

(ଆରବୀ ପାଠ ସହିତ ଓଡ଼ିଆ ଭାଷାନ୍ତର)

ଓଡ଼ିଆ ଭାଷାନ୍ତର :

ଅବଦୁଲ କାଦର ଖାନ୍

ଓ

ଡଃ ମହମ୍ମଦ ଅନ୍ୱାରୁଲ ହକ୍

1989

ISLAM INTERNATIONAL PUBLICATIONS LTD.,

ENGLAND.

*First Published in U.K. in 1989 by*
ISLAM INTERNATIONAL PUBLICATIONS LTD.
*Islamabad,*
*Sheephatch Lane,*
*Tilford Surrey GU10 2AQ*
*and Printed in Great Britain by*
*Richard Clay Ltd, Bungay, Suffolk*



*British Library Cataloguing in Publication Data*
*The Holy Quran: Arabic text with Oriya Translation & explanatory notes.*
*I. Khan. Abdul Qadir, 1938-*
*II. Haque, Mohammad Anwar ul, III. Tafseer e saagheer.*
*Arabic 1989*
*297'. 122*

ISBN 1-85372-269-3

# ପ୍ରକାଶକଙ୍କ ମନ୍ତବ୍ୟ

ଏହି ଅନୁବାଦର ପ୍ରସ୍ତୁତି କାର୍ଯ୍ୟ ଅବଦୁଲ କାଦର ଖାନ୍ ଓ ଡଃ ମହମ୍ମଦ ଅନୱାରୁଲ ହକ୍‌ଙ୍କ ଦ୍ୱାରା ହୋଇଛି ଏବଂ ମୌ : ଶେଖ ଅବଦୁଲ ହଲିମ ଓ ସୟଦ ତାହେର ଅହମଦ କଲିମ ଏହାକୁ ସମୀକ୍ଷା କରିଛନ୍ତି । ଯେଉଁମାନେ ବହୁ ସମୟ ବ୍ୟୟ କରି ଏହି କାର୍ଯ୍ୟ କରିଛନ୍ତି ଏବଂ ପାଣ୍ଡୁଲିପିଟିକୁ ପାଠ କରିବାରେ ଓ ଆବଶ୍ୟକ ସଂଶୋଧନ କରିବାରେ କଠିନ ପରିଶ୍ରମ କରିଛନ୍ତି, ଆମେ ସେ ସମସ୍ତଙ୍କ ଠାରେ କୃତଜ୍ଞ ।

ଅହମଦିୟା ସଂପ୍ରଦାୟର ଦ୍ୱିତୀୟ ଖଲିଫା ହଜରତ ମିର୍ଜା ବଶିରୁଦ୍ଦିନ ମହମୁଦ ଅହମଦ (ଅଲ୍ଲାଃ ତାଙ୍କ ଉପରେ ପ୍ରସନ୍ନ ହୁଅନ୍ତୁ)ଙ୍କ ପ୍ରଣୀତ 'ତଫସିର ସଗିର'ର ଅନୁବାଦକୁ ଭିତ୍ତିକରି ଏହି ଭାଷାନ୍ତର ପ୍ରସ୍ତୁତ କରାଯାଇଥିଲେ ମଧ୍ୟ ସ୍ଥଳ ବିଶେଷରେ ମୌଲବୀ ଶେର ଅଲି, ମଲିକ ଗୁଲାମ ଫରିଦ ଓ ମହମ୍ମଦ ଜଫରୁଲ୍ଲାଃ ଖାନ୍‌ଙ୍କ ଇଂରାଜି ଅନୁବାଦର ସାହାଯ୍ୟ ନିଆଯାଇଛି । ଅଧିକନ୍ତୁ ତଫସିର ସଗିର ଓ ମଲିକ ଗୁଲାମ ଫରିଦଙ୍କ ପ୍ରଣୀତ ପୁସ୍ତକରୁ ପାଦଟୀକାମାନ ସଂଗୃହୀତ ହୋଇ ଏହି ପୁସ୍ତକରେ ସନ୍ନିବିଷ୍ଟ ହୋଇଛି । ବନ୍ଧନୀ ମଧ୍ୟରେ ଥିବା ଶବ୍ଦଗୁଡ଼ିକ ମୂଳ ଆରବୀପାଠକୁ ପ୍ରାଞ୍ଜଳ ଭାବରେ ବୁଝାଇ ଦେବା ପାଇଁ ବ୍ୟବହୃତ ହୋଇଥିଲେ ମଧ୍ୟ ସେଗୁଡ଼ିକ ପବିତ୍ର କୋରାନର ମୂଳ ପାଠରେ ନାହିଁ ।

ଅହମଦିୟା ସଂପ୍ରଦାୟର ଭାରତୀୟ ଶାଖାସମୂହ ଏହି ଅନୁବାଦର ସମସ୍ତ ମୁଦ୍ରଣ ଖର୍ଚ୍ଚ ବହନ କରିଛନ୍ତି । ଆମର ଆନ୍ତରିକ ପ୍ରାର୍ଥନା, ସର୍ବଶକ୍ତିମାନ ଅଲ୍ଲାଃ ସେମାନଙ୍କୁ ପ୍ରଚୁର ପରିମାଣରେ ପୁରସ୍କୃତ କରନ୍ତୁ ଓ ସେମାନଙ୍କ ନିଷ୍ପାପର ତ୍ୟାଗକୁ ଗ୍ରହଣ କରନ୍ତୁ ।

ଓଡ଼ିଆ ଭାଷାଭାଷୀ ଜନସାଧାରଣଙ୍କୁ ଏହି ପବିତ୍ର ଗ୍ରନ୍ଥ ନିବେଦିତ କଲାବେଳେ, ଆମେ ସର୍ବଶକ୍ତିମାନ ଅଲ୍ଲାଃଙ୍କ ଠାରେ ପ୍ରାର୍ଥନା କରୁ ଯେ ଏହା ସେମାନଙ୍କ ପାଇଁ ପଥପ୍ରଦର୍ଶନର ଏକ ଉତ୍ସ ହେଉ ଏବଂ ସେମାନେ ସମଗ୍ର ମାନବଜାତି ପ୍ରତି ପ୍ରେରିତ ଅଲ୍ଲାଃଙ୍କର ଏହି ପବିତ୍ର ବାଣୀରୁ ଉପକୃତ ହୁଅନ୍ତୁ ।

**ପ୍ରକାଶକ**

# ପ୍ରାକ୍‌କଥନ

ପବିତ୍ର କୋରାନ ହେଉଛି ମୁସଲମାନମାନଙ୍କର ପବିତ୍ର ଧର୍ମଗ୍ରନ୍ଥ । ପ୍ରାୟ ୧୪୦୦ ବର୍ଷ ପୂର୍ବେ ଆରବରେ ଅଲ୍ଲାଃ ତାହାଙ୍କର ଭକ୍ତ ଦିବ୍ୟ ବାର୍ତ୍ତାବହ ମହମ୍ମଦ (ତାହାଙ୍କ ଉପରେ ଶାନ୍ତି ବିରାଜିତ ହେଉ)ଙ୍କ ନିକଟରେ ଏହାକୁ ଆକ୍ଷରିକଭାବେ ପ୍ରକଟିତ କରିଥିଲେ ।

ଖ୍ରୀ : ୬୧୦ରେ ଯେତେବେଳେ ଇସଲାମର ବାର୍ତ୍ତାବହଙ୍କ ବୟସ ଥିଲା ପ୍ରାୟ ୪୦ ବର୍ଷ, ସେତେବେଳେ ପ୍ରକଟନର ପ୍ରକ୍ରିୟା ଆରମ୍ଭ ହୋଇଥିଲା ଏବଂ ତାହା ମୋଟାମୋଟି ୨୩ ବର୍ଷ ଧରି ପ୍ରସାର ଲାଭ କରିଥିଲା । ସେକାଳରେ ଆରବରେ ସାକ୍ଷର ସଂଖ୍ୟା ଖୁବ୍ କମ ଥିଲେ ହେଁ ପ୍ରାରମ୍ଭରୁ ପବିତ୍ର କୋରାନକୁ ଲିପିବଦ୍ଧ କରାଯାଉଥିଲା । ଏବଂ ବିଭିନ୍ନ ସମୟରେ ଏହି ପବିତ୍ର କାର୍ଯ୍ୟରେ ଯେଉଁ ଲିପିକାରମାନେ ନିୟୋଜିତ ହୋଇଥିଲେ ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ : ଅବୁବକରଃ, ଜୈଦ ବିନ ସାବିତ, ଜୁବୈର ଇବ୍ନ ଅଲ-ଅୱାମ (ଅଲ୍ଲାଃ ସେମାନଙ୍କ ଉପରେ ପ୍ରସନ୍ନ ହୁଅନ୍ତୁ) । ଏତଦ୍‌ବ୍ୟତୀତ ଦିବ୍ୟ ବାର୍ତ୍ତାବହ (ତାଙ୍କ ଉପରେ ଶାନ୍ତି ବିରାଜିତ ହେଉ)ଙ୍କର ବହୁ ସଂଖ୍ୟକ ସହଚର ପ୍ରକଟିତ ହୋଇଥିବା ପ୍ରକାରେ ପବିତ୍ର କୋରାନକୁ ମୁଖସ୍ଥ କରିଥିଲେ । ଆରବୀୟମାନଙ୍କ ପାଇଁ ବଡ଼ ବଡ଼ ସାହିତ୍ୟିକ କୃତିକୁ ମୁଖସ୍ଥ କରିବା କିଛି ନୂଆ କଥା ନ ଥିଲା । ବସ୍ତୁତଃ ସେମାନଙ୍କ ଅସାଧାରଣ ସ୍ମରଣଶକ୍ତି ପାଇଁ ସେମାନେ ଗର୍ବ କରୁଥିଲେ ଏବଂ ଏ କ୍ଷେତ୍ରରେ ସେମାନଙ୍କୁ ଅନୁପମ ମନେ କରାଯାଉଥିଲା । ସେମାନଙ୍କ ମଧ୍ୟରୁ କେତେକ ବିଭିନ୍ନ ଆରବୀୟ କବିଙ୍କର ୧,୦୦,୦୦୦ ରୁ ଊର୍ଦ୍ଧ୍ୱ ପଙ୍‌କ୍ତି ମୁଖସ୍ଥ କରିଥିବାର ଜଣାଅଛି । ଏଣୁ, ଆରମ୍ଭରୁ ଶେଷ ଯାଏ ପବିତ୍ର କୋରାନକୁ ସଂରକ୍ଷଣ କରାଯିବାର ଦ୍ୱୈତପଦ୍ଧତି ବଜାୟ ରଖାଯାଇଥିଲା, ଯାହା ଫଳରେ ପବିତ୍ର କୋରାନର ମୂଳ ଲିପି ଅପରିବର୍ତ୍ତିତ ଓ ଅକ୍ଷୁଣ୍ଣ ରହିଲା । ବିଭିନ୍ନ ପାଶ୍ଚାତ୍ୟ ପଣ୍ଡିତଙ୍କ ଦ୍ୱାରା ଏହାକୁ ଅନ୍ୟଥା ପ୍ରମାଣିତ କରିବା ଲାଗି ବହୁ ଉଦ୍ୟମ କରାଯାଇଥିଲେ ମଧ୍ୟ ତାହା ବ୍ୟର୍ଥ ହୋଇଥିଲା । ସମାଲୋଚନାର କଠୋରତମ ଉପାୟମାନ ପ୍ରୟୋଗ କରି ମଧ୍ୟ, ସମାଲୋଚକମାନଙ୍କୁ ଶେଷରେ ସ୍ୱୀକାର କରିବାକୁ ପଡ଼ିଲା ଯେ ଆଜି ଆମେ ଯେଉଁ ପବିତ୍ର କୋରାନକୁ ଦେଖୁଛୁ ତାହା ଅବିକଳ ଭାବେ ଦିବ୍ୟ ଅବତାରଙ୍କ ଦ୍ୱାରା ତାଙ୍କ ସାଥୀମାନଙ୍କୁ ଦିଆଯାଇଥିବା ସେହି ଦିବ୍ୟ ପ୍ରକଟନ ସହିତ ସମାନ ।

ସାର ଉଇଲିୟମ ମୁର ତାଙ୍କ **Life of Mahomet** (ମହମ୍ମଦଙ୍କ ଜୀବନୀ) ପୁସ୍ତକ, ଲଣ୍ଡନ ୧୯୧୨, ଗ୍ରନ୍ଥଖଣ୍ଡ ୧, ପୃଷ୍ଠା **xxii-xxiii**ରେ ଲେଖିଛନ୍ତି : ମହମ୍ମଦଙ୍କ ମୃତ୍ୟୁର ୫୦ ବର୍ଷ ଭିତରେ ବିରୋଧୀ ଓ ଅନିଷ୍ଟକାରୀ ଗୋଷ୍ଠୀ ଉସମାନଙ୍କ ମୃତ୍ୟୁରେ ହିଁ ଉତ୍‌ଥିତ ହୋଇ ସେବେଠାରୁ ମୁସଲିମଜଗତକୁ ଖିନ୍‌ଭିନ୍ କରି ଦେଇଛନ୍ତି । ଏହା ସତ୍ତ୍ୱେ କେବଳ ଗୋଟିଏ କୋରାନ ସେମାନଙ୍କ ମଧ୍ୟରେ ପ୍ରଚଳିତ ହୋଇ ରହିଛି; ଏବଂ ଅଦ୍ୟାବଧି ପ୍ରତ୍ୟେକ ଯୁଗରେ ସମସ୍ତଙ୍କ ଦ୍ୱାରା ସେହି ଏକା ଧର୍ମଗ୍ରନ୍ଥର ସର୍ବସମ୍ମତ ବ୍ୟବହାର ହିଁ ଏହାର ଅକାଟ୍ୟ ପ୍ରମାଣ ଯେ ଆମ ଆଗରେ ଥିବା ସାମ୍ପ୍ରତିକ ପାଠ୍ୟ ହେଉଛି ସେଇ ହତଭାଗ୍ୟ ଖଲିଫାଙ୍କ ଆଦେଶକ୍ରମେ ପ୍ରସ୍ତୁତ ହୋଇଥିବା ପାଠ୍ୟ । ସମ୍ଭବତଃ ପୃଥିବୀର ଏପରି ଅନ୍ୟ କୌଣସି କୃତି ନାହିଁ ଯାହାକି ବାର ଶତାବ୍ଦୀ ବ୍ୟାପି ଏପରି ଏକ ନିଖୁଣ ପାଠ୍ୟ ହୋଇ ରହିପାରିଛି ।

ଇ.ଏମ୍.ହ୍ୱେରି ତାଙ୍କ **A Comprehensive commentary of the Quran** (କୋରାନର ସୁବୋଧ୍ୟ ଭାଷ୍ୟ) ଲଣ୍ଡନ, ୧୮୯୬, ପୃଷ୍ଠା ୩୪୯, ଗ୍ରନ୍ଥଖଣ୍ଡରେ ଲେଖିଛନ୍ତି :

ପୁରାତନ କାଳର ସମସ୍ତ କୃତି ମଧ୍ୟରୁ କୋରାନ୍‌ର ପାଠ୍ୟ ହେଉଛି ସର୍ବାଧିକ ବିଶୁଦ୍ଧ ।

ଲେନପୁଲ ତାଙ୍କ **Selections from Kuran** (କୋରାନ ସଞ୍ଚୟନ), ଟର୍ଣ୍ଣବାର, ଲଣ୍ଡନ, ୧୮୭୯, ମୁଖବନ୍ଧର ତୃତୀୟ ପୃଷ୍ଠାରେ ଲେଖିଛନ୍ତି : କୋରାନର ମୌଳିକତା ସମ୍ବନ୍ଧରେ ଯେ କୌଣସି ସନ୍ଦେହ ନାହିଁ, ଏହା ହିଁ କୋରାନର ଅସୀମ ବୈଶିଷ୍ଟ୍ୟ । ପୂର୍ଣ୍ଣ ଆସ୍ଥା ରଖି ଆମେ ଏହାର ଯେ କୌଣସି ଶବ୍ଦକୁ ବର୍ତ୍ତମାନ ପାଠ କଲେ ମଧ୍ୟ ତାହା ପାଖାପାଖି ତେର ଶହ ବର୍ଷ ଭିତରେ ଅପରିବର୍ତ୍ତିତ ରହିଛି ।

ବୋସୱାର୍ଥ ସ୍ମିଥ ତାଙ୍କ **Mohammad and Mohammedanısm** (ମହମ୍ମଦ ଆଣ୍ଡ ମହମ୍ମଡାନିଜିମ୍)

ପୁସ୍ତକ, ଲଣ୍ଡନ, ୧୮୭୪, ପୃଷ୍ଠା ୨୨ରେ ଲେଖିଛନ୍ତି :

ଏହା ସମସ୍ତ ଯୁକ୍ତିଯୁକ୍ତ ସନ୍ଦେହର ବାହାରେ ଯେ ମହମ୍ମଦଙ୍କର ଅବିକଳ ଶବ୍ଦମାନ ଆମେ ଏବେ ବି କୋରାନରେ ପାଉଛୁ, ଯହିଁରେ କିଛି ମିଶା ଯାଇ ନାହିଁ କି ଯହିଁରୁ କିଛି କାଟି ଦିଆଯାଇ ନାହିଁ ।

ଏବଂ ପରିଶେଷରେ ପ୍ରଫେସର ଟି.ଡବ୍ଲ୍ୟୁ ଆର୍‌ନୋଲଡ ତାଙ୍କ **Islamic Faith** (ଇସଲାମୀୟ ଧର୍ମବିଶ୍ୱାସ) ପୁସ୍ତକ, ଲଣ୍ଡନ, ପୃଷ୍ଠା-୯ ରେ ଲେଖିଛନ୍ତି :

ଏହି ସମାଲୋଚନା ପୁସ୍ତକର ପାଠ ସାରତଃ ସ୍ୱୟଂ ମହମ୍ମଦଙ୍କର ବାସ୍ତବ ଉକ୍ତିଗୁଡ଼ିକର ଅନୁରୂପ ଅଟେ ।

ଏହି ଅଲୌକିକ ପୁସ୍ତକର ସମସ୍ତ ମୁଖ୍ୟ ବୈଶିଷ୍ଟ୍ୟକୁ ଆଲୋଚନା କରିବା ସମ୍ଭବ ନ ହେଲେ ମଧ୍ୟ, ଇସଲାମ ଧର୍ମ ସମ୍ବନ୍ଧରେ ଜ୍ଞାନ ନ ଥିବା ପାଠକମାନଙ୍କର ହିତ ଦୃଷ୍ଟିରୁ ଏଠାରେ କେତେକ ଉଲ୍ଲେଖନୀୟ ବୈଶିଷ୍ଟ୍ୟର ବର୍ଣ୍ଣନା ଅସଙ୍ଗତ ହେବ ନାହିଁ ।

ପବିତ୍ର କୋରାନ କେବଳ ଆରବୀୟମାନଙ୍କୁ ସମ୍ବୋଧନ କରି କହେ ନାହିଁ ବରଂ ଏହା ସମସ୍ତ ମାନବ ସମାଜକୁ କହେ । ଏହା ଦିବ୍ୟ ବାର୍ତ୍ତାବହ ମହମ୍ମଦଙ୍କୁ ସମଗ୍ର ପୃଥିବୀର ବାର୍ତ୍ତାବହ ବୋଲି ଘୋଷଣା କରେ (ତାଙ୍କ ଉପରେ ଶାନ୍ତି ବିରାଜିତ ହେଉ) । ଏହା ନିଜକୁ ଅନ୍ତିମ ଧର୍ମବିଧାନ ବୋଲି ଦାବି କରେ । ମାନବ ସମାଜର ମାର୍ଗପ୍ରଦର୍ଶନ ନିମନ୍ତେ ଏହା ଏକ ପରିପୂର୍ଣ୍ଣ ଗ୍ରନ୍ଥ ।

ଏହା ହେଉଛି ଏକମାତ୍ର ପବିତ୍ର ଗ୍ରନ୍ଥ, ଯାହା ବାର୍ତ୍ତାବହଙ୍କ ଆଗମନର ପରମ୍ପରାକୁ ଏକ ସାର୍ବଜନିକ ଘଟଣା ବୋଲି ସ୍ୱୀକାର କରେ ଏବଂ ବାରମ୍ବାର ଘୋଷଣା କରେ ଯେ ମାନବ ଇତିହାସରେ କେବେ ନା କେବେ ପୃଥିବୀର ବିଭିନ୍ନ ଜାତି ଓ ଦେଶର ଲୋକମାନେ ଦିବ୍ୟ ପ୍ରକଟନ ଲାଭ କରି ଆସୁଛନ୍ତି । ଏଣୁ ପବିତ୍ର କୋରାନ ଘୋଷଣା କରେ ଯେ :

ଏବଂ ଏପରି କୌଣସି ସଂପ୍ରଦାୟ ନାହିଁ ଯାହାଙ୍କ ନିକଟକୁ କୌଣସି ସଚେତକ ଆସି ନାହାନ୍ତି ।

(୩୫:୨୫)

ଏବଂ ବାସ୍ତବରେ ଆମେ ପ୍ରତ୍ୟେକ ଜାତିରେ ଏହି ଆଦେଶ ସହିତ ରସୁଲ ପ୍ରେରଣ କରିଅଛୁ ଯେ ତୁମେମାନେ ଅଲ୍ଲାଙ୍କର ଉପାସନା କର ଓ ପ୍ରତ୍ୟେକ ସୀମାଲଂଘନକାରୀଠାରୁ ଦୂରେଇ ରୁହ ।

(୧୬:୩୭)

ଏହିପରିଭାବେ ପୁରାତନ ଓ ନୂତନ ସୁସମାଚାରରେ ଉଲ୍ଲେଖ ଥିବା ବାର୍ତ୍ତାବହମାନଙ୍କ ମଧ୍ୟରେ ହିଁ ଯେ ବାର୍ତ୍ତାବହପଦ ସୀମିତ ଅଟେ, ପବିତ୍ର କୋରାନ ଏହି ମତବାଦକୁ ଅସ୍ୱୀକାର କରେ । ପବିତ୍ର କୋରାନ ଏପରି ଏକ ସାର୍ବଜନିକ ପ୍ରଭୁଙ୍କର ଭାବଧାରାକୁ ପ୍ରବର୍ତ୍ତିତ କରେ ଯେ କି ସତ୍, ଦୟାଳୁ ଓ ହିତସାଧକ ଏବଂ ଯେ କୌଣସି ଦେଶ ଓ ଜାତିର ହୁଅନ୍ତୁ ନା କାହିଁକି ସେ ବ୍ୟବହାରରେ ସକଳ ଜୀବଙ୍କ ପ୍ରତି ସମାନ ।

ଯେଉଁ ପ୍ରଭୁଙ୍କୁ ଭାଗ ଭାଗ କରି ହେବ ନାହିଁ କି ବହୁଗୁଣିତ କରି ହେବ ନାହିଁ, ସେହି ପ୍ରଭୁଙ୍କର ଏକତ୍ୱ ଉପରେ ଏହି ଗ୍ରନ୍ଥରେ ସର୍ବାଧିକ ଗୁରୁତ୍ୱ ଆରୋପ କରାଯାଇଛି । ପ୍ରଭୁ ଓ ଅନ୍ୟ ସମସ୍ତ ପ୍ରକାରର ସ୍ଥିତି ମଧ୍ୟରେ କେବଳ ଏକମାତ୍ର ସମ୍ପର୍କ ଅର୍ଥାତ୍ ସ୍ରଷ୍ଟା ଓ ସୃଷ୍ଟିର ସମ୍ପର୍କକୁ ପବିତ୍ର କୋରାନରେ ସ୍ୱୀକାର କରାଯାଇଛି । ଯେ କୌଣସି ପ୍ରକାରରେ ହେଉ ନା କାହିଁକି ତାହାଙ୍କ ମହିମାରେ ଆଉ କାହାରି ଭାଗ ନାହିଁ । ତ୍ରିତ୍ୱବାଦ ଓ ପୁତ୍ର-ବାଦର ଭାବଧାରାକୁ ପବିତ୍ର କୋରାନରେ ନିର୍ଦ୍ଦିଷ୍ଟଭାବରେ ଅସ୍ୱୀକାର କରାଯାଇଛି । ପ୍ରଭୁଙ୍କର ପତି ବା ପତ୍ନୀ ନାହାନ୍ତି କି ସନ୍ତାନସନ୍ତତି ନାହାନ୍ତି ।

ତୁମେ କହୁଥାଅ, ସେ ହିଁ ଅଲ୍ଲାହ, ଯେ କି ଅଦ୍ୱିତୀୟ । ସେ ହିଁ ଅଲ୍ଲାହ ଯାହାଙ୍କ ଉପରେ ସମସ୍ତେ ନିର୍ଭରଶୀଳ ।
ସେ କାହାକୁ ପ୍ରସବ କରି ନାହାନ୍ତି କି ତାହାଙ୍କୁ ପ୍ରସବ କରା ଯାଇ ନାହିଁ । ଏବଂ କେହି ତାହାଙ୍କର ସମକକ୍ଷ ନୁହନ୍ତି ।

(୧୧୨:୨–୫)

ପବିତ୍ର କୋରାନ ୬ଟି ମୌଳିକ ବିଶ୍ୱାସ ସମ୍ପର୍କରେ ବର୍ଣ୍ଣନା କରେ, ଅର୍ଥାତ୍ ଅଲ୍ଲାହ, ଦେବଦୂତଗଣ, ଧର୍ମଗ୍ରନ୍ଥସମୂହ, ବାର୍ତ୍ତାବହଗଣ, ପୁନରୁତ୍ଥାନ ଓ ବିଗ୍ରର ଦିବସ ଏବଂ ପ୍ରଭୁଙ୍କର ନିଷ୍ପତ୍ତି, ଯାହାକି ପ୍ରତ୍ୟେକ ବିଷୟକୁ ପରିବେଷ୍ଟିତ କରେ ତାହା, ଉପରେ ବିଶ୍ୱାସ ।

ପବିତ୍ର କୋରାନ ଉତ୍ତରାଧିକାର ସୂତ୍ରେ ପ୍ରାପ୍ତ ପାପ ସମ୍ବନ୍ଧିତ ମତବାଦକୁ ଅସ୍ୱୀକାର କରେ ଓ ଦାବି କରେ ଯେ ପ୍ରତ୍ୟେକ ବ୍ୟକ୍ତି କୌଣସି ପ୍ରକାର ଆଧ୍ୟାତ୍ମିକ କଳଙ୍କ ବହନ ନ କରି ଜନ୍ମ ଗ୍ରହଣ କରେ । ଅଲ୍ଲାହ ଯେ କେବଳ ସତ୍, ତା'ନୁହେଁ ବରଂ ସେ ମଧ୍ୟ ଅତ୍ୟନ୍ତ କରୁଣାମୟ, କ୍ଷମାଶୀଳ ଓ ହିତସାଧକ । ସେ ସବୁରି ମାଲିକ, ଯେ କି ପ୍ରସନ୍ନ ହେଲେ ପାପକୁ କ୍ଷମା କରି ପାରିବେ । ଯଦି ଅଲ୍ଲାହ ପାପୀର ଅନୁତାପକୁ ଗ୍ରହଣ କରନ୍ତି ତେବେ ସେହି ପାପୀର ପାପକୁ ତା'ନିଜ ଅନୁତାପ ଅଶ୍ରୁରେ ପରିଷ୍କାର କରି ଧୋଇ ଦିଆଯାଇ ପାରିବ । ପବିତ୍ର କୋରାନ ଅନୁସାରେ ମଣିଷର ନିଜ ଭିତରେ ଅନୁତାପ କରିବା, ନିଜକୁ ସଂଶୋଧନ କରିବା ଏବଂ ସକଳ ନିଷ୍ଠାର ସହିତ ସ୍ରଷ୍ଟାଙ୍କ ନିକଟକୁ ଫେରିବା ଲାଗି ସଂକଳ୍ପ କରିବା ମୁହୂର୍ତ୍ତରେ ହିଁ ପରିତ୍ରାଣ ନିହିତ । ଯଦି ଅଲ୍ଲାହ ସେପରି ସଂକଳ୍ପକୁ ଗ୍ରହଣ କରନ୍ତି ତେବେ ତାହା ପ୍ରତ୍ୟେକ ବ୍ୟକ୍ତିକୁ ତା'ର ପୂର୍ବକୃତ ପାପ ନିର୍ବିଶେଷରେ ଏକ ନୂତନ ଆଧ୍ୟାତ୍ମିକ ଜନ୍ମ ଦିଏ ।

ପବିତ୍ର କୋରାନ ଅନୁସାରେ ଯୀଶୁଖ୍ରୀଷ୍ଟ (ତାହାଙ୍କ ଉପରେ ଶାନ୍ତି ବିରାଜିତ ହେଉ)ଙ୍କର ପଦମର୍ଯ୍ୟାଦା ଜଣେ ଉଚ୍ଚମାନର ତଥା ସମୁନ୍ନତ ସ୍ଥାନର ବାର୍ତ୍ତାବହଙ୍କ ପଦମର୍ଯ୍ୟାଦାର ଅନୁରୂପ ଅଟେ । ଯୀଶୁଖ୍ରୀଷ୍ଟ ଯେ ଆକ୍ଷରିକ ଅର୍ଥରେ ଅଲ୍ଲାହଙ୍କର ପୁତ୍ର ଏବଂ ସେ ମାନବ ଜାତିର ପରି-ତ୍ରାଣ ପାଇଁ ଯେ କ୍ରୁଶରେ ମରିଥିଲେ, ଏହା ପବିତ୍ର କୋରାନ ଗ୍ରହଣ କରେ ନାହିଁ । ଯୀଶୁଖ୍ରୀଷ୍ଟଙ୍କୁ ଯେ ମୃତ୍ୟୁ ପର୍ଯ୍ୟନ୍ତ କ୍ରୁଶବିଦ୍ଧ କରାଯାଇ ରଖାଯାଇଥିଲା, ଖ୍ରୀଷ୍ଟିୟାନ ଓ ଇହୁଦୀମାନଙ୍କର ଏହି ଦାବୀକୁ କୋରାନ ନିର୍ଦ୍ଦିଷ୍ଟ ଭାବେ ପ୍ରତ୍ୟାଖ୍ୟାନ କରେ । ପବିତ୍ର କୋରାନ ଅନୁଯାୟୀ, ଯୀଶୁଙ୍କୁ ତାଙ୍କ ଶତ୍ରୁମାନେ କ୍ରୁଶବିଦ୍ଧ କରି ମାରିବାରେ ବିଫଳ ହେଲେ । ଯେତେବେଳେ ତାଙ୍କ ଶରୀରକୁ ତଳକୁ ଓହ୍ଲାଇ ଅଣାଗଲା ସେତେବେଳେ ସେ ମଲାଭଳି ଅଚେତ ଅବସ୍ଥାରେ ଥିଲେ । ତେଣୁ କ୍ରୁଶରେ ତାଙ୍କର ତଥାକଥିତ ମୃତ୍ୟୁ ନେଇ ଏହିପରି ସବୁ କଳ୍ପନା ଓ ଭ୍ରମ । ଘଟଣାର ବୈଶିଷ୍ଟ୍ୟ ହେଉଛି, କ୍ରୁଶବିଦ୍ଧ ହେବା ପରେ ପରେ ଇହୁଦୀମାନେ ଗଭର୍ଣ୍ଣର ପୋଣ୍ଟିଅସ ପାଇଲେଟଙ୍କ ପାଖକୁ ଗଲେ ଏବଂ ଯୀଶୁଙ୍କ ଶରୀର ସେମାନଙ୍କୁ ଦେଇଦେବାକୁ ଅନୁରୋଧ କଲେ । ସେମାନେ ନିର୍ଦ୍ଦିଷ୍ଟଭାବେ ନିଜ ଆଶଙ୍କା ପ୍ରକାଶ କଲେ ଯେ, କ୍ରୁଶବିଦ୍ଧ ଅବସ୍ଥାରୁ ଯୀଶୁ ବଞ୍ଚିଯାଇ ପାରନ୍ତି ଏବଂ ପରେ ଦାବି କରି ପାରନ୍ତି ଯେ, ସେ ମୃତ୍ୟୁଲୋକରୁ ଉଠି ଆସିଛନ୍ତି । ଯୀଶୁଖ୍ରୀଷ୍ଟ ଯେ କୁମାରୀ-ସମ୍ଭୂତ ଏହି ତଥ୍ୟକୁ ପବିତ୍ର କୋରାନ ସମର୍ଥନ କରେ । ବିଭିନ୍ନ ଅଭିଯୋଗ କରାଯାଇ ମରିୟମ (ବା ମେରି)ଙ୍କୁ ଯେପରି ସନ୍ଦେହାତ୍ମକ ଚରିତ୍ରସମ୍ପନ୍ନା ନାରୀ ଭାବରେ ଚିତ୍ରଣ କରାଯାଇଛି, ପବିତ୍ର କୋରାନ ତାଙ୍କୁ ସେ ସବୁ ଅଭିଯୋଗରୁ ଦୋଷମୁକ୍ତ କରେ ।

ଅନ୍ୟାନ୍ୟ ଧର୍ମ ପ୍ରତି ଆଭିମୁଖ୍ୟ ସଂକ୍ରାନ୍ତରେ ସମସ୍ତ ଧର୍ମଗ୍ରନ୍ଥ ମଧ୍ୟରେ ପବିତ୍ର କୋରାନ ଅନନ୍ୟ । ବାଇବେଲ ବର୍ଣ୍ଣିତ ବାର୍ତ୍ତାବହମାନଙ୍କୁ ଯେ ଏହା ସ୍ୱୀକାର କରେ ତାହା ନୁହେଁ, ବରଂ ଏକ ମୌଳିକ ବିଶ୍ୱାସ ସ୍ୱରୂପ ଯେବେ ଯେବେ ବାର୍ତ୍ତାବହମାନେ ଆବିର୍ଭୂତ ହୋଇଛନ୍ତି ସେ ସମସ୍ତଙ୍କୁ ବିଶ୍ୱାସ କରିବା ଲାଗି ମଧ୍ୟ ଏହା ମୁସଲମାନମାନଙ୍କୁ ନିର୍ଦ୍ଦେଶ ଦିଏ ।

ଯହିଁରେ ସ୍ଥାୟୀ ଆଦେଶାବଳୀ ରହିଥିବ ।

(୯୮:୪)

ପବିତ୍ର କୋରାନ ଅନୁସାରେ ସମସ୍ତ ଧର୍ମର ମୁଖ୍ୟ ବାର୍ତ୍ତା ମୂଳତଃ ସମାନ ଥିଲା ଅର୍ଥାତ୍ ଏକ ପ୍ରଭୁଙ୍କଠାରେ ବିଶ୍ୱାସ, ସମସ୍ତ ନିଷ୍ଠାର ସହିତ ତାଙ୍କର ଉପାସନା ଓ ତାଙ୍କ ସନ୍ତୁଷ୍ଟି ଲାଭ ନିମିତ୍ତ ସତ୍ ଅଭିପ୍ରାୟରେ ବ୍ୟୟ ।

ଏହି ମୌଳିକ ନୀତିଗୁଡ଼ିକ ବ୍ୟତୀତ, ବିଭିନ୍ନ ଧର୍ମର ନୈତିକ ଓ ସାମାଜିକ ଶିକ୍ଷାମାନ ପୃଥିବୀର ବିଭିନ୍ନ ଭାଗରେ ବିଭିନ୍ନ ସମୟରେ ପୃଥକ୍ ପୃଥକ୍ ଅବସ୍ଥା ଓ ଆବଶ୍ୟକତାଭେଦରେ ପୃଥକ୍ ହୋଇପାରେ । ଏହା ମଧ୍ୟ ଉଲ୍ଲେଖ କରାଯାଇ ପାରେ ଯେ ଅନ୍ୟ ଅନେକ ଗ୍ରନ୍ଥ ପରି ପୁରାତନ ସୁସମାଗ୍ରର ଓ ନୂତନ ସୁସମାଗ୍ରର **(Torah and the Gospels)**ଗୁଡ଼ିକୁ ପ୍ରଭୁଙ୍କର ପ୍ରକଟନ ବୋଲି ସ୍ୱୀକାର କରାଗଲେ ହେଁ ପବିତ୍ର କୋରାନ କହେ ଯେ ସେ ସବୁ ପୂରାପୂରି ଅତୁଟ ହୋଇ ରହି ନାହିଁ । ସମୟକ୍ରମେ ଦୁର୍ଭାଗ୍ୟବଶତଃ ମଣିଷ ଏହି ପବିତ୍ର ଗ୍ରନ୍ଥଗୁଡ଼ିକୁ ପ୍ରକ୍ଷିପ୍ତ ଓ ବିକୃତ କରି ଦେଇଛି । ଏହି ମୂଳ ପବିତ୍ର ଗ୍ରନ୍ଥଗୁଡ଼ିକର ଅବଶେଷଗୁଡ଼ିକରେ ଆମେ ଆଜି ଯେଉଁ ସବୁ ଅସାମଞ୍ଜସତା ଓ ବିରୋଧାତ୍ମକତା ଦେଖୁଛୁ, ପବିତ୍ର କୋରାନ ସେ ସବୁକୁ ପ୍ରକ୍ଷିପ୍ତି ଓ ବିକୃତିର ବିଷୟ ବୋଲି ବୁଝାଇ ଦେଇଛି ।

ମାନବ ସୃଷ୍ଟିର ଚରମ ଉଦ୍ଦେଶ୍ୟ ହେଲା ପ୍ରଭୁଙ୍କର ଉପାସନା । କୋରାନର ଶିକ୍ଷା ଅନୁସାରେ ତାଙ୍କ ସମକ୍ଷରେ କେବଳ ନତମସ୍ତକ ହେବା ଓ ସାଷ୍ଟାଙ୍ଗ ପ୍ରଣିପାତ କରିବା ଏହାର ଅର୍ଥ ନୁହେଁ । ତାଙ୍କ ଗୁଣାବଳୀକୁ ଗ୍ରହଣ କରି ତାଙ୍କ ଆଲୋକ ଓ ସଦ୍‌ଗୁଣଗୁଡ଼ିକୁ ପ୍ରକାଶିତ କରି ପୃଥିବୀରେ ତାଙ୍କର ପ୍ରତିନିଧି ହୋଇ ରହିବା ମଧ୍ୟ ତା'ର ଅର୍ଥ । ବିଶ୍ୱରେ ମଣିଷ ତାଙ୍କର ସର୍ବଶ୍ରେଷ୍ଠ ସୃଷ୍ଟି ଏବଂ ସମସ୍ତ ସୃଷ୍ଟ ବସ୍ତୁ ମଧ୍ୟରେ ତା'ର ସ୍ଥାନ, ଗୌରବ ଓ ସମ୍ମାନ ସଭିଙ୍କ ଉପରେ । ସୃଷ୍ଟିର ଅନ୍ୟମାନଙ୍କ ତୁଳନାରେ ତା'ର ସ୍ଥାନ ଉର୍ଦ୍ଧ୍ୱରେ ହେଲେ ହେଁ, ମଣିଷ ମଣିଷ ଭିତରେ ସମାଜବିରୋଧୀ ଶ୍ରେଷ୍ଠତା ଚିନ୍ତାଧାରାକୁ ପବିତ୍ର କୋରାନ ପ୍ରତ୍ୟାଖ୍ୟାନ କରେ । ଯଦି ସେ ଗୁଣରେ ଓ ଧର୍ମଭୀରୁତାରେ ଅନ୍ୟକୁ ଅତିକ୍ରମ କରିଯିବ, ତେବେ ସେ ନିଜ ସ୍ରଷ୍ଟାଙ୍କ ଦୃଷ୍ଟିରେ ପାହ୍ୟା ଓ ପଦରେ ଉଚ୍ଚତର ବୋଲି ବିବେଚିତ ହେବ ।

ପବିତ୍ର କୋରାନର ଶିକ୍ଷା ଏକ ପୂର୍ଣ୍ଣାଙ୍ଗ ଧାର୍ମିକ, ସାମାଜିକ, ଅର୍ଥନୈତିକ ଓ ନୈତିକ ଧାରା ହିସାବରେ ମଣିଷର ସ୍ୱାର୍ଥ ଓ କାର୍ଯ୍ୟାବଳୀର ସମସ୍ତ ସ୍ତରକୁ ଆଚ୍ଛାଦିତ କରେ, ଯାହାକି ସାର୍ବଜନୀନଭାବରେ କାର୍ଯ୍ୟରେ ପରିଣତ ହୋଇପାରିବ । ଯଦି ପରମ ନୈତିକ ମୂଲ୍ୟବୋଧ ପ୍ରତି ଦୃଢ଼ତା ଅବଲମ୍ବନ କରାଯାଏ ତେବେ କୌଣସି ଧାରା, ତାହା ଯେତେ ଉତ୍ତମ ହୋଇଥାଉ ପଛେ, କାର୍ଯ୍ୟକାରୀ ହୋଇ ପାରିବ ନାହିଁ ବୋଲି ଏହା ଦୃଢ଼ତା ସହକାରେ କହେ ।

ପବିତ୍ର କୋରାନ ମଣିଷ ମଣିଷ ଭିତରେ ସବୁ ପ୍ରକାର ସଂଘର୍ଷକୁ ପରିହାର କରିବାକୁ ଯାଇ ଏବଂ ସାମାଜିକ ସ୍ଥିତିରେ ଏକ ସର୍ବାଙ୍ଗସୁନ୍ଦର ସଙ୍ଗତି ଆଣିବାକୁ ଯାଇ ସମାଜର ଭିନ୍ନ ଭିନ୍ନ ବ୍ୟକ୍ତି ଓ ବିଭାଗର ଅଧିକାର ତଥା ନୈତିକ କର୍ତ୍ତବ୍ୟଗୁଡ଼ିକୁ ପରିଷ୍କାର ଭାବରେ ବର୍ଣ୍ଣନା କରିଛି । ଏହିପରି ଭାବେ ଏହା ଶ୍ରେଣୀ ସଂଘର୍ଷକୁ ଓ ମଣିଷ ଦ୍ୱାରା ମଣିଷର ଯେ କୌଣସି ପ୍ରକାର ଶୋଷଣର ମନୋଭାବକୁ ପରିହାର କରିଛି ।

ନାରୀମାନଙ୍କ ଅଧିକାରକୁ ସାବ୍ୟସ୍ତ କରିବାରେ ଏବଂ ସେମାନଙ୍କୁ ଜନସମାଜରେ ଏକ ସମ୍ମାନଜନକ ପଦମର୍ଯ୍ୟାଦା ଦେବାରେ, ପବିତ୍ର କୋରାନ ସମସ୍ତ ଦିବ୍ୟ ଗ୍ରନ୍ଥମାନଙ୍କ ମଧ୍ୟରେ ବୈଶିଷ୍ଟ୍ୟ ଲାଭ କରିଛି ।

ପବିତ୍ର କୋରାନ ମଧ୍ୟ ଏକମାତ୍ର ଦିବ୍ୟ ଗ୍ରନ୍ଥ ଯାହା ଉତ୍ତରାଧିକାର ସୂତ୍ରେ ନାରୀମାନଙ୍କ ଅଧିକାରକୁ ସୁରକ୍ଷା କରିବା ଭଳି ଉତ୍ତରାଧିକାର ଆଇନକୁ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛି ।

କୋରାନର ଶିକ୍ଷାର ଆଉ ଏକ ମହତ୍ତ୍ୱପୂର୍ଣ୍ଣ ଗୁଣ ହେଉଛି ବିବେକ ସ୍ୱାଧୀନତା । ବିଶ୍ୱାସ କରିବା ଲାଗି ବା ପ୍ରତ୍ୟାଖ୍ୟାନ କରିବା ଲାଗି ଅଲ୍ଲାହ ମଣିଷକୁ ସ୍ୱାଧୀନ ଅଭିରୁଚି ଦେଇଛନ୍ତି ଏବଂ ଧର୍ମରେ ବାଧ୍ୟବାଧକତା ପ୍ରୟୋଗ କରିବା ଲାଗି କାହାରିକୁ ଅନୁମତି ଦିଆଯାଇ ନାହିଁ । ଧର୍ମବିଶ୍ୱାସ ସଂକ୍ରାନ୍ତରେ ମଣିଷ ସିଧାସଳଖ ପ୍ରଭୁଙ୍କ ଠାରେ ଉତ୍ତରଦାୟୀ । ଜୋର ଜବରଦସ୍ତି ତା' ଉପରେ କୌଣସି ଆଦର୍ଶକୁ ଲଦି ଦିଆଯାଇ ପାରିବ ନାହିଁ କିମ୍ବା ସେ ଯାହା ବିଶ୍ୱାସ କରେ ତାକୁ ପରିତ୍ୟାଗ କରିବା ପାଇଁ ବାଧ୍ୟ କରାଯାଇ ପାରିବ ନାହିଁ । ମଣିଷର ଚିନ୍ତାଧାରାରେ ପରିବର୍ତ୍ତନ ଆଣିବା ପାଇଁ ପ୍ରବର୍ତ୍ତନା ଓ ଯୁକ୍ତି ହେଉଛି ଏକମାତ୍ର ଅନୁମୋଦନୀୟ ପନ୍ଥା ।

ଧର୍ମ ସଂକ୍ରାନ୍ତରେ କୌଣସି ପ୍ରକାର ବାଧ୍ୟବାଧକତା ନାହିଁ ।

(୨ :୨୫୭)

ଯଦ୍ୱାରା ଯେଉଁ ବ୍ୟକ୍ତି ପ୍ରମାଣ ଦ୍ୱାରା ନିହତ ହୋଇଅଛି ସେ ନିହତ
ହେଉ ଏବଂ ଯେଉଁ ବ୍ୟକ୍ତି ପ୍ରମାଣ ଦ୍ୱାରା ଜୀବିତ ହୋଇଅଛି ସେ ଜୀବିତ ହେଉ ।

(୮ :୪୩)

ମଣିଷର ଆତ୍ମା ମୃତ୍ୟୁ ପରେ ଏକ ନୂତନ ପ୍ରକାରର ସ୍ଥିତି ଲାଭ କରିବା ବିଷୟରେ ପବିତ୍ର କୋରାନ ଶିକ୍ଷା ଦିଏ । ଜଣକର ଆତ୍ମାର ଭାଗ୍ୟ ଓ ଭବିତବ୍ୟତା ତା' ନିଜର କର୍ମ ଓ ଆଚରଣ ଅନୁସାରେ ନିର୍ଦ୍ଧାରିତ ହୁଏ । ପ୍ରତ୍ୟେକ ବ୍ୟକ୍ତିର ଭଲ ବା ମନ୍ଦ କାର୍ଯ୍ୟ ମୃତ୍ୟୁ ପରେ ତା'ର ଆଗାମୀ ଜୀବନର ଠିକଣା ସ୍ଥିର କରେ ।

ପବିତ୍ରକୋରାନ ଦାବୀ କରେ ଯେ ଇସଲାମ ହେଉଛି ଆଲୋକର ବାର୍ତ୍ତା, ଯାହା ଏକ ଦୀର୍ଘ ସଂଘର୍ଷ ପରେ ପରିଶେଷରେ ଅନ୍ଧକାରକୁ ହଟେଇ ପାରିବ । (ପବିତ୍ର କୋରାନରେ ଭବିଷ୍ୟତ ବାଣୀ କରା ହୋଇଛି ଯେ ପରବର୍ତ୍ତୀ କାଳରେ ସମଗ୍ର ମାନବଜାତିର ଧର୍ମବିଶ୍ୱାସ ଓ ଆଦର୍ଶ ପାଇଁ ସାର୍ବଜନୀନ ଧର୍ମର ଏକ ଇପ୍ସିତ ଲକ୍ଷ୍ୟକୁ ହାସଲ କରିବାକୁ ଯାଇ ଇସଲାମ ଅନ୍ୟ ସମସ୍ତ ଧର୍ମବିଶ୍ୱାସ ଓ ଆଦର୍ଶ ଉପରେ ପ୍ରାଧାନ୍ୟ ବିସ୍ତାର କରିବ) । ଦିବ୍ୟ ବାର୍ତ୍ତାବହ (ତାଙ୍କ ଉପରେ ଶାନ୍ତି ବିରାଜିତ ହେଉ)ଙ୍କ ଭବିଷ୍ୟତବାଣୀ ଅନୁସାରେ ମେହେଦି ଓ ମସିହ ନାମକ ଦିବ୍ୟ ବାର୍ତ୍ତାବହଙ୍କର ଜଣେ ଦାସଙ୍କ ଦ୍ୱାରା ତର୍କ, ଯୁକ୍ତି ଓ ପ୍ରବର୍ତ୍ତନା ମାଧ୍ୟମରେ ଇସଲାମର ଏହି ଅନ୍ତିମ ବିଜୟ ହାସଲ କରାଯିବ । ଅହମଦୀ ମୁସଲିମମାନଙ୍କ ବିଶ୍ୱାସ ଅନୁଯାୟୀ ଗତ ଶତାବ୍ଦୀର ଶେଷ ଆଡ଼କୁ ଏହି ଭବିଷ୍ୟବାଣୀର ପୂର୍ତ୍ତି ପାଇଁ ଏହି ଯୁଗର ଦୃଢ଼ପ୍ରତିଜ୍ଞ ସଂସ୍କାରକ ହିସାବରେ ମେହେଦି ଓ ମସିହ ନାମରେ ଭାରତର କାଦିୟାନସ୍ଥ ହଜରତ ମିର୍ଯା ଗୁଲାମ ଅହମଦଙ୍କୁ ଅଲ୍ଲାହ ଉତ୍ଥିତ କରିଥିଲେ । ସେ ୧୮୮୯ ରେ ଏକ ଆନ୍ଦୋଳନର ପ୍ରତିଷ୍ଠା କରିଥିଲେ ଏବଂ ଏହାର ନାମ ରଖିଥିଲେ 'ଇସଲାମରେ ଅହମଦିୟା ଆନ୍ଦୋଳନ' । ଏହି ଆନ୍ଦୋଳନ ଆରମ୍ଭରୁ ହି ଶାନ୍ତିପୂର୍ଣ୍ଣ ପନ୍ଥା, ପ୍ରବର୍ତ୍ତନା ଓ ଯୁକ୍ତି ମାଧ୍ୟମରେ ତଥା ପୃଥିବୀର ବିଭିନ୍ନ ପ୍ରାନ୍ତରେ ଥିବା ଲୋକମାନଙ୍କର ସେବା କରି ଇସଲାମର ବାର୍ତ୍ତା ପ୍ରସାରଣ କରିବା କାର୍ଯ୍ୟଗ୍ରହଣ କରିଛି । ଏହି ଆନ୍ଦୋଳନ ଏ ଯାବତ୍ ପୃଥିବୀର ଶତାଧିକ ଦେଶର ଇସଲାମ ଅନୁରାଗୀଙ୍କୁ ନିଜ ଆଡ଼କୁ ଆକର୍ଷଣ କରିବାରେ ସଫଳ ହୋଇଛି ଏବଂ ଏ ଦିଗରେ ପ୍ରଚେଷ୍ଟା ଚଳାଇ ରଖିଛି । ଏହି ଓଡ଼ିଆ ଅନୁବାଦ ହେଉଛି ସେହି ମହତ୍ ଦିଗରେ ସମ୍ପ୍ରଦାୟ ଦ୍ୱାରା କରାଯାଇଥିବା ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ । ଅଲ୍ଲାହ ଏହାର ସଫଳତା ପାଇଁ ଆଶୀର୍ବାଦ ପ୍ରଦାନ କରନ୍ତୁ ।

---

# ସୂଚୀପତ୍ର

# ବର୍ଣ୍ଣନାକ୍ରମିକ ସୁରା ସୂଚୀ

سُوْرَةُ الْفَاتِحَةِ مَكِّيَّةٌ (١) اٰيَاتُهَا ٧ رُكُوْعُهَا ١

# ଅଲ—ଫାତିହା[1]

[ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୭ଟି ଆୟତ ଅଛି ।][2]

بِسْمِ اللّٰهِ الرَّحْمٰنِ الرَّحِيْمِ ①

١. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

اَلْحَمْدُ لِلّٰهِ رَبِّ الْعٰلَمِيْنَ ②

୨. ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହ ହିଁ ସକଳ ପ୍ରଶଂସାର ପାତ୍ର ।

الرَّحْمٰنِ الرَّحِيْمِ ③

୩. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ।

مٰلِكِ يَوْمِ الدِّيْنِ ④

୪. (ଏବଂ) ବିଚାର ଦିବସର ପ୍ରଭୁ[3] ।

---

୧. ସୃଷ୍ଟିକର୍ତ୍ତା, ଚିର ଆରାଧ୍ୟ ଓ ପରମ ପିତା ଅଲ୍ଲାହଙ୍କୁ ମଣିଷ ଯୁଗେ ଯୁଗେ ସନ୍ତାନ ତୁଲ୍ୟ ଅଳି କରି ଆସିଛି, ପ୍ରଜା ତୁଲ୍ୟ ଗୁହାରି କରି ଆସିଛି ଓ ଭକ୍ତ ଭାବରେ ପ୍ରାର୍ଥନା କରି ଆସିଛି । ଏ ସବୁକୁ ଇସଲାମୀୟ ପଦ୍ଧତିରେ 'ଦୁଆ' କୁହାଯାଏ । ବସ୍ତୁତଃ ଦୁଆ ଓ ଉପାସନା ଏକ ନୁହେଁ । ଏହା ଉପାସନାର ଅନ୍ତର୍ଭୁକ୍ତ ବା ବହିର୍ଭୁକ୍ତ ହୋଇପାରେ । ମଣିଷ ସର୍ବଦା ନିଜ ହିତ ସାଧନ ଉଦ୍ଦେଶ୍ୟରେ ଦୁଆ କରିଥାଏ । ପବିତ୍ର କୋରାନର ବିଭିନ୍ନ ସ୍ଥାନରେ ଅନେକ ଦୁଆ ଉଲ୍ଲିଖିତ ଅଛି । ଭିନ୍ନ ଭିନ୍ନ କାର୍ଯ୍ୟ ସକାଶେ ଭିନ୍ନ ଭିନ୍ନ ଦୁଆ କରାଯାଏ । ଲକ୍ଷ୍ୟ କଲେ ଜଣାଯିବ ଯେ ପବିତ୍ର କୋରାନର ଆଦ୍ୟ ଅଧ୍ୟାୟଟି ଏକ ଦୁଆ ମାତ୍ର ।

ପବିତ୍ର କୋରାନ ପାଠ କରିବା ବେଳେ ଯେ କୌଣସି ଅଧ୍ୟାୟ ପଢିଲେ ମଧ୍ୟ 'ଅଉଜୁ ବିଲ୍ଲାହେ ମିନସ୍ ସଇତା‌ନିର୍‌ରଜିମ' ଓ ତା'ପରେ 'ବିସମିଲ୍ଲାହ ହିର୍ ରହେମା ନିର୍‌ରହିମ' ପଢିବାକୁ ହେବ । ତତ୍ପରେ ଏହି ଆଦ୍ୟ ଅଧ୍ୟାୟ 'ସୁରା 'ଫାତିହା.' ପଢିବାକୁ ହେବ । ଅବଶ୍ୟ ଗୋଟିଏ ଅଧ୍ୟାୟ ଶେଷ ହେବା ପରେ ଯେତେବେଳେ ଅନ୍ୟ ଏକ ଅଧ୍ୟାୟ ଆରମ୍ଭ ହୁଏ ଯାହାର ଆଦ୍ୟ ଆୟତ 'ବିସମିଲ୍ଲାହ ହିର୍ ରହେମା ନିର୍‌ରହିମ' ତାହା ପଢିବାକୁ ହେବ । କିନ୍ତୁ ପୁନରାୟ 'ଅଉଜୁ ବିଲ୍ଲାହେ ......' ପଢିବା ପ୍ରୟୋଜନ ନାହିଁ । କୌଣସି ଅଧ୍ୟାୟର ମଧ୍ୟଭାଗସ୍ଥ ଯେ କୌଣସି ଅଂଶ ପଢିବାବେଳେ 'ଅଉଜୁ ବିଲ୍ଲାହେ .....' ପଢିବାକୁ ହେବ । ମାତ୍ର 'ବିସମିଲ୍ଲାହ .......' ପଢାଯିବ ନାହିଁ, କାରଣ ଏହା ଅଧ୍ୟାୟର ଆରମ୍ଭରେ ହିଁ ଆସିଥାଏ ।

୨. ଏଠାରେ 'ବିସମିଲ୍ଲାହ ......'କୁ ଅଧ୍ୟାୟର ଏକ ଅଂଶ ଭାବେ ଗ୍ରହଣ କରାଯାଇଛି । ଏହା ହଜରତ ମହମ୍ମଦଙ୍କ ଅନୁସୃତ ପଦ୍ଧତି ।

ଏହି ସୁରା ପବିତ୍ର କୋରାନର ପ୍ରାରମ୍ଭିକ ଅଧ୍ୟାୟ ତଥା ମୁଖବନ୍ଧ ଅଟେ । ବସ୍ତୁତଃ ଏହା ସେହି ଗ୍ରନ୍ଥର ଏକ କ୍ଷୁଦ୍ର ପ୍ରତିରୂପ । ଯେଉଁସବୁ ବିଷୟ ସବିସ୍ତାର ଆକାରରେ ଉକ୍ତ ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି ଏହି କ୍ଷୁଦ୍ର ଅଧ୍ୟାୟରେ ସେ ସବୁର ରୂପରେଖ ସନ୍ନିବିଷ୍ଟ ହୋଇଛି ।

୩. ଏହି ସୁରାରେ ଅଲ୍ଲାହଙ୍କର ଯେଉଁ ଚାରିଗୋଟି ମୁଖ୍ୟ ତଥା ମୌଳିକ ଗୁଣ ଯଥା :- 'ରବ୍' (ପାଳନକର୍ତ୍ତା), 'ରହମାନ' (ଅଶେଷ ଦୟାବାନ୍), 'ରହିମ' (ସଦା କରୁଣାମୟ) ଓ 'ମାଲିକେ ୟୋ ମିଦ୍‌ଦିନ' (ବିଚାର ଦିବସର ପ୍ରଭୁ) ବର୍ଣ୍ଣନା କରାଯାଇଛି ତହିଁରୁ ଏହା ପ୍ରତୀତ ହେଉଛି ଯେ ଅଲ୍ଲାହ ମନୁଷ୍ୟକୁ ସୃଷ୍ଟି କଲା ପରେ ତାହାକୁ ଚରମ ଉତ୍କର୍ଷତାର ସାଧନ ପ୍ରଦାନ କରିଛନ୍ତି ଏବଂ ତାହାର ଭୌତିକ, ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ବିକାଶ ନିମନ୍ତେ ପ୍ରୟୋଜନୀୟ ଉପାୟ ଓ ସାମଗ୍ରୀମାନ ବ୍ୟବସ୍ଥା କରିଛନ୍ତି ।

إِيَّاكَ نَعْبُدُ وَإِيَّاكَ نَسْتَعِينُ ۞٥

اِهْدِنَا الصِّرَاطَ الْمُسْتَقِيمَ ۞٦

صِرَاطَ الَّذِينَ أَنْعَمْتَ عَلَيْهِمْ ۙ غَيْرِ الْمَغْضُوبِ عَلَيْهِمْ وَلَا الضَّالِّينَ ۞٧

୫. (ହେ ଅଲ୍ଲାହ !) ଆମେମାନେ ତୁମର ହିଁ ଉପାସନା କରୁଅଛୁ ଓ ତୁମଠାରୁ ହିଁ ସାହାଯ୍ୟ ଭିକ୍ଷା କରୁଅଛୁ ।

୬. ଆମମାନଙ୍କୁ ସରଳ ମାର୍ଗରେ ପରିଚାଳିତ କରାଅ ।[୧]

୭. ସେମାନଙ୍କ ମାର୍ଗରେ, ଯେଉଁମାନଙ୍କୁ ତୁମେ ପୁରସ୍କୃତ କରିଅଛ, ଯେଉଁମାନଙ୍କ ଉପରେ (ପରେ ତୁମର) ପ୍ରକୋପ ଅବତୀର୍ଣ୍ଣ ହୋଇନାହିଁ କି (ପରେ) ସେମାନେ ମାର୍ଗଭ୍ରଷ୍ଟ ହୋଇ ନାହାନ୍ତି ।

---

୧. ମନୁଷ୍ୟ ସରଳ ମାର୍ଗରେ ପରିଚାଳିତ ହୋଇ ଯେପରି ନିଜ ଉଦ୍ୟମ ଓ ପରିଶ୍ରମର ଉପଯୁକ୍ତ ପୁରସ୍କାର ପାଇବ ସେଥିପାଇଁ ମଧ୍ୟ ସେ ବ୍ୟବସ୍ଥା କରିଛନ୍ତି । ଅଲ୍ଲାହଙ୍କର ଉପାସନା ଓ ଫଳ ସ୍ୱରୂପ ତାହାଙ୍କ ସାନ୍ନିଧ୍ୟ ଲାଭ ନିମିତ୍ତ ମନୁଷ୍ୟକୁ ସୃଷ୍ଟି କରାଯାଇଛି । ସୁତରାଂ ସେ ସର୍ବଦା ଅଲ୍ଲାହଙ୍କର ସାହାଯ୍ୟ ଭିକ୍ଷା କରିବା ବିଧେୟ ଯଦ୍ଦ୍ୱାରା ସେ ଇହକାଳ ଓ ପରକାଳରେ ଉନ୍ନତି ଲାଭ କରିପାରିବ । ଅନ୍ୟ ପକ୍ଷରେ ସେ ସତ୍‌ପଥ ପ୍ରାପ୍ତହେବା ପରେ ମଧ୍ୟ କାଳେହେଁ ପଥଭ୍ରଷ୍ଟ ହୋଇଯିବ, ସେଥିପାଇଁ ନିଜକୁ ସୁରକ୍ଷିତ ରଖିବା ସଙ୍ଗେ ସଙ୍ଗେ ଅଲ୍ଲାହଙ୍କର ଶରଣ ଭିକ୍ଷା କରିବାକୁ ତାଙ୍କୁ ଏଥିରେ ଚେତାବନୀ ଦିଆଯାଇଛି ।

୨. ଏହି ଆୟତର ଶେଷ ବାକ୍ୟାଂଶ 'ଗଏରିଲ ...... ଦ୍ୱାଲିନ'ରୁ ପ୍ରତୀତ ହେଉଛି ଯେ ଏହା ତତ୍‌କାଳୀନ ଯୁଗ ପାଇଁ ନୁହେଁ ବରଂ ଆଗାମୀ ଯୁଗ ପାଇଁ ଏକ ଗୁହାରି ବା ଦୁଆ ରୂପେ ଅଭିପ୍ରେତ । ହଜରତ ମହମ୍ମଦ ମଧ୍ୟ ଅନୁରୂପ ମନ୍ତବ୍ୟ ପ୍ରକାଶ କରିଛନ୍ତି କାରଣ ଯେତେବେଳେ ତାଙ୍କ ସହଚରମାନେ ଏ ସଂକ୍ରାନ୍ତରେ ତାଙ୍କୁ ପ୍ରଶ୍ନ କଲେ ଯେ 'ମଗଜୁବେ ଅଲେହିମ' ଓ 'ଦ୍ୱାଲିନ' କେଉଁମାନେ ସେ ବିଷୟରେ ସେମାନଙ୍କୁ ଅବଗତ କରାଯାଉ ସେତେବେଳେ ଦିବ୍ୟ ଅବତାର ସେମାନଙ୍କୁ ଯଥାକ୍ରମେ ଇହୁଦୀ ଓ ଖ୍ରୀଷ୍ଟିୟାନ ବୋଲି କହିଥିଲେ । ସେ ପୁଣି କହିଥିଲେ 'ଅଲ୍ଲାହଙ୍କ ରାଣ ! ଯେପରି ଗୋଟିଏ ପାଦର ଜୋତା ଅନ୍ୟ ପାଦର ଜୋତା ସହିତ ମିଶିଯାଏ ସେହିପରି ଦିନେ ମୋ ସମ୍ପ୍ରଦାୟର ଲୋକେ ପୂର୍ବତନ ସମ୍ପ୍ରଦାୟର ପଦାଙ୍କ ଅନୁସରଣ କରିବେ (ହଦିସ ତିର୍‌ମିଜି ଦ୍ରଷ୍ଟବ୍ୟ) । ଏହି ଭବିଷ୍ୟବାଣୀ ମାଧ୍ୟମରେ ଏକ ମହା ବିପତ୍ତିର ସୂଚନା ମିଳୁଥିଲେ ମଧ୍ୟ ଆଶାର କିରଣ ମଧ୍ୟ ନିକ୍ଷିପ୍ତ ହୋଇଛି । ଯାହା କିଛି ସମ୍ଭବ ତା ପାଇଁ ଗୁହାରି ବା ଦୁଆ କରାଯାଏ ; ଅସମ୍ଭବ ପାଇଁ ନୁହେଁ । ପ୍ରକୃତପକ୍ଷେ ପବିତ୍ର କୋରାନରେ ଯେଉଁସବୁ ଦୁଆ ଶିଖାଯାଇଛି ସେ ସବୁ କେବଳ ସମ୍ଭାବ୍ୟ ବିଷୟ ପାଇଁ କରାଯାଏ । ଯାହା ଅସମ୍ଭବ, ତା ପାଇଁ ଆଦୌ ଦୁଆ ନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ସୁତରାଂ ଏହି 'ଦୁଆ' ଆମମାନଙ୍କ ସକାଶେ ଏକ ଆଶାଜନକ ବିଷୟକୁ ତଥାପି ବଞ୍ଚାଇ ରଖିଛି, ଯାହା ଫଳରେ ଯଦି କୌଣସି ଯୁଗରେ ପୁରସ୍କାର ଲାଭ କରୁଥିବା କୌଣସି ମୁସଲମାନ ଯେପରି ନିଜେ 'ମଗଜୁବେ ଅଲେହିମ' ବା 'ଦ୍ୱାଲିନ' ହୋଇ ନ ଯାଏ ସେଥିରୁ ରକ୍ଷା ପାଇବାକୁ ଚେଷ୍ଟା କରିବା ସକାଶେ ଓ ସେହି ଚେଷ୍ଟାରେ କୃତକାର୍ଯ୍ୟ ହେବା ସକାଶେ ନିଶ୍ଚିତ ରୂପେ ଏକ ସମ୍ଭାବନା ରହିଅଛି । ଅତଏବ କୌଣସି ବିଷୟରେ ଦ୍ୱାର ଉନ୍ମୁକ୍ତ ରହିଲେ ହିଁ ଅସୀମ ଆଶାର ସୃଷ୍ଟି ହୁଏ ଓ ଉତ୍ସାହ ବଢ଼େ ।

سُورَةُ الْبَقَرَةِ مَدَنِيَّةٌ (٢)

# ଅଲ–ବକରା

[ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୨୮୭ଟି ଆୟତ ଓ ୪୦ଟି ରୁକୂ ଅଛି ।]

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

୨. ଅଲିଫ୍-ଲାମ୍-ମିମ୍[୧] (ଅର୍ଥାତ୍ ଆମେ ଅଲ୍ଲାହ ସର୍ବଜ୍ଞ)

୩. ଏହା ଏକ ପରିପୂର୍ଣ୍ଣ ଗ୍ରନ୍ଥ, ଯହିଁରେ କୌଣସି ସନ୍ଦେହ ନାହିଁ, ଏହା ଧର୍ମଭୀରୁମାନଙ୍କୁ ସତ୍‌ପଥରେ ପରିଚାଳିତ କରାଏ ।

୪. ଯେଉଁମାନେ ଅଦୃଷ୍ଟରେ[୨] ବିଶ୍ୱାସ କରନ୍ତି ଓ ସୁଚାରୁ ରୂପେ ନମାଜ ପାଠ କରନ୍ତି ଏବଂ ଆମେ ଯାହା (କିଛି) ସେମାନଙ୍କୁ ଦେଇଅଛୁଁ ତହିଁରୁ ବ୍ୟୟ କରନ୍ତି ।

୫. ଏବଂ ଯାହା ତୁମ ପ୍ରତି ଅବତୀର୍ଣ୍ଣ ହୋଇଅଛି ବା ଯାହା ତୁମ ପୂର୍ବରୁ ଅବତୀର୍ଣ୍ଣ ହୋଇଥିଲା, (ଯେଉଁମାନେ) ତାହାକୁ ବିଶ୍ୱାସ କରନ୍ତି ତଥା ପରକାଳ ଉପରେ ବିଶ୍ୱାସ କରନ୍ତି ।

୬. ଏହିମାନେ ହିଁ (ନିଜ) ପାଳନକର୍ତ୍ତାଙ୍କ (ପ୍ରଦର୍ଶିତ) ମାର୍ଗରେ ବିଦ୍ୟମାନ ଅଛନ୍ତି ଏବଂ ଏହିମାନେ ହିଁ କୃତକାର୍ଯ୍ୟ ହେବେ ।

୭. ଏପରି ବ୍ୟକ୍ତିମାନେ ଯେଉଁମାନେ ଅବିଶ୍ୱାସ କରିଛନ୍ତି, ତୁମେ ସେମାନଙ୍କୁ ସାବଧାନ କରାଅ ବା ନ କରାଅ, ଏହା ସେମାନଙ୍କ ପକ୍ଷେ ଏକା କଥା ; ସେମାନେ (ନିଜର ଅବସ୍ଥାକୁ ପରିବର୍ତ୍ତନ ନ କରିବା ପର୍ଯ୍ୟନ୍ତ) ବିଶ୍ୱାସ କରିବେ ନାହିଁ ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

الٓمّٓ ②

ذٰلِكَ الْكِتٰبُ لَا رَيْبَ ۛۚ فِيْهِ ۚۛ هُدًى لِّلْمُتَّقِيْنَ ③

الَّذِيْنَ يُؤْمِنُوْنَ بِالْغَيْبِ وَيُقِيْمُوْنَ الصَّلٰوةَ وَمِمَّا رَزَقْنٰهُمْ يُنْفِقُوْنَ ④

وَالَّذِيْنَ يُؤْمِنُوْنَ بِمَآ اُنْزِلَ اِلَيْكَ وَمَآ اُنْزِلَ مِنْ قَبْلِكَ ۚ وَبِالْاٰخِرَةِ هُمْ يُوْقِنُوْنَ ⑤

اُولٰٓئِكَ عَلٰى هُدًى مِّنْ رَّبِّهِمْ ۗ وَاُولٰٓئِكَ هُمُ الْمُفْلِحُوْنَ ⑥

اِنَّ الَّذِيْنَ كَفَرُوْا سَوَآءٌ عَلَيْهِمْ ءَاَنْذَرْتَهُمْ اَمْ لَمْ تُنْذِرْهُمْ لَا يُؤْمِنُوْنَ ⑦

---

୧. 'ଅଲିଫ୍-ଲାମ୍-ମିମ୍' ଓ ଏ ପ୍ରକାର ଅନ୍ୟାନ୍ୟ ଅକ୍ଷର ଯାହା ପବିତ୍ର କୋରାନର ବିଭିନ୍ନ ଅଧ୍ୟାୟର ପ୍ରାରମ୍ଭରେ ଉଲ୍ଲିଖିତ ଅଛି ସେଗୁଡିକୁ ସଂକ୍ଷେପାକ୍ଷର କୁହାଯାଏ । ତନ୍ମଧ୍ୟରୁ ପ୍ରତ୍ୟେକ ଅକ୍ଷରକୁ ଗୋଟିଏ ଗୋଟିଏ ଶବ୍ଦ ବଦଳରେ ପ୍ରୟୋଗ କରାଯାଇଥାଏ । ଦୃଷ୍ଟାନ୍ତ ସ୍ୱରୂପ ଅଲିଫ୍ 'ଅନା' ଶବ୍ଦର ପ୍ରତିନିଧିତ୍ୱ କରୁଅଛି । ଏହିପରି ଉପରୋକ୍ତ ତିନିଗୋଟି ଅକ୍ଷର ଅଲିଫ୍-ଲାମ୍-ମିମ୍ ମିଳିତ ହୋଇ 'ଅନା ଅଲ୍ଲାହୋ ଆଲମୋ' ଅର୍ଥାତ୍ 'ଆମେ ଅଲ୍ଲାହ ସର୍ବଜ୍ଞ' । ଏ ରୂପ ସଂକ୍ଷେପାକ୍ଷର ଯେଉଁ ଅଧ୍ୟାୟର ପ୍ରାରମ୍ଭରେ ବ୍ୟବହୃତ ହୋଇଥାଏ ସେଗୁଡ଼ିକ ମାଧ୍ୟମରେ ସେହି ଅଧ୍ୟାୟରେ ବର୍ଣ୍ଣିତ ଅଲ୍ଲାହଙ୍କ ଗୁଣାବଳୀ ସମ୍ବନ୍ଧରେ ଇଙ୍ଗିତରେ ସୂଚନା ଦିଆଯାଇଥାଏ । କେତେକ ସ୍ଥଳେ ଗୁଣବାଚକ ଶବ୍ଦର ଆଦ୍ୟ ଅକ୍ଷର ଓ ଅନ୍ୟ କେତେକ ସ୍ଥଳେ ଶବ୍ଦର ଏକ ପ୍ରମୁଖ ଅକ୍ଷର ସଂକ୍ଷେପାକ୍ଷର ଭାବରେ ବ୍ୟବହୃତ ହୋଇଅଛି । ଅବଶ୍ୟ କେତେକ ଅଧ୍ୟାୟର ପ୍ରାରମ୍ଭରେ କୌଣସି ସଂକ୍ଷେପାକ୍ଷର ନାହିଁ । ଏପରି ଅଧ୍ୟାୟ ନିଜ ପୂର୍ବବର୍ତ୍ତୀ ଅଧ୍ୟାୟର ଅଧୀନ ଅଟେ, ଯାହାର ପ୍ରାରମ୍ଭରେ ସଂକ୍ଷେପାକ୍ଷର ଉଲ୍ଲିଖିତ ହୋଇଅଛି ।

୨. ଏଠାରେ 'ଅଦୃଷ୍ଟ'ରେ ଅଲ୍ଲାହ ହିଁ ଅଭିପ୍ରେତ । ସେ ନିରାକାର ସତ କିନ୍ତୁ ସବୁଠି ବିଦ୍ୟମାନ । ଏହି ଶବ୍ଦ ଦେବଦୂତ, ବିଚାର ଦିବସ, ବୈକୁଣ୍ଠ ଓ ନରକ ପାଇଁ ମଧ୍ୟ ଅଭିପ୍ରେତ । ଧର୍ମଭୀରୁମାନେ ଏସବୁ ବିଷୟରେ ସମ୍ପୂର୍ଣ୍ଣ ରୂପେ ବିଶ୍ୱାସ ସ୍ଥାପନ କରନ୍ତି ।

୮. ଅଲ୍ଲାହ ସେମାନଙ୍କ ହୃଦୟ ଓ କର୍ଣ୍ଣ ଉପରେ ମୋହର[୧] ମାରି ଦେଇଛନ୍ତି ତଥା ସେମାନଙ୍କ ଚକ୍ଷୁରେ ପରଳ ପଡ଼ିଅଛି ଏବଂ ସେମାନଙ୍କ ନିମନ୍ତେ ଏକ କଠିନ ଶାସ୍ତି (ନିୟତ) ଅଛି ।

خَتَمَ اللّٰهُ عَلٰى قُلُوْبِهِمْ وَعَلٰى سَمْعِهِمْ ؕ وَعَلٰٓى اَبْصَارِهِمْ غِشَاوَةٌ ؗ وَّلَهُمْ عَذَابٌ عَظِيْمٌ ٨

ରୁ:୨

୯. ଏବଂ ଲୋକମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ କହନ୍ତି, ''ଆମେମାନେ ଅଲ୍ଲାହ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରୁଅଛୁଁ'' ଅଥଚ ସେମାନେ ଆଦୌ ବିଶ୍ୱାସ କରନ୍ତି ନାହିଁ ।

وَمِنَ النَّاسِ مَنْ يَّقُوْلُ اٰمَنَّا بِاللّٰهِ وَبِالْيَوْمِ الْاٰخِرِ وَمَا هُمْ بِمُؤْمِنِيْنَ ٩

୧୦. ସେମାନେ ଅଲ୍ଲାହଙ୍କୁ ଓ ଯେଉଁ ଲୋକମାନେ ବିଶ୍ୱାସ କରନ୍ତି ସେମାନଙ୍କୁ ପ୍ରତାରିତ କରିବାକୁ ଇଚ୍ଛା କରନ୍ତି ମାତ୍ର ସେମାନେ (ପ୍ରକୃତରେ) ନିଜ ବ୍ୟତୀତ ଅନ୍ୟ କାହାକୁ ପ୍ରତାରିତ କରୁ ନାହାନ୍ତି ; ଏବଂ ସେମାନେ (ଏହା) ବୁଝି ପାରୁ ନାହାନ୍ତି ।

يُخٰدِعُوْنَ اللّٰهَ وَالَّذِيْنَ اٰمَنُوْا ۚ وَمَا يَخْدَعُوْنَ اِلَّآ اَنْفُسَهُمْ وَمَا يَشْعُرُوْنَ ١٠

୧୧. ସେମାନଙ୍କ ହୃଦୟ ବ୍ୟାଧିଗ୍ରସ୍ତ ଥିଲା ଓ ଅଲ୍ଲାହ ସେହି ବ୍ୟାଧିକୁ ବୃଦ୍ଧି କଲେ[୨] ଏବଂ ସେମାନେ ମିଥ୍ୟା କହିବାରେ ଅଭ୍ୟସ୍ତ ଥିବାରୁ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି ।

فِىْ قُلُوْبِهِمْ مَّرَضٌ ۙ فَزَادَهُمُ اللّٰهُ مَرَضًا ۚ وَلَهُمْ عَذَابٌ اَلِيْمٌ ۢ ۙ بِمَا كَانُوْا يَكْذِبُوْنَ ١١

୧୨. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ''ପୃଥିବୀରେ ବିଶୃଙ୍ଖଳା ସୃଷ୍ଟି କର ନାହିଁ'' । ସେମାନେ କହନ୍ତି, ''ଆମେ ତ କେବଳ ସୁଧାରକ ମାତ୍ର ।''

وَاِذَا قِيْلَ لَهُمْ لَا تُفْسِدُوْا فِى الْاَرْضِ ۙ قَالُوْٓا اِنَّمَا نَحْنُ مُصْلِحُوْنَ ١٢

୧୩. (ମନଦେଇ) ଶୁଣ ! ନିଃସନ୍ଦେହରେ ଏହି ଲୋକମାନେ ହିଁ ବିଶୃଙ୍ଖଳା ସୃଷ୍ଟିକାରୀ ଅଟନ୍ତି, ଅଥଚ ସେମାନେ ତାହା ବୁଝିପାରୁ ନାହାନ୍ତି ।

اَلَآ اِنَّهُمْ هُمُ الْمُفْسِدُوْنَ وَلٰكِنْ لَّا يَشْعُرُوْنَ ١٣

୧୪. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ''ଅନ୍ୟମାନେ ଯେପରି ବିଶ୍ୱାସ କରିଛନ୍ତି ତୁମେମାନେ ସେହିପରି ବିଶ୍ୱାସ କର'', ସେମାନେ କହନ୍ତି, ''କ'ଣ ଆମେ (ସେହିପରି) ବିଶ୍ୱାସ କରିବୁ ଯେପରି ନିର୍ବୋଧମାନେ ବିଶ୍ୱାସ କରିଛନ୍ତି ;'' ମନେରଖ ! (ସେମାନେ ମିଛ କହୁଛନ୍ତି) ବାସ୍ତବରେ ସେମାନେ ହିଁ ନିର୍ବୋଧ ; ମାତ୍ର ସେମାନେ ତାହା ଜାଣନ୍ତି ନାହିଁ ।

وَاِذَا قِيْلَ لَهُمْ اٰمِنُوْا كَمَآ اٰمَنَ النَّاسُ قَالُوْٓا اَنُؤْمِنُ كَمَآ اٰمَنَ السُّفَهَآءُ ؕ اَلَآ اِنَّهُمْ هُمُ السُّفَهَآءُ وَلٰكِنْ لَّا يَعْلَمُوْنَ ١٤

---

୧. ''ମୋହର ମାରି ଦେଇଛନ୍ତି'ର ଅର୍ଥ ସେମାନେ ଏପରି କଠୋର ମନୋଭାବାପନ୍ନ ବିରୋଧୀ ହୋଇଗଲେ ଯେଉଁମାନଙ୍କ ହୃଦୟରେ ସତ୍ ବିଷୟ ପ୍ରବେଶ କରିପାରେ ନାହିଁ କି ଅବିଶ୍ୱାସ ସେମାନଙ୍କ ହୃଦୟରୁ ବାହାରି ପାରେ ନାହିଁ । ମଣିଷକୁ ନିଜ କର୍ମଫଳ କେବଳ ଅଲ୍ଲାହଙ୍କ ଠାରୁ ମିଳିଥାଏ । ଯଦିଚ ମୋହର ମାରିବା ବିଷୟଟି ଅଲ୍ଲାହଙ୍କ ପ୍ରତି ଅଭିପ୍ରେତ ହୋଇଛି ବାସ୍ତବରେ ଅଲ୍ଲାହ କାହାରି ପ୍ରତି ଅନ୍ୟାୟ କରନ୍ତି ନାହିଁ । ଅପର ପକ୍ଷରେ ଲୋକମାନେ ନିଜ କୁକର୍ମ ଯୋଗୁଁ ହିଁ ଶାସ୍ତିର ଅଂଶୀଦାର ହୁଅନ୍ତି ।

୨. ''ଅଲ୍ଲାହ ସେହି ବ୍ୟାଧିକୁ ବୃଦ୍ଧି କଲେ''ର ଅର୍ଥ ଅଲ୍ଲାହ ବାରମ୍ବାର ସେହି କପଟ-ବିଶ୍ୱାସୀ ଲୋକମାନଙ୍କୁ ଏପରି ନିଦର୍ଶନମାନ ଦେଖାଇଲେ ଯେ ସେମାନେ ମୁସଲମାନମାନଙ୍କୁ ଅଧିକ ଭୟ କଲେ ଓ ଅଧିକ କପଟାଚରଣ କଲେ ।

୧୫. ଏବଂ ଯେତେବେଳେ ସେମାନେ ସେହି ଲୋକମାନଙ୍କୁ ସାକ୍ଷାତ କରନ୍ତି ଯେଉଁମାନେ ବିଶ୍ୱାସ କରିଛନ୍ତି (ସେତେବେଳେ) କହନ୍ତି, "ଆମେମାନେ ତ (ଏହି ରସୁଲଙ୍କୁ) ବିଶ୍ୱାସ କରୁଅଛୁ;" ମାତ୍ର ଯେତେବେଳେ ସେମାନେ ସେମାନଙ୍କ ଖଳ ନେତୃବୃନ୍ଦଙ୍କ ସହ ଏକାନ୍ତରେ ସାକ୍ଷାତ କରନ୍ତି (ସେତେବେଳେ) କହନ୍ତି, "ଆମେମାନେ ଅବଶ୍ୟ ତୁମ ସଙ୍ଗରେ ଅଛୁ, ଆମେମାନେ ତ କେବଳ (ସେହି ବିଶ୍ୱାସକାରୀ ମାନଙ୍କୁ) ପରିହାସ କରୁଥିଲୁ ।"

وَإِذَا لَقُوا الَّذِينَ آمَنُوا قَالُوا آمَنَّا ۚ وَإِذَا خَلَوْا إِلَىٰ شَيَاطِينِهِمْ قَالُوا إِنَّا مَعَكُمْ إِنَّمَا نَحْنُ مُسْتَهْزِئُونَ ﴿١٥﴾

୧୬. ଅଲ୍ଲାହ ସେମାନଙ୍କୁ (ସେମାନଙ୍କ) ପରିହାସ ଲାଗି ଶାସ୍ତି ଦେବେ ଏବଂ ସେମାନଙ୍କୁ ନିଜ ଦୁରାଚାର ମଧ୍ୟରେ ବିଭ୍ରାନ୍ତ ହେବାକୁ ଛାଡ଼ିଦେବେ ।

اللَّهُ يَسْتَهْزِئُ بِهِمْ وَيَمُدُّهُمْ فِي طُغْيَانِهِمْ يَعْمَهُونَ ﴿١٦﴾

୧୭. ଏହି ଲୋକମାନେ ହିଁ ସତ୍‌ପଥକୁ ତ୍ୟାଗ କରି ତତ୍‌ପରିବର୍ତ୍ତେ ଅସତ୍ ପଥ ଗ୍ରହଣ କରିଛନ୍ତି ; ଫଳରେ ସେମାନଙ୍କର କିଛି ପାର୍ଥିବ ଲାଭ ହୋଇନାହିଁ କି ସେମାନେ ସତ୍‌ପଥ ପାଇ ନାହାନ୍ତି ।

أُولَٰئِكَ الَّذِينَ اشْتَرَوُا الضَّلَالَةَ بِالْهُدَىٰ فَمَا رَبِحَتْ تِجَارَتُهُمْ وَمَا كَانُوا مُهْتَدِينَ ﴿١٧﴾

୧୮. (ଦୃଷ୍ଟାନ୍ତ ସ୍ୱରୂପ) ସେମାନଙ୍କ ଅବସ୍ଥା ଏପରି ଏକ ବ୍ୟକ୍ତିର ଅବସ୍ଥା ସଦୃଶ ଅଟେ ଯେ କି ଅଗ୍ନି[1] ସଂଯୋଗ କରି ତଦ୍ୱାରା ପାର୍ଶ୍ୱବର୍ତ୍ତୀ ସ୍ଥାନକୁ ଆଲୋକିତ କଲା ପରେ ଅଲ୍ଲାହ ସେମାନଙ୍କ ଆଲୋକକୁ ଅପସାରିତ କରି ତାହାଙ୍କୁ ଏପରି (ବହୁବିଧ) ଘନ ଅନ୍ଧକାର[2] ମଧ୍ୟରେ ଛାଡ଼ି ଦେଲେ ଯେ ସେମାନେ (ମୁକ୍ତିପଥ) ଦେଖିପାରୁ ନାହାନ୍ତି ।

مَثَلُهُمْ كَمَثَلِ الَّذِي اسْتَوْقَدَ نَارًا فَلَمَّا أَضَاءَتْ مَا حَوْلَهُ ذَهَبَ اللَّهُ بِنُورِهِمْ وَتَرَكَهُمْ فِي ظُلُمَاتٍ لَا يُبْصِرُونَ ﴿١٨﴾

୧୯. ସେମାନେ ବଧିର, ମୂକ ଓ ଅନ୍ଧ ଅଟନ୍ତି ; ସୁତରାଂ ସେମାନେ ଫେରିବେ ନାହିଁ ।

صُمٌّ بُكْمٌ عُمْيٌ فَهُمْ لَا يَرْجِعُونَ ﴿١٩﴾

---

୧. ଆରବୀ ଭାଷାରେ 'ନାର' ଶବ୍ଦ ଯୁଦ୍ଧ ପାଇଁ ମଧ୍ୟ ବ୍ୟବହୃତ ହୁଏ । ତେଣୁ ଏହି ଆୟତର ତାତ୍ପର୍ଯ୍ୟ ହେଉଛି ଯେ ମୁନାଫିକ ବା କପଟ ବିଶ୍ୱାସୀମାନେ ମୁସଲମାନମାନଙ୍କୁ ପରାଜିତ କରାଇବା ଉଦ୍ଦେଶ୍ୟରେ ଅବିଶ୍ୱାସକାରୀମାନଙ୍କ ସହିତ ଯୁଦ୍ଧ କରିବାକୁ ସେମାନଙ୍କୁ ପ୍ରବର୍ତ୍ତାଇ ଦେଲେ । କିନ୍ତୁ ଯୁଦ୍ଧର ପରିଣାମ ବିପରୀତ ହେଲା, ଅର୍ଥାତ ମୁସଲମାନମାନେ ଯୁଦ୍ଧରେ ଜୟଲାଭ କଲେ ଏବଂ ଅଲ୍ଲାହ କପଟବିଶ୍ୱାସୀମାନଙ୍କୁ ଏପରି ଅବସ୍ଥାରେ ଛାଡ଼ିଦେଲେ ଯେ ସେମାନେ ଏହି ବିଷମ ସମସ୍ୟାରୁ ମୁକ୍ତି ପାଇବା ସକାଶେ କୌଣସି ପଥ ପାଇପାରିଲେ ନାହିଁ ଏବଂ ଅନ୍ଧ ଭଳି ଏଣେ ତେଣେ ବିଭ୍ରାନ୍ତ ହେଉଥିଲେ ।

୨. ଏହି ଆୟତରେ ବର୍ଣ୍ଣିତ ଆରବୀ 'ଜୁଲମତ' ଶବ୍ଦ ସର୍ବତ୍ର ବହୁ ବଚନରେ ବ୍ୟବହୃତ ହୋଇ ଥିବାରୁ, ଏଠାରେ ଅନ୍ଧକାର ଅର୍ଥଜ୍ଞାପକ ଜୁଲମତ ଶବ୍ଦ ଉଭୟ ନୈତିକ ଓ ଆଧ୍ୟାତ୍ମିକ ଅନ୍ଧକାରକୁ ବୁଝାଉଛି । ପାପ କଦାପି ପୃଥକ୍ ରହି ପାରେ ନାହିଁ । ଗୋଟିଏ ପାପ ଅନ୍ୟ ଗୋଟିଏ ପାପକୁ ଏବଂ ଗୋଟିଏ ଦୁର୍ଭାଗ୍ୟ ଅନ୍ୟ ଗୋଟିଏ ଦୁର୍ଭାଗ୍ୟକୁ ଆକର୍ଷଣ କରିଥାଏ । ତେଣୁ ଏହାର ପ୍ରକୃତ ମର୍ମ ହେଉଛି ଯେ ମୁନାଫିକ ବା କପଟ ବିଶ୍ୱାସୀମାନେ ବହୁବିଧ ବିପତ୍ତି ଓ ଦୁର୍ଭାଗ୍ୟରେ କବଳିତ ହେବେ ।

୨୦. ଅଥବା (ସେମାନଙ୍କ ଅବସ୍ଥା ଘନ) ମେଘମାଳାରୁ ସେହି ବୃଷ୍ଟି ସଦୃଶ ଯହିଁରେ (ବହୁବିଧ) ଅନ୍ଧକାର, ବଜ୍ରନିନାଦ ଓ ବିଦ୍ୟୁତ୍ ଥାଏ ; ସେମାନେ ବଜ୍ରନିନାଦ ଯୋଗୁଁ ମୃତ୍ୟୁ ଭୟରେ କାନରେ ନିଜର ଅଙ୍ଗୁଳି ରଖନ୍ତି ; ଅଥଚ ଅଲ୍ଲାହ ସମସ୍ତ ଅବିଶ୍ୱାସକାରୀଙ୍କୁ ବିନାଶ କରିବେ ।

اَوْ كَصَيِّبٍ مِّنَ السَّمَآءِ فِيْهِ ظُلُمٰتٌ وَّرَعْدٌ وَّ بَرْقٌ ۚ يَجْعَلُوْنَ اَصَابِعَهُمْ فِيْٓ اٰذَانِهِمْ مِّنَ الصَّوَاعِقِ حَذَرَ الْمَوْتِ ۭ وَاللّٰهُ مُحِيْطٌۢ بِالْكٰفِرِيْنَ ۝٢٠

୨୧. ବିଦ୍ୟୁତ ସେମାନଙ୍କ ଦୃଷ୍ଟିଶକ୍ତିକୁ ହରଣ କରି ନେବା ଉପରେ ; ଏହା ଯେବେ ବି ସେମାନଙ୍କ ଉପରେ ଝଲସି ଉଠେ, ସେମାନେ ତହିଁରେ (ଅର୍ଥାତ୍ ସେହି ଆଲୋକରେ) ଅଗ୍ରସର ହୁଅନ୍ତି ; ଏବଂ ଯେତେବେଳେ ସେମାନଙ୍କ ପାଇଁ ଏହା ଅନ୍ଧାର କରିଦିଏ ସେମାନେ ଦଣ୍ଡାୟମାନ ହୋଇ ରହନ୍ତି ; ଏବଂ ଅଲ୍ଲାହ ଇଚ୍ଛା କଲେ ସେମାନଙ୍କ ଶ୍ରବଣଶକ୍ତି ଓ ଦୃଷ୍ଟିଶକ୍ତିକୁ ନଷ୍ଟ କରି ପାରନ୍ତେ ; ବାସ୍ତବରେ ଅଲ୍ଲାହ (ନିଜ ଇପ୍ସିତ) ପ୍ରତ୍ୟେକ କାର୍ଯ୍ୟ କରିବାକୁ ପୂର୍ଣ୍ଣ ରୂପେ ସକ୍ଷମ ।

يَكَادُ الْبَرْقُ يَخْطَفُ اَبْصَارَهُمْ ۭ كُلَّمَآ اَضَاۗءَ لَهُمْ مَّشَوْا فِيْهِ ۙ وَاِذَآ اَظْلَمَ عَلَيْهِمْ قَامُوْا ۭ وَلَوْ شَاۗءَ اللّٰهُ لَذَھَبَ بِسَمْعِهِمْ وَاَبْصَارِهِمْ ۭ اِنَّ اللّٰهَ عَلٰي كُلِّ شَيْءٍ قَدِيْرٌ ۝٢١ ع

ରୁ:୩

୨୨. ହେ ଲୋକମାନେ ! ନିଜ ପାଳନକର୍ତ୍ତାଙ୍କର ଉପାସନା କର ଯେ ତୁମମାନଙ୍କୁ ଓ ତୁମମାନଙ୍କ ପୂର୍ବବର୍ତ୍ତୀ (ଲୋକ)ମାନଙ୍କୁ ସୃଷ୍ଟି କରିଛନ୍ତି, ତା'ହେଲେ ତୁମେମାନେ (ପ୍ରତ୍ୟେକ ପ୍ରକାର ବିପଦରୁ) ରକ୍ଷା ପାଇବ ।

يٰٓاَيُّهَا النَّاسُ اعْبُدُوْا رَبَّكُمُ الَّذِىْ خَلَقَكُمْ وَالَّذِيْنَ مِنْ قَبْلِكُمْ لَعَلَّكُمْ تَتَّقُوْنَ ۝٢٢

୨୩. ଯେ କି ତୁମମାନଙ୍କ ପାଇଁ ପୃଥିବୀକୁ ଶଯ୍ୟା ଓ ଆକାଶକୁ ଛାତ ସଦୃଶ ନିର୍ମାଣ କରିଛନ୍ତି ଏବଂ ମେଘରୁ ବୃଷ୍ଟି କରାଇ ତଦ୍ୱାରା ତୁମମାନଙ୍କ ଜୀବନଧାରଣ ସକାଶେ ନାନାଦି ଫଳ ଉପୁଜାଇଛନ୍ତି ; ସୁତରାଂ ତୁମେମାନେ ଜାଣିଶୁଣି (ଅନ୍ୟ କାହାକୁ) ଅଲ୍ଲାହଙ୍କର ସମକକ୍ଷ କରନାହିଁ ।

الَّذِىْ جَعَلَ لَكُمُ الْاَرْضَ فِرَاشًا وَّالسَّمَاۗءَ بِنَاۗءً ۠ وَّاَنْزَلَ مِنَ السَّمَاۗءِ مَاۗءً فَاَخْرَجَ بِهٖ مِنَ الثَّمَرٰتِ رِزْقًا لَّكُمْ ۚ فَلَا تَجْعَلُوْا لِلّٰهِ اَنْدَادًا وَّاَنْتُمْ تَعْلَمُوْنَ ۝٢٣

୨୪. ଏବଂ ଆମେ ନିଜ ଭକ୍ତ (ମହମ୍ମଦ)ଙ୍କ ପ୍ରତି ଯାହା ଅବତୀର୍ଣ୍ଣ କରିଅଛୁ ଯଦି ସେଥିରେ ତୁମମାନଙ୍କର ସନ୍ଦେହ ଥାଏ ତେବେ ତୁମେମାନେ ଏହିପରି ଏକ ଅଧ୍ୟାୟ ରଚନା କର ଏବଂ ଅଲ୍ଲାହଙ୍କ ଭିନ୍ନ ତୁମମାନଙ୍କର ଅନ୍ୟାନ୍ୟ ସହାୟକଙ୍କୁ (ନିଜ ସହାୟତା ପାଇଁ) ଡାକ, ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ ।

وَاِنْ كُنْتُمْ فِىْ رَيْبٍ مِّمَّا نَزَّلْنَا عَلٰي عَبْدِنَا فَاْتُوْا بِسُوْرَةٍ مِّنْ مِّثْلِهٖ ۠ وَادْعُوْا شُهَدَاۗءَكُمْ مِّنْ دُوْنِ اللّٰهِ اِنْ كُنْتُمْ صٰدِقِيْنَ ۝٢٤

୨୫. କିନ୍ତୁ ଯଦି ତୁମେମାନେ ଏହା ନ କର ଏବଂ (ଏହା) ତୁମେମାନେ କଦାପି କରି ପାରିବ ନାହିଁ— ତେବେ ଯେଉଁ ଅଗ୍ନିର ଇନ୍ଧନ ମନୁଷ୍ୟ ଓ ପଥର[୧] ତହିଁରୁ (ନିଜକୁ) ରକ୍ଷାକର, ତାହା ଅବିଶ୍ୱାସକାରୀଙ୍କ ପାଇଁ ପ୍ରସ୍ତୁତ ହୋଇଅଛି ।

فَاِنْ لَّمْ تَفْعَلُوْا وَلَنْ تَفْعَلُوْا فَاتَّقُوا النَّارَ الَّتِىْ وَقُوْدُھَا النَّاسُ وَالْحِجَارَةُ ښ اُعِدَّتْ لِلْكٰفِرِيْنَ ۝٢٥

୧. ଏଠାରେ ପ୍ରଶ୍ନ ହେଉଛି ଯେ ଏକ ନିର୍ଜୀବ ପଦାର୍ଥ ପଥରକୁ ଅଗ୍ନିରେ ନିକ୍ଷେପ କରିବାର ଉଦ୍ଦେଶ୍ୟ କ'ଣ ? ବସ୍ତୁତଃ ପଥର ପିତୁଳାକୁ ବୁଝାଏ । ପିତୁଳାପୂଜକମାନେ ସେମାନଙ୍କ ଉପାସ୍ୟମାନଙ୍କର ଏପରି ଦୟନୀୟ ଅବସ୍ଥା ଲକ୍ଷ୍ୟ କରି ନିଶ୍ଚୟ ମର୍ମାନ୍ତିକ ପୀଡା ଅନୁଭବ କରିବେ । ଅନ୍ୟ ପକ୍ଷରେ ଏହାର ଅର୍ଥ ପଥରକୋଇଲା ମଧ୍ୟ ହୋଇପାରେ ଯଦ୍ୱାରା ଅଗ୍ନି ଅଧିକ ତେଜୀୟାନ ହୋଇଥାଏ ।

وَبَشِّرِ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ اَنَّ لَهُمْ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ ؕ كُلَّمَا رُزِقُوْا مِنْهَا مِنْ ثَمَرَةٍ رِّزْقًا ۙ قَالُوْا هٰذَا الَّذِيْ رُزِقْنَا مِنْ قَبْلُ ۙ وَاُتُوْا بِهٖ مُتَشَابِهًا ؕ وَلَهُمْ فِيْهَاۤ اَزْوَاجٌ مُّطَهَّرَةٌ ۙۗ وَّهُمْ فِيْهَا خٰلِدُوْنَ ﴿٢٦﴾

୨୬. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସତ୍‌କର୍ମ ସମ୍ପାଦନ କରିଛନ୍ତି ତୁମେ ସେମାନଙ୍କୁ ସୁସମାଚାର ଦିଅ ଯେ ସେମାନଙ୍କ ପାଇଁ ଏପରି ଉଦ୍ୟାନସବୁ ଅଛି ଯାହାର ନିମ୍ନ ଦେଶରେ ଝରଣାମାନ ପ୍ରବାହିତ ହେଉଅଛି ; ଯେବେ ବି ସେମାନଙ୍କୁ ଏହି ଉଦ୍ୟାନର ଫଳଗୁଡ଼ିକ ମଧ୍ୟରୁ କିଛି ଖାଇବାକୁ ଦିଆଯିବ, ସେମାନେ କହିବେ, ''ଏହା ତ ସେହି (ଆହାର) ଯାହା ଆମମାନଙ୍କୁ ପୂର୍ବରୁ ଦିଆଯାଇଥିଲା'' ; ଅଥଚ ସେମାନଙ୍କୁ ଯାହା ଦିଆଯାଇଥିଲା ତାହା କେବଳ ଅନୁରୂପ ଥିଲା; ଏବଂ ସେଠାରେ ସେମାନଙ୍କ ପାଇଁ ପବିତ୍ର ଯୋଡ଼ି[୧] ଥିବେ; ଏବଂ ସେମାନେ ସେଠାରେ (ଚିର ଦିନ) ବାସ କରିବେ ।

اِنَّ اللّٰهَ لَا يَسْتَحْيٖۤ اَنْ يَّضْرِبَ مَثَلًا مَّا بَعُوْضَةً فَمَا فَوْقَهَا ؕ فَاَمَّا الَّذِيْنَ اٰمَنُوْا فَيَعْلَمُوْنَ اَنَّهُ الْحَقُّ مِنْ رَّبِّهِمْ ۚ وَاَمَّا الَّذِيْنَ كَفَرُوْا فَيَقُوْلُوْنَ مَاذَاۤ اَرَادَ اللّٰهُ بِهٰذَا مَثَلًا ۘ يُضِلُّ بِهٖ كَثِيْرًا ۙ وَّيَهْدِيْ بِهٖ كَثِيْرًا ؕ وَمَا يُضِلُّ بِهٖۤ اِلَّا الْفٰسِقِيْنَ ﴿٢٧﴾

୨୭. ମଶକ ସଦୃଶ କ୍ଷୁଦ୍ର ବା ତା'ଠାରୁ କ୍ଷୁଦ୍ରତର କୌଣସି ଦୃଷ୍ଟାନ୍ତ ଦେବାକୁ ଅଲ୍ଲାହ୍ ଆଦୌ କୁଣ୍ଠାବୋଧ କରନ୍ତି ନାହିଁ ; ଅବଶ୍ୟ ଯେଉଁମାନେ ବିଶ୍ୱାସ କରନ୍ତି ସେମାନେ ଜାଣନ୍ତି ଯେ ଏହା ସେମାନଙ୍କ ପାଳନକର୍ତ୍ତାଙ୍କ ଠାରୁ (ପ୍ରାପ୍ତ) ସତ୍ୟ ଅଟେ ; ଅଥଚ ଯେଉଁମାନେ ଅବିଶ୍ୱାସକାରୀ ସେମାନେ କହନ୍ତି ଯେ ଅଲ୍ଲାହ୍‌ଙ୍କର ଏହି ଦୃଷ୍ଟାନ୍ତ ଦେବାରେ କି ଉଦ୍ଦେଶ୍ୟ ରହିଅଛି ? (ପ୍ରକୃତରେ) ସେ ଏହା (ଅର୍ଥାତ୍ ପବିତ୍ର କୋରାନ୍) ଦ୍ୱାରା ଅନେକଙ୍କୁ ପଥଭ୍ରଷ୍ଟ ସାବ୍ୟସ୍ତ କରାଉଛନ୍ତି ଓ ଏହାଦ୍ୱାରା ଅନେକଙ୍କୁ ସତ୍ ପଥ ଦେଖାଉଛନ୍ତି ଏବଂ ସେ ଏହାଦ୍ୱାରା ସେହି ଅମାନ୍ୟକାରୀଙ୍କ ବ୍ୟତୀତ ଅନ୍ୟ କାହାକୁ ପଥଭ୍ରଷ୍ଟ ସାବ୍ୟସ୍ତ କରାନ୍ତି ନାହିଁ ।

الَّذِيْنَ يَنْقُضُوْنَ عَهْدَ اللّٰهِ مِنْۢ بَعْدِ مِيْثَاقِهٖ ۪ وَيَقْطَعُوْنَ مَاۤ اَمَرَ اللّٰهُ بِهٖۤ اَنْ يُّوْصَلَ وَيُفْسِدُوْنَ فِي الْاَرْضِ ؕ اُولٰٓئِكَ هُمُ الْخٰسِرُوْنَ ﴿٢٨﴾

୨୮. ଯେଉଁମାନେ ଅଲ୍ଲାହ୍‌ଙ୍କ ସହିତ ଅଙ୍ଗୀକାର କରି ତାହା ଦୃଢ଼ୀଭୂତ ହେଲା ପରେ ଭଙ୍ଗ କରନ୍ତି ଏବଂ ଅଲ୍ଲାହ୍ ଯେଉଁ ସମ୍ପର୍କ ସ୍ଥାପନ କରିବା ଲାଗି ଆଦେଶ ଦେଇଛନ୍ତି ତାହାକୁ ଛିନ୍ନ କରନ୍ତି ତଥା ପୃଥିବୀରେ ବିଶୃଙ୍ଖଳା ସୃଷ୍ଟି କରନ୍ତି, ସେମାନେ ହିଁ କ୍ଷତିଗ୍ରସ୍ତ ହେବେ ।

---

୧. 'ପବିତ୍ର ଯୋଡ଼ି'ର ଅର୍ଥ ଦୁଇଜଣଙ୍କ ମଧ୍ୟରୁ ଜଣଙ୍କର ଏପରି ସାଥୀ ଯାହାଙ୍କ ସହିତ ସମ୍ମିଳିତ ହେଲେ ସେମାନଙ୍କର ସମୂହ ବିକାଶ ହେବ ଓ ସେମାନେ ସୁଖ ସମ୍ପଦ ଲାଭ କରିବେ । ପବିତ୍ର କୋରାନରୁ ସୂଚିତ ହୁଏ ଯେ ଅଲ୍ଲାହ୍‌ଙ୍କ ଭିନ୍ନ ପ୍ରତ୍ୟେକ ବ୍ୟକ୍ତି ତଥା ବସ୍ତୁ ନିଜ ସାଥୀ ବା ଯୋଡ଼ି ଉପରେ ନିର୍ଭରଶୀଳ । ଏହି ନିୟମ ଅନୁସାରେ ବୈକୁଣ୍ଠବାସୀ, ପୁରୁଷ ହେଉ ବା ନାରୀ, ଏକ ଅନ୍ୟ ଉପରେ ନିର୍ଭରଶୀଳ । ବୈକୁଣ୍ଠରେ ଏହି ଯୋଡ଼ି କେଉଁ ପ୍ରକାରର ହେବ ତାହା କେବଳ ଅଲ୍ଲାହ୍‌ଙ୍କୁ ଜଣା । ମନୁଷ୍ୟ ଯେତେବେଳେ ବୈକୁଣ୍ଠରେ ପ୍ରବେଶ କରିବ ସେତେବେଳେ ହିଁ ସେ ଏ ସଂକ୍ରାନ୍ତରେ ଜାଣିପାରିବ ।

كَيْفَ تَكْفُرُونَ بِاللَّهِ وَكُنْتُمْ أَمْوَاتًا فَأَحْيَاكُمْ ثُمَّ يُمِيتُكُمْ ثُمَّ يُحْيِيكُمْ ثُمَّ إِلَيْهِ تُرْجَعُونَ ﴿٢٩﴾

୨୯. (ହେ ଲୋକମାନେ !) ତୁମେମାନେ କିପରି ଅଲ୍ଲାହ୍‌ଙ୍କ (କଥା) ପ୍ରତି ଅବିଶ୍ୱାସ କରୁଛ ? ଅଥଚ ତୁମେମାନେ ନିର୍ଜୀବ ଥିଲ ଏବଂ ଏହାପରେ ସେ ତୁମମାନଙ୍କୁ ସଜୀବ କଲେ ; ପୁଣି (ଦିନେ) ସେ ତୁମମାନଙ୍କୁ ମୃତ୍ୟୁ ମୁଖରେ ପକାଇବେ ; ଏହାପରେ ତୁମମାନଙ୍କୁ ଜୀବିତ କରାଇବେ, ପୁଣି ତୁମମାନଙ୍କୁ ତାହାଙ୍କ ନିକଟକୁ ଫେରାଇ[୧] ନିଆଯିବ ।

هُوَ الَّذِي خَلَقَ لَكُمْ مَا فِي الْأَرْضِ جَمِيعًا ثُمَّ اسْتَوَىٰ إِلَى السَّمَاءِ فَسَوَّاهُنَّ سَبْعَ سَمَاوَاتٍ ۚ وَهُوَ بِكُلِّ شَيْءٍ عَلِيمٌ ﴿٣٠﴾ ع

୩୦. ପୃଥିବୀରେ ଯାହାକିଛି ଅଛି ସେ (ଅଲ୍ଲାହ୍ ହିଁ) ତାହାକୁ ତୁମମାନଙ୍କ (ହିତ) ପାଇଁ ସୃଷ୍ଟି କରିଛନ୍ତି ; ପୁଣି ସେ ଆକାଶ ପ୍ରତି ଧ୍ୟାନ ଦେଲେ ଓ ସାତଗୋଟି ଆକାଶ ରୂପେ ତାହାକୁ ସମ୍ପୂର୍ଣ୍ଣ କଲେ ; ଏବଂ ସେ ସମସ୍ତ ବିଷୟ (ର ବାସ୍ତବିକତା)କୁ ଭଲରୂପେ ଜାଣନ୍ତି ।

ରୁ:୪

وَإِذْ قَالَ رَبُّكَ لِلْمَلَائِكَةِ إِنِّي جَاعِلٌ فِي الْأَرْضِ خَلِيفَةً ۖ قَالُوا أَتَجْعَلُ فِيهَا مَنْ يُفْسِدُ فِيهَا وَيَسْفِكُ الدِّمَاءَ وَنَحْنُ نُسَبِّحُ بِحَمْدِكَ وَنُقَدِّسُ لَكَ ۖ قَالَ إِنِّي أَعْلَمُ مَا لَا تَعْلَمُونَ ﴿٣١﴾

୩୧. ଏବଂ (ହେ ଲୋକମାନେ ! ସେ ସମୟକୁ ସ୍ମରଣ କର) ଯେତେବେଳେ ତୁମର ପାଳନକର୍ତ୍ତା ଦେବଦୂତମାନଙ୍କୁ କହିଲେ, "ଆମେ ପୃଥିବୀରେ ଜଣେ ଖଲିଫା[୨] ନିଯୁକ୍ତ କରିବାକୁ ଯାଉଛୁ ;" (ଏଥି ଉତ୍ତାରୁ) ସେମାନେ କହିଲେ, "କ'ଣ ତୁମେ ସେଠାରେ (ଏପରି ଲୋକମାନଙ୍କୁ) ସୃଷ୍ଟି କରିବ ଯେଉଁମାନେ କି ସେଠାରେ ବିଶୃଙ୍ଖଳା ଓ ରକ୍ତପାତ କରିବେ ଏବଂ ଆମେମାନେ ତ ତୁମର ପ୍ରଶଂସା କରିବା ସଙ୍ଗେ (ସଙ୍ଗେ) ତୁମର ଗୁଣଗାନ କରୁଅଛୁ ଏବଂ ତୁମଠାରେ ସମସ୍ତ ମହାନତା ଥିବାର ସ୍ୱୀକାର କରୁଅଛୁ ;" (ଏଥି ଉତ୍ତାରୁ) ଅଲ୍ଲାହ୍ କହିଲେ, 'ତୁମେମାନେ ଯାହା ଜାଣ, ନାହିଁ ତାହା ନିଶ୍ଚୟ ଆମେ ଜାଣୁଁ ।"

---

୧. ମୃତ୍ୟୁ ପରେ ମନୁଷ୍ୟ ବୈକୁଣ୍ଠ ବା ନରକକୁ ସଙ୍ଗେ ସଙ୍ଗେ ଯାଏ ନାହିଁ । ତା'ର ସତ୍ ଓ ଅସତ୍ କର୍ମର ପରିଣାମ ସ୍ୱରୂପ ସେ ଏକ ମଧ୍ୟବର୍ତ୍ତୀ ସମୟ ପାଇଁ ବୈକୁଣ୍ଠ ବା ନରକର ସ୍ୱାଦ ଆସ୍ୱାଦନ କରିଥାଏ । ଏହାପରେ ପୁନରୁତ୍‌ଥାନ ଦିବସ ଆସେ ଓ ସେ ସେଠାରେ ନିଜ କର୍ମର ସମ୍ପୂର୍ଣ୍ଣ ପ୍ରତିଫଳ ହାସଲ କରେ ।

୨. ଜଣେ ଶାସକଙ୍କ ସ୍ଥଳାଭିଷିକ୍ତ ବ୍ୟକ୍ତିଙ୍କୁ ଖଲିଫା ବା ଅଧିନାୟକ କୁହାଯାଏ । ତେଣୁ ଯେତେବେଳେ ଅଲ୍ଲାହ୍ ପୃଥିବୀପୃଷ୍ଠରେ ନିଜର ଖଲିଫା ନିଯୁକ୍ତ କରିବାକୁ କହିଲେ ସେତେବେଳେ ଦେବଦୂତମାନେ ଏହାର ଆବଶ୍ୟକତା ସମ୍ବନ୍ଧରେ ଅଲ୍ଲାହ୍‌ଙ୍କୁ ପଚାରିଲେ । ସେମାନେ କହିଲେ ଯେତେବେଳେ ମଣିଷମାନେ ନିଜ ନିଜ ଭିତରେ ବିଶୃଙ୍ଖଳା ସୃଷ୍ଟି କରିବେ ଓ ରକ୍ତପାତ କରାଇବେ ସେତେବେଳେ ଖଲିଫାଙ୍କ ନିଯୁକ୍ତି ଆବଶ୍ୟକ ହେବ । ତେଣୁ ଏହି ପରିପ୍ରେକ୍ଷୀରେ କ'ଣ ଅଲ୍ଲାହ୍ ଏକ ବିଶୃଙ୍ଖଳ ଓ ରକ୍ତପିପାସୁ ମନୁଷ୍ୟ-ସମାଜ ସୃଷ୍ଟି କରିବାକୁ ଚାହୁଁଛନ୍ତି ବୋଲି ଦେବଦୂତମାନେ ପଚାରିଛନ୍ତି । ଅତଏବ ଏଠାରେ ଅଲ୍ଲାହ୍‌ଙ୍କ ପ୍ରତି ବା ହଜରତ ଆଦମଙ୍କ ପ୍ରତି କୌଣସି ଦୋଷାରୋପ କରାଯାଇ ନାହିଁ ବରଂ ମାନବ ସମାଜର ଏପରି କେତେକ ବ୍ୟକ୍ତିଙ୍କର ଦୁର୍ବଳତା ଏଠାରେ ଦର୍ଶାଯାଇଛି ଯେଉଁମାନଙ୍କ ମଧ୍ୟରେ ଶାନ୍ତି ଓ ଶୃଙ୍ଖଳା ସ୍ଥାପନ କରିବା ପାଇଁ ଆଦମଙ୍କୁ ପ୍ରେରଣ କରାଯିବାର ଥିଲା । ଦେବଦୂତମାନେ ମନୁଷ୍ୟର କେବଳ ଦୋଷ ଦୁର୍ବଳତା ସମ୍ବନ୍ଧରେ କହିଥିଲେ କିନ୍ତୁ ଅଲ୍ଲାହ୍ ଜାଣନ୍ତି ଯେ ମନୁଷ୍ୟଠାରେ ଏପରି ଶକ୍ତି ଅଛି ଯଦ୍ୱାରା ସେ ଆଧ୍ୟାତ୍ମିକ ଗୁଣାବଳୀର ଅଧିକାରୀ ହୋଇ ନିଜକୁ ଏକ ଆଦର୍ଶ ମନୁଷ୍ୟ ଭାବରେ ପ୍ରତିପାଦିତ କରିପାରିବ । ସୁତରାଂ ଏଠାରେ ଅଲ୍ଲାହ୍‌ଙ୍କ ଉକ୍ତି 'ତୁମେମାନେ ଯାହା ଜାଣନାହିଁ ଆମେ ତାହା ନିଶ୍ଚୟ ଜାଣୁ' ଯଥାର୍ଥ ।

୩୨. ଏବଂ (ଅଲ୍ଲାହ୍) ଆଦମଙ୍କୁ[୧] ସକଳ ନାମ[୨] ଶିଖାଇଲେ ; ତା'ପରେ (ଅଲ୍ଲାହ୍) ସେଗୁଡ଼ିକୁ ଦେବଦୂତମାନଙ୍କ ସମ୍ମୁଖରେ ଉପସ୍ଥାପନ ପୂର୍ବକ କହିଲେ, "ଯଦି ତୁମେମାନେ ଠିକ୍ କହୁଥାଅ ତାହାହେଲେ ତୁମେମାନେ ଆମ୍ଭଙ୍କୁ ଏଗୁଡ଼ିକର ନାମ କୁହ ।"

وَعَلَّمَ اٰدَمَ الْاَسْمَآءَ كُلَّهَا ثُمَّ عَرَضَهُمْ عَلَى الْمَلٰٓئِكَةِ فَقَالَ اَنْۢبِـُٔوْنِيْ بِاَسْمَآءِ هٰٓؤُلَآءِ اِنْ كُنْتُمْ صٰدِقِيْنَ ﴿٣٢﴾

୩୩. ସେମାନେ କହିଲେ, "ତୁମେ ପବିତ୍ର, ତୁମେ ଆମମାନଙ୍କୁ ଯାହାକିଛି ଶିଖାଇ ଅଛ ତାହା ବ୍ୟତୀତ ଆମମାନଙ୍କର ଅନ୍ୟ କୌଣସି ଜ୍ଞାନ ନାହିଁ, ବାସ୍ତବରେ ତୁମେ ହିଁ ସର୍ବଜ୍ଞ ଓ ତତ୍ତ୍ୱଜ୍ଞ ।

قَالُوْا سُبْحٰنَكَ لَا عِلْمَ لَنَآ اِلَّا مَا عَلَّمْتَنَا ۭ اِنَّكَ اَنْتَ الْعَلِيْمُ الْحَكِيْمُ ﴿٣٣﴾

---

୧. ଆଦମଙ୍କୁ ପୃଥିବୀ ପୃଷ୍ଠର ପ୍ରଥମ ବ୍ୟକ୍ତି ବୋଲି ଯେଉଁ ସାଧାରଣ ମତ ପ୍ରକାଶ ପାଉଛି ତାହା ପବିତ୍ର କୋରାନ ଦୃଷ୍ଟିରୁ ସମର୍ଥନ ଯୋଗ୍ୟ ନୁହେଁ । ଆଜିର ପୃଥିବୀ ବିଭିନ୍ନ ସୃଷ୍ଟିଚକ୍ର ତଥା ସଭ୍ୟତା ମଧ୍ୟ ଦେଇ ଗତି କରିଛି । ଏବେକାର ମାନବ ସମାଜର ଆଦିପୁରୁଷ ଆଦମ ଅବଶ୍ୟ ସାମ୍ପ୍ରତିକ ସୃଷ୍ଟିଚକ୍ରରୂପକ ଶିକୁଳିର ପ୍ରଥମ 'କଡ଼ା' ହୋଇପାରନ୍ତି, କିନ୍ତୁ ସୃଷ୍ଟିର ପ୍ରଥମ ମନୁଷ୍ୟ ନୁହନ୍ତି । ପ୍ରାୟ ୬୦୦୦ ବର୍ଷ ପୂର୍ବେ, ସେ ଏହି ପୃଥିବୀ ପୃଷ୍ଠରେ ବାସ କରୁଥିବା ବିଶ୍ୱାସ କରାଯାଏ । ଏଠାରେ ଯେପରି ବିଭିନ୍ନ ଜାତି ଓ ସଭ୍ୟତାର ଆବିର୍ଭାବ ଓ ତିରୋଭାବ ଘଟିଛି ସେହିପରି ବିଭିନ୍ନ ସୃଷ୍ଟିଚକ୍ରର ଜନ୍ମ ଓ ମୃତ୍ୟୁ ଘଟିଥାଇପାରେ ଏବଂ ସାମ୍ପ୍ରତିକ ଆଦମ ପୂର୍ବରୁ ବହୁ ଆଦମ ପୃଥିବୀ ପୃଷ୍ଠରେ ଜନ୍ମ ଓ ମୃତ୍ୟୁ ଲାଭ କରିଥାଇ ପାରନ୍ତି । ଏହି ଉପଲକ୍ଷେ ହଜରତ ମହଜ୍ଜଦଙ୍କ ଉକ୍ତି ପ୍ରଣିଧାନଯୋଗ୍ୟ । ସେ କହିଥିଲେ ଯେ ଅଲ୍ଲାହ୍ ପୃଥିବୀ ପୃଷ୍ଠରେ ଲକ୍ଷାଧିକ ଆଦମଙ୍କର ସର୍ଜନା କରିଛନ୍ତି ।

ଆଦମଙ୍କ ଜନ୍ମ ବେଳକୁ ତତ୍କାଳୀନ ମାନବ ସମାଜ ସମ୍ପୂର୍ଣ୍ଣ ଲୋପ ହୋଇ ନ ଥିଲା । ପୁରାତନ ଗୋଷ୍ଠୀର କେତେକ ଅଧଃପତିତ ବ୍ୟକ୍ତି ତଥାପି ଜୀବିତ ଥିଲେ । ସୁତରାଂ ଅଲ୍ଲାହ୍ ଆଦମଙ୍କୁ ସେହିମାନଙ୍କ ଅଧିନାୟକ ତଥା ଏକ ନୂତନ ସଭ୍ୟତାର ପ୍ରବର୍ତ୍ତକ ରୂପେ ମନୋନୀତ କରିଥିଲେ । ଏପରି ଏକ ମୃତପ୍ରାୟ ସମାଜର କର୍ଣ୍ଣଧାର ହୋଇଥିବାରୁ, ଆଜିର ମାନବ ତାଙ୍କୁ ଯଥାର୍ଥରେ ଆଦି ପୁରୁଷ ରୂପେ ଆଖ୍ୟାୟିତ କରୁଛି । ତେଣୁ ଆଦମଙ୍କ ପୂର୍ବରୁ ମଧ୍ୟ ଏହି ପୃଥିବୀ ପୃଷ୍ଠରେ ମନୁଷ୍ୟ ବାସ କରୁଥିବା ବିଷୟ ପ୍ରତିପାଦିତ ହେବା ପରେ ଆମେମାନେ ନିଶ୍ଚିତ ରୂପେ କହିପାରିବା ନାହିଁ ଯେ ଆମେରିକା, ଅଷ୍ଟ୍ରେଲିଆ ଆଦି ମହାଦେଶର ଆଦିମ ଅଧିବାସୀମାନେ ଆଲୋଚ୍ୟ ଆଦମଙ୍କ ବଂଶଧର କି ତାହାଙ୍କ ପୂର୍ବବର୍ତ୍ତୀ ଆଦମଙ୍କ ବଂଶଧର ।

୨. ଏହି ଆୟତରେ ଥିବା 'ଅସମାଅ' ଅର୍ଥ ନାମସମୂହ, ଯାହା ଅଲ୍ଲାହ୍‌ଙ୍କ ଗୁଣାବଳୀକୁ ବୁଝାଉଛି । ଏହି ସବୁ ଗୁଣ ସମ୍ବନ୍ଧରେ ଯଥାର୍ଥ ଜ୍ଞାନ କେବଳ ଅଲ୍ଲାହ୍ ଶିଖାଇଲେ ପ୍ରାପ୍ତ ହୁଏ । ଧର୍ମ ସଂସ୍ଥାପନା ତଥା ଅଲ୍ଲାହ୍ ଓ ମାନବଜାତି ମଧ୍ୟରେ ସମ୍ପର୍କ ସ୍ଥାପନ ପାଇଁ ହଜରତ ଆଦମ ଆବିର୍ଭାବ ହୋଇଥିଲେ । ଏଣୁ ତାହାଙ୍କୁ ଅଲ୍ଲାହ୍‌ଙ୍କର ସକଳ ଗୁଣ ସମ୍ବନ୍ଧରେ ଶିକ୍ଷାଦାନ କରିବା ଅନିବାର୍ଯ୍ୟ ଥିଲା, ଯଦ୍ବାରା ତାହାଙ୍କ ଅନୁଗାମୀମାନେ ସେହି ନାମ ମାଧ୍ୟମରେ ଅଲ୍ଲାହ୍‌ଙ୍କ ପରିଚୟ ପାଇଥାନ୍ତେ ଓ ତାଙ୍କ ସହିତ ସମ୍ପର୍କ ରଖିଥାନ୍ତେ ଅନ୍ୟଥା ସେମାନେ ନାସ୍ତିକ ଓ ପଥଭ୍ରଷ୍ଟ ହୋଇଯିବାର ଆଶଙ୍କା ଥିଲା ।

ଏହାର ଅନ୍ୟତମ ଉଦ୍ଦେଶ୍ୟ ହେଉଛି—ସଭ୍ୟ ହେବା ପାଇଁ ମାନବ ଜାତି ପକ୍ଷରେ ଏକ ଭାଷାର ଆବଶ୍ୟକତା । ତେଣୁ ଅଲ୍ଲାହ୍ ଆଦମଙ୍କୁ ଭାଷାର ନୀତି ନିୟମ ଶିଖାଇଲେ ଯାହାକୁ ଭିତ୍ତି କରି ସେ ଭାଷା-ବିଜ୍ଞାନ ପ୍ରଚଳନ କରିଥିଲେ । ବୋଧ ହେଉଛି ସେହି ଭାଷା ଆରବୀ ଥିଲା । କାରଣ ପ୍ରତ୍ୟେକ ବସ୍ତୁର ନାମକରଣ ତାର ବିଶେଷତ୍ୱ ଓ ଗୁଣ ଅନୁସାରେ କରାଯାଇଛି । ଏହା ମୁଖ୍ୟତଃ ଆରବୀ ଭାଷାରେ ଦେଖିବାକୁ ମିଳେ ।

୩୪. (ଏହାପରେ ଅଲ୍ଲାହ) କହିଲେ, "ହେ ଆଦମ ! ସେ ଦେବଦୂତମାନଙ୍କୁ ସେଗୁଡ଼ିକର ନାମ କୁହ" ; ସେ ସେମାନଙ୍କୁ ସେଗୁଡ଼ିକର ନାମ କହିବାରୁ [୧] ଅଲ୍ଲାହ କହିଲେ, "କ'ଣ ଆମ୍ଭେ ତୁମମାନଙ୍କୁ କହି ନଥିଲୁ ଯେ ଆମ୍ଭେ ନିଶ୍ଚିତରୂପେ ଆକାଶ ଓ ପୃଥିବୀର ଗୂଢ଼ତତ୍ତ୍ୱ ଜାଣୁ ଏବଂ ତୁମେମାନେ ଯାହା ପ୍ରକାଶ କର ଓ ଯାହା ଗୋପନ ରଖ ତାହା (ମଧ୍ୟ) ଜାଣୁ ।"

قَالَ يَٰٓـَٔادَمُ أَنۢبِئۡهُم بِأَسۡمَآئِهِمۡۖ فَلَمَّآ أَنۢبَأَهُم بِأَسۡمَآئِهِمۡ قَالَ أَلَمۡ أَقُل لَّكُمۡ إِنِّيٓ أَعۡلَمُ غَيۡبَ ٱلسَّمَٰوَٰتِ وَٱلۡأَرۡضِ وَأَعۡلَمُ مَا تُبۡدُونَ وَمَا كُنتُمۡ تَكۡتُمُونَ ٣٤

୩୫. ଏବଂ (ସେ ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମ୍ଭେ ଦେବଦୂତମାନଙ୍କୁ କହିଲୁ, "ଆଦମଙ୍କ ଆଜ୍ଞାନୁବର୍ତ୍ତୀ ହୁଅ [୨], (ସେତେବେଳେ) ସେମାନେ ଆଜ୍ଞାନୁବର୍ତ୍ତୀ ହେଲେ କିନ୍ତୁ ଇବଲିସ [୩] ହେଲା ନାହିଁ ଏବଂ ସେ ଅଗ୍ରାହ୍ୟ କଲା ତଥା ଅହଙ୍କାର ପ୍ରଦର୍ଶନ କଲା ଏବଂ ସେ (ପୂର୍ବରୁ) ଅବିଶ୍ୱାସକାରୀମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ) ଥିଲା ।

وَإِذۡ قُلۡنَا لِلۡمَلَٰٓئِكَةِ ٱسۡجُدُواْ لِأٓدَمَ فَسَجَدُوٓاْ إِلَّآ إِبۡلِيسَ أَبَىٰ وَٱسۡتَكۡبَرَ وَكَانَ مِنَ ٱلۡكَٰفِرِينَ ٣٥

---

୧. ଯେତେବେଳେ ହଜରତ ଆଦମ ତାହାଙ୍କ ସମ୍ମୁଖରେ ଉପସ୍ଥାପିତ ବସ୍ତୁମାନଙ୍କ ଗୁଣାବଳୀ ବର୍ଣ୍ଣନା କରିଦେଲେ ସେତେବେଳେ ଅଲ୍ଲାହ ଦେବଦୂତମାନଙ୍କୁ ପଚାରିଲେ ' କ'ଣ ଆମେ ତୁମମାନଙ୍କୁ ପ୍ରଥମରୁ ଏହା କହି ନ ଥିଲୁ ଯେ ଯେଉଁ ବିଷୟ ତୁମମାନଙ୍କ ହୃଦୟରେ ଅଛି ଓ ଯେଉଁ ବିଷୟ ତୁମେମାନେ ପ୍ରକାଶ କରୁଅଛ ତାହା ଆମେ ଜାଣୁ । ତୁମମାନଙ୍କର ଆଶଙ୍କା ଥିଲା ଯେ ଲୋକମାନଙ୍କ ବିଭିନ୍ନ ଗୁଣ ସମ୍ପର୍କରେ ଜ୍ଞାନ ନ ଥାଇ ଆଦମ କିପରି ସେମାନଙ୍କ ଉପରେ ଶାସନ କରିପାରିବ । କିନ୍ତୁ ଏବେ ତୁମେମାନେ ବୁଝିପାରୁଛ ଯେ ଆମେ ଆଦମଙ୍କୁ ପ୍ରକୃତିର ବିଶେଷତ୍ୱ ସମ୍ବନ୍ଧରେ ଜାଣିପାରିବା ପାଇଁ ଶକ୍ତି ପ୍ରଦାନ କରିଅଛୁ । ତେଣୁ ସେ ସେହି ବସ୍ତୁମାନଙ୍କ ଗୁଣାବଳୀ ବର୍ଣ୍ଣନା କରିପାରିଛନ୍ତି । ଅତଏବ ଏହା ପ୍ରମାଣିତ ହେଲା ଯେ, ଆମର ଜ୍ଞାନ ଯଥାର୍ଥ ଓ ତୁମମାନଙ୍କର ତ୍ରୁଟିପୂର୍ଣ୍ଣ ।

୨. ଏଠାରେ ମୂଳ ଶବ୍ଦ 'ସଜଦା' ଅଟେ । ଆରବୀ ଭାଷାରେ ସଜଦାର ଅର୍ଥ ଭୂମି ଉପରେ ମଥା ରଖି ଅଲ୍ଲାହଙ୍କୁ ପ୍ରଣିପାତ କରିବା ବା ମୁଣ୍ଡିଆ ମାରିବା । ଏହାର ଅନ୍ୟତମ ଅର୍ଥ ଆଜ୍ଞାପାଳନ କରିବା । ଦେବଦୂତମାନଙ୍କୁ ହଜରତ ଆଦମଙ୍କ ସମ୍ମୁଖରେ ସିଜଦା କରିବାର ତାତ୍ପର୍ଯ୍ୟ ହେଉଛି ଆଦମଙ୍କ ଆଜ୍ଞାନୁବହ ହେବା । ଅନ୍ୟ ପକ୍ଷରେ ହଜରତ ଆଦମଙ୍କ ସୃଷ୍ଟି ଯୋଗୁଁ ଅଲ୍ଲାହଙ୍କୁ ସିଜଦା କରିବା ଲାଗି ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେହେତୁ ଅଲ୍ଲାହ ଏକ ପରିପୂର୍ଣ୍ଣ ମାନବକୁ ସୃଷ୍ଟି କରିଥିଲେ । ଏଥିଯୋଗୁଁ ଅଲ୍ଲାହଙ୍କ ମହିମାର ପରିପ୍ରକାଶ ନିମନ୍ତେ ତାହାଙ୍କ ସମ୍ମୁଖରେ ସିଜଦା କରିବାକୁ କୁହାଯାଇଥିଲା ।

ସେହି ବ୍ୟକ୍ତିକୁ ଇବଲିସ୍ କୁହାଯାଏ— (କ) ଯେ ଅଲ୍ଲାହଙ୍କ କୃପା-ଲାଭରୁ ନିରାଶ ହୋଇ ଯାଇଥାଏ ; (ଖ) ଯେ ପରୋପକାର କରିବାକୁ ଅନିଚ୍ଛୁକ ; (ଗ) ଯେ ନିଜର ସମସ୍ୟା ସମାଧାନ କରିବାକୁ ଅସମର୍ଥ ; (ଘ) ଯେ ସଫଳତାର ମାର୍ଗ ଦେଖିପାରେ ନାହିଁ ; (ଙ) ଯାହାର ମନୋବଳ ଭାଙ୍ଗି ପଡିଥାଏ ; (ଚ) ଯାହାର ଧୈର୍ଯ୍ୟଚ୍ୟୁତି ଘଟିଥାଏ ; ଓ (ଛ) ଯେ ସର୍ବଦା ବିବ୍ରତ ରହୁଥାଏ ।

୩. ପବିତ୍ର କୋରାନରେ ଏହି ଶବ୍ଦ ୧୧ ଥର ବ୍ୟବହୃତ ହୋଇଛି । ଯେଉଁଠାରେ ଆଦମଙ୍କ ଆଜ୍ଞାନୁବର୍ତ୍ତୀ ହେବା ବିଷୟରେ ଉଲ୍ଲେଖ ଅଛି ସେଠାରେ ଇବଲିସ୍ ଶବ୍ଦ ଓ ଯେଉଁଠାରେ ଆଦମଙ୍କୁ ପଥଭ୍ରଷ୍ଟ କରାଇବା ବିଷୟରେ ଉଲ୍ଲେଖ ଅଛି ସେଠାରେ 'ସଇତାନ' ଶବ୍ଦ ବ୍ୟବହୃତ ହୋଇଛି । ଏହି ରୂପେ ଉକ୍ତ ଶବ୍ଦକୁ ଦୁଇଗୋଟି ଭିନ୍ନ ଅର୍ଥରେ ପ୍ରୟୋଗ କରାଯାଇଛି । ବସ୍ତୁତଃ ଦେବଦୂତମାନଙ୍କୁ ପ୍ରରୋଚିତ କରୁଥିବା ବ୍ୟକ୍ତିକୁ ଇବ୍‌ଲିସ୍ କୁହାଯାଏ । ସଇତାନ ଏକ ସାଧାରଣ ନାମ । ଇବଲିସ୍‌କୁ ମଧ୍ୟ ସଇତାନ ଭାବରେ ଅଭିହିତ କରାଯାଇପାରେ ଏବଂ ଯେଉଁମାନେ ଇବଲିସ୍‌ର ପ୍ରତିନିଧି ବା ଅନୁଗାମୀ ସେମାନଙ୍କୁ ମଧ୍ୟ ଇବଲିସ୍ କୁହାଯାଇପାରେ । ସେମାନେ ଅସତ୍ କର୍ମ କରିବା ପାଇଁ ପନ୍ଥା ନିର୍ଦ୍ଦେଶ କରିଥାନ୍ତି ଓ ନବିମାନଙ୍କୁ ତଥା ସେମାନଙ୍କ ଶିକ୍ଷାଦୀକ୍ଷାକୁ ପ୍ରବଳ ବିରୋଧ କରିଥାନ୍ତି । ଅନ୍ୟପକ୍ଷରେ ଭୂତ—ପ୍ରେତାଦି ତଥା ଯେଉଁ ମନୁଷ୍ୟ, ଜୀବଜନ୍ତୁ, ରୋଗ ବା ଅନ୍ୟାନ୍ୟ ବିଷୟ ମନୁଷ୍ୟ ପକ୍ଷରେ ମନ୍ଦ ବା କ୍ଷତିକାରକ ତାହାକୁ ମଧ୍ୟ ସଇତାନ କୁହାଯାଏ ।

୩୬. ଏବଂ ଆମ୍ଭେ (ଆଦମଙ୍କୁ) କହିଲୁ, "ହେ ଆଦମ ! ତୁମ୍ଭେ ଓ ତୁମ୍ଭ ପତ୍ନୀ (ଏହି) ଉଦ୍ୟାନରେ[1] ବାସକର ଓ ତନ୍ମଧ୍ୟରୁ ଯେଉଁଠାରୁ ଇଚ୍ଛା ପର୍ଯ୍ୟାପ୍ତ ପରିମାଣରେ ଖାଅ କିନ୍ତୁ ଏହି ବୃକ୍ଷ ନିକଟକୁ (ଅର୍ଥାତ୍ ଅମୁକ ବୃକ୍ଷ ନିକଟକୁ) ଯାଅ ନାହିଁ, ନଚେତ୍ ତୁମ୍ଭେମାନେ ଅତ୍ୟାଚାରୀମାନଙ୍କ ମଧ୍ୟରେ ଗଣ୍ୟ ହେବ ।

وَقُلْنَا يٰاٰدَمُ اسْكُنْ اَنْتَ وَزَوْجُكَ الْجَنَّةَ وَكُلَا مِنْهَا رَغَدًا حَيْثُ شِئْتُمَا وَلَا تَقْرَبَا هٰذِهِ الشَّجَرَةَ فَتَكُوْنَا مِنَ الظّٰلِمِيْنَ ﴿۳۶﴾

୩୭. ଏବଂ (ପରେ ଏପରି ଘଟିଲା ଯେ) ସଇତାନ୍ ତାହା (ଅର୍ଥାତ୍ ସେହି ବୃକ୍ଷ) ଦ୍ୱାରା ସେ ଦୁହିଁଙ୍କୁ (ସ୍ୱସ୍ଥାନରୁ) ବିଚ୍ୟୁତ କରାଇଲା ଏବଂ ଏରୂପେ ସେମାନେ ଯେପରି (ଅବସ୍ଥାରେ) ଥିଲେ ତହିଁରୁ ସେମାନଙ୍କୁ ବିତାଡ଼ିତ କରାଇଲା ; ଏବଂ ଆମ୍ଭେ ସେମାନଙ୍କୁ କହିଲୁ, "(ଏଠାରୁ) ବାହାରି ଯାଅ, ତୁମମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କର ଶତ୍ରୁ ଅଟ ଏବଂ (ମନେରଖ ଯେ) ତୁମମାନଙ୍କ ସକାଶେ ପୃଥିବୀରେ ଏକ (ନିର୍ଦ୍ଦିଷ୍ଟ) ସମୟ ପାଇଁ ବାସସ୍ଥାନ ଓ ଜୀବନଧାରଣର ବ୍ୟବସ୍ଥା ରହିଅଛି ।"

فَاَزَلَّهُمَا الشَّيْطٰنُ عَنْهَا فَاَخْرَجَهُمَا مِمَّا كَانَا فِيْهِ ۪ وَقُلْنَا اهْبِطُوْا بَعْضُكُمْ لِبَعْضٍ عَدُوٌّ ۚ وَلَكُمْ فِي الْاَرْضِ مُسْتَقَرٌّ وَّمَتَاعٌ اِلٰى حِيْنٍ ﴿۳۷﴾

୩୮. ଏହାପରେ ଆଦମ ନିଜ ପାଳନକର୍ତ୍ତାଙ୍କଠାରୁ କେତେକ (ପ୍ରାର୍ଥନା ସମ୍ବନ୍ଧୀୟ) ବାଣୀ ଶିକ୍ଷା କଲେ ; (ତଦନୁସାରେ ପ୍ରାର୍ଥନା କରିବାରୁ) ସେ ତାହାଙ୍କ ପ୍ରତି ଦୃଷ୍ଟି ଦେଲେ ; ବାସ୍ତବରେ ସେ (ଭକ୍ତମାନଙ୍କ ବିପଦ ସମୟରେ) ଅତ୍ୟନ୍ତ ମନୋଯୋଗୀ ଓ (ସେ ହିଁ) ସଦା କରୁଣାମୟ ।

فَتَلَقّٰۤى اٰدَمُ مِنْ رَّبِّهٖ كَلِمٰتٍ فَتَابَ عَلَيْهِ ؕ اِنَّهٗ هُوَ التَّوَّابُ الرَّحِيْمُ ﴿۳۸﴾

୩୯. (ଏହାପରେ) ଆମ୍ଭେ କହିଲୁ, "ତୁମେ ସମସ୍ତେ ଏଠାରୁ ବାହାରି ଯାଅ, (ଏବଂ ମନେରଖ ଯେ) ଯଦି ପୁଣି କେବେ ତୁମମାନଙ୍କ ନିକଟକୁ ଆମ୍ଭଠାରୁ ବିଧାନ ଆସିବ, ତେବେ ଯେଉଁମାନେ ଆମ୍ଭ ବିଧାନର ଅନୁସରଣ କରିବେ ସେମାନଙ୍କର (ଭବିଷ୍ୟତ ପାଇଁ) କୌଣସି ପ୍ରକାର ଭୟ ରହିବ ନାହିଁ କି ସେମାନେ (ଅତୀତ ତ୍ରୁଟି ପାଇଁ) ଦୁଃଖିତ ହେବେ ନାହିଁ ।

قُلْنَا اهْبِطُوْا مِنْهَا جَمِيْعًا ۚ فَاِمَّا يَاْتِيَنَّكُمْ مِّنِّيْ هُدًى فَمَنْ تَبِعَ هُدَايَ فَلَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ ﴿۳۹﴾

୪୦. ଏବଂ ଯେଉଁମାନେ ଅବିଶ୍ୱାସ କରିବେ ଓ ଆମ୍ଭ ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟାରୋପ କରିବେ ସେମାନେ (ନିଶ୍ଚୟ) ନରକବାସୀ ହେବେ ଓ ସେମାନେ ସେଠାରେ ଦୀର୍ଘକାଳ ରହିବେ ।

وَالَّذِيْنَ كَفَرُوْا وَكَذَّبُوْا بِاٰيٰتِنَآ اُولٰٓئِكَ اَصْحٰبُ النَّارِ ۚ هُمْ فِيْهَا خٰلِدُوْنَ ﴿۴۰﴾ ع

---

୧. ଆରବୀ ଭାଷାରେ ଉଦ୍ୟାନ ଓ ଛାୟାପ୍ରଦ ବୃକ୍ଷପୂର୍ଣ୍ଣ ସ୍ଥାନକୁ 'ଜନ୍ନତ' କହନ୍ତି । ଏହି ଆୟତରେ ଥିବା ଜନ୍ନତ ଶବ୍ଦର ଅର୍ଥ ମୃତ୍ୟୁ ପରେ ପ୍ରାପ୍ତ ବୈକୁଣ୍ଠ ନୁହେଁ କାରଣ ବୈକୁଣ୍ଠବାସୀମାନଙ୍କୁ ସେଠାରୁ କଦାପି ବିତାଡ଼ିତ କରାହେବ ନାହିଁ (ସୁରା ହିଜର ଆୟତ : ୪୯ ଦ୍ରଷ୍ଟବ୍ୟ ) କିନ୍ତୁ ଉପରୋକ୍ତ ଜନ୍ନତ ଅର୍ଥାତ୍ ଉଦ୍ୟାନରୁ ହଜରତ ଆଦମଙ୍କୁ ବିତାଡ଼ିତ କରାଯାଇଥିଲା । ତେଣୁ ଏହା ନିଶ୍ଚିତରୂପେ ପୃଥିବୀରେ ଅବସ୍ଥିତ ଏକ ଉଦ୍ୟାନ ।

ରୁ:୫

୪୧. ହେ ଇସ୍ରାଇଲୀୟ[୧] ସନ୍ତାନମାନେ ! ଆମେ ତୁମମାନଙ୍କ ପ୍ରତି କରିଥିବା କୃପାକୁ ସ୍ମରଣ କର ଏବଂ ତୁମେମାନେ ଆମ (ସହିତ କରିଥିବା) ଅଙ୍ଗୀକାରକୁ ପାଳନ କର, ତା ହେଲେ ଆମେ ତୁମ ସହିତ କରିଥିବା ଅଙ୍ଗୀକାରକୁ ପାଳନ କରିବୁ ; ଏବଂ ଆମ୍ଭକୁ, କେବଳ ଆମ୍ଭକୁ ହିଁ ଭୟ କର ।

يٰبَنِىٓ اِسۡرَآءِيۡلَ اذۡكُرُوۡا نِعۡمَتِىَ الَّتِىۡٓ اَنۡعَمۡتُ عَلَيۡكُمۡ وَاَوۡفُوۡا بِعَهۡدِىۡٓ اُوۡفِ بِعَهۡدِكُمۡ‌ۚ وَاِيَّاىَ فَارۡهَبُوۡنِ ﴿۴۱﴾

୪୨. ଏବଂ ଏହା (ଅର୍ଥାତ୍ ଏହି ବାଣୀ)କୁ ବିଶ୍ୱାସ କର ଯାହା (ସମ୍ପ୍ରତି) ଆମେ ଅବତୀର୍ଣ୍ଣ କରିଅଛୁ, ଏବଂ ତୁମମାନଙ୍କ ନିକଟରେ ଯାହା (ବାଣୀ) ଅଛି ଏହା ତାହାର ସତ୍ୟତା ସବ୍ୟସ୍ତ କରୁଅଛି ଏବଂ ତୁମେମାନେ ତାହାକୁ ଅବିଶ୍ୱାସ କରିବାରେ (ସର୍ବ) ପ୍ରଥମ ହୁଅ ନାହିଁ ; ଏବଂ ଆମର ନିଦର୍ଶନଗୁଡ଼ିକର ବିନିମୟରେ ସ୍ୱଳ୍ପ ମୂଲ୍ୟ ଗ୍ରହଣ କରନାହିଁ[୨]; ଏବଂ ଆମ୍ଭକୁ, କେବଳ ଆମ୍ଭକୁ ହିଁ, ଭୟ କର ।

وَاٰمِنُوۡا بِمَآ اَنۡزَلۡتُ مُصَدِّقًا لِّمَا مَعَكُمۡ وَلَا تَكُوۡنُوۡٓا اَوَّلَ كَافِرٍۢ بِهٖ‌ وَلَا تَشۡتَرُوۡا بِاٰيٰتِىۡ ثَمَنًا قَلِيۡلًا وَّاِيَّاىَ فَاتَّقُوۡنِ ﴿۴۲﴾

୪୩. ଏବଂ ଜାଣିଶୁଣି ସତ୍ୟକୁ ମିଥ୍ୟା ସହିତ ମିଶ୍ରିତ କର ନାହିଁ କି ସତ୍ୟକୁ ଗୋପନ କରନାହିଁ ।

وَلَا تَلۡبِسُوا الۡحَـقَّ بِالۡبَاطِلِ وَتَكۡتُمُوا الۡحَـقَّ وَاَنۡتُمۡ تَعۡلَمُوۡنَ ﴿۴۳﴾

୪୪. ଏବଂ ସୁଚାରୁରୂପେ ନମାଜ ପାଠ କର ତଥା ଜକାତ୍ ଦିଅ ଏବଂ ଅଲ୍ଲାହଙ୍କର ପ୍ରକୃତ ଉପାସନାକାରୀ ମାନଙ୍କ ସହିତ ମିଳିତ ହୋଇ ତାହାଙ୍କ ଉପାସନା କର ।

وَاَقِيۡمُوا الصَّلٰوةَ وَاٰتُوا الزَّكٰوةَ وَارۡكَعُوۡا مَعَ الرّٰكِعِيۡنَ ﴿۴۴﴾

୪୫. କ'ଣ ତୁମେମାନେ (ଅନ୍ୟ) ଲୋକମାନଙ୍କୁ ପୁଣ୍ୟ (କରିବା) ପାଇଁ କହୁଅଛ ଏବଂ ନିଜେ ନିଜକୁ ଭୁଲି ଯାଉଅଛ ? ଅଥଚ ତୁମେ (ତୌରାତ) ଗ୍ରନ୍ଥ ପାଠ କରୁଅଛ ; କ'ଣ ତୁମେମାନେ (ତଥାପି) ବୁଝିପାରୁ ନାହିଁ ?

اَتَاۡمُرُوۡنَ النَّاسَ بِالۡبِرِّ وَتَنۡسَوۡنَ اَنۡفُسَكُمۡ وَاَنۡتُمۡ تَتۡلُوۡنَ الۡكِتٰبَ‌ؕ اَفَلَا تَعۡقِلُوۡنَ ﴿۴۵﴾

୪୬. ଏବଂ ଧୈର୍ଯ୍ୟ ଓ ପ୍ରାର୍ଥନା ମାଧ୍ୟମରେ (ଅଲ୍ଲାହଙ୍କର) ସାହାଯ୍ୟ ଭିକ୍ଷା କର ; ବିନୟୀ ମାନଙ୍କ ବ୍ୟତୀତ (ଅନ୍ୟମାନଙ୍କ ପକ୍ଷରେ) ଏହା ବାସ୍ତବିକ କଠିନ (କାର୍ଯ୍ୟ) ଅଟେ ।

وَاسۡتَعِيۡنُوۡا بِالصَّبۡرِ وَالصَّلٰوةِ ‌ؕ وَاِنَّهَا لَكَبِيۡرَةٌ اِلَّا عَلَى الۡخٰشِعِيۡنَۙ ﴿۴۶﴾

୪୭. ଯେଉଁ (ବିନୟୀ) ମାନେ ନିଶ୍ଚିତ ରୂପେ ଜାଣନ୍ତି ଯେ ସେମାନେ ନିଜ ପାଳନକର୍ତ୍ତାଙ୍କୁ ସାକ୍ଷାତ୍ କରିବେ ଓ (ଏହା ମଧ୍ୟ ଜାଣନ୍ତି ଯେ) ତାହାଙ୍କ ନିକଟକୁ ଫେରିଯିବେ ।

الَّذِيۡنَ يَظُنُّوۡنَ اَنَّهُمۡ مُّلٰقُوۡا رَبِّهِمۡ وَاَنَّهُمۡ اِلَيۡهِ رٰجِعُوۡنَ ﴿۴۷﴾ ع

---

୧. 'ଇସ୍ରାଇଲ' ଇସହାକଙ୍କ ପୁତ୍ର ଯାକୁବଙ୍କର ଅନ୍ୟ ଏକ ନାମ । ଇସ୍ରାଇଲ ଶବ୍ଦରୁ ତିନି ଗୋଟି ଅର୍ଥ ପ୍ରକାଶ ପାଏ :(କ) ଯାକୁବ (ଖ) ଯାକୁବଙ୍କ ବଂଶଧର ଓ (ଗ) ଯେ କୌଣସି ପୁଣ୍ୟବାନ ଓ ଧର୍ମଭୀରୁ ବ୍ୟକ୍ତି ବା ଜାତି । ପବିତ୍ର କୋରାନରେ 'ବନି-ଇସ୍ରାଇଲ' ଶବ୍ଦ ଅଠର୍କୋଶିଟି ସ୍ଥାନରେ ଓ 'ୟହୁଦ' ଶବ୍ଦ ନଅଟି ସ୍ଥାନରେ ବ୍ୟବହୃତ ହୋଇଛି । ପ୍ରଥମୋକ୍ତ ଶବ୍ଦ ଜାତି ପାଇଁ ଓ ଶେଷୋକ୍ତ ଶବ୍ଦ ଧର୍ମ ପାଇଁ ବ୍ୟବହୃତ ହୋଇଛି ।

୨. 'ସ୍ୱଳ୍ପ ମୂଲ୍ୟ ଗ୍ରହଣ କର ନାହିଁ'ର ଅର୍ଥ ନୁହେଁ ଯେ ଅଳ୍ପ ପଇସା ନିଅ ନାହିଁ । ବର' ଏହାର ପ୍ରକୃତ ମର୍ମ ହେଉଛି—ଅଲ୍ଲାହଙ୍କ ବାଣୀ ସର୍ବଥା ଧର୍ମମୂଳକ ଅଟେ । ତେଣୁ ଏହାର ପ୍ରତିବଦଳରେ ସଂସାରିକ ମାୟାର କବଳିତ ହୁଅନାହିଁ କାରଣ ଧର୍ମ ତୁଳନାରେ ଏହା ଅତ୍ୟନ୍ତ ତୁଚ୍ଛ ଅଟେ ।

ରୁ:୬

୪୮. ହେ ଇସ୍ରାଇଲୀୟ ସନ୍ତାନମାନେ ! ଆମେ ତୁମମାନଙ୍କ ପ୍ରତି କରିଥିବା କୃପାକୁ ଏବଂ ସାରା ପୃଥିବୀରେ ତୁମମାନଙ୍କୁ ଦେଇଥିବା ପ୍ରାଧାନ୍ୟକୁ ସ୍ମରଣ କର ।

يٰبَنِيْٓ اِسْرَاۗءِيْلَ اذْكُرُوْا نِعْمَتِيَ الَّتِيْٓ اَنْعَمْتُ عَلَيْكُمْ وَاَنِّىْ فَضَّلْتُكُمْ عَلَي الْعٰلَمِيْنَ ﴿٤٨﴾

୪୯. ଏବଂ ସେହି ଦିନକୁ ଭୟ କର ଯେତେବେଳେ କୌଣସି ବ୍ୟକ୍ତି ଅନ୍ୟ କୌଣସି ବ୍ୟକ୍ତିର ପ୍ରତିବଦଳ ହୋଇପାରିବ ନାହିଁ କିମ୍ବା ତା ତରଫରୁ କୌଣସି ସୁପାରିଶ ମଞ୍ଜୁର କରାଯିବ ନାହିଁ କି ତା'ଠାରୁ (କୌଣସି ପ୍ରକାର) କ୍ଷତିପୂରଣ ଗ୍ରହଣ କରାଯିବ ନାହିଁ ତଥା ସେମାନଙ୍କୁ ସାହାଯ୍ୟ କରାଯିବ ନାହିଁ ।

وَاتَّقُوْا يَوْمًا لَّا تَجْزِىْ نَفْسٌ عَنْ نَّفْسٍ شَـيْـــًٔـا وَّلَا يُقْبَلُ مِنْهَا شَفَاعَةٌ وَّلَا يُؤْخَذُ مِنْهَا عَدْلٌ وَّلَا ھُمْ يُنْصَرُوْنَ ﴿٤٩﴾

୫୦. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ ତୁମମାନଙ୍କୁ ଫିରଔନ୍‌ର[୧] ଲୋକମାନଙ୍କ ଠାରୁ ଏପରି ପରିସ୍ଥିତିରେ ମୁକ୍ତି ଦେଉଥିଲୁ କି ସେମାନେ ତୁମମାନଙ୍କୁ ଅତି ନିକୃଷ୍ଟ ଧରଣର ଯନ୍ତ୍ରଣା ଦେଉଥିଲେ, ତୁମମାନଙ୍କ ପୁତ୍ରମାନଙ୍କୁ ହତ୍ୟା କରୁଥିଲେ ଓ ତୁମମାନଙ୍କ ନାରୀମାନଙ୍କୁ ଜୀବିତ ଛାଡ଼ି ଦେଉଥିଲେ ଏବଂ ଏଥିରେ ତୁମମାନଙ୍କ ପାଳନକର୍ତ୍ତାଙ୍କ ପକ୍ଷରୁ (ତୁମମାନଙ୍କ ସକାଶେ) ଏକ କଠିନ ପରୀକ୍ଷା ଥିଲା ।

وَاِذْ نَجَّيْنٰكُمْ مِّنْ اٰلِ فِرْعَوْنَ يَسُوْمُوْنَكُمْ سُوْۗءَ الْعَذَابِ يُذَبِّحُوْنَ اَبْنَاۗءَكُمْ وَيَسْتَحْيُوْنَ نِسَاۗءَكُمْ وَفِىْ ذٰلِكُمْ بَلَاۗءٌ مِّنْ رَّبِّكُمْ عَظِيْمٌ ﴿٥٠﴾

୫୧. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ ତୁମମାନଙ୍କ ପାଇଁ ସମୁଦ୍ରକୁ ବିଭାଜିତ କଲୁ[୨] ଓ ତୁମମାନଙ୍କୁ ମୁକ୍ତି ଦେଇଥିଲୁ ଏବଂ ତୁମମାନଙ୍କ ଆଖି ଆଗରେ ଆମେ ଫିରଔନ୍‌ର ଲୋକମାନଙ୍କୁ ବୁଡ଼ାଇ ଦେଲୁ ।

وَاِذْ فَرَقْنَا بِكُمُ الْبَحْرَ فَاَنْجَيْنٰكُمْ وَاَغْرَقْنَآ اٰلَ فِرْعَوْنَ وَاَنْتُمْ تَنْظُرُوْنَ ﴿٥١﴾

୫୨. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମେ ମୁସାଙ୍କ ସହିତ ଚାଳିଶ ରାତ୍ରିର ପ୍ରତିଜ୍ଞା କଲୁ ତାହାପରେ ତୁମେମାନେ ତାଙ୍କ ଅନୁପସ୍ଥିତିରେ ଅତ୍ୟାଚାରୀ ହୋଇ ବାଛୁରୀକୁ (ଉପାସ୍ୟ ରୂପେ) ଗ୍ରହଣ କଲ ।

وَاِذْ وٰعَدْنَا مُوْسٰٓى اَرْبَعِيْنَ لَيْلَةً ثُمَّ اتَّخَذْتُمُ الْعِجْلَ مِنْۢ بَعْدِهٖ وَاَنْتُمْ ظٰلِمُوْنَ ﴿٥٢﴾

୫୩. ଏହାପରେ (ମଧ୍ୟ) ଆମେ ତୁମମାନଙ୍କୁ କ୍ଷମା କଲୁ; ଯେପରିକି ତୁମେମାନେ କୃତଜ୍ଞ ହେବ ।

ثُمَّ عَفَوْنَا عَنْكُمْ مِّنْۢ بَعْدِ ذٰلِكَ لَعَلَّكُمْ تَشْكُرُوْنَ ﴿٥٣﴾

୫୪. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମେ ମୁସାଙ୍କୁ (ତୌରାତ୍) ଗ୍ରନ୍ଥ ଓ ନିର୍ଣ୍ଣାୟକ ନିଦର୍ଶନମାନ ପ୍ରଦାନ କଲୁ ଯେପରିକି ତୁମେମାନେ ସତ୍‌ପଥଗାମୀ ହେବ ।

وَاِذْ اٰتَيْنَا مُوْسَى الْكِتٰبَ وَالْفُرْقَانَ لَعَلَّكُمْ تَهْتَدُوْنَ ﴿٥٤﴾

---

୧. 'ଫିରଔନ' କୌଣସି ନିର୍ଦ୍ଦିଷ୍ଟ ରାଜାଙ୍କ ନାମ ନୁହେଁ । ମିଶରଦେଶର ନୀଳ ଉପତ୍ୟକାରେ ରାଜତ୍ୱ କରୁଥିବା ରାଜାମାନେ ଫିରଔନ ବା ଫାରୋ ନାମରେ ଅଭିହିତ ।

୨. ଭଟ୍ଟା ଯୋଗୁଁ ଜଳରାଶି ସମୁଦ୍ର ଶଯ୍ୟାରୁ ଅପସାରିତ ହୋଇଗଲା ଓ ହଜରତ ମୁସା ଓ ତାଙ୍କ ଅନୁଚରମାନେ ସମୁଦ୍ର ପାର ହୋଇ ଗୁଲିଗଲେ । ଏହାପରେ ଯେତେବେଳେ ଫିରଔନର ସୈନ୍ୟବାହିନୀ ପାରିହେବାକୁ ଲାଗିଲେ ସେତେବେଳେ ଜୁଆର ଆସିବା ସମୟ ହୋଇଯାଇଥିବାରୁ ଜଳ ବୃଦ୍ଧି ହୋଇଥିଲା ଓ ସେମାନେ ଜଳମଗ୍ନ ହୋଇଯାଇଥିଲେ । ଅଲ୍ଲାହ ଏହିପରି ଭାବେ ଭଟ୍ଟା ସମୟରେ ମୁସାଙ୍କୁ ସମୁଦ୍ର ତଟରେ ପହଞ୍ଚାଇ ଦେଇ ରକ୍ଷା କରିଥିଲେ । ତେଣୁ ଏଠାରେ ସମୁଦ୍ରକୁ ବିଭାଜିତ କରିବା ବିଷୟର ଉଲ୍ଲେଖ ଅଛି ।

୫୫. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ମୁସା ନିଜ ଲୋକ ମାନଙ୍କୁ କହିଲେ, "ହେ ଆମ୍ଭ ସମ୍ପ୍ରଦାୟର ଲୋକମାନେ) ! ତୁମେମାନେ ବାଛୁରୀକୁ (ଉପାସ୍ୟ ରୂପେ ଗ୍ରହଣ କରି ବାସ୍ତବରେ ନିଜ ଉପରେ ଅତ୍ୟାଚାର କରିଅଛ ; ସୁତରାଂ ତୁମେମାନେ ନିଜ ସ୍ରଷ୍ଟାଙ୍କ ପ୍ରତି ମନୋନିବେଶ କର ଏବଂ ନିଜେ ନିଜର (କୁପ୍ରବୃତ୍ତିକୁ) ସଂହାର କର [୧] ; ଏହା ତୁମମାନଙ୍କ ସ୍ରଷ୍ଟାଙ୍କ ଦୃଷ୍ଟିରେ ତୁମମାନଙ୍କ ପକ୍ଷରେ ଅତି ଉତ୍ତମ ଅଟେ" ; (ଯେତେବେଳେ ତୁମେ ଏହା କଲ) ତା ପରେ ସେ (ଅଲ୍ଲାହ୍) ତୁମମାନଙ୍କ ପ୍ରତି ଦୟାପୂର୍ବକ ପୁନଃ ମନୋନିବେଶ କଲେ ; ବାସ୍ତବରେ ସେ (ନିଜ ଭକ୍ତମାନଙ୍କ ପ୍ରତି) ଅତ୍ୟନ୍ତ ମନୋଯୋଗୀ ଓ ସଦା କରୁଣାମୟ ।

وَإِذْ قَالَ مُوسَىٰ لِقَوْمِهِ يَٰقَوْمِ إِنَّكُمْ ظَلَمْتُمْ أَنفُسَكُم بِٱتِّخَاذِكُمُ ٱلْعِجْلَ فَتُوبُوٓا۟ إِلَىٰ بَارِئِكُمْ فَٱقْتُلُوٓا۟ أَنفُسَكُمْ ذَٰلِكُمْ خَيْرٌ لَّكُمْ عِندَ بَارِئِكُمْ فَتَابَ عَلَيْكُمْ ۚ إِنَّهُۥ هُوَ ٱلتَّوَّابُ ٱلرَّحِيمُ ﴿٥٥﴾

୫୬. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ତୁମେମାନେ କହିଥିଲ, "ହେ ମୁସା ! ଆମେମାନେ ଅଲ୍ଲାହ୍‌ଙ୍କୁ ପ୍ରକାଶ୍ୟରେ ନ ଦେଖିବା ପର୍ଯ୍ୟନ୍ତ କଦାପି ତୁମ୍ଭ କଥା ମାନିବୁ ନାହିଁ ;" ଏହାପରେ ତୁମେମାନେ ଏକ ବିନାଶକାରୀ ଶାସ୍ତିର କବଳିତ ହେଲ, ଏବଂ ତୁମେମାନେ (ସ୍ୱଚକ୍ଷୁରେ ନିଜ କର୍ମଫଳ) ଦେଖୁଥିଲ ।

وَإِذْ قُلْتُمْ يَٰمُوسَىٰ لَن نُّؤْمِنَ لَكَ حَتَّىٰ نَرَى ٱللَّهَ جَهْرَةً فَأَخَذَتْكُمُ ٱلصَّٰعِقَةُ وَأَنتُمْ تَنظُرُونَ ﴿٥٦﴾

୫୭. ତତ୍ପରେ ଆମେ ତୁମମାନଙ୍କ (ଆଧ୍ୟାତ୍ମିକ) ବିନାଶ ପରେ ତୁମମାନଙ୍କୁ (ପୁନର୍ବାର) ଉତ୍‌ଥିତ କଲୁ [୨] ଯେପରିକି ତୁମେମାନେ କୃତଜ୍ଞ ହେବ ।

ثُمَّ بَعَثْنَٰكُم مِّنۢ بَعْدِ مَوْتِكُمْ لَعَلَّكُمْ تَشْكُرُونَ ﴿٥٧﴾

୫୮. ଏବଂ ଆମେ ତୁମମାନଙ୍କ ଉପରେ ମେଘମାଳା ଦ୍ୱାରା [୩] ଛାୟା କରାଇଲୁ ଏବଂ ତୁମମାନଙ୍କ ପାଇଁ 'ମନ୍' ଓ 'ସଲୱା' ପଠାଇଲୁ (ଓ କହିଲୁ), "ଆମେ ତୁମମାନଙ୍କୁ ଯେଉଁସବୁ ବିଶୁଦ୍ଧ ଦ୍ରବ୍ୟ ଦେଇଅଛୁ ତନ୍ମଧ୍ୟରୁ ଖାଅ" ; ଏବଂ (ଅମାନ୍ୟ କରି) ସେମାନେ ଆମ୍ଭର କୌଣସି କ୍ଷତି କରି ନାହାନ୍ତି ବରଂ ନିଜର ହିଁ କ୍ଷତି କରୁଥିଲେ ।

وَظَلَّلْنَا عَلَيْكُمُ ٱلْغَمَامَ وَأَنزَلْنَا عَلَيْكُمُ ٱلْمَنَّ وَٱلسَّلْوَىٰ ۖ كُلُوا۟ مِن طَيِّبَٰتِ مَا رَزَقْنَٰكُمْ ۖ وَمَا ظَلَمُونَا وَلَٰكِن كَانُوٓا۟ أَنفُسَهُمْ يَظْلِمُونَ ﴿٥٨﴾

---

୧. ବାଇବେଲ ଅନୁଧ୍ୟାନ କଲେ ଜଣାଯିବ ଯେ ଏକଦା ଇସ୍ରାଇଲୀୟମାନଙ୍କୁ ଏହିପରି ଆଦେଶ କରାଯାଇଥିଲା— ପ୍ରତ୍ୟେକ ଭାଇ ଆପଣା ଭାଇକୁ, ପ୍ରତ୍ୟେକ ବନ୍ଧୁ ନିଜ ବନ୍ଧୁକୁ, ପ୍ରତ୍ୟେକ ପ୍ରତିବେଶୀ ନିଜ ପ୍ରତିବେଶୀକୁ ହତ୍ୟା କରୁ । ତଦନୁସାରେ ତିନି ସହସ୍ର ବ୍ୟକ୍ତି ନିହତ ହୋଇଥିବା ବର୍ଣ୍ଣନା କରାଯାଇଛି । **(Exodus 32 : 27-28)** କିନ୍ତୁ ସେହି ଗ୍ରନ୍ଥରେ ଅନ୍ୟତ୍ର ଅନ୍ୟକୁ ହତ୍ୟା କରି ନ ଥିବା ବ୍ୟକ୍ତିକୁ ହତ୍ୟା କରିବା ଅବୈଧ ଘୋଷଣା କରାଯାଇଥିବାରୁ ଏହି ଅର୍ଥ ଯଥାର୍ଥ ନୁହେଁ । ଅନ୍ୟ ପକ୍ଷରେ କେତେକ ଟୀକାକାର ତାହାର ଆକ୍ଷରିକ ଅର୍ଥକୁ ଗ୍ରହଣ କରି 'ପ୍ରତ୍ୟେକ ବ୍ୟକ୍ତି ଆତ୍ମହତ୍ୟା କରୁ' ବୋଲି ବ୍ୟାଖ୍ୟାନ କରିଛନ୍ତି । ଆତ୍ମହତ୍ୟା ଏକ ଉଚିତ କର୍ମ ହୋଇ ନ ଥିବାରୁ ଏହା ଅଯୌକ୍ତିକ । ଏହି ଘଟଣା ଏକ ଉପମା ମାତ୍ର । ଅତଏବ ଆମମାନଙ୍କ ନିକଟରେ 'ନିଜେ ନିଜକୁ ହତ୍ୟା କରିବା' ଅର୍ଥ ନିଜ କୁପ୍ରବୃତ୍ତିକୁ ଧ୍ୱଂସ କରିବା ।

୨. ଅର୍ଥାତ୍ ତୁମମାନଙ୍କର ଧର୍ମ ବିଶ୍ୱାସ ଓ ତୁମମାନଙ୍କ ବଂଶଧର ମାନଙ୍କର ଅଭିବୃଦ୍ଧି ଘଟାଇ ପୁନର୍ବାର ତୁମମାନଙ୍କୁ ଶକ୍ତିଶାଳୀ କରିଥିଲୁ ।

୩. ଆରବୀ ଭାଷାରେ 'ମନ୍' ଅର୍ଥ ଅନୁଗ୍ରହ ବା ଦାନ । ତେଣୁ ଯାହା ଅଲ୍ଲାହ୍‌ଙ୍କ ଦୟାରୁ ବିନା ପରିଶ୍ରମରେ ମିଳେ ତାହାକୁ 'ମନ୍' କୁହାଯାଏ । ସେହିପରି 'ସଲୱା' ତିତିର ପକ୍ଷୀ ଜାତୀୟ ଏକ ପକ୍ଷୀକୁ ବୁଝାଏ । ଏଠାରେ ଏହି ଆୟତ୍‌ର ତାତ୍ପର୍ଯ୍ୟ ହେଉଛି ଯେ ଅଲ୍ଲାହ୍ ସେମାନଙ୍କ ପାଇଁ ଅଳ୍ପ ପରିଶ୍ରମରେ ଖାଦ୍ୟ ବ୍ୟବସ୍ଥା କରିଥିଲେ ।

وَإِذْ قُلْنَا ادْخُلُوا هَٰذِهِ الْقَرْيَةَ فَكُلُوا مِنْهَا حَيْثُ شِئْتُمْ رَغَدًا وَادْخُلُوا الْبَابَ سُجَّدًا وَقُولُوا حِطَّةٌ نَغْفِرْ لَكُمْ خَطَايَاكُمْ ۚ وَسَنَزِيدُ الْمُحْسِنِينَ ﴿٥٩﴾

୫୯. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମେ କହିଲୁ, "ଏହି ସହରରେ[1] ପ୍ରବେଶ କର ଓ ତନ୍ମଧ୍ୟରୁ ଯେଉଁଠାରୁ ଇଚ୍ଛା ପର୍ଯ୍ୟାପ୍ତ ପରିମାଣରେ ଖାଅ ଏବଂ (ତାହାର ପ୍ରବେଶ ଦ୍ୱାର ମଧ୍ୟଦେଇ) ସମ୍ପୂର୍ଣ୍ଣ ନତମସ୍ତକ ହୋଇ ପ୍ରବେଶ କର ଏବଂ କୁହ, "(ହେ ପ୍ରଭୁ !) ଆମେମାନେ ନିଜ (ପାପ) ଭାର ଲାଘବ କରିବା ପାଇଁ ମିନତି କରୁଅଛୁ" ; ତାହାହେଲେ ଆମେ ତୁମମାନଙ୍କର ସକଳ ଅପରାଧ ମାର୍ଜନା କରିବୁ ଏବଂ ଆମେ ହିତକାରୀମାନଙ୍କର ସମୃଦ୍ଧି ଘଟାଇବୁ ।

فَبَدَّلَ الَّذِينَ ظَلَمُوا قَوْلًا غَيْرَ الَّذِي قِيلَ لَهُمْ فَأَنْزَلْنَا عَلَى الَّذِينَ ظَلَمُوا رِجْزًا مِنَ السَّمَاءِ بِمَا كَانُوا يَفْسُقُونَ ﴿٦٠﴾ ع

୬୦. ତା ପରେ (ସେମାନଙ୍କ ଦୁଷ୍କାମିକୁ ଲକ୍ଷ୍ୟ କର ଯେ) ଅତ୍ୟାଚାରୀମାନଙ୍କୁ ଯାହା କୁହାଯାଇଥିଲା (ସେମାନେ) ତାହା ପରିବର୍ତ୍ତେ ଅନ୍ୟ କଥା ବଦଳାଇ (କହିବାକୁ ଆରମ୍ଭ କରି) ଦେଲେ ; ସୁତରାଂ ଆମେ ଅତ୍ୟାଚାରୀମାନଙ୍କ ଉପରେ, ସେମାନଙ୍କ ଅବିଶ୍ୱାସ ହେତୁ, ଆକାଶରୁ ଏକ ଶାସ୍ତି ପ୍ରେରଣ କଲୁ ।

ରୁ:୬

وَإِذِ اسْتَسْقَىٰ مُوسَىٰ لِقَوْمِهِ فَقُلْنَا اضْرِبْ بِعَصَاكَ الْحَجَرَ ۖ فَانْفَجَرَتْ مِنْهُ اثْنَتَا عَشْرَةَ عَيْنًا ۖ قَدْ عَلِمَ كُلُّ أُنَاسٍ مَشْرَبَهُمْ ۖ كُلُوا وَاشْرَبُوا مِنْ رِزْقِ اللَّهِ وَلَا تَعْثَوْا فِي الْأَرْضِ مُفْسِدِينَ ﴿٦١﴾

୬୧. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ମୁସା ନିଜ ସମ୍ପ୍ରଦାୟ ପାଇଁ ଜଳଭିକ୍ଷା କଲେ ଆମେ (ତାହାଙ୍କୁ) କହିଲୁ, "ନିଜ ଯଷ୍ଟିରେ ଅମୁକ ପଥରକୁ ଆଘାତ କର" ; ଫଳରେ ତହିଁରୁ ବାରଗୋଟି ଝରଣା ନିର୍ଗତ ହେଲା, (ଓ) ପ୍ରତ୍ୟେକ ଗୋଷ୍ଠୀ ଆପଣା ଘାଟକୁ ଚିହ୍ନି ନେଲେ ; (ତା'ପରେ ସେମାନଙ୍କୁ କୁହାଗଲା), "ଅଲ୍ଲାହ୍‌ଙ୍କ ପ୍ରଦତ୍ତ ଦ୍ରବ୍ୟରୁ ଖାଅ ଓ ପିଅ ଏବଂ ବିଶୃଙ୍ଖଳା ସୃଷ୍ଟିକାରୀ ହୋଇ ପୃଥିବୀରେ ବିପର୍ଯ୍ୟୟ ସୃଷ୍ଟି କର ନାହିଁ ।"

وَإِذْ قُلْتُمْ يَا مُوسَىٰ لَنْ نَصْبِرَ عَلَىٰ طَعَامٍ وَاحِدٍ فَادْعُ لَنَا رَبَّكَ يُخْرِجْ لَنَا مِمَّا تُنْبِتُ الْأَرْضُ مِنْ بَقْلِهَا وَقِثَّائِهَا وَفُومِهَا وَعَدَسِهَا وَبَصَلِهَا ۖ قَالَ أَتَسْتَبْدِلُونَ الَّذِي هُوَ أَدْنَىٰ بِالَّذِي هُوَ خَيْرٌ ۚ اهْبِطُوا مِصْرًا فَإِنَّ

୬୨. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ତୁମେମାନେ କହିଥିଲ, "ହେ ମୁସା ! ଆମେମାନେ ଗୋଟିଏ ପ୍ରକାର ଖାଦ୍ୟରେ ତୃପ୍ତ ହେବୁ ନାହିଁ ; ସୁତରାଂ ତୁମେ ଆମମାନଙ୍କ ପାଇଁ ନିଜ ପାଳନକର୍ତ୍ତାଙ୍କ ନିକଟରେ ପ୍ରାର୍ଥନା କର ଯେ ସେ ଆମମାନଙ୍କ ସକାଶେ ଏପରି କେତେକ ଭୂମିଜ ଦ୍ରବ୍ୟ ଯଥା— ପନିପରିବା, କାକୁଡ଼ି, ଗହମ, ମସୁର ଓ ପିଆଜ ଉତ୍ପନ୍ନ କରାନ୍ତୁ" ; (ତେଣୁ ଅଲ୍ଲାହ୍) କହିଲେ, "ତୁମେମାନେ କ'ଣ ଉତ୍କୃଷ୍ଟ ଦ୍ରବ୍ୟ ପରିବର୍ତ୍ତେ ନିକୃଷ୍ଟ ଦ୍ରବ୍ୟ ଗ୍ରହଣ କରିବାକୁ ଚାହୁଁଛ ? ତେବେ କୌଣସି ସହରକୁ

---

୧. ଇସ୍ରାଇଲୀୟ ସନ୍ତାନମାନେ ଯେତେବେଳେ ମିଶର ଦେଶ ପରିତ୍ୟାଗ କରି ସିନା ନାମକ ଜଙ୍ଗଲ ମଧ୍ୟ ଦେଇ କିନ୍‌ଆନ ଅଞ୍ଚଳକୁ ଯାଉଥିଲେ ସେତେବେଳେ ସେମାନେ ଏପରି କେତେକ ଅଧିବାସୀଙ୍କ ସମ୍ପର୍କରେ ଆସିଥିଲେ ଯେଉଁମାନେ ସେହି ଜଙ୍ଗଲରେ ବସତି ସ୍ଥାପନ କରିଥିଲେ । ଉକ୍ତ ଇସ୍ରାଇଲୀୟ ମାନଙ୍କର ଉଦାସୀନତା ଦୂର କରିବା ସକାଶେ ସେହି ବସତି ମାନଙ୍କରେ କିଛି ସମୟ ଅତିବାହିତ କରିବା ପାଇଁ ସେମାନଙ୍କୁ ଅନୁମତି ଦିଆଯାଉଥିଲା । ଏଠାରେ ସେପରି କୌଣସି ସହର ବିଷୟ ବର୍ଣ୍ଣନା କରାଯାଉଛି ।

لَكُمْ مَا سَأَلْتُمْ ۗ وَضُرِبَتْ عَلَيْهِمُ الذِّلَّةُ وَالْمَسْكَنَةُ وَبَاءُوا بِغَضَبٍ مِنَ اللَّهِ ۗ ذَٰلِكَ بِأَنَّهُمْ كَانُوا يَكْفُرُونَ بِآيَاتِ اللَّهِ وَيَقْتُلُونَ النَّبِيِّينَ بِغَيْرِ الْحَقِّ ۗ ذَٰلِكَ بِمَا عَصَوْا وَكَانُوا يَعْتَدُونَ ﴿٦٢﴾ ع

ଚାଲିଯାଅ ; (ସେଠାରେ) ତୁମେମାନେ ଯାହା ଲୋଡୁଅଛ ତାହା ଅବଶ୍ୟ ପାଇବ ;" (ତତ୍ପରେ) ସେମାନଙ୍କୁ ସବୁ ସମୟ ପାଇଁ ଲାଞ୍ଛିତ ଓ ଅସହାୟ କରି ଦିଆଗଲା ଏବଂ ସେମାନେ ଅଲ୍ଲାହଙ୍କ ପ୍ରକୋପର ଭାଜନ ହେଲେ, କାରଣ ସେମାନେ ଅଲ୍ଲାହଙ୍କ ନିଦର୍ଶନ ଗୁଡ଼ିକୁ ଅସ୍ୱୀକାର କରୁଥିଲେ ଓ ନବିମାନଙ୍କୁ ଅନ୍ୟାୟ ଭାବରେ ହତ୍ୟା କରିବାକୁ ଚାହୁଁଥିଲେ ; ଏବଂ ସେମାନେ ଅମାନ୍ୟ କରିଥିବା ଓ ସୀମା ଲଙ୍ଘନ କରିଥିବା ହେତୁ ଏହା (ଅର୍ଥାତ୍ ପାପ, ସେମାନଙ୍କ ମଧ୍ୟରେ ସୃଷ୍ଟି) ହେଲା ।

ରୁ:୮

إِنَّ الَّذِينَ آمَنُوا وَالَّذِينَ هَادُوا وَالنَّصَارَىٰ وَالصَّابِئِينَ مَنْ آمَنَ بِاللَّهِ وَالْيَوْمِ الْآخِرِ وَعَمِلَ صَالِحًا فَلَهُمْ أَجْرُهُمْ عِنْدَ رَبِّهِمْ وَلَا خَوْفٌ عَلَيْهِمْ وَلَا هُمْ يَحْزَنُونَ ﴿٦٣﴾

୬୩. ଯେଉଁମାନେ ବିଶ୍ୱାସକରିଛନ୍ତି ଓ ଇହୁଦୀ ଅଟନ୍ତି ତଥା ଖ୍ରୀଷ୍ଟିୟାନ ଓ ସାବି (ସେମାନଙ୍କ ମଧ୍ୟରୁ) ଯେ (ଦଳ)[୧] ଅଲ୍ଲାହଙ୍କ-ଠାରେ ଏବଂ ଅନ୍ତିମ ଦିବସ ଉପରେ (ସମ୍ପୂର୍ଣ୍ଣ) ବିଶ୍ୱାସ କରିଛନ୍ତି ଓ ସତ୍କର୍ମ କରିଛନ୍ତି ନିଶ୍ଚିତ ରୂପେ ସେମାନଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ସେମାନଙ୍କର (ଉପଯୁକ୍ତ) ପ୍ରତିଫଳ ଅଛି ; ସେମାନଙ୍କର (ଭବିଷ୍ୟତ ପାଇଁ) କୌଣସି ପ୍ରକାର ଭୟ ରହିବ ନାହିଁ କି ସେମାନେ (ଅତୀତ ତ୍ରୁଟି ପାଇଁ) ଦୁଃଖିତ ହେବେ ନାହିଁ ।

وَإِذْ أَخَذْنَا مِيثَاقَكُمْ وَرَفَعْنَا فَوْقَكُمُ الطُّورَ خُذُوا مَا آتَيْنَاكُمْ بِقُوَّةٍ وَاذْكُرُوا مَا فِيهِ لَعَلَّكُمْ تَتَّقُونَ ﴿٦٤﴾

୬୪. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମ୍ଭେ ତୁମମାନଙ୍କଠାରୁ ଦୃଢ଼ ଅଙ୍ଗୀକାର ଗ୍ରହଣ କରିଥିଲୁ ଏବଂ ତୁର (ପର୍ବତ)କୁ ତୁମମାନଙ୍କ ଉପରେ ଉନ୍ନୀତ କରିଥିଲୁ (ଏବଂ କହିଥିଲୁ) ଯାହା (କିଛି) ଆମ୍ଭେ ତୁମମାନଙ୍କୁ ଦେଇଅଛୁ ତାହାକୁ ଦୃଢ଼ ଭାବରେ ଧାରଣ କର ; ଏବଂ ସେଥିରେ ଯାହାକିଛି ଅଛି ତାହାକୁ ମନେ ରଖ, ତାହାହେଲେ ତୁମେମାନେ ଧର୍ମଭୀରୁ ହେବ ।

ثُمَّ تَوَلَّيْتُمْ مِنْ بَعْدِ ذَٰلِكَ ۖ فَلَوْلَا فَضْلُ اللَّهِ عَلَيْكُمْ وَرَحْمَتُهُ لَكُنْتُمْ مِنَ الْخَاسِرِينَ ﴿٦٥﴾

୬୫. ପୁନଶ୍ଚ (ଏହି ପ୍ରକାଶ୍ୟ ଉପଦେଶ ପ୍ରାପ୍ତ ହେବା) ପରେ (ମଧ୍ୟ) ତୁମେମାନେ ବିମୁଖ ହୋଇ ଚାଲିଗଲ ; ଏବଂ ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କ କୃପା ଓ କରୁଣା ହୋଇ ନଥାନ୍ତା ତାହାହେଲେ ତୁମେମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହୋଇଥାନ୍ତ ।

---

୧. କେତେକ ବ୍ୟକ୍ତି ଅଜ୍ଞତା ବଶତଃ ମନେ କରନ୍ତି ଯେ ଇହୁଦୀ ଆଦି ଧର୍ମାବଲମ୍ବୀମାନେ ନିଜ ନିଜ ଧର୍ମରେ ସମ୍ପୂର୍ଣ୍ଣ ଆସ୍ଥା ସ୍ଥାପନ କରି ଓ ସତ୍କର୍ମ ସମ୍ପାଦନ କରି ଯଦି ଅଲ୍ଲାହ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରନ୍ତି, ତେବେ ସେମାନେ ମୋକ୍ଷପ୍ରାପ୍ତ ହେବେ । କିନ୍ତୁ ଏହା ଯଥେଷ୍ଟ ନୁହେଁ । ଉପରୋକ୍ତ ଦୁଇଗୋଟି ବିଷୟ ଉପରେ ବିଶ୍ୱାସ କରିବା ଅର୍ଥ ସୃଷ୍ଟିର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମସ୍ତ ମଧ୍ୟବର୍ତ୍ତୀକାଳୀନ ବିଷୟ ଉପରେ ବିଶ୍ୱାସ କରିବାକୁ ହେବ । ସୁତରାଂ ପ୍ରତ୍ୟେକ ବ୍ୟକ୍ତି— ସେ ଇହୁଦୀ ହୋଇଥାଉ କି ମୁସଲମାନ ହୋଇଥାଉ— କୋରାନ ବର୍ଣ୍ଣିତ ସକଳ ସିଦ୍ଧାନ୍ତକୁ ସମ୍ପୂର୍ଣ୍ଣ ରୂପେ ଗ୍ରହଣ ଓ ପାଳନ କରିବା ଅପରିହାର୍ଯ୍ୟ । ଅତଏବ କେବଳ ମୌଖିକ ବିଶ୍ୱାସ ଲାଭଦାୟକ ହେବ ନାହିଁ ।

୬୬. ଏବଂ ତୁମେମାନେ ସେମାନଙ୍କ (ପରିଣାମ) ବିଷୟରେ ଅବଶ୍ୟ ଜାଣିଅଛ ଯେଉଁମାନେ ତୁମମାନଙ୍କ (ଅର୍ଥାତ୍ ଗ୍ରନ୍ଥଧାରୀମାନଙ୍କ) ମଧ୍ୟରେ (ଥାଇ) ସବତ[୧] ସଂକ୍ରାନ୍ତରେ ସୀମାଲଙ୍ଘନ କରିଥିଲେ ; ତେଣୁ ଆମ୍ଭେ ସେମାନଙ୍କୁ କହିଥିଲୁ, "ଘୃଣିତ ବାନର (ସ୍ୱଭାବର) ହୋଇଯାଅ ।"

وَلَقَدْ عَلِمْتُمُ الَّذِينَ اعْتَدَوْا مِنْكُمْ فِي السَّبْتِ فَقُلْنَا لَهُمْ كُونُوا قِرَدَةً خَاسِئِينَ ﴿٦٦﴾

୬୭. ସୁତରାଂ ଆମ୍ଭେ ଏହାକୁ (ଅର୍ଥାତ୍ ଏହି ଘଟଣାକୁ) ସେମାନଙ୍କ ସମସାମୟିକ ଓ ପରବର୍ତ୍ତୀ (ଲୋକମାନ)ଙ୍କ ପାଇଁ ଶିକ୍ଷା ସ୍ୱରୂପ ଏବଂ ଧର୍ମଭୀରୁମାନଙ୍କ ପାଇଁ ଏକ ଉପଦେଶ (ସ୍ୱରୂପ) କରିଦେଲୁ ।

فَجَعَلْنَاهَا نَكَالًا لِمَا بَيْنَ يَدَيْهَا وَمَا خَلْفَهَا وَمَوْعِظَةً لِلْمُتَّقِينَ ﴿٦٧﴾

୬୮. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ମୁସା ନିଜ ଲୋକମାନଙ୍କୁ କହିଲେ, "ଅଲ୍ଲାଃ ତୁମମାନଙ୍କୁ ଗୋ-ବଧ କରିବାକୁ ଆଦେଶ ଦେଉଛନ୍ତି ;" ସେମାନେ କହିଲେ, "କ'ଣ ତୁମେ ଆମମାନଙ୍କୁ ପରିହାସ କରୁଅଛ ?" (ମୁସା) କହିଲେ, "ମୁଁ ଯେପରି ମୂଢ଼ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇ ନ ଯାଏ ସେଥିଲାଗି ଅଲ୍ଲାଃଙ୍କର ଶରଣଭିକ୍ଷା କରୁଅଛି ।"

وَإِذْ قَالَ مُوسَىٰ لِقَوْمِهِ إِنَّ اللَّهَ يَأْمُرُكُمْ أَنْ تَذْبَحُوا بَقَرَةً ۖ قَالُوا أَتَتَّخِذُنَا هُزُوًا ۖ قَالَ أَعُوذُ بِاللَّهِ أَنْ أَكُونَ مِنَ الْجَاهِلِينَ ﴿٦٨﴾

୬୯. ସେମାନେ କହିଲେ, "ଆମମାନଙ୍କ ପାଇଁ ନିଜ ପାଳକନକର୍ତ୍ତାଙ୍କ ଠାରେ ପ୍ରାର୍ଥନା କର କି ସେ ଆମମାନଙ୍କୁ ଖୋଲି କହନ୍ତୁ ଯେ ସେ (ଗାଈ) କିପରି ?" ସେ (ମୁସା) କହିଲେ "ସେ (ଅଲ୍ଲାଃ) କହୁଛନ୍ତି ଯେ ତାହା ଏପରି ଏକ ଗାଈ ଯାହା ବୁଢ଼ୀ ନୁହେଁ କି ବାଛୁରୀ ନୁହେଁ, ବରଂ ତାହାର ମଝାମଝି ଓ ବୟଃପ୍ରାପ୍ତ ; ତେଣୁ ତୁମମାନଙ୍କୁ ଯେଉଁ ଆଦେଶ ଦିଆଯାଉଅଛି ତାହାକୁ ପାଳନ କର ।"

قَالُوا ادْعُ لَنَا رَبَّكَ يُبَيِّنْ لَنَا مَا هِيَ ۚ قَالَ إِنَّهُ يَقُولُ إِنَّهَا بَقَرَةٌ لَا فَارِضٌ وَلَا بِكْرٌ عَوَانٌ بَيْنَ ذَٰلِكَ ۖ فَافْعَلُوا مَا تُؤْمَرُونَ ﴿٦٩﴾

୭୦. ସେମାନେ କହିଲେ, "ଆମମାନଙ୍କ ପାଇଁ ନିଜ ପାଳନକର୍ତ୍ତାଙ୍କଠାରେ (ପୁଣି) ପ୍ରାର୍ଥନା କର କି ସେ ଆମମାନଙ୍କୁ ଖୋଲି କହନ୍ତୁ ଯେ ତା'ର ରଙ୍ଗ କିପରି ?" (ମୁସା) କହିଲେ, "ସେ (ଅଲ୍ଲାଃ) କହୁଛନ୍ତି ଯେ ସେ କସରା ରଙ୍ଗର ଏକ ଗାଈ, ତା'ର ରଙ୍ଗ ଅତ୍ୟନ୍ତ ଉଜ୍ଜ୍ୱଳ ଓ ସେ ଦର୍ଶକମାନଙ୍କୁ ଖୁବ୍ ପସନ୍ଦ ହୁଏ ।"

قَالُوا ادْعُ لَنَا رَبَّكَ يُبَيِّنْ لَنَا مَا لَوْنُهَا ۚ قَالَ إِنَّهُ يَقُولُ إِنَّهَا بَقَرَةٌ صَفْرَاءُ فَاقِعٌ لَوْنُهَا تَسُرُّ النَّاظِرِينَ ﴿٧٠﴾

---

୧. ଇହୁଦୀମାନଙ୍କ ପାଇଁ ସବତ ଅର୍ଥାତ୍ ଶନିବାରକୁ ପବିତ୍ର କୁହାଯାଇଥିଲା । ସେଦିନ ଅଲ୍ଲାଃଙ୍କ ଉପସନା ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ ନ କରିବାକୁ ନିର୍ଦ୍ଦେଶ ଦିଆ ଯାଇଥିଲା । **(Exodus 20:11)**

୭୧. ସେମାନେ କହିଲେ, "ଆମମାନଙ୍କ ପାଇଁ ନିଜ ପାଳନକର୍ତ୍ତାଙ୍କ ଠାରେ (ପୁଣି) ପ୍ରାର୍ଥନା କର କି ସେ ଆମମାନଙ୍କୁ ଖୋଲି କହନ୍ତୁ ଯେ ସେ (ଗାଈ) କିପରି ? କାରଣ ଆମମାନଙ୍କୁ ଏ ପ୍ରକାରର (ସବୁ) ଗାଈ ଏକା ଭଳି ଦେଖାଯାଉଛନ୍ତି ଏବଂ (ବିଶ୍ୱାସ ରଖ ଯେ) ଅଲ୍ଲାହ ଚାହିଁଲେ ଆମେମାନେ ନିଶ୍ଚୟ ସତ୍‌ପଥଗାମୀ ହେବୁ ।"

قَالُوا ادْعُ لَنَا رَبَّكَ يُبَيِّنْ لَّنَا مَا هِيَ ۙ إِنَّ الْبَقَرَ تَشَابَهَ عَلَيْنَا ؕ وَإِنَّا إِنْ شَاءَ اللَّهُ لَمُهْتَدُونَ ﴿٧١﴾

୭୨. (ମୁସା) କହିଲେ, "ସେ (ଅଲ୍ଲାହ) କହୁଛନ୍ତି କି ସେ ଏପରି ଏକ ଗାଈ ଯେ ଲୁଆଳିରେ ଯୋଚା ହୋଇ ହଳ କରେ ନାହିଁ କି ଜମିରେ ପାଣି ମଡ଼ାଏ ନାହିଁ, ଅତ୍ୟନ୍ତ ସୁସ୍ଥସବଳ ଓ ତା'ଠାରେ ଭିନ୍ନ ରଙ୍ଗ (ଦୃଷ୍ଟିଗୋଚର ହୁଏ) ନାହିଁ ;" ସେମାନେ କହିଲେ, "ବର୍ତ୍ତମାନ ତୁମେ (ଆମମାନଙ୍କ ନିକଟରେ) ବାସ୍ତବତାକୁ ଉନ୍ମୋଚନ କରିଅଛ" ; ସୁତରାଂ ସେମାନେ ତାହାକୁ ବଧ କଲେ, ଯଦ୍ୟପି ସେମାନେ ଏପରି କରିବାକୁ ପ୍ରସ୍ତୁତ ନ ଥିଲେ ।

قَالَ إِنَّهُ يَقُولُ إِنَّهَا بَقَرَةٌ لَّا ذَلُولٌ تُثِيرُ الْأَرْضَ وَلَا تَسْقِي الْحَرْثَ ۚ مُسَلَّمَةٌ لَّا شِيَةَ فِيهَا ۚ قَالُوا الْآنَ جِئْتَ بِالْحَقِّ ۚ فَذَبَحُوهَا وَمَا كَادُوا يَفْعَلُونَ ﴿٧٢﴾ ع

ରୁ:୯

୭୩. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ତୁମେମାନେ ଜଣେ ବ୍ୟକ୍ତିଙ୍କୁ[1] ହତ୍ୟା (କରିବାର ଦାବି) କଲ ; ତା'ପରେ ଏ ସମ୍ପର୍କରେ ତୁମମାନଙ୍କ ମଧ୍ୟରେ ମତଭେଦ ହେଲା ; ଅଥଚ ତୁମେମାନେ ଯାହା (କିଛି) ଗୋପନ କରୁଥିଲ ଅଲ୍ଲାହ ତାହାକୁ ପ୍ରକାଶ କରିଦେବେ ।

وَإِذْ قَتَلْتُمْ نَفْسًا فَادَّارَأْتُمْ فِيهَا ۖ وَاللَّهُ مُخْرِجٌ مَّا كُنْتُمْ تَكْتُمُونَ ﴿٧٣﴾

୭୪. ତା'ପରେ ଆମେ କହିଲୁ, "ଏହାକୁ (ଅର୍ଥାତ୍ ଏହି ଘଟଣାକୁ) ତା ସହିତ ଘଟୁଥିବା ଅନ୍ୟାନ୍ୟ ଅନୁରୂପ ଘଟଣା ସଙ୍ଗେ ତୁଳନା କରି ଦେଖ (ତାହାହେଲେ ତୁମେମାନେ ପ୍ରକୃତ ତଥ୍ୟ ଜାଣି ପାରିବ)"; ଅଲ୍ଲାହ ଏହିପରି ମୃତ[2] (ବ୍ୟକ୍ତି) ମାନଙ୍କୁ ଜୀବନ ପ୍ରଦାନ କରନ୍ତି ଓ ତୁମମାନଙ୍କ ପ୍ରତି ନିଜ ନିଦର୍ଶନଗୁଡ଼ିକୁ ପ୍ରଦର୍ଶିତ କରାନ୍ତି ଯଦ୍ଦ୍ୱାରା ତୁମେମାନେ ବୁଝି ପାରିବ ।

فَقُلْنَا اضْرِبُوهُ بِبَعْضِهَا ۚ كَذَٰلِكَ يُحْيِي اللَّهُ الْمَوْتَىٰ ۙ وَيُرِيكُمْ آيَاتِهِ لَعَلَّكُمْ تَعْقِلُونَ ﴿٧٤﴾

---

୧. ଏହା ହଜରତ ଇସା(ଅର୍ଥାତ୍ ଯିଶୁ)ଙ୍କ କ୍ରୁଶବିଦ୍ଧ ଘଟଣା ସହିତ ସମ୍ପୃକ୍ତ । ଏ ସଂକ୍ରାନ୍ତରେ ଖ୍ରୀଷ୍ଟଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି ଯେ ଇସା ଲୋକମାନଙ୍କ ପାପ ମୋଚନ ପାଇଁ ସ୍ୱେଚ୍ଛାରେ କ୍ରୁଶ ଉପରକୁ ଆରୋହଣ କରିଥିଲେ । ଅପର ପକ୍ଷରେ ଇହୁଦୀମାନେ ଦାବି କରନ୍ତି ଯେ ଇସାଙ୍କୁ ମିଥ୍ୟାବାଦୀ ପ୍ରମାଣିତ କରିବା ପାଇଁ ସେମାନେ ତାହାଙ୍କୁ କ୍ରୁଶବିଦ୍ଧ କରାଇ ହତ୍ୟା କରିଥିଲେ । କିନ୍ତୁ ଅଲ୍ଲାହ ଉଭୟ ବିଷୟକୁ ମିଥ୍ୟା ସାବ୍ୟସ୍ତ କରି ଇସାଙ୍କୁ ରକ୍ଷା କରିଥିଲେ । ଜୀବିତାବସ୍ଥାରେ କ୍ରୁଶରୁ ଓହ୍ଲାଇ ଅଣାଯାଇଥିବା ବ୍ୟକ୍ତି ଯେ ଜୀବିତ ରହିପାରେ ଏହା ଇତିହାସ ପୃଷ୍ଠାରେ କେବଳ ବର୍ଣ୍ଣନା କରାଯାଇଛି ତାହା ନୁହେଁ ବରଂ ଚିକିତ୍ସା ଶାସ୍ତ୍ର ଏହାକୁ ଅନୁମୋଦନ କରୁଛି । ଅତଏବ 'ତୁମେମାନେ ଜଣେ ବ୍ୟକ୍ତିଙ୍କୁ ହତ୍ୟାକଲ'ର ପ୍ରକୃତ ମର୍ମ ହେଉଛି ଯେ ତୁମେମାନେ ହତ୍ୟା କରିବାର ଦାବି କଲ ।

୨. ଅର୍ଥାତ୍ ଅଲ୍ଲାହ ଏପରି ଉପାୟ ବତାଇ ଦିଅନ୍ତି ଯଦ୍ଦ୍ୱାରା ତୁମ ଧାରଣା ଅନୁସାରେ ଯିଏ ମୃତ ଥିଲେ ବସ୍ତୁତଃ ଅଲ୍ଲାହ ତାହାଙ୍କୁ ଜୀବନ୍ତ ଥିବାର ପ୍ରତିପାଦିତ କରନ୍ତି ।

ثُمَّ قَسَتْ قُلُوْبُكُمْ مِّنْۢ بَعْدِ ذٰلِكَ فَهِيَ كَالْحِجَارَةِ اَوْ اَشَدُّ قَسْوَةً ؕ وَاِنَّ مِنَ الْحِجَارَةِ لَمَا يَتَفَجَّرُ مِنْهُ الْاَنْهٰرُ ؕ وَاِنَّ مِنْهَا لَمَا يَشَّقَّقُ فَيَخْرُجُ مِنْهُ الْمَآءُ ؕ وَاِنَّ مِنْهَا لَمَا يَهْبِطُ مِنْ خَشْيَةِ اللّٰهِ ؕ وَمَا اللّٰهُ بِغَافِلٍ عَمَّا تَعْمَلُوْنَ ﴿٧٥﴾

୭୫. ଏହାପରେ ପୁଣି ତୁମମାନଙ୍କ ହୃଦୟ କଠିନ ହୋଇଗଲା ; ବସ୍ତୁତଃ ତାହା ପଥର ଭଳି ବା ତା'ଠାରୁ ଅଧିକ କଠିନ ଅଟେ ; ଏବଂ ଏପରି କେତେକ (ପଥର) ଅଛି ଯହିଁରୁ ବସ୍ତୁତଃ ଝରଣା ପ୍ରବାହିତ ହୁଏ ଏବଂ ତନ୍ମଧ୍ୟରୁ କେତେକ ଫାଟିଗଲେ ତହିଁରୁ ଜଳ ନିର୍ଗତ ହୁଏ ; ଏ (ହୃଦୟ) ମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେ ଅଲ୍ଲାହ୍‌ଙ୍କ ଭୟରେ (କ୍ଷମାଭିକ୍ଷା କରୁ କରୁ) ନିପତିତ ହୁଅନ୍ତି ଏବଂ ତୁମେମାନେ ଯାହା (କିଛି) କରୁଅଛ ଅଲ୍ଲାହ୍ ସେବିଷୟରେ କଦାପି ଅମନୋଯୋଗୀ ନୁହନ୍ତି ।

اَفَتَطْمَعُوْنَ اَنْ يُّؤْمِنُوْا لَكُمْ وَقَدْ كَانَ فَرِيْقٌ مِّنْهُمْ يَسْمَعُوْنَ كَلٰمَ اللّٰهِ ثُمَّ يُحَرِّفُوْنَهٗ مِنْۢ بَعْدِ مَا عَقَلُوْهُ وَهُمْ يَعْلَمُوْنَ ﴿٧٦﴾

୭୬. (ତେବେ ହେ ମୁସଲମାନମାନେ !) କ'ଣ ତୁମେମାନେ ଆଶା କରୁଅଛ ଯେ ସେ (ଇହୁଦୀ)ମାନେ ତୁମମାନଙ୍କ କଥା ମାନିନେବେ ? ଅଥଚ ସେମାନଙ୍କ ମଧ୍ୟରେ ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ଅଲ୍ଲାହ୍‌ଙ୍କ ବାଣୀ ଶୁଣନ୍ତି ଓ ତାହାକୁ ବୁଝିସାରିବା ପରେ ତା (ଅର୍ଥ)କୁ ବିକୃତ କରି ଦିଅନ୍ତି ; ଏବଂ ସେମାନେ (ଏ କାର୍ଯ୍ୟର କୁପରିଣାମକୁ) ଭଲରୂପେ ଜାଣନ୍ତି ।

وَاِذَا لَقُوا الَّذِيْنَ اٰمَنُوْا قَالُوْٓا اٰمَنَّا ۚۖ وَاِذَا خَلَا بَعْضُهُمْ اِلٰى بَعْضٍ قَالُوْٓا اَتُحَدِّثُوْنَهُمْ بِمَا فَتَحَ اللّٰهُ عَلَيْكُمْ لِيُحَآجُّوْكُمْ بِهٖ عِنْدَ رَبِّكُمْ ؕ اَفَلَا تَعْقِلُوْنَ ﴿٧٧﴾

୭୭. ଏବଂ ଯେବେ ଏ ଲୋକମାନେ ବିଶ୍ୱାସକାରୀଙ୍କୁ ଭେଟନ୍ତି ତେବେ କହନ୍ତି, "ଆମେମାନେ ବିଶ୍ୱାସକାରୀ ଅଟୁ," ଏବଂ ଯେବେ ପରସ୍ପରକୁ ଏକାନ୍ତରେ ଭେଟନ୍ତି ତେବେ (ପରସ୍ପରକୁ ଦୋଷାରୋପ କରି) କହନ୍ତି, "ଅଲ୍ଲାହ୍ ତୁମମାନଙ୍କ ନିକଟରେ ଯେଉଁ ବିଷୟ ପ୍ରକଟିତ କରିଛନ୍ତି କ'ଣ ତାହା ତୁମେ ସେମାନଙ୍କୁ ଜଣାଇଦେଉଛ ? ଫଳରେ ସେମାନେ ତଦ୍ୱାରା (ଅର୍ଥାତ ନିଜ ଜ୍ଞାନ ଦ୍ୱାରା) ତୁମମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ତୁମମାନଙ୍କ ସହିତ ଯୁକ୍ତି କରିବେ ; ତେବେ କ'ଣ ତୁମେମାନେ ବୁଝି ପାରୁନାହଁ ?"

اَوَلَا يَعْلَمُوْنَ اَنَّ اللّٰهَ يَعْلَمُ مَا يُسِرُّوْنَ وَمَا يُعْلِنُوْنَ ﴿٧٨﴾

୭୮. କ'ଣ ସେମାନେ (ଏ ବିଷୟ) ଜାଣନ୍ତି ନାହିଁ ଯେ ସେମାନେ ଯାହାକିଛି ଗୋପନ ରଖୁଛନ୍ତି ଓ ସେମାନେ ଯାହାକିଛି ପ୍ରକାଶ କରୁଛନ୍ତି ତାହାକୁ ଅଲ୍ଲାହ୍ ଜାଣନ୍ତି ।

وَمِنْهُمْ اُمِّيُّوْنَ لَا يَعْلَمُوْنَ الْكِتٰبَ اِلَّآ اَمَانِيَّ وَاِنْ هُمْ اِلَّا يَظُنُّوْنَ ﴿٧٩﴾

୭୯. ଏବଂ ସେମାନଙ୍କ ମଧ୍ୟରେ (ଏପରି) କେତେକ ନିରକ୍ଷର ଅଛନ୍ତି ଯେଉଁମାନଙ୍କର କେତେକ ଭ୍ରମ ଧାରଣା ବ୍ୟତୀତ (ନିଜ ଧର୍ମ) ଗ୍ରନ୍ଥ ସମ୍ବନ୍ଧରେ କୌଣସି ଜ୍ଞାନ ନାହିଁ ; ଏବଂ ସେମାନେ କେବଳ ଅନୁମାନ (ଉପରେ ନିର୍ଭର) କରନ୍ତି ।

୮୦. ତେଣୁ ଯେଉଁମାନେ ସ୍ୱହସ୍ତରେ ଗ୍ରନ୍ଥ ରଚନା କରନ୍ତି, (ଏବଂ) ପରେ ଏହା ମାଧ୍ୟମରେ ସ୍ୱଳ୍ପ ମୂଲ୍ୟ ହାସଲ କରିବା ପାଇଁ କହନ୍ତି, "ଏହା (ଅର୍ଥାତ୍ ଏହି ଧର୍ମଗ୍ରନ୍ଥ) ଅଲ୍ଲାହଙ୍କ ନିକଟରୁ (ଆସି) ଅଛି ; ସେମାନଙ୍କ ପାଇଁ (ଏକ କଠିନ) ଶାସ୍ତି (ନିର୍ଦ୍ଦିଷ୍ଟ) ଅଛି ; ପୁନଶ୍ଚ (ଆମେ କହୁଅଛୁ ଯେ) ସେମାନଙ୍କ ସ୍ୱହସ୍ତ ରଚନା ଯୋଗୁଁ ସେମାନଙ୍କ ପାଇଁ (ଏକ କଠିନ) ଶାସ୍ତି (ନିର୍ଦ୍ଦିଷ୍ଟ) ରହିଅଛି ଏବଂ ସେମାନେ ଯାହା ଉପାର୍ଜ୍ଜନ କରିଛନ୍ତି ସେଥିପାଇଁ (ମଧ୍ୟ ଏକ କଠିନ) ଶାସ୍ତି (ନିର୍ଦ୍ଦିଷ୍ଟ) ଅଛି ।

فَوَيْلٌ لِّلَّذِيْنَ يَكْتُبُوْنَ الْكِتٰبَ بِاَيْدِيْهِمْ ثُمَّ يَقُوْلُوْنَ هٰذَا مِنْ عِنْدِ اللّٰهِ لِيَشْتَرُوْا بِهٖ ثَمَنًا قَلِيْلًا فَوَيْلٌ لَّهُمْ مِّمَّا كَتَبَتْ اَيْدِيْهِمْ وَوَيْلٌ لَّهُمْ مِّمَّا يَكْسِبُوْنَ ﴿٨٠﴾

୮୧. ଏବଂ ସେମାନେ କହନ୍ତି, "ଅଳ୍ପ କେତେକ ଦିବସ ବ୍ୟତୀତ (ନରକର) ଅଗ୍ନି ଆମମାନଙ୍କୁ କଦାପି ସ୍ପର୍ଶ କରିବ ନାହିଁ ;" ତୁମେ (ସେମାନଙ୍କୁ) କୁହ, "କ'ଣ ତୁମେମାନେ ଅଲ୍ଲାହଙ୍କ ନିକଟରୁ କୌଣସି ପ୍ରତିଶ୍ରୁତି ପାଇଅଛ ; (ଯଦି ଏପରି ହୋଇଥାଏ) ତେବେ ସେ କେବେହେଁ ନିଜ ପ୍ରତିଶ୍ରୁତିକୁ ଭଙ୍ଗ କରିବେ ନାହିଁ ; ଅଥବା ତୁମେମାନେ ଅଲ୍ଲାହଙ୍କ ସମ୍ପର୍କରେ ଏପରି ବିଷୟ କହୁଅଛ ଯାହା ସଂକ୍ରାନ୍ତରେ ତୁମମାନଙ୍କର (କୌଣସି) ଜ୍ଞାନ ନାହିଁ ।

وَقَالُوْا لَنْ تَمَسَّنَا النَّارُ اِلَّآ اَيَّامًا مَّعْدُوْدَةً قُلْ اَتَّخَذْتُمْ عِنْدَ اللّٰهِ عَهْدًا فَلَنْ يُّخْلِفَ اللّٰهُ عَهْدَهٗٓ اَمْ تَقُوْلُوْنَ عَلَى اللّٰهِ مَا لَا تَعْلَمُوْنَ ﴿٨١﴾

୮୨. ବସ୍ତୁତଃ ଯେଉଁମାନେ କୌଣସି ପ୍ରକାର ପାପ ଅର୍ଜ୍ଜନ କରିବେ ଓ ସେମାନଙ୍କ ପାପ ସେମାନଙ୍କୁ (ଚତୁର୍ଦ୍ଦିଗରୁ) ପରିବେଷ୍ଟିତ କରିବ ସେମାନେ ନରକବାସୀ ହେବେ ଏବଂ ସେମାନେ ସେଠାରେ (ପଡ଼ି) ରହିବେ ।

بَلٰى مَنْ كَسَبَ سَيِّئَةً وَّاَحَاطَتْ بِهٖ خَطِيْٓئَتُهٗ فَاُولٰٓئِكَ اَصْحٰبُ النَّارِ هُمْ فِيْهَا خٰلِدُوْنَ ﴿٨٢﴾

୮୩. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସତ୍‌କାର୍ଯ୍ୟ କରିଛନ୍ତି ସେମାନେ ବୈକୁଣ୍ଠଗାମୀ ହେବେ ; ସେମାନେ ସେଠାରେ (ଚିରକାଳ) ରହିବେ ।

وَالَّذِيْنَ اٰمَنُوْا وَعَمِلُوا الصّٰلِحٰتِ اُولٰٓئِكَ اَصْحٰبُ الْجَنَّةِ هُمْ فِيْهَا خٰلِدُوْنَ ﴿٨٣﴾

٩ ع ٩

ରୁ:୧୦

୮୪. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ ଇସ୍ରାଇଲୀୟ ସନ୍ତାନମାନଙ୍କଠାରୁ ଦୃଢ଼ ଅଙ୍ଗୀକାର ଗ୍ରହଣ କରିଥିଲୁ ଯେ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ (ଅନ୍ୟ) କାହାରି ଉପାସନା କରିବ ନାହିଁ ; ଏବଂ ପିତା ମାତା, ଆତ୍ମୀୟ, ଅନାଥ ଓ ଦରିଦ୍ରମାନଙ୍କ ପ୍ରତି ସଦୟ ହେବ ଓ ଲୋକମାନଙ୍କ ସହିତ ବିନୀତ ବ୍ୟବହାର କରିବ ତଥା ସୁଚାରୁରୂପେ ନମାଜ ପଠ କରିବ ଓ 'ଜକାତ୍' ଦେବ, କିନ୍ତୁ (ଏହାପରେ) ତୁମମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କ ବ୍ୟତୀତ ଅନ୍ୟ ସମସ୍ତେ ବିମୁଖ ହୋଇ ଚାଲିଗଲେ ।

وَاِذْ اَخَذْنَا مِيْثَاقَ بَنِيْٓ اِسْرَآءِيْلَ لَا تَعْبُدُوْنَ اِلَّا اللّٰهَ وَبِالْوَالِدَيْنِ اِحْسَانًا وَّذِي الْقُرْبٰى وَالْيَتٰمٰى وَالْمَسٰكِيْنِ وَقُوْلُوْا لِلنَّاسِ حُسْنًا وَّاَقِيْمُوا الصَّلٰوةَ وَاٰتُوا الزَّكٰوةَ ثُمَّ تَوَلَّيْتُمْ اِلَّا قَلِيْلًا مِّنْكُمْ وَاَنْتُمْ مُّعْرِضُوْنَ ﴿٨٤﴾

وَاِذْ اَخَذْنَا مِیْثَاقَكُمْ لَا تَسْفِكُوْنَ دِمَآءَكُمْ وَلَا تُخْرِجُوْنَ اَنْفُسَكُمْ مِّنْ دِيَارِكُمْ ثُمَّ اَقْرَرْتُمْ وَاَنْتُمْ تَشْهَدُوْنَ ﴿۸۵﴾

୮୫. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ ତୁମମାନଙ୍କ ଠାରୁ ଅଙ୍ଗୀକାର ଗ୍ରହଣ କରିଥିଲୁ ଯେ ତୁମେମାନେ ପରସ୍ପର ମଧ୍ୟରେ ରକ୍ତପାତ କରିବ ନାହିଁ ଓ ନିଜେ ନିଜକୁ (ଅର୍ଥାତ୍ ନିଜ ସମ୍ପ୍ରଦାୟ ଲୋକଙ୍କୁ) ସ୍ୱଗୃହରୁ ବିତାଡ଼ିତ କରିବ ନାହିଁ; (ସେତେବେଳେ) ତୁମେମାନେ ଏହାକୁ ସ୍ୱୀକାର କରିଥିଲ ଏବଂ ତୁମେମାନେ (ଏହି ଅଙ୍ଗୀକାର ସମ୍ବନ୍ଧରେ ସର୍ବଦା) ସାକ୍ଷ୍ୟ ଦେଇ ଆସୁଅଛ।

ثُمَّ اَنْتُمْ هٰۤؤُلَآءِ تَقْتُلُوْنَ اَنْفُسَكُمْ وَتُخْرِجُوْنَ فَرِيْقًا مِّنْكُمْ مِّنْ دِيَارِهِمْ تَظٰهَرُوْنَ عَلَيْهِمْ بِالْاِثْمِ وَالْعُدْوَانِ وَاِنْ يَّاْتُوْكُمْ اُسٰرٰى تُفٰدُوْهُمْ وَهُوَ مُحَرَّمٌ عَلَيْكُمْ اِخْرَاجُهُمْ اَفَتُؤْمِنُوْنَ بِبَعْضِ الْكِتٰبِ وَتَكْفُرُوْنَ بِبَعْضٍ فَمَا جَزَآءُ مَنْ يَّفْعَلُ ذٰلِكَ مِنْكُمْ اِلَّا خِزْيٌ فِی الْحَيٰوةِ الدُّنْيَا وَيَوْمَ الْقِيٰمَةِ يُرَدُّوْنَ اِلٰۤى اَشَدِّ الْعَذَابِ وَمَا اللّٰهُ بِغَافِلٍ عَمَّا تَعْمَلُوْنَ ﴿۸۶﴾

୮୬. ତଥାପି (ଏପରି ଅଙ୍ଗୀକାର ସତ୍ତ୍ୱେ) ତୁମେମାନେ ହିଁ ପରସ୍ପରକୁ ହତ୍ୟା କରୁଅଛ ଏବଂ ନିଜ ମଧ୍ୟରୁ ଦଳେ ଲୋକଙ୍କ ପ୍ରତି ପାପ ଓ ଅତ୍ୟାଚାର କରିବା ସଙ୍ଗେ (ସେମାନଙ୍କ ଶତ୍ରୁଙ୍କୁ) ସାହାଯ୍ୟ କରି ସେମାନଙ୍କୁ ଗୃହରୁ ବିତାଡ଼ିତ କରୁଅଛ; ଏବଂ ଯଦି ସେମାନେ ବନ୍ଦୀ ହୋଇ ତୁମମାନଙ୍କ ନିକଟକୁ (ସାହାଯ୍ୟ ପାଇଁ) ଆସୁଛନ୍ତି ତେବେ ତୁମେମାନେ ମୁକ୍ତି ମୂଲ୍ୟ ପ୍ରଦାନ କରି ସେମାନଙ୍କୁ ମୁକ୍ତ କରୁଅଛ, ଅଥଚ ସେମାନଙ୍କୁ (ଗୃହରୁ) ବିତାଡ଼ିତ କରିବା ତୁମମାନଙ୍କ ସକାଶେ ଅବୈଧ କରା ହୋଇଥିଲା; ତାହାହେଲେ କ'ଣ ତୁମେମାନେ (ଧର୍ମ) ଗ୍ରନ୍ଥର ଏକ ଅଂଶକୁ ବିଶ୍ୱାସ କରୁଅଛ ଓ ଅନ୍ୟ ଅଂଶକୁ ଅବିଶ୍ୱାସ କରୁଅଛ? ଅତଏବ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଏପରି କରୁଛନ୍ତି ସେମାନଙ୍କ ଶାସ୍ତି ଇହ-କାଳରେ ଅପମାନ ଛଡ଼ା ଆଉ କ'ଣ ହୋଇପାରେ? ଏବଂ କୟାମତ ଦିନ ସେମାନଙ୍କୁ ଏହାଠାରୁ ମଧ୍ୟ ଅଧିକ କଠୋର ଶାସ୍ତି ଆଡ଼କୁ ଘେନି ନିଆଯିବ ଏବଂ ତୁମେମାନେ ଯାହାକିଛି କରୁଅଛ ଅଲ୍ଲାହ ସେ ବିଷୟରେ ଆଦୌ ଅମନୋଯୋଗୀ ନୁହନ୍ତି।

اُولٰٓئِكَ الَّذِيْنَ اشْتَرَوُا الْحَيٰوةَ الدُّنْيَا بِالْاٰخِرَةِ فَلَا يُخَفَّفُ عَنْهُمُ الْعَذَابُ وَلَا هُمْ يُنْصَرُوْنَ ﴿۸۷﴾

୮୭. ଏବଂ ଏମାନେ ହିଁ ସେହି ବ୍ୟକ୍ତି ଯେଉଁମାନେ ପରକାଳ ବଦଳରେ ଇହକାଳକୁ ଅଗ୍ରାଧିକାର ଦେଇଛନ୍ତି; ସୁତରାଂ ସେମାନଙ୍କ ଶାସ୍ତିକୁ ଲାଘବ କରାଯିବ ନାହିଁ କି ସେମାନଙ୍କୁ (କୌଣସି ପ୍ରକାର) ସାହାଯ୍ୟ କରାଯିବ ନାହିଁ।

ରୁ: ୧୧

وَلَقَدْ اٰتَيْنَا مُوْسَى الْكِتٰبَ وَقَفَّيْنَا مِنْۢ بَعْدِهٖ بِالرُّسُلِ وَاٰتَيْنَا عِيْسَى ابْنَ مَرْيَمَ الْبَيِّنٰتِ وَاَيَّدْنٰهُ بِرُوْحِ الْقُدُسِ

୮୮. ଏବଂ ଆମେ ନିଶ୍ଚୟ ମୁସାଙ୍କୁ (ଧର୍ମ) ଗ୍ରନ୍ଥ ଦେଇଥିଲୁ ଓ ତାଙ୍କ ପରେ ଆମେ (ସେହି) ରସୁଲମାନଙ୍କୁ (ଯାହାଙ୍କୁ ତୁମେ ଜାଣ, ତାଙ୍କ ପରେ) ପଠାଇଥିଲୁ ଓ ମରିୟମ ନନ୍ଦନ ଇସାଙ୍କୁ (ମଧ୍ୟ) ଆମେ ପ୍ରକାଶ୍ୟ ପ୍ରମାଣମାନ ଦେଇଥିଲୁ ଏବଂ ପବିତ୍ର ଆତ୍ମା[୧] ଦ୍ୱାରା ତାହାଙ୍କୁ ଶକ୍ତି ପ୍ରଦାନ କରିଥିଲୁ; (ମାତ୍ର ତୁମେମାନେ ସେମାନଙ୍କର ବିରୁଦ୍ଧାଚରଣ କରିଥିଲ) ତେବେ (ତୁମେମାନେ ହିଁ କୁହ) କ'ଣ (ଏ କଥା ଅସମୀଚୀନ ନୁହେଁ କି?) ଯେବେ ବି ତୁମମାନଙ୍କ ନିକଟକୁ କୌଣସି ରସୁଲ

୧. ଦେବଦୂତ ଜିବ୍ରାଇଲଙ୍କର ଅନ୍ୟତମ ନାମ 'ରୁହୁଲ କୁଦ୍ଦୁସ' ଅର୍ଥାତ୍ ପବିତ୍ର ଆତ୍ମା।

ତାହାକୁ (ଅର୍ଥାତ୍ ସେହି ଶିକ୍ଷାକୁ) ନେଇ ଆସିଥିଲେ ଯାହାକୁ ତୁମେମାନେ ନିଜେ ପସନ୍ଦ କରୁ ନଥିଲ ସେତେବେଳେ ତୁମେମାନେ ଅହଙ୍କାର (ପ୍ରଦର୍ଶନ) କରିଥିଲ ? ସୁତରାଂ କେତେକ (ରସୁଲ)ଙ୍କୁ ତୁମେମାନେ ମିଥ୍ୟାବାଦୀ ମନେ କରିଥିଲ ଓ (ଅନ୍ୟ) କେତେକଙ୍କୁ ହତ୍ୟା କରିଥିଲ ।

اَفَكُلَّمَا جَآءَكُمْ رَسُوْلٌۢ بِمَا لَا تَهْوٰٓى اَنْفُسُكُمُ اسْتَكْبَرْتُمْ ۚ فَفَرِيْقًا كَذَّبْتُمْ ۫ وَفَرِيْقًا تَقْتُلُوْنَ ﴿٨٨﴾

୮୯. ଏବଂ (ଆମକୁ ଜଣା ଅଛି ଯେ) ସେମାନେ (ଏହା ମଧ୍ୟ) କହିଥିଲେ, "ଆମମାନଙ୍କ ହୃଦୟ ତ ଆବରଣ ଦ୍ବାରା ଆଚ୍ଛାଦିତ ହୋଇଅଛି ; (କିନ୍ତୁ ତାହା ଏପରି) ନୁହେଁ ; ବରଂ ସେମାନଙ୍କ ଅବିଶ୍ୱାସ ଯୋଗୁଁ ଅଲ୍ଲାହ ସେମାନଙ୍କୁ ଅଭିଶପ୍ତ କରିଛନ୍ତି ; ସୁତରାଂ ସେମାନେ ଖୁବ୍ କମ୍ ବିଶ୍ୱାସ କରନ୍ତି ।

وَقَالُوْا قُلُوْبُنَا غُلْفٌ ۗ بَلْ لَّعَنَهُمُ اللّٰهُ بِكُفْرِهِمْ فَقَلِيْلًا مَّا يُؤْمِنُوْنَ ﴿٨٩﴾

୯୦. ଏବଂ ଯେତେବେଳେ ସେମାନଙ୍କ ନିକଟରେ ଥିବା ଗ୍ରନ୍ଥର ସତ୍ୟତାକୁ ପ୍ରମାଣିତ କରୁଥିବା ଏକ ଗ୍ରନ୍ଥ ଅଲ୍ଲାହଙ୍କଠାରୁ ସେମାନଙ୍କ ନିକଟକୁ ଆସିଲା, ଏବଂ ଯଦିଚ ଏହା ପୂର୍ବରୁ ସେମାନେ ଅବିଶ୍ୱାସକାରୀଙ୍କ ବିରୁଦ୍ଧରେ (ଅଲ୍ଲାହଙ୍କଠାରୁ) ବିଜୟ ଭିକ୍ଷା କରୁଥିଲେ ତଥାପି ଯେତେବେଳେ ସେହି ବିଷୟ ସେମାନଙ୍କ ନିକଟକୁ ଆସିଗଲା ସେତେବେଳେ ସେମାନେ ତାହାକୁ ଜାଣିବା ସତ୍ତ୍ୱେ ଅଗ୍ରାହ୍ୟ କରିଦେଲେ ; ସୁତରାଂ ଏପରି ଅବିଶ୍ୱାସକାରୀମାନଙ୍କ ପ୍ରତି ଅଲ୍ଲାହଙ୍କର ଅଭିଶାପ ରହିଅଛି ।

وَلَمَّا جَآءَهُمْ كِتٰبٌ مِّنْ عِنْدِ اللّٰهِ مُصَدِّقٌ لِّمَا مَعَهُمْ ۙ وَكَانُوْا مِنْ قَبْلُ يَسْتَفْتِحُوْنَ عَلَى الَّذِيْنَ كَفَرُوْا ۚۖ فَلَمَّا جَآءَهُمْ مَّا عَرَفُوْا كَفَرُوْا بِهٖ ۫ فَلَعْنَةُ اللّٰهِ عَلَى الْكٰفِرِيْنَ ﴿٩٠﴾

୯୧. ସେ ବିଷୟ ଅତ୍ୟନ୍ତ ଗର୍ହିତ ଯାହାର ବିନିମୟରେ ସେମାନେ ନିଜର ଆତ୍ମାକୁ ବିକ୍ରୟ କରିଛନ୍ତି ; ଏବଂ ସେମାନେ ଏଥିନିମନ୍ତେ କ୍ଷୁବ୍ଧ ହୋଇ ଅଲ୍ଲାହଙ୍କ ପ୍ରେରିତ ବାଣୀକୁ ଅଗ୍ରାହ୍ୟ କରନ୍ତି ଯେ (କାହିଁକି) ଅଲ୍ଲାହ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହାଙ୍କ ପ୍ରତି ପ୍ରସନ୍ନ ହୁଅନ୍ତି ତାହାଙ୍କୁ ନିଜର କୃପା ପ୍ରଦାନ କରନ୍ତି ; ସୁତରାଂ ସେମାନେ ପ୍ରକୋପ ହିଁ ପ୍ରକୋପର ଭାଜନ ହେଲେ ଏବଂ ଏପରି ଅବିଶ୍ୱାସକାରୀମାନଙ୍କ ପାଇଁ ଅପମାନଜନକ ଶାସ୍ତି (ନିର୍ଦ୍ଦିଷ୍ଟ) ଅଛି ।

بِئْسَمَا اشْتَرَوْا بِهٖٓ اَنْفُسَهُمْ اَنْ يَّكْفُرُوْا بِمَآ اَنْزَلَ اللّٰهُ بَغْيًا اَنْ يُّنَزِّلَ اللّٰهُ مِنْ فَضْلِهٖ عَلٰى مَنْ يَّشَآءُ مِنْ عِبَادِهٖ ۚ فَبَآءُوْ بِغَضَبٍ عَلٰى غَضَبٍ ۗ وَلِلْكٰفِرِيْنَ عَذَابٌ مُّهِيْنٌ ﴿٩١﴾

୯୨. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ, "ଅଲ୍ଲାହ ଯାହା (କିଛି) ଅବତୀର୍ଣ୍ଣ କରିଛନ୍ତି ତହିଁରେ ବିଶ୍ୱାସକର," ସେମାନେ କହନ୍ତି, "ଆମମାନଙ୍କ ଉପରେ ଯାହା ଅବତୀର୍ଣ୍ଣ ହୋଇଛି ଆମେମାନେ ତାହାକୁ ବିଶ୍ୱାସ କରୁଅଛୁ ;" ଏବଂ ଏପରି କହି ସେମାନେ ତତ୍ପରବର୍ତ୍ତୀ (ବାଣୀ)କୁ ଅଗ୍ରାହ୍ୟ କରନ୍ତି, ଯଦ୍ୟପି ଏହା ସେହି ବାଣୀକୁ ଯାହା ସେମାନଙ୍କ ପାଖରେ ଅଛି ସତ୍ୟ (ସୂଚିତ) କରି (ସ୍ୱୟଂ ମଧ୍ୟ) ସମ୍ପୂର୍ଣ୍ଣ ରୂପେ ସତ୍ୟ (ସାବ୍ୟସ୍ତ) ହୋଇଅଛି ; ତୁମେ (ସେମାନଙ୍କୁ) କୁହ, "ଯଦି ତୁମେମାନେ ପ୍ରକୃତରେ ବିଶ୍ୱାସକାରୀ ହୋଇଥାଅ ତେବେ କାହିଁକି ତୁମେମାନେ ଏଥିପୂର୍ବେ ଅଲ୍ଲାହଙ୍କ (ପ୍ରେରିତ) ନବିମାନଙ୍କୁ ହତ୍ୟା କରିବା ସକାଶେ ଚେଷ୍ଟିତ ଥିଲ ?"

وَاِذَا قِيْلَ لَهُمْ اٰمِنُوْا بِمَآ اَنْزَلَ اللّٰهُ قَالُوْا نُؤْمِنُ بِمَآ اُنْزِلَ عَلَيْنَا وَيَكْفُرُوْنَ بِمَا وَرَآءَهٗ ۗ وَهُوَ الْحَقُّ مُصَدِّقًا لِّمَا مَعَهُمْ ۗ قُلْ فَلِمَ تَقْتُلُوْنَ اَنْۢبِيَآءَ اللّٰهِ مِنْ قَبْلُ اِنْ كُنْتُمْ مُّؤْمِنِيْنَ ﴿٩٢﴾

وَلَقَدْ جَآءَكُم مُّوسَىٰ بِٱلْبَيِّنَٰتِ ثُمَّ ٱتَّخَذْتُمُ ٱلْعِجْلَ مِنۢ بَعْدِهِۦ وَأَنتُمْ ظَٰلِمُونَ ﴿٩٣﴾

୯୩. ଏବଂ ବାସ୍ତବରେ ମୁସା ତୁମମାନଙ୍କ ନିକଟକୁ ପ୍ରକାଶ୍ୟ ପ୍ରମାଣ ସହିତ ଆସିଥିଲେ ; ତଥାପି ତାହାଙ୍କ (ସିନାଇ ପର୍ବତକୁ ଯିବା) ପରେ ତୁମେମାନେ ଅତ୍ୟାଚାର ପୂର୍ବକ (ଅଲ୍ଲାହ୍‌ଙ୍କୁ ପରିତ୍ୟାଗ କରି) ବାଛୁରୀକୁ (ଉପାସ୍ୟ ରୂପେ) ଗ୍ରହଣ କଲ ।

وَإِذْ أَخَذْنَا مِيثَٰقَكُمْ وَرَفَعْنَا فَوْقَكُمُ ٱلطُّورَ خُذُوا۟ مَآ ءَاتَيْنَٰكُم بِقُوَّةٍ وَٱسْمَعُوا۟ ۖ قَالُوا۟ سَمِعْنَا وَعَصَيْنَا وَأُشْرِبُوا۟ فِى قُلُوبِهِمُ ٱلْعِجْلَ بِكُفْرِهِمْ ۚ قُلْ بِئْسَمَا يَأْمُرُكُم بِهِۦٓ إِيمَٰنُكُمْ إِن كُنتُم مُّؤْمِنِينَ ﴿٩٤﴾

୯୪. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମେ ତୁମମାନଙ୍କ ଠାରୁ ଦୃଢ଼ ଅଙ୍ଗୀକାର ଗ୍ରହଣ କରିଥିଲୁ ଏବଂ ତୁମମାନଙ୍କ ଉପରେ ତୁର ପର୍ବତକୁ ଉନ୍ନୀତ[1] କରିଥିଲୁ ; (ଏବଂ କହିଥିଲୁ) "ଆମେ ଯାହା କିଛି ତୁମମାନଙ୍କୁ ଦେଇଅଛୁ ତାହାକୁ ଦୃଢ଼ଭାବରେ ଧାରଣ କର (ତୁମମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ ସେତେବେଳେ ସମ୍ବୋଧନ କରାଯାଉଥିଲା) ଏଥି ଉତ୍ତାରୁ ସେମାନେ କହିଥିଲେ "(ଅତି ଉତ୍ତମ) ଆମେମାନେ ଶୁଣିଲୁ ଏବଂ (ଆମେମାନେ ଏହା ମଧ୍ୟ କହୁଅଛୁ କି ଏହି ଆଦେଶକୁ) ଆମେମାନେ ଅମାନ୍ୟ କରିବାକୁ ନିଷ୍ପତ୍ତି କରିଅଛୁ ;" ଏବଂ ସେମାନଙ୍କ ଅବିଶ୍ୱାସ ହେତୁ ବାଛୁରୀ (ଅର୍ଥାତ୍ ବାଛୁରୀ ପ୍ରତି ପ୍ରେମ-ଭାବର ଉଚ୍ଛ୍ୱାସ) ସେମାନଙ୍କ ହୃଦୟରେ ସ୍ଥାନ ପାଇଥିଲା ; ତୁମେ (ସେମାନଙ୍କୁ) କୁହ, "ଯଦି ତୁମେମାନେ ବିଶ୍ୱାସକାରୀ ଅଟ (ଯେପରିକି ତୁମେମାନେ ଦାବି କରୁଅଛ) ତେବେ ତୁମମାନଙ୍କ ବିଶ୍ୱାସ ତୁମମାନଙ୍କୁ ଯେଉଁ କାର୍ଯ୍ୟର ଆଦେଶ ଦେଉଅଛି ତାହା ଅତ୍ୟନ୍ତ ଗର୍ହିତ ଅଟେ ।"

قُلْ إِن كَانَتْ لَكُمُ ٱلدَّارُ ٱلْءَاخِرَةُ عِندَ ٱللَّهِ خَالِصَةً مِّن دُونِ ٱلنَّاسِ فَتَمَنَّوُا۟ ٱلْمَوْتَ إِن كُنتُمْ صَٰدِقِينَ ﴿٩٥﴾

୯୫. ତୁମେ (ସେମାନଙ୍କୁ) କୁହ, "ଯଦି ଅଲ୍ଲାହ୍‌ଙ୍କ ନିକଟରେ ପରକାଳର ନିବାସ (ଅନ୍ୟ) ଲୋକମାନଙ୍କ ବ୍ୟତୀତ କେବଳ ତୁମମାନଙ୍କ ପାଇଁ ଅଛି ତେବେ ତୁମେମାନେ ଯଦି (ଏ ଦାବି ସମ୍ବନ୍ଧରେ) ସତ୍ୟବାଦୀ ହୋଇଥାଅ ତେବେ ମୃତ୍ୟୁ[2] କାମନା କର ।

وَلَن يَتَمَنَّوْهُ أَبَدًۢا بِمَا قَدَّمَتْ أَيْدِيهِمْ ۗ وَٱللَّهُ عَلِيمٌۢ بِٱلظَّٰلِمِينَ ﴿٩٦﴾

୯୬. ଏବଂ (ହେ ମୁସଲମାନମାନେ ! ମନେରଖ ଯେ) ସେମାନଙ୍କ ହସ୍ତ ଯାହା କିଛି କର୍ମ ଆଗକୁ ପ୍ରେରଣ କରିଛି ସେଥିଯୋଗୁଁ ସେମାନେ କଦାପି ଏହା (ଅର୍ଥାତ୍ ଏପରି ମୃତ୍ୟୁ) କାମନା କରିବେ ନାହିଁ ; ଏବଂ ଅଲ୍ଲାହ୍ ଅତ୍ୟାଚାରୀମାନଙ୍କୁ ଭଲରୂପେ ଜାଣନ୍ତି ।

---

୧. ଅର୍ଥାତ୍ ତୁମମାନଙ୍କୁ ତୁର୍ ପର୍ବତର ପାଦ ଦେଶରେ ଠିଆ କରାଇଥିଲୁ ।

୨. ଅର୍ଥାତ ହଜରତ ମହମ୍ମଦଙ୍କ ସହିତ 'ମୁବାହେଲା'କର (ଅଧ୍ୟାୟ ୩:୬୨ ଦ୍ରଷ୍ଟବ୍ୟ) । ମୁବାହେଲା ଅର୍ଥ ଧର୍ମର ସତ୍ୟତା ପ୍ରତିପାଦନ କରିବା ପାଇଁ ଜଣେ ଅନ୍ୟକୁ ଅଭିଶାପ ଦେଇ ଅଲ୍ଲାହ୍‌ଙ୍କଠାରୁ ଉଚିତ ନ୍ୟାୟ ଭିକ୍ଷା କରିବା ।

وَلَتَجِدَنَّهُمْ أَحْرَصَ النَّاسِ عَلَىٰ حَيَاةٍ ۚ وَمِنَ الَّذِينَ أَشْرَكُوا ۚ يَوَدُّ أَحَدُهُمْ لَوْ يُعَمَّرُ أَلْفَ سَنَةٍ وَمَا هُوَ بِمُزَحْزِحِهِ مِنَ الْعَذَابِ أَنْ يُعَمَّرَ ۗ وَاللَّهُ بَصِيرٌ بِمَا يَعْمَلُونَ ﴿٩٧﴾

୯୭. ଏବଂ ତୁମେ ନିଶ୍ଚୟ ସେମାନଙ୍କୁ ତଥା ଯେଉଁମାନେ ମୁସରିକ ସେମାନଙ୍କ ମଧ୍ୟରୁ କେତେକଙ୍କୁ ମଧ୍ୟ ସବୁ ଲୋକଙ୍କ ଅପେକ୍ଷା ଜୀବନ ପ୍ରତି ଅଧିକ ଲାଳାୟିତ ଥିବାର ପାଇବ ; ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ସହସ୍ର ବର୍ଷ ପରମାୟୁ ପାଇବାର ଇଚ୍ଛା କରେ, ଅଥଚ ତାହାର (ଦୀର୍ଘ) ପରମାୟୁ ପ୍ରାପ୍ତି ତାହାକୁ ଶାସ୍ତିରୁ ରକ୍ଷା କରିପାରିବ ନାହିଁ ଏବଂ ସେମାନେ ଯାହା (କିଛି) କରୁଛନ୍ତି ଅଲ୍ଲାହ ତାହା ଦେଖୁଛନ୍ତି ।

ରୁ:୧୨

قُلْ مَنْ كَانَ عَدُوًّا لِجِبْرِيلَ فَإِنَّهُ نَزَّلَهُ عَلَىٰ قَلْبِكَ بِإِذْنِ اللَّهِ مُصَدِّقًا لِمَا بَيْنَ يَدَيْهِ وَهُدًى وَبُشْرَىٰ لِلْمُؤْمِنِينَ ﴿٩٨﴾

୯୮. ତୁମେ (ସେମାନଙ୍କୁ) କୁହ "ଯେଉଁ ବ୍ୟକ୍ତି ଏହି କାରଣରୁ ଜିବ୍ରାଇଲ୍‌ଙ୍କ ଶତ୍ରୁ ହୋଇଛି ଯେ ସେ ଅଲ୍ଲାହଙ୍କ ଆଦେଶ ଅନୁସାରେ ଏହା (ଅର୍ଥାତ୍ ପବିତ୍ର କୋରାନ)କୁ ତୁମ ହୃଦୟରେ ଅବତୀର୍ଣ୍ଣ କରାଇଛନ୍ତି, ଯାହାକି ପୂର୍ବବର୍ତ୍ତୀ (ଧର୍ମ) ଗ୍ରନ୍ଥର ସତ୍ୟତା ପ୍ରତିପାଦନ କରୁଅଛି ଓ ବିଶ୍ବାସକାରୀମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଉଛି ତଥା ସୁସମାଚାର ଦେଉଅଛି ।"

مَنْ كَانَ عَدُوًّا لِلَّهِ وَمَلَائِكَتِهِ وَرُسُلِهِ وَجِبْرِيلَ وَمِيكَالَ فَإِنَّ اللَّهَ عَدُوٌّ لِلْكَافِرِينَ ﴿٩٩﴾

୯୯. (ତେବେ ସେ ମନେରଖୁ ଯେ) ଯେଉଁ ବ୍ୟକ୍ତି ଅଲ୍ଲାହଙ୍କର, ତାଙ୍କ ଦେବଦୂତମାନଙ୍କର ଓ ତାଙ୍କ ପ୍ରେରିତ ରସୁଲମାନଙ୍କର ତଥା ଜିବ୍ରାଇଲ୍ ଓ ମିକାଇଲ୍‌ଙ୍କର ଶତ୍ରୁ ତେବେ ଅଲ୍ଲାହ ମଧ୍ୟ ନିଶ୍ଚିତ ରୂପେ (ଏପରି) ଅବିଶ୍ବାସକାରୀମାନଙ୍କର ଶତ୍ରୁ ଅଟନ୍ତି ।

وَلَقَدْ أَنْزَلْنَا إِلَيْكَ آيَاتٍ بَيِّنَاتٍ ۖ وَمَا يَكْفُرُ بِهَا إِلَّا الْفَاسِقُونَ ﴿١٠٠﴾

୧୦୦. ଏବଂ ଆମେ ନିଶ୍ଚୟ ତୁମ ପ୍ରତି ପ୍ରକାଶ୍ୟ ନିଦର୍ଶନମାନ ଅବତୀର୍ଣ୍ଣ କରିଅଛୁ, ଏବଂ ଅମାନ୍ୟକାରୀମାନଙ୍କ ବ୍ୟତୀତ ଅନ୍ୟ କେହି ଏହାକୁ ଅବିଶ୍ବାସ କରନ୍ତି ନାହିଁ ।

أَوَكُلَّمَا عَاهَدُوا عَهْدًا نَبَذَهُ فَرِيقٌ مِنْهُمْ ۚ بَلْ أَكْثَرُهُمْ لَا يُؤْمِنُونَ ﴿١٠١﴾

୧୦୧. ଏବଂ (କ'ଣ ଏହା ଅସମୀଚୀନ ନୁହେଁ ଯେ) ଯେବେ ବି ସେମାନେ କୌଣସି ଅଙ୍ଗୀକାର କରିଥିଲେ ସେମାନଙ୍କ ମଧ୍ୟରୁ ଦଳେ ଏହାକୁ ଭଙ୍ଗ କରିଥିଲେ ; (ସେତିକି ନୁହେଁ) ବରଂ ସେମାନଙ୍କ ମଧ୍ୟରୁ ଅଧିକାଂଶ (ଧର୍ମ) ବିଶ୍ବାସର ନିକଟବର୍ତ୍ତୀ ମଧ୍ୟ ହେଉ ନାହାନ୍ତି ।

وَلَمَّا جَاءَهُمْ رَسُولٌ مِنْ عِنْدِ اللَّهِ مُصَدِّقٌ لِمَا مَعَهُمْ نَبَذَ فَرِيقٌ مِنَ الَّذِينَ أُوتُوا الْكِتَابَ كِتَابَ اللَّهِ وَرَاءَ ظُهُورِهِمْ كَأَنَّهُمْ لَا يَعْلَمُونَ ﴿١٠٢﴾

୧୦୨. ଏବଂ ଯେତେବେଳେ ସେମାନଙ୍କ ନିକଟକୁ ଅଲ୍ଲାହଙ୍କ ତରଫରୁ ଏପରି ଜଣେ ରସୁଲ ଆସିଲେ ଯେ ସେମାନଙ୍କ ନିକଟରେ ଯାହା (ଅର୍ଥାତ୍ ଯେଉଁ ଧର୍ମଗ୍ରନ୍ଥ) ଥିଲା ତାହାର ସତ୍ୟ ସାବ୍ୟସ୍ତକାରୀ ଅଟନ୍ତି, (ସେତେବେଳେ) ସେ ଲୋକମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ (ସେହି ଧର୍ମ) ଗ୍ରନ୍ଥ ଦିଆଯାଇଥିଲା ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ ଅଲ୍ଲାହଙ୍କ (ନୂତନ ଧର୍ମ) ଗ୍ରନ୍ଥକୁ ନିଜ ପୃଷ୍ଠ ଦେଶକୁ ଏପରି ଫିଙ୍ଗି ଦେଲେ ଯେତେ ଯେପରି ସେମାନେ (ତାହାକୁ) ଜାଣନ୍ତି ନାହିଁ ।

୧୦୩. ଏବଂ ସେ (ଇହୁଦୀ)ମାନେ ସେହି କାର୍ଯ୍ୟ ପନ୍ଥାର ଅନୁସରଣ କଲେ ଯାହାକୁ ସୁଲେମାନଙ୍କ ରାଜତ୍ୱ କାଳରେ (ତାହାଙ୍କ ରାଜତ୍ୱ ବିରୁଦ୍ଧରେ ଥିବା) ବିଦ୍ରୋହୀମାନେ ଅନୁସରଣ କରୁଥିଲେ ; ଏବଂ ସୁଲେମାନ ଅବିଶ୍ୱାସକାରୀ ନଥିଲେ; ବରଂ ଉକ୍ତ ବିଦ୍ରୋହୀମାନେ ଅବିଶ୍ୱାସକାରୀ ଥିଲେ ; ସେମାନେ ଲୋକମାନଙ୍କୁ ପ୍ରବଞ୍ଚନା-ମୂଳକ ବିଷୟ ଶିଖାଉଥିଲେ ; ଏବଂ ସେମାନେ (ନିଜ ବିଚାର ଅନୁସାରେ) ସେହି ବିଷୟର (ମଧ୍ୟ ଅନୁକରଣ କରୁଥିଲେ) ଯାହା ବାବିଲୋନର ହାରୁତ୍ ଓ ମାରୁତ୍[୧] ନାମକ ଦୁଇଜଣ ଦେବଦୂତଙ୍କ ପ୍ରତି ଅବତୀର୍ଣ୍ଣ ହୋଇଥିଲା ; ଅଥଚ ସେ ଦୁହେଁ (ସେ ପର୍ଯ୍ୟନ୍ତ) କାହାରିକୁ (କିଛି) ଶିଖାଉ ନ ଥିଲେ ଯେ ପର୍ଯ୍ୟନ୍ତ ଏହା କହି ଦେଉ ନଥିଲେ ଯେ ଆମେ (ଅଲ୍ଲାହଙ୍କ ଆଡୁ) ପରୀକ୍ଷା ସ୍ୱରୂପ(ମୁତଯ୍ୟନ ହୋଇ) ଅଛୁ ; ତେଣୁ (ହେ ସମ୍ବୋଧିତ ବ୍ୟକ୍ତିଗଣ ! ତୁମେମାନେ ଆମ ଆଦେଶାବଳୀକୁ ) ପ୍ରତ୍ୟାଖ୍ୟାନ କର ନାହିଁ; ସୁତରାଂ ସେମାନେ ଏ ଦୁହିଁଙ୍କଠାରୁ ଏପରି ବିଷୟ ଶିଖୁଥିଲେ ଯଦ୍ୱାରା ସେମାନେ[୨] ପତି ଓ ପତ୍ନୀଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରି ଦେଉଥିଲେ ; ଏବଂ ଅଲ୍ଲାହଙ୍କ ଆଦେଶ୍ମ ବ୍ୟତୀତ ସେମାନେ ଏହା ଦ୍ୱାରା କାହାରି ଅନିଷ୍ଟ କରୁ ନ ଥିଲେ ; ଏବଂ (ଅନ୍ୟ ପକ୍ଷରେ) ଏମାନେ (ଅର୍ଥାତ୍ ମହାପୁରୁଷ ମହମ୍ମଦଙ୍କ ଶତ୍ରୁ[୩]ମାନେ) ଏପରି ବିଷୟ ଶିଖୁଛନ୍ତି ଯାହା ଏମାନଙ୍କର ଅନିଷ୍ଟ କରିବ ଅଥଚ (କୌଣସି) ହିତ ସାଧନ କରିବ ନାହିଁ ; ଏବଂ ଏ ଲୋକମାନେ ନିଶ୍ଚିତ ରୂପେ ଜାଣନ୍ତି ଯେ ଯେଉଁମାନେ ଏପରି

وَاتَّبَعُوْا مَا تَتْلُوا الشَّيٰطِيْنُ عَلٰى مُلْكِ سُلَيْمٰنَ ۚ وَ مَا كَفَرَ سُلَيْمٰنُ وَلٰكِنَّ الشَّيٰطِيْنَ كَفَرُوْا يُعَلِّمُوْنَ النَّاسَ السِّحْرَ ۗ وَمَآ اُنْزِلَ عَلَى الْمَلَكَيْنِ بِبَابِلَ هَارُوْتَ وَمَارُوْتَ ؕ وَمَا يُعَلِّمٰنِ مِنْ اَحَدٍ حَتّٰى يَقُوْلَآ اِنَّمَا نَحْنُ فِتْنَةٌ فَلَا تَكْفُرْ ؕ فَيَتَعَلَّمُوْنَ مِنْهُمَا مَا يُفَرِّقُوْنَ بِهٖ بَيْنَ الْمَرْءِ وَزَوْجِهٖ ؕ وَمَا هُمْ بِضَآرِّيْنَ بِهٖ مِنْ اَحَدٍ اِلَّا بِاِذْنِ اللّٰهِ ؕ وَيَتَعَلَّمُوْنَ مَا يَضُرُّهُمْ وَلَا يَنْفَعُهُمْ ؕ وَلَقَدْ عَلِمُوْا لَمَنِ اشْتَرٰىهُ مَا لَهٗ فِي

୧. ବସ୍ତୁତଃ ଏ ଦୁଇଜଣ ଦେବଦୂତ-ତୁଲ୍ୟ ମାନବ ।

୨. ଅର୍ଥାତ୍ ସେ ଦୁହେଁ ସେମାନଙ୍କୁ ବିଶେଷ ଧରଣର ଧର୍ମ ଉପଦେଶ ଦେଉଥିଲେ ଯାହା ଫଳରେ ଜଣେ ମହିଳା ବିଶ୍ୱାସ କଲାପରେ ସମ୍ପ୍ରଦାୟର କୌଣସି ଗୁପ୍ତ ତଥ୍ୟ ନିଜ ସ୍ୱାମୀକୁ ମଧ୍ୟ ବତାଉ ନଥିଲା । ସେହିପରି ଜଣେ ପୁରୁଷ ବିଶ୍ୱାସ ସ୍ଥାପନ କଲାପରେ ଯଦି ତା'ର ସ୍ତ୍ରୀ ବିଶ୍ୱାସ ସ୍ଥାପନ ନ କରିଛି ତେବେ ସେ ନିଜ ସ୍ତ୍ରୀଠାରୁ ମଧ୍ୟ ଗୁପ୍ତ ତଥ୍ୟକୁ ଲୁକ୍କାୟିତ ରଖୁଥିଲା । ପ୍ରତ୍ୟେକେ କେବଳ ନିଜର ଧର୍ମ ଉପଦେଷ୍ଟାଙ୍କ ନିକଟରେ ଗୁପ୍ତ ତଥ୍ୟ ପ୍ରକାଶ କରୁଥିଲେ । ଏହିପରି ଭାବରେ ଜଣେ ଅନ୍ୟକୁ କୌଣସି ଗୁପ୍ତ ତଥ୍ୟ ଜଣାଉ ନ ଥିବାରୁ ସେମାନଙ୍କ ମଧ୍ୟରେ ମତଭେଦ ଘଟୁଥିଲା ।

୩. ହଜରତ ମହମ୍ମଦଙ୍କ ଆବିର୍ଭାବ ପୂର୍ବରୁ ଇହୁଦୀମାନେ ଦୁଇଥର ଷଡଯନ୍ତ୍ର କରି ସାରିଛନ୍ତି । ପ୍ରଥମ ଥର ସେମାନେ ହଜରତ ସୁଲେମାନଙ୍କ ବିରୁଦ୍ଧରେ ଗୁପ୍ତଦଳ ଗଠନ କରି ତାହାଙ୍କ ବିରୁଦ୍ଧରେ ପ୍ରଚାର କରିଥିଲେ ଯେ ସୁଲେମାନ ଜଣେ ଅବିଶ୍ୱାସକାରୀ ଓ ପିତୁଳାପୂଜକ । ତତ୍ ସହିତ ତାଙ୍କ ରାଜ୍ୟରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ମଧ୍ୟ ଉଦ୍ୟମ କରିଥିଲେ । ମାତ୍ର ଏହା ସଫଳ ହେଲା ନାହିଁ ଓ ପରିଶେଷରେ ସେମାନେ ଦେଶରୁ ବିତାଡିତ ହେଲେ । ଦ୍ୱିତୀୟ ଥର ସେମାନେ ହାରୁତ ଓ ମାରୁତଙ୍କ ସମୟରେ ବାବିଲନ୍‌ର ରାଜାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିଥିଲେ । ଏଥିରେ ସେମାନଙ୍କୁ ପାରସ୍ୟ ଓ ମେଦର ରାଜାମାନେ ସାହାଯ୍ୟ କରିଥିଲେ । ଇହୁଦୀମାନେ ବାସ୍ତବରେ ଉତ୍ପୀଡ଼ିତ ହେଉଥିବାରୁ ଅଲ୍ଲାହ ସେମାନଙ୍କ ପ୍ରତି ସଦୟ ଥିଲେ । ଫଳରେ ଏହି ଷଡ଼ଯନ୍ତ୍ର ସଫଳ ହେଲା ଓ ସେମାନେ ପୁନର୍ବାର ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଲେ । ସୁତରାଂ ଏଠାରେ ପ୍ରଶ୍ନ ହେଉଛି. କ'ଣ ସେମାନେ ହଜରତ ମହମ୍ମଦଙ୍କ ବିରୁଦ୍ଧରେ ଷଡଯନ୍ତ୍ର କଲେ ସଫଳ ହେବେ ? ନା. କାରଣ ହଜରତ ମହମ୍ମଦ ଅଲ୍ଲାହଙ୍କର ପ୍ରକୃତ ରସୁଲ । ବସ୍ତୁତଃ ପାରସ୍ୟର ରାଜାକୁ ପ୍ରରୋଚିତ କରି ସେମାନେ ଦିବ୍ୟ ଅବତାରଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଇଥିଲେ । ମାତ୍ର ତାହା କାର୍ଯ୍ୟକାରୀ ହେବା ପୂର୍ବରୁ ରାଜାଙ୍କର ସର୍ବନାଶ ଘଟିଲା ଏବଂ ଇହୁଦୀମାନେ ମଧ୍ୟ ଅକୃତକାର୍ଯ୍ୟ ହେଲେ ।

الْاٰخِرَةِ مِنْ خَلَاقٍ ۛ وَلَبِئْسَ مَا شَرَوْا بِهٖۤ اَنْفُسَهُمْ ۭ
لَوْ كَانُوْا يَعْلَمُوْنَ ۝١٠٣

ପନ୍ଥା ଗ୍ରହଣ କରନ୍ତି ପରକାଳରେ ସେମାନଙ୍କର କୌଣସି ଭାଗ ନାହିଁ ; ଏବଂ ସେମାନେ ଯାହା ବିନିମୟରେ ନିଜକୁ ବିକ୍ରୟ କରିଛନ୍ତି ତାହା ଅତ୍ୟନ୍ତ ମନ୍ଦ ଅଟେ ; ଆହା ! ସେମାନେ ଏହା ଜାଣନ୍ତେ କି !

وَلَوْ اَنَّهُمْ اٰمَنُوْا وَاتَّقَوْا لَمَثُوْبَةٌ مِّنْ عِنْدِ اللّٰهِ خَيْرٌ ۭ
ع لَوْ كَانُوْا يَعْلَمُوْنَ ۝١٠٤

୧୦୪. ଏବଂ ଯଦି ଏ ଲୋକମାନେ ବିଶ୍ୱାସ କରନ୍ତେ ଓ ଧର୍ମଭୀରୁତା ଅବଲମ୍ବନ କରନ୍ତେ ତେବେ (ସେମାନେ ଜାଣିପାରନ୍ତେ ଯେ) ଅଲ୍ଲାହଙ୍କଠାରୁ (ମିଳିବା) ପୁରସ୍କାର ହିଁ ଉତ୍କୃଷ୍ଟତର ; ଆହା ! ସେମାନେ ଏହା ଜାଣନ୍ତେ କି !

ରୁ:୧୩

يٰٓاَيُّهَا الَّذِيْنَ اٰمَنُوْا لَا تَقُوْلُوْا رَاعِنَا وَقُوْلُوا انْظُرْنَا
وَاسْمَعُوْا ۭ وَلِلْكٰفِرِيْنَ عَذَابٌ اَلِيْمٌ ۝١٠٥

୧୦୫. ହେ ବିଶ୍ୱାସକାରୀମାନେ ! (ହଜରତ ମହମ୍ମଦଙ୍କୁ ସମ୍ବୋଧନ କଲାବେଳେ) 'ରାଏନା'[୧] କୁହନାହିଁ, ବରଂ 'ଉନ୍‌କୁରନା' କୁହ ; ଏବଂ ତାହାଙ୍କ କଥା (ମନଦେଇ) ଶୁଣ ; ଏବଂ (ମନେରଖ) ଅବିଶ୍ୱାସକାରୀମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

مَا يَوَدُّ الَّذِيْنَ كَفَرُوْا مِنْ اَھْلِ الْكِتٰبِ وَلَا الْمُشْرِكِيْنَ
اَنْ يُّنَزَّلَ عَلَيْكُمْ مِّنْ خَيْرٍ مِّنْ رَّبِّكُمْ ۭ وَاللّٰهُ يَخْتَصُّ
بِرَحْمَتِهٖ مَنْ يَّشَاۗءُ ۭ وَاللّٰهُ ذُو الْفَضْلِ الْعَظِيْمِ ۝١٠٦

୧୦୬. ଗ୍ରନ୍ଥଧାରୀ-ମାନଙ୍କ ମଧ୍ୟରୁ ବା ମୁସରିକମାନଙ୍କ ମଧ୍ୟରୁ ଯେଉଁମାନେ ଅବିଶ୍ୱାସ କରୁଛନ୍ତି ସେମାନେ ତୁମ୍ଭ ପାଳନକର୍ତ୍ତାଙ୍କଠାରୁ ତୁମ୍ଭ ନିକଟକୁ କୌଣସି ପ୍ରକାର କଲ୍ୟାଣ ପ୍ରେରିତ ହେବା ପସନ୍ଦ କରନ୍ତି ନାହିଁ ; କିନ୍ତୁ (ଭୁଲି ଯାଆନ୍ତି ଯେ) ଅଲ୍ଲାହ ଯାହାଙ୍କ ଉପରେ ସନ୍ତୁଷ୍ଟ ହୁଅନ୍ତି ତାହାଙ୍କୁ ନିଜ କରୁଣା ପ୍ରଦାନ କରିବା ପାଇଁ ମନୋନୀତ କରନ୍ତି ; ଏବଂ ଅଲ୍ଲାହ ଅତ୍ୟନ୍ତ କୃପାଶୀଳ ।

---

୧. ଆରବୀ ଭାଷାରେ ଯଦି ନିଜ ପ୍ରତି କାହାରି ଧ୍ୟାନ ଆକର୍ଷଣ କରିବାକୁ ହେବ ତେବେ 'ରାଏନା' କୁହାଯାଏ । କିନ୍ତୁ ଏହା ସେତେବେଳେ କୁହାଯାଏ ଯେତେବେଳେ ଉଭୟ ପରସ୍ପର ସହିତ ସମାନ ହୋଇ ଥାଆନ୍ତି । କାରଣ ରାଏନା ଅର୍ଥ— ତୁମେ ଆମ ପ୍ରତି ଧ୍ୟାନ ଦିଅ, ଆମେ ତୁମ ପ୍ରତି ଧ୍ୟାନ ଦେବୁଁ । କିନ୍ତୁ ଯଦି ସମ୍ବୋଧିତ ବ୍ୟକ୍ତି ପଦ ଓ ମର୍ଯ୍ୟାଦାରେ ଉଚ୍ଚ ହୋଇଥାଏ ତେବେ ରାଏନା ପରିବର୍ତ୍ତେ 'ଉନଜୁର୍ନା' କୁହାଯାଏ । ଅର୍ଥାତ୍ ହେ ମହାଭାଗ ! ଆମ ପ୍ରତି ଧ୍ୟାନ ଦିଅନ୍ତୁ ତଥା ଏପରି ରୀତିରେ କଥା କହନ୍ତୁ ଯେପରି ଆମେ ବୁଝିପାରିବୁ । ଏହି ଆୟତ୍‌ରେ ମୁସଲମାନମାନଙ୍କୁ ଏହି ଶିକ୍ଷା ଦିଆଯାଇଅଛି ଯେ ହଜରତ ମହମ୍ମଦ୍‌ଙ୍କୁ ରାଏନା କୁହନାହିଁ । ସମ୍ଭବତଃ ଏହାଦ୍ୱାରା ତୁମମାନଙ୍କ ମନରେ ଅବିଶ୍ୱାସର ଭାବନା ସଞ୍ଚାରିତ ହୋଇପାରେ । ଏହି ଶବ୍ଦର ପ୍ରକୃତ ଅର୍ଥ ହେଉଛି ଯେ ଆମେ ଓ ତୁମେ ପରସ୍ପର ସମାନ । ତେଣୁ ତୁମେମାନେ ଉନଜୁର୍ନା କୁହ ଯଦ୍ୱାରା ତୁମମାନଙ୍କ ହୃଦୟରେ ହଜରତ ମହମ୍ମଦଙ୍କ ପ୍ରତି ଭକ୍ତି ଓ ସମ୍ମାନ ବଜାୟ ରହିବ । ତେଣୁ ତୁମେମାନେ ତାଙ୍କ କଥାକୁ ପ୍ରଥମରୁ ହିଁ ଧ୍ୟାନ ଦେଇ ଶୁଣ ଯେପରି ତୁମମାନଙ୍କୁ ରାଏନା ବା ଉନଜୁର୍ନା କହିବାକୁ ପଡ଼ିବ ନାହିଁ ।

مَا نَنْسَخْ مِنْ اٰيَةٍ اَوْ نُنْسِهَا نَاْتِ بِخَيْرٍ مِّنْهَآ اَوْ مِثْلِهَا ؕ اَلَمْ تَعْلَمْ اَنَّ اللّٰهَ عَلٰى كُلِّ شَيْءٍ قَدِيْرٌ ﴿۱۰۷﴾

୧୦୭. ଆମେ ଯେବେ କୌଣସି ବାଣୀକୁ ରଦ୍ଦ[1] କରୁ ବା ବିସ୍ମରଣ କରାଉ, ତେବେ ତାହା ଅପେକ୍ଷା ଉତ୍କୃଷ୍ଟତର ବା ତତ୍ସଦୃଶ (ବାଣୀ) ପୁନର୍ବାର (ସଂସାରକୁ) ଆଣି ଥାଉ ; କ'ଣ ତୁମକୁ ଜଣା ନାହିଁ ଯେ ଅଲ୍ଲାହ (ନିଜ ଇପ୍ସିତ) ପ୍ରତ୍ୟେକ କାର୍ଯ୍ୟ କରିବାକୁ ସମ୍ପୂର୍ଣ୍ଣ ରୂପେ ସକ୍ଷମ ?

اَلَمْ تَعْلَمْ اَنَّ اللّٰهَ لَهٗ مُلْكُ السَّمٰوٰتِ وَالْاَرْضِ ؕ وَمَا لَكُمْ مِّنْ دُوْنِ اللّٰهِ مِنْ وَّلِيٍّ وَّلَا نَصِيْرٍ ﴿۱۰۸﴾

୧୦୮. କ'ଣ ତୁମକୁ ଜଣା ନାହିଁ ଯେ ଆକାଶ ଓ ପୃଥିବୀର ରାଜତ୍ବ କେବଳ ଅଲ୍ଲାହଙ୍କର ଅଟେ ଏବଂ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର କୌଣସି ମିତ୍ର ବା ସାହାଯ୍ୟକାରୀ ନାହାନ୍ତି ।

اَمْ تُرِيْدُوْنَ اَنْ تَسْـَٔلُوْا رَسُوْلَكُمْ كَمَا سُئِلَ مُوْسٰى مِنْ قَبْلُ ؕ وَمَنْ يَّتَبَدَّلِ الْكُفْرَ بِالْاِيْمَانِ فَقَدْ ضَلَّ سَوَآءَ السَّبِيْلِ ﴿۱۰۹﴾

୧୦୯. କ'ଣ ତୁମେମାନେ ନିଜ ରସୁଲଙ୍କୁ ସେହିପରି ପ୍ରଶ୍ନ ପଚାରିବାକୁ ଇଚ୍ଛା କରୁଅଛ ଯେପରି (ଏହା) ପୂର୍ବରୁ ମୁସାଙ୍କୁ ପଚରା ଯାଇଥିଲା ଏବଂ (ତୁମେମାନେ ଭୁଲି ଯାଉଛ ଯେ) ଯେଉଁ ବ୍ୟକ୍ତି ବିଶ୍ବାସ ବଦଳରେ ଅବିଶ୍ବାସକୁ ଗ୍ରହଣ କରେ ତେବେ ବୁଝିନିଅ ଯେ ସେ ସରଳ ପଥରୁ ବିଚ୍ୟୁତ ହୋଇଛି ।

وَدَّ كَثِيْرٌ مِّنْ اَهْلِ الْكِتٰبِ لَوْ يَرُدُّوْنَكُمْ مِّنْ بَعْدِ اِيْمَانِكُمْ كُفَّارًا ۚۖ حَسَدًا مِّنْ عِنْدِ اَنْفُسِهِمْ مِّنْ بَعْدِ مَا تَبَيَّنَ لَهُمُ الْحَقُّ ۚ فَاعْفُوْا وَاصْفَحُوْا حَتّٰى يَاْتِيَ اللّٰهُ بِاَمْرِهٖ ؕ اِنَّ اللّٰهَ عَلٰى كُلِّ شَيْءٍ قَدِيْرٌ ﴿۱۱۰﴾

୧୧୦. ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ଅନେକ ଲୋକଙ୍କ ନିକଟରେ ସତ୍ୟ ଭଲରୂପେ ପ୍ରକାଶିତ ହୋଇଯିବା ପରେ ସେମାନଙ୍କ ହୃଦୟରେ (ଜାତ ହୋଇଥିବା) ଈର୍ଷା ଯୋଗୁଁ ସେମାନେ ଇଚ୍ଛା କରୁଛନ୍ତି ଯେ ତୁମେମାନେ ବିଶ୍ବାସ ସ୍ଥାପନ କରିବା ପରେ ତୁମମାନଙ୍କୁ ପୁନରାୟ ଅବିଶ୍ବାସକାରୀ କରିଦେବେ ; ସୁତରାଂ ଅଲ୍ଲାହ ନିଜର ଆଦେଶ ପ୍ରେରଣ ନ କରିବା ପର୍ଯ୍ୟନ୍ତ ତୁମେମାନେ ସେମାନଙ୍କୁ କ୍ଷମା କର ଓ ଉପେକ୍ଷା କର ; ଅଲ୍ଲାହ ନିଶ୍ଚୟ ସବୁକିଛି କରିବାକୁ ସମ୍ପୂର୍ଣ୍ଣ ରୂପେ ସକ୍ଷମ ।

وَاَقِيْمُوا الصَّلٰوةَ وَاٰتُوا الزَّكٰوةَ ؕ وَمَا تُقَدِّمُوْا لِاَنْفُسِكُمْ مِّنْ خَيْرٍ تَجِدُوْهُ عِنْدَ اللّٰهِ ؕ اِنَّ اللّٰهَ بِمَا تَعْمَلُوْنَ بَصِيْرٌ ﴿۱۱۱﴾

୧୧୧. ଏବଂ ନିୟମାନୁସାରେ ନମାଜ ପାଠ କର ଓ ଜକାତଦିଅ ; ଏବଂ (ମନେରଖ ଯେ) ତୁମେମାନେ ଯାହା କିଛି ପୁଣ୍ୟ ନିଜ ପାଇଁ ଆଗତୁରା ପଠାଇବ ତାହାକୁ ତୁମେମାନେ ଅଲ୍ଲାହଙ୍କ ନିକଟରେ ପାଇବ, ବାସ୍ତବରେ ଅଲ୍ଲାହ ତୁମମାନଙ୍କର କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଛନ୍ତି ।

---

[1] ପବିତ୍ର କୋରାନର କୌଣସି ଆୟତକୁ ରଦ୍ଦ କରାଯିବା ଏହାର ମର୍ମ ନୁହେଁ । ବରଂ ଏହାର ଅସଲ ତାତ୍ପର୍ଯ୍ୟ ହେଉଛି ଯେ ଯେବେ ସେ କୌଣସି ନିଦର୍ଶନକୁ ଅପସାରଣ କରି ଦିଅନ୍ତି ତେବେ ତାହାଠାରୁ ଉତ୍କୃଷ୍ଟ ନିଦର୍ଶନ ଘେନି ଆସନ୍ତି ଅଥବା ଲୋକମାନଙ୍କ ପାଇଁ ସତ୍ପଥ ପ୍ରାପ୍ତିର ମାଧ୍ୟମ ସ୍ବରୂପ ତତ୍ସଦୃଶ ଅନ୍ୟ ନିଦର୍ଶନ ପ୍ରକଟିତ କରାନ୍ତି ।

ଟୀକାକାରମାନଙ୍କ ମତରେ ଯେତେବେଳେ ପବିତ୍ର କୋରାନ ଗ୍ରନ୍ଥର କୌଣସି ଆୟତକୁ ରଦ୍ଦ କରାଯାଏ ସେତେବେଳେ ତତ୍ ପରିବର୍ତ୍ତେ ଅନ୍ୟ ଆୟତ ପ୍ରକଟିତ ହୁଏ । କିନ୍ତୁ ଏହା ଯଥାର୍ଥ ନୁହେଁ । ଯଦି ଏହାକୁ ଧର୍ମଗ୍ରନ୍ଥର କୌଣସି ଆୟତ ରୂପେ ଗ୍ରହଣ କରାଯାଏ ତେବେ ଏଠାରେ ବ୍ୟବହୃତ ଆୟତର ଅର୍ଥ ତୌରାତ ଓ ଇଂଜିଲର କୌଣସି ଅଂଶ ବୋଲି ଅର୍ଥ କରିବା ସମୀଚୀନ ହେବ । ଅତଏବ ଆୟତ ପ୍ରସଙ୍ଗରେ ଏହା ହିଁ ପ୍ରମାଣିତ ହେଉଛି ଯେ ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥ ମାନଙ୍କରେ କୌଣସି ଅଂଶକୁ ରଦ୍ଦ କରିବା ସ୍ଥଳେ ଅଲ୍ଲାହ ପବିତ୍ର କୋରାନରେ ସେହିପରି ବା ତା'ଠାରୁ ଉତ୍କୃଷ୍ଟ ଶିକ୍ଷା ଅବତୀର୍ଣ୍ଣ କରାଇବେ । ବସ୍ତୁତଃ ପବିତ୍ର କୋରାନର କୌଣସି ଆୟତ କୟାମତ ପର୍ଯ୍ୟନ୍ତ ରଦ୍ଦ ହେବ ନାହିଁ ।

୧୧୨. ଏବଂ ସେ (ଇହୁଦୀ ଓ ଖ୍ରୀଷ୍ଟିୟାନ୍) ମାନେ କହନ୍ତି ଯେ ବୈକୁଣ୍ଠରେ ଇହୁଦୀ ଓ ଖ୍ରୀଷ୍ଟିୟାନଙ୍କ ବ୍ୟତୀତ ଅନ୍ୟ କେହି କଦାପି ପ୍ରବେଶ କରିପାରିବେ ନାହି ; ଏହା ସେମାନଙ୍କର ବୃଥା ଅଭିଳାଷ ; ତୁମେ (ସେମାନଙ୍କୁ) କୁହ, "ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ ତାହା ହେଲେ ନିଜର ପ୍ରମାଣ ଉପସ୍ଥାପନ କର ।"

وَقَالُوا لَنْ يَدْخُلَ الْجَنَّةَ إِلَّا مَنْ كَانَ هُودًا أَوْ نَصَارَىٰ ۗ تِلْكَ أَمَانِيُّهُمْ ۗ قُلْ هَاتُوا بُرْهَانَكُمْ إِنْ كُنْتُمْ صَادِقِينَ ﴿١١١﴾

୧୧୩. (କୁହତ ଭଲା ଅନ୍ୟ ଲୋକମାନେ ବୈକୁଣ୍ଠରେ ପ୍ରବେଶ କରିବେ) ନାହିଁ କାହିଁକି ? ଯେ କେହି ନିଜକୁ ସମ୍ପୂର୍ଣ୍ଣ ରୂପେ ଅଲ୍ଲାହଙ୍କ ନିକଟରେ ସମର୍ପଣ କରେ ଓ ସତ୍‌କର୍ମ କରେ ତାହାଲାଗି ନିଜ ପାଳନକର୍ତ୍ତାଙ୍କ ପାଖରେ ପୁରସ୍କାର (ନିୟତ) ଅଛି ; ଏବଂ ସେମାନଙ୍କର ଭବିଷ୍ୟତ ପାଇଁ କୌଣସି ପ୍ରକାର ଭୟ ରହିବ ନାହିଁ କି ସେମାନେ (ଅତୀତ ତ୍ରୁଟି ପାଇଁ) ଦୁଃଖିତ ହେବେ ନାହିଁ ।

بَلَىٰ مَنْ أَسْلَمَ وَجْهَهُ لِلَّهِ وَهُوَ مُحْسِنٌ فَلَهُ أَجْرُهُ عِنْدَ رَبِّهِ وَلَا خَوْفٌ عَلَيْهِمْ وَلَا هُمْ يَحْزَنُونَ ﴿١١٢﴾

ରୁ: ୧୪

୧୧୪. ଏବଂ ଇହୁଦୀମାନେ କହନ୍ତି ଯେ ଖ୍ରୀଷ୍ଟିୟାନମାନେ କୌଣସି (ସତ୍) ବିଷୟ ଉପରେ ପ୍ରତିଷ୍ଠିତ ନାହାନ୍ତି ଓ ଖ୍ରୀଷ୍ଟିୟାନମାନେ କହନ୍ତି ଯେ ଇହୁଦୀମାନେ କୌଣସି (ସତ୍) ବିଷୟ ଉପରେ ପ୍ରତିଷ୍ଠିତ ନାହାନ୍ତି ;ଅଥଚ ଉଭୟେ ସେହି ଏକା (ତୌରାତ) ଗ୍ରନ୍ଥ ପାଠ କରୁଛନ୍ତି ; ଅଜ୍ଞ ବ୍ୟକ୍ତିମାନେ ମଧ୍ୟ ସେମାନଙ୍କ ଭଳି ସେହିପରି କହୁଥିଲେ ; ସୁତରାଂ ଯେଉଁ ବିଷୟରେ ସେମାନଙ୍କ ମଧ୍ୟରେ ମତଭେଦ ରହିଛି କୟାମତ ଦିନ ଅଲ୍ଲାହ ସେମାନଙ୍କ ମଧ୍ୟରେ ସେ ସଂକ୍ରାନ୍ତରେ ମୀମାଂସା କରିବେ ।

وَقَالَتِ الْيَهُودُ لَيْسَتِ النَّصَارَىٰ عَلَىٰ شَيْءٍ وَقَالَتِ النَّصَارَىٰ لَيْسَتِ الْيَهُودُ عَلَىٰ شَيْءٍ وَهُمْ يَتْلُونَ الْكِتَابَ ۗ كَذَٰلِكَ قَالَ الَّذِينَ لَا يَعْلَمُونَ مِثْلَ قَوْلِهِمْ ۚ فَاللَّهُ يَحْكُمُ بَيْنَهُمْ يَوْمَ الْقِيَامَةِ فِيمَا كَانُوا فِيهِ يَخْتَلِفُونَ ﴿١١٣﴾

୧୧୫. ଏବଂ ତା'ଠାରୁ ଅଧିକ ଅତ୍ୟାଚାରୀ ଆଉ କିଏ (ହୋଇପାରେ) ଯେ ଅଲ୍ଲାହଙ୍କ ମସଜିଦମାନଙ୍କରେ ତାହାଙ୍କର ନାମ ଉଚ୍ଚାରଣ କରାଯିବାରେ (ଲୋକମାନଙ୍କୁ) ବାଧା ଦିଏ ଓ ସେଗୁଡ଼ିକୁ ଧ୍ୱଂସ କରିବାକୁ ଚେଷ୍ଟା କରେ ; (ଅଲ୍ଲାହଙ୍କ ପ୍ରତି) ଭୟଭୀତ ନ ହୋଇ ସେ (ମସଜିଦ)ଗୁଡ଼ିକ ମଧ୍ୟରେ ପ୍ରବେଶ କରିବା ସେମାନଙ୍କ ପକ୍ଷରେ ଉଚିତ ନଥିଲା ; ସେମାନଙ୍କ ପାଇଁ ଇହକାଳରେ ଅପମାନ ଓ ପରକାଳରେ କଠିନ ଶାସ୍ତି (ନିୟତ) ଅଛି ।

وَمَنْ أَظْلَمُ مِمَّنْ مَنَعَ مَسَاجِدَ اللَّهِ أَنْ يُذْكَرَ فِيهَا اسْمُهُ وَسَعَىٰ فِي خَرَابِهَا ۚ أُولَٰئِكَ مَا كَانَ لَهُمْ أَنْ يَدْخُلُوهَا إِلَّا خَائِفِينَ ۚ لَهُمْ فِي الدُّنْيَا خِزْيٌ وَلَهُمْ فِي الْآخِرَةِ عَذَابٌ عَظِيمٌ ﴿١١٤﴾

୧୧୬. ପୂର୍ବ ଏବଂ ପଶ୍ଚିମ[୧] ଅଲ୍ଲାହଙ୍କର ଅଟେ ; ସୁତରାଂ ତୁମେ ଯେଉଁ ଦିଗକୁ ମୁହଁ କରିବ ସେହି ଦିଗରେ ନିଶ୍ଚୟ ଅଲ୍ଲାହଙ୍କର ଅସ୍ତିତ୍ୱ ପାଇବ ; ବାସ୍ତବରେ ଅଲ୍ଲାହ ହିଁ ସର୍ବବ୍ୟାପୀ ଓ ସର୍ବଜ୍ଞ ।

وَلِلَّهِ الْمَشْرِقُ وَالْمَغْرِبُ ۚ فَأَيْنَمَا تُوَلُّوا فَثَمَّ وَجْهُ اللَّهِ ۚ إِنَّ اللَّهَ وَاسِعٌ عَلِيمٌ ﴿١١٥﴾

---

୧. ଏହି ଆୟତ ଅନ୍ତର୍ଗତ ଭବିଷ୍ୟବାଣୀ ଅନୁସାରେ ପ୍ରଥମେ ପୂର୍ବାଞ୍ଚଳ ଦେଶମାନଙ୍କରେ ଓ ପରେ ପଶ୍ଚିମାଞ୍ଚଳ ଦେଶମାନଙ୍କରେ ଇସଲାମ ଧର୍ମ ପ୍ରସାର ଲାଭ କରିବ ।

୧୧୭. ଏବଂ ସେମାନେ କହନ୍ତି ''ଅଲ୍ଲାହ ନିଜ ପାଇଁ ଏକ ପୁତ୍ର ଗ୍ରହଣ କରିଛନ୍ତି ;'' (ସେମାନଙ୍କ କଥା ଠିକ୍ ନୁହେଁ) ସେ ପବିତ୍ର (ଅର୍ଥାତ୍ ସମସ୍ତ ଦୁର୍ବଳତାର ଊର୍ଦ୍ଧ୍ୱରେ) ବରଂ ଆକାଶ ଓ ପୃଥିବୀରେ ଥିବା ପ୍ରତ୍ୟେକ ବସ୍ତୁ ତାହାଙ୍କର; ସମସ୍ତେ ତାଙ୍କର ଆଜ୍ଞାବହ ।

وَقَالُوا اتَّخَذَ اللّٰهُ وَلَدًا سُبْحٰنَهٗ ۭ بَلْ لَّهٗ مَا فِي السَّمٰوٰتِ وَالْاَرْضِ ۭ كُلٌّ لَّهٗ قٰنِتُوْنَ ﴿١١٦﴾

୧୧୮. (ଅତୀତର କୌଣସି ନମୁନା ବ୍ୟତିରେକେ) ସେ ଆକାଶ ଓ ପୃଥିବୀର ସ୍ରଷ୍ଟା ; ଏବଂ ଯେତେବେଳେ ସେ କୌଣସି ବିଷୟ (ସୃଷ୍ଟି) କରିବାକୁ ନିଷ୍ପତ୍ତି କରନ୍ତି (ସେତେବେଳେ) ସେ ସମ୍ବନ୍ଧରେ ସେ କେବଳ ଏତିକି କହନ୍ତି 'ହୋଇଯା', ଏବଂ ତାହା ହୋଇଯାଏ ।

بَدِيْعُ السَّمٰوٰتِ وَالْاَرْضِ ۭ وَاِذَا قَضٰٓى اَمْرًا فَاِنَّمَا يَقُوْلُ لَهٗ كُنْ فَيَكُوْنُ ﴿١١٧﴾

୧୧୯. ଏବଂ ଯେଉଁମାନେ (ଅଲ୍ଲାହଙ୍କ ତତ୍ତ୍ୱ ବିଷୟରେ) ଅଜ୍ଞ (ସେମାନେ) କହନ୍ତି, ''ଅଲ୍ଲାହ କାହିଁକି ଆମମାନଙ୍କ ସହିତ (ପ୍ରତ୍ୟକ୍ଷ ଭାବରେ) କଥା କହୁନାହାନ୍ତି କିମ୍ବା ଆମମାନଙ୍କ ନିକଟକୁ କୌଣସି ନିଦର୍ଶନ ଆସୁ (ନାହିଁ କାହିଁକି ? '' ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ ଠିକ୍ ଏହିପରି ସେମାନଙ୍କ ଭଳି କହୁଥିଲେ ; ଏ ସମସ୍ତଙ୍କ ହୃଦୟ ସମରୂପୀ ଅଟେ ; ଯେଉଁ ଲୋକମାନେ ବିଶ୍ୱାସ କରନ୍ତି ସେମାନଙ୍କ ପାଇଁ ଆମ୍ଭେ ବାସ୍ତବରେ ପ୍ରତ୍ୟେକ ପ୍ରକାରର ନିଦର୍ଶନକୁ ସୁସ୍ପଷ୍ଟଭାବରେ ବର୍ଣ୍ଣନା କରିଅଛୁ (କିନ୍ତୁ ଏ ଲୋକମାନେ ମାନୁ ନାହାନ୍ତି) ।

وَقَالَ الَّذِيْنَ لَا يَعْلَمُوْنَ لَوْلَا يُكَلِّمُنَا اللّٰهُ اَوْ تَاْتِيْنَآ اٰيَةٌ ۭ كَذٰلِكَ قَالَ الَّذِيْنَ مِنْ قَبْلِهِمْ مِّثْلَ قَوْلِهِمْ ۭ تَشَابَهَتْ قُلُوْبُهُمْ ۭ قَدْ بَيَّنَّا الْاٰيٰتِ لِقَوْمٍ يُّوْقِنُوْنَ ﴿١١٨﴾

୧୨୦. ନିଶ୍ଚୟ ଆମ୍ଭେ ତୁମକୁ ସତ୍ୟ ସହିତ ସୁସମାଚାରଦାତା ଓ ସତର୍କକାରୀ ରୂପେ ପ୍ରେରଣ କରିଛୁ ; ଏବଂ ନରକବାସୀମାନଙ୍କ ବିଷୟରେ ତୁମକୁ କୌଣସି ପ୍ରଶ୍ନ କରାଯିବ ନାହିଁ ।

اِنَّآ اَرْسَلْنٰكَ بِالْحَقِّ بَشِيْرًا وَّنَذِيْرًا ۙ وَّلَا تُسْـَٔـلُ عَنْ اَصْحٰبِ الْجَحِيْمِ ﴿١١٩﴾

୧୨୧. ଏବଂ (ମନେରଖ ଯେ) ତୁମେ ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କ ଧର୍ମ ଅନୁସରଣ ନ କରିବା ପର୍ଯ୍ୟନ୍ତ ସେମାନେ କେବେହେଁ ତୁମ ପ୍ରତି ପ୍ରସନ୍ନ ହେବେ ନାହିଁ ; ତୁମେ (ସେମାନଙ୍କୁ) କୁହ, ''ବାସ୍ତବରେ ଅଲ୍ଲାହଙ୍କ ପ୍ରଦର୍ଶିତ ପଥ ହିଁ ପ୍ରକୃତ ସତ୍‌ପଥ ;'' ଏବଂ ତୁମ ନିକଟକୁ ପ୍ରେରିତ ଏହି ଜ୍ଞାନ (ଲାଭ) ପରେ ଯଦି ତୁମେ ସେମାନଙ୍କ ଇଚ୍ଛା ଅନୁଯାୟୀ କାର୍ଯ୍ୟ କରିବ ତେବେ ଅଲ୍ଲାହଙ୍କ ତରଫରୁ ତୁମର କେହି ବନ୍ଧୁ ବା ସାହାଯ୍ୟକାରୀ ହେବେନାହିଁ ।

وَلَنْ تَرْضٰى عَنْكَ الْيَهُوْدُ وَلَا النَّصٰرٰى حَتّٰى تَتَّبِعَ مِلَّتَهُمْ ۭ قُلْ اِنَّ هُدَى اللّٰهِ هُوَ الْهُدٰى ۭ وَلَىِٕنِ اتَّبَعْتَ اَهْوَاۗءَهُمْ بَعْدَ الَّذِيْ جَاۗءَكَ مِنَ الْعِلْمِ ۙ مَا لَكَ مِنَ اللّٰهِ مِنْ وَّلِيٍّ وَّلَا نَصِيْرٍ ﴿١٢٠﴾

୧୨୨. ଆମ୍ଭେ ଯେଉଁମାନଙ୍କୁ (ଧର୍ମ)ଗ୍ରନ୍ଥ ଦେଇଅଛୁ ସେମାନେ ତାହାର (ସେହିପରି) ଅନୁସରଣ କରୁଛନ୍ତି ଯେପରି ତାହାର ଅନୁସରଣ କରାଯିବା କଥା ; ସେମାନେ ତହିଁରେ (ଦୃଢ଼) ବିଶ୍ୱାସ କରୁଛନ୍ତି ; ଏବଂ ଯେଉଁମାନେ ତାହାକୁ ଅବିଶ୍ୱାସ କରୁଛନ୍ତି ସେମାନେ ହିଁ କ୍ଷତିଗ୍ରସ୍ତ ହେବେ ।

اَلَّذِيْنَ اٰتَيْنٰهُمُ الْكِتٰبَ يَتْلُوْنَهٗ حَقَّ تِلَاوَتِهٖ ۭ اُولٰۗىِٕكَ يُؤْمِنُوْنَ بِهٖ ۭ وَمَنْ يَّكْفُرْ بِهٖ فَاُولٰۗىِٕكَ هُمُ الْخٰسِرُوْنَ ﴿١٢١﴾

ରୁ:୧୫

يٰبَنِيٓ إِسْرَآءِيلَ اذْكُرُوْا نِعْمَتِيَ الَّتِيٓ أَنْعَمْتُ عَلَيْكُمْ وَأَنِّيْ فَضَّلْتُكُمْ عَلَى الْعٰلَمِيْنَ ﴿١٢٣﴾

୧୨୩. ହେ ଇସ୍ରାଇଲୀୟ ସନ୍ତାନମାନେ ! ଆମ୍ଭେ ତୁମମାନଙ୍କ ପ୍ରତି କରିଥିବା କୃପାକୁ ଏବଂ ସମଗ୍ର ଜଗତରେ ତୁମମାନଙ୍କୁ ଦେଇଥିବା ପ୍ରାଧାନ୍ୟକୁ ସ୍ମରଣ କର ।

وَاتَّقُوْا يَوْمًا لَّا تَجْزِيْ نَفْسٌ عَنْ نَّفْسٍ شَيْـًٔا وَّلَا يُقْبَلُ مِنْهَا عَدْلٌ وَّلَا تَنْفَعُهَا شَفَاعَةٌ وَّلَا هُمْ يُنْصَرُوْنَ ﴿١٢٤﴾

୧୨୪. ଏବଂ ସେହି ଦିନକୁ ଭୟ କର ଯେତେବେଳେ କୌଣସି ବ୍ୟକ୍ତି ଅନ୍ୟ କୌଣସି ବ୍ୟକ୍ତିର (ଆଦୌ) ପ୍ରତିବଦଳ ହୋଇପାରିବ ନାହିଁ କିମ୍ବା ତା'ଠାରୁ (କୌଣସି ପ୍ରକାରର) କ୍ଷତିପୂରଣ ଗ୍ରହଣ କରାଯିବ ନାହିଁ କି ତା'ପାଇଁ କୌଣସି ସୁପାରିଶ ଲାଭଦାୟକ ହେବ ନାହିଁ ତଥା ସେମାନଙ୍କୁ ସାହାଯ୍ୟ କରାଯିବ ନାହିଁ ।

وَإِذِ ابْتَلٰٓى إِبْرٰهٖمَ رَبُّهٗ بِكَلِمٰتٍ فَأَتَمَّهُنَّ ۖ قَالَ إِنِّيْ جَاعِلُكَ لِلنَّاسِ إِمَامًا ۖ قَالَ وَمِنْ ذُرِّيَّتِيْ ۖ قَالَ لَا يَنَالُ عَهْدِي الظّٰلِمِيْنَ ﴿١٢٥﴾

୧୨୫. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣକର) ଯେତେବେଳେ ଇବ୍ରାହିମଙ୍କୁ ତାହାଙ୍କ ପାଳନକର୍ତ୍ତା କେତେକ ଆଦେଶ ଦ୍ୱାରା ପରୀକ୍ଷା କରିଲେ; ଏବଂ ସେ ତାହାକୁ ପାଳନ କରିଲେ ; (ତା'ପରେ ଅଲ୍ଲାହ୍) କହିଲେ, "ଆମ୍ଭେ ନିଶ୍ଚୟ ତୁମକୁ ଲୋକମାନଙ୍କର ଇମାମ (ଅର୍ଥାତ୍ ଆଧ୍ୟାତ୍ମିକ ନେତା) ନିଯୁକ୍ତ କରିବୁ ;" (ଇବ୍ରାହିମ) କହିଲେ, "ଏବଂ ଆମ୍ଭ ସନ୍ତାନମାନଙ୍କ ଭିତରୁ ମଧ୍ୟ (ଆଧ୍ୟାତ୍ମିକ ନେତା ନିଯୁକ୍ତ କର) ; (ଅଲ୍ଲାହ୍) କହିଲେ, "(ଆଚ୍ଛା, କିନ୍ତୁ) ଆମ୍ଭ ପ୍ରତିଶ୍ରୁତି ଅତ୍ୟାଚାରୀମାନଙ୍କ ପ୍ରତି ଲାଗୁ ହେବ ନାହିଁ ।"

وَإِذْ جَعَلْنَا الْبَيْتَ مَثَابَةً لِّلنَّاسِ وَأَمْنًا ۖ وَاتَّخِذُوْا مِنْ مَّقَامِ إِبْرٰهٖمَ مُصَلًّى ۖ وَعَهِدْنَآ إِلٰٓى إِبْرٰهٖمَ

୧୨୬. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମ୍ଭେ ଏହି (କାବା) ଗୃହକୁ ଲୋକମାନଙ୍କ ପାଇଁ ବାରମ୍ବାର ଏକତ୍ରିତ ହେବା ସ୍ଥାନ ଓ ଶାନ୍ତିପୀଠ ରୂପେ ଗଢ଼ିଥିଲୁ ଏବଂ (ଆଦେଶ ଦେଇଥିଲୁ କି) 'ଇବ୍ରାହିମଙ୍କର ଠିଆହେବା ସ୍ଥାନକୁ ନମାଜ ପାଠ ଭାବରେ ଗ୍ରହଣ କର', ଏବଂ ଆମ୍ଭେ ଇବ୍ରାହିମ ଓ ଇସମାଇଲଙ୍କୁ ଚେତାବନୀ-ପୂର୍ବକ ଆଦେଶ

---

୧. ଏହା ଏପରି ଏକ ସ୍ଥାନକୁ ବୁଝାଉଛି ଯାହା ଲୋକମାନଙ୍କ ସକାଶେ ଏକେତ ଏକ ଆଶ୍ରୟସ୍ଥଳ ବା ଯେଉଁସ୍ଥାନକୁ ପରିଦର୍ଶନରେ ଗଲେ ଫଳସ୍ୱରୂପ ପୁରସ୍କାର ମିଳେ । ଏହା 'କାବା' ନାମରେ ପରିଚିତ । କେତେକ ହଦିସର ବର୍ଣ୍ଣନା ଅନୁସାରେ ତଥା କୋରାନରେ ସୂଚିତ ହୋଇଥିବା ପ୍ରକାରେ କା'ବା ସର୍ବ ପ୍ରଥମେ ହଜରତ ଆଦମଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଓ ତାହାଙ୍କ ବଂଶଧରମାନେ ଏହାକୁ ଏକ ଉପାସନା କେନ୍ଦ୍ର ଭାବରେ ଉପଯୋଗ କରୁଥିଲେ । ପରେ ହଜରତ ଇବ୍ରାହିମ ନିଜ ପୁତ୍ର ଇସମାଇଲଙ୍କ ସହାୟତାରେ ଏହାର ପୁନର୍ନିର୍ମାଣ କରିଥିଲେ । ସେ ନିଜେ ଓ ତାହାଙ୍କ ବଂଶଧରମାନେ ଏହାକୁ ମଧ୍ୟ ଉପାସନା କେନ୍ଦ୍ର ରୂପେ ଉପଯୋଗ କରୁଥିଲେ । ମାତ୍ର ସମୟକ୍ରମେ ଏହା ଏକ ବିଗ୍ରହାଳୟରେ ପରିଣତ ହୋଇଥିଲା । ହଜରତ ମହମ୍ମଦଙ୍କ ଆବିର୍ଭାବ ବେଳକୁ ଏଥିରେ ୩୬୦ଟି ବିଗ୍ରହ ଥିଲା । ସମଗ୍ର ମନୁଷ୍ୟସମାଜକୁ ବିଶ୍ୱ ଭ୍ରାତୃତ୍ୱର ବନ୍ଧନରେ ଆବଦ୍ଧକରି ସେ ପୁନର୍ବାର ଏହାକୁ ଏକ-ଅଲ୍ଲାହ୍‌ଙ୍କ ଉପାସନା କେନ୍ଦ୍ରରେ ପରିଣତ କରିଥିଲେ । ଏହା ମକ୍କାରେ ଅବସ୍ଥିତ । ପୃଥିବୀ ପୃଷ୍ଠରେ ଅନେକ ପୁରାତନ ଜାତି ଓ ସହର ନିଶ୍ଚିହ୍ନ ହୋଇଯାଇଥିଲେ ମଧ୍ୟ କା'ବା ଓ ମକ୍କା ଅଦ୍ୟାବଧି ସେହିପରି ବିଦ୍ୟମାନ ଥାଇ ନିରାପତ୍ତା ଓ ସୁରକ୍ଷା ପ୍ରଦାନ କରୁଅଛି ।

وَاِسۡمٰعِيۡلَ اَنۡ طَهِّرَا بَيۡتِىَ لِلطَّآٮِٕفِيۡنَ وَالۡعٰكِفِيۡنَ وَالرُّکَّعِ السُّجُوۡدِ ﴿١٢٦﴾

ଦେଇଥିଲୁ ଯେ ଆମର ଗୃହକୁ 'ତଓ୍ୱାଫ', 'ଏତକାଫ'[୧], 'ରୁକୁ' ଓ 'ସିଜଦା' କରୁଥିବା ବ୍ୟକ୍ତିମାନଙ୍କ ସକାଶେ ଶୁଦ୍ଧ ପୂତ ରଖ ।

وَاِذۡ قَالَ اِبۡرٰهٖمُ رَبِّ اجۡعَلۡ هٰذَا بَلَدًا اٰمِنًا وَّارۡزُقۡ اَهۡلَهٗ مِنَ الثَّمَرٰتِ مَنۡ اٰمَنَ مِنۡهُمۡ بِاللّٰهِ وَالۡيَوۡمِ الۡاٰخِرِ‌ؕ قَالَ وَمَنۡ كَفَرَ فَاُمَتِّعُهٗ قَلِيۡلًا ثُمَّ اَضۡطَرُّهٗۤ اِلٰى عَذَابِ النَّارِ‌ؕ وَبِئۡسَ الۡمَصِيۡرُ ﴿١٢٧﴾

୧୨୭. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଇବ୍ରାହିମ କହିଥିଲେ, "ହେ ଆମର ପାଳନକର୍ତ୍ତା ! ଏହାକୁ (ଅର୍ଥାତ୍ ଏହି ସ୍ଥାନକୁ) ଏକ ଶାନ୍ତିମୟ ସହରରେ ପରିଣତ କର ଏବଂ ଏହାର ନିବାସୀମାନଙ୍କ ମଧ୍ୟରୁ ଯେଉଁମାନେ ଅଲ୍ଲାହଙ୍କଠାରେ ତଥା ଅନ୍ତିମ ଦିବସ ଉପରେ ବିଶ୍ୱାସ କରିବେ ସେମାନଙ୍କୁ (ପ୍ରତ୍ୟେକ ପ୍ରକାର) ଫଳ ପ୍ରଦାନ କର ; (ଏହାପରେ ଅଲ୍ଲାହ) କହିଲେ, "ଯେଉଁ ବ୍ୟକ୍ତି ଅବିଶ୍ୱାସ କରିବ ତାହାକୁ (ମଧ୍ୟ) ଆମେ କିଛି କାଳ ପାଇଁ ଲାଭ ପ୍ରଦାନ କରିବୁ ; ପରେ ତାହାକୁ ବାଧ୍ୟ କରି ନରକର ଶାସ୍ତି ଆଡ଼କୁ ନେଇଯିବୁ ; ଏବଂ (ଏହା) ଅତ୍ୟନ୍ତ କୁପରିଣାମ ଅଟେ ।"

وَاِذۡ يَرۡفَعُ اِبۡرٰهٖمُ الۡقَوَاعِدَ مِنَ الۡبَيۡتِ وَاِسۡمٰعِيۡلُ ؕ رَبَّنَا تَقَبَّلۡ مِنَّا ؕ اِنَّكَ اَنۡتَ السَّمِيۡعُ الۡعَلِيۡمُ ﴿١٢٨﴾

୧୨୮. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣକର) ଯେତେବେଳେ ଇବ୍ରାହିମ୍ ଏହି ଗୃହର ଭିତ୍ତି ନିର୍ମାଣ କରୁଥିଲେ[୨] ଏବଂ (ତାଙ୍କ ସହିତ) ଇସମାଇଲ ମଧ୍ୟ (ଏବଂ ଉଭୟ କହୁଥିଲେ ଯେ), "ହେ ଆମର ପାଳନକର୍ତ୍ତା ! ଆମମାନଙ୍କ ପକ୍ଷରୁ (ଏହି ସେବାକୁ) ଗ୍ରହଣ କର ; ତୁମେ ହି ମହାନ୍ ଶ୍ରୋତା ଓ ସର୍ବଜ୍ଞ ।"

---

୧. 'ଏତକାଫ' ର ଅର୍ଥ ଏକାନ୍ତରେ ଧ୍ୟାନମଗ୍ନ ହେବା । ପବିତ୍ର ରମଜାନ ମାସର ବିଂଶ ଦିବସର ଅପରାହ୍ନଠାରୁ ସେହି ମାସ ଶେଷ ପର୍ଯ୍ୟନ୍ତ ମସଜିଦ ପରିସର ମଧ୍ୟରେ ଏକାନ୍ତବାସ ବ୍ରତ ଗ୍ରହଣପୂର୍ବକ ପ୍ରାର୍ଥନା, ଜପ ଓ ଧ୍ୟାନ କରାଯାଏ । କେବଳ ଉପବାସ କରୁଥିବା ବ୍ୟକ୍ତି ଏହି ବ୍ରତ ପାଳନ କରିପାରିବ । ଏପରି ଏକାନ୍ତବାସୀଙ୍କୁ ସମସ୍ତ ପ୍ରକାର ସାଂସାରିକ ବନ୍ଧନ ଓ ବିଷୟ ଚିନ୍ତାରୁ ଦୂରେଇ ରହି କେବଳ ଅଲ୍ଲାହଙ୍କୁ ସ୍ମରଣ କରିବା, ନିଜର ଦୋଷତ୍ରୁଟି ପାଇଁ ତାହାଙ୍କ ନିକଟରେ କ୍ଷମାଭିକ୍ଷା କରିବା, ପବିତ୍ର କୋରାନ ଆବୃତ୍ତି କରିବା, ସାଧ୍ୟାନୁସାରେ ଅତିରିକ୍ତ ନମାଜ ପାଠ କରିବା ଆଦି ପୁଣ୍ୟକର୍ମରେ ନିୟୋଜିତ ହେବାକୁ ପଡିଥାଏ । ଏହି ବ୍ରତ ଆତ୍ମ-ଶୁଦ୍ଧି ଓ ଆଧ୍ୟାତ୍ମିକ ଉନ୍ନତିର ପରିଚାୟକ । ହଜରତ ମହମ୍ମଦ ନିଜ ଜୀବଦ୍ଦଶାରେ ଏହି ବ୍ରତ ପାଳନ କରୁଥିଲେ ଓ ଅନ୍ୟମାନଙ୍କୁ ଏହା କରିବା ପାଇଁ ପ୍ରେରଣା ପ୍ରଦାନ କରିଯାଇଛନ୍ତି ।

ତଓ୍ୱାଫ, ରୁକୁ ଓ ସିଜଦା ଶବ୍ଦାବଳୀ ପାଇଁ ପରିଭାଷା ଦ୍ରଷ୍ଟବ୍ୟ ।

୨. ଏହି ଗୃହର ପ୍ରଥମ ନିର୍ମାତା କିଏ, ଏ ବିଷୟରେ ବିଭିନ୍ନ ପ୍ରକାର ମତ ପ୍ରକାଶ ପାଇଛି । କିନ୍ତୁ ବିଭିନ୍ନ ହଦିସ, ଐତିହାସିକ ତଥ୍ୟ ଓ ପ୍ରମାଣ ତଥା ପବିତ୍ର କୋରାନର ଅଧ୍ୟାୟ ୩ର ଆୟତ ୯୭ ଓ ଅଧ୍ୟାୟ ୧୪ର ଆୟତ ୩୮ କୁ ଲକ୍ଷ୍ୟ କଲେ ଜଣାଯିବ ଯେ ଏହାର ନିର୍ମାଣ ଇବ୍ରାହିମଙ୍କ ବହୁପୂର୍ବରୁ ହୋଇଥିଲା । ଅତଏବ ଇବ୍ରାହିମ ଯେଉଁ ସ୍ଥାନରେ କା'ବା ଗୃହ ନିର୍ମାଣ କରିଥିଲେ, ସେହି ସ୍ଥାନରେ ସଂସାରର ପ୍ରଥମ ଗୃହର କିଛି ଅଂଶ ଧ୍ୱଂସାବଶେଷ ଆକାରରେ ରହିଥିଲା । ଅତଏବ ସେ ଏହାରି ଉପରେ କା'ବା ର ପୁନର୍ନିର୍ମାଣ କରିଥିଲେ ।

ରَبَّنَا وَاجْعَلْنَا مُسْلِمَيْنِ لَكَ وَمِنْ ذُرِّيَّتِنَآ اُمَّةً مُّسْلِمَةً لَّكَ ۪ وَاَرِنَا مَنَاسِكَنَا وَتُبْ عَلَيْنَا ۚ اِنَّكَ اَنْتَ التَّوَّابُ الرَّحِيْمُ ﴿١٢٩﴾

୧୨୯. "ହେ ଆମ୍ଭର ପାଳନକର୍ତ୍ତା ! (ଆମେ ପୁନରାୟ ମିନତି କରୁଅଛୁ ଯେ) ଆମ୍ଭ ଦୁହିଁଙ୍କୁ ତୁମର ଆଜ୍ଞାବହ (ଭକ୍ତ) କର ଏବଂ ଆମ୍ଭର ସନ୍ତାନମାନଙ୍କ ଭିତରୁ ମଧ୍ୟ ତୁମର ଏକ ଆଜ୍ଞାବହ ଗୋଷ୍ଠୀ ଗଠନ କର ; ଏବଂ ଆମ୍ଭମାନଙ୍କୁ ଆମ୍ଭର (ଯଥୋଚିତ) ଉପାସନା ପଦ୍ଧତି ଶିଖାଅ ଏବଂ (ନିଜ) ଅନୁଗ୍ରହ ସହିତ ଆମ୍ଭ ପ୍ରତି ଦୃଷ୍ଟିଦିଅ ; ବାସ୍ତବରେ ତୁମେ (ନିଜ ଭକ୍ତମାନଙ୍କ ପ୍ରତି) ଅତ୍ୟନ୍ତ ମନୋଯୋଗୀ (ଓ) ସଦା କରୁଣାମୟ ।"

رَبَّنَا وَابْعَثْ فِيْهِمْ رَسُوْلًا مِّنْهُمْ يَتْلُوْا عَلَيْهِمْ اٰيٰتِكَ وَيُعَلِّمُهُمُ الْكِتٰبَ وَالْحِكْمَةَ وَيُزَكِّيْهِمْ ۭ اِنَّكَ اَنْتَ الْعَزِيْزُ الْحَكِيْمُ ﴿١٣٠﴾

୧୩୦. "ଏବଂ ହେ ଆମ୍ଭର ପାଳନକର୍ତ୍ତା ! (ଆମେ ପୁଣି ମିନତି କରୁଅଛୁ ଯେ ତୁମେ) ଏମାନଙ୍କ ମଧ୍ୟରୁ ଏପରି ଜଣେ ରସୁଲଙ୍କୁ[1] ଆବିର୍ଭାବ କରାଅ ଯେ କି ସେମାନଙ୍କୁ ତୁମର ବାଣୀ ପାଠକରି ଶୁଣାଇବେ, ଓ ସେମାନଙ୍କୁ ଗ୍ରନ୍ଥ ଓ ତତ୍ତ୍ୱ ଶିଖାଇବେ, ଏବଂ ସେମାନଙ୍କୁ ପବିତ୍ର କରାଇବେ ; ବାସ୍ତବରେ ତୁମେ ହିଁ ପରାକ୍ରମୀ(ଓ)ତତ୍ତ୍ୱଜ୍ଞ ।"

ରୁ:୧୬

وَمَنْ يَّرْغَبُ عَنْ مِّلَّةِ اِبْرٰهٖمَ اِلَّا مَنْ سَفِهَ نَفْسَهٗ ۭ وَلَقَدِ اصْطَفَيْنٰهُ فِي الدُّنْيَا ۚ وَاِنَّهٗ فِي الْاٰخِرَةِ لَمِنَ الصّٰلِحِيْنَ ﴿١٣١﴾

୧୩୧. ଏବଂ ଯେଉଁ ବ୍ୟକ୍ତି ନିଜେ ନିଜକୁ ବିନାଶ କରିଥାଏ ତା ବ୍ୟତୀତ ଅନ୍ୟ କିଏ ଇବ୍ରାହିମ୍‌ଙ୍କ ଧର୍ମକୁ ପରିହାର କରିପାରେ ? ଏବଂ ଆମେ ନିଶ୍ଚୟ ତାହାଙ୍କୁ (ଏହି) ସଂସାରରେ ମଧ୍ୟ ମନୋନୀତ କରିଥିଲୁ, ଏବଂ ପରକାଳରେ ମଧ୍ୟ ସେ ନିଶ୍ଚୟ ଧର୍ମନିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ (ଗଣ୍ୟ) ହେବେ ।

اِذْ قَالَ لَهٗ رَبُّهٗٓ اَسْلِمْ ۙ قَالَ اَسْلَمْتُ لِرَبِّ الْعٰلَمِيْنَ ﴿١٣٢﴾

୧୩୨. ଯେତେବେଳେ ତାଙ୍କ ପାଳନକର୍ତ୍ତା ତାଙ୍କୁ କହିଲେ, "(ଆମ୍ଭର) ଆଜ୍ଞାବହ ହୁଅ," ସେତେବେଳେ ସେ କହିଲେ, "ଆମେ ତ (ଆଦ୍ୟରୁ) ସମଗ୍ର ଜଗତର ପାଳନକର୍ତ୍ତାଙ୍କ ଆଜ୍ଞାବହ ହୋଇସାରିଛୁ ।"

وَوَصّٰى بِهَآ اِبْرٰهٖمُ بَنِيْهِ وَيَعْقُوْبُ ۭ يٰبَنِيَّ اِنَّ اللّٰهَ اصْطَفٰى لَكُمُ الدِّيْنَ فَلَا تَمُوْتُنَّ اِلَّا وَاَنْتُمْ مُّسْلِمُوْنَ ﴿١٣٣﴾

୧୩୩. ଏବଂ ଇବ୍ରାହିମ ନିଜ ପୁତ୍ରମାନଙ୍କୁ ଓ ସେହିପରି ୟାକୁବ ମଧ୍ୟ (ନିଜ ପୁତ୍ରମାନଙ୍କୁ) ଏ ବିଷୟରେ ଚେତାବନୀ ଦେଲେ, (ଏବଂ କହିଲେ ଯେ,) "ହେ ଆମ୍ଭର ପୁତ୍ରମାନେ ! ଅଲ୍ଲାହ ବାସ୍ତବରେ ତୁମମାନଙ୍କ ପାଇଁ ଏହି ଧର୍ମକୁ ମନୋନୀତ କରିଛନ୍ତି ; ସୁତରାଂ ତୁମେମାନେ ଅଲ୍ଲାହଙ୍କର ସମ୍ପୂର୍ଣ୍ଣ ଆଜ୍ଞାବହ ନଥିବା ଅବସ୍ଥାରେ କଦାପି ମୃତ୍ୟୁ ବରଣ କର ନାହିଁ ।"

اَمْ كُنْتُمْ شُهَدَاۗءَ اِذْ حَضَرَ يَعْقُوْبَ الْمَوْتُ ۙ اِذْ قَالَ لِبَنِيْهِ مَا تَعْبُدُوْنَ مِنْۢ بَعْدِيْ ۭ قَالُوْا نَعْبُدُ اِلٰهَكَ

୧୩୪. କ'ଣ ତୁମେମାନେ ସେତେବେଳେ ଉପସ୍ଥିତ ଥିଲ ଯେତେବେଳେ ୟାକୁବଙ୍କ ମୃତ୍ୟୁ (ସମୟ) ଉପସ୍ଥିତ ହେଲା ? (ଏବଂ) ଯେତେବେଳେ ସେ ନିଜ ପୁତ୍ରମାନଙ୍କୁ ପଚାରିଲେ, "ତୁମେମାନେ ଆମ୍ଭ ଅନ୍ତେ କାହାର ଉପାସନା କରିବ ?" ସେମାନେ ଉତ୍ତରରେ କହିଲେ, "ଆମେମାନେ ତୁମର ତଥା

[1] ଏହି ଆୟତରେ ହଜରତ ଇବ୍ରାହିମ ଓ ହଜରତ ଇସମାଇଲ ଜଣେ ରସୁଲଙ୍କ ଆବିର୍ଭାବ ସମ୍ବନ୍ଧରେ ପ୍ରାର୍ଥନା କରିଛନ୍ତି । ଏହି ପ୍ରାର୍ଥନାର ଫଳ ସ୍ୱରୂପ ହଜରତ ମହମ୍ମଦ ମକ୍କା ନଗରରେ ଜନ୍ମଲାଭ କରିଥିଲେ ।

وَاِلٰهَ اٰبَآئِكَ اِبْرٰهٖمَ وَاِسْمٰعِيْلَ وَاِسْحٰقَ اِلٰهًا وَّاحِدًا ۖۚ وَّنَحْنُ لَهٗ مُسْلِمُوْنَ ﴿١٣٣﴾

ତୁମ ପିତୃ-ପିତାମହ ଇବ୍ରାହିମ ଓ ଇସମାଇଲ ଓ ଇସହାକଙ୍କର ଉପାସ୍ୟ, ଯେ କି ଏକମାତ୍ର ଉପାସ୍ୟ, ତାହାଙ୍କର ଉପାସନା କରିବୁ ; ଏବଂ ଆମେମାନେ ତାହାଙ୍କର ଆଜ୍ଞାବହ ଅଟୁ ।"

تِلْكَ اُمَّةٌ قَدْ خَلَتْ ۚ لَهَا مَا كَسَبَتْ وَلَكُمْ مَّا كَسَبْتُمْ ۚ وَلَا تُسْـَٔلُوْنَ عَمَّا كَانُوْا يَعْمَلُوْنَ ﴿١٣٤﴾

୧୩୫. ସେମାନେ ଏପରି ଏକ ଗୋଷ୍ଠୀ ଯେଉଁମାନେ (ନିଜ ସମୟ ଅତିବାହିତ କରି) ବିଲୀନ ହୋଇଛନ୍ତି ; ସେମାନେ ଯାହାକିଛି ଉପାର୍ଜନ କରିଛନ୍ତି (ତାହାର ଲାଭକ୍ଷତି) ସେମାନଙ୍କ ପାଇଁ ଅଛି ଏବଂ ତୁମେମାନେ ଯାହା କିଛି ଉପାର୍ଜନ କରିଛ (ତାହାର ଲାଭକ୍ଷତି) ତୁମମାନଙ୍କ ପାଇଁ ଅଛି ; ଏବଂ ସେମାନେ ଯାହାକିଛି କରୁଥିଲେ ସେ ସଂକ୍ରାନ୍ତରେ ତୁମମାନଙ୍କୁ (କିଛି) ପଚରାଯିବ ନାହିଁ ।

وَقَالُوْا كُوْنُوْا هُوْدًا اَوْ نَصٰرٰى تَهْتَدُوْا ۗ قُلْ بَلْ مِلَّةَ اِبْرٰهٖمَ حَنِيْفًا ۗ وَمَا كَانَ مِنَ الْمُشْرِكِيْنَ ﴿١٣٥﴾

୧୩୬. ଏବଂ (କ'ଣ ତୁମେ ଶୁଣିଅଛ ଯେ) ସେମାନେ ଏହା ମଧ୍ୟ କହନ୍ତି, "ଇହୁଦୀ ବା ଖ୍ରୀଷ୍ଟିୟାନ ହୋଇଯାଅ, (ତାହାହେଲେ) ତୁମମାନଙ୍କୁ ସତ୍‌ପଥ ପ୍ରାପ୍ତ ହେବ ;" ତୁମେ (ସେମାନଙ୍କୁ) କୁହ, "(ଏପରି) ନୁହେଁ, ବରଂ ଇବ୍ରାହିମଙ୍କ ଧର୍ମକୁ (ଅନୁସରଣ କର) ଯେ କି (ଅଲ୍ଲାହଙ୍କର) ଆଜ୍ଞାନୁବର୍ତ୍ତୀ ଥିଲେ ଏବଂ (ମନେରଖ ଯେ) ସେ ମୁସରିକମାନଙ୍କ ମଧ୍ୟରୁ ନଥିଲେ ।"

قُوْلُوْٓا اٰمَنَّا بِاللّٰهِ وَمَآ اُنْزِلَ اِلَيْنَا وَمَآ اُنْزِلَ اِلٰٓى اِبْرٰهٖمَ وَاِسْمٰعِيْلَ وَاِسْحٰقَ وَيَعْقُوْبَ وَالْاَسْبَاطِ وَمَآ اُوْتِيَ مُوْسٰى وَعِيْسٰى وَمَآ اُوْتِيَ النَّبِيُّوْنَ مِنْ رَّبِّهِمْ ۚ لَا نُفَرِّقُ بَيْنَ اَحَدٍ مِّنْهُمْ ۖ وَنَحْنُ لَهٗ مُسْلِمُوْنَ ﴿١٣٦﴾

୧୩୭. ତୁମେମାନେ କୁହ, "ଆମେମାନେ ଅଲ୍ଲାହଙ୍କ ଉପରେ ତଥା ଯାହା କିଛି ଆମମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଅଛି ଏବଂ ଯାହାକିଛି ଇବ୍ରାହିମ, ଇସମାଇଲ, ଇସହାକ, ୟାକୁବଙ୍କ ଓ (ତାହାଙ୍କ) ସନ୍ତାନମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଥିଲା ଓ ଯାହା କିଛି ମୁସା ଓ ଇସାଙ୍କୁ ପ୍ରଦାନ କରାଯାଇଥିଲା ଓ (ଏହିପରି ଭାବରେ) ଯାହା କିଛି (ଅବଶିଷ୍ଟ) ନବିମାନଙ୍କୁ ସେମାନଙ୍କ ପାଳନକର୍ତ୍ତାଙ୍କ ପକ୍ଷରୁ ପ୍ରଦାନ କରାଯାଇଥିଲା (ଏ ସମସ୍ତ ଓହି ଉପରେ) ବିଶ୍ବାସ ସ୍ଥାପନ କରୁଅଛୁ ; ଆମେମାନେ ସେମାନଙ୍କ ଭିତରୁ କାହାରି ମଧ୍ୟରେ (କୌଣସି) ପାର୍ଥକ୍ୟ[1] କରୁନାହୁଁ ଏବଂ ଆମେମାନେ ତାଙ୍କର (ଅର୍ଥାତ୍ ଅଲ୍ଲାହଙ୍କର) ଆଜ୍ଞାବହ ଅଟୁ ।"

---

୧. ସର୍ବ ପ୍ରଥମେ ଆରବବାସୀଙ୍କୁ ଇସଲାମର ବାର୍ତ୍ତା ପ୍ରଦାନ କରାଯାଉଥିବାରୁ ସେମାନଙ୍କୁ ଜ୍ଞାତ ଅବତାରମାନଙ୍କ ବିଷୟ କୋରାନରେ ବର୍ଣ୍ଣିତ ହୋଇଛି । କିନ୍ତୁ ପ୍ରତ୍ୟେକ ଜାତି ପାଇଁ ଅବତାର ବା ନବି ଆସିଥିବା ବିଷୟକୁ କେବଳ ଇସଲାମ ସ୍ୱୀକାର କରେ (୩୫:୨୫ ଦ୍ରଷ୍ଟବ୍ୟ) । ସୁତରାଂ "ପାର୍ଥକ୍ୟ କରୁ ନାହୁଁ"ର ଅର୍ଥ ଜଣେ ମୁସଲିମ ବିଭିନ୍ନ ଅବତାରଙ୍କ ମଧ୍ୟରେ କୌଣସି ପ୍ରକାର ପାର୍ଥକ୍ୟ ଥିବା ବିଷୟକୁ ସ୍ୱୀକାର କରେ ନାହିଁ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ସମସ୍ତ ଅବତାରଙ୍କ ଆଧ୍ୟାତ୍ମିକ ପଦମର୍ଯ୍ୟାଦା ସମାନ (ପବିତ୍ର କୋରାନ ୨:୨୫୪ ଦ୍ରଷ୍ଟବ୍ୟ) ।

୧୩୮. ସୁତରାଂ ଯଦି ସେ ଲୋକମାନେ(ଏହିପରି) ବିଶ୍ୱାସ କରନ୍ତି ଯେପରି ତୁମେମାନେ ଏହା (ଅର୍ଥାତ୍ ଏହି ଶିକ୍ଷା) ପ୍ରତି ବିଶ୍ୱାସ କରିଅଛ ତେବେ (ଧରିନିଅ ଯେ) ସେମାନେ ସତ୍‌ପଥ ପାଇଛନ୍ତି ; ଏବଂ ଯଦି ସେମାନେ ଫେରିଯାଆନ୍ତି ତେବେ (ଜାଣିରଖ ଯେ) ସେମାନେ କେବଳ ବିଭେଦ (କରିବା) ପାଇଁ (ଅଡ଼ି ବସି) ଅଛନ୍ତି ; ଏହି ପରିସ୍ଥିତିରେ ଅଲ୍ଲାହ ନିଶ୍ଚୟ ତୁମକୁ ସେମାନଙ୍କ (ଦୌରାତ୍ମ୍ୟ)ଠାରୁ ରକ୍ଷା କରିବେ; ସେ ହିଁ ମହାନ୍ ଶ୍ରୋତା ଓ ସର୍ବଜ୍ଞ ।

فَإِنْ آمَنُوا بِمِثْلِ مَا آمَنتُم بِهِ فَقَدِ اهْتَدَوا ۖ وَّإِن تَوَلَّوْا فَإِنَّمَا هُمْ فِي شِقَاقٍ ۖ فَسَيَكْفِيكَهُمُ اللَّهُ ۚ وَهُوَ السَّمِيعُ الْعَلِيمُ ﴿١٣٨﴾

୧୩୯. (ହେ ମୁସଲମାନମାନେ ! ସେମାନଙ୍କୁ କୁହ ଯେ ଆମେମାନେ) ଅଲ୍ଲାହଙ୍କ ଗୁଣାବଳୀ (ଗ୍ରହଣ କରିଅଛୁ) ଓ ଗୁଣାବଳୀ ଦୃଷ୍ଟିରୁ କିଏ ଅଲ୍ଲାହଙ୍କଠାରୁ ଉତ୍କୃଷ୍ଟତର ହୋଇପାରେ ? ଏବଂ ଆମେମାନେ ତାହାଙ୍କର (ହିଁ) ଉପାସକ ।

صِبْغَةَ اللَّهِ ۖ وَمَنْ أَحْسَنُ مِنَ اللَّهِ صِبْغَةً ۖ وَنَحْنُ لَهُ عَابِدُونَ ﴿١٣٩﴾

୧୪୦. ତୁମେ (ସେମାନଙ୍କୁ) କୁହ, ''କ'ଣ ତୁମେମାନେ ଆମ ସହିତ ଅଲ୍ଲାହଙ୍କ ବିଷୟରେ କଳହ କରୁଅଛ ଯଦିଚ ସେ ଆମମାନଙ୍କର (ମଧ୍ୟ) ପାଳନକର୍ତ୍ତା ତଥା ତୁମମାନଙ୍କର (ମଧ୍ୟ) ପାଳନକର୍ତ୍ତା ଅଟନ୍ତି ; ଏବଂ ଆମମାନଙ୍କ କର୍ମ ଆମମାନଙ୍କ ପାଇଁ ଓ ତୁମମାନଙ୍କ କର୍ମ ତୁମମାନଙ୍କ ପାଇଁ ଏବଂ ଆମେମାନେ ତ ତାହାଙ୍କ ପ୍ରତି ନିଷ୍ଠାପର (ସମ୍ପର୍କ ରଖି) ଅଛୁ ।''

قُلْ أَتُحَاجُّونَنَا فِي اللَّهِ وَهُوَ رَبُّنَا وَرَبُّكُمْ وَلَنَا أَعْمَالُنَا وَلَكُمْ أَعْمَالُكُمْ وَنَحْنُ لَهُ مُخْلِصُونَ ﴿١٤٠﴾

୧୪୧. (ହେ ଗ୍ରନ୍ଥଧାରୀମାନେ !) କ'ଣ ତୁମେମାନେ (ଏହା) କହୁଅଛ ଯେ ଇବ୍ରାହିମ୍, ଇସମାଇଲ୍, ଇସହାକ ଓ ଯାକୁବ ଓ (ତାହାଙ୍କ) ସନ୍ତାନମାନେ ଇହୁଦୀ ବା ଖ୍ରୀଷ୍ଟିୟାନ ଥିଲେ ? ତୁମେ (ସେମାନଙ୍କୁ) କୁହ, ''କ'ଣ ତୁମେମାନେ ଅଧିକ ଜାଣ ନା ଅଲ୍ଲାହ ?'' ଏବଂ ତା'ଠାରୁ ବଳି ଅତ୍ୟାଚାରୀ କିଏ ହୋଇପାରେ ଯେ ଅଲ୍ଲାହଙ୍କ ତରଫରୁ ତା ନିକଟରେ ଥିବା ସାକ୍ଷ୍ୟକୁ ଗୋପନ ରଖେ ? ଏବଂ ତୁମେମାନେ ଯାହା କରୁଅଛ ଅଲ୍ଲାହ ସେ ବିଷୟରେ ଆଦୌ ଅପରିଜ୍ଞାତ ନୁହନ୍ତି ।

أَمْ تَقُولُونَ إِنَّ إِبْرَاهِيمَ وَإِسْمَاعِيلَ وَإِسْحَاقَ وَيَعْقُوبَ وَالْأَسْبَاطَ كَانُوا هُودًا أَوْ نَصَارَىٰ ۗ قُلْ أَأَنتُمْ أَعْلَمُ أَمِ اللَّهُ ۗ وَمَنْ أَظْلَمُ مِمَّن كَتَمَ شَهَادَةً عِندَهُ مِنَ اللَّهِ ۗ وَمَا اللَّهُ بِغَافِلٍ عَمَّا تَعْمَلُونَ ﴿١٤١﴾

୧୪୨. ସେମାନେ ଏପରି ଏକ ଗୋଷ୍ଠୀ ଯେଉଁମାନେ ନିଜ ସମୟ ଅତିବାହିତ କରି ବିଲୀନ ହୋଇଛନ୍ତି ; ସେମାନେ ଯାହାକିଛି ଉପାର୍ଜନ କରିଛନ୍ତି (ତାହାର ଲାଭକ୍ଷତି) ସେମାନଙ୍କ ପାଇଁ ଅଛି ଏବଂ ତୁମେମାନେ ଯାହାକିଛି ଉପାର୍ଜନ କରିଅଛ (ତାହାର ଲାଭକ୍ଷତି) ତୁମମାନଙ୍କ ପାଇଁ ଅଛି ; ଏବଂ ସେମାନେ ଯାହାକିଛି କରୁଥିଲେ ସେ ସଂକ୍ରାନ୍ତରେ ତୁମମାନଙ୍କୁ (କିଛି) ପଚରାଯିବ ନାହିଁ ।

تِلْكَ أُمَّةٌ قَدْ خَلَتْ ۖ لَهَا مَا كَسَبَتْ وَلَكُم مَّا كَسَبْتُمْ ۖ وَلَا تُسْأَلُونَ عَمَّا كَانُوا يَعْمَلُونَ ﴿١٤٢﴾ ع

## ଭାଗ-୨

### ରୁ:୧୭

سَيَقُوْلُ السُّفَهَآءُ مِنَ النَّاسِ مَا وَلّٰىهُمْ عَنْ قِبْلَتِهِمُ الَّتِىْ كَانُوْا عَلَيْهَا ؕ قُلْ لِّلّٰهِ الْمَشْرِقُ وَ الْمَغْرِبُ ؕ يَهْدِىْ مَنْ يَّشَآءُ اِلٰى صِرَاطٍ مُّسْتَقِيْمٍ ﴿١٤٣﴾

୧୪୩. ନିର୍ବୋଧ ବ୍ୟକ୍ତିମାନେ ନିଶ୍ଚୟ କହିବେ ଯେ ସେ (ମୁସଲମାନ)ମାନେ ଯେଉଁ କିବ୍ଲା[୧] ଉପରେ (ପ୍ରଥମରୁ ପ୍ରତିଷ୍ଠିତ) ଥିଲେ କେଉଁ ବିଷୟ ସେମାନଙ୍କୁ ତହିଁରୁ ଫେରାଇ ଆଣିଲା ?[୨] (ଯେବେ ସେମାନେ ଏପରି କହିବେ ତେବେ ସେମାନଙ୍କୁ) କୁହ ଯେ ପୂର୍ବ ଓ ପଶ୍ଚିମ ଅଲ୍ଲାହଙ୍କର ହିଁ ଅଟେ ; ସେ ଯାହାକୁ ଇଚ୍ଛା କରନ୍ତି ତାହାକୁ ଏକ ସରଳ ମାର୍ଗ ପ୍ରଦର୍ଶନ କରାନ୍ତି ।

وَكَذٰلِكَ جَعَلْنٰكُمْ اُمَّةً وَّسَطًا لِّتَكُوْنُوْا شُهَدَآءَ عَلَى النَّاسِ وَيَكُوْنَ الرَّسُوْلُ عَلَيْكُمْ شَهِيْدًا ؕ وَمَا جَعَلْنَا الْقِبْلَةَ الَّتِىْ كُنْتَ عَلَيْهَآ اِلَّا لِنَعْلَمَ مَنْ يَّتَّبِعُ الرَّسُوْلَ مِمَّنْ يَّنْقَلِبُ عَلٰى عَقِبَيْهِ ؕ وَاِنْ كَانَتْ لَكَبِيْرَةً اِلَّا عَلَى الَّذِيْنَ هَدَى اللّٰهُ ؕ وَمَا كَانَ اللّٰهُ لِيُضِيْعَ اِيْمَانَكُمْ ؕ اِنَّ اللّٰهَ بِالنَّاسِ لَرَءُوْفٌ رَّحِيْمٌ ﴿١٤٤﴾

୧୪୪. ଏବଂ (ହେ ମୁସଲମାନମାନେ ! ଯେପରି ଆମେ ତୁମମାନଙ୍କୁ ସତ୍‌ପଥ ପ୍ରଦର୍ଶିତ କରିଅଛୁ) ସେହିପରି ଆମେ ତୁମମାନଙ୍କୁ ଏକ ଉତ୍‌କୃଷ୍ଟ ସମ୍ପ୍ରଦାୟ ରୂପେ ଗଢ଼ିଅଛୁ, (ଯଦ୍ଦ୍ୱାରା) ତୁମେମାନେ (ଅନ୍ୟ) ଲୋକମାନଙ୍କର ତତ୍ତ୍ୱାବଧାରକ ହେବ, ଏବଂ ଏହି ରସୁଲ ତୁମମାନଙ୍କର ତତ୍ତ୍ୱାବଧାରକ ହେବେ ; ଏବଂ ଆମେ ଏହି କିବଲାକୁ ଯାହା ଉପରେ ତୁମେ (ଏଥି ପୂର୍ବରୁ ପ୍ରତିଷ୍ଠିତ) ଥିଲ କେବଳ ଏଥିସକାଶେ ନିର୍ଦ୍ଦିଷ୍ଟ କରିଥିଲୁ ଯେ ପୃଷ୍ଠଭଙ୍ଗ ଦେଉଥିବା ବ୍ୟକ୍ତିଙ୍କ ତୁଳନାରେ ଏହି ରସୁଲଙ୍କର ଆଜ୍ଞାବହ ଥିବା ବ୍ୟକ୍ତିଙ୍କୁ (ଉଚ୍ଚ ମର୍ଯ୍ୟାଦା-ସମ୍ପନ୍ନ) ଜାଣି ପାରିବ ; ଏବଂ ଯେଉଁମାନଙ୍କୁ ଅଲ୍ଲାହ ସତ୍‌ପଥ ପ୍ରଦର୍ଶନ କରିଛନ୍ତି ସେମାନଙ୍କ ବ୍ୟତୀତ (ଅନ୍ୟମାନଙ୍କ ପକ୍ଷରେ) ଏହି ବିଷୟ ନିଶ୍ଚିତରୂପେ କଠିନ ; ଏବଂ ଅଲ୍ଲାହ ଏପରି ନୁହନ୍ତି ଯେ କି ତୁମମାନଙ୍କ (ଧର୍ମ) ବିଶ୍ୱାସକୁ ନଷ୍ଟ କରିଦେବେ ; ଅଲ୍ଲାହ ନିଶ୍ଚୟ ସମସ୍ତ ବ୍ୟକ୍ତିଙ୍କ ପ୍ରତି ଅତ୍ୟନ୍ତ ଦୟାଶୀଳ ଓ ସଦା କରୁଣାମୟ ।

---

୧. 'କିବ୍ଲା' – ପରିଭାଷା ଦ୍ରଷ୍ଟବ୍ୟ ।

୨. 'କିବ୍ଲା' ପରିବର୍ତ୍ତନ ଘଟଣା ମଦିନାରେ ହୋଇଥିଲା । ହଜରତ ମହମ୍ମଦ ମକ୍‌କାରେ ଏପରି ସ୍ଥାନରେ ନମାଜ ପଢିବାକୁ ଛିଡା ହେଉଥିଲେ ଯେ ଉଭୟ କା'ବା ଓ ବୈତୁଲ୍ ମୁକଦଶ ତାଙ୍କ ସମ୍ମୁଖରେ ରହୁଥିଲା । ବୈତୁଲ୍ ମୁକଦଶ ଇହୁଦୀମାନଙ୍କର କିବ୍ଲା ହୋଇଥିବାରୁ ସେମାନେ ଏହା ଦେଖି ଅତ୍ୟନ୍ତ ପ୍ରସନ୍ନ ହେଉଥିଲେ । ହଜରତ୍ ମହମ୍ମଦଙ୍କର ମଦିନା ଆଗମନର କେତେମାସ ପରେ କା'ବା ଆଡକୁ ମୁହଁ କରି ନମାଜପାଠ କରିବା ପାଇଁ ତାଙ୍କୁ ଇଲହାମ ବା ଦୈବବାଣୀ ମାଧ୍ୟମରେ ନିର୍ଦ୍ଦେଶ ମିଳିଥିଲା । ଫଳରେ ବୈତୁଲ୍ ମୁକଦଶ ଆଉ ସମ୍ମୁଖରେ ରହିଲା ନାହିଁ । ନିର୍ବୋଧ ଲୋକମାନେ ଏ ବିଷୟରେ ଆପତ୍ତି କରିବାରୁ ଏହି ଆୟତ ଅବତୀର୍ଣ୍ଣ ହୋଇଥିଲା ଓ ସେମାନଙ୍କୁ ଜବାବ ଦିଆଯାଇଥିଲା ଯେ କା'ବାର ନିଜସ୍ୱ କୌଣସି ବିଶେଷତ୍ୱ ନାହିଁ । ଅଲ୍ଲାହ ହିଁ ଉପାସନାର କେନ୍ଦ୍ରବିନ୍ଦୁ । ତାହାଙ୍କ ଦୃଷ୍ଟିରେ ପୂର୍ବ ଓ ପଶ୍ଚିମ ଉଭୟ ସମାନ । ଗୋଟିଏ ନିର୍ଦ୍ଦିଷ୍ଟ ଦିଗକୁ ମୁହଁ କରି ନମାଜ ପଢିବା ଫଳରେ ମନରେ ଏକତା ଓ ଶୃଙ୍ଖଳାର ଭାବ ଜାଗ୍ରତ ହୋଇଥାଏ । ସେହିଦିନ ଠାରୁ ମୁସଲମାନମାନେ ଯେ ଯେଉଁଠାରେ ଥାଆନ୍ତୁ ପଛେ, କା'ବା ଆଡକୁ ମୁହଁ କରି ନମାଜ ପାଠ କରି ଥାଆନ୍ତି ।

قَدْ نَرٰى تَقَلُّبَ وَجْهِكَ فِي السَّمَآءِ ۚ فَلَنُوَلِّيَنَّكَ قِبْلَةً تَرْضٰىهَا ۠ فَوَلِّ وَجْهَكَ شَطْرَ الْمَسْجِدِ الْحَرَامِ ۚ وَحَيْثُ مَا كُنْتُمْ فَوَلُّوْا وُجُوْهَكُمْ شَطْرَهٗ ۚ وَاِنَّ الَّذِيْنَ اُوْتُوا الْكِتٰبَ لَيَعْلَمُوْنَ اَنَّهُ الْحَقُّ مِنْ رَّبِّهِمْ ۚ وَمَا اللّٰهُ بِغَافِلٍ عَمَّا يَعْمَلُوْنَ ۝

୧୪୫. ଆମେ ତୁମର ଧ୍ୟାନ ବାରମ୍ବାର ଆକାଶ ଆଡ଼କୁ ଯାଉଥିବାର ଦେଖୁଅଛୁ ; ସୁତରାଂ ଆମେ ତୁମକୁ ସେହି କିବ୍‌ଲା ଆଡ଼କୁ ନିଶ୍ଚୟ ଫେରାଇ ନେବୁ ଯାହାକୁ ତୁମେ ପସନ୍ଦ କରୁଅଛ ; ତେଣୁ ତୁମେ ବର୍ତ୍ତମାନ 'ମସଜିଦ୍-ଏ-ହରାମ୍' ପ୍ରତି ନିଜର ମୁଖ ବୁଲାଇ ଦିଅ ; ଏବଂ (ହେ ମୁସଲମାନମାନେ !) ତୁମେମାନେ ଯେଉଁଠାରେ (ମଧ୍ୟ) ଥାଅ ସେହି ଆଡ଼କୁ ନିଜର ମୁଖ କର ; ଏବଂ ଯେଉଁ (ଲୋକ) ମାନଙ୍କୁ (ତୌରାତ୍) ଗ୍ରନ୍ଥ ପ୍ରଦାନ କରାଯାଇଛି ସେମାନେ ନିଶ୍ଚୟ ଜାଣନ୍ତି ଯେ ଏହା (ଅର୍ଥାତ୍ କିବ୍‌ଲା ପରିବର୍ତ୍ତନ ଆଦେଶ) ତୁମ ପାଳନକର୍ତ୍ତାଙ୍କଠାରୁ (ପ୍ରେରିତ ଏକ) ସତ୍ୟ ଅଟେ ; ଏବଂ ସେମାନେ ଯାହା କିଛି କରୁଛନ୍ତି, ଅଲ୍ଲାହ ତାହା ପ୍ରତି କଦାପି ଅପରିଜ୍ଞାତ ନୁହନ୍ତି ।

وَلَئِنْ اَتَيْتَ الَّذِيْنَ اُوْتُوا الْكِتٰبَ بِكُلِّ اٰيَةٍ مَّا تَبِعُوْا قِبْلَتَكَ ۚ وَمَآ اَنْتَ بِتَابِعٍ قِبْلَتَهُمْ ۚ وَمَا بَعْضُهُمْ بِتَابِعٍ قِبْلَةَ بَعْضٍ ۭ وَلَئِنِ اتَّبَعْتَ اَهْوَآءَهُمْ مِّنْ ۢ بَعْدِ مَا جَآءَكَ مِنَ الْعِلْمِ ۙ اِنَّكَ اِذًا لَّمِنَ الظّٰلِمِيْنَ ۝

୧୪୬. ଏବଂ ଯେଉଁ (ଲୋକ) ମାନଙ୍କୁ (ତୁମମାନଙ୍କ ପୂର୍ବରୁ) ଗ୍ରନ୍ଥ ପ୍ରଦାନ କରାଯାଇଛି, ଯଦି ତୁମେ ସେମାନଙ୍କ ନିକଟକୁ ପ୍ରତ୍ୟେକ (ପ୍ରକାର) ନିଦର୍ଶନ (ମଧ୍ୟ) ଆଣିବ ତଥାପି ସେମାନେ ତୁମ କିବ୍‌ଲାର ଅନୁସରଣ[୧] କରିବେ ନାହିଁ କି ତୁମେ ସେମାନଙ୍କ କିବ୍‌ଲାର ଅନୁସରଣ କରି ପାରିବ ନାହିଁ, ତଥା ସେମାନଙ୍କ ମଧ୍ୟରୁ କୌଣସିଟି (ଗୋଷ୍ଠୀ) ଅନ୍ୟ (ଗୋଷ୍ଠୀ)ର କିବ୍‌ଲାକୁ ଅନୁସରଣ କରିବ ନାହିଁ ; ଏବଂ (ହେ ମହମ୍ମଦ !) ତୁମ ନିକଟକୁ (ଅଲ୍ଲାହଙ୍କ ପ୍ରେରିତ) ଜ୍ଞାନ ଆସିବା ପରେ ମଧ୍ୟ ଯଦି ତୁମେ ସେମାନଙ୍କ ଅଭିଳାଷର ଅନୁସରଣ କରିବ ତେବେ ତୁମେ (ଏପରି ପରିସ୍ଥିତିରେ) ନିଶ୍ଚୟ ଅତ୍ୟାଚାରୀମାନଙ୍କ ମଧ୍ୟରେ ଗଣ୍ୟ ହେବ ।

اَلَّذِيْنَ اٰتَيْنٰهُمُ الْكِتٰبَ يَعْرِفُوْنَهٗ كَمَا يَعْرِفُوْنَ اَبْنَآءَهُمْ ۭ وَاِنَّ فَرِيْقًا مِّنْهُمْ لَيَكْتُمُوْنَ الْحَقَّ وَهُمْ يَعْلَمُوْنَ ۝

୧୪୭. ଯେଉଁ ଲୋକମାନଙ୍କୁ ଆମେ ଗ୍ରନ୍ଥ ପ୍ରଦାନ କରିଅଛୁ ସେମାନେ ଏହି ସତ୍ୟକୁ ଏପରି ଚିହ୍ନନ୍ତି ଯେପରି ସେମାନେ ନିଜର ପୁତ୍ରମାନଙ୍କୁ ଚିହ୍ନନ୍ତି ; ଏବଂ ସେମାନଙ୍କ ମଧ୍ୟରୁ କେତେକ ଲୋକ ନିଶ୍ଚିତ ରୂପେ ଜାଣିଶୁଣି ସତ୍ୟକୁ ଗୋପନ କରୁଛନ୍ତି ।

اَلْحَقُّ مِنْ رَّبِّكَ فَلَا تَكُوْنَنَّ مِنَ الْمُمْتَرِيْنَ ۝

୧୪୮. (ଉପରୋକ୍ତ) ଏହି ସତ୍ୟ ତୁମ ପାଳନକର୍ତ୍ତାଙ୍କ ଠାରୁ (ଆସି) ଅଛି ; ସୁତରାଂ ତୁମେ କେବେ ହେଁ ସନ୍ଦେହୀ (ବ୍ୟକ୍ତି) ମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

୧. ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ ପୂର୍ବ ଦିଗକୁ ମୁହଁ କରି ଉପାସନା କରନ୍ତି । ନଜରାନର ଖ୍ରୀଷ୍ଟିୟାନମାନେ ଏକଦା ହଜରତ ମହମ୍ମଦଙ୍କ ନିକଟକୁ ଧର୍ମାଲୋଚନା କରିବା ସକାଶେ ମଦିନା ଆସିଥିଲେ । ସେତେବେଳେ ସେମାନେ ପୂର୍ବ ଦିଗକୁ ମୁହଁ କରି ସେମାନଙ୍କ ଉପାସନା କରିଥିଲେ । ସେମାନଙ୍କ ମତରେ ହଜରତ ଇଶାଙ୍କୁ ଶୁଭ ସଙ୍କେତ ପ୍ରଦାନକାରୀ ନକ୍ଷତ୍ର ପୂର୍ବ ଦିଗରେ ଉଦୟ ହୋଇଥିବାରୁ ସେମାନେ ପୂର୍ବ ଦିଗକୁ ମୁହଁ କରି ଉପାସନା କରନ୍ତି । ସେହିପରି New Testamentର ଯୁହନା 4:20ରୁ ପ୍ରତିପାଦିତ ହୁଏ ଯେ ଇହୁଦୀମାନଙ୍କ ମଧ୍ୟରୁ ସାମରି ଜାତିର ଲୋକମାନେ ଜେରୁଜେଲମର ଏକ ପାହାଡ ଆଡକୁ ମୁହଁକରି ଉପାସନା କରୁଥିଲେ ଓ ଅନ୍ୟ ଇହୁଦୀମାନେ ଜେରୁଜେଲମର ପବିତ୍ର ଗୃହ ଆଡ଼କୁ ମୁହଁକରି ଉପାସନା କରୁଥିଲେ । ବାସ୍ତବରେ ସେମାନଙ୍କ ମଧ୍ୟରେ କିବ୍‌ଲା ସଂକ୍ରାନ୍ତରେ ମତଭେଦ ଥିଲା । ଏହି ଆୟତରେ ଏ ବିଷୟରେ ସୂଚନା ଦିଆଯାଇଛି ଯେ ସେମାନେ କେହି କାହାରି କିବ୍‌ଲାକୁ ଗ୍ରହଣ କରିବେ ନାହିଁ ।

ରୁ:୧୮

୧୪୯. ଏବଂ ପ୍ରତ୍ୟେକ (ବ୍ୟକ୍ତି)ର ଏକ (ନିର୍ଦ୍ଦିଷ୍ଟ) ଲକ୍ଷ୍ୟଥାଏ ଯାହା ପ୍ରତି ସେ ମନୋନିବେଶ କରିଥାଏ; ଅତଏବ (ତୁମମାନଙ୍କର ଲକ୍ଷ୍ୟ ଏପରି ହେଉ ଯେ) ତୁମେମାନେ ପୁଣ୍ୟ (ଅର୍ଜନ କରିବାଠ)ରେ ଜଣେ ଅନ୍ୟଠାରୁ ଆଗେଇ ଯିବା ପାଇଁ ପ୍ରୟାସ କର ; ତୁମେମାନେ ଯେଉଁଠାରେ ଥିଲେ ମଧ୍ୟ, ଅଲ୍ଲାହ ତୁମମାନଙ୍କୁ ଏକତ୍ରିତ କରି ଘେନି ଆସିବେ ; ବାସ୍ତବରେ ଅଲ୍ଲାହ (ଯାହା ଇଚ୍ଛା କରନ୍ତି) ସେ ସବୁ କରିବାକୁ ସକ୍ଷମ ।

وَلِكُلٍّ وِّجْهَةٌ هُوَ مُوَلِّيهَا فَاسْتَبِقُوا الْخَيْرٰتِ ۗ اَيْنَ مَا تَكُوْنُوْا يَاْتِ بِكُمُ اللّٰهُ جَمِيْعًا ۗ اِنَّ اللّٰهَ عَلٰى كُلِّ شَيْءٍ قَدِيْرٌ ۝

୧୫୦. ଏବଂ ତୁମେ ଯେକୌଣସି ସ୍ଥାନରୁ ବାହାରିଲେ ମଧ୍ୟ, ନିଜର ଧ୍ୟାନ 'ମସଜିଦ-ଏ-ହରାମ' ଆଡ଼କୁ ଫେରାଇ ନିଅ,[୧] ଏବଂ ଏହା (ଅର୍ଥାତ୍ ଏହି ଆଦେଶ) ନିଶ୍ଚୟ ତୁମର ପାଳନକର୍ତ୍ତାଙ୍କଠାରୁ (ଆସିଥିବାଠ) ସତ୍ୟ ଅଟେ; ଏବଂ ତୁମେମାନେ ଯାହାକିଛି (ମଧ୍ୟ) କରୁଅଛ, ଅଲ୍ଲାହ ସେ ବିଷୟରେ କଦାପି ଅପରିଜ୍ଞାତ ରୁହନ୍ତି ।

وَمِنْ حَيْثُ خَرَجْتَ فَوَلِّ وَجْهَكَ شَطْرَ الْمَسْجِدِ الْحَرَامِ ۗ وَاِنَّهٗ لَلْحَقُّ مِنْ رَّبِّكَ ۗ وَمَا اللّٰهُ بِغَافِلٍ عَمَّا تَعْمَلُوْنَ ۝

୧୫୧. ଏବଂ ତୁମେ ଯେକୌଣସି ସ୍ଥାନରୁ ବାହାରିଲେ ମଧ୍ୟ, ନିଜର ଧ୍ୟାନ 'ମସଜିଦ-ଏ-ହରାମ' ଆଡ଼କୁ ଫେରାଇ ନିଅ ; ଏବଂ ତୁମେମାନେ ଯେଉଁଠାରେ ଥାଅ ପଛେ, ସେହି ଆଡ଼କୁ ନିଜର ମୁହଁ କର,[୨] ତାହେଲେ ଯେଉଁ ମାନେ ସେ (ବିରୋଧୀ) ମାନଙ୍କ ମଧ୍ୟରୁ ଅତ୍ୟାଚାର କରିଛନ୍ତି ସେମାନଙ୍କ ବ୍ୟତୀତ (ଅବଶିଷ୍ଟ) ଲୋକମାନଙ୍କ ତରଫରୁ ତୁମମାନଙ୍କ ବିରୁଦ୍ଧରେ ଦୋଷାରୋପ କରା ନ ଯାଉ; ସୁତରାଂ ତୁମେମାନେ ସେ (ଅତ୍ୟାଚାରୀ) ମାନଙ୍କୁ ଭୟ କର ନାହିଁ, ବରଂ ଆମକୁ

وَمِنْ حَيْثُ خَرَجْتَ فَوَلِّ وَجْهَكَ شَطْرَ الْمَسْجِدِ الْحَرَامِ ۗ وَحَيْثُ مَا كُنْتُمْ فَوَلُّوْا وُجُوْهَكُمْ شَطْرَهٗ ۙ لِئَلَّا يَكُوْنَ لِلنَّاسِ عَلَيْكُمْ حُجَّةٌ ۗ اِلَّا الَّذِيْنَ ظَلَمُوْا

[୧] କା'ବା ଆଡ଼କୁ ମୁହଁ କରି ନମାଜ ପଢ଼ିବା ପାଇଁ ଯେଉଁ ନିୟମ ନିର୍ଦ୍ଦିଷ୍ଟ କରାଯାଇଛି ତାହାର 'ଯେ କୌଣସି ସ୍ଥାନରୁ ବାହାରିଲେ ମଧ୍ୟ' ସହିତ କୌଣସି ସମ୍ବନ୍ଧ ନାହିଁ କାରଣ ମନୁଷ୍ୟ ଯେଉଁଠାରୁ ବାହାରିଲେ ମଧ୍ୟ ବା ଯେଉଁଠାରେ ପ୍ରବେଶ କଲେ ମଧ୍ୟ କେବଳ କା'ବା ଆଡ଼କୁ ମୁହଁକରି ନମାଜ ପଢ଼ିବାକୁ ହେବ । ଏଠାରେ ଆରବୀ ଶବ୍ଦ 'ଖରୁଜ' ଅର୍ଥାତ ବାହାରିବା ଶବ୍ଦ ଯୁଦ୍ଧ ପାଇଁ ବାହାରିବା ଅର୍ଥରେ ବ୍ୟବହୃତ ହୋଇଛି । ଏଠାରେ ମୁସଲମାନମାନଙ୍କୁ ସମ୍ବୋଧନ କରି କୁହାଯାଇଛି ଯେ, ହେ ମୁସଲମାନମାନେ ! ବର୍ତ୍ତମାନ ତୁମମାନଙ୍କୁ ଯୁଦ୍ଧ କରିବାକୁ ବାଧ୍ୟ କରାଯିବ ଓ ତୁମେମାନେ ଯେଉଁଠାରେ ଥିଲେ ମଧ୍ୟ ମକ୍କାବାସୀଙ୍କ ସହିତ ଯୁଦ୍ଧ କରିବାକୁ ତୁମମାନଙ୍କ ଉପରେ ଚାପ ପ୍ରୟୋଗ କରାଯିବ । ତେଣୁ ଏପରି ପରିସ୍ଥିତିରେ ଯୁଦ୍ଧ କରିବାକୁ ଅଲ୍ଲାହ ନିର୍ଦ୍ଦେଶ ଦେଇଛନ୍ତି । ସୁତରାଂ କା'ବା ବିଜୟ ତୁମମାନଙ୍କର ଚରମ ଓ ପରମ ଲକ୍ଷ୍ୟ ହେବା ଆବଶ୍ୟକ । ଅତଏବ ଏଠାରେ କା'ବା ବିଜୟ ସକାଶେ ଇଙ୍ଗିତ ଦିଆଯାଇଛି ।

[୨] ନମାଜ ପଢ଼ିବା ସମୟରେ କା'ବା ଆଡ଼କୁ ମୁହଁ କରିବା ଏକ ସୁବିଦିତ ନିର୍ଦ୍ଦେଶ ; ତେଣୁ କୌଣସି ସ୍ଥାନରୁ ବାହାରିବା ସହିତ ଏହାର କୌଣସି ସମ୍ପର୍କ ନାହିଁ । ବସ୍ତୁତଃ ଏଠାରେ ଯୁଦ୍ଧ ବିଷୟକ ବର୍ଣ୍ଣନା ଅଛି । ଯେଉଁ ମୁସଲମାନମାନେ ଯୁଦ୍ଧକ୍ଷେତ୍ର ବାହାରେ ରହିଯାଇଥିଲେ ସେମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେ ଯୁଦ୍ଧରତ ଅନ୍ୟାନ୍ୟ ମୁସଲମାନମାନଙ୍କୁ ସହାୟତା କରିବା ସକାଶେ ସେମାନେ ଅଗ୍ରସର ହୁଅନ୍ତୁ । ତେଣୁ ସେମାନେ ଯେଉଁଠାରୁ ବାହାରିଲେ ମଧ୍ୟ କା'ବା ବିଜୟ ସେମାନଙ୍କ ଲକ୍ଷ୍ୟର କେନ୍ଦ୍ରବିନ୍ଦୁ ହେବା ସର୍ବାଦୌ କର୍ତ୍ତବ୍ୟ ।

ଭୟକର ; (ଏହି ଆଦେଶ ଆମେ ଏଥିସକାଶେ ଦେଇଅଛୁ ଯେ ତୁମମାନଙ୍କ ବିରୁଦ୍ଧରେ ଲୋକମାନେ ଦୋଷାରୋପ ନ କରନ୍ତୁ) ଫଳରେ ଆମେ ତୁମମାନଙ୍କ ପାଇଁ ନିଜର ଅନୁଗ୍ରହକୁ ସମ୍ପୂର୍ଣ୍ଣ କରିବୁ ଓ ତୁମେମାନେ ସତ୍‌ପଥଗାମୀ ହେବ ।

مِنْهُمْ فَلَا تَخْشَوْهُمْ وَاخْشَوْنِي وَلِأُتِمَّ نِعْمَتِي عَلَيْكُمْ وَلَعَلَّكُمْ تَهْتَدُونَ ﴿١٥١﴾

୧୫୨. (ସେହିପରି ଭାବରେ) ଯେପରି ଆମେ ତୁମମାନଙ୍କ ମଧ୍ୟରେ ତୁମମାନଙ୍କ ମଧ୍ୟରୁ ହିଁ ଜଣେ ରସୁଲଙ୍କୁ ପ୍ରେରଣ କରିଅଛୁ ଯେ କି ତୁମମାନଙ୍କୁ ଆମର ବାଣୀ ପାଠ କରି ଶୁଣାଉଛନ୍ତି ଏବଂ ତୁମମାନଙ୍କୁ ପବିତ୍ର କରାଉଛନ୍ତି ଏବଂ ତୁମମାନଙ୍କୁ ଗ୍ରନ୍ଥ ଓ ତତ୍ତ୍ୱ ଶିଖାଉଛନ୍ତି, ଏବଂ ଯାହା ତୁମେମାନେ (ଆଗରୁ) ଜାଣି ନ ଥିଲ, ତାହା ତୁମମାନଙ୍କୁ ଶିଖାଉଛନ୍ତି ।

كَمَا أَرْسَلْنَا فِيكُمْ رَسُولًا مِنْكُمْ يَتْلُو عَلَيْكُمْ آيَاتِنَا وَيُزَكِّيكُمْ وَيُعَلِّمُكُمُ الْكِتَابَ وَالْحِكْمَةَ وَيُعَلِّمُكُمْ مَا لَمْ تَكُونُوا تَعْلَمُونَ ﴿١٥٢﴾

୧୫୩. ସୁତରାଂ (ଯେବେ ଆମେ ଏପ୍ରକାର ଅନୁଗ୍ରହଶୀଳ ଅଟୁ ତେବେ) ତୁମେମାନେ ଆମଙ୍କୁ ମନେ ପକାଅ, ଆମେ (ମଧ୍ୟ) ତୁମମାନଙ୍କୁ ମନେ ପକାଇବୁ, ଏବଂ ଆମ ପ୍ରତି କୃତଜ୍ଞ ହୁଅ ଓ ଆମ ପ୍ରତି ଅକୃତଜ୍ଞ ହୁଅ ନାହିଁ ।

فَاذْكُرُونِي أَذْكُرْكُمْ وَاشْكُرُوا لِي وَلَا تَكْفُرُونِ ﴿١٥٣﴾ ع

ରୁ:୧୯

୧୫୪. ହେ ଲୋକମାନେ ! ଯେଉଁମାନେ ବିଶ୍ୱାସ ସ୍ଥାପନ କରିଅଛ, ଧୈର୍ଯ୍ୟ ଓ ପ୍ରାର୍ଥନା ଦ୍ୱାରା (ଅଲ୍ଲାହଙ୍କର) ସାହାଯ୍ୟ ଭିକ୍ଷା କର ; ଅଲ୍ଲାହ ବାସ୍ତବରେ ଧୈର୍ଯ୍ୟଶୀଳମାନଙ୍କ ସହିତ ଥାଆନ୍ତି ।

يَا أَيُّهَا الَّذِينَ آمَنُوا اسْتَعِينُوا بِالصَّبْرِ وَالصَّلَاةِ إِنَّ اللَّهَ مَعَ الصَّابِرِينَ ﴿١٥٤﴾

୧୫୫. ଏବଂ ଯେଉଁମାନେ ଅଲ୍ଲାହଙ୍କ ପଥରେ ନିହତ ହୁଅନ୍ତି ସେମାନଙ୍କ ସଂକ୍ରାନ୍ତରେ (ଏହା) କୁହ ନାହିଁ ଯେ ସେମାନେ ମୃତ, (ସେମାନେ ମୃତ) ନୁହନ୍ତି, ବରଂ ଜୀବିତ ଅଛନ୍ତି କିନ୍ତୁ ତୁମେମାନେ ବୁଝିପାରୁ ନାହଁ ।

وَلَا تَقُولُوا لِمَنْ يُقْتَلُ فِي سَبِيلِ اللَّهِ أَمْوَاتٌ بَلْ أَحْيَاءٌ وَلَٰكِنْ لَا تَشْعُرُونَ ﴿١٥٥﴾

୧୫୬. ଏବଂ ଆମେ ତୁମମାନଙ୍କୁ କିଛି ଭୟ ଓ କ୍ଷୁଧା (ଦ୍ୱାରା) ଏବଂ ଧନ, ଜୀବନ ତଥା ଫଳ ହାନି ମାଧ୍ୟମରେ ନିଶ୍ଚୟ ପରୀକ୍ଷା କରିବୁ ; ଏବଂ (ହେ ରସୁଲ !) ତୁମେ (ସେହି) ଧୈର୍ଯ୍ୟଶୀଳମାନଙ୍କୁ ସୁସମାଚାର ଦିଅ,

وَلَنَبْلُوَنَّكُمْ بِشَيْءٍ مِنَ الْخَوْفِ وَالْجُوعِ وَنَقْصٍ مِنَ الْأَمْوَالِ وَالْأَنْفُسِ وَالثَّمَرَاتِ وَبَشِّرِ الصَّابِرِينَ ﴿١٥٦﴾

୧୫୭. ଯେଉଁମାନଙ୍କ ଉପରେ ଯେତେବେଳେ (ମଧ୍ୟ) କୌଣସି ବିପଦ ଆସେ, ସେମାନେ (ଭୟଭୀତ ହୁଅନ୍ତି ନାହିଁ, ବରଂ ଏହା) କହନ୍ତି "ଆମେମାନେ (ତ) ଅଲ୍ଲାହଙ୍କର ଅଟୁ ଏବଂ ତାହାଙ୍କ ନିକଟକୁ ଫେରିଯିବୁ ।

الَّذِينَ إِذَا أَصَابَتْهُمْ مُصِيبَةٌ قَالُوا إِنَّا لِلَّهِ وَإِنَّا إِلَيْهِ رَاجِعُونَ ﴿١٥٧﴾

---

୧. ମୁସଲମାନମାନଙ୍କୁ ମକ୍କା ବିଜୟର ସୁଯୋଗ ଦେଇ ଅଲ୍ଲାହ ତାଙ୍କ କୃପାଦାନକୁ ପରିପୂର୍ଣ୍ଣ କରିଛନ୍ତି । ଫଳରେ ବହୁ ସଂଖ୍ୟକ ଆରବବାସୀ ଇସ୍‌ଲାମ ଧର୍ମ ଗ୍ରହଣ କରିବାକୁ ଆଗଭର ହେଲେ । ସେମାନଙ୍କର ବିଶ୍ୱାସ ଥିଲା ଯେ କୌଣସି ମିଥ୍ୟା ଧର୍ମପ୍ରବର୍ତ୍ତକ ବା ପ୍ରବଞ୍ଚକ ମକ୍କା ଜୟ କରିବାକୁ ସକ୍ଷମ ହେବ ନାହିଁ, ବରଂ ସେପରି ବ୍ୟକ୍ତି ନିଶ୍ଚିତ ରୂପେ ଧ୍ୱଂସ ହୋଇଯିବ । ମକ୍କା ବିଜୟର ସ୍ୱଳ୍ପକାଳ ପୂର୍ବରୁ ଆବିସିନିଆର ପ୍ରବଳ ପରାକ୍ରମୀ ଆକ୍ରମଣକାରୀ ଆବ୍ରାହ ଓ ତାଙ୍କ ସୈନ୍ୟବାହିନୀ ମୁସଲମାନମାନଙ୍କ ସହ ଯୁଦ୍ଧ କରି ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଥିଲେ । ଫଳରେ ଏହା ସେମାନଙ୍କ ମନରେ ଗଭୀର ରେଖାପାତ କରିଥିଲା । ତେଣୁ ମକ୍କା ବିଜୟ ପରେ ଇସଲାମଧର୍ମର ପ୍ରଭାବ ଆରବବାସୀଙ୍କ ଉପରେ ଏପରି ଭାବରେ ପଡ଼ିଥିଲା ଯେ ସେମାନେ ଆଉ ଅଧିକ କାଳ ବିଳମ୍ବ କରିବାକୁ ଶ୍ରେୟସ୍କର ମନେ କଲେ ନାହିଁ ଓ ଇସଲାମ ଧର୍ମ ଗ୍ରହଣ କଲେ ।

أُولَٰٓئِكَ عَلَيْهِمْ صَلَوَٰتٌ مِّن رَّبِّهِمْ وَرَحْمَةٌ ۖ وَأُولَٰٓئِكَ هُمُ ٱلْمُهْتَدُونَ ﴿١٥٨﴾

୧୫୮. ଏମାନେ ସେହି ଲୋକ ଯାହାଙ୍କ ପ୍ରତି ସେମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ଆଶୀର୍ବାଦ ଓ କରୁଣା ଅବତୀର୍ଣ୍ଣ ହୁଏ ଏବଂ ଏମାନେ ହିଁ ସତ୍‌ପଥ ପ୍ରାପ୍ତ ହୋଇଛନ୍ତି ।

إِنَّ ٱلصَّفَا وَٱلْمَرْوَةَ مِن شَعَآئِرِ ٱللَّهِ ۖ فَمَنْ حَجَّ ٱلْبَيْتَ أَوِ ٱعْتَمَرَ فَلَا جُنَاحَ عَلَيْهِ أَن يَطَّوَّفَ بِهِمَا ۚ وَمَن تَطَوَّعَ خَيْرًا فَإِنَّ ٱللَّهَ شَاكِرٌ عَلِيمٌ ﴿١٥٩﴾

୧୫୯. ନିଶ୍ଚିତରୂପେ ସଫା ଓ ମରୁଆ [୧] ଅଲ୍ଲାହଙ୍କ ନିଦର୍ଶନମାନଙ୍କ ମଧ୍ୟରୁ ଅଟନ୍ତି, ସୁତରାଂ ଯେଉଁ ବ୍ୟକ୍ତି ଏହି ଗୃହ (କା'ବା)ର ହଜ ବା ଉମ୍‌ରା କରେ ସେ ଏହା [୨] (ଅର୍ଥାତ୍ ଦୁଇ ପାହାଡ଼) ମଧ୍ୟରେ ଦ୍ରୁତ ଗତିରେ ଚାଲିବାରେ କୌଣସି ପାପ ନାହିଁ; ଏବଂ ଯେଉଁ ବ୍ୟକ୍ତି ସ୍ୱେଚ୍ଛାରେ କୌଣସି ପୁଣ୍ୟକାର୍ଯ୍ୟ କରେ (ସେ ଜାଣି ରଖୁ ଯେ), ଅଲ୍ଲାହ (ତାହାର ପୁଣ୍ୟ କାର୍ଯ୍ୟର) ଗୁଣଗ୍ରାହୀ ଓ (ସେ ହିଁ) ସର୍ବଜ୍ଞ ।

إِنَّ ٱلَّذِينَ يَكْتُمُونَ مَآ أَنزَلْنَا مِنَ ٱلْبَيِّنَٰتِ وَٱلْهُدَىٰ مِنۢ بَعْدِ مَا بَيَّنَّٰهُ لِلنَّاسِ فِى ٱلْكِتَٰبِ ۙ أُولَٰٓئِكَ يَلْعَنُهُمُ ٱللَّهُ وَيَلْعَنُهُمُ ٱللَّٰعِنُونَ ﴿١٦٠﴾

୧୬୦. ଆମେ ତାହାକୁ (ଅର୍ଥାତ୍ ବାଣୀକୁ) ପ୍ରକାଶ୍ୟ ନିଦର୍ଶନ ଓ ଉପଦେଶ ସମ୍ବଳିତ କରି ଅବତୀର୍ଣ୍ଣ କରିଅଛୁ; ତାହାକୁ ଆମେ ଏହି ଗ୍ରନ୍ଥ ମଧ୍ୟରେ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଦେବା ପରେ ମଧ୍ୟ ଯେଉଁ ଲୋକମାନେ ତାହାକୁ ଗୋପନ ରଖନ୍ତି, ସେହିପରି ଲୋକମାନଙ୍କୁ ହିଁ ଅଲ୍ଲାହ ଅଭିଶାପ ଦିଅନ୍ତି; ଏବଂ (ଅନ୍ୟାନ୍ୟ) ଅଭିଶାପଦାତାମାନେ ମଧ୍ୟ ଅଭିଶାପ ଦିଅନ୍ତି ।

إِلَّا ٱلَّذِينَ تَابُوا۟ وَأَصْلَحُوا۟ وَبَيَّنُوا۟ فَأُولَٰٓئِكَ أَتُوبُ عَلَيْهِمْ ۚ وَأَنَا ٱلتَّوَّابُ ٱلرَّحِيمُ ﴿١٦١﴾

୧୬୧. କିନ୍ତୁ ଯେଉଁମାନେ ଅନୁତାପ କରନ୍ତି ଓ ନିଜକୁ ସଂଶୋଧନ କରନ୍ତି ଏବଂ (ଅଲ୍ଲାହଙ୍କ ଆଦେଶଗୁଡ଼ିକୁ) ସ୍ପଷ୍ଟରୂପେ ବର୍ଣ୍ଣନା କରନ୍ତି, ଆମେ ସେମାନଙ୍କ ପ୍ରତି ଦୟାପୂର୍ବକ ଧ୍ୟାନ ଦେବୁ, ଏବଂ ଆମେ (ନିଜ ଭକ୍ତମାନଙ୍କ ପ୍ରତି) ଅତ୍ୟନ୍ତ ମନୋଯୋଗୀ ଓ ସଦା କରୁଣାମୟ ।

إِنَّ ٱلَّذِينَ كَفَرُوا۟ وَمَاتُوا۟ وَهُمْ كُفَّارٌ أُولَٰٓئِكَ عَلَيْهِمْ لَعْنَةُ ٱللَّهِ وَٱلْمَلَٰٓئِكَةِ وَٱلنَّاسِ أَجْمَعِينَ ﴿١٦٢﴾

୧୬୨. ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଅବଜ୍ଞା କରିଥିବା ଅବସ୍ଥାରେ ମୃତ୍ୟୁବରଣ କରିଛନ୍ତି, ସେମାନଙ୍କ ପ୍ରତି ନିଶ୍ଚୟ ଅଲ୍ଲାହଙ୍କର ଦେବଦୂତମାନଙ୍କର ତଥା ସବୁ ଲୋକମାନଙ୍କର ଅଭିଶାପ ପଡ଼ିବ ।

خَٰلِدِينَ فِيهَا ۖ لَا يُخَفَّفُ عَنْهُمُ ٱلْعَذَابُ وَلَا هُمْ يُنظَرُونَ ﴿١٦٣﴾

୧୬୩. ସେମାନେ ସେଥିରେ (ପଡ଼ି) ରହିବେ; ସେମାନଙ୍କ (ପ୍ରତି) ଶାସ୍ତିକୁ କୋହଳ କରାଯିବ ନାହିଁ ବା ସେମାନଙ୍କୁ (ନିଃଶ୍ୱାସ ମାରିବାକୁ) ଅବସର ଦିଆଯିବ ନାହିଁ ।

ع وَإِلَٰهُكُمْ إِلَٰهٌ وَٰحِدٌ ۖ لَّآ إِلَٰهَ إِلَّا هُوَ ٱلرَّحْمَٰنُ ٱلرَّحِيمُ ﴿١٦٤﴾

୧୬୪. ଏବଂ ତୁମମାନଙ୍କର ଉପାସ୍ୟ (ଅଲ୍ଲାହ) ଏକମାତ୍ର ଉପାସ୍ୟ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; (ସେ) ଅଶେଷ ଦୟାବାନ୍ (ଓ) କରୁଣାମୟ ।

---

୧. ସଫା ଓ ମରୁଆ ମକ୍କା ସହର ଅନ୍ତର୍ଗତ ଦୁଇଟି ପାହାଡ଼ ।

୨. ମଦିନାର ଲୋକମାନେ ଏ ସ୍ଥାନରେ ଚଲାବୁଲା କରିବାକୁ ଅବୈଧ ମନେ କରୁଥିଲେ । ତେଣୁ ଏଠାରେ କୁହାଯାଇଛି ଯେ ଚଲାବୁଲା କରିବାରେ କୌଣସି ପାପ ନାହିଁ ।

୧୬୫. ଆକାଶ ଓ ପୃଥିବୀର ସୃଷ୍ଟି, କ୍ରମାନ୍ୱୟରେ ଦିନ ଓ ରାତିର ଆଗମନ, ମାନବ-ସମାଜ ପାଇଁ ସମୁଦ୍ର ବକ୍ଷରେ ଲାଭଦାୟକ ଦ୍ରବ୍ୟ ବହନ କରି ଗ୍ଡ଼ିତ ହେଉଥିବା ଜାହାଜମାନ, ଏବଂ ମେଘରୁ ଅଲ୍ଲାହ ଯେଉଁ ଜଳବର୍ଷଣ କରାଇ ତାହା ଦ୍ୱାରା ମୃତପ୍ରାୟ ଭୂମିକୁ ପୁନର୍ବାର ଜୀବିତ କରାନ୍ତି ତଥା ସେଥିରେ ବିଭିନ୍ନ ପ୍ରକାରର ଜୀବଜନ୍ତୁଙ୍କର ପ୍ରସାରଣ, ଏବଂ ବାୟୁର ସଂଗ୍ଳନ, ଏବଂ ଆକାଶ ଓ ପୃଥିବୀ ମଧ୍ୟସ୍ଥ କାର୍ଯ୍ୟରତ ମେଘମାଳାରେ (ଏ ସମସ୍ତ ବିଷୟରେ ବାସ୍ତବିକ) ଜ୍ଞାନବନ୍ତ ସଂପ୍ରଦାୟ ପାଇଁ ଅନେକ (ପ୍ରକାର) ନିଦର୍ଶନ ରହିଛି ।

୧୬୬. ଏବଂ ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟକୁ (ଅଲ୍ଲାହଙ୍କର) ସମକକ୍ଷ କରନ୍ତି ସେମାନେ ତାହାଙ୍କୁ ଅଲ୍ଲାହଙ୍କ ପ୍ରତି ପ୍ରେମ ସଦୃଶ ପ୍ରେମ କରନ୍ତି ଏବଂ ଯେଉଁମାନେ ବିଶ୍ୱାସକାରୀ ସେମାନେ ଅଲ୍ଲାହଙ୍କୁ (ହିଁ) ସର୍ବାଧିକ ପ୍ରେମ କରନ୍ତି ଏବଂ ଯେଉଁମାନେ (ଏପରି) ଅତ୍ୟାଚାର କରିଛନ୍ତି, ଯଦି ସେମାନେ ଶାସ୍ତିର ସମ୍ମୁଖୀନ ହେବା (ସମୟ)କୁ (କୌଣସି ଉପାୟରେ ସମ୍ପ୍ରତି) ଦେଖିବାକୁ ପାଇ ପାରନ୍ତେ (ତାହେଲେ ଜାଣି ପାରନ୍ତେ) ଯେ ଅଲ୍ଲାହଙ୍କଠାରେ ହିଁ ସମସ୍ତ କ୍ଷମତା (ନିହିତ) ଅଛି ; ଓ ଅଲ୍ଲାହ କଠିନ ଶାସ୍ତି ପ୍ରଦାନକାରୀ ଅଟନ୍ତି ।

୧୬୭. (ଆହା ! ସେ ଲୋକମାନେ ସେହି ସମୟକୁ ଦେଖିବାକୁ ପାଆନ୍ତେ କି !) ଯେତେବେଳେ ସେ ଲୋକମାନେ ଯାହାଙ୍କର ଅନୁସରଣ କରାଯାଉଥିଲା ସେମାନଙ୍କ ଅନୁଗାମୀମାନଙ୍କଠାରୁ ଦୂରେଇ ଯିବେ ଏବଂ (ସ୍ୱଚକ୍ଷୁରେ) ଶାସ୍ତିକୁ ଦେଖିବାକୁ ପାଇବେ ଏବଂ ସେମାନଙ୍କ (ସମ୍ପର୍କଯୋଗୁ) ମୁକ୍ତିର ସମସ୍ତ ପନ୍ଥା ବିଚ୍ଛିନ୍ନ ହୋଇଯିବ (ଏବଂ ସେମାନେ ସମ୍ପୂର୍ଣ୍ଣ ରୂପେ ନିରାଶ୍ରୟ ହୋଇଯିବେ) ।

୧୬୮. ଏବଂ ଯେଉଁ ଲୋକମାନେ (ଅବିଶ୍ୱାସକାରୀଙ୍କ ନେତାମାନଙ୍କର) ଅନୁଗାମୀ ଥିଲେ ସେମାନେ କହିବେ, "ଯଦି ଆମେମାନେ ଥରେ ମାତ୍ର (ପୁନର୍ବାର ସଂସାରକୁ) ଫେରି ଆସି ପାରନ୍ତୁ ତେବେ ଆଜି ଯେପରି ଏ (ଅବିଶ୍ୱାସକାରୀଙ୍କ ନେତା) ମାନେ ଆମମାନଙ୍କ ଠାରୁ ଦୂରେଇ ଯାଇଛନ୍ତି ଆମେମାନେ ମଧ୍ୟ ଏମାନଙ୍କ ଠାରୁ ସେପରି ଦୂରେଇ ଯାଆନ୍ତୁ" ; ଏହିରୂପେ ଅଲ୍ଲାହ ସେମାନଙ୍କୁ ଦର୍ଶାଇ ଦେବେ ଯେ ସେମାନଙ୍କର କର୍ମ (ଫଳ) ସେମାନଙ୍କ ପାଇଁ (ଯନ୍ତ୍ରଣା) ଦୁଃଖଦାୟକ ଅଟେ ଏବଂ ସେମାନେ (ନରକର) ଅଗ୍ନି ମଧ୍ୟରୁ କଦାପି ବାହାରି ପାରିବେ ନାହିଁ ।

إِنَّ فِي خَلْقِ السَّمٰوٰتِ وَالْأَرْضِ وَاخْتِلَافِ الَّيْلِ وَ
النَّهَارِ وَالْفُلْكِ الَّتِي تَجْرِي فِي الْبَحْرِ بِمَا يَنْفَعُ
النَّاسَ وَمَآ أَنْزَلَ اللّٰهُ مِنَ السَّمَآءِ مِنْ مَّآءٍ فَأَحْيَا
بِهِ الْأَرْضَ بَعْدَ مَوْتِهَا وَبَثَّ فِيهَا مِنْ كُلِّ دَآبَّةٍ
وَّتَصْرِيفِ الرِّيٰحِ وَالسَّحَابِ الْمُسَخَّرِ بَيْنَ السَّمَآءِ
وَالْأَرْضِ لَأٰيٰتٍ لِّقَوْمٍ يَّعْقِلُونَ ﴿١٦٥﴾

وَمِنَ النَّاسِ مَنْ يَّتَّخِذُ مِنْ دُوْنِ اللّٰهِ أَنْدَادًا
يُّحِبُّوْنَهُمْ كَحُبِّ اللّٰهِ ۖ وَالَّذِيْنَ اٰمَنُوْٓا أَشَدُّ حُبًّا
لِّلّٰهِ ۗ وَلَوْ يَرَى الَّذِيْنَ ظَلَمُوْٓا إِذْ يَرَوْنَ الْعَذَابَ ۙ
أَنَّ الْقُوَّةَ لِلّٰهِ جَمِيْعًا ۙ وَّأَنَّ اللّٰهَ شَدِيْدُ الْعَذَابِ ﴿١٦٦﴾

إِذْ تَبَرَّأَ الَّذِيْنَ اتُّبِعُوْا مِنَ الَّذِيْنَ اتَّبَعُوْا وَرَأَوُا الْعَذَابَ
وَتَقَطَّعَتْ بِهِمُ الْأَسْبَابُ ﴿١٦٧﴾

وَقَالَ الَّذِيْنَ اتَّبَعُوْا لَوْ أَنَّ لَنَا كَرَّةً فَنَتَبَرَّأَ مِنْهُمْ
كَمَا تَبَرَّءُوْا مِنَّا ۗ كَذٰلِكَ يُرِيْهِمُ اللّٰهُ أَعْمَالَهُمْ حَسَرٰتٍ
عَلَيْهِمْ ۗ وَمَا هُمْ بِخٰرِجِيْنَ مِنَ النَّارِ ﴿١٦٨﴾ ع

ରୁ:୨୧

يَاَيُّهَا النَّاسُ كُلُوْا مِمَّا فِي الْاَرْضِ حَلٰلًا طَيِّبًا ۖ وَّلَا تَتَّبِعُوْا خُطُوٰتِ الشَّيْطٰنِ ؕ اِنَّهٗ لَكُمْ عَدُوٌّ مُّبِيْنٌ ﴿١٦٩﴾

୧୬୯. ହେ ଲୋକମାନେ ! ଯାହା କିଛି ପୃଥିବୀରେ ଅଛି ସେଥିରୁ ଯାହା ବୈଧ ଓ ହିତକର ଅଟେ (ତାହା) ଖାଅ[୧] ଏବଂ ସଇତାନର ପଦାଙ୍କ ଅନୁସରଣ କରନାହିଁ ; ସେ ନିଶ୍ଚୟ ତୁମମାନଙ୍କର ପ୍ରକାଶ୍ୟ ଶତ୍ରୁ ।

اِنَّمَا يَاْمُرُكُمْ بِالسُّوْٓءِ وَالْفَحْشَآءِ وَاَنْ تَقُوْلُوْا عَلَى اللّٰهِ مَا لَا تَعْلَمُوْنَ ﴿١٧٠﴾

୧୭୦. ସେ ତୁମମାନଙ୍କୁ କେବଳ ପାପ ଓ ନିର୍ଲଜ୍ଜ କାର୍ଯ୍ୟ କରିବା ପାଇଁ ଏବଂ ଅଲ୍ଲାହଙ୍କ ସଂକ୍ରାନ୍ତରେ ତୁମେମାନେ ଯାହା ଜାଣ ନାହିଁ ସେପରି ବିଷୟରେ ମିଥ୍ୟା ରଚନା କରି କହିବାକୁ ନିର୍ଦ୍ଦେଶ ଦିଏ ।

وَاِذَا قِيْلَ لَهُمُ اتَّبِعُوْا مَآ اَنْزَلَ اللّٰهُ قَالُوْا بَلْ نَتَّبِعُ مَآ اَلْفَيْنَا عَلَيْهِ اٰبَآءَنَا ؕ اَوَلَوْ كَانَ اٰبَآؤُهُمْ لَا يَعْقِلُوْنَ شَيْـًٔا وَّلَا يَهْتَدُوْنَ ﴿١٧١﴾

୧୭୧. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ "ଅଲ୍ଲାହ ଯାହା (ବାଣୀ) ଅବତୀର୍ଣ୍ଣ କରିଛନ୍ତି ତାହାର ଅନୁସରଣ କର" (ସେତେବେଳେ) ସେମାନେ କହନ୍ତି "ନା, ଆମେମାନେ ସେହି ପନ୍ଥା ଅନୁସରଣ କରିବୁ ଯାହା ଆମମାନଙ୍କ ପିତୃ-ପିତାମହମାନେ କରୁଥିଲେ" ଯଦ୍ୟପି ସେମାନଙ୍କ ପିତୃ-ପିତାମହମାନଙ୍କର କିଛି ବୁଦ୍ଧି ନ ଥିଲା କି ସେମାନେ ସତ୍‌ପଥରେ ପରିଚାଳିତ ହେଉ ନ ଥିଲେ (ତଥାପି ସେମାନେ ଏହିପରି କହିବେ) ।

وَمَثَلُ الَّذِيْنَ كَفَرُوْا كَمَثَلِ الَّذِيْ يَنْعِقُ بِمَا لَا يَسْمَعُ اِلَّا دُعَآءً وَّنِدَآءً ؕ صُمٌّ ۢ بُكْمٌ عُمْىٌ فَهُمْ لَا يَعْقِلُوْنَ ﴿١٧٢﴾

୧୭୨. ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେ ଲୋକମାନଙ୍କ ଅବସ୍ଥା ସେହି ବ୍ୟକ୍ତିର ଅବସ୍ଥା ସଦୃଶ ଯେ ଏପରି ବସ୍ତୁକୁ ଆହ୍ୱାନ କରେ ଯାହା କେବଳ ଡାକ[୨] ଓ ଚିତ୍କାର ବ୍ୟତୀତ ଅନ୍ୟ କିଛି ଶୁଣି ପାରେ ନାହିଁ ; ଏ (ଲୋକ)ମାନେ ବଧିର, ମୂକ ଓ ଅନ୍ଧ[୩] ; ସୁତରାଂ ବୁଝି ପାରନ୍ତି ନାହିଁ ।

يَاَيُّهَا الَّذِيْنَ اٰمَنُوْا كُلُوْا مِنْ طَيِّبٰتِ مَا رَزَقْنٰكُمْ وَاشْكُرُوْا لِلّٰهِ اِنْ كُنْتُمْ اِيَّاهُ تَعْبُدُوْنَ ﴿١٧٣﴾

୧୭୩. ହେ ବିଶ୍ୱାସକାରୀମାନେ ! ଆମେ ତୁମମାନଙ୍କୁ ଯେଉଁସବୁ ବିଶୁଦ୍ଧ ଦ୍ରବ୍ୟ ଦେଇଅଛୁ ତନ୍ମଧ୍ୟରୁ ଖାଅ ; ଏବଂ ଯଦି ତୁମେମାନେ (ପ୍ରକୃତରେ) ଅଲ୍ଲାହଙ୍କର ଉପାସନା କରୁଅଛ ତେବେ ତାହାଙ୍କ ପ୍ରତି କୃତଜ୍ଞତା (ମଧ୍ୟ) ଜ୍ଞାପନ କର ।

୧. ମନୁଷ୍ୟର ଚରିତ୍ର ଗଠନରେ ଖାଦ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଅଛି । ସେଥିଯୋଗୁ ଖାଦ୍ୟ କିପରି ହେବା ବିଧେୟ ସେ ସଂକ୍ରାନ୍ତରେ କୁହାଯାଇଛି ଯେ- (କ) ତାହା ହଲାଲ ଅର୍ଥାତ୍ ବୈଧ ବା ଆଇନାନୁମୋଦିତ ହେବ ଓ (ଖ) ତାହା ତୟବ ଅର୍ଥାତ୍ ଉତ୍ତମ, ବିଶୁଦ୍ଧ, ହିତକର ତଥା ରୁଚିକର ହେବ । ଦ୍ୱିତୀୟ କ୍ଷେତ୍ରରେ ସମୟେ ସମୟେ ସ୍ଥଳ ବିଶେଷରେ ବୈଧ ଖାଦ୍ୟକୁ ମଧ୍ୟ ନିଷିଦ୍ଧ କରାଯାଇଥାଏ । ଅତଏବ ଯେଉଁ ଖାଦ୍ୟ ମନୁଷ୍ୟର ଶାରୀରିକ, ନୈତିକ ଓ ଆଧ୍ୟାତ୍ମିକ କ୍ଷତି କରେ ତାହା ବୈଧ ହେଲେ ମଧ୍ୟ ଅଭୋଜ୍ୟ ।

୨. ଆରବୀ ମୂଳ ଶବ୍ଦ 'ୟନୟେକୋ'ର ଅର୍ଥ କୌଣସି ପଶୁକୁ ଡାକ ଦେବା । ପଶୁ ନିଜ ମାଲିକର ସ୍ୱର, ଶବ୍ଦ ବା ଡାକ ଶୁଣି ତା'ପାଖକୁ ଆସିଥାଏ । କିନ୍ତୁ ସେହି ପଶୁ ପ୍ରକୃତରେ ତା'ର ତାତ୍ପର୍ଯ୍ୟ ବୁଝିବାକୁ ଅସମର୍ଥ । ଏଣୁ ଅଲ୍ଲାହ କହୁଛନ୍ତି ଯେ, ଅବିଶ୍ୱାସକାରୀମାନଙ୍କ ଅବସ୍ଥା ପଶୁ ସଦୃଶ । କାରଣ ସେମାନେ କିଛି ନ ବୁଝି ଅନ୍ୟମାନଙ୍କର ଅନୁସରଣ କରିଥାଆନ୍ତି । କିନ୍ତୁ ଇସଲାମ କେତେକ ନିର୍ଦ୍ଦିଷ୍ଟ ନୀତି ଆଡ଼କୁ ମାର୍ଗ ପ୍ରଦର୍ଶନ କରାଏ ଓ ଯଥୋଚିତ ବିଷୟ ବୁଝାଇ ସୁଝାଇ ଶିଖାଏ । ତେଣୁ ତା'ର ଅନୁଗାମୀମାନେ ବୁଝିବିଚାରି ଏହି ଧର୍ମ ଗ୍ରହଣ କରିଥାଆନ୍ତି ।

୩. ଅବିଶ୍ୱାସକାରୀମାନେ ଈର୍ଷା ଓ ଦ୍ୱେଷର ବଶବର୍ତ୍ତୀ ହୋଇଥିବାରୁ ସେମାନଙ୍କ ସମସ୍ତ ଇନ୍ଦ୍ରିୟ ଅକାମୀ ହୋଇଯାଇଛି ତେଣୁ ସେମାନେ ନିଜ କୁକର୍ମକୁ ବୁଝିପାରୁ ନାହାନ୍ତି ।

إِنَّمَا حَرَّمَ عَلَيْكُمُ الْمَيْتَةَ وَالدَّمَ وَلَحْمَ الْخِنْزِيرِ وَمَا أُهِلَّ بِهِ لِغَيْرِ اللَّهِ ۖ فَمَنِ اضْطُرَّ غَيْرَ بَاغٍ وَلَا عَادٍ فَلَا إِثْمَ عَلَيْهِ ۚ إِنَّ اللَّهَ غَفُورٌ رَحِيمٌ ﴿١٧٤﴾

୧୭୪. ତେଣୁ ସେ କେବଳ ମୁର୍ଦ୍ଦାର, ରକ୍ତ, ଶୁକର ମାଂସକୁ ଏବଂ ସେହି ବସ୍ତୁକୁ, ଯାହା ସହିତ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ନାମ ସଂଯୋଗ କରାଯାଇଥାଏ, ତୁମମାନଙ୍କ ସକାଶେ ଅବୈଧ କରିଛନ୍ତି ; କିନ୍ତୁ ଯେଉଁ ବ୍ୟକ୍ତି ନିୟମ ଭଙ୍ଗ ନ କରି ବା ସୀମାଲଙ୍ଘନ ନ କରି ଅଥଚ ନିରୁପାୟ ହୋଇ (ଏ ବସ୍ତୁଗୁଡ଼ିକୁ ବ୍ୟବହାର କରିବା ଲାଗି) ବାଧ୍ୟ ହେବ ତା'ପକ୍ଷରେ କୌଣସି ପାପ ନାହିଁ ; ଅଲ୍ଲାହ ବାସ୍ତବରେ ଅତ୍ୟନ୍ତ କ୍ଷମାଶୀଳ ଓ ସଦା କରୁଣାମୟ ।

إِنَّ الَّذِينَ يَكْتُمُونَ مَا أَنْزَلَ اللَّهُ مِنَ الْكِتَابِ وَيَشْتَرُونَ بِهِ ثَمَنًا قَلِيلًا ۙ أُولَٰئِكَ مَا يَأْكُلُونَ فِي بُطُونِهِمْ إِلَّا النَّارَ وَلَا يُكَلِّمُهُمُ اللَّهُ يَوْمَ الْقِيَامَةِ وَلَا يُزَكِّيهِمْ وَلَهُمْ عَذَابٌ أَلِيمٌ ﴿١٧٥﴾

୧୭୫. ଯେଉଁ ଲୋକମାନେ ଏହାକୁ (ଅର୍ଥାତ୍ ଏହି ଶିକ୍ଷାକୁ) ଯାହା ଅଲ୍ଲାହ (ନିଜ) ଧର୍ମଗ୍ରନ୍ଥ (ମଧ୍ୟ)ରୁ ଅବତୀର୍ଣ୍ଣ କରିଛନ୍ତି ତାହାକୁ ଗୋପନ ରଖୁଛନ୍ତି ଓ ତାହା ବିନିମୟରେ ସ୍ୱଳ୍ପ ମୂଲ୍ୟ ଗ୍ରହଣ କରୁଛନ୍ତି ସେମାନେ ବାସ୍ତବରେ ନିଜ ଉଦର ମଧ୍ୟକୁ କେବଳ ଅଗ୍ନି ନିକ୍ଷେପ କରୁଛନ୍ତି ଏବଂ କୟାମତ ଦିନ ଅଲ୍ଲାହ ସେମାନଙ୍କ ସହିତ କଥାବାର୍ତ୍ତା କରିବେ ନାହିଁ କି ସେମାନଙ୍କୁ ପବିତ୍ର ସାବ୍ୟସ୍ତ କରିବେ ନାହିଁ ଓ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

أُولَٰئِكَ الَّذِينَ اشْتَرَوُا الضَّلَالَةَ بِالْهُدَىٰ وَالْعَذَابَ بِالْمَغْفِرَةِ ۚ فَمَا أَصْبَرَهُمْ عَلَى النَّارِ ﴿١٧٦﴾

୧୭୬. ଏହି ଲୋକମାନେ ହିଁ ସତ୍‌ପଥ ପରିବର୍ତ୍ତେ ଅସତ୍ ପଥକୁ ଏବଂ କ୍ଷମା ପରିବର୍ତ୍ତେ ଶାସ୍ତିକୁ ଗ୍ରହଣ କରିଛନ୍ତି, ସୁତରାଂ ସେମାନଙ୍କର ଅଗ୍ନି (ଯନ୍ତ୍ରଣା) ସହ୍ୟ କରିବା ଆଶ୍ଚର୍ଯ୍ୟଜନକ ଅଟେ ।

ذَٰلِكَ بِأَنَّ اللَّهَ نَزَّلَ الْكِتَابَ بِالْحَقِّ ۗ وَإِنَّ الَّذِينَ اخْتَلَفُوا فِي الْكِتَابِ لَفِي شِقَاقٍ بَعِيدٍ ﴿١٧٧﴾

୧୭୭. ଏହା (ଅର୍ଥାତ୍ ଏହି ଶାସ୍ତି) ଏଥିଯୋଗୁ (ଦିଆ) ହେବ ଯେହେତୁ ଅଲ୍ଲାହ ଏହି (ଧର୍ମ) ଗ୍ରନ୍ଥକୁ ସତ୍ୟ (ସମନ୍ୱିତ) କରି ଅବତୀର୍ଣ୍ଣ କରିଛନ୍ତି ; ଏବଂ ଯେଉଁ ଲୋକମାନେ ଏହି ଗ୍ରନ୍ଥ ସଂକ୍ରାନ୍ତରେ ଭିନ୍ନ ମତ ପୋଷଣ କରିଛନ୍ତି ସେମାନେ ନିଶ୍ଚୟ ଜଘନ୍ୟ ଧରଣର ଶତ୍ରୁତାରେ (ଲିପ୍ତ) ଅଛନ୍ତି ।

ରୁ:୨୨

لَيْسَ الْبِرَّ أَنْ تُوَلُّوا وُجُوهَكُمْ قِبَلَ الْمَشْرِقِ وَالْمَغْرِبِ وَلَٰكِنَّ الْبِرَّ مَنْ آمَنَ بِاللَّهِ وَالْيَوْمِ الْآخِرِ وَالْمَلَائِكَةِ وَالْكِتَابِ وَالنَّبِيِّينَ وَآتَى الْمَالَ عَلَىٰ حُبِّهِ ذَوِي الْقُرْبَىٰ وَالْيَتَامَىٰ وَالْمَسَاكِينَ وَابْنَ السَّبِيلِ وَالسَّائِلِينَ وَفِي الرِّقَابِ وَأَقَامَ الصَّلَاةَ وَآتَى

୧୭୮. ତୁମେମାନେ ନିଜର ମୁହଁ ପୂର୍ବ ବା ପଶ୍ଚିମ ଦିଗକୁ ଫେରାଇବାରେ ବିଶେଷ କିଛି ପୁଣ୍ୟ ନାହିଁ ; କିନ୍ତୁ ସେହି ବ୍ୟକ୍ତି ପ୍ରକୃତରେ ପୁଣ୍ୟବାନ୍ ଯେ ଅଲ୍ଲାହ, ଅନ୍ତିମ ଦିବସ, ଦେବଦୂତମାନଙ୍କ ଉପରେ, (ଧର୍ମ) ଗ୍ରନ୍ଥ ଓ ସବୁ ନବିଙ୍କ ଉପରେ ବିଶ୍ୱାସ କରେ ଏବଂ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହଙ୍କୁ) ପ୍ରେମ କରିବା ହେତୁ ଆତ୍ମୀୟ ସ୍ୱଜନ, ଅନାଥ, ଦରିଦ୍ର, ପଥିକ, ଭିକ୍ଷୁକ ତଥା କ୍ରୀତଦାସମାନଙ୍କ (ସ୍ୱାଧୀନତା ଲାଭ) ପାଇଁ (ଆପଣା) ଧନ ବ୍ୟୟକରେ ଏବଂ ସୁଚାରୁ ରୂପେ ନମାଜ ପାଠ କରେ, ଜକାତ୍ ଦିଏ ଏବଂ—ଯେବେ ବି କୌଣସି ଅଙ୍ଗୀକାର କରେ— ନିଜ

الزَّكٰوةَ ۚ وَالْمُوْفُوْنَ بِعَهْدِهِمْ اِذَا عٰهَدُوْا ۚ وَالصّٰبِرِيْنَ فِى الْبَاْسَآءِ وَالضَّرَّآءِ وَحِيْنَ الْبَاْسِ ؕ اُولٰٓئِكَ الَّذِيْنَ صَدَقُوْا ؕ وَاُولٰٓئِكَ هُمُ الْمُتَّقُوْنَ ﴿۱۷۷﴾

ଅଙ୍ଗୀକାରକୁ ପାଳନ କରୁଥିବା ବ୍ୟକ୍ତି ଓ (ବିଶେଷତଃ) ଅଭାବରେ, ବ୍ୟାଧିରେ ଓ ଯୁଦ୍ଧ ସମୟରେ ଧୈର୍ଯ୍ୟ ଧରି କାର୍ଯ୍ୟ କରୁଥିବା ବ୍ୟକ୍ତି (ହିଁ ପ୍ରକୃତରେ ପୁଣ୍ୟବାନ୍) ; ଏମାନେ ହିଁ ସତ୍ୟବାଦୀ (ସାବ୍ୟସ୍ତ) ହୋଇଥାନ୍ତି ଓ ଏମାନେ ହିଁ ପ୍ରକୃତ ଧର୍ମଭୀରୁ ।

يٰٓاَيُّهَا الَّذِيْنَ اٰمَنُوْا كُتِبَ عَلَيْكُمُ الْقِصَاصُ فِى الْقَتْلٰى ؕ اَلْحُرُّ بِالْحُرِّ وَالْعَبْدُ بِالْعَبْدِ وَالْاُنْثٰى بِالْاُنْثٰى ؕ فَمَنْ عُفِىَ لَهٗ مِنْ اَخِيْهِ شَىْءٌ فَاتِّبَاعٌۢ بِالْمَعْرُوْفِ وَاَدَآءٌ اِلَيْهِ بِاِحْسَانٍ ؕ ذٰلِكَ تَخْفِيْفٌ مِّنْ رَّبِّكُمْ وَرَحْمَةٌ ؕ فَمَنِ اعْتَدٰى بَعْدَ ذٰلِكَ فَلَهٗ عَذَابٌ اَلِيْمٌ ﴿۱۷۸﴾

୧୭୮. ହେ ବିଶ୍ୱାସକାରୀମାନେ ! ନିହତ ବ୍ୟକ୍ତିମାନଙ୍କ ସଂକ୍ରାନ୍ତରେ ସମାନ ପରିମାଣ ପ୍ରତିଶୋଧ ନେବା ତୁମମାନଙ୍କ ସକାଶେ ନ୍ୟାଯ୍ୟ କରାଯାଇଛି ; ଯଦି (ହତ୍ୟାକାରୀ) ସ୍ୱାଧୀନ (ପୁରୁଷ) ହୋଇଥାଏ ତେବେ ସେହି ସ୍ୱାଧୀନ (ହତ୍ୟାକାରୀ)ଠାରୁ, ଏବଂ ଯଦି(ହତ୍ୟାକାରୀ) କ୍ରୀତଦାସ ହୋଇଥାଏ ତେବେ ସେହି କ୍ରୀତଦାସ (ହତ୍ୟାକାରୀ) ଠାରୁ ଏବଂ ଯଦି (ହତ୍ୟାକାରିଣୀ) ମହିଳା ହୋଇଥାଏ ତେବେ ସେହି ମହିଳା (ହତ୍ୟାକାରିଣୀ)ଠାରୁ ; କିନ୍ତୁ ଯାହାକୁ (ଅର୍ଥାତ୍ ଯେଉଁ ହତ୍ୟାକାରୀକୁ) ତାହାର ଭାଇ ତରଫରୁ କିଛି (ହତ୍ୟାଜନିତ କ୍ଷତିପୂରଣରୁ) କ୍ଷମା କରି ଦିଆଯାଏ ତେବେ (ନିହତ ବ୍ୟକ୍ତିର ଦାୟାଦ ତା'ଠାରୁ ଅବଶିଷ୍ଟ ହତ୍ୟା ଜନିତ କ୍ଷତି ପୂରଣକୁ) ଉଚିତ ପନ୍ଥାରେ ଆଦାୟ କରି ପାରିବ ଏବଂ (ହତ୍ୟାକାରୀ) ସମୁଚିତ ପ୍ରଚଳିତ ପ୍ରଥା ଅନୁସାରେ (ଅବଶିଷ୍ଟ କ୍ଷତିପୂରଣ) ତାହାକୁ ପ୍ରଦାନ କରିବା ବିଧେୟ ; ଏହା ତୁମମାନଙ୍କ ପାଳନକର୍ତ୍ତାଙ୍କ ପକ୍ଷରୁ ଅବ୍ୟାହତି ଓ କରୁଣା ଅଟେ ; ପୁଣି ଯେଉଁ ବ୍ୟକ୍ତି (ଏ ଆଦେଶ ସତ୍ତ୍ୱେ) ସୀମା ଲଙ୍ଘନ କରେ ତା'ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

وَلَكُمْ فِى الْقِصَاصِ حَيٰوةٌ يّٰٓاُولِى الْاَلْبَابِ لَعَلَّكُمْ تَتَّقُوْنَ ﴿۱۷۹﴾

୧୮୦. ହେ ବୁଦ୍ଧିମାନ୍ ବ୍ୟକ୍ତିମାନେ ! ତୁମମାନଙ୍କ ସକାଶେ (ଏହି) ପ୍ରତିଶୋଧ ନେବାରେ (ହିଁ) ଜୀବନ (ସାମଗ୍ରୀ) ରହିଅଛି; (ଏବଂ ଏହି ଆଦେଶ ଏଥି ସକାଶେ ଅଛି) ଯଦ୍ଦ୍ୱାରା ତୁମେମାନେ ରକ୍ଷାପାଇପାରିବ ।

---

୧. ଇସଲାମୀୟ ବିଧାନରେ ହତ୍ୟା ବନ୍ଦ କରିବାକୁ ତଥା ମଣିଷ ଜୀବନକୁ ସୁରକ୍ଷିତ ରଖିବାକୁ ପ୍ରତିଶୋଧମୂଳକ ଫଳପ୍ରଦ ବ୍ୟବସ୍ଥାମାନ ରହିଅଛି । ଯେଉଁ ବ୍ୟକ୍ତି ମନୁଷ୍ୟର ଜୀବନ ପ୍ରତି ଉପଯୁକ୍ତ ସମ୍ମାନ ଦିଏ ନାହିଁ, ତା'ର ସମାଜରେ ବାସ କରିବାକୁ କୌଣସି ଅଧିକାର ନାହିଁ । ଯେଉଁ ସ୍ଥଳେ କ୍ଷମା ଦେଲେ ଅବସ୍ଥାର ଉନ୍ନତି ହେବ ବା ତାହା ଅନ୍ୟଥା ଫଳପ୍ରଦ ହେବ, କେବଳ ସେହି ସ୍ଥଳେ କ୍ଷମାଦାନ ଅନୁମତି ଯୋଗ୍ୟ । ଦୋଷୀକୁ ଦଣ୍ଡଦେବା ପାଇଁ ଇସଲାମୀ ବିଧାନରେ ବ୍ୟବସ୍ଥା ଥିବାବେଳେ ତାହା ଦୟା ଓ କରୁଣା ପ୍ରଦର୍ଶନ କରିବାକୁ ମଧ୍ୟ ପ୍ରେରଣା ଦେଉଛି । ଆଇନ ପୁସ୍ତକରୁ ମୃତ୍ୟୁଦଣ୍ଡ ବ୍ୟବସ୍ଥା ଉଠାଇ ଦେବା ପାଇଁ ବହୁ ପ୍ରଚେଷ୍ଟା ଚାଲିଥିଲେ ମଧ୍ୟ ଏବେ ବି ଅନେକ ଦେଶରେ ମୃତ୍ୟୁଦଣ୍ଡ ତଥାପି ଆଦୃତ ହେଉଅଛି । କାରଣ ମୃତ୍ୟୁଦଣ୍ଡକୁ ବିରୋଧ କରୁଥିବା ବ୍ୟକ୍ତିମାନେ ଏଯାବତ୍ କୌଣସି ଯଥାର୍ଥ ବିକଳ୍ପ ଉଦ୍ଭାବନ କରିପାରି ନାହାନ୍ତି ।

كُتِبَ عَلَيْكُمْ إِذَا حَضَرَ أَحَدَكُمُ الْمَوْتُ إِنْ تَرَكَ خَيْرًا ۖ الْوَصِيَّةُ لِلْوَالِدَيْنِ وَالْأَقْرَبِينَ بِالْمَعْرُوفِ ۖ حَقًّا عَلَى الْمُتَّقِينَ ﴿١٨١﴾

୧୮୧. ଯେବେ ତୁମମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ (ସମୟ) ଉପସ୍ଥିତ ହୁଏ, ଯଦି ସେ (ମରୁଥିବା ବ୍ୟକ୍ତି) ପ୍ରଚୁର ସମ୍ପତ୍ତି ଛାଡ଼ି ଯାଉଥାଏ ତେବେ ପିତାମାତା ଓ ଆତ୍ମୀୟସ୍ୱଜନଙ୍କ ପ୍ରତି ଏକ ସମୁଚିତ ଓସିୟତ[୧] କରିବା ତୁମମାନଙ୍କ ପାଇଁ ନ୍ୟାଯ୍ୟ କରାଯାଇଅଛି ; (ଏହା) ଧର୍ମଭୀରୁଙ୍କ ପାଇଁ (ଏକ) କର୍ତ୍ତବ୍ୟ ଅଟେ ।

فَمَنْ بَدَّلَهُ بَعْدَمَا سَمِعَهُ فَإِنَّمَا إِثْمُهُ عَلَى الَّذِينَ يُبَدِّلُونَهُ ۚ إِنَّ اللَّهَ سَمِيعٌ عَلِيمٌ ﴿١٨٢﴾

୧୮୨. କିନ୍ତୁ ଯଦି ଯେଉଁ ବ୍ୟକ୍ତି ଏହାକୁ (ଅର୍ଥାତ୍ ଓସିୟତକୁ) ଶୁଣିବା ପରେ ବଦଳାଇ ଦିଏ ତେବେ ଏହି ପାପର ଭାଗୀ କେବଳ ସେହିମାନେ ହେବେ ଯିଏ ଏହାକୁ ବଦଳାଇ ଥାଆନ୍ତି ; ବାସ୍ତବରେ ଅଲ୍ଲାହ୍ ହିଁ ମହାନ ଶ୍ରୋତା(ଓ)ସର୍ବଜ୍ଞ ।

---

୧. ଏହି ଆୟତରେ ପିତାମାତା ଓ ନିକଟ ସମ୍ପର୍କୀୟଙ୍କ ପକ୍ଷରେ 'ଓସିୟତ' ବା ଇଚ୍ଛାପତ୍ର କରିବାକୁ କୁହାଯାଇଛି । ଅବଶ୍ୟ ସନ୍ତାନସନ୍ତତିଙ୍କ ସହ ଥିବା ସମ୍ପର୍କ ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ଏଠାରେ ସମ୍ପତ୍ତି ବଣ୍ଟନ ପାଇଁ ଓସିୟତ କରିବାକୁ କୁହାଯାଇ ନାହିଁ । ଅନ୍ୟଥା ଏହି ଆୟତରେ ସନ୍ତାନ ସନ୍ତତିଙ୍କ ବିଷୟ ନିଶ୍ଚୟ ରହିଥା'ନ୍ତା । ବସ୍ତୁତଃ ସମୁଚିତ ପନ୍ଥାରେ ସମ୍ପତ୍ତିର ବଣ୍ଟନ ପାଇଁ ଏଠାରେ ତାଗିଦ କରାଯାଇଛି । ପବିତ୍ର କୋରାନରେ ଅନ୍ୟତ୍ର (4: 12-13) ମୃତ ବ୍ୟକ୍ତିର ପରିତ୍ୟକ୍ତ ସମ୍ପତ୍ତି ଉପରେ ଉତ୍ତରାଧିକାରୀମାନଙ୍କ ନିର୍ଦ୍ଦିଷ୍ଟ ଅଂଶ ବିଷୟରେ ସବିସ୍ତାର ବର୍ଣ୍ଣନା କରାଯାଇଛି । ତହିଁରେ ସନ୍ତାନସନ୍ତତିଙ୍କୁ ପ୍ରାଧାନ୍ୟ ଦିଆଯାଇଛି । ଏହି କାରଣରୁ କେତେକ ଟୀକାକାର ଏହି ଆୟତ ରଦ୍ଦ ହୋଇଥିବା ମନେ କରନ୍ତି । କିନ୍ତୁ ଏହା ଯଥାର୍ଥ ନୁହେଁ । ଏହି ଆୟତର ଅସଲ ଉଦ୍ଦେଶ୍ୟକୁ ବୁଝିବାରେ ତ୍ରୁଟି କରିଥିବା ଯୋଗୁ ସେମାନେ ଏପରି ମତ ପ୍ରକାଶ କରିଛନ୍ତି, କାରଣ ସେମାନେ ଏଠାରେ ଉଲ୍ଲିଖିତ 'ଓସିୟତ'ର ଅର୍ଥ ସମ୍ପତ୍ତି ବଣ୍ଟନର ନିର୍ଦ୍ଦେଶ ବୋଲି ଗ୍ରହଣ କରିଛନ୍ତି । ମାତ୍ର ଏହା ଏକ ଭ୍ରମାତ୍ମକ ଧାରଣା । ଏହି ଆୟତ ଓ ଏହାର ପୂର୍ବାପର ଆୟତମାନଙ୍କରେ ବର୍ଣ୍ଣିତ ପ୍ରସଙ୍ଗରୁ ଏହା ପ୍ରତୀତ ହେଉଛି ଯେ ଯୁଦ୍ଧକାଳୀନ ପରିସ୍ଥିତିରେ ଯଦି କୌଣସି ବ୍ୟକ୍ତି ଯୁଦ୍ଧକ୍ଷେତ୍ରକୁ ଯାଏ ଓ ତା' ନିକଟରେ ପ୍ରଚୁର ଧନସମ୍ପତ୍ତି ଥାଏ ତେବେ ଯିବା ପୂର୍ବରୁ ନିଜ ପିତାମାତା ଓ ନିକଟ ସମ୍ପର୍କୀୟଙ୍କ ପକ୍ଷରେ ଓସିୟତ କରିବା ଉଚିତ ଯଦ୍ଦ୍ୱାରା ସେଭଳି ବ୍ୟକ୍ତିର ମୃତ୍ୟୁ ହେଲେ ତାହାର ସମ୍ପତ୍ତିକୁ ସମୁଚିତ ପନ୍ଥାରେ ଅଲ୍ଲାହ୍‌ଙ୍କ ନିର୍ଦ୍ଧାରିତ ବିଧାନ ଅନୁସାରେ ଆଇନସଙ୍ଗତ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଇପାରିବ । ସାଧାରଣତଃ ଯୁଦ୍ଧରେ ଯୁବକମାନେ ଭାଗ ନେଇଥାନ୍ତି । ଏମାନଙ୍କର ହୁଏତ ସନ୍ତାନ ନ ଥାଇ ପାରନ୍ତି ବା ବାଲ୍ୟତ ଅବସ୍ଥାରେ ସନ୍ତାନ ଥାଇ ପାରନ୍ତି । ସେଥିପାଇଁ ସନ୍ତାନମାନଙ୍କ ବିଷୟ ନ ସୃଷ୍ଟିଇ ପିତାମାତା ଓ ନିକଟ ସମ୍ପର୍କୀୟଙ୍କ ପକ୍ଷରେ ଓସିୟତ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ପବିତ୍ର କୋରାନର ଅଧ୍ୟାୟ 4: 12-13ପରେ ଅବତୀର୍ଣ୍ଣ ହୋଇଥିବା ଅଧ୍ୟାୟ 5:107ଅନୁଯାୟୀ ଆସନ୍ନମୃତ୍ୟୁ ସମୟରେ ମଧ୍ୟ ଜଣେ ମୁସଲମାନ ଓସିୟତ କରିବାକୁ ଅନୁମତି ପାଇଛି । ସୁତରାଂ ଏହି ଆୟତ ରଦ୍ଦ ହୋଇଯିବା ବିଷୟ ଯଥାର୍ଥ ନୁହେଁ ।

ଏବେ ପ୍ରଶ୍ନ ହେଉଛି ଯେ ବଣ୍ଟନର 'ସମୁଚିତ ପନ୍ଥା' କ'ଣ ? ତନ୍ମଧ୍ୟରୁ ଉତ୍ତରାଧିକାର ବିଧାନ (4: 12-13)ଅନ୍ୟତମ । ଏତଦ୍‌ଭିନ୍ନ ଏପରି କେତେକ ଅଧିକାର ଅଛି ଯାହା ଉତ୍ତରାଧିକାର ବିଧାନରେ ଉଲ୍ଲେଖ କରାଯାଇ ନାହିଁ । କିନ୍ତୁ ସେଗୁଡ଼ିକ ଧାର୍ମିକ, ନୈତିକ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ଗ୍ରହଣୀୟ ମନେ ହୁଏ । ଏପରି ସ୍ଥଳେ ସେମାନେ ସମ୍ପତ୍ତିର ଏକ ତୃତୀୟାଂଶ ପର୍ଯ୍ୟନ୍ତ ଓସିୟତ କରିବା ପାଇଁ ବ୍ୟବସ୍ଥା ଅଛି । ତେଣୁ ଏଠାରେ ଏ ବିଷୟ ପ୍ରତି ବସ୍ତୁତଃ ଧ୍ୟାନ ଆକର୍ଷଣ କରାହେଉଛି ।

فَمَنْ خَافَ مِنْ مُّوْصٍ جَنَفًا اَوْ اِثْمًا فَاَصْلَحَ بَيْنَهُمْ فَلَآ اِثْمَ عَلَيْهِ ؕ اِنَّ اللّٰهَ غَفُوْرٌ رَّحِيْمٌ ۝

୧୮୩. ପୁନଶ୍ଚ ଯେଉଁ ବ୍ୟକ୍ତି କୌଣସି ଓସିୟତକାରୀଙ୍କ ଠାରୁ ପକ୍ଷପାତିତା ବା ପାପର ଆଶଙ୍କା କରେ ଓ ସେମାନଙ୍କ ମଧ୍ୟରେ ମୀମାଂସା କରିଦିଏ ତେବେ ତା'ପାଇଁ (କୌଣସି) ପାପ ହେବନାହିଁ ; ବାସ୍ତବରେ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ ଓ ସଦା କରୁଣାମୟ ।

ରୁ:୨୩

يٰٓاَيُّهَا الَّذِيْنَ اٰمَنُوْا كُتِبَ عَلَيْكُمُ الصِّيَامُ كَمَا كُتِبَ عَلَى الَّذِيْنَ مِنْ قَبْلِكُمْ لَعَلَّكُمْ تَتَّقُوْنَ ۝

୧୮୪. ହେ ବିଶ୍ୱାସକାରୀମାନେ ! ତୁମମାନଙ୍କ ପାଇଁ ରୋଜା ରଖିବା (ମଧ୍ୟ ସେହିପରି) ଧାର୍ଯ୍ୟ କରାଯାଇଛି ଯେପରି ତୁମମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କ ସକାଶେ (ଏହା) ଧାର୍ଯ୍ୟ କରାଯାଇଥିଲା ; ଫଳରେ ତୁମେମାନେ(ଆଧ୍ୟାତ୍ମିକ ଓ ନୈତିକ ଦୁର୍ବଳତାଜନିତ ତ୍ରୁଟିରୁ) ରକ୍ଷା ପାଇବ ।

اَيَّامًا مَّعْدُوْدٰتٍ ؕ فَمَنْ كَانَ مِنْكُمْ مَّرِيْضًا اَوْ عَلٰى سَفَرٍ فَعِدَّةٌ مِّنْ اَيَّامٍ اُخَرَ ؕ وَعَلَى الَّذِيْنَ يُطِيْقُوْنَهٗ فِدْيَةٌ طَعَامُ مِسْكِيْنٍ ؕ فَمَنْ تَطَوَّعَ خَيْرًا فَهُوَ خَيْرٌ لَّهٗ ؕ وَاَنْ تَصُوْمُوْا خَيْرٌ لَّكُمْ اِنْ كُنْتُمْ تَعْلَمُوْنَ ۝

୧୮୫. (ସୁତରାଂ ତୁମେମାନେ ରୋଜା ରଖ) କେତେକ ନିର୍ଦ୍ଦିଷ୍ଟ ଦିନରେ ; ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁ ବ୍ୟକ୍ତି ପୀଡ଼ିତ ଥାଏ ବା ଯାତ୍ରା କରୁଥାଏ ତେବେ (ତାହାକୁ) ଅନ୍ୟଦିନ ମାନଙ୍କରେ (ସେହି) ନିର୍ଦ୍ଦିଷ୍ଟ ସଂଖ୍ୟା (ପୂରଣ) କରିବାକୁ ହେବ ; ଏବଂ ଯେଉଁମାନେ ଏହା (ଅର୍ଥାତ୍ କ୍ଷତିପୂରଣ) ଦେବାକୁ ସମର୍ଥ ସେମାନେ (କ୍ଷତିପୂରଣ ସ୍ୱରୂପ) ଜଣେ (ଲେଖାଏଁ) ଦରିଦ୍ରଲୋକଙ୍କୁ ଖାଇବାକୁ ଦେବା ବିଧେୟ ; ଯେଉଁ ବ୍ୟକ୍ତି ସମ୍ପୂର୍ଣ୍ଣ ଆଜ୍ଞାପାଳନ କରି କୌଣସି ପୁଣ୍ୟ କାର୍ଯ୍ୟ କରିବ, ଏହା ତା ପକ୍ଷରେ ଉତ୍କୃଷ୍ଟ ହେବ ; ଏବଂ ଯଦି ତୁମେ ଜାଣିଥାଅ ତେବେ (ବୁଝିପାରିବ ଯେ) ରୋଜା ରଖିବା ତୁମମାନଙ୍କ ପକ୍ଷରେ ଉତ୍କୃଷ୍ଟତର ।

شَهْرُ رَمَضَانَ الَّذِيْٓ اُنْزِلَ فِيْهِ الْقُرْاٰنُ هُدًى لِّلنَّاسِ وَبَيِّنٰتٍ مِّنَ الْهُدٰى وَالْفُرْقَانِ ۚ فَمَنْ شَهِدَ

୧୮୬. ରମଜାନ ମାସ ହେଉଛି ସେହି ମାସ ଯହିଁରେ (ପବିତ୍ର) କୋରାନ ଅବତୀର୍ଣ୍ଣ ହୋଇଅଛି ; ଯାହା ସମସ୍ତ ଲୋକମାନଙ୍କ ପାଇଁ ସତ୍‌ପଥ (ରୂପେ ପ୍ରେରିତ) ହୋଇଅଛି, ଏବଂ ଯହିଁରେ ପ୍ରକାଶ୍ୟ ପ୍ରମାଣମାନ ରହିଅଛି ; (ଏପରି ପ୍ରମାଣମାନ) ଯାହା ସତ୍‌ପଥ ପ୍ରଦର୍ଶିତ କରେ ଏବଂ ତତ୍‌ସଙ୍ଗେ (ପବିତ୍ର କୋରାନରେ) ଅଲ୍ଲାହଙ୍କର ନିଦର୍ଶନମାନ ମଧ୍ୟ

୧. ଏଠାରେ ଇଚ୍ଛାପତ୍ରକାରୀ ଓ ତା'ର ସେହି ବନ୍ଧୁବାନ୍ଧବମାନଙ୍କ ମଧ୍ୟରେ ମିଳାମିଶା କରାଇଦେବାକୁ କୁହାଯାଇଛି, ଯେଉଁମାନଙ୍କର କ୍ଷତି କରିବାକୁ ବା ଯେଉଁମାନଙ୍କୁ ଉପେକ୍ଷା କରିବାକୁ ଇଚ୍ଛାପତ୍ରକାରୀ ଚାହୁଁଥାଏ ବା ଯାହାଙ୍କ ପକ୍ଷରେ ସେ ଇଚ୍ଛାପତ୍ର କରିଥାଏ । ଇଚ୍ଛାପତ୍ରରେ କୌଣସି ବିଷୟ ଉଲ୍ଲେଖ ଥିବା ସତ୍ତ୍ୱେ ଜଣେ ଅନ୍ୟକୁ ତାହାର ସ୍ୱତ୍ୱ ଦେଇଦେବା ପାଇଁ ମଧ୍ୟ ଆପୋଷ ମିଳାମିଶା ମାଧ୍ୟମରେ ସେମାନଙ୍କୁ ରାଜି କରାଯାଇ ପାରେ । ଯଦି କୌଣସି ବ୍ୟକ୍ତି ନିଜ ସମ୍ପତ୍ତିର ଏକ ତୃତୀୟାଂଶ ପାଇଁ ଇଚ୍ଛାପତ୍ର କରିଦିଏ କିନ୍ତୁ ତା'ର ଉତ୍ତରାଧିକାରୀମାନଙ୍କ ସଂଖ୍ୟା ଏତେ ଅଧିକ ଯେ ଅବଶିଷ୍ଟ ସମ୍ପତ୍ତିରେ ସେମାନଙ୍କ ପ୍ରାପ୍ୟ ଅତି ନଗଣ୍ୟ ହେବ ତେବେ ଏପରି ପରିସ୍ଥିତିରେ ସେହି ଇଚ୍ଛାପତ୍ରରେ କିଛି ପରିବର୍ତ୍ତନ କରାଗଲେ ସେଥିରେ କୌଣସି ଦୋଷ ନାହିଁ ।

୨. ଭ୍ରମଣକାରୀ ବା ବ୍ୟାଧିଗ୍ରସ୍ତ ବ୍ୟକ୍ତିଙ୍କୁ ପରେ ଅବଶିଷ୍ଟ ଉପବାସ କରିବାକୁ ହେବ । ବ୍ୟାଧିକୁ ଆଳ କରି 'ଫିଦିୟା' ବା କ୍ଷତିପୂରଣ ଦେବା ଯଥାର୍ଥ ନୁହେଁ । ଅବଶ୍ୟ ସ୍ଥାୟୀ ଭାବରେ ରୋଗଗ୍ରସ୍ତ ହୋଇଥିଲେ ଭିନ୍ନ କଥା ।

مِنْكُمُ الشَّهْرَ فَلْيَصُمْهُ ۖ وَمَنْ كَانَ مَرِيضًا أَوْ عَلَىٰ
سَفَرٍ فَعِدَّةٌ مِنْ أَيَّامٍ أُخَرَ ۗ يُرِيدُ اللَّهُ بِكُمُ
الْيُسْرَ وَلَا يُرِيدُ بِكُمُ الْعُسْرَ وَلِتُكْمِلُوا الْعِدَّةَ
وَلِتُكَبِّرُوا اللَّهَ عَلَىٰ مَا هَدَاكُمْ وَلَعَلَّكُمْ تَشْكُرُونَ ﴿١٨٦﴾

ରହିଅଛି ; ସୁତରାଂ ତୁମମାନଙ୍କ ମଧ୍ୟରୁ ଯେଉଁ ବ୍ୟକ୍ତି ଏହି ମାସରେ (ପୀଡ଼ିତ ବା ଯାତ୍ରୀ ନଥାଇ ଗୃହରେ) ଉପସ୍ଥିତ ଥିବ, ତା'ପାଇଁ ସେହି ମାସରେ ରୋଜା ରଖିବା ଉଚିତ ; ଏବଂ ଯେଉଁ ବ୍ୟକ୍ତି ପୀଡ଼ିତ ଥାଏ ବା ଯାତ୍ରା କରୁଥାଏ ତାହାକୁ ଅନ୍ୟାନ୍ୟ ଦିନରେ ଏହି ସଂଖ୍ୟା ପୂରଣ କରିବାକୁ ହେବ ; ଅଲ୍ଲାହ ତୁମମାନଙ୍କ ପାଇଁ ସହଜତା ଇଚ୍ଛା କରନ୍ତି; ଏବଂ ତୁମମାନଙ୍କ ପାଇଁ କଠିନତା ଇଚ୍ଛା କରନ୍ତି ନାହିଁ (ଏବଂ ତୁମେମାନେ କଠିନତାରୁ ରକ୍ଷାପାଇବା ପାଇଁ ସେ ଏହି ଆଦେଶ ଦେଇଛନ୍ତି) ଯଦ୍ଦ୍ୱାରା ତୁମେମାନେ (ନିର୍ଦ୍ଦିଷ୍ଟ) ସଂଖ୍ୟା ପୂରଣ କରିପାରିବ ; ଏବଂ ଅଲ୍ଲାହ ତୁମମାନଙ୍କୁ ସତ୍‌ପଥ ଦେଖାଇଥିବାରୁ ତାଙ୍କ ମହିମା ଗାନ କର ; ଫଳରେ ତୁମେମାନେ (ତାଙ୍କଠାରେ) କୃତଜ୍ଞ ହେବ ।

وَإِذَا سَأَلَكَ عِبَادِي عَنِّي فَإِنِّي قَرِيبٌ ۖ أُجِيبُ دَعْوَةَ
الدَّاعِ إِذَا دَعَانِ ۖ فَلْيَسْتَجِيبُوا لِي وَلْيُؤْمِنُوا بِي لَعَلَّهُمْ
يَرْشُدُونَ ﴿١٨٧﴾

୧୮୭. ଏବଂ (ହେ ରସୁଲ !) ଯେବେ ଆମ୍ଭ ଭକ୍ତମାନେ ତୁମକୁ ଆମ୍ଭ ସଂକ୍ରାନ୍ତରେ ପ୍ରଶ୍ନ କରିବେ ତେବେ (କୁହ) ଆମ୍ଭେ ସେମାନଙ୍କ ନିକଟରେ ଅଛୁ ; ପ୍ରାର୍ଥନାକାରୀ ଯେବେ ବି ଆମ୍ଭକୁ ପ୍ରାର୍ଥନାକରେ ଆମ୍ଭେ ତାହାର ପ୍ରାର୍ଥନାକୁ ଗ୍ରହଣ କରିଥାଉ ; ସୁତରାଂ ଆମ୍ଭର ଆଦେଶ ଗ୍ରହଣ କରିବା ଓ ଆମ୍ଭ ଉପରେ ବିଶ୍ୱାସ ସ୍ଥାପନ କରିବା ସେମାନଙ୍କ ପକ୍ଷେ ବିଧେୟ, ଫଳରେ ସେମାନେ ସତ୍‌ପଥଗାମୀ ହେବେ ।

أُحِلَّ لَكُمْ لَيْلَةَ الصِّيَامِ الرَّفَثُ إِلَىٰ نِسَائِكُمْ ۚ هُنَّ
لِبَاسٌ لَكُمْ وَأَنْتُمْ لِبَاسٌ لَهُنَّ ۗ عَلِمَ اللَّهُ أَنَّكُمْ
كُنْتُمْ تَخْتَانُونَ أَنْفُسَكُمْ فَتَابَ عَلَيْكُمْ وَعَفَا
عَنْكُمْ ۖ فَالْآنَ بَاشِرُوهُنَّ وَابْتَغُوا مَا كَتَبَ اللَّهُ لَكُمْ ۚ
وَكُلُوا وَاشْرَبُوا حَتَّىٰ يَتَبَيَّنَ لَكُمُ الْخَيْطُ الْأَبْيَضُ
مِنَ الْخَيْطِ الْأَسْوَدِ مِنَ الْفَجْرِ ۖ ثُمَّ أَتِمُّوا الصِّيَامَ

୧୮୮. ତୁମମାନଙ୍କୁ ରୋଜା ରଖିଥିବା ରାତ୍ରିମାନଙ୍କରେ ନିଜ ପତ୍ନୀମାନଙ୍କ ନିକଟକୁ ଯିବା ସକାଶେ ଅନୁମତି ଦିଆଯାଇଛି ; ସେମାନେ ତୁମମାନଙ୍କ ପାଇଁ ଏକ (ପ୍ରକାର) ପରିଧାନ[୧] (ସଦୃଶ) ଓ ତୁମେମାନେ ସେମାନଙ୍କ ପାଇଁ ଏକ (ପ୍ରକାର) ପରିଧାନ (ସଦୃଶ) ; ତୁମେମାନେ ନିଜ ପ୍ରବୃତ୍ତିକୁ ଦମନ କରୁଥିବା ବିଷୟ ଅଲ୍ଲାହଙ୍କୁ ଜଣାଅଛି ; ତେଣୁ ସେ ତୁମମାନଙ୍କ ଉପରେ ଅନୁଗ୍ରହ-ପୂର୍ବକ ଦୃଷ୍ଟି ଦେଇଛନ୍ତି ତଥା ତୁମମାନଙ୍କ (ଏହି ଅବସ୍ଥାର) ସୁଧାର କରି ଦେଇଛନ୍ତି; ଅତଏବ ତୁମେମାନେ (ବର୍ତ୍ତମାନ ଅନାୟାସରେ) ସେମାନଙ୍କ ନିକଟକୁ ଯାଅ ; ଏବଂ ଅଲ୍ଲାହ ତୁମମାନଙ୍କ ପାଇଁ ଯାହା କିଛି ନିୟତ କରିଛନ୍ତି ତାହାକୁ ଅନ୍ୱେଷଣ କର ; ଏବଂ ତୁମମାନଙ୍କୁ ପ୍ରଭାତର ଧଳାରେଖା କଳାରେଖାଠାରୁ ପୃଥକ୍ ଦେଖାଯିବା ପର୍ଯ୍ୟନ୍ତ ଭୋଜନ କର ଓ ପାନକର ; ତା'ପରେ (ପ୍ରଭାତରୁ ରାତ୍ରିରେ ଆଗମନ) ପର୍ଯ୍ୟନ୍ତ ରୋଜା ସମାପନ କର ଏବଂ ଯେବେ ତୁମେ ମସଜିଦରେ ''ଏତକାଫ' ପାଳନ କରୁଥାଅ ସେତେବେଳେ

୧. ଅର୍ଥ ଜଣେ ଅନ୍ୟର ସଂରକ୍ଷକ । ଜଣେ ଥିଲେ ଅପର ନାମରେ ଦୋଷାରୋପ କରିବାକୁ ଲୋକେ ଭୟ କରିଥା'ନ୍ତି । ପରିଧାନ ଯେପରି ଶରୀରକୁ ସଂରକ୍ଷଣ କରିଥାଏ ସେହିପରି ପତି ଓ ପତ୍ନୀ ପରସ୍ପରର ସଂରକ୍ଷକ ଅଟନ୍ତି ।

إِلَى ٱللَّيْلِ ۚ وَلَا تُبَٰشِرُوهُنَّ وَأَنتُمْ عَٰكِفُونَ فِى ٱلْمَسَٰجِدِ ۗ تِلْكَ حُدُودُ ٱللَّهِ فَلَا تَقْرَبُوهَا ۗ كَذَٰلِكَ يُبَيِّنُ ٱللَّهُ ءَايَٰتِهِۦ لِلنَّاسِ لَعَلَّهُمْ يَتَّقُونَ ١٨٨

ସେ (ପତ୍ନୀ) ମାନଙ୍କ ପାଖକୁ ଯାଅ ନାହିଁ; ଏହା ଅଲ୍ଲାହ୍‌ଙ୍କ (ନିର୍ଦ୍ଧାରିତ) ସୀମା ଅଟେ ; ତେଣୁ ତୁମେ ସେଗୁଡ଼ିକର ନିକଟକୁ (ମଧ୍ୟ) ଯାଅନାହିଁ ; ଅଲ୍ଲାହ୍ ଏହିପରି ଭାବରେ ଲୋକମାନଙ୍କ ପାଇଁ ନିଜର ଆଦେଶ ବର୍ଣ୍ଣନା କରନ୍ତି ; ଯଦ୍ଵାରା ସେମାନେ (ଧ୍ୱଂସମୁଖରୁ) ରକ୍ଷା ପାଇବେ ।

وَلَا تَأْكُلُوٓا۟ أَمْوَٰلَكُم بَيْنَكُم بِٱلْبَٰطِلِ وَتُدْلُوا۟ بِهَآ إِلَى ٱلْحُكَّامِ لِتَأْكُلُوا۟ فَرِيقًا مِّنْ أَمْوَٰلِ ٱلنَّاسِ بِٱلْإِثْمِ وَأَنتُمْ تَعْلَمُونَ ١٨٩

୧୮୯. ଏବଂ ତୁମେମାନେ ମିଥ୍ୟା (ଓ ପ୍ରତାରଣା) ଦ୍ୱାରା ଆପଣା (ଭାଇମାନଙ୍କ) ସମ୍ପତ୍ତିକୁ[1] ନିଜନିଜ ମଧ୍ୟରେ (ମିଳିମିଶି) ଆତ୍ମସାତ୍ କରନାହିଁ ; ଏବଂ ତୁମେମାନେ ଅନ୍ୟାୟ-ପୂର୍ବକ ଜାଣିଶୁଣି ସର୍ବସାଧାରଣ ସମ୍ପତ୍ତିର କୌଣସି ଅଂଶକୁ ଆତ୍ମସାତ୍ କରିବା ଉଦ୍ଦେଶ୍ୟରେ ତାହାକୁ (ଉତ୍କୋଚ ରୂପେ) କର୍ତ୍ତୃପକ୍ଷଙ୍କ ନିକଟରେ ଉପସ୍ଥାପିତ କରନାହିଁ ।

ରୁ:୨୪

يَسْـَٔلُونَكَ عَنِ ٱلْأَهِلَّةِ ۖ قُلْ هِىَ مَوَٰقِيتُ لِلنَّاسِ وَٱلْحَجِّ ۗ وَلَيْسَ ٱلْبِرُّ بِأَن تَأْتُوا۟ ٱلْبُيُوتَ مِن ظُهُورِهَا وَلَٰكِنَّ ٱلْبِرَّ مَنِ ٱتَّقَىٰ ۗ وَأْتُوا۟ ٱلْبُيُوتَ مِنْ أَبْوَٰبِهَا ۚ وَٱتَّقُوا۟ ٱللَّهَ لَعَلَّكُمْ تُفْلِحُونَ ١٩٠

୧୯୦. ସେମାନେ ତୁମକୁ ଚନ୍ଦ୍ର ସଂକ୍ରାନ୍ତରେ ପ୍ରଶ୍ନ କରୁଛନ୍ତି ; ତୁମେ କୁହ "ଏହା ଲୋକମାନଙ୍କର (ସାଧାରଣ କାର୍ଯ୍ୟ ପାଇଁ) ଓ ହଜ ଯାତ୍ରା ପାଇଁ ସମୟ ପରିମାପକ ଅଟେ ;" ତୁମେମାନେ ଗୃହର ପଶ୍ଚାତଦିଗରୁ[2] ତନ୍ମଧ୍ୟରେ ପ୍ରବେଶ କରିବାରେ କୌଣସି ପୁଣ୍ୟ ନାହିଁ ; ବରଂ ଅଲ୍ଲାହ୍‌ଙ୍କୁ ଭୟ କରୁଥିବା ବ୍ୟକ୍ତି (ପ୍ରକୃତ) ଧର୍ମ ପରାୟଣ (ବ୍ୟକ୍ତି) ଅଟେ ; ଏବଂ ତୁମେମାନେ (ସଦର) ଦୁଆର ଦେଇ ଗୃହ ମଧ୍ୟରେ ପ୍ରବେଶ କର ; ଏବଂ ଅଲ୍ଲାହ୍‌ଙ୍କୁ ଭୟକର, ତା'ହେଲେ ତୁମେମାନେ କୃତକାର୍ଯ୍ୟ ହେବ ।

---

୧· ପବିତ୍ର କୋରାନରେ ସାମାଜିକ ଜୀବନ ଉପରେ ଗୁରୁତ୍ୱ ଆରୋପ କରାଯାଇଛି ; ସେଥିଯୋଗୁଁ ସର୍ବସାଧାରଣ ସମ୍ପତ୍ତିକୁ ବା ଜାତୀୟ ସମ୍ପତ୍ତିକୁ ନିଜର ସମ୍ପତ୍ତି ବୋଲି କୁହାଯାଇଛି । ତଦ୍ୱାରା ଏଠାରେ ସୂଚାଇ ଦିଆଯାଉଛି ଯେ, ଯେଉଁ ବ୍ୟକ୍ତି ଜାତୀୟ ସମ୍ପତ୍ତିର ବା ଅନ୍ୟ କୌଣସି ବ୍ୟକ୍ତିର କ୍ଷତି ସାଧନ କରେ ସେ ପ୍ରକୃତରେ ନିଜର କ୍ଷତି କରିଥାଏ । ଏଠାରେ ସମ୍ପତ୍ତିର ଅର୍ଥ ସମାଜର ସମ୍ପତ୍ତି ; କିନ୍ତୁ ଉପରୋକ୍ତ ସିଦ୍ଧାନ୍ତ ପ୍ରତି ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ତାହାକୁ ନିଜ ସମ୍ପତ୍ତି ବୋଲି କୁହାଯାଇଛି ।

୨· ଆରବବାସୀମାନେ ହଜ (ତୀର୍ଥ) ଯାତ୍ରା ସମୟରେ ନିଜ ଘରକୁ ଫେରିଆସିବା ଆବଶ୍ୟକ ହେଲେ ସେମାନେ କାନ୍ଥ ଡେଇଁ ଘର ଭିତରେ ପ୍ରବେଶ କରୁଥିଲେ । ଏଠାରେ ସେପରି କାର୍ଯ୍ୟକୁ ନିଷେଧ କରାଯାଇଛି । ପ୍ରକୃତରେ ପୁଣ୍ୟ ଅର୍ଜନ କରିବା ଏକ ଆଧ୍ୟାତ୍ମିକ ବିଷୟ । ସୁତରାଂ ଏଥିପାଇଁ ଯଥାର୍ଥ ପନ୍ଥା ଅବଲମ୍ବନ କରିବା ଉଚିତ ।

୧୯୧. ଏବଂ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ସେମାନଙ୍କ ସହିତ ଯୁଦ୍ଧ[୧] କର ଯେଉଁମାନେ ତୁମମାନଙ୍କ ବିରୁଦ୍ଧରେ ଯୁଦ୍ଧ କରୁଛନ୍ତି କିନ୍ତୁ ସୀମା ଲଙ୍ଘନ କର ନାହିଁ ; (ଏବଂ ମନେରଖ ଯେ) ବାସ୍ତବରେ ଅଲ୍ଲାହ ସୀମାଲଙ୍ଘନକାରୀମାନଙ୍କୁ ଆଦୌ ପ୍ରେମ କରନ୍ତି ନାହିଁ ।

وَ قَاتِلُوْا فِيْ سَبِيْلِ اللّٰهِ الَّذِيْنَ يُقَاتِلُوْنَكُمْ وَ لَا تَعْتَدُوْا ؕ اِنَّ اللّٰهَ لَا يُحِبُّ الْمُعْتَدِيْنَ ﴿۱۹۱﴾

୧୯୨. ଏବଂ (ତୁମେମାନେ) ଯେଉଁଠାରେ ମଧ୍ୟ ସେ (ଅଯଥା ଯୁଦ୍ଧରତ ବ୍ୟକ୍ତି) ମାନଙ୍କୁ ପାଅ ସେଠାରେ ସେମାନଙ୍କୁ ହତ୍ୟା କର ଏବଂ ତୁମେମାନେ ସେମାନଙ୍କୁ ସେ ସ୍ଥାନରୁ ବିତାଡ଼ିତ କରିଦିଅ ଯେଉଁଠାରୁ ସେମାନେ ତୁମମାନଙ୍କୁ ବିତାଡ଼ିତ କରିଥିଲେ ; କାରଣ (ଏପରି) ଉପଦ୍ରବ ହତ୍ୟା ଅପେକ୍ଷା ଅଧିକ କ୍ଷତିକାରକ ; ଏବଂ ତୁମେମାନେ ସେମାନଙ୍କ ସହିତ ମସ୍‌ଜିଦ-ଏ-ହରାମର ଆଖପାଖରେ (ସେପର୍ଯ୍ୟନ୍ତ) ଯୁଦ୍ଧ କରନାହିଁ ଯେପର୍ଯ୍ୟନ୍ତ ସେମାନେ (ନିଜେ) ତୁମମାନଙ୍କ ସହିତ ସେଠାରେ ଯୁଦ୍ଧ (ଆରମ୍ଭ) ନ କରନ୍ତି ; କିନ୍ତୁ ଯଦି ସେମାନେ (ସେଠାରେ ମଧ୍ୟ) ତୁମମାନଙ୍କ ସହିତ ଯୁଦ୍ଧ କରନ୍ତି ତେବେ ତୁମେମାନେ (ମଧ୍ୟ) ସେମାନଙ୍କୁ ହତ୍ୟାକର ; ଏହି ଅବିଶ୍ୱାସକାରୀମାନଙ୍କ ସକାଶେ ଏହା ହିଁ ପ୍ରତିଫଳ ।

وَ اقْتُلُوْهُمْ حَيْثُ ثَقِفْتُمُوْهُمْ وَ اَخْرِجُوْهُمْ مِّنْ حَيْثُ اَخْرَجُوْكُمْ وَ الْفِتْنَةُ اَشَدُّ مِنَ الْقَتْلِ ۚ وَ لَا تُقٰتِلُوْهُمْ عِنْدَ الْمَسْجِدِ الْحَرَامِ حَتّٰى يُقٰتِلُوْكُمْ فِيْهِ ۚ فَاِنْ قٰتَلُوْكُمْ فَاقْتُلُوْهُمْ ؕ كَذٰلِكَ جَزَآءُ الْكٰفِرِيْنَ ﴿۱۹۲﴾

୧୯୩. ତା'ପରେ ଯଦି ସେମାନେ ନିବୃତ୍ତ ହୁଅନ୍ତି ତାହାହେଲେ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ ଓ ସଦା କରୁଣାମୟ ।

فَاِنِ انْتَهَوْا فَاِنَّ اللّٰهَ غَفُوْرٌ رَّحِيْمٌ ﴿۱۹۳﴾

୧୯୪. ତୁମେମାନେ ସେମାନଙ୍କ ସହିତ ସେପର୍ଯ୍ୟନ୍ତ ଯୁଦ୍ଧ କର ଯେପରି କୌଣସି ବିଦ୍ରୋହ ବାକି ନ ରହେ ଓ ଧର୍ମ ଅଲ୍ଲାହଙ୍କ ପାଇଁ ହିଁ ସ୍ୱୀକୃତ ହୋଇଯାଏ ; କିନ୍ତୁ ଯଦି ସେମାନେ ନିବୃତ୍ତ ହୁଅନ୍ତି ତେବେ (ମନେରଖ) ଅତ୍ୟାଚାରୀମାନଙ୍କ ବ୍ୟତୀତ ଅନ୍ୟ କାହାରି ସହିତ ଶତ୍ରୁତା କରିବା ଉଚିତ ନୁହେଁ ।

وَ قٰتِلُوْهُمْ حَتّٰى لَا تَكُوْنَ فِتْنَةٌ وَّ يَكُوْنَ الدِّيْنُ لِلّٰهِ ؕ فَاِنِ انْتَهَوْا فَلَا عُدْوَانَ اِلَّا عَلَى الظّٰلِمِيْنَ ﴿۱۹۴﴾

---

୧. ଶତ୍ରୁମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଯେଉଁସବୁ ଆୟତ ମାଧ୍ୟମରେ ମୁସଲମାନମାନଙ୍କୁ ଅନୁମତି ଦିଆଯାଇଛି ଏହି ଆୟତଟି ସେଗୁଡିକ ମଧ୍ୟରୁ ଅନ୍ୟତମ । ଧର୍ମଯୁଦ୍ଧ କେଉଁ କେଉଁ ସର୍ତ୍ତ ସାପେକ୍ଷ, ଏହି ଆୟତରେ ସେ ବିଷୟରେ ବର୍ଣ୍ଣନା ରହିଅଛି । ସେଗୁଡିକ ହେଉଛି–

(କ) ଅଲ୍ଲାହଙ୍କ ପଥରେ ସ୍ଥାପିତ ପ୍ରତିବନ୍ଧକର ଅପସାରଣ ଅର୍ଥାତ୍ ଧର୍ମଗତ ବିଶ୍ୱାସ ଓ ପ୍ରୟୋଗର ସ୍ୱାଧୀନତା ପ୍ରଦାନ ପାଇଁ ଯୁଦ୍ଧ କରାଯାଇ ପାରିବ ।

(ଖ) ଯେଉଁମାନେ ପ୍ରଥମେ ମୁସଲମାନମାନଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବେ କେବଳ ସେହିମାନଙ୍କ ବିରୁଦ୍ଧରେ ଯୁଦ୍ଧ କରାଯାଇ ପାରିବ ।

(ଗ) ଶତ୍ରୁପକ୍ଷ ଅସ୍ତ୍ର ପ୍ରୟୋଗରୁ ବିରତ ହେବା ସଙ୍ଗେ ସଙ୍ଗେ ମୁସଲମାନମାନଙ୍କୁ ଯୁଦ୍ଧ ବନ୍ଦ କରିବାକୁ ହେବ ।

اَلشَّهْرُ الْحَرَامُ بِالشَّهْرِ الْحَرَامِ وَالْحُرُمٰتُ قِصَاصٌ ۚ فَمَنِ اعْتَدٰى عَلَيْكُمْ فَاعْتَدُوْا عَلَيْهِ بِمِثْلِ مَا اعْتَدٰى عَلَيْكُمْ ۪ وَاتَّقُوا اللّٰهَ وَاعْلَمُوْٓا اَنَّ اللّٰهَ مَعَ الْمُتَّقِيْنَ ﴿١٩٤﴾

୧୯୪. ପବିତ୍ର ମାସର[୧] (ଅବମାନନା କଲେ ତାର) ପ୍ରତିଶୋଧ (ସେହି) ପବିତ୍ର ମାସ (ରେ ହିଁ ନେବା ସମୀଚୀନ) ଅଟେ ; ଏବଂ ସକଳ ପବିତ୍ର ପଦାର୍ଥର (ଅବମାନନାର) ପ୍ରତିଶୋଧ ନିଆଯାଏ ; ସୁତରାଂ ଯେଉଁ ବ୍ୟକ୍ତି ତୁମମାନଙ୍କ ଉପରେ ଅତ୍ୟାଚାର କରେ ତୁମେମାନେ ମଧ୍ୟ ତା ଠାରୁ (ତାହାର) ଅତ୍ୟାଚାରର ସେତିକି ପରିମାଣ ପ୍ରତିଶୋଧ ନିଅ ଯେତିକି ପରିମାଣ ଅତ୍ୟାଚାର ତୁମମାନଙ୍କ ପ୍ରତି ସେ କରିଛି ଏବଂ ଅଲ୍ଲାହ୍‌ଙ୍କୁ ଭୟ କର ; ଏବଂ ଜାଣିଥାଅ ଯେ ଅଲ୍ଲାହ୍ ନିଶ୍ଚୟ ଧର୍ମଭୀରୁମାନଙ୍କ ସଙ୍ଗରେ ଅଛନ୍ତି ।

وَاَنْفِقُوْا فِيْ سَبِيْلِ اللّٰهِ وَلَا تُلْقُوْا بِاَيْدِيْكُمْ اِلَى التَّهْلُكَةِ ۛ وَاَحْسِنُوْا ۛ اِنَّ اللّٰهَ يُحِبُّ الْمُحْسِنِيْنَ ﴿١٩٥﴾

୧୯୬. ଏବଂ ଅଲ୍ଲାହ୍‌ଙ୍କ ପଥରେ (ଧନ ଓ ଜୀବନ) ବ୍ୟୟ କର ; ଏବଂ ସ୍ୱହସ୍ତରେ (ନିଜେ ନିଜକୁ) ବିନାଶ କର ନାହିଁ ; ଏବଂ ହିତ ସାଧନ କର ; ବାସ୍ତବରେ ଅଲ୍ଲାହ୍ ହିତକାରୀମାନଙ୍କୁ ପ୍ରେମ କରନ୍ତି ।

وَاَتِمُّوا الْحَجَّ وَالْعُمْرَةَ لِلّٰهِ ۗ فَاِنْ اُحْصِرْتُمْ فَمَا اسْتَيْسَرَ مِنَ الْهَدْيِ ۚ وَلَا تَحْلِقُوْا رُءُوْسَكُمْ حَتّٰى يَبْلُغَ الْهَدْيُ مَحِلَّهٗ ۗ فَمَنْ كَانَ مِنْكُمْ مَّرِيْضًا اَوْ بِهٖٓ اَذًى مِّنْ رَّاْسِهٖ فَفِدْيَةٌ مِّنْ صِيَامٍ اَوْ صَدَقَةٍ اَوْ نُسُكٍ ۚ فَاِذَآ اَمِنْتُمْ ۥ فَمَنْ تَمَتَّعَ بِالْعُمْرَةِ اِلَى الْحَجِّ فَمَا اسْتَيْسَرَ مِنَ الْهَدْيِ ۚ فَمَنْ لَّمْ يَجِدْ فَصِيَامُ ثَلٰثَةِ اَيَّامٍ فِى الْحَجِّ وَسَبْعَةٍ اِذَا رَجَعْتُمْ ۗ تِلْكَ عَشَرَةٌ كَامِلَةٌ ۗ ذٰلِكَ لِمَنْ

୧୯୭. ଏବଂ ଅଲ୍ଲାହ୍‌ଙ୍କ (ସନ୍ତୋଷ) ପାଇଁ ହଜ ଓ ଉମରା[୨] ପାଳନ କର ; କିନ୍ତୁ ଯଦି ତୁମମାନଙ୍କୁ (କୌଣସି କାରଣରୁ ହଜ ଓ ଉମରା କରିବାରେ) ବାଧା ଦିଆଯାଏ, ତେବେ ଯାହାକିଛି କୁର୍ବାନି ଉପଲବ୍ଧ ହୁଏ (ତାହାକୁ ଜବେହ କର) ; ଏବଂ କୁର୍ବାନି (ପଶୁ) ନିଜ ଲକ୍ଷ୍ୟ ସ୍ଥଳରେ (ନ) ପହଞ୍ଚିବା ପର୍ଯ୍ୟନ୍ତ ନିଜ ମସ୍ତକ ମୁଣ୍ଡନ କରନାହିଁ ; ଏବଂ ତୁମମାନଙ୍କ ମଧ୍ୟରୁ ଯେ କେହି ପୀଡ଼ିତ ହୁଏ ବା ଯାହାର ମସ୍ତକରେ (ପୀଡ଼ା ଯୋଗୁ) ଯନ୍ତ୍ରଣା ହେଉଥାଏ (ଏବଂ ସେ ମସ୍ତକ ମୁଣ୍ଡନ କରେ) ତେବେ (ଏଥିଯୋଗୁ) ରୋଜା, ଦାନ ବା କୁର୍ବାନି ପ୍ରକାରର କିଛି କ୍ଷତିପୂରଣ ଦେବାକୁ ହେବ ; ତା'ପରେ ଯେବେ ତୁମେମାନେ ନିରାପଦ ଅବସ୍ଥାରେ ଉପନୀତ ହେବ ତେବେ (ସେତେବେଳେ) ଯେଉଁ ବ୍ୟକ୍ତି ହଜ ସଙ୍ଗେ ଉମ୍‌ରାର ଲାଭ ହାସଲ କରିବ ତେବେ ଯେଉଁ କୁର୍ବାନି ସହଜରେ ମିଳିବ (ତାହାକୁ କୁର୍ବାନି କରୁ) ; ଏବଂ ଯେ (କିଛି କୁର୍ବାନି କରିବାକୁ ସୁଯୋଗ) ପାଏ ନାହିଁ ତା ପକ୍ଷରେ ହଜ (ସମୟ) ମଧ୍ୟରେ ତିନିଦିନ ରୋଜା ରଖିବା ଓ (ହେ ମୁସଲମାନମାନେ !) ତୁମେମାନେ (ସ୍ୱଗୃହକୁ ହଜରୁ) ପ୍ରତ୍ୟାବର୍ତ୍ତନ କରିବା ପରେ ସାତ ଦିନ୍ (ନିଶ୍ଚିତ ରୂପେ) ରୋଜା ରଖିବାକୁ ହେବ ;

---

୧. ଜିଲକଦ, ଜିଲହଜ, ମୁହରମ୍ ଓ ରଜବ, ଏ ମାସଗୁଡିକରେ ଯୁଦ୍ଧ ବିଗ୍ରହକୁ ବାରଣ କରାଯାଇଛି ।

୨. ଉମରା ବା କ୍ଷୁଦ୍ର ତୀର୍ଥଯାତ୍ରାରେ ମଧ୍ୟ ହଜ ବ୍ରତ ପାଳନର ବିଧି ବିଧାନ ଅନୁସୃତ ହୋଇଥାଏ । ଅବଶ୍ୟ ପଶୁବଳି ବାଧ୍ୟତାମୂଳକ ନୁହେଁ । ଉମରା ବର୍ଷର ଯେ କୌଣସି ସମୟରେ ପାଳିତ ହୋଇପାରେ, କିନ୍ତୁ ହଜ କେବଳ ଜିଲହଜ ମାସରେ ହୁଏ ।

لَمْ يَكُنْ أَهْلُهُ حَاضِرِي الْمَسْجِدِ الْحَرَامِ ۚ وَاتَّقُوا اللَّهَ وَاعْلَمُوا أَنَّ اللَّهَ شَدِيدُ الْعِقَابِ ﴿١٩٦﴾

ଏହିରୂପେ ଦଶ ଦିନ (ରୋଜା) ସମ୍ପୂର୍ଣ୍ଣ ହୁଏ ; ଏ (ଆଦେଶ) ସେହି ବ୍ୟକ୍ତି ପାଇଁ ଅଟେ ଯାହାର ପରିବାରବର୍ଗ ମସଜିଦ-ଏ-ହରାମ ନିକଟରେ ରହୁ ନ ଥାନ୍ତି ; ଏବଂ ତୁମେମାନେ ଅଲ୍ଲାହ୍‌ଙ୍କୁ ଭୟକର ଓ ଜାଣିରଖ ଯେ ଅଲ୍ଲାହ୍‌ଙ୍କ ଶାସ୍ତି ବାସ୍ତବରେ କଠୋର ଅଟେ ।

ରୁ:୨୫

الْحَجُّ أَشْهُرٌ مَّعْلُومَاتٌ ۚ فَمَن فَرَضَ فِيهِنَّ الْحَجَّ فَلَا رَفَثَ وَلَا فُسُوقَ وَلَا جِدَالَ فِي الْحَجِّ ۗ وَمَا تَفْعَلُوا مِنْ خَيْرٍ يَعْلَمْهُ اللَّهُ ۗ وَتَزَوَّدُوا فَإِنَّ خَيْرَ الزَّادِ التَّقْوَىٰ ۚ وَاتَّقُونِ يَا أُولِي الْأَلْبَابِ ﴿١٩٧﴾

୧୯୮. ହଜ୍ଜ ମାସଗୁଡ଼ିକ ସମସ୍ତଙ୍କର ଜଣାଶୁଣା ଅଟେ ; ସୁତରାଂ ଯେଉଁ ବ୍ୟକ୍ତି ସେହି (ମାସ) ଗୁଡ଼ିକରେ ହଜ୍ଜ କରିବାକୁ ଦୃଢ଼ (ସଂକଳ୍ପ) କରେ ସେ (ମନେରଖୁ ଯେ) ହଜ୍ଜ (ଦିନମାନଙ୍କ) ମଧ୍ୟରେ କୌଣସି ପ୍ରକାର ସମ୍ଭୋଗ ସମ୍ବନ୍ଧୀୟ କଥା କହିବା ବା କୌଣସି ପ୍ରକାର ଅବଜ୍ଞା କରିବା ବା କୌଣସି ପ୍ରକାର କଳହ କରିବା ଉଚିତ ହେବ ନାହିଁ ; ଏବଂ ତୁମେମାନେ ଯାହାକିଛି ପୁଣ୍ୟ (କାର୍ଯ୍ୟ) କର, ଅଲ୍ଲାହ୍ ତାହାକୁ (ନିଶ୍ଚୟ) ଜାଣନ୍ତି ଏବଂ ତୁମେମାନେ (ନିଜ ସହ) ପାଥେୟ ନିଅ ଓ (ମନେରଖ ଯେ) ଉତ୍କୃଷ୍ଟ ପାଥେୟ ହେଉଛି ଧର୍ମଭୀରୁତା ; ଏବଂ ହେ ବୁଦ୍ଧିମାନ ବ୍ୟକ୍ତିମାନେ ! ଆମକୁ ହିଁ ଭୟକର ।

لَيْسَ عَلَيْكُمْ جُنَاحٌ أَن تَبْتَغُوا فَضْلًا مِّن رَّبِّكُمْ ۚ فَإِذَا أَفَضْتُم مِّنْ عَرَفَاتٍ فَاذْكُرُوا اللَّهَ عِندَ الْمَشْعَرِ الْحَرَامِ ۖ وَاذْكُرُوهُ كَمَا هَدَاكُمْ وَإِن كُنتُم مِّن قَبْلِهِ لَمِنَ الضَّالِّينَ ﴿١٩٨﴾

୧୯୯. ନିଜ ପାଳନକର୍ତ୍ତାଙ୍କଠାରୁ (ହଜ୍ଜ ସମୟ ମଧ୍ୟରେ) ତୁମେମାନେ କୌଣସି କୃପା[୧] ଅନ୍ୱେଷଣ କରିବା ତୁମମାନଙ୍କ ପକ୍ଷରେ ପାପ ନୁହେଁ ; ତା'ପରେ ଯେତେବେଳେ ତୁମେମାନେ 'ଅରଫାତ'[୨] (ନାମକ ସ୍ଥାନ)ରୁ ଫେରିବ ସେତେବେଳେ 'ମସଅରିଲ-ହରାମ'[୩] (ନାମକ ସ୍ଥାନ) ନିକଟରେ ଅଲ୍ଲାହ୍‌ଙ୍କୁ ସ୍ମରଣ କର ; ଏବଂ ତୁମମାନଙ୍କୁ ସେ ଯେପରି ସତ୍‌ପଥ ପ୍ରଦର୍ଶନ କରିଛନ୍ତି ତୁମେମାନେ (ସେହିପରି) ତାହାଙ୍କୁ ସ୍ମରଣ କର ; ଏବଂ ଏଥିପୂର୍ବେ ତୁମେମାନେ ବାସ୍ତବରେ ପଥଭ୍ରଷ୍ଟ-ମାନଙ୍କ ମଧ୍ୟରେ ଥିଲ ।

୧. ଅଧିକ ସଂଖ୍ୟକ ମୁସଲମାନ ଯେପରି ତୀର୍ଥଯାତ୍ରା କରିପାରିବେ ସେହି ଲକ୍ଷ୍ୟରେ ତୀର୍ଥଯାତ୍ରୀମାନଙ୍କୁ ମଧ୍ୟ ବାଣିଜ୍ୟ ବ୍ୟବସାୟ କରିବାକୁ ଅନୁମତି ଦିଆଯାଇଛି । ଯେଉଁମାନଙ୍କ ପାଖରେ ନଗଦ ଧନ ନାହିଁ ସେମାନେ ସଙ୍ଗରେ ପଣ୍ୟଦ୍ରବ୍ୟ ନେଇ ତାହାକୁ ସେଠାରେ ବିକ୍ରୟ କରି ବିକ୍ରୟ-ଲବ୍ଧ ଧନରେ ଯାତ୍ରାବ୍ୟୟ ବହନ କରିପାରିବେ । ଏହି ଅର୍ଥ ଯଥାର୍ଥ ହେଲେ ହେଁ ଏଠାରେ 'କୃପା'କୁ କେବଳ ବାଣିଜ୍ୟ ବ୍ୟବସାୟଭାବରେ ଅର୍ଥାନ୍ତ୍ୱୟ କରିବା ଫଳରେ ଏକ ବ୍ୟାପକ ବିଷୟର ପରିସର ସୀମିତ ହୋଇଯାଉଛି । ବସ୍ତୁତଃ ଆଜି ଇସଲାମ ଧର୍ମ ଏକ ଦୁର୍ଦ୍ଦିନର ସମ୍ମୁଖୀନ ହୋଇଛି । ଚତୁର୍ଦ୍ଦିଗରେ ନାସ୍ତିକତାର ରାଜତ୍ୱ ଓ ମୁସଲମାନମାନଙ୍କର ଆଧ୍ୟାତ୍ମିକ ଓ ନୈତିକ ଅଧଃପତନ। ଇସଲାମ ଧର୍ମର ଉନ୍ନତି ପାଇଁ ଯେଉଁଭଳି ଉତ୍ସାହ ଓ ଉଦ୍ଦୀପନା ସହିତ ପ୍ରାକ୍ତନ ମୁସଲମାନମାନେ କାର୍ଯ୍ୟ କରି ଆସୁଥିଲେ, ଆଜି ଯେ ସେମାନେ ସେଭଳି କରିପାରିବେ ସେମାନଙ୍କର ପ୍ରତ୍ୟୟ ହେଉନାହିଁ । ଅତଏବ ହଜ୍ଜ ବୃତ୍ତାନ୍ତ ସହ 'କୃପା' ବିଷୟଟି ସଂଯୋଗକରି ମୁସଲମାନମାନଙ୍କୁ ଆହ୍ୱାନ କରାଯାଉଛି ଯେ ସେମାନେ ହଜ୍ଜ ସମାବେଶରେ ଅନ୍ୟାନ୍ୟ ଲାଭ ମଧ୍ୟ ହାସଲ କରନ୍ତୁ । ଫଳରେ ସେମାନେ ଅବମାନନାର ଅତଳ ଗହ୍ୱର ମଧ୍ୟରୁ ନିଜକୁ ମୁକ୍ତ କରି ଉନ୍ନତିର ଚରମ ସୀମାରେ ପହଞ୍ଚି ପାରିବେ ।

୨. ଅରଫାତ ମକ୍କା ନିକଟବର୍ତ୍ତୀ ଏକ ସମତଳ ସ୍ଥାନ । ଏଠାରେ ତୀର୍ଥଯାତ୍ରୀମାନେ ଜିଲହଜ୍ଜ ମାସର ନବମ ଦିବସର ଅପରାହ୍ଣରେ ଉପାସନା ଆଦିରେ ଲିପ୍ତ ରହନ୍ତି ।

୩. ଏହା ଅରଫାତ ଓ ମିନା ମଧ୍ୟରେ ଅବସ୍ଥିତ । ଅରଫାତରୁ ଫେରିବା ବେଳେ ତୀର୍ଥ ଯାତ୍ରୀମାନେ ଏଠାରେ ରାତ୍ରି ଯାପନ କରି ଉପାସନା କରନ୍ତି । ଏହାର ଅନ୍ୟ ନାମ ମୁଜଦଲଫ ।

୨୦୦. ଏବଂ ଯେଉଁ ସ୍ଥାନରୁ ଲୋକମାନେ (ଫେରି) ଆସୁଛନ୍ତି ତୁମେମାନେ (ମଧ୍ୟ) ସେହିଠାରୁ ଫେରିଆସ ; ଏବଂ ଅଲ୍ଲାହ୍‌ଙ୍କ ଠାରୁ କ୍ଷମାଭିକ୍ଷା କର ; ବାସ୍ତବରେ ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ(ଓ)ସଦା କରୁଣାମୟ ।

ثُمَّ اَفِيْضُوْا مِنْ حَيْثُ اَفَاضَ النَّاسُ وَاسْتَغْفِرُوا اللّٰهَ ۭ اِنَّ اللّٰهَ غَفُوْرٌ رَّحِيْمٌ ۝

୨୦୧. ପୁଣି ଯେବେ ତୁମେମାନେ ନିଜର ଉପାସନା ଶେଷ କରିବ ଅତୀତରେ ଯେପରି ନିଜର ପିତୃପିତାମହଙ୍କୁ ସ୍ମରଣ କରୁଥିଲ ସେହିପରି ଅଲ୍ଲାହ୍‌ଙ୍କୁ (ତା ଅପେକ୍ଷା) ଅଧିକ ସ୍ମରଣ କର ; ଏବଂ ଲୋକମାନଙ୍କ ମଧ୍ୟରୁ କେତେକ କହନ୍ତି, ''ହେ ଆମମାନଙ୍କ ପାଳନକର୍ତ୍ତା ! ଆମ୍ଭମାନଙ୍କୁ ଏହି ପୃଥିବୀରେ ହିଁ (କଲ୍ୟାଣ) ପ୍ରଦାନ କର ; ''ଏବଂ ପରକାଳରେ ସେମାନଙ୍କର କୌଣସି ଭାଗ ରହିବ ନାହିଁ ।

فَاِذَا قَضَيْتُمْ مَّنَاسِكَكُمْ فَاذْكُرُوا اللّٰهَ كَذِكْرِكُمْ اٰبَاۗءَكُمْ اَوْ اَشَدَّ ذِكْرًا ۭ فَمِنَ النَّاسِ مَنْ يَّقُوْلُ رَبَّنَآ اٰتِنَا فِي الدُّنْيَا وَمَا لَهٗ فِي الْاٰخِرَةِ مِنْ خَلَاقٍ ۝

୨୦୨. ଏବଂ ସେମାନଙ୍କ ମଧ୍ୟରୁ (ଅନ୍ୟ) କେତେକ କହନ୍ତି, ''ହେ ଆମମାନଙ୍କ ପାଳନକର୍ତ୍ତା ! ତୁମେ ଆମମାନଙ୍କୁ (ଏହି) ପୃଥିବୀରେ ସଫଳତା ପ୍ରଦାନ କର ଓ ପରକାଳରେ (ମଧ୍ୟ) ସଫଳତା ପ୍ରଦାନ କର ଏବଂ ଆମମାନଙ୍କୁ ନରକାଗ୍ନି ଶାସ୍ତିରୁ ରକ୍ଷାକର ।

وَمِنْهُمْ مَّنْ يَّقُوْلُ رَبَّنَآ اٰتِنَا فِي الدُّنْيَا حَسَنَةً وَّفِي الْاٰخِرَةِ حَسَنَةً وَّقِنَا عَذَابَ النَّارِ ۝

୨୦୩. ଏମାନେ ଯାହା (ପୁଣ୍ୟ) ଉପାର୍ଜନ କରିଛନ୍ତି ସେଥିଯୋଗୁ ଏମାନଙ୍କ ପାଇଁ (ପୁଣ୍ୟର) ଏକ ବଡ଼ ଅଂଶ ରହିଅଛି ; ଏବଂ ଅଲ୍ଲାହ୍ ହିସାବ ନିକାଶ କରିବାରେ (ଅତ୍ୟନ୍ତ) ତତ୍ପର ଅଟନ୍ତି ।

اُولٰۗىِٕكَ لَهُمْ نَصِيْبٌ مِّمَّا كَسَبُوْا ۭ وَاللّٰهُ سَرِيْعُ الْحِسَابِ ۝

୨୦୪. ଏବଂ (ଏହି) ନିର୍ଦ୍ଦିଷ୍ଟ ଦିନମାନଙ୍କରେ ଅଲ୍ଲାହ୍‌ଙ୍କୁ ସ୍ମରଣ କର ; ଏବଂ ଯେଉଁ ବ୍ୟକ୍ତି ଦୁଇଦିନ[୧] ମଧ୍ୟରେ (ଚାଲିଯିବାକୁ) ତତ୍ପର ହୁଏ ତା'ପକ୍ଷରେ କୌଣସି ପାପ ହେବ ନାହିଁ ; ଏବଂ ଯେକେହି ପଛରେ ରହିଯାଏ ତା ପାଇଁ (ମଧ୍ୟ) କୌଣସି ପାପ ହେବ ନାହିଁ ; (ଏହି ପ୍ରତିଶ୍ରୁତି) ସେହି ବ୍ୟକ୍ତି ପାଇଁ ଯେ ଧର୍ମଭୀରୁତା ଅବଲମ୍ବନ କରେ, ଏବଂ ତୁମେମାନେ ଅଲ୍ଲାହ୍‌ଙ୍କୁ ଭୟ କର ଓ ଜାଣିରଖ ଯେ (ଦିନେ) ତୁମ ସମସ୍ତଙ୍କୁ ଏକତ୍ରିତ କରି ତାହାଙ୍କ ନିକଟକୁ ନିଆଯିବ ।

وَاذْكُرُوا اللّٰهَ فِيْٓ اَيَّامٍ مَّعْدُوْدٰتٍ ۭ فَمَنْ تَعَجَّلَ فِيْ يَوْمَيْنِ فَلَآ اِثْمَ عَلَيْهِ ۚ وَمَنْ تَاَخَّرَ فَلَآ اِثْمَ عَلَيْهِ ۙ لِمَنِ اتَّقٰى ۭ وَاتَّقُوا اللّٰهَ وَاعْلَمُوْٓا اَنَّكُمْ اِلَيْهِ تُحْشَرُوْنَ ۝

---

୧. ମୁଜଦଲଫ଼୍‌ଠାରୁ ପ୍ରତ୍ୟାବର୍ତ୍ତନ କରିବା ପରେ ତୀର୍ଥଯାତ୍ରୀମାନଙ୍କୁ ମିନା ଠାରେ ତିନିଦିନ ପର୍ଯ୍ୟନ୍ତ ରହିବାକୁ ନିର୍ଦ୍ଦେଶ ଦିଆଯାଇଛି । ଅବଶ୍ୟ ଜଣେ ଦୁଇଦିନ ପରେ ମଧ୍ୟ ପ୍ରତ୍ୟାବର୍ତ୍ତନ କରିପାରେ । ଯଦି ଜଣେ ତୀର୍ଥଯାତ୍ରୀ ତିନି ଦିନ ରହିବ ତେବେ ସେ ଚତୁର୍ଥ ଦିନ ମଧ୍ୟ ସେଠାରେ ରହିବ, ଏପରି କୌଣସି ଆବଶ୍ୟକତା ନାହିଁ । ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଜଣେ ତୀର୍ଥଯାତ୍ରୀ କେବଳ ଦୁଇଦିନରେ ମଧ୍ୟ ଫେରିଆସିପାରେ ଏବଂ ସେ ଇଚ୍ଛା କଲେ ତୃତୀୟ ଦିନରେ ମଧ୍ୟ ଫେରିପାରେ ।

୨୦୫. ଏବଂ ଏପରି କେତେକ ଲୋକ (ମଧ୍ୟ) ଅଛନ୍ତି ଯାହାଙ୍କର (ଏହି) ପାର୍ଥିବ ଜୀବନ କଥା ତୁମ୍ଭଙ୍କୁ (ଅତ୍ୟନ୍ତ) ପସନ୍ଦଯୋଗ୍ୟ ମନେ ହେଉଛି ଏବଂ (କଥା କହିବାବେଳେ) ସେମାନଙ୍କ ମନ ମଧ୍ୟରେ ଯାହାକିଛି (ନିଷ୍ଠା) ଅଛି ସେଥିପାଇଁ ସେମାନେ ଅଲ୍ଲାହଙ୍କୁ ସାକ୍ଷୀ କରନ୍ତି, ଅଥଚ ସେମାନେ କଳହକାରୀମାନଙ୍କ ମଧ୍ୟରେ (ପ୍ରକୃତରେ) ସର୍ବାଧିକ କଳହକାରୀ ।

وَمِنَ النَّاسِ مَنْ يُّعْجِبُكَ قَوْلُهٗ فِي الْحَيٰوةِ الدُّنْيَا وَيُشْهِدُ اللّٰهَ عَلٰى مَا فِيْ قَلْبِهٖ ۙ وَهُوَ اَلَدُّ الْخِصَامِ ﴿٢٠٥﴾

୨୦୬. ଏବଂ ଯେବେ ସେମାନେ କ୍ଷମତାପ୍ରାପ୍ତ ହୁଅନ୍ତି ତେବେ ବିଶୃଙ୍ଖଳା (ସୃଷ୍ଟି) କରିବା ପାଇଁ ତଥା ଫସଲ ଓ ଜୀବଜଗତକୁ ନଷ୍ଟ କରିବା ପାଇଁ (ସମଗ୍ର) ଦେଶରେ ଘୂରି ବୁଲୁଥାନ୍ତି ଅଥଚ ଅଲ୍ଲାହ ବିଶୃଙ୍ଖଳାକୁ ପସନ୍ଦ କରନ୍ତି ନାହିଁ ।

وَاِذَا تَوَلّٰى سَعٰى فِي الْاَرْضِ لِيُفْسِدَ فِيْهَا وَيُهْلِكَ الْحَرْثَ وَالنَّسْلَ ؕ وَاللّٰهُ لَا يُحِبُّ الْفَسَادَ ﴿٢٠٦﴾

୨୦୭. ଏବଂ ଯେବେ ସେମାନଙ୍କୁ କୁହାଯାଏ "ଅଲ୍ଲାହଙ୍କୁ ଭୟ କର", ତେବେ ସେମାନଙ୍କ ସ୍ୱାଭିମାନ ସେମାନଙ୍କୁ ପାପ କରିବାକୁ ଉଦ୍ୟତ କରାଏ; ଅତଏବ ସେମାନଙ୍କ ପାଇଁ ନରକ (ହିଁ) ଉପଯୁକ୍ତ ସ୍ଥାନ ; ଏବଂ ବାସ୍ତବରେ ଏହା ଅତିଶୟ ମନ୍ଦ ଆଶ୍ରୟ ସ୍ଥଳ ।

وَاِذَا قِيْلَ لَهُ اتَّقِ اللّٰهَ اَخَذَتْهُ الْعِزَّةُ بِالْاِثْمِ فَحَسْبُهٗ جَهَنَّمُ ؕ وَلَبِئْسَ الْمِهَادُ ﴿٢٠٧﴾

୨୦୮. ଏବଂ ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କର ପ୍ରୀତିଭାଜନ ହେବା ସକାଶେ ନିଜ ଜୀବନକୁ (ମଧ୍ୟ) ବିକ୍ରୟ କରିଦିଅନ୍ତି ; ଏବଂ ଅଲ୍ଲାହ (ନିଜର ଏପରି ନିଷ୍ଠାପର) ଭକ୍ତମାନଙ୍କ ପ୍ରତି ଅତ୍ୟନ୍ତ ଦୟାଶୀଳ ।

وَمِنَ النَّاسِ مَنْ يَّشْرِيْ نَفْسَهُ ابْتِغَآءَ مَرْضَاتِ اللّٰهِ ؕ وَاللّٰهُ رَءُوْفٌۢ بِالْعِبَادِ ﴿٢٠٨﴾

୨୦୯. ହେ ବିଶ୍ୱାସକାରୀମାନେ ! ତୁମେମାନେ ସମସ୍ତେ ଆଜ୍ଞାନୁବର୍ତ୍ତିତାର (ପରିସର) ମଧ୍ୟକୁ ଆସ ଓ ସଇତାନର ପଦାଙ୍କ ଅନୁସରଣ କର ନାହିଁ ; ବାସ୍ତବରେ ସେ ତୁମମାନଙ୍କର ପ୍ରକାଶ୍ୟ ଶତ୍ରୁ ।

يٰۤاَيُّهَا الَّذِيْنَ اٰمَنُوا ادْخُلُوْا فِي السِّلْمِ كَآفَّةً ۪ وَلَا تَتَّبِعُوْا خُطُوٰتِ الشَّيْطٰنِ ؕ اِنَّهٗ لَكُمْ عَدُوٌّ مُّبِيْنٌ ﴿٢٠٩﴾

୨୧୦. କିନ୍ତୁ ତୁମମାନଙ୍କ ନିକଟକୁ ପ୍ରକାଶ୍ୟ ନିଦର୍ଶନମାନ ଆସିବା ସତ୍ତ୍ୱେ ଯଦି ତୁମମାନଙ୍କର ପଦ-ସ୍ଖଳନ ଘଟେ ତେବେ ଜାଣିରଖ ଯେ ଅଲ୍ଲାହ ହିଁ ବାସ୍ତବରେ ପରାକ୍ରମୀ ଓ ତତ୍ତ୍ୱଜ୍ଞ ।

فَاِنْ زَلَلْتُمْ مِّنْۢ بَعْدِ مَا جَآءَتْكُمُ الْبَيِّنٰتُ فَاعْلَمُوْٓا اَنَّ اللّٰهَ عَزِيْزٌ حَكِيْمٌ ﴿٢١٠﴾

୨୧୧. ସେମାନେ ଏହାଛଡ଼ା ଆଉ କ'ଣ (ବିସ୍ମୟ) ପାଇଁ ଅପେକ୍ଷା କରୁଛନ୍ତି[୧] ଯେ ଅଲ୍ଲାହ ଓ ଦେବଦୂତମାନେ ମେଘର ଛାୟାରେ ସେମାନଙ୍କ ନିକଟକୁ ଆସିବେ ଓ ସେହି ବିଷୟକୁ ମୀମାଂସା କରିଦେବେ ? ଏବଂ ସମସ୍ତ କାର୍ଯ୍ୟ ଅଲ୍ଲାହଙ୍କ ନିକଟକୁ ହିଁ ପ୍ରତ୍ୟାବର୍ତ୍ତନ କରିଥାଏ ।

هَلْ يَنْظُرُوْنَ اِلَّآ اَنْ يَّاْتِيَهُمُ اللّٰهُ فِيْ ظُلَلٍ مِّنَ الْغَمَامِ وَالْمَلٰٓئِكَةُ وَقُضِيَ الْاَمْرُ ؕ وَاِلَى اللّٰهِ تُرْجَعُ الْاُمُوْرُ ﴿٢١١﴾

٢٥ ع ٧

୧. 'ମେଘର ଛାୟାରେ ସେମାନଙ୍କ ନିକଟକୁ ଆସିବେ' ବାକ୍ୟାଂଶଟି କୋରାନରେ ଅନ୍ୟତ୍ର ମଧ୍ୟ ବ୍ୟବହୃତ ହୋଇଛି । ଏହା ଅଲ୍ଲାହଙ୍କ ଶାସ୍ତି ବିଷୟରେ ସୂଚନା ଦେଉଛି । କେତେକ ଅବିଶ୍ୱାସକାରୀ ସ୍ୱଚକ୍ଷୁରେ ଦେବଦୂତମାନଙ୍କୁ ଦେଖିଥିବାର ବିବରଣୀ ମଧ୍ୟ ରହିଅଛି ।

ରୁ:୨୬

سَلْ بَنِيٓ إِسْرَآءِيلَ كَمْ اٰتَيْنٰهُمْ مِّنْ اٰيَةٍۢ بَيِّنَةٍ ۗ وَمَنْ يُّبَدِّلْ نِعْمَةَ اللّٰهِ مِنْ بَعْدِ مَا جَآءَتْهُ فَإِنَّ اللّٰهَ شَدِيدُ الْعِقَابِ ﴿٢١٢﴾

୨୧୨. ଇସ୍ରାଇଲୀୟ ସନ୍ତାନମାନଙ୍କୁ (ଟିକିଏ) ପଚାର ଯେ ଆମ୍ଭେ ସେମାନଙ୍କୁ କେତେ ପ୍ରକାଶ୍ୟ ନିଦର୍ଶନ ଦେଇଥିଲୁ ଏବଂ ଯେଉଁ ବ୍ୟକ୍ତି ଅଲ୍ଲାଃଙ୍କର (କୌଣସି) ଅନୁଗ୍ରହ ପ୍ରାପ୍ତ ହେବା ପରେ (ଓ ସେ ଏହାର ସତ୍ୟତାକୁ ବୁଝିସାରିବା ପରେ) ତାହାକୁ ପରିବର୍ତ୍ତନ କରିଦିଏ ତେବେ (ସେ ମନେରଖୁ ଯେ) ଅଲ୍ଲାଃ (ମଧ୍ୟ) କଠୋର ଶାସ୍ତିଦାତା ।

زُيِّنَ لِلَّذِينَ كَفَرُوا الْحَيٰوةُ الدُّنْيَا وَيَسْخَرُونَ مِنَ الَّذِينَ اٰمَنُوا ۘ وَالَّذِينَ اتَّقَوْا فَوْقَهُمْ يَوْمَ الْقِيٰمَةِ ۗ وَاللّٰهُ يَرْزُقُ مَنْ يَّشَآءُ بِغَيْرِ حِسَابٍ ﴿٢١٣﴾

୨୧୩. ଯେଉଁମାନେ ଅବିଶ୍ୱାସ କରୁଛନ୍ତି ସେମାନଙ୍କୁ ଏହି ପାର୍ଥିବ ଜୀବନକୁ ଶୋଭନୀୟ କରି ଦେଖାଇ ଦିଆଯାଇଛି ଏବଂ ସେମାନେ ବିଶ୍ୱାସକାରୀମାନଙ୍କୁ ଉପହାସ କରୁଛନ୍ତି ; ଏବଂ (ଏହା ତୁଳନାରେ) ଯେଉଁମାନେ ଧର୍ମଭୀରୁତା ଅବଲମ୍ବନ କରିଛନ୍ତି ସେମାନେ କୟାମତ୍ ଦିନ ସେ (ଅବିଶ୍ୱାସ କାରୀ)ମାନଙ୍କ ଉପରେ ବିଜୟ ଲାଭ କରିବେ ; ଏବଂ ଅଲ୍ଲାଃ ଯାହାକୁ ପସନ୍ଦ କରନ୍ତି ତାହାଙ୍କୁ ଅପରିମିତ ଦିଅନ୍ତି ।

كَانَ النَّاسُ أُمَّةً وَّاحِدَةً ۫ فَبَعَثَ اللّٰهُ النَّبِيّٖنَ مُبَشِّرِينَ وَمُنْذِرِينَ ۠ وَأَنْزَلَ مَعَهُمُ الْكِتٰبَ بِالْحَقِّ لِيَحْكُمَ بَيْنَ النَّاسِ فِيمَا اخْتَلَفُوا فِيهِ ۗ وَمَا اخْتَلَفَ فِيهِ إِلَّا الَّذِينَ أُوتُوهُ مِنْ بَعْدِ مَا جَآءَتْهُمُ الْبَيِّنٰتُ

୨୧୪. ମାନବ-ସମାଜ ଏକ (ସମ-ମନୋଭାବସମ୍ପନ୍ନ) ସମ୍ପ୍ରଦାୟ ଥିଲା ; ପରେ ଅଲ୍ଲାଃ ନବିମାନଙ୍କୁ ସୁସମାଚାରଦାତା ଓ ସତର୍କକାରୀ ଭାବରେ ପ୍ରେରଣ କଲେ ଏବଂ ସେମାନଙ୍କ ସଙ୍ଗରେ ସତ୍ୟ ସମ୍ବଳିତ ଗ୍ରନ୍ଥ ଅବତୀର୍ଣ୍ଣ କଲେ ; ଯଦ୍ଦ୍ୱାରା ସେ (ଅଲ୍ଲାଃ), ଯେଉଁ ବିଷୟରେ ଲୋକମାନେ ଭିନ୍ନମତ[1] ପୋଷଣ କରୁଥିଲେ, ସେହି ବିଷୟରେ ସେମାନଙ୍କ ମଧ୍ୟରେ ମୀମାଂସା କରିଦେବେ ; କିନ୍ତୁ (ଏପରି ଘଟିଲା ଯେ) ପ୍ରକାଶ୍ୟ ନିଦର୍ଶନ ଆସିବା ପରେ ଯେଉଁମାନଙ୍କୁ ସେହି ଗ୍ରନ୍ଥ

---

୧. ଏଠାରେ ଏକ ବିଚିତ୍ର ବିଷୟର ବର୍ଣ୍ଣନା ଅଛି । ଜନସାଧାରଣଙ୍କ ମତଭେଦର ଦୂରୀକରଣ ସକାଶେ ବିଭିନ୍ନ ସମୟରେ ରସୁଲ ଆସିଥା'ନ୍ତି । କିନ୍ତୁ ଲୋକମାନେ ନିଜ ମତଭେଦକୁ ଭୁଲିଯାଇ ତାଙ୍କର ଶତ୍ରୁତା କରିବାରେ ଲାଗିପଡ଼ନ୍ତି । ଆଶ୍ଚର୍ଯ୍ୟର କଥା ଯେଉଁ ଜାତି ବା ସମ୍ପ୍ରଦାୟର ହିତ-ସାଧନ ପାଇଁ ଦିବ୍ୟବାଣୀ ପ୍ରେରିତ ହୋଇଥାଏ ସେହି ଜାତି ବା ସମ୍ପ୍ରଦାୟ ଏହାକୁ ପ୍ରବଳ ବିରୋଧ କରେ । ସେମାନେ ଶତ୍ରୁତା ଆଚରଣ କରିବାରେ ଏପରି ଭାବରେ ଅନ୍ଧ ହୋଇଯାଆନ୍ତି ଯେ ଏଥିରେ ସେମାନଙ୍କର କଲ୍ୟାଣ ଥିଲେ ମଧ୍ୟ ସେମାନଙ୍କୁ ତାହା ଦେଖାଯାଏ ନାହିଁ । ଅନ୍ୟ ପକ୍ଷରେ ଅନ୍ୟାନ୍ୟ ଜାତି ବା ସମ୍ପ୍ରଦାୟ ଏହି ଶିକ୍ଷାକୁ ବୁଝିବାକୁ ଚେଷ୍ଟା କରିଥା'ନ୍ତି, ଏଥିପ୍ରତି ଆଗ୍ରହ ପ୍ରକାଶ କରିଥାନ୍ତି, ଏ ବିଷୟକୁ ଗଭୀରଭାବରେ ଅନୁଧ୍ୟାନ କରିଥାନ୍ତି ଏବଂ ସ୍ଥଳ ବିଶେଷରେ କେତେକ ପ୍ରଶଂସା ମଧ୍ୟ କରିଥାନ୍ତି । ଫଳରେ ଯେଉଁମାନଙ୍କ ପାଇଁ ଏହା ଉଦ୍ଦିଷ୍ଟ ସେମାନେ ଲାଭବାନ୍ ନ ହୋଇ ଅନ୍ୟମାନେ ଲାଭବାନ୍ ହୁଅନ୍ତି । ତେଣୁ ଅଳ୍ପ କେତେ ଜଣ ଏହାକୁ ସମର୍ଥନ ଓ ବିଶ୍ୱାସ କଲେ ମଧ୍ୟ ସମ୍ପ୍ରଦାୟର ଅନ୍ୟ ସମସ୍ତେ ପୂର୍ବୋକ୍ତ ବ୍ୟକ୍ତିମାନଙ୍କୁ ଯେ ଅକଥନୀୟ କଷଣର ବଶବର୍ତ୍ତୀ କରାଇବେ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏପରି ଅବସ୍ଥାରେ ଅଲ୍ଲାଃ ସେଭଳି ସଂଖ୍ୟାଲଘୁମାନଙ୍କୁ ସମଗ୍ର ଜାତି ପାଇଁ ଅଭିପ୍ରେତପୁରସ୍କାରର ଉତ୍ତରାଧିକାରୀ ନିଯୁକ୍ତ କରନ୍ତି । ଏକ ହଦିସରେ ହଜରତ ମହମ୍ମଦଙ୍କ ଉକ୍ତି ନିମ୍ନମତେ ଅଛି– 'ପ୍ରତ୍ୟେକ ଲୋକର ନରକରେ ଗୋଟିଏ ଘର ଓ ବୈକୁଣ୍ଠରେ ଗୋଟିଏ ଘର ଥାଏ । ଯିଏ ଅନ୍ୟ ଉପରେ ଅତ୍ୟାଚାର କରେ ଅଲ୍ଲାଃ ତା'ର ବୈକୁଣ୍ଠରେ ଥିବା ଘର ଅତ୍ୟାଚାରିତ ବ୍ୟକ୍ତିଙ୍କୁ ଦେଇଦିଅନ୍ତି ଏବଂ ଅତ୍ୟାଚାରିତ ବ୍ୟକ୍ତିର ନରକରେ ଥିବା ଘରକୁ ଅତ୍ୟାଚାରୀକୁ ଦେଇ ଦିଅନ୍ତି ।' ଅବିଶ୍ୱାସକାରୀମାନେ ବିନା କାରଣରେ ଅବଜ୍ଞା କରିଥିବାରୁ ଓ ବିଶ୍ୱାସକାରୀମାନେ ବିଶ୍ୱାସ କରି ଦୁଃଖ କଷ୍ଟ ଭୋଗିଥିବାରୁ ଅଲ୍ଲାଃ ସକଳ ପୁରସ୍କାରକୁ ବିଶ୍ୱାସକାରୀଙ୍କୁ ପ୍ରଦାନ କରାଯିବା ସକାଶେ ଆଦେଶ ଦେଇଛନ୍ତି ।

بَغْيًا بَيْنَهُمْ ۚ فَهَدَى اللّٰهُ الَّذِيْنَ اٰمَنُوْا لِمَا اخْتَلَفُوْا فِيْهِ مِنَ الْحَقِّ بِاِذْنِهٖ ؕ وَ اللّٰهُ يَهْدِيْ مَنْ يَّشَآءُ اِلٰى صِرَاطٍ مُّسْتَقِيْمٍ ﴿٢١٤﴾

ପ୍ରଦାନ କରାଯାଇଥିଲା। ସେମାନଙ୍କର ପରସ୍ପର ମଧ୍ୟରେ ବିଦ୍ବେଷ (ଓ ବିଶୃଙ୍ଖଳା) ହେତୁ ଏ (ଗ୍ରନ୍ଥ) ସଂକ୍ରାନ୍ତରେ ଭିନ୍ନମତ ପୋଷଣ କରିଥିଲେ;ଅତଏବ ଅଲ୍ଲାଃ ବିଶ୍ବାସକାରୀମାନଙ୍କୁ ନିଜ ଆଦେଶ ଦ୍ବାରା ଏହି ସତ୍ୟ ପର୍ଯ୍ୟନ୍ତ ନେଇଗଲେ ଯାହା ସଂକ୍ରାନ୍ତରେ ଅନ୍ୟ ଲୋକମାନେ ଭିନ୍ନମତ ପୋଷଣ କରିଥିଲେ ; ଏବଂ ଅଲ୍ଲାଃ ଯାହାଙ୍କୁ ପସନ୍ଦ କରନ୍ତି ତାହାଙ୍କୁ ସରଳ ମାର୍ଗରେ ପରିଚାଳିତ କରାନ୍ତି ।

اَمْ حَسِبْتُمْ اَنْ تَدْخُلُوا الْجَنَّةَ وَ لَمَّا يَاْتِكُمْ مَّثَلُ الَّذِيْنَ خَلَوْا مِنْ قَبْلِكُمْ ؕ مَسَّتْهُمُ الْبَاْسَآءُ وَ الضَّرَّآءُ وَ زُلْزِلُوْا حَتّٰى يَقُوْلَ الرَّسُوْلُ وَ الَّذِيْنَ اٰمَنُوْا مَعَهٗ مَتٰى نَصْرُ اللّٰهِ ؕ اَلَاۤ اِنَّ نَصْرَ اللّٰهِ قَرِيْبٌ ﴿٢١٥﴾

୨୧୫. କ'ଣ ତୁମେମାନେ ଭାବିଛ ଯେ ତୁମମାନଙ୍କ ଉପରେ ଏବେ ତୁମମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କ (କଷ୍ଟଦାୟକ) ଅବସ୍ଥା ଆସି ନ ଥିବା ବେଳେ ତୁମେମାନେ ବୈକୁଣ୍ଠକୁ ଚାଲିଯିବ ? ସେମାନଙ୍କୁ ଦାରିଦ୍ର୍ୟ ଓ ପୀଡ଼ା ଆକ୍ରାନ୍ତ କରିଥିଲା ଏବଂ ସେମାନଙ୍କୁ ଅତିଶୟ ଭୟଭୀତ (ମଧ୍ୟ) କରାଯାଇଥିଲା ଯଦ୍ଦ୍ବାରା (ତତ୍କାଳୀନ) ରସୁଲ ଓ ତାହାଙ୍କ ସହିତ ଥିବା ବିଶ୍ବାସକାରୀମାନେ କହି ଉଠିଥିଲେ ଯେ କେବେ ଅଲ୍ଲାଃଙ୍କ ସାହାଯ୍ୟ[୧] ମିଳିବ ? ମନେରଖ ଅଲ୍ଲାଃଙ୍କ ସାହାଯ୍ୟ ଅବଶ୍ୟ ଆଗତ-ପ୍ରାୟ ।

---

୧. ଅବତାର ଓ ବିଶ୍ବାସକାରୀମାନଙ୍କ ଉପରେ ନିପତିତ ହେଉଥିବା ବିପତ୍ତିର ଗୂଢ଼ ରହସ୍ୟ ସମ୍ବନ୍ଧରେ ଏଠାରେ ସୂଚନା ଦିଆଯାଇଛି । ଅଲ୍ଲାଃ କହୁଛନ୍ତି, ଯଦି ଆମେ ଇଚ୍ଛା କରନ୍ତୁ ତେବେ ସେମାନେ କୌଣସି ପ୍ରକାର ବିପତ୍ତିର ସମ୍ମୁଖୀନ ହୁଅନ୍ତେ ନାହିଁ ; କିନ୍ତୁ ଆମେ ଏପରି ଇଚ୍ଛା କରୁନାହୁଁ ବରଂ ଇଚ୍ଛାକରୁ ଯେ ସେମାନଙ୍କ ବିରୋଧୀମାନେ ସେମାନଙ୍କୁ ଅକଥନୀୟ ଯାତନା ଦିଅନ୍ତୁ; ତାହାହେଲେ ସେମାନେ ଆମ ନିକଟରେ ଅଧିକରୁ ଅଧିକ ଗୁହାରି କରୁଥିବେ ଓ ଆମର ସହାୟତା ଲୋଡୁଥିବେ । ଫଳରେ ଆମ ପ୍ରତି ସେମାନଙ୍କ ମନରେ ପ୍ରେମଭାବ ଜାଗ୍ରତ ହେବ ଏବଂ ଯେତେବେଳେ ବିରୋଧୀମାନଙ୍କ ବିରୁଦ୍ଧରେ ଆମର ଅଲୌକିକ ଶାସ୍ତି ସହସା ଉପନୀତ ହେବ ସେତେବେଳେ ଏକ ପକ୍ଷରେ ସେମାନଙ୍କର ବିଶ୍ବାସ ଆହୁରି ଦୃଢ଼ୀଭୂତ ହୋଇଯିବ ଓ ଅନ୍ୟ ପକ୍ଷରେ ଯେଉଁ ବିରୋଧୀମାନେ ଏହା ଲକ୍ଷ୍ୟ କରୁଥିବେ, ସେମାନେ ସତ୍‌ପଥ ପ୍ରାପ୍ତ ହେବେ । ବିଶ୍ବାସକାରୀମାନେ ଏପ୍ରକାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ଅଲ୍ଲାଃ ସେମାନଙ୍କୁ ସମସ୍ତ ପ୍ରକାର ସୁଖ ସ୍ବାଚ୍ଛନ୍ଦ୍ୟର ଅଧିକାର ପ୍ରଦାନ କରନ୍ତି । ବସ୍ତୁତଃ ଇସଲାମ ଧର୍ମ ଗ୍ରହଣ କରିବାରେ ପୁଷ୍ପଶଯ୍ୟା ପ୍ରାପ୍ତ ହୁଏ ନାହିଁ ବରଂ କଣ୍ଟକଶଯ୍ୟା ପ୍ରାପ୍ତ ହୁଏ । ତେଣୁ ସେମାନଙ୍କୁ ସତର୍କ କରାଇ ଦିଆଯାଇଥାଏ ଯେ ସେମାନେ ଅନେକ ଦୁଃଖ କଷ୍ଟର ସମ୍ମୁଖୀନ ହୋଇପାରନ୍ତି ।

୨୧୬. ସେମାନେ ତୁମଙ୍କୁ ପ୍ରଶ୍ନ କରୁଛନ୍ତି ଯେ (ସେମାନେ) କ'ଣ ବ୍ୟୟ କରିବେ ? ତୁମେ କୁହ "ଯାହାକିଛି ଉତ୍ତମ ଧନ[1] ତୁମେମାନେ ବ୍ୟୟ କରୁଅଛ ତହିଁରେ ପିତାମାତା, ନିକଟ ସମ୍ପର୍କୀୟ, ଅନାଥ, ନିଃସ୍ୱ ଏବଂ ପଥିକମାନଙ୍କର (ପ୍ରଥମ) ଅଧିକାର ଅଛି ; ଏବଂ ତୁମେମାନେ ଯେଉଁ ପୁଣ୍ୟକାର୍ଯ୍ୟ କରୁଅଛ ଅଲ୍ଲାହ ନିଶ୍ଚୟ ସେ ବିଷୟରେ ଭଲଗୃପେ ଅବଗତ ଅଛନ୍ତି ।"

يَسْـَٔلُوْنَكَ مَا ذَا يُنْفِقُوْنَ ۞ قُلْ مَآ اَنْفَقْتُمْ مِّنْ خَيْرٍ فَلِلْوَالِدَيْنِ وَ الْاَقْرَبِيْنَ وَ الْيَتٰمٰى وَالْمَسٰكِيْنِ وَابْنِ السَّبِيْلِ ۚ وَمَا تَفْعَلُوْا مِنْ خَيْرٍ فَاِنَّ اللّٰهَ بِهٖ عَلِيْمٌ ﴿٢١٦﴾

୨୧୭. (ରକ୍ଷାତ୍ମକ) ଯୁଦ୍ଧକରିବା ତୁମମାନଙ୍କ ପାଇଁ ଧାର୍ଯ୍ୟ କରାଯାଉଅଛି, ଯଦିଚ ତୁମେମାନେ ତାହାକୁ ପସନ୍ଦ[2] କରୁନାହଁ ; ଏବଂ (ଏହା) ସମ୍ପୂର୍ଣ୍ଣ ସମ୍ଭବ ଯେ ତୁମେମାନେ ପସନ୍ଦ କରୁ ନଥିବା କୌଣସି ବିଷୟ ତୁମମାନଙ୍କ ପକ୍ଷରେ ହିତକର ହୋଇପାରେ ଏବଂ (ଏହା ମଧ୍ୟ ସମ୍ଭବ) ଯେ ତୁମେମାନେ ପସନ୍ଦ କରୁଥିବା ବିଷୟ ଅନ୍ୟ ବିଷୟ ତୁଳନାରେ ତୁମମାନଙ୍କ ପକ୍ଷରେ ଅହିତକର ହୋଇପାରେ ; ଏବଂ (ଏ ବିଷୟ) ଅଲ୍ଲାହ ଜାଣନ୍ତି (କିନ୍ତୁ) ତୁମେ ଜାଣ ନାହିଁ ।

كُتِبَ عَلَيْكُمُ الْقِتَالُ وَهُوَ كُرْهٌ لَّكُمْ ۚ وَعَسٰٓى اَنْ تَكْرَهُوْا شَيْـًٔا وَّهُوَ خَيْرٌ لَّكُمْ ۚ وَعَسٰٓى اَنْ تُحِبُّوْا شَيْـًٔا وَّهُوَ شَرٌّ لَّكُمْ ۗ وَاللّٰهُ يَعْلَمُ وَاَنْتُمْ لَا تَعْلَمُوْنَ ﴿٢١٧﴾ ع

---

୧. ଏହି ଆୟତରେ ନିର୍ଦ୍ଦେଶ ଦିଆଯାଇଛି ଯେ–

(କ) ଦାନ କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ସୀମା ନାହିଁ ; ନିଜ ଶକ୍ତି ମୁତାବକ ଦାନ କର ।

(ଖ) ଯାହା ଦାନ କରାଯିବ ତାହା ଅବଶ୍ୟ ପବିତ୍ର ହୋଇଥିବ ।

(ଗ) ଧନ ଯଥାର୍ଥ ଉପାୟରେ ଉପାର୍ଜ୍ଜିତ ହୋଇଥିବ; ତାହା ଏପରି ଶୁଦ୍ଧ ଓ ଉତ୍ତମ ହୋଇଥିବ ଯାହା ପାଇଲେ ଦାନଗ୍ରହୀତା ପୁଲକିତ ହେବ । ଜଣେ ଦରିଦ୍ର ବ୍ୟକ୍ତିଙ୍କୁ ପୁରୁଣା ଛିଣ୍ଡା ଜୋତା ବା କୁର୍ତ୍ତା ଦାନକଲେ ଅଥବା ଘରେ ରୁଟି ଥିଲାବେଳେ କ୍ଷୁଧାର୍ତ୍ତଙ୍କୁ ଅଟା ଦାନ କଲେ ତାହା ଦାନ ବୋଲାଇବ ନାହିଁ । ଯଦିଚ ସେହିସବୁ ପଦାର୍ଥ ବୈଧ ଅଟେ ତଥାପି ତାହା ଦାନଗ୍ରହୀତାଙ୍କ ପକ୍ଷରେ ଉତ୍ତମ ନୁହେଁ । ତେଣୁ ସେହି ସ୍ଥଳେ ସେଭଳି ଦାନର କୌଣସି ମୂଲ୍ୟ ନାହିଁ ।

(ଘ) ଯଦି ଜଣେ ଚୋରି ବା ଅତ୍ୟାଚାର କରି ଅଥବା ଲାଞ୍ଚ ନେଇ– ସେପରି ଧନ ଯେତେ ଅଳ୍ପ ହେଲେ ମଧ୍ୟ– ନିଜ ପବିତ୍ର ଧନ ସମ୍ପତ୍ତିରୁ ଦାନ ଦେଲେ ମଧ୍ୟ ତାହା ଦାନ ପଦବାଚ୍ୟ ନୁହେଁ କାରଣ ଅସତ୍ ପନ୍ଥାରେ ଉପାର୍ଜ୍ଜିତ ସେହି ଅଳ୍ପ ଧନ ମଧ୍ୟ ବିପୁଳ ସମ୍ପତ୍ତିକୁ ଅପବିତ୍ର କରାଇଥାଏ । ଯେଉଁମାନେ ଏଭଳି ଦାନ କରନ୍ତି ଓ ଭାବନ୍ତି ଯେ ସେମାନେ ପୁଣ୍ୟ କାର୍ଯ୍ୟ କରୁଛନ୍ତି ସେମାନେ ବାସ୍ତବରେ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇଛନ୍ତି ।

ଅନ୍ୟ ପକ୍ଷରେ ସ୍ଥାନ, କାଳ, ଓ ପାତ୍ର ଦେଖି ଦାନ କରିବାକୁ ହେବ, ଯଦ୍ଦ୍ୱାରା ସେହି ଧନର ସଦ୍‌ବିନିଯୋଗ ହୋଇପାରିବ ।

ଏହି ଆୟତକୁ ବ୍ୟାଖ୍ୟା କଲାବେଳେ କେତେକ ସମାଲୋଚକ ଆକ୍ଷେପ କରନ୍ତି ଯେ ଗୋଟିଏ ବିଷୟ ପଚରାଯାଇଛି ଅର୍ଥାତ୍ 'କ'ଣ ବ୍ୟୟ କରାଯିବ' କିନ୍ତୁ ଅନ୍ୟ ଏକ ବିଷୟ କୁହାଯାଇଛି ଅର୍ଥାତ୍ ନିଜ ବିଷୟସମ୍ପତ୍ତି ମଧ୍ୟରୁ ଯାହା କିଛି ବ୍ୟୟ କର ତାହା ଅମୁକ ଅମୁକଙ୍କୁ ଦିଅ । ଏହାହିଁ କୋରାନବର୍ଣ୍ଣିତ ଭାଷାର ବିଶେଷତ୍ୱ ଯାହା ଜଣେ ସାଧାରଣ ବ୍ୟକ୍ତି ବୁଝିପାରେ ନାହିଁ । ନିଃସନ୍ଦେହରେ ଏଠାରେ ନିର୍ଦ୍ଦିଷ୍ଟ ଉତ୍ତର ଅପେକ୍ଷା ଅତିରିକ୍ତ ବିଷୟର ଉତ୍ତର ଦିଆଯାଇଛି । ମହାପୁରୁଷ ମହମ୍ମଦ ମଧ୍ୟ ତଦନୁରୂପ ଉତ୍ତର ଦେଉଥିଲେ । ଏକଦା ଜଣେ ବ୍ୟକ୍ତି ପଚାରିଲେ– 'ସମୁଦ୍ର ଜଳ ସଂକ୍ରାନ୍ତରେ କି ନିର୍ଦ୍ଦେଶ ଅଛି' ? ସେ କହିଲେ– 'ଏହାର ଜଳ ପବିତ୍ର ଓ ଏଥି ଅନ୍ତର୍ଗତ ପ୍ରାଣୀ ବୈଧ ଅଟନ୍ତି ; ଅର୍ଥାତ୍ ସାମୁଦ୍ରିକ ଜୀବଙ୍କୁ ଜବ୍‌ହା କରିବାର ପ୍ରୟୋଜନ ନାହିଁ । ତେଣୁ ଏଠାରେ ଜଳ ସହିତ ଜଳଜ ପ୍ରାଣୀଙ୍କ ବିଷୟ ଅତିରିକ୍ତ ମନେହେଲେ ହେଁ ଏହା ନିଃସନ୍ଦେହରେ ଆବଶ୍ୟକ ଅଟେ । ଅତଏବ ଆମମାନଙ୍କ ମତରେ ପ୍ରଶ୍ନକର୍ତ୍ତା ବାସ୍ତବରେ ଏଠାରେ ଦାନର ପ୍ରକାର ଭେଦ ଜାଣିବାକୁ ଚାହୁଁଛନ୍ତି ।

୨. ମୁସଲମାନମାନେ ଦୁଇଟି କାରଣରୁ ଯୁଦ୍ଧକୁ ଘୃଣା କରୁଥିଲେ– (କ) ସେମାନେ ରକ୍ତପାତ ଚାହୁଁ ନ ଥିଲେ ଓ (ଖ) ସେମାନେ ଭାବୁଥିଲେ ଯେ ଯୁଦ୍ଧ ବିଗ୍ରହ ତୁଳନାରେ ଶାନ୍ତିପୂର୍ଣ୍ଣ ବାତାବରଣ ଇସଲାମ ଧର୍ମର ପ୍ରଚାର ଓ ପ୍ରସାର ପାଇଁ ଅଧିକ ଅନୁକୂଳ ।

ରୁ:୨୭

୨୧୮. ଏ (ଲୋକ)ମାନେ ମର୍ଯ୍ୟାଦାପୂର୍ଣ୍ଣ ମାସରେ ଯୁଦ୍ଧ କରିବା ସଂକ୍ରାନ୍ତରେ ତୁମକୁ ପ୍ରଶ୍ନ କରୁଛନ୍ତି ; ତୁମେ କୁହ, "ଏଥିମଧ୍ୟରେ ଯୁଦ୍ଧ କରିବା ଏକ ଗର୍ହିତ କାର୍ଯ୍ୟ ; ଏବଂ ଅଲ୍ଲାହ୍‌ଙ୍କ ପଥରୁ ନିବୃତ୍ତ କରିବା ଓ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହ୍‌ଙ୍କୁ) ଏବଂ ମର୍ଯ୍ୟାଦାପୂର୍ଣ୍ଣ ମସଜିଦ୍‌କୁ ଅସ୍ୱୀକାର କରିବା, ସେଠାକାର ନିବାସୀମାନଙ୍କୁ ତହିଁରୁ ବିତାଡ଼ିତ କରିବା ଅଲ୍ଲାହ୍‌ଙ୍କ ନିକଟରେ (ଏହାଠାରୁ ମଧ୍ୟ) ଅଧିକ ଗର୍ହିତ କାର୍ଯ୍ୟ ଅଟେ; ଉପଦ୍ରବ (ଓ ବିଶୃଙ୍ଖଳା) ହତ୍ୟା ଅପେକ୍ଷା ଗୁରୁତର (ପାପ) ଅଟେ ;" ଏବଂ ଏମାନଙ୍କର ଶକ୍ତି ଥିଲେ ଏମାନେ ତୁମମାନଙ୍କୁ ତୁମମାନଙ୍କ (ଧର୍ମ) ବିଶ୍ୱାସରୁ ଫେରାଇ ନ ଆଣିବା ପର୍ଯ୍ୟନ୍ତ ଯୁଦ୍ଧ କରୁଥିବେ ; ଏବଂ ତୁମମାନଙ୍କ ମଧ୍ୟରୁ ଯେ କେହି ନିଜ ଧର୍ମ ତ୍ୟାଗ କରିବ ଓ ଅବିଶ୍ୱାସକାରୀ ଥିବା ଅବସ୍ଥାରେ ମୃତ୍ୟୁ ବରଣ କରିବ ତେବେ ସେ ମନେରଖୁ ଯେ ଏପରି ଲୋକମାନଙ୍କର କର୍ମଫଳ ଇହକାଳ ଓ ପରକାଳରେ ବୃଥା ହେବ ଏବଂ ଏପରି ଲୋକମାନେ ନରକବାସୀ ହେବେ ଓ ସେଠାରେ (ଦୀର୍ଘକାଳ) ରହିବେ ।

يَسْـَٔلُوْنَكَ عَنِ الشَّهْرِ الْحَرَامِ قِتَالٍ فِيْهِ ۭ قُلْ قِتَالٌ فِيْهِ كَبِيْرٌ ۭ وَصَدٌّ عَنْ سَبِيْلِ اللّٰهِ وَكُفْرٌۢ بِهٖ وَالْمَسْجِدِ الْحَرَامِ ۤ وَاِخْرَاجُ اَهْلِهٖ مِنْهُ اَكْبَرُ عِنْدَ اللّٰهِ ۚ وَالْفِتْنَةُ اَكْبَرُ مِنَ الْقَتْلِ ۭ وَلَا يَزَالُوْنَ يُقَاتِلُوْنَكُمْ حَتّٰى يَرُدُّوْكُمْ عَنْ دِيْنِكُمْ اِنِ اسْتَطَاعُوْا ۭ وَمَنْ يَّرْتَدِدْ مِنْكُمْ عَنْ دِيْنِهٖ فَيَمُتْ وَھُوَ كَافِرٌ فَاُولٰۗىِٕكَ حَبِطَتْ اَعْمَالُهُمْ فِي الدُّنْيَا وَالْاٰخِرَةِ ۚ وَاُولٰۗىِٕكَ اَصْحٰبُ النَّارِ ۚ ھُمْ فِيْهَا خٰلِدُوْنَ ۝

୨୧୯. ଯେଉଁମାନେ ବିଶ୍ୱାସ ସ୍ଥାପନ କରିଛନ୍ତି ଓ ଯେଉଁମାନେ ସ୍ୱଦେଶ ତ୍ୟାଗ କରିଛନ୍ତି ଓ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ଧର୍ମଯୁଦ୍ଧ କରିଛନ୍ତି ଏପରି ଲୋକମାନେ ନିଶ୍ଚିତରୂପେ ଅଲ୍ଲାହ୍‌ଙ୍କ କୃପାର ଆଶାୟୀ ଅଟନ୍ତି ଏବଂ ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ ଓ ସଦା କରୁଣାମୟ ।

اِنَّ الَّذِيْنَ اٰمَنُوْا وَالَّذِيْنَ ھَاجَرُوْا وَجٰهَدُوْا فِيْ سَبِيْلِ اللّٰهِ ۙ اُولٰۗىِٕكَ يَرْجُوْنَ رَحْمَتَ اللّٰهِ ۭ وَاللّٰهُ غَفُوْرٌ رَّحِيْمٌ ۝

୨୨୦. ସେମାନେ ତୁମକୁ ମଦ୍ୟ (ପାନ) ଓ ଜୁଆଖେଳ ବିଷୟରେ ପଚାରୁଛନ୍ତି ; ତୁମେ କୁହ, "ଏଥିରେ (ଅର୍ଥାତ୍ ଏହି କାର୍ଯ୍ୟରେ) ମହାପାପ (ଓ କ୍ଷତି) ରହିଅଛି ; ଏବଂ ଏଥିରେ ଲୋକମାନଙ୍କ ପାଇଁ କେତେକ ଲାଭ (ମଧ୍ୟ) ଅଛି ; ଏବଂ ସେଗୁଡ଼ିକର ପାପ (ଓ କ୍ଷତି) ସେଗୁଡ଼ିକର ଲାଭ ଅପେକ୍ଷା ଅଧିକ ; ଏବଂ ସେ (ଲୋକ)ମାନେ ତୁମକୁ (ଏହା ମଧ୍ୟ)

يَسْـَٔلُوْنَكَ عَنِ الْخَمْرِ وَالْمَيْسِرِ ۭ قُلْ فِيْهِمَآ اِثْمٌ كَبِيْرٌ وَّمَنَافِعُ لِلنَّاسِ ۡ وَاِثْمُهُمَآ اَكْبَرُ مِنْ نَّفْعِهِمَا ۭ وَ

يَسْـَٔلُوْنَكَ مَاذَا يُنْفِقُوْنَ ۥ قُلِ الْعَفْوَ ۭ كَذٰلِكَ يُبَيِّنُ اللّٰهُ لَكُمُ الْاٰيٰتِ لَعَلَّكُمْ تَتَفَكَّرُوْنَ ﴿٢٢٠﴾

ପଚାରୁଛନ୍ତି, "ସେମାନେ କେତେ ବ୍ୟୟ[1] କରିବେ ?" ତୁମେ କୁହ," "(ସେତିକି), ଯେତିକି କଷ୍ଟଦାୟକ ହେବ ନାହିଁ ;" ଏହିପରି ଭାବରେ ଅଲ୍ଲାହ ତାଙ୍କ ଆଦେଶଗୁଡ଼ିକୁ ତୁମମାନଙ୍କ ସକାଶେ ବର୍ଣ୍ଣନା କରନ୍ତି ଯେପରିକି ତୁମେମାନେ ବୁଝିବିଚାରି କାର୍ଯ୍ୟ କରିବ ।

فِي الدُّنْيَا وَالْاٰخِرَةِ ۭ وَيَسْـَٔلُوْنَكَ عَنِ الْيَتٰمٰى ۭ قُلْ اِصْلَاحٌ لَّهُمْ خَيْرٌ ۭ وَاِنْ تُخَالِطُوْهُمْ فَاِخْوَانُكُمْ ۭ وَاللّٰهُ يَعْلَمُ الْمُفْسِدَ مِنَ الْمُصْلِحِ ۭ وَلَوْ شَاۗءَ اللّٰهُ لَاَعْنَتَكُمْ ۭ اِنَّ اللّٰهَ عَزِيْزٌ حَكِيْمٌ ﴿٢٢١﴾

୨୨୧. ଇହକାଳ ବିଷୟରେ (ମଧ୍ୟ) ଓ ପରକାଳ ବିଷୟରେ ମଧ୍ୟ ; ଏବଂ ଏ (ଲୋକ)ମାନେ ତୁମକୁ ଅନାଥମାନଙ୍କ ସମ୍ବନ୍ଧରେ (ମଧ୍ୟ) ପ୍ରଶ୍ନ କରୁଛନ୍ତି ; ତୁମେ କୁହ, "ସେମାନଙ୍କର ସୁଧାର (କାର୍ଯ୍ୟ) ଏକ ମହତ୍ କାର୍ଯ୍ୟ ଅଟେ ; ଏବଂ ଯଦି ତୁମେମାନେ ସେମାନଙ୍କ ସହିତ ମିଳିମିଶି ରହିବ ତେବେ (ତହିଁରେ କୌଣସି କ୍ଷତି ନାହିଁ, କାରଣ) ସେମାନେ ତୁମମାନଙ୍କ ଭାଇ ଏବଂ ଅଲ୍ଲାହ ବିଶୃଙ୍ଖଳାକାରୀମାନଙ୍କୁ ସୁଧାରକମାନଙ୍କ ତୁଳନାରେ ଉତ୍ତମରୂପେ ଜାଣନ୍ତି ; ଏବଂ ଯଦି ଅଲ୍ଲାହ ଇଚ୍ଛା କରନ୍ତେ ତେବେ ତୁମମାନଙ୍କୁ ଅସୁବିଧାରେ ପକାଇ ଦେଇ ପାରନ୍ତେ ; ଏବଂ ଅଲ୍ଲାହ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।"

وَلَا تَنْكِحُوا الْمُشْرِكٰتِ حَتّٰى يُؤْمِنَّ ۭ وَلَاَمَةٌ مُّؤْمِنَةٌ خَيْرٌ مِّنْ مُّشْرِكَةٍ وَّلَوْ اَعْجَبَتْكُمْ ۚ وَلَا تُنْكِحُوا الْمُشْرِكِيْنَ

୨୨୨. ଏବଂ ମୁସରିକ ମହିଳାମାନେ ବିଶ୍ୱାସ ନ କରିବା ପର୍ଯ୍ୟନ୍ତ ତୁମେମାନେ ସେମାନଙ୍କୁ ବିବାହ[2] କରନାହିଁ ; ଏବଂ ଜଣେ ମୁସରିକମହିଳା ତୁମକୁ (ଯେତେ) ପସନ୍ଦ ହେଲେ ମଧ୍ୟ ବିଶ୍ୱାସକାରିଣୀ ଦାସୀ ତା ଅପେକ୍ଷା ନିଶ୍ଚୟ

---

୧. ଅର୍ଥାତ୍ ସେତିକି ଦାନ କର ଯେତିକି ତୁମ ପକ୍ଷରେ ସମ୍ଭବ ଓ ଯାହା ତୁମ ଧର୍ମବିଶ୍ୱାସ ପ୍ରତି କ୍ଷତିକାରକ ହେବ ନାହିଁ । ଯେହେତୁ କେତେକ ବ୍ୟକ୍ତି ଦୁର୍ବଳମନା ଥାନ୍ତି, ତେଣୁ ଅତ୍ୟନ୍ତ ଆବେଗର ବଶବର୍ତ୍ତୀ ହୋଇ ବହୁ ପରିମାଣରେ ଦାନ କରିଦିଅନ୍ତି । କିନ୍ତୁ ସେମାନେ ଅଧିକ ଧୈର୍ଯ୍ୟବାନ ହୋଇ ନ ଥିବାରୁ ଅଭାବଗ୍ରସ୍ତ ହେବେ ବନ୍ଧୁମାନଙ୍କ ଠାରୁ ସାହାଯ୍ୟ ଭିକ୍ଷା କରନ୍ତି । ସେମାନଙ୍କ ଚାହିଦା ମୁତାବକ ସାହାଯ୍ୟ ନ ମିଳିଲେ ସେମାନେ ଆପତ୍ତି କରିବାରେ ତତ୍ପର ହୁଅନ୍ତି । କିନ୍ତୁ ଯେଉଁମାନେ ଅତ୍ୟନ୍ତ ଧୈର୍ଯ୍ୟଶୀଳ ସେମାନଙ୍କ ପକ୍ଷରେ ଏହି ସର୍ତ୍ତ ପ୍ରଯୋଜ୍ୟ ନୁହେଁ । ଥରେ ମହାପୁରୁଷ ମହମ୍ମଦଙ୍କ ନବୀଦଶାରେ ଯୁଦ୍ଧପାଇଁ ଧନ ଆବଶ୍ୟକ ହେଲା । ଅବୁବକର ନିଜର ସମସ୍ତ ଧନ ଏହି ସକାଶେ ଦାନ କରିବାରୁ ମହାପୁରୁଷ ମହମ୍ମଦ ସେସବୁକୁ ପ୍ରସନ୍ନତା ସହକାରେ ଗ୍ରହଣ କଲେ । ଏ ସମ୍ବନ୍ଧରେ ଅନ୍ୟମାନେ ଜାଣିବା ପରେ ସେମାନଙ୍କ ମଧ୍ୟରେ ଜଣେ ସାଧାରଣ ବିଶ୍ୱାସକାରୀ ଗୋଟିଏ ସ୍ୱର୍ଣ୍ଣପିଣ୍ଡ ଦାନ କରିବାକୁ ଇଚ୍ଛା କଲେ । ମାତ୍ର ମହାପୁରୁଷ ମହମ୍ମଦ ସେହି ଦାନ ଗ୍ରହଣ କରିବାକୁ ଅଗ୍ରାହ୍ୟ କରିଦେଇ କହିଲେ, ତୁମମାନଙ୍କ ଭଳି କେତେକ ନିଜର ସର୍ବସ୍ୱ ଦାନ କରି ପରେ ଅନ୍ୟମାନଙ୍କ ନିକଟରେ ହସ୍ତ ପ୍ରସାରଣ କରୁଅଛ । ତେଣୁ ତୁମ ଠାରୁ ଏତେ ବଡ଼ ଦାନ ଗ୍ରହଣ କରାଯାଇ ପାରିବ ନାହିଁ । ଅତଏବ ସମସ୍ତଙ୍କ ଠାରୁ ସମାନ ପରିମାଣ ଦାନ ଗ୍ରହଣ କରାଯାଇ ପାରିବ ନାହିଁ । ସମାଜରେ ଏପରି କେତେକ ବ୍ୟକ୍ତି ମଧ୍ୟ ଅଛନ୍ତି ଯେଉଁମାନେ ଅନ୍ୟମାନଙ୍କର ଆବଶ୍ୟକତାକୁ ହୃଦୟଙ୍ଗମ କରି ଯଥା ସମୟରେ ସେମାନଙ୍କୁ ସାହାଯ୍ୟ କରିଥାନ୍ତି । ସେଭଳି ବ୍ୟକ୍ତି ଜଣେ ମାତା ସଦୃଶ । ଯେପରି ଶିଶୁ ଖାଇବାକୁ ମାଗୁ ବା ନ ମାଗୁ, ମାଆ ସ୍ନେହରେ ଓ ଖୁସିରେ ଶିଶୁର ଇଚ୍ଛା ପୂରଣ କରୁଥାଏ ସେହିପରି ପ୍ରକୃତ ବିଶ୍ୱାସକାରୀ ଅନ୍ୟମାନଙ୍କର ଚାହିଦାକୁ ପୂରଣ କରନ୍ତି ।

୨. ପତି ଓ ପତ୍ନୀ ଭିନ୍ନ ଧର୍ମାବଲମ୍ବୀ ହେଲେ ସେମାନଙ୍କ ମଧ୍ୟରେ ନିଜ ନିଜ ଚିନ୍ତାଧାରା, ଧର୍ମବିଶ୍ୱାସ ଓ ଜୀବନ ଦର୍ଶନରେ ଏକ ବିରାଟ ପାର୍ଥକ୍ୟ ଦୃଷ୍ଟିଗୋଚର ହେବ । ଫଳରେ ସେମାନଙ୍କ ମଧ୍ୟରେ ମନାନ୍ତର ଓ ମତାନ୍ତର ଘଟିବ ଓ ତାହାର କୁପ୍ରଭାବ ସେମାନଙ୍କ ସନ୍ତାନ ଉପରେ ପଡ଼ିବ । ଏଣୁ ସମଧର୍ମାବଲମ୍ବୀଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ ହେବା ଶ୍ରେୟସ୍କର ।

ଉତ୍କୃଷ୍ଟତର ; ଏବଂ ମୁଶ୍‌ରିକମାନେ ଯେପର୍ଯ୍ୟନ୍ତ ବିଶ୍ୱାସ କରିନାହାନ୍ତି (ସେମାନଙ୍କ ସହିତ ମୁସଲମାନ ମହିଳାମାନଙ୍କୁ) ବିବାହ କରାଅ ନାହିଁ ; ଏବଂ ଜଣେ (ସ୍ୱାଧୀନ) ମୁଶରିକ ତୁମକୁ (ଯେତେ) ପସନ୍ଦ ହେଲେ ମଧ୍ୟ ଜଣେ ବିଶ୍ୱାସକାରୀ ଦାସ ତା ଅପେକ୍ଷା ନିଶ୍ଚୟ ଉତ୍କୃଷ୍ଟତର ; ଏ ଲୋକମାନେ ତ ନରକାଗ୍ନି ଆଡ଼କୁ ଡାକୁଛନ୍ତି ଏବଂ ଅଲ୍ଲାହ୍ ନିଜ ଆଦେଶ ମାଧ୍ୟମରେ ବୈକୁଣ୍ଠ ଓ ମୋକ୍ଷ ଆଡ଼କୁ ଡାକୁଛନ୍ତି ; ଏବଂ ସେ ଲୋକମାନଙ୍କ ପାଇଁ ନିଜ (ଚିହ୍ନଟ)ର ଲକ୍ଷଣଗୁଡ଼ିକୁ ସ୍ପଷ୍ଟଭାବରେ ବର୍ଣ୍ଣନା କରୁଛନ୍ତି ଯେପରିକି ସେମାନେ ଶିକ୍ଷାଲାଭ କରିପାରିବେ ।

حَتّٰى يُؤْمِنُوْا ؕ وَلَعَبْدٌ مُّؤْمِنٌ خَيْرٌ مِّنْ مُّشْرِكٍ وَّلَوْ اَعْجَبَكُمْ ؕ اُولٰٓئِكَ يَدْعُوْنَ اِلَى النَّارِ ۖۚ وَاللّٰهُ يَدْعُوْٓا اِلَى الْجَنَّةِ وَالْمَغْفِرَةِ بِاِذْنِهٖ ۚ وَيُبَيِّنُ اٰيٰتِهٖ لِلنَّاسِ لَعَلَّهُمْ يَتَذَكَّرُوْنَ ﴿۲۲۲﴾

ରୁ:୨୮

୨୨୩. ଏବଂ ଏ (ଲୋକ)ମାନେ ତୁମଙ୍କୁ ଋତୁସ୍ରାବ (ଅବଧିରେ ପତ୍ନୀମାନଙ୍କ ନିକଟକୁ ଯିବା) ସଂକ୍ରାନ୍ତରେ ପ୍ରଶ୍ନ କରୁଛନ୍ତି ; ତୁମେ କୁହ, ''ଏହା ଏକ ଅସ୍ଥାୟୀ ଅସୁସ୍ଥତା ଅଟେ ;'' ସୁତରାଂ ଋତୁସ୍ରାବ ସମୟରେ ତୁମେମାନେ ପତ୍ନୀମାନଙ୍କ ଠାରୁ ଦୂରେଇ ରହ ; ଏବଂ ସେମାନେ ପବିତ୍ର (ଓ ନିର୍ମଳ) ନ ହେବା ପର୍ଯ୍ୟନ୍ତ ସେମାନଙ୍କ ନିକଟକୁ ଯାଅ ନାହିଁ ; ତା'ପରେ ଯେତେବେଳେ ସେମାନେ ସ୍ନାନ କରି ପବିତ୍ର ହେବେ ସେତେବେଳେ ଅଲ୍ଲାହ୍ ତୁମକୁ ଦେଇଥିବା ଆଦେଶ ଅନୁସାରେ ସେମାନଙ୍କ ନିକଟକୁ ଯାଅ ; ଏବଂ ଯେଉଁମାନେ ଅଲ୍ଲାହ୍‌ଙ୍କ ପ୍ରତି ସର୍ବଦା ଧ୍ୟାନ ଦେଇଥାନ୍ତି ସେମାନଙ୍କୁ ସେ ବାସ୍ତବରେ ପ୍ରେମ କରନ୍ତି ଓ (ବାହ୍ୟ ଓ ଅନ୍ତରକୁ) ନିର୍ମଳ ରଖୁଥିବା ଲୋକମାନଙ୍କୁ (ମଧ୍ୟ ବାସ୍ତବରେ) ସେ ପ୍ରେମ କରନ୍ତି ।

وَيَسْـَٔلُوْنَكَ عَنِ الْمَحِيْضِ ؕ قُلْ هُوَ اَذًى ۙ فَاعْتَزِلُوا النِّسَآءَ فِى الْمَحِيْضِ ۙ وَلَا تَقْرَبُوْهُنَّ حَتّٰى يَطْهُرْنَ ۚ فَاِذَا تَطَهَّرْنَ فَاْتُوْهُنَّ مِنْ حَيْثُ اَمَرَكُمُ اللّٰهُ ؕ اِنَّ اللّٰهَ يُحِبُّ التَّوَّابِيْنَ وَيُحِبُّ الْمُتَطَهِّرِيْنَ ﴿۲۲۳﴾

୨୨୪. ତୁମମାନଙ୍କ ପତ୍ନୀମାନେ ତୁମମାନଙ୍କ ପାଇଁ (ଏକ ପ୍ରକାର) କ୍ଷେତ୍ରସଦୃଶ[୧] ; ତେଣୁ ତୁମେମାନେ ଯେତେବେଳେ ଓ ଯେପରି ଇଚ୍ଛା ନିଜର କ୍ଷେତ୍ର ନିକଟକୁ ଯାଅ ଏବଂ ନିଜ ସକାଶେ ଆଗକୁ (କିଛି) ପ୍ରେରଣ କର ; ଏବଂ ଅଲ୍ଲାହ୍‌ଙ୍କୁ ଭୟ କର ; ଏବଂ ଜାଣି ରଖ ଯେ ତୁମେମାନେ ତାଙ୍କୁ ସାକ୍ଷାତ୍ କରିବ ; ଏବଂ ତୁମେ ବିଶ୍ୱାସକାରୀମାନଙ୍କୁ (ସେ ଦିନ ସଂକ୍ରାନ୍ତରେ) ସୁସମାଚାର ଦିଅ ।

نِسَآؤُكُمْ حَرْثٌ لَّكُمْ ۪ فَاْتُوْا حَرْثَكُمْ اَنّٰى شِئْتُمْ ۫ وَقَدِّمُوْا لِاَنْفُسِكُمْ ؕ وَاتَّقُوا اللّٰهَ وَاعْلَمُوْٓا اَنَّكُمْ مُّلٰقُوْهُ ؕ وَبَشِّرِ الْمُؤْمِنِيْنَ ﴿۲۲۴﴾

୧. ଏଠାରେ ପତ୍ନୀମାନଙ୍କୁ କ୍ଷେତ୍ର ସହିତ ତୁଳନା କରାଯାଇଛି । ଫସଲ ଅମଳ କରିବା ପାଇଁ ଯେପରି ବିଭିନ୍ନ ବ୍ୟବସ୍ଥା କରିବାକୁ ହୋଇଥାଏ ସେହିପରି ପତ୍ନୀମାନଙ୍କ ସହିତ ଏକ ନିର୍ଦ୍ଦିଷ୍ଟ ବ୍ୟବସ୍ଥା କରିବାକୁ ଅର୍ଥାତ୍ ଯୌନ ସମ୍ପର୍କ ସ୍ଥାପନ କରିବାକୁ ହେବ, ଫଳରେ ସନ୍ତାନ ଲାଭ ସମ୍ଭବ ହେବ । ଏହା ପ୍ରାୟଶଃ ଲାଭଦାୟକ । ସୁତରାଂ ପତ୍ନୀରୂପୀ କ୍ଷେତ୍ର ସହ ଏପରି ରୀତିରେ ସୁସମ୍ପର୍କ ସ୍ଥାପନ କର ଯଦ୍ୱାରା ଅଲ୍ଲାହ୍ ତୁମମାନଙ୍କ ଉପରେ ପ୍ରସନ୍ନ ହେବେ ।

وَ لَا تَجْعَلُوا اللّٰهَ عُرْضَةً لِّاَیْمَانِكُمْ اَنْ تَبَرُّوْا وَتَتَّقُوْا وَ تُصْلِحُوْا بَیْنَ النَّاسِؕ وَاللّٰهُ سَمِیْعٌ عَلِیْمٌ ۝

୨୨୫. ଏବଂ ତୁମେମାନେ ସଦ୍‌ବ୍ୟବହାର କରିବା, ଧର୍ମଭୀରୁତା ଅବଲମ୍ବନ କରିବା ଓ ଲୋକମାନଙ୍କ ମଧ୍ୟରେ ସୁଧାର କାର୍ଯ୍ୟ ସମ୍ପନ୍ନ କରିବା (ବିଷୟ)ରେ ଅଲ୍ଲାହଙ୍କୁ ନିଜ ଶପଥର ନିଶାଣ[1] କରନାହିଁ ; ଏବଂ ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ)ସର୍ବଜ୍ଞ ।

لَا یُؤَاخِذُكُمُ اللّٰهُ بِاللَّغْوِ فِیْۤ اَیْمَانِكُمْ وَلٰكِنْ یُّؤَاخِذُكُمْ بِمَا كَسَبَتْ قُلُوْبُكُمْ ؕ وَاللّٰهُ غَفُوْرٌ حَلِیْمٌ ۝

୨୨୬. ଅଲ୍ଲାହ ତୁମମାନଙ୍କର ଅଯଥା ଶପଥ[2] ଲାଗି ତୁମମାନଙ୍କୁ ଧରିବେ ନାହିଁ କିନ୍ତୁ ତୁମମାନଙ୍କ ଅନ୍ତର (ଇଚ୍ଛାକରି) ଯାହାକିଛି ପାପ କରିଥାଏ ସେଥିପାଇଁ ଅବଶ୍ୟ ସେ ତୁମମାନଙ୍କୁ ଧରିବେ ; ଏବଂ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ ଓ ସହନଶୀଳ ।

لِلَّذِیْنَ یُؤْلُوْنَ مِنْ نِّسَآئِهِمْ تَرَبُّصُ اَرْبَعَةِ اَشْهُرٍ ۚ فَاِنْ فَآءُوْ فَاِنَّ اللّٰهَ غَفُوْرٌ رَّحِیْمٌ ۝

୨୨୭. ଯେଉଁ ଲୋକମାନେ ନିଜ ପତ୍ନୀମାନଙ୍କ ସମ୍ବନ୍ଧରେ ଶପଥ କରି (ପୃଥକ୍ ହୋଇ ରହି) ଥାଆନ୍ତି ସେମାନଙ୍କ ପାଇଁ (କେବଳ) ଚାରିମାସ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ[3] ହେବ ; ତା'ପରେ ଯଦି (ସେମାନେ ଏହି ସମୟ ମଧ୍ୟରେ ସମାଧାନ କଲେ) ପ୍ରତ୍ୟାବର୍ତ୍ତନ କରନ୍ତି ତେବେ ଅଲ୍ଲାହ ନିଶ୍ଚୟ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

---

୧. ଅର୍ଥାତ୍ ଅଲ୍ଲାହଙ୍କୁ ନିଜ ଶପଥର ଲକ୍ଷ୍ୟ ବା ନିଶାଣ ଅଥବା ଏକ ଢାଲ ରୂପେ ଗ୍ରହଣ କର ନାହିଁ । ଯଦି ତୁମେମାନେ କୌଣସି ଉତ୍ତମ କାର୍ଯ୍ୟ ନ କରିବାକୁ ଶପଥ କରିବ ତେବେ ତୁମେମାନେ ସଂସ୍କାର କରିବାରେ, କଲ୍ୟାଣ କରିବାରେ ଓ ଆତ୍ମସଂଯମ ଅବଲମ୍ବନ କରିବାରେ ବିଫଳ ହେବ ।

୨. ଅଯଥା ଶପଥ ହେଉଛି-

(କ) ଯାହା ବିନା ବିଚାରରେ କରାଯାଏ ।

(ଖ) ଶପଥକାରୀ ଏପରି ବିଶ୍ୱାସ ସହକାରେ ଶପଥ କରେ ଯେ ତାହା ସତ୍ୟ ଅଟେ ଅଥଚ ତାହାର ସେହି ବିଶ୍ୱାସ ଅସତ୍ୟ ଓ ଭ୍ରମାତ୍ମକ ଅଟେ ।

(ଗ) ଏପରି କ୍ରୋଧର ବଶବର୍ତ୍ତୀ ହୋଇଥାଏ ଯେ ଶପଥ କଲାବେଳେ ତାହାର କୌଣସି ଜ୍ଞାନ ନ ଥାଏ ।

(ଘ) ଅବୈଧ ବିଷୟ ସମ୍ପାଦନ କରିବା ପାଇଁ ଶପଥ ।

(ଙ) କର୍ତ୍ତବ୍ୟ ପାଳନ ନ କରିବା ପାଇଁ ଶପଥ ।

(ଚ) ଭାବାବେଶର ବଶବର୍ତ୍ତୀ ହୋଇ କରାଯିବା ଶପଥ ।

ତେଣୁ ସେପରି ଶପଥ ଭଙ୍ଗ କଲେ ସେଥିରେ କୌଣସି ଦୋଷ ନାହିଁ । ସେପରି ଶପଥ ସକାଶେ ତୌବା ବା ଅନୁତାପ କରିବାକୁ ନିର୍ଦ୍ଦେଶ ଦିଆଯାଇଛି, ଅନ୍ୟଥା ଜାଣିଶୁଣି ଏପରି ଶପଥ କଲେ ପାପ ହେବ ।

୩. ଇସଲାମ ଧର୍ମ ପ୍ରଚାର ହେବା ପୂର୍ବରୁ କେତେକ ଆରବବାସୀ ନିଜ ପତ୍ନୀକୁ ତଲାକ ନ ଦେଇ ମଧ୍ୟ ଏପରି ଶପଥ କରୁଥିଲେ ଯେ ସେମାନେ ନିଜ ନିଜ ପତ୍ନୀମାନଙ୍କ ସହ କୌଣସି ସମ୍ପର୍କ ରଖିବେ ନାହିଁ; ଯାହା ଫଳରେ ସେମାନେ ପତ୍ନୀମାନଙ୍କ ଅଧିକାର ସମ୍ବନ୍ଧରେ ଅମନୋଯୋଗୀ ରହୁଥିଲେ ଓ ନିଜେ ନିଜକୁ ମୁକ୍ତ ଓ ନିଷ୍ପାପ ମନେ କରୁଥିଲେ । ଏବେ ବି ପୃଥିବୀରେ କେତେକ କ୍ଷେତ୍ରରେ ଏପରି ମନୋଭାବ ଦୃଷ୍ଟିଗୋଚର ହେଉଛି । କିନ୍ତୁ ଇସଲାମ ଧର୍ମର ନୀତି ଅନୁଯାୟୀ ସେପରି ମୁସଲମାନମାନଙ୍କୁ ଚାରି ମାସର ଏକ ଅବଧି ମଞ୍ଜୁର କରାଯାଇଛି । ସେହି ନିର୍ଦ୍ଧାରିତ ଅବଧି ମଧ୍ୟରେ ସେହି ବ୍ୟକ୍ତିଙ୍କୁ ଏକେ ନିଜ ପତ୍ନୀ ସହିତ ଆପୋଷ ନିଷ୍ପତ୍ତି କରିବାକୁ ହେବ ବା ତାହାକୁ ତଲାକ ଦେବାକୁ ହେବ । ଅନ୍ୟଥା ବିଚାରପତି ସେହି ପତ୍ନୀକୁ ତଲାକ ଦିଆଇବେ ।

وَإِنْ عَزَمُوا الطَّلَاقَ فَإِنَّ اللَّهَ سَمِيعٌ عَلِيمٌ ﴿٢٢٨﴾

୨୨୮. ଏବଂ ଯଦି ସେମାନେ ତଲାକ୍[୧] (ଦେବା)ର ନିଷ୍ପତ୍ତି କରନ୍ତି ତେବେ ଅଲ୍ଲାହ୍ ବାସ୍ତବରେ ମହାନ୍ ଶ୍ରୋତା ଓ ସର୍ବଜ୍ଞ ।

وَالْمُطَلَّقَاتُ يَتَرَبَّصْنَ بِأَنفُسِهِنَّ ثَلَاثَةَ قُرُوءٍ ۚ وَلَا يَحِلُّ لَهُنَّ أَن يَكْتُمْنَ مَا خَلَقَ اللَّهُ فِي أَرْحَامِهِنَّ إِن كُنَّ يُؤْمِنَّ بِاللَّهِ وَالْيَوْمِ الْآخِرِ ۚ وَبُعُولَتُهُنَّ أَحَقُّ بِرَدِّهِنَّ فِي ذَٰلِكَ إِنْ أَرَادُوا إِصْلَاحًا ۚ وَلَهُنَّ مِثْلُ الَّذِي عَلَيْهِنَّ بِالْمَعْرُوفِ ۚ وَلِلرِّجَالِ عَلَيْهِنَّ دَرَجَةٌ ۗ وَاللَّهُ عَزِيزٌ حَكِيمٌ ﴿٢٢٩﴾

୨୨୯. ଏବଂ ଯେଉଁ ମହିଳାମାନଙ୍କୁ ତଲାକ ପ୍ରାପ୍ତ ହୁଏ ସେମାନେ ତିନି (ଥର) ଋତୁସ୍ରାବ ପର୍ଯ୍ୟନ୍ତ ନିଜେ ନିଜକୁ ଅଟକାଇ ରଖନ୍ତୁ ଏବଂ ଯଦି ସେମାନେ ଅଲ୍ଲାହ୍ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରନ୍ତି ତେବେ (ସେମାନେ ଅବଗତ ହୁଅନ୍ତୁ ଯେ) ଅଲ୍ଲାହ୍ ସେମାନଙ୍କ ଗର୍ଭରେ ଯାହାକିଛି ସୃଷ୍ଟି କରିଛନ୍ତି ତାକୁ ଗୋପନ ରଖିବା ସେମାନଙ୍କ ପକ୍ଷରେ ଉଚିତ ନୁହେଁ ; ଏବଂ ସେ (ସମୟ) ମଧ୍ୟରେ ଯଦି ସେମାନଙ୍କ ସ୍ୱାମୀମାନେ ପରସ୍ପର ମଧ୍ୟରେ ମିଳାମିଶା କରିବାକୁ ଇଚ୍ଛୁକ ହୁଅନ୍ତି ତେବେ ସେମାନେ ସେ (ପତ୍ନୀ) ମାନଙ୍କୁ ଫେରାଇ ନେବାଲାଗି ଅଧିକ ହକଦାର ଅଟନ୍ତି ; ଯେପରି ସେ (ମହିଳା) ମାନଙ୍କର କେତେକ ଦାୟିତ୍ୱ ଅଛି ସେହିପରି ନ୍ୟାୟତଃ ସେମାନଙ୍କର କେତେକ ଅଧିକାର ମଧ୍ୟ ରହିଅଛି ; ଅବଶ୍ୟ ପୁରୁଷମାନଙ୍କର ସେମାନଙ୍କ ଉପରେ ଏକ ପ୍ରକାର ପ୍ରାଧାନ୍ୟ ରହିଅଛି ; ଏବଂ ଅଲ୍ଲାହ୍ ହିଁ ପରାକ୍ରମୀ(ଓ) ତତ୍ତ୍ୱଜ୍ଞ ।

٢٨ ع ١٢

ରୁ: ୨୯

الطَّلَاقُ مَرَّتَانِ ۖ فَإِمْسَاكٌ بِمَعْرُوفٍ أَوْ تَسْرِيحٌ بِإِحْسَانٍ ۗ وَلَا يَحِلُّ لَكُمْ أَن تَأْخُذُوا مِمَّا آتَيْتُمُوهُنَّ شَيْئًا إِلَّا

୨୩୦. ଏପରି ତଲାକ (ଯେଉଁଥିରେ ମିଳାମିଶା ହୋଇପାରିବ) ଦୁଇଥର ହୋଇପାରେ ; ତା ପରେ (ହୁଏତ ପତ୍ନୀକୁ) ସମୁଚିତ ପନ୍ଥାରେ ଅଟକାଇବାକୁ ହେବ ଅଥବା ସଦ୍‌ବ୍ୟବହାର ପୂର୍ବକ ବିଦାୟ ଦେବାକୁ ହେବ ; ଏବଂ ସେଥିରୁ (ଅର୍ଥାତ୍ ସେହି

---

୧. ଅଲ୍ଲାହ୍‌ଙ୍କ ଦୃଷ୍ଟିରେ ସମସ୍ତ ବୈଧ ବିଷୟ ମଧ୍ୟରେ ତଲାକ ବା ବିବାହ ବିଚ୍ଛେଦ ହେଉଛି ଏକ ଗର୍ହିତ କାର୍ଯ୍ୟ । ତେଣୁ ତାହାର ନିବାରଣ ନିମନ୍ତେ ଅନେକ ପ୍ରକାର କଟକଣା ଓ ପ୍ରତିବନ୍ଧକ ସୃଷ୍ଟି ଦିଆଯାଇଛି । ସେଗୁଡିକ ହେଉଛି—

(କ) ପତ୍ନୀ ଶୌଚ ଥିବାବେଳେ ହିଁ ତଲାକ ଦିଆ ଯାଇପାରେ ।

(ଖ) ତଲାକ ଘୋଷଣା କରାଯିବା ପରେ ତିନିଗୋଟି ଋତୁସ୍ରାବ ଅର୍ଥାତ୍ ପ୍ରାୟ ତିନିମାସ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ।

(ଗ) ପତ୍ନୀ ଗର୍ଭଧାରଣ କରିଥିଲେ ସେ ବିଷୟ ଗୋପନୀୟ ରଖାଯିବ ନାହିଁ । କାରଣ ଏହା ଆପୋଷ ମୀମାଂସାକୁ ସହଜ କରାଇଥାଏ ।

(ଘ) ସମ୍ପୂର୍ଣ୍ଣ ଓ ଅପରିବର୍ତ୍ତନୀୟ ପୃଥକୀକରଣ ନିମନ୍ତେ ତିନିଥର ତଲାକ ଦେବାକୁ ହୁଏ । ପ୍ରଥମ ଓ ଦ୍ୱିତୀୟ ତଲାକ ଘୋଷଣା କରାଯିବା ପରେ ଓ ପ୍ରତୀକ୍ଷା କାଳର ଅବସାନ ପୂର୍ବରୁ ଯଦି ପତି ତା'ର ପତ୍ନୀକୁ ନିଜ ବୈବାହିକ ଜୀବନ ମଧ୍ୟକୁ ଫେରାଇ ନେବାକୁ ଇଚ୍ଛା କରିବ ତେବେ ସେ ତାହା କରିପାରିବ । ଏପରି କି ପ୍ରତୀକ୍ଷା କାଳ ଶେଷ ହୋଇଯାଇଥିଲେ ମଧ୍ୟ ପ୍ରଥମ ଓ ଦ୍ୱିତୀୟ ତଲାକ କ୍ଷେତ୍ରରେ ଉଭୟ ପୁନର୍ମିଳିତ ହୋଇପାରନ୍ତି ।

(ଙ) ତୃତୀୟ ତଲାକ ଅପରିବର୍ତ୍ତନୀୟ ହୋଇଥିବାରୁ ସେମାନଙ୍କ ମଧ୍ୟରେ ଆଉ ତୁରନ୍ତ ବିବାହ ହୋଇପାରିବ ନାହିଁ । କିନ୍ତୁ ସେହି ସ୍ତ୍ରୀ ଅନ୍ୟ କୌଣସି ପୁରୁଷକୁ ବିବାହ କଲା ପରେ ଯଦି ସେ ତାହାକୁ ତଲାକ ଦେଇଦିଏ ବା ଶେଷୋକ୍ତ ସ୍ୱାମୀର ମୃତ୍ୟୁ ହୁଏ, ତେବେ ପତ୍ନୀ ପ୍ରଥମ ପତିକୁ ବିବାହ କରିପାରିବ ।

(ଚ) ଯଦି କୌଣସି ବ୍ୟକ୍ତି ଏକ ସମୟରେ ଏକାଧିକ, ଏପରିକି ତିନିଥର ବା ତା' ଠାରୁ ଅଧିକ, ତଲାକ ଦିଏ ତେବେ ତାହା ଗୋଟିଏ ତଲାକ ବୋଲି ଗଣ୍ୟ ହେବ ।

اَنْ يَّخَافَآ اَلَّا يُقِيْمَا حُدُوْدَ اللّٰهِ ؕ فَاِنْ خِفْتُمْ اَلَّا يُقِيْمَا حُدُوْدَ اللّٰهِ ۙ فَلَا جُنَاحَ عَلَيْهِمَا فِيْمَا افْتَدَتْ بِهٖ ؕ تِلْكَ حُدُوْدُ اللّٰهِ فَلَا تَعْتَدُوْهَا ۚ وَمَنْ يَّتَعَدَّ حُدُوْدَ اللّٰهِ فَاُولٰٓئِكَ هُمُ الظّٰلِمُوْنَ ﴿۲۳۰﴾

ଧନରୁ) ଯାହା ତୁମେ ତାଙ୍କୁ ପୂର୍ବରୁ ଦେଇସାରିଛ କୌଣସି ଅଂଶ ମଧ୍ୟ (ଫେରସ୍ତ) ନେବା ତୁମମାନଙ୍କ ପକ୍ଷେ ନ୍ୟାୟସଙ୍ଗତ[3] ହେବ ନାହିଁ, କେବଳ ଏହା ବ୍ୟତୀତ ଯେତେବେଳେ କି ସେ ଦୁହିଁଙ୍କୁ ଆଶଙ୍କା ହୁଏ ଯେ ସେମାନେ ଅଲ୍ଲାହ୍‌ଙ୍କ (ନିର୍ଦ୍ଧାରିତ) ସୀମାକୁ ବଜାୟ ରଖି ପାରିବେ ନାହିଁ; ଅତଏବ ଯଦି ତୁମମାନଙ୍କର[2] ଆଶଙ୍କା ହୁଏ ଯେ ସେ (ଦୁହେଁ) ଅଲ୍ଲାହ୍‌ଙ୍କ (ନିର୍ଦ୍ଧାରିତ) ସୀମାକୁ ବଜାୟ ରଖିପାରିବେ ନାହିଁ ତେବେ ସେ (ପତ୍ନୀ ନିଜ ସ୍ୱାଧୀନତା ହାସଲ କରିବା ପାଇଁ) ଯାହାକିଛି କ୍ଷତିପୂରଣ ସ୍ୱରୂପ ଦିଏ ତାହା ସମ୍ପର୍କରେ[1] (ସେ ଦୁହିଁଙ୍କ ମଧ୍ୟରୁ) କାହାରି କୌଣସି ପାପ ହେବ ନାହିଁ ; ଏହା ଅଲ୍ଲାହ୍‌ଙ୍କ (ନିର୍ଦ୍ଧାରିତ) ସୀମା ଅଟେ ; ସୁତରାଂ ତୁମେମାନେ ଏହାକୁ ଉଲ୍ଲଙ୍ଘନ କରନାହିଁ ; ଏବଂ ଯେଉଁ ଲୋକମାନେ ଅଲ୍ଲାହ୍‌ଙ୍କ (ନିର୍ଦ୍ଧାରିତ) ସୀମାକୁ ଉଲ୍ଲଙ୍ଘନ କରନ୍ତି ତେବେ (ଜାଣି ରଖ ଯେ) ସେମାନେ ହିଁ ପ୍ରକୃତ ଅତ୍ୟାଚାରୀ ଅଟନ୍ତି ।

فَاِنْ طَلَّقَهَا فَلَا تَحِلُّ لَهٗ مِنْۢ بَعْدُ حَتّٰى تَنْكِحَ زَوْجًا غَيْرَهٗ ؕ فَاِنْ طَلَّقَهَا فَلَا جُنَاحَ عَلَيْهِمَآ اَنْ يَّتَرَاجَعَآ اِنْ ظَنَّآ اَنْ يُّقِيْمَا حُدُوْدَ اللّٰهِ ؕ وَتِلْكَ حُدُوْدُ اللّٰهِ يُبَيِّنُهَا لِقَوْمٍ يَّعْلَمُوْنَ ﴿۲۳۱﴾

୨୩୧. ତା'ପରେ ଯଦି (ଉପରେ ବର୍ଣ୍ଣିତ ଦୁଇଟି ତଲାକ୍ ଅତିବାହିତ ହେଲା ପରେ ମଧ୍ୟ ପତି ତାହାକୁ ତୃତୀୟ) ତଲାକ୍ ଦିଏ ତେବେ ସେ ମହିଳା ତା'ପାଇଁ (ସେପର୍ଯ୍ୟନ୍ତ) ବୈଧ ହେବ ନାହିଁ ଯେପର୍ଯ୍ୟନ୍ତ ସେ (ମହିଳା) ତା'ବ୍ୟତୀତ ଅନ୍ୟ (କୌଣସି) ପତି ନିକଟକୁ ନ ଯାଇଛି ; କିନ୍ତୁ ଯଦି ସେ (ଦ୍ୱିତୀୟ ପତି) ମଧ୍ୟ ତାହାକୁ ତଲାକ୍ ଦିଏ ତେବେ ଯଦି ସେ ଉଭୟଙ୍କର (ଅର୍ଥାତ୍ ପ୍ରଥମ ପତି ଓ ପତ୍ନୀଙ୍କର) ବିଶ୍ୱାସ ହୁଏ ଯେ ସେମାନେ ଅଲ୍ଲାହ୍‌ଙ୍କ (ନିର୍ଦ୍ଧାରିତ) ସୀମାକୁ ବଜାୟ ରଖିପାରିବେ ତେବେ ପରସ୍ପର ମଧ୍ୟରେ ପୁନର୍ବାର ମିଳାମିଶା କରିବାରେ କୌଣସି ପାପ ହେବନାହିଁ ; ଏବଂ ଏହା ଅଲ୍ଲାହ୍‌ଙ୍କ (ନିର୍ଦ୍ଧାରିତ) ସୀମା ଅଟେ ଯାହା ସେ ଜ୍ଞାନବନ୍ତ ଲୋକମାନଙ୍କ ପାଇଁ ସ୍ପଷ୍ଟ ରୂପେ ବର୍ଣ୍ଣନା କରୁଛନ୍ତି ।

---

୧. ଯଦି ପତ୍ନୀ ନିଜ ପତି ପାଖରେ ରହିବାକୁ ଅନିଚ୍ଛୁକ ଥାଇ ପତିକୁ ଏହା ବିନିମୟରେ କିଛି ଦେବାକୁ ଇଚ୍ଛା କରେ ତେବେ ସେହି ପତି ତାହା ଗ୍ରହଣ କରି ତଲାକ ଦେଇଦେବା ବିଧେୟ । ଅବଶ୍ୟ ସେ ନିଜ ପତ୍ନୀକୁ ଯେତିକି ଧନ ଦେଇଥିବ କେବଳ ସେତିକି ନେଇପାରିବ କିନ୍ତୁ ତା'ଠାରୁ କିଛି ଅଧିକ ନେଇପାରିବ ନାହିଁ ।

୨. ଏଠାରେ 'ତୁମମାନଙ୍କର' ଅର୍ଥ କୌଣସି ବିଗ୍ରହପତି, ନ୍ୟାୟାଳୟ, ମୁସଲିମ ସଂଗଠନ ବା ପ୍ରଶାସନ ।

୩. ଯେତେବେଳେ କୌଣସି ବ୍ୟକ୍ତି ତା'ର ପତ୍ନୀକୁ ତଲାକ ଦିଏ, ସେ ଆଗରୁ ଦେନମହର ବା ସ୍ତ୍ରୀଧନ ଦେଇ ନ ଥିଲେ ତାହା ତୁରନ୍ତ ଦେଇଦେବ, ଫଳରେ ସେହି ତଲାକ କାର୍ଯ୍ୟକାରୀ ହୋଇପାରିବ । ଏପରି କି ଯଦି ସେ ତା'ର ପତ୍ନୀକୁ ପୂର୍ବରୁ ଦାନ ବା ଉପହାର ଆକାରରେ କିଛି ଦେଇଥାଏ ତେବେ ସେ ତାକୁ ଫେରାଇ ନେବା ଉଚିତ ନୁହେଁ ।

୨୩୨. ଏବଂ ଯେତେବେଳେ ତୁମେମାନେ ପତ୍ନୀମାନଙ୍କୁ ତଲାକ୍ ଦିଅ ଓ ସେମାନେ ନିଜ ନିର୍ଦ୍ଦିଷ୍ଟ ସମୟର (ଶେଷ) ସୀମାରେ ଉପନୀତ ହୁଅନ୍ତି ସେତେବେଳେ ଏକେତ ସେମାନଙ୍କୁ ସମୁଚିତ ପନ୍ଥାରେ ଅଟକାଅ ବା ସେମାନଙ୍କୁ ସମୁଚିତ ପନ୍ଥାରେ ବିଦାୟ ଦିଅ ; ଏବଂ ସେମାନଙ୍କୁ କଷ୍ଟଦେବା ପାଇଁ (ଏହି ଉଦ୍ଦେଶ୍ୟରେ) ଆବଦ୍ଧକରି ରଖ ନାହିଁ ଯେ (ପରେ) ସେମାନଙ୍କ ପ୍ରତି ଅତ୍ୟାଚାର କରିବ, ଏବଂ ଯେଉଁ ବ୍ୟକ୍ତି ଏପରି କରିବ (ତେବେ ବୁଝି ରଖ ଯେ) ସେ ନିଜ ଉପରେ ହିଁ ଅତ୍ୟାଚାର କରିଅଛି ; ଏବଂ ତୁମେମାନେ ଅଲ୍ଲାହ୍‌ଙ୍କ ଆଦେଶଗୁଡ଼ିକ ପ୍ରତି ଉପହାସ କରନାହିଁ ଏବଂ ତୁମମାନଙ୍କ ପ୍ରତି ଅଲ୍ଲାହ୍‌ଙ୍କ କୃପାକୁ ମନେରଖ ; ଏବଂ (ତାହାକୁ ମଧ୍ୟ ମନେରଖ) ଯାହା ସେ ତୁମମାନଙ୍କ ପ୍ରତି ଅବତୀର୍ଣ୍ଣ କରିଛନ୍ତି ଅର୍ଥାତ୍ ଗ୍ରନ୍ଥ ଓ ତତ୍ତ୍ୱ, ଯାହା ମାଧ୍ୟମରେ ସେ ତୁମମାନଙ୍କୁ ଉପଦେଶ ଦେଇଥାନ୍ତି ଏବଂ ଅଲ୍ଲାହ୍‌ଙ୍କୁ ଭୟକର ଏବଂ ଜାଣିରଖ ଯେ ଅଲ୍ଲାହ୍ ପ୍ରତ୍ୟେକ ବିଷୟକୁ ଭଲରୂପେ ଜାଣନ୍ତି ।

وَإِذَا طَلَّقْتُمُ النِّسَاءَ فَبَلَغْنَ أَجَلَهُنَّ فَأَمْسِكُوهُنَّ بِمَعْرُوفٍ أَوْ سَرِّحُوهُنَّ بِمَعْرُوفٍ وَلَا تُمْسِكُوهُنَّ ضِرَارًا لِّتَعْتَدُوا وَمَن يَفْعَلْ ذَٰلِكَ فَقَدْ ظَلَمَ نَفْسَهُ وَلَا تَتَّخِذُوا آيَاتِ اللَّهِ هُزُوًا وَاذْكُرُوا نِعْمَتَ اللَّهِ عَلَيْكُمْ وَمَا أَنزَلَ عَلَيْكُم مِّنَ الْكِتَابِ وَالْحِكْمَةِ يَعِظُكُم بِهِ وَاتَّقُوا اللَّهَ وَاعْلَمُوا أَنَّ اللَّهَ بِكُلِّ شَيْءٍ عَلِيمٌ ﴿٢٣٢﴾

ରୁ:୩୦

୨୩୩. ଏବଂ ଯେତେବେଳେ ତୁମେମାନେ ପତ୍ନୀମାନଙ୍କୁ ତଲାକ ଦିଅ ଓ ସେମାନେ ନିଜ ଇଦ୍ଦତ୍‌କୁ[1] ସମ୍ପୂର୍ଣ୍ଣ କରନ୍ତି ଏବଂ ଯେତେବେଳେ ସେମାନେ ପରସ୍ପର ମଧ୍ୟରେ ଉତ୍ତମ ପନ୍ଥାରେ ସମ୍ମତ ହୋଇଯାଆନ୍ତି ସେତେବେଳେ ସେମାନଙ୍କୁ ନିଜ ପତିମାନଙ୍କ ସହିତ (ପୁଣି) ବିବାହ କରିବାକୁ ବାରଣ କର ନାହିଁ ; ତୁମମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଯେ ଅଲ୍ଲାହ୍ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ ସ୍ଥାପନ କରେ, ତାହାକୁ ଏ (ବିଷୟରେ) ଉପଦେଶ ଦିଆଯାଉଛି (ବୁଝି ରଖ ଯେ) ଏ ବିଷୟ ତୁମମାନଙ୍କ ପକ୍ଷରେ ସବୁଠାରୁ ଅଧିକ ମଙ୍ଗଳକର ଓ ଅତ୍ୟନ୍ତ ପବିତ୍ର ଅଟେ ; ଏବଂ ଅଲ୍ଲାହ୍ ଜାଣନ୍ତି ଅଥଚ ତୁମେମାନେ ଜାଣ ନାହିଁ ।

وَإِذَا طَلَّقْتُمُ النِّسَاءَ فَبَلَغْنَ أَجَلَهُنَّ فَلَا تَعْضُلُوهُنَّ أَن يَنكِحْنَ أَزْوَاجَهُنَّ إِذَا تَرَاضَوْا بَيْنَهُم بِالْمَعْرُوفِ ذَٰلِكَ يُوعَظُ بِهِ مَن كَانَ مِنكُمْ يُؤْمِنُ بِاللَّهِ وَالْيَوْمِ الْآخِرِ ذَٰلِكُمْ أَزْكَىٰ لَكُمْ وَأَطْهَرُ وَاللَّهُ يَعْلَمُ وَأَنتُمْ لَا تَعْلَمُونَ ﴿٢٣٣﴾

୨୩୪. ଏବଂ ମାଆମାନେ ନିଜ ସନ୍ତାନମାନଙ୍କୁ ସମ୍ପୂର୍ଣ୍ଣ ଦୁଇବର୍ଷ ଯାଏ ଦୁଗ୍ଧ ପାନ କରାନ୍ତୁ ; ଯେଉଁମାନେ ଦୁଗ୍ଧପାନ କରାଇବା (ନିର୍ଦ୍ଧାରିତ ସମୟକୁ) ସମ୍ପୂର୍ଣ୍ଣ କରିବାକୁ ଇଚ୍ଛା କରନ୍ତି ସେମାନଙ୍କ ପାଇଁ (ଏହି ନିର୍ଦ୍ଦେଶ ଉଦ୍ଦିଷ୍ଟ) ; ଏବଂ ଯାହାର ସନ୍ତାନ ଅଛି ସେ ପ୍ରଚଳିତ ରୀତି-ନୀତି ଅନୁସାରେ ସେ (ମାତା)

وَالْوَالِدَاتُ يُرْضِعْنَ أَوْلَادَهُنَّ حَوْلَيْنِ كَامِلَيْنِ لِمَنْ أَرَادَ أَن يُتِمَّ الرَّضَاعَةَ وَعَلَى الْمَوْلُودِ لَهُ

---

୧. ଇଦ୍ଦତ — ପରିଭାଷା ଦ୍ରଷ୍ଟବ୍ୟ

ମାନଙ୍କର ଭରଣପୋଷଣ ଦାୟିତ୍ୱ ନେବ ; କୌଣସି ବ୍ୟକ୍ତିଙ୍କୁ ନିଜ ସାମର୍ଥ୍ୟଠାରୁ ଅଧିକ ଦାୟିତ୍ୱ ଦିଆଯାଏ ନାହିଁ ; କୌଣସି ମାତାକୁ ନିଜ ସନ୍ତାନ ମାଧ୍ୟମରେ ଦୁଃଖ ଦିଆ ନ ଯାଉ ଓ (କୌଣସି) ପିତାକୁ ତାର ସନ୍ତାନ ଯୋଗୁଁ (ଦୁଃଖ ଦିଆ ନ ଯାଉ) ;[୧] ଏବଂ ଦାୟାଦଙ୍କୁ ମଧ୍ୟ ଏହିପରି କରିବା ଆବଶ୍ୟକ ; ଏବଂ ଯଦି ଉଭୟେ ପରସ୍ପର ସମ୍ମତି କ୍ରମେ ଓ ପରାମର୍ଶ ଅନୁସାରେ ଦୁଗ୍ଧପାନ ବନ୍ଦ କରାଇବା ଚାହାନ୍ତି ତେବେ (ଏଥିରେ) ସେମାନଙ୍କର କୌଣସି ପାପ ନାହିଁ ; ଏବଂ ଯଦି ତୁମେମାନେ ନିଜ ସନ୍ତାନମାନଙ୍କୁ (ଅନ୍ୟ କୌଣସି ମହିଳାରେ) ଦୁଗ୍ଧପାନ କରାଇବାକୁ ଇଚ୍ଛାକର ସେଥିରେ ତୁମମାନଙ୍କ ପାଇଁ କୌଣସି ପାପ ନାହିଁ ଯଦି ତୁମେମାନେ ଯାହା (ପାରିତୋଷିକ) ଦେବାକୁ ସମ୍ମତ ହୋଇଅଛ ତାହା ସମୁଚିତ ପନ୍ଥାରେ ପ୍ରଦାନକର ; ଏବଂ ଅଲ୍ଲାହଙ୍କୁ ଭୟକର ; ଏବଂ ଜାଣିରଖ ଯେ ତୁମେମାନେ ଯାହା କରୁଅଛ ଅଲ୍ଲାହ ତାହାକୁ ଦେଖୁଛନ୍ତି ।

رِزْقُهُنَّ وَكِسْوَتُهُنَّ بِالْمَعْرُوفِ ۚ لَا تُكَلَّفُ نَفْسٌ
إِلَّا وُسْعَهَا ۚ لَا تُضَارَّ وَالِدَةٌ بِوَلَدِهَا وَلَا مَوْلُودٌ
لَهُ بِوَلَدِهِ ۚ وَعَلَى الْوَارِثِ مِثْلُ ذَٰلِكَ ۗ فَإِنْ أَرَادَا
فِصَالًا عَنْ تَرَاضٍ مِنْهُمَا وَتَشَاوُرٍ فَلَا جُنَاحَ عَلَيْهِمَا ۗ
وَإِنْ أَرَدْتُمْ أَنْ تَسْتَرْضِعُوا أَوْلَادَكُمْ فَلَا جُنَاحَ
عَلَيْكُمْ إِذَا سَلَّمْتُمْ مَا آتَيْتُمْ بِالْمَعْرُوفِ ۗ وَاتَّقُوا
اللَّهَ وَاعْلَمُوا أَنَّ اللَّهَ بِمَا تَعْمَلُونَ بَصِيرٌ ﴿٢٣٤﴾

୨୩୫. ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁ (ଲୋକ) ମାନେ ମୃତ୍ୟୁ ବରଣ କରନ୍ତି ଓ ସେମାନେ (ନିଜ ପଛରେ) ପତ୍ନୀମାନଙ୍କୁ ଛାଡ଼ି ଯାଆନ୍ତି ସେ (ବିଧବା ପତ୍ନୀ)ମାନେ ନିଜକୁ ଚାରିମାସ ଦଶ (ଦିନ) ଅଟକାଇ ରଖିବା (ଉଚିତ) ; ପୁଣି ଯେତେବେଳେ ସେମାନେ ନିଜ ନିର୍ଦ୍ଧାରିତ ସମୟ ସମ୍ପୂର୍ଣ୍ଣ କରିନେବେ ସେତେବେଳେ ସେମାନେ ନିଜ ସଂକ୍ରାନ୍ତରେ ସମୁଚିତ ପନ୍ଥାରେ ଯାହାକିଛି (ମଧ୍ୟ) କରିବେ ତହିଁରେ ତୁମମାନଙ୍କର କୌଣସି ପାପ ନାହିଁ ଏବଂ ତୁମେମାନେ ଯାହା କରୁଅଛ ଅଲ୍ଲାହ ସେ ବିଷୟରେ ଅବଗତ ଅଛନ୍ତି ।

وَالَّذِينَ يُتَوَفَّوْنَ مِنْكُمْ وَيَذَرُونَ أَزْوَاجًا يَتَرَبَّصْنَ
بِأَنْفُسِهِنَّ أَرْبَعَةَ أَشْهُرٍ وَعَشْرًا ۖ فَإِذَا بَلَغْنَ أَجَلَهُنَّ
فَلَا جُنَاحَ عَلَيْكُمْ فِيمَا فَعَلْنَ فِي أَنْفُسِهِنَّ بِالْمَعْرُوفِ ۗ
وَاللَّهُ بِمَا تَعْمَلُونَ خَبِيرٌ ﴿٢٣٥﴾

୨୩୬. ଏବଂ (ସେହି) ମହିଳାମାନଙ୍କ ସହିତ ବିବାହ ପ୍ରସ୍ତାବ ସଂକ୍ରାନ୍ତରେ ତୁମେମାନେ (ସେମାନଙ୍କୁ) ସଙ୍କେତ ଦେବାରେ ବା ନିଜ ଅନ୍ତରରେ ଗୋପନ ରଖିବାରେ ତୁମମାନଙ୍କର କୌଣସି ପାପ ହେବନାହିଁ ; ଅଲ୍ଲାହ ଜାଣନ୍ତି ଯେ ତୁମେମାନେ ସେମାନଙ୍କ ସମ୍ବନ୍ଧରେ ନିଶ୍ଚୟ ଭାବିବ ; କିନ୍ତୁ ତୁମେମାନେ ସେମାନଙ୍କ ସହିତ ଗୋପନରେ (କୌଣସି) ଚୁକ୍ତି କରନାହିଁ ; ଅବଶ୍ୟ (ଅନୁମତି ଦିଆଯାଉଛି ଯେ) ତୁମେମାନେ ସେମାନଙ୍କୁ କିଛି ଉଚିତ କଥା କୁହ ; ଏବଂ ଯେପର୍ଯ୍ୟନ୍ତ (ଇଦ୍ଦତ ବିଷୟକ) ନିର୍ଦ୍ଧାରିତ ସମୟ ଶେଷ ସୀମାରେ ଉପନୀତ ନ ହେବ

وَلَا جُنَاحَ عَلَيْكُمْ فِيمَا عَرَّضْتُمْ بِهِ مِنْ خِطْبَةِ النِّسَاءِ
أَوْ أَكْنَنْتُمْ فِي أَنْفُسِكُمْ ۚ عَلِمَ اللَّهُ أَنَّكُمْ سَتَذْكُرُونَهُنَّ
وَلَٰكِنْ لَا تُوَاعِدُوهُنَّ سِرًّا إِلَّا أَنْ تَقُولُوا قَوْلًا
مَعْرُوفًا ۚ وَلَا تَعْزِمُوا عُقْدَةَ النِّكَاحِ حَتَّىٰ يَبْلُغَ

[୧] ଯଦି ଦୁଗ୍ଧପାନ କରାଉଥିବା କୌଣସି ମହିଳାକୁ ତଲାକ ଦିଆଯାଏ ତେବେ ସନ୍ତାନର ହିତ ପାଇଁ ତା' ମାଆ ନିର୍ଦ୍ଧାରିତ ଅବଧି ପର୍ଯ୍ୟନ୍ତ ଦୁଗ୍ଧପାନ କରାଇବ ଏବଂ ତା' ବଦଳରେ ସେହି ସନ୍ତାନର ପିତା ଉକ୍ତ ମହିଳାକୁ ଜଣେ ସ୍ୱଙ୍କରାଣୀ ସଦୃଶ ବ୍ୟବହାର ନ ଦେଖାଇ ତାହାକୁ ନିଜ ଶକ୍ତି ଅନୁସାରେ ସମୁଚିତ ଖର୍ଚ୍ଚ ଦେବ । ସେହିପରି ପତ୍ନୀକୁ ତଲାକ ଦେବାପରେ, ପତିକୁ ମଧ୍ୟ ଏ ସଂକ୍ରାନ୍ତରେ କୌଣସି ପ୍ରକାର ବାଧ୍ୟ କରିବା ସମୀଚୀନ ନୁହେଁ । ଜଣେ ଅନ୍ୟକୁ ଅସୁବିଧାରେ ପକାଇବା ପାଇଁ ସନ୍ତାନକୁ ଏକ ମାଧ୍ୟମ ରୂପେ ବ୍ୟବହାର କରିବା ମଧ୍ୟ ଅସମୀଚୀନ । ଏହି କାରଣରୁ ଅନେକ ସମୟରେ ସନ୍ତାନର ଭବିଷ୍ୟତ ନଷ୍ଟ ହୋଇଥାଏ ।

الْكِتٰبُ اَجَلَهٗ ؕ وَاعْلَمُوْۤا اَنَّ اللّٰهَ يَعْلَمُ مَا فِىْۤ اَنْفُسِكُمْ فَاحْذَرُوْهُ ۚ وَاعْلَمُوْۤا اَنَّ اللّٰهَ غَفُوْرٌ حَلِيْمٌ ﴿۲۳۶﴾

ସେପର୍ଯ୍ୟନ୍ତ ତୁମେମାନେ ବିବାହ ବନ୍ଧନ ସମ୍ବନ୍ଧରେ ଦୃଢ଼ ସଂକଳ୍ପ କର ନାହିଁ ; ଏବଂ ଜାଣିରଖ ଯେ ତୁମମାନଙ୍କ ଅନ୍ତରରେ ଯାହାକିଛି ମଧ୍ୟ ରହିଅଛି ଅଲ୍ଲାହ ତାହା ଜାଣନ୍ତି ସୁତରାଂ ତୁମେମାନେ ତାହାଙ୍କୁ ଭୟ କର ଓ ଜାଣିରଖ ଯେ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ ଓ ସହନଶୀଳ ।

ରୁ:୩୧

لَا جُنَاحَ عَلَيْكُمْ اِنْ طَلَّقْتُمُ النِّسَآءَ مَا لَمْ تَمَسُّوْهُنَّ اَوْ تَفْرِضُوْا لَهُنَّ فَرِيْضَةً ۖۚ وَّمَتِّعُوْهُنَّ عَلَى الْمُوْسِعِ قَدَرُهٗ وَعَلَى الْمُقْتِرِ قَدَرُهٗ ۚ مَتَاعًا ۢ بِالْمَعْرُوْفِ ۚ حَقًّا عَلَى الْمُحْسِنِيْنَ ﴿۲۳۷﴾

୨୩୭. ଯଦି ତୁମେମାନେ ନିଜ ପତ୍ନୀମାନଙ୍କୁ ସ୍ପର୍ଶ ନ କରିଥିବା ବା ମହର ସ୍ଥିର ନ କରିଥିବା ଅବସ୍ଥାରେ ମଧ୍ୟ ତଲାକ ଦିଅ ତେବେ ସେଥିରେ ତୁମମାନଙ୍କର କୌଣସି ପାପ ହେବ ନାହିଁ ; ଏବଂ (ଏପରି ପରିସ୍ଥିତିରେ ଉଚିତ ହେବ ଯେ) ତୁମେମାନେ ସେମାନଙ୍କୁ ସମୁଚିତ ପନ୍ଥାରେ କିଛି ସାମଗ୍ରୀ ଦେଇଦିଅ ; (ଏହି ବିଷୟ) ଧନବାନ୍ ବ୍ୟକ୍ତି ନିଜ ସାମର୍ଥ୍ୟ ଅନୁସାରେ ଓ ଦରିଦ୍ର ବ୍ୟକ୍ତି ନିଜ ସାମର୍ଥ୍ୟ ଅନୁସାରେ (ଦେବା ଆବଶ୍ୟକ) ; (ଆମ୍ଭେ) ପୁଣ୍ୟବାନ୍ ବ୍ୟକ୍ତିଙ୍କ ପାଇଁ (ଏପରି କରିବା) ଧାର୍ଯ୍ୟ କରିଛୁ ।

وَاِنْ طَلَّقْتُمُوْهُنَّ مِنْ قَبْلِ اَنْ تَمَسُّوْهُنَّ وَقَدْ فَرَضْتُمْ لَهُنَّ فَرِيْضَةً فَنِصْفُ مَا فَرَضْتُمْ اِلَّاۤ اَنْ يَّعْفُوْنَ اَوْ يَعْفُوَا الَّذِىْ بِيَدِهٖ عُقْدَةُ النِّكَاحِ ؕ وَاَنْ تَعْفُوْۤا اَقْرَبُ لِلتَّقْوٰى ؕ وَلَا تَنْسَوُا الْفَضْلَ بَيْنَكُمْ ؕ اِنَّ اللّٰهَ بِمَا تَعْمَلُوْنَ بَصِيْرٌ ﴿۲۳۸﴾

୨୩୮. ଏବଂ ଯଦି ତୁମେମାନେ ମହର ଧାର୍ଯ୍ୟ ହେବା ପରେ କିନ୍ତୁ ସେମାନଙ୍କୁ ସ୍ପର୍ଶ କରିବା ପୂର୍ବରୁ ତଲାକ ଦିଅ ତେବେ (ଏପରି ପରିସ୍ଥିତିରେ) ଯାହା (ମହର) ତୁମେମାନେ ଧାର୍ଯ୍ୟ କରିଅଛ ତାହାର ଅଧା (ସେମାନଙ୍କୁ ଦେବାକୁ) ହେବ କେବଳ ଏହା ବ୍ୟତୀତ ଯଦି ସେ (ମହିଳା) ମାନେ ମାଫ୍ କରିଦିଅନ୍ତି ବା ଯାହା ହାତରେ ବିବାହ ବନ୍ଧନ ଅଛି ସେ ମାଫ୍ କରେ ; ଏବଂ ତୁମେମାନେ ମାଫ କରିବା ଧର୍ମଭୀରୁତାର ଅଧିକ ନିକଟତର ଅଟେ ; ଏବଂ ତୁମେମାନେ ପରସ୍ପର ମଧ୍ୟରେ (ଆପୋଷ ବୁଝାମଣା ସମୟରେ) ହିତସାଧନକୁ ପରିତ୍ୟାଗ କରନାହିଁ ; ଏବଂ (ମନେରଖ ଯେ) ଯାହା କିଛି ତୁମେମାନେ କରୁଅଛ ଅଲ୍ଲାହ ତାହାକୁ ନିଶ୍ଚୟ ଦେଖୁଛନ୍ତି ।

حٰفِظُوْا عَلَى الصَّلَوٰتِ وَالصَّلٰوةِ الْوُسْطٰى ۚ وَقُوْمُوْا لِلّٰهِ قٰنِتِيْنَ ﴿۲۳۹﴾

୨୩୯. ତୁମେମାନେ ସକଳ (ପ୍ରକାର) ନମାଜ ଓ (ବିଶେଷତଃ) ମଧ୍ୟବର୍ତ୍ତୀ ନମାଜ ପ୍ରତି ସମ୍ପୂର୍ଣ୍ଣ ଧ୍ୟାନ ଦିଅ ; ଏବଂ ଅଲ୍ଲାହଙ୍କ ପାଇଁ ଆଜ୍ଞାବହ ହୋଇ ଛିଡ଼ା ହୋଇଯାଅ ।

فَاِنْ خِفْتُمْ فَرِجَالًا اَوْ رُكْبَانًا ۚ فَاِذَاۤ اَمِنْتُمْ فَاذْكُرُوا اللّٰهَ كَمَا عَلَّمَكُمْ مَّا لَمْ تَكُوْنُوْا تَعْلَمُوْنَ ﴿۲۴۰﴾

୨୪୦. ଏବଂ ଯଦି ତୁମେମାନେ ଭୟ କରୁଥାଅ ତେବେ ତୁମେମାନେ ପଦଗାମୀ ବା ଆରୋହୀ ଥିବା ଅବସ୍ଥାରେ ହିଁ (ନମାଜ ପାଠକର) ; ପରେ ଯେବେ ତୁମେମାନେ ନିରାପଦ ହେବ, ତେବେ ଅଲ୍ଲାହଙ୍କୁ ସ୍ମରଣ କର, କାରଣ ସେ ତୁମମାନଙ୍କୁ (ସେ ସମସ୍ତ) ଶିକ୍ଷା ଦେଇଛନ୍ତି ଯାହା ତୁମେମାନେ (ପୂର୍ବରୁ) ଜାଣି ନ ଥିଲ ।

୨୪୧. ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ମୃତ୍ୟୁ ବରଣ କରନ୍ତି ଓ ପତ୍ନୀମାନଙ୍କୁ ଛାଡ଼ି ଯାଆନ୍ତି, ସେମାନେ ନିଜ ପତ୍ନୀମାନଙ୍କ କଲ୍ୟାଣ ପାଇଁ ଏକ ବର୍ଷ ପର୍ଯ୍ୟନ୍ତ ଲାଭଦାୟକ[୧] ଅର୍ଥାତ୍ ସେମାନଙ୍କୁ (ଘରୁ) ବାହାର ନ କରିବା ଓସିୟତ୍ କରିଯିବା ଉଚିତ ; କିନ୍ତୁ ଯଦି ସେମାନେ (ସ୍ୱେଚ୍ଛାରେ) ଚାଲି ଯାଆନ୍ତି ତେବେ ସେମାନେ ନିଜ ସଂକ୍ରାନ୍ତରେ ଯାହାକିଛି ପସନ୍ଦଯୋଗ୍ୟ ବିଷୟ କରନ୍ତି ସେଥିରେ ତୁମମାନଙ୍କର କୌଣସି ଦୋଷ ନାହିଁ ; ଏବଂ ଅଲ୍ଲାହ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

وَالَّذِينَ يُتَوَفَّوْنَ مِنكُمْ وَيَذَرُونَ أَزْوَاجًا وَصِيَّةً لِّأَزْوَاجِهِم مَّتَاعًا إِلَى الْحَوْلِ غَيْرَ إِخْرَاجٍ ۚ فَإِنْ خَرَجْنَ فَلَا جُنَاحَ عَلَيْكُمْ فِي مَا فَعَلْنَ فِي أَنفُسِهِنَّ مِن مَّعْرُوفٍ ۗ وَاللَّهُ عَزِيزٌ حَكِيمٌ ﴿٢٤١﴾

୨୪୨. ଏବଂ ଯେଉଁ ମହିଳାମାନଙ୍କୁ ତଲାକ୍ ଦିଆଯାଏ,[୨] ସେମାନଙ୍କୁ ମଧ୍ୟ (ନିଜ) ଅବସ୍ଥା ଅନୁସାରେ କିଛି ସାମଗ୍ରୀ ଦେବା ଉଚିତ ; ଏହା ଧର୍ମଭୀରୁମାନଙ୍କର ଏକ ନୈତିକ କର୍ତ୍ତବ୍ୟ ଅଟେ ।

وَلِلْمُطَلَّقَاتِ مَتَاعٌ بِالْمَعْرُوفِ ۖ حَقًّا عَلَى الْمُتَّقِينَ ﴿٢٤٢﴾

୨୪୩. ଅଲ୍ଲାହ ଏହିପରି[୩] ଭାବରେ ନିଜ ଆଦେଶାବଳୀକୁ ତୁମମାନଙ୍କ (କଲ୍ୟାଣ) ସକାଶେ ସ୍ପଷ୍ଟରୂପେ ବର୍ଣ୍ଣନା କରନ୍ତି ଯେପରିକି ତୁମେମାନେ ବୁଝି ପାରିବ ।

كَذَٰلِكَ يُبَيِّنُ اللَّهُ لَكُمْ آيَاتِهِ لَعَلَّكُمْ تَعْقِلُونَ ﴿٢٤٣﴾

---

୧. ଏଠାରେ ମୂଳ ଆରବୀ ଶବ୍ଦ 'ମାରୁଫ'ର ଅନୁବାଦ 'ଲାଭଦାୟକ' କରାଯାଇଛି । ଏହାର ଅର୍ଥ ଏପରି ବିଷୟ ଯାହାକୁ ବୈଧାନିକ ବା ସ୍ୱାଭାବିକ ନିୟମ ଅନୁସାରେ ଅଥବା ପରମ୍ପରା ଅନୁସାରେ ସର୍ବସାଧାରଣ ଉତ୍ତମ ରୂପେ ଜାଣନ୍ତି । ଏଠାରେ ଏହା ଉଚିତାର୍ଥରେ ମଧ୍ୟ ବ୍ୟବହୃତ ହୋଇଛି । ଏହାର ତାତ୍ପର୍ଯ୍ୟ ଏହି ଯେ ବିଧବାମାନେ ଇଚ୍ଛାକଲେ ପୁନରାୟ ବିବାହ କରିପାରନ୍ତି ଅଥବା ନିଜ ପିତାମାତା ବା ବନ୍ଧୁବାନ୍ଧବଙ୍କ ନିକଟକୁ ଚାଲିଯାଇପାରନ୍ତି । ଏପରି କି ସ୍ୱକିରି କଲେ ମଧ୍ୟ ତୁମର କୌଣସି ଦୋଷ ନାହିଁ । ଅତଏବ ସେମାନଙ୍କୁ ଅଟକାଇ ରଖିବା ସକାଶେ ତୁମର କୌଣସି ଅଧିକାର ନାହିଁ ।

୨. କେତେକ ସ୍ଥଳେ ପରସ୍ପର ମଧ୍ୟରେ ବିବାଦ ନ ଥାଇ ମଧ୍ୟ ଅବସ୍ଥା-ଚକ୍ରରେ ତଲାକ ଦେବାକୁ ହୋଇଥାଏ । ଏପରି ତଲାକ୍ ଶାସ୍ତ୍ରାନୁମୋଦିତ ଓ ତାହା ପାରସ୍ପରିକ ଜ୍ଞାତସାରରେ ହୋଇଥାଏ । ଏଠାରେ ଅନ୍ୟ ଯେଉଁ ବିଷୟରେ ସୂଚନା ଦିଆଯାଇଛି ତାହା ହେଉଛି-ଯେତେବେଳେ ଶାସ୍ତ୍ରାନୁସାରେ ବିଧବା ନିଜ ସ୍ୱର୍ଗୀୟ ପତିଙ୍କ ଗୃହରେ ଏକ ବର୍ଷ ପର୍ଯ୍ୟନ୍ତ ରହିପାରିବ ସେତେବେଳେ ସେହି ତଲାକ ପ୍ରାପ୍ତ ପତ୍ନୀକୁ ମଧ୍ୟ ତା'ର ଆବଶ୍ୟକତା ମୁତାବିକ ଆଉ କିଛି ଦିନ ଅଧିକ ରହିବାକୁ ଅନୁମତି ଦେବା ବିଶ୍ୱାସକାରୀଙ୍କ ପକ୍ଷରେ ସମୀଚୀନ ହେବ ।

୩. ଅର୍ଥାତ୍ ଧର୍ମବିଧାନଗୁଡ଼ିକୁ ବର୍ଣ୍ଣନା କଲାବେଳେ ସର୍ବଦା ଏପରି ବିଷୟ ପ୍ରତି ଧ୍ୟାନ ଦିଆଯାଇଛି ଯେ ସକଳ ଗୁରୁତ୍ୱପୂର୍ଣ୍ଣ ଓ ଅତ୍ୟାବଶ୍ୟକ ବିଷୟ ସମ୍ବନ୍ଧିତ ଶିକ୍ଷାର ଉଲ୍ଲେଖ ରହିବ ଏବଂ ଏପରି ସରଳ ଭାବରେ ବିବରଣୀ ଦିଆଯିବ ଯଦ୍ୱାରା ମାନବ-ସମାଜ ପାପ ଓ ଦୋଷତ୍ରୁଟିରୁ ରକ୍ଷା ପାଇ ପାରିବ ।

ରୁ:୩୨

୨୪୪. କ'ଣ ତୁମକୁ ସେହି ଲୋକମାନଙ୍କର ସମାଚାର ପହଞ୍ଚି ନାହିଁ ଯେଉଁମାନେ ସହସ୍ର ସହସ୍ର (ସଂଖ୍ୟାରେ) ଥାଇ ମଧ୍ୟ ମୃତ୍ୟୁ ମୁଖରୁ ରକ୍ଷା ପାଇବା ସକାଶେ ନିଜ ଗୃହରୁ ପଳାୟନ[1] କରିଥିଲେ ; ତେଣୁ ଅଲ୍ଲାହ ସେମାନଙ୍କୁ କହିଲେ, "ତୁମେମାନେ ମରିଯାଅ"[2]; ଏହାପରେ ସେ ସେମାନଙ୍କୁ ଜୀବିତ କରିଦେଲେ ; ଅଲ୍ଲାହ ଅବଶ୍ୟ ଲୋକମାନଙ୍କ ପ୍ରତି (ଅତ୍ୟନ୍ତ) ଦୟାଶୀଳ, କିନ୍ତୁ ଅଧିକାଂଶ ଲୋକ କୃତଜ୍ଞ ନୁହନ୍ତି ।

أَلَمْ تَرَ إِلَى الَّذِينَ خَرَجُوا مِن دِيَارِهِمْ وَهُمْ أُلُوفٌ حَذَرَ الْمَوْتِ فَقَالَ لَهُمُ اللَّهُ مُوتُوا ثُمَّ أَحْيَاهُمْ ۚ إِنَّ اللَّهَ لَذُو فَضْلٍ عَلَى النَّاسِ وَلَٰكِنَّ أَكْثَرَ النَّاسِ لَا يَشْكُرُونَ ﴿٢٤٤﴾

୨୪୫. ଏବଂ ତୁମେମାନେ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଯୁଦ୍ଧ କର ଏବଂ ଜାଣ ଯେ ଅଲ୍ଲାହ ହିଁ ମହାନ ଶ୍ରୋତା(ଓ)ସର୍ବଜ୍ଞ ।

وَقَاتِلُوا فِي سَبِيلِ اللَّهِ وَاعْلَمُوا أَنَّ اللَّهَ سَمِيعٌ عَلِيمٌ ﴿٢٤٥﴾

୨୪୬. କ'ଣ ଏପରି କେହି ଅଛି ଯେ ଅଲ୍ଲାହଙ୍କୁ (ନିଜ) ଧନର ଏକ ଉତ୍ତମ ଅଂଶ କାଟି ଋଣ ଦେଇ ପାରିବ ? ଯାହାକୁ ଅଲ୍ଲାହ ତା' ପାଇଁ ବହୁଗୁଣିତ କରି ବୃଦ୍ଧି କରାଇବେ, ଏବଂ ଅଲ୍ଲାହଙ୍କର ଏହା ମଧ୍ୟ ପରମ୍ପରା ରହିଅଛି ଯେ ସେ ଲୋକମାନଙ୍କ ଧନ) ଗ୍ରହଣ କରନ୍ତି ଓ (ତାହାକୁ) ବୃଦ୍ଧି କରାନ୍ତି ଏବଂ (ପରିଶେଷରେ) ତୁମମାନଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆଯିବ ।

مَّن ذَا الَّذِي يُقْرِضُ اللَّهَ قَرْضًا حَسَنًا فَيُضَاعِفَهُ لَهُ أَضْعَافًا كَثِيرَةً ۚ وَاللَّهُ يَقْبِضُ وَيَبْسُطُ وَإِلَيْهِ تُرْجَعُونَ ﴿٢٤٦﴾

୨୪୭. କ'ଣ ତୁମକୁ ମୁସାଙ୍କ ପରେ ଇସ୍ରାଇଲୀୟ ସନ୍ତାନମାନଙ୍କର ସେହି ନେତୃବର୍ଗଙ୍କ ଅବସ୍ଥା ଜଣା ନାହିଁ ? ଯେବେ ସେମାନେ ନିଜର ଜଣେ ନବିଙ୍କୁ କହିଲେ, "ଆମମାନଙ୍କ ପାଇଁ (କୌଣସି ବ୍ୟକ୍ତିଙ୍କୁ) ରାଜା ନିଯୁକ୍ତ କର ତାହାହେଲେ ଆମେମାନେ (ତାଙ୍କ ଅଧୀନରେ) ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଯୁଦ୍ଧ କରିପାରିବୁ ;" ସେ କହିଲେ, "ତୁମମାନଙ୍କ ପାଇଁ ଯୁଦ୍ଧ ଧାର୍ଯ୍ୟ କରାଗଲେ ସମ୍ଭବତଃ ତୁମେମାନେ ଯୁଦ୍ଧ କରିବ ନାହିଁ" ; ସେମାନେ କହିଲେ,

أَلَمْ تَرَ إِلَى الْمَلَإِ مِن بَنِي إِسْرَائِيلَ مِن بَعْدِ مُوسَىٰ إِذْ قَالُوا لِنَبِيٍّ لَّهُمُ ابْعَثْ لَنَا مَلِكًا نُّقَاتِلْ فِي سَبِيلِ اللَّهِ ۖ قَالَ هَلْ عَسَيْتُمْ إِن كُتِبَ عَلَيْكُمُ الْقِتَالُ أَلَّا تُقَاتِلُوا ۖ قَالُوا وَمَا لَنَا أَلَّا نُقَاتِلَ فِي

୧. ଯେଉଁମାନେ ନିଜ ଘରୁ ପଳାଇ ଆସିଥିଲେ ସେମାନେ ଥିଲେ ଇସ୍ରାଇଲୀୟ ସନ୍ତାନ । ସେମାନେ ଫିରଔନଙ୍କ ଭୟରେ ମିଶରରୁ ଗ୍ଲଲିଆସିଥିଲେ । ପବିତ୍ର କୋରାନର ବିବରଣୀ ଅନୁସାରେ ସେମାନଙ୍କ ସଂଖ୍ୟା ଥିଲା ମାତ୍ର କେତେ ସହସ୍ର । କିନ୍ତୁ ବାଇବେଲରେ ସେମାନଙ୍କ ସଂଖ୍ୟା ଛଅ ଲକ୍ଷ ତିନି ହଜାର ପାଞ୍ଚଶହ ପଚାଶ ବୋଲି ବର୍ଣ୍ଣନା କରାଯାଇଛି । ଏଠାରେ ସେହି ତଥ୍ୟକୁ ଖଣ୍ଡନ କରାଯାଇଛି କାରଣ ଛଅ ଲକ୍ଷରୁ ଅଧିକ ଏକ ଯାତ୍ରୀଦଳ ଅଧିକ ସାମଗ୍ରୀ ନ ନେଇ ଏକ ଜଳଶୂନ୍ୟ ଜଙ୍ଗଲ ମଧ୍ୟଦେଇ ଶହ ଶହ ମାଇଲ ପର୍ଯ୍ୟନ୍ତ ଯାତ୍ରା କରି ପାରିବନାହିଁ ।

୨. ଅର୍ଥାତ୍ ତୁମମାନଙ୍କର ଅବସ୍ଥା ଯୋଗୁଁ ତୁମମାନଙ୍କଠାରୁ ଜୟ ଲାଭ କରିବା ଶକ୍ତିକୁ ଫେରାଇ ନିଆଯାଉଛି । ପରେ ଅବଶ୍ୟ ଅଲ୍ଲାହ ସେମାନଙ୍କୁ କ୍ଷମା ପ୍ରଦାନ କରିଥିଲେ ଓ ସେମାନଙ୍କୁ ଜୟ ଲାଭ କରିବା ଶକ୍ତି ଫେରାଇ ଦେଇଥିଲେ ।

୩. ମୂଳ ଶବ୍ଦ 'କର୍ଜ' ଅର୍ଥ : (କ) ଋଣ (ଖ) ଋଣ ଦେବା (ଗ) କାଟିବା (ଘ) କାଟି ଅଲଗା କରିବା ।

ଏହି ଆୟତର ଭାବାର୍ଥ ହେଉଛି ଯେ ଯେଉଁ ବ୍ୟକ୍ତି ନିଜ ବିଶୁଦ୍ଧ ଧନ ମଧ୍ୟରୁ କିଛି ଅଂଶ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଦାନ କରେ ତାହାକୁ ଅଲ୍ଲାହ ଉକ୍ତ କାର୍ଯ୍ୟ ପାଇଁ ଉପଯୁକ୍ତ ପୁରସ୍କାର ଦେବେ । ସତ୍‌କାର୍ଯ୍ୟ କଦାପି ନିଷ୍ଫଳ ହୁଏ ନାହିଁ ବରଂ ଅଲ୍ଲାହ ସେଥିପାଇଁ ଅଧିକରୁ ଅଧିକ ସୁଫଳ ଦେଇଥାନ୍ତି । ଅଲ୍ଲାହଙ୍କର କୌଣସି ଋଣର ଆବଶ୍ୟକତା ନାହିଁ କି ଅନ୍ୟ ବସ୍ତୁର । ସେ ଧନୀ ଲୋକମାନଙ୍କୁ ଦରିଦ୍ରଙ୍କ କଲ୍ୟାଣ ସକାଶେ ଦାନ କରିବାକୁ କେବଳ ଉତ୍ସାହିତ କରନ୍ତି ଓ ତତ୍‌ସଙ୍ଗେ ଦାତାଙ୍କୁ ଅଧିକରୁ ଅଧିକ ପୁରସ୍କାର ଦେବାକୁ ପ୍ରତିଶ୍ରୁତି ଦିଅନ୍ତି ।

سَبِيلِ اللَّهِ وَقَدْ أُخْرِجْنَا مِن دِيَارِنَا وَأَبْنَائِنَا ۖ فَلَمَّا كُتِبَ عَلَيْهِمُ الْقِتَالُ تَوَلَّوْا إِلَّا قَلِيلًا مِّنْهُمْ ۗ وَاللَّهُ عَلِيمٌ بِالظَّالِمِينَ ﴿٢٤٧﴾

"(ଏପରି ହେବ ନାହିଁ) ଆମମାନଙ୍କର ଏପରି କ'ଣ ହୋଇଛି ଯେ ଆମେମାନେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ଯୁଦ୍ଧ କରିବୁ ନାହିଁ ; ଅଥଚ ଆମମାନଙ୍କୁ ନିଜ ଗୃହରୁ ବିତାଡ଼ିତ କରାଯାଇଛି ଓ ନିଜ ସନ୍ତାନମାନଙ୍କ ଠାରୁ ବିଛିନ୍ନ କରାଯାଇଛି ? କିନ୍ତୁ ଯେବେ ସେମାନଙ୍କ ଉପରେ ଯୁଦ୍ଧ ଧାର୍ଯ୍ୟ କରାଗଲା, ସେମାନଙ୍କ ମଧ୍ୟରୁ (କେବଳ) ଅଳ୍ପ ସଂଖ୍ୟକଙ୍କୁ ଛାଡ଼ି ଅନ୍ୟମାନେ ଫେରିଗଲେ, ଏବଂ ଅଲ୍ଲାହ୍ ଅତ୍ୟାଚାରୀମାନଙ୍କୁ ଭଲ ରୂପେ ଜାଣନ୍ତି ।

وَقَالَ لَهُمْ نَبِيُّهُمْ إِنَّ اللَّهَ قَدْ بَعَثَ لَكُمْ طَالُوتَ مَلِكًا ۚ قَالُوا أَنَّىٰ يَكُونُ لَهُ الْمُلْكُ عَلَيْنَا وَنَحْنُ أَحَقُّ بِالْمُلْكِ مِنْهُ وَلَمْ يُؤْتَ سَعَةً مِّنَ الْمَالِ ۚ قَالَ إِنَّ اللَّهَ اصْطَفَاهُ عَلَيْكُمْ وَزَادَهُ بَسْطَةً فِي الْعِلْمِ وَالْجِسْمِ ۖ وَاللَّهُ يُؤْتِي مُلْكَهُ مَن يَشَاءُ ۚ وَاللَّهُ وَاسِعٌ عَلِيمٌ ﴿٢٤٨﴾

୨୪୮. ଏବଂ ସେମାନଙ୍କ ନବି ସେମାନଙ୍କୁ କହିଲେ, "ଅଲ୍ଲାହ୍ ତୁମମାନଙ୍କ ସକାଶେ 'ତାଲୁତ' (ଅର୍ଥାତ୍ ଜଦୁନ)ଙ୍କୁ (ଏହି କାର୍ଯ୍ୟ ପାଇଁ) ରାଜା ନିଯୁକ୍ତ କରିଛନ୍ତି ;" ସେମାନେ କହିଲେ, "ତାହାଙ୍କୁ କିପରି ଆମମାନଙ୍କ ଉପରେ ରାଜତ୍ୱ ପ୍ରାପ୍ତ ହେବ ଯେତେବେଳେ କି ଆମେମାନେ ରାଜତ୍ୱ କରିବାକୁ ତାହାଙ୍କ ଅପେକ୍ଷା ଅଧିକ ହକଦାର ଅଟୁ ଏବଂ ତାହାଙ୍କୁ (ସେପରି କୌଣସି ଅଧିକ) ଆର୍ଥିକ ସ୍ୱଚ୍ଛଳତା ମଧ୍ୟ ପ୍ରଦାନ କରାଯାଇ ନାହିଁ ?" ସେ କହିଲେ, "ଅଲ୍ଲାହ୍ ତାହାଙ୍କୁ ତୁମମାନଙ୍କ ଉପରେ ନିଶ୍ଚିତ ରୂପେ ପ୍ରାଧାନ୍ୟ ଦେଇ(ମନୋନୀତ କରି)ଛନ୍ତି ଏବଂ ତାହାଙ୍କୁ ଅଧିକ ପରିମାଣରେ ବିଦ୍ୟା ଓ ଶାରୀରିକ ଶକ୍ତି ପ୍ରଦାନ କରିଛନ୍ତି ; ଏବଂ ଅଲ୍ଲାହ୍ ଯାହାଙ୍କୁ ପସନ୍ଦ କରନ୍ତି ତାଙ୍କୁ ନିଜ ରାଜ୍ୟ ପ୍ରଦାନ କରନ୍ତି ; ଏବଂ ଅଲ୍ଲାହ୍ ହିଁ ଅତ୍ୟନ୍ତ ବଦାନ୍ୟ(ଓ) ସର୍ବଜ୍ଞ ।

وَقَالَ لَهُمْ نَبِيُّهُمْ إِنَّ آيَةَ مُلْكِهِ أَن يَأْتِيَكُمُ التَّابُوتُ فِيهِ سَكِينَةٌ مِّن رَّبِّكُمْ وَبَقِيَّةٌ مِّمَّا

୨୪୯. ଏବଂ ସେମାନଙ୍କ ନବି ସେମାନଙ୍କୁ କହିଲେ, "ତାହାଙ୍କ ରାଜତ୍ୱର ପ୍ରମାଣ ଏହା (ମଧ୍ୟ) ଅଟେ ଯେ ତୁମମାନଙ୍କୁ (ଏପରି ଏକ) 'ତାବୁତ୍'[୧] ମିଳିବ ଯହିଁରେ ତୁମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ପ୍ରଶାନ୍ତି (ରହିଥିବ) ଏବଂ ମୁସା ଓ ହାରୁନଙ୍କ ସମ୍ପର୍କୀୟମାନେ (ନିଜ ପଛରେ) ଯେଉଁ

---

୧. ମୂଳ ଆରବୀ ଶବ୍ଦ 'ତା ବୁତ୍'ର ଅର୍ଥ—(କ) ସିନ୍ଦୁକ(ଖ)ଡଙ୍ଗା (ଗ) ଉପମା ଆକାରରେ ହୃଦୟ । ଏଠାରେ ତାବୁତ ଶବ୍ଦଟି ହୃଦୟ ଅର୍ଥରେ ବ୍ୟବହୃତ ହୋଇଛି । କାରଣ ଶାନ୍ତି ଓ ସନ୍ତୋଷ କେବଳ ହୃଦୟରେ ସ୍ଥାନ ପାଇପାରେ । ବସ୍ତୁତଃ ଦେବଦୂତମାନେ ତାଲୁତଙ୍କ ଅନୁଗାମୀମାନଙ୍କ ହୃଦୟରେ ଉତ୍ସାହ ଓ ଉଦ୍ଦୀପନା ଜାଗ୍ରତ କରାଉଥିଲେ ଏବଂ ସେମାନଙ୍କୁ ତ୍ୟାଗ ଓ ବଳିଦାନ ସଂକ୍ରାନ୍ତରେ ପ୍ରେରଣା ଦେଉଥିଲେ ।

تَرَكَ اٰلُ مُوْسٰى وَاٰلُ هٰرُوْنَ تَحْمِلُهُ الْمَلٰٓئِكَةُ ۗ اِنَّ فِىْ ذٰلِكَ لَاٰيَةً لَّكُمْ اِنْ كُنْتُمْ مُّؤْمِنِيْنَ ۝

ବିଷୟ ଛାଡ଼ିଯାଇଥିବେ ତାହାର ଅବଶେଷ[୧] ରହିଥିବ ଯାହାକୁ ଦେବଦୂତମାନେ ବହନ କରିଥିବେ ; ଏବଂ ତୁମେମାନେ ବିଶ୍ୱାସକାରୀ ହୋଇଥିଲେ ତୁମମାନଙ୍କ ପାଇଁ ନିଶ୍ଚୟ ଏଥିରେ (ମହାନ) ନିଦର୍ଶନ ଅଛି ।''

ରୁ:୩୩

فَلَمَّا فَصَلَ طَالُوْتُ بِالْجُنُوْدِ ۙ قَالَ اِنَّ اللّٰهَ مُبْتَلِيْكُمْ بِنَهَرٍ ۚ فَمَنْ شَرِبَ مِنْهُ فَلَيْسَ مِنِّىْ ۚ وَمَنْ لَّمْ يَطْعَمْهُ فَاِنَّهٗ مِنِّىْٓ اِلَّا مَنِ اغْتَرَفَ غُرْفَةً ۢ بِيَدِهٖ ۚ فَشَرِبُوْا مِنْهُ اِلَّا قَلِيْلًا مِّنْهُمْ ۗ فَلَمَّا جَاوَزَهٗ هُوَ وَالَّذِيْنَ اٰمَنُوْا مَعَهٗ ۙ قَالُوْا لَا طَاقَةَ لَنَا الْيَوْمَ

୨୫୦. ପୁଣି ଯେତେବେଳେ 'ତାଲୁତ' ନିଜ ସୈନ୍ୟବାହିନୀକୁ ନେଇ ବାହାରିଲେ ସେତେବେଳେ ସେ କହିଲେ, ''ଅଲ୍ଲାହ୍ ଏକ ନଦୀ[୨] ମାଧ୍ୟମରେ ତୁମମାନଙ୍କୁ ନିଶ୍ଚୟ ପରୀକ୍ଷା କରିବେ ; ସୁତରାଂ ଯେ ତହିଁରୁ (ମନବୋଧ କରି) ଜଳପାନ କରିବ ତା'ର ମୋ ସହିତ ସମ୍ପର୍କ (ରହିବ) ନାହିଁ ; ଏବଂ ଯେ ତହିଁରୁ ଜଳପାନ କରିବ ନାହିଁ କିମ୍ବା ଆଞ୍ଜୁଳାଏ ମାତ୍ର ପାନ କରିବ, ମୋ ସହିତ ତା'ର (ନିଶ୍ଚୟ) ସମ୍ପର୍କ ରହିବ (ଏବଂ ତା'ପ୍ରତି ଦୋଷାରୋପ କରାଯିବ ନାହିଁ) ; ପୁଣି (ଏପରି ହେଲା ଯେ) ସେମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କ ବ୍ୟତୀତ (ଅନ୍ୟ ସମସ୍ତେ) ତହିଁରୁ (ଜଳ) ପାନ କଲେ ; ତା'ପରେ ଯେତେବେଳେ ସେ ନିଜେ ଓ ତାଙ୍କ ସହିତ ବିଶ୍ୱାସ ସ୍ଥାପନ କରିଥିବା ଲୋକମାନେ ସେହି ନଦୀ ଅତିକ୍ରମ କରି ଚାଲିଗଲେ (ସେତେବେଳେ) ସେମାନେ କହିଲେ, ''ଆଜି 'ଜାଲୁତ' ଓ ତାହାଙ୍କର ସୈନ୍ୟବାହିନୀର ପ୍ରତିରୋଧ କରିବାକୁ ଆମମାନଙ୍କର ଆଦୌ ଶକ୍ତି ନାହିଁ ;'' କିନ୍ତୁ ଯେଉଁମାନେ ବିଶ୍ୱାସ କରୁଥିଲେ ଯେ ସେମାନେ (ଦିନେ ନା ଦିନେ) ଅଲ୍ଲାହ୍‌ଙ୍କ

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ତାଲୁତଙ୍କ ଅନୁଗାମୀମାନଙ୍କ ମଧ୍ୟରେ ସେହି ଉଚ୍ଚକୋଟିର ନୈତିକ ଓ ଆଧ୍ୟାତ୍ମିକ ଶକ୍ତି ସୃଷ୍ଟି କରାଯିବ ଯାହା ହଜରତ ମୁସା ଓ ହଜରତ ହାରୁନଙ୍କ ଅନୁଗାମୀମାନଙ୍କଠାରେ ଥିଲା । ବସ୍ତୁତଃ ତତ୍କାଳୀନ ଅବତାର ସେହି ଅମାନ୍ୟକାରୀଙ୍କୁ ଉତ୍ତର ଦେଇଥିଲେ ଯେ ଗୋପନୀୟ ଶକ୍ତି ବିଷୟକ ଜ୍ଞାନ କେବଳ ଅଲ୍ଲାହ୍‌ଙ୍କଠାରେ ରହିଅଛି । ତେଣୁ ଅନୁଶାସନ ପାଇଁ ସେ ତାଲୁତଙ୍କୁ ମନୋନୀତ କରିଥିବାରୁ ସେ ତୁମଠାରୁ ଏ ବିଷୟରେ ଅଧିକ ଜାଣନ୍ତି । ଅନୁଶାସନ କେବଳ ଧନ ଦ୍ୱାରା ସମ୍ଭବ ନୁହେଁ ବରଂ ଜ୍ଞାନ, ତ୍ୟାଗ ଓ ବଳିଦାନ ଦ୍ୱାରା ମଧ୍ୟ ସମ୍ଭବ ହୁଏ । ଏ ବିଷୟରେ ତାଲୁତ ନିଃସନ୍ଦେହରେ ତୁମମାନଙ୍କ ଅପେକ୍ଷା ଅଧିକ ଯୋଗ୍ୟ ଓ ଏଥିପାଇଁ ସଦା ପ୍ରସ୍ତୁତ । ଅଲ୍ଲାହ୍ ତାହାଙ୍କୁ ବୀରତା, ଧୀରତା, ସହିଷ୍ଣୁତା ଓ ତ୍ୟାଗ ଭଳି ସଦ୍‌ଗୁଣମାନ ପ୍ରଦାନ କରିଛନ୍ତି । ସେ ନିଜେ ଓ ତାହାଙ୍କ ଅନୁଗାମୀମାନଙ୍କୁ ଅଲ୍ଲାହ୍‌ଙ୍କ ଠାରୁ ସହାୟତା ଲାଭ କରି ସନ୍ତୁଷ୍ଟ । ସେମାନଙ୍କୁ ସେହି ସଂଯମତା ଓ ଧର୍ମଭୀରୁତା ଅବଲମ୍ବନ କରିବାକୁ ସୁଯୋଗ ମିଳିବ ଯାହା ମୁସା ଓ ହାରୁନଙ୍କ ଅନୁଗାମୀମାନଙ୍କୁ ମିଳିଥିଲା ।

୨. ମୂଳ ଶବ୍ଦ 'ନହର'ର ଦୁଇଗୋଟି ଅର୍ଥ ଅଛି-(କ) ନଦୀ (ଖ) ଧନ ସମ୍ପତ୍ତି । ଏଠାରେ ଦୁଇଟିଯାକ ଅର୍ଥ ସମାନଭାବରେ ପ୍ରଯୋଜ୍ୟ । ଦ୍ୱିତୀୟ ଅର୍ଥ ଅନୁସାରେ ଏହା ପ୍ରତୀତ ହେଉଛି ଯେ ତୁମମାନଙ୍କୁ ଧନସମ୍ପତ୍ତି ମାଧ୍ୟମରେ ପରୀକ୍ଷା କରାଯିବ । ଧନ ପଛରେ ଧାଇଁଲେ ତୁମେମାନେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ କୌଣସି କାର୍ଯ୍ୟ କରିପାରିବ ନାହିଁ । ସୁତରାଂ ଧନ ସମ୍ପତ୍ତି ଦ୍ୱାରା ପ୍ରଭାବିତ ନ ହେଲେ ଯାଇ ତୁମେମାନେ ସଫଳତା ଲାଭ କରି ପାରିବ ।

ପ୍ରଥମ ଅର୍ଥକୁ ତୌରାତ ଧର୍ମଗ୍ରନ୍ଥ ମଧ୍ୟ ସମର୍ଥନ କରୁଅଛି । ସେଥିରେ ଲେଖାଅଛି ଯେ ଜଦୁନ୍ (ବା ତାଲୁତ)ଙ୍କ ସାଥୀମାନଙ୍କୁ ଏକ ନଦୀ ମାଧ୍ୟମରେ ପରୀକ୍ଷା କରାଯାଇଥିଲା । ଅଲ୍ଲାହ୍ ସେମାନଙ୍କୁ ଅଳ୍ପ ପରିମାଣରେ ଜଳପାନ କରିବାକୁ ଆଦେଶ ଦେଇଥିଲେ ଯଦ୍ୱାରା ସେମାନେ ତୀବ୍ରତା ସହକାରେ ଯୁଦ୍ଧ କରିପାରିବେ । କିନ୍ତୁ ଅନେକେ ଏହି ଗୂଢ଼ ରହସ୍ୟକୁ ବୁଝି ପାରିଲେ ନାହିଁ ଓ ମନବୋଧ କରି ଜଳପାନ କଲେ । ତୌରାତ୍‌ର ବର୍ଣ୍ଣନା ମୁତାବକ ସେହି ଘଟଣାରେ ତିନିଶହ ଜଣ ବ୍ୟକ୍ତି ଅଳ୍ପ ପରିମାଣରେ ଜଳପାନ କରିଥିଲେ । ସେମାନଙ୍କର ଏହି ଆଜ୍ଞାପାଳନ ଯୋଗୁଁ ଅଲ୍ଲାହ୍ କେବଳ ସେହିମାନଙ୍କୁ ଉଚ୍ଚ ମର୍ଯ୍ୟାଦା ପ୍ରଦାନ କରିଥିଲେ ଓ ଯୁଦ୍ଧରେ ସମ୍ମିଳିତ ହେବାକୁ ନିଜର ନିଷ୍ପତ୍ତି ଦେଇଥିଲେ ଓ ପରିଶେଷରେ ସେହିମାନଙ୍କୁ ବିଜୟ ପ୍ରଦାନ କରିଥିଲେ ।

بِجَالُوتَ وَجُنُودِهِ ۚ قَالَ الَّذِينَ يَظُنُّونَ أَنَّهُم مُّلَاقُو اللَّهِ كَم مِّن فِئَةٍ قَلِيلَةٍ غَلَبَتْ فِئَةً كَثِيرَةً بِإِذْنِ اللَّهِ ۗ وَاللَّهُ مَعَ الصَّابِرِينَ ﴿٢٥٠﴾

ସହିତ ସାକ୍ଷାତ୍ କରିବେ ସେମାନେ କହିଲେ, "ଅନେକ ଛୋଟ ଛୋଟ ଦଳ ଅଲ୍ଲାହ୍‌ଙ୍କ ଆଦେଶ କ୍ରମେ ବଡ଼ବଡ଼ ଦଳ ଉପରେ ବିଜୟ ଲାଭ କରିଛନ୍ତି ; ଏବଂ ଅଲ୍ଲାହ୍ ଧୈର୍ଯ୍ୟଧାରୀ-ମାନଙ୍କ ସହିତ (ରହି) ଅଛନ୍ତି (ସୁତରାଂ ଭୟ କରିବାର କୌଣସି କାରଣ ନାହିଁ)" ।

وَلَمَّا بَرَزُوا لِجَالُوتَ وَجُنُودِهِ قَالُوا رَبَّنَا أَفْرِغْ عَلَيْنَا صَبْرًا وَثَبِّتْ أَقْدَامَنَا وَانصُرْنَا عَلَى الْقَوْمِ الْكَافِرِينَ ﴿٢٥١﴾

୨୫୧. ଏବଂ ଯେତେବେଳେ ସେମାନେ 'ଜାଲୁତ'[1] ଓ ତାହାଙ୍କ ସୈନ୍ୟବାହିନୀର ପ୍ରତିରୋଧ କରିବାକୁ ବାହାରିଲେ ସେତେବେଳେ (ସେମାନେ) କହିଲେ, "ହେ ଆମମାନଙ୍କ ପାଳନକର୍ତ୍ତା ! ଆମମାନଙ୍କୁ ସହିବାର ଶକ୍ତି ଦିଅ (ଓ ରଣକ୍ଷେତ୍ରରେ) ଆମମାନଙ୍କ ପାଦକୁ ସୁଦୃଢ଼ କର ଓ ସେହି ଅବିଶ୍ୱାସକାରୀଙ୍କ ବିରୁଦ୍ଧରେ ଆମମାନଙ୍କୁ ସାହାଯ୍ୟ କର ।

فَهَزَمُوهُم بِإِذْنِ اللَّهِ وَقَتَلَ دَاوُودُ جَالُوتَ وَآتَاهُ اللَّهُ الْمُلْكَ وَالْحِكْمَةَ وَعَلَّمَهُ مِمَّا يَشَاءُ ۗ وَلَوْلَا دَفْعُ اللَّهِ النَّاسَ بَعْضَهُم بِبَعْضٍ لَّفَسَدَتِ الْأَرْضُ وَلَٰكِنَّ اللَّهَ ذُو فَضْلٍ عَلَى الْعَالَمِينَ ﴿٢٥٢﴾

୨୫୨. ତା'ପରେ ସେମାନେ ଯୁଦ୍ଧକୁ ଲମ୍ଫ ପ୍ରଦାନ କଲେ ଓ) ଅଲ୍ଲାହ୍‌ଙ୍କ ଇଚ୍ଛା ଅନୁସାରେ ସେମାନଙ୍କୁ ପରାସ୍ତ କଲେ ; ଏବଂ ଦାଉଦ ଜାଲୁତଙ୍କୁ ହତ୍ୟାକଲେ ; ଏବଂ ଅଲ୍ଲାହ୍ ତାହାଙ୍କୁ ରାଜତ୍ୱ ଓ ତତ୍ତ୍ୱଜ୍ଞାନ ପ୍ରଦାନ କଲେ ; ଏବଂ ସେ (ଅଲ୍ଲାହ୍) ଯାହା କିଛି ଇଚ୍ଛା କଲେ ତାଙ୍କୁ (ଅର୍ଥାତ୍ ଦାଉଦଙ୍କୁ) ତାହାର ଜ୍ଞାନ ପ୍ରଦାନ କଲେ ; ଏବଂ ଯଦି ଅଲ୍ଲାହ୍ ଲୋକମାନଙ୍କୁ (ଦୁଷ୍କାମିରୁ) ଦୂରେଇ ନ ରଖନ୍ତେ ଅର୍ଥାତ୍ କେତେକ (ଲୋକ)ଙ୍କୁ ଅନ୍ୟ କେତେକଙ୍କ ଜରିଆରେ (ଅପସାରିତ ନ କରନ୍ତେ) ତେବେ ପୃଥିବୀ ଓଲଟପାଲଟ ହୋଇଯାନ୍ତା ; କିନ୍ତୁ ଅଲ୍ଲାହ୍ ସମସ୍ତ ଜଗତ ପ୍ରତି ଅତ୍ୟନ୍ତ କୃପାଶୀଳ (ସେଥିଯୋଗୁଁ ଏହି ବିଶୃଙ୍ଖଳାକୁ ନିବାରିତ କରାନ୍ତି) ।

تِلْكَ آيَاتُ اللَّهِ نَتْلُوهَا عَلَيْكَ بِالْحَقِّ ۚ وَإِنَّكَ لَمِنَ الْمُرْسَلِينَ ﴿٢٥٣﴾

୨୫୩. ଏହିଗୁଡ଼ିକ ଅଲ୍ଲାହ୍‌ଙ୍କର ନିଦର୍ଶନ ଯାହାକୁ ଆମେ ତୁମ ନିକଟରେ ଆବୃତ୍ତି କରୁଅଛୁ ଏପରି ପରିସ୍ଥିତିରେ ଯେତେବେଳେ କି ତୁମେ ସତ୍ୟ ଉପରେ (ପ୍ରତିଷ୍ଠିତ) ଅଛ ; ଏବଂ ତୁମେ ବାସ୍ତବରେ ରସୁଲମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।

୧. ଆରବୀ ଭାଷାରେ 'ଜାଲୁତ' ଏକ ଗୁଣବାଚକ ସଂଜ୍ଞା । ସେହି ବ୍ୟକ୍ତି ବା ଲୋକଙ୍କୁ ଜାଲୁତ କୁହାଯାଏ ଯିଏ ଦେଶରେ ଲୁଣ୍ଠନ କରେ ବା ବିଶୃଙ୍ଖଳା ସୃଷ୍ଟି କରେ । ଏଠାରେ ଜଦୁନ ଓ ହଜରତ ଦାଉଦ ଉଭୟଙ୍କ ଶତ୍ରୁକୁ ଜାଲୁତ କୁହାଯାଇଛି ।

## ଭାଗ-୩

تِلْكَ الرُّسُلُ فَضَّلْنَا بَعْضَهُمْ عَلٰى بَعْضٍ مِنْهُمْ مَنْ كَلَّمَ اللّٰهُ وَرَفَعَ بَعْضَهُمْ دَرَجٰتٍ ۚ وَاٰتَيْنَا عِيْسَى ابْنَ مَرْيَمَ الْبَيِّنٰتِ وَاَيَّدْنٰهُ بِرُوْحِ الْقُدُسِ ۗ وَلَوْ شَآءَ اللّٰهُ مَا اقْتَتَلَ الَّذِيْنَ مِنْ بَعْدِهِمْ مِنْ بَعْدِ مَا جَآءَتْهُمُ الْبَيِّنٰتُ وَلٰكِنِ اخْتَلَفُوْا فَمِنْهُمْ مَنْ اٰمَنَ وَمِنْهُمْ مَنْ كَفَرَ ۚ وَلَوْ شَآءَ اللّٰهُ مَا اقْتَتَلُوْا ۫ وَلٰكِنَّ اللّٰهَ يَفْعَلُ مَا يُرِيْدُ ﴿٢٥٤﴾

୨୫୪. ଆମେ (ଉପରୋକ୍ତ) ଏହି ରସୁଲମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଉପରେ ପ୍ରାଧାନ୍ୟ ଦେଇଥିଲୁ ; ସେମାନଙ୍କ ମଧ୍ୟରୁ ଏପରି କେତେକ ଅଛନ୍ତି ଯେଉଁମାନଙ୍କ ସହିତ ଅଲ୍ଲାହ କଥାବାର୍ତ୍ତା[୧] କରିଥିଲେ (ଅର୍ଥାତ୍ କେତେକଙ୍କୁ ନୂତନ ବିଧାନ ପ୍ରଦାନ କରିଥିଲେ) ଏବଂ ଅନ୍ୟମାନଙ୍କ ତୁଳନାରେ ସେମାନଙ୍କର ପଦ ଉନ୍ନତ କରିଥିଲେ (ଅର୍ଥାତ୍ କୌଣସି ନୂତନ ବିଧାନ ନ ଥାଇ ତାହାଙ୍କ ପଦ ମର୍ଯ୍ୟାଦା ବୃଦ୍ଧି କରିଥିଲେ) ; ଏବଂ ଆମେ ମରିୟମ ନନ୍ଦନ ଇସାଙ୍କୁ ପ୍ରକାଶ୍ୟ ପ୍ରମାଣମାନ ଦେଇଥିଲୁ ; ଏବଂ ପବିତ୍ର ଆତ୍ମା ଦ୍ବାରା ତାହାଙ୍କୁ ଶକ୍ତି ପ୍ରଦାନ କରିଥିଲୁ ; ଏବଂ ଯଦି ଅଲ୍ଲାହ ଇଚ୍ଛା କରିଥାଆନ୍ତେ, ତେବେ ସେମାନଙ୍କ ପରବର୍ତ୍ତୀ ଲୋକମାନେ ସେମାନଙ୍କ ପାଖକୁ ପ୍ରକାଶ୍ୟ ନିଦର୍ଶନମାନ ଆସିବା ପରେ ପରସ୍ପର ମଧ୍ୟରେ କଳହ କରିନଥା'ନ୍ତେ ; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଏହା ସତ୍ତ୍ୱେ ସେମାନେ ମତଭେଦ ସୃଷ୍ଟିକଲେ ; ଫଳରେ ସେମାନଙ୍କ ମଧ୍ୟରୁ କେତେକ ବିଶ୍ୱାସ କଲେ ଓ ଅନ୍ୟ କେତେକ ଅବିଶ୍ୱାସ କଲେ ; ଏବଂ ଯଦି ଅଲ୍ଲାହ ଇଚ୍ଛା କରିଥା'ନ୍ତେ, ତେବେ ଏହି ଲୋକମାନେ ପରସ୍ପର ମଧ୍ୟରେ କଳହ କରି ନଥା'ନ୍ତେ ; କିନ୍ତୁ ଅଲ୍ଲାହ ଯାହା ଇଚ୍ଛା କରନ୍ତି ତାହା ହିଁ କରନ୍ତି ।

ରୁ : ୩୪

يٰۤاَيُّهَا الَّذِيْنَ اٰمَنُوْۤا اَنْفِقُوْا مِمَّا رَزَقْنٰكُمْ مِنْ قَبْلِ اَنْ يَّاْتِيَ يَوْمٌ لَا بَيْعٌ فِيْهِ وَلَا خُلَّةٌ وَلَا شَفَاعَةٌ ۗ وَالْكٰفِرُوْنَ هُمُ الظّٰلِمُوْنَ ﴿٢٥٥﴾

୨୫୫. ହେ ବିଶ୍ୱାସକାରୀମାନେ ! ଯେଉଁଦିନ କୌଣସି ପ୍ରକାର କ୍ରୟ-ବିକ୍ରୟ, ବନ୍ଧୁତା ଓ ସୁପାରିଶ ଚାଲିବ ନାହିଁ ସେଦିନର ଆଗମନ ପୂର୍ବରୁ ଆମେ ତୁମମାନଙ୍କୁ ଯାହା ଦେଇଅଛୁ ସେଥିରୁ (ଯଥାସମ୍ଭବ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ବ୍ୟୟ କର ; ଏବଂ ଏହାକୁ (ଅର୍ଥାତ୍ ଏହି ଆଦେଶକୁ ଅବଜ୍ଞା କରୁଥିବା ବ୍ୟକ୍ତିମାନେ ହିଁ (ନିଜ ଉପରେ) ଅତ୍ୟାଚାର କରୁଛନ୍ତି ।

୧. ମୂଳ ଆରବୀ ଶବ୍ଦ 'କଲାମ୍'ର ତାତ୍ପର୍ଯ୍ୟ ହେଉଛି ଶରିୟତ୍ ବା ଆଧ୍ୟାତ୍ମିକ ବିଧାନ ଅର୍ଥାତ୍ କେତେକ ଅବତାର ବା ନବି ବିଧାନବାହୀ ଅଟନ୍ତି ଓ ଅଲ୍ଲାହ ଅନ୍ୟ କେତେକଙ୍କୁ କେବଳ ନବି ପଦରେ ବିଭୂଷିତ କରିଛନ୍ତି ଅଥଚ ନୂତନ ବିଧାନ ପ୍ରଦାନ କରିନାହାନ୍ତି । ଅନ୍ୟ ଅର୍ଥରେ 'କେତେକ' କେବଳ ଜଣେ ନବିଙ୍କୁ ବୁଝାଉଛି ଓ ସେହି ନବି ହେଉଛନ୍ତି ହଜରତ ମହମ୍ମଦ ।

୨୫୬. ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ, ସେ ଚିରଞ୍ଜୀବୀ, (ଓ ସେ ସ୍ୱୟଂ) ପ୍ରତିଷ୍ଠିତ (ଓ ସମସ୍ତଙ୍କର) ପ୍ରତିଷ୍ଠାତା ; ତାହାଙ୍କୁ ତନ୍ଦ୍ରା ଆସେ ନାହିଁ କି ନିଦ୍ରା (ସ୍ପର୍ଶ କରେ ନାହିଁ) ; ଯାହା କିଛି ଆକାଶରେ ଓ ଯାହା କିଛି ପୃଥିବୀରେ ଅଛି (ତାହା) ତାଙ୍କରି ଅଟେ ; ଏପରି କିଏ ଅଛି ଯେ ତାଙ୍କ ବିନାନୁମତିରେ ତାଙ୍କ ସମୀପରେ ସୁପାରିଶ କରିପାରିବ ? ସେମାନଙ୍କ ସମ୍ମୁଖରେ ଯାହା ଅଛି ଓ ସେମାନଙ୍କ ପଶ୍ଚାତରେ ଯାହା ଅଛି ସେ (ତାହାକୁ) ଜାଣନ୍ତି ; ଏବଂ ସେମାନେ ତାଙ୍କ ବିନା ଇଚ୍ଛାରେ ତାଙ୍କ ଜ୍ଞାନର କୌଣସି ଅଂଶକୁ ଲାଭ କରିପାରିବେ ନାହିଁ ; ତାହାଙ୍କର ସିଂହାସନ[୧] ଆକାଶ ଓ ପୃଥିବୀରେ ବ୍ୟାପୀ ରହିଛି ଏବଂ ଏଗୁଡିକର ରକ୍ଷଣାବେକ୍ଷଣ ତାଙ୍କୁ କ୍ଲାନ୍ତ କରେ ନାହିଁ ; ଏବଂ ସେ ହିଁ ଅତ୍ୟୁଚ୍ଚ ଓ ମହାନ ।

اَللّٰهُ لَاۤ اِلٰهَ اِلَّا هُوَۚ اَلْحَيُّ الْقَيُّوْمُ ۚ لَا تَاْخُذُهٗ سِنَةٌ وَّلَا نَوْمٌ ؕ لَهٗ مَا فِي السَّمٰوٰتِ وَمَا فِي الْاَرْضِ ؕ مَنْ ذَا الَّذِيْ يَشْفَعُ عِنْدَهٗۤ اِلَّا بِاِذْنِهٖ ؕ يَعْلَمُ مَا بَيْنَ اَيْدِيْهِمْ وَمَا خَلْفَهُمْ ۚ وَلَا يُحِيْطُوْنَ بِشَيْءٍ مِّنْ عِلْمِهٖۤ اِلَّا بِمَا شَآءَ ۚ وَسِعَ كُرْسِيُّهُ السَّمٰوٰتِ وَالْاَرْضَ ۚ وَلَا يَـُٔوْدُهٗ حِفْظُهُمَا ۚ وَهُوَ الْعَلِيُّ الْعَظِيْمُ ﴿٢٥٦﴾

୨୫୭. ଧର୍ମ ସଂକ୍ରାନ୍ତରେ କୌଣସି ପ୍ରକାର ବାଧ୍ୟ-ବାଧକତା ନାହିଁ ; (କାରଣ) ସତ୍‌ପଥ ଓ ଅସତ୍ ପଥ ମଧ୍ୟରେ ଥିବା ପ୍ରଭେଦ ଭଲରୂପେ ପ୍ରକାଶିତ ହୋଇ ଯାଇଅଛି ; ସୁତରାଂ (ଜାଣିରଖ ଯେ) ଯେଉଁ ବ୍ୟକ୍ତି (ନିଜ ଇଚ୍ଛାରେ) ପୁଣ୍ୟ କାର୍ଯ୍ୟରେ ପ୍ରତିରୋଧ କରୁଥିବା ବ୍ୟକ୍ତିମାନଙ୍କର (କଥା ମାନିବାକୁ) ଅସ୍ୱୀକାର କରେ ଏବଂ ଅଲ୍ଲାହ୍‌ଙ୍କ ପ୍ରତି ବିଶ୍ୱାସ ସ୍ଥାପନ କରେ ସେ ଏପରି (ଏକ) ଶକ୍ତ ନିର୍ଭରଯୋଗ୍ୟ ବସ୍ତୁକୁ ଦୃଢ ଭାବରେ ଧାରଣ କରିଛି ଯାହା (କଦାପି) ଭାଙ୍ଗିବ ନାହିଁ ; ଏବଂ ଅଲ୍ଲାହ୍ ହିଁ ମହାନ୍ ଶ୍ରୋତା ଏବଂ ସର୍ବଜ୍ଞ ।

لَاۤ اِكْرَاهَ فِي الدِّيْنِ ۙ قَدْ تَّبَيَّنَ الرُّشْدُ مِنَ الْغَيِّ ۚ فَمَنْ يَّكْفُرْ بِالطَّاغُوْتِ وَيُؤْمِنْۢ بِاللّٰهِ فَقَدِ اسْتَمْسَكَ بِالْعُرْوَةِ الْوُثْقٰى ۗ لَا انْفِصَامَ لَهَا ؕ وَاللّٰهُ سَمِيْعٌ عَلِيْمٌ ﴿٢٥٧﴾

୨୫୮. ଅଲ୍ଲାହ୍ ସେହି ଲୋକମାନଙ୍କର ବନ୍ଧୁ ଯେଉଁମାନେ ବିଶ୍ୱାସ ସ୍ଥାପନ କରନ୍ତି ; ସେ ସେମାନଙ୍କୁ ଅନ୍ଧକାରରୁ ବାହାର କରି ଆଲୋକ ଆଡକୁ ଆଣନ୍ତି ଏବଂ ଯେଉଁମାନେ ଅବିଶ୍ୱାସକାରୀ, ସେମାନଙ୍କର ବନ୍ଧୁ ପୁଣ୍ୟ କାର୍ଯ୍ୟରେ ପ୍ରତିରୋଧକାରୀ (ବ୍ୟକ୍ତି) ଅଟନ୍ତି ; ସେମାନେ ସେମାନଙ୍କୁ ଆଲୋକରୁ ବାହାର କରି ଅନ୍ଧକାର ଆଡକୁ ଘେନି ଯାଆନ୍ତି ; ସେମାନେ ନରକବାସୀ ହେବେ ଏବଂ ସେଠାରେ ସେମାନେ ରହିବେ ।

اَللّٰهُ وَلِيُّ الَّذِيْنَ اٰمَنُوْا ۙ يُخْرِجُهُمْ مِّنَ الظُّلُمٰتِ اِلَى النُّوْرِ ؕ وَالَّذِيْنَ كَفَرُوْۤا اَوْلِيٰٓـُٔهُمُ الطَّاغُوْتُ ۙ يُخْرِجُوْنَهُمْ مِّنَ النُّوْرِ اِلَى الظُّلُمٰتِ ؕ اُولٰٓئِكَ اَصْحٰبُ النَّارِ ۚ هُمْ فِيْهَا خٰلِدُوْنَ ﴿٢٥٨﴾ ع

[୧] ଆରବୀ ଶବ୍ଦ 'କୁର୍ସି'ର ଅର୍ଥ– ଆସନ, ସିଂହାସନ, ଜ୍ଞାନ, କ୍ଷମତା ଓ ଆଧିପତ୍ୟ । ଏଠାରେ ଏହି ଶବ୍ଦର ଅନୁବାଦ ସିଂହାସନ ରଖାଯାଇଛି ଅଥଚ ଉପରୋକ୍ତ ସମସ୍ତ ଅର୍ଥ ଏହା ପାଇଁ ପ୍ରଯୋଜ୍ୟ । ଏହି ଆୟତରେ ଅଲ୍ଲାହ୍‌ଙ୍କ ଏକତ୍ୱ ଓ ତାହାଙ୍କ ମହାନ୍ ଗୁଣାବଳୀ ସଂକ୍ରାନ୍ତରେ ଏକ ସୁନ୍ଦର ବର୍ଣ୍ଣନା ଅଛି । ମହାପୁରୁଷ ମହମ୍ମଦ ଏହି ଆୟତକୁ କୋରାନ ଅନ୍ତର୍ଗତ ସର୍ବୋଚ୍ଚ ଆୟତ ରୂପେ ଅଭିହିତ କରିଛନ୍ତି । (ମୁସଲିମ୍)

ରୁ : ୩୫

୨୫୯. କ'ଣ ତୁମେ ସେହି ବ୍ୟକ୍ତି ସଂକ୍ରାନ୍ତରେ ଜାଣ ନାହିଁ ଯେ କି ଅଲ୍ଲାଃ ତାହାଙ୍କୁ ରାଜତ୍ୱ ପ୍ରଦାନ କରିଥିବାରୁ ଇବ୍ରାହିମ୍‌ଙ୍କ ସହିତ ତାଙ୍କ ପାଳନକର୍ତ୍ତାଙ୍କ ସମ୍ବନ୍ଧରେ ଯୁକ୍ତି କରିଥିଲା ; (ଏହା ସେତେବେଳର ଘଟଣା) ଯେତେବେଳେ ଇବ୍ରାହିମ (ତାହାକୁ) କହିଲେ, "ସେ ହିଁ ମୋର ପାଳନକର୍ତ୍ତା ଯେ ଜୀବନ ଦିଅନ୍ତି ଓ ସଂହାର କରନ୍ତି" ; ତା'ପରେ ସେ କହିଲା, "ମୁଁ (ମଧ୍ୟ) ଜୀବନ ଦେଉଛି ଓ ସଂହାର କରୁଛି" ; ଇବ୍ରାହିମ କହିଲେ, "(ଯେବି ଏହା ଠିକ୍) ଅଲ୍ଲାଃ ତ ସୂର୍ଯ୍ୟକୁ ପୂର୍ବ (ଦିଗ)ରୁ ଉଦୟ କରାଉଛନ୍ତି (ଏବେ) ତୁମେ ତାହାକୁ ପଶ୍ଚିମ (ଦିଗ)ରୁ ଉଦୟ କରାଅ" ; ଏଥି ଉତ୍ତାରୁ ସେ (ଅବିଶ୍ୱାସକାରୀ) ବିସ୍ମିତ[୧] ହୋଇଗଲା, ଏବଂ (ଏପରି ଘଟିବା ଅନିବାର୍ଯ୍ୟ ଥିଲା କାରଣ) ଅଲ୍ଲାଃ ଅତ୍ୟାଚାରୀମାନଙ୍କୁ (ସଫଳତାର) ପଥ ପ୍ରଦର୍ଶନ କରାନ୍ତି ନାହିଁ ।

اَلَمۡ تَرَ اِلَی الَّذِیۡ حَآجَّ اِبۡرٰهٖمَ فِیۡ رَبِّهٖۤ اَنۡ اٰتٰىهُ اللّٰهُ الۡمُلۡكَ ۘ اِذۡ قَالَ اِبۡرٰهٖمُ رَبِّیَ الَّذِیۡ یُحۡیٖ وَیُمِیۡتُ ۙ قَالَ اَنَا اُحۡیٖ وَاُمِیۡتُ ؕ قَالَ اِبۡرٰهٖمُ فَاِنَّ اللّٰهَ یَاۡتِیۡ بِالشَّمۡسِ مِنَ الۡمَشۡرِقِ فَاۡتِ بِهَا مِنَ الۡمَغۡرِبِ فَبُهِتَ الَّذِیۡ كَفَرَ ؕ وَاللّٰهُ لَا یَهۡدِی الۡقَوۡمَ الظّٰلِمِیۡنَ ﴿۲۵۹﴾

୨୬୦. ଏବଂ (କ'ଣ ତୁମେ) ଏପରି ଏକ ବ୍ୟକ୍ତି ସଦୃଶ (କୌଣସି ବ୍ୟକ୍ତିଙ୍କୁ ଦେଖିଅଛ) ଯେ ଏପରି ଏକ ସହର ପାଖ ଦେଇ ଅତିକ୍ରମ କଲା ଯାହାର (ଗୃହ) ଛାତଗୁଡିକ ଭୁଷୁଡି[୨]

اَوۡ كَالَّذِیۡ مَرَّ عَلٰی قَرۡیَةٍ وَّهِیَ خَاوِیَةٌ عَلٰی عُرُوۡشِهَا ۚ قَالَ اَنّٰی یُحۡیٖ هٰذِهِ اللّٰهُ بَعۡدَ مَوۡتِهَا ۚ

୧. କେତେକ ଭାଷ୍ୟକାରଙ୍କ ମତରେ ହଜରତ ଇବ୍ରାହିମ ନିଜ ଦୁର୍ବଳତାକୁ ଲକ୍ଷ୍ୟକରି ତର୍କର ବିଷୟବସ୍ତୁକୁ ପରିବର୍ତ୍ତନ କରିଥିଲେ । ମାତ୍ର ଏହା ଯଥାର୍ଥ ନୁହେଁ । ତାଙ୍କ ଦେଶବାସୀ ସୂର୍ଯ୍ୟ ଓ ନକ୍ଷତ୍ର ଉପାସନା କରୁଥିବାରୁ ଏବଂ ପ୍ରତ୍ୟେକ ପ୍ରାଣୀର ଜୀବନ ଓ ମୃତ୍ୟୁ ସହିତ ସୂର୍ଯ୍ୟ ସମ୍ପୃକ୍ତ ଥିବା ବିଷୟରେ ବିଶ୍ୱାସ କରୁଥିବାରୁ, ଯେତେବେଳେ ପ୍ରତିପକ୍ଷ ଜିଦି କଲେ ସେତେବେଳେ ହଜରତ ଇବ୍ରାହିମ କହିଲେ– ଆମର ସେହି ଜୀବନ ଓ ମୃତ୍ୟୁ ସହିତ କୌଣସି ସମ୍ବନ୍ଧ ନାହିଁ ଯାହା ତୁମର ଅଧିକାରଭୁକ୍ତ । ପରନ୍ତୁ ଆମର ଅଭିପ୍ରାୟ ହେଉଛି ଯେ ଏହି ସଂସାରରେ ଜୀବନ–ମୃତ୍ୟୁର ଯେଉଁ ପରମ୍ପରା ଚାଲିଛି ତାହା ଅଲ୍ଲାଃଙ୍କ ଅଧୀନ । ସେ ବିଷୟରେ ତୁମର ଚିନ୍ତାଧାରା ହେଉଛି ଯେ ସେହି ଜୀବନ-ମୃତ୍ୟୁର ଚକ୍ର ସୂର୍ଯ୍ୟଙ୍କ ଅଧୀନ ଓ ତାହା ନିର୍ଦ୍ଦେଶରେ ପରିଚାଳିତ । ସୁତରାଂ ଯଦି ତୁମେ ସେହି ଅଲ୍ଲାଃ, ଯାହାଙ୍କ ହସ୍ତରେ ଜୀବନ-ମୃତ୍ୟୁର ଚକ୍ର ପରିଚାଳିତ ହେଉଛି, ତେବେ ତୁମେ ସୂର୍ଯ୍ୟକୁ ପୂର୍ବଦିଗ ପରିବର୍ତ୍ତେ ପଶ୍ଚିମ ଦିଗରେ ଉଦିତ କରାଅ । ଏହି ତର୍କରେ ସେ ବିସ୍ମିତ ହୋଇଯାଇଥିଲା । ଅନ୍ୟପକ୍ଷରେ ଯଦି ସେ କହିଥା'ନ୍ତା ଯେ ଅଲ୍ଲାଃ ନୁହନ୍ତି ବରଂ ମୁଁ ନିଜେ ସୂର୍ଯ୍ୟକୁ ପୂର୍ବ ଦିଗରେ ଉଦିତ କରାଉଛି ତେବେ ସେ ଦେଶର ଲୋକମାନେ ପ୍ରଥମେ ତାକୁ ବିରୋଧ କରିଥା'ନ୍ତେ ଓ ପଚାରିଥା'ନ୍ତେ ଯେ କ'ଣ ସେ ସୂର୍ଯ୍ୟଦେବତାଙ୍କ ଠାରୁ ଶ୍ରେଷ୍ଠ ? ଏପରି ସ୍ଥଳେ ସେ ନୀରବ ରହିବା ଶ୍ରେୟସ୍କର ମନେ କରିଥିଲା ।

୨. ଅର୍ଥାତ୍ ପ୍ରଥମେ ଗୃହଗୁଡ଼ିକର ଛାତସବୁ ପଡ଼ିଯାଇଥିଲା ଓ ପରେ କାନ୍ଥଗୁଡ଼ିକ ଭୁଷୁଡ଼ି ପଡ଼ିଥିଲା । କେତେକ ଭାଷ୍ୟକାର ଏହାକୁ 'ଶୂନ୍ୟ ହୋଇଯାଇଥିଲା' ଅର୍ଥ କରିଥାଆନ୍ତି; ଏହା ମଧ୍ୟ ଠିକ୍, କାରଣ ଏତଦ୍ୱାରା ସେହି ସ୍ଥାନ ଜନଶୂନ୍ୟ ହେବା ମଧ୍ୟ ବୁଝାଉଛି । ଭୂମିକମ୍ପରେ ପ୍ରଥମେ କାନ୍ଥ ପଡ଼ିଯାଏ ଓ ପରେ ଛାତ ଭୁଷୁଡ଼ି ପଡେ । ତେଣୁ ସେହି ସହର ଭୂମିକମ୍ପ ଯୋଗୁଁ ଜନଶୂନ୍ୟ ହୋଇନାହିଁ ବରଂ ସହରବାସୀ ସେହି ସହର ପରିତ୍ୟାଗ କରି ଚାଲିଯିବାରୁ ତାହା ପରିତ୍ୟକ୍ତ ହୋଇ ପଡିରହିଛି । ବସ୍ତୁତଃ ସେହି ସହର ଅର୍ଥାତ ଜେରୁଜେଲମ କୁ ବାବିଲନର ସମ୍ରାଟ ନେବୁଚାଦନେଜାର ଖ୍ରୀଷ୍ଟପୂର୍ବ ୫୯୯ ରେ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲେ । ସେ ଇହୁଦୀମାନଙ୍କର ତତ୍କାଳୀନ ଅବତାର ଇଜକାଇଲଙ୍କୁ ବନ୍ଦୀକରି ଏହି ଦୃଶ୍ୟ ଦେଖାଇବାକୁ ସେଠାକୁ ନେଇଥିଲେ । ଜେରୁଜାଲେମର ଏହି ଅବସ୍ଥା ଦେଖି ଇଜକାଇଲ୍ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥିଲେ ଓ ତାହାର ପୂର୍ବ ଗୌରବ ଫେରାଇ ଆଣିବାକୁ ଅଲ୍ଲାଃଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ତାହାଙ୍କ ମର୍ମସ୍ପର୍ଶୀ ପ୍ରାର୍ଥନା ଶୁଣି ଅଲ୍ଲାଃ ତାହାଙ୍କୁ ଶହେବର୍ଷ ପର ଜେରୁଜେଲମର ଚିତ୍ର ଏକ ଅଲୌକିକ ଦୃଶ୍ୟ ମାଧ୍ୟମରେ ଦେଖାଇଥିଲେ । ତେଣୁ ଇଜକାଇଲ ଶହେବର୍ଷ ପର୍ଯ୍ୟନ୍ତ ମୃତ ଅବସ୍ଥାରେ ପଡିରହିଥିବା, ଏହି ଆୟତର ପ୍ରକୃତ ଅର୍ଥ ନୁହେଁ । ସେ ମରିଯାଇଥିବା ଓ ମୃତ ଅବସ୍ଥାରେ ଶହେ ବର୍ଷ ପର୍ଯ୍ୟନ୍ତ ପଡ଼ିରହିଥିବା ବିଷୟକୁ କେବଳ ଏକ ସ୍ୱପ୍ନ ବା ଅଲୌକିକ ଦୃଶ୍ୟ ମାଧ୍ୟମରେ ତାଙ୍କୁ ଦେଖାଇ ଦିଆଯାଇଥିଲା । ସେ ମଧ୍ୟ ଭଲରୂପେ ବୁଝିପାରିଥିଲେ ଯେ ଇସ୍ରାଇଲୀୟ ସନ୍ତାନମାନେ ଶହେ ବର୍ଷ ପର୍ଯ୍ୟନ୍ତ ପରାଧୀନ ରହିବେ ଓ ସେହି ସମୟରେ ଇସ୍ରାଇଲ ଜାତିର ଅଧଃପତନ ଘଟିବ । ବସ୍ତୁତଃ ଜେରୁଜାଲେମର ପୂର୍ବଗୌରବ ଫେରିବାକୁ ଠିକ ଶହେ ବର୍ଷ ଲାଗିଥିଲା । ଏଠାରେ ଇଜକାଇଲ୍‌ଙ୍କୁ ଇହୁଦୀ ଜାତିର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ବର୍ଣ୍ଣନା କରାଯାଇଛି ।

فَأَمَاتَهُ اللّٰهُ مِائَةَ عَامٍ ثُمَّ بَعَثَهُ ۖ قَالَ كَمْ لَبِثْتَ ۖ قَالَ لَبِثْتُ يَوْمًا أَوْ بَعْضَ يَوْمٍ ۖ قَالَ بَلْ لَّبِثْتَ مِائَةَ عَامٍ فَانْظُرْ إِلٰى طَعَامِكَ وَشَرَابِكَ لَمْ يَتَسَنَّهْ ۖ وَانْظُرْ إِلٰى حِمَارِكَ وَلِنَجْعَلَكَ اٰيَةً لِّلنَّاسِ وَانْظُرْ إِلَى الْعِظَامِ كَيْفَ نُنْشِزُهَا ثُمَّ نَكْسُوْهَا لَحْمًا ۖ فَلَمَّا تَبَيَّنَ لَهٗ ۙ قَالَ أَعْلَمُ أَنَّ اللّٰهَ عَلٰى كُلِّ شَيْءٍ قَدِيْرٌ ۝

ପଡିଥିଲା ; (ଏହା ଦେଖି) ସେ କହିଲା, "ଏହାର ଧ୍ୱଂସ ପରେ କେବେ ଅଲ୍ଲାହ୍ ଏହାକୁ ପୁନଃସ୍ଥାପନ କରିବେ ?" ତା'ପରେ ତା'କୁ ଅଲ୍ଲାହ୍ ଏକଶତ ବର୍ଷ ପର୍ଯ୍ୟନ୍ତ (ସ୍ୱପ୍ନରେ) ମୃତ (ଅବସ୍ଥାରେ) ରଖିଲେ ; ତା'ପରେ ତା'କୁ ଜାଗ୍ରତ କରାଇ ପଚାରିଲେ, "(ହେ ମୋର ଭକ୍ତ!) ତୁ କେତେ ସମୟ ପର୍ଯ୍ୟନ୍ତ (ଏପରି ଅବସ୍ଥାରେ) ରହିଲୁ ?" ସେ କହିଲା, "ମୁଁ (ଏପରି ଅବସ୍ଥାରେ) ଗୋଟିଏ ଦିନ ବା ଦିନର କିଛି ଅଂଶ ରହିଥିଲି ;" (ତତ୍‌ପରେ ଅଲ୍ଲାହ୍) କହିଲେ, "(ଏହା ମଧ୍ୟ ଠିକ୍) ଏବଂ ତୁ (ଏପରି ଅବସ୍ଥାରେ) ଏକଶତ ବର୍ଷ ପର୍ଯ୍ୟନ୍ତ ମଧ୍ୟ ରହିଥିଲୁ ;" ବର୍ତ୍ତମାନ ତୁ ନିଜ ଆହାର ଓ ପାନୀୟକୁ ଦେଖ, ତାହା ପଚି ଯାଇ ନାହିଁ ; ଏବଂ ତୋ ଗଧକୁ (ମଧ୍ୟ) ଦେଖ ; (ଏବଂ ସେ ଉଭୟ ଭଲ ଅବସ୍ଥାରେ ଥିବା ଦେଖି ବୁଝି ନେ ଯେ ତୋ'ର ଚିନ୍ତାଧାରା ଯେପରି ନିର୍ଭୁଲ ମୋର ମଧ୍ୟ ସେହିପରି ନିର୍ଭୁଲ ଅଟେ) ; ଏବଂ ଆମେ ତୋତେ ଲୋକମାନଙ୍କ ପାଇଁ ଏକ ନିଦର୍ଶନ କରିବା ସକାଶେ ଏପରି କରିଅଛୁ ; ଏବଂ (ଏହି) ଅସ୍ଥିଗୁଡିକୁ ଦେଖ, ଆମେ କିପରି ସେଗୁଡିକୁ ସ୍ୱ ସ୍ୱ ସ୍ଥାନରେ ରଖି ଗଢି ଦେଉଛୁଁ ; ଏବଂ ତା'ପରେ ସେଗୁଡିକ ଉପରେ ମାଂସ ଆଚ୍ଛାଦିତ କରୁଛୁଁ ; ସୁତରାଂ ଯେତେବେଳେ ତା' ନିକଟରେ (ବାସ୍ତବତା) ସମ୍ପୂର୍ଣ୍ଣ ମାତ୍ରାରେ ପ୍ରକାଶିତ ହେଲା ସେ କହିଲା, "ମୁଁ ଜାଣେ ଯେ ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି ସେସବୁ କରିବାକୁ ସମ୍ପୂର୍ଣ୍ଣରୂପେ ସକ୍ଷମ ।"

وَإِذْ قَالَ إِبْرٰهٖمُ رَبِّ أَرِنِيْ كَيْفَ تُحْيِ الْمَوْتٰى ۖ قَالَ أَوَلَمْ تُؤْمِنْ ۖ قَالَ بَلٰى وَلٰكِنْ لِّيَطْمَئِنَّ قَلْبِيْ ۖ قَالَ

୨୬୧. ଏବଂ (ଏହି ଘଟଣାକୁ ମଧ୍ୟ ସ୍ମରଣକର) ଯେତେବେଳେ ଇବ୍ରାହିମ କହିଲେ, "ହେ ଆମର ପାଳନକର୍ତ୍ତା ! ତୁମେ କିପରି ମୃତକୁ ଜୀବିତ କରୁଅଛ ତାହା ଆମକୁ ଦେଖାଇଦିଅ ?" (ଅଲ୍ଲାହ୍) କହିଲେ, "ତୁମେ କ'ଣ ବିଶ୍ୱାସ ସ୍ଥାପନ କରିନାହଁ", ଇବ୍ରାହିମ କହିଲେ "କାହିଁକି ନୁହେଁ

୧. ମୂଳ ଆରବୀ ଶବ୍ଦ 'ବଲ'କୁ ଦୁଇଟି ଅର୍ଥରେ ବ୍ୟବହାର କରାଯାଏ:(କ) କୌଣସି ଉକ୍ତିକୁ ଖଣ୍ଡନ କରିବାପାଇଁ, (ଖ) ପ୍ରଥମୋକ୍ତ ଉକ୍ତିକୁ ଖଣ୍ଡନକରିବା ଅଭିପ୍ରାୟ ନ ଥାଇ ବରଂ ଧ୍ୟାନ ଆକର୍ଷଣ କରିବାପାଇଁ । ଏଠାରେ ଉଭୟ ଯଥାର୍ଥ । ଏହି ଆୟତରେ ଅଲ୍ଲାହ୍‌ଙ୍କର ନବିଙ୍କ ଉକ୍ତିକୁ ଖଣ୍ଡନ କରିବା ଅଭିପ୍ରାୟ ନାହିଁ ବରଂ ଅନ୍ୟ ଏକ ବିଷୟ ପ୍ରତି ଧ୍ୟାନ ଆକର୍ଷଣ କରାଇବାର ଲକ୍ଷ୍ୟ ଅଛି; ଅର୍ଥାତ୍ ଯଦି ତୁମେ ଏ ବିଷୟକୁ ଏକ ଭିନ୍ନ ଦୃଷ୍ଟିରେ ଦେଖିବ ତେବେ ଜାଣିପାରିବ ଯେ ତୁମେ ଏକଶହ ବର୍ଷ ଏପରି ଅବସ୍ଥାରେ ଅତିବାହିତ କରିଛ । ଯେହେତୁ ନବିଙ୍କ ଉକ୍ତି ସ୍ୱସ୍ଥାନରେ ଯଥାର୍ଥ, କାଳେ ସେହି ନବି ଅଲ୍ଲାହ୍‌ଙ୍କ ଉକ୍ତିକୁ ପ୍ରାଧାନ୍ୟ ଦେଇ ନିଜ ଚିନ୍ତାଧାରାକୁ ଦୋଷଯୁକ୍ତ ପ୍ରତିପାଦିତ କରାଇବେ ସେହି ହେତୁ ଅଲ୍ଲାହ୍ ନବିଙ୍କ ଚିନ୍ତାଧାରାକୁ ଖଣ୍ଡନ କରୁ ନ ଥିବା ବିଷୟ ମଧ୍ୟ ସୂଚାଇ ଦେଇଥିଲେ ।

ଉକ୍ତ ଅଲୌକିକ ଦୃଶ୍ୟକୁ ଇଜକାଇଲ୍ ଅତି ଅଳ୍ପ ସମୟ ପାଇଁ ଦେଖିଥିଲେ । ତେଣୁ ତାଙ୍କ ମନରେ ଏହାର ସତ୍ୟତା କିପରି ରେଖାପାତ କରିବ ସେଥିପାଇଁ ତାଙ୍କ ଖାଦ୍ୟ, ପାନୀୟ ଓ ଗଧ ପ୍ରତି ତାହାଙ୍କ ଦୃଷ୍ଟି ଆକର୍ଷଣ କରାଯାଇଛି ।

୨. ବିଶ୍ୱାସ କରିବା (ଇମାନ୍) ଓ ହୃଦ୍‌ବୋଧ ହେବା (ଇତମିନାନ୍) ମଧ୍ୟରେ ଅବଶ୍ୟ ପାର୍ଥକ୍ୟ ଅଛି । ପ୍ରଥମ ଅବସ୍ଥାରେ ଜଣେ ସରଳଭାବରେ କେବଳ ବିଶ୍ୱାସ କରିବ ଯେ ଅଲ୍ଲାହ୍ ସବୁକିଛି କରିପାରିବେ । କିନ୍ତୁ ଦ୍ୱିତୀୟ ଅବସ୍ଥାରେ ଏହା ତା' ନିଜ ପାଇଁ ମଧ୍ୟ ଘଟିବ ବୋଲି ସେ ନିର୍ଭରଯୋଗ୍ୟ ଉତ୍ତର ପାଇଥିବ । ହଜରତ ଇବ୍ରାହିମ ଅଲ୍ଲାହ୍‌ଙ୍କ ଶକ୍ତି ବିଷୟରେ ସମ୍ପୂର୍ଣ୍ଣ ସଚେତନ ଥିଲେ ମଧ୍ୟ ନିଜର ବ୍ୟକ୍ତିଗତ ସନ୍ତୋଷ ତଥା ଭାବୀ ବଂଶଧରଙ୍କ ଆତ୍ମବିଶ୍ୱାସର ଦୃଢତା ନିମିତ୍ତ ଏପରି କହିଥିଲେ । ନିଃସନ୍ଦେହରେ ଇବ୍ରାହିମ୍ ସନ୍ଦେହର ବଶବର୍ତ୍ତୀ ହୋଇ ଏହା ପଚାରି ନ ଥିଲେ ବରଂ ତାଙ୍କ ମନରେ ପ୍ରବଳ ଆଗ୍ରହ ଜନ୍ମିବାରୁ ସେ ଏପରି ପଚାରିଥିଲେ ।

فَخُذْ اَرْبَعَةً مِّنَ الطَّيْرِ فَصُرْهُنَّ اِلَيْكَ ثُمَّ اجْعَلْ عَلٰى كُلِّ جَبَلٍ مِّنْهُنَّ جُزْءًا ثُمَّ ادْعُهُنَّ يَاْتِيْنَكَ سَعْيًا ۚ وَاعْلَمْ اَنَّ اللّٰهَ عَزِيْزٌ حَكِيْمٌ

(ନିଃସନ୍ଦେହରେ ଆମେ ବିଶ୍ୱାସ ସ୍ଥାପନ କରିଅଛୁ) କିନ୍ତୁ ଆମର ହୃଦୟର ଶାନ୍ତି ପାଇଁ (ଏ ପ୍ରଶ୍ନ ଆମେ ପଚାରୁଛୁ) ;" ଅଲ୍ଲାଃ କହିଲେ, "ଆଚ୍ଛା ତୁମେ ଚାରିଗୋଟି[1] ପକ୍ଷୀ ଆଣ, ଏବଂ ସେମାନଙ୍କୁ ତୁମର ପୋଷା ମନାଅ ; ତା'ପରେ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ପାହାଡ ଉପରେ (ବସାଇ) ରଖ ; ତତ୍ପରେ ସେମାନଙ୍କୁ ଡାକ ; ସେମାନେ ତୁମ ନିକଟକୁ ଦ୍ରୁତ ଗତିରେ ଆସିବେ ଏବଂ ମନେ ରଖ ଅଲ୍ଲାଃ ହିଁ ପରାକ୍ରମୀ ଓ ତତ୍ତ୍ୱଜ୍ଞ ।"

ରୁ : ୩୬

مَثَلُ الَّذِيْنَ يُنْفِقُوْنَ اَمْوَالَهُمْ فِيْ سَبِيْلِ اللّٰهِ كَمَثَلِ حَبَّةٍ اَنْۢبَتَتْ سَبْعَ سَنَابِلَ فِيْ كُلِّ سُنْۢبُلَةٍ مِّائَةُ حَبَّةٍ ۗ وَاللّٰهُ يُضٰعِفُ لِمَنْ يَّشَآءُ ۗ وَاللّٰهُ وَاسِعٌ عَلِيْمٌ

୨୬୨. ଯେଉଁମାନେ ଅଲ୍ଲାଃଙ୍କ ଉଦ୍ଦେଶ୍ୟରେ ନିଜର ଧନ ବ୍ୟୟ କରନ୍ତି ସେମାନଙ୍କ (ଏହି କାର୍ଯ୍ୟର) ଉପମା ସେହି ଶସ୍ୟର ଏକ ବୀଜ ସହିତ ତୁଳନୀୟ ଯେଉଁଥିରୁ ସାତଗୋଟି ଶସ୍ୟଗୁଚ୍ଛ ଉତ୍ପନ୍ନ ହୁଏ ; ଏବଂ ପ୍ରତ୍ୟେକ ଗୁଚ୍ଛରେ ଏକଶତ ବୀଜ ଥାଏ ; ଏବଂ ଅଲ୍ଲାଃ ଯାହାଙ୍କ ଉପରେ ପ୍ରସନ୍ନ ହୁଅନ୍ତି ତାହାଙ୍କୁ (ଏହାଠାରୁ ମଧ୍ୟ) ଅଧିକ ପ୍ରଦାନ କରନ୍ତି ; ଏବଂ ଅଲ୍ଲାଃ ହିଁ ଅତ୍ୟନ୍ତ ବଦାନ୍ୟ ଓ ସର୍ବଜ୍ଞ ।

اَلَّذِيْنَ يُنْفِقُوْنَ اَمْوَالَهُمْ فِيْ سَبِيْلِ اللّٰهِ ثُمَّ لَا يُتْبِعُوْنَ مَآ اَنْفَقُوْا مَنًّا وَّلَآ اَذًى ۙ لَّهُمْ اَجْرُهُمْ عِنْدَ رَبِّهِمْ ۚ وَلَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ

୨୬୩. ଯେଉଁମାନେ ଅଲ୍ଲାଃଙ୍କ ଉଦ୍ଦେଶ୍ୟରେ ନିଜର ଧନ ବ୍ୟୟ କରନ୍ତି ଏବଂ ବ୍ୟୟ କରିବା ପରେ କୌଣସି ପ୍ରକାରରେ (ନିଜ) ଉପକାର ବଖାଣନ୍ତି ନାହିଁ ବା କୌଣସି ପ୍ରକାର କଷ୍ଟ ଦିଅନ୍ତି ନାହିଁ ; ସେମାନଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ (ସେମାନଙ୍କ କର୍ମର) ପ୍ରତିଫଳ ଗଚ୍ଛିତ ଅଛି ; ସେମାନଙ୍କର କୌଣସି ଭୟ ନାହିଁ କି ସେମାନେ ଦୁଃଖିତ ହେବେ ନାହିଁ ।

قَوْلٌ مَّعْرُوْفٌ وَّمَغْفِرَةٌ خَيْرٌ مِّنْ صَدَقَةٍ يَّتْبَعُهَآ اَذًى ۗ وَاللّٰهُ غَنِيٌّ حَلِيْمٌ

୨୬୪. ମଧୁର ବଚନ (କହିବା) ଏବଂ (ଦୋଷ) କ୍ଷମା କରିବା ସେ ଦାନ ଅପେକ୍ଷା ଉତ୍କୃଷ୍ଟ ଯାହା ପରେ କ୍ଳେଶ ଦେବା ଆରମ୍ଭ ହୋଇ ଥାଏ ; ଏବଂ ଅଲ୍ଲାଃ ହିଁ ସ୍ୱୟଂ-ପର୍ଯ୍ୟାପ୍ତ (ଓ) ସହନଶୀଳ ।

يٰٓاَيُّهَا الَّذِيْنَ اٰمَنُوْا لَا تُبْطِلُوْا صَدَقٰتِكُمْ بِالْمَنِّ وَالْاَذٰى ۙ كَالَّذِيْ يُنْفِقُ مَالَهٗ رِئَآءَ النَّاسِ وَلَا يُؤْمِنُ بِاللّٰهِ وَالْيَوْمِ الْاٰخِرِ ۗ فَمَثَلُهٗ كَمَثَلِ صَفْوَانٍ

୨୬୫. ହେ ବିଶ୍ୱାସକାରୀମାନେ ! ତୁମେମାନେ ଉପକାର ବଖାଣି ଓ କ୍ଳେଶ ଦେଇ ନିଜ ଦାନକୁ ସେହି ବ୍ୟକ୍ତି ସଦୃଶ ନଷ୍ଟ କର ନାହିଁ ଯେ ଲୋକ ଦେଖାଣିଆ ଧନ ବ୍ୟୟ କରେ ଏବଂ ଅଲ୍ଲାଃ ଓ ଅନ୍ତିମ ଦିବସରେ ବିଶ୍ୱାସ ରଖେ ନାହିଁ ; କାରଣ ତାହାର ଅବସ୍ଥା ସେହି ଶିଳାର ଅବସ୍ଥା ସଦୃଶ ଯାହା ଉପରେ କିଛି ମାଟି ପଡିଥାଏ ଏବଂ ତାହା ଉପରେ ଭୀଷଣ ବର୍ଷା ହେବା

୧. କେତେକଙ୍କ ମତରେ ଚାରିଗୋଟି ପକ୍ଷୀଙ୍କୁ ମାରି ସେମାନଙ୍କ ମାଂସ ଖଣ୍ଡଗୁଡ଼ିକୁ ଏକତ୍ରିତ କରି ଭିନ୍ନଭିନ୍ନ ପର୍ବତ ଉପରେ ରଖିବାକୁ ଅଲ୍ଲାଃ କହିଥିଲେ । କିନ୍ତୁ ଆମ ମତରେ ଗୋଟିଏ ଲେଖାଏଁ ପକ୍ଷୀକୁ ପ୍ରତ୍ୟେକ ପର୍ବତ ଉପରେ ସ୍ଥାପନ କରିବା ବିଷୟ ବର୍ଣ୍ଣନା କରାଯାଇଛି । ଏଠାରେ ଚାରିଗୋଟି ପକ୍ଷୀଙ୍କ ବର୍ଣ୍ଣନାରେ ଏକ ଭବିଷ୍ୟତ ବାଣୀ ମଧ୍ୟ ଲୁକ୍କାୟିତ ରହିଥିଲା । ତଦନୁଯାୟୀ ଇବ୍ରାହିମଙ୍କ ବଂଶଧର ଚାରିଥର ଉନ୍ନତି ଓ ଚାରିଥର ଅବନତିର ସମ୍ମୁଖୀନ ହେବେ ।

عَلَيْهِ تُرَابٌ فَأَصَابَهُ وَابِلٌ فَتَرَكَهُ صَلْدًا ۖ لَا يَقْدِرُونَ عَلَىٰ شَيْءٍ مِّمَّا كَسَبُوا ۗ وَاللَّهُ لَا يَهْدِي الْقَوْمَ الْكَافِرِينَ ﴿٢٦٥﴾

ଫଳରେ ତାହାକୁ (ଧୋଇ ପୁଣି) ପରିଷ୍କାର ଶିଳା କରିଦିଏ ; ସେମାନେ (ଏପରି ଲୋକ ଯେଉଁମାନେ) ଯାହା କିଛି ଅର୍ଜନ କରନ୍ତି ତାହାର କୌଣସି ଅଂଶ ମଧ୍ୟ ତାଙ୍କର ହସ୍ତଗତ ହୁଏ ନାହିଁ ; ଏବଂ ଅଲ୍ଲାହ ଏଭଳି ଅବିଶ୍ୱାସକାରୀମାନଙ୍କୁ (ସଫଳତାର) ପଥ ପ୍ରଦର୍ଶନ କରାନ୍ତି ନାହିଁ ।

وَمَثَلُ الَّذِينَ يُنفِقُونَ أَمْوَالَهُمُ ابْتِغَاءَ مَرْضَاتِ اللَّهِ وَتَثْبِيتًا مِّنْ أَنفُسِهِمْ كَمَثَلِ جَنَّةٍ بِرَبْوَةٍ أَصَابَهَا وَابِلٌ فَآتَتْ أُكُلَهَا ضِعْفَيْنِ فَإِن لَّمْ يُصِبْهَا وَابِلٌ فَطَلٌّ ۗ وَاللَّهُ بِمَا تَعْمَلُونَ بَصِيرٌ ﴿٢٦٦﴾

୨୬୬. ଏବଂ ଯେଉଁମାନେ ଅଲ୍ଲାହଙ୍କର ପ୍ରୀତିଭାଜନ ହେବା ପାଇଁ ଓ ନିଜକୁ ସୁଦୃଢ଼ କରିବା ପାଇଁ ନିଜ ଧନ ବ୍ୟୟ କରନ୍ତି ସେମାନଙ୍କ ବ୍ୟୟର ଉପମା ଉଚ୍ଚ ଭୂମି ଉପରେ ଥିବା ଏକ ଉଦ୍ୟାନର ଅବସ୍ଥା ସଦୃଶ ଯେଉଁଠାରେ ବହୁଳ ବୃଷ୍ଟି ହେଲେ ତାହା ଦୁଇଗୁଣ ଫଳ ଦିଏ ; ଏବଂ ବହୁଳ ବୃଷ୍ଟି ନ ହେଲେ ଅଳ୍ପ ବୃଷ୍ଟି ହିଁ (ତାହା ପାଇଁ ଯଥେଷ୍ଟ) ; ଏବଂ ତୁମେମାନେ ଯାହା କରୁଅଛ ଅଲ୍ଲାହ ତାହା ଦେଖୁଅଛନ୍ତି ।

أَيَوَدُّ أَحَدُكُمْ أَن تَكُونَ لَهُ جَنَّةٌ مِّن نَّخِيلٍ وَأَعْنَابٍ تَجْرِي مِن تَحْتِهَا الْأَنْهَارُ لَهُ فِيهَا مِن كُلِّ الثَّمَرَاتِ وَأَصَابَهُ الْكِبَرُ وَلَهُ ذُرِّيَّةٌ ضُعَفَاءُ فَأَصَابَهَا إِعْصَارٌ فِيهِ نَارٌ فَاحْتَرَقَتْ ۗ كَذَٰلِكَ يُبَيِّنُ اللَّهُ لَكُمُ الْآيَاتِ لَعَلَّكُمْ تَتَفَكَّرُونَ ﴿٢٦٧﴾

୨୬୭. କ'ଣ ତୁମମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତି ଇଚ୍ଛା କରୁଅଛି ଯେ ତାହାର ଖଜୁରୀ ଓ ଅଙ୍ଗୁରର ଏକ ଉଦ୍ୟାନ ଥିବ ଯାହାର ନିମ୍ନଭାଗରେ ଝରଣା ବହୁଥିବ ଏବଂ ତାହାକୁ ସେଥିରୁ ପ୍ରତ୍ୟେକ ପ୍ରକାରର ଫଳ ମିଳୁଥିବ ତଥା ଯେତେବେଳେ ତାହାର ବାର୍ଦ୍ଧକ୍ୟ ମଧ୍ୟ ଆସିଯାଇଥିବ ଓ ତାହାର ପିଲାମାନେ ଛୋଟ (ଛୋଟ) ହୋଇଥିବେ ଏବଂ ତା'ପରେ ସେହି ଉଦ୍ୟାନ ମଧ୍ୟରେ ଏପରି ଏକ ଘୂର୍ଣ୍ଣିବାତ୍ୟା ପ୍ରବାହିତ ହୁଏ ଯହିଁରେ ଅଗ୍ନି (ସଦୃଶ ଉତ୍ତାପ) ଥାଏ ଓ ତାହାକୁ ପୋଡି ଦିଏ (ଦେଖ) ଅଲ୍ଲାହ ତୁମମାନଙ୍କ (ହିତ) ପାଇଁ ଏପରିଭାବରେ ନିଜ ନିଦର୍ଶନମାନଙ୍କୁ ବର୍ଣ୍ଣନା କରନ୍ତି, ଯଦ୍ଦ୍ୱାରା ତୁମେମାନେ ଭାବିଚିନ୍ତି (କାର୍ଯ୍ୟ) କରିବ ।

ରୁ : ୩୭

يَا أَيُّهَا الَّذِينَ آمَنُوا أَنفِقُوا مِن طَيِّبَاتِ مَا كَسَبْتُمْ وَمِمَّا أَخْرَجْنَا لَكُم مِّنَ الْأَرْضِ ۖ وَلَا تَيَمَّمُوا الْخَبِيثَ مِنْهُ تُنفِقُونَ وَلَسْتُم بِآخِذِيهِ إِلَّا أَن تُغْمِضُوا فِيهِ ۚ وَاعْلَمُوا أَنَّ اللَّهَ غَنِيٌّ حَمِيدٌ ﴿٢٦٨﴾

୨୬୮. ହେ ବିଶ୍ୱାସକାରୀମାନେ ! ଯାହାକିଛି ତୁମେମାନେ ଉପାର୍ଜନ କରିଅଛ ସେଥିରୁ ଶୁଦ୍ଧ ବସ୍ତୁମାନ ଏବଂ ଯାହା ଆମ୍ଭେ ତୁମମାନଙ୍କ ଲାଗି ଭୂମିରୁ ବାହାର କରିଅଛୁ, ତା ମଧ୍ୟରୁ (ସାଧ୍ୟ ଅନୁଯାୟୀ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ବ୍ୟୟ କର ; ଏବଂ ସେଥିମଧ୍ୟରୁ (ଏପରି) ନିକୃଷ୍ଟ ବସ୍ତୁ ଦେବାକୁ ଇଚ୍ଛା କର ନାହିଁ, ଯାହାକୁ ତୁମେ ନିଜେ ଗ୍ରହଣ କରିବାକୁ ଲଜ୍ଜାବୋଧ କର ; ଏବଂ ମନେରଖ ଅଲ୍ଲାହ ସ୍ୱୟଂ-ପର୍ଯ୍ୟାପ୍ତ(ଓ)ପ୍ରଶଂସନୀୟ ।

الشَّيْطَانُ يَعِدُكُمُ الْفَقْرَ وَيَأْمُرُكُم بِالْفَحْشَاءِ ۖ وَاللَّهُ يَعِدُكُم مَّغْفِرَةً مِّنْهُ وَفَضْلًا ۗ وَاللَّهُ وَاسِعٌ عَلِيمٌ ﴿٢٦٩﴾

୨୬୯. ସଇତାନ ତୁମମାନଙ୍କୁ ଦରିଦ୍ରତାର ଭୟ ପ୍ରଦର୍ଶନ କରାଉଛି ; ଏବଂ ତୁମମାନଙ୍କୁ ନିର୍ଲଜ୍ଜତା ବିଷୟରେ ପ୍ରେରଣା ଦେଉଅଛି ; ଏବଂ ଅଲ୍ଲାହ ନିଜ ପକ୍ଷରୁ ତୁମମାନଙ୍କୁ ମହାନ୍ କ୍ଷମା ଓ ଅନୁଗ୍ରହର ପ୍ରତିଶ୍ରୁତି ଦେଇ ଅଛନ୍ତି ; ଏବଂ ଅଲ୍ଲାହ ଅତ୍ୟନ୍ତ ବଦାନ୍ୟ(ଓ)ସର୍ବଜ୍ଞ ।

୨୭୦. ସେ ଯାହାଙ୍କ ଉପରେ ପ୍ରସନ୍ନ ହୁଅନ୍ତି, ତାହାଙ୍କୁ ତତ୍ତ୍ୱଜ୍ଞାନ ପ୍ରଦାନ କରନ୍ତି; ଏବଂ ଯାହାଙ୍କୁ ତତ୍ତ୍ୱଜ୍ଞାନ ପ୍ରଦାନ କରାଯାଇଥାଏ (ଜାଣିରଖ ଯେ) ବାସ୍ତବିକ ତାହାଙ୍କୁ ଏକ ଅତ୍ୟନ୍ତ ଲାଭଦାୟକ ପଦାର୍ଥ ମିଳିଯାଇଛି ; ଏବଂ (ମନେରଖ ଯେ) ବୁଦ୍ଧିମାନ (ବ୍ୟକ୍ତି)ଙ୍କ ବ୍ୟତୀତ ଅନ୍ୟ କେହି ଉପଦେଶ ଗ୍ରହଣ କରନ୍ତି ନାହିଁ।

يُؤْتِي الْحِكْمَةَ مَنْ يَشَاءُ ۚ وَمَنْ يُؤْتَ الْحِكْمَةَ فَقَدْ أُوتِيَ خَيْرًا كَثِيرًا ۗ وَمَا يَذَّكَّرُ إِلَّا أُولُو الْأَلْبَابِ ٢٧٠

୨୭୧. ଏବଂ ଯାହାକିଛି ମଧ୍ୟ ତୁମେମାନେ (ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ) ବ୍ୟୟ କର ବା ଯାହାକିଛି ମାନସିକ କର ; ଅଲ୍ଲାହ୍ ଅବଶ୍ୟ ତାହା ଜାଣନ୍ତି (ସେ ତାହା ର ଉତ୍ତମ ପୁରସ୍କାର ଦେବେ) ଏବଂ ଅତ୍ୟାଚାରୀମାନଙ୍କର କେହି ସାହାଯ୍ୟକାରୀ ·ହେବେ ନାହିଁ।

وَمَا أَنْفَقْتُمْ مِنْ نَفَقَةٍ أَوْ نَذَرْتُمْ مِنْ نَذْرٍ فَإِنَّ اللَّهَ يَعْلَمُهُ ۗ وَمَا لِلظَّالِمِينَ مِنْ أَنْصَارٍ ٢٧١

୨୭୨. ଯଦି ତୁମେମାନେ ପ୍ରକାଶ୍ୟରେ[1] ଦାନ କର ତେବେ ତାହା ମଧ୍ୟ ଉତ୍କୃଷ୍ଟ (ପନ୍ଥା) ଅଟେ ଏବଂ ଯଦି ତୁମେମାନେ ତାହା ଗୋପନରେ ଦରିଦ୍ରମାନଙ୍କୁ ଦାନ କର ତେବେ ତାହା ତୁମମାନଙ୍କ ପାଇଁ ଉତ୍କୃଷ୍ଟତର ହେବ ଏବଂ ସେ (ଅଲ୍ଲାହ୍ ଏଥିଯୋଗୁଁ) ତୁମମାନଙ୍କର ଅନେକ ଦୁଷ୍କର୍ମକୁ ତୁମଠାରୁ ଦୂର କରି ଦେବେ ; ଏବଂ ତୁମେମାନେ ଯାହାକିଛି କରୁଅଛ ; ଅଲ୍ଲାହ୍ ସେ ବିଷୟରେ ଅବଗତ ଅଛନ୍ତି।

إِنْ تُبْدُوا الصَّدَقَاتِ فَنِعِمَّا هِيَ ۖ وَإِنْ تُخْفُوهَا وَتُؤْتُوهَا الْفُقَرَاءَ فَهُوَ خَيْرٌ لَكُمْ ۚ وَيُكَفِّرُ عَنْكُمْ مِنْ سَيِّئَاتِكُمْ ۗ وَاللَّهُ بِمَا تَعْمَلُونَ خَبِيرٌ ٢٧٢

୨୭୩. ସେମାନଙ୍କୁ ସତ୍‌ପଥଗାମୀ କରାଇବା ଦାୟିତ୍ୱ ତୁମ ଉପରେ ନ୍ୟସ୍ତ ହୋଇନାହିଁ ; କିନ୍ତୁ ଅଲ୍ଲାହ୍ ଯାହା ପ୍ରତି ପ୍ରସନ୍ନ ହୁଅନ୍ତି ତାହାଙ୍କୁ ସତ୍‌ପଥଗାମୀ କରାନ୍ତି ; ଏବଂ ଯାହାକିଛି ବିଶୁଦ୍ଧ ଧନ ତୁମେମାନେ (ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ) ବ୍ୟୟ କର— ଓ ପ୍ରକୃତରେ ତୁମେମାନେ ଏପରି ବ୍ୟୟ କେବଳ ଅଲ୍ଲାହ୍‌ଙ୍କ କୃପା ହାସଲ କରିବା ସକାଶେ କର— ତାହାର ଲାଭ ତୁମମାନଙ୍କୁ ହି ପ୍ରାପ୍ତ ହେବ ; ଏବଂ ଯାହା କିଛି ବିଶୁଦ୍ଧ ଧନ ତୁମେମାନେ ବ୍ୟୟ କରିବ ତାହା ତୁମମାନଙ୍କୁ ସମ୍ପୂର୍ଣ୍ଣରୂପେ (ଫେରସ୍ତ) ଦିଆଯିବ ; ଓ ତୁମମାନଙ୍କ ପ୍ରତି ଅତ୍ୟାଚାର କରାଯିବ ନାହିଁ।

لَيْسَ عَلَيْكَ هُدَاهُمْ وَلَٰكِنَّ اللَّهَ يَهْدِي مَنْ يَشَاءُ ۗ وَمَا تُنْفِقُوا مِنْ خَيْرٍ فَلِأَنْفُسِكُمْ ۚ وَمَا تُنْفِقُونَ إِلَّا ابْتِغَاءَ وَجْهِ اللَّهِ ۚ وَمَا تُنْفِقُوا مِنْ خَيْرٍ يُوَفَّ إِلَيْكُمْ وَأَنْتُمْ لَا تُظْلَمُونَ ٢٧٣

---

୧. ଖୋଲାଖୋଲି ଦାନ କରିବା ଓ ଲୁଚାଇ ଦାନ କରିବା, ଉଭୟକୁ ଇସଲାମ ପସନ୍ଦ କରେ। ପ୍ରଥମ ପ୍ରକାର ଦାନ ଦ୍ୱାରା ଅନ୍ୟମାନେ ଉଦ୍‌ବୁଦ୍ଧ ହୁଅନ୍ତି ଓ ଦ୍ୱିତୀୟ ପ୍ରକାର ଦାନ ଦ୍ୱାରା ଦାନଗ୍ରହୀତାଙ୍କ ଦାରିଦ୍ର୍ୟକୁ ସାଧାରଣରେ ପ୍ରକାଶ କରାଯାଏ ନାହିଁ ଓ ଦାନକର୍ତ୍ତାଙ୍କ ପକ୍ଷରେ ଗର୍ବିତ ହେବାର ଅବକାଶ ନ ଥାଏ।

لِلْفُقَرَآءِ الَّذِيْنَ اُحْصِرُوْا فِيْ سَبِيْلِ اللّٰهِ لَا يَسْتَطِيْعُوْنَ ضَرْبًا فِي الْاَرْضِ يَحْسَبُهُمُ الْجَاهِلُ اَغْنِيَآءَ مِنَ التَّعَفُّفِ تَعْرِفُهُمْ بِسِيْمٰهُمْ لَا يَسْـَٔلُوْنَ النَّاسَ اِلْحَافًا وَمَا تُنْفِقُوْا مِنْ خَيْرٍ فَاِنَّ اللّٰهَ بِهٖ عَلِيْمٌ ﴿٢٧٣﴾

୨୭୪. (ଉପର ବର୍ଣ୍ଣିତ ଦାନ) ସେହି ଦରିଦ୍ରମାନଙ୍କ ସକାଶେ ଉଦ୍ଦିଷ୍ଟ ଯେଉଁମାନଙ୍କୁ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ (ଅନ୍ୟାନ୍ୟ କାର୍ଯ୍ୟ କରିବାରୁ) ଅବରୁଦ୍ଧ କରାଯାଇଅଛି ଓ ଯେଉଁମାନେ ଦେଶରେ (ସ୍ୱଚ୍ଛନ୍ଦରେ) ଚଳପ୍ରଚଳ କରିପାରୁ ନାହାନ୍ତି ; ସେମାନେ ଭିକ୍ଷା କରିବାରୁ ନିବୃତ୍ତ ରହୁଥିବା ଯୋଗୁଁ (ଜଣେ) ଅପରିଚିତ (ବ୍ୟକ୍ତି) ସେମାନଙ୍କୁ ଅଭାବହୀନ ବୋଲି ମନେ କରେ ; ସେମାନଙ୍କ ଚେହେରାର ବାହ୍ୟ ଲକ୍ଷଣରୁ ତୁମ୍ଭେ ସେମାନଙ୍କୁ ଚିହ୍ନିପାରିବ ; ସେମାନେ ଲୋକମାନଙ୍କୁ ଅନୁନୟ ପୂର୍ବକ ଭିକ୍ଷା ମାଗନ୍ତି ନାହିଁ ; ଏବଂ ତୁମେମାନେ ଯାହାକିଛି[1] ବିଶୁଦ୍ଧଧନ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ବ୍ୟୟକର ତାହା ଅବଶ୍ୟ ଅଲ୍ଲାହ୍‌ଙ୍କୁ ଭଲରୂପେ ଜଣାଅଛି ; ରୁ : ୩୮

اَلَّذِيْنَ يُنْفِقُوْنَ اَمْوَالَهُمْ بِالَّيْلِ وَالنَّهَارِ سِرًّا وَّعَلَانِيَةً فَلَهُمْ اَجْرُهُمْ عِنْدَ رَبِّهِمْ وَلَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ ﴿٢٧٤﴾

୨୭୫. ଯେଉଁମାନେ ଦିବାରାତ୍ର ନିଜର ଧନକୁ ଗୋପନରେ ଓ ପ୍ରକାଶ୍ୟରେ (ମଧ୍ୟ ଅଲ୍ଲାହ୍‌ଙ୍କ ପଥରେ) ବ୍ୟୟ କରନ୍ତି, ସେମାନଙ୍କ ପାଇଁ ସେମାନଙ୍କର ପାଳନକର୍ତ୍ତାଙ୍କ ନିକଟରେ ପୁରସ୍କାର (ଗଚ୍ଛିତ) ଅଛି ; ସେମାନେ ଭୟଭୀତ ହେବେ ନାହିଁ କି ଦୁଃଖିତ ହେବେ ନାହିଁ ।

اَلَّذِيْنَ يَاْكُلُوْنَ الرِّبٰوا لَا يَقُوْمُوْنَ اِلَّا كَمَا يَقُوْمُ الَّذِيْ يَتَخَبَّطُهُ الشَّيْطٰنُ مِنَ الْمَسِّ ذٰلِكَ بِاَنَّهُمْ قَالُوْٓا اِنَّمَا الْبَيْعُ مِثْلُ الرِّبٰوا وَاَحَلَّ اللّٰهُ الْبَيْعَ وَحَرَّمَ الرِّبٰوا فَمَنْ جَآءَهٗ مَوْعِظَةٌ مِّنْ رَّبِّهٖ فَانْتَهٰى فَلَهٗ مَا سَلَفَ وَاَمْرُهٗٓ اِلَى اللّٰهِ وَمَنْ عَادَ فَاُولٰٓئِكَ اَصْحٰبُ النَّارِ هُمْ فِيْهَا خٰلِدُوْنَ ﴿٢٧٥﴾

୨୭୬. ଯେଉଁମାନେ ସୁଧ ଗ୍ରହଣ କରନ୍ତି ସେମାନେ ଏପରି ବ୍ୟକ୍ତିଙ୍କ ସଦୃଶ ଦଣ୍ଡାୟମାନ ହୁଅନ୍ତି ଯେ ସଇତାନ (ଅର୍ଥାତ୍ ପାଗଳାମୀ) ଦ୍ୱାରା ଆକ୍ରାନ୍ତ ହୋଇଥାଏ ; (ଏପରି ଅବସ୍ଥା) ଏଥିଯୋଗୁଁ ହୁଏ ଯେହେତୁ ସେମାନେ କୁହନ୍ତି, "(କ୍ରୟ) ବିକ୍ରୟ (ମଧ୍ୟ) ଅବିକଳ ସୁଧ ସଦୃଶ ଅଟେ" ; ଅଥଚ ଅଲ୍ଲାହ୍ (କ୍ରୟ) ବିକ୍ରୟକୁ ବୈଧ ଓ ସୁଧକୁ ଅବୈଧ ସାବ୍ୟସ୍ତ କରିଛନ୍ତି ; ସୁତରାଂ (ମନେରଖ ଯେ) ଯାହା ପାଖକୁ ତାହାର ପାଳନକର୍ତ୍ତାଙ୍କ ଠାରୁ କୌଣସି ଉପଦେଶ ଆସିବା ପରେ ସେ (ତାହାକୁ ଶ୍ରବଣ କରି) ଏହାର ବିରୁଦ୍ଧାଚରଣରୁ (ଅର୍ଥାତ୍ ସୁଧ ବ୍ୟବସାୟରୁ) ନିବୃତ୍ତ ହୁଏ ତେବେ ଯାହା (ନେଣ ଦେଣ) ସେ ପୂର୍ବରୁ କରିସାରିଛି ସେଥିରେ ଲାଭ ତାହାରି ଅଟେ ଏବଂ ତାହାର ମାମଲା (ଅର୍ଥାତ୍ ବିଚାର) ଅଲ୍ଲାହ୍‌ଙ୍କ ହାତରେ ଅଛି ; ଏବଂ ଯେଉଁମାନେ ପୁନର୍ବାର ସେଥିରେ ଲିପ୍ତ ହେବେ, ସେମାନେ (ନିଶ୍ଚୟ, ନରକ) ଅଗ୍ନିର ଅଧିବାସୀ ହେବେ ଏବଂ ସେମାନେ ସେଠାରେ ପଡ଼ି ରହିବେ ।

୧. ଦୁଇ କିସମର ଦାନ ଅଛି – ବାଧ୍ୟତାମୂଳକ (ଜକାତ୍) ଏବଂ ସ୍ୱେଚ୍ଛାକୃତ (ସଦ୍‌କା) । କେତେକ ନିର୍ଦ୍ଦିଷ୍ଟ ପରିମାଣର ଧନ ବା ସମ୍ପତ୍ତି ଥିଲେ ଜକାତ ସଂଗ୍ରହ କରାଯାଇ ସରକାରଙ୍କ ମାଧ୍ୟମରେ ଦରିଦ୍ର, ଅଭାବଗ୍ରସ୍ତ, ଅନାଥ, ବିଧବା ଓ ପଥିକମାନଙ୍କ ଉଦ୍ଦେଶ୍ୟରେ ବ୍ୟୟ କରାଯାଏ । ଗ୍ରହୀତା ଏ ପ୍ରକାର ଦାନ ସମ୍ବନ୍ଧରେ ଦାତାଙ୍କୁ ଜାଣୁ ନ ଥିବାରୁ ଗ୍ରହୀତାଙ୍କୁ କୌଣସି ବ୍ୟକ୍ତିବିଶେଷଙ୍କ ଠାରେ କୃତଜ୍ଞ ହେବାକୁ ପଡେ ନାହିଁ । ଏହା ସରକାରଙ୍କ ପ୍ରାପ୍ୟ ଏକ ଶୁଳ୍କ । ବ୍ୟକ୍ତି ବିଶେଷଙ୍କୁ ସାହାଯ୍ୟ କରିବାପାଇଁ ଯେଉଁ ଦାନ କରାଯାଏ ତାହା ସ୍ୱେଚ୍ଛାକୃତ ହୋଇଥିବାରୁ ତାହାକୁ ସଦ୍‌କା କୁହାଯାଏ । ଏହା ଧନବାନ୍‌ଙ୍କ ମନରେ ସେମାନଙ୍କ ଦରିଦ୍ର ଭାଇମାନଙ୍କ ସକାଶେ ସହାନୁଭୂତି ଉଦ୍ରେକ କରାଏ ଓ ଦରିଦ୍ରମାନଙ୍କ ମନରେ ସେମାନଙ୍କ ହିତାକାଂକ୍ଷୀଙ୍କ ପ୍ରତି କୃତଜ୍ଞତାର ମନୋଭାବ ଜନ୍ମାଏ । ଏପ୍ରକାର ଦାନଦ୍ୱାରା ପ୍ରକୃତ ବିଶ୍ୱାସକାରୀର ଧର୍ମନିଷ୍ଠାକୁ ଜଜନ କରାଯାଇପାରେ ।

୨୭୭. ଅଲ୍ଲାହ ସୁଧକୁ ଲୋପ କରନ୍ତି[୧] ଏବଂ ଦାନକୁ ବୃଦ୍ଧି କରାନ୍ତି ; ଏବଂ ଅଲ୍ଲାହ କୌଣସି କଠୋର ଅବିଶ୍ୱାସକାରୀ (ତଥା) ପାପୀକୁ ପସନ୍ଦ କରନ୍ତି ନାହିଁ ।

يَمْحَقُ اللّٰهُ الرِّبٰوا وَيُرْبِي الصَّدَقٰتِ ۗ وَاللّٰهُ لَا يُحِبُّ كُلَّ كَفَّارٍ اَثِيْمٍ ﴿٢٧٧﴾

୨୭୮. ବାସ୍ତବରେ ଯେଉଁମାନେ ବିଶ୍ୱାସ କରନ୍ତି ଏବଂ ପୁଣ୍ୟ ଓ ଯଥାର୍ଥ କାର୍ଯ୍ୟ କରନ୍ତି ଏବଂ (ମନୋଯୋଗ ସହିତ) ନମାଜ ପାଠ କରନ୍ତି ଓ ଜକାତ ଦିଅନ୍ତି ସେମାନଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ଠାରେ ପୁରସ୍କାର (ଗଚ୍ଛିତ) ଅଛି ; ସେମାନେ ଭୟଭୀତ ହେବେ ନାହିଁ କି ଦୁଃଖିତ ହେବେ ନାହିଁ ।

اِنَّ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ وَاَقَامُوا الصَّلٰوةَ وَاٰتَوُا الزَّكٰوةَ لَهُمْ اَجْرُهُمْ عِنْدَ رَبِّهِمْ ۚ وَلَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ ﴿٢٧٨﴾

୨୭୯. ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କୁ ଭୟ କର ଏବଂ ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ ତେବେ ସୁଧର ଅବଶିଷ୍ଟ (ଅଂଶ) ଛାଡିଦିଅ ।

يٰۤاَيُّهَا الَّذِيْنَ اٰمَنُوا اتَّقُوا اللّٰهَ وَذَرُوْا مَا بَقِيَ مِنَ الرِّبٰوۤا اِنْ كُنْتُمْ مُّؤْمِنِيْنَ ﴿٢٧٩﴾

୨୮୦. ଏବଂ ଯଦି ତୁମେମାନେ ଏପରି ନ କର, ତେବେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ତରଫରୁ ଏକ (ଆସନ୍ନ) ଯୁଦ୍ଧକୁ ଅବଶ୍ୟମ୍ଭାବୀ ମନେକର (ଓ ସେଥିପାଇଁ ସାବଧାନ ହୁଅ) ; ଏବଂ ଯଦି ତୁମେମାନେ (ସୁଧ ଗ୍ରହଣ କରିବା ସଂକ୍ରାନ୍ତରେ) ଅନୁତାପ କରିବ ତେବେ (ତୁମମାନଙ୍କର କ୍ଷତି ହେବ ନାହିଁ କାରଣ) ତୁମମାନଙ୍କ ପକ୍ଷରେ ତୁମର ମୂଳଧନକୁ ଆଦାୟକରିବା ବିଧେୟ ; (ଏପରି ଅବସ୍ଥାରେ) ତୁମେମାନେ (କାହାରି ପ୍ରତି) ଅତ୍ୟାଚାର କରିବ ନାହିଁ କି ତୁମ ପ୍ରତି ଅତ୍ୟାଚାର କରାଯିବ ନାହିଁ ।

فَاِنْ لَّمْ تَفْعَلُوْا فَاْذَنُوْا بِحَرْبٍ مِّنَ اللّٰهِ وَرَسُوْلِهٖ ۚ وَاِنْ تُبْتُمْ فَلَكُمْ رُءُوْسُ اَمْوَالِكُمْ ۚ لَا تَظْلِمُوْنَ وَلَا تُظْلَمُوْنَ ﴿٢٨٠﴾

୨୮୧. ଏବଂ ଯଦି କୌଣସି ଋଣଗ୍ରହୀତା ଅଭାବଗ୍ରସ୍ତ ଥାଏ, ତେବେ ସେ ସମର୍ଥ ହେବା ପର୍ଯ୍ୟନ୍ତ ତାହାକୁ ଅବସର ଦେବାକୁ ହେବ ; ଏବଂ ଯଦି ତୁମେମାନେ ଏହା ଜାଣିଥାଅ ତେବେ (ସେହି ବ୍ୟକ୍ତିକୁ ମୂଳଧନ ମଧ୍ୟ) ଦାନ ସ୍ୱରୂପ ଛାଡ଼ିଦେବା ତୁମମାନଙ୍କ ପକ୍ଷରେ ଏକ ମହତ୍ କାର୍ଯ୍ୟ ହେବ ।

وَاِنْ كَانَ ذُوْ عُسْرَةٍ فَنَظِرَةٌ اِلٰى مَيْسَرَةٍ ۚ وَاَنْ تَصَدَّقُوْا خَيْرٌ لَّكُمْ اِنْ كُنْتُمْ تَعْلَمُوْنَ ﴿٢٨١﴾

୨୮୨. ଏବଂ ତୁମମାନଙ୍କୁ ଯେଉଁଦିନ ଅଲ୍ଲାହଙ୍କ ପାଖକୁ ଫେରାଇ ନିଆଯିବ ସେହି ଦିନକୁ ଭୟ କର ; ପୁନଶ୍ଚ ପ୍ରତ୍ୟେକ ବ୍ୟକ୍ତି ଯାହା କିଛି ଉପାର୍ଜନ କରିଅଛି ତାହାକୁ ସମ୍ପୂର୍ଣ୍ଣରୂପେ ପ୍ରଦାନ କରାଯିବ ଏବଂ ସେମାନଙ୍କ ପ୍ରତି କୌଣସି ଅତ୍ୟାଚାର କରାଯିବ ନାହିଁ ।

وَاتَّقُوْا يَوْمًا تُرْجَعُوْنَ فِيْهِ اِلَى اللّٰهِ ۗ ثُمَّ تُوَفّٰى كُلُّ نَفْسٍ مَّا كَسَبَتْ وَهُمْ لَا يُظْلَمُوْنَ ﴿٢٨٢﴾ ع

୧. କେତେକ ଆପତ୍ତି କରନ୍ତି ଯେ ଅଣମୁସଲମାନମାନେ ସୁଧ ଗ୍ରହଣ କରି ଉନ୍ନତି କରୁଥିବା ବେଳେ ମୁସଲମାନମାନେ ସୁଧ ପରିତ୍ୟାଗ କରି କ୍ଷତି ସହୁଛନ୍ତି । ଅଲ୍ଲାହ ସୁଧଗ୍ରହଣ କରୁଥିବା ଜାତିକୁ ବିନାଶ କରିବେ ଓ ସୁଧ ପରିତ୍ୟାଗ କରୁଥିବା ଜାତିକୁ ଧ୍ୱଂସ ମୁଖରୁ ରକ୍ଷାକରିବେ ବୋଲି ଏକ ଭବିଷ୍ୟତ ବାଣୀ ଅଛି । ତେଣୁ ସମ୍ପ୍ରତି କେତେକ ଦେଶରେ ସୁଧପ୍ରଥାକୁ ଉଠାଇ ଦେବାପାଇଁ ଆନ୍ଦୋଳନ ହେଲାଣି । ଋଣଦାତାଙ୍କ ଅପରିଣାମଦର୍ଶୀ ମନୋଭାବ ଯୋଗୁଁ ବ୍ୟକ୍ତି ବିଶେଷଙ୍କର ତଥା ଦେଶର କେତେ ଯେ କ୍ଷତି ହେଉଛି ତାହା କଳନା କରିବା କଷ୍ଟକର । ସେହିପରି ଋଣକର୍ତ୍ତାଙ୍କର ପରିଶୋଧ କରିବାକୁ ଶକ୍ତି ନ ଥିଲେ ମଧ୍ୟ ନିଜର ଅହେତୁକ ମର୍ଯ୍ୟାଦା ପ୍ରଦର୍ଶନ ସକାଶେ ଭବିଷ୍ୟତ୍ ଚିନ୍ତା ନ କରି ସେ ଋଣ କରିବାକୁ ତତ୍ପର ହୁଏ । ଏବେ ଅନେକ ଦେଶ ଧନଶାଳୀ ଦେଶମାନଙ୍କରୁ ଋଣ ସଂଗ୍ରହ କରି ନିଜ ଦେଶବାସୀଙ୍କ କଲ୍ୟାଣ ଉଦ୍ଦେଶ୍ୟରେ ତାହାକୁ ବ୍ୟୟ କରିବା ପରିବର୍ତ୍ତେ ମାରଣାସ୍ତ୍ର ଖରିଦ କରିବାରେ ଲାଗିପଡ଼ିଛନ୍ତି । ଏହା ଫଳରେ ପରିଶେଷରେ ଉଭୟ ବିଜିତ ଓ ବିଜେତାଙ୍କର ଅପୂରଣୀୟ କ୍ଷତି ହୁଏ ।

ରୁ :୩୯

يَٰٓأَيُّهَا ٱلَّذِينَ ءَامَنُوٓا۟ إِذَا تَدَايَنتُم بِدَيْنٍ إِلَىٰٓ أَجَلٍ
مُّسَمًّى فَٱكْتُبُوهُ ۚ وَلْيَكْتُب بَّيْنَكُمْ كَاتِبٌۢ بِٱلْعَدْلِ ۚ وَ
لَا يَأْبَ كَاتِبٌ أَن يَكْتُبَ كَمَا عَلَّمَهُ ٱللَّهُ ۚ فَلْيَكْتُبْ
وَلْيُمْلِلِ ٱلَّذِى عَلَيْهِ ٱلْحَقُّ وَلْيَتَّقِ ٱللَّهَ رَبَّهُۥ وَلَا
يَبْخَسْ مِنْهُ شَيْـًٔا ۚ فَإِن كَانَ ٱلَّذِى عَلَيْهِ ٱلْحَقُّ سَفِيهًا
أَوْ ضَعِيفًا أَوْ لَا يَسْتَطِيعُ أَن يُمِلَّ هُوَ فَلْيُمْلِلْ
وَلِيُّهُۥ بِٱلْعَدْلِ ۚ وَٱسْتَشْهِدُوا۟ شَهِيدَيْنِ مِن رِّجَالِكُمْ ۖ
فَإِن لَّمْ يَكُونَا رَجُلَيْنِ فَرَجُلٌ وَٱمْرَأَتَانِ مِمَّن تَرْضَوْنَ
مِنَ ٱلشُّهَدَآءِ أَن تَضِلَّ إِحْدَىٰهُمَا فَتُذَكِّرَ إِحْدَىٰهُمَا
ٱلْأُخْرَىٰ ۚ وَلَا يَأْبَ ٱلشُّهَدَآءُ إِذَا مَا دُعُوا۟ ۚ وَلَا تَسْـَٔمُوٓا۟
أَن تَكْتُبُوهُ صَغِيرًا أَوْ كَبِيرًا إِلَىٰٓ أَجَلِهِۦ ۚ ذَٰلِكُمْ أَقْسَطُ
عِندَ ٱللَّهِ وَأَقْوَمُ لِلشَّهَٰدَةِ وَأَدْنَىٰٓ أَلَّا تَرْتَابُوٓا۟ ۖ إِلَّآ أَن
تَكُونَ تِجَٰرَةً حَاضِرَةً تُدِيرُونَهَا بَيْنَكُمْ فَلَيْسَ عَلَيْكُمْ

୨୮୩. ହେ ବିଶ୍ୱାସକାରୀମାନେ ! ଯେବେ ତୁମେମାନେ ଜଣେ ଅନ୍ୟ ଠାରୁ କୌଣସି ନିର୍ଦ୍ଦିଷ୍ଟ ସମୟ ପାଇଁ କରଜ ନିଅ ତେବେ ତାହାକୁ ଲେଖିପକାଅ ଏବଂ କୌଣସି ଲେଖାଳି ତୁମମାନଙ୍କ ମଧ୍ୟରେ (ନିଷ୍ପତ୍ତି କରା ହୋଇଥିବା ଚୁକ୍ତିକୁ) ନ୍ୟାୟସଂଗତ ଭାବରେ ଲେଖି ଦେଉ ଏବଂ କୌଣସି ଲେଖାଳି ଲେଖିଦେବାକୁ ମନା ନ କରୁ ; କାରଣ ଅଲ୍ଲାହ ତାହାକୁ (ଲେଖିବା) ଶିଖାଇଛନ୍ତି ତେଣୁ ସେ ନିଶ୍ଚୟ ଲେଖିଦେଉ ଓ ଯାହାଠାରେ ଦାୟିତ୍ୱ ରହିଅଛି ସେ ହିଁ ଲେଖାଇ ନେଉ ଏବଂ (ଲେଖାଇବା ସମୟରେ) ସେ ନିଜର ପାଳନକର୍ତ୍ତା ଅଲ୍ଲାହଙ୍କ ପ୍ରତି ଭୟ ରଖି ଏବଂ ଏଥିରେ କିଛି କମ୍ ନ କରୁ ; ଏବଂ ଯଦି ଦାୟିତ୍ୱ ବହନ କରୁଥିବା ବ୍ୟକ୍ତି ନିର୍ବୋଧ ହୋଇଥାଏ ବା ଦୁର୍ବଳ ହୋଇଥାଏ ବା ନିଜେ ଲେଖାଇବାର ସାମର୍ଥ୍ୟ ରଖି ନ ଥାଏ ତେବେ ତା ପରିବର୍ତ୍ତେ ତା'ର କାର୍ଯ୍ୟ ନିର୍ବାହକ ନ୍ୟାୟସଂଗତ ଭାବେ (ଦଲିଲ) ଲେଖାଇ ନେବ ଏବଂ ତୁମେମାନେ ନିଜ ପୁରୁଷମାନଙ୍କ ମଧ୍ୟରୁ (ସେହି ଘଟଣା ବେଳେ) ଦୁଇ ଜଣ ସାକ୍ଷୀଙ୍କୁ ନିଯୁକ୍ତ କର ; ଅବଶ୍ୟ ଯଦି ଉଭୟ (ସାକ୍ଷୀ) ପୁରୁଷ ହୋଇନଥା'ନ୍ତି, ତେବେ (ଘଟଣା ସମୟର) ସାକ୍ଷୀମାନଙ୍କ ମଧ୍ୟରୁ ଯେଉଁ ଲୋକମାନଙ୍କୁ (ସାକ୍ଷୀ ରୂପେ) ତୁମେ ପସନ୍ଦ କରୁଥାଅ ସେମାନଙ୍କ ମଧ୍ୟରୁ ଜଣେ ପୁରୁଷ ଓ ଦୁଇଜଣ ମହିଳାଙ୍କୁ (ସାକ୍ଷୀ କର) ; (ଦୁଇଜଣ ମହିଳା ସାକ୍ଷୀ ବିଷୟକ ସର୍ତ୍ତ ଏଥିଯୋଗୁଁ ଅଛି) ଯଦ୍ୱାରା ସେମାନଙ୍କ ମଧ୍ୟରୁ ଜଣେ ପାସୋରିଯିବା ଅବସ୍ଥାରେ ଉଭୟଙ୍କ ମଧ୍ୟରୁ ପ୍ରତ୍ୟେକ ଅନ୍ୟକୁ (ବିଷୟଟି) ମନେ ପକାଇ ଦେବ ; ଏବଂ ଯେବେ ସାକ୍ଷୀମାନଙ୍କୁ ଡକରା ହେବ ତେବେ ସେମାନେ ମନା ନ କରନ୍ତୁ ; ଏବଂ ତାହା ଛୋଟ (ନେଣ ଦେଣ) ହେଉ କି ବଡ଼, ତୁମେମାନେ (ପରିଶୋଧର) ନିର୍ଦ୍ଦିଷ୍ଟ ସମୟ ସମେତ ତାହାକୁ ଲେଖିବାରେ ଅବହେଳା କର ନାହିଁ ; ଏ ବିଷୟ ଅଲ୍ଲାହଙ୍କ ନିକଟରେ ଅଧିକ ନ୍ୟାୟସଂଗତ ଅଟେ ଓ ସାକ୍ଷ୍ୟ (ପ୍ରଦାନ)କୁ ଅଧିକ ଯଥାର୍ଥ କରାଇଥାଏ ତଥା (ତୁମମାନଙ୍କ ସକାଶେ ଏପରି ବିଷୟକୁ) ନିକଟବର୍ତ୍ତୀ କରାଏ, ଯଦ୍ୱାରା ତୁମେମାନେ ସନ୍ଦେହରେ ପଡ଼ିବ ନାହିଁ (ସୁତରାଂ ନେଣ ଦେଣକୁ ଲେଖିପକାଇବା ଆବଶ୍ୟକ) ; ଯେଉଁସ୍ଥଳେ ହାତକୁ ହାତ କାରବାରରେ ତୁମେମାନେ ପରସ୍ପର ମଧ୍ୟରେ (ମାଲ ଓ ଧନ) ଆଦାନ ପ୍ରଦାନ (କରି ଯଦି ସେହି ସମୟରେ କାରବାର ସମାପ୍ତ କରି ଦେଉଅଛ (ସେହିସ୍ଥଳେ) ଏହାକୁ (ଅର୍ଥାତ୍ ଏହି ନେଣ ଦେଣକୁ) ନ ଲେଖିଲେ କିଛି ପାପ ନାହିଁ ; ଯେବେ ପରସ୍ପର ମଧ୍ୟରେ କ୍ରୟ ବିକ୍ରୟ କର ତେବେ

جُنَاحٌ اَلَّا تَكْتُبُوْهَا ۭ وَاَشْهِدُوْٓا اِذَا تَبَايَعْتُمْ ۠ وَلَا يُضَآرَّ كَاتِبٌ وَّلَا شَهِيْدٌ ڛ وَاِنْ تَفْعَلُوْا فَاِنَّهٗ فُسُوْقٌۢ بِكُمْ ۭ وَاتَّقُوا اللّٰهَ ۭ وَيُعَلِّمُكُمُ اللّٰهُ ۭ وَاللّٰهُ بِكُلِّ شَيْءٍ عَلِيْمٌ ۝

ସାକ୍ଷୀ ନିଯୁକ୍ତ କର ; ଏବଂ (ଏ ବିଷୟକୁ ମନେରଖିବାକୁ ହେବ ଯେ) ଲେଖାଳିଙ୍କୁ କଷ୍ଟ ଦିଆ ନ ଯାଉ କି ସାକ୍ଷୀଙ୍କୁ ; ଏବଂ ଯଦି ତୁମେମାନେ (ଏପରି) କର ତେବେ ଏହା (ଅର୍ଥାତ ଏହି ବିଷୟ) ତୁମମାନଙ୍କ ପକ୍ଷରେ ଅମାନ୍ୟତା (ର ଲକ୍ଷଣ) ହେବ ; ଏବଂ ତୁମେମାନେ ଅଲ୍ଲାହଙ୍କୁ ଭୟକରିବା ଉଚିତ ; ଏବଂ ଯଦି ତୁମେମାନେ ଏପରି କରିବ ତେବେ ଅଲ୍ଲାହ ତୁମମାନଙ୍କୁ ଜ୍ଞାନ ପ୍ରଦାନ କରିବେ ଏବଂ ଅଲ୍ଲାହ ପ୍ରତ୍ୟେକ ବିଷୟକୁ ଭଲରୂପେ ଜାଣନ୍ତି ।

وَاِنْ كُنْتُمْ عَلٰي سَفَرٍ وَّلَمْ تَجِدُوْا كَاتِبًا فَرِھٰنٌ مَّقْبُوْضَةٌ ۭ فَاِنْ اَمِنَ بَعْضُكُمْ بَعْضًا فَلْيُؤَدِّ الَّذِي اؤْتُمِنَ اَمَانَتَهٗ وَلْيَتَّقِ اللّٰهَ رَبَّهٗ ۭ وَلَا تَكْتُمُوا الشَّهَادَةَ ۭ وَمَنْ يَّكْتُمْهَا فَاِنَّهٗٓ اٰثِمٌ قَلْبُهٗ ۭ وَاللّٰهُ بِمَا تَعْمَلُوْنَ عَلِيْمٌ ۝ ع ٣٩

୨୮୪. ଏବଂ ଯଦି ତୁମେମାନେ ଯାତ୍ରା କରୁଥାଅ ଏବଂ ତୁମମାନଙ୍କୁ କୌଣସି ଲେଖାଳି ନ ମିଳନ୍ତି ତେବେ (ଟୋ' ବଦଳରେ) ଦଖଲି ବନ୍ଧକ[୧] ଗ୍ରହଣ କର ସୁତରାଂ ଯଦି ତୁମମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତି ଅନ୍ୟକୁ ସଚ୍ଚୋଟ ମନେକରେ (ଏବଂ ତାହାକୁ କିଛି ଧନ ଦିଏ) ତେବେ ସେହି ସଚ୍ଚୋଟ ବ୍ୟକ୍ତି ତାହାର ସେହି ଗଚ୍ଛିତ ଧନକୁ (ଦାବିକରିବା ମାତ୍ରେ) ଫେରାଇ ଦେବା ଉଚିତ ; ଏବଂ ତାହାର ପାଳନକର୍ତ୍ତା ଅଲ୍ଲାହଙ୍କୁ ଭୟକରିବା ଉଚିତ ; ଏବଂ ତୁମେମାନେ ସାକ୍ଷ୍ୟକୁ ମଧ୍ୟ ଗୋପନ କର ନାହିଁ ; ଏବଂ ଯେ ତାହାକୁ ଗୋପନ କରେ ତାହାର ହୃଦୟ ନିଶ୍ଚିତରୂପେ ପାପପୂର୍ଣ୍ଣ ; ଏବଂ (ମନେରଖ ଯେ) ତୁମେମାନେ ଯାହା କିଛି କରୁଅଛ ଅଲ୍ଲାହ ତାହାକୁ ଭଲରୂପେ ଜାଣନ୍ତି ।

ରୁ : ୪୦

لِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۭ وَاِنْ تُبْدُوْا مَا فِيْٓ اَنْفُسِكُمْ اَوْ تُخْفُوْهُ يُحَاسِبْكُمْ بِهِ اللّٰهُ ۭ فَيَغْفِرُ لِمَنْ يَّشَاۗءُ وَيُعَذِّبُ مَنْ يَّشَاۗءُ ۭ وَاللّٰهُ عَلٰي كُلِّ شَيْءٍ قَدِيْرٌ ۝

୨୮୫. ଯାହାକିଛି ଆକାଶ ଓ ପୃଥିବୀରେ ଅଛି ତାହା ଅଲ୍ଲାହଙ୍କର ଏବଂ ଯାହାକିଛି ତୁମମାନଙ୍କ ଅନ୍ତରରେ ଅଛି ତାହାକୁ ତୁମେମାନେ ପ୍ରକାଶକର ବା ଗୋପନ ରଖ, ଅଲ୍ଲାହ ତୁମମାନଙ୍କ ଠାରୁ ତାହାର ହିସାବ ନେବେ ; ତାପରେ (ସେ) ଯାହାକୁ ଚାହିଁବେ କ୍ଷମା ଦେବେ ଓ ଯାହାକୁ ଚାହିଁବେ ଶାସ୍ତି ପ୍ରଦାନ କରିବେ ; ଏବଂ ଅଲ୍ଲାହ (ନିଜ ଇପ୍ସିତ) ପ୍ରତ୍ୟେକ କାର୍ଯ୍ୟ କରିବାକୁ ପୂର୍ଣ୍ଣ ରୂପେ ସକ୍ଷମ ।

---

୧. ବନ୍ଧକସୂତ୍ରେ ମଧ୍ୟ ଋଣ ଦିଆଯାଏ । ଏଥିରେ ଜଣେ ଋଣଟଙ୍କା ବଦଳେ ଅନ୍ୟକୁ ବନ୍ଧକ ରଖିବାକୁ ସାମଗ୍ରୀ ଦେଇଥାଏ । ଏହା 'ଅମାନତ' ବା ନ୍ୟାସ ସ୍ୱରୂପ । ଏହା ଉଭୟ ପକ୍ଷକୁ ସମାନଭାବରେ ପ୍ରଭାବିତ କରେ । ଏ ବ୍ୟବହାରେ ଋଣଦାତା ନ୍ୟାସ ସମ୍ପତ୍ତିକୁ ଯେପରି ଦାବି ମାତ୍ରେ ଫେରାଇବେ ସେହିପରି ଋଣକର୍ତ୍ତା ମଧ୍ୟ ଋଣ ପରିଶୋଧ କରିବାରେ ଯଥୋଚିତ ତତ୍ପରତା ପ୍ରକାଶ କରିବେ ଓ ସଚ୍ଚୋଟ ହେବେ ।

ٰامَنَ الرَّسُوْلُ بِمَآ اُنْزِلَ اِلَيْهِ مِنْ رَّبِّهٖ وَالْمُؤْمِنُوْنَ ؕ كُلٌّ اٰمَنَ بِاللّٰهِ وَمَلٰٓئِكَتِهٖ وَكُتُبِهٖ وَرُسُلِهٖ ۟ لَا نُفَرِّقُ بَيْنَ اَحَدٍ مِّنْ رُّسُلِهٖ ۟ وَقَالُوْا سَمِعْنَا وَاَطَعْنَا ٭ غُفْرَانَكَ رَبَّنَا وَاِلَيْكَ الْمَصِيْرُ ﴿۲۸۵﴾

୨୮୬. ଏହି ରସୁଲଙ୍କ ନିକଟରେ ତାହାଙ୍କ ପାଳନକର୍ତ୍ତା ଠାରୁ ଯାହାକିଛି ଅବତୀର୍ଣ୍ଣ ହୋଇଅଛି ସେ (ନିଜେ) ତାହା ଉପରେ ବିଶ୍ୱାସ କରନ୍ତି ଓ (ଅନ୍ୟ) ବିଶ୍ୱାସକାରୀମାନେ ମଧ୍ୟ (ବିଶ୍ୱାସ କରନ୍ତି) ; ସେମାନେ ସମସ୍ତେ ଅଲ୍ଲାହ୍‌ଙ୍କ ଉପରେ, ତାହାଙ୍କ ଦେବଦୂତମାନଙ୍କ ଉପରେ, ତାହାଙ୍କ ଗ୍ରନ୍ଥମାନଙ୍କ ଉପରେ ତଥା ତାହାଙ୍କ ରସୁଲମାନଙ୍କ ଉପରେ ବିଶ୍ୱାସ କରନ୍ତି ; (ଏବଂ କହନ୍ତି ଯେ) "ଆମେମାନେ ତାଙ୍କ ରସୁଲମାନଙ୍କ ମଧ୍ୟରୁ କାହାରି ମଧ୍ୟରେ (କୌଣସି) ପ୍ରଭେଦ କରୁନାହୁଁ," ଏବଂ ସେମାନେ ଏହା ମଧ୍ୟ କହନ୍ତି ଯେ ଆମେମାନେ (ଅଲ୍ଲାହ୍‌ଙ୍କ ଆଦେଶ) ଶୁଣିଅଛୁ ; ଏବଂ ଆମେମାନେ ଅନ୍ତରରୁ ତାଙ୍କର ଆଜ୍ଞାବହ ହୋଇଅଛୁ ; ଏମାନେ ପ୍ରାର୍ଥନା କରନ୍ତି ଯେ (ହେ ଆମମାନଙ୍କର ପାଳନକର୍ତ୍ତା !) ଆମେମାନେ ତୁମ୍ଭ ନିକଟରେ କ୍ଷମାଭିକ୍ଷା କରୁଅଛୁ ; ଏବଂ ତୁମ୍ଭ ନିକଟକୁ (ଆମମାନଙ୍କୁ) ଫେରିବାକୁ ହେବ ।

لَا يُكَلِّفُ اللّٰهُ نَفْسًا اِلَّا وُسْعَهَا ؕ لَهَا مَا كَسَبَتْ وَعَلَيْهَا مَا اكْتَسَبَتْ ؕ رَبَّنَا لَا تُؤَاخِذْنَآ اِنْ نَّسِيْنَآ اَوْ اَخْطَاْنَا ۚ رَبَّنَا وَلَا تَحْمِلْ عَلَيْنَآ اِصْرًا كَمَا حَمَلْتَهٗ عَلَى الَّذِيْنَ مِنْ قَبْلِنَا ۚ رَبَّنَا وَلَا تُحَمِّلْنَا مَا لَا طَاقَةَ لَنَا بِهٖ ۚ وَاعْفُ عَنَّا ٭ وَاغْفِرْ لَنَا ٭ وَارْحَمْنَا ٭ اَنْتَ مَوْلٰىنَا فَانْصُرْنَا عَلَى الْقَوْمِ الْكٰفِرِيْنَ ﴿۲۸۶﴾ ع

୨୮୭. ଅଲ୍ଲାହ୍ କୌଣସି ବ୍ୟକ୍ତିକୁ ତାହାର ସାମର୍ଥ୍ୟ ବାହାରେ କୌଣସି ଦାୟିତ୍ୱ ଦିଅନ୍ତି ନାହିଁ ; ସେ ଯାହା କିଛି (ମହତ୍) କାର୍ଯ୍ୟ ସମ୍ପାଦନ କରିଥାଏ (ତାହା) ନିଜ ପାଇଁ ଲାଭଦାୟକ ହେବ ; ଏବଂ ସେ ଯାହାକିଛି (ମନ୍ଦ) କାର୍ଯ୍ୟ କରିଥାଏ (ତାହା) ତା'ଉପରେ (ଶାସ୍ତି ଆକାରରେ) ନିପତିତ ହେବ ; (ଏବଂ ସେମାନେ ପୁଣି କହନ୍ତି) "ହେ ଆମମାନଙ୍କ ପାଳନକର୍ତ୍ତା ! ଯଦି ଆମେମାନେ କେବେ ଭୁଲି ଯାଉ ବା ଦୋଷ କରିଥାଉଁ ତେବେ ଆମମାନଙ୍କୁ ଦଣ୍ଡ ଦିଅନାହିଁ [1]; ହେ ଆମମାନଙ୍କ ପାଳନକର୍ତ୍ତା ! ତୁମେ ଆମମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କ ଉପରେ ଯେପରି ଦାୟିତ୍ୱ ନ୍ୟସ୍ତ କରିଥିଲ, ସେପରି ଦାୟିତ୍ୱ ଆମମାନଙ୍କ ଉପରେ ନ୍ୟସ୍ତ କର ନାହିଁ ; ହେ ଆମମାନଙ୍କ ପାଳନକର୍ତ୍ତା ! ଯାହା ବହନ କରିବାକୁ ଆମମାନଙ୍କର ଶକ୍ତି ନାହିଁ, ତାହା (ବହନ କରିବାକୁ) ଆମମାନଙ୍କୁ ଦିଅ ନାହିଁ ; ଏବଂ ଆମମାନଙ୍କୁ (ପାପରୁ) ମୁକ୍ତି ଦିଅ ଓ ଆମମାନଙ୍କୁ କ୍ଷମାକର ; ଏବଂ ଆମମାନଙ୍କ ପ୍ରତି କରୁଣା କର (କାରଣ) ତୁମେ ହିଁ ଆମମାନଙ୍କର ପ୍ରଭୁ ; ସୁତରାଂ ଅବିଶ୍ୱାସକାରୀ ଗୋଷ୍ଠୀ ବିରୁଦ୍ଧରେ ଆମମାନଙ୍କୁ ସାହାଯ୍ୟ କର ।

---

୧. ଏହି ଆୟାତ୍ ମାଧ୍ୟମରେ [illegible] ବିଷୟକ ବିଶ୍ୱାସକୁ [illegible] କରାଯାଇଛି । ଏଥିରେ ଦୁଇଟି ମୁଖ୍ୟ ବିଷୟର ସୂଚନା ମିଳୁଛି : (କ) ମନୁଷ୍ୟର ସାମର୍ଥ୍ୟ ଓ ତା'ର ସ୍ୱାଭାବିକ ଅସାମର୍ଥ୍ୟକୁ ଯଥୋଚିତ ଧ୍ୟାନ ଦିଆଯାଇ ଆଧ୍ୟାତ୍ମିକ ଆଦେଶାବଳୀ ପ୍ରଦାନ କରାଯାଇଥାଏ. (ଖ) ଏହି ସଂସାରରେ ଜଣକର ନୈତିକ ମାନର ବୃଦ୍ଧି [illegible] ସେ ସବୁ ଦୋଷ ଦୁର୍ବଳତାରୁ ମୁକ୍ତ, ଏହା ଜାଣିବା ଉଚିତ ନୁହେଁ । କେବଳ ମନୁଷ୍ୟ ନିଷ୍ଠାର ସହିତ ସତ୍କର୍ମ କରୁ ଓ ଅସତ୍କର୍ମ ଠାରୁ ଦୂରେଇ ରହୁ, ଏହାହିଁ ତା'ଠାରୁ ଆଶା କରାଯାଉଛି । [illegible] ଯଦି କିଛି ବାକି ରହିଗଲା ତାହା କ୍ଷମା କରିବାକୁ ସଦା କରୁଣାମୟ ଅଲ୍ଲାହ ବିଦ୍ୟମାନ ଅଛନ୍ତି

سُوْرَةُ اٰلِ عِمْرٰنَ مَدَنِيَّةٌ (٣) اٰيَاتُهَا

# ଆଲେ—ଇମ୍‌ରାନ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୨୦୧ଟି ଆୟତ ଓ ୨୦ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ଅଲିଫ୍—ଲାମ୍—ମିମ୍ ।

الٓمّٓ ②

୩. ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସେ ଚିରଞ୍ଜୀବୀ, (ଓ ସେ ସ୍ୱୟଂ) ପ୍ରତିଷ୍ଠିତ ଓ (ସମସ୍ତଙ୍କର) ପ୍ରତିଷ୍ଠାତା ।

اَللّٰهُ لَآ اِلٰهَ اِلَّا هُوَۙ الْحَيُّ الْقَيُّوْمُ ③

୪/୫. ସେ ସତ୍ୟ ଉପରେ ଆଧାରିତ ଏହି ଗ୍ରନ୍ଥକୁ ତୁମ ପ୍ରତି ଅବତୀର୍ଣ୍ଣ କରିଛନ୍ତି ଯାହା ଏହାର ପୂର୍ବବର୍ତ୍ତୀ (ବାଣୀ)କୁ ପ୍ରତିପାଦିତ କରେ ଏବଂ ସେ ଲୋକମାନଙ୍କୁ ସତ୍‌ପଥ ପ୍ରଦର୍ଶିତ କରିବା ପାଇଁ ଏଥିପୂର୍ବରୁ ତୌରାତ ଓ ଇଞ୍ଜିଲ[୧] ଅବତୀର୍ଣ୍ଣ କରିଥିଲେ ; ଏବଂ ସେ ଅବିସମ୍ବାଦିତ ନିଦର୍ଶନମାନ ଅବତୀର୍ଣ୍ଣ କରିଅଛନ୍ତି ; ଯେଉଁ ଲୋକମାନେ ଅଲ୍ଲାହଙ୍କ ନିଦର୍ଶନଗୁଡିକୁ ଅସ୍ୱୀକାର କରିଛନ୍ତି ସେମାନଙ୍କ ଲାଗି ନିଶ୍ଚୟ କଠିନ ଶାସ୍ତି (ନିୟତ) ଅଛି ; ଏବଂ ଅଲ୍ଲାହ ହିଁ ପରାକ୍ରମୀ (ଓ) ଶାସ୍ତିଦାତା ।

نَزَّلَ عَلَيْكَ الْكِتٰبَ بِالْحَقِّ مُصَدِّقًا لِّمَا بَيْنَ يَدَيْهِ وَاَنْزَلَ التَّوْرٰىةَ وَالْاِنْجِيْلَۙ ④ مِنْ قَبْلُ هُدًى لِّلنَّاسِ وَاَنْزَلَ الْفُرْقَانَ ۗ اِنَّ الَّذِيْنَ كَفَرُوْا بِاٰيٰتِ اللّٰهِ لَهُمْ عَذَابٌ شَدِيْدٌ ۗ وَاللّٰهُ عَزِيْزٌ ذُو انْتِقَامٍ ⑤

୬. ଆକାଶ ଓ ପୃଥିବୀରେ ଥିବା କୌଣସି ବସ୍ତୁ ଅଲ୍ଲାହଙ୍କ ଠାରୁ ଆଦୌ ଲୁକ୍କାୟିତ ନାହିଁ ।

اِنَّ اللّٰهَ لَا يَخْفٰى عَلَيْهِ شَيْءٌ فِى الْاَرْضِ وَلَا فِى السَّمَآءِ ⑥

୭. ସେ ହିଁ ନିଜ ଇଚ୍ଛାରେ ତୁମମାନଙ୍କୁ (ମାତୃ) ଗର୍ଭ ମଧ୍ୟରେ ଆକୃତି ପ୍ରଦାନ କରନ୍ତି ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସେ ହିଁ ପରାକ୍ରମୀ(ଓ)ତତ୍ତ୍ୱଜ୍ଞ ।

هُوَ الَّذِيْ يُصَوِّرُكُمْ فِى الْاَرْحَامِ كَيْفَ يَشَآءُ ۗ لَآ اِلٰهَ اِلَّا هُوَ الْعَزِيْزُ الْحَكِيْمُ ⑦

---

୧. ଇହୁଦୀମାନଙ୍କର ଧର୍ମଗ୍ରନ୍ଥକୁ ତୌରାତ କୁହାଯାଏ । ଏହି ନାମ ହଜରତ ମୁସାଙ୍କର ପାଞ୍ଚଗୋଟି ପୁସ୍ତକ ଯଥା— Genesis, Exodus, Levitiens, Numbers ଓ Deuteronomy ପ୍ରତି ପ୍ରଯୁକ୍ତ । ଏହା ମଧ୍ୟ ବେଳେ ବେଳେ Ten commandments ପ୍ରତି ଲାଗୁ ହୁଏ । ଖ୍ରୀଷ୍ଟିୟାନମାନଙ୍କ ଧର୍ମଗ୍ରନ୍ଥକୁ ଇଞ୍ଜିଲ କୁହାଯାଏ । ଇଞ୍ଜିଲ ଅର୍ଥ ସୁସମାଚାର । ଏହା ଯୀଶୁଙ୍କର ଚାରିଜଣ ଅନୁଗାମୀଙ୍କ ଦ୍ୱାରା ଲିଖିତ ଓ Gospels ନାମରେ ଅଭିହିତ । ଏଥିରେ ଯୀଶୁଙ୍କ ଅନୁଗାମୀମାନଙ୍କ ସକାଶେ ସୁସମାଚାର ଥିବାରୁ ଏବଂ ଯେଉଁ ଶ୍ରେଷ୍ଠ ଅବତାରଙ୍କ ଆଗମନକୁ ସ୍ୱୟଂ ପ୍ରଭୁଙ୍କ ଆଗମନ ବୋଲି ଯୀଶୁ ବର୍ଣ୍ଣନା କରିଛନ୍ତି (ମାଥିଉ 21:40 ଦ୍ରଷ୍ଟବ୍ୟ) ତାହାଙ୍କ ଆବିର୍ଭାବ ସଂକ୍ରାନ୍ତରେ ଭବିଷ୍ୟବାଣୀ ଥିବାରୁ ଏଗୁଡ଼ିକର ସେପରି ନାମକରଣ ହୋଇଛି ।

هُوَ الَّذِيٓ اَنْزَلَ عَلَيْكَ الْكِتٰبَ مِنْهُ اٰيٰتٌ مُّحْكَمٰتٌ هُنَّ اُمُّ الْكِتٰبِ وَاُخَرُ مُتَشٰبِهٰتٌ ۗ فَاَمَّا الَّذِيْنَ فِيْ قُلُوْبِهِمْ زَيْغٌ فَيَتَّبِعُوْنَ مَا تَشَابَهَ مِنْهُ ابْتِغَآءَ الْفِتْنَةِ وَابْتِغَآءَ تَاْوِيْلِهٖ ۚ وَمَا يَعْلَمُ تَاْوِيْلَهٗٓ اِلَّا اللّٰهُ ۘ وَالرّٰسِخُوْنَ فِي الْعِلْمِ يَقُوْلُوْنَ اٰمَنَّا بِهٖ ۙ كُلٌّ مِّنْ عِنْدِ رَبِّنَا ۚ وَمَا يَذَّكَّرُ اِلَّآ اُولُوا الْاَلْبَابِ ⑧

୮. ସେ ହିଁ ତୁମ ପ୍ରତି ଏହି ଗ୍ରନ୍ଥ ଅବତୀର୍ଣ୍ଣ କରିଛନ୍ତି, ଯାହାର କେତେକ ଆୟତ ମୋହକମ୍[୧] ଯାହା ଏହି ଗ୍ରନ୍ଥର ଆଧାର ଅଟେ ; ଏବଂ ଅନ୍ୟ କେତେକ ମୁତସାବିହ, ଅଟେ ; ସୁତରାଂ ଯେଉଁ ଲୋକମାନଙ୍କ ଅନ୍ତରରେ କୁଟିଳତା ରହିଅଛି, ସେମାନେ ବିଶୃଙ୍ଖଳା ସୃଷ୍ଟିକରିବା ଲକ୍ଷ୍ୟରେ ଓ ଏହି ଗ୍ରନ୍ଥ (ର ଅର୍ଥ)କୁ ବଦଳାଇଦେବା ଉଦ୍ଦେଶ୍ୟରେ "ମୁତସାବିହ"[୨] ଆୟତଗୁଡ଼ିକ ପଛରେ (ଜୋକ ଭଳି) ଲାଗିଥା'ନ୍ତି ଅଥଚ ଅଲ୍ଲାହ ଏବଂ ଜ୍ଞାନବନ୍ତମାନଙ୍କ ବ୍ୟତୀତ ଅନ୍ୟ କେହି ତାହାର (ସଠିକ) ବ୍ୟାଖ୍ୟା ଜାଣନ୍ତି ନାହିଁ ; ସେ (ଜ୍ଞାନବନ୍ତ)ମାନେ କହନ୍ତି, "ଆମେମାନେ ଏହା ଉପରେ ବିଶ୍ୱାସ କରୁଅଛୁ ; ଏ ସମସ୍ତ ଆମମାନଙ୍କ ପାଳନକର୍ତ୍ତାଙ୍କ ନିକଟରୁ (ଅବତୀର୍ଣ୍ଣ ହୋଇ) ଅଛି ଏବଂ ବୁଦ୍ଧିମାନ ଲୋକଙ୍କ ବ୍ୟତୀତ ଅନ୍ୟ କେହି ଉପଦେଶ ଗ୍ରହଣ କରନ୍ତି ନାହିଁ ।"

رَبَّنَا لَا تُزِغْ قُلُوْبَنَا بَعْدَ اِذْ هَدَيْتَنَا وَهَبْ لَنَا مِنْ لَّدُنْكَ رَحْمَةً ۚ اِنَّكَ اَنْتَ الْوَهَّابُ ⑨

୯. ହେ ଆମମାନଙ୍କ ପାଳନକର୍ତ୍ତା ! ତୁମେ ଆମମାନଙ୍କୁ ସତ୍‌ପଥଗାମୀ କରାଇବା ପରେ ଆମମାନଙ୍କ ହୃଦୟକୁ କୁଟିଳ କର ନାହିଁ ; ଏବଂ ତୁମ ନିକଟରୁ ଆମମାନଙ୍କୁ କରୁଣା ପ୍ରଦାନ କର ; ବାସ୍ତବରେ ତୁମେ ହିଁ ମହାନ୍ ଦାତା ।

---

୧. 'ମୁହକମ' ଅର୍ଥ:(କ) ଯାହା ଅପରିବର୍ତ୍ତନୀୟ (ଖ) ଯହିଁରେ କୌଣସି ସନ୍ଦେହର ଅବକାଶ ନାହିଁ କି ଯାହା ଅନେକାର୍ଥ ପ୍ରକାଶ କରେ ନାହିଁ, (ଗ) ଯାହାର ଅର୍ଥ ସ୍ପଷ୍ଟ ଓ ବ୍ୟାଖ୍ୟା ନିଶ୍ଚିତିମୂଳକ,(ଘ) ଏପରି ଆୟତ ଯହିଁରେ ସ୍ୱତନ୍ତ୍ର ଧରଣର ଶିକ୍ଷା ବିଷୟରେ ଉଲ୍ଲେଖ ରହିଅଛି ।

୨. 'ମୁତସାବିହ' ଅର୍ଥ: (କ) ଏପରି ଆୟତ ଯହିଁରେ ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥରେ ଥିବା ଶିକ୍ଷା ମଧ୍ୟ ରହିଅଛି, (ଖ) ମୁତସାବିହ ଏପରି ଆୟତଗୁଡ଼ିକ ସଂକ୍ରାନ୍ତରେ ବ୍ୟବହୃତ ହୋଇଛି ଯହିଁରେ ବିଭିନ୍ନ ବ୍ୟାଖ୍ୟା ପ୍ରକାଶିତ ହେଉଥିଲେ ହେଁ ସେଗୁଡ଼ିକ ମଧ୍ୟରେ ପାରସ୍ପରିକ ସାମଞ୍ଜସ୍ୟ ଥାଏ (ଗ) ଗଭୀର ଅନୁଧ୍ୟାନ ଓ ଚିନ୍ତନ ବିନା ଯାହାକୁ ଭଲ ଭାବରେ ବୁଝି ହୁଏ ନାହିଁ ।

କୌଣସି ବିବାଦାତ୍ମକ ବିଷୟକୁ ପ୍ରମାଣିତ କରିବା ପାଇଁ ଧର୍ମଗ୍ରନ୍ଥର ସ୍ପଷ୍ଟ ଓ ନିର୍ଣ୍ଣାୟକ ଅଂଶଗୁଡ଼ିକୁ ବିଗ୍ରହ କରିବାକୁ ହେବ । ଯଦି ଅନେକାର୍ଥବୋଧକ କୌଣସି ଅଂଶ ସଂଶୟ ସୃଷ୍ଟି କରୁଥାଏ ତେବେ ତାହାକୁ ସ୍ପଷ୍ଟ ଓ ନିର୍ଣ୍ଣାୟକ ଅଂଶ ସହିତ ତୁଳନା କରି ତାହାର ବ୍ୟାଖ୍ୟା ଠିକ୍ କରିବାକୁ ହେବ । ପବିତ୍ର କୋରାନର ୧୧:୨ରେ ଆୟତଗୁଡ଼ିକୁ 'ମୁହକମ' ଓ ୩୯:୨୪ରେ ଆୟତଗୁଡ଼ିକୁ 'ମୁତସାବିହ' କୁହାଯାଇଥିବାରୁ, ଆଲୋଚ୍ୟ ଆୟତ ଉପରେ ବର୍ଣ୍ଣିତ ଦୁଇ ଆୟତକୁ ଖଣ୍ଡନ କରୁଥିବା ବିବେଚିତ ହେବନାହିଁ । ବସ୍ତୁତଃ କୋରାନ ଅନ୍ତର୍ଗତ ଆୟତଗୁଡ଼ିକରେ ନିର୍ଣ୍ଣାୟକ ଓ ଚିରନ୍ତନ ସତ୍ୟ ରହିଥିବାରୁ ସବୁଗୁଡ଼ିକୁ ମୁହକମ ଆୟତ କହିବା ଯଥାର୍ଥ ହେବ । ପକ୍ଷାନ୍ତରେ ବିଭିନ୍ନ ଆୟତ୍‌ରେ ଭାଷାକୁ ଏପରି ବିନ୍ୟସ୍ତ କରାଯାଇଛି ଯେ ଏକା ସମୟରେ ତହିଁରୁ ଏକାଧିକ ଉତ୍ତମ ଓ ଯଥୋଚିତ ଅର୍ଥ ବାହାର କରାଯାଇପାରେ । ସୁତରାଂ ଏହି ପରିପ୍ରେକ୍ଷୀରେ ସମଗ୍ରାଂଶକୁ ମୁତସାବିହ କହିବା ମଧ୍ୟ ଅସମୀଚୀନ ନୁହେଁ । ଅବଶ୍ୟ ପାଠକମାନଙ୍କ ଜ୍ଞାନ, ବୋଧ-ଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ ବିଭିନ୍ନ ପାଠକଙ୍କ ପକ୍ଷରେ କୋରାନର କେତେକ ଅଂଶ ମୁହକମ ବା ମୁତସାବିହ ।

ମୁହକମ ଆୟତଗୁଡ଼ିକରେ ସାଧାରଣତଃ ଧର୍ମର ସିଦ୍ଧାନ୍ତ ଓ ଆଧ୍ୟାତ୍ମିକ ବିଧାନ ଆଲୋଚନା କରାଯାଇଛି । ମୁତସାବିହ ଆୟତଗୁଡ଼ିକରେ ସାଧାରଣତଃ ଅବତାରମାନଙ୍କର ଜୀବନୀ, ଇତିହାସ ଓ ଅନ୍ୟାନ୍ୟ ଗୌଣ ବିଷୟର ବର୍ଣ୍ଣନା ରହିଅଛି । ମୁତସାବିହ ଆୟତଗୁଡ଼ିକରେ ଅନେକ ଉପମାମୂଳକ ବ୍ୟାଖ୍ୟାନ ରହିଅଛି । ଫଳରେ ଧର୍ମଶାସ୍ତ୍ରର ଭାଷା ଓ ବର୍ଣ୍ଣନା ଶୈଳୀ ସୁନ୍ଦର ଓ ଉପଭୋଗ୍ୟ ହୋଇଛି ।

رَبَّنَآ اِنَّكَ جَامِعُ النَّاسِ لِيَوۡمٍ لَّا رَيۡبَ فِيۡهِ‌ؕ اِنَّ اللّٰهَ لَا يُخۡلِفُ الۡمِيۡعَادَ ۝١٠

୧୦. ହେ ଆମମାନଙ୍କର ପାଳନକର୍ତ୍ତା ! ଯେଉଁ ଦିବସର ଆଗମନ ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ, ନିଶ୍ଚୟ ତୁମେ ସେହି ଦିବସରେ ସମସ୍ତ ଲୋକଙ୍କୁ ଏକତ୍ରିତ କରିବ ; ବାସ୍ତବିକ ଅଲ୍ଲାହ ପ୍ରତିଶ୍ରୁତି ଭଙ୍ଗ କରନ୍ତି ନାହିଁ ।

ରୁ : ୨

اِنَّ الَّذِيۡنَ كَفَرُوۡا لَنۡ تُغۡنِىَ عَنۡهُمۡ اَمۡوَالُهُمۡ وَلَاۤ اَوۡلَادُهُمۡ مِّنَ اللّٰهِ شَيۡـــًٔا‌ ؕ وَاُولٰٓـئِكَ هُمۡ وَقُوۡدُ النَّارِۙ ۝١١

୧୧. ଯେଉଁମାନେ ଅବିଶ୍ୱାସକାରୀ ଅଟନ୍ତି ସେମାନଙ୍କର ଧନ ସମ୍ପତ୍ତି ଓ ସନ୍ତାନ ସନ୍ତତି ଅଲ୍ଲାହଙ୍କ ବିରୁଦ୍ଧରେ ଆଦୌ ଫଳପ୍ରଦ ହେବେ ନାହିଁ ; ଏବଂ ସେମାନେ ହିଁ ନରକାଗ୍ନିର ଇନ୍ଧନ ହେବେ ।

كَدَاۡبِ اٰلِ فِرۡعَوۡنَۙ وَالَّذِيۡنَ مِنۡ قَبۡلِهِمۡ‌ؕ كَذَّبُوۡا بِاٰيٰتِنَا ‌ۚ فَاَخَذَهُمُ اللّٰهُ بِذُنُوۡبِهِمۡ‌ؕ وَاللّٰهُ شَدِيۡدُ الۡعِقَابِ ۝١٢

୧୨. (ସେମାନଙ୍କ ଆଚରଣ) ଫିରଔନର ଅନୁଗାମୀ ଏବଂ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କ ଆଚରଣ ସଦୃଶ ଥିଲା ; ସେମାନେ ଆମର ନିଦର୍ଶନଗୁଡ଼ିକୁ ଅଗ୍ରାହ୍ୟ କରିଥିଲେ ; ତେଣୁ ଅଲ୍ଲାହ ସେମାନଙ୍କୁ ସେମାନଙ୍କ ଦୋଷ ପାଇଁ ଦଣ୍ଡ ଦେଲେ ; ଏବଂ ଅଲ୍ଲାହଙ୍କ ଦଣ୍ଡ ଅତ୍ୟନ୍ତ କଠୋର ଅଟେ ।

قُلْ لِّلَّذِيۡنَ كَفَرُوۡا سَتُغۡلَبُوۡنَ وَتُحۡشَرُوۡنَ اِلٰى جَهَنَّمَ‌ؕ وَبِئۡسَ الۡمِهَادُ ۝١٣

୧୩. ଯେଉଁମାନେ ଅବିଶ୍ୱାସକାରୀ ସେମାନଙ୍କୁ କୁହ, "ତୁମମାନଙ୍କୁ ନିଶ୍ଚୟ ପରାଜିତ କରାଯିବ ; ଏବଂ ନରକ ଆଡ଼କୁ ଏକତ୍ରିତ କରି ଘେନି ନିଆଯିବ ; ଏବଂ ତାହା ଅତ୍ୟନ୍ତ ମନ୍ଦ ସ୍ଥାନ ଅଟେ ।"

قَدۡ كَانَ لَـكُمۡ اٰيَةٌ فِىۡ فِئَتَيۡنِ الۡتَقَتَا‌ؕ فِئَةٌ تُقَاتِلُ فِىۡ سَبِيۡلِ اللّٰهِ وَاُخۡرٰى كَافِرَةٌ يَّرَوۡنَهُمۡ مِّثۡلَيۡهِمۡ رَاۡىَ الۡعَيۡنِ‌ؕ وَاللّٰهُ يُؤَيِّدُ بِنَصۡرِهٖ مَنۡ يَّشَآءُ‌ؕ اِنَّ فِىۡ ذٰلِكَ لَعِبۡرَةً لِّاُولِى الۡاَبۡصَارِ ۝١٤

୧୪. ସେହି ଦୁଇ ଦଳ ମଧ୍ୟରେ ଯେଉଁମାନେ ପରସ୍ପର ସହିତ ଯୁଦ୍ଧ କରୁଥିଲେ (ତହିଁରେ) ତୁମମାନଙ୍କ ପାଇଁ ନିଶ୍ଚୟ ଏକ ନିଦର୍ଶନ[1] ଥିଲା : ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ ଅଲ୍ଲାହଙ୍କ ମାର୍ଗରେ ଯୁଦ୍ଧ କରୁଥିଲା ଓ ଅନ୍ୟଟି ଅମାନ୍ୟକାରୀ ଥିଲା; ସେ (ମୁସଲମାନ) ମାନେ ସ୍ୱଚକ୍ଷୁରେ ସେ (ଅବିଶ୍ୱାସକାରୀ)ମାନଙ୍କୁ ଦୁଇଗୁଣ ଥିବାର ଦେଖୁଥିଲେ ; ଏବଂ ଅଲ୍ଲାହ ଯାହାକୁ ଚାହାନ୍ତି ତାହାକୁ ନିଜର ସାହାଯ୍ୟ ଦ୍ୱାରା ଶକ୍ତି ପ୍ରଦାନ କରିଥା'ନ୍ତି ; ଏଥିରେ ଚକ୍ଷୁଷ୍ମାନ୍ ବ୍ୟକ୍ତିମାନଙ୍କ ପାଇଁ ନିଶ୍ଚୟ ଏକ ଉପଦେଶ ଅଛି ।

---

୧. ଏଠାରେ ବଦର ଯୁଦ୍ଧ ବିଷୟରେ ସୂଚନା ଦିଆଯାଇଛି । ସେହି ଯୁଦ୍ଧରେ ମାତ୍ର ୩୧୩ ଜଣ ଅର୍ଦ୍ଧସଜ୍ଜିତ ମୁସଲମାନଙ୍କ ଦ୍ୱାରା ୧୦୦୦ ଜଣ ସୁସଜ୍ଜିତ ମକ୍କାନିବାସୀଙ୍କ ଦ୍ୱାରା ଗଠିତ ସୈନ୍ୟବାହିନୀ ପରାସ୍ତ ହୋଇଥିଲେ । ଏହି ଘଟଣା ବିଷୟରେ ପୂର୍ବରୁ ପବିତ୍ର କୋରାନ ଓ ବାଇବେଲରେ ଭବିଷ୍ୟବାଣୀ କରାଯାଇଥିଲା । ଏହି ଯୁଦ୍ଧର ଫଳାଫଳ ଆରବବାସୀଙ୍କ ଭାଗ୍ୟମୀମାଂସା କରିବା ସଙ୍ଗେ ସଙ୍ଗେ ଇସଲାମ ଧର୍ମର ମୂଳଭିତ୍ତିକୁ ସୁଦୃଢ଼ କରିଥିଲା ।

୧୫. (ସାଧାରଣତଃ) ଲୋକମାନଙ୍କୁ ପସନ୍ଦଯୋଗ୍ୟ ବସ୍ତୁ ଯଥା– ନାରୀ, ପୁତ୍ର ସନ୍ତାନ, ସୁନା ଓ ରୂପାର ସୁରକ୍ଷିତ ଭଣ୍ଡାର, ସୁନ୍ଦର ଘୋଡ଼ା, ଗୃହପାଳିତ ପଶୁ ଓ ଶସ୍ୟ କ୍ଷେତ୍ରର ଲାଳସା ଶୋଭନୀୟ କରି ଦର୍ଶାଇ ଦିଆଯାଇଛି ; ଏଗୁଡ଼ିକ ପାର୍ଥିବ ଜୀବନର ସମ୍ପଦ ; କିନ୍ତୁ ସେ ହି ଅଲ୍ଲାଃ ଯାହାଙ୍କ ନିକଟରେ ସର୍ବୋତ୍କୃଷ୍ଟ ଆଶ୍ରୟସ୍ଥଳ ଅଛି ।

زُيِّنَ لِلنَّاسِ حُبُّ الشَّهَوٰتِ مِنَ النِّسَآءِ وَالْبَنِيْنَ وَالْقَنَاطِيْرِ الْمُقَنْطَرَةِ مِنَ الذَّهَبِ وَالْفِضَّةِ وَالْخَيْلِ الْمُسَوَّمَةِ وَالْاَنْعَامِ وَالْحَرْثِ ؕ ذٰلِكَ مَتَاعُ الْحَيٰوةِ الدُّنْيَا ۚ وَاللّٰهُ عِنْدَهٗ حُسْنُ الْمَاٰبِ ﴿۱۵﴾

୧୬. ତୁମେ କୁହ, "କ'ଣ ଆମେ ତୁମମାନଙ୍କୁ ଏହା ଅପେକ୍ଷା ଉତ୍କୃଷ୍ଟତର ବିଷୟ ସଂକ୍ରାନ୍ତରେ ଜଣାଇବୁ ?" ଯେଉଁମାନେ ଧର୍ମଭୀରୁତା ଅବଲମ୍ବନ କରନ୍ତି ସେମାନଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ଏପରି ଉଦ୍ୟାନମାନ ଅଛି ଯାହାର ନିମ୍ନ ଦେଶରେ ଝରଣାମାନ ପ୍ରବାହିତ ହେଉଅଛି ; ସେଠାରେ ସେମାନେ ବାସକରିବେ (ତଥା ସେଠାରେ ସେମାନଙ୍କ ପାଇଁ) ପବିତ୍ର ଯୋଡ଼ି ତଥା ଅଲ୍ଲାଃଙ୍କର ପ୍ରସନ୍ନତା ଥିବ ; ଏବଂ ଅଲ୍ଲାଃ ନିଜ ଭକ୍ତମାନଙ୍କ ପ୍ରତି ଲକ୍ଷ୍ୟ ରଖିଥାଆନ୍ତି ।

قُلْ اَؤُنَبِّئُكُمْ بِخَيْرٍ مِّنْ ذٰلِكُمْ ؕ لِلَّذِيْنَ اتَّقَوْا عِنْدَ رَبِّهِمْ جَنّٰتٌ تَجْرِيْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَا وَاَزْوَاجٌ مُّطَهَّرَةٌ وَّرِضْوَانٌ مِّنَ اللّٰهِ ؕ وَاللّٰهُ بَصِيْرٌۢ بِالْعِبَادِ ﴿۱۶﴾

୧୭. ଯେଉଁମାନେ କୁହନ୍ତି "ହେ ଆମମାନଙ୍କର ପାଳନକର୍ତ୍ତା ! ଆମେମାନେ ନିଶ୍ଚୟ ବିଶ୍ୱାସ ସ୍ଥାପନ କରିଅଛୁ ; ସୁତରାଂ ତୁମେ ଆମମାନଙ୍କର ଦୋଷ କ୍ଷମାକର ଓ ଆମମାନଙ୍କୁ ନରକର ଶାସ୍ତିରୁ ରକ୍ଷାକର ।"

اَلَّذِيْنَ يَقُوْلُوْنَ رَبَّنَآ اِنَّنَآ اٰمَنَّا فَاغْفِرْ لَنَا ذُنُوْبَنَا وَقِنَا عَذَابَ النَّارِ ﴿۱۷﴾

୧୮. ଯେଉଁମାନେ ଧୈର୍ଯ୍ୟବାନ, ସତ୍ୟବାଦୀ, ଆଜ୍ଞାପାଳନକାରୀ ଓ (ଅଲ୍ଲାଃଙ୍କ ଉଦ୍ଦେଶ୍ୟରେ ନିଜ ଅର୍ଥ) ବ୍ୟୟକାରୀ ଓ ରାତ୍ରିର ଶେଷ ପ୍ରହରରେ କ୍ଷମାପ୍ରାର୍ଥନାକାରୀ ଅଟନ୍ତି ।

اَلصّٰبِرِيْنَ وَالصّٰدِقِيْنَ وَالْقٰنِتِيْنَ وَالْمُنْفِقِيْنَ وَالْمُسْتَغْفِرِيْنَ بِالْاَسْحَارِ ﴿۱۸﴾

୧୯. ଅଲ୍ଲାଃ ଯେ କି ପରମ ନ୍ୟାୟବନ୍ତ ଏହି ସାକ୍ଷ୍ୟ ଦେଉଛନ୍ତି ଯେ ପ୍ରକୃତରେ ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ଏବଂ ଦେବଦୂତମାନେ ଓ ଜ୍ଞାନବନ୍ତମାନେ (ମଧ୍ୟ ଏ ପ୍ରକାର ସାକ୍ଷ୍ୟ ଦେଉଅଛନ୍ତି) ଯେ ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସେ ହି ପରାକ୍ରମୀ(ଓ)ତତ୍ତ୍ୱଜ୍ଞ ।

شَهِدَ اللّٰهُ اَنَّهٗ لَآ اِلٰهَ اِلَّا هُوَ ۙ وَالْمَلٰٓئِكَةُ وَاُولُوا الْعِلْمِ قَآئِمًۢا بِالْقِسْطِ ؕ لَآ اِلٰهَ اِلَّا هُوَ الْعَزِيْزُ الْحَكِيْمُ ﴿۱۹﴾

୨୦. ବାସ୍ତବିକ ଅଲ୍ଲାଃଙ୍କ ନିକଟରେ ଇସଲାମ (ଅର୍ଥାତ୍ ସମ୍ପୂର୍ଣ୍ଣ ଆଜ୍ଞାପାଳନ) ହି ପ୍ରକୃତ ଧର୍ମ ଅଟେ ; ଏବଂ କେବଳ ସେହି ଲୋକମାନେ ଯେଉଁମାନଙ୍କୁ ଗ୍ରନ୍ଥ ଦିଆଯାଇଥିଲା ସେମାନଙ୍କ ନିକଟକୁ ଜ୍ଞାନ ଆସିବା ପରେ ପରସ୍ପର ମଧ୍ୟରେ ବିବାଦ ଯୋଗୁ ଭିନ୍ନମତ ପୋଷଣ କରିଥିଲେ ଏବଂ ଯେ ଅଲ୍ଲାଃଙ୍କ ନିଦର୍ଶନଗୁଡ଼ିକୁ ଅଗ୍ରାହ୍ୟ କରେ (ସେ ମନେରଖୁ ଯେ) ଅଲ୍ଲାଃ ତା'ର ନିଶ୍ଚୟ ଶୀଘ୍ର ହିସାବ ନେବେ ।

اِنَّ الدِّيْنَ عِنْدَ اللّٰهِ الْاِسْلَامُ ۫ وَمَا اخْتَلَفَ الَّذِيْنَ اُوْتُوا الْكِتٰبَ اِلَّا مِنْۢ بَعْدِ مَا جَآءَهُمُ الْعِلْمُ بَغْيًۢا بَيْنَهُمْ ؕ وَمَنْ يَّكْفُرْ بِاٰيٰتِ اللّٰهِ فَاِنَّ اللّٰهَ سَرِيْعُ الْحِسَابِ ﴿۲۰﴾

فَاِنْ حَآجُّوْكَ فَقُلْ اَسْلَمْتُ وَجْهِىَ لِلّٰهِ وَمَنِ اتَّبَعَنِ ؕ وَقُلْ لِّلَّذِيْنَ اُوْتُوا الْكِتٰبَ وَالْاُمِّيّٖنَ ءَاَسْلَمْتُمْ ؕ فَاِنْ اَسْلَمُوْا فَقَدِ اهْتَدَوْا ۚ وَاِنْ تَوَلَّوْا فَاِنَّمَا عَلَيْكَ الْبَلٰغُ ؕ وَاللّٰهُ بَصِيْرٌۢ بِالْعِبَادِ ﴿۲۱﴾

୨୧. ଏହା ପରେ ଯଦି ସେମାନେ ତୁମ ସହିତ ବିବାଦ କରନ୍ତି ତେବେ ତୁମେ ସେମାନଙ୍କୁ କୁହ "ଆମେ ନିଜେ ଓ ଆମର ଅନୁଗାମୀମାନେ ଅଲ୍ଲାହଙ୍କ ଆଜ୍ଞା ପାଳନ କରିବାରେ ନିଜକୁ ନିୟୋଜିତ କରିଅଛୁ" ଏବଂ ଯେଉଁମାନଙ୍କୁ ଗ୍ରନ୍ଥ ଦିଆଯାଇଛି ସେମାନଙ୍କୁ ତଥା ନିରକ୍ଷର[୧] ଲୋକମାନଙ୍କୁ କୁହ, "କ'ଣ ତୁମେମାନେ (ମଧ୍ୟ) ଆଜ୍ଞା ପାଳନକାରୀ ହେବ ?" ସୁତରାଂ ଯଦି ସେମାନେ ଆଜ୍ଞାପାଳନକାରୀ ହୁଅନ୍ତି, ତେବେ (ଜାଣି ରଖ ଯେ) ସେମାନେ ସତ୍‌ପଥ ପ୍ରାପ୍ତ ହେବେ, କିନ୍ତୁ ଯଦି ସେମାନେ ବିମୁଖ ହୁଅନ୍ତି, ତେବେ ତୁମର ଦାୟିତ୍ୱ କେବଳ (ବାର୍ତ୍ତା) ପହଞ୍ଚାଇ ଦେବା ; ଏବଂ ଅଲ୍ଲାହ ନିଜ ଭକ୍ତମାନଙ୍କ ପ୍ରତି ଲକ୍ଷ୍ୟ ରଖିଥାଆନ୍ତି ।

ରୁ : ୩

اِنَّ الَّذِيْنَ يَكْفُرُوْنَ بِاٰيٰتِ اللّٰهِ وَيَقْتُلُوْنَ النَّبِيّٖنَ بِغَيْرِ حَقٍّ ۙ وَّيَقْتُلُوْنَ الَّذِيْنَ يَاْمُرُوْنَ بِالْقِسْطِ مِنَ النَّاسِ ۙ فَبَشِّرْهُمْ بِعَذَابٍ اَلِيْمٍ ﴿۲۲﴾

୨୨. ଅବଶ୍ୟ ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ଅଗ୍ରାହ୍ୟ କରନ୍ତି ଓ ନବିମାନଙ୍କୁ ବିନା କାରଣରେ ହତ୍ୟା କରିବାକୁ ଚେଷ୍ଟା କରନ୍ତି ; ଏବଂ ଲୋକମାନଙ୍କ ମଧ୍ୟରେ ନ୍ୟାୟ ବିଚାର ପାଇଁ ଉପଦେଶ ଦେଉଥିବା ବ୍ୟକ୍ତିମାନଙ୍କୁ ମଧ୍ୟ ହତ୍ୟା କରିବାକୁ ଚେଷ୍ଟା କରନ୍ତି ତୁମେ ସେମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତିର ସମାଚାର ଦିଅ ।

اُولٰٓئِكَ الَّذِيْنَ حَبِطَتْ اَعْمَالُهُمْ فِى الدُّنْيَا وَالْاٰخِرَةِ ؗ وَمَا لَهُمْ مِّنْ نّٰصِرِيْنَ ﴿۲۳﴾

୨୩. ଏମାନେ ସେହି (ଲୋକ), ଯାହାଙ୍କର କର୍ମ ଇହକାଳ ଓ ପରକାଳରେ ନଷ୍ଟ ହୋଇଯିବ ; ଏବଂ ସେମାନଙ୍କର କୌଣସି ସାହାଯ୍ୟକାରୀ ରହିବେ ନାହିଁ ।

اَلَمْ تَرَ اِلَى الَّذِيْنَ اُوْتُوْا نَصِيْبًا مِّنَ الْكِتٰبِ يُدْعَوْنَ اِلٰى كِتٰبِ اللّٰهِ لِيَحْكُمَ بَيْنَهُمْ ثُمَّ يَتَوَلّٰى فَرِيْقٌ مِّنْهُمْ وَهُمْ مُّعْرِضُوْنَ ﴿۲۴﴾

୨୪. ଯେଉଁମାନଙ୍କୁ ଧର୍ମ ବିଧାନର ଏକ ଅଂଶ ଦିଆଯାଇଅଛି କ'ଣ ତୁମଙ୍କୁ ସେମାନଙ୍କ ବିଷୟରେ ଜଣା ନାହିଁ ? ଯେବେ ସେମାନଙ୍କୁ ଅଲ୍ଲାହଙ୍କ ଗ୍ରନ୍ଥ ଆଡ଼କୁ ଡକାଯାଏ ଯଦ୍ୱାରା ତାହା ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରିଦେବ, ତେବେ ସେମାନଙ୍କ ମଧ୍ୟରୁ କେତେକ (ତହିଁରୁ) ବିମୁଖ ହୋଇ ଚାଲିଯାଆନ୍ତି ।

ذٰلِكَ بِاَنَّهُمْ قَالُوْا لَنْ تَمَسَّنَا النَّارُ اِلَّآ اَيَّامًا مَّعْدُوْدٰتٍ ۪ وَّغَرَّهُمْ فِىْ دِيْنِهِمْ مَّا كَانُوْا يَفْتَرُوْنَ ﴿۲۵﴾

୨୫. ଏହି ବିମୁଖତା ଏଥିଯୋଗୁ ହୁଏ ଯେ ସେମାନେ କହନ୍ତି ; "କେତେକ ନିର୍ଦ୍ଦିଷ୍ଟ ଦିନ ବ୍ୟତୀତ (ନରକର) ଅଗ୍ନି ଆମକୁ କଦାପି ସ୍ପର୍ଶ କରିବ ନାହିଁ ;" ଏବଂ ସେମାନଙ୍କର ଯାହା କିଛି ମନଗଢ଼ା ଚିନ୍ତାଧାରା ଅଛି ତାହା ସେମାନଙ୍କୁ ସେମାନଙ୍କ ଧର୍ମ ସଂକ୍ରାନ୍ତରେ ପ୍ରତାରିତ କରିଅଛି ।

---

୧. ଅର୍ଥାତ ଯେଉଁମାନେ ଅଲ୍ଲାହଙ୍କ ଠାରୁ ପ୍ରେରିତ କୌଣସି ଧର୍ମପୁସ୍ତକ ଅନୁସରଣ କରନ୍ତି ନାହିଁ ।

فَكَيْفَ اِذَا جَمَعْنٰهُمْ لِيَوْمٍ لَّا رَيْبَ فِيْهِ ۣ وَوُفِّيَتْ كُلُّ نَفْسٍ مَّا كَسَبَتْ وَهُمْ لَا يُظْلَمُوْنَ ﴿٢٦﴾

୨୬. ସୁତରାଂ ଯେଉଁ ଦିନର ଆଗମନ ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ, ସେହିଦିନ ଯେବେ ଆମେ ସେମାନଙ୍କୁ ଏକତ୍ରିତ କରିବୁ, ସେମାନଙ୍କର ଅବସ୍ଥା କ'ଣ ହେବ ଏବଂ ପ୍ରତ୍ୟେକ ବ୍ୟକ୍ତି ଯାହା ଉପାର୍ଜନ କରିଥିବ (ସେହିଦିନ) ତାହାକୁ ପୂର୍ଣ୍ଣମାତ୍ରାରେ ଦେଇ ଦିଆଯିବ ଓ ସେମାନଙ୍କ ପ୍ରତି କୌଣସି ଅନ୍ୟାୟ କରାଯିବ ନାହିଁ ।

قُلِ اللّٰهُمَّ مٰلِكَ الْمُلْكِ تُؤْتِي الْمُلْكَ مَنْ تَشَآءُ وَتَنْزِعُ الْمُلْكَ مِمَّنْ تَشَآءُ ۡ وَتُعِزُّ مَنْ تَشَآءُ وَتُذِلُّ مَنْ تَشَآءُ ؕ بِيَدِكَ الْخَيْرُ ؕ اِنَّكَ عَلٰى كُلِّ شَيْءٍ قَدِيْرٌ ﴿٢٧﴾

୨୭. ତୁମେ କୁହ "ହେ ଅଲ୍ଲାହ ! ତୁମେ ସକଳ ରାଜ୍ୟର ଅଧୀଶ୍ୱର, ତୁମେ ଯାହାକୁ ଇଚ୍ଛା ରାଜତ୍ୱ ପ୍ରଦାନକର ଏବଂ ଯାହାଠାରୁ ଇଚ୍ଛା ରାଜତ୍ୱ ଛଡାଇ ନିଅ ; ତୁମେ ଯାହାକୁ ଇଚ୍ଛା ସମ୍ମାନିତ କର ଏବଂ ଯାହାକୁ ଇଚ୍ଛା ଅପମାନିତ କର ; ସକଳ କଲ୍ୟାଣ ତୁମ ହସ୍ତରେ ରହିଅଛି ; ଏବଂ ବାସ୍ତବରେ ତୁମେ ପ୍ରତ୍ୟେକ ବିଷୟ କରିବାକୁ ସକ୍ଷମ ।"

تُوْلِجُ الَّيْلَ فِي النَّهَارِ وَتُوْلِجُ النَّهَارَ فِي الَّيْلِ ۡ وَتُخْرِجُ الْحَيَّ مِنَ الْمَيِّتِ وَتُخْرِجُ الْمَيِّتَ مِنَ الْحَيِّ ۡ وَتَرْزُقُ مَنْ تَشَآءُ بِغَيْرِ حِسَابٍ ﴿٢٨﴾

୨୮. "ତୁମେ ରାତ୍ରିକୁ ଦିବସରେ ପ୍ରବେଶ କରାଅ ଏବଂ ଦିବସକୁ ରାତ୍ରିରେ ପ୍ରବେଶ କରାଅ ; ଏବଂ ନିର୍ଜୀବରୁ ସଜୀବକୁ ବାହାର କରାଅ ଓ ସଜୀବରୁ ନିର୍ଜୀବକୁ ବାହାର କରାଅ ; ଏବଂ ଯାହାକୁ ଇଚ୍ଛା ତାହାକୁ ଅପରିମିତ ପ୍ରଦାନ କର ।"

لَا يَتَّخِذِ الْمُؤْمِنُوْنَ الْكٰفِرِيْنَ اَوْلِيَآءَ مِنْ دُوْنِ الْمُؤْمِنِيْنَ ۚ وَمَنْ يَّفْعَلْ ذٰلِكَ فَلَيْسَ مِنَ اللّٰهِ فِيْ شَيْءٍ اِلَّآ اَنْ تَتَّقُوْا مِنْهُمْ تُقٰىةً ؕ وَيُحَذِّرُكُمُ اللّٰهُ نَفْسَهٗ ؕ وَاِلَى اللّٰهِ الْمَصِيْرُ ﴿٢٩﴾

୨୯. ବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ ଛାଡ଼ି ଅବିଶ୍ୱାସକାରୀଙ୍କ ସହିତ ବନ୍ଧୁତା ସ୍ଥାପନ ନ କରନ୍ତୁ ; ବରଂ ସେମାନଙ୍କ ଠାରୁ ସମ୍ପୂର୍ଣ୍ଣଭାବେ ଦୂରେଇ ରହିବା ତୁମମାନଙ୍କ ପକ୍ଷରେ ଉଚିତ ହେବ ; ଏବଂ (ତୁମମାନଙ୍କ ମଧ୍ୟରୁ) ଯେଉଁ ବ୍ୟକ୍ତି ଏପରି କରିବ ତାହାର ଅଲ୍ଲାହଙ୍କ ସହିତ କୌଣସି ବିଷୟରେ ମଧ୍ୟ (କୌଣସି) ସମ୍ପର୍କ ରହିବ ନାହିଁ ; ଏବଂ ଅଲ୍ଲାହ ତୁମମାନଙ୍କୁ ନିଜ ସମ୍ବନ୍ଧରେ ସାବଧାନ କରାଉଛନ୍ତି ଏବଂ '(ତୁମମାନଙ୍କୁ) ଅଲ୍ଲାହଙ୍କ ନିକଟକୁ ଫେରିବାକୁ ହେବ ।

قُلْ اِنْ تُخْفُوْا مَا فِيْ صُدُوْرِكُمْ اَوْ تُبْدُوْهُ يَعْلَمْهُ اللّٰهُ ؕ وَيَعْلَمُ مَا فِي السَّمٰوٰتِ وَمَا فِي الْاَرْضِ ؕ وَاللّٰهُ عَلٰى كُلِّ شَيْءٍ قَدِيْرٌ ﴿٣٠﴾

୩୦. ତୁମେ (ସେମାନଙ୍କୁ) କୁହ, "ତୁମମାନଙ୍କ ହୃଦୟରେ ଯାହାକିଛି ଅଛି ତୁମେମାନେ ତାହାକୁ ଗୋପନ ରଖ ବା ପ୍ରକାଶ କର ଅଲ୍ଲାହ ତାହା ଜାଣନ୍ତି, ଏବଂ ଯାହାକିଛି ଆକାଶରେ ଅଛି ଓ ଯାହାକିଛି ପୃଥିବୀରେ ଅଛି ଅଲ୍ଲାହ ତାହାକୁ ମଧ୍ୟ ଜାଣନ୍ତି, ଏବଂ ଅଲ୍ଲାହ ପ୍ରତ୍ୟେକ ବିଷୟ କରିବାକୁ ସକ୍ଷମ ।"

يَوْمَ تَجِدُ كُلُّ نَفْسٍ مَّا عَمِلَتْ مِنْ خَيْرٍ مُّحْضَرًا ۚۖ وَّمَا عَمِلَتْ مِنْ سُوْٓءٍ ۚ تَوَدُّ لَوْ اَنَّ بَيْنَهَا وَبَيْنَهٗٓ اَمَدًا ۢ بَعِيْدًا ؕ وَيُحَذِّرُكُمُ اللّٰهُ نَفْسَهٗ ؕ وَاللّٰهُ رَءُوْفٌ ۢ بِالْعِبَادِ ﴿٣١﴾ ع ٣

୩୧. ସେହି ଦିନକୁ ଭୟକର ଯେଉଁଦିନ ପ୍ରତ୍ୟେକ ବ୍ୟକ୍ତି ନିଜ କୃତ ପ୍ରତ୍ୟେକ ପୁଣ୍ୟକୁ ଓ ପାପକୁ ନିଜ ସମ୍ମୁଖରେ ଦେଖିବାକୁ ପାଇବ ସେ ଇଚ୍ଛା କରିବ ଯେ ସେହି ପାପ ଓ ତା'ମଧ୍ୟରେ ଏକ ବଡ଼ ବ୍ୟବଧାନ ରହନ୍ତା କି ! ଏବଂ ଅଲ୍ଲାହ ତୁମମାନଙ୍କୁ ନିଜ ଶାସ୍ତି ଦ୍ୱାରା ଭୟ ପ୍ରଦର୍ଶନ କରାନ୍ତି ଓ ଅଲ୍ଲାହ ଭକ୍ତମାନଙ୍କ ପ୍ରତି ଅତ୍ୟନ୍ତ ଦୟାଶୀଳ ।

ରୁ : ୪

୩୨. ତୁମେ କୁହ, "(ହେ ଲୋକମାନେ !) ଯଦି ତୁମେମାନେ ଅଲ୍ଲାହଙ୍କୁ ପ୍ରେମ କରୁଥାଅ ତେବେ ଆମକୁ ଅନୁସରଣ କର ; ତାହାହେଲେ ଅଲ୍ଲାହ ତୁମମାନଙ୍କୁ ପ୍ରେମ କରିବେ ଏବଂ ତୁମମାନଙ୍କର ଦୋଷ କ୍ଷମା କରିବେ ;" ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ(ଓ)ସଦା କରୁଣାମୟ ।

قل ان كنتم تحبون الله فاتبعوني يحببكم الله ويغفر لكم ذنوبكم والله غفور رحيم ﴿٣٢﴾

୩୩. ତୁମେ କୁହ, "ତୁମେମାନେ ଅଲ୍ଲାହଙ୍କର ଏବଂ ତାହାଙ୍କ ରସୁଲଙ୍କର ଆଜ୍ଞା ପାଳନକର ;" କିନ୍ତୁ ଯଦି ସେମାନେ ବିମୁଖ ହୁଅନ୍ତି ତେବେ (ମନେରଖ ଯେ) ଅଲ୍ଲାହ ଅବିଶ୍ୱାସକାରୀମାନଙ୍କୁ କଦାପି ପ୍ରେମ କରନ୍ତି ନାହିଁ ।

قل اطيعوا الله والرسول فان تولوا فان الله لا يحب الكفرين ﴿٣٣﴾

୩୪. ଅଲ୍ଲାହ ଆଦମ୍ ଓ ନୁହଙ୍କୁ ତଥା ଇବ୍ରାହିମ ଓ ଇମରାନଙ୍କ ବଂଶଧରମାନଙ୍କୁ ସାରା ଜଗତରେ[୧] ଶ୍ରେଷ୍ଠତା ପ୍ରଦାନ କରିଥିଲେ ।

ان الله اصطفى ادم ونوحا وال ابرهيم وال عمرن على العلمين ﴿٣٤﴾

୩୫. (ସେ) ଏପରି ଏକ ବଂଶଧରକୁ ଶ୍ରେଷ୍ଠତା (ପ୍ରଦାନ କଲେ), ଯାହାର ପରସ୍ପର ସହିତ ସାମଞ୍ଜସ୍ୟ ଥିଲା ; ଏବଂ ଅଲ୍ଲାହ ହିଁ ମହାନ ଶ୍ରୋତା(ଓ)ସର୍ବଜ୍ଞ ।

ذرية بعضها من بعض والله سميع عليم ﴿٣٥﴾

୩୬. (ସ୍ମରଣ କର) ଯେତେବେଳେ ଇମରାନ (ବଂଶ)ର ସ୍ତ୍ରୀ କହିଲେ, "ହେ ମୋର ପାଳନକର୍ତ୍ତା ! ମୋ ଗର୍ଭରେ ଯାହା କିଛି ଅଛି (ତାହାକୁ) ମୁକ୍ତ କରି ମୁଁ ତୁମ ନିକଟରେ ସମର୍ପଣ କରି ଦେଇଅଛି ; ସୁତରାଂ ତୁମେ (ତାହାକୁ) ମୋ ପକ୍ଷରୁ ଯେ କୌଣସି ପ୍ରକାରେ ଗ୍ରହଣ କର ;" ବାସ୍ତବରେ ତୁମେ ହିଁ ମହାନ୍ ଶ୍ରୋତା(ଓ)ସର୍ବଜ୍ଞ ।

اذ قالت امرات عمرن رب اني نذرت لك ما في بطني محررا فتقبل مني انك انت السميع العليم ﴿٣٦﴾

୩୭. ତାହାପରେ ସେ ତାହାକୁ ପ୍ରସବ କରିସାରି କହିଲେ, "ହେ ମୋର ପାଳନକର୍ତ୍ତା ! ମୁଁ ତାହାକୁ ଏକ କନ୍ୟାରୂପେ ପ୍ରସବ କରିଅଛି", ଏବଂ ସେ ଯାହା ପ୍ରସବ କରିଥିଲେ ଅଲ୍ଲାହ ତାହା ଭଲଭାବରେ ଜାଣିଥିଲେ ; ଏବଂ ତାହାଙ୍କର (ଇପ୍ସିତ) ପୁତ୍ର (ସେହି) କନ୍ୟା ସଦୃଶ ନୁହେଁ ଏବଂ (କହିଲେ) "ମୁଁ ତାହାର ନାମ ମରିୟମ ରଖିଅଛି, ଏବଂ ମୁଁ ତାହାକୁ ଓ ତାହାର ସନ୍ତାନଙ୍କୁ ଅଭିଶପ୍ତ ସଇତାନ କବଳରୁ ତୁମ ଆଶ୍ରୟରେ ଛାଡ଼ି ଦେଉଅଛି ।"

فلما وضعتها قالت رب اني وضعتها انثى والله اعلم بما وضعت وليس الذكر كالانثى واني سميتها مريم واني اعيذها بك وذريتها من الشيطن الرجيم ﴿٣٧﴾

୩୮. ତେଣୁ ତାହାଙ୍କ ପାଳନକର୍ତ୍ତା ତାହାକୁ ଉତ୍ତମ ରୂପେ ଗ୍ରହଣ କଲେ ; ଏବଂ ସୁଚାରୁରୂପେ ବିକଶିତ କରାଇଲେ ଏବଂ ଜକରିୟା ତାହାଙ୍କ ଅଭିଭାବକ ହେଲେ ; ଯେବେ ବି ଜକରିୟା ତାଙ୍କ ନିକଟକୁ ଗୃହ ମଧ୍ୟସ୍ଥ ସର୍ବୋତ୍କୃଷ୍ଟ ସ୍ଥାନକୁ ଯାଉଥିଲେ

فتقبلها ربها بقبول حسن وانبتها نباتا حسنا وكفلها زكريا كلما دخل عليها زكريا المحراب

୧. ଅର୍ଥାତ୍ ତତ୍କାଳୀନ ଲୋକମାନଙ୍କ ଉପରେ ।

وَجَدَ عِنْدَهَا رِزْقًا ۚ قَالَ يَٰمَرْيَمُ أَنَّىٰ لَكِ هَٰذَا ۖ قَالَتْ هُوَ مِنْ عِنْدِ اللَّهِ ۖ إِنَّ اللَّهَ يَرْزُقُ مَنْ يَشَاءُ بِغَيْرِ حِسَابٍ ﴿٣٨﴾

(ସେତେବେଳେ) ତାଙ୍କ ନିକଟରେ କିଛି (ନା କିଛି) ଖାଦ୍ୟ ପଦାର୍ଥ ଥିବାର ଦେଖୁଥିଲେ ; (ସୁତରାଂ ଏପରି ଦେଖି ଦିନେ) ସେ କହିଲେ, "ହେ ମରିୟମ ! ଏହା ତୁମ୍ ପାଇଁ କେଉଁଠାରୁ ଆସିଅଛି ?" ସେ କହିଲେ, "ଏହା ଅଲ୍ଲାହଙ୍କ ସମୀପରୁ; " ବାସ୍ତବରେ ଅଲ୍ଲାହ ଯାହାକୁ ଇଚ୍ଛା (ତାହାକୁ) ଅପରିମିତ ପ୍ରଦାନ କରନ୍ତି ।

هُنَالِكَ دَعَا زَكَرِيَّا رَبَّهُ ۖ قَالَ رَبِّ هَبْ لِي مِنْ لَدُنْكَ ذُرِّيَّةً طَيِّبَةً ۖ إِنَّكَ سَمِيعُ الدُّعَاءِ ﴿٣٩﴾

୩୯. ତା'ପରେ ଜକରିୟା ନିଜ ପାଳନକର୍ତ୍ତାଙ୍କୁ ପ୍ରାର୍ଥନା-ପୂର୍ବକ କହିଲେ, "ହେ ଆମ୍ଭ ପାଳନକର୍ତ୍ତା ! ଆମ୍ଭଙ୍କୁ ତୁମ୍ଭ ସମୀପରୁ ଏକ ପବିତ୍ର ସନ୍ତାନ ପ୍ରଦାନ କର ; ବାସ୍ତବରେ ତୁମ୍ଭେ ହିଁ ପ୍ରାର୍ଥନାକୁ ଗ୍ରହଣ କରିଥାଅ ।

فَنَادَتْهُ الْمَلَٰٓئِكَةُ وَهُوَ قَائِمٌ يُصَلِّي فِي الْمِحْرَابِ أَنَّ اللَّهَ يُبَشِّرُكَ بِيَحْيَىٰ مُصَدِّقًا بِكَلِمَةٍ مِنَ اللَّهِ وَسَيِّدًا وَحَصُورًا وَنَبِيًّا مِنَ الصَّالِحِينَ ﴿٤٠﴾

୪୦. ଯେତେବେଳେ ସେ ଗୃହ ମଧ୍ୟସ୍ଥ ଉତ୍କୃଷ୍ଟ ସ୍ଥାନରେ ନମାଜ ପାଠ କରୁଥିଲେ ସେତେବେଳେ ଦେବଦୂତମାନେ ତାହାଙ୍କୁ (ସମ୍ବୋଧନ କରି) କହିଲେ, "ଅଲ୍ଲାହ ୟହିୟାଙ୍କ ସମ୍ବନ୍ଧରେ ତୁମ୍ଭଙ୍କୁ ସୁସମାଚାର ଦେଉଛନ୍ତି ଯେ କି ଅଲ୍ଲାହଙ୍କ ଏକ ବାଣୀକୁ ପ୍ରମାଣିତ କରିବେ ଓ ଦଳପତି, ସଂଯମୀ ତଥା ଧର୍ମନିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରୁ (ଉନ୍ନତି କରି) ନବି ହେବେ ।

قَالَ رَبِّ أَنَّىٰ يَكُونُ لِي غُلَامٌ وَقَدْ بَلَغَنِيَ الْكِبَرُ وَامْرَأَتِي عَاقِرٌ ۖ قَالَ كَذَٰلِكَ اللَّهُ يَفْعَلُ مَا يَشَاءُ ﴿٤١﴾

୪୧. ସେ କହିଲେ, "ହେ ଆମ୍ଭ ପାଳନକର୍ତ୍ତା" ! ଯେତେବେଳେ କି ମୋର ବାର୍ଦ୍ଧକ୍ୟ ଆସିଯାଇଛି ଓ ପତ୍ନୀ ବନ୍ଧ୍ୟା ଅଟେ ସେତେବେଳେ କିପରି ମୋର ପୁତ୍ର (ସନ୍ତାନ) ହେବ ? (ସେ) କହିଲେ, "ଅଲ୍ଲାହ ସେହିପରି (କରିବାକୁ ସକ୍ଷମ) ଅଟନ୍ତି ; ସେ ଯାହା ଇଚ୍ଛା କରନ୍ତି ତାହା କରନ୍ତି ।"

قَالَ رَبِّ اجْعَلْ لِي آيَةً ۖ قَالَ آيَتُكَ أَلَّا تُكَلِّمَ النَّاسَ ثَلَاثَةَ أَيَّامٍ إِلَّا رَمْزًا ۗ وَاذْكُرْ رَبَّكَ كَثِيرًا وَسَبِّحْ بِالْعَشِيِّ وَالْإِبْكَارِ ﴿٤٢﴾ ع

୪୨. ପୁନଶ୍ଚ ସେ କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭକୁ କୌଣସି ଆଦେଶ ପ୍ରଦାନ କର "; ଅଲ୍ଲାହ କହିଲେ, "ତୁମ୍ଭ ପାଇଁ ଏହି ଆଦେଶ ଯେ ତୁମ୍ଭେ ତିନି ଦିନ ପର୍ଯ୍ୟନ୍ତ ସଙ୍କେତ ଛଡ଼ା ଲୋକମାନଙ୍କ ସହିତ କଥାବାର୍ତ୍ତା କରିବ ନାହିଁ ; ଏବଂ ନିଜର ପାଳନକର୍ତ୍ତାଙ୍କୁ ବିଶେଷଭାବରେ ସ୍ମରଣ କରିବ ଏବଂ ସନ୍ଧ୍ୟା ଓ ସକାଳେ ତାହାଙ୍କର ଗୁଣଗାନ କରିବ ।"

ରୁ:୪

وَإِذْ قَالَتِ الْمَلَٰٓئِكَةُ يَٰمَرْيَمُ إِنَّ اللَّهَ اصْطَفَاكِ وَطَهَّرَكِ وَاصْطَفَاكِ عَلَىٰ نِسَاءِ الْعَالَمِينَ ﴿٤٣﴾

୪୩. ଏବଂ (ସେହି ସମୟକୁ ସ୍ମରଣକର) ଯେତେବେଳେ ଦେବଦୂତମାନେ କହିଲେ, "ହେ ମରିୟମ ! ନିଶ୍ଚୟ ଅଲ୍ଲାହ ତୁମ୍ଭଙ୍କୁ ସମ୍ମାନିତ ଓ ପବିତ୍ର କରିଅଛନ୍ତି ; ଏବଂ ତୁମ୍ଭଙ୍କୁ ସମସ୍ତ ଜଗତର ନାରୀମାନଙ୍କ ମଧ୍ୟରୁ ମନୋନୀତ କରିଅଛନ୍ତି ।"

يَٰمَرْيَمُ اقْنُتِي لِرَبِّكِ وَاسْجُدِي وَارْكَعِي مَعَ الرَّاكِعِينَ ﴿٤٤﴾

୪୪. "ହେ ମରିୟମ୍ ! ତୁମ୍ଭେ ନିଜ ପାଳନକର୍ତ୍ତାଙ୍କ ଆଜ୍ଞାକାରିଣୀ ହୁଅ ଓ ସିଜଦା କର ; ଏବଂ କେବଳ ଅଲ୍ଲାହଙ୍କ ଉପାସନାକାରୀମାନଙ୍କ ସହିତ ମିଳିତ ହୋଇ ଉପାସନା କର ।"

୪୫. ଏହା ଅଦୃଷ୍ଟ ସମାଚାରମାନଙ୍କ[୧] ମଧ୍ୟରୁ (ଗୋଟିଏ ସମାଚାର) ଅଟେ ଯାହାକୁ ଆମେ ତୁମ ପ୍ରତି ଓହି (ମାଧ୍ୟମରେ ପ୍ରକାଶିତ) କରିଅଛୁ ; ଏବଂ ଯେତେବେଳେ ସେମାନେ ନିଜ ଶରକୁ ଏଥିଯୋଗୁଁ ନିକ୍ଷେପ କରୁଥିଲେ ଯେ ସେମାନଙ୍କ ମଧ୍ୟରୁ କିଏ ମରିୟମଙ୍କର ସଂରକ୍ଷକ ହେବ ସେତେବେଳେ ତୁମେ ସେମାନଙ୍କ ନିକଟରେ ନ ଥିଲ ; ଏବଂ ସେମାନେ (ପରସ୍ପର ମଧ୍ୟରେ) ବିବାଦ କରୁଥିବା ସମୟରେ ମଧ୍ୟ ତୁମେ ସେମାନଙ୍କ ନିକଟରେ ନ ଥିଲ ।

ذٰلِكَ مِنْ اَنْۢبَآءِ الْغَيْبِ نُوْحِيْهِ اِلَيْكَ ؕ وَمَا كُنْتَ لَدَيْهِمْ اِذْ يُلْقُوْنَ اَقْلَامَهُمْ اَيُّهُمْ يَكْفُلُ مَرْيَمَ ۪ وَمَا كُنْتَ لَدَيْهِمْ اِذْ يَخْتَصِمُوْنَ ﴿٤٥﴾

୪୬. (ପୁନଶ୍ଚ ସେ ସମୟକୁ ମଧ୍ୟ ସ୍ମରଣକର) ଯେତେବେଳେ ଦେବଦୂତମାନେ କହିଲେ, "ହେ ମରିୟମ ! ନିଶ୍ଚୟ ଅଲ୍ଲାହ ତୁମଙ୍କୁ ନିଜର ଏକ ବାଣୀ ମାଧ୍ୟମରେ (ଏକ ପୁତ୍ର ସମ୍ପର୍କରେ) ସୁସମାଚାର ଦେଉଅଛନ୍ତି ; ତାହାଙ୍କର ନାମ ମରିୟମ–ନନ୍ଦନ ଇସାମସିହ୍[୨] ହେବ ଯେ କି ଇହକାଳରେ ଓ ପରକାଳରେ ସମ୍ମାନିତ ହେବେ ; ଓ (ଅଲ୍ଲାହଙ୍କ) ସାନ୍ନିଧ୍ୟ ଲାଭକରିଥିବା ବ୍ୟକ୍ତିମାନଙ୍କର ଅନ୍ତର୍ଗତ ହେବେ ।

اِذْ قَالَتِ الْمَلٰٓئِكَةُ يٰمَرْيَمُ اِنَّ اللّٰهَ يُبَشِّرُكِ بِكَلِمَةٍ مِّنْهُ ۖ اسْمُهُ الْمَسِيْحُ عِيْسَى ابْنُ مَرْيَمَ وَجِيْهًا فِى الدُّنْيَا وَالْاٰخِرَةِ وَمِنَ الْمُقَرَّبِيْنَ ﴿٤٦﴾

୪୭. ସେ ଦୋଳି ଶଯ୍ୟାରେ (ଅର୍ଥାତ୍ ଶୈଶବ ଅବସ୍ଥାରେ) ଓ ମଧ୍ୟମ ବୟସର ହୋଇଥିବା ବେଳେ ମଧ୍ୟ ଲୋକମାନଙ୍କ ସହିତ କଥାବାର୍ତ୍ତା କରିବ ; ଏବଂ ସେ ଧର୍ମନିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ ଗଣ୍ୟ ହେବ ।

وَيُكَلِّمُ النَّاسَ فِى الْمَهْدِ وَكَهْلًا وَّمِنَ الصّٰلِحِيْنَ ﴿٤٧﴾

୪୮. ସେ (ମରିୟମ) କହିଲେ, "ହେ ଆମର ପାଳନକର୍ତ୍ତା ! କିପରି ଆମର ପୁତ୍ର ହେବ ଯେତେବେଳେ କି କୌଣସି ପୁରୁଷ ଆମକୁ ସ୍ପର୍ଶ କରିନାହିଁ ?" (ଅଲ୍ଲାହ କହିଲେ), "ଅଲ୍ଲାହଙ୍କ କାର୍ଯ୍ୟ ଏପରି ହୁଏ ; ସେ ଯାହା ଚାହାନ୍ତି ସୃଷ୍ଟି କରିଥାଆନ୍ତି ;" (ଏବଂ) ଯେତେବେଳେ ସେ କୌଣସି ବିଷୟରେ ନିଷ୍ପତ୍ତି କରି ନିଅନ୍ତି ସେ ସଂକ୍ରାନ୍ତରେ ଏତିକି କହନ୍ତି "ହୋଇ ଯାଅ," ଏବଂ ତାହା (ତତ୍‌କ୍ଷଣାତ୍) ହୋଇଯାଏ ।

قَالَتْ رَبِّ اَنّٰى يَكُوْنُ لِىْ وَلَدٌ وَّلَمْ يَمْسَسْنِىْ بَشَرٌ ؕ قَالَ كَذٰلِكِ اللّٰهُ يَخْلُقُ مَا يَشَآءُ ؕ اِذَا قَضٰٓى اَمْرًا فَاِنَّمَا يَقُوْلُ لَهٗ كُنْ فَيَكُوْنُ ﴿٤٨﴾

୪୯. ଏବଂ (ଏହି ସୁସମାଚାର ମଧ୍ୟ ଦେଲେ ଯେ ଅଲ୍ଲାହ) ତାହାଙ୍କୁ ଗ୍ରନ୍ଥ ଓ ତତ୍ତ୍ୱ ଏବଂ ତୌରାତ ଓ ଇଞ୍ଜିଲ ଶିଖାଇବେ ;

وَيُعَلِّمُهُ الْكِتٰبَ وَالْحِكْمَةَ وَالتَّوْرٰىةَ وَالْاِنْجِيْلَ ﴿٤٩﴾

୧. ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥମାନଙ୍କରେ ମରିୟମଙ୍କ ସମ୍ବନ୍ଧରେ ଯେଉଁସବୁ ବୃତ୍ତାନ୍ତ ନ ଥିଲା ସେସବୁକୁ କୋରାନ ଗ୍ରନ୍ଥ ଲୋକଲୋଚନକୁ ଆଣିଛି । ସେଥିଯୋଗୁଁ ଏଗୁଡ଼ିକୁ 'ଅଦୃଷ୍ଟ ସମାଚାର' ବୋଲି କୁହାଯାଇଛି । ପରବର୍ତ୍ତୀ ଆୟତରୁ ଜଣାପଡୁଛି ଯେ ମରିୟମ ଉପାସନା ପୀଠରେ ଏକ ଉତ୍ସର୍ଗୀକୃତ ଜୀବନଯାପନ କରୁଥିବାବେଳେ ଗର୍ଭବତୀ ହୋଇଥିଲେ । ଏପ୍ରକାର ଚମକପ୍ରଦ ବିଷୟ ଅବଗତ ହେବାପରେ ଧର୍ମଯାଜକମାନେ ପ୍ରକୃତ ତଥ୍ୟ ଜାଣିବାପାଇଁ ଆଗ୍ରହୀ ହୋଇପଡ଼ିଲେ । ସେମାନେ ଏ ବିଷୟକୁ ବ୍ୟଭିଚାର ମନେକରି ପରସ୍ପର ମଧ୍ୟରେ ବିବାଦ କରିବାକୁ ଲାଗିଲେ । ପରିଶେଷରେ ବାଇବେଲର ବର୍ଣ୍ଣନା ଅନୁଯାୟୀ ସେମାନେ ମରିୟମଙ୍କୁ ଯୋସେଫ ନାମକ ଜଣେ ବଢ଼େଇ ସହିତ ବିବାହ କରାଇଦେଲେ । ଏହା ଗୋପନରେ କରାଯାଇଥିବାରୁ ପବିତ୍ର କୋରାନ୍ ଏ ବିଷୟରେ ଆଲୋକପାତ କରିଛି ।

୨. କୌଣସି ପୁରୁଷ ସହିତ ମରିୟମଙ୍କର ଦୈହିକ ସମ୍ପର୍କ ନ ଥିଲେ ମଧ୍ୟ ଅଲ୍ଲାହଙ୍କ ବାଣୀ ବା ଆଦେଶ ମାଧ୍ୟମରେ ଇସା (ଯୀଶୁ) ଜନ୍ମଗ୍ରହଣ କରିଥିଲେ । ସେଥିଯୋଗୁଁ ସେ ଯଥାର୍ଥରେ ତାଙ୍କ ମାତାଙ୍କ ନାମାନୁସାରେ ଅଭିହିତ ହୋଇଛନ୍ତି ।

ଵَرَسُولًا إِلَىٰ بَنِي إِسْرَائِيلَ أَنِّي قَدْ جِئْتُكُم بِآيَةٍ مِّن رَّبِّكُمْ ۖ أَنِّي أَخْلُقُ لَكُم مِّنَ الطِّينِ كَهَيْئَةِ الطَّيْرِ فَأَنفُخُ فِيهِ فَيَكُونُ طَيْرًا بِإِذْنِ اللَّهِ ۖ وَأُبْرِئُ الْأَكْمَهَ وَالْأَبْرَصَ وَأُحْيِي الْمَوْتَىٰ بِإِذْنِ اللَّهِ ۖ وَأُنَبِّئُكُم بِمَا تَأْكُلُونَ وَمَا تَدَّخِرُونَ فِي بُيُوتِكُمْ ۚ إِنَّ فِي ذَٰلِكَ لَآيَةً لَّكُمْ إِن كُنتُم مُّؤْمِنِينَ ﴿٥٠﴾

୫୦. ଏବଂ ତାହାଙ୍କୁ ଇସ୍ରାଇଲୀୟ ସନ୍ତାନମାନଙ୍କ ନିକଟକୁ ରସୁଲ କରି (ଏହି ସମ୍ବାଦ ସହିତ) ପଠାଇବେ ଯେ "ଆମ୍ଭେ ତୁମମାନଙ୍କ ପାଳନକର୍ତ୍ତାଙ୍କ ନିକଟରୁ ଏକ ନିଦର୍ଶନ ସହିତ ତୁମମାନଙ୍କ ନିକଟକୁ ଆସିଅଛୁ, (ତାହା ହେଉଛି) ଆମ୍ଭେ ତୁମମାନଙ୍କ ପାଇଁ ମାଟିରୁ ପକ୍ଷୀ ସଦୃଶ ଗଢି ତହିଁରେ ଏକ ନୂତନ ପ୍ରାଣବାୟୁ ଫୁଙ୍କି ଦେବୁ[1] ଯଦ୍ଦ୍ୱାରା ତାହା ଅଲ୍ଲାହ୍‌ଙ୍କ ଆଦେଶାନୁଯାୟୀ ଉଡ଼ିବାର ଯୋଗ୍ୟ ହେବ ; ଏବଂ ଆମ୍ଭେ ଅଲ୍ଲାହ୍‌ଙ୍କର ଆଦେଶାନୁଯାୟୀ ଅନ୍ଧ ଓ କୁଷ୍ଠରୋଗୀଙ୍କୁ ଆରୋଗ୍ୟ କରିବୁ ; ଓ ମୃତବ୍ୟକ୍ତିଙ୍କୁ ଜୀବିତ କରିବୁ[2] ; ଏବଂ ତୁମେମାନେ ଯାହା ଭୋଜନ କରିବ ଓ ଯାହା ନିଜ ଗୃହରେ ସଂଚୟ କରିବ ସେ ବିଷୟରେ ତୁମ୍ଭଙ୍କୁ ଜଣାଇଦେବୁ ; ତୁମେମାନେ ବିଶ୍ୱାସକାରୀ ହୋଇଥିଲେ ତୁମମାନଙ୍କ ପାଇଁ ନିଶ୍ଚୟ ଏଥିରେ ଏକ ନିଦର୍ଶନ ଅଛି ।"

وَمُصَدِّقًا لِّمَا بَيْنَ يَدَيَّ مِنَ التَّوْرَاةِ وَلِأُحِلَّ لَكُم بَعْضَ الَّذِي حُرِّمَ عَلَيْكُمْ ۚ وَجِئْتُكُم بِآيَةٍ مِّن رَّبِّكُمْ فَاتَّقُوا اللَّهَ وَأَطِيعُونِ ﴿٥١﴾

୫୧. ଏବଂ "(ଆମ୍ଭେ ସେହି ଓହିକୁ) ଯାହା ଆମ୍ଭ ପୂର୍ବରୁ (ଆସି) ଅଛି ଅର୍ଥାତ୍ ତୌରାତ୍‌ର ସତ୍ୟତା ପ୍ରତିପାଦନ କରିବାକୁ ଏବଂ ଯେଉଁ କେତେକ ବିଷୟ ତୁମମାନଙ୍କ ପାଇଁ ଅବୈଧ କରିଦିଆ ଯାଇଥିଲା[3], (ତାହାକୁ) ତୁମମାନଙ୍କ ପାଇଁ ବୈଧ କରିଦେବାକୁ (ଆସିଅଛୁ) ; ଏବଂ ଆମ୍ଭେ ତୁମମାନଙ୍କ ପାଖକୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ଏକ ନିଦର୍ଶନ ନେଇ ଆସିଅଛୁ ; ସୁତରାଂ ତୁମେମାନେ ଅଲ୍ଲାହ୍‌ଙ୍କୁ ଭୟକର ଓ ଆମ୍ଭର ଆଜ୍ଞା ପାଳନ କର ।"

إِنَّ اللَّهَ رَبِّي وَرَبُّكُمْ فَاعْبُدُوهُ ۗ هَٰذَا صِرَاطٌ مُّسْتَقِيمٌ ﴿٥٢﴾

୫୨. ନିଶ୍ଚୟ ଅଲ୍ଲାହ୍ ଆମ୍ଭର ପାଳନକର୍ତ୍ତା ଓ ତୁମମାନଙ୍କର ମଧ୍ୟ ପାଳନକର୍ତ୍ତା ଅଟନ୍ତି ; ସୁତରାଂ ତୁମେମାନେ ତାଙ୍କର ଉପାସନା କର ; ଏହା ହିଁ ସରଳମାର୍ଗ ।

---

୧. ଯେପରି ପକ୍ଷୀ ଅଣ୍ଡାକୁ ନିଜ ପାଖରେ ରଖି ଅର୍ଥାତ୍ ତାହାକୁ ଉଷୁମାଇ ଛୁଆ ବାହାରକରେ, ସେହି ପ୍ରକାରେ ଯୀଶୁ ଲୋକମାନଙ୍କ ମଧ୍ୟରୁ ପୁଣ୍ୟବାନ୍ ଲୋକଙ୍କୁ ନିଜପାଖକୁ ଆଣି ସେମାନଙ୍କୁ ଏପରି ଯୋଗ୍ୟ କରାଇବେ ଯେ ସେମାନେ ପକ୍ଷୀ ଭଳି ଉଡି ଅଲ୍ଲାହ୍‌ଙ୍କ ନିକଟକୁ ଯାଇପାରିବେ । ତେଣୁ ଯୀଶୁ ହିଁ ସ୍ରଷ୍ଟା ଓ ସେ ପକ୍ଷୀ ସୃଷ୍ଟି କରି ପାରୁଥିଲେ ଭାବିବା ଯଥାର୍ଥ ନୁହେଁ ।

୨. ସେ ଅନ୍ଧ ଓ କୁଷ୍ଠରୋଗୀମାନଙ୍କୁ ଆରୋଗ୍ୟ କରିବା ସମ୍ପର୍କରେ ମଧ୍ୟ ଅନୁରୂପ ବ୍ୟାଖ୍ୟା କରାଯାଇପାରେ । ବାଇବେଲ୍‌ରେ ଲେଖାଅଛି ଯେ ଅନ୍ଧ ଓ କୁଷ୍ଠରୋଗୀଙ୍କୁ ଇସ୍ରାଇଲମାନେ ଅସ୍ପୃଶ୍ୟ ଓ ଅଶୁଦ୍ଧ ମନେ କରୁଥିଲେ ଏବଂ ସେମାନଙ୍କୁ ଅନ୍ୟମାନଙ୍କ ସହିତ ସାମାଜିକ ସମ୍ପର୍କ ସ୍ଥାପନ କରିବା ଲାଗି ଅନୁମତି ଦେଉ ନ ଥିଲେ । କିନ୍ତୁ ଯୀଶୁ ସେହି ଲୋକମାନଙ୍କୁ ଏପ୍ରକାର ଅତ୍ୟାଚାରରୁ ମୁକ୍ତ କରିଥିଲେ । ଅବତାରମାନେ ଏକ ପ୍ରକାର ଦିବ୍ୟ ଚିକିତ୍ସକ । ସେମାନେ କେତେକଙ୍କୁ ରୋଗମୁକ୍ତ କରିଥାଆନ୍ତି । ଅର୍ଥାତ୍ ଯେଉଁମାନଙ୍କର ଦିବ୍ୟଚକ୍ଷୁ ନ ଥାଏ ସେମାନଙ୍କୁ ଚକ୍ଷୁ, ଯେଉଁମାନଙ୍କର ଆଧ୍ୟାତ୍ମିକ ବିଷୟ ଶୁଣିବାକୁ କାନ ନ ଥାଏ ସେମାନଙ୍କୁ କାନ ଓ ଯେଉଁମାନଙ୍କର ନୈତିକ ଓ ଆଧ୍ୟାତ୍ମିକ ମୃତ୍ୟୁ ହୋଇଥାଏ ସେମାନଙ୍କୁ ଜୀବନ ଦାନ କରିଥାଆନ୍ତି (ମାଥିଉ: ୧୩:୧୫ ଦ୍ରଷ୍ଟବ୍ୟ) । ସୁତରାଂ ଯୀଶୁ ଶାରୀରିକ ଦୃଷ୍ଟିରୁ ଆରୋଗ୍ୟ ପ୍ରଦାନ କରୁଥିବା ଅପେକ୍ଷା ଆଧ୍ୟାତ୍ମିକ ଦୃଷ୍ଟିରୁ ଆରୋଗ୍ୟ ପ୍ରଦାନ କରୁଥିବା ବିଷୟକୁ ଗ୍ରହଣ କରିବା ଶ୍ରେୟସ୍କର ହେବ ।

୩. ଅର୍ଥାତ୍ ତୁମମାନଙ୍କ କୁକର୍ମ ଯୋଗୁଁ ଦିବ୍ୟବାଣୀର ଆଗମନ ବନ୍ଦ ହୋଇଯାଇଥିଲା । ବର୍ତ୍ତମାନ ତାହା ମୋ ଜରିଆରେ ଜାରି କରାହେବ ।

فَلَمَّآ اَحَسَّ عِيْسٰى مِنْهُمُ الْكُفْرَ قَالَ مَنْ اَنْصَارِيْٓ اِلَى اللّٰهِ ۭ قَالَ الْحَوَارِيُّوْنَ نَحْنُ اَنْصَارُ اللّٰهِ ۚ اٰمَنَّا بِاللّٰهِ ۚ وَاشْهَدْ بِاَنَّا مُسْلِمُوْنَ ﴿٥٣﴾

୫୩. ତା'ପରେ ଯେତେବେଳେ ଇସା ସେମାନଙ୍କୁ ଅବଜ୍ଞା କରୁଥିବାର ଦେଖିଲେ ସେତେବେଳେ ସେ କହିଲେ "ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ କେଉଁ (ଲୋକ)ମାନେ ସାହାଯ୍ୟକାରୀ ହେବେ ?" ହୱାରି (ଅର୍ଥାତ୍ ତାଙ୍କ ଶିଷ୍ୟ)ମାନେ କହିଲେ "ଆମେମାନେ ଅଲ୍ଲାହ୍‌ଙ୍କର (ଧର୍ମର) ସାହାଯ୍ୟକାରୀ ; ଆମେମାନେ ଅଲ୍ଲାହ୍‌ଙ୍କ ଠାରେ ବିଶ୍ୱାସ କରିଅଛୁଁ ; ଏବଂ ତୁମେ ସାକ୍ଷୀ ରୁହ ଯେ ଆମେମାନେ ଆଜ୍ଞାପାଳନକାରୀ ଅଟୁ ।"

رَبَّنَآ اٰمَنَّا بِمَآ اَنْزَلْتَ وَاتَّبَعْنَا الرَّسُوْلَ فَاكْتُبْنَا مَعَ الشّٰهِدِيْنَ ﴿٥٤﴾

୫୪. "ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ ଯାହା କିଛି ଅବତୀର୍ଣ୍ଣ କରିଅଛ ଆମେମାନେ ତାହା ଉପରେ ବିଶ୍ୱାସ କରିଅଛୁ ; ଏବଂ ଆମେମାନେ ସେହି ରସୁଲଙ୍କର ଅନୁଗାମୀ ହୋଇଅଛୁ; ସୁତରାଂ ତୁମେ ଆମମାନଙ୍କୁ ସାକ୍ଷୀମାନଙ୍କ ମଧ୍ୟରେ ତାଲିକାଭୁକ୍ତ କରିନିଅ ।"

وَمَكَرُوْا وَمَكَرَ اللّٰهُ ۭ وَاللّٰهُ خَيْرُ الْمٰكِرِيْنَ ﴿٥٥﴾

୫୫. [1]ଏବଂ ସେମାନେ (ଅର୍ଥାତ୍ ଇସାଙ୍କର ଶତ୍ରୁମାନେ) ଯୋଜନା କଲେ ; ଏବଂ ଅଲ୍ଲାହ୍ ମଧ୍ୟ ଯୋଜନା କଲେ ; ଏବଂ ଅଲ୍ଲାହ୍ ସମସ୍ତ ଯୋଜନାକାରୀଙ୍କ ତୁଳନାରେ ସର୍ବୋତ୍ତମ ଯୋଜନାକାରୀ ।

ରୁ : ୬

اِذْ قَالَ اللّٰهُ يٰعِيْسٰٓى اِنِّىْ مُتَوَفِّيْكَ وَرَافِعُكَ اِلَيَّ وَمُطَهِّرُكَ مِنَ الَّذِيْنَ كَفَرُوْا وَجَاعِلُ الَّذِيْنَ اتَّبَعُوْكَ فَوْقَ الَّذِيْنَ كَفَرُوْٓا اِلٰى يَوْمِ الْقِيٰمَةِ ۚ ثُمَّ اِلَيَّ مَرْجِعُكُمْ فَاَحْكُمُ بَيْنَكُمْ فِيْمَا كُنْتُمْ فِيْهِ تَخْتَلِفُوْنَ ﴿٥٦﴾

୫୬. (ସେ ସମୟକୁ ସ୍ମରଣ କର) ଯେତେବେଳେ ଅଲ୍ଲାହ୍ କହିଲେ, ହେ ଇସା ! ଆମେ ନିଶ୍ଚୟ ତୁମକୁ (ସ୍ୱାଭାବିକ ରୀତିରେ) ମୃତ୍ୟୁ ପ୍ରଦାନ କରିବୁ ; ଏବଂ ତୁମକୁ ନିଜ ସମୀପରେ ସମ୍ମାନ [2]ପ୍ରଦାନ କରିବୁ, ଏବଂ ଅବିଶ୍ୱାସକାରୀମାନଙ୍କ ଠାରୁ ତୁମକୁ (ସେମାନଙ୍କ ଅପବାଦରୁ) ପବିତ୍ର (ପ୍ରମାଣିତ) କରିବୁ, ଏବଂ ତୁମର ଅନୁଗାମୀମାନଙ୍କୁ କୟାମତ ପର୍ଯ୍ୟନ୍ତ ଅବିଶ୍ୱାସକାରୀମାନଙ୍କ ଉପରେ ପ୍ରାଧାନ୍ୟ ଦେବୁ ; ପୁଣି ତୁମମାନଙ୍କୁ ଆମ ନିକଟକୁ ହିଁ ଫେରିବାକୁ ହେବ ଏବଂ ତୁମେମାନେ ଯେଉଁ ବିଷୟରେ ଭିନ୍ନ ମତ ପୋଷଣ କରୁଅଛ ଆମେ (ସେ ବିଷୟରେ) ତୁମମାନଙ୍କ ମଧ୍ୟରେ ସେତେବେଳେ ନିଷ୍ପତ୍ତି କରିବୁ ।

فَاَمَّا الَّذِيْنَ كَفَرُوْا فَاُعَذِّبُهُمْ عَذَابًا شَدِيْدًا فِى الدُّنْيَا وَالْاٰخِرَةِ ۡ وَمَا لَهُمْ مِّنْ نّٰصِرِيْنَ ﴿٥٧﴾

୫୭. ସୁତରାଂ ଯେଉଁ ଲୋକମାନେ ଅବିଶ୍ୱାସକାରୀ ସେମାନଙ୍କୁ ଆମେ ଇହକାଳ ଓ ପରକାଳରେ (ମଧ୍ୟ) କଠିନ ଶାସ୍ତି ଦେବୁ ; ଏବଂ ସେମାନଙ୍କର କେହି ସାହାଯ୍ୟକାରୀ ହେବେ ନାହିଁ ।

---

୧. ଏଠାରେ ଇହୁଦୀମାନଙ୍କ ଯୋଜନା ବିଫଳ ହେବା ବିଷୟରେ ବର୍ଣ୍ଣନା କରାଯାଇଛି । ସେମାନେ ଯୀଶୁଙ୍କୁ କ୍ରୁଶବିଦ୍ଧ କରି ହତ୍ୟା କରିବା ପାଇଁ ଯୋଜନା କରିଥିଲେ ମଧ୍ୟ ଅଲ୍ଲାହ୍ ନିଜ ଯୋଜନା ଦ୍ୱାରା ତାହାଙ୍କୁ ରକ୍ଷା କରିଥିଲେ । ଫଳରେ ଯୀଶୁ ଆହୁରି ଅନେକ ବର୍ଷ ପର୍ଯ୍ୟନ୍ତ ଜୀବିତ ରହି ଶେଷରେ କାଶ୍ମୀରରେ ଦେହତ୍ୟାଗ କରିଥିଲେ ।

୨. ମୂଳ ଶବ୍ଦ 'ରଫା' ଅର୍ଥ କୌଣସି ବ୍ୟକ୍ତିର ପାହ୍ୟା ବା ସମ୍ମାନ ବୃଦ୍ଧି କରିବା । କେତେକ ଟୀକାକାରଙ୍କ ମତରେ ଅଲ୍ଲାହ୍ ଯୋଜନା କରି ଯୀଶୁଙ୍କୁ ସଶରୀରରେ ସ୍ୱର୍ଗକୁ ଉଠାଇ ନେଇଥିଲେ; ବର୍ତ୍ତମାନ ସେ ସେଠାରେ ଜୀବିତ ଅଛନ୍ତି ଓ କୟାମତ ପୂର୍ବରୁ ପୁଣିଥରେ ପୃଥିବୀକୁ ଫେରିଆସି ସ୍ୱାଭାବିକ ମୃତ୍ୟୁ ବରଣ କରିବେ । କିନ୍ତୁ ପବିତ୍ର କୋରାନର କୌଣସି ଆୟତ୍‌ରେ ସେ ସଶରୀରରେ ସ୍ୱର୍ଗାରୋହଣ କରିଥିବା ବିଷୟର ବର୍ଣ୍ଣନା ବା ସୂଚନା ନାହିଁ । ବରଂ ପବିତ୍ର କୋରାନର ପ୍ରାୟ ୩୦ ଟି ଆୟତ୍‌ରେ ଏହି ହାସ୍ୟାସ୍ପଦ ବିଶ୍ୱାସକୁ ଖଣ୍ଡନ କରାଯାଇଛି । ଯେହେତୁ ଅଲ୍ଲାହ୍‌ଙ୍କର କୌଣସି ଭୌତିକ କଳେବର ନାହିଁ, ତାହାଙ୍କୁ କୌଣସି ଏକ ସ୍ଥାନରେ ସୀମିତ କରାଯାଇ ପାରିବ ନାହିଁ ଓ ସର୍ବୋପରି ସେ ଊର୍ଦ୍ଧ୍ୱ ଓ ଅଧଃ ସର୍ବତ୍ର ବିଦ୍ୟମାନ । ତେଣୁ ଯୀଶୁ ତାହାଙ୍କ ନିକଟକୁ ବା ସ୍ୱର୍ଗକୁ ଆରୋହଣ କରିବାର ପ୍ରଶ୍ନ ହିଁ ଉଠୁନାହିଁ ।

୫୮. ଏବଂ ଯେଉଁ ଲୋକମାନେ ବିଶ୍ୱାସକାରୀ ଅଟନ୍ତି ଓ ସେମାନେ ପୁଣ୍ୟ (ଓ ଉଚିତ) କାର୍ଯ୍ୟ କରିଛନ୍ତି ସେ ସେମାନଙ୍କୁ ସେମାନଙ୍କର (କାର୍ଯ୍ୟର) ସମ୍ପୂର୍ଣ୍ଣ ପ୍ରତିଫଳ ପ୍ରଦାନ କରିବେ ; ଏବଂ ଅଲ୍ଲାଃ ଅତ୍ୟାଚାରୀମାନଙ୍କୁ ପ୍ରେମ କରନ୍ତି ନାହିଁ ।

وَاَمَّا الَّذِیۡنَ اٰمَنُوۡا وَعَمِلُوا الصّٰلِحٰتِ فَیُوَفِّیۡہِمۡ اُجُوۡرَہُمۡ ؕ وَاللّٰہُ لَا یُحِبُّ الظّٰلِمِیۡنَ ﴿۵۸﴾

୫୯. ଆମେ ତାହକୁ ଅର୍ଥାତ୍ ନିଦର୍ଶନ ଓ ତତ୍ତ୍ୱ ସମ୍ବଳିତ ଶିକ୍ଷାକୁ ତୁମ ନିକଟରେ ପଢ଼ି ଶୁଣାଉଛୁ ।

ذٰلِکَ نَتۡلُوۡہُ عَلَیۡکَ مِنَ الۡاٰیٰتِ وَالذِّکۡرِ الۡحَکِیۡمِ ﴿۵۹﴾

୬୦. (ମନେରଖ) ବାସ୍ତବରେ ଅଲ୍ଲାଃଙ୍କ ନିକଟରେ ଇସାଙ୍କ ଅବସ୍ଥା ଆଦମଙ୍କ ଅବସ୍ଥା ସଦୃଶ ଅଟେ ; ତାହାଙ୍କୁ (ଅର୍ଥାତ୍ ଆଦମଙ୍କୁ) ଶୁଷ୍କ ମୃତ୍ତିକାରୁ[1] ସୃଷ୍ଟି କଲେ ; ତତ୍ପରେ ସେ ତାଙ୍କ ସମ୍ବନ୍ଧରେ କହିଲେ, "ହୋଇଯାଅ" ଏବଂ ସେ ହୋଇଗଲେ ।

اِنَّ مَثَلَ عِیۡسٰی عِنۡدَ اللّٰہِ کَمَثَلِ اٰدَمَ ؕ خَلَقَہٗ مِنۡ تُرَابٍ ثُمَّ قَالَ لَہٗ کُنۡ فَیَکُوۡنُ ﴿۶۰﴾

୬୧. ଏହା ତୁମ ପାଳନକର୍ତ୍ତାଙ୍କ ଠାରୁ (ପ୍ରେରିତ) ସତ୍ୟ ଅଟେ ; ସୁତରାଂ ତୁମେ ସନ୍ଦେହକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

اَلۡحَقُّ مِنۡ رَّبِّکَ فَلَا تَکُنۡ مِّنَ الۡمُمۡتَرِیۡنَ ﴿۶۱﴾

୬୨. ବର୍ତ୍ତମାନ ଯେଉଁ ବ୍ୟକ୍ତି ତୁମ ନିକଟକୁ ଅଲ୍ଲାଃଙ୍କ (ପ୍ରଦତ୍ତ), ଜ୍ଞାନ ଆସି ସାରିବା ପରେ ତୁମ ସହିତ ଏ ସଂକ୍ରାନ୍ତରେ ବିବାଦ[2]

فَمَنۡ حَآجَّکَ فِیۡہِ مِنۡۢ بَعۡدِ مَا جَآءَکَ مِنَ الۡعِلۡمِ

[1]. 'ଆଦମ' ଶବ୍ଦ ମୁଖ୍ୟତଃ ମନୁଷ୍ୟ ଅର୍ଥରେ ବ୍ୟବହୃତ । ଅନ୍ୟମାନଙ୍କ ଭଳି ଯୀଶୁ ମଧ୍ୟ ମୃତ୍ତିକାରୁ ସୃଷ୍ଟ । ଏହି ଦୃଷ୍ଟିରୁ ତାଙ୍କ ପ୍ରତି କୌଣସି ଅସାଧାରଣ ବିଶେଷତ୍ୱ ଆରୋପ କରାଯିବା ସମୀଚୀନ ନୁହେଁ, କାରଣ ଯେଉଁମାନେ ମାତୃଗର୍ଭରୁ ଜାତ, ପବିତ୍ର କୋରାନ ଦୃଷ୍ଟିରୁ ସେମାନେ ସମସ୍ତେ ମୃତ୍ତିକାରୁ ସୃଷ୍ଟ । ପବିତ୍ର କୋରାନରେ ସଇତାନ ବିଷୟକ ବୃତ୍ତାନ୍ତରେ ତଥା ଅନ୍ୟାନ୍ୟ ଆୟତରେ ଆଦମର ସୃଷ୍ଟି 'ତୀନ' ଅର୍ଥାତ୍ ମୃତ୍ତିକାରୁ ହୋଇଥିବା କୁହାଯାଇଛି । ଅର୍ଥାତ୍ ତାହା ଏପରି ମୃତ୍ତିକା ଯହିଁରେ ଦିବ୍ୟବାଣୀ-ଯୁକ୍ତ ଜଳ ମିଶ୍ରିତ ହୋଇଥିଲା । କିନ୍ତୁ ଏଠାରେ ହଜରତ ଆଦମ ଓ ହଜରତ ଇସାଙ୍କ ସୃଷ୍ଟି 'ତୁରାବ' ଅର୍ଥାତ ଶୁଷ୍କ ମୃତ୍ତିକାରୁ ହୋଇଥିବା କୁହାଯାଇଛି । ତାହା ଏପରି ମୃତ୍ତିକା ଯହିଁରେ ଦିବ୍ୟବାଣୀଯୁକ୍ତ ଜଳ ମିଶ୍ରିତ ହୋଇନାହିଁ । ବସ୍ତୁତଃ ଏ ଦୁଇଟି ବିଷୟରେ କୌଣସି ପାର୍ଥକ୍ୟ ନାହିଁ । କାରଣ ଏଠାରେ 'ଆଦମ' ଅର୍ଥ ଆଦମ ଓ ତାଙ୍କ ବଂଶଧର ଏବଂ 'ଇସା' ଅର୍ଥ ଇସା (ଯୀଶୁ) ଓ ତାଙ୍କ ଅନୁଗାମୀମାନେ ଏବଂ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ଦିବ୍ୟବାଣୀ ପ୍ରତି ଅମନୋଯୋଗୀ ଓ ଉପେକ୍ଷାକାରୀ ହେବାର ଥିଲା । ଅତଏବ ଉଭୟଙ୍କ ସୃଷ୍ଟି ଶୁଷ୍କ ମୃତ୍ତିକାରୁ ହୋଇଥିବା ବର୍ଣ୍ଣନା କରାଯାଇଛି ।

[2]. ଏହି ଆୟତରେ 'ମୁବାହିଲା'ର ବର୍ଣ୍ଣନା ଅଛି । ମୁବାହିଲା ଅର୍ଥ ଦୁଇପକ୍ଷ ପରସ୍ପରକୁ ଅଭିଶାପ ଦେବା । ମୁବାହିଲା କରିବା ପୂର୍ବରୁ ନିମ୍ନଲିଖିତ ବିଷୟଗୁଡ଼ିକ ପ୍ରତି ଧ୍ୟାନ ଦେବା ଜରୁରି ଅଟେ ।

(କ) ଉଭୟ ପକ୍ଷ ସ୍ୱ ସ୍ୱ ଧର୍ମମତର ସତ୍ୟତା ଅନ୍ୟ ପାଖରେ ପ୍ରମାଣ ଦ୍ୱାରା ସ୍ପଷ୍ଟ କରାଇବେ, ତା'ପରେ ଯଦି କୌଣସି ପକ୍ଷ ଅନ୍ୟର ଧର୍ମମତକୁ ନ ମାନେ ବା କୌଣସି ବିଷୟରେ ଜିଦି କରେ ତେବେ ଜଣେ ଅନ୍ୟକୁ ମୁବାହିଲା ପାଇଁ ଆହ୍ୱାନ କରିପାରିବ ।

(ଖ) ମୁବାହିଲାରେ ଯଥା ସମ୍ଭବ ଅଧିକ ଲୋକଙ୍କୁ ସମ୍ମିଳିତ କରାଯିବ ଯେପରିକି ଅନେକଙ୍କ ଉପରେ ତା'ର ପ୍ରଭାବ ପଡ଼ିବ ।

(ଗ) ଉଭୟ ପକ୍ଷର ନେତା ଏଥିରେ ସାମିଲ ହେବା ଆବଶ୍ୟକ ।

(ଘ) ଶାସ୍ତିର ସମୟ ସୀମା ଅନ୍ତତଃ ଏକ ବର୍ଷ ହେବା ବିଧେୟ ।

(ଙ) ମିଥ୍ୟାବାଦୀଙ୍କ ପ୍ରତି ଦଣ୍ଡବିଧାନ ହେଉ ବୋଲି ମୁବାହିଲାରେ ଗୁହାରି କରାହେବ ।

(ଚ) ନିଜ ତରଫରୁ କୌଣସି ଶାସ୍ତି ନିର୍ଦ୍ଦିଷ୍ଟ କରାଯିବ ନାହିଁ ; ପରିଣାମ ନିଜେ ସ୍ପଷ୍ଟ କରିଦେବ ଯେ କେଉଁ ପକ୍ଷ ସତ୍ୟବାଦୀ ।

(ଛ) ମୁବାହିଲା ପର ଶାସ୍ତି, ଯହିଁରେ କୌଣସି ବ୍ୟକ୍ତି ବିଶେଷର ପ୍ରଚେଷ୍ଟାର ଆଦୌ ସମ୍ଭାବନା ନଥିବ ତାହା ଅଲ୍ଲାଃଙ୍କ ପ୍ରକୋପ ରୂପେ ବିବେଚିତ ହେବ ।

ନଜରାନର ଏକ ଖ୍ରୀଷ୍ଟୀୟ ପ୍ରତିନିଧି ମଣ୍ଡଳ ନିଜ ନେତାଙ୍କ ସହିତ ଏକଦା ହଜରତ ମହମ୍ମଦଙ୍କ ନିକଟକୁ ଆସିଥିଲେ । ସେ ସେମାନଙ୍କୁ ଏକେଶ୍ୱରବାଦ ବିଷୟରେ ତଥା ଯୀଶୁ ଈଶ୍ୱର ନୁହଁନ୍ତି ବୋଲି ଯେତେ ପ୍ରମାଣ ଦେଲେ ମଧ୍ୟ ସେମାନେ ଏହା ଗ୍ରହଣ କଲେ ନାହିଁ । ତେଣୁ ଏହି ପରିପେକ୍ଷୀରେ ସେ ସେମାନଙ୍କୁ ମୁବାହିଲା କରିବା ପାଇଁ ଆହ୍ୱାନ ଦେଇଥିଲେ । ମାତ୍ର ସେମାନେ ଏହି ଆହ୍ୱାନକୁ ଗ୍ରହଣ କରିବାକୁ ଭୟଭୀତ ହେଲେ । ସେମାନେ ଯଦି ଏହି ଆହ୍ୱାନକୁ ଗ୍ରହଣ କରି ଥାଆନ୍ତେ ତେବେ ନିଃସନ୍ଦେହରେ ଏକ ବର୍ଷ ମଧ୍ୟରେ ସେମାନଙ୍କର ସର୍ବନାଶ ହୋଇଥାଆନ୍ତା । ଏହି ଆୟତ ଉପରୋକ୍ତ ଘଟଣା ସହ ସମ୍ପୃକ୍ତ ।

فَقُلْ تَعَالَوْا نَدْعُ اَبْنَآءَنَا وَاَبْنَآءَكُمْ وَنِسَآءَنَا وَنِسَآءَكُمْ وَاَنْفُسَنَا وَاَنْفُسَكُمْ ثُمَّ نَبْتَهِلْ فَنَجْعَلْ لَّعْنَتَ اللّٰهِ عَلَى الْكٰذِبِيْنَ ﴿٦٢﴾

କରେ ତୁମେ ତାହାଙ୍କୁ କୁହ, "ଆସ, ଆମେ ନିଜର ପୁତ୍ରମାନଙ୍କୁ ଏବଂ ତୁମେମାନେ ତୁମମାନଙ୍କର ପୁତ୍ରମାନଙ୍କୁ ଏବଂ ଆମେ ନିଜର ସ୍ତ୍ରୀମାନଙ୍କୁ ଓ ତୁମେମାନେ ତୁମମାନଙ୍କର ସ୍ତ୍ରୀମାନଙ୍କୁ ଏବଂ ଆମେ ନିଜକୁ ଓ ତୁମେମାନେ ନିଜକୁ ଡାକିବା ଏବଂ ତାପରେ ଅନୁନୟ ପୂର୍ବକ ପ୍ରାର୍ଥନା କରିବା ଏବଂ ମିଥ୍ୟାବାଦୀମାନଙ୍କ ଉପରେ ଅଲ୍ଲାଃଙ୍କର ଅଭିଶାପ ପକାଇବା ।"

اِنَّ هٰذَا لَهُوَ الْقَصَصُ الْحَقُّ وَمَا مِنْ اِلٰهٍ اِلَّا اللّٰهُ وَاِنَّ اللّٰهَ لَهُوَ الْعَزِيْزُ الْحَكِيْمُ ﴿٦٣﴾

୬୩. ବାସ୍ତବରେ ଏହା ହିଁ ସତ୍ୟ ବୃତ୍ତାନ୍ତ ଅଟେ ; ଏବଂ ଅଲ୍ଲାଃଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ଏବଂ ବାସ୍ତବରେ ଅଲ୍ଲାଃ ହିଁ ପରାକ୍ରମୀ ଓ ତତ୍ତ୍ୱଜ୍ଞ ।

فَاِنْ تَوَلَّوْا فَاِنَّ اللّٰهَ عَلِيْمٌ بِالْمُفْسِدِيْنَ ﴿٦٤﴾ ع

୬୪. କିନ୍ତୁ ଯଦି ସେମାନେ ଫେରିଯାଆନ୍ତି ତେବେ (ମନେରଖ) ବାସ୍ତବରେ ଅଲ୍ଲାଃ ବିଶୃଙ୍ଖଳାକାରୀମାନଙ୍କୁ ଭଲରୂପେ ଜାଣନ୍ତି ।

ରୁ : ୬

قُلْ يٰاَهْلَ الْكِتٰبِ تَعَالَوْا اِلٰى كَلِمَةٍ سَوَآءٍ بَيْنَنَا وَبَيْنَكُمْ اَلَّا نَعْبُدَ اِلَّا اللّٰهَ وَلَا نُشْرِكَ بِهٖ شَيْـًٔا وَّلَا يَتَّخِذَ بَعْضُنَا بَعْضًا اَرْبَابًا مِّنْ دُوْنِ اللّٰهِ فَاِنْ تَوَلَّوْا فَقُوْلُوا اشْهَدُوْا بِاَنَّا مُسْلِمُوْنَ ﴿٦٥﴾

୬୫. (ତୁମେ) କୁହ, "ହେ ଗ୍ରନ୍ଥଧାରୀମାନେ ! ତୁମେମାନେ (ଅନ୍ତତଃ) ଏପରି ଏକ ପନ୍ଥା ଅବଲମ୍ବନ କର ଯାହା ଆମମାନଙ୍କ ତଥା ତୁମମାନଙ୍କ ମଧ୍ୟରେ ସମାନ ଅଟେ (ଏବଂ ତାହା ହେଉଛି) ଯେ ଆମେମାନେ ଅଲ୍ଲାଃଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କରିବା ନାହିଁ ; ଏବଂ ଅନ୍ୟ କୌଣସି ବସ୍ତୁକୁ ତାହାଙ୍କ ସହିତ ସମକକ୍ଷ କରିବା ନାହିଁ; ଏବଂ ଅଲାଃଙ୍କୁ ପରିତ୍ୟାଗ କରି ପରସ୍ପର ମଧ୍ୟରେ ଜଣେ ଅନ୍ୟକୁ ପାଳନକର୍ତ୍ତା ରୂପେ ଗ୍ରହଣ କରିବା ନାହିଁ ; କିନ୍ତୁ ଯଦି ସେମାନେ ପୁଣି ଫେରିଯାଆନ୍ତି ତେବେ ସେମାନଙ୍କୁ କୁହ, "ତୁମେମାନେ ସାକ୍ଷୀ ରୁହ ଯେ ଆମେମାନେ (ଅଲାଃଙ୍କର) ଆଜ୍ଞା ପାଳନକାରୀ ଅଟୁ ।"

يٰاَهْلَ الْكِتٰبِ لِمَ تُحَآجُّوْنَ فِيْٓ اِبْرٰهِيْمَ وَمَآ اُنْزِلَتِ التَّوْرٰىةُ وَالْاِنْجِيْلُ اِلَّا مِنْۢ بَعْدِهٖ اَفَلَا تَعْقِلُوْنَ ﴿٦٦﴾

୬୬. "ହେ ଗ୍ରନ୍ଥଧାରୀମାନେ ! ତୁମେମାନେ ଇବ୍ରାହିମଙ୍କ ସଂକ୍ରାନ୍ତରେ କାହିଁକି ବିବାଦ କରୁଅଛ ଅଥଚ ତୌରାତ ଓ ଇଞ୍ଜିଲ ବସ୍ତୁତଃ ତାହାଙ୍କ ପରେ ଅବତୀର୍ଣ୍ଣ ହୋଇଅଛି; ତେବେ କ'ଣ ତୁମେମାନେ ବୁଝିପାରୁନାହଁ ?"

هٰٓاَنْتُمْ هٰٓؤُلَآءِ حَاجَجْتُمْ فِيْمَا لَكُمْ بِهٖ عِلْمٌ فَلِمَ تُحَآجُّوْنَ فِيْمَا لَيْسَ لَكُمْ بِهٖ عِلْمٌ وَاللّٰهُ يَعْلَمُ وَاَنْتُمْ لَا تَعْلَمُوْنَ ﴿٦٧﴾

୬୭. ଶୁଣ ! ତୁମମାନଙ୍କର ଯେଉଁ ବିଷୟରେ ଜ୍ଞାନ ଥିଲା ସେ ବିଷୟରେ ତୁମେମାନେ ବିବାଦ କରିଅଛ ; ତେବେ ଯେଉଁ ବିଷୟରେ ତୁମମାନଙ୍କର ଆଦୌ ଜ୍ଞାନ ନାହିଁ ସେ ବିଷୟରେ ତୁମେମାନେ (ବର୍ତ୍ତମାନ) କାହିଁକି ବିବାଦ କରୁଅଛ ; ଅଥଚ ଅଲ୍ଲାଃ ଜାଣନ୍ତି ଏବଂ ତୁମେମାନେ ଜାଣ ନାହିଁ ।

مَا كَانَ اِبْرٰهِيْمُ يَهُوْدِيًّا وَّلَا نَصْرَانِيًّا وَّلٰكِنْ كَانَ حَنِيْفًا مُّسْلِمًا وَمَا كَانَ مِنَ الْمُشْرِكِيْنَ ﴿٦٨﴾

୬୮. ଇବ୍ରାହିମ ଇହୁଦୀ ନ ଥିଲେ କି ଖ୍ରୀଷ୍ଟିୟାନ ନ ଥିଲେ ; ବରଂ ସେ ଅଲ୍ଲାଃଙ୍କ ପ୍ରତି ଅବନତ ଓ ଆଜ୍ଞା ପାଳନକାରୀ ଥିଲେ ; ଏବଂ ମୁସରିକମାନଙ୍କ ମଧ୍ୟରେ ନ ଥିଲେ ।

୬୯. ବାସ୍ତବରେ ଲୋକମାନଙ୍କ ମଧ୍ୟରୁ ଇବ୍ରାହିମଙ୍କ ସହିତ ଅଧିକ ସମ୍ପର୍କ ସ୍ଥାପନକାରୀ ଲୋକ ସେହିମାନେ ଯେଉଁମାନେ ତାହାଙ୍କର ଅନୁଗାମୀ ତଥା ଏହି ନବି ଓ ତାହାଙ୍କୁ ବିଶ୍ୱାସ କରୁଥିବା ଲୋକମାନେ ; ଏବଂ ଅଲ୍ଲାହ ବିଶ୍ୱାସକାରୀମାନଙ୍କର ବନ୍ଧୁ ଅଟନ୍ତି ।

إِنَّ أَوْلَى النَّاسِ بِإِبْرٰهِيمَ لَلَّذِينَ اتَّبَعُوهُ وَ هٰذَا النَّبِيُّ وَ الَّذِينَ اٰمَنُوا ۗ وَاللّٰهُ وَلِيُّ الْمُؤْمِنِينَ ﴿٦٩﴾

୭୦. ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ଦଳେ ତୁମମାନଙ୍କୁ ପଥଭ୍ରଷ୍ଟ କରାଇବାକୁ ଇଚ୍ଛା କରନ୍ତି, କିନ୍ତୁ ସେମାନେ ନିଜକୁ ହିଁ ପଥଭ୍ରଷ୍ଟ କରାଉଛନ୍ତି ; ଏବଂ (ସେମାନେ ଏହା) ବୁଝିପାରୁ ନାହାନ୍ତି ।

وَدَّتْ طَّآئِفَةٌ مِّنْ أَهْلِ الْكِتٰبِ لَوْ يُضِلُّونَكُمْ وَ مَا يُضِلُّونَ إِلَّآ أَنْفُسَهُمْ وَ مَا يَشْعُرُونَ ﴿٧٠﴾

୭୧. ହେ ଗ୍ରନ୍ଥଧାରୀମାନେ ! ତୁମେମାନେ (ଜାଣିଶୁଣି) କାହିଁକି ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ଅସ୍ୱୀକାର କରୁଅଛ ? ଅଥଚ ତୁମେମାନେ ସାକ୍ଷ୍ୟ ଦେଇଅଛ ।

يٰٓأَهْلَ الْكِتٰبِ لِمَ تَكْفُرُونَ بِاٰيٰتِ اللّٰهِ وَ أَنْتُمْ تَشْهَدُونَ ﴿٧١﴾

୭୨. ହେ ଗ୍ରନ୍ଥଧାରୀମାନେ ! ତୁମେମାନେ କାହିଁକି ଜାଣିଶୁଣି ସତ୍ୟକୁ [୧]ମିଥ୍ୟା ସହିତ ମିଶ୍ରିତ କରୁଅଛ ; ଏବଂ ସତ୍ୟକୁ ଗୋପନ ରଖୁଅଛ ?

يٰٓأَهْلَ الْكِتٰبِ لِمَ تَلْبِسُونَ الْحَقَّ بِالْبَاطِلِ وَ تَكْتُمُونَ الْحَقَّ وَ أَنْتُمْ تَعْلَمُونَ ﴿٧٢﴾ ع ١٥

ରୁ : ୮

୭୩. ଏବଂ ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ଦଳେ କହନ୍ତି ଯେ ବିଶ୍ୱାସକାରୀମାନଙ୍କ ପ୍ରତି ଯାହା ଅବତୀର୍ଣ୍ଣ ହୋଇଛି ତାହାପ୍ରତି ତୁମେମାନେ ଦିନର ପ୍ରଥମ ଭାଗରେ ବିଶ୍ୱାସ କର ଓ ଏହାର ଶେଷ ଭାଗରେ (ତାହାକୁ) ଅବିଶ୍ୱାସ କର ; ବୋଧହୁଏ (ଏପରି ଭାବରେ) ସେମାନେ ଫେରିଯିବେ ।

وَ قَالَتْ طَّآئِفَةٌ مِّنْ أَهْلِ الْكِتٰبِ اٰمِنُوا بِالَّذِيٓ أُنْزِلَ عَلَى الَّذِينَ اٰمَنُوا وَجْهَ النَّهَارِ وَ اكْفُرُوٓا اٰخِرَهُ لَعَلَّهُمْ يَرْجِعُونَ ﴿٧٣﴾

୭୪. ଏବଂ (କହନ୍ତି ଯେ) ଯେଉଁ ବ୍ୟକ୍ତି ତୁମ ଧର୍ମର ଅନୁଗାମୀ ଅଟେ ତାହା ବ୍ୟତୀତ ଅନ୍ୟର ଆଜ୍ଞା ପାଳନ କର ନାହିଁ ; ତୁମେ କୁହ, "ପ୍ରକୃତ ସତ୍‌ପଥ ହେଉଛି ଅଲ୍ଲାହଙ୍କ ପ୍ରଦର୍ଶିତ ପଥ, ଯାହାକି ତୁମମାନଙ୍କୁ ଯେପରି ପ୍ରାପ୍ତ ହୋଇଛି ଅନ୍ୟକୁ ସେହିପରି ପ୍ରାପ୍ତ ହେଉ ; ତା ନ ହେଲେ ସେମାନେ ତୁମମାନଙ୍କ ପାଳନକର୍ତ୍ତାଙ୍କ ସମୀପରେ ତୁମମାନଙ୍କ ସହିତ ବିବାଦ କରନ୍ତୁ ;" ପୁଣି କୁହ, "ଅନୁଗ୍ରହ ବାସ୍ତବରେ ଅଲ୍ଲାହଙ୍କ ହସ୍ତରେ ଅଛି ; ସେ ଯାହାକୁ ଇଚ୍ଛା (ତାହାକୁ) ଅନୁଗ୍ରହ ପ୍ରଦାନ କରନ୍ତି" ; ଏବଂ ଅଲ୍ଲାହ ହିଁ ବଦାନ୍ୟ ଓ ସର୍ବଜ୍ଞ ।

وَ لَا تُؤْمِنُوٓا إِلَّا لِمَنْ تَبِعَ دِينَكُمْ ۗ قُلْ إِنَّ الْهُدٰى هُدَى اللّٰهِ ۙ أَنْ يُّؤْتٰٓى أَحَدٌ مِّثْلَ مَآ أُوتِيتُمْ أَوْ يُحَآجُّوكُمْ عِنْدَ رَبِّكُمْ ۗ قُلْ إِنَّ الْفَضْلَ بِيَدِ اللّٰهِ ۚ يُؤْتِيهِ مَنْ يَّشَآءُ ۗ وَ اللّٰهُ وَاسِعٌ عَلِيمٌ ﴿٧٤﴾

---

୧. ସେମାନଙ୍କ ଧର୍ମ ଗ୍ରନ୍ଥଗୁଡ଼ିକରେ ହଜରତ ମହମ୍ମଦଙ୍କ ସମ୍ବନ୍ଧରେ ଯେଉଁସବୁ ନିଦର୍ଶନ ରହିଅଛି ତା'ସାହାଯ୍ୟରେ ସେମାନେ ତାହାଙ୍କୁ ସହଜରେ ଚିହ୍ନିପାରନ୍ତେ । କିନ୍ତୁ ଶତ୍ରୁତା ଓ ଈର୍ଷା ଯୋଗୁଁ ସେମାନେ ତାହା କରିପାରିଲେ ନାହିଁ । ଅଧିକନ୍ତୁ ସେମାନେ ସତ୍ୟ ସହିତ ମିଥ୍ୟାକୁ ମିଶ୍ରିତ କରିଥିଲେ । ପରବର୍ତ୍ତୀ ଆୟତରୁ ସେମାନଙ୍କ ଚକ୍ରାନ୍ତ ଓ ଦୁରାଚାର ବିଷୟ ଜଣାପଡୁଛି । ତତ୍କାଳୀନ ଆରବବାସୀଙ୍କ ଦୃଷ୍ଟିରେ ଇହୁଦୀମାନେ ଅତ୍ୟନ୍ତ ସମ୍ମାନିତ ବ୍ୟକ୍ତି ଥିଲେ । ଏହାରି ସୁଯୋଗରେ ଇହୁଦୀମାନେ ଦିନର ପ୍ରଥମ ଭାଗରେ ଇସଲାମ ଧର୍ମ ଗ୍ରହଣ କରି ଦିନର ଶେଷ ଭାଗରେ ତାହାକୁ ପରିତ୍ୟାଗ କରୁଥିଲେ, ଯେପରିକି ନିରକ୍ଷର ଆରବବାସୀମାନେ ଭାବିବେ ଯେ ନିଶ୍ଚୟ ସେହି ଧର୍ମରେ କିଛି ଗୁରୁତର ତ୍ରୁଟି ଅଛି, ନୋହିଲେ ଇହୁଦୀମାନେ ଇସଲାମ ଧର୍ମ ଗ୍ରହଣ କରି ଏତେ ଶୀଘ୍ର ତାହାକୁ ପରିତ୍ୟାଗ କରି ନଥା'ନ୍ତେ ।

يَّخْتَصُّ بِرَحْمَتِهٖ مَنْ يَّشَآءُ ؕ وَ اللّٰهُ ذُو الْفَضْلِ الْعَظِيْمِ ﴿٧٥﴾

୭୫. ସେ ଯାହାକୁ ଚାହାନ୍ତି (ତାହାକୁ) ନିଜର କରୁଣା ପ୍ରଦାନ କରିବାକୁ ବାଛି ନିଅନ୍ତି ; ଏବଂ ଅଲ୍ଲାଃ ମହାନ୍ ଅନୁଗ୍ରହକାରୀ ଅଟନ୍ତି ।

وَ مِنْ اَهْلِ الْكِتٰبِ مَنْ اِنْ تَاْمَنْهُ بِقِنْطَارٍ يُّؤَدِّهٖۤ اِلَيْكَ ۚ وَ مِنْهُمْ مَّنْ اِنْ تَاْمَنْهُ بِدِيْنَارٍ لَّا يُؤَدِّهٖۤ اِلَيْكَ اِلَّا مَا دُمْتَ عَلَيْهِ قَآئِمًا ؕ ذٰلِكَ بِاَنَّهُمْ قَالُوْا لَيْسَ عَلَيْنَا فِي الْاُمِّيّٖنَ سَبِيْلٌ ۚ وَ يَقُوْلُوْنَ عَلَى اللّٰهِ الْكَذِبَ وَ هُمْ يَعْلَمُوْنَ ﴿٧٦﴾

୭୬. ଏବଂ ଗ୍ରନ୍ଥଧାରୀ ବ୍ୟକ୍ତିମାନଙ୍କ ମଧ୍ୟରେ ଏପରି ବ୍ୟକ୍ତି ଅଛନ୍ତି ଯାହାକୁ ତୁମେ ଯଦି ପ୍ରଚୁର ଧନ ନ୍ୟାସ ରୂପେ ରଖିବାକୁ ଦେବ ତେବେ ସେ ତାହା ତୁମକୁ ଫେରସ୍ତ କରିଦେବେ ; ସେମାନଙ୍କ ମଧ୍ୟରେ ଏପରି ବ୍ୟକ୍ତି ଅଛନ୍ତି ଯାହାକୁ ତୁମେ ଯଦି ଗୋଟିଏ ଦିନାର ନ୍ୟାସ ରୂପେ ରଖିବାକୁ ଦେବ ତେବେ ତା ଉପରେ (ବୋଝ ହୋଇ) ଠିଆ ନ ହେବା ପର୍ଯ୍ୟନ୍ତ ସେ ତୁମକୁ ତାହା (ମଧ୍ୟ) ଫେରସ୍ତ କରିବ ନାହିଁ ; ଏହା ଏଥି ନିମନ୍ତେ ହୁଏ ଯେ ସେମାନେ କହନ୍ତି, "ନିରକ୍ଷରମାନଙ୍କ ସଂକ୍ରାନ୍ତରେ ଆମମାନଙ୍କୁ ଦାୟୀ କରାହେବ ନାହିଁ ;" ଏବଂ ସେମାନେ ଜାଣିଶୁଣି ଅଲ୍ଲାଃଙ୍କ ବିଷୟରେ ମିଥ୍ୟା କହନ୍ତି ।

بَلٰى مَنْ اَوْفٰى بِعَهْدِهٖ وَ اتَّقٰى فَاِنَّ اللّٰهَ يُحِبُّ الْمُتَّقِيْنَ ﴿٧٧﴾

୭୭. ଏପରି ନୁହେଁ, ବରଂ ଯେ ନିଜର ଅଙ୍ଗୀକାର ପାଳନ କରେ ଓ ଅଲ୍ଲାଃଙ୍କୁ ଭୟ କରେ ସେ ହିଁ ଧର୍ମଭୀରୁ ; ବାସ୍ତବରେ ଅଲାଃ ଧର୍ମଭୀରୁଙ୍କୁ ପ୍ରେମ କରନ୍ତି ।

اِنَّ الَّذِيْنَ يَشْتَرُوْنَ بِعَهْدِ اللّٰهِ وَ اَيْمَانِهِمْ ثَمَنًا قَلِيْلًا اُولٰٓئِكَ لَا خَلَاقَ لَهُمْ فِي الْاٰخِرَةِ وَ لَا يُكَلِّمُهُمُ اللّٰهُ وَ لَا يَنْظُرُ اِلَيْهِمْ يَوْمَ الْقِيٰمَةِ وَ لَا يُزَكِّيْهِمْ ۪ وَ لَهُمْ عَذَابٌ اَلِيْمٌ ﴿٧٨﴾

୭୮. ବାସ୍ତବରେ ଯେଉଁମାନେ ଅଲ୍ଲାଃଙ୍କ ସହିତ ନିଜ ଅଙ୍ଗୀକାର ଓ ଶପଥଗୁଡ଼ିକ ବିନିମୟରେ ଅଳ୍ପ ମୂଲ୍ୟ ଗ୍ରହଣ କରନ୍ତି, ସେମାନଙ୍କ ପାଇଁ ପରକାଳରେ କୌଣସି ଭାଗ ନାହିଁ ; ଏବଂ କୟାମତ ଦିନ ଅଲ୍ଲାଃ ସେମାନଙ୍କ ସହିତ କଥା କହିବେ ନାହିଁ ଓ ସେମାନଙ୍କ ପ୍ରତି ଦୃଷ୍ଟି ଦେବେ ନାହିଁ କି ସେମାନଙ୍କୁ ପବିତ୍ର ବୋଲି ବିଚାରିବେ ନାହିଁ ; ଏବଂ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

وَ اِنَّ مِنْهُمْ لَفَرِيْقًا يَّلْوٗنَ اَلْسِنَتَهُمْ بِالْكِتٰبِ لِتَحْسَبُوْهُ مِنَ الْكِتٰبِ وَ مَا هُوَ مِنَ الْكِتٰبِ ۚ وَ يَقُوْلُوْنَ هُوَ مِنْ عِنْدِ اللّٰهِ وَ مَا هُوَ مِنْ عِنْدِ اللّٰهِ ۚ وَ يَقُوْلُوْنَ عَلَى اللّٰهِ الْكَذِبَ وَ هُمْ يَعْلَمُوْنَ ﴿٧٩﴾

୭୯. ଏବଂ ସେମାନଙ୍କ ମଧ୍ୟରେ ବସ୍ତୁତଃ (ଏପରି) ଏକ ଦଳ ଅଛି ଯେ (ତୌରାତ) ଗ୍ରନ୍ଥ (ଆବୃତ୍ତି) ମାଧ୍ୟମରେ ନିଜର ଜିହ୍ୱାକୁ ବକ୍ର (କରି ଏପରି ଆବୃତ୍ତି କରେ ଯେ ତୁମେମାନେ ତାହାକୁ ଗ୍ରନ୍ଥର (ଅଂଶ) ବୋଲି ମନେ କରିବ ଅଥଚ ତାହା ଗ୍ରନ୍ଥର (ଅଂଶ) ନୁହେଁ ; ଏବଂ ସେମାନେ କହନ୍ତି, "ଏହା ଅଲ୍ଲାଃଙ୍କ ନିକଟରୁ ଆସିଅଛି" ଅଥଚ ତାହା ଅଲ୍ଲାଙ୍କ ନିକଟରୁ ଆସି ନାହିଁ ; ଏବଂ ସେମାନେ ଜାଣିଶୁଣି ଅଲ୍ଲାଙ୍କ ବିଷୟରେ ମିଥ୍ୟା କହନ୍ତି ।

مَا كَانَ لِبَشَرٍ اَنْ يُّؤْتِيَهُ اللّٰهُ الْكِتٰبَ وَ الْحُكْمَ وَ النُّبُوَّةَ ثُمَّ يَقُوْلَ لِلنَّاسِ كُوْنُوْا عِبَادًا لِّيْ مِنْ دُوْنِ اللّٰهِ وَ لٰكِنْ كُوْنُوْا رَبّٰنِيّٖنَ بِمَا كُنْتُمْ تُعَلِّمُوْنَ الْكِتٰبَ وَ بِمَا كُنْتُمْ تَدْرُسُوْنَ ۙ﴿٨٠﴾

୮୦. କୌଣସି (ସତ୍ୟବାଦୀ) ବ୍ୟକ୍ତିଙ୍କ ପକ୍ଷେ ଏହା ଶୋଭନୀୟ ନୁହେଁ ଯେ ଅଲ୍ଲାଃ ତାହାଙ୍କୁ ଗ୍ରନ୍ଥ, ରାଜତ୍ୱ ଓ ନବି ପଦ ଦେବା ପରେ ସେ (ଏହା) କହନ୍ତି, "ତୁମେମାନେ ଅଲ୍ଲାଃଙ୍କୁ ଛାଡ଼ି ମୋର ଉପାସକ ହୋଇଯାଅ", ବରଂ (ଏପରି ବ୍ୟକ୍ତି ତ ଏହା କହନ୍ତି) "ତୁମେମାନେ ଅଲ୍ଲାଃଙ୍କର ହିଁ ହୋଇଯାଅ କାରଣ ତୁମେମାନେ (ଅଲ୍ଲାଃଙ୍କର) ଗ୍ରନ୍ଥର ଶିକ୍ଷା ଦେଉଅଛ ଓ (ତାହାକୁ) ମୁଖସ୍ଥ କରୁଅଛ ।"

୮୧. ଏବଂ ତାହାଙ୍କ ପକ୍ଷରେ ଏହା (ମଧ୍ୟ ସମ୍ଭବ) ନୁହେଁ ଯେ ସେ ତୁମମାନଙ୍କୁ ଏହି ଶିକ୍ଷା ଦେବେ ଯେ ତୁମେମାନେ ଦେବଦୂତ ଓ ନବିମାନଙ୍କୁ ନିଜ ପାଳନକର୍ତ୍ତା ରୂପେ ଗ୍ରହଣ କର ; ତୁମେମାନେ ମୁସଲମାନ ହେବାପରେ କ'ଣ ସେ ତୁମମାନଙ୍କୁ ଅବିଶ୍ୱାସ କରିବାକୁ ଶିକ୍ଷା ଦେବେ ?

وَلَا يَأْمُرَكُمْ أَنْ تَتَّخِذُوا الْمَلٰٓئِكَةَ وَالنَّبِيّٖنَ أَرْبَابًا ۗ أَيَأْمُرُكُمْ بِالْكُفْرِ بَعْدَ إِذْ أَنْتُمْ مُّسْلِمُوْنَ ﴿٨١﴾

ରୁ : ୯

୮୨. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଅଲ୍ଲାହ (ଗ୍ରନ୍ଥଧାରୀମାନଙ୍କ ଠାରୁ) ନବିମାନଙ୍କ ମାଧ୍ୟମରେ ନେଇଥିବା ଦୃଢ଼ ଅଙ୍ଗୀକାର ନେଇଥିଲେ ଯେ ଯେବେ ଆମ୍ଭେ ତୁମମାନଙ୍କୁ ଯେ କୌଣସି ଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ପ୍ରଦାନ କରିବୁ ଏବଂ ତା'ପରେ ତୁମମାନଙ୍କ ନିକଟକୁ ଏପରି କୌଣସି ରସୁଲ ଆସିବେ ଯେ କି ତୁମମାନଙ୍କ ପାଖରେ ଥିବା ସେହି ବାଣୀର ସତ୍ୟତା ପ୍ରମାଣିତ କରୁଥିବେ ତେବେ ତୁମେମାନେ ତାହାଙ୍କ ଉପରେ ନିଶ୍ଚୟ ବିଶ୍ୱାସ ସ୍ଥାପନ କରିବ ଏବଂ ତାହାଙ୍କୁ ନିଶ୍ଚୟ ସାହାଯ୍ୟ କରିବ ; (ଅଲ୍ଲାହ) କହିଥିଲେ, ''କ'ଣ ତୁମେମାନେ ସ୍ୱୀକାର କରୁଅଛ ଓ ଆମ୍ଭେ ଦେଇଥିବା ଦାୟିତ୍ୱକୁ ଗ୍ରହଣ କରୁଅଛ ?'' ସେମାନେ କହିଥିଲେ, ''ଆମେମାନେ ସ୍ୱୀକାର କରୁଅଛୁ ।'' ଅଲ୍ଲାହ କହିଲେ, ''ତା ହେଲେ ତୁମେମାନେ ସାକ୍ଷୀ ରୁହ ; ଏବଂ ଆମ୍ଭେ ମଧ୍ୟ ତୁମମାନଙ୍କ ସହିତ ସାକ୍ଷୀ ରହିଲୁ ।''

وَإِذْ أَخَذَ اللّٰهُ مِيْثَاقَ النَّبِيّٖنَ لَمَآ اٰتَيْتُكُمْ مِّنْ كِتٰبٍ وَّحِكْمَةٍ ثُمَّ جَآءَكُمْ رَسُوْلٌ مُّصَدِّقٌ لِّمَا مَعَكُمْ لَتُؤْمِنُنَّ بِهٖ وَلَتَنْصُرُنَّهٗ ۗ قَالَ ءَأَقْرَرْتُمْ وَأَخَذْتُمْ عَلٰى ذٰلِكُمْ إِصْرِيْ ۗ قَالُوْٓا أَقْرَرْنَا ۗ قَالَ فَاشْهَدُوْا وَأَنَا مَعَكُمْ مِّنَ الشّٰهِدِيْنَ ﴿٨٢﴾

୮୩. ସୁତରାଂ ଏହାପରେ ଯେଉଁମାନେ ଫେରିଯିବେ ସେମାନେ ବାସ୍ତବରେ ଅମାନ୍ୟକାରୀ ।

فَمَنْ تَوَلّٰى بَعْدَ ذٰلِكَ فَأُولٰٓئِكَ هُمُ الْفٰسِقُوْنَ ﴿٨٣﴾

୮୪. ତେବେ କ'ଣ ସେମାନେ ଅଲ୍ଲାହଙ୍କ ଧର୍ମ ଭିନ୍ନ (ଅନ୍ୟ କୌଣସି) ଧର୍ମ ଚାହୁଁଛନ୍ତି, ଅଥଚ ଆକାଶ ଓ ପୃଥିବୀରେ ଯେ (କେହି) ଅଛନ୍ତି ସେମାନେ ସ୍ୱ ଇଚ୍ଛାରେ ବା ଅନିଚ୍ଛାରେ ତାହାଙ୍କ ଆଜ୍ଞା ପାଳନକାରୀ ଅଟନ୍ତି ; ଏବଂ (ସେମାନଙ୍କୁ) ତାହାଙ୍କ ନିକଟକୁ ଫେରାଇ ନିଆଯିବ ।

أَفَغَيْرَ دِيْنِ اللّٰهِ يَبْغُوْنَ وَلَهٗٓ أَسْلَمَ مَنْ فِي السَّمٰوٰتِ وَالْأَرْضِ طَوْعًا وَّكَرْهًا وَّإِلَيْهِ يُرْجَعُوْنَ ﴿٨٤﴾

୮୫. ତୁମେ କୁହ, ''ଆମେମାନେ ଅଲ୍ଲାହଙ୍କ ଉପରେ ଏବଂ ଯାହାକିଛି ଆମମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଅଛି ତା'ଉପରେ ଏବଂ ଯାହା ଇବ୍ରାହିମ, ଇସମାଇଲ, ଇସହାକ ଓ ୟାକୁବ ତଥା ସେମାନଙ୍କ ସନ୍ତାନମାନଙ୍କ ନିକଟରେ ଅବତୀର୍ଣ୍ଣ ହୋଇଥିଲା (ତା'ଉପରେ) ଓ ଯାହା ମୁସା ଓ ଇସାଙ୍କୁ ଓ (ଅବଶିଷ୍ଟ) ସମସ୍ତ ନବିଙ୍କୁ ସେମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ଦିଆଯାଇଥିଲା ତା'ଉପରେ ବିଶ୍ୱାସ କରୁଅଛୁ ; ଏବଂ ସେମାନଙ୍କ ମଧ୍ୟରୁ ଜଣଙ୍କୁ ଅନ୍ୟ ଠାରୁ ଭିନ୍ନ ମନେ କରୁ ନାହୁଁ ; ଏବଂ ଆମେମାନେ ତାଙ୍କର ଆଜ୍ଞା ପାଳନକାରୀ ଅଟୁ ।''

قُلْ اٰمَنَّا بِاللّٰهِ وَمَآ أُنْزِلَ عَلَيْنَا وَمَآ أُنْزِلَ عَلٰٓى إِبْرٰهِيْمَ وَإِسْمٰعِيْلَ وَإِسْحٰقَ وَيَعْقُوْبَ وَالْأَسْبَاطِ وَمَآ أُوْتِيَ مُوْسٰى وَعِيْسٰى وَالنَّبِيُّوْنَ مِنْ رَّبِّهِمْ ۪ لَا نُفَرِّقُ بَيْنَ أَحَدٍ مِّنْهُمْ ۫ وَنَحْنُ لَهٗ مُسْلِمُوْنَ ﴿٨٥﴾

୮୬. ଏବଂ ଯେଉଁ ବ୍ୟକ୍ତି ଇସ୍‌ଲାମ ବ୍ୟତୀତ ଅନ୍ୟ ଧର୍ମ (ଗ୍ରହଣ କରିବାକୁ) ଚାହୁଁଥାଏ ତେବେ (ସେ ମନେରଖୁ ଯେ) ତା'ଠାରୁ ଏହା କେବେହେଲେ ଗ୍ରହଣ କରାଯିବ ନାହିଁ ; ଏବଂ ପରକାଳରେ ସେ କ୍ଷତିଗ୍ରସ୍ତ (ଲୋକ)ମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।

وَمَنْ يَبْتَغِ غَيْرَ الْإِسْلَامِ دِينًا فَلَنْ يُقْبَلَ مِنْهُ ۚ وَهُوَ فِي الْآخِرَةِ مِنَ الْخَاسِرِينَ ﴿٨٥﴾

୮୭. ଯେଉଁ ଲୋକମାନେ ବିଶ୍ୱାସ କରିବା ପରେ ଅବିଶ୍ୱାସକାରୀ ହୋଇଛନ୍ତି ଏବଂ ସାକ୍ଷ୍ୟ ଦେଇଛନ୍ତି ଯେ (ଏହି) ରସୁଲ ସତ୍ୟବାଦୀ ଅଟନ୍ତି ଏବଂ ସେମାନଙ୍କ ନିକଟକୁ ସ୍ପଷ୍ଟ ପ୍ରମାଣମାନ ମଧ୍ୟ ଆସିଯାଇଛି, ଅଲ୍ଲାହ ସେମାନଙ୍କୁ କିପରି ସତ୍‌ପଥ ଦେଖାଇବେ ? ଏବଂ ଅଲ୍ଲାହ ଅତ୍ୟାଚାରୀମାନଙ୍କୁ ସତ୍‌ପଥଗାମୀ କରାନ୍ତି ନାହିଁ ।

كَيْفَ يَهْدِي اللَّهُ قَوْمًا كَفَرُوا بَعْدَ إِيمَانِهِمْ وَشَهِدُوا أَنَّ الرَّسُولَ حَقٌّ وَجَاءَهُمُ الْبَيِّنَاتُ ۚ وَاللَّهُ لَا يَهْدِي الْقَوْمَ الظَّالِمِينَ ﴿٨٦﴾

୮୮. ଏପରି ଲୋକମାନଙ୍କର ଶାସ୍ତି ହେଉଛି ଯେ ସେମାନଙ୍କ ଉପରେ ଅଲ୍ଲାହଙ୍କର, ଦେବଦୂତମାନଙ୍କର ଓ ଲୋକମାନଙ୍କର, ଏ ସମସ୍ତଙ୍କର ଅଭିଶାପ ପଡ଼ିବ ।

أُولَٰئِكَ جَزَاؤُهُمْ أَنَّ عَلَيْهِمْ لَعْنَةَ اللَّهِ وَالْمَلَائِكَةِ وَالنَّاسِ أَجْمَعِينَ ﴿٨٧﴾

୮୯. ସେମାନେ ବହୁକାଳ ପର୍ଯ୍ୟନ୍ତ ତନ୍ମଧ୍ୟରେ ରହିବେ ; ସେମାନଙ୍କ ଶାସ୍ତିକୁ ଲାଘବ କରାଯିବ ନାହିଁ କି ସେମାନଙ୍କୁ ଅବ୍ୟାହତି ଦିଆଯିବ ନାହିଁ ।

خَالِدِينَ فِيهَا لَا يُخَفَّفُ عَنْهُمُ الْعَذَابُ وَلَا هُمْ يُنْظَرُونَ ﴿٨٨﴾

୯୦. (ଅବଶ୍ୟ) ସେହି ଲୋକମାନଙ୍କ ବ୍ୟତୀତ ଯେଉଁମାନେ ଏହାପରେ ଅନୁତାପ କରିବେ ଏବଂ ନିଜକୁ ସୁଧାରି ନେବେ ; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ(ଓ)ସଦା କରୁଣାମୟ :

إِلَّا الَّذِينَ تَابُوا مِنْ بَعْدِ ذَٰلِكَ وَأَصْلَحُوا فَإِنَّ اللَّهَ غَفُورٌ رَحِيمٌ ﴿٨٩﴾

୯୧. ଯେଉଁମାନେ ବିଶ୍ୱାସ କରିବା ପରେ ଅବିଶ୍ୱାସ କରିଅଛନ୍ତି ଓ ତତ୍‌ପରେ ଅବିଶ୍ୱାସ କରିବାରେ ବହୁତ ଆଗେଇ ଯାଇଛନ୍ତି, ସେମାନଙ୍କ ଅନୁତାପକୁ ଆଦୌ ଗ୍ରହଣ କରାଯିବ ନାହିଁ ; ଏବଂ ସେମାନେ ହିଁ ପଥଭ୍ରଷ୍ଟ ଅଟନ୍ତି ।

إِنَّ الَّذِينَ كَفَرُوا بَعْدَ إِيمَانِهِمْ ثُمَّ ازْدَادُوا كُفْرًا لَنْ تُقْبَلَ تَوْبَتُهُمْ وَأُولَٰئِكَ هُمُ الضَّالُّونَ ﴿٩٠﴾

୯୨. ଯେଉଁମାନେ ଅବିଶ୍ୱାସକାରୀ ହୋଇଛନ୍ତି ଓ ଅବିଶ୍ୱାସକାରୀ ଥିବା ଅବସ୍ଥାରେ ମୃତ୍ୟୁବରଣ କରିଛନ୍ତି ସେମାନଙ୍କ ମଧ୍ୟରୁ ଯେ କେହି ପୃଥିବୀ ପ୍ରମାଣେ ସ୍ୱର୍ଣ୍ଣ ମୁକ୍ତିମୂଲ୍ୟ ସ୍ୱରୂପ ଉପସ୍ଥାପନ କଲେ (ମଧ୍ୟ) ତାହା ଆଦୌ ଗ୍ରହଣ କରାଯିବ ନାହିଁ ; ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ; ଏବଂ ସେମାନଙ୍କର କେହି ସାହାଯ୍ୟକାରୀ ହେବେ ନାହିଁ ।

إِنَّ الَّذِينَ كَفَرُوا وَمَاتُوا وَهُمْ كُفَّارٌ فَلَنْ يُقْبَلَ مِنْ أَحَدِهِمْ مِلْءُ الْأَرْضِ ذَهَبًا وَلَوِ افْتَدَىٰ بِهِ ۗ أُولَٰئِكَ لَهُمْ عَذَابٌ أَلِيمٌ وَمَا لَهُمْ مِنْ نَاصِرِينَ ﴿٩١﴾

## ଭାଗ—୪

**ରୁ : ୧୦**

୯୩. ତୁମେମାନେ (ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ) ନିଜ ପ୍ରିୟ ବସ୍ତୁମାନଙ୍କ ମଧ୍ୟରୁ ବ୍ୟୟ ନ କରିବା ପର୍ଯ୍ୟନ୍ତ ତୁମେମାନେ କଦାପି ସମ୍ପୂର୍ଣ୍ଣ ପୁଣ୍ୟ ଲାଭ କରିପାରିବ ନାହିଁ ; ଏବଂ ତୁମେମାନେ ଯାହାକିଛି ବ୍ୟୟକର ଅଲ୍ଲାହ୍ ତାହାକୁ ଭଲରୂପେ ଜାଣନ୍ତି ।

لَنْ تَنَالُوا الْبِرَّ حَتّٰى تُنْفِقُوْا مِمَّا تُحِبُّوْنَ ۗ وَمَا تُنْفِقُوْا مِنْ شَيْءٍ فَاِنَّ اللّٰهَ بِهٖ عَلِيْمٌ ﴿٩٢﴾

୯୪. ତୌରାତ ଅବତୀର୍ଣ୍ଣ ହେବା ପୂର୍ବରୁ ଇସ୍ରାଇଲ (ଅର୍ଥାତ୍ ହଜରତ ଯାକୁବ) ଯେଉଁ ଖାଦ୍ୟ ଦ୍ରବ୍ୟକୁ[1] ଘୃଣ୍ୟ ସାବ୍ୟସ୍ତ କରିଥିଲେ ତାହା ବ୍ୟତୀତ ଆଉ ସମସ୍ତ (ଖାଦ୍ୟ) ଇସ୍ରାଇଲୀୟ ସନ୍ତାନମାନଙ୍କ ପାଇଁ ବୈଧ ଥିଲା ; (ତୁମେ) କୁହ, "ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ତୌରାତ ଆଣ ଓ ତାହାକୁ ପାଠ କର ।"

كُلُّ الطَّعَامِ كَانَ حِلًّا لِّبَنِيْٓ اِسْرَآءِيْلَ اِلَّا مَا حَرَّمَ اِسْرَآءِيْلُ عَلٰى نَفْسِهٖ مِنْ قَبْلِ اَنْ تُنَزَّلَ التَّوْرٰىةُ ۗ قُلْ فَاْتُوْا بِالتَّوْرٰىةِ فَاتْلُوْهَآ اِنْ كُنْتُمْ صٰدِقِيْنَ ﴿٩٣﴾

୯୫. ସୁତରାଂ ଏହାପରେ ଯେଉଁ ଲୋକମାନେ ଅଲ୍ଲାହ୍‌ଙ୍କ ବିରୁଦ୍ଧରେ ମିଥ୍ୟା ଆରୋପ କରିବେ ସେମାନେ ହିଁ ଅତ୍ୟାଚାରୀ ହେବେ ।

فَمَنِ افْتَرٰى عَلَى اللّٰهِ الْكَذِبَ مِنْۢ بَعْدِ ذٰلِكَ فَاُولٰٓئِكَ هُمُ الظّٰلِمُوْنَ ﴿٩٤﴾

୯୬. ତୁମେ କୁହ, "ଅଲ୍ଲାହ୍ ସତ୍ୟ କହିଥିଲେ ; ସୁତରାଂ ଇବ୍ରାହିମଙ୍କ ଧର୍ମ ଅନୁସରଣ କର ଯେ (ଅଲ୍ଲାହ୍‌ଙ୍କ ପ୍ରତି) ଅନୁଗତ ଥିଲେ ; ଓ ସେ ମୁସରିକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନ ଥିଲେ ।

قُلْ صَدَقَ اللّٰهُ ۗ فَاتَّبِعُوْا مِلَّةَ اِبْرٰهِيْمَ حَنِيْفًا ۗ وَمَا كَانَ مِنَ الْمُشْرِكِيْنَ ﴿٩٥﴾

୯୭. ବାସ୍ତବରେ ଯେଉଁ ଗୃହ ସମସ୍ତ ଲୋକଙ୍କ (ଲାଭ) ପାଇଁ ସର୍ବପ୍ରଥମେ ନିର୍ମାଣ କରାଯାଇଥିଲା ତାହା ମକ୍କାରେ[2] ଅବସ୍ଥିତ ; ତାହା ସମଗ୍ର ଜଗତ ପାଇଁ କଲ୍ୟାଣ-ଦାୟକ ସ୍ଥାନ ଓ ସତ୍‌ପଥର ଉତ୍ସ ଅଟେ ।

اِنَّ اَوَّلَ بَيْتٍ وُّضِعَ لِلنَّاسِ لَلَّذِيْ بِبَكَّةَ مُبٰرَكًا وَّهُدًى لِّلْعٰلَمِيْنَ ﴿٩٦﴾

୯୮. ଏଥିରେ କେତେକ ପ୍ରକାଶ୍ୟ ନିଦର୍ଶନ ଅଛି ; (ଏହା) ଇବ୍ରାହିମଙ୍କ ଆସ୍ଥାନ ଅଟେ ଏବଂ ଯେ କେହି ଏଥିରେ ପ୍ରବେଶ କରେ ସେ ସୁରକ୍ଷିତ ହୋଇଯାଏ ; ଏବଂ ଯେଉଁମାନଙ୍କର ଏଠାକୁ ଆସିବା ସକାଶେ ସାମର୍ଥ୍ୟ ଅଛି

فِيْهِ اٰيٰتٌۢ بَيِّنٰتٌ مَّقَامُ اِبْرٰهِيْمَ ۚ وَمَنْ دَخَلَهٗ كَانَ

---

୧. ଅସୁସ୍ଥତା ଯୋଗୁଁ ହଜରତ ଯାକୁବଙ୍କ ପାଇଁ କେତେକ ଦ୍ରବ୍ୟ ନିଷିଦ୍ଧ କରାଯାଇଥିଲା । କିନ୍ତୁ ତାଙ୍କ ସନ୍ତାନମାନେ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ ସେଗୁଡ଼ିକୁ ସେମାନଙ୍କ ପାଇଁ ଅବୈଧ ମନେ କରିଥିଲେ ।

୨. ଆୟତ ଅନ୍ତର୍ଗତ 'ବକ୍କା' ଶବ୍ଦକୁ ଆରବୀ ଭାଷାରେ ମକ୍କା କୁହାଯାଏ । କାରଣ କେତେକ ସ୍ଥଳେ ଆରବୀ ଅକ୍ଷର 'ମିମ୍' ଅର୍ଥାତ୍ 'ମ'ର ପ୍ରୟୋଗ 'ବେ' ଅର୍ଥାତ 'ବ' ଆକାରରେ ହୋଇଥାଏ ।

آمِنًا ۗ وَلِلَّهِ عَلَى النَّاسِ حِجُّ الْبَيْتِ مَنِ اسْتَطَاعَ إِلَيْهِ سَبِيلًا ۚ وَمَن كَفَرَ فَإِنَّ اللَّهَ غَنِيٌّ عَنِ الْعَالَمِينَ ﴿٩٨﴾

ଅଲ୍ଲାହ ସେମାନଙ୍କ ପାଇଁ ଏହି ଗୃହକୁ ହଜ ଯାତ୍ରାରେ ଆସିବା ବିଧେୟ କରିଛନ୍ତି ; ଏବଂ ଯେ କେହି ଅବିଶ୍ୱାସ କରେ ତେବେ (ସେ ମନେରଖିବା ଉଚିତ ଯେ) ଅଲ୍ଲାହ ସମସ୍ତ ଜଗତ (ବାସୀଙ୍କ) ଉପରେ ଆଦୌ ନିର୍ଭରଶୀଳ ନୁହନ୍ତି ।

قُلْ يَا أَهْلَ الْكِتَابِ لِمَ تَكْفُرُونَ بِآيَاتِ اللَّهِ وَاللَّهُ شَهِيدٌ عَلَىٰ مَا تَعْمَلُونَ ﴿٩٩﴾

୯୯. ତୁମେ କୁହ, "ହେ ଗ୍ରନ୍ଥଧାରୀମାନେ ! ତୁମେମାନେ କାହିଁକି ଅଲ୍ଲାହଙ୍କ ନିଦର୍ଶନଗୁଡିକୁ ଅବିଶ୍ୱାସ କରୁଅଛ ; ଅଥଚ ଅଲ୍ଲାହ ତୁମର ସକଳ କାର୍ଯ୍ୟକୁ ନିରୀକ୍ଷଣ କରୁଛନ୍ତି ।"

قُلْ يَا أَهْلَ الْكِتَابِ لِمَ تَصُدُّونَ عَن سَبِيلِ اللَّهِ مَنْ آمَنَ تَبْغُونَهَا عِوَجًا وَأَنتُمْ شُهَدَاءُ ۗ وَمَا اللَّهُ بِغَافِلٍ عَمَّا تَعْمَلُونَ ﴿١٠٠﴾

୧୦୦. (ପୁନଶ୍ଚ ତୁମେ) କୁହ, "ହେ ଗ୍ରନ୍ଥଧାରୀମାନେ ! ଯେଉଁ ବ୍ୟକ୍ତି ବିଶ୍ୱାସ କରୁଅଛି ତୁମେମାନେ କାହିଁକି ତାହାକୁ ଅଲ୍ଲାହଙ୍କ ମାର୍ଗରେ ବାଧା ଦେଉଅଛ ? ତୁମେମାନେ (ଏହାର) ସାକ୍ଷୀ ଥାଇ ମଧ୍ୟ ଏଥିରେ (ଅର୍ଥାତ୍ ଏହି ମାର୍ଗରେ) କୁଟିଳତା ଗ୍ରହଣ କରିବାକୁ ଚାହୁଁଅଛ ; ଏବଂ ତୁମେମାନେ ଯାହା କରୁଅଛ ଅଲ୍ଲାହ ସେଥିପ୍ରତି ଆଦୌ ଅପରିଜ୍ଞାତ ନୁହନ୍ତି ।"

يَا أَيُّهَا الَّذِينَ آمَنُوا إِن تُطِيعُوا فَرِيقًا مِّنَ الَّذِينَ أُوتُوا الْكِتَابَ يَرُدُّوكُم بَعْدَ إِيمَانِكُمْ كَافِرِينَ ﴿١٠١﴾

୧୦୧. "ହେ ବିଶ୍ୱାସକାରୀମାନେ ! ଯଦି ତୁମେମାନେ ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ଯେ କୌଣସି ସମ୍ପ୍ରଦାୟକୁ ଅନୁସରଣ କରିବ, ତେବେ ସେମାନେ ତୁମମାନଙ୍କୁ ବିଶ୍ୱାସ କରିବା ପରେ ଅବିଶ୍ୱାସକାରୀରେ ପରିଣତ କରାଇ ଦେବେ ।"

وَكَيْفَ تَكْفُرُونَ وَأَنتُمْ تُتْلَىٰ عَلَيْكُمْ آيَاتُ اللَّهِ وَفِيكُمْ رَسُولُهُ ۗ وَمَن يَعْتَصِم بِاللَّهِ فَقَدْ هُدِيَ إِلَىٰ صِرَاطٍ مُّسْتَقِيمٍ ﴿١٠٢﴾ ع

୧୦୨. "ଏବଂ ତୁମେମାନେ କିପରି ଅବିଶ୍ୱାସ କରିବ ଯେତେବେଳେ କି ତୁମମାନଙ୍କୁ ଅଲ୍ଲାହଙ୍କ ବାଣୀ ପାଠ କରି ଶୁଣାଇ ଦିଆଯାଉଛି ଓ ତୁମମାନଙ୍କ ମଧ୍ୟରେ ତାହାଙ୍କ ରସୁଲ (ବିଦ୍ୟମାନ) ଅଛନ୍ତି ; ଏବଂ ଯେଉଁ ବ୍ୟକ୍ତି ଅଲ୍ଲାହଙ୍କର ଶରଣ ପଶେ (ବୁଝିରଖ ଯେ) ତାହାଙ୍କୁ ହିଁ ସରଳମାର୍ଗରେ ପରିଚାଳିତ କରାଯାଏ ।"

ରୁ : ୧୧

يَا أَيُّهَا الَّذِينَ آمَنُوا اتَّقُوا اللَّهَ حَقَّ تُقَاتِهِ وَلَا تَمُوتُنَّ إِلَّا وَأَنتُم مُّسْلِمُونَ ﴿١٠٣﴾

୧୦୩. "ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କ ପାଇଁ ତୁମେମାନେ ସମସ୍ତ ସର୍ତ୍ତ ସହିତ ଧର୍ମଭୀରୁତା ଅବଲମ୍ବନ କର ଏବଂ ସମ୍ପୂର୍ଣ୍ଣ ଆଜ୍ଞାପାଳନକାରୀ ହୋଇଥିବା ଅବସ୍ଥାରେ ତୁମମାନଙ୍କର ମୃତ୍ୟୁ ହେଉ ।

وَاعْتَصِمُوا بِحَبْلِ اللَّهِ جَمِيعًا وَلَا تَفَرَّقُوا ۚ

୧୦୪. ଏବଂ ତୁମେମାନେ ସମସ୍ତେ ଅଲ୍ଲାହଙ୍କ ରଜ୍ଜୁକୁ[୧] ଦୃଢ ଭାବେ ଧାରଣ କର ; ଏବଂ (ପରସ୍ପର ଠାରୁ) ପୃଥକ୍ ହୁଅ

୧. ମୂଳ 'ହବଲ୍' ଶବ୍ଦର ଅର୍ଥ (କ) ରଜ୍ଜୁ, (ଖ) ବନ୍ଧପତ୍ର ବା ଚୁକ୍ତିନାମା, (ଗ) ଏପରି ଏକ କର୍ତ୍ତବ୍ୟ ଯାହାଦ୍ୱାରା ଜଣେ ଅନ୍ୟ ବ୍ୟକ୍ତି ବା ବସ୍ତୁର ନିରାପତ୍ତା ପାଇଁ ଦାୟୀ, (ଘ) ସନ୍ଧି, (ଙ) ସୁରକ୍ଷା ।
ଧର୍ମଗ୍ରନ୍ଥକୁ ହଜରତ ମହମ୍ମଦ ରଜ୍ଜୁ ସହିତ ତୁଳନା କରିଛନ୍ତି ଓ କହିଛନ୍ତି ଯେ ଏହା ଆକାଶରୁ ଭୂପୃଷ୍ଠ ପର୍ଯ୍ୟନ୍ତ ବିସ୍ତାରିତ ।

وَاذْكُرُوْا نِعْمَتَ اللّٰهِ عَلَيْكُمْ اِذْ كُنْتُمْ اَعْدَآءً فَاَلَّفَ بَيْنَ قُلُوْبِكُمْ فَاَصْبَحْتُمْ بِنِعْمَتِهٖٓ اِخْوَانًا ۚ وَكُنْتُمْ عَلٰى شَفَا حُفْرَةٍ مِّنَ النَّارِ فَاَنْقَذَكُمْ مِّنْهَا ۗ كَذٰلِكَ يُبَيِّنُ اللّٰهُ لَكُمْ اٰيٰتِهٖ لَعَلَّكُمْ تَهْتَدُوْنَ ﴿١٠٤﴾

ନାହିଁ ; ଏବଂ ତୁମମାନଙ୍କ ପ୍ରତି ଅଲ୍ଲାହ୍‌ଙ୍କ କୃପାକୁ ସ୍ମରଣ କର, ଯେତେବେଳେ କି ତୁମେମାନେ (ପରସ୍ପରର) ଶତ୍ରୁ ଥିଲ, ସେ ତୁମମାନଙ୍କ ହୃଦୟରେ ପ୍ରେମଭାବ ଜାଗ୍ରତ କରାଇଲେ, ଯଦ୍ଦ୍ୱାରା ତୁମେମାନେ ତାହାଙ୍କ କୃପାରୁ ଭାଇଭାଇ ହୋଇଗଲ, ଏବଂ ତୁମେମାନେ ଏକ ଅଗ୍ନିଗହ୍ୱର ସମୀପରେ ଥିଲ କିନ୍ତୁ ସେ ତୁମମାନଙ୍କୁ ସେଥିରୁ ରକ୍ଷା କଲେ ; ଏହିପରି ଅଲ୍ଲାହ୍ ତୁମମାନଙ୍କ ପାଇଁ ନିଜ ନିଦର୍ଶନଗୁଡ଼ିକୁ ବର୍ଣ୍ଣନା କରନ୍ତି, ଯଦ୍ଦ୍ୱାରା ତୁମେମାନେ ସତ୍‌ପଥ ପ୍ରାପ୍ତ ହେବ ।

وَلْتَكُنْ مِّنْكُمْ اُمَّةٌ يَّدْعُوْنَ اِلَى الْخَيْرِ وَيَاْمُرُوْنَ بِالْمَعْرُوْفِ وَيَنْهَوْنَ عَنِ الْمُنْكَرِ ۗ وَاُولٰٓئِكَ هُمُ الْمُفْلِحُوْنَ ﴿١٠٥﴾

୧୦୫. ଏବଂ ତୁମମାନଙ୍କ ମଧ୍ୟରେ ଏପରି ଏକ ଦଳ ରହିବା ଉଚିତ ଯେ କି (ଲୋକମାନଙ୍କୁ) କେବଳ ପୁଣ୍ୟ କର୍ମ କରିବାକୁ ଡାକିବେ ଓ ପୁଣ୍ୟ କାର୍ଯ୍ୟର ଶିକ୍ଷାଦେବେ ଓ ପାପକାର୍ଯ୍ୟ କରିବାକୁ ବାରଣ କରିବେ ଏବଂ ଏହି ଲୋକମାନେ ହିଁ କୃତକାର୍ଯ୍ୟ ହେବେ ।

وَلَا تَكُوْنُوْا كَالَّذِيْنَ تَفَرَّقُوْا وَاخْتَلَفُوْا مِنْۢ بَعْدِ مَا جَآءَهُمُ الْبَيِّنٰتُ ۗ وَاُولٰٓئِكَ لَهُمْ عَذَابٌ عَظِيْمٌ ﴿١٠٦﴾

୧୦୬. ଏବଂ ତୁମେମାନେ ସେହି ଲୋକମାନଙ୍କ ସଦୃଶ ହୁଅ ନାହିଁ ଯେଉଁମାନଙ୍କ ନିକଟକୁ ପ୍ରକାଶ୍ୟ ନିଦର୍ଶନମାନ ଆସିବା ପରେ ମଧ୍ୟ ସେମାନେ (ପରସ୍ପର ଠାରୁ) ପୃଥକ୍ ହୋଇଯାଇଥିଲେ ଓ ଭିନ୍ନମତ ପୋଷଣ କରିଥିଲେ ; ଏବଂ ଏହି ଲୋକମାନଙ୍କ ପାଇଁ (ସେହି ଦିନ) ଭୀଷଣ ଶାସ୍ତି (ନିୟତ) ଅଛି ।

يَّوْمَ تَبْيَضُّ وُجُوْهٌ وَّتَسْوَدُّ وُجُوْهٌ ۚ فَاَمَّا الَّذِيْنَ اسْوَدَّتْ وُجُوْهُهُمْ ۟ اَكَفَرْتُمْ بَعْدَ اِيْمَانِكُمْ فَذُوْقُوا الْعَذَابَ بِمَا كُنْتُمْ تَكْفُرُوْنَ ﴿١٠٧﴾

୧୦୭. ଯେଉଁଦିନ କେତେକଙ୍କ ଚେହେରା ଧଳା ଓ କେତେକଙ୍କ ଚେହେରା କଳା ହେବ ଏବଂ ଯେଉଁ ଲୋକମାନଙ୍କର ଚେହେରା କଳା ହୋଇଥିବ (ସେମାନଙ୍କୁ କୁହାଯିବ), "କ'ଣ (ଏହା ସତ୍ୟ ନୁହେଁ ଯେ) ତୁମେମାନେ ବିଶ୍ୱାସ କଲା ପରେ ଅବିଶ୍ୱାସକାରୀ ହୋଇଯାଇଥିଲ ?" ତାହାହେଲେ ତୁମେମାନେ ଅବିଶ୍ୱାସ କରିଥିବା ଯୋଗୁଁ ଏହି ଶାସ୍ତିକୁ ଆସ୍ୱାଦନ କର ।

وَاَمَّا الَّذِيْنَ ابْيَضَّتْ وُجُوْهُهُمْ فَفِيْ رَحْمَةِ اللّٰهِ ۗ هُمْ فِيْهَا خٰلِدُوْنَ ﴿١٠٨﴾

୧୦୮. ଏବଂ ଯେଉଁ ଲୋକମାନଙ୍କ ଚେହେରା ଧଳା ହୋଇଯିବ, ସେମାନେ ଅଲ୍ଲାହ୍‌ଙ୍କ କରୁଣା ଲାଭ କରିବେ ; ସେମାନେ ସେଠାରେ ରହିଥିବେ ।

تِلْكَ اٰيٰتُ اللّٰهِ نَتْلُوْهَا عَلَيْكَ بِالْحَقِّ ۗ وَمَا اللّٰهُ يُرِيْدُ ظُلْمًا لِّلْعٰلَمِيْنَ ﴿١٠٩﴾

୧୦୯. ଏଗୁଡ଼ିକ ସତ୍ୟ ଉପରେ ଆଧାରିତ ଅଲ୍ଲାହ୍‌ଙ୍କର ନିଦର୍ଶନ ଯାହାକୁ ଆମେ ତୁମମାନଙ୍କ ନିକଟରେ ପାଠ କରି ଶୁଣାଉଅଛୁ ; ଏବଂ ଅଲ୍ଲାହ୍ ସମସ୍ତ ଜଗତ ପ୍ରତି କୌଣସି ପ୍ରକାର ଅନ୍ୟାୟ କରିବାକୁ ଇଚ୍ଛା କରନ୍ତି ନାହିଁ ।

وَلِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۗ وَاِلَى اللّٰهِ تُرْجَعُ الْاُمُوْرُ ﴿١١٠﴾

୧୧୦. ଏବଂ ଯାହାକିଛି ଆକାଶରେ ଅଛି ଓ ଯାହାକିଛି ପୃଥିବୀରେ ଅଛି (ସେ ସମସ୍ତ) ଅଲ୍ଲାହ୍‌ଙ୍କର ଅଟେ ; ଏବଂ ଅଲ୍ଲାହ୍‌ଙ୍କ ନିକଟକୁ ସମସ୍ତ ବିଷୟ ଫେରାଇ ନିଆଯିବ ।

ରୁ : ୧୨

୧୧୧. ତୁମେମାନେ ସର୍ବୋତ୍କୃଷ୍ଟ ସମ୍ପ୍ରଦାୟ,[1] ଯାହାକୁ ଲୋକମାନଙ୍କ (ଉପକାର) ଲାଗି ସୃଷ୍ଟି କରାଯାଇଛି ; ତୁମେମାନେ ପୁଣ୍ୟ (କାର୍ଯ୍ୟକରିବା) ପାଇଁ ଉପଦେଶ ଦେଉଅଛ ଓ ପାପ (କାର୍ଯ୍ୟ)ରୁ ବାରଣ କରୁଅଛ ; ଏବଂ ଯଦି ଗ୍ରନ୍ଥଧାରୀମାନେ ମଧ୍ୟ ବିଶ୍ୱାସ ସ୍ଥାପନ କରିଥାଆନ୍ତେ ତେବେ ସେମାନଙ୍କ ପାଇଁ ଉତ୍କୃଷ୍ଟ ହୋଇ ଥାଆନ୍ତା ; ସେମାନଙ୍କ ମଧ୍ୟରୁ କେତେକ ବିଶ୍ୱାସକାରୀ ଅଟନ୍ତି, ମାତ୍ର ସେମାନଙ୍କ ମଧ୍ୟରୁ ଅଧିକାଂଶ ଅମାନ୍ୟକାରୀ ଅଟନ୍ତି ।

كُنْتُمْ خَيْرَ أُمَّةٍ أُخْرِجَتْ لِلنَّاسِ تَأْمُرُوْنَ بِالْمَعْرُوْفِ وَتَنْهَوْنَ عَنِ الْمُنْكَرِ وَتُؤْمِنُوْنَ بِاللّٰهِ ۗ وَلَوْ اٰمَنَ اَهْلُ الْكِتٰبِ لَكَانَ خَيْرًا لَّهُمْ ۗ مِنْهُمُ الْمُؤْمِنُوْنَ وَاَكْثَرُهُمُ الْفٰسِقُوْنَ ﴿١١١﴾

୧୧୨. ସେ (ଲୋକ)ମାନେ ସାମାନ୍ୟ କଷ୍ଟ ଦେବା ବ୍ୟତୀତ ତୁମମାନଙ୍କର କୌଣସି କ୍ଷତି କରିପାରିବେ ନାହିଁ ; ଏବଂ ଯଦି ସେମାନେ ତୁମମାନଙ୍କ ସହିତ ଯୁଦ୍ଧ କରନ୍ତି, ତେବେ ସେମାନେ ତୁମ ଆଡ଼କୁ ପିଠି ବୁଲାଇ ପଳାୟନ କରିବେ ; ଏହାପରେ ସେମାନଙ୍କୁ କୌଣସି ଆଡ଼ୁ ମଧ୍ୟ ସାହାଯ୍ୟ ମିଳିବ ନାହିଁ ।

لَنْ يَّضُرُّوْكُمْ اِلَّآ اَذًى ۗ وَاِنْ يُّقَاتِلُوْكُمْ يُوَلُّوْكُمُ الْاَدْبَارَ ۟ ثُمَّ لَا يُنْصَرُوْنَ ﴿١١٢﴾

୧୧୩. ସେମାନେ ଅଲ୍ଲାହ୍‌ଙ୍କ କୌଣସି ଅଙ୍ଗୀକାରର ଶରଣାଧୀନ କିମ୍ବା ଲୋକମାନଙ୍କର ଅଙ୍ଗୀକାରର ଶରଣାଧୀନ ହୋଇ ନ ଥିଲେ, ସେମାନେ ଯେଉଁଠାରେ ଥିଲେ ମଧ୍ୟ ସେମାନଙ୍କୁ ଲାଞ୍ଛିତ[2] କରାହେବ ଯେହିଁରୁ ସେମାନେ ରକ୍ଷା ପାଇବେ ନାହିଁ ; ସେମାନେ ଅଲ୍ଲାହ୍‌ଙ୍କ ପ୍ରକୋପର ଭାଜନ ହୋଇଛନ୍ତି ; ଏବଂ ସେମାନଙ୍କ ଉପରେ ଅସହାୟତା (ଅବସ୍ଥାକୁ) ଲଦି ଦିଆଯାଇଛି, କାରଣ ସେମାନେ ଅଲ୍ଲାହ୍‌ଙ୍କ ନିଦର୍ଶନଗୁଡିକୁ ଅଗ୍ରାହ୍ୟ କରୁଥିଲେ ଓ ବିନା କାରଣରେ ନବିମାନଙ୍କୁ ହତ୍ୟା କରିବାକୁ ଇଚ୍ଛା କରୁଥିଲେ ; ସେମାନେ ଅମାନ୍ୟ କରିଥିବାରୁ ଓ ସୀମା ଲଙ୍ଘନ କରିଥିବାରୁ ଏପରି ବିଷୟ (ସେମାନଙ୍କଠାରେ ଦେଖାଯାଇ) ଥିଲା ।

ضُرِبَتْ عَلَيْهِمُ الذِّلَّةُ اَيْنَ مَا ثُقِفُوْٓا اِلَّا بِحَبْلٍ مِّنَ اللّٰهِ وَحَبْلٍ مِّنَ النَّاسِ وَبَآءُوْ بِغَضَبٍ مِّنَ اللّٰهِ وَضُرِبَتْ عَلَيْهِمُ الْمَسْكَنَةُ ۗ ذٰلِكَ بِاَنَّهُمْ كَانُوْا يَكْفُرُوْنَ بِاٰيٰتِ اللّٰهِ وَيَقْتُلُوْنَ الْاَنْۢبِيَآءَ بِغَيْرِ حَقٍّ ۗ ذٰلِكَ بِمَا عَصَوْا وَّكَانُوْا يَعْتَدُوْنَ ﴿١١٣﴾

୧୧୪. ସେ (ଲୋକ)ମାନେ ସମସ୍ତେ ସମାନ ନୁହନ୍ତି ; ଗ୍ରନ୍ଥଧାରୀମାନଙ୍କ ଭିତରେ ଏପରି ମଧ୍ୟ ଦଳେ ଅଛନ୍ତି ଯେଉଁମାନେ (ନିଜ ଅଙ୍ଗୀକାରରେ) ପ୍ରତିଷ୍ଠିତ ଅଛନ୍ତି ; ସେମାନେ ରାତ୍ରିକାଳରେ ଅଲ୍ଲାହ୍‌ଙ୍କ ବାଣୀ ପାଠ କରୁଛନ୍ତି ଓ ସିଜ୍‌ଦା (ମଧ୍ୟ) କରୁଅଛନ୍ତି ।

لَيْسُوْا سَوَآءً ۗ مِنْ اَهْلِ الْكِتٰبِ اُمَّةٌ قَآئِمَةٌ يَّتْلُوْنَ اٰيٰتِ اللّٰهِ اٰنَآءَ الَّيْلِ وَهُمْ يَسْجُدُوْنَ ﴿١١٤﴾

---

୧. ମୁସଲମାନମାନଙ୍କୁ ସ୍ୱ ସ୍ୱ କଲ୍ୟାଣ ପରିବର୍ତ୍ତେ ଅନ୍ୟ ଲୋକମାନଙ୍କ କଲ୍ୟାଣ ସକାଶେ ସୃଷ୍ଟି କରାଯାଇଥିବାରୁ ସେମାନଙ୍କୁ ସର୍ବଶ୍ରେଷ୍ଠ ବ୍ୟକ୍ତି ବୋଲି କୁହାଯାଇଛି । ସୁତରାଂ ସେମାନେ ଏହା ଉପଲବ୍ଧି କରିବା ଉଚିତ ଯଦ୍ବାରା ସେମାନଙ୍କୁ ଅଯଥା ଅପମାନିତ ହେବାକୁ ପଡିବ ନାହିଁ ।

୨. ଏହି ଆୟତରେ ଇହୁଦୀମାନଙ୍କ ସମ୍ବନ୍ଧରେ ଏକ ଗୁରୁତ୍ୱପୂର୍ଣ୍ଣ ଓ ସୁଦୂରପ୍ରସାରୀ ଭବିଷ୍ୟତ୍‌ବାଣୀ ରହିଅଛି । ତାହା ହେଉଛି, ଇହୁଦୀମାନେ ସବୁବେଳେ ଲାଞ୍ଛିତ ହେଉଥିବେ ଓ ପରାଧୀନ ଜୀବନଯାପନ କରୁଥିବେ । ଇହୁଦୀମାନଙ୍କ ଇତିବୃତ୍ତ ଏହାର ଜ୍ୱଳନ୍ତ ପ୍ରମାଣ । ସବୁଦେଶରେ ଓ ସବୁଯୁଗରେ ସେମାନେ ନିର୍ଯ୍ୟାତନାର ଶିକାର ହୋଇଛନ୍ତି । ସାମ୍ପ୍ରତିକ ଇସ୍ରାଏଲ୍ ରାଜ୍ୟର ପ୍ରତିଷ୍ଠା ଇହୁଦୀ ଇତିହାସରେ ଏକ କ୍ଷଣସ୍ଥାୟୀ ପର୍ଯ୍ୟାୟ ।

୧୧୫. ସେମାନେ ଅଲ୍ଲାହ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରୁଛନ୍ତି ଏବଂ ପୁଣ୍ୟ (କାର୍ଯ୍ୟ) କରିବାକୁ ଉପଦେଶ ଦେଉଛନ୍ତି ଓ ପାପ (କାର୍ଯ୍ୟ)ରୁ ବାରଣ କରୁଛନ୍ତି ତଥା ପୁଣ୍ୟ କାର୍ଯ୍ୟ କରିବାରେ ଜଣେ ଅନ୍ୟଠାରୁ ଆଗେଇ ଯିବାକୁ ତତ୍ପର ହେଉଛନ୍ତି; ଏମାନେ ହି ପୁଣ୍ୟବାନମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ।

يُؤْمِنُونَ بِاللَّهِ وَالْيَوْمِ الْآخِرِ وَيَأْمُرُونَ بِالْمَعْرُوفِ وَيَنْهَوْنَ عَنِ الْمُنكَرِ وَيُسَارِعُونَ فِي الْخَيْرَاتِ ۖ وَأُولَٰئِكَ مِنَ الصَّالِحِينَ ﴿١١٤﴾

୧୧୬. ଏବଂ ସେମାନେ ଯାହା କିଛି ପୁଣ୍ୟ କରିବେ ତାହାକୁ ହତାଦର[1] କରାଯିବ ନାହିଁ; ଏବଂ ଅଲ୍ଲାହ ଧର୍ମଭୀରୁମାନଙ୍କୁ ଭଲ ରୂପେ ଜାଣନ୍ତି।

وَمَا يَفْعَلُوا مِنْ خَيْرٍ فَلَن يُكْفَرُوهُ ۗ وَاللَّهُ عَلِيمٌ بِالْمُتَّقِينَ ﴿١١٥﴾

୧୧୭. ଯେଉଁମାନେ ଅବିଶ୍ୱାସକାରୀ ଅଟନ୍ତି, ସେମାନଙ୍କୁ ସେମାନଙ୍କର ଧନ ସମ୍ପତ୍ତି ଓ ସେମାନଙ୍କର ସନ୍ତାନସନ୍ତତି ଅଲ୍ଲାହଙ୍କ ଶାସ୍ତିରୁ ରକ୍ଷା କରିପାରିବେ ନାହିଁ; ଏବଂ ସେମାନେ ନରକାଗ୍ନିର ଅଧିବାସୀ ଅଟନ୍ତି ଓ ସେଠାରେ ଦୀର୍ଘକାଳ ରହିବେ।

إِنَّ الَّذِينَ كَفَرُوا لَن تُغْنِيَ عَنْهُمْ أَمْوَالُهُمْ وَلَا أَوْلَادُهُم مِّنَ اللَّهِ شَيْئًا ۖ وَأُولَٰئِكَ أَصْحَابُ النَّارِ ۚ هُمْ فِيهَا خَالِدُونَ ﴿١١٦﴾

୧୧୮. ଯାହାକିଛି ଏ (ଲୋକ)ମାନେ ଏହି ସାଂସାରିକ ଜୀବନ ପାଇଁ ବ୍ୟୟ କରୁଛନ୍ତି, ତାହାର ଅବସ୍ଥା ସେହି ବାୟୁ ସଦୃଶ[2] ଯାହା ଅତ୍ୟନ୍ତ ଶୀତଳ ଓ ତାହା ନିଜ ପ୍ରତି ଅତ୍ୟାଚାର କରିଥିବା ଏକ ସମ୍ପ୍ରଦାୟର ଶସ୍ୟକ୍ଷେତ୍ର ଉପରେ ପ୍ରବାହିତ ହୋଇ ତାହାକୁ ନଷ୍ଟ କରିଥାଏ; ଏବଂ ଅଲ୍ଲାହ ସେମାନଙ୍କ ପ୍ରତି ଅତ୍ୟାଚାର କରି ନାହାନ୍ତି ବରଂ ସେମାନେ ନିଜେ ନିଜ ପ୍ରତି ଅତ୍ୟାଚାର କରିଛନ୍ତି।

مَثَلُ مَا يُنفِقُونَ فِي هَٰذِهِ الْحَيَاةِ الدُّنْيَا كَمَثَلِ رِيحٍ فِيهَا صِرٌّ أَصَابَتْ حَرْثَ قَوْمٍ ظَلَمُوا أَنفُسَهُمْ فَأَهْلَكَتْهُ ۚ وَمَا ظَلَمَهُمُ اللَّهُ وَلَٰكِنْ أَنفُسَهُمْ يَظْلِمُونَ ﴿١١٧﴾

୧୧୯. ହେ ବିଶ୍ୱାସକାରୀମାନେ! (ତୁମେମାନେ) ନିଜ ଲୋକମାନଙ୍କ ବ୍ୟତୀତ (ଅନ୍ୟ କାହାରିକୁ) ଅନ୍ତରଙ୍ଗ ବନ୍ଧୁ (ରୂପେ ଗ୍ରହଣ) କର ନାହିଁ; ସେମାନେ ତୁମମାନଙ୍କ ପ୍ରତି ଅସଦ୍ ବ୍ୟବହାର କରିବାରେ ଆଦୌ ହେଳା କରନ୍ତି ନାହିଁ ଏବଂ ତୁମେମାନେ ଦୁଃଖରେ ପଡିଯିବାକୁ ପସନ୍ଦ କରନ୍ତି; (ସେମାନଙ୍କ) ଶତ୍ରୁତା ସେମାନଙ୍କ ଚେହେରାରୁ ପ୍ରକାଶ ପାଇଅଛି; ଏବଂ ଯାହାକିଛି ସେମାନଙ୍କ ଅନ୍ତରରେ ଗୋପନ ଅଛି ଏହା (ତାହାଠାରୁ) ମଧ୍ୟ ଗୁରୁତର; ଯଦି ତୁମମାନଙ୍କର ବୋଧଶକ୍ତି ଥିବ ତେବେ ଜାଣିପାରିବ ଯେ ଆମେ ତୁମମାନଙ୍କ ପାଇଁ ଆମର ନିଦର୍ଶନଗୁଡିକୁ ସ୍ପଷ୍ଟରୂପେ ବର୍ଣ୍ଣନା କରିଅଛୁ।

يَا أَيُّهَا الَّذِينَ آمَنُوا لَا تَتَّخِذُوا بِطَانَةً مِّن دُونِكُمْ لَا يَأْلُونَكُمْ خَبَالًا وَدُّوا مَا عَنِتُّمْ قَدْ بَدَتِ الْبَغْضَاءُ مِنْ أَفْوَاهِهِمْ وَمَا تُخْفِي صُدُورُهُمْ أَكْبَرُ ۚ قَدْ بَيَّنَّا لَكُمُ الْآيَاتِ ۖ إِن كُنتُمْ تَعْقِلُونَ ﴿١١٨﴾

---

୧. ଇସଲାମ ଏକ ରାଷ୍ଟ୍ରୀୟ ବା ଆଞ୍ଚଳିକ ଧର୍ମ ନୁହେଁ। ତେଣୁ ଯେ କେହି ଏହି ଧର୍ମ ଗ୍ରହଣ କରି ସତ୍କର୍ମ କରିବ ସେ ଯେଉଁ ଜାତି, ଦେଶ ବା ବର୍ଣ୍ଣର ହୋଇଥାଉ ପଛେ, ସମାନ ଭାବରେ ପୁରସ୍କୃତ ହେବ। ଆରବବାସୀ ନିଜକୁ ସର୍ବଶ୍ରେଷ୍ଠ ମନେ କରୁଥିବା ଧାରଣାକୁ ଏହା ଖଣ୍ଡନ କରୁଅଛି।

୨. ଏହାର ପ୍ରକୃତ ମର୍ମ ହେଉଛି ଯେ ମନୁଷ୍ୟ ନିଜର ବିଳାସ ପାଇଁ ବ୍ୟୟ କରିଥାଏ ଅଥଚ ଏହା ଛଳନାପୂର୍ଣ୍ଣ ଉପାୟରେ କରାଯାଉଥିବାରୁ ତାହାର ପରିଣାମ ଉତ୍ତର ଦିଗରୁ ପ୍ରବାହିତ ଶୀତଳ ବାୟୁ ସଦୃଶ। ଉକ୍ତ ବାୟୁ ଯେପରି ଶସ୍ୟକ୍ଷେତ୍ରକୁ ନଷ୍ଟ କରିଥାଏ ସେହିପରି ସେମାନଙ୍କର ଉକ୍ତ ବ୍ୟୟ ସେମାନଙ୍କ କର୍ମକୁ ନଷ୍ଟ କରିଦିଏ।

୧୨୦. ଶୁଣ, ତୁମେମାନେ ସେମାନଙ୍କୁ ପ୍ରେମ କର, ଅଥଚ ସେମାନେ ତୁମମାନଙ୍କୁ ପ୍ରେମ କରନ୍ତି ନାହିଁ ; ଏବଂ ତୁମେମାନେ (ସମଗ୍ର ଧର୍ମ) ଗ୍ରନ୍ଥରେ ବିଶ୍ୱାସ କରୁଅଛ ; ଏବଂ ଯେତେବେଳେ ସେମାନେ ତୁମମାନଙ୍କୁ ସାକ୍ଷାତ୍ କରନ୍ତି ସେତେବେଳେ କହନ୍ତି ଯେ ଆମେମାନେ (ମଧ୍ୟ) ବିଶ୍ୱାସ କରୁଅଛୁ ; ଏବଂ ଯେତେବେଳେ ପୃଥକ୍ ହୁଅନ୍ତି ସେମାନେ ତୁମମାନଙ୍କ ପ୍ରତି କ୍ରୋଧରେ (ନିଜ) ଆଙ୍ଗୁଳି କାମୁଡନ୍ତି ; (ତୁମେ) ସେମାନଙ୍କୁ କୁହ, "ତୁମେମାନେ ନିଜ କ୍ରୋଧ ଯୋଗୁଁ ମରିଯାଅ;" ଅଲ୍ଲାହ ବାସ୍ତବରେ ଅନ୍ତରର ଭେଦକୁ ଭଲ ଭାବରେ ଜାଣନ୍ତି ।

هَٰٓأَنتُمْ أُوْلَآءِ تُحِبُّونَهُمْ وَلَا يُحِبُّونَكُمْ وَتُؤْمِنُونَ بِٱلْكِتَٰبِ كُلِّهِۦ وَإِذَا لَقُوكُمْ قَالُوٓا۟ ءَامَنَّا وَإِذَا خَلَوْا۟ عَضُّوا۟ عَلَيْكُمُ ٱلْأَنَامِلَ مِنَ ٱلْغَيْظِ ۚ قُلْ مُوتُوا۟ بِغَيْظِكُمْ ۗ إِنَّ ٱللَّهَ عَلِيمٌۢ بِذَاتِ ٱلصُّدُورِ ١٢٠

୧୨୧. ଯଦି ତୁମମାନଙ୍କୁ କୌଣସି ସଫଳତା ପ୍ରାପ୍ତି ହୁଏ ତେବେ ସେମାନଙ୍କୁ ଖରାପ ଲାଗେ ; ଏବଂ ଯଦି ତୁମମାନଙ୍କୁ କୌଣସି କଷ୍ଟ ହୁଏ ତେବେ ସେମାନେ ଆନନ୍ଦିତ ହୁଅନ୍ତି ; ଯଦି ତୁମେମାନେ ଧୈର୍ଯ୍ୟ ଧରିବ ଓ ଧର୍ମଭୀରୁତା ଅବଲମ୍ବନ କରିବ ତେବେ ସେମାନଙ୍କର ଚକ୍ରାନ୍ତ ତୁମମାନଙ୍କର କୌଣସି ଅନିଷ୍ଟ କରିବ ନାହିଁ ; ଏବଂ ସେମାନେ ଯାହା କିଛି କରୁଅଛନ୍ତି ଅଲ୍ଲାହ ନିଶ୍ଚୟ ତାହାକୁ ନଷ୍ଟଭ୍ରଷ୍ଟ କରିଦେବେ ।

إِن تَمْسَسْكُمْ حَسَنَةٌ تَسُؤْهُمْ وَإِن تُصِبْكُمْ سَيِّئَةٌ يَفْرَحُوا۟ بِهَا ۖ وَإِن تَصْبِرُوا۟ وَتَتَّقُوا۟ لَا يَضُرُّكُمْ كَيْدُهُمْ شَيْـًٔا ۗ إِنَّ ٱللَّهَ بِمَا يَعْمَلُونَ مُحِيطٌ ١٢١ ع

ରୁ : ୧୩

୧୨୨. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ତୁମେ ପ୍ରଭାତରେ ନିଜ ପରିବାର ବର୍ଗଙ୍କୁ ଛାଡି ବିଶ୍ୱାସକାରୀମାନଙ୍କୁ ସେମାନଙ୍କର ନିର୍ଦ୍ଦିଷ୍ଟ ସ୍ଥାନରେ ଯୁଦ୍ଧ[୧] ପାଇଁ ଅବସ୍ଥାପିତ କରିବା ସକାଶେ ବାହାରିଥିଲ ; ଏବଂ ଅଲ୍ଲାହ ମହାନ୍ ଶ୍ରୋତା ଓ ସର୍ବଜ୍ଞ ।

وَإِذْ غَدَوْتَ مِنْ أَهْلِكَ تُبَوِّئُ ٱلْمُؤْمِنِينَ مَقَٰعِدَ لِلْقِتَالِ ۗ وَٱللَّهُ سَمِيعٌ عَلِيمٌ ١٢٢

୧୨୩. (ପୁନଶ୍ଚ ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ (ଏହି ଅବସ୍ଥାକୁ ଲକ୍ଷ୍ୟ କରି) ତୁମମାନଙ୍କ ମଧ୍ୟରୁ ଦୁଇଟି ଦଳ ଭୀରୁତା ପ୍ରକାଶ କରିବା ସକାଶେ ପ୍ରସ୍ତୁତ ହୋଇଗଲେ ଅଥଚ ଅଲ୍ଲାହ ସେମାନଙ୍କର ବନ୍ଧୁ ଥିଲେ ; ଏବଂ ବିଶ୍ୱାସକାରୀମାନଙ୍କୁ ଅଲ୍ଲାହଙ୍କ ଉପରେ ହିଁ ନିର୍ଭର କରିବା ଉଚିତ ।

إِذْ هَمَّت طَّآئِفَتَانِ مِنكُمْ أَن تَفْشَلَا وَٱللَّهُ وَلِيُّهُمَا ۗ وَعَلَى ٱللَّهِ فَلْيَتَوَكَّلِ ٱلْمُؤْمِنُونَ ١٢٣

୧୨୪. ଏବଂ (ଏଥିପୂର୍ବରୁ) ବଦର (ଯୁଦ୍ଧ କ୍ଷେତ୍ରରେ), ଯେତେବେଳେ କି ତୁମେମାନେ ନଗଣ୍ୟ ଥିଲ (ସେତେବେଳେ) ଅଲ୍ଲାହ ବାସ୍ତବରେ ତୁମମାନଙ୍କୁ ସାହାଯ୍ୟ କରିଥିଲେ ; ସୁତରାଂ ତୁମେମାନେ ଅଲ୍ଲାହଙ୍କୁ ଭୟ କର, ଫଳରେ ତୁମେମାନେ କୃତଜ୍ଞ ହେବ ।

وَلَقَدْ نَصَرَكُمُ ٱللَّهُ بِبَدْرٍ وَأَنتُمْ أَذِلَّةٌ ۖ فَٱتَّقُوا۟ ٱللَّهَ لَعَلَّكُمْ تَشْكُرُونَ ١٢٤

---

୧. ଏହି ଆୟତରେ ଉହଦ ଯୁଦ୍ଧକ୍ଷେତ୍ରର ଏକ ଘଟଣା ବର୍ଣ୍ଣନା କରାଯାଇଛି ।

إِذْ تَقُولُ لِلْمُؤْمِنِينَ أَلَن يَكْفِيَكُمْ أَن يُمِدَّكُمْ رَبُّكُم بِثَلَاثَةِ آلَافٍ مِّنَ الْمَلَائِكَةِ مُنزَلِينَ ﴿١٢٥﴾

୧୨୫. (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ତୁମେ ବିଶ୍ୱାସକାରୀମାନଙ୍କୁ କହୁଥିଲ, "କ'ଣ ତୁମମାନଙ୍କ ସକାଶେ ଏ (ବିଷୟ) ଯଥେଷ୍ଟ ହେବ ନାହିଁ ଯେ ତୁମମାନଙ୍କର ପାଳନକର୍ତ୍ତା (ଆକାଶରୁ) ଅବତୀର୍ଣ୍ଣ କରିଥିବା ତିନି ହଜାର[1] ଦେବଦୂତଙ୍କ ଜରିଆରେ ତୁମମାନଙ୍କୁ ସାହାଯ୍ୟ କରନ୍ତୁ ?"

بَلَىٰ ۚ إِن تَصْبِرُوا وَتَتَّقُوا وَيَأْتُوكُم مِّن فَوْرِهِمْ هَٰذَا يُمْدِدْكُمْ رَبُّكُم بِخَمْسَةِ آلَافٍ مِّنَ الْمَلَائِكَةِ مُسَوِّمِينَ ﴿١٢٦﴾

୧୨୬. କାହିଁକି ଯଥେଷ୍ଟ ନ ହେବ ! ଯଦି ତୁମେମାନେ ଧୈର୍ଯ୍ୟ ଧରିବ ଓ ଅଲ୍ଲାହ୍‌ଙ୍କୁ ଭୟ କରିବ ; ଏବଂ ସେ (ଅର୍ଥାତ୍ ଅବିଶ୍ୱାସକାରୀମାନେ ତୁମମାନଙ୍କୁ ଅତର୍କିତ ଆକ୍ରମଣ କଲେ, ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କୁ ପାଞ୍ଚ ହଜାର ପ୍ରଚଣ୍ଡ ଆକ୍ରମଣକାରୀ ଦେବଦୂତଙ୍କ ଦ୍ୱାରା ସାହାଯ୍ୟ କରିବେ ।

وَمَا جَعَلَهُ اللَّهُ إِلَّا بُشْرَىٰ لَكُمْ وَلِتَطْمَئِنَّ قُلُوبُكُم بِهِ ۗ وَمَا النَّصْرُ إِلَّا مِنْ عِندِ اللَّهِ الْعَزِيزِ الْحَكِيمِ ﴿١٢٧﴾ لِيَقْطَعَ طَرَفًا مِّنَ الَّذِينَ كَفَرُوا أَوْ يَكْبِتَهُمْ فَيَنقَلِبُوا خَائِبِينَ ﴿١٢٨﴾

୧୨୭/୧୨୮. ଏବଂ ଅଲ୍ଲାହ୍ ଏହାକୁ କେବଳ ତୁମମାନଙ୍କ ପାଇଁ ଏକ ସୁସମାଚାର ରୂପେ ତୁମମାନଙ୍କ ହୃଦୟ ସନ୍ତୋଷ ଲାଭ କରିବା ସକାଶେ ନିର୍ଦ୍ଦିଷ୍ଟ କରିଛନ୍ତି; (ଏବଂ) ଏଥି ସକାଶେ (ନିର୍ଦ୍ଦିଷ୍ଟ କରିଛନ୍ତି) ଯେ ତଦ୍ୱାରା ସେ (ଅଲ୍ଲାହ୍) ଅବିଶ୍ୱାସକାରୀମାନଙ୍କର ଗୋଟିଏ ଅଂଶକୁ ବିଚ୍ଛିନ୍ନ କରିଦେବେ ବା ସେମାନଙ୍କୁ ଲାଞ୍ଛିତ କରିଦେବେ ଫଳରେ ସେମାନେ ଅକୃତକାର୍ଯ୍ୟ ହୋଇ ଫେରିଯିବେ ; ଅନ୍ୟାନ୍ୟ ସାହାଯ୍ୟ ତ (କେବଳ) ଅଲ୍ଲାହ୍‌ଙ୍କ ଠାରୁ ମିଳିଥାଏ ଯେ କି ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

لَيْسَ لَكَ مِنَ الْأَمْرِ شَيْءٌ أَوْ يَتُوبَ عَلَيْهِمْ أَوْ يُعَذِّبَهُمْ فَإِنَّهُمْ ظَالِمُونَ ﴿١٢٩﴾

୧୨୯. ତୁମର ଏ ମାମଲାରେ କିଛି (କର୍ତ୍ତୃତ୍ୱ) ନାହିଁ (ଏସବୁ ମାମଲା ଅଲ୍ଲାହ୍‌ଙ୍କ ହସ୍ତରେ ଅଛି) ; (ସେ) ଇଚ୍ଛା କଲେ ସେମାନଙ୍କ ପ୍ରତି କୃପା କରିବେ ଓ ଇଚ୍ଛା କଲେ ସେମାନଙ୍କୁ ଶାସ୍ତି ଦେବେ, (ଏବଂ ସେମାନେ ଶାସ୍ତି ପାଇବା ଯୋଗ୍ୟ) କାରଣ ସେମାନେ ଅତ୍ୟାଚାରୀ ।

---

୧. ଏହି ଆୟତରେ ତିନି ହଜାର ଓ ଏହାର ଠିକ୍ ପରବର୍ତ୍ତୀ ଆୟତରେ ପାଞ୍ଚ ହଜାର ଦେବଦୂତଙ୍କ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଥିବାରୁ ବିଷୟଟି ଅସ୍ପଷ୍ଟ ମନେହେଉଛି । ଅଲ୍ଲାହ୍ ବିପଦ ସମୟରେ ଧର୍ମଭୀରୁମାନଙ୍କୁ ସାହାଯ୍ୟ କରିଥା'ନ୍ତି । ବଦର ଯୁଦ୍ଧରେ ମାତ୍ର ୩୧୩ ମୁସଲମାନ ଯୁଦ୍ଧ କରୁଥିଲେ ମଧ୍ୟ ସେମାନଙ୍କ ସଂଖ୍ୟା ଶତ୍ରୁମାନଙ୍କୁ ବହୁ ଅଧିକ ଦେଖାଯାଇଥିଲା । ଏହି ଆୟତରେ ଉହଦ ଯୁଦ୍ଧର ସୂଚନା ଦିଆଯାଇଛି । ଶତ୍ରୁ ପକ୍ଷର ୩୦୦୦ ସୈନ୍ୟ ସେହି ଯୁଦ୍ଧରେ ଯୋଗ ଦେଇଥିବାରୁ ମୁସଲମାନମାନଙ୍କୁ ମଧ୍ୟ ୩୦୦୦ ଦେବଦୂତଙ୍କ ଦ୍ୱାରା ସାହାଯ୍ୟ କରାଯିବାକୁ ପ୍ରତିଶ୍ରୁତି ଦିଆଯାଇଥିଲା ଓ ସେହି ପ୍ରତିଶ୍ରୁତି ମଧ୍ୟ କାର୍ଯ୍ୟକାରୀ ହୋଇଥିଲା (୩:୧୫୩ ଦ୍ରଷ୍ଟବ୍ୟ) । ଉହଦ ଯୁଦ୍ଧକ୍ଷେତ୍ରରେ ମୁସଲମାନମାନେ ଏତେ କ୍ଷତିଗ୍ରସ୍ତ ହୋଇଥିଲେ ଯେ ଅଲ୍ଲାହ୍ ସେମାନଙ୍କ ପ୍ରତି ଅଧିକ ଅନୁକମ୍ପା ପ୍ରଦର୍ଶନ କରି ପୁନରାୟ ପ୍ରତିଶ୍ରୁତି ଦେଇଥିଲେ ଯେ ଯଦି ଶତ୍ରୁପକ୍ଷ ପୁଣିଥରେ ଆକ୍ରମଣ କରିବାକୁ ଫେରି ଆସନ୍ତି ତେବେ ସେମାନଙ୍କୁ ସହାୟତା ପ୍ରଦାନ କରିବା ସକାଶେ ୫୦୦୦ ଦେବଦୂତ ନିୟୋଜିତ ହେବେ । ବସ୍ତୁତଃ ଶତ୍ରୁମାନେ ମକ୍କା ଆଡକୁ କିଛି ବାଟ ଯିବାପରେ ପୁଣିଥରେ ଫେରି ଆକ୍ରମଣ କରିବାକୁ ଉଦ୍ୟତ ହେଲେ । ଏହା ଜାଣିବା ପରେ ହଜରତ ମହମ୍ମଦ ସେମାନଙ୍କ ମୁକାବିଲା ପାଇଁ ଅଗ୍ରସର ହେଲେ । କିନ୍ତୁ ଅବିଶ୍ୱାସକାରୀମାନେ ଏପରି ଦୃଢ ଓ ତୁରନ୍ତ ପଦକ୍ଷେପକୁ ତଥା ସେମାନଙ୍କ ସମ୍ମୁଖରେ ସ୍ୱୟଂ ଅବତାରଙ୍କ ଆବିର୍ଭାବକୁ ଲକ୍ଷ୍ୟକରି ବିବ୍ରତ ଓ ଭୟଭୀତ ହୋଇପଡିଲେ । ବାସ୍ତବରେ ସେତେବେଳେ ଦେବଦୂତମାନେ ସେମାନଙ୍କ ହୃଦୟରେ ଆଶଙ୍କା ସୃଷ୍ଟି କରାଇଥିଲେ । ଅନ୍ୟଥା ଗୋଟିଏ ଦିନ ପୂର୍ବରୁ ସେହି ଅବିଶ୍ୱାସକାରୀମାନେ ଯେଉଁମାନଙ୍କର ଅପରିମିତ କ୍ଷତି ଘଟାଇଥିଲେ ଓ ଯେଉଁମାନଙ୍କର ବହୁ ସଂଖ୍ୟକ ସୈନ୍ୟଙ୍କୁ ନିହତ କରିଥିଲେ ସେଦିନ କାହିଁକି ସେମାନଙ୍କୁ ଦେଖି ପଳାୟନ କରିବାକୁ ନିଷ୍ପତ୍ତି କଲେ ।

୧୩୦. ଏବଂ ଯାହାକିଛି ଆକାଶରେ ଅଛି ଓ ଯାହାକିଛି ପୃଥିବୀରେ ଅଛି ସେସବୁ ଅଲ୍ଲାହ୍‌ଙ୍କର ; ସେ ଯାହାକୁ ଇଚ୍ଛା କ୍ଷମା କରନ୍ତି, ଓ ଯାହାକୁ ଇଚ୍ଛା ଶାସ୍ତି ଦିଅନ୍ତି ଏବଂ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ(ଓ)ସଦା କରୁଣାମୟ ।

وَلِلّٰهِ مَا فِي السَّمٰوٰتِ وَمَا فِي الْأَرْضِ ۚ يَغْفِرُ لِمَنْ يَّشَآءُ وَيُعَذِّبُ مَنْ يَّشَآءُ ۚ وَاللّٰهُ غَفُوْرٌ رَّحِيْمٌ ﴿١٣٠﴾ ع

ରୁ : ୧୪

୧୩୧. ହେ ଅବିଶ୍ୱାସକାରୀମାନେ ! ତୁମେମାନେ ସୁଧ ଖାଅ ନାହିଁ (ଯାହା ଧନକୁ ବିପୁଳ ପରିମାଣରେ ବୃଦ୍ଧି କରାଏ) ଏବଂ ଅଲ୍ଲାହ୍‌ଙ୍କୁ ଭୟ କର, ତାହାହେଲେ ତୁମେମାନେ କୃତକାର୍ଯ୍ୟ ହେବ ।

يٰٓأَيُّهَا الَّذِيْنَ اٰمَنُوْا لَا تَأْكُلُوا الرِّبٰوٓا أَضْعَافًا مُّضٰعَفَةً ۖ وَاتَّقُوا اللّٰهَ لَعَلَّكُمْ تُفْلِحُوْنَ ﴿١٣١﴾

୧୩୨. ଏବଂ ସେହି (ନରକ) ଅଗ୍ନିକୁ ଭୟକର ଯାହା ଅବିଶ୍ୱାସକାରୀମାନଙ୍କ ପାଇଁ ପ୍ରସ୍ତୁତ କରାଯାଇଛି ।

وَاتَّقُوا النَّارَ الَّتِيْٓ أُعِدَّتْ لِلْكٰفِرِيْنَ ﴿١٣٢﴾

୧୩୩. ଏବଂ ଅଲ୍ଲାହ୍ ଓ ଏହି ରସୁଲଙ୍କର ଆଜ୍ଞା ପାଳନକର ତାହାହେଲେ ତୁମମାନଙ୍କ ପ୍ରତି କରୁଣା କରାଯିବ ।

وَأَطِيْعُوا اللّٰهَ وَالرَّسُوْلَ لَعَلَّكُمْ تُرْحَمُوْنَ ﴿١٣٣﴾

୧୩୪. ଏବଂ ନିଜ ପାଳନକର୍ତ୍ତାଙ୍କ ଠାରୁ ପ୍ରାପ୍ତ କ୍ଷମା ତଥା ସେହି ବୈକୁଣ୍ଠ ଆଡକୁ ଯାହାର ମୂଲ୍ୟ ଆକାଶ ଓ ପୃଥିବୀ ଅଟେ ଓ ଯାହା ଧର୍ମଭୀରୁମାନଙ୍କ ପାଇଁ ପ୍ରସ୍ତୁତ କରାଯାଇଅଛି, ସେହି ଆଡକୁ ଅଗ୍ରସର ହୁଅ ।

وَسَارِعُوْٓا إِلٰى مَغْفِرَةٍ مِّنْ رَّبِّكُمْ وَجَنَّةٍ عَرْضُهَا السَّمٰوٰتُ وَالْأَرْضُ ۙ أُعِدَّتْ لِلْمُتَّقِيْنَ ﴿١٣٤﴾

୧୩୫. ଯେଉଁ (ଧର୍ମଭୀରୁ)ମାନେ ସ୍ୱଚ୍ଛଳ ଓ ଅଭାବଗ୍ରସ୍ତ ଥାଇ ମଧ୍ୟ (ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ) ବ୍ୟୟ କରନ୍ତି, ତଥା ନିଜର କ୍ରୋଧ ସମ୍ବରଣ କରନ୍ତି ଓ ଲୋକମାନଙ୍କୁ କ୍ଷମା କରନ୍ତି, ଅଲ୍ଲାହ୍ ଏପରି ହିତକାରୀମାନଙ୍କୁ ପ୍ରେମ କରନ୍ତି ।

الَّذِيْنَ يُنْفِقُوْنَ فِي السَّرَّآءِ وَالضَّرَّآءِ وَالْكٰظِمِيْنَ الْغَيْظَ وَالْعَافِيْنَ عَنِ النَّاسِ ۗ وَاللّٰهُ يُحِبُّ الْمُحْسِنِيْنَ ﴿١٣٥﴾

୧୩୬. (ଅବଶ୍ୟ ଏହା ସେହି ବ୍ୟକ୍ତିମାନଙ୍କ ପାଇଁ) ଯେଉଁମାନେ କୌଣସି କୁକାର୍ଯ୍ୟ କରିବା ଅବସ୍ଥାରେ ବା ନିଜ ପ୍ରତି ଅତ୍ୟାଚାର କରିବା ଅବସ୍ଥାରେ ଅଲ୍ଲାହ୍‌ଙ୍କୁ ସ୍ମରଣ କରନ୍ତି ଓ ନିଜର ଦୋଷ ପାଇଁ କ୍ଷମା ପ୍ରାର୍ଥନା କରନ୍ତି ; ଏବଂ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କିଏ ଦୋଷ କ୍ଷମା କରି ପାରିବ ? ଏବଂ ସେମାନେ ଯାହାକିଛି (କୁକାର୍ଯ୍ୟ) କରିଥାଆନ୍ତି ସେ ବିଷୟରେ ଜାଣିଶୁଣି ଜିଦ୍ କରନ୍ତି ନାହିଁ ।

وَالَّذِيْنَ إِذَا فَعَلُوْا فَاحِشَةً أَوْ ظَلَمُوْٓا أَنْفُسَهُمْ ذَكَرُوا اللّٰهَ فَاسْتَغْفَرُوْا لِذُنُوْبِهِمْ ۪ وَمَنْ يَّغْفِرُ الذُّنُوْبَ إِلَّا اللّٰهُ ۪ وَلَمْ يُصِرُّوْا عَلٰى مَا فَعَلُوْا وَهُمْ يَعْلَمُوْنَ ﴿١٣٦﴾

୧୩୭. ଏହି ଲୋକମାନଙ୍କର ପୁରସ୍କାର ହେଉଛି ସେମାନଙ୍କ ପାଳନକର୍ତ୍ତାଙ୍କ ଠାରୁ କ୍ଷମା ଓ ଏପରି ଉଦ୍ୟାନ ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥିବ ଯେଉଁଠାରେ କି ଏମାନେ (ସର୍ବଦା) ରହିବେ ; ଏବଂ (ସତ୍) କାର୍ଯ୍ୟ କରୁଥିବା ବ୍ୟକ୍ତିଙ୍କର ଏହି ପୁରସ୍କାର କେତେ ଭଲ !

أُولٰٓئِكَ جَزَآؤُهُمْ مَّغْفِرَةٌ مِّنْ رَّبِّهِمْ وَجَنّٰتٌ تَجْرِيْ مِنْ تَحْتِهَا الْأَنْهٰرُ خٰلِدِيْنَ فِيْهَا ۗ وَنِعْمَ أَجْرُ الْعٰمِلِيْنَ ﴿١٣٧﴾

قَدْ خَلَتْ مِنْ قَبْلِكُمْ سُنَنٌ فَسِيرُوا فِي الْأَرْضِ فَانْظُرُوا كَيْفَ كَانَ عَاقِبَةُ الْمُكَذِّبِينَ ﴿١٣٧﴾

୧୩୮. ତୁମମାନଙ୍କ ପୂର୍ବରୁ ଅନେକ କାର୍ଯ୍ୟ-ପଦ୍ଧତି ପ୍ରଣୀତ ହୋଇଅଛି ; (ଏମାନଙ୍କର ପରିଣାମ ଦେଖିବାର ଇଚ୍ଛା ଥିଲେ) ପୃଥିବୀରେ ବିଚରଣ କର ଏବଂ ଦେଖ ଯେ (ଏହି ପଦ୍ଧତିକୁ) ମିଥ୍ୟା ମଣୁଥିବା ବ୍ୟକ୍ତିମାନଙ୍କର ପରିଣାମ କିପରି (ଭୟାବହ) ହେଲା ।

هَٰذَا بَيَانٌ لِلنَّاسِ وَهُدًى وَمَوْعِظَةٌ لِلْمُتَّقِينَ ﴿١٣٨﴾

୧୩୯. ଏହା (ଅର୍ଥାତ୍ ଏହି ବିବରଣ) ଲୋକମାନଙ୍କ ପାଇଁ ଏକ ସୁସ୍ପଷ୍ଟ ଘୋଷଣା ତଥା ଧର୍ମଭୀରୁଙ୍କ ପାଇଁ ପଥ ପ୍ରଦର୍ଶକ ଓ ଉପଦେଶକ ।

وَلَا تَهِنُوا وَلَا تَحْزَنُوا وَأَنْتُمُ الْأَعْلَوْنَ إِنْ كُنْتُمْ مُؤْمِنِينَ ﴿١٣٩﴾

୧୪୦. ଏବଂ ତୁମେମାନେ ଦୁର୍ବଳତା ପ୍ରକାଶ କରନାହିଁ ଓ ଦୁଃଖିତ ହୁଅନାହିଁ ; ଏବଂ ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ ତେବେ ତୁମେମାନେ ହିଁ ବିଜୟୀ ହେବ ।

إِنْ يَمْسَسْكُمْ قَرْحٌ فَقَدْ مَسَّ الْقَوْمَ قَرْحٌ مِثْلُهُ ۚ وَتِلْكَ الْأَيَّامُ نُدَاوِلُهَا بَيْنَ النَّاسِ وَلِيَعْلَمَ اللَّهُ الَّذِينَ آمَنُوا وَيَتَّخِذَ مِنْكُمْ شُهَدَاءَ ۗ وَاللَّهُ لَا يُحِبُّ الظَّالِمِينَ ﴿١٤٠﴾

୧୪୧. ଯଦି ତୁମମାନଙ୍କୁ କୌଣସି ଆଘାତ ଲାଗିଥାଏ ତେବେ ସେପରି ଆଘାତ ତ ସେହି ଲୋକମାନଙ୍କୁ ମଧ୍ୟ ଲାଗିଅଛି ; ଏବଂ ଏ (ବିଜୟ) ଦିବସଗୁଡ଼ିକ ଏପରି ଅଟେ ଯେ ଆମେ ସେଗୁଡ଼ିକୁ ଲୋକମାନଙ୍କ ମଧ୍ୟରେ ବାରମ୍ବାର ଅଦଳବଦଳ କରୁଥାଉ (ତାହାହେଲେ ସେମାନେ ଶିକ୍ଷାଲାଭ କରିବେ), ତଦ୍ୱାରା ଅଲ୍ଲାଃ ବିଶ୍ୱାସକାରୀମାନଙ୍କୁ ପ୍ରକଟ କରିଦେବେ ଓ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଶହୀଦ କରିବେ ; ଏବଂ ଅଲ୍ଲାଃ ଅତ୍ୟାଚାରୀମାନଙ୍କୁ ପସନ୍ଦ କରନ୍ତି ନାହିଁ ।

وَلِيُمَحِّصَ اللَّهُ الَّذِينَ آمَنُوا وَيَمْحَقَ الْكَافِرِينَ ﴿١٤١﴾

୧୪୨. ଏବଂ ତଦ୍ୱାରା ଅଲ୍ଲାଃ ବିଶ୍ୱାସକାରୀମାନଙ୍କୁ ଶୁଦ୍ଧପୂତ କରିବେ ଓ ଅବିଶ୍ୱାସକାରୀମାନଙ୍କୁ ବିନାଶ କରିବେ ।

أَمْ حَسِبْتُمْ أَنْ تَدْخُلُوا الْجَنَّةَ وَلَمَّا يَعْلَمِ اللَّهُ الَّذِينَ جَاهَدُوا مِنْكُمْ وَيَعْلَمَ الصَّابِرِينَ ﴿١٤٢﴾

୧୪୩. କ'ଣ ତୁମେମାନେ ଭାବୁଅଛ ଯେ ତୁମେମାନେ ବୈକୁଣ୍ଠରେ ପ୍ରବେଶ କରିବ ଅଥଚ ବର୍ତ୍ତମାନ ଅଲ୍ଲାଃ ତୁମମାନଙ୍କ ମଧ୍ୟରୁ ସେ ଲୋକମାନଙ୍କୁ ଯେଉଁମାନେ ଜେହାଦ କରନ୍ତି ସେମାନଙ୍କୁ ପ୍ରକାଶ କରି ନାହାନ୍ତି କି ଧୈର୍ଯ୍ୟଶୀଳମାନଙ୍କୁ ପ୍ରକାଶ କରି ନାହାନ୍ତି ।

وَلَقَدْ كُنْتُمْ تَمَنَّوْنَ الْمَوْتَ مِنْ قَبْلِ أَنْ تَلْقَوْهُ فَقَدْ رَأَيْتُمُوهُ وَأَنْتُمْ تَنْظُرُونَ ﴿١٤٣﴾

୧୪୪. ଏବଂ ତୁମେମାନେ ଏହି ମୃତ୍ୟୁର[୧] କାମନା ସେହି ସମୟର ଆଗମନ ପୂର୍ବରୁ ମଧ୍ୟ କରୁଥିଲ ; ସୁତରାଂ ତୁମେମାନେ (ବର୍ତ୍ତମାନ) ତାହାକୁ ଏପରି ଅବସ୍ଥାରେ ଦେଖିସାରିଛ ଯେ ତାହାର ସମସ୍ତ ଭଲମନ୍ଦ ତୁମମାନଙ୍କ ନିକଟରେ ପ୍ରକାଶିତ ହୋଇଗଲାଣି (ତାହାହେଲେ ତୁମମାନଙ୍କ ମଧ୍ୟରୁ କେତେକ କାହିଁକି ପଛଘୁଞ୍ଚା ଦେଉଅଛ ?)

---

୧. ଅର୍ଥାତ୍ ସଂଗ୍ରାମ କରି ଶହୀଦ ହେବା ।

ରୁ : ୧୫

୧୪୫. ଏବଂ ମହମ୍ମଦ କେବଳ ଜଣେ ରସୁଲ ଅଟନ୍ତି ; ତାହାଙ୍କ ପୂର୍ବରୁ ସମସ୍ତ ରସୁଲ ମୃତ୍ୟୁ ବରଣ କରିଛନ୍ତି ; ସୁତରାଂ ଯଦି ସେ ମୃତ୍ୟୁ ବରଣ କରନ୍ତି ବା ତାହାଙ୍କୁ ହତ୍ୟା କରାଯାଏ ତେବେ କଅଣ ତୁମେମାନେ ପଶ୍ଚାତ୍‌ପଦ ହୋଇ ଫେରିଯିବ[୧] ? ଏବଂ ଯେଉଁ ବ୍ୟକ୍ତି ପଶ୍ଚାତ୍‌ପଦ ହୋଇ ଫେରିଯାଏ ସେ ଅଲ୍ଲାହ୍‌ଙ୍କର କଦାପି କିଛି କ୍ଷତି କରିପାରିବ ନାହିଁ ; ଏବଂ ଅଲ୍ଲାହ୍ କୃତଜ୍ଞମାନଙ୍କୁ ନିଶ୍ଚୟ ଉତ୍ତମ ପ୍ରତିଫଳ ପ୍ରଦାନ କରିବେ ।

وَمَا مُحَمَّدٌ إِلَّا رَسُولٌ قَدْ خَلَتْ مِنْ قَبْلِهِ الرُّسُلُ ۚ أَفَإِنْ مَاتَ أَوْ قُتِلَ انْقَلَبْتُمْ عَلَىٰ أَعْقَابِكُمْ ۚ وَمَنْ يَنْقَلِبْ عَلَىٰ عَقِبَيْهِ فَلَنْ يَضُرَّ اللَّهَ شَيْئًا ۗ وَسَيَجْزِي اللَّهُ الشَّاكِرِينَ ﴿١٤٥﴾

୧୪୬. ଅଲ୍ଲାହ୍‌ଙ୍କ ବିନା ଆଦେଶରେ କୌଣସି ଜୀବର ମୃତ୍ୟୁ ହୋଇପାରିବ ନାହିଁ ; (କାରଣ ଅଲ୍ଲାହ୍) ଏକ ନିର୍ଦ୍ଦିଷ୍ଟ ସମୟର ନିଷ୍ପତ୍ତି (କରିଛନ୍ତି) ; ଏବଂ ଯେଉଁ ବ୍ୟକ୍ତି ଇହକାଳର ପ୍ରତିଫଳ ଇଚ୍ଛା କରିବ ଆମେ ତାକୁ ସେଥିରୁ ଦେବୁ, ଏବଂ ଯେ ପରକାଳର ପ୍ରତିଫଳ ଇଚ୍ଛା କରିବ ଆମେ ତାକୁ ସେଥିରୁ ଦେବୁ ; ଏବଂ ଆମେ କୃତଜ୍ଞମାନଙ୍କୁ ନିଶ୍ଚୟ ପ୍ରତିଫଳ ଦେବୁ ।

وَمَا كَانَ لِنَفْسٍ أَنْ تَمُوتَ إِلَّا بِإِذْنِ اللَّهِ كِتَابًا مُؤَجَّلًا ۗ وَمَنْ يُرِدْ ثَوَابَ الدُّنْيَا نُؤْتِهِ مِنْهَا وَمَنْ يُرِدْ ثَوَابَ الْآخِرَةِ نُؤْتِهِ مِنْهَا ۚ وَسَنَجْزِي الشَّاكِرِينَ ﴿١٤٦﴾

୧୪୭. ଏବଂ ଏପରି ଅନେକ ରସୁଲ ଥିଲେ ଯେଉଁମାନଙ୍କ ସହିତ ମିଳିତ ହୋଇ ସେମାନଙ୍କ ସମ୍ପ୍ରଦାୟର ଅନେକ ଧର୍ମପ୍ରାଣ ଲୋକ ଯୁଦ୍ଧ କରିଥିଲେ ; ଏବଂ ଅଲ୍ଲାହ୍‌ଙ୍କ ମାର୍ଗରେ ସେମାନଙ୍କ ଉପରେ ଯେଉଁ ବିପତ୍ତି ପଡ଼ିଥିଲା ସେଥିଯୋଗୁଁ ସେମାନେ ଶିଥିଳ ହେଲେ ନାହିଁ କି ଦୁର୍ବଳତା ପ୍ରକାଶ କଲେ ନାହିଁ ବା (ଶତ୍ରୁ ସମ୍ମୁଖରେ) ନିଜକୁ ଅବନତ କଲେ ନାହିଁ ; ଏବଂ ଅଲ୍ଲାହ୍ ଧୈର୍ଯ୍ୟବାନମାନଙ୍କୁ ପ୍ରେମ କରନ୍ତି ।

وَكَأَيِّنْ مِنْ نَبِيٍّ قُتِلَ مَعَهُ رِبِّيُّونَ كَثِيرٌ فَمَا وَهَنُوا لِمَا أَصَابَهُمْ فِي سَبِيلِ اللَّهِ وَمَا ضَعُفُوا وَمَا اسْتَكَانُوا ۗ وَاللَّهُ يُحِبُّ الصَّابِرِينَ ﴿١٤٧﴾

---

୧. ଶତ୍ରୁପକ୍ଷ ଉହଦ ଯୁଦ୍ଧକ୍ଷେତ୍ରରେ ହଜରତ ମହମ୍ମଦଙ୍କୁ ହତ୍ୟା କରିଥିବା ସମ୍ବନ୍ଧରେ ଯେଉଁ ମିଥ୍ୟା ପ୍ରଚାର କରିଥିଲେ ଏହି ଆୟତରେ ତା'ର ସୂଚନା ଦିଆଯାଇଛି । ଏହି ଆୟତର ତାତ୍ପର୍ଯ୍ୟ ହେଉଛି ଯେ ତାହା ଏକ ମିଥ୍ୟା ପ୍ରଚାର ହୋଇଥିଲେ ମଧ୍ୟ ଯଦି ସତରେ ତାଙ୍କୁ ହତ୍ୟା କରାଯାଇଥା'ନ୍ତା ତେବେ ବି ବିଶ୍ୱାସକାରୀମାନଙ୍କରପଦସ୍ଖଳନ ହୋଇ ନ ଥା'ନ୍ତା।କାରଣ ହଜରତ ମହମ୍ମଦ କେବଳ ଜଣେ ଅବତାର ଥିଲେ ଓ ତାଙ୍କ ପୂର୍ବରୁ ସବୁ ଅବତାରଙ୍କର ମୃତ୍ୟୁ ହୋଇଛି । କିନ୍ତୁ ଅଲ୍ଲାହ୍ ଚିରଞ୍ଜୀବୀ ।

ଏଠାରେ ହଜରତ ମହମ୍ମଦଙ୍କ ଦେହାବସାନର ପରବର୍ତ୍ତୀ ଏକ ଘଟଣା ଉଲ୍ଲେଖ କରିବା ସମୀଚୀନ ବୋଧ ହେଉଛି । ଯେତେବେଳେ ତାଙ୍କର ଦେହାବସାନ ହେଲା ସେତେବେଳେ ହଜରତ୍ ଉମରଙ୍କ ଭଳି ଜଣେ ଦୃଢ଼ମନା ବ୍ୟକ୍ତି ମଧ୍ୟ ବିବ୍ରତ ହୋଇପଡ଼ିଲେ ଓ ଘୋଷଣା କରିଦେଲେ ଯେ ଯଦି କୌଣସି ବ୍ୟକ୍ତି ହଜରତ ମହମ୍ମଦଙ୍କର ଦେହାବସାନ ହୋଇଥିବା କହିବ ତେବେ ସେ ତାକୁ ହତ୍ୟା କରିବେ । ସେ ପୁଣି କହିଲେ ଯେ ହଜରତ ମହମ୍ମଦଙ୍କର ମୃତ୍ୟୁ ହୋଇନାହିଁ, ବରଂ ସେ ହଜରତ ମୁସାଙ୍କ ସଦୃଶ ନିଜ ପ୍ରଭୁଙ୍କ ନିକଟକୁ ଯାଇଛନ୍ତି । ସେଠାରୁ ଫେରିବା ପରେ ସେ କପଟ-ବିଶ୍ୱାସୀମାନଙ୍କୁ ଦଣ୍ଡ ଦେବେ । ଏହା ପରେ ପରେ ହଜରତ ଅବୁବକର ସେଠାରେ ପହଞ୍ଚିଲେ ଓ ଉମରଙ୍କୁ ବସିପଡ଼ିବା ପାଇଁ ଦୃଢ଼ଭାବରେ କହିଲେ । ତା'ପରେ ସେ ଉପସ୍ଥିତ ଜନତା ସମ୍ମୁଖରେ ଏହି ଆୟତଟି ପାଠ କରିଥିଲେ । ସେମାନେ ସମସ୍ତେ ପ୍ରକୃତ ଘଟଣା ବିଷୟରେ ଅବଗତ ହେଲା ପରେ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଲେ । ହଜରତ ମହମ୍ମଦଙ୍କୁ ମଧ୍ୟ ଯୁଦ୍ଧରେ ହତ୍ୟା କରାଯାଇ ପାରିଥା'ନ୍ତା ବୋଲି ଅର୍ଥ କରିବା ଏହି ଆୟତର ଉଦ୍ଦେଶ୍ୟ ନୁହେଁ । କାରଣ ତାଙ୍କୁ ସୁରକ୍ଷା ପ୍ରଦାନ କରାଯାଉଥିବା ଅନ୍ୟତ୍ର ବର୍ଣ୍ଣିତ ହୋଇଛି(୫:୬୮ ଦ୍ରଷ୍ଟବ୍ୟ) । ଏହି ଆୟତ ଦ୍ୱାରା ଅନ୍ୟ ଯେଉଁ ବିଷୟ ସୁସ୍ପଷ୍ଟ ହୋଇଯାଇଛି ତାହା ହେଉଛି ହଜରତ ମହମ୍ମଦଙ୍କ ପୂର୍ବରୁ ଯୀଶୁଖ୍ରୀଷ୍ଟଙ୍କର ଦେହାନ୍ତ ହୋଇଥିଲା ।

୧୪୮. ଏବଂ ସେମାନେ ଏକଥା ବ୍ୟତୀତ ଅନ୍ୟ କିଛି (ମଧ୍ୟ) କହି ନ ଥିଲେ ଯେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କର ତ୍ରୁଟିଗୁଡିକୁ ଆମମାନଙ୍କର କର୍ତ୍ତବ୍ୟରେ ସୀମାଲଙ୍ଘନକୁ ମାର୍ଜନା କର ଏବଂ ଆମମାନଙ୍କର ପାଦକୁ ସୁଦୃଢ଼ କର ଏବଂ ଅବିଶ୍ୱାସକାରୀମାନଙ୍କ ବିରୁଦ୍ଧରେ ଆମମାନଙ୍କୁ ସାହାଯ୍ୟ କର ।"

وَمَا كَانَ قَوْلَهُمْ إِلَّا أَنْ قَالُوا رَبَّنَا اغْفِرْ لَنَا ذُنُوبَنَا وَإِسْرَافَنَا فِي أَمْرِنَا وَثَبِّتْ أَقْدَامَنَا وَانْصُرْنَا عَلَى الْقَوْمِ الْكٰفِرِينَ ﴿١٤٨﴾

୧୪୯. ସୁତରାଂ ଅଲ୍ଲାହ ସେମାନଙ୍କୁ ଇହକାଳର ପ୍ରତିଫଳ ପ୍ରଦାନ କରିଥିଲେ ଓ ପରକାଳର (ମଧ୍ୟ) ଉତ୍ତମ ପ୍ରତିଫଳ ପ୍ରଦାନ କରିଥିଲେ ; ଏବଂ ଅଲ୍ଲାହ ହିତକାରୀମାନଙ୍କୁ ପ୍ରେମ କରନ୍ତି ।

فَآتَاهُمُ اللَّهُ ثَوَابَ الدُّنْيَا وَحُسْنَ ثَوَابِ الْآخِرَةِ ۗ وَاللَّهُ يُحِبُّ الْمُحْسِنِينَ ﴿١٤٩﴾ ع

ରୁ : ୧୬

୧୫୦. ହେ ବିଶ୍ୱାସକାରୀମାନେ ! ଯଦି ତୁମେମାନେ ଅବିଶ୍ୱାସକାରୀମାନଙ୍କର କଥା ମାନିବ, ତାହାହେଲେ ସେମାନେ ତୁମମାନଙ୍କୁ ପଶ୍ଚାତ୍‌ପଦ କରି ଫେରାଇଦେବେ, ଯେଉଁ କାରଣରୁ ତୁମେମାନେ କ୍ଷତିଗ୍ରସ୍ତ ହେବ ।

يَا أَيُّهَا الَّذِينَ آمَنُوا إِنْ تُطِيعُوا الَّذِينَ كَفَرُوا يَرُدُّوكُمْ عَلَىٰ أَعْقَابِكُمْ فَتَنْقَلِبُوا خٰسِرِينَ ﴿١٥٠﴾

୧୫୧. (ତୁମେମାନେ କ୍ଷତିଗ୍ରସ୍ତ ହେବ ନାହିଁ) କାରଣ ଅଲ୍ଲାହ ତୁମମାନଙ୍କର ସାହାଯ୍ୟକାରୀ ଅଟନ୍ତି ଏବଂ ସେ ସମସ୍ତସାହାଯ୍ୟକାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ।

بَلِ اللَّهُ مَوْلٰكُمْ ۖ وَهُوَ خَيْرُ النّٰصِرِينَ ﴿١٥١﴾

୧୫୨. ଆମ୍ଭେ ଅବିଶ୍ୱାସକାରୀମାନଙ୍କ ମନରେ ନିଶ୍ଚୟ ଭୟ ସଞ୍ଚାର କରାଇବୁ, କାରଣ ଯାହା ସମ୍ବନ୍ଧରେ କୌଣସି ପ୍ରମାଣ ଅବତୀର୍ଣ୍ଣ କରିନାହୁଁ ସେମାନେ ତାହାକୁ ଅଲ୍ଲାହଙ୍କ ସହିତ ସମକକ୍ଷ (ମନେ) କରୁଅଛନ୍ତି ; ଏବଂ ନରକାଗ୍ନି ସେମାନଙ୍କର ବାସସ୍ଥାନ ; ଏବଂ ଅତ୍ୟାଚାରୀମାନଙ୍କର ବାସସ୍ଥାନ ଅତ୍ୟନ୍ତ ମନ୍ଦ ଅଟେ ।

سَنُلْقِي فِي قُلُوبِ الَّذِينَ كَفَرُوا الرُّعْبَ بِمَا أَشْرَكُوا بِاللَّهِ مَا لَمْ يُنَزِّلْ بِهِ سُلْطٰنًا ۚ وَمَأْوٰىهُمُ النَّارُ ۚ وَبِئْسَ مَثْوَى الظّٰلِمِينَ ﴿١٥٢﴾

୧୫୩. ଏବଂ ଯେତେବେଳେ ତୁମେମାନେ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ) ଆଦେଶକ୍ରମେ ସେମାନଙ୍କୁ ଆକ୍ରମଣ କରି ବିନାଶ କରୁଥିଲ ସେତେବେଳେ ଅଲ୍ଲାହ ତୁମମାନଙ୍କ ସମ୍ବନ୍ଧରେ ନିଶ୍ଚୟ ନିଜର ପ୍ରତିଶ୍ରୁତି[1] ରକ୍ଷା କରିଥିଲେ, ଏପରିକି ଯେତେବେଳେ ତୁମେମାନେ ଅବହେଳା କରିଥିଲ ଓ (ହଜରତ ମହମ୍ମଦଙ୍କ) ଆଦେଶ[2] ସଂକ୍ରାନ୍ତରେ ପରସ୍ପର

وَلَقَدْ صَدَقَكُمُ اللَّهُ وَعْدَهُ إِذْ تَحُسُّونَهُمْ بِإِذْنِهِ ۖ حَتَّىٰ إِذَا فَشِلْتُمْ وَتَنَازَعْتُمْ فِي الْأَمْرِ وَعَصَيْتُمْ مِنْ

୧. ଏହା ୩:୧୨୬–୧୩୪ରେ ବର୍ଣ୍ଣିତ ହୋଇଛି ।

୨. କୌଣସି ପରିସ୍ଥିତିରେ ମଧ୍ୟ ସ୍ଥାନ ତ୍ୟାଗ ନ କରିବାକୁ ହଜରତ ମହମ୍ମଦ ଆଦେଶ ଦେଇଥିଲେ । କିନ୍ତୁ ତୀରନ୍ଦାଜମାନେ ଭାବିଲେ ଯେ ସେମାନେ ସେହି ଯୁଦ୍ଧରେ ବିଜୟୀ ହୋଇ ସାରିଲେଣି । ତେଣୁ ସେମାନେ ସେହି ସ୍ଥାନ ଛାଡ଼ି ଚାଲିଆସିଲେ । ଫଳରେ ମୁସଲମାନମାନଙ୍କୁ ଅନେକ କ୍ଷତି ସହିବାକୁ ପଡ଼ିଥିଲା ଓ ଯେଉଁ ବିଜୟ ସେମାନଙ୍କ ହାତପାଆନ୍ତି ଥିଲା ତାହା ପରାଜୟରେ ପରିଣତ ହେଲା ।

بَعْدِ مَآ اَرٰىكُمْ مَّا تُحِبُّوْنَ ۭ مِنْكُمْ مَّنْ يُّرِيْدُ الدُّنْيَا وَمِنْكُمْ مَّنْ يُّرِيْدُ الْاٰخِرَةَ ۚ ثُمَّ صَرَفَكُمْ عَنْھُمْ لِيَبْتَلِيَكُمْ ۚ وَلَقَدْ عَفَا عَنْكُمْ ۭ وَاللّٰهُ ذُوْ فَضْلٍ عَلَي الْمُؤْمِنِيْنَ ۝

ମଧ୍ୟରେ ବିବାଦ କରିଥିଲ ଏବଂ ତୁମେମାନେ ଯାହା ପସନ୍ଦ କରୁଥିଲ ତାହା ତୁମମାନଙ୍କୁ ଦେଖାଇବା ପରେ ମଧ୍ୟ ତୁମେମାନେ ଅବଜ୍ଞା କରିଥିଲ (ସେତେବେଳେ ଅଲ୍ଲାହ୍ ତାହାଙ୍କ ସାହାଯ୍ୟକୁ ପ୍ରତ୍ୟାହାର କରିନେଲେ); ତୁମମାନଙ୍କ ମଧ୍ୟରୁ କେତେକ ଇହକାଳ ଚାହିଁଥିଲ ଏବଂ କେତେକ ପରକାଳ ଚାହିଁଥିଲ ; ତତ୍ପରେ ସେ ତୁମମାନଙ୍କୁ ପରୀକ୍ଷା କରିବା ପାଇଁ ସେମାନଙ୍କ (ଅର୍ଥାତ୍ ଶତ୍ରୁମାନଙ୍କ) ଆକ୍ରମଣରୁ ରକ୍ଷା କରିଥିଲେ ଏବଂ ସେ ନିଶ୍ଚୟ ତୁମମାନଙ୍କୁ କ୍ଷମା କରିଅଛନ୍ତି; ଏବଂ ଅଲ୍ଲାହ୍ ବିଶ୍ୱାସକାରୀମାନଙ୍କ ଉପରେ ଅତ୍ୟନ୍ତ କୃପା କରନ୍ତି।

اِذْ تُصْعِدُوْنَ وَلَا تَلْوٗنَ عَلٰٓي اَحَدٍ وَّالرَّسُوْلُ يَدْعُوْكُمْ فِيْٓ اُخْرٰىكُمْ فَاَثَابَكُمْ غَمًّـۢا بِغَمٍّ لِّكَيْلَا تَحْزَنُوْا عَلٰي مَا فَاتَكُمْ وَلَا مَآ اَصَابَكُمْ ۭ وَاللّٰهُ خَبِيْرٌۢ بِمَا تَعْمَلُوْنَ ۝

୧୫୪. ଯେତେବେଳେ ତୁମେମାନେ ପଳାୟନ କରୁଥିଲ ଏବଂ କାହାରିକୁ ଫେରି ଚାହୁଁ ନ ଥିଲ ଅଥଚ ରସୁଲ (ଅର୍ଥାତ୍ ମହାପୁରୁଷ ମହମ୍ମଦ) ତୁମମାନଙ୍କୁ ସବୁଠାରୁ ପଛ ଦଳରେ ଥାଇ ଡାକୁଥିଲେ ; ତା'ପରେ ସେ (ଅର୍ଥାତ୍ ଅଲ୍ଲାହ୍) ତୁମମାନଙ୍କର ଗୋଟିଏ ଛୋଟ ଦୁଃଖକୁ [୧] ଏକ ବଡ଼ ଦୁଃଖରେ ପରିଣତ କରିଥିଲେ ଯଦ୍ବାରା ତୁମେମାନେ ଯାହା ହରାଇଥିଲ ଓ ତୁମମାନଙ୍କ ଉପରେ ଯାହାକିଛି (ବିପତ୍ତି) ପଡ଼ିଲା ସେଥିପାଇଁ ଦୁଃଖିତ ହେବ ନାହିଁ ; ଏବଂ ଯାହାକିଛି ତୁମେମାନେ କରୁଅଛ ତାହା ଅଲ୍ଲାହ୍ ଜାଣନ୍ତି।

ثُمَّ اَنْزَلَ عَلَيْكُمْ مِّنْۢ بَعْدِ الْغَمِّ اَمَنَةً نُّعَاسًا يَّغْشٰى طَاۗىِٕفَةً مِّنْكُمْ ۙ وَطَاۗىِٕفَةٌ قَدْ اَهَمَّتْھُمْ اَنْفُسُھُمْ يَظُنُّوْنَ بِاللّٰهِ غَيْرَ الْحَقِّ ظَنَّ الْجَاهِلِيَّةِ ۭ يَقُوْلُوْنَ هَلْ لَّنَا مِنَ الْاَمْرِ مِنْ شَيْءٍ ۭ قُلْ اِنَّ الْاَمْرَ كُلَّهٗ لِلّٰهِ ۭ يُخْفُوْنَ فِيْٓ اَنْفُسِھِمْ مَّا لَا يُبْدُوْنَ لَكَ ۭ يَقُوْلُوْنَ لَوْ كَانَ لَنَا مِنَ الْاَمْرِ شَيْءٌ مَّا قُتِلْنَا هٰهُنَا ۭ قُلْ لَّوْ

୧୫୫. ତତ୍ପରେ ଏହି ଦୁଃଖ ପରେ ସେ ତୁମମାନଙ୍କ ପ୍ରତି ମାନସିକ ଶାନ୍ତି ଅର୍ଥାତ୍ ତନ୍ଦ୍ରା ଅବତୀର୍ଣ୍ଣ କଲେ ଯାହା ତୁମମାନଙ୍କ ମଧ୍ୟରୁ ଏକ ଦଳକୁ ଅଭିଭୂତ କରୁଥିଲା ଏବଂ ଅନ୍ୟ ଏକ ଦଳ ନିଜ ପ୍ରାଣ ପାଇଁ ଚିନ୍ତିତ ଥିଲେ ; ସେମାନେ ଅଲ୍ଲାହ୍‌ଙ୍କ ସମ୍ବନ୍ଧରେ ଅଜ୍ଞତାପୂର୍ଣ୍ଣ କଳ୍ପନା ସଦୃଶ ମିଥ୍ୟା କଳ୍ପନା କରୁଥିଲେ ; ସେମାନେ କହୁଥିଲେ, "ଏ ବ୍ୟାପାରରେ ଆମମାନଙ୍କର କିଛି କହିବାର ଅଛି କି ?" ତୁମେ କୁହ, "ସମସ୍ତ ସିଦ୍ଧାନ୍ତ ଅଲ୍ଲାହ୍‌ଙ୍କର" ; ସେ (କପଟବିଶ୍ୱାସୀ)ମାନେ ଯାହାକିଛି ନିଜ ଅନ୍ତରରେ ଗୋପନ ରଖୁଅଛନ୍ତି ତାହା ତୁମ ନିକଟରେ ପ୍ରକାଶ କରୁନାହାନ୍ତି ; ସେମାନେ କହନ୍ତି "ଯଦି ଏ ବ୍ୟାପାରରେ ଆମମାନଙ୍କର (ମଧ୍ୟ) କିଛି ଅଧିକାର ଥାଆନ୍ତା ତାହାହେଲେ ଆମେମାନେ ଏଠାରେ ନିହତ ହୋଇ ନ ଥାଆନ୍ତୁ ;" ତୁମେ କୁହ, "ଯଦି ତୁମେମାନେ ନିଜ ଗୃହରେ

୧. ପ୍ରଥମ ଦୁଃଖ ହେଉଛି ହଜରତ ମହମ୍ମଦଙ୍କର ଆଦେଶକୁ ଅମାନ୍ୟ କରିବା କାରଣ କେତେକ ବ୍ୟକ୍ତି ବାଧ୍ୟ ହୋଇ ସେହି ସ୍ଥାନ ଛାଡ଼ିଥିଲେ। ଦ୍ବିତୀୟ ଦୁଃଖ ହେଉଛି ଅମାନ୍ୟ କରିବା ଫଳରେ ଆସନ୍ନବିଜୟ ପରାଜୟରେ ପରିଣତ ହୋଇଥିଲା। ଅବଶ୍ୟ ଏତଦ୍ବାରା ଅଲ୍ଲାହ୍ ସେମାନଙ୍କୁ ପ୍ରଥମେ ଦଣ୍ଡିତ କରି ତା'ପରେ କ୍ଷମା ଦେଲେ।

କେତେକ ଟୀକାକାରଙ୍କ ମତରେ ପ୍ରଥମ ଦୁଃଖର ତାତ୍ପର୍ଯ୍ୟ ହେଉଛି ମୁସଲମାନଙ୍କ ପରାଜୟ ଓ ଦ୍ବିତୀୟ ଦୁଃଖର ତାତ୍ପର୍ଯ୍ୟ ହେଉଛି ହଜରତ୍ ମହମ୍ମଦ ଗୁରୁତରଭାବେ କ୍ଷତବିକ୍ଷତ ହେବା। କିନ୍ତୁ ଆମ ମତରେ ଏହା ଯଥାର୍ଥ ନୁହେଁ, କାରଣ ଏହାର ଅର୍ଥ ହେବ ଯେ ସହଚରମାନଙ୍କ ଦୋଷତ୍ରୁଟିର ଶାସ୍ତି ହଜରତ ମହମ୍ମଦଙ୍କୁ ମିଳିଲା।

(ମଧ୍ୟ) ରହିଥାଆନ୍ତ ତେବେ ମଧ୍ୟ ଯେଉଁମାନଙ୍କ ନିମନ୍ତେ ଯୁଦ୍ଧ ଅନିବାର୍ଯ୍ୟ କରାଯାଇଛି (ଅର୍ଥାତ୍ ଯେଉଁମାନଙ୍କ ଭାଗ୍ୟରେ ନିହତ ହେବାର ଅଛି) ସେମାନେ ନିଶ୍ଚୟ ନିଜର ମୃତ୍ୟୁ ଶଯ୍ୟା (ଅର୍ଥାତ୍ ଯୁଦ୍ଧ କ୍ଷେତ୍ର) ଆଡ଼କୁ ଚାଲିଯାଇ ଥାଆନ୍ତେ'' (ତଦ୍ଵାରା ଅଲ୍ଲାହ୍‌ଙ୍କ ଆଦେଶ ପାଳିତ ହୋଇଥାଆନ୍ତା) ; ଏବଂ ତଦ୍ଵାରା ତୁମମାନଙ୍କ ଅନ୍ତରରେ ଯାହା କିଛି ଅଛି ଅଲ୍ଲାହ୍ ତାହାକୁ ପରୀକ୍ଷା କରିଥାଆନ୍ତେ ତଥା ତୁମମାନଙ୍କ ଅନ୍ତରରେ ଯାହା ଅଛି ତାହାକୁ (ପବିତ୍ର ଓ) ନିର୍ମଳ କରିଥାଆନ୍ତେ ;'' ଏବଂ ଅନ୍ତରରେ ଯାହା ଅଛି ଅଲ୍ଲାହ୍ ତାହା ଭଲଭାବରେ ଜାଣନ୍ତି ।

كُنتُمْ فِي بُيُوتِكُمْ لَبَرَزَ الَّذِينَ كُتِبَ عَلَيْهِمُ الْقَتْلُ إِلَىٰ مَضَاجِعِهِمْ ۖ وَلِيَبْتَلِيَ اللَّهُ مَا فِي صُدُورِكُمْ وَلِيُمَحِّصَ مَا فِي قُلُوبِكُمْ ۗ وَاللَّهُ عَلِيمٌ بِذَاتِ الصُّدُورِ ﴿١٥٥﴾

୧୫୬. ଯେଉଁଦିନ ଉଭୟ ସୈନ୍ୟଦଳ ପରସ୍ପରର ସମ୍ମୁଖୀନ ହୋଇଥିଲେ ସେହି ଦିନ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ପୃଷ୍ଠଭଙ୍ଗ ଦେଇଥିଲେ ସେମାନଙ୍କର କେବଳ କେତେକ କାର୍ଯ୍ୟ ଯୋଗୁ ସଇତାନ ସେମାନଙ୍କର ପଦସ୍ଖଳନ କରାଇବାକୁ ଇଚ୍ଛା କରିଥିଲା. ଏବଂ ବର୍ତ୍ତମାନ ଅଲ୍ଲାହ୍ ସେମାନଙ୍କୁ ନିଶ୍ଚୟ କ୍ଷମା ପ୍ରଦାନ କରିସାରିଛନ୍ତି ; ଅଲ୍ଲାହ୍ ଅବଶ୍ୟ ପରମ କ୍ଷମାଶୀଳ(ଓ)ସହନଶୀଳ ।

إِنَّ الَّذِينَ تَوَلَّوْا مِنكُمْ يَوْمَ الْتَقَى الْجَمْعَانِ إِنَّمَا اسْتَزَلَّهُمُ الشَّيْطَانُ بِبَعْضِ مَا كَسَبُوا ۖ وَلَقَدْ عَفَا اللَّهُ عَنْهُمْ ۗ إِنَّ اللَّهَ غَفُورٌ حَلِيمٌ ﴿١٥٦﴾ ع

ରୁ : ୧୭

୧୫୭. ହେ ବିଶ୍ୱାସକାରୀମାନେ ! ତୁମେମାନେ ସେ ଲୋକମାନଙ୍କ ପରି ହୁଅ ନାହିଁ ଯେଉଁମାନେ ଅବିଶ୍ୱାସକାରୀ ହୋଇଯାଇଛନ୍ତି ; ଏବଂ ଯେତେବେଳେ ସେମାନେ ଦେଶ ଭିତରେ (ଜେହାଦ ଉଦ୍ଦେଶ୍ୟରେ) ଯାତ୍ରା କରନ୍ତି ବା ଯୁଦ୍ଧ ପାଇଁ ବାହାରନ୍ତି, ସେତେବେଳେ ନିଜର ଭାଇମାନଙ୍କ ସମ୍ବନ୍ଧରେ କହନ୍ତି ଯେ ଯଦି ସେମାନେ ଆମମାନଙ୍କ ନିକଟରେ ଥାଆନ୍ତେ, ତେବେ ମରି ନ ଥା'ନ୍ତେ କି ନିହତ ହୋଇ ନ ଥା'ନ୍ତେ ; ତଦ୍ଵାରା ଅଲ୍ଲାହ୍ ଏହାକୁ (ଅର୍ଥାତ୍ ସେମାନଙ୍କର ଏହି ଉକ୍ତିକୁ) ସେମାନଙ୍କ ଅନ୍ତରରେ ଏକ ମନସ୍ତାପର କାରଣ କରିଦେବେ ; ଏବଂ ଅଲ୍ଲାହ୍ ହିଁ ଜୀବନ ଦାନ କରନ୍ତି ଓ ମୃତ୍ୟୁ ପ୍ରଦାନ କରନ୍ତି ; ଏବଂ ଯାହାକିଛି ତୁମେମାନେ କରୁଅଛ ଅଲ୍ଲାହ୍ ତାହା ଦେଖୁଛନ୍ତି ।

يَا أَيُّهَا الَّذِينَ آمَنُوا لَا تَكُونُوا كَالَّذِينَ كَفَرُوا وَقَالُوا لِإِخْوَانِهِمْ إِذَا ضَرَبُوا فِي الْأَرْضِ أَوْ كَانُوا غُزًّى لَّوْ كَانُوا عِندَنَا مَا مَاتُوا وَمَا قُتِلُوا لِيَجْعَلَ اللَّهُ ذَٰلِكَ حَسْرَةً فِي قُلُوبِهِمْ ۗ وَاللَّهُ يُحْيِي وَيُمِيتُ ۗ وَاللَّهُ بِمَا تَعْمَلُونَ بَصِيرٌ ﴿١٥٧﴾

୧୫୮. ଏବଂ ଯଦି ତୁମେମାନେ ଅଲ୍ଲାଙ୍କ ପଥରେ ନିହତ ହୁଅ ବା ମରିଯାଅ ତେବେ ନିଶ୍ଚିତ ରୂପେ ଅଲ୍ଲାଙ୍କ ତରଫରୁ (ତୁମମାନଙ୍କ ନିକଟକୁ ପ୍ରେରିତ) କ୍ଷମା ଓ କରୁଣା ତାହା ଠାରୁ ଉତ୍କୃଷ୍ଟତର, ଯାହା ସେମାନେ ମହଜୁଦ କରୁଅଛନ୍ତି ।

وَلَئِن قُتِلْتُمْ فِي سَبِيلِ اللَّهِ أَوْ مُتُّمْ لَمَغْفِرَةٌ مِّنَ اللَّهِ وَرَحْمَةٌ خَيْرٌ مِّمَّا يَجْمَعُونَ ﴿١٥٨﴾

୧୫୯. ଏବଂ ଯଦି ତୁମେମାନେ ମରିଯାଅ ବା ନିହତ ହୁଅ ତେବେ ତୁମମାନଙ୍କୁ ନିଶ୍ଚୟ ଅଲ୍ଲାଙ୍କ ନିକଟକୁ ଏକତ୍ରିତ କରି ନିଆଯିବ ।

وَلَئِن مُّتُّمْ أَوْ قُتِلْتُمْ لَإِلَى اللَّهِ تُحْشَرُونَ ﴿١٥٩﴾

୧୬୦. ଏବଂ ଅଲ୍ଲାହ୍‌ଙ୍କର ସେହି ମହାନ୍ କରୁଣା ଯୋହା ତୁମକୁ ପ୍ରଦାନ କରାଯାଇଛି ସେଥିପାଇଁ ତୁମେ ସେମାନଙ୍କ ପ୍ରତି ନମ୍ର[୧] ହୋଇଅଛ; ଏବଂ ଯଦି ତୁମେ ମନ୍ଦସ୍ୱଭାବୀ ଓ କଠିନ ହୃଦୟର ହୋଇଥାଆନ୍ତ, ତେବେ ଏମାନେ ତୁମ ଚତୁଃପାର୍ଶ୍ୱରୁ ଛିନ୍ନଛତ୍ର ହୋଇ ଯାଆନ୍ତେ; ସୁତରାଂ ତୁମେ ସେମାନଙ୍କୁ କ୍ଷମା କର ଓ ସେମାନଙ୍କ ପାଇଁ (ଅଲ୍ଲାଙ୍କ ଠାରୁ) କ୍ଷମା ପ୍ରାର୍ଥନା କର ; ଏବଂ ଗୁରୁତ୍ୱପୂର୍ଣ୍ଣ ବ୍ୟାପାରରେ ସେମାନଙ୍କ ସହିତ ପରାମର୍ଶ[୨] କର ; ଏବଂ ଯେତେବେଳେ ତୁମେ (କୌଣସି ବିଷୟରେ) ଦୃଢ଼ ସଂକଳ୍ପ କର, ତେବେ ଅଲ୍ଲାହ୍‌ଙ୍କ ଉପରେ ଭରସା କର ; ନିଶ୍ଚୟ ଅଲ୍ଲାହ୍ ଭରସାକାରୀମାନଙ୍କୁ ପ୍ରେମ କରନ୍ତି ।

فَبِمَا رَحْمَةٍ مِّنَ اللّٰهِ لِنْتَ لَهُمْ ۚ وَلَوْ كُنْتَ فَظًّا غَلِيْظَ الْقَلْبِ لَانْفَضُّوْا مِنْ حَوْلِكَ ۖ فَاعْفُ عَنْهُمْ وَاسْتَغْفِرْ لَهُمْ وَشَاوِرْهُمْ فِي الْاَمْرِ ۚ فَاِذَا عَزَمْتَ فَتَوَكَّلْ عَلَى اللّٰهِ ۗ اِنَّ اللّٰهَ يُحِبُّ الْمُتَوَكِّلِيْنَ ﴿۱۶۰﴾

୧୬୧. ଯଦି ଅଲ୍ଲାହ୍ ତୁମମାନଙ୍କୁ ସାହାଯ୍ୟ କରନ୍ତି, ତାହେଲେ ତୁମମାନଙ୍କ ଉପରେ କେହି ବିଜୟୀ (ହୋଇପାରିବେ) ନାହିଁ ; କିନ୍ତୁ ଯଦି ସେ ତୁମମାନଙ୍କୁ ସାହାଯ୍ୟ ନ କରନ୍ତି, ତେବେ ତାହାଙ୍କ ବ୍ୟତୀତ ଅନ୍ୟ କିଏ ଅଛି ଯେ ତୁମମାନଙ୍କୁ ସାହାଯ୍ୟ କରିବ ? ଏବଂ ବିଶ୍ୱାସକାରୀମାନଙ୍କୁ ଅଲ୍ଲାହ୍‌ଙ୍କ ଉପରେ ହିଁ ଭରସା କରିବା ଉଚିତ ।

اِنْ يَّنْصُرْكُمُ اللّٰهُ فَلَا غَالِبَ لَكُمْ ۚ وَاِنْ يَّخْذُلْكُمْ فَمَنْ ذَا الَّذِيْ يَنْصُرُكُمْ مِّنْ بَعْدِهٖ ۗ وَعَلَى اللّٰهِ فَلْيَتَوَكَّلِ الْمُؤْمِنُوْنَ ﴿۱۶۱﴾

୧୬୨. ଏବଂ କୌଣସି ନବିଙ୍କ ପକ୍ଷରେ ଆତ୍ମସାତ୍ କରିବା ଶୋଭନୀୟ ନୁହେଁ ଏବଂ ଯେଉଁ ବ୍ୟକ୍ତି ଆତ୍ମସାତ୍ କରିବ ସେ ନିଜ ଆତ୍ମସାତ୍-ଲବ୍ଧ ଧନକୁ କୟାମତ୍ ଦିନ ନିଜେ ହିଁ ପ୍ରକାଶ କରିବ ; ତାପରେ ପ୍ରତ୍ୟେକ ବ୍ୟକ୍ତିକୁ, ଯାହା କିଛି ସେ ଉପାର୍ଜନ କରିଥିବ, ସମ୍ପୂର୍ଣ୍ଣ ରୂପେ ଦିଆଯିବ ; ଏବଂ ସେମାନଙ୍କ ପ୍ରତି କୌଣସି ପ୍ରକାରର ଅତ୍ୟାଚାର କରାଯିବ ନାହିଁ ।

وَمَا كَانَ لِنَبِيٍّ اَنْ يَّغُلَّ ۚ وَمَنْ يَّغْلُلْ يَاْتِ بِمَا غَلَّ يَوْمَ الْقِيٰمَةِ ۚ ثُمَّ تُوَفّٰى كُلُّ نَفْسٍ مَّا كَسَبَتْ وَهُمْ لَا يُظْلَمُوْنَ ﴿۱۶۲﴾

୧୬୩. ଯେଉଁ ବ୍ୟକ୍ତି ଅଲ୍ଲାହ୍‌ଙ୍କ ପ୍ରସନ୍ନତାର ଅନୁସରଣ କରେ ସେ କ'ଣ ସେପରି ବ୍ୟକ୍ତି ସଦୃଶ (ହୋଇପାରିବ) ଯେ ଅଲ୍ଲାଙ୍କ ତରଫରୁ (ଅବତୀର୍ଣ୍ଣ ହୋଇଥିବା) ପ୍ରକୋପ ଘେନି ଫେରେ ଓ ତାହାର ବାସସ୍ଥାନ ନରକ ଥାଏ ? ଏବଂ ସେହିସ୍ଥାନ (ଅବସ୍ଥାନ ଦୃଷ୍ଟିରୁ) ଅତ୍ୟନ୍ତ ମନ୍ଦ ଅଟେ ।

اَفَمَنِ اتَّبَعَ رِضْوَانَ اللّٰهِ كَمَنْ بَآءَ بِسَخَطٍ مِّنَ اللّٰهِ وَمَاْوٰىهُ جَهَنَّمُ ۚ وَبِئْسَ الْمَصِيْرُ ﴿۱۶۳﴾

---

୧. ହଜରତ ମହମ୍ମଦ କେବଳ ନିଜ ଅନୁଗାମୀମାନଙ୍କ ପ୍ରତି ସଦୟ ନ ଥିଲେ ବରଂ ଶତ୍ରୁ ଓ କୃତଘ୍ନ ବ୍ୟକ୍ତିମାନଙ୍କ ପ୍ରତି ମଧ୍ୟ ସଦୟ ଥିଲେ । ଏହା ହିଁ ତାଙ୍କର ଅନ୍ୟତମ ଶ୍ରେଷ୍ଠ ଗୁଣ । ଏପରିକି ଯେଉଁମାନେ ଓହଦ ଯୁଦ୍ଧକ୍ଷେତ୍ରରେ ତାଙ୍କ ସହିତ କପଟ ଆଚରଣ କରିଥିଲେ ପରେ ସେ ସେମାନଙ୍କ ସହିତ ମଧ୍ୟ ରାଜ୍ୟର ବିଭିନ୍ନ ବ୍ୟାପାର ସମ୍ବନ୍ଧରେ ପରାମର୍ଶ କରୁଥିଲେ ।

୨. ବସ୍ତୁତଃ ପରାମର୍ଶ କରିବା ଇସଲାମ ଧର୍ମର ଏକ ମୌଳିକ ନୀତି । ପ୍ରତ୍ୟେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଅନ୍ୟମାନଙ୍କର ପରାମର୍ଶ ନେବା ଜଣେ ଖଲିଫା ବା ମୁସଲମାନଙ୍କ ପକ୍ଷରେ ଅନିବାର୍ଯ୍ୟ । ହଜରତ ମହମ୍ମଦ ଏହା ହିଁ କରୁଥିଲେ । ଅବଶ୍ୟ ଖଲିଫା ବା ଶାସକ ସବୁ ପରାମର୍ଶ ଗ୍ରହଣ କରିବାକୁ ବାଧ୍ୟ ନୁହନ୍ତି । ତାଙ୍କ ବିବେକାଧିକାର ଅନୁସାରେ ସେ ଯେ କୌଣସି ପରାମର୍ଶକୁ ପ୍ରତ୍ୟାଖ୍ୟାନ କରିପାରନ୍ତି । ଅବଶ୍ୟ ନିଜ ବିବେକାଧିକାରକୁ ମନ ଇଚ୍ଛା ପ୍ରୟୋଗ ନ କରି ସଂଖ୍ୟାଧିକଙ୍କ ପରାମର୍ଶ ପ୍ରତି ଯଥୋଚିତ ସମ୍ମାନ ଦେବା ଉଚିତ ।

هُمْ دَرَجٰتٌ عِنْدَ اللّٰهِ وَاللّٰهُ بَصِيْرٌۢ بِمَا يَعْمَلُوْنَ ﴿١٦٤﴾

୧୬୪. ସେମାନେ ଅଲ୍ଲାହଙ୍କ ନିକଟରେ ବିଭିନ୍ନ ପଦମର୍ଯ୍ୟାଦାରେ ଅଛନ୍ତି ଏବଂ ସେମାନେ ଯାହାକିଛି କରୁଛନ୍ତି ଅଲ୍ଲାହ ତାହା ଦେଖୁଛନ୍ତି ।

لَقَدْ مَنَّ اللّٰهُ عَلَى الْمُؤْمِنِيْنَ اِذْ بَعَثَ فِيْهِمْ رَسُوْلًا مِّنْ اَنْفُسِهِمْ يَتْلُوْا عَلَيْهِمْ اٰيٰتِهٖ وَيُزَكِّيْهِمْ وَيُعَلِّمُهُمُ الْكِتٰبَ وَالْحِكْمَةَ ۚ وَاِنْ كَانُوْا مِنْ قَبْلُ لَفِيْ ضَلٰلٍ مُّبِيْنٍ ﴿١٦٥﴾

୧୬୫. ଅଲ୍ଲାହ, ବିଶ୍ୱାସକାରୀମାନଙ୍କ ମଧ୍ୟରୁ ଏପରି ଜଣେ ନବିଙ୍କୁ ପ୍ରେରଣ କରି ସେମାନଙ୍କ ପ୍ରତି ଅନୁଗ୍ରହ କରିଅଛନ୍ତି ଯେ କି ସେମାନଙ୍କୁ ତାହାଙ୍କର ବାଣୀ ପାଠ କରି ଶୁଣାଉଛନ୍ତି ; ଓ ସେମାନଙ୍କୁ ପବିତ୍ର କରୁଛନ୍ତି ତଥା ସେମାନଙ୍କୁ (ଧର୍ମ) ଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ଶିଖାଉଛନ୍ତି ; ଏବଂ ସେମାନେ ନିଶ୍ଚୟ (ଏଥି) ପୂର୍ବରୁ ସ୍ପଷ୍ଟ ବିଭ୍ରାନ୍ତି ମଧ୍ୟରେ (ପଡ଼ି) ରହିଥିଲେ ।

اَوَلَمَّآ اَصَابَتْكُمْ مُّصِيْبَةٌ قَدْ اَصَبْتُمْ مِّثْلَيْهَا ۙ قُلْتُمْ اَنّٰى هٰذَا ۗ قُلْ هُوَ مِنْ عِنْدِ اَنْفُسِكُمْ ۗ اِنَّ اللّٰهَ عَلٰى كُلِّ شَيْءٍ قَدِيْرٌ ﴿١٦٦﴾

୧୬୬. ଏବଂ (ଏହା କ'ଣ ସତ୍ୟ ନୁହେଁ ଯେ) ଯେତେବେଳେ (ମଧ୍ୟ) ତୁମମାନଙ୍କ ଉପରେ ଏପରି କୌଣସି ବିପତ୍ତି ପହଞ୍ଚିଲା ଯାହାର ଦୁଇଗୁଣ[1] ତୁମେମାନେ (ନିଜେ) ପହଞ୍ଚାଇ ସାରିଥିଲ (ସେତେବେଳେ) ତୁମେମାନେ କହି ଉଠିଲ, "ଏହା କେଉଁଠାରୁ ଆସିଅଛି ?" ତୁମେ (ସେମାନଙ୍କୁ) କୁହ, "ଏହା ତୁମମାନଙ୍କ ନିଜ ତରଫରୁ ଆସିଅଛି;" ବାସ୍ତବରେ ଅଲ୍ଲାହ (ନିଜ ଇପ୍‌ସିତ) ପ୍ରତ୍ୟେକ କାର୍ଯ୍ୟ କରିବାକୁ ସମ୍ପୂର୍ଣ୍ଣ ରୂପେ ସକ୍ଷମ ।

وَمَآ اَصَابَكُمْ يَوْمَ الْتَقَى الْجَمْعٰنِ فَبِاِذْنِ اللّٰهِ وَلِيَعْلَمَ الْمُؤْمِنِيْنَ ﴿١٦٧﴾

୧୬୭. ଏବଂ ଉଭୟ ଦଳ ପରସ୍ପରର ସମ୍ମୁଖୀନ ହେବା ଦିନ ଯେଉଁ ବିପତ୍ତି ତୁମମାନଙ୍କ ଉପରେ ପହଞ୍ଚିଥିଲା ତାହା ଅଲ୍ଲାହଙ୍କ ଆଦେଶ ଅନୁସାରେ ହୋଇଥିଲା ; ଏହା ଏଥିଯୋଗୁଁ (ହୋଇଥିଲା) ଯେ ସେ ବିଶ୍ୱାସକାରୀମାନଙ୍କୁ (ଓ କପଟ ବିଶ୍ୱାସୀମାନଙ୍କୁ) ପ୍ରକାଶ କରିଦେବେ ।

وَلِيَعْلَمَ الَّذِيْنَ نَافَقُوْا ۖ وَقِيْلَ لَهُمْ تَعَالَوْا قَاتِلُوْا فِيْ سَبِيْلِ اللّٰهِ اَوِ ادْفَعُوْا ۗ قَالُوْا لَوْ نَعْلَمُ قِتَالًا لَّاتَّبَعْنٰكُمْ ۗ هُمْ لِلْكُفْرِ يَوْمَئِذٍ اَقْرَبُ مِنْهُمْ لِلْاِيْمَانِ ۚ يَقُوْلُوْنَ بِاَفْوَاهِهِمْ مَّا لَيْسَ فِيْ قُلُوْبِهِمْ ۗ وَاللّٰهُ اَعْلَمُ بِمَا يَكْتُمُوْنَ ﴿١٦٨﴾

୧୬୮. ଏବଂ ସେ (କପଟବିଶ୍ୱାସୀ)ମାନଙ୍କୁ କୁହାଯାଇଥିଲା, "ଆସ, ଅଲ୍ଲାହଙ୍କ ପଥରେ ଯୁଦ୍ଧକର ଏବଂ (ଶତ୍ରୁ ଆକ୍ରମଣକୁ) ପ୍ରତିହତ କର ;" (ଏଥି ଉତ୍ତାରୁ) ସେମାନେ କହିଲେ, "ଯଦି ଆମେମାନେ ଯୁଦ୍ଧ କରିବା ଜାଣିଥାଆନ୍ତୁ, ତେବେ ନିଶ୍ଚୟ ତୁମମାନଙ୍କ ସଙ୍ଗରେ ଯାଇଥାଆନ୍ତୁ ;" ସେମାନେ ସେଦିନ ବିଶ୍ୱାସ ତୁଳନାରେ ଅବିଶ୍ୱାସର ନିକଟତର ଥିଲେ ; ସେମାନେ ନିଜ ମୁଖରେ ଯାହା କହୁଥିଲେ ସେମାନଙ୍କ ଅନ୍ତରରେ ତାହା ନ ଥିଲା ; ଏବଂ ସେମାନେ ଯାହା କିଛି ଗୋପନ କରୁଛନ୍ତି ଅଲ୍ଲାହ ତାହାକୁ ଭଲ ରୂପେ ଜାଣନ୍ତି ।

୧. ବଦର ଯୁଦ୍ଧରେ ୭୦ ଜଣ ମକ୍‌କାବାସୀ ନିହତ ହୋଇଥିଲେ ଓ ଅନ୍ୟ ୭୦ ଜଣ ବନ୍ଦୀ ହୋଇଥିଲେ ଅଥଚ ଉହଦ ଯୁଦ୍ଧରେ ୭୦ ଜଣ ମୁସଲମାନ ନିହତ ହୋଇଥିଲେ ମଧ୍ୟ କେହି ବନ୍ଦୀ ହୋଇ ନ ଥିଲେ । ତେଣୁ ମୁସଲମାନମାନେ ଶତ୍ରୁପକ୍ଷର ଦ୍ୱିଗୁଣ କ୍ଷତି କରିଥିବା ସୂଚାଯାଇଛି ।

الَّذِينَ قَالُوا لِإِخْوَانِهِمْ وَقَعَدُوا لَوْ أَطَاعُونَا مَا قُتِلُوا ۗ قُلْ فَادْرَءُوا عَنْ أَنْفُسِكُمُ الْمَوْتَ إِنْ كُنْتُمْ صَادِقِينَ ﴿١٦٩﴾

୧୬୯. ଯେଉଁମାନେ ନିଜେ (ପଛରେ) ବସିରହି ସେମାନଙ୍କ ଭାଇମାନଙ୍କ ସମ୍ବନ୍ଧରେ କହିଥିଲେ, "ଯଦି ସେମାନେ ଆମମାନଙ୍କର କଥା ମାନି ଥାଆନ୍ତେ ତାହାହେଲେ ନିହତ ହୋଇ ନ ଥାନ୍ତେ ;" ତୁମେ (ସେମାନଙ୍କୁ) କୁହ, ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ ତେବେ (ଏବେ) ମୃତ୍ୟୁକୁ ତୁମମାନଙ୍କ ନିକଟରୁ ଅପସାରଣ କରି (ଦେଖାଇ) ଦିଅ ।

وَلَا تَحْسَبَنَّ الَّذِينَ قُتِلُوا فِي سَبِيلِ اللَّهِ أَمْوَاتًا ۚ بَلْ أَحْيَاءٌ عِنْدَ رَبِّهِمْ يُرْزَقُونَ ﴿١٧٠﴾

୧୭୦. ଏବଂ ଯେଉଁମାନେ ଅଲ୍ଲାହ୍ଙ୍କ ପଥରେ ନିହତ ହୋଇଛନ୍ତି, ତୁମେ ସେମାନଙ୍କୁ କଦାପି ମୃତ ମନେ କର ନାହିଁ ବରଂ ସେମାନେ ନିଜ ପାଳନକର୍ତ୍ତାଙ୍କ ସମୀପରେ ଜୀବିତ ଅଛନ୍ତି (ଓ) ସେମାନଙ୍କୁ ଜୀବିକା ପ୍ରଦାନ କରାଯାଉଛି ।

فَرِحِينَ بِمَا آتَاهُمُ اللَّهُ مِنْ فَضْلِهِ وَيَسْتَبْشِرُونَ بِالَّذِينَ لَمْ يَلْحَقُوا بِهِمْ مِنْ خَلْفِهِمْ أَلَّا خَوْفٌ عَلَيْهِمْ وَلَا هُمْ يَحْزَنُونَ ﴿١٧١﴾

୧୭୧. ଅଲ୍ଲାହ୍ ସେମାନଙ୍କୁ ନିଜ ଅନୁଗ୍ରହରୁ ଯାହା ଦେଇଛନ୍ତି ସେଥିରେ ସେମାନେ ଆନନ୍ଦିତ[1] ଅଛନ୍ତି ; ଏବଂ ସେ ଲୋକମାନଙ୍କ ସମ୍ବନ୍ଧରେ (ମଧ୍ୟ) ଯେଉଁମାନେ ବର୍ତ୍ତମାନ ସେମାନଙ୍କ ପଛରୁ (ଆସି) ସେମାନଙ୍କ ସହିତ ମିଳିତ ହୋଇ ନାହାନ୍ତି, (କାରଣ) ସେମାନଙ୍କର (ତଥା ସେମାନଙ୍କ ସମଧର୍ମୀମାନଙ୍କର) କୌଣସି ଭୟ ରହିବ ନାହିଁ କି ସେମାନେ ଦୁଃଖିତ ହେବେ ନାହିଁ ।

يَسْتَبْشِرُونَ بِنِعْمَةٍ مِنَ اللَّهِ وَفَضْلٍ وَأَنَّ اللَّهَ لَا يُضِيعُ أَجْرَ الْمُؤْمِنِينَ ﴿١٧٢﴾

୧୭୨. (ଅବଶ୍ୟ) ଅଲ୍ଲାହ୍ଙ୍କ ତରଫରୁ (ସେମାନଙ୍କୁ ପ୍ରଦତ୍ତ) ସେହି ମହାନ୍ କୃପା ସମ୍ବନ୍ଧରେ ଓ (ତାହାଙ୍କର) ଅନୁଗ୍ରହ ସମ୍ବନ୍ଧରେ ତଥା ଅଲ୍ଲାହ୍ ବିଶ୍ୱାସକାରୀମାନଙ୍କର ପୁରସ୍କାରକୁ ନଷ୍ଟ କରନ୍ତି ନାହିଁ ଏଥିପାଇଁ ସେମାନେ ଆନନ୍ଦିତ ହେଉଛନ୍ତି ।

ରୁ : ୧୮

الَّذِينَ اسْتَجَابُوا لِلَّهِ وَالرَّسُولِ مِنْ بَعْدِ مَا أَصَابَهُمُ الْقَرْحُ ۚ لِلَّذِينَ أَحْسَنُوا مِنْهُمْ وَاتَّقَوْا أَجْرٌ عَظِيمٌ ﴿١٧٣﴾

୧୭୩. ଯେଉଁ ଲୋକମାନେ ଆଘାତ ପାଇବା ପରେ (ମଧ୍ୟ) ଅଲ୍ଲାହ୍ଙ୍କର ଓ ରସୁଲଙ୍କର ଆଦେଶକୁ ଗ୍ରହଣ କରିଛନ୍ତି, ସେମାନଙ୍କ ମଧ୍ୟରୁ ଯେଉଁମାନେ ଭଲ ଭାବରେ ନିଜର କର୍ତ୍ତବ୍ୟ ସମ୍ପାଦନ କରିଛନ୍ତି ଓ ଧର୍ମଭୀରୁତା ଅବଲମ୍ବନ କରିଛନ୍ତି ସେମାନଙ୍କ ପାଇଁ ମହାନ୍ ପୁରସ୍କାର ଅଛି ।

---

୧. ମୃତ୍ୟୁପରେ ଦେବଦୂତମାନେ ଶହୀଦମାନଙ୍କୁ ଯୁଦ୍ଧରେ କ'ଣ ଘଟିବାକୁ ଯାଉଛି ତାହା ପୂର୍ବରୁ ଜଣାଇ ଦିଅନ୍ତି । ଫଳରେ ଶହୀଦମାନେ ମୁସଲମାନଙ୍କ ବିଜୟ ଓ ସଫଳତା ବିଷୟରେ ଶୁଣି ଅତ୍ୟନ୍ତ ଆନନ୍ଦିତ ହୁଅନ୍ତି ।

୧୭୪. (ଏମାନେ) ସେହି (ଲୋକ), ଯେଉଁମାନଙ୍କୁ (ଶତ୍ରୁ ପକ୍ଷର) ଲୋକମାନେ କହିଥିଲେ, "ତୁମମାନଙ୍କ ବିରୁଦ୍ଧରେ ଲୋକମାନେ (ସୈନ୍ୟବାହାନୀ) ଏକତ୍ରିତ କରି ଅଛନ୍ତି, ସୁତରାଂ ତୁମେମାନେ ସେମାନଙ୍କୁ ଭୟ କର"; କିନ୍ତୁ ଏହା ସେମାନଙ୍କ ବିଶ୍ୱାସକୁ ଅଧିକ ବୃଦ୍ଧି କରାଇଲା ଏବଂ ସେମାନେ କହିଲେ, "ଅଲ୍ଲାହ ଆମମାନଙ୍କ ପାଇଁ ଯଥେଷ୍ଟ ଓ ସେ ହିଁ ଉତ୍ତମ କାର୍ଯ୍ୟ ସମ୍ପାଦନକାରୀ ଅଟନ୍ତି।"

الَّذِينَ قَالَ لَهُمُ النَّاسُ إِنَّ النَّاسَ قَدْ جَمَعُوا لَكُمْ فَاخْشَوْهُمْ فَزَادَهُمْ إِيمَانًا وَقَالُوا حَسْبُنَا اللَّهُ وَنِعْمَ الْوَكِيلُ ﴿١٧٤﴾

୧୭୫. ସୁତରାଂ ସେମାନେ ବିନା କ୍ଷତିରେ ଅଲ୍ଲାହଙ୍କ ଠାରୁ ମହାନ୍ କୃପା ଓ ମହାନ୍ ଅନୁଗ୍ରହ[1] ସହ ଫେରି ଆସିଲେ ; ଏବଂ ସେମାନେ ଅଲ୍ଲାହଙ୍କ ପ୍ରସନ୍ନତାର ଅନୁସରଣ କରିଥିଲେ ; ଏବଂ ଅଲ୍ଲାହ ପରମ ଅନୁଗ୍ରହକାରୀ।

فَانْقَلَبُوا بِنِعْمَةٍ مِنَ اللَّهِ وَفَضْلٍ لَمْ يَمْسَسْهُمْ سُوءٌ وَاتَّبَعُوا رِضْوَانَ اللَّهِ وَاللَّهُ ذُو فَضْلٍ عَظِيمٍ ﴿١٧٥﴾

୧୭୬. ଏ (ଭୟ ପ୍ରଦର୍ଶନକାରୀ) କେବଳ ଜଣେ ସଇତାନ ; ସେ ତା'ର ବନ୍ଧୁମାନଙ୍କୁ ଭୟଭୀତ କରାଏ ; ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ, ତେବେ ଏ (ସଇତାନ)ମାନଙ୍କୁ ଭୟ କର ନାହିଁ ; ବରଂ ଆମ୍ଭଙ୍କୁ ଭୟ କର।

إِنَّمَا ذَٰلِكُمُ الشَّيْطَانُ يُخَوِّفُ أَوْلِيَاءَهُ فَلَا تَخَافُوهُمْ وَخَافُونِ إِنْ كُنْتُمْ مُؤْمِنِينَ ﴿١٧٦﴾

୧୭୭. ଏବଂ ଯେଉଁମାନେ ଅବିଶ୍ୱାସ (କରିବାରେ) (ଶୀଘ୍ର) ଅଗ୍ରସର ହେଉଛନ୍ତି, ସେମାନେ ତୁମ୍ଭଙ୍କୁ ଦୁଃଖିତ ନ କରନ୍ତୁ ; ସେମାନେ ଅଲ୍ଲାହଙ୍କର କୌଣସି କ୍ଷତି କରିପାରିବେ ନାହିଁ ; ଅଲ୍ଲାହ ଇଚ୍ଛା କରନ୍ତି ଯେ ପରକାଳରେ ସେମାନଙ୍କର କୌଣସି ଭାଗ ନ ରହୁ ଏବଂ ସେମାନଙ୍କ ପାଇଁ ଭୀଷଣ ଶାସ୍ତି (ନିୟତ) ଅଛି।

وَلَا يَحْزُنْكَ الَّذِينَ يُسَارِعُونَ فِي الْكُفْرِ إِنَّهُمْ لَنْ يَضُرُّوا اللَّهَ شَيْئًا يُرِيدُ اللَّهُ أَلَّا يَجْعَلَ لَهُمْ حَظًّا فِي الْآخِرَةِ وَلَهُمْ عَذَابٌ عَظِيمٌ ﴿١٧٧﴾

୧୭୮. ବାସ୍ତବରେ ଯେଉଁମାନେ ବିଶ୍ୱାସକୁ ପରିତ୍ୟାଗ କରି ଅବିଶ୍ୱାସକୁ ଗ୍ରହଣ କରିଅଛନ୍ତି ସେମାନେ କଦାପି ଅଲ୍ଲାହଙ୍କର କୌଣସି କ୍ଷତି କରିପାରିବେ ନାହିଁ ; ଏବଂ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି।

إِنَّ الَّذِينَ اشْتَرَوُا الْكُفْرَ بِالْإِيمَانِ لَنْ يَضُرُّوا اللَّهَ شَيْئًا وَلَهُمْ عَذَابٌ أَلِيمٌ ﴿١٧٨﴾

୧୭୯. ଏବଂ ଅବିଶ୍ୱାସକାରୀମାନେ ଏହା ଭାବିବା କଦାପି ଉଚିତ ନୁହେଁ ଯେ ଆମ୍ଭର ସେମାନଙ୍କୁ ଅବ୍ୟାହତି ଦେବା ସେମାନଙ୍କ ପକ୍ଷେ ଉତ୍କୃଷ୍ଟ ଅଟେ ; ଆମ୍ଭେ ସେମାନଙ୍କୁ ଯେଉଁ ଅବ୍ୟାହତି ଦେଉଅଛୁ ତା' ଫଳରେ ସେମାନେ କେବଳ ପାପରେ ଅଗ୍ରସର ହେବେ ; ସେମାନଙ୍କ ପାଇଁ ଅପମାନଜନକ ଶାସ୍ତି (ନିୟତ) ରହିଅଛି।

وَلَا يَحْسَبَنَّ الَّذِينَ كَفَرُوا أَنَّمَا نُمْلِي لَهُمْ خَيْرٌ لِأَنْفُسِهِمْ إِنَّمَا نُمْلِي لَهُمْ لِيَزْدَادُوا إِثْمًا وَلَهُمْ عَذَابٌ مُهِينٌ ﴿١٧٩﴾

---

୧. ଉହଦ ଯୁଦ୍ଧକ୍ଷେତ୍ର ପରିତ୍ୟାଗ କରିବା ପୂର୍ବରୁ ମକ୍କାର ସେନାଧ୍ୟକ୍ଷ ଅବୁସୁଫିୟାନ ମୁସଲମାନମାନଙ୍କ ନିକଟରେ ପ୍ରତିଜ୍ଞା କରିଥିଲେ ଯେ ଆଗାମୀ ବର୍ଷ ସେମାନଙ୍କ ମଧ୍ୟରେ ପୁନର୍ବାର ଯୁଦ୍ଧ ହେବ। କିନ୍ତୁ ପରବର୍ତ୍ତୀ ବର୍ଷ ସେଠାରେ ଦୁର୍ଭିକ୍ଷ ପଡ଼ିବାରୁ ସେ ନିଜ ବଚନ ରକ୍ଷା କରି ପାରି ନ ଥିଲେ। କିନ୍ତୁ ମକ୍କାବାସୀ ଯୁଦ୍ଧ ପ୍ରସ୍ତୁତିରେ ଲାଗିଛନ୍ତି ବୋଲି ଅପପ୍ରଚାର କରାଇଦେବାରୁ ମୁସଲମାନମାନେ ବଦର ଯୁଦ୍ଧକ୍ଷେତ୍ରକୁ ଆସିଥିଲେ। ଯେହେତୁ ଶତ୍ରୁପକ୍ଷ ମୁକାବିଲା ପାଇଁ ଆସିଲେ ନାହିଁ ତେଣୁ ମୁସଲମାନମାନେ ସେଠା ବାର୍ଷିକ ମେଳାରେ ବ୍ୟବସାୟ କରି ପ୍ରଚୁର ଧନ ଅର୍ଜନ କରିଥିଲେ।

مَا كَانَ اللّٰهُ لِيَذَرَ الْمُؤْمِنِيْنَ عَلٰى مَآ اَنْتُمْ عَلَيْهِ حَتّٰى يَمِيْزَ الْخَبِيْثَ مِنَ الطَّيِّبِ ۚ وَمَا كَانَ اللّٰهُ لِيُطْلِعَكُمْ عَلَى الْغَيْبِ وَلٰكِنَّ اللّٰهَ يَجْتَبِيْ مِنْ رُّسُلِهٖ مَنْ يَّشَآءُ ۪ فَاٰمِنُوْا بِاللّٰهِ وَرُسُلِهٖ ۚ وَاِنْ تُؤْمِنُوْا وَتَتَّقُوْا فَلَكُمْ اَجْرٌ عَظِيْمٌ ﴿١٨٠﴾

୧୮୦. ଏହା କେବେ ହେଁ ସମ୍ଭବପର ନ ଥିଲା ଯେ ଅପବିତ୍ରଙ୍କୁ ପବିତ୍ରଙ୍କ ଠାରୁ ପୃଥକ୍ ନ କରିବା ପର୍ଯ୍ୟନ୍ତ ତୁମେମାନେ ଯେଉଁ ଅବସ୍ଥାରେ ଅଛ ଅଲ୍ଲାଃ (ତୁମମାନଙ୍କ ସଦୃଶ) ବିଶ୍ୱାସକାରୀମାନଙ୍କୁ ସେହି ଅବସ୍ଥାରେ ଛାଡ଼ି ଦେଇଥାଆନ୍ତେ ; ଏବଂ ଅଲ୍ଲାଃ ତୁମମାନଙ୍କୁ ଅଦୃଶ୍ୟ ବିଷୟରେ କଦାପି ଅବଗତ କରାଇ ପାରି ନ ଥାଆନ୍ତେ। ଅବଶ୍ୟ ଅଲ୍ଲାଃ ତାହାଙ୍କ ରସୁଲମାନଙ୍କ ମଧ୍ୟରୁ ଯାହାଙ୍କୁ ଇଚ୍ଛା (ତାହାଙ୍କୁ) ମନୋନୀତ କରନ୍ତି; ଅତଏବ ତୁମେମାନେ ଅଲ୍ଲାଃ ଓ ତାହାଙ୍କ ରସୁଲମାନଙ୍କ ଉପରେ ବିଶ୍ୱାସ କର ; ଏବଂ ଯଦି ତୁମେମାନେ ବିଶ୍ୱାସ କରିବ ଏବଂ ଧର୍ମଭୀରୁତା ଅବଲମ୍ବନ କରିବ ତେବେ ତୁମମାନଙ୍କୁ ମହାନ୍ ପୁରସ୍କାର ମିଳିବ।

وَلَا يَحْسَبَنَّ الَّذِيْنَ يَبْخَلُوْنَ بِمَآ اٰتٰىهُمُ اللّٰهُ مِنْ فَضْلِهٖ هُوَ خَيْرًا لَّهُمْ ۚ بَلْ هُوَ شَرٌّ لَّهُمْ ۚ سَيُطَوَّقُوْنَ مَا بَخِلُوْا بِهٖ يَوْمَ الْقِيٰمَةِ ۚ وَلِلّٰهِ مِيْرَاثُ السَّمٰوٰتِ وَالْاَرْضِ ۚ وَاللّٰهُ بِمَا تَعْمَلُوْنَ خَبِيْرٌ ﴿١٨١﴾

୧୮୧. ଏବଂ ଅଲ୍ଲାଃ ନିଜ ଅନୁଗ୍ରହରୁ ସେମାନଙ୍କୁ ଯାହା ଦେଇଛନ୍ତି, ଯେଉଁମାନେ (ତାହା ବ୍ୟୟ କରିବାରେ) କୃପଣତା କରନ୍ତି ସେମାନେ ନିଜ ପାଇଁ ତାହାକୁ କଦାପି ଉତ୍ତମ ମନେ ନ କରନ୍ତୁ ବରଂ ସେମାନଙ୍କ ପାଇଁ ଏହା ଅତ୍ୟନ୍ତ ମନ୍ଦ ଅଟେ ; ସେମାନେ ଯେଉଁ ଧନ ସଂକ୍ରାନ୍ତରେ କୃପଣତା କରନ୍ତି କୟାମତ ଦିନ ନିଶ୍ଚୟ ତାହା ସେମାନଙ୍କ ଗଳାରେ ଶିକୁଳି ହୋଇପଡ଼ିବ ; ଏବଂ ଆକାଶ ଓ ପୃଥିବୀର ସ୍ୱତ୍ୱ କେବଳ ଅଲ୍ଲାଃଙ୍କର ଅଟେ ଏବଂ ତୁମେମାନେ ଯାହା କରୁଅଛ, ଅଲ୍ଲାଃ ତାହା ଜାଣନ୍ତି।

ରୁ : ୧୯

لَقَدْ سَمِعَ اللّٰهُ قَوْلَ الَّذِيْنَ قَالُوْٓا اِنَّ اللّٰهَ فَقِيْرٌ وَّنَحْنُ اَغْنِيَآءُ ۘ سَنَكْتُبُ مَا قَالُوْا وَقَتْلَهُمُ الْاَنْۢبِيَآءَ بِغَيْرِ حَقٍّ ۙ وَّنَقُوْلُ ذُوْقُوْا عَذَابَ الْحَرِيْقِ ﴿١٨٢﴾

୧୮୨. ଯେଉଁ ଲୋକମାନେ କହୁଅଛନ୍ତି ଯେ ଅଲ୍ଲାଃ ଦରିଦ୍ର ଓ ଆମ୍ଭେମାନେ ଧନୀ, ଅଲ୍ଲାଃ ନିଶ୍ଚୟ ସେମାନଙ୍କ (ଏହି) କଥା[୧] ଶୁଣିଅଛନ୍ତି ; ଆମ୍ଭେ ସେମାନଙ୍କର ଏହି କଥାକୁ ଓ ସେମାନଙ୍କ ନବିମାନଙ୍କୁ ଅଯଥାରେ ହତ୍ୟା କରିବା ଚେଷ୍ଟାକୁ ନିଶ୍ଚୟ ଲେଖି ରଖିବୁ ; ଏବଂ ଆମ୍ଭେ ସେମାନଙ୍କୁ କହିବୁ, "ଦହନକାରୀ ଶାସ୍ତିକୁ ଭୋଗ କର ।"

ذٰلِكَ بِمَا قَدَّمَتْ اَيْدِيْكُمْ وَاَنَّ اللّٰهَ لَيْسَ بِظَلَّامٍ لِّلْعَبِيْدِ ﴿١٨٣﴾

୧୮୩. ଯାହା କିଛି ତୁମେମାନେ ସ୍ୱହସ୍ତରେ ଅର୍ଜନ କରିଅଛ, ଏହା (ଅର୍ଥାତ୍ ଶାସ୍ତି) ଏଥିଯୋଗୁଁ ହେବ ; ଏବଂ ପ୍ରକୃତରେ ଅଲ୍ଲାଃ ତାଙ୍କର ଭକ୍ତମାନଙ୍କ ପ୍ରତି ଅତ୍ୟାଚାର କରନ୍ତି ନାହିଁ।

---

୧. ମୁସଲମାନମାନେ ଯେପରି ଦାନ କରିବାକୁ ଆଗଭର ହେବେ ସେ ସଂକ୍ରାନ୍ତରେ ଏକ ଆୟତ୍ (୨:୨୪୬ ଦ୍ରଷ୍ଟବ୍ୟ) ଅବତୀର୍ଣ୍ଣ ହେବାପରେ ଇହୁଦୀମାନେ ନିଜକୁ ଧନବାନ ଓ ଅଲ୍ଲାଃଙ୍କୁ ନିର୍ଦ୍ଧନ ବୋଲି କହିଥିଲେ। ଏହାର ଉତ୍ତରରେ ସେମାନଙ୍କୁ ଜଣାଇ ଦିଆଗଲା ଯେ ସେମାନଙ୍କ ଏହି ଉକ୍ତି ଯୋଗୁଁ ସେମାନଙ୍କ ଠାରୁ ଧନସମ୍ପତ୍ତି ଅପସାରିତ ହେବା ଶୀଘ୍ର ଘଟିବ। ବସ୍ତୁତଃ ଅଳ୍ପଦିନ ପରେ ସେମାନେ ମଦିନା ଓ ତା'ର ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଥିବା ସେମାନଙ୍କ ସମସ୍ତ ଧନସମ୍ପତ୍ତିକୁ ଛାଡ଼ି ପଳାୟନ କରିଥିଲେ। ଏହା ଇତିହାସ ପୃଷ୍ଠାରୁ ପ୍ରମାଣିତ।

ୱ୧୮୪. ଯେଉଁ ଲୋକମାନେ କହିଥିଲେ ଯେ ଅଲ୍ଲାହ ବାସ୍ତବିକ ଆମମାନଙ୍କୁ ଚେତାବନୀ ପୂର୍ବକ ଆଦେଶ ଦେଇଅଛନ୍ତି ଯେ ଆମେମାନେ ସେପର୍ଯ୍ୟନ୍ତ କୌଣସି ରସୁଲଙ୍କ କଥା ମାନିବୁ ନାହିଁ ଯେପର୍ଯ୍ୟନ୍ତ ସେ ଏପରି କୁରବାନି (ସଂକ୍ରାନ୍ତରେ ଆଦେଶ) ନ ଆଣନ୍ତି ଯାହାକୁ ଅଗ୍ନି[1] ଦଗ୍ଧ କରେ ; ତୁମେ (ସେମାନଙ୍କୁ) କୁହ ଯେ ତୁମମାନଙ୍କ ନିକଟକୁ ଅନେକ ରସୁଲ ଆମ ପୂର୍ବରୁ ପ୍ରକାଶ୍ୟ ନିଦର୍ଶନମାନ ସହିତ ଏବଂ ତୁମେ ଯାହା ବର୍ଣ୍ଣନା କରିଅଛ ତାହା ସହିତ ଆସିଥିଲେ ; ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ତୁମେମାନେ ସେମାନଙ୍କୁ ହତ୍ୟା କରିବାକୁ କାହିଁକି ଚେଷ୍ଟିତ ଥିଲ ।

الَّذِينَ قَالُوا إِنَّ اللَّهَ عَهِدَ إِلَيْنَا أَلَّا نُؤْمِنَ لِرَسُولٍ حَتَّىٰ يَأْتِيَنَا بِقُرْبَانٍ تَأْكُلُهُ النَّارُ ۗ قُلْ قَدْ جَاءَكُمْ رُسُلٌ مِّن قَبْلِي بِالْبَيِّنَاتِ وَبِالَّذِي قُلْتُمْ فَلِمَ قَتَلْتُمُوهُمْ إِن كُنتُمْ صَادِقِينَ ﴿١٨٣﴾

୧୮୫. ସୁତରାଂ ଯଦି ସେମାନେ ତୁମ ପ୍ରତି ମିଥ୍ୟା ଆରୋପ କରନ୍ତି (ତାହେଲେ କଣ ହେଲା), ତୁମ ପୂର୍ବରୁ ମଧ୍ୟ ପ୍ରକାଶ୍ୟ ନିଦର୍ଶନମାନ ଓ ତତ୍ତ୍ୱ ସମ୍ବଳିତ ପୁସ୍ତକ ତଥା ଦୀପ୍ତିମାନ ବିଧାନ ଆଣିଥିବା ରସୁଲମାନଙ୍କ ପ୍ରତି ମିଥ୍ୟା ଆରୋପ କରାଯାଇଥିଲା ।

فَإِن كَذَّبُوكَ فَقَدْ كُذِّبَ رُسُلٌ مِّن قَبْلِكَ جَاءُوا بِالْبَيِّنَاتِ وَالزُّبُرِ وَالْكِتَابِ الْمُنِيرِ ﴿١٨٤﴾

୧୮୬. ପ୍ରତ୍ୟେକ ପ୍ରାଣୀକୁ ମୃତ୍ୟୁର ସ୍ୱାଦ ଆସ୍ୱାଦନ କରିବାକୁ ପଡ଼ିବ ଏବଂ ତୁମମାନଙ୍କୁ କେବଳ କୟାମତ ଦିନ ହିଁ ତୁମମାନଙ୍କ (କର୍ମର) ସମ୍ପୂର୍ଣ୍ଣ ପୁରସ୍କାର[2] ଦିଆଯିବ ; ସୁତରାଂ ଯାହାକୁ ନରକାଗ୍ନି ଠାରୁ ଦୂରେଇ ରଖାଯିବ ଓ ବୈକୁଣ୍ଠରେ ପ୍ରବେଶ କରାଯିବ ସେ ହିଁ କୃତକାର୍ଯ୍ୟ ହେବ ; ଏବଂ ପାର୍ଥିବ ଜୀବନ (ର ସାମଗ୍ରୀ) କେବଳ ପ୍ରତାରଣାଦାୟକ ଅସ୍ଥାୟୀ ସାମଗ୍ରୀ ଅଟେ ।

كُلُّ نَفْسٍ ذَائِقَةُ الْمَوْتِ ۗ وَإِنَّمَا تُوَفَّوْنَ أُجُورَكُمْ يَوْمَ الْقِيَامَةِ ۖ فَمَن زُحْزِحَ عَنِ النَّارِ وَأُدْخِلَ الْجَنَّةَ فَقَدْ فَازَ ۗ وَمَا الْحَيَاةُ الدُّنْيَا إِلَّا مَتَاعُ الْغُرُورِ ﴿١٨٥﴾

୧୮୭. ତୁମମାନଙ୍କୁ ତୁମମାନଙ୍କର ଧନ ଓ ତୁମମାନଙ୍କର ଜୀବନ ସମ୍ବନ୍ଧରେ ନିଶ୍ଚୟ ପରୀକ୍ଷା କରାଯିବ, ଏବଂ ତୁମମାନଙ୍କ ପୂର୍ବରୁ ଯାହାଙ୍କୁ ଗ୍ରନ୍ଥ ଦିଆଯାଇଅଛି, ଓ ଯେଉଁମାନେ ମୁସରିକ, ତୁମେମାନେ ନିଶ୍ଚୟ ସେମାନଙ୍କ ଠାରୁ ଅନେକ ଦୁଃଖଦାୟକ କଥା ଶୁଣିବ, ଏବଂ ଯଦି ତୁମେମାନେ ଧୈର୍ଯ୍ୟ ଧରିବ ଓ ଧର୍ମଭୀରୁତା ଅବଲମ୍ବନ କରିବ, ଏହା ନିଶ୍ଚୟ ସାହସିକତାର କାର୍ଯ୍ୟ ହେବ ।

لَتُبْلَوُنَّ فِي أَمْوَالِكُمْ وَأَنفُسِكُمْ وَلَتَسْمَعُنَّ مِنَ الَّذِينَ أُوتُوا الْكِتَابَ مِن قَبْلِكُمْ وَمِنَ الَّذِينَ أَشْرَكُوا أَذًى كَثِيرًا ۚ وَإِن تَصْبِرُوا وَتَتَّقُوا فَإِنَّ ذَٰلِكَ مِنْ عَزْمِ الْأُمُورِ ﴿١٨٦﴾

---

୧. କୌଣସି ଏକ ସ୍ଥାନରୁ ଅଗ୍ନି ଆସି ତାହାକୁ ଭସ୍ମ କରି ଦେଉଥିଲ ବୋଲି ଅର୍ଥ କରିବା ଠିକ୍ ନୁହେଁ । ପ୍ରକୃତରେ ତାହା ସେହି ଉତ୍ସର୍ଗ ବା ବଳିଦାନ ପ୍ରତି ଇଙ୍ଗିତ ହୁଏ ଯାହାକୁ ଅଗ୍ନିରେ ନିକ୍ଷେପ କରି ଦହନ କରାଯାଏ । ଏହି ଦାହ ବଳିଦାନ ଭାବରେ ଅଭିହିତ । ଏହି ପ୍ରଥା ହିନ୍ଦୁ, ଇରାନୀ ଓ ଇହୁଦୀମାନଙ୍କ ମଧ୍ୟରେ ବହୁଳ ଭାବରେ ପ୍ରଚଳିତ ଥିଲା ।

୨. ଯଦ୍ୟପି ସାଂସାରିକ ଜୀବନରେ ଉପଯୁକ୍ତ ପୁରସ୍କାର ମଧ୍ୟ ମିଳେ ତଥାପି ତାହା ସମ୍ପୂର୍ଣ୍ଣ ପୁରସ୍କାର ନୁହେଁ । ବିଶ୍ୱାସକାରୀମାନଙ୍କୁ ନିଜ ନିଜ ସୁକୃତି ଅନୁସାରେ କୟାମତ ଦିନ ସମ୍ପୂର୍ଣ୍ଣ ପୁରସ୍କାର ମିଳିଥାଏ । ଅଲ୍ଲାହ ଯେ ଅତ୍ୟନ୍ତ କରୁଣାମୟ ତାହାର ପ୍ରମାଣ ସେହିଦିନ ମିଳେ ।

وَاِذْ اَخَذَ اللّٰهُ مِيْثَاقَ الَّذِيْنَ اُوْتُوا الْكِتٰبَ لَتُبَيِّنُنَّهٗ لِلنَّاسِ وَلَا تَكْتُمُوْنَهٗ فَنَبَذُوْهُ وَرَآءَ ظُهُوْرِهِمْ وَاشْتَرَوْا بِهٖ ثَمَنًا قَلِيْلًا ۗ فَبِئْسَ مَا يَشْتَرُوْنَ ﴿١٨٨﴾

୧୮୮. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଅଲ୍ଲାହ୍ ଗ୍ରନ୍ଥଧାରୀମାନଙ୍କ-ଠାରୁ ଅଙ୍ଗୀକାର ନେଇଥିଲେ ଯେ ତୁମେମାନେ ନିଶ୍ଚୟ ତାହାକୁ (ଅର୍ଥାତ୍ ସେହି ଗ୍ରନ୍ଥକୁ) ଲୋକମାନଙ୍କ ନିକଟରେ ପ୍ରକାଶ କରିବ ଏବଂ ତାହାକୁ ଗୋପନ କରିବ ନାହି ; କିନ୍ତୁ ଏହା ସତ୍ତ୍ୱେ ସେମାନେ ଏହାକୁ ନିଜର ପୃଷ୍ଠ ଦେଶକୁ ଫୋପାଡ଼ି ଦେଲେ ଏବଂ ତା ବିନିମୟରେ ସ୍ୱଳ୍ପ ମୂଲ୍ୟ ଗ୍ରହଣ କଲେ ; ସୁତରାଂ ସେମାନେ ଯାହା କିଛି ଗ୍ରହଣ କରିଛନ୍ତି ତାହା ଅତ୍ୟନ୍ତ ମନ୍ଦ ଅଟେ ।

لَا تَحْسَبَنَّ الَّذِيْنَ يَفْرَحُوْنَ بِمَآ اَتَوْا وَّيُحِبُّوْنَ اَنْ يُّحْمَدُوْا بِمَا لَمْ يَفْعَلُوْا فَلَا تَحْسَبَنَّهُمْ بِمَفَازَةٍ مِّنَ الْعَذَابِ ۚ وَلَهُمْ عَذَابٌ اَلِيْمٌ ﴿١٨٩﴾

୧୮୯. ଯେଉଁମାନେ ନିଜ କର୍ମ ପାଇଁ (ଗର୍ବରେ) ଉତ୍ଫୁଲ୍ଲ ହୁଅନ୍ତି ଏବଂ ସେମାନେ କରି ନ ଥିବା କର୍ମ ପାଇଁ ପ୍ରଶଂସିତ ହେବାକୁ ଇଚ୍ଛା କରନ୍ତି ତୁମେ କଦାପି ଭାବ ନାହିଁ ଯେ ସେମାନେ ଶାସ୍ତିରୁ ସୁରକ୍ଷିତ ଅଛନ୍ତି ; (ସେମାନେ ଧରା ପଡ଼ିବେ) ଏବଂ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

وَلِلّٰهِ مُلْكُ السَّمٰوٰتِ وَالْاَرْضِ ۗ وَاللّٰهُ عَلٰى كُلِّ شَيْءٍ قَدِيْرٌ ﴿١٩٠﴾

୧୯୦.ଏବଂ ଆକାଶ ଓ ପୃଥିବୀର ରାଜତ୍ୱ ଅଲ୍ଲାହ୍‌ଙ୍କର ହି ଅଟେ; ଏବଂ ଅଲ୍ଲାହ୍ ପ୍ରତ୍ୟେକ ବିଷୟ କରିବାକୁ ପୂର୍ଣ୍ଣରୂପେ ସକ୍ଷମ ।

ରୁ : ୨୦

اِنَّ فِيْ خَلْقِ السَّمٰوٰتِ وَالْاَرْضِ وَاخْتِلَافِ الَّيْلِ وَالنَّهَارِ لَاٰيٰتٍ لِّاُولِي الْاَلْبَابِ ﴿١٩١﴾

୧୯୧. ବାସ୍ତବିକ ଆକାଶ ଓ ପୃଥିବୀର ସୃଷ୍ଟିରେ ଏବଂ କ୍ରମାନ୍ୱୟରେ ଦିନ ଓ ରାତିର ଆଗମନରେ ଜ୍ଞାନୀ ଲୋକମାନଙ୍କ ପାଇଁ ଅନେକ ନିଦର୍ଶନ ରହିଅଛି ।

الَّذِيْنَ يَذْكُرُوْنَ اللّٰهَ قِيٰمًا وَّقُعُوْدًا وَّعَلٰى جُنُوْبِهِمْ وَيَتَفَكَّرُوْنَ فِيْ خَلْقِ السَّمٰوٰتِ وَالْاَرْضِ ۚ رَبَّنَا مَا خَلَقْتَ هٰذَا بَاطِلًا ۚ سُبْحٰنَكَ فَقِنَا عَذَابَ النَّارِ ﴿١٩٢﴾

୧୯୨. ଯେଉଁ (ଜ୍ଞାନୀ)ମାନେ ଠିଆ ହେବା, ବସିବା ଓ ଶୋଇବା ଅବସ୍ଥାରେ ଅଲ୍ଲାହ୍‌ଙ୍କୁ ସ୍ମରଣ କରନ୍ତି ଏବଂ ଆକାଶ ଓ ପୃଥିବୀର ସୃଷ୍ଟି ବିଷୟରେ ଚିନ୍ତା କରନ୍ତି, (ଏବଂ କୁହନ୍ତି), "ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ ଏହାକୁ ବୃଥାରେ ସୃଷ୍ଟି କରି ନାହଁ, ତୁମେ (ଏପରି ନିରୁଦ୍ଦେଶ କାର୍ଯ୍ୟ କରିବାରୁ) ପବିତ୍ର ; ସୁତରାଂ ତୁମେ ଆମମାନଙ୍କୁ ନରକାଗ୍ନିର ଶାସ୍ତିରୁ ରକ୍ଷା କର । (ଏବଂ ଆମମାନଙ୍କ ଜୀବନକୁ ନିରୁଦ୍ଦେଶ ହେବାରୁ ରକ୍ଷା କର )

رَبَّنَآ اِنَّكَ مَنْ تُدْخِلِ النَّارَ فَقَدْ اَخْزَيْتَهٗ ؕ وَمَا لِلظّٰلِمِيْنَ مِنْ اَنْصَارٍ ۝

୧୯୩. ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ ଯାହାକୁ ନରକାଗ୍ନିରେ ପ୍ରବେଶ କରାଅ ନିଶ୍ଚୟ ତୁମେ ତାହାକୁ ଅପମାନିତ କରିଅଛ ; ଏବଂ ଅତ୍ୟାଚାରୀମାନଙ୍କର କେହି ସାହାଯ୍ୟକାରୀ ନାହାନ୍ତି ।

رَبَّنَآ اِنَّنَا سَمِعْنَا مُنَادِيًا يُّنَادِيْ لِلْاِيْمَانِ اَنْ اٰمِنُوْا بِرَبِّكُمْ فَاٰمَنَّا ۖ رَبَّنَا فَاغْفِرْ لَنَا ذُنُوْبَنَا وَكَفِّرْ عَنَّا سَيِّاٰتِنَا وَتَوَفَّنَا مَعَ الْاَبْرَارِ ۝

୧୯୪. ହେ ଆମମାନଙ୍କର ପାଳନକର୍ତ୍ତା ! ଆମେମାନେ ନିଶ୍ଚୟ ଜଣେ ଏପରି ଆହ୍ୱାନକାରୀଙ୍କୁ ବିଶ୍ୱାସ କରିବା ସକାଶେ ଡାକିବାର ଶୁଣିଅଛୁ ଯେ (କହୁଛି) ନିଜର ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ କର ; ସୁତରାଂ ଆମେମାନେ ବିଶ୍ୱାସ କରିଅଛୁ; (ତେଣୁ) ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ ଆମମାନଙ୍କର ପାପକୁ କ୍ଷମା କର ଓ ଆମମାନଙ୍କ ଠାରୁ ଆମର କୁକାର୍ଯ୍ୟଗୁଡ଼ିକୁ ଦୂର କର ; ଏବଂ ଆମମାନଙ୍କୁ ପୁଣ୍ୟବାନ୍ ଲୋକମାନଙ୍କ ସଙ୍ଗରେ ଗଣନା କରି ମୃତ୍ୟୁ ଦିଅ ।

رَبَّنَا وَاٰتِنَا مَا وَعَدْتَّنَا عَلٰى رُسُلِكَ وَلَا تُخْزِنَا يَوْمَ الْقِيٰمَةِ ؕ اِنَّكَ لَا تُخْلِفُ الْمِيْعَادَ ۝

୧୯୫. ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ ତୁମର ରସୁଲମାନଙ୍କ ମାଧ୍ୟମରେ ଆମମାନଙ୍କ ବିଷୟରେ ଯାହା ଅଙ୍ଗୀକାର କରିଅଛ ତାହା ଆମମାନଙ୍କୁ ପ୍ରଦାନ କର ; ଏବଂ କୟାମତ ଦିନ ଆମମାନଙ୍କୁ ଅପମାନିତ କର ନାହିଁ ; ବାସ୍ତବିକ ତୁମେ କଦାପି ନିଜର ଅଙ୍ଗୀକାର ଭଙ୍ଗ କର ନାହିଁ ।

فَاسْتَجَابَ لَهُمْ رَبُّهُمْ اَنِّيْ لَآ اُضِيْعُ عَمَلَ عَامِلٍ مِّنْكُمْ مِّنْ ذَكَرٍ اَوْ اُنْثٰى ۚ بَعْضُكُمْ مِّنْ بَعْضٍ ۚ فَالَّذِيْنَ هَاجَرُوْا وَاُخْرِجُوْا مِنْ دِيَارِهِمْ وَاُوْذُوْا فِيْ سَبِيْلِيْ وَقٰتَلُوْا وَقُتِلُوْا لَاُكَفِّرَنَّ عَنْهُمْ سَيِّاٰتِهِمْ وَلَاُدْخِلَنَّهُمْ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ ۚ ثَوَابًا مِّنْ عِنْدِ اللّٰهِ ؕ وَاللّٰهُ عِنْدَهٗ حُسْنُ الثَّوَابِ ۝

୧୯୬. ସୁତରାଂ ସେମାନଙ୍କର ପାଳନକର୍ତ୍ତା ସେମାନଙ୍କ ପ୍ରାର୍ଥନା ଗ୍ରହଣ କଲେ (ଏବଂ କହିଲେ ଯେ), ଆମେ ତୁମମାନଙ୍କ ମଧ୍ୟରୁ କୌଣସି କର୍ମଚାରୀଙ୍କର କର୍ମକୁ, ସେ ପୁରୁଷ ହେଉ ବା ସ୍ତ୍ରୀ ହେଉ, ବିନଷ୍ଟ କରିବୁ ନାହିଁ ; ତୁମେମାନେ ପରସ୍ପର ମଧ୍ୟରେ (ସମ୍ପର୍କ ସ୍ଥାପନକାରୀ) ଅଟ ; ସୁତରାଂ ଯେଉଁମାନେ ଦେଶ ତ୍ୟାଗ କରିଛନ୍ତି ଓ ନିଜ ଗୃହରୁ ବିତାଡ଼ିତ ହୋଇଛନ୍ତି ଏବଂ ଆମ ଉଦ୍ଦେଶ୍ୟରେ କଷ୍ଟ ପାଇଛନ୍ତି ତଥା ଯୁଦ୍ଧ କରିଛନ୍ତି ଓ ନିହତ ହୋଇଛନ୍ତି, ଆମେ ନିଶ୍ଚୟ ସେମାନଙ୍କ ଠାରୁ ସେମାନଙ୍କର କୁକାର୍ଯ୍ୟଗୁଡ଼ିକୁ ଦୂର କରିବୁ ଏବଂ ନିଶ୍ଚୟ ସେମାନଙ୍କୁ ଏପରି ଉଦ୍ୟାନମାନଙ୍କରେ ପ୍ରବେଶ କରାଇବୁ ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥିବ ; ଏହା ଅଲ୍ଲାହଙ୍କ ଠାରୁ ପୁରସ୍କାର ସ୍ୱରୂପ ମିଳିବ ; ଏବଂ ଅଲ୍ଲାହଙ୍କ ଠାରେ ହିଁ ସର୍ବୋତ୍କୃଷ୍ଟ ପୁରସ୍କାର ରହିଅଛି ।

୧୯୭. ଯେଉଁମାନେ ଅବିଶ୍ୱାସକାରୀ ଅଟନ୍ତି ସେମାନଙ୍କର ଦେଶ ମଧ୍ୟରେ ସ୍ୱାଧୀନ ଭାବରେ ବିଚରଣ ତୁମକୁ କଦାପି ପ୍ରତାରିତ ନ କରୁ ।

لَا يَغُرَّنَّكَ تَقَلُّبُ الَّذِينَ كَفَرُوا فِي الْبِلَادِ ﴿١٩٧﴾

୧୯୮. ଏହା ଏକ ଅସ୍ଥାୟୀ ଲାଭ ; ଏହା ପରେ ସେମାନଙ୍କର ବାସସ୍ଥାନ ନରକ ହେବ ଏବଂ ଏହା ଅତ୍ୟନ୍ତ ମନ୍ଦ ସ୍ଥାନ ଅଟେ ।

مَتَاعٌ قَلِيلٌ ثُمَّ مَأْوَاهُمْ جَهَنَّمُ وَبِئْسَ الْمِهَادُ ﴿١٩٨﴾

୧୯୯. କିନ୍ତୁ ଯେଉଁମାନେ ନିଜର ପାଳନକର୍ତ୍ତାଙ୍କୁ ଭୟ କରୁଅଛନ୍ତି ସେମାନଙ୍କ ପାଇଁ ଏପରି ଉଦ୍ୟାନ ଅଛି ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଅଛି ; ସେମାନେ ସେଠାରେ ରହି ଚାଲିବେ ; ଏହା ସେମାନଙ୍କ ପାଇଁ ଅଲ୍ଲାହ୍‌ଙ୍କ ତରଫରୁ ଆତିଥ୍ୟ ସ୍ୱରୂପ ହେବ ଏବଂ ଯାହା କିଛି ଅଲ୍ଲାହ୍‌ଙ୍କ ନିକଟରେ ଅଛି ତାହା ପୁଣ୍ୟବାନ୍ ଲୋକଙ୍କ ପାଇଁ ଅତି ଉତ୍ତମ ।

لَٰكِنِ الَّذِينَ اتَّقَوْا رَبَّهُمْ لَهُمْ جَنَّاتٌ تَجْرِي مِن تَحْتِهَا الْأَنْهَارُ خَالِدِينَ فِيهَا نُزُلًا مِّنْ عِندِ اللَّهِ وَمَا عِندَ اللَّهِ خَيْرٌ لِّلْأَبْرَارِ ﴿١٩٩﴾

୨୦୦. ଗ୍ରନ୍ଥଧାରୀମାନଙ୍କ ମଧ୍ୟରେ ନିଶ୍ଚୟ ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ଅଲ୍ଲାହ୍‌ଙ୍କ ଉପରେ ଓ ଯାହା ତୁମମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଅଛି ଓ ଯାହା ସେମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଥିଲା (ସେଥିରେ) ବିଶ୍ୱାସ କରୁଅଛନ୍ତି ଏବଂ ତତ୍‌ସହିତ (ସେମାନେ) ଅଲ୍ଲାହ୍‌ଙ୍କ ନିକଟରେ ଅନୁନୟ (ମଧ୍ୟ) କରୁଅଛନ୍ତି; ଅଲ୍ଲାହ୍‌ଙ୍କ ବାଣୀର ବିନିମୟରେ ଅଳ୍ପ ମୂଲ୍ୟ ଗ୍ରହଣ କରନ୍ତି ନାହିଁ, ସେପରି ଲୋକମାନଙ୍କ ପାଇଁ ଅଲ୍ଲାହ୍‌ଙ୍କ ନିକଟରେ ସେମାନଙ୍କର ପୁରସ୍କାର (ଗଚ୍ଛିତ) ଅଛି ; ଅଲ୍ଲାହ୍ ନିଶ୍ଚୟ ଶୀଘ୍ର ହିସାବ ନିକାସ କରିବେ ।

وَإِنَّ مِنْ أَهْلِ الْكِتَابِ لَمَن يُؤْمِنُ بِاللَّهِ وَمَا أُنزِلَ إِلَيْكُمْ وَمَا أُنزِلَ إِلَيْهِمْ خَاشِعِينَ لِلَّهِ لَا يَشْتَرُونَ بِآيَاتِ اللَّهِ ثَمَنًا قَلِيلًا أُولَٰئِكَ لَهُمْ أَجْرُهُمْ عِندَ رَبِّهِمْ إِنَّ اللَّهَ سَرِيعُ الْحِسَابِ ﴿٢٠٠﴾

୨୦୧. ହେ ବିଶ୍ୱାସକାରୀମାନେ ! ଧୈର୍ଯ୍ୟ ଧର ଓ (ଶତ୍ରୁ ତୁଳନାରେ ଅଧିକ) ଧୈର୍ଯ୍ୟ ପ୍ରଦର୍ଶନ କର ଓ ସୀମାନ୍ତ ପ୍ରତି ସଚେତନ ରହ ଏବଂ ଅଲ୍ଲାହ୍‌ଙ୍କୁ ଭୟକର ତାହା ହେଲେ ତୁମେମାନେ କୃତକାର୍ଯ୍ୟ ହେବ ।

يَا أَيُّهَا الَّذِينَ آمَنُوا اصْبِرُوا وَصَابِرُوا وَرَابِطُوا وَاتَّقُوا اللَّهَ لَعَلَّكُمْ تُفْلِحُونَ ﴿٢٠١﴾




# ଅଲ—ନିସା

(ଏହି ସୁରା ମଦିନାରେ ଅବତୀର୍ଣ୍ଣ। ଏଥିରେ ବିସମିଲ୍ଲାହ ସମେତ ୧୭୭ଟି ଆୟତ ଓ ୨୪ଟି ରୁକୁ ଅଛି।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

يٰۤاَيُّهَا النَّاسُ اتَّقُوْا رَبَّكُمُ الَّذِيْ خَلَقَكُمْ مِّنْ نَّفْسٍ وَّاحِدَةٍ وَّخَلَقَ مِنْهَا زَوْجَهَا وَبَثَّ مِنْهُمَا رِجَالًا كَثِيْرًا وَّنِسَآءً ۚ وَاتَّقُوا اللّٰهَ الَّذِيْ تَسَآءَلُوْنَ بِهٖ وَالْاَرْحَامَ ۗ اِنَّ اللّٰهَ كَانَ عَلَيْكُمْ رَقِيْبًا ②

وَاٰتُوا الْيَتٰمٰۤى اَمْوَالَهُمْ وَلَا تَتَبَدَّلُوا الْخَبِيْثَ بِالطَّيِّبِ ۪ وَلَا تَاْكُلُوْۤا اَمْوَالَهُمْ اِلٰۤى اَمْوَالِكُمْ ۗ اِنَّهٗ كَانَ حُوْبًا كَبِيْرًا ③

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି)।

୨. ହେ ଲୋକମାନେ ! ନିଜର ପାଳନକର୍ତ୍ତାଙ୍କୁ ଭୟ କର ଯେ କି ତୁମମାନଙ୍କୁ ଗୋଟିଏ (ମାତ୍ର) ଜୀବରୁ[1] ସୃଷ୍ଟି କରିଛନ୍ତି ଏବଂ ତନ୍ମଧ୍ୟରୁ ତାହାର ସାଥୀ ସୃଷ୍ଟି କରିଛନ୍ତି ଏବଂ ସେ ଉଭୟଙ୍କ ମଧ୍ୟରୁ ଅନେକ ପୁରୁଷ ଓ ନାରୀ (ସୃଷ୍ଟି କରି ପୃଥିବୀରେ) ବିସ୍ତାର କରିଛନ୍ତି ; ଏବଂ ଅଲ୍ଲାହଙ୍କୁ (ଏଥିଯୋଗୁଁ ମଧ୍ୟ) ଭୟ କର ଯାହାଙ୍କ ନାମରେ ତୁମେମାନେ ପରସ୍ପରର ସାହାଯ୍ୟ ଭିକ୍ଷା କରୁଅଛ, ଏବଂ ବିଶେଷତଃ ବନ୍ଧୁବାନ୍ଧବଙ୍କ (ମାମଲା) ସଂକ୍ରାନ୍ତରେ (ଅଲ୍ଲାହଙ୍କୁ ଭୟ କର) ; ଅଲ୍ଲାହ ନିଶ୍ଚୟ ତୁମମାନଙ୍କର ତତ୍ତ୍ୱାବଧାରକ ଅଟନ୍ତି।

୩. ଏବଂ ଅନାଥମାନଙ୍କୁ ସେମାନଙ୍କର (ସମ୍ପତ୍ତି) ଅର୍ପଣ କର; ଏବଂ ଭଲ (ସମ୍ପତ୍ତି) ବିନିମୟରେ ଖରାପ (ସମ୍ପତ୍ତି) ନିଅ ନାହିଁ ; ଏବଂ ସେମାନଙ୍କର ସମ୍ପତ୍ତି ନିଜ ସମ୍ପତ୍ତି ସହିତ (ଯୋଗ କରି) ଭୋଗ କର ନାହିଁ, ବାସ୍ତବିକ ଏହା ମହାପାପ ଅଟେ।

---

୧. 'ଗୋଟିଏ ଜୀବ' ର ଅର୍ଥ ନିମ୍ନୋକ୍ତ ପ୍ରକାରର ହୋଇପାରେ। (୧) ଆଦମ (୨) ସମ୍ମିଳିତ ଭାବେ ପୁରୁଷ ଓ ନାରୀ, କାରଣ ଦୁଇଜଣ ଗୋଟିଏ କାର୍ଯ୍ୟ କରୁଥିଲେ ଉଭୟଙ୍କୁ ଏକ ଧରାଯାଏ। (୩) ପୃଥକ୍ ଭାବେ ପୁରୁଷ ଓ ନାରୀ, କାରଣ ପ୍ରତ୍ୟେକ ବ୍ୟକ୍ତି ଜଣେ ପୁରୁଷର ବୀର୍ଯ୍ୟରୁ ତଥା ଜଣେ ନାରୀ ଠାରୁ ସୃଷ୍ଟ ଏବଂ ଏ ଉଭୟେ ଗୋଟିଏ ଲେଖାଏଁ ଜୀବ।

୪. ଏବଂ ଯଦି ଅନାଥମାନଙ୍କ ସମ୍ବନ୍ଧରେ ନ୍ୟାୟ କରିପାରିବ[୧] ନାହିଁ ବୋଲି ତୁମମାନଙ୍କର ଆଶଙ୍କା ହୁଏ ତେବେ ଯାହା (ଅର୍ଥାତ୍ ଯେଉଁ ପଦ୍ଧତି) ତୁମକୁ ପସନ୍ଦ ହୁଏ (ତାହା କର, ଅର୍ଥାତ୍ ଅନାଥ ହୋଇ ନ ଥିବା) ନାରୀମାନଙ୍କ ମଧ୍ୟରୁ ଦୁଇ ବା ତିନି ବା ଚାରିଜଣଙ୍କୁ ବିବାହ କର ; କିନ୍ତୁ ଯଦି ନ୍ୟାୟ ବିଚାର କରିପାରିବ ନାହିଁ ବୋଲି ତୁମମାନଙ୍କର



୧. ଅନାଥ ମହିଳାମାନଙ୍କ ମଧ୍ୟରୁ ଏକାଧିକ ମହିଳାଙ୍କୁ ବିବାହ କରିବା ଶ୍ରେୟସ୍କର ନୁହେଁ, କାରଣ ସେମାନଙ୍କ ପ୍ରତି ଅନ୍ୟାୟ ଆଚରଣ କରାଯିବାର ଆଶଙ୍କା ଥାଏ । ଅବଶ୍ୟ ସେମାନଙ୍କ ବ୍ୟତୀତ ଅନ୍ୟାନ୍ୟ ମହିଳାଙ୍କ ମଧ୍ୟରୁ ଦୁଇ–ଦୁଇ, ତିନି-ତିନି, ଚାରି-ଚାରି ଜଣଙ୍କୁ ବିବାହ କରାଯାଇପାରେ । କାରଣ ସେମାନଙ୍କ ଅଭିଭାବକମାନେ ସେମାନଙ୍କ ଅଧିକାରକୁ ରକ୍ଷା କରିବା ସହଜ ହେବ ।

ଏହା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଆୟତ । କେତେକ ପରିସ୍ଥିତିରେ ଇସଲାମଧର୍ମ ବହୁ ବିବାହ ପାଇଁ ଅନୁମତି ଦିଏ । ଜଣକୁ ଏକ ସମୟରେ ଚାରିଗୋଟି ପର୍ଯ୍ୟନ୍ତ ପତ୍ନୀ ରଖିବାକୁ ଇସଲାମ୍ ଧର୍ମରେ ଅନୁମତି ଦିଆଯାଇଥିଲେ ମଧ୍ୟ ଏହି ଧର୍ମ ସେପରି କରିବାକୁ କେବେ ହେଁ ଉତ୍ସାହିତ କରୁନାହିଁ । ଯେହେତୁ ଅନାଥମାନେ ସର୍ବଦା ସମାଜରେ ଅବହେଳିତ ହୁଅନ୍ତି ସେମାନଙ୍କ ସମ୍ବନ୍ଧରେ ଏପରି ଅନୁମତି ଦିଆଯାଇଛି । ବାସ୍ତବରେ ବିବାହ ମାଧ୍ୟମରେ ସେମାନଙ୍କ ଅଧିକାରକୁ ରକ୍ଷା କରିବା ଅଧିକ ସହଜ ଓ ସମ୍ଭବପର । ଏଠାରେ ଅନାଥମାନଙ୍କ ବିଷୟରେ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ବହୁ ବିବାହ କେତେକ କ୍ଷେତ୍ରରେ ଲୋକମାନଙ୍କର ଉପକାର କରିଥାଏ । ଏହା ଲୋକମାନଙ୍କୁ ସାମାଜିକ ଓ ନୈତିକ ଅପକର୍ମରୁ ରକ୍ଷା କରିବାରେ ସାହାଯ୍ୟ କରେ । ବିବାହର ବିଭିନ୍ନ ଉଦ୍ଦେଶ୍ୟକୁ ବିଚାର କଲେ ଜଣାଯିବ ଯେ ଏହି ଅନୁମତିଦାନ କେବଳ ଯୁକ୍ତିସଂଗତ ନୁହେଁ ବରଂ କେତେକ ସ୍ଥଳେ ବାଞ୍ଛନୀୟ ଓ ଅନ୍ୟ କେତେକ ସ୍ଥଳେ ଆବଶ୍ୟକ ମଧ୍ୟ । ଏହାର ବିପରୀତ, ବ୍ୟକ୍ତିବିଶେଷ ଓ ସମାଜ ପାଇଁ କ୍ଷତିକାରକ।ପବିତ୍ର କୋରାନ ଅନୁଯାୟୀ ବିବାହର ଉଦ୍ଦେଶ୍ୟଗୁଡ଼ିକ ହେଉଛି (କ) ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ଦୋଷ ଦୁର୍ବଳତା ଠାରୁ ନିଜକୁ ରକ୍ଷାକରିବା (ଖ) ମାନସିକ ଶାନ୍ତି ପାଇବା ତଥା ଜଣେ ସ୍ନେହ-ପ୍ରବଣ ସଙ୍ଗୀର ସାନ୍ନିଧ୍ୟଲାଭ କରିବା (ଗ) ସନ୍ତାନ ଉତ୍ପାଦନ କରିବା (ଘ) ପାରସ୍ପରିକ ସଂପର୍କକୁ ସଂପ୍ରସାରିତ କରିବା ।

ସମୟେ ସମୟେ ଗୋଟିଏ ପତ୍ନୀ କ୍ଷେତ୍ରରେ ଏସବୁ ବା ଯେକୌଣସି ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । ଉଦାହରଣ ସ୍ୱରୂପ ଯଦି କାହାରି ପତ୍ନୀ ସ୍ଥାୟୀଭାବରେଅକର୍ମଣ୍ୟବା ଅସୁସ୍ଥ ହୋଇଯାଏ ବା ସଂକ୍ରାମକ ରୋଗରେ ପଡ଼େ, ତେବେ ସେ ଦ୍ୱିତୀୟ ବିବାହ ନ କଲେ ବିବାହର ଉଦ୍ଦେଶ୍ୟ ବ୍ୟର୍ଥ ହେବ । ସେହିପରି ପତ୍ନୀ ମଧ୍ୟ ଉପଯୁକ୍ତ ଜୀବନସାଥୀ ହୋଇ ପାରିବ ନାହିଁ ଓ ଅନ୍ୟ ପକ୍ଷରେ ତା'ର ଚାରିତ୍ରିକ ସ୍ଖଳନ ଘଟିବ ଓ ପାରିବାରିକ ଶାନ୍ତି ନଷ୍ଟ ହେବ । ଯଦି କୌଣସି ପତ୍ନୀ ବନ୍ଧ୍ୟା ହୋଇଥିବ ତେବେ ପୁରୁଷ ଦ୍ୱିତୀୟ ବିବାହ ନ କଲେ ତା'ର କୌଣସି ଉତ୍ତରାଧିକାରୀ ରହିବେ ନାହିଁ । ଏସବୁ ପରିସ୍ଥିତିରେ ବିବାହ ବିଚ୍ଛେଦ ପ୍ରକୃଷ୍ଟ ପନ୍ଥା ନୁହେଁ, ବରଂ ଦ୍ୱିତୀୟ ବିବାହ ଶ୍ରେୟସ୍କର । ଏତଦ୍‌ଭିନ୍ନ ଅନ୍ୟ କେତେକ ସ୍ଥଳେ ଏକାଧିକ ବିବାହର ମଧ୍ୟ ପ୍ରୟୋଜନ ରହିଛି । ସେଗୁଡ଼ିକ ହେଉଛି (କ) ଅନାଥକୁ ରକ୍ଷା କରିବା, (ଖ) ବିବାହଯୋଗ୍ୟ ବିଧବାମାନଙ୍କ ପାଇଁ ସ୍ୱାମୀ ବ୍ୟବସ୍ଥା କରିବା (ଗ) ପରିବାର ବା ଜାତିର ପୁରୁଷ ସଂଖ୍ୟା ହ୍ରାସ ପାଇଥିଲେ ସେମାନଙ୍କ ସଂଖ୍ୟା ବୃଦ୍ଧି କରାଇବା ।

ସେହିପରି ଅନାଥମାନଙ୍କର ମାତାମାନଙ୍କୁ ଯେଉଁ ପୁରୁଷମାନେ ଆଶ୍ରୟ ଦେଉଥାନ୍ତି ସେମାନେ ସେହି ମାତାମାନଙ୍କୁ ବିବାହ କଲେ ଅନାଥମାନଙ୍କ ପ୍ରତି ଅଧିକ ଧ୍ୟାନ ଦେଇପାରିବେ । ଯୁଦ୍ଧ ବିଗ୍ରହ ପରେ ସମାଜରେ ଯେତେବେଳେ ପୁରୁଷ ସଂଖ୍ୟା ହ୍ରାସ ପାଇ ମହିଳା ଓ ପିତୃହୀନ ସନ୍ତାନମାନଙ୍କର ସଂଖ୍ୟା 'ଅସ୍ୱାଭାବିକ ଭାବେ ବୃଦ୍ଧି ପାଏ ସେତେବେଳେ ପୁରୁଷକୁ ଏକାଧିକ ବିବାହ କରି ସମାଜକୁ ନୈତିକ ଓ ଚାରିତ୍ରିକ ଅଧଃପତନରୁ ରକ୍ଷା କରିବା ଏକାନ୍ତ ପ୍ରୟୋଜନ, ଅନ୍ୟଥା ବିଶ୍ୱଯୁଦ୍ଧପରେ ୟୁରୋପରେ ଯେପରି ନୈତିକ ଅଧଃପତନ ଓ ଚାରିତ୍ରିକ ସ୍ଖଳନ ଘଟିଲା ଯେ କୌଣସି ମହାସମର ପରେ ସର୍ବତ୍ର ସେହିପରି ଘଟିବ । ଯେଉଁଠାରେ ଜନ୍ମହାର ହ୍ରାସ ପାଇ କୌଣସି ଜାତି କ୍ରମଶଃ ଲୋପ ପାଇଯାଉଛି ସେଠାରେ ମଧ୍ୟ ବହୁ ବିବାହ ଅପରିହାର୍ଯ୍ୟ । ବହୁ ବିବାହରେ କେବଳ ଯୌନଲାଳସା ଚରିତାର୍ଥ କରିବାର ମନୋବାଞ୍ଛା ପୂରିରହିଛି କହିବା ଠିକ୍ ନୁହେଁ ବରଂ ପୁରୁଷ ଓ ସ୍ତ୍ରୀ ଉଭୟଙ୍କଠାରୁ ଏକ ମହାନ୍ ତ୍ୟାଗ ପ୍ରତ୍ୟାଶା କରାଯାଉଛି । ସେହି ତ୍ୟାଗ ହେଉଛି ନିଜର ସୁଖସ୍ୱାଚ୍ଛନ୍ଦ୍ୟ ଓ ମନୋଭାବ ତୁଳନାରେ ଦେଶ ଓ ଗୋଷ୍ଠୀର ହିତ ଓ ଉନ୍ନତି ସାଧନକୁ ପ୍ରାଧାନ୍ୟ ଦେବା ।

اَلَّا تَعۡدِلُوۡا فَوَاحِدَةً اَوۡ مَا مَلَكَتۡ اَيۡمَانُكُمۡ ؕ ذٰلِكَ اَدۡنٰۤى اَلَّا تَعُوۡلُوۡا ؕ

ଆଶଙ୍କା ହୁଏ, ତେବେ ଜଣକୁ ବା ତୁମମାନଙ୍କର କରଗତ ହୋଇଥିବା (ଦାସୀମାନଙ୍କ ମଧ୍ୟରୁ ବିବାହ କର)[1]; ଏହା ଉତ୍କୃଷ୍ଟ (ପନ୍ଥା) ଯଦ୍ଵାରା ତୁମେମାନେ ଅତ୍ୟାଗ୍ରହୀ ହେବ ନାହିଁ ।

وَاٰتُوا النِّسَآءَ صَدُقٰتِهِنَّ نِحۡلَةً ؕ فَاِنۡ طِبۡنَ لَكُمۡ عَنۡ شَىۡءٍ مِّنۡهُ نَفۡسًا فَكُلُوۡهُ هَنِيۡٓــًٔـا مَّرِیۡٓــًٔـا ‏

୫. ଏବଂ ଆନନ୍ଦର ସହିତ ସ୍ତ୍ରୀମାନଙ୍କୁ ସେମାନଙ୍କ ମହେର[2] ପ୍ରଦାନ କର ; ତା'ପରେ ଯଦି ସେମାନେ ତୁମମାନଙ୍କୁ ସେଥିରୁ କୌଣସି ଅଂଶ ସ୍ଵେଚ୍ଛାରେ ଛାଡ଼ି ଦିଅନ୍ତି ତେବେ ତାହାକୁ ତୁମେମାନେ ରୁଚିକର ଓ ପରିଣାମ ଦୃଷ୍ଟିରୁ ଉତ୍ତମ ମନେ କରି ଭୋଗ କର ।

---

୧. ଶତ୍ରୁପକ୍ଷର ଯେଉଁ ସ୍ତ୍ରୀଲୋକମାନେ ଯୁଦ୍ଧବେଳେ ଭାଗନେଇ ମୁସଲମାନଙ୍କ ହାତରେ ଧରାପଡ଼ିଥାନ୍ତି ଓ ଯେଉଁମାନଙ୍କୁ ସେମାନଙ୍କ ଲୋକମାନେ ମୁକ୍ତ କରିବାକୁ ଚେଷ୍ଟା କରନ୍ତି ନାହିଁ କି ଉକ୍ତ ସ୍ତ୍ରୀ ଲୋକ ନିଜେ ମୁକ୍ତହେବାକୁ ଚେଷ୍ଟା କରେ ନାହିଁ ସେପରି ସ୍ତ୍ରୀକୁ ତା'ର ସମ୍ମତି ବିନା ମଧ୍ୟ ବିବାହ କରାଯାଇପାରେ । ଇସଲାମ ଧର୍ମରେ କ୍ରୀତଦାସ ପ୍ରଥାକୁ ନିନ୍ଦା କରାଯାଇଛି । ଯଦି ଜଣେ ଇସଲାମ ଧର୍ମ ବା ରାଷ୍ଟ୍ର ବିରୁଦ୍ଧରେ ଯୁଦ୍ଧକରି ନିଜର ସ୍ଵାଧୀନତା ହରାଇବାକୁ ନିଜକୁ ଦାୟୀ କରାଇ ନ ଥିବ ତେବେ ତା'ର ସ୍ଵାଧୀନତା ଅପହରଣ କରିବା ଏକ ନୈତିକ ପାପ । ସେହିପରି କ୍ରୀତଦାସ କାରବାର ମଧ୍ୟ ଏକ ଗୁରୁତର ପାପ । ଅବଶ୍ୟ ଇସଲାମ ଧର୍ମର ଆରମ୍ଭ ବେଳକୁ କ୍ରୀତଦାସ ପ୍ରଥା ତତ୍କାଳୀନ ସମାଜର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ ସାରିଥିଲା । ସବୁ ଦେଶରେ କ୍ରୀତଦାସ ଥିଲେ । ତେଣୁ କାଳକ୍ରମରେ ଏହି ପ୍ରଥାକୁ ଉଚ୍ଛେଦ କରିବା ସହଜ ବା ସମ୍ଭବ ନ ଥିବାରୁ ଏହା କିପରି କ୍ରମଶଃ ଓ ନିଶ୍ଚିତରୂପେ ସଂପୂର୍ଣ୍ଣ ଲୋପ ପାଇବ ସେଥିପାଇଁ ଇସଲାମ ଧର୍ମରେ କେତେକ ବ୍ୟବସ୍ଥା ନିର୍ଦ୍ଦିଷ୍ଟ କରାଗଲା । ସେଗୁଡ଼ିକ ହେଉଛି : (କ) କେବଳ ନିୟମିତ ଯୁଦ୍ଧପରେ ବନ୍ଦୀ ଗ୍ରହଣ କରାଯିବ, (ଖ) ଯୁଦ୍ଧ ସରିଲେ ସେମାନଙ୍କୁ ଅଟକାଇ ରଖାଯିବ ନାହିଁ, (ଗ) ଅନୁଗ୍ରହ ପ୍ରଦର୍ଶନକରି ବା ବନ୍ଦୀ ବିନିମୟ ମାଧ୍ୟମରେ ସେମାନଙ୍କୁ ଛାଡ଼ି ଦିଆଯିବ ।

ଯେଉଁ ହତଭାଗ୍ୟ ବନ୍ଦୀମାନେ ଉପରୋକ୍ତ ମତେ ମୁକ୍ତି ପାଇପାରିବେ ନାହିଁ ବା ଯେଉଁମାନେ ସେମାନଙ୍କ ମୁସଲମାନ ମାଲିକ ପାଖରେ ରହିବାକୁ ପସନ୍ଦ କରିବେ ସେମାନେ ପରେ ମୁକ୍ତି ମୂଲ୍ୟ ପ୍ରଦାନକରି ମୁକ୍ତ ହେବାକୁ ମାଲିକଙ୍କ ସହ ଚୁକ୍ତି କରିପାରିବେ । ସେହିପରି ଜଣେ ବନ୍ଦିନୀ ଉପରୋକ୍ତ କୌଣସି ଉପାୟରେ ମୁକ୍ତି ନ ପାଇଲେ ଓ ତା'ର ନିଜ ଲୋକେ ତାକୁ ମୁକ୍ତ କରି ନେବାକୁ ଚେଷ୍ଟା ନ କଲେ ତା'ର ମାଲିକ ତା'ର ସମ୍ମତିବିନା ଯଦି ତାକୁ ବିବାହକରେ ତେବେ ନୈତିକତା ଦୃଷ୍ଟିରୁ କ'ଣ ଏ ପ୍ରକାର ବ୍ୟବସ୍ଥା ଆପତ୍ତିଜନକ ବିବେଚିତ ହେବ ?

ବିବାହ ନ କରି ଏପରି କୌଣସି ସ୍ତ୍ରୀଲୋକ ସହିତ ଯୌନ ସଂପର୍କ ରଖିବାକୁ ଇସଲାମ ଆଦୌ ଅନୁମୋଦନ କରେ ନାହିଁ ବରଂ ସେମାନଙ୍କୁ ଅବିବାହିତ ଅବସ୍ଥାରେ ରଖାଯିବାକୁ ନିଷେଧ କରାଯାଇଛି । ହଜରତ ମହମ୍ମଦଙ୍କ ଉକ୍ତି ଅନୁସାରେ ଯାହା ପାଖରେ କୌଣସି କ୍ରୀତଦାସୀ ବାଳିକା ଥିବ ଯଦି ସେ ତାକୁ ଉପଯୁକ୍ତ ଶିକ୍ଷା ଦେଇ, ଭଲ ଭାବରେ ଭରଣପୋଷଣ କରି ପରେ ତାହାକୁ ମୁକ୍ତି ଦେଇ ବିବାହ କରିବ ତେବେ ସେ ଅନ୍ୟଙ୍କ ଠାରୁ ଦୁଇଗୁଣ ପୁରସ୍କାର ପାଇବ । ହଜରତ ମହମ୍ମଦ ନିଜ ଜୀବଦଶାରେ ଏହି ଆଦର୍ଶ ପ୍ରତିଷ୍ଠା କରିଯାଇଛନ୍ତି ।

୨. 'ସଦୁକାତ' ଅର୍ଥ ବିବାହ ବେଳେ କନ୍ୟାକୁ ବା କନ୍ୟା ପାଇଁ ଦିଆଯିବା ଉପହାର । ଏଠାରେ କନ୍ୟାପକ୍ଷ ଓ ବର ଉଭୟଙ୍କ ପାଇଁ କିଛି ନିର୍ଦ୍ଦେଶ ରହିଅଛି । କନ୍ୟାଙ୍କ ସମ୍ପର୍କୀୟମାନେ ଏହି ଧନକୁ ନିଜେ ଖର୍ଚ୍ଚ ନ କରି କନ୍ୟାକୁ ଦେଇଦେବା ବିଧେୟ । ସେହିପରି ବର ସ୍ଵେଚ୍ଛାରେ, ଆନନ୍ଦରେ ଓ ବିନା ଦ୍ଵିଧାରେ କନ୍ୟାକୁ ଏହି ଧନ ପ୍ରଦାନ କରିବା ଉଚିତ । ଅବଶ୍ୟ ଉକ୍ତ ପରିମାଣ ଏପରି ଧାର୍ଯ୍ୟ କରିବାକୁ ହେବ, ଯେପରି ବର ପକ୍ଷରେ ଏହା ପ୍ରଦାନ କରିବା ସହଜ ଓ ସମ୍ଭବ ହେବ ।

୬. ଏବଂ ଅଜ୍ଞାନମାନଙ୍କୁ ନିଜର ସମ୍ପତ୍ତି ଅର୍ପଣ କର ନାହିଁ, ଯାହାକୁ ଅଲ୍ଲାହ ତୁମମାନଙ୍କ ଜୀବିକା ନିର୍ବାହର ପନ୍ଥା ନିରୂପଣ କରିଅଛନ୍ତି, ଏବଂ ତୁମେମାନେ ତନ୍ମଧ୍ୟରୁ ସେମାନଙ୍କୁ ଖୁଆଅ ଓ ପିନ୍ଧାଅ ଏବଂ ସେମାନଙ୍କୁ ଉଚିତ (ଓ ଉତ୍ତମ) କଥା କୁହ ।

وَلَا تُؤْتُوا السُّفَهَاءَ أَمْوَالَكُمُ الَّتِي جَعَلَ اللَّهُ لَكُمْ قِيَامًا وَارْزُقُوهُمْ فِيهَا وَاكْسُوهُمْ وَقُولُوا لَهُمْ قَوْلًا مَعْرُوفًا ٦

୭. ଏବଂ ଅନାଥମାନେ ବିବାହଯୋଗ୍ୟ (ବୟସ) ହେବା ପର୍ଯ୍ୟନ୍ତ ସେମାନଙ୍କର (ବୋଧ ଶକ୍ତିକୁ) ପରୀକ୍ଷା କର ; ତାପରେ ଯଦି ତୁମେମାନେ ସେମାନଙ୍କ ଠାରେ ବୋଧଶକ୍ତି ଥିବାର (ଲକ୍ଷଣ) ଦେଖ, ତେବେ ସେମାନଙ୍କର ସମ୍ପତ୍ତି ସେମାନଙ୍କୁ ଫେରାଇ ଦିଅ ଏବଂ ସେମାନେ ପ୍ରାପ୍ତବୟସ୍କ ହୋଇଯିବା ଭୟରେ ତାହାକୁ ଅନୁଚିତ ପନ୍ଥାରେ ଓ ଶୀଘ୍ର (ଶୀଘ୍ର) ଆତ୍ମସାତ୍ କର ନାହିଁ ; ଏବଂ ଯେ କେହି ଧନୀ ହୋଇଥିବେ, ସେ (ଏହି ସମ୍ପତ୍ତିର ବିନିଯୋଗ କରିବାରୁ) ସମ୍ପୂର୍ଣ୍ଣରୂପେ କ୍ଷାନ୍ତ ହେବା ଉଚିତ, କିନ୍ତୁ ଯେ ନିଃସ୍ୱ ହୋଇଥିବେ ସେ ଉଚିତ ପନ୍ଥାରେ (ତହିଁରୁ) ଭୋଗ କରିପାରିବେ ; ତାହାପରେ ଯେତେବେଳେ ତୁମେମାନେ ସେମାନଙ୍କର ସମ୍ପତ୍ତି ସେମାନଙ୍କୁ ଫେରାଇ ଦେବ, (ସେତେବେଳେ) ସେ (ଅନାଥ)ମାନଙ୍କ ଉପସ୍ଥିତିରେ ସାକ୍ଷୀ ରଖିବ ; ଏବଂ ଅଲ୍ଲାହ ହିସାବ ନିକାସ କରିବାରେ ନିଜେ ହିଁ ଯଥେଷ୍ଟ ।

وَابْتَلُوا الْيَتَامَىٰ حَتَّىٰ إِذَا بَلَغُوا النِّكَاحَ فَإِنْ آنَسْتُمْ مِنْهُمْ رُشْدًا فَادْفَعُوا إِلَيْهِمْ أَمْوَالَهُمْ ۖ وَلَا تَأْكُلُوهَا إِسْرَافًا وَبِدَارًا أَنْ يَكْبَرُوا ۚ وَمَنْ كَانَ غَنِيًّا فَلْيَسْتَعْفِفْ ۖ وَمَنْ كَانَ فَقِيرًا فَلْيَأْكُلْ بِالْمَعْرُوفِ ۚ فَإِذَا دَفَعْتُمْ إِلَيْهِمْ أَمْوَالَهُمْ فَأَشْهِدُوا عَلَيْهِمْ ۚ وَكَفَىٰ بِاللَّهِ حَسِيبًا ٧

୮. ପିତା–ମାତା ଓ ନିକଟ ସମ୍ପର୍କୀୟମାନେ ଯାହା ଛାଡ଼ି ଯାଇଥିବେ, ତହିଁରେ ପୁରୁଷମାନଙ୍କର ତଥା ନାରୀମାନଙ୍କର ଏକ ଅଂଶ ଅଛି ; (ଏହା) ଏକ ନିର୍ଦ୍ଦିଷ୍ଟ ଅଂଶ ଯାହା (ଅଲ୍ଲାହଙ୍କ ଦ୍ୱାରା) ନିର୍ଦ୍ଧାରିତ ହୋଇଛି ।

لِلرِّجَالِ نَصِيبٌ مِمَّا تَرَكَ الْوَالِدَانِ وَالْأَقْرَبُونَ وَلِلنِّسَاءِ نَصِيبٌ مِمَّا تَرَكَ الْوَالِدَانِ وَالْأَقْرَبُونَ مِمَّا قَلَّ مِنْهُ أَوْ كَثُرَ ۚ نَصِيبًا مَفْرُوضًا ٨

୯. ଏବଂ ଛାଡ଼ିଯାଇଥିବା ସମ୍ପତ୍ତିର ବଣ୍ଟନ ସମୟରେ ଯଦି (ଅନ୍ୟ) ବନ୍ଧୁବାନ୍ଧବ, ଅନାଥ ବା ଦରିଦ୍ରମାନେ ଉପସ୍ଥିତ ହୁଅନ୍ତି, ତେବେ ସେମାନଙ୍କୁ (ମଧ୍ୟ) ସେଥିରୁ କିଛି ଦେଇଦିଅ, ଏବଂ ସେମାନଙ୍କୁ ଉଚିତ (ଓ ଉତ୍ତମ) କଥା କୁହ ।

وَإِذَا حَضَرَ الْقِسْمَةَ أُولُو الْقُرْبَىٰ وَالْيَتَامَىٰ وَالْمَسَاكِينُ فَارْزُقُوهُمْ مِنْهُ وَقُولُوا لَهُمْ قَوْلًا مَعْرُوفًا ٩

୧୦. ଏବଂ ଯେଉଁମାନେ ଆଶଙ୍କା କରନ୍ତି ଯେ ଯଦି ସେମାନେ ନିଜ ପଛରେ ଦୁର୍ବଳ ସନ୍ତାନମାନଙ୍କୁ ଛାଡ଼ି ଯିବେ ତେବେ ସେମାନଙ୍କର ଅବସ୍ଥା କ'ଣ ହେବ ; ତେଣୁ ସେମାନେ (ଅନ୍ୟ ଅନାଥମାନଙ୍କ ସମ୍ପର୍କରେ ମଧ୍ୟ) ଅଲ୍ଲାହଙ୍କୁ ଭୟ କରି କାର୍ଯ୍ୟ କରିବା ଉଚିତ ; ଏବଂ ସେମାନେ ସ୍ପଷ୍ଟ ଓ ସରଳକଥା କହିବା ଉଚିତ ।

وَلْيَخْشَ الَّذِينَ لَوْ تَرَكُوا مِنْ خَلْفِهِمْ ذُرِّيَّةً ضِعَافًا خَافُوا عَلَيْهِمْ فَلْيَتَّقُوا اللَّهَ وَلْيَقُولُوا قَوْلًا سَدِيدًا ١٠

إِنَّ الَّذِينَ يَأْكُلُونَ أَمْوَالَ الْيَتَامَىٰ ظُلْمًا إِنَّمَا يَأْكُلُونَ فِي بُطُونِهِمْ نَارًا ۖ وَسَيَصْلَوْنَ سَعِيرًا ⑪

୧୧. ଏବଂ ଯେଉଁ ଲୋକମାନେ ଅତ୍ୟାଚାର — ପୂର୍ବକ ଅନାଥମାନଙ୍କର ସମ୍ପତ୍ତିକୁ ଆତ୍ମସାତ୍ କରନ୍ତି, ସେମାନେ ନିଶ୍ଚୟ ନିଜ ଉଦର ମଧ୍ୟରେ କେବଳ ଅଗ୍ନି ଭର୍ତ୍ତି କରନ୍ତି, ଏବଂ ସେମାନେ ନିଶ୍ଚୟ ଜ୍ୱଳନ୍ତ ଅଗ୍ନିରେ ପ୍ରବେଶ କରିବେ ।

ରୁ : ୨

يُوصِيكُمُ اللَّهُ فِي أَوْلَادِكُمْ ۖ لِلذَّكَرِ مِثْلُ حَظِّ الْأُنثَيَيْنِ ۚ فَإِن كُنَّ نِسَاءً فَوْقَ اثْنَتَيْنِ فَلَهُنَّ ثُلُثَا مَا تَرَكَ ۖ وَإِن كَانَتْ وَاحِدَةً فَلَهَا النِّصْفُ ۚ وَلِأَبَوَيْهِ لِكُلِّ وَاحِدٍ مِّنْهُمَا السُّدُسُ مِمَّا تَرَكَ إِن كَانَ لَهُ وَلَدٌ ۚ فَإِن لَّمْ يَكُن لَّهُ وَلَدٌ وَوَرِثَهُ أَبَوَاهُ فَلِأُمِّهِ الثُّلُثُ ۚ فَإِن كَانَ لَهُ إِخْوَةٌ فَلِأُمِّهِ السُّدُسُ ۚ مِن بَعْدِ وَصِيَّةٍ يُوصِي بِهَا أَوْ دَيْنٍ ۗ آبَاؤُكُمْ وَأَبْنَاؤُكُمْ لَا تَدْرُونَ أَيُّهُمْ أَقْرَبُ لَكُمْ نَفْعًا ۚ فَرِيضَةً مِّنَ اللَّهِ ۗ إِنَّ اللَّهَ كَانَ عَلِيمًا حَكِيمًا ⑫

୧୨. ଅଲ୍ଲାହ ତୁମମାନଙ୍କୁ ସନ୍ତାନମାନଙ୍କ ସମ୍ବନ୍ଧରେ ଆଦେଶ କରୁଛନ୍ତି ଯେ ଜଣେ ପୁରୁଷର (ଅଂଶ) ଦୁଇ ଜଣ ନାରୀଙ୍କ ଅଂଶ ସହିତ ସମାନ, ଏବଂ ଯଦି (ସନ୍ତାନ) କେବଳ ନାରୀ ହୋଇଥିବେ ଯେଉଁମାନେ କି (ଦୁଇ ବା) ଦୁଇରୁ ଅଧିକ ହୋଇଥିବେ ତାହାହେଲେ ମୃତ ବ୍ୟକ୍ତି ଯାହା ଛାଡ଼ି ଯାଇଥିବେ (ତାହାର) ଦୁଇ ତୃତୀୟାଂଶ ସେମାନଙ୍କ ପାଇଁ ଧାର୍ଯ୍ୟ ହୋଇଅଛି ଏବଂ ଯଦି ଏକମାତ୍ର (ନାରୀ) ହୋଇଥିବ, ତେବେ ସେ ଉକ୍ତ ସମ୍ପତ୍ତିର ଅର୍ଦ୍ଧାଂଶ ପାଇବ, ଯଦି ମୃତ ବ୍ୟକ୍ତିର ସନ୍ତାନ ଥିବେ, ତେବେ ସେ ଯାହା ଛାଡି ଯାଇଥିବେ ତାହାର ଏକ ଷଷ୍ଠାଂଶ ତାହାର ପିତା-ମାତା ପ୍ରତ୍ୟେକ ପାଇବେ, ଏବଂ ଯଦି ତାହାର କୌଣସି ସନ୍ତାନ ନ ଥିବେ, ଏବଂ ପିତାମାତା ହିଁ ତାହାର ଉତ୍ତରାଧିକାରୀ ହୋଇଥିବେ, ତେବେ ତାହାର ମାତା ଏକ ତୃତୀୟାଂଶ ପାଇବେ ; କିନ୍ତୁ ଯଦି ତାହାର ଭାଇ (ଭଉଣୀ) ଥିବେ, ତେବେ ତାହାର ମାତା ଏକ ଷଷ୍ଠାଂଶ ପାଇବେ ; (ଏହି ସବୁ ଅଂଶ) ତାହାର ୱସିୟତ୍ ଓ ଋଣ (ପରିଶୋଧ) ପରେ ପ୍ରଦାନ କରା ହେବ ; ତୁମମାନଙ୍କର ପିତା (ଓ ପିତାମହ) ଏବଂ ପୁତ୍ରମାନଙ୍କ ମଧ୍ୟରୁ ତୁମମାନଙ୍କ ପାଇଁ କିଏ ଅଧିକ ହିତକାରୀ, ତାହା ତୁମେମାନେ ଜାଣ ନାହିଁ ; ଏହା ଅଲ୍ଲାହଙ୍କ ଦ୍ୱାରା ଧାର୍ଯ୍ୟ କରାହୋଇଛି ; ବାସ୍ତବରେ ଅଲ୍ଲାହ ହିଁ ସର୍ବଜ୍ଞ(ଓ) ତତ୍ତ୍ୱଜ୍ଞ ।

وَلَكُمْ نِصْفُ مَا تَرَكَ أَزْوَاجُكُمْ إِن لَّمْ يَكُن لَّهُنَّ وَلَدٌ ۚ فَإِن كَانَ لَهُنَّ وَلَدٌ فَلَكُمُ الرُّبُعُ مِمَّا تَرَكْنَ ۚ مِن بَعْدِ وَصِيَّةٍ يُوصِينَ بِهَا أَوْ دَيْنٍ ۚ وَلَهُنَّ الرُّبُعُ مِمَّا تَرَكْتُمْ إِن لَّمْ يَكُن لَّكُمْ وَلَدٌ ۚ فَإِن كَانَ لَكُمْ وَلَدٌ

୧୩. ଏବଂ ତୁମମାନଙ୍କର ପତ୍ନୀମାନେ ଯାହା ଛାଡ଼ିଯିବେ, ଯଦି ସେମାନଙ୍କର ସନ୍ତାନ ନ ଥିବେ ତେବେ ତୁମେମାନେ ତାହାର ଅର୍ଦ୍ଧାଂଶ ପାଇବ ; କିନ୍ତୁ ଯଦି ସେମାନଙ୍କର ସନ୍ତାନ ଥିବେ ତେବେ ୱସିୟତ୍ ବା ଋଣ (ପରିଶୋଧ) ପରେ ସେମାନେ ଯାହା ଛାଡ଼ି ଯାଇଥିବେ ତାହାର ଏକ ଚତୁର୍ଥାଂଶ ତୁମମାନଙ୍କର ହେବ ; ଏବଂ ଯଦି ତୁମମାନଙ୍କର ସନ୍ତାନ ନ ଥିବେ ତେବେ ତୁମେମାନେ ଯାହା ଛାଡିଯାଇଥିବ ତାହାର ଏକ ଚତୁର୍ଥାଂଶ ସେ (ପତ୍ନୀ)ମାନଙ୍କର ହେବ ; ଏବଂ ଯଦି

ତୁମମାନଙ୍କର ସନ୍ତାନ ଥିବେ ତେବେ ତୁମମାନଙ୍କର ଓ୍ୱସିୟତ ଓ ଋଣ (ପରିଶୋଧ) ପରେ ତୁମେମାନେ ଯାହା ଛାଡି ଯାଇଥିବ ତାହାର ଏକ ଅଷ୍ଟମାଂଶ ସେମାନଙ୍କର ହେବ ; ଏବଂ ଯେଉଁ ପୁରୁଷ ବା ନାରୀର ସମ୍ପତ୍ତି ବଣ୍ଟନ କରାଯାଉଅଛି, ଯଦି ତାହାର ପିତା ବା ସନ୍ତାନ ନ ଥିବେ ଏବଂ ତାହାର ଗୋଟିଏ ଭାଇ ବା ଗୋଟିଏ ଭଉଣୀ[1] ଥିବେ ତେବେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ଏକ ଷଷ୍ଠାଂଶ ହେବ ; କିନ୍ତୁ ଯଦି ସେମାନେ ଏଥିରୁ ଅଧିକ ଥିବେ, ତେବେ ଓ୍ୱସିୟତ ଓ ଋଣ (ପରିଶୋଧ) ପରେ ସେମାନେ (ଅବଶିଷ୍ଟ ଧନର) ଏକ ତୃତୀୟାଂଶରେ ଭାଗୀଦାର ହେବେ ; (ଏହି ବଣ୍ଟନରେ) କାହାରି କ୍ଷତି ଘଟାଇବା ଉଦ୍ଦେଶ୍ୟ ନ ରହିବା ଉଚିତ ; ଏବଂ ଅଲ୍ଲାହଙ୍କ ତରଫରୁ ତୁମମାନଙ୍କୁ ଏହି ନିର୍ଦ୍ଦେଶ ଦିଆଯାଉଛି ; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ(ଓ)ସହନଶୀଳ ।

فَلَهُنَّ الثُّمُنُ مِمَّا تَرَكْتُمْ مِنْ بَعْدِ وَصِيَّةٍ تُوصُونَ بِهَا أَوْ دَيْنٍ ۗ وَإِنْ كَانَ رَجُلٌ يُورَثُ كَلَالَةً أَوِ امْرَأَةٌ وَلَهُ أَخٌ أَوْ أُخْتٌ فَلِكُلِّ وَاحِدٍ مِنْهُمَا السُّدُسُ ۚ فَإِنْ كَانُوا أَكْثَرَ مِنْ ذَٰلِكَ فَهُمْ شُرَكَاءُ فِي الثُّلُثِ مِنْ بَعْدِ وَصِيَّةٍ يُوصَىٰ بِهَا أَوْ دَيْنٍ غَيْرَ مُضَارٍّ ۚ وَصِيَّةً مِنَ اللَّهِ ۗ وَاللَّهُ عَلِيمٌ حَلِيمٌ ﴿١٣﴾

୧୪. ଏହା ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ସୀମା ; ଏବଂ ଯେଉଁ (ବ୍ୟକ୍ତି)ମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ଆଜ୍ଞା ପାଳନ କରିବେ ସେମାନଙ୍କୁ ସେ ଏପରି ଉଦ୍ୟାନରେ ପ୍ରବେଶ କରାଇବେ ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥିବ ; ସେମାନେ ସେଠାରେ ସର୍ବଦା ରହିବେ ଏବଂ ଏହା ଏକ ମହାନ୍ ସାଫଲ୍ୟ ।

تِلْكَ حُدُودُ اللَّهِ ۚ وَمَنْ يُطِعِ اللَّهَ وَرَسُولَهُ يُدْخِلْهُ جَنَّاتٍ تَجْرِي مِنْ تَحْتِهَا الْأَنْهَارُ خَالِدِينَ فِيهَا ۚ وَذَٰلِكَ الْفَوْزُ الْعَظِيمُ ﴿١٤﴾

୧୫. ଏବଂ ଯେଉଁ ବ୍ୟକ୍ତି ଅଲ୍ଲାହ ଓ ତାହାଙ୍କ ରସୁଲଙ୍କୁ ଅବଜ୍ଞା କରେ ଏବଂ ତାହାଙ୍କର (ନିର୍ଦ୍ଧାରିତ) ସୀମା ଲଙ୍ଘନ କରେ ତାହାକୁ ସେ (ନରକ) ଅଗ୍ନିରେ ପ୍ରବେଶ କରାଇବେ ଯହିଁରେ ସେ ବହୁକାଳ[2] ବାସ କରିବ ; ଏବଂ ତା' ପାଇଁ ଅପମାନଜନକ ଶାସ୍ତି (ନିୟତ) ଅଛି ।

وَمَنْ يَعْصِ اللَّهَ وَرَسُولَهُ وَيَتَعَدَّ حُدُودَهُ يُدْخِلْهُ نَارًا خَالِدًا فِيهَا وَلَهُ عَذَابٌ مُهِينٌ ﴿١٥﴾ ع

---

୧. ଯେଉଁ ଭାଇ ଭଉଣୀମାନେ ମାତାଙ୍କ କୁଳର ହୋଇଥିବେ, ସେମାନେ 'କଲାଲା' ର ଅନ୍ତର୍ଗତ । ସେମାନଙ୍କ ଉତ୍ତରାଧିକାର ବିଷୟ ଏଠାରେ ବର୍ଣ୍ଣିତ ।

୨. ବୈକୁଣ୍ଠ ଓ ନରକ ଉଭୟ କ୍ଷେତ୍ରରେ 'ଖୁଲୁଦ' ଶବ୍ଦ ବ୍ୟବହୃତ ହୋଇଥିଲେ ମଧ୍ୟ ଯେହେତୁ ପବିତ୍ର କୋରାନରେ ଅନ୍ୟତ୍ର ସ୍ପଷ୍ଟୀକରଣ ଦିଆଯାଇଛି ଯେ ନରକରେ ଶାସ୍ତିର କାଳାବଧି କିଛି ସମୟ ପରେ ସମାପ୍ତ ହୋଇଯିବ, ତେଣୁ ନରକ କ୍ଷେତ୍ରରେ 'ଦୀର୍ଘକାଳ' ଶବ୍ଦ ପ୍ରୟୋଗ କରାଯାଇଛି ।

ରୁ : ୩

وَالّٰتِيْ يَاْتِيْنَ الْفَاحِشَةَ مِنْ نِّسَآئِكُمْ فَاسْتَشْهِدُوْا عَلَيْهِنَّ اَرْبَعَةً مِّنْكُمْ ۚ فَاِنْ شَهِدُوْا فَاَمْسِكُوْهُنَّ فِي الْبُيُوْتِ حَتّٰى يَتَوَفّٰهُنَّ الْمَوْتُ اَوْ يَجْعَلَ اللّٰهُ لَهُنَّ سَبِيْلًا ﴿۱۶﴾

୧୬. ଏବଂ ତୁମମାନଙ୍କର ପତ୍ନୀମାନଙ୍କ ମଧ୍ୟରୁ ଯେଉଁମାନେ ଅଶୋଭନୀୟ[1] କାର୍ଯ୍ୟରେ ଲିପ୍ତ ଥିବେ, ସେମାନଙ୍କ ବିରୁଦ୍ଧରେ ତୁମମାନଙ୍କ ମଧ୍ୟରୁ (ଅର୍ଥାତ୍ ବନ୍ଧୁବାନ୍ଧବ ଓ ପଡ଼ୋଶୀମାନଙ୍କ ମଧ୍ୟରୁ) ଚାରି ଜଣ ସାକ୍ଷୀ ତଲବ କର ; ଯଦି ସେମାନେ ସାକ୍ଷ୍ୟ ଦିଅନ୍ତି ତେବେ ସେ (ପତ୍ନୀ)ମାନଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ବା ସେମାନଙ୍କ ପାଇଁ ଅଲ୍ଲାହ୍ ଅନ୍ୟ କୌଣସି ପଥ ନିରୂପିତ କରିବା ପର୍ଯ୍ୟନ୍ତ, ଗୃହ ମଧ୍ୟରେ ଆବଦ୍ଧ କରି ରଖ ।

وَالَّذٰنِ يَاْتِيٰنِهَا مِنْكُمْ فَاٰذُوْهُمَا ۚ فَاِنْ تَابَا وَاَصْلَحَا فَاَعْرِضُوْا عَنْهُمَا ۗ اِنَّ اللّٰهَ كَانَ تَوَّابًا رَّحِيْمًا ﴿۱۷﴾

୧୭. ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁ ଦୁଇ ଜଣ ପୁରୁଷ ଅଶୋଭନୀୟ[2] କାର୍ଯ୍ୟରେ ଲିପ୍ତ ହୁଅନ୍ତି ସେମାନଙ୍କୁ ଦଣ୍ଡଦିଅ ; ଏବଂ ଯଦି ସେମାନେ ଅନୁତାପ କରନ୍ତି ଓ (ନିଜକୁ) ସୁଧାରି ନିଅନ୍ତି ତେବେ ସେମାନଙ୍କୁ ଛାଡିଦିଅ, ବାସ୍ତବରେ ଅଲ୍ଲାହ୍ ଅନୁତାପଗ୍ରହୀତା(ଓ) ସଦା କରୁଣାମୟ ।

اِنَّمَا التَّوْبَةُ عَلَى اللّٰهِ لِلَّذِيْنَ يَعْمَلُوْنَ السُّوْٓءَ بِجَهَالَةٍ ثُمَّ يَتُوْبُوْنَ مِنْ قَرِيْبٍ فَاُولٰٓئِكَ يَتُوْبُ اللّٰهُ عَلَيْهِمْ ۗ وَكَانَ اللّٰهُ عَلِيْمًا حَكِيْمًا ﴿۱۸﴾

୧୮. ଅଲ୍ଲାହ୍‌ଙ୍କ ନିକଟରେ କେବଳ ସେହି (ଲୋକ)ମାନଙ୍କର ଅନୁତାପ ଗ୍ରହଣୀୟ ଯେଉଁମାନେ ଅଜ୍ଞତା–ବଶତଃ ମନ୍ଦ କାର୍ଯ୍ୟ କରନ୍ତି ଓ ତତ୍ପରେ ଅତି ଶୀଘ୍ର ଅନୁତାପ କରନ୍ତି ; ଏବଂ ଏ ଲୋକମାନେ ଏପରି ଯେଉଁମାନଙ୍କ ପ୍ରତି ଅଲ୍ଲାହ୍ ଦୟା ପ୍ରଦର୍ଶନ କରନ୍ତି ; ଏବଂ ଅଲ୍ଲାହ୍ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَلَيْسَتِ التَّوْبَةُ لِلَّذِيْنَ يَعْمَلُوْنَ السَّيِّاٰتِ ۚ حَتّٰۤى اِذَا حَضَرَ اَحَدَهُمُ الْمَوْتُ قَالَ اِنِّيْ تُبْتُ الْـٰٔنَ وَلَا الَّذِيْنَ يَمُوْتُوْنَ وَهُمْ كُفَّارٌ ۗ اُولٰٓئِكَ اَعْتَدْنَا لَهُمْ عَذَابًا اَلِيْمًا ﴿۱۹﴾

୧୯. ଏବଂ ସେହି ଲୋକମାନଙ୍କର ଅନୁତାପ (ଗ୍ରହଣୀୟ) ନୁହେଁ ଯେଉଁମାନେ (ନିରନ୍ତର) ମନ୍ଦ କାର୍ଯ୍ୟ କରୁଥା'ନ୍ତି, ଏପରିକି ଯେବେ ସେମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ (ସମୟ) ଉପସ୍ଥିତ ହୁଏ ତେବେ (ସେ) କହେ ଯେ ମୁଁ ବର୍ତ୍ତମାନ ନିଶ୍ଚିତ ରୂପେ ଅନୁତାପ କରୁଅଛି ତଥା ସେ ଲୋକମାନଙ୍କର (ଅନୁତାପ) ଗ୍ରହଣୀୟ ନୁହେଁ, ଯେଉଁମାନେ ଅବିଶ୍ୱାସକାରୀ ଥିବା ଅବସ୍ଥାରେ ମରି ଯାଆନ୍ତି ; ଏପରି ଲୋକମାନଙ୍କ ପାଇଁ ଆମେ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଅଛୁ ।

---

୧. ଏହି ଆୟତରେ ତଥା ଏହାର ପରବର୍ତ୍ତୀ ଆୟତରେ ଅଶ୍ଳୀଳ କର୍ମ ପାଇଁ ଶାସ୍ତି ବ୍ୟବସ୍ଥା କରାଯାଇଛି । କୌଣସି ମହିଳା ସ୍ଥଳେ, ପରିବାରର ଚାରିଜଣ ସାକ୍ଷୀଙ୍କ ସାକ୍ଷ୍ୟ ଉପରେ ନିର୍ଭର କରି ଉକ୍ତ ମହିଳାକୁ ସ୍ୱେଚ୍ଛାରେ ଗୃହତ୍ୟାଗ କରିବାରୁ, ଏପରିକି ଅନ୍ୟାନ୍ୟ ମହିଳାଙ୍କ ସହ ସମ୍ପର୍କ ସ୍ଥାପନ କରିବାରୁ ସେପର୍ଯ୍ୟନ୍ତ ବାରଣ କରାଯିବ ଯେ ପର୍ଯ୍ୟନ୍ତ ସେ ବିବାହ ନ କରିଛି ବା ନିଜକୁ ନ ସୁଧାରିଛି । ପୁରୁଷ କ୍ଷେତ୍ରରେ ସାମାଜିକ କଟକଣା ଲାଗୁ କରାଯିବ । ଏଠାରେ କୌଣସି ନିର୍ଦ୍ଦିଷ୍ଟ ଶାସ୍ତି ବ୍ୟବସ୍ଥା କରାଯାଇ ନ ଥିବାରୁ କର୍ତ୍ତୃପକ୍ଷ ଯାହା ଉଚିତ ମନେକରିବେ ତାହା କରିବେ । ବସ୍ତୁତଃ ଏଠାରେ ଯୌନଲାଳସା-ଜନିତ କୌଣସି ଅପରାଧ ସମ୍ବନ୍ଧରେ ବର୍ଣ୍ଣନା କରାଯାଇନାହିଁ । କାରଣ ଏ ବିଷୟ 'ସୁରା ନୁର'ରେ ଅନୁରୂପ ଅପରାଧ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି । ଆଲୋଚ୍ୟ ଆୟତ୍ ଅନ୍ତର୍ଗତ ଶାସ୍ତି ଓ ସୁରା ନୁର ଅନ୍ତର୍ଗତ ଶାସ୍ତି ମଧ୍ୟରେ ପାର୍ଥକ୍ୟ ଅଛି । ଅତଏବ ଏଠାରେ ଯେଉଁ ବିଷୟର ଶାସ୍ତି ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି ତାହା ହେଉଛି ଅଶ୍ଳୀଳ କର୍ମ ଓ ମନ୍ଦ ଆଚରଣ ।

୨. ଏଠାରେ 'ଅଶୋଭନୀୟ' ର ଅର୍ଥ ବ୍ୟଭିଚାର ନୁହେଁ, ଏହା କଳିଗୋଳ ବା ବିଶୃଙ୍ଖଳା ବା ଅରୁଚିକର କଥୋପକଥନକୁ ବୁଝାଉଛି ।

يٰٓاَيُّهَا الَّذِيْنَ اٰمَنُوْا لَا يَحِلُّ لَكُمْ اَنْ تَرِثُوا النِّسَآءَ كَرْهًا ؕ وَلَا تَعْضُلُوْهُنَّ لِتَذْهَبُوْا بِبَعْضِ مَآ اٰتَيْتُمُوْهُنَّ اِلَّآ اَنْ يَّاْتِيْنَ بِفَاحِشَةٍ مُّبَيِّنَةٍ ۚ وَعَاشِرُوْهُنَّ بِالْمَعْرُوْفِ ۚ فَاِنْ كَرِهْتُمُوْهُنَّ فَعَسٰٓى اَنْ تَكْرَهُوْا شَيْـًٔا وَّيَجْعَلَ اللّٰهُ فِيْهِ خَيْرًا كَثِيْرًا ﴿۲۰﴾

୨୦. ହେ ବିଶ୍ୱାସକାରୀମାନେ ! ଜବରଦସ୍ତି ସ୍ତ୍ରୀଲୋକମାନଙ୍କର ଉତ୍ତରାଧିକାରୀ ହେବା ତୁମମାନଙ୍କ ପକ୍ଷରେ ନ୍ୟାଯ୍ୟ ନୁହେଁ ; ଏବଂ ତୁମେମାନେ ସେମାନଙ୍କୁ ଯାହା କିଛି ଦେଇଅଛ ତହିଁରୁ କିଛି ଛଡାଇ ନେବା ଉଦ୍ଦେଶ୍ୟରେ ସେମାନଙ୍କୁ ହଇରାଣ କର ନାହିଁ ; ଅବଶ୍ୟ ଯଦି ସେମାନେ କୌଣସି ପ୍ରକାଶ୍ୟ ପାପରେ ଲିପ୍ତ ରହନ୍ତି (ତେବେ ଏ ସଂକ୍ରାନ୍ତ ଆଦେଶ ଉପରେ ବର୍ଣ୍ଣିତ ହୋଇଅଛି) ଏବଂ ସେମାନଙ୍କ ସହିତ ଉତ୍ତମ ବ୍ୟବହାର[2] କର ; ଏବଂ ଯଦି ତୁମେମାନେ ସେମାନଙ୍କୁ ନାପସନ୍ଦ କର ତେବେ (ମନେରଖ ଯେ) ସମ୍ଭବତଃ ତୁମେମାନେ ଯାହାକୁ ନାପସନ୍ଦ କରୁଥାଅ ଅଲ୍ଲାହ ତହିଁରେ ଅଶେଷ କଲ୍ୟାଣ କରିଥାଇ ପାରନ୍ତି ।

وَاِنْ اَرَدْتُّمُ اسْتِبْدَالَ زَوْجٍ مَّكَانَ زَوْجٍ ۙ وَّاٰتَيْتُمْ اِحْدٰىهُنَّ قِنْطَارًا فَلَا تَاْخُذُوْا مِنْهُ شَيْـًٔا ؕ اَتَاْخُذُوْنَهٗ بُهْتَانًا وَّاِثْمًا مُّبِيْنًا ﴿۲۱﴾

୨୧. ଏବଂ ଯଦି ତୁମେମାନେ ଗୋଟିଏ ପତ୍ନୀ ବଦଳରେ ଅନ୍ୟ ଗୋଟିଏ ପତ୍ନୀ ଗ୍ରହଣ କରିବାକୁ ଇଚ୍ଛା କର ଏବଂ ସେମାନଙ୍କ ମଧ୍ୟରୁ ଜଣକୁ ପ୍ରଚୁର (ଧନ) ପ୍ରଦାନ କରିଥାଅ ତେବେ ତହିଁରୁ କିଛି ଫେରସ୍ତ ନିଅ ନାହିଁ ; କ'ଣ ତୁମେମାନେ ମିଥ୍ୟା ଅଭିଯୋଗ ଓ ପ୍ରକାଶ୍ୟ ପାପ କାର୍ଯ୍ୟ କରି ଏହାକୁ ଗ୍ରହଣ କରିବ ?

وَكَيْفَ تَاْخُذُوْنَهٗ وَقَدْ اَفْضٰى بَعْضُكُمْ اِلٰى بَعْضٍ وَّاَخَذْنَ مِنْكُمْ مِّيْثَاقًا غَلِيْظًا ﴿۲۲﴾

୨୨. ଏବଂ କିପରି ତୁମେମାନେ ଏହାକୁ (ଅର୍ଥାତ୍ ଏହି ଧନକୁ) ଗ୍ରହଣ କରିବ ଯେତେବେଳେ କି ତୁମମାନଙ୍କର ପରସ୍ପର ମଧ୍ୟରେ ମିଳନ ହୋଇସାରିଛି ଏବଂ ସେ (ପତ୍ନୀ)ମାନେ ତୁମମାନଙ୍କ ଠାରୁ ଏକ ଦୃଢ଼ ଅଙ୍ଗୀକାର ଗ୍ରହଣ କରିସାରିଛନ୍ତି ।

---

୧. ପୂର୍ବବର୍ତ୍ତୀ ଆୟତ୍ ଅନୁସାରେ କୌଣସି ମହିଳାକୁ ଘରୁ ବାହାରିବାରେ ବାଧା ଦିଆଯାଇପାରେ, ମାତ୍ର ତାର ଧନ ଛଡେଇ ନେବା ଉଦ୍ଦେଶ୍ୟରେ ସେପରି କରାଯିବ ନାହିଁ । ତେଣୁ ଏଠାରେ, ସେ ବ୍ୟଭିଚାରରେ ଲିପ୍ତ ହେଲେ ତା'ର ଧନ ଛଡେଇନେବାକୁ ଆଦୌ କୁହାଯାଇ ନାହିଁ ।

୨. ହଜରତ ମହମ୍ମଦ କହିଛନ୍ତି – ''ତୁମମାନଙ୍କ ମଧ୍ୟରେ ସେହି ବ୍ୟକ୍ତି ସର୍ବୋତ୍କୃଷ୍ଟ ଯେ ନିଜ ପତ୍ନୀ ପ୍ରତି ସର୍ବୋତ୍ତମ ବ୍ୟବହାର ଦେଖାଏ ।' ପତି ଓ ପତ୍ନୀଙ୍କ ମଧ୍ୟରେ ଆପୋଷ ବୁଝାମଣା ଓ ପାରସ୍ପରିକ ସ୍ନେହ ବଜାୟ ରଖିବାକୁ ଏଠାରେ ନିର୍ଦ୍ଦେଶ ଦିଆଯାଇଛି ।

وَلَا تَنكِحُوا مَا نَكَحَ آبَاؤُكُم مِّنَ النِّسَاءِ إِلَّا مَا قَدْ سَلَفَ ۚ إِنَّهُ كَانَ فَاحِشَةً وَمَقْتًا وَسَاءَ سَبِيلًا ﴿٢٣﴾

୨୩. ଏବଂ ଯାହା (ପୂର୍ବରୁ) ହୋଇ ଯାଇଅଛି ତାହା ବ୍ୟତୀତ, ତୁମମାନଙ୍କର ପିତା ଓ ପିତାମହମାନେ ଯେଉଁ ସ୍ତ୍ରୀ ଲୋକମାନଙ୍କୁ ବିବାହ କରିଛନ୍ତି, ତୁମେମାନେ ସେମାନଙ୍କୁ ବିବାହ କର ନାହିଁ ; ଏବଂ ଏହା ନିଶ୍ଚୟ ଏକ ଅଶ୍ଳୀଳ କାର୍ଯ୍ୟ, ଘୃଣୀତ ବିଷୟ ଓ ହୀନ ରୀତି ଅଟେ ।

ରୁ : ୪

حُرِّمَتْ عَلَيْكُمْ أُمَّهَاتُكُمْ وَبَنَاتُكُمْ وَأَخَوَاتُكُمْ وَعَمَّاتُكُمْ وَخَالَاتُكُمْ وَبَنَاتُ الْأَخِ وَبَنَاتُ الْأُخْتِ وَأُمَّهَاتُكُمُ اللَّاتِي أَرْضَعْنَكُمْ وَأَخَوَاتُكُم مِّنَ الرَّضَاعَةِ وَأُمَّهَاتُ نِسَائِكُمْ وَرَبَائِبُكُمُ اللَّاتِي فِي حُجُورِكُم مِّن نِّسَائِكُمُ اللَّاتِي دَخَلْتُم بِهِنَّ فَإِن لَّمْ تَكُونُوا دَخَلْتُم بِهِنَّ فَلَا جُنَاحَ عَلَيْكُمْ وَحَلَائِلُ أَبْنَائِكُمُ الَّذِينَ مِنْ أَصْلَابِكُمْ وَأَن تَجْمَعُوا بَيْنَ الْأُخْتَيْنِ إِلَّا مَا قَدْ سَلَفَ ۗ إِنَّ اللَّهَ كَانَ غَفُورًا رَّحِيمًا ﴿٢٤﴾

୨୪. ତୁମମାନଙ୍କର ମାତାମାନେ ଓ ତୁମମାନଙ୍କର କନ୍ୟାମାନେ ଓ ତୁମମାନଙ୍କର ଭଉଣୀମାନେ ଓ ତୁମମାନଙ୍କର ପିଉସୀମାନେ ଓ ତୁମମାନଙ୍କର ମାଉସୀମାନେ ଓ ତୁମମାନଙ୍କର ଝିଆରୀମାନେ ଓ ତୁମମାନଙ୍କର ଭାଣିଜୀମାନେ ଓ ସ୍ତନ୍ୟପାନ କରାଇଥିବା ତୁମମାନଙ୍କର ମାତାମାନେ ଓ ସ୍ତନ୍ୟ ସମ୍ପର୍କୀୟା ଭଉଣୀମାନେ ଓ ତୁମମାନଙ୍କର ଶାଶୁମାନେ ତଥା ତୁମମାନଙ୍କର ସେହି ସାବତ କନ୍ୟାମାନେ ଯେଉଁମାନେ ତୁମମାନଙ୍କର ସେହି ପତ୍ନୀମାନଙ୍କ ଗର୍ଭରୁ ଜାତ ଯାହାଙ୍କ ସହିତ ତୁମେମାନେ ସହବାସ କରିଅଛ ଓ ସେମାନେ ତୁମମାନଙ୍କ ଗୃହରେ ପ୍ରତିପାଳିତ ହେଉଛନ୍ତି (ଏ ସମସ୍ତଙ୍କ ସହିତ ବିବାହ) ତୁମମାନଙ୍କ ପକ୍ଷରେ ଅବୈଧ ; କିନ୍ତୁ ଯଦି ତୁମେମାନେ ସେମାନଙ୍କ (ଅର୍ଥାତ୍ ସେହି ମାଆମାନଙ୍କ) ସହିତ ସହବାସ କରି ନ ଥାଅ ତେବେ (ସେମାନଙ୍କ କନ୍ୟାମାନଙ୍କ ସହିତ ବିବାହ କରିବାରେ) ତୁମମାନଙ୍କର କୌଣସି ପାପ ହେବ ନାହିଁ ; ଏବଂ (ଏହିପରି ଭାବେ) ତୁମମାନଙ୍କର ଔରସ ପୁତ୍ରମାନଙ୍କର ପତ୍ନୀମାନଙ୍କୁ ତୁମମାନଙ୍କ ପାଇଁ ଅବୈଧ କରାଯାଇଅଛି ; ଏବଂ ତୁମେ (ଏକ ସମୟରେ) ଦୁଇ ଭଉଣୀଙ୍କୁ (ବିବାହ କରି ପତ୍ନୀ ରୂପେ) ଏକତ୍ରିତ କରାଇବା ମଧ୍ୟ (ଅବୈଧ କରାଯାଇଛି), ଅବଶ୍ୟ ତାହା ବ୍ୟତୀତ ଯାହା (ପୂର୍ବରୁ) ହୋଇଯାଇଛି ; ବାସ୍ତବିକ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

୧. ଏହି ଆୟତ ଅବତୀର୍ଣ୍ଣ ହେବା ପୂର୍ବରୁ ଯେଉଁ ବ୍ୟକ୍ତି ସାବତ ମା'କୁ ଅଥବା ଏକତ୍ରିତଭାବରେ ଦୁଇଭଉଣୀଙ୍କୁ ବିବାହ କରିଥାଏ ସେ ତାହାକୁ ବା ସେମାନଙ୍କୁ ଆଉ ପତ୍ନୀରୂପେ ରଖି ପାରିବ ନାହିଁ । ଏହାର ସରଳ ଅର୍ଥ ହେଉଛି ଯେ ଯଦି ସେ ଅନୁତାପ କରିବ ଓ ଅବସ୍ଥାକୁ ସୁଧାରି ନେବ ତେବେ ସେ ପୂର୍ବରୁ ଯେଉଁ ଶାସ୍ତ୍ରବିରୁଦ୍ଧ କାର୍ଯ୍ୟ କରିସାରିଛି ସେଥିପାଇଁ ତା'ର କୌଣସି ଅନିଷ୍ଟ ହେବନାହିଁ । ଅତୀତର ଅପରାଧକୁ ଅବଶ୍ୟ କ୍ଷମା କରାଯିବ କିନ୍ତୁ ସେ ଯାହାକୁ ବିବାହ କରିବା ବିଧି ବିରୁଦ୍ଧ ତାହାକୁ ତୁରନ୍ତ ଛାଡ଼ପତ୍ର ଦେବାକୁ ହେବ ।

## ଭାଗ— ୫

وَّالْمُحْصَنٰتُ مِنَ النِّسَآءِ اِلَّا مَا مَلَكَتْ اَيْمَانُكُمْ ۚ كِتٰبَ اللّٰهِ عَلَيْكُمْ ۚ وَاُحِلَّ لَكُمْ مَّا وَرَآءَ ذٰلِكُمْ اَنْ تَبْتَغُوْا بِاَمْوَالِكُمْ مُّحْصِنِيْنَ غَيْرَ مُسٰفِحِيْنَ ؕ فَمَا اسْتَمْتَعْتُمْ بِهٖ مِنْهُنَّ فَاٰتُوْهُنَّ اُجُوْرَهُنَّ فَرِيْضَةً ۚ وَلَا جُنَاحَ عَلَيْكُمْ فِيْمَا تَرٰضَيْتُمْ بِهٖ مِنْ بَعْدِ الْفَرِيْضَةِ ؕ اِنَّ اللّٰهَ كَانَ عَلِيْمًا حَكِيْمًا ﴿۲۵﴾

୨୫. ଏବଂ ଯେଉଁମାନେ ତୁମମାନଙ୍କର କର୍ତ୍ତୃତ୍ୱାଧୀନ[1] ହୋଇଛନ୍ତି ସେମାନଙ୍କ ବ୍ୟତୀତ ଅନ୍ୟ ବିବାହିତା ନାରୀମାନଙ୍କୁ (ବିବାହ କରିବା ତୁମମାନଙ୍କ ପକ୍ଷରେ ଅବୈଧ) ; ଏହାକୁ ଅଲ୍ଲାହ ତୁମମାନଙ୍କ ପାଇଁ ଧାର୍ଯ୍ୟ କରିଛନ୍ତି ;ଏହି (ଉପର ବର୍ଣ୍ଣିତ ନାରୀ)ମାନଙ୍କ ବ୍ୟତୀତ ଅନ୍ୟମାନେ ତୁମମାନଙ୍କ ପାଇଁ (ବିବାହ ପରେ) ବୈଧ ହେବେ (ଅର୍ଥାତ୍) ଯେଉଁମାନଙ୍କୁ ତୁମେମାନେ ନିଜର ଅର୍ଥ ବିନିମୟରେ ହାସଲ କର ଏହି ସର୍ତ୍ତରେ ଯେ ସେମାନଙ୍କ ସହିତ ବିବାହ କରିବ, ବ୍ୟଭିଚାର[2] କରିବ ନାହି ; ତତ୍ପରେ ଯଦି ତୁମେମାନେ ସେମାନଙ୍କଠାରୁ ଲାଭ ପାଉଥାଅ ତେବେ ତୁମେମାନେ ସେମାନଙ୍କୁ (ତୁମମାନଙ୍କ ଦ୍ୱାରା ନିର୍ଦ୍ଧାରିତ) ସେମାନଙ୍କର ମହେର ପ୍ରଦାନ କର; ଏବଂ (ମହେର) ନିର୍ଦ୍ଧାରିତ ହେବା ପରେ ତୁମେମାନେ ଯେଉଁ ବିଷୟରେ (ଅର୍ଥାତ୍ ଏହାର ହ୍ରାସବୃଦ୍ଧି ବିଷୟରେ) ପରସ୍ପର ମଧ୍ୟରେ ଏକମତ ହୁଅ, ସେଥିରେ ତୁମମାନଙ୍କର କୌଣସି ପାପ ହେବ ନାହିଁ; ବାସ୍ତବରେ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَمَنْ لَّمْ يَسْتَطِعْ مِنْكُمْ طَوْلًا اَنْ يَّنْكِحَ الْمُحْصَنٰتِ الْمُؤْمِنٰتِ فَمِنْ مَّا مَلَكَتْ اَيْمَانُكُمْ مِّنْ فَتَيٰتِكُمُ الْمُؤْمِنٰتِ ؕ وَاللّٰهُ اَعْلَمُ بِاِيْمَانِكُمْ ؕ بَعْضُكُمْ مِّنْۢ بَعْضٍ ۚ فَانْكِحُوْهُنَّ بِاِذْنِ اَهْلِهِنَّ وَاٰتُوْهُنَّ اُجُوْرَهُنَّ بِالْمَعْرُوْفِ مُحْصَنٰتٍ غَيْرَ مُسٰفِحٰتٍ وَّلَا مُتَّخِذٰتِ اَخْدَانٍ ۚ فَاِذَاۤ اُحْصِنَّ فَاِنْ اَتَيْنَ

୨୬. ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁ ବ୍ୟକ୍ତିର ସ୍ୱାଧୀନା ବିଶ୍ୱାସକାରିଣୀ ନାରୀମାନଙ୍କୁ ବିବାହ କରିବାର ଆଦୌ ସାମର୍ଥ୍ୟ ନଥାଏ ତେବେ (ସେ) ତୁମମାନଙ୍କର କର୍ତ୍ତୃତ୍ୱାଧୀନ ହୋଇଥିବା ନାରୀମାନଙ୍କ ମଧ୍ୟରୁ ଅର୍ଥାତ୍ ତୁମମାନଙ୍କର ବିଶ୍ୱାସକାରିଣୀ ଦାସୀମାନଙ୍କ ମଧ୍ୟରୁ କାହାରିକୁ ବିବାହ କରୁ ; ଏବଂ ଅଲ୍ଲାହ ତୁମମାନଙ୍କର ବିଶ୍ୱାସକୁ ଭଲଭାବରେ ଜାଣନ୍ତି ; ତୁମେମାନେ ପରସ୍ପର ମଧ୍ୟରେ ସମ୍ପର୍କ ରଖୁଅଛ ; ସୁତରାଂ ସେମାନଙ୍କ ମାଲିକମାନଙ୍କ ଅନୁମତିକ୍ରମେ ସେମାନଙ୍କୁ ବିବାହ କର ; ଏବଂ ଯଦି ସେମାନେ ସଚ୍ଚରିତ୍ରା ଥାଆନ୍ତି, ବ୍ୟଭିଚାର ନ କରୁଥାଆନ୍ତି ଓ ଗୁପ୍ତପ୍ରେମିକ ଗ୍ରହଣ ନ କରୁଥା'ନ୍ତି, ତେବେ ସେମାନଙ୍କୁ[3] ସେମାନଙ୍କର ନ୍ୟାଯ୍ୟ ମହେର ପ୍ରଦାନ କର;ଏବଂ ବିବାହିତା

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେଉଁ ମହିଳାମାନଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ ହେବା ଯଥାର୍ଥ ବୋଲି ଇସଲାମ ଧର୍ମଶାସ୍ତ୍ରରେ ଲେଖାଅଛି ବିବାହ ପରେ ସେମାନେ ପୁରୁଷଙ୍କ ପକ୍ଷରେ ନିଶ୍ଚିତ ରୂପେ ବୈଧ, କିନ୍ତୁ ପୂର୍ବୋକ୍ତ ମହିଳାମାନେ ବିବାହ କରିଥିଲେ ମଧ୍ୟ ବୈଧ ହୋଇପାରିବ ନାହିଁ. ଅବଶ୍ୟ ଯୁଦ୍ଧ ବନ୍ଦିନୀମାନଙ୍କ ବିଷୟ ଭିନ୍ନ ଅଟେ (ଟୀକା ୪:୪ ଦ୍ରଷ୍ଟବ୍ୟ) ।

୨. କୌଣସି କ୍ଷେତ୍ରରେ ମଧ୍ୟ ଜଣେ ବିଶ୍ୱାସକାରୀକୁ ବ୍ୟଭିଚାର କରିବା ପାଇଁ ନିର୍ଦ୍ଦେଶ ଦିଆଯାଇ ନାହିଁ କି ପ୍ରରୋଚିତ କରାଯାଇ ନାହିଁ । ବସ୍ତୁତଃ ତାକୁ ନିର୍ଦ୍ଦେଶ ଦିଆଯାଇଛି ଯେ ସେ ବିବାହ ସମୟରେ ସଂଯମତା ଓ ଧର୍ମଭୀରୁତା ପ୍ରତି ଯଥୋଚିତ ଧ୍ୟାନ ଦେବ ଓ ତତ୍ସହିତ ବ୍ୟଭିଚାରମୂଳକ ପରିସ୍ଥିତି ଠାରୁ ନିଜକୁ ଦୂରେଇ ରଖିବ ।

୩. ଯଦି ସେମାନେ ଉତ୍ତମ ଆଚରଣ ପ୍ରଦର୍ଶନ କରୁଛନ୍ତି ତେବେ ସେମାନଙ୍କୁ ମହର ପ୍ରଦାନ କର ଅନ୍ୟଥା ପ୍ରଦାନ କର ନାହିଁ— ଏଠାରେ ଏପରି କୌଣସି ଉଦ୍ଦେଶ୍ୟ ନାହିଁ ବରଂ ଏହାର ଅସଲ ଉଦ୍ଦେଶ୍ୟ ହେଉଛି ଯେ ଯେଉଁମାନେ ନିଷ୍କଳଙ୍କ ଥିବାର ତୁମ ନିକଟରେ ପ୍ରମାଣିତ ହୋଇଛି ସେମାନଙ୍କୁ ବିବାହ କର । ତେଣୁ ଅନ୍ୟ ସ୍ୱାଧୀନା ମହିଳାଙ୍କ କ୍ଷେତ୍ରରେ ଯେପରି ମହର ପ୍ରଦାନ କରାଯିବା କଥା ଦାସୀମାନଙ୍କୁ ମଧ୍ୟ ସେହିପରି ପ୍ରଦାନ କର ।

بِفَاحِشَةٍ فَعَلَيْهِنَّ نِصْفُ مَا عَلَى الْمُحْصَنٰتِ مِنَ الْعَذَابِ ۭ ذٰلِكَ لِمَنْ خَشِيَ الْعَنَتَ مِنْكُمْ ۭ وَاَنْ تَصْبِرُوْا خَيْرٌ لَّكُمْ ۭ وَاللّٰهُ غَفُوْرٌ رَّحِيْمٌ ﴿٢٦﴾

ହେବା ପରେ ଯଦି ସେମାନେ କୌଣସି ପ୍ରକାର ନିର୍ଲ୍ଲଜ କାର୍ଯ୍ୟରେ ଲିପ୍ତ ହୁଅନ୍ତି ତେବେ ସେମାନଙ୍କ ଶାସ୍ତି ସ୍ୱାଧୀନା ନାରୀ ତୁଳନାରେ ଅର୍ଦ୍ଧେକ[1] ହେବ ; ଏପରି (ଅନୁମତି) ତାହା ପାଇଁ ଉଦ୍ଦିଷ୍ଟ ଯିଏ ତୁମମାନଙ୍କ ମଧ୍ୟରୁ ପାପକାର୍ଯ୍ୟକୁ ଭୟ କରେ ଏବଂ ତୁମେମାନେ ଧୈର୍ଯ୍ୟବାନ୍ ହେବା ତୁମମାନଙ୍କ ପକ୍ଷରେ ଉତ୍ତମ ଅଟେ ; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

يُرِيْدُ اللّٰهُ لِيُبَيِّنَ لَكُمْ وَيَهْدِيَكُمْ سُنَنَ الَّذِيْنَ مِنْ قَبْلِكُمْ وَيَتُوْبَ عَلَيْكُمْ ۭ وَاللّٰهُ عَلِيْمٌ حَكِيْمٌ ﴿٢٧﴾

୨୭. ଅଲ୍ଲାହ ଇଚ୍ଛା କରନ୍ତି ଯେ ତୁମମାନଙ୍କର ପୂର୍ବବର୍ତ୍ତୀ ଲୋକମାନଙ୍କ (ଅନୁସୃତ) ପନ୍ଥା ତୁମମାନଙ୍କ ପାଇଁ ବର୍ଣ୍ଣନା କରିବେ ; ତୁମମାନଙ୍କ ପ୍ରତି ଦୟାପରବଶ ହେବେ ; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَاللّٰهُ يُرِيْدُ اَنْ يَّتُوْبَ عَلَيْكُمْ ۣ وَيُرِيْدُ الَّذِيْنَ يَتَّبِعُوْنَ الشَّهَوٰتِ اَنْ تَمِيْلُوْا مَيْلًا عَظِيْمًا ﴿٢٨﴾

୨୮. ଏବଂ ଅଲ୍ଲାହ ତ ତୁମମାନଙ୍କ ପ୍ରତି ଦୟାପରବଶ ହେବାକୁ ଇଚ୍ଛା କରନ୍ତି; କିନ୍ତୁ ଯେଉଁମାନେ କୁପ୍ରବୃତ୍ତିର ଅନୁସରଣ କରନ୍ତି ସେମାନେ ଇଚ୍ଛା କରନ୍ତି ଯେ ତୁମେମାନେ ସମ୍ପୂର୍ଣ୍ଣରୂପେ (ପାପ ଆଡକୁ) ଢଳିଯାଅ ।

يُرِيْدُ اللّٰهُ اَنْ يُّخَفِّفَ عَنْكُمْ ۚ وَخُلِقَ الْاِنْسَانُ ضَعِيْفًا ﴿٢٩﴾

୨୯. ଅଲ୍ଲାହ ତୁମମାନଙ୍କର ଭାର ଲାଘବ କରିବାକୁ ଇଚ୍ଛା କରନ୍ତି ଏବଂ ମନୁଷ୍ୟକୁ ଦୁର୍ବଳ ସୃଷ୍ଟି କରାଯାଇଅଛି ।

يٰٓاَيُّهَا الَّذِيْنَ اٰمَنُوْا لَا تَاْكُلُوْٓا اَمْوَالَكُمْ بَيْنَكُمْ بِالْبَاطِلِ اِلَّآ اَنْ تَكُوْنَ تِجَارَةً عَنْ تَرَاضٍ مِّنْكُمْ ۣ وَلَا تَقْتُلُوْٓا اَنْفُسَكُمْ ۭ اِنَّ اللّٰهَ كَانَ بِكُمْ رَحِيْمًا ﴿٣٠﴾

୩୦. ହେ ବିଶ୍ୱାସକାରୀମାନେ ! ତୁମେମାନେ ପରସ୍ପର ମଧ୍ୟରେ ଅନୁଚିତ ପନ୍ଥାରେ ନିଜ ଧନକୁ ଆତ୍ମସାତ୍ କର ନାହିଁ ; କିନ୍ତୁ ପରସ୍ପରର ସମ୍ମତି କ୍ରମେ ବ୍ୟବସାୟ ଦ୍ୱାରା ଧନ ଅର୍ଜନ କରିବା ବୈଧ ଅଟେ ; ଏବଂ ତୁମେମାନେ ନିଜେ ନିଜକୁ ହତ୍ୟା କର ନାହିଁ; ନିଶ୍ଚୟ ଅଲ୍ଲାହ ତୁମମାନଙ୍କ ପ୍ରତି ସଦା କରୁଣାମୟ ।

وَمَنْ يَّفْعَلْ ذٰلِكَ عُدْوَانًا وَّظُلْمًا فَسَوْفَ نُصْلِيْهِ نَارًا ۭ وَكَانَ ذٰلِكَ عَلَى اللّٰهِ يَسِيْرًا ﴿٣١﴾

୩୧. ଏବଂ ଯେଉଁ ବ୍ୟକ୍ତି ଅନ୍ୟାୟ ଓ ଅତ୍ୟାଚାରର ଅଭ୍ୟାସ ଯୋଗୁଁ ଏହା (ଅର୍ଥାତ୍ ଅନ୍ୟର ଧନ ଆତ୍ମସାତ୍) କରିବ, ଆମେ ନିଶ୍ଚୟ ତାହାକୁ (ନରକ) ଅଗ୍ନିରେ ନିକ୍ଷେପ କରିବୁ ; ଏବଂ ଏହା ଅଲ୍ଲାହଙ୍କ ପକ୍ଷରେ ଅତି ସହଜ ।

୧. ଏହି ଆୟତରେ ତିନିଗୋଟି ଗୁରୁତ୍ୱପୂର୍ଣ୍ଣ ନୀତି ବର୍ଣ୍ଣିତ ହୋଇଛି: (କ) ଦାସୀମାନଙ୍କ ସହିତ ଯୌନ ସମ୍ପର୍କ ସ୍ଥାପନ କରିବା ପୂର୍ବରୁ ସେମାନଙ୍କୁ ବିବାହ କରିବାକୁ ହେବ, (ଖ) ସେମାନେ ବ୍ୟଭିଚାରିଣୀ ହେଲେ ସ୍ୱାଧୀନା ମହିଳାଙ୍କ ପାଇଁ ଧାର୍ଯ୍ୟ କରାଯାଇଥିବା ଶାସ୍ତିର ଅଧା ପାଇବେ । ଉଦାହରଣ ସ୍ୱରୂପ ଏଠାରେ ସ୍ୱାଧୀନା ମହିଳାଙ୍କ ପାଇଁ ଶହେଥର କୋରଡ଼ାମାଡ଼ ଖାଇବାକୁ ଥିବାରୁ ଦାସୀକୁ ଶାସ୍ତି ଦେବାବେଳେ ୫୦ ଥର କୋରଡ଼ାରେ ପିଟିବାକୁ ହେବ । ଯେଉଁମାନେ ବ୍ୟଭିଚାର ପାଇଁ ଶିଳାଘାତ ଦ୍ୱାରା ମୃତ୍ୟୁଦଣ୍ଡ ନିର୍ଦ୍ଦିଷ୍ଟ କରାଯାଇଥିବା କହନ୍ତି ସେମାନେ ନିଃସନ୍ଦେହରେ ଏକ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇଛନ୍ତି କାରଣ କୌଣସି ଦାସୀ କ୍ଷେତ୍ରରେ ଏହି ଶାସ୍ତିକୁ ଦୁଇଭାଗ କରି ହେବନାହିଁ, (ଗ) ବିବାହ କଲେ ମଧ୍ୟ ଜଣେ ଦାସୀ-ପତ୍ନୀର ମର୍ଯ୍ୟାଦା ଜଣେ ସ୍ୱାଧୀନା ପତ୍ନୀଙ୍କ ତୁଳନାରେ କମ୍, କାରଣ ଇସଲାମ ବିରୁଦ୍ଧ ଯୁଦ୍ଧରେ ଅଂଶ ଗ୍ରହଣ କରି ସେ ନିଜେ ନିଜର ମର୍ଯ୍ୟାଦାକୁ ଜଳାଞ୍ଜଳି ଦେଇଛି ।

କେବଳ କେତେକ ବିଶେଷ ପରିସ୍ଥିତିରେ ଦାସୀମାନଙ୍କ ସହିତ ବିବାହ କରାଯାଇପାରେ । ଏହା ମନେରଖିବାକୁ ହେବ ଯେ ସେମାନେ ଅନ୍ୟ ଧର୍ମାବଲମ୍ବୀ ଓ ଅନ୍ୟ ଦେଶର ହୋଇଥିବାରୁ ମତଭେଦ ଘଟିବାର ସମ୍ଭାବନା ଅଛି । ସୁତରାଂ ନିଜ ଧର୍ମର ଓ ନିଜ ଦେଶର ସ୍ୱାଧୀନା ମହିଳାଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ ହେବା ସର୍ବଥା ବାଞ୍ଛନୀୟ ।

إِنْ تَجْتَنِبُوا كَبَائِرَ مَا تُنْهَوْنَ عَنْهُ نُكَفِّرْ عَنْكُمْ سَيِّئَاتِكُمْ وَنُدْخِلْكُمْ مُدْخَلًا كَرِيمًا ﴿٣٢﴾

୩୨. ଯେଉଁ ଯେଉଁ ବିଷୟରେ ତୁମମାନଙ୍କୁ ନିଷେଧ କରାଯାଉଅଛି, ଯଦି ତୁମେମାନେ ତନ୍ମଧ୍ୟରୁ ବଡ଼ (ବଡ଼ ବିଷୟ)ରୁ ଦୂରେଇ ରହିବ, ତେବେ ଆମେ ତୁମମାନଙ୍କର ଦୋଷତ୍ରୁଟିକୁ ତୁମମାନଙ୍କ ଠାରୁ ଦୂର କରିଦେବୁ ; ଏବଂ ତୁମମାନଙ୍କୁ ଏକ ଗୌରବମୟ ସ୍ଥାନରେ ପ୍ରବେଶ କରାଇବୁ ।

وَلَا تَتَمَنَّوْا مَا فَضَّلَ اللَّهُ بِهِ بَعْضَكُمْ عَلَىٰ بَعْضٍ ۚ لِلرِّجَالِ نَصِيبٌ مِمَّا اكْتَسَبُوا ۖ وَلِلنِّسَاءِ نَصِيبٌ مِمَّا اكْتَسَبْنَ ۚ وَاسْأَلُوا اللَّهَ مِنْ فَضْلِهِ ۗ إِنَّ اللَّهَ كَانَ بِكُلِّ شَيْءٍ عَلِيمًا ﴿٣٣﴾

୩୩. ଏବଂ ଯାହା ଦ୍ୱାରା ଅଲ୍ଲାହ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ (କେତେକଙ୍କ) ଉପରେ ଶ୍ରେଷ୍ଠତା ପ୍ରଦାନ କରିଛନ୍ତି, ତୁମେମାନେ ତାହାର କାମନା କର ନାହିଁ ; ଯାହାକିଛି ପୁରୁଷମାନେ ଉପାର୍ଜନ କରିଛନ୍ତି ସେଥିରେ ସେମାନଙ୍କର ଅଂଶ ଅଛି, ଏବଂ ଯାହାକିଛି ନାରୀମାନେ ଉପାର୍ଜନ କରିଛନ୍ତି ସେଥିରେ ସେମାନଙ୍କର ଅଂଶ ଅଛି ; ଏବଂ ତୁମେମାନେ ଅଲ୍ଲାହଙ୍କଠାରୁ (ହିଁ) କୃପା ଭିକ୍ଷା କର ; ବାସ୍ତବିକ ଅଲ୍ଲାହ ସକଳ ବିଷୟକୁ ଭଲ ଭାବରେ ଜାଣନ୍ତି ।

وَلِكُلٍّ جَعَلْنَا مَوَالِيَ مِمَّا تَرَكَ الْوَالِدَانِ وَالْأَقْرَبُونَ ۚ وَالَّذِينَ عَقَدَتْ أَيْمَانُكُمْ فَآتُوهُمْ نَصِيبَهُمْ ۚ إِنَّ اللَّهَ كَانَ عَلَىٰ كُلِّ شَيْءٍ شَهِيدًا ﴿٣٤﴾ ع

୩୪. ଏବଂ ଆମେ ପ୍ରତ୍ୟେକ (ବ୍ୟକ୍ତି) ପାଇଁ ତା'ର ଛାଡ଼ି ଯାଇଥିବା ସମ୍ପତ୍ତି ସମ୍ବନ୍ଧରେ ଦାୟାଦ ନିଯୁକ୍ତ କରିଅଛୁ, (ସେ ଦାୟାଦ ହେଉଛନ୍ତି) ମାତା, ପିତା ଏବଂ ନିକଟ ସମ୍ପର୍କୀୟମାନେ ଓ ସେମାନେ (ମଧ୍ୟ), ଯେଉଁମାନଙ୍କ ସହିତ ତୁମେମାନେ ଦୃଢ଼ ଅଙ୍ଗୀକାର କରିଅଛ (ଅର୍ଥାତ୍ ପତ୍ନୀମାନେ ବା ପତି) ; ସୁତରାଂ ସେମାନଙ୍କୁ ସେମାନଙ୍କର ନିର୍ଦ୍ଦିଷ୍ଟ ଭାଗ ପ୍ରଦାନ କର ଏବଂ ଅଲ୍ଲାହ ପ୍ରତ୍ୟେକ ବିଷୟର ତତ୍ତ୍ୱାବଧାରକ ଅଟନ୍ତି ।

---

୧. ଏହି ଆୟତ ସମ୍ବନ୍ଧରେ କେତେକ ଟୀକାକାର ମତବ୍ୟକ୍ତ କରନ୍ତି ଯେ 'ଅକଦତ୍ ଐମାନୋକୁମ୍' ଶବ୍ଦାବଳୀରେ ଏପରି ବନ୍ଧୁମାନଙ୍କ ପ୍ରତି ସଙ୍କେତ ଦିଆଯାଉଛି ଯେଉଁମାନଙ୍କୁ ଶପଥ ମାଧ୍ୟମରେ ନିଜ ଭାଇ ଭାବରେ ସ୍ୱୀକାର କରାଯାଇଛି । ସେମାନେ ଆଦ୍ୟରେ ଦାୟାଦ ହେଉଥିଲେ, କିନ୍ତୁ ପରେ ହଜରତ ମହମ୍ମଦ ସେମାନଙ୍କୁ ଦାୟାଦର ପରିସର ମଧ୍ୟରୁ ବହିଷ୍କାର କରିଦେଲେ । କିନ୍ତୁ ଏହି ବ୍ୟାଖ୍ୟା ଯଥାର୍ଥ ନୁହେଁ କାରଣ ଏହି ଆୟତରେ 'ଅକଦତ୍ ଐମାନୋକୁମ୍' ଅର୍ନ୍ତଗତ ଲୋକମାନେ ଦାୟାଦ ଭାବରେ ସ୍ୱୀକୃତ, ସୁତରାଂ ନିରସନର ପ୍ରଶ୍ନ ଉଠୁ ନାହିଁ । ଯଦି ସେପରି ଟୀକାକାରମାନଙ୍କ ମନ୍ତବ୍ୟକୁ ଗ୍ରହଣ କରିବାକୁ ହେବ ତେବେ ଏଭଳି ଅର୍ଥ କରିବାକୁ ହେବ ଯେ ଏହି ଆୟତ ମାଧ୍ୟମରେ ସେମାନଙ୍କୁ ଦାୟାଦ ଭାବେ ସ୍ୱୀକାର କରାଯାଇଥିଲା କିନ୍ତୁ ହଦିସରେ ସେମାନେ ଦାୟାଦ ନୁହନ୍ତି ବୋଲି ବର୍ଣ୍ଣନା କରାଗଲା ଅର୍ଥାତ୍ ହଦିସ ପବିତ୍ର କୋରାନକୁ ନିରସିତ କରୁଅଛି, ମାତ୍ର ଏ ବ୍ୟାଖ୍ୟା ଅଧିକାଂଶ ବ୍ୟାଖ୍ୟାକାରଙ୍କ ନିକଟରେ ଯଥାର୍ଥ ନୁହେଁ । ଅତଏବ ଆମର ବ୍ୟାଖ୍ୟା ହିଁ ଶୁଦ୍ଧ ଅର୍ଥାତ୍ ଆଲୋଚ୍ୟ ଶବ୍ଦାବଳୀର ପରିସର ମଧ୍ୟରେ ଅଛନ୍ତି ପତ୍ନୀମାନେ ଓ ପତି ତଥା ସେମାନଙ୍କର ଦାୟାଦ ଏବଂ ଏ ଯାବତ୍ ସେହିମାନେ ହିଁ ଦାୟାଦ ରୂପେ ଗଣ୍ୟ ହେଉଛନ୍ତି । ଏହି ବ୍ୟାଖ୍ୟା ଦୃଷ୍ଟିରୁ ନିରସନକାରୀ ବା ନିରସିତ ଆୟତର ପ୍ରଶ୍ନ ହିଁ ଉଠୁ ନାହିଁ ।

ରୁ : ୬

୩୫. ପୁରୁଷମାନେ ନାରୀମାନଙ୍କର ଅଭିଭାବକ (ନିରୂପିତ) ହୋଇଛନ୍ତି କାରଣ ଅଲ୍ଲାହ୍ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତକଙ୍କ ଉପରେ ଶ୍ରେଷ୍ଠତା ପ୍ରଦାନ କରିଛନ୍ତି ଓ ସେମାନେ (ନାରୀମାନଙ୍କ ପାଇଁ) ନିଜର ଧନକୁ ବ୍ୟୟ କରିଛନ୍ତି ; ସୁତରାଂ ପୁଣ୍ୟବତୀ ନାରୀମାନେ ଆଜ୍ଞାପାଳନ-କାରିଣୀ ଅଟନ୍ତି ଓ ଅଲ୍ଲାହ୍‌ଙ୍କ ସାହାଯ୍ୟକ୍ରମେ (ସ୍ୱାମୀମାନଙ୍କର) ଗୋପନୀୟ ବିଷୟର ସୁରକ୍ଷାକାରିଣୀ ଅଟନ୍ତି ଏବଂ ଯେଉଁମାନଙ୍କର ଅବଜ୍ଞା[1] ସମ୍ପର୍କରେ ତୁମେମାନେ ଆଶଙ୍କା କର (ତୁମେ) ସେମାନଙ୍କୁ ଉପଦେଶ ଦିଅ ଓ ଶୟନ କକ୍ଷରେ ସେମାନଙ୍କୁ ଏକାକିନୀ ଛାଡିଦିଅ, ଏବଂ ସେମାନଙ୍କୁ (ମୃଦୁ) ପ୍ରହାର କର ; ତତ୍‌ପରେ ଯଦି ସେମାନେ ତୁମମାନଙ୍କର ଆଜ୍ଞାପାଳନ କରନ୍ତି ତେବେ ସେମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନାହିଁ ; ବାସ୍ତବରେ ଅଲ୍ଲାହ୍ ହିଁ ମହୀୟାନ୍, ଅତ୍ୟୁଚ୍ଚ(ଓ)ମହାନ୍ ।

اَلرِّجَالُ قَوّٰمُوْنَ عَلَى النِّسَآءِ بِمَا فَضَّلَ اللّٰهُ بَعْضَهُمْ عَلٰى بَعْضٍ وَّ بِمَاۤ اَنْفَقُوْا مِنْ اَمْوَالِهِمْ ؕ فَالصّٰلِحٰتُ قٰنِتٰتٌ حٰفِظٰتٌ لِّلْغَيْبِ بِمَا حَفِظَ اللّٰهُ ؕ وَالّٰتِيْ تَخَافُوْنَ نُشُوْزَهُنَّ فَعِظُوْهُنَّ وَاهْجُرُوْهُنَّ فِي الْمَضَاجِعِ وَاضْرِبُوْهُنَّ ۚ فَاِنْ اَطَعْنَكُمْ فَلَا تَبْغُوْا عَلَيْهِنَّ سَبِيْلًا ؕ اِنَّ اللّٰهَ كَانَ عَلِيًّا كَبِيْرًا ﴿۳۵﴾

୩୬. ଏବଂ ଯଦି ତୁମେମାନେ ସେ ଦୁଇଜଣ (ଅର୍ଥାତ୍ ପତି ଓ ପତ୍ନୀ)ଙ୍କ ମଧ୍ୟରେ କୌଣସି ମନାନ୍ତର ଘଟିବାର ଆଶଙ୍କା କର ତା'ହେଲେ ପତିର ଆତ୍ମୀୟମାନଙ୍କ ମଧ୍ୟରୁ ଜଣେ ମଧ୍ୟସ୍ଥି ଏବଂ ପତ୍ନୀର ଆତ୍ମୀୟମାନଙ୍କ ମଧ୍ୟରୁ ଜଣେ ମଧ୍ୟସ୍ଥି ନିଯୁକ୍ତ କର ; ଯଦି ସେ ଦୁଇଜଣ (ମଧ୍ୟସ୍ଥି) ଆପୋଷ ମିଳାମିଶା କରାଇବାର ଇଚ୍ଛା କରନ୍ତି, ତେବେ ଅଲ୍ଲାହ୍ ସେ ଦୁଇଜଣ (ଅର୍ଥାତ୍ ପତି ଓ ପତ୍ନୀ)ଙ୍କ ମଧ୍ୟରେ ମିଳାମିଶା କରାଇ ଦେବେ ; ବାସ୍ତବରେ ଅଲ୍ଲାହ୍ ହିଁ ସର୍ବଜ୍ଞ(ଓ)ସର୍ବବିଦିତ ।

وَاِنْ خِفْتُمْ شِقَاقَ بَيْنِهِمَا فَابْعَثُوْا حَكَمًا مِّنْ اَهْلِهٖ وَحَكَمًا مِّنْ اَهْلِهَا ۚ اِنْ يُّرِيْدَاۤ اِصْلَاحًا يُّوَفِّقِ اللّٰهُ بَيْنَهُمَا ؕ اِنَّ اللّٰهَ كَانَ عَلِيْمًا خَبِيْرًا ﴿۳۶﴾

୩୭. ଏବଂ ତୁମେମାନେ ଅଲ୍ଲାହ୍‌ଙ୍କର ଉପାସନା କର ଏବଂ କୌଣସି ବସ୍ତୁକୁ ତାହାଙ୍କ ସହିତ ସମକକ୍ଷ କର ନାହିଁ ; ଏବଂ ପିତାମାତାଙ୍କ ପ୍ରତି ଓ ନିକଟ ସମ୍ପର୍କୀୟମାନଙ୍କ ପ୍ରତି ଓ ଅନାଥ-ମାନଙ୍କ ପ୍ରତି ଓ ଦରିଦ୍ରମାନଙ୍କ ପ୍ରତି ଓ ସମ୍ପର୍କୀୟ ପଡୋଶୀମାନଙ୍କ ପ୍ରତି ଓ ଅପରିଚିତ ପଡୋଶୀମାନଙ୍କ ପ୍ରତି ଓ ସମୀପବର୍ତ୍ତୀ ବ୍ୟକ୍ତିମାନଙ୍କ ପ୍ରତି ଓ ପଥିକମାନଙ୍କ ପ୍ରତି ଏବଂ ଯେଉଁମାନେ ତୁମମାନଙ୍କର କର୍ତ୍ତୃତ୍ୱାଧୀନ ହୋଇଛନ୍ତି ସେମାନଙ୍କ ପ୍ରତି ସଦୟ ହୁଅ ; ବାସ୍ତବରେ ଅଲ୍ଲାହ୍ ଅହଙ୍କାରୀ ଓ ଆତ୍ମାଭିମାନୀମାନଙ୍କୁ ଆଦୌ ପସନ୍ଦ କରନ୍ତି ନାହିଁ ।

وَاعْبُدُوا اللّٰهَ وَلَا تُشْرِكُوْا بِهٖ شَيْـًٔا وَّبِالْوَالِدَيْنِ اِحْسَانًا وَّبِذِي الْقُرْبٰى وَالْيَتٰمٰى وَالْمَسٰكِيْنِ وَالْجَارِ ذِي الْقُرْبٰى وَالْجَارِ الْجُنُبِ وَالصَّاحِبِ بِالْجَنْۢبِ وَابْنِ السَّبِيْلِ ۙ وَمَا مَلَكَتْ اَيْمَانُكُمْ ؕ اِنَّ اللّٰهَ لَا يُحِبُّ مَنْ كَانَ مُخْتَالًا فَخُوْرَا ۙ﴿۳۷﴾

---

[1] ଏଠାରେ ଅବଜ୍ଞା ଅର୍ଥ ବ୍ୟାଭିଚାର ନୁହେଁ ବରଂ ଏପରି ମନ୍ଦକାର୍ଯ୍ୟ ଯଦ୍ୱାରା ଜଣେ ମହିଳା ନିଜ ପ୍ରତିବେଶୀଙ୍କ ନିକଟରେ ଅପମାନ ବୋଧ କରେ । ତେଣୁ ଏପରି ଶାସ୍ତି ଧାର୍ଯ୍ୟ କରାଯାଇଛି ଯଦ୍ୱାରା ସେ ସର୍ବସାଧାରଣରେ ସ୍ୱଚ୍ଛନ୍ଦରେ ବୁଲି ପାରିବ ନାହିଁ । ଅବଶ୍ୟ, ଯଦି କୌଣସି ପୁରୁଷ ସୀମା ଲଂଘନ କରେ ତେବେ ବିଚାରାଳୟର ଆଶ୍ରୟ ନେବାପାଇଁ ମହିଳାଙ୍କୁ ଅଧିକାର ଦିଆଯାଇଛି ।

୩୮. ଯେଉଁମାନେ (ନିଜେ) କୃପଣତା କରନ୍ତି ଓ (ଅନ୍ୟ) ଲୋକମାନଙ୍କୁ (ମଧ୍ୟ) କୃପଣତା କରିବାକୁ ଉପଦେଶ ଦିଅନ୍ତି ଏବଂ ଅଲ୍ଲାହ୍ ନିଜ କୃପାରୁ ଯାହା କିଛି ସେମାନଙ୍କୁ ଦେଇଛନ୍ତି ତାହାକୁ ଗୋପନ କରନ୍ତି (ଅଲ୍ଲାହ୍ ସେମାନଙ୍କୁ ଆଦୌ ପସନ୍ଦ କରନ୍ତି ନାହିଁ); ଏବଂ ଆମେ ଅବିଶ୍ୱାସକାରୀମାନଙ୍କ ପାଇଁ ଅପମାନଜନକ ଶାସ୍ତି ପ୍ରସ୍ତୁତ କରିଅଛୁ।

الَّذِينَ يَبْخَلُونَ وَيَأْمُرُونَ النَّاسَ بِالْبُخْلِ وَيَكْتُمُونَ مَا آتَاهُمُ اللَّهُ مِن فَضْلِهِ ۗ وَأَعْتَدْنَا لِلْكَافِرِينَ عَذَابًا مُّهِينًا ﴿٣٨﴾

୩୯. ଏବଂ ଯେଉଁମାନେ ଲୋକମାନଙ୍କୁ ଦେଖାଇବା ଉଦ୍ଦେଶ୍ୟରେ ନିଜର ଧନ ବ୍ୟୟ କରନ୍ତି ଏବଂ ଅଲ୍ଲାହ୍‌ଙ୍କ ଉପରେ ଓ ପରକାଳ ଉପରେ ବିଶ୍ୱାସ ସ୍ଥାପନ କରନ୍ତି ନାହିଁ (ସେମାନଙ୍କର ପରିଣାମ ମନ୍ଦ ହେବ); ସଇତାନ ଯାହାର ସାଥୀ (ତାହାର ମନେ ରଖିବା ଉଚିତ ଯେ) ସେ ଅତ୍ୟନ୍ତ ଖରାପ ସାଥୀ।

وَالَّذِينَ يُنفِقُونَ أَمْوَالَهُمْ رِئَاءَ النَّاسِ وَلَا يُؤْمِنُونَ بِاللَّهِ وَلَا بِالْيَوْمِ الْآخِرِ ۗ وَمَن يَكُنِ الشَّيْطَانُ لَهُ قَرِينًا فَسَاءَ قَرِينًا ﴿٣٩﴾

୪୦. ଏବଂ ଯଦି ସେମାନେ ଅଲ୍ଲାହ୍‌ଙ୍କ ଉପରେ ଓ ପରକାଳରେ ବିଶ୍ୱାସ ସ୍ଥାପନ କରିଥାନ୍ତେ ଏବଂ ଅଲ୍ଲାହ୍ ସେମାନଙ୍କୁ ଯାହା କିଛି ଦେଇଛନ୍ତି ସେଥିରୁ (ତାହାଙ୍କ ଉଦ୍ଦେଶ୍ୟରେ) ବ୍ୟୟ କରିଥାନ୍ତେ ତେବେ ସେମାନଙ୍କର କଣ (କ୍ଷତି) ହୋଇଥାନ୍ତା ? ଏବଂ ଅଲ୍ଲାହ୍ ସେମାନଙ୍କୁ ଭଲ ଭାବରେ ଜାଣନ୍ତି।

وَمَاذَا عَلَيْهِمْ لَوْ آمَنُوا بِاللَّهِ وَالْيَوْمِ الْآخِرِ وَأَنفَقُوا مِمَّا رَزَقَهُمُ اللَّهُ ۚ وَكَانَ اللَّهُ بِهِمْ عَلِيمًا ﴿٤٠﴾

୪୧. ଅଲ୍ଲାହ୍ କେବେ ହେଁ ଅଣୁମାତ୍ର ଅନ୍ୟାୟ କରିବେ ନାହିଁ ଏବଂ ଯଦି କାହାରି କୌଣସି ଏକ ପୁଣ୍ୟ ଥାଏ ତେବେ ସେ ତାହାକୁ ବହୁଗୁଣିତ କରିବେ ଏବଂ ନିଜ ତରଫରୁ (ମଧ୍ୟ) ମହାନ୍ ପୁରସ୍କାର ଦେବେ।

إِنَّ اللَّهَ لَا يَظْلِمُ مِثْقَالَ ذَرَّةٍ ۖ وَإِن تَكُ حَسَنَةً يُضَاعِفْهَا وَيُؤْتِ مِن لَّدُنْهُ أَجْرًا عَظِيمًا ﴿٤١﴾

୪୨. ଯେତେବେଳେ ଆମେ ପ୍ରତ୍ୟେକ ଗୋଷ୍ଠୀରୁ ଜଣେ ଲେଖାଁଏ ସାକ୍ଷୀ ଆଣିବୁ ଏବଂ ସେମାନଙ୍କ ବିରୁଦ୍ଧରେ ତୁମକୁ ସାକ୍ଷୀ ସ୍ୱରୂପ ଆଣିବୁ ସେତେବେଳେ ସେମାନଙ୍କର ଅବସ୍ଥା କଣ ହେବ ?

فَكَيْفَ إِذَا جِئْنَا مِن كُلِّ أُمَّةٍ بِشَهِيدٍ وَجِئْنَا بِكَ عَلَىٰ هَٰؤُلَاءِ شَهِيدًا ﴿٤٢﴾

୪୩. ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ରସୁଲଙ୍କ ଆଦେଶ ଅମାନ୍ୟ କରିଛନ୍ତି, (ସେମାନେ) ସେଦିନ ଇଚ୍ଛା କରିବେ ଯେ ସେମାନଙ୍କୁ ଭୂମିରେ ପୋତି ଦିଆଯାଆନ୍ତା କି ! ଏବଂ ସେମାନେ ଅଲ୍ଲାହ୍‌ଙ୍କଠାରୁ କୌଣସି ବିଷୟ ଗୋପନ ରଖି ପାରିବେ ନାହିଁ।

يَوْمَئِذٍ يَوَدُّ الَّذِينَ كَفَرُوا وَعَصَوُا الرَّسُولَ لَوْ تُسَوَّىٰ بِهِمُ الْأَرْضُ وَلَا يَكْتُمُونَ اللَّهَ حَدِيثًا ﴿٤٣﴾

ରୁ : ୭

୪୪. ହେ ବିଶ୍ୱାସକାରୀମାନେ ! ଯେବେ ତୁମମାନଙ୍କର ଚେତନା ନଥିବ ତେବେ (ତୁମେମାନେ ସେ ପର୍ଯ୍ୟନ୍ତ) ନମାଜର ନିକଟବର୍ତ୍ତୀ ହୁଅ ନାହିଁ (ଅର୍ଥାତ୍ ନମାଜ ପାଠ କର ନାହିଁ) ଯେ ପର୍ଯ୍ୟନ୍ତ ତୁମେମାନେ ଯାହା କହୁଅଛ ତାହା (ନ) ବୁଝି ପାରୁଅଛ ; ଏବଂ ସହବାସ ପର ଅଶୌଚ ଥିବା ଅବସ୍ଥାରେ ମଧ୍ୟ (ନମାଜ ପାଠ କର ନାହିଁ) ,ଯେ ପର୍ଯ୍ୟନ୍ତ ସ୍ନାନ (ନ) କରିଛ, ଅବଶ୍ୟ ଏହା ବ୍ୟତିରେକେ ଯେ ତୁମେମାନେ ପଥଗାମୀ ଥିବ ; ଏବଂ ଯଦି ତୁମେମାନେ ପୀଡିତ ଥିବ ବା ଯାତ୍ରା କରୁଥିବ (ଏବଂ ତୁମେମାନେ ସହବାସ-ପର ଅଶୌଚ ଅବସ୍ଥାରେ ଥିବ, ତେବେ ତୟମ୍ମୁମ୍ କରିନିଅ) ; ଅଥବା ଯଦି ତୁମମାନଙ୍କ ମଧ୍ୟରୁ କେହି ମଳତ୍ୟାଗ କରି ଆସିଥିବ (ଓ ତାହାକୁ ପାଣି ନମିଳିବ) ବା ତୁମେମାନେ ପତ୍ନୀ ସହିତ ସହବାସ କରିଥିବ (ଅର୍ଥାତ୍ ଅଶୌଚ ହୋଇଥିବ) ଏବଂ ତୁମମାନଙ୍କୁ ପାଣି ନ ମିଳିବ ତେବେ ବିଶୁଦ୍ଧ ମୃତ୍ତିକା ନେଇ ତାହା ଦ୍ୱାରା[୧] ନିଜର ମୁଖ ମଣ୍ଡଳ ଓ ହସ୍ତଦ୍ୱୟକୁ ଘଷି ଦେବ (ଅର୍ଥାତ୍ ତୟମ୍ମୁମ୍ କରିବ) ବାସ୍ତବରେ ଅଲ୍ଲାହ ହିଁ ମାର୍ଜନାକାରୀ(ଓ)କ୍ଷମାଶୀଳ ।

يَاَيُّهَا الَّذِيْنَ اٰمَنُوْا لَا تَقْرَبُوا الصَّلٰوةَ وَاَنْتُمْ سُكٰرٰى حَتّٰى تَعْلَمُوْا مَا تَقُوْلُوْنَ وَلَا جُنُبًا اِلَّا عَابِرِيْ سَبِيْلٍ حَتّٰى تَغْتَسِلُوْا ۚ وَاِنْ كُنْتُمْ مَّرْضٰٓى اَوْ عَلٰى سَفَرٍ اَوْ جَآءَ اَحَدٌ مِّنْكُمْ مِّنَ الْغَآئِطِ اَوْ لٰمَسْتُمُ النِّسَآءَ فَلَمْ تَجِدُوْا مَآءً فَتَيَمَّمُوْا صَعِيْدًا طَيِّبًا فَامْسَحُوْا بِوُجُوْهِكُمْ وَاَيْدِيْكُمْ ۗ اِنَّ اللّٰهَ كَانَ عَفُوًّا غَفُوْرًا ﴿٤٣﴾

୪୫. ଯେଉଁମାନଙ୍କୁ ଧର୍ମଗ୍ରନ୍ଥର କିଛି ଅଂଶ ପ୍ରଦାନ କରାଯାଇଥିଲା, କ'ଣ ତୁମକୁ ସେମାନଙ୍କ ଅବସ୍ଥା ଜଣାନାହିଁ ? ସେମାନେ ଭ୍ରାନ୍ତ ପଥ ଅନୁସରଣ କରୁଛନ୍ତି ଏବଂ ଇଚ୍ଛା କରୁଛନ୍ତି ଯେ ତୁମେମାନେ ମଧ୍ୟ ପଥଭ୍ରଷ୍ଟ ହୁଅ ।

اَلَمْ تَرَ اِلَى الَّذِيْنَ اُوْتُوْا نَصِيْبًا مِّنَ الْكِتٰبِ يَشْتَرُوْنَ الضَّلٰلَةَ وَيُرِيْدُوْنَ اَنْ تَضِلُّوا السَّبِيْلَ ﴿٤٤﴾

୪୬. ଏବଂ ଅଲ୍ଲାହ ତୁମମାନଙ୍କ ଶତ୍ରୁମାନଙ୍କୁ (ତୁମମାନଙ୍କ ଅପେକ୍ଷା) ଭଲ ରୂପେ ଜାଣନ୍ତି ; ଏବଂ ଅଲ୍ଲାହ ବନ୍ଧୁ ହିସାବରେ ଯଥେଷ୍ଟ ଏବଂ ଅଲ୍ଲାହ ସାହାଯ୍ୟକାରୀ ହିସାବରେ (ମଧ୍ୟ) ଯଥେଷ୍ଟ ।

وَاللّٰهُ اَعْلَمُ بِاَعْدَآئِكُمْ ۚ وَكَفٰى بِاللّٰهِ وَلِيًّا ۙ وَّكَفٰى بِاللّٰهِ نَصِيْرًا ﴿٤٥﴾

୪୭. ଯେଉଁମାନେ ଇହୁଦୀ ,ସେମାନଙ୍କ ମଧ୍ୟରୁ କେତେକ (ଅଲ୍ଲାହଙ୍କର) ବାଣୀଗୁଡିକୁ ସେଗୁଡିକର ଯଥାସ୍ଥାନରୁ ପରିବର୍ତ୍ତନ କରିଦିଅନ୍ତି, ଏବଂ ସେମାନେ କହନ୍ତି, "ଆମେମାନେ ଶୁଣିଲୁ ଓ ତତ୍‌ସତ୍ତ୍ୱେ ଆମେମାନେ ଅବଜ୍ଞା କଲୁ" ଏବଂ (କହନ୍ତି) "ତୁମେ ଆମମାନଙ୍କର କଥା ଶୁଣ, ତୁମକୁ (ଅଲ୍ଲାହଙ୍କ ବାଣୀ) କଦାପି

مِنَ الَّذِيْنَ هَادُوْا يُحَرِّفُوْنَ الْكَلِمَ عَنْ مَّوَاضِعِهٖ وَيَقُوْلُوْنَ سَمِعْنَا وَعَصَيْنَا وَاسْمَعْ غَيْرَ مُسْمَعٍ وَّ

[୧] ନମାଜ ଇତ୍ୟାଦି ଉପାସନା କରିବା ପୂର୍ବରୁ 'ଓଜୁ' କରାଯାଏ । ସ୍ଥଳ ବିଶେଷରେ ଓଜୁ ବଦଳରେ 'ତୟମ୍ମୁମ' କରାଯାଏ (ଓଜୁ ଓ ତୟମ୍ମୁମ ଶବ୍ଦଗୁଡ଼ିକ ସକାଶେ ପରିଭାଷା ଦ୍ରଷ୍ଟବ୍ୟ) । ଏହି ଆୟତ୍‌ରେ ବର୍ଣ୍ଣନା କରାଯାଇଛି ଯେ ଜଣେ ଲୋକର ହିତାହିତ ଜ୍ଞାନ ନ ଥିବାବେଳେ ଯେପରି ସେ ନମାଜ ପଢିବା ଉଚିତ ନୁହେଁ ସେହିପରି ଅଶୁଦ୍ଧ ଥିବାବେଳେ ନମାଜ ପଢିବା ଉଚିତ ନୁହେଁ । ସ୍ନାନ କରି ନିଜ ଶରୀରକୁ ଶୁଦ୍ଧ କଲାପରେ ଯାଇ ଉପାସନା କରିବାକୁ ହେବ । ଯୌନସଙ୍ଗମ ପରେ ଶରୀର କଳୁଷିତ ହୁଏ । ସୁତରାଂ ସ୍ନାନ କଲେ ହି ଉପାସନା ସକାଶେ ଆବଶ୍ୟକ ହେଉଥିବା ପବିତ୍ରତା, ପ୍ରଫୁଲ୍ଲତା ଓ ଉତ୍ସାହ ହାସଲ ହୋଇପାରିବ । ଅବଶ୍ୟ ଭ୍ରମଣ ବା ଯାତ୍ରା କରୁଥିବାବେଳେ ସ୍ନାନ ଅନିବାର୍ଯ୍ୟ ନୁହେଁ, ତେଣୁ ତୟମ୍ମୁମ କରାଯାଇପାରେ ।

رَاعِنَا لَيًّا بِأَلْسِنَتِهِمْ وَطَعْنًا فِي الدِّينِ ۚ وَلَوْ أَنَّهُمْ قَالُوا سَمِعْنَا وَأَطَعْنَا وَاسْمَعْ وَانْظُرْنَا لَكَانَ خَيْرًا لَهُمْ وَأَقْوَمَ وَلَٰكِنْ لَعَنَهُمُ اللَّهُ بِكُفْرِهِمْ فَلَا يُؤْمِنُونَ إِلَّا قَلِيلًا ﴿٤٧﴾

ଶୁଣାଇ ଦିଆ ନ ଯାଉ, ଏବଂ ଆମମାନଙ୍କ କଥା ପ୍ରତି ଧ୍ୟାନ ଦିଅ।'' ସେମାନେ ମିଥ୍ୟା କହି ଏବଂ ଧର୍ମକୁ ଆକ୍ଷେପ କରି ଏହା କହନ୍ତି ; ଯଦି ସେମାନେ ଏପରି କହିଥାଆନ୍ତେ ଯେ ଆମେମାନେ ଶୁଣିଲୁ ଏବଂ ଗ୍ରହଣ କଲୁ, (ଏବଂ କହିଥାଆନ୍ତେ ଯେ) ଶୁଣ, ଏବଂ ଆମମାନଙ୍କ ପ୍ରତି (କୃପା) ଦୃଷ୍ଟି ଦିଅ, ତାହାହେଲେ ଏହା ସେମାନଙ୍କ ପାଇଁ ଉତ୍‌କୃଷ୍ଟତର ଓ ଅଧିକ ଶୁଦ୍ଧ ହୋଇଥାଆନ୍ତା, କିନ୍ତୁ ସେମାନଙ୍କ ଅବିଶ୍ୱାସ ହେତୁ (ସେମାନେ କେବଳ ଏଥିରୁ ବଞ୍ଚିତ ହୋଇ ନାହାନ୍ତି ବରଂ) ଅଲ୍ଲାହ ସେମାନଙ୍କୁ ଅଭିଶପ୍ତ କରିଛନ୍ତି, ଏଥିଯୋଗୁଁ ସେମାନେ ବିଶ୍ୱାସ କରୁନାହାନ୍ତି ।

يَا أَيُّهَا الَّذِينَ أُوتُوا الْكِتَابَ آمِنُوا بِمَا نَزَّلْنَا مُصَدِّقًا لِمَا مَعَكُمْ مِنْ قَبْلِ أَنْ نَطْمِسَ وُجُوهًا فَنَرُدَّهَا عَلَىٰ أَدْبَارِهَا أَوْ نَلْعَنَهُمْ كَمَا لَعَنَّا أَصْحَابَ السَّبْتِ ۚ وَكَانَ أَمْرُ اللَّهِ مَفْعُولًا ﴿٤٨﴾

୪୮. ହେ ଗ୍ରନ୍ଥାଧାରୀମାନେ ! ଆମେ ତୁମମାନଙ୍କର ବଡ଼ ବଡ଼ ନେତାଙ୍କୁ ଅପମାନିତ କରିବା ଓ ସେମାନଙ୍କୁ ପଳାୟନ କରିବାକୁ ବାଧ୍ୟ କରିବା ପୂର୍ବରୁ କିମ୍ବା ଆମେ ଯେପରି ସବତ୍‌ର (ଅନୁଗାମୀ) ଲୋକମାନଙ୍କୁ ଅଭିଶାପ ଦେଇଥିଲୁ ସେହିପରି ସେମାନଙ୍କୁ (ମଧ୍ୟ) ଅଭିଶାପ ଦେବା ପୂର୍ବରୁ ଏହା (ଅର୍ଥାତ୍ ଏହି ଗ୍ରନ୍ଥ) ପ୍ରତି ବିଶ୍ୱାସ କର ଯାହାକୁ ଆମେ (ସଂପ୍ରତି) ଅବତୀର୍ଣ୍ଣ କରିଅଛୁ (ଓ) ଯାହା ତୁମମାନଙ୍କ ନିକଟରେ (ପୂର୍ବରୁ) ରହିଥିବା (ଅଲ୍ଲାହଙ୍କ) ବାଣୀର ସତ୍ୟତା ସାବ୍ୟସ୍ତକାରୀ ଅଟେ ; ଏବଂ ଅଲ୍ଲାହଙ୍କର କଥା ହିଁ (ନିଶ୍ଚୟ ପୂରଣ) ହେବ ।

إِنَّ اللَّهَ لَا يَغْفِرُ أَنْ يُشْرَكَ بِهِ وَيَغْفِرُ مَا دُونَ ذَٰلِكَ لِمَنْ يَشَاءُ ۚ وَمَنْ يُشْرِكْ بِاللَّهِ فَقَدِ افْتَرَىٰ إِثْمًا عَظِيمًا ﴿٤٩﴾

୪୯. ବାସ୍ତବରେ ଅଲ୍ଲାହ ଅନ୍ୟ କାହାରିକୁ ତାହାଙ୍କ ସହିତ ସମକକ୍ଷ କରାଯିବାକୁ ଆଦୌ କ୍ଷମା ଦେବେ ନାହିଁ; କିନ୍ତୁ ଏହା ଅପେକ୍ଷା ଯାହା (ପାପ) ନ୍ୟୂନତର ହୋଇଥିବ ସେ ଯାହାକୁ ଇଚ୍ଛା କ୍ଷମା ଦେବେ; ଏବଂ ଯେ କେହି ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ସମକକ୍ଷ କରେ (ମନେରଖ) ସେ ବାସ୍ତବରେ ଏକ ମହାପାପ କରେ ।

أَلَمْ تَرَ إِلَى الَّذِينَ يُزَكُّونَ أَنْفُسَهُمْ ۚ بَلِ اللَّهُ يُزَكِّي مَنْ يَشَاءُ وَلَا يُظْلَمُونَ فَتِيلًا ﴿٥٠﴾

୫୦. ଯେଉଁମାନେ ନିଜକୁ ପବିତ୍ର ମନେ କରୁଛନ୍ତି କଅଣ ତୁମଙ୍କୁ ସେମାନଙ୍କ ଅବସ୍ଥା ଜଣା ନାହିଁ ? (ଏପରି କହିବା ଅଧିକାର ସେମାନଙ୍କର ନାହିଁ ବରଂ ଅଲ୍ଲାହ ଯାହାକୁ ପସନ୍ଦ କରନ୍ତି ତାହାକୁ ପବିତ୍ର ସାବ୍ୟସ୍ତ କରାନ୍ତି ; ଏବଂ ସେମାନଙ୍କ ପ୍ରତି ଖଜୁରି ମଞ୍ଜିର ରନ୍ଧ୍ର ସଦୃଶ କ୍ଷୁଦ୍ର ଅନ୍ୟାୟ ମଧ୍ୟ କରାଯିବ ନାହିଁ ।

انْظُرْ كَيْفَ يَفْتَرُونَ عَلَى اللَّهِ الْكَذِبَ ۖ وَكَفَىٰ بِهِ إِثْمًا مُبِينًا ﴿٥١﴾

୫୧. ଦେଖ ! କିପରି ସେମାନେ ଅଲ୍ଲାହଙ୍କ ପ୍ରତି ମିଥ୍ୟା ଆରୋପ କରୁଛନ୍ତି ; ଏବଂ ତାହା ଏକ ପ୍ରକାଶ୍ୟ ପାପରୂପେ ଯଥେଷ୍ଟ ।

ରୁ : ୮

୫୨. ଯେଉଁମାନଙ୍କୁ ଧର୍ମଗ୍ରନ୍ଥର କିଛି ଅଂଶ ପ୍ରଦାନ କରାଯାଇଥିଲା କଅଣ ତୁମଙ୍କୁ ସେମାନଙ୍କ ଅବସ୍ଥା ଜଣାନାହିଁ ? ସେମାନେ ଅଯଥା ବିଷୟ ଉପରେ ଓ ସୀମା-ଲଙ୍ଘନକାରୀମାନଙ୍କ ଉପରେ ବିଶ୍ୱାସ କରନ୍ତି ଏବଂ ଅବିଶ୍ୱାସକାରୀମାନଙ୍କ ସମ୍ବନ୍ଧରେ କହନ୍ତି ଯେ ଏମାନେ ବିଶ୍ୱାସ-କାରୀମାନଙ୍କ ତୁଳନାରେ ଅଧିକ ସତ୍‌ପଥ ପ୍ରାପ୍ତ(ବ୍ୟକ୍ତି) ।

أَلَمْ تَرَ إِلَى الَّذِينَ أُوتُوا نَصِيبًا مِّنَ الْكِتَٰبِ يُؤْمِنُونَ بِالْجِبْتِ وَالطَّٰغُوتِ وَيَقُولُونَ لِلَّذِينَ كَفَرُوا هَٰٓؤُلَآءِ أَهْدَىٰ مِنَ الَّذِينَ ءَامَنُوا سَبِيلًا ﴿٥٢﴾

୫୩. ଅଲ୍ଲାହ ଏହିମାନଙ୍କୁ ହିଁ ଅଭିଶାପ ଦେଇଛନ୍ତି ; ଏବଂ ଅଲ୍ଲାହ ଯାହାକୁ ଅଭିଶପ୍ତ କରନ୍ତି, ତୁମେ ତାହା ପାଇଁ କଦାପି କୌଣସି ସାହାଯ୍ୟକାରୀ ପାଇବ ନାହିଁ ।

أُولَٰٓئِكَ الَّذِينَ لَعَنَهُمُ اللَّهُ ۖ وَمَن يَلْعَنِ اللَّهُ فَلَن تَجِدَ لَهُۥ نَصِيرًا ﴿٥٣﴾

୫୪. କଅଣ ରାଜ୍ୟ ଶାସନରେ ସେମାନଙ୍କର କୌଣସି ଭାଗ ଅଛି ? ତାହାହେଲେ ସେମାନେ ଲୋକମାନଙ୍କୁ ଖଜୁରି ମଞ୍ଜିର ରନ୍ଧ୍ର ସଦୃଶ (କ୍ଷୁଦ୍ରାଂଶ) ମଧ୍ୟ ଦେବେ ନାହିଁ ।

أَمْ لَهُمْ نَصِيبٌ مِّنَ الْمُلْكِ فَإِذًا لَّا يُؤْتُونَ النَّاسَ نَقِيرًا ﴿٥٤﴾

୫୫. ତେବେ କଅଣ ସେମାନେ ଲୋକମାନଙ୍କ ପ୍ରତି ଏଥିଯୋଗୁଁ ଈର୍ଷା କରୁଅଛନ୍ତି ଯେ ସେମାନଙ୍କୁ ଅଲ୍ଲାହ ସ୍ୱକୃପାରୁ ଦାନ କରିଛନ୍ତି ? (ଯଦି ସେପରି ହୋଇଥାଏ ତେବେ) ଆମ୍ଭେ ଇବ୍ରାହିମଙ୍କ ସନ୍ତାନମାନଙ୍କୁ (ମଧ୍ୟ ଧର୍ମ)ଗ୍ରନ୍ଥ ଓ ତତ୍ତ୍ୱଜ୍ଞାନ ପ୍ରଦାନ କରିଥିଲୁ ଏବଂ ସେମାନଙ୍କୁ ଏକ ବିଶାଳ ସାମ୍ରାଜ୍ୟ ମଧ୍ୟ ପ୍ରଦାନ କରିଥିଲୁ ।

أَمْ يَحْسُدُونَ النَّاسَ عَلَىٰ مَآ ءَاتَىٰهُمُ اللَّهُ مِن فَضْلِهِۦ ۖ فَقَدْ ءَاتَيْنَآ ءَالَ إِبْرَٰهِيمَ الْكِتَٰبَ وَالْحِكْمَةَ وَءَاتَيْنَٰهُم مُّلْكًا عَظِيمًا ﴿٥٥﴾

୫୬. ପୁଣି ସେମାନଙ୍କ ମଧ୍ୟରୁ କେତେକ ଏହା (ଅର୍ଥାତ୍ ନୂତନ ଗ୍ରନ୍ଥ) ଉପରେ ବିଶ୍ୱାସ ସ୍ଥାପନ କଲେ ଏବଂ ସେମାନଙ୍କ ମଧ୍ୟରୁ ଅନ୍ୟ କେତେକ ତାହା ପ୍ରତି ବିମୁଖ ହେଲେ ; ଏବଂ ନରକର ଉତ୍ତାପ ଅତ୍ୟନ୍ତ ପ୍ରବଳ ।

فَمِنْهُم مَّنْ ءَامَنَ بِهِۦ وَمِنْهُم مَّن صَدَّ عَنْهُ ۚ وَكَفَىٰ بِجَهَنَّمَ سَعِيرًا ﴿٥٦﴾

୫୭. ଯେଉଁମାନେ ଆମ୍ଭର ନିଦର୍ଶନଗୁଡିକୁ ଅବଜ୍ଞା କରିଛନ୍ତି ଆମ୍ଭେ ସେମାନଙ୍କୁ ଶୀଘ୍ର (ନରକ) ଅଗ୍ନିରେ ନିକ୍ଷେପ କରିବୁ ; ଯେବେ ବି ସେମାନଙ୍କର ଚର୍ମ ଦଗ୍ଧ ହେବ ଆମ୍ଭେ ତତ୍‌ପରିବର୍ତ୍ତେ ସେମାନଙ୍କୁ ନୂତନ ଚର୍ମ ପ୍ରଦାନ କରିବୁ ଯେପରିକି ସେମାନେ ଶାସ୍ତି ଆସ୍ୱାଦନ କରିପାରିବେ ; ଅଲ୍ଲାହ ବାସ୍ତବରେ ପରାକ୍ରମୀ(ଓ)ତତ୍ତ୍ୱଜ୍ଞ ।

إِنَّ الَّذِينَ كَفَرُوا بِـَٔايَٰتِنَا سَوْفَ نُصْلِيهِمْ نَارًا كُلَّمَا نَضِجَتْ جُلُودُهُم بَدَّلْنَٰهُمْ جُلُودًا غَيْرَهَا لِيَذُوقُوا الْعَذَابَ ۗ إِنَّ اللَّهَ كَانَ عَزِيزًا حَكِيمًا ﴿٥٧﴾

وَالَّذِيْنَ اٰمَنُوْا وَعَمِلُوا الصّٰلِحٰتِ سَنُدْخِلُهُمْ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَآ اَبَدًا ؕ لَهُمْ فِيْهَآ اَزْوَاجٌ مُّطَهَّرَةٌ ؗ وَّنُدْخِلُهُمْ ظِلًّا ظَلِيْلًا ﴿۵۸﴾

୫୮. ଏବଂ ଯେଉଁ ଲୋକମାନେ ବିଶ୍ୱାସ ସ୍ଥାପନ କରିଛନ୍ତି ଓ ସତ୍‌କର୍ମ କରିଛନ୍ତି ଆମେ ସେମାନଙ୍କୁ ନିଶ୍ଚୟ ଏପରି ଉଦ୍ୟାନରେ ପ୍ରବେଶ କରାଇବୁ ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଅଛି ; ସେଠାରେ ସେମାନେ ସର୍ବଦା ରହିଥିବେ, ସେଠାରେ ସେମାନଙ୍କ ପାଇଁ ପବିତ୍ର (ପତି ବା) ପତ୍ନୀ ଥିବେ ; ଏବଂ ଆମେ ସେମାନଙ୍କୁ ଘନ ଛାୟାରେ ବାସ କରିବା ପାଇଁ ପ୍ରବେଶ କରାଇବୁ ।

اِنَّ اللّٰهَ يَاْمُرُكُمْ اَنْ تُؤَدُّوا الْاَمٰنٰتِ اِلٰٓى اَهْلِهَا ۙ وَاِذَا حَكَمْتُمْ بَيْنَ النَّاسِ اَنْ تَحْكُمُوْا بِالْعَدْلِ ؕ اِنَّ اللّٰهَ نِعِمَّا يَعِظُكُمْ بِهٖ ؕ اِنَّ اللّٰهَ كَانَ سَمِيْعًاۢ بَصِيْرًا ﴿۵۹﴾

୫୯. ବାସ୍ତବରେ ଅଲ୍ଲାହ୍ ତୁମମାନଙ୍କୁ ଆଦେଶ ଦେଇଛନ୍ତି ଯେ ତୁମେମାନେ ଅମାନତକୁ ତାହାର ହକ୍‌ଦାର (ବ୍ୟକ୍ତିମାନଙ୍କୁ ଅର୍ପଣ କର ଏବଂ ତୁମେମାନେ ଲୋକମାନଙ୍କ ମଧ୍ୟରେ ନିଷ୍ପତ୍ତି କରିବା ବେଳେ ନ୍ୟାୟସଙ୍ଗତ ଭାବେ ନିଷ୍ପତ୍ତି କର ; ଅଲ୍ଲାହ୍ ଯେଉଁ ବିଷୟରେ ତୁମମାନଙ୍କୁ ଉପଦେଶ ଦେଇଛନ୍ତି ତାହା ବାସ୍ତବିକ ଅତି ଉତ୍ତମ ; ବାସ୍ତବରେ ଅଲ୍ଲାହ୍ ମହାନ୍ ଶ୍ରୋତା (ଓ) ମହାନ୍ ଦ୍ରଷ୍ଟା ।

يٰۤاَيُّهَا الَّذِيْنَ اٰمَنُوْۤا اَطِيْعُوا اللّٰهَ وَاَطِيْعُوا الرَّسُوْلَ وَاُولِى الْاَمْرِ مِنْكُمْ ۚ فَاِنْ تَنَازَعْتُمْ فِيْ شَيْءٍ فَرُدُّوْهُ اِلَى اللّٰهِ وَالرَّسُوْلِ اِنْ كُنْتُمْ تُؤْمِنُوْنَ بِاللّٰهِ وَالْيَوْمِ الْاٰخِرِ ؕ ذٰلِكَ خَيْرٌ وَّاَحْسَنُ تَاْوِيْلًا ﴿۶۰﴾ ع

୬୦. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ୍‌ଙ୍କର ଆଦେଶ ପାଳନ କର ଏବଂ ତାହାଙ୍କ ପ୍ରେରିତ ରସୁଲଙ୍କର ତଥା ତୁମମାନଙ୍କ ମଧ୍ୟରେ ଥିବା କର୍ତ୍ତୃପକ୍ଷଙ୍କର ଆଦେଶ ପାଳନ କର ; ପୁଣି ଯଦି ତୁମେମାନେ କୌଣସି ବିଷୟରେ (କର୍ତ୍ତୃପକ୍ଷଙ୍କ ସହିତ) ଏକମତ ନହୁଅ ତେବେ ଯଦି ତୁମେମାନେ ଅଲ୍ଲାହ୍ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ ସ୍ଥାପନ କରୁଥାଅ ତେବେ ତାହାକୁ ଅଲ୍ଲାହ୍ ଓ ରସୁଲଙ୍କ ପ୍ରତି ପ୍ରତ୍ୟାବର୍ତ୍ତନ କର (ଓ ତାହାଙ୍କ ଆଦେଶାନୁସାରେ ମୀମାଂସା କର) ; ଏହା ଉତ୍‌କୃଷ୍ଟତର ଓ ପରିଣାମ ଦୃଷ୍ଟିରୁ ଅତି ଉତ୍ତମ ।

ରୁ : ୯

اَلَمْ تَرَ اِلَى الَّذِيْنَ يَزْعُمُوْنَ اَنَّهُمْ اٰمَنُوْا بِمَآ اُنْزِلَ اِلَيْكَ وَمَآ اُنْزِلَ مِنْ قَبْلِكَ يُرِيْدُوْنَ اَنْ يَّتَحَاكَمُوْۤا

୬୧. କ'ଣ ତୁମେ ସେମାନଙ୍କ ଅବସ୍ଥା ଦେଖିନାହିଁ ଯେଉଁମାନେ ଦାବି କରନ୍ତି ଯେ ଯାହା (କିଛି) ତୁମପ୍ରତି ଅବତୀର୍ଣ୍ଣ ହୋଇଅଛି ଓ ଯାହା ତୁମ ପୂର୍ବରୁ ଅବତୀର୍ଣ୍ଣ ହୋଇଥିଲା, ସେମାନେ ତହିଁରେ ବିଶ୍ୱାସ କରିଛନ୍ତି ? ଦୁର୍ବୃତ୍ତଙ୍କ[2] ଦ୍ୱାରା ନିଷ୍ପତ୍ତି ନ କରାଇବା ତଥା

[1] ଏଠାରେ ଗଣତନ୍ତ୍ର ଶାସନ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି । ଶାସନ କରିବାର କ୍ଷମତା ବା ଅଧିକାର ଶାସକଙ୍କ ପାଇଁ ଲୋକମାନଙ୍କ ତରଫରୁ ଏକ ନ୍ୟାସ ବା ଅମାନତ ସ୍ୱରୂପ । ଶାସନ କରିବା ପାଇଁ କୌଣସି ବ୍ୟକ୍ତିବିଶେଷ ବା ବଂଶବିଶେଷର ଜନ୍ମଗତ ଅଧିକାର ନାହିଁ । ଇସଲାମ ଧର୍ମ ବଂଶାନୁକ୍ରମିକ ରାଜତ୍ୱକୁ ଆଦୌ ଅନୁମୋଦନ କରୁନାହିଁ ବରଂ ଗଣତନ୍ତ୍ରକୁ ସମର୍ଥନ କରୁଛି । ତେଣୁ ଲୋକପ୍ରତିନିଧିଙ୍କୁ ନିର୍ବାଚନ କଲାବେଳେ ତାହାଙ୍କ ଯୋଗ୍ୟତା ପ୍ରତି ଉପଯୁକ୍ତ ଧ୍ୟାନ ଦେଇ ନିରପେକ୍ଷ ଭାବରେ ନିର୍ବାଚନ କରିବାକୁ ହେବ । ସେହିପରି ନିର୍ବାଚିତ ପ୍ରତିନିଧିଙ୍କୁ ସୂଚାଇ ଦେବାକୁ ଯାଇ କୁହାଯାଇଛି ଯେ ସେମାନେ ସର୍ବଦା ନ୍ୟାୟସଂଗତ ଆଚରଣ ପ୍ରଦର୍ଶନ କରିବେ ଓ କେବେ ହେଁ ପକ୍ଷପାତ ବିଚାର କରିବେ ନାହିଁ, ଏପରିକି ପ୍ରତିପକ୍ଷଙ୍କ ବିରୁଦ୍ଧରେ ମଧ୍ୟ କୌଣସି ଅନ୍ୟାୟ କାର୍ଯ୍ୟ କରିବେ ନାହିଁ ।

[2] ଯେଉଁ ଦୁର୍ବୃତ୍ତମାନେ ଅନ୍ୟଲୋକଙ୍କ ନିଷ୍ପତ୍ତିକୁ ହଜରତ ମହମ୍ମଦଙ୍କ ନିଷ୍ପତ୍ତି ତୁଳନାରେ ଅଧିକ ଉତ୍ତମ ମନେ କରୁଥିଲେ ଏହି ଆୟତରେ ସେହିମାନଙ୍କ କଥା ବର୍ଣ୍ଣନା କରାଯାଇଛି ।

ତାହାଙ୍କ କଥାରେ ନ ଚାଲିବା ପାଇଁ ସେମାନଙ୍କୁ ଆଦେଶ ଦିଆଯିବା ସତ୍ତ୍ୱେ ସେମାନେ ସେମାନଙ୍କ (ଅର୍ଥାତ୍ ଦୁର୍ବୃତ୍ତଙ୍କ) ଦ୍ୱାରା ନିଷ୍ପତ୍ତି କରାଯିବା ଇଚ୍ଛା କରନ୍ତି, କାରଣ ସଇତାନ ସେମାନଙ୍କୁ ବିପଦସଂକୁଳ ଅସତ୍ ପଥକୁ ଠେଲି ଦେବାକୁ ଇଚ୍ଛାକରେ ।

إِلَى الطَّاغُوتِ وَقَدْ أُمِرُوا أَنْ يَكْفُرُوا بِهِ ۖ وَيُرِيدُ الشَّيْطَانُ أَنْ يُضِلَّهُمْ ضَلَالًا بَعِيدًا ﴿٦١﴾

୬୨. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ ଯାହା ଅବତୀର୍ଣ୍ଣ କରିଛନ୍ତି ତାହା ନିକଟକୁ ଓ ରସୁଲଙ୍କ ନିକଟକୁ ଆସ, (ସେତେବେଳେ) ତୁମେ ଦେଖିବାକୁ ପାଇବ ଯେ କପଟ-ବିଶ୍ୱାସୀମାନେ ତୁମ ନିକଟରୁ ଦୂରେଇ ଯାଉଛନ୍ତି ।

وَإِذَا قِيلَ لَهُمْ تَعَالَوْا إِلَىٰ مَا أَنْزَلَ اللَّهُ وَإِلَى الرَّسُولِ رَأَيْتَ الْمُنَافِقِينَ يَصُدُّونَ عَنْكَ صُدُودًا ﴿٦٢﴾

୬୩. ତେବେ ଏପରି କାହିଁକି (ହେଉଛି) ଯେତେବେଳେ ସେମାନଙ୍କ ନିଜ କର୍ମଯୋଗୁଁ ସେମାନଙ୍କ ପ୍ରତି କୌଣସି ବିପତ୍ତି ଆସେ (ସେତେବେଳେ) ସେମାନେ (ଆତଙ୍କିତ ହୋଇ) ଅଲ୍ଲାହଙ୍କ ନାମରେ ଶପଥ ନେଇ ତୁମନିକଟକୁ ଆସନ୍ତି (ଓ କହନ୍ତି) ଯେ ଆମେମାନେ ତ କେବଳ ଉତ୍ତମ ବ୍ୟବହାର ଓ ମିଳାମିଶା କରାଇବାର ଇଚ୍ଛା କରିଥିଲୁ ।

فَكَيْفَ إِذَا أَصَابَتْهُمْ مُصِيبَةٌ بِمَا قَدَّمَتْ أَيْدِيهِمْ ثُمَّ جَاءُوكَ يَحْلِفُونَ بِاللَّهِ إِنْ أَرَدْنَا إِلَّا إِحْسَانًا وَتَوْفِيقًا ﴿٦٣﴾

୬୪. ଏହି ଲୋକମାନଙ୍କ ଅନ୍ତରରେ ଯାହା ଅଛି ଅଲ୍ଲାହ ତାହାକୁ ଭଲରୂପେ ଜାଣନ୍ତି ; ସୁତରାଂ ତୁମେ ସେମାନଙ୍କଠାରୁ ଦୂରେଇ ରହ ଓ ସେମାନଙ୍କୁ ଉପଦେଶ ଦିଅ ଏବଂ ସେମାନଙ୍କୁ ସେମାନଙ୍କ ସମ୍ବନ୍ଧରେ ଫଳପ୍ରଦ କଥା କୁହ ।

أُولَٰئِكَ الَّذِينَ يَعْلَمُ اللَّهُ مَا فِي قُلُوبِهِمْ فَأَعْرِضْ عَنْهُمْ وَعِظْهُمْ وَقُلْ لَهُمْ فِي أَنْفُسِهِمْ قَوْلًا بَلِيغًا ﴿٦٤﴾

୬୫. ଏବଂ ଆମେ ପ୍ରତ୍ୟେକ ରସୁଲଙ୍କୁ କେବଳ ଏଥି ସକାଶେ ପ୍ରେରିତ କରିଅଛୁ ଯେ ଅଲ୍ଲାହଙ୍କ ଆଦେଶ କ୍ରମେ ତାହାଙ୍କର ଆଜ୍ଞାପାଳନ କରି ଏବଂ ସେମାନେ ନିଜ ଜୀବନ ପ୍ରତି ଅତ୍ୟାଚାର କରି ଯେବେ ତୁମ ନିକଟକୁ ଆସିଥାନ୍ତେ ଓ ଅଲ୍ଲାହଙ୍କ ନିକଟରେ କ୍ଷମାଭିକ୍ଷା କରିଥାନ୍ତେ ତଥା ରସୁଲ ମଧ୍ୟ ସେମାନଙ୍କ ପାଇଁ କ୍ଷମାଭିକ୍ଷା କରିଥାନ୍ତେ ତେବେ ସେମାନେ ନିଶ୍ଚୟ ଅଲ୍ଲାହଙ୍କୁ ସ୍ନେହଶୀଳ(ଓ)କରୁଣାମୟ ପାଇଥାଆନ୍ତେ ।

وَمَا أَرْسَلْنَا مِنْ رَسُولٍ إِلَّا لِيُطَاعَ بِإِذْنِ اللَّهِ ۚ وَلَوْ أَنَّهُمْ إِذْ ظَلَمُوا أَنْفُسَهُمْ جَاءُوكَ فَاسْتَغْفَرُوا اللَّهَ وَاسْتَغْفَرَ لَهُمُ الرَّسُولُ لَوَجَدُوا اللَّهَ تَوَّابًا رَحِيمًا ﴿٦٥﴾

୬୬. ସୁତରାଂ ତୁମ୍ଭର ପାଳନକର୍ତ୍ତାଙ୍କ ରାଣ; ଯେ ପର୍ଯ୍ୟନ୍ତ ସେମାନେ ସେମାନଙ୍କ ପରସ୍ପର ବିବାଦ ସଂକ୍ରାନ୍ତରେ ତୁମଙ୍କୁ ବିଚାରପତି ନିଯୁକ୍ତ ନ କରନ୍ତି ଓ ତୁମର ନିଷ୍ପତ୍ତି ସଂକ୍ରାନ୍ତରେ ସେମାନଙ୍କ ମନରେ କୌଣସି ଖେଦ ନ ରଖନ୍ତି ଏବଂ ସମ୍ପୂର୍ଣ୍ଣ ଭାବରେ ଆଜ୍ଞାପାଳନ ନ କରନ୍ତି (ସେ ପର୍ଯ୍ୟନ୍ତ) ସେମାନେ ପ୍ରକୃତ ବିଶ୍ୱାସକାରୀ ହେବେ ନାହିଁ ।

فَلَا وَرَبِّكَ لَا يُؤْمِنُونَ حَتَّىٰ يُحَكِّمُوكَ فِيمَا شَجَرَ بَيْنَهُمْ ثُمَّ لَا يَجِدُوا فِي أَنْفُسِهِمْ حَرَجًا مِمَّا قَضَيْتَ وَيُسَلِّمُوا تَسْلِيمًا ﴿٦٦﴾

وَلَوْ أَنَّا كَتَبْنَا عَلَيْهِمْ أَنِ اقْتُلُوا أَنْفُسَكُمْ أَوِ اخْرُجُوا مِنْ دِيَارِكُمْ مَا فَعَلُوهُ إِلَّا قَلِيلٌ مِنْهُمْ ۖ وَلَوْ أَنَّهُمْ فَعَلُوا مَا يُوعَظُونَ بِهِ لَكَانَ خَيْرًا لَهُمْ وَأَشَدَّ تَثْبِيتًا ﴿٦٧﴾

୬୭. ଏବଂ ଯଦି ଆମ୍ଭେ ସେମାନଙ୍କୁ ଆଦେଶ ଦେଇଥାନ୍ତୁ ଯେ ତୁମେମାନେ ନିଜର ଜୀବନ ଉତ୍ସର୍ଗ କର ବା ସ୍ୱଗୃହ ପରିତ୍ୟାଗ କର ତେବେ ସେମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କ ବ୍ୟତୀତ ଅବଶିଷ୍ଟ ଏହା କରି ନ ଥାଆନ୍ତେ ଏବଂ ଯେଉଁ ବିଷୟରେ ସେମାନଙ୍କୁ ଉପଦେଶ ଦିଆଯାଇଛି ଯଦି ସେମାନେ ତାହା କରିଥାନ୍ତେ ତେବେ ତାହା ନିଶ୍ଚୟ ସେମାନଙ୍କ ପକ୍ଷରେ ଉତ୍କୃଷ୍ଟତର ଓ ସୁଦୃଢ଼ ହୋଇଥାନ୍ତା ।

وَإِذًا لَآتَيْنَاهُمْ مِنْ لَدُنَّا أَجْرًا عَظِيمًا ﴿٦٨﴾

୬୮. ଏବଂ ସେପରି ପରିସ୍ଥିତିରେ ଆମ୍ଭେ ସେମାନଙ୍କୁ ନିଜ ତରଫରୁ ବାସ୍ତବରେ ମହାନ୍ ପୁରସ୍କାର ଦେଇଥାନ୍ତୁ ।

وَلَهَدَيْنَاهُمْ صِرَاطًا مُسْتَقِيمًا ﴿٦٩﴾

୬୯. ଏବଂ ଆମ୍ଭେ ସେମାନଙ୍କୁ ନିଶ୍ଚୟ ସତ୍‌ପଥ ପ୍ରଦର୍ଶିତ କରିଥାନ୍ତୁ ।

وَمَنْ يُطِعِ اللَّهَ وَالرَّسُولَ فَأُولَٰئِكَ مَعَ الَّذِينَ أَنْعَمَ اللَّهُ عَلَيْهِمْ مِنَ النَّبِيِّينَ وَالصِّدِّيقِينَ وَالشُّهَدَاءِ وَالصَّالِحِينَ ۚ وَحَسُنَ أُولَٰئِكَ رَفِيقًا ﴿٧٠﴾

୭୦. ଏବଂ ଯେ କେହି ଅଲ୍ଲାଃ ଓ ରସୁଲଙ୍କର ଆଜ୍ଞାପାଳନ କରିବ ସେ ସେହି ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ଯେଉଁମାନଙ୍କୁ ଅଲ୍ଲାଃ ପୁରସ୍କୃତ କରିଛନ୍ତି ଅର୍ଥାତ୍ ନବି, ସିଦ୍ଦିକ, ଶହୀଦ ଓ ସ୍ୱାଲେହଙ୍କ[1] ମଧ୍ୟରେ ; ଏବଂ ଏ ଲୋକମାନେ ହିଁ (ଅତି) ଉତ୍ତମ ମିତ୍ର ।

ذَٰلِكَ الْفَضْلُ مِنَ اللَّهِ ۚ وَكَفَىٰ بِاللَّهِ عَلِيمًا ﴿٧١﴾

୭୧. ଏହି କୃପା ଅଲ୍ଲାଃଙ୍କ ତରଫରୁ ରହିଅଛି ଏବଂ ଅଲ୍ଲାଃ ହିଁ ସର୍ବଜ୍ଞ ।

ରୁ : ୧୦

يَا أَيُّهَا الَّذِينَ آمَنُوا خُذُوا حِذْرَكُمْ فَانْفِرُوا ثُبَاتٍ أَوِ انْفِرُوا جَمِيعًا ﴿٧٢﴾

୭୨. ହେ ବିଶ୍ୱାସକାରୀମାନେ ! ଛୋଟ ଛୋଟ ଦଳରେ (ଘରୁ) ବାହାରୁ ଥାଅ କି ବଡ଼ ବଡ଼ ଦଳରେ ବାହାରୁ ଥାଅ ଆତ୍ମରକ୍ଷା ପାଇଁ (ସାମଗ୍ରୀ ସହିତ ସର୍ବଦା) ପ୍ରସ୍ତୁତ ରହ ।

وَإِنَّ مِنْكُمْ لَمَنْ لَيُبَطِّئَنَّ فَإِنْ أَصَابَتْكُمْ مُصِيبَةٌ قَالَ قَدْ أَنْعَمَ اللَّهُ عَلَيَّ إِذْ لَمْ أَكُنْ مَعَهُمْ شَهِيدًا ﴿٧٣﴾

୭୩. ଏବଂ ତୁମମାନଙ୍କ ମଧ୍ୟରେ ଏଭଳି କେତେକ (ଲୋକ) ଅଛନ୍ତି ଯେଉଁମାନେ (ପ୍ରତ୍ୟେକ କାର୍ଯ୍ୟ ସମୟରେ) ବସ୍ତୁତଃ ପଛରେ ରହନ୍ତି ; ଏବଂ ଯଦି ତୁମମାନଙ୍କ ଉପରେ କୌଣସି ବିପଦ ପଡ଼େ ତେବେ ସେମାନେ କହନ୍ତି, "ଅଲ୍ଲାଃ ମୋ ପ୍ରତି ଅନୁଗ୍ରହ କରିଥିବାରୁ ମୁଁ ସେମାନଙ୍କ ସହିତ ଉପସ୍ଥିତ ନ ଥିଲି ।"

---

୧. ଏହା ଏକ ଗୁରୁତ୍ୱପୂର୍ଣ୍ଣ ଅଥଚ ବିବାଦାତ୍ମକ ଆୟତ । ଏଥିରେ ମୁସଲମାନମାନଙ୍କ ସକାଶେ ଆଧ୍ୟାତ୍ମିକ ଉତ୍କର୍ଷତା ଲାଭ କରିବା ପାଇଁ ସକଳ ପଥ ଉନ୍ମୁକ୍ତ ଥିବାର ବର୍ଣ୍ଣନା କରାଯାଇଛି । ତେଣୁ କେବଳ ହଜରତ ମହମ୍ମଦଙ୍କର ଅନୁସରଣ କରି ଚାରୋଟି ଯାକ ଆଧ୍ୟାତ୍ମିକ ପାହ୍ୟା ଯଥା– ନବି (ଅବତାର), ସିଦ୍ଦିକ (ସତ୍ୟବାଦୀ ବା ପ୍ରମାଣକ), ଶହୀଦ (ନିଜ ମତବାଦ ବା ଧର୍ମବିଶ୍ୱାସ ପାଇଁ ନିହତ ହୋଇଥିବା ବ୍ୟକ୍ତି) ଓ ସ୍ୱାଲେହ (ପୁଣ୍ୟବାନ ବ୍ୟକ୍ତି) ପାହ୍ୟା ଲାଭ କରାଯାଇ ପାରେ ।

ଅବଶ୍ୟ ଅନ୍ୟମାନେ ଆମର ଏହି ମତକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ସେମାନଙ୍କ ମତରେ ଯଦି ଜଣେ ବ୍ୟକ୍ତି ଅଲ୍ଲାଃ ଓ ହଜରତ ମହମ୍ମଦଙ୍କର ଆଜ୍ଞା ପାଳନ କରିବ ତେବେ ସେ ପରଲୋକରେ ନବି, ସିଦ୍ଦିକ, ଶହୀଦ ଓ ସ୍ୱାଲେହଙ୍କ ସହିତ ରହିବ । କିନ୍ତୁ ପବିତ୍ର କୋରାନରେ ସୁରା 'ହଦିଦ'ର ଆୟତ ୨୦ କୁ ଅନୁଧ୍ୟାନ କଲେ ସେମାନଙ୍କ ଏହି ଧାରଣା ଭୁଲଥିବାର ପ୍ରତିପାଦିତ ହେବ ।

୭୪. ଏବଂ ଯଦି ତୁମେମାନେ ଅଲ୍ଲାହ୍‌ଙ୍କ ତରଫରୁ କିଛି କୃପା ଲାଭ କର ତେବେ ସେମାନେ କହନ୍ତି, "ଆହା ! ଯଦି ଆମେମାନେ (ମଧ୍ୟ) ସେମାନଙ୍କ ସଙ୍ଗରେ ଥାନ୍ତୁ ତେବେ (ମହାନ୍) ସଫଳତା ଲାଭ କରିଥାନ୍ତୁ" ; (ସେମାନେ ଏପରି କହନ୍ତି) ସତେ ଯେପରିକି ସେମାନଙ୍କ ଓ ତୁମମାନଙ୍କ ମଧ୍ୟରେ କୌଣସି ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ନ ଥିଲା ।

وَلَئِنْ أَصَابَكُمْ فَضْلٌ مِّنَ اللَّهِ لَيَقُولَنَّ كَأَن لَّمْ تَكُن بَيْنَكُمْ وَبَيْنَهُ مَوَدَّةٌ يَا لَيْتَنِي كُنتُ مَعَهُمْ فَأَفُوزَ فَوْزًا عَظِيمًا ﴿٧٤﴾

୭୫. ସୁତରାଂ ଯେଉଁମାନେ ପାର୍ଥିବ ଜୀବନକୁ ପରିତ୍ୟାଗ କରି ପରକାଳକୁ ଗ୍ରହଣ କରନ୍ତି ସେମାନେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ସଂଗ୍ରାମ କରିବା ଉଚିତ ; ଏବଂ ଯେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ସଂଗ୍ରାମ କରି ନିହତ ହୁଏ ବା ବିଜୟୀ ହୁଏ ତେବେ ଆମେ ତାହାକୁ ଶୀଘ୍ର (ମହାନ୍)ପୁରସ୍କାର 'ଦେବୁ ।

فَلْيُقَاتِلْ فِي سَبِيلِ اللَّهِ الَّذِينَ يَشْرُونَ الْحَيَاةَ الدُّنْيَا بِالْآخِرَةِ ۚ وَمَن يُقَاتِلْ فِي سَبِيلِ اللَّهِ فَيُقْتَلْ أَوْ يَغْلِبْ فَسَوْفَ نُؤْتِيهِ أَجْرًا عَظِيمًا ﴿٧٥﴾

୭୬. ଏବଂ ତୁମମାନଙ୍କର୍ କଅଣ ହୋଇଅଛି ଯେ ତୁମେମାନେ ଅଲ୍ଲାହ୍‌ଙ୍କ (ଉଦ୍ଦେଶ୍ୟରେ)[୧] ଏବଂ ସେହି ଦୁର୍ବଳ ପୁରୁଷ, ନାରୀ ଓ ଶିଶୁମାନଙ୍କ (ରକ୍ଷା) ଉଦ୍ଦେଶ୍ୟରେ ସଂଗ୍ରାମ କରୁନାହଁ ଯେଉଁମାନେ କହନ୍ତି, "ହେ ଆମର ପାଳନକର୍ତ୍ତା ! ଆମମାନଙ୍କୁ ଏହି ଗ୍ରାମରୁ ଉଦ୍ଧାର କର ଯାହାର ଅଧିବାସୀ ଅତ୍ୟାଚାରୀ ଅଟନ୍ତି, ଓ ନିଜ ସମୀପରୁ ଆମମାନଙ୍କ ପାଇଁ କୌଣସି ବନ୍ଧୁ ପ୍ରେରଣ କର ଓ ନିଜ ସମୀପରୁ (କାହାରିକୁ) ଆମମାନଙ୍କର ସାହାଯ୍ୟକାରୀ ରୂପେ ଛିଡ଼ାକର ।"

وَمَا لَكُمْ لَا تُقَاتِلُونَ فِي سَبِيلِ اللَّهِ وَالْمُسْتَضْعَفِينَ مِنَ الرِّجَالِ وَالنِّسَاءِ وَالْوِلْدَانِ الَّذِينَ يَقُولُونَ رَبَّنَا أَخْرِجْنَا مِنْ هَٰذِهِ الْقَرْيَةِ الظَّالِمِ أَهْلُهَا وَاجْعَل لَّنَا مِن لَّدُنكَ وَلِيًّا وَاجْعَل لَّنَا مِن لَّدُنكَ نَصِيرًا ﴿٧٦﴾

୭୭. ଯେଉଁମାନେ ବିଶ୍ୱାସ କରିଛନ୍ତି ସେମାନେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ସଂଗ୍ରାମ କରନ୍ତି, ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନେ ସଇତାନର ଉଦ୍ଦେଶ୍ୟରେ ସଂଗ୍ରାମ କରନ୍ତି ; ସୁତରାଂ ତୁମେମାନେ ସଇତାନର ବନ୍ଧୁମାନଙ୍କ ବିରୁଦ୍ଧରେ ସଂଗ୍ରାମ କର ; ବାସ୍ତବରେ ସଇତାନର କୌଶଳ ଦୁର୍ବଳ ଅଟେ ।

الَّذِينَ آمَنُوا يُقَاتِلُونَ فِي سَبِيلِ اللَّهِ ۖ وَالَّذِينَ كَفَرُوا يُقَاتِلُونَ فِي سَبِيلِ الطَّاغُوتِ فَقَاتِلُوا أَوْلِيَاءَ الشَّيْطَانِ ۖ إِنَّ كَيْدَ الشَّيْطَانِ كَانَ ضَعِيفًا ﴿٧٧﴾ ع

## ରୁ : ୧୧

୭୮. କ'ଣ ତୁମଙ୍କୁ ସେମାନଙ୍କ ଅବସ୍ଥା ଜଣାନାହିଁ ଯେଉଁମାନଙ୍କୁ କୁହାଯାଇଥିଲା, "ତୁମେମାନେ ନିଜ ହାତକୁ ଅଟକାଇ ରଖ ଏବଂ ନମାଜ ପାଠ କର ତଥା ଜକାତ ଦିଅ" (କିନ୍ତୁ ସେମାନେ ଯୁଦ୍ଧ କରିବାକୁ ଇଚ୍ଛା କରୁଥିଲେ) ଅଥଚ ଯେତେବେଳେ ସେମାନଙ୍କ ଉପରେ ଯୁଦ୍ଧକୁ ବିଧିବଦ୍ଧ କରାଗଲା ସେତେବେଳେ ହଠାତ୍ ସେମାନଙ୍କ ମଧ୍ୟରୁ କେତେକ, ଲୋକମାନଙ୍କୁ ଏପରି ଭୟ କରିବାକୁ ଲାଗିଲେ ଯେପରି ଅଲ୍ଲାହ୍‌ଙ୍କୁ ଭୟ କରିବା ଉଚିତ ବରଂ ତାହାଠାରୁ ଅଧିକ

أَلَمْ تَرَ إِلَى الَّذِينَ قِيلَ لَهُمْ كُفُّوا أَيْدِيَكُمْ وَأَقِيمُوا الصَّلَاةَ وَآتُوا الزَّكَاةَ فَلَمَّا كُتِبَ عَلَيْهِمُ الْقِتَالُ إِذَا فَرِيقٌ مِّنْهُمْ يَخْشَوْنَ النَّاسَ كَخَشْيَةِ اللَّهِ أَوْ أَشَدَّ خَشْيَةً ۚ وَقَالُوا رَبَّنَا لِمَ كَتَبْتَ عَلَيْنَا

୧. ଅର୍ଥାତ୍ ସେମାନଙ୍କୁ ସ୍ୱାଧୀନ କରିବା ସକାଶେ, ଯେଉଁମାନେ କି ଅବିଶ୍ୱାସକାରୀଙ୍କ ଅତ୍ୟାଚାରର ଶିକାର ହୋଇଛନ୍ତି ।

الْقِتَالَ ۚ لَوْلَا أَخَّرْتَنَا إِلَىٰ أَجَلٍ قَرِيبٍ ۗ قُلْ مَتَاعُ الدُّنْيَا قَلِيلٌ ۚ وَالْآخِرَةُ خَيْرٌ لِّمَنِ اتَّقَىٰ وَلَا تُظْلَمُونَ فَتِيلًا ﴿٧٨﴾

(ଭୟକଲେ) ଏବଂ ସେମାନେ କହିବାକୁ ଲାଗିଲେ, "ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ କାହିଁକି ଆମମାନଙ୍କ ଉପରେ ଯୁଦ୍ଧ ବିଧିବଦ୍ଧ କଲ ? ତୁମେ କାହିଁକି ଆଉ କିଛି ସମୟ ପାଇଁ ଆମମାନଙ୍କୁ ଅବସର ଦେଇ ନାହିଁ ?" ତୁମେ କୁହ, "ପାର୍ଥିବ ଲାଭ ହେୟ ଅଟେ ; ଏବଂ ଯେ (ଅଲ୍ଲାହ୍‌ଙ୍କୁ) ଭୟ କରେ ତାହା ପାଇଁ ପରକାଳ ଉତ୍‌କୃଷ୍ଟତର ; ଏବଂ ତୁମମାନଙ୍କ ପ୍ରତି ଏକ ଖଜୁରି ମଞ୍ଜିର ରନ୍ଧ୍ର ସଦୃଶ (କ୍ଷୁଦ୍ର) ଅତ୍ୟାଚାର କରାଯିବ ନାହିଁ ।

أَيْنَ مَا تَكُونُوا يُدْرِككُّمُ الْمَوْتُ وَلَوْ كُنتُمْ فِي بُرُوجٍ مُّشَيَّدَةٍ ۗ وَإِن تُصِبْهُمْ حَسَنَةٌ يَقُولُوا هَٰذِهِ مِنْ عِندِ اللَّهِ ۖ وَإِن تُصِبْهُمْ سَيِّئَةٌ يَقُولُوا هَٰذِهِ مِنْ عِندِكَ ۚ قُلْ كُلٌّ مِّنْ عِندِ اللَّهِ ۖ فَمَالِ هَٰؤُلَاءِ الْقَوْمِ لَا يَكَادُونَ يَفْقَهُونَ حَدِيثًا ﴿٧٩﴾

୭୯. ତୁମେମାନେ ଯେଉଁଠାରେ ଥିଲେ ମଧ୍ୟ ମୃତ୍ୟୁ ତୁମମାନଙ୍କୁ କବଳିତ କରିବ ଯଦ୍ୟପି ତୁମେମାନେ ସୁଦୃଢ଼ ଦୁର୍ଗ ମଧ୍ୟରେ ଥାଅ (ତଥାପି ଧରିନେବ) ; ଏବଂ ଯଦି ଏମାନଙ୍କୁ (ଅର୍ଥାତ୍ ଉପରୋକ୍ତ ଲୋକମାନଙ୍କୁ) କୌଣସି ମଙ୍ଗଳ ପ୍ରାପ୍ତ ହୁଏ ତେବେ ସେମାନେ କହନ୍ତି ଯେ ଏହା ଅଲ୍ଲାହ୍‌ଙ୍କ ନିକଟରୁ (ଆସି) ଅଛି ଏବଂ ଯଦି ଏମାନଙ୍କ ଉପରେ କୌଣସି ଅମଙ୍ଗଳ ନିପତିତ ହୁଏ ତେବେ ସେମାନେ କହନ୍ତି ଯେ ଏହା ତୁମ[1] ନିକଟରୁ (ଆସି) ଅଛି ; ତୁମେ କୁହ, "ସବୁ (କିଛି) ଅଲ୍ଲାହ୍‌ଙ୍କ ନିକଟରୁ (ଆସି) ଅଛି ; ସୁତରାଂ ଏ ଲୋକମାନଙ୍କର (ଏପରି) କ'ଣ ହୋଇଛି ଯେ ସେମାନେ କୌଣସି ବିଷୟକୁ ଆଦୌ ବୁଝିପାରୁନାହାନ୍ତି ।"

مَّا أَصَابَكَ مِنْ حَسَنَةٍ فَمِنَ اللَّهِ ۖ وَمَا أَصَابَكَ مِن سَيِّئَةٍ فَمِن نَّفْسِكَ ۚ وَأَرْسَلْنَاكَ لِلنَّاسِ رَسُولًا ۚ وَكَفَىٰ بِاللَّهِ شَهِيدًا ﴿٨٠﴾

୮୦. ତୁମକୁ ଯାହା ମଙ୍ଗଳ ପ୍ରାପ୍ତ ହୁଏ ତାହା ଅଲ୍ଲାହ୍‌ଙ୍କ ଠାରୁ (ଆସି) ଅଛି, ଏବଂ ତୁମ ଉପରେ ଯାହା ଅମଙ୍ଗଳ ନିପତିତ ହୁଏ ତାହା ତୁମ ନିଜ ତରଫରୁ (ଘଟି) ଅଛି, ଏବଂ ଆମେ ତୁମକୁ ମାନବ ସମାଜ ପାଇଁ ରସୁଲ ଭାବରେ ପ୍ରେରଣ କରିଅଛୁ, ଏବଂ ଅଲ୍ଲାହ୍ ହିଁ ଉତ୍‌କୃଷ୍ଟ ସାକ୍ଷୀ ।

---

୧. ମୁନାଫିକ ବା କପଟବିଶ୍ୱାସୀମାନଙ୍କ ନୀତି ହେଉଛି ଯେ ଯେତେବେଳେ କୌଣସି ସଫଳତା ମିଳେ ସେତେବେଳେ ସେମାନେ ଏହି ସଫଳତାକୁ ଅଲ୍ଲାହ୍‌ଙ୍କ ସହିତ ସମ୍ବନ୍ଧିତ ଥିବାର କହନ୍ତି । କିନ୍ତୁ ଯେତେବେଳେ କୌଣସି ଦୁଃଖ ଦୁର୍ଦ୍ଦଶା ନିପତିତ ହୁଏ ସେତେବେଳେ ସେମାନେ କହନ୍ତି ଯେ ଏହା ନବି ବା ଖଲିଫାଙ୍କ ତ୍ରୁଟି ଯୋଗୁଁ ଘଟିଲା । ପ୍ରକୃତ ପକ୍ଷେ ସୁଖ ଓ ଦୁଃଖ ଉଭୟ ଅଲ୍ଲାହ୍‌ଙ୍କ ତରଫରୁ ଆସିଥାଏ । ତାହାହେଲେ କ'ଣ ଗୋଟିକୁ ଅଲ୍ଲାହ୍‌ଙ୍କ ପ୍ରତି ଓ ଅନ୍ୟଟିକୁ ନବିଙ୍କ ପ୍ରତି ସମ୍ବନ୍ଧିତ କରି ଲୋକମାନଙ୍କ ମନରୁ ନବିଙ୍କ ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନକୁ କମ କରିବା ଏହାର ଉଦ୍ଦେଶ୍ୟ ନୁହେଁ କି ? କିନ୍ତୁ ମନେ ରଖିବାକୁ ହେବ ଯେ ଅଲ୍ଲାହ୍ ସକଳ ଶକ୍ତିକୁ କଲ୍ୟାଣ ଓ ସତ୍‌କର୍ମ ନିମିତ୍ତ ସୃଷ୍ଟି କରିଛନ୍ତି । ସୁତରାଂ ଯେତେବେଳେ ମନୁଷ୍ୟ ସେହିସବୁ ଶକ୍ତିର ଅପବ୍ୟବହାର କରେ ସେତେବେଳେ ସେ ଦୁଃଖ ଦୁର୍ଦ୍ଦଶାରେ ଜଡ଼ିତ ହୁଏ । ଅତଏବ ମାନବ ମନ୍ଦ କାର୍ଯ୍ୟକୁ ନିଜ ପ୍ରତି ସମ୍ବନ୍ଧିତ କରିବା ଉଚିତ ହେବ କାରଣ ନିଜ କୁକର୍ମ ଯୋଗୁଁ ସେ ଦୁଃଖଦୁର୍ଦ୍ଦଶା ଭୋଗ କରିଥାଏ । ବସ୍ତୁତଃ ଅନ୍ୟ ଉପରେ ଦୋଷ ଲଦି ଦେଲେ କିଛି ଲାଭ ନାହିଁ ।

ଏଠାରେ ଏକ ସାଧାରଣ ଗ୍ରହଣଯୋଗ୍ୟ ସିଦ୍ଧାନ୍ତ ବିଷୟରେ ବର୍ଣ୍ଣନା କରାଯାଇଛି ଅଥଚ ହଜରତ ମହମ୍ମଦଙ୍କୁ ସମ୍ବୋଧନ କରାଯାଇଛି । ଯାହାହେଉ, ପ୍ରତ୍ୟେକ ବ୍ୟକ୍ତି ଯାହାକିଛି ଦୁଃଖଦୁର୍ଦ୍ଦଶା ଭୋଗିବ ସେଥିପାଇଁ ସେ ଅନ୍ୟ ପ୍ରତି କୌଣସି ଦୋଷାରୋପ ନ କରି ନିଜକୁ ସମ୍ପୃକ୍ତ ଥିବା ଭାବିବ । ବସ୍ତୁତଃ ଏହି ଆୟତ୍‌ର ଶେଷାଂଶ ଓ ପରବର୍ତ୍ତୀ ଆୟତ୍‌ରୁ ଜଣାପଡୁଛି ଯେ ଏଠାରେ ହଜରତ ମହମ୍ମଦଙ୍କୁ ପ୍ରକୃତରେ ସମ୍ବୋଧନ କରାଯାଇନାହିଁ । ପରବର୍ତ୍ତୀ ଆୟତରେ କୁହାଯାଇଛି ଯେ ନବିଙ୍କ ଆଜ୍ଞା ପାଳନ କରିବା ଅର୍ଥ ଅଲ୍ଲାହ୍‌ଙ୍କ ଆଜ୍ଞା ପାଳନ କରିବା । ଅନ୍ୟ ପକ୍ଷରେ ଏହା ମଧ୍ୟ ମନେ ରଖିବାକୁ ହେବ ଯେ ଅଲ୍ଲାହ୍ ଯାହା କରନ୍ତି ତାହା ପ୍ରାଣୀର ମଙ୍ଗଳ ସକାଶେ କରନ୍ତି ।

୮୧. ଯେ କେହି ରସୁଲଙ୍କର ଆଜ୍ଞାପାଳନ କରେ, (ତେବେ ଜାଣିରଖ ଯେ) ସେ ଅଲ୍ଲାହଙ୍କର ଆଜ୍ଞା ପାଳନ କରେ ; ଏବଂ ଯେଉଁ ଲୋକମାନେ ବିମୁଖ ହୁଅନ୍ତି ତେବେ (ମନେରଖ ଯେ) ଆମେ ତୁମଙ୍କୁ ସେମାନଙ୍କର ତତ୍ତ୍ୱାବଧାରକ ରୂପେ ପ୍ରେରଣ କରିନାହୁଁ ।

مَنْ يُّطِعِ الرَّسُوْلَ فَقَدْ اَطَاعَ اللّٰهَ ۚ وَمَنْ تَوَلّٰى فَمَآ اَرْسَلْنٰكَ عَلَيْهِمْ حَفِيْظًا ﴿٨١﴾

୮୨. ଏବଂ ସେମାନେ କହନ୍ତି, "ଆଜ୍ଞାପାଳନ କରିବା ଆମମାନଙ୍କର କର୍ତ୍ତବ୍ୟ ;" କିନ୍ତୁ ଯେତେବେଳେ ସେମାନେ ତୁମ ନିକଟରୁ ଚାଲିଯାଆନ୍ତି ସେମାନଙ୍କ ମଧ୍ୟରୁ ଦଳେ ତୁମେ ଯାହା କହୁଅଛ ତାହା ବିରୁଦ୍ଧରେ (ଗୁପ୍ତ) ମନ୍ତ୍ରଣା କରନ୍ତି ଏବଂ ସେମାନେ ଯାହା ମନ୍ତ୍ରଣା କରନ୍ତି ଅଲ୍ଲାହ ତାହାକୁ ଲିପିବଦ୍ଧ କରୁଛନ୍ତି ; ତେଣୁ ତୁମେ ସେମାନଙ୍କଠାରୁ ଦୂରେଇ ରହ, ଏବଂ ଅଲ୍ଲାହଙ୍କ ଉପରେ ନିର୍ଭର କର ; ଏବଂ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ-ସମ୍ପାଦନାକାରୀଙ୍କର ଆବଶ୍ୟକତା ନାହିଁ ।

وَيَقُوْلُوْنَ طَاعَةٌ ۫ فَاِذَا بَرَزُوْا مِنْ عِنْدِكَ بَيَّتَ طَآئِفَةٌ مِّنْهُمْ غَيْرَ الَّذِيْ تَقُوْلُ ۭ وَاللّٰهُ يَكْتُبُ مَا يُبَيِّتُوْنَ ۚ فَاَعْرِضْ عَنْهُمْ وَتَوَكَّلْ عَلَى اللّٰهِ ۭ وَكَفٰى بِاللّٰهِ وَكِيْلًا ﴿٨٢﴾

୮୩. ତେବେ କ'ଣ ସେମାନେ (ପବିତ୍ର) କୋରାନର ଅନୁଧ୍ୟାନ କରୁନାହାନ୍ତି ? ଏବଂ (ବୁଝିପାରୁ ନାହାନ୍ତି ଯେ) ଏହା ଯଦି ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ତରଫରୁ ହୋଇଥାଆନ୍ତା ତେବେ ସେମାନେ ନିଶ୍ଚୟ ଏଥିରେ ଅନେକ ଅସାମଞ୍ଜସ୍ୟ ପାଇଥାଆନ୍ତେ ।

اَفَلَا يَتَدَبَّرُوْنَ الْقُرْاٰنَ ۭ وَلَوْ كَانَ مِنْ عِنْدِ غَيْرِ اللّٰهِ لَوَجَدُوْا فِيْهِ اخْتِلَافًا كَثِيْرًا ﴿٨٣﴾

୮୪. ଏବଂ ଯେବେ ବି ସେମାନଙ୍କ ନିକଟରେ କୌଣସି ଶାନ୍ତିପ୍ରଦ ବା ଭୀତିପ୍ରଦ ସୂଚନା ମିଳେ (ସେତେବେଳେ) ସେମାନେ ତାହାଙ୍କୁ ପ୍ରସାରିତ କରନ୍ତି ; ଏବଂ ଯଦି ସେମାନେ ଏହାକୁ ରସୁଲଙ୍କ ନିକଟରେ ଓ ନିଜ କର୍ତ୍ତୃପକ୍ଷଙ୍କ ନିକଟରେ ଉପସ୍ଥାପିତ କରନ୍ତେ ତେବେ ସେମାନଙ୍କ ମଧ୍ୟରୁ ଯେଉଁ (ଲୋକ)ମାନେ ଏହାକୁ (ଅର୍ଥାତ୍ ନିର୍ଦ୍ଧାରିତ ବିଷୟର ସତ୍ୟତାକୁ) ଜାଣିପାରନ୍ତି ତାହାକୁ (ଅର୍ଥାତ୍ ତାହାର ମର୍ମକୁ) ଜାଣିପାରନ୍ତେ ; ଏବଂ ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନ ଥାଆନ୍ତା ତେବେ ଅଳ୍ପ କେତେକଙ୍କ ବ୍ୟତୀତ, (ଅବଶିଷ୍ଟ ଲୋକେ) ସଇତାନର ଅନୁଗାମୀ ହୋଇଯାଆନ୍ତେ ।

وَاِذَا جَآءَهُمْ اَمْرٌ مِّنَ الْاَمْنِ اَوِ الْخَوْفِ اَذَاعُوْا بِهٖ ۭ وَلَوْ رَدُّوْهُ اِلَى الرَّسُوْلِ وَاِلٰٓى اُولِي الْاَمْرِ مِنْهُمْ لَعَلِمَهُ الَّذِيْنَ يَسْتَنْۢبِطُوْنَهٗ مِنْهُمْ ۭ وَلَوْلَا فَضْلُ اللّٰهِ عَلَيْكُمْ وَرَحْمَتُهٗ لَاتَّبَعْتُمُ الشَّيْطٰنَ اِلَّا قَلِيْلًا ﴿٨٤﴾

୮୫. ଅତଏବ ତୁମେ ଅଲ୍ଲାହଙ୍କ ପଥରେ ସଂଗ୍ରାମ କର, ତୁମଙ୍କୁ ନିଜ ବ୍ୟତୀତ ଅନ୍ୟ କାହାରି ପାଇଁ ଦାୟୀ କରାଯିବ ନାହିଁ ; ଏବଂ (ତୁମର କର୍ତ୍ତବ୍ୟ ହେଉଛି ଯେ) ତୁମେ ବିଶ୍ୱାସକାରୀମାନଙ୍କୁ ଉତ୍ସାହିତ କର ; ଏହା ଅବଶ୍ୟମ୍ଭାବୀ ଅଟେ ଯେ ଅଲ୍ଲାହ ଅବିଶ୍ୱାସକାରୀମାନଙ୍କର ସଂଗ୍ରାମକୁ ପ୍ରତିରୋଧ କରିଦେବେ ଏବଂ ଅଲ୍ଲାହଙ୍କର ସଂଗ୍ରାମ ଅତ୍ୟନ୍ତ ପ୍ରବଳ ଏବଂ ତାହାଙ୍କର ଶାସ୍ତି ମଧ୍ୟ ଅତ୍ୟନ୍ତ କଠୋର ।

فَقَاتِلْ فِيْ سَبِيْلِ اللّٰهِ ۚ لَا تُكَلَّفُ اِلَّا نَفْسَكَ وَحَرِّضِ الْمُؤْمِنِيْنَ ۚ عَسَى اللّٰهُ اَنْ يَّكُفَّ بَاْسَ الَّذِيْنَ كَفَرُوْا ۭ وَاللّٰهُ اَشَدُّ بَاْسًا وَّاَشَدُّ تَنْكِيْلًا ﴿٨٥﴾

مَنْ يَّشْفَعْ شَفَاعَةً حَسَنَةً يَّكُنْ لَّهٗ نَصِيْبٌ مِّنْهَا ۚ وَمَنْ يَّشْفَعْ شَفَاعَةً سَيِّئَةً يَّكُنْ لَّهٗ كِفْلٌ مِّنْهَا ۗ وَكَانَ اللّٰهُ عَلٰى كُلِّ شَيْءٍ مُّقِيْتًا ﴿٨٦﴾

୮୬. ଯେଉଁ ବ୍ୟକ୍ତି ଉତ୍ତମ ସୁପାରିଶ କରିବ ସେ ସେଥିରେ ଅଂଶୀଦାର ହେବ, ଏବଂ ଯେଉଁ ବ୍ୟକ୍ତି ମନ୍ଦ ସୁପାରିଶ କରିବ ସେ ସେଥିରୁ (ଅନୁରୂପ) ଅଂଶ ପାଇବ ; ଏବଂ ଅଲ୍ଲାହ ସକଳ ବିଷୟରେ ସମ୍ପୂର୍ଣ୍ଣ କ୍ଷମତାଶାଳୀ ଅଟନ୍ତି ।

وَاِذَا حُيِّيْتُمْ بِتَحِيَّةٍ فَحَيُّوْا بِاَحْسَنَ مِنْهَآ اَوْ رُدُّوْهَا ۗ اِنَّ اللّٰهَ كَانَ عَلٰى كُلِّ شَيْءٍ حَسِيْبًا ﴿٨٧﴾

୮୭. ଏବଂ ଯେତେବେଳେ କେହି ତୁମମାନଙ୍କର ଶୁଭ କାମନା କରେ (ସେତେବେଳେ) ତୁମେମାନେ ମଧ୍ୟ ତାହାକୁ ତାଠାରୁ ଉତ୍‌କୃଷ୍ଟ ଧରଣର ବା (ଅନ୍ତତଃ) ସେତିକି ଫେରାଇଦିଅ ; ବାସ୍ତବରେ ଅଲ୍ଲାହ ପ୍ରତ୍ୟେକ ବିଷୟର ହିସାବ ନେବେ ।

اَللّٰهُ لَآ اِلٰهَ اِلَّا هُوَ ۗ لَيَجْمَعَنَّكُمْ اِلٰى يَوْمِ الْقِيٰمَةِ لَا رَيْبَ فِيْهِ ۗ وَمَنْ اَصْدَقُ مِنَ اللّٰهِ حَدِيْثًا ﴿٨٨﴾

୮୮. ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ ; ନିଃସନ୍ଦେହରେ ସେ ତୁମମାନଙ୍କୁ ସେହି କୟାମତ ଦିବସ ପର୍ଯ୍ୟନ୍ତ ଏକତ୍ରିତ କରାଉଥିବେ ଯାହାର ଆଗମନ ସଂକ୍ରାନ୍ତରେ କୌଣସି ସନ୍ଦେହ ନାହିଁ ; ଏବଂ ଅଲ୍ଲାହଙ୍କଠାରୁ ବଳି ଅନ୍ୟ କାହାର କଥା ସତ୍ୟ (ହୋଇପାରେ) ?

ରୁ : ୧୨

فَمَا لَكُمْ فِي الْمُنٰفِقِيْنَ فِئَتَيْنِ وَاللّٰهُ اَرْكَسَهُمْ بِمَا كَسَبُوْا ۗ اَتُرِيْدُوْنَ اَنْ تَهْدُوْا مَنْ اَضَلَّ اللّٰهُ ۗ وَمَنْ يُّضْلِلِ اللّٰهُ فَلَنْ تَجِدَ لَهٗ سَبِيْلًا ﴿٨٩﴾

୮୯. ଏବଂ ତୁମମାନଙ୍କର କ'ଣ ହୋଇଛି ଯେ ତୁମେମାନେ କପଟ-ବିଶ୍ୱାସୀମାନଙ୍କ ସମ୍ବନ୍ଧରେ ଦୁଇଦଳ (ରେ ବିଭକ୍ତ) ହୋଇଅଛ ? ଅଥଚ ସେମାନେ ଯାହା କିଛି ଉପାର୍ଜନ କରିଛନ୍ତି ସେହି ହେତୁ ଅଲ୍ଲାହ ସେମାନଙ୍କୁ ମୁହଁମାଡ଼ି ପକାଇ ଦେଇଛନ୍ତି (ଅର୍ଥାତ୍ ସେମାନଙ୍କର ବୁଦ୍ଧି ନଷ୍ଟ କରି ଦେଇଛନ୍ତି) ; ଅଲ୍ଲାହ ଯାହାକୁ ବିନାଶ କରିଛନ୍ତି କ'ଣ ତୁମେ ତାହାକୁ ସତ୍‌ପଥକୁ ଆଣି ପାରିବ ? ଏବଂ ଅଲ୍ଲାହ ଯାହାକୁ ବିନାଶ କରନ୍ତି ତୁମେ ତାହା ପାଇଁ କଦାପି କୌଣସି ପଥ ପାଇବ ନାହିଁ ।

وَدُّوْا لَوْ تَكْفُرُوْنَ كَمَا كَفَرُوْا فَتَكُوْنُوْنَ سَوَآءً فَلَا تَتَّخِذُوْا مِنْهُمْ اَوْلِيَآءَ حَتّٰى يُهَاجِرُوْا فِيْ سَبِيْلِ اللّٰهِ ۗ فَاِنْ تَوَلَّوْا فَخُذُوْهُمْ وَاقْتُلُوْهُمْ حَيْثُ وَجَدْتُّمُوْهُمْ ۖ وَلَا تَتَّخِذُوْا مِنْهُمْ وَلِيًّا وَّلَا نَصِيْرًا ﴿٩٠﴾

୯୦. ସେମାନେ ଇଚ୍ଛା[୧] କରନ୍ତି ଯେ ଯେଉଭଳି ସେମାନେ ନିଜେ ଅବିଶ୍ୱାସକାରୀ ହୋଇଛନ୍ତି ତୁମେମାନେ ମଧ୍ୟ ସେହିପରି ଅବିଶ୍ୱାସକାରୀ ହୋଇଯାଅ ଏବଂ (ସେମାନେ ଓ ତୁମେମାନେ) ସମାନ ହୋଇଯାଅ ; ସୁତରାଂ ସେମାନେ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ସ୍ୱଦେଶ ତ୍ୟାଗ ନ କରିବା ପର୍ଯ୍ୟନ୍ତ ତୁମେମାନେ ସେମାନଙ୍କ ମଧ୍ୟରୁ (କାହାରିକୁ) ବନ୍ଧୁ (ରୂପେ ଗ୍ରହଣ) କର ନାହିଁ ; ତାପରେ ଯଦି ସେମାନେ ଫେରିଯାଆନ୍ତି, ତେବେ ତୁମେମାନେ ସେମାନଙ୍କୁ ଧର ଏବଂ ଯେଉଁଠାରେ ସେମାନଙ୍କୁ ପାଅ ସେମାନଙ୍କୁ ହତ୍ୟା କର, ଏବଂ ସେମାନଙ୍କ ମଧ୍ୟରୁ କାହାରିକୁ ବନ୍ଧୁ ବା ସାହାଯ୍ୟକାରୀ ରୂପେ ଗ୍ରହଣ କର ନାହିଁ ।

---

୧. ଏଠାରେ ସେହିସବୁ ମୁନାଫିକଙ୍କ ବିଷୟ ବର୍ଣ୍ଣନା କରାଯାଇଛି ଯେଉଁମାନେ ଅବିଶ୍ୱାସକାରୀଙ୍କ ଦେଶରେ ରହୁଥିଲେ । ଯେତେବେଳେ ସେମାନେ ମୁସଲମାନମାନଙ୍କର ଅଭିବୃଦ୍ଧି ଦେଖୁଥିଲେ ସେତେବେଳେ ସେମାନେ ଅବିଶ୍ୱାସକାରୀମାନଙ୍କୁ ସାହାଯ୍ୟ କରୁଥିଲେ ଓ ମୁସଲମାନମାନଙ୍କୁ ପ୍ରତାରିତ କରୁଥିଲେ ।

إِلَّا الَّذِينَ يَصِلُونَ إِلَىٰ قَوْمٍ بَيْنَكُمْ وَبَيْنَهُم مِّيثَاقٌ
أَوْ جَاءُوكُمْ حَصِرَتْ صُدُورُهُمْ أَن يُقَاتِلُوكُمْ أَوْ
يُقَاتِلُوا قَوْمَهُمْ ۚ وَلَوْ شَاءَ اللَّهُ لَسَلَّطَهُمْ عَلَيْكُمْ
فَلَقَاتَلُوكُمْ ۚ فَإِنِ اعْتَزَلُوكُمْ فَلَمْ يُقَاتِلُوكُمْ وَأَلْقَوْا
إِلَيْكُمُ السَّلَمَ فَمَا جَعَلَ اللَّهُ لَكُمْ عَلَيْهِمْ سَبِيلًا ﴿٩١﴾

୯୧. ସେମାନଙ୍କ ବ୍ୟତୀତ ଯେଉଁମାନେ ତୁମମାନଙ୍କ ସଂଗରେ ସନ୍ଧି ସୂତ୍ରରେ ଆବଦ୍ଧ ଥିବା ଏପରି କୌଣସି ଗୋଷ୍ଠୀ ସହିତ ସମ୍ପର୍କ ରଖନ୍ତି ଅଥବା ତୁମମାନଙ୍କ ସଙ୍ଗରେ ବା ନିଜ ଲୋକ ମାନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ କୁଣ୍ଠିତ[1] ଥିବା ଅବସ୍ଥାରେ ତୁମମାନଙ୍କ ପାଖକୁ ଆସନ୍ତି ଏବଂ ଯଦି ଅଲ୍ଲାହ୍ ଇଚ୍ଛା କରିଥାନ୍ତେ ତେବେ ସେ ସେମାନଙ୍କୁ ତୁମମାନଙ୍କ ଉପରେ ଆଧିପତ୍ୟ ପ୍ରଦାନ କରି ପାରିଥାନ୍ତେ, ତେବେ ସେମାନେ ନିଶ୍ଚୟ ତୁମମାନଙ୍କ ସଙ୍ଗରେ ଯୁଦ୍ଧ କରିଥାନ୍ତେ ; ସୁତରାଂ ଯଦି ସେମାନେ ତୁମାନଙ୍କଠାରୁ ଦୂରେଇ ରହନ୍ତି ଓ ତୁମମାନଙ୍କ ସଙ୍ଗରେ ଯୁଦ୍ଧ ନ କରନ୍ତି ଏବଂ ତୁମମାନଙ୍କ ନିକଟରେ ସନ୍ଧିର ପ୍ରସ୍ତାବ କରନ୍ତି ତା'ହେଲେ ଅଲ୍ଲାହ୍ ତୁମମାନଙ୍କ ସକାଶେ ସେମାନଙ୍କ ବିରୁଦ୍ଧରେ (ଅତ୍ୟାଗ୍ରର ପାଇଁ) କୌଣସି ପଥ (ଉନ୍ମୁକ୍ତ) ରଖିନାହାନ୍ତି ।

سَتَجِدُونَ آخَرِينَ يُرِيدُونَ أَن يَأْمَنُوكُمْ وَيَأْمَنُوا
قَوْمَهُمْ كُلَّمَا رُدُّوا إِلَى الْفِتْنَةِ أُرْكِسُوا فِيهَا ۚ فَإِن لَّمْ
يَعْتَزِلُوكُمْ وَيُلْقُوا إِلَيْكُمُ السَّلَمَ وَيَكُفُّوا أَيْدِيَهُمْ
فَخُذُوهُمْ وَاقْتُلُوهُمْ حَيْثُ ثَقِفْتُمُوهُمْ ۚ وَأُولَٰئِكُمْ
جَعَلْنَا لَكُمْ عَلَيْهِمْ سُلْطَانًا مُّبِينًا ﴿٩٢﴾

୯୨. ତୁମେ ନିଶ୍ଚୟ ଅନ୍ୟ[2] କେତେକ ଲୋକଙ୍କୁ (ଏପରି) ପାଇବ ଯେଉଁମାନେ ତୁମମାନଙ୍କ ସହିତ ଓ ନିଜ ସମ୍ପ୍ରଦାୟ ସହିତ (ମଧ୍ୟ) ଶାନ୍ତିରେ ରହିବାକୁ ଇଚ୍ଛା କରନ୍ତି ; ଯେବେ ବି ସେମାନଙ୍କୁ ବିଶୃଙ୍ଖଳା ଆଡ଼କୁ ଫେରାଇ ନିଆଯାଇଅଛି ତେବେ ସେମାନଙ୍କୁ ତହିଁରେ ମୁହଁମାଡ଼ି ପକାଇ ଦିଆଯାଇଅଛି, ସୁତରାଂ ଯଦି ସେମାନେ ତୁମମାନଙ୍କଠାରୁ ଦୂରେଇ ନ ଯାଆନ୍ତି ଏବଂ ତୁମମାନଙ୍କ ସହିତ ସନ୍ଧି ପ୍ରସ୍ତାବ ନ କରନ୍ତି ଏବଂ ନିଜ ହସ୍ତକୁ ଅଟକାଇ ନ ରଖନ୍ତି ତେବେ ତୁମେମାନେ ସେମାନଙ୍କୁ ଧର ଏବଂ ଯେଉଁଠାରେ ସେମାନଙ୍କୁ ପାଅ, ସେମାନଙ୍କୁ ହତ୍ୟାକର ; ଏବଂ ଏହିମାନଙ୍କ ବିରୁଦ୍ଧରେ ଆମେ ତୁମଙ୍କୁ ପ୍ରକାଶ୍ୟ ପ୍ରମାଣ ପ୍ରଦାନ କରିଅଛୁ ।

ରୁ : ୧୩

وَمَا كَانَ لِمُؤْمِنٍ أَن يَقْتُلَ مُؤْمِنًا إِلَّا خَطَأً ۚ وَمَن
قَتَلَ مُؤْمِنًا خَطَأً فَتَحْرِيرُ رَقَبَةٍ مُّؤْمِنَةٍ وَدِيَةٌ
مُّسَلَّمَةٌ إِلَىٰ أَهْلِهِ إِلَّا أَن يَصَّدَّقُوا ۚ فَإِن كَانَ مِن

୯୩. ଭୁଲବଶତଃ ହୋଇ ନଥିଲେ, କୌଣସି ବିଶ୍ୱାସକାରୀ ଅନ୍ୟ ଜଣେ ବିଶ୍ୱାସକାରୀକୁ ହତ୍ୟା କରିବା ଶୋଭନୀୟ ନୁହେଁ ; ଏବଂ ଯେ (ବିଶ୍ୱାସକାରୀ) କୌଣସି ବିଶ୍ୱାସକାରୀକୁ ଅଜାଣତରେ ହତ୍ୟା କରିଦିଏ (ତା ପକ୍ଷରେ) ଜଣେ ବିଶ୍ୱାସକାରୀ (ଦାସ)କୁ ମୁକ୍ତ କରିବା ଏବଂ ସେହି ନିହତ ବ୍ୟକ୍ତିର ଦାୟାଦମାନଙ୍କୁ ହତ୍ୟା ବିନିମୟ ଧନ[3] ପ୍ରଦାନ କରିବା

୧. ସେମାନେ ତୁମମାନଙ୍କ ସହିତ ସନ୍ଧି କରିଥିବାରୁ ତୁମମାନଙ୍କ ସହିତ ତଥା ନିଜ ଜାତିର ଲୋକମାନଙ୍କ ସହିତ ଯୁଦ୍ଧ କରିପାରିବେ ନାହିଁ ।

୨. ଆୟତ–୯୧ରେ: ସନ୍ଧି କରିଥିବା ଲୋକଙ୍କ ବିଷୟ ଓ ଆୟତ–୯୨ରେ କପଟବିଶ୍ୱାସୀଙ୍କ ବିଷୟ ବର୍ଣ୍ଣନା କରାଯାଇଛି । ତେଣୁ ଅଲଗା ଅଲଗା ପରିସ୍ଥିତିରେ କାର୍ଯ୍ୟପନ୍ଥା ଓ ବ୍ୟବହାର ପୃଥକ୍ ହେବା ସ୍ୱାଭାବିକ ।

୩. ଆରବୀ 'ଦିୟତ' ଶବ୍ଦର ଅର୍ଥ ଏପରି କ୍ଷତିପୂରଣ ଯାହା ହତ୍ୟା ପରେ ହତ୍ୟାକାରୀ ନିହତ ବ୍ୟକ୍ତିର ଉତ୍ତରାଧିକାରୀଙ୍କୁ ଦିଏ ।

قَوْمٍ عَدُوٍّ لَّكُمْ وَهُوَ مُؤْمِنٌ فَتَحْرِيرُ رَقَبَةٍ مُّؤْمِنَةٍ ۖ وَإِن كَانَ مِن قَوْمٍ بَيْنَكُمْ وَبَيْنَهُم مِّيثَاقٌ فَدِيَةٌ مُّسَلَّمَةٌ إِلَىٰ أَهْلِهِ وَتَحْرِيرُ رَقَبَةٍ مُّؤْمِنَةٍ ۖ فَمَن لَّمْ يَجِدْ فَصِيَامُ شَهْرَيْنِ مُتَتَابِعَيْنِ تَوْبَةً مِّنَ اللَّهِ ۗ وَكَانَ اللَّهُ عَلِيمًا حَكِيمًا ﴿٩٢﴾

(ଉଚିତ) ହେବ, କେବଳ ଏହା ବ୍ୟତୀତ ଯଦି ସେମାନେ ତାହାକୁ ଦାନ ରୂପେ ଛାଡ଼ି ଦିଅନ୍ତି ; କିନ୍ତୁ ଯଦି ସେ (ନିହତ ବ୍ୟକ୍ତି) ତୁମମାନଙ୍କ ଶତ୍ରୁ ସମ୍ପ୍ରଦାୟର ହୋଇଥାଏ ଏବଂ ସେ (ନିଜେ) ବିଶ୍ୱାସକାରୀ ହୋଇଥାଏ, ତେବେ (ଏହି କାର୍ଯ୍ୟ ଲାଗି କେବଳ) ଜଣେ ବିଶ୍ୱାସକାରୀ (ଦାସ)କୁ ମୁକ୍ତ କରିବା (ଯଥେଷ୍ଟ) ହେବ ; ଏବଂ ଯଦି ସେ (ନିହତ ବ୍ୟକ୍ତି) ଏପରି କୌଣସି ସମ୍ପ୍ରଦାୟର ହୋଇଥାଏ ଯେଉଁମାନଙ୍କ ସହିତ ତୁମେମାନେ ସନ୍ଧି ଦ୍ୱାରା ଆବଦ୍ଧ ଥାଅ ତେବେ (ହତ୍ୟାକାରୀ ପକ୍ଷରେ ନିହତ ବ୍ୟକ୍ତିର) ଦାୟାଦମାନଙ୍କୁ ହତ୍ୟା ବିନିମୟ ଧନ ପ୍ରଦାନ କରିବା (ଉଚିତ) ହେବ ଓ ଏ ରୂପେ ଜଣେ ବିଶ୍ୱାସକାରୀ (ଦାସ)କୁ ମୁକ୍ତ କରିବା ମଧ୍ୟ ଅନିବାର୍ଯ୍ୟ ହେବ ; ଏବଂ ଯାହାର (ଏପରି ସାମର୍ଥ୍ୟ) ନଥାଏ, ତେବେ (ତାହାକୁ) ନିରନ୍ତର ଦୁଇମାସ ରୋଜା ରଖିବା (ଉଚିତ) ହେବ ; ଏ (ଅବ୍ୟାହତି) ଅଲ୍ଲାହଙ୍କ ତରଫରୁ ଅନୁତାପ ସ୍ୱରୂପ ରହିଅଛି ; ଏବଂ ଅଲ୍ଲାହ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَمَن يَقْتُلْ مُؤْمِنًا مُّتَعَمِّدًا فَجَزَاؤُهُ جَهَنَّمُ خَالِدًا فِيهَا وَغَضِبَ اللَّهُ عَلَيْهِ وَلَعَنَهُ وَأَعَدَّ لَهُ عَذَابًا عَظِيمًا ﴿٩٣﴾

୯୪. ଏବଂ ଯେ ଜାଣିଶୁଣି କୌଣସି ବିଶ୍ୱାସକାରୀଙ୍କୁ ହତ୍ୟା କରିବ ତାହାର ଶାସ୍ତି ନରକ ହେବ, ସେ ସେଠାରେ ଦୀର୍ଘକାଳ ବାସ କରିବ ଏବଂ ଅଲ୍ଲାହ ତା ଉପରେ ଅସନ୍ତୁଷ୍ଟ ହେବେ ; ଏବଂ ତା'କୁ (ନିଜ ସମୀପରୁ) ବହିଷ୍କାର କରିଦେବେ ; ଏବଂ ତାହା ପାଇଁ କଠିନ ଶାସ୍ତି ପ୍ରସ୍ତୁତ କରିବେ ।

يَا أَيُّهَا الَّذِينَ آمَنُوا إِذَا ضَرَبْتُمْ فِي سَبِيلِ اللَّهِ فَتَبَيَّنُوا وَلَا تَقُولُوا لِمَنْ أَلْقَىٰ إِلَيْكُمُ السَّلَامَ لَسْتَ مُؤْمِنًا ۚ تَبْتَغُونَ عَرَضَ الْحَيَاةِ الدُّنْيَا فَعِندَ اللَّهِ مَغَانِمُ كَثِيرَةٌ ۚ كَذَٰلِكَ كُنتُم مِّن قَبْلُ فَمَنَّ اللَّهُ عَلَيْكُمْ فَتَبَيَّنُوا ۚ إِنَّ اللَّهَ كَانَ بِمَا تَعْمَلُونَ خَبِيرًا ﴿٩٤﴾

୯୫. ହେ ବିଶ୍ୱାସକାରୀମାନେ ! ତୁମେମାନେ ଯେତେବେଳେ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଯାତ୍ରା କର, ସେତେବେଳେ ଭଲ ରୂପେ ପରୀକ୍ଷାନିରୀକ୍ଷା କରି ନିଅ ; ଏବଂ ଯଦି କେହି ତୁମକୁ ସଲାମ କରେ ତେବେ ତାହାକୁ(ଏହା) କୁହ ନାହିଁ ଯେ, "ତୁମେ ବିଶ୍ୱାସକାରୀ ନୁହଁ"[1]; ତୁମେମାନେ ପାର୍ଥିବ ଜୀବନର ସମ୍ପଦ ଲୋଭୁ ଅଛ ଯଦିଚ ଅଲ୍ଲାହଙ୍କ ପାଖରେ ପ୍ରଚୁର ସମ୍ପଦ ଅଛି ; ପ୍ରଥମେ ତୁମେମାନେ (ମଧ୍ୟ) ଏହିପରି ଥିଲ, ପରେ ଅଲ୍ଲାହ ତୁମମାନଙ୍କ ଉପରେ ଅନୁଗ୍ରହ କଲେ ; ସୁତରାଂ ଉତ୍ତମ ରୂପେ ପରୀକ୍ଷାନିରୀକ୍ଷା କରିବା ତୁମ ପକ୍ଷରେ ଉଚିତ ; ବାସ୍ତବରେ ତୁମେମାନେ ଯାହା କରୁଅଛ, ଅଲ୍ଲାହ ସେ ବିଷୟରେ ସୁବିଦିତ ଅଛନ୍ତି ।

୧. ଯେତେବେଳେ କୌଣସି ଜାତି ବା ସମ୍ପ୍ରଦାୟ ମୁସଲମାନମାନଙ୍କୁ ଶାନ୍ତି ପ୍ରସ୍ତାବ ଦିଏ ବା ସେମାନଙ୍କ ସହିତ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଚାହେଁ ସେତେବେଳେ ଏହି ମନୋଭାବ ପ୍ରତି ସମ୍ମାନ ପ୍ରଦର୍ଶନ କରିବାକୁ ଓ ସେମାନଙ୍କ ସହିତ ଶତ୍ରୁତା ନ କରିବାକୁ ମୁସଲମାନମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ସେହି ସମୟରେ ମଦିନା ନିକଟବର୍ତ୍ତୀ ଅଞ୍ଚଳରେ ଅନେକ ମୁସଲମାନ ବିରୋଧୀ ଗୋଷ୍ଠୀ ରହୁଥିଲେ । ତେଣୁ ସେହି ପରିପ୍ରେକ୍ଷୀରେ ନିର୍ଦ୍ଦେଶ ଦିଆଯାଇଛି ଯେ— ଯଦି କେହି ତୁମକୁ ଇସଲାମୀୟ ପଦ୍ଧତିରେ ସଲାମ (ଅଭିବାଦନ) କରେ ତେବେ ଅନ୍ୟଥା ପ୍ରମାଣିତ ନ ହେବା ପର୍ଯ୍ୟନ୍ତ ତାହାକୁ ମୁସଲମାନ ବୋଲି ଧାରଣା କରିବାକୁ ହେବ । ଯଦି ତୁମେ ତାହାର ଅଭିବାଦନକୁ ସନ୍ଦେହ ଚକ୍ଷୁରେ ଦେଖିବ ବା ତାକୁ ପ୍ରତାରକ ବୋଲି ଭାବିବ ତେବେ ତୁମେ ପରକାଳ ତୁଳନାରେ ଇହକାଳକୁ ପ୍ରାଧାନ୍ୟ ଦେଉଥିବା ଓ ତା'ର ଧନ ସମ୍ପତ୍ତିକୁ ଆତ୍ମସାତ୍ କରିବାକୁ ଚାହୁଁଥିବା ବିବେଚିତ ହେବ ।

لَا يَسْتَوِى الْقٰعِدُوْنَ مِنَ الْمُؤْمِنِيْنَ غَيْرُ اُولِى الضَّرَرِ وَالْمُجٰهِدُوْنَ فِىْ سَبِيْلِ اللّٰهِ بِاَمْوَالِهِمْ وَاَنْفُسِهِمْ ۚ فَضَّلَ اللّٰهُ الْمُجٰهِدِيْنَ بِاَمْوَالِهِمْ وَاَنْفُسِهِمْ عَلَى الْقٰعِدِيْنَ دَرَجَةً ۚ وَكُلًّا وَّعَدَ اللّٰهُ الْحُسْنٰى ۚ وَفَضَّلَ اللّٰهُ الْمُجٰهِدِيْنَ عَلَى الْقٰعِدِيْنَ اَجْرًا عَظِيْمًا ﴿٩٦﴾

୯୬. ବିଶ୍ୱାସକାରୀମାନଙ୍କ ମଧ୍ୟରୁ ଯେଉଁମାନେ ଯନ୍ତ୍ରଣାଗ୍ରସ୍ତ ନ ଥାଇ (ଘରେ) ବସି ରହନ୍ତି ଏବଂ ଯେଉଁମାନେ ନିଜ ସମ୍ପତ୍ତି ଓ ନିଜର ପ୍ରାଣ ଦେଇ ଅଲ୍ଲାହ୍‌ଙ୍କ ପଥରେ ଜେହାଦ କରନ୍ତି ସେମାନେ ସମାନ ନୁହନ୍ତି ; ନିଜର ସମ୍ପତ୍ତି ଓ ପ୍ରାଣ ଦେଇ ଜେହାଦ କରୁଥିବା ବ୍ୟକ୍ତିମାନଙ୍କୁ ବସି ରହିଥିବା ଲୋକମାନଙ୍କ ତୁଳନାରେ ଅଲ୍ଲାହ୍ ପଦମର୍ଯ୍ୟାଦାରେ ଶ୍ରେଷ୍ଠତା ପ୍ରଦାନ କରିଛନ୍ତି ; ଏବଂ ଅଲ୍ଲାହ୍ ପ୍ରତ୍ୟେକଙ୍କୁ କଲ୍ୟାଣ ବିଷୟକ ପ୍ରତିଶ୍ରୁତି ଦେଇଛନ୍ତି ; ଏବଂ ଅଲ୍ଲାହ୍ ଜେହାଦ-କାରୀମାନଙ୍କୁ (ଘରେ) ବସି ରହିଥିବା ଲୋକମାନଙ୍କ ତୁଳନାରେ ମହାନ୍ ପୁରସ୍କାରର ପ୍ରତିଶ୍ରୁତି ଦେଇ (ନିଶ୍ଚୟ) ଶ୍ରେଷ୍ଠତା ପ୍ରଦାନ କରିଛନ୍ତି ।

دَرَجٰتٍ مِّنْهُ وَمَغْفِرَةً وَّرَحْمَةً ۚ وَكَانَ اللّٰهُ غَفُوْرًا رَّحِيْمًا ﴿٩٧﴾

୯୭. (ଏପରି ଶ୍ରେଷ୍ଠତାର ଅର୍ଥ) ତାହାଙ୍କ ନିକଟରୁ ଅନେକ ପଦମର୍ଯ୍ୟାଦା, କ୍ଷମା ଓ କରୁଣା ଲାଭ କରିବା ; ଏବଂ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ (ଓ) କରୁଣାମୟ ।

ع ١٣ / ١٠

ରୁ : ୧୪

اِنَّ الَّذِيْنَ تَوَفّٰهُمُ الْمَلٰٓئِكَةُ ظَالِمِىْٓ اَنْفُسِهِمْ قَالُوْا فِيْمَ كُنْتُمْ ۚ قَالُوْا كُنَّا مُسْتَضْعَفِيْنَ فِى الْاَرْضِ ۚ قَالُوْٓا اَلَمْ تَكُنْ اَرْضُ اللّٰهِ وَاسِعَةً فَتُهَاجِرُوْا فِيْهَا ۚ فَاُولٰٓئِكَ مَاْوٰىهُمْ جَهَنَّمُ ۚ وَسَآءَتْ مَصِيْرًا ﴿٩٨﴾

୯୮. ଯେଉଁ ଲୋକମାନେ ନିଜ ଜୀବନ ପ୍ରତି ଅତ୍ୟାଚାର କରୁଥିବା ବେଳେ ଦେବଦୂତମାନେ ସେମାନଙ୍କର ପ୍ରାଣ ନାଶ କରିଥିଲେ, ସେ (ଦେବଦୂତ)ମାନେ (ସେମାନଙ୍କୁ) ପଚାରିବେ, "ତୁମେମାନେ କ'ଣ ଭାବୁଥିଲ" ? ସେମାନେ (ଅର୍ଥାତ୍ ଦେଶତ୍ୟାଗ[1] କରିବାକୁ ଅମଙ୍ଗ ହେଉଥିବା ଲୋକେ ଉତ୍ତରରେ) କହିବେ, "ଦେଶରେ ଆମମାନଙ୍କୁ ଦୁର୍ବଳ ମନେ କରାଯାଉଥିଲା; (ତେଣୁ ଦେଶ ତ୍ୟାଗ କଲୁ ନାହିଁ); ସେ (ଦେବଦୂତ)ମାନେ ଉତ୍ତର ଦେବେ, "କ'ଣ ଦେଶ ତ୍ୟାଗ କରିବାକୁ ଅଲ୍ଲାହ୍‌ଙ୍କର ପୃଥିବୀ ପ୍ରଶସ୍ତ ନ ଥିଲା ?" ସୁତରାଂ ସେମାନଙ୍କ ବାସସ୍ଥାନ ନରକ ହେବ; ଏବଂ ଅବସ୍ଥାନ ଦୃଷ୍ଟିରୁ ତାହା ଏକ ନିତାନ୍ତ ମନ୍ଦସ୍ଥାନ ।

اِلَّا الْمُسْتَضْعَفِيْنَ مِنَ الرِّجَالِ وَالنِّسَآءِ وَالْوِلْدَانِ لَا يَسْتَطِيْعُوْنَ حِيْلَةً وَّلَا يَهْتَدُوْنَ سَبِيْلًا ﴿٩٩﴾

୯୯. ଅବଶ୍ୟ ସେହି ଲୋକମାନେ ଯେଉଁମାନେ ପୁରୁଷ, ନାରୀ ଓ ଶିଶୁମାନଙ୍କ ମଧ୍ୟରୁ ବସ୍ତୁତଃ ଦୁର୍ବଳ ଥିଲେ (ଓ) ସେମାନେ କୌଣସି ଉପାୟ ଅବଲମ୍ବନ କରିବାକୁ ସକ୍ଷମ ନଥିଲେ ଓ ସେମାନଙ୍କୁ କୌଣସି ପଥ ଦେଖାଯାଉ ନଥିଲା—

فَاُولٰٓئِكَ عَسَى اللّٰهُ اَنْ يَّعْفُوَ عَنْهُمْ ۚ وَكَانَ اللّٰهُ عَفُوًّا غَفُوْرًا ﴿١٠٠﴾

୧୦୦. ଏ ଲୋକମାନଙ୍କୁ ଅଲ୍ଲାହ୍ ଶୀଘ୍ର କ୍ଷମା ପ୍ରଦାନ କରିବେ; କାରଣ ଅଲ୍ଲାହ୍ ହିଁ ଅତ୍ୟନ୍ତ ମାର୍ଜନାକାରୀ (ଓ) କ୍ଷମାଶୀଳ ।

---

୧. ଅର୍ଥାତ୍ ଦେଶ ଭିତରେ ଅବିଶ୍ୱାସକାରୀଙ୍କ ଅତ୍ୟାଚାର ସହ୍ୟ କରୁଥିଲେ ମଧ୍ୟ ସେମାନେ ହିଜରତ ବା ଦେଶାନ୍ତର ଗମନ କଲୁ ନ ଥିଲେ । ଇସଲାମ ଧର୍ମ ଦୁର୍ବଳ ବା ନିଷ୍କ୍ରିୟ ଧର୍ମବିଶ୍ୱାସକୁ ପସନ୍ଦ କରେ ନାହିଁ । ଯଦି ବିଶ୍ୱାସକାରୀ ପକ୍ଷରେ କୌଣସି ପରିବେଶ ଅନୁକୂଳ ନୁହେଁ, ତେବେ ସେ ସେହି ପରିବେଶକୁ ପରିତ୍ୟାଗ କରିବା ଉଚିତ ଅନ୍ୟଥା ତା'ଠାରେ ଧର୍ମନିଷ୍ଠାର ଅଭାବ ଅଛି ବୋଲି ଧରାଯିବ ।

୧୦୧. ଏବଂ ଯେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ଦେଶତ୍ୟାଗ କରିବ ସେ ପୃଥିବୀ ମଧ୍ୟରେ ଅନେକ ଆଶ୍ରୟସ୍ଥଳ ତଥା ପ୍ରାଚୁର୍ଯ୍ୟ ଲାଭ କରିବ; ଏବଂ ଯେ ନିଜ ଗୃହରୁ ବାହାରି ଅଲ୍ଲାହ୍ ଓ ତାଙ୍କର ରସୁଲଙ୍କ ଉଦ୍ଦେଶ୍ୟରେ ଦେଶତ୍ୟାଗ କରେ ଓ ତତ୍‌ପରେ ତାର ମୃତ୍ୟୁ ହୁଏ ତେବେ (ଜାଣିରଖ ଯେ) ତାହାର ପୁରସ୍କାର ଅଲ୍ଲାହ୍‌ଙ୍କ ପାଖରେ ଅଛି; ଏବଂ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَمَنْ يُّهَاجِرْ فِيْ سَبِيْلِ اللّٰهِ يَجِدْ فِي الْاَرْضِ مُرٰغَمًا كَثِيْرًا وَّسَعَةً ۗ وَمَنْ يَّخْرُجْ مِنْۢ بَيْتِهٖ مُهَاجِرًا اِلَى اللّٰهِ وَرَسُوْلِهٖ ثُمَّ يُدْرِكْهُ الْمَوْتُ فَقَدْ وَقَعَ اَجْرُهٗ عَلَى اللّٰهِ ۗ وَكَانَ اللّٰهُ غَفُوْرًا رَّحِيْمًا ﴿١٠١﴾

ରୁ : ୧୫

୧୦୨. ଏବଂ ଯଦି ତୁମେ ଆଶଙ୍କା କରୁଥାଅ ଯେ ଅବିଶ୍ୱାସକାରୀମାନେ ତୁମମାନଙ୍କୁ କଷ୍ଟ ଦେବେ ତାହାହେଲେ ଯେତେବେଳେ ତୁମେମାନେ ଦେଶ ମଧ୍ୟରେ ଭ୍ରମଣ କରୁଥାଅ, ସେତେବେଳେ ନମାଜକୁ ସଂକ୍ଷେପ[୧] କରିବାରେ ତୁମମାନଙ୍କ ପକ୍ଷରେ କୌଣସି ପାପ ନାହିଁ; ବାସ୍ତବରେ ଅବିଶ୍ୱାସକାରୀମାନେ ତୁମମାନଙ୍କର ପ୍ରକାଶ୍ୟ ଶତ୍ରୁ ।

وَاِذَا ضَرَبْتُمْ فِي الْاَرْضِ فَلَيْسَ عَلَيْكُمْ جُنَاحٌ اَنْ تَقْصُرُوْا مِنَ الصَّلٰوةِ ۖ اِنْ خِفْتُمْ اَنْ يَّفْتِنَكُمُ الَّذِيْنَ كَفَرُوْا ۗ اِنَّ الْكٰفِرِيْنَ كَانُوْا لَكُمْ عَدُوًّا مُّبِيْنًا ﴿١٠٢﴾

୧୦୩. ଏବଂ ଯେତେବେଳେ ତୁମେ (ନିଜେ) ସେମାନଙ୍କ ମଧ୍ୟରେ ଥାଅ ଏବଂ ତୁମେ ସେମାନଙ୍କୁ ନମାଜ ପାଠ କରାଅ ସେତେବେଳେ ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ ତୁମ ସହିତ ଦଣ୍ଡାୟମାନ ହେବେ ଓ ନିଜ ନିଜ ଅସ୍ତ୍ର ଧାରଣ କରିବେ; ତାପରେ ଯେତେବେଳେ ସେମାନେ ସିଜଦା କରିସାରିବେ ସେତେବେଳେ ସେମାନେ ତୁମମାନଙ୍କ ପଛରେ ସୁରକ୍ଷା ଲାଗି ଦଣ୍ଡାୟମାନ ହେବେ; ନମାଜ ପାଠ କରି ନ ଥିବା ଅନ୍ୟ ଦଳଟି (ଆଗେଇ) ଆସିବେ, ଏବଂ ତୁମ ସହିତ ନମାଜ ପାଠ କରିବେ, ଏବଂ ସେମାନେ ମଧ୍ୟ ଆତ୍ମରକ୍ଷାର ସାମଗ୍ରୀ ଓ ନିଜର ଅସ୍ତ୍ର ଧାରଣ କରିଥିବେ; ଅବିଶ୍ୱାସକାରୀମାନେ ଇଚ୍ଛା କରନ୍ତି ଯେ ତୁମେମାନେ ନିଜର ଅସ୍ତ୍ରଶସ୍ତ୍ର ଓ ନିଜର ସାମଗ୍ରୀ ସଂପର୍କରେ ଅସାବଧାନ ହୁଅ, ତାହାହେଲେ ସେମାନେ ତୁମ ଉପରେ ସହସା ଆକ୍ରମଣ କରିବେ; ଏବଂ ବୃଷ୍ଟିପାତ ହେତୁ ଯଦି

وَاِذَا كُنْتَ فِيْهِمْ فَاَقَمْتَ لَهُمُ الصَّلٰوةَ فَلْتَقُمْ طَآئِفَةٌ مِّنْهُمْ مَّعَكَ وَلْيَاْخُذُوْٓا اَسْلِحَتَهُمْ ۫ فَاِذَا سَجَدُوْا فَلْيَكُوْنُوْا مِنْ وَّرَآئِكُمْ ۠ وَلْتَاْتِ طَآئِفَةٌ اُخْرٰى لَمْ يُصَلُّوْا فَلْيُصَلُّوْا مَعَكَ وَلْيَاْخُذُوْا حِذْرَهُمْ وَاَسْلِحَتَهُمْ ۚ وَدَّ الَّذِيْنَ كَفَرُوْا لَوْ تَغْفُلُوْنَ عَنْ اَسْلِحَتِكُمْ وَاَمْتِعَتِكُمْ فَيَمِيْلُوْنَ عَلَيْكُمْ مَّيْلَةً وَّاحِدَةً ۗ وَلَا جُنَاحَ عَلَيْكُمْ اِنْ كَانَ بِكُمْ اَذًى مِّنْ مَّطَرٍ اَوْ كُنْتُمْ مَّرْضٰٓى اَنْ تَضَعُوْٓا

---

୧. ଏହି ଆୟତରେ ବ୍ୟାଖ୍ୟା କଲାବେଳେ କେତେକ ଟୀକାକାର ଯାତ୍ରା ବା ଭ୍ରମଣ ସମୟରେ ଦୁଇ ରକାତ ନମାଜ ପଢ଼ିବାକୁ ଆଦେଶ ଦିଆଯାଇଥିବା କହି ଭୁଲ କରିଛନ୍ତି । ହଜରତ ଆଏଶାଙ୍କ ଉକ୍ତିରୁ ଜଣାପଡ଼େ ଯେ ଜଣେ ଘରେ ଥାଉ କି ଭ୍ରମଣ କରୁଥାଉ ତା'ପାଇଁ ପ୍ରଥମେ ଦୁଇ ରକାତ ନମାଜ (ଫର୍ଜ) ନିର୍ଦ୍ଦିଷ୍ଟ କରାଯାଇଥିଲା । ପରେ ଅବଶ୍ୟ ଘରେ ଥିଲାବେଳେ ଚାରି ରକାତ ପଢ଼ିବା ନିର୍ଦ୍ଦିଷ୍ଟ କରାଗଲା (ହଦିସ ବୁଖାରି ଦ୍ରଷ୍ଟବ୍ୟ) । ତେଣୁ ନମାଜକୁ ସଂକ୍ଷେପ କରିବା ଅର୍ଥ ନମାଜ ଶୀଘ୍ର ଶୀଘ୍ର ପଢ଼ିବା ଯେପରିକି ଅଳ୍ପ ସମୟରେ ତାହା ଶେଷ ହୋଇଯିବ ।

ଭୟ ଲାଗି ରହିଥିବା ବେଳେ କିପରି ନମାଜ ପାଠ କରିବାକୁ ହେବ ସେ ବିଷୟରେ କୋରାନର ତିନିଗୋଟି ଆୟତରେ ଆଲୋଚନା କରାଯାଇଛି: (କ) ଅତ୍ୟଧିକ ଭୟ ଲାଗି ରହିଥିବା ବେଳେ ୨:୨୪୦, (ଖ)ସାଧାରଣ ଭୟ ସମୟରେ ବ୍ୟକ୍ତିଗତ ଭାବେ କିପରି ନମାଜ ପଢ଼ିବାକୁ ହେବ ୪:୧୦୨, (ଗ)ଭୟ ଲାଗି ରହିଥିବା ବେଳେ କିପରି ସାମୂହିକ ନମାଜ ପଢ଼ିବାକୁ ହେବ । (୪:୧୦୩)

ଏହି ଆୟତରେ ବର୍ଣ୍ଣନା କରାଯାଇଛି ଯେ ଶତ୍ରୁ ଆକ୍ରମଣ ଭୟ ଲାଗି ରହିଥିବାବେଳେ ତୁମେମାନେ ଶୀଘ୍ର ଶୀଘ୍ର ନମାଜ ପଢ଼ିଲେ ତୁମମାନଙ୍କର ନମାଜ ବ୍ୟର୍ଥ ହେବ ନାହିଁ ମାତ୍ର ଯେତେବେଳେ କୌଣସି ବ୍ୟକ୍ତି ଭ୍ରମଣ କରୁଥିବ ସେତେବେଳେ ସେ ଦୁଇ ରକାତ ନମାଜ ପଢ଼ିବା ଉଚିତ ।

أَسْلِحَتَكُمْ وَخُذُوا حِذْرَكُمْ ۗ إِنَّ اللَّهَ أَعَدَّ لِلْكَافِرِينَ عَذَابًا مُهِينًا ۝

ତୁମମାନଙ୍କୁ କଷ୍ଟ ହୁଏ ବା ତୁମେମାନେ ପୀଡ଼ିତ ଥାଅ, ତେବେ ନିଜର ଅସ୍ତ୍ର ପରିତ୍ୟାଗ କରିବାରେ ତୁମମାନଙ୍କର କୌଣସି ପାପ ହେବ ନାହିଁ; କିନ୍ତୁ ତଥାପି ସକଳ ସାବଧାନତା ଅବଲମ୍ବନ କର; ବାସ୍ତବରେ ଅଲ୍ଲାହ ଅବିଶ୍ୱାସକାରୀମାନଙ୍କ ପାଇଁ ଅପମାନଜନକ ଶାସ୍ତି ପ୍ରସ୍ତୁତ କରିଛନ୍ତି ।

فَإِذَا قَضَيْتُمُ الصَّلَاةَ فَاذْكُرُوا اللَّهَ قِيَامًا وَقُعُودًا وَعَلَىٰ جُنُوبِكُمْ ۚ فَإِذَا اطْمَأْنَنْتُمْ فَأَقِيمُوا الصَّلَاةَ ۚ إِنَّ الصَّلَاةَ كَانَتْ عَلَى الْمُؤْمِنِينَ كِتَابًا مَوْقُوتًا ۝

୧୦୪. ଏବଂ ଯେତେବେଳେ ତୁମେମାନେ ନମାଜ ପାଠ ଶେଷ କରିବ ସେତେବେଳେ ଠିଆ ହୋଇ ଓ ବସିକରି ତଥା ଗଡ଼ପଡ଼ ହେଉଥିବା ଅବସ୍ଥାରେ ଅଲ୍ଲାହଙ୍କୁ ସ୍ମରଣ କର; ପୁଣି ଯେତେବେଳେ ତୁମେମାନେ ସୁରକ୍ଷିତ ହୋଇଯିବ, (ସେତେବେଳେ) ସୁଚାରୁରୂପେ ନମାଜ ପାଠ କର; ବିଶ୍ୱାସକାରୀମାନଙ୍କ ପାଇଁ ନିର୍ଦ୍ଧାରିତ ସମୟରେ ନମାଜ ପାଠ କରିବା ଅନିବାର୍ଯ୍ୟ କରାଯାଇଛି ।

وَلَا تَهِنُوا فِي ابْتِغَاءِ الْقَوْمِ ۖ إِنْ تَكُونُوا تَأْلَمُونَ فَإِنَّهُمْ يَأْلَمُونَ كَمَا تَأْلَمُونَ ۖ وَتَرْجُونَ مِنَ اللَّهِ مَا لَا يَرْجُونَ ۗ وَكَانَ اللَّهُ عَلِيمًا حَكِيمًا ۝

୧୦୫. ଏବଂ ତୁମେମାନେ ଏହି ଦଳ (ଅର୍ଥାତ୍ ଶତ୍ରୁପକ୍ଷ)କୁ ଖୋଜିବାରେ ଅବହେଳା କରନାହିଁ; ଯଦି ତୁମମାନଙ୍କୁ କଷ୍ଟ ହେଉଛି, ତେବେ ଯେପରି ତୁମମାନଙ୍କୁ କଷ୍ଟ ହେଉଛି, ସେମାନଙ୍କୁ ମଧ୍ୟ ସେହିପରି କଷ୍ଟ ହେଉଛି; ଏବଂ ତୁମେମାନେ ତ ଅଲ୍ଲାହଙ୍କଠାରୁ ତାହା (ଅର୍ଥାତ୍ କୃପା ଓ କରୁଣା) ଆଶା କରୁଅଛ ଯାହାର ଆଶା ସେମାନେ ରଖୁନାହାନ୍ତି; ଏବଂ ଅଲ୍ଲାହ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

ରୁ : ୧୬

إِنَّا أَنْزَلْنَا إِلَيْكَ الْكِتَابَ بِالْحَقِّ لِتَحْكُمَ بَيْنَ النَّاسِ بِمَا أَرَاكَ اللَّهُ ۚ وَلَا تَكُنْ لِلْخَائِنِينَ خَصِيمًا ۝

୧୦୬. ବାସ୍ତବରେ ଆମେ ତୁମ ପ୍ରତି ସତ୍ୟ ସମ୍ବଳିତ (ଏହି) ଗ୍ରନ୍ଥ ଏଥି ନିମିତ୍ତ ଅବତୀର୍ଣ୍ଣ କରିଅଛୁ ଯେପରିକି ତୁମେ ଲୋକମାନଙ୍କ ମଧ୍ୟରେ ସେହି ସତ୍ୟ ଦ୍ୱାରା ଯାହା ଅଲ୍ଲାହ ତୁମଙ୍କୁ ପ୍ରଦର୍ଶିତ କରିଛନ୍ତି ମୀମାଂସା କରିବ; ତୁମେ ଆତ୍ମସାତ୍କାରୀମାନଙ୍କ ତରଫରୁ କଳହକାରୀ ହୁଅ ନାହିଁ ।

وَاسْتَغْفِرِ اللَّهَ ۖ إِنَّ اللَّهَ كَانَ غَفُورًا رَحِيمًا ۝

୧୦୭. ଏବଂ ଅଲ୍ଲାହଙ୍କ ନିକଟରେ କ୍ଷମା ପ୍ରାର୍ଥନା କର; ବାସ୍ତବରେ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَلَا تُجَادِلْ عَنِ الَّذِينَ يَخْتَانُونَ أَنْفُسَهُمْ ۚ إِنَّ اللَّهَ لَا يُحِبُّ مَنْ كَانَ خَوَّانًا أَثِيمًا ۝

୧୦୮. ଏବଂ ଯେଉଁମାନେ ନିଜ ଆତ୍ମା ପ୍ରତି ବିଶ୍ୱାସଘାତକତା କରନ୍ତି ତୁମେ ସେମାନଙ୍କ ତରଫରୁ କଳହ କର ନାହିଁ; ଏବଂ ଯେ ବିଶ୍ୱାସଘାତକ ଓ ମହାପାପୀ ଅଲ୍ଲାହ ତାହାକୁ ପସନ୍ଦ କରନ୍ତି ନାହିଁ ।

يَسْتَخْفُونَ مِنَ النَّاسِ وَلَا يَسْتَخْفُونَ مِنَ اللَّهِ وَهُوَ مَعَهُمْ إِذْ يُبَيِّتُونَ مَا لَا يَرْضَىٰ مِنَ الْقَوْلِ ۚ وَكَانَ اللَّهُ بِمَا يَعْمَلُونَ مُحِيطًا ﴿١٠٩﴾

୧୦୯. ସେମାନେ ଲୋକମାନଙ୍କଠାରୁ ଲୁଚାଉଛନ୍ତି କିନ୍ତୁ ଅଲ୍ଲାହଙ୍କଠାରୁ ଲୁଚାଇ ପାରିବେ ନାହିଁ ଅଥଚ ଯେତେବେଳେ ସେମାନେ ରାତ୍ରିରେ ଏପରି ବିଷୟରେ ମନ୍ତ୍ରଣା କରନ୍ତି, ଯାହା ଅଲ୍ଲାହ ପସନ୍ଦ କରନ୍ତି ନାହିଁ ସେ (ଅଲ୍ଲାହ) ସେମାନଙ୍କ ପାଖରେ ଥାଆନ୍ତି, ଏବଂ ସେମାନେ ଯାହା କିଛି କରୁଛନ୍ତି ଅଲ୍ଲାହ ତାହାର ମୂଳୋତ୍ପାଟନ କରିଦେବେ ।

هَا أَنتُمْ هَٰؤُلَاءِ جَادَلْتُمْ عَنْهُمْ فِي الْحَيَاةِ الدُّنْيَا فَمَن يُجَادِلُ اللَّهَ عَنْهُمْ يَوْمَ الْقِيَامَةِ أَم مَّن يَكُونُ عَلَيْهِمْ وَكِيلًا ﴿١١٠﴾

୧୧୦. ସାବଧାନ ! ତୁମେମାନେ ହିଁ ସେମାନଙ୍କ ତରଫରୁ ସାଂସାରିକ ଜୀବନରେ କଳହ କରୁଅଛ, କିନ୍ତୁ କୟାମତ ଦିନ କିଏ ସେମାନଙ୍କ ପକ୍ଷରୁ ଅଲ୍ଲାହଙ୍କ ସହିତ କଳହ କରିବ ବା କିଏ ସେମାନଙ୍କର ସଂରକ୍ଷକ ହେବ ।

وَمَن يَعْمَلْ سُوءًا أَوْ يَظْلِمْ نَفْسَهُ ثُمَّ يَسْتَغْفِرِ اللَّهَ يَجِدِ اللَّهَ غَفُورًا رَّحِيمًا ﴿١١١﴾

୧୧୧. ଏବଂ ଯେ କେହି ଦୁଷ୍କର୍ମ କରି ବା ନିଜ ଜୀବନ ପ୍ରତି ଅତ୍ୟାଚାର କରି ତା ପରେ ଅଲ୍ଲାହଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିବ, ସେ ଅଲ୍ଲାହଙ୍କୁ କ୍ଷମାଶୀଳ (ଓ) ସଦା କରୁଣାମୟ ପାଇବ ।

وَمَن يَكْسِبْ إِثْمًا فَإِنَّمَا يَكْسِبُهُ عَلَىٰ نَفْسِهِ ۚ وَكَانَ اللَّهُ عَلِيمًا حَكِيمًا ﴿١١٢﴾

୧୧୨. ଏବଂ ଯେ କେହି ଦୁଷ୍କର୍ମ କରିବ, ତାହାର କର୍ମ ତାହାରି ଉପରେ (ଓଲଟି) ପଡ଼ିବ; ଏବଂ ଅଲ୍ଲାହ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَمَن يَكْسِبْ خَطِيئَةً أَوْ إِثْمًا ثُمَّ يَرْمِ بِهِ بَرِيئًا فَقَدِ احْتَمَلَ بُهْتَانًا وَإِثْمًا مُّبِينًا ﴿١١٣﴾

୧୧୩. ଏବଂ ଯେଉଁ ବ୍ୟକ୍ତି କୌଣସି ଅପରାଧ ବା ପାପ କରି ତା ପରେ ତାହାକୁ କୌଣସି ନିରପରାଧୀ ପ୍ରତି ଆରୋପ କରେ (ତେବେ ଜାଣିରଖ ଯେ) ସେ ନିଜେ ସେହି ମିଥ୍ୟା ଆରୋପ ଓ ପ୍ରକାଶ୍ୟ ପାପର ଭାର ବହନ କରେ ।

ରୁ : ୧୭

وَلَوْلَا فَضْلُ اللَّهِ عَلَيْكَ وَرَحْمَتُهُ لَهَمَّت طَّائِفَةٌ مِّنْهُمْ أَن يُضِلُّوكَ وَمَا يُضِلُّونَ إِلَّا أَنفُسَهُمْ ۖ وَمَا يَضُرُّونَكَ مِن شَيْءٍ ۚ وَأَنزَلَ اللَّهُ عَلَيْكَ الْكِتَابَ وَالْحِكْمَةَ وَعَلَّمَكَ مَا لَمْ تَكُن تَعْلَمُ ۚ وَكَانَ فَضْلُ اللَّهِ عَلَيْكَ عَظِيمًا ﴿١١٤﴾

୧୧୪. ଏବଂ ଯଦି ତୁମ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନ ହୁଅନ୍ତା ତେବେ (ସେମାନେ ଅର୍ଥାତ୍ ଶତ୍ରୁମାନେ ନିଜ ମନ୍ଦ ଅଭିଳାଷରେ ସଫଳ ହୋଇଥାଆନ୍ତେ; ସୁତରାଂ) ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ ଦୃଢ଼ ସଂକଳ୍ପ କରିଥିଲେ ଯେ ତୁମକୁ ବିନାଶ କରିଦେବେ ଏବଂ ସେମାନେ ନିଜ ଛଡ଼ା ଅନ୍ୟ କାହାର ବିନାଶ କରନ୍ତି ନାହିଁ; ଏବଂ ତୁମର କୌଣସି କ୍ଷତି କରି ପାରିବେ ନାହିଁ; ଏବଂ ଅଲ୍ଲାହ ତୁମ ପ୍ରତି (ଧର୍ମ) ଗ୍ରନ୍ଥ ଏବଂ ତତ୍ତ୍ୱଜ୍ଞାନ ଅବତୀର୍ଣ୍ଣ କରିଛନ୍ତି ଏବଂ ତୁମେ ଯାହା ଜାଣି ନଥିଲ ତାହା ତୁମକୁ ଶିଖାଇଛନ୍ତି; ଏବଂ ତୁମ ପ୍ରତି ଅଲ୍ଲାହଙ୍କର ବିଶେଷ କୃପା ଅଛି ।

୧୧୫. ବଦାନ୍ୟତା ବା ପୁଣ୍ୟ କାର୍ଯ୍ୟ କିମ୍ବା ଲୋକମାନଙ୍କ ମଧ୍ୟରେ ଶାନ୍ତି ସ୍ଥାପନ ବିଷୟକ ଆଦେଶ ବ୍ୟତୀତ ସେମାନଙ୍କର ଅନେକ ପରାମର୍ଶରେ କୌଣସି ମଙ୍ଗଳ ନାହିଁ; ଏବଂ ଯେଉଁ ବ୍ୟକ୍ତି ଅଲ୍ଲାହ୍‌ଙ୍କ ସନ୍ତୋଷ ବିଧାନ ପାଇଁ ଏପରି କରେ (ଅର୍ଥାତ୍ ଉତ୍ତମ ପରାମର୍ଶ ଦିଏ), ଆମେ ତାହାକୁ ଶୀଘ୍ର ମହାନ୍ ପୁରସ୍କାର ଦେବୁ ।

لَا خَيْرَ فِي كَثِيرٍ مِّن نَّجْوَاهُمْ إِلَّا مَنْ أَمَرَ بِصَدَقَةٍ أَوْ مَعْرُوفٍ أَوْ إِصْلَاحٍ بَيْنَ النَّاسِ ۚ وَمَن يَفْعَلْ ذَٰلِكَ ابْتِغَاءَ مَرْضَاتِ اللَّهِ فَسَوْفَ نُؤْتِيهِ أَجْرًا عَظِيمًا ﴿١١٤﴾

୧୧୬. ଏବଂ ଯେଉଁ ବ୍ୟକ୍ତି ନିକଟରେ ସତ୍‌ପଥ ସଂପୂର୍ଣ୍ଣ ରୂପେ ଉନ୍ମୁକ୍ତ ହେବା ପରେ ସେ (ସେହି) ରସୁଲଙ୍କର ବିରୁଦ୍ଧାଚରଣ କରେ ଏବଂ ବିଶ୍ୱାସକାରୀମାନଙ୍କ ପଥ ଭିନ୍ନ ଅନ୍ୟ ପଥକୁ ଅନୁସରଣ କରେ, ସେ ଯେଉଁ ପଥ ଅନୁସରଣ କରୁଅଛି ଆମେ ତାହାକୁ ସେହି ଆଡ଼କୁ ଫେରାଇ ନେବୁ;[1] ଏବଂ ତାହାକୁ ନରକରେ ନିକ୍ଷେପ କରିବୁ ଏବଂ ତାହା ଅତ୍ୟନ୍ତ ମନ୍ଦ ସ୍ଥାନ ।

وَمَن يُشَاقِقِ الرَّسُولَ مِن بَعْدِ مَا تَبَيَّنَ لَهُ الْهُدَىٰ وَيَتَّبِعْ غَيْرَ سَبِيلِ الْمُؤْمِنِينَ نُوَلِّهِ مَا تَوَلَّىٰ وَنُصْلِهِ جَهَنَّمَ ۖ وَسَاءَتْ مَصِيرًا ﴿١١٥﴾

ରୁ : ୧୮

୧୧୭. ବାସ୍ତବରେ ଅଲ୍ଲାହ୍ ତାହାଙ୍କ ସହିତ ସମକକ୍ଷ କରାଇବା (ପାପ)କୁ କଦାପି କ୍ଷମା କରିବେ ନାହିଁ; ଏବଂ ତାହାଠାରୁ ନ୍ୟୂନ ଯାହା (ପାପ) ହେବ (ତାହା) ସେ ଯାହାକୁ ଇଚ୍ଛା କ୍ଷମା କରିଦେବେ; ଏବଂ ଯେଉଁ ବ୍ୟକ୍ତି ଅନ୍ୟକୁ ଅଲ୍ଲାହ୍‌ଙ୍କ ସହିତ ସମକକ୍ଷ କରେ (ତେବେ ମନେରଖ ଯେ) ସେ ନିଶ୍ଚୟ (ସତ୍‌ପଥରୁ) ବହୁତ ଦୂରେଇ ଯାଇଅଛି ।

إِنَّ اللَّهَ لَا يَغْفِرُ أَن يُشْرَكَ بِهِ وَيَغْفِرُ مَا دُونَ ذَٰلِكَ لِمَن يَشَاءُ ۚ وَمَن يُشْرِكْ بِاللَّهِ فَقَدْ ضَلَّ ضَلَالًا بَعِيدًا ﴿١١٦﴾

୧୧୮. ସେମାନେ ଅଲ୍ଲାହ୍‌ଙ୍କୁ ପରିତ୍ୟାଗ କରି ନିର୍ଜୀବ ବସ୍ତୁ ଛଡ଼ା ଅନ୍ୟ କାହାରିକୁ ଡାକନ୍ତି ନାହିଁ; ବରଂ ସେମାନେ ଦୁରାଚାରୀ ସଇତାନ ବ୍ୟତୀତ ଅନ୍ୟ କାହାରିକୁ ଡାକନ୍ତି ନାହିଁ ।

إِن يَدْعُونَ مِن دُونِهِ إِلَّا إِنَاثًا وَإِن يَدْعُونَ إِلَّا شَيْطَانًا مَّرِيدًا ﴿١١٧﴾

୧୧୯. (ସେହି ସଇତାନକୁ) ଯାହାକୁ ଅଲ୍ଲାହ୍ (ନିଜ ସମୀପରୁ) ବିତାଡ଼ିତ କରିଛନ୍ତି ଏବଂ (ଯେ ଏହା) କହିଥିଲା, "ମୁଁ ନିଶ୍ଚୟ ତୁମର ଭକ୍ତମାନଙ୍କ ମଧ୍ୟରୁ ଏକ ନିର୍ଦ୍ଦିଷ୍ଟ ଭାଗକୁ ନେଇଯିବି ।"

لَّعَنَهُ اللَّهُ ۘ وَقَالَ لَأَتَّخِذَنَّ مِنْ عِبَادِكَ نَصِيبًا مَّفْرُوضًا ﴿١١٨﴾

୧୨୦. "ଏବଂ ମୁଁ ନିଶ୍ଚୟ ସେମାନଙ୍କୁ ପଥଭ୍ରଷ୍ଟ କରାଇବି, ଏବଂ ନିଶ୍ଚୟ ସେମାନଙ୍କୁ (ବୃଥା) ଆଶା ପ୍ରଦାନ କରିବି ଏବଂ ଚତୁଷ୍ପଦ(ପ୍ରାଣୀ)ର କର୍ଣ୍ଣ ଛେଦନ[2] କରିବାକୁ ସେମାନଙ୍କୁ ନିଶ୍ଚୟ ନିର୍ଦ୍ଦେଶ ଦେବି; ଏବଂ ସେହିପରି ନିର୍ଦ୍ଦେଶ ଦେବି ଯେ ସେମାନେ (ଅଲ୍ଲାହ୍‌ଙ୍କର) ସୃଷ୍ଟିକୁ ପରିବର୍ତ୍ତନ କରନ୍ତୁ"; ଏବଂ ଯେ ଅଲ୍ଲାହ୍‌ଙ୍କୁ ପରିତ୍ୟାଗ କରି ସଇତାନ ସହିତ ବନ୍ଧୁତା ସ୍ଥାପନ କରେ (ତେବେ ମନେରଖ) ସେ ନିଶ୍ଚୟ ପ୍ରକାଶ୍ୟରେ କ୍ଷତିରେ ପଡ଼ିଗଲା ।

وَلَأُضِلَّنَّهُمْ وَلَأُمَنِّيَنَّهُمْ وَلَآمُرَنَّهُمْ فَلَيُبَتِّكُنَّ آذَانَ الْأَنْعَامِ وَلَآمُرَنَّهُمْ فَلَيُغَيِّرُنَّ خَلْقَ اللَّهِ ۚ وَمَن يَتَّخِذِ الشَّيْطَانَ وَلِيًّا مِّن دُونِ اللَّهِ فَقَدْ خَسِرَ خُسْرَانًا مُّبِينًا ﴿١١٩﴾

---

୧. ଅର୍ଥାତ୍ ଅବତାର ଓ ତାଙ୍କ ଅନୁଗାମୀମାନଙ୍କୁ ବିନାଶ କରିବାପାଇଁ ଯେ ଇଚ୍ଛା କରୁଛି ଆମେ ତା' ଭାଗ୍ୟରେ ସେହି ବିନାଶକୁ ଲେଖି ଦେବୁ ।

୨. ଦେବାଦେବୀଙ୍କ ପାଖରେ ବଳି ପକାଯିବା ପଶୁମାନଙ୍କର କାନକଟା ବିଧି ତତ୍କାଳୀନ ଆରବ ସମାଜରେ ପ୍ରଚଳିତ ଥିଲା । ଏବେ ବି କେତେକ ଦେଶରେ ଏହି ପ୍ରଥା ଆଦୃତ ହେଉଛି ।

୧୨୧. ସେ (ସଇତାନ) ସେମାନଙ୍କୁ ପ୍ରତିଶ୍ରୁତି ଦିଏ ଏବଂ ଆଶା ପ୍ରଦାନ କରେ ଏବଂ ସଇତାନ ସେମାନଙ୍କୁ ପ୍ରକାଶ୍ୟ ପ୍ରତାରଣା ଛଡ଼ା ଅନ୍ୟ କୌଣସି ପ୍ରତିଶ୍ରୁତି ଦିଏ ନାହିଁ ।

يَعِدُهُمْ وَيُمَنِّيهِمْ ۖ وَمَا يَعِدُهُمُ الشَّيْطٰنُ إِلَّا غُرُورًا ﴿١٢١﴾

୧୨୨. ସେମାନଙ୍କ ବାସସ୍ଥାନ ନରକ ଅଟେ; ଏବଂ ସେମାନେ ସେଠାରୁ ପଳାଇବା ପାଇଁ କୌଣସି ପଥ ପାଇବେ ନାହିଁ ।

أُولٰٓئِكَ مَأْوٰىهُمْ جَهَنَّمُ وَلَا يَجِدُونَ عَنْهَا مَحِيصًا ﴿١٢٢﴾

୧୨୩. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସତ୍ କାର୍ଯ୍ୟ କରିଛନ୍ତି, ଆମେ ସେମାନଙ୍କୁ ନିଶ୍ଚୟ ଏପରି ଉଦ୍ୟାନରେ ପ୍ରବେଶ କରାଇବୁ ଯାହାର ନିମ୍ନ ଦେଶରେ ଝରଣାମାନ ପ୍ରବାହିତ ହେଉଥିବ, ଓ ସେମାନେ ସେଠାରେ ସର୍ବଦା ବାସ କରିବେ; ଏହା ଅଲ୍ଲାହ୍‌ଙ୍କର ସତ୍ୟ ପ୍ରତିଶ୍ରୁତି ଅଟେ; ଏବଂ ଅଲ୍ଲାହ୍‌ଙ୍କଠାରୁ ଅନ୍ୟ କାହାର କଥା ଅଧିକ ସତ୍ୟ ହୋଇପାରେ ?

وَالَّذِينَ اٰمَنُوا وَعَمِلُوا الصّٰلِحٰتِ سَنُدْخِلُهُمْ جَنّٰتٍ تَجْرِي مِنْ تَحْتِهَا الْأَنْهٰرُ خٰلِدِينَ فِيهَا أَبَدًا ۖ وَعْدَ اللّٰهِ حَقًّا ۚ وَمَنْ أَصْدَقُ مِنَ اللّٰهِ قِيلًا ﴿١٢٣﴾

୧୨୪. ଏହା ତୁମମାନଙ୍କ ଇଚ୍ଛାନୁସାରେ ହେବ ନାହିଁ କି ଗ୍ରନ୍ଥଧାରୀମାନଙ୍କ ଇଚ୍ଛାନୁସାରେ ହେବ ନାହିଁ, ବରଂ ଯେଉଁ ବ୍ୟକ୍ତି ଅସତ୍ କାର୍ଯ୍ୟ କରିବ, ତାହାକୁ ତଦନୁସାରେ ପୁରସ୍କାର ମିଳିବ; ଏବଂ ସେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାକୁ (ନିଜର) ବନ୍ଧୁ ବା ସାହାଯ୍ୟକାରୀ ପାଇବ ନାହିଁ ।

لَيْسَ بِأَمَانِيِّكُمْ وَلَا أَمَانِيِّ أَهْلِ الْكِتٰبِ ۗ مَنْ يَعْمَلْ سُوٓءًا يُجْزَ بِهٖ وَلَا يَجِدْ لَهٗ مِنْ دُونِ اللّٰهِ وَلِيًّا وَلَا نَصِيرًا ﴿١٢٤﴾

୧୨୫. ପୁରୁଷ ହେଉ ବା ନାରୀ, ଯେଉଁ ଲୋକମାନେ ବିଶ୍ୱାସକାରୀ ଥାଇ ପୁଣ୍ୟ କାର୍ଯ୍ୟ କରିବେ, ତେବେ ସେମାନେ ବୈକୁଣ୍ଠରେ ପ୍ରବେଶ କରିବେ ଏବଂ ସେମାନଙ୍କ ପ୍ରତି ଖଜୁରି ମଞ୍ଜିର ରନ୍ଧ୍ର ସଦୃଶ (ସାମାନ୍ୟ) ଅତ୍ୟାଚାର କରାଯିବ ନାହିଁ ।

وَمَنْ يَعْمَلْ مِنَ الصّٰلِحٰتِ مِنْ ذَكَرٍ أَوْ أُنْثٰى وَهُوَ مُؤْمِنٌ فَأُولٰٓئِكَ يَدْخُلُونَ الْجَنَّةَ وَلَا يُظْلَمُونَ نَقِيرًا ﴿١٢٥﴾

୧୨୬. ଏବଂ ସେହି ବ୍ୟକ୍ତିଠାରୁ କାହାର ଧର୍ମ ଉତ୍କୃଷ୍ଟ ହୋଇପାରେ ଯେ ଭଲ ରୂପେ କାର୍ଯ୍ୟ କରି ନିଜକୁ ସଂପୂର୍ଣ୍ଣ ରୂପେ ଅଲ୍ଲାହ୍‌ଙ୍କଠାରେ ସମର୍ପଣ କରିଥିବ ଏବଂ ଏକନିଷ୍ଠ ଇବ୍ରାହିମଙ୍କର ଧର୍ମକୁ ଅନୁସରଣ କରୁଥିବ ? ଏବଂ ଅଲ୍ଲାହ୍ ଇବ୍ରାହିମଙ୍କୁ ଏକ ଅନ୍ତରଙ୍ଗ ବନ୍ଧୁ ରୂପେ ଗ୍ରହଣ କରିଥିଲେ ।

وَمَنْ أَحْسَنُ دِينًا مِمَّنْ أَسْلَمَ وَجْهَهٗ لِلّٰهِ وَهُوَ مُحْسِنٌ وَاتَّبَعَ مِلَّةَ إِبْرٰهِيمَ حَنِيفًا ۗ وَاتَّخَذَ اللّٰهُ إِبْرٰهِيمَ خَلِيلًا ﴿١٢٦﴾

୧୨୭. ଏବଂ ଯାହା କିଛି ଆକାଶରେ ଅଛି ଓ ଯାହା କିଛି ପୃଥିବୀରେ ଅଛି ସେସବୁ ଅଲ୍ଲାହ୍‌ଙ୍କର, ଏବଂ ଅଲ୍ଲାହ୍ ସକଳ ବିଷୟକୁ ସଂପୂର୍ଣ୍ଣରୂପେ ଜାଣନ୍ତି ।

وَلِلّٰهِ مَا فِي السَّمٰوٰتِ وَمَا فِي الْأَرْضِ ۚ وَكَانَ اللّٰهُ بِكُلِّ شَيْءٍ مُحِيطًا ﴿١٢٧﴾

ରୁ : ୧୯

وَيَسْتَفْتُونَكَ فِي النِّسَاءِ ۖ قُلِ اللَّهُ يُفْتِيكُمْ فِيهِنَّ وَمَا يُتْلَىٰ عَلَيْكُمْ فِي الْكِتَابِ فِي يَتَامَى النِّسَاءِ اللَّاتِي لَا تُؤْتُونَهُنَّ مَا كُتِبَ لَهُنَّ وَتَرْغَبُونَ أَن تَنكِحُوهُنَّ وَالْمُسْتَضْعَفِينَ مِنَ الْوِلْدَانِ وَأَن تَقُومُوا لِلْيَتَامَىٰ بِالْقِسْطِ ۚ وَمَا تَفْعَلُوا مِنْ خَيْرٍ فَإِنَّ اللَّهَ كَانَ بِهِ عَلِيمًا ﴿١٢٨﴾

୧୨୮. ଏବଂ ଲୋକମାନେ ତୁମକୁ (ଏକାଧିକ) ନାରୀ (ସହିତ ବିବାହ ବିଧାନ) ସଂକ୍ରାନ୍ତରେ ପ୍ରଶ୍ନ କରୁଛନ୍ତି; ତୁମେ (ସେମାନଙ୍କୁ) କୁହ ଯେ ଅଲ୍ଲାଃ ସେମାନଙ୍କ ସଂକ୍ରାନ୍ତରେ ତୁମମାନଙ୍କୁ ଅନୁମତି ଦେଇଛନ୍ତି, ଯାହାକି (ଏହି) ଗ୍ରନ୍ଥରେ (ଅନ୍ୟତ୍ର)[1] ତୁମମାନଙ୍କ ନିକଟରେ ଆବୃତ୍ତି କରାଯାଇଛି ତାହା ସେହି ଅନାଥ ନାରୀମାନଙ୍କ ସଂପର୍କରେ ଅଛି, ଯାହାକୁ ତୁମେମାନେ ସେମାନଙ୍କର ନିର୍ଦ୍ଦିଷ୍ଟ ଦେୟ (ଅର୍ଥାତ୍ ମହର) ପ୍ରଦାନ ନ କରି ବିବାହ କରିବାକୁ ଇଚ୍ଛା କରୁଅଛ; ତଥା ତାହା ଦୁର୍ବଳ ବାଳିକାମାନଙ୍କ[2] ସଂକ୍ରାନ୍ତରେ (ମଧ୍ୟ) ଅଛି, (ଏବଂ ତୁମମାନଙ୍କୁ ଆଦେଶ ଦିଆଯାଇଅଛି ଯେ) ଅନାଥମାନଙ୍କ ସହିତ ନ୍ୟାୟସଙ୍ଗତ ବ୍ୟବହାର କର; ଏବଂ ତୁମେମାନେ ଯାହା କିଛି ପୁଣ୍ୟ କାର୍ଯ୍ୟ କର (ମନେରଖ ଯେ) ଅଲ୍ଲାଃ ନିଶ୍ଚୟ ତାହାକୁ ଭଲ ରୂପେ ଜାଣନ୍ତି ।

وَإِنِ امْرَأَةٌ خَافَتْ مِن بَعْلِهَا نُشُوزًا أَوْ إِعْرَاضًا فَلَا جُنَاحَ عَلَيْهِمَا أَن يُصْلِحَا بَيْنَهُمَا صُلْحًا ۚ وَالصُّلْحُ خَيْرٌ ۗ وَأُحْضِرَتِ الْأَنفُسُ الشُّحَّ ۚ وَإِن تُحْسِنُوا وَتَتَّقُوا فَإِنَّ اللَّهَ كَانَ بِمَا تَعْمَلُونَ خَبِيرًا ﴿١٢٩﴾

୧୨୯. ଏବଂ ଯଦି କୌଣସି ନାରୀକୁ ନିଜର ସ୍ୱାମୀ ତରଫରୁ ଅସଦାଚରଣ ବା ଅବହେଳାର ଆଶଙ୍କା ଥାଏ, ତେବେ ସେମାନେ[3] ଯଦି ଶାନ୍ତିପୂର୍ଣ୍ଣ ଭାବେ ପରସ୍ପର ମଧ୍ୟରେ ମାମଲାର ମୀମାଂସା କରନ୍ତି ତାହାହେଲେ ଏଥିରେ କୌଣସି କ୍ଷତି ନାହିଁ, ଏବଂ ମୀମାଂସା ହିଁ (ସବୁଠାରୁ) ଉତ୍କୃଷ୍ଟ ଏବଂ ଲୋକମାନଙ୍କ ଅନ୍ତରରେ କୃପଣ[4] ଭାବ ସୃଷ୍ଟି କରାଯାଇଛି ଏବଂ ଯଦି ତୁମେମାନେ ପୁଣ୍ୟ କାର୍ଯ୍ୟ କରିବ ଓ ଧର୍ମଭୀରୁତା ଅବଲମ୍ବନ କରିବ ତେବେ (ମନେରଖ ଯେ) ତୁମେମାନେ ଯାହା କରୁଅଛ ଅଲ୍ଲାଃ ସେ ବିଷୟରେ ନିଶ୍ଚୟ ଅବଗତ ଅଛନ୍ତି ।

---

୧. ସୁରା 'ନିସା'ର ଆୟତ—୪ ଦ୍ରଷ୍ଟବ୍ୟ ।

୨. ଅର୍ଥାତ୍ ଅନାଥିନୀ ବାଳିକା ।

୩. ଯଦି ଜଣେ ମହିଳା ବୁଝିପାରିବ ଯେ ବିଷୟଟି ଅଯଥା ଦୀର୍ଘକାଳ ପର୍ଯ୍ୟନ୍ତ ଗଡ଼ିବ ଓ ତାକୁ ଅସହ୍ୟ କଷ୍ଟ ଭୋଗ କରିବାକୁ ହେବ ତେବେ ତା'ପକ୍ଷରେ ନିଜର କିଛି ଅଧିକାରକୁ ପରିତ୍ୟାଗ କରିବା ଶ୍ରେୟସ୍କର ହେବ । ପୁନଶ୍ଚ ଯଦି ବିଚାରପତି ଭାବିବେ ଯେ ସେପରି କରିବାରେ କିଛି ଆପତ୍ତି ନାହିଁ ତେବେ ସେ ସେପରି କରାଯିବାକୁ ଆଦେଶ ଦେଇପାରିବେ ।

୪. ବ୍ୟୟ କରିବା ଯେତେ ଲାଭଦାୟକ ହେଲେ ମଧ୍ୟ ଲୋକମାନେ ସାଧାରଣତଃ ଲୋଭର ବଶବର୍ତ୍ତୀ ହୋଇ ବ୍ୟୟକୁଣ୍ଠ ହୁଅନ୍ତି । ପତି ଓ ପତ୍ନୀ ପରସ୍ପର ପ୍ରତି ସହାନୁଭୂତିଶୀଳ ନ ହେବା, ଧନଲୋଭର ଅନ୍ୟତମ କାରଣ ।

୧୩୦. ତୁମେମାନେ ଯେତେ ଇଚ୍ଛା କଲେ ମଧ୍ୟ କଦାପି ସ୍ତ୍ରୀମାନଙ୍କ ମଧ୍ୟରେ ନ୍ୟାୟ[୧] କରିପାରିବ ନାହିଁ; ସୁତରାଂ ତୁମେମାନେ ଜଣକୁ ଦୋଦୁଲ୍ୟମାନ ଅବସ୍ଥାରେ ପରିତ୍ୟାଗ କରି ଅନ୍ୟ ଜଣକ ଆଡ଼କୁ ସଂପୂର୍ଣ୍ଣ ରୂପେ ଢଳି ଯାଅ ନାହିଁ; ଯଦି ତୁମମାନଙ୍କ ମଧ୍ୟରେ ମିଳାମିଶା ହୋଇଥାଏ ଏବଂ (ତୁମେମାନେ) ଅଲ୍ଲାହ୍‌ଙ୍କୁ ଭୟ କରୁଥାଅ ତେବେ (ମନେରଖ ଯେ) ଅଲ୍ଲାହ୍ ବାସ୍ତବରେ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ।

وَلَنْ تَسْتَطِيْعُوْٓا اَنْ تَعْدِلُوْا بَيْنَ النِّسَآءِ وَلَوْ حَرَصْتُمْ فَلَا تَمِيْلُوْا كُلَّ الْمَيْلِ فَتَذَرُوْهَا كَالْمُعَلَّقَةِ ۭ وَاِنْ تُصْلِحُوْا وَتَتَّقُوْا فَاِنَّ اللّٰهَ كَانَ غَفُوْرًا رَّحِيْمًا ۝١٣٠

୧୩୧. ଏବଂ ଯଦି ସେମାନେ (ପରସ୍ପରଠାରୁ) ବିଚ୍ଛିନ୍ନ ହୁଅନ୍ତି ତେବେ ଅଲ୍ଲାହ୍ ନିଜ ତରଫରୁ ପ୍ରାଚୁର୍ଯ୍ୟ ପ୍ରଦାନ କରି,[୨] (ସେମାନଙ୍କ ମଧ୍ୟରୁ) ପ୍ରତ୍ୟେକଙ୍କୁ ଆତ୍ମନିର୍ଭରଶୀଳ କରିଦେବେ; ଏବଂ ଅଲ୍ଲାହ୍ ଅତ୍ୟନ୍ତ ଦାନଶୀଳ (ଓ) ତତ୍ତ୍ୱଜ୍ଞ।

وَاِنْ يَّتَفَرَّقَا يُغْنِ اللّٰهُ كُلًّا مِّنْ سَعَتِهٖ ۭ وَكَانَ اللّٰهُ وَاسِعًا حَكِيْمًا ۝١٣١

୧୩୨. ଏବଂ ଯାହା କିଛି ଆକାଶରେ ଅଛି ଓ ଯାହା କିଛି ପୃଥିବୀରେ ଅଛି ସେସବୁ ଅଲ୍ଲାହ୍‌ଙ୍କର; ଏବଂ ଯେଉଁମାନଙ୍କୁ ତୁମମାନଙ୍କ ପୂର୍ବରୁ (ଧର୍ମ) ଗ୍ରନ୍ଥ ଦିଆଯାଇଥିଲା ଆମେ ସେମାନଙ୍କୁ ଓ ତୁମମାନଙ୍କୁ (ମଧ୍ୟ) ଚେତାବନୀ—ପୂର୍ବକ ଆଦେଶ ଦେଇଥିଲୁ ଯେ ତୁମେମାନେ ଅଲ୍ଲାହ୍‌ଙ୍କୁ ଭୟକର ଏବଂ ଯଦି ତୁମେମାନେ ଅବଜ୍ଞା କରିବ ତେବେ (ମନେରଖ ଯେ) ଯାହା କିଛି ଆକାଶରେ ଅଛି ଓ ଯାହା କିଛି ପୃଥିବୀରେ ଅଛି ସେସବୁ ଅଲ୍ଲାହ୍‌ଙ୍କର ଏବଂ ଅଲ୍ଲାହ୍ ଆତ୍ମନିର୍ଭରଶୀଳ ଓ (ଅପରିମିତ) ପ୍ରଶଂସାର ପାତ୍ର।

وَلِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۭ وَلَقَدْ وَصَّيْنَا الَّذِيْنَ اُوْتُوا الْكِتٰبَ مِنْ قَبْلِكُمْ وَاِيَّاكُمْ اَنِ اتَّقُوا اللّٰهَ ۭ وَاِنْ تَكْفُرُوْا فَاِنَّ لِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۭ وَكَانَ اللّٰهُ غَنِيًّا حَمِيْدًا ۝١٣٢

୧୩୩. ଏବଂ ଯାହା କିଛି ଆକାଶରେ ଅଛି ଓ ଯାହା କିଛି ପୃଥିବୀରେ ଅଛି ସେସବୁ ଅଲ୍ଲାହ୍‌ଙ୍କର ଏବଂ ଅଲ୍ଲାହ୍ ସଂରକ୍ଷକ ଭାବେ ଯଥେଷ୍ଟ।

وَلِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۭ وَكَفٰى بِاللّٰهِ وَكِيْلًا ۝١٣٣

---

୧. ପତ୍ନୀମାନଙ୍କୁ ସମାନ ବ୍ୟବହାର କରିବା ବା ଦେଖାଇବା ଏକ କଷ୍ଟକର ବ୍ୟାପାର ହୋଇଥିବାରୁ ପୁରୁଷ ପକ୍ଷରେ ଗୋଟିଏ ପତ୍ନୀ ବରଂ ଶ୍ରେୟସ୍କର। ମଣିଷ ହୃଦୟରେ ପ୍ରେମର ସୃଷ୍ଟି ହୋଇଥାଏ ଓ ତା' ଉପରେ ତା'ର କୌଣସି କର୍ତ୍ତୃତ୍ୱ ନ ଥାଏ। ସେହି ଦୃଷ୍ଟିରୁ ପତି ତା'ର ସବୁ ପତ୍ନୀଙ୍କୁ ସମାନ ପ୍ରେମ କରିବ ଏହା ଆଶା କରାଯାଇପାରେ ନାହିଁ। କିନ୍ତୁ ଅନ୍ୟାନ୍ୟ ବିଷୟରେ ସେ ସମସ୍ତଙ୍କ ସହିତ ନ୍ୟାୟସଙ୍ଗତ ବ୍ୟବହାର କରିପାରେ ଓ ତାହା ତାଙ୍କୁ କରିବାକୁ ହେବ। ଅତଏବ ଯେଉଁସବୁ କାର୍ଯ୍ୟ ଉପରେ ତା'ର ନିୟନ୍ତ୍ରଣ ଅଛି ସେଗୁଡ଼ିକୁ ସେ ନ୍ୟାୟସଙ୍ଗତ ଭାବରେ କରିବା ଉଚିତ।

୨. ପତି ଓ ପତ୍ନୀ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ବଜାୟ ରଖିବାକୁ ସବୁମତେ ଚେଷ୍ଟାକରି ବିଫଳ ହେବା ପରେ ଯଦି ସେମାନେ ପୃଥକ୍ ହୋଇଯିବାକୁ ସ୍ଥିର କରନ୍ତି, ତେବେ ସେପରି ପରିସ୍ଥିତିରେ ଅଲ୍ଲାହ୍ ସେମାନଙ୍କୁ ଉପଯୁକ୍ତ ଜୀବନସାଥୀ ଦେବାକୁ ପ୍ରତିଶ୍ରୁତିଦେଉଛନ୍ତି। ମାତ୍ର 'ଅଲ୍ଲାହ୍‌ଙ୍କ ଦୃଷ୍ଟିରେ ସକଳ ଅନୁମତିଯୋଗ୍ୟ ବିଷୟ ମଧ୍ୟରେ ବିବାହ-ବିଚ୍ଛେଦ ଅତ୍ୟନ୍ତ ଘୃଣ୍ୟ' (ହଦିସ୍ ଦାଉଦ ଦ୍ରଷ୍ଟବ୍ୟ)।

١٣٤. ହେ ଲୋକମାନେ ! ସେ (ଅଲ୍ଲାହ) ଇଚ୍ଛା କଲେ ତୁମମାନଙ୍କୁ ବିନାଶ କରି (ତୁମମାନଙ୍କ ସ୍ଥାନରେ) ଅନ୍ୟମାନଙ୍କୁ ଘେନି ଆସିବେ; ଏବଂ ଅଲ୍ଲାହ ଏ ବିଷୟରେ ସଂପୂର୍ଣ୍ଣ ରୂପେ ସକ୍ଷମ ଅଟନ୍ତି ।

إِنْ يَشَأْ يُذْهِبْكُمْ أَيُّهَا النَّاسُ وَيَأْتِ بِآخَرِينَ ۚ وَكَانَ اللَّهُ عَلَىٰ ذَٰلِكَ قَدِيرًا ﴿١٣٣﴾

୧୩୫. ଯେଉଁ ବ୍ୟକ୍ତି ଇହଲୋକରେ ପୁରସ୍କାର କାମନା କରୁଥାଏ, ତେବେ (ସେ ଜାଣି ରଖୁ ଯେ) ତାହା ପାଇଁ ଅଲ୍ଲାହଙ୍କ ନିକଟରେ (ଉଭୟ) ଇହଲୋକ ଓ ପରଲୋକର ପୁରସ୍କାର ରହିଅଛି; ଏବଂ ଅଲ୍ଲାହ ହିଁ ମହାନ୍ ଶ୍ରୋତା ଓ ମହାନ୍ ଦ୍ରଷ୍ଟା ।

مَنْ كَانَ يُرِيدُ ثَوَابَ الدُّنْيَا فَعِنْدَ اللَّهِ ثَوَابُ الدُّنْيَا وَالْآخِرَةِ ۚ وَكَانَ اللَّهُ سَمِيعًا بَصِيرًا ﴿١٣٤﴾

ରୁ : ୨୦

୧୩୬. ହେ ବିଶ୍ୱାସକାରୀମାନେ ! ତୁମେମାନେ ନ୍ୟାୟ ବିଚାରରେ ସଂପୂର୍ଣ୍ଣ ଭାବେ ସୁଦୃଢ଼ ରହି ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ସାକ୍ଷ୍ୟ ପ୍ରଦାନକାରୀ ହୋଇଯାଅ ଯଦିଚ ଏହା ତୁମମାନଙ୍କ ନିଜ ବିରୁଦ୍ଧରେ ବା ତୁମମାନଙ୍କ ପିତାମାତା ଓ ନିକଟ ସମ୍ପର୍କୀୟଙ୍କ ବିରୁଦ୍ଧରେ ହେଉଥାଏ; ଯଦି ସେ (ଅର୍ଥାତ୍ ଯାହାଙ୍କ ସଂକ୍ରାନ୍ତରେ ସାକ୍ଷ୍ୟ ପ୍ରଦାନ କରାଯାଇଅଛି) ଧନବାନ୍ ବା ଦରିଦ୍ର ହୋଇଥାଏ ତେବେ (ସେପରି ପରିସ୍ଥିତିରେ) ଅଲ୍ଲାହ ସେ ଉଭୟଙ୍କର (ତୁମମାନଙ୍କଠାରୁ) ଅଧିକ ଶୁଭାକାଙ୍କ୍ଷୀ ଅଟନ୍ତି; ସୁତରାଂ ନ୍ୟାୟ ପ୍ରଦାନ କଲେ ତୁମେମାନେ (କୁ) ପ୍ରବୃତ୍ତିର ଅନୁସରଣ କର ନାହିଁ; ଏବଂ ଯଦି ତୁମେ (ସତ୍ୟ ସାକ୍ଷ୍ୟକୁ) ଗୋପନ ରଖିବ ବା (ସତ୍ୟକୁ) ଏଡ଼ି ଦେବ, ତେବେ (ମନେରଖ ଯେ) ତୁମେମାନେ ଯାହା କିଛି କରୁଅଛ ଅଲ୍ଲାହ ସେ ବିଷୟରେ ନିଶ୍ଚୟ ଅବଗତ ଅଛନ୍ତି ।

يَا أَيُّهَا الَّذِينَ آمَنُوا كُونُوا قَوَّامِينَ بِالْقِسْطِ شُهَدَاءَ لِلَّهِ وَلَوْ عَلَىٰ أَنْفُسِكُمْ أَوِ الْوَالِدَيْنِ وَالْأَقْرَبِينَ ۚ إِنْ يَكُنْ غَنِيًّا أَوْ فَقِيرًا فَاللَّهُ أَوْلَىٰ بِهِمَا ۖ فَلَا تَتَّبِعُوا الْهَوَىٰ أَنْ تَعْدِلُوا ۚ وَإِنْ تَلْوُوا أَوْ تُعْرِضُوا فَإِنَّ اللَّهَ كَانَ بِمَا تَعْمَلُونَ خَبِيرًا ﴿١٣٥﴾

୧୩୭. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ ଏବଂ ତାହାଙ୍କ ରସୁଲଙ୍କ ଉପରେ ଓ ତାହାଙ୍କ ରସୁଲଙ୍କ ଉପରେ ଯେଉଁ (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ ହୋଇଅଛି ଏବଂ ଏହାଙ୍କ ପୂର୍ବରୁ ଯେଉଁ (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ ହୋଇଥିଲା ସେମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କର; ଏବଂ ଯେଉଁ ବ୍ୟକ୍ତି ଅଲ୍ଲାହଙ୍କୁ, ତାହାଙ୍କ ଦେବଦୂତମାନଙ୍କୁ, ତାହାଙ୍କ ଧର୍ମଗ୍ରନ୍ଥଗୁଡ଼ିକୁ, ତାହାଙ୍କ ରସୁଲମାନଙ୍କୁ ତଥା ଅନ୍ତିମ ଦିବସକୁ ଅସ୍ୱୀକାର କରେ (ତେବେ ଜାଣିରଖ ଯେ) ସେ ଅତିଶୟ ବିଭ୍ରାନ୍ତିରେ ପଡ଼ିଯାଇଛି ।

يَا أَيُّهَا الَّذِينَ آمَنُوا آمِنُوا بِاللَّهِ وَرَسُولِهِ وَالْكِتَابِ الَّذِي نَزَّلَ عَلَىٰ رَسُولِهِ وَالْكِتَابِ الَّذِي أَنْزَلَ مِنْ قَبْلُ ۚ وَمَنْ يَكْفُرْ بِاللَّهِ وَمَلَائِكَتِهِ وَكُتُبِهِ وَرُسُلِهِ وَالْيَوْمِ الْآخِرِ فَقَدْ ضَلَّ ضَلَالًا بَعِيدًا ﴿١٣٦﴾

୧୩୮. ବାସ୍ତବିକ ଯେଉଁମାନେ ବିଶ୍ୱାସ କରି ତା ପରେ ଅବଜ୍ଞା କରିଛନ୍ତି, ପୁଣି ବିଶ୍ୱାସ ସ୍ଥାପନ କରି ପୁନର୍ବାର ଅବଜ୍ଞା କରିଛନ୍ତି ଓ ପୁନରାୟ ଅବଜ୍ଞା କରିବାରେ ଅଗ୍ରସର ହୋଇଥାଆନ୍ତି, ଅଲ୍ଲାହ ସେମାନଙ୍କୁ କଦାପି କ୍ଷମା କରିବେ ନାହିଁ ଓ ସେମାନଙ୍କୁ କୌଣସି (ମୁକ୍ତି) ପଥ ଦେଖାଇବେ ନାହିଁ ।

إِنَّ الَّذِينَ آمَنُوا ثُمَّ كَفَرُوا ثُمَّ آمَنُوا ثُمَّ كَفَرُوا ثُمَّ ازْدَادُوا كُفْرًا لَمْ يَكُنِ اللَّهُ لِيَغْفِرَ لَهُمْ وَلَا لِيَهْدِيَهُمْ سَبِيلًا ﴿١٣٧﴾

بَشِّرِ الْمُنٰفِقِيْنَ بِاَنَّ لَهُمْ عَذَابًا اَلِيْمَا ۙ﴿١٣٩﴾

୧୩୯. ତୁମେ କପଟ-ବିଶ୍ୱାସକାରୀମାନଙ୍କୁ ସମାଚାର ଦିଅ ଯେ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି।

الَّذِيْنَ يَتَّخِذُوْنَ الْكٰفِرِيْنَ اَوْلِيَآءَ مِنْ دُوْنِ الْمُؤْمِنِيْنَ ؕ اَيَبْتَغُوْنَ عِنْدَهُمُ الْعِزَّةَ فَاِنَّ الْعِزَّةَ لِلّٰهِ جَمِيْعًا ؕ﴿١٤٠﴾

୧୪୦. ଯେଉଁମାନେ ବିଶ୍ୱାସକାରୀମାନଙ୍କୁ ପରିତ୍ୟାଗ କରି ଅବିଶ୍ୱାସକାରୀମାନଙ୍କୁ ନିଜର ବନ୍ଧୁ ରୂପେ ଗ୍ରହଣ କରନ୍ତି, ସେମାନେ କଅଣ ସେମାନଙ୍କଠାରୁ ସମ୍ମାନ ଆଶା କରନ୍ତି? (ସେମାନେ ମନେ ରଖିବା ଉଚିତ ଯେ) ବାସ୍ତବିକ ସକଳ ସମ୍ମାନ ଅଲ୍ଲାଃଙ୍କ ହସ୍ତରେ ରହିଛି।

وَقَدْ نَزَّلَ عَلَيْكُمْ فِي الْكِتٰبِ اَنْ اِذَا سَمِعْتُمْ اٰيٰتِ اللّٰهِ يُكْفَرُ بِهَا وَيُسْتَهْزَاُ بِهَا فَلَا تَقْعُدُوْا مَعَهُمْ حَتّٰى يَخُوْضُوْا فِيْ حَدِيْثٍ غَيْرِهٖٓ ۖ اِنَّكُمْ اِذًا مِّثْلُهُمْ ؕ اِنَّ اللّٰهَ جَامِعُ الْمُنٰفِقِيْنَ وَالْكٰفِرِيْنَ فِيْ جَهَنَّمَ جَمِيْعَا ۙ﴿١٤١﴾

୧୪୧. ଏବଂ ସେ ତୁମମାନଙ୍କ ପ୍ରତି ଏହି (ଧର୍ମ) ଗ୍ରନ୍ଥରେ ଏହାକୁ (ଅର୍ଥାତ୍ ଏହି ଆଦେଶକୁ) ଅବତୀର୍ଣ୍ଣ କରିଛନ୍ତି ଯେ ଯେତେବେଳେ ତୁମେମାନେ ଅଲ୍ଲାଃଙ୍କର ବାଣୀଗୁଡ଼ିକୁ ଅବଜ୍ଞା କରାଯିବା ଓ ତାହା ପ୍ରତି ଉପହାସ କରାଯିବା ଶୁଣ ସେତେବେଳେ (ତୁମେମାନେ) ସେ (ଉପହାସକାରୀ)ମାନଙ୍କ ସହିତ (ସେ ପର୍ଯ୍ୟନ୍ତ) ବସିବ ନାହିଁ ଯେ ପର୍ଯ୍ୟନ୍ତ କି ସେମାନେ ଅନ୍ୟ ବିଷୟରେ ଆଲୋଚନା ନ କରନ୍ତି; ଅନ୍ୟଥା ତୁମେମାନେ ଏପରି ଅବସ୍ଥାରେ ନିଶ୍ଚୟ ସେମାନଙ୍କ ପରି (ଗଣ୍ୟ) ହେବ; ନିଶ୍ଚୟ ଅଲ୍ଲାଃ କପଟ – ବିଶ୍ୱାସୀମାନଙ୍କୁ ଓ ଅବିଶ୍ୱାସକାରୀମାନଙ୍କୁ ନରକରେ ଏକତ୍ରିତ କରାଇବେ–

الَّذِيْنَ يَتَرَبَّصُوْنَ بِكُمْ ۚ فَاِنْ كَانَ لَكُمْ فَتْحٌ مِّنَ اللّٰهِ قَالُوْٓا اَلَمْ نَكُنْ مَّعَكُمْ ۖ وَاِنْ كَانَ لِلْكٰفِرِيْنَ نَصِيْبٌ ۙ قَالُوْٓا اَلَمْ نَسْتَحْوِذْ عَلَيْكُمْ وَنَمْنَعْكُمْ مِّنَ الْمُؤْمِنِيْنَ ؕ فَاللّٰهُ يَحْكُمُ بَيْنَكُمْ يَوْمَ الْقِيٰمَةِ ؕ وَلَنْ يَّجْعَلَ اللّٰهُ لِلْكٰفِرِيْنَ عَلَى الْمُؤْمِنِيْنَ سَبِيْلًا ﴿١٤٢﴾ ع

୧୪୨. (ସେହି କପଟ–ବିଶ୍ୱାସୀମାନଙ୍କୁ) ଯେଉଁମାନେ ତୁମମାନଙ୍କର ବିନାଶ ପାଇଁ ପ୍ରତୀକ୍ଷା କରୁଛନ୍ତି; ଏବଂ ଯଦି ତୁମେମାନେ ଅଲ୍ଲାଃଙ୍କ ଠାରୁ କୌଣସି ବିଜୟ[1] ହାସଲ କର ତେବେ ସେମାନେ (ତୁମମାନଙ୍କୁ) କହନ୍ତି, "ଆମେମାନେ କଅଣ ତୁମମାନଙ୍କ ସଙ୍ଗରେ ନ ଥିଲୁ?" ଏବଂ ଯଦି ଅବିଶ୍ୱାସକାରୀମାନଙ୍କୁ ବିଜୟର କୌଣସି ଅଂଶ ପ୍ରାପ୍ତ ହୁଏ ତେବେ ସେମାନେ ସେମାନଙ୍କୁ କହନ୍ତି, "କଅଣ ଆମେମାନେ ତୁମମାନଙ୍କ ଉପରେ ବିଜୟ ଲାଭ କରି ନ ଥିଲୁ ଓ ତୁମମାନଙ୍କୁ ବିଶ୍ୱାସକାରୀମାନଙ୍କଠାରୁ ରକ୍ଷା କରି ନଥିଲୁ?" ସୁତରାଂ ଅଲ୍ଲାଃ ତୁମମାନଙ୍କ ମଧ୍ୟରେ କୟାମତ ଦିନ ନିଷ୍ପତ୍ତି କରିବେ ଏବଂ ଅଲ୍ଲାଃ ଅବିଶ୍ୱାସକାରୀମାନଙ୍କୁ ବିଶ୍ୱାସକାରୀମାନଙ୍କ ଉପରେ କେବେ ହେଁ ବିଜୟ ପ୍ରଦାନ କରିବେ ନାହିଁ।

---

୧. ଅବିଶ୍ୱାସକାରୀମାନେ କହନ୍ତି– କ'ଣ ମୁସଲମାନମାନେ ଏହା ପୂର୍ବରୁ ଗୋଟିଏ ଘଟଣାରେ ବିଜୟଲାଭ କରି ନ ଥିଲେ ଯାହାକି ବାସ୍ତବରେ ଆମର ବିଜୟ, କିନ୍ତୁ ଆମେ ସେମାନଙ୍କ ନିକଟରେ ସୁପାରିଶ କରି ତୁମମାନଙ୍କୁ ରକ୍ଷା କରିଥିଲୁ।

ରୁ : ୨୧

୧୪୩. ବାସ୍ତବିକ, କପଟବିଶ୍ୱାସୀମାନେ ଅଲ୍ଲାହ୍‌ଙ୍କୁ ପ୍ରତାରଣା କରିବାକୁ ଚାହୁଁଛନ୍ତି ଏବଂ ସେ ସେମାନଙ୍କୁ ସେମାନଙ୍କ ପ୍ରତାରଣା ପାଇଁ ଦଣ୍ଡିତ କରିବେ; ଏବଂ ଯେତେବେଳେ ସେମାନେ ନମାଜ ପାଇଁ ଦଣ୍ଡାୟମାନ ହୁଅନ୍ତି ସେତେବେଳେ ସେମାନେ ଆଳସ୍ୟ-ପରାୟଣ ଭାବରେ କେବଳ ଲୋକମାନଙ୍କୁ ଦେଖାଇବା ଉଦ୍ଦେଶ୍ୟରେ ଦଣ୍ଡାୟମାନ ହୁଅନ୍ତି ଏବଂ (ସେମାନେ) ଅଲ୍ଲାହ୍‌ଙ୍କୁ ଅତ୍ୟଳ୍ପ ସ୍ମରଣ କରନ୍ତି ।

إِنَّ ٱلْمُنَٰفِقِينَ يُخَٰدِعُونَ ٱللَّهَ وَهُوَ خَٰدِعُهُمْ وَإِذَا قَامُوٓا۟ إِلَى ٱلصَّلَوٰةِ قَامُوا۟ كُسَالَىٰ يُرَآءُونَ ٱلنَّاسَ وَلَا يَذْكُرُونَ ٱللَّهَ إِلَّا قَلِيلًا ﴿١٤٣﴾

୧୪୪. ସେମାନଙ୍କର ଅବସ୍ଥା (ଅଲ୍ଲାହ୍‌ଙ୍କ ସ୍ମରଣ ଓ ଅମନୋଯୋଗ ମଧ୍ୟରେ) ଦୋଦୁଲ୍ୟମାନ ଅଛି, ସେମାନେ ଏ (ବିଶ୍ୱାସକାରୀ)ମାନଙ୍କ ସହିତ ନାହାନ୍ତି କି ସେ (ଅବିଶ୍ୱାସକାରୀ)ମାନଙ୍କ ସହିତ ନାହାନ୍ତି; ଏବଂ ଯାହାକୁ ଅଲ୍ଲାହ୍ ବିନାଶ କରିଥାଆନ୍ତି ତୁମେ ତାହା ପାଇଁ କଦାପି କୌଣସି (ମୁକ୍ତି) ପଥ ପାଇବ ନାହିଁ ।

مُّذَبْذَبِينَ بَيْنَ ذَٰلِكَ لَآ إِلَىٰ هَٰٓؤُلَآءِ وَلَآ إِلَىٰ هَٰٓؤُلَآءِ وَمَن يُضْلِلِ ٱللَّهُ فَلَن تَجِدَ لَهُۥ سَبِيلًا ﴿١٤٤﴾

୧୪୫. ହେ ବିଶ୍ୱାସକାରୀମାନେ ! ବିଶ୍ୱାସକାରୀମାନଙ୍କୁ ପରିତ୍ୟାଗ କରି ଅବିଶ୍ୱାସକାରୀମାନଙ୍କୁ (ନିଜର) ବଂଧୁ ରୂପେ ଗ୍ରହଣ କର ନାହିଁ; କ'ଣ ତୁମେମାନେ ଇଚ୍ଛା କରୁଅଛ ଯେ ଅଲ୍ଲାହ୍‌ଙ୍କୁ ତୁମମାନଙ୍କ ବିରୁଦ୍ଧରେ ପ୍ରକାଶ୍ୟ ଦୋଷାରୋପ ପାଇଁ (ଏକ) ସୁଯୋଗ ଦେବ ।

يَٰٓأَيُّهَا ٱلَّذِينَ ءَامَنُوا۟ لَا تَتَّخِذُوا۟ ٱلْكَٰفِرِينَ أَوْلِيَآءَ مِن دُونِ ٱلْمُؤْمِنِينَ أَتُرِيدُونَ أَن تَجْعَلُوا۟ لِلَّهِ عَلَيْكُمْ سُلْطَٰنًا مُّبِينًا ﴿١٤٥﴾

୧୪୬. କପଟ – ବିଶ୍ୱାସୀମାନେ ନିଶ୍ଚୟ ନରକର ନିମ୍ନତମ ସ୍ତରରେ ଅବସ୍ଥାନ କରିବେ; ଏବଂ ତୁମେ କଦାପି (କାହାରିକୁ) ସେମାନଙ୍କର ସାହାଯ୍ୟକାରୀ ରୂପେ ପାଇବ ନାହିଁ;

إِنَّ ٱلْمُنَٰفِقِينَ فِى ٱلدَّرْكِ ٱلْأَسْفَلِ مِنَ ٱلنَّارِ وَلَن تَجِدَ لَهُمْ نَصِيرًا ﴿١٤٦﴾

୧୪୭. ସେମାନଙ୍କ ବ୍ୟତୀତ ଯେଉଁମାନେ ଅନୁତାପ କରନ୍ତି ଓ (ନିଜକୁ) ସଂଶୋଧିତ କରନ୍ତି ଏବଂ ଅଲ୍ଲାହ୍‌ଙ୍କ ଦ୍ୱାରା (ନିଜର) ସୁରକ୍ଷା ଇଚ୍ଛା କରନ୍ତି; ଏବଂ ଆନ୍ତରିକତା ସହିତ ଅଲ୍ଲାହ୍‌ଙ୍କ ଉପାସନା କରନ୍ତି ସେହିମାନେ ହିଁ ବିଶ୍ୱାସକାରୀମାନଙ୍କର ଅନ୍ତର୍ଗତ; ଏବଂ ଅଲ୍ଲାହ୍ ଶୀଘ୍ର ବିଶ୍ୱାସକାରୀମାନଙ୍କୁ ମହାନ୍ ପ୍ରତିଦାନ ଦେବେ ।

إِلَّا ٱلَّذِينَ تَابُوا۟ وَأَصْلَحُوا۟ وَٱعْتَصَمُوا۟ بِٱللَّهِ وَأَخْلَصُوا۟ دِينَهُمْ لِلَّهِ فَأُو۟لَٰٓئِكَ مَعَ ٱلْمُؤْمِنِينَ وَسَوْفَ يُؤْتِ ٱللَّهُ ٱلْمُؤْمِنِينَ أَجْرًا عَظِيمًا ﴿١٤٧﴾

୧୪୮. ଯଦି ତୁମେମାନେ କୃତଜ୍ଞତା ଜ୍ଞାପନ କରିବ ଓ ବିଶ୍ୱାସ କରିବ ତେବେ କାହିଁକି ଅଲ୍ଲାହ୍ ତୁମମାନଙ୍କୁ ଶାସ୍ତି ପ୍ରଦାନ କରିବେ ? ଏବଂ ଅଲ୍ଲାହ୍ ଗୁଣଗ୍ରାହୀ(ଓ)ସର୍ବଜ୍ଞ ।

مَّا يَفْعَلُ ٱللَّهُ بِعَذَابِكُمْ إِن شَكَرْتُمْ وَءَامَنتُمْ وَكَانَ ٱللَّهُ شَاكِرًا عَلِيمًا ﴿١٤٨﴾

## ଭାଗ-୬

لَا يُحِبُّ اللّٰهُ الْجَهْرَ بِالسُّوْٓءِ مِنَ الْقَوْلِ اِلَّا مَنْ ظُلِمَ ؕ وَكَانَ اللّٰهُ سَمِيْعًا عَلِيْمًا ﴿١٤٨﴾

୧୪୯. ଅଲ୍ଲାହ ମନ୍ଦ କଥାର ପ୍ରକାଶକୁ ପସନ୍ଦ କରନ୍ତି ନାହିଁ; କିନ୍ତୁ ଯାହା ପ୍ରତି ଅତ୍ୟାଚାର କରାଯାଇଥାଏ ସେ (ଏହି ଅତ୍ୟାଚାର ବିଷୟରେ) ପ୍ରକାଶ କରିପାରେ; ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

اِنْ تُبْدُوْا خَيْرًا اَوْ تُخْفُوْهُ اَوْ تَعْفُوْا عَنْ سُوْٓءٍ فَاِنَّ اللّٰهَ كَانَ عَفُوًّا قَدِيْرًا ﴿١٤٩﴾

୧୫୦. ଯଦି ତୁମେ କୌଣସି ପୁଣ୍ୟ କାର୍ଯ୍ୟକୁ ପ୍ରକାଶ କର ବା ଗୋପନ ରଖ, (କିମ୍ବା କାହାରି) କୁକାର୍ଯ୍ୟକୁ କ୍ଷମା କର ତେବେ (ମନେରଖ ଯେ) ଅଲ୍ଲାହ (ଦୋଷ) ମାର୍ଜନାକାରୀ (ଓ) ସର୍ବ-ଶକ୍ତିମାନ ।

اِنَّ الَّذِيْنَ يَكْفُرُوْنَ بِاللّٰهِ وَرُسُلِهٖ وَيُرِيْدُوْنَ اَنْ يُّفَرِّقُوْا بَيْنَ اللّٰهِ وَرُسُلِهٖ وَيَقُوْلُوْنَ نُؤْمِنُ بِبَعْضٍ وَّنَكْفُرُ بِبَعْضٍ ۙ وَّيُرِيْدُوْنَ اَنْ يَّتَّخِذُوْا بَيْنَ ذٰلِكَ سَبِيْلًا ۙ ﴿١٥٠﴾

୧୫୧. ଯେଉଁମାନେ ଅଲ୍ଲାହ ଓ ତାହାଙ୍କର ରସୁଲମାନଙ୍କୁ ଅବଜ୍ଞା କରନ୍ତି ଏବଂ ଅଲ୍ଲାହ ଓ ତାହାଙ୍କର ରସୁଲମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିବା ଇଚ୍ଛା କରନ୍ତି ଏବଂ କହନ୍ତି; "ଆମେମାନେ କେତେକଙ୍କ ଉପରେ ବିଶ୍ୱାସ କରିବୁ ଓ ଅନ୍ୟ କେତେକଙ୍କୁ ଅବଜ୍ଞା କରିବୁ", ଏବଂ ଏହାର ମଧ୍ୟବର୍ତ୍ତୀ[୧] କୌଣସି ପଥ ଅନୁସରଣ କରିବାକୁ ଇଚ୍ଛା କରନ୍ତି;

اُولٰٓئِكَ هُمُ الْكٰفِرُوْنَ حَقًّا ۚ وَاَعْتَدْنَا لِلْكٰفِرِيْنَ عَذَابًا مُّهِيْنًا ﴿١٥١﴾

୧୫୨. ବାସ୍ତବରେ ସେମାନେ ହିଁ ପ୍ରକୃତ ଅବିଶ୍ୱାସକାରୀ ଅଟନ୍ତି; ଏବଂ ଅବିଶ୍ୱାସକାରୀମାନଙ୍କ ସକାଶେ ଆମେ ଅପମାନଜନକ ଶାସ୍ତି ପ୍ରସ୍ତୁତ କରିଅଛୁ ।

وَالَّذِيْنَ اٰمَنُوْا بِاللّٰهِ وَرُسُلِهٖ وَلَمْ يُفَرِّقُوْا بَيْنَ اَحَدٍ مِّنْهُمْ اُولٰٓئِكَ سَوْفَ يُؤْتِيْهِمْ اُجُوْرَهُمْ ۗ وَكَانَ اللّٰهُ غَفُوْرًا رَّحِيْمًا ﴿١٥٢﴾

୧୫୩. ଏବଂ ଯେଉଁମାନେ ଅଲ୍ଲାହ ଓ ତାହାଙ୍କର ସମସ୍ତ ରସୁଲଙ୍କ ଉପରେ ବିଶ୍ୱାସ କରିଛନ୍ତି ଏବଂ ସେମାନେ ସେ (ରସୁଲ)ମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ସୃଷ୍ଟି କରି ନାହାନ୍ତି; ସେ ଲୋକମାନେ ଏପରି ଅଟନ୍ତି ଯେ ସେ (ଅଲ୍ଲାହ) ସେମାନଙ୍କୁ ଶୀଘ୍ର ସେମାନଙ୍କର ପୁରସ୍କାର ଦେବେ; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

---

୧. ଅଲ୍ଲାହଙ୍କୁ ସ୍ୱୀକାର କରି ଅବତାରମାନଙ୍କୁ ଅସ୍ୱୀକାର କରିବା, କେତେକ ଅବତାରଙ୍କୁ ସ୍ୱୀକାର କରି ଅନ୍ୟମାନଙ୍କୁ ଅସ୍ୱୀକାର କରିବା ଓ ଜଣେ ଅବତାରଙ୍କ କେତେକ ଦାବିକୁ ସ୍ୱୀକାର କରି ଅନ୍ୟାନ୍ୟ ଦାବିକୁ ଅସ୍ୱୀକାର କରିବା ଯଥାର୍ଥ ନୁହେଁ । ସମ୍ପୂର୍ଣ୍ଣ ସମର୍ପଣରେ ପ୍ରକୃତ ବିଶ୍ୱାସ ନିହିତ ଅଛି ।

ରୁ : ୨୨

يَسْـَٔلُكَ اَهْلُ الْكِتٰبِ اَنْ تُنَزِّلَ عَلَيْهِمْ كِتٰبًا مِّنَ السَّمَآءِ فَقَدْ سَاَلُوْا مُوْسٰۤى اَكْبَرَ مِنْ ذٰلِكَ فَقَالُوْۤا اَرِنَا اللّٰهَ جَهْرَةً فَاَخَذَتْهُمُ الصّٰعِقَةُ بِظُلْمِهِمْ ثُمَّ اتَّخَذُوا الْعِجْلَ مِنْۢ بَعْدِ مَا جَآءَتْهُمُ الْبَيِّنٰتُ فَعَفَوْنَا عَنْ ذٰلِكَ وَاٰتَيْنَا مُوْسٰى سُلْطٰنًا مُّبِيْنًا ۝

୧୫୪. ଗ୍ରନ୍ଥଧାରୀମାନେ[୧] ତୁମକୁ ପ୍ରଶ୍ନ କରୁଛନ୍ତି ଯେ ତୁମେ ସେମାନଙ୍କ ପାଇଁ ଆକାଶରୁ ଏକ (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ କର; (ଏଥିଯୋଗୁଁ ଆଶ୍ଚର୍ଯ୍ୟ ହୁଅ ନାହିଁ) କାରଣ ସେମାନେ ମୁସାଙ୍କୁ ମଧ୍ୟ ଏହାଠାରୁ ବଡ଼ ପ୍ରଶ୍ନ କରିଥିଲେ; ସେମାନେ ତାହାଙ୍କୁ କହିଥିଲେ, "ତୁମେ ଆମମାନଙ୍କୁ ପ୍ରକାଶ୍ୟରେ ଅଲ୍ଲାହଙ୍କୁ ଦେଖାଇ ଦିଅ;" ତେଣୁ ସେମାନଙ୍କ ଅତ୍ୟାଗ୍ରହ ଯୋଗୁଁ ସେମାନେ ମାରାତ୍ମକ ଶାସ୍ତିର କବଳିତ ହେଲେ; ତାହାପରେ ସେମାନଙ୍କ ନିକଟରେ ପ୍ରକାଶ୍ୟ ନିଦର୍ଶନମାନ ପହଞ୍ଚି ସାରିଥିଲେ ମଧ୍ୟ, ସେମାନେ ନିଜର (ଉପାସନା ପାଇଁ) ବାଛୁରୀକୁ ଗ୍ରହଣ କଲେ; କିନ୍ତୁ ଆମେ ଏହାକୁ ମଧ୍ୟ ମାର୍ଜନା କଲୁ; ଏବଂ ଆମେ ମୁସାଙ୍କୁ ପ୍ରକାଶ୍ୟ ପ୍ରାଧିକାର ପ୍ରଦାନ କଲୁ ।

وَرَفَعْنَا فَوْقَهُمُ الطُّوْرَ بِمِيْثَاقِهِمْ وَقُلْنَا لَهُمُ ادْخُلُوا الْبَابَ سُجَّدًا وَّقُلْنَا لَهُمْ لَا تَعْدُوْا فِى السَّبْتِ وَاَخَذْنَا مِنْهُمْ مِّيْثَاقًا غَلِيْظًا ۝

୧୫୫. ଏବଂ ଆମେ ସେମାନଙ୍କ ଠାରୁ (ଦୃଢ଼) ଅଙ୍ଗୀକାର ଗ୍ରହଣ କରିବା ବେଳେ ସେମାନଙ୍କ ଉପରେ ତୁର (ପର୍ବତ)କୁ ଉନ୍ନତ[୨] କରିଥିଲୁ ଓ ଆମେ ସେମାନଙ୍କୁ କହିଥିଲୁ, "ସଂପୂର୍ଣ୍ଣ ଅଣ୍ଟାବହ ହୋଇ ଏହି ଦ୍ୱାର ମଧ୍ୟରେ ପ୍ରବେଶ କର;" ଏବଂ (ପୁନଶ୍ଚ) କହିଥିଲୁ, "ସବତ ସଂକ୍ରାନ୍ତରେ ସୀମା ଅତିକ୍ରମ କର ନାହିଁ;" ଏବଂ ଆମେ ସେମାନଙ୍କଠାରୁ ଏକ ଦୃଢ଼ ଅଙ୍ଗୀକାର ଗ୍ରହଣ କରିଥିଲୁ ।

فَبِمَا نَقْضِهِمْ مِّيْثَاقَهُمْ وَكُفْرِهِمْ بِاٰيٰتِ اللّٰهِ وَقَتْلِهِمُ الْاَنْۢبِيَآءَ بِغَيْرِ حَقٍّ وَّقَوْلِهِمْ قُلُوْبُنَا غُلْفٌ بَلْ طَبَعَ اللّٰهُ عَلَيْهَا بِكُفْرِهِمْ فَلَا يُؤْمِنُوْنَ اِلَّا قَلِيْلًا ۝

୧୫୬. ତାପରେ ସେମାନଙ୍କ ନିଜ ଅଙ୍ଗୀକାର ଭଙ୍ଗ କରିବା (ହେତୁ) ଏବଂ ଅଲ୍ଲାହଙ୍କର ନିଦର୍ଶନଗୁଡ଼ିକୁ ସେମାନେ ଅବଜ୍ଞା କରିବା ଓ ନବିମାନଙ୍କୁ ଅଯଥାରେ ହତ୍ୟା[୩] କରିବାକୁ ଚେଷ୍ଟା କରିବା (ହେତୁ) ଓ ଏହା କହିବା ହେତୁ ଯେ ସେମାନଙ୍କ ଅନ୍ତର ପରଦା ଆଢୁଆଳରେ ଅଛି, (ପରଦା ଆଢୁଆଳରେ) ନାହିଁ,ବରଂ ସେମାନଙ୍କର ଅବିଶ୍ୱାସ ହେତୁ ସେମାନଙ୍କ (ଅନ୍ତର) ଉପରେ ଅଲ୍ଲାହ ମୋହର ମାରିଦେଇଛନ୍ତି; ତେଣୁ ସେମାନେ ଆଦୌ ବିଶ୍ୱାସ କରନ୍ତି ନାହିଁ ।

୧. ଗ୍ରନ୍ଥଧାରୀ ଅର୍ଥ ଇହୁଦୀ ଓ ଖ୍ରୀଷ୍ଟିୟାନ; କିନ୍ତୁ ଏଠାରେ କେବଳ ଇହୁଦୀ ଅଭିପ୍ରେତ, କାରଣ ଏହାପରେ ବର୍ଣ୍ଣନା କରାଯାଇଛି ଯେ ସେମାନେ ହି ମହୀୟସୀ ମରିୟମଙ୍କ ପ୍ରତି ଦୋଷାରୋପ କରିଥିଲେ ଓ ସେମାନେ ହିଁ ଯୀଶୁଙ୍କୁ କ୍ରୁଶ ଉପରେ ଚଢାଇ ହତ୍ୟା କରିବାକୁ ଚେଷ୍ଟା କରିଥିଲେ ।

୨. ଅର୍ଥାତ୍ ସେମାନଙ୍କୁ ତୁର୍ ପର୍ବତର ପାଦଦେଶ ପର୍ଯ୍ୟନ୍ତ ନିଆ ଯାଇଥିଲା । ତେଣୁ ସେମାନଙ୍କ ସମ୍ମୁଖରେ ଏହି ଉଚ୍ଚ ପର୍ବତ ଦୃଷ୍ଟିଗୋଚର ହୋଇଥିଲା ।

୩. ଏଠାରେ ଆରବୀ 'ଅମ୍ବିଆ' ଶବ୍ଦ ବ୍ୟବହୃତ ହୋଇଛି, ଯାହାର ଅର୍ଥ ନବିମାନେ । ଫଳରେ ନବିମାନଙ୍କୁ ହତ୍ୟା କରାଯାଇଥିବା ବର୍ଣ୍ଣନା କରାଯାଇଛି । କିନ୍ତୁ ଇତିହାସ ପାଠକଲେ ଜଣାଯାଏ ଯେ ଇହୁଦୀମାନେ ନବିମାନଙ୍କୁ ହତ୍ୟାକରି ନାହାନ୍ତି । ଅତଏବ ଏଠାରେ ହତ୍ୟା କରିବାକୁ ପ୍ରଯତ୍ନ କରିଥିବା ବା ଇଚ୍ଛା କରିଥିବା ବୁଝିବାକୁ ହେବ ଅଥବା ତାହା ଏପରି ନିର୍ଯାତନା ଯାହା ହତ୍ୟା ସଙ୍ଗେ ସମାନ ।

وَبِكُفْرِهِمْ وَقَوْلِهِمْ عَلَىٰ مَرْيَمَ بُهْتَانًا عَظِيمًا ١٥٧

୧୫୭. ତଥା ସେମାନଙ୍କର ଅବିଶ୍ୱାସ (ହେତୁ) ଓ ମରିୟମଙ୍କ ପ୍ରତି ସେମାନେ ଗୁରୁତର ଅପବାଦ ଆରୋପ କରିବା ହେତୁ–

وَقَوْلِهِمْ إِنَّا قَتَلْنَا الْمَسِيحَ عِيسَى ابْنَ مَرْيَمَ رَسُولَ اللَّهِ وَمَا قَتَلُوهُ وَمَا صَلَبُوهُ وَلَٰكِنْ شُبِّهَ لَهُمْ ۚ وَإِنَّ الَّذِينَ اخْتَلَفُوا فِيهِ لَفِي شَكٍّ مِنْهُ ۚ مَا لَهُمْ بِهِ مِنْ عِلْمٍ إِلَّا اتِّبَاعَ الظَّنِّ ۚ وَمَا قَتَلُوهُ يَقِينًا ١٥٨

୧୫୮. ଏବଂ ସେମାନଙ୍କ (ଏହି କଥା) କହିବା ହେତୁ ଯେ ଅଲ୍ଲାହ୍‌ଙ୍କ ରସୁଲ ମରିୟମ-ନନ୍ଦନ ମସିହ ଇସାଙ୍କୁ ଆମେମାନେ ଅବଶ୍ୟ ହତ୍ୟା କରିଅଛୁ (ସେମାନଙ୍କୁ ଏହି ଶାସ୍ତି ମିଳିଅଛି); ଅଥଚ ସେମାନେ ତାହାଙ୍କୁ ହତ୍ୟା କରିନାହାନ୍ତି କି କ୍ରୁଶବିଦ୍ଧ କରି ତାହାଙ୍କର ପ୍ରାଣନାଶ କରି ନାହାନ୍ତି ବରଂ ସେ[1] ସେମାନଙ୍କ ନିକଟରେ ସେଭଳି (କ୍ରୁଶବିଦ୍ଧ ହୋଇଥିବା) ପ୍ରତୀତ ହେଲେ; ଏବଂ ଯେଉଁମାନେ ଏ ବିଷୟରେ (ଅର୍ଥାତ୍ ମସିହଙ୍କୁ କ୍ରୁଶ ଉପରୁ ଜୀବିତାବସ୍ଥାରେ ଉଦ୍ଧାର କରିବା ସଂକ୍ରାନ୍ତରେ) ଭ୍ରାନ୍ତ ଧାରଣାର ଅନୁସରଣ କରୁଛନ୍ତି, ସେମାନେ ବାସ୍ତବରେ ଏ (ଜୀବିତାବସ୍ଥାରେ ଉଦ୍ଧାର କରିବା) ସଂକ୍ରାନ୍ତରେ ସନ୍ଦେହରେ ପଡ଼ିଛନ୍ତି; ସେମାନଙ୍କର ଏ ବିଷୟରେ (ସଠିକ) ଜ୍ଞାନ[2] ନାହିଁ; ସେମାନେ (କେବଳ ଏକ) ଭ୍ରାନ୍ତ ଧାରଣାର ଅନୁସରଣ କରୁଛନ୍ତି; ଏବଂ ସେମାନେ ବାସ୍ତବରେ ତାହାଙ୍କୁ ହତ୍ୟା କରି ନାହାନ୍ତି (କି ପ୍ରକୃତ ଘଟଣାକୁ ସଂପୂର୍ଣ୍ଣରୂପେ ବୁଝି ନାହାନ୍ତି ଓ ଯାହା ବୁଝିଛନ୍ତି ତାହା ଭୁଲ) ।

بَلْ رَفَعَهُ اللَّهُ إِلَيْهِ ۚ وَكَانَ اللَّهُ عَزِيزًا حَكِيمًا ١٥٩

୧୫୯. (ବସ୍ତୁତଃ) ଅଲ୍ଲାହ୍ ତାହାଙ୍କୁ ନିଜ ସମୀପରେ ସମ୍ମାନିତ (ଓ ଉନ୍ନତ) କରିଥିଲେ (ଓ ସେ କ୍ରୁଶ ଉପରେ ପ୍ରାଣତ୍ୟାଗ କରି ନ ଥିଲେ), କାରଣ ଅଲ୍ଲାହ୍ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯୀଶୁଙ୍କୁ କ୍ରୁଶ ଉପରେ ଚଢ଼ାଇଲା ପରେ ସେ ମୂର୍ଚ୍ଛିତ ହୋଇଗଲେ । ଏହି କାରଣରୁ ସେ କ୍ରୁଶ ଉପରେ ମୃତ୍ୟୁଲାଭ କରିଥିବା କେତେକ ବିଶ୍ୱାସ କରନ୍ତି । ଆରବୀ 'ସଲବ' ଶବ୍ଦ କ୍ରୁଶ୍ ଉପରେ ଚଢ଼ାଇବା ଓ ହାଡ ଭାଙ୍ଗିଦେବା ଉଭୟ କାର୍ଯ୍ୟ ପାଇଁ ବ୍ୟବହୃତ ହୁଏ । ବାସ୍ତବରେ ଯୀଶୁଙ୍କ ହାଡ ଭଙ୍ଗାଯାଇ ନ ଥିଲା । ସେହି କାରଣରୁ ତାହାଙ୍କୁ କ୍ରୁଶରେ ଚଢ଼ାଇ ହତ୍ୟା କରାଯାଇ ନାହିଁ 'ବର' ସେ ସେମାନଙ୍କ ନିକଟରେ ସେଭଳି ପ୍ରତୀତ ହେଲେ' ବର୍ଣ୍ଣନା କରାଯାଇଛି ।

୨. ଅର୍ଥାତ୍ ସକଳ ପରିସ୍ଥିତି ଯୀଶୁ କ୍ରୁଶରେ ନିହତ ହୋଇଥିବା ବିଷୟର ବିରୁଦ୍ଧାଚରଣ କରୁଛି । ଅବଶ୍ୟ ଇହୁଦୀମାନେ ଇଚ୍ଛା କରିଥିଲେ ଯେ ଯୀଶୁ କ୍ରୁଶ ଉପରେ ନିହତ ହୁଅନ୍ତୁ । ସେହି କାରଣରୁ ସେମାନେ ହିଁ ନିଜ ଭ୍ରାନ୍ତ ଧାରଣାର ଶିକାର ହୋଇଥିଲେ ଓ ଯୀଶୁ କ୍ରୁଶ ଉପରେ ନିହତ ହୋଇଥିବା ବିଶ୍ୱାସ କରୁଥିଲେ ।

ବାଇବେଲ ବର୍ଣ୍ଣିତ ବିଭିନ୍ନ ତଥ୍ୟ ଯଥା:– (କ) ଯାହାଙ୍କୁ ଫାଶୀ ଦିଆଯାଏ ସେ ଅଭିଶପ୍ତ, (ଡ୍ରିଉଟ୍ ୨୧:୨୩)(ଖ) ଯୀଶୁ ପ୍ରାର୍ଥନା କରିଥିଲେ — ହେ ପ୍ରଭୁ ! ମୃତ୍ୟୁର ପିଆଲା ମୋ ଠାରୁ ନେଇଯାଅ (ମାର୍କ ୧୪:୩୬);(ଗ)ଏବଂ ତାଙ୍କ ଗୁହାରି ଶୁଣାଗଲା (ହେବ୍ ୫:୭), (ଘ) ଯୋନାହ (ହଜରତ ୟୁନୁସ) ଯେପରି ମାଛ ପେଟରେ ତିନି ଦିନ ରହି ଜୀବନ୍ତ ବାହାରି ଆସିଥିଲେ ମୁଁ ମଧ୍ୟ ସେହିପରି ସମାଧି ଭିତରେ ତିନି ଦିନ ରହି ଜୀବନ୍ତ ବାହାରି ଆସିବି (ମାଥ୍ ୧୨:୪୦),(ଙ) କ୍ରୁଶରୁ ଓହ୍ଲାଇ ଅଣାଯିବା ପରେ ତାଙ୍କୁ ବର୍ଚ୍ଛାବିଦ୍ଧ କରିବାରୁ ତାଙ୍କ ଦେହରୁ ରକ୍ତ ଓ ଜଳ ନିର୍ଗତ ହେଲା (ଜନ୍ ୧୯:୩୪)(ଚ) ତାଙ୍କର କ୍ଷତ ଗୁଡ଼ିକ ଅନେକାଂଶରେ ଭଲ ହୋଇଯିବା ପରେ ସେ ସମାଧିରୁ ବାହାରି ଆସି କେତେକ ଅନୁଚରଙ୍କୁ ଭେଟିବା ଓ ସେମାନଙ୍କ ସହିତ ଭୋଜନ କରିବା (ଲ୍ୟୁକ୨୪:୫୦)ଆଦି ତଥ୍ୟ ସମୂହକୁ ଅନୁଧ୍ୟାନ କଲେ ଜଣାଯିବ ଯେ ସେ କ୍ରୁଶରେ ମରିନାହାନ୍ତି ।

୧୬୦. ଏବଂ ଗ୍ରନ୍ଥଧାରୀମାନଙ୍କ ମଧ୍ୟରେ ଏପରି କେହି ନାହିଁ ଯେ କି ଏହାକୁ (ଅର୍ଥାତ୍ ଏହି ଘଟଣାକୁ) ନିଜ ମୃତ୍ୟୁ[1] ପୂର୍ବରୁ ବିଶ୍ୱାସ ନ କରିବ ଏବଂ ସେ (ଇସା) କୟାମତ ଦିନ ଏମାନଙ୍କ ବିରୁଦ୍ଧରେ ସାକ୍ଷୀ ହେବେ ।

وَإِن مِّنْ أَهْلِ الْكِتٰبِ إِلَّا لَيُؤْمِنَنَّ بِهِ قَبْلَ مَوْتِهِ ۚ وَيَوْمَ الْقِيٰمَةِ يَكُونُ عَلَيْهِمْ شَهِيدًا ﴿١٦٠﴾

୧୬୧. ସୁତରାଂ ଯେଉଁ ସବୁ ବିଶୁଦ୍ଧ ବସ୍ତୁ ଇହୁଦୀମାନଙ୍କ ପାଇଁ ବୈଧ ଥିଲା ସେମାନଙ୍କ ଅତ୍ୟାଚାର (ହେତୁ) ଏବଂ ଅଲ୍ଲାହ୍‌ଙ୍କ ପଥକୁ ଅନେକଙ୍କ ପ୍ରତିରୋଧ କରିବା ହେତୁ ଆମେ ସେମାନଙ୍କ ପାଇଁ ସେଗୁଡ଼ିକୁ ଅବୈଧ[2] କରିଦେଲୁ (ଏବଂ ସେମାନେ ଏହି ଶାସ୍ତି ପାଇଲେ) ।

فَبِظُلْمٍ مِّنَ الَّذِينَ هَادُوا حَرَّمْنَا عَلَيْهِمْ طَيِّبٰتٍ أُحِلَّتْ لَهُمْ وَبِصَدِّهِمْ عَن سَبِيلِ اللّٰهِ كَثِيرًا ﴿١٦١﴾

୧୬୨. ଏବଂ ସେମାନଙ୍କୁ ନିଷେଧ[3] କରାଯିବା ସତ୍ତ୍ୱେ ସେମାନେ ସୁଧ କାରବାର କରୁଥିବାରୁ ତଥା ଲୋକମାନଙ୍କର ଧନକୁ ଆତ୍ମସାତ କରିବା ହେତୁ (ସେମାନେ ଏହି ଶାସ୍ତି ପାଇଲେ); ଏବଂ ଆମେ ସେମାନଙ୍କ ମଧ୍ୟରୁ ଅବିଶ୍ୱାସକାରୀମାନଙ୍କ ସକାଶେ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରିଅଛୁ ।

وَأَخْذِهِمُ الرِّبٰوا وَقَدْ نُهُوا عَنْهُ وَأَكْلِهِمْ أَمْوٰلَ النَّاسِ بِالْبٰطِلِ ۚ وَأَعْتَدْنَا لِلْكٰفِرِينَ مِنْهُمْ عَذَابًا أَلِيمًا ﴿١٦٢﴾

୧୬୩. କିନ୍ତୁ ସେ (ଇହୁଦୀ)ମାନଙ୍କ ମଧ୍ୟରୁ ଯେଉଁମାନେ ବିଦ୍ୟାରେ ପରିପକ୍ୱ ତଥା ବିଶ୍ୱାସକାରୀ (ମୁସଲମାନ)ମାନେ ମଧ୍ୟ ଏହା (ଅର୍ଥାତ୍ ଅଲ୍ଲାହ୍‌ଙ୍କ ବାଣୀ) ଉପରେ ବିଶ୍ୱାସ କରନ୍ତି ଯାହା ତୁମ ପ୍ରତି ଅବତୀର୍ଣ୍ଣ ହୋଇଅଛି ଓ ଯାହା ତୁମ ପୂର୍ବରୁ ଅବତୀର୍ଣ୍ଣ ହୋଇଥିଲା; ଏବଂ ବିଶେଷତଃ ଯେଉଁମାନେ ସୁଚାରୁରୂପେ ନମାଜ ପାଠ କରନ୍ତି ଓ ଜକାତ ଦିଅନ୍ତି ଓ ଅଲ୍ଲାହ୍‌ଙ୍କ ଉପରେ ତଥା ଅନ୍ତିମ ଦିବସ ଉପରେ ବିଶ୍ୱାସ କରନ୍ତି ଆମେ ସେମାନଙ୍କୁ ନିଶ୍ଚୟ (ମହାନ୍) ପୁରସ୍କାର ଦେବୁ ।

لٰكِنِ الرّٰسِخُونَ فِي الْعِلْمِ مِنْهُمْ وَالْمُؤْمِنُونَ يُؤْمِنُونَ بِمَا أُنزِلَ إِلَيْكَ وَمَا أُنزِلَ مِن قَبْلِكَ ۚ وَالْمُقِيمِينَ الصَّلٰوةَ ۚ وَالْمُؤْتُونَ الزَّكٰوةَ وَالْمُؤْمِنُونَ بِاللّٰهِ وَالْيَوْمِ الْآخِرِ ۗ أُولٰئِكَ سَنُؤْتِيهِمْ أَجْرًا عَظِيمًا ﴿١٦٣﴾

---

୧. କେତେକ ଟୀକାକାର କହନ୍ତି ଯେ ଗ୍ରନ୍ଥଧାରୀମାନେ ଯୀଶୁଙ୍କ ମୃତ୍ୟୁ ପୂର୍ବରୁ ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବେ, କିନ୍ତୁ ଆମ ମତରେ ଏହା ଠିକ୍ ନୁହେଁ କାରଣ ଏଠାରେ 'ଇନ୍‌ମିନ୍ ଅହଲିଲ୍ କିତାବ' ବାକ୍ୟାଂଶରୁ ସୂଚିତ ହେଉଛି ଯେ ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ପ୍ରତ୍ୟେକ ବିଶ୍ୱାସ ସ୍ଥାପନ କରିବା ଆବଶ୍ୟକ ଅଥଚ ଯୀଶୁଙ୍କ ସମୟଠାରୁ ଆଜି ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଇହୁଦୀ ମୃତ୍ୟୁବରଣ କରିଥିଲେ ମଧ୍ୟ ସେମାନଙ୍କ ଭାଗ୍ୟରେ ଖ୍ରୀଷ୍ଟିୟାନ ହେବା ସମ୍ଭବ ହେଲା ନାହିଁ । ସେହି କାରଣରୁ ଆମେ ମତବ୍ୟକ୍ତ କରୁଅଛୁ ଯେ ପ୍ରତ୍ୟେକ ଗ୍ରନ୍ଥଧାରୀ–ସେ ଇହୁଦୀ ହୋଇଥାଉ କି ଖ୍ରୀଷ୍ଟିୟାନ– ନିଜ ମୃତ୍ୟୁ ପର୍ଯ୍ୟନ୍ତ ଇସାଙ୍କୁ କ୍ରୁଶ ଉପରେ ମରିଥିବା ବିଶ୍ୱାସ କରିବେ । ଇହୁଦୀମାନେ ବିଶ୍ୱାସ କରନ୍ତି ଯେ ସେମାନେ ତାଙ୍କୁ କ୍ରୁଶ ଉପରେ ହତ୍ୟା କରିଛନ୍ତି କାରଣ ସେମାନେ ତାଙ୍କୁ ଜଣେ ମିଥ୍ୟାବାଦୀ ଅବତାର ପ୍ରମାଣିତ କରିବା ଚାହାନ୍ତି ଏବଂ ଖ୍ରୀଷ୍ଟିୟାନମାନେ ବିଶ୍ୱାସ କରନ୍ତି ଯେ ସେ କ୍ରୁଶ ଉପରେ ମୃତ୍ୟୁ ବରଣ କରିଛନ୍ତି । କାରଣ ସେମାନେ ପ୍ରାୟଶ୍ଚିତ୍ତ ମତବାଦ (Doctrine of Atonement) ର ପୃଷ୍ଠପୋଷକ । ବସ୍ତୁତଃ ଗ୍ରନ୍ଥଧାରୀମାନେ ମୃତ୍ୟୁ ପରେ ପ୍ରକୃତ ତଥ୍ୟ ଜାଣି ପାରିବେ ।

୨. ଅର୍ଥାତ୍ ହଜରତ ଇସା (ଯୀଶୁ)ଙ୍କୁ ପ୍ରତ୍ୟାଖ୍ୟାନ କରିଥିବାରୁ ସେମାନଙ୍କ ପାଇଁ ଧର୍ମଦ୍ୱାରକୁ ବନ୍ଦ କରି ଦିଆଗଲା ।

୩. ଇହୁଦୀମାନଙ୍କ ଠାରୁ ସୁଧ ଗ୍ରହଣ କରିବାକୁ ବାରଣ କରାଯାଇଥିଲା ଅଥଚ ଅଣ–ଇହୁଦୀମାନଙ୍କ ଠାରୁ ସୁଧ ଗ୍ରହଣ କରିବାକୁ ସେମାନଙ୍କୁ ଅନୁମତି ଦିଆଯାଇଥିଲା (Exod 22:25, Lev 25:36–37, Deut. 23:19–20 ଦ୍ରଷ୍ଟବ୍ୟ) । ବାସ୍ତବରେ କୋରାନର ଉକ୍ତି ଅନୁସାରେ ଇହୁଦୀମାନେ ନିଜ ବ୍ୟବସାୟ ଦୃଷ୍ଟିରୁ ଭାଷାସ୍ତୁଗୀ ଦେଖାଇଛନ୍ତି । ବସ୍ତୁତଃ ଅଲ୍ଲାହ୍ ସମସ୍ତ ପ୍ରକାର ସୁଧ କାରବାରକୁ ନିଷିଦ୍ଧ କରିଛନ୍ତି । ଅତଏବ ଯାହା କିଛି ବାଇବେଲରେ ବର୍ଣ୍ଣନା କରାଯାଇଛି ତାହାକୁ ଇହୁଦୀମାନେ ଭାଷା ପରିବର୍ତ୍ତନ କରି ଓ ଚତୁରତା ସହକାରେ କରିଛନ୍ତି ।

إِنَّا أَوْحَيْنَا إِلَيْكَ كَمَا أَوْحَيْنَا إِلَىٰ نُوحٍ وَالنَّبِيِّينَ مِن بَعْدِهِ ۚ وَأَوْحَيْنَا إِلَىٰ إِبْرَاهِيمَ وَإِسْمَاعِيلَ وَإِسْحَاقَ وَيَعْقُوبَ وَالْأَسْبَاطِ وَعِيسَىٰ وَأَيُّوبَ وَيُونُسَ وَهَارُونَ وَسُلَيْمَانَ ۚ وَآتَيْنَا دَاوُودَ زَبُورًا ﴿١٦٤﴾

୧୬୪. ଆମେ ନୁହ ଓ ତାହାଙ୍କ ପରବର୍ତ୍ତୀ ସମସ୍ତ ରସୁଲଙ୍କ ପ୍ରତି ଯେପରି ଓହି ପ୍ରେରଣ କରିଥିଲୁ ତୁମ ପ୍ରତି ମଧ୍ୟ ନିଶ୍ଚୟ ସେହିପରି ଓହି ପ୍ରେରଣ କରିଅଛୁ; ଏବଂ ଆମେ ଇବ୍ରାହିମ ଓ ଇସମାଇଲ ଓ ଇସହାକ ଓ ୟାକୁବ ଓ (ତାଙ୍କର) ସନ୍ତାନମାନଙ୍କ ପ୍ରତି ଏବଂ ଇସା ଓ ଅୟୁବ ଓ ୟୁନୁସ ଓ ହାରୁନ ଓ ସୋଲେମାନଙ୍କ ପ୍ରତି (ମଧ୍ୟ) ଓହି ପ୍ରେରଣ କରିଥିଲୁ ଏବଂ ଆମେ ଦାଉଦଙ୍କୁ ମଧ୍ୟ ଜବୁର (ଧର୍ମ) ଗ୍ରନ୍ଥ ପ୍ରଦାନ କରିଥିଲୁ ।

وَرُسُلًا قَدْ قَصَصْنَاهُمْ عَلَيْكَ مِن قَبْلُ وَرُسُلًا لَّمْ نَقْصُصْهُمْ عَلَيْكَ ۚ وَكَلَّمَ اللَّهُ مُوسَىٰ تَكْلِيمًا ﴿١٦٥﴾

୧୬୫. ଏବଂ ଏପରି କେତେକ ରସୁଲ ଅଛନ୍ତି ଯେଉଁମାନଙ୍କ ସମାଚାର ଆମେ ତୁମଙ୍କୁ (ଏହା) ପୂର୍ବରୁ ଦେଇ ସାରିଛୁ ଏବଂ ଅନ୍ୟ କେତେକ ରସୁଲ[1] ଏପରି ଅଛନ୍ତି ଯେଉଁମାନଙ୍କ ବିଷୟ ଆମେ ତୁମ ନିକଟରେ ବର୍ଣ୍ଣନା କରିନାହୁଁ; ଏବଂ ଅଲ୍ଲାହ ମୁସାଙ୍କ ସହିତ ଭଲ ଭାବରେ କଥାବାର୍ତ୍ତା କରିଥିଲେ ।

رُّسُلًا مُّبَشِّرِينَ وَمُنذِرِينَ لِئَلَّا يَكُونَ لِلنَّاسِ عَلَى اللَّهِ حُجَّةٌ بَعْدَ الرُّسُلِ ۚ وَكَانَ اللَّهُ عَزِيزًا حَكِيمًا ﴿١٦٦﴾

୧୬୬. ଆମେ ସେମାନଙ୍କୁ (ଅର୍ଥାତ୍ ମୁସାଙ୍କ ସହିତ ବର୍ଣ୍ଣନା କରାଯାଇଥିବା ରସୁଲମାନଙ୍କୁ) ସୁସମାଚାରଦାତା ଓ ସତର୍କକାରୀ ରସୁଲ ରୂପେ ପ୍ରେରଣ କରିଥିଲୁ ଯେପରିକି ଏହି ଲୋକମାନେ ଏହି ରସୁଲମାନଙ୍କ (ଆଗମନ) ପରେ ଲୋକମାନଙ୍କର ଅଲ୍ଲାହଙ୍କ ପ୍ରତି କୌଣସି ଦୋଷାରୋପ ରହିବ ନାହିଁ; ଏବଂ ଅଲ୍ଲାହ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

لَّٰكِنِ اللَّهُ يَشْهَدُ بِمَا أَنزَلَ إِلَيْكَ ۖ أَنزَلَهُ بِعِلْمِهِ ۖ وَالْمَلَائِكَةُ يَشْهَدُونَ ۚ وَكَفَىٰ بِاللَّهِ شَهِيدًا ﴿١٦٧﴾

୧୬୭. କିନ୍ତୁ ଅଲ୍ଲାହ ତୁମ ପ୍ରତି ଯାହା କିଛି (ଅର୍ଥାତ୍ ଯେଉଁ ବାଣୀ) ଅବତୀର୍ଣ୍ଣ କରିଛନ୍ତି ତା ମାଧ୍ୟମରେ ସାକ୍ଷ୍ୟ ଦେଉଛନ୍ତି ଯେ ସେ ତାହାକୁ ନିଜ ଜ୍ଞାନ ସମ୍ବଳିତ କରି ଅବତୀର୍ଣ୍ଣ କରିଛନ୍ତି ଏବଂ ଦେବଦୂତମାନେ (ମଧ୍ୟ) ସାକ୍ଷ୍ୟ ଦେଉଛନ୍ତି; ଏବଂ ଅଲ୍ଲାହ ସାକ୍ଷୀ ଭାବରେ ଯଥେଷ୍ଟ ।

إِنَّ الَّذِينَ كَفَرُوا وَصَدُّوا عَن سَبِيلِ اللَّهِ قَدْ ضَلُّوا ضَلَالًا بَعِيدًا ﴿١٦٨﴾

୧୬୮. ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ (ଲୋକମାନଙ୍କୁ) ଅଲ୍ଲାହଙ୍କ ପଥରୁ ପ୍ରତିରୋଧ କରିଛନ୍ତି ସେମାନେ ନିଶ୍ଚୟ ଅତିଶୟ ବିଭ୍ରାନ୍ତିରେ ପଡ଼ିଯାଇଛନ୍ତି ।

إِنَّ الَّذِينَ كَفَرُوا وَظَلَمُوا لَمْ يَكُنِ اللَّهُ لِيَغْفِرَ لَهُمْ وَلَا لِيَهْدِيَهُمْ طَرِيقًا ﴿١٦٩﴾

إِلَّا طَرِيقَ جَهَنَّمَ خَالِدِينَ فِيهَا أَبَدًا ۚ وَكَانَ ذَٰلِكَ عَلَى اللَّهِ يَسِيرًا ﴿١٧٠﴾

୧୬୯/୧୭୦. ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଅତ୍ୟାଚାର କରିଛନ୍ତି ଅଲ୍ଲାହ ସେମାନଙ୍କୁ କଦାପି କ୍ଷମା ଦେବେ ନାହିଁ କି ସେମାନଙ୍କୁ ନରକ ଭିନ୍ନ ଅନ୍ୟ କୌଣସି ପଥ ଦେଖାଇବେ ନାହିଁ; ସେଠାରେ ସେମାନେ ବହୁକାଳ ରହିବେ; ଏବଂ ଏହା ଅଲ୍ଲାହଙ୍କ ପକ୍ଷେ ସହଜ ।

---

୧. ପବିତ୍ର କୋରାନରେ ୨୪ ଜଣ ଅବତାରଙ୍କ ନାମର ଉଲ୍ଲେଖ ଥିଲେ ମଧ୍ୟ ହଜରତ ମହମ୍ମଦଙ୍କ ଏକ ଉକ୍ତି ଅନୁଯାୟୀ ସଂସାରରେ ୧,୨୪,୦୦୦ ଅବତାର ଜନ୍ମ ଗ୍ରହଣ କରିଛନ୍ତି । ଅନ୍ୟତ୍ର ଉଲ୍ଲେଖ ଅଛି ଯେ ପ୍ରତ୍ୟେକ ଜାତିପାଇଁ ସଚେତକ ଅର୍ଥାତ୍ ନବି ଆସିଛନ୍ତି (୩୫:୨୫ ଦ୍ରଷ୍ଟବ୍ୟ) ।

୧୭୧. ହେ ଲୋକମାନେ ! ଏହି ରସୁଲ ତୁମମାନଙ୍କ ନିକଟକୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ସତ୍ୟ ଘେନି ଆସିଛନ୍ତି; ସୁତରାଂ ତୁମେମାନେ ବିଶ୍ୱାସ କର; (ଏହା) ତୁମମାନଙ୍କ ପକ୍ଷରେ ଉତ୍ତମ ହେବ; ଏବଂ ଯଦି ତୁମେମାନେ ଅବଜ୍ଞା କରିବ ତେବେ (ମନେରଖ ଯେ) ଯାହା କିଛି ଆକାଶ ଓ ପୃଥିବୀରେ ଅଛି ସେ ସବୁ ବାସ୍ତବରେ ଅଲ୍ଲାଃଙ୍କର ଏବଂ ଅଲ୍ଲାଃ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

يَٰٓأَيُّهَا ٱلنَّاسُ قَدْ جَآءَكُمُ ٱلرَّسُولُ بِٱلْحَقِّ مِن رَّبِّكُمْ فَـَٔامِنُوا۟ خَيْرًا لَّكُمْ ۚ وَإِن تَكْفُرُوا۟ فَإِنَّ لِلَّهِ مَا فِى ٱلسَّمَٰوَٰتِ وَٱلْأَرْضِ ۚ وَكَانَ ٱللَّهُ عَلِيمًا حَكِيمًا ﴿١٧١﴾

୧୭୨. ହେ ଗ୍ରନ୍ଥଧାରୀମାନେ[1]! ତୁମେମାନେ ନିଜ ଧର୍ମ ସଂକ୍ରାନ୍ତରେ ଅତିରଂଜନ କରନାହିଁ; ଏବଂ ଅଲ୍ଲାଃଙ୍କ ସମ୍ବନ୍ଧରେ ସତ୍ୟ ଭିନ୍ନ ଅନ୍ୟ କିଛି କୁହ ନାହିଁ; ବାସ୍ତବରେ ମରିୟମ-ନନ୍ଦନ ମସିହ ଈସା ଅଲ୍ଲାଃଙ୍କର କେବଳ ଜଣେ ରସୁଲ ଥିଲେ ଓ ତାହାଙ୍କର (ଏକ) ସୁସମାଚାର (ବାଣୀ) ଥିଲେ, ଯାହା ସେ ମରିୟମଙ୍କ ପ୍ରତି ଅବତୀର୍ଣ୍ଣ କରିଥିଲେ ଏବଂ (ସେ) ତାହାଙ୍କ ତରଫରୁ ଏକ କରୁଣା ଥିଲେ, ତେଣୁ ତୁମେମାନେ ଅଲ୍ଲାଃ ଓ ତାହାଙ୍କର ସମସ୍ତ ରସୁଲଙ୍କ ଉପରେ ବିଶ୍ୱାସ କର ଏବଂ (ଅଲ୍ଲାଃ) ତିନି (ଜଣ ବୋଲି) କହ ନାହିଁ; (ଏଥିରୁ) ନିବୃତ୍ତ ରହ; (ଏହା) ତୁମମାନଙ୍କ ପକ୍ଷରେ ଉତ୍ତମ ହେବ; ଅଲ୍ଲାଃ ହିଁ ଏକମାତ୍ର ଉପାସ୍ୟ; ତାହାଙ୍କର କୌଣସି ସନ୍ତାନ ହେଉ, ଏହା ତାହାଙ୍କ ମହିମାର ପ୍ରତିକୂଳ; ଯାହା କିଛି ଆକାଶରେ ଅଛି ଓ ଯାହା କିଛି ପୃଥିବୀରେ ଅଛି ସେ ସବୁ ତାହାଙ୍କର; ଏବଂ ଅଲ୍ଲାଃଙ୍କର ସୁରକ୍ଷା ବାହାରେ ଅନ୍ୟ କାହାରି ସୁରକ୍ଷାର ଆବଶ୍ୟକତା ନାହିଁ ।

يَٰٓأَهْلَ ٱلْكِتَٰبِ لَا تَغْلُوا۟ فِى دِينِكُمْ وَلَا تَقُولُوا۟ عَلَى ٱللَّهِ إِلَّا ٱلْحَقَّ ۚ إِنَّمَا ٱلْمَسِيحُ عِيسَى ٱبْنُ مَرْيَمَ رَسُولُ ٱللَّهِ وَكَلِمَتُهُۥٓ أَلْقَىٰهَآ إِلَىٰ مَرْيَمَ وَرُوحٌ مِّنْهُ ۖ فَـَٔامِنُوا۟ بِٱللَّهِ وَرُسُلِهِۦ ۖ وَلَا تَقُولُوا۟ ثَلَٰثَةٌ ۚ ٱنتَهُوا۟ خَيْرًا لَّكُمْ ۚ إِنَّمَا ٱللَّهُ إِلَٰهٌ وَٰحِدٌ ۖ سُبْحَٰنَهُۥٓ أَن يَكُونَ لَهُۥ وَلَدٌ ۘ لَّهُۥ مَا فِى ٱلسَّمَٰوَٰتِ وَمَا فِى ٱلْأَرْضِ ۗ وَكَفَىٰ بِٱللَّهِ وَكِيلًا ﴿١٧٢﴾

ରୁ : ୨୪

୧୭୩. ମସିହ ଅଲ୍ଲାଃଙ୍କର ଜଣେ ଭକ୍ତ ହୋଇଥିବା ବିଷୟ ତାଙ୍କୁ ଆଦୌ ଖରାପ ଲାଗିବ ନାହିଁ ଏବଂ (ଅଲ୍ଲାଃଙ୍କର) ସାମୀପ୍ୟ ଲାଭ କରିଥିବା ଦେବଦୂତମାନେ ମଧ୍ୟ (ଏହାକୁ ଖରାପ ଭାବିବେ ନାହିଁ); ଏବଂ 'ଯେଉଁ (ଲୋକ)ମାନେ ତାହାଙ୍କର' ଉପାସନା କରିବାକୁ ଖରାପ ମନେ କରନ୍ତି ଓ ଗର୍ବ କରନ୍ତି ଏ ସମସ୍ତଙ୍କୁ ସେ (ଅଲ୍ଲାଃ) ନିଜ ସମୀପରେ ନିଶ୍ଚୟ ଏକତ୍ରିତ କରିବେ ।

لَّن يَسْتَنكِفَ ٱلْمَسِيحُ أَن يَكُونَ عَبْدًا لِّلَّهِ وَلَا ٱلْمَلَٰٓئِكَةُ ٱلْمُقَرَّبُونَ ۚ وَمَن يَسْتَنكِفْ عَنْ عِبَادَتِهِۦ وَيَسْتَكْبِرْ فَسَيَحْشُرُهُمْ إِلَيْهِ جَمِيعًا ﴿١٧٣﴾

୧୭୪. ତାପରେ ଯେଉଁ ଲୋକମାନେ ବିଶ୍ୱାସ କରିଥିଲେ ଓ (ବିଶ୍ୱାସ ଅନୁସାରେ) ପୁଣ୍ୟ କାର୍ଯ୍ୟ କରିଥିଲେ ସେ ସେମାନଙ୍କୁ ସେମାନଙ୍କର ସଂପୂର୍ଣ୍ଣ ପୁରସ୍କାର ଦେବେ ଏବଂ ନିଜ କୃପାରୁ ସେମାନଙ୍କୁ ଅଧିକ ପ୍ରଦାନ କରିବେ; କିନ୍ତୁ ଯେଉଁ ଲୋକମାନେ ଖରାପ ମନେ କରିଥିଲେ ଓ ଗର୍ବ କରିଥିଲେ,

فَأَمَّا ٱلَّذِينَ ءَامَنُوا۟ وَعَمِلُوا۟ ٱلصَّٰلِحَٰتِ فَيُوَفِّيهِمْ أُجُورَهُمْ وَيَزِيدُهُم مِّن فَضْلِهِۦ ۖ وَأَمَّا ٱلَّذِينَ ٱسْتَنكَفُوا۟ وَٱسْتَكْبَرُوا۟ فَيُعَذِّبُهُمْ عَذَابًا أَلِيمًا وَلَا يَجِدُونَ

---

୧. ଏଠାରେ ଗ୍ରନ୍ଥଧାରୀ ଅର୍ଥ ଖ୍ରୀଷ୍ଟିୟାନ, କାରଣ ସେମାନେ ହିଁ ଏପରି ବିଶ୍ୱାସ (ଯାହାକୁ ଖଣ୍ଡନ କରାଯାଇଛି) ପୋଷଣ କରୁଥିଲେ ।

لَهُمْ مِّنْ دُوْنِ اللّٰهِ وَلِيًّا وَّلَا نَصِيْرًا ﴿١٧٤﴾

ସେ ସେମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଦେବେ, ଏବଂ ସେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାକୁ ନିଜର ବନ୍ଧୁ ବା ସାହାଯ୍ୟକାରୀ ପାଇବେ ନାହିଁ ।

يٰۤاَيُّهَا النَّاسُ قَدْ جَآءَكُمْ بُرْهَانٌ مِّنْ رَّبِّكُمْ وَاَنْزَلْنَاۤ اِلَيْكُمْ نُوْرًا مُّبِيْنًا ﴿١٧٥﴾

୧୭୫. ହେ ଲୋକମାନେ ! ତୁମମାନଙ୍କ ନିକଟକୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ଏକ ପ୍ରକାଶ୍ୟ ପ୍ରମାଣ ଆସିଅଛି ଏବଂ ଆମେ ତୁମମାନଙ୍କ ପ୍ରତି (ଅତି) ଉଜ୍ଜ୍ୱଳ ଜ୍ୟୋତି ଅବତୀର୍ଣ୍ଣ କରିଅଛୁ ।

فَاَمَّا الَّذِيْنَ اٰمَنُوْا بِاللّٰهِ وَاعْتَصَمُوْا بِهٖ فَسَيُدْخِلُهُمْ فِيْ رَحْمَةٍ مِّنْهُ وَفَضْلٍ وَّيَهْدِيْهِمْ اِلَيْهِ صِرَاطًا مُّسْتَقِيْمًا ﴿١٧٦﴾

୧୭୬. ସୁତରାଂ ଯେଉଁମାନେ ଅଲ୍ଲାହ୍‌ଙ୍କ ଉପରେ ବିଶ୍ୱାସ କରିଛନ୍ତି ଓ (ସେମାନେ) ତାହା ମାଧ୍ୟମରେ (ନିଜକୁ) ସୁରକ୍ଷିତ କରିଛନ୍ତି ସେମାନଙ୍କୁ ସେ ନିଶ୍ଚୟ ନିଜର କରୁଣା ଓ କୃପା ମଧ୍ୟକୁ ପ୍ରବେଶ କରାଇବେ ଏବଂ ସେମାନଙ୍କୁ ନିଜ ଆଡ଼କୁ ଯାଉଥିବା ଏକ ସରଳ ପଥ ପ୍ରଦର୍ଶନ କରାଇବେ ।

يَسْتَفْتُوْنَكَ ۗ قُلِ اللّٰهُ يُفْتِيْكُمْ فِي الْكَلٰلَةِ ۗ اِنِ امْرُؤٌا هَلَكَ لَيْسَ لَهٗ وَلَدٌ وَّلَهٗۤ اُخْتٌ فَلَهَا نِصْفُ مَا تَرَكَ ۚ وَهُوَ يَرِثُهَاۤ اِنْ لَّمْ يَكُنْ لَّهَا وَلَدٌ ۚ فَاِنْ كَانَتَا اثْنَتَيْنِ فَلَهُمَا الثُّلُثٰنِ مِمَّا تَرَكَ ۚ وَاِنْ كَانُوْۤا اِخْوَةً رِّجَالًا وَّنِسَآءً فَلِلذَّكَرِ مِثْلُ حَظِّ الْاُنْثَيَيْنِ ۗ يُبَيِّنُ اللّٰهُ لَكُمْ اَنْ تَضِلُّوْا ۗ وَاللّٰهُ بِكُلِّ شَيْءٍ عَلِيْمٌ ﴿١٧٧﴾

୧୭୭. ସେମାନେ (ଏକ ପ୍ରକାର) 'କଲାଲା'[୧] ସଂକ୍ରାନ୍ତରେ ତୁମର ନିଷ୍ପତ୍ତି ଲୋଡ଼ୁଛନ୍ତି; ତୁମେ କୁହ, ''ଅଲ୍ଲାହ୍ 'କଲାଲା' ସଂପର୍କରେ ତୁମମାନଙ୍କୁ ଆଦେଶ ପ୍ରଦାନ କରୁଛନ୍ତି; ଯଦି ସନ୍ତାନହୀନ ଥାଇ କୌଣସି ବ୍ୟକ୍ତି ମୃତ୍ୟୁବରଣ କରେ ଓ ତାହାର ଗୋଟିଏ ଭଉଣୀ ଥାଏ ତେବେ ସେ ଯାହାକିଛି ଛାଡ଼ି ଯାଇଥାଏ ସେଥିର ଅର୍ଦ୍ଧାଂଶ ତାହାର (ଅର୍ଥାତ୍ ଭଉଣୀର) ହେବ; ଏବଂ ଯଦି (ସେ ଭଉଣୀ ମରିଯାଏ ଓ) ତାହାର କୌଣସି ସନ୍ତାନ ନ ଥାଆନ୍ତି ତେବେ ସେ (ଅର୍ଥାତ୍ ତାର ଭାଇ) ତା'ର (ସବୁ ସଂପତ୍ତିର) ଦାୟାଦ ହେବ; କିନ୍ତୁ ଯଦି ଦୁଇ ଜଣ ଭଉଣୀ ଥାଆନ୍ତି, ତେବେ ସେ (ଭାଇ) ଯାହା ଛାଡ଼ି ଯାଇଥାଏ ସେମାନଙ୍କର ତହିଁରେ ଦୁଇ ତୃତୀୟାଂଶ ହେବ; ଏବଂ ଯଦି (ଦାୟାଦମାନେ) ଭାଇଭଉଣୀ ଅର୍ଥାତ୍ ପୁରୁଷ ଓ ସ୍ତ୍ରୀ ହୋଇଥାଆନ୍ତି ତେବେ ଜଣେ ପୁରୁଷର ଭାଗ ଦୁଇ ଜଣ ସ୍ତ୍ରୀର ଭାଗ ସହିତ ସମାନ ହେବ; କାଳେ ତୁମେମାନେ ପଥଭ୍ରଷ୍ଟ ହୋଇଯିବ, ଏଥି ସକାଶେ ଅଲ୍ଲାହ୍ (ଏହା) ବର୍ଣ୍ଣନା କରୁଛନ୍ତି ଏବଂ ଅଲ୍ଲାହ୍ ସକଳ ବିଷୟକୁ ଉତ୍ତମ ରୂପେ ଜାଣନ୍ତି ।

---

[୧] ଏହି ଆୟତରେ 'କଲାଲା' ହଜରତ ଈସାଙ୍କୁ ବୁଝାଉଛି । ଇବ୍ନ୍ ଅବ୍ବାସଙ୍କ ମତରେ ଯେଉଁ ବ୍ୟକ୍ତି ନିଜ ପଛରେ କୌଣସି ସନ୍ତାନ ଛାଡ଼ିଯାଇ ନ ଥାନ୍ତି, ସେ ଜଣେ କଲାଲା । ହଜରତ ଈସା ନିଜ ପଛରେ କୌଣସି ଆଧ୍ୟାତ୍ମିକ ଉତ୍ତରାଧିକାରୀ ଛାଡ଼ିଯାଇ ନାହାନ୍ତି; ସୁତରାଂ ସେ ଜଣେ କଲାଲା ।

ଏକ ପ୍ରକାର 'କଲାଲା' ସମ୍ବନ୍ଧରେ ସୁରା ନିସା'ର ଆୟତ-୧୩ରେ ବର୍ଣ୍ଣନା ଅଛି । ସେ କ୍ଷେତ୍ରରେ କଲାଲା ନିଜ ପଛରେ ନିଜ ପିତାମାତା ବା ସନ୍ତାନ ସନ୍ତତିଙ୍କୁ ଛାଡ଼ିଯାଇ ନଥାନ୍ତି ଅଥଚ କେବଳ ନିଜ ପିତାମାତାଙ୍କ ଔରସରୁ ତା'ର ଭାଇ ଭଉଣୀମାନେ ଥାଆନ୍ତି । ଏହି ଆୟତରେ ଏପରି କଲାଲା ସମ୍ପର୍କରେ ଉଲ୍ଲେଖ ଅଛି ଯାହାର ପିତାମାତାଙ୍କ ଔରସରୁ ବା କେବଳ ମାତାଙ୍କ ଔରସରୁ ଭାଇଭଉଣୀ ଜୀବିତ ଅଛନ୍ତି । ଉପର ବର୍ଣ୍ଣିତ ଦୁଇଗୋଟି ଆୟତକୁ ତୁଳନା କଲେ ଜଣାଯିବ ଯେ ପ୍ରଥମୋକ୍ତ କ୍ଷେତ୍ରରେ ଭାଇ-ଭଉଣୀମାନଙ୍କ ଅଂଶ ଶେଷୋକ୍ତ କ୍ଷେତ୍ର ତୁଳନାରେ ନ୍ୟୁନ । ଏହାର କାରଣ ସହଜେ ଅନୁମେୟ ।

ଏହି ଆୟତର ପୂର୍ବବର୍ତ୍ତୀ ଆୟତଗୁଡ଼ିକରେ ଇହୁଦୀମାନେ ଯୀଶୁଙ୍କ ବିରୁଦ୍ଧରେ ଆଗତ ଦୋଷାରୋପ ଉପରେ ବିଶଦ ଆଲୋଚନା କରାଯିବା ପରେ ଏହି ଅଧ୍ୟାୟର ଶେଷାଂଶରେ କଲାଲା ବିଷୟର ଅବତାରଣା କରାଯାଇଛି । ଏତଦ୍ଦ୍ୱାରା ଯୀଶୁ (ଈସା) ଆଧ୍ୟାତ୍ମିକ ଦୃଷ୍ଟିରୁ ସନ୍ତାନହୀନ ଥିବା ସମ୍ପର୍କରେ ଦୃଷ୍ଟି ଆକର୍ଷଣ କରାଯାଇଛି ।

سُوْرَةُ الْمَائِدَةِ مَدَنِيَّةٌ (٥)

# ଅଲ—ମାଏଦା

୧

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୨୧ ଆୟତ ଓ ୧୬ ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

يٰٓاَيُّهَا الَّذِيْنَ اٰمَنُوْٓا اَوْفُوْا بِالْعُقُوْدِ ۬ؕ اُحِلَّتْ لَكُمْ بَهِيْمَةُ الْاَنْعَامِ اِلَّا مَا يُتْلٰى عَلَيْكُمْ غَيْرَ مُحِلِّي الصَّيْدِ وَاَنْتُمْ حُرُمٌ ؕ اِنَّ اللّٰهَ يَحْكُمُ مَا يُرِيْدُ ②

୨. ହେ ବିଶ୍ୱାସକାରୀମାନେ ! ନିଜର ଚୁକ୍ତିଗୁଡ଼ିକୁ ପାଳନ କର; ଯେଉଁ ଯେଉଁ ତୃଣଭୋଜୀ ପ୍ରାଣୀଙ୍କ ବିଷୟରେ ତୁମକୁ (କୋରାନ ମାଧ୍ୟମରେ) ଶୁଣାଇ ଦିଆଯିବ ସେମାନଙ୍କ ବ୍ୟତୀତ ଅନ୍ୟ ପ୍ରାଣୀଙ୍କୁ ତୁମମାନଙ୍କ ପକ୍ଷରେ ବୈଧ କରାଯାଇ ଅଛି; କିନ୍ତୁ ଏହରାମ ବାନ୍ଧିବା ସମୟରେ ଶିକାର କରିବା ତୁମ ପକ୍ଷରେ ଉଚିତ ନୁହେଁ; ବାସ୍ତବରେ ଅଲ୍ଲାହ ଯାହା ଇଚ୍ଛା କରନ୍ତି, ତାହା ନିର୍ଣ୍ଣୟ କରନ୍ତି ।

يٰٓاَيُّهَا الَّذِيْنَ اٰمَنُوْا لَا تُحِلُّوْا شَعَآئِرَ اللّٰهِ وَلَا الشَّهْرَ الْحَرَامَ وَلَا الْهَدْيَ وَلَا الْقَلَآئِدَ وَلَآ آٰمِّيْنَ الْبَيْتَ الْحَرَامَ يَبْتَغُوْنَ فَضْلًا مِّنْ رَّبِّهِمْ وَرِضْوَانًا ؕ وَاِذَا حَلَلْتُمْ فَاصْطَادُوْا ؕ وَلَا يَجْرِمَنَّكُمْ شَنَاٰنُ قَوْمٍ اَنْ صَدُّوْكُمْ عَنِ الْمَسْجِدِ الْحَرَامِ اَنْ تَعْتَدُوْا ۘ وَتَعَاوَنُوْا عَلَى الْبِرِّ وَالتَّقْوٰى ۪ وَلَا تَعَاوَنُوْا عَلَى الْاِثْمِ وَالْعُدْوَانِ ۪ وَاتَّقُوا اللّٰهَ ؕ اِنَّ اللّٰهَ شَدِيْدُ الْعِقَابِ ③

୩. ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କ ଦ୍ୱାରା (ନିର୍ଦ୍ଦିଷ୍ଟ କରା ହୋଇଥିବା) ନିଦର୍ଶନଗୁଡ଼ିକୁ ଓ ପବିତ୍ର ମାସକୁ ଓ (ପବିତ୍ର ଗୃହ ଆଡ଼କୁ ନିଆ ଯାଉଥିବା) କୁର୍ବାନି ପଶୁକୁ ଓ (ଏପରି କୁର୍ବାନି ପଶୁ) ଯାହାର ଗଳାରେ ପବିତ୍ର ଗୃହ ପରିସର ମଧ୍ୟରେ ଜବେହ ହେବା ଚିହ୍ନ ସ୍ୱରୂପ ହାର ପିନ୍ଧାଇ ଦିଆଯାଇ ଥାଏ ତାହାକୁ ଓ ପବିତ୍ର ଗୃହକୁ ନିଜ ପାଳନକର୍ତ୍ତାଙ୍କ କୃପା ଓ ସନ୍ତୋଷ ଲାଭ କରିବା ସକାଶେ ଯାଉଥିବା ବ୍ୟକ୍ତିମାନଙ୍କୁ ଅନାଦର କର ନାହିଁ, ଏବଂ ଯେତେବେଳେ ତୁମେମାନେ ଏହରାମ ଖୋଲିଦିଅ ସେତେବେଳେ ଶିକାର କର; ଏବଂ ଯେଉଁମାନେ ତୁମକୁ ପବିତ୍ର ମସଜିଦରେ (ପ୍ରବେଶ କରିବାକୁ) ପ୍ରତିରୋଧ କରିଛନ୍ତି, ସେହି ସଂପ୍ରଦାୟ ପ୍ରତି ଶତ୍ରୁତା ଯେପରି ତୁମମାନଙ୍କୁ ସୀମାତିକ୍ରମ କରିବାକୁ ଉତ୍ତେଜିତ ନ କରୁ; ଏବଂ ତୁମେମାନେ ପୁଣ୍ୟ କାର୍ଯ୍ୟ ଓ ଧର୍ମଭୀରୁତାରେ ପରସ୍ପରକୁ ସାହାଯ୍ୟ କର ଏବଂ ପାପ ଓ ସୀମା ଲଂଘନ ସଂକ୍ରାନ୍ତରେ ପରସ୍ପରକୁ ସାହାଯ୍ୟ କରନାହିଁ; ଏବଂ ଅଲ୍ଲାହଙ୍କୁ ଭୟ କର; ନିଶ୍ଚୟ ଅଲ୍ଲାହ ଶାସ୍ତି ପ୍ରଦାନ କରିବାରେ କଠୋର ।

---

୧. ଏହି ଅଧ୍ୟାୟ ହୁଦେବିୟା ସନ୍ଧି ପରେ ଅବତୀର୍ଣ୍ଣ ହୋଇଥିଲା । ଯେଉଁ ବର୍ଷ ମୁସଲମାନମାନେ ମକ୍କା ଜୟ କଲେ ସେହି ବର୍ଷ ଏହାର କେତେକ ଅଂଶ ଓ 'ହଜ୍ଜତୁଲ ୱିଦା'ରେ ଅନ୍ୟ ଅଂଶ ଅବତୀର୍ଣ୍ଣ ହୋଇଥିଲା ।

୨. ପରିଭାଷା ଦ୍ରଷ୍ଟବ୍ୟ ।

୪. ମୁର୍ଦ୍ଦାର ଓ ରକ୍ତ ଓ ଶୂକର ମାଂସ ଏବଂ ଯାହା (ଅର୍ଥାତ୍ ଯେଉଁ ପଶୁ) ଉପରେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାରି ନାମ ଉଚ୍ଚାରିତ ହୋଇଥିବ ଓ ଯାହା କଣ୍ଠରୋଧ ଦ୍ବାରା ମୃତ ବା ଅଦାଡୁଆ ଅସ୍ତ୍ରପ୍ରହାର ଦ୍ବାରା ମୃତ ବା ଉର୍ଦ୍ଧ୍ବରୁ ଖସି ପଡ଼ିବା ଦ୍ବାରା ମୃତ ଓ ଶିଙ୍ଗ ଆଘାତରେ ମୃତ (ପଶୁ) ଏବଂ ଯାହାକୁ କୌଣସି ହିଂସ୍ର ଜନ୍ତୁ ଖାଇଥାଏ ଓ ତାହାକୁ ତୁମେମାନେ ମରିବା ପୂର୍ବରୁ ଜବେହ କରିନାହିଁ ଏବଂ ଯାହାକୁ ଦେବାଦେବୀଙ୍କ ପୂଜା ବେଦିରେ ବଳି ଦିଆଯାଇଥିବ, ଭାଗ୍ୟ ନିର୍ଦ୍ଦେଶକ ତୀର ଦ୍ବାରା ଯାହା ତୁମ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବ, ଏସବୁକୁ ତୁମମାନଙ୍କ ପାଇଁ ଅବୈଧ କରାଯାଇଛି, ଏହା ଅବଜ୍ଞାମୂଳକ (କାର୍ଯ୍ୟ) ଅଟେ; ଆଜି ଅବିଶ୍ୱାସକାରୀମାନେ ତୁମମାନଙ୍କର ଧର୍ମ ରେ କ୍ଷତି ଘଟାଇବାରେ ନିରାଶ ହୋଇଛନ୍ତି; ତେଣୁ ତୁମେମାନେ ସେମାନଙ୍କୁ ଭୟ କର ନାହିଁ ଓ ଆମକୁ ଭୟ କର; ଆଜି ଆମେ ତୁମମାନଙ୍କ (କଲ୍ୟାଣ) ସକାଶେ ତୁମମାନଙ୍କ ଧର୍ମକୁ ପୂର୍ଣ୍ଣତା[୧] ପ୍ରଦାନ କରିଅଛୁ ଓ ତୁମମାନଙ୍କ ପ୍ରତି ଆମର ଅନୁଗ୍ରହକୁ ସଂପୂର୍ଣ୍ଣ କରିଅଛୁ ଏବଂ ତୁମମାନଙ୍କ ସକାଶେ 'ଇସଲାମକୁ' ଧର୍ମ ରୂପେ ପସନ୍ଦ କରିଅଛୁ; କିନ୍ତୁ ଯେଉଁ ବ୍ୟକ୍ତି ସ୍ୱେଚ୍ଛାରେ ପାପାସକ୍ତ ନ ହୋଇ କ୍ଷୁଧାରେ ବିବଶ ହୁଏ (ଅର୍ଥାତ୍ କୌଣସି ଅବୈଧ ବସ୍ତୁ ମଧ୍ୟରୁ କିଛି ଭକ୍ଷଣ କରେ) ତେବେ (ମନେରଖ ଯେ) ବାସ୍ତବିକ ଅଲ୍ଲାହ୍ (ବିବଶ-ଜନିତ ଦୋଷ ପ୍ରତି) ଅତ୍ୟନ୍ତ କ୍ଷମାଶୀଳ (ଓ) କରୁଣାମୟ ।

حُرِّمَتْ عَلَيْكُمُ الْمَيْتَةُ وَالدَّمُ وَلَحْمُ الْخِنْزِيرِ وَ
مَا أُهِلَّ لِغَيْرِ اللَّهِ بِهِ وَالْمُنْخَنِقَةُ وَالْمَوْقُوذَةُ وَالْمُتَرَدِّيَةُ
وَالنَّطِيحَةُ وَمَا أَكَلَ السَّبُعُ إِلَّا مَا ذَكَّيْتُمْ وَمَا ذُبِحَ
عَلَى النُّصُبِ وَأَنْ تَسْتَقْسِمُوا بِالْأَزْلَامِ ذَٰلِكُمْ فِسْقٌ
الْيَوْمَ يَئِسَ الَّذِينَ كَفَرُوا مِنْ دِينِكُمْ فَلَا تَخْشَوْهُمْ
وَاخْشَوْنِ الْيَوْمَ أَكْمَلْتُ لَكُمْ دِينَكُمْ وَأَتْمَمْتُ عَلَيْكُمْ
نِعْمَتِي وَرَضِيتُ لَكُمُ الْإِسْلَامَ دِينًا فَمَنِ اضْطُرَّ فِي
مَخْمَصَةٍ غَيْرَ مُتَجَانِفٍ لِإِثْمٍ فَإِنَّ اللَّهَ غَفُورٌ رَحِيمٌ ④

୫. ସେମାନେ (ଅର୍ଥାତ୍ ମୁସଲମାନମାନେ) ତୁମଙ୍କୁ ପ୍ରଶ୍ନ କରୁଛନ୍ତି ଯେ ସେମାନଙ୍କ ପାଇଁ କ'ଣ ବୈଧ ଅଟେ ? ତୁମେ କୁହ, "ତୁମମାନଙ୍କ ପାଇଁ ସକଳ ବିଶୁଦ୍ଧ ବସ୍ତୁକୁ[୨] ବୈଧ କରାଯାଇଛି; ଏବଂ ଅଲ୍ଲାହ୍ ତୁମମାନଙ୍କୁ ଯେପରି ଶିକ୍ଷା ଦେଇଛନ୍ତି ସେହିପରି ତୁମେମାନେ ଯେଉଁ ଶିକାରୀ ପଶୁଗୁଡ଼ିକୁ

يَسْأَلُونَكَ مَاذَا أُحِلَّ لَهُمْ قُلْ أُحِلَّ لَكُمُ الطَّيِّبَاتُ ۙ
وَمَا عَلَّمْتُمْ مِنَ الْجَوَارِحِ مُكَلِّبِينَ تُعَلِّمُونَهُنَّ مِمَّا

୧. 'ଧର୍ମକୁ ପୂର୍ଣ୍ଣତା ପ୍ରଦାନ କରିଅଛୁ' ବାକ୍ୟାଂଶରୁ ଏହା ପ୍ରତୀତ ହେଉଛି ଯେ ମାନବର ଶାରୀରିକ, ନୈତିକ ଓ ଆଧ୍ୟାତ୍ମିକ ବିକାଶକୁ ପ୍ରଭାବିତ କରୁଥିବା ସମସ୍ତ ସିଦ୍ଧାନ୍ତ ଓ ଆଦେଶ କୋରାନ ଗ୍ରନ୍ଥରେ ସନ୍ନିବେଶିତ ହେବା ପରେ ଅଲ୍ଲାହ୍ ଏହି ଆୟତ ମାଧ୍ୟମରେ ଜଣାଇଦେଲେ ଯେ ଅନ୍ୟ କୌଣସି ପ୍ରୟୋଜନୀୟ ବିଷୟ ବାକି ରହିନାହିଁ । ଉତ୍ତମ ଚରିତ୍ର ଆଧ୍ୟାତ୍ମିକ ବିକାଶର ପରିଚାୟକ । ଖାଦ୍ୟ ଚରିତ୍ର ଗଠନରେ ସାହାଯ୍ୟ କରିଥାଏ । ଉତ୍ତମ ଓ ବୈଧ ଖାଦ୍ୟ ସତ୍ ଚରିତ୍ର ଗଠନର ସହାୟକ ହୁଏ । ତେଣୁ ଅଲ୍ଲାହ୍ ଇସଲାମ ମତବାଦକୁ ସରସ, ସୁନ୍ଦର ଓ ପରିପୂର୍ଣ୍ଣ କରିଦେବା ତଥା ନିଜର ସମ୍ପୂର୍ଣ୍ଣ କୃପାକୁ ପ୍ରଦାନ କରିଥିବା କହିବା ସଙ୍ଗେ ସଙ୍ଗେ ସେହି ବାକ୍ୟରେ ବୈଧ ଓ ଉତ୍ତମ ଖାଦ୍ୟ ବିଷୟ ବର୍ଣ୍ଣନା କରି ଚରିତ୍ର ଗଠନ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ପ୍ରସଙ୍ଗ କ୍ରମେ ଏହା ମନେ ରଖିବାକୁ ହେବ ଯେ ଏହି ଆୟତ ହେଉଛି ଅବତରିତ ଅନ୍ତିମ ଆୟତ । ଏହା ଅବତୀର୍ଣ୍ଣ ହେବାର ମାତ୍ର ୮୨ ଦିନ ପରେ ହଜରତ ମହମ୍ମଦଙ୍କର ଦେହାନ୍ତ ହୋଇଥିଲା ।

୨. ଇସଲାମ ଧର୍ମର ମୌଳିକ ନୀତି ହେଉଛି ଯେ ଖାଦ୍ୟ ଉପଯୋଗୀ ସମସ୍ତ ବସ୍ତୁ ବୈଧ ; ଅବଶ୍ୟ ସେଗୁଡ଼ିକ ପବିତ୍ର ଓ ବିଶୁଦ୍ଧ ହୋଇଥିବ ଅର୍ଥାତ୍ ସେଗୁଡ଼ିକ ସ୍ୱାସ୍ଥ୍ୟ ଓ ଚରିତ୍ର ଉପରେ କୌଣସି ମନ୍ଦ ପ୍ରଭାବ ପକାଉ ନ ଥିବ କି ସମାଜରେ ଅଶାନ୍ତି ବା ବିଶୃଙ୍ଖଳା ସୃଷ୍ଟି କରୁ ନ ଥିବ । ଯେକୌଣସି ବ୍ୟକ୍ତି ନିଜର ପରିସ୍ଥିତି ଓ ସ୍ୱାସ୍ଥ୍ୟ ଅବସ୍ଥା ପ୍ରତି ଧ୍ୟାନ ଦେଇ କେଉଁ ଖାଦ୍ୟ ତା'ପକ୍ଷରେ ହିତକର ଓ କେଉଁ ଖାଦ୍ୟ ଅହିତକର ତା' ସେ ନିଜେ ନିଷ୍ପତ୍ତି କରିବ ।

ହଜରତ ମହମ୍ମଦ ନଖଯୁକ୍ତ ଶିକାରୀ ପଶୁ ଓ ପକ୍ଷୀଙ୍କୁ ଭୋଜ୍ୟ ଖାଦ୍ୟ ତାଲିକାରୁ ବାଦ୍ ଦେଇଛନ୍ତି ;

ଶିକାର ଧରିବାକୁ ଶିଖାଇବ; ତତ୍‌ପରେ ସେଗୁଡ଼ିକ ତୁମମାନଙ୍କ ପାଇଁ ଯାହା ଧରିବେ ତନ୍ମଧ୍ୟରୁ ଖାଅ ଏବଂ ତାହା ଉପରେ ଅଲ୍ଲାହ୍‌ଙ୍କ ନାମ ଉଚ୍ଚାରଣ କର; ଏବଂ ଅଲ୍ଲାହ୍‌ଙ୍କୁ ଭୟ କର; ନିଶ୍ଚୟ ଅଲ୍ଲାହ୍ ଶୀଘ୍ର ହିସାବ ନେବେ ।''

عَلَّمَكُمُ اللّٰهُ فَكُلُوْا مِمَّآ اَمْسَكْنَ عَلَيْكُمْ وَاذْكُرُوا اسْمَ اللّٰهِ عَلَيْهِ وَاتَّقُوا اللّٰهَ ۭ اِنَّ اللّٰهَ سَرِيْعُ الْحِسَابِ ⑤

୬. ଆଜି ତୁମମାନଙ୍କ ପାଇଁ ସକଳ ବିଶୁଦ୍ଧ ବସ୍ତୁ ବୈଧ[୨] କରାଯାଇଅଛି; ଏବଂ ତୁମମାନଙ୍କ ପାଇଁ ଗ୍ରନ୍ଥଧାରୀଙ୍କର ଖାଦ୍ୟ (ଅର୍ଥାତ୍ ଜବେହ କରାଯାଇଥିବା ମାଂସ) ଓ ସେମାନଙ୍କ ପାଇଁ ତୁମମାନଙ୍କର ଖାଦ୍ୟ ବୈଧ ଅଟେ; ଏବଂ ବିଶ୍ୱାସକାରିଣୀମାନଙ୍କ ମଧ୍ୟରୁ ସତୀ ନାରୀମାନଙ୍କୁ ଓ ତୁମମାନଙ୍କ ପୂର୍ବରୁ ଯେଉଁମାନଙ୍କୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରାଯାଇଛି ସେମାନଙ୍କ ମଧ୍ୟରୁ ସତୀ ନାରୀମାନଙ୍କୁ ଯେତେବେଳେ ତୁମେମାନେ ସେମାନଙ୍କ ସହିତ ଗୁପ୍ତପ୍ରେମ କରିବା ଓ କାମଲାଳସା ଚରିତାର୍ଥ କରିବାକୁ ଇଚ୍ଛା ନ କରି (ବରଂ) ସେମାନଙ୍କୁ ବିବାହ କରି 'ମହର' ପ୍ରଦାନ କରିବ (ସେତେବେଳେ ସେମାନେ ତୁମମାନଙ୍କ ସକାଶେ ବୈଧ ଅଟନ୍ତି); ଏବଂ ଯେଉଁ ବ୍ୟକ୍ତି ବିଶ୍ୱାସ କରି ଅବିଶ୍ୱାସ କରେ, ତେବେ ନିଶ୍ଚୟ ତାହାର କର୍ମ ବିନଷ୍ଟ ହୋଇଯାଏ ଏବଂ ସେ ପରକାଳରେ କ୍ଷତିଗ୍ରସ୍ତମାନଙ୍କ ମଧ୍ୟରେ ଅନ୍ତର୍ଗତ ହେବ ।

اَلْيَوْمَ اُحِلَّ لَكُمُ الطَّيِّبٰتُ ۭ وَطَعَامُ الَّذِيْنَ اُوْتُوا الْكِتٰبَ حِلٌّ لَّكُمْ ۠ وَطَعَامُكُمْ حِلٌّ لَّهُمْ ۡ وَالْمُحْصَنٰتُ مِنَ الْمُؤْمِنٰتِ وَالْمُحْصَنٰتُ مِنَ الَّذِيْنَ اُوْتُوا الْكِتٰبَ مِنْ قَبْلِكُمْ اِذَآ اٰتَيْتُمُوْهُنَّ اُجُوْرَهُنَّ مُحْصِنِيْنَ غَيْرَ مُسٰفِحِيْنَ وَلَا مُتَّخِذِيْٓ اَخْدَانٍ ۭ وَمَنْ يَّكْفُرْ بِالْاِيْمَانِ فَقَدْ حَبِطَ عَمَلُهٗ ۡ وَهُوَ فِي الْاٰخِرَةِ مِنَ الْخٰسِرِيْنَ ⑥ ع

ରୁ : ୨

୭. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମେମାନେ ନମାଜ ପାଠ କରିବା ପାଇଁ ପ୍ରସ୍ତୁତ ହୁଅ ସେତେବେଳେ ନିଜର ମୁଖ ମଣ୍ଡଳ ଓ କହୁଣୀ ପର୍ଯ୍ୟନ୍ତ ନିଜ ହାତକୁ ଧୋଇ ଦିଅ; ଏବଂ ନିଜର ମୁଣ୍ଡକୁ ଓଦା ହାତରେ ପୋଛି ଦିଅ ଏବଂ ବଳାଗଣ୍ଠି ପର୍ଯ୍ୟନ୍ତ ନିଜର ପାଦ ଦ୍ୱୟକୁ ଧୋଇ ଦିଅ ଏବଂ ଯଦି ତୁମେମାନେ ଅଶୁଦ୍ଧ ଥାଅ ତେବେ ସ୍ନାନ କର; ଏବଂ ଯଦି ତୁମେମାନେ ପୀଡ଼ିତ ଥାଅ ବା ଭ୍ରମଣ କରୁଥାଅ (ଓ ଅଶୁଚି

يٰٓاَيُّهَا الَّذِيْنَ اٰمَنُوْٓا اِذَا قُمْتُمْ اِلَى الصَّلٰوةِ فَاغْسِلُوْا وُجُوْهَكُمْ وَاَيْدِيَكُمْ اِلَى الْمَرَافِقِ وَامْسَحُوْا بِرُءُوْسِكُمْ وَاَرْجُلَكُمْ اِلَى الْكَعْبَيْنِ ۭ وَاِنْ كُنْتُمْ جُنُبًا فَاطَّهَّرُوْا ۭ وَاِنْ كُنْتُمْ مَّرْضٰٓى اَوْ عَلٰي سَفَرٍ اَوْ جَاۗءَ اَحَدٌ مِّنْكُمْ مِّنَ

୧. ତାଲିମ୍ ପ୍ରାପ୍ତ ଶିକାରୀ ପଶୁ ଯେଉଁ ଜୀବକୁ ମାରିଥାଏ ସେହି ଜୀବ 'ଜବେହ' କରାଯାଇଥିବା ଜୀବ ସହିତ ସମାନ, କାରଣ ସେହି ପଶୁ ମଣିଷ ଠାରୁ ତାଲିମ ପ୍ରାପ୍ତ ହୋଇ ଶିକାର କରେ। ତେଣୁ ସେହି ପଶୁକୁ ଶିକାର କାର୍ଯ୍ୟରେ ନିୟୋଜିତ କଲା ପୂର୍ବରୁ 'ବିସ୍ମିଲ୍ଲାହ....' ପଢ଼ିବା ବିଧେୟ ଯାହା ଫଳରେ ସେ ମାରିଥିବା ଜୀବ ବୈଧ ଖାଦ୍ୟ ରୂପେ ଗୃହୀତ ହେବ ।

୨. ଯଦି ସେହି ଜୀବ ଉପରେ 'ଅଲ୍ଲାହ୍ ହୁ ଅକବର' ଶବ୍ଦାବଳୀ ଉଚ୍ଚାରିତ ହୋଇଥିବ ତେବେ ଇହୁଦୀମାନଙ୍କ ଦ୍ୱାରା ଜବେହ କରାଯାଇଥିବା ଜୀବ ମଧ୍ୟ ବୈଧ ହେବ କାରଣ ଇସଲାମ ଧର୍ମରେ ଯେଉଁ ଯେଉଁ ଜୀବକୁ ବୈଧ ସ୍ଥିର କରାଯାଇଛି ସେ ସବୁକୁ ମଧ୍ୟ ଇହୁଦୀ ଧର୍ମରେ ବୈଧ ସ୍ଥିର କରାଯାଇଥିଲା । ଯଦି ଖ୍ରୀଷ୍ଟିୟାନମାନେ ଯୀଶୁଙ୍କ ଶିକ୍ଷା ଅନୁସାରେ ତୌରାତ ବର୍ଣ୍ଣିତ ଆଦେଶାବଳୀକୁ ଗ୍ରହଣ କରିବେ ତେବେ ସେମାନେ ମଧ୍ୟ ଉକ୍ତ ଆଦେଶର ପରିସରଭୁକ୍ତ ହେବେ ଏବଂ ଯଦି ଜଣାପଡ଼ିବ ଯେ ସେମାନେ ଅବୈଧ ବସ୍ତୁ ଭକ୍ଷଣ କରୁଛନ୍ତି ତେବେ ସେମାନଙ୍କ ପ୍ରତି 'ଫତୱା' ବା ଧର୍ମନିର୍ଦ୍ଦେଶ ଲାଗୁ ହେବ । ବସ୍ତୁତଃ ଇହୁଦୀ ବା ଖ୍ରୀଷ୍ଟିୟାନ ହେବା ପର୍ଯ୍ୟାପ୍ତ ନୁହେଁ କାରଣ କେତେକ ପୁରାତନ ଓ ନୂତନ ଖ୍ରୀଷ୍ଟୀୟ ସମ୍ପ୍ରଦାୟ ତୌରାତ ବର୍ଣ୍ଣିତ ଶିକ୍ଷାର ଅନୁସରଣ କରିଥାନ୍ତି ।

الْغَآئِطِ اَوْ لٰمَسْتُمُ النِّسَآءَ فَلَمْ تَجِدُوْا مَآءً فَتَيَمَّمُوْا صَعِيْدًا طَيِّبًا فَامْسَحُوْا بِوُجُوْهِكُمْ وَ اَيْدِيْكُمْ مِّنْهُ ؕ مَا يُرِيْدُ اللّٰهُ لِيَجْعَلَ عَلَيْكُمْ مِّنْ حَرَجٍ وَّلٰكِنْ يُّرِيْدُ لِيُطَهِّرَكُمْ وَ لِيُتِمَّ نِعْمَتَهٗ عَلَيْكُمْ لَعَلَّكُمْ تَشْكُرُوْنَ ۝٧

ଥାଅ) ବା ତୁମମାନଙ୍କ ମଧ୍ୟରୁ କେହି ମଳତ୍ୟାଗ କରି ଆସିଥାଏ ବା ତୁମେମାନେ ପତ୍ନୀ ସହିତ ସହବାସ କରିଥାଅ ଏବଂ ଯଦି ତୁମମାନଙ୍କୁ ପାଣି ନ ମିଳେ ତେବେ ବିଶୁଦ୍ଧ ମୃତ୍ତିକା ନେଇ ତାହାଦ୍ୱାରା ନିଜର ମୁଖମଣ୍ଡଳ ଓ ହସ୍ତଦ୍ୱୟକୁ ଘଷି ଦିଅ; ଅଲ୍ଲାହ ତୁମମାନଙ୍କୁ କୌଣସି ଅସୁବିଧାରେ ପକାଇବାକୁ ଇଚ୍ଛା କରନ୍ତି ନାହିଁ ବରଂ ସେ ତୁମମାନଙ୍କୁ ବିଶୁଦ୍ଧ କରିବା ଓ ତୁମମାନଙ୍କ ପ୍ରତି ତାହାଙ୍କର କୃପା ସଂପୂର୍ଣ୍ଣ କରିବାକୁ ଇଚ୍ଛା କରନ୍ତି, ଯେପରିକି ତୁମେମାନେ କୃତଜ୍ଞ ହେବ ।

وَاذْكُرُوْا نِعْمَةَ اللّٰهِ عَلَيْكُمْ وَ مِيْثَاقَهُ الَّذِيْ وَاثَقَكُمْ بِهٖٓ ۙ اِذْ قُلْتُمْ سَمِعْنَا وَ اَطَعْنَا ؗ وَ اتَّقُوا اللّٰهَ ؕ اِنَّ اللّٰهَ عَلِيْمٌۢ بِذَاتِ الصُّدُوْرِ ۝٨

୮. ଏବଂ ତୁମମାନଙ୍କ ପ୍ରତି ଅଲ୍ଲାହ ଯେଉଁ କୃପା କରିଛନ୍ତି (ତାହାକୁ) ଏବଂ ସେହି ଦୃଢ଼ ଅଙ୍ଗୀକାରକୁ ଯାହା ସେ ତୁମମାନଙ୍କ ଠାରୁ (ସେତେବେଳେ) ଗ୍ରହଣ କରିଥିଲେ ଯେତେବେଳେ ତୁମେମାନେ କହିଥିଲ ଯେ ଆମେମାନେ ଶୁଣିଅଛୁ ଓ ଆଜ୍ଞା ପାଳନ କରିଅଛୁ, ତାହାକୁ ମନେରଖ ଓ ଅଲ୍ଲାହଙ୍କୁ ଭୟକର; ବାସ୍ତବରେ ଅଲ୍ଲାହ ଅନ୍ତରର କଥା ଭଲ ରୂପେ ଜାଣନ୍ତି ।

يٰٓاَيُّهَا الَّذِيْنَ اٰمَنُوْا كُوْنُوْا قَوّٰمِيْنَ لِلّٰهِ شُهَدَآءَ بِالْقِسْطِ ۫ وَلَا يَجْرِمَنَّكُمْ شَنَاٰنُ قَوْمٍ عَلٰٓى اَلَّا تَعْدِلُوْا ؕ اِعْدِلُوْا ۫ هُوَ اَقْرَبُ لِلتَّقْوٰى ۫ وَ اتَّقُوا اللّٰهَ ؕ اِنَّ اللّٰهَ خَبِيْرٌۢ بِمَا تَعْمَلُوْنَ ۝٩

୯. ହେ ବିଶ୍ୱାସକାରୀମାନେ ! ତୁମେମାନେ ନ୍ୟାୟସଂଗତ ଭାବରେ ସାକ୍ଷ୍ୟ ପ୍ରଦାନ କରି ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଦୃଢ଼ ରହ ଏବଂ କୌଣସି ସଂପ୍ରଦାୟର ଶତ୍ରୁତା ତୁମମାନଙ୍କୁ ନ୍ୟାୟ ଭିନ୍ନ ଅନ୍ୟଥା କରିବାକୁ କଦାପି ନ ପ୍ରବର୍ତ୍ତାଉ; ତୁମେମାନେ ନ୍ୟାୟ କର; ତାହା ଧର୍ମଭୀରୁତାର ଅଧିକ ନିକଟବର୍ତ୍ତୀ; ଏବଂ ଅଲ୍ଲାହଙ୍କୁ ଭୟ କର; ତୁମେମାନେ ଯାହା କରୁଅଛ, ବାସ୍ତବରେ ଅଲ୍ଲାହ ସେ ବିଷୟରେ ଅବଗତ ଅଛନ୍ତି ।

وَعَدَ اللّٰهُ الَّذِيْنَ اٰمَنُوْا وَ عَمِلُوا الصّٰلِحٰتِ ۙ لَهُمْ مَّغْفِرَةٌ وَّ اَجْرٌ عَظِيْمٌ ۝١٠

୧୦. ଯେଉଁମାନେ ବିଶ୍ୱାସ ସ୍ଥାପନ କରିଛନ୍ତି, ସତ୍‌କାର୍ଯ୍ୟ କରିଛନ୍ତି, ଅଲ୍ଲାହ ସେମାନଙ୍କୁ କ୍ଷମା ଓ ମହାନ୍ ପୁରସ୍କାରର ପ୍ରତିଶ୍ରୁତି ପ୍ରଦାନ କରିଛନ୍ତି ।

وَالَّذِيْنَ كَفَرُوْا وَ كَذَّبُوْا بِاٰيٰتِنَآ اُولٰٓئِكَ اَصْحٰبُ الْجَحِيْمِ ۝١١

୧୧. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଆମର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରିଛନ୍ତି, ସେମାନେ ନରକବାସୀ ଅଟନ୍ତି ।

يٰٓاَيُّهَا الَّذِيْنَ اٰمَنُوا اذْكُرُوْا نِعْمَتَ اللّٰهِ عَلَيْكُمْ اِذْ هَمَّ قَوْمٌ اَنْ يَّبْسُطُوْٓا اِلَيْكُمْ اَيْدِيَهُمْ فَكَفَّ اَيْدِيَهُمْ عَنْكُمْ ۚ وَ اتَّقُوا اللّٰهَ ؕ وَ عَلَى اللّٰهِ فَلْيَتَوَكَّلِ الْمُؤْمِنُوْنَ ۝١٢ ع

୧୨. ହେ ବିଶ୍ୱାସକାରୀମାନେ ! ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପାକୁ ସ୍ମରଣ କର, ଯେତେବେଳେ କି ଏକ ସଂପ୍ରଦାୟ ତୁମମାନଙ୍କ ବିରୁଦ୍ଧରେ ସେମାନଙ୍କର ହସ୍ତ ପ୍ରସାରିତ କରିବାକୁ ମନସ୍ଥ କରିଥିଲା, ସେତେବେଳେ ସେ ତୁମମାନଙ୍କୁ ସେମାନଙ୍କ କବଳରୁ ରକ୍ଷା କରିଥିଲେ; ଏବଂ ଅଲ୍ଲାହଙ୍କୁ ଭୟକର ଏବଂ ବିଶ୍ୱାସକାରୀମାନେ ଅଲ୍ଲାହଙ୍କ ଉପରେ ଭରସା କରିବା ଉଚିତ ।

ରୁ : ୩

୧୩. ଏବଂ ବାସ୍ତବରେ ଅଲ୍ଲାହ୍ ଇସ୍ରାଇଲୀୟ ସନ୍ତାନମାନଙ୍କଠାରୁ ଦୃଢ଼ ଅଙ୍ଗୀକାର ଗ୍ରହଣ କରିଥିଲେ ଏବଂ ଆମ୍ଭେ ସେମାନଙ୍କ ମଧ୍ୟରେ ବାରଜଣ ମୁଖ୍ୟ ନିଯୁକ୍ତ କରି କହିଥିଲୁ ଯେ ଯଦି ତୁମେମାନେ ସୁଚାରୁରୂପେ ନମାଜ ପାଠ କରିବ ଓ ଜକାତ ଦେବ ଏବଂ ଆମ୍ଭର ରସୁଲମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବ ଓ ସେମାନଙ୍କୁ ସମସ୍ତ ପ୍ରକାରର ସାହାଯ୍ୟ କରିବ ଓ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ (ନିଜ ସଂପତ୍ତିରୁ) ଏକ ଉତ୍ତମ ଅଂଶ ପ୍ରଦାନ କରିବ, ତେବେ ନିଶ୍ଚିତ ରୂପେ ଆମ୍ଭେ ତୁମମାନଙ୍କ ସହିତ ରହିବୁ ଓ ତୁମମାନଙ୍କର କୁକର୍ମକୁ ତୁମମାନଙ୍କଠାରୁ ନିଶ୍ଚୟ ଦୂର କରିଦେବୁ ଏବଂ ଆମ୍ଭେ ତୁମମାନଙ୍କୁ ବାସ୍ତବରେ ଏପରି ଉଦ୍ୟାନରେ ପ୍ରବେଶ କରାଇବୁ ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥିବ; କିନ୍ତୁ ତୁମମାନଙ୍କ ମଧ୍ୟରୁ ଯେ ଏହାପରେ ମଧ୍ୟ ଅବଜ୍ଞା କରେ, ତେବେ (ସେ ଜାଣିରଖୁ ଯେ) ସେ ସତ୍‌ପଥରୁ ବିଚ୍ୟୁତ ହୋଇଛି ।

وَلَقَدْ اَخَذَ اللّٰهُ مِيْثَاقَ بَنِيْٓ اِسْرَآءِيْلَ ۚ وَبَعَثْنَا مِنْهُمُ اثْنَيْ عَشَرَ نَقِيْبًا ۭ وَقَالَ اللّٰهُ اِنِّيْ مَعَكُمْ ۭ لَئِنْ اَقَمْتُمُ الصَّلٰوةَ وَاٰتَيْتُمُ الزَّكٰوةَ وَاٰمَنْتُمْ بِرُسُلِيْ وَعَزَّرْتُمُوْهُمْ وَاَقْرَضْتُمُ اللّٰهَ قَرْضًا حَسَنًا لَّاُكَفِّرَنَّ عَنْكُمْ سَيِّاٰتِكُمْ وَلَاُدْخِلَنَّكُمْ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ ۚ فَمَنْ كَفَرَ بَعْدَ ذٰلِكَ مِنْكُمْ فَقَدْ ضَلَّ سَوَآءَ السَّبِيْلِ ﴿١٣﴾

୧୪. ଏବଂ ସେମାନଙ୍କ ନିଜ ଦୃଢ଼ ଅଙ୍ଗୀକାର ଭଙ୍ଗ ଯୋଗୁଁ ଆମ୍ଭେ ସେମାନଙ୍କୁ ଅଭିଶପ୍ତ କରିଥିଲୁ ଏବଂ ସେମାନଙ୍କ ହୃଦୟକୁ କଠୋର କରି ଦେଇଥିଲୁ; ତେଣୁ ସେମାନେ (ଗ୍ରନ୍ଥର) ପଦଗୁଡ଼ିକୁ ଯଥା ସ୍ଥାନରୁ ପରିବର୍ତ୍ତନ କରିଦେଉଛନ୍ତି ଏବଂ ସେମାନଙ୍କୁ ଯେଉଁ ବିଷୟରେ ଉପଦେଶ ଦିଆଯାଇଥିଲା ତାହାର ଗୋଟିଏ ଅଂଶକୁ ଭୁଲି ଯାଇଛନ୍ତି ଏବଂ ତୁମେ ସେମାନଙ୍କ ମଧ୍ୟରୁ ଅଳ୍ପ କେତେକଙ୍କୁ ଛାଡ଼ି ଅନ୍ୟମାନଙ୍କୁ ସର୍ବଦା ବିଶ୍ୱାସଘାତକତା କରିବାର ଦେଖିବାକୁ ପାଉଥିବ; ସୁତରାଂ ତୁମେ ସେମାନଙ୍କୁ କ୍ଷମାକର ଓ (ସେମାନଙ୍କର) ତ୍ରୁଟି ମାର୍ଜନା କର; ଅଲ୍ଲାହ୍ ବାସ୍ତବରେ ହିତକାରୀମାନଙ୍କୁ ପ୍ରେମ କରନ୍ତି ।

فَبِمَا نَقْضِهِمْ مِّيْثَاقَهُمْ لَعَنّٰهُمْ وَجَعَلْنَا قُلُوْبَهُمْ قٰسِيَةً ۚ يُحَرِّفُوْنَ الْكَلِمَ عَنْ مَّوَاضِعِهٖ ۙ وَنَسُوْا حَظًّا مِّمَّا ذُكِّرُوْا بِهٖ ۚ وَلَا تَزَالُ تَطَّلِعُ عَلٰى خَآئِنَةٍ مِّنْهُمْ اِلَّا قَلِيْلًا مِّنْهُمْ فَاعْفُ عَنْهُمْ وَاصْفَحْ ۭ اِنَّ اللّٰهَ يُحِبُّ الْمُحْسِنِيْنَ ﴿١٤﴾

୧୫. ଏବଂ ଯେଉଁମାନେ ନିଜକୁ ଖ୍ରୀଷ୍ଟିୟାନ କହନ୍ତି ଆମ୍ଭେ ସେମାନଙ୍କଠାରୁ (ମଧ୍ୟ) ଅଙ୍ଗୀକାର ଗ୍ରହଣ କରିଥିଲୁ, କିନ୍ତୁ ସେମାନଙ୍କୁ ଯେଉଁ ବିଷୟରେ ଉପଦେଶ ଦିଆଯାଇଥିଲା ସେମାନେ ତାହାର ଗୋଟିଏ ଅଂଶକୁ ଭୁଲି ଯାଇଛନ୍ତି; ସୁତରାଂ ଆମ୍ଭେ କୟାମତ ଦିବସ ପର୍ଯ୍ୟନ୍ତ ସେମାନଙ୍କ ମଧ୍ୟରେ ତୀବ୍ର ଶତ୍ରୁତା ଓ ଘୃଣା ସଂଚାରିତ କରିଅଛୁ; ଏବଂ ସେମାନେ ଯାହା କିଛି କରୁଛନ୍ତି ଅଲ୍ଲାହ୍ ସେମାନଙ୍କୁ ତାହା ତୁରନ୍ତ ଜଣାଇ ଦେବେ ।

وَمِنَ الَّذِيْنَ قَالُوْٓا اِنَّا نَصٰرٰٓى اَخَذْنَا مِيْثَاقَهُمْ فَنَسُوْا حَظًّا مِّمَّا ذُكِّرُوْا بِهٖ ۠ فَاَغْرَيْنَا بَيْنَهُمُ الْعَدَاوَةَ وَالْبَغْضَآءَ اِلٰى يَوْمِ الْقِيٰمَةِ ۭ وَسَوْفَ يُنَبِّئُهُمُ اللّٰهُ بِمَا كَانُوْا يَصْنَعُوْنَ ﴿١٥﴾

୧. ଅର୍ଥାତ୍ ମୁସାଙ୍କ ପରବର୍ତ୍ତୀ ୧୨ ଜଣ ଇସ୍ରାଇଲୀୟ ଅବତାର ।

୨. ଏହା ଏକ ଉଲ୍ଲେଖନୀୟ ଭବିଷ୍ୟବାଣୀ । ଏଠାରେ ଖ୍ରୀଷ୍ଟଧର୍ମାବଲମ୍ବୀମାନେ ପରସ୍ପର ମଧ୍ୟରେ ଶତ୍ରୁତା କରିବା ସମ୍ବନ୍ଧରେ ସୂଚନା ଦିଆଯାଇଛି । ତେଣୁ ମୁସଲମାନମାନଙ୍କୁ ନିଜର ଦୁର୍ବଳ ମୁହୂର୍ତ୍ତରେ ନିରାଶ ନ ହୋଇ ଦୃଢ଼ ରହିବାକୁ ପରାମର୍ଶ ଦିଆଯାଇଛି ।

يَٰٓأَهۡلَ ٱلۡكِتَٰبِ قَدۡ جَآءَكُمۡ رَسُولُنَا يُبَيِّنُ لَكُمۡ كَثِيرٗا مِّمَّا كُنتُمۡ تُخۡفُونَ مِنَ ٱلۡكِتَٰبِ وَيَعۡفُواْ عَن كَثِيرٖۚ قَدۡ جَآءَكُم مِّنَ ٱللَّهِ نُورٞ وَكِتَٰبٞ مُّبِينٞ ⑯

୧୬. ହେ ଗ୍ରନ୍ଥଧାରୀମାନେ ! ଆମର ରସୁଲ ତୁମମାନଙ୍କ ନିକଟକୁ ଆସିଛନ୍ତି; ତୁମେମାନେ (ଧର୍ମ) ଗ୍ରନ୍ଥ ମଧ୍ୟରୁ ଯାହା ଗୋପନ କରୁଥିଲ ତହିଁରୁ ଅନେକ (ଅଂଶ) ସେ ତୁମମାନଙ୍କ ନିକଟରେ ବର୍ଣ୍ଣନା କରୁଛନ୍ତି ଏବଂ ଅନେକ ଦୋଷ କ୍ଷମା କରୁଛନ୍ତି; ବସ୍ତୁତଃ ଅଲ୍ଲାଃଙ୍କ ତରଫରୁ ତୁମମାନଙ୍କ ଲାଗି ଏକ ଜ୍ୟୋତି ଓ ଏକ ଉଜ୍ଜ୍ୱଳ ଗ୍ରନ୍ଥ ଆସିଛି ।

يَهۡدِي بِهِ ٱللَّهُ مَنِ ٱتَّبَعَ رِضۡوَٰنَهُۥ سُبُلَ ٱلسَّلَٰمِ وَيُخۡرِجُهُم مِّنَ ٱلظُّلُمَٰتِ إِلَى ٱلنُّورِ بِإِذۡنِهِۦ وَيَهۡدِيهِمۡ إِلَىٰ صِرَٰطٖ مُّسۡتَقِيمٖ ⑰

୧୭. ଯେଉଁମାନେ ଅଲ୍ଲାଃଙ୍କ ପ୍ରସନ୍ନତା ଲାଭ କରିବା ପାଇଁ ଚେଷ୍ଟା କରନ୍ତି, ସେ ଏହାଦ୍ୱାରା ସେମାନଙ୍କୁ ଶାନ୍ତି ପଥରେ ପରିଚାଳିତ କରାନ୍ତି ଏବଂ ସେମାନଙ୍କୁ ନିଜ ଆଶୀର୍ବାଦ ବଳରେ ଅନ୍ଧକାର ମଧ୍ୟରୁ ଜ୍ୟୋତି ଆଡ଼କୁ ଘେନି ଯାଆନ୍ତି ଏବଂ ସେମାନଙ୍କୁ ସରଳ ପଥ ଆଡ଼କୁ ପରିଚାଳିତ କରାନ୍ତି ।

لَّقَدۡ كَفَرَ ٱلَّذِينَ قَالُوٓاْ إِنَّ ٱللَّهَ هُوَ ٱلۡمَسِيحُ ٱبۡنُ مَرۡيَمَۚ قُلۡ فَمَن يَمۡلِكُ مِنَ ٱللَّهِ شَيۡـًٔا إِنۡ أَرَادَ أَن يُهۡلِكَ ٱلۡمَسِيحَ ٱبۡنَ مَرۡيَمَ وَأُمَّهُۥ وَمَن فِي ٱلۡأَرۡضِ جَمِيعٗاۗ وَلِلَّهِ مُلۡكُ ٱلسَّمَٰوَٰتِ وَٱلۡأَرۡضِ وَمَا بَيۡنَهُمَاۚ يَخۡلُقُ مَا يَشَآءُۚ وَٱللَّهُ عَلَىٰ كُلِّ شَيۡءٖ قَدِيرٞ ⑱

୧୮. ଯେଉଁମାନେ କହନ୍ତି ଯେ ଅଲ୍ଲାଃ ହିଁ ନିଶ୍ଚୟ ମରିୟମ-ନନ୍ଦନ ମସିହ ଅଟନ୍ତି ସେମାନେ ନିଃସନ୍ଦେହରେ ଅବିଶ୍ୱାସକାରୀ ଅଟନ୍ତି; ତୁମେ (ସେମାନଙ୍କୁ) କୁହ, "ଯଦି ଅଲ୍ଲାଃ ମରିୟମ-ନନ୍ଦନ ମସିହ ଓ ତାଙ୍କର ମାତା[1] ଏବଂ ପୃଥିବୀରେ ଯେଉଁମାନେ ଅଛନ୍ତି ସେ ସମସ୍ତଙ୍କୁ ବିନାଶ କରିବାକୁ ଇଚ୍ଛା କରନ୍ତି, ତେବେ ତାହାଙ୍କ ବିରୁଦ୍ଧରେ କାହାର କ'ଣ ବା କ୍ଷମତା ଅଛି ?; ଏବଂ ଆକାଶ ଓ ପୃଥିବୀରେ ଓ ଯାହା କିଛି ତନ୍ମଧ୍ୟରେ ଅଛି ତାହା ଉପରେ ଅଲ୍ଲାଃଙ୍କର ହିଁ ଆଧିପତ୍ୟ ଅଛି; ସେ ଯାହା ଇଚ୍ଛା କରନ୍ତି (ତାହା) ସୃଷ୍ଟି କରନ୍ତି; ଏବଂ ଅଲ୍ଲାଃ ପ୍ରତ୍ୟେକ ବିଷୟ କରିବାକୁ ସଂପୂର୍ଣ୍ଣ ରୂପେ ସକ୍ଷମ ।

وَقَالَتِ ٱلۡيَهُودُ وَٱلنَّصَٰرَىٰ نَحۡنُ أَبۡنَٰٓؤُاْ ٱللَّهِ وَأَحِبَّٰٓؤُهُۥۚ قُلۡ فَلِمَ يُعَذِّبُكُم بِذُنُوبِكُمۖ بَلۡ أَنتُم بَشَرٞ مِّمَّنۡ خَلَقَۚ يَغۡفِرُ لِمَن يَشَآءُ وَيُعَذِّبُ مَن يَشَآءُۚ وَلِلَّهِ مُلۡكُ ٱلسَّمَٰوَٰتِ وَٱلۡأَرۡضِ وَمَا بَيۡنَهُمَاۖ وَإِلَيۡهِ ٱلۡمَصِيرُ ⑲

୧୯. ଏବଂ ଇହୁଦୀ ଓ ଖ୍ରୀଷ୍ଟିୟାନମାନେ କହନ୍ତି, "ଆମେମାନେ ଅଲ୍ଲାଃଙ୍କର ପୁତ୍ର (ଅଟୁ) ଏବଂ ତାହାଙ୍କର ପ୍ରିୟପାତ୍ର ଅଟୁ," ତୁମେ କୁହ, "ତେବେ ସେ କାହିଁକି ତୁମମାନଙ୍କର ଅପରାଧ ପାଇଁ ତୁମମାନଙ୍କୁ ଶାସ୍ତି ଦେଉଛନ୍ତି ?" (ଏପରି ନୁହେଁ) ବରଂ ସେ ଯେଉଁ (ଅନ୍ୟ ଲୋକ)ମାନଙ୍କୁ ସୃଷ୍ଟି କରିଛନ୍ତି ତୁମେମାନେ (ମଧ୍ୟ) ସେମାନଙ୍କ ସଦୃଶ ମାନବ; ସେ ଯାହାକୁ ପସନ୍ଦ କରନ୍ତି, କ୍ଷମା କରନ୍ତି ଓ ଯାହାକୁ ଇଚ୍ଛା କରନ୍ତି ଶାସ୍ତି ପ୍ରଦାନ କରନ୍ତି; ଏବଂ ଆକାଶ ଓ ପୃଥିବୀରେ ତଥା ତନ୍ମଧ୍ୟରେ ଯାହା କିଛି ଅଛି ତାହା ଉପରେ ଅଲ୍ଲାଃଙ୍କର ହିଁ ଆଧିପତ୍ୟ ଅଛି; ଏବଂ ତାହାଙ୍କ ନିକଟକୁ (ସମସ୍ତଙ୍କୁ) ଫେରିବାକୁ ହେବ ।

---

୧. ଏଠାରେ ଯୀଶୁ ଓ ତାଙ୍କ ମାତା ଉଭୟଙ୍କର ମୃତ୍ୟୁ ସମ୍ବନ୍ଧରେ ଅକାଟ୍ୟ ପ୍ରମାଣ ରହିଅଛି ।

يَٰٓأَهۡلَ ٱلۡكِتَٰبِ قَدۡ جَآءَكُمۡ رَسُولُنَا يُبَيِّنُ لَكُمۡ عَلَىٰ فَتۡرَةٖ مِّنَ ٱلرُّسُلِ أَن تَقُولُواْ مَا جَآءَنَا مِنۢ بَشِيرٖ وَلَا نَذِيرٖۖ فَقَدۡ جَآءَكُم بَشِيرٞ وَنَذِيرٞۗ وَٱللَّهُ عَلَىٰ كُلِّ شَيۡءٖ قَدِيرٞ ٢٠ ع

୨୦. ହେ ଗ୍ରନ୍ଥଧାରୀମାନେ ! ରସୁଲମାନଙ୍କର ଆଗମନ କ୍ରମର ଅବସାନ ପରେ ତୁମମାନଙ୍କ ନିକଟକୁ ଆମର ରସୁଲ ଆସିଛନ୍ତି; ସେ ତୁମମାନଙ୍କୁ (ଆମର ବାର୍ତ୍ତା) ଶୁଣାଉଛନ୍ତି; ଯଦ୍ଦ୍ୱାରା କି ତୁମେମାନେ ଏପରି କହି ପାରିବ ନାହିଁ ଯେ ଆମମାନଙ୍କ ନିକଟକୁ କୌଣସି ସୁସମାଚାରଦାତା ଓ ସତର୍କକାରୀ ଆସିନାହାନ୍ତି; ସୁତରାଂ ତୁମମାନଙ୍କ ନିକଟକୁ ଏକ ସୁସମାଚାରଦାତା ଓ ସତର୍କକାରୀ ଆସିଛନ୍ତି; ଏବଂ ଅଲ୍ଲାହ ପ୍ରତ୍ୟେକ ବିଷୟ କରିବାକୁ ସକ୍ଷମ ।

ରୁ : ୪

وَإِذۡ قَالَ مُوسَىٰ لِقَوۡمِهِۦ يَٰقَوۡمِ ٱذۡكُرُواْ نِعۡمَةَ ٱللَّهِ عَلَيۡكُمۡ إِذۡ جَعَلَ فِيكُمۡ أَنۢبِيَآءَ وَجَعَلَكُم مُّلُوكٗا وَءَاتَىٰكُم مَّا لَمۡ يُؤۡتِ أَحَدٗا مِّنَ ٱلۡعَٰلَمِينَ ٢١

୨୧. ଏବଂ (ତୁମେମାନେ ସେହି ସମୟକୁ ସ୍ମରଣ କର) ଯେତେବେଳେ ମୁସା ନିଜ ସଂପ୍ରଦାୟ ଲୋକମାନଙ୍କୁ କହିଥିଲେ, "ହେ ଆମ୍ଭ ସଂପ୍ରଦାୟ ! ତୁମମାନଙ୍କ ପ୍ରତି ଅଲ୍ଲାହଙ୍କ କୃପାକୁ ସ୍ମରଣ କର ଯେତେବେଳେ କି ସେ ତୁମମାନଙ୍କ ମଧ୍ୟରେ ନବିମାନଙ୍କୁ ନିଯୁକ୍ତ କରିଥିଲେ ଓ ତୁମମାନଙ୍କୁ ସମ୍ରାଟ[୧] କରିଥିଲେ ଏବଂ ତୁମମାନଙ୍କୁ ସେସବୁ ଦେଇଥିଲେ ଯାହା ପୃଥିବୀର ଅନ୍ୟ କୌଣସି ପ୍ରଖ୍ୟାତ ସଂପ୍ରଦାୟକୁ ଦେଇ ନ ଥିଲେ ।"

يَٰقَوۡمِ ٱدۡخُلُواْ ٱلۡأَرۡضَ ٱلۡمُقَدَّسَةَ ٱلَّتِي كَتَبَ ٱللَّهُ لَكُمۡ وَلَا تَرۡتَدُّواْ عَلَىٰٓ أَدۡبَارِكُمۡ فَتَنقَلِبُواْ خَٰسِرِينَ ٢٢

୨୨. "ହେ ଆମ୍ଭ ସଂପ୍ରଦାୟ ! ତୁମେମାନେ ଏହି ପବିତ୍ର ଭୂମିରେ ପ୍ରବେଶ କର ଯାହା ଅଲ୍ଲାହ ତୁମମାନଙ୍କ ପାଇଁ ଲିପିବଦ୍ଧ କରିଛନ୍ତି ଏବଂ ନିଜର ପୃଷ୍ଠଦେଶକୁ ଫେରିଯାଅ ନାହିଁ, ଅନ୍ୟଥା ତୁମେମାନେ କ୍ଷତିଗ୍ରସ୍ତ ହୋଇ ଫେରିବ ।"

قَالُواْ يَٰمُوسَىٰٓ إِنَّ فِيهَا قَوۡمٗا جَبَّارِينَ وَإِنَّا لَن نَّدۡخُلَهَا حَتَّىٰ يَخۡرُجُواْ مِنۡهَا فَإِن يَخۡرُجُواْ مِنۡهَا فَإِنَّا دَٰخِلُونَ ٢٣

୨୩. ସେମାନେ (ଉତ୍ତରରେ) କହିଲେ, "ହେ ମୁସା ! ଏଠାରେ ବାସ୍ତବରେ ଏକ ଦୁରାଚାରୀ ଓ ଶକ୍ତିଶାଳୀ ସଂପ୍ରଦାୟ[୨] ବାସ କରୁଛନ୍ତି; ଏବଂ ଯେ ପର୍ଯ୍ୟନ୍ତ ସେମାନେ ଏଠାରୁ ବାହାରି ନ ଯାଆନ୍ତି ଆମେମାନେ ତନ୍ମଧ୍ୟରେ କଦାପି ପ୍ରବେଶ କରିବୁ ନାହିଁ; କିନ୍ତୁ ଯଦି ସେମାନେ ଏଠାରୁ ବାହାରି ଯାଆନ୍ତି ତେବେ ଆମେମାନେ ନିଶ୍ଚୟ ପ୍ରବେଶ କରିବୁ ।"

---

୧. ଇତିହାସ ବର୍ଣ୍ଣିତ ତଥ୍ୟାବଳୀରୁ ଜଣାପଡ଼େ ଯେ ଇସ୍ରାଇଲୀୟମାନେ ନିଜ ଦେଶ ଛାଡ଼ି ମିଶର ଦେଶକୁ ଚାଲିଯାଇଥିଲେ ଓ ସେଠାରେ କ୍ରମେ କ୍ରମେ ଏପରି ଆଧିପତ୍ୟ ବିସ୍ତାର କଲେ ଯେ ମିଶରବାସୀ ଆତଙ୍କିତ ହୋଇପଡ଼ିଲେ । ଇସ୍ରାଇଲୀୟମାନେ ମହା-ପରାକ୍ରମୀ ଥିବା ଓ ସେଠାରେ ଉନ୍ନତି ଲାଭ କରିଥିବା ବାଇବେଲରେ ଲିପିବଦ୍ଧ ଅଛି : ମିଶର ଦେଶରେ ଯେତେବେଳେ ଜଣେ ନୂତନ ସମ୍ରାଟ ସିଂହାସନ ଆରୋହଣ କଲେ, ସେ ଲକ୍ଷ୍ୟ କଲେ ଯେ ସେଠାରେ ଇସ୍ରାଇଲୀୟମାନଙ୍କ ସଂଖ୍ୟା ବହୁ ଅଧିକ । ତେଣୁ ସେ ନିଜ ଲୋକମାନଙ୍କୁ ପ୍ରରୋଚିତ କରି ସେମାନଙ୍କୁ ବହୁ ନିର୍ଯାତନା ଦେଇଥିଲେ । ନିର୍ଯାତିତ ହେବା ସତ୍ତ୍ୱେ ସେମାନଙ୍କ ସଂଖ୍ୟା ବୃଦ୍ଧି ହେବାରୁ ମିଶରବାସୀ ଓ ସେମାନଙ୍କ ସମ୍ରାଟ ଅତ୍ୟନ୍ତ ବିବ୍ରତ ହୋଇପଡ଼ିଲେ । ଫଳରେ ସେମାନଙ୍କ ଉପରେ ଭୟଙ୍କର ଅତ୍ୟାଚାର କରାଗଲା । ସେମାନଙ୍କୁ ବେଠି ଖଟାଗଲା, କୃଷିକ୍ଷେତ୍ରରେ ନିୟୋଜିତ କରାଗଲା ଓ ଇଟା ତିଆରି କାର୍ଯ୍ୟରେ ଲଗାଗଲା । ଏପରି ଅବସ୍ଥାରେ ଇସ୍ରାଇଲୀୟ ଲୋକମାନଙ୍କ ଜୀବନ ଦୁର୍ବିସହ ହୋଇପଡ଼ିଲା । (ଏକ୍ସୋଡ଼ସ୍, ୧୭ : ୧୪ ଦ୍ରଷ୍ଟବ୍ୟ) ।

୨. ସେତେବେଳେ ସେଠାରେ ଅମାଲିକାଇ ଓ ଅରବର ଅନ୍ୟାନ୍ୟ ଜାତିର ଯେଉଁ ଲୋକମାନେ ବାସ କରୁଥିଲେ, ସେମାନଙ୍କୁ ଇହୁଦୀମାନେ ଭୟ କରୁଥିଲେ ।

قَالَ رَجُلٰنِ مِنَ الَّذِيْنَ يَخَافُوْنَ اَنْعَمَ اللّٰهُ عَلَيْهِمَا ادْخُلُوْا عَلَيْهِمُ الْبَابَ ۚ فَاِذَا دَخَلْتُمُوْهُ فَاِنَّكُمْ غٰلِبُوْنَ ۚ وَعَلَى اللّٰهِ فَتَوَكَّلُوْٓا اِنْ كُنْتُمْ مُّؤْمِنِيْنَ ﴿۲۴﴾

୨୪. ତତ୍‌ପରେ ଯେଉଁ ଲୋକମାନେ ଅଲ୍ଲାହଙ୍କୁ ଭୟ କରୁଥିଲେ ସେମାନଙ୍କ ମଧ୍ୟରୁ ଦୁଇ ଜଣ ବ୍ୟକ୍ତି[1] ଯାହାଙ୍କ ଉପରେ ଅଲ୍ଲାହ ବିଶେଷ କୃପା କରିଥିଲେ (ସେମାନଙ୍କୁ) କହିଲେ, "ତୁମେମାନେ ସେମାନଙ୍କୁ ଆକ୍ରମଣ କରି ଦ୍ବାର ମଧ୍ୟଦେଇ ପ୍ରବେଶ କର; ଯେତେବେଳେ ତୁମେମାନେ ତନ୍ମଧ୍ୟରେ ପ୍ରବେଶ କରିବ (ସେତେବେଳେ) ତୁମେମାନେ ନିଶ୍ଚୟ ବିଜୟୀ ହେବ; ଏବଂ ଯଦି ତୁମେମାନେ ବିଶ୍ବାସକାରୀ ହୋଇଥାଅ ତେବେ ଅଲ୍ଲାହଙ୍କ ଉପରେ ହିଁ ନିର୍ଭର କର।"

قَالُوْا يٰمُوْسٰٓى اِنَّا لَنْ نَّدْخُلَهَآ اَبَدًا مَّا دَامُوْا فِيْهَا فَاذْهَبْ اَنْتَ وَرَبُّكَ فَقَاتِلَآ اِنَّا هٰهُنَا قٰعِدُوْنَ ﴿۲۵﴾

୨୫. ସେମାନେ କହିଲେ, "ହେ ମୁସା ! ଯେ ପର୍ଯ୍ୟନ୍ତ ସେମାନେ ସେଠାରେ ଥିବେ ଆମେମାନେ ତନ୍ମଧ୍ୟରେ କଦାପି ପ୍ରବେଶ କରିବୁ ନାହିଁ; ସୁତରାଂ ତୁମେ ଓ ତୁମର ପାଳନକର୍ତ୍ତା (ଉଭୟେ) ଯାଅ ଓ (ସେମାନଙ୍କ ସହିତ) ଯୁଦ୍ଧ କର; ଆମେମାନେ ଅବଶ୍ୟ ଏହିଠାରେ ବସି ରହିବୁ।"

قَالَ رَبِّ اِنِّيْ لَآ اَمْلِكُ اِلَّا نَفْسِيْ وَاَخِيْ فَافْرُقْ بَيْنَنَا وَبَيْنَ الْقَوْمِ الْفٰسِقِيْنَ ﴿۲۶﴾

୨୬. ମୁସା କହିଲେ, "ହେ ଆମର ପାଳନକର୍ତ୍ତା ! ଆମର ନିଜ ଉପରେ ତଥା ନିଜ ଭାଇଙ୍କ ବ୍ୟତୀତ ଅନ୍ୟ କାହାରି ଉପରେ କୌଣସି ଅଧିକାର ନାହିଁ; ତେଣୁ ତୁମେ ଆମମାନଙ୍କ ମଧ୍ୟରେ ଓ ବିଦ୍ରୋହୀ ଲୋକମାନଙ୍କ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରାଅ।"

قَالَ فَاِنَّهَا مُحَرَّمَةٌ عَلَيْهِمْ اَرْبَعِيْنَ سَنَةً ۚ يَتِيْهُوْنَ فِى الْاَرْضِ ۗ فَلَا تَاْسَ عَلَى الْقَوْمِ الْفٰسِقِيْنَ ﴿۲۷﴾ ع

୨୭. (ଅଲ୍ଲାହ) କହିଲେ, "(ଯେବେ ତୁମର ଏହା ହିଁ ଇଚ୍ଛା ତେବେ) ସେମାନଙ୍କୁ ଏଠାରୁ ଚାଳିଶ ବର୍ଷ ପର୍ଯ୍ୟନ୍ତ ନିଶ୍ଚିତ ରୂପେ ବଞ୍ଚିତ କରାଯିବ; ସେମାନେ ବିଭ୍ରାନ୍ତ ହୋଇ ଭୂପୃଷ୍ଠରେ ଏଣେତେଣେ ବୁଲୁଥିବେ; ସୁତରାଂ ତୁମେ ବିଦ୍ରୋହୀ ଲୋକମାନଙ୍କ ପାଇଁ ଦୁଃଖିତ ହୁଅ ନାହିଁ।"

---

୧. ପବିତ୍ର କୋରାନ ଅନୁସାରେ ସମ୍ଭବତଃ ହଜରତ ମୁସା ଓ ହଜରତ ହାରୁନ, ଅଥଚ ବାଇବେଲ ଅନୁସାରେ ଯଶୁ ଓ କାଲେବ ଅଭିପ୍ରେତ ଯେଉଁମାନଙ୍କୁ କି ଦେଶର ଅବସ୍ଥା ବିଷୟରେ ଅବଗତ ହେବାକୁ ପ୍ରେରଣ କରାଯାଇଥିଲା। (ନମ୍. ୧୪ : ୫-୬ ଦ୍ରଷ୍ଟବ୍ୟ।)

ରୁ : ୫

وَاتْلُ عَلَيْهِمْ نَبَأَ ابْنَيْ آدَمَ بِالْحَقِّ إِذْ قَرَّبَا قُرْبَانًا فَتُقُبِّلَ مِنْ أَحَدِهِمَا وَلَمْ يُتَقَبَّلْ مِنَ الْآخَرِ قَالَ لَأَقْتُلَنَّكَ قَالَ إِنَّمَا يَتَقَبَّلُ اللَّهُ مِنَ الْمُتَّقِينَ ﴿٢٨﴾

୨୮. ଏବଂ ତୁମେ (ଅର୍ଥାତ୍ ହଜରତ ମହମ୍ମଦ) ସେମାନଙ୍କୁ ଆଦମଙ୍କର ପୁତ୍ରଦ୍ୱୟଙ୍କ[1] କାହାଣୀ ସଠିକ୍ ଭାବରେ ବର୍ଣ୍ଣନା କର; (ଅର୍ଥାତ୍ ସେ ସମୟର ଘଟଣା) ଯେତେବେଳେ ସେ ଦୁହେଁ (ପ୍ରତ୍ୟେକେ) ଏକ ଉତ୍ସର୍ଗ (ଅର୍ଥାତ୍ କୁର୍ବାନି) ଅର୍ପଣ କରିଥିଲେ, ସେତେବେଳେ ସେମାନଙ୍କ ମଧ୍ୟରୁ ଜଣଙ୍କ ଠାରୁ (ତାହା) ଗୃହୀତ ହେଲା ଓ ଅନ୍ୟଠାରୁ ଗୃହୀତ ହେଲା ନାହିଁ; (ତେଣୁ) ସେ (ଅର୍ଥାତ୍ ଶେଷୋକ୍ତ ବ୍ୟକ୍ତି ନିଜ ଭାଇକୁ) କହିଲା, "ମୁଁ ତୁମକୁ ନିଶ୍ଚୟ ହତ୍ୟା କରିବି," (ପ୍ରଥମୋକ୍ତ ବ୍ୟକ୍ତି) ଉତ୍ତର ଦେଲା, "ଅଲ୍ଲାହ କେବଳ ଧର୍ମଭୀରୁମାନଙ୍କଠାରୁ (ଉତ୍ସର୍ଗ) ଗ୍ରହଣ କରନ୍ତି।"

لَئِنْ بَسَطْتَ إِلَيَّ يَدَكَ لِتَقْتُلَنِي مَا أَنَا بِبَاسِطٍ يَدِيَ إِلَيْكَ لِأَقْتُلَكَ إِنِّي أَخَافُ اللَّهَ رَبَّ الْعَالَمِينَ ﴿٢٩﴾

୨୯. "ଯଦି ତୁମେ ମୋତେ ହତ୍ୟା କରିବା ପାଇଁ ତୁମର ହସ୍ତକୁ[2] ମୋ ଆଡ଼କୁ ପ୍ରସାରିତ କରିବ, ମୁଁ ତୁମକୁ ହତ୍ୟା କରିବା ପାଇଁ ମୋ ହସ୍ତକୁ ତୁମ ଆଡ଼କୁ କଦାପି ପ୍ରସାରିତ କରିବି ନାହିଁ; ମୁଁ ନିଶ୍ଚୟ ସମଗ୍ର ଜଗତର ପାଳନକର୍ତ୍ତା ଅଲ୍ଲାହଙ୍କୁ ଭୟ କରେ।"

إِنِّي أُرِيدُ أَنْ تَبُوءَ بِإِثْمِي وَإِثْمِكَ فَتَكُونَ مِنْ أَصْحَابِ النَّارِ وَذَٰلِكَ جَزَاءُ الظَّالِمِينَ ﴿٣٠﴾

୩୦. ବାସ୍ତବରେ ମୁଁ ଇଚ୍ଛା[3] କରେ ଯେ ତୁମେ ମୋର ପାପ ଓ ତୁମର ପାପକୁ ସବୁଦିନ ପାଇଁ ବହନ କର; ଫଳରେ ତୁମେ ନରକବାସୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ; ଏବଂ ଏହା ଅତ୍ୟାଚାରୀମାନଙ୍କର ପ୍ରତିଫଳ ଅଟେ।

فَطَوَّعَتْ لَهُ نَفْسُهُ قَتْلَ أَخِيهِ فَقَتَلَهُ فَأَصْبَحَ مِنَ الْخَاسِرِينَ ﴿٣١﴾

୩୧. ତତ୍ପରେ ତାହାର (ଅର୍ଥାତ୍ ଯେଉଁ ଭାଇର ଉତ୍ସର୍ଗ ଗୃହୀତ ହୋଇ ନ ଥିଲା) କୁ-ପ୍ରବୃତ୍ତି ନିଜ ଭାଇକୁ ହତ୍ୟା କରିବାକୁ ପ୍ରବର୍ତ୍ତାଇଲା; ତେଣୁ ସେ ତାହାକୁ ହତ୍ୟା କଲା; ଫଳରେ ସେ କ୍ଷତିଗ୍ରସ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେଲା।

---

୧. ଏହି ଦୃଷ୍ଟାନ୍ତରେ ଇସ୍ରାଇଲୀୟଙ୍କ ସହିତ ଇସମାଇଲୀୟଙ୍କୁ ତୁଳନା କରାଯାଇଛି । ଇସ୍ରାଇଲୀୟ ସନ୍ତାନମାନେ ହଜରତ ମହମ୍ମଦଙ୍କୁ ନବି ରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ତେଣୁ କାବିଲ ସଦୃଶ ସେମାନେ ମଧ୍ୟ ମୁସଲମାନଙ୍କ ପ୍ରତି ଈର୍ଷାନ୍ୱିତ ହେଉଥିଲେ । ବଳିଦାନକୁ ସ୍ୱୀକାର ବା ଗ୍ରହଣ କରିବା ଅଲ୍ଲାହଙ୍କର କାର୍ଯ୍ୟ, ବଳିଦାତାଙ୍କର ନୁହେଁ ।

୨. ଏହାର ଅର୍ଥ ନୁହେଁ ଯେ ମୁଁ ନିଜକୁ ରକ୍ଷା କରିବି ନାହିଁ । ବରଂ ଏହାର ପ୍ରକୃତ ଅର୍ଥ ହେଉଛି ଯେ ମୁଁ ଏପରି ଭାବରେ ନିଜକୁ ରକ୍ଷା କରିବି ନାହିଁ ଯଦ୍ୱାରା ପରିଣାମ ସ୍ୱରୂପ ଶତ୍ରୁ ନିହତ ହେବ ।

୩. ଏହାର ତାତ୍ପର୍ଯ୍ୟ ନୁହେଁ ଯେ ମୋର ଏହା ଆନ୍ତରିକ ଇଚ୍ଛା, ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ମୁଁ ନୈତିକ ଦୃଷ୍ଟିରୁ ବାଧ୍ୟ ହୋଇ ମଧ୍ୟ ନିଜକୁ ରକ୍ଷା କରିବାକୁ କଠୋର ପଦକ୍ଷେପ ଗ୍ରହଣ କରିବି ନାହିଁ ଯଦ୍ୱାରା ତୁମେ ମୋର ପାପଭାର ବହନ କରିବ । ଇହୁଦୀମାନଙ୍କର ଅବସ୍ଥା ତାହା ହିଁ ହୋଇଥିଲା । ମୁସଲମାନମାନେ ସନ୍ଧି ପାଇଁ ପ୍ରସ୍ତାବ ଦେଲେ ଅଥଚ ଇହୁଦୀମାନେ କେବଳ ଯୁଦ୍ଧ ପାଇଁ ଆଗଭର ହେଲେ ନାହିଁ ବରଂ ଅବିଶ୍ୱାସକାରୀମାନଙ୍କୁ ପ୍ରରୋଚିତ କରିଥିଲେ । ପରିଶେଷରେ ଇହୁଦୀମାନେ ଜଘନ୍ୟ ପାପରେ ଜଡ଼ିତ ହୋଇ ଶାସ୍ତିଭୋଗ କରିଥିଲେ ।

୩୨. ତତ୍‌ପରେ ଅଲ୍ଲାହ ଗୋଟିଏ କାଉ[୧] ପଠାଇଲେ ଯେ କି ଭୂମିକୁ (ଏଥି ସକାଶେ) ରାମ୍ପୁଡୁଥିଲା ଯେପରିକି ତାହାର ଭାଇର ମୃତ ଶରୀରକୁ କିପରି ଲୁଚାଇବାକୁ ହେବ ସେ ତାହାକୁ ଦେଖାଇ ପାରିବ; ସେ କହିଲା, "ହାୟ ! ମୁଁ କଣ ଏଭଳି ଅଧମ ଯେ ମୋ ଭାଇର ଶବକୁ ଘୋଡ଼ାଇବାକୁ ଏହି କାଉ ପରି ହୋଇ ପାରିବି ନାହିଁ ?" ତାହାପରେ ସେ ଅନୁତପ୍ତ ହେଲା ।

فَبَعَثَ اللّٰهُ غُرَابًا يَّبْحَثُ فِي الْاَرْضِ لِيُرِيَهٗ كَيْفَ يُوَارِيْ سَوْءَةَ اَخِيْهِ ؕ قَالَ يٰوَيْلَتٰۤى اَعَجَزْتُ اَنْ اَكُوْنَ مِثْلَ هٰذَا الْغُرَابِ فَاُوَارِيَ سَوْءَةَ اَخِيْ ۚ فَاَصْبَحَ مِنَ النّٰدِمِيْنَ ۚ ﴿٣٢﴾

୩୩. ଏଥିଯୋଗୁଁ ଆମ୍ଭେ ଇସ୍ରାଇଲୀୟ ସନ୍ତାନମାନଙ୍କ ପାଇଁ ବିହିତ କରିଥିଲୁ ଯେ ଯେଉଁ ବ୍ୟକ୍ତି ଅନ୍ୟ କାହାରି ହତ୍ୟା ବା ଭୂପୃଷ୍ଠରେ ବିଶୃଙ୍ଖଳା ପ୍ରସାରିତ କରିବା ବ୍ୟତିରେକେ ଅନ୍ୟ କୌଣସି କାରଣରୁ ହତ୍ୟା କରେ ତେବେ ଧରିନିଅ ଯେ ସେ ସକଳ ମାନବ ସମାଜର[୨] ହତ୍ୟା କରିଛି; ଏବଂ ଯେଉଁ ବ୍ୟକ୍ତି କାହାରି ଜୀବନ ରକ୍ଷା କରେ ତେବେ ବୁଝିନିଅ ଯେ ସେ ସକଳ ମାନବ ସମାଜର ଜୀବନ ରକ୍ଷା କଲା; ଏବଂ ଆମ୍ଭର ରସୁଲ ସେମାନଙ୍କ ନିକଟକୁ ବାସ୍ତବରେ ପ୍ରକାଶ୍ୟ ନିଦର୍ଶନ ସହିତ ଆସିଥିଲେ; ତଥାପି ଦେଶ ଭିତରେ ସେମାନଙ୍କ ମଧ୍ୟରୁ ଅନେକେ ସୀମା ଲଂଘନ କରୁଛନ୍ତି ।

مِنْ اَجْلِ ذٰلِكَ ۛۚ كَتَبْنَا عَلٰى بَنِيْۤ اِسْرَآءِيْلَ اَنَّهٗ مَنْ قَتَلَ نَفْسًۢا بِغَيْرِ نَفْسٍ اَوْ فَسَادٍ فِي الْاَرْضِ فَكَاَنَّمَا قَتَلَ النَّاسَ جَمِيْعًا ؕ وَمَنْ اَحْيَاهَا فَكَاَنَّمَاۤ اَحْيَا النَّاسَ جَمِيْعًا ؕ وَلَقَدْ جَآءَتْهُمْ رُسُلُنَا بِالْبَيِّنٰتِ ۫ ثُمَّ اِنَّ كَثِيْرًا مِّنْهُمْ بَعْدَ ذٰلِكَ فِي الْاَرْضِ لَمُسْرِفُوْنَ ﴿٣٣﴾

୩୪. ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ବିରୁଦ୍ଧରେ ଯୁଦ୍ଧ କରନ୍ତି ଓ ଦେଶ ଭିତରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ଚେଷ୍ଟା କରନ୍ତି ସେମାନଙ୍କୁ ହତ୍ୟା କରିବା ବା ଶୂଳି ଦେବା ବା ଶତ୍ରୁତା ଯୋଗୁଁ ସେମାନଙ୍କର ହାତ ଓ ଗୋଡ଼କୁ କାଟି ଦେବା ବା ସେମାନଙ୍କୁ ଦେଶରୁ ବହିଷ୍କାର[୩] କରିବା ସେମାନଙ୍କ ପାଇଁ ନିଶ୍ଚୟ ଉପଯୁକ୍ତ ଶାସ୍ତି ଅଟେ; ଇହକାଳରେ ଏହା ସେମାନଙ୍କ ପାଇଁ ଏକ ଲାଞ୍ଛନା ଅଟେ ଓ ପରକାଳରେ ସେମାନଙ୍କ ପାଇଁ ଭୀଷଣ ଶାସ୍ତି (ନିୟତ) ଅଛି ।

اِنَّمَا جَزٰٓؤُا الَّذِيْنَ يُحَارِبُوْنَ اللّٰهَ وَرَسُوْلَهٗ وَيَسْعَوْنَ فِي الْاَرْضِ فَسَادًا اَنْ يُّقَتَّلُوْۤا اَوْ يُصَلَّبُوْۤا اَوْ تُقَطَّعَ اَيْدِيْهِمْ وَاَرْجُلُهُمْ مِّنْ خِلَافٍ اَوْ يُنْفَوْا مِنَ الْاَرْضِ ؕ ذٰلِكَ لَهُمْ خِزْيٌ فِي الدُّنْيَا وَلَهُمْ فِي الْاٰخِرَةِ عَذَابٌ عَظِيْمٌ ۙ ﴿٣٤﴾

୧. ଦୈବଯୋଗେ ସେଠାକୁ ଗୋଟିଏ କାଉ ଉଡ଼ି ଆସି ଅନ୍ୟ ଏକ କାଉର ଶବ ସେଠାରେ ପଡ଼ିଥିବାର ଦେଖିଲା ଓ ନିଜ ନଖ ଓ ଚଞ୍ଚୁ ଦ୍ୱାରା ମାଟି ଖୋଳି ତା ଉପରେ ପକାଇଲା । ଏହା ଦେଖି ହତ୍ୟାକାରୀ ଭାଇ ମନରେ ଅନ୍ୟ ଭାଇ ପ୍ରତି ଭ୍ରାତୃପ୍ରେମ ଜାଗରିତ ହେଲା ଓ ସେ ଦୁଃଖରେ କେତେକ ଶୋକସୂଚକ ଶବ୍ଦ ଉଚ୍ଚାରଣ କଲା । ଯାହାହେଉ ସେଠାକୁ ଗୋଟିଏ କାଉକୁ ପ୍ରେରଣ କରାଯିବାର ଅର୍ଥ କେବଳ ଏତିକି ହୋଇପାରେ ଯେ ଗୋଟିଏ କାଉ ସ୍ୱାଭାବିକ ଭାବରେ ଉଡ଼ି ଉଡ଼ି ସେଠାକୁ ଆସିଥିଲା ।

୨. ଏଠାରେ ତୌରାତର ଶିକ୍ଷା ବିଷୟରେ ସୂଚନା ଦିଆଯାଇଛି । ଏହି ଘଟଣା ଘଟି ନଥିଲେ ଏପରି ଆଦେଶ ଦିଆଯାଇ ନଥା'ନ୍ତା ଭାବିବା ଯଥାର୍ଥ ନୁହେଁ । ପ୍ରକୃତ ପକ୍ଷେ ଏଠାରେ ସୂଚାଇ ଦିଆଯାଇଛି ଯେ ଯଦି କୌଣସି ବ୍ୟକ୍ତି କୌଣସି ବିଶିଷ୍ଟ ଜନନାୟକଙ୍କୁ ହତ୍ୟା କରେ ତେବେ ଏପରି ବୋଧହେବ ସତେ ଯେପରି ସେ ସାରା ସଂସାରକୁ ହତ୍ୟା କରିଛି ।

୩. ଏ ପ୍ରକାର କାର୍ଯ୍ୟ ସରକାରଙ୍କର ଅଧୀନ । କୌଣସି ବ୍ୟକ୍ତି ବିଶେଷଙ୍କର ଖିଆଲ ଅନୁସାରେ ଅନ୍ୟ ଉପରେ ଫତୱା ଲଗାଯାଇ ଦଣ୍ଡ ଦିଆଯାଇ ପାରିବ ନାହିଁ ।

إِلَّا الَّذِينَ تَابُوا مِنْ قَبْلِ أَنْ تَقْدِرُوا عَلَيْهِمْ ۖ فَاعْلَمُوا أَنَّ اللَّهَ غَفُورٌ رَحِيمٌ ﴿٣٥﴾

୩୫. କିନ୍ତୁ ସେପରି[୨] ଲୋକମାନେ ତୁମ ଅକ୍ତିଆରକୁ ଆସିବା ପୂର୍ବରୁ ଯଦି ଅନୁତାପ କରନ୍ତି ତେବେ ମନେରଖ ଯେ, ଅଲ୍ଲାହ ନିଶ୍ଚୟ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ (ଏହି କାରଣରୁ [୧] ଅଲ୍ଲାହ ଅନୁତାପକାରୀଙ୍କୁ ଦଣ୍ଡରୁ ଅବ୍ୟାହତି ଦେଇଛନ୍ତି)।

يَا أَيُّهَا الَّذِينَ آمَنُوا اتَّقُوا اللَّهَ وَابْتَغُوا إِلَيْهِ الْوَسِيلَةَ وَجَاهِدُوا فِي سَبِيلِهِ لَعَلَّكُمْ تُفْلِحُونَ ﴿٣٦﴾

୩୬. ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କୁ ଭୟ କର ଏବଂ ତାଙ୍କର ସାନ୍ନିଧ୍ୟ ଲାଭ କରିବାକୁ ଉପାୟ ଅନ୍ୱେଷଣ କର ଓ ତାହାଙ୍କ ପଥରେ ପ୍ରବଳ ଉଦ୍ୟମ କର ଯେପରି ତୁମେମାନେ ସଫଳ ହେବ ।

إِنَّ الَّذِينَ كَفَرُوا لَوْ أَنَّ لَهُمْ مَا فِي الْأَرْضِ جَمِيعًا وَمِثْلَهُ مَعَهُ لِيَفْتَدُوا بِهِ مِنْ عَذَابِ يَوْمِ الْقِيَامَةِ مَا تُقُبِّلَ مِنْهُمْ ۖ وَلَهُمْ عَذَابٌ أَلِيمٌ ﴿٣٧﴾

୩୭. ଯେଉଁମାନେ ଅବିଶ୍ୱାସକାରୀ ଅଟନ୍ତି ଯଦି ସେମାନେ ପୃଥିବୀରେ ଥିବା ସମସ୍ତ ପଦାର୍ଥ ଓ ତତ୍ତୁଲ୍ୟ ପଦାର୍ଥକୁ କୟାମତ ଦିନ ଶାସ୍ତି ବଦଳରେ ପ୍ରଦାନ କରନ୍ତି ତେବେ ମଧ୍ୟ ତାହା ସେମାନଙ୍କଠାରୁ ଗୃହୀତ ହେବ ନାହିଁ ଏବଂ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

يُرِيدُونَ أَنْ يَخْرُجُوا مِنَ النَّارِ وَمَا هُمْ بِخَارِجِينَ مِنْهَا ۖ وَلَهُمْ عَذَابٌ مُقِيمٌ ﴿٣٨﴾

୩୮. ସେମାନେ (ନରକ) ଅଗ୍ନିରୁ ବାହାରିବା ପାଇଁ ଇଚ୍ଛା[୩] କରିବେ କିନ୍ତୁ ସେଥିରୁ ସେମାନେ ବାହାରି ପାରିବେ ନାହିଁ; ଏବଂ ସେମାନଙ୍କ ପାଇଁ ଏକ ବହୁକାଳ ସ୍ଥାୟୀ ଶାସ୍ତି (ନିୟତ) ଅଛି ।

وَالسَّارِقُ وَالسَّارِقَةُ فَاقْطَعُوا أَيْدِيَهُمَا جَزَاءً بِمَا كَسَبَا نَكَالًا مِنَ اللَّهِ ۗ وَاللَّهُ عَزِيزٌ حَكِيمٌ ﴿٣٩﴾

୩୯. ଯେଉଁ ପୁରୁଷ ଚୋରିକରେ ଓ ଯେଉଁ ସ୍ତ୍ରୀ ଚୋରି କରେ ତାହାର ପ୍ରତିଫଳ ସ୍ୱରୂପ ସେ ଦୁହିଙ୍କର ହାତ କାଟି ଦିଅ; ଏହା ଅଲ୍ଲାଙ୍କ ତରଫରୁ ଏକ (ଦୃଷ୍ଟାନ୍ତମୂଳକ) ଶାସ୍ତି[୪] ଅଟେ; ଏବଂ ଅଲ୍ଲାହ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

---

୧. ଏହି ନିର୍ଦ୍ଦେଶ ପ୍ରଜାଙ୍କ ପାଇଁ ନୁହେଁ ବରଂ ସରକାରଙ୍କ ପାଇଁ କାରଣ ପୋଲିସ ବା ସୈନ୍ୟବାହିନୀ ସରକାରଙ୍କ ଅଧୀନ ।

୨. ଏହି ଆଦେଶରୁ ପରିଷ୍କାର ଜଣାପଡୁଛି ଯେ ଇସଲାମ ଧର୍ମର ବିଧିବିଧାନ (ଶରିୟତ) ଦୟା ଓ କରୁଣା ଉପରେ ଆଧାରିତ । ଯଦି କୌଣସି ବ୍ୟକ୍ତି ଦଣ୍ଡ ଭୋଗିବା ପୂର୍ବରୁ ତୌବା କିମ୍ବା ଅନୁତାପ କରେ ତେବେ ତାହାର ସେହି ଅନୁତାପ ଜ୍ଞାପନକୁ ଗ୍ରହଣ କରିବାକୁ ହେବ । ସେ ନିରପରାଧ ଥିଲେ ଯେପରି ବ୍ୟବହାର ପାଉଥାନ୍ତା ତା' ସହିତ ସେପରି ବ୍ୟବହାର କରିବାକୁ ହେବ । ଅଲ୍ଲାହ ହିଁ ଅନ୍ତରର କଥା ଜାଣିପାରନ୍ତି । ଅତଏବ ଅନୁତାପ ମାଧ୍ୟମରେ ଅଲ୍ଲାହଙ୍କ ଠାରୁ କ୍ଷମା ହାସଲ କରାଯାଇ ପାରେ ।

ଏହି ଆୟତ ଓ ଏହାର ପୂର୍ବବର୍ତ୍ତୀ ଆୟତରେ ଚୋର, ଡକାୟତ ଓ ଅନୁରୂପ ଅପରାଧୀଙ୍କ ବିଷୟ ବର୍ଣ୍ଣିତ ହୋଇ ନାହିଁ ବରଂ ମୁସଲିମ ରାଷ୍ଟ୍ର ବିରୋଧୀ ଦୁରାଚାରୀ ଓ ବିଦ୍ରୋହୀଙ୍କ ବିଷୟ ବର୍ଣ୍ଣନା କରାଯାଇଛି : ତେଣୁ ଯେଉଁ ଲୋକ ଚୋର ଡକାୟତଙ୍କ ପରି ଅନ୍ୟ ଜଣେ ବ୍ୟକ୍ତି ବା ସମାଜ ପ୍ରତି ଜଘନ୍ୟ ଅପରାଧ କରିଥିବ ସେ ଅନୁତାପ କଲେ ମଧ୍ୟ ସର୍ବ-ସାଧାରଣଙ୍କ ହିତ ଦୃଷ୍ଟିରୁ ତାକୁ କ୍ଷମା ଦିଆଯାଇ ପାରିବ ନାହିଁ । ତେଣୁ ଆଇନ ଅନୁସାରେ ତାକୁ ଦଣ୍ଡ ଭୋଗ କରିବାକୁ ହେବ ।

୩. ଅର୍ଥାତ୍ କେହି ନିଜର ଶକ୍ତି ପ୍ରୟୋଗ କରି ନରକରୁ ମୁକ୍ତି ହୋଇପାରିବ ନାହିଁ ; କିନ୍ତୁ ପବିତ୍ର କୋରାନରେ ଅନ୍ୟତ୍ର ଉଲ୍ଲିଖିତ ଅଛି ଯେ ଅଲ୍ଲାହ ଦୟାକରି ଯେ କୌଣସି ବ୍ୟକ୍ତିକୁ ମୁକ୍ତି ଦେଇପାରିବେ ।

୪. ବିହିତ ଦଣ୍ଡବିଧାନ ଅବଶ୍ୟ କଠୋର । କିନ୍ତୁ ଯଦି ଦଣ୍ଡ ସୁଦୃଢ଼ତର ହୋଇଥାଏ ତେବେ ତାହା ଅନ୍ୟକୁ ମନ୍ଦ କାର୍ଯ୍ୟ କରିବାରୁ ନିବୃତ୍ତ କରାଏ । ଯେପରି ଜଣେ ଶଲ୍ୟ ଚିକିତ୍ସକ ଆବଶ୍ୟକ ସ୍ଥଳେ ଶରୀରର ଗୋଟିଏ ଅଂଶକୁ କାଟି ଅବଶିଷ୍ଟ ଅଂଶକୁ ରକ୍ଷା କରିଥାଆନ୍ତି ସେହିପରି ସମାଜକୁ ରକ୍ଷା କରିବା ପାଇଁ ବ୍ୟକ୍ତିବିଶେଷଙ୍କୁ କଠିନ ଶାସ୍ତିଦେବା ବରଂ ଶ୍ରେୟସ୍କର । କିନ୍ତୁ ଏ ପ୍ରକାର ଦଣ୍ଡବିଧାନ ବିରଳ, ଏପରିକି ଇସଲାମ ପ୍ରବଳ ପରାକ୍ରମୀ ହୋଇଥିବା ବେଳେ ମଧ୍ୟ ଏପରି ଦଣ୍ଡବିଧାନ କ୍ୱଚିତ ହୋଇଛି ।

୪୦. କିନ୍ତୁ ଯେଉଁ ବ୍ୟକ୍ତି ନିଜେ ଅତ୍ୟାଚାର କରିବା ପରେ ଅନୁତାପ କରେ ଓ (ନିଜକୁ) ସଂଶୋଧିତ କରେ ତାହାହେଲେ ନିଶ୍ଚୟ ଅଲ୍ଲାଃ ତାହା ପ୍ରତି ଅନୁଗ୍ରହ ପ୍ରଦର୍ଶନ କରିବେ; ଅଲ୍ଲାଃ ନିଶ୍ଚୟ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

فَمَنْ تَابَ مِنْ بَعْدِ ظُلْمِهٖ وَاَصْلَحَ فَاِنَّ اللّٰهَ يَتُوْبُ عَلَيْهِ ؕ اِنَّ اللّٰهَ غَفُوْرٌ رَّحِيْمٌ ﴿۴۰﴾

୪୧. ତୁମ୍ଭକୁ କ'ଣ ଜଣା ନାହିଁ ଯେ ଆକାଶ ଓ ପୃଥିବୀରେ ଅଲ୍ଲାଃଙ୍କର ଆଧିପତ୍ୟ ଅଛି ? ସେ ଯାହାକୁ ଇଚ୍ଛା ଶାସ୍ତି ଦିଅନ୍ତି ଓ ଯାହାକୁ ଇଚ୍ଛା କ୍ଷମା ପ୍ରଦାନ କରନ୍ତି; ଏବଂ ଅଲ୍ଲାଃ (ନିଜ ଇପ୍‌ସିତ) ପ୍ରତ୍ୟେକ କାର୍ଯ୍ୟ କରିବାକୁ ପୂର୍ଣ୍ଣ ରୂପେ ସକ୍ଷମ ।

اَلَمْ تَعْلَمْ اَنَّ اللّٰهَ لَهٗ مُلْكُ السَّمٰوٰتِ وَالْاَرْضِ ؕ يُعَذِّبُ مَنْ يَّشَآءُ وَيَغْفِرُ لِمَنْ يَّشَآءُ ؕ وَاللّٰهُ عَلٰى كُلِّ شَىْءٍ قَدِيْرٌ ﴿۴۱﴾

୪୨. ହେ ରସୁଲ ! ଯେଉଁମାନେ (କେବଳ) ନିଜ ମୁଖରେ କହନ୍ତି ଯେ ସେମାନେ ବିଶ୍ୱାସ କରିଛନ୍ତି ଅଥଚ ସେମାନେ ଅନ୍ତରରେ ବିଶ୍ୱାସ କରି ନାହାନ୍ତି, ସେମାନଙ୍କ ମଧ୍ୟରୁ ଯେଉଁମାନେ ଅବିଶ୍ୱାସ କରିବାରେ ତତ୍‌ପର ତୁମେ ସେମାନଙ୍କ ପାଇଁ ଦୁଃଖିତ ହୁଅ ନାହିଁ; ଏବଂ ଇହୁଦୀମାନଙ୍କ ମଧ୍ୟରୁ କେତେକ ମିଥ୍ୟା କଥାକୁ ସ୍ୱେଚ୍ଛାରେ ଶୁଣନ୍ତି ଏବଂ ସେମାନେ ତୁମ୍ଭ ନିକଟକୁ ନ ଆସିଥିବା ଅନ୍ୟ ଏକ ସଂପ୍ରଦାୟକୁ ତାହା ଶୁଣାଇବା ପାଇଁ କେବଳ ଶୁଣନ୍ତି; ସେମାନେ (ଅଲ୍ଲାଃଙ୍କର) ବାଣୀଗୁଡ଼ିକ (ଯଥାଠ) ସ୍ଥାନରେ ରଖାଯିବା ପରେ ସେଗୁଡ଼ିକୁ (ନିଜ ସ୍ଥାନରୁ) ପରିବର୍ତ୍ତନ[1] କରିଥାଆନ୍ତି; ଏବଂ କହନ୍ତି, "ଯଦି ତୁମମାନଙ୍କୁ ଏହିପରି (ଆଦେଶ) ଦିଆଯାଏ ତେବେ ଗ୍ରହଣ କର ଏବଂ ଯଦି ତୁମମାନଙ୍କୁ ଏହିପରି (ଆଦେଶ) ଦିଆ ନ ଯାଏ ତେବେ (ତହିଁରୁ) ଦୂରେଇ ଯାଅ (ଓ ଗ୍ରହଣ କର ନାହିଁ); ଏବଂ ଅଲ୍ଲାଃ ଯାହାକୁ ପରୀକ୍ଷା କରିବାକୁ ଇଚ୍ଛା କରନ୍ତି, ତୁମେ ତାହା ପାଇଁ ଅଲ୍ଲାଃଙ୍କ ବିରୁଦ୍ଧରେ କିଛି କରି ପାରିବ ନାହିଁ; ଅଲ୍ଲାଃ ଏ ଲୋକମାନଙ୍କର ହୃଦୟକୁ ନିର୍ମଳ କରିବାକୁ (ଆଦୌ) ଇଚ୍ଛା କରନ୍ତି ନାହିଁ; (କାରଣ) ଇହକାଳରେ ଏମାନଙ୍କ ପାଇଁ ଲାଞ୍ଛନା ଅଛି ଓ ପରକାଳରେ ଏମାନଙ୍କ ପାଇଁ ଭୀଷଣ ଶାସ୍ତି (ନିୟତ) ଅଛି ।

يٰۤاَيُّهَا الرَّسُوْلُ لَا يَحْزُنْكَ الَّذِيْنَ يُسَارِعُوْنَ فِى الْكُفْرِ مِنَ الَّذِيْنَ قَالُوْۤا اٰمَنَّا بِاَفْوَاهِهِمْ وَلَمْ تُؤْمِنْ قُلُوْبُهُمْ ۛۚ وَمِنَ الَّذِيْنَ هَادُوْا ۛۚ سَمّٰعُوْنَ لِلْكَذِبِ سَمّٰعُوْنَ لِقَوْمٍ اٰخَرِيْنَ ۙ لَمْ يَاْتُوْكَ ؕ يُحَرِّفُوْنَ الْكَلِمَ مِنْۢ بَعْدِ مَوَاضِعِهٖ ۚ يَقُوْلُوْنَ اِنْ اُوْتِيْتُمْ هٰذَا فَخُذُوْهُ وَاِنْ لَّمْ تُؤْتَوْهُ فَاحْذَرُوْا ؕ وَمَنْ يُّرِدِ اللّٰهُ فِتْنَتَهٗ فَلَنْ تَمْلِكَ لَهٗ مِنَ اللّٰهِ شَيْـًٔا ؕ اُولٰۤـئِكَ الَّذِيْنَ لَمْ يُرِدِ اللّٰهُ اَنْ يُّطَهِّرَ قُلُوْبَهُمْ ؕ لَهُمْ فِى الدُّنْيَا خِزْىٌ ۖۚ وَّلَهُمْ فِى الْاٰخِرَةِ عَذَابٌ عَظِيْمٌ ﴿۴۲﴾

୧. ଅର୍ଥାତ୍ ପବିତ୍ର କୋରାନର ବାଣୀ ଶୁଣିବା ପରେ ଲୋକମାନଙ୍କ ମଧ୍ୟରେ ତା'ର ଭୁଲ ଅର୍ଥ ପ୍ରଚାର କରନ୍ତି ଯଦ୍ଦ୍ୱାରା ମୁସଲମାନଙ୍କ ପ୍ରତି ଦୋଷାରୋପ କରାଯାଇ ପାରିବ ।

سَمّٰعُوْنَ لِلْكَذِبِ اَكّٰلُوْنَ لِلسُّحْتِ ؕ فَاِنْ جَآءُوْكَ فَاحْكُمْ بَيْنَهُمْ اَوْ اَعْرِضْ عَنْهُمْ ۚ وَاِنْ تُعْرِضْ عَنْهُمْ فَلَنْ يَّضُرُّوْكَ شَيْـًٔا ؕ وَاِنْ حَكَمْتَ فَاحْكُمْ بَيْنَهُمْ بِالْقِسْطِ ؕ اِنَّ اللّٰهَ يُحِبُّ الْمُقْسِطِيْنَ ﴿۴۳﴾

୪୩. ସେ (ଲୋକ)ମାନେ ମିଥ୍ୟା କଥାକୁ ସ୍ୱେଚ୍ଛାରେ ଶୁଣନ୍ତି (ଓ) ଅବୈଧ ଲାଭ ହାସଲକୁ ପସନ୍ଦ କରନ୍ତି; ସୁତରାଂ ଯଦି ସେମାନେ ତୁମ ନିକଟକୁ (କୌଣସି କଳହର ମୀମାଂସା ପାଇଁ) ଆସନ୍ତି, ତେବେ ସେମାନଙ୍କ ମଧ୍ୟରେ ମୀମାଂସା କର ବା ସେମାନଙ୍କଠାରୁ ଦୂରେଇ ରହ; (ଉଭୟ ପରିସ୍ଥିତିରେ) ସେମାନେ ତୁମର କୌଣସି କ୍ଷତି କରି ପାରିବେ ନାହିଁ; ଏବଂ ଯଦି ତୁମେ ମୀମାଂସା କର, ତେବେ ସେମାନଙ୍କ ମଧ୍ୟରେ ନ୍ୟାୟସଂଗତ ମୀମାଂସା କର; ନିଶ୍ଚୟ ଅଲ୍ଲାହ ନ୍ୟାୟବନ୍ତମାନଙ୍କୁ ପ୍ରେମ କରନ୍ତି ।

وَكَيْفَ يُحَكِّمُوْنَكَ وَعِنْدَهُمُ التَّوْرٰىةُ فِيْهَا حُكْمُ اللّٰهِ ثُمَّ يَتَوَلَّوْنَ مِنْۢ بَعْدِ ذٰلِكَ ؕ وَمَاۤ اُولٰٓئِكَ بِالْمُؤْمِنِيْنَ ﴿۴۴﴾ ع

୪୪. ଏବଂ ସେମାନେ ତୁମକୁ କିପରି ବିଚାରପତି ନିଯୁକ୍ତ କରି ପାରିବେ ଯେତେବେଳେ କି ସେମାନଙ୍କ ନିକଟରେ ଅଲ୍ଲାହଙ୍କର ଆଦେଶାବଳୀ[1] ସଂବଳିତ ତୌରାତ (ଧର୍ମଗ୍ରନ୍ଥ) ଅଛି; ତଥାପି ଏହା ସତ୍ତ୍ୱେ, ସେମାନେ ପୃଷ୍ଠ ଭଙ୍ଗ କରି ଫେରି ଯାଉଛନ୍ତି; ଏବଂ ସେମାନେ କଦାପି ବିଶ୍ୱାସକାରୀ ନୁହନ୍ତି ।

ରୁ : ୭

اِنَّاۤ اَنْزَلْنَا التَّوْرٰىةَ فِيْهَا هُدًى وَّنُوْرٌ ۚ يَحْكُمُ بِهَا النَّبِيُّوْنَ الَّذِيْنَ اَسْلَمُوْا لِلَّذِيْنَ هَادُوْا وَالرَّبّٰنِيُّوْنَ وَالْاَحْبَارُ بِمَا اسْتُحْفِظُوْا مِنْ كِتٰبِ اللّٰهِ وَكَانُوْا عَلَيْهِ شُهَدَآءَ ۚ فَلَا تَخْشَوُا النَّاسَ وَاخْشَوْنِ وَلَا تَشْتَرُوْا بِاٰيٰتِىْ ثَمَنًا قَلِيْلًا ؕ وَمَنْ لَّمْ يَحْكُمْ بِمَاۤ اَنْزَلَ اللّٰهُ فَاُولٰٓئِكَ هُمُ الْكٰفِرُوْنَ ﴿۴۵﴾

୪୫. ବାସ୍ତବରେ ଆମେ ତୌରାତକୁ ସତ୍‌ପଥ ପ୍ରଦର୍ଶନ ଓ ଜ୍ୟୋତିରେ ପରିପୂର୍ଣ୍ଣ କରି ଅବତୀର୍ଣ୍ଣ କରିଥିଲୁ; ଏହାଦ୍ୱାରା (ଆମର) ଆଜ୍ଞାବହ ନବିମାନେ ତଥା ପ୍ରଭୁଭକ୍ତ ଓ ବିଦ୍ୱାନମାନେ, ଯେହେତୁ ସେମାନଙ୍କ ଠାରୁ ଅଲ୍ଲାହଙ୍କ (ଧର୍ମ) ଗ୍ରନ୍ଥର ସଂରକ୍ଷଣ ଆବଶ୍ୟକ କରାଯାଇଥିଲା ଓ ସେମାନେ ଏହାର ତତ୍ତ୍ୱାବଧାରକ ଥିଲେ, ଇହୁଦୀମାନଙ୍କ ପାଇଁ ମୀମାଂସା କରୁଥିଲେ; ଅତଏବ, ତୁମେମାନେ ଲୋକମାନଙ୍କୁ ଭୟ କର ନାହିଁ, କିନ୍ତୁ ଆମକୁ ଭୟ କର; ଏବଂ ତୁମେମାନେ ଆମର ନିଦର୍ଶନଗୁଡ଼ିକ ବିନିମୟରେ ଅଳ୍ପ ମୂଲ୍ୟ ଗ୍ରହଣ କର ନାହିଁ, ଏବଂ ଅଲ୍ଲାହ ଯାହା ଅବତୀର୍ଣ୍ଣ କରିଛନ୍ତି ତଦନୁସାରେ ଯେଉଁମାନେ ମୀମାଂସା ନ କରନ୍ତି ସେମାନେ ହିଁ (ପ୍ରକୃତ) ଅବିଶ୍ୱାସକାରୀ ।

୧. ଅର୍ଥାତ୍ ଯଦ୍ୟପି ମୁସଲମାନଙ୍କ ବିଶ୍ୱାସ ଦୃଷ୍ଟିରୁ ତୌରାତ ବର୍ଣ୍ଣିତ କେତେକ ଆଦେଶ ଏବେ ବି ଯଥାର୍ଥ ଅଟେ, ତଥାପି ଇହୁଦୀମାନଙ୍କ ମତାନୁସାରେ ଏହାର ସମସ୍ତ ଆଦେଶ ଆଜି ପର୍ଯ୍ୟନ୍ତ ପ୍ରଯୋଜ୍ୟ ।

وَكَتَبْنَا عَلَيْهِمْ فِيهَآ أَنَّ النَّفْسَ بِالنَّفْسِ وَالْعَيْنَ بِالْعَيْنِ وَالْأَنْفَ بِالْأَنْفِ وَالْأُذُنَ بِالْأُذُنِ وَالسِّنَّ بِالسِّنِّ وَالْجُرُوحَ قِصَاصٌ فَمَنْ تَصَدَّقَ بِهٖ فَهُوَ كَفَّارَةٌ لَّهٗ وَمَنْ لَّمْ يَحْكُمْ بِمَآ أَنْزَلَ اللّٰهُ فَأُولٰٓئِكَ هُمُ الظّٰلِمُونَ ﴿٤٦﴾

୪୬. ଏବଂ ଆମେ ତହିଁରେ (ଅର୍ଥାତ୍ ତୌରାତରେ) ସେମାନଙ୍କ ପାଇଁ ପ୍ରାଣ ବଦଳରେ ପ୍ରାଣ, ଆଖି ବଦଳରେ ଆଖି, ନାକ ବଦଳରେ ନାକ, କାନ ବଦଳରେ କାନ, ଦାନ୍ତ ବଦଳରେ ଦାନ୍ତ ଓ କ୍ଷତ ବଦଳରେ ଅନୁରୂପ କ୍ଷତ ନ୍ୟାୟସଙ୍ଗତ ପ୍ରତିଶୋଧ ସ୍ୱରୂପ ଧାର୍ଯ୍ୟ କରିଥିଲୁ; କିନ୍ତୁ ଯେଉଁ ବ୍ୟକ୍ତି ଏହାକୁ (ଅର୍ଥାତ୍ ନିଜର ଏହି ଅଧିକାରକୁ) ଛାଡ଼ି ଦିଏ ତେବେ (ଏହି ତ୍ୟାଗ) ତାହା ପାଇଁ (ନିଜ) ପାପ ମାର୍ଜନାର ଏକ ସାଧନ ହୋଇଯିବ; ଏବଂ ଅଲ୍ଲାହ ଯାହା ଅବତୀର୍ଣ୍ଣ କରିଛନ୍ତି ତଦନୁଯାୟୀ ଯେଉଁମାନେ ମୀମାଂସା ନ କରନ୍ତି ସେମାନେ ହିଁ (ପ୍ରକୃତ) ଅତ୍ୟାଚାରୀ ଅଟନ୍ତି।

وَقَفَّيْنَا عَلٰٓى اٰثَارِهِمْ بِعِيسَى ابْنِ مَرْيَمَ مُصَدِّقًا لِّمَا بَيْنَ يَدَيْهِ مِنَ التَّوْرٰىةِ وَاٰتَيْنٰهُ الْإِنْجِيلَ فِيهِ هُدًى وَّنُورٌ وَّمُصَدِّقًا لِّمَا بَيْنَ يَدَيْهِ مِنَ التَّوْرٰىةِ وَهُدًى وَّمَوْعِظَةً لِّلْمُتَّقِينَ ﴿٤٧﴾

୪୭. ଏବଂ ଆମେ ମରିୟମ-ନନ୍ଦନ ଈସାଙ୍କୁ ଯେତେବେଳେ କି ସେ ଏହି (ବାଣୀ) ଅର୍ଥାତ୍ ତୌରାତରେ ପ୍ରତିପାଦନକାରୀ ଥିଲେ, ସେମାନଙ୍କର (ଅର୍ଥାତ୍ ପୂର୍ବ ବର୍ଣ୍ଣିତ ନବିମାନଙ୍କର) ପଦାଙ୍କ ଅନୁସରଣ କରାଇଥିଲୁ; ଏବଂ ଆମେ ତାହାଙ୍କୁ ଇଂଜିଲ (ଧର୍ମଗ୍ରନ୍ଥ) ପ୍ରଦାନ କରିଥିଲୁ ଯହିଁରେ ସତ୍‌ପଥ ପ୍ରଦର୍ଶନ ଓ ଜ୍ୟୋତି ଥିଲା ଓ ସେ ବାଣୀର ପ୍ରତିପାଦକ ଥିଲା ଯାହା ତାହାଙ୍କ ପୂର୍ବରୁ ଆସି ସାରିଥିଲା (ଅର୍ଥାତ୍ ତୌରାତରେ ଭବିଷ୍ୟତ ବାଣୀଗୁଡ଼ିକୁ ପ୍ରତିପାଦିତ କରୁଥିଲା); ଏବଂ ତାହା ଧର୍ମଭୀରୁମାନଙ୍କ ପାଇଁ ସତ୍‌ପଥ ପ୍ରଦର୍ଶନ ଓ ସଦୁପଦେଶ ଥିଲା।

وَلْيَحْكُمْ أَهْلُ الْإِنْجِيلِ بِمَآ أَنْزَلَ اللّٰهُ فِيهِ وَمَنْ لَّمْ يَحْكُمْ بِمَآ أَنْزَلَ اللّٰهُ فَأُولٰٓئِكَ هُمُ الْفٰسِقُونَ ﴿٤٨﴾

୪୮. ଏବଂ ଇଂଜିଲର ଅନୁଗାମୀମାନଙ୍କ ପକ୍ଷରେ ଉଚିତ ହେବ ଯେ ଅଲ୍ଲାହ ଯାହା କିଛି ତହିଁରେ ଅବତୀର୍ଣ୍ଣ କରିଛନ୍ତି, ତଦନୁସାରେ ମୀମାଂସା କରନ୍ତୁ; ଏବଂ ଅଲ୍ଲାହ ଯାହା ଅବତୀର୍ଣ୍ଣ କରିଛନ୍ତି ତଦନୁସାରେ ଯେଉଁମାନେ ମୀମାଂସା ନ କରନ୍ତି, ସେମାନେ ହିଁ ବିଦ୍ରୋହୀ।

---

୧. ତୌରାତରେ ଲେଖାଅଛି ଯେ ଯଦି କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତିକୁ ହତ୍ୟାକରେ ତେବେ ହତ୍ୟାକାରୀକୁ ହତ୍ୟା କରାଯିବ। ଯଦି କେହି ତା'ର ପ୍ରତିବେଶୀକୁ ବିକଳାଙ୍ଗ କରାଇବ ତେବେ ତାକୁ ମଧ୍ୟ ବିକଳାଙ୍ଗ କରାଯିବ, ଅର୍ଥାତ୍ ଅଙ୍ଗଭଙ୍ଗ ପାଇଁ ଅଙ୍ଗଭଙ୍ଗ, ଆଖି ଫୁଟାଇବା ପାଇଁ ଆଖି ଫୁଟାଇ ଦେବା, ଦାନ୍ତ ଭାଙ୍ଗିଦେବା ପାଇଁ ଦାନ୍ତ ଭାଙ୍ଗିଦେବା ବିହିତ କରାହୋଇଛି।
(ଏକ୍ସୋଡ଼ସ୍, ୨୧:୨୩-୨୫ ଲେଭି, ୨୪:୧୯-୨୧ ଦ୍ରଷ୍ଟବ୍ୟ)।

୨. ଅର୍ଥାତ୍ ତୌରାତ ବର୍ଣ୍ଣିତ ଭବିଷ୍ୟବାଣୀକୁ ପ୍ରତିପାଦିତ କରୁଥିଲା।

وَاَنْزَلْنَآ اِلَيْكَ الْكِتٰبَ بِالْحَقِّ مُصَدِّقًا لِّمَا بَيْنَ يَدَيْهِ
مِنَ الْكِتٰبِ وَمُهَيْمِنًا عَلَيْهِ فَاحْكُمْ بَيْنَهُمْ بِمَآ اَنْزَلَ
اللّٰهُ وَلَا تَتَّبِعْ اَهْوَآءَهُمْ عَمَّا جَآءَكَ مِنَ الْحَقِّ لِكُلٍّ
جَعَلْنَا مِنْكُمْ شِرْعَةً وَّمِنْهَاجًا وَلَوْ شَآءَ اللّٰهُ لَجَعَلَكُمْ
اُمَّةً وَّاحِدَةً وَّلٰكِنْ لِّيَبْلُوَكُمْ فِيْ مَآ اٰتٰىكُمْ فَاسْتَبِقُوا
الْخَيْرٰتِ اِلَى اللّٰهِ مَرْجِعُكُمْ جَمِيْعًا فَيُنَبِّئُكُمْ بِمَا
كُنْتُمْ فِيْهِ تَخْتَلِفُوْنَ ۝٤٩

୪୯. ଏବଂ ଆମେ ତୁମ ପ୍ରତି ଏହି (ଧର୍ମ) ଗ୍ରନ୍ଥକୁ ସତ୍ୟ ସମ୍ବଳିତ କରି ଅବତୀର୍ଣ୍ଣ କରିଅଛୁ ଯାହା ପୂର୍ବବର୍ତ୍ତୀ (ଧର୍ମ) ଗ୍ରନ୍ଥର ପ୍ରତିପାଦକ ଓ ସଂରକ୍ଷକ ଅଟେ; ସୁତରାଂ ଅଲ୍ଲାହ ଯାହା (ତୁମ ପ୍ରତି) ଅବତୀର୍ଣ୍ଣ କରିଛନ୍ତି ତଦନୁସାରେ ସେମାନଙ୍କ ମଧ୍ୟରେ ମୀମାଂସା କର; ଏବଂ ତୁମ ନିକଟକୁ ଯେଉଁ ସତ୍ୟ ଆସିଅଛି, ତାହାକୁ ପରିତ୍ୟାଗ କରି ସେମାନଙ୍କର (ମନ୍ଦ) ଅଭିଳାଷକୁ ଅନୁସରଣ କର ନାହିଁ; ଆମେ ତୁମମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ପାଇଁ (ନିଜ ନିଜ ସାମର୍ଥ୍ୟ ଅନୁସାରେ ପ୍ରେରିତ[1] ଆଧ୍ୟାତ୍ମିକ) ଜଳ ପର୍ଯ୍ୟନ୍ତ ପହଞ୍ଚିବା ସକାଶେ ଛୋଟ ବା ବଡ଼ ରାସ୍ତା ନିର୍ମାଣ କରିଅଛୁ; ଏବଂ ଯଦି ଅଲ୍ଲାହ ଇଚ୍ଛା କରିଥାନ୍ତେ, ତେବେ ତୁମମାନଙ୍କୁ ଗୋଟିଏ ସଂପ୍ରଦାୟରେ ପରିଣତ କରିଥାନ୍ତେ; କିନ୍ତୁ ସେ ଏପରି କଲେ ନାହିଁ, କାରଣ ତୁମମାନଙ୍କୁ ଯାହା ଦିଆଯାଇଛି, ତଦ୍ୱାରା ତୁମମାନଙ୍କୁ ପରୀକ୍ଷା କରାଯିବ; ସୁତରାଂ ତୁମେମାନେ ସତ୍‌କାର୍ଯ୍ୟରେ ପରସ୍ପର ଠାରୁ ଆଗୁଆ ହେବାପାଇଁ ପ୍ରତିଯୋଗିତା କର, କାରଣ ତୁମ ସମସ୍ତଙ୍କୁ ଅଲ୍ଲାହଙ୍କ ନିକଟକୁ ଫେରିବାକୁ ହେବ, ସେତେବେଳେ ସେ ତୁମମାନଙ୍କୁ ସେହି ସମସ୍ତ ବିଷୟର ବାସ୍ତବତାକୁ ଜଣାଇଦେବେ ଯାହା ସଂକ୍ରାନ୍ତରେ ତୁମେମାନେ ଭିନ୍ନ ମତ ପୋଷଣ କରୁଥିଲ ।

وَاَنِ احْكُمْ بَيْنَهُمْ بِمَآ اَنْزَلَ اللّٰهُ وَلَا تَتَّبِعْ اَهْوَآءَهُمْ
وَاحْذَرْهُمْ اَنْ يَّفْتِنُوْكَ عَنْ بَعْضِ مَآ اَنْزَلَ اللّٰهُ اِلَيْكَ
فَاِنْ تَوَلَّوْا فَاعْلَمْ اَنَّمَا يُرِيْدُ اللّٰهُ اَنْ يُّصِيْبَهُمْ بِبَعْضِ
ذُنُوْبِهِمْ وَاِنَّ كَثِيْرًا مِّنَ النَّاسِ لَفٰسِقُوْنَ ۝٥٠

୫୦. ଏବଂ (ହେ ରସୁଲ !) ତୁମେ ସେମାନଙ୍କ ମଧ୍ୟରେ ସେହି ବାଣୀ ମାଧ୍ୟମରେ ମୀମାଂସା କର ଯାହା ଅଲ୍ଲାହ (ତୁମ ପ୍ରତି) ଅବତୀର୍ଣ୍ଣ କରିଛନ୍ତି ଏବଂ ତୁମେ ସେମାନଙ୍କ (ମନ୍ଦ) ଅଭିଳାଷକୁ ଅନୁସରଣ କର ନାହିଁ; ଏବଂ ସେମାନଙ୍କ ଠାରୁ ସତର୍କ ରହ ଯେପରି ସେମାନେ ତୁମକୁ ଅସୁବିଧାରେ ପକାଇ ଅଲ୍ଲାହଙ୍କ ଦ୍ୱାରା ଅବତୀର୍ଣ୍ଣ ହୋଇଥିବା ବାଣୀଠାରୁ ଦୂରକୁ ଘେନି ନ ଯାଆନ୍ତି; ଏହାପରେ ଯଦି ସେମାନେ ଫେରି ଯାଆନ୍ତି, ତେବେ ଜାଣିନିଅ ଯେ ଅଲ୍ଲାହ ସେମାନଙ୍କୁ କେତେକ ପାପ ଯୋଗୁଁ ଦଣ୍ଡିତ କରିବାକୁ ଇଚ୍ଛା କରନ୍ତି; ଏବଂ ବାସ୍ତବରେ ବହୁ ସଂଖ୍ୟକ ଲୋକ ଅଙ୍ଗୀକାର ଭଙ୍ଗକାରୀ ଅଟନ୍ତି ।

اَفَحُكْمَ الْجَاهِلِيَّةِ يَبْغُوْنَ وَمَنْ اَحْسَنُ مِنَ اللّٰهِ
حُكْمًا لِّقَوْمٍ يُّوْقِنُوْنَ ۝٥١

୫୧. ତେବେ କ'ଣ ସେମାନେ ଅଲ୍ଲାହଙ୍କର ବାଣୀ ଅବତୀର୍ଣ୍ଣ ହେବା ପୂର୍ବ ମୀମାଂସାକୁ ପସନ୍ଦ କରୁଛନ୍ତି ? କିନ୍ତୁ ବିଶ୍ୱାସକାରୀମାନଙ୍କ ନିକଟରେ ତ ଅଲ୍ଲାହଙ୍କ ଅପେକ୍ଷା ଉତ୍ତମ ମୀମାଂସାକାରୀ କେହି ନାହାନ୍ତି ।

---

୧. ଏଠାରେ ଜଣାଇ ଦିଆଯାଇଛି ଯେ ଦିବ୍ୟବାଣୀ ନିଃସୃତ ଜ୍ୟୋତିକୁ ହାସଲ କରିବା ପାଇଁ ପବିତ୍ର କୋରାନରେ ପ୍ରତ୍ୟେକ ବ୍ୟକ୍ତିର ଯୋଗ୍ୟତା ଅନୁସାରେ ଶିକ୍ଷା ରହିଅଛି ଓ ପବିତ୍ର କୋରାନ ଏକ ସ୍ୱୟଂସମ୍ପୂର୍ଣ୍ଣ ଗ୍ରନ୍ଥ ।

ରୁ : ୮

୫୨. ହେ ବିଶ୍ୱାସକାରୀମାନେ ! ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କୁ (ନିଜର) ସାହାଯ୍ୟକାରୀ ଭାବରେ ଗ୍ରହଣ କର ନାହିଁ; (କାରଣ) ସେମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କର ସାହାଯ୍ୟକାରୀ ଅଟନ୍ତି; ଏବଂ ତୁମମାନଙ୍କ ମଧ୍ୟରୁ ଯେ ସେମାନଙ୍କୁ ନିଜର ସାହାଯ୍ୟକାରୀ ଭାବେ ଗ୍ରହଣ କରିବ, ସେ ନିଶ୍ଚୟ ସେମାନଙ୍କ ମଧ୍ୟରେ (ଗଣ୍ୟ) ହେବ; ଅଲ୍ଲାହ ଅତ୍ୟାଚାରୀ ଲୋକମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରନ୍ତି ନାହିଁ।

يٰٓاَيُّهَا الَّذِيْنَ اٰمَنُوْا لَا تَتَّخِذُوا الْيَهُوْدَ وَالنَّصٰرٰٓى اَوْلِيَآءَ ۘ بَعْضُهُمْ اَوْلِيَآءُ بَعْضٍ ۗ وَمَنْ يَّتَوَلَّهُمْ مِّنْكُمْ فَاِنَّهٗ مِنْهُمْ ۗ اِنَّ اللّٰهَ لَا يَهْدِى الْقَوْمَ الظّٰلِمِيْنَ ﴿٥٢﴾

୫୩. ଯେଉଁମାନଙ୍କ ଅନ୍ତରରେ ରୋଗ ଅଛି ତୁମେ ସେମାନଙ୍କୁ ଦେଖିବ ଯେ ସେମାନେ ଏହା କହି ସେ (ଅବିଶ୍ୱାସକାରୀ)ମାନଙ୍କ ନିକଟକୁ ଧାବମାନ ହୁଅନ୍ତି, "ଆମମାନଙ୍କର ଭୟ ହେଉଛି ଯେ ଆମମାନଙ୍କ ଉପରେ କୌଣସି ବିପତ୍ତି (ନ) ଆସିଯାଉ;" ସୁତରାଂ ସମ୍ଭବତଃ ଅଲ୍ଲାହ ଶୀଘ୍ର (ତୁମମାନଙ୍କର) ବିଜୟ (ସାମଗ୍ରୀ) ବା ନିଜ ସମୀପରୁ ଅନ୍ୟ କୌଣସି ବିଷୟ (ପ୍ରକଟିତ) କରିବେ ଯଦ୍ୱାରା କି ସେମାନେ ନିଜ ଅନ୍ତରରେ ଯାହା ଗୋପନ ରଖିଛନ୍ତି ସେଥିଯୋଗୁଁ ଲଜ୍ଜିତ ହେବେ ।

فَتَرَى الَّذِيْنَ فِىْ قُلُوْبِهِمْ مَّرَضٌ يُّسَارِعُوْنَ فِيْهِمْ يَقُوْلُوْنَ نَخْشٰٓى اَنْ تُصِيْبَنَا دَآئِرَةٌ ۗ فَعَسَى اللّٰهُ اَنْ يَّاْتِىَ بِالْفَتْحِ اَوْ اَمْرٍ مِّنْ عِنْدِهٖ فَيُصْبِحُوْا عَلٰى مَآ اَسَرُّوْا فِىْٓ اَنْفُسِهِمْ نٰدِمِيْنَ ﴿٥٣﴾

୫୪. ଏବଂ ବିଶ୍ୱାସକାରୀ ଲୋକମାନେ କହିବେ, "କ'ଣ ଏମାନେ ସେହି ଲୋକ ଯେଉଁମାନେ ଦୃଢ଼ ଶପଥ କରି କହିଥିଲେ ଯେ ଆମେମାନେ ନିଶ୍ଚିତ ରୂପେ ତୁମମାନଙ୍କ ସହିତ ଅଛୁ;" ସେମାନଙ୍କର କର୍ମ ନଷ୍ଟ ହୋଇଗଲା; ସୁତରାଂ ସେମାନେ କ୍ଷତିଗ୍ରସ୍ତ ହେଲେ ।

وَيَقُوْلُ الَّذِيْنَ اٰمَنُوْٓا اَهٰٓؤُلَآءِ الَّذِيْنَ اَقْسَمُوْا بِاللّٰهِ جَهْدَ اَيْمَانِهِمْ ۙ اِنَّهُمْ لَمَعَكُمْ ؕ حَبِطَتْ اَعْمَالُهُمْ فَاَصْبَحُوْا خٰسِرِيْنَ ﴿٥٤﴾

୫୫. ହେ ବିଶ୍ୱାସକାରୀମାନେ ! ତୁମମାନଙ୍କ ମଧ୍ୟରୁ ଯେ ନିଜ ଧର୍ମରୁ ଫେରିଯିବ (ତେବେ ସେ ମନେରଖୁ ଯେ) ଅଲ୍ଲାହ (ତାହା ବଦଳରେ) ଶୀଘ୍ର ଏପରି ଏକ ସଂପ୍ରଦାୟ ପ୍ରେରଣ କରିବେ ଯେଉଁମାନଙ୍କୁ ସେ ପ୍ରେମ କରୁଥିବେ ଏବଂ ସେମାନେ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହଙ୍କୁ) ପ୍ରେମ କରୁଥିବେ; (ଏବଂ) ସେମାନେ ବିଶ୍ୱାସକାରୀମାନଙ୍କ ପ୍ରତି ଦୟାଶୀଳ ଓ ଅବିଶ୍ୱାସକାରୀମାନଙ୍କ ପ୍ରତି କଠିନ ହେବେ; ସେମାନେ ଅଲ୍ଲାହଙ୍କ ପଥରେ ଜେହାଦ କରିବେ ଏବଂ କୌଣସି ନିନ୍ଦାକାରୀର ନିନ୍ଦାକୁ ଭୟ କରିବେ ନାହିଁ; ଏହା ହିଁ ଅଲ୍ଲାହଙ୍କର କୃପା; ସେ ଯାହାକୁ ପସନ୍ଦ କରନ୍ତି (ଏହି କୃପା) ତାହାକୁ ପ୍ରଦାନ କରନ୍ତି; ଏବଂ ଅଲ୍ଲାହ ହିଁ ଅତ୍ୟନ୍ତ ଦାନଶୀଳ (ଓ) ସର୍ବଜ୍ଞ ।

يٰٓاَيُّهَا الَّذِيْنَ اٰمَنُوْا مَنْ يَّرْتَدَّ مِنْكُمْ عَنْ دِيْنِهٖ فَسَوْفَ يَاْتِى اللّٰهُ بِقَوْمٍ يُّحِبُّهُمْ وَيُحِبُّوْنَهٗٓ ۙ اَذِلَّةٍ عَلَى الْمُؤْمِنِيْنَ اَعِزَّةٍ عَلَى الْكٰفِرِيْنَ ۫ يُجَاهِدُوْنَ فِىْ سَبِيْلِ اللّٰهِ وَلَا يَخَافُوْنَ لَوْمَةَ لَآئِمٍ ۗ ذٰلِكَ فَضْلُ اللّٰهِ يُؤْتِيْهِ مَنْ يَّشَآءُ ۗ وَاللّٰهُ وَاسِعٌ عَلِيْمٌ ﴿٥٥﴾

୫୬. ତୁମମାନଙ୍କର ସାହାଯ୍ୟକାରୀ କେବଳ ଅଲ୍ଲାହ ଓ ତାହାଙ୍କର ରସୁଲ ଏବଂ ସେ ବିଶ୍ୱାସକାରୀମାନେ ଯେଉଁମାନେ ସୁଚାରୁରୂପେ ନମାଜ ପାଠକରନ୍ତି ଓ ଜକାତ ଦିଅନ୍ତି ତଥା ସଂପୂର୍ଣ୍ଣ ଏକେଶ୍ୱରବାଦୀ ଅଟନ୍ତି;

إِنَّمَا وَلِيُّكُمُ اللَّهُ وَرَسُولُهُ وَالَّذِينَ آمَنُوا الَّذِينَ يُقِيمُونَ الصَّلَاةَ وَيُؤْتُونَ الزَّكَاةَ وَهُمْ رَاكِعُونَ ﴿٥٦﴾

୫୭. ଏବଂ ଯେଉଁମାନେ ଅଲ୍ଲାହ ଓ ତାହାଙ୍କର ରସୁଲ ତଥା ବିଶ୍ୱାସକାରୀମାନଙ୍କୁ ନିଜର ସାହାଯ୍ୟକାରୀ ରୂପେ ଗ୍ରହଣ କରନ୍ତି ସେମାନେ (ନିଶ୍ଚିତ ରହନ୍ତୁ ଯେ) ଅଲ୍ଲାହଙ୍କର ଦଳ ହିଁ ବିଜୟୀ ହେବ ।

وَمَن يَتَوَلَّ اللَّهَ وَرَسُولَهُ وَالَّذِينَ آمَنُوا فَإِنَّ حِزْبَ اللَّهِ هُمُ الْغَالِبُونَ ﴿٥٧﴾

ରୁ:୯.

୫୮. ହେ ବିଶ୍ୱାସକାରୀମାନେ ! ଯେଉଁମାନଙ୍କୁ ତୁମମାନଙ୍କ ପୂର୍ବରୁ (ଧର୍ମ) ଗ୍ରନ୍ଥ ଦିଆଯାଇଥିଲା, ସେମାନଙ୍କ ମଧ୍ୟରୁ ଯେଉଁମାନେ ତୁମମାନଙ୍କର ଧର୍ମକୁ ଉପହାସ କରୁଛନ୍ତି ଓ ଖେଳ ମନେ କରୁଛନ୍ତି ସେମାନଙ୍କୁ ଏବଂ (ସେମାନଙ୍କ ଛଡ଼ା ଅନ୍ୟାନ୍ୟ) ଅବିଶ୍ୱାସକାରୀମାନଙ୍କୁ ସାହାଯ୍ୟକାରୀ ରୂପେ ଗ୍ରହଣ କର ନାହିଁ; ଏବଂ ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ, ତେବେ ଅଲ୍ଲାହଙ୍କୁ ଭୟକର ।

يَا أَيُّهَا الَّذِينَ آمَنُوا لَا تَتَّخِذُوا الَّذِينَ اتَّخَذُوا دِينَكُمْ هُزُوًا وَلَعِبًا مِّنَ الَّذِينَ أُوتُوا الْكِتَابَ مِن قَبْلِكُمْ وَالْكُفَّارَ أَوْلِيَاءَ وَاتَّقُوا اللَّهَ إِن كُنتُم مُّؤْمِنِينَ ﴿٥٨﴾

୫୯. ଏବଂ ଯେତେବେଳେ ତୁମେମାନେ ନମାଜ ପାଇଁ (ଲୋକମାନଙ୍କୁ) ଡାକ, ସେମାନେ ତାହାକୁ ଉପହାସ କରନ୍ତି ଓ (ତାହାକୁ) ଖେଳ ମନେ କରନ୍ତି; କାରଣ ସେମାନେ ଏପରି ଲୋକ ଯେଉଁମାନେ ବୁଦ୍ଧିର ପ୍ରୟୋଗ କରନ୍ତି ନାହିଁ।

وَإِذَا نَادَيْتُمْ إِلَى الصَّلَاةِ اتَّخَذُوهَا هُزُوًا وَلَعِبًا ذَٰلِكَ بِأَنَّهُمْ قَوْمٌ لَّا يَعْقِلُونَ ﴿٥٩﴾

୬୦. ତୁମେ (ସେମାନଙ୍କୁ) କୁହ, "ହେ ଗ୍ରନ୍ଥଧାରୀମାନେ ! ତୁମେମାନେ ଆମ ପ୍ରତି ଏହା ବ୍ୟତୀତ ଅନ୍ୟ କୌଣସି ଦୋଷାରୋପ କର ନାହିଁ ଯେ ଆମେମାନେ ଅଲ୍ଲାହଙ୍କ ଉପରେ ଓ ଆମମାନଙ୍କ ପ୍ରତି ଯାହା ଅବତୀର୍ଣ୍ଣ ହୋଇଛି ଓ ଆମମାନଙ୍କ ପୂର୍ବରୁ ଯାହା ଅବତୀର୍ଣ୍ଣ ହୋଇଥିଲା ତହିଁରେ ବିଶ୍ୱାସ କରୁଅଛୁ; ଏବଂ ଏଥିନିମନ୍ତେ (ଦୋଷାରୋପ କରୁଅଛ) ଯେ ତୁମମାନଙ୍କ ମଧ୍ୟରୁ ଅଧିକାଂଶ (ଅଲ୍ଲାହଙ୍କ) ଅମାନ୍ୟକାରୀ ଅଟ ।"

قُلْ يَا أَهْلَ الْكِتَابِ هَلْ تَنقِمُونَ مِنَّا إِلَّا أَنْ آمَنَّا بِاللَّهِ وَمَا أُنزِلَ إِلَيْنَا وَمَا أُنزِلَ مِن قَبْلُ وَأَنَّ أَكْثَرَكُمْ فَاسِقُونَ ﴿٦٠﴾

---

୧. ପୂର୍ବବର୍ତ୍ତୀ ଆୟତ ସଂ-୫୨ରେ ଅବିଶ୍ୱାସକାରୀ ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କ ସହିତ ବନ୍ଧୁତା ସ୍ଥାପନ କରିବାକୁ ନିଷେଧ କରାଯାଇଛି । କାରଣ ସେମାନେ ମୁସଲମାନଙ୍କ ପ୍ରତି ଶତ୍ରୁତା ଆଚରଣ କରୁଥିଲେ । ଏଠାରେ ତା'ର କାରଣ ଦର୍ଶାଯାଇଛି । କିନ୍ତୁ ସବୁ ଅବିଶ୍ୱାସକାରୀଙ୍କ ସହ କୌଣସି ପ୍ରକାରର ସମ୍ପର୍କ ନ ରଖିବାକୁ, ସେମାନଙ୍କର କଲ୍ୟାଣ ସାଧନ କରିବାକୁ ବା ସେମାନଙ୍କ ପ୍ରତି ସଦ୍‌ବ୍ୟବହାର କରିବାକୁ ମୁସଲମାନମାନଙ୍କୁ ବାରଣ କରାଯାଇ ନାହିଁ ।

قُلْ هَلْ أُنَبِّئُكُمْ بِشَرٍّ مِنْ ذَٰلِكَ مَثُوبَةً عِنْدَ اللَّهِ ۚ مَنْ لَعَنَهُ اللَّهُ وَغَضِبَ عَلَيْهِ وَجَعَلَ مِنْهُمُ الْقِرَدَةَ وَالْخَنَازِيرَ وَعَبَدَ الطَّاغُوتَ ۚ أُولَٰئِكَ شَرٌّ مَكَانًا وَأَضَلُّ عَنْ سَوَاءِ السَّبِيلِ ﴿٦١﴾

୬୧. ତୁମେ (ସେମାନଙ୍କୁ) କୁହ, ''କ'ଣ ଆମେ ତୁମମାନଙ୍କୁ ସେହି ଲୋକମାନଙ୍କ ଅବସ୍ଥା ବିଷୟରେ ଅବଗତ କରାଇବୁ ଯେଉଁମାନଙ୍କର ପୁରସ୍କାର ଅଲ୍ଲାହ୍‌ଙ୍କ ନିକଟରେ ତା'ଠାରୁ (ଅର୍ଥାତ୍ ତୁମମାନଙ୍କୁ ଅପସନ୍ଦ ହେଉଥିବା ବ୍ୟକ୍ତିଠାରୁ) ମଧ୍ୟ ନିକୃଷ୍ଟତର; ସେମାନେ ଏପରି ଲୋକ[1] ଯାହାଙ୍କୁ ଅଲ୍ଲାହ୍ ଅଭିଶପ୍ତ କରିଛନ୍ତି ଓ ଯାହାଙ୍କ ଉପରେ ସେ ନିଜର ପ୍ରକୋପ ଅବତୀର୍ଣ୍ଣ କରିଛନ୍ତି ଏବଂ ଯେଉଁମାନଙ୍କ ମଧ୍ୟରୁ (କେତେକଙ୍କୁ) ସେ ମାଙ୍କଡ଼ ଓ ଘୁଷୁରି (ସଦୃଶ) କରି ଦେଇଛନ୍ତି ଏବଂ ଯେଉଁମାନେ ସଇତାନର ଉପାସନା କରୁଛନ୍ତି ସେମାନଙ୍କ ଶେଷ ପରିଣାମ ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ ହେବ; ଏବଂ ସେମାନେ ସରଳ ମାର୍ଗରୁ ଅତି ମାତ୍ରାରେ ବିଭ୍ରାନ୍ତ ହୋଇଛନ୍ତି ।

وَإِذَا جَاءُوكُمْ قَالُوا آمَنَّا وَقَدْ دَخَلُوا بِالْكُفْرِ وَهُمْ قَدْ خَرَجُوا بِهِ ۚ وَاللَّهُ أَعْلَمُ بِمَا كَانُوا يَكْتُمُونَ ﴿٦٢﴾

୬୨. ଏବଂ ଯେତେବେଳେ ସେମାନେ ତୁମମାନଙ୍କ ପାଖକୁ ଆସନ୍ତି ସେତେବେଳେ କହନ୍ତି ଯେ ଆମେମାନେ ବିଶ୍ୱାସ କରିଅଛୁ ଅଥଚ ସେମାନେ ଅବିଶ୍ୱାସ ସହ ପ୍ରବେଶ କରନ୍ତି ଓ ତାହା ସହ ବାହାରି ଯାଆନ୍ତି; ଏବଂ ଯାହା କିଛି ସେମାନେ ଗୋପନ ରଖନ୍ତି, ଅଲ୍ଲାହ୍ ତାହାକୁ ଉତ୍ତମରୂପେ ଜାଣନ୍ତି ।

وَتَرَىٰ كَثِيرًا مِنْهُمْ يُسَارِعُونَ فِي الْإِثْمِ وَالْعُدْوَانِ وَأَكْلِهِمُ السُّحْتَ ۚ لَبِئْسَ مَا كَانُوا يَعْمَلُونَ ﴿٦٣﴾

୬୩. ଏବଂ ତୁମେ ଦେଖୁଅଛ ଯେ ସେମାନଙ୍କ ମଧ୍ୟରୁ ଅଧିକାଂଶ ପାପ, ସୀମାଲଂଘନ ଓ ଅବୈଧ ବସ୍ତୁର ଭକ୍ଷଣ (କାର୍ଯ୍ୟ)ରେ ତତ୍ପର ଅଟନ୍ତି; ସେମାନେ ଯାହା କିଛି କରୁଛନ୍ତି ତାହା ବାସ୍ତବରେ ଅତି ନିକୃଷ୍ଟ ।

لَوْلَا يَنْهَاهُمُ الرَّبَّانِيُّونَ وَالْأَحْبَارُ عَنْ قَوْلِهِمُ الْإِثْمَ وَأَكْلِهِمُ السُّحْتَ ۚ لَبِئْسَ مَا كَانُوا يَصْنَعُونَ ﴿٦٤﴾

୬୪. ପ୍ରଭୁଭକ୍ତ ଓ ବିଦ୍ବାନମାନେ କାହିଁକି ସେମାନଙ୍କୁ ପାପ କଥା କହିବାରୁ ଓ ଅବୈଧ ବସ୍ତୁ ଭକ୍ଷଣ କରିବାରୁ ବାରଣ କରୁ ନାହାନ୍ତି ? ସେମାନେ ଯାହା କିଛି କରୁଛନ୍ତି ବାସ୍ତବରେ ତାହା ଅତି ନିକୃଷ୍ଟ ।

وَقَالَتِ الْيَهُودُ يَدُ اللَّهِ مَغْلُولَةٌ ۚ غُلَّتْ أَيْدِيهِمْ وَلُعِنُوا بِمَا قَالُوا ۘ بَلْ يَدَاهُ مَبْسُوطَتَانِ يُنْفِقُ كَيْفَ يَشَاءُ ۚ وَلَيَزِيدَنَّ كَثِيرًا مِنْهُمْ مَا أُنْزِلَ إِلَيْكَ مِنْ

୬୫. ଏବଂ ଇହୁଦୀମାନେ କହନ୍ତି ଯେ ଅଲ୍ଲାହ୍‌ଙ୍କର ହାତରେ ବନ୍ଧନ ପଡ଼ିଛି; (କିନ୍ତୁ ପ୍ରକୃତରେ) ସେମାନଙ୍କର ହାତକୁ[2] ବାନ୍ଧି ଦିଆଯାଇଛି ଓ ସେମାନେ ଯାହା କିଛି କହିଛନ୍ତି ସେଥିଯୋଗୁଁ ସେମାନଙ୍କୁ ଅଭିଶାପ ଦିଆଯିବ; (ସେମାନେ ମିଥ୍ୟା କହୁଛନ୍ତି) ବାସ୍ତବରେ ତାହାଙ୍କର (ଅର୍ଥାତ୍ ଅଲ୍ଲାହ୍‌ଙ୍କର) ହାତ ପ୍ରଶସ୍ତ; ସେ ଯେପରି ପସନ୍ଦ କରନ୍ତି (ସେପରି) ବ୍ୟୟ କରନ୍ତି; ଏବଂ ତୁମ

୧. ଅର୍ଥାତ୍ ତୁମେମାନେ ଅନ୍ୟକୁ ତୁଚ୍ଛ ମନେ କରୁଅଛ କିନ୍ତୁ ବାସ୍ତବରେ ତୁମେମାନେ ନିଜେ ତୁଚ୍ଛ, ଯେଉଁମାନଙ୍କ ପ୍ରତି ସେହି ଶାସ୍ତି ଅବତୀର୍ଣ୍ଣ ହୋଇଛି ଯାହାକି ଏହି ଆୟତରେ ବର୍ଣ୍ଣନା କରାଯାଇଛି ।

୨. କୃପା ଓ ପୁରସ୍କାର ପ୍ରଦାନ କରିବା ସକାଶେ ଏକ ସାଧନ ଭାବରେ ତଥା ଜଣେ ଅପରାଧୀକୁ ଶାସ୍ତି ଦେବା ସକାଶେ ଥିବା କ୍ଷମତା ଓ ଅଧିକାରର ଏକ ପ୍ରତୀକ ଭାବରେ 'ହାତ' ବ୍ୟବହୃତ ହୁଏ । ଅଲ୍ଲାହ୍‌ଙ୍କର ଉଭୟ ହାତ ସୁପ୍ରଶସ୍ତ—ଗୋଟିକରେ ସେ ବିଶ୍ୱାସକାରୀମାନଙ୍କୁ ଅପର୍ଯ୍ୟାପ୍ତ ଦାନ କରିଥାଆନ୍ତି ଓ ଅନ୍ୟଟିରେ ସେ ଅବିଶ୍ୱାସକାରୀମାନଙ୍କୁ ସେମାନଙ୍କ ଔଦ୍ଧତ୍ୟ ସକାଶେ କଠୋର ଦଣ୍ଡ ଦେଇଥାଆନ୍ତି ।

رَبِّكَ طُغْيَانًا وَّكُفْرًا ؕ وَاَلْقَيْنَا بَيْنَهُمُ الْعَدَاوَةَ
وَالْبَغْضَآءَ اِلٰى يَوْمِ الْقِيٰمَةِ ؕ كُلَّمَآ اَوْقَدُوْا نَارًا
لِّلْحَرْبِ اَطْفَاَهَا اللّٰهُ ۙ وَيَسْعَوْنَ فِى الْاَرْضِ فَسَادًا ؕ
وَاللّٰهُ لَا يُحِبُّ الْمُفْسِدِيْنَ ﴿٦٥﴾

ପାଳନକର୍ତ୍ତାଙ୍କ ନିକଟରୁ ଯାହା କିଛି ତୁମ ପ୍ରତି ଅବତୀର୍ଣ୍ଣ ହୋଇଛି ତାହା ସେ ବାସ୍ତବରେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ବିଦ୍ରୋହ ଓ ଅବିଶ୍ୱାସ କରିବାରେ ପରିବର୍ଦ୍ଧିତ କରାଇବେ; ଏବଂ ଆମେ ସେମାନଙ୍କ ମଧ୍ୟରେ କୟାମତ ଦିବସ ପର୍ଯ୍ୟନ୍ତ ଶତ୍ରୁତା ଓ ଘୃଣାଭାବ ସଂଚାରିତ କରିଅଛୁ; ଯେବେ ବି ସେମାନେ ଯୁଦ୍ଧ ପାଇଁ କୌଣସି ପ୍ରକାରର ଅଗ୍ନି ପ୍ରଜ୍ୱଳିତ କରନ୍ତି ଅଲ୍ଲାହ ତାହାକୁ ନିର୍ବାପିତ କରନ୍ତି; ଏବଂ ସେମାନେ ପୃଥିବୀରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ଚେଷ୍ଟା କରନ୍ତି; ଏବଂ ଅଲ୍ଲାହ ବିଶୃଙ୍ଖଳାକାରୀଙ୍କୁ ପସନ୍ଦ କରନ୍ତି ନାହିଁ ।

وَلَوْ اَنَّ اَهْلَ الْكِتٰبِ اٰمَنُوْا وَاتَّقَوْا لَكَفَّرْنَا عَنْهُمْ
سَيِّاٰتِهِمْ وَلَاَدْخَلْنٰهُمْ جَنّٰتِ النَّعِيْمِ ﴿٦٦﴾

୬୬. ଏବଂ ଯଦି ଗ୍ରନ୍ଥଧାରୀମାନେ ବିଶ୍ୱାସ କରନ୍ତେ ଏବଂ ଧର୍ମଭୀରୁତା ଅବଲମ୍ବନ କରନ୍ତେ ତେବେ ଆମେ ନିଶ୍ଚୟ ସେମାନଙ୍କଠାରୁ ସେମାନଙ୍କର କୁକାର୍ଯ୍ୟଗୁଡ଼ିକୁ ଦୂର କରି ଦିଅନ୍ତୁ; ଏବଂ ସେମାନଙ୍କୁ ନିଶ୍ଚୟ ସୁଖ–ସମ୍ପଦପୂର୍ଣ୍ଣ ଉଦ୍ୟାନରେ ପ୍ରବେଶ କରାନ୍ତୁ ।

وَلَوْ اَنَّهُمْ اَقَامُوا التَّوْرٰىةَ وَالْاِنْجِيْلَ وَمَآ اُنْزِلَ
اِلَيْهِمْ مِّنْ رَّبِّهِمْ لَاَكَلُوْا مِنْ فَوْقِهِمْ وَمِنْ تَحْتِ
اَرْجُلِهِمْ ؕ مِنْهُمْ اُمَّةٌ مُّقْتَصِدَةٌ ؕ وَكَثِيْرٌ مِّنْهُمْ سَآءَ
مَا يَعْمَلُوْنَ ﴿٦٧﴾ ع

୬୭. ଏବଂ ଯଦି ସେମାନେ ତୌରାତ ଓ ଇଞ୍ଜିଲକୁ ଓ ଯାହା (କିଛି) ସେମାନଙ୍କ ନିକଟରେ ସେମାନଙ୍କର ପାଳନକର୍ତ୍ତାଙ୍କ ଠାରୁ (ଏବେ) ଅବତୀର୍ଣ୍ଣ ହୋଇଛି ତାହାକୁ ପ୍ରକାଶିତ କରୁଥାନ୍ତେ, ତେବେ ନିଶ୍ଚୟ ସେମାନେ ନିଜ ଉର୍ଦ୍ଧ୍ୱରୁ ଭକ୍ଷଣ କରନ୍ତେ ଓ ସେମାନଙ୍କ ପାଦ ତଳୁ ମଧ୍ୟ (ଭକ୍ଷଣ କରନ୍ତେ); (ଅବଶ୍ୟ) ସେମାନଙ୍କ ମଧ୍ୟରେ ଏକ ମଧ୍ୟମପନ୍ଥୀ ସଂପ୍ରଦାୟ ଅଛି, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଯାହା କରୁଛନ୍ତି ତାହା ଅତ୍ୟନ୍ତ ମନ୍ଦ ଅଟେ ।

ରୁ : ୧୦

يٰۤاَيُّهَا الرَّسُوْلُ بَلِّغْ مَآ اُنْزِلَ اِلَيْكَ مِنْ رَّبِّكَ ؕ وَاِنْ لَّمْ
تَفْعَلْ فَمَا بَلَّغْتَ رِسَالَتَهٗ ؕ وَاللّٰهُ يَعْصِمُكَ مِنَ النَّاسِ ؕ
اِنَّ اللّٰهَ لَا يَهْدِى الْقَوْمَ الْكٰفِرِيْنَ ﴿٦٨﴾

୬୮. ହେ ରସୁଲ ! ତୁମ ପାଳନକର୍ତ୍ତାଙ୍କ ଠାରୁ ତୁମ ପ୍ରତି ଯାହା (ଅର୍ଥାତ୍ ଯେଉଁ ବାଣୀ) ଅବତୀର୍ଣ୍ଣ ହୋଇଛି ତାହାକୁ (ଲୋକମାନଙ୍କ ନିକଟରେ) ପହଞ୍ଚାଇ ଦିଅ; ଏବଂ ଯଦି ତୁମେ (ଏପରି) ନ କରିବ; ତେବେ (ଧରାଯିବ ଯେ) ତୁମେ ତାହାଙ୍କର ବାର୍ତ୍ତା (ଆଦୌ) ପହଞ୍ଚାଇ ନାହିଁ; ଏବଂ ଅଲ୍ଲାହ ତୁମକୁ ଲୋକମାନଙ୍କ (ଆକ୍ରମଣ)ଠାରୁ ରକ୍ଷା କରିବେ; ଅଲ୍ଲାହ ଅବିଶ୍ୱାସକାରୀ ଲୋକମାନଙ୍କୁ କଦାପି (ସଫଳତାର) ପଥ ଦେଖାଇବେ ନାହିଁ ।

قُلْ يٰٓاَهْلَ الْكِتٰبِ لَسْتُمْ عَلٰى شَيْءٍ حَتّٰى تُقِيْمُوا التَّوْرٰىةَ وَالْاِنْجِيْلَ وَمَآ اُنْزِلَ اِلَيْكُمْ مِّنْ رَّبِّكُمْ ۗ وَلَيَزِيْدَنَّ كَثِيْرًا مِّنْهُمْ مَّآ اُنْزِلَ اِلَيْكَ مِنْ رَّبِّكَ طُغْيَانًا وَّكُفْرًا ۚ فَلَا تَاْسَ عَلَى الْقَوْمِ الْكٰفِرِيْنَ ﴿٦٩﴾

୬୯. ତୁମେ କୁହ, "ହେ ଗ୍ରନ୍ଥଧାରୀମାନେ ! ଯେ ପର୍ଯ୍ୟନ୍ତ ତୁମେମାନେ ତୌରାତ ଓ ଇଞ୍ଜିଲକୁ ଏବଂ ଯାହା କିଛି ତୁମମାନଙ୍କ ପାଳନକର୍ତ୍ତାଙ୍କଠାରୁ ତୁମମାନଙ୍କ ନିକଟରେ ଅବତୀର୍ଣ୍ଣ ହୋଇଛି ତାହାକୁ ପ୍ରକାଶ ନ କରିବ (ସେ ପର୍ଯ୍ୟନ୍ତ) ତୁମେମାନେ କୌଣସି (ଉତ୍ତମ) ବିଷୟ ଉପରେ (ପ୍ରତିଷ୍ଠିତ) ରହିବ ନାହିଁ; ଏବଂ ଯାହା କିଛି ତୁମ ପାଳନକର୍ତ୍ତାଙ୍କଠାରୁ ତୁମ ନିକଟରେ ଅବତୀର୍ଣ୍ଣ ହୋଇଛି ତାହା ସେମାନଙ୍କ ମଧ୍ୟରୁ ଅନେକଙ୍କୁ ବିଦ୍ରୋହ ଓ ଅବିଶ୍ୱାସ କରିବାରେ ନିଶ୍ଚୟ ପରିବର୍ଦ୍ଧିତ କରିଦେବ; ସୁତରାଂ ତୁମେ ଏହି ଅବିଶ୍ୱାସକାରୀ ସଂପ୍ରଦାୟ ପାଇଁ ଦୁଃଖ କର ନାହିଁ ।

اِنَّ الَّذِيْنَ اٰمَنُوْا وَالَّذِيْنَ هَادُوْا وَالصّٰبِـُٔوْنَ وَالنَّصٰرٰى مَنْ اٰمَنَ بِاللّٰهِ وَالْيَوْمِ الْاٰخِرِ وَعَمِلَ صَالِحًا فَلَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ ﴿٧٠﴾

୭୦. ଯେଉଁମାନେ ବିଶ୍ୱାସକାରୀ ଓ ଯେଉଁମାନେ ଇହୁଦୀ ଏବଂ ସାବି[୧] ଓ ଖ୍ରୀଷ୍ଟିୟାନ, (ଏମାନଙ୍କ ମଧ୍ୟରୁ) ଯେଉଁମାନେ ଅଲ୍ଲାହ ଓ ଅନ୍ତିମ ଦିବସ ଉପରେ ପ୍ରକୃତରେ ବିଶ୍ୱାସ କରିଛନ୍ତି ଏବଂ ସତ୍‌କାର୍ଯ୍ୟ କରିଛନ୍ତି, ସେମାନଙ୍କର (ଭବିଷ୍ୟତ ପାଇଁ) କୌଣସି ଭୟ ନାହିଁ[୨] କି (ଅତୀତ ପାଇଁ) ସେମାନେ ଦୁଃଖିତ ହେବେ ନାହିଁ ।

لَقَدْ اَخَذْنَا مِيْثَاقَ بَنِيْٓ اِسْرَآءِيْلَ وَاَرْسَلْنَآ اِلَيْهِمْ رُسُلًا ۗ كُلَّمَا جَآءَهُمْ رَسُوْلٌۢ بِمَا لَا تَهْوٰٓى اَنْفُسُهُمْ ۙ فَرِيْقًا كَذَّبُوْا وَفَرِيْقًا يَّقْتُلُوْنَ ﴿٧١﴾

୭୧. ଆମେ ବାସ୍ତବରେ ଇସ୍ରାଇଲୀୟ ସନ୍ତାନମାନଙ୍କଠାରୁ ଦୃଢ଼ ଅଙ୍ଗୀକାର ଗ୍ରହଣ କରିଥିଲୁ ଓ ସେମାନଙ୍କ ନିକଟକୁ ଅନେକ ରସୁଲ ପ୍ରେରଣ କରିଥିଲୁ; ଯେବେ ବି ସେମାନଙ୍କ ନିକଟକୁ କୌଣସି ରସୁଲ ତାହାକୁ (ଅର୍ଥାତ୍ ସେହି ଶିକ୍ଷାକୁ) ଘେନି ଆସିଥିଲେ ଯାହାକୁ ସେମାନଙ୍କ ଅନ୍ତରାତ୍ମା ପସନ୍ଦ କରୁ ନ ଥିଲା ତେବେ, କେତେକଙ୍କୁ ସେମାନେ ମିଥ୍ୟାବାଦୀ କହିଥିଲେ ଓ ଅନ୍ୟ କେତେକଙ୍କୁ ସେମାନେ ହତ୍ୟା କରିବାକୁ ଇଚ୍ଛା କରିଥିଲେ ।

---

୧. ଯେଉଁ ସବୁ ପ୍ରାଚୀନ ଆରବ ଦେଶୀୟ ଗାଥା ହଦିସରେ ମଧ୍ୟ ବର୍ଣ୍ଣିତ ହୋଇଛି ସେଥିରୁ ପ୍ରତୀତ ହୁଏ ଯେ ଯେଉଁ ବ୍ୟକ୍ତି ଖ୍ରୀଷ୍ଟିୟାନ ବା ଇହୁଦୀ ନ ଥାଇ ମଧ୍ୟ ନିଜକୁ ଗ୍ରନ୍ଥଧାରୀ କହୁଥିଲା ତାହାକୁ ଆରବର ଲୋକମାନେ 'ସାବି' କହୁଥିଲେ । ତେଣୁ ଯେଉଁ ବ୍ୟକ୍ତି ଇସଲାମ ଧର୍ମ ଗ୍ରହଣ କରୁଥିଲା ତାକୁ ମକ୍କାର ଲୋକମାନେ ସାବି ନାମରେ ଅଭିହିତ କରୁଥିଲେ । ଗବେଷଣାରୁ ଜଣାଯାଏ ଯେ ହର୍‌ରାନ ନାମକ ସ୍ଥାନ ସହିତ ସାବିମାନଙ୍କର ସମ୍ପର୍କ ଥିଲା । ସେହି ସ୍ଥାନ ଉର୍-ପାଲେଷ୍ଟାଇନ ମାର୍ଗ ପାର୍ଶ୍ୱରେ ଅବସ୍ଥିତ । ଯେହେତୁ ସେମାନଙ୍କ ଚାଲିଚଳଣ ଓ ଆଚାର ବ୍ୟବହାର ଆରବ ଦେଶର ଲୋକମାନଙ୍କ ସଦୃଶ ଥିଲା ତେଣୁ ଏହା ବିଶ୍ୱାସ କରାଯାଏ ଯେ ସେମାନେ ଆଦ ସମ୍ପ୍ରଦାୟର ଲୋକ ଏବଂ ଇବ୍ରାହିମଙ୍କ ବଂଶଧରମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏଥିଯୋଗୁଁ ସେମାନେ ଅନିର୍ଦ୍ଦିଷ୍ଟ ଭାବରେ ଧର୍ମଗ୍ରନ୍ଥ ଓ ଅବତାରମାନଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ ।

୨. ଏଠାରେ, ଚିନ୍ତା ଓ ଭୟରୁ ସୁରକ୍ଷିତ ରହିବା ଧର୍ମ ବିଶ୍ୱାସର ଏକ ଲକ୍ଷଣ ବୋଲି ସ୍ଥିର କରାଯାଇଛି । ଅତଏବ ଇହୁଦୀ, ଖ୍ରୀଷ୍ଟିୟାନ ଓ ସାବିମାନେ ଯେ ବିଶ୍ୱାସକାରୀ, ତାହା ଏହି ଆୟତର ଅର୍ଥ ନୁହେଁ । ବରଂ ଏହାର ଅର୍ଥ ହେଉଛି ଯେ କେବଳ ବଚନରେ ବିଶ୍ୱାସକାରୀ ବୋଲାଉଥିବା ଯଥେଷ୍ଟ ନୁହେଁ । ଏମାନେ ସବୁ କେବଳ ବଚନରେ ବିଶ୍ୱାସକାରୀ ହୋଇଥିବା ବଖାଣନ୍ତି । ଅଥଚ ଅଲ୍ଲାହ ସେମାନଙ୍କ ଧର୍ମ ବିଶ୍ୱାସକୁ ଯେ ସ୍ୱୀକାର କରିଛନ୍ତି ଏ ବିଷୟରେ ସେମାନେ କୌଣସି ପ୍ରମାଣ ଉପସ୍ଥାପନ କରିନାହାନ୍ତି । ଅଲ୍ଲାହଙ୍କ ଅନୁଗ୍ରହ ଲାଭକରି ପ୍ରକୃତ ବିଶ୍ୱାସକାରୀ କୌଣସି ଭବିଷ୍ୟତ ଭୟର ଶିକାର ହୁଏ ନାହିଁ କି ଅତୀତ ଦୋଷତ୍ରୁଟି ପାଇଁ ଚିନ୍ତିତ ହୁଏ ନାହିଁ—ଏହା ହିଁ ତାହାଙ୍କ ପ୍ରକୃତିର ଲକ୍ଷଣ । ସୁତରାଂ ଯେଉଁ ବ୍ୟକ୍ତି ଏପରି ଚିହ୍ନ ବା ସନ୍ତୋଷ ହାସଲ କରିବ ସେ ହିଁ ପ୍ରକୃତ ବିଶ୍ୱାସକାରୀ ଏବଂ ଯେଉଁ ବ୍ୟକ୍ତିକୁ ସେପରି ସନ୍ତୋଷ ମିଳିବ ନାହିଁ ସେ ନିଜକୁ ଯେତେ ବଡ଼ ବିଶ୍ୱାସକାରୀ କୁହାଇ ହେଉଥିଲେ ମଧ୍ୟ ଅଲ୍ଲାହଙ୍କ ନିକଟରେ ପ୍ରକୃତ ବିଶ୍ୱାସକାରୀ ନୁହେଁ ।

وَحَسِبُوٓا أَلَّا تَكُونَ فِتْنَةٌ فَعَمُوا وَصَمُّوا ثُمَّ تَابَ ٱللَّهُ عَلَيْهِمْ ثُمَّ عَمُوا وَصَمُّوا كَثِيرٌ مِّنْهُمْ ۚ وَٱللَّهُ بَصِيرٌۢ بِمَا يَعْمَلُونَ ﴿٧٢﴾

୭୨. ଏବଂ ସେମାନେ ଭାବିଥିଲେ ଯେ (ଏହାଦ୍ୱାରା) କୌଣସି ବିଶୃଙ୍ଖଳା ହେବ ନାହିଁ; ତେଣୁ ସେମାନେ ଅନ୍ଧ ଓ ବଧିର ହୋଇଗଲେ; ତଥାପି ଅଲ୍ଲାହ୍ ସେମାନଙ୍କ ପ୍ରତି କରୁଣାପୂର୍ଣ୍ଣ ଦୃଷ୍ଟି ଦେଲେ; କିନ୍ତୁ ଏହା ସତ୍ତ୍ୱେ ସେମାନଙ୍କ ମଧ୍ୟରୁ ଅନେକ ଜାଣିଶୁଣି ଅନ୍ଧ ଓ ବଧିର ହୋଇ ରହିଲେ; ଏବଂ ସେମାନେ ଯାହା କିଛି କରୁଛନ୍ତି ଅଲ୍ଲାହ୍ ତାହାକୁ ଦେଖୁଛନ୍ତି ।

لَقَدْ كَفَرَ ٱلَّذِينَ قَالُوٓا إِنَّ ٱللَّهَ هُوَ ٱلْمَسِيحُ ٱبْنُ مَرْيَمَ ۖ وَقَالَ ٱلْمَسِيحُ يَٰبَنِىٓ إِسْرَٰٓءِيلَ ٱعْبُدُوا ٱللَّهَ رَبِّى وَرَبَّكُمْ ۖ إِنَّهُۥ مَن يُشْرِكْ بِٱللَّهِ فَقَدْ حَرَّمَ ٱللَّهُ عَلَيْهِ ٱلْجَنَّةَ وَمَأْوَىٰهُ ٱلنَّارُ ۖ وَمَا لِلظَّٰلِمِينَ مِنْ أَنصَارٍ ﴿٧٣﴾

୭୩. ଯେଉଁ ଲୋକମାନେ କହନ୍ତି, "ବାସ୍ତବରେ ଅଲ୍ଲାହ୍ ହିଁ ମରିୟମ-ନନ୍ଦନ ମସିହ,ସେମାନେ ନିଶ୍ଚୟ ଅବିଶ୍ୱାସକାରୀ ଅଟନ୍ତି;" ଏବଂ ମସିହ କହିଥିଲେ, "ହେ ଇସ୍ରାଇଲୀୟ ସନ୍ତାନମାନେ ! ତୁମେମାନେ ଆମର ପାଳନକର୍ତ୍ତା ଓ ତୁମମାନଙ୍କର ପାଳନକର୍ତ୍ତା ଅଲ୍ଲାହ୍‌ଙ୍କର ଉପାସନା କର;" ବାସ୍ତବରେ ଯେ କେହି ଅଲ୍ଲାହ୍‌ଙ୍କ ସହିତ ଅନ୍ୟକୁ ସମକକ୍ଷ କରେ, ତେବେ, (ଜାଣିରଖ ଯେ) ଅଲ୍ଲାହ୍ ତାହା ପାଇଁ ବୈକୁଣ୍ଠକୁ ନିଷେଧ କରିଛନ୍ତି ଓ ତାହାର ବାସସ୍ଥାନ ନରକ ହେବ; ଓ ଅତ୍ୟାଚାରୀମାନଙ୍କର କେହି ସାହାଯ୍ୟକାରୀ ହେବେ ନାହିଁ ।

لَّقَدْ كَفَرَ ٱلَّذِينَ قَالُوٓا إِنَّ ٱللَّهَ ثَالِثُ ثَلَٰثَةٍ ۘ وَمَا مِنْ إِلَٰهٍ إِلَّآ إِلَٰهٌ وَٰحِدٌ ۚ وَإِن لَّمْ يَنتَهُوا عَمَّا يَقُولُونَ لَيَمَسَّنَّ ٱلَّذِينَ كَفَرُوا مِنْهُمْ عَذَابٌ أَلِيمٌ ﴿٧٤﴾

୭୪. ଯେଉଁ ଲୋକମାନେ ଏପରି କହନ୍ତି ଯେ ବାସ୍ତବରେ ଅଲ୍ଲାହ୍ ତିନି ଜଣଙ୍କ[୧] ମଧ୍ୟରୁ ଜଣେ, ନିଶ୍ଚୟ ସେମାନେ ଅବିଶ୍ୱାସକାରୀ ଅଟନ୍ତି; ଏବଂ ଏକମାତ୍ର ଉପାସ୍ୟ (ଅଲ୍ଲାହ୍‌ଙ୍କ) ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ଏବଂ ସେମାନେ ଯାହା କିଛି କହନ୍ତି ଯଦି ସେଥିରୁ କ୍ଷାନ୍ତ ନ ହୁଅନ୍ତି, ତେବେ ସେମାନଙ୍କ ମଧ୍ୟରେ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନଙ୍କୁ ନିଶ୍ଚୟ ଯନ୍ତ୍ରଣାଦାୟକ ଶାସ୍ତି ମିଳିବ ।

أَفَلَا يَتُوبُونَ إِلَى ٱللَّهِ وَيَسْتَغْفِرُونَهُۥ ۚ وَٱللَّهُ غَفُورٌ رَّحِيمٌ ﴿٧٥﴾

୭୫. ତେବେ କ'ଣ ସେମାନେ ଅଲ୍ଲାହ୍‌ଙ୍କ ନିକଟରେ ନତମସ୍ତକ ହେବେ ନାହିଁ ଓ ତାହାଙ୍କ ନିକଟରେ (ନିଜ ପାପ ପାଇଁ) କ୍ଷମା ମାଗିବେ ନାହିଁ ? ଅଥଚ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦାକରୁଣାମୟ ।

---

୧. ଏଠାରେ ଖ୍ରୀଷ୍ଟିୟାନମାନଙ୍କର ତ୍ରିତ୍ୱବାଦ (Doctrine of Trinity) ସମ୍ବନ୍ଧରେ ସୂଚନା ଦିଆଯାଇଛି । ସେମାନେ ଈଶ୍ୱରଙ୍କୁ ତିନି ଭାଗରେ ବିଭକ୍ତ କରିଛନ୍ତି, ଯଥା- ପିତା, ପୁତ୍ର ଓ ପବିତ୍ର ଆତ୍ମା । ତିନିହେଁ ଏକତ୍ର ବିଦ୍ୟମାନ ଓ ସବୁମତେ ପରସ୍ପର ସହିତ ସମାନ, ତିନିହେଁ ମିଳିତ ଭାବେ ଏକ ହେଲେ ହେଁ ତଥାପି ତିନି । ବାସ୍ତବରେ ଏହା ଏକ ରହସ୍ୟାବୃତ ଓ ଦୁର୍ବୋଧ୍ୟ ତତ୍ତ୍ୱ ।

مَا الْمَسِيحُ ابْنُ مَرْيَمَ إِلَّا رَسُولٌ قَدْ خَلَتْ مِنْ قَبْلِهِ الرُّسُلُ وَأُمُّهُ صِدِّيقَةٌ كَانَا يَأْكُلَانِ الطَّعَامَ انْظُرْ كَيْفَ نُبَيِّنُ لَهُمُ الْآيَاتِ ثُمَّ انْظُرْ أَنَّى يُؤْفَكُونَ ﴿٧٦﴾

୭୬. ମରିୟମ-ନନ୍ଦନ ମସିହ କେବଳ ଜଣେ ରସୁଲ ଥିଲେ; ତାହାଙ୍କ ପୂର୍ବରୁ ରସୁଲମାନେ (ମଧ୍ୟ) ମୃତ୍ୟୁବରଣ[1] କରିଛନ୍ତି; ଏବଂ ତାହାଙ୍କର ମାତା ଜଣେ ଧାର୍ମିକ ମହିଳା ଥିଲେ; ସେମାନେ ଦୁହେଁ ଆହାର ଭୋଜନ[2] କରୁଥିଲେ; ଦେଖ, ଆମ୍ଭେ କିପରି ସେମାନଙ୍କ (କଲ୍ୟାଣ) ପାଇଁ ନିଦର୍ଶନମାନ ବର୍ଣ୍ଣନା କରୁଅଛୁ; ପୁଣି ଦେଖ, ସେ (ଲୋକ)ମାନଙ୍କ ମନୋଭାବ କିପରି ବଦଳାଇ ଦିଆଯାଉଅଛି ।

قُلْ أَتَعْبُدُونَ مِنْ دُونِ اللَّهِ مَا لَا يَمْلِكُ لَكُمْ ضَرًّا وَلَا نَفْعًا وَاللَّهُ هُوَ السَّمِيعُ الْعَلِيمُ ﴿٧٧﴾

୭୭. ତୁମ୍ଭେ (ସେମାନଙ୍କୁ) କୁହ, "ତୁମେମାନେ କ'ଣ ଅଲ୍ଲାହଙ୍କୁ ପରିତ୍ୟାଗ କରି ସେପରି ବସ୍ତୁକୁ ପୂଜା କରୁଅଛ ଯାହାର ତୁମମାନଙ୍କ ପ୍ରତି କୌଣସି କ୍ଷତି ବା ଲାଭ କରିବାର ସାମର୍ଥ୍ୟ ନାହିଁ?" ଏବଂ ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

قُلْ يَا أَهْلَ الْكِتَابِ لَا تَغْلُوا فِي دِينِكُمْ غَيْرَ الْحَقِّ وَلَا تَتَّبِعُوا أَهْوَاءَ قَوْمٍ قَدْ ضَلُّوا مِنْ قَبْلُ وَأَضَلُّوا كَثِيرًا وَضَلُّوا عَنْ سَوَاءِ السَّبِيلِ ﴿٧٨﴾

୭୮. ତୁମ୍ଭେ କୁହ, ହେ ଗ୍ରନ୍ଥଧାରୀମାନେ ! ତୁମେମାନେ ନିଜ ଧର୍ମ ସଂକ୍ରାନ୍ତରେ ଅଯଥାରେ ସୀମାଲଂଘନ କର ନାହିଁ; ଏବଂ (ତୁମେମାନେ) ସେହି ଲୋକମାନଙ୍କ ଅଭିଳାଷର ଅନୁସରଣ କର ନାହିଁ ଯେଉଁମାନେ ଏଥି ପୂର୍ବରୁ (ନିଜେ) ପଥଭ୍ରଷ୍ଟ ହୋଇଛନ୍ତି ଏବଂ ସରଳ ମାର୍ଗରୁ ବିଭ୍ରାନ୍ତ ହୋଇଛନ୍ତି ।[3]

ରୁ : ୧୧

لُعِنَ الَّذِينَ كَفَرُوا مِنْ بَنِي إِسْرَائِيلَ عَلَىٰ لِسَانِ دَاوُودَ وَعِيسَى ابْنِ مَرْيَمَ ذَٰلِكَ بِمَا عَصَوْا وَكَانُوا يَعْتَدُونَ ﴿٧٩﴾

୭୯. ଇସ୍ରାଇଲୀୟ ସନ୍ତାନମାନଙ୍କ ମଧ୍ୟରୁ ଯେଉଁମାନେ ଅବିଶ୍ୱାସ କରିଥିଲେ ସେମାନଙ୍କୁ ଦାଉଦ ଓ ମରିୟମ-ନନ୍ଦନ ଇସାଙ୍କ ମୁଖରୁ ଅଭିଶାପ ଦିଆଯାଇ ଥିଲା କାରଣ ସେମାନେ ଅବଜ୍ଞା କରିଥିଲେ ଓ ସୀମା ଲଂଘନ କରିଥିଲେ ।

---

୧. ଏହି ଆୟତ୍ ଯୀଶୁଙ୍କ ମୃତ୍ୟୁକୁ ପ୍ରମାଣିତ କରୁଛି, କାରଣ ପବିତ୍ର କୋରାନରେ ଅନ୍ୟତ୍ର ବର୍ଣ୍ଣନା କରାଯାଇଛି ଯେ ହଜରତ ମହମ୍ମଦଙ୍କ ପୂର୍ବରୁ ଆବିର୍ଭାବ ହୋଇଥିବା ସବୁ ନବି ମୃତ୍ୟୁ ବରଣ କରିଛନ୍ତି (୩ : ୧୪୫ ଦ୍ରଷ୍ଟବ୍ୟ) ।

୨. ଯୀଶୁ ଯେ ଈଶ୍ୱର ନ ଥିଲେ ଏ ବିଷୟର ପ୍ରମାଣ ହେଉଛି କି ସେ ଭୋଜନ କରୁଥିଲେ (ମାର୍କ ୧୪:୧୮ ଦ୍ରଷ୍ଟବ୍ୟ) । ଏହି ଆୟତରେ ଯୀଶୁଙ୍କ ଈଶ୍ୱରତ୍ୱ ବିରୁଦ୍ଧରେ ଅନେକ ପ୍ରମାଣ ଦିଆଯାଇଛି :(କ) ସେ କୌଣସି ପ୍ରକାରେ ମଧ୍ୟ ଅନ୍ୟାନ୍ୟ ଅବତାରଙ୍କ ତୁଳନାରେ ଅଧିକ ନୁହନ୍ତି (ଖ) ସେ ନାରୀ ଗର୍ଭରୁ ଜନ୍ମଗ୍ରହଣ କରିଛନ୍ତି (ଗ) ସେ ଅନ୍ୟମାନଙ୍କ ସଦୃଶ କ୍ଷୁଧା ଓ ତୃଷା ଆଦି ସ୍ୱାଭାବିକ ନିୟମର ଅଧୀନ ।

୩. ଅର୍ଥାତ୍ ପ୍ରମାଣ ଥାଇ ମଧ୍ୟ ଦୁରାଚାରୀ ପଣ୍ଡିତମାନେ ଲୋକମାନଙ୍କୁ ଭୁଲ ବାଟରେ ପରିଚାଳିତ କରାନ୍ତି ।

୮୦. ସେମାନେ ଯେଉଁ ଅଶୋଭନୀୟ କର୍ମ କରୁଥିଲେ ସେ ବିଷୟରେ କେହି କାହାକୁ ବାରଣ କରୁ ନ ଥିଲେ; ସେମାନେ ଯାହା କରୁଥିଲେ ବାସ୍ତବରେ ତାହା ଅତ୍ୟନ୍ତ ଗର୍ହିତ ।

كَانُوْا لَا يَتَنَاهَوْنَ عَنْ مُّنْكَرٍ فَعَلُوْهُ ۭ لَبِئْسَ مَا كَانُوْا يَفْعَلُوْنَ ٨٠

୮୧. ତୁମେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଦେଖିବ ଯେ ସେମାନେ ଅବିଶ୍ୱାସକାରୀମାନଙ୍କୁ ସାହାଯ୍ୟକାରୀ ରୂପେ ଗ୍ରହଣ କରିଛନ୍ତି; ସେମାନେ ନିଜ ସକାଶେ ଯାହା କିଛି ସ୍ୱେଚ୍ଛାରେ[1] ପୂର୍ବରୁ ପଠାଇଛନ୍ତି ତାହା ଅତ୍ୟନ୍ତ ଗର୍ହିତ; ସେଥିଯୋଗୁଁ ଅଲ୍ଲାହ ସେମାନଙ୍କ ପ୍ରତି ଅସନ୍ତୁଷ୍ଟ ହୋଇଛନ୍ତି ଏବଂ ସେମାନେ ଶାସ୍ତିରେ ପଡ଼ି ରହିବେ ।

تَرٰى كَثِيْرًا مِّنْهُمْ يَتَوَلَّوْنَ الَّذِيْنَ كَفَرُوْا ۭ لَبِئْسَ مَا قَدَّمَتْ لَهُمْ اَنْفُسُهُمْ اَنْ سَخِطَ اللّٰهُ عَلَيْهِمْ وَفِي الْعَذَابِ هُمْ خٰلِدُوْنَ ٨١

୮୨. ଏବଂ ଯଦି ସେମାନେ ଅଲ୍ଲାହଙ୍କ ପ୍ରତି ଓ (ଏହି) ନବିଙ୍କ ପ୍ରତି ଓ ତାହାଙ୍କ ନିକଟରେ ଯାହା ଅବତୀର୍ଣ୍ଣ ହୋଇଛି ତାହା ପ୍ରତି ବିଶ୍ୱାସ କରିଥାଆନ୍ତେ ତେବେ ସେମାନେ ସେମାନଙ୍କୁ ନିଜର ସାହାଯ୍ୟକାରୀ ଭାବରେ ଗ୍ରହଣ କରି ନ ଥାଆନ୍ତେ, କିନ୍ତୁ ସେମାନଙ୍କ ମଧ୍ୟରୁ ଅନେକ ଅମାନ୍ୟକାରୀ ଅଟନ୍ତି ।

وَلَوْ كَانُوْا يُؤْمِنُوْنَ بِاللّٰهِ وَالنَّبِيِّ وَمَآ اُنْزِلَ اِلَيْهِ مَا اتَّخَذُوْهُمْ اَوْلِيَاۗءَ وَلٰكِنَّ كَثِيْرًا مِّنْهُمْ فٰسِقُوْنَ ٨٢

୮୩. ତୁମେ ଇହୁଦୀ ଓ ମୁସରିକମାନଙ୍କୁ ବିଶ୍ୱାସକାରୀମାନଙ୍କ ବିରୁଦ୍ଧରେ ସବୁଠାରୁ ବଳି ତୀବ୍ର ଶତ୍ରୁତା କରୁଥିବାର ଦେଖିବାକୁ ପାଇବ; ଏବଂ ଯେଉଁମାନେ କହନ୍ତି, ''ଆମେମାନେ ଖ୍ରୀଷ୍ଟିୟାନ; ତୁମେ ସେମାନଙ୍କୁ ନିଶ୍ଚୟ ବିଶ୍ୱାସକାରୀମାନଙ୍କ ସହିତ ବନ୍ଧୁତା ସ୍ଥାପନ କରିବାରେ ଅଧିକ ନିକଟବର୍ତ୍ତୀ ପାଇବ; କାରଣ ସେମାନଙ୍କ ମଧ୍ୟରେ କେତେକ ବିଦ୍ୱାନ ଓ ସାଧୁସନ୍ଥ ଅଛନ୍ତି ଏବଂ ସେମାନେ ଅହଙ୍କାରୀ ନୁହନ୍ତି ।''

لَتَجِدَنَّ اَشَدَّ النَّاسِ عَدَاوَةً لِّلَّذِيْنَ اٰمَنُوا الْيَهُوْدَ وَالَّذِيْنَ اَشْرَكُوْا ۚ وَلَتَجِدَنَّ اَقْرَبَهُمْ مَّوَدَّةً لِّلَّذِيْنَ اٰمَنُوا الَّذِيْنَ قَالُوْٓا اِنَّا نَصٰرٰى ۭ ذٰلِكَ بِاَنَّ مِنْهُمْ قِسِّيْسِيْنَ وَرُهْبَانًا وَّاَنَّهُمْ لَا يَسْتَكْبِرُوْنَ ٨٣

---

୧. ଅର୍ଥାତ୍ ଅଲ୍ଲାହଙ୍କ ଅସନ୍ତୋଷ, ଯାହା ମାନବ ନିଜ ହିତାର୍ଥେ ପରଲୋକ ପାଇଁ ସଞ୍ଚୟ କରିପାରିବ ନାହିଁ ।

## ଭାଗ–୭

୮୪. ଏବଂ ଏହି ରସୁଲଙ୍କ ନିକଟରେ ଯାହା ଅବତୀର୍ଣ୍ଣ ହୋଇଛି ତାହାକୁ ଯେତେବେଳେ ସେମାନେ ଶୁଣନ୍ତି (ସେତେବେଳେ) ତୁମେ ଦେଖିବ ଯେ ଯେଉଁ ସତ୍ୟକୁ ସେମାନେ ଚିହ୍ନି ପାରିଛନ୍ତି ସେଥିଯୋଗୁଁ ସେମାନଙ୍କ ଆଖିରୁ ଲୁହ ଝରୁଛି; (ଏବଂ) ସେମାନେ କହନ୍ତି, "ହେ ଆମମାନଙ୍କର ପାଳନକର୍ତ୍ତା ! ଆମେମାନେ ବିଶ୍ୱାସ କରିଅଛୁ; ସୁତରାଂ ଆମମାନଙ୍କ ନାମ ସାକ୍ଷୀମାନଙ୍କ ସହିତ ଲିପିବଦ୍ଧ କରିନିଅ ।"

وَإِذَا سَمِعُوا مَا أُنْزِلَ إِلَى الرَّسُولِ تَرَى أَعْيُنَهُمْ تَفِيضُ مِنَ الدَّمْعِ مِمَّا عَرَفُوا مِنَ الْحَقِّ ۚ يَقُولُونَ رَبَّنَا آمَنَّا فَاكْتُبْنَا مَعَ الشَّاهِدِينَ ﴿٨٣﴾

୮୫. "ଏବଂ (ସେମାନେ କହୁଛନ୍ତି) ଆମମାନଙ୍କର ଏପରି କ'ଣ ହୋଇଛି ଯେ ଆମେମାନେ ଅଲ୍ଲାହଙ୍କଠାରେ ଓ ଆମମାନଙ୍କ ନିକଟକୁ ଆସିଥିବା ସତ୍ୟ ଉପରେ ବିଶ୍ୱାସ ନ କରିବୁ ଅଥଚ ଆମେମାନେ ଇଚ୍ଛା କରୁଅଛୁ ଯେ ଆମମାନଙ୍କର ପାଳନକର୍ତ୍ତା ଆମମାନଙ୍କୁ ସତ୍ୟନିଷ୍ଠ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ କରନ୍ତୁ ।"

وَمَا لَنَا لَا نُؤْمِنُ بِاللَّهِ وَمَا جَاءَنَا مِنَ الْحَقِّ وَنَطْمَعُ أَنْ يُدْخِلَنَا رَبُّنَا مَعَ الْقَوْمِ الصَّالِحِينَ ﴿٨٤﴾

୮୬. ସୁତରାଂ ସେମାନେ ଯାହା କହିଥିଲେ ତାହାର ପ୍ରତିଦାନ ସ୍ୱରୂପ ଅଲ୍ଲାହ ସେମାନଙ୍କୁ ସେ ବୈକୁଣ୍ଠ ପ୍ରଦାନ କରିବେ ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ; ସେଠାରେ ସେମାନେ ରହି ଯିବେ; ଏବଂ ଏହା ପୁଣ୍ୟବାନ୍‌ମାନଙ୍କର ପ୍ରତିଦାନ ଅଟେ ।

فَأَثَابَهُمُ اللَّهُ بِمَا قَالُوا جَنَّاتٍ تَجْرِي مِنْ تَحْتِهَا الْأَنْهَارُ خَالِدِينَ فِيهَا ۚ وَذَٰلِكَ جَزَاءُ الْمُحْسِنِينَ ﴿٨٥﴾

୮୭. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଆମର ନିଦର୍ଶନଗୁଡିକୁ ଅଗ୍ରାହ୍ୟ କରିଛନ୍ତି ସେମାନେ ନରକବାସୀ ଅଟନ୍ତି ।

وَالَّذِينَ كَفَرُوا وَكَذَّبُوا بِآيَاتِنَا أُولَٰئِكَ أَصْحَابُ الْجَحِيمِ ﴿٨٦﴾

### ରୁ: ୧୨

୮୮. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ ତୁମମାନଙ୍କ ପାଇଁ ଯାହା କିଛି ବୈଧ କରିଛନ୍ତି ତନ୍ମଧ୍ୟରୁ ବିଶୁଦ୍ଧ (ବସ୍ତୁ) କୁ ଅବୈଧ ସାବ୍ୟସ୍ତ କର ନାହିଁ ଏବଂ ସୀମାଲଂଘନ କରନାହିଁ ; ଅଲ୍ଲାହ ବାସ୍ତବରେ ସୀମା ଲଂଘନକାରୀଙ୍କୁ ପସନ୍ଦ କରନ୍ତି ନାହିଁ ।

يَا أَيُّهَا الَّذِينَ آمَنُوا لَا تُحَرِّمُوا طَيِّبَاتِ مَا أَحَلَّ اللَّهُ لَكُمْ وَلَا تَعْتَدُوا ۚ إِنَّ اللَّهَ لَا يُحِبُّ الْمُعْتَدِينَ ﴿٨٧﴾

୮୯. ଏବଂ ଅଲ୍ଲାହ ତୁମମାନଙ୍କୁ ଯାହା କିଛି ଦେଇଛନ୍ତି ତନ୍ମଧ୍ୟରୁ ବୈଧ ଓ ବିଶୁଦ୍ଧ ବସ୍ତୁକୁ ଭକ୍ଷଣ କର ଏବଂ ଅଲ୍ଲାହଙ୍କୁ ଭୟ କର ଯାହାଙ୍କୁ ତୁମେମାନେ ବିଶ୍ୱାସ କରୁଅଛ ।

وَكُلُوا مِمَّا رَزَقَكُمُ اللَّهُ حَلَالًا طَيِّبًا ۚ وَاتَّقُوا اللَّهَ الَّذِي أَنْتُمْ بِهِ مُؤْمِنُونَ ﴿٨٨﴾

୯୦. ଅଲ୍ଲାହ ତୁମମାନଙ୍କୁ ତୁମମାନଙ୍କର ବୃଥା ଶପଥ[୧] ପାଇଁ ଦଣ୍ଡ ଦେବେ ନାହିଁ; ବରଂ ତୁମେମାନେ ଆନ୍ତରିକତା ସହ ଶପଥ କରିଥିଲେ (ତାହାର ଭଙ୍ଗ ନିମନ୍ତେ) ତୁମମାନଙ୍କୁ ଦଣ୍ଡ ଦେବେ; ସୁତରାଂ ଏହାର ପ୍ରାୟଶ୍ଚିତ୍ତ ସକାଶେ ଦଶଜଣ ଦରିଦ୍ର ଲୋକଙ୍କୁ ତୁମ (ନିଜ) ପରିବାରରେ ଯେଉଁ ଅନୁପାତରେ ଖାଦ୍ୟ ଖାଉଥିବ ତାହା ଖୁଆଇବ ବା ସେମାନଙ୍କୁ ପୋଷାକ ଦେବ ବା ଜଣେ କ୍ରୀତଦାସକୁ ମୁକ୍ତ କରିବ; କିନ୍ତୁ ଯାହାର ଏହି ସାମର୍ଥ୍ୟ (ମଧ୍ୟ) ନ ଥିବ ସେ ତିନିଦିନ ରୋଜା ରଖିବ; ତୁମମାନଙ୍କର ଶପଥ (ଭଙ୍ଗ) ପାଇଁ ଏହା ହିଁ ପ୍ରାୟଶ୍ଚିତ୍ତ; ଏବଂ ତୁମେମାନେ ନିଜର ଶପଥକୁ ପାଳନ କର; ଅଲ୍ଲାହ ତୁମମାନଙ୍କ ପାଇଁ ନିଜର ନିଦର୍ଶନଗୁଡିକୁ ଏହିପରି ଭାବରେ ବର୍ଣ୍ଣନା କରିଛନ୍ତି; ଯଦ୍ଦ୍ୱାରା ତୁମେମାନେ କୃତଜ୍ଞ ହେବ ।

لَا يُؤَاخِذُكُمُ اللّٰهُ بِاللَّغْوِ فِيْٓ اَيْمَانِكُمْ وَلٰكِنْ يُّؤَاخِذُكُمْ بِمَا عَقَّدْتُّمُ الْاَيْمَانَ ۚ فَكَفَّارَتُهٗٓ اِطْعَامُ عَشَرَةِ مَسٰكِيْنَ مِنْ اَوْسَطِ مَا تُطْعِمُوْنَ اَهْلِيْكُمْ اَوْ كِسْوَتُهُمْ اَوْ تَحْرِيْرُ رَقَبَةٍ ۭ فَمَنْ لَّمْ يَجِدْ فَصِيَامُ ثَلٰثَةِ اَيَّامٍ ۭ ذٰلِكَ كَفَّارَةُ اَيْمَانِكُمْ اِذَا حَلَفْتُمْ ۭ وَاحْفَظُوْٓا اَيْمَانَكُمْ ۭ كَذٰلِكَ يُبَيِّنُ اللّٰهُ لَكُمْ اٰيٰتِهٖ لَعَلَّكُمْ تَشْكُرُوْنَ ﴿٩٠﴾

୯୧. ହେ ବିଶ୍ୱାସକାରୀମାନେ ! ମାଦକ ଦ୍ରବ୍ୟ, ଜୁଆ, ପ୍ରତିମା ଓ ଭାଗ୍ୟ ନିର୍ଣ୍ଣାୟକ ଶର କେବଳ ସଇତାନ-ପ୍ରସୂତ ଏକ ଘୃଣିତ କାର୍ଯ୍ୟ; ସୁତରାଂ ଏ ସବୁଠାରୁ (ନିଜକୁ) ରକ୍ଷାକର; ଯଦ୍ଦ୍ୱାରା ତୁମେମାନେ କୃତକାର୍ଯ୍ୟ ହେବ ।

يٰٓاَيُّهَا الَّذِيْنَ اٰمَنُوْٓا اِنَّمَا الْخَمْرُ وَالْمَيْسِرُ وَالْاَنْصَابُ وَالْاَزْلَامُ رِجْسٌ مِّنْ عَمَلِ الشَّيْطٰنِ فَاجْتَنِبُوْهُ لَعَلَّكُمْ تُفْلِحُوْنَ ﴿٩١﴾

୯୨. ସଇତାନ ତୁମମାନଙ୍କ ମଧ୍ୟରେ ମାଦକ ଦ୍ରବ୍ୟ ଓ ଜୁଆ ମାଧ୍ୟମରେ କେବଳ ଶତ୍ରୁତା ଓ ଘୃଣା ସଞ୍ଚାର କରିବାପାଇଁ ଓ ତୁମମାନଙ୍କୁ ଅଲ୍ଲାହଙ୍କ ସ୍ମରଣ ଓ ନମାଜରୁ ବିରତ କରିବାପାଇଁ ଇଚ୍ଛା କରେ; ଅତଏବ କ'ଣ ତୁମେମାନେ ଏଥିରୁ କ୍ଷାନ୍ତ ହେବ ନାହିଁ ?

اِنَّمَا يُرِيْدُ الشَّيْطٰنُ اَنْ يُّوْقِعَ بَيْنَكُمُ الْعَدَاوَةَ وَالْبَغْضَآءَ فِي الْخَمْرِ وَالْمَيْسِرِ وَيَصُدَّكُمْ عَنْ ذِكْرِ اللّٰهِ وَعَنِ الصَّلٰوةِ ۚ فَهَلْ اَنْتُمْ مُّنْتَهُوْنَ ﴿٩٢﴾

୯୩. ଏବଂ ତୁମେମାନେ ଅଲ୍ଲାହଙ୍କର ଆଜ୍ଞାପାଳନ କର ଓ ସେହି ରସୁଲଙ୍କର (ମଧ୍ୟ) ଆଜ୍ଞାପାଳନ କର ଏବଂ ସତର୍କ ରହ; କିନ୍ତୁ ଯଦି ତୁମେମାନେ (ଏହି ଚେତାବନୀ ସତ୍ତ୍ୱେ) ଫେରିଯାଅ ତେବେ ଜାଣିରଖ ଯେ କେବଳ ପ୍ରକାଶ୍ୟ ଭାବରେ (ଆମର ବାର୍ତ୍ତା) ପହଞ୍ଚାଇ ଦେବା ଦାୟିତ୍ୱ ଆମ ରସୁଲଙ୍କର ଅଟେ ।

وَاَطِيْعُوا اللّٰهَ وَاَطِيْعُوا الرَّسُوْلَ وَاحْذَرُوْا ۚ فَاِنْ تَوَلَّيْتُمْ فَاعْلَمُوْٓا اَنَّمَا عَلٰى رَسُوْلِنَا الْبَلٰغُ الْمُبِيْنُ ﴿٩٣﴾

୯୪. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସତ୍‌କର୍ମ କରିଛନ୍ତି ଯଦି ସେମାନେ ଅଲ୍ଲାହଙ୍କୁ ଭୟ କରିବେ ଓ ବିଶ୍ୱାସ କରିବେ ଓ ସତ୍‌କର୍ମ କରିବେ ଏବଂ ପୁନରପି ଅଲ୍ଲାହଙ୍କୁ (ଅଧିକ) ଭୟ କରିବେ ଓ ବିଶ୍ୱାସ କରିବେ, (ଏବଂ) ପୁନଶ୍ଚ ଅଲ୍ଲାହଙ୍କୁ (ଅଧିକତର) ଭୟ କରିବେ ଓ ହିତସାଧନ କରିବେ, ତେବେ ସେମାନେ ଯାହା କିଛି ଖାଇବେ ସେଥିପାଇଁ ସେମାନଙ୍କର କୌଣସି ପାପ ହେବ ନାହିଁ; ଏବଂ ଅଲ୍ଲାହ ହିତକାରୀମାନଙ୍କୁ ପ୍ରେମ କରନ୍ତି ।

لَيْسَ عَلَى الَّذِيْنَ اٰمَنُوْا وَعَمِلُوا الصّٰلِحٰتِ جُنَاحٌ فِيْمَا طَعِمُوْٓا اِذَا مَا اتَّقَوْا وَّاٰمَنُوْا وَعَمِلُوا الصّٰلِحٰتِ ثُمَّ اتَّقَوْا وَّاٰمَنُوْا ثُمَّ اتَّقَوْا وَّاَحْسَنُوْا ۭ وَاللّٰهُ يُحِبُّ الْمُحْسِنِيْنَ ﴿٩٤﴾ ع ١٢/٢

---

୧. ଟୀକା ୨: ୨୨୬ ଦ୍ରଷ୍ଟବ୍ୟ ।

ରୁ: ୧୩

୯୫. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ ତୁମମାନଙ୍କୁ ଏକ (ନଗଣ୍ୟ) ବିଷୟ ଅର୍ଥାତ୍ (ଏପରି) ଶିକାର ଯାହା ପର୍ଯ୍ୟନ୍ତ ତୁମର ହସ୍ତ ଓ ବର୍ଚ୍ଛା ପହଞ୍ଚିପାରିବ ତାହା ଦ୍ୱାରା ପରୀକ୍ଷା କରିବେ, ତାହାହେଲେ ଯେଉଁମାନେ ଏକାନ୍ତରେ ଅଲ୍ଲାହଙ୍କୁ ଭୟ କରନ୍ତି ସେ ସେମାନଙ୍କୁ ପ୍ରକଟିତ କରିଦେବେ; ଅତଏବ ଯେ (ବ୍ୟକ୍ତି) ଏହି ଆଦେଶ (ଶୁଣିବା) ପରେ ସୀମା ଲଂଘନ କରିବ ତାହା ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ରହିଛି ।

يٰٓاَيُّهَا الَّذِيْنَ اٰمَنُوْا لَيَبْلُوَنَّكُمُ اللّٰهُ بِشَيْءٍ مِّنَ الصَّيْدِ تَنَالُهٗٓ اَيْدِيْكُمْ وَرِمَاحُكُمْ لِيَعْلَمَ اللّٰهُ مَنْ يَّخَافُهٗ بِالْغَيْبِ ۚ فَمَنِ اعْتَدٰى بَعْدَ ذٰلِكَ فَلَهٗ عَذَابٌ اَلِيْمٌ ﴿۹۵﴾

୯୬. ହେ ବିଶ୍ୱାସକାରୀମାନେ ! ତୁମେମାନେ (ହଜ୍ଜ ଅବସରରେ) ଏହରାମ ବାନ୍ଧିଥିବା ଅବସ୍ଥାରେ ଶିକାର କର ନାହିଁ; ଏବଂ ତୁମମାନଙ୍କ ମଧ୍ୟରୁ ଯେ ଜାଣିଶୁଣି ଏହାକୁ ବଧ କରିବ ତେବେ ଯେଉଁ ଚତୁଷ୍ପଦ (ପ୍ରାଣୀ) କୁ ସେ ବଧ କରିଥାଏ ତାହାର ବିନିମୟରେ ସେହି (ପ୍ରାଣୀ) ସଦୃଶ ଦେବାକୁ ହେବ; ଏ ବିଷୟକ ନିଷ୍ପତ୍ତି ତୁମମାନଙ୍କ ମଧ୍ୟରୁ ଦୁଇଜଣ ନ୍ୟାୟବାନ୍ ବ୍ୟକ୍ତି କରିବେ; ଏବଂ ତାହାକୁ କା'ବା ପର୍ଯ୍ୟନ୍ତ କୁର୍ବାନି ଭାବେ ପହଞ୍ଚାଇବାକୁ ହେବ; ଏବଂ (ଯେଦି ତାହାର ସାମର୍ଥ୍ୟ ନ ଥାଏ) ପ୍ରାୟଶ୍ଚିତ୍ତ ସ୍ୱରୂପ କେତେକ ଦରିଦ୍ର ବ୍ୟକ୍ତିଙ୍କୁ ଖୁଆଇବାକୁ ହେବ ବା ତାହାର ସମାନ ପରିମାଣ ରୋଜା ରଖିବ ଯଦ୍ୱାରା ସେ (ଦୋଷୀ) ନିଜ କୃତକର୍ମର ଫଳ ଭୋଗ କରିବ; ଅବଶ୍ୟ ଯାହା ବିତିଯାଇଛି ଅଲ୍ଲାହ ତାହାକୁ କ୍ଷମା କରିଛନ୍ତି; ଏବଂ ଯେଉଁ ବ୍ୟକ୍ତି ପୁନର୍ବାର (ଏପରି) କରିବ ଅଲ୍ଲାହ ତାହାକୁ ଦଣ୍ଡିତ କରିବେ; ଏବଂ ଅଲ୍ଲାହ ପରାକ୍ରମୀ ଓ (କୁକର୍ମର) ଶାସ୍ତିଦାତା ।

يٰٓاَيُّهَا الَّذِيْنَ اٰمَنُوْا لَا تَقْتُلُوا الصَّيْدَ وَاَنْتُمْ حُرُمٌ ۗ وَمَنْ قَتَلَهٗ مِنْكُمْ مُّتَعَمِّدًا فَجَزَآءٌ مِّثْلُ مَا قَتَلَ مِنَ النَّعَمِ يَحْكُمُ بِهٖ ذَوَا عَدْلٍ مِّنْكُمْ هَدْيًاۢ بٰلِغَ الْكَعْبَةِ اَوْ كَفَّارَةٌ طَعَامُ مَسٰكِيْنَ اَوْ عَدْلُ ذٰلِكَ صِيَامًا لِّيَذُوْقَ وَبَالَ اَمْرِهٖ ۗ عَفَا اللّٰهُ عَمَّا سَلَفَ ۗ وَمَنْ عَادَ فَيَنْتَقِمُ اللّٰهُ مِنْهُ ۗ وَاللّٰهُ عَزِيْزٌ ذُو انْتِقَامٍ ﴿۹۶﴾

୯୭. ତୁମମାନଙ୍କର ଓ ଯାତ୍ରୀମାନଙ୍କର ଉପକାର ପାଇଁ ସାମୁଦ୍ରିକ[୧] ଶିକାର କରିବା ଓ ତାହାକୁ ଖାଇବା ବୈଧ କରାଯାଇଛି; କିନ୍ତୁ ଯେ ପର୍ଯ୍ୟନ୍ତ ତୁମେମାନେ ଏହରାମ ଅବସ୍ଥାରେ ଥିବ ସେ ପର୍ଯ୍ୟନ୍ତ ସ୍ଥଳ ଭାଗର ଶିକାର କରିବା ତୁମମାନଙ୍କ ପାଇଁ ଅବୈଧ କରାଯାଇଛି; ଏବଂ ତୁମେମାନେ ଅଲ୍ଲାହଙ୍କୁ ଭୟକର ଯାହାଙ୍କ ସମୀପକୁ ତୁମମାନଙ୍କୁ ଏକତ୍ରିତ କରି ନିଆଯିବ ।

اُحِلَّ لَكُمْ صَيْدُ الْبَحْرِ وَطَعَامُهٗ مَتَاعًا لَّكُمْ وَلِلسَّيَّارَةِ ۚ وَحُرِّمَ عَلَيْكُمْ صَيْدُ الْبَرِّ مَا دُمْتُمْ حُرُمًا ۗ وَاتَّقُوا اللّٰهَ الَّذِيْٓ اِلَيْهِ تُحْشَرُوْنَ ﴿۹۷﴾

---

୧. ନଦୀ, ଝରଣା, ପୋଖରୀ, ଗଡ଼ିଆ, ହ୍ରଦ ଆଦି ଜଳଭାଗ 'ସମୁଦ୍ର' ଶବ୍ଦର ଅର୍ଥ ମଧ୍ୟରେ ଆସୁଅଛି ।

جَعَلَ اللّٰهُ الْكَعْبَةَ الْبَيْتَ الْحَرَامَ قِيٰمًا لِّلنَّاسِ وَ الشَّهْرَ الْحَرَامَ وَ الْهَدْيَ وَ الْقَلَآئِدَ ؕ ذٰلِكَ لِتَعْلَمُوْۤا اَنَّ اللّٰهَ يَعْلَمُ مَا فِي السَّمٰوٰتِ وَ مَا فِي الْاَرْضِ وَ اَنَّ اللّٰهَ بِكُلِّ شَيْءٍ عَلِيْمٌ ﴿۹۸﴾

୯୮. ଅଲ୍ଲାହ କାବା ଅର୍ଥାତ୍ ସୁରକ୍ଷିତ ଗୃହ ତଥା ପବିତ୍ର ମାସ ସମୂହ , କୁର୍ବାନି ଓ ଯେଉଁ (ଉତ୍ସର୍ଗାର୍ଥ ପଶୁ) ମାନଙ୍କ ଗଳାରେ ଫିତା ବନ୍ଧା ହୋଇଥିବ (ସେମାନଙ୍କୁ ମଧ୍ୟ) ମାନବ ସମାଜ ପାଇଁ ଏକ ଶାଶ୍ୱତ ଅଭିବୃଦ୍ଧିର[1] ମାଧ୍ୟମ କରିଛନ୍ତି; ଏହା ଏଥିଯୋଗୁଁ କରାଯାଇଛି ଯଦ୍ଦ୍ୱାରା ତୁମେମାନେ ଜାଣିପାରିବ ଯେ ଯାହାକିଛି ଆକାଶ ଓ ପୃଥିବୀରେ ଅଛି ତାହାକୁ ଅଲ୍ଲାହ ଭଲ ରୂପେ ଜାଣନ୍ତି ।

اِعْلَمُوْۤا اَنَّ اللّٰهَ شَدِيْدُ الْعِقَابِ وَ اَنَّ اللّٰهَ غَفُوْرٌ رَّحِيْمٌ ﴿۹۹﴾

୯୯. ମନେରଖ ଯେ ଅଲ୍ଲାହ ଶାସ୍ତି ଦେବାରେ (ମଧ୍ୟ) କଠୋର; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ (ମଧ୍ୟ) ଅଟନ୍ତି ।

مَا عَلَى الرَّسُوْلِ اِلَّا الْبَلٰغُ ؕ وَ اللّٰهُ يَعْلَمُ مَا تُبْدُوْنَ وَ مَا تَكْتُمُوْنَ ﴿۱۰۰﴾

୧୦୦. ରସୁଲଙ୍କର (ଦାୟିତ୍ୱ) କେବଳ ବାର୍ତ୍ତା ପହଞ୍ଚାଇ ଦେବା; ଏବଂ ତୁମେମାନେ ଯାହା ପ୍ରକାଶ କର ଓ ଯାହା ଗୋପନ ରଖ ଅଲ୍ଲାହ ତାହାକୁ (ଭଲରୂପେ) ଜାଣନ୍ତି ।

قُلْ لَّا يَسْتَوِي الْخَبِيْثُ وَ الطَّيِّبُ وَ لَوْ اَعْجَبَكَ كَثْرَةُ الْخَبِيْثِ ۚ فَاتَّقُوا اللّٰهَ يٰۤاُولِي الْاَلْبَابِ لَعَلَّكُمْ تُفْلِحُوْنَ ﴿۱۰۱﴾ ع ۱۳

୧୦୧. ତୁମେ କୁହ, "ଅପବିତ୍ର (ବସ୍ତୁ) ର ପ୍ରାଚୁର୍ଯ୍ୟ ତୁମକୁ ଯେତେ ପସନ୍ଦ ହେଲେ ହେଁ ପବିତ୍ର ଓ ଅପବିତ୍ର (ବସ୍ତୁ) ସମାନ ନୁହେଁ; ସୁତରାଂ ହେ ବୁଦ୍ଧିମାନ ଲୋକମାନେ ! ଅଲ୍ଲାହଙ୍କୁ ଭୟ କର ଯଦ୍ଦ୍ୱାରା କି ତୁମେମାନେ ସଫଳତା ଲାଭ କରିବ ।

ରୁ: ୧୪

يٰۤاَيُّهَا الَّذِيْنَ اٰمَنُوْا لَا تَسْـَٔلُوْا عَنْ اَشْيَآءَ اِنْ تُبْدَ لَكُمْ تَسُؤْكُمْ ۚ وَ اِنْ تَسْـَٔلُوْا عَنْهَا حِيْنَ يُنَزَّلُ الْقُرْاٰنُ تُبْدَ لَكُمْ ؕ عَفَا اللّٰهُ عَنْهَا ؕ وَ اللّٰهُ غَفُوْرٌ حَلِيْمٌ ﴿۱۰۲﴾

୧୦୨. ହେ ବିଶ୍ୱାସକାରୀମାନେ ! ତୁମେମାନେ ସେ ବିଷୟମାନଙ୍କ ସଂକ୍ରାନ୍ତରେ ପ୍ରଶ୍ନ କରନାହିଁ ଯାହା ତୁମମାନଙ୍କ ନିକଟରେ ପ୍ରକାଶିତ ହେଲେ ତୁମମାନଙ୍କ ସକାଶେ ଅପ୍ରୀତିକର ହେବ; ଏବଂ କୋରାନ ଅବତୀର୍ଣ୍ଣ ହେଉଥିବା ସମୟରେ ଯଦି ତୁମେମାନେ ସେ ସମ୍ବନ୍ଧରେ ପ୍ରଶ୍ନ କରିବ ତେବେ ତାହା ତୁମମାନଙ୍କ ପାଇଁ ପ୍ରକାଶ କରାଯିବ ; ଅଲ୍ଲାହ ନିଜେ (ଜାଣିଶୁଣି ଅନୁଗ୍ରହ-ପୂର୍ବକ) ତାହାକୁ ବର୍ଣ୍ଣନା କରିବାରୁ ନିବୃତ୍ତ ହୋଇଛନ୍ତି; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସହିଷ୍ଣୁ ।

قَدْ سَاَلَهَا قَوْمٌ مِّنْ قَبْلِكُمْ ثُمَّ اَصْبَحُوْا بِهَا كٰفِرِيْنَ ﴿۱۰۳﴾

୧୦୩. ଅବଶ୍ୟ ତୁମମାନଙ୍କ ପୂର୍ବରୁ ଏକ ସମ୍ପ୍ରଦାୟ ଏହିପରି ବିଷୟମାନଙ୍କ ସମ୍ବନ୍ଧରେ ପ୍ରଶ୍ନ କରିଥିଲେ; (କିନ୍ତୁ ଉତ୍ତର ପାଇବାପରେ) ପରେ ସେମାନେ ଏହାକୁ ଅବଜ୍ଞା କଲେ ।

---

୧. ହଜ (ତୀର୍ଥ ଯାତ୍ରା) କରିବା ମୁସଲମାନଙ୍କ ପାଇଁ ପ୍ରଗତିର ଏକ ପ୍ରତୀକ । ଏହି କାର୍ଯ୍ୟ ଲୋକମାନଙ୍କ ଦ୍ୱାରା ସମ୍ପାଦିତ ହେଉଥିବା ପର୍ଯ୍ୟନ୍ତ ଅଲ୍ଲାହଙ୍କ କୃପା ଜାରି ରହିଥିବ । ଲୋକମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ମକ୍କାକୁ ତୀର୍ଥଯାତ୍ରା କରୁଥିବାରୁ କେବଳ ସେଠାକାର ଲୋକମାନେ ଉପକୃତ ହୁଅନ୍ତି ନାହିଁ ବରଂ ଏତଦ୍ଦ୍ୱାରା ସମଗ୍ର ମାନବ ସମାଜ ଉପକୃତ ହୁଏ ।

ଏହି ଆୟତରେ ବ୍ୟବହୃତ 'କୟାମ' ଶବ୍ଦ ଏପରି ଶିକ୍ଷାକୁ ବୁଝାଏ ଯାହା କେବେ ରଦ ହୁଏ ନାହିଁ ।

مَا جَعَلَ اللّٰهُ مِنْۢ بَحِيْرَةٍ وَّلَا سَآئِبَةٍ وَّلَا وَصِيْلَةٍ وَّلَا حَامٍ ۙ وَّلٰكِنَّ الَّذِيْنَ كَفَرُوْا يَفْتَرُوْنَ عَلَى اللّٰهِ الْكَذِبَ ۗ وَاَكْثَرُهُمْ لَا يَعْقِلُوْنَ ۝

୧୦୪. ଅଲ୍ଲାହ (ପଶୁମାନଙ୍କୁ) 'ବହିରା'[୧] ବା 'ସାଇବା'[୨] ବା 'ଓସିଲା'[୩] ବା 'ହାମ'[୪] (କରିବା) ବିଷୟରେ ଆଦେଶ ଦେଇ ନାହାନ୍ତି; କିନ୍ତୁ ଅବିଶ୍ୱାସକାରୀମାନେ ଅଲ୍ଲାହଙ୍କ ବିରୁଦ୍ଧରେ ମିଥ୍ୟା ଆରୋପ କରୁଛନ୍ତି; ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ନିର୍ବୋଧ ଅଟନ୍ତି ।

وَاِذَا قِيْلَ لَهُمْ تَعَالَوْا اِلٰى مَآ اَنْزَلَ اللّٰهُ وَاِلَى الرَّسُوْلِ قَالُوْا حَسْبُنَا مَا وَجَدْنَا عَلَيْهِ اٰبَآءَنَا ؕ اَوَلَوْ كَانَ اٰبَآؤُهُمْ لَا يَعْلَمُوْنَ شَيْـًٔا وَّلَا يَهْتَدُوْنَ ۝

୧୦୫. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାହ ଯାହା ଅବତୀର୍ଣ୍ଣ କରିଛନ୍ତି ତାହା ନିକଟକୁ ଏବଂ ରସୁଲଙ୍କ ନିକଟକୁ ଆସ ସେତେବେଳେ ସେମାନେ କୁହନ୍ତି, "ଆମେମାନେ ନିଜର ପୂର୍ବପୁରୁଷଙ୍କୁ ଯେଉଁ ବିଷୟରେ ରହିଥିବାର ଦେଖିଅଛୁ ତାହାହିଁ ଆମ ପାଇଁ ଯଥେଷ୍ଟ," ତେବେ କ'ଣ ସେମାନଙ୍କର ପୂର୍ବପୁରୁଷମାନେ ଅଜ୍ଞାନ ଥିବା ଓ ସତ୍‌ପଥ ଜାଣି ନ ଥିବା ସତ୍ତ୍ୱେ (ସେମାନେ ନିଜ ଦୃଷ୍ଟିଭଙ୍ଗୀ ଉପରେ ପ୍ରତିଷ୍ଠିତ ରହିବେ ) ?

يٰٓاَيُّهَا الَّذِيْنَ اٰمَنُوْا عَلَيْكُمْ اَنْفُسَكُمْ ۚ لَا يَضُرُّكُمْ مَّنْ ضَلَّ اِذَا اهْتَدَيْتُمْ ؕ اِلَى اللّٰهِ مَرْجِعُكُمْ جَمِيْعًا فَيُنَبِّئُكُمْ بِمَا كُنْتُمْ تَعْمَلُوْنَ ۝

୧୦୬. ହେ ବିଶ୍ୱାସକାରୀମାନେ ! ତୁମେମାନେ ନିଜ ପାଇଁ ଦାୟୀ; ଯେତେବେଳେ ତୁମେମାନେ ସତ୍‌ପଥଗାମୀ ହେବ ସେତେବେଳେ ଅନ୍ୟ କେହି ପଥଭ୍ରଷ୍ଟ ହେଲେ ତୁମମାନଙ୍କର କୌଣସି କ୍ଷତି ହେବ ନାହିଁ; ତୁମ ସମସ୍ତଙ୍କୁ ଅଲ୍ଲାହଙ୍କ ନିକଟକୁ ଫେରିବାକୁ ହେବ; ସୁତରାଂ ତୁମେମାନେ ଯାହା କିଛି କରୁଅଛ ସେ ତୁମମାନଙ୍କୁ ତାହା ଜଣାଇଦେବେ ।

---

୧. ବହିରା' ଅର୍ଥ ସେହି ମାଈ ଓଟ ଯାହାର କାନ ଫୋଡ଼ା ଯାଇଛି । ଇସଲାମ ଧର୍ମର ଆବିର୍ଭାବ ପୂର୍ବରୁ ପ୍ରଚଳିତ ପ୍ରଥା ଅନୁସାରେ ଗୋଟିଏ ମାଈ ଓଟ ଦଶଟି ଛୁଆ ପ୍ରସବ କରିବା ପରେ ଆରବ ଦେଶରେ ସେହି ଓଟର କାନ ଫୋଡ଼ି ତାକୁ ବାହାରକୁ ଛାଡ଼ି ଦେଉଥିଲେ । ଏହାପରେ ସେହି ଓଟକୁ ଆରୋହଣ ବା ଭାର ବହନ କାର୍ଯ୍ୟରେ ଉପଯୋଗ କରାଯାଉ ନ ଥିଲା ।

୨. 'ସାଇବା' ଅର୍ଥ ସେହି ମାଈ ଓଟ ଯାହାକୁ ତତ୍କାଳୀନ ପ୍ରଥା ଅନୁସାରେ ଚାରଣ ଭୂମିରେ ମୁକ୍ତ ଛାଡ଼ି ଦିଆଯାଏ । ତା'ପାଇଁ ଜଳଘାଟ ବା ଚାରଣଭୂମି ନିଷିଦ୍ଧ ନୁହେଁ । ଅବଶ୍ୟ ପାଞ୍ଚଟି ଛୁଆ ଜନ୍ମ କଲା ପରେ ତାକୁ ଏପରି ଅବସ୍ଥାରେ ଛାଡ଼ି ଦିଆଯାଉଥିଲା ।

୩. 'ଓସିଲା'- ଏକ ପ୍ରାକ୍ତନ ଆରବୀୟ ପ୍ରଥା ଅନୁସାରେ କୌଣସି ଛେଳି ଏକ ସମୟରେ ଦୁଇଟି ଛୁଆ—ଗୋଟିଏ ମାଈ ଓ ଅନ୍ୟଟି ଅଣ୍ଡିରା- ପ୍ରସବ କଲେ ତନ୍ମଧ୍ୟରୁ ଗୋଟିକୁ ଜବେହ କରାଯାଉ ନ ଥିଲା । ଲୋକମାନେ ଭାବୁଥିଲେ ଯେ ଗୋଟିକୁ ଜବେହ କଲେ ଅନ୍ୟଟିକୁ କଷ୍ଟ ହୋଇପାରେ ।

୪. 'ହାମ'-ସାତୋଟି ଛୁଆର ଜନକ । ଏହାକୁ ଆରୋହଣ ବା ଭାରବହନ ପାଇଁ ଉପଯୋଗ କରାଯାଏ ନାହିଁ । ଏହାକୁ ଚାରଣ ଭୂମି ବା ଜଳଘାଟ ମନା ନାହିଁ ।

୧୦୭. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତିର ମୃତ୍ୟୁ (ସମୟ) ନିକଟତର ହୁଏ ସେତେବେଳେ ଓ୍ୱସିୟତ୍‌ କରିବା ସମୟରେ ତୁମମାନଙ୍କର ପରସ୍ପର ମଧ୍ୟରେ ସାକ୍ଷ୍ୟ (ର ପଦ୍ଧତି) ଏପରି ହେବା ଉଚିତ ଯେ ତୁମମାନଙ୍କ ମଧ୍ୟରୁ ଦୁଇଜଣ ନ୍ୟାୟବାନ୍‌ ବ୍ୟକ୍ତିଙ୍କୁ ସାକ୍ଷୀ ରଖ; କିମ୍ବା ତୁମେମାନେ ଦେଶ ମଧ୍ୟରେ ଭ୍ରମଣ କରୁଥିବା ଅବସ୍ଥାରେ ଯଦି ତୁମର ମୃତ୍ୟୁ-ଜନିତ ବିପଦ ଉପସ୍ଥିତ ହୁଏ ଏବଂ ତୁମ (ମୁସଲମାନ) ମାନଙ୍କ ମଧ୍ୟରୁ ସାକ୍ଷୀ ନ ମିଳନ୍ତି ତେବେ ଅନ୍ୟ ଲୋକମାନଙ୍କ ମଧ୍ୟରୁ ଦୁଇଜଣଙ୍କୁ ସାକ୍ଷୀ ରଖ; ନମାଜ ପାଠ ଉତ୍ତାରୁ ତୁମେମାନେ ସେ ଦୁହିଙ୍କୁ (ସାକ୍ଷ୍ୟ ପ୍ରଦାନ କରିବାପାଇଁ) ଅଟକାଇ ରଖ; ଯଦି (ସେମାନଙ୍କର ସାକ୍ଷ୍ୟ ସଂକ୍ରାନ୍ତରେ) ତୁମମାନଙ୍କର ସନ୍ଦେହ ହୁଏ ତେବେ ସେ ଉଭୟ ଅଲ୍ଲାହଙ୍କ ନାମରେ ଶପଥପୂର୍ବକ କହିବେ ଯେ (ଆମେମାନେ ଯାହା ସପକ୍ଷରେ ସାକ୍ଷ୍ୟ ଦେଉଅଛୁ) ସେ ଆମମାନଙ୍କର ନିକଟ ସମ୍ପର୍କୀୟ ହୋଇଥାଉ ପଛେ ଏଥିରେ (ଅର୍ଥାତ୍‌ ଏହି ସାକ୍ଷ୍ୟ ପ୍ରଦାନ କରିବାରେ) ଆମମାନଙ୍କର କୌଣସି ସ୍ୱାର୍ଥ ନାହିଁ କି ଆମେମାନେ ଅଲ୍ଲାହଙ୍କ (ଦ୍ୱାରା ନିର୍ଦ୍ଧାରିତ) ସାକ୍ଷ୍ୟ (ଅର୍ଥାତ୍‌ ସତ୍ୟ କଥନର ନିର୍ଦ୍ଦେଶ)କୁ ଗୋପନ ରଖିବୁ ନାହିଁ; ଯଦି ଆମେମାନେ ଏପରି କରୁ ତେବେ ନିଶ୍ଚୟ ପାପୀ ହେବୁ ।

يَاأَيُّهَا الَّذِينَ آمَنُوا شَهَادَةُ بَيْنِكُمْ إِذَا حَضَرَ أَحَدَكُمُ الْمَوْتُ حِينَ الْوَصِيَّةِ اثْنَانِ ذَوَا عَدْلٍ مِّنكُمْ أَوْ آخَرَانِ مِنْ غَيْرِكُمْ إِنْ أَنتُمْ ضَرَبْتُمْ فِي الْأَرْضِ فَأَصَابَتْكُم مُّصِيبَةُ الْمَوْتِ ۚ تَحْبِسُونَهُمَا مِن بَعْدِ الصَّلَاةِ فَيُقْسِمَانِ بِاللَّهِ إِنِ ارْتَبْتُمْ لَا نَشْتَرِي بِهِ ثَمَنًا وَلَوْ كَانَ ذَا قُرْبَىٰ ۙ وَلَا نَكْتُمُ شَهَادَةَ اللَّهِ إِنَّا إِذًا لَّمِنَ الْآثِمِينَ ﴿١٠٧﴾

୧୦୮. ତାପରେ ଯଦି ଏହା ପ୍ରକାଶିତ ହୁଏ ଯେ ସେ ଦୁହେଁ ସେହି ପାପରେ ଭାଗୀ ହୋଇଛନ୍ତି ତେବେ (ମୃତ ବ୍ୟକ୍ତିର ଦାୟାଦ ଅର୍ଥାତ୍‌ ବନ୍ଧୁ ବାନ୍ଧବ ମଧ୍ୟରୁ) ଅନ୍ୟ ଦୁଇଜଣ ଯାହାଙ୍କ ବିରୁଦ୍ଧରେ ପ୍ରଥମ ଦୁଇଜଣ ହକ୍‌ ସାବ୍ୟସ୍ତ କରିଥିଲେ ସେମାନେ (ସାକ୍ଷ୍ୟ ପ୍ରଦାନ କରିବାପାଇଁ) ଦଣ୍ଡାୟମାନ ହୋଇ ଅଲ୍ଲାହଙ୍କ ନାମରେ ଶପଥପୂର୍ବକ କହିବେ, "ଆମମାନଙ୍କର ସାକ୍ଷ୍ୟ ପୂର୍ବୋକ୍ତ ଦୁଇ ସାକ୍ଷୀଙ୍କ ସାକ୍ଷ୍ୟ ଅପେକ୍ଷା ଅଧିକ ସତ୍ୟ ଅଟେ ଏବଂ ଆମେମାନେ (ସାକ୍ଷ୍ୟ ଦେବାରେ) କୌଣସି ସୀମା ଲଂଘନ କରି ନାହୁଁ; ଯଦି ଆମେମାନେ ଏପରି କରିଥାଉ ତେବେ ଆମେମାନେ ନିଶ୍ଚୟ ଅତ୍ୟାଚାରୀମାନଙ୍କ ମଧ୍ୟରେ ପରିଗଣିତ ହେବୁ" ।

فَإِنْ عُثِرَ عَلَىٰ أَنَّهُمَا اسْتَحَقَّا إِثْمًا فَآخَرَانِ يَقُومَانِ مَقَامَهُمَا مِنَ الَّذِينَ اسْتَحَقَّ عَلَيْهِمُ الْأَوْلَيَانِ فَيُقْسِمَانِ بِاللَّهِ لَشَهَادَتُنَا أَحَقُّ مِن شَهَادَتِهِمَا وَمَا اعْتَدَيْنَا إِنَّا إِذًا لَّمِنَ الظَّالِمِينَ ﴿١٠٨﴾

୧୦୯. ଅତଏବ ଏହି ପଦ୍ଧତି ଦ୍ୱାରା ଏହା ଅଧିକ ସମ୍ଭବପର ହେବ ଯେ ସେମାନେ (ଅର୍ଥାତ୍‌ ପ୍ରଥମୋକ୍ତ ସାକ୍ଷୀମାନେ) ତଥ୍ୟ ଅନୁଯାୟୀ ସାକ୍ଷ୍ୟ ପ୍ରଦାନ କରିବେ ବା ସେମାନେ ଭୟ କରିବେ ଯେ ସେମାନଙ୍କ ଶପଥ ପରେ (ସେମାନଙ୍କ ଶପଥକୁ ଖଣ୍ଡନ କରିବା ଉଦ୍ଦେଶ୍ୟରେ) ଅନ୍ୟ

ذَٰلِكَ أَدْنَىٰ أَن يَأْتُوا بِالشَّهَادَةِ عَلَىٰ وَجْهِهَا أَوْ يَخَافُوا أَن تُرَدَّ أَيْمَانٌ بَعْدَ أَيْمَانِهِمْ ۗ وَاتَّقُوا اللَّهَ وَاسْمَعُوا

وَاللّٰهُ لَا يَهْدِي الْقَوْمَ الْفٰسِقِيْنَ ١٠٩

ଶପଥମାନ ଉପସ୍ଥାପିତ ହେବ; ଏବଂ ଅଲ୍ଲାହ୍‌ଙ୍କୁ ଭୟ କର ଓ ତାହାଙ୍କ ଆଦେଶକୁ ଭଲ ଭାବରେ ପାଳନ କର; ଏବଂ ଅଲ୍ଲାହ୍ ଅମାନ୍ୟକାରୀମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାନ୍ତି ନାହିଁ ।

**ରୁ: ୧୫**

يَوْمَ يَجْمَعُ اللّٰهُ الرُّسُلَ فَيَقُوْلُ مَاذَآ اُجِبْتُمْ قَالُوْا لَا عِلْمَ لَنَا اِنَّكَ اَنْتَ عَلَّامُ الْغُيُوْبِ ١١٠

୧୧୦. (ସେହିଦିନକୁ ସ୍ମରଣ କର) ଯେଉଁଦିନ ଅଲ୍ଲାହ୍ ରସୁଲମାନଙ୍କୁ ଏକତ୍ରିତ କରି କହିବେ, "ତୁମ୍ଭମାନଙ୍କୁ କ'ଣ ଉତ୍ତର ଦିଆଯାଇଥିଲା ?" ସେମାନେ କହିବେ, "ଆମ୍ଭମାନଙ୍କର ପ୍ରକୃତ ଜ୍ଞାନ ନାହିଁ; ଅଦୃଷ୍ଟ ବିଷୟରେ (ପ୍ରକୃତ) ଜ୍ଞାନ (କେବଳ) ତୁମ୍ଭର ଅଛି ।"

اِذْ قَالَ اللّٰهُ يٰعِيْسَى ابْنَ مَرْيَمَ اذْكُرْ نِعْمَتِيْ عَلَيْكَ وَعَلٰى وَالِدَتِكَ اِذْ اَيَّدْتُّكَ بِرُوْحِ الْقُدُسِ تُكَلِّمُ النَّاسَ فِي الْمَهْدِ وَكَهْلًا وَاِذْ عَلَّمْتُكَ الْكِتٰبَ وَالْحِكْمَةَ وَالتَّوْرٰىةَ وَالْاِنْجِيْلَ وَاِذْ تَخْلُقُ مِنَ الطِّيْنِ كَهَيْـَٔةِ الطَّيْرِ بِاِذْنِيْ فَتَنْفُخُ فِيْهَا فَتَكُوْنُ طَيْرًا بِاِذْنِيْ وَتُبْرِئُ الْاَكْمَهَ وَالْاَبْرَصَ بِاِذْنِيْ وَاِذْ تُخْرِجُ الْمَوْتٰى

୧୧୧. ସେତେବେଳେ ଅଲ୍ଲାହ୍ କହିବେ, "ହେ ମରିୟମ-ନନ୍ଦନ ଈସା ! ତୁମ୍ଭପ୍ରତି ଓ ତୁମ୍ଭ ମାତାଙ୍କ ପ୍ରତି ଆମ୍ଭେ କରିଥିବା କୃପାକୁ ସ୍ମରଣ କର; (ଅର୍ଥାତ୍) ଯେତେ ବେଳେ ଆମ୍ଭେ ତୁମ୍ଭଙ୍କୁ ପବିତ୍ର ବାଣୀ ଦ୍ୱାରା ସାହାଯ୍ୟ କରିଥିଲୁ; ତୁମ୍ଭେ ବାଲ୍ୟାବସ୍ଥାରେ ଓ ପ୍ରୌଢ଼ାବସ୍ଥାରେ ମଧ୍ୟ ଲୋକମାନଙ୍କ ସହିତ (ଆଧ୍ୟାତ୍ମିକ ବିଷୟରେ) କଥା ହେଉଥିଲ; ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଆମ୍ଭେ ତୁମ୍ଭକୁ (ଧର୍ମ) ଗ୍ରନ୍ଥ, ତତ୍ତ୍ୱଜ୍ଞାନ ତଥା ତୌରାତ୍ ଓ ଇଂଜିଲ ଶିଖାଇଥିଲୁ; ଏବଂ ଯେତେବେଳେ ଆମ୍ଭ ନିର୍ଦ୍ଦେଶକ୍ରମେ ଓଦା ମାଟିରୁ[1] (ଅର୍ଥାତ୍ ନମ୍ର ସ୍ୱଭାବ ଲୋକମାନଙ୍କ ମଧ୍ୟରୁ)ପକ୍ଷୀ ସୃଷ୍ଟି କରିବା ସଦୃଶ ଜୀବ ସୃଷ୍ଟି କରୁଥିଲ, ତତ୍‌ପରେ ତୁମ୍ଭେ ସେମାନଙ୍କୁ ଫୁଙ୍କି ଦେଉଥିଲ ଯାହା ଫଳରେ ସେମାନେ ଆମ୍ଭ ଆଦେଶକ୍ରମେ ଉଡ଼ିବା ଯୋଗ୍ୟ ହୋଇ ଯାଉଥିଲେ; ଏବଂ ଆମ୍ଭର ଆଦେଶକ୍ରମେ ତୁମ୍ଭେ ଅନ୍ଧ ଓ କୁଷ୍ଠରୋଗୀମାନଙ୍କୁ (ରୋଗ) ମୁକ୍ତ[2] ସାବ୍ୟସ୍ତ କରୁଥିଲ, ଏବଂ ଯେତେବେଳେ ଆମ୍ଭ ଆଦେଶକ୍ରମେ ତୁମ୍ଭେ ମୃତ (ବ୍ୟକ୍ତି) କୁ

---

୧. ଏଠାରେ 'ଓଦା ମାଟି'ର ଅର୍ଥ ସରଳ ପ୍ରକୃତିର ଲୋକ । ଯୀଶୁଖ୍ରୀଷ୍ଟଙ୍କର ଆଧ୍ୟାତ୍ମିକ ପ୍ରଭାବ ବଳରେ ସେମାନଙ୍କର ପକ୍ଷୀସ୍ୱଭାବ-ସୁଲଭ ବିନମ୍ର ଅବସ୍ଥା ପରିବର୍ତ୍ତିତ ହୋଇଥିଲା । (୩ : ୫୦ର ଟୀକା ଦ୍ରଷ୍ଟବ୍ୟ)

୨. (୩ : ୫୦ର ଟୀକା ଦ୍ରଷ୍ଟବ୍ୟ)

بِإِذْنِي وَإِذْ كَفَفْتُ بَنِي إِسْرَائِيلَ عَنكَ إِذْ جِئْتَهُم بِالْبَيِّنَاتِ فَقَالَ الَّذِينَ كَفَرُوا مِنْهُمْ إِنْ هَٰذَا إِلَّا سِحْرٌ مُّبِينٌ ﴿١١١﴾

ଉତ୍‌ଥିତ କରୁଥିଲ;[1] ଏବଂ ଯେତେବେଳେ ତୁମେ ଇସ୍ରାଇଲୀୟ ସନ୍ତାନମାନଙ୍କ ନିକଟକୁ ସ୍ପଷ୍ଟ ନିଦର୍ଶନ ସହିତ ଆସିଥିଲ ଯେବେ କି ସେମାନେ ତୁମକୁ ହତ୍ୟା କରିବାକୁ ଇଚ୍ଛା କରୁଥିଲେ ସେତେବେଳେ ଆମେ ସେମାନଙ୍କୁ ଅବରୋଧ କରିଥିଲୁ;'' ଏବଂ ସେମାନଙ୍କ ମଧ୍ୟରୁ ଅବିଶ୍ୱାସକାରୀମାନେ କହିଲେ, ''ଏହା ତ ସ୍ପଷ୍ଟ ପ୍ରବଞ୍ଚନା ।''

وَإِذْ أَوْحَيْتُ إِلَى الْحَوَارِيِّينَ أَنْ آمِنُوا بِي وَبِرَسُولِي قَالُوا آمَنَّا وَاشْهَدْ بِأَنَّنَا مُسْلِمُونَ ﴿١١٢﴾

୧୧୨. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ (ଇସାଙ୍କର) ଅନୁଚରମାନଙ୍କୁ ଓହି ମାଧ୍ୟମରେ କହିଲୁ, ''ଆମଠାରେ ଏବଂ ଆମର ରସୁଲଙ୍କଠାରେ ବିଶ୍ୱାସ କର''; ସେମାନେ (ଏହି ଓହିର ପ୍ରତ୍ୟୁତ୍ତରରେ) କହିଲେ, ''ଆମେମାନେ ବିଶ୍ୱାସ କଲୁ ଏବଂ ତୁମେ ସାକ୍ଷୀ ରହ ଯେ ଆମେମାନେ ଆଜ୍ଞାପାଳନକାରୀମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ ହୋଇ) ଅଛୁ ।''

إِذْ قَالَ الْحَوَارِيُّونَ يَا عِيسَى ابْنَ مَرْيَمَ هَلْ يَسْتَطِيعُ رَبُّكَ أَن يُنَزِّلَ عَلَيْنَا مَائِدَةً مِّنَ السَّمَاءِ قَالَ اتَّقُوا اللَّهَ إِن كُنتُم مُّؤْمِنِينَ ﴿١١٣﴾

୧୧୩. (ଏବଂ ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ଅନୁଚରମାନେ କହିଲେ, ''ହେ ମରିୟମ-ନନ୍ଦନ ଇସା ! କ'ଣ ଆମମାନଙ୍କ ସକାଶେ ସ୍ୱର୍ଗରୁ ଏକ ଖାଦ୍ୟପୂର୍ଣ୍ଣ ଥାଳି ପ୍ରେରଣ କରିବାର ସାମର୍ଥ୍ୟ ତୁମପାଳନ-କର୍ତ୍ତାଙ୍କର ଅଛି ?'' ଏଥି ଉତ୍ତାରୁ ଇସା — ମସିହ କହିଲେ, ''ଯଦି ତୁମେମାନେ ପ୍ରକୃତ ବିଶ୍ୱାସକାରୀ ହୋଇଥାଅ ତେବେ ଅଲ୍ଲାହଙ୍କୁ ଭୟ କର ।''

قَالُوا نُرِيدُ أَن نَّأْكُلَ مِنْهَا وَتَطْمَئِنَّ قُلُوبُنَا وَنَعْلَمَ أَن قَدْ صَدَقْتَنَا وَنَكُونَ عَلَيْهَا مِنَ الشَّاهِدِينَ ﴿١١٤﴾

୧୧୪. ସେମାନେ (ଅର୍ଥାତ୍ ଅନୁଚରମାନେ) କହିଲେ, ''ଆମେମାନେ ଇଚ୍ଛା କରୁଅଛୁ ଯେ ଆମେମାନେ ସେଥିରୁ (ଅର୍ଥାତ୍ ସେହି ଖାଦ୍ୟପୂର୍ଣ୍ଣ ଥାଳିରୁ) ଖାଇବୁ ଏବଂ ଆମମାନଙ୍କର ହୃଦୟ ତୃପ୍ତ ହେବ (ଯେ ଆମମାନଙ୍କର ଅଲ୍ଲାହ ସର୍ବ-ଶକ୍ତିମାନ) ଏବଂ ଆମମାନଙ୍କର ବିଶ୍ୱାସ ହେବ ଯେ ତୁମେ ଆମକୁ ସତ୍ୟ କହିଅଛ ଏବଂ ଆମେମାନେ ସେ ବିଷୟରେ ସାକ୍ଷ୍ୟ ପ୍ରଦାନ କରିବାକୁ ସକ୍ଷମ ହେବୁ ।''

---

[1] ଯୀଶୁ ମୃତ ବ୍ୟକ୍ତିଙ୍କୁ ଜୀବିତ କରୁଥିବା ସମ୍ବନ୍ଧରେ କେତେକ ଭାଷ୍ୟକାର ଯେଉଁ ମତ ପୋଷଣ କରନ୍ତି ତାହାକୁ କୋରାନ ଗ୍ରନ୍ଥ ଖଣ୍ଡନ କରୁଅଛି । କାରଣ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଜୀବିତ କରାଇ ପାରିବ ନାହିଁ । (୧୦:୫୭, ୪୪:୯ ଓ ୫୭:୩ ଦ୍ରଷ୍ଟବ୍ୟ) । ଅନ୍ୟ ପକ୍ଷରେ କୋରାନ ଗ୍ରନ୍ଥରେ ଅନ୍ୟତ୍ର ମୃତକୁ ଜୀବିତ କରାଇବା କର୍ମ ହଜରତ ମହମ୍ମଦଙ୍କ ସକାଶେ ମଧ୍ୟ ପ୍ରୟୋଗ କରାଯାଇଛି । (୮:୨୫ ଦ୍ରଷ୍ଟବ୍ୟ) । ଆଲୋଚ୍ୟ ଆୟତରେ ଆଧ୍ୟାତ୍ମିକ ଜୀବନ ହିଁ ଅଭିପ୍ରେତ, ଶାରୀରିକ ନୁହେଁ ।

କେତେକ ଭାଷ୍ୟକାର ମତବ୍ୟକ୍ତ କରନ୍ତି ଯେ ଅନ୍ୟ ଜଣେ ବ୍ୟକ୍ତିର ରୂପକୁ ଯୀଶୁଙ୍କ ରୂପ ଭଳି କରାଇ ତାଙ୍କୁ ଯୀଶୁଙ୍କ ସ୍ଥାନରେ କ୍ରୁଶରେ ଚଢ଼ା ଯାଇଥିଲା । ଏହା ବାସ୍ତବରେ ଏକ ହାସ୍ୟାସ୍ପଦ ଯୁକ୍ତି । ଯଦି ପ୍ରକୃତରେ ଏପରି ହୋଇଥାଏ ତେବେ ଇହୁଦୀମାନଙ୍କ କଥା ସତ, କାରଣ ସେମାନେ ବୁଝିଥିଲେ ଯେ କ୍ରୁଶବିଦ୍ଧ ହୋଇ ଯୀଶୁ ପ୍ରାଣତ୍ୟାଗ କରିଛନ୍ତି । କେବଳ ଯୀଶୁଙ୍କ ସମ୍ବନ୍ଧରେ କାହିଁକି ଏପରି ଭାଷା ବ୍ୟବହୃତ ହୋଇଛି ବୋଲି କେତେକ ଅବଶ୍ୟ ସନ୍ଦେହରେ ପଡ଼ିଛନ୍ତି । ତା'ର ଉତ୍ତର ହେଉଛି—ଯୀଶୁ ଉପମା ମାଧ୍ୟମରେ କଥା କହିବାର ଭବିଷ୍ୟବାଣୀ ରହିଅଛି (ମାଥିଉ—ଅଧ୍ୟାୟ ୧୩ ଦ୍ରଷ୍ଟବ୍ୟ) । ତେଣୁ ଯେଉଁସବୁ ବିଷୟ ପବିତ୍ର କୋରାନରେ ବର୍ଣ୍ଣନା କରାଯାଇଛି ସେସବୁ ଇଞ୍ଜିଲରେ ଥିବା ଦୃଷ୍ଟାନ୍ତ ମୁତାବକ ବର୍ଣ୍ଣନା କରାଯାଇଛି ।

قَالَ عِيسَى ابْنُ مَرْيَمَ اللّٰهُمَّ رَبَّنَآ أَنْزِلْ عَلَيْنَا مَآئِدَةً مِّنَ السَّمَآءِ تَكُوْنُ لَنَا عِيْدًا لِّاَوَّلِنَا وَاٰخِرِنَا وَاٰيَةً مِّنْكَ ۚ وَارْزُقْنَا وَاَنْتَ خَيْرُ الرّٰزِقِيْنَ ﴿۱۱۵﴾

୧୧୫. ଏଥି ଉତ୍ତାରୁ ମରିୟମନନ୍ଦନ ଇସା କହିଲେ, "ହେ ଅଲ୍ଲାହ ! ହେ ଆମମାନଙ୍କର ପାଳନକର୍ତ୍ତା, ଆମମାନଙ୍କ ପାଇଁ ଆକାଶରୁ ଏକ ଖାଦ୍ୟ ପୂର୍ଣ୍ଣ ଥାଳି ପ୍ରେରଣ କର ଯାହାକି ଆମ (ଖ୍ରୀଷ୍ଟିୟାନ) ମାନଙ୍କ ମଧ୍ୟରୁ ପ୍ରଥମ ଭାଗ[୧] ପାଇଁ ଓ ଶେଷଭାଗ ପାଇଁ ମଧ୍ୟ ଏକ ମହୋତ୍ସବ ହେବ, ଏବଂ ତୁମଠାରୁ ଏକ ନିଦର୍ଶନ ହେବ, ଏବଂ ତୁମେ (ନିଜ ପାଖରୁ) ଆମମାନଙ୍କୁ ଜୀବିକା ପ୍ରଦାନ କର, ଏବଂ ଜୀବିକା ପ୍ରଦାନକାରୀମାନଙ୍କ ମଧ୍ୟରେ ତୁମେ ସର୍ବଶ୍ରେଷ୍ଠ ଜୀବିକା ପ୍ରଦାନକାରୀ।"

قَالَ اللّٰهُ اِنِّيْ مُنَزِّلُهَا عَلَيْكُمْ ۚ فَمَنْ يَّكْفُرْ بَعْدُ مِنْكُمْ فَاِنِّيْٓ اُعَذِّبُهٗ عَذَابًا لَّآ اُعَذِّبُهٗٓ اَحَدًا مِّنَ الْعٰلَمِيْنَ ﴿۱۱۶﴾

୧୧୬. ଅଲ୍ଲାହ କହିଲେ, "ଆମେ ତୁମମାନଙ୍କ ନିକଟକୁ ଏପରି (ଖାଦ୍ୟପୂର୍ଣ୍ଣ ଥାଳି) ନିଶ୍ଚୟ ପ୍ରେରଣ କରିବୁ, ସୁତରାଂ ଏହା (ପ୍ରେରିତ ହେବା) ପରେ ତୁମମାନଙ୍କ ମଧ୍ୟରୁ ଯେ କେହି ଅକୃତଜ୍ଞ ହେବ ତେବେ, ତାହାକୁ ଆମେ ନିଶ୍ଚୟ ଏପରି ଏକ ଶାସ୍ତି[୨] ଦେବୁ ଯେ ସେପରି ଶାସ୍ତି ପୃଥିବୀର ଅନ୍ୟ କାହାକୁ ଦେବୁ ନାହିଁ।"

୧. ଏହି ପ୍ରାର୍ଥନାର ପରିଣାମ ସ୍ୱରୂପ ଆଦ୍ୟ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ବିଭିନ୍ନ ଦେଶରେ ରାଜତ୍ୱ କରିଥିଲେ ଏବଂ ଅନ୍ତିମ ସମ୍ପ୍ରଦାୟ ମଧ୍ୟ। ମଧ୍ୟବର୍ତ୍ତୀ କାଳରେ ହଜରତ ମହମ୍ମଦଙ୍କର ସେବକମାନେ ସେମାନଙ୍କର ଏହି ଆଧିପତ୍ୟକୁ ନିଃଶେଷ କରିଦେଇଥିଲେ। ସମ୍ପ୍ରତି ଯେତେବେଳେ କୋରାନ ବର୍ଣ୍ଣିତ ଭବିଷ୍ୟତ ବାଣୀ ସତ୍ୟ ସାବ୍ୟସ୍ତ ହୋଇଯାଇଛି, ସେତେବେଳେ ଏକ ପକ୍ଷରେ ମୁସଲମାନମାନେ ଏପରି ଅତିରଞ୍ଜିତ କରୁଛନ୍ତି କି ଆକାଶରେ ଦେବଦୂତ ଜିବ୍ରାଇଲ ସୁସ୍ୱାଦୁ ଭୋଜନ ପ୍ରସ୍ତୁତ କରାଇ, ତାହାକୁ ଅନ୍ୟାନ୍ୟ ଦେବଦୂତଙ୍କ ମୁଣ୍ଡରେ ଲଦି ସକାଳେ ଓ ସନ୍ଧ୍ୟାରେ ଖ୍ରୀଷ୍ଟିୟାନମାନଙ୍କ ପାଇଁ ବୋହି ଆଣୁଛନ୍ତି ଏବଂ ଅନ୍ୟ ପକ୍ଷରେ ଖ୍ରୀଷ୍ଟିୟାନ ଶାସକମାନଙ୍କ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ ମଧ୍ୟ କରୁଛନ୍ତି।

୨. ଏଠାରେ ବର୍ଣ୍ଣନା କରାଯାଇଛି ଯେ ଯେଉଁମାନେ ଭୋଜନ ପାଇଁ ଅନୁରୋଧ କରୁଛନ୍ତି ସେମାନଙ୍କୁ ଅଭୂତପୂର୍ବ ଶାସ୍ତି ମିଳିବ। ଅନ୍ୟତ୍ର ଏହି ବିଷୟ ଖ୍ରୀଷ୍ଟିୟାନମାନଙ୍କ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି ଯେ ସେମାନେ ଅଲ୍ଲାହଙ୍କ ସହିତ ଅନ୍ୟକୁ ସମକକ୍ଷ ଉପାସ୍ୟ ଭାବେ ଗ୍ରହଣ କରିଥିବାରୁ ସେମାନଙ୍କୁ କଠୋର ଶାସ୍ତି ଦିଆଯିବ। (୩:୫୭ ଦ୍ରଷ୍ଟବ୍ୟ)। ଅତଏବ ଏହି ବିଷୟ ଯୀଶୁଙ୍କର ତତ୍କାଳୀନ ଶିଷ୍ୟମାନଙ୍କ ସମ୍ପର୍କରେ ନ ଥିଲା। ବରଂ ସାମଗ୍ରିକ ଭାବେ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ବିରୁଦ୍ଧରେ ଥିଲା। ଯୀଶୁ ନିଶ୍ଚିତ ରୂପେ ଏକେଶ୍ୱରବାଦ ଶିକ୍ଷା ଦେଇଥିଲେ। (ମାଥିଉ ୪ : ୧୦ ଓ ଲୁକ୍ ୪ : ୮ ଦ୍ରଷ୍ଟବ୍ୟ)। ଖ୍ରୀଷ୍ଟିୟାନମାନେ ଆଦ୍ୟ ପର୍ଯ୍ୟାୟରେ ଅର୍ଥାତ୍ ରୋମ ସାମ୍ରାଜ୍ୟ ସମୟରେ ମଧ୍ୟ ଅନେକ ସଫଳତା ଲାଭ କରିଥିଲେ ଏବଂ ଅନ୍ତିମ ପର୍ଯ୍ୟାୟରେ ଅର୍ଥାତ୍ ଖ୍ରୀଷ୍ଟୀୟ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ମଧ୍ୟ ବହୁ ସଫଳତା ହାସଲ କରିଥିଲେ। ଏହି ଆୟତ ଅନ୍ତର୍ଗତ ଭବିଷ୍ୟବାଣୀ ମାଧ୍ୟମରେ ସେମାନଙ୍କୁ ଜଣାଇ ଦିଆଯାଇଥିଲା ଯେ ଅଲ୍ଲାହ ନିଜର ପ୍ରତିଶ୍ରୁତି ମୁତାବକ ସେମାନଙ୍କୁ ସକାଳେ ଓ ସନ୍ଧ୍ୟାରେ ପ୍ରଚୁର ପରିମାଣରେ ଭୋଜନ ସାମଗ୍ରୀ ପ୍ରଦାନ କରିବେ। କିନ୍ତୁ ଯେଉଁମାନେ ଏହା ସତ୍ତ୍ୱେ ଅବଜ୍ଞା ଜାରି ରଖିବେ ଅଲ୍ଲାହ ସେମାନଙ୍କୁ ନିଶ୍ଚୟ ଏପରି କଠୋର ଶାସ୍ତି ଦେବେ ଯାହା ପୂର୍ବରୁ ସେ ଦେଇ ନାହାନ୍ତି। ସୁତରାଂ ଏଠାରେ ଖ୍ରୀଷ୍ଟିୟାନମାନଙ୍କର ଦୁଇଗୋଟି ଯୁଗ ସମ୍ବନ୍ଧରେ ଭବିଷ୍ୟବାଣୀ ଅଛି। ଅତଏବ ଯୀଶୁଙ୍କ ଶିଷ୍ୟମାନେ ଏ ବିଷୟରେ ଆଦୌ ସମ୍ପୃକ୍ତ ନୁହନ୍ତି। ପରବର୍ତ୍ତୀ ଆୟତରୁ ମଧ୍ୟ ଏହା ସ୍ପଷ୍ଟ ହୋଇଯାଉଛି, କାରଣ ଉକ୍ତ ଶିଷ୍ୟମାନେ ଅଲ୍ଲାହଙ୍କ ସହିତ ଅନ୍ୟକୁ ସମକକ୍ଷ ଉପାସ୍ୟ ସ୍ଥିର କରି ନ ଥିଲେ।

ରୁ: ୧୬

وَاِذْ قَالَ اللّٰهُ يٰعِيْسَى ابْنَ مَرْيَمَ ءَاَنْتَ قُلْتَ لِلنَّاسِ اتَّخِذُوْنِيْ وَاُمِّيَ اِلٰهَيْنِ مِنْ دُوْنِ اللّٰهِ ؕ قَالَ سُبْحٰنَكَ مَا يَكُوْنُ لِيْٓ اَنْ اَقُوْلَ مَا لَيْسَ لِيْ بِحَقٍّ ؕ اِنْ كُنْتُ قُلْتُهٗ فَقَدْ عَلِمْتَهٗ ؕ تَعْلَمُ مَا فِيْ نَفْسِيْ وَلَآ اَعْلَمُ مَا فِيْ نَفْسِكَ ؕ اِنَّكَ اَنْتَ عَلَّامُ الْغُيُوْبِ ﴿۱۱۷﴾

୧୧୭. ଏବଂ ଯେତେବେଳେ ଅଲ୍ଲାହ କହିବେ,[୧] "ହେ ମରିୟମନନ୍ଦନ ଇସା ! କ'ଣ ତୁମେ ଲୋକମାନଙ୍କୁ କହିଥିଲ, "ଆମକୁ ଓ ଆମର ମାତାକୁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଦୁଇ ଉପାସ୍ୟ ସ୍ଥିର କର ?" ସେ ଉତ୍ତର ଦେଲେ, "ତୁମେ ହି ପବିତ୍ର; ଆମ ପକ୍ଷରେ ଶୋଭନୀୟ ନ ଥିଲା ଯେ ଆମେ ତାହା କହନ୍ତୁ ଯାହା (କହିବା)ର ଅଧିକାର ଆମର ନ ଥିଲା; ଏବଂ ଯଦି ଆମେ ଏପରି କହିଥିବୁ ତେବେ ତୁମକୁ ଏହା ନିଶ୍ଚୟ ଜଣାଥିବ, ଆମ ଅନ୍ତରରେ ଯାହା କିଛି ଅଛି ତାହା ତୁମେ ଜାଣ, ଏବଂ ତୁମ ଅନ୍ତରରେ ଯାହା ଅଛି, ତାହା ଆମେ ଜାଣୁ ନାହିଁ; ବାସ୍ତବରେ ତୁମେ ହି ଅଦୃଶ୍ୟ ବିଷୟକୁ ଉତ୍ତମ ରୂପେ ଜାଣ ।

مَا قُلْتُ لَهُمْ اِلَّا مَآ اَمَرْتَنِيْ بِهٖٓ اَنِ اعْبُدُوا اللّٰهَ رَبِّيْ وَرَبَّكُمْ ۚ وَكُنْتُ عَلَيْهِمْ شَهِيْدًا مَّا دُمْتُ فِيْهِمْ ۚ فَلَمَّا تَوَفَّيْتَنِيْ كُنْتَ اَنْتَ الرَّقِيْبَ عَلَيْهِمْ ؕ وَاَنْتَ عَلٰى كُلِّ شَيْءٍ شَهِيْدٌ ﴿۱۱۸﴾

୧୧୮. ଆମେ ସେମାନଙ୍କୁ କେବଳ ତାହା କହିଥିଲୁ ଯାହାର ଆଦେଶ ତୁମେ ଆମକୁ ଦେଇଥିଲ; ଅର୍ଥାତ୍ ଅଲ୍ଲାହଙ୍କର ଉପାସନା କର ଯିଏ ଆମର ପାଳନକର୍ତ୍ତା ଏବଂ ତୁମମାନଙ୍କର ପାଳନକର୍ତ୍ତା, ଏବଂ ଯେ ପର୍ଯ୍ୟନ୍ତ ଆମେ ସେମାନଙ୍କ ମଧ୍ୟରେ ଥିଲୁ,[୨] ସେ ପର୍ଯ୍ୟନ୍ତ ଆମେ ସେମାନଙ୍କର ତତ୍ତ୍ୱାବଧାରକ ଥିଲୁ; କିନ୍ତୁ ଯେତେବେଳେ ତୁମେ ଆମର ପ୍ରାଣନାଶ କଲ (ସେତେବେଳେ) ତୁମେ ହିଁ ସେମାନଙ୍କର ତତ୍ତ୍ୱାବଧାରକ ଥିଲ; (ଆମେ ନ ଥିଲୁ) ଏବଂ ତୁମେ ହି ସକଳ ବିଷୟର ତତ୍ତ୍ୱାବଧାରକ ।

---

୧. ଆରବୀ 'କା'ଲା' ଶବ୍ଦ ଅତୀତ କାଳକୁ ସୂଚାଉଥିଲେ ମଧ୍ୟ ଏଠାରେ ଭବିଷ୍ୟତ କାଳରେ ପ୍ରୟୋଗ କରାଯାଇଛି । ତେଣୁ ଅଲ୍ଲାହ କିୟାମତ ଦିନ ଏପରି କହିବେ କାରଣ ଯୀଶୁଙ୍କ ମୃତ୍ୟୁର ବହୁକାଳ ପରେ ଖ୍ରୀଷ୍ଟିୟାନମାନେ ଯୀଶୁ ଓ ତାଙ୍କ ମାତାଙ୍କୁ ଅଲ୍ଲାହଙ୍କ ସମକକ୍ଷ ଉପାସ୍ୟ ସ୍ଥିର କରିଥିଲେ ।

୨. ଯୀଶୁ ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କ ଅନୁଗାମୀମାନଙ୍କ ଉପରେ ଦୃଷ୍ଟି ରଖିଥିଲେ ଯେପରିକି ସେମାନେ ପଥଭ୍ରଷ୍ଟ ହୋଇଯିବେ ନାହିଁ । କିନ୍ତୁ ତାଙ୍କର ଦେହାନ୍ତ ହେବା ପରେ ସେମାନେ କେଉଁ କେଉଁ ଭ୍ରାନ୍ତ ସିଦ୍ଧାନ୍ତର ଅନୁସରଣ କଲେ ତାହା ସେ ଜାଣି ନ ଥିଲେ । ଏହି ଆୟତରୁ ସୂଚନା ମିଳୁଛି ଯେ ତାଙ୍କ ମୃତ୍ୟୁ ପରେ ତାଙ୍କ ଅନୁଗାମୀମାନେ ତାଙ୍କୁ ଈଶ୍ୱର ସଦୃଶ ପୂଜା କରୁଛନ୍ତି । ସେହିପରି ତାଙ୍କୁ ଓ ତାଙ୍କ ମାତାଙ୍କୁ ଉପାସ୍ୟ ରୂପେ ଗ୍ରହଣ କରାଯାଇଥିବା ବିଷୟରେ ଯୀଶୁ ନିଜର ଯେଉଁ ଅଜ୍ଞତା ପ୍ରକାଶ କରିଛନ୍ତି ସେ ସମ୍ବନ୍ଧରେ ଏହି ଆୟତରେ ତାହା ସ୍ପଷ୍ଟ ଭାବରେ ବର୍ଣ୍ଣନା କରାଯାଇଛି ଓ ଯୀଶୁ ଆଉ ଥରେ ସଂସାରକୁ ନ ଫେରିବା ବିଷୟରେ ତହିଁରେ ପ୍ରମାଣ ରହିଅଛି । ଯଦି ସେ ପୁନର୍ବାର ସଂସାରକୁ ଫେରିବାର ଥାଆନ୍ତା ଓ ତାଙ୍କ ଅନୁଗାମୀମାନଙ୍କ ଦ୍ୱାରା ଅନୁସରଣ କରାଯାଉଥିବା ଅସତ୍ ମାର୍ଗକୁ ସେ ସ୍ୱଚକ୍ଷୁରେ ଦେଖିବାର ଥାଆନ୍ତା, ତେବେ ସେ ସେମାନଙ୍କ କୃତ୍ୟ ସମ୍ବନ୍ଧରେ ନିଜ ଅଜ୍ଞତା ପ୍ରକାଶ କରି ନ ଥାଆନ୍ତେ । ତେଣୁ ଯଦି ସେ ଅଜ୍ଞତା ପ୍ରକାଶ କରିବେ , ତେବେ ତାହା ନିଶ୍ଚିତ ରୂପେ ମିଥ୍ୟା କଥନ ହେବ । ଅନ୍ୟ ପକ୍ଷରେ ଯୀଶୁଙ୍କ ଦେହାବସାନ ବିଷୟରେ ଏହି ଆୟତରୁ ସ୍ପଷ୍ଟ ପ୍ରମାଣ ମିଳୁଛି ।

إِنْ تُعَذِّبْهُمْ فَإِنَّهُمْ عِبَادُكَ ۖ وَإِنْ تَغْفِرْ لَهُمْ فَإِنَّكَ أَنْتَ الْعَزِيزُ الْحَكِيمُ ﴿١١٩﴾

୧୧୯. ଯଦି ତୁମେ ସେମାନଙ୍କୁ ଶାସ୍ତି ପ୍ରଦାନ କରିବାକୁ ଇଚ୍ଛା କର, ତାହାହେଲେ ସେମାନେ ତୁମର ଭକ୍ତ, ଏବଂ ଯଦି ତୁମେ ସେମାନଙ୍କୁ କ୍ଷମା କରିବା ଇଚ୍ଛା କର, ତେବେ ତୁମେ ଅତ୍ୟନ୍ତ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

قَالَ اللَّهُ هَٰذَا يَوْمُ يَنْفَعُ الصَّادِقِينَ صِدْقُهُمْ ۚ لَهُمْ جَنَّاتٌ تَجْرِي مِنْ تَحْتِهَا الْأَنْهَارُ خَالِدِينَ فِيهَا أَبَدًا ۚ رَضِيَ اللَّهُ عَنْهُمْ وَرَضُوا عَنْهُ ۚ ذَٰلِكَ الْفَوْزُ الْعَظِيمُ ﴿١٢٠﴾

୧୨୦. ଅଲ୍ଲାହ କହିଲେ, "ଏହି ଦିନ ସତ୍ୟବାଦୀମାନେ ସେମାନଙ୍କ ସତ୍ୟତା ପାଇଁ ଲାଭବାନ୍ ହେବେ, ସେମାନଙ୍କୁ ଏପରି ଉଦ୍ୟାନମାନ ପ୍ରାପ୍ତ ହେବ ଯାହାର ନିମ୍ନ ଦେଶରେ ଝରଣାମାନ ପ୍ରବାହିତ ହେଉଥିବ, ସେଥିରେ ସେମାନେ ଚିରକାଳ ରହିବେ;" ଅଲ୍ଲାହ ସେମାନଙ୍କ ପ୍ରତି ସନ୍ତୁଷ୍ଟ ଓ ସେମାନେ ତାହାଙ୍କ ପ୍ରତି ସନ୍ତୁଷ୍ଟ ରହିବେ, ଏହା ଏକ ମହାନ୍ ସାଫଲ୍ୟ ।

لِلَّهِ مُلْكُ السَّمَاوَاتِ وَالْأَرْضِ وَمَا فِيهِنَّ ۚ وَهُوَ عَلَىٰ كُلِّ شَيْءٍ قَدِيرٌ ﴿١٢١﴾

୧୨୧. ଆକାଶ ଓ ପୃଥିବୀ, ଏବଂ ତନ୍ମଧ୍ୟରେ ଯାହା କିଛି ଅଛି, ସେ ସମସ୍ତ ଉପରେ ଅଲ୍ଲାହଙ୍କର ଆଧିପତ୍ୟ ଅଛି ଏବଂ ଅଲ୍ଲାହ ପ୍ରତ୍ୟେକ ବିଷୟ କରିବାକୁ ସମ୍ପୂର୍ଣ୍ଣରୂପେ ସକ୍ଷମ ।

سُوۡرَةُ الۡاَنۡعَامِ مَكِّيَّةٌ (٦)

# ଅଲ-ଅନଆମ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ, ଏଥିରେ ବିସ୍‌ମିଲ୍ଲାହ ସମେତ ୧୬୬ଟି ଆୟତ ଓ ୨୦ଟି ରୁକୁ ଅଛି ।)

بِسۡمِ اللّٰهِ الرَّحۡمٰنِ الرَّحِيۡمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି)।

اَلۡحَمۡدُ لِلّٰهِ الَّذِىۡ خَلَقَ السَّمٰوٰتِ وَالۡاَرۡضَ وَجَعَلَ الظُّلُمٰتِ وَالنُّوۡرَ ؕ ثُمَّ الَّذِيۡنَ كَفَرُوۡا بِرَبِّهِمۡ يَعۡدِلُوۡنَ ②

୨. (କେବଳ) ଅଲ୍ଲାହ୍ ହିଁ ସମସ୍ତ ପ୍ରଶଂସାର ଯୋଗ୍ୟ ଯେ କି ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ଏବଂ ଅନ୍ଧକାର ଓ ଜ୍ୟୋତିକୁ ମଧ୍ୟ ସୃଷ୍ଟି କରିଛନ୍ତି; ଏହା ସତ୍ତ୍ୱେ ଅବିଶ୍ୱାସକାରୀମାନେ ସେମାନଙ୍କ ପାଳନକର୍ତ୍ତାଙ୍କ (ସହିତ ଅନ୍ୟକୁ) ସମକକ୍ଷ କରୁଛନ୍ତି ।

هُوَ الَّذِىۡ خَلَقَكُمۡ مِّنۡ طِيۡنٍ ثُمَّ قَضٰۤى اَجَلًا ؕ وَاَجَلٌ مُّسَمًّى عِنۡدَهٗ ثُمَّ اَنۡتُمۡ تَمۡتَرُوۡنَ ③

୩. ସେ ଅଲ୍ଲାହ୍ ହିଁ ତୁମମାନଙ୍କୁ ଓଦା ମାଟିରୁ ସୃଷ୍ଟି କରିଛନ୍ତି; ଏବଂ ତତ୍‌ପରେ (ଜୀବନକାଳ ପାଇଁ)[1] ଏକ ଅବଧି ନିର୍ଦ୍ଧାରିତ କରିଛନ୍ତି; ଏବଂ ଅନ୍ୟ ଏକ ଅବଧି ମଧ୍ୟ (ସଂସାର ପାଇଁ) ନିରୂପିତ ହୋଇ ରହିଛି ଯାହା ବିଷୟରେ କେବଳ ସେ ହିଁ ଜାଣନ୍ତି; ତଥାପି ତୁମେ ସନ୍ଦେହ କରୁଅଛ ।

وَهُوَ اللّٰهُ فِى السَّمٰوٰتِ وَفِى الۡاَرۡضِ ؕ يَعۡلَمُ سِرَّكُمۡ وَجَهۡرَكُمۡ وَيَعۡلَمُ مَا تَكۡسِبُوۡنَ ④

୪. ଏବଂ ଆକାଶ ଓ ପୃଥିବୀରେ ସେ ହିଁ ଅଲ୍ଲାହ୍ ଯେ ତୁମମାନଙ୍କର ଗୁପ୍ତ ଓ ତୁମମାନଙ୍କର ପ୍ରକାଶ୍ୟ ବିଷୟଗୁଡ଼ିକୁ ମଧ୍ୟ ଜାଣନ୍ତି; ଏବଂ ଯାହା କିଛି ତୁମେମାନେ ଅର୍ଜନ କରୁଅଛ, ସେ ତାହାକୁ ମଧ୍ୟ ଜାଣନ୍ତି ।

وَمَا تَاۡتِيۡهِمۡ مِّنۡ اٰيَةٍ مِّنۡ اٰيٰتِ رَبِّهِمۡ اِلَّا كَانُوۡا عَنۡهَا مُعۡرِضِيۡنَ ⑤

୫. ଏବଂ ସେମାନଙ୍କ ନିକଟକୁ ସେମାନଙ୍କର ପାଳନକର୍ତ୍ତାଙ୍କର ନିଦର୍ଶନଗୁଡ଼ିକ ମଧ୍ୟରୁ କେବେହେଲେ କୌଣସି ନିଦର୍ଶନ ଆସି ନାହିଁ, କିନ୍ତୁ ସେମାନେ ଏଥିରୁ ବିମୁଖ ହେଉଛନ୍ତି ।

---

୧. ପ୍ରଥମ ଅବଧି ଜଣେ ବ୍ୟକ୍ତିର ଜୀବନକାଳକୁ ଓ ଦ୍ୱିତୀୟ ଅବଧି ପୃଥିବୀର ଜୀବନକାଳକୁ ବୁଝାଉଛି ।

୬. ସୁତରାଂ ଯେତେବେଳେ ସମ୍ପୂର୍ଣ୍ଣ ସତ୍ୟ (ଅର୍ଥାତ୍ ପବିତ୍ର କୋରାନ) ସେମାନଙ୍କ ନିକଟକୁ ଆସିଲା ସେତେବେଳେ ମଧ୍ୟ ସେମାନେ ତାହାକୁ ଅଗ୍ରାହ୍ୟ କରିଥିଲେ, ଏବେ ଏହାର ପରିଣାମ ଏପରି[1] ହେବ ଯେ ଯେଉଁ ବିଷୟ ସମ୍ବନ୍ଧରେ ସେମାନେ ଉପହାସ କରୁଥିଲେ ତାହା ଘଟିବାର ସମାଗ୍ରର ଶୀଘ୍ର ସେମାନଙ୍କ ନିକଟକୁ ଆସିବ ।

فَقَدْ كَذَّبُوا بِالْحَقِّ لَمَّا جَاءَهُمْ فَسَوْفَ يَأْتِيهِمْ أَنبَاءُ مَا كَانُوا بِهِ يَسْتَهْزِئُونَ ﴿٦﴾

୭. ସେମାନଙ୍କୁ କ'ଣ ଜଣା ନାହିଁ ଯେ ଆମେ ସେମାନଙ୍କ ପୂର୍ବରୁ ବିଭିନ୍ନ ଅଞ୍ଚଳର ଅନେକ ମାନବ ଜାତିକୁ ଧ୍ୱଂସ କରିଅଛୁ ଯେଉଁମାନଙ୍କୁ ଆମେ ପୃଥିବୀରେ ଏତେ ଶକ୍ତି ପ୍ରଦାନ କରିଥିଲୁ ଯେତେ ଶକ୍ତି ତୁମମାନଙ୍କୁ ପ୍ରଦାନ କରିନାହୁଁ; ଏବଂ ଆମେ ସେମାନଙ୍କ ଉପରେ ଅଜସ୍ର ବୃଷ୍ଟିପାତ କରୁଥିବା ମେଘମାଳା ପ୍ରେରଣ କରିଥିଲୁ, ଏବଂ ତହିଁରୁ ଏପରି ଝରଣାମାନ ପ୍ରବାହିତ କରାଇଥିଲୁ ଯାହା ସେମାନଙ୍କ ନିୟନ୍ତ୍ରଣରେ ପ୍ରବାହିତ ହେଉଥିଲା; ତତ୍‌ପରେ ଆମେ ସେମାନଙ୍କୁ ସେମାନଙ୍କ ପାପ ପାଇଁ ଧ୍ୱଂସ କରିଦେଲୁ; ଏବଂ ସେମାନଙ୍କ ପରେ ଅନ୍ୟ ଏକ ମାନବ ଜାତି ସୃଷ୍ଟି କରିଥିଲୁ ।

أَلَمْ يَرَوْا كَمْ أَهْلَكْنَا مِن قَبْلِهِم مِّن قَرْنٍ مَّكَّنَّاهُمْ فِي الْأَرْضِ مَا لَمْ نُمَكِّن لَّكُمْ وَأَرْسَلْنَا السَّمَاءَ عَلَيْهِم مِّدْرَارًا وَجَعَلْنَا الْأَنْهَارَ تَجْرِي مِن تَحْتِهِمْ فَأَهْلَكْنَاهُم بِذُنُوبِهِمْ وَأَنشَأْنَا مِن بَعْدِهِمْ قَرْنًا آخَرِينَ ﴿٧﴾

୮. ଏବଂ ଯଦି ଆମେ ତୁମ ପ୍ରତି ଏକ କାଗଜ ଉପରେ ଲିଖିତ ପୁସ୍ତକ ଅବତୀର୍ଣ୍ଣ କରିଥାନ୍ତୁ ଯାହାକୁ ସେମାନେ ସ୍ୱହସ୍ତରେ ସ୍ପର୍ଶ କରି ପାରନ୍ତେ ତେବେ ବି ଅବିଶ୍ୱାସକାରୀମାନେ କହନ୍ତେ ଯେ ଏହା ତ ଏକ ପ୍ରକାଶ୍ୟ ପ୍ରତାରଣା ।

وَلَوْ نَزَّلْنَا عَلَيْكَ كِتَابًا فِي قِرْطَاسٍ فَلَمَسُوهُ بِأَيْدِيهِمْ لَقَالَ الَّذِينَ كَفَرُوا إِنْ هَٰذَا إِلَّا سِحْرٌ مُّبِينٌ ﴿٨﴾

୯. ଏବଂ (ବିରୋଧୀମାନେ) କହୁଛନ୍ତି; "ତାହାଙ୍କ ନିକଟରେ କାହିଁକି କୌଣସି ଦେବଦୂତ[2] ଅବତୀର୍ଣ୍ଣ ହେଉ ନାହାନ୍ତି ?" ଏବଂ ଯଦି ଆମେ ଦେବଦୂତ ଅବତୀର୍ଣ୍ଣ କରିଥାନ୍ତୁ ତେବେ ନିଷ୍ପତ୍ତି ହୋଇଯାଇଥାନ୍ତା (ଏବଂ) ତା' ପରେ ସେମାନଙ୍କୁ ଆଉ ଅବସର ଦିଆଯାଇ ନ ଥା'ନ୍ତା ।

وَقَالُوا لَوْلَا أُنزِلَ عَلَيْهِ مَلَكٌ ۖ وَلَوْ أَنزَلْنَا مَلَكًا لَّقُضِيَ الْأَمْرُ ثُمَّ لَا يُنظَرُونَ ﴿٩﴾

୧୦. ଏବଂ (ଏହା ମଧ୍ୟ ମନେ ରଖିବାକୁ ହେବ ଯେ) ଯଦି ଆମେ ତାହାଙ୍କୁ (ଅର୍ଥାତ୍ ସେହି ବାର୍ତ୍ତାବହଙ୍କୁ) ଦେବଦୂତ ମାନଙ୍କ ମଧ୍ୟରୁ ମନୋନୀତ କରିଥାଆନ୍ତୁ, ତେବେ ବି ଆମେ ତାହାଙ୍କୁ ମାନବ ଆକୃତି ପ୍ରଦାନ କରିଥାନ୍ତୁ ଏବଂ ସେମାନଙ୍କୁ ସେହି ସନ୍ଦେହରେ ପକାଇ ଦିଅନ୍ତୁ ଯେଉଁଥିରେ ସେମାନେ ବର୍ତ୍ତମାନ ପଡିଛନ୍ତି ।

وَلَوْ جَعَلْنَاهُ مَلَكًا لَّجَعَلْنَاهُ رَجُلًا وَلَلَبَسْنَا عَلَيْهِم مَّا يَلْبِسُونَ ﴿١٠﴾

---

[1] ଅର୍ଥାତ୍ ସେମାନଙ୍କ ଉପହାସ ଯୋଗୁଁ ସେମାନଙ୍କ ପ୍ରତି ଶୀଘ୍ର ଶାସ୍ତି ଅବତୀର୍ଣ୍ଣ ହେବ ।

[2] ଅର୍ଥାତ୍ ଅବିଶ୍ୱାସକାରୀଙ୍କ ସକାଶେ ଯେବେ କୌଣସି ଦେବଦୂତଙ୍କୁ ପ୍ରେରଣ କରାଯାଏ ତେବେ ସେ ଭୟଙ୍କର ସମାଚାର ନେଇ ଆସିଥା'ନ୍ତି ।

୧୧. ଏବଂ ତୁମ୍ଭ ପୂର୍ବରୁ ପ୍ରେରିତ ରସୁଲମାନଙ୍କ ସହିତ ମଧ୍ୟ ଉପହାସ କରାଯାଇଥିଲା, କିନ୍ତୁ ପରିଣାମରେ[1] ଯେଉଁମାନେ ଉପହାସ କରିଥିଲେ ସେମାନଙ୍କୁ ସେହି ଶାସ୍ତି ପରିବେଷ୍ଟନ କଲା ଯାହା ସମ୍ବନ୍ଧରେ ସେମାନେ ଉପହାସ କରୁଥିଲେ ।

وَلَقَدِ اسْتُهْزِئَ بِرُسُلٍ مِّنْ قَبْلِكَ فَحَاقَ بِالَّذِيْنَ سَخِرُوْا مِنْهُمْ مَّا كَانُوْا بِهٖ يَسْتَهْزِءُوْنَ ﴿١١﴾

ରୁ : ୨

୧୨. ତୁମ୍ଭେ ସେମାନଙ୍କୁ କୁହ, ''ପୃଥିବୀରେ ଭ୍ରମଣ କର, ତତ୍ପରେ ଦେଖ ଯେ ମିଥ୍ୟା ଆରୋପକାରୀମାନଙ୍କର ପରିଣାମ କ'ଣ ହୁଏ ?''

قُلْ سِيْرُوْا فِي الْاَرْضِ ثُمَّ انْظُرُوْا كَيْفَ كَانَ عَاقِبَةُ الْمُكَذِّبِيْنَ ﴿١٢﴾

୧୩. (ସେମାନଙ୍କୁ) ପଚ୍ଚର, ''ଆକାଶ ଓ ପୃଥିବୀରେ ଯାହା କିଛି ଅଛି ସେ ସବୁ କାହାର ? (ଏହାର ଉତ୍ତର ସେମାନେ ବା କ'ଣ ଦେବେ, ତେଣୁ ତୁମ୍ଭେ ସେମାନଙ୍କୁ) କୁହ, ''ଅଲ୍ଲାହଙ୍କର'', ସେ ନିଜ ଉପରେ କରୁଣାକୁ ଅନିବାର୍ଯ୍ୟ କରିଅଛନ୍ତି; ସେ ତୁମ୍ଭମାନଙ୍କୁ କୟାମତ ଦିନ ପର୍ଯ୍ୟନ୍ତ ଏକତ୍ରିତ କରୁଥିବେ; ଏଥିରେ କୌଣସି ସନ୍ଦେହ ନାହିଁ ଯେ ଯେଉଁମାନେ ନିଜ ଜୀବନକୁ କ୍ଷତିଗ୍ରସ୍ତ[2] କରାଇଛନ୍ତି ସେମାନେ ବିଶ୍ୱାସ କରିବେ ନାହିଁ ।

قُلْ لِّمَنْ مَّا فِي السَّمٰوٰتِ وَالْاَرْضِ ۭ قُلْ لِّلّٰهِ ۭ كَتَبَ عَلٰى نَفْسِهِ الرَّحْمَةَ ۭ لَيَجْمَعَنَّكُمْ اِلٰى يَوْمِ الْقِيٰمَةِ لَا رَيْبَ فِيْهِ ۭ اَلَّذِيْنَ خَسِرُوْٓا اَنْفُسَهُمْ فَهُمْ لَا يُؤْمِنُوْنَ ﴿١٣﴾

୧୪. ଯାହା କିଛି ରାତ୍ରି (ର ଅନ୍ଧକାର) ରେ ଅଛି ଓ ଦିବସ (ର ଆଲୋକ)ରେ ବିଦ୍ୟମାନ ତାହା ତାହାଙ୍କର (ଅର୍ଥାତ୍ ଅଲ୍ଲାହଙ୍କର) ଅଟେ; ଏବଂ ସେ ମହାନ୍ ଶ୍ରୋତା(ଓ)ସର୍ବଜ୍ଞ ।

وَلَهٗ مَا سَكَنَ فِي الَّيْلِ وَالنَّهَارِ ۭ وَهُوَ السَّمِيْعُ الْعَلِيْمُ ﴿١٤﴾

୧୫. (ତୁମ୍ଭେ) କୁହ, ''କ'ଣ ମୁଁ ଆକାଶ ଓ ପୃଥିବୀର ସୃଷ୍ଟିକର୍ତ୍ତା ଅଲ୍ଲାହଙ୍କ ବ୍ୟତୀତ ଅନ୍ୟକୁ ବନ୍ଧୁରୂପେ ଗ୍ରହଣ କରିବି ?'' ଯଦିଚ ସେ (ସମସ୍ତ ପ୍ରାଣୀଙ୍କୁ) ଖାଇବାକୁ ଦିଅନ୍ତି, ତାହାଙ୍କୁ କେହି ଖାଇବାକୁ ଦିଏ ନାହିଁ; (ତୁମ୍ଭେ) କୁହ, ''ଆମ୍ଭକୁ ଆଦେଶ ଦିଆଯାଇଅଛି ଯେ ଆମ୍ଭେ ସର୍ବୋତ୍ତମ ଆଜ୍ଞା ପାଳନକାରୀ ହେବୁ,'' ଏବଂ ଏହା (ମଧ୍ୟ ଆଦେଶ ଦିଆଯାଇ ଅଛି) ଯେ (ହେ ରସୁଲ !) ତୁମ୍ଭେ ମୁସରିକମାନଙ୍କର ଅନ୍ତର୍ଭୁକ୍ତ ହୁଅ ନାହିଁ ।

قُلْ اَغَيْرَ اللّٰهِ اَتَّخِذُ وَلِيًّا فَاطِرِ السَّمٰوٰتِ وَالْاَرْضِ وَهُوَ يُطْعِمُ وَلَا يُطْعَمُ ۭ قُلْ اِنِّىْٓ اُمِرْتُ اَنْ اَكُوْنَ اَوَّلَ مَنْ اَسْلَمَ وَلَا تَكُوْنَنَّ مِنَ الْمُشْرِكِيْنَ ﴿١٥﴾

୧୬. ତୁମ୍ଭେ କୁହ, ''ଯଦି ମୁଁ ନିଜ ପାଳନକର୍ତ୍ତାଙ୍କର ଅବାଧ୍ୟ ହେବି ତେବେ ମୁଁ ଏକ ଦିବସର ମହାନ୍ ଶାସ୍ତିକୁ ଭୟ କରୁଛି ।''

قُلْ اِنِّىْٓ اَخَافُ اِنْ عَصَيْتُ رَبِّيْ عَذَابَ يَوْمٍ عَظِيْمٍ ﴿١٦﴾

---

୧. ଅର୍ଥାତ୍ ଯେଉଁ ପ୍ରତିଶ୍ରୁତ ଶାସ୍ତି ସମ୍ବନ୍ଧରେ ସେମାନେ ଉପହାସ କରୁଥିଲେ ତାହାର ଆଗମନ ହେଲା ଓ ସେମାନେ ଧ୍ୱଂସ ହୋଇଗଲେ ।

୨. ଅର୍ଥାତ୍ ବିଶ୍ୱାସ ସ୍ଥାପନ କରିବାରୁ ବଞ୍ଚିତ ହେବା ଅଲ୍ଲାହଙ୍କ ଯୋଗୁଁ ନୁହେଁ ବରଂ ନିଜର କୁକର୍ମ ଯୋଗୁଁ ସେମାନେ ବଞ୍ଚିତ ହୁଅନ୍ତି ।

مَنْ يُّصْرَفْ عَنْهُ يَوْمَئِذٍ فَقَدْ رَحِمَهٗ ؕ وَذٰلِكَ الْفَوْزُ الْمُبِيْنُ ﴿١٧﴾

୧୭. ସେଦିନ ଯାହା ନିକଟରୁ ତାହା (ଅର୍ଥାତ୍ ଶାସ୍ତି) କୁ ଅପସାରିତ କରାଯାଇଅଛି (ଜାଣ ଯେ) ତାହା ଉପରେ ଅଲ୍ଲାହଙ୍କର କରୁଣା ହୋଇଅଛି, ଏବଂ ଏହା ଏକ ମହାନ୍ ସଫଳତା ।

وَاِنْ يَّمْسَسْكَ اللّٰهُ بِضُرٍّ فَلَا كَاشِفَ لَهٗۤ اِلَّا هُوَ ؕ وَاِنْ يَّمْسَسْكَ بِخَيْرٍ فَهُوَ عَلٰى كُلِّ شَيْءٍ قَدِيْرٌ ﴿١٨﴾

୧୮. ଏବଂ ଯଦି ଅଲ୍ଲାହ ତୁମକୁ କୌଣସି କଷ୍ଟ ଦିଅନ୍ତି, ତେବେ ତାହାଙ୍କ ବ୍ୟତୀତ ଅନ୍ୟ କେହି ତାହାକୁ ଦୂର କରି ପାରିବ ନାହିଁ, ଏବଂ ଯଦି ସେ ତୁମକୁ କୌଣସି କଲ୍ୟାଣ ପ୍ରଦାନ କରନ୍ତି ତେବେ ସେ ପ୍ରତ୍ୟେକ ବିଷୟ କରିବାକୁ ସକ୍ଷମ ।

وَهُوَ الْقَاهِرُ فَوْقَ عِبَادِهٖ ؕ وَهُوَ الْحَكِيْمُ الْخَبِيْرُ ﴿١٩﴾

୧୯. ଏବଂ ନିଜ ସେବକମାନଙ୍କ ଉପରେ ତାହାଙ୍କର ନିରଙ୍କୁଶ କ୍ଷମତା ଅଛି; ଏବଂ ସେ ତତ୍ତ୍ୱଜ୍ଞ (ଓ) ସର୍ବବିଦିତ ।

قُلْ اَيُّ شَيْءٍ اَكْبَرُ شَهَادَةً ؕ قُلِ اللّٰهُ ۙ شَهِيْدٌۢ بَيْنِيْ وَبَيْنَكُمْ ۚ وَاُوْحِيَ اِلَيَّ هٰذَا الْقُرْاٰنُ لِاُنْذِرَكُمْ بِهٖ وَمَنْۢ بَلَغَ ؕ اَئِنَّكُمْ لَتَشْهَدُوْنَ اَنَّ مَعَ اللّٰهِ اٰلِهَةً اُخْرٰى ؕ قُلْ لَّاۤ اَشْهَدُ ۚ قُلْ اِنَّمَا هُوَ اِلٰهٌ وَّاحِدٌ وَّاِنَّنِيْ بَرِيْٓءٌ مِّمَّا تُشْرِكُوْنَ ﴿٢٠﴾

୨୦. ତୁମେ କୁହ, "କାହାର ସାକ୍ଷ୍ୟ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ?" ପୁନଶ୍ଚ (ନିଜେ ଉତ୍ତର ଦେଇ) କୁହ, "ଅଲ୍ଲାହ, ସେ ଆମର ଓ ତୁମମାନଙ୍କର ମଧ୍ୟରେ ସାକ୍ଷୀ ଅଟନ୍ତି; ଏବଂ ଆମ ନିକଟକୁ (ଏହି ପବିତ୍ର) କୋରାନ 'ଓହି' (ମାଧ୍ୟମ) ରେ ଆସିଅଛି ଯାହାଦ୍ୱାରା ଆମେ ତୁମମାନଙ୍କୁ ତଥା ଯେଉଁମାନଙ୍କ ନିକଟରେ ଏହା ପହଞ୍ଚିବ ସେମାନଙ୍କୁ ଏହାଦ୍ୱାରା ସତର୍କ କରାଇବୁ; କ'ଣ ତୁମେମାନେ ଏହା ସାକ୍ଷ୍ୟ ଦେଉଅଛ ଯେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ ମଧ୍ୟ ଅଛନ୍ତି ?" (ଏବଂ ପୁନଶ୍ଚ ନିଜ ଆଡୁ) କୁହ, (ତୁମେମାନେ ମିଥ୍ୟା ସାକ୍ଷ୍ୟ ଦେଉଥାଅ, ମାତ୍ର) "ଆମେ ତ ଏପରି ସାକ୍ଷ୍ୟ ଦେଉ ନାହୁଁ;" (ପୁନଶ୍ଚ ସେମାନଙ୍କୁ) କୁହ, "କେବଳ ସେ ହିଁ ଏକମାତ୍ର ଅଲ୍ଲାହ (ଅର୍ଥାତ୍ ଉପାସ୍ୟ) ଅଟନ୍ତି ଏବଂ (ତାହାଙ୍କ ସହିତ) ତୁମେମାନେ ଯାହାକୁ ସମକକ୍ଷ କରୁଅଛ ଆମେ ସେଥିପାଇଁ ଅସ୍ୱସ୍ତି ବୋଧ କରୁଅଛୁ ।"

اَلَّذِيْنَ اٰتَيْنٰهُمُ الْكِتٰبَ يَعْرِفُوْنَهٗ كَمَا يَعْرِفُوْنَ اَبْنَآءَهُمْ ۘ اَلَّذِيْنَ خَسِرُوْۤا اَنْفُسَهُمْ فَهُمْ لَا يُؤْمِنُوْنَ ﴿٢١﴾

୨୧. ଯେଉଁମାନେ ପରିପୂର୍ଣ୍ଣ (ଧର୍ମ) ଗ୍ରନ୍ଥ ପାଇଛନ୍ତି ସେମାନେ ତାହାଙ୍କୁ[2] ଏପରି ଭାବରେ ଚିହ୍ନିଛନ୍ତି ଯେପରି ସେମାନେ ନିଜ ପୁତ୍ରମାନଙ୍କୁ ଚିହ୍ନୁଛନ୍ତି; ଯେଉଁମାନେ କ୍ଷତିଗ୍ରସ୍ତ ହୋଇଛନ୍ତି ଓ ନିଜ ଜୀବନକୁ କ୍ଷତିଗ୍ରସ୍ତ କରାଇଛନ୍ତି ସେମାନେ ବିଶ୍ୱାସ କରିବେ ନାହିଁ ।

---

୧. ଏଠାରେ ପ୍ରଶ୍ନ ଉଠୁଛି ଯେ ଯେବେ ଅଲ୍ଲାହ ପ୍ରତ୍ୟେକ ବିଷୟ କରିବାକୁ ସମ୍ପୂର୍ଣ୍ଣ ରୂପେ ସକ୍ଷମ ତେବେ ସେ କାହିଁକି ତୁରନ୍ତ ଦଣ୍ଡବିଧାନ କରୁନାହାନ୍ତି ? ଏହାର ଉତ୍ତର ହେଉଛି–ଯେହେତୁ ଅଲ୍ଲାହ ତତ୍ତ୍ୱଜ୍ଞ ତଥା ସୂକ୍ଷ୍ମଦର୍ଶୀ ଓ ଦୂରଦର୍ଶୀ, ତେଣୁ ସେ ଏପରି କାର୍ଯ୍ୟ କରିଥାନ୍ତି ଯଦ୍ୱାରା ଉତ୍ତମ ପରିଣାମ ପ୍ରାପ୍ତ ହେବା ସଙ୍ଗେସଙ୍ଗେ କେତେକ ବ୍ୟକ୍ତି ସତ୍‌ପଥ ମଧ୍ୟ ପାଇପାରିବେ । ଅଧିକନ୍ତୁ ସେ ତ୍ରିକାଳଦର୍ଶୀ ହୋଇଥିବାରୁ ଭବିଷ୍ୟତରେ ଅନେକ ଲୋକ ବିଶ୍ୱାସ ସ୍ଥାପନ କରିବା କଥା ତାଙ୍କୁ ଜଣା । ତେଣୁ ଯଦି ବର୍ତ୍ତମାନ ସମସ୍ତଙ୍କୁ ଧ୍ୱଂସ କରି ଦିଆଯିବ ତେବେ ଆଗାମୀ ଦିନଗୁଡ଼ିକରେ ବିଶ୍ୱାସ କରିବାକୁ ଥିବା ଲୋକମାନେ ମଧ୍ୟ ଧ୍ୱଂସ ହୋଇଯିବେ ।

୨. ଏହା (ଧର୍ମ) ଗ୍ରନ୍ଥ ପ୍ରତି ମଧ୍ୟ ପ୍ରଯୋଜ୍ୟ ହୋଇପାରେ ।

ରୁ: ୩

୨୨. ଏବଂ ଯେ ଅଲ୍ଲାହଙ୍କ ପ୍ରତି ମିଥ୍ୟା ରଚନା କରେ ବା ତାହାଙ୍କର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରେ ତାହାଠାରୁ ଅଧିକ ଅତ୍ୟାଚାରୀ ଆଉ କିଏ ହୋଇପାରେ ? ବାସ୍ତବରେ ଅତ୍ୟାଚାରୀମାନେ କଦାପି ସଫଳ ହେବେ ନାହିଁ ।

وَمَنْ أَظْلَمُ مِمَّنِ افْتَرَىٰ عَلَى اللَّهِ كَذِبًا أَوْ كَذَّبَ بِآيَاتِهِ ۗ إِنَّهُ لَا يُفْلِحُ الظَّالِمُونَ ﴿٢٢﴾

୨୩. ଏବଂ ଯେଉଁଦିନ ଆମେ ସେ ସମସ୍ତଙ୍କୁ ଏକତ୍ରିତ କରିବୁ, ତତ୍‌ପରେ ଯେଉଁମାନେ ଆମ ସହିତ ସମକକ୍ଷ ନିରୂପିତ କରିଛନ୍ତି ସେମାନଙ୍କୁ କହିବୁ, "ତୁମମାନଙ୍କର (ନିରୂପିତ) ସେ ସମକକ୍ଷ ଯାହାଙ୍କ ସଂକ୍ରାନ୍ତରେ ତୁମେମାନେ ଦାବି କରୁଥିଲ (ଯେ ସେମାନେ ଅଲ୍ଲାହଙ୍କ ସମକକ୍ଷ ଅଟନ୍ତି) କେଉଁଠାରେ ଅଛନ୍ତି ?"

وَيَوْمَ نَحْشُرُهُمْ جَمِيعًا ثُمَّ نَقُولُ لِلَّذِينَ أَشْرَكُوا أَيْنَ شُرَكَاؤُكُمُ الَّذِينَ كُنتُمْ تَزْعُمُونَ ﴿٢٣﴾

୨୪. ତତ୍‌ପରେ ଏହାର ଉତ୍ତରରେ ସେମାନେ କେବଳ କହିବେ ଯେ "ଆମମାନଙ୍କର ପାଳନକର୍ତ୍ତା ଅଲ୍ଲାହଙ୍କ ରାଣ, ଆମେମାନେ ମୁସରିକ ନ ଥିଲୁ ।"

ثُمَّ لَمْ تَكُن فِتْنَتُهُمْ إِلَّا أَن قَالُوا وَاللَّهِ رَبِّنَا مَا كُنَّا مُشْرِكِينَ ﴿٢٤﴾

୨୫. ଦେଖ, (ଏପରି ପରିସ୍ଥିତିରେ) ସେମାନେ ନିଜ ସମ୍ବନ୍ଧରେ କିପରି ମିଥ୍ୟା କହିବେ, ଏବଂ ସେମାନେ ଯାହା (କିଛି) ମିଥ୍ୟା ରଚନା କରୁଥିଲେ ତାହା ସେମାନଙ୍କ ପାଇଁ ଲାଭପ୍ରଦ ହେବନାହିଁ ।

انظُرْ كَيْفَ كَذَبُوا عَلَىٰ أَنفُسِهِمْ ۚ وَضَلَّ عَنْهُم مَّا كَانُوا يَفْتَرُونَ ﴿٢٥﴾

୨୬. ଏବଂ ସେମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ ତୁମ (କଥା) ପ୍ରତି କର୍ଣ୍ଣପାତ କରୁଛନ୍ତି ଅଥଚ ଆମେ ସେମାନଙ୍କ ହୃଦୟରେ ଆବରଣ [୧]ସ୍ଥାପନ କରିଅଛୁ, ଯଦ୍ଦ୍ୱାରା ସେମାନେ ଏହା ବୁଝିପାରିବେ ନାହିଁ; ଏବଂ ସେମାନଙ୍କ କର୍ଣ୍ଣରେ ବଧିରତା (ସୃଷ୍ଟି କରିଅଛୁ); ଏବଂ ସେମାନେ ପ୍ରତ୍ୟେକ (ପ୍ରକାର) ନିଦର୍ଶନ ଦେଖିବା ସତ୍ତ୍ୱେ ତାହାକୁ ବିଶ୍ୱାସ କରିବେ ନାହିଁ; (ସେମାନଙ୍କ ଅବସ୍ଥା ଏପରି ହୋଇଛି ଯେ) ଯେତେବେଳେ ସେମାନେ ତୁମ ନିକଟକୁ ଆସନ୍ତି (ସେତେବେଳେ) ତୁମ ସହିତ କଳହ କରନ୍ତି; ଅବିଶ୍ୱାସକାରୀମାନେ କହନ୍ତି, "[୨]ଏହା (ଅର୍ଥାତ୍ ପବିତ୍ର କୋରାନ) କେବଳ ପୁରାତନ କାଳର କାହାଣୀ ।

وَمِنْهُم مَّن يَسْتَمِعُ إِلَيْكَ ۖ وَجَعَلْنَا عَلَىٰ قُلُوبِهِمْ أَكِنَّةً أَن يَفْقَهُوهُ وَفِي آذَانِهِمْ وَقْرًا ۚ وَإِن يَرَوْا كُلَّ آيَةٍ لَّا يُؤْمِنُوا بِهَا ۚ حَتَّىٰ إِذَا جَاءُوكَ يُجَادِلُونَكَ يَقُولُ الَّذِينَ كَفَرُوا إِنْ هَٰذَا إِلَّا أَسَاطِيرُ الْأَوَّلِينَ ﴿٢٦﴾

---

[୧] ଅନ୍ୟତ୍ର ବର୍ଣ୍ଣନା କରାଯାଇଛି ଯେ ମାନବ ନିଜ କୁକର୍ମ ଯୋଗୁଁ ଶାସ୍ତି ପାଇଥାଏ । ପ୍ରକୃତ ପକ୍ଷେ ଅଲ୍ଲାହ କାହାରିକୁ ବିଶ୍ୱାସ ସ୍ଥାପନ କରିବାରୁ ବଞ୍ଚିତ କରାନ୍ତି ନାହିଁ ।

[୨] ଅବିଶ୍ୱାସକାରୀମାନେ ଏପରି କହନ୍ତି କିନ୍ତୁ ପବିତ୍ର କୋରାନରେ ପ୍ରାଚୀନ ଘଟଣାମାନ ଭବିଷ୍ୟବାଣୀ ଆକାରରେ ବର୍ଣ୍ଣନା କରାଯାଇଛି ଏବଂ ଏପରି କେତେକ ଘଟଣା ହଜରତ ମହମ୍ମଦ ଓ ତାଙ୍କ ଅନୁଗାମୀମାନଙ୍କ ସମୟରେ ମଧ୍ୟ ଘଟିଅଛି ।

୨୭. ଏବଂ ସେମାନେ (ଅନ୍ୟମାନଙ୍କୁ) ଏଥିରୁ ବାରଣ କରନ୍ତି, ଏବଂ (ନିଜେ ମଧ୍ୟ) ଏଥିରୁ ଦୂରେଇ ରହନ୍ତି, ଏବଂ ସେମାନେ ନିଜ ବ୍ୟତୀତ ଅନ୍ୟ କାହାରିକୁ ବିନାଶ କରନ୍ତି ନାହିଁ; କିନ୍ତୁ ସେମାନେ ଏହା ବୁଝିପାରୁ ନାହାନ୍ତି ।

وَهُمْ يَنْهَوْنَ عَنْهُ وَيَنْـَٔوْنَ عَنْهُ ۚ وَإِنْ يُّهْلِكُوْنَ إِلَّآ أَنْفُسَهُمْ وَمَا يَشْعُرُوْنَ ﴿٢٧﴾

୨୮. ଏବଂ ଯଦି ତୁମେ ସେମାନଙ୍କୁ ନରକ ସମ୍ମୁଖରେ ଦଣ୍ଡାୟମାନ ହେବାବେଳେ ଦେଖିପାରନ୍ତ ଯେତେବେଳେ ସେମାନେ କହିବେ, "ଆହା, ଆମମାନଙ୍କୁ ବିଶ୍ୱାସ କରୁଥିବା ଅବସ୍ଥାରେ ପୁନଶ୍ଚ ଫେରାଇ ଦିଆଯାଆନ୍ତା କି ! ଏବଂ ଆମେମାନେ ଭବିଷ୍ୟତରେ ଆମମାନଙ୍କ ପାଳନକର୍ତ୍ତାଙ୍କର ନିଦର୍ଶନଗୁଡିକୁ କଦାପି ମିଥ୍ୟା ମନେ କରିବୁ ନାହିଁ" (ତେବେ ତୁମକୁ ସେମାନଙ୍କ ମିଥ୍ୟାର ବାସ୍ତବତା ଜଣାପଡନ୍ତା) ।

وَلَوْ تَرٰٓى إِذْ وُقِفُوْا عَلَى النَّارِ فَقَالُوْا يٰلَيْتَنَا نُرَدُّ وَلَا نُكَذِّبَ بِاٰيٰتِ رَبِّنَا وَنَكُوْنَ مِنَ الْمُؤْمِنِيْنَ ﴿٢٨﴾

୨୯. ପ୍ରକୃତରେ ସେମାନେ (ପୂର୍ବରୁ) ଯାହା ଗୋପନ କରିଥିଲେ, ତାହା ସେମାନଙ୍କ ସମ୍ମୁଖରେ ପ୍ରକାଶିତ ହୋଇଯାଇଅଛି, ଏବଂ ଯଦି ସେମାନଙ୍କୁ ଫେରାଇ ଦିଆଯା'ନ୍ତା, ତେବେ ସେମାନଙ୍କୁ ଯେଉଁ ବିଷୟରେ ବାରଣ କରାଯାଇଥିଲା ସେମାନେ ନିଶ୍ଚୟ ତାହାହିଁ କରନ୍ତେ, ଏବଂ ବସ୍ତୁତଃ ସେମାନେ (ନିଜର ଏହି ଦାବିରେ) ମିଥ୍ୟାବାଦୀ ଅଟନ୍ତି ।

بَلْ بَدَا لَهُمْ مَّا كَانُوْا يُخْفُوْنَ مِنْ قَبْلُ ۖ وَلَوْ رُدُّوْا لَعَادُوْا لِمَا نُهُوْا عَنْهُ وَإِنَّهُمْ لَكٰذِبُوْنَ ﴿٢٩﴾

୩୦. ଏବଂ ସେମାନେ କହନ୍ତି, "ଆମମାନଙ୍କର (ଏହି) ପାର୍ଥିବ ଜୀବନ ବ୍ୟତୀତ ଅନ୍ୟ କିଛି (ଜୀବନ) ନାହିଁ; ଏବଂ ଆମମାନଙ୍କୁ (ପୁନର୍ବାର) ଉତ୍‌ଥିତ କରାଯିବ ନାହିଁ ।

وَقَالُوْٓا إِنْ هِيَ إِلَّا حَيَاتُنَا الدُّنْيَا وَمَا نَحْنُ بِمَبْعُوْثِيْنَ ﴿٣٠﴾

୩୧. ଏବଂ ଯଦି ତୁମେ ସେମାନଙ୍କୁ ସେମାନଙ୍କର ପାଳନକର୍ତ୍ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେବାବେଳେ ଦେଖିପାରନ୍ତ, ଯେତେବେଳେ ସେ (ଅଲ୍ଲାଃ ସେମାନଙ୍କୁ) କହିବେ, "କଣ ଏହା (ଅର୍ଥାତ୍ ପୁନରୁତ୍‌ଥାନ) ସତ୍ୟ ନୁହେଁ ?" ସେମାନେ ଉତ୍ତରରେ କହିବେ,"ହଁ, ଆମମାନଙ୍କ ପାଳନକର୍ତ୍ତାଙ୍କ ରାଣ (ନିଶ୍ଚୟ ଏହା ସତ୍ୟ )"; ସେ (ଅଲ୍ଲାଃ) କହିବେ, "ତୁମେମାନେ ନିଜ ଅବିଶ୍ୱାସ ଯୋଗୁଁ ଶାସ୍ତି ଆସ୍ୱାଦ କର ।"

وَلَوْ تَرٰٓى إِذْ وُقِفُوْا عَلٰى رَبِّهِمْ ۚ قَالَ أَلَيْسَ هٰذَا بِالْحَقِّ ۚ قَالُوْا بَلٰى وَرَبِّنَا ۚ قَالَ فَذُوْقُوا الْعَذَابَ بِمَا كُنْتُمْ تَكْفُرُوْنَ ﴿٣١﴾ ع

ରୁ.୪

୩୨. ଯେଉଁମାନେ ଅଲ୍ଲାଃଙ୍କ ସହିତ ସାକ୍ଷାତ (ବିଷୟ) କୁ ମିଥ୍ୟା ମନେ କରନ୍ତି, ସେମାନେ କ୍ଷତିଗ୍ରସ୍ତ ହୋଇଛନ୍ତି; ଏପରିକି ଯେତେବେଳେ ସେହି ମୁହୂର୍ତ୍ତ ସେମାନଙ୍କ ନିକଟରେ ହଠାତ୍ ଉପସ୍ଥିତ ହେବ, ସେତେବେଳେ ସେମାନେ କହିବେ, "ହାୟ ଆମ ଦୁର୍ଭାଗ୍ୟ ! ଆମେମାନେ ଏହି ମୁହୂର୍ତ୍ତ ସଂକ୍ରାନ୍ତରେ ଅବହେଳା କରିଥିବା ହେତୁ" ଏବଂ ସେତେବେଳେ ସେମାନେ ନିଜ ଭାର ନିଜ ପୃଷ୍ଠରେ ବହନ କରିଥିବେ; ଶୁଣ ! ସେମାନେ ଯେଉଁ ଭାର ବହନ କରିବେ, ତାହା ଅତ୍ୟନ୍ତ ମନ୍ଦ ହେବ ।

قَدْ خَسِرَ الَّذِيْنَ كَذَّبُوْا بِلِقَآءِ اللّٰهِ ۖ حَتّٰٓى إِذَا جَآءَتْهُمُ السَّاعَةُ بَغْتَةً قَالُوْا يٰحَسْرَتَنَا عَلٰى مَا فَرَّطْنَا فِيْهَا ۙ وَهُمْ يَحْمِلُوْنَ أَوْزَارَهُمْ عَلٰى ظُهُوْرِهِمْ ۗ أَلَا سَآءَ مَا يَزِرُوْنَ ﴿٣٢﴾

୩୩. ଏବଂ ପାର୍ଥିବ ଜୀବନ, କ୍ରୀଡ଼ା କୌତୁକ ବ୍ୟତୀତ ଅନ୍ୟ କିଛି ନୁହେଁ । ଏବଂ ଯେଉଁମାନେ ଧର୍ମଭୀରୁତା ଅବଲମ୍ବନ କରନ୍ତି ସେମାନଙ୍କ ପାଇଁ ପରଲୋକରେ ଆବାସ ବାସ୍ତବିକ ଶ୍ରେଷ୍ଠତର; ତେବେ କ'ଣ ତୁମେମାନେ ଏହା ବୁଝି ପାରୁ ନାହଁ !

وَمَا الْحَيٰوةُ الدُّنْيَآ اِلَّا لَعِبٌ وَّلَهْوٌ ۗ وَلَلدَّارُ الْاٰخِرَةُ خَيْرٌ لِّلَّذِيْنَ يَتَّقُوْنَ ۗ اَفَلَا تَعْقِلُوْنَ ﴿٣٣﴾

୩୪. ଅବଶ୍ୟ ଆମେ ଜାଣୁଅଛୁ ଏବଂ ଏହାହି ସତ୍ୟ ଯେ ସେମାନେ ଯାହା କହୁଛନ୍ତି, ତାହା ତୁମକୁ ନିଶ୍ଚୟ ଦୁଃଖିତ କରାଉଛି, କାରଣ ସେମାନେ ତୁମ ପ୍ରତି ଯେ ମିଥ୍ୟାରୋପ କରୁଛନ୍ତି ତାହା ନୁହେଁ ବରଂ ସେହି ଅତ୍ୟାଚାରୀମାନେ ଅଲ୍ଲାହଙ୍କର ନିଦର୍ଶନଗୁଡ଼ିକୁ (ଜାଣିଶୁଣି) ଅସ୍ୱୀକାର[1] କରୁଛନ୍ତି ।

قَدْ نَعْلَمُ اِنَّهٗ لَيَحْزُنُكَ الَّذِيْ يَقُوْلُوْنَ فَاِنَّهُمْ لَا يُكَذِّبُوْنَكَ وَلٰكِنَّ الظّٰلِمِيْنَ بِاٰيٰتِ اللّٰهِ يَجْحَدُوْنَ ﴿٣٤﴾

୩୫. ଏବଂ ତୁମର ପୂର୍ବବର୍ତ୍ତୀ ରସୁଲମାନଙ୍କ ପ୍ରତି ମଧ୍ୟ ମିଥ୍ୟାରୋପ କରାଯାଇଥିଲା, କିନ୍ତୁ ସେମାନଙ୍କ ପ୍ରତି ମିଥ୍ୟାରୋପ ଓ ଅତ୍ୟାଚାର ସତ୍ତ୍ୱେ ସେମାନଙ୍କ ନିକଟରେ ଆମର ସାହାଯ୍ୟ ନ ପହଞ୍ଚିବା ଯାଏ ସେମାନେ ଧୈର୍ଯ୍ୟ ଧାରଣ କରିଥିଲେ, ଏବଂ ଅଲ୍ଲାହଙ୍କର ବାଣୀକୁ କେହି ପରିବର୍ତ୍ତନ କରିପାରିବେ ନାହିଁ; ଏବଂ ତୁମ ନିକଟକୁ (ପୂର୍ବବର୍ତ୍ତୀ) ରସୁଲମାନଙ୍କର କେତେକ ସମାଚାର ବାସ୍ତବିକ ଆସିଅଛି ।

وَلَقَدْ كُذِّبَتْ رُسُلٌ مِّنْ قَبْلِكَ فَصَبَرُوْا عَلٰى مَا كُذِّبُوْا وَاُوْذُوْا حَتّٰٓى اَتٰىهُمْ نَصْرُنَا ۚ وَلَا مُبَدِّلَ لِكَلِمٰتِ اللّٰهِ ۚ وَلَقَدْ جَآءَكَ مِنْ نَّبَاِى الْمُرْسَلِيْنَ ﴿٣٥﴾

୩୬. ଏବଂ ଯଦି ସେ (ଅବିଶ୍ୱାସକାରୀ)ମାନଙ୍କର ବିମୁଖତା ତୁମ ପକ୍ଷରେ କଷ୍ଟଦାୟକ ହୁଏ, ତେବେ ଯଦି ତୁମେ ଭୂଗର୍ଭରେ ଏକ ସୁଡ଼ଙ୍ଗ ବା ଆକାଶକୁ ଏକ ସିଡ଼ି ସନ୍ଧାନ କରିବାରେ ସମର୍ଥ ହୋଇ ସେମାନଙ୍କ ନିକଟକୁ କୌଣସି ନିଦର୍ଶନ ଆଣିପାର (ତାହା ହେଲେ, ନିଶ୍ଚୟ ସେପରି କର) ଏବଂ ଯଦି ଅଲ୍ଲାହ ଇଚ୍ଛା କରନ୍ତେ ତାହାହେଲେ ସେମାନଙ୍କୁ ନିଶ୍ଚୟ ସତ୍ ପଥରେ ଏକତ୍ରିତ କରନ୍ତେ; ସୁତରାଂ ତୁମେ ଅଜ୍ଞ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

وَاِنْ كَانَ كَبُرَ عَلَيْكَ اِعْرَاضُهُمْ فَاِنِ اسْتَطَعْتَ اَنْ تَبْتَغِيَ نَفَقًا فِى الْاَرْضِ اَوْ سُلَّمًا فِى السَّمَآءِ فَتَاْتِيَهُمْ بِاٰيَةٍ ۗ وَلَوْ شَآءَ اللّٰهُ لَجَمَعَهُمْ عَلَى الْهُدٰى فَلَا تَكُوْنَنَّ مِنَ الْجٰهِلِيْنَ ﴿٣٦﴾

୩୭. ଯେଉଁମାନେ ଶୁଣନ୍ତି କେବଳ ସେମାନେ ହିଁ ଉତ୍ତର ଦେଇ ପାରିବେ; ଏବଂ ଯେଉଁମାନେ ମୃତ[2] ସେମାନଙ୍କୁ ଅଲ୍ଲାହ ଉତ୍‌ଥିତ କରିବେ, ତତ୍‌ପରେ ସେମାନଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆଯିବ ।

اِنَّمَا يَسْتَجِيْبُ الَّذِيْنَ يَسْمَعُوْنَ ؕ وَالْمَوْتٰى يَبْعَثُهُمُ اللّٰهُ ثُمَّ اِلَيْهِ يُرْجَعُوْنَ ﴿٣٧﴾

୩୮. ଏବଂ ସେମାନେ କହନ୍ତି, "ତାଙ୍କ ପାଳନକର୍ତ୍ତାଙ୍କ ନିକଟରୁ କାହିଁକି ତାଙ୍କ ପ୍ରତି କୌଣସି ନିଦର୍ଶନ ଅବତୀର୍ଣ୍ଣ ହୋଇ ନାହିଁ ?" ତୁମେ କୁହ, "ଅଲ୍ଲାହ ନିଦର୍ଶନ ଅବତୀର୍ଣ୍ଣ କରିବାରେ ନିଶ୍ଚୟ ସକ୍ଷମ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ (ଏହା) ଜାଣନ୍ତି ନାହିଁ ।

وَقَالُوْا لَوْلَا نُزِّلَ عَلَيْهِ اٰيَةٌ مِّنْ رَّبِّهٖ ۗ قُلْ اِنَّ اللّٰهَ قَادِرٌ عَلٰٓى اَنْ يُّنَزِّلَ اٰيَةً وَّلٰكِنَّ اَكْثَرَهُمْ لَا يَعْلَمُوْنَ ﴿٣٨﴾

---

୧. ଅର୍ଥାତ୍ ଯେହେତୁ ସେମାନେ ଅଲ୍ଲାହଙ୍କ ପ୍ରତି ଦୋଷାରୋପ କରିଛନ୍ତି ସେଥିଯୋଗୁଁ ତୁମେ ଦୁଃଖିତ ହେଉଅଛ । ବସ୍ତୁତଃ ତୁମେ ନିଜ ପାଇଁ ଚିନ୍ତିତ ନୁହଁ ।

୨. ଯେଉଁମାନେ ସତ୍‌ପଥରୁ ବଞ୍ଚିତ ସେମାନଙ୍କ କ୍ଷେତ୍ରରେ 'ମୃତ' ଶବ୍ଦ ପ୍ରୟୋଗ କରାଯାଇ ଥିବା ଏହି ଆୟତରୁ ପ୍ରତୀତ ହେଉଅଛି ।

୩୯. ଏବଂ ପୃଥିବୀର ସମସ୍ତ ବିଚରଣକାରୀ (ପଶୁ) ତଥା ନିଜ ଦୁଇ ପକ୍ଷ ଦ୍ୱାରା ଉଡୁଥିବା ପକ୍ଷୀଙ୍କର ତୁମମାନଙ୍କ ସଦୃଶ[1] ଗୋଷ୍ଠୀ ଅଛି; ଆମ୍ଭେ ଏହି ଗ୍ରନ୍ଥରେ କୌଣସି ବିଷୟର ଅଭାବ[2] ରଖି ନାହୁଁ; ଏହାପରେ ସେମାନଙ୍କୁ (ଅର୍ଥାତ୍ ମାନବ ଗୋଷ୍ଠୀଙ୍କୁ) ନିଜ ପାଳନକର୍ତ୍ତାଙ୍କ ପାଖକୁ ଏକତ୍ରିତ କରି ନିଆଯିବ ।

وَمَا مِنْ دَآبَّةٍ فِي الْاَرْضِ وَلَا طٰٓئِرٍ يَّطِيْرُ بِجَنَاحَيْهِ اِلَّآ اُمَمٌ اَمْثَالُكُمْ ؕ مَا فَرَّطْنَا فِي الْكِتٰبِ مِنْ شَيْءٍ ثُمَّ اِلٰى رَبِّهِمْ يُحْشَرُوْنَ ۝٣٩

୪୦. ଏବଂ ଯେଉଁମାନେ ଆମ୍ଭ ନିଦର୍ଶନଗୁଡିକ ପ୍ରତି ମିଥ୍ୟାରୋପ କରିଛନ୍ତି ସେମାନେ ମୂକ ଓ ବଧିର ଅଟନ୍ତି; (ତଥା) ଅନ୍ଧକାରରେ ଅଛନ୍ତି; ଅଲ୍ଲାହ ଯାହାକୁ ଇଚ୍ଛା କରିବେ ତାହାକୁ ବିପଥଗାମୀ କରାଇବେ ଏବଂ ଯାହାକୁ ଇଚ୍ଛା କରିବେ ତାହାକୁ ସରଳ ପଥରେ ପରିଚାଳିତ କରିବେ ।

وَالَّذِيْنَ كَذَّبُوْا بِاٰيٰتِنَا صُمٌّ وَّبُكْمٌ فِي الظُّلُمٰتِ ؕ مَنْ يَّشَاِ اللّٰهُ يُضْلِلْهُ ؕ وَمَنْ يَّشَاْ يَجْعَلْهُ عَلٰى صِرَاطٍ مُّسْتَقِيْمٍ ۝٤٠

୪୧. ତୁମ୍ଭେ କୁହ, "ତୁମେମାନେ କହିପାରିବ କି ଯଦି ତୁମମାନଙ୍କ ଉପରେ ଅଲ୍ଲାହଙ୍କର ଶାସ୍ତି ଉପନୀତ ହେବ ବା ତୁମ ନିକଟରେ ସେହି ନିର୍ଦ୍ଦିଷ୍ଟ ମୁହୂର୍ତ୍ତ ଉପସ୍ଥିତ ହେବ, ଯଦି ତୁମେମାନେ ସତ୍ୟବାନ୍ ହୋଇଥାଅ ତେବେ କ'ଣ ତୁମେମାନେ ସେତେବେଳେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟଙ୍କୁ ଡାକିବ ?"

قُلْ اَرَءَيْتَكُمْ اِنْ اَتٰىكُمْ عَذَابُ اللّٰهِ اَوْ اَتَتْكُمُ السَّاعَةُ اَغَيْرَ اللّٰهِ تَدْعُوْنَ ۚ اِنْ كُنْتُمْ صٰدِقِيْنَ ۝٤١

୪୨. ନା, ବରଂ ତୁମେମାନେ ତାଙ୍କୁ ହିଁ ଡାକିବ, ଏବଂ ଯାହା (କଷ୍ଟର ଦୂରୀକରଣ) ପାଇଁ ତୁମେମାନେ ତାହାଙ୍କୁ ଡାକ, ସେ ଇଚ୍ଛାକଲେ ତାହାକୁ ନିଶ୍ଚୟ ଦୂର କରିଦେବେ, ଏବଂ ତୁମେମାନେ ଯାହାଙ୍କୁ (ଅଲ୍ଲାହଙ୍କ ସହିତ) ସମକକ୍ଷ କରୁଅଛ ତାହାଙ୍କୁ ଭୁଲିଯିବ ।

بَلْ اِيَّاهُ تَدْعُوْنَ فَيَكْشِفُ مَا تَدْعُوْنَ اِلَيْهِ اِنْ شَآءَ وَتَنْسَوْنَ مَا تُشْرِكُوْنَ ۝٤٢

ରୁ: ୪

୪୩. ଏବଂ ଆମ୍ଭେ ତୁମ୍ଭର ପୂର୍ବବର୍ତ୍ତୀ ସମ୍ପ୍ରଦାୟଙ୍କ ପ୍ରତି ରସୁଲ ପ୍ରେରଣ କରିଅଛୁ; ଏବଂ (ଏହି ରସୁଲମାନଙ୍କ ପ୍ରେରଣ ପରେ) ଆମ୍ଭେ ସେମାନଙ୍କୁ (ଅର୍ଥାତ୍ ଅମାନ୍ୟକାରୀଙ୍କୁ) ପୀଡା ଓ ବିପତ୍ତି[3] ଦ୍ୱାରା ଏଥିଯୋଗୁଁ କବଳିତ କରିଥିଲୁ, ଯେପରିକି ସେମାନେ ବିନମ୍ର ହେବେ ।

وَلَقَدْ اَرْسَلْنَآ اِلٰٓى اُمَمٍ مِّنْ قَبْلِكَ فَاَخَذْنٰهُمْ بِالْبَاْسَآءِ وَالضَّرَّآءِ لَعَلَّهُمْ يَتَضَرَّعُوْنَ ۝٤٣

୪୪. ଯେତେବେଳେ ସେମାନଙ୍କ ନିକଟରେ ଆମ୍ଭର ଶାସ୍ତି ଉପନୀତ ହେଲା ସେତେବେଳେ ସେମାନେ କାହିଁକି ବିନମ୍ର ହେଲେ ନାହିଁ ? ବରଂ ସେମାନଙ୍କ ହୃଦୟ ଅଧିକ କଠିନ ହୋଇଗଲା, ଏବଂ ସଇତାନ ସେମାନଙ୍କ କର୍ମକୁ ସେମାନଙ୍କ ନିକଟରେ ସୁଶୋଭିତ କରି ଦେଖାଇଲା ।

فَلَوْلَآ اِذْ جَآءَهُمْ بَاْسُنَا تَضَرَّعُوْا وَلٰكِنْ قَسَتْ قُلُوْبُهُمْ وَزَيَّنَ لَهُمُ الشَّيْطٰنُ مَا كَانُوْا يَعْمَلُوْنَ ۝٤٤

୧. ଅର୍ଥାତ୍ ସେମାନେ ମଧ୍ୟ ଅଲ୍ଲାହଙ୍କ ନିୟମାନୁଯାୟୀ ପରିଚାଳିତ ।

୨. ଅର୍ଥାତ୍ ପବିତ୍ର କୋରାନରେ ସବୁପ୍ରକାର ଶିକ୍ଷା ରହିଅଛି ।

୩. ବୋଧ ହେଉଛି, ଉପଦେଶ ଦେବା ଯୋଗୁଁ କଷ୍ଟସ୍ୱୀକାର କରିବାକୁ ହେବ ।

୪୫. ତତ୍‌ପରେ ଯେତେବେଳେ ସେମାନେ ସେହି ବିଷୟକୁ ଭୁଲିଗଲେ ଯାହା ସଂକ୍ରାନ୍ତରେ ସେମାନଙ୍କୁ ସତର୍କ କରାଯାଉଥିଲା ସେତେବେଳେ ଆମ୍ଭେ ସେମାନଙ୍କ ନିକଟରେ ସକଳ ବିଷୟର ଦ୍ୱାର ଉନ୍ମୁକ୍ତ କରିଦେଲୁ, ଏପରିକି ଯେତେବେଳେ ସେମାନେ ସେମାନଙ୍କୁ ଯାହା ଦିଆଯାଇଥିଲା ତାହାକୁ ନେଇ ଆନନ୍ଦିତ ହେଉଥିଲେ, ସେତେବେଳେ ହଠାତ୍ ଆମ୍ଭେ ସେମାନଙ୍କୁ ଶାସ୍ତି ଦ୍ୱାରା କବଳିତ କରିଦେଲୁ ଯାହା ଫଳରେ ସେମାନେ ଅତ୍ୟନ୍ତ ନିରାଶ ହୋଇଗଲେ ।

فَلَمَّا نَسُوْا مَا ذُكِّرُوْا بِهٖ فَتَحْنَا عَلَيْهِمْ اَبْوَابَ كُلِّ شَيْءٍ ۗ حَتّٰۤى اِذَا فَرِحُوْا بِمَاۤ اُوْتُوْۤا اَخَذْنٰهُمْ بَغْتَةً فَاِذَا هُمْ مُّبْلِسُوْنَ ۝

୪୬. ସୁତରାଂ ଯେଉଁମାନେ ଅତ୍ୟାଚ୍ଚାର କରିଥିଲେ, ସେମାନଙ୍କର ମୂଳୋତ୍ପାଟନ କରି ଦିଆଗଲା ଏବଂ ପ୍ରମାଣିତ ହେଲା ଯେ ସମଗ୍ର ଜଗତର ପାଳନକର୍ତ୍ତା ଅଲ୍ଲାହ ହିଁ ସକଳ ପ୍ରଶଂସାର ଯୋଗ୍ୟ ।

فَقُطِعَ دَابِرُ الْقَوْمِ الَّذِيْنَ ظَلَمُوْا ۗ وَالْحَمْدُ لِلّٰهِ رَبِّ الْعٰلَمِيْنَ ۝

୪୭. ତୁମ୍ଭେ କୁହ, "ତୁମ୍ଭେ କହିପାରିବ କି ଯଦି ଅଲ୍ଲାହ ତୁମର ଶ୍ରବଣ ଶକ୍ତି ଓ ଦର୍ଶନ ଶକ୍ତିକୁ ହରଣ କରିବେ ଓ ତୁମର ହୃଦୟରେ ମୋହର ମାରିଦେବେ, ତେବେ ଅଲ୍ଲାହଙ୍କ ବ୍ୟତୀତ କେଉଁ ଉପାସ୍ୟ ତୁମକୁ ତାହା ପୁନଶ୍ଚ ଫେରାଇଦେବ ?" ଦେଖ ! ଆମ୍ଭେ କିପରି ନିଦର୍ଶନଗୁଡିକୁ ବାରମ୍ବାର (ବିଭିନ୍ନ ପ୍ରକାରେ) ବର୍ଣ୍ଣନା କରୁଅଛୁ, ତଥାପି ସେମାନେ ମୁହଁମୋଡି ଫେରି ଯାଉଛନ୍ତି ।

قُلْ اَرَءَيْتُمْ اِنْ اَخَذَ اللّٰهُ سَمْعَكُمْ وَاَبْصَارَكُمْ وَخَتَمَ عَلٰى قُلُوْبِكُمْ مَّنْ اِلٰهٌ غَيْرُ اللّٰهِ يَاْتِيْكُمْ بِهٖ ۗ اُنْظُرْ كَيْفَ نُصَرِّفُ الْاٰيٰتِ ثُمَّ هُمْ يَصْدِفُوْنَ ۝

୪୮. ତୁମ୍ଭେ କୁହ, "ତୁମ୍ଭେ କହି ପାରିବ କି ଯଦି ଅଲ୍ଲାହଙ୍କର ଶାସ୍ତି ତୁମମାନଙ୍କ ଉପରେ ହଠାତ୍ ବା ପ୍ରତ୍ୟକ୍ଷ ଭାବରେ ନିପତିତ ହୁଏ, ତେବେ ଅତ୍ୟାଚ୍ଚାରୀମାନଙ୍କ ବ୍ୟତୀତ ଆଉ କିଏ ଧ୍ୱଂସ ହେବ ?"

قُلْ اَرَءَيْتَكُمْ اِنْ اَتٰىكُمْ عَذَابُ اللّٰهِ بَغْتَةً اَوْ جَهْرَةً هَلْ يُهْلَكُ اِلَّا الْقَوْمُ الظّٰلِمُوْنَ ۝

୪୯. ଏବଂ ଆମ୍ଭେ ରସୁଲମାନଙ୍କୁ କେବଳ ସୁସମାଚ୍ଚାର-ଦାତା ଓ ସତର୍କକାରୀ ଭାବେ ପ୍ରେରଣ କରୁ; ସୁତରାଂ ଯେଉଁମାନେ ବିଶ୍ୱାସ କରିବେ ଓ ନିଜକୁ ସଂଶୋଧନ କରିବେ ସେମାନଙ୍କର (ଭବିଷ୍ୟତ ପାଇଁ) କୌଣସି ଭୟ ରହିବ ନାହିଁ ଓ ସେମାନେ (ବିଗତ ତ୍ରୁଟି ପାଇଁ) ଦୁଃଖିତ ହେବେ ନାହିଁ ।

وَمَا نُرْسِلُ الْمُرْسَلِيْنَ اِلَّا مُبَشِّرِيْنَ وَمُنْذِرِيْنَ ۚ فَمَنْ اٰمَنَ وَاَصْلَحَ فَلَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ ۝

୫୦. ଏବଂ ଯେଉଁମାନେ ଆମର ନିଦର୍ଶନମାନଙ୍କୁ ଅସ୍ୱୀକାର କରିଛନ୍ତି, ସେମାନଙ୍କୁ ସେମାନଙ୍କର ଅମାନ୍ୟ ଯୋଗୁ ଶାସ୍ତି ଦିଆଯିବ ।

وَالَّذِيْنَ كَذَّبُوْا بِاٰيٰتِنَا يَمَسُّهُمُ الْعَذَابُ بِمَا كَانُوْا يَفْسُقُوْنَ ۝

قُلْ لَّآ اَقُوْلُ لَكُمْ عِنْدِيْ خَزَآئِنُ اللّٰهِ وَلَآ اَعْلَمُ الْغَيْبَ وَلَآ اَقُوْلُ لَكُمْ اِنِّيْ مَلَكٌ ۚ اِنْ اَتَّبِعُ اِلَّا مَا يُوْحٰٓى اِلَيَّ ۗ قُلْ هَلْ يَسْتَوِي الْاَعْمٰى وَالْبَصِيْرُ ۗ اَفَلَا تَتَفَكَّرُوْنَ ﴿٥١﴾

୫୧. ତୁମେ କୁହ, "ଆମେ ତୁମମାନଙ୍କୁ କହୁନାହୁଁ ଯେ 'ଆମ ନିକଟରେ ଅଲ୍ଲାହଙ୍କର ଧନଭଣ୍ଡାର ଅଛି, ଓ ଆମେ ଅଦୃଷ୍ଟ ବିଷୟରେ ଅବଗତ ଅଛୁ, ଏବଂ ଆମେ ତୁମମାନଙ୍କୁ ଏହା ମଧ୍ୟ କହୁନାହୁଁ ଯେ 'ଆମେ ଜଣେ ଦେବଦୂତ;' ଆମେ ତ କେବଳ ତାହା ଅନୁସରଣ କରୁଅଛୁ ଯାହା ଆମ ପ୍ରତି 'ଓହି' କରାଯାଇଅଛି." ତୁମେ କୁହ, କ'ଣ ଦୃଷ୍ଟିହୀନ ଓ ଚକ୍ଷୁଷ୍ମାନ୍ (ବ୍ୟକ୍ତି) ସମାନ ହୋଇପାରନ୍ତି ? ତାହାହେଲେ ତୁମେମାନେ କଅଣ ଚିନ୍ତା କରୁନାହଁ ?"

ରୁ: ୬

وَاَنْذِرْ بِهِ الَّذِيْنَ يَخَافُوْنَ اَنْ يُّحْشَرُوْٓا اِلٰى رَبِّهِمْ لَيْسَ لَهُمْ مِّنْ دُوْنِهٖ وَلِيٌّ وَّلَا شَفِيْعٌ لَّعَلَّهُمْ يَتَّقُوْنَ ﴿٥٢﴾

୫୨. ଏବଂ ତୁମେ ଏହା (ଅର୍ଥାତ୍ ଏହି ବାଣୀ) ଦ୍ୱାରା ସେ ଲୋକମାନଙ୍କୁ ଚେତାବନୀ ଦିଅ ଯେଉଁମାନେ ଏ ବିଷୟକୁ ଭୟ କରନ୍ତି ଯେ ସେମାନଙ୍କୁ ସେମାନଙ୍କର ପାଳନକର୍ତ୍ତାଙ୍କ ନିକଟକୁ ଏକତ୍ରିତ କରି ନିଆହେବ ଯେତେବେଳେ ତାହାଙ୍କ ବ୍ୟତୀତ ସେମାନଙ୍କର ଅନ୍ୟ କେହି ସାହାଯ୍ୟକାରୀ କି ସୁପାରିଶକାରୀ ନ ଥିବେ ତାହାହେଲେ ସେମାନେ ଧର୍ମଭୀରୁତା ଅବଲମ୍ବନ କରିବେ ।

وَلَا تَطْرُدِ الَّذِيْنَ يَدْعُوْنَ رَبَّهُمْ بِالْغَدٰوةِ وَالْعَشِيِّ يُرِيْدُوْنَ وَجْهَهٗ ۗ مَا عَلَيْكَ مِنْ حِسَابِهِمْ مِّنْ شَيْءٍ وَّمَا مِنْ حِسَابِكَ عَلَيْهِمْ مِّنْ شَيْءٍ فَتَطْرُدَهُمْ فَتَكُوْنَ مِنَ الظّٰلِمِيْنَ ﴿٥٣﴾

୫୩. ଏବଂ ତୁମେ ସେ ଲୋକମାନଙ୍କୁ ଯେଉଁମାନେ ସକାଳେ ଏବଂ ସନ୍ଧ୍ୟାରେ ନିଜର ପାଳନକର୍ତ୍ତାଙ୍କୁ ତାହାଙ୍କ ଅନୁଗ୍ରହ ଲାଭ ସକାଶେ ଡାକନ୍ତି, ସେମାନଙ୍କୁ ବିତାଡ଼ିତ କର ନାହିଁ, ତୁମ ଉପରେ ସେମାନଙ୍କ ହିସାବର କୌଣସି ଅଂଶର ଦାୟିତ୍ୱ ନାହିଁ ଏବଂ ସେମାନଙ୍କ ଉପରେ ତୁମ୍ଭ ହିସାବର କୌଣସି ଅଂଶର ଦାୟିତ୍ୱ ନାହିଁ; ସୁତରାଂ ଯଦି ତୁମେ ସେମାନଙ୍କୁ ତଡ଼ି ଦେବ, ତେବେ ଅତ୍ୟାଚାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।

وَكَذٰلِكَ فَتَنَّا بَعْضَهُمْ بِبَعْضٍ لِّيَقُوْلُوْٓا اَهٰٓؤُلَآءِ مَنَّ اللّٰهُ عَلَيْهِمْ مِّنْ بَيْنِنَا ۗ اَلَيْسَ اللّٰهُ بِاَعْلَمَ بِالشّٰكِرِيْنَ ﴿٥٤﴾

୫୪. ଏବଂ ଆମେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଦ୍ୱାରା ଏପରି ଭାବରେ ପରୀକ୍ଷା କରିଛୁ ଯେପରିକି ସେମାନେ କହିବେ, "କ'ଣ ଆମମାନଙ୍କ ମଧ୍ୟରୁ ଏହି (ତୁଚ୍ଛ) ଲୋକମାନଙ୍କୁ ଅଲ୍ଲାହ ଅନୁଗ୍ରହ ପ୍ରଦାନ କରିଛନ୍ତି ?" କଣ ଅଲ୍ଲାହ କୃତଜ୍ଞମାନଙ୍କୁ ଭଲରୂପେ ଜାଣନ୍ତି ନାହିଁ ?

୫୫. ଏବଂ ଯେଉଁମାନେ ଆମର ନିଦର୍ଶନମାନଙ୍କ ଉପରେ ବିଶ୍ୱାସ କରିଛନ୍ତି ଯେତେବେଳେ ସେମାନେ ତୁମ ନିକଟକୁ ଆସିବେ, ସେତେବେଳେ ତୁମେ (ସେମାନଙ୍କୁ) କୁହ, "ତୁମମାନଙ୍କ ଉପରେ ସର୍ବଦା ଶାନ୍ତି ହେଉ;" ତୁମର ପାଳନକର୍ତ୍ତା ନିଜ ପକ୍ଷେ (ତୁମମାନଙ୍କ ପାଇଁ) ଏପରି ଅନୁଗ୍ରହକୁ ବିଧିବଦ୍ଧ କରିଛନ୍ତି, ଯଦ୍ବାରା ତୁମମାନଙ୍କ ମଧ୍ୟରୁ ଯେ ଅଜ୍ଞତାବଶତଃ କୌଣସି ମନ୍ଦକାର୍ଯ୍ୟ କରିବ, ତାପରେ ଅନୁତାପ କରିବ ଏବଂ ନିଜକୁ ସଂଶୋଧନ କରିବ; ତେବେ ସେ (ଅର୍ଥାତ୍ ଅଲ୍ଲାହ୍) ଅତ୍ୟନ୍ତ କ୍ଷମାଶୀଳ(ଓ)ସଦା କରୁଣାମୟ ।

وَ اِذَا جَآءَكَ الَّذِيْنَ يُؤْمِنُوْنَ بِاٰيٰتِنَا فَقُلْ سَلٰمٌ عَلَيْكُمْ كَتَبَ رَبُّكُمْ عَلٰى نَفْسِهِ الرَّحْمَةَ ۙ اَنَّهٗ مَنْ عَمِلَ مِنْكُمْ سُوْٓءًۢا بِجَهَالَةٍ ثُمَّ تَابَ مِنْ بَعْدِهٖ وَ اَصْلَحَ فَاَنَّهٗ غَفُوْرٌ رَّحِيْمٌ ﴿۵۵﴾

୫୬. ଏବଂ ଆମେ ଏହିପରି ଭାବେ ନିଦର୍ଶନଗୁଡିକୁ ସ୍ପଷ୍ଟରୂପେ ବର୍ଣ୍ଣନା କରୁ (ଯେପରିକି ସତ୍ୟ ପ୍ରକାଶିତ ହେବ) ଏବଂ ଅପରାଧୀମାନଙ୍କର ପନ୍ଥା ପ୍ରକଟିତ ହେବ ।

وَ كَذٰلِكَ نُفَصِّلُ الْاٰيٰتِ وَ لِتَسْتَبِيْنَ سَبِيْلُ الْمُجْرِمِيْنَ ﴿۵۶﴾

ରୁ: ୬

୫୭. ତୁମେ (ସେମାନଙ୍କୁ) କୁହ, "ତୁମେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଯେଉଁ (ମିଥ୍ୟା ଉପାସ୍ୟ)ମାନଙ୍କୁ ଡାକୁଛ, ସେମାନଙ୍କ ଉପାସନା କରିବା ଲାଗି ଆମକୁ ସମ୍ପୂର୍ଣ୍ଣରୂପେ ବାରଣ କରାହୋଇଛି;" ତୁମେ (ସେମାନଙ୍କୁ) କୁହ, "ଆମେ ତୁମମାନଙ୍କର 'ତୁଚ୍ଛ କାମନାର ଅନୁସରଣ କରୁନାହୁଁ, (ଯଦି ଆମେ ଏହା କରିବୁ ତେବେ) ଏପରି ସ୍ଥଳେ (ବୁଝିନିଅ ଯେ) ଆମେ ପଥଭ୍ରଷ୍ଟ ହୋଇଯାଇଛୁ ଏବଂ ଆମେ ସତ୍‌ପଥଗାମୀମାନଙ୍କ ମଧ୍ୟରେ ନାହୁଁ ।"

قُلْ اِنِّيْ نُهِيْتُ اَنْ اَعْبُدَ الَّذِيْنَ تَدْعُوْنَ مِنْ دُوْنِ اللّٰهِ ؕ قُلْ لَّاۤ اَتَّبِعُ اَهْوَآءَكُمْ ۙ قَدْ ضَلَلْتُ اِذًا وَّ مَاۤ اَنَا مِنَ الْمُهْتَدِيْنَ ﴿۵۷﴾

୫୮. ତୁମେ (ସେମାନଙ୍କୁ) କୁହ, "ଆମେ ନିଜ ପାଳନକର୍ତ୍ତାଙ୍କ ତରଫରୁ ସ୍ପଷ୍ଟ ପ୍ରମାଣ ଉପରେ ପ୍ରତିଷ୍ଠିତ, ଏବଂ ତୁମେମାନେ ଏହାକୁ ଅସ୍ୱୀକାର କରୁଅଛ, ତୁମେମାନେ ଯେଉଁ ବିଷୟରେ ତରବର ହେଉଅଛ ତାହା ଆମ ନିକଟରେ ନାହିଁ; (କେବଳ) ଅଲ୍ଲାହ୍‌ଙ୍କ ଅକ୍ତିଆରରେ ନିଷ୍ପତ୍ତି ରହିଅଛି; ସେ ସତ୍ୟ ବର୍ଣ୍ଣନା କରନ୍ତି ଏବଂ ସେ ହିଁ ସର୍ବଶ୍ରେଷ୍ଠ ନିଷ୍ପତ୍ତିକାରୀ ।"

قُلْ اِنِّيْ عَلٰى بَيِّنَةٍ مِّنْ رَّبِّيْ وَ كَذَّبْتُمْ بِهٖ ؕ مَا عِنْدِيْ مَا تَسْتَعْجِلُوْنَ بِهٖ ؕ اِنِ الْحُكْمُ اِلَّا لِلّٰهِ ؕ يَقُصُّ الْحَقَّ وَ هُوَ خَيْرُ الْفٰصِلِيْنَ ﴿۵۸﴾

୫୯. ତୁମେ (ସେମାନଙ୍କୁ) କୁହ, "ତୁମେମାନେ ଯେଉଁ ବିଷୟରେ ତରବର ହେଉଅଛ ଯଦି ତାହା ଆମ ନିକଟରେ ଥା'ନ୍ତା, ତେବେ ଆମ ଓ ତୁମମାନଙ୍କ ମଧ୍ୟରେ (କେବେଠାରୁ) ବିଷୟଟିର ନିଷ୍ପତ୍ତି ହୋଇଯାଆନ୍ତା;" ଏବଂ ଅଲ୍ଲାହ୍ ଅତ୍ୟାଚାରୀମାନଙ୍କୁ ସବୁଠାରୁ ଅଧିକ ଜାଣନ୍ତି ।

قُلْ لَّوْ اَنَّ عِنْدِيْ مَا تَسْتَعْجِلُوْنَ بِهٖ لَقُضِيَ الْاَمْرُ بَيْنِيْ وَ بَيْنَكُمْ ؕ وَ اللّٰهُ اَعْلَمُ بِالظّٰلِمِيْنَ ﴿۵۹﴾

୬୦. ଏବଂ ତାହାଙ୍କଠାରେ ଅଦୃଶ୍ୟ ର ସୁବିକାଠି ଅଛି, ତାହାଙ୍କ ବ୍ୟତୀତ ଅନ୍ୟ କେହି ଏହାକୁ ଜାଣନ୍ତି ନାହିଁ; ଏବଂ ଯାହା କିଛି ସ୍ଥଳଭାଗରେ ତଥା ସମୁଦ୍ରରେ ଅଛି ସେ ତାହାକୁ ଜାଣନ୍ତି; ଏବଂ ତାହାଙ୍କ ଅଜ୍ଞାତସାରରେ କୌଣସି ପତ୍ର ମଧ୍ୟ ପଡ଼େ ନାହିଁ; ଏବଂ ପୃଥିବୀର ଘନ ଅନ୍ଧକାର ମଧ୍ୟରେ ଏପରି କୌଣସି ଶସ୍ୟ ଦାନା ନାହିଁ, ଏବଂ ଏପରି କୌଣସି ଆର୍ଦ୍ର ଓ ଶୁଷ୍କ ଦ୍ରବ୍ୟ ନାହିଁ ଯାହା (ତାହାଙ୍କର) ପ୍ରକାଶ୍ୟ ସୁରକ୍ଷା ମଧ୍ୟରେ ରହିନାହିଁ।

وَعِنْدَهٗ مَفَاتِحُ الْغَيْبِ لَا يَعْلَمُهَآ اِلَّا هُوَ ۭ وَيَعْلَمُ مَا فِي الْبَرِّ وَالْبَحْرِ ۭ وَمَا تَسْقُطُ مِنْ وَّرَقَةٍ اِلَّا يَعْلَمُهَا وَلَا حَبَّةٍ فِيْ ظُلُمٰتِ الْاَرْضِ وَلَا رَطْبٍ وَّلَا يَابِسٍ اِلَّا فِيْ كِتٰبٍ مُّبِيْنٍ ﴿٦٠﴾

୬୧. ଏବଂ ସେ ହିଁ ରାତ୍ରିକାଳରେ ତୁମମାନଙ୍କର ଆତ୍ମାକୁ କବଳିତ କରନ୍ତି ଏବଂ ଦିନବେଳେ ତୁମେମାନେ ଯାହା କିଛି କରୁଅଛ, ତାହାକୁ ଜାଣନ୍ତି; ତତ୍‌ପରେ ସେ ତୁମମାନଙ୍କୁ ଦିନବେଳେ ଜାଗ୍ରତ କରାନ୍ତି, ଯେପରିକି ନିର୍ଦ୍ଦିଷ୍ଟକାଳ ସମ୍ପୂର୍ଣ୍ଣ ହେବ; ଯାହାପରେ ତୁମେମାନେ ତାହାଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରିବ, ଏବଂ ତୁମେମାନେ ଯାହାକିଛି କରୁଅଛ, ସେ ତୁମମାନଙ୍କୁ ତାହା ଜଣାଇଦେବେ।

وَهُوَ الَّذِيْ يَتَوَفّٰىكُمْ بِالَّيْلِ وَيَعْلَمُ مَا جَرَحْتُمْ بِالنَّهَارِ ثُمَّ يَبْعَثُكُمْ فِيْهِ لِيُقْضٰٓى اَجَلٌ مُّسَمًّى ۚ ثُمَّ اِلَيْهِ مَرْجِعُكُمْ ثُمَّ يُنَبِّئُكُمْ بِمَا كُنْتُمْ تَعْمَلُوْنَ ﴿٦١﴾

ରୁ: ୮

୬୨. ଏବଂ ନିଜ ଭକ୍ତମାନଙ୍କ ଉପରେ ତାହାଙ୍କର ନିରଙ୍କୁଶ କ୍ଷମତା ଅଛି ଏବଂ ସେ ତୁମମାନଙ୍କ ସକାଶେ ତତ୍ତ୍ୱାବଧାରକ (ନିଯୁକ୍ତ କରି) ପ୍ରେରଣ[1] କରନ୍ତି, ଏପରିକି ଯେତେବେଳେ ତୁମମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ (ସମୟ) ଉପସ୍ଥିତ ହୁଏ ସେତେବେଳେ ଆମର ପ୍ରେରିତ (ଦେବଦୂତମାନେ) ତାହାର ପ୍ରାଣ ନାଶ କରନ୍ତି ଏବଂ ସେମାନେ (ଆଦେଶ ପାଳନ କରିବାରେ) ତ୍ରୁଟି କରନ୍ତି ନାହିଁ।

وَهُوَ الْقَاهِرُ فَوْقَ عِبَادِهٖ وَيُرْسِلُ عَلَيْكُمْ حَفَظَةً ۭ حَتّٰٓى اِذَا جَاۗءَ اَحَدَكُمُ الْمَوْتُ تَوَفَّتْهُ رُسُلُنَا وَهُمْ لَا يُفَرِّطُوْنَ ﴿٦٢﴾

୬୩. ତତ୍‌ପରେ ସେମାନଙ୍କୁ ସେମାନଙ୍କର ବାସ୍ତବ ପ୍ରଭୁ ଅଲ୍ଲାହ୍‌ଙ୍କ ନିକଟକୁ ଫେରାଇ ନିଆଯିବ; ମନେରଖ ! ନିଷ୍ପତ୍ତି କରିବା ତାହାଙ୍କର ଅଧିକାରଭୁକ୍ତ ଏବଂ ସେ ହିସାବ ଗ୍ରହୀତାମାନଙ୍କ ମଧ୍ୟରେ ଅତ୍ୟନ୍ତ କ୍ଷିପ୍ର।

ثُمَّ رُدُّوْٓا اِلَى اللّٰهِ مَوْلٰىهُمُ الْحَقِّ ۭ اَلَا لَهُ الْحُكْمُ ۣ وَهُوَ اَسْرَعُ الْحٰسِبِيْنَ ﴿٦٣﴾

---

୧. ଅର୍ଥାତ୍ ରସୁଲ। ପ୍ରତ୍ୟେକ ରସୁଲ ବା ନବି ଯେଉଁମାନଙ୍କ ପ୍ରତି ପ୍ରେରିତ ହୋଇଥିବେ ସେମାନଙ୍କ ପାଇଁ–ସେମାନେ ବିଶ୍ୱାସକାରୀ ହୋଇଥାଆନ୍ତୁ ବା ଅବିଶ୍ୱାସକାରୀ–ସାକ୍ଷ୍ୟ ଦେବେ। ଅବଶ୍ୟ ସାକ୍ଷ୍ୟର ସ୍ୱରୂପ ଭିନ୍ନ ହେବ। ଏହି ପରିପ୍ରେକ୍ଷୀରେ ଅଲ୍ଲାହ୍ ପ୍ରଶ୍ନ କରୁଛନ୍ତି ଯେ ସେଦିନ ତୁମମାନଙ୍କର ଅବସ୍ଥା କ'ଣ ହେବ ଯେତେବେଳେ ଆମେ ସେହି ରସୁଲମାନଙ୍କୁ ତୁମମାନଙ୍କ ସମ୍ବନ୍ଧରେ ସାକ୍ଷ୍ୟ ଦେବା ପାଇଁ ହାଜର କରାଇବୁ (୪ : ୪୨ ଦ୍ରଷ୍ଟବ୍ୟ)।

୬୪. ତୁମେ (ସେମାନଙ୍କୁ) କୁହ, "କିଏ ତୁମମାନଙ୍କୁ ସ୍ଥଳଭାଗ ଓ ଜଳଭାଗସ୍ଥ ବିପଦରୁ ରକ୍ଷା କରନ୍ତି, ଯେତେବେଳେ ତୁମେମାନେ ତାହାଙ୍କୁ ବିନୀତ ଭାବରେ ଓ ଗୋପନରେ ଡାକ ଯେ ଯଦି ସେ ଆମମାନଙ୍କୁ ଏହି ବିପଦରୁ ଉଦ୍ଧାର କରିବେ ତେବେ ଆମେମାନେ ନିଶ୍ଚୟ କୃତଜ୍ଞ ହେବୁ ।"

قُلْ مَنْ يُنَجِّيكُمْ مِنْ ظُلُمَاتِ الْبَرِّ وَالْبَحْرِ تَدْعُونَهُ تَضَرُّعًا وَخُفْيَةً ۚ لَئِنْ أَنْجَانَا مِنْ هَٰذِهِ لَنَكُونَنَّ مِنَ الشَّاكِرِينَ ﴿٦٤﴾

୬୫. ତୁମେ (ସେମାନଙ୍କୁ) କୁହ, "ଅଲ୍ଲାହ (ହିଁ) ତୁମମାନଙ୍କୁ ସେଥିରୁ ଓ ସକଳ ବିପଦରୁ ଉଦ୍ଧାର କରିଥା'ନ୍ତି ; ତଥାପି ତୁମେମାନେ ସିର୍କ କରୁଅଛ ।"

قُلِ اللَّهُ يُنَجِّيكُمْ مِنْهَا وَمِنْ كُلِّ كَرْبٍ ثُمَّ أَنْتُمْ تُشْرِكُونَ ﴿٦٥﴾

୬୬. ତୁମେ (ସେମାନଙ୍କୁ) କୁହ, "ତୁମମାନଙ୍କ ଊର୍ଦ୍ଧ୍ୱରୁ ଓ ତୁମମାନଙ୍କ ପାଦ ତଳୁ ତୁମମାନଙ୍କ ପ୍ରତି ଶାସ୍ତି ପ୍ରେରଣ କରିବାକୁ ଅଥବା ତୁମମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟିକରି ବିଭିନ୍ନ ଦଳରେ ବିଭକ୍ତ କରିବାକୁ ଏବଂ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଦ୍ୱାରା ପୀଡା ଦେବାକୁ ସେ ସକ୍ଷମ"; ଦେଖ, ଆମେ କିପରି ନିଦର୍ଶନଗୁଡିକୁ ବାରମ୍ବାର ବର୍ଣ୍ଣନା କରୁଅଛୁ ଯଦ୍ଦ୍ୱାରା ସେମାନେ ବୁଝି ପାରିବେ ।

قُلْ هُوَ الْقَادِرُ عَلَىٰ أَنْ يَبْعَثَ عَلَيْكُمْ عَذَابًا مِنْ فَوْقِكُمْ أَوْ مِنْ تَحْتِ أَرْجُلِكُمْ أَوْ يَلْبِسَكُمْ شِيَعًا وَيُذِيقَ بَعْضَكُمْ بَأْسَ بَعْضٍ ۗ انْظُرْ كَيْفَ نُصَرِّفُ الْآيَاتِ لَعَلَّهُمْ يَفْقَهُونَ ﴿٦٦﴾

୬୭. ଏବଂ ତୁମ ସମ୍ପ୍ରଦାୟ ଏହାକୁ (ଅର୍ଥାତ୍ ହଜରତ ମହମ୍ମଦଙ୍କ ବାର୍ତ୍ତାକୁ) ମିଥ୍ୟା ସାବ୍ୟସ୍ତ କରିଛନ୍ତି, ଅଥଚ ତାହା ସତ୍ୟ ଅଟେ ; ତୁମେ (ସେମାନଙ୍କୁ) କୁହ, "ଆମେ ତୁମମାନଙ୍କ ପାଇଁ ଦାୟୀ ନୋହୁଁ ।"

وَكَذَّبَ بِهِ قَوْمُكَ وَهُوَ الْحَقُّ ۚ قُلْ لَسْتُ عَلَيْكُمْ بِوَكِيلٍ ﴿٦٧﴾

୬୮. ପ୍ରତ୍ୟେକ ଭବିଷ୍ୟବାଣୀ ପାଇଁ ନିର୍ଦ୍ଦିଷ୍ଟ ସମୟ ଅଛି ଓ ତୁମେମାନେ ଶୀଘ୍ର (ଏହା) ଜାଣି ପାରିବ ।

لِكُلِّ نَبَإٍ مُسْتَقَرٌّ ۚ وَسَوْفَ تَعْلَمُونَ ﴿٦٨﴾

୬୯. ଏବଂ ଯେତେବେଳେ ତୁମେ ସେମାନଙ୍କୁ ଦେଖିବ ଯେଉଁମାନେ ଆମର ନିଦର୍ଶନଗୁଡିକ ସଂକ୍ରାନ୍ତରେ ଅସଂଯତ ଭାବରେ ଆଲୋଚନା କରିଛନ୍ତି, ତେବେ ସେମାନେ ଏହାକୁ ପରିତ୍ୟାଗ କରି ଅନ୍ୟ ବିଷୟରେ ଆଲୋଚନା ନ କରିବା ପର୍ଯ୍ୟନ୍ତ ତୁମେ ସେମାନଙ୍କ ଠାରୁ ଦୂରେଇ ରହ; ; ଏବଂ ଯଦି ସଇତାନ ତୁମକୁ ଭୁଲାଇ ଦିଏ, ତେବେ ଏହା ସ୍ମରଣ ହେବା ପରେ, ତୁମେ ଅତ୍ୟାଚାରୀ ସମ୍ପ୍ରଦାୟ ସହିତ ବସ ନାହିଁ ।

وَإِذَا رَأَيْتَ الَّذِينَ يَخُوضُونَ فِي آيَاتِنَا فَأَعْرِضْ عَنْهُمْ حَتَّىٰ يَخُوضُوا فِي حَدِيثٍ غَيْرِهِ ۚ وَإِمَّا يُنْسِيَنَّكَ الشَّيْطَانُ فَلَا تَقْعُدْ بَعْدَ الذِّكْرَىٰ مَعَ الْقَوْمِ الظَّالِمِينَ ﴿٦٩﴾

୭୦. ଏବଂ ସେ (କୁଭାଷୀ ଲୋକ)ମାନଙ୍କ କାର୍ଯ୍ୟ ପାଇଁ ଧର୍ମଭୀରୁମାନେ ଉତ୍ତରଦାୟୀ ନୁହନ୍ତି, ବରଂ ସେମାନଙ୍କୁ ଉପଦେଶ ପ୍ରଦାନ କରିବା (ସେମାନଙ୍କ ଦାୟିତ୍ୱ) ହେବ ଯେପରିକି ସେମାନେ ଧର୍ମଭୀରୁ ହେବେ ।

وَمَا عَلَى الَّذِينَ يَتَّقُونَ مِنْ حِسَابِهِمْ مِنْ شَيْءٍ وَلَٰكِنْ ذِكْرَىٰ لَعَلَّهُمْ يَتَّقُونَ ﴿٧٠﴾

୭୧. ଏବଂ ଯେଉଁମାନେ ସେମାନଙ୍କର ଧର୍ମକୁ କ୍ରୀଡା କୌତୁକ ମନେ କରିଛନ୍ତି ଏବଂ ପାର୍ଥିବ ଜୀବନ ଯେଉଁମାନଙ୍କୁ ପ୍ରବଞ୍ଚିତ କରିଅଛି, ତୁମେ ସେମାନଙ୍କୁ ପରିତ୍ୟାଗ କର ; ଏବଂ କୌଣସି ଆତ୍ମା ଯାହାକିଛି ଉପାର୍ଜନ କରିଅଛି ସେଥିଲାଗି କାଳେ ତାହା ଧ୍ୱଂସ ମୁଖରେ ନିପତିତ ହେବ, ସେଥି ଯୋଗୁଁ (ଲୋକମାନଙ୍କୁ) ଏହା (ଅର୍ଥାତ୍ ଅଲ୍ଲାଃଙ୍କ ବାଣୀ) ମାଧ୍ୟମରେ ଉପଦେଶ ଦିଅ, (କାରଣ) ଅଲ୍ଲାଃଙ୍କ ବ୍ୟତୀତ ତାହାର ଅନ୍ୟ କେହି ବନ୍ଧୁ ବା ସୁପାରିଶକାରୀ ହେବେ ନାହିଁ; ଏବଂ ବିନିମୟରେ ସେ ଯାହା କିଛି ପ୍ରଦାନ କଲେ ମଧ୍ୟ ତାହାଙ୍କଠାରୁ ଏହା ଗ୍ରହଣ କରାଯିବ ନାହିଁ ; ସେମାନଙ୍କ ନିଜ ଉପାର୍ଜନ ଯୋଗୁଁ ସେମାନେ ଧ୍ୱଂସ ମୁଖରେ ନିପତିତ ହେବେ ; ସେମାନଙ୍କୁ ସେମାନଙ୍କ ଅବିଶ୍ୱାସ ହେତୁ ପିଇବାକୁ ଉତ୍ତପ୍ତ ଜଳ (ମିଳିବ) ଓ ଯନ୍ତ୍ରଣାଦାୟକ ଶାସ୍ତି ପ୍ରଦାନ କରାଯିବ ।

وَذَرِ الَّذِيْنَ اتَّخَذُوْا دِيْنَهُمْ لَعِبًا وَّلَهْوًا وَّغَرَّتْهُمُ
الْحَيٰوةُ الدُّنْيَا وَذَكِّرْ بِهٖٓ اَنْ تُبْسَلَ نَفْسٌۢ بِمَا كَسَبَتْ
لَيْسَ لَهَا مِنْ دُوْنِ اللّٰهِ وَلِيٌّ وَّلَا شَفِيْعٌ وَاِنْ
تَعْدِلْ كُلَّ عَدْلٍ لَّا يُؤْخَذْ مِنْهَا اُولٰٓئِكَ الَّذِيْنَ
اُبْسِلُوْا بِمَا كَسَبُوْا لَهُمْ شَرَابٌ مِّنْ حَمِيْمٍ وَّعَذَابٌ
اَلِيْمٌۢ بِمَا كَانُوْا يَكْفُرُوْنَ ﴿٧١﴾

ରୁ : ୯

୭୨. ତୁମେ (ସେମାନଙ୍କୁ) କୁହ, "କ'ଣ ଆମେମାନେ ଅଲ୍ଲାଃଙ୍କ ବ୍ୟତୀତ ତାହାକୁ ଡାକିବୁ ଯେ ଆମମାନଙ୍କର (କୌଣସି) ଲାଭ ବା କ୍ଷତି କରିପାରିବ ନାହିଁ ଏବଂ ଅଲ୍ଲାଃ ଆମମାନଙ୍କୁ ସତ୍‌ପଥ ପ୍ରଦର୍ଶିତ କରାଇବା ପରେ କ'ଣ ଆମେମାନେ ସେ (ବ୍ୟକ୍ତି) ପରି ପଶ୍ଚାତପଦ ହୋଇ ଫେରିଯିବୁ ଯାହାକୁ ଖଳ (ଲୋକ)ମାନେ ପ୍ରଲୁବ୍ଧ କରାଇଛନ୍ତି ଯଦ୍ୱାରା ସେ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଏ, ତାହାର ଏପରି (କେତେକ) ସଙ୍ଗୀ ଅଛନ୍ତି ଯେଉଁମାନେ ତାହାକୁ ସମ୍ବୋଧନ କରି କହନ୍ତି 'ଆମ ନିକଟକୁ ଆସ, ତାହାହେଲେ ସତ୍‌ପଥ ପାଇବ'"; ତୁମେ (ସେ ଅବିଶ୍ୱାସକାରୀମାନଙ୍କୁ) କୁହ, "ବାସ୍ତବରେ ଅଲ୍ଲାଃଙ୍କ ପ୍ରଦର୍ଶିତ ପଥ ହିଁ ପ୍ରକୃତ ସତ୍‌ପଥ"; ଏବଂ ଆମମାନଙ୍କୁ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ଆଜ୍ଞାପାଳନ କରିବାକୁ ଆଦେଶ ଦିଆଯାଇଛି ।

قُلْ اَنَدْعُوْا مِنْ دُوْنِ اللّٰهِ مَا لَا يَنْفَعُنَا وَلَا يَضُرُّنَا
وَنُرَدُّ عَلٰٓى اَعْقَابِنَا بَعْدَ اِذْ هَدٰىنَا اللّٰهُ كَالَّذِى
اسْتَهْوَتْهُ الشَّيٰطِيْنُ فِى الْاَرْضِ حَيْرَانَ لَهٗٓ اَصْحٰبٌ
يَّدْعُوْنَهٗٓ اِلَى الْهُدَى ائْتِنَا قُلْ اِنَّ هُدَى اللّٰهِ
هُوَ الْهُدٰى وَاُمِرْنَا لِنُسْلِمَ لِرَبِّ الْعٰلَمِيْنَ ﴿٧٢﴾

୭୩. ଏବଂ (ଏହା ମଧ୍ୟ ନିର୍ଦ୍ଦେଶ ଦିଆଯାଇଛି ଯେ) ନମାଜକୁ ସୁଚାରୁରୂପେ ପାଠ କର ତଥା ତାହାଙ୍କୁ (ଅର୍ଥାତ୍ ଅଲ୍ଲାଃଙ୍କୁ) ନିଜର ରକ୍ଷାକର୍ତ୍ତା ରୂପେ ଗ୍ରହଣ କର; ଏବଂ ତାହାଙ୍କ ନିକଟକୁ ହିଁ ତୁମମାନଙ୍କୁ ଏକତ୍ରିତ କରି ନିଆଯିବ ।

وَاَنْ اَقِيْمُوا الصَّلٰوةَ وَاتَّقُوْهُ وَهُوَ الَّذِىْٓ اِلَيْهِ
تُحْشَرُوْنَ ﴿٧٣﴾

وَهُوَ الَّذِيْ خَلَقَ السَّمٰوٰتِ وَالْاَرْضَ بِالْحَقِّ ۭ وَيَوْمَ يَقُوْلُ كُنْ فَيَكُوْنُ ڛ قَوْلُهُ الْحَقُّ ۭ وَلَهُ الْمُلْكُ يَوْمَ يُنْفَخُ فِي الصُّوْرِ ۭ عٰلِمُ الْغَيْبِ وَالشَّهَادَةِ ۭ وَهُوَ الْحَكِيْمُ الْخَبِيْرُ ﴿٧٤﴾

୭୪. ଏବଂ ସେ ହିଁ ଆକାଶ ଓ ପୃଥିବୀକୁ ସତ୍ୟ (ଓ ତତ୍ତ୍ୱ) ସହିତ ସୃଷ୍ଟି କରିଛନ୍ତି ; ଏବଂ ଯେଉଁଦିନ ସେ କହିବେ, (ମୋ ଇଚ୍ଛାନୁସାରେ ଏପରି) "ହୋଇଯାଉ", (ସେହିପରି) ହୋଇଯିବ; ତାହାଙ୍କର ବାଣୀ (ସତ୍ୟ ଓ) ଅଟଳ ଏବଂ ଯେଉଁଦିନ ବିଗୁଲ ଫୁଙ୍କା ଯିବ ସେଦିନ ତାହାଙ୍କର (ହିଁ) ଆଧିପତ୍ୟ ହେବ ; (ସେ) ଅଦୃଶ୍ୟ ଓ ପ୍ରକାଶ୍ୟ (ଉଭୟ ବିଷୟକୁ) ଜାଣନ୍ତି ; ଏବଂ ସେ ହିଁ ତତ୍ତ୍ୱଜ୍ଞ (ଓ) ସୁବିଦିତ ।

وَاِذْ قَالَ اِبْرٰهِيْمُ لِاَبِيْهِ اٰزَرَ اَتَتَّخِذُ اَصْنَامًا اٰلِهَةً ۚ اِنِّيْٓ اَرٰىكَ وَقَوْمَكَ فِيْ ضَلٰلٍ مُّبِيْنٍ ﴿٧٥﴾

୭୫. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଇବ୍ରାହିମ ତାହାଙ୍କ ପିତା ଆଜରଙ୍କୁ କହିଲେ, "କ'ଣ ତୁମେ (କେତେକ) ପ୍ରତିମାକୁ ଉପାସ୍ୟ ରୂପେ ଗ୍ରହଣ କରୁଅଛ ? ଆମ୍ଭେ ତୁମକୁ ଓ ତୁମର ସମ୍ପ୍ରଦାୟକୁ ସ୍ପଷ୍ଟତଃ ପଥଭ୍ରଷ୍ଟ ହୋଇଥିବାର ଦେଖୁଅଛୁ ।"

وَكَذٰلِكَ نُرِيْٓ اِبْرٰهِيْمَ مَلَكُوْتَ السَّمٰوٰتِ وَالْاَرْضِ وَلِيَكُوْنَ مِنَ الْمُوْقِنِيْنَ ﴿٧٦﴾

୭୬. ଏବଂ ଆମ୍ଭେ ଏହିପରି ଇବ୍ରାହିମଙ୍କୁ ଆକାଶ ଓ ପୃଥିବୀରେ (ଆମ୍ଭର) ରାଜତ୍ୱ ପ୍ରଦର୍ଶିତ କରାଉଥିଲୁ ଯଦ୍ଦ୍ୱାରା (ତାହାଙ୍କ ଜ୍ଞାନ ପରିପୂର୍ଣ୍ଣ ହେବ ଏବଂ) ସେ ବିଶ୍ୱାସକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବେ ।

فَلَمَّا جَنَّ عَلَيْهِ الَّيْلُ رَاٰ كَوْكَبًا ۚ قَالَ هٰذَا رَبِّيْ ۚ فَلَمَّآ اَفَلَ قَالَ لَآ اُحِبُّ الْاٰفِلِيْنَ ﴿٧٧﴾

୭୭. (ଦିନେ ଏପରି ହେଲା) ଯେତେବେଳେ ତାହାଙ୍କ ଉପରେ ରାତ୍ରି ଆଚ୍ଛନ୍ନ ହେଲା, ସେ ଏକ ନକ୍ଷତ୍ରକୁ ଦେଖିଲେ ; (ଏହା ଦେଖି) ସେ କହିଲେ, "କ'ଣ ଏହା ଆମ୍ଭର ପାଳନକର୍ତ୍ତା (ହୋଇପାରେ) ?" ପରେ ଯେତେବେଳେ ତାହା ଅସ୍ତ ହେଲା (ସେତେବେଳେ) ସେ କହିଲେ, "ଆମ୍ଭେ ଅସ୍ତଗାମୀକୁ ପସନ୍ଦ କରୁନାହୁଁ ।"[1]

فَلَمَّا رَاَ الْقَمَرَ بَازِغًا قَالَ هٰذَا رَبِّيْ ۚ فَلَمَّآ اَفَلَ قَالَ لَىِٕنْ لَّمْ يَهْدِنِيْ رَبِّيْ لَاَكُوْنَنَّ مِنَ الْقَوْمِ الضَّاۗلِّيْنَ ﴿٧٨﴾

୭୮. (ତତ୍ପରେ) ଯେତେବେଳେ ସେ ଜ୍ୟୋତ୍ସ୍ନାମୟୀ ଚନ୍ଦ୍ରକୁ ଦେଖିଲେ ସେତେବେଳେ ସେ କହିଲେ, "କ'ଣ ଏହା ଆମ୍ଭର ପାଳନକର୍ତ୍ତା (ହୋଇପାରେ) ?" ତାପରେ ଯେତେବେଳେ ଏହା ଅଦୃଶ୍ୟ ହୋଇଗଲା ସେତେବେଳେ ସେ କହିଲେ, "ଯଦି ଆମ୍ଭର ପାଳନକର୍ତ୍ତା ଆମ୍ଭଙ୍କୁ ସତ୍ପଥ ପ୍ରଦର୍ଶିତ କରାଇ ନ ଥାନ୍ତେ, ତେବେ ଆମ୍ଭେ ନିଶ୍ଚୟ ପଥଭ୍ରଷ୍ଟ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ହୋଇଥା'ନ୍ତୁ ।"

---

୧. ସେତେବେଳେ ଅନେକ ଲୋକ ବହୁ ଈଶ୍ୱରବାଦରେ ବିଶ୍ୱାସ କରୁଥିଲେ । ସେମାନଙ୍କର ଏହି ଭ୍ରାନ୍ତ ଧାରଣାକୁ ବଦଳାଇବା ସକାଶେ ହଜରତ ଇବ୍ରାହିମ ସେମାନଙ୍କ ନିକଟରେ ଯେଉଁ ଯୁକ୍ତି ଉପସ୍ଥାପନ କରିଥିଲେ ତାହା ଆୟତ ୭୭–୭୯ରେ ବର୍ଣ୍ଣନା କରାଯାଇଛି । ହଜରତ ଇବ୍ରାହିମ ନିଜେ ଅନ୍ଧାରରେ ବାଡ଼ି ବୁଲାଉଥିଲେ ଓ ଅଲ୍ଲାହ୍ କିଏ ବୋଲି ଜାଣି ନଥିଲେ, ଅର୍ଥକରିବା ଯଥାର୍ଥ ହେବ ନାହିଁ । ସେମାନଙ୍କ ଉପାସ୍ୟମାନେ ଯେ ଅଳୀକ ଓ ନିରର୍ଥକ ସେ ଏହାକୁ ସେମାନଙ୍କ ନିକଟରେ ପର୍ଯ୍ୟାୟକ୍ରମେ ପ୍ରତିପାଦିତ କରିବାକୁ ଚେଷ୍ଟା କରିଛନ୍ତି । ବସ୍ତୁତଃ ଏଠାରେ ଇବ୍ରାହିମଙ୍କ ମୁଖରେ ବ୍ୟଙ୍ଗାତ୍ମକ ବାକ୍ୟମାନ କୁହାଯାଇଛି । ଆୟତ ୭୫–୭୬କୁ ଅନୁଧ୍ୟାନ କଲେ ଜଣାଯିବ ଯେ ହଜରତ ଇବ୍ରାହିମ ଏକ-ଅଲ୍ଲାହଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ ସ୍ଥାପନ କରିଥିଲେ ।

୭୯. ତତ୍‌ପରେ ଯେତେବେଳେ ସେ ଜାଜ୍ୱଲ୍ୟମାନ ସୂର୍ଯ୍ୟକୁ ଦେଖିଲେ (ସେତେବେଳେ) ସେ କହିଲେ, "କ'ଣ ଏହା ଆମର ପାଳନକର୍ତ୍ତା (ହୋଇପାରେ) ? ଏହା ନିଃସନ୍ଦେହରେ ସବୁଠାରୁ ବଡ଼ ;" ପୁଣି ଯେତେବେଳେ ଏହା (ମଧ୍ୟ) ଅସ୍ତ ହୋଇଗଲା ସେତେବେଳେ ସେ କହିଲେ, "ହେ ଆମ ସମ୍ପ୍ରଦାୟର ଲୋକମାନେ ! ତୁମେମାନେ ଯାହାକୁ ଅଲ୍ଲାହଙ୍କର ସମକକ୍ଷ କରୁଅଛ ଆମେ ସେ ବିଷୟରେ ଅସ୍ୱସ୍ତି ବୋଧ କରୁଅଛୁ ।"

فَلَمَّا رَاَ الشَّمْسَ بَازِغَةً قَالَ هٰذَا رَبِّيْ هٰذَآ اَكْبَرُ ۚ فَلَمَّآ اَفَلَتْ قَالَ يٰقَوْمِ اِنِّيْ بَرِيْٓءٌ مِّمَّا تُشْرِكُوْنَ ۝٧٩

୮୦. "ଆମେ ସମସ୍ତ କୁଟିଳ ମାର୍ଗରୁ ନିଜକୁ ସୁରକ୍ଷିତ କରି ଆକାଶ ଓ ପୃଥିବୀର ସୃଷ୍ଟିକର୍ତ୍ତା ଅଲ୍ଲାହଙ୍କ ଆଡ଼କୁ ନିଶ୍ଚିତ ରୂପେ ନିଜର ଧ୍ୟାନ ଫେରାଇଛୁ, ଏବଂ ଆମେ ମୁସରିକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନୋହୁଁ ।"

اِنِّيْ وَجَّهْتُ وَجْهِيَ لِلَّذِيْ فَطَرَ السَّمٰوٰتِ وَالْاَرْضَ حَنِيْفًا وَّمَآ اَنَا مِنَ الْمُشْرِكِيْنَ ۝٨٠

୮୧. ଏବଂ ତାହାଙ୍କ ସମ୍ପ୍ରଦାୟ ତାହାଙ୍କ ସହିତ ଯୁକ୍ତି କରି ବିଜୟ ଲାଭ କରିବାକୁ ଇଚ୍ଛାକଲେ, (ତେଣୁ) ସେ କହିଲେ, "କ'ଣ ତୁମେମାନେ ଆମ ସହିତ ଅଲ୍ଲାହଙ୍କ ସମ୍ପର୍କରେ ଯୁକ୍ତି କରୁଅଛ ? ଅଥଚ ସେ ନିଜେ ଆମକୁ ସତ୍‌ପଥ ପ୍ରଦର୍ଶନ କରିଛନ୍ତି, ଏବଂ ତୁମେମାନେ ଯାହାଙ୍କୁ ଅଲ୍ଲାହଙ୍କ ସମକକ୍ଷ କରୁଅଛ, ଆମେ ତାହାଙ୍କୁ ଭୟ କରୁ ନାହୁଁ ; ଅବଶ୍ୟ ଯଦି ଆମର ପାଳନକର୍ତ୍ତା କୌଣସି ବିଷୟରେ ଇଚ୍ଛାକରନ୍ତି (ତେବେ, ଆମେ ତାହାଙ୍କୁ ଭୟ କରୁ) ; ଆମର ପାଳନକର୍ତ୍ତା ସକଳ ବିଷୟକୁ ନିଜ ଜ୍ଞାନର ପରିସରଭୁକ୍ତ କରିଅଛନ୍ତି ; ତଥାପି କ'ଣ ତୁମେମାନେ ବୁଝି ପାରୁ ନାହଁ ?"

وَحَآجَّهٗ قَوْمُهٗ ۗ قَالَ اَتُحَآجُّوْٓنِّيْ فِي اللّٰهِ وَقَدْ هَدٰىنِ ۗ وَلَآ اَخَافُ مَا تُشْرِكُوْنَ بِهٖٓ اِلَّآ اَنْ يَّشَآءَ رَبِّيْ شَيْـًٔا ۗ وَسِعَ رَبِّيْ كُلَّ شَيْءٍ عِلْمًا ۗ اَفَلَا تَتَذَكَّرُوْنَ ۝٨١

୮୨. "ଏବଂ ତୁମେମାନେ ଯାହାକୁ ଅଲ୍ଲାହଙ୍କର ସମକକ୍ଷ କରୁଅଛ ତାହାକୁ ଆମେ କିପରି ଭୟ କରିବୁ, ଯେତେବେଳେ କି ଏହି ବିଷୟରେ ତୁମ ପ୍ରତି ଅଲ୍ଲାହଙ୍କ ଠାରୁ କୌଣସି ପ୍ରମାଣ ଅବତୀର୍ଣ୍ଣ ହୋଇନାହିଁ ; ତଥାପି ତୁମେମାନେ ଅଲ୍ଲାହଙ୍କ ସହିତ (ଅନ୍ୟକୁ) ସମକକ୍ଷ କରିବାକୁ ଭୟ କରୁନାହଁ ? ସୁତରାଂ ତୁମର ଯଦି କୌଣସି ଜ୍ଞାନ ଥାଏ, ତେବେ (କୁହ ଯେ) ଆମ ଦୁଇ ପକ୍ଷ ମଧ୍ୟରୁ କିଏ ଶାନ୍ତିରେ ରହିବାକୁ ଅଧିକ ହକ୍‌ଦାର ଅଟେ ?"

وَكَيْفَ اَخَافُ مَآ اَشْرَكْتُمْ وَلَا تَخَافُوْنَ اَنَّكُمْ اَشْرَكْتُمْ بِاللّٰهِ مَا لَمْ يُنَزِّلْ بِهٖ عَلَيْكُمْ سُلْطٰنًا ۗ فَاَيُّ الْفَرِيْقَيْنِ اَحَقُّ بِالْاَمْنِ ۚ اِنْ كُنْتُمْ تَعْلَمُوْنَ ۝٨٢

୮୩. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ନିଜ ବିଶ୍ୱାସ ସହିତ ଅନ୍ୟାୟକୁ ମିଶାଇ ନାହାନ୍ତି, ସେମାନଙ୍କ ପାଇଁ ଶାନ୍ତି (ନିୟତ) ଅଛି, ଓ ସେମାନେ ହିଁ ସତ୍‌ପଥଗାମୀ ହେବେ ।

اَلَّذِيْنَ اٰمَنُوْا وَلَمْ يَلْبِسُوْٓا اِيْمَانَهُمْ بِظُلْمٍ اُولٰٓئِكَ لَهُمُ الْاَمْنُ وَهُمْ مُّهْتَدُوْنَ ۝٨٣

ରୁ : ୧୦

୮୪. ଏବଂ ଏହା ଆମ ତରଫରୁ (ପ୍ରଦତ୍ତ ଏକ) ପ୍ରମାଣ, ଯାହା ଆମେ ଇବ୍ରାହିମଙ୍କୁ ତାଙ୍କ ସମ୍ପ୍ରଦାୟ ବିରୁଦ୍ଧରେ ଶିକ୍ଷା ଦେଇଥିଲୁ ; ଆମେ ଯାହାକୁ ଇଚ୍ଛା କରୁ ମର୍ଯ୍ୟାଦାରେ ସମୁନ୍ନତ କରୁ ; ତୁମର ପାଳନକର୍ତ୍ତା ବାସ୍ତବିକ ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞ ।

وَتِلْكَ حُجَّتُنَآ اٰتَيْنٰهَآ اِبْرٰهِيْمَ عَلٰى قَوْمِهٖ ۭ نَرْفَعُ دَرَجٰتٍ مَّنْ نَّشَاۗءُ ۭ اِنَّ رَبَّكَ حَكِيْمٌ عَلِيْمٌ ﴿٨٤﴾

୮୫. ଏବଂ ଆମେ ତାହାଙ୍କୁ (ଅର୍ଥାତ୍ ଇବ୍ରାହିମଙ୍କୁ) ଇସହାକ ଓ ୟାକୁବ ପ୍ରଦାନ କରିଥିଲୁ ; ଆମେ ଏ ସମସ୍ତଙ୍କୁ ସତ୍‌ପଥ ପ୍ରଦର୍ଶନ କରିଥିଲୁ ; ଏବଂ ଏଥିପୂର୍ବରୁ ଆମେ ନୂହ, ଓ ତାହାଙ୍କର (ଅର୍ଥାତ୍ ଇବ୍ରାହିମ) ସନ୍ତାନମାନଙ୍କ ମଧ୍ୟରୁ ଦାଉଦ, ସୋଲେମାନ, ଅୟୁବ, ୟୁସୁଫ,ମୁସା ଓ ହାରୁନଙ୍କୁ (ମଧ୍ୟ) ସତ୍‌ପଥ ପ୍ରଦର୍ଶନ କରିଥିଲୁ, ଏବଂ ଏହିପରି ଆମେ ସତ୍‌କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କୁ ପୁରସ୍କାର ଦେଇଥାଉ ।

وَوَهَبْنَا لَهٗٓ اِسْحٰقَ وَيَعْقُوْبَ ۭ كُلًّا هَدَيْنَا ۚ وَنُوْحًا هَدَيْنَا مِنْ قَبْلُ وَمِنْ ذُرِّيَّتِهٖ دَاوٗدَ وَسُلَيْمٰنَ وَاَيُّوْبَ وَيُوْسُفَ وَمُوْسٰى وَهٰرُوْنَ ۭ وَكَذٰلِكَ نَجْزِي الْمُحْسِنِيْنَ ﴿٨٥﴾

୮୬. ଏବଂ ଜକରିୟା,[୧] ୟହିୟା, ଇସା ଓ ଇଲିୟାସଙ୍କୁ ମଧ୍ୟ (ସତ୍‌ପଥ ପ୍ରଦର୍ଶନ କରିଥିଲୁ), ଏ ସମସ୍ତେ ଧର୍ମନିଷ୍ଠମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ ।

وَزَكَرِيَّا وَيَحْيٰى وَعِيْسٰى وَاِلْيَاسَ ۭ كُلٌّ مِّنَ الصّٰلِحِيْنَ ﴿٨٦﴾

୮୭. ଏବଂ ଇସମାଇଲ, ଏସୟା, ୟୁନୁସ ଓ ଲୁତ୍‌ଙ୍କୁ ମଧ୍ୟ (ସତ୍‌ପଥ ପ୍ରଦର୍ଶନ କରିଥିଲୁ), ଏବଂ ଏ ସମସ୍ତଙ୍କୁ ଆମେ ସମସ୍ତ ଜଗତରେ ପ୍ରାଧାନ୍ୟ ଦେଇଥିଲୁ ।

وَاِسْمٰعِيْلَ وَالْيَسَعَ وَيُوْنُسَ وَلُوْطًا ۭ وَكُلًّا فَضَّلْنَا عَلَي الْعٰلَمِيْنَ ﴿٨٧﴾

୮୮. ଏବଂ ସେମାନଙ୍କର ପିତା, ପିତାମହ ଓ ସେମାନଙ୍କର ସନ୍ତାନମାନଙ୍କୁ ଏବଂ ସେମାନଙ୍କର ଭାଇମାନଙ୍କୁ ମଧ୍ୟ (ଆମେ ସତ୍‌ପଥ ପ୍ରଦର୍ଶନ କରିଥିଲୁ), ଏବଂ ଆମେ ସେମାନଙ୍କୁ ମନୋନୀତ କରିଥିଲୁ ଏବଂ ସେମାନଙ୍କୁ ସତ୍‌ପଥ ଦେଖାଇଥିଲୁ ।

وَمِنْ اٰبَاۗىِٕهِمْ وَذُرِّيّٰتِهِمْ وَاِخْوَانِهِمْ ۚ وَاجْتَبَيْنٰهُمْ وَهَدَيْنٰهُمْ اِلٰى صِرَاطٍ مُّسْتَقِيْمٍ ﴿٨٨﴾

୮୯. ଏହାହି ଅଲ୍ଲାହଙ୍କର ସତ୍‌ପଥ ପ୍ରଦର୍ଶନ କରିବାର ପନ୍ଥା, ଯଦ୍ୱାରା ସେ ନିଜର ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ପସନ୍ଦ କରନ୍ତି ପଥ ପ୍ରଦର୍ଶନ କରାନ୍ତି ; ଏବଂ ଯଦି ସେମାନେ ସିର୍କ କରିଥା'ନ୍ତେ, ତା'ହେଲେ ସେମାନେ ଯାହାକିଛି କର୍ମ କରୁଥିଲେ ତାହା ନଷ୍ଟ ହୋଇଯାଇଥା'ନ୍ତା ।

ذٰلِكَ هُدَى اللّٰهِ يَهْدِيْ بِهٖ مَنْ يَّشَاۗءُ مِنْ عِبَادِهٖ ۭ وَلَوْ اَشْرَكُوْا لَحَبِطَ عَنْهُمْ مَّا كَانُوْا يَعْمَلُوْنَ ﴿٨٩﴾

---

[୧] ହଜରତ ଜକ୍ରିୟାଙ୍କ ବୃତ୍ତାନ୍ତ ହଜରତ ୟହିୟାଙ୍କ ସହିତ ଏଥିଯୋଗୁଁ ବର୍ଣ୍ଣନା କରାଯାଇଛି ଯେ ସେ ତାଙ୍କର ପିତା । ହଜରତ ଇସାଙ୍କର ବୃତ୍ତାନ୍ତ ଏଥିଯୋଗୁଁ ବର୍ଣ୍ଣନା କରାଯାଇଛି ଯେ ହଜରତ ୟହିୟା ଇସାଙ୍କ ସକାଶେ ଅଗ୍ରଦୂତ ଥିଲେ । ସେହିପରି ହଜରତ ଇଲିୟାସଙ୍କ ବୃତ୍ତାନ୍ତ ଏଥିଯୋଗୁ ଯେ ହଜରତ ଇସାଙ୍କ ଆଗମନ ପୂର୍ବରୁ ପୂର୍ବରୁ ଇଲିୟାସ୍‌ଙ୍କ ଆଗମନ ସମ୍ବନ୍ଧରେ ସମାଚାର ଦିଆ ଯାଇଥିଲା ; ଏବଂ ହଜରତ ଇସମାଇଲଙ୍କର ବୃତ୍ତାନ୍ତ ଏଥିଯୋଗୁଁ ଯେ ସେ ମଧ୍ୟ ହଜରତ ଇସାଙ୍କ ଅନୁରୂପ ପାହ୍ୟାର ନବି ଥିଲେ । ପୁନଶ୍ଚ ଅଲୟସଅ ବା ୟସିୟଙ୍କ ବୃତ୍ତାନ୍ତ ଏଥିଯୋଗୁଁ ଯେ ତାଙ୍କୁ ମଧ୍ୟ ଇଲିୟାସଙ୍କ ସହିତ ତୁଳନା କରାଯାଏ ; ହଜରତ ୟୁନୁସଙ୍କ ବୃତ୍ତାନ୍ତ ଏଥିଯୋଗୁଁ ଯେ ତାଙ୍କର ଓ ହଜରତ ଇସାଙ୍କର ଘଟଣାବଳୀକୁ ଅନୁରୂପ ଘଟଣା ରୂପେ ବିଚାର କରାଯାଏ ଓ ହଜରତ ଲୁତ୍‌ଙ୍କ ସହିତ ହଜରତ ଇସମାଇଲ ଓ ଇବ୍ରାହିମଙ୍କର ଘନିଷ୍ଠ ସଂପର୍କ ଥିବାରୁ ଏଠାରେ ସେମାନଙ୍କ ବିଷୟ ଏକତ୍ର ବର୍ଣ୍ଣନା କରାଯାଇଛି । ଉପରୋକ୍ତ ନବିମାନେ ଜଣେ ଅନ୍ୟର ଆଗପଛ ହୋଇ ଆସିଥିଲେ ଅଥଚ ପବିତ୍ର କୋରାନରେ ସମସ୍ତଙ୍କ ବୃତ୍ତାନ୍ତ ଏକତ୍ର ବର୍ଣ୍ଣନା କରାଯାଇଥିବା ସମ୍ପର୍କରେ କୌଣସି ବିବାଦ ନାହିଁ, କାରଣ ଏଠାରେ ଇତିହାସ ଦୃଷ୍ଟିରୁ ନୁହେଁ ବରଂ ତତ୍ତ୍ୱ ଦୃଷ୍ଟିରୁ ସମସ୍ତଙ୍କ ବୃତ୍ତାନ୍ତ ଏକତ୍ରିତ ଭାବରେ ବର୍ଣ୍ଣନା କରାଯାଇଛି ।

أُولَٰئِكَ الَّذِينَ آتَيْنَاهُمُ الْكِتَابَ وَالْحُكْمَ وَالنُّبُوَّةَ ۚ فَإِنْ يَكْفُرْ بِهَا هَٰؤُلَاءِ فَقَدْ وَكَّلْنَا بِهَا قَوْمًا لَيْسُوا بِهَا بِكَافِرِينَ ﴿٩٠﴾

୯୦. ସେହିମାନଙ୍କୁ ହିଁ ଆମେ (ଧର୍ମ)ଗ୍ରନ୍ଥ, ନିର୍ଣ୍ଣାୟକ ଶକ୍ତି (ଅର୍ଥାତ୍ କର୍ତ୍ତୃତ୍ୱ) ଓ ନବୁଅତ ପ୍ରଦାନ କରିଥିଲୁ ; ସୁତରାଂ ଯଦି ସେମାନେ ଏହାକୁ (ଅର୍ଥାତ୍ ନବୁଅତକୁ) ଅବିଶ୍ୱାସ କରନ୍ତି, ତେବେ ଆମେ ତାହାକୁ ଏକ (ଅନ୍ୟ) ସମ୍ପ୍ରଦାୟ (ଅର୍ଥାତ୍ ମୁସଲମାନଙ୍କ) ଉପରେ ନ୍ୟସ୍ତ କରିଦେଇଅଛୁ, ଯେଉଁମାନେ ଏଥିରେ ଅବିଶ୍ୱାସ କରନ୍ତି ନାହିଁ ।

أُولَٰئِكَ الَّذِينَ هَدَى اللَّهُ ۖ فَبِهُدَاهُمُ اقْتَدِهْ ۗ قُلْ لَا أَسْأَلُكُمْ عَلَيْهِ أَجْرًا ۖ إِنْ هُوَ إِلَّا ذِكْرَىٰ لِلْعَالَمِينَ ﴿٩١﴾

୯୧. ଏହି (ଉପରୋକ୍ତ) ଲୋକମାନଙ୍କୁ ହିଁ ଅଲ୍ଲାହ୍ ସତ୍‌ପଥ ପ୍ରଦର୍ଶନ କରାଇଛନ୍ତି ; ସୁତରାଂ ତୁମେ ସେମାନଙ୍କର ସତ୍‌ପଥକୁ ଅନୁସରଣ କର ; ତୁମେ ସେମାନଙ୍କୁ କୁହ, "ଆମେ ତୁମମାନଙ୍କ ନିକଟରୁ ଏଥିପାଇଁ କୌଣସି ପାରିଶ୍ରମିକ ଲୋଡୁ ନାହୁଁ ; ଏହାତ ସମସ୍ତ ଜଗତ ପାଇଁ କେବଳ ଏକ ଉପଦେଶ ଅଟେ ।"

ରୁ : ୧୧

وَمَا قَدَرُوا اللَّهَ حَقَّ قَدْرِهِ إِذْ قَالُوا مَا أَنْزَلَ اللَّهُ عَلَىٰ بَشَرٍ مِنْ شَيْءٍ ۗ قُلْ مَنْ أَنْزَلَ الْكِتَابَ الَّذِي جَاءَ بِهِ مُوسَىٰ نُورًا وَهُدًى لِلنَّاسِ ۖ تَجْعَلُونَهُ قَرَاطِيسَ تُبْدُونَهَا وَتُخْفُونَ كَثِيرًا ۖ وَعُلِّمْتُمْ مَا لَمْ تَعْلَمُوا أَنْتُمْ وَلَا آبَاؤُكُمْ ۖ قُلِ اللَّهُ ۖ ثُمَّ ذَرْهُمْ فِي خَوْضِهِمْ يَلْعَبُونَ ﴿٩٢﴾

୯୨. ଏବଂ ଯେତେବେଳେ ସେମାନେ ଏ ବିଷୟ କହିଥିଲେ ଯେ ଅଲ୍ଲାହ୍ କୌଣସି ବ୍ୟକ୍ତି ପ୍ରତି କିଛି ଅବତୀର୍ଣ୍ଣ କରିନାହାନ୍ତି, ସେତେବେଳେ ସେ (ଲୋକ)ମାନେ ଅଲ୍ଲାହ୍‌ଙ୍କର (ଗୁଣାବଳୀର) ଯଥୋଚିତ ମୂଲ୍ୟାୟନ କରି ନ ଥିଲେ ତୁମେ (ସେମାନଙ୍କୁ) କୁହ, "ମୁସା ଆଣିଥିବା (ଧର୍ମ)ଗ୍ରନ୍ଥ ଯାହା ଲୋକମାନଙ୍କ ପାଇଁ ଜ୍ୟୋତି ଓ ଉପଦେଶ ଥିଲା ତାହାକୁ କିଏ ଅବତୀର୍ଣ୍ଣ କରିଥିଲା ? ତୁମେମାନେ ଏହାକୁ ଖଣ୍ଡଖଣ୍ଡ କରି ରଖିଅଛ ; ତହିଁରୁ କେତେକ ଅଂଶକୁ ପ୍ରକାଶ କରୁଅଛ କିନ୍ତୁ ଅଧିକାଂଶକୁ ଗୋପନ ରଖୁଅଛ ଅଥଚ ତୁମେମାନେ ଓ ତୁମମାନଙ୍କର ପିତୃ-ପିତାମହମାନେ ଯାହା ଜାଣି ନଥିଲେ ତାହା ତୁମମାନଙ୍କୁ ଶିଖାଇ ଦିଆଯାଇଅଛି ;" ତୁମେ (ସେମାନଙ୍କୁ) କୁହ, "ଅଲ୍ଲାହ୍ (ହିଁ ତାହାକୁ ଅବତୀର୍ଣ୍ଣ କରିଥିଲେ) ;" ତତ୍‌ପରେ ତୁମେ ସେମାନଙ୍କୁ ସେମାନଙ୍କର ମିଥ୍ୟା ଆଲୋଚନାରେ କ୍ରୀଡା କୌତୁକ କରିବାକୁ ଛାଡିଦିଅ ।

وَهَٰذَا كِتَابٌ أَنْزَلْنَاهُ مُبَارَكٌ مُصَدِّقُ الَّذِي بَيْنَ يَدَيْهِ وَلِتُنْذِرَ أُمَّ الْقُرَىٰ وَمَنْ حَوْلَهَا ۚ وَالَّذِينَ

୯୩. ଏବଂ ଏହା (ଅର୍ଥାତ୍ ପବିତ୍ର କୋରାନ) ଏକ (ମହାନ୍) ଗ୍ରନ୍ଥ ଯାହାକୁ ଆମେ ଅବତୀର୍ଣ୍ଣ କରିଅଛୁ ; (ଏବଂ ଏହା) ଆଶୀର୍ବାଦପୂର୍ଣ୍ଣ ଅଟେ ; (ଏବଂ) ତାହା ପୂର୍ବବର୍ତ୍ତୀ (ବାଣୀ)କୁ ସମର୍ଥନ କରେ ; (ଏବଂ ଆମେ ଏହାକୁ ଏଥି ସକାଶେ ଅବତୀର୍ଣ୍ଣ କରିଅଛୁ ଯଦ୍ୱାରା ତୁମେ ଏହା ମାଧ୍ୟମରେ ଲୋକମାନଙ୍କୁ ସତ୍‌ପଥ ଦେଖାଇବ) ଏବଂ ତୁମେ 'ଉମ୍ମୁଲକୁରା'

يُؤْمِنُونَ بِالْاٰخِرَةِ يُؤْمِنُوْنَ بِهٖ وَهُمْ عَلٰى صَلَاتِهِمْ يُحَافِظُوْنَ ﴿٩٣﴾

(ଅର୍ଥାତ୍ ମକ୍କା) ଓ ଏହାର ପାର୍ଶ୍ୱବର୍ତ୍ତୀ ଅଞ୍ଚଳର ଅଧିବାସୀମାନଙ୍କୁ ସତର୍କ କରାଇ ପାରିବ ; ଏବଂ ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ସେମାନେ ଏଥିରେ (ଅର୍ଥାତ୍ କୋରାନକୁ) ମଧ୍ୟ ବିଶ୍ୱାସ କରନ୍ତି ; ଏବଂ ସେମାନେ ନିଜ ନମାଜ ସଂକ୍ରାନ୍ତରେ ସର୍ବଦା ସଚେତନ ଥାଆନ୍ତି ।

وَمَنْ اَظْلَمُ مِمَّنِ افْتَرٰى عَلَى اللّٰهِ كَذِبًا اَوْ قَالَ اُوْحِيَ اِلَيَّ وَلَمْ يُوْحَ اِلَيْهِ شَيْءٌ وَّمَنْ قَالَ سَاُنْزِلُ مِثْلَ مَآ اَنْزَلَ اللّٰهُ ۗ وَلَوْ تَرٰٓى اِذِ الظّٰلِمُوْنَ فِيْ غَمَرٰتِ الْمَوْتِ وَالْمَلٰٓئِكَةُ بَاسِطُوْٓا اَيْدِيْهِمْ ۚ اَخْرِجُوْٓا اَنْفُسَكُمْ ۗ اَلْيَوْمَ تُجْزَوْنَ عَذَابَ الْهُوْنِ بِمَا كُنْتُمْ تَقُوْلُوْنَ عَلَى اللّٰهِ غَيْرَ الْحَقِّ وَكُنْتُمْ عَنْ اٰيٰتِهٖ تَسْتَكْبِرُوْنَ ﴿٩٤﴾

୯୪. ଏବଂ ସେ ବ୍ୟକ୍ତି ଅପେକ୍ଷା ଅଧିକ ଅତ୍ୟାଚାରୀ କିଏ ହୋଇପାରେ ଯେ ଜାଣିଶୁଣି ଅଲ୍ଲାହଙ୍କ ସଂକ୍ରାନ୍ତରେ ମିଥ୍ୟା ରଚନା କରେ ବା ଏହା କହେ ଯେ ମୋ ପ୍ରତି ଓହି ପ୍ରେରିତ ହୋଇଅଛି, ଅଥଚ ତାହା ପ୍ରତି ଓହି ପ୍ରେରିତ ହୋଇ ନାହିଁ ; କିମ୍ବା ସେ କହେ ଅଲ୍ଲାହ ଯାହା ଅବତୀର୍ଣ୍ଣ କରିଛନ୍ତି ମୁଁ ମଧ୍ୟ ନିଶ୍ଚୟ ତଦନୁରୂପ (ବାଣୀ) ଅବତୀର୍ଣ୍ଣ କରିପାରିବି ; ଏବଂ ଯଦି ତୁମେ ଦେଖିପାରନ୍ତ ଯେତେବେଳେ ଅତ୍ୟାଚାରୀ ମୃତ୍ୟୁ ଯନ୍ତ୍ରଣାରେ ଆକ୍ରାନ୍ତ ହେବ ଏବଂ ଦେବଦୂତମାନେ (ଏହା କହି) ସ୍ୱହସ୍ତ ପ୍ରସାରଣ କରିବେ ଯେ ନିଜର ପ୍ରାଣତ୍ୟାଗ କର, ଆଜି ତୁମମାନଙ୍କୁ ଅପମାନଜନକ ଶାସ୍ତି ଦିଆଯିବ, କାରଣ ତୁମେମାନେ ଅଲ୍ଲାହଙ୍କ ବିରୁଦ୍ଧରେ ଅଯଥା (କଥାମାନ) କହୁଥିଲ ଓ ତାହାଙ୍କର ନିଦର୍ଶନଗୁଡ଼ିକୁ ହେୟ ମନେ କରୁଥିଲ ।

وَلَقَدْ جِئْتُمُوْنَا فُرَادٰى كَمَا خَلَقْنٰكُمْ اَوَّلَ مَرَّةٍ وَّتَرَكْتُمْ مَّا خَوَّلْنٰكُمْ وَرَآءَ ظُهُوْرِكُمْ ۚ وَمَا نَرٰى مَعَكُمْ شُفَعَآءَكُمُ الَّذِيْنَ زَعَمْتُمْ اَنَّهُمْ فِيْكُمْ شُرَكٰٓؤُا ۗ لَقَدْ تَّقَطَّعَ بَيْنَكُمْ وَضَلَّ عَنْكُمْ مَّا كُنْتُمْ تَزْعُمُوْنَ ﴿٩٥﴾ ع

୯୫. ଏବଂ (ସେତେବେଳେ ଆମ୍ଭେ କହିବୁ ଯେ) ଯେପରି ଆମ୍ଭେ ତୁମମାନଙ୍କୁ ପ୍ରଥମେ ସୃଷ୍ଟି କରିଥିଲୁ ସେହିପରି (ବର୍ତ୍ତମାନ ତୁମେମାନେ) ଆମ୍ଭ ନିକଟକୁ ଏକାକୀ ପ୍ରତ୍ୟାବର୍ତ୍ତନ କରିଅଛ ; ଏବଂ ଆମ୍ଭେ (ନିଜ କୃପାରୁ) ତୁମମାନଙ୍କୁ ଯାହାକିଛି ପ୍ରଦାନ କରିଥିଲୁ ତାହା ତୁମେମାନେ ନିଜ ପଛରେ ଛାଡି ଦେଇ ଆସିଅଛ ; ଏବଂ ଆମ୍ଭେ ତୁମମାନଙ୍କ ସହିତ ତୁମମାନଙ୍କର ସେହି ସୁପାରିଶକାରୀମାନଙ୍କୁ ମଧ୍ୟ ଦେଖୁନାହୁଁ ଯେଉଁମାନଙ୍କ ସମ୍ବନ୍ଧରେ ତୁମେମାନେ ଦାବି କରୁଥିଲ ଯେ ତୁମମାନଙ୍କ ବ୍ୟାପାରରେ ସେମାନେ ମଧ୍ୟ ଅଲ୍ଲାହଙ୍କର ସମକକ୍ଷ ଅଟନ୍ତି ; ଏବେ ତୁମମାନଙ୍କର ପରସ୍ପର ସମ୍ପର୍କ ଛିନ୍ନ ହୋଇଅଛି ଏବଂ ତୁମେମାନେ ଦୃଢତା ସହକାରେ ଯାହାକିଛି କହୁଥିଲ ତାହା ବ୍ୟର୍ଥ ହୋଇଯାଇଅଛି ।

ରୁ : ୧୨

اِنَّ اللّٰهَ فَالِقُ الْحَبِّ وَالنَّوٰى ۗ يُخْرِجُ الْحَيَّ مِنَ الْمَيِّتِ وَمُخْرِجُ الْمَيِّتِ مِنَ الْحَيِّ ۗ ذٰلِكُمُ اللّٰهُ فَاَنّٰى تُؤْفَكُوْنَ ﴿٩٦﴾

୯୬. ବାସ୍ତବରେ ଅଲ୍ଲାହ ବୀଜ ଓ ଟାକୁଆକୁ ଅଙ୍କୁରିତ କରାନ୍ତି; ସେ ଜୀବନ୍ତକୁ ମୃତଠାରୁ ବାହାର କରାନ୍ତି ଓ ମୃତକୁ ଜୀବନ୍ତଠାରୁ ବାହାର କରାନ୍ତି; ସେ ହିଁ ତୁମମାନଙ୍କର ଅଲ୍ଲାହ, ତେବେ କୁହ, "ତୁମେମାନେ କିପରି ଫେରିଯାଉଅଛ ?"

୯୭. ସେ ପ୍ରଭାତକୁ ପ୍ରକାଶ କରନ୍ତି, ଏବଂ ସେ ରାତ୍ରିକୁ ବିଶ୍ରାମ ପାଇଁ ତଥା ସୂର୍ଯ୍ୟ ଓ ଚନ୍ଦ୍ରକୁ ଗଣନାର ମାଧ୍ୟମ ରୂପେ ଗଢ଼ିଛନ୍ତି ; ଏହି ନିରୂପଣ ତାହାଙ୍କର, ଯେ ପରାକ୍ରମୀ(ଓ)ସର୍ବଜ୍ଞ ।

فَالِقُ الْاِصْبَاحِ ۚ وَجَعَلَ الَّيْلَ سَكَنًا وَّالشَّمْسَ وَالْقَمَرَ حُسْبَانًا ؕ ذٰلِكَ تَقْدِيْرُ الْعَزِيْزِ الْعَلِيْمِ ﴿٩٧﴾

୯୮. ଏବଂ ସେ ହିଁ ତୁମମାନଙ୍କ ପାଇଁ ନକ୍ଷତ୍ର ସୃଷ୍ଟି କରିଛନ୍ତି, ଯଦ୍ୱାରା ତୁମେମାନେ ଅନ୍ଧକାରରେ ସ୍ଥଳଭାଗ ଓ ଜଳଭାଗ ମଧ୍ୟରେ ମାର୍ଗ ଜାଣିପାରିବ ; ଆମେ ଜ୍ଞାନବନ୍ତ ସମ୍ପ୍ରଦାୟ ପାଇଁ ନିଦର୍ଶନଗୁଡ଼ିକୁ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ ।

وَهُوَ الَّذِيْ جَعَلَ لَكُمُ النُّجُوْمَ لِتَهْتَدُوْا بِهَا فِيْ ظُلُمٰتِ الْبَرِّ وَالْبَحْرِ ؕ قَدْ فَصَّلْنَا الْاٰيٰتِ لِقَوْمٍ يَّعْلَمُوْنَ ﴿٩٨﴾

୯୯. ଏବଂ ସେ ହିଁ ତୁମମାନଙ୍କୁ ଗୋଟିଏ ଉତ୍ସରୁ ସୃଷ୍ଟି କରିଛନ୍ତି, ଏବଂ ତତ୍‌ପରେ (ସେ ତୁମମାନଙ୍କ ପାଇଁ) ଏକ ଅସ୍ଥାୟୀ[1] ବାସସ୍ଥାନ ଓ ଏକ ସ୍ଥାୟୀ ବାସସ୍ଥାନ ନିର୍ଦ୍ଧାରିତ କରିଛନ୍ତି, ଆମେ ବୁଝିପାରୁଥିବା ଲୋକମାନଙ୍କ ପାଇଁ ନିଦର୍ଶନମାନ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ ।

وَهُوَ الَّذِيْۤ اَنْشَاَكُمْ مِّنْ نَّفْسٍ وَّاحِدَةٍ فَمُسْتَقَرٌّ وَّمُسْتَوْدَعٌ ؕ قَدْ فَصَّلْنَا الْاٰيٰتِ لِقَوْمٍ يَّفْقَهُوْنَ ﴿٩٩﴾

୧୦୦. ଏବଂ ସେ ହିଁ ଆକାଶରୁ ଜଳ ବର୍ଷଣ କରାନ୍ତି ; ତତ୍ପରେ (ଲକ୍ଷ୍ୟ କର କିପରି) ଆମେ ତଦ୍ୱାରା ସକଳ ଉଦ୍ଭିଦର ଅଙ୍କୁରୋଦ୍‌ଗମ କରାଉ, ଏବଂ ତଦ୍ୱାରା ସବୁଜ କ୍ଷେତ ସୃଷ୍ଟି କରାଉ, ଯହିଁରୁ ଆମେ କେଣ୍ଡା (କେଣ୍ଡା) ଶସ୍ୟ ଉତ୍ପନ୍ନ କରାଉ ଏବଂ ଖଜୁରି ଗଛର କାଣ୍ଡରୁ ଝୁଲି ପଡ଼ିଥିବା କାନ୍ଦି ବାହାର କରାଉ, ଏବଂ ଆମେ ତନ୍ମଧ୍ୟରୁ ସାମଞ୍ଜସ୍ୟ ଥିବା ଏବଂ ସାମଞ୍ଜସ୍ୟ ନ ଥିବା ଅଙ୍ଗୁର, ଜୈତୁନ ଓ ଡାଳିମ୍ବର ଉଦ୍ୟାନମାନ ସୃଷ୍ଟି କରିଅଛୁ ; ଯେତେବେଳେ ତାହା (ଅର୍ଥାତ୍‌ ପ୍ରତ୍ୟେକ ପ୍ରକାରର ଗଛ) ଫଳ ଧାରଣ କରେ (ସେତେବେଳେ) ତାହାର ଫଳ ଓ ପରିପକ୍ୱ ଅବସ୍ଥାକୁ ଲକ୍ଷ୍ୟ କର ; ବାସ୍ତବରେ ତହିଁରେ ବିଶ୍ୱାସକାରୀମାନଙ୍କ ପାଇଁ ନିଦର୍ଶନମାନ ରହିଅଛି ।

وَهُوَ الَّذِيْۤ اَنْزَلَ مِنَ السَّمَآءِ مَآءً ۚ فَاَخْرَجْنَا بِهٖ نَبَاتَ كُلِّ شَيْءٍ فَاَخْرَجْنَا مِنْهُ خَضِرًا نُّخْرِجُ مِنْهُ حَبًّا مُّتَرَاكِبًا ۚ وَمِنَ النَّخْلِ مِنْ طَلْعِهَا قِنْوَانٌ دَانِيَةٌ وَّجَنّٰتٍ مِّنْ اَعْنَابٍ وَّالزَّيْتُوْنَ وَالرُّمَّانَ مُشْتَبِهًا وَّغَيْرَ مُتَشَابِهٍ ؕ اُنْظُرُوْۤا اِلٰى ثَمَرِهٖۤ اِذَاۤ اَثْمَرَ وَيَنْعِهٖ ؕ اِنَّ فِيْ ذٰلِكُمْ لَاٰيٰتٍ لِّقَوْمٍ يُّؤْمِنُوْنَ ﴿١٠٠﴾

୧୦୧. ଏବଂ ସେମାନେ ଅଲ୍ଲାହଙ୍କ ସହିତ 'ଜିନ୍ନ' ମାନଙ୍କୁ ସମକକ୍ଷ କରିଛନ୍ତି, ଅଥଚ ସେ (ଅଲ୍ଲାହ) ସେମାନଙ୍କୁ ସୃଷ୍ଟି କରିଛନ୍ତି ; ଏବଂ ସେମାନେ ମିଥ୍ୟାରେ ଓ ଅଜ୍ଞତାବଶତଃ ତାହାଙ୍କ ପାଇଁ ପୁତ୍ର ଓ କନ୍ୟା ନିର୍ଦ୍ଧାରିତ କରିଛନ୍ତି ; ସେ (ଅଲ୍ଲାହ) ପବିତ୍ର, ଏବଂ ଯାହାକିଛି ସେମାନେ ବର୍ଣ୍ଣନା କରୁଛନ୍ତି, ତହିଁରୁ ସେ ଊର୍ଦ୍ଧ୍ୱରେ ।

وَجَعَلُوْا لِلّٰهِ شُرَكَآءَ الْجِنَّ وَخَلَقَهُمْ وَخَرَقُوْا لَهٗ بَنِيْنَ وَبَنٰتٍۭ بِغَيْرِ عِلْمٍ ؕ سُبْحٰنَهٗ وَتَعٰلٰى عَمَّا يَصِفُوْنَ ﴿١٠١﴾

١٢ ع ١٨

୧. ଏଠାରେ ଅସ୍ଥାୟୀ ବାସସ୍ଥାନ ଅର୍ଥ : (କ) କବର (ଖ) ଇହ-ଲୋକ । ସେହିପରି ଦୀର୍ଘ ସ୍ଥାୟୀ ବାସସ୍ଥାନ ଅର୍ଥ ମୃତ୍ୟୁପର ଜୀବନ ବା ପରଲୋକ ।

ରୁ : ୧୩

୧୦୨. (ସେ) ଆକାଶ ଓ ପୃଥିବୀର ସ୍ରଷ୍ଟା, ତାଙ୍କର କୌଣସି ପତ୍ନୀ ନଥିବା ବେଳେ, ତାଙ୍କର କିପରି ପୁତ୍ର ସନ୍ତାନ ହୋଇପାରେ ? ସେ ସମସ୍ତ ବିଷୟ ସୃଷ୍ଟି କରିଛନ୍ତି ଓ ସେ ସକଳ ବିଷୟକୁ ଜାଣନ୍ତି ।

بَدِيعُ السَّمٰوٰتِ وَالْاَرْضِ ؕ اَنّٰى يَكُوْنُ لَهٗ وَلَدٌ وَّلَمْ تَكُنْ لَّهٗ صَاحِبَةٌ ؕ وَخَلَقَ كُلَّ شَىْءٍ ۚ وَهُوَ بِكُلِّ شَىْءٍ عَلِيْمٌ ﴿١٠٢﴾

୧୦୩. ସେ ହିଁ ତୁମମାନଙ୍କର ପାଳନକର୍ତ୍ତା ଅଲ୍ଲାହ, ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ, ସେ ସକଳ ବିଷୟର ସ୍ରଷ୍ଟା, ସୁତରାଂ ତାଙ୍କର ଉପାସନା କର ଏବଂ ସେ ପ୍ରତ୍ୟେକ ବିଷୟର ତତ୍ତ୍ୱାବଧାରକ ।

ذٰلِكُمُ اللّٰهُ رَبُّكُمْ ۚ لَاۤ اِلٰهَ اِلَّا هُوَ ۚ خَالِقُ كُلِّ شَىْءٍ فَاعْبُدُوْهُ ۚ وَهُوَ عَلٰى كُلِّ شَىْءٍ وَّكِيْلٌ ﴿١٠٣﴾

୧୦୪. ଦୃଷ୍ଟି ତାହାଙ୍କ ପର୍ଯ୍ୟନ୍ତ ପହଞ୍ଚିପାରେ ନାହିଁ, କିନ୍ତୁ ସେ ଦୃଷ୍ଟି[1] ପର୍ଯ୍ୟନ୍ତ ପହଞ୍ଚି ପାରନ୍ତି ; ଏବଂ ସେ ରହସ୍ୟମୟ (ଓ) ସର୍ବଜ୍ଞାତା ।

لَا تُدْرِكُهُ الْاَبْصَارُ ؗ وَهُوَ يُدْرِكُ الْاَبْصَارَ ۚ وَهُوَ اللَّطِيْفُ الْخَبِيْرُ ﴿١٠٤﴾

୧୦୫. ତୁମମାନଙ୍କର ପାଳନକର୍ତ୍ତାଙ୍କ ନିକଟରୁ ବସ୍ତୁତଃ ସୁସ୍ପଷ୍ଟ ଆଲୋକ ଆସିସାରିଛି ; ସୁତରାଂ ଯେ ଏହାକୁ ବୁଝିଲା, ତାହା ନିଜର କଲ୍ୟାଣ ପାଇଁ ହେବ ଏବଂ ଯେ କୁଟିଳ ମାର୍ଗ ଅନୁସରଣ କରିବ, ତାର ଅନିଷ୍ଟ ହେବ ଏବଂ ଆମ୍ଭେ ତୁମମାନଙ୍କର ସଂରକ୍ଷକ[2] ନୋହୁଁ ।

قَدْ جَآءَكُمْ بَصَآئِرُ مِنْ رَّبِّكُمْ ۚ فَمَنْ اَبْصَرَ فَلِنَفْسِهٖ ۚ وَمَنْ عَمِىَ فَعَلَيْهَا ؕ وَمَاۤ اَنَا عَلَيْكُمْ بِحَفِيْظٍ ﴿١٠٥﴾

୧୦୬. ଏବଂ ଏହିପରି ଭାବରେ ଆମ୍ଭେ ନିଦର୍ଶନଗୁଡିକୁ ବିଭିନ୍ନ ପ୍ରକାରେ ବର୍ଣ୍ଣନା କରୁ (ଯେପରିକି ସତ୍ୟ ପ୍ରତିଷ୍ଠିତ ହୋଇଯିବ) ଓ ସେମାନେ କହିବେ, "ତୁମ୍ଭେ ଆମମାନଙ୍କୁ ପାଠ କରି ଶୁଣାଇଅଛ (ଏବଂ ସତ୍ୟକୁ ସାବ୍ୟସ୍ତ କରିଅଛ)" ଏବଂ ଯଦ୍ଦ୍ୱାରା ଏହାକୁ ଆମ୍ଭେ ଜ୍ଞାନବନ୍ତ ଲୋକମାନଙ୍କ (କଲ୍ୟାଣ) ପାଇଁ ବର୍ଣ୍ଣନା କରିଦେବୁ ।

وَكَذٰلِكَ نُصَرِّفُ الْاٰيٰتِ وَلِيَقُوْلُوْا دَرَسْتَ وَلِنُبَيِّنَهٗ لِقَوْمٍ يَّعْلَمُوْنَ ﴿١٠٦﴾

୧୦୭. ତୁମ୍ଭର ପାଳନକର୍ତ୍ତାଙ୍କ ଠାରୁ ଯାହାକିଛି ତୁମ୍ଭ ପ୍ରତି ଅବତୀର୍ଣ୍ଣ ହୋଇଅଛି ତାହା ଅନୁସରଣ କର ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ ; ଏବଂ ମୁସରିକମାନଙ୍କଠାରୁ ଦୂରେଇ ରହ ।

اِتَّبِعْ مَاۤ اُوْحِىَ اِلَيْكَ مِنْ رَّبِّكَ ۚ لَاۤ اِلٰهَ اِلَّا هُوَ ۚ وَاَعْرِضْ عَنِ الْمُشْرِكِيْنَ ﴿١٠٧﴾

---

୧. ଅର୍ଥାତ୍ ମାନବ ନିଜ ବିଦ୍ୟାବଳରେ ବଳୀୟାନ ହୋଇ ଅଲ୍ଲାହଙ୍କୁ ଦେଖିପାରିବ ନାହିଁ, କିନ୍ତୁ ଅଲ୍ଲାହ ଇଚ୍ଛା କଲେ ନିଜ କୃପା ବଳରେ ତା'ପାଖରେ ପ୍ରକଟିତ ହେବେ । ଫଳରେ ମାନବ ତାହାଙ୍କର ଦର୍ଶନ ଲାଭ କରି ପାରିବ ।

୨. ଅର୍ଥାତ୍ ତୁମମାନଙ୍କର ଅବଜ୍ଞା ଯୋଗୁଁ ତୁମମାନଙ୍କୁ ଯେଉଁ ଶାସ୍ତି ଦିଆଯିବ ରସୁଲ ତୁମମାନଙ୍କୁ ସେଥିରୁ ରକ୍ଷା କରିପାରିବେ ନାହିଁ ଏବଂ ତୁମମାନଙ୍କୁ କୁକର୍ମ କରିବାରୁ ନିବୃତ୍ତ କରିବା ପାଇଁ ସେ ବଳ ପ୍ରୟୋଗ କରି ପାରିବେ ନାହିଁ ।

وَلَوْ شَاءَ اللّٰهُ مَا أَشْرَكُوا ۗ وَمَا جَعَلْنٰكَ عَلَيْهِمْ حَفِيْظًا ۚ وَمَا أَنْتَ عَلَيْهِمْ بِوَكِيْلٍ ﴿١٠٨﴾

୧୦୮. ଏବଂ ଯଦି ଅଲ୍ଲାହ ଇଚ୍ଛା କରିଥାଆନ୍ତେ, ତାହାହେଲେ ସେମାନେ ସିର୍କ୍. କରି ନଥା'ନ୍ତେ, ଏବଂ ଆମେ ତୁମକୁ ସେମାନଙ୍କର ସଂରକ୍ଷକ ନିଯୁକ୍ତ କରିନାହୁଁ, ଏବଂ ତୁମେ ସେମାନଙ୍କର ତତ୍ତ୍ୱାବଧାରକ ନୁହଁ।

وَلَا تَسُبُّوا الَّذِيْنَ يَدْعُوْنَ مِنْ دُوْنِ اللّٰهِ فَيَسُبُّوا اللّٰهَ عَدْوًا بِغَيْرِ عِلْمٍ ۗ كَذٰلِكَ زَيَّنَّا لِكُلِّ أُمَّةٍ عَمَلَهُمْ ۠ ثُمَّ إِلٰى رَبِّهِمْ مَرْجِعُهُمْ فَيُنَبِّئُهُمْ بِمَا كَانُوْا يَعْمَلُوْنَ ﴿١٠٩﴾

୧୦୯. ଏବଂ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଯେଉଁମାନଙ୍କୁ ସେମାନେ (ପ୍ରାର୍ଥନାରେ) ଡାକନ୍ତି, (ତୁମେ) ସେମାନଙ୍କୁ ତିରସ୍କାର କର ନାହିଁ, ନଚେତ୍ ସେମାନେ (ଶତ୍ରୁ ହୋଇ) ଅଜ୍ଞତାବଶତଃ ଅଲ୍ଲାହଙ୍କୁ ତିରସ୍କାର କରିବେ ; ଏହିପରି ଆମେ ପ୍ରତ୍ୟେକ ସମ୍ପ୍ରଦାୟର କର୍ମକୁ ସୁଶୋଭିତ[1] କରି ଦେଖାଇଅଛୁ ; ଏହାପରେ ସେମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରିଯିବାକୁ ହେବ ; ଏବଂ ସେମାନେ ଯାହା କରୁଥିଲେ ସେ (ଅଲ୍ଲାହ) ସେମାନଙ୍କୁ ତାହା ଜଣାଇ ଦେବେ।

وَأَقْسَمُوْا بِاللّٰهِ جَهْدَ أَيْمَانِهِمْ لَئِنْ جَاءَتْهُمْ اٰيَةٌ لَيُؤْمِنُنَّ بِهَا ۗ قُلْ إِنَّمَا الْاٰيٰتُ عِنْدَ اللّٰهِ وَمَا يُشْعِرُكُمْ ۙ أَنَّهَا إِذَا جَاءَتْ لَا يُؤْمِنُوْنَ ﴿١١٠﴾

୧୧୦. ଏବଂ ସେମାନେ ଅଲ୍ଲାହଙ୍କ ନାମରେ ଦୃଢ଼ ଶପଥପୂର୍ବକ କହନ୍ତି ଯେ ଯଦି ସେମାନଙ୍କ ନିକଟକୁ କୌଣସି ନିଦର୍ଶନ ଆସେ, ତେବେ ସେମାନେ ତାହାକୁ ନିଶ୍ଚୟ ଗ୍ରହଣ କରିବେ ; ତୁମେ (ବିଶ୍ୱାସକାରୀ ମାନଙ୍କୁ) କୁହ, "ନିଦର୍ଶନମାନ ଅଲ୍ଲାହଙ୍କ ନିକଟରେ ଅଛି ଏବଂ ସେ ସମସ୍ତ ବିଷୟ[2] ମଧ୍ୟ ଯାହା ତୁମମାନଙ୍କୁ ସୂଚାଇ ଦେବ ଯେ ଯେତେବେଳେ ନିଦର୍ଶନମାନ ଆସିବ ସେତେବେଳେ ସେମାନେ ବିଶ୍ୱାସ କରିବେ ନାହିଁ।"

وَنُقَلِّبُ أَفْئِدَتَهُمْ وَأَبْصَارَهُمْ كَمَا لَمْ يُؤْمِنُوْا بِهٖ أَوَّلَ مَرَّةٍ وَنَذَرُهُمْ فِيْ طُغْيَانِهِمْ يَعْمَهُوْنَ ﴿١١١﴾ ع ١٣

୧୧୧. ଏବଂ ଆମେ ସେମାନଙ୍କର ହୃଦୟ ତଥା ସେମାନଙ୍କର ଚକ୍ଷୁକୁ ପରିବର୍ତ୍ତନ କରିବୁ, କାରଣ ସେମାନେ ପ୍ରଥମଥର ଏହାକୁ (ଅର୍ଥାତ୍ ନିଦର୍ଶନକୁ) ବିଶ୍ୱାସ କରିନଥିଲେ ; ଏବଂ ଆମେ ସେମାନଙ୍କ ସୀମା ଲଙ୍ଘନ ଯୋଗୁଁ ସେମାନଙ୍କୁ ପଥଭ୍ରଷ୍ଟ ହୋଇ ବିଚରଣ କରିବାକୁ ଛାଡି ଦେବୁ।

---

୧. ସକ୍ରିୟ ଭାବରେ କୌଣସି କାର୍ଯ୍ୟକୁ ନିଜର କରିନେଲେ ତାହା କ୍ରମେ କ୍ରମେ ଉତ୍ତମ ଓ ଯଥାର୍ଥ କାର୍ଯ୍ୟ ବିବେଚିତ ହୁଏ। ଏଠାରେ କୁହାଯାଇଛି ଯେ ଏବେ ସେହି ସମ୍ପ୍ରଦାୟ ଅନ୍ୟାନ୍ୟ ଉପାସ୍ୟଙ୍କୁ ଗ୍ରହଣ କରିବାରେ ଏପରି ଅଭ୍ୟସ୍ତ ହୋଇଗଲେଣି ଯେ ସେହି ତତ୍ତ୍ୱ ବିରୁଦ୍ଧରେ କିଛି କହିଲେ ସେମାନେ ଉତ୍ତେଜିତ ହେବେ ଓ ଅଲ୍ଲାହଙ୍କୁ ମଧ୍ୟ ଗାଳି ଗୁଲଜ କରିବେ।

୨. ଅର୍ଥାତ୍ ଯେଉଁ ସବୁ ପୂର୍ବବର୍ତ୍ତୀ କୁକର୍ମ ବିଶ୍ୱାସ ସ୍ଥାପନ କରିବାରେ ସେମାନଙ୍କୁ ବାଧା ଦେବ ସେସବୁ ଅଲ୍ଲାହଙ୍କ ନିକଟରେ ସୁରକ୍ଷିତ ଅଛି। ଯେତେବେଳେ ସେମାନଙ୍କ ନିକଟରେ ଏହା ପ୍ରକଟିତ ହେବ ସେତେବେଳେ ସେମାନେ ଜାଣିପାରିବେ ଯେ ସେମାନେ ନିଜ ମନକୁ ପରିଷ୍କାର ନ କରିବା ପର୍ଯ୍ୟନ୍ତ ଓ ଅନ୍ୟ ଉପାସ୍ୟ ଗ୍ରହଣ ସମ୍ବନ୍ଧରେ ନିଜର ପୂର୍ବ ଅଭ୍ୟାସକୁ ପରିତ୍ୟାଗ ନ କରିବା ପର୍ଯ୍ୟନ୍ତ ସେମାନେ କଦାପି ବିଶ୍ୱାସ ସ୍ଥାପନ କରିବେ ନାହିଁ।

## ଭାଗ-୮

### ରୁ : ୧୪

ୠ وَلَوْ أَنَّنَا نَزَّلْنَا إِلَيْهِمُ الْمَلٰٓئِكَةَ وَكَلَّمَهُمُ الْمَوْتٰى وَحَشَرْنَا عَلَيْهِمْ كُلَّ شَيْءٍ قُبُلًا مَّا كَانُوا لِيُؤْمِنُوٓا إِلَّآ أَنْ يَّشَآءَ اللّٰهُ وَلٰكِنَّ أَكْثَرَهُمْ يَجْهَلُوْنَ ﴿١١٢﴾

୧୧୨. ଏବଂ ଯଦି ଆମେ ସେମାନଙ୍କ ନିକଟକୁ ଦେବଦୂତ ପ୍ରେରଣ କରନ୍ତୁ ଓ ମୃତବ୍ୟକ୍ତିମାନେ[୧] ସେମାନଙ୍କ ସହିତ କଥା ହୁଅନ୍ତେ, ତଥା ସେମାନଙ୍କ ସମ୍ମୁଖରେ ସକଳ ବିଷୟକୁ ଏକତ୍ରିତ କରାନ୍ତୁ ତଥାପି ଅଲ୍ଲାହଙ୍କ ଇଚ୍ଛା ବ୍ୟତୀତ ସେମାନେ ବିଶ୍ୱାସ କରନ୍ତେ ନାହିଁ, ବରଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଜ୍ଞ ଅଟନ୍ତି।

وَكَذٰلِكَ جَعَلْنَا لِكُلِّ نَبِيٍّ عَدُوًّا شَيٰطِيْنَ الْإِنْسِ وَالْجِنِّ يُوْحِيْ بَعْضُهُمْ إِلٰى بَعْضٍ زُخْرُفَ الْقَوْلِ غُرُوْرًا ۚ وَلَوْ شَآءَ رَبُّكَ مَا فَعَلُوْهُ فَذَرْهُمْ وَمَا يَفْتَرُوْنَ ﴿١١٣﴾

୧୧୩. ଏବଂ ଆମେ ଏହିପରି ଭାବରେ ମାନବ ଓ ଜିନ୍ନ ମାନଙ୍କ[୨] ମଧ୍ୟରୁ ଖଳ ପ୍ରକୃତିର ଲୋକମାନଙ୍କୁ ପ୍ରତ୍ୟେକ ନବିଙ୍କର ଶତ୍ରୁ କରିଥିଲୁ ; ସେମାନଙ୍କ ମଧ୍ୟରୁ କେତେକ ଅନ୍ୟମାନଙ୍କୁ ପ୍ରତାରିତ କରିବା ପାଇଁ ସେମାନଙ୍କ ମନରେ ମନ୍ଦଭାବନା ଜାଗରିତ କରାନ୍ତି ଯାହା କେବଳ ସୁଶୋଭିତ କଥା ଅଟେ : ଏବଂ ଯଦି ତୁମର ପାଳନକର୍ତ୍ତା ଇଚ୍ଛାକରନ୍ତେ, ତେବେ ସେମାନେ ଏପରି କରନ୍ତେ ନାହିଁ ; ସୁତରାଂ ତୁମେ ସେମାନଙ୍କୁ ଓ ସେମାନଙ୍କର ମିଥ୍ୟା ରଚନାକୁ ଉପେକ୍ଷା କର ।

وَلِتَصْغٰٓى إِلَيْهِ أَفْئِدَةُ الَّذِيْنَ لَا يُؤْمِنُوْنَ بِالْاٰخِرَةِ وَلِيَرْضَوْهُ وَلِيَقْتَرِفُوْا مَا هُمْ مُّقْتَرِفُوْنَ ﴿١١٤﴾

୧୧୪. ଏବଂ (ଅଲ୍ଲାହ ଏହା ଏଥିଯୋଗୁଁ ଇଚ୍ଛା କରନ୍ତି ଯେ) ପରକାଳରେ ବିଶ୍ୱାସ ନ କରୁ ଥିବା ଲୋକମାନଙ୍କ ହୃଦୟ (ନିଜ କର୍ମର ପରିଣାମ ସ୍ୱରୂପ) ଯେପରି ଏପରି ବିଷୟ ପ୍ରତି ଅନୁରକ୍ତ ହେବ ଓ ସେମାନେ ଯେପରି ଏହାକୁ (ଅର୍ଥାତ୍ ମିଥ୍ୟାକୁ) ପସନ୍ଦ କରିବେ ଏବଂ ତଦ୍ୱାରା ସେମାନେ ନିଜ କର୍ମର ପରିଣାମ ଉପଲବ୍ଧି କରିବେ ।

---

୧. ଲୋକମାନଙ୍କ ପାଖରେ ସତ୍‌ଚିନ୍ତା ଉପସ୍ଥାପନ କରିବା ଓ ସେମାନଙ୍କୁ ସତ୍‌ପଥରେ ପରିଚାଳିତ ହେବା ପାଇଁ ଆହ୍ୱାନ କରିବା ଦେବଦୂତମାନଙ୍କର ଅନ୍ୟତମ ପରମ କର୍ତ୍ତବ୍ୟ । ସମୟେ ସମୟେ ସେମାନେ ଏହି କର୍ତ୍ତବ୍ୟ ସ୍ୱପ୍ନ ବା ଅଲୌକିକ ଦୃଶ୍ୟ ମାଧ୍ୟମରେ ସମ୍ପାଦନ କରିଥାଆନ୍ତି । ବେଳେ ବେଳେ ମୃତ ପୁଣ୍ୟବାନ୍ ବ୍ୟକ୍ତିମାନେ ଅବତାରମାନଙ୍କ ଦାବିର ସମର୍ଥନ ପାଇଁ ସ୍ୱପ୍ନରେ ଦେଖା ଦେଇଥାନ୍ତି । ଅନ୍ୟ ଅର୍ଥରେ ଯେଉଁମାନେ ଆଧ୍ୟାତ୍ମିକ ଦୃଷ୍ଟିରୁ ମୃତ ସେମାନେ ଅବତାରଙ୍କ ଶିକ୍ଷାକୁ ଗ୍ରହଣ କରି ଯେଉଁ ନୂତନ ଆଧ୍ୟାତ୍ମିକ ଜୀବନ ଲାଭକରନ୍ତି ସେହି ଜୀବନ ଅବିଶ୍ୱାସକାରୀଙ୍କ ନିକଟରେ ଏହାର ସତ୍ୟତା ସମ୍ବନ୍ଧରେ ପ୍ରମାଣ ଉପସ୍ଥାପନ କରେ ।

୨. 'ଇନ୍ସ' ଓ 'ଜିନ' ଅର୍ଥାତ୍ ମନୁଷ୍ୟ ଓ ଜିନ୍ନ ପବିତ୍ର କୋରାନର ବହୁ ସ୍ଥାନରେ ବ୍ୟବହୃତ ହୋଇଛି । ମନୁଷ୍ୟ ଓ ଜିନ୍ନ ସୃଷ୍ଟିର ଦୁଇଟି ଭିନ୍ନ ଜାତି ନୁହେଁ ବରଂ ମାନବ ସମାଜର ଦୁଇଟି ଭିନ୍ନ ଶ୍ରେଣୀ । ମନୁଷ୍ୟ ସାଧାରଣ ଲୋକ ବା ଜନତାକୁ ବୁଝାଏ । ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ଜନତା ଠାରୁ ଦୂରେଇ ରହନ୍ତି ଓ ଜନତା ସହିତ ସାଧାରଣ ଭାବରେ ମିଶି ପାରନ୍ତି ନାହିଁ ତଥା ସେମାନଙ୍କ ଦୃଷ୍ଟି ଅନ୍ତରାଳରେ ରହନ୍ତି ସେମାନଙ୍କ ପାଇଁ ଜିନ୍ନ ଶବ୍ଦ ବ୍ୟବହାର କରାଯାଏ ।

୧୧୫. (ତୁମେ କୁହ), ''ତେବେ କ'ଣ ଆମେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କୌଣସି ନିଷ୍ପତ୍ତିକାରୀଙ୍କୁ ଅନୁସନ୍ଧାନ କରିବୁ ଯଦିଓ ସେ ତୁମମାନଙ୍କ ନିକଟରେ ସୁସ୍ପଷ୍ଟ (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ କରିଅଛନ୍ତି'' ? ଏବଂ ଆମେ ଯେଉଁମାନଙ୍କୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଅଛୁ, ସେମାନେ ଜାଣନ୍ତି ଯେ ନିଶ୍ଚୟ ଏହା ତୁମ୍ଭ ପାଳନକର୍ତ୍ତାଙ୍କ ଠାରୁ ସତ୍ୟ ସହ ଅବତୀର୍ଣ୍ଣ ହୋଇଅଛି ; ସୁତରାଂ ତୁମେ ସନ୍ଦେହକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

أَفَغَيْرَ اللَّهِ أَبْتَغِي حَكَمًا وَهُوَ الَّذِي أَنْزَلَ إِلَيْكُمُ الْكِتَابَ مُفَصَّلًا ۚ وَالَّذِينَ آتَيْنَاهُمُ الْكِتَابَ يَعْلَمُونَ أَنَّهُ مُنَزَّلٌ مِنْ رَبِّكَ بِالْحَقِّ ۖ فَلَا تَكُونَنَّ مِنَ الْمُمْتَرِينَ ﴿١١٤﴾

୧୧୬. ଏବଂ ତୁମ୍ଭ ପାଳନକର୍ତ୍ତାଙ୍କ ବାଣୀ ସତ୍ୟ ଓ ନ୍ୟାୟ ସହିତ ପରିପୂର୍ଣ୍ଣ ହେବ, (କାରଣ) ତାହାଙ୍କ ବାଣୀକୁ କେହି ପରିବର୍ତ୍ତନ କରିପାରିବେ ନାହିଁ ; ଏବଂ ସେ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَتَمَّتْ كَلِمَتُ رَبِّكَ صِدْقًا وَعَدْلًا ۚ لَا مُبَدِّلَ لِكَلِمَاتِهِ ۚ وَهُوَ السَّمِيعُ الْعَلِيمُ ﴿١١٥﴾

୧୧୭. ଏବଂ ଯଦି ତୁମେ ପୃଥିବୀର ଅଧିକାଂଶ ଲୋକଙ୍କର କଥାକୁ ଅନୁସରଣ କରିବ, ତେବେ ସେମାନେ ତୁମ୍ଭଙ୍କୁ ଅଲ୍ଲାଙ୍କ ପଥରୁ ବିଭ୍ରାନ୍ତ କରିଦେବେ ; ସେମାନେ କେବଳ କଳ୍ପନାକୁ ଅନୁସରଣ କରନ୍ତି ଏବଂ କେବଳ ଅନୁମାନରେ କଥା କୁହନ୍ତି ।

وَإِنْ تُطِعْ أَكْثَرَ مَنْ فِي الْأَرْضِ يُضِلُّوكَ عَنْ سَبِيلِ اللَّهِ ۚ إِنْ يَتَّبِعُونَ إِلَّا الظَّنَّ وَإِنْ هُمْ إِلَّا يَخْرُصُونَ ﴿١١٦﴾

୧୧୮. ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ତାହାଙ୍କୁ ଉତ୍ତମ ରୂପେ ଜାଣନ୍ତି ଯେ ତାହାଙ୍କ ପଥରୁ ବିଭ୍ରାନ୍ତ ହୋଇଯା'ନ୍ତି ; ଏବଂ ସେ ହିଁ ସତ୍‌ପଥଗାମୀମାନଙ୍କୁ ଉତ୍ତମ ରୂପେ ଜାଣନ୍ତି ।

إِنَّ رَبَّكَ هُوَ أَعْلَمُ مَنْ يَضِلُّ عَنْ سَبِيلِهِ ۖ وَهُوَ أَعْلَمُ بِالْمُهْتَدِينَ ﴿١١٧﴾

୧୧୯. ସୁତରାଂ ଯଦି ତୁମେମାନେ ତାହାଙ୍କ ନିଦର୍ଶନଗୁଡିକୁ ବିଶ୍ୱାସ କରୁଥାଅ, ତେବେ ଯାହା ଉପରେ ଅଲ୍ଲାହ୍‌ଙ୍କର ନାମ ଉଚ୍ଚାରିତ ହୋଇଥାଏ ତହିଁରୁ ଖାଅ ।

فَكُلُوا مِمَّا ذُكِرَ اسْمُ اللَّهِ عَلَيْهِ إِنْ كُنْتُمْ بِآيَاتِهِ مُؤْمِنِينَ ﴿١١٨﴾

୧୨୦. ଏବଂ ତୁମମାନଙ୍କର ଏପରି କ'ଣ ହୋଇଛି ଯେ ତୁମେମାନେ ତହିଁରୁ ଖାଉ ନାହିଁ ଯାହା ଉପରେ ଅଲ୍ଲାହ୍‌ଙ୍କର ନାମ ଉଚ୍ଚାରିତ ହୋଇଛି, ଅଥଚ ତୁମେମାନେ ନିରୁପାୟ ହୋଇଯିବା ବ୍ୟତୀତ (ଅନ୍ୟ ସମୟରେ) ତୁମମାନଙ୍କ ପାଇଁ ଯାହା ଅବୈଧ, ସେ (ଅଲ୍ଲାହ୍) ତୁମମାନଙ୍କ ସମ୍ମୁଖରେ ସେ ସମସ୍ତ (ବିଷୟ) ବିଶଦ ଭାବରେ ବ୍ୟାଖ୍ୟା କରିଛନ୍ତି ; ବାସ୍ତବରେ ଅନେକ (ଲୋକ) ଯଥାର୍ଥ ଜ୍ଞାନ ଅଭାବରୁ ନିଜ କୁପ୍ରବୃତ୍ତି ଦ୍ୱାରା (ଅନ୍ୟମାନଙ୍କୁ) ପଥଭ୍ରଷ୍ଟ କରାଇ ଥାଆନ୍ତି ; ତୁମ୍ଭର ପାଳନକର୍ତ୍ତା ସୀମାଲଙ୍ଘନକାରୀମାନଙ୍କୁ ଅବଶ୍ୟ ଭଲରୂପେ ଜାଣନ୍ତି ।

وَمَا لَكُمْ أَلَّا تَأْكُلُوا مِمَّا ذُكِرَ اسْمُ اللَّهِ عَلَيْهِ وَقَدْ فَصَّلَ لَكُمْ مَا حَرَّمَ عَلَيْكُمْ إِلَّا مَا اضْطُرِرْتُمْ إِلَيْهِ ۗ وَإِنَّ كَثِيرًا لَيُضِلُّونَ بِأَهْوَائِهِمْ بِغَيْرِ عِلْمٍ ۗ إِنَّ رَبَّكَ هُوَ أَعْلَمُ بِالْمُعْتَدِينَ ﴿١١٩﴾

୧୨୧. ଏବଂ (ତୁମେମାନେ) ପ୍ରକାଶ୍ୟ ତଥା ଗୁପ୍ତ ପାପ (ଉଭୟ) ପରିହାର କର ; ଯେଉଁମାନେ ପାପ ଅର୍ଜନ କରୁଛନ୍ତି, ନିଶ୍ଚୟ ସେମାନଙ୍କୁ ତାହାର ପ୍ରତିଫଳ ମିଳିବ ।

وَذَرُوا ظَاهِرَ الْإِثْمِ وَبَاطِنَهُ ۚ إِنَّ الَّذِينَ يَكْسِبُونَ الْإِثْمَ سَيُجْزَوْنَ بِمَا كَانُوا يَقْتَرِفُونَ ﴿١٢٠﴾

୧୨୨. ଏବଂ ଯାହା ଉପରେ ଅଲ୍ଲାଃଙ୍କର ନାମ[1] ଉଚ୍ଚାରିତ ହୋଇନାହିଁ ତୁମେମାନେ ତହିଁରୁ ଖାଅ ନାହିଁ; ଏବଂ ଏହା ନିଶ୍ଚୟ ଅବଜ୍ଞାସୂଚକ (କର୍ମ), ଏବଂ ସଇତାନ୍ ନିଶ୍ଚୟ ନିଜ ବନ୍ଧୁମାନଙ୍କ ମନରେ (ଏପରି ଭାବନା) ଜାଗ୍ରତ କରାଉ ଥିବାରୁ ସେମାନେ ତୁମମାନଙ୍କ ସହିତ କଳହ କରିବେ ; ଏବଂ ଯଦି ତୁମେ ସେମାନଙ୍କର ଆଜ୍ଞାବହ ହେବ, ତେବେ ନିଶ୍ଚୟ ତୁମେ ମୁସରିକ୍ ହୋଇଯିବ ।

وَلَا تَأْكُلُوا مِمَّا لَمْ يُذْكَرِ اسْمُ اللَّهِ عَلَيْهِ وَإِنَّهُ لَفِسْقٌ ۗ وَإِنَّ الشَّيَاطِينَ لَيُوحُونَ إِلَىٰ أَوْلِيَائِهِمْ لِيُجَادِلُوكُمْ ۖ وَإِنْ أَطَعْتُمُوهُمْ إِنَّكُمْ لَمُشْرِكُونَ ﴿١٢٢﴾

ରୁ : ୧୫

୧୨୩. ଏବଂ କ'ଣ ଯେଉଁ ବ୍ୟକ୍ତି ମୃତ ଥିଲା, ପରେ ଆମେ ତାହାକୁ ଜୀବିତ କଲୁ, ଏବଂ ତାହା ପାଇଁ ଏପରି ଆଲୋକ ବ୍ୟବସ୍ଥା କଲୁ ; ଯଦ୍ଦ୍ୱାରା ସେ ଲୋକମାନଙ୍କ ମଧ୍ୟରେ ବିଚରଣ କରି ପାରିବ ; କ'ଣ ଏପରି ଲୋକ ସେହି ଲୋକ ସହିତ ସମାନ ହେବ ଯାହାର ଅବସ୍ଥା ଏପରି ଯେ ସେ ଘନ ଅନ୍ଧକାର ମଧ୍ୟରେ (ପଡ଼ିରହି) ଅଛି ଯେଉଁଠାରୁ ସେ କଦାପି ବାହାରୁ ନାହିଁ ? ଏହିପରି ଭାବରେ ଅବିଶ୍ୱାସକାରୀମାନଙ୍କୁ ସେମାନଙ୍କ କର୍ମଗୁଡ଼ିକୁ ସୁଶୋଭିତ କରି ପ୍ରଦର୍ଶିତ କରାଯାଇଅଛି ।

أَوَمَن كَانَ مَيْتًا فَأَحْيَيْنَاهُ وَجَعَلْنَا لَهُ نُورًا يَمْشِي بِهِ فِي النَّاسِ كَمَن مَّثَلُهُ فِي الظُّلُمَاتِ لَيْسَ بِخَارِجٍ مِّنْهَا ۚ كَذَٰلِكَ زُيِّنَ لِلْكَافِرِينَ مَا كَانُوا يَعْمَلُونَ ﴿١٢٣﴾

୧୨୪. ଏବଂ ଆମେ ପ୍ରତ୍ୟେକ ଜନବସତିର ମୁଖ୍ୟ ଅପରାଧୀମାନଙ୍କୁ ଏରୂପେ ଗଢ଼ିଅଛୁ[2] (ଅର୍ଥାତ୍ ସେମାନେ ନିଜ କୁକର୍ମକୁ ଉତ୍ତମ ମନେକରନ୍ତି) ଯାହା ଫଳରେ ସେମାନେ ଏଠାରେ (ନବିମାନଙ୍କ ବିରୁଦ୍ଧରେ) ଚକ୍ରାନ୍ତ କରନ୍ତି, କିନ୍ତୁ ବସ୍ତୁତଃ ସେମାନେ ନିଜ ବିରୁଦ୍ଧରେ ହିଁ ଚକ୍ରାନ୍ତ କରନ୍ତି ଏବଂ ସେମାନେ ତାହା ବୁଝନ୍ତି ନାହିଁ ।

وَكَذَٰلِكَ جَعَلْنَا فِي كُلِّ قَرْيَةٍ أَكَابِرَ مُجْرِمِيهَا لِيَمْكُرُوا فِيهَا ۖ وَمَا يَمْكُرُونَ إِلَّا بِأَنفُسِهِمْ وَمَا يَشْعُرُونَ ﴿١٢٤﴾

୧୨୫. ଏବଂ ଯେତେବେଳେ ସେମାନଙ୍କ ନିକଟକୁ କୌଣସି ନିଦର୍ଶନ ଆସେ, ସେତେବେଳେ ସେମାନେ କହନ୍ତି, "ଯେ ପର୍ଯ୍ୟନ୍ତ ଅଲ୍ଲାଃଙ୍କ ପ୍ରେରିତ ରସୁଲମାନଙ୍କୁ ଯାହା ଦିଆଯାଇଛି ତାହା ସଦୃଶ ଆମମାନଙ୍କୁ ଦିଆ ନଯାଏ, ଆମେମାନେ କଦାପି ବିଶ୍ୱାସ କରିବୁ ନାହିଁ ;" ଅଲ୍ଲାଃ କାହାକୁ ରସୁଲ ପଦ ପ୍ରଦାନ କରିବେ (ଅର୍ଥାତ୍ କିଏ ରସୁଲ ହେବ।

وَإِذَا جَاءَتْهُمْ آيَةٌ قَالُوا لَن نُّؤْمِنَ حَتَّىٰ نُؤْتَىٰ مِثْلَ مَا أُوتِيَ رُسُلُ اللَّهِ ۘ اللَّهُ أَعْلَمُ حَيْثُ يَجْعَلُ

୧. ଯେଉଁ ପଶୁ ସ୍ୱତଃ ମରିଥାଏ ବା ଯାହାକୁ ମରାଗଲା ବେଳେ ତା'ଉପରେ ଅଲ୍ଲାଃଙ୍କ ନାମ ଉଚ୍ଚାରିତ ହୋଇ ନ ଥାଏ ତାହାକୁ ଖାଇବା ପାଇଁ କାହିଁକି ବାରଣ କରାଯାଇଛି ସେ ବିଷୟ ଏଠାରେ ବୁଝାଇ ଦିଆଯାଇଛି । ଅଲ୍ଲାଃଙ୍କ ନାମ ଉଚ୍ଚାରଣ କରି କୌଣସି ଜୀବକୁ ମାରିଲେ ତାହା ମନୁଷ୍ୟ ହୃଦୟରେ ଏକ ପବିତ୍ରକାରୀ ପ୍ରଭାବ ପକାଏ, ଫଳରେ ତା'ମନରୁ ଜୀବହତ୍ୟା ଜନିତ ନୃଶଂସତା ଦୂର ହୁଏ ।

୨. ଏହା ଅତ୍ୟାଚାର ନୁହେଁ କାରଣ ଅପରାଧର ସ୍ୱାଭାବିକ ପରିଣାମ ଏହି ଯେ ମନ୍ଦକାର୍ଯ୍ୟ କ୍ରମେ ଶୋଭନୀୟ ଜଣା ପଡ଼େ । ଏହା ହିଁ ପ୍ରାକୃତିକ ପରିଣାମ, ଅନ୍ୟଥା ଅଲ୍ଲାଃ କାହାରି ଉପରେ ଅତ୍ୟାଚାର କରନ୍ତି ନାହିଁ ।

رِسَالَتَهٗ ؕ سَيُصِيْبُ الَّذِيْنَ اَجْرَمُوْا صَغَارٌ عِنْدَ اللّٰهِ وَعَذَابٌ شَدِيْدٌۢ بِمَا كَانُوْا يَمْكُرُوْنَ ﴿۱۲۴﴾

ଯୋଗ୍ୟ ଓ କିଏ ଯୋଗ୍ୟ ନୁହେଁ) ତାହା ସେ ଭଲରୂପେ ଜାଣନ୍ତି ; ଯେଉଁମାନେ ପାପ କାର୍ଯ୍ୟ କରୁଛନ୍ତି, (ନବିଙ୍କ ବିରୁଦ୍ଧରେ) ସେମାନଙ୍କ ଚକ୍ରାନ୍ତ ପାଇଁ ଅଲ୍ଲାହ୍‌ଙ୍କ ନିକଟରୁ ଶୀଘ୍ର ଲାଞ୍ଛନା ଓ କଠୋର ଶାସ୍ତି ସେମାନଙ୍କ ନିକଟରେ ପହଞ୍ଚିବ ।

فَمَنْ يُّرِدِ اللّٰهُ اَنْ يَّهْدِيَهٗ يَشْرَحْ صَدْرَهٗ لِلْاِسْلَامِ ۚ وَمَنْ يُّرِدْ اَنْ يُّضِلَّهٗ يَجْعَلْ صَدْرَهٗ ضَيِّقًا حَرَجًا كَاَنَّمَا يَصَّعَّدُ فِي السَّمَآءِ ؕ كَذٰلِكَ يَجْعَلُ اللّٰهُ الرِّجْسَ عَلَى الَّذِيْنَ لَا يُؤْمِنُوْنَ ﴿۱۲۵﴾

୧୨୬. ଅଲ୍ଲାହ୍ ଯାହାଙ୍କୁ ସତ୍‌ପଥ ଦର୍ଶାଇବା ଲାଗି ଇଚ୍ଛା କରନ୍ତି, ଇସ୍‌ଲାମ ପ୍ରତି ତାହାର ହୃଦୟକୁ ଉନ୍ମୁକ୍ତ କରନ୍ତି, ଏବଂ ଯାହାକୁ କୁପଥଗାମୀ କରାଇବାକୁ ଇଚ୍ଛା କରନ୍ତି ତାହାର ହୃଦୟ ଅତ୍ୟନ୍ତ ସଂକୁଚିତ କରିଦିଅନ୍ତି ; ଯେପରିକି ସେ ଊର୍ଦ୍ଧ୍ୱକୁ ଆରୋହଣ କରୁଛି ; ଏହିପରି ଭାବେ ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ, ସେମାନଙ୍କୁ ଅଲ୍ଲାହ୍ ଶାସ୍ତି ଦିଅନ୍ତି ।

وَهٰذَا صِرَاطُ رَبِّكَ مُسْتَقِيْمًا ؕ قَدْ فَصَّلْنَا الْاٰيٰتِ لِقَوْمٍ يَّذَّكَّرُوْنَ ﴿۱۲۶﴾

୧୨୭. ଏବଂ ଏହାହିଁ ତୁମମାନଙ୍କ ପାଳନକର୍ତ୍ତାଙ୍କର (ପ୍ରଦର୍ଶିତ) ସରଳପଥ ; ଆମ୍ଭେ ଉପଦେଶଗ୍ରାହୀ ସମ୍ପ୍ରଦାୟ ପାଇଁ ନିଦର୍ଶନଗୁଡିକୁ ସ୍ପଷ୍ଟରୂପେ ବର୍ଣ୍ଣନା କରିଅଛୁ ।

لَهُمْ دَارُ السَّلٰمِ عِنْدَ رَبِّهِمْ وَهُوَ وَلِيُّهُمْ بِمَا كَانُوْا يَعْمَلُوْنَ ﴿۱۲۷﴾

୧୨୮. ସେମାନଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ଶାନ୍ତିର ନିବାସ ରହିଅଛି, ଏବଂ ସେମାନେ ଯାହା କିଛି କରୁଛନ୍ତି, ସେଥି ସକାଶେ ସେ ସେମାନଙ୍କର ସାହାଯ୍ୟକାରୀ ।

وَيَوْمَ يَحْشُرُهُمْ جَمِيْعًا ۚ يٰمَعْشَرَ الْجِنِّ قَدِ اسْتَكْثَرْتُمْ مِّنَ الْاِنْسِ ۚ وَقَالَ اَوْلِيٰٓؤُهُمْ مِّنَ الْاِنْسِ رَبَّنَا اسْتَمْتَعَ بَعْضُنَا بِبَعْضٍ وَّبَلَغْنَآ اَجَلَنَا الَّذِيْٓ اَجَّلْتَ لَنَا ؕ قَالَ النَّارُ مَثْوٰىكُمْ خٰلِدِيْنَ فِيْهَآ اِلَّا مَا شَآءَ اللّٰهُ ؕ اِنَّ رَبَّكَ حَكِيْمٌ عَلِيْمٌ ﴿۱۲۸﴾

୧୨୯. ଏବଂ (ସେହି ସମୟକୁ ସ୍ମରଣକର) ଯେଉଁଦିନ ସେ ସମସ୍ତଙ୍କୁ ଏକତ୍ରିତ କରିବେ (ଓ କହିବେ), ''ହେ ଜିନ୍ନ ଗୋଷ୍ଠୀ ! ତୁମେମାନେ ଜନସାଧାରଣ ମଧ୍ୟରୁ ଅଧିକାଂଶଙ୍କୁ ନିଜର ଦଳଭୁକ୍ତ କରିଅଛ'' ; ଏବଂ ଜନସାଧାରଣଙ୍କ ମଧ୍ୟରୁ ସେମାନଙ୍କ ସମର୍ଥକମାନେ କହିବେ, ''ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କ ଦ୍ୱାରା ଲାଭବାନ୍ ହୋଇଅଛୁ, ଏବଂ ଆମେମାନେ ସେହି ନିର୍ଦ୍ଦିଷ୍ଟ କାଳରେ ପହଞ୍ଚି ଯାଇଛୁ, ଯାହା ତୁମେ ଆମମାନଙ୍କ ପାଇଁ ନିର୍ଦ୍ଧାରିତ କରିଥିଲ'', ସେ କହିବେ, ''ନରକାଗ୍ନି ହିଁ ତୁମମାନଙ୍କର ବାସସ୍ଥାନ''. ଅଲ୍ଲାହ୍ ଅନ୍ୟଥା ଇଚ୍ଛା ନ କଲେ, ତୁମେମାନେ ସେଠାରେ ବହୁକାଳ ରହିବ, ବାସ୍ତବରେ ତୁମର ପାଳନକର୍ତ୍ତା ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞ ।

وَكَذٰلِكَ نُوَلِّيْ بَعْضَ الظّٰلِمِيْنَ بَعْضًۢا بِمَا كَانُوْا يَكْسِبُوْنَ ﴿۱۲۹﴾ ع

୧୩୦. ଏବଂ ଆମ୍ଭେ ଏହିପରି ଭାବରେ କେତେକ ଅତ୍ୟାଚାରୀ ଯାହାକିଛି ଅର୍ଜନ କରୁଛନ୍ତି ସେଥିସକାଶେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟମାନଙ୍କର ବନ୍ଧୁ କରି ଦେଉ ।

ରୁ : ୧୬

يٰمَعْشَرَ الْجِنِّ وَالْاِنْسِ اَلَمْ يَاْتِكُمْ رُسُلٌ مِّنْكُمْ يَقُصُّوْنَ عَلَيْكُمْ اٰيٰتِيْ وَيُنْذِرُوْنَكُمْ لِقَآءَ يَوْمِكُمْ هٰذَا ۭ قَالُوْا شَهِدْنَا عَلٰٓي اَنْفُسِنَا وَغَرَّتْهُمُ الْحَيٰوةُ الدُّنْيَا وَشَهِدُوْا عَلٰٓي اَنْفُسِهِمْ اَنَّهُمْ كَانُوْا كٰفِرِيْنَ ۝

୧୩୧. ହେ ଜିନ୍ନ ଓ ମାନବ ଗୋଷ୍ଠୀ ! କ'ଣ ତୁମମାନଙ୍କ ମଧ୍ୟରୁ ତୁମମାନଙ୍କ ନିକଟକୁ ରସୁଲମାନେ ଆସି ନ ଥିଲେ ଯେଉଁମାନେ କି ତୁମମାନଙ୍କୁ ଆମର ନିଦର୍ଶନଗୁଡିକୁ ପାଠ କରି ଶୁଣାଉଥିଲେ ତଥା ତୁମମାନଙ୍କୁ ଆଜି ଦିନର ସାକ୍ଷାତ୍ ସଂକ୍ରାନ୍ତରେ ଭୟ ପ୍ରଦର୍ଶନ କରାଉଥିଲେ ? ସେମାନେ କହିବେ, "ଆମେମାନେ ନିଜ ବିରୁଦ୍ଧରେ (ନିଜେ) ସାକ୍ଷ୍ୟ ଦେଉଅଛୁ", ଏବଂ ପାର୍ଥିବ ଜୀବନ ସେମାନଙ୍କୁ ପ୍ରତାରିତ କରିଥିଲା ; ଏବଂ ସେମାନେ ନିଜ ବିରୁଦ୍ଧରେ (ନିଜେ) ସାକ୍ଷ୍ୟ ପ୍ରଦାନ କରିବେ ଯେ ସେମାନେ ଅବିଶ୍ୱାସକାରୀ ଥିଲେ ।

ذٰلِكَ اَنْ لَّمْ يَكُنْ رَّبُّكَ مُهْلِكَ الْقُرٰي بِظُلْمٍ وَّاَهْلُهَا غٰفِلُوْنَ ۝

୧୩୨. ଏହା (ଅର୍ଥାତ୍ ରସୁଲମାନଙ୍କ ପ୍ରେରଣ) ଏଥି ସକାଶେ କରାଯାଇଥିଲା ଯେ ତୁମର ପାଳନକର୍ତ୍ତା ସହରଗୁଡିକୁ ତା'ର ଅଧିବାସୀମାନେ [୧] ଅଜ୍ଞାତ ଅବସ୍ଥାରେ ଥିବାବେଳେ ଅନ୍ୟାୟ ଭାବରେ ଧ୍ୱଂସ କରିବେ ନାହିଁ ।

وَلِكُلٍّ دَرَجٰتٌ مِّمَّا عَمِلُوْا ۭ وَمَا رَبُّكَ بِغَافِلٍ عَمَّا يَعْمَلُوْنَ ۝

୧୩୩. ଏବଂ ପ୍ରତ୍ୟେକ ବ୍ୟକ୍ତି (ବା ସମ୍ପ୍ରଦାୟ) ପାଇଁ ତା'ର କର୍ମ ଅନୁସାରେ (ବିଭିନ୍ନ) ପଦମର୍ଯ୍ୟାଦା ନିର୍ଦ୍ଦିଷ୍ଟ ହୋଇଅଛି, ଏବଂ ସେମାନେ ଯାହା କରନ୍ତି, ତୁମ ପାଳନକର୍ତ୍ତା ସେ ବିଷୟରେ ଅପରିଜ୍ଞାତ ନୁହନ୍ତି ।

وَرَبُّكَ الْغَنِيُّ ذُو الرَّحْمَةِ ۭ اِنْ يَّشَاْ يُذْهِبْكُمْ وَيَسْتَخْلِفْ مِنْۢ بَعْدِكُمْ مَّا يَشَاۗءُ كَمَآ اَنْشَاَكُمْ مِّنْ ذُرِّيَّةِ قَوْمٍ اٰخَرِيْنَ ۝

୧୩୪. ଏବଂ ତୁମ ପାଳନକର୍ତ୍ତା କାହାରି ଉପରେ ନିର୍ଭର କରନ୍ତି ନାହିଁ, (ଓ ସେ) କରୁଣାମୟ ; ଏବଂ ସେ ଇଚ୍ଛାକଲେ ତୁମମାନଙ୍କୁ ବିନାଶ କରିଦେବେ, ଏବଂ ଯେପରି ଭାବରେ ସେ ତୁମମାନଙ୍କୁ ଅନ୍ୟ ସମ୍ପ୍ରଦାୟର ବଂଶଧରମାନଙ୍କ ମଧ୍ୟରୁ ସୃଷ୍ଟି କରିଅଛନ୍ତି ସେହିପରି ସେ ଯାହାକୁ ପସନ୍ଦ କରିବେ ତୁମମାନଙ୍କ (ବିନାଶ) ପରେ ତୁମମାନଙ୍କର ଉତ୍ତରାଧିକାରୀ ନିଯୁକ୍ତ କରିବେ ।

اِنَّ مَا تُوْعَدُوْنَ لَاٰتٍ ۙ وَّمَآ اَنْتُمْ بِمُعْجِزِيْنَ ۝

୧୩୫. ଏବଂ ଯେଉଁ ବିଷୟରେ ତୁମମାନଙ୍କ ନିକଟରେ ପ୍ରତିଜ୍ଞା କରାଯାଉଅଛି ତାହା ଅବଶ୍ୟ ଘଟିବ, ଏବଂ ତୁମେମାନେ କୌଣସି ପ୍ରକାରେ ମଧ୍ୟ ଆମକୁ ଅସମର୍ଥ କରିପାରିବ ନାହିଁ ।

---

୧. ଅର୍ଥାତ୍ କୌଣସି ନବିଙ୍କୁ ପ୍ରେରଣ ନକରି ତଥା ବିଭିନ୍ନ ପ୍ରକାର ଯୁକ୍ତିକୁ ସ୍ପଷ୍ଟ ଭାବରେ ବୁଝାଇ ନଦେଇ ଦଣ୍ଡ ଦେବା ଅନ୍ୟାୟ । ବସ୍ତୁତଃ ସତ୍ୟତା ସମ୍ବନ୍ଧରେ ପ୍ରମାଣ ପ୍ରସ୍ତୁତ ନ କରି ତଥା ମାନବ ସମାଜକୁ ସାବଧାନ ନ କରାଇ ଅଲ୍ଲାହଙ୍କର ଶାସ୍ତି ଅବତୀର୍ଣ୍ଣ ହୁଏ ନାହିଁ । ଅତଏବ ଏହି ନୀତି ଅନୁସାରେ ଅଲ୍ଲାହ ପ୍ରଥମେ ନବି ବା ସଂସ୍କାରକ ପଠାଇ ଥା'ନ୍ତି । ଏହି ନୀତି ଅନୁସାରେ ମଧ୍ୟ, ହଜରତ ମହମ୍ମଦ ଓ ତାଙ୍କ ସହଚରମାନେ ପ୍ରଥମେ ଅବିଶ୍ୱାସକାରୀମାନଙ୍କୁ ଚେତାବନୀ ଦେଉଥିଲେ ଓ ତାପରେ ସେମାନଙ୍କ ଉପରେ ଚଢ଼ାଉ କରୁଥିଲେ ।

୧୩୬. ତୁମେ କୁହ, "ହେ ଆମର ସମ୍ପ୍ରଦାୟ ! ତୁମେମାନେ ନିଜ ପନ୍ଥାରେ କାର୍ଯ୍ୟକର, ଆମେ ମଧ୍ୟ (ନିଜ ପନ୍ଥାରେ) କାର୍ଯ୍ୟ କରିବୁ ;" ତୁମେମାନେ ଶୀଘ୍ର ଅବଗତ ହେବ ଯେ ଏହି ବାସସ୍ଥାନ (ଅର୍ଥାତ୍ ଏହି ସଂସାର) ସଂକ୍ରାନ୍ତରେ ଶେଷ ପରିଣାମ କାହା ସପକ୍ଷରେ ହେବ ; ବସ୍ତୁତଃ ଅତ୍ୟାଚାରୀମାନେ କେଦାପି କୃତକାର୍ଯ୍ୟ ହେବେ ନାହିଁ ।

قُلْ يٰقَوْمِ اعْمَلُوْا عَلٰى مَكَانَتِكُمْ اِنِّىْ عَامِلٌ فَسَوْفَ تَعْلَمُوْنَ مَنْ تَكُوْنُ لَهٗ عَاقِبَةُ الدَّارِ اِنَّهٗ لَا يُفْلِحُ الظّٰلِمُوْنَ ﴿١٣٦﴾

୧୩୭. ଏବଂ ସେମାନେ ଅଲ୍ଲାହ୍‌ଙ୍କ ସୃଷ୍ଟ ଶସ୍ୟ ବା ପଶୁମାନଙ୍କର ଏକ ଅଂଶକୁ ଅଲ୍ଲାହ୍‌ଙ୍କ ପାଇଁ ନିର୍ଦ୍ଧାରିତ କରିଛନ୍ତି, ଏବଂ ତତ୍‌ପରେ ସେମାନେ ନିଜ ଧାରଣା ଅନୁସାରେ କହନ୍ତି, "ଏତିକି ଅଲ୍ଲାହ୍‌ଙ୍କ ପାଇଁ ଏବଂ ଏତିକି ଆମମାନଙ୍କର ଦେବାଦେବୀଙ୍କ ପାଇଁ" ; ତା'ପରେ ଏହା ମଧ୍ୟ ଦାବି କରନ୍ତି ଯେ ଯାହା ସେମାନଙ୍କର ଦେବାଦେବୀଙ୍କ ପାଇଁ ଅଛି ତାହା ଅଲ୍ଲାହ୍‌ଙ୍କ ନିକଟରେ ପହଞ୍ଚେ ନାହିଁ ; ଏବଂ ଯାହା ଅଲ୍ଲାହ୍‌ଙ୍କ ପାଇଁ ଅଛି ତାହା ସେମାନଙ୍କର ଦେବାଦେବୀଙ୍କ ନିକଟରେ ପହଞ୍ଚେ ; ଏହା ସେମାନଙ୍କର ଏକ ମନ୍ଦ ନିଷ୍ପତ୍ତି ଅଟେ ।

وَجَعَلُوْا لِلّٰهِ مِمَّا ذَرَاَ مِنَ الْحَرْثِ وَالْاَنْعَامِ نَصِيْبًا فَقَالُوْا هٰذَا لِلّٰهِ بِزَعْمِهِمْ وَهٰذَا لِشُرَكَآئِنَا فَمَا كَانَ لِشُرَكَآئِهِمْ فَلَا يَصِلُ اِلَى اللّٰهِ وَمَا كَانَ لِلّٰهِ فَهُوَ يَصِلُ اِلٰى شُرَكَآئِهِمْ سَآءَ مَا يَحْكُمُوْنَ ﴿١٣٧﴾

୧୩୮. ଏବଂ ଏହିପରି ମୁସରିକମାନଙ୍କ ମଧ୍ୟରୁ ଅନେକଙ୍କୁ ସେମାନଙ୍କର ଦେବାଦେବୀମାନେ ସେମାନଙ୍କୁ ବିନାଶ କରିବା ଉଦ୍ଦେଶ୍ୟରେ ଓ ସେମାନଙ୍କ ଧର୍ମକୁ ସେମାନଙ୍କ ପାଇଁ ବିଭ୍ରାନ୍ତିମୟ କରିବା ପାଇଁ ନିଜ ସନ୍ତାନ ହତ୍ୟାକୁ ସୁଶୋଭିତ କରି ଦେଖାଇଥିଲେ ; ଏବଂ ଯଦି ଅଲ୍ଲାହ୍ ଇଚ୍ଛା କରୁଥା'ନ୍ତେ ତେବେ ସେମାନେ ଏପରି କରି ନ ଥା'ନ୍ତେ। ସୁତରାଂ ତୁମେ ସେମାନଙ୍କୁ ତଥା ସେମାନଙ୍କର ଏହି ଭ୍ରାନ୍ତ ଧାରଣାକୁ ଉପେକ୍ଷା କର ।

وَكَذٰلِكَ زَيَّنَ لِكَثِيْرٍ مِّنَ الْمُشْرِكِيْنَ قَتْلَ اَوْلَادِهِمْ شُرَكَآؤُهُمْ لِيُرْدُوْهُمْ وَلِيَلْبِسُوْا عَلَيْهِمْ دِيْنَهُمْ وَلَوْ شَآءَ اللّٰهُ مَا فَعَلُوْهُ فَذَرْهُمْ وَمَا يَفْتَرُوْنَ ﴿١٣٨﴾

୧୩୯. ଏବଂ ସେମାନେ ନିଜ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ କହନ୍ତି, "ଅମୁକ ଅମୁକ ପଶୁ ଓ ଶସ୍ୟ (ଖାଇବା) ନିଷିଦ୍ଧ ଅଟେ ; ତାହାକୁ କେବଳ ସେ ହିଁ ଖାଇବ ଯାହା ସଂକ୍ରାନ୍ତରେ ଆମେମାନେ କହିବୁ" ; ଏବଂ (କହନ୍ତି) "କେତେକ ପଶୁଙ୍କ ପୃଷ୍ଠ (ପରିବହନ ପାଇଁ) ଅବୈଧ କରାହୋଇଅଛି ;" ଏବଂ କେତେକ ପଶୁଙ୍କ ଉପରେ (ବଧ କରିବା ସମୟରେ) ସେମାନେ ଅଲ୍ଲାହ୍‌ଙ୍କର ନାମ ଉଚ୍ଚାରଣ କରନ୍ତି ନାହିଁ ; ଏହା ତାହାଙ୍କ (ଅର୍ଥାତ୍ ଅଲ୍ଲାହ୍‌ଙ୍କ) ପ୍ରତି ଏକ ମିଥ୍ୟା ଆରୋପ ସଦୃଶ ; ଏହି ମିଥ୍ୟା ଆରୋପ ଯୋଗୁଁ ଅଲ୍ଲାହ୍ ସେମାନଙ୍କୁ ନିଶ୍ଚୟ ଶାସ୍ତି ପ୍ରଦାନ କରିବେ ।

وَقَالُوْا هٰذِهٖۤ اَنْعَامٌ وَّحَرْثٌ حِجْرٌ لَّا يَطْعَمُهَآ اِلَّا مَنْ نَّشَآءُ بِزَعْمِهِمْ وَاَنْعَامٌ حُرِّمَتْ ظُهُوْرُهَا وَاَنْعَامٌ لَّا يَذْكُرُوْنَ اسْمَ اللّٰهِ عَلَيْهَا افْتِرَآءً عَلَيْهِ سَيَجْزِيْهِمْ بِمَا كَانُوْا يَفْتَرُوْنَ ﴿١٣٩﴾

୧୪୦. ଏବଂ ସେମାନେ କହନ୍ତି, "ଯାହା କିଛି ସେହି ପଶୁମାନଙ୍କ ଉଦରରେ ଅଛି, ତାହା କେବଳ ଆମମାନଙ୍କ ପୁରୁଷମାନଙ୍କ ପାଇଁ ଉଦ୍ଦିଷ୍ଟ ; ଏବଂ ଆମମାନଙ୍କ ପତ୍ନୀମାନଙ୍କ ପାଇଁ ଅବୈଧ କରାହୋଇଛି ; କିନ୍ତୁ ଯଦି ଏହା ମୃତ ହୋଇଥାଏ, ତେବେ ଏଥିରେ ସେମାନେ (ସମସ୍ତେ) ଅଂଶୀଦାର ହେବେ; ସେ ସେମାନଙ୍କର ଏହି (ଅମୂଳକ) ଉକ୍ତି ପାଇଁ ସେମାନଙ୍କୁ ନିଶ୍ଚୟ ଶାସ୍ତି ଦେବେ ; ମନେରଖ ଯେ ସେ ହିଁ ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞ ।

وَقَالُوا مَا فِي بُطُونِ هَٰذِهِ الْأَنْعَامِ خَالِصَةٌ لِذُكُورِنَا وَمُحَرَّمٌ عَلَىٰ أَزْوَاجِنَا ۖ وَإِنْ يَكُنْ مَيْتَةً فَهُمْ فِيهِ شُرَكَاءُ ۚ سَيَجْزِيهِمْ وَصْفَهُمْ ۚ إِنَّهُ حَكِيمٌ عَلِيمٌ ﴿١٤٠﴾

୧୪୧. ଯେଉଁମାନେ ଅଜ୍ଞତା ବଶତଃ ନିର୍ବୋଧଙ୍କ ପରି ନିଜ ସନ୍ତାନମାନଙ୍କୁ ହତ୍ୟା କରିଛନ୍ତି, ଏବଂ ଅଲ୍ଲାଃଙ୍କ ପ୍ରତି ଦୋଷାରୋପ ପୂର୍ବକ ଅଲ୍ଲାଃ ସେମାନଙ୍କୁ ଯାହାକିଛି ଦେଇଛନ୍ତି, ସେମାନେ ତାହାକୁ (ନିଜ ପାଇଁ) ଅବୈଧ କରିଛନ୍ତି , ସେମାନେ ହିଁ କ୍ଷତିଗ୍ରସ୍ତ ହୋଇଛନ୍ତି ଓ ସେମାନେ ବିପଥଗାମୀ ହୋଇଛନ୍ତି ଏବଂ ସେମାନେ ସତ୍‌ପଥଗାମୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନୁହନ୍ତି ।

قَدْ خَسِرَ الَّذِينَ قَتَلُوا أَوْلَادَهُمْ سَفَهًا بِغَيْرِ عِلْمٍ وَحَرَّمُوا مَا رَزَقَهُمُ اللَّهُ افْتِرَاءً عَلَى اللَّهِ ۚ قَدْ ضَلُّوا وَمَا كَانُوا مُهْتَدِينَ ﴿١٤١﴾

ରୁ : ୧୭

୧୪୨. ଏବଂ ସେ (ଅଲ୍ଲାଃ) ହିଁ ରଙ୍ଗା ଆଶ୍ରିତ ଓ ରଙ୍ଗା ବିହୀନ ଉଦ୍ୟାନମାନ ତଥା ଖଜୁରି ଓ କ୍ଷେତକୁ ବିଭିନ୍ନ ସ୍ୱାଦ ବିଶିଷ୍ଟ ଫଳ ଏବଂ (ପରସ୍ପର ମଧ୍ୟରେ) ସାଦୃଶ୍ୟ ଥିବା ଓ ସାଦୃଶ୍ୟ ନ ଥିବା ଜଇତୁନ୍ ଓ ଡାଳିମ୍ବ ସୃଷ୍ଟି କରିଅଛନ୍ତି ; ଯେବେ ଏହା ଫଳଧାରଣ କରେ ତେବେ ତୁମେମାନେ ଏହାର ଫଳ ଖାଅ, ଏବଂ ଅମଳ ସମୟରେ ତାହାଙ୍କର (ଅର୍ଥାତ୍ ଅଲ୍ଲାଃଙ୍କର) ପ୍ରାପ୍ୟ[1] ପ୍ରଦାନ କର ଓ ଅପବ୍ୟୟ କର ନାହିଁ, କାରଣ ସେ ଅପବ୍ୟୟକାରୀଙ୍କୁ ପସନ୍ଦ କରନ୍ତି ନାହିଁ ।

وَهُوَ الَّذِي أَنْشَأَ جَنَّاتٍ مَعْرُوشَاتٍ وَغَيْرَ مَعْرُوشَاتٍ وَالنَّخْلَ وَالزَّرْعَ مُخْتَلِفًا أُكُلُهُ وَالزَّيْتُونَ وَالرُّمَّانَ مُتَشَابِهًا وَغَيْرَ مُتَشَابِهٍ ۚ كُلُوا مِنْ ثَمَرِهِ إِذَا أَثْمَرَ وَآتُوا حَقَّهُ يَوْمَ حَصَادِهِ ۖ وَلَا تُسْرِفُوا ۚ إِنَّهُ لَا يُحِبُّ الْمُسْرِفِينَ ﴿١٤٢﴾

୧୪୩. ଏବଂ ଚତୁଷ୍ପଦ ପ୍ରାଣୀମାନଙ୍କ ମଧ୍ୟରେ (କେତେକ) ଭାରବାହୀ ଅଛନ୍ତି ଓ (କେତେକ) କ୍ଷୁଦ୍ର ମଧ୍ୟ ଅଛନ୍ତି ; ଅଲ୍ଲାଃ ତୁମମାନଙ୍କୁ ଯାହା କିଛି ଦେଇଛନ୍ତି ତନ୍ମଧ୍ୟରୁ ଖାଅ, ଏବଂ ସଇତାନର ପଦାଙ୍କ ଅନୁସରଣ କର ନାହିଁ ; ସେ ବାସ୍ତବରେ ତୁମମାନଙ୍କର ପ୍ରକାଶ୍ୟ ଶତ୍ରୁ ।

وَمِنَ الْأَنْعَامِ حَمُولَةً وَفَرْشًا ۚ كُلُوا مِمَّا رَزَقَكُمُ اللَّهُ وَلَا تَتَّبِعُوا خُطُوَاتِ الشَّيْطَانِ ۚ إِنَّهُ لَكُمْ عَدُوٌّ مُبِينٌ ﴿١٤٣﴾

୧. ଅର୍ଥାତ୍ ଦରିଦ୍ର ବ୍ୟକ୍ତିଙ୍କୁ ସାହାଯ୍ୟ କର ।

ثَمٰنِيَةَ اَزْوَاجٍ ۚ مِنَ الضَّاْنِ اثْنَيْنِ وَمِنَ الْمَعْزِ اثْنَيْنِ ؕ قُلْ ءٰٓالذَّكَرَيْنِ حَرَّمَ اَمِ الْاُنْثَيَيْنِ اَمَّا اشْتَمَلَتْ عَلَيْهِ اَرْحَامُ الْاُنْثَيَيْنِ ؕ نَبِّـُٔوْنِىْ بِعِلْمٍ اِنْ كُنْتُمْ صٰدِقِيْنَ ﴿١٤٤﴾

୧୪୪. (ସେ) ଆଠ ହଳ ସୃଷ୍ଟି କରିଅଛନ୍ତି, ମେଣ୍ଢା ମଧ୍ୟରୁ ଦୁଇଗୋଟି, ଛେଳି ମଧ୍ୟରୁ ଦୁଇଗୋଟି ; ତୁମେ (ସେମାନଙ୍କୁ) କୁହ, "କ'ଣ ସେ ସେମାନଙ୍କ ମଧ୍ୟରୁ ଦୁଇଗୋଟି ଅଣ୍ଡିରା (ପଶୁ) ବା ଦୁଇଗୋଟି ମାଈ (ପଶୁ) ଅଥବା ମାଈ (ପଶୁ) ଦୁଇଟିର ଗର୍ଭରେ ଯାହା ଅଛି (ତାହାକୁ ଅବୈଧ କରିଛନ୍ତି) ? ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ ତାହାହେଲେ କୌଣସି ଜ୍ଞାନ ଉପରେ ଭିତ୍ତିକରି ମୋତେ (ଏ ବିଷୟରେ) ଅବଗତ କରାଅ ।"

وَمِنَ الْاِبِلِ اثْنَيْنِ وَمِنَ الْبَقَرِ اثْنَيْنِ ؕ قُلْ ءٰٓالذَّكَرَيْنِ حَرَّمَ اَمِ الْاُنْثَيَيْنِ اَمَّا اشْتَمَلَتْ عَلَيْهِ اَرْحَامُ الْاُنْثَيَيْنِ ؕ اَمْ كُنْتُمْ شُهَدَآءَ اِذْ وَصّٰىكُمُ اللّٰهُ بِهٰذَا ۚ فَمَنْ اَظْلَمُ مِمَّنِ افْتَرٰى عَلَى اللّٰهِ كَذِبًا لِّيُضِلَّ النَّاسَ بِغَيْرِ عِلْمٍ ؕ اِنَّ اللّٰهَ لَا يَهْدِى الْقَوْمَ الظّٰلِمِيْنَ ﴿١٤٥﴾

୧୪୫. ଏବଂ (ସେ) ଓଟ ମଧ୍ୟରୁ ଦୁଇଟି ଏବଂ ଗୋରୁ ମଧ୍ୟରୁ ଦୁଇଟି (ସୃଷ୍ଟି କରିଅଛନ୍ତି), ତୁମେ ସେମାନଙ୍କୁ କୁହ "କ'ଣ ସେ (ଅଲ୍ଲାହ) ସେମାନଙ୍କ ମଧ୍ୟରୁ ଦୁଇଗୋଟି ଅଣ୍ଡିରା (ପଶୁ) ବା ଦୁଇଗୋଟି ମାଈ (ପଶୁ) ଅଥବା ମାଈ (ପଶୁ) ଦୁଇଟିର ଗର୍ଭରେ ଯାହା ଅଛି ତାହାକୁ ଅବୈଧ କରିଅଛନ୍ତି ?" (କୁହ) "ଯେତେବେଳେ ଅଲ୍ଲାହ ତୁମମାନଙ୍କୁ ଏ ସଂକ୍ରାନ୍ତରେ ଆଦେଶ ଦେଇଥିଲେ କ'ଣ ତୁମେମାନେ (ସେତେବେଳେ) ଉପସ୍ଥିତ ଥିଲ ? (ଯଦି ନ ଥିଲ) ତେବେ ତା'ଠାରୁ ଅଧିକ ଅତ୍ୟାଚାରୀ କିଏ ହୋଇପାରେ ଯେ ଜାଣିଶୁଣି ଅଲ୍ଲାହଙ୍କ ଉପରେ ଏଥି ସକାଶେ ମିଥ୍ୟା ଆରୋପ କରେ ଯଦ୍ଦ୍ୱାରା ଲୋକମାନଙ୍କୁ ବିନା ଜ୍ଞାନରେ ବିପଥଗାମୀ କରିଦେବ ?" ବାସ୍ତବରେ ଅଲ୍ଲାହ ଅତ୍ୟାଚାରୀମାନଙ୍କୁ ପଥ ପ୍ରଦର୍ଶିତ କରନ୍ତି ନାହିଁ ।

ରୁ:୧୮

قُلْ لَّاۤ اَجِدُ فِىْ مَاۤ اُوْحِىَ اِلَىَّ مُحَرَّمًا عَلٰى طَاعِمٍ يَّطْعَمُهٗۤ اِلَّاۤ اَنْ يَّكُوْنَ مَيْتَةً اَوْ دَمًا مَّسْفُوْحًا اَوْ لَحْمَ خِنْزِيْرٍ فَاِنَّهٗ رِجْسٌ اَوْ فِسْقًا اُهِلَّ لِغَيْرِ اللّٰهِ بِهٖ ۚ فَمَنِ اضْطُرَّ غَيْرَ بَاغٍ وَّلَا عَادٍ فَاِنَّ رَبَّكَ غَفُوْرٌ رَّحِيْمٌ ﴿١٤٦﴾

୧୪୬. ତୁମେ ସେମାନଙ୍କୁ କୁହ, "ଯାହା କିଛି ଆମ ନିକଟରେ ଅବତୀର୍ଣ୍ଣ ହୋଇଅଛି ସେଥିରେ ମୃତ ବା ପ୍ରବହମାନ ରକ୍ତ ବା ଶୂକର ମାଂସ ବ୍ୟତୀତ ଭକ୍ଷଣକାରୀଙ୍କ ପାଇଁ ଅନ୍ୟ କୌଣସି ବସ୍ତୁକୁ ଅବୈଧ କରାଯାଇଥିବାର ଆମେ ଦେଖୁ ନାହୁଁ, କାରଣ ଏହା ଅଶୁଦ୍ଧ କିମ୍ବା କଳୁଷିତ ବସ୍ତୁକୁ (ଅବୈଧ କରାଯାଇଛି) ଅର୍ଥାତ୍ ସେହି ବସ୍ତୁ ଯାହା ଉପରେ ଅଲ୍ଲାହଙ୍କର ନାମ ଭିନ୍ନ ଅନ୍ୟ ନାମ ଉଚ୍ଚାରିତ ହୋଇଛି ; କିନ୍ତୁ ଯେ ସୀମା ଲଙ୍ଘନକାରୀ ବା ବିଦ୍ରୋହୀ ନ ହୋଇ (ଏହା ଖାଇବାକୁ) ବାଧ୍ୟ[୧] ହୁଏ, ତେବେ (ମନେରଖ) ତୁମର ପାଳନକର୍ତ୍ତା ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।"

---

୧. ଅର୍ଥାତ୍ ଇସଲାମ ଧର୍ମରେ ଯାହା କିଛି ବୈଧ ସ୍ଥିର କରାଯାଇଛି ଯଦି ତାହା ଦେଶରେ ଉପଲବ୍ଧ ହୁଏ ନାହିଁ ତେବେ ଜୀବନରକ୍ଷାର୍ଥେ ଅନ୍ତତଃ ପକ୍ଷେ ଯେତିକି ଆବଶ୍ୟକ କେବଳ ସେତିକି ଖାଇବାକୁ ହେବ । ସେପରି ପରିସ୍ଥିତିରେ ସେ ଦଣ୍ଡିତ ହେବ ନାହିଁ ।

وَعَلَى الَّذِيْنَ هَادُوْا حَرَّمْنَا كُلَّ ذِيْ ظُفُرٍ ۚ وَ مِنَ الْبَقَرِ وَ الْغَنَمِ حَرَّمْنَا عَلَيْهِمْ شُحُوْمَهُمَآ اِلَّا مَا حَمَلَتْ ظُهُوْرُهُمَآ اَوِ الْحَوَايَآ اَوْ مَا اخْتَلَطَ بِعَظْمٍ ۚ ذٰلِكَ جَزَيْنٰهُمْ بِبَغْيِهِمْ ۖ وَاِنَّا لَصٰدِقُوْنَ ﴿١٤٧﴾

୧୪୭. ଏବଂ ଆମେ ଇହୁଦୀମାନଙ୍କ ପାଇଁ ପ୍ରତ୍ୟେକ ପ୍ରକାର ନଖଯୁକ୍ତ[1] (ଶିକାରୀ) ପଶୁଙ୍କୁ ଅବୈଧ କରିଥିଲୁ ଏବଂ ଆମେ ସେମାନଙ୍କ ପାଇଁ ଗୋରୁ ଓ (ଛେଳି) ମେଣ୍ଢାଙ୍କର ଯେଉଁ ଚର୍ବି ସେମାନଙ୍କ ପୃଷ୍ଠ ବା ଅନ୍ତ ଉପରେ ବା ଅସ୍ଥି ସହିତ ଲାଗି ରହିଥାଏ ତାହା ବ୍ୟତୀତ ସେମାନଙ୍କର ଅନ୍ୟ ଚର୍ବିକୁ ଅବୈଧ[2] କରିଥିଲୁ ; ଆମେ ସେମାନଙ୍କୁ ସେମାନଙ୍କର ଅବାଧ୍ୟତା ପାଇଁ ଏହି ଶାସ୍ତି ଦେଇଥିଲୁ ; ଏବଂ ଆମେ ବାସ୍ତବରେ ସତ୍ୟବାଦୀ ଅଟୁ ।

فَاِنْ كَذَّبُوْكَ فَقُلْ رَّبُّكُمْ ذُوْ رَحْمَةٍ وَّاسِعَةٍ ۚ وَلَا يُرَدُّ بَأْسُهٗ عَنِ الْقَوْمِ الْمُجْرِمِيْنَ ﴿١٤٨﴾

୧୪୮. ତତ୍ପରେ ଯଦି ସେମାନେ ତୁମଙ୍କୁ ମିଥ୍ୟାବାଦୀ କହନ୍ତି ତେବେ ତୁମେ କୁହ, "ତୁମମାନଙ୍କର ପାଳନକର୍ତ୍ତା ଅସୀମ କରୁଣାମୟ ଓ ତାହାଙ୍କର ଶାସ୍ତି ଅପରାଧୀମାନଙ୍କ ଠାରୁ ଅପସୃତ ହେବ ନାହିଁ ।"

سَيَقُوْلُ الَّذِيْنَ اَشْرَكُوْا لَوْ شَآءَ اللّٰهُ مَآ اَشْرَكْنَا وَلَآ اٰبَآؤُنَا وَلَا حَرَّمْنَا مِنْ شَيْءٍ ۚ كَذٰلِكَ كَذَّبَ الَّذِيْنَ مِنْ قَبْلِهِمْ حَتّٰى ذَاقُوْا بَأْسَنَا ۚ قُلْ هَلْ عِنْدَكُمْ مِّنْ عِلْمٍ فَتُخْرِجُوْهُ لَنَا ۚ اِنْ تَتَّبِعُوْنَ اِلَّا الظَّنَّ وَاِنْ اَنْتُمْ اِلَّا تَخْرُصُوْنَ ﴿١٤٩﴾

୧୪୯. ମୁସରିକମାନେ ନିଶ୍ଚୟ କହିବେ "ଯଦି ଅଲ୍ଲାହ ଇଚ୍ଛା କରିଥା'ନ୍ତେ ତେବେ ଆମେମାନେ ଓ ଆମମାନଙ୍କର ପିତୃ ପିତାମହମାନେ (କଦାପି) ସିର୍କ କରି ନଥାନ୍ତେ ଏବଂ ଆମେମାନେ କୌଣସି ବସ୍ତୁକୁ ଅବୈଧ କରି ନଥାନ୍ତୁ ; ଏହିପରି ଭାବରେ ସେମାନଙ୍କର ପୂର୍ବବର୍ତ୍ତୀ ଲୋକମାନେ ଆମର ଶାସ୍ତି ଆସ୍ୱାଦନ ନ କରିବା ପର୍ଯ୍ୟନ୍ତ (ଆମର ବାଣୀ ସଂକ୍ରାନ୍ତରେ) ମିଥ୍ୟା ରଚନା କରିଥିଲେ ; ତୁମେ ସେମାନଙ୍କୁ କୁହ, "କ'ଣ ତୁମମାନଙ୍କ ନିକଟରେ ଏପରି କୌଣସି ଜ୍ଞାନ ଅଛି ଯାହା ତୁମେମାନେ ଆମଙ୍କୁ ନିରୁତ୍ତର କରାଇବା ସକାଶେ ଉପସ୍ଥାପିତ କରିପାରିବ ? ତୁମେମାନେ (କେବଳ) ଅନୁମାନ ବ୍ୟତୀତ ଅନ୍ୟ କିଛି ଅନୁସରଣ କରୁ ନାହଁ ଏବଂ ତୁମେମାନେ କେବଳ ଅଟକଳ କରି କହୁଅଛ ।"

قُلْ فَلِلّٰهِ الْحُجَّةُ الْبَالِغَةُ ۚ فَلَوْ شَآءَ لَهَدٰىكُمْ اَجْمَعِيْنَ ﴿١٥٠﴾

୧୫୦. ତୁମେ କୁହ, "(ତୁମମାନଙ୍କର ବୁଦ୍ଧିହୀନ କଥାରୁ ଜଣାଯାଏ ଯେ) ପ୍ରଭାବଶାଳୀ ପ୍ରମାଣ ଅଲ୍ଲାହଙ୍କ ଠାରେ ରହିଅଛି ; ଏବଂ ଯଦି ସେ ଇଚ୍ଛା କରନ୍ତେ ତେବେ ତୁମ ସମସ୍ତଙ୍କୁ ସତ୍ପଥଗାମୀ କରାନ୍ତେ ।"

---

୧. ଅର୍ଥାତ୍ ଶିକାରୀ ପଶୁ ।

୨. ଏ ସଂକ୍ରାନ୍ତରେ ବାଇବେଲର ଲେଭ. ୩ : ୧୪–୧୭ ଓ ୭ : ୨୩ ଦ୍ରଷ୍ଟବ୍ୟ ।

୧୫୧. ତୁମେ ସେମାନଙ୍କୁ କୁହ, "ତୁମମାନଙ୍କର ସେହି ସାକ୍ଷୀମାନଙ୍କୁ ପେଶ୍ କର ଯେଉଁମାନେ ସାକ୍ଷୀ ପ୍ରଦାନ କରନ୍ତୁ ଯେ ଅଲ୍ଲାହ ଏହାକୁ (ଅର୍ଥାତ୍ ଅମୁକ ଅମୁକ ବସ୍ତୁକୁ) ଅବୈଧ କରିଛନ୍ତି"; ତା'ପରେ ଯଦି ସେମାନେ ଏଭଳି ସାକ୍ଷ୍ୟ ଦିଅନ୍ତି, ତେବେ ତୁମେ ସେମାନଙ୍କ ସହିତ (ମିଶି) ସାକ୍ଷ୍ୟ ଦିଅ ନାହିଁ ; ଏବଂ ଯେଉଁମାନେ ଆମର ନିଦର୍ଶନଗୁଡିକୁ ମିଥ୍ୟା ମନେ କରନ୍ତି ଓ ପରକାଳରେ ବିଶ୍ୱାସ କରନ୍ତି ନାହିଁ ଏବଂ ଯେଉଁମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ସହିତ ଅନ୍ୟକୁ ସମକକ୍ଷ କରନ୍ତି, ତୁମେ ସେମାନଙ୍କ (ମନ୍ଦ) ଅଭିଳାଷକୁ ଅନୁସରଣ କରନାହିଁ ।

قُلْ هَلُمَّ شُهَدَآءَكُمُ الَّذِيْنَ يَشْهَدُوْنَ اَنَّ اللّٰهَ حَرَّمَ هٰذَا ۚ فَاِنْ شَهِدُوْا فَلَا تَشْهَدْ مَعَهُمْ ۚ وَلَا تَتَّبِعْ اَهْوَآءَ الَّذِيْنَ كَذَّبُوْا بِاٰيٰتِنَا وَالَّذِيْنَ لَا يُؤْمِنُوْنَ بِالْاٰخِرَةِ وَهُمْ بِرَبِّهِمْ يَعْدِلُوْنَ ﴿١٥١﴾

ରୁ : ୧୯

୧୫୨. ତୁମେ (ସେମାନଙ୍କୁ) କୁହ, "ଆସ ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କ ସକାଶେ ଯାହା ଅବୈଧ କରିଛନ୍ତି ତାହା ଆମେ ତୁମମାନଙ୍କୁ ପାଠ କରି ଶୁଣାଇବୁ ;" (ତାହାଙ୍କ ଆଦେଶ ଅଟେ) ଯେ ତୁମେମାନେ ତାହାଙ୍କ ସହିତ କୌଣସି ବସ୍ତୁକୁ ସମକକ୍ଷ କର ନାହିଁ ଓ ପିତାମାତାଙ୍କ ପ୍ରତି ସଦ୍‌ବ୍ୟବହାର କର ଏବଂ ଦରିଦ୍ର ହୋଇଯିବା ଭୟରେ ନିଜର ସନ୍ତାନମାନଙ୍କୁ ହତ୍ୟାକର ନାହିଁ, ଆମେ ତୁମମାନଙ୍କୁ ତଥା ସେମାନଙ୍କୁ ମଧ୍ୟ ଜୀବିକା ପ୍ରଦାନ କରୁ ଏବଂ କୌଣସି ପ୍ରକାଶ୍ୟ ବା ଗୁପ୍ତ କୁକାର୍ଯ୍ୟର ନିକଟବର୍ତ୍ତୀ ହୁଅ ନାହିଁ; ଏବଂ ଅଲ୍ଲାହ ଯେଉଁ ଜୀବହତ୍ୟାକୁ ନିଷିଦ୍ଧ କରିଛନ୍ତି (ଆଇନ କିମ୍ବା ସରିୟତର) ଅନୁମତି ବିନା ତାହାକୁ ହତ୍ୟା କର ନାହିଁ; ଅଲ୍ଲାହ ଏହି ବିଷୟରେ ତୁମମାନଙ୍କୁ ଚେତାବନୀ-ପୂର୍ବକ ଆଦେଶ ଦେଇଛନ୍ତି ଯେପରି ତୁମେମାନେ (କୁକାର୍ଯ୍ୟରୁ) ନିବୃତ୍ତ ହେବ ।

قُلْ تَعَالَوْا اَتْلُ مَا حَرَّمَ رَبُّكُمْ عَلَيْكُمْ اَلَّا تُشْرِكُوْا بِهٖ شَيْـًٔا وَّبِالْوَالِدَيْنِ اِحْسَانًا ۚ وَلَا تَقْتُلُوْٓا اَوْلَادَكُمْ مِّنْ اِمْلَاقٍ ۭ نَحْنُ نَرْزُقُكُمْ وَاِيَّاهُمْ ۚ وَلَا تَقْرَبُوا الْفَوَاحِشَ مَا ظَهَرَ مِنْهَا وَمَا بَطَنَ ۚ وَلَا تَقْتُلُوا النَّفْسَ الَّتِيْ حَرَّمَ اللّٰهُ اِلَّا بِالْحَقِّ ۭ ذٰلِكُمْ وَصّٰىكُمْ بِهٖ لَعَلَّكُمْ تَعْقِلُوْنَ ﴿١٥٢﴾

୧୫୩. "ଏବଂ (ଏହି ଆଦେଶ ମଧ୍ୟ ଦେଉଛନ୍ତି ଯେ) ଅନାଥମାନେ ପ୍ରାପ୍ତବୟସ୍କ ନ ହେବା ପର୍ଯ୍ୟନ୍ତ ତୁମେମାନେ ହିତକର ଉଦ୍ଦେଶ୍ୟ ବ୍ୟତୀତ ସେମାନଙ୍କ ସମ୍ପତ୍ତିର ନିକଟବର୍ତ୍ତୀ ହୁଅ ନାହିଁ ; ଏବଂ ନ୍ୟାୟସଙ୍ଗତ ଭାବରେ ମାପ ଓ ଓଜନ ସମ୍ପୂର୍ଣ୍ଣ କର ; ଆମେ କୌଣସି ବ୍ୟକ୍ତିଙ୍କୁ ତାହାର ଶକ୍ତି ବହିର୍ଭୂତ ଭାର ପ୍ରଦାନ କରୁନାହୁଁ; ଏବଂ ଯେତେବେଳେ ତୁମେମାନେ କିଛି କୁହ, ତେବେ ସେ ବ୍ୟକ୍ତି ନିକଟ ସମ୍ପର୍କୀୟ ହୋଇଥିଲେ ମଧ୍ୟ ନ୍ୟାୟସଙ୍ଗତ ଭାବରେ କୁହ ; ଏବଂ ଅଲ୍ଲାହଙ୍କ ଅଙ୍ଗୀକାରକୁ ପରିପୂର୍ଣ୍ଣ କର, ଏ ସଂକ୍ରାନ୍ତରେ ସେ ତୁମମାନଙ୍କୁ ଚେତାବନୀ-ପୂର୍ବକ ନିର୍ଦ୍ଦେଶ କରୁଛନ୍ତି ଯେପରି ତୁମେମାନେ ଶିକ୍ଷାଲାଭ କରିପାରିବ ।"

وَلَا تَقْرَبُوْا مَالَ الْيَتِيْمِ اِلَّا بِالَّتِيْ هِيَ اَحْسَنُ حَتّٰى يَبْلُغَ اَشُدَّهٗ ۚ وَاَوْفُوا الْكَيْلَ وَالْمِيْزَانَ بِالْقِسْطِ ۚ لَا نُكَلِّفُ نَفْسًا اِلَّا وُسْعَهَا ۚ وَاِذَا قُلْتُمْ فَاعْدِلُوْا وَلَوْ كَانَ ذَا قُرْبٰى ۚ وَبِعَهْدِ اللّٰهِ اَوْفُوْا ۭ ذٰلِكُمْ وَصّٰىكُمْ بِهٖ لَعَلَّكُمْ تَذَكَّرُوْنَ ﴿١٥٣﴾

୧୫୪. ଏବଂ ବାସ୍ତବିକ ଏହାହିଁ ଆମ୍ଭର ସରଳପଥ : ସୁତରାଂ ଏହାକୁ ଅନୁସରଣ କର ଏବଂ ବିଭିନ୍ନ ପଥକୁ ଅନୁସରଣ କର ନାହିଁ ; ନଚେତ୍ ସେମାନେ ତୁମମାନଙ୍କୁ ତାହାଙ୍କ ପଥରୁ ବିଚ୍ୟୁତ କରିବେ ; ସେ ତୁମମାନଙ୍କୁ (ଏ ବିଷୟରେ) ଏଥି ସକାଶେ ଆକଟ କରୁଛନ୍ତି ଯେପରିକି ତୁମେମାନେ ଧର୍ମଭୀରୁ ହେବ ।

وَاَنَّ هٰذَا صِرَاطِيْ مُسْتَقِيْمًا فَاتَّبِعُوْهُ ۚ وَلَا تَتَّبِعُوا السُّبُلَ فَتَفَرَّقَ بِكُمْ عَنْ سَبِيْلِهٖ ۗ ذٰلِكُمْ وَصّٰىكُمْ بِهٖ لَعَلَّكُمْ تَتَّقُوْنَ ﴿١٥٣﴾

୧୫୫. ଯେ ପୁଣ୍ୟକାର୍ଯ୍ୟ କରେ ତାହା ପ୍ରତି ଆମ୍ଭର କୃପାକୁ ସମ୍ପୂର୍ଣ୍ଣ କରିବା ପାଇଁ ଓ ପ୍ରତ୍ୟେକ ବିଷୟକୁ ବିସ୍ତୃତ ଭାବରେ ବର୍ଣ୍ଣନା କରିବା ପାଇଁ ତଥା ସତ୍‌ପଥ ଓ କରୁଣା ପ୍ରଦାନ କରିବା ପାଇଁ ଆମ୍ଭେ ମୁସାଙ୍କୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଥିଲୁ ଯେପରିକି ସେମାନେ ନିଜ ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ୍ ସଂକ୍ରାନ୍ତରେ ବିଶ୍ୱାସ ସ୍ଥାପନ କରିବେ ।

ثُمَّ اٰتَيْنَا مُوْسَى الْكِتٰبَ تَمَامًا عَلَى الَّذِيْٓ اَحْسَنَ وَتَفْصِيْلًا لِّكُلِّ شَيْءٍ وَّهُدًى وَّرَحْمَةً لَّعَلَّهُمْ بِلِقَآءِ رَبِّهِمْ يُؤْمِنُوْنَ ﴿١٥٤﴾ ع ١٩

ରୁ : ୨୦

୧୫୬. ଏବଂ ଆଶୀର୍ବାଦରେ ପରିପୂର୍ଣ୍ଣ ଏହି (ପବିତ୍ର କୋରାନ) ଗ୍ରନ୍ଥକୁ ଆମ୍ଭେ ଅବତୀର୍ଣ୍ଣ କରିଅଛୁ ; ସୁତରାଂ ଏହାକୁ ଅନୁସରଣ କର ; ଏବଂ ଧର୍ମଭୀରୁ ହୁଅ ଯେପରିକି ତୁମମାନଙ୍କ ପ୍ରତି କରୁଣା ପ୍ରଦର୍ଶିତ ହେବ ।

وَهٰذَا كِتٰبٌ اَنْزَلْنٰهُ مُبٰرَكٌ فَاتَّبِعُوْهُ وَاتَّقُوْا لَعَلَّكُمْ تُرْحَمُوْنَ ﴿١٥٥﴾

୧୫୭. କାଳେ ତୁମେମାନେ କହିବ [୧] ଯେ ଆମମାନଙ୍କ ପୂର୍ବବର୍ତ୍ତୀ କେବଳ ଦୁଇଗୋଟି ସମ୍ପ୍ରଦାୟଙ୍କ ପାଇଁ (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ ହୋଇଥିଲା, ଏବଂ ସେମାନେ କ'ଣ ପଢୁଥିଲେ ଆମେମାନେ ଜାଣି ନ ଥିଲୁ ।

اَنْ تَقُوْلُوْٓا اِنَّمَآ اُنْزِلَ الْكِتٰبُ عَلٰى طَآئِفَتَيْنِ مِنْ قَبْلِنَا ۖ وَاِنْ كُنَّا عَنْ دِرَاسَتِهِمْ لَغٰفِلِيْنَ ﴿١٥٦﴾

୧୫୮. ଅଥବା କାଳେ ତୁମେମାନେ ଏପରି କହିବ ଯେ ଯଦି ଆମମାନଙ୍କ ପ୍ରତି (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ ହୋଇଥା'ନ୍ତା ତେବେ ଆମେମାନେ ସେମାନଙ୍କ ଅପେକ୍ଷା ନିଶ୍ଚୟ ଅଧିକ ସତ୍‌ପଥ ପ୍ରାପ୍ତ ହୋଇ ଥା'ନ୍ତୁ; ତେଣୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ତୁମମାନଙ୍କ ନିକଟକୁ ସୁସ୍ପଷ୍ଟ ନିଦର୍ଶନ, ସତ୍‌ପଥ ତଥା କରୁଣା ଆସିଅଛି ; ସୁତରାଂ (ମନେରଖ) ଯେ ଅଲ୍ଲାହଙ୍କର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରେ ଓ ତାହାକୁ ବିଶ୍ୱାସ କରିବାରୁ ନିବୃତ୍ତ ହୁଏ ତେବେ ତାହା ଠାରୁ କିଏ ଅଧିକ ଅତ୍ୟାଚାରୀ ? ଯେଉଁମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ବିଶ୍ୱାସ କରିବାରୁ ନିବୃତ୍ତ ହୁଅନ୍ତି, ଆମ୍ଭେ ସେମାନଙ୍କୁ ସେମାନଙ୍କର ଏହି ନିବୃତ୍ତି ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ପ୍ରଦାନ କରିବୁ ।

اَوْ تَقُوْلُوْا لَوْ اَنَّآ اُنْزِلَ عَلَيْنَا الْكِتٰبُ لَكُنَّآ اَهْدٰى مِنْهُمْ ۚ فَقَدْ جَآءَكُمْ بَيِّنَةٌ مِّنْ رَّبِّكُمْ وَهُدًى وَّرَحْمَةٌ ۚ فَمَنْ اَظْلَمُ مِمَّنْ كَذَّبَ بِاٰيٰتِ اللّٰهِ وَصَدَفَ عَنْهَا ۗ سَنَجْزِي الَّذِيْنَ يَصْدِفُوْنَ عَنْ اٰيٰتِنَا سُوْٓءَ الْعَذَابِ بِمَا كَانُوْا يَصْدِفُوْنَ ﴿١٥٧﴾

୧. ଅର୍ଥାତ୍ ଇହୁଦୀ ଓ ଖ୍ରୀଷ୍ଟିୟାନଙ୍କ ସମ୍ବନ୍ଧରେ ମୁସରିକମାନେ ଅଜ୍ଞତାବଶତଃ ଏହିପରି ଧାରଣା କରୁଥିଲେ, ଅଥଚ ଯୀଶୁ ନିଜେ କହୁଛନ୍ତି ଯେ ସେ ତୌରାତ ବର୍ଣ୍ଣିତ ଶିକ୍ଷାକୁ ପ୍ରତିଷ୍ଠା କରିବା ପାଇଁ ଆସିଥିଲେ ଓ ନିଜେ କୌଣସି ନୂତନ ଧର୍ମବିଧାନ ଆଣି ନ ଥିଲେ । (ମାଥିଉ ୫ : ୧୭ ଦ୍ରଷ୍ଟବ୍ୟ) । ତେଣୁ ଇଞ୍ଜିଲ ଗ୍ରନ୍ଥ ଧର୍ମବିଧାନ ସମ୍ବଳିତ ଗ୍ରନ୍ଥନୁହେଁ ।

୧୫୯. ସେମାନେ କେବଳ ଏହି ବିଷୟର ଅପେକ୍ଷା କରୁଛନ୍ତି ଯେ ସେମାନଙ୍କ ନିକଟକୁ ଦେବଦୂତମାନେ ଆସନ୍ତୁ, ଅଥବା ତୁମର ପାଳନକର୍ତ୍ତା ଆସନ୍ତୁ, ଅଥବା ତୁମର ପାଳନକର୍ତ୍ତାଙ୍କର କେତେକ ନିଦର୍ଶନ ଆସୁ ; ଯେଉଁଦିନ ତୁମ ପାଳନକର୍ତ୍ତାଙ୍କର କେତେକ ନିଦର୍ଶନ ପ୍ରକାଶିତ ହେବ ସେଦିନ ଯେ ପୂର୍ବରୁ ବିଶ୍ୱାସ ସ୍ଥାପନ କରି ନଥିବ ବା ନିଜ ବିଶ୍ୱାସ ଅନୁଯାୟୀ ପୁଣ୍ୟ ଅର୍ଜନ କରି ନ ଥିବ ତା'ର ବିଶ୍ୱାସ ଆଣିବା ଲାଭଦାୟକ ହେବ ନାହିଁ; ତୁମେ କୁହ, ''ତୁମେମାନେ ଅପେକ୍ଷା କର, ଆମେ ମଧ୍ୟ ଅପେକ୍ଷା କରୁଅଛୁ ।''

هَلْ يَنْظُرُوْنَ اِلَّاۤ اَنْ تَاْتِيَهُمُ الْمَلٰٓئِكَةُ اَوْ يَاْتِيَ رَبُّكَ اَوْ يَاْتِيَ بَعْضُ اٰيٰتِ رَبِّكَ ؕ يَوْمَ يَاْتِيْ بَعْضُ اٰيٰتِ رَبِّكَ لَا يَنْفَعُ نَفْسًا اِيْمَانُهَا لَمْ تَكُنْ اٰمَنَتْ مِنْ قَبْلُ اَوْ كَسَبَتْ فِيْۤ اِيْمَانِهَا خَيْرًا ؕ قُلِ انْتَظِرُوْۤا اِنَّا مُنْتَظِرُوْنَ ﴿۱۵۹﴾

୧୬୦. ଯେଉଁ ଲୋକମାନେ ନିଜ ଧର୍ମକୁ ଖଣ୍ଡ ବିଖଣ୍ଡ କରିଛନ୍ତି ଏବଂ ବିଭିନ୍ନ ଦଳରେ ବିଭକ୍ତ ହୋଇଛନ୍ତି ସେମାନଙ୍କ ସହିତ ତୁମର କୌଣସି ସମ୍ପର୍କ ନାହିଁ ; ସେମାନଙ୍କର ବ୍ୟାପାର କେବଳ ଅଲ୍ଲାହଙ୍କ ହସ୍ତରେ ନ୍ୟସ୍ତ ଅଛି ; ପୁଣି ସେମାନେ ଯାହା କିଛି କରୁଥିଲେ, ତାହା ସେ ସେମାନଙ୍କୁ ଜଣାଇ ଦେବେ ।

اِنَّ الَّذِيْنَ فَرَّقُوْا دِيْنَهُمْ وَكَانُوْا شِيَعًا لَّسْتَ مِنْهُمْ فِيْ شَيْءٍ ؕ اِنَّمَاۤ اَمْرُهُمْ اِلَى اللّٰهِ ثُمَّ يُنَبِّئُهُمْ بِمَا كَانُوْا يَفْعَلُوْنَ ﴿۱۶۰﴾

୧୬୧. ଯେଉଁମାନେ ପୁଣ୍ୟ କରିଛନ୍ତି, ସେମାନେ ଏହାର ଦଶଗୁଣ ପାଇଁ ହକ୍‌ଦାର ହେବେ ଏବଂ ଯେଉଁମାନେ ପାପ କରିଛନ୍ତି ସେମାନଙ୍କୁ କେବଳ ସେତିକି ଶାସ୍ତି ଦିଆଯିବ ଏବଂ ସେମାନଙ୍କ ପ୍ରତି ଅନ୍ୟାୟ କରାଯିବ ନାହିଁ ।

مَنْ جَآءَ بِالْحَسَنَةِ فَلَهٗ عَشْرُ اَمْثَالِهَا ۚ وَمَنْ جَآءَ بِالسَّيِّئَةِ فَلَا يُجْزٰۤى اِلَّا مِثْلَهَا وَهُمْ لَا يُظْلَمُوْنَ ﴿۱۶۱﴾

୧୬୨. ତୁମେ (ସେମାନଙ୍କୁ) କୁହ, ''ଆମଙ୍କୁ ଆମର ପାଳନକର୍ତ୍ତା ବାସ୍ତବରେ ଏପରି ସରଳ ପଥ ପ୍ରଦର୍ଶନ କରିଛନ୍ତି ଯାହା ପ୍ରକୃତ ଧର୍ମ ଅର୍ଥାତ୍‌ ସତ୍ୟ ଉପରେ ପ୍ରତିଷ୍ଠିତ ଇବ୍ରାହିମ୍‌ଙ୍କ ଧର୍ମ ; ଏବଂ ସେ ମୁସରିକମାନଙ୍କ ମଧ୍ୟରେ ନ ଥିଲେ ।''

قُلْ اِنَّنِيْ هَدٰىنِيْ رَبِّيْۤ اِلٰى صِرَاطٍ مُّسْتَقِيْمٍ ۚ دِيْنًا قِيَمًا مِّلَّةَ اِبْرٰهِيْمَ حَنِيْفًا ۚ وَمَا كَانَ مِنَ الْمُشْرِكِيْنَ ﴿۱۶۲﴾

୧୬୩. ତୁମେ (ସେମାନଙ୍କୁ) କୁହ, ''ଆମର ନମାଜ ଏବଂ ଆମର ତ୍ୟାଗ ତଥା ଆମର ଜୀବନ ଓ ଆମର ମୃତ୍ୟୁ ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହଙ୍କ ପାଇଁ ଉଦ୍ଦିଷ୍ଟ ଅଟେ ।''

قُلْ اِنَّ صَلَاتِيْ وَنُسُكِيْ وَمَحْيَايَ وَمَمَاتِيْ لِلّٰهِ رَبِّ الْعٰلَمِيْنَ ۙ ﴿۱۶۳﴾

୧୬୪. ''(ଏବଂ) ତାହାଙ୍କର କୌଣସି ସମକକ୍ଷ ନାହାନ୍ତି ; ଏବଂ ଆମଙ୍କୁ ଏ ବିଷୟରେ ଆଦେଶ ଦିଆହୋଇଛି ଏବଂ ଆମେ ସର୍ବ ପ୍ରଥମ ଆଜ୍ଞାବହ ଅଟୁ ।''

لَا شَرِيْكَ لَهٗ ۚ وَبِذٰلِكَ اُمِرْتُ وَاَنَا اَوَّلُ الْمُسْلِمِيْنَ ﴿۱۶۴﴾

قُلْ أَغَيْرَ اللَّهِ أَبْغِي رَبًّا وَهُوَ رَبُّ كُلِّ شَيْءٍ ۚ وَلَا تَكْسِبُ كُلُّ نَفْسٍ إِلَّا عَلَيْهَا ۚ وَلَا تَزِرُ وَازِرَةٌ وِزْرَ أُخْرَىٰ ۚ ثُمَّ إِلَىٰ رَبِّكُمْ مَرْجِعُكُمْ فَيُنَبِّئُكُمْ بِمَا كُنْتُمْ فِيهِ تَخْتَلِفُونَ ﴿١٦٥﴾

୧୬୫. ତୁମେ (ସେମାନଙ୍କୁ) କୁହ, "କ'ଣ ଆମେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟକୁ ପାଳନକର୍ତ୍ତା ରୂପେ ତଲବ କରିବୁ ; ଅଥଚ ସେ ସମସ୍ତଙ୍କର ପାଳନକର୍ତ୍ତା ?" ଏବଂ ପ୍ରତ୍ୟେକ ବ୍ୟକ୍ତି ଯାହାକିଛି ଉପାର୍ଜ୍ଜନ କରେ ସେ ତାହାର ପରିଣାମ ଭୋଗ କରେ ; ଏବଂ ଜଣେ ଭାରବାହକ[1] ଅନ୍ୟର ଭାର ବହନ କରିପାରିବ ନାହିଁ (ଅର୍ଥାତ୍ ଜଣେ ଅନ୍ୟ ପାଇଁ ଉତ୍ତରଦାୟୀ ହେବ ନାହିଁ) ; ଏହା ପରେ ତୁମମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରିଯିବାକୁ ହେବ ; ଏହାପରେ ତୁମେମାନେ ଯେଉଁ ବିଷୟରେ ଭିନ୍ନ ମତ ପୋଷଣ କରୁଥିଲ, ସେ ତୁମମାନଙ୍କୁ ତାହା ଜଣାଇ ଦେବେ ।

وَهُوَ الَّذِي جَعَلَكُمْ خَلَائِفَ الْأَرْضِ وَرَفَعَ بَعْضَكُمْ فَوْقَ بَعْضٍ دَرَجَاتٍ لِيَبْلُوَكُمْ فِي مَا آتَاكُمْ ۗ إِنَّ رَبَّكَ سَرِيعُ الْعِقَابِ وَإِنَّهُ لَغَفُورٌ رَحِيمٌ ﴿١٦٦﴾

୧୬୬. ଏବଂ ସେ ହିଁ ତୁମମାନଙ୍କୁ ପୃଥିବୀରେ (ପୂର୍ବଜମାନଙ୍କର) ଉତ୍ତରାଧିକାରୀ କରିଛନ୍ତି, ଏବଂ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଉପରେ ପଦମର୍ଯ୍ୟାଦାରେ ଏଥିଯୋଗୁଁ ଉନ୍ନୀତ କରିଛନ୍ତି ଯେ ସେ ତୁମମାନଙ୍କୁ ଯାହା ପ୍ରଦାନ କରିଛନ୍ତି ତାହାଦ୍ୱାରା ତୁମମାନଙ୍କୁ ପରୀକ୍ଷା କରିବେ ; ବାସ୍ତବରେ ତୁମର ପାଳନକର୍ତ୍ତାଙ୍କ ଶାସ୍ତି ଶୀଘ୍ର ଉପସ୍ଥିତ ହୁଏ ; ଏବଂ ବାସ୍ତବରେ ସେ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

---

୧. ଏହି ଆୟତ ପ୍ରାୟଶ୍ଚିତ୍ତ ମତବାଦକୁ ଦୃଢ଼ତା ସହକାରେ ଖଣ୍ଡନ କରୁଅଛି । ପ୍ରତ୍ୟେକେ ନିଜର ଦାୟିତ୍ୱ ବହନ କରିବା ସଙ୍ଗେ ସଙ୍ଗେ ସେଥିପାଇଁ ଯେ ଉତ୍ତରଦାୟୀ ହେବେ, ଏ ବିଷୟରେ ଗୁରୁତ୍ୱ ସହକାରେ ଦୃଷ୍ଟି ଆକର୍ଷଣ କରାଯାଇଛି । ପାପୀମାନଙ୍କ ସକାଶେ ଯୀଶୁଙ୍କର ଆତ୍ମୋହର୍ଗ ସେମାନଙ୍କର କଲ୍ୟାଣ ସାଧନ କରିପାରିବ ନାହିଁ । ଖ୍ରୀଷ୍ଟିୟାନମାନେ ଏହି ଆୟତକୁ ଭିତ୍ତିକରି ପ୍ରମାଣ କରିବାକୁ ଚେଷ୍ଟାକରି ଥାଆନ୍ତି ଯେ ପାପୀର ପ୍ରାୟଶ୍ଚିତ୍ତ ହେବ ନାହିଁ ଏବଂ ଇସଲାମୀୟ ଶିକ୍ଷା ଅନୁସାରେ ଯୀଶୁ ହିଁ ନିଷ୍ପାପ ଥିଲେ । କିନ୍ତୁ ଏଠାରେ ଭାରବାହକର ଅର୍ଥ ପାପୀ ନୁହେଁ ବରଂ ସେ ଅଲ୍ଲାହଙ୍କ ନିକଟରେ ଉତ୍ତରଦାୟୀ ହେବ । ଯୀଶୁ ଅଲ୍ଲାହଙ୍କ ନିକଟରେ ଉତ୍ତରଦାୟୀ ହେବା ଓ ନିଜେ ନିଷ୍ପାପ ନଥିବା ସମ୍ବନ୍ଧରେ ଉଲ୍ଲେଖ ରହିଅଛି । (ଲିଉକ ୧୮ : ୧୯, ମାଥିଉ ୧୯ : ୧୭ ଓ ମାର୍କ ୧୦ : ୧୮ ଦ୍ରଷ୍ଟବ୍ୟ) । ଅତଏବ ସେ ନିଜେ ପ୍ରାୟଶ୍ଚିତ୍ତକର୍ତ୍ତା ହୋଇ ପାରିବେ ନାହିଁ ।

سُوْرَةُ الْاَعْرَافِ مَكِّيَّةٌ (٧)

# ଅଲ-ଆରାଫ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ : ଏଥିରେ ବିସ୍‌ମିଲ୍ଲାହ ସମେତ ୨୦୭ଟି ଆୟତ ଓ ୩୪ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଛି) ।

الٓمّٓصٓ ②

୨. ଅଲିଫ୍-ଲାମ୍-ମିମ୍-ସ୍ୱାଦ୍[1] ।

كِتٰبٌ اُنْزِلَ اِلَيْكَ فَلَا يَكُنْ فِيْ صَدْرِكَ حَرَجٌ مِّنْهُ لِتُنْذِرَ بِهٖ وَ ذِكْرٰى لِلْمُؤْمِنِيْنَ ③

୩. (ଏହି ପବିତ୍ର କୋରାନ) ଏକ ମହାନ୍ ଧର୍ମଗ୍ରନ୍ଥ (ଯାହା) ତୁମ ପ୍ରତି ଅବତୀର୍ଣ୍ଣ ହୋଇଅଛି; (ତୁମେ ନିଜେ ଏହାକୁ ପ୍ରଣୟନ କରିନାହଁ) ସୁତରାଂ ତୁମ ହୃଦୟରେ ଏହା ଦ୍ୱାରା କୌଣସି ସଂକୀର୍ଣ୍ଣତା ସୃଷ୍ଟି ନ ହେଉ; (ଏହାକୁ ଅବତୀର୍ଣ୍ଣ କରିବା ଉଦ୍ଦେଶ୍ୟ ହେଉଛି ଯେ) ତୁମେ ଏହାଦ୍ୱାରା (ଲୋକମାନଙ୍କୁ ଆସନ୍ନ ଶାସ୍ତି ସମ୍ବନ୍ଧରେ) ସତର୍କ କରାଇ ପାରିବ ଏବଂ ଏହା ବିଶ୍ୱାସକାରୀମାନଙ୍କ ପାଇଁ ଏକ ଅନୁସ୍ମାରକ ।

اِتَّبِعُوْا مَاۤ اُنْزِلَ اِلَيْكُمْ مِّنْ رَّبِّكُمْ وَلَا تَتَّبِعُوْا مِنْ دُوْنِهٖۤ اَوْلِيَآءَ ۗ قَلِيْلًا مَّا تَذَكَّرُوْنَ ④

୪. ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ତୁମମାନଙ୍କ ନିକଟରେ ଯାହା (ଅର୍ଥାତ୍ ଯେଉଁ ବାଣୀ) ଅବତୀର୍ଣ୍ଣ ହୋଇଅଛି, ତାହାକୁ ଅନୁସରଣ କର ଏବଂ ତାହାଙ୍କ ଛଡ଼ା ଅନ୍ୟ କାର୍ଯ୍ୟ ସମ୍ପାଦନକାରୀମାନଙ୍କୁ ଅନୁସରଣ କର ନାହିଁ; କିନ୍ତୁ ତୁମେମାନେ ଆଦୌ ଉପଦେଶ ଗ୍ରହଣ କରୁ ନାହିଁ ।

وَكَمْ مِّنْ قَرْيَةٍ اَهْلَكْنٰهَا فَجَآءَهَا بَاْسُنَا بَيَاتًا اَوْ هُمْ قَآئِلُوْنَ ⑤

୫. ଏବଂ ଏପରି ଅନେକ ଜନବସତି ଥିଲା ଯାହାକୁ ଆମେ ଧ୍ୱଂସ କରିଅଛୁ ; ସେମାନେ ରାତ୍ରିରେ ନିଦ୍ରିତ ଥିବା ବେଳେ ବା ମଧ୍ୟାହ୍ନରେ ବିଶ୍ରାମ କରୁଥିବା ବେଳେ ସେମାନଙ୍କ ଉପରେ ଆମର ଶାସ୍ତି ଉପସ୍ଥିତ ହେଲା ।

---

୧. ପ୍ରଥମ ତିନିଗୋଟି ଅକ୍ଷର ପାଇଁ ୨ : ୨ର ଟୀକା ଦ୍ରଷ୍ଟବ୍ୟ । ଚତୁର୍ଥ ଅକ୍ଷର 'ସ୍ୱାଦ୍' ସାଦିକ (ଅର୍ଥାତ୍ ସତ୍ୟବାଦୀ) ଶବ୍ଦ ବଦଳେ ବ୍ୟବହୃତ ହୋଇଛି । ତେଣୁ ଏଠାରେ 'ସ୍ୱାଦ' ଅର୍ଥ ଆମେ ସତ୍ୟବାଦୀ । ଆମେ ଯାହାକିଛି ଶିକ୍ଷା ଦେଇଅଛୁ ତାହା ସତ୍ୟ ଉପରେ ଆଧାରିତ । ଇବ୍ନ ଅବ୍ବାସଙ୍କ ମତରେ 'ସ୍ୱାଦ୍'ର ଅର୍ଥ ମୁଁ ବ୍ୟାଖ୍ୟା କରୁଅଛି । ଏହି ଅଧ୍ୟାୟର ବିଷୟବସ୍ତୁକୁ ଅନୁଧ୍ୟାନ କଲେ ଏହାର ଯଥାର୍ଥତା ପରିଲକ୍ଷିତ ହେବ କାରଣ ଏଥିରେ ଦିବ୍ୟଜ୍ଞାନ ଚର୍ଚ୍ଚା କରାଯାଉଥିବା ବେଳେ ତାହା ବିଶଦ ଭାବରେ ବ୍ୟାଖ୍ୟା କରାଯାଇଛି ।

୬. ସୁତରାଂ ଯେତେବେଳେ ଆମ୍ଭର ଶାସ୍ତି ସେମାନଙ୍କ ପାଖରେ ଉପସ୍ଥିତ ହେଲା (ସେତେବେଳେ) 'ଆମେମାନେ ଅତ୍ୟାଚାରୀ ଥିଲୁ' କହିବା ବ୍ୟତୀତ ସେମାନେ ଅନ୍ୟ କିଛି କହୁ ନ ଥିଲେ ।

فَمَا كَانَ دَعْوٰىهُمْ اِذْ جَآءَهُمْ بَاْسُنَآ اِلَّآ اَنْ قَالُوْٓا اِنَّا كُنَّا ظٰلِمِيْنَ ۝٦

୭. ଏବଂ ଯେଉଁମାନଙ୍କ ପ୍ରତି ରସୁଲ ପ୍ରେରିତ ହୋଇଥିଲେ ଆମେ ସେମାନଙ୍କୁ ନିଶ୍ଚୟ ପ୍ରଶ୍ନ କରିବୁ ଓ ରସୁଲମାନଙ୍କୁ ମଧ୍ୟ ନିଶ୍ଚୟ ପ୍ରଶ୍ନ କରିବୁ ।

فَلَنَسْـَٔلَنَّ الَّذِيْنَ اُرْسِلَ اِلَيْهِمْ وَلَنَسْـَٔلَنَّ الْمُرْسَلِيْنَ ۝٧

୮. ତା'ପରେ ଆମେ ନିଶ୍ଚୟ ସେମାନଙ୍କ ନିକଟରେ ନିଜର ଜ୍ଞାନମୁତାବକ ପ୍ରକୃତ ଘଟଣା ବର୍ଣ୍ଣନା କରିବୁ, କାରଣ ଆମେ କେବେ ହେଁ ସେମାନଙ୍କ ନିକଟରେ ଅନୁପସ୍ଥିତ ନ ଥିଲୁ (ସର୍ବଦା ସେମାନଙ୍କ ଅବସ୍ଥା ଲକ୍ଷ୍ୟ କରୁଥିଲୁ )।

فَلَنَقُصَّنَّ عَلَيْهِمْ بِعِلْمٍ وَّمَا كُنَّا غَآئِبِيْنَ ۝٨

୯. ଏବଂ ସେ (କୟାମତ) ଦିନ କର୍ମ ସମୂହକୁ ଓଜନ କରାଯିବା ଏକ ପ୍ରମାଣିତ ସତ୍ୟ ଅଟେ ; ସୁତରାଂ ଯେଉଁମାନଙ୍କ (କର୍ମର) ଓଜନ ଅଧିକ ହେବ, ସେ ଲୋକମାନେ ସଫଳ ହେବେ ।

وَالْوَزْنُ يَوْمَئِذِ ࣙالْحَقُّ ۚ فَمَنْ ثَقُلَتْ مَوَازِيْنُهٗ فَاُولٰٓئِكَ هُمُ الْمُفْلِحُوْنَ ۝٩

୧୦. ଏବଂ ଯେଉଁମାନଙ୍କ (କର୍ମର) ଓଜନ ହାଲୁକା ହେବ, ସେ ଲୋକମାନେ ନିଜେ ନିଜକୁ କ୍ଷତିଗ୍ରସ୍ତ କରାଇବେ, କାରଣ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକ ପ୍ରତି ଅନ୍ୟାୟ କରିଥିଲେ ।

وَمَنْ خَفَّتْ مَوَازِيْنُهٗ فَاُولٰٓئِكَ الَّذِيْنَ خَسِرُوْٓا اَنْفُسَهُمْ بِمَا كَانُوْا بِاٰيٰتِنَا يَظْلِمُوْنَ ۝١٠

୧୧. ଏବଂ ନିଶ୍ଚୟ ଆମେ ତୁମମାନଙ୍କୁ ପୃଥିବୀରେ ଶକ୍ତି ପ୍ରଦାନ କରିଥିଲୁ ଏବଂ ସେଥିରେ ତୁମମାନଙ୍କ ଜୀବିକା ନିର୍ବାହ ପାଇଁ (ବିଭିନ୍ନ) ସାମଗ୍ରୀର ବ୍ୟବସ୍ଥା କରିଥିଲୁ, କିନ୍ତୁ ; ତୁମେମାନେ ଆଦୌ କୃତଜ୍ଞ ହେଉ ନାହଁ ।

وَلَقَدْ مَكَّنّٰكُمْ فِى الْاَرْضِ وَجَعَلْنَا لَكُمْ فِيْهَا مَعَايِشَ ۗ قَلِيْلًا مَّا تَشْكُرُوْنَ ۝١١

ରୁ : ୨

୧୨. ଏବଂ ଆମେ ତୁମମାନଙ୍କୁ ସୃଷ୍ଟି କରିଥିଲୁ ; ଏହାପରେ ଆମେ ତୁମମାନଙ୍କୁ (ସମୁଚିତ) ଆକୃତି ପ୍ରଦାନ କରିଲୁ, ତତ୍ପରେ ଦେବଦୂତମାନଙ୍କୁ କହିଥିଲୁ, "ଆଦମଙ୍କର ଆଜ୍ଞାବହ ହୁଅ", ଏବଂ ଇବଲିସ ବ୍ୟତୀତ ଅନ୍ୟ ଦେବଦୂତମାନେ ଆଜ୍ଞାବହ ହେଲେ ; ସେ (ଇବଲିସ) ଆଜ୍ଞାବହମାନଙ୍କ ମଧ୍ୟରେ ନ ଥିଲା ।

وَلَقَدْ خَلَقْنٰكُمْ ثُمَّ صَوَّرْنٰكُمْ ثُمَّ قُلْنَا لِلْمَلٰٓئِكَةِ اسْجُدُوْا لِاٰدَمَ ۖ فَسَجَدُوْٓا اِلَّآ اِبْلِيْسَ ۗ لَمْ يَكُنْ مِّنَ السّٰجِدِيْنَ ۝١٢

୧୩. (ଏହାପରେ ଅଲ୍ଲାହ୍) କହିଲେ, "ଆମର ନିର୍ଦ୍ଦେଶ[୧] ସତ୍ତ୍ୱେ ସିଜଦା କରିବାପାଇଁ କିଏ ତୁମକୁ ବାରଣ କଲା ?"ସେ କହିଲା, "ମୁଁ ତାହାଙ୍କ (ଅର୍ଥାତ୍ ଆଦମ୍) ଠାରୁ ଉତ୍କୃଷ୍ଟ, ତୁମେ ମୋ ସ୍ୱଭାବରେ ଅଗ୍ନି ରଖିଅଛ ଏବଂ ତାହାଙ୍କ ସ୍ୱଭାବରେ ଓଦାମାଟିର[୨] ଗୁଣ ରଖିଅଛ ।"

قَالَ مَا مَنَعَكَ أَلَّا تَسْجُدَ إِذْ أَمَرْتُكَ ۖ قَالَ أَنَا خَيْرٌ مِّنْهُ خَلَقْتَنِي مِن نَّارٍ وَخَلَقْتَهُ مِن طِينٍ ﴿١٣﴾

୧୪. (ଅଲ୍ଲାହ୍) କହିଲେ, "ଏଠାରୁ ବାହାରି ଯାଅ'; ଯେହେତୁ ତୋ'ପକ୍ଷରେ ଏହା ଉଚିତ୍ ନୁହେଁ ଯେ ତୁ ଏଠାରେ ଗର୍ବ କରିବୁ; ସୁତରାଂ (ଏଠାରୁ) ବାହାରି ଯାଅ; ତୁ ଅଧମମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।"

قَالَ فَاهْبِطْ مِنْهَا فَمَا يَكُونُ لَكَ أَن تَتَكَبَّرَ فِيهَا فَاخْرُجْ إِنَّكَ مِنَ الصَّاغِرِينَ ﴿١٤﴾

୧୫. ସେ କହିଲା, "(ହେ ମୋର ପାଳନକର୍ତ୍ତା !) ମୋତେ ସେହିଦିନ ପର୍ଯ୍ୟନ୍ତ[୩] ଅବସର ଦିଅ ଯେତେବେଳେ ସେମାନେ ପୁନରୁତ୍ଥିତ ହେବେ ।"

قَالَ أَنظِرْنِي إِلَىٰ يَوْمِ يُبْعَثُونَ ﴿١٥﴾

୧୬. ଅଲ୍ଲାହ୍ କହିଲେ, "ତୋତେ (ନିଜ କହିବା ଅନୁସାରେ) ଅବସର ପ୍ରଦାନ କରାଯାଇଅଛି ।"

قَالَ إِنَّكَ مِنَ الْمُنظَرِينَ ﴿١٦﴾

୧୭. ସେ କହିଲା, "ଯେହେତୁ ତୁମେ ମୋତେ ବିନଷ୍ଟ[୪] କରିଅଛ, ତେଣୁ ମୁଁ ମଧ୍ୟ ତୁମର(ପ୍ରଦର୍ଶିତ) ସରଳ ପଥରେ ସେମାନଙ୍କୁ ପ୍ରତୀକ୍ଷା କରିବି ।"

قَالَ فَبِمَا أَغْوَيْتَنِي لَأَقْعُدَنَّ لَهُمْ صِرَاطَكَ الْمُسْتَقِيمَ ﴿١٧﴾

୧୮. "ତତ୍ପରେ ମୁଁ ସେମାନଙ୍କ ଆଗରୁ, ସେମାନଙ୍କ ପଛରୁ, ସେମାନଙ୍କର ଡାହାଣ ପଟୁ ଓ ସେମାନଙ୍କର ବାମପଟୁ ସେମାନଙ୍କ ନିକଟକୁ ଆସିବି, (ଫଳରେ ମୁଁ ସେମାନଙ୍କୁ ପଥଭ୍ରଷ୍ଟ କରାଇବି) ଏବଂ ତୁମେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ କୃତଜ୍ଞ ପାଇବ ନାହିଁ ।"

ثُمَّ لَآتِيَنَّهُم مِّن بَيْنِ أَيْدِيهِمْ وَمِنْ خَلْفِهِمْ وَعَنْ أَيْمَانِهِمْ وَعَن شَمَائِلِهِمْ ۖ وَلَا تَجِدُ أَكْثَرَهُمْ شَاكِرِينَ ﴿١٨﴾

---

୧. ଦେବଦୂତମାନଙ୍କୁ ପ୍ରତ୍ୟକ୍ଷ ଭାବେ ଆଦେଶ ଦିଆଯାଇଥିଲା ସତ କିନ୍ତୁ ଯେବେ ଉଚ୍ଚ ଅଧିକାରୀମାନଙ୍କୁ କୌଣସି ଆଦେଶ ଦିଆଯାଏ ତେବେ ସେମାନଙ୍କ ଅଧସ୍ତନ କର୍ମଚାରୀମାନେ ମଧ୍ୟ ଏହି ଆଦେଶର ପରିସରଭୁକ୍ତ ହୁଅନ୍ତି । ପବିତ୍ର କୋରାନର ଏପରି ଅନେକ ସ୍ଥଳେ ହଜରତ ମହମ୍ମଦଙ୍କ ବିଷୟରେ ଆଲୋଚନା କରାଯାଇଛି ଯେଉଁ ସ୍ଥଳେ ଏହା ପ୍ରକୃତରେ ତାଙ୍କ ଅନୁଗାମୀମାନଙ୍କ ପାଇଁ ଅଭିପ୍ରେତ । ଦୃଷ୍ଟାନ୍ତ ସ୍ୱରୂପ ଯେଉଁ ସ୍ଥଳେ ଅଲ୍ଲାହ୍ ମହମ୍ମଦଙ୍କୁ କହିଛନ୍ତି : ଯେବେ ତୁମ ଜୀବଦ୍ଦଶାରେ ତୁମ ପିତାମାତା ବୃଦ୍ଧାବସ୍ଥାରେ ଉପନୀତ ହେବେ ତେବେ ତୁମେ ସେମାନଙ୍କୁ ଛି ଛା କରିବ ନାହିଁ । ଯେହେତୁ ହଜରତ ମହମ୍ମଦ ଅନାଥ ଥିଲେ ତେଣୁ ଏ ଆଦେଶ ନିଶ୍ଚିତ ରୂପେ ତାଙ୍କ ଅନୁଗାମୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

୨. ଯେପରି ଓଦା ମାଟିକୁ ବିଭିନ୍ନ ରୂପ ବା ଆକାର ଦିଆଯାଇ ପାରେ ସେହିପରି ମଣିଷର ପ୍ରକୃତିକୁ ବିଭିନ୍ନ ପ୍ରକାର ଗୁଣରେ ରୂପାନ୍ତରିତ କରାଯାଇପାରେ । ମଣିଷ ଇଚ୍ଛା କଲେ ସର୍ବଶକ୍ତିମାନ ଅଲ୍ଲାହଙ୍କର ଅଧୀନ ଓ ଆଜ୍ଞାବହ ହୋଇପାରିବ । ତେଣୁ ଏହି ପରିପ୍ରେକ୍ଷୀରେ ଇବଲିସ କହିଲା : ଯେହେତୁ ମୋ ଭିତରେ ତୁମେ ଅଗ୍ନିର ଗୁଣ ରଖିଅଛ ତେଣୁ ମୁଁ କାହାରି ଅଧୀନରେ ରହିପାରିବି ନାହିଁ କି ଆଜ୍ଞାବହ ହୋଇପାରିବି ନାହିଁ । ମଣିଷର ସୃଷ୍ଟି ମାଟିରୁ ଓ ସଇତାନର ସୃଷ୍ଟି ଅଗ୍ନିରୁ, ଏପରି କହିବା ଏହି ଆୟତର ଅସଲ ଉଦ୍ଦେଶ୍ୟ ନୁହେଁ । ଏହାର ଅସଲ ଉଦ୍ଦେଶ୍ୟ ହେଉଛି ଯେ ମଣିଷ ଭିନ୍ନ ଭିନ୍ନ ପରିସ୍ଥିତିରେ ଆବଶ୍ୟକତା ଅନୁସାରେ ନିଜକୁ ଖାପ ଖୁଆଇ ଚଳାଇ ନିଏ । ଅଥଚ ସଇତାନର ସ୍ୱଭାବରେ ଅଗ୍ନି ଅନୁରୂପ ଉପାଦାନ ଥିବାରୁ ସେ ଅବଜ୍ଞା କରିଥାଏ ।

୩. ଏଠାରେ କୟାମତ ପର୍ଯ୍ୟନ୍ତ ଅବସର ଦିଆଯିବା ଅଭିପ୍ରେତ ନୁହେଁ ବରଂ ଆଧ୍ୟାତ୍ମିକ ସଚେତନତାର ଉଦ୍ରେକ ହେବା ପର୍ଯ୍ୟନ୍ତ ଅବସର ଦିଆଯିବା ଅଭିପ୍ରେତ ।

୪. ଏଠାରେ ସଇତାନକୁ ଅଲ୍ଲାହ୍ ବିନାଶ କରିଥିବା ଅଭିପ୍ରେତ ନୁହେଁ ବରଂ ସଇତାନ ନିଜେ ନିଜ କୁକର୍ମ ଯୋଗୁଁ ବିନାଶ ହୋଇଥିବା ଅଭିପ୍ରେତ ।

୧୯. (ଅଲ୍ଲାହ) କହିଲେ, "ଏଠାରୁ ଲାଞ୍ଛିତ ଓ ନିର୍ବାସିତ ହୋଇ ବାହାରି ଯାଅ; ସେମାନଙ୍କ ମଧ୍ୟରୁ, ଯେ ତୋର ଅନୁଗତ ହେବ, ଆମ୍ଭେ ସେମାନଙ୍କ ଦ୍ବାରା ନରକକୁ ପୂର୍ଣ୍ଣ କରିବୁ।"

قَالَ اخْرُجْ مِنْهَا مَذْءُومًا مَّدْحُورًا ۖ لَّمَن تَبِعَكَ مِنْهُمْ لَأَمْلَأَنَّ جَهَنَّمَ مِنكُمْ أَجْمَعِينَ ⑲

୨୦. ଏବଂ ହେ ଆଦମ! "ତୁମେ ଓ ତୁମର ପତ୍ନୀ ବୈକୁଣ୍ଠରେ ବାସକର ଏବଂ ଯେଉଁ ଠାରୁ ଇଚ୍ଛା ସେଠାରୁ ଖାଅ; କିନ୍ତୁ ଏହି (ନିଷିଦ୍ଧ) ବୃକ୍ଷ ନିକଟକୁ ଯାଅ ନାହିଁ; ଅନ୍ୟଥା ତୁମେମାନେ ଅତ୍ୟାଚାରୀ ହେବ।"

وَيَا آدَمُ اسْكُنْ أَنتَ وَزَوْجُكَ الْجَنَّةَ فَكُلَا مِنْ حَيْثُ شِئْتُمَا وَلَا تَقْرَبَا هَٰذِهِ الشَّجَرَةَ فَتَكُونَا مِنَ الظَّالِمِينَ ⑳

୨୧. ତା'ପରେ ସଇତାନ ସେମାନଙ୍କୁ ପ୍ରବର୍ତ୍ତାଇଲା, ଯଦ୍ବାରା ସେମାନଙ୍କ ନଗ୍ନତା (ଅର୍ଥାତ୍ ଦୁର୍ବଳତାଠାରେ ଯାହା କିଛି ସେମାନଙ୍କ ପାଇଁ ଲୁକ୍‌କାୟିତ ରଖା ଯାଇଥିଲା ତାହା (ସେମାନଙ୍କ ସମ୍ମୁଖରେ) ପ୍ରକାଶିତ କରିଦେଉ, ଏବଂ ସେ କହିଲା, "ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କୁ କେବଳ ଏଥିସକାଶେ ଏହି ବୃକ୍ଷରୁ ବାରଣ କରିଛନ୍ତି ଯେ କାଳେ ତୁମେ ଦୁହେଁ ଦେବଦୂତ ହୋଇଯିବ ବା ଅମର ହୋଇଯିବ।"

فَوَسْوَسَ لَهُمَا الشَّيْطَانُ لِيُبْدِيَ لَهُمَا مَا وُورِيَ عَنْهُمَا مِن سَوْآتِهِمَا وَقَالَ مَا نَهَاكُمَا رَبُّكُمَا عَنْ هَٰذِهِ الشَّجَرَةِ إِلَّا أَن تَكُونَا مَلَكَيْنِ أَوْ تَكُونَا مِنَ الْخَالِدِينَ ㉑

୨୨. ଏବଂ ସେ (ସଇତାନ) ସେମାନଙ୍କ ନିକଟରେ ଶପଥ ପୂର୍ବକ କହିଲା, "ମୁଁ ତୁମ ଦୁହିଙ୍କର ହିତାକାଂକ୍ଷୀ ଅଟେ।"

وَقَاسَمَهُمَا إِنِّي لَكُمَا لَمِنَ النَّاصِحِينَ ㉒

---

୧. ଏହି ଆୟତରୁ ପ୍ରତୀତ ହେଉଛି ଯେ ଧର୍ମ ବିଧାନ ବା ଶରିୟତର ମୂଳ ଭିତ୍ତି ପବିତ୍ରତା ଉପରେ ପ୍ରତିଷ୍ଠିତ। ତେଣୁ ଯେଉଁସବୁ ବସ୍ତୁ ଆଧ୍ୟାତ୍ମିକ ଓ ଶାରୀରିକ ଦୃଷ୍ଟିରୁ କ୍ଷତିକାରକ କେବଳ ସେହିଗୁଡ଼ିକୁ ନିଷେଧ କରାଯାଇଛି।

୨. 'ନିଷିଦ୍ଧ'ର ଅର୍ଥ ସେହିସବୁ ଆଦେଶ ଯହିଁରେ କେତେକ ବିଷୟ ସମ୍ବନ୍ଧରେ ଆଦମଙ୍କୁ ନିଷେଧ କରାଯାଇଥିଲା। ବିଶେଷତଃ ଇବଲିସ ଓ ତା'ର ଅନୁଗାମୀମାନଙ୍କ ସହିତ ସମ୍ପର୍କ ସ୍ଥାପନ ନ କରିବାକୁ ଆଦେଶ ଦିଆଯାଇଥିଲା। ପବିତ୍ର କୋରାନରେ ଅନ୍ୟତ୍ର ପବିତ୍ର ବୃକ୍ଷକୁ ଉତ୍ତମ ଆଦେଶାବଳୀ ସହିତ (୧୪:୨୫ ଦ୍ରଷ୍ଟବ୍ୟ) ଓ ନିଷିଦ୍ଧ ବୃକ୍ଷକୁ ମନ୍ଦ ଆଦେଶାବଳୀ ସହିତ (୧୪:୨୭ ଦ୍ରଷ୍ଟବ୍ୟ) ତୁଳନା କରାଯାଇଛି। ତେଣୁ ଏଠାରେ ନିଷିଦ୍ଧ ବୃକ୍ଷର ଅର୍ଥ ସେହିସବୁ ମନ୍ଦକାର୍ଯ୍ୟ, ଯହିଁରୁ ନିଜକୁ ରକ୍ଷାକରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି। ତନ୍ମଧ୍ୟରେ ଇବଲିସ ଓ ତା'ର ଅନୁଗାମୀମାନଙ୍କ ଠାରୁ ନିଜକୁ ରକ୍ଷାକରିବା ହେଉଛି ମୁଖ୍ୟ ଆଦେଶ। ହଜରତ ଆଦମଙ୍କୁ ମଧ୍ୟ ଅନୁରୂପ ଆଦେଶ ଦିଆଯାଇଥିଲା।

୩. ଅସତ୍ ଚିନ୍ତା ମନୁଷ୍ୟର କେବଳ ସର୍ବନାଶ କରେ ନାହିଁ ବରଂ ସେଗୁଡ଼ିକ ତା' ନିକଟରେ ତା' ଦୋଷ ତ୍ରୁଟିକୁ ପରିପ୍ରକାଶ କରେ।

୪. ଯେଉଁ ବିଷୟ କରିବାକୁ ମଣିଷକୁ ଅଲ୍ଲାହ ବାରଣ କରିଛନ୍ତି ତାହାକୁ ସମ୍ପାଦନ କଲେ ହିଁ ସେ ଉନ୍ନତି ଲାଭ କରିପାରିବ ବୋଲି ଅସତ୍ ଚିନ୍ତା ତାହାକୁ ଉତ୍‌ପ୍ରେରିତ କରେ। ଯିଏ ଚୋରି କରେ ସେ ଭଲ ଭାବରେ ଜାଣେ ଯେ ଅନ୍ୟର ଧନ ଅପହରଣ ନ କଲେ ସେ ସୁଖରେ ରହିପାରିବ ନାହିଁ। ସେହିପରି ଯିଏ ଲାଞ୍ଚ ନିଏ ସେ ଭାବେ ଯେ ସେ ଲାଞ୍ଚ ନ ନେଲେ ତା'ର ଉନ୍ନତି ସମ୍ଭବ ନୁହେଁ କି ସେ ଧନବାନ୍ ହୋଇପାରିବ ନାହିଁ। ସେ ଭଲଭାବରେ ବୁଝିଥାଏ ଯେ ଅନ୍ୟର ଧନ ଅପହରଣ କରି ସେ ଅଧିକ ଦିନ ଏହି ସଂସାରରେ ସୁଖରେ ରହିବାକୁ ସୁଯୋଗ ପାଇବ।

୨୩. ସୁତରାଂ ସେ ଦୁହିଁଙ୍କୁ ପ୍ରତାରଣା କରି ସ୍ୱସ୍ଥାନରୁ ଅଧଃପତିତ କରାଇଲା ; ତା'ପରେ ଯେତେବେଳେ ସେ ଦୁହେଁ ଉକ୍ତ (ନିଷିଦ୍ଧ) ବୃକ୍ଷରୁ (କିଛି) ଆସ୍ୱାଦନ କଲେ, ସେତେବେଳେ ସେମାନଙ୍କର ନଗ୍ନତା ସେମାନଙ୍କ ସମ୍ମୁଖରେ ପ୍ରକାଶିତ ହେଲା ଏବଂ ସେମାନେ ବୈକୁଣ୍ଠର ଭୂଷଣ[1] ଦ୍ୱାରା ନିଜକୁ ଆବୃତ କରିବାକୁ ଲାଗିଲେ ଏବଂ ସେ ଦୁହିଁଙ୍କୁ ସେମାନଙ୍କର ପାଳନକର୍ତ୍ତା ଡାକିଲେ[2] (ଓ କହିଲେ), "କ'ଣ ଆମେ ତୁମ ଦୁହିଁଙ୍କୁ ସେହି ବୃକ୍ଷରୁ ବାରଣ କରି ନ ଥିଲୁ ? ଏବଂ କ'ଣ ଏହା କହି ନ ଥିଲୁ ଯେ ସଇତାନ ତୁମ ଦୁହିଁଙ୍କର ପ୍ରକାଶ୍ୟ ଶତ୍ରୁ ?"

فَدَلّٰىهُمَا بِغُرُوْرٍ ۚ فَلَمَّا ذَاقَا الشَّجَرَةَ بَدَتْ لَهُمَا سَوْاٰتُهُمَا وَطَفِقَا يَخْصِفٰنِ عَلَيْهِمَا مِنْ وَّرَقِ الْجَنَّةِ ؕ وَنَادٰىهُمَا رَبُّهُمَاۤ اَلَمْ اَنْهَكُمَا عَنْ تِلْكُمَا الشَّجَرَةِ وَاَقُلْ لَّكُمَاۤ اِنَّ الشَّيْطٰنَ لَكُمَا عَدُوٌّ مُّبِيْنٌ ﴿۲۳﴾

୨୪. ସେ ଦୁହେଁ କହିଲେ, "ହେ ଆମର ପାଳନକର୍ତ୍ତା ! ଆମେ ନିଜେ ନିଜ ଉପରେ ଅତ୍ୟାଚାର କରିଅଛୁ ; ଏବଂ ଯଦି ତୁମେ ଆମମାନଙ୍କୁ କ୍ଷମା ନ କରିବ ଓ ଆମମାନଙ୍କ ପ୍ରତି କରୁଣା ନ କରିବ, ତେବେ ଆମ୍ଭେମାନେ କ୍ଷତିଗ୍ରସ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବୁ ।"

قَالَا رَبَّنَا ظَلَمْنَاۤ اَنْفُسَنَا ٜ وَاِنْ لَّمْ تَغْفِرْ لَنَا وَتَرْحَمْنَا لَنَكُوْنَنَّ مِنَ الْخٰسِرِيْنَ ﴿۲۴﴾

---

୧. କେତେକ ଭାଷ୍ୟକାରଙ୍କ ମତରେ 'ଓରକ' ଶବ୍ଦର ଅର୍ଥ ସମାଜର ଯୁବଗୋଷ୍ଠୀ । ସେମାନେ କହନ୍ତି: ଯେତେବେଳେ ଆଦମଙ୍କ ଲୋକମାନେ ଗୋଷ୍ଠୀବିବାଦ ଯୋଗୁଁ ଦୁଇ ଭାଗରେ ବିଭକ୍ତ ହୋଇଗଲେ ଓ କେତେକ ଦୁର୍ବଳମନା ବ୍ୟକ୍ତି ତାଙ୍କ ଠାରୁ ଦୂରେଇଗଲେ ସେତେବେଳେ ସେ ସେମାନଙ୍କ ମଧ୍ୟରେ ଥିବା ଯୁବଗୋଷ୍ଠୀକୁ ନେଇ ଓ ସେମାନଙ୍କ ସାହାଯ୍ୟରେ ପୁଣି ଥରେ ଲୋକମାନଙ୍କୁ ଏକତ୍ରିତ ଓ ସଂଗଠିତ କଲେ । ମନ୍ଦ ପ୍ରକୃତିର ଲୋକଙ୍କୁ ସଇତାନ କୁହାଯାଏ । ଏଠାରେ ଯିଏ ଆଦମଙ୍କୁ ଉତ୍ପ୍ରେରିତ କରି ପଥଭ୍ରଷ୍ଟ କରାଇଥିଲା ସେ କୌଣସି ଅଦୃଶ୍ୟ ଭୂତପ୍ରେତ ନୁହେଁ ବରଂ ରକ୍ତମାଂସରେ ଗଢ଼ା ସଇତାନ ରୂପଧାରୀ ଦୁଷ୍ଟ ମାନବ । ବସ୍ତୁତଃ ତା'ଠାରୁ ଓ ତା'ର ପରିବାରବର୍ଗଠାରୁ ଦୂରେଇ ରହିବା ପାଇଁ ଆଦମଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା କିନ୍ତୁ ଆଦମ ଦୁର୍ଭାଗ୍ୟବଶତଃ ତା'ପ୍ରତାରଣାର ଶିକାର ହୋଇଥିଲେ ।

ଅନ୍ୟ କେତେକ ଟୀକାକାର 'ଓରକ' ଶବ୍ଦର ଅର୍ଥ ପତ୍ର ବୋଲି କହିଛନ୍ତି । ଆମମାନଙ୍କ ମତରେ ଏହି ଅର୍ଥ ଏଠାରେ ପ୍ରଯୋଜ୍ୟ ନୁହେଁ । ଆମମାନଙ୍କ ମତରେ ଓରକର ଅର୍ଥ ଭୂଷଣ ବା ସୌନ୍ଦର୍ଯ୍ୟ । ଯେତେ ବେଳେ ମନୁଷ୍ୟ କୌଣସି ପାପ କାର୍ଯ୍ୟ କରିସାରିଥାଏ ସେତେ-ବେଳେ ତା'ବିବେକ ତାକୁ ଦଂଶନ କରେ, ତା'ର ଦୁର୍ବଳତା ସଂପର୍କରେ ଚେତାବନୀ ଦିଏ ଓ ତାକୁ ବୁଝାଇଦିଏ ଯେ ସେହି ପାପ କାର୍ଯ୍ୟ ଦ୍ୱାରା ସେ ଲାଭବାନ୍ ହେଲା ନାହିଁ ବରଂ ଯଦି ସେ ସେହି କାର୍ଯ୍ୟ କରି ନ ଥାନ୍ତା ତେବେ ତାର କୌଣସି ବିଶେଷ କ୍ଷତି ହୋଇ ନ ଥା'ନ୍ତା । ସେତେବେଳେ ଯାଇ ମନୁଷ୍ୟ ପ୍ରକୃତ ବିଷୟ ବୁଝି ପାରେ ଏବଂ ସେ ସ୍ୱର୍ଗର ସୌନ୍ଦର୍ଯ୍ୟଯୁକ୍ତ ସାମଗ୍ରୀ ଦ୍ୱାରା ଅର୍ଥାତ୍ ଯେଉଁ କର୍ମ କରି ଜଣେ ମନୁଷ୍ୟ ସ୍ୱର୍ଗରାଜ୍ୟରେ ପ୍ରବେଶ କରି ପାରିବ ସେହି କର୍ମ ଦ୍ୱାରା ନିଜ ପାପକୁ ଘୋଡ଼ାଇବାକୁ ଚେଷ୍ଟା କରେ । ପୁନଶ୍ଚ ସେ ପଶ୍ଚାତାପ କରି ନିଜ ପାପ କ୍ଷାଳନ କରିଥାଏ । ଆଦମ ଓ ତାଙ୍କ ପତ୍ନୀ ହଓ୍ୱାଙ୍କ କ୍ଷେତ୍ରରେ ତାହା ହିଁ ଘଟିଥିଲା । ତେଣୁ ସେମାନେ ସତ୍‌କର୍ମ ସମ୍ପାଦନ ଆରମ୍ଭ କରିଥିଲେ ଯେପରିକି ସେମାନଙ୍କ ଦୋଷ ଦୁର୍ବଳତା ଘୋଡ଼େଇ ହୋଇଯିବ ।

୨. ଏଠାରେ ପାପୀମାନଙ୍କୁ ଇଲ୍‌ହାମ୍ ବା ଐଶୀବାଣୀ ପ୍ରେରିତ ହେଉଥିବା ଅଭିପ୍ରେତ ନୁହେଁ ବରଂ ଏହାର ଅଭିପ୍ରାୟ ହେଉଛି କି ଯେ ପର୍ଯ୍ୟନ୍ତ ମନୁଷ୍ୟ ହୃଦୟରେ ଲଜ୍ଜା ଓ ଗ୍ଲାନି ଉଦ୍ରେକ ହେଉଥିବ ସେ ପର୍ଯ୍ୟନ୍ତ ତା'ର ସତ୍‌ସ୍ୱଭାବ ତାକୁ ଏହି ଶିକ୍ଷା ଦେଉଥିବ ଯେ ଯାହା କିଛି ଅଲ୍ଲାଃ କହୁଥିଲେ ତାହା ସର୍ବଥା ସତ୍ୟ ଓ ଯାହାକିଛି କାର୍ଯ୍ୟ ସେ ସମ୍ପାଦନ କରିଅଛି ତାହା ଅନୁଚିତ ଅଟେ ; ସେତେବେଳେ ଯାଇ ସେ ବିନୟପୂର୍ବକ ଉପାସନା ଓ କ୍ଷମାପ୍ରାର୍ଥନା କରିବାରେ ରତ ହେବ ଓ ପରିଶେଷରେ ଅଲ୍ଲାଃଙ୍କର ଅପାରକୃପା ହାସଲ କରିବାକୁ ସକ୍ଷମ ହେବ ।

୨୫. (ତା'ପରେ ଅଲ୍ଲାହ୍) କହିଲେ, "ତୁମେ ସମସ୍ତେ ଏଠାରୁ ବାହାରି ଯାଅ, ତୁମମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କର ଶତ୍ରୁ ହେବେ, ଏବଂ ଏହି ପୃଥିବୀ ହିଁ ତୁମମାନଙ୍କର ବାସସ୍ଥାନ[2] ହେବ ଏବଂ କିଛି କାଳ ପାଇଁ (ତହିଁରେ) ଲାଭ ଉଠାଇବା ପାଇଁ ସୁଯୋଗ ଦିଆ ଯିବ।"[1]

قَالَ اهْبِطُوْا بَعْضُكُمْ لِبَعْضٍ عَدُوٌّ ۚ وَلَكُمْ فِي الْاَرْضِ مُسْتَقَرٌّ وَّمَتَاعٌ اِلٰى حِيْنٍ ⑮

୨୬. (ପୁନଶ୍ଚ ଅଲ୍ଲାହ୍) କହିଲେ, "ଏହି ପୃଥିବୀରେ ତୁମେମାନେ ଜୀବିତ ରହିବ ଓ ଏହିଠାରେ ତୁମେମାନେ ମରିବ, ଏବଂ ପୁଣି ଏହି ଠାରୁ ତୁମମାନଙ୍କୁ ବାହାର କରାଯିବ[3]।"

قَالَ فِيْهَا تَحْيَوْنَ وَفِيْهَا تَمُوْتُوْنَ وَمِنْهَا تُخْرَجُوْنَ ⑯

ରୁ : ୩

୨୭. ହେ ଆଦମଙ୍କ ସନ୍ତାନମାନେ ! ଆମେ ତୁମମାନଙ୍କ ପାଇଁ ଏପରି ଏକ ବସ୍ତ୍ର ସୃଷ୍ଟି[4] କରିଅଛୁ ଯାହା ତୁମମାନଙ୍କର ନଗ୍ନତାକୁ ଆଚ୍ଛାଦିତ କରେ ଓ ସୁଶୋଭିତ କରେ, ଏବଂ ଧର୍ମଭୀରୁତା ରୂପକ ବସ୍ତ୍ର ସର୍ବୋତ୍କୃଷ୍ଟ ; ଏହା ଅଲ୍ଲାହ୍‌ଙ୍କର ଅନ୍ୟତମ ଆଦେଶ ଯଦ୍ଦ୍ୱାରା ତୁମେମାନେ ଶିକ୍ଷା ଲାଭ କରିପାରିବ ।

يٰبَنِيْٓ اٰدَمَ قَدْ اَنْزَلْنَا عَلَيْكُمْ لِبَاسًا يُّوَارِيْ سَوْاٰتِكُمْ وَرِيْشًا ۚ وَلِبَاسُ التَّقْوٰى ۙ ذٰلِكَ خَيْرٌ ۚ ذٰلِكَ مِنْ اٰيٰتِ اللّٰهِ لَعَلَّهُمْ يَذَّكَّرُوْنَ ⑰

---

୧. ଏହି ଆୟତରୁ ଜଣାପଡୁଛି ଯେ ଯେଉଁ ସଇତାନମାନଙ୍କ ବିଷୟ ପ୍ରଥମେ ବର୍ଣ୍ଣନା କରାଯାଇଛି ସେମାନେ ନିଶ୍ଚିତ ରୂପେ ମନୁଷ୍ୟ ଥିଲେ, କାରଣ ଏହି ଆୟତରୁ ପ୍ରତିପାଦିତ ହେଉଛି ଯେ ମନୁଷ୍ୟ ଓ ସଇତାନ ଉଭୟଙ୍କୁ ଏକତ୍ର ବାହାରି ଯିବାକୁ ଆଦେଶ ହୋଇଥିଲା ଏବଂ ସେମାନଙ୍କୁ ସୂଚନା ଦିଆଯାଇଥିଲା ଯେ ସେମାନେ ସର୍ବଦା ପରସ୍ପର ସହିତ ଶତ୍ରୁତା କରୁଥିବେ । ଲକ୍ଷ୍ୟ କଲେ ଜଣାଯିବ ଯେ ସଂସାରରେ କେବଳ ମନୁଷ୍ୟମାନେ ଦୃଷ୍ଟିଗୋଚର ହୁଅନ୍ତି କିନ୍ତୁ ସଇତାନମାନେ ଦୃଷ୍ଟିଗୋଚର ହୁଅନ୍ତି ନାହିଁ। ବସ୍ତୁତଃ ଏହି ସଂସାରରେ କେବଳ ମନୁଷ୍ୟମାନେ ପରସ୍ପର ସହିତ ଶତ୍ରୁତା କରୁଛନ୍ତି ଏବଂ ସଇତାନମାନଙ୍କର ଏପରି କୌଣସି ପୃଥକ୍ ଗୋଷ୍ଠୀ ନାହିଁ ଯେଉଁମାନେ ମନୁଷ୍ୟମାନଙ୍କ ସହିତ ଶତ୍ରୁତା କରିଥାନ୍ତି ।

୨. ଏହି ଆୟତରୁ ଆହୁରି ସୂଚନା ମିଳୁଛି ଯେ ଏଠାରେ କେବଳ ମନୁଷ୍ୟମାନଙ୍କ ବିଷୟ ବର୍ଣ୍ଣନା କରାଯାଇଛି। ଇବଲିସ ଓ ତା'ର ଅନୁଗାମୀମାନେ ମଧ୍ୟ ଏକ ପ୍ରକାର ବା ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ମନୁଷ୍ୟ, କାରଣ ଅଲ୍ଲାହ୍ କହିଛନ୍ତି ଯେ ମନୁଷ୍ୟ, ଇବଲିସ ଓ ଇବଲିସର ଅନୁଗାମୀମାନେ ସମସ୍ତେ ଏହି ସଂସାରରେ ବାସ କରିବେ ଓ ଏହିଠାରେ ନିଜର କାର୍ଯ୍ୟ ସମ୍ପାଦନ କରିବେ । ଅତଏବ ଏହି ସଂସାରରେ ବାସ କରୁଥିବା ଓ କାର୍ଯ୍ୟରତ ଥିବା ସମସ୍ତେ ମନୁଷ୍ୟ ।

୩. ଏହି ଆୟତରୁ ପ୍ରତିପାଦିତ ହେଉଛି ଯେ ମନୁଷ୍ୟ ସଂସାର ବାହାରକୁ ଯାଇପାରିବ ନାହିଁ କି ଆକାଶ ଉପରକୁ ଚଢ଼ି ପାରିବ ନାହିଁ। ଯେଉଁମାନେ ବିଶ୍ୱାସ କରନ୍ତି ଯେ ହଜରତ ଇସା ଓ ହଜରତ ଇଦ୍ରିସ ଆକାଶ ଉପରକୁ ଚଢ଼ି ଯାଇଛନ୍ତି ସେମାନେ ଭୁଲ୍ ଅର୍ଥ କରୁଛନ୍ତି । ଯଦି ସେ ଦୁହେଁ ଆକାଶରେ ଅଛନ୍ତି ତେବେ ଏକେତ ଏହି ଆୟତ ଭ୍ରମାତ୍ମକ ବା ସେ ଦୁହେଁ ମନୁଷ୍ୟ ନୁହନ୍ତି । ଏହି ଆୟତରୁ ଆହୁରି ପ୍ରମାଣିତ ହେଉଛି ଯେ ହଜରତ ଇସା ଓ ହଜରତ ଇଦ୍ରିସ ତଥା ସେସବୁ ମନୁଷ୍ୟ ଯେଉଁମାନଙ୍କ ସମ୍ବନ୍ଧରେ କୁହାଯାଏ ଯେ ସେମାନେ ଆକାଶରେ ଅଛନ୍ତି ସେମାନେ ସମସ୍ତେ ଏହି ସଂସାରରେ ଆପଣା ଜୀବନ ବ୍ୟତିତ କରିବେ, ଏଠାରେ ପୋତାଯିବେ ବା ପୋତା ଯିବେ ଓ ଏହି ସଂସାରରୁ ପୁନର୍ବାର ଜୀବିତ ହୋଇ ଉତ୍‌ଥିତ ହେବେ ।

୪. 'ଅନ୍‌ଜଲନା' ଶବ୍ଦର ଅର୍ଥ ଅବତରଣ କରାଇବା ଥିଲେ ମଧ୍ୟ ପବିତ୍ର କୋରାନରେ 'ସୃଷ୍ଟି କରିବା' ଅର୍ଥରେ ଅନ୍ୟତ୍ର ବ୍ୟବହୃତ ହୋଇଛି । (୫୭ : ୨୬ ଓ ୬୫ : ୧୧ ଦ୍ରଷ୍ଟବ୍ୟ)

يَٰبَنِيٓ ءَادَمَ لَا يَفۡتِنَنَّكُمُ ٱلشَّيۡطَٰنُ كَمَآ أَخۡرَجَ أَبَوَيۡكُم مِّنَ ٱلۡجَنَّةِ يَنزِعُ عَنۡهُمَا لِبَاسَهُمَا لِيُرِيَهُمَا سَوۡءَٰتِهِمَآۚ إِنَّهُۥ يَرَىٰكُمۡ هُوَ وَقَبِيلُهُۥ مِنۡ حَيۡثُ لَا تَرَوۡنَهُمۡۗ إِنَّا جَعَلۡنَا ٱلشَّيَٰطِينَ أَوۡلِيَآءَ لِلَّذِينَ لَا يُؤۡمِنُونَ ﴿٢٨﴾

୨୮. ହେ ଆଦମ୍‌ଙ୍କ ସନ୍ତାନମାନେ ! ସଇତାନ ଯେପରି ତୁମମାନଙ୍କର ପିତାମାତାଙ୍କୁ ବୈକୁଣ୍ଠରୁ ବିତାଡ଼ିତ କରାଇଥିଲା ସେପରି ସେ ତୁମମାନଙ୍କୁ (ଅଲ୍ଲାହ୍‌ଙ୍କ ପଥରୁ) ବିଭ୍ରାନ୍ତ ନ କରୁ ; ସେ ଦୁହିଁଙ୍କର ବସ୍ତ୍ର କାଢ଼ି ନେଇ ସେ (ସଇତାନ) ସେମାନଙ୍କୁ ବିବସ୍ତ୍ର କରାଇଥିଲା ଯେପରିକି ସେମାନଙ୍କ ନିକଟରେ ସେମାନଙ୍କ ନଗ୍ନତା ପ୍ରକାଶିତ କରିଦେବ ; ନିଶ୍ଚୟ ସେ ଓ ତାହାର ସ୍ୱଜାତି [୧] ତୁମମାନଙ୍କୁ ସେଠାରୁ ଦେଖୁଛନ୍ତି ଯେଉଁଠାରୁ ତୁମେମାନେ ସେମାନଙ୍କୁ ଦେଖ ନାହିଁ; ଆମ୍ଭେ ସଇତାନଙ୍କୁ ଅବିଶ୍ୱାସକାରୀମାନଙ୍କର ବନ୍ଧୁ କରିଅଛୁ [୨]।

وَإِذَا فَعَلُواْ فَٰحِشَةً قَالُواْ وَجَدۡنَا عَلَيۡهَآ ءَابَآءَنَا وَٱللَّهُ أَمَرَنَا بِهَاۗ قُلۡ إِنَّ ٱللَّهَ لَا يَأۡمُرُ بِٱلۡفَحۡشَآءِۖ أَتَقُولُونَ عَلَى ٱللَّهِ مَا لَا تَعۡلَمُونَ ﴿٢٩﴾

୨୯. ଏବଂ ଯେତେବେଳେ ସେ (ଅବିଶ୍ୱାସକାରୀ) ମାନେ କୌଣସି ମନ୍ଦ କାର୍ଯ୍ୟ କରନ୍ତି ସେତେବେଳେ କହନ୍ତି, "ଆମେମାନେ ନିଜର ପୂର୍ବ ପୁରୁଷଙ୍କୁ ଏହିପରି କରିବାର ଦେଖିଅଛୁ ଏବଂ ଅଲ୍ଲାହ୍ ଆମମାନଙ୍କୁ ମଧ୍ୟ ଏଥି ସକାଶେ ନିର୍ଦ୍ଦେଶ ଦେଇଛନ୍ତି," (ତୁମ୍ଭେ) କୁହ, "ଅଲ୍ଲାହ୍ କେବେ ହେଁ ମନ୍ଦ କାର୍ଯ୍ୟ ପାଇଁ ନିର୍ଦ୍ଦେଶ ଦିଅନ୍ତି ନାହିଁ ; କ'ଣ ତୁମେମାନେ ଅଲ୍ଲାହ୍‌ଙ୍କ ସଂକ୍ରାନ୍ତରେ ସେହି ବିଷୟ ମିଥ୍ୟାରେ କହୁଅଛ ଯାହା ତୁମେମାନେ ଜାଣ ନାହିଁ ?"

قُلۡ أَمَرَ رَبِّي بِٱلۡقِسۡطِۖ وَأَقِيمُواْ وُجُوهَكُمۡ عِندَ كُلِّ مَسۡجِدٖ وَٱدۡعُوهُ مُخۡلِصِينَ لَهُ ٱلدِّينَۚ كَمَا بَدَأَكُمۡ تَعُودُونَ ﴿٣٠﴾

୩୦. (ତୁମ୍ଭେ) କୁହ ଆମର ପାଳନକର୍ତ୍ତା ନ୍ୟାୟ (କରିବା) ପାଇଁ ଆମଙ୍କୁ 'ନ୍ୟାୟ'ର ଆଦେଶ ଦେଇଛନ୍ତି ଯେ ପ୍ରତ୍ୟେକ ଉପାସନା ସ୍ଥାନ (ଓ ସମୟ)ରେ ନିଜର ଧ୍ୟାନ ଠିକ୍ କରିନିଅ ଓ ଅଲ୍ଲାହ୍‌ଙ୍କୁ ହିଁ ଉପାସନା ଯୋଗ୍ୟ ମନେକରି ତାହାଙ୍କୁ ଡାକ ; ଯେପରି ସେ ତୁମମାନଙ୍କୁ ପ୍ରଥମେ ସୃଷ୍ଟି କରିଥିଲେ ସେହିପରି (ଅବସ୍ଥାରେ) ତୁମମାନଙ୍କୁ ତାହାଙ୍କ ନିକଟକୁ ଫେରିବାକୁ ହେବ ।

---

୧. ଅର୍ଥାତ୍ ସଇତାନର ସନ୍ତାନ-ସନ୍ତତି ସଂସାରରେ ଚତୁରତା ସହକାରେ କାର୍ଯ୍ୟ ହାସଲ କରିଥାନ୍ତି । ସେମାନେ ଲୋକମାନଙ୍କୁ ବାରମ୍ବାର କୁପ୍ରବର୍ତ୍ତନା ଦିଅନ୍ତି ଯଦ୍ୱାରା କେତେକ ଲୋକ ଅନ୍ୟ ଲୋକମାନଙ୍କ ପାଖରେ ବିଭିନ୍ନ କାର୍ଯ୍ୟକୁ ବିଗାଡ଼ି ଦେଇ ଶୁଣାଇ ପାରିବେ, ପରିଣାମରେ ସେମାନେ ପରସ୍ପର ମଧ୍ୟରେ ଶତ୍ରୁତା କରିବେ । ସଇତାନମାନେ ଲୋକମାନଙ୍କର ଦୋଷ ଦୁର୍ବଳତାକୁ ଜାଣିବା ପରେ ସେମାନଙ୍କୁ ଅସତ୍‌କାର୍ଯ୍ୟ କରିବାକୁ ପ୍ରବର୍ତ୍ତାନ୍ତି ଓ ସେମାନଙ୍କୁ ସେହି ଦିଗରେ ପରିଚାଳିତ କରାନ୍ତି । ମନେ ରଖିବାକୁ ହେବ ଯେ ଅଲ୍ଲାହ୍ ଲୋକମାନଙ୍କ ପରୀକ୍ଷା ପାଇଁ ସଇତାନ ସୃଷ୍ଟି କରିଛନ୍ତି । ସେମାନଙ୍କୁ ଆଧ୍ୟାତ୍ମିକ ଦୌଡ଼ରେ ଗୋଟିଏ ଗୋଟିଏ ପ୍ରତିବନ୍ଧକ ଭାବରେ ସ୍ଥାପନ କରାଯାଇଛି । ତେଣୁ ପ୍ରତିଯୋଗୀ ପ୍ରତିବନ୍ଧକଗୁଡ଼ିକୁ ଉପଯୁକ୍ତ ଧ୍ୟାନ ଦେଇ ଅଗ୍ରସର ହେଲେ ପ୍ରତିଯୋଗିତାରେ ବିଜୟ ମଣ୍ଡିତ ହେବା ସହଜ । କିନ୍ତୁ ଯେଉଁମାନେ ଯତ୍ନହୀନ ଓ ଅସାବଧାନ୍ ସେମାନେ ପ୍ରତିବନ୍ଧକ ଦୌଡ଼ରେ ହାରି ଯାଆନ୍ତି । ଅତଏବ ଏ ପ୍ରକାର ଲୋକମାନେ ଅନ୍ୟକୁ ଦୋଷ ନଦେଇ ପ୍ରଥମେ ନିଜକୁ ଦୋଷ ଦେବା ବିଧେୟ । ତେଣୁ ଜଣେ ନିଜକୁ ସଇତାନର କୁପ୍ରଭାବରୁ ମୁକ୍ତ ରଖିପାରିଲେ ଆଧ୍ୟାତ୍ମିକ ଉନ୍ନତି ଲାଭ କରିପାରିବ ।

୨. ଅର୍ଥାତ୍ ଅବିଶ୍ୱାସକାରୀମାନେ ଅନ୍ୟମାନଙ୍କୁ ଶିକ୍ଷା ଦିଅନ୍ତି ଯେ ତୁମ ପୂର୍ବଜମାନେ ଯେଉଁ ସିଦ୍ଧାନ୍ତ ଉପରେ ଥିଲେ ତୁମେମାନେ ମଧ୍ୟ ସେହି ସିଦ୍ଧାନ୍ତ ଉପରେ ଦୃଢ଼ ରହ । କାରଣ ତୁମେମାନେ ନିଜ ବୁଦ୍ଧି ବିଦ୍ୟାକୁ ପ୍ରୟୋଗ କରି କାର୍ଯ୍ୟକଲେ ପ୍ରମାଦ ହୋଇପାରେ ।

୩୧. ସେ ଗୋଟିଏ ଦଳକୁ ପଥ ପ୍ରଦର୍ଶନ କରିଛନ୍ତି ଏବଂ ଅନ୍ୟ ଏକ ଦଳ ପାଇଁ ପଥଭ୍ରଷ୍ଟତା ସିଦ୍ଧ ହୋଇଛି ; ସେମାନେ ଅଲ୍ଲାହ୍‌ଙ୍କୁ ପରିତ୍ୟାଗ କରି ସଇତାନକୁ ବନ୍ଧୁରୂପେ ଗ୍ରହଣ କରିଛନ୍ତି ; ଏବଂ ସେମାନେ ମନେ କରନ୍ତି ଯେ ସେମାନଙ୍କୁ ସତ୍‌ପଥ ପ୍ରାପ୍ତ ହୋଇଛି ।

فَرِيقًا هَدٰى وَفَرِيقًا حَقَّ عَلَيْهِمُ الضَّلٰلَةُ ۗ إِنَّهُمُ اتَّخَذُوا الشَّيٰطِينَ أَوْلِيَآءَ مِنْ دُونِ اللّٰهِ وَيَحْسَبُونَ أَنَّهُمْ مُّهْتَدُونَ ﴿٣١﴾

୩୨. ହେ ଆଦମ୍‌ଙ୍କ ସନ୍ତାନମାନେ! ତୁମେମାନେ ପ୍ରତ୍ୟେକ ଉପାସନା ସ୍ଥାନ (ଓ ସମୟ)ରେ ଭୂଷଣ (ସାମଗ୍ରୀ) ଧାରଣ କର (ଓ ମନ ନିର୍ମଳ କର)[1], ଏବଂ ଭୋଜନ କର ଓ ପାନ କର ; ଏବଂ ଅପବ୍ୟୟ କର ନାହିଁ, କାରଣ ସେ (ଅଲ୍ଲାହ୍) ଅପବ୍ୟୟକାରୀଙ୍କୁ ପସନ୍ଦ କରନ୍ତି ନାହିଁ ।[2]

يٰبَنِيٓ اٰدَمَ خُذُوا زِينَتَكُمْ عِنْدَ كُلِّ مَسْجِدٍ وَّكُلُوا وَاشْرَبُوا وَلَا تُسْرِفُوا ۚ إِنَّهُ لَا يُحِبُّ الْمُسْرِفِينَ ﴿٣٢﴾ ع

ରୁ : ୪

୩୩. (ତୁମେ) କୁହ, "ଅଲ୍ଲାହ୍‌ଙ୍କର ସେହି ଭୂଷଣ (ସାମଗ୍ରୀ) ଯାହାକୁ ସେ ନିଜ ଭକ୍ତମାନଙ୍କ ପାଇଁ ସୃଷ୍ଟି କରିଛନ୍ତି ସେଗୁଡ଼ିକୁ ଏବଂ ସେହିପରି ଜୀବିକା ମଧ୍ୟରୁ ବିଶୁଦ୍ଧ ବସ୍ତୁଗୁଡ଼ିକୁ[3] କିଏ ଅବୈଧ[4] କରିଅଛି ?" (ତୁମେ) କୁହ, "ଏହା ବାସ୍ତବରେ ବିଶ୍ୱାସକାରୀମାନଙ୍କ ପାଇଁ ଏହି ପୃଥିବୀରେ (ମଧ୍ୟ) ରହିଅଛି ତଥା କୟାମତ ଦିବସ କେବଳ ସେମାନଙ୍କ ପାଇଁ ହିଁ ହେବ ; ଏହିପରି ଆମେ ନିଜ ନିଦର୍ଶନଗୁଡ଼ିକୁ ଜ୍ଞାନବନ୍ତଙ୍କ ପାଇଁ ସ୍ପଷ୍ଟରୂପେ ବର୍ଣ୍ଣନା କରୁ ।

قُلْ مَنْ حَرَّمَ زِينَةَ اللّٰهِ الَّتِيٓ أَخْرَجَ لِعِبَادِهِ وَالطَّيِّبٰتِ مِنَ الرِّزْقِ ۗ قُلْ هِيَ لِلَّذِينَ اٰمَنُوا فِي الْحَيٰوةِ الدُّنْيَا خَالِصَةً يَّوْمَ الْقِيٰمَةِ ۗ كَذٰلِكَ نُفَصِّلُ الْاٰيٰتِ لِقَوْمٍ يَّعْلَمُونَ ﴿٣٣﴾

---

୧. ଅର୍ଥାତ୍ ମସଜିଦକୁ ଯିବା ପୂର୍ବରୁ ନିଜ ହୃଦୟ ଓ ଚିନ୍ତାଧାରାକୁ ଶୁଦ୍ଧକର ତଥା ନିଜ ଶରୀର ଓ ପରିଧାନକୁ ମଧ୍ୟ ପରିଷ୍କାର ଓ ପବିତ୍ର କର ।

୨. ମସଜିଦ ସହିତ ପାନାହାର ଓ ଅପବ୍ୟୟ ସଂକ୍ରାନ୍ତ ବିଷୟର କୌଣସି ସମ୍ପର୍କ ନାହିଁ । ତଥାପି ମସଜିଦ ବିଷୟରେ ବର୍ଣ୍ଣନା କଲାବେଳେ କାହିଁକି ଯେ ପାନାହାର ଓ ଅପବ୍ୟୟ ବିଷୟରେ ବର୍ଣ୍ଣନା କରାଗଲା ସେଥିପାଇଁ ମନରେ ସ୍ୱତଃ ପ୍ରଶ୍ନ ଉଦ୍ରେକ ହୁଏ । ଏଠାରେ ମସଜିଦ ସହିତ ଉପରୋକ୍ତ ଦୁଇଗୋଟି ବିଷୟର ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ହେଉଛି ଯେ ଭୋଜନ ଶରୀର ଉପରେ ପ୍ରଭାବ ପକାଇଥାଏ । ଉତ୍ତମ ଓ ଉପଯୋଗୀ କର୍ମ ପାଇଁ ଉପାସନା ସୁଯୋଗ ଦେଇଥାଏ । ଅତଏବ ଶରୀର, ଆତ୍ମା ଓ ଉପାସନା ପରସ୍ପର ସହିତ ଗଭୀର ଭାବରେ ସମ୍ପୃକ୍ତ । ତେଣୁ ନିର୍ଦ୍ଦେଶ ଦିଆଯାଇଛି ଯେ ଯଥାବିଧି ନମାଜ ପାଠ କର ତାହାହେଲେ ପୁଣ୍ୟ କାର୍ଯ୍ୟ କରିବା ପାଇଁ ତୁମମାନଙ୍କୁ ଉପଯୁକ୍ତ ସାମର୍ଥ୍ୟ ପ୍ରାପ୍ତ ହେବ । ଏଠାରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ବିଷୟ ଶିକ୍ଷା ଦିଆଯାଇଛି ତାହା ହେଉଛି ପାନାହାରରେ ଅପବ୍ୟୟ ବା ଆବଶ୍ୟକତାଠାରୁ ଅଧିକ ବ୍ୟୟ କର ନାହିଁ ।

୩. କେତେକ ହିନ୍ଦୁ ଓ ଖ୍ରୀଷ୍ଟିୟାନମାନଙ୍କ ମତରେ ଧର୍ମନିଷ୍ଠ ବ୍ୟକ୍ତିମାନେ କଦାପି ସର୍ବୋତ୍କୃଷ୍ଟ ଭୋଜନ କରନ୍ତି ନାହିଁ । କିନ୍ତୁ ଇସଲାମ ଧର୍ମରେ ଯେ କୌଣସି ବିଶ୍ୱାସକାରୀଙ୍କ ପାଇଁ ସକଳ ବିଶୁଦ୍ଧ ଭୋଜନ ବୈଧ ଅଟେ । ବ୍ୟବହାର କରାଯିବା ପାଇଁ ହିଁ ଏଗୁଡ଼ିକ ଅଲ୍ଲାହ୍ ସୃଷ୍ଟି କରିଛନ୍ତି । ଉତ୍ତମ ଓ ବିଶୁଦ୍ଧ ସାମଗ୍ରୀମାନ ବିଶ୍ୱାସକାରୀମାନଙ୍କ ସକାଶେ ବ୍ୟବସ୍ଥା କରାଯାଇଥିଲେ ମଧ୍ୟ ଇହ-ଜଗତରେ ଅବିଶ୍ୱାସକାରୀମାନେ ସେଗୁଡ଼ିକୁ ଉପଭୋଗ କରିଥାନ୍ତି । କିନ୍ତୁ ପରକାଳରେ ସେଗୁଡ଼ିକୁ କେବଳ ବିଶ୍ୱାସକାରୀମାନେ ଭୋଗ କରିବେ ଓ ଅବିଶ୍ୱାସକାରୀମାନଙ୍କର ତହିଁରେ କୌଣସି ଭାଗ ରହିବ ନାହିଁ ।

୪. ଏହାର ତାତ୍ପର୍ଯ୍ୟ ହେଉଛି, ଇସଲାମ ଧର୍ମରେ ପାନାହାର ଓ ବେଶ-ଭୂଷାରେ କଳୁଷିତ ସାମଗ୍ରୀର ବ୍ୟବହାରକୁ ନିଷେଧ କରାଯାଇଛି । ସେପରି ସାମଗ୍ରୀର ବ୍ୟବହାରକୁ ମୁସରିକ ଓ ଖ୍ରୀଷ୍ଟିୟାନମାନେ ଅନୁମତି ଦେଇଥିଲେ ମଧ୍ୟ ପବିତ୍ର କୋରାନରେ ଅଲ୍ଲାହ୍ ଅପବିତ୍ର ଓ କଳୁଷିତ ସାମଗ୍ରୀର ବ୍ୟବହାରକୁ ନିଷିଦ୍ଧ କରିଛନ୍ତି ଓ ଅନ୍ୟ ପକ୍ଷରେ ପରିଚ୍ଛନ୍ନ ଓ ପବିତ୍ର ରହିବାକୁ ଆଦେଶ ଦେଇଛନ୍ତି ।

قُلْ إِنَّمَا حَرَّمَ رَبِّيَ الْفَوَاحِشَ مَا ظَهَرَ مِنْهَا وَمَا بَطَنَ وَالْإِثْمَ وَالْبَغْيَ بِغَيْرِ الْحَقِّ وَأَنْ تُشْرِكُوا بِاللَّهِ مَا لَمْ يُنَزِّلْ بِهِ سُلْطَانًا وَأَنْ تَقُولُوا عَلَى اللَّهِ مَا لَا تَعْلَمُونَ ﴿٣٤﴾

୩୪. ତୁମେ କୁହ, "ଆମମାନଙ୍କ ପାଳନକର୍ତ୍ତା କେବଳ ଗୁପ୍ତ ଓ ପ୍ରକାଶ୍ୟ କୁକାର୍ଯ୍ୟଗୁଡ଼ିକୁ, ପାପ ତଥା ନ୍ୟାୟସଙ୍ଗତ କାରଣ ନ ଥାଇ ବିଦ୍ରୋହ କରିବାକୁ ଅବୈଧ କରିଛନ୍ତି ଏବଂ ତାହାକୁ ମଧ୍ୟ (ଅବୈଧ) କରିଛନ୍ତି ଯେ ତୁମେମାନେ ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ, ଯାହା ବିଷୟରେ ସେ କୌଣସି ପ୍ରମାଣ ଅବତୀର୍ଣ୍ଣ କରିନାହାନ୍ତି, ସମକକ୍ଷ ମନେକର ; ଏବଂ ସେହି ବିଷୟଗୁଡ଼ିକୁ ମଧ୍ୟ (ଅବୈଧ କରିଛନ୍ତି) ଯେ ତୁମେମାନେ ଅଲ୍ଲାହଙ୍କ ସଂକ୍ରାନ୍ତରେ ଏପରି ମିଥ୍ୟା ଆରୋପ କର ଯାହା ତୁମେମାନେ ଜାଣି ନାହଁ ।"

وَلِكُلِّ أُمَّةٍ أَجَلٌ فَإِذَا جَاءَ أَجَلُهُمْ لَا يَسْتَأْخِرُونَ سَاعَةً وَلَا يَسْتَقْدِمُونَ ﴿٣٥﴾

୩୫. ଏବଂ ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଏକ (ନିର୍ଦ୍ଦିଷ୍ଟ) ଅବଧି[୧] ଅଛି, ଏବଂ ଯେତେବେଳେ ସେମାନଙ୍କର (ସମାପ୍ତି) ସମୟ ଉପସ୍ଥିତ ହେବ, ସେତେବେଳେ ସେମାନେ ତହିଁରୁ ମୁହୂର୍ତ୍ତେ ପଛେଇ ପାରିବେ ନାହିଁ, କି (ମୁହୂର୍ତ୍ତେ) ଆଗେଇ ପାରିବେ ନାହିଁ ।

يَا بَنِي آدَمَ إِمَّا يَأْتِيَنَّكُمْ رُسُلٌ مِنْكُمْ يَقُصُّونَ عَلَيْكُمْ آيَاتِي فَمَنِ اتَّقَى وَأَصْلَحَ فَلَا خَوْفٌ عَلَيْهِمْ وَلَا هُمْ يَحْزَنُونَ ﴿٣٦﴾

୩୬. ହେ ଆଦମଙ୍କ ସନ୍ତାନମାନେ[୨] ! ଯଦି (କେବେ) ତୁମମାନଙ୍କ ମଧ୍ୟରୁ ତୁମମାନଙ୍କ ନିକଟକୁ ରସୁଲମାନେ ଆସନ୍ତି ଓ ସେମାନେ ତୁମମାନଙ୍କ ନିକଟରେ ଆମର ନିଦର୍ଶନଗୁଡ଼ିକୁ ବର୍ଣ୍ଣନା କରନ୍ତି, ତେବେ ଯେଉଁମାନେ ଧର୍ମଭୀରୁ ହେବେ ଓ (ନିଜକୁ) ସଂଶୋଧନ କରିବେ, ସେମାନଙ୍କର ଭବିଷ୍ୟତ ପାଇଁ କୌଣସି ଭୟ ନାହିଁ, କି (ଅତୀତ ପାଇଁ) ସେମାନେ ଦୁଃଖିତ ହେବେ ନାହିଁ ।

وَالَّذِينَ كَذَّبُوا بِآيَاتِنَا وَاسْتَكْبَرُوا عَنْهَا أُولَٰئِكَ أَصْحَابُ النَّارِ هُمْ فِيهَا خَالِدُونَ ﴿٣٧﴾

୩୭. ଏବଂ ଯେଉଁମାନେ ଆମର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରନ୍ତି ଏବଂ ତହିଁରୁ ଅହଙ୍କାର-ପୂର୍ବକ ଫେରି ଯାଆନ୍ତି, ସେମାନେ ହିଁ ନରକବାସୀ ଅଟନ୍ତି ; ସେମାନେ ସେଥିରେ ବହୁକାଳ ପଡ଼ି ରହିବେ ।

---

୧. ଏହାର ତାତ୍ପର୍ଯ୍ୟ ନୁହେଁ ଯେ ବିଧାତା ସମୟ ନିର୍ଦ୍ଧାରିତ କରି ଦେଇଛନ୍ତି ବରଂ ସେ କର୍ମ ନିର୍ଦ୍ଧାରିତ କରିଛନ୍ତି ଯାହାକୁ ଭିତ୍ତିକରି କୌଣସି ଜାତିର ପରମାୟୁରେ ହ୍ରାସବୃଦ୍ଧି ହେଉଥାଏ ।। ଯେବେ କୌଣସି ଜାତି ପୁଣ୍ୟକାର୍ଯ୍ୟ ସମ୍ପାଦନ କରିବାରେ ନିଜକୁ ଦୂରେଇ ରଖିବ ତେବେ ସେହି ଜାତିର ବିନାଶ ଅବଶ୍ୟମ୍ଭାବୀ । ଅତଏବ ସମୟର ଅର୍ଥ ସେହି ବିଧାନ ଯାହା ଅଧୀନରେ କୌଣସି ଜାତିର ପରମାୟୁରେ ହ୍ରାସ ବୃଦ୍ଧି ହୋଇଥାଏ ।

୨. ଏହି ଆୟତରେ ତଥା ଏହାର ପୂର୍ବବର୍ତ୍ତୀ ଆୟତ ୨୭, ୨୮ ଓ ୩୨ରେ ବ୍ୟବହୃତ 'ହେ ଆଦମଙ୍କ ସନ୍ତାନମାନେ' ପ୍ରତି ଦୃଷ୍ଟି ଦେଲେ ଜଣାଯିବ ଯେ ଏଠାରେ ହଜରତ ଆଦମଙ୍କ ଠିକ୍ ପରେ ସୁଦୂର ଅତୀତରେ ବାସ କରୁଥିବା ଲୋକମାନଙ୍କୁ ସମ୍ବୋଧନ କରାଯାଇ ନାହିଁ ବରଂ ହଜରତ ମହମ୍ମଦଙ୍କ ସମୟର ଓ ତାହାଙ୍କ ପରେ ଜନ୍ମ ହୋଇଥିବା ଲୋକମାନଙ୍କୁ ସମ୍ବୋଧିତ କରି କୁହାଯାଇଛି ।

୩୮. ସୁତରାଂ, ଯେ ଅଲ୍ଲାଃଙ୍କ ବିରୁଦ୍ଧରେ ମିଥ୍ୟା ରଚନା କରେ ବା ତାହାଙ୍କର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରେ ତାହାଠାରୁ ଅଧିକ ଅତ୍ୟାଚାରୀ କିଏ ହୋଇପାରେ ? ସେମାନେ ନିର୍ଦ୍ଦିଷ୍ଟ ଶାସ୍ତି ମଧ୍ୟରୁ ନିଜର ଭାଗ ପାଉଥିବେ ଏପରି କି ଯେତେବେଳେ ସେମାନଙ୍କର ପ୍ରାଣ ନାଶ କରିବା ପାଇଁ ଆମ୍ଭର ଦେବଦୂତମାନେ ସେମାନଙ୍କ ପାଖରେ ଉପସ୍ଥିତ ହୋଇ କହିବେ, "ଅଲ୍ଲାଃଙ୍କ ବ୍ୟତୀତ ଯାହାଙ୍କୁ ତୁମେମାନେ ଡାକୁଥିଲ ସେମାନେ କାହାନ୍ତି ?" ଯେତେବେଳେ ସେମାନେ କହିବେ, "ସେମାନେ ତ ଆମମାନଙ୍କ ନିକଟରୁ ଅନ୍ତର୍ଦ୍ଧାନ ହୋଇ ଯାଇଛନ୍ତି", ସେମାନେ ନିଜ ବିରୁଦ୍ଧରେ ନିଜେ ସାକ୍ଷ୍ୟ ଦେବେ ଯେ ସେମାନେ ଅବିଶ୍ୱାସକାରୀ ଥିଲେ ।

فَمَنْ أَظْلَمُ مِمَّنِ افْتَرَىٰ عَلَى اللَّهِ كَذِبًا أَوْ كَذَّبَ بِآيَاتِهِ ۚ أُولَٰئِكَ يَنَالُهُمْ نَصِيبُهُمْ مِنَ الْكِتَابِ ۖ حَتَّىٰ إِذَا جَاءَتْهُمْ رُسُلُنَا يَتَوَفَّوْنَهُمْ قَالُوا أَيْنَ مَا كُنْتُمْ تَدْعُونَ مِنْ دُونِ اللَّهِ ۖ قَالُوا ضَلُّوا عَنَّا وَشَهِدُوا عَلَىٰ أَنْفُسِهِمْ أَنَّهُمْ كَانُوا كَافِرِينَ ﴿٣٨﴾

୩୯. (ଅଲ୍ଲାଃ ସେମାନଙ୍କୁ) କହିବେ, "ତୁମମାନଙ୍କ ପୂର୍ବବର୍ତ୍ତୀ ଜିନ୍ନ ଓ ମାନବମାନଙ୍କ ମଧ୍ୟରୁ ଯେଉଁମାନେ (ନରକ) ଅଗ୍ନିରେ ପ୍ରବେଶ କରିଛନ୍ତି, ତୁମେମାନେ ମଧ୍ୟ ସେମାନଙ୍କ ସହିତ ପ୍ରବେଶ କର"; ଯେତେବେଳେ କୌଣସି ଦଳ (ନରକରେ) ପ୍ରବେଶ କରିବ, (ସେତେବେଳେ) ସେମାନେ ପୂର୍ବରୁ ପ୍ରବେଶ କରିଥିବା ନିଜର ଭଗିନୀ (ଦଳ)କୁ ଅଭିଶାପ ଦେବେ, ଏପରି କି ଯେତେବେଳେ ସେମାନେ ସମସ୍ତେ ସେଠାରେ (ଅର୍ଥାତ୍ ନରକରେ) ପ୍ରବେଶ କରି ସାରିଥିବେ, ସେତେବେଳେ ସେମାନଙ୍କ ମଧ୍ୟରୁ ସର୍ବଶେଷ ଦଳ ସେମାନଙ୍କ ପୂର୍ବବର୍ତ୍ତୀ ଦଳ ସମ୍ବନ୍ଧରେ କହିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଏମାନେ ହିଁ ଆମମାନଙ୍କୁ ପଥଭ୍ରଷ୍ଟ କରାଇଥିଲେ, ସୁତରାଂ ତୁମେ ସେମାନଙ୍କୁ ନରକରେ ବହୁ ଗୁଣ ଶାସ୍ତି ଦିଅ,"[୨] ସେ (ଅଲ୍ଲାଃ) କହିବେ, "ସମସ୍ତଙ୍କୁ ଅଧିକ ଶାସ୍ତି ଦିଆଯାଉଛି, କିନ୍ତୁ ତୁମେମାନେ ଜାଣୁ ନାହଁ ।"

قَالَ ادْخُلُوا فِي أُمَمٍ قَدْ خَلَتْ مِنْ قَبْلِكُمْ مِنَ الْجِنِّ وَالْإِنْسِ فِي النَّارِ ۖ كُلَّمَا دَخَلَتْ أُمَّةٌ لَعَنَتْ أُخْتَهَا ۖ حَتَّىٰ إِذَا ادَّارَكُوا فِيهَا جَمِيعًا قَالَتْ أُخْرَاهُمْ لِأُولَاهُمْ رَبَّنَا هَٰؤُلَاءِ أَضَلُّونَا فَآتِهِمْ عَذَابًا ضِعْفًا مِنَ النَّارِ ۖ قَالَ لِكُلٍّ ضِعْفٌ وَلَٰكِنْ لَا تَعْلَمُونَ ﴿٣٩﴾

୪୦. ଏବଂ ସେମାନଙ୍କର ପୂର୍ବବର୍ତ୍ତୀ (ଦଳ) ସେମାନଙ୍କର ପରବର୍ତ୍ତୀ (ଦଳ)କୁ କହିବେ, "ତୁମମାନଙ୍କର ଆମମାନଙ୍କ ଉପରେ କୌଣସି ଶ୍ରେଷ୍ଠତା ନାହିଁ (ଯଦ୍ଦ୍ୱାରା ତୁମମାନଙ୍କୁ ଅଳ୍ପ ଶାସ୍ତି ଦିଆଯିବ);ସୁତରାଂ ତୁମେମାନେ ନିଜର କର୍ମ ଯୋଗୁଁ ଶାସ୍ତି ଆସ୍ୱାଦନ କର ।"

وَقَالَتْ أُولَاهُمْ لِأُخْرَاهُمْ فَمَا كَانَ لَكُمْ عَلَيْنَا مِنْ فَضْلٍ فَذُوقُوا الْعَذَابَ بِمَا كُنْتُمْ تَكْسِبُونَ ﴿٤٠﴾ ع

୧. ଏହି ଆୟତ ଅନ୍ତର୍ଗତ 'ଇଫ୍‌ତରା' ଶବ୍ଦ ଉଭୟ ସତ୍ୟ ଓ ମିଥ୍ୟାକୁ ବୁଝାଏ । ସତ୍ୟ ଏହି ଦୃଷ୍ଟିରୁ ଯେ ଜଣେ ବକ୍ତା କୌଣସି ବ୍ୟକ୍ତିଙ୍କ ପ୍ରତି ଲକ୍ଷ୍ୟକରି କିଛି କହିଥାନ୍ତି ଯାହା ବାସ୍ତବରେ ସତ୍ୟ, କିନ୍ତୁ ପ୍ରକୃତରେ ଉକ୍ତ ବକ୍ତା ସେହି ବିଷୟ କହିନାହାନ୍ତି । ସେହିପରି ମିଥ୍ୟା, ଏହି ଦୃଷ୍ଟିରୁ ଯେ ଯେଉଁ ବିଷୟ ବକ୍ତାଙ୍କୁ ଲକ୍ଷ୍ୟ କରି କୁହାଯାଏ ସେହି ବିଷୟଟି ସ୍ୱତଃ ମିଥ୍ୟା ଓ ବକ୍ତା ସେହି ବିଷୟକୁ ଆଦୌ କହିନାହାନ୍ତି ।

୨. ଶାସ୍ତିଭୋଗ ହେଉଥିବା ସମୟରେ ସେହି ଶାସ୍ତି ସର୍ବଦା ଅଧିକ କଷ୍ଟଦାୟକ ପ୍ରତୀତ ହୁଏ, କାରଣ ଅଲ୍ଲାଃଙ୍କ ପ୍ରଦତ୍ତ ଶାସ୍ତି ଅସହ୍ୟ, ଯେପରିକି ପ୍ରତ୍ୟେକ ରୋଗୀ ଚିନ୍ତାକରେ ଯେ ଅନ୍ୟ ରୋଗୀମାନଙ୍କ ତୁଳନାରେ ତା'ରୋଗ ଅଧିକ କଷ୍ଟଦାୟକ ।

ରୁ:୫

إِنَّ الَّذِينَ كَذَّبُوا بِآيَاتِنَا وَاسْتَكْبَرُوا عَنْهَا لَا تُفَتَّحُ لَهُمْ أَبْوَابُ السَّمَاءِ وَلَا يَدْخُلُونَ الْجَنَّةَ حَتَّىٰ يَلِجَ الْجَمَلُ فِي سَمِّ الْخِيَاطِ ۚ وَكَذَٰلِكَ نَجْزِي الْمُجْرِمِينَ ﴿٤١﴾

୪୧. ବାସ୍ତବିକ ଯେଉଁମାନେ ଆମର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରନ୍ତି, ଏବଂ ଅହଂକାରପୂର୍ବକ ଫେରି ଯାଆନ୍ତି, ସେମାନଙ୍କ ପାଇଁ ଆକାଶର ଦ୍ୱାର ଉନ୍ମୁକ୍ତ ହେବ ନାହିଁ, ଏବଂ ସେମାନେ ବୈକୁଣ୍ଠରେ ପ୍ରବେଶ କରି ପାରିବେ ନାହିଁ ଯେ ପର୍ଯ୍ୟନ୍ତ କି ସୂଚିରନ୍ଧ୍ର ମଧ୍ୟରେ ଓଟ ପ୍ରବେଶ[1] ନ କରିଛି ; ଏବଂ ଆମେ ଏହିପରି ଭାବେ ଅପରାଧୀମାନଙ୍କୁ ପ୍ରତିଫଳ ପ୍ରଦାନ କରୁ ।

لَهُمْ مِنْ جَهَنَّمَ مِهَادٌ وَمِنْ فَوْقِهِمْ غَوَاشٍ ۚ وَكَذَٰلِكَ نَجْزِي الظَّالِمِينَ ﴿٤٢﴾

୪୨. ନରକ ସେମାନଙ୍କ ପାଇଁ ଶଯ୍ୟା ହେବ, ଏବଂ ସେମାନଙ୍କ ଉପରେ ତାହାରି ଆବରଣ ରହିବ ; ଏବଂ ଆମେ ଏହିପରି ଭାବେ ଅପରାଧୀମାନଙ୍କୁ ପ୍ରତିଫଳ ପ୍ରଦାନ କରୁ ।

وَالَّذِينَ آمَنُوا وَعَمِلُوا الصَّالِحَاتِ لَا نُكَلِّفُ نَفْسًا إِلَّا وُسْعَهَا أُولَٰئِكَ أَصْحَابُ الْجَنَّةِ ۖ هُمْ فِيهَا خَالِدُونَ ﴿٤٣﴾

୪୩. ଏବଂ ଯେଉଁମାନେ ବିଶ୍ୱାସ କରନ୍ତି ଓ ସତ୍‌କାର୍ଯ୍ୟ କରନ୍ତି, (ସେମାନେ ମନେ ରଖନ୍ତୁ ଯେ) ଆମେ କାହାରିକୁ ତାହାର ସାଧ୍ୟ ଅପେକ୍ଷା ଅଧିକ ଦାୟିତ୍ୱ ନ୍ୟସ୍ତ କରୁ ନାହୁଁ; ସେମାନେ ବୈକୁଣ୍ଠବାସୀ ହେବେ, ଏବଂ ସେଠାରେ ସର୍ବଦା ବାସ କରିବେ ।

وَنَزَعْنَا مَا فِي صُدُورِهِمْ مِنْ غِلٍّ تَجْرِي مِنْ تَحْتِهِمُ الْأَنْهَارُ ۖ وَقَالُوا الْحَمْدُ لِلَّهِ الَّذِي هَدَانَا لِهَٰذَا وَمَا كُنَّا لِنَهْتَدِيَ لَوْلَا أَنْ هَدَانَا اللَّهُ ۖ لَقَدْ جَاءَتْ رُسُلُ رَبِّنَا بِالْحَقِّ ۖ وَنُودُوا أَنْ تِلْكُمُ الْجَنَّةُ أُورِثْتُمُوهَا بِمَا كُنْتُمْ تَعْمَلُونَ ﴿٤٤﴾

୪୪. ଏବଂ ଆମେ ସେ ବୈକୁଣ୍ଠବାସୀମାନଙ୍କ ହୃଦୟରୁ (ପରସ୍ପର ମଧ୍ୟରେ ଥିବା) ସମସ୍ତ ପ୍ରକାର ବିଦ୍ୱେଷ ଭାବକୁ ଦୂର କରି ଦେବୁ ; ସେମାନଙ୍କ ନିୟନ୍ତ୍ରଣରେ[2] ଝରଣାମାନ ପ୍ରବାହିତ ହେଉଥିବ ଏବଂ ସେମାନେ କହିବେ, "ଅଲ୍ଲାଃ ହିଁ ସକଳ ପ୍ରଶଂସାର ପାତ୍ର ଯେ ଆମମାନଙ୍କୁ ଏହାର (ଅର୍ଥାତ୍ ବୈକୁଣ୍ଠର) ପଥ ପ୍ରଦର୍ଶନ କରିଅଛନ୍ତି ; ଏବଂ ଯଦି ଅଲ୍ଲାଃ ଆମମାନଙ୍କୁ ଏହାର ପଥ ପ୍ରଦର୍ଶନ କରାଇ ନ ଥା'ନ୍ତେ, ତେବେ ଆମେମାନେ କଦାପି ଏହି ପଥପ୍ରାପ୍ତ ହୋଇପାରି ନ ଥାଆନ୍ତୁ ; ଆମମାନଙ୍କ ପାଳନକର୍ତ୍ତାଙ୍କର ରସୁଲମାନେ ନିଶ୍ଚୟ ଆମମାନଙ୍କ ପାଖକୁ ସତ୍ୟ ସହିତ ଆଗମନ କରିଥିଲେ"; ଏବଂ ସେମାନଙ୍କୁ ଉଚ୍ଚ ସ୍ୱରରେ କହି ଦିଆଯିବ, "ଏହା ହିଁ ସେହି ବୈକୁଣ୍ଠ ଯାହାର ଦାୟାଦ ତୁମମାନଙ୍କ କର୍ମ ଯୋଗୁଁ ତୁମମାନଙ୍କୁ କରାଯାଇଛି ।"

---

୧. ଅର୍ଥାତ୍ ନିଜ କର୍ମ ଯୋଗୁ ବୈକୁଣ୍ଠରେ ପ୍ରବେଶ କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ମନେ ହେବ । ଅବଶ୍ୟ ଅଲ୍ଲାଃ କରୁଣା କଲେ ତାହା ସମ୍ଭବ ।

୨. ପୃଥିବୀରେ ଝରଣା ଆଦି ଜଳସ୍ରୋତର ମାଲିକ ହେଉଛନ୍ତି ଜମିଦାର ବା ସରକାର ; କିନ୍ତୁ ପରଲୋକରେ ଯେଉଁସବୁ ଝରଣାରୁ ବୈକୁଣ୍ଠବାସୀ ଜଳପାନ କରିବେ ସେଗୁଡ଼ିକ ଉପରେ ସେମାନଙ୍କର କର୍ତ୍ତୃତ୍ୱ ରହିବ ।

وَنَادَىٰٓ أَصْحَٰبُ ٱلْجَنَّةِ أَصْحَٰبَ ٱلنَّارِ أَن قَدْ وَجَدْنَا مَا وَعَدَنَا رَبُّنَا حَقًّا فَهَلْ وَجَدتُّم مَّا وَعَدَ رَبُّكُمْ حَقًّا ۖ قَالُوا۟ نَعَمْ ۚ فَأَذَّنَ مُؤَذِّنٌۢ بَيْنَهُمْ أَن لَّعْنَةُ ٱللَّهِ عَلَى ٱلظَّٰلِمِينَ ﴿٤٥﴾

୪୫. ଏବଂ ବୈକୁଣ୍ଠବାସୀମାନେ ନରକବାସୀମାନଙ୍କୁ କହିବେ, "ଆମମାନଙ୍କ ପାଳନକର୍ତ୍ତା ଆମମାନଙ୍କ ନିକଟରେ ଯାହା ଅଙ୍ଗୀକାର କରିଥିଲେ ତାହାକୁ ଆମେମାନେ ସତ୍ୟ ବୋଲି ପାଇଲୁ, ତୁମମାନଙ୍କର ପାଳନକର୍ତ୍ତା ଯାହା ତୁମମାନଙ୍କୁ ଅଙ୍ଗୀକାର କରିଥିଲେ, କ'ଣ ତୁମେମାନେ ତାହାକୁ ସତ୍ୟ ବୋଲି ପାଇଲ ?" ସେ (ନରକବାସୀ)ମାନେ କହିବେ, "ହଁ", ତତ୍‌ପରେ ଜଣେ ଘୋଷଣାକାରୀ ସେମାନଙ୍କ ମଧ୍ୟରେ ଉଚ୍ଚସ୍ୱରରେ କହିବ, "ଅତ୍ୟାଚାରୀମାନଙ୍କ ଉପରେ ଅଲ୍ଲାହଙ୍କର ଅଭିଶାପ ହେଉ ।"

ٱلَّذِينَ يَصُدُّونَ عَن سَبِيلِ ٱللَّهِ وَيَبْغُونَهَا عِوَجًا وَهُم بِٱلْءَاخِرَةِ كَٰفِرُونَ ﴿٤٦﴾

୪୬. ଯେଉଁମାନେ ଅଲ୍ଲାହଙ୍କ ପଥରୁ (ଲୋକମାନଙ୍କୁ) ବାଧା ଦିଅନ୍ତି, ଏବଂ ସେ ପଥରେ କୁଟିଳତା ଖୋଜନ୍ତି, ଏବଂ ତତ୍‌ସଙ୍ଗେ ଯେଉଁମାନେ ପରକାଳକୁ ଅସ୍ୱୀକାର କରନ୍ତି ।

وَبَيْنَهُمَا حِجَابٌ ۚ وَعَلَى ٱلْأَعْرَافِ رِجَالٌ يَعْرِفُونَ كُلًّۢا بِسِيمَىٰهُمْ ۚ وَنَادَوْا۟ أَصْحَٰبَ ٱلْجَنَّةِ أَن سَلَٰمٌ عَلَيْكُمْ ۚ لَمْ يَدْخُلُوهَا وَهُمْ يَطْمَعُونَ ﴿٤٧﴾

୪୭. ଏବଂ ଏ ଉଭୟ (ବୈକୁଣ୍ଠବାସୀ ଓ ନରକବାସୀମାନଙ୍କ) ମଧ୍ୟରେ ଏକ ପରଦା ଥିବ, ଏବଂ ମର୍ଯ୍ୟାଦାସମ୍ପନ୍ନ[୧] ସ୍ଥାନରେ ଏପରି କେତେକ ଲୋକ ଥିବେ, ଯେଉଁମାନେ କି ସମସ୍ତଙ୍କୁ ସେମାନଙ୍କର ମୁଖମଣ୍ଡଳର ଲକ୍ଷଣରୁ ଜାଣି ପାରୁଥିବେ, ଏବଂ ସେମାନେ ବୈକୁଣ୍ଠବାସୀଙ୍କୁ (ଦେଖି) ଡାକି କହିବେ, "ତୁମମାନଙ୍କ ଉପରେ ଶାନ୍ତି ହେଉ ;" ସେମାନେ ଏ ପର୍ଯ୍ୟନ୍ତ ବୈକୁଣ୍ଠରେ ପ୍ରବେଶ କରି ନ ଥିବେ କିନ୍ତୁ ସେମାନେ ଯିବାକୁ ଆଶାବାନ୍ ଥିବେ ।

وَإِذَا صُرِفَتْ أَبْصَٰرُهُمْ تِلْقَآءَ أَصْحَٰبِ ٱلنَّارِ قَالُوا۟ رَبَّنَا لَا تَجْعَلْنَا مَعَ ٱلْقَوْمِ ٱلظَّٰلِمِينَ ﴿٤٨﴾

୪୮. ଏବଂ ଯେତେବେଳେ ସେ (ବୈକୁଣ୍ଠବାସୀ)- ମାନଙ୍କ ଦୃଷ୍ଟି ନରକବାସୀଙ୍କ ଆଡ଼କୁ ଫେରାଇ ନିଆଯିବ ସେତେବେଳେ ସେମାନେ କହିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କୁ ଅତ୍ୟାଚାରୀ ସମ୍ପ୍ରଦାୟରେ ଅନ୍ତର୍ଭୁକ୍ତ କର ନାହିଁ ।"

---

୧. କେତେକ ବିଦ୍ୱାନ "ଆରାଫ" ଶବ୍ଦର ଅର୍ଥ ଏହିପରି କରିଛନ୍ତି: ଏପରି ସ୍ଥାନ ଯହିଁରେ ମଧ୍ୟମ ଶ୍ରେଣୀର ବିଶ୍ୱାସକାରୀ ରହିବେ । କିନ୍ତୁ ଏହି ଅର୍ଥର ଯଥାର୍ଥତା ସମ୍ବନ୍ଧରେ କୌଣସି ପ୍ରମାଣ ନାହିଁ । ପୂର୍ବାପର ଅନ୍ୟାନ୍ୟ ଆୟତକୁ ଅନୁଧ୍ୟାନ କଲେ ଏହା ଭ୍ରମାତ୍ମକ ବୋଧହେବ । ସେଠାରେ ରହିଥିବା ଲୋକମାନଙ୍କ କଥୋପକଥନରୁ ଜଣାପଡ଼େ ଯେ ସେମାନେ ଉଚ୍ଚ ମର୍ଯ୍ୟାଦା ସମ୍ପନ୍ନ ଓ ସର୍ବଗୁଣାନ୍ୱିତ ବିଶ୍ୱାସକାରୀ ତଥା ଆଦର୍ଶ ପୁରୁଷ କାରଣ ସେମାନେ ଅନ୍ୟ ବିଶ୍ୱାସକାରୀମାନଙ୍କୁ ବୈକୁଣ୍ଠରେ ପ୍ରବେଶ କରିବାକୁ ନିର୍ଦ୍ଦେଶ ଦେଉଥିବେ । ନିଜେ ବିପଦ ମଧ୍ୟରେ ଥାଇ କ'ଣ କେହି ଅନ୍ୟ ବିଷୟରେ ଚିନ୍ତା କରିପାରେ ? ତେଣୁ ଆରାଫରେ ଅବସ୍ଥାପିତ ବ୍ୟକ୍ତିମାନେ ନିଜ ସମ୍ବନ୍ଧରେ ଚିନ୍ତିତ ନଥିବା ଯୋଗୁଁ ଓ ଅନ୍ୟମାନଙ୍କୁ ବୈକୁଣ୍ଠରେ ପ୍ରବେଶ କରିବାକୁ ନିର୍ଦ୍ଦେଶ ଦେଉଥିବା ହେତୁ ସେମାନଙ୍କ ପଦମର୍ଯ୍ୟାଦା ନିଶ୍ଚିତ ରୂପେ ବହୁ ଉଚ୍ଚରେ । କେତେକଙ୍କ ମତରେ ସେଠାରେ ଅବସ୍ଥାପିତ ବ୍ୟକ୍ତିମାନେ ହେଉଛନ୍ତି ନବି । ଏହା ଅଧିକ ସମୀଚୀନ ମନେ ହେଉଛି । ତେଣୁ ନବି ଓ ଶହୀଦମାନଙ୍କୁ ଅପେକ୍ଷାକୃତ ନିମ୍ନ ସ୍ଥାନରେ ରଖାଯାଇ ମଧ୍ୟମ ଶ୍ରେଣୀୟ ବିଶ୍ୱାସକାରୀମାନଙ୍କୁ ଆରାଫରେ ରଖାଯିବା ଆଦୌ ଗ୍ରହଣୀୟ ନୁହେଁ ।

ରୁ : ୬

୪୯. ଏବଂ ମର୍ଯ୍ୟାଦା–ସମ୍ପନ୍ନ ସ୍ଥାନରେ ରହୁଥିବା ଲୋକମାନେ କେତେକ (ନରକବାସୀ)ଙ୍କୁ ସେମାନଙ୍କ ଲକ୍ଷଣ ଦ୍ବାରା ଜାଣି ପାରି ସେମାନଙ୍କୁ ଡାକି କହିବେ, "ତୁମମାନଙ୍କର ସଂଖ୍ୟା ବା ତୁମମାନଙ୍କର ଅହଂକାର ତୁମମାନଙ୍କ ପ୍ରତି ମଙ୍ଗଳପ୍ରଦ ହେଲା ନାହିଁ।"

وَنَادَىٰ أَصْحَابُ الْأَعْرَافِ رِجَالًا يَعْرِفُونَهُم بِسِيمَاهُمْ قَالُوا مَا أَغْنَىٰ عَنكُمْ جَمْعُكُمْ وَمَا كُنتُمْ تَسْتَكْبِرُونَ ﴿٤٩﴾

୫୦. (ତତ୍‌ପରେ ବୈକୁଣ୍ଠବାସୀଙ୍କ ପ୍ରତି ସଙ୍କେତ ଦେଇ ନରକବାସୀଙ୍କୁ କହିବେ ଯେ) "କ'ଣ ଏମାନେ ସେହି ଲୋକ ଯେଉଁମାନଙ୍କ ସଂକ୍ରାନ୍ତରେ ତୁମେମାନେ ଶପଥପୂର୍ବକ କହୁଥିଲ ଯେ ଅଲ୍ଲାଃ ସେମାନଙ୍କ ପ୍ରତି କରୁଣା କରିବେ ନାହିଁ ? (ତତ୍‌ପରେ ଅଲ୍ଲାଃ ବୈକୁଣ୍ଠରେ ପ୍ରବେଶ କରିବାକୁ ପ୍ରତୀକ୍ଷା କରୁଥିବା ଲୋକମାନଙ୍କୁ କହିବେ ଯେ) "ତୁମେମାନେ ବୈକୁଣ୍ଠରେ ପ୍ରବେଶ କର ? ତୁମମାନଙ୍କର (ଭବିଷ୍ୟତ ପାଇଁ) କୌଣସି ଭୟ ନାହିଁ କି ତୁମମାନଙ୍କୁ ଅତୀତର କୌଣସି ଘଟଣା ଦୁଃଖିତ କରିବ ନାହିଁ।"

أَهَٰؤُلَاءِ الَّذِينَ أَقْسَمْتُمْ لَا يَنَالُهُمُ اللَّهُ بِرَحْمَةٍ ۚ ادْخُلُوا الْجَنَّةَ لَا خَوْفٌ عَلَيْكُمْ وَلَا أَنتُمْ تَحْزَنُونَ ﴿٥٠﴾

୫୧. ଏବଂ ନରକବାସୀମାନେ ବୈକୁଣ୍ଠବାସୀଙ୍କୁ ସମ୍ବୋଧନ କରି କହିବେ, "ଆମମାନଙ୍କ ଆଡ଼କୁ ମଧ୍ୟ କିଛି ଜଳ ନିକ୍ଷେପ କର, କିମ୍ବା ତୁମମାନଙ୍କୁ ଅଲ୍ଲାଃ ଯାହା କିଛି ପ୍ରଦାନ କରିଛନ୍ତି ତହିଁରୁ କିଛି ଦିଅ" ; ସେମାନେ କହିବେ, "ଅଲ୍ଲାଃ ଏହି ଦୁଇ ଗୋଟି ବସ୍ତୁକୁ ଅବିଶ୍ବାସକାରୀଙ୍କ ସକାଶେ ଅବୈଧ କରିଛନ୍ତି।"

وَنَادَىٰ أَصْحَابُ النَّارِ أَصْحَابَ الْجَنَّةِ أَنْ أَفِيضُوا عَلَيْنَا مِنَ الْمَاءِ أَوْ مِمَّا رَزَقَكُمُ اللَّهُ ۚ قَالُوا إِنَّ اللَّهَ حَرَّمَهُمَا عَلَى الْكَافِرِينَ ﴿٥١﴾

୫୨. ଯେଉଁମାନେ ନିଜ ଧର୍ମକୁ କ୍ରୀଡ଼ା କୌତୁକ କରି ରଖିଥିଲେ ଓ ପାର୍ଥିବ ଜୀବନ ଯେଉଁମାନଙ୍କୁ ପ୍ରତାରିତ କରିଥିଲା, ସେମାନଙ୍କୁ ଆଜି ଆମେ ପରିତ୍ୟାଗ କରିବୁ ଯେପରି ସେମାନେ ଉକ୍ତ ଦିବସର ସାକ୍ଷାତ୍ (ସଂକ୍ରାନ୍ତ ଭାବନା)କୁ ପରିତ୍ୟାଗ କରିଥିଲେ ଓ ଆମର ନିଦର୍ଶନଗୁଡ଼ିକୁ ଜିଦିରେ ପ୍ରତ୍ୟାଖ୍ୟାନ କରିଥିଲେ।

الَّذِينَ اتَّخَذُوا دِينَهُمْ لَهْوًا وَلَعِبًا وَغَرَّتْهُمُ الْحَيَاةُ الدُّنْيَا ۚ فَالْيَوْمَ نَنسَاهُمْ كَمَا نَسُوا لِقَاءَ يَوْمِهِمْ هَٰذَا وَمَا كَانُوا بِآيَاتِنَا يَجْحَدُونَ ﴿٥٢﴾

୫୩. ଏବଂ ଆମେ ସେମାନଙ୍କୁ ଏକ ମହାନ୍ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଅଛୁ ଯାହାକୁ ଆମେ ଜ୍ଞାନ ବଳରେ ଏପରି ସ୍ପଷ୍ଟ ରୂପେ ବର୍ଣ୍ଣନା କରିଅଛୁ ଯେ ତାହା ବିଶ୍ବାସକାରୀମାନଙ୍କ ପାଇଁ ସତ୍‌ପଥ ଓ କରୁଣା ହେବ।

وَلَقَدْ جِئْنَاهُم بِكِتَابٍ فَصَّلْنَاهُ عَلَىٰ عِلْمٍ هُدًى وَرَحْمَةً لِّقَوْمٍ يُؤْمِنُونَ ﴿٥٣﴾

هَلْ يَنْظُرُوْنَ اِلَّا تَاْوِيْلَهٗ ؕ يَوْمَ يَاْتِيْ تَاْوِيْلُهٗ يَقُوْلُ الَّذِيْنَ نَسُوْهُ مِنْ قَبْلُ قَدْ جَآءَتْ رُسُلُ رَبِّنَا بِالْحَقِّ ۚ فَهَلْ لَّنَا مِنْ شُفَعَآءَ فَيَشْفَعُوْا لَنَآ اَوْ نُرَدُّ فَنَعْمَلَ غَيْرَ الَّذِيْ كُنَّا نَعْمَلُ ؕ قَدْ خَسِرُوْٓا اَنْفُسَهُمْ وَضَلَّ عَنْهُمْ مَّا كَانُوْا يَفْتَرُوْنَ ﴿۵۴﴾

୫୪. କ'ଣ ଏମାନେ ଏହି ଗ୍ରନ୍ଥର ସତ୍ୟତାର (ପ୍ରକାଶ ନିମନ୍ତେ) ପ୍ରତୀକ୍ଷା କରିଛନ୍ତି ? ଯେଉଁ ଦିନ ଏହାର ସତ୍ୟତା ପ୍ରକାଶିତ ହେବ, ଯେଉଁମାନେ ଏହାକୁ ପୂର୍ବେ ପରିତ୍ୟାଗ କରିଥିଲେ ସେମାନେ କହିବେ, ''ନିଶ୍ଚୟ ଆମମାନଙ୍କର ପାଳନକର୍ତ୍ତାଙ୍କ ରସୁଲମାନେ ଯାହା କିଛି କହୁଥିଲେ ସତ୍ୟ କହୁ ଥିଲେ ; ସୁତରାଂ କ'ଣ ଆମମାନଙ୍କର କୌଣସି ସୁପାରିଶକାରୀ ଅଛନ୍ତି ଯେ ଆମମାନଙ୍କ ପକ୍ଷରେ ସୁପାରିଶ କରିବେ ? ଅଥବା କ'ଣ ଆମମାନଙ୍କୁ ପୁନର୍ବାର ପୃଥିବୀକୁ ଫେରାଇ ଦିଆଯାଇପାରେ ? ତାହା ହେଲେ ଆମେମାନେ ଯାହା କିଛି (କୁ) କର୍ମ କରିଥିଲୁ ତାହା ପରିବର୍ତ୍ତେ ଅନ୍ୟ (ସତ୍) କର୍ମ କରିପାରନ୍ତୁ'' ; (ଉପରୋକ୍ତ) ସେହି ବ୍ୟକ୍ତିମାନେ ବାସ୍ତବରେ କ୍ଷତିଗ୍ରସ୍ତ ହୋଇଛନ୍ତି ଏବଂ ସେମାନେ ଯାହା କିଛି ମିଥ୍ୟା ରଚନା କରୁଥିଲେ ଆଜି ତାହାକୁ ସେମାନେ ହରାଇଲେ ।

ରୁ : ୭

اِنَّ رَبَّكُمُ اللّٰهُ الَّذِيْ خَلَقَ السَّمٰوٰتِ وَالْاَرْضَ فِيْ سِتَّةِ اَيَّامٍ ثُمَّ اسْتَوٰى عَلَى الْعَرْشِ ۫ يُغْشِي الَّيْلَ النَّهَارَ يَطْلُبُهٗ حَثِيْثًا ۙ وَّالشَّمْسَ وَالْقَمَرَ وَالنُّجُوْمَ مُسَخَّرٰتٍۭ بِاَمْرِهٖ ؕ اَلَا لَهُ الْخَلْقُ وَالْاَمْرُ ؕ تَبٰرَكَ اللّٰهُ رَبُّ الْعٰلَمِيْنَ ﴿۵۵﴾

୫୫. ବାସ୍ତବରେ ତୁମମାନଙ୍କର ପାଳନକର୍ତ୍ତା ଅଲ୍ଲାହ ଅଟନ୍ତି ଯେ କି ଛଅ ଗୋଟି ଅବଧି[୧] ମଧ୍ୟରେ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ; ତତ୍‌ପରେ ସେ ସିଂହାସନ ଉପରେ ଦୃଢ଼ ଭାବରେ ପ୍ରତିଷ୍ଠିତ ହୋଇଛନ୍ତି ; ସେ ଦିନକୁ ରାତ୍ରି ଦ୍ୱାରା ଆଚ୍ଛାଦିତ କରନ୍ତି ଯାହା ଶୀଘ୍ର ତାହାର ଅନୁଧାବନ କରେ ; ସେ ସୂର୍ଯ୍ୟ, ଚନ୍ଦ୍ର ଓ ନକ୍ଷତ୍ରକୁ ଏ ରୂପେ ସୃଷ୍ଟି କରିଛନ୍ତି ଯେ, ସେ ସମସ୍ତେ ତାହାଙ୍କ ଆଦେଶ ଅନୁସାରେ (ବିନା ବେତନରେ ମନୁଷ୍ୟ ସମାଜ ପାଇଁ) କାର୍ଯ୍ୟରତ ଅଛନ୍ତି ; ମନେରଖ, ସୃଷ୍ଟି କରିବା ଓ ବିଧାନ ପ୍ରଣୟନ କରିବା ତାହାଙ୍କର କାର୍ଯ୍ୟ ; ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହ ହିଁ ମଙ୍ଗଳମୟ ।

---

୧. ଏହି ଅବଧିର ଦୈର୍ଘ୍ୟ କେତେ ତାହାକୁ କଳନା କରିବା, କଳ୍ପନା କରିବା ଓ ବ୍ୟାଖ୍ୟା କରିବା ସମ୍ଭବ ନୁହେଁ । ଏହା ଏକ ହଜାର ବର୍ଷ ହୋଇପାରେ (୨୨:୪୮ ଦ୍ରଷ୍ଟବ୍ୟ) ବା ପଚାଶ ହଜାର ବର୍ଷ ହୋଇପାରେ (୭୦:୫ ଦ୍ରଷ୍ଟବ୍ୟ) । ପୃଥିବୀ ଥରେ ସୂର୍ଯ୍ୟ ଚାରିପଟେ ବୁଲି ଆସିବା ପାଇଁ ଯେଉଁ ସମୟ ଲାଗେ ତାହାକୁ ଏକ ପାର୍ଥିବ ବର୍ଷ ରୂପେ ଗଣନା କରାଯାଏ । ସେ ବିଷୟରେ ଏହି ଆୟତରେ ବା ଅନ୍ୟ କୌଣସି ଆୟତରେ କୌଣସି ସୂଚନା ନାହିଁ । ଅଲ୍ଲାହ ତାଙ୍କ ଦିବସର ଦୈର୍ଘ୍ୟ ସମ୍ବନ୍ଧରେ ଆମମାନଙ୍କୁ ସ୍ପଷ୍ଟ ଭାବରେ ସୂଚାଇ ନାହାନ୍ତି । କେତେକ ସ୍ଥଳେ ଏହା ଏକ ହଜାର ପାର୍ଥିବ ବର୍ଷ ପର୍ଯ୍ୟନ୍ତ, କେତେକ ସ୍ଥଳେ ପଚାଶ ହଜାର ପାର୍ଥିବ ବର୍ଷ ପର୍ଯ୍ୟନ୍ତ ଓ ଅନ୍ୟ କେତେକ ସ୍ଥଳେ ଲକ୍ଷାଧିକ ପାର୍ଥିବ ବର୍ଷ ପର୍ଯ୍ୟନ୍ତ ବିସ୍ତାରିତ ହୋଇପାରେ । ପୃଥିବୀ ତା'ର ସାମ୍ପ୍ରତିକ ଅବସ୍ଥାକୁ ଆସିବା ପାଇଁ ଲକ୍ଷ ଲକ୍ଷ ବର୍ଷ ବିତିଯାଇଛି ବୋଲି ବୈଜ୍ଞାନିକମାନେ ମତବ୍ୟକ୍ତ କରନ୍ତି । ତେଣୁ ଆଲୋଚ୍ୟ ଛଅଗୋଟି ଅବଧିର ଦୈର୍ଘ୍ୟ କେତେ ତାହା ନିର୍ଦ୍ଦିଷ୍ଟ ଭାବରେ କଳନା କରିବା ଏକ କଷ୍ଟକର ବ୍ୟାପାର । ଆମେମାନେ କେବଳ ଏତିକି କହିପାରିବା ଯେ ଆକାଶ ଓ ପୃଥିବୀର ସୃଷ୍ଟି ସମ୍ପୂର୍ଣ୍ଣ ହେବା ପାଇଁ ଛଅଗୋଟି ଦୀର୍ଘ ସମୟ-ଚକ୍ର ଲାଗିଥିଲା ।

୫୬. ତୁମେମାନେ ନିଜର ପାଳନକର୍ତ୍ତାଙ୍କୁ ବିଳାପ କରି[୧] ଓ ଗୋପନରେ ଡାକ; ବାସ୍ତବରେ ସେ ସୀମା ଅତିକ୍ରମକାରୀମାନଙ୍କୁ ପସନ୍ଦ କରନ୍ତି ନାହିଁ ।

ادْعُوا رَبَّكُمْ تَضَرُّعًا وَخُفْيَةً ۚ إِنَّهُ لَا يُحِبُّ الْمُعْتَدِينَ ﴿٥٦﴾

୫୭. ଏବଂ ଶୃଙ୍ଖଳା ସ୍ଥାପନ ହେବା ପରେ ପୃଥିବୀରେ ବିଶୃଙ୍ଖଳା ସୃଷ୍ଟି କର ନାହିଁ ; ଏବଂ ତାହାଙ୍କୁ ଭୟପୂର୍ବକ ଓ ଆଶାବାନ୍ ହୋଇ ଡାକ ; ବାସ୍ତବରେ ଅଲ୍ଲାହଙ୍କର କରୁଣା ହିତକାରୀମାନଙ୍କର[୨] ନିକଟବର୍ତ୍ତୀ ।

وَلَا تُفْسِدُوا فِي الْأَرْضِ بَعْدَ إِصْلَاحِهَا وَادْعُوهُ خَوْفًا وَطَمَعًا ۚ إِنَّ رَحْمَتَ اللَّهِ قَرِيبٌ مِنَ الْمُحْسِنِينَ ﴿٥٧﴾

୫୮. ଏବଂ ନିଜର କରୁଣା (ବର୍ଷଣ) ପୂର୍ବରୁ ସେ ବାୟୁକୁ ସୁସମାଚାର ଦେବା ପାଇଁ ପ୍ରେରଣ କରନ୍ତି ; ଏପରି କି ଯେତେବେଳେ ସେ (ବାୟୁ) ଭାରାକ୍ରାନ୍ତ ମେଘମାଳାକୁ ଉତ୍ତୋଳନ କରେ (ସେତେବେଳେ) ଆମ୍ଭେ ତାହାକୁ ଏକ ମୃତ[୩] ଦେଶକୁ ପରିଚାଳିତ କରୁ, ଏହା ପରେ ଆମ୍ଭେ ସେଥିରୁ ଜଳ ବର୍ଷଣ କରୁ ; ତତ୍‌ପରେ ଆମ୍ଭେ ଏହି ଜଳ ଦ୍ୱାରା ସମସ୍ତ ପ୍ରକାର ଫଳ ଉତ୍ପନ୍ନ କରୁ ; ଏହିପରି ଆମ୍ଭେ ମୃତମାନଙ୍କୁ[୪] ଜୀବିତ କରୁ ତାହା ହେଲେ ତୁମେମାନେ ଶିକ୍ଷାଲାଭ କରିପାରିବ ।

وَهُوَ الَّذِي يُرْسِلُ الرِّيَاحَ بُشْرًا بَيْنَ يَدَيْ رَحْمَتِهِ ۖ حَتَّىٰ إِذَا أَقَلَّتْ سَحَابًا ثِقَالًا سُقْنَاهُ لِبَلَدٍ مَيِّتٍ فَأَنْزَلْنَا بِهِ الْمَاءَ فَأَخْرَجْنَا بِهِ مِنْ كُلِّ الثَّمَرَاتِ ۚ كَذَٰلِكَ نُخْرِجُ الْمَوْتَىٰ لَعَلَّكُمْ تَذَكَّرُونَ ﴿٥٨﴾

୫୯. ଏବଂ ଉତ୍କୃଷ୍ଟ ଦେଶ (ଯାହାର ମାଟି ଉର୍ବର) ନିଜ ପାଳନକର୍ତ୍ତାଙ୍କ[୫] ଆଦେଶ ଅନୁସାରେ (ପ୍ରଚୁର ପରିମାଣରେ) ଉଦ୍ଭିଦ ଉପୁଜାଏ ଏବଂ ସେ (ଦେଶ) ଯାହାର ମାଟି ଅନୁର୍ବର ତାହା ନିକୃଷ୍ଟ ଫସଲ ଉପୁଜାଏ ; ଏହିପରି ଭାବରେ ଆମ୍ଭେ କୃତଜ୍ଞ ସମ୍ପ୍ରଦାୟ ପାଇଁ ଆମର ନିଦର୍ଶନଗୁଡ଼ିକୁ ସ୍ପଷ୍ଟ ଭାବରେ ବର୍ଣ୍ଣନା କରୁ ।

وَالْبَلَدُ الطَّيِّبُ يَخْرُجُ نَبَاتُهُ بِإِذْنِ رَبِّهِ ۖ وَالَّذِي خَبُثَ لَا يَخْرُجُ إِلَّا نَكِدًا ۚ كَذَٰلِكَ نُصَرِّفُ الْآيَاتِ لِقَوْمٍ يَشْكُرُونَ ﴿٥٩﴾ ع ١٤

୧. ପ୍ରକାଶ୍ୟ ପ୍ରାର୍ଥନା ବା ମିନତି କରିବା ସକାଶେ 'ବିଳାପ' ଶବ୍ଦ ପ୍ରୟୋଗ କରାଯାଇଛି କାରଣ ପ୍ରକାଶ୍ୟରେ ହିଁ ମଣିଷ ବିଭିନ୍ନ ପ୍ରକାର ଭାବଭଙ୍ଗୀ କରିପାରେ, ଅପ୍ରକାଶ୍ୟରେ ତାହା ସମ୍ଭବ ନୁହେଁ । ତେଣୁ ଅପ୍ରକାଶ୍ୟ ପ୍ରାର୍ଥନା ପାଇଁ ବିଳାପ କରିବାର ଆବଶ୍ୟକତା ନାହିଁ କାରଣ ତାହା ବିନମ୍ରତା ସହକାରେ କରାଯାଏ ।

୨. ମୂଳ 'ମୁହସିନ' ଶବ୍ଦର ଅର୍ଥ: ସେହି ବ୍ୟକ୍ତି ଯେ ସବୁ ସର୍ତ୍ତ ପାଳନ କରି କାର୍ଯ୍ୟ ସମ୍ପନ୍ନ କରେ । ତେଣୁ ମୁହସିନ ଶବ୍ଦରୁ ଏହି ସଙ୍କେତ ମିଳୁଛି ଯେ ଯେଉଁ ବ୍ୟକ୍ତି ଆପଣା ପାପ ଲାଗି ଅଲ୍ଲାହଙ୍କ ଠାରୁ ଦଣ୍ଡ ମିଳିବା ଆଶଙ୍କାରେ ତଥା ପୁଣ୍ୟ ଲାଗି ତାଙ୍କଠାରୁ କୃପା ପ୍ରାପ୍ତି ଆଶାରେ ତାଙ୍କୁ ସସର୍ତ୍ତ ମିନତି କରୁଥାଏ ସେହି ବ୍ୟକ୍ତି ଉପରେ ନିଶ୍ଚୟ ଅଲ୍ଲାହଙ୍କ କରୁଣା ଅବତୀର୍ଣ୍ଣ ହେବ । ବସ୍ତୁତଃ ସେପରି କରୁଣା ସ୍ଥଳ ବିଶେଷରେ ଏତେ ଶୀଘ୍ର ଅବତୀର୍ଣ୍ଣ ହୁଏ ଯେ ଦେଖଣାହାରୀ ଆଚମ୍ବିତ ହୋଇଯାଏ ।

୩. ଅର୍ଥାତ୍ ସେପରି ଦେଶ ଯେଉଁଠାରେ ଅନାବୃଷ୍ଟି ଯୋଗୁଁ ତାହା ମୃତପ୍ରାୟ ଭୂମିରେ ପରିଣତ ହୋଇ ମରୁଡ଼ି ଓ ଦୁର୍ଭିକ୍ଷର ଶିକାର ହୋଇଥିଲା ।

୪. ଏହାର ଅର୍ଥ ଅଲ୍ଲାହ ମୃତପ୍ରାୟ ଜାତିମାନଙ୍କୁ ଉନ୍ନତି ପ୍ରଦାନ କରିଥାଆନ୍ତି । ପ୍ରକୃତ ପକ୍ଷେ ଏଠାରେ ପରଲୋକ ସମ୍ବନ୍ଧରେ ବର୍ଣ୍ଣନା କରାଯାଇନାହିଁ । ଯଦି ସେପରି କରାଯାଇଥାନ୍ତା ତେବେ 'ଯଦ୍ୱାରା ତୁମେମାନେ ଶିକ୍ଷା ଲାଭ କରିବ' ଶବ୍ଦଗୁଡ଼ିକ ଏଠାରେ ବ୍ୟବହୃତ ହୋଇ ନ ଥାନ୍ତା କାରଣ ପରଲୋକ ମାନବ ଦୃଷ୍ଟିର ଅନ୍ତରାଳରେ ଅବସ୍ଥିତ । ତେଣୁ ସେଠାରେ ଯେଉଁ ଜୀବନ ଲାଭ ହେବ ତହିଁରୁ ମନୁଷ୍ୟ ଇହକାଳରେ କୌଣସି ଶିକ୍ଷା ପାଇପାରିବ ନାହିଁ ।

୫. ତା'ପାଇଁ ସ୍ୱତନ୍ତ୍ର ଆଦେଶ ଅବତୀର୍ଣ୍ଣ ହେବ 'ନିଜ ପାଳନ-କର୍ତ୍ତାଙ୍କ ଆଦେଶ' ବାକ୍ୟାଂଶର ପ୍ରକୃତ ମର୍ମ ନୁହେଁ ବରଂ ଏହାର ମର୍ମ ହେଉଛି ଯେ ଭୂମିରେ ଯେଉଁ ପ୍ରକାର ଉତ୍ପାଦିକା ଶକ୍ତି ରଖାଯାଏ ତଦନୁସାରେ ଫସଲ ଉତ୍ପାଦନ ହୁଏ ।

ରୁ : ୮

୬୦. ନିଶ୍ଚୟ ଆମ୍ଭେ ନୁହଙ୍କୁ ତାଙ୍କର ସମ୍ପ୍ରଦାୟ ନିକଟକୁ ରସୁଲ ଭାବରେ ପ୍ରେରଣ କରୁଅଛୁ; ଏହାପରେ ସେ (ଯେତେବେଳେ ସେମାନଙ୍କ ନିକଟକୁ ଆସିଲେ, ସେତେବେଳେ) କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ଅଲ୍ଲାହଙ୍କର ଉପାସନା କର ; ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ ; ଆମ୍ଭେ ତୁମମାନଙ୍କ ଉପରେ ମହାନ୍ ଦିବସର ଶାସ୍ତି ଅବତୀର୍ଣ୍ଣ ହେବା ସଂକ୍ରାନ୍ତରେ ଭୟ କରୁଅଛୁ ।"

لَقَدْ اَرْسَلْنَا نُوْحًا اِلٰى قَوْمِهٖ فَقَالَ يٰقَوْمِ اعْبُدُوا اللّٰهَ مَا لَكُمْ مِّنْ اِلٰهٍ غَيْرُهٗ ؕ اِنِّيْۤ اَخَافُ عَلَيْكُمْ عَذَابَ يَوْمٍ عَظِيْمٍ ﴿٦٠﴾

୬୧. ତାହାଙ୍କ ସମ୍ପ୍ରଦାୟର ମୁଖ୍ୟ (ବ୍ୟକ୍ତି)ମାନେ କହିଲେ, "ଆମେମାନେ ତୁମକୁ ପ୍ରକାଶ୍ୟ ରୂପେ ପଥଭ୍ରଷ୍ଟ ହୋଇଥିବା ଦେଖୁ ଅଛୁ ।"

قَالَ الْمَلَاُ مِنْ قَوْمِهٖۤ اِنَّا لَنَرٰىكَ فِيْ ضَلٰلٍ مُّبِيْنٍ ﴿٦١﴾

୬୨. ସେ କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ଆମ୍ଭ ଠାରେ କୌଣସି ପଥଭ୍ରଷ୍ଟତା ପରିଲକ୍ଷିତ ହେଉ ନାହିଁ ; ବରଂ ଆମ୍ଭେ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ତରଫରୁ (ପ୍ରେରିତ) ରସୁଲ ଅଟୁ ।"

قَالَ يٰقَوْمِ لَيْسَ بِيْ ضَلٰلَةٌ وَّ لٰكِنِّيْ رَسُوْلٌ مِّنْ رَّبِّ الْعٰلَمِيْنَ ﴿٦٢﴾

୬୩. (ଏବଂ) "ଆମ୍ଭେ ତୁମମାନଙ୍କୁ ଆମ୍ଭର ପାଳନକର୍ତ୍ତାଙ୍କ ବାର୍ତ୍ତା ଦେଉଅଛୁ ଏବଂ ତୁମମାନଙ୍କର ମଙ୍ଗଳ କାମନା କରୁଅଛୁ ଏବଂ ଅଲ୍ଲାହଙ୍କ ପ୍ରଦତ୍ତ ଜ୍ଞାନରୁ ଆମ୍ଭେ ଯାହା ଜାଣୁ, ତୁମେମାନେ ତାହା ଜାଣ ନାହିଁ ।"

اُبَلِّغُكُمْ رِسٰلٰتِ رَبِّيْ وَ اَنْصَحُ لَكُمْ وَ اَعْلَمُ مِنَ اللّٰهِ مَا لَا تَعْلَمُوْنَ ﴿٦٣﴾

୬୪. "କ'ଣ ତୁମେମାନେ ଏହି ବିଷୟ ପାଇଁ ବିସ୍ମିତ ହେଉଅଛ ଯେ ତୁମମାନଙ୍କ ନିକଟରୁ ତୁମମାନଙ୍କର ପାଳନକର୍ତ୍ତାଙ୍କ ତରଫରୁ ତୁମମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତିଙ୍କ ମାଧ୍ୟମରେ ଉପଦେଶପୂର୍ଣ୍ଣ ବାଣୀ ଅବତୀର୍ଣ୍ଣ ହୋଇଅଛି ଯେପରି କି ସେ ତୁମମାନଙ୍କୁ ସତର୍କ କରାଇବେ ଏବଂ ଯେପରି କି ତୁମେମାନେ ଧର୍ମଭୀରୁ ହେବ ଏବଂ ଫଳସ୍ୱରୂପ ତୁମମାନଙ୍କ ପ୍ରତି କରୁଣା କରା ହେବ ?"

اَوَ عَجِبْتُمْ اَنْ جَآءَكُمْ ذِكْرٌ مِّنْ رَّبِّكُمْ عَلٰى رَجُلٍ مِّنْكُمْ لِيُنْذِرَكُمْ وَ لِتَتَّقُوْا وَ لَعَلَّكُمْ تُرْحَمُوْنَ ﴿٦٤﴾

୬୫. କିନ୍ତୁ ତଥାପି ସେମାନେ ତାହାଙ୍କୁ ପ୍ରତ୍ୟାଖ୍ୟାନ କଲେ ; ସୁତରାଂ ଆମ୍ଭେ ତାହାଙ୍କୁ ଓ ତାଙ୍କର ସହଚରମାନଙ୍କୁ ନୌକା ମାଧ୍ୟମରେ ରକ୍ଷା କଲୁ, ଏବଂ ଯେଉଁମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲେ, ଆମ୍ଭେ ସେମାନଙ୍କୁ ଜଳମଗ୍ନ କଲୁ, ସେମାନେ ଏକ ଅନ୍ଧ ସମ୍ପ୍ରଦାୟ ଥିଲେ ।

فَكَذَّبُوْهُ فَاَنْجَيْنٰهُ وَ الَّذِيْنَ مَعَهٗ فِي الْفُلْكِ وَ اَغْرَقْنَا الَّذِيْنَ كَذَّبُوْا بِاٰيٰتِنَا ؕ اِنَّهُمْ كَانُوْا قَوْمًا عَمِيْنَ ﴿٦٥﴾ ع ١٥

ରୁ: ୯

୬୬. ଏବଂ ଆମେ 'ଆଦ'[1] ସମ୍ପ୍ରଦାୟ ନିକଟକୁ ସେମାନଙ୍କ ଭାଇ ହୁଦଙ୍କୁ[2] (ରସୁଲରୂପେ) ପ୍ରେରଣ କରିଥିଲୁ ; ସେ କହିଲେ, "ହେ ଆମର ସମ୍ପ୍ରଦାୟ ! ଅଲ୍ଲାହଙ୍କର ଉପାସନା କର ; ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ ; ତେବେ କ'ଣ ତୁମେମାନେ ଧର୍ମଭୀରୁତା ଅବଲମ୍ବନ କରିବ ନାହିଁ ?"

وَاِلٰى عَادٍ اَخَاهُمْ هُوْدًا ۗ قَالَ يٰقَوْمِ اعْبُدُوا اللّٰهَ مَا لَكُمْ مِّنْ اِلٰهٍ غَيْرُهٗ ۗ اَفَلَا تَتَّقُوْنَ ﴿٦٦﴾

୬୭. (ତାପରେ) ତାହାଙ୍କ ସମ୍ପ୍ରଦାୟର ଅବିଶ୍ୱାସକାରୀ ମୁଖ୍ୟମାନେ କହିଲେ, "ହେ ହୁଦ !) ନିଶ୍ଚୟ ଆମେମାନେ ତୁମକୁ ବୋକାମିର ବଶବର୍ତ୍ତୀ ହୋଇଥିବା ଦେଖୁଅଛୁ ଏବଂ ନିଶ୍ଚୟ ତୁମକୁ ମିଥ୍ୟାବାଦୀ ବୋଲି ମନେ କରୁ ଅଛୁ ।"

قَالَ الْمَلَاُ الَّذِيْنَ كَفَرُوْا مِنْ قَوْمِهٖٓ اِنَّا لَنَرٰىكَ فِيْ سَفَاهَةٍ وَّاِنَّا لَنَظُنُّكَ مِنَ الْكٰذِبِيْنَ ﴿٦٧﴾

୬୮. ସେ (ହୁଦ) କହିଲେ, "ହେ ଆମର ସମ୍ପ୍ରଦାୟ ! ଆମଠାରେ ବୋକାମିର କୌଣସି ବିଷୟ ନାହିଁ ; ଆମେ ସମସ୍ତ ଜଗତର ପାଳନକର୍ତ୍ତାଙ୍କ (ଠାରୁ ପ୍ରେରିତ) ରସୁଲ ଅଟୁ ।"

قَالَ يٰقَوْمِ لَيْسَ بِيْ سَفَاهَةٌ وَّلٰكِنِّيْ رَسُوْلٌ مِّنْ رَّبِّ الْعٰلَمِيْنَ ﴿٦٨﴾

୬୯. "ଆମେ ନିଜ ପାଳନକର୍ତ୍ତାଙ୍କର ବାର୍ତ୍ତା ଦେଉଅଛୁ; ଏବଂ ଆମେ ତୁମମାନଙ୍କର ହିତାକାଂକ୍ଷୀ ଓ ବିଶ୍ୱସ୍ତ ଅଟୁ ।

اُبَلِّغُكُمْ رِسٰلٰتِ رَبِّيْ وَاَنَا لَكُمْ نَاصِحٌ اَمِيْنٌ ﴿٦٩﴾

୭୦. "କ'ଣ ତୁମେମାନେ ଏହି ବିଷୟ ପାଇଁ ବିସ୍ମିତ ହେଉଅଛ ଯେ ତୁମମାନଙ୍କ ନିକଟକୁ ତୁମମାନଙ୍କର ପାଳନକର୍ତ୍ତାଙ୍କ ତରଫରୁ ତୁମମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତିଙ୍କ ମାଧ୍ୟମରେ ଉପଦେଶପୂର୍ଣ୍ଣ ବାଣୀ ଅବତୀର୍ଣ୍ଣ ହୋଇଅଛି ଯେପରି କି ସେ ତୁମମାନଙ୍କୁ ଆସନ୍ନ ଶାସ୍ତି ସଂକ୍ରାନ୍ତରେ ସତର୍କ କରାଇବେ ? ଏବଂ ସ୍ମରଣ କର ଯେତେବେଳେ ଅଲ୍ଲାହ ତୁମମାନଙ୍କୁ ନୁହଙ୍କ ସମ୍ପ୍ରଦାୟର ଉତ୍ତରାଧିକାରୀ କରିଥିଲେ ଏବଂ ତୁମମାନଙ୍କୁ ଶକ୍ତିଶାଳୀ କରି ଗଢ଼ିଥିଲେ[3]; ସୁତରାଂ ଅଲ୍ଲାହଙ୍କର କୃପାକୁ ସ୍ମରଣ କର ତାହାହେଲେ ତୁମେମାନେ କୃତକାର୍ଯ୍ୟ ହେବ ।"

اَوَعَجِبْتُمْ اَنْ جَآءَكُمْ ذِكْرٌ مِّنْ رَّبِّكُمْ عَلٰى رَجُلٍ مِّنْكُمْ لِيُنْذِرَكُمْ ۗ وَاذْكُرُوْٓا اِذْ جَعَلَكُمْ خُلَفَآءَ مِنْۢ بَعْدِ قَوْمِ نُوْحٍ وَّزَادَكُمْ فِى الْخَلْقِ بَصْۜطَةً ۚ فَاذْكُرُوْٓا اٰلَآءَ اللّٰهِ لَعَلَّكُمْ تُفْلِحُوْنَ ﴿٧٠﴾

---

୧. ଆରବ ଦେଶରେ ବହୁବର୍ଷ ପୂର୍ବେ ବାସ କରୁଥିବା ଏକ ଜାତିର ନାମ ଆଦ । ଏକଦା ସେମାନେ ବୃହତ୍ତର ଆରବର ଯମେନ, ସିରିଆ ଓ ମେସୋପଟାମିୟାର ଉର୍ବର ସମତଳ ଅଞ୍ଚଳରେ ରାଜତ୍ୱ କରୁଥିଲେ ।

୨. 'ହୁଦ' ହେଉଛନ୍ତି ପୁରୁଷାନୁକ୍ରମେ ହଜରତ ନୁହଙ୍କର ସପ୍ତମ ଉତ୍ତର ପୁରୁଷ ।

୩. ଏହାର ଅନ୍ୟ ଏକ ଅନୁବାଦ ହେଉଛି, ତୁମମାନଙ୍କର ବଂଶଧରଙ୍କୁ ବୃଦ୍ଧି କରାଇଲେ।ପାଠକମାନେ ଉଭୟ ଅର୍ଥ ସମ୍ବନ୍ଧରେ ଅବଗତ ହେବା ଲକ୍ଷ୍ୟରେ ଆମେମାନେ ଟିପ୍ପଣୀରେ ଏହି ଅନୁବାଦକୁ ମଧ୍ୟ ଲିପିବଦ୍ଧ କରିଅଛୁ ।

୭୧. ସେମାନେ କହିଲେ, "(ହେ ହୁଦ !) କ'ଣ ତୁମେ ଆମମାନଙ୍କ ନିକଟକୁ ଏଥିପାଇଁ ଆସିଅଛ ଯେ ଆମେମାନେ ଜଣେ ମାତ୍ର ଅଲ୍ଲାହ୍‌ଙ୍କୁ ଉପାସନା କରିବୁ ଏବଂ ଆମମାନଙ୍କର ପିତୃପିତାମହମାନେ, ଯାହାଙ୍କର ଉପାସନା କରୁଥିଲେ, ତାହାଙ୍କୁ ପରିତ୍ୟାଗ କରିବୁ ? ସୁତରାଂ ତୁମେ ଯଦି ସତ୍ୟବାଦୀ ହୋଇଥାଅ ତେବେ ଆମମାନଙ୍କୁ ଯେଉଁ ବିଷୟରେ ଭୟ ଦେଖାଉଛ ତାହା ଆମମାନଙ୍କ ନିକଟକୁ ଘେନି ଆସ ।"

قَالُوْٓا اَجِئْتَنَا لِنَعْبُدَ اللّٰهَ وَحْدَهٗ وَنَذَرَ مَا كَانَ يَعْبُدُ اٰبَآؤُنَا ۚ فَاْتِنَا بِمَا تَعِدُنَآ اِنْ كُنْتَ مِنَ الصّٰدِقِيْنَ ﴿٧١﴾

୭୨. ସେ କହିଲେ, "ତୁମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ତୁମମାନଙ୍କ ଉପରେ ଶାସ୍ତି ଓ ବିପତ୍ତି ଆସିଅଛି ; କ'ଣ ତୁମେମାନେ ସେହି ନାମଗୁଡ଼ିକ ସଂକ୍ରାନ୍ତରେ ଆମ ସହିତ ତର୍କ କରୁଅଛ ଯାହାଙ୍କୁ ତୁମେ ଏବଂ ତୁମମାନଙ୍କର ପିତୃପିତାମହମାନେ ମନୋନୀତ କରିଥିଲ ?" ଅଲ୍ଲାହ୍‌ ସେମାନଙ୍କ ପାଇଁ କୌଣସି ପ୍ରମାଣ ଅବତୀର୍ଣ୍ଣ କରି ନାହାନ୍ତି, ସୁତରାଂ ତୁମେମାନେ (ଆମ ସକାଶେ ଶାସ୍ତିକୁ) ପ୍ରତୀକ୍ଷା କର, ଆମେ ମଧ୍ୟ ତୁମମାନଙ୍କ ସହିତ (ତୁମମାନଙ୍କ ସକାଶେ ଶାସ୍ତିକୁ) ପ୍ରତୀକ୍ଷା କରୁଅଛୁ ; (ଏବଂ ଲକ୍ଷ୍ୟ କର ଯେ କାହାର ଆଶା ପୂର୍ଣ୍ଣ ହେଉଛି ।)"

قَالَ قَدْ وَقَعَ عَلَيْكُمْ مِّنْ رَّبِّكُمْ رِجْسٌ وَّغَضَبٌ ۗ اَتُجَادِلُوْنَنِيْ فِيْٓ اَسْمَآءٍ سَمَّيْتُمُوْهَآ اَنْتُمْ وَاٰبَآؤُكُمْ مَّا نَزَّلَ اللّٰهُ بِهَا مِنْ سُلْطٰنٍ ۗ فَانْتَظِرُوْٓا اِنِّيْ مَعَكُمْ مِّنَ الْمُنْتَظِرِيْنَ ﴿٧٢﴾

୭୩. ପରିଶେଷରେ ଆମେ ନିଜ କରୁଣା ବଳରେ ତାହାଙ୍କୁ ଓ ତାହାଙ୍କର ସହଚରମାନଙ୍କୁ ରକ୍ଷା କରିଥିଲୁ, ଏବଂ ଯେଉଁମାନେ ଆମର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ବିଶ୍ୱାସକାରୀମାନଙ୍କ ମଧ୍ୟରେ ନ ଥିଲେ, ଆମେ ସେମାନଙ୍କର ମୂଳୋତ୍ପାଟନ କରିଥିଲୁ ।

فَاَنْجَيْنٰهُ وَالَّذِيْنَ مَعَهٗ بِرَحْمَةٍ مِّنَّا وَقَطَعْنَا دَابِرَ الَّذِيْنَ كَذَّبُوْا بِاٰيٰتِنَا وَمَا كَانُوْا مُؤْمِنِيْنَ ﴿٧٣﴾

ରୁ : ୧୦

୭୪. ଏବଂ ଆମେ 'ସମୁଦ'[୧] (ସମ୍ପ୍ରଦାୟ) ନିକଟକୁ ସେମାନଙ୍କ ଭାଇ ସ୍ୱାଲେହ୍‌ଙ୍କୁ ରସୁଲ ରୂପେ (ପ୍ରେରଣ କରିଥିଲୁ) ; ସେ (ସେମାନଙ୍କୁ) କହିଲେ, "ହେ ଆମର ସମ୍ପ୍ରଦାୟ ! ଅଲ୍ଲାହ୍‌ଙ୍କର ଉପାସନା କର ; ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ ; ତୁମମାନଙ୍କ ନିକଟକୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ଏକ ସୁସ୍ପଷ୍ଟ ପ୍ରମାଣ

وَاِلٰى ثَمُوْدَ اَخَاهُمْ صٰلِحًا ۘ قَالَ يٰقَوْمِ اعْبُدُوا اللّٰهَ مَا لَكُمْ مِّنْ اِلٰهٍ غَيْرُهٗ ۗ قَدْ جَآءَتْكُمْ بَيِّنَةٌ مِّنْ رَّبِّكُمْ

୧. ଆରବର ପଶ୍ଚିମାଞ୍ଚଳରେ ଏଡ଼େନ୍ ଠାରୁ ଉତ୍ତରକୁ ସିରିଆ ପର୍ଯ୍ୟନ୍ତ ଯେଉଁ ବିସ୍ତୃତ ଅଞ୍ଚଳ ରହିଅଛି ସେଠାରେ ହଜରତ ଇସମାଇଲଙ୍କର ଅଳ୍ପଦିନ ପୂର୍ବରୁ ସମୁଦ ଜାତିର ଲୋକମାନେ ବାସ କରୁଥିଲେ । ସେମାନଙ୍କ ରାଜ୍ୟ ଆଦମାନଙ୍କ ରାଜ୍ୟର ସନ୍ନିହିତ ଥିଲା । କିନ୍ତୁ ସେମାନେ ସାଧାରଣତଃ ପାହାଡ଼ ପର୍ବତ ଉପରେ ବାସ କରୁଥିଲେ । ସେମାନେ ସୁସଂସ୍କୃତ, ଅଧ୍ୟବସାୟୀ ଓ ଧନଶାଳୀ ଥିଲେ । ସେମାନେ ଶୀତ ଋତୁରେ ସମତଳ ଅଞ୍ଚଳରେ ଓ ଗ୍ରୀଷ୍ମ ଋତୁରେ ପର୍ବତ ଉପରିସ୍ଥ ଗ୍ରୀଷ୍ମ ନିବାସରେ ବାସ କରୁଥିଲେ।ବସ୍ତୁତଃ ସେମାନଙ୍କ ଜୀବନ ଧାରଣର ମାନକୁ ଲକ୍ଷ୍ୟ କଲେ ଜଣାଯିବ ଯେ ସେମାନେ ଏକ ବିଳାସପ୍ରିୟ ଜାତି ଥିଲେ ।

ଆସିଅଛି ; ଏବଂ ଏହା ଏକ ମାଈ ଓଟ ଯାହା ତୁମମାନଙ୍କ ପାଇଁ ଅଲ୍ଲାହ୍‌ଙ୍କ ନିକଟରୁ (ପ୍ରେରିତ) ଏକ ନିଦର୍ଶନ ସ୍ୱରୂପ ଅଟେ ; ସୁତରାଂ ତାହାକୁ ଅଲ୍ଲାହ୍‌ଙ୍କ ଭୂମିରେ ଚରାବୁଲା କରିବାପାଇଁ ଛାଡ଼ି ଦିଅ ଏବଂ ତାହାର କୌଣସି ଅନିଷ୍ଟ କର ନାହିଁ, (ଏପରି କଲେ) ତୁମେମାନେ ଯନ୍ତ୍ରଣାଦାୟକ ଶାସ୍ତି ପାଇବ ।''

هٰذِهٖ نَاقَةُ اللّٰهِ لَكُمْ اٰيَةً فَذَرُوْهَا تَاْكُلْ فِيْٓ اَرْضِ اللّٰهِ وَلَا تَمَسُّوْهَا بِسُوْٓءٍ فَيَاْخُذَكُمْ عَذَابٌ اَلِيْمٌ ﴿٧٤﴾

୭୫. ଏବଂ ସ୍ମରଣ କର, ଯେତେବେଳେ ସେ (ଅଲ୍ଲାହ୍) ତୁମମାନଙ୍କୁ 'ଆଦ' ସମ୍ପ୍ରଦାୟର ଉତ୍ତରାଧିକାରୀ କଲେ, ଏବଂ ପୃଥିବୀରେ ତୁମମାନଙ୍କୁ (ଏପରି) ପ୍ରତିଷ୍ଠିତ କଲେ ଯେ ତୁମେମାନେ ତାହାର ସମତଳ ଅଞ୍ଚଳରେ ଦୁର୍ଗ ନିର୍ମାଣ କରୁଥିଲ ଏବଂ ପର୍ବତଗୁଡ଼ିକୁ ଖନନ କରି ଗୃହ ନିର୍ମାଣ କରୁଥିଲ ; ସୁତରାଂ ଅଲ୍ଲାହ୍‌ଙ୍କ ଅନୁଗ୍ରହକୁ ସ୍ମରଣ କର ; ଏବଂ ପୃଥିବୀରେ ବିଶୃଙ୍ଖଳା ସୃଷ୍ଟି କରି ଅନ୍ୟାୟ କର ନାହିଁ ।

وَاذْكُرُوْٓا اِذْ جَعَلَكُمْ خُلَفَآءَ مِنْۢ بَعْدِ عَادٍ وَّبَوَّاَكُمْ فِي الْاَرْضِ تَتَّخِذُوْنَ مِنْ سُهُوْلِهَا قُصُوْرًا وَّتَنْحِتُوْنَ الْجِبَالَ بُيُوْتًا ۚ فَاذْكُرُوْٓا اٰلَآءَ اللّٰهِ وَلَا تَعْثَوْا فِي الْاَرْضِ مُفْسِدِيْنَ ﴿٧٥﴾

୭୬. (ତା'ପରେ) ତାହାଙ୍କ (ଅର୍ଥାତ୍ ସ୍ୱାଲେହ୍)ଙ୍କ ସମ୍ପ୍ରଦାୟର ଯେଉଁ ମୁଖ୍ୟ ବ୍ୟକ୍ତିମାନେ ଅହଙ୍କାର କରିଥିଲେ, ସେମାନେ ବିଶ୍ୱାସକାରୀମାନଙ୍କ ମଧ୍ୟରେ ଥିବା ଦୁର୍ବଳ ବ୍ୟକ୍ତିମାନଙ୍କୁ କହିଲେ, ''କ'ଣ ସ୍ୱାଲେହ୍ ତାଙ୍କର ପାଳନକର୍ତ୍ତାଙ୍କ ଠାରୁ ପ୍ରେରିତ ରସୁଲ ବୋଲି ତୁମେମାନେ ବିଶ୍ୱାସ କରୁଅଛ ?'' ସେ (ବିଶ୍ୱାସକାରୀ)ମାନେ କହିଲେ, ''ତାହାଙ୍କ ନିକଟକୁ ଯାହା ପ୍ରେରିତ ହୋଇଅଛି ଆମେମାନେ ତାହା ଉପରେ ବିଶ୍ୱାସ କରୁଅଛୁ ।''

قَالَ الْمَلَاُ الَّذِيْنَ اسْتَكْبَرُوْا مِنْ قَوْمِهٖ لِلَّذِيْنَ اسْتُضْعِفُوْا لِمَنْ اٰمَنَ مِنْهُمْ اَتَعْلَمُوْنَ اَنَّ صٰلِحًا مُّرْسَلٌ مِّنْ رَّبِّهٖ ۗ قَالُوْٓا اِنَّا بِمَآ اُرْسِلَ بِهٖ مُؤْمِنُوْنَ ﴿٧٦﴾

୭୭. (ଏହାପରେ) ଅହଙ୍କାରୀମାନେ କହିଲେ, ''ତୁମେମାନେ ଯାହା ବିଶ୍ୱାସ କର, ଆମେମାନେ ତାହାକୁ ଅବିଶ୍ୱାସ କରୁ ।''

قَالَ الَّذِيْنَ اسْتَكْبَرُوْٓا اِنَّا بِالَّذِيْٓ اٰمَنْتُمْ بِهٖ كٰفِرُوْنَ ﴿٧٧﴾

୭୮. ତା'ପରେ ସେମାନେ ମାଈ ଓଟର[୧] ଗୋଡ଼ିକୁ କାଟି ଦେଲେ ଏବଂ ନିଜର ପାଳନକର୍ତ୍ତାଙ୍କ ଆଦେଶକୁ ଅବଜ୍ଞା କଲେ, ଏବଂ କହିଲେ, ''ହେ ସ୍ୱାଲେହ୍ ! ଯଦି ତୁମେ (ପ୍ରକୃତରେ) ରସୁଲ୍ ହୋଇଥାଅ, ତାହାହେଲେ ତୁମେ ଯେଉଁ ଶାସ୍ତି ବିଷୟରେ ଆମ୍ଭକୁ ଭୟଭୀତ କରାଉଅଛ ତାହା ଆମ୍ଭମାନଙ୍କ ନିକଟରେ ଉପସ୍ଥିତ କରାଅ ।''

فَعَقَرُوا النَّاقَةَ وَعَتَوْا عَنْ اَمْرِ رَبِّهِمْ وَقَالُوْا يٰصٰلِحُ ائْتِنَا بِمَا تَعِدُنَآ اِنْ كُنْتَ مِنَ الْمُرْسَلِيْنَ ﴿٧٨﴾

---

୧. ପ୍ରକୃତ ପକ୍ଷେ ଓଟ ସହିତ ସେମାନଙ୍କର କୌଣସି ଶତ୍ରୁତା ନ ଥିଲା । ଓଟକୁ ମାରିଦେବା ମଧ୍ୟ ଏକ ବଡ଼ ପାପ କାର୍ଯ୍ୟ ନ ଥିଲା । କିନ୍ତୁ ହଜରତ ସ୍ୱାଲେହ୍ ସେହି ଓଟ ଉପରେ ଚଢ଼ି ଦେଶରେ ଧର୍ମପ୍ରଚାର କରୁଥିଲେ । ତେଣୁ କିପରି ତାଙ୍କର ଧର୍ମ ପ୍ରଚାର କାର୍ଯ୍ୟ ସମାପ୍ତ ହୋଇଯିବ ଓ ଲୋକମାନଙ୍କ ପାଖରେ କିପରି ତାଙ୍କର ଦୁର୍ନାମ ହେବ ସେଥିପାଇଁ ସେମାନେ ସେହି ଓଟଟିକୁ ମାରିଦେଇଥିଲେ । ତେଣୁ ସେମାନଙ୍କ ପ୍ରତି ଶାସ୍ତି ପ୍ରେରିତ ହୋଇଥିଲା ।

୭୯. ତା'ପରେ ସେମାନଙ୍କୁ ଭୂମିକମ୍ପ କବଳିତ କରିଥିଲା, ଏବଂ ସେମାନେ ନିଜ ଘରେ ଆଣ୍ଠୁମାଡ଼ି ପଡ଼ି ରହିଥିଲେ[୧]।

فَاَخَذَتۡهُمُ الرَّجۡفَةُ فَاَصۡبَحُوۡا فِىۡ دَارِهِمۡ جٰثِمِيۡنَ ﴿۷۹﴾

୮୦. ତା'ପରେ ସ୍ୱାଲେହ ସେମାନଙ୍କୁ ଛାଡ଼ି ଅନ୍ୟ ଆଡ଼କୁ ଚାଲିଗଲେ ଏବଂ କହିଲେ, "ହେ ଆମର ସମ୍ପ୍ରଦାୟ ! ଆମେ ତୁମମାନଙ୍କୁ ନିଜ ପାଳନକର୍ତ୍ତାଙ୍କର ବାର୍ତ୍ତା ପହଞ୍ଚାଇ ଦେଇଥିଲୁ ; ଏବଂ ତୁମମାନଙ୍କୁ ହିତ ଉପଦେଶ ଦେଇଥିଲୁ, କିନ୍ତୁ ତୁମେମାନେ ହିତାକାଂକ୍ଷୀମାନଙ୍କୁ ପସନ୍ଦ କରୁନାହଁ ।"

فَتَوَلّٰى عَنۡهُمۡ وَقَالَ يٰقَوۡمِ لَقَدۡ اَبۡلَغۡتُكُمۡ رِسَالَةَ رَبِّىۡ وَنَصَحۡتُ لَـكُمۡ وَلٰـكِنۡ لَّا تُحِبُّوۡنَ النّٰصِحِيۡنَ ﴿۸۰﴾

୮୧. ଏବଂ (ଆମେ) ଲୁତଙ୍କୁ (ମଧ୍ୟ ତାହାଙ୍କ ସମ୍ପ୍ରଦାୟ ନିକଟକୁ ରସୁଲ ଭାବରେ) ପ୍ରେରଣ କରିଥିଲୁ ; ଯେତେବେଳେ ସେ ନିଜ ସମ୍ପ୍ରଦାୟଙ୍କୁ କହିଲେ, "କ'ଣ ତୁମେମାନେ ଏପରି ନିର୍ଲ୍ଲଜ କର୍ମ କରୁଅଛ ଯାହା ତୁମମାନଙ୍କ ପୂର୍ବରୁ ପୃଥିବୀରେ କେହି କେବେ କରି ନାହିଁ ?"

وَلُوۡطًا اِذۡ قَالَ لِقَوۡمِهٖۤ اَتَاۡتُوۡنَ الۡفَاحِشَةَ مَا سَبَقَكُمۡ بِهَا مِنۡ اَحَدٍ مِّنَ الۡعٰلَمِيۡنَ ﴿۸۱﴾

୮୨. "କଣ ତୁମେମାନେ କାମତୃଷା ଚରିତାର୍ଥ କରିବା ପାଇଁ ନାରୀମାନଙ୍କୁ ଛାଡ଼ି ପୁରୁଷମାନଙ୍କ ପାଖକୁ ଆସୁଅଛ ? ବରଂ (ପ୍ରକୃତ ପକ୍ଷେ) ତୁମେମାନେ ଏକ ସୀମା ଅତିକ୍ରମକାରୀ ସମ୍ପ୍ରଦାୟ ।"

اِنَّكُمۡ لَتَاۡتُوۡنَ الرِّجَالَ شَهۡوَةً مِّنۡ دُوۡنِ النِّسَآءِ ؕ بَلۡ اَنۡتُمۡ قَوۡمٌ مُّسۡرِفُوۡنَ ﴿۸۲﴾

୮୩. ଏବଂ ତାଙ୍କ ସମ୍ପ୍ରଦାୟର ଲୋକମାନେ କେବଳ ଏତିକି କହିଲେ,"ସେମାନଙ୍କୁ (ଅର୍ଥାତ୍ ଲୁତ ଏବଂ ତାହାଙ୍କ ସହଚରମାନଙ୍କୁ) ସହରରୁ ବିତାଡ଼ିତ କର ; ସେମାନେ ଏପରି ଲୋକ, ଯେଉଁମାନେ ନିଜର ପବିତ୍ରତା ସଂକ୍ରାନ୍ତରେ ଗର୍ବ କରୁଛନ୍ତି ।"

وَمَا كَانَ جَوَابَ قَوۡمِهٖۤ اِلَّاۤ اَنۡ قَالُوۡۤا اَخۡرِجُوۡهُمۡ مِّنۡ قَرۡيَتِكُمۡ‌ۚ اِنَّهُمۡ اُنَاسٌ يَّتَطَهَّرُوۡنَ ﴿۸۳﴾

---

୧. ଶାସ୍ତି ବିଧାନ କରାଯିବା ସମୟରେ ସେମାନେ ଆଣ୍ଠୁମାଡ଼ି ପ୍ରାର୍ଥନା କରିବା ପାଇଁ ନଇଁ ପଡ଼ିଥିଲେ । କିନ୍ତୁ ସେତେବେଳକୁ ଅନୁତାପ କରିବା ପାଇଁ ସମୟ ଗଡ଼ି ଯାଇଥିଲା । ଫଳରେ ସେହି ଅନୁତାପର କୌଣସି ମୂଲ୍ୟ ରହିଲା ନାହିଁ ଓ ସେମାନେ ସେପରି ଅବସ୍ଥାରେ ମରି ଯାଇଥିଲେ ଓ ଭୂମିକମ୍ପ ଯୋଗୁଁ ଘରସବୁ ସେମାନଙ୍କ ଉପରେ ପଡ଼ି ଯାଇଥିଲା ।

୮୪. ସୁତରାଂ ଆମେ ତାହାଙ୍କ ପତ୍ନୀଙ୍କ ବ୍ୟତୀତ ତାଙ୍କୁ ଏବଂ ତାଙ୍କର ପରିବାରବର୍ଗଙ୍କୁ ମୁକ୍ତି ଦେଲୁ ; କାରଣ ସେ (ଅର୍ଥାତ୍ ତାଙ୍କର[୧] ପତ୍ନୀ) ପଶ୍ଚାତ୍‌ବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ଥିଲେ ।

فَأَنْجَيْنَٰهُ وَأَهْلَهُۥٓ إِلَّا ٱمْرَأَتَهُۥ كَانَتْ مِنَ ٱلْغَٰبِرِينَ ﴿٨٣﴾

୮୫. ଏବଂ ଆମେ ସେମାନଙ୍କ ଉପରେ (ଭୂମିକମ୍ପ ଦ୍ୱାରା ଶିଳା) ବୃଷ୍ଟି କରିଥିଲୁ ; ସୁତରାଂ ତୁମେମାନେ ଦେଖ ଯେ ଦୋଷୀମାନଙ୍କ ପରିଣାମ କିପରି (ଭୟାବହ) ହୋଇଥିଲା[୨] ।

وَأَمْطَرْنَا عَلَيْهِم مَّطَرًا ۖ فَٱنظُرْ كَيْفَ كَانَ عَٰقِبَةُ ٱلْمُجْرِمِينَ ﴿٨٤﴾

ରୁ : ୧୧

୮୬. ଏବଂ ଆମେ "ମଦୟନ"[୩] ସମ୍ପ୍ରଦାୟ ପ୍ରତି ସେମାନଙ୍କ ଭାଇ 'ସୁଏବ'ଙ୍କୁ ମଧ୍ୟ (ରସୁଲ ଭାବେ) ପ୍ରେରଣ

وَإِلَىٰ مَدْيَنَ أَخَاهُمْ شُعَيْبًا ۗ قَالَ يَٰقَوْمِ ٱعْبُدُوا۟ ٱللَّهَ

---

୧. ଶାସ୍ତିବିଧାନ କରାଯିବା ପୂର୍ବରୁ ହଜରତ ଲୁତଙ୍କୁ ସେଠାରୁ ଚାଲିଯିବା ପାଇଁ ଆଦେଶ ଦିଆଯାଇଥିଲା । କିନ୍ତୁ ତାଙ୍କର ଦୁଇଟି କନ୍ୟା ସେହି ସହରରେ ବିବାହ କରିଥିଲେ । ତାଙ୍କ ପତ୍ନୀ ଅଲ୍ଲାହଙ୍କ ଆଦେଶକୁ ଅମାନ୍ୟ କଲେ ଓ କନ୍ୟାମାନଙ୍କ ପ୍ରତି ଥିବା ମମତା ଯୋଗୁଁ ସେ ପଛରେ ରହିଗଲେ । ଫଳରେ ସେ ଶାସ୍ତିର କବଳିତ ହେଲେ ।

୨. ହଜରତ ଲୁତଙ୍କ ଦେଶବାସୀଙ୍କ ଉପରେ ଏପରି ଏକ ପ୍ରଚଣ୍ଡ ଭୂକମ୍ପ ଆସିଥିଲା ଯାହା ଭୂପୃଷ୍ଠକୁ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିଲା । ସାଧାରଣତଃ ଭୂକମ୍ପ ଯୋଗୁଁ ଭୂପୃଷ୍ଠର ମୃତ୍ତିକା ଆଦି ବହୁ ଉଚ୍ଚକୁ ଉତ୍କ୍ଷିପ୍ତ ହୋଇ ତଳକୁ ଖସିପଡ଼େ ସତେ ଯେପରି ମୃତ୍ତିକା ଓ ଶିଳା ବୃଷ୍ଟି ହେଉଛି । ଅନୁରୂପ ଭୂକମ୍ପ ଧ୍ରମାଇ, କାଙ୍ଗଡ଼ା ଓ କାବୁଲରେ ହୋଇଥିଲା ।

୩. ତୌରାତ ଧର୍ମଗ୍ରନ୍ଥରୁ ଜଣାପଡ଼େ ଯେ ହଜରତ ଇବ୍ରାହିମଙ୍କର ଦୁଇ ପତ୍ନୀ ହଜରତ ସାରା ଓ ହଜରତ ହାଜରା ବ୍ୟତୀତ କତୁରା ନାମ୍ନୀ ଅନ୍ୟ ଜଣେ ପତ୍ନୀ ଥିଲେ ଯାହାଙ୍କ ଗର୍ଭରୁ ମଦୟନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ସନ୍ତାନମାନେ ଅନେକ ଅଞ୍ଚଳରେ ବ୍ୟାପି ଯାଇଥିଲେ । ସେମାନେ ହିଜାଜର ଉତ୍ତରାଞ୍ଚଳ ତଥା ପାଲେଷ୍ଟାଇନର ଦକ୍ଷିଣାଞ୍ଚଳରେ ବସତି ସ୍ଥାପନ କରିଥିଲେ । ହଜରତ ସୁଏବ ସେମାନଙ୍କ ଜାତିରେ ଜନ୍ମ ଗ୍ରହଣ କରିଥିଲେ । ମଦୟନଙ୍କ ନାମାନୁସାରେ ସେମାନଙ୍କ ସହରର ନାମ ଥିଲା ମଦୟନ । ମଦୟନ ସେହିଠାରେ ବାସ କରୁଥିଲେ ଓ ସେଠାକାର ଅଧିକାଂଶ ନିବାସୀ ଇସମାଇଲଙ୍କ ବଂଶଜ ଥିଲେ ।

ହଜରତ ଇବ୍ରାହିମଙ୍କ ଅନ୍ୟତମ ପତ୍ନୀ କତୁରାଙ୍କ ଗର୍ଭଜାତ ବଂଶରେ ହଜରତ ସୁଏବ ଜନ୍ମ ଗ୍ରହଣ କରିଥିଲେ । ମଦୟନ ବା ଆଧୁନିକ ମଦିନା ସହର ନିକଟବର୍ତ୍ତୀ ଅଞ୍ଚଳରେ ଇସମାଇଲ ବଂଶଜ ଲୋକେ ଅର୍ଥାତ୍ କୁରେଶ ବଂଶର ଲୋକେ ବାସ କରୁଥିଲେ । ସେମାନଙ୍କ ଘଟଣା ସହିତ ହଜରତ ମହମ୍ମଦଙ୍କ ଘଟଣାବଳୀର ଅନେକ ସାମଞ୍ଜସ୍ୟ ଅଛି । ଯେପରି ଉଭୟ କ୍ଷେତ୍ରରେ ବିରୁଦ୍ଧାଚରଣ ନିଜ ସହରବାସୀ କରିଥିଲେ ଓ ଉଭୟେ ମଦିନାକୁ ହିଜରତ କରିଥିଲେ ।

مَا لَكُمْ مِّنْ اِلٰهٍ غَيْرُهٗ ۖ قَدْ جَآءَتْكُمْ بَيِّنَةٌ مِّنْ رَّبِّكُمْ فَاَوْفُوا الْكَيْلَ وَ الْمِيْزَانَ وَلَا تَبْخَسُوا النَّاسَ اَشْيَآءَهُمْ وَلَا تُفْسِدُوْا فِي الْاَرْضِ بَعْدَ اِصْلَاحِهَا ۗ ذٰلِكُمْ خَيْرٌ لَّكُمْ اِنْ كُنْتُمْ مُّؤْمِنِيْنَ ۝

କରିଥିଲୁ; ସେ କହିଲେ, "ହେ ଆମର ସମ୍ପ୍ରଦାୟ ! ତୁମେମାନେ ଅଲ୍ଲାହଙ୍କର ଉପାସନା କର, ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ; ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ତୁମମାନଙ୍କ ନିକଟକୁ ଏକ ସୁସ୍ପଷ୍ଟ ପ୍ରମାଣ ଆସିଅଛି, ତେଣୁ ଯଥାର୍ଥ ମାପ ଓ ଓଜନ କର ଏବଂ ଲୋକମାନଙ୍କୁ ସେମାନଙ୍କର ପ୍ରାପ୍ୟ ଦ୍ରବ୍ୟ ଊଣା କରି ଦିଅ ନାହିଁ; ଏବଂ ଶୃଙ୍ଖଳା ସ୍ଥାପିତ ହେବା ପରେ ପୃଥିବୀରେ ବିଶୃଙ୍ଖଳା ସୃଷ୍ଟି କର ନାହିଁ; ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ, ଏହା ହିଁ ତୁମମାନଙ୍କ ପକ୍ଷରେ ଉତ୍ତମ ଅଟେ ;

وَلَا تَقْعُدُوْا بِكُلِّ صِرَاطٍ تُوْعِدُوْنَ وَتَصُدُّوْنَ عَنْ سَبِيْلِ اللّٰهِ مَنْ اٰمَنَ بِهٖ وَتَبْغُوْنَهَا عِوَجًا ۚ وَاذْكُرُوْٓا اِذْ كُنْتُمْ قَلِيْلًا فَكَثَّرَكُمْ ۖ وَانْظُرُوْا كَيْفَ كَانَ عَاقِبَةُ الْمُفْسِدِيْنَ ۝

୮୭. "ଏବଂ ବିଶ୍ୱାସକାରୀମାନଙ୍କୁ ଭୟଭୀତ କରିବା ଓ ଅଲ୍ଲାହଙ୍କ ପଥରୁ ବିଚ୍ୟୁତ କରିବା ପାଇଁ ପ୍ରତ୍ୟେକ ପଥରେ ବସ ନାହିଁ ଓ ସେଥିରେ କୁଟିଳତା ସୃଷ୍ଟି କରିବାକୁ ଚେଷ୍ଟା କର ନାହିଁ ; ଏବଂ ସ୍ମରଣ କର, ଯେତେବେଳେ ତୁମେମାନେ ଅଳ୍ପସଂଖ୍ୟକ ଥିଲ, ସେ (ଅଲ୍ଲାହ) ତୁମମାନଙ୍କୁ ବହୁସଂଖ୍ୟକ କରିଥିଲେ ; ଏବଂ ସର୍ବଦା ମନେରଖ ଯେ ବିଶୃଙ୍ଖଳାକାରୀମାନଙ୍କ ପରିଣାମ କିପରି ଭୟାବହ ହୋଇଥାଏ ।"

وَاِنْ كَانَ طَآئِفَةٌ مِّنْكُمْ اٰمَنُوْا بِالَّذِيْٓ اُرْسِلْتُ بِهٖ وَطَآئِفَةٌ لَّمْ يُؤْمِنُوْا فَاصْبِرُوْا حَتّٰى يَحْكُمَ اللّٰهُ بَيْنَنَا ۚ وَهُوَ خَيْرُ الْحٰكِمِيْنَ ۝

୮୮. "ଏବଂ ଯାହା ଘେନି ଆମେ ପ୍ରେରିତ ହୋଇଅଛୁ, ଯଦି ତୁମମାନଙ୍କ ମଧ୍ୟରୁ କୌଣସି ଦଳ ତାହାକୁ ବିଶ୍ୱାସ କରେ ଏବଂ କୌଣସି ଦଳ ବିଶ୍ୱାସ କରେ ନାହିଁ, ତେବେ ଅଲ୍ଲାହ ଆମ (ବିଶ୍ୱାସକାରୀ ଓ ଅବିଶ୍ୱାସକାରୀ)ମାନଙ୍କ ମଧ୍ୟରେ ନିଷ୍ପତ୍ତି ନ କରିବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧର ଏବଂ ସେ ହିଁ ସର୍ବୋତ୍ତମ ନିଷ୍ପତ୍ତିକାରୀ ।"

## ଭାଗ–୯

୮୯. ତାହାଙ୍କ ସମ୍ପ୍ରଦାୟର ଅହଙ୍କାରୀ ମୁଖ୍ୟ ବ୍ୟକ୍ତିମାନେ କହିଲେ, ''ହେ ସୁଏବ୍ ! ନିଶ୍ଚୟ ଆମେମାନେ ତୁମଙ୍କୁ ଓ ତୁମ ସହିତ ବିଶ୍ୱାସ କରିଥିବା ବ୍ୟକ୍ତିମାନଙ୍କୁ ନିଜ ଦେଶରୁ ବିତାଡ଼ିତ କରିଦେବୁ ; ଅଥବା ତୁମମାନଙ୍କୁ ଆମମାନଙ୍କର ଧର୍ମକୁ ଫେରି ଆସିବାକୁ ହେବ;'' ସେ କହିଲେ, ''ଯଦି ଆମେ (ଏପରି କାର୍ଯ୍ୟକୁ) ଅପସନ୍ଦ କରିବୁ ତଥାପି କ'ଣ (ତୁମେମାନେ ବିତାଡ଼ିତ କରିଦେବ )?''

قَالَ الْمَلَأُ الَّذِينَ اسْتَكْبَرُوا مِن قَوْمِهِ لَنُخْرِجَنَّكَ يَا شُعَيْبُ وَالَّذِينَ آمَنُوا مَعَكَ مِن قَرْيَتِنَا أَوْ لَتَعُودُنَّ فِي مِلَّتِنَا ۚ قَالَ أَوَلَوْ كُنَّا كَارِهِينَ ﴿٨٩﴾

୯୦. (ପ୍ରକୃତ ପକ୍ଷେ) ଅଲ୍ଲାଃ ଆମମାନଙ୍କୁ ସେଥିରୁ ମୁକ୍ତି ଦେବା ପରେ ଯଦି ଆମେମାନେ ତୁମ ଧର୍ମକୁ ଫେରିଯାଉ, ତେବେ (ତାହାର ଅର୍ଥ ନୁହେଁ ଯେ ତୁମେ ସତ୍ୟବାଦୀ ବରଂ ଏହା ହେବ ଯେ) ବାସ୍ତବରେ ଆମେମାନେ ଅଲ୍ଲାଃଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲୁ ଏବଂ (ବିଶ୍ୱାସ କରିବା ପରେ) ଅଲ୍ଲାଃଙ୍କ ଇଚ୍ଛା ବ୍ୟତୀତ ସେ (ପୂର୍ବତନ ଧର୍ମ) ଆଡ଼କୁ ଫେରିବା ଆମମାନଙ୍କର ସାଧ୍ୟାତୀତ ; ପ୍ରତ୍ୟେକ ବିଷୟରେ ଆମମାନଙ୍କ ପାଳନକର୍ତ୍ତାଙ୍କର ସମ୍ପୂର୍ଣ୍ଣ ଜ୍ଞାନ ଅଛି ; ଆମେମାନେ ଅଲ୍ଲାଃଙ୍କ ଉପରେ ନିର୍ଭର କରୁ, (ଏବଂ କହୁ), ''ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କର ଏବଂ ଆମମାନଙ୍କର ସମ୍ପ୍ରଦାୟ ମଧ୍ୟରେ ନ୍ୟାୟସଙ୍ଗତ ନିଷ୍ପତ୍ତି କର, ଏବଂ ତୁମେ ହିଁ ସର୍ବୋତ୍ତମ ନିଷ୍ପତ୍ତିକାରୀ ।''

قَدِ افْتَرَيْنَا عَلَى اللَّهِ كَذِبًا إِنْ عُدْنَا فِي مِلَّتِكُم بَعْدَ إِذْ نَجَّانَا اللَّهُ مِنْهَا ۚ وَمَا يَكُونُ لَنَا أَن نَّعُودَ فِيهَا إِلَّا أَن يَشَاءَ اللَّهُ رَبُّنَا ۚ وَسِعَ رَبُّنَا كُلَّ شَيْءٍ عِلْمًا ۚ عَلَى اللَّهِ تَوَكَّلْنَا ۚ رَبَّنَا افْتَحْ بَيْنَنَا وَبَيْنَ قَوْمِنَا بِالْحَقِّ وَأَنتَ خَيْرُ الْفَاتِحِينَ ﴿٩٠﴾

୯୧. ଏବଂ ତାହାଙ୍କ (ଅର୍ଥାତ୍ ସୁଏବଙ୍କ) ସଂପ୍ରଦାୟର ଅବିଶ୍ୱାସକାରୀ ମୁଖ୍ୟମାନେ କହିଲେ, ''ଯଦି ତୁମେମାନେ ସୁଏବଙ୍କୁ ଅନୁସରଣ କରିବ, ତେବେ ତୁମେମାନେ ନିଶ୍ଚୟ କ୍ଷତିଗ୍ରସ୍ତ ହେବ ।''

وَقَالَ الْمَلَأُ الَّذِينَ كَفَرُوا مِن قَوْمِهِ لَئِنِ اتَّبَعْتُمْ شُعَيْبًا إِنَّكُمْ إِذًا لَّخَاسِرُونَ ﴿٩١﴾

୯୨. ଅତଏବ, ସେମାନଙ୍କୁ (ଏକ) ଭୂମିକମ୍ପ କମ୍ପିତ କରିଥିଲା, ଏବଂ ସେମାନେ ନିଜ ଘରେ ଆଣ୍ଠୁମାଡ଼ି ପଡ଼ି ରହିଥିଲେ ।

فَأَخَذَتْهُمُ الرَّجْفَةُ فَأَصْبَحُوا فِي دَارِهِمْ جَاثِمِينَ ﴿٩٢﴾

୯୩. ଯେଉଁମାନେ ସୁଏବଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ, (ସେମାନେ ଏପରି ଭାବରେ ଧ୍ୱଂସ ହେଲେ) ସତେ ଯେପରି ସେମାନେ ସେଠାରେ କେବେ ହେଁ ବାସ କରୁ ନ ଥିଲେ[୧]; ଯେଉଁମାନେ ସୁଏବଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ ସେମାନେ କ୍ଷତିଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥିଲେ ।

الَّذِيْنَ كَذَّبُوْا شُعَيْبًا كَاَنْ لَّمْ يَغْنَوْا فِيْهَا ۚ اَلَّذِيْنَ كَذَّبُوْا شُعَيْبًا كَانُوْا هُمُ الْخٰسِرِيْنَ ﴿٩٣﴾

୯୪. ତା'ପରେ ସେ (ସୁଏବ) ଏହିପରି କହି ସେମାନଙ୍କୁ ଛାଡ଼ି ଚାଲିଗଲେ, "ହେ ଆମର ସମ୍ପ୍ରଦାୟ ! ଆମେ ତୁମମାନଙ୍କୁ ଆମର ପାଳନକର୍ତ୍ତାଙ୍କ ବାର୍ତ୍ତା ପହଞ୍ଚାଇ ଦେଇଥିଲୁ ଏବଂ ତୁମମାନଙ୍କୁ ଉପଦେଶ ଦେଇଥିଲୁ ; ତେଣୁ ଏବେ ଆମେ କିପରି ଅବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ଦୁଃଖିତ ହେବୁ ?"

فَتَوَلّٰى عَنْهُمْ وَقَالَ يٰقَوْمِ لَقَدْ اَبْلَغْتُكُمْ رِسٰلٰتِ رَبِّيْ وَنَصَحْتُ لَكُمْ ۚ فَكَيْفَ اٰسٰى عَلٰى قَوْمٍ كٰفِرِيْنَ ﴿٩٤﴾ ع

ରୁ : ୧୨

୯୫. ଏବଂ ଆମେ କୌଣସି ସହର ପ୍ରତି କୌଣସି ରସୁଲ ପ୍ରେରଣ କରି ନାହୁଁ, କିନ୍ତୁ (ଏପରି ହେଲା ଯେ) ଆମେ ସେଠାକାର ବାସିନ୍ଦାମାନଙ୍କୁ ଦୁଃଖ ଓ କଷ୍ଟରେ କବଳିତ କଲୁ, ଫଳରେ ସେମାନେ ନମ୍ର ହେବେ ।

وَمَآ اَرْسَلْنَا فِيْ قَرْيَةٍ مِّنْ نَّبِيٍّ اِلَّآ اَخَذْنَآ اَهْلَهَا بِالْبَاْسَآءِ وَالضَّرَّآءِ لَعَلَّهُمْ يَضَّرَّعُوْنَ ﴿٩٥﴾

୯୬. ତତ୍‌ପରେ ଆମେ ସେମାନଙ୍କର ଦୁରବସ୍ଥାକୁ ସ୍ୱାଚ୍ଛନ୍ଦ୍ୟରେ ପରିଣତ କଲୁ, ଏପରି କି ଯେତେବେଳେ ସେମାନେ ଉନ୍ନତି କରିଲେ ଓ କହିଲେ, "ଦୁଃଖ ଓ ସୁଖ ଆମମାନଙ୍କ ପିତୃପିତାମହଙ୍କ ପାଇଁ ମଧ୍ୟ ଆସିଥିଲା (ତେଣୁ ଆମମାନଙ୍କ ପ୍ରତି ଆସିଲେ ଏଥିରେ କିଛି ନୂତନତା ନାହିଁ) ; ସୁତରାଂ ଆମେ ସେମାନଙ୍କୁ ହଠାତ୍ (ଶାସ୍ତିରେ) ଆକ୍ରାନ୍ତ କଲୁ ; (ଏପରି କାହିଁକି ଘଟିଲା) ସେମାନେ ବୁଝି ପାରିଲେ ନାହିଁ ;"

ثُمَّ بَدَّلْنَا مَكَانَ السَّيِّئَةِ الْحَسَنَةَ حَتّٰى عَفَوْا وَّقَالُوْا قَدْ مَسَّ اٰبَآءَنَا الضَّرَّآءُ وَالسَّرَّآءُ فَاَخَذْنٰهُمْ بَغْتَةً وَّهُمْ لَا يَشْعُرُوْنَ ﴿٩٦﴾

୯୭. ଏବଂ ଯଦି ସେହି ସହରମାନଙ୍କର ବାସିନ୍ଦାମାନେ ବିଶ୍ୱାସ କରିଥା'ନ୍ତେ ଓ ଧର୍ମଭୀରୁ ହୋଇଥା'ନ୍ତେ, ତେବେ ଆମେ ସେମାନଙ୍କ ପାଇଁ ଆକାଶ ଓ ପୃଥିବୀର ଆଶୀର୍ବାଦପୂର୍ଣ୍ଣ ଦ୍ୱାର ଉନ୍ମୁକ୍ତ କରିଥା'ନ୍ତୁ ; କିନ୍ତୁ ସେମାନେ (ନବିମାନଙ୍କ ଉପରେ) ମିଥ୍ୟା ଆରୋପ କରିଥିଲେ; ସୁତରାଂ ଆମେ ସେମାନଙ୍କୁ ସେମାନଙ୍କ କର୍ମ ଯୋଗୁଁ (ଶାସ୍ତିର) କବଳିତ କରିଥିଲୁ ।

وَلَوْ اَنَّ اَهْلَ الْقُرٰٓى اٰمَنُوْا وَاتَّقَوْا لَفَتَحْنَا عَلَيْهِمْ بَرَكٰتٍ مِّنَ السَّمَآءِ وَالْاَرْضِ وَلٰكِنْ كَذَّبُوْا فَاَخَذْنٰهُمْ بِمَا كَانُوْا يَكْسِبُوْنَ ﴿٩٧﴾

---

୧. ଅର୍ଥାତ୍ ସଂଖ୍ୟା ଗରିଷ୍ଠ ଲୋକମାନେ ସଂଖ୍ୟା ଲଘିଷ୍ଠ ଲୋକମାନଙ୍କୁ ଦେଶରୁ ବିତାଡ଼ିତ କରିବା ପାଇଁ ଇଚ୍ଛା କରୁଥିଲେ । ଅଥଚ ଅନ୍ୟ ଦେଶରେ ସେମାନଙ୍କ ପାଇଁ କୌଣସି ବାସସ୍ଥାନ ନ ଥିଲା । ଏପରି ପରିସ୍ଥିତିରେ ଅଲ୍ପ ସଂଖ୍ୟାଗରିଷ୍ଠ ଗୋଷ୍ଠୀଙ୍କୁ ନିଜ ଜନ୍ମଭୂମିରୁ ବିତାଡ଼ିତ କରି ସେମାନଙ୍କର ସର୍ବନାଶ କରିଥାନ୍ତି ।

୯୮. ତେବେ କ'ଣ ଏହି ସହରଗୁଡ଼ିକର[1] ବାସିନ୍ଦାମାନେ (ଅର୍ଥାତ୍ ମକ୍‌କା ଓ ଏହାର ଆଖପାଖ ଲୋକମାନେ) ରାତ୍ରିରେ ଶୋଇଥିବା ଅବସ୍ଥାରେ ସେମାନଙ୍କ ଉପରେ ଆମର ଶାସ୍ତି ଉପସ୍ଥିତ ହେବା ସଂକ୍ରାନ୍ତରେ ନିଶ୍ଚିନ୍ତ ଅଛନ୍ତି ?

أَفَأَمِنَ أَهْلُ الْقُرَىٰ أَنْ يَأْتِيَهُمْ بَأْسُنَا بَيَاتًا وَهُمْ نَائِمُونَ ﴿٩٨﴾

୯୯. ଅଥବା କ'ଣ ଏହି ସହରଗୁଡ଼ିକର ବାସିନ୍ଦାମାନେ ମଧ୍ୟାହ୍ନରେ ଖେଳୁଥିବା[2] ସମୟରେ ସେମାନଙ୍କ ଉପରେ ଆମର ଶାସ୍ତି ଉପସ୍ଥିତ ହେବା ସଂକ୍ରାନ୍ତରେ ନିଶ୍ଚିନ୍ତ ଅଛନ୍ତି ?

أَوَأَمِنَ أَهْلُ الْقُرَىٰ أَنْ يَأْتِيَهُمْ بَأْسُنَا ضُحًى وَهُمْ يَلْعَبُونَ ﴿٩٩﴾

୧୦୦. ତେବେ କ'ଣ ସେମାନେ ଅଲ୍ଲାହଙ୍କ କୌଶଳରୁ ସୁରକ୍ଷିତ ହୋଇ ଯାଇଛନ୍ତି ? (ମନେରଖ ଯେ) କ୍ଷତିଗ୍ରସ୍ତ ସମ୍ପ୍ରଦାୟ ବ୍ୟତୀତ ଅନ୍ୟ କେହି ଅଲ୍ଲାହଙ୍କ କୌଶଳରୁ ସୁରକ୍ଷିତ ନୁହେଁ ।

أَفَأَمِنُوا مَكْرَ اللَّهِ ۚ فَلَا يَأْمَنُ مَكْرَ اللَّهِ إِلَّا الْقَوْمُ الْخَاسِرُونَ ﴿١٠٠﴾

ରୁ : ୧୩

୧୦୧. ତେବେ କ'ଣ ପୃଥିବୀର (ପୂର୍ବବର୍ତ୍ତୀ) ବାସିନ୍ଦାମାନଙ୍କ ପରେ ଯେଉଁମାନେ ତାହାର ଉତ୍ତରାଧିକାରୀ ହୋଇଛନ୍ତି, ଏହି ବିଷୟରୁ ଜ୍ଞାନ ଲଭିଲେ ନାହିଁ ଯେ ଯଦି ଆମେ ଇଚ୍ଛା କରିବୁ ତେବେ ସେମାନଙ୍କ ପାପ ପାଇଁ ସେମାନଙ୍କୁ ଶାସ୍ତି ପ୍ରଦାନ କରିପାରୁ ତଥା ସେମାନଙ୍କ ହୃଦୟରେ ମଧ୍ୟ ମୋହର ଲଗାଇ ପାରୁ ଯଦ୍ଦ୍ୱାରା କି ସେମାନେ ସଦୁପଦେଶ ଶୁଣି ପାରିବେ ନାହିଁ ?

أَوَلَمْ يَهْدِ لِلَّذِينَ يَرِثُونَ الْأَرْضَ مِنْ بَعْدِ أَهْلِهَا أَنْ لَوْ نَشَاءُ أَصَبْنَاهُمْ بِذُنُوبِهِمْ ۚ وَنَطْبَعُ عَلَىٰ قُلُوبِهِمْ فَهُمْ لَا يَسْمَعُونَ ﴿١٠١﴾

୧୦୨. ଏଗୁଡ଼ିକ ଏପରି ସହର ଯାହାର ଖବର ଆମେ ତୁମ ନିକଟରେ ବର୍ଣ୍ଣନା କରୁଅଛୁ ; ଏବଂ ସେମାନଙ୍କ ନିକଟକୁ ସେମାନଙ୍କର ରସୁଲମାନେ ନିଦର୍ଶନ ସହିତ ଆସିଥିଲେ, କିନ୍ତୁ ସେମାନେ (ତାହାକୁ) ବିଶ୍ୱାସ କରିଲେ ନାହିଁ, କାରଣ ସେମାନେ ଆଦ୍ୟରୁ ଅସ୍ୱୀକାର କରିଥିଲେ ; ଏହିପରି ଅଲ୍ଲାହ ଅବିଶ୍ୱାସକାରୀମାନଙ୍କର ହୃଦୟରେ ମୋହର ମାରିଥାଆନ୍ତି ।

تِلْكَ الْقُرَىٰ نَقُصُّ عَلَيْكَ مِنْ أَنْبَائِهَا ۚ وَلَقَدْ جَاءَتْهُمْ رُسُلُهُمْ بِالْبَيِّنَاتِ فَمَا كَانُوا لِيُؤْمِنُوا بِمَا كَذَّبُوا مِنْ قَبْلُ ۚ كَذَٰلِكَ يَطْبَعُ اللَّهُ عَلَىٰ قُلُوبِ الْكَافِرِينَ ﴿١٠٢﴾

୧୦୩. ଏବଂ ଆମେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ (ନିଜ) ଅଙ୍ଗୀକାର ପାଳନକାରୀ ଭାବରେ ପାଇନାହୁଁ ; ବରଂ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ଆମେ ନିଶ୍ଚିତ ରୂପେ ଅଙ୍ଗୀକାର ଲଙ୍ଘନକାରୀ ହିସାବରେ ପାଇଅଛୁ ।

وَمَا وَجَدْنَا لِأَكْثَرِهِمْ مِنْ عَهْدٍ ۖ وَإِنْ وَجَدْنَا أَكْثَرَهُمْ لَفَاسِقِينَ ﴿١٠٣﴾

---

୧. ହଜରତ ସୁଏବଙ୍କ ସହରର ପରିଣାମ ଦେଖିବା ସତ୍ତ୍ୱେ ମକ୍‌କା ଓ ତାହାର ପାର୍ଶ୍ୱବର୍ତ୍ତୀ ସ୍ଥାନର ଲୋକମାନେ ତଥାପି ଶିକ୍ଷା ପାଇପାରିଲେ ନାହିଁ ।

୨. ଭାରତରେ ଦ୍ୱିପ୍ରହର ସମୟରେ ଲୋକମାନେ ହାଟବଜାରରେ ବା ନିଜ ନିଜ ବାରଣ୍ଡାରେ ପଶା ଆଦି ଖେଳନ୍ତି । ସେଥିରୁ ଏହା ମଧ୍ୟ ଜଣାପଡୁଛି ଯେ ଏ ଜାତି ମଧ୍ୟ ବେପାର ବଣିଜ କରୁଥିଲା ଓ ସେମାନଙ୍କ ମଧ୍ୟରେ ଏପରି କୌଣସି ରୀତି ପ୍ରଚଳିତ ଥିଲା ।

୧୦୪. ତତ୍‌ପରେ ଆମ୍ଭେ ଏ (ନବି)ମାନଙ୍କ ପରେ ମୁସାଙ୍କୁ ନିଦର୍ଶନ ସହିତ ଫିରଓିନ ଓ ତାହାର ମୁଖ୍ୟମାନଙ୍କ ନିକଟକୁ ପ୍ରେରଣ କଲୁ ; କିନ୍ତୁ ସେମାନେ ତାଙ୍କ ଉପରେ ଅତ୍ୟାଚାର କରିଲେ ; ଅତଏବ, ତୁମ୍ଭେ ଲକ୍ଷ୍ୟ କର ଯେ ବିଶୃଙ୍ଖଳାକାରୀମାନଙ୍କ ପରିଣାମ କିପରି (ଭୟାବହ) ହୋଇଅଛି ।

ثُمَّ بَعَثْنَا مِنْ بَعْدِهِمْ مُّوسٰى بِاٰيٰتِنَآ اِلٰى فِرْعَوْنَ وَمَلَا۟ئِهٖ فَظَلَمُوْا بِهَا ۚ فَانْظُرْ كَيْفَ كَانَ عَاقِبَةُ الْمُفْسِدِيْنَ ﴿۱۰۴﴾

୧୦୫. ଏବଂ ମୁସା କହିଲେ, "ହେ ଫିରଓିନ୍ ! ନିଶ୍ଚୟ ଆମ୍ଭେ ସମସ୍ତ ଜଗତର ପାଳନକର୍ତ୍ତାଙ୍କର ପ୍ରେରିତ ରସୁଲ ଅଟୁ ।"

وَقَالَ مُوْسٰى يٰفِرْعَوْنُ اِنِّيْ رَسُوْلٌ مِّنْ رَّبِّ الْعٰلَمِيْنَ ﴿۱۰۵﴾

୧୦୬. "ଏବଂ ଅଲ୍ଲାହଙ୍କ ସମ୍ବନ୍ଧରେ ସତ୍ୟ ବ୍ୟତୀତ ଅନ୍ୟ କିଛି ନ କହିବା ଆମ୍ଭର କର୍ତ୍ତବ୍ୟ ; ଆମ୍ଭେ ତୁମମାନଙ୍କ ନିକଟକୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ଏକ ସ୍ପଷ୍ଟ ନିଦର୍ଶନ ନେଇ ଆସିଅଛୁ ; ଅତଏବ ଆମ୍ଭ ସହିତ ଇସ୍ରାଇଲୀୟ ସନ୍ତାନମାନଙ୍କୁ ପ୍ରେରଣ କର ।"

حَقِيْقٌ عَلٰٓى اَنْ لَّآ اَقُوْلَ عَلَى اللّٰهِ اِلَّا الْحَقَّ ؕ قَدْ جِئْتُكُمْ بِبَيِّنَةٍ مِّنْ رَّبِّكُمْ فَاَرْسِلْ مَعِيَ بَنِيْٓ اِسْرَآءِيْلَ ﴿۱۰۶﴾

୧୦୭. (ଫିରଓିନ) କହିଲା, "ଯଦି ତୁମ୍ଭେ କୌଣସି ନିଦର୍ଶନ ସହିତ ଆସିଅଛ, ଓ ଯଦି ତୁମ୍ଭେ ବାସ୍ତବରେ ସତ୍ୟବାଦୀ ହୋଇଥାଅ, ତେବେ ତାହା ପ୍ରକାଶ କର ।"

قَالَ اِنْ كُنْتَ جِئْتَ بِاٰيَةٍ فَاْتِ بِهَآ اِنْ كُنْتَ مِنَ الصّٰدِقِيْنَ ﴿۱۰۷﴾

୧୦୮. ତା'ପରେ ସେ (ଅର୍ଥାତ୍ ମୁସା) ନିଜର ଲାଠିକୁ (ଭୂମିରେ) ପକାଇ ଦେଲେ ଏବଂ ସହସା ତାହା ଏକ ସୁସ୍ପଷ୍ଟ ସର୍ପ (ସଦୃଶ) ଦେଖାଗଲା ।

فَاَلْقٰى عَصَاهُ فَاِذَا هِيَ ثُعْبَانٌ مُّبِيْنٌ ﴿۱۰۸﴾

୧୦୯. ଏବଂ ତା'ପରେ ସେ ତା'ଙ୍କ ହାତ ବାହାର କଲେ ଏବଂ ତାହା ଦର୍ଶକମାନଙ୍କ ଦୃଷ୍ଟିରେ ଧଳା ଦେଖାଗଲା ।

ରୁ:୧୪

وَّنَزَعَ يَدَهٗ فَاِذَا هِيَ بَيْضَآءُ لِلنّٰظِرِيْنَ ﴿۱۰۹﴾

୧୧୦. ଏଥିଯୋଗୁଁ ଫିରଓିନ ସମ୍ପ୍ରଦାୟର ମୁଖ୍ୟମାନେ କହିଲେ, "ନିଶ୍ଚୟ ଏ ଜଣେ କୁଶଳୀ ଯାଦୁକର ।"

قَالَ الْمَلَاُ مِنْ قَوْمِ فِرْعَوْنَ اِنَّ هٰذَا لَسٰحِرٌ عَلِيْمٌ ﴿۱۱۰﴾

୧୧୧. "ସେ ତୁମମାନଙ୍କୁ ତୁମମାନଙ୍କର ଦେଶରୁ ବିତାଡ଼ିତ କରିବାକୁ ଇଚ୍ଛା କରୁଛନ୍ତି, ଅତଏବ ତୁମେମାନେ (ତା' ସଂକ୍ରାନ୍ତରେ) କ'ଣ ପରାମର୍ଶ ଦେଉଅଛ ?"

يُّرِيْدُ اَنْ يُّخْرِجَكُمْ مِّنْ اَرْضِكُمْ ۚ فَمَاذَا تَاْمُرُوْنَ ﴿۱۱۱﴾

୧୧୨. "ସେମାନେ (ଫିରଓିନ୍‌କୁ) କହିଲେ, "ମୁସାଙ୍କୁ ଓ ତାଙ୍କର ଭାଇଙ୍କୁ କିଛି ଅବସର ଦିଅ, ଏବଂ ସବୁ ସହରକୁ ଢେଣ୍ଡୁରାକାରୀମାନଙ୍କୁ ପଠାଅ ।"

قَالُوْٓا اَرْجِهْ وَاَخَاهُ وَاَرْسِلْ فِي الْمَدَآئِنِ حٰشِرِيْنَ ﴿۱۱۲﴾

୧. ଯେତେବେଳେ ହଜରତ ମୁସା, ଫିରଓିନ ପାଖକୁ ଗଲେ ସେତେବେଳେ ତାଙ୍କୁ ଧର୍ମଶିକ୍ଷା ଦେବା ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ନଥିଲା, ବରଂ ନିଜ ଜାତିର ଲୋକମାନଙ୍କୁ ନିଜ ସହିତ ନେଇଯିବା ପାଇଁ ଅନୁରୋଧ କରିବା ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା । ବସ୍ତୁତଃ ସେ ଇସ୍ରାଇଲୀୟମାନଙ୍କ ପାଇଁ ଅବତାର ରୂପେ ପ୍ରେରିତ ହୋଇଥିଲେ । କିନ୍ତୁ ଯେ ପର୍ଯ୍ୟନ୍ତ ଇସ୍ରାଇଲୀୟମାନେ ମିଶରବାସୀଙ୍କ ସହିତ ଏକତ୍ରିତ ରହିଥିଲେ ସେ ସେପର୍ଯ୍ୟନ୍ତ ଉଭୟ ଗୋଷ୍ଠୀକୁ ଧର୍ମଶିକ୍ଷା ଦେଉଥିଲେ । ଫଳରେ ଇସ୍ରାଇଲୀୟମାନେ ମିଶର ଦେଶ ଛାଡ଼ିବା ପରେ ମିଶରବାସୀଙ୍କ ସହିତ ହଜରତ ମୁସାଙ୍କର ଆଉ ସମ୍ପର୍କ ରହିଲା ନାହିଁ ।

୧୧୩. "(ଯେପରି) ସେମାନେ ତୁମ ନିକଟକୁ ପ୍ରତ୍ୟେକ କୁଶଳୀ ଯାଦୁକରଙ୍କୁ ଘେନି ଆସିବେ ।"

يَأْتُوكَ بِكُلِّ سَاحِرٍ عَلِيمٍ ﴿١١٣﴾

୧୧୪. ଏବଂ (ଏହି ଚେଷ୍ଟା ଫଳରେ) ଯାଦୁକରମାନେ ଫିରଔନ ନିକଟରେ ଏକତ୍ରିତ ହୋଇ କହିଲେ, "ଯଦି ଆମେମାନେ ଜୟଲାଭ କରିବୁ, ତେବେ କ'ଣ ଆମମାନଙ୍କୁ କୌଣସି ପୁରସ୍କାର ମିଳିବ ?"

وَجَاءَ السَّحَرَةُ فِرْعَوْنَ قَالُوٓا إِنَّ لَنَا لَأَجْرًا إِنْ كُنَّا نَحْنُ الْغٰلِبِينَ ﴿١١٤﴾

୧୧୫. ସେ (ଫିରଔନ) କହିଲା, "କାହିଁକି ନୁହେଁ, ଓ ଏହା ବ୍ୟତୀତ ତୁମେମାନେ ନିଶ୍ଚୟ ମୋର ନିକଟବର୍ତ୍ତୀ ଲୋକମାନଙ୍କ ମଧ୍ୟରୁ ହୋଇଯିବ ।"

قَالَ نَعَمْ وَإِنَّكُمْ لَمِنَ الْمُقَرَّبِينَ ﴿١١٥﴾

୧୧୬. ସେମାନେ କହିଲେ, "ହେ ମୁସା ! କ'ଣ ତୁମେ ପ୍ରଥମେ (ଲାଠି) ଫୋପାଡ଼ିବ ନା ଆମେମାନେ ପ୍ରଥମେ ଫୋପାଡ଼ିବୁ ?"

قَالُوا يٰمُوسٰى إِمَّآ أَنْ تُلْقِيَ وَإِمَّآ أَنْ نَكُونَ نَحْنُ الْمُلْقِينَ ﴿١١٦﴾

୧୧୭. (ମୁସା) କହିଲେ, "ତୁମେମାନେ (ପ୍ରଥମେ) ଫୋପାଡ଼" ; ତା'ପରେ ଯେତେବେଳେ ସେମାନେ (ନିଜର ଲାଠି ଓ ଦଉଡ଼ି) ଫୋପାଡ଼ିଲେ ଓ ଲୋକମାନଙ୍କ ଆଖିକୁ ମାୟାଗ୍ରସ୍ତ କରିଦେଲେ ଏବଂ ସେମାନଙ୍କୁ ଭୟଭୀତ କରିଲେ ଏବଂ (ଲୋକମାନଙ୍କ ସମ୍ମୁଖରେ) ଏକ ମନ୍ତ୍ରବତ୍ ମାୟାଜାଲ ଉପସ୍ଥାପିତ କଲେ ।

قَالَ أَلْقُوا ۚ فَلَمَّآ أَلْقَوْا سَحَرُوٓا أَعْيُنَ النَّاسِ وَاسْتَرْهَبُوهُمْ وَجَآءُو بِسِحْرٍ عَظِيمٍ ﴿١١٧﴾

୧୧୮. ଏବଂ ଆମେ ମୁସାଙ୍କୁ ଓହି ମାଧ୍ୟମରେ କହିଲୁ, "ତୁମେ ନିଜର ଲାଠି ଫୋପାଡ଼ି ଦିଅ" ; ତା'ପରେ (ସେ ଏହା କରିବାରୁ ଦେଖାଗଲା ଯେ) ତାହା ଯାଦୁକରମାନଙ୍କର ମାୟାକୁ ଗ୍ରାସ[1] କରିଯାଉଛି ।

وَأَوْحَيْنَآ إِلٰى مُوسٰٓى أَنْ أَلْقِ عَصَاكَ ۚ فَإِذَا هِيَ تَلْقَفُ مَا يَأْفِكُونَ ﴿١١٨﴾

୧୧୯. ଅତଏବ, ସତ୍ୟ ସାବ୍ୟସ୍ତ ହେଲା ଏବଂ ସେ ଯାଦୁକରମାନେ ଯାହା କରୁଥିଲେ ତାହା ବୃଥା ହୋଇଗଲା ।

فَوَقَعَ الْحَقُّ وَبَطَلَ مَا كَانُوا يَعْمَلُونَ ﴿١١٩﴾

୧୨୦. ସୁତରାଂ ସେ (ଯାଦୁକର)ମାନେ ପରାଜିତ ଏବଂ ଲାଞ୍ଛିତ ହେଲେ ।

فَغُلِبُوا هُنَالِكَ وَانْقَلَبُوا صٰغِرِينَ ﴿١٢٠﴾

୧୨୧. ଏବଂ ସେ ଯାଦୁକରମାନେ (ଆଜ୍ଞାବହ ହୋଇ) ସିଜଦା କଲେ ।

وَأُلْقِيَ السَّحَرَةُ سٰجِدِينَ ﴿١٢١﴾

---

୧. ଏହାର ମର୍ମ ହେଉଛି ଯେ ତା'ର ପ୍ରଭାବ ନଷ୍ଟ ହୋଇ ଯାଉଥିଲା । ପ୍ରକୃତ ପକ୍ଷେ ସେମାନେ ନିଜ ନିଜ ଦଉଡ଼ି ଭିତରେ ଲୁହା କଣ୍ଟା ଲୁଚାଇ ରଖିଥିଲେ ଓ ବାଡ଼ିରେ ପାରଦ ଭର୍ତ୍ତି ହୋଇଥିଲା ଯାହାଫଳରେ ସେଗୁଡ଼ିକ ଚଳମାନ ଦୃଷ୍ଟିଗୋଚର ହେଉଥିଲା । ପିଲାଙ୍କ ଯନ୍ତ୍ରଲଗା ଖେଳଣା ଯେପରି ଚଳମାନ ହୁଏ ସେହିପରି ଏଗୁଡ଼ିକ ମଧ୍ୟ ଚଳମାନ ହେଉଥିଲା । ମୁସା ସେଗୁଡ଼ିକୁ ନିଜ ଲାଠିରେ ପିଟିବାରୁ ସେଥିରେ ଲାଗିଥିବା କଣ୍ଟାଗୁଡ଼ିକ ଭାଙ୍ଗି ପଡ଼ିଲା ଓ ପାରଦ ବାହାରି ଆସିଲା ଯଦ୍ୱାରା ସେମାନଙ୍କ ପ୍ରତାରଣା ଲୋକଲୋଚନକୁ ଆସିଲା ।

قَالُوْٓا اٰمَنَّا بِرَبِّ الْعٰلَمِيْنَ ﴿١٢٢﴾

୧୨୨. (ଏବଂ) କହିଲେ, "ଆମେ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ଠାରେ ବିଶ୍ୱାସ କରୁଅଛୁ—

رَبِّ مُوْسٰى وَ هٰرُوْنَ ﴿١٢٣﴾

୧୨୩. "(ଯେ କି) ମୁସା ଏବଂ ହାରୁନଙ୍କର ପାଳନକର୍ତ୍ତା।"

قَالَ فِرْعَوْنُ اٰمَنْتُمْ بِهٖ قَبْلَ اَنْ اٰذَنَ لَكُمْ ۚ اِنَّ هٰذَا لَمَكْرٌ مَّكَرْتُمُوْهُ فِى الْمَدِيْنَةِ لِتُخْرِجُوْا مِنْهَآ اَهْلَهَا ۚ فَسَوْفَ تَعْلَمُوْنَ ﴿١٢٤﴾

୧୨୪. ଫିରଔନ କହିଲା, "କ'ଣ ମୁଁ ତୁମମାନଙ୍କୁ ଅନୁମତି ଦେବା ପୂର୍ବରୁ ତୁମେମାନେ ତାହାଙ୍କ ଉପରେ ବିଶ୍ୱାସ କଲ ? ନିଶ୍ଚୟ ଏହା ଏକ ଷଡ଼ଯନ୍ତ୍ର, ଯାହାକୁ ତୁମେମାନେ ମିଳିତ ଭାବରେ ସହର ମଧ୍ୟରେ କରିଅଛ ଯେପରି କି ତୁମେମାନେ ଏଠାରୁ ଏହାର ବାସିନ୍ଦାମାନଙ୍କୁ ବିତାଡ଼ିତ କରିବ ; ସୁତରାଂ ଅତି ଶୀଘ୍ର ତୁମମାନଙ୍କୁ (ଏହାର ପରିଣାମ) ଜ୍ଞାତ ହେବ।

لَاُقَطِّعَنَّ اَيْدِيَكُمْ وَ اَرْجُلَكُمْ مِّنْ خِلَافٍ ثُمَّ لَاُصَلِّبَنَّكُمْ اَجْمَعِيْنَ ﴿١٢٥﴾

୧୨୫. "(ତୁମମାନଙ୍କ) ବିରୁଦ୍ଧାଚରଣ[୧] ହେତୁ ମୁଁ ନିଶ୍ଚୟ "ତୁମମାନଙ୍କର ହାତ ଓ ଗୋଡ଼କୁ କାଟି ଦେବି ; ତା'ପରେ ମୁଁ ତୁମ ସମସ୍ତଙ୍କୁ ଶୂଳିରେ ଚଢ଼ାଇବି।"

قَالُوْٓا اِنَّآ اِلٰى رَبِّنَا مُنْقَلِبُوْنَ ﴿١٢٦﴾

୧୨୬. ସେମାନେ କହିଲେ, "(ତେବେ କ'ଣ ହେବ) ଆମେମାନେ ନିଜର ପାଳନକର୍ତ୍ତାଙ୍କ ନିକଟକୁ ହିଁ ପ୍ରତ୍ୟାବର୍ତ୍ତନ କରିବୁ" ;

وَ مَا تَنْقِمُ مِنَّآ اِلَّآ اَنْ اٰمَنَّا بِاٰيٰتِ رَبِّنَا لَمَّا جَآءَتْنَا ؕ رَبَّنَآ اَفْرِغْ عَلَيْنَا صَبْرًا وَّ تَوَفَّنَا مُسْلِمِيْنَ ﴿١٢٧﴾

୧୨୭. "ଏବଂ ତୁମେ ଆମମାନଙ୍କ ଉପରେ କେବଳ ଏଥିସକାଶେ କ୍ରୋଧାନ୍ୱିତ ହୋଇଅଛ ଯେ ଯେତେବେଳେ ଆମମାନଙ୍କ ପାଳନକର୍ତ୍ତାଙ୍କ ନିଦର୍ଶନମାନ ଆମମାନଙ୍କ ନିକଟକୁ ଆସିଲା, ଆମେମାନେ ସେଥିରେ ବିଶ୍ୱାସ କଲୁ, (ଏବଂ ଆମେମାନେ ପ୍ରାର୍ଥନା କରୁଅଛୁ ଯେ) "ହେ ଆମମାନଙ୍କ ପାଳନକର୍ତ୍ତା ! ଆମମାନଙ୍କୁ ଧୈର୍ଯ୍ୟ ପ୍ରଦାନ କର, ଏବଂ ଆମମାନଙ୍କୁ ମୁସଲମାନ (ଅର୍ଥାତ୍ ଆଜ୍ଞା ପାଳନକାରୀ) ଥିବା ଅବସ୍ଥାରେ ମୃତ୍ୟୁ ପ୍ରଦାନ କର।"

---

୧. କେତେକ ଭାଷ୍ୟକାରଙ୍କ ମତରେ 'ମିନ୍ ଖିଲାଫିନ'ର ଅର୍ଥ ବାମହାତ ଓ ଡାହାଣ ହାତକୁ ଅଥବା ଗୋଟିଏ ପାର୍ଶ୍ୱର ହାତ ସହିତ ଅନ୍ୟ ପାର୍ଶ୍ୱର ଗୋଡ଼କୁ କାଟି ଦିଆଯିବ। କିନ୍ତୁ ଯେହେତୁ ଏହାର ଅନ୍ୟତମ ଅର୍ଥ ବିରୁଦ୍ଧାଚରଣ କରିବା, ତେଣୁ ଏଠାରେ ସେହି ଅର୍ଥ ନିଆଯାଇଛି।

ରୁ : ୧୫

୧୨୮. ଏବଂ ଫିରଔନ ସମ୍ପ୍ରଦାୟର କେତେକ ମୁଖ୍ୟ (ବ୍ୟକ୍ତି) କହିଲେ, "କ'ଣ ତୁମେ ମୁସା ଏବଂ ତାଙ୍କର ସମ୍ପ୍ରଦାୟଙ୍କୁ ଦେଶ ମଧ୍ୟରେ (ଅନାୟାସରେ) ବିଶୃଙ୍ଖଳା ସୃଷ୍ଟି କରିବାକୁ ଏବଂ ତୁମକୁ ଓ ତୁମର ଉପାସ୍ୟମାନଙ୍କୁ ପରିତ୍ୟାଗ କରିବାକୁ ସ୍ୱାଧୀନତା ଦେଇଅଛ ?" ସେ (ଫିରଔନ) କହିଲା, "ଆମେ ନିଶ୍ଚୟ ସେମାନଙ୍କର ପୁତ୍ରମାନଙ୍କୁ ହତ୍ୟା କରିବୁ, ଏବଂ ସେମାନଙ୍କର ନାରୀମାନଙ୍କୁ ଜୀବିତ ରଖିବୁ, ଏବଂ ଆମେ ସେମାନଙ୍କ ଉପରେ ପରାକ୍ରମୀ ଅଟୁ ।"

وَقَالَ الْمَلَأُ مِنْ قَوْمِ فِرْعَوْنَ أَتَذَرُ مُوسَىٰ وَقَوْمَهُ لِيُفْسِدُوا فِي الْأَرْضِ وَيَذَرَكَ وَآلِهَتَكَ ۚ قَالَ سَنُقَتِّلُ أَبْنَاءَهُمْ وَنَسْتَحْيِي نِسَاءَهُمْ وَإِنَّا فَوْقَهُمْ قَاهِرُونَ ﴿١٢٨﴾

୧୨୯. (ଏଥିଯୋଗୁଁ) ମୁସା ନିଜ ସମ୍ପ୍ରଦାୟର ଲୋକମାନଙ୍କୁ କହିଲେ, "ଅଲ୍ଲାହଙ୍କ ଠାରୁ ସାହାଯ୍ୟ ଭିକ୍ଷା କର ଏବଂ ଧୈର୍ଯ୍ୟ ଧର, ରାଜ୍ୟ ତ ଅଲ୍ଲାହଙ୍କର ; ସେ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ଏହାର ଉତ୍ତରାଧିକାରୀ କରି ଦିଅନ୍ତି ; ଏବଂ ଧର୍ମଭୀରୁମାନଙ୍କ ପାଇଁ (ଉତ୍ତମ) ପରିଣାମ (ଉଦ୍ଦିଷ୍ଟ) ଅଛି ।"

قَالَ مُوسَىٰ لِقَوْمِهِ اسْتَعِينُوا بِاللَّهِ وَاصْبِرُوا ۖ إِنَّ الْأَرْضَ لِلَّهِ يُورِثُهَا مَنْ يَشَاءُ مِنْ عِبَادِهِ ۖ وَالْعَاقِبَةُ لِلْمُتَّقِينَ ﴿١٢٩﴾

୧୩୦. ସେମାନେ କହିଲେ, "ତୁମ ଆଗମନ ପୂର୍ବରୁ ମଧ୍ୟ ଆମମାନଙ୍କୁ ନିର୍ଯାତିତ କରାଯାଉଥିଲା, ଏବଂ ଆମମାନଙ୍କ ନିକଟକୁ ତୁମର ଆଗମନ ପରେ (ମଧ୍ୟ) ଆମମାନଙ୍କୁ ନିର୍ଯାତିତ କରାଯାଉଅଛି" ; ସେ (ମୁସା) କହିଲେ, "ସମ୍ଭବତଃ ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କ ଶତ୍ରୁକୁ ଅବିଳମ୍ବେ ଧ୍ୱଂସ କରିଦେବେ ଏବଂ ତୁମମାନଙ୍କୁ ରାଜ୍ୟରେ ନିଜର ଉତ୍ତରାଧିକାରୀ କରିଦେବେ, ଏବଂ ତା'ପରେ ତୁମେମାନେ କିପରି କାର୍ଯ୍ୟ କରୁଅଛ ତାହା ସେ ଲକ୍ଷ୍ୟ କରିବେ ।"

قَالُوا أُوذِينَا مِنْ قَبْلِ أَنْ تَأْتِيَنَا وَمِنْ بَعْدِ مَا جِئْتَنَا ۚ قَالَ عَسَىٰ رَبُّكُمْ أَنْ يُهْلِكَ عَدُوَّكُمْ وَيَسْتَخْلِفَكُمْ فِي الْأَرْضِ فَيَنْظُرَ كَيْفَ تَعْمَلُونَ ﴿١٣٠﴾

ରୁ : ୧୬

୧୩୧. ଏବଂ ଆମେ ଫିରଔନର ସମ୍ପ୍ରଦାୟକୁ ବର୍ଷ ବ୍ୟାପୀ ମରୁଡ଼ି ଏବଂ ଫଳ ଉତ୍ପାଦନ ହ୍ରାସ କରି ଆକ୍ରାନ୍ତ କରିଥିଲୁ ଯେପରି କି ସେମାନେ ଶିକ୍ଷା ଲାଭ କରିପାରିବେ ।

وَلَقَدْ أَخَذْنَا آلَ فِرْعَوْنَ بِالسِّنِينَ وَنَقْصٍ مِنَ الثَّمَرَاتِ لَعَلَّهُمْ يَذَّكَّرُونَ ﴿١٣١﴾

୧୩୨. କିନ୍ତୁ ଯେତେବେଳେ ସେମାନଙ୍କ ନିକଟରେ ସମୃଦ୍ଧିର ସମୟ ଉପସ୍ଥିତ ହେଲା, ସେତେବେଳେ ସେମାନେ କହିଲେ, "ଏହା ଆମମାନଙ୍କର ପ୍ରାପ୍ୟ." ଏବଂ ଯେତେବେଳେ ସେମାନଙ୍କ ନିକଟରେ ଦୁର୍ଗତିର ସମୟ ଉପସ୍ଥିତ ହେଲା, ସେତେବେଳେ ସେମାନେ ଏହାକୁ ମୁସା ଓ ତାଙ୍କର ସହଚରମାନଙ୍କ ମନ୍ଦ ଲକ୍ଷଣର ପରିଣାମ ସ୍ୱରୂପ ମନେ-କଲେ ; ସାବଧାନ ! ସେମାନଙ୍କ ମନ୍ଦ ଲକ୍ଷଣରେ ସାମଗ୍ରୀ ଅଲ୍ଲାହଙ୍କ ନିକଟରେ ସଂରକ୍ଷିତ ଅଛି, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ ।

فَإِذَا جَآءَتْهُمُ الْحَسَنَةُ قَالُوا لَنَا هَٰذِهِۦ ۖ وَإِن تُصِبْهُمْ سَيِّئَةٌ يَطَّيَّرُوا بِمُوسَىٰ وَمَن مَّعَهُۥٓ ۗ أَلَآ إِنَّمَا طَٰٓئِرُهُمْ عِندَ اللَّهِ وَلَٰكِنَّ أَكْثَرَهُمْ لَا يَعْلَمُونَ ﴿١٣١﴾

୧୩୩. ଏବଂ ସେମାନେ କହିଲେ, "ଆମମାନଙ୍କୁ ପ୍ରତାରିତ କରିବାପାଇଁ ତୁମେ ଯେ କୌଣସି ନିଦର୍ଶନ ଆମ ନିକଟକୁ ଯେତେବେଳେ ଆଣିଲେ ମଧ୍ୟ ଆମେମାନେ କଦାପି ତୁମ ପ୍ରତି ବିଶ୍ୱାସ କରିବୁ ନାହିଁ ।"

وَقَالُوا مَهْمَا تَأْتِنَا بِهِۦ مِنْ ءَايَةٍ لِّتَسْحَرَنَا بِهَا فَمَا نَحْنُ لَكَ بِمُؤْمِنِينَ ﴿١٣٢﴾

୧୩୪. ତା'ପରେ ଆମେ ସେମାନଙ୍କ ପ୍ରତି ବିଭିନ୍ନ ନିଦର୍ଶନ ଯଥା :– ଝଡ଼, ପଙ୍ଗପାଳ, ଉକୁଣି, ମଣ୍ଡୁକ ଏବଂ ରକ୍ତ[1] ପ୍ରେରଣ କରିଥିଲୁ ; ତଥାପି ସେମାନେ ଅହଙ୍କାର କଲେ ଓ ସେମାନେ ଅପରାଧୀ ସମ୍ପ୍ରଦାୟ ହୋଇଗଲେ ।

فَأَرْسَلْنَا عَلَيْهِمُ الطُّوفَانَ وَالْجَرَادَ وَالْقُمَّلَ وَالضَّفَادِعَ وَالدَّمَ ءَايَٰتٍ مُّفَصَّلَٰتٍ فَاسْتَكْبَرُوا وَكَانُوا قَوْمًا مُّجْرِمِينَ ﴿١٣٣﴾

୧୩୫. ଏବଂ ଯେତେବେଳେ ବି ସେମାନଙ୍କ ଉପରେ କୌଣସି ଶାସ୍ତି ନିପତିତ ହେଲା, ସେତେବେଳେ ସେମାନେ ଚିତ୍କାର କଲେ, "ହେ ମୁସା ! ତୁମେ ନିଜ ପାଳନକର୍ତ୍ତାଙ୍କ ନିକଟରେ ତୁମ ସହିତ କରାଯାଇଥିବା ତାଙ୍କର ସକଳ ଅଙ୍ଗୀକାରକୁ ସ୍ମରଣ କରାଇ ଆମମାନଙ୍କ ପାଇଁ ପ୍ରାର୍ଥନା କର ; ଯଦି ତୁମେ ଆମମାନଙ୍କ ଠାରୁ ଏହି ଶାସ୍ତି ଦୂର କରାଇ ଦେବ, ତେବେ ଆମେମାନେ ନିଶ୍ଚୟ ତୁମ ପ୍ରତି ବିଶ୍ୱାସ କରିବୁ ; ଏବଂ ତୁମ ସହିତ ଇସ୍ରାଇଲୀୟ ସନ୍ତାନମାନଙ୍କୁ ପ୍ରେରଣ କରିବୁ ;"

وَلَمَّا وَقَعَ عَلَيْهِمُ الرِّجْزُ قَالُوا يَٰمُوسَى ادْعُ لَنَا رَبَّكَ بِمَا عَهِدَ عِندَكَ ۖ لَئِن كَشَفْتَ عَنَّا الرِّجْزَ لَنُؤْمِنَنَّ لَكَ وَلَنُرْسِلَنَّ مَعَكَ بَنِىٓ إِسْرَٰٓءِيلَ ﴿١٣٤﴾

୧୩୬. କିନ୍ତୁ ଯେତେବେଳେ ଆମେ ସେମାନଙ୍କ ନିକଟରୁ ନିୟତ ଶାସ୍ତିକୁ ନିର୍ଦ୍ଦିଷ୍ଟ ସମୟ ପାଇଁ ଦୂର କରିଦେଲୁ, ସେତେବେଳେ ସେମାନେ ସଙ୍ଗେ ସଙ୍ଗେ ପ୍ରତିଜ୍ଞା ଭଙ୍ଗ କରି ଦେଲେ ।

فَلَمَّا كَشَفْنَا عَنْهُمُ الرِّجْزَ إِلَىٰٓ أَجَلٍ هُم بَٰلِغُوهُ إِذَا هُمْ يَنكُثُونَ ﴿١٣٥﴾

୧. ବାଇବେଲରେ ମଧ୍ୟ ଅନୁରୂପ ବର୍ଣ୍ଣନା ରହିଅଛି । (ଏକ୍ସୋଡ୍ ୭ : ୧୦ ଦ୍ରଷ୍ଟବ୍ୟ) ।

فَانْتَقَمْنَا مِنْهُمْ فَاَغْرَقْنٰهُمْ فِى الْيَمِّ بِاَنَّهُمْ كَذَّبُوْا بِاٰيٰتِنَا وَكَانُوْا عَنْهَا غٰفِلِيْنَ ﴿١٣٧﴾

୧୩୭. ତେଣୁ ଆମ୍ଭେ ସେମାନଙ୍କ ଠାରୁ (ସେମାନଙ୍କ ଦୁଷ୍କର୍ମ ଯୋଗୁଁ) ପ୍ରତିଶୋଧ ନେଲୁ ଓ ସେମାନଙ୍କୁ ସମୁଦ୍ରରେ ଜଳମଗ୍ନ କରାଇଲୁ ; କାରଣ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରୁଥିଲେ ଓ ସେ ବିଷୟରେ ଅମନୋଯୋଗୀ ଥିଲେ ।

وَاَوْرَثْنَا الْقَوْمَ الَّذِيْنَ كَانُوْا يُسْتَضْعَفُوْنَ مَشَارِقَ الْاَرْضِ وَمَغَارِبَهَا الَّتِىْ بٰرَكْنَا فِيْهَا ۗ وَتَمَّتْ كَلِمَتُ رَبِّكَ الْحُسْنٰى عَلٰى بَنِىْٓ اِسْرَاۤءِيْلَ ۙ بِمَا صَبَرُوْا ۗ وَدَمَّرْنَا مَا كَانَ يَصْنَعُ فِرْعَوْنُ وَقَوْمُهٗ وَمَا كَانُوْا يَعْرِشُوْنَ ﴿١٣٨﴾

୧୩୮. ଏବଂ ଏହି ସମ୍ପ୍ରଦାୟ ଯାହାଙ୍କୁ ଦୁର୍ବଳ ମନେ କରାଯାଉ ଥିଲା, ଆମ୍ଭେ ସେମାନଙ୍କୁ ଏହି ଦେଶର[୧] ପୂର୍ବ ଭାଗର ଓ ତାହାର ପଶ୍ଚିମ ଭାଗର ଉତ୍ତରାଧିକାରୀ କରିଦେଲୁ, ଯାହାକୁ ଆମ୍ଭେ ଆଶୀର୍ବାଦ ପ୍ରଦାନ କରିଥିଲୁ ; ଏବଂ ଇସ୍ରାଇଲୀୟ ସନ୍ତାନମାନଙ୍କ ପ୍ରତି ତୁମ ପାଳନକର୍ତ୍ତାଙ୍କର ଶୁଭବାଣୀ (ଅର୍ଥାତ୍ ଉତ୍ତମ ପ୍ରତିଶ୍ରୁତି ) ପୂର୍ଣ୍ଣ ହୋଇଥିଲା, କାରଣ ସେମାନେ (ଅତ୍ୟାଚାର ସତ୍ତ୍ୱେ) ଧୈର୍ଯ୍ୟ ଧାରଣ କରିଥିଲେ ଏବଂ ଫିରଔନ ଓ ତାହାର ସମ୍ପ୍ରଦାୟ ଯାହା କିଛି ନିର୍ମାଣ କରିଥିଲେ ଓ ଯେଉଁ ସୁଉଚ୍ଚ ଅଟ୍ଟାଳିକା ଗଢ଼ି ଥିଲେ, ଆମ୍ଭେ ସେସବୁକୁ ଧ୍ୱଂସ କରି ଦେଲୁ ;

وَجٰوَزْنَا بِبَنِىْٓ اِسْرَاۤءِيْلَ الْبَحْرَ فَاَتَوْا عَلٰى قَوْمٍ يَّعْكُفُوْنَ عَلٰٓى اَصْنَامٍ لَّهُمْ ۚ قَالُوْا يٰمُوْسَى اجْعَلْ لَّنَآ اِلٰهًا كَمَا لَهُمْ اٰلِهَةٌ ۗ قَالَ اِنَّكُمْ قَوْمٌ تَجْهَلُوْنَ ﴿١٣٩﴾

୧୩୯. ଏବଂ ଆମ୍ଭେ ଇସ୍ରାଇଲୀୟ ସନ୍ତାନମାନଙ୍କୁ ସମୁଦ୍ର ପାରି କରାଇ ଦେଇଥିଲୁ ଏବଂ ସେମାନେ ଏପରି ଏକ ସମ୍ପ୍ରଦାୟ[୨] ନିକଟରେ ପହଞ୍ଚିଲେ ଯେଉଁମାନେ ମୂର୍ତ୍ତିପୂଜାରେ ମଗ୍ନ ଥିଲେ ; ସେମାନେ କହିଲେ, "ହେ ମୁସା ! ଯେପରି ସେମାନଙ୍କର ଉପାସ୍ୟ ଅଛନ୍ତି, ଆମମାନଙ୍କ ପାଇଁ ମଧ୍ୟ ସେହିପରି କେତେକ ଉପାସ୍ୟ ଗଢ଼ି ଦିଅ" ; (ମୁସା) କହିଲେ, "ତୁମେମାନେ ଏକ ନିର୍ବୋଧ ସମ୍ପ୍ରଦାୟ ;"

اِنَّ هٰٓؤُلَاۤءِ مُتَبَّرٌ مَّا هُمْ فِيْهِ وَبٰطِلٌ مَّا كَانُوْا يَعْمَلُوْنَ ﴿١٤٠﴾

୧୪୦. "ସେମାନେ ଯେଉଁ କାର୍ଯ୍ୟରେ ରତ ଅଛନ୍ତି, ତାହା ନିଶ୍ଚୟ ଧ୍ୱଂସ ହେବ ଏବଂ ଯାହା କିଛି ସେମାନେ କରୁଛନ୍ତି ତାହା ବୃଥା ହେବ ।"

قَالَ اَغَيْرَ اللّٰهِ اَبْغِيْكُمْ اِلٰهًا وَّهُوَ فَضَّلَكُمْ عَلَى الْعٰلَمِيْنَ ﴿١٤١﴾

୧୪୧. (ପୁନଶ୍ଚ) କହିଲେ, "ତେବେ କ'ଣ ଆମ୍ଭେ ତୁମମାନଙ୍କ ପାଇଁ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କୌଣସି ଉପାସ୍ୟ ଅନ୍ୱେଷଣ କରିବୁ ? ଅଥଚ ସେ ତୁମମାନଙ୍କୁ ସମସ୍ତ ଜଗତରେ ପ୍ରାଧାନ୍ୟ ଦେଇଛନ୍ତି, "

---

୧. ଅର୍ଥାତ୍ ସମଗ୍ର ପାଲେଷ୍ଟାଇନ ଅଞ୍ଚଳରେ ମୁସାଙ୍କ ସମ୍ପ୍ରଦାୟକୁ ଉତ୍ତରାଧିକାର ପ୍ରଦାନ କରିବେ ।

୨. ଏମାନେ ପାଲେଷ୍ଟାଇନର ଲୋକ । ସେତେବେଳେ ସେମାନେ ପିତୁଳା ପୂଜା କରୁଥିଲେ । ସମ୍ଭବତଃ ସେମାନେ ବନୁ ଇସ୍ମାଇଲ୍ ସମ୍ପ୍ରଦାୟର ଏକ ଶାଖା ଓ ଆଦ ନାମରେ ପରିଚିତ ।

وَاِذْ اَنْجَيْنٰكُمْ مِّنْ اٰلِ فِرْعَوْنَ يَسُوْمُوْنَكُمْ سُوْٓءَ الْعَذَابِ ۚ يُقَتِّلُوْنَ اَبْنَآءَكُمْ وَيَسْتَحْيُوْنَ نِسَآءَكُمْ ۚ وَفِيْ ذٰلِكُمْ بَلَآءٌ مِّنْ رَّبِّكُمْ عَظِيْمٌ ﴿١٤٢﴾

୧୪୨. ଏବଂ (ସ୍ମରଣ କର) ଯେତେବେଳେ ଆମେ ତୁମମାନଙ୍କୁ ଫିରଔନ ସମ୍ପ୍ରଦାୟ ଠାରୁ ମୁକ୍ତ କରିଥିଲୁ ଯେଉଁମାନେ କି ତୁମକୁ ଅତ୍ୟନ୍ତ କଷ୍ଟଦାୟକ ଶାସ୍ତି ଦେଉଥିଲେ, ତୁମମାନଙ୍କ ପୁତ୍ରମାନଙ୍କୁ ହତ୍ୟା କରୁଥିଲେ ଓ ତୁମମାନଙ୍କର ନାରୀମାନଙ୍କୁ ଜୀବିତ ରଖୁଥିଲେ; ଏବଂ ଏଥିରେ ତୁମମାନଙ୍କର ପାଳନକର୍ତ୍ତାଙ୍କ ଠାରୁ ଏକ ମହାନ୍ ପରୀକ୍ଷା ଥିଲା ।

ରୁ : ୧୭

وَوٰعَدْنَا مُوْسٰى ثَلٰثِيْنَ لَيْلَةً وَّاَتْمَمْنٰهَا بِعَشْرٍ فَتَمَّ مِيْقَاتُ رَبِّهٖٓ اَرْبَعِيْنَ لَيْلَةً ۚ وَقَالَ مُوْسٰى لِاَخِيْهِ هٰرُوْنَ اخْلُفْنِيْ فِيْ قَوْمِيْ وَاَصْلِحْ وَلَا تَتَّبِعْ سَبِيْلَ الْمُفْسِدِيْنَ ﴿١٤٣﴾

୧୪୩. ଏବଂ ଆମେ ମୁସାଙ୍କ ସହିତ ତିରିଶି ରାତି ସଂକ୍ରାନ୍ତରେ ଅଙ୍ଗୀକାର କରିଥିଲୁ ଏବଂ ସେଥିରେ ଆହୁରି ଦଶ ଯୋଗ କରି ସମ୍ପୂର୍ଣ୍ଣ କରିଥିଲୁ ; ଏହିପରି ଭାବରେ ତାହାଙ୍କ ପାଳନକର୍ତ୍ତାଙ୍କ ନିୟତ ଅଙ୍ଗୀକାର ଚାଳିଶି ରାତ୍ରି ଆକାରରେ ସମ୍ପୂର୍ଣ୍ଣ ହୋଇଥିଲା ; ଏବଂ ମୁସା ନିଜ ଭାଇ ହାରୁନଙ୍କୁ କହିଲେ, "(ଆମର ଅନୁପସ୍ଥିତିରେ) ଆମ ସମ୍ପ୍ରଦାୟ ମଧ୍ୟରେ ଆମର ପ୍ରତିନିଧିତ୍ୱ କର ; ଏବଂ ସେମାନଙ୍କ ସୁଧାର ପ୍ରତି ଦୃଷ୍ଟି ଦିଅ ; ଏବଂ ବିଶୃଙ୍ଖଳା କରୁଥିବା ଲୋକମାନଙ୍କ ମାର୍ଗ ଅନୁସରଣ କର ନାହିଁ ।"

وَلَمَّا جَآءَ مُوْسٰى لِمِيْقَاتِنَا وَكَلَّمَهٗ رَبُّهٗ ۙ قَالَ رَبِّ اَرِنِيْٓ اَنْظُرْ اِلَيْكَ ۗ قَالَ لَنْ تَرٰىنِيْ وَلٰكِنِ انْظُرْ اِلَى الْجَبَلِ فَاِنِ اسْتَقَرَّ مَكَانَهٗ فَسَوْفَ تَرٰىنِيْ ۚ فَلَمَّا

୧୪୪. ଏବଂ ଆମେ ନିର୍ଦ୍ଦିଷ୍ଟ କରିଥିବା ସମୟ ଅନୁସାରେ ଯେତେବେଳେ ମୁସା ନିର୍ଦ୍ଦିଷ୍ଟ ସ୍ଥାନରେ ଉପସ୍ଥିତ ହେଲେ ଏବଂ ତାହାଙ୍କ ପାଳନକର୍ତ୍ତା ତାହାଙ୍କ ସହିତ କଥାବାର୍ତ୍ତା କରିଥିଲେ ସେତେବେଳେ (ମୁସା) କହିଲେ, "ହେ ଆମର ପାଳନକର୍ତ୍ତା ! ଆମକୁ ଦର୍ଶନ ଦିଅ ଯେପରି କି ଆମେ ତୁମକୁ ଦେଖି ପାରିବୁ ;" ସେ ଉତ୍ତର ଦେଲେ, "ତୁମେ କଦାପି ଆମକୁ[୧] ଦେଖି ପାରିବ ନାହିଁ ; କିନ୍ତୁ ପର୍ବତ ଆଡ଼କୁ ଦେଖ, ଏବଂ ଯଦି ତାହା ସ୍ୱସ୍ଥାନରେ ପ୍ରତିଷ୍ଠିତ ରହେ, ତେବେ ତୁମେ ଆମକୁ ଦେଖି ପାରିବ ;" ପରେ ଯେତେବେଳେ ତାହାଙ୍କର ପାଳନକର୍ତ୍ତା ପର୍ବତ ଉପରେ ନିଜର ଜ୍ୟୋତି ପ୍ରକାଶ କଲେ,

---

୧. ଏଠାରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋକପାତ କରାଯାଇଛି । ତାହା ହେଉଛି ଜଣେ ପାର୍ଥିବ ଚକ୍ଷୁରେ ଅଲ୍ଲାହଙ୍କ ଦର୍ଶନ କରିପାରିବ କି ନାହିଁ ?ଏହି ଆୟତରୁ ଏକ ନାସ୍ତିବାଚକ ଉତ୍ତର ମିଳୁଛି କାରଣ ସେ ଦୃଷ୍ଟି ପର୍ଯ୍ୟନ୍ତ ପହଞ୍ଚି ପାରନ୍ତି କିନ୍ତୁ ଦୃଷ୍ଟି ତାଙ୍କ ପର୍ଯ୍ୟନ୍ତ ପହଞ୍ଚିପାରେ ନାହିଁ । (୬ : ୧୦୪ ଦ୍ରଷ୍ଟବ୍ୟ) ।

ଏପରିକି ଦେବଦୂତମାନଙ୍କୁ ମଧ୍ୟ ମନୁଷ୍ୟ ଦେଖିପାରେ ନାହିଁ । ଆମେମାନେ କେବଳ ସେମାନଙ୍କ କାର୍ଯ୍ୟସାଧନ ଓ ପ୍ରଦର୍ଶନକୁ ଲକ୍ଷ୍ୟକରି ପାରିବା । ସେହିପରି ଆମେମାନେ ଅଲ୍ଲାହଙ୍କୁ ପାର୍ଥିବ ଚକ୍ଷୁରେ ଦେଖିପାରିବା ନାହିଁ, କେବଳ ତାହାଙ୍କ ନିଦର୍ଶନ ଓ ପ୍ରଦର୍ଶନଗୁଡ଼ିକୁ ଅବଲୋକନ କରିପାରିବା ।

تَجَلّٰى رَبُّهٗ لِلْجَبَلِ جَعَلَهٗ دَكًّا وَّخَرَّ مُوْسٰى صَعِقًا ۚ فَلَمَّآ اَفَاقَ قَالَ سُبْحٰنَكَ تُبْتُ اِلَيْكَ وَاَنَا اَوَّلُ الْمُؤْمِنِيْنَ ﴿١٤٤﴾

(ସେତେବେଳେ) ସେ ତାହାକୁ ଖଣ୍ଡ ବିଖଣ୍ଡ କରିଦେଲେ, ଏବଂ ମୁସା ଅଚେତ ହୋଇ ପଡ଼ି ଗଲେ ; ଏବଂ ଯେତେବେଳେ ତାହାଙ୍କର ଚେତା ଫେରିଲା, ସେ କହିଲେ, "(ହେ ପାଳନକର୍ତ୍ତା !) ତୁମେ ହି ପବିତ୍ର, ଆମେ ତୁମ ପ୍ରତି ଅବନତ ହେଉଅଛୁ ; ଏବଂ ଆମେ ବିଶ୍ୱାସକାରୀମାନଙ୍କ ମଧ୍ୟରେ ସର୍ବ ପ୍ରଥମ ।"

قَالَ يٰمُوْسٰٓى اِنِّى اصْطَفَيْتُكَ عَلَى النَّاسِ بِرِسٰلٰتِىْ وَبِكَلَامِىْ ۖ فَخُذْ مَآ اٰتَيْتُكَ وَكُنْ مِّنَ الشّٰكِرِيْنَ ﴿١٤٥﴾

୧୪୫. (ଅଲ୍ଲାହ ଉତ୍ତରରେ) କହିଲେ, "ହେ ମୁସା ! ଆମେ ତୁମକୁ ଆମର ବାର୍ତ୍ତା ତଥା ଆମର ବାଣୀ ମାଧ୍ୟମରେ (ତୁମ ସମୟର) ସମଗ୍ର ମାନବ ସମାଜ ଉପରେ ପ୍ରାଧାନ୍ୟ ଦେଇଅଛୁ ; ସୁତରାଂ ଯାହା କିଛି ଆମେ ତୁମକୁ ଦେଇଅଛୁ, ତାହାକୁ ଦୃଢ଼ ଭାବରେ ଧାରଣ କର, ଏବଂ କୃତଜ୍ଞ ଭକ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ।"

وَكَتَبْنَا لَهٗ فِى الْاَلْوَاحِ مِنْ كُلِّ شَىْءٍ مَّوْعِظَةً وَّتَفْصِيْلًا لِّكُلِّ شَىْءٍ ۚ فَخُذْهَا بِقُوَّةٍ وَّاْمُرْ قَوْمَكَ يَاْخُذُوْا بِاَحْسَنِهَا ۗ سَاُورِيْكُمْ دَارَ الْفٰسِقِيْنَ ﴿١٤٦﴾

୧୪୬. ଏବଂ ଆମେ ତାହାଙ୍କ ପାଇଁ କେତେକ ଫଳକ ଉପରେ ନିଜର ଏପରି ଆଦେଶ ଲିପିବଦ୍ଧ କଲୁ ଯହିଁରେ ପ୍ରତ୍ୟେକ ପ୍ରକାରର ଉପଦେଶ ଥିଲା ଏବଂ ଯେଉଁଥିରେ (ସେହି ଯୁଗ ପାଇଁ) ସକଳ ପ୍ରକାର ଆବଶ୍ୟକ ବିଷୟର ବିବରଣ ଥିଲା ; (ଏବଂ ପୁଣି ଆମେ ତାହାଙ୍କୁ କହିଲୁ ଯେ) "ଏହି ଆଦେଶାବଳୀକୁ ଦୃଢ଼ ଭାବରେ ଧାରଣ କର, ଏବଂ ନିଜ ସମ୍ପ୍ରଦାୟକୁ ମଧ୍ୟ କୁହ, ସେମାନେ ଏହାର ଉତ୍କୃଷ୍ଟ ଅଂଶଗୁଡ଼ିକୁ ଦୃଢ଼ ଭାବରେ ଧାରଣ କରନ୍ତୁ ; ଆମେ ଅବିଳମ୍ବେ ତୁମକୁ ଦୁରାଚାରୀମାନଙ୍କର ବାସସ୍ଥାନ ଦେଖାଇବୁଁ[୧] ।"

سَاَصْرِفُ عَنْ اٰيٰتِىَ الَّذِيْنَ يَتَكَبَّرُوْنَ فِى الْاَرْضِ بِغَيْرِ الْحَقِّ ۗ وَاِنْ يَّرَوْا كُلَّ اٰيَةٍ لَّا يُؤْمِنُوْا بِهَا ۚ وَاِنْ يَّرَوْا سَبِيْلَ الرُّشْدِ لَا يَتَّخِذُوْهُ سَبِيْلًا ۚ وَاِنْ يَّرَوْا سَبِيْلَ الْغَىِّ يَتَّخِذُوْهُ سَبِيْلًا ۗ ذٰلِكَ بِاَنَّهُمْ كَذَّبُوْا بِاٰيٰتِنَا وَكَانُوْا عَنْهَا غٰفِلِيْنَ ﴿١٤٧﴾

୧୪୭. ଯେଉଁମାନେ ପୃଥିବୀରେ ଅନ୍ୟାୟପୂର୍ବକ ଅହଙ୍କାର କରିଛନ୍ତି, ଆମେ ଶୀଘ୍ର ସେମାନଙ୍କୁ ଆମର ନିଦର୍ଶନମାନଙ୍କ ଠାରୁ ଦୂରେଇ ନେବୁ ; ଏବଂ ସେମାନେ ସକଳ ନିଦର୍ଶନଗୁଡ଼ିକୁ ଦେଖୁଥିଲେ ମଧ୍ୟ, ସେମାନେ ସେଥିରେ ବିଶ୍ୱାସ କରିବେ ନାହିଁ, ଏବଂ ସେମାନେ ସରଳ ପଥ ଦେଖି ପାରିଲେ ମଧ୍ୟ (ସେମାନେ) ତାହାକୁ ଗ୍ରହଣ କରିବେ ନାହିଁ ; କିନ୍ତୁ ଯଦି ସେମାନେ ଭ୍ରାନ୍ତପଥ ଦେଖନ୍ତି, ତେବେ ତାହାକୁ ଗ୍ରହଣ କରିନେବେ ; ଏହା ଏଥିପାଇଁ ଯେ ସେମାନେ ଆମର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରିଥିଲେ ଏବଂ ସେଥିରେ ଅମନୋଯୋଗୀ ହୋଇଥିଲେ ।

وَالَّذِيْنَ كَذَّبُوْا بِاٰيٰتِنَا وَلِقَآءِ الْاٰخِرَةِ حَبِطَتْ اَعْمَالُهُمْ ۗ هَلْ يُجْزَوْنَ اِلَّا مَا كَانُوْا يَعْمَلُوْنَ ﴿١٤٨﴾ ع

୧୪୮. ଏବଂ ଯେଉଁମାନେ ଆମର ନିଦର୍ଶନଗୁଡ଼ିକୁ ତଥା ମୃତ୍ୟୁ ପରକାଳର ସାକ୍ଷାତ୍‌କୁ ମିଥ୍ୟା ମନେ କରିଛନ୍ତି ; ସେମାନଙ୍କର ସମସ୍ତ କର୍ମ ବୃଥା ହୋଇଯାଇଛି ; ସେମାନେ କେବଳ ନିଜ (ଉତ୍ତମ) କର୍ମର ପୁରସ୍କାର ପାଇବେ ।

୧. ଅର୍ଥାତ୍ ଦୁରାଚାରୀମାନଙ୍କୁ ଦଣ୍ଡଦେଇ ସେମାନଙ୍କ ପରିଣାମକୁ ପ୍ରକଟିତ କରାଯିବ ।

ରୁ : ୧୮

وَاتَّخَذَ قَوْمُ مُوْسٰى مِنْ بَعْدِهٖ مِنْ حُلِيِّهِمْ عِجْلًا جَسَدًا لَّهٗ خُوَارٌ ؕ اَلَمْ يَرَوْا اَنَّهٗ لَا يُكَلِّمُهُمْ وَلَا يَهْدِيْهِمْ سَبِيْلًا ۘ اِتَّخَذُوْهُ وَكَانُوْا ظٰلِمِيْنَ ﴿١٤٩﴾

୧୪୯. ଏବଂ ମୁସାଙ୍କ ସମ୍ପ୍ରଦାୟ, ତାହାଙ୍କ (ଯାତ୍ରା)[୧] ପରେ ନିଜ ଅଳଙ୍କାର ଦ୍ୱାରା ଏକ ବାଛୁରୀ ଗଢ଼ିଲେ ତାହା[୨] କେବଳ ଏକ (ନିର୍ଜୀବ) ଶରୀର ଥିଲା ; ସେଥିରୁ ଏକ ନିରର୍ଥକ ଶବ୍ଦ ବାହାରୁଥିଲା ; କ'ଣ ସେମାନେ ଏତିକି ଚିନ୍ତା କରି ନ ଥିଲେ ଯେ ତାହା ସେମାନଙ୍କ ସହିତ କଥା କହୁ ନ ଥିଲା କି ସେମାନଙ୍କୁ କୌଣସି ସତ୍‌ପଥ ପ୍ରଦର୍ଶିତ କରୁ ନ ଥିଲା ? ସେମାନେ ତାହାକୁ ବିନା କାରଣରେ ଉପାସ୍ୟ ରୂପେ ଗ୍ରହଣ କରିଥିଲେ ; ଏବଂ ସେମାନେ ମୁସରିକ ହୋଇଗଲେ ।

وَلَمَّا سُقِطَ فِيْۤ اَيْدِيْهِمْ وَرَاَوْا اَنَّهُمْ قَدْ ضَلُّوْا ۙ قَالُوْا لَئِنْ لَّمْ يَرْحَمْنَا رَبُّنَا وَيَغْفِرْ لَنَا لَنَكُوْنَنَّ مِنَ الْخٰسِرِيْنَ ﴿١٥٠﴾

୧୫୦. ଏବଂ ଯେତେବେଳେ ସେମାନେ ଲଜ୍ଜିତ ହୋଇଗଲେ ତଥା ସେମାନେ ବୁଝି ପାରିଲେ ଯେ ସେମାନେ ପଥଭ୍ରଷ୍ଟ ହୋଇଛନ୍ତି, ସେତେବେଳେ ସେମାନେ କହିଲେ, ''ଯଦି ଆମମାନଙ୍କର ପାଳନକର୍ତ୍ତା ଆମମାନଙ୍କ ପ୍ରତି କରୁଣା ନ କରିବେ ଓ ଆମମାନଙ୍କୁ କ୍ଷମା ନ କରିବେ ତେବେ ଆମେମାନେ କ୍ଷତିଗ୍ରସ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବୁ ।''

وَلَمَّا رَجَعَ مُوْسٰۤى اِلٰى قَوْمِهٖ غَضْبَانَ اَسِفًا ۙ قَالَ بِئْسَمَا خَلَفْتُمُوْنِيْ مِنْۢ بَعْدِيْ ۚ اَعَجِلْتُمْ اَمْرَ رَبِّكُمْ ۚ وَاَلْقَى الْاَلْوَاحَ وَاَخَذَ بِرَاْسِ اَخِيْهِ يَجُرُّهٗۤ اِلَيْهِ ؕ قَالَ ابْنَ اُمَّ اِنَّ الْقَوْمَ اسْتَضْعَفُوْنِيْ وَكَادُوْا

୧୫୧. ଏବଂ ଯେତେବେଳେ ମୁସା ନିଜ ସମ୍ପ୍ରଦାୟ ନିକଟକୁ କ୍ରୋଧ ଏବଂ ଦୁଃଖର ସହିତ ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ସେ କହିଲେ, ''ତୁମେ ଆମ ଅନୁପସ୍ଥିତିରେ ଯେ ପ୍ରକାର ପ୍ରତିନିଧିତ୍ୱ କରିଅଛ, ତାହା ଅତି ଜଘନ୍ୟ ; କ'ଣ ତୁମେ ନିଜ ପାଳନକର୍ତ୍ତାଙ୍କ ଆଦେଶ ସଂକ୍ରାନ୍ତରେ ଅଧୈର୍ଯ୍ୟ ହୋଇ ପଡ଼ିଲ ? (ଏବଂ ବ୍ୟସ୍ତ ହୋଇ ପଡ଼ିଲ ଯେ ମୁସା ଏ ପର୍ଯ୍ୟନ୍ତ କାହିଁକି ଫେରିଲେ ନାହିଁ) ; ସେତେବେଳ ମୁସା ଓହି ଫଳକଗୁଡ଼ିକୁ ତଳେ ରଖି ଦେଲେ ଏବଂ ନିଜ ଭାଇଙ୍କର ମୁଣ୍ଡବାଳକୁ ଧରି ନିଜ ଆଡ଼କୁ ଘୋଷାରି ଆଣିଲେ ; (ହାରୁନ) କହିଲେ, ''ହେ ମୋର ସହୋଦର ! ସମ୍ପ୍ରଦାୟ ମୋତେ ଦୁର୍ବଳ ମନେ କରିଥିଲା ଏବଂ ସେମାନେ ମୋତେ ହତ୍ୟା କରିବା ପାଇଁ

---

୧. ଅର୍ଥାତ୍ ଅଲ୍ଲାହ୍‌ଙ୍କ ନିମନ୍ତ୍ରଣକ୍ରମେ ହଜରତ ମୁସା ଚାଳିଶ ରାତି ପାଇଁ ପର୍ବତ ଉପରକୁ ଯାଇଥିଲେ ଯାହାର ବୃତ୍ତାନ୍ତ ଏହି ଅଧ୍ୟାୟର ଆୟତ-୧୪୩ରେ ଅଛି ।

୨. ଆରବୀ 'ଖୁଓ୍ୱାର' ଅର୍ଥ ଗୋମେଷାଦି ପଶୁର ସ୍ୱର ଭଳି ଏକ ପ୍ରକାର ନିରର୍ଥକ ଶବ୍ଦ । ଆଲୋଚ୍ୟ ବାଛୁରୀଟି ଏପରି ନିର୍ମିତ ହୋଇଥିଲା ଯେ ତା'ର ଗୋଟିଏ ପାର୍ଶ୍ୱରୁ ଭିତରକୁ ବାୟୁ ପ୍ରବାହିତ ହେଲେ ତାହା ହୁଇସିଲ୍ ଭଳି ଶବ୍ଦ କରୁଥିଲା ।

ଉଦ୍ୟତ। ହୋଇ ଥିଲେ ; ଅତଏବ, ଶତ୍ରୁମାନଙ୍କୁ ମୋ ପ୍ରତି ଉପହାସ[1] କରିବାକୁ ସୁଯୋଗ ଦିଅ ନାହିଁ ; ଏବଂ ମୋତେ ଅତ୍ୟାଚାରୀ ଲୋକମାନଙ୍କ ମଧ୍ୟରେ ଗଣ୍ୟ କର ନାହିଁ ।''

يَقْتُلُوْنَنِيْ فَلَا تُشْمِتْ بِيَ الْاَعْدَآءَ وَلَا تَجْعَلْنِيْ مَعَ الْقَوْمِ الظّٰلِمِيْنَ ﴿۱۵۱﴾

୧୫୨. (ଏହା ଶୁଣି ମୁସା) କହିଲେ, ''ହେ ଆମର ପାଳନକର୍ତ୍ତା ! ଆମ୍ଭଙ୍କୁ ଏବଂ ଆମର ଭାଇଙ୍କୁ କ୍ଷମା କର, ଏବଂ ଆମ ଦୁହିଁଙ୍କୁ ନିଜର କରୁଣା ପ୍ରଦାନ କର ; ଏବଂ ତୁମେ କରୁଣାମୟମାନଙ୍କ ମଧ୍ୟରେ ସର୍ବୋତ୍ତମ (କରୁଣାମୟ) ।''

قَالَ رَبِّ اغْفِرْ لِيْ وَلِاَخِيْ وَاَدْخِلْنَا فِيْ رَحْمَتِكَ ۖ وَاَنْتَ اَرْحَمُ الرّٰحِمِيْنَ ﴿۱۵۲﴾ ع ۱۸ ۸

ରୁ : ୧୯

୧୫୩. (ଏଥିଯୋଗୁଁ ଅଲ୍ଲାହ କହିଲେ) ଯେଉଁମାନେ ବାଛୁରୀକୁ (ଉପାସ୍ୟ ରୂପେ) ଗ୍ରହଣ କରିଥିଲେ ଶୀଘ୍ର ସେମାନଙ୍କ ଉପରେ ନିଶ୍ଚୟ ସେମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ଶାସ୍ତି ଓ ପାର୍ଥିବ ଦୁର୍ଗତି ଉପସ୍ଥିତ ହେବ ; ଏବଂ ମିଥ୍ୟା ଆରୋପକାରୀମାନଙ୍କୁ ଆମେ ଏହିପରି ଶାସ୍ତି ଦେଇଥାଉ ।

اِنَّ الَّذِيْنَ اتَّخَذُوا الْعِجْلَ سَيَنَالُهُمْ غَضَبٌ مِّنْ رَّبِّهِمْ وَذِلَّةٌ فِي الْحَيٰوةِ الدُّنْيَا ۗ وَكَذٰلِكَ نَجْزِي الْمُفْتَرِيْنَ ﴿۱۵۳﴾

୧୫୪. ଏବଂ ଯେଉଁମାନେ କୁକାର୍ଯ୍ୟ କରନ୍ତି, ପୁଣି (ତାହାକୁ ପରିତ୍ୟାଗ କରି) ଅଲ୍ଲାହଙ୍କ ନିକଟକୁ ଫେରି ଆସନ୍ତି ଓ ତାହାଙ୍କ ଉପରେ ବିଶ୍ୱାସ କରନ୍ତି, ଏହାପରେ ନିଶ୍ଚୟ ତୁମ୍ଭର ପାଳନକର୍ତ୍ତା ସେମାନଙ୍କ ପ୍ରତି ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ହେବେ ।

وَالَّذِيْنَ عَمِلُوا السَّيِّاٰتِ ثُمَّ تَابُوْا مِنْ بَعْدِهَا وَاٰمَنُوْٓا اِنَّ رَبَّكَ مِنْ بَعْدِهَا لَغَفُوْرٌ رَّحِيْمٌ ﴿۱۵۴﴾

୧୫୫. ଏବଂ ଯେତେବେଳେ ମୁସାଙ୍କ କ୍ରୋଧ ସାମାନ୍ୟ ଶାନ୍ତ ହେଲା, ସେତେବେଳେ ସେ ଉକ୍ତ ଫଳକଗୁଡ଼ିକୁ ଉଠାଇ ନେଇଥିଲେ, ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଭୟ କରନ୍ତି, ସେହି (ଫଳକ) ଲେଖାରେ ସେମାନଙ୍କ ପାଇଁ ସତ୍‌ପଥ ଓ କରୁଣା ଲିପିବଦ୍ଧ ଥିଲା ।

وَلَمَّا سَكَتَ عَنْ مُّوْسَى الْغَضَبُ اَخَذَ الْاَلْوَاحَ ۖ وَفِيْ نُسْخَتِهَا هُدًى وَّرَحْمَةٌ لِّلَّذِيْنَ هُمْ لِرَبِّهِمْ يَرْهَبُوْنَ ﴿۱۵۵﴾

---

[1] ହଜରତ ମୁସା ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇଥିବା ବିଷୟ ଏହି ଆୟତରେ ବର୍ଣ୍ଣନା କରାଯାଇଛି । ନିଜ ଜାତିର ଲୋକମାନେ ଅଲ୍ଲାହଙ୍କସମକକ୍ଷ ଉପାସ୍ୟ ସ୍ଥିର କରିଥିବାରୁ ସେମାନଙ୍କ ଉପରେ ଯେତିକି କ୍ରୋଧାନ୍ୱିତ ହୋଇଥିଲେ ତା' ଅପେକ୍ଷା ଅଧିକ କ୍ରୋଧାନ୍ୱିତ ହୋଇଥିଲେ ନିଜ ଭାଇ ହାରୁନଙ୍କ ଉପରେ । ଯେତେବେଳେ ଲୋକମାନେ ଏପରି କରିବା ବିଷୟରେ ହାରୁନ ଜାଣିବାକୁ ପାଇଲେ ସେ କାହିଁକି ସେମାନଙ୍କ ସହିତ କଳହ କଲେ ନାହିଁ ବା ସେମାନଙ୍କୁ ଏଥିରୁ ନିବୃତ୍ତ କରାଇଲେ ନାହିଁ, ସେଥିସକାଶେ ହଜରତ ମୁସା ନିଜ ଭାଇଙ୍କ ଉପରେ କ୍ରୋଧାନ୍ୱିତ ହେଲେ । ଏପରି କ୍ରୋଧାନ୍ୱିତ ହେବାର ଅନ୍ୟ ଏକ ଉଦ୍ଦେଶ୍ୟ ହେଉଛି ଯେ ତାଙ୍କ ଜାତିର ଲୋକମାନେ ଏହା ଲକ୍ଷ୍ୟ କରି ଭୟଭୀତ ହେବେ ଓ ନିଜକୁ ସୁଧାରି ନେବେ ।

୧୫୬. ଏବଂ ମୁସା ନିଜ ସମ୍ପ୍ରଦାୟ ମଧ୍ୟରୁ ସତୁରି ଜଣଙ୍କୁ ଆମ ପ୍ରତିଶ୍ରୁତ ସ୍ଥାନକୁ ନେବା ପାଇଁ ମନୋନୀତ କରିଥିଲେ ; ତା'ପରେ ଯେତେବେଳେ ସେମାନଙ୍କୁ ଭୂମିକମ୍ପ[1] ଆକ୍ରାନ୍ତ କରିଥିଲା, ସେତେବେଳେ ସେ (ମୁସା) କହିଲେ, "ହେ ଆମର ପାଳନକର୍ତ୍ତା ! ଯଦି ତୁମେ ଇଚ୍ଛା କରିଥାଆନ୍ତ, ତେବେ ସେମାନଙ୍କୁ ଓ ଆମ୍ଭଙ୍କୁ ମଧ୍ୟ ପୂର୍ବରୁ ହିଁ ବିନାଶ କରି ଦେଇଥା'ନ୍ତ ; କ'ଣ ତୁମେ ଆମ୍ଭଙ୍କୁ ନିର୍ବୋଧମାନଙ୍କର ନିର୍ବୋଧତାପୂର୍ଣ୍ଣ କାର୍ଯ୍ୟ ଯୋଗୁଁ ଶାସ୍ତି ଦେଇ ବିନାଶ କରିବାକୁ ଚାହୁଁଅଛ ? ଏହା ତୁମର ଏକ ପରୀକ୍ଷା ମାତ୍ର ; ତୁମେ ଏହି (ପରୀକ୍ଷା) ମାଧ୍ୟମରେ ଯାହାକୁ ଇଚ୍ଛା ପଥଭ୍ରଷ୍ଟ କର ଏବଂ ଯାହାକୁ ଇଚ୍ଛା ସତ୍‌ପଥ ପ୍ରଦର୍ଶିତ କରିଥାଅ ; ତୁମେ ଆମମାନଙ୍କର ସଂରକ୍ଷକ ଓ ବନ୍ଧୁ ; ସୁତରାଂ ଆମ୍ଭମାନଙ୍କୁ କ୍ଷମାକର ; ଆମ୍ଭମାନଙ୍କ ପ୍ରତି କରୁଣାକର ଏବଂ ତୁମେ ହିଁ ସର୍ବୋତ୍ତମ କ୍ଷମାକାରୀ ।

وَاخْتَارَ مُوسَىٰ قَوْمَهُ سَبْعِينَ رَجُلًا لِّمِيقَاتِنَا ۖ فَلَمَّا أَخَذَتْهُمُ الرَّجْفَةُ قَالَ رَبِّ لَوْ شِئْتَ أَهْلَكْتَهُم مِّن قَبْلُ وَإِيَّايَ ۖ أَتُهْلِكُنَا بِمَا فَعَلَ السُّفَهَاءُ مِنَّا ۖ إِنْ هِيَ إِلَّا فِتْنَتُكَ تُضِلُّ بِهَا مَن تَشَاءُ وَتَهْدِي مَن تَشَاءُ ۖ أَنتَ وَلِيُّنَا فَاغْفِرْ لَنَا وَارْحَمْنَا ۖ وَأَنتَ خَيْرُ الْغَافِرِينَ ﴿١٥٥﴾

୧୫୭. "ଏବଂ ତୁମେ ଆମମାନଙ୍କ ପାଇଁ ଇହଲୋକରେ ତଥା ପରଲୋକରେ ପୁଣ୍ୟ ଲିପିବଦ୍ଧ କର ; ଆମେମାନେ ତୁମ ଆଡ଼କୁ ପ୍ରତ୍ୟାବର୍ତ୍ତନ କରିଅଛୁ" ; (ଅଲ୍ଲାହ) କହିଲେ, "ଆମେ ଯାହାକୁ ଇଚ୍ଛା ଆମର ଶାସ୍ତି ପ୍ରଦାନ କରିଥାଉ ଏବଂ ଆମର କରୁଣା[2] ପ୍ରତ୍ୟେକ ବସ୍ତୁକୁ ବେଷ୍ଟିତ କରି ରଖିଛି ; ସୁତରାଂ ଯେଉଁମାନେ ଧର୍ମଭୀରୁ ଅଟନ୍ତି ଓ ଜକାତ ଦିଅନ୍ତି, ଏବଂ ଯେଉଁମାନେ ଆମର ନିଦର୍ଶନଗୁଡ଼ିକ ଉପରେ ବିଶ୍ୱାସ କରନ୍ତି, ଆମେ ସେମାନଙ୍କ ପାଇଁ ତାହାକୁ (ଅର୍ଥାତ୍ ପୁଣ୍ୟକୁ) ନିଶ୍ଚୟ ଲିପିବଦ୍ଧ କରିବୁ ;"

وَاكْتُبْ لَنَا فِي هَٰذِهِ الدُّنْيَا حَسَنَةً وَفِي الْآخِرَةِ إِنَّا هُدْنَا إِلَيْكَ ۚ قَالَ عَذَابِي أُصِيبُ بِهِ مَنْ أَشَاءُ ۖ وَرَحْمَتِي وَسِعَتْ كُلَّ شَيْءٍ ۚ فَسَأَكْتُبُهَا لِلَّذِينَ يَتَّقُونَ وَيُؤْتُونَ الزَّكَاةَ وَالَّذِينَ هُم بِآيَاتِنَا يُؤْمِنُونَ ﴿١٥٦﴾

୧୫୮. "ଯେଉଁମାନେ ଆମର ଏହି ନିରକ୍ଷର ରସୁଲ ତଥା ନବି (ଅର୍ଥାତ୍ ହଜରତ ମହମ୍ମଦ୍)ଙ୍କୁ ଅନୁସରଣ କରନ୍ତି ଯାହାଙ୍କ (ସଂକ୍ରାନ୍ତରେ) ବର୍ଣ୍ଣନା ତୌରାତ ଓ ବାଇବେଲରେ ଲିପିବଦ୍ଧ ହୋଇ ସେମାନଙ୍କ ନିକଟରେ ରହିଅଛି ; ସେ ସେମାନଙ୍କୁ ପୁଣ୍ୟ କାର୍ଯ୍ୟ କରିବାପାଇଁ ଆଦେଶ ଦିଅନ୍ତି ତଥା ସେମାନଙ୍କୁ ପାପକାର୍ଯ୍ୟରୁ ନିବୃତ୍ତ କରନ୍ତି ଓ ସେମାନଙ୍କ ପାଇଁ ଶୁଦ୍ଧ ବସ୍ତୁଗୁଡ଼ିକୁ ବୈଧ କରନ୍ତି ତଥା ଅଶୁଦ୍ଧ ବସ୍ତୁଗୁଡ଼ିକୁ ଅବୈଧ

الَّذِينَ يَتَّبِعُونَ الرَّسُولَ النَّبِيَّ الْأُمِّيَّ الَّذِي يَجِدُونَهُ مَكْتُوبًا عِندَهُمْ فِي التَّوْرَاةِ وَالْإِنجِيلِ يَأْمُرُهُم بِالْمَعْرُوفِ وَيَنْهَاهُمْ عَنِ الْمُنكَرِ وَيُحِلُّ لَهُمُ الطَّيِّبَاتِ وَيُحَرِّمُ عَلَيْهِمُ الْخَبَائِثَ وَيَضَعُ عَنْهُمْ إِصْرَهُمْ

[1] ଅବଶ୍ୟ ପ୍ରାକୃତିକ ନିୟମ ଅନୁସାରେ ଭୂମିକମ୍ପ ହୁଏ । କିନ୍ତୁ ହଜରତ ମୁସା ଭାବିଲେ ଯେ ସମ୍ଭବତଃ ତାଙ୍କ ଜାତିର ଲୋକେ ଅଲ୍ଲାହଙ୍କ ସମକକ୍ଷ ଉପାସ୍ୟ ଗ୍ରହଣ କରିଥିବାରୁ ଦଣ୍ଡବିଧାନ ଉଦ୍ଦେଶ୍ୟରେ ଭୂମିକମ୍ପ ହୋଇଥିଲା ।

[2] ଅର୍ଥାତ୍ ଅଲ୍ଲାହ ବିନା କାରଣରେ କାହାକୁ ଶାସ୍ତି ଦିଅନ୍ତି ନାହିଁ, ବରଂ ଅନେକ ସମୟରେ କ୍ଷମା ଦେଇଥାନ୍ତି । ଏପରିକି ଅବିଶ୍ୱାସକାରୀମାନେ ମଧ୍ୟ ଅଲ୍ଲାହଙ୍କ କୃପାରୁ ଲାଭବାନ୍ ହେବେ ଯଦ୍ୟପି ଏହା ବିଶ୍ୱାସକାରୀମାନଙ୍କ ସକାଶେ ଅନିବାର୍ଯ୍ୟ ଓ ସୁରକ୍ଷିତ ।

କରନ୍ତି ; ଏବଂ ସେମାନଙ୍କ ଉପରେ (ଲଦା ହୋଇ) ଥିବା ବୋଝ ଓ ସେମାନଙ୍କ ବେକରେ ପଡ଼ିଥିବା ଶିକୁଳିକୁ ଅପସାରଣ କରନ୍ତି ; ସୁତରାଂ ଯେଉଁମାନେ ତାହାଙ୍କ ଉପରେ ବିଶ୍ୱାସ କରିବେ, ତାହାଙ୍କୁ ସମର୍ଥନ କରିବେ, ତାହାଙ୍କୁ ସାହାଯ୍ୟ କରିବେ ଓ ତାହାଙ୍କ ସହିତ ଅବତୀର୍ଣ୍ଣ ହୋଇଥିବା ଜ୍ୟୋତିକୁ ଅନୁସରଣ କରିବେ, ସେହିମାନେ ହି କୃତକାର୍ଯ୍ୟ ହେବେ ।"

وَالْاَغْلٰلَ الَّتِیْ كَانَتْ عَلَیْهِمْ ؕ فَالَّذِیْنَ اٰمَنُوْا بِهٖ وَ عَزَّرُوْهُ وَ نَصَرُوْهُ وَ اتَّبَعُوا النُّوْرَ الَّذِیْۤ اُنْزِلَ مَعَهٗۤ ۙ اُولٰٓىِٕكَ هُمُ الْمُفْلِحُوْنَ ﴿١٥٨﴾ ع ١٩

ରୁ : ୨୦

୧୫୯. କୁହ, "ହେ ଲୋକମାନେ ! ନିଶ୍ଚୟ ଆମ୍ଭେ ତୁମ ସମସ୍ତଙ୍କ ପାଇଁ ଆକାଶ ଓ ପୃଥିବୀର ଅଧୀଶ୍ୱର ଅଲ୍ଲାହଙ୍କର ରସୁଲ ଅଟୁ ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସେ ଜୀବନ ଦାନ କରନ୍ତି ଓ ମୃତ୍ୟୁ ଦିଅନ୍ତି ; ସୁତରାଂ ତୁମେମାନେ ଅଲ୍ଲାହଙ୍କ ଉପରେ ତଥା ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କର, ଯେ କି ନବି ଓ ନିରକ୍ଷର ଅଟନ୍ତି ଏବଂ ଯେ କି ଅଲ୍ଲାହଙ୍କ ଉପରେ ତଥା ତାହାଙ୍କର ବାଣୀ ଉପରେ ବିଶ୍ୱାସ କରନ୍ତି, ଏବଂ ତାଙ୍କୁ ହି ଅନୁସରଣ କର, ତାହା ହେଲେ ତୁମେମାନେ ସତ୍‌ପଥ ପ୍ରାପ୍ତ ହେବ ।"

قُلْ یٰۤاَیُّهَا النَّاسُ اِنِّیْ رَسُوْلُ اللّٰهِ اِلَیْكُمْ جَمِیْعَا الَّذِیْ لَهٗ مُلْكُ السَّمٰوٰتِ وَ الْاَرْضِ ۚ لَاۤ اِلٰهَ اِلَّا هُوَ یُحْیٖ وَ یُمِیْتُ ۪ فَاٰمِنُوْا بِاللّٰهِ وَ رَسُوْلِهِ النَّبِیِّ الْاُمِّیِّ الَّذِیْ یُؤْمِنُ بِاللّٰهِ وَ كَلِمٰتِهٖ وَ اتَّبِعُوْهُ لَعَلَّكُمْ تَهْتَدُوْنَ ﴿١٥٩﴾

୧୬୦. ଏବଂ ମୁସାଙ୍କ ସମ୍ପ୍ରଦାୟ ମଧ୍ୟରେ ଏପରି ଏକ ଗୋଷ୍ଠୀ ଅଛନ୍ତି ଯେଉଁମାନେ ସତ୍ୟ ମାଧ୍ୟମରେ (ଲୋକମାନଙ୍କୁ) ସତ୍ ଉପଦେଶ ଦେଉଛନ୍ତି ଏବଂ (ସଂସାରରେ) ନ୍ୟାୟ ପ୍ରତିଷ୍ଠା କରୁଛନ୍ତି ।

وَ مِنْ قَوْمِ مُوْسٰۤى اُمَّةٌ یَّهْدُوْنَ بِالْحَقِّ وَ بِهٖ یَعْدِلُوْنَ ﴿١٦٠﴾

୧୬୧. ଏବଂ ଆମ୍ଭେ ସେମାନଙ୍କୁ ବାର ଗୋଟି ଦଳରେ ବିଭକ୍ତ କରିଥିଲୁ, ଯେଉଁମାନେ (ଉତ୍ତରୋତ୍ତର ଉନ୍ନତି କରି) ବିଭିନ୍ନ ସଂପ୍ରଦାୟରେ ପରିଣତ ହୋଇଥିଲେ ; ଏବଂ ଯେତେବେଳେ ମୁସାଙ୍କୁ ତାହାଙ୍କ ସମ୍ପ୍ରଦାୟ ଜଳ ଭିକ୍ଷା କଲେ, ଆମ୍ଭେ ତାଙ୍କୁ ଓହି ମାଧ୍ୟମରେ କହିଲୁ, "ନିଜ ଲାଠି ଦ୍ୱାରା (ଅମୁକ) ପଥରକୁ ଆଘାତ କର" ; ଫଳରେ ସେଥିରୁ ବାର ଗୋଟି ଝରଣା ନିର୍ଗତ ହେଲା ; ପ୍ରତ୍ୟେକ ସମ୍ପ୍ରଦାୟ ନିଜ ନିଜର ଘାଟକୁ ଚିହ୍ନି ପାରିଲେ ; ଏବଂ ଆମ୍ଭେ ସେମାନଙ୍କ ଉପରେ ମେଘର ଛାୟା କଲୁ ଓ ସେମାନଙ୍କ ପାଇଁ ମନ୍ନ ଓ ସଲୱା ଅବତୀର୍ଣ୍ଣ କରି କହିଲୁ, "ଆମ୍ଭେ ତୁମମାନଙ୍କୁ ଦେଇଥିବା ବିଶୁଦ୍ଧ ବସ୍ତୁଗୁଡ଼ିକ ମଧ୍ୟରୁ ଖାଅ" ; ଏବଂ ସେମାନେ ଆମମାନଙ୍କ ଉପରେ ଅତ୍ୟାଚାର କରି ନ ଥିଲେ, ବରଂ ସେମାନେ ନିଜ ଉପରେ ନିଜେ ଅତ୍ୟାଚାର କରୁଥିଲେ ।

وَ قَطَّعْنٰهُمُ اثْنَتَیْ عَشْرَةَ اَسْبَاطًا اُمَمًا ؕ وَ اَوْحَیْنَاۤ اِلٰی مُوْسٰۤی اِذِ اسْتَسْقٰهُ قَوْمُهٗۤ اَنِ اضْرِبْ بِّعَصَاكَ الْحَجَرَ ۚ فَانْۢبَجَسَتْ مِنْهُ اثْنَتَا عَشْرَةَ عَیْنًا ؕ قَدْ عَلِمَ كُلُّ اُنَاسٍ مَّشْرَبَهُمْ ؕ وَ ظَلَّلْنَا عَلَیْهِمُ الْغَمَامَ وَ اَنْزَلْنَا عَلَیْهِمُ الْمَنَّ وَ السَّلْوٰی ؕ كُلُوْا مِنْ طَیِّبٰتِ مَا رَزَقْنٰكُمْ ؕ وَ مَا ظَلَمُوْنَا وَ لٰكِنْ كَانُوْۤا اَنْفُسَهُمْ یَظْلِمُوْنَ ﴿١٦١﴾

وَإِذْ قِيلَ لَهُمُ اسْكُنُوا هَٰذِهِ الْقَرْيَةَ وَكُلُوا مِنْهَا حَيْثُ شِئْتُمْ وَقُولُوا حِطَّةٌ وَادْخُلُوا الْبَابَ سُجَّدًا نَّغْفِرْ لَكُمْ خَطِيئَاتِكُمْ ۚ سَنَزِيدُ الْمُحْسِنِينَ ﴿١٦٢﴾

୧୬୨. ଏବଂ (ସ୍ମରଣକର) ଯେତେବେଳେ ସେମାନଙ୍କୁ (ଅର୍ଥାତ୍ ଇସ୍ରାଇଲୀୟ ସନ୍ତାନମାନଙ୍କୁ) କୁହାଗଲା, "ଏହି ଅଞ୍ଚଳରେ ବାସ କର ଏବଂ ଏହା ମଧ୍ୟରୁ ଯେଉଁ ଠାରୁ ଇଚ୍ଛା ଖାଅ ଏବଂ କୁହ, ("ହେ ଅଲ୍ଲାହ ! ଆମର) ଭାର[1] ଲାଘବ କର", ଏବଂ (ସମ୍ମୁଖସ୍ଥ ସହରର) ଦ୍ୱାର ମଧ୍ୟରେ ବିନୀତ ଭାବରେ ପ୍ରବେଶ କର ; ତାହା ହେଲେ ଆମେ ତୁମମାନଙ୍କ ଦୋଷ କ୍ଷମା କରିବୁ, ଏବଂ ଯେଉଁମାନେ ସମ୍ପୂର୍ଣ୍ଣରୂପେ ଆଜ୍ଞା ପାଳନ କରନ୍ତି ସେମାନଙ୍କୁ ଆମେ ଆହୁରି ଅଧିକ ପୁରସ୍କାର ପ୍ରଦାନ କରିବୁ ।

فَبَدَّلَ الَّذِينَ ظَلَمُوا مِنْهُمْ قَوْلًا غَيْرَ الَّذِي قِيلَ لَهُمْ فَأَرْسَلْنَا عَلَيْهِمْ رِجْزًا مِّنَ السَّمَاءِ بِمَا كَانُوا يَظْلِمُونَ ﴿١٦٣﴾

୧୬୩. ତା'ପରେ ସେ (ଇସ୍ରାଇଲ)ମାନଙ୍କ ମଧ୍ୟରେ ଯେଉଁମାନେ ଅତ୍ୟାଚାରୀ ଥିଲେ ସେମାନେ ସେମାନଙ୍କୁ କୁହା ଯାଇଥିବା ବିଷୟକୁ ପରିବର୍ତ୍ତନ କରି ଅନ୍ୟ ବିଷୟ[2] କହିବା ଆରମ୍ଭ କଲେ ; ଫଳରେ ଆମେ ସେମାନଙ୍କ ଅତ୍ୟାଚାର ଯୋଗୁଁ ସେମାନଙ୍କ ଉପରେ ଆକାଶରୁ ଶାସ୍ତି ପ୍ରେରଣ କରିଥିଲୁ ।

ରୁ : ୨୧

وَاسْأَلْهُمْ عَنِ الْقَرْيَةِ الَّتِي كَانَتْ حَاضِرَةَ الْبَحْرِ إِذْ يَعْدُونَ فِي السَّبْتِ إِذْ تَأْتِيهِمْ حِيتَانُهُمْ يَوْمَ سَبْتِهِمْ شُرَّعًا وَيَوْمَ لَا يَسْبِتُونَ ۙ لَا تَأْتِيهِمْ ۚ كَذَٰلِكَ نَبْلُوهُم بِمَا كَانُوا يَفْسُقُونَ ﴿١٦٤﴾

୧୬୪. ଏବଂ (ହେ ରସୁଲ !) ତୁମେ ସେ (ଇସ୍ରାଇଲୀୟ ସନ୍ତାନ)ମାନଙ୍କୁ ସମୁଦ୍ର କୂଳରେ ଥିବା ସେହି ସହର ବିଷୟରେ ପ୍ରଶ୍ନ କର ; ଯେତେବେଳେ କି ସେ (ଇହୁଦୀ)ମାନେ ସବତ ବିଷୟକ ଆଦେଶର ସୀମା ଲଙ୍ଘନ କରୁଥିଲେ ; ଯେତେବେଳେ କି ସେମାନଙ୍କର ସବତ ଦିବସରେ ସେମାନଙ୍କ ମାଛଗୁଡ଼ିକ ଦଳ ଦଳ[3] ହୋଇ ସେମାନଙ୍କ ନିକଟକୁ ଆସୁଥିଲେ ; ଏବଂ ଯେଉଁ ଦିନ ସବତ ପାଳନ କରୁ ନ ଥିଲେ ସେମାନଙ୍କ ନିକଟକୁ ସେଗୁଡ଼ିକ ଆସୁ ନ ଥିଲେ ; ଏହିପରି ଆମେ ସେମାନଙ୍କ ଅବଜ୍ଞା ଯୋଗୁଁ ସେମାନଙ୍କୁ ପରୀକ୍ଷା କରିଥିଲୁ ।

---

୧. ଅର୍ଥାତ୍ ପାପର ଭାର, (୨ : ୫୯ ଦ୍ରଷ୍ଟବ୍ୟ) ।

୨. ବିନମ୍ରତାପୂର୍ବକ ନଗର ମଧ୍ୟରେ ପ୍ରବେଶ କରିବାକୁ ତଥା ପ୍ରାର୍ଥନା କରିବାକୁ ଇସ୍ରାଇଲୀୟମାନଙ୍କୁ ଆଦେଶ ଦିଆଯାଇଥିଲା କିନ୍ତୁ ସେମାନେ ପରିହାସପୂର୍ବକ କାର୍ଯ୍ୟ ସମ୍ପାଦନ କରିଥିଲେ ଓ ଅଯଥା କଥା କହିଥିଲେ, ଫଳରେ ସେମାନଙ୍କ ପ୍ରତି ଶାସ୍ତି ଅବତୀର୍ଣ୍ଣ ହୋଇଥିଲା ।

୩. ମନୁଷ୍ୟ ବ୍ୟତୀତ ଅନ୍ୟାନ୍ୟ ପ୍ରାଣୀ ମଧ୍ୟ ଦିନ ଚିହ୍ନିପାରନ୍ତି । ହିନ୍ଦୁମାନେ ଯେଉଁ ଦିନ ଜଳଘାଟ ବା ଜଳସ୍ରୋତରେ ଖାଦ୍ୟ ସାମଗ୍ରୀ ନିକ୍ଷେପ କରନ୍ତି ସେଦିନ ମାଛମାନେ ବହୁ ସଂଖ୍ୟାରେ ସେଠାକୁ ଆସନ୍ତି ।

وَإِذْ قَالَتْ أُمَّةٌ مِّنْهُمْ لِمَ تَعِظُونَ قَوْمًا ۙ اللَّهُ مُهْلِكُهُمْ أَوْ مُعَذِّبُهُمْ عَذَابًا شَدِيدًا ۖ قَالُوا مَعْذِرَةً إِلَىٰ رَبِّكُمْ وَلَعَلَّهُمْ يَتَّقُونَ ﴿١٦٥﴾

୧୬୫. ଏବଂ ଯେତେବେଳେ ସେମାନଙ୍କ[1] ମଧ୍ୟରୁ ଏକ ଗୋଷ୍ଠୀ (ଅନ୍ୟ ଗୋଷ୍ଠୀକୁ) କହିଲେ, "ତୁମେମାନେ କାହିଁକି ଏହି ସମ୍ପ୍ରଦାୟକୁ ଉପଦେଶ ଦେଉଅଛ ଯାହାକୁ ଅଲ୍ଲାହ ବିନାଶ କରିବେ ବା କଠୋର ଶାସ୍ତି ପ୍ରଦାନ କରିବେ ?" ସେମାନେ ଉତ୍ତର ଦେଲେ, "ତୁମମାନଙ୍କ ପାଳନକର୍ତ୍ତାଙ୍କଠାରେ ଦୋଷମୁକ୍ତ ହେବା ପାଇଁ ଏବଂ ସେମାନେ ଅଲ୍ଲାହଙ୍କୁ ଭୟ କରିବା ପାଇଁ ଆମେ ସେମାନଙ୍କୁ ଉପଦେଶ ଦେଇଥିଲୁ ।"

فَلَمَّا نَسُوا مَا ذُكِّرُوا بِهِ أَنجَيْنَا الَّذِينَ يَنْهَوْنَ عَنِ السُّوءِ وَأَخَذْنَا الَّذِينَ ظَلَمُوا بِعَذَابٍ بَئِيسٍ بِمَا كَانُوا يَفْسُقُونَ ﴿١٦٦﴾

୧୬୬. ତା'ପରେ ଯେତେବେଳେ ସେମାନେ ସେମାନଙ୍କୁ ଦିଆ ଯାଇଥିବା ଉପଦେଶଗୁଡ଼ିକୁ ଭୁଲି ଗଲେ, ସେତେବେଳେ ଯେଉଁମାନେ ମନ୍ଦ କାର୍ଯ୍ୟରୁ ନିବୃତ୍ତ କରୁଥିଲେ ଆମେ ସେମାନଙ୍କୁ ମୁକ୍ତି ଦେଲୁ ଏବଂ ଯେଉଁମାନେ ଅତ୍ୟାଚାରୀ ଥିଲେ ସେମାନଙ୍କୁ ସେମାନଙ୍କ ଅମାନ୍ୟ ପାଇଁ ଅତ୍ୟନ୍ତ କଷ୍ଟଦାୟକ ଶାସ୍ତିରେ ଆକ୍ରାନ୍ତ କଲୁ ।

فَلَمَّا عَتَوْا عَن مَّا نُهُوا عَنْهُ قُلْنَا لَهُمْ كُونُوا قِرَدَةً خَاسِئِينَ ﴿١٦٧﴾

୧୬୭. ପୁନଶ୍ଚ ଯେତେବେଳେ ସେମାନଙ୍କୁ ଯେଉଁ ବିଷୟ କରିବାକୁ ନିଷେଧ କରାଯାଇଥିଲା, ସେଥିରୁ ସେମାନେ ନିବୃତ୍ତ ହେବା ପରିବର୍ତ୍ତେ ତହିଁରେ ଅଗ୍ରସର ହେଲେ, ସେତେବେଳେ ଆମେ ସେମାନଙ୍କୁ କହିଲୁ, "ତୁମେମାନେ ଘୃଣ୍ୟ ବାନର (ସ୍ୱଭାବର) ହୋଇଯାଅ ।"[2]

وَإِذْ تَأَذَّنَ رَبُّكَ لَيَبْعَثَنَّ عَلَيْهِمْ إِلَىٰ يَوْمِ الْقِيَامَةِ مَن يَسُومُهُمْ سُوءَ الْعَذَابِ ۗ إِنَّ رَبَّكَ لَسَرِيعُ الْعِقَابِ ۖ وَإِنَّهُ لَغَفُورٌ رَّحِيمٌ ﴿١٦٨﴾

୧୬୮. ଏବଂ (ସ୍ମରଣକର) ଯେତେବେଳେ ତୁମର ପାଳନକର୍ତ୍ତା ଘୋଷଣା କରିଥିଲେ ଯେ ସେ କୟାମତ ଦିବସ ପର୍ଯ୍ୟନ୍ତ ସେ (ଇହୁଦୀ)ମାନଙ୍କ ଉପରେ ଏଭଳି ଲୋକମାନଙ୍କୁ ନିଯୁକ୍ତ କରିବେ ଯେଉଁମାନେ ସେମାନଙ୍କୁ ପୀଡ଼ା ଓ ଶାସ୍ତି ଦେବେ ; (ତେବେ କ'ଣ ଏପରି ହେଲା କି ନାହିଁ ?) ତୁମର ପାଳନକର୍ତ୍ତା ଶାସ୍ତି ଦେବାରେ ବାସ୍ତବରେ କ୍ଷିପ୍ର[3] ଓ ସେ ବାସ୍ତବରେ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

---

୧. ଅର୍ଥାତ ଇସ୍ରାଇଲୀୟ ସନ୍ତାନମାନଙ୍କ ମଧ୍ୟରୁ ।

୨. ସେମାନେ ଆକୃତିରେ ବାନର ହୋଇଯାଇ ନଥିଲେ, ବରଂ ସେମାନଙ୍କ ସ୍ୱଭାବ ବାନର ଅନୁରୂପ ହୋଇଥିଲା ତଥା ସେମାନଙ୍କ ହୃଦୟ ଅପବିତ୍ର ହୋଇଯାଇଥିଲା । ତେଣୁ ଏଠାରେ ବିଷୟଟି ପ୍ରକୃତ ବାନରକୁ ବୁଝାଉନାହିଁ । ସୁରା ମାଏଦାର ଆୟତ-୬୧ ଓ୬୨ କୁ ଅନୁଧ୍ୟାନ କଲେ ଜଣାଯିବ ଯେ ଯେଉଁ ଇହୁଦୀମାନେ ହଜରତ ମହମ୍ମଦଙ୍କ ପାଖକୁ ଆସୁଥିଲେ ସେମାନଙ୍କ ଆକୃତି ବାନର ଭଳି ନ ଥିଲା । ହଜରତ ମହମ୍ମଦଙ୍କ ନିକଟକୁ ବାନର ଆକୃତି ବିଶିଷ୍ଟ ମଣିଷ ଆସୁଥିବା ବିଷୟ ହଦିସ ବା ଇତିହାସରେ କୁତ୍ରାପି ଉଲ୍ଲେଖ ନାହିଁ । ବସ୍ତୁତଃ ସେମାନଙ୍କ ସ୍ୱଭାବ ବାନର ସଦୃଶ ଥିଲା । ସେହିପରି ପରବର୍ତ୍ତୀ ଆୟତ ୧୬୯କୁ ଅନୁଧ୍ୟାନ କଲେ ଜଣାପଡ଼ିବ ଯେ ସେମାନେ ମନୁଷ୍ୟ ଥିଲେ । ଅନ୍ୟଥା କେତେକ ସଦାଚାରୀ ହେବାର ଅର୍ଥ କଅଣ ? କ'ଣ ସେପରି ବାନରମାନେ ଯଥାବିଧି ଉପାସନା କରୁଥିଲେ, ସିଜଦା କରୁଥିଲେ ଓ ଦାନ କରୁଥିଲେ ?

୩. ଦଣ୍ଡ ଦେବାରେ ଅଲ୍ଲାହ ଆଦୌ ତରବର ହେଉ ନ ଥିବା ପବିତ୍ର କୋରାନରୁ ପ୍ରତିପାଦିତ ହେଉଛି । କିନ୍ତୁ ଏଠାରେ କ୍ଷିପ୍ରତା ଶବ୍ଦର ତାତ୍ପର୍ଯ୍ୟ ହେଉଛି କି ଯେତେବେଳେ ଅଲ୍ଲାହ କୌଣସି ବ୍ୟକ୍ତିକୁ ଦଣ୍ଡ ଦିଅନ୍ତି ତେବେ ତାକୁ କ୍ଷିପ୍ରତା ସହକାରେ ଧରି ନିଅନ୍ତି । ତାଙ୍କ ପଥରେ କେହି ପ୍ରତିବନ୍ଧକ ସୃଷ୍ଟି କରିପାରିବ ନାହିଁ । ଜଣେ ପାପ କଲେ ଅଲ୍ଲାହ ତା'ପ୍ରତି କ୍ଷିପ୍ରତା ସହକାରେ ଦଣ୍ଡବିଧାନ କରିଥାନ୍ତି, ଏପରି ଅର୍ଥ କରିବା ଯଥାର୍ଥ ନୁହେଁ ।

وَقَطَّعْنٰهُمْ فِي الْاَرْضِ اُمَمًا ۚ مِنْهُمُ الصّٰلِحُوْنَ وَمِنْهُمْ دُوْنَ ذٰلِكَ ۖ وَبَلَوْنٰهُمْ بِالْحَسَنٰتِ وَالسَّيِّاٰتِ لَعَلَّهُمْ يَرْجِعُوْنَ ﴿١٦٩﴾

୧୬୯. ଏବଂ ଆମେ ସେମାନଙ୍କୁ ପୃଥିବୀରେ ବିଭିନ୍ନ ଗୋଷ୍ଠୀରେ ବିଭକ୍ତ କରି ସମ୍ପ୍ରସାରିତ କରିଅଛୁ ; (ଏବେ ମଧ୍ୟ) ସେମାନଙ୍କ ମଧ୍ୟରେ କେତେକ ପୁଣ୍ୟବାନ୍ ବ୍ୟକ୍ତି ଅଛନ୍ତି ଓ ଅନ୍ୟ କେତେକ ପାପୀ ଅଛନ୍ତି ; ଏବଂ ଆମେ ସେମାନଙ୍କୁ ଭଲ ଅବସ୍ଥାରେ ଓ ମନ୍ଦ ଅବସ୍ଥାରେ ପରୀକ୍ଷା କରିଥାଉ ; ଯେପରି କି ସେମାନେ (ନିଜ ଦୁଷ୍କର୍ମରୁ) ନିବୃତ୍ତ ହେବେ ।

فَخَلَفَ مِنْ بَعْدِهِمْ خَلْفٌ وَّرِثُوا الْكِتٰبَ يَاْخُذُوْنَ عَرَضَ هٰذَا الْاَدْنٰى وَيَقُوْلُوْنَ سَيُغْفَرُ لَنَا ۚ وَاِنْ يَّاْتِهِمْ عَرَضٌ مِّثْلُهٗ يَاْخُذُوْهُ ۗ اَلَمْ يُؤْخَذْ عَلَيْهِمْ مِّيْثَاقُ الْكِتٰبِ اَنْ لَّا يَقُوْلُوْا عَلَى اللّٰهِ اِلَّا الْحَقَّ وَدَرَسُوْا مَا فِيْهِ ۗ وَالدَّارُ الْاٰخِرَةُ خَيْرٌ لِّلَّذِيْنَ يَتَّقُوْنَ ۗ اَفَلَا تَعْقِلُوْنَ ﴿١٧٠﴾

୧୭୦. କିନ୍ତୁ ସେମାନଙ୍କ ପରେ ଏପରି ଏକ (ଅଧମ) ବଂଶଧର (ସେମାନଙ୍କର) ପ୍ରତିନିଧିତ୍ୱ କରୁଅଛନ୍ତି ଯେଉଁମାନେ (ତୌରାତ) ଗ୍ରନ୍ଥର ଉତ୍ତରାଧିକାରୀ ହୋଇ ପାର୍ଥିବ ଜୀବନର (ତୁଚ୍ଛ) ସାମଗ୍ରୀ ସଂଗ୍ରହ କରୁଛନ୍ତି ଓ କହୁଛନ୍ତି, "ନିଶ୍ଚୟ ଅଲ୍ଲାହ ଆମମାନଙ୍କୁ କ୍ଷମା ପ୍ରଦାନ କରିବେ," ଏବଂ ଯଦି ସେମାନଙ୍କ ନିକଟକୁ ସେହିପରି ଅନ୍ୟ କୌଣସି ସାମଗ୍ରୀ ଆସିଯାଏ ତେବେ ସେଗୁଡ଼ିକୁ ମଧ୍ୟ ହାସଲ କରିବାକୁ ଚେଷ୍ଟା କରନ୍ତି ; କ'ଣ ସେମାନଙ୍କ ଠାରୁ (ତୌରାତ) ଗ୍ରନ୍ଥରେ ପ୍ରତିଶ୍ରୁତି ନିଆଯାଇ ନ ଥିଲା ଯେ ସେମାନେ ଅଲ୍ଲାହଙ୍କ ସଂକ୍ରାନ୍ତରେ କେବଳ ସତ୍ୟ କହିବେ ? ଏବଂ ଯାହା କିଛି ଏହି ଗ୍ରନ୍ଥରେ ଅଛି ତାହା ସେମାନେ ଅଧ୍ୟୟନ କରିଛନ୍ତି ; ଏବଂ (ଏହା ଜାଣନ୍ତି ଯେ) ଯେଉଁମାନେ ଧର୍ମଭୀରୁ ସେମାନଙ୍କ ସକାଶେ ପରଲୋକର ବାସସ୍ଥାନ ଉତ୍କୃଷ୍ଟ ; (ତଥାପି) କ'ଣ ତୁମେମାନେ ବୁଝି ପାରୁନାହିଁ ?

وَالَّذِيْنَ يُمَسِّكُوْنَ بِالْكِتٰبِ وَاَقَامُوا الصَّلٰوةَ ۗ اِنَّا لَا نُضِيْعُ اَجْرَ الْمُصْلِحِيْنَ ﴿١٧١﴾

୧୭୧. ଏବଂ ଯେଉଁମାନେ (ମୁସାଙ୍କ) ଗ୍ରନ୍ଥକୁ ଦୃଢ଼ତା ସହକାରେ ଧାରଣ କରିଛନ୍ତି ଓ ସୁଚାରୁ-ରୂପେ ନମାଜ ପାଠ କରୁଛନ୍ତି ଆମେ ଏପରି ଧର୍ମନିଷ୍ଠ ବ୍ୟକ୍ତିମାନଙ୍କର ପୁରସ୍କାରକୁ ନଷ୍ଟ କରିବୁ ନାହିଁ ।

وَاِذْ نَتَقْنَا الْجَبَلَ فَوْقَهُمْ كَاَنَّهٗ ظُلَّةٌ وَّظَنُّوْٓا اَنَّهٗ وَاقِعٌۢ بِهِمْ ۚ خُذُوْا مَآ اٰتَيْنٰكُمْ بِقُوَّةٍ وَّاذْكُرُوْا مَا فِيْهِ لَعَلَّكُمْ تَتَّقُوْنَ ﴿١٧٢﴾ ع

୧୭୨. ଏବଂ ଯେତେବେଳେ ଆମେ ସେମାନଙ୍କ ଉପରେ ପର୍ବତକୁ ଚାନ୍ଦୁଆ ପରି ଉତ୍‌ଥିତ[୧] କରିଥିଲୁ ଏବଂ (ଯେତେବେଳେ) ସେମାନେ ଭାବିଥିଲେ ଯେ ତାହା ସେମାନଙ୍କ ଉପରେ ପଡ଼ି ଯିବ ; (ଏବଂ ଆମେ କହିଲୁ), "ଆମେ ଯାହା କିଛି ତୁମମାନଙ୍କୁ ପ୍ରଦାନ କରିଅଛୁ, ତାହାକୁ ଦୃଢ଼ ଭାବରେ ଧାରଣ କର, ଏବଂ ସେଥିରେ ଯାହା ଅଛି ତାହାକୁ ମନେରଖ ତାହା ହେଲେ ତୁମେମାନେ ଧର୍ମଭୀରୁ ହେବ ।"

---

୧. ଅର୍ଥାତ୍ ସେମାନଙ୍କ ନେତାମାନଙ୍କୁ ତୁର ପର୍ବତର ପାଦଦେଶରେ ଛିଡ଼ା କରାଇଥିଲେ ଯେପରିକି ସେମାନେ ମଧ୍ୟ ତା'ର ଦୃଶ୍ୟ ଦେଖିପାରିବେ । ଯେତେବେଳେ ପର୍ବତର ପାଦଦେଶରେ ଜଣେ ବ୍ୟକ୍ତି ଦଣ୍ଡାୟମାନ ହୁଏ ସେତେବେଳେ ତାଙ୍କୁ ସେହି ପର୍ବତ ଏପରି ପ୍ରତୀତ ହୁଏ ସତେ ଯେପରି ସେହି ପର୍ବତ ତା' ମୁଣ୍ଡ ଉପରେ ଛାତ ସଦୃଶ ରହିଅଛି ।

୧୭୩. ଏବଂ ଯେତେବେଳେ ତୁମ୍ଭ ପାଳନକର୍ତ୍ତା ଆଦମଙ୍କ ସନ୍ତାନମାନଙ୍କ ଔରସରୁ ସେମାନଙ୍କ ସନ୍ତାନ – ସନ୍ତତିଙ୍କୁ ଜନ୍ମ ଦେଇ ଥିଲେ ଓ ସେମାନଙ୍କୁ ନିଜ ସଂକ୍ରାନ୍ତରେ ସାକ୍ଷୀ ରଖି ଥିଲେ (ଓ ପଚାରି ଥିଲେ) ''କ'ଣ ଆମ୍ଭେ ତୁମ୍ଭର ପାଳନକର୍ତ୍ତା ନୋହୁଁ ?'' ସେମାନେ କହିଲେ, ''ହଁ, ଆମେମାନେ (ଏ ବିଷୟରେ) ସାକ୍ଷ୍ୟ ଦେଉଅଛୁ'' ; (ଆମ୍ଭେ ଏହା ଏଥିଯୋଗୁଁ କଲୁ ଯେ) କାଳେ ତୁମେମାନେ କୟାମତ ଦିନ କହିବ, ''ଆମେମାନେ ଏ (ଶିକ୍ଷା) ସଂକ୍ରାନ୍ତରେ ଅଜ୍ଞ ଥିଲୁ ।''

وَإِذْ أَخَذَ رَبُّكَ مِنْ بَنِيٓ ءَادَمَ مِنْ ظُهُورِهِمْ ذُرِّيَّتَهُمْ وَأَشْهَدَهُمْ عَلَىٰٓ أَنْفُسِهِمْ أَلَسْتُ بِرَبِّكُمْ ۖ قَالُوا۟ بَلَىٰ ۛ شَهِدْنَآ ۛ أَنْ تَقُولُوا۟ يَوْمَ ٱلْقِيَٰمَةِ إِنَّا كُنَّا عَنْ هَٰذَا غَٰفِلِينَ ﴿١٧٣﴾

୧୭୪. ଅଥବା ତୁମେମାନେ କହିବ, ''(ଆମମାନଙ୍କ ପୂର୍ବରୁ) କେବଳ ଆମମାନଙ୍କ ପିତୃପିତାମହମାନେ ସିର୍କ କରିଥିଲେ ଏବଂ ଆମେମାନେ ସେମାନଙ୍କ ଉତ୍ତାରୁ ଏକ ଦୁର୍ବଳ ବଂଶଧର ଥିଲୁ ; କ'ଣ ତୁମ୍ଭେ ଆମମାନଙ୍କୁ ସେହି ମିଥ୍ୟାବାଦୀମାନଙ୍କ କାର୍ଯ୍ୟ ଯୋଗୁଁ ବିନାଶ କରିବ ?''

أَوْ تَقُولُوٓا۟ إِنَّمَآ أَشْرَكَ ءَابَآؤُنَا مِنْ قَبْلُ وَكُنَّا ذُرِّيَّةً مِّنۢ بَعْدِهِمْ ۖ أَفَتُهْلِكُنَا بِمَا فَعَلَ ٱلْمُبْطِلُونَ ﴿١٧٤﴾

୧୭୫. ଆମ୍ଭେ ଏହିପରି ଭାବରେ ନିଦର୍ଶନଗୁଡ଼ିକୁ ସ୍ପଷ୍ଟ ରୂପେ ବର୍ଣ୍ଣନା କରିଥାଉ, ଯେପରି କି ସେମାନେ (ନିଜ ତ୍ରୁଟି ମାର୍ଜନା କରି ଆମ୍ଭ ନିକଟକୁ) ଫେରିବେ ।

وَكَذَٰلِكَ نُفَصِّلُ ٱلْءَايَٰتِ وَلَعَلَّهُمْ يَرْجِعُونَ ﴿١٧٥﴾

୧୭୬. ଏବଂ (ତୁମ୍ଭେ) ସେମାନଙ୍କ ନିକଟରେ ସେହି ବ୍ୟକ୍ତିର ଅବସ୍ଥା ବର୍ଣ୍ଣନା କର ଯାହାକୁ ଆମ୍ଭେ ଆମ୍ଭର ନିଦର୍ଶନ ଦେଇଥିଲୁ ; କିନ୍ତୁ ସେ ସେଥିରୁ ବିଚ୍ୟୁତ ହୋଇ ଅଲଗା ହୋଇଗଲା[2] ; ସୁତରାଂ ସଇତାନ ତାହାକୁ ଅନୁସରଣ କଲା ଏବଂ ସେ ପଥଭ୍ରଷ୍ଟମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେଲା ।

وَٱتْلُ عَلَيْهِمْ نَبَأَ ٱلَّذِيٓ ءَاتَيْنَٰهُ ءَايَٰتِنَا فَٱنسَلَخَ مِنْهَا فَأَتْبَعَهُ ٱلشَّيْطَٰنُ فَكَانَ مِنَ ٱلْغَاوِينَ ﴿١٧٦﴾

୧୭୭. ଏବଂ ଯଦି ଆମ୍ଭେ ଇଚ୍ଛା କରିଥାଆନ୍ତୁ, ତେବେ ଆମ୍ଭେ ତାହାକୁ ଏହା (ଅର୍ଥାତ୍ ନିଦର୍ଶନମାନ) ଦ୍ୱାରା ଉନ୍ନତ କରିଥାଆନ୍ତୁ ; କିନ୍ତୁ ସେ ସଂସାର ପ୍ରତି ଆକୃଷ୍ଟ ହେଲା ; ଏବଂ ନିଜ କୁପ୍ରବୃତ୍ତିର ଅନୁସରଣ କଲା ସୁତରାଂ ତାହାର ଦୃଷ୍ଟାନ୍ତ ସେହି କୁକୁର ଅବସ୍ଥା ପରି ଯାହାକୁ ଯଦି ତୁମେ ମାରିବାକୁ ଉଦ୍ୟତ ହେବ, ତଥାପି ସେ ଧକେଇ ହେଉଥିବ ଏବଂ ଯଦି

وَلَوْ شِئْنَا لَرَفَعْنَٰهُ بِهَا وَلَٰكِنَّهُۥٓ أَخْلَدَ إِلَى ٱلْأَرْضِ وَٱتَّبَعَ هَوَىٰهُ ۚ فَمَثَلُهُۥ كَمَثَلِ ٱلْكَلْبِ إِن تَحْمِلْ عَلَيْهِ

୧. ଅର୍ଥାତ୍ ହଜରତ ମହମ୍ମଦଙ୍କୁ ଅମାନ୍ୟ କରୁଥିବା ବ୍ୟକ୍ତିମାନେ ।

୨. ଏହା ଏକ ଦୃଷ୍ଟାନ୍ତ । କିନ୍ତୁ ତୌରାତ ଧର୍ମଗ୍ରନ୍ଥ ତଥା କେତେକ ଭାଷ୍ୟକାରଙ୍କ ଅନୁସାରେ ଏହା ବଲଅମ ବାଉର ନାମକ ଜଣେ ବ୍ୟକ୍ତିଙ୍କ ବୃତ୍ତାନ୍ତ । ଉପସ୍ଥିତ ପରିସ୍ଥିତି ସହିତ ତାଙ୍କ ସମୟରେ ଘଟିଥିବା ଘଟଣାଗୁଡ଼ିକର ସାମଞ୍ଜସ୍ୟ ଥିବାରୁ ଏପରି ଧାରଣା ସୃଷ୍ଟି ହୋଇଛି । ଯଦି କୌଣସି ବ୍ୟକ୍ତି ନିଜକୁ ସେପରି କରିଦେବ ତେବେ ଏହି ଦୃଷ୍ଟାନ୍ତ ତା'ପକ୍ଷରେ ମଧ୍ୟ ପ୍ରଯୋଜ୍ୟ ହେବ ।

يَلْهَثْ اَوْ تَتْرُكْهُ يَلْهَثْ ذٰلِكَ مَثَلُ الْقَوْمِ الَّذِيْنَ
كَذَّبُوْا بِاٰيٰتِنَا فَاقْصُصِ الْقَصَصَ لَعَلَّهُمْ يَتَفَكَّرُوْنَ ﴿١٧٧﴾

ତୁମେ ତାହାକୁ ଛାଡ଼ିଦିଅ, ତେବେ ମଧ୍ୟ ସେ ଧକେଇ ହେଉଥିବ ; ଏହିପରି ସେହି ସମ୍ପ୍ରଦାୟର ଅବସ୍ଥା ଯେଉଁମାନେ ଆମ୍ଭର[୧] ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟାରୋପ କରନ୍ତି ; ଅତଏବ ତୁମେ ସେମାନଙ୍କ ନିକଟରେ ଏହି ବିଷୟ ବର୍ଣ୍ଣନା କର, ଯେପରି କି ସେମାନେ ଚିନ୍ତା କରିବେ ।

سَآءَ مَثَلًا ۨالْقَوْمُ الَّذِيْنَ كَذَّبُوْا بِاٰيٰتِنَا وَاَنْفُسَهُمْ كَانُوْا
يَظْلِمُوْنَ ﴿١٧٨﴾

୧୭୮. ସେହି ସମ୍ପ୍ରଦାୟର ଅବସ୍ଥା ଅତ୍ୟନ୍ତ ମନ୍ଦ ; ଯେଉଁମାନେ ଆମ୍ଭର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟାରୋପ କରିଥିଲେ ; ଏବଂ ସେମାନେ (ଏହି କାର୍ଯ୍ୟ ଦ୍ବାରା) କେବଳ ନିଜ ଉପରେ ହିଁ ଅତ୍ୟାଚାର କରୁଥିଲେ ।

مَنْ يَّهْدِ اللّٰهُ فَهُوَ الْمُهْتَدِيْ ۚ وَمَنْ يُّضْلِلْ فَاُولٰٓئِكَ
هُمُ الْخٰسِرُوْنَ ﴿١٧٩﴾

୧୭୯. ଅଲ୍ଲାହ୍ ଯାହାଙ୍କୁ ସତ୍‌ପଥ ପ୍ରଦର୍ଶନ କରାନ୍ତି, ସେମାନେ ହିଁ ସତ୍‌ପଥଗାମୀ ହେବେ ; ଏବଂ ଯାହାଙ୍କୁ ବିପଥଗାମୀ କରାନ୍ତି, ସେମାନେ ହିଁ କ୍ଷତିଗ୍ରସ୍ତ ହେବେ ।

وَلَقَدْ ذَرَاْنَا لِجَهَنَّمَ كَثِيْرًا مِّنَ الْجِنِّ وَالْاِنْسِ ۖ
لَهُمْ قُلُوْبٌ لَّا يَفْقَهُوْنَ بِهَا ۫ وَلَهُمْ اَعْيُنٌ لَّا يُبْصِرُوْنَ
بِهَا ۫ وَلَهُمْ اٰذَانٌ لَّا يَسْمَعُوْنَ بِهَا ؕ اُولٰٓئِكَ كَالْاَنْعَامِ
بَلْ هُمْ اَضَلُّ ؕ اُولٰٓئِكَ هُمُ الْغٰفِلُوْنَ ﴿١٨٠﴾

୧୮୦. ଏବଂ ଆମ୍ଭେ ଜିନ୍ନ୍ ଏବଂ ମାନବଙ୍କୁ (ଆମ୍ଭର କରୁଣା ଲାଭ ପାଇଁ) ସୃଷ୍ଟି କରିଅଛୁ ; କିନ୍ତୁ ପରିଣାମ ଏପରି ହେଉଅଛି ଯେ ସେମାନଙ୍କ ମଧ୍ୟରୁ ଅନେକ ନରକଗାମୀ ହୁଅନ୍ତି ; ସେମାନଙ୍କର ଅବଶ୍ୟ ହୃଦୟ ଅଛି, କିନ୍ତୁ ତଦ୍ବାରା ସେମାନେ ହୃଦୟଙ୍ଗମ କରିପାରନ୍ତି ନାହିଁ ; ସେମାନଙ୍କର ଅବଶ୍ୟ ଚକ୍ଷୁ ଅଛି, କିନ୍ତୁ ସେମାନେ ତଦ୍ବାରା ଦେଖିପାରୁ ନାହାନ୍ତି ; ସେମାନଙ୍କର ଅବଶ୍ୟ କର୍ଣ୍ଣ ଅଛି, କିନ୍ତୁ ତଦ୍ବାରା ସେମାନେ ଶୁଣି ପାରୁନାହାନ୍ତି ; ସେମାନେ ଚତୁଷ୍ପଦ ସଦୃଶ, ଏପରି କି ସେମାନଙ୍କ ଠାରୁ ମଧ୍ୟ ନୀଚ ; ବାସ୍ତବିକ ସେମାନେ ହିଁ ନିର୍ବୋଧ ।

وَلِلّٰهِ الْاَسْمَآءُ الْحُسْنٰى فَادْعُوْهُ بِهَا ۪ وَذَرُوا الَّذِيْنَ
يُلْحِدُوْنَ فِيْٓ اَسْمَآئِهٖ ؕ سَيُجْزَوْنَ مَا كَانُوْا يَعْمَلُوْنَ ﴿١٨١﴾

୧୮୧. ଏବଂ ସମସ୍ତ ସୁଗୁଣ ଅଲ୍ଲାହ୍‌ଙ୍କ ପାଇଁ ହିଁ ଉଦ୍ଦିଷ୍ଟ ; ଅତଏବ, ତୁମେମାନେ ସେଗୁଡ଼ିକ ମାଧ୍ୟମରେ ତାହାଙ୍କ ନିକଟରେ ପ୍ରାର୍ଥନା କର ; ଏବଂ ଯେଉଁମାନେ ତାଙ୍କର ଗୁଣାବଳୀ ସଂକ୍ରାନ୍ତରେ ବିଭ୍ରାନ୍ତ କରୁଛନ୍ତି, ସେମାନଙ୍କୁ ପରିତ୍ୟାଗ କର ; ସେମାନଙ୍କୁ ତାଙ୍କର କର୍ମ ପାଇଁ ପ୍ରତିଫଳ ପ୍ରଦାନ କରାଯିବ ।

وَمِمَّنْ خَلَقْنَآ اُمَّةٌ يَّهْدُوْنَ بِالْحَقِّ وَبِهٖ يَعْدِلُوْنَ ﴿١٨٢﴾

୧୮୨. ଏବଂ ଆମ୍ଭେ ସୃଷ୍ଟି କରିଥିବା ପ୍ରାଣୀମାନଙ୍କ ମଧ୍ୟରେ ଏପରି ଏକ ଗୋଷ୍ଠୀ ଅଛନ୍ତି, ଯେଉଁମାନେ ସତ୍ୟ ମାଧ୍ୟମରେ (ଲୋକମାନଙ୍କୁ) ସତ୍‌ପଥ ପ୍ରଦର୍ଶନ କରାନ୍ତି ଏବଂ ତଦ୍ବାରା ନ୍ୟାୟ ବିଚାର କରନ୍ତି ।

---

୧. ଅର୍ଥାତ୍ ସର୍ବଦା ଅଲ୍ଲାହ୍‌ଙ୍କ ବିରୁଦ୍ଧରେ ଆପତ୍ତି କରୁଥାନ୍ତି ଯେ ଅଲ୍ଲାହ୍ ସେମାନଙ୍କୁ କିଛି ଦେଉନାହାନ୍ତି ।

ରୁ : ୨୩

୧୮୩. ଏବଂ ଯେଉଁମାନେ ଆମ ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରନ୍ତି ଆମେ ସେମାନଙ୍କୁ ଧୀରେ ଧୀରେ ଏପରି ରୀତିରେ (ଧ୍ୱଂସ ମୁଖକୁ) ଆକର୍ଷଣ କରିବୁ, ଯାହା ସେମାନେ ଜାଣି ନାହାନ୍ତି ।

وَالَّذِينَ كَذَّبُوا بِآيَاتِنَا سَنَسْتَدْرِجُهُم مِّنْ حَيْثُ لَا يَعْلَمُونَ ﴿١٨٣﴾

୧୮୪. ଏବଂ ଆମେ ସେମାନଙ୍କୁ (ବର୍ତ୍ତମାନ) ଅବସର ଦେଇଅଛୁ ; ନିଶ୍ଚୟ ଆମର କୌଶଳ ଅତ୍ୟନ୍ତ ଦୃଢ଼ ।

وَأُمْلِي لَهُمْ ۚ إِنَّ كَيْدِي مَتِينٌ ﴿١٨٤﴾

୧୮୫. ସେମାନେ କ'ଣ ଭାବି ନାହାନ୍ତି ଯେ ସେମାନଙ୍କର ସାଥୀ (ହଜରତ ମହମ୍ମଦ) ପାଗଳ ନୁହଁନ୍ତି ? ସେ ତ କେବଳ ପ୍ରକାଶ୍ୟ ସତର୍କକାରୀ ।

أَوَلَمْ يَتَفَكَّرُوا ۗ مَا بِصَاحِبِهِم مِّن جِنَّةٍ ۚ إِنْ هُوَ إِلَّا نَذِيرٌ مُّبِينٌ ﴿١٨٥﴾

୧୮୬. କ'ଣ ସେମାନେ ଆକାଶ ଓ ପୃଥିବୀର ପ୍ରଶାସନ ପ୍ରତି ଏବଂ ଅଲ୍ଲାହ ସୃଷ୍ଟି କରିଥିବା ପ୍ରତ୍ୟେକ ବିଷୟ ପ୍ରତି ଲକ୍ଷ୍ୟ କରୁ ନାହାନ୍ତି, ଏବଂ (ଏଥିପ୍ରତି ମଧ୍ୟ ଯେ) ସେମାନଙ୍କର ସମ୍ଭବତଃ ବିନାଶକାଳ ନିକଟବର୍ତ୍ତୀ ହୋଇଅଛି ? ତେବେ ଏହା ପରେ ସେମାନେ କେଉଁ କଥା ଉପରେ ବିଶ୍ୱାସ କରିବେ ?

أَوَلَمْ يَنظُرُوا فِي مَلَكُوتِ السَّمَاوَاتِ وَالْأَرْضِ وَمَا خَلَقَ اللَّهُ مِن شَيْءٍ وَأَنْ عَسَىٰ أَن يَكُونَ قَدِ اقْتَرَبَ أَجَلُهُمْ ۖ فَبِأَيِّ حَدِيثٍ بَعْدَهُ يُؤْمِنُونَ ﴿١٨٦﴾

୧୮୭. ଯାହାଙ୍କୁ ଅଲ୍ଲାହ ପଥଭ୍ରଷ୍ଟ ସାବ୍ୟସ୍ତ କରାନ୍ତି, ତାହାଙ୍କୁ ସତ୍‌ପଥ ପ୍ରଦର୍ଶନ କରିବା ପାଇଁ କେହି ନାହିଁ ; ଏବଂ ସେ ସେମାନଙ୍କୁ ସେମାନଙ୍କର ଅବାଧ୍ୟତାରେ [୧]ବିଭ୍ରାନ୍ତ ହୋଇ ବିଚରଣ କରିବାକୁ ଛାଡ଼ି ଦିଅନ୍ତି ।

مَن يُضْلِلِ اللَّهُ فَلَا هَادِيَ لَهُ ۚ وَيَذَرُهُمْ فِي طُغْيَانِهِمْ يَعْمَهُونَ ﴿١٨٧﴾

୧୮୮. (ହେ ରସୁଲ !) ତୁମର ବିରୋଧୀମାନେ ତୁମଙ୍କୁ କୟାମତ ଦିବସ କେବେ ଘଟିବ, ସେ ସଂକ୍ରାନ୍ତରେ ପ୍ରଶ୍ନ କରୁଅଛନ୍ତି ; ତୁମେ କୁହ, "ଏହା କେବଳ ଆମର ପାଳନକର୍ତ୍ତା ଜାଣନ୍ତି ଯାହା କେବଳ ସେ ନିର୍ଦ୍ଦିଷ୍ଟ ସମୟରେ ହିଁ ପ୍ରକାଶ କରିବେ ; ତାହା ଆକାଶ ଓ ପୃଥିବୀ ଉଭୟଙ୍କୁ ଭାରାକ୍ରାନ୍ତ କରିବ ; ତୁମମାନଙ୍କ ନିକଟରେ ତାହା ହଠାତ୍ ଉପସ୍ଥିତ ହେବ ;" ସେମାନେ କୟାମତ ଦିବସ ସଂକ୍ରାନ୍ତରେ ତୁମଙ୍କୁ ଏପରି ଭାବରେ ପ୍ରଶ୍ନ ପଚାରୁଛନ୍ତି, ଯେପରି ତୁମେ ମଧ୍ୟ ସେ ବିଷୟ ଜାଣିବାକୁ ଉତ୍କଣ୍ଠିତ ଅଛ ; ତୁମେ କୁହ ; "ଏହା କେବଳ ଅଲ୍ଲାହ ହିଁ ଜାଣନ୍ତି, କିନ୍ତୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ ।"

يَسْأَلُونَكَ عَنِ السَّاعَةِ أَيَّانَ مُرْسَاهَا ۖ قُلْ إِنَّمَا عِلْمُهَا عِندَ رَبِّي ۖ لَا يُجَلِّيهَا لِوَقْتِهَا إِلَّا هُوَ ۚ ثَقُلَتْ فِي السَّمَاوَاتِ وَالْأَرْضِ ۚ لَا تَأْتِيكُمْ إِلَّا بَغْتَةً ۗ يَسْأَلُونَكَ كَأَنَّكَ حَفِيٌّ عَنْهَا ۖ قُلْ إِنَّمَا عِلْمُهَا عِندَ اللَّهِ وَلَٰكِنَّ أَكْثَرَ النَّاسِ لَا يَعْلَمُونَ ﴿١٨٨﴾

[୧] ଅର୍ଥାତ୍ ଯେ ଅବାଧ୍ୟ ହୁଏ ତାକୁ ସତ୍‌ପଥ ମିଳେ ନାହିଁ ଅଥଚ ଯିଏ ଅନୁତାପ କରେ ତାକୁ ସତ୍‌ପଥ ମିଳେ ।

୧୮୯. (ପ୍ରନଶ୍ଚ) ତୁମେ କୁହ, ''ଆମେ ନିଜର ଲାଭ ବା କ୍ଷତିର ଅଧିକାରୀ ନୋହୁଁ ; ଅବଶ୍ୟ (ଆମକୁ ତାହା ହି ପ୍ରାପ୍ତ ହେବ) ଯାହା ଅଲ୍ଲାହ ଇଚ୍ଛା କରିବେ ; ଯଦି ଆମେ ଅଦୃଷ୍ଟ ବିଷୟରେ ଜାଣି ଥାଆନ୍ତୁ ତେବେ ପର୍ଯ୍ୟାପ୍ତ ପରିମାଣର କଲ୍ୟାଣ ଲାଭ କରି ଥାଆନ୍ତୁ ଏବଂ ଆମର କୌଣସି ପ୍ରକାର ଅନିଷ୍ଟ ହୁଅନ୍ତା ନାହିଁ ; ମାତ୍ର ଆମେ ବିଶ୍ୱାସକାରୀ ଲୋକମାନଙ୍କ ସକାଶେ କେବଳ ସତର୍କକାରୀ ଓ ସୁସମାଚାର-ଦାତା ।''

قُلْ لَّآ اَمْلِكُ لِنَفْسِىْ نَفْعًا وَّلَا ضَرًّا اِلَّا مَا شَآءَ اللّٰهُ ۗ وَلَوْ كُنْتُ اَعْلَمُ الْغَيْبَ لَا سْتَكْثَرْتُ مِنَ الْخَيْرِ ۖ وَمَا مَسَّنِىَ السُّوْٓءُ ۚ اِنْ اَنَا اِلَّا نَذِيْرٌ وَّبَشِيْرٌ لِّقَوْمٍ يُّؤْمِنُوْنَ ﴿١٨٩﴾

ରୁ : ୨୪

୧୯୦. ସେ ହିଁ ତୁମମାନଙ୍କୁ ଗୋଟିଏ ଜୀବରୁ ସୃଷ୍ଟି କରିଛନ୍ତି, ଏବଂ ତନ୍ମଧ୍ୟରୁ ତାହାର ଯୋଡ଼ା କରିଛନ୍ତି, ଯେପରି କି ସେ ତାହା (ଅର୍ଥାତ୍ ନାରୀ) ପ୍ରତି ଅନୁରକ୍ତ ହୋଇ ଶାନ୍ତି ଲାଭ କରିବ ; ଅତଏବ ଯେତେବେଳେ ସେ (ପୁରୁଷ) ତାହାକୁ ଆବୃତ କରେ, ସେତେବେଳେ ସେ (ନାରୀ) ଏକ ଲଘୁଭାର ବହନ କରେ, ଓ ତାହାକୁ ଘେନି ବିଚରଣ କରେ ; ତା'ପରେ ଯେତେବେଳେ ସେ (ନାରୀ) ଭାରାକ୍ରାନ୍ତ ହୁଏ, ସେତେବେଳେ ଉଭୟ (ପୁରୁଷ ଓ ନାରୀ) ନିଜର ପାଳନକର୍ତ୍ତା ଅଲ୍ଲାହଙ୍କ ନିକଟରେ ପ୍ରାର୍ଥନା କରନ୍ତି, ''ଯଦି ତୁମେ ଆମମାନଙ୍କୁ ଏକ ସୁସ୍ଥ ସବଳ ସନ୍ତାନ ପ୍ରଦାନ କରିବ, ତେବେ ଆମେ ନିଶ୍ଚୟ କୃତଜ୍ଞ ହେବୁ ।''

هُوَ الَّذِىْ خَلَقَكُمْ مِّنْ نَّفْسٍ وَّاحِدَةٍ وَّجَعَلَ مِنْهَا زَوْجَهَا لِيَسْكُنَ اِلَيْهَا ۚ فَلَمَّا تَغَشّٰهَا حَمَلَتْ حَمْلًا خَفِيْفًا فَمَرَّتْ بِهٖ ۚ فَلَمَّآ اَثْقَلَتْ دَّعَوَا اللّٰهَ رَبَّهُمَا لَئِنْ اٰتَيْتَنَا صَالِحًا لَّنَكُوْنَنَّ مِنَ الشّٰكِرِيْنَ ﴿١٩٠﴾

୧୯୧. କିନ୍ତୁ ଯେତେବେଳେ ସେ (ଅଲ୍ଲାହ) ସେମାନଙ୍କୁ ଏକ ସୁସ୍ଥ ସବଳ ସନ୍ତାନ ପ୍ରଦାନ କରନ୍ତି ସେତେବେଳେ ସେ ଦୁହେଁ ଅଲ୍ଲାହଙ୍କ ଦ୍ୱାରା ପ୍ରଦତ୍ତ ସନ୍ତାନ ସଂକ୍ରାନ୍ତରେ ଅନ୍ୟକୁ ତାହାଙ୍କ ସହିତ ସମକକ୍ଷ କରାନ୍ତି ; କିନ୍ତୁ ସେମାନେ ଯାହାକୁ ସମକକ୍ଷ କରନ୍ତି, ଅଲ୍ଲାହ ତାହା ଠାରୁ ବହୁ ଊର୍ଦ୍ଧ୍ୱରେ ।

فَلَمَّآ اٰتٰىهُمَا صَالِحًا جَعَلَا لَهٗ شُرَكَآءَ فِيْمَآ اٰتٰىهُمَا ۚ فَتَعٰلَى اللّٰهُ عَمَّا يُشْرِكُوْنَ ﴿١٩١﴾

୧୯୨. କ'ଣ ସେମାନେ (ଅଲ୍ଲାହଙ୍କ ସହିତ ସେମାନଙ୍କୁ) ସମକକ୍ଷ କରୁଛନ୍ତି, ଯେଉଁମାନେ କିଛି ସୃଷ୍ଟି କରନ୍ତି ନାହିଁ, ବରଂ ନିଜେ ସୃଷ୍ଟ ହୋଇଛନ୍ତି ।

اَيُشْرِكُوْنَ مَا لَا يَخْلُقُ شَيْـًٔا وَّهُمْ يُخْلَقُوْنَ ﴿١٩٢﴾

୧୯୩. ଏବଂ ସେମାନେ ସେ (ମୁସରିକ)ମାନଙ୍କୁ ସାହାଯ୍ୟ କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ ଏବଂ ନିଜକୁ ମଧ୍ୟ ସାହାଯ୍ୟ କରିପାରନ୍ତି ନାହିଁ ।

وَلَا يَسْتَطِيْعُوْنَ لَهُمْ نَصْرًا وَّلَآ اَنْفُسَهُمْ يَنْصُرُوْنَ ﴿١٩٣﴾

୧୯୪. ଏବଂ ଯଦି ତୁମେ ସେ (ତଥାକଥିତ) ଉପାସ୍ୟମାନଙ୍କୁ ସତ୍‌ପଥ ଆଡ଼କୁ ଡାକ ତେବେ ସେମାନେ ତୁମର ଅନୁସରଣ କରି ପାରିବେ ନାହିଁ, ତୁମେ ସେମାନଙ୍କୁ ଡାକ ବା ନୀରବ ରୁହ, ଏହା ସେମାନଙ୍କ ପାଇଁ ଏକା କଥା ।

وَاِنْ تَدْعُوْهُمْ اِلَى الْهُدٰى لَا يَتَّبِعُوْكُمْ ۗ سَوَآءٌ عَلَيْكُمْ اَدَعَوْتُمُوْهُمْ اَمْ اَنْتُمْ صَامِتُوْنَ ﴿١٩٤﴾

إِنَّ الَّذِينَ تَدْعُونَ مِنْ دُونِ اللَّهِ عِبَادٌ أَمْثَالُكُمْ فَادْعُوهُمْ فَلْيَسْتَجِيبُوا لَكُمْ إِنْ كُنْتُمْ صَادِقِينَ ﴿١٩٤﴾

୧୯୪. ଅଲ୍ଲାହଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କୁ ଡାକୁଅଛ, ସେମାନେ ତୁମମାନଙ୍କ ଭଳି ଭକ୍ତ ; ସୁତରାଂ ତୁମେମାନେ ସେମାନଙ୍କୁ ଡାକୁଥାଅ ; ଏବଂ ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ସେମାନେ ତୁମମାନଙ୍କ ଡାକର ଜବାବ ଦିଅନ୍ତୁ ।

أَلَهُمْ أَرْجُلٌ يَمْشُونَ بِهَا أَمْ لَهُمْ أَيْدٍ يَبْطِشُونَ بِهَا أَمْ لَهُمْ أَعْيُنٌ يُبْصِرُونَ بِهَا أَمْ لَهُمْ آذَانٌ يَسْمَعُونَ بِهَا قُلِ ادْعُوا شُرَكَاءَكُمْ ثُمَّ كِيدُونِ فَلَا تُنْظِرُونِ ﴿١٩٥﴾

୧୯୬. କ'ଣ ସେମାନଙ୍କର ପାଦ ଅଛି ଯଦ୍ଦ୍ୱାରା ସେମାନେ ଚାଲନ୍ତି, ବା କ'ଣ ସେମାନଙ୍କର ହାତ ଅଛି ଯଦ୍ଦ୍ୱାରା ସେମାନେ ଧରନ୍ତି, ବା କ'ଣ ସେମାନଙ୍କର ଚକ୍ଷୁ ଅଛି ଯଦ୍ଦ୍ୱାରା ସେମାନେ ଦେଖନ୍ତି, କ'ଣ ସେମାନଙ୍କର କାନ ଅଛି ଯଦ୍ଦ୍ୱାରା ସେମାନେ ଶୁଣନ୍ତି ; ତୁମେ ସେମାନଙ୍କୁ କୁହ, "ତୁମମାନଙ୍କର ସମସ୍ତ ସମକକ୍ଷ ଉପାସ୍ୟଙ୍କୁ ଡାକି, ତା'ପରେ ସମସ୍ତେ ମିଶି ଆମ ବିରୁଦ୍ଧରେ ଯୋଜନା କର, ଏବଂ ଆମକୁ କୌଣସି ଅବସର ଦିଅ ନାହିଁ ।"

إِنَّ وَلِيِّيَ اللَّهُ الَّذِي نَزَّلَ الْكِتَابَ وَهُوَ يَتَوَلَّى الصَّالِحِينَ ﴿١٩٦﴾

୧୯୭. ବାସ୍ତବିକ ଅଲ୍ଲାହ ହିଁ ଆମର ବନ୍ଧୁ, ଯେ ଏହି ପରିପୂର୍ଣ୍ଣ ଗ୍ରନ୍ଥ ଅବତୀର୍ଣ୍ଣ କରିଛନ୍ତି, ଏବଂ ସେ ଧର୍ମନିଷ୍ଠମାନଙ୍କୁ ସାହାଯ୍ୟ କରନ୍ତି ।

وَالَّذِينَ تَدْعُونَ مِنْ دُونِهِ لَا يَسْتَطِيعُونَ نَصْرَكُمْ وَلَا أَنْفُسَهُمْ يَنْصُرُونَ ﴿١٩٧﴾

୧୯୮. ଏବଂ ତାହାଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କୁ ଡାକୁଅଛ, ସେମାନେ ତୁମମାନଙ୍କୁ ସାହାଯ୍ୟ କରିବାକୁ ଅସମର୍ଥ, ଏବଂ ସେମାନେ ନିଜକୁ ମଧ୍ୟ ସାହାଯ୍ୟ କରିପାରନ୍ତି ନାହିଁ ।

وَإِنْ تَدْعُوهُمْ إِلَى الْهُدَىٰ لَا يَسْمَعُوا وَتَرَاهُمْ يَنْظُرُونَ إِلَيْكَ وَهُمْ لَا يُبْصِرُونَ ﴿١٩٨﴾

୧୯୯. ଯଦି ତୁମେ ସେମାନଙ୍କୁ ସତ୍‌ପଥ ଆଡ଼କୁ ଡାକ ତେବେ ସେମାନେ ଶୁଣି ପାରନ୍ତି ନାହିଁ ; ଏବଂ ସେମାନେ ତୁମ ପ୍ରତି ଲକ୍ଷ୍ୟ କରୁଥିବାର ତୁମେ ଦେଖୁଅଛ, କିନ୍ତୁ ପ୍ରକୃତରେ ସେମାନେ (ତୁମକୁ) ଦେଖି ପାରୁ ନାହାନ୍ତି ।

خُذِ الْعَفْوَ وَأْمُرْ بِالْعُرْفِ وَأَعْرِضْ عَنِ الْجَاهِلِينَ ﴿١٩٩﴾

୨୦୦ (ହେ ନବି !) ସର୍ବଦା କ୍ଷମା ରୀତି ଅବଲମ୍ବନ କର, ଏବଂ ସ୍ୱଭାବୋଚିତ କାର୍ଯ୍ୟ ସକାଶେ ଆଦେଶ ଦିଅ ଏବଂ ନିର୍ବୋଧମାନଙ୍କ ଠାରୁ ଦୂରେଇ ରୁହ ।

وَإِمَّا يَنْزَغَنَّكَ مِنَ الشَّيْطَانِ نَزْغٌ فَاسْتَعِذْ بِاللَّهِ إِنَّهُ سَمِيعٌ عَلِيمٌ ﴿٢٠٠﴾

୨୦୧. ଏବଂ ଯଦି ସଇତାନ୍ ଠାରୁ ତୁମକୁ କୌଣସି ଦୁଃଖ ପ୍ରାପ୍ତ ହୁଏ, ତେବେ ତୁମେ ଅଲ୍ଲାହଙ୍କର ଶରଣ ଭିକ୍ଷା କର, ସେ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

إِنَّ الَّذِينَ اتَّقَوْا إِذَا مَسَّهُمْ طَائِفٌ مِنَ الشَّيْطَانِ تَذَكَّرُوا فَإِذَا هُمْ مُبْصِرُونَ ﴿٢٠١﴾

୨୦୨. ବାସ୍ତବରେ ଯେଉଁମାନେ ଧର୍ମଭୀରୁ ଯେତେବେଳେ ସଇତାନ ତରଫରୁ କୌଣସି (ମନ୍ଦ) ଭାବନା ସେମାନଙ୍କୁ ଆକ୍ରାନ୍ତ କରେ (ସେତେବେଳେ) ସେମାନେ ସତର୍କ ହୋଇ ଯାଆନ୍ତି, ଏବଂ ସେମାନଙ୍କର ଆଖି ଖୋଲି ଯାଏ ।

୨୦୩. ଏବଂ ସେ (ଅବିଶ୍ୱାସକାରୀ)ମାନଙ୍କର ଭାଇ (ବନ୍ଧୁ)ମାନେ ସେମାନଙ୍କୁ ଅସତ୍ ପଥ ଆଡ଼କୁ ଆକର୍ଷଣ କରନ୍ତି ଏବଂ ତହିଁରେ କୌଣସି ପ୍ରକାର କୋହଳ କରନ୍ତି ନାହିଁ ।

وَاِخْوَانُهُمْ يَمُدُّوْنَهُمْ فِي الْغَيِّ ثُمَّ لَا يُقْصِرُوْنَ ۝

୨୦୪. ଏବଂ ଯେତେବେଳେ ତୁମେ ସେମାନଙ୍କ ନିକଟକୁ କୌଣସି ସ୍ପଷ୍ଟ ନିଦର୍ଶନ ଆଣୁ ନାହଁ, ସେତେବେଳେ[୧] ସେମାନେ କହନ୍ତି, "କାହିଁକି ତୁମେ ଏହାକୁ ଟାଣି ଆଣୁ ନାହଁ ?" ତୁମେ କୁହ, "ଆମର ପାଳନକର୍ତ୍ତାଙ୍କ ନିକଟରୁ ଆମପ୍ରତି ଯେଉଁ ଓହି ଅବତୀର୍ଣ୍ଣ ହେଉଅଛି, ଆମେ କେବଳ ତାହାର ହିଁ ଅନୁସରଣ କରୁଅଛୁ, ଏ (ଓହି) ତୁମର ପାଳନକର୍ତ୍ତାଙ୍କଠାରୁ ସୁସ୍ପଷ୍ଟ ଜ୍ୟୋତି ଅଟେ, ଏବଂ (ଏଥିରେ) ବିଶ୍ୱାସକାରୀମାନଙ୍କ ପାଇଁ ସତ୍‌ପଥ ଏବଂ କରୁଣା ରହିଅଛି ।

وَاِذَا لَمْ تَأْتِهِمْ بِاٰيَةٍ قَالُوْا لَوْلَا اجْتَبَيْتَهَا ۗ قُلْ اِنَّمَآ اَتَّبِعُ مَا يُوْحٰٓى اِلَيَّ مِنْ رَّبِّيْ ۚ هٰذَا بَصَآئِرُ مِنْ رَّبِّكُمْ وَهُدًى وَّرَحْمَةٌ لِّقَوْمٍ يُّؤْمِنُوْنَ ۝

୨୦୫. ଏବଂ (ହେ ଲୋକମାନେ !) ଯେତେବେଳେ କୋରାନ ପାଠ କରାଯାଏ (ସେତେବେଳେ ) ତାହାକୁ ଶ୍ରବଣ କର ଏବଂ ନୀରବ ରୁହ, ଯଦ୍ଦ୍ୱାରା କି ତୁମମାନଙ୍କ ପ୍ରତି କରୁଣା କରାହେବ ।

وَاِذَا قُرِئَ الْقُرْاٰنُ فَاسْتَمِعُوْا لَهٗ وَاَنْصِتُوْا لَعَلَّكُمْ تُرْحَمُوْنَ ۝

୨୦୬. ଏବଂ (ହେ ନବି !) ତୁମେ ତୁମର ପାଳନକର୍ତ୍ତାଙ୍କୁ ନିଜ ଅନ୍ତରରେ ବିନୀତ ଭାବେ ଏବଂ ଭୟ ସହିତ ଓ ନିମ୍ନ ସ୍ୱରରେ ସକାଳେ ଓ ସନ୍ଧ୍ୟା ବେଳେ ମଧ୍ୟ ସ୍ମରଣ କର ; ଏବଂ ଅମନୋଯୋଗୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

وَاذْكُرْ رَّبَّكَ فِيْ نَفْسِكَ تَضَرُّعًا وَّخِيْفَةً وَّدُوْنَ الْجَهْرِ مِنَ الْقَوْلِ بِالْغُدُوِّ وَالْاٰصَالِ وَلَا تَكُنْ مِّنَ الْغٰفِلِيْنَ ۝

୨୦୭. ଯେଉଁମାନେ ତୁମ ପାଳନକର୍ତ୍ତାଙ୍କର ନିକଟବର୍ତ୍ତୀ ବାସ୍ତବରେ ସେମାନେ ଉପାସନା କରୁଥିବା ଯୋଗୁଁ ନିଜକୁ ବଡ଼ ମନେ କରନ୍ତି ନାହିଁ, ଏବଂ ସେମାନେ ତାଙ୍କର ଗୁଣଗାନ କରନ୍ତି ଓ ତାହାଙ୍କୁ ସିଜଦା କରନ୍ତି ।

اِنَّ الَّذِيْنَ عِنْدَ رَبِّكَ لَا يَسْتَكْبِرُوْنَ عَنْ عِبَادَتِهٖ وَيُسَبِّحُوْنَهٗ وَلَهٗ يَسْجُدُوْنَ ۩ ۝

---

୧. ବସ୍ତୁତଃ ମଝିରେ ମଝିରେ ନିଦର୍ଶନ ପ୍ରଦର୍ଶିତ ହେଉଥାଏ । ଯେତେବେଳେ ବିନା ନିଦର୍ଶନରେ କିଛିଦିନ ବିତିଯାଏ ସେତେବେଳେ ବିରୋଧୀମାନେ ଚିତ୍କାର କରିବାକୁ ଲାଗନ୍ତି ।

سُوْرَةُ الْاَنْفَالِ مَدَنِيَّةٌ (٨)

# ଅଲ-ଅନ୍‌ଫାଲ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ. ଏଥିରେ ବିସ୍ମିଲ୍ଲାହ ସମେତ ୭୬ଟି ଆୟତ ଓ ୧୦ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଛି) ।

يَسْـَٔلُوْنَكَ عَنِ الْاَنْفَالِ ۭ قُلِ الْاَنْفَالُ لِلّٰهِ وَالرَّسُوْلِ ۚ فَاتَّقُوا اللّٰهَ وَاَصْلِحُوْا ذَاتَ بَيْنِكُمْ ۠ وَاَطِيْعُوا اللّٰهَ وَرَسُوْلَهٗٓ اِنْ كُنْتُمْ مُّؤْمِنِيْنَ ②

୨. (ହେ ରସୁଲ !) ଲୋକମାନେ ତୁମକୁ ଯୁଦ୍ଧ-ଲବ୍ଧ ସମ୍ପଦ ସଂକ୍ରାନ୍ତରେ ପ୍ରଶ୍ନ କରୁଛନ୍ତି. (ତୁମେ) କୁହ ''ଯୁଦ୍ଧ ଲବ୍ଧ ସମ୍ପଦ ଅଲ୍ଲାହଙ୍କର ଏବଂ ତାଙ୍କ ରସୁଲଙ୍କର ; ସୁତରାଂ ଅଲ୍ଲାହଙ୍କୁ ଭୟକର, ଏବଂ ପରସ୍ପର ମଧ୍ୟରେ ଶାନ୍ତି ସ୍ଥାପନ କରିବାକୁ ଚେଷ୍ଟାକର, ଏବଂ ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ, ତେବେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ଆଜ୍ଞାବହ ହୁଅ ।

اِنَّمَا الْمُؤْمِنُوْنَ الَّذِيْنَ اِذَا ذُكِرَ اللّٰهُ وَجِلَتْ قُلُوْبُهُمْ وَاِذَا تُلِيَتْ عَلَيْهِمْ اٰيٰتُهٗ زَادَتْهُمْ اِيْمَانًا وَّعَلٰي رَبِّهِمْ يَتَوَكَّلُوْنَ ③

୩. କେବଳ ସେହିମାନେ ହିଁ (ପ୍ରକୃତ) ବିଶ୍ୱାସକାରୀ ଯେଉଁମାନଙ୍କର ହୃଦୟ ଅଲ୍ଲାହଙ୍କ ବିଷୟ ସେମାନଙ୍କ ନିକଟରେ ବର୍ଣ୍ଣନା କରାଯିବା ବେଳେ ଭୟରେ ପ୍ରକମ୍ପିତ ହୁଏ, ଏବଂ ଯେବେ ସେମାନଙ୍କ ନିକଟରେ ତାହାଙ୍କର ବାଣୀ ପାଠ କରାଯାଏ ତେବେ ସେମାନଙ୍କ (ଧର୍ମ) ବିଶ୍ୱାସ ବୃଦ୍ଧି ପାଏ ; ଏବଂ (ସେହିମାନେ ହିଁ ବିଶ୍ୱାସକାରୀ) ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ଉପରେ ନିର୍ଭର କରନ୍ତି ।

الَّذِيْنَ يُقِيْمُوْنَ الصَّلٰوةَ وَمِمَّا رَزَقْنٰهُمْ يُنْفِقُوْنَ ④

୪. (ଏହିପରି ପ୍ରକୃତ ବିଶ୍ୱାସକାରୀ ସେହିମାନେ) ଯେଉଁମାନେ (ସୁଚାରୁରୂପେ) ନମାଜ ପାଠ କରନ୍ତି ଏବଂ ସେମାନଙ୍କୁ ଆମେ ଯାହା ଦେଇଅଛୁ, ସେଥିରୁ ଖର୍ଚ୍ଚ କରନ୍ତି ।

اُولٰۗىِٕكَ هُمُ الْمُؤْمِنُوْنَ حَقًّا ۭ لَهُمْ دَرَجٰتٌ عِنْدَ رَبِّهِمْ وَمَغْفِرَةٌ وَّرِزْقٌ كَرِيْمٌ ⑤

୫. ଏହି (ଉପରୋକ୍ତ ଗୁଣ ସମ୍ପନ୍ନ ବ୍ୟକ୍ତି)ମାନେ ହିଁ ପ୍ରକୃତ ବିଶ୍ୱାସକାରୀ ; ସେମାନଙ୍କ ପାଇଁ ସେମାନଙ୍କର ପାଳନକର୍ତ୍ତାଙ୍କ ନିକଟରେ ପଦମର୍ଯ୍ୟାଦା, କ୍ଷମା ଓ ସମ୍ମାନଜନକ ଜୀବିକା ରହିଅଛି ।

كَمَآ اَخْرَجَكَ رَبُّكَ مِنْۢ بَيْتِكَ بِالْحَقِّ ۪ وَاِنَّ فَرِيْقًا مِّنَ الْمُؤْمِنِيْنَ لَكٰرِهُوْنَ ۝٦

୬. ଏହା (ଅର୍ଥାତ୍ ଏହି ପୁରସ୍କାର ସେମାନଙ୍କୁ) ଏଥିଯୋଗୁଁ (ପ୍ରାପ୍ତ ହେବ) ଯେ ତୁମର ପାଳନକର୍ତ୍ତା ତୁମଙ୍କୁ ଏକ ମହତ୍ ଉଦ୍ଦେଶ୍ୟରେ ଗୃହରୁ ବାହାର କରିଥିଲେ, ଏବଂ ବିଶ୍ୱାସକାରୀମାନଙ୍କ ମଧ୍ୟରୁ ଗୋଟିଏ ଦଳ ଏହାକୁ ଅପସନ୍ଦ କରୁଥିଲେ ।

يُجَادِلُوْنَكَ فِي الْحَقِّ بَعْدَمَا تَبَيَّنَ كَاَنَّمَا يُسَاقُوْنَ اِلَى الْمَوْتِ وَهُمْ يَنْظُرُوْنَ ۝٧

୭. ସତ୍ୟ ପ୍ରକାଶିତ ହେବା ପରେ ସେମାନେ[୨] ତୁମ ସହିତ ଏପରି ତର୍କ କରୁଛନ୍ତି ସତେ ଯେପରି (ଇସ୍‌ଲାମର ଆମନ୍ତ୍ରଣ ଯୋଗୁଁ) ସେମାନଙ୍କୁ ମୃତ୍ୟୁମୁଖକୁ ଠେଲି ଦିଆଯାଉ ଅଛି ଓ ସେମାନେ (ସ୍ୱଚକ୍ଷୁରେ) ତାହା ଦେଖୁଛନ୍ତି ।

وَاِذْ يَعِدُكُمُ اللّٰهُ اِحْدَى الطَّآئِفَتَيْنِ اَنَّهَا لَكُمْ وَتَوَدُّوْنَ اَنَّ غَيْرَ ذَاتِ الشَّوْكَةِ تَكُوْنُ لَكُمْ وَيُرِيْدُ اللّٰهُ اَنْ يُّحِقَّ الْحَقَّ بِكَلِمٰتِهٖ وَيَقْطَعَ دَابِرَ الْكٰفِرِيْنَ ۝٨

୮. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଅଲ୍ଲାହ୍ ଦୁଇ ଦଳ ମଧ୍ୟରୁ ଗୋଟିଏ ଦଳ ସଂକ୍ରାନ୍ତରେ ତୁମମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ନିଶ୍ଚୟ ଉକ୍ତ ଦଳ ତୁମମାନଙ୍କର କରଗତ ହେବ, ଏବଂ ତୁମେମାନେ ଅସ୍ତ୍ରଶସ୍ତ୍ରହୀନମାନଙ୍କୁ ନିଜର (କରଗତ) କରିବାକୁ ଇଚ୍ଛା କରୁଥିଲ, ଏବଂ ଅଲ୍ଲାହ୍ ନିଜର ଆଦେଶ ବଳରେ ସତ୍ୟତା ପ୍ରତିପାଦନ କରିବାକୁ ତଥା ଅବିଶ୍ୱାସୀମାନଙ୍କର ମୂଳୋତ୍ପାଟନ କରିବାକୁ ଇଚ୍ଛା କରିଥିଲେ ;

لِيُحِقَّ الْحَقَّ وَيُبْطِلَ الْبَاطِلَ وَلَوْ كَرِهَ الْمُجْرِمُوْنَ ۝٩

୯. ତାହା ହେଲେ ସେ ଏହିରୂପେ ସତ୍ୟକୁ ପ୍ରତିଷ୍ଠିତ କରିବେ ଓ ଅସତ୍ୟକୁ ବିନାଶ କରିବେ ଯଦ୍ୟପି ଅପରାଧୀମାନେ ଏହାକୁ ଅପସନ୍ଦ କରିପାରନ୍ତି ।

اِذْ تَسْتَغِيْثُوْنَ رَبَّكُمْ فَاسْتَجَابَ لَكُمْ اَنِّيْ مُمِدُّكُمْ بِاَلْفٍ مِّنَ الْمَلٰٓئِكَةِ مُرْدِفِيْنَ ۝١٠

୧୦. (ଏବଂ ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ତୁମେମାନେ ନିଜ ପାଳନକର୍ତ୍ତାଙ୍କର ସାହାଯ୍ୟ ଭିକ୍ଷା କରିଥିଲ, ସେତେବେଳେ ସେ ତୁମମାନଙ୍କର ପ୍ରାର୍ଥନାକୁ ଗ୍ରହଣ କରି କହିଥିଲେ, "ଆମେ ତୁମମାନଙ୍କୁ ଏକ ସହସ୍ର ଦେବଦୂତଙ୍କ ଦ୍ୱାରା ସାହାଯ୍ୟ କରିବୁ, ଯେଉଁମାନଙ୍କ ସୈନ୍ୟ ଦଳର ଉତ୍ତରୋତ୍ତର ବୃଦ୍ଧି ହେଉଥିବ ।"

---

୧. ମୁସଲମାନମାନେ ମଦିନା ବାହାରକୁ ଯାତ୍ରା କଲାବେଳେ ଜାଣି ନ ଥିଲେ ଯେ ସେମାନେ କେଉଁଠାକୁ ଓ କେଉଁ ଉଦ୍ଦେଶ୍ୟରେ ଯାଉଛନ୍ତି । ତେଣୁ ଯେତେବେଳେ ସେମାନେ ଯୁଦ୍ଧ ବିଷୟ ଜାଣିବାକୁ ପାଇଲେ, ସେମାନେ ନିଜ ପାଇଁ ଆଦୌ ଚିନ୍ତିତ ହୋଇ ନ ଥିଲେ ବରଂ ହଜରତ ମହମ୍ମଦଙ୍କ ପାଇଁ ଚିନ୍ତିତ ହୋଇପଡ଼ିଲେ କାରଣ ସେମାନେ ଯୁଦ୍ଧ ଉଦ୍ଦେଶ୍ୟରେ ସଜ୍ଜିତ ହୋଇ ଆସି ନ ଥିଲେ ଓ ଆଶଙ୍କିତ ଥିଲେ ଯେ କାଳେ ହଜରତ ମହମ୍ମଦଙ୍କର କିଛି ଅନିଷ୍ଟ ହୋଇଯିବ । ସେମାନେ ଯୁଦ୍ଧ କରିବାକୁ ଭୟଭୀତ ନ ଥିଲେ ମାତ୍ର ରକ୍ତପାତକୁ ଘୃଣା କରୁଥିଲେ । ଯୁଦ୍ଧ ଦ୍ୱାରା ସମ୍ପତ୍ତି ଲୁଣ୍ଠନ କରିବା ସେମାନଙ୍କର ଆଦୌ ଲକ୍ଷ୍ୟ ନ ଥିଲା । ଖ୍ରୀଷ୍ଟିୟାନମାନଙ୍କ ଦ୍ୱାରା ସେମାନଙ୍କ ବିରୁଦ୍ଧରେ ଯେଉଁ ସବୁ ଦୋଷାରୋପ କରାଯାଇଛି ଏହି ଆୟତ ମାଧ୍ୟମରେ ସେଗୁଡ଼ିକୁ ଖଣ୍ଡନ କରାଯାଇଛି ।

୨. ଅର୍ଥାତ୍ ଅବିଶ୍ୱାସକାରୀମାନେ । କାରଣ ବିଶ୍ୱାସକାରୀମାନେ ଯୁଦ୍ଧକୁ ଅପସନ୍ଦ କରିବା ସତ୍ତ୍ୱେ ଅଲ୍ଲାହ୍‌ଙ୍କର ଆଜ୍ଞାପାଳନ କରିବାକୁ ସର୍ବଦା ପ୍ରସ୍ତୁତ ଥିଲେ । ଏହା ଉପରବର୍ଣ୍ଣିତ ଆୟତ ଓ ଅନ୍ୟାନ୍ୟ ଆୟତରୁ ପ୍ରମାଣିତ । କେତେକ ଟୀକାକାରଙ୍କ ମତରେ ହଜରତ ମହମ୍ମଦଙ୍କର ସହଚରମାନେ ଯୁଦ୍ଧ ନ କରିବାକୁ ଯୁକ୍ତି ବାଢୁଥିଲେ । ମାତ୍ର ପବିତ୍ର କୋରାନ ଓ ଇତିହାସ ଏହାକୁ ଭ୍ରମାତ୍ମକ ପ୍ରମାଣ କରୁଛି । ଅନ୍ୟପକ୍ଷରେ ସେମାନେ ତାଙ୍କ ସହିତ ବଦର ଯୁଦ୍ଧକ୍ଷେତ୍ରକୁ ଯିବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ ।

وَمَا جَعَلَهُ اللّٰهُ اِلَّا بُشْرٰى وَلِتَطْمَئِنَّ بِهٖ قُلُوْبُكُمْ ۚ وَمَا النَّصْرُ اِلَّا مِنْ عِنْدِ اللّٰهِ ؕ اِنَّ اللّٰهَ عَزِيْزٌ حَكِيْمٌ ⑪

୧୧. ଏବଂ ଅଲ୍ଲାହ ଏହି ଖବରକୁ କେବଳ ଏକ ସୁସମାଚାର[୧] ରୂପେ ପ୍ରେରଣ କରିଥିଲେ ; ଯଦ୍ଦ୍ୱାରା ତୁମମାନଙ୍କର ହୃଦୟ ଶାନ୍ତିଲାଭ କରିବ, ଏବଂ ସାହାଯ୍ୟ କେବଳ ଅଲ୍ଲାହଙ୍କ ନିକଟରୁ ହିଁ ଆସେ (ଦେବଦୂତମାନେ କେବଳ ଏକ ଲକ୍ଷଣ ମାତ୍ର);ନିଶ୍ଚୟ ଅଲ୍ଲାହ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

**ରୁ : ୨**

اِذْ يُغَشِّيْكُمُ النُّعَاسَ اَمَنَةً مِّنْهُ وَيُنَزِّلُ عَلَيْكُمْ مِّنَ السَّمَآءِ مَآءً لِّيُطَهِّرَكُمْ بِهٖ وَيُذْهِبَ عَنْكُمْ رِجْزَ الشَّيْطٰنِ وَلِيَرْبِطَ عَلٰى قُلُوْبِكُمْ وَيُثَبِّتَ بِهِ الْاَقْدَامَ ؕ ⑫

୧୨. (ଏହି ନିଦର୍ଶନ ସେତେବେଳେ ପ୍ରକାଶିତ ହେଲା) ଯେତେବେଳେ ଅଲ୍ଲାହ ଶାନ୍ତି ଓ ସାନ୍ତ୍ୱନା ରୂପକ ସୁସମାଚାର ଦେବା ପାଇଁ ତୁମମାନଙ୍କୁ ତନ୍ଦ୍ରାଚ୍ଛନ୍ନ କରିଥିଲେ ଓ ତୁମମାନଙ୍କ ଉପରେ ମେଘରୁ[୨] ଜଳବୃଷ୍ଟି କରିଥିଲେ, ଯଦ୍ଦ୍ୱାରା ସେ ତୁମମାନଙ୍କୁ ପବିତ୍ର କରିବେ ଏବଂ ତୁମମାନଙ୍କ ଠାରୁ ସଇତାନର ଅପବିତ୍ରତାକୁ (ଅର୍ଥାତ୍ ଭୟକୁ) ଦୂର କରିବେ ଏବଂ ସେ ତୁମମାନଙ୍କର ହୃଦୟକୁ ବଳିଷ୍ଠ କରିବେ ; ଏବଂ ସେହି (ବର୍ଷା) ମାଧ୍ୟମରେ ତୁମମାନଙ୍କର ପାଦକୁ ସୁଦୃଢ଼ କରିବେ ।

اِذْ يُوْحِيْ رَبُّكَ اِلَى الْمَلٰٓئِكَةِ اَنِّيْ مَعَكُمْ فَثَبِّتُوا الَّذِيْنَ اٰمَنُوْا ؕ سَاُلْقِيْ فِيْ قُلُوْبِ الَّذِيْنَ كَفَرُوا الرُّعْبَ فَاضْرِبُوْا فَوْقَ الْاَعْنَاقِ وَاضْرِبُوْا مِنْهُمْ كُلَّ بَنَانٍ ؕ ⑬

୧୩. ଯେତେବେଳେ ତୁମର ପାଳନକର୍ତ୍ତା ଦେବଦୂତମାନଙ୍କୁ ଓହି କରିଥିଲେ ଯେ ଆମେ ତୁମମାନଙ୍କ ସଙ୍ଗରେ ଅଛୁ ; ଅତଏବ, ବିଶ୍ୱାସକାରୀମାନଙ୍କ ପାଦ ସୁଦୃଢ଼ କର; ଆମେ ଅବିଶ୍ୱାସକାରୀମାନଙ୍କ ହୃଦୟରେ ଭୟ ସଞ୍ଚାର କରିବୁ ; ସୁତରାଂ (ହେ ବିଶ୍ୱାସକାରୀମାନେ !) ତୁମେମାନେ, ସେମାନଙ୍କ ବେକ ଉପରେ ଆଘାତ କର, ଏବଂ ସେମାନଙ୍କର ପ୍ରତ୍ୟେକ ଗଣ୍ଠିକୁ ପ୍ରହାର କର ।

ذٰلِكَ بِاَنَّهُمْ شَآقُّوا اللّٰهَ وَرَسُوْلَهٗ ۚ وَمَنْ يُّشَاقِقِ اللّٰهَ وَرَسُوْلَهٗ فَاِنَّ اللّٰهَ شَدِيْدُ الْعِقَابِ ⑭

୧୪. ସେମାନେ ଅଲ୍ଲାହ ଏବଂ ତାଙ୍କର ରସୁଲଙ୍କର ବିରୁଦ୍ଧାଚରଣ କରିଥିବାରୁ ଏହିପରି ହେବ ; ଏବଂ ଯେ କେହି ଅଲ୍ଲାହ ଏବଂ ତାହାଙ୍କ ରସୁଲଙ୍କର ବିରୁଦ୍ଧାଚରଣ କରେ ତେବେ (ତାହାର ମନେରଖିବା ଉଚିତ୍ ଯେ) ଅଲ୍ଲାହ କଠୋର ଶାସ୍ତିଦାତା ।

---

[୧] ସେହି ଅବିଶ୍ୱାସକାରୀଙ୍କ ସହିତ ଦେବଦୂତମାନେ ପ୍ରକୃତରେ ଯୁଦ୍ଧ କରିଥିବା ଏହାର ତାତ୍ପର୍ଯ୍ୟ ନୁହେଁ । ଯଦି କଶଫ୍ ବା ସ୍ୱପ୍ନରେ ଦେବଦୂତମାନେ ସାହାଯ୍ୟ କରୁଥିବା ଦେଖାଯାଏ ତେବେ ବୁଝିବାକୁ ହେବ ଯେ ଅଲ୍ଲାହ ନିଶ୍ଚୟ ସାହାଯ୍ୟ କରିବେ । ଏହିରୂପେ ବିଶ୍ୱାସକାରୀମାନଙ୍କୁ ସୁସମାଚାର ଦିଆଯାଏ ।

[୨] ଏହା ବଦର ଯୁଦ୍ଧକ୍ଷେତ୍ରର ଘଟଣା । ଯୁଦ୍ଧବେଳେ ବିଶ୍ୱାସକାରୀ ଓ ଅବିଶ୍ୱାସକାରୀମାନଙ୍କ ମଧ୍ୟରେ ଏକ ବାଲୁକାପୂର୍ଣ୍ଣ ସ୍ଥାନ ଥିଲା । ଅବିଶ୍ୱାସକାରୀମାନଙ୍କ ପଛକୁ ଯେଉଁ ସ୍ଥାନ ଥିଲା ସେଠାକାର ମାଟି ଚିକ୍କିଟା ଥିଲା । ବିଶ୍ୱାସକାରୀଙ୍କ ସାମ୍ନାରେ ଯେଉଁ ବାଲୁକାପୂର୍ଣ୍ଣ ସ୍ଥାନ ଥିଲା, ତାହା ବର୍ଷା ଯୋଗୁଁ ଟାଣ ହୋଇଗଲା ଓ ପଛରେ ଥିବା ଚିକ୍କିଟା ମାଟି ଖସଡ଼ା ହୋଇଗଲା । ଫଳରେ ଯେତେବେଳେ ମୁସଲମାନମାନେ ସେମାନଙ୍କୁ ଆକ୍ରମଣ କଲେ ମୁସଲମାନମାନଙ୍କର ଗୋଡ଼ ତ ଖସିଲା ନାହିଁ ବରଂ ଶତ୍ରୁପକ୍ଷ ପଶ୍ଚାତ ଭାଗରୁ ଖସଡ଼ା ହେତୁ କୌଣସି ସାହାଯ୍ୟ ପାଇ ପାରିଲେ ନାହିଁ ।

ذٰلِكُمْ فَذُوقُوهُ وَأَنَّ لِلْكٰفِرِينَ عَذَابَ النَّارِ ﴿١٥﴾

୧୫. (ହେ ଲୋକମାନେ ! ଅଲ୍ଲାହଙ୍କର) ଶାସ୍ତି ଏହିପରି ହୋଇଥାଏ ; ଅତଏବ ଏହାକୁ ଆସ୍ୱାଦନ କର, ଏବଂ ଅବିଶ୍ୱାସକାରୀମାନଙ୍କ ପାଇଁ ନିଶ୍ଚୟ (ନରକ) ଅଗ୍ନିର ଶାସ୍ତି ରହିଛି ।

يٰٓأَيُّهَا الَّذِينَ اٰمَنُوٓا إِذَا لَقِيتُمُ الَّذِينَ كَفَرُوا زَحْفًا فَلَا تُوَلُّوهُمُ الْأَدْبَارَ ﴿١٦﴾

୧୬. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମେମାନେ ଅବିଶ୍ୱାସକାରୀମାନଙ୍କ ସହିତ ଯୁଦ୍ଧର ସମ୍ମୁଖୀନ ହୁଅ, ସେତେବେଳେ ସେମାନଙ୍କ ଠାରୁ (ପଳାୟନ ଉଦ୍ଦେଶ୍ୟରେ) ପୃଷ୍ଠଭଙ୍ଗ ଦିଅ ନାହିଁ ।

وَمَنْ يُوَلِّهِمْ يَوْمَئِذٍ دُبُرَهُۥٓ إِلَّا مُتَحَرِّفًا لِقِتَالٍ أَوْ مُتَحَيِّزًا إِلٰى فِئَةٍ فَقَدْ بَآءَ بِغَضَبٍ مِنَ اللّٰهِ وَمَأْوٰىهُ جَهَنَّمُ وَبِئْسَ الْمَصِيرُ ﴿١٧﴾

୧୭. ଏବଂ ଯୁଦ୍ଧ (କୌଶଳର ଅବଲମ୍ବନ) ପାଇଁ ସ୍ଥାନ ପରିବର୍ତ୍ତନ କରିବା ଅଥବା କୌଣସି (ମୁସଲମାନ) ଦଳ ଆଡ଼କୁ (ସାହାଯ୍ୟ ଉଦ୍ଦେଶ୍ୟରେ) ଗମନ କରିବା ବ୍ୟତୀତ, ଯେ କେହି ଏପରି ଅବସରରେ ପୃଷ୍ଠଭଙ୍ଗ କରିବ ତେବେ ସେ ନିଶ୍ଚୟ ଅଲ୍ଲାହଙ୍କର ପ୍ରକୋପ ଭାଜନ ହୋଇ ଫେରିବ ଏବଂ ତାହାର ବାସସ୍ଥାନ ନରକ ହେବ ଓ ଏହା ଅତ୍ୟନ୍ତ ମନ୍ଦ ବାସସ୍ଥାନ ।

فَلَمْ تَقْتُلُوهُمْ وَلٰكِنَّ اللّٰهَ قَتَلَهُمْ وَمَا رَمَيْتَ إِذْ رَمَيْتَ وَلٰكِنَّ اللّٰهَ رَمٰى وَلِيُبْلِيَ الْمُؤْمِنِينَ مِنْهُ بَلَآءً حَسَنًا إِنَّ اللّٰهَ سَمِيعٌ عَلِيمٌ ﴿١٨﴾

୧୮. ସୁତରାଂ (ମନେରଖ ଯେ) ତୁମେମାନେ ସେ (ଅବିଶ୍ୱାସକାରୀ)ମାନଙ୍କୁ ହତ୍ୟା କରି ନ ଥିଲ, ବରଂ ଅଲ୍ଲାହ ସେମାନଙ୍କୁ ହତ୍ୟା କରିଥିଲେ ; ଏବଂ ଯେତେବେଳେ ତୁମେ (ଗୋଡ଼ି)[୧] ନିକ୍ଷେପ କରିଥିଲ, ତାହା ତୁମେ ନିକ୍ଷେପ କରି ନ ଥିଲ ବରଂ ଅଲ୍ଲାହ ନିକ୍ଷେପ କରିଥିଲେ ; ଫଳରେ ଏହାଦ୍ୱାରା ଅଲ୍ଲାହ ବିଶ୍ୱାସକାରୀମାନଙ୍କୁ ଅନୁଗ୍ରହପୂର୍ବକ ପରୀକ୍ଷା କଲେ ; ବାସ୍ତବରେ ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

ذٰلِكُمْ وَأَنَّ اللّٰهَ مُوهِنُ كَيْدِ الْكٰفِرِينَ ﴿١٩﴾

୧୯. (ଯେପରି ଅଲ୍ଲାହ କହିଥିଲେ) ସେହିପରି ଏହା ଘଟିବ ; ଏବଂ ବାସ୍ତବରେ ଅଲ୍ଲାହ ଅବିଶ୍ୱାସକାରୀମାନଙ୍କର କୌଶଳକୁ ଦୁର୍ବଳ କରିବେ ।

---

୧. ବଦର ଯୁଦ୍ଧ କ୍ଷେତ୍ରରେ ଅଳ୍ପ ସଂଖ୍ୟକ ମୁସଲମାନ ପ୍ରବଳ ପରାକ୍ରମୀ ମକ୍କାବାସୀଙ୍କ ସହିତ ଯୁଦ୍ଧ କରିଥିଲେ । ସେମାନେ ନିଜ ପୌରୁଷ, ପରାକ୍ରମ ବା କୌଶଳ ଯୋଗୁଁ ସେହି ଯୁଦ୍ଧରେ ଜୟଲାଭ କରି ନଥିଲେ ବରଂ ଅଲ୍ଲାହଙ୍କ କୃପାରୁ କରିଥିଲେ । ଯୁଦ୍ଧ ଚାଲିଥିଲା ବେଳେ ଅବିଶ୍ୱାସକାରୀମାନେ ପ୍ରବଳ ବେଗରେ ମୁସଲମାନଙ୍କ ଆଡ଼କୁ ମାଡ଼ି ଆସିବାରୁ ହଜରତ ମହମ୍ମଦ ସେମାନଙ୍କ ଉପରକୁ ମୁଠାଏ ବାଲିମିଶା ଗୋଡ଼ି ଫୋପାଡ଼ି ଦେଲେ । ସେତିକି ବେଳକୁ ଅଲ୍ଲାହଙ୍କ ଆଦେଶରେ ଖୁବ୍ ଜୋରରେ ପବନ ବହିଲା ଓ ସେହି ବାଲିମିଶା ଗୋଡ଼ି ଶତ୍ରୁ ସୈନ୍ୟଙ୍କ ଆଖିରେ ଭର୍ତ୍ତି ହୋଇଗଲା ଯାହା ଫଳରେ ସେମାନେ କିଛି ଦେଖିପାରିଲେ ନାହିଁ ।

إِنْ تَسْتَفْتِحُوا فَقَدْ جَاءَكُمُ الْفَتْحُ وَإِنْ تَنْتَهُوا فَهُوَ خَيْرٌ لَكُمْ وَإِنْ تَعُودُوا نَعُدْ وَلَنْ تُغْنِيَ عَنْكُمْ فِئَتُكُمْ شَيْئًا وَلَوْ كَثُرَتْ وَأَنَّ اللَّهَ مَعَ الْمُؤْمِنِينَ (٢٠)

୨୦. (ହେ ମକ୍କାର ଅବିଶ୍ୱାସକାରୀମାନେ !) ଯଦି ତୁମେମାନେ ବିଜୟର ଭିକ୍ଷା କରୁଥିଲ ତେବେ ଦେଖ, ବିଜୟ ତୁମମାନଙ୍କ ନିକଟକୁ ଆସି ଅଛି ; ଏବଂ ଯଦି ଏବେ ମଧ୍ୟ ତୁମେମାନେ କ୍ଷାନ୍ତ ହୁଅ ତେବେ ଏହା ନିଶ୍ଚୟ ତୁମମାନଙ୍କ ପକ୍ଷରେ ଉତ୍ତମ ହେବ ; ଏବଂ ଯଦି ତୁମେମାନେ (ଦୁଷ୍ଟାମି ଆଡ଼କୁ) ପ୍ରତ୍ୟାବର୍ତ୍ତନ କରିବ ତେବେ ଆମ୍ଭେ ମଧ୍ୟ (ଶାସ୍ତି ଆଡ଼କୁ) ପ୍ରତ୍ୟାବର୍ତ୍ତନ କରିବୁ, ଏବଂ ତୁମମାନଙ୍କର ଦଳ ଯେତେ ଶକ୍ତିଶାଳୀ ହେଲେ ମଧ୍ୟ ତୁମମାନଙ୍କର କୌଣସି ଲାଭ ହେବ ନାହିଁ ; ଏବଂ ଅଲ୍ଲାହ ବାସ୍ତବରେ ବିଶ୍ୱାସକାରୀମାନଙ୍କ ସହିତ ଅଛନ୍ତି ।

### ରୁ : ୩

يَا أَيُّهَا الَّذِينَ آمَنُوا أَطِيعُوا اللَّهَ وَرَسُولَهُ وَلَا تَوَلَّوْا عَنْهُ وَأَنْتُمْ تَسْمَعُونَ (٢١)

୨୧. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ଆଜ୍ଞା ପାଳନ କର ; ଏବଂ (ତାହାଙ୍କର ଆଦେଶ) ଶୁଣିବା ପରେ ତୁମେମାନେ ସେମାନଙ୍କ ନିକଟରୁ ଫେରି ଯାଅ ନାହିଁ ।

وَلَا تَكُونُوا كَالَّذِينَ قَالُوا سَمِعْنَا وَهُمْ لَا يَسْمَعُونَ (٢٢)

୨୨. ଏବଂ ସେମାନଙ୍କ ଭଳି ହୁଅ ନାହିଁ ଯେଉଁମାନେ କହନ୍ତି, ''ଆମେମାନେ ଶୁଣିଅଛୁ,'' ଅଥଚ ସେମାନେ ଶୁଣନ୍ତି ନାହିଁ ।

إِنَّ شَرَّ الدَّوَابِّ عِنْدَ اللَّهِ الصُّمُّ الْبُكْمُ الَّذِينَ لَا يَعْقِلُونَ (٢٣)

୨୩. ଯେଉଁ ଲୋକମାନେ (ଆଧ୍ୟାତ୍ମିକ ଦୃଷ୍ଟିରୁ) ମୂକ ଓ ବଧିର ତଥା ଯେଉଁମାନେ କିଛି ବୁଝି ପାରନ୍ତି ନାହିଁ, ବାସ୍ତବରେ ସେମାନେ ଅଲ୍ଲାହଙ୍କ ଦୃଷ୍ଟିରେ ପଶୁ ଠାରୁ (ମଧ୍ୟ) ହୀନ ।

وَلَوْ عَلِمَ اللَّهُ فِيهِمْ خَيْرًا لَأَسْمَعَهُمْ وَلَوْ أَسْمَعَهُمْ لَتَوَلَّوْا وَهُمْ مُعْرِضُونَ (٢٤)

୨୪. ଏବଂ ଯଦି ଅଲ୍ଲାହ ସେ (ଅବିଶ୍ୱାସକାରୀ)ମାନଙ୍କ ଠାରେ କୌଣସି ଉତ୍ତମ ଗୁଣ ଦେଖନ୍ତେ ତେବେ ସେମାନଙ୍କୁ (ପବିତ୍ର କୋରାନ) ଶୁଣାଇ ଦିଅନ୍ତେ ; ଏବଂ ଯଦିବା (ବର୍ତ୍ତମାନ ଅବସ୍ଥାରେ) ସେମାନଙ୍କୁ (ପବିତ୍ର କୋରାନ) ଶୁଣାଇ ଦିଅନ୍ତେ ତେବେ ବି ସେମାନେ ଘୃଣାରେ ବିମୁଖ ହୋଇ ଫେରି ଯାଆନ୍ତେ ।

يَا أَيُّهَا الَّذِينَ آمَنُوا اسْتَجِيبُوا لِلَّهِ وَلِلرَّسُولِ إِذَا دَعَاكُمْ لِمَا يُحْيِيكُمْ وَاعْلَمُوا أَنَّ اللَّهَ يَحُولُ بَيْنَ الْمَرْءِ وَقَلْبِهِ وَأَنَّهُ إِلَيْهِ تُحْشَرُونَ (٢٥)

୨୫. ହେ ବିଶ୍ୱାସକାରୀମାନେ ! ତୁମେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ କଥା ଶୁଣ ଯେତେବେଳେ କି ସେ ତୁମମାନଙ୍କୁ (ଆଧ୍ୟାତ୍ମିକ) ଜୀବନ[୧] ଦାନ କରିବାକୁ ଡାକନ୍ତି ଏବଂ ମନେରଖ ଯେ ଅଲ୍ଲାହ ମନୁଷ୍ୟର ହୃଦୟ ଅପେକ୍ଷା ତାହାର ଅଧିକ ନିକଟବର୍ତ୍ତୀ ; ଏବଂ ତୁମମାନଙ୍କୁ ଜୀବିତ କରି ତାହାଙ୍କ ନିକଟକୁ ଫେରାଇ ନିଆ ଯିବ ।

୧. ପ୍ରକୃତ ହେଉଛି ଜଣେ ବ୍ୟକ୍ତି ଆଧ୍ୟାତ୍ମିକ ଦୃଷ୍ଟିରୁ ମୃତ ଅନ୍ୟ ଜଣେ ବ୍ୟକ୍ତିକୁ ସତ୍‌ମାର୍ଗ ଦେଖାଇ ଜୀବିତ କରାଇଥାଏ । ମୃତବ୍ୟକ୍ତିକୁ କବରରୁ ଉଠାଇ ଜୀବିତ କରାଇବା ଏହାର ତାତ୍ପର୍ଯ୍ୟ ନୁହେଁ ।

୨୬. ଏବଂ ସେହି ବିଶୃଙ୍ଖଳାକୁ ଭୟକର ଯାହା କି ତୁମମାନଙ୍କ ମଧ୍ୟରେ ଥିବା କେବଳ ଅତ୍ୟାଚାରୀମାନଙ୍କୁ ସ୍ପର୍ଶ କରିବ ନାହିଁ, ଏବଂ ମନେରଖ ଯେ, ଅଲ୍ଲାହ୍‌ଙ୍କ ଶାସ୍ତି ଅତ୍ୟନ୍ତ କଠୋର ।

وَاتَّقُوْا فِتْنَةً لَّا تُصِيْبَنَّ الَّذِيْنَ ظَلَمُوْا مِنْكُمْ خَآصَّةً ۚ وَاعْلَمُوْٓا اَنَّ اللّٰهَ شَدِيْدُ الْعِقَابِ ۝٢٦

୨୭. ଏବଂ (ସ୍ମରଣ କର) ଯେ ଯେତେବେଳେ ତୁମେମାନେ ଅଳ୍ପସଂଖ୍ୟକ ଥିଲ ; ତଥା ପୃଥିବୀରେ ଦୁର୍ବଳ ମନେକରାଯାଉଥିଲ, ଏବଂ ତୁମେମାନେ ଭୟ କରୁଥିଲ ଯେ କାଳେ ଲୋକମାନେ ତୁମମାନଙ୍କୁ ବଳପୂର୍ବକ ଘେନି ଯିବେ, (ସେତେବେଳେ) ସେ (ଅଲ୍ଲାହ୍ ଏହା ସତ୍ତ୍ୱେ) ତୁମମାନଙ୍କୁ ମଦିନାରେ ଆଶ୍ରୟ ପ୍ରଦାନ କଲେ ତଥା ନିଜ ସହାୟତା ଦ୍ୱାରା ତୁମମାନଙ୍କୁ ସମର୍ଥନ କଲେ, ଏବଂ ବିଶୁଦ୍ଧ ଦ୍ରବ୍ୟଗୁଡ଼ିକ ଦ୍ୱାରା ତୁମମାନଙ୍କୁ ଜୀବିକା ପ୍ରଦାନ କଲେ ଯେପରି କି ତୁମେମାନେ କୃତଜ୍ଞ ହେବ ।

وَاذْكُرُوْٓا اِذْ اَنْتُمْ قَلِيْلٌ مُّسْتَضْعَفُوْنَ فِى الْاَرْضِ تَخَافُوْنَ اَنْ يَّتَخَطَّفَكُمُ النَّاسُ فَاٰوٰىكُمْ وَاَيَّدَكُمْ بِنَصْرِهٖ وَرَزَقَكُمْ مِّنَ الطَّيِّبٰتِ لَعَلَّكُمْ تَشْكُرُوْنَ ۝٢٧

୨୮. ହେ ବିଶ୍ୱାସକାରୀମାନେ ! ତୁମେମାନେ ଅଲ୍ଲାହ୍ ଏବଂ ତାହାଙ୍କ ରସୁଲଙ୍କ ପ୍ରତି ବିଶ୍ୱାସଘାତକତା କର ନାହିଁ ଏବଂ ଅମାନତକୁଁ[1] ଜାଣି ଶୁଣି ଆତ୍ମସାତ୍ କର ନାହିଁ ।

يٰٓاَيُّهَا الَّذِيْنَ اٰمَنُوْا لَا تَخُوْنُوا اللّٰهَ وَالرَّسُوْلَ وَتَخُوْنُوْٓا اَمٰنٰتِكُمْ وَاَنْتُمْ تَعْلَمُوْنَ ۝٢٨

୨୯. ଏବଂ ମନେରଖ ଯେ, ତୁମମାନଙ୍କର ଧନ ସମ୍ପତ୍ତି ଓ ତୁମମାନଙ୍କର ସନ୍ତାନ-ସନ୍ତତି କେବଳ ଏକ ପରୀକ୍ଷା ସଦୃଶ ଏବଂ ଅଲ୍ଲାହ୍‌ଙ୍କ ନିକଟରେ ହିଁ ଉତ୍କୃଷ୍ଟ ପୁରସ୍କାର ରହିଅଛି ।

وَاعْلَمُوْٓا اَنَّمَآ اَمْوَالُكُمْ وَاَوْلَادُكُمْ فِتْنَةٌ ۙ وَّاَنَّ اللّٰهَ عِنْدَهٗٓ اَجْرٌ عَظِيْمٌ ۝٢٩

ରୁ : ୪

୩୦. ହେ ବିଶ୍ୱାସକାରୀମାନେ ! ଯଦି ତୁମେମାନେ ଅଲ୍ଲାହ୍‌ଙ୍କୁ ଭୟ କରିବ, ତା'ହେଲେ ଅଲ୍ଲାହ୍ ତୁମମାନଙ୍କ ସକାଶେ ଏକ ମଜବୁତ୍ ପାର୍ଥକ୍ୟସୂଚକ ବସ୍ତୁ ସୃଷ୍ଟି କରିବେ ଏବଂ ତୁମମାନଙ୍କର ଦୁର୍ବଳତାକୁ ଦୂର କରି ତୁମମାନଙ୍କୁ କ୍ଷମା ପ୍ରଦାନ କରିବେ ; ଏବଂ ସେ ମହାନ୍ ଅନୁଗ୍ରହକାରୀ ।

يٰٓاَيُّهَا الَّذِيْنَ اٰمَنُوْٓا اِنْ تَتَّقُوا اللّٰهَ يَجْعَلْ لَّكُمْ فُرْقَانًا وَّيُكَفِّرْ عَنْكُمْ سَيِّاٰتِكُمْ وَيَغْفِرْ لَكُمْ ۗ وَاللّٰهُ ذُو الْفَضْلِ الْعَظِيْمِ ۝٣٠

୩୧. ଏବଂ (ହେ ରସୁଲ ! ସେହି ସମୟକୁ ସ୍ମରଣ କର) ଯେତେବେଳେ ଅବିଶ୍ୱାସକାରୀମାନେ ତୁମ ସଂକ୍ରାନ୍ତରେ ଷଡ଼ଯନ୍ତ୍ର କରୁଥିଲେ ଯେ ତୁମକୁ ବନ୍ଦୀ କରିବେ ବା ତୁମକୁ

وَاِذْ يَمْكُرُ بِكَ الَّذِيْنَ كَفَرُوْا لِيُثْبِتُوْكَ اَوْ يَقْتُلُوْكَ اَوْ

[1] ଏହାର ଅର୍ଥ ନୁହେଁ ଯେ ଅଜାଣତରେ ଅମାନତ ବା ନ୍ୟାସଧନକୁ ଆତ୍ମସାତ୍ କରିବା ନ୍ୟାୟସଙ୍ଗତ ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ବାସ୍ତବତା ଉନ୍ମୋଚିତ ହେବାପରେ ଯଦି ତୁମେମାନେ ଆତ୍ମସାତ୍ କରିବ ତେବେ ସେଥିଯୋଗୁଁ କଠିନ ଶାସ୍ତି ପାଇବ ।

[2] ଅର୍ଥାତ୍ ହଜରତ ମହମ୍ମଦଙ୍କୁ ଗୃହ ମଧ୍ୟରେ ଅବରୋଧ କରି ରଖିବା କିମ୍ବା ତାଙ୍କୁ ହତ୍ୟା କରିବା ପାଇଁ ଯେଉଁସବୁ ଯୋଜନା ହୋଇଥିଲା ସେସବୁ ବ୍ୟର୍ଥ ହୋଇଗଲା । କିନ୍ତୁ ଅବିଶ୍ୱାସକାରୀମାନେ ତାଙ୍କୁ ଦେଶରୁ ବିତାଡ଼ିତ କରିବା ପାଇଁ ଯେଉଁ ଯୋଜନା କରିଥିଲେ ସେମାନେ ପ୍ରକାରାନ୍ତରେ ସଫଳ ହୋଇଥିଲେ । ଶତ୍ରୁମାନେ ତାଙ୍କୁ ନିଜ ଗୃହରେ ଅବରୋଧ କରି ରଖିଥିଲେ । କିନ୍ତୁ ସେ ନିଜର ଘନିଷ୍ଠ ସହଚର ଅବୁ ବକରଙ୍କ ସହିତ ଗଭୀର ରାତ୍ରିରେ ସ୍ୱଗୃହରୁ ପଳାୟନ କରି ପ୍ରଥମେ ସୌର୍ ନାମକ ଗୁମ୍ଫାରେ ଆଶ୍ରୟ ନେଇ ପରେ ମଦିନାରେ ପହଞ୍ଚିଥିଲେ । ପରିଶେଷରେ ତାଙ୍କୁ ସ୍ୱଗୃହରୁ ବିତାଡ଼ିତ କରିବା ମକ୍କାବାସୀଙ୍କ ବିନାଶର କାରଣ ହୋଇଥିଲା ।

ହତ୍ୟା କରିବେ, ବା ତୁମକୁ ବହିଷ୍କାର କରିବେ ; ଏବଂ ସେମାନେ ଯୋଜନା କରୁଥିଲେ ଏବଂ ଅଲ୍ଲାହ ମଧ୍ୟ ଯୋଜନା କରୁଥିଲେ ; ଏବଂ ଅଲ୍ଲାହ ସର୍ବୋତ୍ତମ ଯୋଜନାକାରୀ ।

يُخْرِجُوْكَ ؕ وَيَمْكُرُوْنَ وَيَمْكُرُ اللّٰهُ ؕ وَاللّٰهُ خَيْرُ الْمٰكِرِيْنَ ۝

୩୨. ଏବଂ ଯେତେବେଳେ ସେମାନଙ୍କ ନିକଟରେ ଆମର ବାଣୀ ପାଠ କରାଯାଏ, ସେତେବେଳେ ସେମାନେ କହନ୍ତି, "(ସେତିକି ଥାଉ), ଆମେମାନେ ଶୁଣିଲୁ ; ଯଦି ଆମ୍ଭେମାନେ ଇଚ୍ଛା କରନ୍ତୁ, ତେବେ ଆମେମାନେ ମଧ୍ୟ ତଦନୁରୂପ ବାଣୀ ରଚନା କରି ପାରନ୍ତୁ ; ଏହା (ଅର୍ଥାତ୍ ପବିତ୍ର କୋରାନ) କେବଳ ପୂର୍ବକାଳର କାହାଣୀ ମାତ୍ର ।"[1]

وَاِذَا تُتْلٰى عَلَيْهِمْ اٰيٰتُنَا قَالُوْا قَدْ سَمِعْنَا لَوْ نَشَآءُ لَقُلْنَا مِثْلَ هٰذَآ ۙ اِنْ هٰذَآ اِلَّآ اَسَاطِيْرُ الْاَوَّلِيْنَ ۝

୩୩. ଏବଂ (ସ୍ମରଣ କର) ଯେତେବେଳେ ସେମାନେ କହିଲେ "ହେ ଅଲ୍ଲାହ ! ଯଦି ତୁମ ତରଫରୁ ଏହା ହିଁ ସତ୍ୟ (ଧର୍ମ) ହୋଇଥାଏ, ତେବେ ଆମମାନଙ୍କ ଉପରେ ଆକାଶରୁ ଶିଳା ବୃଷ୍ଟିକର କିମ୍ବା ଆମମାନଙ୍କୁ ଅନ୍ୟ କିଛି ଯନ୍ତ୍ରଣାଦାୟକ ଶାସ୍ତି ଦିଅ ।"[2]

وَاِذْ قَالُوا اللّٰهُمَّ اِنْ كَانَ هٰذَا هُوَ الْحَقَّ مِنْ عِنْدِكَ فَاَمْطِرْ عَلَيْنَا حِجَارَةً مِّنَ السَّمَآءِ اَوِ ائْتِنَا بِعَذَابٍ اَلِيْمٍ ۝

୩୪. ଏବଂ ତୁମ୍ଭେ ସେମାନଙ୍କ ମଧ୍ୟରେ ଥିଲାବେଳେ ଅଲ୍ଲାହ ସେମାନଙ୍କୁ ଶାସ୍ତି ପ୍ରଦାନ କରିପାରି ନ ଥାଆନ୍ତେ କି ସେମାନେ କ୍ଷମା ପ୍ରାର୍ଥନା କରୁଥିବା ବେଳେ ଅଲ୍ଲାହ ସେମାନଙ୍କୁ ଶାସ୍ତି ପ୍ରଦାନ କରିପାରି ନ ଥାଆନ୍ତେ ।[3]

وَمَا كَانَ اللّٰهُ لِيُعَذِّبَهُمْ وَاَنْتَ فِيْهِمْ ؕ وَمَا كَانَ اللّٰهُ مُعَذِّبَهُمْ وَهُمْ يَسْتَغْفِرُوْنَ ۝

୩୫. ଏବଂ ସେମାନଙ୍କର କ'ଣ (ବିଶେଷତ୍ୱ) ଅଛି ଯେ ଅଲ୍ଲାହ ସେମାନଙ୍କୁ ଶାସ୍ତି ପ୍ରଦାନ କରିବେ ନାହିଁ, ଯେତେବେଳେ କି ସେମାନେ ପବିତ୍ର ମସଜିଦରୁ (ଲୋକମାନଙ୍କୁ) ପ୍ରତିରୋଧ କରୁଛନ୍ତି ? ଏବଂ ସେମାନେ ପ୍ରକୃତରେ ଏହାର ସଂରକ୍ଷକ ନୁହନ୍ତି, ଧର୍ମଭୀରୁମାନେ ହିଁ ଏହାର (ପ୍ରକୃତ) ସଂରକ୍ଷକ, ଏବଂ ସେ (ଅବିଶ୍ୱାସକାରୀ)ମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ ।

وَمَا لَهُمْ اَلَّا يُعَذِّبَهُمُ اللّٰهُ وَهُمْ يَصُدُّوْنَ عَنِ الْمَسْجِدِ الْحَرَامِ وَمَا كَانُوْٓا اَوْلِيَآءَهٗ ؕ اِنْ اَوْلِيَآؤُهٗٓ اِلَّا الْمُتَّقُوْنَ وَلٰكِنَّ اَكْثَرَهُمْ لَا يَعْلَمُوْنَ ۝

---

[1] ଅବିଶ୍ୱାସକାରୀମାନେ ଏ ପ୍ରକାର ବୃଥା ଗର୍ବ କରିଥିଲେ । ଏପରିକି ଆଜି ପର୍ଯ୍ୟନ୍ତ କୋରାନର କୋଣସି ଅଧ୍ୟାୟ ସଦୃଶ ଏକ କ୍ଷୁଦ୍ର ଅଧ୍ୟାୟ ମଧ୍ୟ ରଚନା କରିବାରେ କେହି ସମର୍ଥ ହୋଇ ନାହାନ୍ତି ।

[2] ବଦର ଯୁଦ୍ଧରେ ଅବୁଜହଲ ଅନୁରୂପ ଭାଷାରେ ପ୍ରାର୍ଥନା କରିଥିଲା । ଫଳସ୍ୱରୂପ ବହୁ ନେତାଙ୍କ ସହିତ ସେ ସେହି ଯୁଦ୍ଧରେ ନିହତ ହୋଇଥିଲା ।

[3] ଦୈବୀ ପ୍ରକୋପରୁ ରକ୍ଷା ପାଇବା ସକାଶେ ଅବତାରମାନେ ଲୋକମାନଙ୍କ ପାଇଁ ଏକ ପ୍ରକାର ଢାଲ ସଦୃଶ । ତେଣୁ ହଜରତ ମହମ୍ମଦ ସେଠାରୁ ପଳାଇ ଆସିବା ପରେ ସେମାନେ ନିରାଶ୍ରୟ ହୋଇଗଲେ । ଅତଏବ ସେମାନଙ୍କର ଗୋଟିଏ ସାଧନ ଆଉ କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଅନ୍ୟ ଏକ ସାଧନ ହେଉଛି ଅନୁତାପ, ଯାହାକଲେ କ୍ଷମା ମିଳିଥାଏ । ସେମାନେ ଆରମ୍ଭରୁ ଏପରି କରୁ ନ ଥିବାରୁ ପରିଶେଷରେ ଧ୍ୱଂସ ହୋଇଗଲେ ।

୩୬. ଏବଂ କା'ବା ଗୃହ (ଅର୍ଥାତ୍ ପବିତ୍ର ମସ୍‌ଜିଦ) ନିକଟରେ ସେମାନଙ୍କ ଉପାସନା କେବଳ ସିଟି ମାରିବା ଓ କରତାଳି ଦେବା ବ୍ୟତୀତ ଅନ୍ୟ କିଛି ନୁହେଁ, ସୁତରାଂ,(ହେ ବିଧର୍ମୀମାନେ) ନିଜ ଅବିଶ୍ୱାସ ହେତୁ ଶାସ୍ତି ଆସ୍ୱାଦନ କର ।

وَمَا كَانَ صَلَاتُهُمْ عِنْدَ الْبَيْتِ إِلَّا مُكَاءً وَتَصْدِيَةً ۚ فَذُوقُوا الْعَذَابَ بِمَا كُنْتُمْ تَكْفُرُونَ ﴿٣٦﴾

୩୭. ଯେଉଁମାନେ ଅବିଶ୍ୱାସ କରିଛନ୍ତି, ବାସ୍ତବରେ ସେମାନେ ଅଲ୍ଲାହ୍‌ଙ୍କ ପଥରୁ (ଲୋକମାନଙ୍କୁ) ପ୍ରତିରୋଧ କରିବାପାଇଁ ନିଜର ଧନ ବ୍ୟୟ କରନ୍ତି, ସୁତରାଂ ସେମାନେ ଏହିପରି ଭାବରେ ଧନ ବ୍ୟୟ କରିବେ ; ପରିଶେଷରେ ଏହା ସେମାନଙ୍କ ପାଇଁ ଏକ ଅନୁଶୋଚନା ହେବ, ଓ ତତ୍‌ପରେ ସେମାନଙ୍କୁ ଦମନ କରି ହେବ ; ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନଙ୍କୁ ନରକ ଆଡ଼କୁ ଏକତ୍ରିତ କରି ନିଆଯିବ ।

إِنَّ الَّذِينَ كَفَرُوا يُنْفِقُونَ أَمْوَالَهُمْ لِيَصُدُّوا عَنْ سَبِيلِ اللَّهِ ۚ فَسَيُنْفِقُونَهَا ثُمَّ تَكُونُ عَلَيْهِمْ حَسْرَةً ثُمَّ يُغْلَبُونَ ۗ وَالَّذِينَ كَفَرُوا إِلَىٰ جَهَنَّمَ يُحْشَرُونَ ﴿٣٧﴾

୩୮. ଯଦ୍ୱାରା ଅଲ୍ଲାହ୍ ଅପବିତ୍ରକୁ ପବିତ୍ର–ଠାରୁ ପୃଥକ୍ କରିଦେବେ ଏବଂ ଅପବିତ୍ର (ବସ୍ତୁଗୁଡ଼ିକ)ର ଗୋଟିଏ ଭାଗକୁ ଅନ୍ୟ ଭାଗ ଉପରେ ରଖିବେ ଓ ତା'ପରେ ସେଗୁଡ଼ିକୁ ଏକ ସ୍ତୂପରେ ପରିଣତ କରିଦେବେ, ଏବଂ ଏହା ପରେ ତାହାକୁ ନରକରେ ନିକ୍ଷେପ କରିବେ ; (ଶୁଣ) ଏହି (ଲୋକ)ମାନେ ହିଁ କ୍ଷତିଗ୍ରସ୍ତ ହେବେ ।

لِيَمِيزَ اللَّهُ الْخَبِيثَ مِنَ الطَّيِّبِ وَيَجْعَلَ الْخَبِيثَ بَعْضَهُ عَلَىٰ بَعْضٍ فَيَرْكُمَهُ جَمِيعًا فَيَجْعَلَهُ فِي جَهَنَّمَ ۚ أُولَٰئِكَ هُمُ الْخَاسِرُونَ ﴿٣٨﴾

ରୁ: ୫

୩୯. ତୁମେ ଅବିଶ୍ୱାସକାରୀମାନଙ୍କୁ କୁହ, "ଯଦି ସେମାନେ ଏଥିରୁ ବିରତ ହେବେ, ତେବେ ଯାହା (ତ୍ରୁଟି) ସେମାନଙ୍କ ଦ୍ୱାରା ପୂର୍ବରୁ ହୋଇଅଛି, (ସେଥିପାଇଁ) ସେମାନଙ୍କୁ କ୍ଷମା ଦିଆଯିବ, ଯଦି ସେମାନେ (ସେହି କୁକାର୍ଯ୍ୟ ଆଡ଼କୁ) ପ୍ରତ୍ୟାବର୍ତ୍ତନ କରିବେ, ତେବେ ପୂର୍ବବର୍ତ୍ତୀ ଲୋକମାନଙ୍କ ପାଇଁ ଯାହା ବିଧାନ ଥିଲା (ତାହା ହିଁ ହେବ) ।"

قُلْ لِلَّذِينَ كَفَرُوا إِنْ يَنْتَهُوا يُغْفَرْ لَهُمْ مَا قَدْ سَلَفَ وَإِنْ يَعُودُوا فَقَدْ مَضَتْ سُنَّتُ الْأَوَّلِينَ ﴿٣٩﴾

୪୦. "ଏବଂ ଯେ ପର୍ଯ୍ୟନ୍ତ ନିର୍ଯାତନା ସମାପ୍ତ ନ ହୋଇଛି ଏବଂ ଧର୍ମ ସମ୍ପୂର୍ଣ୍ଣତଃ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ନ ହୋଇଛି ସେ ପର୍ଯ୍ୟନ୍ତ, ସେ (ଅବିଶ୍ୱାସକାରୀ)ମାନଙ୍କ ସହିତ ଯୁଦ୍ଧ କର ;" କିନ୍ତୁ ଯଦି ସେମାନେ (ସେଥିରୁ) କ୍ଷାନ୍ତ ହୁଅନ୍ତି ତେବେ ସେମାନେ ଯାହା କରୁଛନ୍ତି, ଅଲ୍ଲାହ୍ ନିଶ୍ଚୟ ତାହାକୁ ଲକ୍ଷ୍ୟ କରୁଛନ୍ତି ।

وَقَاتِلُوهُمْ حَتَّىٰ لَا تَكُونَ فِتْنَةٌ وَيَكُونَ الدِّينُ كُلُّهُ لِلَّهِ ۚ فَإِنِ انْتَهَوْا فَإِنَّ اللَّهَ بِمَا يَعْمَلُونَ بَصِيرٌ ﴿٤٠﴾

୪୧. ଏବଂ ଯଦି ସେମାନେ ପୃଷ୍ଠଭଙ୍ଗ ଦିଅନ୍ତି, ତେବେ ଜାଣିରଖ ଯେ ଅଲ୍ଲାହ୍ ବାସ୍ତବରେ ତୁମମାନଙ୍କର ପୃଷ୍ଠପୋଷକ ; ସେ ସର୍ବୋତ୍ତମ ପୃଷ୍ଠପୋଷକ ଓ ସର୍ବୋତ୍ତମ ସାହାଯ୍ୟକାରୀ ।

وَإِنْ تَوَلَّوْا فَاعْلَمُوا أَنَّ اللَّهَ مَوْلَاكُمْ ۚ نِعْمَ الْمَوْلَىٰ وَنِعْمَ النَّصِيرُ ﴿٤١﴾

## ଭାଗ- ୧୦

وَاعْلَمُوْٓا اَنَّمَا غَنِمْتُمْ مِّنْ شَيْءٍ فَاَنَّ لِلّٰهِ خُمُسَهٗ وَلِلرَّسُوْلِ وَلِذِي الْقُرْبٰى وَالْيَتٰمٰى وَالْمَسٰكِيْنِ وَابْنِ السَّبِيْلِ ۙ اِنْ كُنْتُمْ اٰمَنْتُمْ بِاللّٰهِ وَمَآ اَنْزَلْنَا عَلٰى عَبْدِنَا يَوْمَ الْفُرْقَانِ يَوْمَ الْتَقَى الْجَمْعٰنِ ؕ وَاللّٰهُ عَلٰى كُلِّ شَيْءٍ قَدِيْرٌ ﴿٤٢﴾

୪୨. ଏବଂ ଜାଣିରଖ ଯେ ତୁମମାନଙ୍କୁ ଯାହାକିଛି ସମ୍ପଦ (ଯୁଦ୍ଧରୁ) ମିଳିବ, ତାହାର ଏକ ପଞ୍ଚମାଂଶ ଅଲ୍ଲାଃ ଓ ତାହାଙ୍କ ରସୁଲଙ୍କ ପାଇଁ ଏବଂ (ରସୁଲଙ୍କ) ନିକଟ ସମ୍ପର୍କୀୟ, ଅନାଥ, ଦରିଦ୍ର ଓ ପଥିକମାନଙ୍କ ପାଇଁ (ଉଦ୍ଦିଷ୍ଟ) ଅଟେ ; ଯଦି ତୁମେମାନେ ଅଲ୍ଲାଃଙ୍କ ପ୍ରତି, ଏବଂ ଯେଉଁ ଦିନ ଉଭୟ ସୈନ୍ୟବାହିନୀ ପରସ୍ପରର ସମ୍ମୁଖୀନ ହୋଇଥିଲେ ସେହି ସତ୍ ଓ ଅସତ୍ ନିଷ୍ପତ୍ତିକାରୀ ଦିନ ଆମେ ନିଜ ଭକ୍ତଙ୍କ ଉପରେ ଯାହା କିଛି ଅବତୀର୍ଣ୍ଣ କରିଥିଲୁ ତାହା ପ୍ରତି ବିଶ୍ୱାସ କର, (ତେବେ ଉପର୍ଯୁକ୍ତ ଆଦେଶ ପାଳନ କର) ; ଏବଂ ଅଲ୍ଲାଃ ପ୍ରତ୍ୟେକ କାର୍ଯ୍ୟ କରିବାକୁ ପୂର୍ଣ୍ଣରୂପେ ସକ୍ଷମ ।

اِذْ اَنْتُمْ بِالْعُدْوَةِ الدُّنْيَا وَهُمْ بِالْعُدْوَةِ الْقُصْوٰى وَالرَّكْبُ اَسْفَلَ مِنْكُمْ ۗ وَلَوْ تَوَاعَدْتُّمْ لَاخْتَلَفْتُمْ فِي الْمِيْعٰدِ ۙ وَلٰكِنْ لِّيَقْضِيَ اللّٰهُ اَمْرًا كَانَ مَفْعُوْلًا ۙ لِّيَهْلِكَ مَنْ هَلَكَ عَنْۢ بَيِّنَةٍ وَّيَحْيٰى مَنْ حَيَّ عَنْۢ بَيِّنَةٍ ۗ وَاِنَّ اللّٰهَ لَسَمِيْعٌ عَلِيْمٌ ﴿٤٣﴾

୪୩. (ସେ ଦିନ) ଯେତେବେଳେ ତୁମେମାନେ (ରଣ କ୍ଷେତ୍ରର) ନିକଟବର୍ତ୍ତୀ ପ୍ରାନ୍ତରେ ଥିଲ ଓ ସେ (ଅବିଶ୍ୱାସକାରୀ)ମାନେ ଦୂରବର୍ତ୍ତୀ ପ୍ରାନ୍ତରେ ଥିଲେ ଏବଂ ଯାତ୍ରୀଦଳ ତୁମମାନଙ୍କର ନିମ୍ନଭାଗରେ ଥିଲେ, ଏବଂ ଯଦି ତୁମେମାନେ (ସେମାନଙ୍କ ସହିତ) ଅଙ୍ଗୀକାରବଦ୍ଧ ହୋଇଥାନ୍ତ, ତେବେ ଯୁଦ୍ଧର ସମୟ ସଂକ୍ରାନ୍ତରେ ତୁମମାନଙ୍କର ସେମାନଙ୍କ ସହିତ ମତାନ୍ତର ହୋଇଥାନ୍ତା ; କିନ୍ତୁ (ଅଲ୍ଲାଃ ତୁମମାନଙ୍କୁ ଏକତ୍ରିତ କରିଥିଲେ) ଯଦ୍ଦ୍ୱାରା ସେ ଉକ୍ତ ବିଷୟକୁ ସମ୍ପନ୍ନ କରିବେ ଯାହା କରିବାକୁ ସେ ନିଷ୍ପତ୍ତି କରିଥିଲେ ; (ଏବଂ ଏହି ନିଦର୍ଶନ ଏଥିଯୋଗୁଁ ମଧ୍ୟ ପ୍ରଦର୍ଶିତ ହେଲା) ଯଦ୍ଦ୍ୱାରା ଯେଉଁ ବ୍ୟକ୍ତି ପ୍ରମାଣ ଦ୍ୱାରା ନିହତ ହୋଇଅଛି ସେ ନିହତ ହେଉ, ଏବଂ ଯେଉଁ ବ୍ୟକ୍ତି ପ୍ରମାଣ ଦ୍ୱାରା ଜୀବିତ ହୋଇଅଛି ସେ ଜୀବିତ ହେଉ ; ଏବଂ ଅଲ୍ଲାଃ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

اِذْ يُرِيْكَهُمُ اللّٰهُ فِيْ مَنَامِكَ قَلِيْلًا ۗ وَلَوْ اَرٰىكَهُمْ كَثِيْرًا لَّفَشِلْتُمْ وَلَتَنَازَعْتُمْ فِي الْاَمْرِ وَلٰكِنَّ اللّٰهَ سَلَّمَ ۗ اِنَّهٗ عَلِيْمٌۢ بِذَاتِ الصُّدُوْرِ ﴿٤٤﴾

୪୪. (ଏ ଘଟଣା ସେହି ସମୟର) ଯେତେବେଳେ ଅଲ୍ଲାଃ ତୁମ୍ଭଙ୍କୁ ସ୍ୱପ୍ନ ମାଧ୍ୟମରେ[1] ସେ (ଅବିଶ୍ୱାସକାରୀ)ମାନେ ଅଳ୍ପ ସଂଖ୍ୟକ ଥିବାର ଦେଖାଇଥିଲେ ; ଏବଂ ଯଦି ସେମାନେ ଅଧିକ ସଂଖ୍ୟାରେ ଥିବାର ତୁମ୍ଭଙ୍କୁ ଦେଖାଇଥାନ୍ତେ, ତେବେ ତୁମେ ନିଶ୍ଚୟ ଦୁର୍ବଳତା ପ୍ରକାଶ କରିଥାନ୍ତ ଏବଂ ଏହି ବ୍ୟାପାରରେ (ଅର୍ଥାତ୍ ଯୁଦ୍ଧ ବିଷୟରେ) ତୁମେମାନେ ପରସ୍ପର ମଧ୍ୟରେ କଳହ କରିଥାନ୍ତ ; କିନ୍ତୁ ଅଲ୍ଲାଃ ତୁମମାନଙ୍କୁ ସୁରକ୍ଷିତ ରଖିଥିଲେ ; ସେ (ତୁମମାନଙ୍କ) ଅନ୍ତରର କଥା ଭଲରୂପେ ଜାଣନ୍ତି ।

---

୧. ସ୍ୱପ୍ନରେ ଶତ୍ରୁ ସୈନ୍ୟଙ୍କ ସଂଖ୍ୟା କମ୍ ଥିବାର ଦେଖାଇ ଦିଆଯିବା ଅର୍ଥ ଶତ୍ରୁମାନଙ୍କ ଉପରେ ଜୟଲାଭ କରିବା । ସେହିପରି ଯଦି ଶତ୍ରୁମାନଙ୍କ ସଂଖ୍ୟା ଅଧିକ ଥିବାର ଦେଖାଇ ଦିଆଯାଇଥା'ନ୍ତା, ତେବେ ସେମାନେ ଜୟଲାଭ କରିଥା'ନ୍ତେ ।

وَاِذۡ يُرِيۡكُمُوۡهُمۡ اِذِ الۡتَقَيۡتُمۡ فِىۡۤ اَعۡيُنِكُمۡ قَلِيۡلًا وَّ يُقَلِّلُكُمۡ فِىۡۤ اَعۡيُنِهِمۡ لِيَقۡضِىَ اللّٰهُ اَمۡرًا كَانَ مَفۡعُوۡلًا ؕ وَاِلَى اللّٰهِ تُرۡجَعُ الۡاُمُوۡرُ ۝

୪୫. ଏବଂ ଯେତେବେଳେ ତୁମେମାନେ ସେମାନଙ୍କ ସହିତ ଯୁଦ୍ଧରେ ରତ ଥିଲ (ସେତେବେଳେ) ସେ ତୁମମାନଙ୍କ ଦୃଷ୍ଟିରେ ସେମାନଙ୍କୁ ଦୁର୍ବଳ[୧] ଥିବାର ଦେଖାଇଥିଲେ, ଏବଂ ତୁମମାନଙ୍କୁ ମଧ୍ୟ ସେମାନଙ୍କ ଦୃଷ୍ଟିରେ ଦୁର୍ବଳ[୨] ଥିବାର ଦେଖାଇଥିଲେ ; ଫଳରେ ଅଲ୍ଲାହ ଯାହା କରିବାକୁ ନିଷ୍ପତ୍ତି କରିଥିଲେ ତାହାକୁ ସମ୍ପନ୍ନ କରିବେ, ଏବଂ ଅଲ୍ଲାହଙ୍କ ନିକଟକୁ ହିଁ ସକଳ ବିଷୟ ଫେରାଇ ନିଆଯିବ ।

ରୁ : ୬

يٰۤاَيُّهَا الَّذِيۡنَ اٰمَنُوۡۤا اِذَا لَقِيۡتُمۡ فِئَةً فَاثۡبُتُوۡا وَاذۡكُرُوا اللّٰهَ كَثِيۡرًا لَّعَلَّكُمۡ تُفۡلِحُوۡنَ ۝

୪୬. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମେମାନେ କୌଣସି (ଅବିଶ୍ୱାସକାରୀ) ସୈନ୍ୟବାହିନୀ ସହିତ ଯୁଦ୍ଧର ସମ୍ମୁଖୀନ ହୁଅ ସେତେବେଳେ ସୁଦୃଢ ରୁହ, ଏବଂ ଅଲ୍ଲାହଙ୍କୁ ଅଧିକ[୩] ସ୍ମରଣ କର ତାହାହେଲେ ତୁମେମାନେ କୃତକାର୍ଯ୍ୟ ହେବ ।

وَاَطِيۡعُوا اللّٰهَ وَرَسُوۡلَهٗ وَلَا تَنَازَعُوۡا فَتَفۡشَلُوۡا وَتَذۡهَبَ رِيۡحُكُمۡ وَاصۡبِرُوۡا ؕ اِنَّ اللّٰهَ مَعَ الصّٰبِرِيۡنَ ۝

୪୭. ଏବଂ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ଆଜ୍ଞାବହ ହୁଅ ଏବଂ ପରସ୍ପର ମଧ୍ୟରେ ବିବାଦ କରନାହିଁ ; (ଏପରି କଲେ) ତୁମମାନଙ୍କର ମନୋବଳ ଭାଙ୍ଗିଯିବ ଓ ତୁମେମାନେ ଶକ୍ତିହୀନ[୪] ହୋଇଯିବ ; ଏବଂ ଧୈର୍ଯ୍ୟ ଧାରଣ କର ; ବାସ୍ତବରେ ଯେଉଁମାନେ ଧୈର୍ଯ୍ୟବାନ୍, ଅଲ୍ଲାହ ସେମାନଙ୍କ ସହିତ ଥାଆନ୍ତି ।

وَلَا تَكُوۡنُوۡا كَالَّذِيۡنَ خَرَجُوۡا مِنۡ دِيَارِهِمۡ بَطَرًا وَّرِئَآءَ النَّاسِ وَيَصُدُّوۡنَ عَنۡ سَبِيۡلِ اللّٰهِ ؕ وَاللّٰهُ بِمَا يَعۡمَلُوۡنَ مُحِيۡطٌ ۝

୪୮. ଏବଂ ତୁମେମାନେ ସେମାନଙ୍କ ସଦୃଶ ହୁଅ ନାହିଁ ଯେଉଁମାନେ ସ୍ୱଗୃହରୁ ଲୋକମାନଙ୍କୁ (ନିଜର ପରାକ୍ରମ ଓ ଧର୍ମଗତ ଅଭିମାନ) ଦେଖାଇବା ସକାଶେ ଗର୍ବର ସହିତ ବାହାରିଲେ ଏବଂ ଯେଉଁମାନେ ଅଲ୍ଲାହଙ୍କ ପଥରୁ ଲୋକମାନଙ୍କୁ ପ୍ରତିରୋଧ କରନ୍ତି, ଅଲ୍ଲାହ ଏପରି ଲୋକମାନଙ୍କର କାର୍ଯ୍ୟକୁ ବିନାଶ କରିବା ପାଇଁ ନିଷ୍ପତ୍ତି କରିସାରିଛନ୍ତି ।

---

୧. ପୂର୍ବବର୍ତ୍ତୀ ଆୟତ୍‌ରେ ସ୍ୱପ୍ନ ମାଧ୍ୟମରେ ଜଣାଇ ଦିଆଯାଇଥିଲା, କିନ୍ତୁ ଆଲୋଚ୍ୟ ଆୟତରେ ଏକ ବାସ୍ତବ ଘଟଣାକୁ ଚକ୍ଷୁ ସମ୍ମୁଖରେ ଘଟିଥିବା ଦେଖାଇ ଦିଆଯାଇଛି । ଆରବୀ 'କଲୀଲ୍' ଶବ୍ଦର ଅନ୍ୟତମ ଅର୍ଥ ହେଉଛି ଦୁର୍ବଳ ଓ ଏଠାରେ ଏହାର ତାତ୍ପର୍ଯ୍ୟ ହେଉଛି, ସେମାନଙ୍କ ହୃଦୟକୁ ଏପରି ଦୃଢ ଓ ଭୟଶୂନ୍ୟ କରାଇ ଦିଆଗଲା ଯେ ଅବିଶ୍ୱାସକାରୀମାନଙ୍କ ସଂଖ୍ୟା ବହୁ ଅଧିକ ଥିଲେ ମଧ୍ୟ ଅବିଶ୍ୱାସକାରୀମାନଙ୍କୁ ସେମାନେ ତୁଚ୍ଛ ମନେ କରିଥିଲେ ଓ ସେମାନଙ୍କ ଉପରେ ସିଂହ ସଦୃଶ ଝାମ୍ପଦେଇ ସେମାନଙ୍କୁ ଧ୍ୱଂସ କରିଦେଇଥିଲେ ।

୨. ଅର୍ଥାତ୍ ମୁସଲମାନମାନେ ନିଜ ବିଶ୍ୱାସ ବଳରେ ଅବିଶ୍ୱାସକାରୀଙ୍କୁ ଭୀରୁ ଓ ଦୁର୍ବଳ ମନେ କରୁଥିଲେ ଏବଂ ଅବିଶ୍ୱାସକାରୀ ଈର୍ଷା ଯୋଗୁଁ ମୁସଲମାନଙ୍କ ବିଶ୍ୱାସଜନିତ ଶକ୍ତିକୁ ବେଖାତିର କରୁଥିଲେ ।

୩. ଅଲ୍ଲାହଙ୍କୁ ଅଧିକ ସ୍ମରଣ କଲେ ହୃଦୟରେ ତାଙ୍କ ଗୁଣର ପରିପ୍ରକାଶ ହୁଏ, ଫଳରେ ଧର୍ମବିଶ୍ୱାସ ଓ ସାହସ ବୃଦ୍ଧି ପାଏ ।

୪. ଆରବୀ 'ରିହ୍' ଶବ୍ଦର ଅନ୍ୟତମ ଅର୍ଥ ଶକ୍ତି । ଏଠାରେ ସେହି ଅର୍ଥ ପ୍ରୟୋଗ କରାଯାଇଛି ।

وَاِذْ زَيَّنَ لَهُمُ الشَّيْطٰنُ اَعْمَالَهُمْ وَقَالَ لَا غَالِبَ لَكُمُ الْيَوْمَ مِنَ النَّاسِ وَاِنِّيْ جَارٌ لَّكُمْ ۚ فَلَمَّا تَرَآءَتِ الْفِئَتٰنِ نَكَصَ عَلٰى عَقِبَيْهِ وَقَالَ اِنِّيْ بَرِيْٓءٌ مِّنْكُمْ اِنِّيْٓ اَرٰى مَا لَا تَرَوْنَ اِنِّيْٓ اَخَافُ اللّٰهَ ۗ وَاللّٰهُ شَدِيْدُ الْعِقَابِ ﴿٤٩﴾

୪୯. ଏବଂ (ସ୍ମରଣ କର) ଯେତେବେଳେ ସଇତାନ (ଅବିଶ୍ୱାସକାରୀମାନଙ୍କୁ) ସେମାନଙ୍କ କାର୍ଯ୍ୟକଳାପକୁ ସୁନ୍ଦର କରି ଦେଖାଇଲା ଓ କହିଲା, "ଆଜି ଲୋକମାନଙ୍କ ମଧ୍ୟରୁ କେହି ତୁମମାନଙ୍କ ଉପରେ ବିଜୟଲାଭ କରିପାରିବେ ନାହିଁ, କାରଣ ମୁଁ ତୁମମାନଙ୍କର ପୃଷ୍ଠପୋଷକ;" ତା'ପରେ ଯେତେବେଳେ ଉଭୟ ସୈନ୍ୟବାହିନୀ ପରସ୍ପରର ସମ୍ମୁଖୀନ ହୋଇଥିଲେ (ସେତେବେଳେ) ସେ ପଶ୍ଚାତ୍‌ପଦ ହୋଇ ଖସିଗଲା ଓ କହିଲା, "ମୁଁ ତୁମମାନଙ୍କ ଉପରେ ବିରକ୍ତ ହୋଇଅଛି ; ତୁମେମାନେ ଯାହା ଦେଖୁନାହିଁ ମୁଁ ତାହା ଦେଖୁଅଛି ; ମୁଁ ଅଲ୍ଲାହଙ୍କୁ ଭୟକରେ ଓ ଅଲ୍ଲାହଙ୍କର ଶାସ୍ତି କଠୋର ।"

ରୁ : ୬

اِذْ يَقُوْلُ الْمُنٰفِقُوْنَ وَالَّذِيْنَ فِيْ قُلُوْبِهِمْ مَّرَضٌ غَرَّ هٰٓؤُلَآءِ دِيْنُهُمْ ۗ وَمَنْ يَّتَوَكَّلْ عَلَى اللّٰهِ فَاِنَّ اللّٰهَ عَزِيْزٌ حَكِيْمٌ ﴿٥٠﴾

୫୦. ଏବଂ (ସ୍ମରଣ କର) ଯେତେବେଳେ କପଟବିଶ୍ୱାସୀମାନେ ଓ ଯେଉଁମାନଙ୍କ ହୃଦୟ ରୋଗଗ୍ରସ୍ତ ସେମାନେ କହୁଥିଲେ, "ସେହି ମୁସଲମାନମାନଙ୍କୁ ସେମାନଙ୍କ ଧର୍ମ ଅହଙ୍କାରୀ କରିଦେଇଅଛି" ; କିନ୍ତୁ ଯେ ଅଲ୍ଲାହଙ୍କ ଉପରେ ନିର୍ଭର କରେ ସେ ଦେଖିବାକୁ ପାଇବ ଯେ ଅଲ୍ଲାହ ବାସ୍ତବରେ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

وَلَوْ تَرٰٓى اِذْ يَتَوَفَّى الَّذِيْنَ كَفَرُوا ۙ الْمَلٰٓئِكَةُ يَضْرِبُوْنَ وُجُوْهَهُمْ وَاَدْبَارَهُمْ ۚ وَذُوْقُوْا عَذَابَ الْحَرِيْقِ ﴿٥١﴾

୫୧. ଏବଂ ଯଦି ତୁମେ ଏହା କଳ୍ପନା କରି ପାରନ୍ତ ଯେ ଯେତେବେଳେ ଦେବଦୂତମାନେ ଅବିଶ୍ୱାସକାରୀମାନଙ୍କ ପ୍ରାଣ ହରଣ କରନ୍ତି ଏବଂ ସେମାନଙ୍କ ମୁଖମଣ୍ଡଳ ଓ ପୃଷ୍ଠଦେଶକୁ ପ୍ରହାର କରି କହୁଥାଆନ୍ତି, "ତୁମେମାନେ ଏକ ଦାହକ ଶାସ୍ତି ଆସ୍ୱାଦନ କର ।"

ذٰلِكَ بِمَا قَدَّمَتْ اَيْدِيْكُمْ وَاَنَّ اللّٰهَ لَيْسَ بِظَلَّامٍ لِّلْعَبِيْدِ ۙ ﴿٥٢﴾

୫୨. ଏହା (ଅର୍ଥାତ୍ ଏହି ଶାସ୍ତି) ତୁମମାନଙ୍କର ସ୍ୱହସ୍ତ ଅର୍ଜିତ ବିଗତ କୃତିର ପରିଣାମ ; (ଏବଂ ମନେରଖ ଯେ) ଅଲ୍ଲାହ ନିଜର ଭକ୍ତମାନଙ୍କ ପ୍ରତି ସାମାନ୍ୟତମ ଅନ୍ୟାୟ କରନ୍ତି ନାହିଁ ।

كَدَاْبِ اٰلِ فِرْعَوْنَ ۙ وَالَّذِيْنَ مِنْ قَبْلِهِمْ ۗ كَفَرُوْا بِاٰيٰتِ اللّٰهِ فَاَخَذَهُمُ اللّٰهُ بِذُنُوْبِهِمْ ۗ اِنَّ اللّٰهَ قَوِيٌّ شَدِيْدُ الْعِقَابِ ﴿٥٣﴾

୫୩. (ହେ ଅମାନ୍ୟକାରୀମାନେ ! ତୁମମାନଙ୍କର ଅବସ୍ଥା ମଧ୍ୟ) ଫିରଔନର ସମ୍ପ୍ରଦାୟ ଓ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କ ସଦୃଶ (ହେବ), ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନଗୁଡିକୁ ଅବିଶ୍ୱାସ କରିଥିଲେ ; ତେଣୁ ଅଲ୍ଲାହ ସେମାନଙ୍କୁ ସେମାନଙ୍କ ପାପ ଯୋଗୁଁ କବଳିତ କରିଥିଲେ ; ବାସ୍ତବରେ ଅଲ୍ଲାହ ଅତ୍ୟନ୍ତ ଶକ୍ତିଶାଳୀ (ଓ) କଠୋର ଶାସ୍ତିଦାତା ।

୧. ପୂର୍ବବର୍ତ୍ତୀ ଆୟତରୁ ଜଣାପଡୁଛି ଯେ ଅବିଶ୍ୱାସକାରୀମାନେ ଅହଙ୍କାରର ବଶବର୍ତ୍ତୀ ହୋଇ ଯୁଦ୍ଧ କରିବା ପାଇଁ ଆସିଥିଲେ । ତେଣୁ ସେମାନେ ମୁସଲମାନମାନଙ୍କୁ ମଧ୍ୟ ନିଜ ସଦୃଶ ଅହଙ୍କାରୀ ମନେ କରୁଥିଲେ ଅଥଚ ସେମାନେ ମୁସଲମାନମାନଙ୍କ ଧର୍ମବିଶ୍ୱାସର ପ୍ରଭାବକୁ ଅନୁଭବ କରିପାରୁ ନ ଥିଲେ ।

ذٰلِكَ بِاَنَّ اللّٰهَ لَمۡ يَكُ مُغَيِّرًا نِّعۡمَةً اَنۡعَمَهَا عَلٰى قَوۡمٍ حَتّٰى يُغَيِّرُوۡا مَا بِاَنۡفُسِهِمۡ ۙ وَاَنَّ اللّٰهَ سَمِيۡعٌ عَلِيۡمٌ ۙ﴿۵۴﴾

୫୪. କାରଣ ଯେ ପର୍ଯ୍ୟନ୍ତ କୌଣସି ସମ୍ପ୍ରଦାୟ ନିଜ ମନର ଅବସ୍ଥାକୁ ପରିବର୍ତ୍ତନ ନ କରେ (ସେ ପର୍ଯ୍ୟନ୍ତ) ଅଲ୍ଲାହ ସେହି ସମ୍ପ୍ରଦାୟକୁ ପ୍ରଦାନ କରାଯାଇଥିବା କୃପାର ପରିବର୍ତ୍ତନ କରନ୍ତି ନାହିଁ ; ଏବଂ ବାସ୍ତବରେ ଅଲ୍ଲାହ ମହାନ୍ ଶ୍ରୋତା (ଓ) ଡତ୍ତ୍ୱଜ୍ଞ ।[1]

كَدَاۡبِ اٰلِ فِرۡعَوۡنَ ۙ وَالَّذِيۡنَ مِنۡ قَبۡلِهِمۡ ؕ كَذَّبُوۡا بِاٰيٰتِ رَبِّهِمۡ فَاَهۡلَكۡنٰهُمۡ بِذُنُوۡبِهِمۡ وَاَغۡرَقۡنَاۤ اٰلَ فِرۡعَوۡنَ ۚ وَكُلٌّ كَانُوۡا ظٰلِمِيۡنَ ﴿۵۵﴾

୫୫. (ହେ ଅମାନ୍ୟକାରୀମାନେ ! ଧ୍ବମମାନଙ୍କର ଅବସ୍ଥା ମଧ୍ୟ) ଫିରଔନର ସମ୍ପ୍ରଦାୟ ଓ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କ ସଦୃଶ (ହେବ), ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲେ ; ତେଣୁ ଆମେ ସେମାନଙ୍କୁ ସେମାନଙ୍କ ପାପ ଯୋଗୁଁ ବିନାଶ କରିଥିଲୁ ; (ଏବଂ ସେମାନେ ଅଲ୍ଲାହଙ୍କ ପ୍ରତି ବିମୁଖ ହେବାରୁ ସେମାନଙ୍କଠାରୁ ସେମାନଙ୍କୁ ପ୍ରଦତ୍ତ କୃପା ପ୍ରତ୍ୟାହାର କରାଗଲା), ଏବଂ ଆମେ ଫିରଔନର ସମ୍ପ୍ରଦାୟକୁ ଜଳମଗ୍ନ କରାଇଥିଲୁ, ଏବଂ ସେମାନେ ସମସ୍ତେ ଅତ୍ୟାଚାରୀ ଥିଲେ ।

اِنَّ شَرَّ الدَّوَآبِّ عِنۡدَ اللّٰهِ الَّذِيۡنَ كَفَرُوۡا فَهُمۡ لَا يُؤۡمِنُوۡنَ ۖۚ﴿۵۶﴾

୫୬. ଯେଉଁମାନେ ଅଲ୍ଲାହଙ୍କ ବାଣୀକୁ ପ୍ରତ୍ୟାଖ୍ୟାନ କରନ୍ତି ଏବଂ ବିଶ୍ୱାସ କରନ୍ତି ନାହିଁ, ସେମାନେ ଅଲ୍ଲାହଙ୍କ ନିକଟରେ ପଶୁଠାରୁ ହୀନ ।

اَلَّذِيۡنَ عٰهَدْتَّ مِنۡهُمۡ ثُمَّ يَنۡقُضُوۡنَ عَهۡدَهُمۡ فِىۡ كُلِّ مَرَّةٍ وَّهُمۡ لَا يَتَّقُوۡنَ ﴿۵۷﴾

୫୭. ଯେଉଁମାନଙ୍କ ସହିତ ତୁମେ ଚୁକ୍ତିବଦ୍ଧ ହୋଇଅଛ, ତତ୍‌ପରେ ସେମାନେ ପ୍ରତିଥର ସେମାନଙ୍କର ଚୁକ୍ତି ଭଙ୍ଗ କରନ୍ତି, ଓ ସେମାନେ ଅଲ୍ଲାହଙ୍କୁ ଭୟ କରନ୍ତି ନାହିଁ ।

فَاِمَّا تَثۡقَفَنَّهُمۡ فِى الۡحَرۡبِ فَشَرِّدۡ بِهِمۡ مَّنۡ خَلۡفَهُمۡ لَعَلَّهُمۡ يَذَّكَّرُوۡنَ ﴿۵۸﴾

୫୮. ସୁତରାଂ, ଯଦି ତୁମେ ଯୁଦ୍ଧରେ ସେମାନଙ୍କୁ ଆୟତ୍ତାଧୀନ କର, ତେବେ ତୁମେ ସେମାନଙ୍କ ଦ୍ୱାରା ସେମାନଙ୍କ ପଛରେ ଯେଉଁ (ସୈନ୍ୟ) ମାନେ ଅଛନ୍ତି ସେମାନଙ୍କୁ ବିତାଡ଼ିତ କର, ଯେପରିକି ସେମାନେ ଶିକ୍ଷାଲାଭ କରିବେ ।[2]

---

୧. ମୁସଲମାନମାନେ ଏହି ଆୟତ ଯୋଗୁଁ ଏକ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇଛନ୍ତି । ଯେପର୍ଯ୍ୟନ୍ତ କୌଣସି ଜାତି ସାଂସାରିକ ବ୍ୟବସ୍ଥା ନ କରିବ ସେ ପର୍ଯ୍ୟନ୍ତ ଉନ୍ନତି ଲାଭ କରିପାରିବ ନାହିଁ । ଅଥଚ ଏହି ଆୟତରେ ସେପରି କୌଣସି ବର୍ଣ୍ଣନା ନାହିଁ । ଏଠାରେ ଯାହା ବର୍ଣ୍ଣନା କରାଯାଇଛି ତା ହେଉଛି, ଯେବେ ଅଲ୍ଲାହ କୌଣସି ଜାତିକୁ କୌଣସି ପୁରସ୍କାର ପ୍ରଦାନ କରନ୍ତି ତେବେ ସେହି ଜାତିର ମନୋବୃତ୍ତି କଳୁଷିତ ନହେବା ପର୍ଯ୍ୟନ୍ତ ସେ ସେହି ପୁରସ୍କାରକୁ ଛଡ଼ାଇ ନିଅନ୍ତି ନାହିଁ । ମୁସଲମାନମାନେ ଏଥିରୁ ଯେଉଁ ଅର୍ଥ ବୁଝୁଛନ୍ତି ଅନ୍ୟାନ୍ୟ ନବିଙ୍କ ସମୟରେ ତାହା ଅସତ୍ୟ ପ୍ରତିପାଦିତ ହୋଇଯାଇଛି, ଅର୍ଥାତ୍ ସାଂସାରିକ ବ୍ୟବସ୍ଥା ହୋଇ ନଥିବା ସତ୍ତ୍ୱେ ଓ ନିଜର ସମସ୍ତ ସମ୍ପତ୍ତି ଅଲ୍ଲାହଙ୍କ ପଥରେ ବ୍ୟୟ କରିବା ସତ୍ତ୍ୱେ ନବିଙ୍କ ଅନୁଗାମୀମାନେ ସବୁବେଳେ ଉନ୍ନତି କରିଥାନ୍ତି ଓ ଶତ୍ରୁମାନଙ୍କ ଉପରେ ଜୟଲାଭ କରିଥାନ୍ତି । ଅବଶ୍ୟ ଅନ୍ୟତ୍ର ବର୍ଣ୍ଣନା କରାଯାଇଛି ଯେ ମୁସଲମାନମାନେ ପ୍ରାକୃତିକ ନିୟମକୁ ଉପେକ୍ଷା କରିବା ଉଚିତ ନୁହେଁ । କିନ୍ତୁ ତାହା ଆଧ୍ୟାତ୍ମିକ ନିୟମ ନୁହେଁ ବରଂ ପ୍ରାକୃତିକ ନିୟମ ସମ୍ବନ୍ଧିତ ଏକ ସିଦ୍ଧାନ୍ତ ।

୨. ଅର୍ଥାତ୍ ଏପରି ସାବଧାନତା ଓ ବିଶ୍ୱସ୍ତତା ସହକାରେ ଯୁଦ୍ଧ କର ଯେପରି ଦୂରସ୍ଥ ଅବିଶ୍ୱାସକାରୀମାନେ ମଧ୍ୟ ଭୟଭୀତ ହେବେ ଓ ସମ୍ମୁଖୀନ ହେବାକୁ ସାହସ କରିପାରିବେ ନାହିଁ ।

وَإِمَّا تَخَافَنَّ مِن قَوْمٍ خِيَانَةً فَانْبِذْ إِلَيْهِمْ عَلَىٰ سَوَاءٍ ۚ إِنَّ اللَّهَ لَا يُحِبُّ الْخَائِنِينَ ﴿٥٩﴾

୫୯. ଏବଂ ଯଦି ତୁମ୍ଭେ କୌଣସି ସମ୍ପ୍ରଦାୟଠାରୁ ବିଶ୍ୱାସଘାତକତା ଆଶଙ୍କା କର, ତେବେ ଏପରି ଭାବେ ସେମାନଙ୍କ ସହ ଚୁକ୍ତି ସମାପ୍ତ କର ; ଯଦ୍ଦ୍ୱାରା ସେମାନେ ବୁଝି ପାରିବେ ଯେ ଉଭୟ ପକ୍ଷ (ନିଜ ନିଜ କଟକଣାରୁ) ମୁକ୍ତ ; ଅଲ୍ଲାହ୍ ବିଶ୍ୱାସଘାତକମାନଙ୍କୁ ପସନ୍ଦ କରନ୍ତି ନାହିଁ ।

ରୁ : ୮

وَلَا يَحْسَبَنَّ الَّذِينَ كَفَرُوا سَبَقُوا ۚ إِنَّهُمْ لَا يُعْجِزُونَ ﴿٦٠﴾

୬୦. ଏବଂ ଅବିଶ୍ୱାସକାରୀମାନେ ଏପରି କଦାପି ମନେ ନ କରନ୍ତୁ ଯେ ସେମାନେ (ପ୍ରତାରଣା କରି) ଅଗ୍ରସର ହୋଇଯାଇଛନ୍ତି, ସେମାନେ କେବେହେଲେ (ବିଶ୍ୱାସକାରୀମାନଙ୍କୁ) ପରାସ୍ତ କରିପାରିବେ ନାହିଁ ।

وَأَعِدُّوا لَهُم مَّا اسْتَطَعْتُم مِّن قُوَّةٍ وَمِن رِّبَاطِ الْخَيْلِ تُرْهِبُونَ بِهِ عَدُوَّ اللَّهِ وَعَدُوَّكُمْ وَآخَرِينَ مِن دُونِهِمْ لَا تَعْلَمُونَهُمُ اللَّهُ يَعْلَمُهُمْ ۚ وَمَا تُنفِقُوا مِن شَيْءٍ فِي سَبِيلِ اللَّهِ يُوَفَّ إِلَيْكُمْ وَأَنتُمْ لَا تُظْلَمُونَ ﴿٦١﴾

୬୧. ଏବଂ (ହେ ମୁସଲମାନମାନେ !) ତୁମେମାନେ ଯଥାସାଧ୍ୟ ସମ୍ଭବ, ସେ (ଯୁଦ୍ଧରତ ବ୍ୟକ୍ତି) ମାନଙ୍କ ସକାଶେ ନିଜ ଶକ୍ତି ସଞ୍ଚୟ କରି ପ୍ରସ୍ତୁତ ହୁଅ ; ଏବଂ ସୀମାନ୍ତରେ ଛାଉଣୀ ସ୍ଥାପନ କରି ତଦ୍ଦ୍ୱାରା ଅଲ୍ଲାହ୍‌ଙ୍କର ଶତ୍ରୁମାନଙ୍କୁ ଓ ତୁମମାନଙ୍କର ଶତ୍ରୁମାନଙ୍କୁ ତଥା ସେମାନଙ୍କ ବ୍ୟତୀତ ଯେଉଁମାନଙ୍କୁ ତୁମେମାନେ ଜାଣନାହିଁ, ଅଥଚ ଅଲ୍ଲାହ୍ ସେମାନଙ୍କୁ ଭଲରୂପେ ଜାଣନ୍ତି, ସେମାନଙ୍କୁ ମଧ୍ୟ ଭୟଭୀତ କରାଅ ; ଏବଂ ତୁମେମାନେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ଯାହା କିଛି ବ୍ୟୟ କରିବ, ସେ ତୁମମାନଙ୍କୁ ତାହାର ସମ୍ପୂର୍ଣ୍ଣ ପ୍ରତିଦାନ ଦେବେ ; ଏବଂ ତୁମମାନଙ୍କ ପ୍ରତି ଅନ୍ୟାୟ କରାଯିବ ନାହିଁ ।[1]

وَإِن جَنَحُوا لِلسَّلْمِ فَاجْنَحْ لَهَا وَتَوَكَّلْ عَلَى اللَّهِ ۚ إِنَّهُ هُوَ السَّمِيعُ الْعَلِيمُ ﴿٦٢﴾

୬୨. ଏବଂ ଯଦି (ତୁମମାନଙ୍କ ପ୍ରସ୍ତୁତିକୁ ଲକ୍ଷ୍ୟ କରି) ସେମାନେ ସନ୍ଧି ସ୍ଥାପନ ପାଇଁ ଆଗ୍ରହୀ ହୁଅନ୍ତି ; ତେବେ ତୁମ୍ଭେ ମଧ୍ୟ ସେଥିପାଇଁ ଆଗ୍ରହୀ ହୁଅ; ଏବଂ ଅଲ୍ଲାହ୍‌ଙ୍କ ଉପରେ ନିର୍ଭର କର ; ନିଶ୍ଚୟ ଅଲ୍ଲାହ୍ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَإِن يُرِيدُوا أَن يَخْدَعُوكَ فَإِنَّ حَسْبَكَ اللَّهُ ۚ هُوَ الَّذِي أَيَّدَكَ بِنَصْرِهِ وَبِالْمُؤْمِنِينَ ﴿٦٣﴾

୬୩. ଏବଂ ପରେ ଯଦି ସେମାନେ ତୁମକୁ ପ୍ରତାରଣା କରିବା ପାଇଁ ଇଚ୍ଛାକରନ୍ତି, ତେବେ (ମନେରଖ ଯେ) ଅଲ୍ଲାହ୍ ନିଶ୍ଚୟ ତୁମପାଇଁ ଯଥେଷ୍ଟ ; ସେ ହିଁ ତୁମକୁ ବିଶ୍ୱାସକାରୀମାନଙ୍କ ଦ୍ୱାରା ଏବଂ ନିଜ ସାହାଯ୍ୟ ଦ୍ୱାରା ଶକ୍ତିଶାଳୀ କରିଥିଲେ ।

---

[1] ଏଠାରେ ରୋମ ଓ ଇରାନର ସମ୍ରାଟଙ୍କ ସୈନ୍ୟବାହିନୀ ବିଷୟରେ ସୂଚନା ଦିଆଯାଇ ବର୍ଣ୍ଣନା କରାଯାଇଛି ଯେ କେବଳ ଆରବର ବିଭିନ୍ନ ଗୋଷ୍ଠୀଙ୍କୁ ଉପଦେଶ ଦେବା ତୁମମାନଙ୍କର କର୍ତ୍ତବ୍ୟ ନୁହେଁ ବରଂ ତୁମମାନଙ୍କୁ ସେମାନଙ୍କ ସୈନ୍ୟବାହିନୀର ମୁକାବିଲା କରିବାକୁ ହେବ ଓ ସେମାନଙ୍କ ମନରେ ଆତଙ୍କ ସୃଷ୍ଟି କରିବାକୁ ହେବ ।

୬୪. ଏବଂ ସେ (ଅଲ୍ଲାହ) ସେମାନଙ୍କ ହୃଦୟକୁ ପରସ୍ପର ସହିତ ବାନ୍ଧି ଦେଲେ (ଏପରିକି ତୁମ ସହଚରମାନେ ତୁମ ସ୍ୱେଦର ପରିବର୍ତ୍ତେ ନିଜ ରକ୍ତ ପ୍ରବାହିତ କରାଇବାକୁ ପ୍ରସ୍ତୁତ ହୋଇଗଲେ) ; ପୃଥିବୀରେ ଯାହା କିଛି ଅଛି ଯଦି ତୁମେ ତାହାଙ୍କ ସକାଶେ ବ୍ୟୟ କରିଥାଆନ୍ତ, ତଥାପି ସେମାନଙ୍କ ହୃଦୟକୁ ଏପରି ବାନ୍ଧିପାରି ନଥାଆନ୍ତ, କିନ୍ତୁ ଅଲ୍ଲାହ ସେମାନଙ୍କ ହୃଦୟରେ ପରସ୍ପର ପ୍ରତି (ଓ ତୁମପ୍ରତି ମଧ୍ୟ) ପ୍ରୀତି ସ୍ଥାପନ କରିଥିଲେ, ବାସ୍ତବରେ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

وَأَلَّفَ بَيْنَ قُلُوبِهِمْ ۚ لَوْ أَنفَقْتَ مَا فِي الْأَرْضِ جَمِيعًا مَّا أَلَّفْتَ بَيْنَ قُلُوبِهِمْ وَلَٰكِنَّ اللَّهَ أَلَّفَ بَيْنَهُمْ ۚ إِنَّهُ عَزِيزٌ حَكِيمٌ ﴿٦٣﴾

୬୫. ହେ ନବି ! ଅଲ୍ଲାହ ଓ ତୁମର ଆଜ୍ଞାବହ ବିଶ୍ୱାସକାରୀମାନେ ତୁମପାଇଁ ଯଥେଷ୍ଟ ; (ତେଣୁ ବିରୋଧୀମାନଙ୍କୁ ଖାତିର କର ନାହିଁ) ।

يَا أَيُّهَا النَّبِيُّ حَسْبُكَ اللَّهُ وَمَنِ اتَّبَعَكَ مِنَ الْمُؤْمِنِينَ ﴿٦٤﴾ ع

ରୁ : ୯

୬୬. ହେ ନବି ! (ଅବିଶ୍ୱାସକାରୀମାନଙ୍କ ବିପକ୍ଷରେ) ଯୁଦ୍ଧ କରିବା ପାଇଁ ବିଶ୍ୱାସକାରୀମାନଙ୍କୁ ବାରମ୍ବାର ପରାମର୍ଶ ଦିଅ ; ଯଦି ତୁମମାନଙ୍କ ମଧ୍ୟରୁ କୋଡ଼ିଏ[1] ଜଣ ଧୈର୍ଯ୍ୟବାନ୍ (ବିଶ୍ୱାସକାରୀ) ଥିବେ, ତେବେ ସେମାନେ ଦୁଇଶହ (ଅବିଶ୍ୱାସକାରୀ)ଙ୍କ ଉପରେ ବିଜୟ ଲାଭ କରିବେ ; ଏବଂ ଯଦି ତୁମମାନଙ୍କ ମଧ୍ୟରୁ ଶହେ ଜଣ (ଧୈର୍ଯ୍ୟବାନ୍ ବିଶ୍ୱାସକାରୀ) ଥିବେ ତେବେ ସେମାନେ ଏକହଜାର (ଅବିଶ୍ୱାସକାରୀ)ଙ୍କ ଉପରେ ବିଜୟ ଲାଭ କରିବେ । କାରଣ ସେମାନେ ଏକ ନିର୍ବୋଧ ସମ୍ପ୍ରଦାୟ (ଅଥଚ ବିଶ୍ୱାସକାରୀମାନେ ବୁଝି ବିଚାରି ନିଜ ବିଶ୍ୱାସ ଉପରେ ପ୍ରତିଷ୍ଠିତ ରହିଛନ୍ତି) ।

يَا أَيُّهَا النَّبِيُّ حَرِّضِ الْمُؤْمِنِينَ عَلَى الْقِتَالِ ۚ إِن يَكُن مِّنكُمْ عِشْرُونَ صَابِرُونَ يَغْلِبُوا مِائَتَيْنِ ۚ وَإِن يَكُن مِّنكُم مِّائَةٌ يَغْلِبُوا أَلْفًا مِّنَ الَّذِينَ كَفَرُوا بِأَنَّهُمْ قَوْمٌ لَّا يَفْقَهُونَ ﴿٦٥﴾

୧. ଏଠାରେ କୁହାଯାଇଛି ଯେ ମୁସଲମାନମାନେ ନିଜଠାରୁ ଦଶ ଗୁଣ ଅଧିକ ଅବିଶ୍ୱାସକାରୀଙ୍କ ଉପରେ ବିଜୟ ପାଇବେ କାରଣ ସେତେବେଳକୁ ସେମାନଙ୍କ ଧର୍ମବିଶ୍ୱାସ ଆହୁରି ବଢ଼ି ଯାଇଥିବ ଓ ଅଲ୍ଲାହଙ୍କ ଅଙ୍ଗୀକାର ମଧ୍ୟ ପୂର୍ଣ୍ଣ ହୋଇଯାଇଥିବ । ଏହା ଅବଶ୍ୟ ପରେ ଘଟିବ । ବର୍ତ୍ତମାନ ପାଇଁ ସେମାନଙ୍କ ଧର୍ମବିଶ୍ୱାସ ଓ ଅଲ୍ଲାହଙ୍କ ଅଙ୍ଗୀକାର ଦୃଷ୍ଟିରୁ ସେମାନଙ୍କୁ ନିଜ ଠାରୁ ଦୁଇଗୁଣ ଅଧିକ ଶତ୍ରୁଙ୍କ ଉପରେ ବିଜୟ ପ୍ରାପ୍ତ ହେବ ।

୬୭. ବର୍ତ୍ତମାନ ଅଲ୍ଲାହ ତୁମମାନଙ୍କ ଭାର ଲାଘବ କରି ଦେଇଛନ୍ତି, କାରଣ ସେ ଜାଣିଛନ୍ତି ଯେ ଏବେ ବି ତୁମମାନଙ୍କ ମଧ୍ୟରେ କିଛି ଦୁର୍ବଳତା ଅଛି, (ଅର୍ଥାତ୍ ସବୁ ବିଶ୍ୱାସକାରୀ ସର୍ବୋଚ୍ଚ ଶ୍ରେଣୀର ବିଶ୍ୱାସକାରୀ ହୋଇ ପାରିନାହାନ୍ତି) ; ସୁତରାଂ ଯଦି ତୁମମାନଙ୍କ ମଧ୍ୟରେ ଏକଶହ ଧୈର୍ଯ୍ୟବାନ୍ (ବିଶ୍ୱାସକାରୀ) ଥିବେ ତେବେ [1] ସେମାନେ ଦୁଇଶହ (ଅବିଶ୍ୱାସକାରୀ)ଙ୍କ ଉପରେ ବିଜୟ ଲାଭ କରିବେ । ଏବଂ ଯଦି ତୁମମାନଙ୍କ ମଧ୍ୟରେ ଏକ ହଜାର (ଧୈର୍ଯ୍ୟବାନ୍ ବିଶ୍ୱାସକାରୀ) ଥିବେ ତେବେ ସେମାନେ ଅଲ୍ଲାହଙ୍କ ଆଦେଶ କ୍ରମେ ଦୁଇ ହଜାର (ଅବିଶ୍ୱାସକାରୀ)ଙ୍କ ଉପରେ ବିଜୟ ଲାଭ କରିବେ ; ଏବଂ ଅଲ୍ଲାହ ଧୈର୍ଯ୍ୟବାନ୍‌ବ୍ୟକ୍ତିମାନଙ୍କ ସହିତ ଥାଆନ୍ତି ।

ٱلْـَٰٔنَ خَفَّفَ ٱللَّهُ عَنكُمْ وَعَلِمَ أَنَّ فِيكُمْ ضَعْفًا ۚ فَإِن يَكُن مِّنكُم مِّا۟ئَةٌ صَابِرَةٌ يَغْلِبُوا۟ مِا۟ئَتَيْنِ ۚ وَإِن يَكُن مِّنكُمْ أَلْفٌ يَغْلِبُوٓا۟ أَلْفَيْنِ بِإِذْنِ ٱللَّهِ ۗ وَٱللَّهُ مَعَ ٱلصَّٰبِرِينَ ﴿٦٧﴾

୬୮. ଦେଶରେ ରକ୍ତପାତ [2] ନ ହେବା ପର୍ଯ୍ୟନ୍ତ କୌଣସି ନବିଙ୍କ ପକ୍ଷରେ କାହାରିକୁ ବନ୍ଦୀ କରି ରଖିବା ଶୋଭନୀୟ ନୁହେଁ ; (ଯେବି ତୁମେ ବିନା ଯୁଦ୍ଧରେ କାହାରିକୁ ବନ୍ଦୀ କରି ରଖ) ତେବେ ତୁମେମାନେ ପାର୍ଥିବ ବିଭବ କାମନା କରୁଥିବାର ଜଣାଯିବ ; ଅଥଚ ଅଲ୍ଲାହ (ତୁମମାନଙ୍କ ପାଇଁ) ପରକାଳର (ବିଭବ) କାମନା କରୁଛନ୍ତି ; ଏବଂ ଅଲ୍ଲାହ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

مَا كَانَ لِنَبِىٍّ أَن يَكُونَ لَهُۥٓ أَسْرَىٰ حَتَّىٰ يُثْخِنَ فِى ٱلْأَرْضِ ۚ تُرِيدُونَ عَرَضَ ٱلدُّنْيَا وَٱللَّهُ يُرِيدُ ٱلْـَٔاخِرَةَ ۗ وَٱللَّهُ عَزِيزٌ حَكِيمٌ ﴿٦٨﴾

୬୯. ଯଦି ପୂର୍ବରୁ ଅଲ୍ଲାହଙ୍କଠାରୁ ଏକ ସ୍ପଷ୍ଟ ଆଦେଶ [3] ପ୍ରାପ୍ତ ହୋଇ ନ ଥାଆନ୍ତା, ତେବେ ତୁମେମାନେ (ବନ୍ଦୀମାନଙ୍କଠାରୁ) ଯେଉଁ ମୁକ୍ତି ମୂଲ୍ୟ ଗ୍ରହଣ କରିଥିଲ, ସେଥିଯୋଗୁଁ ତୁମମାନଙ୍କୁ କଠୋର ଶାସ୍ତି ପ୍ରଦାନ କରାଯାଇଥାଆନ୍ତା ।

لَّوْلَا كِتَٰبٌ مِّنَ ٱللَّهِ سَبَقَ لَمَسَّكُمْ فِيمَآ أَخَذْتُمْ عَذَابٌ عَظِيمٌ ﴿٦٩﴾

---

୧. ଅଲ୍ଲାହଙ୍କର ଏହି ଆଦେଶ ଧର୍ମବିଶ୍ୱାସର ସ୍ତର ଅନୁସାରେ ନିର୍ଦ୍ଧାରିତ ହେଉଥିବ । ତେଣୁ ଧର୍ମବିଶ୍ୱାସ ସହିତ ଏହା ବୃଦ୍ଧି ପାଉଥିବ । ରୋମ ଓ ଇରାନ ସୈନ୍ୟବାହିନୀ ସହିତ ଯୁଦ୍ଧ ହେଲାବେଳେ ମୁସଲମାନମାନେ ଦଶ ଗୁଣ ନୁହେଁ ବରଂ ଅଶୀ ଗୁଣ ଓ ଶହେ ଗୁଣ ଅଧିକ ସୈନ୍ୟଙ୍କୁ ପରାସ୍ତ କରିଥିଲେ । ଏପରି ହେବାର କାରଣ ହେଉଛି ଯେ ହଜରତ ମହମ୍ମଦଙ୍କ ସହଚରମାନଙ୍କ ସମୟକୁ ତଥା ତାଙ୍କ ପରବର୍ତ୍ତୀ କାଳର ନୂଆ ନୂଆ ନିଦର୍ଶନ ଓ ଅଲୌକିକ ଘଟଣାକୁ ଦେଖିଥିଲେ ।

୨. ଏଠାରେ ନବି ରକ୍ତପାତ କରାଇବା ଜଣାପଡୁ ନାହିଁ କାରଣ ପବିତ୍ର କୋରାନରେ ଏହାର ବିପରୀତ ଶିକ୍ଷା ରହିଅଛି । ଏହାର ପ୍ରକୃତ ମର୍ମ ହେଉଛି, ଯେବେ ଶତ୍ରୁପକ୍ଷର ଆକ୍ରମଣ ଫଳରେ ସେ ରକ୍ତପାତ କରାଇବାକୁ ବାଧ୍ୟ ହେବେ ତେବେ ସେ ପ୍ରତିପକ୍ଷକୁ ବନ୍ଦୀ କରିପାରିବେ, ଅନ୍ୟଥା କରିପାରିବେ ନାହିଁ । ଅତଏବ ବିନା ରକ୍ତପାତରେ କାହାରିକୁ ବନ୍ଦୀ କରିବା ଅନୁଚିତ । ଯେଉଁ ସ୍ଥଳେ ଦୁଇଟି ଗୋଷ୍ଠୀ ମଧ୍ୟରେ ଯୁଦ୍ଧ ହୁଏ କେବଳ ସେହି ସ୍ଥଳେ ପ୍ରତିପକ୍ଷକୁ ବନ୍ଦୀ କରିବା ଉଚିତ ।

୩. 'ଫିଦ୍‌ୟା' ଗ୍ରହଣ କରିବା ପ୍ରଥମରୁ ନ୍ୟାଯ୍ୟ ସ୍ଥିର କରାଯାଇଛି । ତେଣୁ ଯେଉଁ ଟୀକାକାରମାନେ କହନ୍ତି ଯେ ଫିଦ୍‌ୟା ଗ୍ରହଣ କରିବା ହେତୁ ଅଲ୍ଲାହ ହଜରତ ମହମ୍ମଦଙ୍କ ଉପରେ କ୍ରୋଧାନ୍ୱିତ ହେଲେ ସେମାନେ ଏକ ମସ୍ତବଡ଼ ଭୁଲ୍ କରିଛନ୍ତି । ସେମାନେ ମନେ ରଖିବା ଉଚିତ ଯେ ହଜରତ ମହମ୍ମଦ କେବଳ ସେହି ସେହି କାର୍ଯ୍ୟ କରିଛନ୍ତି ଯେଉଁସବୁ କାର୍ଯ୍ୟ କରିବାକୁ ଅଲ୍ଲାହ ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

فَكُلُوا مِمَّا غَنِمْتُمْ حَلٰلًا طَيِّبًا ۖ وَّاتَّقُوا اللّٰهَ ۗ اِنَّ اللّٰهَ غَفُوْرٌ رَّحِيْمٌ ۝

୭୦. ସୁତରାଂ, (ମୁକ୍ତି ମୂଲ୍ୟ ସଂକ୍ରାନ୍ତରେ ଆଦେଶ ଆସିଯାଇ ଥିବାରୁ) ତୁମମାନଙ୍କୁ ଯୁଦ୍ଧରୁ ଯାହା ସମ୍ପଦ ମିଳିଅଛି, ଏବଂ (ଅଲ୍ଲାହ୍‌ଙ୍କ ଆଦେଶ ଅନୁଯାୟୀ) ଯାହାକିଛି ବୈଧ ଓ ବିଶୁଦ୍ଧ, ତନ୍ମଧ୍ୟରୁ ଭୋଗ କର ; ଏବଂ ଅଲ୍ଲାହ୍‌ଙ୍କୁ ଭୟକର ; ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

ରୁ : ୧୦

يٰۤاَيُّهَا النَّبِيُّ قُلْ لِّمَنْ فِيْۤ اَيْدِيْكُمْ مِّنَ الْاَسْرٰۤى ۙ اِنْ يَّعْلَمِ اللّٰهُ فِيْ قُلُوْبِكُمْ خَيْرًا يُّؤْتِكُمْ خَيْرًا مِّمَّاۤ اُخِذَ مِنْكُمْ وَيَغْفِرْ لَكُمْ ۗ وَاللّٰهُ غَفُوْرٌ رَّحِيْمٌ ۝

୭୧. ହେ ନବି ! ଯେଉଁ ଲୋକମାନେ ତୁମ ଅଧୀନରେ ଯୁଦ୍ଧବନ୍ଦୀ ଭାବରେ ଅଛନ୍ତି, ସେମାନଙ୍କୁ କୁହ, ''ଯଦି ଅଲ୍ଲାହ୍ ତୁମମାନଙ୍କ ହୃଦୟରେ କୌଣସି ପୁଣ୍ୟ ଦେଖିବାକୁ ପାଇବେ, ତେବେ ତୁମମାନଙ୍କଠାରୁ ଯାହାକିଛି (ଯୁଦ୍ଧର କ୍ଷତିପୂରଣ ସ୍ୱରୂପ) ଗ୍ରହଣ କରାଯାଇଅଛି, ସେ ତୁମମାନଙ୍କୁ ତାହା ଅପେକ୍ଷା ଉତ୍କୃଷ୍ଟତର ପ୍ରଦାନ କରିବେ, ଏବଂ ତୁମମାନଙ୍କୁ କ୍ଷମାପ୍ରଦାନ କରିବେ;'' ଏବଂ ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦାକରୁଣାମୟ ।

وَاِنْ يُّرِيْدُوْا خِيَانَتَكَ فَقَدْ خَانُوا اللّٰهَ مِنْ قَبْلُ فَاَمْكَنَ مِنْهُمْ ۗ وَاللّٰهُ عَلِيْمٌ حَكِيْمٌ ۝

୭୨. ଏବଂ ଯଦି ସେମାନେ (ମୁକ୍ତି ଲାଭ ପରେ) ତୁମ ସହିତ ବିଶ୍ୱାସଘାତକତା କରିବାର ଇଚ୍ଛା କରନ୍ତି ତେବେ ସେମାନେ ଏହା ପୂର୍ବରୁ ଅଲ୍ଲାହ୍‌ଙ୍କ ସହିତ ମଧ୍ୟ ବିଶ୍ୱାସଘାତକତା କରିଛନ୍ତି, ତା ସତ୍ତ୍ୱେ ସେ ସେମାନଙ୍କୁ ତୁମର ଅଧୀନସ୍ଥ କରିଥିଲେ, ଏବଂ ଅଲ୍ଲାହ୍ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

اِنَّ الَّذِيْنَ اٰمَنُوْا وَهَاجَرُوْا وَجٰهَدُوْا بِاَمْوَالِهِمْ وَاَنْفُسِهِمْ فِيْ سَبِيْلِ اللّٰهِ وَالَّذِيْنَ اٰوَوْا وَّنَصَرُوْۤا اُولٰٓئِكَ بَعْضُهُمْ اَوْلِيَآءُ بَعْضٍ ۗ وَالَّذِيْنَ اٰمَنُوْا وَلَمْ يُهَاجِرُوْا مَا لَكُمْ مِّنْ وَّلَايَتِهِمْ مِّنْ شَيْءٍ حَتّٰى يُهَاجِرُوْا ۚ وَاِنِ اسْتَنْصَرُوْكُمْ فِي الدِّيْنِ فَعَلَيْكُمُ النَّصْرُ اِلَّا عَلٰى قَوْمٍ ۢ بَيْنَكُمْ وَبَيْنَهُمْ مِّيْثَاقٌ ۗ وَاللّٰهُ بِمَا تَعْمَلُوْنَ بَصِيْرٌ ۝

୭୩. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ହିଜରତ କରିଛନ୍ତି ତଥା ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ନିଜର ଧନ ଓ ଜୀବନ ଦେଇ ଜେହାଦ କରିଛନ୍ତି ଏବଂ ଯେଉଁମାନେ (ହିଜରତକାରୀଙ୍କୁ) ସ୍ୱଗୃହରେ ଆଶ୍ରୟ ଦେଇଛନ୍ତି ତଥା ସେମାନଙ୍କୁ ସାହାଯ୍ୟ କରିଛନ୍ତି, ସେମାନଙ୍କ ମଧ୍ୟରୁ କେତେକ ପରସ୍ପରର ଅନ୍ତରଙ୍ଗ ବନ୍ଧୁ ; ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି କିନ୍ତୁ ହିଜରତ କରିନାହାନ୍ତି, ସେମାନେ ହିଜରତ ନ କରିବା ପର୍ଯ୍ୟନ୍ତ ତୁମମାନଙ୍କର ସେମାନଙ୍କ ସହିତ ଅନ୍ତରଙ୍ଗ ଭାବରେ ବନ୍ଧୁତା ସ୍ଥାପନ କରିବା ଦରକାର ନାହିଁ, ଏବଂ ଯଦି ସେମାନେ ତୁମଠାରୁ ଧର୍ମ ସଂକ୍ରାନ୍ତରେ ସାହାଯ୍ୟ ଭିକ୍ଷା କରନ୍ତି ତେବେ ଯେଉଁ ସମ୍ପ୍ରଦାୟ ସହିତ ତୁମେମାନେ ଚୁକ୍ତି କରିଅଛ ସେମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ବିପକ୍ଷରେ ସେମାନଙ୍କୁ ସାହାଯ୍ୟ ପ୍ରଦାନ କରିବା ତୁମମାନଙ୍କର କର୍ତ୍ତବ୍ୟ, ଏବଂ ତୁମେମାନେ ଯାହା କରୁଅଛ, ଅଲ୍ଲାହ୍ ତାହା ଦେଖୁଛନ୍ତି ।

୭୪. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନେ ପରସ୍ପରର ବନ୍ଧୁ ; ଆମ୍ଭେ ଯାହା ନିର୍ଦ୍ଦେଶ ଦେଇଅଛୁ ଯଦି ତୁମେ ତାହା ନ କର, ତେବେ ପୃଥିବୀରେ ଉପଦ୍ରବ ଓ ବିଶୃଙ୍ଖଳା ସୃଷ୍ଟି ହେବ ।

وَالَّذِيْنَ كَفَرُوْا بَعْضُهُمْ اَوْلِيَآءُ بَعْضٍ ۗ اِلَّا تَفْعَلُوْهُ تَكُنْ فِتْنَةٌ فِي الْاَرْضِ وَفَسَادٌ كَبِيْرٌ ۞

୭୫. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ହିଜରତ କରିଛନ୍ତି, ତଥା ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଜେହାଦ କରିଛନ୍ତି ଏବଂ ଯେଉଁମାନେ (ହିଜରତକାରୀଙ୍କୁ) ସ୍ୱଗୃହରେ ଆଶ୍ରୟ ଦେଇଛନ୍ତି ତଥା ସେମାନଙ୍କୁ ସାହାଯ୍ୟ କରିଛନ୍ତି, ସେହିମାନେ ହି ପ୍ରକୃତ ବିଶ୍ୱାସକାରୀ ; ସେମାନଙ୍କ ପାଇଁ କ୍ଷମା ଓ ସମ୍ମାନଜନକ ଜୀବିକା ରହିଅଛି ।

وَالَّذِيْنَ اٰمَنُوْا وَهَاجَرُوْا وَجٰهَدُوْا فِيْ سَبِيْلِ اللّٰهِ وَالَّذِيْنَ اٰوَوْا وَّنَصَرُوْٓا اُولٰٓئِكَ هُمُ الْمُؤْمِنُوْنَ حَقًّا ۗ لَهُمْ مَّغْفِرَةٌ وَّرِزْقٌ كَرِيْمٌ ۞

୭୬. ଏବଂ ଯେଉଁମାନେ ପରେ ବିଶ୍ୱାସ କରିବେ ଓ ହିଜରତ କରିବେ ଏବଂ ତୁମମାନଙ୍କ ସହିତ ସମ୍ମିଳିତ ହୋଇ ଜେହାଦ କରିବେ, ସେମାନେ ମଧ୍ୟ ତୁମମାନଙ୍କ ସମ୍ପ୍ରଦାୟଭୁକ୍ତ ହୋଇଥିବାର ବିବେଚିତ ହେବେ ; ଅଲ୍ଲାହଙ୍କର (ଧର୍ମ)ଗ୍ରନ୍ଥ ଅନୁସାରେ କେତେକ ରକ୍ତ ସମ୍ପର୍କୀୟ ଅନ୍ୟ କେତେକଙ୍କ ତୁଳନାରେ ନିକଟତର ; ଅଲ୍ଲାହ ସକଳ ବିଷୟ ଭଲରୂପେ ଜାଣନ୍ତି ।

وَالَّذِيْنَ اٰمَنُوْا مِنْۢ بَعْدُ وَهَاجَرُوْا وَجٰهَدُوْا مَعَكُمْ فَاُولٰٓئِكَ مِنْكُمْ ۗ وَاُولُوا الْاَرْحَامِ بَعْضُهُمْ اَوْلٰى بِبَعْضٍ فِيْ كِتٰبِ اللّٰهِ ۗ اِنَّ اللّٰهَ بِكُلِّ شَيْءٍ عَلِيْمٌ ۞

سُورَةُ التَّوْبَةِ مَدَنِيَّةٌ (٩)

# ଅଲ-ତୌବା

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ୧୨୯ଟି ଆୟତ ଓ ୧୬ଟି ରୁକୁ ଅଛି ।)

୧. ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ତରଫରୁ (ଏହି ଆୟତଗୁଡ଼ିକରେ) ସେହି (ମୁସରିକ) ମାନଙ୍କ (ଦୋଷାରୋପ) ଠାରୁ ମୁକ୍ତିର ଘୋଷଣା କରାଯାଉଛି ଯେଉଁମାନଙ୍କ ସହିତ ତୁମେମାନେ ବାଜି ମାରିଥିଲ (ଯେ ତୁମେମାନେ ବିଜୟ ଲାଭ କରିବ ଓ ସେମାନେ ପରାସ୍ତ ହେବେ) ।



---

୧. ମୂଳ ଶବ୍ଦ 'ବରାଅତୁନ' ଅର୍ଥ (କ) ବ୍ୟସ୍ତ ବା ବିବ୍ରତ ହେବା (ଖ) ଆରୋପ ଦୂର କରିବା । ଏଠାରେ ଦ୍ୱିତୀୟ ଅର୍ଥ ଅଧିକତର ପ୍ରଯୋଜ୍ୟ ।

ହଜରତ ମହମ୍ମଦ କହୁଥିଲେ ଯେ ହଜରତ ଇବ୍ରାହିମଙ୍କ ଭବିଷ୍ୟବାଣୀ ମୁତାବକ ସେ ମକ୍କାରେ ଅବତାର ରୂପେ ଜନ୍ମହୋଇଛନ୍ତି । ଏଠାରେ ଅବିଶ୍ୱାସକାରୀମାନେ ଯେଉଁ ଦୋଷାରୋପ କରିଛନ୍ତି ଯେ ସେ ମଦିନା ଚାଲିଯାଇ ଥିବାରୁ ସେ କିପରି ମକ୍କାର ଅବତାର ହୋଇପାରିବେ, ସେହି ବିଷୟକୁ ଖଣ୍ଡନ କରାଯାଇଛି । ଉଭୟ କୋରାନର ବାଣୀ ଓ ଦିବ୍ୟ ଅବତାରଙ୍କ କଥନ ଅନୁସାରେ ମକ୍କା ବିଜୟ ହୋଇଛି ଓ ସେ ମକ୍କାକୁ ନିଜ ଆୟତ୍ତାଧୀନ କରି ପୁନର୍ବାର ମକ୍କାବାସୀ ହେବାକୁ ସମର୍ଥ ହୋଇଛନ୍ତି ।

ଏହି ଅଧ୍ୟାୟର ଆୟତ ୩. ୫ ଓ ୧୩ରେ ଯେଉଁ ମୁସରିକମାନଙ୍କ ସହିତ ଯୁଦ୍ଧ କରିବାକୁ ଆଦେଶ ଦିଆଯାଇଛି ସେମାନଙ୍କ ପ୍ରତି ପ୍ରକୃତରେ କୌଣସି ଅନ୍ୟାୟ ବା ଅତ୍ୟାଚାର କରାଯାଇ ନାହିଁ କାରଣ ଏହି ଅଧ୍ୟାୟର ପ୍ରାରମ୍ଭରେ ତୁମମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ଯେ ଯେଉଁମାନଙ୍କ ସହିତ ତୁମେମାନେ ଆପୋଷ ନିଷ୍ପତ୍ତି କରିଅଛ ସେମାନଙ୍କ ସହିତ ବଚନ ଭଙ୍ଗ କର ନାହିଁ ଓ ତାହାକୁ ଅକ୍ଷରେ ଅକ୍ଷରେ ପାଳନ କରିବାକୁ ହେବ । କିନ୍ତୁ ସେମାନଙ୍କ ବ୍ୟତୀତ ଅନ୍ୟ ଯେଉଁମାନେ ତୁମମାନଙ୍କ ସହିତ ଯୁଦ୍ଧରତ ଅଛନ୍ତି ଓ ଅଦ୍ୟାବଧି ଯୁଦ୍ଧ ବନ୍ଦ କରିନାହାନ୍ତି ସେମାନଙ୍କ ସହିତ ତୁମେମାନେ ସେପର୍ଯ୍ୟନ୍ତ ଯୁଦ୍ଧ କରୁଥାଅ ଯେପର୍ଯ୍ୟନ୍ତ ସେମାନେ ନିଜେ ଯୁଦ୍ଧ ବନ୍ଦ କରିନାହାନ୍ତି ବା ତୁମମାନଙ୍କ ସହିତ ସନ୍ଧି କରିନାହାନ୍ତି ବା ଶାନ୍ତିପୂର୍ଣ୍ଣ ମିଳାମିଶା ପ୍ରସ୍ତାବକୁ ଗ୍ରହଣ କରି ନାହାନ୍ତି । ତେବେ ସେ ବିଷୟ ସମ୍ପୂର୍ଣ୍ଣ ରୂପେ ନ୍ୟାୟସଙ୍ଗତ ଅଟେ । ଏଥିରେ ଲେଶମାତ୍ର ଅନ୍ୟାୟ ବା ଅତ୍ୟାଚାରମୂଳକ ଶିକ୍ଷା ଦିଆଯାଇ ନାହିଁ ।

୨. ସୁତରାଂ (ହେ ମୁସରିକମାନେ !) ତୁମେମାନେ ଏହି ଆରବ ଭୂଖଣ୍ଡରେ ଚାରିମାସ ପର୍ଯ୍ୟନ୍ତ ବିଚରଣ କରି ଲକ୍ଷ୍ୟକର ଏବଂ ଜାଣିନିଅ ଯେ ତୁମେମାନେ ଅଲ୍ଲାହଙ୍କୁ ପରାସ୍ତ କରିପାରିବ ନାହିଁ ; ଏବଂ (ଜାଣିନିଅ ଯେ) ଅଲ୍ଲାହ ଅବିଶ୍ୱାସକାରୀମାନଙ୍କୁ ଅପମାନିତ କରିବେ ।

فَسِيحُوا فِي الْأَرْضِ أَرْبَعَةَ أَشْهُرٍ وَاعْلَمُوا أَنَّكُمْ غَيْرُ مُعْجِزِي اللَّهِ ۙ وَأَنَّ اللَّهَ مُخْزِي الْكَافِرِينَ ②

୩. ଏବଂ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ତରଫରୁ ସେହି "ମହାନ-ହଜ" ଦିବସରେ ଲୋକମାନଙ୍କ ନିକଟରେ ଏହି ଘୋଷଣା (କରାଯାଉଅଛି)ଯେ ମୁସରିକମାନଙ୍କ (ସମସ୍ତ ଦୋଷାରୋପ) ଠାରୁ ଅଲ୍ଲାହ ଓ ତାହାଙ୍କ ରସୁଲ ମୁକ୍ତ ହୋଇଛନ୍ତି (ଏବଂ ମକ୍କା ବିଜୟ ସମାପ୍ତ ହୋଇଯାଇଛି) ; ସୁତରାଂ ଯଦି (ଏହି ନିଦର୍ଶନଗୁଡ଼ିକୁ ଦେଖି) ତୁମେମାନେ ଅନୁତାପ କର, ତେବେ ଏହା ତୁମମାନଙ୍କ ପକ୍ଷରେ ଉତ୍ତମ ହେବ, ଏବଂ ଯଦି ତୁମେମାନେ ଫେରିଯାଅ, ତେବେ ଜାଣିରଖ ଯେ ତୁମେମାନେ କଦାପି ଅଲ୍ଲାହଙ୍କୁ ପରାସ୍ତ କରିପାରିବ ନାହିଁ ; ଏବଂ ତୁମେ ଅବିଶ୍ୱାସକାରୀମାନଙ୍କୁ ସୂଚନା ଦିଅ ଯେ ସେମାନଙ୍କ ପାଇଁ (ଏକ) ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

وَأَذَانٌ مِّنَ اللَّهِ وَرَسُولِهِ إِلَى النَّاسِ يَوْمَ الْحَجِّ الْأَكْبَرِ أَنَّ اللَّهَ بَرِيءٌ مِّنَ الْمُشْرِكِينَ ۙ وَرَسُولُهُ ۚ فَإِن تُبْتُمْ فَهُوَ خَيْرٌ لَّكُمْ ۖ وَإِن تَوَلَّيْتُمْ فَاعْلَمُوا أَنَّكُمْ غَيْرُ مُعْجِزِي اللَّهِ ۗ وَبَشِّرِ الَّذِينَ كَفَرُوا بِعَذَابٍ أَلِيمٍ ③

---

୧. ଯେଉଁ ମୁସରିକମାନେ ମୁସଲମାନଙ୍କ ସହିତ ସନ୍ଧି ବା ମିଳାମିଶା କରି ନ ଥିଲେ ଏବଂ ସକ୍ରିୟ ଭାବରେ ଯୁଦ୍ଧ ଜାରି ରଖିଥିଲେ କେବଳ ସେମାନଙ୍କୁ ଚାରିମାସ ପାଇଁ ଅବ୍ୟାହତି ଦିଆଯାଇଥିଲା । ପ୍ରକୃତ ପକ୍ଷେ ଏପରି ଲୋକମାନଙ୍କୁ କୌଣସି ସରକାର ଦେଶରେ ରହିବାକୁ ସୁଯୋଗ ଦେବ ନାହିଁ । ଏଠାରେ ଏକ ସନ୍ଦେହ ଜନ୍ମିପାରେ ଯେ ଚାରିମାସ ପରେ କାହିଁକି ମକ୍କାବାସୀଙ୍କୁ ବାହାରି ଯିବାକୁ ଆଦେଶ ଦିଆଯାଇଥିଲା ? ମନେ ରଖିବାକୁ ହେବ ଯେ ପବିତ୍ର କୋରାନରେ ଏଭଳି ଆଦେଶ କୁତ୍ରାପି ଦୃଷ୍ଟିଗୋଚର ହୁଏନାହିଁ ବରଂ ଚାରିମାସ ପର୍ଯ୍ୟନ୍ତ ଦେଶରେ ଭ୍ରମଣ କରି ପ୍ରକୃତ ଅବସ୍ଥା ସମ୍ବନ୍ଧରେ ଅବଗତ ହେବାକୁ ଅବସର ଦିଆଯାଇଥିଲା, ଯାହା ଫଳରେ ସାରା ଆରବ-ଜଗତ ଯେ ମୁସଲମାନଙ୍କ ଛତ୍ରଛାୟା ତଳେ ରହିଅଛି ଓ ସେମାନଙ୍କ ଦୋଷାରୋପ ଯେ ମିଥ୍ୟା ପ୍ରମାଣିତ ହୋଇଅଛି ସେମାନେ ତାହା ବୁଝିପାରିବେ । ଦେଶରୁ ବାହାରି ଯିବା ପାଇଁ ସେପରି କୌଣସି ନିର୍ଦ୍ଦିଷ୍ଟ ଆଦେଶ ନଥିଲେ ମଧ୍ୟ-ମନେକରନ୍ତୁ--ଯଦି ବାହାରି ଯିବାକୁ ଆଦେଶ ଦିଆଯାଇ ଥାଆନ୍ତା ତେବେ ଏହା ଅନ୍ୟାୟ ହୋଇ ନଥାନ୍ତା । କାରଣ ସେତେବେଳେ ସେଠାରେ ତଥାପି ଏପରି କେତେଜଣ ମୁସରିକ୍ ଥିଲେ ଯେଉଁମାନେ ହଜରତ ମହମ୍ମଦ ଓ ତାଙ୍କର କେତେକ ଅନୁଗାମୀଙ୍କୁ ମକ୍କାରୁ ବିତାଡ଼ିତ କରିଥିଲେ ଅଥଚ ହଜରତ ମହମ୍ମଦ ଓ ତାଙ୍କର ସେହି ଅନୁଗାମୀମାନେ ମଧ୍ୟ ମକ୍କାନିବାସୀ ଥିଲେ ।

ଏ ସମ୍ବନ୍ଧରେ ଅବୁଜହଲ ପୁତ୍ର ଅକରମାର ଇସଲାମ ଧର୍ମ ଗ୍ରହଣ ଏକ ପ୍ରଣିଧାନଯୋଗ୍ୟ ବିଷୟ । ସେ ଥିଲା ପ୍ରବଳ ପରାକ୍ରମୀ ଓ ଅତ୍ୟନ୍ତ ସ୍ୱାଭିମାନୀ । ମକ୍କା ବିଜୟ ପରେ ସେ ଦେଶ ଛାଡ଼ି ଆବିସିନିଆକୁ ପଳାୟନ କରିଥିଲା । ନିଜ ପତ୍ନୀର ପରାମର୍ଶ କ୍ରମେ ଯେତେବେଳେ ସେ ହଜରତ ମହମ୍ମଦଙ୍କୁ ସାକ୍ଷାତ୍ କଲା ଓ ବୁଝିପାରିଲା ଯେ ମୁସରିକମାନେ ମଧ୍ୟ,ଯଦି କୌଣସି ବିଶୃଙ୍ଖଳା ସୃଷ୍ଟି ନ କରନ୍ତି ତେବେ, ମକ୍କାରେ ସ୍ୱଚ୍ଛନ୍ଦରେ ରହିପାରିବେ ଓ ନିଜ ନିଜର ଧର୍ମ ପାଳନ କରିପାରିବେ ସେତେବେଳେ ଏହା ତା ମନରେ ଗଭୀର ରେଖାପାତ କଲା ଓ ସେ ତତ୍‌କ୍ଷଣାତ୍ ଇସଲାମଧର୍ମ ଗ୍ରହଣ ନକରି ରହିପାରିଲା ନାହିଁ ।

ଏଥିରୁ ପ୍ରମାଣିତ ହେଉଛି ଯେ କେବଳ ବିଶୃଙ୍ଖଳାକାରୀମାନଙ୍କୁ ଦେଶରୁ ବିତାଡ଼ିତ କରାଯାଏ । ଯେଉଁ ମୁସରିକମାନେ ମୁସଲମାନଙ୍କ ସହିତ ଶାନ୍ତିରେ ବାସ କରିବାକୁ ଚାହିଁବେ ସେମାନଙ୍କୁ ବାହାରିଯିବା ପାଇଁ ଆଦେଶ ଦିଆଯାଏ ନାହିଁ । ପବିତ୍ର କୋରାନ ଓ ହଜରତ ମହମ୍ମଦଙ୍କ ଉକ୍ତି ଏହି ସିଦ୍ଧାନ୍ତକୁ ସମର୍ଥନ କରୁଛି ।

୨. ସାଧାରଣତଃ ଶୁକ୍ରବାର ଦିନ ଯେଉଁ ହଜ କରାଯାଏ ତାକୁ ଶ୍ରେଷ୍ଠ ବା ମହାନ ହଜ କୁହାଯାଏ, କିନ୍ତୁ ମକ୍କା ବିଜୟର ପର ବର୍ଷ ଯେଉଁ ହଜ କରାଯାଇଥିଲା ଏହା ସେହି ହଜକୁ ବୁଝାଉଛି । ପୂର୍ବରୁ ମକ୍କା ସହର ଅବିଶ୍ୱାସକାରୀଙ୍କ ଶାସନାଧୀନ ଥିବାବେଳେ ହଜ ବ୍ରତ ପାଳନ କରାଯାଉଥିଲା । କିନ୍ତୁ ଆଲୋଚ୍ୟ ହଜ ମୁସଲିମ ଶାସନାଧୀନ ସମୟର ପ୍ରଥମ ହଜ ହୋଇଥିବାରୁ ଏହାକୁ ମହାନ୍ ହଜ କୁହାଯାଉଛି ।

إِلَّا الَّذِينَ عَاهَدتُّم مِّنَ الْمُشْرِكِينَ ثُمَّ لَمْ يَنقُصُوكُمْ شَيْئًا وَلَمْ يُظَاهِرُوا عَلَيْكُمْ أَحَدًا فَأَتِمُّوا إِلَيْهِمْ عَهْدَهُمْ إِلَىٰ مُدَّتِهِمْ ۚ إِنَّ اللَّهَ يُحِبُّ الْمُتَّقِينَ ④

୪. ଅବଶ୍ୟ ମୁସ୍‌ରିକମାନଙ୍କ ମଧ୍ୟରୁ ଯେଉଁମାନଙ୍କ ସହ ତୁମେମାନେ ଚୁକ୍ତି କରିଥିଲ ଓ ଏହାପରେ ସେମାନେ ତୁମମାନଙ୍କ ସହ ଚୁକ୍ତିଭଙ୍ଗ କରିନାହାନ୍ତି ଓ ତୁମମାନଙ୍କ ବିରୁଦ୍ଧରେ କାହାରିକୁ ସାହାଯ୍ୟ କରି ନାହାନ୍ତି, ତୁମେ ସେମାନଙ୍କ (ସହିତ କରିଥିବା) ଚୁକ୍ତିକୁ ତାହାର ନିର୍ଦ୍ଧାରିତ ଅବଧି ପର୍ଯ୍ୟନ୍ତ ପାଳନ କର (ଓ ସେମାନଙ୍କୁ ଦେଶରୁ ବିତାଡିତ କର ନାହିଁ) ; ବାସ୍ତବରେ ଅଲ୍ଲାହ ଧର୍ମଭୀରୁମାନଙ୍କୁ ପସନ୍ଦ କରନ୍ତି ।

فَإِذَا انسَلَخَ الْأَشْهُرُ الْحُرُمُ فَاقْتُلُوا الْمُشْرِكِينَ حَيْثُ وَجَدتُّمُوهُمْ وَخُذُوهُمْ وَاحْصُرُوهُمْ وَاقْعُدُوا لَهُمْ كُلَّ مَرْصَدٍ ۚ فَإِن تَابُوا وَأَقَامُوا الصَّلَاةَ وَآتَوُا الزَّكَاةَ فَخَلُّوا سَبِيلَهُمْ ۚ إِنَّ اللَّهَ غَفُورٌ رَّحِيمٌ ⑤

୫. ତାପରେ ଯେବେ ଉକ୍ତ ପବିତ୍ର (ଚାରି) ମାସ[1] ଅତିବାହିତ ହେବ ଯହିଁରେ (ଆରବର ଅବିଶ୍ୱାସକାରୀମାନଙ୍କ ଉପରୋକ୍ତ ବାଣୀ ମାଧ୍ୟମରେ) ଯୁଦ୍ଧ କରିବାକୁ ବାରଣ କରାଯାଇଥିଲା, (କିନ୍ତୁ ତଥାପି ସେମାନେ ଚୁକ୍ତି ପ୍ରତି ଧ୍ୟାନ ଦେଲେ ନାହିଁ, ଅଥଚ ଏହା ପୂର୍ବରୁ ସେମାନେ ମୁସଲମାନମାନଙ୍କ ସହିତ ଯୁଦ୍ଧରତ ଥିଲେ) ତେବେ ମୁସରିକମାନଙ୍କର ସେହି ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ଯେଉଁଠାରେ ଦେଖ ହତ୍ୟାକର ଓ ସେମାନଙ୍କୁ ବନ୍ଦୀକର, ଏବଂ ସେମାନଙ୍କୁ (ସେମାନଙ୍କ ଦୁର୍ଗ ମଧ୍ୟରେ) ଅବରୋଧ କର ଏବଂ ପ୍ରତ୍ୟେକ ଘାଟି ସ୍ଥାନରେ ସେମାନଙ୍କୁ ଜଗିରହ ; କିନ୍ତୁ ଯଦି ସେମାନେ ଅନୁତାପ କରନ୍ତି ଓ ସୁସ୍ଥରୂପେ ନମାଜ ପାଠ କରନ୍ତି ଓ ଜକାତ ଦିଅନ୍ତି ତେବେ ସେମାନଙ୍କ ପଥ ଉନ୍ମୁକ୍ତ[2] କରିଦିଅ ; ବାସ୍ତବରେ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦାକରୁଣାମୟ ।

وَإِنْ أَحَدٌ مِّنَ الْمُشْرِكِينَ اسْتَجَارَكَ فَأَجِرْهُ حَتَّىٰ يَسْمَعَ كَلَامَ اللَّهِ ثُمَّ أَبْلِغْهُ مَأْمَنَهُ ۚ ذَٰلِكَ بِأَنَّهُمْ قَوْمٌ لَّا يَعْلَمُونَ ⑥

୬. ଏବଂ ଯଦି ମୁସରିକମାନଙ୍କ ମଧ୍ୟରୁ କେହି ତୁମର ଶରଣ ଭିକ୍ଷା କରେ ତେବେ ସେ ଅଲ୍ଲାହଙ୍କ ବାଣୀ ଶୁଣିବା ପର୍ଯ୍ୟନ୍ତ ତାହାକୁ ଶରଣ ପ୍ରଦାନ କର ; ତାପରେ ତାହାକୁ ତାହାର ସୁରକ୍ଷିତ ସ୍ଥାନରେ ପହଞ୍ଚାଇ ଦିଅ, କାରଣ ସେମାନେ ଏପରି ଏକ ଅଜ୍ଞ ସମ୍ପ୍ରଦାୟ, ଯେଉଁମାନେ (ବାସ୍ତବତାକୁ) ଜାଣନ୍ତି ନାହିଁ ।

---

୧. ଅର୍ଥାତ୍ ନିର୍ଦ୍ଧାରିତ ଚାରି ମାସ, ଯେଉଁ ସମୟରେ ସେମାନଙ୍କୁ ଦେଶ ମଧ୍ୟରେ ବୁଲା ବୁଲି କରିବାକୁ ଅନୁମତି ଦିଆଯାଇଛି ।

୨. ଯେଉଁମାନେ ଅବିଶ୍ୱାସ କରୁଛନ୍ତି ସେମାନେ ମୁସଲମାନ ନ ହେବା ପର୍ଯ୍ୟନ୍ତ ସେମାନଙ୍କ ସହିତ ଯୁଦ୍ଧ କରୁଥାଅ, ଏପରି ଅର୍ଥ କରାଯିବା ଯଥାର୍ଥ ନୁହେଁ, କାରଣ ଏଠାରେ ସାଧାରଣ ଅବିଶ୍ୱାସକାରୀଙ୍କ ବିଷୟରେ ବର୍ଣ୍ଣନା କରାଯାଇ ନାହିଁ ବରଂ ସେହି ଅବିଶ୍ୱାସକାରୀମାନଙ୍କ କଥା କୁହାଯାଇଛି ଯେଉଁମାନେ ଦୀର୍ଘ ଆଠ ବର୍ଷ ଧରି ହଜରତ ମହମ୍ମଦଙ୍କ ସହିତ ଯୁଦ୍ଧ କରିଥିଲେ ଓ ମକ୍କା ବିଜୟ ପରେ ମଧ୍ୟ ସନ୍ଧି ବା ମିଳାମିଶା ପ୍ରତି ଆଦୌ ଦୃଷ୍ଟି ଦେଉ ନଥିଲେ ।

ରୁ : ୨

୭. ତୁମେମାନେ ଯେଉଁ ମୁସରିକମାନଙ୍କ[୧] ସହିତ ପବିତ୍ର ମସଜିଦ ନିକଟରେ ଚୁକ୍ତିବଦ୍ଧ ହୋଇଥିଲ ସେମାନଙ୍କ ବ୍ୟତୀତ ଅନ୍ୟ ମୁସରିକମାନଙ୍କ ସହିତ ଅଲ୍ଲାହ ଓ ତାହାଙ୍କ ରସୁଲ କିପରି ଚୁକ୍ତି କରି ପାରିବେ ? ସୁତରାଂ ସେମାନେ ନିଜ ଚୁକ୍ତିରେ ଅଟଳ ରହିଥିବା ପର୍ଯ୍ୟନ୍ତ ତୁମେମାନେ ମଧ୍ୟ ସେମାନଙ୍କ ସହିତ କରିଥିବା ଚୁକ୍ତିରେ ଅଟଳ ରହ ; ଅଲ୍ଲାହ (ଚୁକ୍ତି ପାଳନକାରୀ) ଧର୍ମଭୀରୁମାନଙ୍କୁ ପସନ୍ଦ କରନ୍ତି ।

كَيْفَ يَكُوْنُ لِلْمُشْرِكِيْنَ عَهْدٌ عِنْدَ اللّٰهِ وَعِنْدَ رَسُوْلِهٖۤ اِلَّا الَّذِيْنَ عٰهَدْتُّمْ عِنْدَ الْمَسْجِدِ الْحَرَامِ ۚ فَمَا اسْتَقَامُوْا لَكُمْ فَاسْتَقِيْمُوْا لَهُمْ ؕ اِنَّ اللّٰهَ يُحِبُّ الْمُتَّقِيْنَ ۝٧

୮. (ଏବଂ ଏପ୍ରକାର ମୁସରିକମାନଙ୍କୁ)[୨] କିପରି (ରିହାତି ମିଳିବ)?[୩] କାରଣ ଯଦି ସେମାନେ ତୁମମାନଙ୍କ ଉପରେ ବିଜୟ ଲାଭ କରିବେ ତେବେ, ତୁମମାନଙ୍କ ସହିତ ଥିବା ଆତ୍ମୀୟତାକୁ ବା କରିଥିବା ଚୁକ୍ତିକୁ ଖାତିର କରିବେ ନାହିଁ ; ସେମାନେ ନିଜ ବଚନ ଦ୍ୱାରା ତୁମମାନଙ୍କୁ ସନ୍ତୁଷ୍ଟ କରନ୍ତି, ଅଥଚ ସେମାନଙ୍କ ଅନ୍ତର (ସେହି ବଚନକୁ) ଅଗ୍ରାହ୍ୟ କରେ ; ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅମାନ୍ୟକାରୀ (ଅର୍ଥାତ୍ ଚୁକ୍ତିଭଙ୍ଗକାରୀ) ।

كَيْفَ وَاِنْ يَّظْهَرُوْا عَلَيْكُمْ لَا يَرْقُبُوْا فِيْكُمْ اِلًّا وَّلَا ذِمَّةً ؕ يُرْضُوْنَكُمْ بِاَفْوَاهِهِمْ وَتَاْبٰى قُلُوْبُهُمْ ۚ وَاَكْثَرُهُمْ فٰسِقُوْنَ ۝٨

୯. ସେମାନେ ଅଲ୍ଲାହଙ୍କ ନିଦର୍ଶନଗୁଡିକର ବିନିମୟରେ ସ୍ୱଳ୍ପମୂଲ୍ୟ ଗ୍ରହଣ କରିଛନ୍ତି ଓ ତାହାଙ୍କ ପଥରୁ ଲୋକମାନଙ୍କୁ ପ୍ରତିରୋଧ କରିଛନ୍ତି ; ବାସ୍ତବରେ ସେମାନଙ୍କ କାର୍ଯ୍ୟକଳାପ ଅତ୍ୟନ୍ତ ମନ୍ଦ ।

اِشْتَرَوْا بِاٰيٰتِ اللّٰهِ ثَمَنًا قَلِيْلًا فَصَدُّوْا عَنْ سَبِيْلِهٖ ؕ اِنَّهُمْ سَآءَ مَا كَانُوْا يَعْمَلُوْنَ ۝٩

୧୦. କୌଣସି ବିଶ୍ୱାସକାରୀଙ୍କ ସଂକ୍ରାନ୍ତରେ ସେମାନେ ଆତ୍ମୀୟତା ବା ଚୁକ୍ତିକୁ ଖାତିର କରନ୍ତି ନାହିଁ ; ଏବଂ ସେମାନେ ହିଁ ସୀମା ଲଂଘନକାରୀ ।

لَا يَرْقُبُوْنَ فِيْ مُؤْمِنٍ اِلًّا وَّلَا ذِمَّةً ؕ وَاُولٰٓئِكَ هُمُ الْمُعْتَدُوْنَ ۝١٠

୧୧. ସୁତରାଂ ଯଦି ସେମାନେ ଅନୁତାପ କରନ୍ତି, ସୁସ୍ଥରୂପେ ନମାଜ ପାଠ କରନ୍ତି ଓ ଜକାତ ଦିଅନ୍ତି ତେବେ ସେମାନେ ଧର୍ମ ଦୃଷ୍ଟିରୁ ତୁମର ଭାଇ ; ଏବଂ ଆମ୍ଭେ (ନିଜର) ନିଦର୍ଶନଗୁଡିକୁ ବିଜ୍ଞ ସମ୍ପ୍ରଦାୟ ପାଇଁ ସ୍ପଷ୍ଟ ରୂପେ ବର୍ଣ୍ଣନା କରିଥାଉ ।

فَاِنْ تَابُوْا وَاَقَامُوا الصَّلٰوةَ وَاٰتَوُا الزَّكٰوةَ فَاِخْوَانُكُمْ فِي الدِّيْنِ ؕ وَنُفَصِّلُ الْاٰيٰتِ لِقَوْمٍ يَّعْلَمُوْنَ ۝١١

---

୧. ଅର୍ଥାତ୍ ସେହି ମୁସରିକମାନଙ୍କ ମିଳାମିଶା ବଜାୟ ରହିଛି ଯେଉଁମାନେ କେବଳ ମକ୍କା ବିଜୟକୁ ମିଳାମିଶାର ଭିତ୍ତି ସ୍ଥିର କରି ନ ଥିଲେ ବରଂ ନିଜେ ଆବେଦନ କରି ନିଜ ପାଇଁ ଶାନ୍ତି ଓ ଆଶ୍ରୟ ଦାନ ବିଷୟକ ଘୋଷଣା କରାଇଥିଲେ ।

୨. ମକ୍କାବାସୀମାନେ ପ୍ରଚାର କରୁଥିଲେ ଯେ ମକ୍କାବିଜୟ ପରେ ସବୁ ଅବିଶ୍ୱାସକାରୀଙ୍କୁ କ୍ଷମା ଦିଆଯାଇଛି ଓ ପ୍ରତିପକ୍ଷ ସହିତ ମିଳାମିଶା ହୋଇଯାଇଛି । କିନ୍ତୁ ଏହା ମିଥ୍ୟା ଅଟେ । ସେମାନେ ବଶ୍ୟତା ସ୍ୱୀକାର କରି ମିଳାମିଶା ପାଇଁ ଆବେଦନ ନ କରିବା ପର୍ଯ୍ୟନ୍ତ ସେମାନଙ୍କ ସହିତ କିପରି ମିଳାମିଶା ହୋଇପାରିବ ?

୩. ଏହା ଏକ କାଳ୍ପନିକ ବିଷୟ ନୁହେଁ ବରଂ ଏ ବିଷୟ ଇତିହାସ ପୃଷ୍ଠାରେ ଲିପିବଦ୍ଧ ଅଛି ।

୧୨. ଏବଂ ଯଦି ସେମାନେ ଚୁକ୍ତିବଦ୍ଧ ହେବା ପରେ ନିଜ ଶପଥ ଭଙ୍ଗ କରନ୍ତି, ଏବଂ ତୁମମାନଙ୍କ ଧର୍ମକୁ ବିଦ୍ରୂପ[1] କରନ୍ତି, ତେବେ ଏପରି ଅବିଶ୍ୱାସକାରୀ ନେତୃବର୍ଗଙ୍କ ସହିତ ଯୁଦ୍ଧକର, ଯଦ୍ଦ୍ୱାରା ସେମାନେ ଦୁଷ୍କାମି କରିବାରୁ ନିବୃତ୍ତ ରହିବେ, କାରଣ ସେମାନଙ୍କ ଶପଥରେ କୌଣସି ମୂଲ୍ୟ ନାହିଁ ।

وَإِنْ نَّكَثُوٓا أَيْمَانَهُمْ مِّنْ بَعْدِ عَهْدِهِمْ وَطَعَنُوا فِي دِينِكُمْ فَقَاتِلُوٓا أَئِمَّةَ الْكُفْرِ ۙ إِنَّهُمْ لَآ أَيْمَانَ لَهُمْ لَعَلَّهُمْ يَنْتَهُونَ ﴿١٢﴾

୧୩. (ହେ ବିଶ୍ୱାସକାରୀମାନେ !) କ'ଣ ତୁମେମାନେ ସେହି ସମ୍ପ୍ରଦାୟ ସହିତ ଯୁଦ୍ଧ କରିବ ନାହିଁ ଯେଉଁମାନେ ନିଜର ଶପଥ ଭଙ୍ଗ କରିଥିଲେ ଓ ରସୁଲଙ୍କୁ (ତାହାଙ୍କ ଗୃହରୁ) ବିତାଡ଼ିତ କରିବା ପାଇଁ ସିଦ୍ଧାନ୍ତ କରିଥିଲେ ଏବଂ ତୁମମାନଙ୍କ ବିରୁଦ୍ଧରେ (ଯୁଦ୍ଧର ଆରମ୍ଭ କରିବାର) ସୂତ୍ରପାତ ସେମାନେ (ହିଁ) କରିଥିଲେ ? କ'ଣ ତୁମେମାନେ ସେମାନଙ୍କୁ ଭୟକରୁଅଛ ? ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ, ତେବେ ଅଲ୍ଲାଃଙ୍କୁ ହିଁ ଭୟକର, କାରଣ ସେ ଏଥିପାଇଁ ଅଧିକ ହକ୍‌ଦାର ।

أَلَا تُقَاتِلُونَ قَوْمًا نَّكَثُوٓا أَيْمَانَهُمْ وَهَمُّوا بِإِخْرَاجِ الرَّسُولِ وَهُمْ بَدَءُوكُمْ أَوَّلَ مَرَّةٍ ۚ أَتَخْشَوْنَهُمْ ۚ فَاللَّهُ أَحَقُّ أَنْ تَخْشَوْهُ إِنْ كُنْتُمْ مُّؤْمِنِينَ ﴿١٣﴾

୧୪. ସେମାନଙ୍କ ସହିତ ଯୁଦ୍ଧ କର ; ଅଲ୍ଲାଃ ତୁମମାନଙ୍କ ହାତରେ ସେମାନଙ୍କୁ ଶାସ୍ତି ପ୍ରଦାନ କରିବେ ଓ ସେମାନଙ୍କୁ ଅପମାନିତ କରିବେ, ଏବଂ ତୁମମାନଙ୍କୁ ସେମାନଙ୍କ ଉପରେ ବିଜୟ ପ୍ରଦାନ କରିବେ ଏବଂ (ଏହାରି ମାଧ୍ୟମରେ) ବିଶ୍ୱାସକାରୀ ସମ୍ପ୍ରଦାୟଙ୍କ ହୃଦୟକୁ (ଦୁଃଖ ଓ ଭୟରୁ) ମୁକ୍ତି ଦେବେ ।

قَاتِلُوهُمْ يُعَذِّبْهُمُ اللَّهُ بِأَيْدِيكُمْ وَيُخْزِهِمْ وَيَنْصُرْكُمْ عَلَيْهِمْ وَيَشْفِ صُدُورَ قَوْمٍ مُّؤْمِنِينَ ﴿١٤﴾

୧୫. ଏବଂ ସେମାନଙ୍କ ହୃଦୟରୁ କ୍ରୋଧକୁ ଦୂର କରିବେ, ଏବଂ ଅଲ୍ଲାଃ ଯାହାକୁ ପସନ୍ଦ କରନ୍ତି ତାହା ପ୍ରତି କୃପା କରନ୍ତି ; ଏବଂ ଅଲ୍ଲାଃ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَيُذْهِبْ غَيْظَ قُلُوبِهِمْ ۗ وَيَتُوبُ اللَّهُ عَلَىٰ مَنْ يَّشَآءُ ۗ وَاللَّهُ عَلِيمٌ حَكِيمٌ ﴿١٥﴾

୧୬. ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଜେହାଦ କରିଛନ୍ତି ଓ ଯେଉଁମାନେ ଅଲ୍ଲାଃ ଓ ତାହାଙ୍କ ରସୁଲ ଓ ବିଶ୍ୱାସକାରୀମାନଙ୍କ ପରିବର୍ତ୍ତେ ଅବିଶ୍ୱାସକାରୀମାନଙ୍କ ସହ ଗୁପ୍ତ ବନ୍ଧୁତା ସ୍ଥାପନ କରି ନାହାନ୍ତି ସେମାନଙ୍କୁ ଅଲ୍ଲାଃ ଅଦ୍ୟାବଧି ପ୍ରକାଶ ନ କରିବା ସ୍ଥଳେ କ'ଣ ତୁମେମାନେ ମନେ କରୁଅଛ ଯେ ତୁମମାନଙ୍କୁ ଏହିପରି ଭାବରେ ଛାଡ଼ି ଦିଆଯିବ ? ଏବଂ ତୁମେମାନେ ଯାହା କରୁଅଛ ଅଲ୍ଲାଃ ସେ ବିଷୟରେ ଭଲରୂପେ ଅବଗତ ଅଛନ୍ତି ।

أَمْ حَسِبْتُمْ أَنْ تُتْرَكُوا وَلَمَّا يَعْلَمِ اللَّهُ الَّذِينَ جَاهَدُوا مِنْكُمْ وَلَمْ يَتَّخِذُوا مِنْ دُونِ اللَّهِ وَلَا رَسُولِهِ وَلَا الْمُؤْمِنِينَ وَلِيجَةً ۚ وَاللَّهُ خَبِيرٌ بِمَا تَعْمَلُونَ ﴿١٦﴾ ع

[1] ଅର୍ଥାତ୍ ଏମାନେ ସହିତ ଯୁକ୍ତି ନ କରି ଘୃଣାବ୍ୟଞ୍ଜକ ଓ କ୍ରୋଧବ୍ୟଞ୍ଜକ ବାର୍ତ୍ତାଳାପ କରନ୍ତି ।

ରୁ : ୩

୧୭. ଅଲ୍ଲାହ୍‌ଙ୍କ ମସଜିଦଗୁଡିକୁ ରକ୍ଷଣାବେକ୍ଷଣ କରିବା ପାଇଁ ଏପରି ମୁସରିକମାନଙ୍କର କୌଣସି ଅଧିକାର ନାହିଁ, ଯେତେବେଳେ କି ସେମାନେ ନିଜେ ନିଜ ବିରୁଦ୍ଧରେ ଅବିଶ୍ୱାସକାରୀ ହୋଇଥିବାର ସାକ୍ଷ୍ୟ ଦେଉଛନ୍ତି ; ଏହି ଲୋକମାନଙ୍କର କର୍ମ-ସମୂହ ବ୍ୟର୍ଥ ହୋଇଅଛି, ଏବଂ ସେମାନେ (ନରକ) ଅଗ୍ନିରେ ଦୀର୍ଘଦିନ ରହିବେ ।

مَا كَانَ لِلْمُشْرِكِينَ أَنْ يَعْمُرُوا مَسَاجِدَ اللَّهِ شَاهِدِينَ عَلَىٰ أَنْفُسِهِمْ بِالْكُفْرِ ۚ أُولَٰئِكَ حَبِطَتْ أَعْمَالُهُمْ وَفِي النَّارِ هُمْ خَالِدُونَ ﴿١٧﴾

୧୮. ଅଲ୍ଲାହ୍‌ଙ୍କ ମସଜିଦଗୁଡିକର ସେ ହିଁ ରକ୍ଷଣାବେକ୍ଷଣ କରିଥାଏ ଯେ ଅଲ୍ଲାହ୍ ଓ ପରକାଳ ଉପରେ ବିଶ୍ୱାସ କରେ ଏବଂ ସୁଷ୍ଠୁରୂପେ ନମାଜ ପାଠକରେ ଓ ଜକାତ ଦିଏ ତଥା ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାରିକୁ ଭୟ କରେ ନାହିଁ, ସୁତରାଂ ସେହିମାନେ ହିଁ ସତ୍‌ପଥଗାମୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇପାରନ୍ତି ।

إِنَّمَا يَعْمُرُ مَسَاجِدَ اللَّهِ مَنْ آمَنَ بِاللَّهِ وَالْيَوْمِ الْآخِرِ وَأَقَامَ الصَّلَاةَ وَآتَى الزَّكَاةَ وَلَمْ يَخْشَ إِلَّا اللَّهَ ۖ فَعَسَىٰ أُولَٰئِكَ أَنْ يَكُونُوا مِنَ الْمُهْتَدِينَ ﴿١٨﴾

୧୯. କ'ଣ ତୁମେମାନେ ହଜ ଯାତ୍ରୀମାନଙ୍କୁ ପାଣି ପିଆଇବା ଓ କା'ବା ଗୃହର ରକ୍ଷଣାବେକ୍ଷଣ କରିବା (କାର୍ଯ୍ୟ)କୁ ସେହି ବ୍ୟକ୍ତି[୧] (ର କାର୍ଯ୍ୟ) ସଦୃଶ ଭାବି ନେଇଛ ଯେ କି ଅଲ୍ଲାହ୍ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରେ ତଥା ଅଲ୍ଲାହ୍‌ଙ୍କ ମାର୍ଗରେ ଜେହାଦ କରେ ? ଏ (ଦୁଇ ଗୋଷ୍ଠୀ) ଅଲ୍ଲାହ୍‌ଙ୍କ ନିକଟରେ (କଦାପି) ସମାନ ନୁହନ୍ତି ; ଓ ଅଲ୍ଲାହ୍ ଅତ୍ୟାଚାରୀ ସମ୍ପ୍ରଦାୟକୁ କଦାପି ସତ୍‌ପଥଗାମୀ କରାନ୍ତି ନାହିଁ ।

أَجَعَلْتُمْ سِقَايَةَ الْحَاجِّ وَعِمَارَةَ الْمَسْجِدِ الْحَرَامِ كَمَنْ آمَنَ بِاللَّهِ وَالْيَوْمِ الْآخِرِ وَجَاهَدَ فِي سَبِيلِ اللَّهِ ۚ لَا يَسْتَوُونَ عِنْدَ اللَّهِ ۗ وَاللَّهُ لَا يَهْدِي الْقَوْمَ الظَّالِمِينَ ﴿١٩﴾

୨୦. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ହିଜରତ କରିଛନ୍ତି ଏବଂ ନିଜର ଧନ ଓ ଜୀବନ ଦେଇ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ଜେହାଦ କରିଛନ୍ତି, ଅଲ୍ଲାହ୍‌ଙ୍କ ନିକଟରେ ସେମାନେ ମର୍ଯ୍ୟାଦାରେ ବହୁ ଉଚ୍ଚରେ ; ଏବଂ ସେହିମାନେ ହିଁ କୃତକାର୍ଯ୍ୟ ହେବେ ।

الَّذِينَ آمَنُوا وَهَاجَرُوا وَجَاهَدُوا فِي سَبِيلِ اللَّهِ بِأَمْوَالِهِمْ وَأَنْفُسِهِمْ أَعْظَمُ دَرَجَةً عِنْدَ اللَّهِ ۚ وَأُولَٰئِكَ هُمُ الْفَائِزُونَ ﴿٢٠﴾

୨୧. ସେମାନଙ୍କ ପାଳନକର୍ତ୍ତା ସେମାନଙ୍କୁ ନିଜ ତରଫରୁ ଅଶେଷ କରୁଣାର ସୁସମାଚାର ଦେଉଛନ୍ତି ଏବଂ (ନିଜର) ପ୍ରସନ୍ନତା ଓ ଏପରି ବୈକୁଣ୍ଠର ମଧ୍ୟ, ଯହିଁରେ ସେମାନଙ୍କ ପାଇଁ ଚିରସ୍ଥାୟୀ ସୁଖ ସ୍ୱାଚ୍ଛନ୍ଦ୍ୟ ରହିଅଛି ।

يُبَشِّرُهُمْ رَبُّهُمْ بِرَحْمَةٍ مِنْهُ وَرِضْوَانٍ وَجَنَّاتٍ لَهُمْ فِيهَا نَعِيمٌ مُقِيمٌ ﴿٢١﴾

---

୧. ଏପରି କେତେକ ବିବଶ ଓ ଦୁର୍ବଳ ବ୍ୟକ୍ତି ଥିଲେ ଯେଉଁମାନେ ଦେଶ ଛାଡ଼ିବାକୁ ଭୟ କରୁଥିଲେ, ଅଥଚ ହଜଯାତ୍ରୀମାନଙ୍କର ସେବା ଶୁଶ୍ରୁଷା କରୁଥିଲେ, ସେମାନେ ମକ୍କାବିଜୟ ପୂର୍ବରୁ ଦେଶ ଛାଡ଼ିଥିବା ଲୋକଙ୍କ ତୁଳନାରେ ନିଜକୁ ଶ୍ରେଷ୍ଠ ମନେ କରୁଥିବାରୁ ଅଲ୍ଲାହ୍ ଏହି ଧାରଣାକୁ ଖଣ୍ଡନ କରି ଜଣାଇ ଦେଇଛନ୍ତି ଯେ ଯେଉଁମାନେ ଦେଶ ତ୍ୟାଗ କରିଛନ୍ତି ଓ ଇସଲାମ ପାଇଁ ଯୁଦ୍ଧ କରିଛନ୍ତି ସେମାନଙ୍କ ସମ୍ମାନ ବହୁ ଉର୍ଦ୍ଧ୍ୱରେ ଓ ଅନ୍ୟମାନେ ସେତିକି ସମ୍ମାନ ପାଇପାରିବେ ନାହିଁ ।

୨୨. ସେମାନେ ସେଠାରେ ଚିରକାଳ ରହିବେ ; (ମନେରଖ ଯେ) ଅଲ୍ଲାହ୍‌ଙ୍କ ନିକଟରେ ମହାନ ପୁରସ୍କାର ରହିଅଛି ।

خٰلِدِيْنَ فِيْهَآ اَبَدًا ۭ اِنَّ اللّٰهَ عِنْدَهٗٓ اَجْرٌ عَظِيْمٌ ﴿٢٢﴾

୨୩. ହେ ବିଶ୍ୱାସକାରୀମାନେ ! ଯଦି ତୁମମାନଙ୍କର ପିତା, ପିତାମହ ଓ ଭ୍ରାତାମାନେ ବିଶ୍ୱାସ ତୁଳନାରେ ଅବିଶ୍ୱାସକୁ ଅଧିକ ପ୍ରିୟ ମନେକରନ୍ତି, ତେବେ ସେମାନଙ୍କୁ ବନ୍ଧୁରୂପେ ଗ୍ରହଣ କରନାହିଁ ; ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ସେମାନଙ୍କ ସହିତ ଏପରି ବନ୍ଧୁତା ସ୍ଥାପନ କରିବେ ସେହିମାନେ ହିଁ ବାସ୍ତବରେ ଅତ୍ୟାଚାରୀ ହେବେ ।

يٰٓاَيُّهَا الَّذِيْنَ اٰمَنُوْا لَا تَتَّخِذُوْٓا اٰبَاۗءَكُمْ وَاِخْوَانَكُمْ اَوْلِيَاۗءَ اِنِ اسْتَحَبُّوا الْكُفْرَ عَلَي الْاِيْمَانِ ۭ وَمَنْ يَّتَوَلَّهُمْ مِّنْكُمْ فَاُولٰۗىِٕكَ هُمُ الظّٰلِمُوْنَ ﴿٢٣﴾

୨୪. ତୁମେ (ବିଶ୍ୱାସକାରୀମାନଙ୍କୁ) କୁହ, "ତୁମମାନଙ୍କର ପିତା ଓ ପିତାମହ ଏବଂ ତୁମମାନଙ୍କର ପୁତ୍ରମାନେ ଓ ତୁମମାନଙ୍କର ଭ୍ରାତାମାନେ ଓ ତୁମମାନଙ୍କର ପତ୍ନୀମାନେ ତଥା ତୁମମାନଙ୍କର (ଅନ୍ୟାନ୍ୟ) ଜ୍ଞାତିକୁଟୁମ୍ବ ଏବଂ ତୁମେମାନେ ଉପାର୍ଜନ କରିଥିବା ଧନ ସମ୍ପତ୍ତି ତଥା ଏପରି ବ୍ୟବସାୟ ଯାହାର କ୍ଷତିକୁ ତୁମେମାନେ ଭୟ କରୁଅଛ ଓ ଏପରି ବାସଗୃହ ଯାହାକୁ ତୁମେମାନେ ପସନ୍ଦ କରୁଅଛ ସେସବୁ ଯଦି ଅଲ୍ଲାହ୍ ଓ ତାହାଙ୍କର ରସୁଲ ତଥା ତାହାଙ୍କ (ଅର୍ଥାତ୍ ଅଲ୍ଲାହ୍‌ଙ୍କ) ଉଦ୍ଦେଶ୍ୟରେ ଜେହାଦ କରିବା ଅପେକ୍ଷା ତୁମମାନଙ୍କ ପକ୍ଷରେ ଅଧିକ ପ୍ରିୟ ହୋଇଥାଏ, ତେବେ ନିଜ ନିଷ୍ପତ୍ତି ପ୍ରକଟ କରିବା ପର୍ଯ୍ୟନ୍ତ ପ୍ରତୀକ୍ଷା କର"; ଏବଂ ଅଲ୍ଲାହ୍ ଅମାନ୍ୟକାରୀ ସମ୍ପ୍ରଦାୟକୁ କେବେ ହେଁ ସତ୍‌ପଥ ପ୍ରଦର୍ଶିତ କରନ୍ତି ନାହିଁ ।

قُلْ اِنْ كَانَ اٰبَاۗؤُكُمْ وَاَبْنَاۗؤُكُمْ وَاِخْوَانُكُمْ وَاَزْوَاجُكُمْ وَعَشِيْرَتُكُمْ وَاَمْوَالُ اقْتَرَفْتُمُوْهَا وَتِجَارَةٌ تَخْشَوْنَ كَسَادَهَا وَمَسٰكِنُ تَرْضَوْنَهَآ اَحَبَّ اِلَيْكُمْ مِّنَ اللّٰهِ وَرَسُوْلِهٖ وَجِهَادٍ فِيْ سَبِيْلِهٖ فَتَرَبَّصُوْا حَتّٰي يَاْتِيَ اللّٰهُ بِاَمْرِهٖ ۭ وَاللّٰهُ لَا يَهْدِي الْقَوْمَ الْفٰسِقِيْنَ ﴿٢٤﴾ ع

ରୁ : ୪

୨୫. ଅଲ୍ଲାହ୍ ତୁମମାନଙ୍କୁ ବହୁ କ୍ଷେତ୍ରରେ ସାହାଯ୍ୟ କରିଛନ୍ତି ଏବଂ (ବିଶେଷତଃ) ହୁନଏନ୍ (ଯୁଦ୍ଧ) ଦିନ, ଯେତେବେଳେ ତୁମମାନଙ୍କର ସଂଖ୍ୟାଗରିଷ୍ଠତା ତୁମମାନଙ୍କୁ ଗର୍ବିତ କରିଥିଲା ; କିନ୍ତୁ ତାହା (ଅର୍ଥାତ୍ ସେହି ସଂଖ୍ୟା ଗରିଷ୍ଠତା) ତୁମମାନଙ୍କର କୌଣସି ଉପକାର କରି ନଥିଲା ; ଏବଂ ପୃଥିବୀର ବିଶାଳତା ସତ୍ତ୍ୱେ ଏହା ତୁମମାନଙ୍କ ପକ୍ଷରେ ସଂକୀର୍ଣ୍ଣ ହୋଇଗଲା ; ଏବଂ ତୁମେମାନେ ପଶ୍ଚାତ୍‌ପଦ ହୋଇ ପଳାୟନ କରିଥିଲ ।

لَقَدْ نَصَرَكُمُ اللّٰهُ فِيْ مَوَاطِنَ كَثِيْرَةٍ ۙ وَّيَوْمَ حُنَيْنٍ ۙ اِذْ اَعْجَبَتْكُمْ كَثْرَتُكُمْ فَلَمْ تُغْنِ عَنْكُمْ شَيْـــًٔا وَّضَاقَتْ عَلَيْكُمُ الْاَرْضُ بِمَا رَحُبَتْ ثُمَّ وَلَّيْتُمْ مُّدْبِرِيْنَ ﴿٢٥﴾

୨୬. ଏହାପରେ ଅଲ୍ଲାହ୍ ନିଜ ରସୁଲଙ୍କ ପ୍ରତି ତଥା ବିଶ୍ୱାସକାରୀଙ୍କ ପ୍ରତି ପ୍ରଶାନ୍ତି ଅବତୀର୍ଣ୍ଣ କରିଥିଲେ, ଏବଂ ଏପରି ସୈନ୍ୟବାହିନୀ ପ୍ରେରଣ କରିଥିଲେ ଯେଉଁମାନଙ୍କୁ ତୁମେମାନେ ଦେଖି ପାରିନଥିଲ, ଏବଂ ସେ ଅବିଶ୍ୱାସକାରୀମାନଙ୍କୁ ଶାସ୍ତି ପ୍ରଦାନ କରିଥିଲେ ; ଏବଂ ଏହା ହିଁ ଅବିଶ୍ୱାସକାରୀମାନଙ୍କ ପାଇଁ (ଉଚିତ) ପ୍ରତିଫଳ ।

ثُمَّ اَنْزَلَ اللّٰهُ سَكِيْنَتَهٗ عَلٰي رَسُوْلِهٖ وَعَلَي الْمُؤْمِنِيْنَ وَاَنْزَلَ جُنُوْدًا لَّمْ تَرَوْهَا ۚ وَعَذَّبَ الَّذِيْنَ كَفَرُوْا ۭ وَذٰلِكَ جَزَاۗءُ الْكٰفِرِيْنَ ﴿٢٦﴾

୨୭. ଏପରି ଶାସ୍ତି ପ୍ରଦାନ ପରେ ଅଲ୍ଲାହ ଯାହାକୁ ଇଚ୍ଛା କରନ୍ତି ତାହା ପ୍ରତି କରୁଣା କରିଥା'ନ୍ତି ; ଏବଂ ଅଲ୍ଲାହ ହି ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

ثُمَّ يَتُوبُ اللَّهُ مِن بَعْدِ ذَٰلِكَ عَلَىٰ مَن يَشَاءُ ۗ وَاللَّهُ غَفُورٌ رَّحِيمٌ ﴿٢٧﴾

୨୮. ହେ ବିଶ୍ୱାସକାରୀମାନେ ! ମୁସରିକମାନେ ବାସ୍ତବରେ କଳୁଷିତ (ଓ ଅପବିତ୍ର)[1] ; ସୁତରାଂ ଏହି ବର୍ଷ (ଅତିବାହିତ ହେବା) ପରେ, ସେମାନେ ପବିତ୍ର ମସଜିଦ (ଅର୍ଥାତ୍ କା'ବା ଗୃହ)ର [2]ନିକଟବର୍ତ୍ତୀ ନ ହୁଅନ୍ତୁ ; ଏବଂ ଯଦି ତୁମେମାନେ ଦାରିଦ୍ର୍ୟ ଆଶଙ୍କା କର ତେବେ ଅଲ୍ଲାହ ଇଚ୍ଛାକଲେ ତୁମମାନଙ୍କୁ ନିଜ କୃପାରୁ ନିଶ୍ଚୟ ଧନବାନ୍ କରିଦେବେ ; ବାସ୍ତବରେ ଅଲ୍ଲାହ ହି ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

يَا أَيُّهَا الَّذِينَ آمَنُوا إِنَّمَا الْمُشْرِكُونَ نَجَسٌ فَلَا يَقْرَبُوا الْمَسْجِدَ الْحَرَامَ بَعْدَ عَامِهِمْ هَٰذَا ۚ وَإِنْ خِفْتُمْ عَيْلَةً فَسَوْفَ يُغْنِيكُمُ اللَّهُ مِن فَضْلِهِ إِن شَاءَ ۚ إِنَّ اللَّهَ عَلِيمٌ حَكِيمٌ ﴿٢٨﴾

୨୯. ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ଯେଉଁମାନେ ଅଲ୍ଲାହଙ୍କ ଉପରେ ତଥା ଅନ୍ତିମ ଦିବସରେ ବିଶ୍ୱାସ କରନ୍ତି ନାହିଁ, ଏବଂ ଅଲ୍ଲାହ ଓ ତାହାଙ୍କର ରସୁଲ ଯାହା ଅବୈଧ ଘୋଷଣା କରିଛନ୍ତି ତାହାକୁ ଅବୈଧ ମନେ କରନ୍ତି ନାହିଁ ଓ ସତ୍ୟ ଧର୍ମକୁ ଗ୍ରହଣ କରନ୍ତି ନାହିଁ, ସେମାନଙ୍କ ସହିତ ତୁମେମାନେ ସେ ପର୍ଯ୍ୟନ୍ତ ଯୁଦ୍ଧକର[3] ଯେ ପର୍ଯ୍ୟନ୍ତ ସେମାନେ ସ୍ୱେଚ୍ଛାରେ ଜିଜିୟା (କର) ନ ଦିଅନ୍ତି ଓ ତୁମମାନଙ୍କର ବଶ୍ୟତା ସ୍ୱୀକାର ନ କରନ୍ତି ।

قَاتِلُوا الَّذِينَ لَا يُؤْمِنُونَ بِاللَّهِ وَلَا بِالْيَوْمِ الْآخِرِ وَلَا يُحَرِّمُونَ مَا حَرَّمَ اللَّهُ وَرَسُولُهُ وَلَا يَدِينُونَ دِينَ الْحَقِّ مِنَ الَّذِينَ أُوتُوا الْكِتَابَ حَتَّىٰ يُعْطُوا الْجِزْيَةَ عَن يَدٍ وَهُمْ صَاغِرُونَ ﴿٢٩﴾

ରୁ : ୫

୩୦. ଏବଂ ଇହୁଦୀମାନେ କହନ୍ତି, "ଓଜେର ଅଲ୍ଲାହଙ୍କ ପୁତ୍ର" ଓ ଖ୍ରୀଷ୍ଟିୟାନମାନେ କହନ୍ତି, "ଇସା ମସିହ ଅଲ୍ଲାହଙ୍କର ପୁତ୍ର" ; ଏହା କେବଳ ସେମାନଙ୍କର ମନଗଢା କଥା ; ସେମାନେ ନିଜ ପୂର୍ବବର୍ତ୍ତୀ ଅବିଶ୍ୱାସକାରୀମାନଙ୍କର କଥାକୁ (କେବଳ) ଅନୁକରଣ କରୁଛନ୍ତି ; ଅଲ୍ଲାହ ସେମାନଙ୍କୁ ବିନାଶ କରନ୍ତୁ ; ସେମାନେ (ବାସ୍ତବତାଠାରୁ) କିପରି ଦୂରେଇ ଯାଉଛନ୍ତି !

وَقَالَتِ الْيَهُودُ عُزَيْرٌ ابْنُ اللَّهِ وَقَالَتِ النَّصَارَى الْمَسِيحُ ابْنُ اللَّهِ ۖ ذَٰلِكَ قَوْلُهُم بِأَفْوَاهِهِمْ ۖ يُضَاهِئُونَ قَوْلَ الَّذِينَ كَفَرُوا مِن قَبْلُ ۚ قَاتَلَهُمُ اللَّهُ ۚ أَنَّىٰ يُؤْفَكُونَ ﴿٣٠﴾

---

୧. ଅର୍ଥାତ୍ ସେମାନଙ୍କ ଚିନ୍ତାଧାରାରେ ଆବିଳତା ପୂରି ରହିଛି ।

୨. ଅବିଶ୍ୱାସକାରୀମାନେ ଚାଲିଯିବା ପରେ ବ୍ୟବସାୟ ମାନ୍ଦା ପଡ଼ିଯିବ ଓ ଆମଦାନୀ କମିଯିବ ବୋଲି ସେମାନେ ଆଶଙ୍କା କରିଥିଲେ ।

୩. ଅର୍ଥାତ୍ ଇହୁଦୀମାନଙ୍କ ସହିତ ଅକାରଣ ଯୁଦ୍ଧ କରିବାକୁ ଏଠାରେ ନିର୍ଦ୍ଦେଶ ଦିଆଯାଇ ନାହିଁ । କେଉଁ ପରିସ୍ଥିତିରେ ଯୁଦ୍ଧ କରିବାକୁ ହେବ ତାହା ଅନ୍ୟତ୍ର ବର୍ଣ୍ଣନା କରାଯାଇଛି । ଯୁଦ୍ଧର ଅନ୍ୟତମ ସର୍ତ୍ତ ହେଉଛି ଯେ ଯେତେବେଳେ କୌଣସି ଶତ୍ରୁ ଅତ୍ୟାଚାରମୂଳକ ଆକ୍ରମଣ କରିବ ସେତେବେଳେ କେବଳ ପ୍ରତିରକ୍ଷାମୂଳକ ଯୁଦ୍ଧ କରାଯାଇପାରିବ । ତେଣୁ ଇହୁଦୀମାନେ ଯୁଦ୍ଧ ଆରମ୍ଭ କଲେ ଯାଇ ସେମାନଙ୍କ ସହିତ ଯୁଦ୍ଧ କରିବାକୁ ହେବ । କିନ୍ତୁ ଯଦି ସେମାନେ ପରାଜିତ ହୁଅନ୍ତି ଓ ଅଧୀନତା ସ୍ୱୀକାର କରି କର ଦେବାକୁ ପ୍ରସ୍ତୁତ ହୁଅନ୍ତି ତେବେ ଆଉ ଅଧିକ ଦିନ ପର୍ଯ୍ୟନ୍ତ ଯୁଦ୍ଧ ଜାରି ରଖାଯିବ ନାହିଁ । ସୁତରାଂ ସେମାନଙ୍କ ପ୍ରଥମ ତ୍ରୁଟିକୁ ମାର୍ଜନା କରାଯିବ ।

୩୧. ସେମାନେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଧର୍ମଜ୍ଞମାନଙ୍କୁ ଓ ସାଧୁସନ୍ଥମାନଙ୍କୁ ତଥା ମରିୟମନନ୍ଦନ ମସିହଙ୍କୁ ସେମାନଙ୍କ ପାଳନକର୍ତ୍ତା ରୂପେ ଗ୍ରହଣ କରିଛନ୍ତି, ଅଥଚ ସେମାନଙ୍କୁ କେବଳ ଆଦେଶ କରାଯାଇଥିଲା ଯେ ସେମାନେ ଏକମାତ୍ର ଉପାସ୍ୟ (ଅଲ୍ଲାହ୍)ଙ୍କର ଉପାସନା କରିବେ, ଯାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହେଁ, ସେ ହିଁ ପବିତ୍ର ଓ ସେମାନଙ୍କର (କଳ୍ପିତ) ଉପାସ୍ୟମାନଙ୍କ ଊର୍ଦ୍ଧ୍ୱରେ ।

اتَّخَذُوٓا أَحْبَارَهُمْ وَرُهْبَانَهُمْ أَرْبَابًا مِّن دُونِ اللَّهِ وَالْمَسِيحَ ابْنَ مَرْيَمَ وَمَآ أُمِرُوٓا إِلَّا لِيَعْبُدُوٓا إِلَٰهًا وَاحِدًا ۖ لَّآ إِلَٰهَ إِلَّا هُوَ ۚ سُبْحَٰنَهُۥ عَمَّا يُشْرِكُونَ ﴿٣١﴾

୩୨. ସେମାନେ ଅଲ୍ଲାହ୍‌ଙ୍କର ଜ୍ୟୋତିକୁ ନିଜ ମୁହଁ ଦ୍ୱାରା (ଫୁଙ୍କି) ଲିଭାଇ ଦେବାକୁ ଇଚ୍ଛା କରନ୍ତି ; ଅବିଶ୍ୱାସକାରୀମାନଙ୍କୁ ଯେତେ ଅପ୍ରୀତିକର ମନେ ହେଲେ ମଧ୍ୟ, ଅଲ୍ଲାହ୍ ନିଜର ଜ୍ୟୋତିକୁ ପରିପୂର୍ଣ୍ଣ କରିବା ବ୍ୟତୀତ ଅନ୍ୟ ପ୍ରତ୍ୟେକ ବିଷୟକୁ ପ୍ରତ୍ୟାଖ୍ୟାନ କରନ୍ତି ।

يُرِيدُونَ أَن يُطْفِـُٔوا نُورَ اللَّهِ بِأَفْوَٰهِهِمْ وَيَأْبَى اللَّهُ إِلَّآ أَن يُتِمَّ نُورَهُۥ وَلَوْ كَرِهَ الْكَٰفِرُونَ ﴿٣٢﴾

୩୩. ମୁସରିକମାନଙ୍କୁ ଯେତେ ଅପ୍ରୀତିକର ମନେ ହେଲେ ସୁଦ୍ଧା, ସକଳ ଧର୍ମ ଉପରେ ପ୍ରଭୁତ୍ୱ ବିସ୍ତାର କରିବା କଳ୍ପେ, ସେ ହିଁ ନିଜର ରସୁଲଙ୍କୁ ସତ୍‌ପଥ ଓ ସତ୍ୟଧର୍ମ ସହିତ ପ୍ରେରଣ କରିଛନ୍ତି ।

هُوَ الَّذِىٓ أَرْسَلَ رَسُولَهُۥ بِالْهُدَىٰ وَدِينِ الْحَقِّ لِيُظْهِرَهُۥ عَلَى الدِّينِ كُلِّهِۦ وَلَوْ كَرِهَ الْمُشْرِكُونَ ﴿٣٣﴾

୩୪. ହେ ବିଶ୍ୱାସକାରୀମାନେ ! ଅନେକ ଧର୍ମଜ୍ଞ ଓ ସାଧୁସନ୍ଥ,ଲୋକମାନଙ୍କର ଧନ ସମ୍ପତ୍ତିକୁ ଅନ୍ୟାୟ ଭାବରେ ଆତ୍ମସାତ୍ କରନ୍ତି, ଏବଂ (ଲୋକମାନଙ୍କୁ) ଅଲ୍ଲାହ୍‌ଙ୍କ ପଥରୁ ପ୍ରତିରୋଧ କରନ୍ତି, ଏବଂ ଯେଉଁ ଲୋକମାନେ ସୁନାରୂପା ଗଚ୍ଛିତ କରି ରଖନ୍ତି, ଏବଂ ଅଲ୍ଲାହ୍‌ଙ୍କ ପଥରେ ବ୍ୟୟ କରନ୍ତି ନାହିଁ, ସେମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତିର ସମ୍ବାଦ ଦିଅ ।

يَٰٓأَيُّهَا الَّذِينَ ءَامَنُوٓا إِنَّ كَثِيرًا مِّنَ الْأَحْبَارِ وَالرُّهْبَانِ لَيَأْكُلُونَ أَمْوَٰلَ النَّاسِ بِالْبَٰطِلِ وَيَصُدُّونَ عَن سَبِيلِ اللَّهِ ۗ وَالَّذِينَ يَكْنِزُونَ الذَّهَبَ وَالْفِضَّةَ وَلَا يُنفِقُونَهَا فِى سَبِيلِ اللَّهِ فَبَشِّرْهُم بِعَذَابٍ أَلِيمٍ ﴿٣٤﴾

୩୫. (ଏ ଶାସ୍ତି ସେମାନଙ୍କୁ) ସେହିଦିନ (ଦିଆଯିବ), ଯେଉଁଦିନ ତାହା (ଅର୍ଥାତ୍ ଗଚ୍ଛିତ ସୁନାରୂପା) ନରକ ଅଗ୍ନି ମଧ୍ୟରେ ଉତପ୍ତ କରାଯିବ ଏବଂ ଏହାଦ୍ୱାରା ସେମାନଙ୍କର ଲଲାଟ, ସେମାନଙ୍କର ପାର୍ଶ୍ୱ ଓ ସେମାନଙ୍କର ପୃଷ୍ଠଦେଶରେ ଦାଗ ଦିଆଯିବ, (ଓ ସେମାନଙ୍କୁ କୁହାଯିବ) "ଯାହା ତୁମେମାନେ ନିଜ ପାଇଁ ଗଚ୍ଛିତ କରିଥିଲ ଏହା ସେହି ପଦାର୍ଥ ; ସୁତରାଂ ତୁମେମାନେ ଯାହା ଗଚ୍ଛିତ କରିଥିଲ ତାହାର ସ୍ୱାଦ ଆସ୍ୱାଦନ କର ।"

يَوْمَ يُحْمَىٰ عَلَيْهَا فِى نَارِ جَهَنَّمَ فَتُكْوَىٰ بِهَا جِبَاهُهُمْ وَجُنُوبُهُمْ وَظُهُورُهُمْ ۖ هَٰذَا مَا كَنَزْتُمْ لِأَنفُسِكُمْ فَذُوقُوا مَا كُنتُمْ تَكْنِزُونَ ﴿٣٥﴾

୩୬. ବାସ୍ତବରେ ମାସମାନଙ୍କର[୧] ଗଣନା ଅଲ୍ଲାହଙ୍କ ନିକଟରେ ବାର ମାସ ଅଟେ ; ଏହା ଅଲ୍ଲାହଙ୍କର ବିଧାନ ; (ଏହା) ସେହିଦିନଠାରୁ ଅଛି ଯେବେଠାରୁ ସେ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ; ତନ୍ମଧ୍ୟରୁ ଚାରିଗୋଟି (ମାସକୁ) ପବିତ୍ର ମାସ (କୁହାଯାଏ) ; ଏହାହିଁ ସୁପ୍ରତିଷ୍ଠିତ ଧର୍ମ[୨] ; ସୁତରାଂ ଏହି ମାସଗୁଡିକରେ ନିଜ ଉପରେ ଅତ୍ୟାଚାର କରନାହିଁ ; ଏବଂ ମୁସରିକମାନଙ୍କ ସହିତ ସମବେତ ହୋଇ ଯୁଦ୍ଧକର, ଯେପରି ସେମାନେ ସମସ୍ତେ ତୁମମାନଙ୍କ ସହିତ ସମବେତ ହୋଇ ଯୁଦ୍ଧ କରନ୍ତି ; ଏବଂ ମନେରଖ ଯେ ଅଲ୍ଲାହ ନିଶ୍ଚୟ ଧର୍ମଭୀରୁମାନଙ୍କ ସହିତ ଅଛନ୍ତି ।

إِنَّ عِدَّةَ الشُّهُورِ عِنْدَ اللّٰهِ اثْنَا عَشَرَ شَهْرًا فِي كِتٰبِ اللّٰهِ يَوْمَ خَلَقَ السَّمٰوٰتِ وَالْأَرْضَ مِنْهَا أَرْبَعَةٌ حُرُمٌ ۚ ذٰلِكَ الدِّينُ الْقَيِّمُ ۚ فَلَا تَظْلِمُوا فِيهِنَّ أَنْفُسَكُمْ ۚ وَقٰتِلُوا الْمُشْرِكِينَ كَافَّةً كَمَا يُقٰتِلُونَكُمْ كَافَّةً ۚ وَاعْلَمُوا أَنَّ اللّٰهَ مَعَ الْمُتَّقِينَ ﴿٣٦﴾

୩୭. 'ନସି'[୩] ଅବିଶ୍ୱାସ କାଳର ଏକ ଅତିରିକ୍ତ ବିଷୟ ଅଟେ ଯଦ୍ୱାରା ଅବିଶ୍ୱାସକାରୀମାନେ ପଥଭ୍ରଷ୍ଟ ହୋଇଥାନ୍ତି ; ସେମାନେ ତାହାକୁ ଗୋଟିଏ ବର୍ଷ ବୈଧ ସାବ୍ୟସ୍ତ କରିଥାନ୍ତି ଓ ପରବର୍ଷକୁ ଅବୈଧ ସାବ୍ୟସ୍ତ କରିଥାନ୍ତି ଯଦ୍ୱାରା ସେମାନେ ମାସଗୁଡିକୁ ବର୍ଷର ନିର୍ଦ୍ଧାରିତ ଗଣନା ସହିତ ସମାନ କରିପାରିବେ ଏବଂ ସେହିସବୁ ମାସ ଅନୁସାରେ (ସେପରି) କରିଦେବେ ଯହିଁରେ ଯୁଦ୍ଧ ବାରଣ କରାଯାଇଛି (ଏବଂ ନିଜ ସୃଷ୍ଟ ପରିବର୍ତ୍ତନ ଯୋଗୁଁ ଯେଉଁ ପାର୍ଥକ୍ୟ ହୋଇଥାଏ ତାକୁ ପୂରଣ କରିଦେବେ); ସେହି ମନ୍ଦ କାର୍ଯ୍ୟକୁ ସେମାନଙ୍କ ଆଗରେ (ସଇତାନ ଦ୍ୱାରା) ଶୋଭନୀୟ କରି ଦେଖାଇ ଦିଆଯାଇଛି ; ଏବଂ ଅଲ୍ଲାହ ଅବଜ୍ଞାକାରୀ ସମ୍ପ୍ରଦାୟକୁ ସତ୍‌ପଥ ପ୍ରଦର୍ଶିତ କରାନ୍ତି ନାହିଁ ।

إِنَّمَا النَّسِيءُ زِيَادَةٌ فِي الْكُفْرِ يُضَلُّ بِهِ الَّذِينَ كَفَرُوا يُحِلُّونَهُ عَامًا وَيُحَرِّمُونَهُ عَامًا لِيُوَاطِئُوا عِدَّةَ مَا حَرَّمَ اللّٰهُ فَيُحِلُّوا مَا حَرَّمَ اللّٰهُ ۚ زُيِّنَ لَهُمْ سُوءُ أَعْمَالِهِمْ ۗ وَاللّٰهُ لَا يَهْدِي الْقَوْمَ الْكٰفِرِينَ ﴿٣٧﴾

୧. ମୁସଲମାନମାନେ ଚନ୍ଦ୍ରମାସ ଗଣନା କରିଥାନ୍ତି ଓ ସେମାନଙ୍କ ହିସାବରେ ବର୍ଷକ କେବଳ ବାରମାସ । ଅବଶ୍ୟ ସୌରବର୍ଷ ମଧ୍ୟ ବାରମାସକୁ ନେଇ ଗଠିତ । କିନ୍ତୁ ବହାଇମାନେ ବର୍ଷକୁ ୧୯ ମାସରେ ବାଣ୍ଟିଛନ୍ତି । କିନ୍ତୁ ଚନ୍ଦ୍ରମାସ ୧୯ ଭାଗରେ ବିଭକ୍ତ ହୋଇପାରିବ ନାହିଁ । ଅନ୍ୟ ପକ୍ଷରେ ସୌରମାସର ପ୍ରବର୍ତ୍ତକମାନେ ମଧ୍ୟ ବାରମାସରୁ ଅଧିକ କଳ୍ପନା କରିନାହାନ୍ତି ।

୨. ଅର୍ଥାତ୍ ଅସଲ ଉଦ୍ଦେଶ୍ୟ ମାସ ନୁହେଁ ବରଂ ଶୁଦ୍ଧପୂତ ଜୀବନ ଯାପନ କରିବା ।

୩. ମୂଳ ଶବ୍ଦ 'ନସି' ଅର୍ଥାତ୍ ମାସଗୁଡିକୁ ଅଦଳବଦଳ କରିବା । ଇସଲାମ ଧର୍ମର ଆବିର୍ଭାବ ପୂର୍ବରୁ ମକ୍କାବାସୀ କେବେ କେବେ ମୋହରମ ମାସକୁ ବୈଧ ସ୍ଥିର କରିଦେଉଥିଲେ ଯଦ୍ୱାରା ସେମାନେ ସେହି ମାସରେ ଲୁଣ୍ଠନ ଓ ରକ୍ତପାତ କରିପାରିବେ । ସେହି କାରଣରୁ ସେମାନେ ସଫର ମାସକୁ ମୋହରମ ମାସ ଭାବରେ ପରିବର୍ତ୍ତନ କରିଦେଉଥିଲେ । ଏହିରୂପେ ସବୁଗୁଡିକ ମାସକୁ ଅଦଳ ବଦଳ କରି ବର୍ଷଟିକୁ ତେରମାସିଆ ବର୍ଷରେ ପରିଣତ କରୁଥିଲେ । ପରେ ପୁଣି ଥରେ ବଦଳାଇ ବର୍ଷକୁ ନିଜ ପୂର୍ବ ଅବସ୍ଥାକୁ ଫେରାଇ ଆଣୁଥିଲେ ।

ରୁ : ୬

୩୮. ହେ ବିଶ୍ୱାସକାରୀମାନେ ! ତୁମମାନଙ୍କର ଏପରି କ'ଣ ହୋଇଅଛି ଯେ ଯେତେବେଳେ ତୁମମାନଙ୍କୁ କୁହାଯାଏ (ତୁମେ ସମସ୍ତେ ସମବେତ ହୋଇ) ଅଲ୍ଲାହ୍‌ଙ୍କ ମାର୍ଗରେ ଯୁଦ୍ଧ କରିବାକୁ ବାହାର, ସେତେବେଳେ ତୁମେମାନେ ନିଜ ଦେଶ (ପ୍ରୀତି) ପ୍ରତି ଢଳି ଯାଉଅଛ ? କ'ଣ ତୁମେମାନେ ପରକାଳ ପରିବର୍ତ୍ତେ ପାର୍ଥିବ ଜୀବନକୁ ପସନ୍ଦ କରୁଅଛ ? ଯେଦି ଏପରି ହୋଇଥାଏ ତେବେ ମନେରଖ ; ପରକାଳ ତୁଳନାରେ ପାର୍ଥିବ ଜୀବନର ସମ୍ପଦ ଅତ୍ୟନ୍ତ ତୁଚ୍ଛ ।

يٰٓاَيُّهَا الَّذِيْنَ اٰمَنُوْا مَا لَكُمْ اِذَا قِيْلَ لَكُمُ انْفِرُوْا فِيْ سَبِيْلِ اللّٰهِ اثَّاقَلْتُمْ اِلَى الْاَرْضِ ؕ اَرَضِيْتُمْ بِالْحَيٰوةِ الدُّنْيَا مِنَ الْاٰخِرَةِ ۚ فَمَا مَتَاعُ الْحَيٰوةِ الدُّنْيَا فِي الْاٰخِرَةِ اِلَّا قَلِيْلٌ ﴿٣٨﴾

୩୯. ଯଦି ତୁମେମାନେ (ସମବେତ ହୋଇ ଅଲ୍ଲାହ୍‌ଙ୍କ ମାର୍ଗରେ) ଯୁଦ୍ଧ କରିବାକୁ ନ ବାହାରିବ, ତେବେ ସେ ତୁମମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଦେବେ, ଏବଂ ତୁମମାନଙ୍କ ପରିବର୍ତ୍ତେ ଅନ୍ୟ ଏକ ସମ୍ପ୍ରଦାୟକୁ ଆଣିବେ, ଓ ତୁମେମାନେ ତାହାଙ୍କର (ଅର୍ଥାତ୍ ଅଲ୍ଲାହ୍‌ଙ୍କର) କୌଣସି କ୍ଷତି କରିପାରିବ ନାହିଁ ; ଏବଂ ଅଲ୍ଲାହ୍ (ନିଜ ଇପ୍ସିତ) ପ୍ରତ୍ୟେକ କାର୍ଯ୍ୟ କରିବାକୁ ପୂର୍ଣ୍ଣରୂପେ ସକ୍ଷମ ।

اِلَّا تَنْفِرُوْا يُعَذِّبْكُمْ عَذَابًا اَلِيْمًا ۙ وَّيَسْتَبْدِلْ قَوْمًا غَيْرَكُمْ وَلَا تَضُرُّوْهُ شَيْـًٔا ؕ وَاللّٰهُ عَلٰى كُلِّ شَيْءٍ قَدِيْرٌ ﴿٣٩﴾

୪୦. ଯଦି ତୁମେମାନେ ଏହି ରସୁଲଙ୍କୁ ସାହାଯ୍ୟ ନ କରିବ (ତେବେ ମନେରଖ ଯେ) ଅଲ୍ଲାହ୍ ତାହାଙ୍କୁ ସେହି ସମୟରେ ମଧ୍ୟ ସାହାଯ୍ୟ କରିଛନ୍ତି ଯେତେବେଳେ କି[୧] ଅବିଶ୍ୱାସକାରୀମାନେ ସେ ଦୁହିଁଙ୍କ ମଧ୍ୟରୁ ଜଣକୁ ବିତାଡ଼ିତ କରିଥିଲେ ; ଯେତେବେଳେ ସେ ଦୁହେଁ ଗୁମ୍ଫାରେ ଥିଲେ, ଏବଂ ସେତେବେଳେ ସେ ତାହାଙ୍କ ସହଚର (ଅବୁବକର)ଙ୍କୁ କହିଥିଲେ, "ଅତୀତର କୌଣସି ତ୍ରୁଟି ପାଇଁ ଦୁଃଖ କର ନାହିଁ, ଅଲ୍ଲାହ୍ ନିଶ୍ଚୟ ଆମମାନଙ୍କ ସହିତ ଅଛନ୍ତି "; ସୁତରାଂ, ଅଲ୍ଲାହ୍ ତାହାଙ୍କୁ ନିଜର ଶାନ୍ତି ପ୍ରଦାନ କରିଥିଲେ ; ଏବଂ ଏପରି ସୈନ୍ୟବାହିନୀ ଦ୍ୱାରା ତାହାଙ୍କୁ ସାହାଯ୍ୟ କରିଥିଲେ ଯେଉଁମାନଙ୍କୁ ତୁମେମାନେ ଦେଖି ପାରୁନଥିଲ, ଏବଂ ଯେଉଁମାନେ ଅବିଶ୍ୱାସ କରିଥିଲେ, ସେମାନଙ୍କ ବଚନକୁ ନ୍ୟୂନ କରିଦେଲେ ; ଏବଂ ଅଲ୍ଲାହ୍‌ଙ୍କର ବାଣୀ ହିଁ ଉର୍ଦ୍ଧ୍ୱରେ ରହେ, ଏବଂ ଅଲ୍ଲାହ୍‌ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

اِلَّا تَنْصُرُوْهُ فَقَدْ نَصَرَهُ اللّٰهُ اِذْ اَخْرَجَهُ الَّذِيْنَ كَفَرُوْا ثَانِيَ اثْنَيْنِ اِذْ هُمَا فِي الْغَارِ اِذْ يَقُوْلُ لِصَاحِبِهٖ لَا تَحْزَنْ اِنَّ اللّٰهَ مَعَنَا ۚ فَاَنْزَلَ اللّٰهُ سَكِيْنَتَهٗ عَلَيْهِ وَاَيَّدَهٗ بِجُنُوْدٍ لَّمْ تَرَوْهَا وَجَعَلَ كَلِمَةَ الَّذِيْنَ كَفَرُوا السُّفْلٰى ؕ وَكَلِمَةُ اللّٰهِ هِيَ الْعُلْيَا ؕ وَاللّٰهُ عَزِيْزٌ حَكِيْمٌ ﴿٤٠﴾

୪୧. ହେ ବିଶ୍ୱାସକାରୀମାନେ ! ତୁମେମାନେ ନିରସ୍ତ୍ର ଥାଅ ବା ସଶସ୍ତ୍ର ଥାଅ, ଜେହାଦ ଉଦ୍ଦେଶ୍ୟରେ ବାହାରି ପଡ଼, ଏବଂ ନିଜ ଧନ ଓ ଜୀବନ ଦେଇ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ଜେହାଦ କର ; ଯଦି ତୁମେ ଜାଣିଥାଅ ତେବେ ଏହା ତୁମମାନଙ୍କ ପାଇଁ ଉତ୍ତମ ହେବ ।

اِنْفِرُوْا خِفَافًا وَّثِقَالًا وَّجَاهِدُوْا بِاَمْوَالِكُمْ وَاَنْفُسِكُمْ فِيْ سَبِيْلِ اللّٰهِ ؕ ذٰلِكُمْ خَيْرٌ لَّكُمْ اِنْ كُنْتُمْ تَعْلَمُوْنَ ﴿٤١﴾

୧. ଅର୍ଥାତ୍ ହିଜରତ ସମୟରେ

୪୨. ଯଦି ଶୀଘ୍ର ଲାଭ ମିଳିବାର ଥାଆନ୍ତା ବା ଯାତ୍ରା ଅଳ୍ପ ଦୂର ହୋଇ ଥାଆନ୍ତା ତେବେ ସେ ଲୋକମାନେ ତୁମର ଅନୁଗମନ କରିଥାଆନ୍ତେ, କିନ୍ତୁ ଯାତ୍ରା ସେମାନଙ୍କୁ ସୁଦୂର ମନେ ହେଲା ; କିନ୍ତୁ ଏବେ (ତୁମର ପ୍ରତ୍ୟାବର୍ତ୍ତନ ପରେ) ସେମାନେ ଅଲ୍ଲାହ୍‌ଙ୍କ ନାମରେ ଶପଥପୂର୍ବକ କହିବେ, "ଯଦି ଆମେମାନେ ସମର୍ଥ ହୋଇଥାଆନ୍ତୁ, ତେବେ ଆମେମାନେ ନିଶ୍ଚୟ ତୁମ ସହିତ ଯାଇ ଥାଆନ୍ତୁ ;" ଏମାନେ ନିଜ ଜୀବନକୁ ବିନାଶ କରୁଛନ୍ତି ; ଏବଂ ଅଲ୍ଲାହ୍ ଜାଣନ୍ତି ଯେ ଏମାନେ ମିଥ୍ୟାବାଦୀ ।

لَوْ كَانَ عَرَضًا قَرِيْبًا وَّسَفَرًا قَاصِدًا لَّاتَّبَعُوْكَ وَ لٰكِنْۢ بَعُدَتْ عَلَيْهِمُ الشُّقَّةُ ۭ وَ سَيَحْلِفُوْنَ بِاللّٰهِ لَوِ اسْتَطَعْنَا لَخَرَجْنَا مَعَكُمْ ۚ يُهْلِكُوْنَ اَنْفُسَهُمْ ۚ وَاللّٰهُ يَعْلَمُ اِنَّهُمْ لَكٰذِبُوْنَ ﴿٤٢﴾

ରୁ : ୭

୪୩. ଅଲ୍ଲାହ୍ (ତୁମ ତ୍ରୁଟିର କୁପ୍ରଭାବକୁ) ଲୋପ କରିଦେଲେ ଏବଂ ତୁମଙ୍କୁ ସମ୍ମାନିତ କଲେ, କିନ୍ତୁ ତୁମ ନିକଟରେ ସତ୍ୟବାଦୀମାନେ ପ୍ରକାଶିତ ନ ହେବା ପର୍ଯ୍ୟନ୍ତ ଓ ତୁମେ ମିଥ୍ୟାବାଦୀମାନଙ୍କୁ ନ ଜାଣିବା ପର୍ଯ୍ୟନ୍ତ, ତୁମେ କାହିଁକି ସେମାନଙ୍କୁ ପଛରେ ରହିବା ପାଇଁ ଅନୁମତି ଦେଇଥିଲ ?

عَفَا اللّٰهُ عَنْكَ ۚ لِمَ اَذِنْتَ لَهُمْ حَتّٰى يَتَبَيَّنَ لَكَ الَّذِيْنَ صَدَقُوْا وَتَعْلَمَ الْكٰذِبِيْنَ ﴿٤٣﴾

୪୪. ଯେଉଁମାନେ ଅଲ୍ଲାହ୍ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରିଛନ୍ତି, ସେମାନେ ନିଜର ଧନ ଓ ଜୀବନ ଦେଇ ଯୁଦ୍ଧ କରିବାରୁ ଅବ୍ୟାହତି ପାଇବା ସକାଶେ ତୁମର ଅନୁମତି ପ୍ରାର୍ଥନା କରନ୍ତି ନାହିଁ ; ଏବଂ ଅଲ୍ଲାହ୍ ଧର୍ମଭୀରୁମାନଙ୍କୁ ଭଲରୂପେ ଜାଣନ୍ତି ।

لَا يَسْتَاْذِنُكَ الَّذِيْنَ يُؤْمِنُوْنَ بِاللّٰهِ وَالْيَوْمِ الْاٰخِرِ اَنْ يُّجَاهِدُوْا بِاَمْوَالِهِمْ وَاَنْفُسِهِمْ ۭ وَاللّٰهُ عَلِيْمٌۢ بِالْمُتَّقِيْنَ ﴿٤٤﴾

୪୫. ଯେଉଁମାନେ ଅଲ୍ଲାହ୍ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରନ୍ତି ନାହିଁ କେବଳ ସେହିମାନେ ହିଁ ପଛରେ ରହିଯିବା ପାଇଁ ତୁମର ଅନୁମତି ପ୍ରାର୍ଥନା କରନ୍ତି, ଏବଂ ସେମାନଙ୍କ ହୃଦୟରେ ସଂଶୟ ସୃଷ୍ଟି ହୋଇଅଛି ; ସୁତରାଂ ସେମାନେ ନିଜର ସଂଶୟ ଯୋଗୁଁ ଦୋଦୁଲ୍ୟମାନ (ଅବସ୍ଥାରେ) ଅଛନ୍ତି ।

اِنَّمَا يَسْتَاْذِنُكَ الَّذِيْنَ لَا يُؤْمِنُوْنَ بِاللّٰهِ وَالْيَوْمِ الْاٰخِرِ وَارْتَابَتْ قُلُوْبُهُمْ فَهُمْ فِيْ رَيْبِهِمْ يَتَرَدَّدُوْنَ ﴿٤٥﴾

୪୬. ଏବଂ ଯଦି ସେମାନେ (ଯୁଦ୍ଧ ପାଇଁ) ଯିବାକୁ ଦୃଢ଼ ଇଚ୍ଛା ପୋଷଣ କରିଥାଆନ୍ତେ ତେବେ ସେଥିପାଇଁ କିଛି ପ୍ରସ୍ତୁତି ମଧ୍ୟ କରିଥାଆନ୍ତେ ; କିନ୍ତୁ ଅଲ୍ଲାହ୍ (ଯୁଦ୍ଧ ସକାଶେ) ସେମାନଙ୍କ ଯିବାକୁ ପସନ୍ଦ କଲେ ନାହିଁ ; ସୁତରାଂ ସେମାନଙ୍କୁ ନିଜ ସ୍ଥାନରେ ହିଁ ବସାଇ ଦେଲେ ଓ ସେମାନଙ୍କୁ କୁହାଗଲା (ଅର୍ଥାତ୍ ସେମାନଙ୍କର ଅବିଶ୍ୱାସକାରୀ ବନ୍ଧୁମାନେ କହିଲେ) ଯେ ତୁମେମାନେ ବସିବା ଲୋକମାନଙ୍କ ସହିତ ବସିଥାଅ ।

وَلَوْ اَرَادُوا الْخُرُوْجَ لَاَعَدُّوْا لَهٗ عُدَّةً وَّلٰكِنْ كَرِهَ اللّٰهُ انْۢبِعَاثَهُمْ فَثَبَّطَهُمْ وَقِيْلَ اقْعُدُوْا مَعَ الْقٰعِدِيْنَ ﴿٤٦﴾

لَوْ خَرَجُوا فِيكُم مَّا زَادُوكُمْ إِلَّا خَبَالًا وَلَأَوْضَعُوا خِلَالَكُمْ يَبْغُونَكُمُ الْفِتْنَةَ وَفِيكُمْ سَمَّاعُونَ لَهُمْ ۗ وَاللَّهُ عَلِيمٌ بِالظَّالِمِينَ ﴿٤٧﴾

୪୭. ଯଦି ସେମାନେ ତୁମମାନଙ୍କ ସହିତ ସମ୍ମିଳିତ ହୋଇଯାଇଥାଆନ୍ତେ, ତେବେ ଅସୁବିଧା ସୃଷ୍ଟି କରିବା ଛଡ଼ା ତୁମମାନଙ୍କର କିଛି ସାହାଯ୍ୟ କରି ନ ଥାଆନ୍ତେ, ଏବଂ ସେମାନେ ତୁମମାନଙ୍କ ମଧ୍ୟରେ (ବିଭେଦ ସୃଷ୍ଟି କରିବାକୁ) ଖୁବ୍ ଧାଁ ଦଉଡ଼ କରିଥାଆନ୍ତେ (ଓ) ତୁମମାନଙ୍କ ମଧ୍ୟରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ଇଚ୍ଛା କରିଥାଆନ୍ତେ ; ଏବଂ ତୁମମାନଙ୍କ ମଧ୍ୟରେ ଏପରି କେତେକ ମଧ୍ୟ ଅଛନ୍ତି, ଯେଉଁମାନେ ସେମାନଙ୍କୁ (ଖବର) ପହଞ୍ଚାଇବା ପାଇଁ (ତୁମମାନଙ୍କ) କଥା ଶୁଣୁଥାଆନ୍ତି ; ଏବଂ ଅଲ୍ଲାହ ଅତ୍ୟାଚାରୀମାନଙ୍କୁ ଭଲ ରୂପେ ଜାଣନ୍ତି ।

لَقَدِ ابْتَغَوُا الْفِتْنَةَ مِن قَبْلُ وَقَلَّبُوا لَكَ الْأُمُورَ حَتَّىٰ جَاءَ الْحَقُّ وَظَهَرَ أَمْرُ اللَّهِ وَهُمْ كَارِهُونَ ﴿٤٨﴾

୪୮. ସେମାନେ ଏହା ପୂର୍ବରୁ ମଧ୍ୟ ବିଶୃଙ୍ଖଳା (ସୃଷ୍ଟି କରିବା) ପାଇଁ ଇଚ୍ଛା କରିଥିଲେ, ଏବଂ ତୁମ ସକାଶେ ପରିସ୍ଥିତିକୁ ବିଭିନ୍ନ ପ୍ରକାରେ ପରିବର୍ତ୍ତନ କରିଥିଲେ ଏପରିକି ସତ୍ୟର ଆଗମନ ହେଲା ଓ ଅଲ୍ଲାହଙ୍କର ନିଷ୍ପତ୍ତି ପ୍ରକାଶିତ ହେଲା, ଏବଂ ସେମାନେ (ଏହି ନିଷ୍ପତ୍ତିକୁ) ପସନ୍ଦ କରୁ ନ ଥିଲେ ।

وَمِنْهُم مَّن يَقُولُ ائْذَن لِّي وَلَا تَفْتِنِّي ۚ أَلَا فِي الْفِتْنَةِ سَقَطُوا ۗ وَإِنَّ جَهَنَّمَ لَمُحِيطَةٌ بِالْكَافِرِينَ ﴿٤٩﴾

୪୯. ଏବଂ ସେମାନଙ୍କ ମଧ୍ୟରୁ ଏପରି କେତେକ (କପଟ ବିଶ୍ୱାସୀ) ଅଛନ୍ତି ଯେଉଁମାନେ କହନ୍ତି, "ଆମମାନଙ୍କୁ (ପଛରେ ରହିଯିବା ପାଇଁ) ଅନୁମତି ପ୍ରଦାନ କର ଏବଂ ଆମମାନଙ୍କୁ (ଯୁଦ୍ଧରେ ଯିବା ପାଇଁ) ପରୀକ୍ଷା କର ନାହିଁ ;" ଜାଣିରଖ, ଏହି ଲୋକମାନେ ଆଦ୍ୟରୁ ବିଶୃଙ୍ଖଳାରେ ଜଡ଼ିତ ରହିଛନ୍ତି, ଏବଂ ନରକ ଅବିଶ୍ୱାସକାରୀମାନଙ୍କୁ ନିଶ୍ଚୟ ବିନାଶ କରିବ ।

إِن تُصِبْكَ حَسَنَةٌ تَسُؤْهُمْ ۖ وَإِن تُصِبْكَ مُصِيبَةٌ يَقُولُوا قَدْ أَخَذْنَا أَمْرَنَا مِن قَبْلُ وَيَتَوَلَّوا وَّهُمْ فَرِحُونَ ﴿٥٠﴾

୫୦. ଯଦି ତୁମଙ୍କୁ କୌଣସି ଲାଭ ମିଳେ, ତେବେ ସେମାନଙ୍କୁ ଖରାପ ଲାଗେ, ଏବଂ ଯଦି ତୁମ ଉପରେ କୌଣସି ବିପତ୍ତି ପଡ଼େ, ତେବେ ସେମାନେ କହନ୍ତି, "ସେହି ଦିନର ଆଗମନ ପୂର୍ବରୁ ଆମେମାନେ ତାହାର ବ୍ୟବସ୍ଥା କରିଥିଲୁ ;" ଏବଂ ସେମାନେ ଆନନ୍ଦରେ ଫେରି ଯାଆନ୍ତି ।

قُل لَّن يُصِيبَنَا إِلَّا مَا كَتَبَ اللَّهُ لَنَا هُوَ مَوْلَانَا ۚ وَعَلَى اللَّهِ فَلْيَتَوَكَّلِ الْمُؤْمِنُونَ ﴿٥١﴾

୫୧. ତୁମେ (ସେମାନଙ୍କୁ) କୁହ, "ଅଲ୍ଲାହ ଯାହା କିଛି ଆମମାନଙ୍କ ପାଇଁ ନିର୍ଦ୍ଦିଷ୍ଟ କରିଛନ୍ତି କେବଳ ତାହାହିଁ ଆମକୁ ମିଳେ ; ସେ ହିଁ ଆମମାନଙ୍କର କାର୍ଯ୍ୟ ସମ୍ପାଦନକାରୀ ; ଏବଂ ବିଶ୍ୱାସକାରୀମାନଙ୍କର ଅଲ୍ଲାହଙ୍କ ଉପରେ ହିଁ ନିର୍ଭର କରିବା ଉଚିତ ।"

قُلْ هَلْ تَرَبَّصُوْنَ بِنَآ اِلَّآ اِحْدَى الْحُسْنَيَيْنِ ۖ وَنَحْنُ نَتَرَبَّصُ بِكُمْ اَنْ يُّصِيْبَكُمُ اللّٰهُ بِعَذَابٍ مِّنْ عِنْدِهٖٓ اَوْ بِاَيْدِيْنَا ۖ فَتَرَبَّصُوْٓا اِنَّا مَعَكُمْ مُّتَرَبِّصُوْنَ ﴿٥٢﴾

୫୨. ତୁମେ (ସେମାନଙ୍କୁ) କୁହ, "ଆମମାନଙ୍କ ସକାଶେ ଦୁଇଗୋଟି ମଙ୍ଗଳଦାୟକ ବିଷୟ[୧] ମଧ୍ୟରୁ ତୁମେମାନେ ଗୋଟିଏ ଛଡା ଅନ୍ୟ କୌଣସି ବିଷୟର ପ୍ରତୀକ୍ଷା କରୁନାହଁ ; ଏବଂ ଆମେମାନେ ତୁମମାନଙ୍କ ପାଇଁ କେବଳ ଏହି ବିଷୟର ପ୍ରତୀକ୍ଷା କରୁଅଛୁ ଯେ ଅଲ୍ଲାହ ନିଜ ତରଫରୁ କିମ୍ବା ଆମମାନଙ୍କ ହସ୍ତରୁ ତୁମମାନଙ୍କୁ ଶାସ୍ତି ଦେବେ ; ସୁତରାଂ ତୁମେମାନେ ପ୍ରତୀକ୍ଷା କର, ଆମେମାନେ ମଧ୍ୟ ତୁମମାନଙ୍କ ସହିତ ପ୍ରତୀକ୍ଷା କରିବୁ ।"

قُلْ اَنْفِقُوْا طَوْعًا اَوْ كَرْهًا لَّنْ يُّتَقَبَّلَ مِنْكُمْ ۖ اِنَّكُمْ كُنْتُمْ قَوْمًا فٰسِقِيْنَ ﴿٥٣﴾

୫୩. ତୁମେ (ସେମାନଙ୍କୁ) କୁହ ; "ସ୍ୱେଚ୍ଛାପୂର୍ବକ ବା ଅନିଚ୍ଛାପୂର୍ବକ ବ୍ୟୟ କର, ତୁମମାନଙ୍କ ଠାରୁ କୌଣସି ପ୍ରକାରେ (ତୁମମାନଙ୍କର ଦାନ) ଗ୍ରହଣ କରାଯିବ ନାହିଁ ; କାରଣ ତୁମେମାନେ ଅମାନ୍ୟକାରୀ ସମ୍ପ୍ରଦାୟ ।"

وَمَا مَنَعَهُمْ اَنْ تُقْبَلَ مِنْهُمْ نَفَقٰتُهُمْ اِلَّآ اَنَّهُمْ كَفَرُوْا بِاللّٰهِ وَبِرَسُوْلِهٖ وَلَا يَاْتُوْنَ الصَّلٰوةَ اِلَّا وَهُمْ كُسَالٰى وَلَا يُنْفِقُوْنَ اِلَّا وَهُمْ كٰرِهُوْنَ ﴿٥٤﴾

୫୪. ଏବଂ ସେମାନଙ୍କର ଦାନକୁ ଗ୍ରହଣ କରାଯିବାରେ ଏହା ବ୍ୟତୀତ ଅନ୍ୟ କ'ଣ ପ୍ରତିବନ୍ଧକ ଅଛି ଯେ ସେମାନେ ଅଲ୍ଲାହ ଓ ତାହାଙ୍କର ରସୁଲଙ୍କୁ ଅମାନ୍ୟ କରୁଥିଲେ ଓ ନମାଜ ପାଠରେ ଆଳସ୍ୟ ପ୍ରଦର୍ଶନ କରୁଥିଲେ ଓ (ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ଅନିଚ୍ଛାପୂର୍ବକ ବ୍ୟୟ କରୁଥିଲେ ।

فَلَا تُعْجِبْكَ اَمْوَالُهُمْ وَلَآ اَوْلَادُهُمْ ۚ اِنَّمَا يُرِيْدُ اللّٰهُ لِيُعَذِّبَهُمْ بِهَا فِى الْحَيٰوةِ الدُّنْيَا وَتَزْهَقَ اَنْفُسُهُمْ وَهُمْ كٰفِرُوْنَ ﴿٥٥﴾

୫୫. ସୁତରାଂ ତୁମେ ସେମାନଙ୍କ ଧନ ଓ ସେମାନଙ୍କ ସନ୍ତାନସନ୍ତତିଙ୍କ ସମ୍ବନ୍ଧରେ ଆଶ୍ଚର୍ଯ୍ୟ ହୁଅନାହିଁ ; ଅଲ୍ଲାହ କେବଳ ଏହା ଇଚ୍ଛା କରନ୍ତି ଯେ ସେମାନଙ୍କ ଧନ ଓ ସନ୍ତାନସନ୍ତତିଙ୍କ ଦ୍ୱାରା ସେମାନଙ୍କୁ ଏହି ପାର୍ଥିବ ଜୀବନରେ ଶାସ୍ତି ପ୍ରଦାନ କରିବେ ତଥା ଅବିଶ୍ୱାସକାରୀ ଥିବାବେଳେ ହିଁ ସେମାନଙ୍କର ମୃତ୍ୟୁ ହେବ ।

وَيَحْلِفُوْنَ بِاللّٰهِ اِنَّهُمْ لَمِنْكُمْ ۖ وَمَا هُمْ مِّنْكُمْ وَلٰكِنَّهُمْ قَوْمٌ يَّفْرَقُوْنَ ﴿٥٦﴾

୫୬. ଏବଂ ସେମାନେ ଅଲ୍ଲାହଙ୍କ (ନାମରେ) ଶପଥ କରନ୍ତି ଯେ ସେମାନେ ତୁମମାନଙ୍କ ମଧ୍ୟରେ ଅଛନ୍ତି, ଅଥଚ ସେମାନେ ତୁମମାନଙ୍କ ମଧ୍ୟରେ ନାହାନ୍ତି ; ବରଂ ସେମାନେ ଏକ ଅତ୍ୟନ୍ତ ଭୀରୁ ସମ୍ପ୍ରଦାୟ ।

لَوْ يَجِدُوْنَ مَلْجَاً اَوْ مَغٰرٰتٍ اَوْ مُدَّخَلًا لَّوَلَّوْا اِلَيْهِ وَهُمْ يَجْمَحُوْنَ ﴿٥٧﴾

୫୭. ଯଦି ସେମାନେ କୌଣସି ଆଶ୍ରୟସ୍ଥଳୀ ବା ଆତ୍ମଗୋପନ କରିବାକୁ କୌଣସି ଗୁମ୍ଫା ବା ପଶିରହିବା ପାଇଁ କୌଣସି ସ୍ଥାନ ପାଆନ୍ତି, ତେବେ ସେମାନେ ମୁହଁ ମୋଡି ସେହି ଆଡକୁ ଧାଇଁ ପଳାଇବେ ।

---

୧. ଅର୍ଥାତ୍ ସେମାନେ ଏକେତ ଆଶା କରୁଛନ୍ତି ଯେ ସେମାନେ ଯୁଦ୍ଧରେ ବୀରଗତି ଲାଭ କରିବେ ଯାହା ସେମାନଙ୍କୁ ଶହୀଦର ମର୍ଯ୍ୟାଦା ପ୍ରଦାନ କରିବ ଅଥବା ଯୁଦ୍ଧରେ ବିଜୟ ଲାଭ କରିବେ ଯାହାକି ସେମାନଙ୍କ ପକ୍ଷରେ ଆଶୀର୍ବାଦମୂଳକ ହେବ ।

୫୮. ଏବଂ ସେମାନଙ୍କ ମଧ୍ୟରେ ଏପରି କେତେକ (କପଟ ବିଶ୍ୱାସୀ) ଅଛନ୍ତି ଯେଉଁମାନେ ଦାନ ବିଷୟରେ ତୁମ୍ଭ ପ୍ରତି ଦୋଷାରୋପ କରୁଛନ୍ତି ; ଯଦି ସେହି ଦାନରୁ ସେମାନଙ୍କୁ କିଛି ପ୍ରଦାନ କରାଯାଏ ତେବେ ସେମାନେ ସନ୍ତୁଷ୍ଟ ହୋଇ ଯାଆନ୍ତି ; ଏବଂ ଯଦି ସେମାନଙ୍କୁ ତହିଁରୁ କିଛି ପ୍ରଦାନ ନ କରାଯାଏ ତେବେ ସେମାନେ ସହସା କ୍ରୋଧାନ୍ୱିତ ହୁଅନ୍ତି ।

وَمِنْهُمْ مَّنْ يَّلْمِزُكَ فِي الصَّدَقٰتِ ۚ فَاِنْ اُعْطُوْا مِنْهَا رَضُوْا وَاِنْ لَّمْ يُعْطَوْا مِنْهَآ اِذَا هُمْ يَسْخَطُوْنَ ﴿۵۸﴾

୫୯. ଏବଂ ଅଲ୍ଲାଃ ଓ ତାହାଙ୍କ ରସୁଲ ସେମାନଙ୍କୁ ଯାହାକିଛି ଦେଇଛନ୍ତି ଯଦି ସେମାନେ ତହିଁରେ ସନ୍ତୁଷ୍ଟ ହୁଅନ୍ତେ ଓ ଏହା କହନ୍ତେ, "ଅଲ୍ଲାଃ (ଓ ତାହାଙ୍କ ରସୁଲ) ଆମମାନଙ୍କ ପାଇଁ ଯଥେଷ୍ଟ; (ଯେବେ ଆମମାନଙ୍କର ଅଭାବ ହେବ ତେବେ) ଅଲ୍ଲାଃ ନିଜ କୃପାରୁ ଆମମାନଙ୍କୁ ପ୍ରଦାନ କରିବେ ଓ ଏହିପରି ଭାବରେ ତାହାଙ୍କର ରସୁଲ ମଧ୍ୟ ; ଆମେମାନେ ଅଲ୍ଲାଃଙ୍କ ପ୍ରତି ବିନମ୍ର ଭାବରେ ଅବନତ ହେଉଅଛୁ." (ତେବେ ଏହା ସେମାନଙ୍କ ପକ୍ଷରେ ଉତ୍କୃଷ୍ଟତର ହୋଇଥାନ୍ତା )।

وَلَوْ اَنَّهُمْ رَضُوْا مَآ اٰتٰىهُمُ اللّٰهُ وَرَسُوْلُهٗ ۙ وَقَالُوْا حَسْبُنَا اللّٰهُ سَيُؤْتِيْنَا اللّٰهُ مِنْ فَضْلِهٖ وَرَسُوْلُهٗٓ ۙ اِنَّآ اِلَى اللّٰهِ رٰغِبُوْنَ ﴿۵۹﴾ ع

ରୁ : ୮

୬୦. ଦାନ କେବଳ ଦରିଦ୍ର ଓ ଅଭାବଗ୍ରସ୍ତମାନଙ୍କ ପାଇଁ ଓ ଯେଉଁମାନେ ଏହି ଦାନ ସଂଗ୍ରହ କରନ୍ତି ସେମାନଙ୍କ ପାଇଁ ଏବଂ ଯେଉଁମାନଙ୍କ ହୃଦୟ (ତୁମମାନଙ୍କ ହୃଦୟ ସହିତ)[1] ସଂଯୁକ୍ତ ହେବାକୁ ଉଦ୍ଦିଷ୍ଟ ସେମାନଙ୍କ ପାଇଁ, ଏବଂ ଏରୂପେ ବନ୍ଦୀ ଓ ଋଣଗ୍ରସ୍ତମାନଙ୍କ ପାଇଁ, ଏବଂ ଯେଉଁମାନେ ଅଲ୍ଲାଃଙ୍କ ଉଦ୍ଦେଶ୍ୟରେ (ଯୁଦ୍ଧ କରନ୍ତି) ସେମାନଙ୍କ ପାଇଁ, ତଥା ପଥିକ ମାନଙ୍କ ପାଇଁ ; ଏହି ନିର୍ଦ୍ଦେଶ ଅଲ୍ଲାଃଙ୍କ ଦ୍ୱାରା ନିର୍ଦ୍ଧାରିତ ହୋଇଅଛି ; ଏବଂ ଅଲ୍ଲାଃ ହି ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

اِنَّمَا الصَّدَقٰتُ لِلْفُقَرَآءِ وَالْمَسٰكِيْنِ وَالْعٰمِلِيْنَ عَلَيْهَا وَالْمُؤَلَّفَةِ قُلُوْبُهُمْ وَفِي الرِّقَابِ وَالْغٰرِمِيْنَ وَفِيْ سَبِيْلِ اللّٰهِ وَابْنِ السَّبِيْلِ ۚ فَرِيْضَةً مِّنَ اللّٰهِ ۚ وَاللّٰهُ عَلِيْمٌ حَكِيْمٌ ﴿۶۰﴾

୬୧. ଏବଂ ସେମାନଙ୍କ ମଧ୍ୟରେ ଏପରି କେତେକ (କପଟବିଶ୍ୱାସୀ) ଅଛନ୍ତି, ଯେଉଁମାନେ ନବିଙ୍କୁ ଦୁଃଖ ଦିଅନ୍ତି ଓ କହନ୍ତି, "ସେ ତ କେବଳ କାନ[2] (ହିଁ କାନ)" ; ତୁମେ କୁହ, ସେ ତାହା ହି ଶୁଣନ୍ତି ଯାହା ତୁମମାନଙ୍କ ପକ୍ଷେ କଲ୍ୟାଣକର,[3]

وَمِنْهُمُ الَّذِيْنَ يُؤْذُوْنَ النَّبِيَّ وَيَقُوْلُوْنَ هُوَ اُذُنٌ ۗ قُلْ اُذُنُ خَيْرٍ لَّكُمْ يُؤْمِنُ بِاللّٰهِ وَيُؤْمِنُ لِلْمُؤْمِنِيْنَ

---

୧. ଅର୍ଥାତ୍ ଏପରି ଅବିଶ୍ୱାସକାରୀ ଯେଉଁମାନେ ଇସଲାମର ସତ୍ୟତା ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ଇଚ୍ଛାକଲେ ସେମାନଙ୍କୁ କିଛି ସହାୟତା ପ୍ରଦାନ କରିବାକୁ ହେବ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ସେପରି ଅବିଶ୍ୱାସକାରୀମାନଙ୍କୁ ଲାଞ୍ଚ ଦେଇ କ୍ରୟ କରାଯାଇ ପାରିବ ।

୨. ଅର୍ଥାତ୍ ଲୋକମାନଙ୍କର ଅପରି ଅଭିଯୋଗ ଶୁଣୁଥାଆନ୍ତି ।

୩. ସେ ଅବଶ୍ୟ ଲୋକମାନଙ୍କର କଥା ଶୁଣନ୍ତି । କିନ୍ତୁ ସେ ଯାହା ଶୁଣନ୍ତି ଲୋକମାନଙ୍କ କଲ୍ୟାଣ ପାଇଁ ଶୁଣନ୍ତି ଯଦ୍ଦ୍ୱାରା ସେ ତୁମମାନଙ୍କୁ ସୁଧାରି ପାରିବେ । ବସ୍ତୁତଃ ଯେ ସେପରି ଶୁଣୁଥାଏ ସେ ଜଣେ ହିତସାଧକ ।

وَرَحْمَةٌ لِّلَّذِينَ آمَنُوا مِنكُمْ ۚ وَالَّذِينَ يُؤْذُونَ رَسُولَ اللَّهِ لَهُمْ عَذَابٌ أَلِيمٌ ﴿٦١﴾

ସେ ଅଲ୍ଲାଃଙ୍କ ଉପରେ ବିଶ୍ୱାସ କରନ୍ତି, ଓ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ବିଶ୍ୱାସକାରୀ ଅଟନ୍ତି ସେମାନଙ୍କୁ ବିଶ୍ୱାସ କରନ୍ତି, ଏବଂ ବିଶ୍ୱାସକାରୀମାନଙ୍କ ପାଇଁ ଏକ କରୁଣା ସ୍ୱରୂପ ;" ଏବଂ ଯେଉଁମାନେ ଅଲ୍ଲାଃଙ୍କ ରସୁଲଙ୍କୁ ଦୁଃଖ ଦିଅନ୍ତି ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ଅଛି ।

يَحْلِفُونَ بِاللَّهِ لَكُمْ لِيُرْضُوكُمْ وَاللَّهُ وَرَسُولُهُ أَحَقُّ أَن يُرْضُوهُ إِن كَانُوا مُؤْمِنِينَ ﴿٦٢﴾

୬୨. ସେମାନେ ତୁମମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅଲ୍ଲାଃଙ୍କ (ନାମରେ) ଶପଥ କରନ୍ତି, ଅଥଚ ଅଲ୍ଲାଃ ଓ ତାହାଙ୍କ ରସୁଲ ଅଧିକ ହକ୍‌ଦାର ଅଟନ୍ତି ଯେ ତାହାଙ୍କୁ ସନ୍ତୁଷ୍ଟ କରାଯାଉ, ପରନ୍ତୁ ଏହି ସର୍ତ୍ତରେ ଯେ ସେ (କପଟବିଶ୍ୱାସୀ)ମାନେ ସଚ୍ଚୋଟ ବିଶ୍ୱାସକାରୀ ହୋଇଥିବେ ।

أَلَمْ يَعْلَمُوا أَنَّهُ مَن يُحَادِدِ اللَّهَ وَرَسُولَهُ فَأَنَّ لَهُ نَارَ جَهَنَّمَ خَالِدًا فِيهَا ۚ ذَٰلِكَ الْخِزْيُ الْعَظِيمُ ﴿٦٣﴾

୬୩. ସେମାନେ କ'ଣ ଜାଣନ୍ତି ନାହିଁ ଯେ ଯେଉଁ ବ୍ୟକ୍ତି ଅଲ୍ଲାଃ ଓ ତାହାଙ୍କ ରସୁଲଙ୍କର ବିରୁଦ୍ଧାଚରଣ କରେ, ତାହାପାଇଁ (ନରକ) ଅଗ୍ନି (ନିୟତ) ଅଛି, ସେ ସେଥିରେ ବାସ କରିବ ଏବଂ ଏହା ଅତ୍ୟନ୍ତ ଅପମାନଜନକ ଅଟେ ।

يَحْذَرُ الْمُنَافِقُونَ أَن تُنَزَّلَ عَلَيْهِمْ سُورَةٌ تُنَبِّئُهُم بِمَا فِي قُلُوبِهِمْ ۚ قُلِ اسْتَهْزِئُوا إِنَّ اللَّهَ مُخْرِجٌ مَّا تَحْذَرُونَ ﴿٦٤﴾

୬୪. କପଟବିଶ୍ୱାସୀମାନେ (ଲୋକ ଦେଖାଣିଆ) ଭୟ ପ୍ରକାଶ କରୁଛନ୍ତି ଯେ କାଳେ ସେମାନଙ୍କ ବିରୁଦ୍ଧରେ ଏପରି ଏକ ଅଧ୍ୟାୟ ଅବତୀର୍ଣ୍ଣ ହେବ ଯଦ୍ଦ୍ୱାରା ଯାହାକିଛି ସେମାନଙ୍କ ହୃଦୟରେ ଅଛି ତାହା ସେମାନଙ୍କୁ (ଓ ମୁସଲମାନମାନଙ୍କୁ) ସଚେତନ କରାଇଦେବ ; (ତୁମେ) କୁହ, "ଉପହାସ କରୁଥାଅ, ତୁମେମାନେ ଯେଉଁ ବିଷୟରେ (ଲୋକ ଦେଖାଣିଆ) ଭୟ କରୁଅଛ, ଅଲ୍ଲାଃ ନିଶ୍ଚୟ ତାହା ପ୍ରକାଶ କରିଦେବେ")

وَلَئِن سَأَلْتَهُمْ لَيَقُولُنَّ إِنَّمَا كُنَّا نَخُوضُ وَنَلْعَبُ ۚ قُلْ أَبِاللَّهِ وَآيَاتِهِ وَرَسُولِهِ كُنتُمْ تَسْتَهْزِئُونَ ﴿٦٥﴾

୬୫. ଏବଂ ଯଦି ତୁମେ ସେମାନଙ୍କୁ ଏ ସଂକ୍ରାନ୍ତରେ ପ୍ରଶ୍ନ କରିବ (ଯେ ତୁମେମାନେ ଏପରି କଥା କାହିଁକି କହୁଥିଲ ?) ତେବେ ସେମାନେ ନିଶ୍ଚୟ ଏହା ଉତ୍ତର ଦେବେ, "ଆମେମାନେ ତ କେବଳ ଥଟ୍ଟା ପରିହାସ କରୁଥିଲୁ" ; (ତୁମେ) କୁହ, "ତେବେ କ'ଣ ତୁମେମାନେ ଅଲ୍ଲାଃ ଓ ତାହାଙ୍କ ନିଦର୍ଶନ ଓ ତାହାଙ୍କ ରସୁଲଙ୍କ ସହିତ ଥଟ୍ଟା ପରିହାସ କରୁଥିଲ ?"

لَا تَعْتَذِرُوا قَدْ كَفَرْتُم بَعْدَ إِيمَانِكُمْ ۚ إِن نَّعْفُ عَن طَائِفَةٍ مِّنكُمْ نُعَذِّبْ طَائِفَةً بِأَنَّهُمْ كَانُوا مُجْرِمِينَ ﴿٦٦﴾

୬୬. ବର୍ତ୍ତମାନ କୌଣସି ଆପତ୍ତି କରନାହିଁ, ବିଶ୍ୱାସ କରିଲା ପରେ ତୁମେମାନେ ଅବିଶ୍ୱାସ କରିଅଛ ; (ସୁତରାଂ ଶାସ୍ତି ଭୋଗ କର) ଯଦି ଆମେ ତୁମମାନଙ୍କ ମଧ୍ୟରୁ ଗୋଟିଏ ଦଳକୁ କ୍ଷମା କରିଦେଉ ଓ ଅନ୍ୟଦଳକୁ ଶାସ୍ତି ପ୍ରଦାନ କରୁ କାରଣ ସେମାନେ ଅପରାଧୀ ଥିଲେ (ତେବେ ଏହା ଆମର କାର୍ଯ୍ୟ) ।

ରୁ : ୯

୬୭. କପଟବିଶ୍ୱାସୀ ପୁରୁଷ ଓ କପଟବିଶ୍ୱାସିନୀ ନାରୀ ପରସ୍ପର ସହିତ ସମ୍ପର୍କ ରଖନ୍ତି ; ସେମାନେ ଅସତ୍ କାର୍ଯ୍ୟର ଆଦେଶ ଦିଅନ୍ତି, ଓ ସତ୍ କାର୍ଯ୍ୟରୁ ବାରଣ କରନ୍ତି ; ଏବଂ (ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ବ୍ୟୟ କରିବା ପାଇଁ) ନିଜ ହାତକୁ ସଂକୁଚିତ କରନ୍ତି ; ସେମାନେ ଅଲ୍ଲାହଙ୍କୁ ପରିତ୍ୟାଗ କରିଦେବାରୁ ଅଲ୍ଲାହ ସେମାନଙ୍କୁ ପରିତ୍ୟାଗ କରିଛନ୍ତି ; କପଟ-ବିଶ୍ୱାସୀମାନେ ବାସ୍ତବରେ ଅମାନ୍ୟକାରୀ ଅଟନ୍ତି ।

ٱلْمُنَٰفِقُونَ وَٱلْمُنَٰفِقَٰتُ بَعْضُهُم مِّنۢ بَعْضٍ يَأْمُرُونَ بِٱلْمُنكَرِ وَيَنْهَوْنَ عَنِ ٱلْمَعْرُوفِ وَيَقْبِضُونَ أَيْدِيَهُمْ نَسُوا۟ ٱللَّهَ فَنَسِيَهُمْ إِنَّ ٱلْمُنَٰفِقِينَ هُمُ ٱلْفَٰسِقُونَ ﴿٦٧﴾

୬୮. ଅଲ୍ଲାହ କପଟବିଶ୍ୱାସୀ ପୁରୁଷମାନଙ୍କୁ ଓ କପଟବିଶ୍ୱାସିନୀ ନାରୀମାନଙ୍କୁ ତଥା ଅବିଶ୍ୱାସକାରୀମାନଙ୍କୁ ନରକାଗ୍ନିର ପ୍ରତିଶ୍ରୁତି ଦେଇଛନ୍ତି, ଏବଂ ସେମାନେ ସେଠାରେ ବାସ କରିବେ ; ଏହା ହି ସେମାନଙ୍କ ପାଇଁ ଯଥେଷ୍ଟ ହେବ ; ଏବଂ (ଏତଦ୍‌ବ୍ୟତୀତ) ଅଲ୍ଲାହ ସେମାନଙ୍କୁ (ନିଜ ସମୀପରୁ) ବିତାଡ଼ିତ କରିଛନ୍ତି ; ଏବଂ ସେମାନଙ୍କ ପାଇଁ ଏକ ଚିରସ୍ଥାୟୀ ଶାସ୍ତି (ନିୟତ) ରହିଅଛି ।

وَعَدَ ٱللَّهُ ٱلْمُنَٰفِقِينَ وَٱلْمُنَٰفِقَٰتِ وَٱلْكُفَّارَ نَارَ جَهَنَّمَ خَٰلِدِينَ فِيهَا هِىَ حَسْبُهُمْ وَلَعَنَهُمُ ٱللَّهُ وَلَهُمْ عَذَابٌ مُّقِيمٌ ﴿٦٨﴾

୬୯. (ହେ କପଟବିଶ୍ୱାସୀମାନେ ! ଏହି ଶାସ୍ତି ସେହି ଲୋକମାନଙ୍କ (ଶାସ୍ତି) ସଦୃଶ (ହେବ) ଯେଉଁମାନେ ତୁମମାନଙ୍କ ପୂର୍ବରୁ ଥିଲେ ; ସେମାନେ ତୁମମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ଓ ଅଧିକ ଧନବାନ୍ ଥିଲେ ଓ ସେମାନଙ୍କର ଅଧିକ ସନ୍ତାନସନ୍ତତି ଥିଲେ ; ସୁତରାଂ ସେମାନେ ନିଜର ଅଂଶ ଅନୁସାରେ ଲାଭବାନ୍ ହୋଇଥିଲେ ଏବଂ ତୁମେମାନେ ମଧ୍ୟ ଆପଣା ଅଂଶ ଅନୁସାରେ ଲାଭବାନ୍ ହୋଇଛ ଯେପରି ତୁମମାନଙ୍କର ପୂର୍ବବର୍ତ୍ତୀ ଲୋକମାନେ ସେମାନଙ୍କ ଅଂଶ ଅନୁସାରେ ଲାଭବାନ୍ ହୋଇଥିଲେ ; ଏବଂ ଯେପରି ସେମାନେ ଥଟ୍ଟା ପରିହାସ କରିଥିଲେ, ତୁମେମାନେ ମଧ୍ୟ ସେହିପରି ଥଟ୍ଟା ପରିହାସ କରିଅଛ ; ସେମାନଙ୍କର କର୍ମ ଇହକାଳରେ ତଥା ପରକାଳ ସମ୍ବନ୍ଧରେ ବ୍ୟର୍ଥ ହୋଇଅଛି ; ଏବଂ ସେମାନେ ହି କ୍ଷତିଗ୍ରସ୍ତ ହୋଇଛନ୍ତି ।

كَٱلَّذِينَ مِن قَبْلِكُمْ كَانُوٓا۟ أَشَدَّ مِنكُمْ قُوَّةً وَأَكْثَرَ أَمْوَٰلًا وَأَوْلَٰدًا فَٱسْتَمْتَعُوا۟ بِخَلَٰقِهِمْ فَٱسْتَمْتَعْتُم بِخَلَٰقِكُمْ كَمَا ٱسْتَمْتَعَ ٱلَّذِينَ مِن قَبْلِكُم بِخَلَٰقِهِمْ وَخُضْتُمْ كَٱلَّذِى خَاضُوٓا۟ أُو۟لَٰٓئِكَ حَبِطَتْ أَعْمَٰلُهُمْ فِى ٱلدُّنْيَا وَٱلْءَاخِرَةِ وَأُو۟لَٰٓئِكَ هُمُ ٱلْخَٰسِرُونَ ﴿٦٩﴾

୭୦. କ'ଣ ସେମାନଙ୍କ ନିକଟରେ ସେମାନଙ୍କ ପୂର୍ବବର୍ତ୍ତୀମାନଙ୍କର ଅର୍ଥାତ୍ ନୂହ, ଆଦ ଓ ସମୁଦ ଓ ଇବ୍ରାହିମଙ୍କ ସମ୍ପ୍ରଦାୟ ତଥା ମଦୟନର ଅଧିବାସୀ ଓ ଧ୍ୱଂସପ୍ରାପ୍ତ ଜନବସତି (ଅର୍ଥାତ୍ ଲୁତଙ୍କ ସମ୍ପ୍ରଦାୟ)ର ଲୋକମାନଙ୍କ ସଂକ୍ରାନ୍ତରେ ସମାଚାର ପହଞ୍ଚି ନାହିଁ ? ସେମାନଙ୍କ ନିକଟକୁ ସେମାନଙ୍କ

أَلَمْ يَأْتِهِمْ نَبَأُ ٱلَّذِينَ مِن قَبْلِهِمْ قَوْمِ نُوحٍ وَعَادٍ وَثَمُودَ وَقَوْمِ إِبْرَٰهِيمَ وَأَصْحَٰبِ مَدْيَنَ وَٱلْمُؤْتَفِكَٰتِ

أَتَتْهُمْ رُسُلُهُم بِالْبَيِّنَاتِ ۖ فَمَا كَانَ اللَّهُ لِيَظْلِمَهُمْ وَلَٰكِن كَانُوا أَنفُسَهُمْ يَظْلِمُونَ ﴿٧٠﴾

ରସୁଲମାନେ ସ୍ପଷ୍ଟ ନିଦର୍ଶନ ନେଇ ଆସିଥିଲେ ; (କିନ୍ତୁ ସେମାନେ ଅବଜ୍ଞା କରିଥିବାରୁ ଶାସ୍ତି ପାଇଥିଲେ) ଅଲ୍ଲାଃ ସେମାନଙ୍କ ଉପରେ ଅତ୍ୟାଚାର କରି ନ ଥିଲେ, ବରଂ ସେମାନେ ନିଜ ଉପରେ ନିଜେ ଅତ୍ୟାଚାର କରିଥିଲେ ।

وَالْمُؤْمِنُونَ وَالْمُؤْمِنَاتُ بَعْضُهُمْ أَوْلِيَاءُ بَعْضٍ ۚ يَأْمُرُونَ بِالْمَعْرُوفِ وَيَنْهَوْنَ عَنِ الْمُنكَرِ وَيُقِيمُونَ الصَّلَاةَ وَيُؤْتُونَ الزَّكَاةَ وَيُطِيعُونَ اللَّهَ وَرَسُولَهُ ۚ أُولَٰئِكَ سَيَرْحَمُهُمُ اللَّهُ ۗ إِنَّ اللَّهَ عَزِيزٌ حَكِيمٌ ﴿٧١﴾

୭୧. ଏବଂ ବିଶ୍ୱାସକାରୀ ପୁରୁଷମାନେ ଓ ବିଶ୍ୱାସକାରିଣୀ ନାରୀମାନେ ପରସ୍ପରର ବନ୍ଧୁ ଅଟନ୍ତି ; ସେମାନେ ସତ୍‌ କାର୍ଯ୍ୟର ଆଦେଶ ଦିଅନ୍ତି ଓ ଅସତ୍‌ କାର୍ଯ୍ୟରୁ ବାରଣ କରନ୍ତି ତଥା ସୁଚାରୁରୂପେ ନମାଜ ପାଠ କରନ୍ତି ଓ ଜକାତ ଦିଅନ୍ତି ଏବଂ ଅଲ୍ଲାଃ ଓ ତାହାଙ୍କର ରସୁଲମାନଙ୍କର ଆଦେଶ ପାଳନ କରନ୍ତି ; ଏମାନେ ଏପରି ଲୋକ ଯାହାଙ୍କ ପ୍ରତି ଅଲ୍ଲାଃ ନିଶ୍ଚୟ କରୁଣା କରିବେ ; ବାସ୍ତବରେ ଅଲ୍ଲାଃ ଅତ୍ୟନ୍ତ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

وَعَدَ اللَّهُ الْمُؤْمِنِينَ وَالْمُؤْمِنَاتِ جَنَّاتٍ تَجْرِي مِن تَحْتِهَا الْأَنْهَارُ خَالِدِينَ فِيهَا وَمَسَاكِنَ طَيِّبَةً فِي جَنَّاتِ عَدْنٍ ۚ وَرِضْوَانٌ مِّنَ اللَّهِ أَكْبَرُ ۚ ذَٰلِكَ هُوَ الْفَوْزُ الْعَظِيمُ ﴿٧٢﴾

୭୨. ଅଲ୍ଲାଃ ବିଶ୍ୱାସକାରୀ ପୁରୁଷ ଓ ବିଶ୍ୱାସକାରିଣୀ ନାରୀମାନଙ୍କୁ ଏପରି ବୈକୁଣ୍ଠ ସଂକ୍ରାନ୍ତରେ ଅଙ୍ଗୀକାର କରିଛନ୍ତି ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ, ଯେଉଁଠାରେ ସେମାନେ ସର୍ବଦା ରହିବେ ; ଏବଂ ଚିରସ୍ଥାୟୀ ବୈକୁଣ୍ଠ ମଧ୍ୟରେ ପବିତ୍ର ଗୃହ ଥିବ ; ଏବଂ ଏତଦ୍‌ଭିନ୍ନ ଅଲ୍ଲାଃଙ୍କର ସନ୍ତୋଷଭାଜନ ହେବା ଏକ ସର୍ବୋତ୍କୃଷ୍ଟ ପୁରସ୍କାର ଅଟେ (ଯାହା ସେମାନଙ୍କୁ ମିଳିବ) ; ଏବଂ ଏହାକୁ ଲାଭ କରିବା ଏକ ମହାନ୍‌ ସଫଳତା ।

ରୁ : ୧୦

يَا أَيُّهَا النَّبِيُّ جَاهِدِ الْكُفَّارَ وَالْمُنَافِقِينَ وَاغْلُظْ عَلَيْهِمْ ۚ وَمَأْوَاهُمْ جَهَنَّمُ ۖ وَبِئْسَ الْمَصِيرُ ﴿٧٣﴾

୭୩. ହେ ନବି ! ଅବିଶ୍ୱାସକାରୀ ଓ କପଟବିଶ୍ୱାସୀମାନଙ୍କ ବିରୁଦ୍ଧରେ ଜେହାଦ କର ; ଏବଂ (ସୁବନ୍ଦୋବସ୍ତ କରି) ସେମାନଙ୍କ ପ୍ରତି ଦୃଢ଼ତା ଅବଲମ୍ବନ କର ; ସେମାନଙ୍କ ବାସସ୍ଥାନ ନରକ ଓ ତାହା (ବାସ କରିବା ଦୃଷ୍ଟିରୁ) ଅତ୍ୟନ୍ତ ମନ୍ଦ ଅଟେ ।

يَحْلِفُونَ بِاللَّهِ مَا قَالُوا وَلَقَدْ قَالُوا كَلِمَةَ الْكُفْرِ وَكَفَرُوا بَعْدَ إِسْلَامِهِمْ وَهَمُّوا بِمَا لَمْ يَنَالُوا ۚ وَمَا نَقَمُوا إِلَّا أَنْ أَغْنَاهُمُ اللَّهُ وَرَسُولُهُ مِن فَضْلِهِ ۚ فَإِن يَتُوبُوا يَكُ خَيْرًا لَّهُمْ ۖ وَإِن يَتَوَلَّوْا يُعَذِّبْهُمُ اللَّهُ

୭୪. ସେମାନେ ଅଲ୍ଲାଃଙ୍କ ନାମରେ ଶପଥ କରନ୍ତି ଯେ ସେମାନେ କୌଣସି (ମନ୍ଦ) କଥା କହିନାହାନ୍ତି ; ଅଥଚ ସେମାନେ ଅବିଶ୍ୱାସ କରିବା କଥା କହିଛନ୍ତି, ଏବଂ ଇସଲାମ ଗ୍ରହଣ କରିବା ପରେ ଅବିଶ୍ୱାସ କରିଛନ୍ତି ; ସେମାନେ (ଇସଲାମ ବିରୁଦ୍ଧରେ) ଯାହା ହାସଲ କରିପାରିବେ ନାହିଁ, ସେ ବିଷୟ କାମନା କରିଛନ୍ତି ; ଏବଂ ସେମାନେ ସେ (ମୁସଲମାନ)ମାନଙ୍କ ସହିତ କେବଳ ଏଥିଯୋଗୁଁ ଶତ୍ରୁତା କରିଛନ୍ତି ଯେହେତୁ ଅଲ୍ଲାଃ ଓ ତାହାଙ୍କର ରସୁଲ ନିଜ କୃପାରୁ ସେମାନଙ୍କୁ ଧନବାନ୍‌ କରିଛନ୍ତି ; ସୁତରାଂ ଯଦି ସେମାନେ

عَذَابًا أَلِيمًا فِي الدُّنْيَا وَالْآخِرَةِ ۚ وَمَا لَهُمْ فِي الْأَرْضِ مِن وَلِيٍّ وَلَا نَصِيرٍ ﴿٧٤﴾

ଅନୁତାପ କରନ୍ତି, ତେବେ (ତାହା) ସେମାନଙ୍କ ପାଇଁ ଶ୍ରେୟସ୍କର ହେବ ; ଏବଂ ଯଦି ସେମାନେ ପୃଷ୍ଠଭଙ୍ଗ କରି ଫେରି ଯାଆନ୍ତି, ତେବେ ଅଲ୍ଲାହ ସେମାନଙ୍କୁ ଇହକାଳ ଓ ପରକାଳରେ ଯନ୍ତ୍ରଣାଦାୟକ ଶାସ୍ତି ପ୍ରଦାନ କରିବେ ; ଏବଂ ଏହି ପୃଥିବୀରେ ସେମାନଙ୍କର କେହି ବନ୍ଧୁ କି ସାହାଯ୍ୟକାରୀ ହେବେ ନାହିଁ ।

وَمِنْهُم مَّنْ عَاهَدَ اللَّهَ لَئِنْ آتَانَا مِن فَضْلِهِ لَنَصَّدَّقَنَّ وَلَنَكُونَنَّ مِنَ الصَّالِحِينَ ﴿٧٥﴾

୭୫. ଏବଂ ସେମାନଙ୍କ ମଧ୍ୟରେ ଏପରି (କେତେକ ବ୍ୟକ୍ତି) ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କ ନିକଟରେ ଅଙ୍ଗୀକାର କରନ୍ତି, "ଯଦି ସେ (ଅଲ୍ଲାହ) ନିଜ କୃପାରୁ ଆମମାନଙ୍କୁ କିଛି ପ୍ରଦାନ କରିବେ, ତେବେ ଆମେ ନିଶ୍ଚୟ ତାହାଙ୍କ ଉଦ୍ଦେଶ୍ୟରେ ଦାନ କରିବୁ, ଏବଂ ଆମେମାନେ ନିଶ୍ଚୟ ଧର୍ମନିଷ୍ଠ ହେବୁ ।"

فَلَمَّا آتَاهُم مِّن فَضْلِهِ بَخِلُوا بِهِ وَتَوَلَّوا وَّهُم مُّعْرِضُونَ ﴿٧٦﴾

୭୬. କିନ୍ତୁ ଯେତେବେଳେ ସେ (ଅଲ୍ଲାହ) ନିଜ କୃପାରୁ ସେମାନଙ୍କୁ ଧନ ପ୍ରଦାନ କଲେ ସେତେବେଳେ ସେମାନେ (ତାହାକୁ ତାଙ୍କ ଉଦ୍ଦେଶ୍ୟରେ ବ୍ୟୟ କରିବାକୁ) କୃପଣତା କରିଥିଲେ, ଏବଂ ସେମାନେ (ନିଜର ପୂର୍ବବର୍ତ୍ତୀ ପଛା ଆଡ଼କୁ) - ପ୍ରତ୍ୟାବର୍ତ୍ତନ କଲେ, ଏବଂ (ଅଲ୍ଲାହ ଓ ତାହାଙ୍କର ରସୁଲଙ୍କ ଶିକ୍ଷାରୁ) ବିମୁଖ ହୋଇ ଫେରିଗଲେ ।

فَأَعْقَبَهُمْ نِفَاقًا فِي قُلُوبِهِمْ إِلَىٰ يَوْمِ يَلْقَوْنَهُ بِمَا أَخْلَفُوا اللَّهَ مَا وَعَدُوهُ وَبِمَا كَانُوا يَكْذِبُونَ ﴿٧٧﴾

୭୭. ସୁତରାଂ (ପରିଣାମ ଏପରି ହେଲା ଯେ) ସେମାନେ ତାହାଙ୍କ ସହିତ ସାକ୍ଷାତ୍ କରିବା ଦିବସ ପର୍ଯ୍ୟନ୍ତ ସେ (ଅଲ୍ଲାହ) ସେମାନଙ୍କ ହୃଦୟରେ କପଟ ସଞ୍ଚାରିତ କରିଥିଲେ ; କାରଣ ସେମାନେ ଅଲ୍ଲାହଙ୍କ ସହିତ ସେମାନଙ୍କର ଅଙ୍ଗୀକାର ଭଙ୍ଗ କରିଥିଲେ ଏବଂ ସେମାନେ ମିଛ କହୁଥିଲେ ।

أَلَمْ يَعْلَمُوا أَنَّ اللَّهَ يَعْلَمُ سِرَّهُمْ وَنَجْوَاهُمْ وَأَنَّ اللَّهَ عَلَّامُ الْغُيُوبِ ﴿٧٨﴾

୭୮. କ'ଣ ସେମାନେ ଜାଣି ନ ଥିଲେ ଯେ ଅଲ୍ଲାହ ସେମାନଙ୍କ ଗୁପ୍ତ ପରାମର୍ଶକୁ ଓ ସେମାନଙ୍କ ପ୍ରକାଶ୍ୟ ପରାମର୍ଶକୁ (ମଧ୍ୟ) ଜାଣନ୍ତି ଏବଂ ଅଲ୍ଲାହ ସମସ୍ତ ଅଦୃଶ୍ୟ ବିଷୟକୁ ଭଲ ରୂପେ ଜାଣନ୍ତି ?

الَّذِينَ يَلْمِزُونَ الْمُطَّوِّعِينَ مِنَ الْمُؤْمِنِينَ فِي الصَّدَقَاتِ وَالَّذِينَ لَا يَجِدُونَ إِلَّا جُهْدَهُمْ فَيَسْخَرُونَ مِنْهُمْ ۙ سَخِرَ اللَّهُ مِنْهُمْ وَلَهُمْ عَذَابٌ أَلِيمٌ ﴿٧٩﴾

୭୯. ବିଶ୍ୱାସକାରୀମାନଙ୍କ ମଧ୍ୟରୁ ଯେଉଁମାନେ ମୁକ୍ତ ହସ୍ତରେ ଦାନ କରନ୍ତି, ସେମାନଙ୍କୁ ଏ (କପଟବିଶ୍ୱାସୀ)ମାନେ ବିଦ୍ରୂପ କରନ୍ତି, ଏବଂ ଯେଉଁମାନଙ୍କର ନିଜ (ପରିଶ୍ରମ ଦ୍ୱାରା) ଉପାର୍ଜିତ ଧନ ବ୍ୟତୀତ (ଦାନ ଦେବା ପାଇଁ) ଅନ୍ୟ କିଛି ସାମର୍ଥ୍ୟ ନଥାଏ ସେମାନଙ୍କୁ ମଧ୍ୟ ; ସୁତରାଂ (ସେମାନଙ୍କର ଏହି ତ୍ୟାଗ ସତ୍ତ୍ୱେ) ଏ (କପଟବିଶ୍ୱାସୀ)ମାନେ ସେମାନଙ୍କୁ ପରିହାସ କରନ୍ତି ; ଅଲ୍ଲାହ ସେମାନଙ୍କ ପରିହାସ ପାଇଁ ସେମାନଙ୍କୁ ଦଣ୍ଡିତ କରିବେ ; ଏବଂ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି ।

୮୦. ତୁମେ ସେମାନଙ୍କ ପାଇଁ କ୍ଷମା ପ୍ରାର୍ଥନା କର ବା କ୍ଷମା ପ୍ରାର୍ଥନା ନ କର (ଏହା ସେମାନଙ୍କ ପାଇଁ ସମାନ) ; ଯଦି ତୁମେ ସେମାନଙ୍କ ପାଇଁ ସତୁରି ଥର[1] କ୍ଷମା ପ୍ରାର୍ଥନା କରିବ, ତେବେ ମଧ୍ୟ ଅଲ୍ଲାହ ସେମାନଙ୍କୁ କ୍ଷମା କରିବେ ନାହିଁ, କାରଣ ସେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କୁ ଅମାନ୍ୟ କରିଛନ୍ତି ; ଏବଂ ଅଲ୍ଲାହ ଅମାନ୍ୟକାରୀ ସମ୍ପ୍ରଦାୟକୁ କଦାପି ସଫଳତାର ପଥ ପ୍ରଦର୍ଶନ କରାନ୍ତି ନାହିଁ ।

اِسْتَغْفِرْ لَهُمْ اَوْ لَا تَسْتَغْفِرْ لَهُمْ ۗ اِنْ تَسْتَغْفِرْ لَهُمْ سَبْعِيْنَ مَرَّةً فَلَنْ يَّغْفِرَ اللّٰهُ لَهُمْ ۗ ذٰلِكَ بِاَنَّهُمْ كَفَرُوْا بِاللّٰهِ وَرَسُوْلِهٖ ۗ وَاللّٰهُ لَا يَهْدِى الْقَوْمَ الْفٰسِقِيْنَ ﴿٨٠﴾ ع

ରୁ : ୧୧

୮୧. ଯେଉଁ (କପଟବିଶ୍ୱାସୀ)ମାନେ (ଜେହାଦକୁ ନ ଯାଇ) ପଛରେ ରହି ଯାଇଥିଲେ, ସେମାନେ ଅଲ୍ଲାହଙ୍କ ରସୁଲଙ୍କର ବିରୁଦ୍ଧାଚରଣ କରି ସ୍ୱସ୍ଥାନରେ ବସି ରହିବାରେ ଆନନ୍ଦିତ ହେଉଛନ୍ତି ; ଏବଂ ସେମାନେ ନିଜ ଜୀବନ ଓ ନିଜ ଧନ ଦ୍ୱାରା ଜେହାଦ କରିବାକୁ ଖରାପ ମନେ କରିଥିଲେ ; ଏବଂ ସେମାନେ (ପରସ୍ପରକୁ) କହୁଥିଲେ, "ଏପରି (ପ୍ରଖର) ଉତ୍ତାପ (ସମୟ)ରେ ଯୁଦ୍ଧ କରିବା ପାଇଁ ବାହାର ନାହିଁ" ; ତୁମେ (ସେମାନଙ୍କୁ) କୁହ, "ନରକର ଅଗ୍ନି (ଏହି ଉତ୍ତାପ ଅପେକ୍ଷା) ଅଧିକ ତୀବ୍ର" ; ଆହା ! ସେମାନେ ବୁଝିପାରନ୍ତେ କି !

فَرِحَ الْمُخَلَّفُوْنَ بِمَقْعَدِهِمْ خِلٰفَ رَسُوْلِ اللّٰهِ وَكَرِهُوْٓا اَنْ يُّجَاهِدُوْا بِاَمْوَالِهِمْ وَاَنْفُسِهِمْ فِىْ سَبِيْلِ اللّٰهِ وَقَالُوْا لَا تَنْفِرُوْا فِى الْحَرِّ ۗ قُلْ نَارُ جَهَنَّمَ اَشَدُّ حَرًّا ۗ لَوْ كَانُوْا يَفْقَهُوْنَ ﴿٨١﴾

୮୨. ସୁତରାଂ ସେମାନେ (ନିଜର ଏହି ପ୍ରତାରଣା ଯୋଗୁଁ) ଅଳ୍ପ ହସିବା ଓ ନିଜ କର୍ମର ପ୍ରତିଫଳ ଯୋଗୁଁ ଅଧିକ କାନ୍ଦିବା ଉଚିତ ।

فَلْيَضْحَكُوْا قَلِيْلًا وَّلْيَبْكُوْا كَثِيْرًا ۚ جَزَآءًۢ بِمَا كَانُوْا يَكْسِبُوْنَ ﴿٨٢﴾

୮୩. ସୁତରାଂ ଯଦି ଏହା ପରେ ଅଲ୍ଲାହ ତୁମକୁ ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ ନିକଟକୁ ଫେରାଇ ଆଣନ୍ତି, ଏବଂ ସେମାନେ (ଆଗାମୀ କୌଣସି) ଯୁଦ୍ଧକୁ ଯିବା ପାଇଁ ତୁମର ଅନୁମତି ପ୍ରାର୍ଥନା କରନ୍ତି, ତେବେ ତୁମେ ସେମାନଙ୍କୁ କୁହ, "ତୁମମାନଙ୍କୁ କଦାପି ଆମ ସହିତ (ଭବିଷ୍ୟତରେ ଯୁଦ୍ଧକୁ) ଯିବା ପାଇଁ ଅନୁମତି ଦିଆଯିବ ନାହିଁ, ଏବଂ ତୁମେମାନେ କଦାପି ଆମ ସହିତ ମିଶି ଶତ୍ରୁ ବିପକ୍ଷରେ ଯୁଦ୍ଧ କରି ପାରିବ ନାହିଁ, (କାରଣ) ତୁମେମାନେ ପ୍ରଥମଥର (ପଛରେ) ବସି ରହିବାକୁ ପସନ୍ଦ କରିଥିଲ ; ସୁତରାଂ (ଭବିଷ୍ୟତରେ ମଧ୍ୟ ସର୍ବଦା) ପଛରେ ବସିରହିଥିବା ଲୋକମାନଙ୍କ ସହିତ ବସିଥାଅ ।"

فَاِنْ رَّجَعَكَ اللّٰهُ اِلٰى طَآئِفَةٍ مِّنْهُمْ فَاسْتَاْذَنُوْكَ لِلْخُرُوْجِ فَقُلْ لَّنْ تَخْرُجُوْا مَعِىَ اَبَدًا وَّلَنْ تُقَاتِلُوْا مَعِىَ عَدُوًّا ۗ اِنَّكُمْ رَضِيْتُمْ بِالْقُعُوْدِ اَوَّلَ مَرَّةٍ فَاقْعُدُوْا مَعَ الْخٰلِفِيْنَ ﴿٨٣﴾

---

୧. ଏଠାରେ ସତୁରି ଥର ଏକ ନିର୍ଦ୍ଦିଷ୍ଟ ସଂଖ୍ୟାକୁ ବୁଝାଉ ନାହିଁ ବରଂ ଅସଂଖ୍ୟ ଥରକୁ ବୁଝାଉଛି । ବସ୍ତୁତଃ ହଜରତ ମହମ୍ମଦ ସେମାନଙ୍କ ପାଇଁ ଯେତେଥର କ୍ଷମାପ୍ରାର୍ଥନା କଲେ ମଧ୍ୟ ସେମାନଙ୍କୁ କ୍ଷମା ଦିଆଯିବ ନାହିଁ ।

୮୪. ଏବଂ ଯଦି ସେମାନଙ୍କ ମଧ୍ୟରୁ କେହି ମୃତ୍ୟୁବରଣ କରେ ତେବେ ତାହା ପାଇଁ (ଜନାଜା) ନମାଜ ପାଠ କରନାହିଁ ଓ ତାହାର କବର ନିକଟରେ (ପ୍ରାର୍ଥନା କରିବା ସକାଶେ) ଦଣ୍ଡାୟମାନ ହୁଅ ନାହିଁ କାରଣ ସେମାନେ ଅଲ୍ଲାହ ଓ ତାହାଙ୍କର ରସୁଲଙ୍କୁ ଅମାନ୍ୟ କରିଥିଲେ ଓ ଅମାନ୍ୟକାରୀ ଥିବାବେଳେ ମୃତ୍ୟୁବରଣ କରିଛନ୍ତି ।

وَلَا تُصَلِّ عَلَىٰٓ أَحَدٍ مِّنْهُم مَّاتَ أَبَدًا وَلَا تَقُمْ عَلَىٰ قَبْرِهِۦٓ ۖ إِنَّهُمْ كَفَرُوا۟ بِٱللَّهِ وَرَسُولِهِۦ وَمَاتُوا۟ وَهُمْ فَٰسِقُونَ ٨٤

୮୫. ଏବଂ ସେମାନଙ୍କ ଧନ ସମ୍ପତ୍ତି ଓ ସନ୍ତାନସନ୍ତତି ତୁମକୁ ଆଶ୍ଚର୍ଯ୍ୟାନ୍ୱିତ ନ କରୁ ; ତଦ୍ୱାରା ଅଲ୍ଲାହ ସେମାନଙ୍କୁ ଏହି ପୃଥିବୀରେ ହିଁ ଶାସ୍ତି ପ୍ରଦାନ କରିବାକୁ ଇଚ୍ଛା କରନ୍ତି, ଏବଂ ସେମାନେ ଅବିଶ୍ୱାସ କରୁଥିବା ଅବସ୍ଥାରେ ସେମାନଙ୍କର ପ୍ରାଣବାୟୁ ଉଡ଼ିଯିବ ।

وَلَا تُعْجِبْكَ أَمْوَٰلُهُمْ وَأَوْلَٰدُهُمْ ۚ إِنَّمَا يُرِيدُ ٱللَّهُ أَن يُعَذِّبَهُم بِهَا فِى ٱلدُّنْيَا وَتَزْهَقَ أَنفُسُهُمْ وَهُمْ كَٰفِرُونَ ٨٥

୮୬. ଏବଂ ଯେତେବେଳେ କୌଣସି ଅଧ୍ୟାୟ (ଏହି ଆଦେଶ ବହନ କରି) ଅବତୀର୍ଣ୍ଣ ହୁଏ ଯେ ଅଲ୍ଲାହଙ୍କ ଉପରେ ବିଶ୍ୱାସ କର ଓ ତାହାଙ୍କ ରସୁଲଙ୍କ ସହିତ ମିଶି ଜେହାଦ କର ସେତେବେଳେ ସେମାନଙ୍କ ମଧ୍ୟରୁ ଧନବାନ୍ ଲୋକମାନେ ତୁମଠାରୁ ଅନୁମତି ପ୍ରାର୍ଥନା କରି କହନ୍ତି, "ଆମମାନଙ୍କୁ ଅବ୍ୟାହତି ଦିଅ ଯଦ୍ୱାରା ଆମେମାନେ (ପଛରେ) ବସିଥିବା ଲୋକମାନଙ୍କ ସଙ୍ଗରେ (ବସି) ରହିବୁ ।"

وَإِذَآ أُنزِلَتْ سُورَةٌ أَنْ ءَامِنُوا۟ بِٱللَّهِ وَجَٰهِدُوا۟ مَعَ رَسُولِهِ ٱسْتَـْٔذَنَكَ أُو۟لُوا۟ ٱلطَّوْلِ مِنْهُمْ وَقَالُوا۟ ذَرْنَا نَكُن مَّعَ ٱلْقَٰعِدِينَ ٨٦

୮୭. ସେମାନେ ପଛରେ ରହିଯାଇଥିବା ନାରୀମାନଙ୍କ (ସମ୍ପ୍ରଦାୟ) ସହିତ ରହିବାକୁ ପସନ୍ଦ କରିଛନ୍ତି, ଏବଂ ସେମାନଙ୍କ ହୃଦୟରେ ମୋହର ମରାଯାଇଅଛି, ସୁତରାଂ ସେମାନେ (ନିଜ କୁକର୍ମ ଯୋଗୁଁ) ବୁଝିପାରୁ ନାହାନ୍ତି ।

رَضُوا۟ بِأَن يَكُونُوا۟ مَعَ ٱلْخَوَالِفِ وَطُبِعَ عَلَىٰ قُلُوبِهِمْ فَهُمْ لَا يَفْقَهُونَ ٨٧

୮୮. କିନ୍ତୁ ଏହି ରସୁଲ (ଅର୍ଥାତ୍ ହଜରତ ମହମ୍ମଦ) ଓ ଯେଉଁମାନେ ତାହାଙ୍କ ସହିତ ମିଶି (ଅଲ୍ଲାହଙ୍କ ଉପରେ) ବିଶ୍ୱାସ କରିଛନ୍ତି ଓ ଯେଉଁମାନେ ନିଜର ଧନ ଓ ଜୀବନ ଦେଇ ଜେହାଦ କରିଛନ୍ତି, ସେମାନଙ୍କ ସକାଶେ ସମସ୍ତ ପ୍ରକାର ମଙ୍ଗଳ ରହିଛି, ଏବଂ ସେମାନେ ହିଁ (ପରିଶେଷରେ) କୃତକାର୍ଯ୍ୟ ହେବେ ।

لَٰكِنِ ٱلرَّسُولُ وَٱلَّذِينَ ءَامَنُوا۟ مَعَهُۥ جَٰهَدُوا۟ بِأَمْوَٰلِهِمْ وَأَنفُسِهِمْ ۚ وَأُو۟لَٰٓئِكَ لَهُمُ ٱلْخَيْرَٰتُ ۖ وَأُو۟لَٰٓئِكَ هُمُ ٱلْمُفْلِحُونَ ٨٨

୮୯. ଅଲ୍ଲାହ ସେମାନଙ୍କ ପାଇଁ ଏପରି ବୈକୁଣ୍ଠ ଗଢ଼ିଛନ୍ତି ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଅଛି, ସେମାନେ ଏହି ଉଦ୍ୟାନରେ ସର୍ବଦା ବାସ କରିବେ ; ଏହା ଏକ ମହାନ୍ ସଫଳତା ।

أَعَدَّ ٱللَّهُ لَهُمْ جَنَّٰتٍ تَجْرِى مِن تَحْتِهَا ٱلْأَنْهَٰرُ خَٰلِدِينَ فِيهَا ۚ ذَٰلِكَ ٱلْفَوْزُ ٱلْعَظِيمُ ٨٩ ع

ରୁ : ୧୨

୯୦. ଏବଂ (ମଦିନା ନିକଟସ୍ଥ) ଗ୍ରାମାଞ୍ଚଳର ଅଧିବାସୀମାନଙ୍କ ମଧ୍ୟରୁ ଛଳନାକାରୀ (ଲୋକ)ମାନେ ଆସି କହନ୍ତି ଯେ ସେମାନଙ୍କୁ (ମଧ୍ୟ ପଛରେ ରହିବା ପାଇଁ) ଅନୁମତି

وَجَآءَ ٱلْمُعَذِّرُونَ مِنَ ٱلْأَعْرَابِ لِيُؤْذَنَ لَهُمْ

وَقَعَدَ الَّذِينَ كَذَبُوا اللَّهَ وَرَسُولَهُ ۚ سَيُصِيبُ الَّذِينَ كَفَرُوا مِنْهُمْ عَذَابٌ أَلِيمٌ ﴿٩٠﴾

ଦିଆଯାଉ ; ଏବଂ ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କୁ ମିଥ୍ୟା କହି (ପଛରେ) ରହିଗଲେ, ସେମାନଙ୍କ ମଧ୍ୟରୁ ଯେଉଁମାନେ ଅବିଶ୍ୱାସକାରୀ ସେମାନଙ୍କୁ ନିଶ୍ଚୟ ଯନ୍ତ୍ରଣାଦାୟକ ଶାସ୍ତି ଦିଆଯିବ ।

لَيْسَ عَلَى الضُّعَفَاءِ وَلَا عَلَى الْمَرْضَىٰ وَلَا عَلَى الَّذِينَ لَا يَجِدُونَ مَا يُنْفِقُونَ حَرَجٌ إِذَا نَصَحُوا لِلَّهِ وَرَسُولِهِ ۚ مَا عَلَى الْمُحْسِنِينَ مِنْ سَبِيلٍ ۚ وَاللَّهُ غَفُورٌ رَحِيمٌ ﴿٩١﴾

୯୧. (କିନ୍ତୁ ହେ ରସୁଲ !) ଯେଉଁମାନେ ପ୍ରକୃତରେ ଦୁର୍ବଳ ବା ପୀଡିତ ଅଥବା ଯେଉଁମାନେ (ଅଭାବବଶତଃ) ବ୍ୟୟ କରିବାକୁ କିଛି ପାଆନ୍ତି ନାହିଁ, ଯଦି ସେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ପ୍ରତି ଆନ୍ତରିକତା ସହିତ ନିଷ୍ଠାପର ରହିବେ, ତେବେ (ପଛରେ ରହିଗଲେ) ସେମାନଙ୍କର କୌଣସି ଦୋଷ ନାହିଁ ; (ଏମାନେ ହିଁ ହିତକାରୀ) ଏବଂ ହିତକାରୀମାନଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ନାହିଁ, ଏବଂ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَلَا عَلَى الَّذِينَ إِذَا مَا أَتَوْكَ لِتَحْمِلَهُمْ قُلْتَ لَا أَجِدُ مَا أَحْمِلُكُمْ عَلَيْهِ تَوَلَّوْا وَأَعْيُنُهُمْ تَفِيضُ مِنَ الدَّمْعِ حَزَنًا أَلَّا يَجِدُوا مَا يُنْفِقُونَ ﴿٩٢﴾

୯୨. ଏବଂ ସେମାନଙ୍କ ବିରୁଦ୍ଧରେ (ମଧ୍ୟ କୌଣସି ଅଭିଯୋଗ) ନାହିଁ, ଯେଉଁମାନେ ତୁମ ନିକଟକୁ ସେତେବେଳେ ଆସିଥିଲେ ଯେତେବେଳେ ଯୁଦ୍ଧ ଘୋଷଣା କରାଯାଇଥିଲା ; ସେମାନେ ଏଥିସକାଶେ ଆସିଥିଲେ ଯେ ତୁମେ ସେମାନଙ୍କ ସକାଶେ କୌଣସି ବାହନର[1] ବ୍ୟବସ୍ଥା କରିଦେବ ; ତୁମେ ଉତ୍ତର ଦେଇଥିଲ ଯେ ଆମ ନିକଟରେ ଏପରି କିଛି ନାହିଁ ଯାହା ଉପରେ ତୁମମାନଙ୍କୁ ଆରୋହଣ କରାଇବୁ ; (ଏହା ଶୁଣି) ସେମାନେ ଫେରି ଯାଇଥିଲେ, ଏବଂ ଦୁଃଖରେ ସେମାନଙ୍କ ଚକ୍ଷୁରୁ ଅଶ୍ରୁ ନିର୍ଗତ ହେଉଥିଲା ଯେ ହାୟ ! ସେମାନଙ୍କ ନିକଟରେ (ଅଲ୍ଲାହଙ୍କ ମାର୍ଗରେ) ବ୍ୟୟ କରିବାକୁ କିଛି ନଥିଲା ।

إِنَّمَا السَّبِيلُ عَلَى الَّذِينَ يَسْتَأْذِنُونَكَ وَهُمْ أَغْنِيَاءُ ۚ رَضُوا بِأَنْ يَكُونُوا مَعَ الْخَوَالِفِ وَطَبَعَ اللَّهُ عَلَىٰ قُلُوبِهِمْ فَهُمْ لَا يَعْلَمُونَ ﴿٩٣﴾

୯୩. ଅଭିଯୋଗ କେବଳ ସେହି ଲୋକମାନଙ୍କ ବିରୁଦ୍ଧରେ ଲାଗୁ ହେବ ଯେଉଁମାନେ ଧନବାନ୍ ହୋଇ ମଧ୍ୟ ପଛରେ ରହିବା ପାଇଁ ତୁମ ନିକଟରେ ଅନୁମତି ପ୍ରାର୍ଥନା କରନ୍ତି ; ସେମାନେ ପଛରେ ରହିଯିବା ନାରୀମାନଙ୍କ (ସମ୍ପ୍ରଦାୟ) ସହିତ (ବେସିରହିବାକୁ) ରାଜି ହୋଇଗଲେ, ଏବଂ ଅଲ୍ଲାହ ସେମାନଙ୍କ ହୃଦୟରେ ମୋହର ମାରି ଦେଇଛନ୍ତି, ଅଥଚ ସେମାନେ ଏହା ଜାଣି ପାରୁ ନାହାନ୍ତି ।

---

୧. ସାତଜଣ ଅତ୍ୟନ୍ତ ଦରିଦ୍ର ବ୍ୟକ୍ତିଙ୍କର ଜିହାଦ କରିବା ପାଇଁ ପ୍ରବଳ ଇଚ୍ଛା ଥିଲେ ମଧ୍ୟ ସେମାନଙ୍କ ପାଖରେ କୌଣସି ସମ୍ବଳ ନ ଥିଲା । ସେହିମାନଙ୍କ ବିଷୟ ହଦିସରେ ବର୍ଣ୍ଣନା କରାଯାଇଛି । ସେମାନେ ଅଲ୍ଲାହଙ୍କ ନାମରେ ଶପଥପୂର୍ବକ କହିଥିଲେ ଯେ ସେମାନେ ଅବତାରଙ୍କ ନିକଟକୁ କୌଣସି ବାହନ ମାଗିବାକୁ ଆସି ନ ଥିଲେ, ବରଂ ସେମାନେ ଜୋତା ବା ଚପଲକୁ ବାହନ ମନେ କରୁଥିଲେ, ଯାହାକୁ ପିନ୍ଧି ସେମାନେ ଉତପ୍ତ କଙ୍କରିଳ ବାଲୁକା ରାଶି ଉପରେ ଚାଲିପାରିବେ । ପବିତ୍ର କୋରାନରେ ବ୍ୟବହୃତ ଶବ୍ଦାବଳୀର ତାତ୍ପର୍ଯ୍ୟ ହେଉଛି : ଆମମାନଙ୍କୁ ଏପରି ବସ୍ତୁ ଦିଅନ୍ତୁ ଯାହା ଉପରେ ଠିଆହୋଇ ଆମେମାନେ ସଂଗ୍ରାମ ଭୂଇଁ ପର୍ଯ୍ୟନ୍ତ ଯାଇପାରିବୁ । ଏଣୁ ମଗାଯାଇଥିବା ସେହି ବସ୍ତୁକୁ ଜୋତା ବା ଚପଲ ବୁଝିବାକୁ ହେବ । ସେତେବେଳେ ଏପରି ଅଭାବ ଓ ଦାରିଦ୍ର୍ୟ ଘେରି ରହିଥିଲା ଯେ ହଜରତ ମହମ୍ମଦ ସବୁ ସଂଗ୍ରାମୀଙ୍କୁ ଜୋତା ବା ଚପଲ ମଧ୍ୟ ଯୋଗାଇ ପାରୁ ନଥିଲେ । (ଫତହୁଲ ବୟାନ ଦ୍ରଷ୍ଟବ୍ୟ) ।

## ଭାଗ-୧୧

୯୪. ଯେତେବେଳେ ତୁମେମାନେ ଯୁଦ୍ଧରୁ ସେମାନଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ କରୁଛ, ସେମାନେ ତୁମମାନଙ୍କ ନିକଟକୁ ଆସି (ବିଭିନ୍ନ ପ୍ରକାରର) ଛଳନା କରନ୍ତି ; ତୁମେ କୁହ, "ତୁମେମାନେ ଛଳନା କର ନାହିଁ, ଆମ୍ଭେ କଦାପି (ତୁମମାନଙ୍କର ଛଳନାକୁ) ବିଶ୍ୱାସ କରିବୁ ନାହିଁ ; ତୁମମାନଙ୍କ ବିଷୟରେ ଅଲ୍ଲାହ ଆମମାନଙ୍କୁ ଜଣାଇ ଦେଇଛନ୍ତି ; ଏବଂ ଅଲ୍ଲାହ ଓ ତାହାଙ୍କର ରସୁଲ ତୁମମାନଙ୍କ କାର୍ଯ୍ୟଗୁଡ଼ିକୁ ନିରୀକ୍ଷଣ କରୁଥିବେ ; ଏହାପରେ ତୁମମାନଙ୍କୁ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା ଅଲ୍ଲାହଙ୍କ ନିକଟକୁ ଫେରାଇ ନିଆଯିବ ; ସୁତରାଂ ସେ ତୁମମାନଙ୍କ କାର୍ଯ୍ୟାବଳୀର ପ୍ରକୃତ ସ୍ୱରୂପ ସମ୍ପର୍କରେ ତୁମମାନଙ୍କୁ ଅବଗତ କରାଇବେ ।"

يَعْتَذِرُونَ إِلَيْكُمْ إِذَا رَجَعْتُمْ إِلَيْهِمْ ۚ قُل لَّا تَعْتَذِرُوا لَن نُّؤْمِنَ لَكُمْ قَدْ نَبَّأَنَا اللَّهُ مِنْ أَخْبَارِكُمْ ۚ وَسَيَرَى اللَّهُ عَمَلَكُمْ وَرَسُولُهُ ثُمَّ تُرَدُّونَ إِلَىٰ عَالِمِ الْغَيْبِ وَالشَّهَادَةِ فَيُنَبِّئُكُم بِمَا كُنتُمْ تَعْمَلُونَ ﴿٩٤﴾

୯୫. ଯେତେବେଳେ ତୁମେମାନେ ସେମାନଙ୍କ ନିକଟକୁ ଫେରି ଆସିବ, ସେତେବେଳେ ସେମାନେ ତୁମମାନଙ୍କ ନିକଟରେ ଅଲ୍ଲାହଙ୍କ ନାମରେ ଶପଥ କରିବେ ଯେପରି କି ତୁମେମାନେ ସେମାନଙ୍କ ଦୋଷ ଧରିବ ନାହିଁ ; ସୁତରାଂ (ଆମ୍ଭେ କହୁଛୁ) ତୁମେମାନେ ସେମାନଙ୍କ ଦୋଷ ଧର ନାହିଁ ; କାରଣ ସେମାନେ ବାସ୍ତବରେ କଳୁଷିତ, ଓ ସେମାନେ ଯାହା କିଛି କରିଛନ୍ତି ତାହାର ପ୍ରତିଫଳ ସ୍ୱରୂପ ସେମାନଙ୍କ ବାସସ୍ଥାନ ପ୍ରଥମରୁ ହିଁ ନରକ ନିର୍ଦ୍ଦିଷ୍ଟ ହୋଇଅଛି ।

سَيَحْلِفُونَ بِاللَّهِ لَكُمْ إِذَا انقَلَبْتُمْ إِلَيْهِمْ لِتُعْرِضُوا عَنْهُمْ ۖ فَأَعْرِضُوا عَنْهُمْ ۖ إِنَّهُمْ رِجْسٌ ۖ وَمَأْوَاهُمْ جَهَنَّمُ جَزَاءً بِمَا كَانُوا يَكْسِبُونَ ﴿٩٥﴾

୯୬. ସେମାନେ ତୁମମାନଙ୍କ ନିକଟରେ ଶପଥ କରିବେ ଯେପରି କି ତୁମେମାନେ ସେମାନଙ୍କ ଉପରେ ସନ୍ତୁଷ୍ଟ ହେବ; ସୁତରାଂ ତୁମେମାନେ ସେମାନଙ୍କ ଉପରେ ସନ୍ତୁଷ୍ଟ ହେଲେ ମଧ୍ୟ, ଅଲ୍ଲାହ ଅମାନ୍ୟକାରୀ ବ୍ୟକ୍ତିମାନଙ୍କ ପ୍ରତି ସନ୍ତୁଷ୍ଟ ହେବେ ନାହିଁ ।

يَحْلِفُونَ لَكُمْ لِتَرْضَوْا عَنْهُمْ ۖ فَإِن تَرْضَوْا عَنْهُمْ فَإِنَّ اللَّهَ لَا يَرْضَىٰ عَنِ الْقَوْمِ الْفَاسِقِينَ ﴿٩٦﴾

୯୭. (ଗ୍ରାମାଞ୍ଚଳରେ ଓ ଜଙ୍ଗଲରେ ରହୁଥିବା ଆରବର) ମରୁବାସୀମାନେ ଅବିଶ୍ୱାସ ଓ କପଟ କରିବାରେ (ସମସ୍ତ ଆରବବାସୀଙ୍କ ଠାରୁ) ବଳି ଯାଇଛନ୍ତି, ଏବଂ ଅଲ୍ଲାହ ତାହାଙ୍କ ରସୁଲଙ୍କ ପ୍ରତି ଯାହା କିଛି (ଆଦେଶ) ଅବତୀର୍ଣ୍ଣ କରିଛନ୍ତି ତାହାର ସୀମା ସଂକ୍ରାନ୍ତରେ ଜାଣିବାକୁ ସେମାନେ ଅଯୋଗ୍ୟ ; ଏବଂ ଅଲ୍ଲାହ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

الْأَعْرَابُ أَشَدُّ كُفْرًا وَنِفَاقًا وَأَجْدَرُ أَلَّا يَعْلَمُوا حُدُودَ مَا أَنزَلَ اللَّهُ عَلَىٰ رَسُولِهِ ۗ وَاللَّهُ عَلِيمٌ حَكِيمٌ ﴿٩٧﴾

وَمِنَ الْأَعْرَابِ مَن يَتَّخِذُ مَا يُنفِقُ مَغْرَمًا وَيَتَرَبَّصُ بِكُمُ الدَّوَائِرَ ۚ عَلَيْهِمْ دَائِرَةُ السَّوْءِ ۗ وَاللَّهُ سَمِيعٌ عَلِيمٌ ﴿٩٨﴾

୯୮. ଏବଂ (ଗ୍ରାମାଞ୍ଚଳରେ ଓ ଜଙ୍ଗଲରେ ରହୁଥିବା ଆରବର) ମରୁବାସୀମାନଙ୍କ ମଧ୍ୟରେ କେତେକ ଏପରି ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କ ପଥରେ ବ୍ୟୟ କରୁଥିବା ଧନକୁ (ଏକ) ବୋଝ ବୋଲି ମନେ କରନ୍ତି ; ଏବଂ ତୁମମାନଙ୍କ ପାଇଁ (ଦୈବ) ଦୁର୍ବିପାକର ଅପେକ୍ଷା କରୁଛନ୍ତି; (ମନେରଖ) ସେମାନଙ୍କ ଉପରେ ହିଁ ଦୁର୍ବିପାକ ଆସିବ ; ଏବଂ ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَمِنَ الْأَعْرَابِ مَن يُؤْمِنُ بِاللَّهِ وَالْيَوْمِ الْآخِرِ وَيَتَّخِذُ مَا يُنفِقُ قُرُبَاتٍ عِندَ اللَّهِ وَصَلَوَاتِ الرَّسُولِ ۚ أَلَا إِنَّهَا قُرْبَةٌ لَّهُمْ ۚ سَيُدْخِلُهُمُ اللَّهُ فِي رَحْمَتِهِ ۗ إِنَّ اللَّهَ غَفُورٌ رَّحِيمٌ ﴿٩٩﴾

୯୯. ଏବଂ (ଗ୍ରାମାଞ୍ଚଳରେ ଓ ଜଙ୍ଗଲରେ ରହୁଥିବା ଆରବର) ମରୁବାସୀମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ ଅଲ୍ଲାହ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରନ୍ତି, ଏବଂ (ଅଲ୍ଲାହଙ୍କ ପଥରେ) ସେମାନେ ଯାହା କିଛି ବ୍ୟୟ କରନ୍ତି, ତାହାକୁ ଅଲ୍ଲାହଙ୍କ ସାମୀପ୍ୟ ଲାଭ ଓ ରସୁଲଙ୍କ ଆଶୀର୍ବାଦ ଲାଭର ପନ୍ଥା ବୋଲି ମନେ କରନ୍ତି ; ମନେରଖ ଏହା ନିଶ୍ଚୟ ସେମାନଙ୍କ ପାଇଁ ଅଲ୍ଲାହଙ୍କ ସାମୀପ୍ୟ ଲାଭ କରିବାର ପନ୍ଥା, ଅଲ୍ଲାହ ନିଶ୍ଚୟ ସେମାନଙ୍କୁ ନିଜ କରୁଣା ମଧ୍ୟରେ ପ୍ରବେଶ କରାଇବେ ; କାରଣ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

ରୁ : ୧୩

وَالسَّابِقُونَ الْأَوَّلُونَ مِنَ الْمُهَاجِرِينَ وَالْأَنصَارِ وَالَّذِينَ اتَّبَعُوهُم بِإِحْسَانٍ رَّضِيَ اللَّهُ عَنْهُمْ وَرَضُوا عَنْهُ وَأَعَدَّ لَهُمْ جَنَّاتٍ تَجْرِي تَحْتَهَا الْأَنْهَارُ خَالِدِينَ فِيهَا أَبَدًا ۚ ذَٰلِكَ الْفَوْزُ الْعَظِيمُ ﴿١٠٠﴾

୧୦୦. ଏବଂ ହିଜରତକାରୀ ଓ ସାହାଯ୍ୟକାରୀମାନଙ୍କ ମଧ୍ୟରୁ ଯେଉଁମାନେ ଅଗ୍ରଗାମୀ, ଏବଂ ଯେଉଁମାନେ ନିଷ୍ଠାର ସହିତ ସେମାନଙ୍କୁ ଅନୁସରଣ କରୁଛନ୍ତି, ଅଲ୍ଲାହ ସେମାନଙ୍କ ଉପରେ ସନ୍ତୁଷ୍ଟ ; ଏବଂ ସେମାନେ ମଧ୍ୟ ଅଲ୍ଲାହଙ୍କ ଉପରେ ସନ୍ତୁଷ୍ଟ; ଏବଂ ସେ ସେମାନଙ୍କ ପାଇଁ ଏପରି ବୈକୁଣ୍ଠ ଗଢ଼ିଛନ୍ତି, ଯାହାର ନିମ୍ନରେ ଝରଣା ପ୍ରବାହିତ ହେଉଅଛି ; ସେମାନେ ସେଠାରେ ସର୍ବଦା ବାସ କରିବେ ; ଏବଂ ଏହା ହିଁ ଏକ ମହାନ୍ ସଫଳତା ।

وَمِمَّنْ حَوْلَكُم مِّنَ الْأَعْرَابِ مُنَافِقُونَ ۖ وَمِنْ أَهْلِ الْمَدِينَةِ ۖ مَرَدُوا عَلَى النِّفَاقِ لَا تَعْلَمُهُمْ ۖ نَحْنُ نَعْلَمُهُمْ ۚ سَنُعَذِّبُهُم مَّرَّتَيْنِ ثُمَّ يُرَدُّونَ إِلَىٰ عَذَابٍ عَظِيمٍ ﴿١٠١﴾

୧୦୧. ଏବଂ ତୁମମାନଙ୍କ ପାର୍ଶ୍ୱବର୍ତ୍ତୀ (ଗ୍ରାମାଞ୍ଚଳରେ ଓ ଜଙ୍ଗଲରେ ରହୁଥିବା ଆରବର) କେତେକ ମରୁବାସୀ କପଟ ବିଶ୍ୱାସୀ ଅଟନ୍ତି ; ଏବଂ ମଦିନାବାସୀମାନଙ୍କ ଭିତରୁ ମଧ୍ୟ କେତେକ ଲୋକ (ଏପରି ଅଛନ୍ତି) ଯେଉଁମାନେ କପଟତା କରିବାରେ ଅଟଳ ; ତୁମେ ସେମାନଙ୍କୁ ଜାଣ ନାହିଁ, କିନ୍ତୁ ଆମେ ସେମାନଙ୍କୁ ଜାଣୁ ; ଆମେ ସେମାନଙ୍କୁ ଦୁଇ ଥର [୧] ଶାସ୍ତି ପ୍ରଦାନ କରିବୁ ; ତତ୍ପରେ ସେମାନଙ୍କୁ ଏକ କଠୋର ଶାସ୍ତି ଆଡ଼କୁ ଫେରାଇ ନିଆଯିବ ।

୧. ହଜରତ ମହମ୍ମଦଙ୍କ ମୃତ୍ୟୁ ପରେ ପ୍ରଥମ ଥର ମୁନାଫିକ ଓ ସେମାନଙ୍କ ସାଥୀମାନଙ୍କର ଓ ଦ୍ୱିତୀୟ ଥର ସେମାନଙ୍କ ଆଶାର ଉତ୍ସ ଆରବବାସୀ ଖ୍ରିଷ୍ଟିୟାନ ସମ୍ପ୍ରଦାୟର ସର୍ବନାଶ ହୋଇଥିଲା ।

وَاٰخَرُوْنَ اعْتَرَفُوْا بِذُنُوْبِهِمْ خَلَطُوْا عَمَلًا صَالِحًا وَّاٰخَرَ سَيِّئًا ؕ عَسَى اللّٰهُ اَنْ يَّتُوْبَ عَلَيْهِمْ ؕ اِنَّ اللّٰهَ غَفُوْرٌ رَّحِيْمٌ ۝١٠٢

୧୦୨. ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ନିଜର ପାପକୁ ସ୍ୱୀକାର କରିଛନ୍ତି ; ସେମାନେ ଉତ୍ତମ କାର୍ଯ୍ୟ ସହିତ କୁକାର୍ଯ୍ୟଗୁଡ଼ିକୁ ମିଶ୍ରିତ କରିଛନ୍ତି ; ସମ୍ଭବତଃ ଅଲ୍ଲାଃ ସେମାନଙ୍କୁ ଦୟା ପ୍ରଦର୍ଶନ କରିବେ ; ଅଲ୍ଲାଃ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

خُذْ مِنْ اَمْوَالِهِمْ صَدَقَةً تُطَهِّرُهُمْ وَتُزَكِّيْهِمْ بِهَا وَصَلِّ عَلَيْهِمْ ؕ اِنَّ صَلٰوتَكَ سَكَنٌ لَّهُمْ ؕ وَاللّٰهُ سَمِيْعٌ عَلِيْمٌ ۝١٠٣

୧୦୩. (ହେ ରସୁଲ !) ସେମାନଙ୍କ ସମ୍ପତ୍ତିରୁ ଦାନ[1] ଗ୍ରହଣ କର, ଯଦ୍ଦ୍ୱାରା ତୁମେ ସେମାନଙ୍କୁ ପବିତ୍ର କରାଇ ପାରିବ ; ଓ ସେମାନଙ୍କ ପାଇଁ ଉନ୍ନତି ବିଧାନ କରିପାରିବ ; ଏବଂ ସେମାନଙ୍କ ପାଇଁ ପ୍ରାର୍ଥନା ମଧ୍ୟ କରୁଥାଅ ; କାରଣ ତୁମର ପ୍ରାର୍ଥନା ସେମାନଙ୍କ ପାଇଁ ଶାନ୍ତିର ଆଧାର ଅଟେ ; ଏବଂ ଅଲ୍ଲାଃ ହି ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

اَلَمْ يَعْلَمُوْٓا اَنَّ اللّٰهَ هُوَ يَقْبَلُ التَّوْبَةَ عَنْ عِبَادِهٖ وَيَاْخُذُ الصَّدَقٰتِ وَاَنَّ اللّٰهَ هُوَ التَّوَّابُ الرَّحِيْمُ ۝١٠٤

୧୦୪. କ'ଣ ସେମାନେ ଏହା ଜାଣନ୍ତି ନାହିଁ ଯେ ଅଲ୍ଲାଃ ହି ତାଙ୍କ ଭକ୍ତମାନଙ୍କର ଅନୁତାପକୁ ଗ୍ରହଣ କରନ୍ତି ଓ ସେମାନଙ୍କ ଦାନର ପ୍ରାପ୍ତି ସ୍ୱୀକାର କରନ୍ତି, (ରସୁଲ ଗ୍ରହଣ କରନ୍ତି ନାହିଁ) ; ଏବଂ ଅଲ୍ଲାଃ ହି ଅନୁତାପ ଗ୍ରହୀତା (ଓ) ସଦା କରୁଣାମୟ ।

وَقُلِ اعْمَلُوْا فَسَيَرَى اللّٰهُ عَمَلَكُمْ وَرَسُوْلُهٗ وَالْمُؤْمِنُوْنَ ؕ وَسَتُرَدُّوْنَ اِلٰى عٰلِمِ الْغَيْبِ وَالشَّهَادَةِ فَيُنَبِّئُكُمْ بِمَا كُنْتُمْ تَعْمَلُوْنَ ۝١٠٥

୧୦୫. ଏବଂ (ସେମାନଙ୍କୁ) କୁହ, "କର୍ମ କରି ଚାଲ, ଏବଂ ଅଲ୍ଲାଃ ଏବଂ ତାହାଙ୍କ ରସୁଲ ଓ ବିଶ୍ୱାସକାରୀମାନେ ନିଶ୍ଚୟ ତୁମମାନଙ୍କର କର୍ମକୁ ନିରୀକ୍ଷଣ କରିବେ ; ଏବଂ ତୁମମାନଙ୍କୁ ଦୃଷ୍ଟ ଓ ଅଦୃଷ୍ଟର ଜ୍ଞାତା (ଅଲ୍ଲାଃ)ଙ୍କ ନିକଟକୁ ନିଶ୍ଚୟ ଫେରାଇ ନିଆଯିବ ; ଏବଂ ସେ ତୁମମାନଙ୍କ କାର୍ଯ୍ୟାବଳୀର ପ୍ରକୃତ ସ୍ୱରୂପ ସମ୍ପର୍କରେ ତୁମମାନଙ୍କୁ ଅବଗତ କରାଇବେ ।"

وَاٰخَرُوْنَ مُرْجَوْنَ لِاَمْرِ اللّٰهِ اِمَّا يُعَذِّبُهُمْ وَاِمَّا يَتُوْبُ عَلَيْهِمْ ؕ وَاللّٰهُ عَلِيْمٌ حَكِيْمٌ ۝١٠٦

୧୦୬. ଏବଂ ଏପରି କେତେକ ଲୋକ ଅଛନ୍ତି, ଯେଉଁମାନେ ଅଲ୍ଲାଃଙ୍କ ଆଦେଶର ପ୍ରତୀକ୍ଷା[2] କରୁଛନ୍ତି ଯେ ସେ ସେମାନଙ୍କୁ ଶାସ୍ତି ପ୍ରଦାନ କରି ପାରନ୍ତି, ବା ସେମାନଙ୍କର ଅନୁତାପ ଗ୍ରହଣ କରିପାରନ୍ତି ; ଏବଂ ଅଲ୍ଲାଃ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

---

୧. ସଦକା ବା ଦାନ ଦରିଦ୍ର ଓ ଅସହାୟ ବ୍ୟକ୍ତିଙ୍କ ପାଇଁ ଖର୍ଚ୍ଚ କରାଯାଏ । ତାହା ଅଲ୍ଲାଃ ଓ ରସୁଲଙ୍କ ପାଇଁ ଖର୍ଚ୍ଚ କରାଯାଏ ନାହିଁ ।

୨. ଅର୍ଥାତ୍ ଅଲ୍ଲାଃଙ୍କ ଆଦେଶ ଅବତୀର୍ଣ୍ଣ ନ ହେବା ପର୍ଯ୍ୟନ୍ତ କୌଣସି କାର୍ଯ୍ୟାନୁଷ୍ଠାନ କରାଯିବ ନାହିଁ ।

وَالَّذِينَ اتَّخَذُوا مَسْجِدًا ضِرَارًا وَكُفْرًا وَتَفْرِيقًا بَيْنَ الْمُؤْمِنِينَ وَإِرْصَادًا لِمَنْ حَارَبَ اللَّهَ وَرَسُولَهُ مِنْ قَبْلُ ۚ وَلَيَحْلِفُنَّ إِنْ أَرَدْنَا إِلَّا الْحُسْنَىٰ ۖ وَاللَّهُ يَشْهَدُ إِنَّهُمْ لَكَاذِبُونَ ﴿١٠٧﴾

୧୦୭. ଏବଂ ଯେଉଁ ଲୋକମାନେ ଅନିଷ୍ଟ[୧] ସାଧନ କରିବା ଓ ଅବିଶ୍ୱାସର ପ୍ରଚାର କରିବା ଉଦ୍ଦେଶ୍ୟରେ ତଥା ବିଶ୍ୱାସକାରୀମାନଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରିବା ଓ ଯେଉଁ ବ୍ୟକ୍ତି ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ବିରୁଦ୍ଧରେ ପୂର୍ବରୁ ଯୁଦ୍ଧ କରିଅଛି, ତାହାକୁ ଗୁପ୍ତସ୍ଥାନ ଯୋଗାଇବା ପାଇଁ ଉପାସନା ଗୃହକୁ ମନୋନୀତ କରିଅଛନ୍ତି,, ସେମାନେ ନିଶ୍ଚୟ ଶପଥ-ପୂର୍ବକ କହିବେ ଯେ (ଏହି ଉପାସନା ଗୃହ ନିର୍ମାଣରେ) ଆମର ଉଦ୍ଦେଶ୍ୟ ମହତ୍ ଥିଲା ; କିନ୍ତୁ ଅଲ୍ଲାହ ସାକ୍ଷ୍ୟ ଦେଉଛନ୍ତି ଯେ ସେମାନେ ବାସ୍ତବରେ ମିଥ୍ୟାବାଦୀ ।

لَا تَقُمْ فِيهِ أَبَدًا ۚ لَمَسْجِدٌ أُسِّسَ عَلَى التَّقْوَىٰ مِنْ أَوَّلِ يَوْمٍ أَحَقُّ أَنْ تَقُومَ فِيهِ ۚ فِيهِ رِجَالٌ يُحِبُّونَ أَنْ يَتَطَهَّرُوا ۚ وَاللَّهُ يُحِبُّ الْمُطَّهِّرِينَ ﴿١٠٨﴾

୧୦୮. (ହେ ନବି !) ତୁମେ (କଦାପି) ତହିଁରେ ଦଣ୍ଡାୟମାନ ହୁଅ ନାହିଁ ; ଯେଉଁ ମସଜିଦର ମୂଳଭିତ୍ତି ପ୍ରଥମ ଦିନରୁ ପୁଣ୍ୟ ଉପରେ ପ୍ରତିଷ୍ଠିତ ତାହା ଅଧିକ ଯୋଗ୍ୟ ଯେ ତୁମେ ତହିଁରେ (ସାମୂହିକ ନମାଜ ପାଠ ପାଇଁ) ଦଣ୍ଡାୟମାନ ହୁଅ ; ସେଥିରେ ଏପରି ଲୋକମାନେ ଅଛନ୍ତି ଯେଉଁମାନେ ସମ୍ପୂର୍ଣ୍ଣ ରୂପେ ପବିତ୍ର ହୋଇ ଯିବାକୁ ଇଚ୍ଛା ପୋଷଣ କରନ୍ତି ; ଏବଂ ସମ୍ପୂର୍ଣ୍ଣ ପବିତ୍ରତା ଅବଲମ୍ବନ କରୁଥିବା ଲୋକମାନଙ୍କୁ ଅଲ୍ଲାହ ପସନ୍ଦ କରନ୍ତି ।

أَفَمَنْ أَسَّسَ بُنْيَانَهُ عَلَىٰ تَقْوَىٰ مِنَ اللَّهِ وَرِضْوَانٍ خَيْرٌ أَمْ مَنْ أَسَّسَ بُنْيَانَهُ عَلَىٰ شَفَا جُرُفٍ هَارٍ فَانْهَارَ بِهِ فِي نَارِ جَهَنَّمَ ۗ وَاللَّهُ لَا يَهْدِي الْقَوْمَ الظَّالِمِينَ ﴿١٠٩﴾

୧୦୯. ସୁତରାଂ ଯେ ନିଜ ଗୃହର ମୂଳଭିତ୍ତି ଅଲ୍ଲାହଙ୍କ ଭୟ ଓ ସନ୍ତୋଷ ଉପରେ ପ୍ରତିଷ୍ଠା କରେ, ସେ ଉତ୍ତମ ନା ଯେ ନିଜ ଗୃହର ମୂଳଭିତ୍ତି ଏପରି ଏକ ପତନୋନ୍ମୁଖୀ ଅତଡ଼ା ଉପରେ ପ୍ରତିଷ୍ଠା କରିଅଛି ଯାହା ସେହି ଗୃହ ସହିତ ନରକ ଅଗ୍ନିରେ ପଡ଼ିଯିବ ? ଏବଂ ଅଲ୍ଲାହ ଅତ୍ୟାଚାରୀ ସମ୍ପ୍ରଦାୟକୁ (ସଫଳତାର) ପଥ ପ୍ରଦର୍ଶିତ କରାନ୍ତି ନାହିଁ ।

لَا يَزَالُ بُنْيَانُهُمُ الَّذِي بَنَوْا رِيبَةً فِي قُلُوبِهِمْ إِلَّا أَنْ تَقَطَّعَ قُلُوبُهُمْ ۗ وَاللَّهُ عَلِيمٌ حَكِيمٌ ﴿١١٠﴾

୧୧୦. ସେମାନେ ଯେଉଁ ମୂଳଭିତ୍ତି ନିର୍ମାଣ କରିଥିଲେ, ତାହା ସେମାନଙ୍କ ହୃଦୟରେ ସେ ପର୍ଯ୍ୟନ୍ତ ସର୍ବଦା ସନ୍ଦେହର କାରଣ ହୋଇ ରହିବ ଯେ ପର୍ଯ୍ୟନ୍ତ ସେମାନଙ୍କ ହୃଦୟ ଖଣ୍ଡ ବିଖଣ୍ଡିତ ନ ହୁଏ ଓ ସେମାନେ ମୃତ୍ୟୁଲାଭ ନ କରନ୍ତି ; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

---

୧. ଇସଲାମ ଧର୍ମର ଉତ୍ତରୋତ୍ତର ଉନ୍ନତି ହେବାରୁ ଓ ମୁନାଫିକମାନେ କ୍ରମଶଃ ନିରାଶ ହୋଇ ପଡ଼ିବାରୁ ଅବୁ ଆମିର ନାମକ ଜଣେ ଖ୍ରୀଷ୍ଟିୟାନ ପାଦ୍ରୀ ମୁନାଫିକମାନଙ୍କ ନିକଟକୁ ଏକ ଗୁପ୍ତ ବାର୍ତ୍ତା ପଠାଇ ତାଙ୍କ ପାଇଁ ଏକ ପୃଥକ୍ ସଦନ ନିର୍ମାଣ କରାଯିବା ପାଇଁ ପ୍ରସ୍ତାବ ଦେଇଥିଲେ । ସେଠାରେ ସେ ଅନ୍ୟମାନଙ୍କ ସହିତ ପରାମର୍ଶ କରି ରୋମ ସମ୍ରାଟଙ୍କ ନିକଟକୁ ଯିବେ ଓ ତାଙ୍କ ସୈନ୍ୟବାହିନୀ ସାହାଯ୍ୟରେ ମଦିନା ଆକ୍ରମଣ କରିବେ ବୋଲି ମଧ୍ୟ ପ୍ରସ୍ତାବ ଦେଇଥିଲେ । ସେକାଳରେ ମସଜିଦେ-ନବଓ୍ୱୀ ବ୍ୟତୀତ ମଦିନା ଉପକଣ୍ଠରେ କେତେକ ବିଶିଷ୍ଟ ମୁସଲମାନଙ୍କର ଅନ୍ୟ ଏକ ମସଜିଦ ଥିଲା । ମୁନାଫିକମାନେ ଅବୁ ଆମିରଙ୍କୁ ଲୁଚାଇ ରଖିବା ପାଇଁ ସେଠାରେ ଅନ୍ୟ ଏକ ମସଜିଦ ନିର୍ମାଣ କରିଥିଲେ ଓ ହଜରତ ମହାମ୍ମଦଙ୍କୁ ସେଠାରେ ନମାଜ ପଢ଼ିବାକୁ ନିମନ୍ତ୍ରଣ କରିଥିଲେ । କିନ୍ତୁ ଅଲ୍ଲାହ ତାଙ୍କୁ ଓହି ମାଧ୍ୟମରେ ସେଠାକୁ ଯିବା ପାଇଁ ବାରଣ କରିଥିଲେ । ଅବୁ ଆମିର ନିଜର ଅଜ୍ଞାତାବଶତଃ ଭାବିଲା ଯେ ସମ୍ଭବତଃ କୌଣସି ଗୁପ୍ତଚର ତାଙ୍କୁ ତା'ର ଯୋଜନା ବିଷୟରେ ଜଣାଇ ଦେଇଛି । ଏହାପରେ ସେ ମଦିନା ଛାଡ଼ି ପଳାୟନ କଲା । ତା'ର ସେଇ ପଳାୟନ ମୁସଲମାନ ଓ ରୋମ ବାସୀଙ୍କ ମଧ୍ୟରେ ପରେ ଯୁଦ୍ଧର କାରଣ ହେଲା । କିନ୍ତୁ ଅଲ୍ଲାହ ଏହି ଯୁଦ୍ଧରେ ମୁସଲମାନମାନଙ୍କୁ ବିଜୟମଣ୍ଡିତ କରିଥିଲେ ।

ରୁ : ୧୪

୧୧୧. ଅଲ୍ଲାହ୍ ବିଶ୍ୱାସକାରୀମାନଙ୍କଠାରୁ ସେମାନଙ୍କ ଧନ ଓ ଜୀବନ (ଏହି ପ୍ରତିଶ୍ରୁତି ସହ) କ୍ରୟ କରିଛନ୍ତି ଯେ ସେମାନଙ୍କୁ ବୈକୁଣ୍ଠପ୍ରାପ୍ତ ହେବ; (କାରଣ) ସେମାନେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ଯୁଦ୍ଧ କରନ୍ତି; ତା'ପରେ ସେମାନେ (ଶତ୍ରୁମାନଙ୍କୁ) ହତ୍ୟା କରନ୍ତି ବା (ନିଜେ) ନିହତ ହୁଅନ୍ତି ; ଏହା ଏପରି ଏକ ପ୍ରତିଶ୍ରୁତି ଯାହା ସେ (ଅଲ୍ଲାହ୍) ନିଜ ଉପରେ ଅନିବାର୍ଯ୍ୟ କରିଅଛନ୍ତି, (ଏବଂ ଏହା) ତୌରାତ, ଇଞ୍ଜିଲ ଏବଂ କୋରାନରେ (ବର୍ଣ୍ଣିତ) ଅଛି ; ଏବଂ ଅଲ୍ଲାହ୍‌ଙ୍କ ଅପେକ୍ଷା କିଏ ନିଜର ପ୍ରତିଶ୍ରୁତିକୁ ଅଧିକ ପାଳନ କରିପାରେ ? ସୁତରାଂ (ହେ ବିଶ୍ୱାସକାରୀମାନେ !) ତୁମେମାନେ ଯେଉଁ କାରବାର କରିଅଛ, ସେଥିପାଇଁ ଆନନ୍ଦିତ ହୁଅ ; ଏବଂ ଏହା ହିଁ ଏକ ମହାନ୍ ସଫଳତା ଯାହାର ପ୍ରତିଶ୍ରୁତି ବିଶ୍ୱାସକାରୀମାନଙ୍କୁ ଦିଆଯାଇଛି ;

إِنَّ اللَّهَ اشْتَرَىٰ مِنَ الْمُؤْمِنِينَ أَنفُسَهُمْ وَأَمْوَالَهُم بِأَنَّ لَهُمُ الْجَنَّةَ ۚ يُقَاتِلُونَ فِي سَبِيلِ اللَّهِ فَيَقْتُلُونَ وَيُقْتَلُونَ ۖ وَعْدًا عَلَيْهِ حَقًّا فِي التَّوْرَاةِ وَالْإِنجِيلِ وَالْقُرْآنِ ۚ وَمَنْ أَوْفَىٰ بِعَهْدِهِ مِنَ اللَّهِ ۚ فَاسْتَبْشِرُوا بِبَيْعِكُمُ الَّذِي بَايَعْتُم بِهِ ۚ وَذَٰلِكَ هُوَ الْفَوْزُ الْعَظِيمُ ﴿١١١﴾

୧୧୨. ଯେଉଁ ଲୋକମାନେ ଅନୁତାପ କରନ୍ତି, ଉପାସନା କରନ୍ତି, (ଅଲ୍ଲାହ୍‌ଙ୍କ) ସ୍ତୁତିଗାନ କରନ୍ତି (ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ) ଯାତ୍ରା କରନ୍ତି, ରୁକୁ କରନ୍ତି, ସିଜଦା କରନ୍ତି, ସତ୍‌କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦିଅନ୍ତି, ଏବଂ ମନ୍ଦକାର୍ଯ୍ୟରୁ ବାରଣ କରନ୍ତି, ଏବଂ ଅଲ୍ଲାହ୍‌ଙ୍କ ଦ୍ୱାରା ସୀମାକୁ ସଂରକ୍ଷିତ କରନ୍ତି, ଏପରି ବିଶ୍ୱାସକାରୀମାନଙ୍କୁ (ତୁମେ) ସୁସମାଚାର ଦିଅ ।

التَّائِبُونَ الْعَابِدُونَ الْحَامِدُونَ السَّائِحُونَ الرَّاكِعُونَ السَّاجِدُونَ الْآمِرُونَ بِالْمَعْرُوفِ وَالنَّاهُونَ عَنِ الْمُنكَرِ وَالْحَافِظُونَ لِحُدُودِ اللَّهِ ۗ وَبَشِّرِ الْمُؤْمِنِينَ ﴿١١٢﴾

୧୧୩. ମୁସରିକମାନେ ନରକବାସୀ ଅଟନ୍ତି ବୋଲି ପ୍ରକାଶିତ ହେବା ପରେ ସେ (ମୁସରିକ)ମାନେ ନିକଟ ସଂପର୍କୀୟ ହୋଇଥିଲେ ମଧ୍ୟ ସେମାନଙ୍କ ପାଇଁ କ୍ଷମାପ୍ରାର୍ଥନା କରିବା ନବି ଓ ବିଶ୍ୱାସକାରୀମାନଙ୍କ ପାଇଁ ଶୋଭନୀୟ ନୁହେଁ ।

مَا كَانَ لِلنَّبِيِّ وَالَّذِينَ آمَنُوا أَن يَسْتَغْفِرُوا لِلْمُشْرِكِينَ وَلَوْ كَانُوا أُولِي قُرْبَىٰ مِن بَعْدِ مَا تَبَيَّنَ لَهُمْ أَنَّهُمْ أَصْحَابُ الْجَحِيمِ ﴿١١٣﴾

୧୧୪. ଏବଂ ଇବ୍ରାହିମ ନିଜ ପିତାଙ୍କ ପାଇଁ କ୍ଷମା ପ୍ରାର୍ଥନା କରିବା କେବଳ ଏହି କାରଣରୁ ଥିଲା ଯେ ସେ ତାଙ୍କୁ ପ୍ରତିଶ୍ରୁତି ଦେଇ ଥିଲେ, କିନ୍ତୁ ଯେତେବେଳେ ଏହା ତାହାଙ୍କ ନିକଟରେ ପ୍ରକାଶିତ ହେଲା ଯେ ସେ ଅଲ୍ଲାହ୍‌ଙ୍କର ଶତ୍ରୁ, ସେତେବେଳେ ସେ ସେହି ପ୍ରତିଶ୍ରୁତିରୁ ସମ୍ପୂର୍ଣ୍ଣ ଭାବରେ ଓହରି ଗଲେ ; ବାସ୍ତବରେ ଇବ୍ରାହିମ ଅତ୍ୟନ୍ତ କୋମଳ ହୃଦୟ ଓ ବୁଦ୍ଧିମାନ୍ ବ୍ୟକ୍ତି ଥିଲେ ।

وَمَا كَانَ اسْتِغْفَارُ إِبْرَاهِيمَ لِأَبِيهِ إِلَّا عَن مَّوْعِدَةٍ وَعَدَهَا إِيَّاهُ فَلَمَّا تَبَيَّنَ لَهُ أَنَّهُ عَدُوٌّ لِّلَّهِ تَبَرَّأَ مِنْهُ ۚ إِنَّ إِبْرَاهِيمَ لَأَوَّاهٌ حَلِيمٌ ﴿١١٤﴾

୧୧୫. କୌଣସି ସମ୍ପ୍ରଦାୟକୁ ସତ୍‌ପଥ ପ୍ରଦର୍ଶିତ କରାଇବା ପରେ ସେମାନେ ଯେଉଁ ବିଷୟ ବସ୍ତୁଗୁଡ଼ିକରୁ ନିଜକୁ ଦୂରେଇ ରଖିବେ ସେଗୁଡ଼ିକ ସେମାନଙ୍କ ନିକଟରେ ପ୍ରକାଶ ନ କରିବା ପର୍ଯ୍ୟନ୍ତ ସେମାନଙ୍କୁ ପଥଭ୍ରଷ୍ଟ ସାବ୍ୟସ୍ତ କରାଇବା ଅଲ୍ଲାହ୍‌ଙ୍କ

وَمَا كَانَ اللَّهُ لِيُضِلَّ قَوْمًا بَعْدَ إِذْ هَدَاهُمْ

حَتّٰى يُبَيِّنَ لَهُمْ مَّا يَتَّقُوْنَ ؕ اِنَّ اللّٰهَ بِكُلِّ شَيْءٍ عَلِيْمٌ ﴿۱۱۵﴾

ପକ୍ଷରେ ଶୋଭନୀୟ ନୁହେଁ ; ଅଲ୍ଲାଃ ସକଳ ବିଷୟକୁ ଭଲ ରୂପେ ଜାଣନ୍ତି ;

اِنَّ اللّٰهَ لَهٗ مُلْكُ السَّمٰوٰتِ وَالْاَرْضِ ؕ يُحْيٖ وَيُمِيْتُ ؕ وَمَا لَكُمْ مِّنْ دُوْنِ اللّٰهِ مِنْ وَّلِيٍّ وَّلَا نَصِيْرٍ ﴿۱۱۶﴾

୧୧୬. ବାସ୍ତବରେ ଆକାଶ ଓ ପୃଥିବୀର ରାଜତ୍ୱ ଅଲ୍ଲାଃଙ୍କର ଅଟେ ; ସେ ଜୀବନ ଦାନ କରନ୍ତି ଓ ପ୍ରାଣ ନାଶ କରନ୍ତି ; ଏବଂ ଅଲ୍ଲାଃଙ୍କ ବ୍ୟତୀତ ତୁମମାନଙ୍କର କୌଣସି ବନ୍ଧୁ ନାହାନ୍ତି କି କୌଣସି ସାହାଯ୍ୟକାରୀ ନାହାନ୍ତି ।

لَقَدْ تَّابَ اللّٰهُ عَلَى النَّبِيِّ وَالْمُهٰجِرِيْنَ وَالْاَنْصَارِ الَّذِيْنَ اتَّبَعُوْهُ فِيْ سَاعَةِ الْعُسْرَةِ مِنْۢ بَعْدِ مَا كَادَ يَزِيْغُ قُلُوْبُ فَرِيْقٍ مِّنْهُمْ ثُمَّ تَابَ عَلَيْهِمْ ؕ اِنَّهٗ بِهِمْ رَءُوْفٌ رَّحِيْمٌ ﴿۱۱۷﴾

୧୧୭. ଅଲ୍ଲାଃ ନବି, ହିଜରତକାରୀ ତଥା ସାହାଯ୍ୟକାରୀମାନଙ୍କ ପ୍ରତି କୃପା କରିଛନ୍ତି, ଯେଉଁମାନେ (ସେ ନବିଙ୍କର) ଘଡ଼ିସନ୍ଧି ମୁହୂର୍ତ୍ତରେ ତାହାଙ୍କର ଅନୁସରଣ କରିଥିଲେ, ଯେତେବେଳେ କି ସେମାନଙ୍କ ମଧ୍ୟରୁ ଗୋଟିଏ ଦଳର ହୃଦୟ ସଂଶୟାଚ୍ଛନ୍ନ ହୋଇ ଯାଇଥିଲା ; ପୁନଶ୍ଚ ସେ ସେହି (ଦୁର୍ବଳ)ମାନଙ୍କ ପ୍ରତି ମଧ୍ୟ କୃପା କରିଥିଲେ ; ବାସ୍ତବରେ ସେ ସେ(ବିଶ୍ୱାସକାରୀ)ମାନଙ୍କ ପ୍ରତି ଦୟାଶୀଳ (ଓ) ସଦା କରୁଣାମୟ ।

وَّعَلَى الثَّلٰثَةِ الَّذِيْنَ خُلِّفُوْا ؕ حَتّٰۤى اِذَا ضَاقَتْ عَلَيْهِمُ الْاَرْضُ بِمَا رَحُبَتْ وَضَاقَتْ عَلَيْهِمْ اَنْفُسُهُمْ وَظَنُّوْۤا اَنْ لَّا مَلْجَاَ مِنَ اللّٰهِ اِلَّاۤ اِلَيْهِ ؕ ثُمَّ تَابَ عَلَيْهِمْ لِيَتُوْبُوْا ؕ اِنَّ اللّٰهَ هُوَ التَّوَّابُ الرَّحِيْمُ ﴿۱۱۸﴾ ع

୧୧୮. ଏବଂ ସେହିପରି ଉକ୍ତ ତିନି ଜଣଙ୍କ[୧] ପ୍ରତି ମଧ୍ୟ (ସେ କୃପା କରିଥିଲେ) ଯେଉଁମାନେ ପଛରେ ରହି ଯାଇଥିଲେ ; ଏପରି କି ଯେତେବେଳେ ପୃଥିବୀ ପ୍ରଶସ୍ତ ଥାଇ ମଧ୍ୟ ସେମାନଙ୍କ ପାଇଁ ସଂକୀର୍ଣ୍ଣ ହୋଇ ଯାଇଥିଲା, ଏବଂ ସେମାନଙ୍କ ନିଜ ଜୀବନ ମଧ୍ୟ ସେମାନଙ୍କ ପାଇଁ ଭାରାକ୍ରାନ୍ତ ହୋଇଥିଲା ; ଏବଂ ଏହା ସେମାନଙ୍କର ହୃଦ୍‌ବୋଧ ହୋଇଥିଲା ଯେ ଅଲ୍ଲାଃଙ୍କ କୋପରୁ ରକ୍ଷା ପାଇବା ସକାଶେ ତାହାଙ୍କ ବିନା ଅନ୍ୟ କୌଣସି ଆଶ୍ରୟ ନାହିଁ ; ତା'ପରେ ଅଲ୍ଲାଃ ସେମାନଙ୍କ ଅବସ୍ଥା ଲକ୍ଷ୍ୟ କରି ସେମାନଙ୍କ ପ୍ରତି କୃପା କରିଥିଲେ ; ଯେପରି କି ସେମାନେ ମଧ୍ୟ ଅନୁତାପ କରିବେ;ବାସ୍ତବରେ ଅଲ୍ଲାଃ ବାରମ୍ବାର ଅନୁତାପ ଗ୍ରହଣ କରନ୍ତି (ଓ) ବାରମ୍ବାର କରୁଣା କରନ୍ତି ।

**ରୁ : ୧୫**

يٰۤاَيُّهَا الَّذِيْنَ اٰمَنُوا اتَّقُوا اللّٰهَ وَكُوْنُوْا مَعَ الصّٰدِقِيْنَ ﴿۱۱۹﴾

୧୧୯. ହେ ବିଶ୍ୱାସକାରୀଗଣ ! ଅଲ୍ଲାଃଙ୍କୁ ଭୟ କର ଓ ସତ୍ୟବାଦୀମାନଙ୍କ ସହ ସାମିଲ୍ ହୁଅ ।

---

୧. ଏଠାରେ ହଜରତ ମହମ୍ମଦଙ୍କର ସେହି ତିନି ଜଣ ସାଥୀଙ୍କ ବିଷୟରେ ସୂଚନା ଦିଆଯାଇଛି ଯେଉଁମାନେ ବାସ୍ତବରେ ମୁନାଫିକ ନଥିଲେ ମାତ୍ର ଭୁଲବଶତଃ ଅବତାରଙ୍କ ସହିତ ତବୁକ ଯୁଦ୍ଧରେ ଯୋଗ ନ ଦେଇ ପଛରେ ରହି ଯାଇଥିଲେ । ସେମାନେ ନିଃସନ୍ଦେହରେ ବିଶିଷ୍ଟ ଓ ଅନୁରକ୍ତ ବିଶ୍ୱାସକାରୀ ଥିଲେ । ତେଣୁ ହଜରତ ମହମ୍ମଦ ଅଲ୍ଲାଃଙ୍କ ଆଦେଶ ଅନୁସାରେ ସେମାନଙ୍କୁ ଦଣ୍ଡ ଦେଇଥିଲେ ଅଥଚ ମୁନାଫିକମାନଙ୍କୁ ଦଣ୍ଡ ନ ଦେଇ ଛାଡ଼ି ଦେଇଥିଲେ । ସେ ଯୁଦ୍ଧ ଅଭିଯାନରୁ ମଦିନା ପ୍ରତ୍ୟାବର୍ତ୍ତନ କରିବା ପରେ ସେମାନଙ୍କ ପ୍ରତି ସାମାଜିକ ବାସନ୍ଦ ବ୍ୟବସ୍ଥା ଲାଗୁ କରାଗଲା, ଏପରିକି ସେମାନଙ୍କୁ ନିଜ ନିଜର ପତ୍ନୀମାନଙ୍କ ଠାରୁ ଦୂରେଇ ରଖାଗଲା । ସେମାନେ ଏହିପରି ବାସନ୍ଦ ଅବସ୍ଥାରେ ଅନ୍ତତଃ ୫୦ ଦିନ ପର୍ଯ୍ୟନ୍ତ ରହିବା ପରେ ଓ ଗଭୀର ଅନୁତାପ କରିବା ପରେ ସେମାନଙ୍କୁ କ୍ଷମାଦିଆଯାଇ ଥିଲା ।

୧୨୦. ମଦିନା ଅଧିବାସୀମାନଙ୍କ ପକ୍ଷରେ ତଥା ଏହାର ପାର୍ଶ୍ୱବର୍ତ୍ତୀ (ଗ୍ରାମାଞ୍ଚଳରେ ଓ ଜଙ୍ଗଲରେ ରହୁଥିବା ଆରବର) ମରୁବାସୀମାନଙ୍କ ପକ୍ଷରେ ଏହା ଉଚିତ ନ ଥିଲା ଯେ ସେମାନେ ଅଲ୍ଲାହଙ୍କ ରସୁଲଙ୍କୁ (ଏକାନ୍ତରେ) ଛାଡ଼ି ଦେଇ ନିଜେ ପଛରେ ଯାଇ ରହିଥା'ନ୍ତେ ସେମାନେ ତାହାଙ୍କ ଜୀବନ ପ୍ରତି ଅମନୋଯୋଗୀ ହୋଇ ନିଜ ଜୀବନ ବିଷୟରେ ଅଧିକ ଚିନ୍ତିତ ହୋଇ ଯାଇଥା'ନ୍ତେ ; ଏହା (ଅର୍ଥାତ୍ ଏହି ନିଷ୍ପତ୍ତି) ଏଥିଯୋଗୁଁ କରାଯାଉଅଛି ଯେ ଅଲ୍ଲାହଙ୍କ ପଥରେ ସେମାନଙ୍କର ଏପରି କୌଣସି ତୃଷା, କ୍ଳାନ୍ତି ବା କ୍ଷୁଧାଜନିତ କଷ୍ଟ ସହ୍ୟ କରିବା ସମୟ ଉପସ୍ଥିତ ହୁଏ ନାହିଁ ; ଏବଂ ସେମାନେ ଅବିଶ୍ୱାସକାରୀମାନଙ୍କର କ୍ରୋଧଜାତ ହେବା ଭଳି, ଏପରି କୌଣସି ସ୍ଥାନରେ ପାଦ ରଖନ୍ତି ନାହିଁ ଓ ସେମାନେ ଶତ୍ରୁମାନଙ୍କ ଉପରେ ଏପରି କୌଣସି ବିଜୟ ଲାଭ କରନ୍ତି ନାହିଁ, ଯାହାର ପୁରସ୍କାର ସ୍ୱରୂପ ସେମାନଙ୍କ ପାଇଁ ପୁଣ୍ୟ ଲିପିବଦ୍ଧ ହୁଏ ନାହିଁ ; ବାସ୍ତବରେ ଅଲ୍ଲାହ ହିତକାରୀମାନଙ୍କର ପୁରସ୍କାରକୁ କଦାପି ନଷ୍ଟ କରନ୍ତି ନାହିଁ ।

مَا كَانَ لِأَهْلِ الْمَدِينَةِ وَمَنْ حَوْلَهُم مِّنَ الْأَعْرَابِ أَن يَتَخَلَّفُوا عَن رَّسُولِ اللَّهِ وَلَا يَرْغَبُوا بِأَنفُسِهِمْ عَن نَّفْسِهِ ۚ ذَٰلِكَ بِأَنَّهُمْ لَا يُصِيبُهُمْ ظَمَأٌ وَلَا نَصَبٌ وَلَا مَخْمَصَةٌ فِي سَبِيلِ اللَّهِ وَلَا يَطَئُونَ مَوْطِئًا يَغِيظُ الْكُفَّارَ وَلَا يَنَالُونَ مِنْ عَدُوٍّ نَّيْلًا إِلَّا كُتِبَ لَهُم بِهِ عَمَلٌ صَالِحٌ ۚ إِنَّ اللَّهَ لَا يُضِيعُ أَجْرَ الْمُحْسِنِينَ ﴿١٢٠﴾

୧୨୧. ଏବଂ ସେମାନେ (ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ଅଳ୍ପ ହେଉ କି ଅଧିକ ହେଉ କୌଣସି ଖର୍ଚ୍ଚ କରନ୍ତି ନାହିଁ କି କୌଣସି ଉପତ୍ୟକାକୁ ପାରି ହୋଇ ଯାଆନ୍ତି ନାହିଁ କିନ୍ତୁ (ସେଙ୍ଗେ ସଙ୍ଗେ ସେମାନଙ୍କ କର୍ମସୂଚୀରେ ସେମାନଙ୍କ ସକାଶେ ସେହି ପୁଣ୍ୟ-କାର୍ଯ୍ୟଗୁଡ଼ିକ) ଲିପିବଦ୍ଧ କରାଯାଏ ଯଦ୍ୱାରା ଅଲ୍ଲାହ ସେମାନଙ୍କ କର୍ମର (ଅତି) ଉତ୍ତମ ପୁରସ୍କାର ଦେବେ ।

وَلَا يُنفِقُونَ نَفَقَةً صَغِيرَةً وَلَا كَبِيرَةً وَلَا يَقْطَعُونَ وَادِيًا إِلَّا كُتِبَ لَهُمْ لِيَجْزِيَهُمُ اللَّهُ أَحْسَنَ مَا كَانُوا يَعْمَلُونَ ﴿١٢١﴾

୧୨୨. ଏବଂ ବିଶ୍ୱାସକାରୀମାନଙ୍କ ପକ୍ଷେ ଏହା ସମ୍ଭବପର ନ ଥିଲା ଯେ ସେମାନେ ସମସ୍ତେ ଏକତ୍ରିତ ହୋଇ (ଧର୍ମଶିକ୍ଷା ପାଇଁ) ବାହାରି ପଡ଼ନ୍ତେ ; ତେବେ କାହିଁକି ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ସମ୍ପ୍ରଦାୟରୁ ଗୋଟିଏ ଦଳ ବାହାରୁ ନାହାନ୍ତି, ତାହା ହେଲେ ସେମାନେ ଧର୍ମ ସଂକ୍ରାନ୍ତରେ ସମ୍ପୂର୍ଣ୍ଣ ଶିକ୍ଷା ଲାଭ କରନ୍ତେ ; ଏବଂ ନିଜ ସମ୍ପ୍ରଦାୟ ନିକଟକୁ ଫେରିଯାଇ (ଅଧର୍ମ ସମ୍ବନ୍ଧରେ) ସତର୍କ କରାଇ ପାରନ୍ତେ ଫଳରେ ସେମାନେ (ବିଭ୍ରାନ୍ତ ହେବା ସମ୍ବନ୍ଧରେ) ଭୟ କରନ୍ତେ ।

وَمَا كَانَ الْمُؤْمِنُونَ لِيَنفِرُوا كَافَّةً ۚ فَلَوْلَا نَفَرَ مِن كُلِّ فِرْقَةٍ مِّنْهُمْ طَائِفَةٌ لِّيَتَفَقَّهُوا فِي الدِّينِ وَلِيُنذِرُوا قَوْمَهُمْ إِذَا رَجَعُوا إِلَيْهِمْ لَعَلَّهُمْ يَحْذَرُونَ ﴿١٢٢﴾ ع

ରୁ : ୧୬

୧୨୩. ହେ ବିଶ୍ୱାସକାରୀମାନେ ! ସେହି ଅବିଶ୍ୱାସକାରୀମାନଙ୍କ ସହିତ ଯୁଦ୍ଧ କର, ଯେଉଁମାନେ ତୁମମାନଙ୍କ ନିକଟରେ ରହୁଛନ୍ତି, ଏବଂ ସେମାନେ ତୁମମାନଙ୍କ ଠାରେ ଦୃଢ଼ତା ଥିବାର ଅନୁଭବ କରନ୍ତୁ ; ଏବଂ ମନେରଖ ଯେ ଅଲ୍ଲାହ ଧର୍ମଭୀରୁମାନଙ୍କ ସହିତ ଅଛନ୍ତି ।

يَا أَيُّهَا الَّذِينَ آمَنُوا قَاتِلُوا الَّذِينَ يَلُونَكُم مِّنَ الْكُفَّارِ وَلْيَجِدُوا فِيكُمْ غِلْظَةً ۚ وَاعْلَمُوا أَنَّ اللَّهَ مَعَ الْمُتَّقِينَ ﴿١٢٣﴾

୧୨୪. ଏବଂ ଯେତେବେଳେ କୌଣସି ଅଧ୍ୟାୟ ଅବତୀର୍ଣ୍ଣ ହୁଏ, ସେତେବେଳେ ସେମାନଙ୍କ ମଧ୍ୟରୁ କେତେକ (କପଟ ବିଶ୍ୱାସୀ) କହନ୍ତି, "ଏହା ତୁମମାନଙ୍କ ମଧ୍ୟରୁ କାହାର ବିଶ୍ୱାସକୁ ବୃଦ୍ଧି କରିଅଛି ?" ସୁତରାଂ (ମନେରଖ) ଯେଉଁମାନେ ବିଶ୍ୱାସକାରୀ ଅଟନ୍ତି, (ସେମାନଙ୍କର ପୂର୍ବ ବିଶ୍ୱାସ ଯୋଗୁଁ) ସେମାନଙ୍କର ବିଶ୍ୱାସକୁ ଏହି ଅଧ୍ୟାୟ ବୃଦ୍ଧି କରିଅଛି, ଏବଂ ସେମାନେ ଆନନ୍ଦ ଅନୁଭବ କରୁଛନ୍ତି ।

وَإِذَا مَا أُنْزِلَتْ سُورَةٌ فَمِنْهُمْ مَنْ يَقُولُ أَيُّكُمْ زَادَتْهُ هَٰذِهِ إِيمَانًا ۚ فَأَمَّا الَّذِينَ آمَنُوا فَزَادَتْهُمْ إِيمَانًا وَهُمْ يَسْتَبْشِرُونَ ﴿١٢٤﴾

୧୨୫. ଏବଂ ଯେଉଁମାନଙ୍କ ହୃଦୟରେ ବ୍ୟାଧି ଅଛି ଏହା (ଅର୍ଥାତ୍ ଏହି ଅଧ୍ୟାୟ) ସେମାନଙ୍କ ଅପବିତ୍ରତାକୁ ଆହୁରି ବୃଦ୍ଧି କରିଅଛି ; ଏପରି କି ସେମାନେ ଅବିଶ୍ୱାସକାରୀ ଥିବା ଅବସ୍ଥାରେ ମୃତ୍ୟୁବରଣ କରିବେ ।

وَأَمَّا الَّذِينَ فِي قُلُوبِهِمْ مَرَضٌ فَزَادَتْهُمْ رِجْسًا إِلَىٰ رِجْسِهِمْ وَمَاتُوا وَهُمْ كَافِرُونَ ﴿١٢٥﴾

୧୨୬. ତେବେ କ'ଣ ସେମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ ପ୍ରତି ବର୍ଷ ସେମାନଙ୍କୁ ଥରେ ବା ଦୁଇ ଥର ପରୀକ୍ଷାରେ ଅବତୀର୍ଣ୍ଣ କରାଯାଉଛି ? ତଥାପି ସେମାନେ ଅନୁତାପ କରୁ ନାହାନ୍ତି କି ଉପଦେଶ ଗ୍ରହଣ କରୁନାହାନ୍ତି ।

أَوَلَا يَرَوْنَ أَنَّهُمْ يُفْتَنُونَ فِي كُلِّ عَامٍ مَرَّةً أَوْ مَرَّتَيْنِ ثُمَّ لَا يَتُوبُونَ وَلَا هُمْ يَذَّكَّرُونَ ﴿١٢٦﴾

୧୨୭. ଏବଂ ଯେତେବେଳେ କୌଣସି ଅଧ୍ୟାୟ ଅବତୀର୍ଣ୍ଣ ହୁଏ ସେତେବେଳେ ସେମାନଙ୍କ ମଧ୍ୟରୁ କେତେକ ଲୋକ ଅନ୍ୟମାନଙ୍କୁ ଏହା ଜାଣିବା ପାଇଁ ଦେଖନ୍ତି ଯେ କ'ଣ କୌଣସି ଲୋକ ସେମାନଙ୍କୁ ଦେଖୁ ନାହିଁ ତ ! ଏହାପରେ ସେମାନେ (ସଭା ସ୍ଥଳରୁ) ଚାଲି ଯାଆନ୍ତି ; ଅଲ୍ଲାହ ସେମାନଙ୍କ ହୃଦୟକୁ ପରିବର୍ତ୍ତନ କରିଛନ୍ତି, କାରଣ ସେମାନେ ଏପରି ଲୋକ ଯେଉଁମାନେ କିଛି ବୁଝନ୍ତି ନାହିଁ ।

وَإِذَا مَا أُنْزِلَتْ سُورَةٌ نَظَرَ بَعْضُهُمْ إِلَىٰ بَعْضٍ هَلْ يَرَاكُمْ مِنْ أَحَدٍ ثُمَّ انْصَرَفُوا ۚ صَرَفَ اللَّهُ قُلُوبَهُمْ بِأَنَّهُمْ قَوْمٌ لَا يَفْقَهُونَ ﴿١٢٧﴾

୧୨୮. (ହେ ବିଶ୍ୱାସକାରୀମାନେ !) ତୁମମାନଙ୍କ ସମ୍ପ୍ରଦାୟରୁ ତୁମମାନଙ୍କ ନିକଟକୁ ଜଣେ ବ୍ୟକ୍ତି ରସୁଲ ହୋଇ ଆସିଛନ୍ତି ; ତୁମମାନଙ୍କର ବିପଦଗ୍ରସ୍ତ ହେବା ତାହାଙ୍କ ପକ୍ଷରେ ଅସହ୍ୟ ; ଏବଂ ସେ ତୁମମାନଙ୍କର ହିତପାଇଁ ବ୍ୟଗ୍ର ; (ଏବଂ ସେ) ବିଶ୍ୱାସକାରୀମାନଙ୍କ ପ୍ରତି ଅତ୍ୟନ୍ତ ଦୟାଶୀଳ (ଓ) ସଦା କରୁଣାମୟ ।

لَقَدْ جَاءَكُمْ رَسُولٌ مِنْ أَنْفُسِكُمْ عَزِيزٌ عَلَيْهِ مَا عَنِتُّمْ حَرِيصٌ عَلَيْكُمْ بِالْمُؤْمِنِينَ رَءُوفٌ رَحِيمٌ ﴿١٢٨﴾

୧୨୯. ସୁତରାଂ ଯଦି ସେମାନେ ଫେରି ଯାଆନ୍ତି, ତେବେ ତୁମେ କୁହ, "ଅଲ୍ଲାହ ଆମ ପାଇଁ ଯଥେଷ୍ଟ ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ଆମେ ତାହାଙ୍କ ଉପରେ ଭରସା କରୁ, ଏବଂ ସେ ହିଁ ମହାନ୍ ସିଂହାସନର ଅଧିକାରୀ ।"

فَإِنْ تَوَلَّوْا فَقُلْ حَسْبِيَ اللَّهُ لَا إِلَٰهَ إِلَّا هُوَ ۖ عَلَيْهِ تَوَكَّلْتُ ۖ وَهُوَ رَبُّ الْعَرْشِ الْعَظِيمِ ﴿١٢٩﴾

سُوْرَةُ يُوْنُسَ مَكِّيَّةٌ (١٠)

# ୟୁନୁସ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୧୦ଟି ଆୟତ ଓ ୧୧ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ଅଲିଫ୍-ଲାମ୍-ରା ;[୧] ଏଗୁଡ଼ିକ ତତ୍ତ୍ୱଜ୍ଞାନ ସମ୍ବଳିତ ଏକ ପରିପୂର୍ଣ୍ଣ (ଧର୍ମ) ଗ୍ରନ୍ଥର ଆୟତ ଅଟେ ।

الٓرٰ تِلْكَ اٰيٰتُ الْكِتٰبِ الْحَكِيْمِ ②

୩. କ'ଣ ଲୋକମାନଙ୍କ ନିକଟରେ ଆମର ସେମାନଙ୍କ ମଧ୍ୟରୁ ଜଣେ ବ୍ୟକ୍ତିଙ୍କ ପ୍ରତି ଓହି ପ୍ରେରଣ କରି କହିବା ଯେ ଲୋକମାନଙ୍କୁ ଚେତାବନୀ ଦିଅ, ଓ ଯେଉଁମାନେ ବିଶ୍ୱାସ କରିଛନ୍ତି ସେମାନଙ୍କୁ ସୁସମାଚାର ଦିଅ ଯେ ସେମାନଙ୍କ ପାଳନକର୍ତ୍ତାଙ୍କ ସମୀପରେ ସେମାନଙ୍କ ସକାଶେ (ପ୍ରକାଶ୍ୟ ଓ ଅପ୍ରକାଶ୍ୟ) ଆକାରରେ ଉଚ୍ଚ ପଦମର୍ଯ୍ୟାଦା ରହିଅଛି, (ଏପରି) ଆଶ୍ଚର୍ଯ୍ୟଜନକ (ବିଷୟ) ଥିଲା (ଯେ) ସେହି ଅବିଶ୍ୱାସକାରୀମାନେ କହିଥିଲେ, "ନିଶ୍ଚୟ ଏ (ବ୍ୟକ୍ତି) ଜଣେ ପ୍ରକାଶ୍ୟ ପ୍ରତାରକ ।"

اَكَانَ لِلنَّاسِ عَجَبًا اَنْ اَوْحَيْنَآ اِلٰى رَجُلٍ مِّنْهُمْ اَنْ اَنْذِرِ النَّاسَ وَ بَشِّرِ الَّذِيْنَ اٰمَنُوْٓا اَنَّ لَهُمْ قَدَمَ صِدْقٍ عِنْدَ رَبِّهِمْ ؕ قَالَ الْكٰفِرُوْنَ اِنَّ هٰذَا لَسٰحِرٌ مُّبِيْنٌ ③

୪. ବାସ୍ତବରେ ତୁମମାନଙ୍କ ପାଳନକର୍ତ୍ତା ହିଁ ଅଲ୍ଲାହ ଯିଏ ଛଅ ଗୋଟି କାଳାବଧି ମଧ୍ୟରେ ଆକାଶ ଓ ପୃଥିବୀ ସୃଷ୍ଟି କରିଛନ୍ତି ; ଏବଂ ଏହାପରେ ସେ ସିଂହାସନ ଉପରେ ବିରାଜମାନ ହୋଇଛନ୍ତି ; ସେ ପ୍ରତ୍ୟେକ ବିଷୟକୁ ସଂଗଠିତ କରନ୍ତି ; ତାହାଙ୍କ ଅନୁମତି ବିନା (ତାହାଙ୍କ ସମୀପରେ) କେହି (କାହାରି ପାଇଁ) ସୁପାରିଶ କରିପାରିବେ ନାହିଁ ; ସେହି ଅଲ୍ଲାହ ହିଁ ତୁମମାନଙ୍କର ପାଳନକର୍ତ୍ତା ; ତେଣୁ ତୁମେମାନେ ତାହାଙ୍କର ଉପାସନା କର ; ତେବେ (ଏହା ସତ୍ତ୍ୱେ) କ'ଣ ତୁମେମାନେ ଉପଦେଶ ଗ୍ରହଣ କରିବ ନାହିଁ ?

اِنَّ رَبَّكُمُ اللّٰهُ الَّذِيْ خَلَقَ السَّمٰوٰتِ وَ الْاَرْضَ فِيْ سِتَّةِ اَيَّامٍ ثُمَّ اسْتَوٰى عَلَى الْعَرْشِ يُدَبِّرُ الْاَمْرَ ؕ مَا مِنْ شَفِيْعٍ اِلَّا مِنْۢ بَعْدِ اِذْنِهٖ ؕ ذٰلِكُمُ اللّٰهُ رَبُّكُمْ فَاعْبُدُوْهُ ؕ اَفَلَا تَذَكَّرُوْنَ ④

୫. ତୁମ ସମସ୍ତଙ୍କୁ ତାହାଙ୍କ ନିକଟକୁ ଫେରିବାକୁ ହେବ ; (ଏହା) ଅଲ୍ଲାହଙ୍କର ପ୍ରତିଶ୍ରୁତି (ଯାହା ନିଶ୍ଚୟ) ପାଳିତ ହେବ ; ବାସ୍ତବରେ ସେ ଜୀବନକୁ ସୃଷ୍ଟି କରନ୍ତି ଓ ପରେ ଏହାକୁ (ନିଜ ଆଡ଼କୁ) ଫେରାଇ ଆଣନ୍ତି, ଫଳରେ ଯେଉଁମାନେ ବିଶ୍ୱାସ କରିଛନ୍ତି ଏବଂ ସତ୍ (ଓ ସମୁଚିତ) କାର୍ଯ୍ୟ କରିଛନ୍ତି, ସେମାନଙ୍କୁ

اِلَيْهِ مَرْجِعُكُمْ جَمِيْعًا ؕ وَعْدَ اللّٰهِ حَقًّا ؕ اِنَّهٗ يَبْدَؤُا الْخَلْقَ ثُمَّ يُعِيْدُهٗ لِيَجْزِيَ الَّذِيْنَ اٰمَنُوْا وَ عَمِلُوا

୧. ଅଲିଫ-ଲାମ-ରା, 'ଅନଲ ଲାହୋ ଅରା'ର ସଂକ୍ଷେପାଂଶ । ଏହାର ଅର୍ଥ ଆମେ ଅଲ୍ଲାହ ମହାନ୍ ଦ୍ରଷ୍ଟା ।

ସେ ଉଚିତ ପୁରସ୍କାର ପ୍ରଦାନ କରିବେ![୧] ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି, ସେମାନଙ୍କ ପିଇବା ପାଇଁ ଉତପ୍ତ ଜଳ ଥିବ, ଏବଂ ଏକ ଯନ୍ତ୍ରଣାଦାୟକ ଶାସ୍ତି ଥିବ, କାରଣ ସେମାନେ ଅବିଶ୍ୱାସ କରୁଥିଲେ ।

الصّٰلِحٰتِ بِالْقِسْطِ ۭ وَالَّذِيْنَ كَفَرُوْا لَهُمْ شَرَابٌ مِّنْ حَمِيْمٍ وَّعَذَابٌ اَلِيْمٌۢ بِمَا كَانُوْا يَكْفُرُوْنَ ٤

୬. ସେ ହିଁ ସୂର୍ଯ୍ୟକୁ ଆଲୋକର ଉତ୍ସ ରୂପେ ଗଢ଼ିଛନ୍ତି, ଓ ଚନ୍ଦ୍ରକୁ ଜ୍ୟୋତ୍ସ୍ନା ପ୍ରଦାନ କରିଛନ୍ତି, ଏବଂ ତାହା ପାଇଁ ବିଭିନ୍ନ ପର୍ଯ୍ୟାୟ ନିରୂପଣ କରିଛନ୍ତି, ଯଦ୍ଦ୍ୱାରା ତୁମେମାନେ ବର୍ଷ ଗଣନା ଓ (ସମୟ) ହିସାବ ଜାଣି ପାରିବ ; ଏହାକୁ ଅଲ୍ଲାହ ସତ୍ୟ (ଓ ତତ୍ତ୍ୱ) ଅନୁସାରେ ସୃଷ୍ଟି କରିଛନ୍ତି ; ସେ ଏହି ନିଦର୍ଶନଗୁଡ଼ିକୁ ଜ୍ଞାନବନ୍ତ ଲୋକମାନଙ୍କ ପାଇଁ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ।

هُوَ الَّذِيْ جَعَلَ الشَّمْسَ ضِيَاۗءً وَّالْقَمَرَ نُوْرًا وَّقَدَّرَهٗ مَنَازِلَ لِتَعْلَمُوْا عَدَدَ السِّنِيْنَ وَالْحِسَابَ ۭ مَا خَلَقَ اللّٰهُ ذٰلِكَ اِلَّا بِالْحَقِّ ۚ يُفَصِّلُ الْاٰيٰتِ لِقَوْمٍ يَّعْلَمُوْنَ ٥

୭. ପର୍ଯ୍ୟାୟକ୍ରମେ ରାତି ଓ ଦିନର ଆଗମନରେ, ଏବଂ ଆକାଶ ଓ ପୃଥିବୀରେ ଅଲ୍ଲାହ ଯାହା ସୃଷ୍ଟି କରିଛନ୍ତି (ତହିଁରେ) ଧର୍ମଭୀରୁମାନଙ୍କ[୨] ପାଇଁ ନିଶ୍ଚିତ ଭାବରେ ଅନେକ ନିଦର୍ଶନ ରହିଅଛି ।

اِنَّ فِي اخْتِلَافِ الَّيْلِ وَالنَّهَارِ وَمَا خَلَقَ اللّٰهُ فِي السَّمٰوٰتِ وَالْاَرْضِ لَاٰيٰتٍ لِّقَوْمٍ يَّتَّقُوْنَ ٦

୮. ଯେଉଁମାନଙ୍କର ଆମ ସହିତ ସାକ୍ଷାତ୍ କରିବାର ଆଶା ନାହିଁ ଏବଂ ଏହି ପାର୍ଥିବ ଜୀବନରେ ସନ୍ତୁଷ୍ଟ ଅଛନ୍ତି ଓ ଏଥିରେ ଆଶ୍ୱସ୍ତି ଅନୁଭବ କରନ୍ତି, ଏବଂ ଯେଉଁମାନେ ଆମର ନିଦର୍ଶନଗୁଡ଼ିକ ପ୍ରତି ଅମନୋଯୋଗୀ ହୋଇ ଯାଇଛନ୍ତି–

اِنَّ الَّذِيْنَ لَا يَرْجُوْنَ لِقَاۗءَنَا وَرَضُوْا بِالْحَيٰوةِ الدُّنْيَا وَاطْمَاَنُّوْا بِهَا وَالَّذِيْنَ هُمْ عَنْ اٰيٰتِنَا غٰفِلُوْنَ ٧

୯. ସେମାନେ ଯାହା କିଛି ଅର୍ଜନ କରିଛନ୍ତି ସେଥି ଯୋଗୁଁ ସେମାନଙ୍କ ବାସସ୍ଥାନ ନିଶ୍ଚିତରୂପେ (ନରକର) ଅଗ୍ନି ହେବ ।

اُولٰۗىِٕكَ مَاْوٰىهُمُ النَّارُ بِمَا كَانُوْا يَكْسِبُوْنَ ٨

୧୦. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସତ୍ କାର୍ଯ୍ୟ କରିଛନ୍ତି, ସେମାନଙ୍କ ବିଶ୍ୱାସ ପାଇଁ ସେମାନଙ୍କ ପାଳନକର୍ତ୍ତା ସେମାନଙ୍କୁ (ସଫଳତାର) ପଥ ପ୍ରଦର୍ଶନ କରିବେ ; ସୁଖଦାୟକ ବୈକୁଣ୍ଠ ମଧ୍ୟରେ, ସେମାନଙ୍କ ପାଦଦେଶରେ ଝରଣାମାନ ପ୍ରବାହିତ ହେଉଥିବ ;

اِنَّ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ يَهْدِيْهِمْ رَبُّهُمْ بِاِيْمَانِهِمْ ۚ تَجْرِيْ مِنْ تَحْتِهِمُ الْاَنْهٰرُ فِيْ جَنّٰتِ النَّعِيْمِ ٩

---

୧. ଏଠାରେ ଏକ ପ୍ରାକୃତିକ ନିୟମର ସୂଚନା ଦିଆଯାଇଛି । ଅଲ୍ଲାହ ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀର ଗତି ଓ ସ୍ଥିତିକୁ ନିର୍ଦ୍ଦିଷ୍ଟ କରି ଦେଇଥିବାରୁ ଆମମାନଙ୍କ ପକ୍ଷରେ ସମୟ ଗଣନା କରିବା ଓ ପଞ୍ଜିକା ତିଆରି କରିବା ସହଜ ହୋଇଛି । ଚନ୍ଦ୍ର ପୃଥିବୀକୁ ପ୍ରଦକ୍ଷିଣ କରିବା ଫଳରେ ମାସ ହିସାବ କରିବା ଏବଂ ପୃଥିବୀ ନିଜ ଅକ୍ଷର ଚାରିପଟେ ତଥା କକ୍ଷ ପଥରେ ଘୂରୁଥିବାରୁ ଦିନ ଓ ବର୍ଷ ହିସାବ କରିବା ସହଜ ଓ ସମ୍ଭବ ହୋଇଛି ।

୨. କୌଣସି ଜାତି ବା ବ୍ୟକ୍ତି ଶାଶ୍ୱତ ଗୌରବର ଅଧିକାରୀ ନୁହେଁ କି ଚିର ଅନ୍ଧକାରରେ ପଡ଼ି ରହେ ନାହିଁ । ନିଜ କର୍ମ ବଳରେ ସେ ଏହାକୁ ହ୍ରାସ ବା ବୃଦ୍ଧି କରିପାରେ । ଏଠାରେ ଏହି ଅତିରିକ୍ତ ବିଷୟର ସୂଚନା ଦିଆଯାଇଛି । ତେଣୁ ସାଧାରଣ ବ୍ୟକ୍ତିଙ୍କ ଅପେକ୍ଷା ଧର୍ମଭୀରୁମାନେ ଦିବା ରାତ୍ରିର ପରିବର୍ତ୍ତନରୁ ଉପଯୁକ୍ତ ଆଧ୍ୟାତ୍ମିକ ହିତ ଲାଭ କରିପାରିବେ ।

୧୧. ସେଥି ମଧ୍ୟରେ ସେମାନେ (ଏହି ରୂପେ) ପ୍ରାର୍ଥନା କରିବେ, "ହେ ଅଲ୍ଲାହ ! ତୁମେ ହିଁ ପବିତ୍ର" ; ଏବଂ ସେମାନେ 'ପରସ୍ପର ପାଇଁ ପ୍ରାର୍ଥନା କରିବେ, "(ତୁମମାନଙ୍କ ପ୍ରତି ସର୍ବଦା ଶାନ୍ତି ବର୍ଷଣ ହେଉ" ; ଏବଂ ପରିଶେଷରେ ସେମାନେ ଉଚ୍ଚ ସ୍ୱରରେ ପ୍ରାର୍ଥନା କରି କହିବେ, "ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହ ହିଁ ସକଳ ପ୍ରଶଂସାର ପାତ୍ର ।"[୧]

دَعْوٰىهُمْ فِيْهَا سُبْحٰنَكَ اللّٰهُمَّ وَتَحِيَّتُهُمْ فِيْهَا سَلٰمٌ ۚ وَاٰخِرُ دَعْوٰىهُمْ اَنِ الْحَمْدُ لِلّٰهِ رَبِّ الْعٰلَمِيْنَ ⑪

**ରୁ : ୨**

୧୨. ଏବଂ ଲୋକମାନେ ଧନ ଲାଭ ପାଇଁ ଯେପରି ତତ୍ପର ହେଉଥା'ନ୍ତି ଯଦି ଅଲ୍ଲାହ ସେମାନଙ୍କୁ (ସେମାନଙ୍କ କୁକର୍ମର) ମନ୍ଦ ପ୍ରତିଫଳ ଦେବାରେ ସେହିପରି ତତ୍ପର ହୁଅନ୍ତେ, ତେବେ ସେମାନଙ୍କ ପାଇଁ ସେମାନଙ୍କ (ଜୀବନ) କାଳକୁ ସମାପ୍ତ କରି ଦିଆଯାଇ ଥାଆନ୍ତା ; କିନ୍ତୁ ଯେଉଁମାନଙ୍କର ଆମ ସହିତ ସାକ୍ଷାତ୍ କରିବାର ଆଶା ନାହିଁ, ଆମେ ସେମାନଙ୍କୁ ସେମାନଙ୍କ ଦୁଷ୍କର୍ମ ମଧ୍ୟରେ ପଥଭ୍ରଷ୍ଟ ହୋଇ ବିଚରଣ କରିବାପାଇଁ ଛାଡ଼ି ଦେଉ ।

وَلَوْ يُعَجِّلُ اللّٰهُ لِلنَّاسِ الشَّرَّ اسْتِعْجَالَهُمْ بِالْخَيْرِ لَقُضِيَ اِلَيْهِمْ اَجَلُهُمْ ۖ فَنَذَرُ الَّذِيْنَ لَا يَرْجُوْنَ لِقَآءَنَا فِيْ طُغْيَانِهِمْ يَعْمَهُوْنَ ⑫

୧୩. ଏବଂ ଯେତେବେଳେ କୌଣସି ବ୍ୟକ୍ତି ଦୁଃଖରେ ପଡ଼େ, ସେତେବେଳେ ସେ ଶୋଇଥିବା ବା ବସିଥିବା ବା ଛିଡ଼ା ହୋଇଥିବା ଅବସ୍ଥାରେ ଆମକୁ ଡାକେ ; କିନ୍ତୁ ଯେତେବେଳେ ଆମେ ତାହାର ଦୁଃଖ ଦୂର କରି ଦେଉ, ସେତେବେଳେ ସେ ଏପରି (ଉପେକ୍ଷା କରି) ଚାଲିଯାଏ ସତେ ଯେପରି ସେ ଦୁଃଖରେ ପଡ଼ିଥିବା ସମୟରେ ଆମକୁ କଦାପି ଡାକି ନାହିଁ ; ଏହିପରି ଭାବରେ ସମସ୍ତ ସୀମାଲଙ୍ଘନକାରୀମାନଙ୍କ କର୍ମଗୁଡ଼ିକୁ ସେମାନଙ୍କ ପାଇଁ ସୁଶୋଭିତ କରି ଦେଖାଇ ଦିଆଯାଇଅଛି ।

وَاِذَا مَسَّ الْاِنْسَانَ الضُّرُّ دَعَانَا لِجَنْۢبِهٖۤ اَوْ قَاعِدًا اَوْ قَآئِمًا ۚ فَلَمَّا كَشَفْنَا عَنْهُ ضُرَّهٗ مَرَّ كَاَنْ لَّمْ يَدْعُنَآ اِلٰى ضُرٍّ مَّسَّهٗ ؕ كَذٰلِكَ زُيِّنَ لِلْمُسْرِفِيْنَ مَا كَانُوْا يَعْمَلُوْنَ ⑬

୧୪. ଏବଂ ବାସ୍ତବରେ ଆମେ ତୁମମାନଙ୍କ ପୂର୍ବରୁ ଅନେକ ସମ୍ପ୍ରଦାୟକୁ ସେତେବେଳେ ବିନାଶ କରିଥିଲୁ ଯେତେବେଳେ ସେମାନଙ୍କ ନିକଟକୁ ସ୍ପଷ୍ଟ ନିଦର୍ଶନ ସହିତ ସେମାନଙ୍କର ରସୂଲ ଆସିବା ସତ୍ତ୍ୱେ ସେମାନେ ଅତ୍ୟାଚାର କରିଥିଲେ ଓ ବିଶ୍ୱାସ କରି ନ ଥିଲେ ; ଆମେ ଏହିପରି ଭାବରେ ଅପରାଧୀମାନଙ୍କୁ ପ୍ରତିଫଳ ଦେଇଥାଉ ।

وَلَقَدْ اَهْلَكْنَا الْقُرُوْنَ مِنْ قَبْلِكُمْ لَمَّا ظَلَمُوْا ۙ وَجَآءَتْهُمْ رُسُلُهُمْ بِالْبَيِّنٰتِ وَمَا كَانُوْا لِيُؤْمِنُوْا ؕ كَذٰلِكَ نَجْزِى الْقَوْمَ الْمُجْرِمِيْنَ ⑭

୧୫. ତା'ପରେ ଆମେ ତୁମମାନଙ୍କୁ ସେମାନଙ୍କ ପରେ ପୃଥିବୀରେ ଉତ୍ତରାଧିକାରୀ କରିଅଛୁ, ଯଦ୍ଦ୍ୱାରା କି ଆମେ ଦେଖି ପାରିବୁ ଯେ ତୁମେମାନେ କିପରି କର୍ମ କରୁଅଛ ।

ثُمَّ جَعَلْنٰكُمْ خَلٰٓئِفَ فِى الْاَرْضِ مِنْۢ بَعْدِهِمْ لِنَنْظُرَ كَيْفَ تَعْمَلُوْنَ ⑮

---

୧. ବୈକୁଣ୍ଠରେ ରହିବା ପରେ ସେମାନେ ସ୍ୱତଃପ୍ରବୃତ୍ତ ହୋଇ କେବଳ ଅଲ୍ଲାହଙ୍କ ସ୍ତୁତି ଗାନ କରୁଥିବେ କାରଣ ସେମାନେ ପାଉଥିବା ପୁରସ୍କାର ସମ୍ବନ୍ଧରେ ସଂପୂର୍ଣ୍ଣ ସନ୍ତୁଷ୍ଟ ଥିବେ । ଅନ୍ୟ ଅର୍ଥରେ ବିଶ୍ୱାସକାରୀମାନଙ୍କର ପରିଣାମ ଏପରି ଉତ୍ତମ ହୋଇଥାଏ ଯେ ଅନ୍ତିମ ଫଳାଫଳ ପ୍ରାପ୍ତିସମୟରେ ସେମାନେ ଅଲ୍ଲାହଙ୍କର ପ୍ରଶଂସା ଗାନ କରିବା ସଙ୍ଗେ ସ୍ତୁତି ଗାନ କରୁଥା'ନ୍ତି । ସେମାନେ ସର୍ବଦା କୃତକାର୍ଯ୍ୟ ହୁଅନ୍ତି ଓ ସୁଖରେ ରହନ୍ତି ।

وَإِذَا تُتْلَىٰ عَلَيْهِمْ آيَاتُنَا بَيِّنَاتٍ ۙ قَالَ الَّذِينَ لَا يَرْجُونَ لِقَاءَنَا ائْتِ بِقُرْآنٍ غَيْرِ هَٰذَا أَوْ بَدِّلْهُ ۚ قُلْ مَا يَكُونُ لِي أَنْ أُبَدِّلَهُ مِنْ تِلْقَاءِ نَفْسِي ۖ إِنْ أَتَّبِعُ إِلَّا مَا يُوحَىٰ إِلَيَّ ۖ إِنِّي أَخَافُ إِنْ عَصَيْتُ رَبِّي عَذَابَ يَوْمٍ عَظِيمٍ ﴿١٦﴾

୧୬. ଏବଂ ଯେତେବେଳେ ସେମାନଙ୍କ ନିକଟରେ ଆମର ସ୍ପଷ୍ଟ ନିଦର୍ଶନମାନ ପାଠ କରାଯାଏ, ସେତେବେଳେ ଯେଉଁମାନେ ଆମ ସହିତ ସାକ୍ଷାତ କରିବାକୁ ଆଶା ରଖନ୍ତି ନାହିଁ, ସେମାନେ କହନ୍ତି, "(ହେ ମହମ୍ମଦ !) ତୁମେ ଏହା ଭିନ୍ନ ଅନ୍ୟ କୌଣସି କୋରାନ ଆଣ ବା ଏଥିରେ କିଛି ପରିବର୍ତ୍ତନ କର" ; ତୁମେ (ସେମାନଙ୍କୁ) କୁହ, "ଏହା ଆମର କାର୍ଯ୍ୟ ନୁହେଁ ଯେ ଆମେ ଏଥିରେ ନିଜ ତରଫରୁ (କୌଣସି) ପରିବର୍ତ୍ତନ କରିଦେବୁ ; ଆମ ପ୍ରତି ଯାହା କିଛି ଓହି କରାଯାଇଅଛି, ଆମେ କେବଳ ସେତିକି ହିଁ ଅନୁସରଣ କରୁଅଛୁ ; ଏବଂ ଯଦି ଆମେ ନିଜ ପାଳନକର୍ତ୍ତାଙ୍କର ଅମାନ୍ୟ କରିବୁ ତେବେ ଏକ ଭୟାବହ ଦିବସର ଶାସ୍ତି ପ୍ରତି ନିଶ୍ଚୟ ଆମର ଭୟ ରହିଅଛି ।"

قُلْ لَوْ شَاءَ اللَّهُ مَا تَلَوْتُهُ عَلَيْكُمْ وَلَا أَدْرَاكُمْ بِهِ ۖ فَقَدْ لَبِثْتُ فِيكُمْ عُمُرًا مِنْ قَبْلِهِ ۚ أَفَلَا تَعْقِلُونَ ﴿١٧﴾

୧୭. ତୁମେ (ସେମାନଙ୍କୁ) କୁହ, "ଯଦି (କୋରାନର ଶିକ୍ଷା ପରିବର୍ତ୍ତେ ଅନ୍ୟ କୌଣସି ଶିକ୍ଷା ପ୍ରଦାନ କରିବା) ଅଲ୍ଲାଃଙ୍କର ଇଚ୍ଛା ଥାଆନ୍ତା, ତେବେ ଆମେ ଏହାକୁ (ଅର୍ଥାତ୍ କୋରାନର ଶିକ୍ଷାକୁ) ତୁମମାନଙ୍କ ସମ୍ମୁଖରେ ପାଠକରି ଶୁଣାଇ ନ ଥା'ନ୍ତୁ କି ସେ ତୁମମାନଙ୍କୁ ଏହା ଅବଗତ କରାଇ ନ ଥାଆନ୍ତେ ; ବସ୍ତୁତଃ ଆମେ ଏଥିପୂର୍ବରୁ ତୁମମାନଙ୍କ ସହିତ ଜୀବନର ଏକ ଦୀର୍ଘ ସମୟ [1] ଅତିବାହିତ କରିଅଛୁ ; ତଥାପି କ'ଣ ତୁମେମାନେ ବୁଝିପାରୁ ନାହଁ ?"

فَمَنْ أَظْلَمُ مِمَّنِ افْتَرَىٰ عَلَى اللَّهِ كَذِبًا أَوْ كَذَّبَ بِآيَاتِهِ ۚ إِنَّهُ لَا يُفْلِحُ الْمُجْرِمُونَ ﴿١٨﴾

୧୮. ସୁତରାଂ, ଯେ ଅଲ୍ଲାଃଙ୍କ ପ୍ରତି ମିଥ୍ୟା ଆରୋପ କରେ, ବା ତାହାଙ୍କର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରେ, ତା'ଠାରୁ ଅଧିକ ଅତ୍ୟାଚାରୀ ଆଉ କିଏ ହୋଇପାରେ ! ଏହା ନିଶ୍ଚିତ ଯେ ଅପରାଧୀମାନେ କୃତକାର୍ଯ୍ୟ ହୁଅନ୍ତି ନାହିଁ ।

وَيَعْبُدُونَ مِنْ دُونِ اللَّهِ مَا لَا يَضُرُّهُمْ وَلَا يَنْفَعُهُمْ وَيَقُولُونَ هَٰؤُلَاءِ شُفَعَاؤُنَا عِنْدَ اللَّهِ ۚ قُلْ أَتُنَبِّئُونَ

୧୯. ଏବଂ ସେମାନେ ଅଲ୍ଲାଃଙ୍କ ପରିବର୍ତ୍ତେ ଯାହାର ଉପାସନା କରନ୍ତି, ସେ ସେମାନଙ୍କର କୌଣସି ଅନିଷ୍ଟ କରେ ନାହିଁ ବା କୌଣସି ଉପକାର କରେ ନାହିଁ ; ଏବଂ ସେମାନେ କହନ୍ତି, "ଏହି (ଉପାସ୍ୟ)ମାନେ ଅଲ୍ଲାଃଙ୍କ ସମୀପରେ ଆମମାନଙ୍କର ସୁପାରିଶକାରୀ ଅଟନ୍ତି" ; ତୁମେ (ସେମାନଙ୍କୁ) କୁହ, "କ'ଣ ତୁମେମାନେ ଅଲ୍ଲାଃଙ୍କୁ ତାହା (ଅର୍ଥାତ୍ ସେ

୧. ଅର୍ଥାତ୍ କ'ଣ ତୁମେମାନେ ହଜରତ ମହମ୍ମଦଙ୍କର ବିଗତ ଜୀବନକୁ ଲକ୍ଷ୍ୟ କରୁ ନାହିଁ ? ଲକ୍ଷ୍ୟକଲେ ଜାଣିପାରନ୍ତ ଯେ ଅଲ୍ଲାଃଙ୍କ ବିଷୟ ତ ଅଲଗା କଥା ଏପରିକି କୌଣସି ବ୍ୟକ୍ତି ବିଶେଷ ସମ୍ବନ୍ଧରେ ମଧ୍ୟ ସେ କୌଣସି ମିଥ୍ୟା କହି ନାହାନ୍ତି । ନବି ପଦର ଦାବିଦାରଙ୍କ ଦାବି କେତେ ଦୂର ଯଥାର୍ଥ ତାହା ପରୀକ୍ଷା କରିବା ପାଇଁ ଏହି ଆୟତରେ ଏକ ଅଭ୍ରାନ୍ତ ମାନଦଣ୍ଡ ଉଲ୍ଲେଖ ରହିଅଛି । ଦାବି ପୂର୍ବରୁ ଯଦି ଜଣେ ଅବତାରଙ୍କ ଜୀବନ, ସତ୍ୟତା ଓ ସଚ୍ଚୋଟତା ଦୃଷ୍ଟିରୁ ଅତି ଉଚ୍ଚକୋଟୀର ହୋଇଥାଏ ଏବଂ ଦାବି କରାଯିବା ପୂର୍ବରୁ ଯଦି ତାଙ୍କର ସେହି ଉଚ୍ଚ ନୈତିକମାନ ହ୍ରାସ ପାଇନଥାଏ କି ଲୋପ ପାଇନଥାଏ, ତେବେ ସେହି ଦାବି ଜଣେ ଉଚ୍ଚ ନୈତିକମାନ ବିଶିଷ୍ଟ ସତ୍ୟବାଦୀ ପୁରୁଷଙ୍କ ତରଫରୁ କରାଯାଇଥିବା ବିବେଚିତ ହେବ ।

اللّٰهَ بِمَا لَا يَعْلَمُ فِي السَّمٰوٰتِ وَلَا فِي الْاَرْضِ ۚ سُبْحٰنَهٗ وَتَعٰلٰى عَمَّا يُشْرِكُوْنَ ⑲

ବିଷୟ) ଜଣାଉଛ ଯାହାର ଅସ୍ତିତ୍ୱ ଆକାଶ ବା ପୃଥିବୀରେ ଥିବାର ସେ ଜାଣନ୍ତି ନାହିଁ ?'' ସେ ହିଁ ପବିତ୍ର ; ସେମାନେ ଯାହାକୁ ତାହାଙ୍କର ସମକକ୍ଷ ମନେ କରୁଛନ୍ତି, ସେ ତାହା ଠାରୁ ଊର୍ଦ୍ଧ୍ୱରେ ।

وَمَا كَانَ النَّاسُ اِلَّا اُمَّةً وَّاحِدَةً فَاخْتَلَفُوْا ۚ وَلَوْلَا كَلِمَةٌ سَبَقَتْ مِنْ رَّبِّكَ لَقُضِيَ بَيْنَهُمْ فِيْمَا فِيْهِ يَخْتَلِفُوْنَ ⑳

୨୦. ଏବଂ ଲୋକମାନେ ଗୋଟିଏ ଗୋଷ୍ଠୀରେ ହିଁ (ଆବଦ୍ଧ) ଥିଲେ, ଏବଂ ପରେ ସେମାନେ ନିଜ ମଧ୍ୟରେ ମତଭେଦ (ସୃଷ୍ଟି) କଲେ ; ଏବଂ ଯେଉଁ ବିଷୟ ତୁମ୍ଭ ପାଳନକର୍ତ୍ତାଙ୍କ ଠାରୁ ପୂର୍ବରୁ (ପ୍ରତିଶ୍ରୁତି ରୂପେ) ଆସି ସାରିଛି ଯଦି ତାହା (ପ୍ରତିବନ୍ଧକ ହୋଇ ) ନ ଥାଆନ୍ତା, ତେବେ ଯହିଁରେ ସେମାନଙ୍କର ମତଭେଦ ଅଛି ସେ ସଂକ୍ରାନ୍ତରେ ସେମାନଙ୍କ ମଧ୍ୟରେ (କେବେ ଠାରୁ) ନିଷ୍ପତ୍ତି ହୋଇ ସାରନ୍ତାଣି ;

وَيَقُوْلُوْنَ لَوْلَا اُنْزِلَ عَلَيْهِ اٰيَةٌ مِّنْ رَّبِّهٖ ۚ فَقُلْ اِنَّمَا الْغَيْبُ لِلّٰهِ فَانْتَظِرُوْا ۚ اِنِّيْ مَعَكُمْ مِّنَ الْمُنْتَظِرِيْنَ ㉑ ع

୨୧. ଏବଂ ସେମାନେ କହନ୍ତି, ''ତାହାଙ୍କର ପାଳନକର୍ତ୍ତାଙ୍କ ନିକଟରୁ କାହିଁକି ତାହାଙ୍କ ପ୍ରତି କୌଣସି ନିଦର୍ଶନ ଅବତୀର୍ଣ୍ଣ ହୋଇ ନାହିଁ ?'' ତୁମେ (ସେମାନଙ୍କୁ) କୁହ, ''ପ୍ରତ୍ୟେକ ଅଦୃଶ୍ୟ ବିଷୟ (ର ଜ୍ଞାନ) ଅଲ୍ଲାହ୍‌ଙ୍କ ଠାରେ ଅଛି ; ଏଣୁ ତୁମେମାନେ ଅପେକ୍ଷା କର, ନିଶ୍ଚୟ ଆମେ ମଧ୍ୟ ତୁମମାନଙ୍କ ସହିତ ଅପେକ୍ଷା କରିବୁ ।''

ରୁ : ୩

وَاِذَاۤ اَذَقْنَا النَّاسَ رَحْمَةً مِّنْۢ بَعْدِ ضَرَّآءَ مَسَّتْهُمْ اِذَا لَهُمْ مَّكْرٌ فِيْۤ اٰيَاتِنَا ۚ قُلِ اللّٰهُ اَسْرَعُ مَكْرًا ۚ اِنَّ رُسُلَنَا يَكْتُبُوْنَ مَا تَمْكُرُوْنَ ㉒

୨୨. ଏବଂ କୌଣସି ଦୁଃଖପ୍ରାପ୍ତି ହେବା ପରେ ଯେତେବେଳେ ଆମେ ଲୋକମାନଙ୍କୁ ଅନୁଗ୍ରହ (ର ମାଧୁର୍ଯ୍ୟ) ଆସ୍ୱାଦନ କରାଉ, ସେତେବେଳେ ସେମାନେ ତତ୍‌କ୍ଷଣାତ୍ ଆମର ନିଦର୍ଶନଗୁଡ଼ିକର ଉଦ୍ଦେଶ୍ୟକୁ ପଣ୍ଡ କରିବାକୁ ଯୋଜନା କରନ୍ତି ; ତୁମେ (ସେମାନଙ୍କୁ) କୁହ, ''(ଏହି ଯୋଜନା ତୁଳନାରେ) ଅଲ୍ଲାହ୍ ପ୍ରତିକୂଳ ଯୋଜନା କରିବାରେ କ୍ଷିପ୍ର:'' ବାସ୍ତବିକ ତୁମେମାନେ ଯେଉଁ ଯୋଜନା କରୁଅଛ, ଆମର ଦେବଦୂତମାନେ ତାହାକୁ ଲିପିବଦ୍ଧ କରୁଛନ୍ତି ।''

هُوَ الَّذِيْ يُسَيِّرُكُمْ فِي الْبَرِّ وَالْبَحْرِ ۚ حَتّٰۤى اِذَا كُنْتُمْ فِي الْفُلْكِ ۚ وَجَرَيْنَ بِهِمْ بِرِيْحٍ طَيِّبَةٍ وَّفَرِحُوْا بِهَا جَآءَتْهَا رِيْحٌ عَاصِفٌ وَّجَآءَهُمُ الْمَوْجُ مِنْ كُلِّ

୨୩. ସେ (ଅଲ୍ଲାହ୍) ହିଁ ତୁମମାନଙ୍କୁ ସ୍ଥଳଭାଗରେ ଓ ଜଳଭାଗରେ ଚଳପ୍ରଚଳ କରାଉଛନ୍ତି ; ଏପରି କି ଯେତେବେଳେ ତୁମେମାନେ ନୌକାରେ ଆରୋହଣ କରି) ଥାଅ ଓ ନୌକାଗୁଡ଼ିକ ସେମାନଙ୍କୁ ସଙ୍ଗରେ ଧରି ଅନୁକୂଳ ପବନରେ ଚାଳିତ ହୁଏ ଓ ସେମାନେ ସେଥିପାଇଁ ଆନନ୍ଦିତ ହୁଅନ୍ତି, (ଏବଂ ଏହା ପରେ) ଯେତେବେଳେ ସେଗୁଡ଼ିକ ଉପରେ ବାତ୍ୟା ପ୍ରବାହିତ ହୁଏ ଏବଂ ଚତୁର୍ଦ୍ଦିଗରୁ ସେମାନଙ୍କ ଉପରକୁ ଲହଡ଼ି ମାଡ଼ି ଆସେ ଓ ସେମାନେ ଅନୁଭବ କରନ୍ତି ଯେ ସେମାନେ (ବର୍ତ୍ତମାନ) ଧ୍ୱଂସ ମୁଖରେ

مَكَانٍ وَّظَنُّوْٓا اَنَّهُمْ اُحِيْطَ بِهِمْ ۙ دَعَوُا اللّٰهَ مُخْلِصِيْنَ لَهُ الدِّيْنَ ۚ لَئِنْ اَنْجَيْتَنَا مِنْ هٰذِهٖ لَنَكُوْنَنَّ مِنَ الشّٰكِرِيْنَ ﴿٢٣﴾

ପଡ଼ିଛନ୍ତି, ସେତେବେଳେ ସେମାନେ ନିଷ୍ଠାର ସହିତ ଅଲ୍ଲାହ୍‌ଙ୍କ ନିକଟରେ ପ୍ରାର୍ଥନା କରନ୍ତି, "(ହେ ଅଲ୍ଲାହ୍ !) ଯଦି ତୁମେ ଆମମାନଙ୍କୁ ଏଥିରୁ (ଅର୍ଥାତ୍ ଏହି ବିପତ୍ତିରୁ) ରକ୍ଷା କରିବ, ତେବେ ଆମେମାନେ ନିଶ୍ଚୟ କୃତଜ୍ଞମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବୁ ।"

فَلَمَّآ اَنْجٰىهُمْ اِذَا هُمْ يَبْغُوْنَ فِى الْاَرْضِ بِغَيْرِ الْحَقِّ ۗ يٰٓاَيُّهَا النَّاسُ اِنَّمَا بَغْيُكُمْ عَلٰٓى اَنْفُسِكُمْ ۙ مَّتَاعَ الْحَيٰوةِ الدُّنْيَا ۖ ثُمَّ اِلَيْنَا مَرْجِعُكُمْ فَنُنَبِّئُكُمْ بِمَا كُنْتُمْ تَعْمَلُوْنَ ﴿٢٤﴾

୨୪. ଏହାପରେ ଯେତେବେଳେ ସେ ସେମାନଙ୍କୁ (ଏହି ବିପଦରୁ) ରକ୍ଷା କରି ସ୍ଥଳଭାଗରେ ପହଞ୍ଚାଇ ଦିଅନ୍ତି, ସେତେବେଳେ ତତ୍‌କ୍ଷଣାତ୍ ସେମାନେ ଅନ୍ୟାୟ ଭାବରେ ପୃଥିବୀରେ ଦୌରାତ୍ମ୍ୟ କରନ୍ତି ; ହେ ଲୋକମାନେ ! ଇହକାଳରେ କ୍ଷଣସ୍ଥାୟୀ ଲାଭ ପାଇଁ ତୁମମାନଙ୍କର ଦୌରାତ୍ମ୍ୟ କେବଳ ତୁମମାନଙ୍କ ବିରୁଦ୍ଧରେ (ବିପରିତ ହୋଇ) ପଡ଼ିବ ; ପରିଶେଷରେ ତୁମମାନଙ୍କୁ ଆମ ନିକଟକୁ ଫେରିବାକୁ ହେବ ; ତୁମେମାନେ ଯାହା କରୁଥିଲ ତାହା ତୁମମାନଙ୍କୁ ସେତେବେଳେ ଆମେ ଅବଗତ କରାଇବୁ ।

اِنَّمَا مَثَلُ الْحَيٰوةِ الدُّنْيَا كَمَآءٍ اَنْزَلْنٰهُ مِنَ السَّمَآءِ فَاخْتَلَطَ بِهٖ نَبَاتُ الْاَرْضِ مِمَّا يَاْكُلُ النَّاسُ وَالْاَنْعَامُ ۗ حَتّٰٓى اِذَآ اَخَذَتِ الْاَرْضُ زُخْرُفَهَا وَازَّيَّنَتْ وَظَنَّ اَهْلُهَآ اَنَّهُمْ قٰدِرُوْنَ عَلَيْهَآ ۙ اَتٰىهَآ اَمْرُنَا لَيْلًا اَوْ نَهَارًا فَجَعَلْنٰهَا حَصِيْدًا كَاَنْ لَّمْ تَغْنَ بِالْاَمْسِ ۗ كَذٰلِكَ نُفَصِّلُ الْاٰيٰتِ لِقَوْمٍ يَّتَفَكَّرُوْنَ ﴿٢٥﴾

୨୫. ଏହି ସାଂସାରିକ ଜୀବନର ଦୃଷ୍ଟାନ୍ତ ଏପରି ଜଳ ସଦୃଶ ଯାହାକୁ ଆମେ ମେଘମାଳାରୁ ବୃଷ୍ଟି କରୁ, ତା'ପରେ ଏହା ଭୂମିରୁ ଜାତ ଉଦ୍ଭିଦ ସହିତ ମିଶ୍ରିତ ହୁଏ, ଯାହାକୁ ମନୁଷ୍ୟ ଓ ଚତୁଷ୍ପଦମାନେ ଖାଆନ୍ତି, ଏପରି କି ଯେତେବେଳେ ଭୂପୃଷ୍ଠ (ଏହାଦ୍ୱାରା) ସୌନ୍ଦର୍ଯ୍ୟରେ ଅଳଙ୍କୃତ ହୁଏ ଓ ସୁଶୋଭିତ ହୁଏ, ଓ ଏହାର ମାଲିକମାନେ ମନେ କରନ୍ତି ଯେ ଏହା ସେମାନଙ୍କ ଆୟତ୍ତାଧୀନ, ସେତେବେଳେ ରାତି ବା ଦିନରେ (ଶାସ୍ତି ସଂକ୍ରାନ୍ତରେ) ଆମର ନିର୍ଦ୍ଦେଶ ଉପସ୍ଥିତ ହୁଏ, ଏବଂ ଆମେ ଏହାକୁ ଏପରି (ଫସଲ) କଟା କ୍ଷେତ ସଦୃଶ କରି ଦେଉ ସତେ ଯେପରି ଏଠାରେ ଗତକାଲି (କିଛି) ନ ଥିଲା ; (ସୁତରାଂ) ଯେଉଁମାନେ ଚିନ୍ତା କରି କାର୍ଯ୍ୟ କରନ୍ତି, ଆମେ ସେମାନଙ୍କ ପାଇଁ ଏହିପରି ଭାବେ ନିଦର୍ଶନମାନ ସ୍ପଷ୍ଟରୂପେ ବର୍ଣ୍ଣନା କରୁ ।

وَاللّٰهُ يَدْعُوْٓا اِلٰى دَارِ السَّلٰمِ ۗ وَيَهْدِيْ مَنْ يَّشَآءُ اِلٰى صِرَاطٍ مُّسْتَقِيْمٍ ﴿٢٦﴾

୨୬. ଏବଂ ଅଲ୍ଲାହ୍ ତୁମମାନଙ୍କୁ ଶାନ୍ତିର ସଦନ ଆଡ଼କୁ ଡାକୁଛନ୍ତି, ଏବଂ ଯାହାକୁ ପସନ୍ଦ କରନ୍ତି (ତାହାକୁ) ଏକ ସରଳ ମାର୍ଗରେ ପରିଚାଳିତ କରାନ୍ତି (ଓ ଲକ୍ଷ୍ୟସ୍ଥଳରେ ପହଞ୍ଚାଇ ଦିଅନ୍ତି ।)

لِلَّذِيْنَ اَحْسَنُوا الْحُسْنٰى وَزِيَادَةٌ ۗ وَلَا يَرْهَقُ وُجُوْهَهُمْ قَتَرٌ وَّلَا ذِلَّةٌ ۗ اُولٰٓئِكَ اَصْحٰبُ الْجَنَّةِ ۚ هُمْ فِيْهَا خٰلِدُوْنَ ﴿٢٧﴾

୨୭. ଯେଉଁମାନେ ସତ୍‌କାର୍ଯ୍ୟ କରନ୍ତି, ସେମାନଙ୍କର ପରିଣାମ ଉତ୍କୃଷ୍ଟ ହେବ, ଏବଂ (ଏହାଠାରୁ) ଅଧିକତର (ପୁରସ୍କାରପ୍ରାପ୍ତ) ହେବ ; ଏବଂ ସେମାନଙ୍କର ମୁଖମଣ୍ଡଳକୁ ମଳିନତା ଓ ଲାଞ୍ଛନା ଆଚ୍ଛାଦିତ କରିବ ନାହିଁ ; ସେମାନେ ହିଁ ବୈକୁଣ୍ଠର ଅଧିବାସୀ, ସେମାନେ ସେଠାରେ ସର୍ବଦା ବାସ କରିବେ ।

୨୮. ଏବଂ ଯେଉଁମାନେ ମନ୍ଦ କାର୍ଯ୍ୟ କରିଥିବେ, (ସେମାନେ) ତାହା ବଦଳରେ ତାହାର ଅନୁରୂପ (ଫଳ) ପାଇବେ ଏବଂ ସେମାନେ ଲାଞ୍ଛିତ ହେବେ, ଓ ସେମାନଙ୍କୁ କେହି ଅଲ୍ଲାହ୍‌ଙ୍କ (ଶାସ୍ତି) କବଳରୁ ରକ୍ଷା କରିବା ପାଇଁ ନ ଥିବେ ; (ସେମାନଙ୍କର ଅବସ୍ଥା ଏପରି ହେବ) ଯେପରି କି ରାତ୍ରିକାଳୀନ ଅନ୍ଧକାରର[୧] ଅନେକ ଅଂଶ ସେମାନଙ୍କ ମୁଖମଣ୍ଡଳରେ ନିପତିତ ହୋଇଅଛି ; ସେମାନେ ହିଁ (ନରକ ଅଗ୍ନିର) ଅଧିବାସୀ । ସେମାନେ ସେଠାରେ ଦୀର୍ଘକାଳ ରହିବେ ।

وَالَّذِينَ كَسَبُوا السَّيِّئَاتِ جَزَاءُ سَيِّئَةٍ بِمِثْلِهَا وَتَرْهَقُهُمْ ذِلَّةٌ مَا لَهُمْ مِنَ اللَّهِ مِنْ عَاصِمٍ كَأَنَّمَا أُغْشِيَتْ وُجُوهُهُمْ قِطَعًا مِنَ اللَّيْلِ مُظْلِمًا أُولَٰئِكَ أَصْحَابُ النَّارِ هُمْ فِيهَا خَالِدُونَ ۝٢٨

୨୯. ଏବଂ (ହେ ଲୋକମାନେ ! ସେହି ଦିନକୁ ସ୍ମରଣ କର) ଯେଉଁ ଦିନ ଆମ୍ଭେ ସେ ସମସ୍ତଙ୍କୁ ଏକତ୍ରିତ କରିବୁ, ତା'ପରେ ମୁସରିକମାନଙ୍କୁ କହିବୁ, "ତୁମେମାନେ ତଥା ତୁମେମାନେ ଯାହାଙ୍କୁ (ଅଲ୍ଲାହ୍‌ଙ୍କର) ସମକକ୍ଷ ସ୍ଥିର କରିଥିଲ ଉଭୟେ (ପଛକୁ ଘୁଞ୍ଚି) ନିଜ ନିଜ ସ୍ଥାନରେ ଛିଡ଼ା ହୁଅ ;" ତା'ପରେ ଆମ୍ଭେ ସେମାନଙ୍କୁ ପରସ୍ପରଠାରୁ ବିଚ୍ଛିନ୍ନ କରିଦେବୁ, ଏବଂ ସେମାନଙ୍କ (ନିର୍ମିତ) ଉପାସ୍ୟମାନେ (ସେମାନଙ୍କୁ) କହିବେ, "ତୁମେମାନେ ଆମମାନଙ୍କର ଉପାସନା (କଦାପି) କରୁ ନ ଥିଲ ।"

وَيَوْمَ نَحْشُرُهُمْ جَمِيعًا ثُمَّ نَقُولُ لِلَّذِينَ أَشْرَكُوا مَكَانَكُمْ أَنْتُمْ وَشُرَكَاؤُكُمْ فَزَيَّلْنَا بَيْنَهُمْ وَقَالَ شُرَكَاؤُهُمْ مَا كُنْتُمْ إِيَّانَا تَعْبُدُونَ ۝٢٩

୩୦. ସୁତରାଂ, ଆମମାନଙ୍କ ଓ ତୁମମାନଙ୍କ ମଧ୍ୟରେ ଅଲ୍ଲାହ୍‌ଙ୍କ ସାକ୍ଷ୍ୟ ହିଁ ଯଥେଷ୍ଟ ; ଆମେମାନେ ତୁମମାନଙ୍କ ଉପାସନା ସଂକ୍ରାନ୍ତରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲୁ ।

فَكَفَىٰ بِاللَّهِ شَهِيدًا بَيْنَنَا وَبَيْنَكُمْ إِنْ كُنَّا عَنْ عِبَادَتِكُمْ لَغَافِلِينَ ۝٣٠

୩୧. ପ୍ରତ୍ୟେକ ବ୍ୟକ୍ତି ପୂର୍ବରୁ ଯାହା କିଛି କରିଅଛି ସେଠାରେ ତାହାର ଫଳ ଭୋଗ କରିବ ; ଏବଂ ସେମାନଙ୍କୁ ସେମାନଙ୍କର ପ୍ରକୃତ ପ୍ରତିପୋଷକ ଅଲ୍ଲାହ୍‌ଙ୍କ ନିକଟକୁ ଫେରାଇ ନିଆଯିବ ଏବଂ ସେମାନେ ଯାହା କିଛି ମିଥ୍ୟା ରଚନା କରୁଥିଲେ, ତାହା ସେମାନେ ପାଶୋରି ପକାଇବେ ।

هُنَالِكَ تَبْلُو كُلُّ نَفْسٍ مَا أَسْلَفَتْ وَرُدُّوا إِلَى اللَّهِ مَوْلَاهُمُ الْحَقِّ وَضَلَّ عَنْهُمْ مَا كَانُوا يَفْتَرُونَ ۝٣١

---

୧. ଅର୍ଥାତ୍ ଏପରି ଭୀଷଣ ଯୁଦ୍ଧ ହେବ ଯେ ତାହା ପରିବେଶକୁ ଅନ୍ଧକାରମୟ କରିଦେବ, ଯେତେ ଯେପରି ରାତି ମାଡ଼ି ଆସୁଛି ।
ଏଠାରେ ନିମ୍ନୋକ୍ତ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତଗୁଡ଼ିକ ରୂପାୟିତ ହୋଇଛି । (କ) ପୂର୍ବ ଆୟତ ମୁତାବକ ଉତ୍ତମ କାର୍ଯ୍ୟ ପାଇଁ ବହୁବିଧ ପୁରସ୍କାର ମିଳୁଥିଲେ ମଧ୍ୟ ଏହି ଆୟତରେ ଗୋଟିଏ ମନ୍ଦ କାର୍ଯ୍ୟ ପାଇଁ ମାତ୍ରା ଅନୁଯାୟୀ ଗୋଟିଏ ଦଣ୍ଡ ମିଳିବା ବ୍ୟବସ୍ଥା କରାଯାଇଛି । (ଖ) ନିୟମଭଙ୍ଗକାରୀମାନେ ଅଲ୍ଲାହ୍‌ଙ୍କ କରୁଣା ଲାଭ କରିପାରନ୍ତି ନାହିଁ, ଉଚ୍ଚ ଆଦର୍ଶ ଓ ସଚ୍ଚରିତ୍ର ଦ୍ୱାରା ଅନୁପ୍ରାଣିତ ହୋଇ ପାରନ୍ତି ନାହିଁ ଅଥବା ନେତୃତ୍ୱ ନେଇ ପାରନ୍ତି ନାହିଁ । (ଗ) ଅଲ୍ଲାହ୍‌ଙ୍କର ବିରାଗ ଭାଜନ ହୋଇଥିବାରୁ ସେମାନେ ବିପଦବେଳେ ତାଙ୍କ ସାହାଯ୍ୟ ପାଇ ପାରନ୍ତି ନାହିଁ । (ଘ) କୁକର୍ମ ବହୁ ଦିନ ପର୍ଯ୍ୟନ୍ତ ଲୁକ୍କାୟିତ ରହେ ନାହିଁ ।

### ରୁ : ୪

୩୨. ତୁମେ (ସେମାନଙ୍କୁ) ପଚାର, ''ଆକାଶ ଓ ପୃଥିବୀରୁ କିଏ ତୁମମାନଙ୍କୁ ଜୀବିକା ପ୍ରଦାନ କରୁଅଛି ? ଅଥବା କାନ ଓ ଆଖି ଉପରେ କାହାର ନିୟନ୍ତ୍ରଣ ଅଛି ? ଏବଂ କିଏ ମୃତ (ବସ୍ତୁ) ମଧ୍ୟରୁ ଜୀବିତ (ବସ୍ତୁ)କୁ ଓ ଜୀବିତ (ବସ୍ତୁ) ମଧ୍ୟରୁ ମୃତ (ବସ୍ତୁ) ବାହାର କରେ ? ଏବଂ କିଏ (ଏ) ସମସ୍ତ କାର୍ଯ୍ୟ ସମ୍ପାଦନା କରୁଅଛି ?'' (ଏ ବିଷୟରେ) ସେମାନେ ଅବଶ୍ୟ କହିବେ, ''ଅଲ୍ଲାହ'' ; ତାହା ହେଲେ (ସେମାନଙ୍କୁ) ପଚାର, ''ତୁମେମାନେ କାହିଁକି ଧର୍ମଭୀରୁତା ଅବଲମ୍ବନ କରୁ ନାହଁ ?''

قُلْ مَنْ يَّرْزُقُكُمْ مِّنَ السَّمَآءِ وَالْاَرْضِ اَمَّنْ يَّمْلِكُ السَّمْعَ وَالْاَبْصَارَ وَمَنْ يُّخْرِجُ الْحَيَّ مِنَ الْمَيِّتِ وَيُخْرِجُ الْمَيِّتَ مِنَ الْحَيِّ وَمَنْ يُّدَبِّرُ الْاَمْرَ فَسَيَقُوْلُوْنَ اللّٰهُ فَقُلْ اَفَلَا تَتَّقُوْنَ ﴿٣٢﴾

୩୩. ସେହି ଅଲ୍ଲାହ ହିଁ ତୁମମାନଙ୍କର ବାସ୍ତବ ପାଳନକର୍ତ୍ତା ; ସୁତରାଂ ସତ୍ୟକୁ ପରିତ୍ୟାଗ କରି ପଥଭ୍ରଷ୍ଟ ହେବା ଛଡ଼ା ଆଉ କ'ଣ (ପ୍ରାପ୍ତ) ହୋଇପାରେ ? ତେବେ (କୁହ ତ ଭଲା) ତୁମମାନଙ୍କୁ କିପରି (ଅନ୍ୟ ଦିଗକୁ) ଫେରାଇ ନିଆଯାଉଛି ?

فَذٰلِكُمُ اللّٰهُ رَبُّكُمُ الْحَقُّ فَمَاذَا بَعْدَ الْحَقِّ اِلَّا الضَّلٰلُ فَاَنّٰى تُصْرَفُوْنَ ﴿٣٣﴾

୩୪. ଏହିପରି ଭାବେ ଯେଉଁମାନେ ଅମାନ୍ୟ କରିଛନ୍ତି ସେମାନଙ୍କ ସଂକ୍ରାନ୍ତରେ ତୁମ ପାଳନକର୍ତ୍ତାଙ୍କ ବିଚାର ସତ୍ୟ ପ୍ରମାଣିତ ହୋଇଛି ଯେ ସେମାନେ ବିଶ୍ୱାସ କରିବେ ନାହିଁ ।

كَذٰلِكَ حَقَّتْ كَلِمَتُ رَبِّكَ عَلَى الَّذِيْنَ فَسَقُوْٓا اَنَّهُمْ لَا يُؤْمِنُوْنَ ﴿٣٤﴾

୩୫. ତୁମେ (ସେମାନଙ୍କୁ ) କୁହ, ''କ'ଣ ତୁମମାନଙ୍କର ସ୍ଥିରୀକୃତ ଉପାସ୍ୟମାନଙ୍କ ମଧ୍ୟରେ ଏପରି କେହି ଅଛି ଯେ କି ପ୍ରଥମେ ସୃଷ୍ଟି କରେ (ଓ) ପରେ (ସେହି ସୃଷ୍ଟିର) ପୁନରାବୃତ୍ତି କରେ'' ; ତୁମେ (ସେମାନଙ୍କୁ ) କୁହ, ''ଅଲ୍ଲା ହିଁ ପ୍ରଥମେ ସୃଷ୍ଟି କରନ୍ତି ଓ ତତ୍‌ପରେ ତାହାର ପୁନରାବୃତ୍ତି କରନ୍ତି'' ; ସୁତରାଂ (ଏହା ସତ୍ତ୍ୱେ) ତୁମମାନଙ୍କୁ କେଉଁ ଆଡ଼କୁ ଫେରାଇ ନିଆଯାଉ ଅଛି ?

قُلْ هَلْ مِنْ شُرَكَآئِكُمْ مَّنْ يَّبْدَؤُا الْخَلْقَ ثُمَّ يُعِيْدُهٗ قُلِ اللّٰهُ يَبْدَؤُا الْخَلْقَ ثُمَّ يُعِيْدُهٗ فَاَنّٰى تُؤْفَكُوْنَ ﴿٣٥﴾

୩୬. ତୁମେ (ସେମାନଙ୍କୁ ଏହା ମଧ୍ୟ) କୁହ, ''କ'ଣ ତୁମମାନଙ୍କର (ସ୍ଥିରୀକୃତ) ଉପାସ୍ୟମାନଙ୍କ ମଧ୍ୟରେ (ଏପରି) କେହି ଅଛି ଯେ କି (ଲୋକମାନଙ୍କୁ) ସତ୍ୟ ଆଡ଼କୁ ମାର୍ଗ ପ୍ରଦର୍ଶନ କରାଏ ?'' (ସେମାନେ ଏହାର କି ଉତ୍ତର ଦେଇ ପାରିବେ), ତୁମେ (ନିଜେ ସେମାନଙ୍କୁ) କୁହ, ''ଅଲ୍ଲାହ (ହିଁ ଲୋକମାନଙ୍କୁ) ସତ୍ୟ ଆଡ଼କୁ ମାର୍ଗ ପ୍ରଦର୍ଶନ କରାନ୍ତି; ସୁତରାଂ ଯେ (ଅଲ୍ଲାହ) ସତ୍ୟମାର୍ଗ ପ୍ରଦର୍ଶନ କରାନ୍ତି, ସେ ଅନୁସୃତ ହେବା ପାଇଁ ଅଧିକ ଯୋଗ୍ୟ ନା (ସେ ତଥାକଥିତ ଉପାସ୍ୟ) ଯେ ସ୍ୱୟଂ ପଥ ପ୍ରଦର୍ଶିତ ନ ହେବା ପର୍ଯ୍ୟନ୍ତ ସତ୍‌ପଥ ପ୍ରାପ୍ତ ହୁଏ ନାହିଁ (ସେ ଅଧିକ ଯୋଗ୍ୟ) ?'' ପୁନଶ୍ଚ କୁହ, ''ତୁମମାନଙ୍କର କ'ଣ ହୋଇଛି ? ତୁମେମାନେ କିପରି ନିଷ୍ପତ୍ତି କରୁଅଛ ?''

قُلْ هَلْ مِنْ شُرَكَآئِكُمْ مَّنْ يَّهْدِيْٓ اِلَى الْحَقِّ قُلِ اللّٰهُ يَهْدِيْ لِلْحَقِّ اَفَمَنْ يَّهْدِيْٓ اِلَى الْحَقِّ اَحَقُّ اَنْ يُّتَّبَعَ اَمَّنْ لَّا يَهِدِّيْٓ اِلَّآ اَنْ يُّهْدٰى فَمَا لَكُمْ كَيْفَ تَحْكُمُوْنَ ﴿٣٦﴾

ୱَمَا يَتَّبِعُ أَكْثَرُهُمْ إِلَّا ظَنًّا ۚ إِنَّ الظَّنَّ لَا يُغْنِي مِنَ الْحَقِّ شَيْئًا ۚ إِنَّ اللَّهَ عَلِيمٌ بِمَا يَفْعَلُونَ ٣٧

୩୭. ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ (ନିଜ) ଅନୁମାନ ଛଡ଼ା ଅନ୍ୟ କୌଣସି ବିଷୟର ଅନୁସରଣ କରୁ ନାହାନ୍ତି ; (ଅଥଚ) ସତ୍ୟ ପରିବର୍ତ୍ତେ ଅନୁମାନ କୌଣସି କାର୍ଯ୍ୟରେ ଲାଗେ ନାହିଁ ; ସେମାନେ ଯାହା କିଛି କରୁଛନ୍ତି ଅଲ୍ଲାହ ନିଶ୍ଚୟ ସେ ବିଷୟରେ ଅବଗତ ଅଛନ୍ତି ।

وَمَا كَانَ هَٰذَا الْقُرْآنُ أَنْ يُفْتَرَىٰ مِنْ دُونِ اللَّهِ وَلَٰكِنْ تَصْدِيقَ الَّذِي بَيْنَ يَدَيْهِ وَتَفْصِيلَ الْكِتَابِ لَا رَيْبَ فِيهِ مِنْ رَبِّ الْعَالَمِينَ ٣٨

୩୮. ଅଲ୍ଲାହଙ୍କ ବ୍ୟତୀତ ଏହି କୋରାନ ଗ୍ରନ୍ଥକୁ ଅନ୍ୟ କେହି ରଚନା କରିବା ସମ୍ଭବ ନୁହେଁ, ବରଂ ଏହା, ଏଥିପୂର୍ବରୁ ଯାହା (ଅଲ୍ଲାହଙ୍କବାଣୀ) ଅବତୀର୍ଣ୍ଣ ହୋଇଅଛି, ତାହାର ସତ୍ୟତା ପ୍ରତିପାଦନ କରୁଅଛି, ଏବଂ ଅଲ୍ଲାଙ୍କ ଗ୍ରନ୍ଥରେ ଯାହା ରହିବା କଥା ତାହାର ବିସ୍ତୃତ ବିବରଣୀ ପ୍ରଦାନ କରୁଅଛି, ଏଥିରେ ମଧ୍ୟ କୌଣସି ସନ୍ଦେହ ନାହିଁ ଯେ ଏହା ସମସ୍ତ ଜଗତର ପାଳନକର୍ତ୍ତାଙ୍କ ତରଫରୁ ଆସିଅଛି ।

أَمْ يَقُولُونَ افْتَرَاهُ ۖ قُلْ فَأْتُوا بِسُورَةٍ مِثْلِهِ وَادْعُوا مَنِ اسْتَطَعْتُمْ مِنْ دُونِ اللَّهِ إِنْ كُنْتُمْ صَادِقِينَ ٣٩

୩୯. କ'ଣ ସେମାନେ କହୁଛନ୍ତି ଯେ ଏହା ତାଙ୍କର ସ୍ୱରଚିତ ଗ୍ରନ୍ଥ ? ତୁମେ (ସେମାନଙ୍କୁ) କୁହ, "ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ ତେବେ ତୁମେମାନେ ଏହାର ଅନୁରୂପ ଏକ ଅଧ୍ୟାୟ ରଚନା କରି ଆଣ ଏବଂ ଅଲ୍ଲାହଙ୍କ ବ୍ୟତୀତ[1] ଯାହାକୁ (ମଧ୍ୟ) ତୁମର (ଡାକିବାର) ସାମର୍ଥ୍ୟ ଅଛି (ନିଜ ସହାୟତା ସକାଶେ) ଡାକି ଆଣ ।

بَلْ كَذَّبُوا بِمَا لَمْ يُحِيطُوا بِعِلْمِهِ وَلَمَّا يَأْتِهِمْ تَأْوِيلُهُ ۚ كَذَٰلِكَ كَذَّبَ الَّذِينَ مِنْ قَبْلِهِمْ ۖ فَانْظُرْ كَيْفَ كَانَ عَاقِبَةُ الظَّالِمِينَ ٤٠

୪୦. ବରଂ ସେମାନେ ଏପରି ବିଷୟକୁ ପ୍ରତ୍ୟାଖ୍ୟାନ କଲେ ଯେଉଁ ବିଷୟରେ ସେମାନେ ସମ୍ପୂର୍ଣ୍ଣ ଜ୍ଞାନ ଆହରଣ କରି ନ ଥିଲେ କି ଯାହାର ବାସ୍ତବତା ଏବେ ମଧ୍ୟ ସେମାନଙ୍କ ନିକଟରେ ପ୍ରକାଶିତ ହୋଇ ନ ଥିଲା ; ଯେଉଁମାନେ ସେମାନଙ୍କ ପୂର୍ବରୁ ଥିଲେ, ସେମାନେ ମଧ୍ୟ ଏହିପରି ପ୍ରତ୍ୟାଖ୍ୟାନ କରିଥିଲେ ; ଅତଏବ ଦେଖ, ସେହି ଅତ୍ୟାଚାରୀମାନଙ୍କ ପରିଣାମ କିପରି ହୋଇଥିଲା ।

وَمِنْهُمْ مَنْ يُؤْمِنُ بِهِ وَمِنْهُمْ مَنْ لَا يُؤْمِنُ بِهِ ۚ وَرَبُّكَ أَعْلَمُ بِالْمُفْسِدِينَ ٤١ ع

୪୧. ଏବଂ ସେମାନଙ୍କ ମଧ୍ୟରୁ କେତେକ ବିଶ୍ୱାସ[2] କରିବେ, ଏବଂ ଅନ୍ୟ କେତେକ ବିଶ୍ୱାସ କରିବେ ନାହିଁ ; ଏବଂ ତୁମ ପାଳନକର୍ତ୍ତା ବିଶୃଙ୍ଖଳାକାରୀମାନଙ୍କୁ ଉତ୍ତମ ରୂପେ ଜାଣନ୍ତି ।

---

୧. ଅର୍ଥାତ୍ ଆଧ୍ୟାତ୍ମିକ ଗ୍ରନ୍ଥ ବୋଲାଉଥିବା ପୂର୍ବବର୍ତ୍ତୀ ଗ୍ରନ୍ଥର ମଧ୍ୟ ସାହାଯ୍ୟ ନିଅ, ଅନ୍ୟଥା ବୁଦ୍ଧିମତ୍ତା ଓ ନୀତି ଦୃଷ୍ଟିରୁ ଖ୍ରୀଷ୍ଟିୟାନ ଆଦି ଅନ୍ୟାନ୍ୟ ସଂପ୍ରଦାୟର ସାହାଯ୍ୟ ନେବାର କୌଣସି ପ୍ରଶ୍ନ ନାହିଁ । ଏଠାରେ ଦର୍ଶାଯାଇଛି ଯେ ପବିତ୍ର କୋରାନ୍ ତୁଳନାରେ ଇଂଜିଲର ସ୍ଥାନ ଅତି ତୁଚ୍ଛ ଓ ତାହା ଅଲ୍ଲାହଙ୍କ ପୁତ୍ର କର୍ତ୍ତୃକ ରଚିତ ହୋଇଥିବାର ଯେତେ ଦାବି କଲେ ମଧ୍ୟ ତାହାକୁ ପବିତ୍ର କୋରାନ ସହିତ ତୁଳନା କରାଯାଇ ପାରିବ ନାହିଁ ।

୨. କୌଣସି ନା କୌଣସି ସମୟରେ ଅଧିକାଂଶ ଖ୍ରୀଷ୍ଟିୟାନ ପବିତ୍ର କୋରାନ ଉପରେ ବିଶ୍ୱାସ କରିବେ, ଏହା ହେଉଛି ଅନ୍ୟତମ ଭବିଷ୍ୟବାଣୀ ।

ରୁ : ୫

୪୨. ଏବଂ ଯଦି ସେମାନେ ତୁମ ପ୍ରତି ମିଥ୍ୟା ଆରୋପ କରନ୍ତି ତେବେ (ସେମାନଙ୍କୁ) କୁହ, "ଆମର କର୍ମ ଆମ ପାଇଁ (ଲାଭଦାୟକ ବା କ୍ଷତିକାରକ ହେବ) ଓ ତୁମମାନଙ୍କ କର୍ମ ତୁମମାନଙ୍କ ପାଇଁ (ଲାଭଦାୟକ ବା କ୍ଷତିକାରକ ହେବ), ଆମେ ଯାହା କରୁଅଛୁ ସେଥିରୁ ତୁମେମାନେ (ଦାୟିତ୍ୱ) ମୁକ୍ତ ; ଏବଂ ତୁମେମାନେ ଯାହା କରୁଅଛ ସେଥିରୁ ଆମେ (ଦାୟିତ୍ୱ) ମୁକ୍ତ ।"

وَاِنْ كَذَّبُوْكَ فَقُلْ لِّيْ عَمَلِيْ وَلَكُمْ عَمَلُكُمْ ۚ اَنْتُمْ بَرِيْٓـُٔوْنَ مِمَّآ اَعْمَلُ وَاَنَا بَرِيْٓءٌ مِّمَّا تَعْمَلُوْنَ ﴿۴۲﴾

୪୩. ଏବଂ ସେମାନଙ୍କ ମଧ୍ୟରୁ କେତେକ ତୁମ (କଥାକୁ) ପ୍ରତି (ସର୍ବଦା) କର୍ଣ୍ଣପାତ କରନ୍ତି ; (ତା'ହେଲେ) କ'ଣ ତୁମେ ସେପରି ବଧିରମାନଙ୍କୁ, ଯେଉଁମାନେ କି ବୁଦ୍ଧିବଳରେ କାର୍ଯ୍ୟ କରନ୍ତି ନାହିଁ, (ନିଜ କଥାକୁ) ଶୁଣାଇ ପାରିବ ?

وَمِنْهُمْ مَّنْ يَّسْتَمِعُوْنَ اِلَيْكَ ؕ اَفَاَنْتَ تُسْمِعُ الصُّمَّ وَلَوْ كَانُوْا لَا يَعْقِلُوْنَ ﴿۴۳﴾

୪୪. ଏବଂ ସେମାନଙ୍କ ମଧ୍ୟରୁ କେତେକ ଏପରି ଅଛନ୍ତି ଯେଉଁମାନେ ତୁମ ପ୍ରତି ଦୃଷ୍ଟିପାତ କରନ୍ତି ; (ତା'ହେଲେ) କ'ଣ ସେପରି ଅନ୍ଧମାନଙ୍କୁ ଯେଉଁମାନେ ଦେଖି ପାରନ୍ତି ନାହିଁ, ତୁମେ ପଥ ପ୍ରଦର୍ଶନ କରାଇ ପାରିବ ?

وَمِنْهُمْ مَّنْ يَّنْظُرُ اِلَيْكَ ؕ اَفَاَنْتَ تَهْدِى الْعُمْىَ وَلَوْ كَانُوْا لَا يُبْصِرُوْنَ ﴿۴۴﴾

୪୫. ବାସ୍ତବରେ ଅଲ୍ଲାହ ଲୋକମାନଙ୍କ ପ୍ରତି ଆଦୌ ଅତ୍ୟାଚାର କରନ୍ତି ନାହିଁ, ବରଂ ଲୋକମାନେ (ନିଜେ) ନିଜ ପ୍ରତି ଅତ୍ୟାଚାର କରନ୍ତି ।

اِنَّ اللّٰهَ لَا يَظْلِمُ النَّاسَ شَيْـًٔا وَّلٰكِنَّ النَّاسَ اَنْفُسَهُمْ يَظْلِمُوْنَ ﴿۴۵﴾

୪୬. ଏବଂ ଯେଉଁ ଦିନ ସେ (ଅଲ୍ଲାହ) ସେମାନଙ୍କୁ ଏପରି ଅବସ୍ଥାରେ ଏକତ୍ରିତ କରିବେ (ଯେ ସେମାନେ ଅନୁଭବ କରିବେ) ଯେ ସେମାନେ ସତେ ଯେପରି ଦିନର ଗୋଟିଏ ମୁହୂର୍ତ୍ତ ମାତ୍ର (ପୃଥିବୀରେ) ରହିଥିଲେ, (ସେହି ଦିନ) ସେମାନେ ପରସ୍ପରକୁ (ଅର୍ଥାତ୍ ପରସ୍ପରର ଅବସ୍ଥାକୁ) ଜାଣି ପାରିବେ ; (ମନେରଖ ଯେ) ଯେଉଁମାନେ ଅଲ୍ଲାହଙ୍କ ସହିତ ସାକ୍ଷାତ୍‌କୁ ଅସ୍ୱୀକାର କରିଥିଲେ ଓ ସତ୍‌ପଥଗାମୀ ହେଲେ ନାହିଁ, ସେମାନେ ହିଁ କ୍ଷତିଗ୍ରସ୍ତ ହେବେ ।

وَيَوْمَ يَحْشُرُهُمْ كَاَنْ لَّمْ يَلْبَثُوْٓا اِلَّا سَاعَةً مِّنَ النَّهَارِ يَتَعَارَفُوْنَ بَيْنَهُمْ ؕ قَدْ خَسِرَ الَّذِيْنَ كَذَّبُوْا بِلِقَآءِ اللّٰهِ وَمَا كَانُوْا مُهْتَدِيْنَ ﴿۴۶﴾

୪୭. ଏବଂ ଆମେ ସେମାନଙ୍କୁ ଯାହା (ଅର୍ଥାତ୍ ଯେଉଁ ଶାସ୍ତି ପ୍ରେରଣ) ସଂକ୍ରାନ୍ତରେ ଅଙ୍ଗୀକାର କରିଅଛୁ, ଯଦି ତାହାର କୌଣସି ଅଂଶ ତୁମକୁ (ତୁମ ଜୀବନକାଳ ମଧ୍ୟରେ) ଦେଖାଇ ଦେଉ (ତା'ହେଲେ ତୁମେ ମଧ୍ୟ ଦେଖି ପାରିବ), କିମ୍ବା ଯଦି ଆମେ ତୁମକୁ (ଏହି ଅବଧି ପୂର୍ବରୁ) ମୃତ୍ୟୁ ପ୍ରଦାନ କରୁ, ତେବେ (ମୃତ୍ୟୁ ପରେ ମଧ୍ୟ ତୁମେ ଏହାର ବାସ୍ତବତାକୁ ଜାଣି ପାରିବ) ଅବଶ୍ୟ ସେମାନଙ୍କୁ ଆମ ନିକଟକୁ ଫେରିବାକୁ ହେବ,

وَاِمَّا نُرِيَنَّكَ بَعْضَ الَّذِىْ نَعِدُهُمْ اَوْ نَتَوَفَّيَنَّكَ فَاِلَيْنَا

(ସେମାନେ ମଧ୍ୟ ସେଠାରେ ଏହାର ବାସ୍ତବତାକୁ ଜାଣି ପାରିବେ) ; ଏବଂ ସେମାନେ ଯାହା କିଛି କରୁଛନ୍ତି ଅଲ୍ଲାହ ସେ ବିଷୟରେ ଭଲରୂପେ ଅବଗତ ଅଛନ୍ତି ।

مَرْجِعُهُمْ ثُمَّ اللّٰهُ شَهِيْدٌ عَلٰى مَا يَفْعَلُوْنَ ﴿٤٧﴾

୪୮. ଏବଂ ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଜଣେ (ନା ଜଣେ) ରସୁଲ (ଆସିବା ଅନିବାର୍ଯ୍ୟ) ; ସୁତରାଂ ଯେତେବେଳେ ସେମାନଙ୍କର ରସୁଲ ଆସନ୍ତି, ସେତେବେଳେ ସେମାନଙ୍କ ମଧ୍ୟରେ ନ୍ୟାୟପୂର୍ବକ ନିଷ୍ପତ୍ତି କରାଯାଏ ; ଏବଂ ସେମାନଙ୍କ ପ୍ରତି କୌଣସି ଅତ୍ୟାଚାର କରାଯାଏ ନାହିଁ ।

وَلِكُلِّ اُمَّةٍ رَّسُوْلٌ ۚ فَاِذَا جَآءَ رَسُوْلُهُمْ قُضِيَ بَيْنَهُمْ بِالْقِسْطِ وَهُمْ لَا يُظْلَمُوْنَ ﴿٤٨﴾

୪୯. ଏବଂ ସେମାନେ କହନ୍ତି, "ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ଏହି ଅଙ୍ଗୀକାର କେବେ (ପୂର୍ଣ୍ଣ) ହେବ ?"

وَيَقُوْلُوْنَ مَتٰى هٰذَا الْوَعْدُ اِنْ كُنْتُمْ صٰدِقِيْنَ ﴿٤٩﴾

୫୦. ତୁମେ (ସେମାନଙ୍କୁ) କୁହ, "ଅଲ୍ଲାହଙ୍କ ଇଚ୍ଛା ବ୍ୟତୀତ ନିଜ ପାଇଁ କୌଣସି କ୍ଷତି ବା ଲାଭ (କରିବାର) ସାମର୍ଥ୍ୟ ଆମର ନାହିଁ ; (ଏହା ସତ୍ୟ ଯେ ଶାସ୍ତି ବିଧାନ ପାଇଁ) ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ଧାର୍ଯ୍ୟ ହୋଇଅଛି ; ଯେତେବେଳେ ସେହି ସମୟ ଉପସ୍ଥିତ ହୁଏ, ସେତେବେଳେ ସେମାନେ ତହିଁରୁ ଗୋଟିଏ ମୁହୂର୍ତ୍ତ ପଛକୁ ବା ଗୋଟିଏ ମୁହୂର୍ତ୍ତ ଆଗକୁ ରହି (ତହିଁରୁ ରକ୍ଷା ପାଇ) ପାରିବେ ନାହିଁ ।"

قُلْ لَّآ اَمْلِكُ لِنَفْسِيْ ضَرًّا وَّلَا نَفْعًا اِلَّا مَا شَآءَ اللّٰهُ ؕ لِكُلِّ اُمَّةٍ اَجَلٌ ؕ اِذَا جَآءَ اَجَلُهُمْ فَلَا يَسْتَاْخِرُوْنَ سَاعَةً وَّلَا يَسْتَقْدِمُوْنَ ﴿٥٠﴾

୫୧. ତୁମେ (ସେମାନଙ୍କୁ) କୁହ, "କହିଲ (ଭଲା), ଯଦି ରାତିରେ ବା ଦିନରେ ତାହାଙ୍କର (ଅର୍ଥାତ୍ ଅଲ୍ଲାହଙ୍କର) ଶାସ୍ତି ତୁମମାନଙ୍କ ପ୍ରତି ପ୍ରେରିତ ହୁଏ, ତେବେ ଅପରାଧୀମାନେ ତହିଁରୁ କିପରି ରକ୍ଷା ପାଇପାରିବେ ?"

قُلْ اَرَءَيْتُمْ اِنْ اَتٰىكُمْ عَذَابُهٗ بَيَاتًا اَوْ نَهَارًا مَّاذَا يَسْتَعْجِلُ مِنْهُ الْمُجْرِمُوْنَ ﴿٥١﴾

୫୨. "ତା'ପରେ ଯେତେବେଳେ ଏହା ଘଟିବ, କ'ଣ ତୁମେମାନେ ତାହା ଉପରେ ବିଶ୍ୱାସ କରିବ ? (ଏଥିରେ କିଛି ଲାଭ ନାହିଁ କାରଣ ସେତେବେଳେ ତୁମମାନଙ୍କୁ କୁହାଯିବ ଯେ) କ'ଣ ଏବେ (ତୁମେମାନେ ବିଶ୍ୱାସ କରୁଅଛ) ? ଅଥଚ (ଏହାର ଆଗମନ ପର୍ଯ୍ୟନ୍ତ) ଏହା ଶୀଘ୍ର ଘଟିବା ନିମନ୍ତେ ତୁମେମାନେ ଦାବି କରୁଥିଲ ।"

اَثُمَّ اِذَا مَا وَقَعَ اٰمَنْتُمْ بِهٖ ؕ آٰلْـٰٔنَ وَقَدْ كُنْتُمْ بِهٖ تَسْتَعْجِلُوْنَ ﴿٥٢﴾

୫୩. ତା'ପରେ ଯେଉଁମାନେ ଅତ୍ୟାଚାର କରିଥିବେ ସେମାନଙ୍କୁ କୁହା ଯିବ, "(ବର୍ତ୍ତମାନ) ତୁମେମାନେ ସ୍ଥାୟୀ ଶାସ୍ତି ଭୋଗ କର, ତୁମେମାନେ ଯାହା ଉପାର୍ଜନ କରିଥିଲ କ'ଣ ତାହା ବ୍ୟତୀତ ତୁମମାନଙ୍କୁ ଅନ୍ୟ କୌଣସି ବିଷୟର ପ୍ରତିଫଳ ପ୍ରଦାନ କରାଯାଉଛି ?"

ثُمَّ قِيْلَ لِلَّذِيْنَ ظَلَمُوْا ذُوْقُوْا عَذَابَ الْخُلْدِ ۚ هَلْ تُجْزَوْنَ اِلَّا بِمَا كُنْتُمْ تَكْسِبُوْنَ ﴿٥٣﴾

وَيَسْتَنْۢبِـُٔوْنَكَ اَحَقٌّ هُوَ ۭ قُلْ اِيْ وَرَبِّيْٓ اِنَّهٗ لَحَقٌّ ۚ وَمَآ اَنْتُمْ بِمُعْجِزِيْنَ ﴿٥٤﴾

୫୪. ଏବଂ ସେମାନେ ତୁମ୍ଭଙ୍କୁ ପଚାରୁଛନ୍ତି, "କ'ଣ ସତରେ ଏହା ଘଟିବ ?" ତୁମେ (ସେମାନଙ୍କୁ) କୁହ, "ହଁ, ଆମ୍ଭେ ନିଜ ପାଳନକର୍ତ୍ତାଙ୍କ ନାମରେ ଶପଥ – ପୂର୍ବକ କହୁଅଛୁ (ଯେ) ଏହା ନିଶ୍ଚୟ ଘଟିବ, ଏବଂ ତୁମେମାନେ (ଅଲ୍ଲାହ୍‌ଙ୍କ ଏହି କାର୍ଯ୍ୟକୁ) ବ୍ୟର୍ଥ କରିପାରିବ ନାହିଁ।"

ରୁ : ୬

وَلَوْ اَنَّ لِكُلِّ نَفْسٍ ظَلَمَتْ مَا فِي الْاَرْضِ لَافْتَدَتْ بِهٖ ۭ وَاَسَرُّوا النَّدَامَةَ لَمَّا رَاَوُا الْعَذَابَ ۚ وَقُضِيَ بَيْنَهُمْ بِالْقِسْطِ وَهُمْ لَا يُظْلَمُوْنَ ﴿٥٥﴾

୫୫. ଏବଂ ଯଦି ପ୍ରତ୍ୟେକ ଅତ୍ୟାଚାରୀ ବ୍ୟକ୍ତିକୁ ପୃଥିବୀର ସବୁ କିଛି ମିଳି ଯାଆନ୍ତା, ତେବେ ସେ ଏହାର ବିନିମୟରେ ନିଜକୁ ମୁକ୍ତ କରିବାରେ ପଶ୍ଚାତ୍‌ପଦ ହୁଅନ୍ତା ନାହିଁ (ମାତ୍ର ଏହା ସମ୍ଭବ ହେବ ନାହିଁ ; ଏବଂ ଯେତେବେଳେ ସେମାନେ ଶାସ୍ତିକୁ ଦେଖିବେ ସେତେବେଳେ (ନିଜର) ଲଜ୍ଜାକୁ ଲୁଚାଇବେ ; ଏବଂ ସେମାନଙ୍କ ମଧ୍ୟରେ ନ୍ୟାୟ-ପୂର୍ବକ ନିଷ୍ପତ୍ତି କରାହେବ ; ଏବଂ ସେମାନଙ୍କ ପ୍ରତି (କୌଣସି) ଅନ୍ୟାୟ କରାଯିବ ନାହିଁ।

اَلَآ اِنَّ لِلّٰهِ مَا فِي السَّمٰوٰتِ وَالْاَرْضِ ۭ اَلَآ اِنَّ وَعْدَ اللّٰهِ حَقٌّ وَّلٰكِنَّ اَكْثَرَهُمْ لَا يَعْلَمُوْنَ ﴿٥٦﴾

୫୬. ଶୁଣ ! ଯାହା କିଛି ଆକାଶ ଓ ପୃଥିବୀରେ ଅଛି, ବାସ୍ତବରେ ସେ ସମସ୍ତ ଅଲ୍ଲାହ୍‌ଙ୍କର ; ଅଲ୍ଲାହ୍‌ଙ୍କର ଅଙ୍ଗୀକାର ନିଶ୍ଚୟ ପାଳିତ ହେବ ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ।

هُوَ يُحْيٖ وَيُمِيْتُ وَاِلَيْهِ تُرْجَعُوْنَ ﴿٥٧﴾

୫୭. ସେ ଜୀବନ ପ୍ରଦାନ କରନ୍ତି ଓ ମୃତ୍ୟୁ ଘଟାନ୍ତି ; ଏବଂ ତୁମମାନଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆ ଯିବ।

يٰٓاَيُّهَا النَّاسُ قَدْ جَاۗءَتْكُمْ مَّوْعِظَةٌ مِّنْ رَّبِّكُمْ وَشِفَاۗءٌ لِّمَا فِي الصُّدُوْرِ ڏ وَهُدًى وَّرَحْمَةٌ لِّلْمُؤْمِنِيْنَ ﴿٥٨﴾

୫୮. ହେ ଲୋକମାନେ ! ତୁମମାନଙ୍କ ନିକଟକୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ଉପଦେଶ (ପୂର୍ଣ୍ଣ ଗ୍ରନ୍ଥ) ଆସି ଅଛି ଏବଂ ତୁମମାନଙ୍କ ଅନ୍ତରରେ ଯାହାକିଛି (ବ୍ୟାଧି) ଅଛି ତାହା (ସେ ସବୁର) ଆରୋଗ୍ୟ ପ୍ରଦାନକାରୀ ଏବଂ ବିଶ୍ୱାସକାରୀମାନଙ୍କ ପାଇଁ (ଏହା ଏକ) ସତ୍‌ପଥ ଓ କରୁଣା ଅଟେ।

قُلْ بِفَضْلِ اللّٰهِ وَبِرَحْمَتِهٖ فَبِذٰلِكَ فَلْيَفْرَحُوْا ۭ هُوَ خَيْرٌ مِّمَّا يَجْمَعُوْنَ ﴿٥٩﴾

୫୯. ତୁମେ (ସେମାନଙ୍କୁ) କୁହ, "ଏହା ଅଲ୍ଲାହ୍‌ଙ୍କର ଅନୁଗ୍ରହ ଓ ତାହାଙ୍କର କରୁଣା (ସହିତ ସଂଶ୍ଳିଷ୍ଟ) ଅଟେ ; ସୁତରାଂ ଏଥିରେ ହିଁ ସେମାନେ ଆନନ୍ଦିତ ହେବା ଉଚିତ ; ସେମାନେ ଯାହା କିଛି (ଧନ) ଠୁଳ କରୁଛନ୍ତି ତାହା ଅପେକ୍ଷା ଏହା ଉତ୍କୃଷ୍ଟତର।"

قُلْ اَرَءَيْتُمْ مَّآ اَنْزَلَ اللّٰهُ لَكُمْ مِّنْ رِّزْقٍ فَجَعَلْتُمْ

୬୦. ତୁମେ (ସେମାନଙ୍କୁ ) କୁହ, "କ'ଣ ତୁମେମାନେ (କେବେ) ବିଚାର କରିଅଛ ଯେ ଅଲ୍ଲାହ୍ ତୁମମାନଙ୍କ ସକାଶେ (ଆକାଶରୁ) ଆହାର ପ୍ରେରଣ କରିଛନ୍ତି; ତା'ପରେ ତୁମେମାନେ ତହିଁରୁ (କିଛି) ବୈଧ ଓ (ଅନ୍ୟ କିଛି) ଅବୈଧ

مِّنْهُ حَرَامًا وَّحَلٰلًا ؕ قُلْ آٰللّٰهُ اَذِنَ لَكُمْ اَمْ عَلَى اللّٰهِ تَفْتَرُوْنَ ﴿٦٠﴾

କରିଅଛ'' ; ତୁମେ (ସେମାନଙ୍କୁ) କୁହ, ''କ'ଣ ଅଲ୍ଲାହ (ଏ ବିଷୟରେ) ତୁମମାନଙ୍କୁ ଅନୁମତି ଦେଇଛନ୍ତି ନା ତୁମେମାନେ ଅଲ୍ଲାହଙ୍କ ପ୍ରତି (କେବଳ) ମିଥ୍ୟା ଆରୋପ କରୁଅଛ ?''

وَمَا ظَنُّ الَّذِيْنَ يَفْتَرُوْنَ عَلَى اللّٰهِ الْكَذِبَ يَوْمَ الْقِيٰمَةِ ؕ اِنَّ اللّٰهَ لَذُوْ فَضْلٍ عَلَى النَّاسِ وَلٰكِنَّ اَكْثَرَهُمْ لَا يَشْكُرُوْنَ ﴿٦١﴾

୬୧. ଏବଂ ଯେଉଁମାନେ ଅଲ୍ଲାହଙ୍କ ପ୍ରତି ମିଥ୍ୟା ଆରୋପ କରନ୍ତି କୟାମତ ସଂକ୍ରାନ୍ତରେ ସେମାନଙ୍କର କ'ଣ ଧାରଣା ଅଛି ? ବାସ୍ତବରେ ଅଲ୍ଲାହ ଲୋକମାନଙ୍କ ପ୍ରତି ଅନୁଗ୍ରହଶୀଳ ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ କୃତଜ୍ଞ ହୁଅନ୍ତି ।

ରୁ : ୬

وَمَا تَكُوْنُ فِيْ شَاْنٍ وَّمَا تَتْلُوْا مِنْهُ مِنْ قُرْاٰنٍ وَّلَا تَعْمَلُوْنَ مِنْ عَمَلٍ اِلَّا كُنَّا عَلَيْكُمْ شُهُوْدًا اِذْ تُفِيْضُوْنَ فِيْهِ ؕ وَمَا يَعْزُبُ عَنْ رَّبِّكَ مِنْ مِّثْقَالِ ذَرَّةٍ فِي الْاَرْضِ وَلَا فِي السَّمَآءِ وَلَاۤ اَصْغَرَ مِنْ ذٰلِكَ وَلَاۤ اَكْبَرَ اِلَّا فِيْ كِتٰبٍ مُّبِيْنٍ ﴿٦٢﴾

୬୨. ଏବଂ ତୁମେ ଯେ କୌଣସି କାର୍ଯ୍ୟରେ (ଯେବେ ବି ଲିପ୍ତ) ରହୁଥାଅ ଓ ତୁମେ ଏହି କୋରାନ ଗ୍ରନ୍ଥରୁ ଯେ କୌଣସି ଅଂଶ ଆବୃତ୍ତି କରୁଥାଅ ଏବଂ (ହେ ଲୋକମାନେ !) ତୁମେମାନେ (ସମସ୍ତେ ଅନ୍ୟ) କୌଣସି କାର୍ଯ୍ୟ କରୁଥାଅ, (ତେବେ ଏ ସକଳ ପରିସ୍ଥିତିରେ) ଯେତେବେଳେ ତୁମେମାନେ (ନିଜ କାର୍ଯ୍ୟରେ ସମ୍ପୂର୍ଣ୍ଣ) ଧ୍ୟାନ ଦେଇ ଲିପ୍ତ ରହ (ସେତେବେଳେ) ଆମେ ତୁମମାନଙ୍କୁ ଲକ୍ଷ୍ୟ କରୁଥାଉ ଏବଂ ଆକାଶ ବା ପୃଥିବୀର ଅଣୁମାତ୍ର ବସ୍ତୁ ମଧ୍ୟ ତୁମ ପାଳନକର୍ତ୍ତାଙ୍କ ନିକଟରେ ଗୋପନ ରହେ ନାହିଁ ; ଏବଂ ଅଣୁ ଠାରୁ କ୍ଷୁଦ୍ର ବା ଅଣୁଠାରୁ ବୃହତ୍ ଏପରି କୌଣସି ବସ୍ତୁ ନାହିଁ, ଯାହା (ପ୍ରତ୍ୟେକ ଗୂଢ଼ ରହସ୍ୟକୁ) ପ୍ରକାଶିତ କରୁଥିବା ଏକ ଗ୍ରନ୍ଥ ମଧ୍ୟରେ (ଲିପିବଦ୍ଧ ଓ ବର୍ଣ୍ଣିତ ହୋଇ) ନାହିଁ ।

اَلَاۤ اِنَّ اَوْلِيَآءَ اللّٰهِ لَا خَوْفٌ عَلَيْهِمْ وَلَا هُمْ يَحْزَنُوْنَ ﴿٦٣﴾

୬୩. ଶୁଣ ! ଯେଉଁମାନେ ଅଲ୍ଲାହଙ୍କର ପ୍ରକୃତ ବନ୍ଧୁ ସେମାନଙ୍କର କୌଣସି ଭୟ ନାହିଁ କି ସେମାନେ ଦୁଃଖିତ ହେବେ ନାହିଁ,

الَّذِيْنَ اٰمَنُوْا وَكَانُوْا يَتَّقُوْنَ ﴿٦٤﴾

୬୪. (ଅର୍ଥାତ୍ ସେମାନେ) ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ଧର୍ମଭୀରୁତା ଅବଲମ୍ବନ କରିଛନ୍ତି,

لَهُمُ الْبُشْرٰى فِي الْحَيٰوةِ الدُّنْيَا وَفِي الْاٰخِرَةِ ؕ لَا تَبْدِيْلَ لِكَلِمٰتِ اللّٰهِ ؕ ذٰلِكَ هُوَ الْفَوْزُ الْعَظِيْمُ ﴿٦٥﴾

୬୫. ସେମାନଙ୍କ ସକାଶେ (ଏହି) ପାର୍ଥିବ ଜୀବନରେ ତଥା ପରକାଳରେ (ଅଲ୍ଲାହଙ୍କ ସମୀପରୁ) ସୁସମାଚାର ରହିଅଛି ; ଅଲ୍ଲାହଙ୍କ ବାଣୀରେ (କଦାପି) କୌଣସି ପରିବର୍ତ୍ତନ (ହୁଏ) ନାହିଁ ; ଏବଂ ଏହା ହିଁ ମହାନ୍ ସଫଳତା ।

୬୬. ଏବଂ ସେମାନଙ୍କର କୌଣସି କଥା ତୁମ୍ଭଙ୍କୁ ଦୁଃଖିତ[୧] ନ କରୁ ; (କାରଣ) ଅଲ୍ଲାଃ ହିଁ ସକଳ ଶକ୍ତି ଓ ସମ୍ମାନର ଆଧାର ; ସେ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَلَا يَحْزُنْكَ قَوْلُهُمْ ۘ اِنَّ الْعِزَّةَ لِلّٰهِ جَمِيْعًا ؕ هُوَ السَّمِيْعُ الْعَلِيْمُ ﴿۶۶﴾

୬୭. ଶୁଣ ! ଯାହା କିଛି ଆକାଶରେ ଅଛି ଓ ଯାହା କିଛି ପୃଥିବୀରେ ଅଛି, ସେ ସମସ୍ତ ଅଲ୍ଲାଃଙ୍କର ; ଏବଂ ଯେଉଁମାନେ ଅଲ୍ଲାଃଙ୍କୁ ଛାଡ଼ି ଅନ୍ୟମାନଙ୍କୁ ଡାକନ୍ତି ସେମାନେ (ପ୍ରକୃତରେ) ସେମାନଙ୍କର (ତଥାକଥିତ) ଉପାସ୍ୟଙ୍କର ଅନୁସରଣ କରନ୍ତି ନାହିଁ ; ବରଂ ସେମାନେ କେବଳ ନିଜ ଭ୍ରାନ୍ତ ଧାରଣାର ଅନୁସରଣ କରନ୍ତି, ଏବଂ ସେମାନେ କେବଳ ଅନୁମାନ ଦ୍ୱାରା କାର୍ଯ୍ୟ କରନ୍ତି ।

اَلَاۤ اِنَّ لِلّٰهِ مَنْ فِى السَّمٰوٰتِ وَمَنْ فِى الْاَرْضِ ؕ وَمَا يَتَّبِعُ الَّذِيْنَ يَدْعُوْنَ مِنْ دُوْنِ اللّٰهِ شُرَكَآءَ ؕ اِنْ يَّتَّبِعُوْنَ اِلَّا الظَّنَّ وَاِنْ هُمْ اِلَّا يَخْرُصُوْنَ ﴿۶۷﴾

୬୮. ସେ ହିଁ ତୁମମାନଙ୍କ ପାଇଁ ରାତିକୁ ଏଥି ସକାଶେ କରିଛନ୍ତି ଯଦ୍ଦ୍ୱାରା ତୁମେମାନେ ତହିଁରେ ବିଶ୍ରାମ କରିପାରିବ ଏବଂ (କାର୍ଯ୍ୟ କରିବାପାଇଁ) ଦିନକୁ ଆଲୋକିତ କରିଛନ୍ତି ; ଯେଉଁ ଲୋକମାନେ (ଏହି ସତ୍ୟବାଣୀକୁ) ଶୁଣନ୍ତି ସେମାନଙ୍କ ପାଇଁ ନିଶ୍ଚୟ ଏଥିରେ ନିଦର୍ଶନମାନ ରହିଅଛି ।

هُوَ الَّذِىْ جَعَلَ لَكُمُ الَّيْلَ لِتَسْكُنُوْا فِيْهِ وَالنَّهَارَ مُبْصِرًا ؕ اِنَّ فِىْ ذٰلِكَ لَاٰيٰتٍ لِّقَوْمٍ يَّسْمَعُوْنَ ﴿۶۸﴾

୬୯. ସେମାନେ କହନ୍ତି ଯେ ଅଲ୍ଲାଃ (ମଧ୍ୟ) ସନ୍ତାନ ଗ୍ରହଣ କରିଛନ୍ତି ; ଅଲ୍ଲାଃ (ଏ ବିଷୟର ଉର୍ଦ୍ଧ୍ୱରେ ଓ) ପବିତ୍ର ; ସେ ଆତ୍ମନିର୍ଭରଶୀଳ ; ଯାହା କିଛି ଆକାଶରେ ଅଛି, ଯାହା କିଛି ପୃଥିବୀରେ ଅଛି, ସେ ସବୁ ତାହାଙ୍କର ; ଏ (ଦାବି) ସଂକ୍ରାନ୍ତରେ ତୁମମାନଙ୍କ ନିକଟରେ କୌଣସି ପ୍ରମାଣ ନାହିଁ ; କ'ଣ ଯେଉଁ ବିଷୟରେ ତୁମମାନଙ୍କର ଜ୍ଞାନ ନାହିଁ, ତୁମେମାନେ ଅଲ୍ଲାଃଙ୍କ ସଂକ୍ରାନ୍ତରେ ତାହା କହୁଅଛ ?

قَالُوا اتَّخَذَ اللّٰهُ وَلَدًا سُبْحٰنَهٗ ؕ هُوَ الْغَنِىُّ ؕ لَهٗ مَا فِى السَّمٰوٰتِ وَمَا فِى الْاَرْضِ ؕ اِنْ عِنْدَكُمْ مِّنْ سُلْطٰنٍۢ بِهٰذَا ؕ اَتَقُوْلُوْنَ عَلَى اللّٰهِ مَا لَا تَعْلَمُوْنَ ﴿۶۹﴾

୭୦. ତୁମ୍ଭେ (ସେମାନଙ୍କୁ) କୁହ, ''ଯେଉଁମାନେ ଅଲ୍ଲାଃଙ୍କ ପ୍ରତି ମିଥ୍ୟା ଆରୋପ କରନ୍ତି ସେମାନେ କଦାପି କୃତକାର୍ଯ୍ୟ ହେବେ ନାହିଁ ।''

قُلْ اِنَّ الَّذِيْنَ يَفْتَرُوْنَ عَلَى اللّٰهِ الْكَذِبَ لَا يُفْلِحُوْنَ ﴿۷۰﴾ؕ

୭୧. ପୃଥିବୀରେ (ସେମାନେ କିଛି କାଳ ପାଇଁ) ଲାଭବାନ୍ ହେବେ ; ଏହାପରେ ସେମାନଙ୍କୁ ଆମ୍ଭ ନିକଟକୁ ପ୍ରତ୍ୟାବର୍ତ୍ତନ କରିବାକୁ ହେବ ; ତତ୍ପରେ ସେମାନେ ଅବିଶ୍ୱାସ କରିଥିବା ହେତୁ ଆମ୍ଭେ ସେମାନଙ୍କୁ କଠୋର ଶାସ୍ତି ଆସ୍ୱାଦନ କରାଇବୁ ।

مَتَاعٌ فِى الدُّنْيَا ثُمَّ اِلَيْنَا مَرْجِعُهُمْ ثُمَّ نُذِيْقُهُمُ الْعَذَابَ الشَّدِيْدَ بِمَا كَانُوْا يَكْفُرُوْنَ ﴿۷۱﴾

୧. ଅଲ୍ଲାଃଙ୍କ ବନ୍ଧୁମାନେ କେବେ ହେଁ ଦୁଃଖିତ ନ ହେବା ବିଷୟରେ ପୂର୍ବବର୍ତ୍ତୀ ଆୟତ ୬୩ରେ ବର୍ଣ୍ଣନା କରାଯାଇଛି ଅଥଚ ଏଠାରେ ହଜରତ ମହମ୍ମଦଙ୍କୁ ଦୁଃଖିତ ନ ହେବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ପ୍ରକୃତପକ୍ଷେ ସେ ନିଜ ପାଇଁ ଦୁଃଖିତ ହେଉ ନ ଥିଲେ ବରଂ ସାରା ମାନବ ସମାଜର ହିତ ପାଇଁ କ୍ରନ୍ଦନ ଓ ବିଳାପ କରୁଥିଲେ ତଥା ଦୁଃଖରେ ମ୍ରିୟମାଣ ହୋଇ ଯାଉଥିଲେ । ସମୟେ ସମୟେ ସେ ଅନ୍ୟମାନଙ୍କ ସକାଶେ ଏତେ ବିବ୍ରତ ହୋଇ ପଡୁଥିଲେ ଯେ ତାଙ୍କର ମୃତ୍ୟୁ ହୋଇଯାଇପାରେ ବୋଲି ତାଙ୍କୁ ସତର୍କ କରାଇ ଦିଆଯାଇଥିଲା (୧୮:୭ ଦ୍ରଷ୍ଟବ୍ୟ) । ଅଲ୍ଲାଃଙ୍କ ଅବତାରମାନେ ଦୟାର ମୂର୍ତ୍ତିମନ୍ତ ପ୍ରତୀକ । କିନ୍ତୁ ହାୟ ! ଯେଉଁମାନଙ୍କ ସକାଶେ ସେମାନେ ଏତେ ବିବ୍ରତ ସେମାନେ ସେହି ଅବତାରମାନଙ୍କୁ କେବଳ ନିର୍ଯ୍ୟାତିତ କରନ୍ତି ନାହିଁ ବରଂ ହତ୍ୟା କରିବାକୁ ସତତ ଚେଷ୍ଟିତ ହୁଅନ୍ତି ।

ରୁ : ୮

୭୨. ଏବଂ ତୁମେ ସେମାନଙ୍କୁ ନୁହଙ୍କ ବିଷୟ ଶୁଣାଅ ; କାରଣ ସେ (ମଧ୍ୟ) ନିଜ ସମ୍ପ୍ରଦାୟକୁ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ଯଦି ତୁମମାନଙ୍କ ପକ୍ଷରେ ଆମ୍ଭର (ଅଲ୍ଲାହଙ୍କ ପ୍ରଦତ୍ତ) ମର୍ଯ୍ୟାଦା ଏବଂ ଅଲ୍ଲାହଙ୍କ ନିଦର୍ଶନମାନଙ୍କ ମାଧ୍ୟମରେ ତୁମମାନଙ୍କୁ (ତୁମମାନଙ୍କ କର୍ତ୍ତବ୍ୟ) ସ୍ମରଣ କରାଇବା ଅସହ୍ୟ ବୋଧ ହୁଏ, ତେବେ ମନେରଖ ଯେ ଆମ୍ଭେ ଅଲ୍ଲାହଙ୍କ ଉପରେ ହିଁ ନିର୍ଭର କରୁଅଛୁ ; ସୁତରାଂ ତୁମେମାନେ ନିଜର ଯୋଜନା ଓ ନିଜର ମନୋନୀତ ଉପାସ୍ୟମାନଙ୍କୁ ଏକତ୍ର କର, ଏବଂ ତୁମମାନଙ୍କର ଯୋଜନା ତୁମମାନଙ୍କ ନିକଟରେ ସନ୍ଦେହାଚ୍ଛନ୍ନ ନ ରହୁ ; ତତ୍ପରେ ଆମ୍ଭ ବିରୁଦ୍ଧରେ ତାହାକୁ କାର୍ଯ୍ୟକାରୀ କର ଏବଂ ଆମ୍ଭଙ୍କୁ ଅବସର ଦିଅ ନାହିଁ ।"

وَاتْلُ عَلَيْهِمْ نَبَاَ نُوْحٍ ۘ اِذْ قَالَ لِقَوْمِهٖ يٰقَوْمِ اِنْ كَانَ كَبُرَ عَلَيْكُمْ مَّقَامِيْ وَتَذْكِيْرِيْ بِاٰيٰتِ اللّٰهِ فَعَلَى اللّٰهِ تَوَكَّلْتُ فَاَجْمِعُوْۤا اَمْرَكُمْ وَشُرَكَآءَكُمْ ثُمَّ لَا يَكُنْ اَمْرُكُمْ عَلَيْكُمْ غُمَّةً ثُمَّ اقْضُوْۤا اِلَيَّ وَلَا تُنْظِرُوْنِ ﴿٧٢﴾

୭୩. "ତଥାପି ଯଦି ତୁମେମାନେ ଫେରି ଯାଅ, ତହିଁରେ ଆମ୍ଭର କୌଣସି କ୍ଷତି ହେବ ନାହିଁ (ବରଂ ତୁମମାନଙ୍କର କ୍ଷତି ହେବ), କାରଣ ଆମ୍ଭେ (ଏହା ବଦଳରେ) ତୁମମାନଙ୍କ ନିକଟରୁ କୌଣସି ପୁରସ୍କାର ଭିକ୍ଷା କରି ନାହୁଁ, ଆମ୍ଭର ପୁରସ୍କାର ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ପାଖରେ ନାହିଁ, ଏବଂ ଆମ୍ଭଙ୍କୁ (ତାହାଙ୍କର) ସମ୍ପୂର୍ଣ୍ଣ ଆତ୍ମସମର୍ପଣକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବାକୁ ଆଦେଶ କରାଯାଇଅଛି ।"

فَاِنْ تَوَلَّيْتُمْ فَمَا سَاَلْتُكُمْ مِّنْ اَجْرٍ ۗ اِنْ اَجْرِيَ اِلَّا عَلَى اللّٰهِ ۙ وَاُمِرْتُ اَنْ اَكُوْنَ مِنَ الْمُسْلِمِيْنَ ﴿٧٣﴾

୭୪. ଏହାପରେ ମଧ୍ୟ ସେମାନେ ତାହାଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ, ସୁତରାଂ ଆମ୍ଭେ ତାହାଙ୍କୁ ଓ ନୌକାରେ ଥିବା ତାହାଙ୍କର ସଙ୍ଗୀମାନଙ୍କୁ ରକ୍ଷା କରିଥିଲୁ, ଏବଂ ଆମ୍ଭେ ସେମାନଙ୍କୁ ପୂର୍ବବର୍ତ୍ତୀ ଲୋକମାନଙ୍କ ଉତ୍ତରାଧିକାରୀ କରିଥିଲୁ, ଏବଂ ଯେଉଁମାନେ ଆମ୍ଭର ନିଦର୍ଶନମାନଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ, ସେମାନଙ୍କୁ ଆମ୍ଭେ ଜଳରେ ବୁଡ଼ାଇ ଦେଇଥିଲୁ ; ସୁତରାଂ ଯେଉଁମାନଙ୍କୁ (ଏହି ଶାସ୍ତି ସଂକ୍ରାନ୍ତରେ) ସଚେତନ କରାଇ ଦିଆଯାଇଥିଲା, ସେମାନଙ୍କ ପରିଣାମ କିପରି ହୋଇଥିଲା ତାହା ଲକ୍ଷ୍ୟ କର ।

فَكَذَّبُوْهُ فَنَجَّيْنٰهُ وَمَنْ مَّعَهٗ فِي الْفُلْكِ وَجَعَلْنٰهُمْ خَلٰٓئِفَ وَاَغْرَقْنَا الَّذِيْنَ كَذَّبُوْا بِاٰيٰتِنَا ۚ فَانْظُرْ كَيْفَ كَانَ عَاقِبَةُ الْمُنْذَرِيْنَ ﴿٧٤﴾

---

୧. ଅଲ୍ଲାହ ସ୍ୱେଚ୍ଛାଚାରପୂର୍ବକ ଅବିଶ୍ୱାସକାରୀମାନଙ୍କ ହୃଦୟରେ ମୋହର ଲଗାନ୍ତି ନାହିଁ ବରଂ ସେମାନେ ନିଜ ନିଜ ଜିଦ୍‌ରେ ଅଟଳ ରହି ଓ ଅନ୍ୟାୟ ଭାବରେ ଅଲ୍ଲାହଙ୍କ ବାଣୀକୁ ପ୍ରତ୍ୟାଖ୍ୟାନ କରି ନିଜକୁ ସତ୍‌ପଥ ପ୍ରାପ୍ତିରୁ ବଞ୍ଚିତ କରିଥାନ୍ତି । ସେମାନେ ନିଜେ ନିଜର ଭାଗ୍ୟ ନିର୍ମାତା ।

୭୫. ତାହାଙ୍କ ପରେ ଆମ୍ଭେ ସେମାନଙ୍କ ନିଜ (ନିଜ) ସମ୍ପ୍ରଦାୟ ନିକଟକୁ କେତେକ ରସୁଲଙ୍କୁ ପ୍ରେରଣ କରିଥିଲୁ, ଏବଂ ସେମାନେ ସେମାନଙ୍କ ନିକଟକୁ ସ୍ପଷ୍ଟ ନିଦର୍ଶନ ସହିତ ଆସିଥିଲେ ; କିନ୍ତୁ ସେମାନେ ଏହି (ସତ୍ୟ) ସଂକ୍ରାନ୍ତରେ ପୂର୍ବରୁ ମିଥ୍ୟା ଆରୋପ କରିଥିବା ହେତୁ, ସେମାନେ (ତହିଁରେ) ବିଶ୍ୱାସ କଲେ ନାହିଁ, ଆମ୍ଭେ ସୀମାଲଙ୍ଘନକାରୀମାନଙ୍କ ହୃଦୟରେ ଏହିପରି ଭାବରେ ମୋହର ମାରି ଦେଉ ।

ثُمَّ بَعَثْنَا مِنْۢ بَعْدِهٖ رُسُلًا اِلٰی قَوْمِهِمْ فَجَآءُوْهُمْ بِالْبَيِّنٰتِ فَمَا كَانُوْا لِيُؤْمِنُوْا بِمَا كَذَّبُوْا بِهٖ مِنْ قَبْلُ ؕ كَذٰلِكَ نَطْبَعُ عَلٰی قُلُوْبِ الْمُعْتَدِيْنَ ﴿۷۵﴾

୭୬. ତା'ପରେ ଆମ୍ଭେ ସେମାନଙ୍କ ଉତ୍ତାରୁ ମୁସା ଓ ହାରୁନ୍‌ଙ୍କୁ ଆମ୍ଭର ନିଦର୍ଶନମାନଙ୍କ ସହିତ ଫିରଔନ ଓ ତାଙ୍କ ସମ୍ପ୍ରଦାୟର ମୁଖ୍ୟ ବ୍ୟକ୍ତିମାନଙ୍କ ନିକଟକୁ ପ୍ରେରଣ କରିଥିଲୁ, କିନ୍ତୁ ସେମାନେ ଗର୍ବ କରିଥିଲେ ; ଏବଂ (ଆଦ୍ୟରୁ) ସେମାନେ ଏକ ଅପରାଧୀ ସମ୍ପ୍ରଦାୟ ଥିଲେ ।

ثُمَّ بَعَثْنَا مِنْۢ بَعْدِهِمْ مُّوْسٰی وَهٰرُوْنَ اِلٰی فِرْعَوْنَ وَمَلَا۠ئِهٖ بِاٰيٰتِنَا فَاسْتَكْبَرُوْا وَكَانُوْا قَوْمًا مُّجْرِمِيْنَ ﴿۷۶﴾

୭୭. ଏହାପରେ ଯେତେବେଳେ ଆମ୍ଭ ନିକଟରୁ ସେମାନଙ୍କ ନିକଟରେ ସତ୍ୟ ଉପସ୍ଥିତ ହେଲା, ସେମାନେ କହିଲେ, ''ବାସ୍ତବରେ ଏହା ଏକ ପ୍ରକାଶ୍ୟ ପ୍ରତାରଣା ।''

فَلَمَّا جَآءَهُمُ الْحَقُّ مِنْ عِنْدِنَا قَالُوْۤا اِنَّ هٰذَا لَسِحْرٌ مُّبِيْنٌ ﴿۷۷﴾

୭୮. ମୁସା କହିଲେ, ''କ'ଣ ତୁମେମାନେ ସତ୍ୟ ସଂକ୍ରାନ୍ତରେ ଏପରି କହୁଅଛ ଯେତେବେଳେ କି ତାହା ତୁମମାନଙ୍କ ନିକଟକୁ ଆସିଅଛି ? କ'ଣ ଏହା ପ୍ରତାରଣା (ହୋଇପାରେ) ? ଅଥଚ ପ୍ରତାରକମାନେ କୃତକାର୍ଯ୍ୟ ହୁଅନ୍ତି ନାହିଁ ।''

قَالَ مُوْسٰۤی اَتَقُوْلُوْنَ لِلْحَقِّ لَمَّا جَآءَكُمْ ؕ اَسِحْرٌ هٰذَا ؕ وَلَا يُفْلِحُ السّٰحِرُوْنَ ﴿۷۸﴾

୭୯. ସେମାନେ କହିଲେ, ''ଆମେମାନେ ଆମମାନଙ୍କର ପୂର୍ବ ପୁରୁଷଙ୍କୁ ଯେଉଁ ପଥ ଅନୁସରଣ କରିବା ଦେଖିଅଛୁ କ'ଣ ତୁମେ ଆମମାନଙ୍କୁ ସେଥିରୁ ଫେରାଇ ନେବା ପାଇଁ ଓ ଦେଶରେ ତୁମେ ଦୁହେଁ ଶ୍ରେଷ୍ଠତା ଲାଭ କରିବା ପାଇଁ ଆମମାନଙ୍କ ନିକଟକୁ ଆସିଅଛ ? ଏବଂ ଆମେମାନେ ତ ତୁମ ଉପରେ କଦାପି ବିଶ୍ୱାସ କରିବୁ ନାହିଁ ।''

قَالُوْۤا اَجِئْتَنَا لِتَلْفِتَنَا عَمَّا وَجَدْنَا عَلَيْهِ اٰبَآءَنَا وَتَكُوْنَ لَكُمَا الْكِبْرِيَآءُ فِي الْاَرْضِ ؕ وَمَا نَحْنُ لَكُمَا بِمُؤْمِنِيْنَ ﴿۷۹﴾

୮୦. ଏବଂ ଫିରଔନ (ନିଜ ଲୋକମାନଙ୍କୁ) କହିଲେ, ''ତୁମେମାନେ ମୋ ନିକଟକୁ (ସାରା ଦେଶର) ଅଭିଜ୍ଞ ଯାଦୁକରଙ୍କୁ ଘେନି ଆସ ।''

وَقَالَ فِرْعَوْنُ ائْتُوْنِيْ بِكُلِّ سٰحِرٍ عَلِيْمٍ ﴿۸۰﴾

୮୧. ସୁତରାଂ ଯେତେବେଳେ ଯାଦୁକରମାନେ ଉପସ୍ଥିତ ହେଲେ ମୁସା ସେମାନଙ୍କୁ କହିଲେ, ''ଯାହା କିଛି ତୁମମାନଙ୍କର ନିକ୍ଷେପ କରିବାକୁ ଅଛି, ତାହା ନିକ୍ଷେପ କର ।''

فَلَمَّا جَآءَ السَّحَرَةُ قَالَ لَهُمْ مُّوْسٰۤی اَلْقُوْا مَاۤ اَنْتُمْ مُّلْقُوْنَ ﴿۸۱﴾

୮୨. ତା'ପରେ ଯେତେବେଳେ ସେମାନେ ଯାହା ନିକ୍ଷେପ କରିବା କଥା ନିକ୍ଷେପ କଲେ ସେତେବେଳେ ମୁସା କହିଲେ, "ଯାହା କିଛି ତୁମେମାନେ ଉପସ୍ଥାପିତ କରିଅଛ, ତାହା ପ୍ରତାରଣା ମାତ୍ର ; ଅଲ୍ଲାହ ଏହାକୁ ନିଶ୍ଚୟ ନଷ୍ଟ କରିଦେବେ ; ବାସ୍ତବରେ ଅଲ୍ଲାହ ବିଶୃଙ୍ଖଳାକାରୀଙ୍କ କାର୍ଯ୍ୟକଳାପକୁ କେବେ ହେଁ ସଫଳ କରାନ୍ତି ନାହିଁ ।"

فَلَمَّآ اَلْقَوْا قَالَ مُوْسٰى مَا جِئْتُمْ بِهِ ۙ السِّحْرُ ؕ اِنَّ اللّٰهَ سَيُبْطِلُهٗ ؕ اِنَّ اللّٰهَ لَا يُصْلِحُ عَمَلَ الْمُفْسِدِيْنَ ۝

୮୩. "ଏବଂ ଅଲ୍ଲାହ ନିଜ ବାଣୀ ମାଧ୍ୟମରେ ସତ୍ୟକୁ ପ୍ରତିଷ୍ଠା କରନ୍ତି ଯଦ୍ୟପି ଅପରାଧୀମାନେ ଏହାକୁ ପସନ୍ଦ କରନ୍ତି ନାହିଁ ।"

وَ يُحِقُّ اللّٰهُ الْحَقَّ بِكَلِمٰتِهٖ وَلَوْ كَرِهَ الْمُجْرِمُوْنَ ۝

ରୁ : ୯

୮୪. ଏବଂ ତାହାଙ୍କ ସମ୍ପ୍ରଦାୟର କେବଳ କେତେକ ଯୁବକ ତାହାଙ୍କ ଉପରେ ବିଶ୍ବାସ କରିଥିଲେ ; ଅନ୍ୟମାନେ ଫିରଔନ ଓ ତାହାର ସମ୍ପ୍ରଦାୟଭୁକ୍ତ ମୁଖ୍ୟ ବ୍ୟକ୍ତିଙ୍କ ଭୟରେ ମୁସାଙ୍କର ଆଜ୍ଞାବହ ହେଲେ ନାହିଁ କାଳେ ସେମାନେ ସେମାନଙ୍କୁ ବିପଦରେ ପକାଇବେ ; ଏବଂ ଫିରଔନ ନିଶ୍ଚିତ ରୂପେ ପୃଥିବୀରେ ପ୍ରବଳ ପ୍ରତାପୀ ଥିଲା ଏବଂ ବାସ୍ତବରେ ସେ ସୀମାଲଙ୍ଘନକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ।

فَمَآ اٰمَنَ لِمُوْسٰۤى اِلَّا ذُرِّيَّةٌ مِّنْ قَوْمِهٖ عَلٰى خَوْفٍ مِّنْ فِرْعَوْنَ وَ مَلَا۟ئِهِمْ اَنْ يَّفْتِنَهُمْ ؕ وَ اِنَّ فِرْعَوْنَ لَعَالٍ فِى الْاَرْضِ ۚ وَ اِنَّهٗ لَمِنَ الْمُسْرِفِيْنَ ۝

୮୫. ଏବଂ ମୁସା (ନିଜ ସମ୍ପ୍ରଦାୟକୁ) କହିଲେ, "ହେ ଆମର ସମ୍ପ୍ରଦାୟ ! ଯଦି (ଏହା ସତ ଯେ) ତୁମେମାନେ ଅଲ୍ଲାହଙ୍କ ଉପରେ ବିଶ୍ବାସ କରିଅଛ ଓ ଯଦି ତୁମେମାନେ (ତାହାଙ୍କର) ପ୍ରକୃତ ଆଜ୍ଞାବହ ଅଟ, ତେବେ ତାହାଙ୍କ ଉପରେ ହିଁ ଭରସା କର ।"

وَ قَالَ مُوْسٰى يٰقَوْمِ اِنْ كُنْتُمْ اٰمَنْتُمْ بِاللّٰهِ فَعَلَيْهِ تَوَكَّلُوْۤا اِنْ كُنْتُمْ مُّسْلِمِيْنَ ۝

୮୬. ତେଣୁ ସେମାନେ କହିଲେ, "ଆମେମାନେ ଅଲ୍ଲାହଙ୍କ ଉପରେ ହିଁ ଭରସା କରୁଅଛୁ ; ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କୁ (ସେହି) ଅତ୍ୟାଚାରୀ ଲୋକମାନଙ୍କ ବିଶୃଙ୍ଖଳାର ମାଧ୍ୟମ କର ନାହିଁ ।"

فَقَالُوْا عَلَى اللّٰهِ تَوَكَّلْنَا ۚ رَبَّنَا لَا تَجْعَلْنَا فِتْنَةً لِّلْقَوْمِ الظّٰلِمِيْنَ ۝

୮୭. "ଏବଂ ନିଜ କରୁଣା ଦ୍ବାରା ଆମମାନଙ୍କୁ ଅବିଶ୍ବାସକାରୀ ଲୋକମାନଙ୍କ ଠାରୁ ରକ୍ଷାକର ।"

وَ نَجِّنَا بِرَحْمَتِكَ مِنَ الْقَوْمِ الْكٰفِرِيْنَ ۝

୮୮. ଏବଂ ଆମେ ମୁସା ଓ ତାହାଙ୍କ ଭାଇଙ୍କ ପ୍ରତି ଓହି ପ୍ରେରଣ କରି କହିଥିଲୁ, "ତୁମେମାନେ ମିଶର (ଦେଶ)ରେ ନିଜ ଲୋକମାନଙ୍କ ପାଇଁ କେତେକ ବାସସ୍ଥାନ ନିର୍ଦ୍ଦିଷ୍ଟ କର, ଏବଂ ତୁମେମାନେ ସମସ୍ତେ ନିଜ ନିଜ ଗୃହକୁ (ପରସ୍ପରର)

وَ اَوْحَيْنَاۤ اِلٰى مُوْسٰى وَ اَخِيْهِ اَنْ تَبَوَّاٰ لِقَوْمِكُمَا

بِمِصْرَ بُيُوْتًا وَّ اجْعَلُوْا بُيُوْتَكُمْ قِبْلَةً وَّ اَقِيْمُوا الصَّلٰوةَ ؕ وَ بَشِّرِ الْمُؤْمِنِيْنَ ﴿۸۸﴾

ସମ୍ମୁଖୀନ କରାଇ ନିର୍ମାଣ କର, ଏବଂ (ସେଠାରେ) ସୁଚାରୁ ରୂପେ ନମାଜ ପାଠ କର ; ଏବଂ (ହେ ମୁସା !) ତୁମେ ବିଶ୍ୱାସକାରୀମାନଙ୍କୁ (ସଫଳତା ସମ୍ବନ୍ଧରେ) ସୁସମାଚାର ଦିଅ ।''

وَ قَالَ مُوْسٰى رَبَّنَاۤ اِنَّكَ اٰتَيْتَ فِرْعَوْنَ وَ مَلَاَهٗ زِيْنَةً وَّ اَمْوَالًا فِى الْحَيٰوةِ الدُّنْيَا ۙ رَبَّنَا لِيُضِلُّوْا عَنْ سَبِيْلِكَ ۚ رَبَّنَا اطْمِسْ عَلٰۤى اَمْوَالِهِمْ وَ اشْدُدْ عَلٰى قُلُوْبِهِمْ فَلَا يُؤْمِنُوْا حَتّٰى يَرَوُا الْعَذَابَ الْاَلِيْمَ ﴿۸۹﴾

୮୯. ଏବଂ ମୁସା କହିଲେ, ''ହେ ଆମ୍ଭର ପାଳନକର୍ତ୍ତା ! ତୁମେ ଫିରଔନ ଓ ତା ସମ୍ପ୍ରଦାୟର ମୁଖ୍ୟ ବ୍ୟକ୍ତିମାନଙ୍କୁ ପାର୍ଥିବ ଜୀବନରେ ଶୋଭା (ବର୍ଦ୍ଧକ ସାମଗ୍ରୀ) ଓ ଧନ ସମ୍ପତ୍ତି ପ୍ରଦାନ କରିଅଛ ; ସେ ଆମ୍ଭର ପାଳନକର୍ତ୍ତା ! ଫଳରେ ସେମାନେ ତୁମ୍ଭ ପଥରୁ (ଲୋକମାନଙ୍କୁ) ପଥଭ୍ରଷ୍ଟ କରାଉଛନ୍ତି ; ସୁତରାଂ, ହେ ଆମ୍ଭର ପାଳନକର୍ତ୍ତା ! ସେମାନଙ୍କ ଧନ ସମ୍ପତ୍ତିକୁ ନଷ୍ଟ କରିଦିଅ ; ଏବଂ ସେମାନଙ୍କ ହୃଦୟ ପ୍ରତି କଠୋର ବ୍ୟବହାର କର ଯେପରି କି ସେମାନେ ଯନ୍ତ୍ରଣାଦାୟକ ଶାସ୍ତିକୁ ନ ଦେଖିବା ପର୍ଯ୍ୟନ୍ତ ବିଶ୍ୱାସ [1] ନ କରନ୍ତୁ ।''

قَالَ قَدْ اُجِيْبَتْ دَّعْوَتُكُمَا فَاسْتَقِيْمَا وَ لَا تَتَّبِعٰٓنِّ سَبِيْلَ الَّذِيْنَ لَا يَعْلَمُوْنَ ﴿۹۰﴾

୯୦. (ଏଣୁ ଅଲ୍ଲାହ) କହିଲେ, ''ତୁମମାନଙ୍କର ପ୍ରାର୍ଥନା ଗୃହୀତ ହୋଇଅଛି ; ସୁତରାଂ ତୁମେ ଦୁହେଁ ଏକନିଷ୍ଠତା ଅବଲମ୍ବନ କର ; ଏବଂ ଯେଉଁମାନଙ୍କର ଜ୍ଞାନ ନାହିଁ କେବେ ହେଁ ସେମାନଙ୍କର ପଥ ଅନୁସରଣ କର ନାହିଁ ।''

وَ جٰوَزْنَا بِبَنِىْۤ اِسْرَآءِيْلَ الْبَحْرَ فَاَتْبَعَهُمْ فِرْعَوْنُ وَ جُنُوْدُهٗ بَغْيًا وَّ عَدْوًا ؕ حَتّٰۤى اِذَاۤ اَدْرَكَهُ الْغَرَقُ ۙ قَالَ اٰمَنْتُ اَنَّهٗ لَاۤ اِلٰهَ اِلَّا الَّذِىْۤ اٰمَنَتْ بِهٖ بَنُوْۤا اِسْرَآءِيْلَ وَ اَنَا مِنَ الْمُسْلِمِيْنَ ﴿۹۱﴾

୯୧. ଏବଂ ଆମ୍ଭେ ଇସ୍ରାଇଲୀୟ ସନ୍ତାନମାନଙ୍କୁ ସମୁଦ୍ର ପାର କରାଇଥିଲୁ ; କିନ୍ତୁ ଫିରଔନ ଓ ତାହାର ସୈନ୍ୟବାହିନୀ ଦୌରାତ୍ମ୍ୟ ଓ ଅତ୍ୟାଚାର (ପନ୍ଥା ଅବଲମ୍ବନ) କରି ସେମାନଙ୍କର ଅନୁଧାବନ କରିଥିଲେ ; ଏପରି କି ଯେତେବେଳେ ସେ (ଓ ତାହାର ସୈନ୍ୟବାହିନୀ) ଜଳମଗ୍ନ ହେବା ଉପଲବ୍ଧି କଲେ, ସେତେବେଳେ ସେ କହିଲା ଯେ ଯାହାଙ୍କ ପ୍ରତି ଇସ୍ରାଇଲୀୟ ସନ୍ତାନମାନେ ବିଶ୍ୱାସ କରିଛନ୍ତି, ମୁଁ ମଧ୍ୟ ତାହାଙ୍କ ଉପରେ ବିଶ୍ୱାସ କରୁଅଛି ଯେ ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ଏବଂ ମୁଁ ଆଜ୍ଞା ପାଳନକାରୀମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ ହେଉ) ଅଛି ।

آٰلْــٰٔنَ وَ قَدْ عَصَيْتَ قَبْلُ وَ كُنْتَ مِنَ الْمُفْسِدِيْنَ ﴿۹۲﴾

୯୨. (ଅଲ୍ଲାହ କହିଲେ) ''କ'ଣ ବର୍ତ୍ତମାନ (ତୁ ବିଶ୍ୱାସ କରୁଅଛୁ !) ଅଥଚ ଏହା ପୂର୍ବରୁ ତୁ ଅବଜ୍ଞା କରିଥିଲୁ ଓ ବିଶୃଙ୍ଖଳାକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲୁ ।''

---

୧. ଅଲ୍ଲାହ ଜବରଦସ୍ତି ଲୋକମାନଙ୍କ ପ୍ରତି ଶାସ୍ତି ପ୍ରେରଣ କରୁଥିବା, ଏଠାରେ କୁହାଯାଇ ନାହିଁ ବରଂ ଏହି ଆୟତର ତାତ୍ପର୍ଯ୍ୟ ହେଉଛି, ସେମାନେ ଅସତ୍ ପଥରେ ଏତେ ଦୂର ଆଗେଇ ଯାଇଛନ୍ତି ଯେ ସେମାନଙ୍କୁ ସତ୍‌ପଥ ମିଳିବା ପାଇଁ ଆଉ ଅବସର ଦିଆଯାଇପାରିବନାହିଁ । ଯଦି ସେମାନେ ଶାସ୍ତିକୁ ଅବଲୋକନ କରି ଅନୁତାପ କରିବେ ତେବେ ଏହା ସେମାନଙ୍କ ପକ୍ଷେ କଲ୍ୟାଣକର ହେବ ।

فَالْيَوْمَ نُنَجِّيْكَ بِبَدَنِكَ لِتَكُوْنَ لِمَنْ خَلْفَكَ اٰيَةً ۗ وَاِنَّ كَثِيْرًا مِّنَ النَّاسِ عَنْ اٰيٰتِنَا لَغٰفِلُوْنَ ﴿٩٢﴾

୯୩. ସୁତରାଂ ଆଜି ଆମ୍ଭେ ତୋର (ମୃତ) ଶରୀର[୧] (ସଂରକ୍ଷିତ କରି ତାହା) ଦ୍ୱାରା ତୋତେ (ଆଂଶିକ) ମୁକ୍ତି ପ୍ରଦାନ କରୁଅଛୁ ଯଦ୍ଦ୍ୱାରା କି ଯେଉଁମାନେ ତୋ'ପରେ ଆସିବେ ସେମାନଙ୍କ ପାଇଁ ତୁ ଏକ ନିଦର୍ଶନ ସ୍ୱରୂପ ହେବୁ ; ଏବଂ ଲୋକମାନଙ୍କ ମଧ୍ୟରୁ ଅନେକ ଆମ୍ଭର ନିଦର୍ଶନଗୁଡ଼ିକ ସଂକ୍ରାନ୍ତରେ ନିଃସନ୍ଦେହରେ ଅଜ୍ଞ ଅଛନ୍ତି ।

ରୁ : ୧୦

وَلَقَدْ بَوَّاْنَا بَنِيْٓ اِسْرَآءِيْلَ مُبَوَّاَ صِدْقٍ وَّرَزَقْنٰهُمْ مِّنَ الطَّيِّبٰتِ ۚ فَمَا اخْتَلَفُوْا حَتّٰى جَآءَهُمُ الْعِلْمُ ۗ اِنَّ رَبَّكَ يَقْضِيْ بَيْنَهُمْ يَوْمَ الْقِيٰمَةِ فِيْمَا كَانُوْا فِيْهِ يَخْتَلِفُوْنَ ﴿٩٣﴾

୯୪. ଏବଂ ଆମ୍ଭେ ନିଃସନ୍ଦେହରେ ଇସ୍ରାଇଲୀୟ ସନ୍ତାନମାନଙ୍କୁ ପ୍ରକାଶ୍ୟ ଓ ଅପ୍ରକାଶ୍ୟ (ପ୍ରତ୍ୟେକ ପ୍ରକାର) ଉତ୍କୃଷ୍ଟ ବାସସ୍ଥାନ ଦେଇଥିଲୁ ଏବଂ ସେମାନଙ୍କୁ (ପ୍ରତ୍ୟେକ ପ୍ରକାର) ଉତ୍ତମ ବସ୍ତୁ ପ୍ରଦାନ କରିଥିଲୁ, ଏବଂ ସେମାନଙ୍କ ନିକଟରେ ପ୍ରକୃତ ଜ୍ଞାନ ଉପସ୍ଥିତ ନ ହେବା ପର୍ଯ୍ୟନ୍ତ[୨] ସେମାନେ (କୌଣସି ବିଷୟରେ) ବିରୋଧ କରି ନ ଥିଲେ ; ସେମାନେ ଯେଉଁ ବିଷୟରେ ବର୍ତ୍ତମାନ ବିରୋଧ କରୁଛନ୍ତି ତୁମ୍ଭର ପାଳନକର୍ତ୍ତା ସେ ବିଷୟରେ ନିଶ୍ଚୟ କୟାମତ ଦିନ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରିବେ ।

فَاِنْ كُنْتَ فِيْ شَكٍّ مِّمَّآ اَنْزَلْنَآ اِلَيْكَ فَسْـَٔلِ الَّذِيْنَ يَقْرَءُوْنَ الْكِتٰبَ مِنْ قَبْلِكَ ۚ لَقَدْ جَآءَكَ الْحَقُّ مِنْ رَّبِّكَ فَلَا تَكُوْنَنَّ مِنَ الْمُمْتَرِيْنَ ﴿٩٤﴾

୯୫. ଏବଂ ଆମ୍ଭେ ତୁମ୍ଭ ନିକଟରେ ଯାହା ଅବତୀର୍ଣ୍ଣ କରିଅଛୁ ଯଦି (ହେ କୋରାନର ପାଠକମାନେ !) ତୁମେମାନେ[୩] ତହିଁରେ ସନ୍ଦେହ କରୁଥାଅ, ତେବେ ତୁମମାନଙ୍କ ପୂର୍ବରୁ ଯେଉଁମାନେ ଏହି ଗ୍ରନ୍ଥ ପାଠ କରୁଛନ୍ତି, ତୁମେମାନେ ସେମାନଙ୍କୁ ପଚାର, (ତେବେ ତୁମେ ଜାଣି ପାରିବ ଯେ) ବାସ୍ତବରେ ତୁମମାନଙ୍କ ପାଳନକର୍ତ୍ତାଙ୍କ ନିକଟରୁ ତୁମମାନଙ୍କ ନିକଟରେ ସତ୍ୟ ଉପସ୍ଥିତ ହୋଇଅଛି ; ସୁତରାଂ ତୁମେମାନେ ସନ୍ଦେହକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

وَلَا تَكُوْنَنَّ مِنَ الَّذِيْنَ كَذَّبُوْا بِاٰيٰتِ اللّٰهِ فَتَكُوْنَ مِنَ الْخٰسِرِيْنَ ﴿٩٥﴾

୯୬. ଏବଂ ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରିଛନ୍ତି ତୁମେ ସେମାନଙ୍କ ମଧ୍ୟରେ କଦାପି ଅନ୍ତର୍ଭୁକ୍ତ ହୁଅ ନାହିଁ, ନଚେତ୍ ତୁମେ କ୍ଷତିଗ୍ରସ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।

---

୧. ଏହି ଆୟତ ଦ୍ୱାରା କୋରାନ ଗ୍ରନ୍ଥର ସତ୍ୟତା ଏବେ ବି ପ୍ରତିପାଦିତ ହେଉଅଛି । କାରଣ ହଜରତ ମୁସାଙ୍କ ସମସାମୟିକ ଫିରଔନର ଶବ ସମୁଦ୍ର ଗର୍ଭରୁ କିଛି ବର୍ଷ ପୂର୍ବରୁ ଉଦ୍ଧାର କରାଯାଇ ମିଶରର ସଂଗ୍ରହାଳୟରେ ସୁରକ୍ଷିତ ରଖାଯାଇଛି ।

୨. ଅର୍ଥାତ୍ ଯେବେ ବି ସେମାନଙ୍କ ନିକଟକୁ ଅବତାର ଆସୁଥାନ୍ତି, ତେବେ ସେମାନେ ମତଭେଦ ସୃଷ୍ଟି କରୁଥାନ୍ତି । ଅବତାରମାନଙ୍କ ଶିକ୍ଷା ଅବତୀର୍ଣ୍ଣ ହେବା ପୂର୍ବରୁ ସେମାନେ ଅତୀତର ପନ୍ଥା ଅନୁସରଣ କରୁଥାନ୍ତି, ଏହି ଆୟତରେ ମଧ୍ୟ କୁହାଯାଇଛି ଯେ ହଜରତ ମହମ୍ମଦଙ୍କ ସହିତ ସେମାନଙ୍କର ଭୀଷଣ ମତଭେଦ ଘଟିଥିଲା ଓ କୟାମତ ଦିନ ଏହାର ନିଷ୍ପତ୍ତି କରାହେବ ।

୩. ଏଠାରେ ପ୍ରକୃତ ପକ୍ଷେ କୋରାନ ପାଠ କରୁଥିବା ଲୋକମାନଙ୍କୁ ସମ୍ବୋଧନ କରାଯାଇଛି, ହଜରତ ମହମ୍ମଦଙ୍କୁ ନୁହେଁ । ପବିତ୍ର କୋରାନ୍‌ର ବର୍ଣ୍ଣନା ଅନୁସାରେ ହଜରତ ମହମ୍ମଦ ସକଳ ସନ୍ଦେହର ଊର୍ଦ୍ଧ୍ୱରେ କାରଣ ସେ ହିଁ ସର୍ବପ୍ରଥମ ଆଜ୍ଞାପାଳନକାରୀ । (୬:୧୩୪ ଦ୍ରଷ୍ଟବ୍ୟ) ।

୯୭. ବାସ୍ତବରେ ଯେଉଁମାନଙ୍କ ସମ୍ବନ୍ଧରେ ତୁମର ପାଳନକର୍ତ୍ତାଙ୍କ (ଠାରୁ ବିନାଶ ବିଷୟକ) ଆଦେଶ ଆସି ଅଛି ସେମାନେ କଦାପି ବିଶ୍ୱାସ କରିବେ ନାହିଁ ।

إِنَّ الَّذِينَ حَقَّتْ عَلَيْهِمْ كَلِمَتُ رَبِّكَ لَا يُؤْمِنُونَ ﴿٩٦﴾

୯୮. ଏବଂ ସେମାନଙ୍କ ନିକଟରୁ ସମସ୍ତ ପ୍ରକାର ନିଦର୍ଶନ ଆସିବା ସତ୍ତ୍ୱେ ସେମାନେ ଯନ୍ତ୍ରଣାଦାୟକ ଶାସ୍ତି ନ ଦେଖିବା ପର୍ଯ୍ୟନ୍ତ ବିଶ୍ୱାସ କରିବେ ନାହିଁ ।

وَلَوْ جَآءَتْهُمْ كُلُّ اٰيَةٍ حَتّٰى يَرَوُا الْعَذَابَ الْاَلِيْمَ ﴿٩٧﴾

୯୯. ଏବଂ ୟୁନୁସଙ୍କ ସମ୍ପ୍ରଦାୟ ବ୍ୟତୀତ କାହିଁକି ଏପରି ଅନ୍ୟ କୌଣସି ସମ୍ପ୍ରଦାୟ ନ ଥିଲା ଯେଉଁମାନେ ବିଶ୍ୱାସ କରି ଥାଆନ୍ତେ ଏବଂ ସେମାନଙ୍କର ବିଶ୍ୱାସ କରିବା ସେମାନଙ୍କ ପାଇଁ ଲାଭଜନକ ହୋଇ ଥାଆନ୍ତା ? ଯେତେବେଳେ ସେମାନେ (ଅର୍ଥାତ୍ ୟୁନୁସଙ୍କ ସମ୍ପ୍ରଦାୟ) ବିଶ୍ୱାସ କଲେ, ସେତେବେଳେ ଆମେ ସେମାନଙ୍କ ଠାରୁ ଏହି ପାର୍ଥିବ ଜୀବନର ମଧ୍ୟ ଅପମାନଜନକ ଶାସ୍ତିକୁ ଦୂରୀଭୂତ କରିଥିଲୁ ଏବଂ ସେମାନଙ୍କୁ କିଛି କାଳ ପାଇଁ (ସମସ୍ତ ପ୍ରକାରର) ସାମଗ୍ରୀ ପ୍ରଦାନ କରିଥିଲୁ ।

فَلَوْلَا كَانَتْ قَرْيَةٌ اٰمَنَتْ فَنَفَعَهَآ اِيْمَانُهَآ اِلَّا قَوْمَ
يُوْنُسَ ۚ لَمَّآ اٰمَنُوْا كَشَفْنَا عَنْهُمْ عَذَابَ الْخِزْيِ فِي
الْحَيٰوةِ الدُّنْيَا وَمَتَّعْنٰهُمْ اِلٰى حِيْنٍ ﴿٩٨﴾

୧୦୦. ଏବଂ ଯଦି ତୁମର ପାଳନକର୍ତ୍ତା ନିଜର ଇଚ୍ଛାକୁ କାର୍ଯ୍ୟକାରୀ କରିଥାଆନ୍ତେ, ତେବେ ନିଶ୍ଚୟ ଯେଉଁମାନେ ପୃଥିବୀରେ ଅଛନ୍ତି ସେମାନେ ସମସ୍ତେ (ଏକ ସଙ୍ଗେ) ବିଶ୍ୱାସ କରିଥାଆନ୍ତେ ; (ସୁତରାଂ ଯେତେବେଳେ ଅଲ୍ଲାହ ଏ ସମ୍ବନ୍ଧରେ ବାଧ୍ୟ କରୁ ନାହାନ୍ତି) କ'ଣ ତୁମେ ଲୋକମାନଙ୍କୁ ବିଶ୍ୱାସକାରୀ ହେବା ପାଇଁ ବାଧ୍ୟ କରିବ ?

وَلَوْ شَآءَ رَبُّكَ لَاٰمَنَ مَنْ فِي الْاَرْضِ كُلُّهُمْ جَمِيْعًا ۚ
اَفَاَنْتَ تُكْرِهُ النَّاسَ حَتّٰى يَكُوْنُوْا مُؤْمِنِيْنَ ﴿٩٩﴾

୧୦୧. ଏବଂ ଅଲ୍ଲାହଙ୍କ ଅନୁମତି ବିନା ବିଶ୍ୱାସ କରିବା କୌଣସି ବ୍ୟକ୍ତି ପକ୍ଷରେ ସମ୍ଭବ ନୁହେଁ ; ଯେଉଁମାନେ ବୁଦ୍ଧିମତାର ସହ କାର୍ଯ୍ୟ କରନ୍ତି ନାହିଁ , ସେ ସେମାନଙ୍କୁ ଶାସ୍ତି ପ୍ରଦାନ କରନ୍ତି ।

وَمَا كَانَ لِنَفْسٍ اَنْ تُؤْمِنَ اِلَّا بِاِذْنِ اللّٰهِ ۚ وَيَجْعَلُ
الرِّجْسَ عَلَى الَّذِيْنَ لَا يَعْقِلُوْنَ ﴿١٠٠﴾

୧୦୨. ତୁମେ (ସେମାନଙ୍କୁ) କୁହ, ''ଦେଖ, ଆକାଶ ଓ ପୃଥିବୀରେ କ'ଣ (ହେଉ) ଅଛି'' ; ଏବଂ ଯେଉଁମାନେ ବିଶ୍ୱାସ ନ କରିବାକୁ ବଦ୍ଧପରିକର ସେମାନଙ୍କ ପ୍ରତି କୌଣସି ପ୍ରକାର ନିଦର୍ଶନ, ତାହା ଶାନ୍ତିଦାୟକ ହେଉ ବା ଭୟ ପ୍ରଦର୍ଶକ ହେଉ, ଫଳପ୍ରଦ ହୁଏ ନାହିଁ ।

قُلِ انْظُرُوْا مَاذَا فِي السَّمٰوٰتِ وَالْاَرْضِ ۚ وَمَا تُغْنِي
الْاٰيٰتُ وَالنُّذُرُ عَنْ قَوْمٍ لَّا يُؤْمِنُوْنَ ﴿١٠١﴾

فَهَلْ يَنْتَظِرُوْنَ اِلَّا مِثْلَ اَيَّامِ الَّذِيْنَ خَلَوْا مِنْ قَبْلِهِمْ قُلْ فَانْتَظِرُوْٓا اِنِّيْ مَعَكُمْ مِّنَ الْمُنْتَظِرِيْنَ ﴿١٠٣﴾

୧୦୩. ତେବେ କ'ଣ ସେମାନେ ପୂର୍ବବର୍ତ୍ତୀ ଲୋକମାନଙ୍କ ପ୍ରତି ଘଟିଥିବା ଦୁର୍ଦ୍ଦିନ ଛଡ଼ା ଆଉ କେଉଁ ଦିନକୁ ପ୍ରତୀକ୍ଷା କରୁଛନ୍ତି ? ତୁମେ (ସେମାନଙ୍କୁ) କୁହ, ''(ଯେଦି ତାହା ହିଁ ଦେଖିବାକୁ ଇଚ୍ଛା ଥାଏ) ତେବେ ତୁମେମାନେ ପ୍ରତୀକ୍ଷା କର ; ଆମେ ମଧ୍ୟ ନିଶ୍ଚୟ ତୁମମାନଙ୍କ ସହିତ ପ୍ରତୀକ୍ଷା କରିବୁ ।''

ثُمَّ نُنَجِّيْ رُسُلَنَا وَالَّذِيْنَ اٰمَنُوْا كَذٰلِكَ حَقًّا عَلَيْنَا نُنْجِ الْمُؤْمِنِيْنَ ﴿١٠٤﴾

୧୦୪. ଏବଂ (ଯେତେବେଳେ ସେହି ଶାସ୍ତି ଉପସ୍ଥିତ ହେବ) ଆମେ ନିଜ ରସୁଲମାନଙ୍କୁ ଓ ଯେଉଁମାନେ (ତାହାଙ୍କ ପ୍ରତି) ବିଶ୍ଵାସ କରିଛନ୍ତି ସେ ସମସ୍ତଙ୍କୁ ରକ୍ଷା କରିବୁ ;ଏହିପରି ଭାବରେ ଆମର (ସ୍ଵ ନିର୍ଦ୍ଧାରିତ) ଏକ କର୍ତ୍ତବ୍ୟ ଅଛି ଯେ ଆମେ ବିଶ୍ଵାସକାରୀମାନଙ୍କୁ ଅବଶ୍ୟ ରକ୍ଷା କରିଥାଉ ।

ରୁ : ୧୧

قُلْ يٰٓاَيُّهَا النَّاسُ اِنْ كُنْتُمْ فِيْ شَكٍّ مِّنْ دِيْنِيْ فَلَآ اَعْبُدُ الَّذِيْنَ تَعْبُدُوْنَ مِنْ دُوْنِ اللّٰهِ وَلٰكِنْ اَعْبُدُ اللّٰهَ الَّذِيْ يَتَوَفّٰىكُمْ وَاُمِرْتُ اَنْ اَكُوْنَ مِنَ الْمُؤْمِنِيْنَ ﴿١٠٥﴾

୧୦୫. ତୁମେ (ସେମାନଙ୍କୁ) କୁହ, ''ହେ ଲୋକମାନେ ! ଯଦି ଆମ ଧର୍ମ ସଂକ୍ରାନ୍ତରେ ତୁମମାନଙ୍କର କୌଣସି ପ୍ରକାର ସନ୍ଦେହ ହୁଏ, ତେବେ (ଶୁଣ) ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କର ଉପାସନା କରୁଅଛ ଆମେ ସେମାନଙ୍କୁ ଉପାସନା କରୁନାହୁଁ ; ବରଂ ଆମେ ସେହି ଅଲ୍ଲାହଙ୍କର ଉପାସନା କରୁ ଯେ ତୁମମାନଙ୍କର ପ୍ରାଣ ନାଶ କରିବେ ଏବଂ ଆମକୁ ଆଦେଶ କରାଯାଇଅଛି ଯେ ଆମେ ବିଶ୍ଵାସକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବୁ ।''

وَاَنْ اَقِمْ وَجْهَكَ لِلدِّيْنِ حَنِيْفًا وَلَا تَكُوْنَنَّ مِنَ الْمُشْرِكِيْنَ ﴿١٠٦﴾

୧୦୬. ଏବଂ (ତୁମକୁ ଏହି ଉପଦେଶ ପହଞ୍ଚାଇ ଦେବା ପାଇଁ ମଧ୍ୟ ଆଦେଶ ଦିଆଯାଇଅଛି ଯେ (ସମସ୍ତ)ଆବିଳତାରୁ ତୁମେ ପବିତ୍ର ହୋଇ ନିଜ ଅଭିପ୍ରାୟକୁ ସଦାସର୍ବଦା ପାଇଁ ଧର୍ମ ନିମନ୍ତେ (ଅର୍ପଣ) କରିଦିଅ , ଏବଂ ତୁମେ ମୁସରିକମାନଙ୍କ ମଧ୍ୟରେ କଦାପି ଅନ୍ତର୍ଭୁକ୍ତ ହୁଅ ନାହିଁ ।

୧୦୭. ଏବଂ ତୁମେ ଅଲ୍ଲାହଙ୍କ ବ୍ୟତୀତ ଏପରି କାହାକୁ ଡାକ ନାହିଁ ଯେ ତୁମକୁ (କୌଣସି) ଲାଭ ଦିଏ ନାହିଁ ବା (ତୁମର କୌଣସି) କ୍ଷତି କରେ ନାହିଁ ; କିନ୍ତୁ ଯଦି ତୁମେ ଏପରି କରିବ, ତେବେ ସେପରି ଅବସ୍ଥାରେ ତୁମେ ନିଶ୍ଚୟ ଅତ୍ୟାଚାରୀମାନଙ୍କ ମଧ୍ୟରେ ଗଣ୍ୟ ହେବ ।

وَلَا تَدْعُ مِنْ دُوْنِ اللّٰهِ مَا لَا يَنْفَعُكَ وَلَا يَضُرُّكَ ۚ فَاِنْ فَعَلْتَ فَاِنَّكَ اِذًا مِّنَ الظّٰلِمِيْنَ ﴿۱۰۷﴾

୧୦୮. ଏବଂ ଯଦି ଅଲ୍ଲାହ ତୁମକୁ କୌଣସି କଷ୍ଟ ଦିଅନ୍ତି, ତେବେ ତାହାଙ୍କ ବ୍ୟତୀତ ଅନ୍ୟ କେହି ଏହାକୁ ଦୂର କରିପାରିବେ ନାହିଁ ; ଏବଂ ଯଦି ସେ ତୁମର କୌଣସି ମଙ୍ଗଳ କାମନା କରନ୍ତି ତେବେ କେହି ତାହାଙ୍କର କୃପାକୁ ପ୍ରତିରୋଧ କରିପାରିବେ ନାହିଁ ; ସେ ତାହାଙ୍କର ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ପସନ୍ଦ କରନ୍ତି ତାହାକୁ (ନିଜର କୃପା) ପ୍ରଦାନ କରନ୍ତି ; ଏବଂ ସେ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَاِنْ يَّمْسَسْكَ اللّٰهُ بِضُرٍّ فَلَا كَاشِفَ لَهٗۤ اِلَّا هُوَ ۚ وَاِنْ يُّرِدْكَ بِخَيْرٍ فَلَا رَآدَّ لِفَضْلِهٖ ؕ يُصِيْبُ بِهٖ مَنْ يَّشَآءُ مِنْ عِبَادِهٖ ؕ وَهُوَ الْغَفُوْرُ الرَّحِيْمُ ﴿۱۰۸﴾

୧୦୯. ତୁମେ (ସେମାନଙ୍କୁ) କୁହ, "ହେ ଲୋକମାନେ ! ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରୁ ତୁମମାନଙ୍କ ନିକଟକୁ ସତ୍ୟ ଆସି ଯାଇଛି ; ସୁତରାଂ ଯେ କେହି ସତ୍‌ପଥର ଅନୁସରଣ କରେ, ସେ କେବଳ ନିଜ (କଲ୍ୟାଣ) ପାଇଁ ସତ୍‌ପଥ ଗ୍ରହଣ କରିଥାଏ ; ଏବଂ ଯେ ଏହି ପଥରୁ ବିଚ୍ୟୁତ ହୁଏ , ସେ କେବଳ ନିଜ (ଅମଙ୍ଗଳ) ପାଇଁ ବିଚ୍ୟୁତ ହୁଏ ; ଏବଂ ଆମେ ତୁମମାନଙ୍କ ସକାଶେ ଦାୟୀ ନୋହୁଁ ।"

قُلْ يٰۤاَيُّهَا النَّاسُ قَدْ جَآءَكُمُ الْحَقُّ مِنْ رَّبِّكُمْ ۚ فَمَنِ اهْتَدٰى فَاِنَّمَا يَهْتَدِيْ لِنَفْسِهٖ ۚ وَمَنْ ضَلَّ فَاِنَّمَا يَضِلُّ عَلَيْهَا ۚ وَمَاۤ اَنَا عَلَيْكُمْ بِوَكِيْلٍ ﴿۱۰۹﴾

୧୧୦. ଏବଂ ତୁମ ପ୍ରତି ଯାହା କିଛି ଓହି କରାଯାଇଅଛି ତୁମେ ତାହାକୁ ଅନୁସରଣ କର ଏବଂ ଅଲ୍ଲାହ ନିଷ୍ପତ୍ତି କରିବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧର ; ଏବଂ ସମସ୍ତ ନିଷ୍ପତ୍ତିକାରୀମାନଙ୍କ ମଧ୍ୟରେ ସେ ହିଁ ଉତ୍ତମ ନିଷ୍ପତ୍ତିକାରୀ ।

وَاتَّبِعْ مَا يُوْحٰۤى اِلَيْكَ وَاصْبِرْ حَتّٰى يَحْكُمَ اللّٰهُ ۚۖ وَهُوَ خَيْرُ الْحٰكِمِيْنَ ﴿۱۱۰﴾




# ହୁଦ

[ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୧୨୪ଟି ଆୟତ ଓ ୧୦ଟି ରୁକୂ ଅଛି ।]

بِسۡمِ اللّٰهِ الرَّحۡمٰنِ الرَّحِيۡمِ ①

୧. ଅଶେଷ ଦୟାବାନ୍ ଓ ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

الٓرٰ كِتٰبٌ اُحۡكِمَتۡ اٰيٰتُهٗ ثُمَّ فُصِّلَتۡ مِنۡ لَّدُنۡ حَكِيۡمٍ خَبِيۡرٍ ②

୨. ଅଲିଫ୍-ଲାମ୍-ରା ; ଏହା ଏପରି ଗ୍ରନ୍ଥ ଯାହାର ଆୟତଗୁଡ଼ିକୁ ସୁଦୃଢ଼ କରାଯାଇଛି ତଥା ସେଗୁଡ଼ିକୁ ସୁସ୍ପଷ୍ଟ ଭାବରେ ବର୍ଣ୍ଣନା କରାଯାଇଛି ; ଏବଂ ଏହା ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞାତା (ଅଲ୍ଲାହ)ଙ୍କ ତରଫରୁ ପ୍ରେରିତ ହୋଇଅଛି ।

اَلَّا تَعۡبُدُوۡۤا اِلَّا اللّٰهَ ؕ اِنَّنِيۡ لَكُمۡ مِّنۡهُ نَذِيۡرٌ وَّبَشِيۡرٌ ③

୩. (ଏବଂ) ଏହା ଶିକ୍ଷା ଦେଉଅଛି ଯେ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କର ନାହିଁ ; ଆମେ ନିଃସନ୍ଦେହରେ ତୁମମାନଙ୍କ ନିକଟକୁ ସତର୍କକାରୀ ଓ ସୁସମାଚାରଦାତା (ଭାବରେ ଆସି ଅଛୁ) ।

وَّاَنِ اسۡتَغۡفِرُوۡا رَبَّكُمۡ ثُمَّ تُوۡبُوۡۤا اِلَيۡهِ يُمَتِّعۡكُمۡ مَّتَاعًا حَسَنًا اِلٰۤى اَجَلٍ مُّسَمًّى وَّيُؤۡتِ كُلَّ ذِيۡ فَضۡلٍ فَضۡلَهٗ ؕ وَاِنۡ تَوَلَّوۡا فَاِنِّيۡۤ اَخَافُ عَلَيۡكُمۡ عَذَابَ يَوۡمٍ كَبِيۡرٍ ④

୪. ଏବଂ ତୁମେମାନେ ନିଜ ପାଳନକର୍ତ୍ତାଙ୍କଠାରେ କ୍ଷମା ଭିକ୍ଷାକର ଓ ତାହାଙ୍କ ପ୍ରତି ମନୋଯୋଗୀ ହୁଅ, (ତାହା ହେଲେ) ସେ ତୁମମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଉତ୍କୃଷ୍ଟ ସୁଖ ସମ୍ପଦ ପ୍ରଦାନ କରିବେ ; ଏବଂ ପ୍ରତ୍ୟେକ ଯୋଗ୍ୟ ବ୍ୟକ୍ତିକୁ ନିଜର କୃପା ପ୍ରଦାନ କରିବେ ; କିନ୍ତୁ ଯଦି ତୁମେମାନେ ଫେରି ଯିବ, ତେବେ ଆମେ ନିଶ୍ଚୟ ତୁମମାନଙ୍କ ପ୍ରତି ଏକ ଭୟାବହ ଦିବସର ଶାସ୍ତି ସମ୍ବନ୍ଧରେ ଭୟ ପ୍ରଦର୍ଶନ କରାଉଅଛୁ ।

اِلَى اللّٰهِ مَرۡجِعُكُمۡ ۚ وَهُوَ عَلٰى كُلِّ شَيۡءٍ قَدِيۡرٌ ⑤

୫. ତୁମମାନଙ୍କୁ ଅଲ୍ଲାହଙ୍କ ନିକଟକୁ ଫେରିବାକୁ ହେବ ଏବଂ ସେ ସକଳ ବିଷୟରେ ସର୍ବଶକ୍ତିମାନ୍ ।

اَلَاۤ اِنَّهُمۡ يَثۡنُوۡنَ صُدُوۡرَهُمۡ لِيَسۡتَخۡفُوۡا مِنۡهُ ؕ اَلَا حِيۡنَ يَسۡتَغۡشُوۡنَ ثِيَابَهُمۡ ۙ يَعۡلَمُ مَا يُسِرُّوۡنَ وَمَا يُعۡلِنُوۡنَ ۚ اِنَّهٗ عَلِيۡمٌۢ بِذَاتِ الصُّدُوۡرِ ⑥

୬. ଶୁଣ ! ବାସ୍ତବିକ ସେମାନେ ନିଜର ବକ୍ଷକୁ ଏଥି ସକାଶେ ସଙ୍କୁଚିତ କରୁଛନ୍ତି ଯେପରି କି ସେମାନେ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ )ଠାରୁ (ନିଜର କୁପ୍ରବୃତ୍ତିକୁ) ଗୋପନ ରଖି ପାରିବେ ; ଶୁଣ ! ଯେତେବେଳେ ସେମାନେ ନିଜର ବସ୍ତ୍ର ଆଚ୍ଛାଦନ କରନ୍ତି, ସେତେବେଳେ ସେମାନେ ଯାହା କିଛି ପ୍ରକାଶ କରନ୍ତି ତାହା ସେ (ଅଲ୍ଲାହ) ଜାଣନ୍ତି ; ସେ ବାସ୍ତବିକ ଅନ୍ତରର ବିଷୟକୁ ଭଲ ଭାବରେ ଜାଣନ୍ତି ।

## ଭାଗ — ୧୨

୭. ଏବଂ ପୃଥିବୀରେ ଏପରି କୌଣସି ପ୍ରାଣୀ ନାହିଁ ଯାହାର ଜୀବିକାର ଭାର ଅଲ୍ଲାଃଙ୍କ ଉପରେ ନାହିଁ; ଏବଂ ସେ ଏମାନଙ୍କର ଅସ୍ଥାୟୀ ବାସସ୍ଥାନ ତଥା ସ୍ଥାୟୀ ବାସସ୍ଥାନ ସମ୍ବନ୍ଧରେ ଅବଗତ ଅଛନ୍ତି; ଏ ସମସ୍ତ ଏକ ସ୍ପଷ୍ଟ ଗ୍ରନ୍ଥରେ (ଲିପିବଦ୍ଧ) ଅଛି ।

وَمَا مِنْ دَآبَّةٍ فِي الْأَرْضِ إِلَّا عَلَى اللّٰهِ رِزْقُهَا وَيَعْلَمُ مُسْتَقَرَّهَا وَمُسْتَوْدَعَهَا ۚ كُلٌّ فِي كِتٰبٍ مُّبِينٍ ⑦

୮. ଏବଂ ସେ ଆକାଶ ଓ ପୃଥିବୀକୁ ଛଅ ଗୋଟି ଅବଧି ମଧ୍ୟରେ ସୃଷ୍ଟି କରିଛନ୍ତି, ଯଦ୍ଦ୍ୱାରା ସେ ତୁମମାନଙ୍କୁ ପରୀକ୍ଷା କରିବେ ଯେ ତୁମମାନଙ୍କ ମଧ୍ୟରୁ କାହାର କର୍ମ ଉତ୍କୃଷ୍ଟ; ଏବଂ ତାହାଙ୍କ ସିଂହାସନ[୧] ଜଳ ଉପରେ (ପ୍ରତିଷ୍ଠିତ) ଅଛି; ଏବଂ ଯଦି ତୁମେ (ସେମାନଙ୍କୁ) କହିବ, "ମୃତ୍ୟୁ ପରେ ତୁମମାନଙ୍କୁ ନିଶ୍ଚୟ ଉତ୍ଥିତ କରାହେବ, ତେବେ ଏହା ନିଶ୍ଚିତ ଯେ ଅବିଶ୍ୱାସକାରୀମାନେ (ଶପଥ-ପୂର୍ବକ) କହିବେ, "ଏହା କେବଳ ଏକ ପ୍ରକାଶ୍ୟ ପ୍ରତାରଣା ଅଟେ ।"

وَهُوَ الَّذِي خَلَقَ السَّمٰوٰتِ وَالْأَرْضَ فِي سِتَّةِ أَيَّامٍ وَّكَانَ عَرْشُهُ عَلَى الْمَآءِ لِيَبْلُوَكُمْ أَيُّكُمْ أَحْسَنُ عَمَلًا ۗ وَلَئِنْ قُلْتَ إِنَّكُمْ مَّبْعُوثُونَ مِنْ بَعْدِ الْمَوْتِ لَيَقُولَنَّ الَّذِينَ كَفَرُوٓا إِنْ هٰذَآ إِلَّا سِحْرٌ مُّبِينٌ ⑧

୯. ଏବଂ ଏହା (ମଧ୍ୟ) ନିଶ୍ଚିତ ଯେ ଯଦି ଆମେ ସେମାନଙ୍କୁ ଶାସ୍ତି ଦେବାରେ ଏକ ନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବିଳମ୍ବ କରୁ, ତେବେ ସେମାନେ ନିଶ୍ଚୟ କହିବେ, "କେଉଁ ବିଷୟ ଏହାକୁ ଅଟକାଇ ରଖିଅଛି ?" ଶୁଣ ! ଯେତେବେଳେ ଏହା ସେମାନଙ୍କ ନିକଟରେ ଉପସ୍ଥିତ ହେବ, ସେତେବେଳେ ଏହାକୁ ସେମାନଙ୍କଠାରୁ ଅପସାରଣ କରାଯିବ ନାହିଁ; ଏବଂ ସେମାନେ ଯେଉଁ ଶାସ୍ତି ବିଷୟରେ ପରିହାସ କରୁଥିଲେ, ତାହା ସେମାନଙ୍କୁ ଘେରି ନେବ ।

وَلَئِنْ أَخَّرْنَا عَنْهُمُ الْعَذَابَ إِلٰٓى أُمَّةٍ مَّعْدُودَةٍ لَّيَقُولُنَّ مَا يَحْبِسُهُ ۗ أَلَا يَوْمَ يَأْتِيهِمْ لَيْسَ مَصْرُوفًا عَنْهُمْ وَحَاقَ بِهِمْ مَّا كَانُوا بِهِ يَسْتَهْزِءُونَ ⑨

୧୦. ଏବଂ ଯଦି ଆମେ ମନୁଷ୍ୟକୁ ଆମର କୃପା ଆସ୍ୱାଦନ କରାଇ ତପରେ ଆମେ ତାହାଠାରୁ ପ୍ରତ୍ୟାହାର କରୁ, ତେବେ ସେ ଅତ୍ୟନ୍ତ ନିରାଶ ଓ ଅକୃତଜ୍ଞ ହୋଇଯାଏ ।

وَلَئِنْ أَذَقْنَا الْإِنْسَانَ مِنَّا رَحْمَةً ثُمَّ نَزَعْنٰهَا مِنْهُ ۚ إِنَّهُ لَيَئُوسٌ كَفُورٌ ⑩

୧୧. ଏବଂ ଯଦି ସେ ଦୁଃଖ ଭୋଗ କରିବା ପରେ ଆମେ ତାହାକୁ ସୁଖ ଆସ୍ୱାଦନ କରାଉ ତେବେ ନିଶ୍ଚୟ ସେ କହିବ, "ମୋ ଠାରୁ ସକଳ ଦୁଃଖ ଦୂର ହୋଇଅଛି; " ସେ ନିଶ୍ଚିତ ରୂପେ ଅତ୍ୟନ୍ତ ଉଲ୍ଲସିତ ହୁଏ ଓ ଗର୍ବ କରେ —

وَلَئِنْ أَذَقْنٰهُ نَعْمَآءَ بَعْدَ ضَرَّآءَ مَسَّتْهُ لَيَقُولَنَّ ذَهَبَ السَّيِّاٰتُ عَنِّي ۚ إِنَّهُ لَفَرِحٌ فَخُورٌ ⑪

---

୧. ଏଠାରେ ଆରବୀ 'ଅର୍ଶ' ଶବ୍ଦ ଶାସନ ବା ତାହାଙ୍କ ସିଦ୍ଧାନ୍ତକୁ ବୁଝାଉଛି । ପବିତ୍ର କୋରାନରେ 'ଓହି' ପାଇଁ ଜଳ ଶବ୍ଦ ବ୍ୟବହୃତ ହୋଇଛି । ଅତଏବ ଏହି ଆୟତର ତାତ୍ପର୍ଯ୍ୟ ହେଉଛି ଯେ ଅଲ୍ଲାଃଙ୍କ ଶାସନ ବିଷୟକ ସିଦ୍ଧାନ୍ତ 'ଓହି' ମାଧ୍ୟମରେ ଜାରି କରାଯାଏ । ସୁତରାଂ କୌଣସି ଜଳ ଉପରେ ତାଙ୍କର ସିଂହାସନ ସ୍ଥାପିତ ହୋଇନାହିଁ । ତାହାଙ୍କ ସମକକ୍ଷ ବା ସଦୃଶ କେହି ନାହାନ୍ତି । ତେଣୁ ଭୌତିକ ବସ୍ତୁ ସହିତ ତାହାଙ୍କୁ ସଂଶ୍ଳିଷ୍ଟ କରାଯିବା ଯଥାର୍ଥ ନୁହେଁ ।

୧୨. କେବଳ ସେମାନଙ୍କ ବ୍ୟତୀତ ଯେଉଁମାନେ ଧୈର୍ଯ୍ୟ ଧାରଣ କରିଛନ୍ତି ଓ ସତ୍ କାର୍ଯ୍ୟ କରିଛନ୍ତି; ଏହିମାନଙ୍କ ପାଇଁ ହିଁ କ୍ଷମା ଓ ମହାନ୍ ପୁରସ୍କାର ଅଛି ।

إِلَّا الَّذِينَ صَبَرُوا وَعَمِلُوا الصَّلِحَتِ أُولَٰئِكَ لَهُم مَّغْفِرَةٌ وَأَجْرٌ كَبِيرٌ ⑫

୧୩. ବୋଧହୁଏ (ଅବିଶ୍ୱାସକାରୀମାନେ ଆଶା କରୁଛନ୍ତି ଯେ) ତୁମ ପ୍ରତି ଯାହା କିଛି ଓହି ମାଧ୍ୟମରେ ଅବତୀର୍ଣ୍ଣ ହୋଇଅଛି, ସେଥିରୁ କିଛି ଅଂଶ ତୁମେ ପରିତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଯିବ; (କିନ୍ତୁ ଏପରି କଦାପି ହୋଇ ପାରିବ ନାହିଁ) ଏବଂ (ସେମାନେ ଏହା ମଧ୍ୟ ଆଶା କରୁଛନ୍ତି ଯେ) ସେମାନଙ୍କର ଏହି ଆପତ୍ତି ଯୋଗୁଁ ଯେ କାହିଁକି ତାହାଙ୍କ ନିକଟକୁ କୌଣସି ଧନର ଭଣ୍ଡାର ପ୍ରେରିତ ହୋଇନାହିଁ ବା ତାହାଙ୍କ ନିକଟକୁ କାହିଁକି କୌଣସି ଦେବଦୂତ ଆସି ନାହାନ୍ତି, ତୁମର ହୃଦୟ ସଙ୍କୁଚିତ ହୋଇଯାଉଛି; ତୁମେ କେବଳ ସତର୍କକାରୀ ଅଟ; ଏବଂ ଅଲ୍ଲାହ ସକଳ ବିଷୟର ତତ୍ତ୍ୱାବଧାରକ ।

فَلَعَلَّكَ تَارِكٌ بَعْضَ مَا يُوحَىٰ إِلَيْكَ وَضَائِقٌ بِهِ صَدْرُكَ أَن يَقُولُوا لَوْلَا أُنزِلَ عَلَيْهِ كَنزٌ أَوْ جَاءَ مَعَهُ مَلَكٌ إِنَّمَا أَنتَ نَذِيرٌ وَاللَّهُ عَلَىٰ كُلِّ شَيْءٍ وَكِيلٌ ⑬

୧୪. କ'ଣ ସେମାନେ କହନ୍ତି, " ସେ ନିଜେ ଏହାକୁ ରଚନା କରିଛନ୍ତି ?" ତୁମେ (ସେମାନଙ୍କୁ) କୁହ, "ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ତୁମେମାନେ ଏହାର ଅନୁରୂପ ଦଶ ଗୋଟି ସୁରା ରଚନା କରି ଆଣ; ଏବଂ ଅଲ୍ଲାହଙ୍କ ବ୍ୟତୀତ ଯାହାକୁ ତୁମର ସାମର୍ଥ୍ୟ ଅଛି( ସହାୟତା ପାଇଁ) ଡାକି ଆଣ ।"

أَمْ يَقُولُونَ افْتَرَاهُ قُلْ فَأْتُوا بِعَشْرِ سُوَرٍ مِّثْلِهِ مُفْتَرَيَاتٍ وَادْعُوا مَنِ اسْتَطَعْتُم مِّن دُونِ اللَّهِ إِن كُنتُمْ صَادِقِينَ ⑭

୧୫. ସୁତରାଂ, ଯଦି ସେମାନେ ତୁମର ଏହି ଆହ୍ୱାନକୁ ଗ୍ରହଣ ନ କରନ୍ତି, ତେବେ ଜାଣିରଖ ଯେ ଏହା କେବଳ ଅଲ୍ଲାହଙ୍କର ଜ୍ଞାନ ଉପରେ ଆଧାରିତ ହୋଇ ଅବତୀର୍ଣ୍ଣ ହୋଇଅଛି; ଏବଂ ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସନାର ଯୋଗ୍ୟ ନୁହନ୍ତି; ସୁତରାଂ କ'ଣ ତୁମେମାନେ ସମ୍ପୂର୍ଣ୍ଣ ଆତ୍ମସମର୍ପଣକାରୀ ହେବ ?

فَإِلَّمْ يَسْتَجِيبُوا لَكُمْ فَاعْلَمُوا أَنَّمَا أُنزِلَ بِعِلْمِ اللَّهِ وَأَن لَّا إِلَٰهَ إِلَّا هُوَ فَهَلْ أَنتُم مُّسْلِمُونَ ⑮

୧୬. ଯେଉଁମାନେ ପାର୍ଥିବ ଜୀବନ ତଥା ତାହାର ସୌନ୍ଦର୍ଯ୍ୟ ଇଚ୍ଛା କରିବେ, ଆମେ ସେମାନଙ୍କୁ ସେମାନଙ୍କର କର୍ମଫଳ ସମ୍ପୂର୍ଣ୍ଣ ରୂପେ ଏହିଠାରେ ହିଁ (ଅର୍ଥାତ୍ ଏହି ପାର୍ଥିବ ଜୀବନରେ) ପ୍ରଦାନ କରିବୁ, ଏବଂ ସେମାନଙ୍କୁ ଏଥିରୁ ଊଣା ଦିଆଯିବ ନାହିଁ ।

مَن كَانَ يُرِيدُ الْحَيَوٰةَ الدُّنْيَا وَزِينَتَهَا نُوَفِّ إِلَيْهِمْ أَعْمَالَهُمْ فِيهَا وَهُمْ فِيهَا لَا يُبْخَسُونَ ⑯

୧୭. ପରକାଳରେ ଏହିମାନଙ୍କ ପାଇଁ (ନରକ) ଅଗ୍ନି ବ୍ୟତୀତ ଅନ୍ୟ କିଛି ନ ଥିବ; ଏବଂ ସେମାନେ ଯାହାକିଛି ଏଥି ସକାଶେ (ଅର୍ଥାତ୍ ଏହି ପାର୍ଥିବ ଜୀବନପାଇଁ) କରିଥିବେ ତାହା ପରକାଳରେ ସମ୍ପୂର୍ଣ୍ଣ ବୃଥା ହୋଇଯିବ, ଏବଂ ଯାହାକିଛି ସେମାନେ କରୁଥିଲେ ତାହା ନଷ୍ଟ ହୋଇଯିବ ।

أُولَٰئِكَ الَّذِينَ لَيْسَ لَهُمْ فِي الْآخِرَةِ إِلَّا النَّارُ وَحَبِطَ مَا صَنَعُوا فِيهَا وَبَاطِلٌ مَّا كَانُوا يَعْمَلُونَ ⑰

أَفَمَن كَانَ عَلَىٰ بَيِّنَةٍ مِّن رَّبِّهِۦ وَيَتْلُوهُ شَاهِدٌ مِّنْهُ وَمِن قَبْلِهِۦ كِتَـٰبُ مُوسَىٰٓ إِمَامًا وَرَحْمَةً ۚ أُو۟لَـٰٓئِكَ يُؤْمِنُونَ بِهِۦ ۚ وَمَن يَكْفُرْ بِهِۦ مِنَ ٱلْأَحْزَابِ فَٱلنَّارُ مَوْعِدُهُۥ ۚ فَلَا تَكُ فِى مِرْيَةٍ مِّنْهُ ۚ إِنَّهُ ٱلْحَقُّ مِن رَّبِّكَ وَلَـٰكِنَّ أَكْثَرَ ٱلنَّاسِ لَا يُؤْمِنُونَ ﴿١٨﴾

୧୮. ତୁମେମାନେ କିପରି ତାହାଙ୍କୁ ପ୍ରତ୍ୟାଖ୍ୟାନ କରିପାରିବ ଯାହାଙ୍କ[1] ନିକଟରେ ତାଙ୍କ ପାଳନକର୍ତ୍ତାଙ୍କଠାରୁ ଏକ ସ୍ପଷ୍ଟ ନିଦର୍ଶନ ଅଛି, ଏବଂ ତାଙ୍କ (ପାଳନକର୍ତ୍ତାଙ୍କ) ଠାରୁ (ତାଙ୍କ ସତ୍ୟତା ପ୍ରତିପାଦିତ କରିବାପାଇଁ) ଜଣେ ସାକ୍ଷୀ[2] ତାଙ୍କ ପରେ ଆସିବେ; ଏବଂ ଯାହାଙ୍କ ପୂର୍ବରୁ ସମର୍ଥନକାରୀ ଓ କରୁଣା ପ୍ରଦାୟକ ମୁସାଙ୍କ ଧର୍ମ (ଗ୍ରନ୍ଥ) ଆସିଅଛି ? ସେମାନଙ୍କ ମଧ୍ୟରୁ ଯେଉଁମାନେ ମନୋଯୋଗୀ ସେମାନେ ତାହାଙ୍କ ପ୍ରତି ବିଶ୍ୱାସ କରନ୍ତି, ଏବଂ (ବିରୋଧୀ) ସମ୍ପ୍ରଦାୟମାନଙ୍କ ମଧ୍ୟରୁ ଯେ କେହି ତାହାଙ୍କ ପ୍ରତି ଅବିଶ୍ୱାସ କରେ, (ନରକ) ଅଗ୍ନି ତାହାର ନିରୂପିତ ବାସସ୍ଥାନ ହେବ; ଅତଏବ ତୁମେ ଏ ସଂକ୍ରାନ୍ତରେ କୌଣସି ସନ୍ଦେହ କର ନାହିଁ; ବାସ୍ତବରେ ତାହା ହିଁ ତୁମ ପାଳନକର୍ତ୍ତାଙ୍କଠାରୁ (ପ୍ରେରିତ) ସତ୍ୟ ଅଟେ; କିନ୍ତୁ ଅଧିକାଂଶ ଲୋକ ବିଶ୍ୱାସ କରନ୍ତି ନାହିଁ ।

وَمَنْ أَظْلَمُ مِمَّنِ ٱفْتَرَىٰ عَلَى ٱللَّهِ كَذِبًا ۚ أُو۟لَـٰٓئِكَ يُعْرَضُونَ عَلَىٰ رَبِّهِمْ وَيَقُولُ ٱلْأَشْهَـٰدُ هَـٰٓؤُلَآءِ ٱلَّذِينَ كَذَبُوا۟ عَلَىٰ رَبِّهِمْ ۚ أَلَا لَعْنَةُ ٱللَّهِ عَلَى ٱلظَّـٰلِمِينَ ﴿١٩﴾

୧୯. ଏବଂ ଯେ ଅଲ୍ଲାହ୍‌ଙ୍କ ପ୍ରତି ମିଥ୍ୟା ଆରୋପ କରେ, ତାହାଠାରୁ ଅଧିକ କିଏ ଅତ୍ୟାଗ୍ରହୀ (ହୋଇପାରେ) ? ଏପରି ଲୋକମାନଙ୍କୁ ସେମାନଙ୍କ ଅଲ୍ଲାହ୍‌ଙ୍କ ସମ୍ମୁଖରେ ଉପସ୍ଥାପିତ କରାଯିବ, ଏବଂ ସାକ୍ଷୀମାନେ କହିବେ, "ଏମାନେ ହିଁ ନିଜ ପାଳନକର୍ତ୍ତାଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ;" ଶୁଣ ! ଏହି ଅତ୍ୟାଗ୍ରହୀମାନଙ୍କ ପ୍ରତି ଅଲ୍ଲାହ୍‌ଙ୍କର ଅଭିଶାପ ହେବ ।

ٱلَّذِينَ يَصُدُّونَ عَن سَبِيلِ ٱللَّهِ وَيَبْغُونَهَا عِوَجًا وَهُم بِٱلْـَٔاخِرَةِ هُمْ كَـٰفِرُونَ ﴿٢٠﴾

୨୦. ଏମାନେ ହିଁ ଅଲ୍ଲାହ୍‌ଙ୍କ ପଥରୁ (ଲୋକମାନଙ୍କୁ) ପ୍ରତିରୋଧ କରନ୍ତି, ଏବଂ ତହିଁରେ କୁଟିଳତା ସୃଷ୍ଟି କରିବାକୁ ଇଚ୍ଛା କରନ୍ତି; ଏବଂ ଏମାନେ ହିଁ ପରକାଳକୁ ଅସ୍ୱୀକାର କରନ୍ତି ।

أُو۟لَـٰٓئِكَ لَمْ يَكُونُوا۟ مُعْجِزِينَ فِى ٱلْأَرْضِ وَمَا كَانَ لَهُم مِّن دُونِ ٱللَّهِ مِنْ أَوْلِيَآءَ ۘ يُضَـٰعَفُ لَهُمُ ٱلْعَذَابُ ۚ مَا كَانُوا۟ يَسْتَطِيعُونَ ٱلسَّمْعَ وَمَا كَانُوا۟ يُبْصِرُونَ ﴿٢١﴾

୨୧. ପୃଥିବୀରେ ଏମାନେ (ଅଲ୍ଲାହ୍‌ଙ୍କ ଯୋଜନାକୁ) କଦାପି ଦୁର୍ବଳ କରିପାରିବେ ନାହିଁ ଏବଂ ଅଲ୍ଲାହ୍‌ଙ୍କ ବ୍ୟତୀତ ସେମାନଙ୍କର କୌଣସି ବନ୍ଧୁ ନାହାନ୍ତି; ସେମାନଙ୍କ ଶାସ୍ତିକୁ (ଇହକାଳ ତଥା ପରକାଳରେ) ଦ୍ୱିଗୁଣିତ କରାହେବ; ସେମାନେ କିଛି ଶୁଣି ପାରନ୍ତି ନାହିଁ କି ସେମାନେ କିଛି ଦେଖିପାରନ୍ତି ନାହିଁ ।

أُو۟لَـٰٓئِكَ ٱلَّذِينَ خَسِرُوٓا۟ أَنفُسَهُمْ وَضَلَّ عَنْهُم مَّا كَانُوا۟ يَفْتَرُونَ ﴿٢٢﴾

୨୨. ଏମାନେ ହିଁ ନିଜକୁ କ୍ଷତିଗ୍ରସ୍ତ କରାଇଛନ୍ତି, ଏବଂ ଯେଉଁଥିପାଇଁ ସେମାନେ (ଅଲ୍ଲାହ୍‌ଙ୍କ ପ୍ରତି) ମିଥ୍ୟା ଆରୋପ କରୁଥିଲେ, ତାହା ସେମାନଙ୍କଠାରୁ ଦୂର ହେବ ।

୧. ଅର୍ଥାତ୍ ହଜରତ ମହମ୍ମଦ ।

୨. ଅର୍ଥାତ୍ ତାଙ୍କ ଅନୁଗାମୀମାନଙ୍କ ମଧ୍ୟରୁ ଜଣେ ସଂସ୍କାରକ ଜନ୍ମ ଗ୍ରହଣ କରିବେ ଯେ କି ଦିବ୍ୟ ବାଣୀ ଦ୍ୱାରା ତାଙ୍କୁ ସମର୍ଥନ କରିବେ । ଅତଏବ ହଜରତ ମହମ୍ମଦଙ୍କର ସହାୟତା ପାଇଁ ତ୍ରିବିଧ ସାକ୍ଷୀ ଅଛନ୍ତି । (କ) ନିଜସ୍ୱ ପ୍ରମାଣ (ଖ) ତାଙ୍କ ଅନୁଗାମୀମାନଙ୍କ ମଧ୍ୟରେ ଏପରି ଭକ୍ତ ଓ ଧର୍ମପ୍ରାଣ ବ୍ୟକ୍ତି ଜନ୍ମ ହେବେ ଯେଉଁମାନେ ତାଙ୍କ ସତ୍ୟତା ସମ୍ବନ୍ଧରେ ପ୍ରମାଣ ଦେବେ । (ଗ) ତୌରାତର ପ୍ରମାଣ । ବସ୍ତୁତଃ ଏତେ ସୁଦୃଢ଼ ପ୍ରମାଣ କୌଣସି ନବିଙ୍କ ପାଇଁ ଉପଲବ୍ଧ ହୋଇ ନାହିଁ ।

୨୩. ନିଃସନ୍ଦେହରେ ସେମାନେ ହି ପରକାଳରେ ସର୍ବାଧିକ କ୍ଷତିଗ୍ରସ୍ତ ହେବେ;

لَا جَرَمَ اَنَّهُمْ فِى الْاٰخِرَةِ هُمُ الْاَخْسَرُوْنَ ﴿٢٣﴾

୨୪. ବାସ୍ତବରେ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସତ୍କର୍ମ କରିଛନ୍ତି ଏବଂ ନିଜର ପାଳନକର୍ତ୍ତାଙ୍କ ପ୍ରତି ବିନମ୍ର ହୋଇଛନ୍ତି, ସେମାନେ ହି ବୈକୁଣ୍ଠର ଅଧିବାସୀ ହେବେ; ସେମାନେ ସେଠାରେ ସର୍ବଦା ରହିଥିବେ ।

اِنَّ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ وَاَخْبَتُوْٓا اِلٰى رَبِّهِمْ ۙ اُولٰٓئِكَ اَصْحٰبُ الْجَنَّةِ ۚ هُمْ فِيْهَا خٰلِدُوْنَ ﴿٢٤﴾

୨୫. ଏହି ଦୁଇ ଗୋଷ୍ଠୀର ଦୃଷ୍ଟାନ୍ତ ଏକ ଚକ୍ଷୁହୀନ ଓ ଚକ୍ଷୁଷ୍ମାନ୍ ତଥା ବଧିର ଓ ଶ୍ରୋତା ସଦୃଶ; କ'ଣ ଉଭୟଙ୍କ ଅବସ୍ଥା ଏକ ହୋଇପାରେ ; ତଥାପି ତୁମେମାନେ କ'ଣ ବୁଝିପାରୁ ନାହଁ ?

مَثَلُ الْفَرِيْقَيْنِ كَالْاَعْمٰى وَالْاَصَمِّ وَالْبَصِيْرِ وَالسَّمِيْعِ ؕ هَلْ يَسْتَوِيٰنِ مَثَلًا ؕ اَفَلَا تَذَكَّرُوْنَ ﴿٢٥﴾

ରୁ: ୩

୨୬. ଏବଂ ଆମ୍ଭେ ହି ନୂହଙ୍କୁ ତାହାଙ୍କ ସମ୍ପ୍ରଦାୟ ନିକଟକୁ (ରସୁଲ କରି) ପ୍ରେରଣ କରିଥିଲୁ; (ସେ କହିଥିଲେ); "ଆମ୍ଭେ ତୁମମାନଙ୍କ ପାଇଁ ପ୍ରକାଶ୍ୟ ସତର୍କକାରୀ ଅଟୁ ।"

وَلَقَدْ اَرْسَلْنَا نُوْحًا اِلٰى قَوْمِهٖٓ ۚ اِنِّىْ لَكُمْ نَذِيْرٌ مُّبِيْنٌ ﴿٢٦﴾

୨୭. (ଅତଏବ) "ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କର ନାହିଁ; ବାସ୍ତବରେ ଆମ୍ଭେ ତୁମମାନଙ୍କ ପ୍ରତି ଏକ ଯନ୍ତ୍ରଣାଦାୟକ ଦିବସର ଶାସ୍ତି ସଂକ୍ରାନ୍ତରେ ଭୟ କରୁଅଛୁ ।"

اَنْ لَّا تَعْبُدُوْٓا اِلَّا اللّٰهَ ؕ اِنِّىْٓ اَخَافُ عَلَيْكُمْ عَذَابَ يَوْمٍ اَلِيْمٍ ﴿٢٧﴾

୨୮. ଏହାପରେ ତାହାଙ୍କ ସମ୍ପ୍ରଦାୟର ଅବିଶ୍ୱାସକାରୀ ମୁଖ୍ୟମାନେ କହିଲେ, "ଆମେମାନେ ତୁମକୁ ଆମମାନଙ୍କ ପରି ଏକ ମନୁଷ୍ୟ ବ୍ୟତୀତ ଅନ୍ୟ କିଛି ମନେ କରୁନାହୁଁ; ଏବଂ ଆମମାନଙ୍କ ମଧ୍ୟରେ ଯେଉଁମାନେ ନିକୃଷ୍ଟତମ, ସେମାନଙ୍କ ବ୍ୟତୀତ ଅନ୍ୟ କାହାକୁ ତୁମର ଅନୁସରଣ କରିବା ଦେଖୁନାହୁଁ; ଏବଂ ଆମମାନଙ୍କ ଉପରେ ତୁମର କୌଣସି ଶ୍ରେଷ୍ଠତା ଥିବାର ଦେଖୁନାହୁଁ; ବରଂ ଆମେମାନେ ତୁମକୁ ମିଥ୍ୟାବାଦୀ ମନେ କରୁ ।"

فَقَالَ الْمَلَاُ الَّذِيْنَ كَفَرُوْا مِنْ قَوْمِهٖ مَا نَرٰىكَ اِلَّا بَشَرًا مِّثْلَنَا وَمَا نَرٰىكَ اتَّبَعَكَ اِلَّا الَّذِيْنَ هُمْ اَرَاذِلُنَا بَادِىَ الرَّاْىِ ۚ وَمَا نَرٰى لَكُمْ عَلَيْنَا مِنْ فَضْلٍۭ بَلْ نَظُنُّكُمْ كٰذِبِيْنَ ﴿٢٨﴾

୨୯. ସେ କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ଯଦି ଆମ୍ଭର ପାଳନକର୍ତ୍ତାଙ୍କ ନିକଟରୁ ଆମ୍ଭ ପାଖରେ ସ୍ପଷ୍ଟ ପ୍ରମାଣ ଥାଏ, ଏବଂ ସେ ନିଜଠାରୁ ଆମ୍ଭଙ୍କୁ କୃପା ପ୍ରଦାନ କରିଥାଆନ୍ତି ଏବଂ ଯଦି ତାହାକୁ ତୁମେମାନେ ସନ୍ଦେହ କରୁଥାଅ ତେବେ କୁହ, ଆମ୍ଭେ କିପରି ତୁମମାନଙ୍କୁ ଏହା ଗ୍ରହଣ କରିବାକୁ ବାଧ୍ୟ କରିବୁ, ଯେତେବେଳେ କି ତୁମେମାନେ ଏହାକୁ ପସନ୍ଦ କରୁ ନାହଁ;"

قَالَ يٰقَوْمِ اَرَءَيْتُمْ اِنْ كُنْتُ عَلٰى بَيِّنَةٍ مِّنْ رَّبِّىْ وَاٰتٰىنِىْ رَحْمَةً مِّنْ عِنْدِهٖ فَعُمِّيَتْ عَلَيْكُمْ ؕ اَنُلْزِمُكُمُوْهَا وَاَنْتُمْ لَهَا كٰرِهُوْنَ ﴿٢٩﴾

୩୦. "ଏବଂ ହେ ଆମର ସମ୍ପ୍ରଦାୟ ! ଆମେ ଏ ବିଷୟରେ ତୁମମାନଙ୍କ ନିକଟରୁ କୌଣସି ଧନ ସମ୍ପତ୍ତି ଚାହୁଁ ନାହୁଁ; ଆମର ପୁରସ୍କାର ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହା ପାଖରେ ନାହିଁ; ଏବଂ ଯେଉଁମାନେ (ଆମଠାରେ) ବିଶ୍ୱାସ କରିଛନ୍ତି ଆମେ ସେମାନଙ୍କୁ କଦାପି ବିତାଡ଼ିତ କରିବୁ ନାହିଁ; ସେମାନେ ନିଶ୍ଚୟ ନିଜର ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ୍ କରିବେ; କିନ୍ତୁ ସେମାନଙ୍କୁ ତୁଚ୍ଛ ମନେ କରିବା ପ୍ରମାଣିତ କରୁଛି ଯେ ତୁମେମାନେ ଏକ ନିର୍ବୋଧ ସମ୍ପ୍ରଦାୟ ।"

وَيٰقَوْمِ لَآ اَسْـَٔلُكُمْ عَلَيْهِ مَالًا ۗ اِنْ اَجْرِيَ اِلَّا عَلَى اللّٰهِ وَمَآ اَنَا بِطَارِدِ الَّذِيْنَ اٰمَنُوْا ۗ اِنَّهُمْ مُّلٰقُوْا رَبِّهِمْ وَلٰكِنِّيْٓ اَرٰىكُمْ قَوْمًا تَجْهَلُوْنَ ۝

୩୧. "ଏବଂ ହେ ଆମର ସମ୍ପ୍ରଦାୟ ! ଯଦି ଆମେ ସେମାନଙ୍କୁ ବିତାଡ଼ିତ କରିଦେଉ, ତେବେ (ଏହି କାର୍ଯ୍ୟ ପାଇଁ) ଅଲ୍ଲାହ୍‌ଙ୍କ ନିକଟରୁ (ଯେଉଁ ଶାସ୍ତି ଉପସ୍ଥିତ ହେବ ତହିଁରୁ) ରକ୍ଷା ପାଇବା ପାଇଁ ଆମକୁ କିଏ ସାହାଯ୍ୟ କରିବ ? ତଥାପି କ'ଣ ତୁମେମାନେ ବୁଝିପାରୁ ନାହଁ ?"

وَيٰقَوْمِ مَنْ يَّنْصُرُنِيْ مِنَ اللّٰهِ اِنْ طَرَدْتُّهُمْ ۗ اَفَلَا تَذَكَّرُوْنَ ۝

୩୨. "ଏବଂ ଆମେ ତୁମମାନଙ୍କୁ ଏପରି କହୁ ନାହୁଁ ଯେ ଅଲ୍ଲାହ୍‌ଙ୍କର ଧନ ଭଣ୍ଡାର ଆମ ନିକଟରେ ଅଛି ବା ଆମେ ଅଦୃଶ୍ୟ ବିଷୟରେ ଅବଗତ ଅଛୁ; ଏବଂ ଆମେ ଏହା ମଧ୍ୟ କହୁ ନାହୁଁ ଯେ ଆମେ ଜଣେ ଦେବଦୂତ; ଏବଂ ଯେଉଁମାନଙ୍କୁ ତୁମେମାନେ ଘୃଣା ଚକ୍ଷୁରେ ଦେଖୁଅଛ ଆମେ ସେମାନଙ୍କ ସଂକ୍ରାନ୍ତରେ କହୁ ନାହୁଁ ଯେ ଅଲ୍ଲାହ୍ ସେମାନଙ୍କର କୌଣସି ମଙ୍ଗଳ କରିବେ ନାହିଁ; ଯାହା କିଛି ସେମାନଙ୍କ ଅନ୍ତରରେ ଅଛି ତାହା ଅଲ୍ଲାହ୍ ଉତ୍ତମରୂପେ ଜାଣନ୍ତି; ଏବଂ ଯେପରି ତୁମେମାନେ କହୁଛ ଯଦି ଆମେ ମଧ୍ୟ ସେହିପରି କହିବୁ ତେବେ ସେପରି ଅବସ୍ଥାରେ ଆମେ ନିଶ୍ଚୟ ଅତ୍ୟାଚାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବୁ ।"

وَلَآ اَقُوْلُ لَكُمْ عِنْدِيْ خَزَاۗىِٕنُ اللّٰهِ وَلَآ اَعْلَمُ الْغَيْبَ وَلَآ اَقُوْلُ اِنِّيْ مَلَكٌ وَّلَآ اَقُوْلُ لِلَّذِيْنَ تَزْدَرِيْٓ اَعْيُنُكُمْ لَنْ يُّؤْتِيَهُمُ اللّٰهُ خَيْرًا ۗ اَللّٰهُ اَعْلَمُ بِمَا فِيْٓ اَنْفُسِهِمْ ښ اِنِّىْٓ اِذًا لَّمِنَ الظّٰلِمِيْنَ ۝

୩୩. ସେମାନେ କହିଲେ, "ହେ ନୁହ ! ତୁମେ ଆମମାନଙ୍କ ସହିତ ଯୁକ୍ତିତର୍କ କରିଅଛ; ବରଂ ଭଲଭାବେ ଯୁକ୍ତିତର୍କ କରିଅଛ; ସୁତରାଂ ଯଦି ତୁମେ ସତ୍ୟବାଦୀ ହୋଇଥାଅ, ତେବେ ଯେଉଁ (ଶାସ୍ତି) ବିଷୟରେ ତୁମେ ଆମମାନଙ୍କୁ ଭୟଭୀତ କରାଉଛ, ତାହା ଆମମାନଙ୍କ ନିକଟରେ ଉପସ୍ଥିତ କରାଅ ।"

قَالُوْا يٰنُوْحُ قَدْ جٰدَلْتَنَا فَاَكْثَرْتَ جِدَالَنَا فَاْتِنَا بِمَا تَعِدُنَآ اِنْ كُنْتَ مِنَ الصّٰدِقِيْنَ ۝

୩୪. ସେ କହିଲେ, "ଯଦି ଅଲ୍ଲାହ୍ ଇଚ୍ଛା କରିବେ, ତାହା ତୁମମାନଙ୍କ ନିକଟରେ ଉପସ୍ଥିତ କରାଇବେ, ଏବଂ ତୁମେମାନେ (ଅଲ୍ଲାହ୍‌ଙ୍କୁ) ଏଥିରୁ କ୍ଷାନ୍ତ କରିପାରିବ ନାହିଁ ।"

قَالَ اِنَّمَا يَاْتِيْكُمْ بِهِ اللّٰهُ اِنْ شَاۗءَ وَمَآ اَنْتُمْ بِمُعْجِزِيْنَ ۝

୩୫. ଏବଂ ଯଦି ଅଲ୍ଲାଃ ତୁମମାନଙ୍କୁ ବିପଥଗାମୀ କରିବାକୁ ଇଚ୍ଛା କରିବେ, ତେବେ ଆମେ ତୁମମାନଙ୍କୁ (ଉତ୍ତମ) ପରାମର୍ଶ ଦେବାକୁ ଇଚ୍ଛା କଲେ ମଧ୍ୟ ଆମର ପରାମର୍ଶ ତୁମମାନଙ୍କ ପକ୍ଷରେ ଲାଭପ୍ରଦ ହେବ ନାହିଁ, ସେ ହିଁ ତୁମମାନଙ୍କର ପାଳନକର୍ତ୍ତା, ଏବଂ ତାହାଙ୍କ ନିକଟକୁ ତୁମମାନଙ୍କୁ ଫେରିବାକୁ ହେବ ।

وَلَا يَنْفَعُكُمْ نُصْحِيْٓ اِنْ اَرَدْتُّ اَنْ اَنْصَحَ لَكُمْ اِنْ كَانَ اللّٰهُ يُرِيْدُ اَنْ يُّغْوِيَكُمْ ؕ هُوَ رَبُّكُمْ ۟ وَاِلَيْهِ تُرْجَعُوْنَ ؕ﴿۳۵﴾

୩୬. କ'ଣ ସେମାନେ କହନ୍ତି, ''ସେ ନିଜେ ଏହାକୁ (ଅର୍ଥାତ୍ ଶାସ୍ତିକୁ ନିଜ ତରଫରୁ) ପ୍ରସ୍ତୁତ କରିଛନ୍ତି ?'' ତୁମେ (ସେମାନଙ୍କୁ) କୁହ, ''ଯଦି ଆମେ ଏହାକୁ ନିଜ ତରଫରୁ ପ୍ରସ୍ତୁତ କରିଥିବୁ, ତେବେ ଏହି ମାରାତ୍ମକ ଅପରାଧର ଶାସ୍ତି ଆମକୁ ହିଁ ଭୋଗିବାକୁ ହେବ, ଏବଂ (ତୁମମାନଙ୍କ ଅପରାଧର ଶାସ୍ତି ଆମକୁ ଭୋଗିବାକୁ ହେବ ନାହିଁ କାରଣ) ଯେଉଁ ମାରାତ୍ମକ ଅପରାଧ ତୁମେମାନେ କରୁଅଛ ଆମେ ସେଥିରୁ ମୁକ୍ତ ।''

اَمْ يَقُوْلُوْنَ افْتَرٰىهُ ؕ قُلْ اِنِ افْتَرَيْتُهٗ فَعَلَيَّ اِجْرَامِيْ وَاَنَا بَرِيْٓءٌ مِّمَّا تُجْرِمُوْنَ ۧ﴿۳۶﴾

ରୁ: ୪

୩୭. ଏବଂ ନୂହଙ୍କ ପ୍ରତି (ଏହା ମଧ୍ୟ) ଓହି କରାଯାଇଥିଲା ଯେ ଯେଉଁମାନେ ବିଶ୍ୱାସ କରିଛନ୍ତି, ସେମାନଙ୍କ ବ୍ୟତୀତ ତୁମ ସମ୍ପ୍ରଦାୟର ଅନ୍ୟ କେହି କଦାପି ବିଶ୍ୱାସ କରିବେ ନାହିଁ; ସୁତରାଂ ସେମାନେ ଯାହା (କିଛି) କରୁଛନ୍ତି ସେଥିଯୋଗୁଁ ତୁମେ ଦୁଃଖ କର ନାହିଁ ।

وَاُوْحِيَ اِلٰى نُوْحٍ اَنَّهٗ لَنْ يُّؤْمِنَ مِنْ قَوْمِكَ اِلَّا مَنْ قَدْ اٰمَنَ فَلَا تَبْتَئِسْ بِمَا كَانُوْا يَفْعَلُوْنَ ۚۖ﴿۳۷﴾

୩୮. ଏବଂ ତୁମେ ଆମ ଚକ୍ଷୁ (ସମ୍ମୁଖରେ) ଓ ଆମର ଓହି ଅନୁସାରେ ନୌକା ନିର୍ମାଣ କର; ଏବଂ ଯେଉଁମାନେ ଅତ୍ୟାଚାର (ପନ୍ଥା ଅବଲମ୍ବନ) କରିଛନ୍ତି, ସେମାନଙ୍କ ସଂକ୍ରାନ୍ତରେ ଆମକୁ କିଛି କୁହ ନାହିଁ; ସେମାନଙ୍କୁ ନିଶ୍ଚୟ ଜଳରେ ବୁଡାଇ ଦିଆଯିବ ।

وَاصْنَعِ الْفُلْكَ بِاَعْيُنِنَا وَوَحْيِنَا وَلَا تُخَاطِبْنِيْ فِي الَّذِيْنَ ظَلَمُوْا ۚ اِنَّهُمْ مُّغْرَقُوْنَ ﴿۳۸﴾

୩୯. ଏବଂ ସେ ଆମ ଆଦେଶ ମୁତାବକ ନୌକା ନିର୍ମାଣ କରିବାକୁ ଲାଗିଲେ; ଏବଂ ଯେତେବେଳେ ତାହାଙ୍କ ସମ୍ପ୍ରଦାୟର ମୁଖ୍ୟ ବ୍ୟକ୍ତିମାନେ ତାହାଙ୍କୁ ଅତିକ୍ରମ କରି ଯାଉଥିଲେ, ସେତେବେଳେ ସେମାନେ ତାହାଙ୍କୁ ପରିହାସ କରୁଥିଲେ; (ଏଥିଯୋଗୁଁ) ସେ କହିଥିଲେ, ''ଯଦି (ଆଜି) ତୁମେମାନେ ଆମମାନଙ୍କୁ ପରିହାସ କରୁଥାଅ, ତେବେ (କାଲି) ଆମେମାନେ (ମଧ୍ୟ) ତୁମମାନଙ୍କୁ ପରିହାସ କରିବୁ ଯେପରି (ଆଜି) ତୁମେମାନେ ଆମମାନଙ୍କୁ ପରିହାସ କରୁଅଛ ।''

وَيَصْنَعُ الْفُلْكَ ۟ وَكُلَّمَا مَرَّ عَلَيْهِ مَلَاٌ مِّنْ قَوْمِهٖ سَخِرُوْا مِنْهُ ؕ قَالَ اِنْ تَسْخَرُوْا مِنَّا فَاِنَّا نَسْخَرُ مِنْكُمْ كَمَا تَسْخَرُوْنَ ؕ﴿۳۹﴾

୪୦. ''ତତ୍ପରେ ତୁମେମାନେ ଶୀଘ୍ର ଜାଣିପାରିବ (ଯେ) କାହା ପ୍ରତି ଏଭଳି ଶାସ୍ତି ଉପସ୍ଥିତ ହେବ ଯାହା ତାକୁ ଅପମାନିତ କରିବ, ଏବଂ କାହା ପ୍ରତି ଚିରନ୍ତନ ଶାସ୍ତି ଉପସ୍ଥିତ ହେବ ।''

فَسَوْفَ تَعْلَمُوْنَ ۙ مَنْ يَّاْتِيْهِ عَذَابٌ يُّخْزِيْهِ وَيَحِلُّ عَلَيْهِ عَذَابٌ مُّقِيْمٌ ﴿۴۰﴾

حَتّٰۤى اِذَا جَآءَ اَمۡرُنَا وَفَارَ التَّنُّوۡرُ ۙ قُلۡنَا احۡمِلۡ فِيۡهَا مِنۡ كُلٍّ زَوۡجَيۡنِ اثۡنَيۡنِ وَاَهۡلَكَ اِلَّا مَنۡ سَبَقَ عَلَيۡهِ الۡقَوۡلُ وَمَنۡ اٰمَنَ ؕ وَمَاۤ اٰمَنَ مَعَهٗۤ اِلَّا قَلِيۡلٌ ﴿٤١﴾

୪୧. ଏପରିକି ଯେତେବେଳେ (ଶାସ୍ତିପାଇଁ) ଆମ୍ଭର ଆଦେଶ[1] ଉପସ୍ଥିତ ହେବ ଓ ଝରଣାରୁ ଜଳ ନିର୍ଗତ ହେବ, ସେତେବେଳେ ଆମ୍ଭେ କହିବୁ, "ପ୍ରତ୍ୟେକ (ପ୍ରକାର ପ୍ରାଣୀ) ମଧ୍ୟରୁ ଏକ ଯୋଡ଼ା (ଅର୍ଥାତ୍ ମାଈ ଓ ଅଣ୍ଡିରା), ଏବଂ ଯେଉଁମାନଙ୍କ (ବିନାଶ) ସଂକ୍ରାନ୍ତରେ ପୂର୍ବରୁ (ଆମ୍ଭର) ନିର୍ଦ୍ଦେଶନାମା ଦିଆଯାଇଅଛି ସେମାନଙ୍କ ବ୍ୟତୀତ ତୁମ୍ଭ ପରିବାରବର୍ଗ ତଥା ଯେଉଁମାନେ (ତୁମ୍ଭ ପ୍ରତି) ବିଶ୍ୱାସ କରିଛନ୍ତି ସେମାନଙ୍କୁ ତହିଁରେ (ଅର୍ଥାତ୍ ନୌକାରେ) ଆରୋହଣ କରାଅ." ଏବଂ ସ୍ୱଳ୍ପ ସଂଖ୍ୟକ (ଲୋକଙ୍କ) ବ୍ୟତୀତ (ଅନ୍ୟମାନେ) ତାହାଙ୍କ ଉପରେ ବିଶ୍ୱାସ କରି ନ ଥିଲେ ।

وَقَالَ ارۡكَبُوۡا فِيۡهَا بِسۡمِ اللّٰهِ مَجۡرٖٮهَا وَمُرۡسٰٮهَا ؕ اِنَّ رَبِّىۡ لَغَفُوۡرٌ رَّحِيۡمٌ ﴿٤٢﴾

୪୨. ସୁତରାଂ (ଯେତେବେଳେ ବାତ୍ୟା ଆସିଗଲା, ସେତେବେଳେ) ସେ (ନିଜର ସହଚରମାନଙ୍କୁ) କହିଲେ, "ଏଥିରେ ଆରୋହଣ କର; ଅଲ୍ଲାହ୍‌ଙ୍କ ନାମ (ଅର୍ଥାତ୍ ଅଲ୍ଲାହ୍‌ଙ୍କ କୃପା) ଅନୁସାରେ ଏହା ଗତିକରିବ ଓ ଅଟକିବ; ବାସ୍ତବରେ ଆମ୍ଭର ପାଳନକର୍ତ୍ତା ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।"

وَهِىَ تَجۡرِىۡ بِهِمۡ فِىۡ مَوۡجٍ كَالۡجِبَالِ وَنَادٰى نُوۡحُ ۨابۡنَهٗ وَكَانَ فِىۡ مَعۡزِلٍ يّٰبُنَىَّ ارۡكَبْ مَّعَنَا وَلَا تَكُنۡ مَّعَ الۡكٰفِرِيۡنَ ﴿٤٣﴾

୪୩. ଏବଂ ଏହା ସେମାନଙ୍କୁ ନେଇ ପର୍ବତ ସଦୃଶ (ଉଚ୍ଚ) ତରଙ୍ଗ ମଧ୍ୟରେ ଗତି କରିବାକୁ ଲାଗିଲା; ଏବଂ (ଏହି ସମୟରେ) ନୁହ ନିଜ ପୁତ୍ରକୁ, ଯେ କି ତାଙ୍କଠାରୁ (ପୃଥକ୍ ହୋଇ) ଅନ୍ୟ ଦିଗରେ ଗ୍ଭଲି ଯାଇଥିଲା ଡାକିଲେ, "ହେ ଆମ୍ଭର ପୁତ୍ର ! ତୁମ୍ଭେ ଆମ୍ଭ ସହିତ ଆରୋହଣ କର, ଏବଂ ଅବିଶ୍ୱାସକାରୀମାନଙ୍କ ସହିତ ରହ ନାହିଁ ।"

قَالَ سَاٰوِىۡۤ اِلٰى جَبَلٍ يَّعۡصِمُنِىۡ مِنَ الۡمَآءِ ؕ قَالَ لَا عَاصِمَ الۡيَوۡمَ مِنۡ اَمۡرِ اللّٰهِ اِلَّا مَنۡ رَّحِمَ ۚ وَحَالَ بَيۡنَهُمَا الۡمَوۡجُ فَكَانَ مِنَ الۡمُغۡرَقِيۡنَ ﴿٤٤﴾

୪୪. ସେ କହିଲା, "ମୁଁ ଶୀଘ୍ର କୌଣସି ପର୍ବତ ଉପରେ ଆଶ୍ରୟ ନେବି ଯାହା ମୋତେ ଏହି ଜଳ (ପ୍ଲାବନ) ରୁ ରକ୍ଷା କରିବ," ସେ କହିଲେ, "ଯାହାଙ୍କ ପ୍ରତି ସେ (ଅଲ୍ଲାହ୍) କରୁଣା କରିବେ ତାହା ବ୍ୟତୀତ ଆଜି ଅଲ୍ଲାହ୍‌ଙ୍କର ଏହି (ଶାସ୍ତି ରୂପକ) ଆଦେଶରୁ କେହି (କାହାକୁ) ରକ୍ଷା କରିପାରିବେ ନାହିଁ." ଏହି ସମୟରେ ଉଭୟଙ୍କ ମଧ୍ୟରେ ତରଙ୍ଗ ମାଡ଼ି ଆସିଲା; ଏବଂ ସେ ଜଳମଗ୍ନ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେଲା ।

---

୧. ଏଠାରେ ଅବଶ୍ୟ ଅତୀତ କାଳର କ୍ରିୟା ପ୍ରୟୋଗ କରାଯାଇଛି ପବିତ୍ର କୋରାନରେ ଭବିଷ୍ୟବାଣୀଗୁଡ଼ିକରେ ଅତୀତ କାଳ ପ୍ରାୟଶଃ ବ୍ୟବହୃତ ହୋଇଥାଏ । ଏହା ଏଥିଯୋଗୁଁ ଯେ ଯେପରି ଅତୀତର କୌଣସି ବିଷୟ ଯେତିକି ବିଶ୍ୱାସ ଯୋଗ୍ୟ ସେହିପରି ଏହା ମଧ୍ୟ ସେତିକି ବିଶ୍ୱାସଯୋଗ୍ୟ ।

୪୫. ଏହାପରେ (ପୃଥିବୀକୁ) କୁହାଗଲା, "ହେ ପୃଥିବୀ ! ତୁ (ବର୍ତ୍ତମାନ) ନିଜର ଜଳକୁ ଶୋଷଣ କର, ଏବଂ (ଆକାଶକୁ କୁହାଗଲା) ହେ ଆକାଶ ! ତୁ (ବର୍ତ୍ତମାନ ଜଳ ବର୍ଷଣରୁ) କ୍ଷାନ୍ତ ହୁଅ;" ଏବଂ ଜଳକୁ ଶୁଷ୍କ କରାଗଲା ଏବଂ ଏ ଘଟଣା ସମାପ୍ତ ହେଲା; ଏବଂ ସେହି ନୌକା ଜୁଦି[୧] ଉପରେ (ଯାଇ) ଅଟକିଲା, ଏବଂ କୁହାଗଲା, "(ହେ ଶାସ୍ତିପ୍ରଦାନକାରୀ ଦେବଦୂତଗଣ !) ଅତ୍ୟାଚାରୀମାନଙ୍କୁ ବିନାଶ କର ।"

وَقِيلَ يَا أَرْضُ ابْلَعِي مَاءَكِ وَيَا سَمَاءُ أَقْلِعِي وَغِيضَ الْمَاءُ وَقُضِيَ الْأَمْرُ وَاسْتَوَتْ عَلَى الْجُودِيِّ ۖ وَقِيلَ بُعْدًا لِّلْقَوْمِ الظَّالِمِينَ ﴿٤٥﴾

୪୬. ଏବଂ ନୁହ ନିଜ ପାଳନକର୍ତ୍ତାଙ୍କୁ ଡାକିକରି କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭର ପୁତ୍ର ନିଶ୍ଚିତ ରୂପେ ଆମ୍ଭ ପରିବାରରେ ଅନ୍ତର୍ଭୁକ୍ତ, ଏବଂ ତୁମର ଅଙ୍ଗୀକାର ମଧ୍ୟ ସତ୍ୟ ଅଟେ, ଏବଂ ତୁମେ ମୀମାଂସାକାରୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ।"

وَنَادَىٰ نُوحٌ رَّبَّهُ فَقَالَ رَبِّ إِنَّ ابْنِي مِنْ أَهْلِي وَإِنَّ وَعْدَكَ الْحَقُّ وَأَنتَ أَحْكَمُ الْحَاكِمِينَ ﴿٤٦﴾

୪୭. (ଅଲ୍ଲାହ) କହିଲେ, "ହେ ନୁହ ! ସେ କେବେ ହେଁ ତୁମ ପରିବାରର ଅନ୍ତର୍ଭୁକ୍ତ ନୁହେଁ; (କାରଣ) ନିଃସନ୍ଦେହରେ ସେ ଦୁରାଚାରୀ ଅଟେ ; ସୁତରାଂ ଯେଉଁ ବିଷୟରେ (ଆମ୍ଭେ) ତୁମ୍ଭଙ୍କୁ ଜ୍ଞାନ ପ୍ରଦାନ କରି ନାହୁଁ, ସେ ସଂକ୍ରାନ୍ତରେ ତୁମେ ଆମ୍ଭ ନିକଟରେ ପ୍ରାର୍ଥନା କର ନାହିଁ, ଆମ୍ଭେ ତୁମ୍ଭଙ୍କୁ ଉପଦେଶ ଦେଇଅଛୁ ଯେ ନିର୍ବୋଧମାନଙ୍କ ସଦୃଶ କଦାପି କାର୍ଯ୍ୟ କର ନାହିଁ ।"

قَالَ يَا نُوحُ إِنَّهُ لَيْسَ مِنْ أَهْلِكَ ۖ إِنَّهُ عَمَلٌ غَيْرُ صَالِحٍ ۖ فَلَا تَسْأَلْنِ مَا لَيْسَ لَكَ بِهِ عِلْمٌ ۖ إِنِّي أَعِظُكَ أَن تَكُونَ مِنَ الْجَاهِلِينَ ﴿٤٧﴾

୪୮. (ନୁହ) କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଯେଉଁ ବିଷୟରେ ଆମ୍ଭର ପ୍ରକୃତ ଜ୍ଞାନ ନାହିଁ, ସେ ବିଷୟରେ ତୁମ୍ଭଙ୍କୁ କୌଣସି ପ୍ରଶ୍ନ ପଚାରିବାରୁ (ନିବୃତ୍ତ ହେବା ପାଇଁ) ଆମ୍ଭେ ତୁମ୍ଭର ଶରଣ ଭିକ୍ଷା କରୁଅଛୁ; ଏବଂ ଯଦି ତୁମେ ଆମ୍ଭଙ୍କୁ (ଆମ୍ଭର ପୂର୍ବବର୍ତ୍ତୀ ତ୍ରୁଟିପାଇଁ) କ୍ଷମା ନ କର ଓ ଆମ୍ଭ ପ୍ରତି କରୁଣା ନ କର, ତେବେ ଆମ୍ଭେ କ୍ଷତିଗ୍ରସ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବୁ ।"

قَالَ رَبِّ إِنِّي أَعُوذُ بِكَ أَنْ أَسْأَلَكَ مَا لَيْسَ لِي بِهِ عِلْمٌ ۖ وَإِلَّا تَغْفِرْ لِي وَتَرْحَمْنِي أَكُن مِّنَ الْخَاسِرِينَ ﴿٤٨﴾

୪୯. (ତପରେ ତାହାଙ୍କୁ) କୁହାଗଲା, "ହେ ନୁହ ! ତୁମେ ଆମ୍ଭଠାରୁ (ପ୍ରାପ୍ତ) ଶାନ୍ତି ଓ ଆଶୀର୍ବାଦ ଘେନି ଯାତ୍ରାକର[୨] ଯାହା ତୁମ୍ଭ ପ୍ରତି ଓ ତୁମ୍ଭ ସହିତ ଥିବା ସମ୍ପ୍ରଦାୟ ପ୍ରତି ପ୍ରେରିତ ହୋଇଅଛି; ଏବଂ ଏପରି କେତେକ ସମ୍ପ୍ରଦାୟ ଅଛି, ଯେଉଁମାନଙ୍କୁ ଆମ୍ଭେ ନିଶ୍ଚୟ (ପାର୍ଥିବ ଜୀବନର) ସାମଗ୍ରୀ ପ୍ରଦାନ କରିବୁ; (କିନ୍ତୁ) ତା' ପରେ ସେମାନଙ୍କ ପ୍ରତି ଆମ୍ଭ ତରଫରୁ ଯନ୍ତ୍ରଣାଦାୟକ ଶାସ୍ତି ଉପସ୍ଥିତ ହେବ ।"

قِيلَ يَا نُوحُ اهْبِطْ بِسَلَامٍ مِّنَّا وَبَرَكَاتٍ عَلَيْكَ وَعَلَىٰ أُمَمٍ مِّمَّن مَّعَكَ ۚ وَأُمَمٌ سَنُمَتِّعُهُمْ ثُمَّ يَمَسُّهُم مِّنَّا عَذَابٌ أَلِيمٌ ﴿٤٩﴾

୧. ଏହା ଏକ ପାହାଡ଼ର ନାମ । ସାଂପ୍ରତିକ ଗବେଷଣାରୁ ଜଣାଯାଏ ଯେ ଏହା ଆରମେନିଆରେ ଅବସ୍ଥିତ ।

୨. ପ୍ରତୀତ ହେଉଛି, ହଜରତ ନୁହଙ୍କ ଅବତାର-କାଳ ଏକ ଦୀର୍ଘ ସମୟ ପର୍ଯ୍ୟନ୍ତ ଜାରି ରହିଥିଲା ଓ ସେହି ସମୟ ମଧ୍ୟରେ ବହୁ ସଂପ୍ରଦାୟ ଗଠିତ ହୋଇଥିଲା ଓ ନଷ୍ଟଭ୍ରଷ୍ଟ ହୋଇଥିଲା । ତେଣୁ ଏଠାରେ ଯାତ୍ରାର ଅର୍ଥ ନୌକା ଯାତ୍ରା ନୁହେଁ ବରଂ ଅବତାର-କାଳର ଯାତ୍ରା ।

تِلْكَ مِنْ اَنْۢبَآءِ الْغَيْبِ نُوْحِيْهَآ اِلَيْكَ ۚ مَا كُنْتَ تَعْلَمُهَآ اَنْتَ وَلَا قَوْمُكَ مِنْ قَبْلِ هٰذَا ۛ فَاصْبِرْ ۛ اِنَّ الْعَاقِبَةَ لِلْمُتَّقِيْنَ ۝

୫୦. "ଏହା[1] (ଅର୍ଥାତ୍ ଏହି ଭୟାବହ ବୃତ୍ତାନ୍ତ) ଅଦୃଷ୍ଟ ବିଷୟକ ମୁଖ୍ୟ ସମ୍ବାଦମାନଙ୍କ ମଧ୍ୟରୁ ଅନ୍ୟତମ ଅଟେ ଯାହା ଆମ୍ଭେ ତୁମ୍ଭପ୍ରତି ଓହି ମାଧ୍ୟମରେ ପ୍ରେରଣ କରୁଅଛୁ; ଏହାକୁ ଏଥି ପୂର୍ବରୁ ତୁମ୍ଭେ ବା ତୁମ୍ଭର ସମ୍ପ୍ରଦାୟ ଜାଣି ନ ଥିଲେ; ସୁତରାଂ ତୁମ୍ଭେ ଧୈର୍ଯ୍ୟ ଧର; ବାସ୍ତବିକ ଧର୍ମଭୀରୁମାନଙ୍କ ପାଇଁ ଉତ୍ତମ ପରିଣାମ ଅଛି ।

**ରୁ: ୫**

وَاِلٰى عَادٍ اَخَاهُمْ هُوْدًا ۗ قَالَ يٰقَوْمِ اعْبُدُوا اللّٰهَ مَا لَكُمْ مِّنْ اِلٰهٍ غَيْرُهٗ ۗ اِنْ اَنْتُمْ اِلَّا مُفْتَرُوْنَ ۝

୫୧. ଏବଂ ଆଦଙ୍କ (ସମ୍ପ୍ରଦାୟ) ପ୍ରତି ସେମାନଙ୍କ ଭାଇ ହୁଦଙ୍କୁ (ଆମ୍ଭେ ରସୁଲ ରୂପେ ପ୍ରେରଣ କରିଥିଲୁ); ସେ (ସେମାନଙ୍କୁ) କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ତୁମ୍ଭେମାନେ ଅଲ୍ଲାହଙ୍କର ଉପାସନା କର; ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ ଉପାସ୍ୟ ନାହିଁ; ତୁମେମାନେ (ଅଲ୍ଲାହଙ୍କର ସମକକ୍ଷ କରିବାରେ) କେବଳ ମିଥ୍ୟା କଳ୍ପନା କରୁଅଛ ।"

يٰقَوْمِ لَآ اَسْـَٔلُكُمْ عَلَيْهِ اَجْرًا ۗ اِنْ اَجْرِيَ اِلَّا عَلَى الَّذِيْ فَطَرَنِيْ ۗ اَفَلَا تَعْقِلُوْنَ ۝

୫୨. "ହେ ଆମ୍ଭର ସମ୍ପ୍ରଦାୟ ! ଆମ୍ଭେ ଏଥିପାଇଁ ତୁମମାନଙ୍କଠାରୁ କୌଣସି ପୁରସ୍କାର ଗ୍ରହୁଁନାହୁଁ; ଆମ୍ଭର ପୁରସ୍କାର କେବଳ ତାଙ୍କରି ନିକଟରେ ଗଚ୍ଛିତ ରହିଅଛି ଯେ ଆମ୍ଭଙ୍କୁ ଆକୃତି ପ୍ରଦାନ କରିଛନ୍ତି; ତଥାପି କ'ଣ ତୁମେମାନେ ବୁଝି ପାରୁନାହଁ ?"

وَيٰقَوْمِ اسْتَغْفِرُوْا رَبَّكُمْ ثُمَّ تُوْبُوْٓا اِلَيْهِ يُرْسِلِ السَّمَآءَ عَلَيْكُمْ مِّدْرَارًا وَّيَزِدْكُمْ قُوَّةً اِلٰى قُوَّتِكُمْ وَلَا تَتَوَلَّوْا مُجْرِمِيْنَ ۝

୫୩. "ହେ ଆମ୍ଭର ସମ୍ପ୍ରଦାୟ ! ତୁମେମାନେ ନିଜ ପାଳନକର୍ତ୍ତାଙ୍କଠାରେ କ୍ଷମାଭିକ୍ଷା କର; ତା'ପରେ ତାହାଙ୍କ ପ୍ରତି ମନୋନିବେଶ କର, (ଯାହା) ଫଳରେ ସେ ତୁମମାନଙ୍କ ପାଇଁ ପ୍ରବଳ ଜଳବର୍ଷଣକାରୀ ମେଘ ପ୍ରେରଣ କରିବେ, ଏବଂ ତୁମମାନଙ୍କୁ ଅଧିକରୁ ଅଧିକତର ଶକ୍ତି ପ୍ରଦାନ କରିବେ ; ଏବଂ ଅପରାଧୀ ହୋଇ ଅଲ୍ଲାହଙ୍କ ନିକଟରୁ ଫେରି ଯାଅ ନାହିଁ ।"

قَالُوْا يٰهُوْدُ مَا جِئْتَنَا بِبَيِّنَةٍ وَّمَا نَحْنُ بِتَارِكِيْٓ اٰلِهَتِنَا عَنْ قَوْلِكَ وَمَا نَحْنُ لَكَ بِمُؤْمِنِيْنَ ۝

୫୪. ସେମାନେ କହିଲେ, "ହେ ହୁଦ ! ତୁମ୍ଭେ ଆମମାନଙ୍କ ନିକଟକୁ (ନିଜ ଦାବି ସଂକ୍ରାନ୍ତରେ) କୌଣସି ସ୍ପଷ୍ଟ ପ୍ରମାଣ ଆଣି ନାହଁ; ଏବଂ ଆମେମାନେ କେବଳ ତୁମ୍ଭ କଥାରେ ଆମମାନଙ୍କର ଉପାସ୍ୟମାନଙ୍କୁ ପରିତ୍ୟାଗ କରିବୁ ନାହିଁ କି ଆମେମାନେ ତୁମ୍ଭ ପ୍ରତି ବିଶ୍ୱାସ କରିବୁ ନାହିଁ ।"

اِنْ نَّقُوْلُ اِلَّا اعْتَرٰىكَ بَعْضُ اٰلِهَتِنَا بِسُوْٓءٍ ۗ قَالَ اِنِّيْٓ اُشْهِدُ اللّٰهَ وَاشْهَدُوْٓا اَنِّيْ بَرِيْٓءٌ مِّمَّا تُشْرِكُوْنَ ۝

୫୫./୫୬. "(ତୁମ୍ଭ ସଂକ୍ରାନ୍ତରେ) ଆମେମାନେ କେବଳ ଏତିକି କହୁଅଛୁ ଯେ ଆମମାନଙ୍କର କୌଣସି ଉପାସ୍ୟ ମନ୍ଦ ଉଦ୍ଦେଶ୍ୟ ନେଇ ତୁମ୍ଭ ପଛରେ ଲାଗି ଯାଇଛନ୍ତି; " ସେ କହିଲେ, "ଆମ୍ଭେ ଅଲ୍ଲାହଙ୍କୁ (ଏ ବିଷୟରେ) ସାକ୍ଷୀ କରୁଅଛୁ,

---

୧. ଏହା ହଜରତ ନୂହଙ୍କ ବୃତ୍ତାନ୍ତ ନୁହେଁ ବରଂ ଏଠାରେ ହଜରତ ମହମ୍ମଦଙ୍କ ସଂପ୍ରଦାୟ ଉପରେ ଅବତୀର୍ଣ୍ଣ ହେବା ଶାସ୍ତି ସମ୍ବନ୍ଧରେ ସୂଚନା ଦିଆଯାଇଛି ।

ଏବଂ ତୁମେମାନେ ମଧ୍ୟ ସାକ୍ଷୀ ରୁହ ଯେ ତୁମେମାନେ ଅନ୍ୟ ଯାହାକୁ ଅଲ୍ଲାହ୍‌ଙ୍କର ସମକକ୍ଷ କରୁଅଛ ଆମେ ତାହାକୁ ପ୍ରତ୍ୟାଖ୍ୟାନ କରୁଅଛୁ; ସୁତରାଂ ଯେଦି ଆମେ ଭୁଲ କରିଥାଉ (ତେବେ) ତୁମେମାନେ ସମସ୍ତେ ଆମ୍ଭ ବିରୁଦ୍ଧରେ ଯୋଜନା କର ଏବଂ ଆମ୍ଭଙ୍କୁ କୌଣସି ଅବ୍ୟାହତି ଦିଅ ନାହିଁ।"

مِنْ دُوْنِهٖ فَكِيْدُوْنِيْ جَمِيْعًا ثُمَّ لَا تُنْظِرُوْنِ ٥٥

୫୭. "ଆମେ ଅଲ୍ଲାହ୍‌ଙ୍କ ଉପରେ ଭରସା କରୁଅଛୁ ଯେ କି ଆମ୍ଭର ପାଳନକର୍ତ୍ତା ଓ ତୁମମାନଙ୍କର (ମଧ୍ୟ) ପାଳନକର୍ତ୍ତା; ଏବଂ (ପୃଥିବୀରେ) ଏପରି କୌଣସି ବିଚରଣକାରୀ (ପ୍ରାଣୀ) ନାହିଁ ଯେ କି ତାହାଙ୍କର (ଅର୍ଥାତ୍ ଅଲ୍ଲାହ୍‌ଙ୍କର) ଆୟତ୍ତାଧୀନ ନୁହେଁ; (ବିଶ୍ୱାସକାରୀମାନଙ୍କୁ ସାହାଯ୍ୟ କରିବା ଓ ରକ୍ଷା କରିବାପାଇଁ) ଆମ୍ଭର ପାଳନକର୍ତ୍ତା ବାସ୍ତବରେ ସରଳ ପଥରେ ଦଣ୍ଡାୟମାନ ଅଛନ୍ତି।"

اِنِّيْ تَوَكَّلْتُ عَلَى اللّٰهِ رَبِّيْ وَرَبِّكُمْ مَا مِنْ دَآبَّةٍ اِلَّا هُوَ اٰخِذٌۢ بِنَاصِيَتِهَا اِنَّ رَبِّيْ عَلٰى صِرَاطٍ مُّسْتَقِيْمٍ ٥٦

୫୮. "ସୁତରାଂ ଯଦି ତୁମେମାନେ ଆମ୍ଭ ନିକଟରୁ ଫେରିଯାଅ, ତେବେ (ଏଥିରେ ଆମ୍ଭର କୌଣସି କ୍ଷତି ହେବ ନାହିଁ କାରଣ) ଯେଉଁ ଶିକ୍ଷା ସହିତ ଆମେ ତୁମ୍ଭ ପ୍ରତି ପ୍ରେରିତ ହୋଇଅଛୁ, ତାହା ଆମେ ତୁମମାନଙ୍କ ନିକଟରେ ପହଞ୍ଚାଇ ଦେଇଅଛୁ; ଏବଂ (ଯେଦି ତୁମେମାନେ ଫେରିଯିବ ତେବେ) ଆମ୍ଭର ପାଳନକର୍ତ୍ତା ତୁମମାନଙ୍କ ପରିବର୍ତ୍ତେ ଅନ୍ୟ କୌଣସି ସମ୍ପ୍ରଦାୟକୁ ଉତ୍ତରାଧିକାରୀ କରିଦେବେ; ଏବଂ ତୁମେମାନେ ତାହାଙ୍କର କୌଣସି କ୍ଷତି କରିପାରିବ ନାହିଁ; ବାସ୍ତବରେ ଆମ୍ଭର ପାଳନକର୍ତ୍ତା ସକଳ ବିଷୟର ସଂରକ୍ଷକ ଅଟନ୍ତି।"

فَاِنْ تَوَلَّوْا فَقَدْ اَبْلَغْتُكُمْ مَّآ اُرْسِلْتُ بِهٖٓ اِلَيْكُمْ وَيَسْتَخْلِفُ رَبِّيْ قَوْمًا غَيْرَكُمْ وَلَا تَضُرُّوْنَهٗ شَيْـًٔا اِنَّ رَبِّيْ عَلٰى كُلِّ شَيْءٍ حَفِيْظٌ ٥٧

୫୯. ଏବଂ ଯେତେବେଳେ (ଶାସ୍ତି ସଂକ୍ରାନ୍ତରେ) ଆମ୍ଭର ଆଦେଶ ଉପସ୍ଥିତ ହେଲା, ସେତେବେଳେ ଆମେ ହୁଦଙ୍କୁ ଓ ଯେଉଁମାନେ ତାହାଙ୍କ ସହିତ ବିଶ୍ୱାସ କରିଥିଲେ, ସେମାନଙ୍କୁ ମଧ୍ୟ ନିଜ କରୁଣା ଦ୍ୱାରା (ଏହି ଶାସ୍ତିରୁ) ମୁକ୍ତି ପ୍ରଦାନ କରିଥିଲୁ, ଏବଂ ଆମେ ସେମାନଙ୍କୁ ଏକ କଠୋର ଶାସ୍ତିରୁ ରକ୍ଷା କରିଥିଲୁ।

وَلَمَّا جَآءَ اَمْرُنَا نَجَّيْنَا هُوْدًا وَّالَّذِيْنَ اٰمَنُوْا مَعَهٗ بِرَحْمَةٍ مِّنَّا وَنَجَّيْنٰهُمْ مِّنْ عَذَابٍ غَلِيْظٍ ٥٨

୬୦. ଏବଂ ଏମାନେ ହିଁ (ଅହଙ୍କାରୀ) ଆଦ ସମ୍ପ୍ରଦାୟ ଥିଲେ, ଯେଉଁମାନେ କି (ଜାଣିଶୁଣି) ନିଜ ପାଳନକର୍ତ୍ତାଙ୍କର ନିଦର୍ଶନଗୁଡିକୁ ଅସ୍ୱୀକାର କରିଥିଲେ; ଏବଂ ତାହାଙ୍କର (ଅର୍ଥାତ୍ ଅଲ୍ଲାହ୍‌ଙ୍କର) ରସୁଲମାନଙ୍କୁ ଅମାନ୍ୟ କରିଥିଲେ ଏବଂ (ସତ୍ୟର ବିରୁଦ୍ଧାଚରଣ କରୁଥିବା) ପ୍ରତ୍ୟେକ ଦୁରାଗ୍ରହୀଙ୍କ ଆଦେଶର ଅନୁସରଣ କରୁଥିଲେ।

وَتِلْكَ عَادٌ جَحَدُوْا بِاٰيٰتِ رَبِّهِمْ وَعَصَوْا رُسُلَهٗ وَاتَّبَعُوْٓا اَمْرَ كُلِّ جَبَّارٍ عَنِيْدٍ ٥٩

୬୧. ଏବଂ ଏହି ପୃଥିବୀରେ (ମଧ୍ୟ) ସେମାନଙ୍କୁ ଅଭିଶାପ ଅନୁଧାବନ କରିଛି ଓ କୟାମତ ଦିନ (ମଧ୍ୟ ଅନୁଧାବନ କରିବ); ଶୁଣ ! ଆଦ (ସମ୍ପ୍ରଦାୟ) ନିଶ୍ଚୟ ସେମାନଙ୍କ ପାଳନକର୍ତ୍ତାଙ୍କ (ଅନୁଗ୍ରହ) ପ୍ରତି ଅବିଶ୍ୱାସ କରିଥିଲେ; ସୁତରାଂ (ଶାସ୍ତି ବିଧାନକାରୀ ଦେବଦୂତଙ୍କୁ ଆଦେଶ ଦିଆଗଲା ଯେ) ଆଦ ଅର୍ଥାତ୍ ହୁଦଙ୍କ ସମ୍ପ୍ରଦାୟ ପାଇଁ ଅଭିଶାପ ନିର୍ଦ୍ଧାରିତ କର ।

وَاُتۡبِعُوۡا فِىۡ هٰذِهِ الدُّنۡيَا لَعۡنَةً وَّيَوۡمَ الۡقِيٰمَةِ ؕ اَلَاۤ اِنَّ عَادًا كَفَرُوۡا رَبَّهُمۡ ؕ اَلَا بُعۡدًا لِّعَادٍ قَوۡمِ هُوۡدٍ ﴿٦١﴾

ରୁ: ୬

୬୨. ଏବଂ ସମୁଦଙ୍କ (ସମ୍ପ୍ରଦାୟ) ପ୍ରତି (ଆମ୍ଭେ) ସେମାନଙ୍କର ଭାଇ ସ୍ୱାଲେହଙ୍କୁ ପ୍ରେରଣ କରିଥିଲୁ; ସେ କହିଥିଲେ, "ହେ ଆମର ସମ୍ପ୍ରଦାୟ ! ତୁମେମାନେ ଅଲ୍ଲାହଙ୍କର ଉପାସନା କର; ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ ; ସେ ହିଁ ତୁମମାନଙ୍କୁ ଭୂପୃଷ୍ଠରୁ ଉତ୍‌ଥିତ କରିଛନ୍ତି ଏବଂ ସେଠାରେ ତୁମମାନଙ୍କୁ ଅବସ୍ଥାପିତ କରିଛନ୍ତି; ସୁତରାଂ ତୁମେମାନେ ତାହାଙ୍କଠାରୁ କ୍ଷମା ପ୍ରାର୍ଥନା କର, ତଥା ସମ୍ପୂର୍ଣ୍ଣରୂପେ ତାହାଙ୍କଠାରେ ମନୋନିବେଶ କର; ବାସ୍ତବରେ ଆମର ପାଳନକର୍ତ୍ତା (ଖୁବ୍) ନିକଟରେ ଅଛନ୍ତି; (ଏବଂ ପ୍ରାର୍ଥନା) ଗ୍ରହଣକାରୀ ଅଟନ୍ତି ।"

وَاِلٰى ثَمُوۡدَ اَخَاهُمۡ صٰلِحًا ۘ قَالَ يٰقَوۡمِ اعۡبُدُوا اللّٰهَ مَا لَكُمۡ مِّنۡ اِلٰهٍ غَيۡرُهٗ ؕ هُوَ اَنۡشَاَكُمۡ مِّنَ الۡاَرۡضِ وَاسۡتَعۡمَرَكُمۡ فِيۡهَا فَاسۡتَغۡفِرُوۡهُ ثُمَّ تُوۡبُوۡۤا اِلَيۡهِ ؕ اِنَّ رَبِّىۡ قَرِيۡبٌ مُّجِيۡبٌ ﴿٦٢﴾

୬୩. ସେମାନେ କହିଲେ, "ହେ ସ୍ୱାଲେହ ! ଏହା ପୂର୍ବରୁ ତୁମେ ଆମମାନଙ୍କ ପାଇଁ (ଭବିଷ୍ୟତର) ଆଶା ଥିଲ ; (ଏହା ସତ୍ତ୍ୱେ) କ'ଣ ତୁମେ ଆମମାନଙ୍କୁ ଆମମାନଙ୍କର ପୂର୍ବପୁରୁଷମାନେ ଯାହାଙ୍କର ଉପାସନା କରୁଥିଲେ ତାହାଙ୍କର ଉପାସନା କରିବାକୁ ବାରଣ କରୁଅଛ ? ଏବଂ ବାସ୍ତବରେ ତୁମେ ଆମମାନଙ୍କୁ ଯାହାଙ୍କ ନିକଟକୁ ଡାକୁଅଛ, ଆମେମାନେ ସେ ସଂକ୍ରାନ୍ତରେ ଏକ ଗୁରୁତର ସନ୍ଦେହରେ ପଡିଅଛୁ ।"

قَالُوۡا يٰصٰلِحُ قَدۡ كُنۡتَ فِيۡنَا مَرۡجُوًّا قَبۡلَ هٰذَاۤ اَتَنۡهٰٮنَاۤ اَنۡ نَّعۡبُدَ مَا يَعۡبُدُ اٰبَآؤُنَا وَاِنَّنَا لَفِىۡ شَكٍّ مِّمَّا تَدۡعُوۡنَاۤ اِلَيۡهِ مُرِيۡبٍ ﴿٦٣﴾

୬୪. ସେ କହିଲେ,"ହେ ଆମ ସମ୍ପ୍ରଦାୟ ! କୁହ, ଯଦି ଆମ୍ଭେ ନିଜ ପାଳନକର୍ତ୍ତାଙ୍କଠାରୁ (ପ୍ରାପ୍ତ) ସ୍ପଷ୍ଟ ପ୍ରମାଣ ପାଇଥାଉ ଏବଂ ସେ ଆମକୁ ତାହାଙ୍କ ସମୀପରୁ (ସ୍ୱତନ୍ତ୍ର) କରୁଣା ପ୍ରଦାନ କରିଥାଆନ୍ତି, ତେବେ (ଏହା ସତ୍ତ୍ୱେ) ଯଦି ଆମ୍ଭେ ଅଲ୍ଲାହଙ୍କୁ ଅମାନ୍ୟ କରୁ, ତେବେ ତାହାଙ୍କ ବିରୁଦ୍ଧରେ କିଏ ଆମକୁ ସାହାଯ୍ୟ କରିବ ? ସୁତରାଂ (ସେତେବେଳେ) ତୁମେମାନେ ଆମର କ୍ଷତି କରିବା ଛଡା ଅନ୍ୟ କିଛି କରିପାରିବ ନାହିଁ ।"

قَالَ يٰقَوۡمِ اَرَءَيۡتُمۡ اِنۡ كُنۡتُ عَلٰى بَيِّنَةٍ مِّنۡ رَّبِّىۡ وَاٰتٰٮنِىۡ مِنۡهُ رَحۡمَةً فَمَنۡ يَّنۡصُرُنِىۡ مِنَ اللّٰهِ اِنۡ عَصَيۡتُهٗ فَمَا تَزِيۡدُوۡنَنِىۡ غَيۡرَ تَخۡسِيۡرٍ ﴿٦٤﴾

وَيٰقَوْمِ هٰذِهٖ نَاقَةُ اللّٰهِ لَكُمْ اٰيَةً فَذَرُوْهَا تَاْكُلْ فِيْٓ اَرْضِ اللّٰهِ وَلَا تَمَسُّوْهَا بِسُوْٓءٍ فَيَاْخُذَكُمْ عَذَابٌ قَرِيْبٌ ۝٦٥

୬୫. "ଏବଂ ହେ ଆମ୍ଭର ସମ୍ପ୍ରଦାୟ ! ଏଇ ମାଈ ଓଟ[୧] ଅଲ୍ଲାହ୍‌ଙ୍କ ତରଫରୁ ତୁମମାନଙ୍କ ପାଇଁ ଏକ ନିଦର୍ଶନ ଅଟେ; ସୁତରାଂ ତାହାକୁ (ଅବାଧରେ) ବୁଲିବାକୁ ଛାଡିଦିଅ ଯେପରିକି ସେ ଅଲ୍ଲାହ୍‌ଙ୍କ ଭୂପୃଷ୍ଠରେ ଚଲାବୁଲା କରିବ ; ଏବଂ ତାହାକୁ କୌଣସି କଷ୍ଟ ଦିଅ ନାହିଁ, ନଚେତ୍ ତୁମମାନଙ୍କୁ ଏକ ଶାସ୍ତି ସହସା ଆକ୍ରାନ୍ତ କରିବ ।"

فَعَقَرُوْهَا فَقَالَ تَمَتَّعُوْا فِيْ دَارِكُمْ ثَلٰثَةَ اَيَّامٍ ۭ ذٰلِكَ وَعْدٌ غَيْرُ مَكْذُوْبٍ ۝٦٦

୬୬. କିନ୍ତୁ ସେମାନେ ତାହାର ଗୋଡ଼ଛି କାଟିଦେଲେ; ତେଣୁ (ସ୍ୱାଲେହ୍ ସେମାନଙ୍କୁ) କହିଲେ, "ତୁମେମାନେ ତିନିଦିନ ପର୍ଯ୍ୟନ୍ତ ସ୍ୱଗୃହରେ ଆନନ୍ଦଲାଭ କର; ଏହା ଏପରି ଏକ ଅଙ୍ଗୀକାର ଯାହା (କେବେହେଲେ) ଭଙ୍ଗ ହେବ ନାହିଁ ।"

فَلَمَّا جَاۗءَ اَمْرُنَا نَجَّيْنَا صٰلِحًا وَّالَّذِيْنَ اٰمَنُوْا مَعَهٗ بِرَحْمَةٍ مِّنَّا وَمِنْ خِزْيِ يَوْمِىِٕذٍ ۭ اِنَّ رَبَّكَ هُوَ الْقَوِيُّ الْعَزِيْزُ ۝٦٧

୬୭. ତପରେ ଯେତେବେଳେ ଆମ୍ଭର (ଶାସ୍ତିର) ଆଦେଶ ଉପସ୍ଥିତ ହେଲା, ସେତେବେଳେ ଆମ୍ଭେ ସ୍ୱାଲେହ୍ ଏବଂ ତାହାଙ୍କ ସହିତ ଯେଉଁମାନେ ବିଶ୍ୱାସ କରିଥିଲେ , ସେମାନଙ୍କୁ ନିଜ (ସ୍ୱତନ୍ତ୍ର) କରୁଣା ଦ୍ୱାରା ପ୍ରତ୍ୟେକ ବିପଦରୁ ଓ ବିଶେଷତଃ ସେହି ଦିବସରେ ଲାଞ୍ଛନାରୁ ଉଦ୍ଧାର କରି ଥିଲୁ; ବାସ୍ତବରେ ତୁମ୍ଭର ପାଳନକର୍ତ୍ତା ହିଁ ଶକ୍ତିଶାଳୀ (ଓ) ପରାକ୍ରମୀ ।

وَاَخَذَ الَّذِيْنَ ظَلَمُوا الصَّيْحَةُ فَاَصْبَحُوْا فِيْ دِيَارِهِمْ جٰثِمِيْنَ ۝٦٨

୬୮. ଏବଂ ଯେଉଁମାନେ ଅତ୍ୟାଚାର କରିଥିଲେ ସେମାନଙ୍କୁ ସେହି ଶାସ୍ତି ଆକ୍ରାନ୍ତ କଲା, ଏବଂ ସେମାନେ ସେଥିଯୋଗୁଁ ନିଜ ଘରେ ମୁହଁମାଡି ପଡି ରହିଲେ ।

كَاَنْ لَّمْ يَغْنَوْا فِيْهَا ۭ اَلَآ اِنَّ ثَمُوْدَا۟ كَفَرُوْا رَبَّهُمْ ۭ اَلَا بُعْدًا لِّثَمُوْدَ ۝٦٩

୬୯. (ସେମାନେ ଏପରି ବିନାଶ ହେଲେ) ସତେ ଯେପରି ସେମାନେ ସେଠାରେ କେବେ ହେଁ ବାସ କରୁ ନ ଥିଲେ; ମନେରଖ ! ସମୁଦ (ସମ୍ପ୍ରଦାୟ) ନିଜ ପାଳନକର୍ତ୍ତାଙ୍କ (ଅନୁଗ୍ରହ) ପ୍ରତି ଅବିଶ୍ୱାସ କରିଥିଲେ; ସୁତରାଂ (ଶାସ୍ତିବିଧାନକାରୀ ଦେବଦୂତଙ୍କୁ ଆଦେଶ ଦିଆଗଲା ଯେ) ସମୁଦ ସମ୍ପ୍ରଦାୟ ପାଇଁ ଅଭିଶାପ (ନିର୍ଦ୍ଧାରିତ) କର ।

ରୁ: ୬

وَلَقَدْ جَاۗءَتْ رُسُلُنَآ اِبْرٰهِيْمَ بِالْبُشْرٰى قَالُوْا سَلٰمًا ۭ قَالَ سَلٰمٌ فَمَا لَبِثَ اَنْ جَاۗءَ بِعِجْلٍ حَنِيْذٍ ۝٧٠

୭୦. ଏବଂ ବାସ୍ତବରେ ଆମ୍ଭର ଦୂତମାନେ ଇବ୍ରାହିମଙ୍କ ନିକଟକୁ ସୁସମାଚାର ସହିତ ଆସି କହିଥିଲେ, "(ତୁମ୍ଭ ପ୍ରତି) ଶାନ୍ତି ବର୍ଷଣ ହେଉ," ସେ ମଧ୍ୟ କହିଥିଲେ, "(ତୁମମାନଙ୍କ ପ୍ରତି ମଧ୍ୟ ସର୍ବଦା) ଶାନ୍ତି ବର୍ଷଣ ହେଉ,"; ତା' ପରେ (ସେ) ଅବିଳମ୍ବେ (ନିଆଁରେ) ସେକା ଯାଇଥିବା ଏକ ବାଛୁରୀ ଆଣିଲେ ।

---

୧. ଯେହେତୁ ହଜରତ ସ୍ୱାଲେହ୍ ସେହି ମାଈ ଓଟ ଉପରେ ଚଢ଼ି ଧର୍ମ ପ୍ରଚାର କରୁଥିଲେ ଅଲ୍ଲାହ୍ ତାହାକୁ ତାଙ୍କ ସଂପ୍ରଦାୟ ପାଇଁ ଏକ ନିଦର୍ଶନ କରିଥିଲେ ଓ ଜଣାଇଥିଲେ ଯେ ଯଦି ତାଙ୍କ ସଂପ୍ରଦାୟ ସେହି ମାଈ ଓଟକୁ ହତ୍ୟା କରିବ ତେବେ ତାହା ଧର୍ମପ୍ରଚାର ପାଇଁ ବାଧା ସୃଷ୍ଟି କରିବା ସହିତ ସମାନ ହେବ । ଅତଏବ ତାହାକୁ ହତ୍ୟା କଲେ ଶାସ୍ତି ପ୍ରେରିତ ହେବା ସ୍ୱାଭାବିକ ।

فَلَمَّا رَآ اَيْدِيَهُمْ لَا تَصِلُ اِلَيْهِ نَكِرَهُمْ وَاَوْجَسَ مِنْهُمْ خِيْفَةً ؕ قَالُوْا لَا تَخَفْ اِنَّاۤ اُرْسِلْنَاۤ اِلٰى قَوْمِ لُوْطٍ ﴿٧١﴾

୭୧. କିନ୍ତୁ ଯେତେବେଳେ ସେ ଦେଖିଲେ ଯେ ସେମାନଙ୍କର ହାତ ତାହା (ଅର୍ଥାତ୍ ଖାଦ୍ୟ) ନିକଟକୁ ଯାଉ ନାହିଁ,[୧] ସେତେବେଳେ ସେ ସେମାନଙ୍କର. କାର୍ଯ୍ୟକୁ ଅସାଧାରଣ ମନେକଲେ, ଓ ସେମାନଙ୍କ ପ୍ରତି (ତାହାଙ୍କ ମନରେ) ଭୟ ସଞ୍ଚାରିତ ହେଲା; ସେମାନେ କହିଲେ, "ତୁମେ ଭୟ କରନାହିଁ, ଆମମାନଙ୍କୁ ଲୁତଙ୍କ ସମ୍ପ୍ରଦାୟ ପ୍ରତି ପ୍ରେରଣ କରାଯାଇଅଛି ।"

وَامْرَاَتُهٗ قَآئِمَةٌ فَضَحِكَتْ فَبَشَّرْنٰهَا بِاِسْحٰقَ ۙ وَمِنْ وَّرَآءِ اِسْحٰقَ يَعْقُوْبَ ﴿٧٢﴾

୭୨. ଏବଂ ତାହାଙ୍କ ପତ୍ନୀ (ତାହାଙ୍କ ନିକଟରେ) ଦଣ୍ଡାୟମାନ ହୋଇଥିଲେ; ଓ ସେ ମଧ୍ୟ ଭୟଭୀତ ହୋଇଥିଲେ, ତେଣୁ ଆମେ ତାହାଙ୍କୁ (ସାନ୍ତ୍ୱନା ଦେବାପାଇଁ) ଇସହାକ ଓ ଇସହାକଙ୍କ ପରେ ୟାକୁବଙ୍କ ଜନ୍ମ ସଂକ୍ରାନ୍ତରେ ସୁସମାଗ୍ଭର ଦେଲୁ ।

قَالَتْ يٰوَيْلَتٰۤى ءَاَلِدُ وَاَنَا عَجُوْزٌ وَّهٰذَا بَعْلِىْ شَيْخًا ؕ اِنَّ هٰذَا لَشَىْءٌ عَجِيْبٌ ﴿٧٣﴾

୭୩. ସେ କହିଲେ, "ହାୟ ମୋର ଦୁର୍ଭାଗ୍ୟ ! ଯେତେବେଳେ କି ମୁଁ ଅତ୍ୟନ୍ତ ବୃଦ୍ଧା ଓ ମୋର ସ୍ୱାମୀ ମଧ୍ୟ ଅତ୍ୟନ୍ତ ବୃଦ୍ଧ, ସେତେବେଳେ କ'ଣ ମୁଁ ସନ୍ତାନ ପ୍ରସବ କରିବି ?" ଏହା ବାସ୍ତବରେ ଆଶ୍ଚର୍ଯ୍ୟଜନକ ବିଷୟ ।

قَالُوْۤا اَتَعْجَبِيْنَ مِنْ اَمْرِ اللّٰهِ رَحْمَتُ اللّٰهِ وَبَرَكٰتُهٗ عَلَيْكُمْ اَهْلَ الْبَيْتِ ؕ اِنَّهٗ حَمِيْدٌ مَّجِيْدٌ ﴿٧٤﴾

୭୪. ସେମାନେ କହିଲେ, "କ'ଣ ତୁମେ ଅଲ୍ଲାଃଙ୍କ ଆଦେଶକୁ ଆଶ୍ଚର୍ଯ୍ୟ ମନେ କରୁଅଛ ? ହେ ଏହି ଗୃହରେ ବାସ କରୁଥିବା ଲୋକମାନେ ! ତୁମମାନଙ୍କ ପ୍ରତି ଅଲ୍ଲାଃଙ୍କର କରୁଣା ଓ ତାହାଙ୍କର ଆଶୀର୍ବାଦ (ଅବତୀର୍ଣ୍ଣ ହେଉ) ଅଛି; (ସୁତରାଂ ତୁମମାନଙ୍କ ପକ୍ଷରେ ଏହା ଆଶ୍ଚର୍ଯ୍ୟଜନକ ହେବା ବାଞ୍ଛନୀୟ ନୁହେ କାରଣ) ସେ (ଅଲ୍ଲାଃ) ନିଃସନ୍ଦେହରେ ବହୁ ପ୍ରଶଂସିତ (ଓ) ଗୌରବମୟ ଅଟନ୍ତି ।"

فَلَمَّا ذَهَبَ عَنْ اِبْرٰهِيْمَ الرَّوْعُ وَجَآءَتْهُ الْبُشْرٰى يُجَادِلُنَا فِىْ قَوْمِ لُوْطٍ ﴿٧٥﴾

୭୫. ସୁତରାଂ ଯେତେବେଳେ ଇବ୍ରାହିମଙ୍କଠାରୁ ଭୟ ଦୂର ହେଲା ଓ ତାହାଙ୍କୁ ସୁସମାଗ୍ଭର ପ୍ରାପ୍ତ ହେଲା, (ସେତେବେଳେ) ସେ ଲୁତ ସମ୍ପ୍ରଦାୟ ସପକ୍ଷରେ ଆମମାନଙ୍କ ସହିତ ବାଦାନୁବାଦ କରିବାକୁ ଲାଗିଲେ ।

اِنَّ اِبْرٰهِيْمَ لَحَلِيْمٌ اَوَّاهٌ مُّنِيْبٌ ﴿٧٦﴾

୭୬. ବାସ୍ତବିକ ଇବ୍ରାହିମ ଅତ୍ୟନ୍ତ ସହନଶୀଳ, କୋମଳ ହୃଦୟ (ଓ ଆମ ପ୍ରତି ଅତ୍ୟନ୍ତ) ମନୋଯୋଗୀ ଥିଲେ ।

يٰۤاِبْرٰهِيْمُ اَعْرِضْ عَنْ هٰذَا ۚ اِنَّهٗ قَدْ جَآءَ اَمْرُ

୭୭. (ସେଥିଯୋଗୁଁ ଆମେ ତାଙ୍କୁ କହିଲୁ), "ହେ ଇବ୍ରାହିମ ! ତୁମେ ଏଥିରୁ (ଅର୍ଥାତ୍ ଏହି ସୁପାରିଶ କରିବାରୁ) ନିବୃତ୍ତ ହୁଅ; କାରଣ ତୁମ ପାଳନକର୍ତ୍ତାଙ୍କଠାରୁ (ଅନ୍ତିମ) ଆଦେଶ ଆସି

୧. ହଜରତ ଇବ୍ରାହିମ ପ୍ରଥମେ ସେହି ଅପରିଚିତ ବ୍ୟକ୍ତିମାନଙ୍କୁ ସାଧାରଣ ପଥିକ ଭାବିଥିଲେ ମଧ୍ୟ ଯେତେବେଳେ ଦେଖିଲେ ଯେ ସେମାନଙ୍କ ହାତ ଖାଦ୍ୟ ପର୍ଯ୍ୟନ୍ତ ପହଞ୍ଚୁ ନାହିଁ, ସେତେବେଳେ ସେ ଚିନ୍ତା କଲେ ଯେ ସମ୍ଭବତଃ ସେମାନେ କୌଣସି ଅଶୁଭ ସମାଚାର ଆଣିଛନ୍ତି ଅଥବା ତାଙ୍କ ଅତିଥି ସତ୍କାରରେ କିଛି ତ୍ରୁଟି ରହିଯାଇଛି । ତାଙ୍କର ଏହି ବିବ୍ରତ ଅବସ୍ଥାକୁ ଲକ୍ଷ୍ୟ କରି ଉପରୋକ୍ତ ବ୍ୟକ୍ତିମାନେ ତାଙ୍କୁ ଭୟଭୀତ ନ ହେବା ପାଇଁ ପରାମର୍ଶ ଦେଲେ ଓ କହିଲେ ଯେ ସେମାନେ ଏକ ବିଶେଷ କାର୍ଯ୍ୟ ସମ୍ପାଦନ ପାଇଁ ଯାଉଥିବାରୁ ଭୋଜନ କରିବାକୁ ସେମାନଙ୍କର ଆଦୌ ଇଚ୍ଛା ହେଉ ନାହିଁ ।

رَبِّكَ ۚ وَإِنَّهُمْ آتِيهِمْ عَذَابٌ غَيْرُ مَرْدُودٍ ﴿٧٧﴾

ଯାଇଅଛି ; ଏବଂ ସେ ଅବିଶ୍ୱାସକାରୀମାନଙ୍କ ଅବସ୍ଥା ଏପରି ଯେ ସେମାନଙ୍କ ପ୍ରତି ନିଶ୍ଚୟ ଅପରିବର୍ତ୍ତନୀୟ ଶାସ୍ତି ଉପସ୍ଥିତ ହେବ ।''

وَلَمَّا جَاءَتْ رُسُلُنَا لُوطًا سِيءَ بِهِمْ وَضَاقَ بِهِمْ ذَرْعًا وَقَالَ هَٰذَا يَوْمٌ عَصِيبٌ ﴿٧٨﴾

୭୮. ଏବଂ ଯେତେବେଳେ ଆମର ଦୂତମାନେ ଲୁତଙ୍କ ନିକଟରେ ଉପସ୍ଥିତ ହେଲେ, ସେତେବେଳେ ସେମାନଙ୍କ ଯୋଗୁଁ ସେ ଦୁଃଖିତ [୧] ହେଲେ , ଏବଂ ତାହାଙ୍କ ହୃଦୟ ସଙ୍କୁଚିତ ହେଲା, ଏବଂ (ସେ) କହିଲେ, ''ଆଜିର ଦିନଟି ଅତ୍ୟନ୍ତ ନିର୍ମମ ।''

وَجَاءَهُ قَوْمُهُ يُهْرَعُونَ إِلَيْهِ وَمِنْ قَبْلُ كَانُوا يَعْمَلُونَ السَّيِّئَاتِ ۚ قَالَ يَا قَوْمِ هَٰؤُلَاءِ بَنَاتِي هُنَّ أَطْهَرُ لَكُمْ ۖ فَاتَّقُوا اللَّهَ وَلَا تُخْزُونِ فِي ضَيْفِي ۖ أَلَيْسَ مِنْكُمْ رَجُلٌ رَشِيدٌ ﴿٧٩﴾

୭୯. ଏବଂ ତାହାଙ୍କର ସମ୍ପ୍ରଦାୟ (ର ଲୋକମାନେ କ୍ରୋଧାନ୍ୱିତ ହୋଇ) ତାହାଙ୍କ ଆଡକୁ ଅଗ୍ରସର ହେଲେ; ଏବଂ ଏହା ପୂର୍ବରୁ (ମଧ୍ୟ) ସେମାନେ (ଜଘନ୍ୟ) ପାପ କାର୍ଯ୍ୟ କରୁଥିଲେ; ସେ, [୨] କହିଲେ, ''ହେ ଆମର ସମ୍ପ୍ରଦାୟ ! ଏମାନେ ମୋର କନ୍ୟା ଅଟନ୍ତି (ଯେଉଁମାନେ ତୁମମାନଙ୍କ ପରିବାରରେ ବିବାହ କରିଛନ୍ତି) ସେମାନେ ତୁମମାନଙ୍କ ପାଇଁ (ଓ ତୁମମାନଙ୍କ ସମ୍ମାନ ରକ୍ଷା କରିବା ପାଇଁ) ଅତ୍ୟନ୍ତ ପବିତ୍ର ଅଟନ୍ତି; ସୁତରାଂ ତୁମେମାନେ ଅଲ୍ଲାହଙ୍କୁ ଭୟ କର; ଏବଂ ଆମର ଅତିଥିମାନଙ୍କ ସମ୍ମୁଖରେ (ଆମକୁ) ଅପମାନିତ କର ନାହିଁ; ତା'ହେଲେ କ'ଣ ତୁମମାନଙ୍କ ମଧ୍ୟରୁ କେହି ବୁଦ୍ଧିମାନ୍ ବ୍ୟକ୍ତି ନାହାନ୍ତି ?''

---

୧. ହଜରତ ଲୁତ ହଜରତ ଇବ୍ରାହିମଙ୍କର ପୁତୁରା । ସେ ପ୍ରଥମେ ଇରାକରେ ଓ ପରେ ପାଲେଷ୍ଟାଇନରେ ବାସ କରୁଥିଲେ । ଶେଷୋକ୍ତ ସ୍ଥାନରେ ତାଙ୍କୁ ଅନେକ ଚିହ୍ନୁ ନଥିଲେ । ତାଙ୍କ ଜାତିର ଲୋକମାନେ ନିଜ ପାଖରେ ଅପରିଚିତ ଲୋକଙ୍କୁ ରଖିବାକୁ ବାରଣ କରିଥିଲେ । (୧୫:୭୧ ଦ୍ରଷ୍ଟବ୍ୟ) । କିନ୍ତୁ ସେ ଅତିଶୟ ଅତିଥି ସତ୍କାରକ ହୋଇଥିବାରୁ ଯେତେବେଳେ ଅତିଥିମାନଙ୍କୁ ଦେଖିଲେ ସେତେବେଳେ ଭାବିଲେ ଅତିଥିମାନଙ୍କୁ ଆପଣା ଘରକୁ ନେଲେ ନିଜ ଜାତିର ଲୋକମାନେ ଅସନ୍ତୁଷ୍ଟ ହେବେ, ଫଳରେ ଏହି ଭାବନା ହିଁ ତାଙ୍କୁ ଦୁଃଖ ଓ ଶୋକର ବଶବର୍ତ୍ତୀ କରାଇଥିଲା ।

୨. ହଜରତ ଲୁତଙ୍କର ଦୁଇ କନ୍ୟା ସେହି ସହରରେ ବିବାହ କରିଥିଲେ **(Genesis 19:15** ଦ୍ରଷ୍ଟବ୍ୟ**)** । କେତେକ ଭାଷ୍ୟକାର ଏକ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଏହିପରି ମନ୍ତବ୍ୟ କରିଛନ୍ତି–ହଜରତ ଲୁତ ନିଜ ସଂପ୍ରଦାୟର ଲୋକମାନଙ୍କୁ ଅନୁରୋଧ କରି କହିଥିଲେ ଯେ ସେମାନେ ବରଂ ତାଙ୍କ କନ୍ୟାମାନଙ୍କ ସହିତ କାମ ଲାଳସା ଚରିତାର୍ଥ କରନ୍ତୁ କିନ୍ତୁ ତାଙ୍କ ଅତିଥିମାନଙ୍କୁ କିଛି କହନ୍ତୁ ନାହିଁ । ଏହା ବାସ୍ତବରେ ଏକ ବିପଜ୍ଜନକ ଚିନ୍ତାଧାରା ଏବଂ ଜଣେ ଅବତାରଙ୍କ ମର୍ଯ୍ୟାଦା ଉପରେ କୁଠାରାଘାତ ସହ ସମାନ । ଏଠାରେ ପରିଷ୍କାର ଭାବରେ ସେମାନଙ୍କ କ୍ରୋଧର କାରଣ ଦର୍ଶାଯାଇଛି । ସେ କାହିଁକି ଅପରିଚିତ ଲୋକମାନଙ୍କୁ ନିଜ ପାଖକୁ ଆଣିଲେ ସେଥିପାଇଁ ସେମାନେ କ୍ରୋଧାନ୍ୱିତ ହୋଇଥିବା ବିଷୟ ଉଭୟ ପବିତ୍ର କୋରାନ ଓ ବାଇବେଲରୁ ପ୍ରମାଣିତ । ଅତିଥିମାନଙ୍କୁ ସେମାନଙ୍କ କାମ ଲାଳସା ଚରିତାର୍ଥ କରିବା ପାଇଁ ସୁଯୋଗ ଦେବା ତାଙ୍କର ଆଦୌ ଅଭିପ୍ରାୟ ନଥିଲା । ବାଇବେଲର ଉପରୋକ୍ତ ବର୍ଣ୍ଣନା ଅନୁଯାୟୀ ତାଙ୍କର ଦୁଇ କନ୍ୟା ପୂର୍ବରୁ ସେହି ସହରରେ ବିବାହ କରିଥିବାରୁ ସେମାନଙ୍କ ପ୍ରତି ଇଙ୍ଗିତ କରିବା ଅର୍ଥ ହଜରତ ଲୁତଙ୍କୁ ବୋକା ବନାଇବା । ସେ କେବଳ ଏହି କଥା କହୁଥିଲେ ଯେ ତାଙ୍କର ଦୁଇକନ୍ୟା ସେଠାରେ ଉପସ୍ଥିତ ଥିବାରୁ ସେ ଓ ତାଙ୍କ ଅତିଥିମାନେ ସେମାନଙ୍କ ସହିତ କୌଣସି ପ୍ରକାର ବିଶ୍ୱାସଘାତକତା କରିବେ ନାହିଁ ବୋଲି ସେମାନଙ୍କୁ ବୁଝିବାକୁ ହେବ । ତେଣୁ ବୃଥାରେ କ୍ରୋଧାନ୍ୱିତ ନ ହେବା ପାଇଁ ସେ ସେମାନଙ୍କୁ ପରାମର୍ଶ ଦେଇଥିଲେ ।

୮୦. ସେମାନେ କହିଲେ, "ତୁମେ ନିଶ୍ଚୟ ଜାଣିପାରିଛ ଯେ ତୁମ କନ୍ୟାମାନଙ୍କ[୧] ସଂକ୍ରାନ୍ତରେ ଆମ୍ଭର କୌଣସି ଅଧିକାର ନାହିଁ, ଏବଂ ଯାହାକିଛି ଆମେ ଇଚ୍ଛା କରୁଅଛୁ, ତାହା ତୁମେ ଅବଶ୍ୟ ଜାଣିଅଛ ।"

قَالُوْا لَقَدْ عَلِمْتَ مَا لَنَا فِيْ بَنٰتِكَ مِنْ حَقٍّ ۚ وَاِنَّكَ لَتَعْلَمُ مَا نُرِيْدُ ﴿٨٠﴾

୮୧. ସେ କହିଲେ, "ତୁମମାନଙ୍କ ବିରୁଦ୍ଧରେ ଆମ୍ଭର ଶକ୍ତି ଥାଆନ୍ତା କି !" (ତା'ହେଲେ ଆମେ ତୁମମାନଙ୍କ ବିରୁଦ୍ଧାଚରଣ କରିଥାଆନ୍ତୁ, କିନ୍ତୁ ଏପରି ନ ଥିବା ହେତୁ) ଆମେ ଏକ ସୁଦୃଢ଼ ଆଶ୍ରୟସ୍ଥଳର ଶରଣାପନ୍ନ ହେବୁ ।"

قَالَ لَوْ اَنَّ لِيْ بِكُمْ قُوَّةً اَوْ اٰوِيْٓ اِلٰى رُكْنٍ شَدِيْدٍ ﴿٨١﴾

୮୨. (ଅତିଥି ଦେବଦୂତମାନେ ) କହିଲେ, "ହେ ଲୁତ ! ଆମେମାନେ ନିଶ୍ଚିତ ତୁମ ପାଳନକର୍ତ୍ତାଙ୍କ ନିକଟରୁ[୨] ପ୍ରେରିତ ହୋଇଅଛୁ ;ଏବଂ (ଆମେମାନେ ଜାଣୁ ଯେ) ସେମାନେ କଦାପି ତୁମ ନିକଟରେ ପହଞ୍ଚି ପାରିବେ ନାହିଁ, (ସେମାନଙ୍କର ବିନାଶ ସମୟ ଆସିଯାଇଛି); ସୁତରାଂ ତୁମେ ରାତ୍ରିର କୌଣସି ପ୍ରହରରେ ତୁମ ପରିବାରବର୍ଗ ସହିତ (ଏଠାରୁ) ଶୀଘ୍ର ଗ୍ଭଲିଯାଅ, ଏବଂ ତୁମ ପତ୍ନୀ ବ୍ୟତୀତ ଅନ୍ୟମାନେ ପଛକୁ ନ ଦେଖନ୍ତୁ (ଫଳରେ ତୁମେମାନେ ସୁରକ୍ଷିତ ରହିବ); ସେମାନଙ୍କ ପ୍ରତି ଯାହା (ଅର୍ଥାତ୍ ଯେଉଁ ଶାସ୍ତି) ଆସିବାର ଅଛି ତା' (ଅର୍ଥାତ୍ ତୁମ ପତ୍ନୀ) ପ୍ରତି ମଧ୍ୟ ନିଶ୍ଚିତ ରୂପେ ଆସିବ; ସେମାନଙ୍କର ନିର୍ଦ୍ଦିଷ୍ଟ ସମୟ (ଆଗାମୀ) ପ୍ରଭାତ ଅଟେ; କ'ଣ (ସେହି) ପ୍ରଭାତ ନିକଟବର୍ତ୍ତୀ ନୁହେଁ ?"

قَالُوْا يٰلُوْطُ اِنَّا رُسُلُ رَبِّكَ لَنْ يَّصِلُوْٓا اِلَيْكَ فَاَسْرِ بِاَهْلِكَ بِقِطْعٍ مِّنَ الَّيْلِ وَلَا يَلْتَفِتْ مِنْكُمْ اَحَدٌ اِلَّا امْرَاَتَكَ ۗ اِنَّهٗ مُصِيْبُهَا مَآ اَصَابَهُمْ ۗ اِنَّ مَوْعِدَهُمُ الصُّبْحُ ۗ اَلَيْسَ الصُّبْحُ بِقَرِيْبٍ ﴿٨٢﴾

୮୩. ତତ୍ପରେ ଯେତେବେଳେ ଆମ୍ଭର (ଶାସ୍ତି ସମ୍ବନ୍ଧରେ) ଆଦେଶ ଉପସ୍ଥିତ ହେଲା, ସେତେବେଳେ ଆମେ ତାହାକୁ (ଅର୍ଥାତ୍ ସହରକୁ) ଓଲଟ ପାଲଟ କରିଦେଲୁ; ଏବଂ ଆମେ ସେମାନଙ୍କ ଉପରେ ଦୁହାକୁ ଦୁହା ମୃତ୍ତିକାର ଶିଳା ବୃଷ୍ଟି କରାଇଲୁ ।

فَلَمَّا جَآءَ اَمْرُنَا جَعَلْنَا عَالِيَهَا سَافِلَهَا وَاَمْطَرْنَا عَلَيْهَا حِجَارَةً مِّنْ سِجِّيْلٍ ۙ مَّنْضُوْدٍ ﴿٨٣﴾

୮୪. ଏହା ତୁମ୍ଭର ପାଳନକର୍ତ୍ତାଙ୍କଠାରୁ (ସେମାନଙ୍କ ପାଇଁ) ନିର୍ଦ୍ଧାରିତ କରାଯାଇଥିଲା; ଏବଂ ଏ ଶାସ୍ତି[୩] ଏହି ଅତ୍ୟାଗ୍ଭରୀମାନଙ୍କଠାରୁ (ମଧ୍ୟ ବହୁ) ଦୂରରେ ନାହିଁ ।

مُّسَوَّمَةً عِنْدَ رَبِّكَ ۗ وَمَا هِيَ مِنَ الظّٰلِمِيْنَ بِبَعِيْدٍ ﴿٨٣﴾

---

୧. ଅର୍ଥାତ୍ ସେମାନେ ତ ବହୁ ପୂର୍ବରୁ ଆମର ବୋହୁ ଝିଅ । ଆମେମାନେ କେବଳ ଅପରିଚିତ ଅତିଥିମାନଙ୍କ ବିରୁଦ୍ଧରେ ଆପତ୍ତି କରୁଅଛୁ । ପ୍ରକୃତପକ୍ଷେ ହଜରତ ଲୁତ ନିଜ କନ୍ୟାମାନଙ୍କୁ ମୁଣ୍ଡ ଜାମିନ ଭାବରେ ସେମାନଙ୍କ ନିକଟରେ ପେଶ୍ କରିବାରୁ ସେମାନେ ଏହି ପ୍ରସ୍ତାବରେ ରାଜି ହୋଇନଥିଲେ, କାରଣ ମହିଳାମାନଙ୍କୁ ମୁଣ୍ଡ ଜାମିନ ରଖିବା ତତ୍କାଳୀନ ପରମ୍ପରାର ପରିପନ୍ଥୀ ଥିଲା । ବସ୍ତୁତଃ ସେମାନେ ଯାହା ଚାହୁଁଥିଲେ ତାହା ହେଉଛି ଅପରିଚିତ ଲୋକମାନଙ୍କୁ ସେମାନଙ୍କ ନିକଟରେ ସମର୍ପଣ କରାଯାଉ ।

୨. ସେମାନେ ନିକଟବର୍ତ୍ତୀ ଅଞ୍ଚଳର ଧର୍ମନିଷ୍ଠ ବ୍ୟକ୍ତି ଥିଲେ ଯେଉଁମାନଙ୍କୁ ଅଲ୍ଲାହ ହଜରତ ଲୁତଙ୍କ ପାଖକୁ ଏଥିଯୋଗୁଁ ପଠାଇଥିଲେ ଯେ ଲୁତ ବିଦେଶୀ ହୋଇଥିବାରୁ ସେମାନେ ତାଙ୍କୁ ନିର୍ଭୁଲ ରାସ୍ତା ବତାଇ ଦେବେ, ଯାହା ଫଳରେ ସେ ହଇରାଣ ହେବେ ନାହିଁ ।

୩. ଅର୍ଥାତ୍ ହଜରତ ମହମ୍ମଦଙ୍କ ସମୟର ଅତ୍ୟାଚାରୀମାନେ ।

ରୁ: ୮

୮୫. ଏବଂ ଆମ୍ଭେ ମଦୟନ (ସମ୍ପ୍ରଦାୟ)ପ୍ରତି ସେମାନଙ୍କ ଭାଇ ସୋଏବକୁ (ନବି ଭାବରେ) ପ୍ରେରଣ କରିଥିଲୁ; ସେ କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ତୁମେମାନେ ଅଲ୍ଲାହଙ୍କର ଉପାସନା କର, ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ; ଏବଂ ମାପ ଓ ଓଜନରେ ଊଣା କର ନାହିଁ; ବାସ୍ତବରେ ଆମ୍ଭେ ତୁମମାନଙ୍କୁ (ବର୍ତ୍ତମାନ) ଉତ୍ତମ ଅବସ୍ଥାରେ ଦେଖୁଅଛୁ; ଏବଂ ଏହା ସହିତ ଆମ୍ଭେ ତୁମମାନଙ୍କ ସଂକ୍ରାନ୍ତରେ ଏକ ଧ୍ୱଂସକାରୀ ଦିବସର ଶାସ୍ତି ସମ୍ବନ୍ଧରେ ଭୟ କରୁଅଛୁ।"

وَ اِلٰی مَدْیَنَ اَخَاهُمْ شُعَیْبًاؕ قَالَ یٰقَوْمِ اعْبُدُوا اللّٰهَ مَا لَكُمْ مِّنْ اِلٰهٍ غَیْرُهٗؕ وَ لَا تَنْقُصُوا الْمِكْیَالَ وَ الْمِیْزَانَ اِنِّیْۤ اَرٰىكُمْ بِخَیْرٍ وَّ اِنِّیْۤ اَخَافُ عَلَیْكُمْ عَذَابَ یَوْمٍ مُّحِیْطٍ۝

୮୬. "ଏବଂ ହେ ଆମ୍ଭର ସମ୍ପ୍ରଦାୟ ! ତୁମେମାନେ ନ୍ୟାୟ ସଙ୍ଗତଭାବରେ ମାପ ଓ ଓଜନ କର; ଏବଂ ଲୋକମାନଙ୍କୁ ସେମାନଙ୍କର ସାମଗ୍ରୀ ଊଣା କରି ଦିଅ ନାହିଁ, ଏବଂ ବିଶୃଙ୍ଖଳାକାରୀ ହୋଇ ପୃଥିବୀରେ ବିଶୃଙ୍ଖଳା ସୃଷ୍ଟି କର ନାହିଁ ;"

وَ یٰقَوْمِ اَوْفُوا الْمِكْیَالَ وَ الْمِیْزَانَ بِالْقِسْطِ وَ لَا تَبْخَسُوا النَّاسَ اَشْیَآءَهُمْ وَ لَا تَعْثَوْا فِی الْاَرْضِ مُفْسِدِیْنَ۝

୮୭. "ଯଦି ତୁମେମାନେ (ପ୍ରକୃତ) ବିଶ୍ୱାସକାରୀ ହୋଇଥାଅ, ତେବେ (ଜାଣିରଖ ଯେ) ଅଲ୍ଲାହ (ତୁମମାନଙ୍କ ନିକଟରେ) ଯାହାକିଛି ଛାଡି ଯାଆନ୍ତି, ତାହା ତୁମମାନଙ୍କ ପକ୍ଷରେ ଉତ୍କୃଷ୍ଟ ହେବ; ଏବଂ ଆମ୍ଭେ ତୁମମାନଙ୍କର ସଂରକ୍ଷକ ନୋହୁଁ (କେବଳ ଜଣେ ଉପଦେଷ୍ଟା ଅଟୁ)।"

بَقِیَّتُ اللّٰهِ خَیْرٌ لَّكُمْ اِنْ كُنْتُمْ مُّؤْمِنِیْنَ۬ۚ وَ مَاۤ اَنَا عَلَیْكُمْ بِحَفِیْظٍ۝

୮୮. ସେମାନେ ଉତ୍ତର ଦେଲେ, "ହେ ସୋଏବ ! କ'ଣ ତୁମର ନମାଜ ତୁମକୁ ଆଦେଶ ଦେଉଅଛି ଯେ ଆମମାନଙ୍କର ପିତୃ-ପିତାମହମାନେ ଯାହାର ଉପାସନା କରୁଥିଲେ, ତାହା ଆମେମାନେ ପରିତ୍ୟାଗ କରିବୁ, କିମ୍ବା ଆମମାନଙ୍କର ଧନ ସଂକ୍ରାନ୍ତରେ ଇଚ୍ଛାନୁଯାୟୀ ଯାହା କରିବା କଥା (ତାହାକୁ) ପରିତ୍ୟାଗ କରିବୁ ? ବାସ୍ତବରେ, ତୁମେ ତ ଅତ୍ୟନ୍ତ ଚତୁର (ଓ) ବୁଦ୍ଧିମାନ୍ (ଲୋକ) ଅଟ ।"

قَالُوْا یٰشُعَیْبُ اَصَلٰوتُكَ تَاْمُرُكَ اَنْ نَّتْرُكَ مَا یَعْبُدُ اٰبَآؤُنَاۤ اَوْ اَنْ نَّفْعَلَ فِیْۤ اَمْوَالِنَا مَا نَشٰٓؤُاؕ اِنَّكَ لَاَنْتَ الْحَلِیْمُ الرَّشِیْدُ۝

୮୯. ସେ କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! କୁହ ତ ଯଦି (ଏହା ପ୍ରମାଣିତ ହୁଏ ଯେ) ଆମ୍ଭେ (ନିଜ ଦାବିର ଭିତ୍ତି ନିଜ ପାଳନକର୍ତ୍ତାଙ୍କ (ପ୍ରଦତ୍ତ) କୌଣସି ସ୍ପଷ୍ଟ ନିଦର୍ଶନ ଉପରେ (ସ୍ଥାପନ କରୁ) ଅଛୁ, ଏବଂ ସେ ଆମ୍ଭକୁ ନିଜ ସମୀପରୁ ଉତ୍ତମ ଜୀବିକା ପ୍ରଦାନ କରିଛନ୍ତି, (ତେବେ କାଲି ଅଲ୍ଲାହଙ୍କ ନିକଟରେ କ'ଣ ଉତ୍ତର ଦେବ ?); ଏବଂ ଆମ୍ଭେ ଇଚ୍ଛା କରୁ ନାହୁଁ ଯେ ଆମ୍ଭେ ଯେଉଁ ବିଷୟରେ ତୁମମାନଙ୍କୁ ନିଷେଧ କରୁଅଛୁ (ତହିଁରୁ ତୁମେମାନେ ନିଷିଦ୍ଧ ହୁଅ ଓ ଆମ୍ଭେ ନିଜେ )

قَالَ یٰقَوْمِ اَرَءَیْتُمْ اِنْ كُنْتُ عَلٰی بَیِّنَةٍ مِّنْ رَّبِّیْ وَ رَزَقَنِیْ مِنْهُ رِزْقًا حَسَنًاؕ وَ مَاۤ اُرِیْدُ اَنْ اُخَالِفَكُمْ اِلٰی مَاۤ اَنْهٰىكُمْ عَنْهُؕ اِنْ اُرِیْدُ اِلَّا

ଭୁମମାନଙ୍କ ବିରୁଦ୍ଧରେ[1] ସେହି ବିଷୟ କରିବୁ; (ଯେତେଦୂର) ତୁମମାନଙ୍କର ସଂସ୍କାର କରିବା (ସମ୍ଭବ, ତାହା) ବ୍ୟତିରେକେ ଆମ୍ଭେ ଅନ୍ୟ କିଛି ଇଚ୍ଛା କରୁ ନାହୁଁ; ଏବଂ ଆମ୍ଭେ କୃତକାର୍ଯ୍ୟ ହେବା କେବଳ ଅଲ୍ଲାହଙ୍କ (କରୁଣା ଓ କୃପା) ସହିତ ସଂଶ୍ଳିଷ୍ଟ ଅଛି; ଆମ୍ଭେ ତାହାଙ୍କ ଉପରେ ହିଁ ଭରସା କରୁ ଏବଂ ଆମ୍ଭେ ତାହାଙ୍କ ପ୍ରତି ବାରମ୍ବାର ଅବନତ ହୋଇଥାଉ ।''

الْإِصْلَاحَ مَا اسْتَطَعْتُ ۚ وَمَا تَوْفِيقِي إِلَّا بِاللَّهِ ۚ عَلَيْهِ تَوَكَّلْتُ وَإِلَيْهِ أُنِيبُ ﴿٨٩﴾

୯୦. ''ଏବଂ ହେ ଆମ୍ଭର ସମ୍ପ୍ରଦାୟ ! ଆମ୍ଭପ୍ରତି ଶତ୍ରୁତା ତୁମମାନଙ୍କୁ (ଏପରି ବିଷୟରେ) ପ୍ରରୋଚିତ ନ କରୁ ଯେ ତୁମେମାନେ ସେହିପରି ବିପଦରେ ପଡ ଯେପରି ନୂହଙ୍କ ସମ୍ପ୍ରଦାୟ ବା ହୁଦଙ୍କ ସମ୍ପ୍ରଦାୟ ବା ସ୍ୱାଲେହଙ୍କ ସମ୍ପ୍ରଦାୟ ବିପଦରେ ପଡିଥିଲେ; ଏବଂ ଲୁତଙ୍କ ସମ୍ପ୍ରଦାୟ ତୁମମାନଙ୍କଠାରୁ (ବେଶୀ କିଛି) ଦୂରବର୍ତ୍ତୀ ନୁହନ୍ତି ।''

وَيَا قَوْمِ لَا يَجْرِمَنَّكُمْ شِقَاقِي أَنْ يُصِيبَكُمْ مِثْلُ مَا أَصَابَ قَوْمَ نُوحٍ أَوْ قَوْمَ هُودٍ أَوْ قَوْمَ صَالِحٍ ۚ وَمَا قَوْمُ لُوطٍ مِنْكُمْ بِبَعِيدٍ ﴿٩٠﴾

୯୧. ''ଏବଂ ତୁମେମାନେ ନିଜ ପାଳନକର୍ତ୍ତାଙ୍କ ନିକଟରେ କ୍ଷମାଭିକ୍ଷା କର; ତା' ପରେ ତାହାଙ୍କ ପ୍ରତି ପୂର୍ଣ୍ଣ ମନୋନିବେଶ କର; ବାସ୍ତବରେ ଆମ୍ଭର ପାଳନକର୍ତ୍ତା ହିଁ ସଦା କରୁଣାମୟ (ଓ) ଅଶେଷ ପ୍ରେମମୟ ।''

وَاسْتَغْفِرُوا رَبَّكُمْ ثُمَّ تُوبُوا إِلَيْهِ ۚ إِنَّ رَبِّي رَحِيمٌ وَدُودٌ ﴿٩١﴾

୯୨. ସେମାନେ କହିଲେ, ''ହେ ସୋଏବ ! ତୁମେ ଯାହା କିଛି କହୁଅଛ ତାହାର ଅନେକାଂଶ ଆମେମାନେ ବୁଝିପାରୁ ନାହୁଁ; ଏବଂ ଆମେମାନେ ତୁମକୁ ନିଜ ମଧ୍ୟରେ ଏକ ଦୁର୍ବଳ ବ୍ୟକ୍ତି ମନେକରୁଅଛୁ; ଏବଂ ଯଦି ତୁମର ଗୋଷ୍ଠୀ ନ ଥାଆନ୍ତେ, ତେବେ ଆମେମାନେ ନିଶ୍ଚୟ ତୁମ ଉପରେ ଶିଳାବୃଷ୍ଟି କରି ମାରିଦିଅନ୍ତୁ; ଏବଂ ଆମମାନଙ୍କ ଦୃଷ୍ଟିରେ ତୁମେ କୌଣସି ସମ୍ମାନନୀୟ ବ୍ୟକ୍ତି (ମଧ୍ୟ) ନୁହଁ ।''

قَالُوا يَا شُعَيْبُ مَا نَفْقَهُ كَثِيرًا مِمَّا تَقُولُ وَإِنَّا لَنَرَاكَ فِينَا ضَعِيفًا ۖ وَلَوْلَا رَهْطُكَ لَرَجَمْنَاكَ ۖ وَمَا أَنْتَ عَلَيْنَا بِعَزِيزٍ ﴿٩٢﴾

୯୩. ସେ କହିଲେ, ''ହେ ଆମ୍ଭର ସମ୍ପ୍ରଦାୟ ! କ'ଣ ଆମ୍ଭ ଗୋଷ୍ଠୀ ଅଲ୍ଲାହଙ୍କ ତୁଳନାରେ ତୁମମାନଙ୍କ ଦୃଷ୍ଟିରେ ଅଧିକ ସମ୍ମାନର ଯୋଗ୍ୟ ? ଏବଂ ତୁମେମାନେ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହଙ୍କୁ) ତୁମମାନଙ୍କର ପୃଷ୍ଠ-ଦେଶକୁ ନିକ୍ଷେପ କରିଅଛ; ବାସ୍ତବରେ ତୁମେମାନେ ଯାହା କରୁଅଛ ଆମ୍ଭର ପାଳନକର୍ତ୍ତା ସେ ବିଷୟରେ ଉତ୍ତମରୂପେ ଅବଗତ ଅଛନ୍ତି ।''

قَالَ يَا قَوْمِ أَرَهْطِي أَعَزُّ عَلَيْكُمْ مِنَ اللَّهِ وَاتَّخَذْتُمُوهُ وَرَاءَكُمْ ظِهْرِيًّا ۖ إِنَّ رَبِّي بِمَا تَعْمَلُونَ مُحِيطٌ ﴿٩٣﴾

---

୧. ଅବିଶ୍ୱାସୀକାରୀମାନେ ମନେ କରୁଥିଲେ ଯେ ହଜରତ ସୁଏବ ସେମାନଙ୍କ ସହ ପ୍ରତାରଣା କରି ନିଜ ବ୍ୟବସାୟ ବଢ଼ାଇବାକୁ ଚାହୁଁଛନ୍ତି । ତେଣୁ ସେ ସେମାନଙ୍କୁ ଏହିପରି ଉତ୍ତର ଦେଇଥିଲେ ।

୯୪. "ଏବଂ ହେ ଆମ୍ଭ ସମ୍ପ୍ରଦାୟ ! ତୁମମାନଙ୍କ ପକ୍ଷରେ ଯାହା ଭଲ ତାହା କର, (ଆମ୍ଭ ପକ୍ଷରେ ଯାହା ଭଲ ତାହା) ଆମ୍ଭେ କରୁଅଛୁ; ତୁମେମାନେ ଶୀଘ୍ର ଜାଣିପାରିବ ଯେ କାହା ଉପରେ ଅପମାନଦାୟକ ଶାସ୍ତି ପ୍ରେରିତ ହେବ ଓ କିଏ ମିଥ୍ୟାବାଦୀ; ଏବଂ ତୁମେମାନେ (ପରିଣାମକୁ) ଅପେକ୍ଷା କର; ଆମ୍ଭେ ମଧ୍ୟ ତୁମମାନଙ୍କ ସହିତ ନିଶ୍ଚୟ (ଉକ୍ତ ପରିଣାମକୁ) ଅପେକ୍ଷା କରିବୁ ।"

وَيٰقَوْمِ اعْمَلُوْا عَلٰى مَكَانَتِكُمْ اِنِّيْ عَامِلٌ ۗ سَوْفَ تَعْلَمُوْنَ ۙ مَنْ يَّاْتِيْهِ عَذَابٌ يُّخْزِيْهِ وَمَنْ هُوَ كَاذِبٌ ۗ وَارْتَقِبُوْٓا اِنِّيْ مَعَكُمْ رَقِيْبٌ ﴿٩٤﴾

୯୫. ଏବଂ ଯେତେବେଳେ (ଶାସ୍ତି ସଂକ୍ରାନ୍ତରେ) ଆମ୍ଭର ଆଦେଶ ଆସିଥିଲା, ସେତେବେଳେ ଆମ୍ଭେ ସୋଏବଙ୍କୁ ଓ ଯେଉଁମାନେ ତାହାଙ୍କ ସହିତ ବିଶ୍ୱାସ କରିଥିଲେ ସେମାନଙ୍କୁ ନିଜର (ସ୍ୱତନ୍ତ୍ର) କରୁଣା ବଳରେ (ଏହି ଶାସ୍ତିରୁ) ରକ୍ଷା କରିଥିଲୁ; ଏବଂ ଯେଉଁମାନେ ଅତ୍ୟାଚାର କରିଥିଲେ ସେମାନଙ୍କୁ ସେହି ଶାସ୍ତି କବଳିତ କରିଥିଲା; ଏବଂ ସେମାନେ ନିଜ (ନିଜ) ଗୃହ ମଧ୍ୟରେ ମାଟି କାମୁଡ଼ି ପଡ଼ି ରହି (ଧ୍ୱଂସ ହୋଇଯାଇ)ଥିଲେ ।

وَلَمَّا جَآءَ اَمْرُنَا نَجَّيْنَا شُعَيْبًا وَّالَّذِيْنَ اٰمَنُوْا مَعَهٗ بِرَحْمَةٍ مِّنَّا وَاَخَذَتِ الَّذِيْنَ ظَلَمُوا الصَّيْحَةُ فَاَصْبَحُوْا فِيْ دِيَارِهِمْ جٰثِمِيْنَ ۙ﴿٩٥﴾

୯୬. ଯେପରି ସେମାନେ ସେଠାରେ (କଦାପି) ବାସ କରି ନ ଥିଲେ; ଶୁଣ ! ମଦୟନ ସକାଶେ (ଅଲ୍ଲାହ) ଏପରି ଅଭିଶାପ ନିୟତ କରିଥିଲେ ଯେପରି (ସେମାନଙ୍କ ପୂର୍ବରୁ) ସମୁଦଙ୍କ ପାଇଁ ଅଭିଶାପ ନିୟତ ଥିଲା ।

كَاَنْ لَّمْ يَغْنَوْا فِيْهَا ۗ اَلَا بُعْدًا لِّمَدْيَنَ كَمَا بَعِدَتْ ثَمُوْدُ ﴿٩٦﴾ ع

ରୁ: ୯

୯୭. ଏବଂ ବାସ୍ତବରେ ଆମ୍ଭେ ମୁସାଙ୍କୁ ପ୍ରତ୍ୟେକ ପ୍ରକାର ନିଦର୍ଶନ ଓ ପ୍ରକାଶ୍ୟ ପ୍ରମାଣ ସହିତ ପ୍ରେରଣ କରିଥିଲୁ;

وَلَقَدْ اَرْسَلْنَا مُوْسٰى بِاٰيٰتِنَا وَسُلْطٰنٍ مُّبِيْنٍ ۙ﴿٩٧﴾

୯୮. ଫିରଔନ ଓ ତାହାର ସମ୍ପ୍ରଦାୟର ମୁଖ୍ୟ ବ୍ୟକ୍ତିଙ୍କ ନିକଟକୁ, କିନ୍ତୁ ସେମାନେ (ମୁସାଙ୍କୁ ପରିତ୍ୟାଗ କରି) ଫିରଔନର ଆଦେଶ ଅନୁସରଣ କରିଥିଲେ; ଏବଂ ଫିରଔନର ଆଦେଶ କେବେ ହେଁ ଯଥାର୍ଥ ନ ଥିଲା ।

اِلٰى فِرْعَوْنَ وَمَلَا۟ئِهٖ فَاتَّبَعُوْٓا اَمْرَ فِرْعَوْنَ ۚ وَمَآ اَمْرُ فِرْعَوْنَ بِرَشِيْدٍ ﴿٩٨﴾

୯୯. ସେ କୟାମତ ଦିନ ନିଜ ସମ୍ପ୍ରଦାୟର ଅଗ୍ରଭାଗରେ ଚାଲିବ ଓ ସେମାନଙ୍କୁ (ନରକ) ଅଗ୍ନିରେ ଅବତରଣ କରାଇବ, ଏବଂ ସେହି ଘାଟ ଓ ତହିଁରେ ଅବତରଣ କରୁଥିବା ଲୋକ (ଉଭୟ) ଅତ୍ୟନ୍ତ ମନ୍ଦ ।

يَقْدُمُ قَوْمَهٗ يَوْمَ الْقِيٰمَةِ فَاَوْرَدَهُمُ النَّارَ ۗ وَبِئْسَ الْوِرْدُ الْمَوْرُوْدُ ﴿٩٩﴾

୧୦୦. ଏବଂ ଇହକାଳରେ ଅଭିଶାପ ସେମାନଙ୍କୁ ଅନୁସରଣ କରୁଅଛି ଓ କୟାମତ ଦିନ ମଧ୍ୟ (ଅନୁସରଣ କରିବ); ଏବଂ ସେମାନଙ୍କୁ ଦିଆଯିବାକୁ ଥିବା ଏହି ପୁରସ୍କାର[୧] ଅତ୍ୟନ୍ତ ମନ୍ଦ ଅଟେ ।

وَاُتْبِعُوْا فِيْ هٰذِهٖ لَعْنَةً وَّيَوْمَ الْقِيٰمَةِ ۗ بِئْسَ الرِّفْدُ الْمَرْفُوْدُ ﴿١٠٠﴾

୧. ଏଠାରେ ବ୍ୟଙ୍ଗାତ୍ମକ ଭାଷାରେ ଦଣ୍ଡକୁ ପୁରସ୍କାର ବୋଲି ବର୍ଣ୍ଣନା କରାଯାଇଛି, କାରଣ ଅବିଶ୍ୱାସକାରୀମାନଙ୍କୁ ଅଲ୍ଲାହଙ୍କ ନିକଟରୁ ଉତ୍ତମ ସାମଗ୍ରୀ ମିଳିବ ବୋଲି ସେମାନେ କହୁଥିଲେ । ଏଠାରେ ହଜରତ ମୁସାଙ୍କ ସଂପ୍ରଦାୟକୁ ଶାସ୍ତି ଦିଆଯିବା ସମ୍ବନ୍ଧରେ ବ୍ୟଙ୍ଗ କରି କୁହାଯାଇଛି ।

ذٰلِكَ مِنْ اَنْۢبَآءِ الْقُرٰى نَقُصُّهٗ عَلَيْكَ مِنْهَا قَآئِمٌ وَّحَصِيْدٌ ﴿۱۰۱﴾

୧୦୧. ଏହି (ବିଧ୍ୱସ୍ତ) ବସତିଗୁଡ଼ିକର ସମାଚାରମାନଙ୍କ ମଧ୍ୟରୁ ଏକ ଅଂଶ ଆମେ ତୁମ ନିକଟରେ ବର୍ଣ୍ଣନା କରୁଅଛୁ; ସେମାନଙ୍କ ମଧ୍ୟରୁ କେତେକ (ବସତି ବର୍ତ୍ତମାନ ମଧ୍ୟ) ବିଦ୍ୟମାନ ଅଛି (ଅର୍ଥାତ୍ ସେଗୁଡ଼ିକର ଧ୍ୱଂସାବଶେଷ ଅଛି) ଏବଂ ଅନ୍ୟ କେତେକ ବିଧ୍ୱସ୍ତ ଅବସ୍ଥାରେ ଅଛି (ଅର୍ଥାତ୍ ସେମାନଙ୍କର ଚିହ୍ନ ବର୍ଣ୍ଣ ମଧ୍ୟ ବିଲୁପ୍ତ ହୋଇଅଛି) ।

وَمَا ظَلَمْنٰهُمْ وَلٰكِنْ ظَلَمُوْٓا اَنْفُسَهُمْ فَمَآ اَغْنَتْ عَنْهُمْ اٰلِهَتُهُمُ الَّتِيْ يَدْعُوْنَ مِنْ دُوْنِ اللّٰهِ مِنْ شَيْءٍ لَّمَّا جَآءَ اَمْرُ رَبِّكَ ؕ وَمَا زَادُوْهُمْ غَيْرَ تَتْبِيْبٍ ﴿۱۰۲﴾

୧୦୨. ଏବଂ ଆମେ ସେମାନଙ୍କ ପ୍ରତି କୌଣସି ଅନ୍ୟାୟ କରି ନ ଥିଲୁ, ବରଂ ସେମାନେ (ନିଜେ ହିଁ) ନିଜ ପ୍ରତି ଅନ୍ୟାୟ କରିଥିଲେ; ତେଣୁ ଯେତେବେଳେ ତୁମର ପାଳନକର୍ତ୍ତାଙ୍କ (ଶାସ୍ତି) ଆଦେଶ ଆସିଗଲା, ସେତେବେଳେ ସେମାନଙ୍କର ଉପାସ୍ୟମାନେ, ଯାହାଙ୍କୁ ସେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଡାକୁଥିଲେ, ସେମାନଙ୍କୁ କୌଣସି ଲାଭ ପ୍ରଦାନ କରି ନ ଥିଲେ, ଏବଂ (ବସ୍ତୁତଃ) ସେ (ଉପାସ୍ୟ) ମାନେ ସେମାନଙ୍କୁ ବିଧ୍ୱସ୍ତ କରିବା ଛଡ଼ା ସେମାନଙ୍କର (ଅନ୍ୟ କୌଣସି) ଅଭିବୃଦ୍ଧି ଘଟାଇ ନ ଥିଲେ ।

وَكَذٰلِكَ اَخْذُ رَبِّكَ اِذَآ اَخَذَ الْقُرٰى وَهِيَ ظَالِمَةٌ ؕ اِنَّ اَخْذَهٗٓ اَلِيْمٌ شَدِيْدٌ ﴿۱۰۳﴾

୧୦୩. ଏବଂ ଯେତେବେଳେ ତୁମ ପାଳନକର୍ତ୍ତା ପ୍ରବଳ ଅତ୍ୟାଚାରୀ ବସତିମାନଙ୍କୁ ଆୟତ୍ତ କରନ୍ତି, ସେତେବେଳେ ଏହିପରି ଭାବେ ହିଁ ଆୟତ୍ତ କରିଥା'ନ୍ତି; ବାସ୍ତବରେ ତାହାଙ୍କର ଆୟତ୍ତ ଅତ୍ୟନ୍ତ ଯନ୍ତ୍ରଣାଦାୟକ (ଓ) କଠୋର ।

اِنَّ فِيْ ذٰلِكَ لَاٰيَةً لِّمَنْ خَافَ عَذَابَ الْاٰخِرَةِ ؕ ذٰلِكَ يَوْمٌ مَّجْمُوْعٌ ۙ لَّهُ النَّاسُ وَذٰلِكَ يَوْمٌ مَّشْهُوْدٌ ﴿۱۰۴﴾

୧୦୪. ଯେ ପରକାଳର ଶାସ୍ତିକୁ ଭୟ କରେ ତାହା ପାଇଁ ବାସ୍ତବରେ ଏଥିରେ ଏକ (ଶିକ୍ଷଣୀୟ) ନିଦର୍ଶନ ଅଛି; ଏହା ଏପରି ଏକ ଦିନ ଅଟେ ଯେଉଁଥିପାଇଁ ଲୋକମାନଙ୍କୁ ଏକତ୍ରିତ କରାଯିବ, ଏବଂ ଏହା ଏପରି ଦିନ ହେବ ଯାହାକୁ ସମସ୍ତେ ଦେଖିବେ ।

وَمَا نُؤَخِّرُهٗٓ اِلَّا لِاَجَلٍ مَّعْدُوْدٍ ﴿۱۰۵﴾

୧୦୫. ଏବଂ ଆମେ ଏହାକୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ବିଳମ୍ବିତ କରିଅଛୁ ।

يَوْمَ يَاْتِ لَا تَكَلَّمُ نَفْسٌ اِلَّا بِاِذْنِهٖ ۚ فَمِنْهُمْ شَقِيٌّ وَّسَعِيْدٌ ﴿۱۰۶﴾

୧୦୬. ଯେଉଁଦିନ ତାହା ଉପସ୍ଥିତ ହେବ, କୌଣସି ବ୍ୟକ୍ତି ତାହାଙ୍କ (ଅର୍ଥାତ୍ ଅଲ୍ଲାହ୍‌ଙ୍କ) ଅନୁମତି ବିନା କଥା କହି ପାରିବ ନାହିଁ, ଏହାପରେ ସେମାନଙ୍କ ମଧ୍ୟରୁ (କେତେକ) ହତଭାଗ୍ୟ ହେବେ ଏବଂ(ଅନ୍ୟ କେତେକ) ଭାଗ୍ୟବାନ୍ ହେବେ ।

فَاَمَّا الَّذِيْنَ شَقُوْا فَفِي النَّارِ لَهُمْ فِيْهَا زَفِيْرٌ وَّشَهِيْقٌ ﴿۱۰۷﴾

୧୦୭. ସୁତରାଂ ଯେଉଁମାନେ ହତଭାଗ୍ୟ (ବୋଲି ପ୍ରମାଣିତ) ହେବେ, ସେମାନେ (ନରକ) ଅଗ୍ନିରେ ପ୍ରବେଶ କରିବେ; ତହିଁରେ ସେମାନଙ୍କର (ପୀଡ଼ା ଯୋଗୁଁ କେବେ କେବେ) ଦୀର୍ଘ ନିଶ୍ୱାସ ବହିର୍ଗତ ହେଉଥିବ ଏବଂ (କେବେ କେବେ) ଦୁଃଖପୂର୍ଣ୍ଣ ଅବସ୍ଥା ସଦୃଶ ନିଶ୍ୱାସ (ବହିର୍ଗତ ହେଉଥିବ) ।

خٰلِدِيْنَ فِيْهَا مَا دَامَتِ السَّمٰوٰتُ وَالْاَرْضُ اِلَّا مَا شَآءَ رَبُّكَ ؕ اِنَّ رَبَّكَ فَعَّالٌ لِّمَا يُرِيْدُ ﴿۱۰۸﴾

୧୦୮. ତୁମର ପାଳନକର୍ତ୍ତା ଇଚ୍ଛା ନ କଲେ, ଯେ ପର୍ଯ୍ୟନ୍ତ ଆକାଶ ଓ ପୃଥିବୀ ରହିଥିବ,[1] ସେ ପର୍ଯ୍ୟନ୍ତ ସେମାନେ ସେଠାରେ ରହିଥିବେ; ବାସ୍ତବରେ ତୁମର ପାଳନକର୍ତ୍ତା ଯାହା ଇଚ୍ଛା କରନ୍ତି ତାହା ହିଁ କରିଥାନ୍ତି ।

وَاَمَّا الَّذِيْنَ سُعِدُوْا فَفِى الْجَنَّةِ خٰلِدِيْنَ فِيْهَا مَا دَامَتِ السَّمٰوٰتُ وَالْاَرْضُ اِلَّا مَا شَآءَ رَبُّكَ ؕ عَطَآءً غَيْرَ مَجْذُوْذٍ ﴿۱۰۹﴾

୧୦୯. ଏବଂ ଯେଉଁମାନେ ଭାଗ୍ୟବାନ୍ ପ୍ରମାଣିତ ହେବେ, ସେମାନେ ବୈକୁଣ୍ଠରେ ରହିବେ, ଏବଂ ତୁମର ପାଳନକର୍ତ୍ତା ଇଚ୍ଛା ନ କଲେ, ଯେ ପର୍ଯ୍ୟନ୍ତ ଆକାଶ ଓ ପୃଥିବୀ ରହିଥିବ, ସେ ପର୍ଯ୍ୟନ୍ତ ସେମାନେ ସେଠାରେ ରହିଥିବେ; (ଏହା ଏପରି ଏକ) ଦାନ, ଯାହାକୁ (କେବେ ହେଁ) କାଟ କରାଯିବ ନାହିଁ ।

فَلَا تَكُ فِىْ مِرْيَةٍ مِّمَّا يَعْبُدُ هٰٓؤُلَآءِ ؕ مَا يَعْبُدُوْنَ اِلَّا كَمَا يَعْبُدُ اٰبَآؤُهُمْ مِّنْ قَبْلُ ؕ وَاِنَّا لَمُوَفُّوْهُمْ نَصِيْبَهُمْ غَيْرَ مَنْقُوْصٍ ﴿۱۱۰﴾

୧୧୦. ସୁତରାଂ ଏ (ଲୋକ)ମାନେ ଯେଉଁ ଉପାସନା କରୁଛନ୍ତି ତାହା (ନିଷ୍ଫଳ ହୋଇଥିବା) ବିଷୟରେ ତୁମେ ସନ୍ଦେହରେ ପଡ ନାହିଁ; ଏଥିପୂର୍ବରୁ ସେମାନଙ୍କର ପିତୃ-ପିତାମହମାନେ ଯେଉଁ ପରି ଉପାସନା କରୁଥିଲେ ସେମାନେ ସେହିପରି ଉପାସନା କରୁଛନ୍ତି; ଏବଂ ଆମେ ନିଶ୍ଚୟ ସେମାନଙ୍କୁ ସେମାନଙ୍କର ସମ୍ପୂର୍ଣ୍ଣ ଅଂଶ ପ୍ରଦାନ କରିବୁ; ଏଥିରେ (ଆଦୌ) କିଛି କମ କରାଯିବ ନାହିଁ ।

ରୁ: ୧୦

وَلَقَدْ اٰتَيْنَا مُوْسَى الْكِتٰبَ فَاخْتُلِفَ فِيْهِ ؕ وَلَوْلَا كَلِمَةٌ سَبَقَتْ مِنْ رَّبِّكَ لَقُضِىَ بَيْنَهُمْ ؕ وَاِنَّهُمْ لَفِىْ شَكٍّ مِّنْهُ مُرِيْبٍ ﴿۱۱۱﴾

୧୧୧. ଏବଂ ଆମେ (ମତଭେଦ ଦୂର କରିବା କଳ୍ପେ) ମୁସାଙ୍କୁ (ମଧ୍ୟ ତୌରାତ) ଗ୍ରନ୍ଥ ପ୍ରଦାନ କରିଥିଲୁ; ପୁଣି (କିଛିକାଳ ପରେ) ଏ ସଂକ୍ରାନ୍ତରେ (ମଧ୍ୟ) ମତଭେଦ ହେଲା; ଏବଂ ଉକ୍ତ (କରୁଣାମୂଳକ ପ୍ରତିଶ୍ରୁତି) ବିଷୟ ଯାହା ତୁମର ପାଳନକର୍ତ୍ତାଙ୍କଠାରୁ ଯଦି (ପ୍ରତିବନ୍ଧକ ହୋଇ) ପୂର୍ବରୁ ଅବତୀର୍ଣ୍ଣ ହୋଇ ନ ଥା'ନ୍ତା, ତେବେ ସେମାନଙ୍କ ମଧ୍ୟରେ (କେବେଠାରୁ) ନିଷ୍ପତ୍ତି କରି ଦିଆ ଯାଇଥା'ନ୍ତା, ଏବଂ ବର୍ତ୍ତମାନ ସେମାନେ ଏ (କୋରାନ) ସଂକ୍ରାନ୍ତରେ (ମଧ୍ୟ) ଏକ ଗୁରୁତର ସନ୍ଦେହରେ ପଡିଛନ୍ତି ।

وَاِنَّ كُلًّا لَّمَّا لَيُوَفِّيَنَّهُمْ رَبُّكَ اَعْمَالَهُمْ ؕ اِنَّهٗ بِمَا يَعْمَلُوْنَ خَبِيْرٌ ﴿۱۱۲﴾

୧୧୨. ଏବଂ ତୁମର ପାଳନକର୍ତ୍ତା ନିଶ୍ଚୟ ସେ ସମସ୍ତଙ୍କୁ ସେମାନଙ୍କର କର୍ମ (ଫଳ) ସମ୍ପୂର୍ଣ୍ଣରୂପେ ପ୍ରଦାନ କରିବେ; ସେମାନେ ଯାହା କିଛି କରୁଛନ୍ତି ତାହାକୁ ସେ ଭଲରୂପେ ଜାଣନ୍ତି ।

---

୧. ଏହା ଏକ ରୁଢ଼ି, ଅନ୍ୟଥା ପବିତ୍ର କୋରାନରୁ ପ୍ରମାଣିତ ହେଉଛି ଯେ ଦିନେ ନା ଦିନେ ସମସ୍ତ ନରକବାସୀ ନରକରୁ ମୁକ୍ତ ହେବେ । ପରବର୍ତ୍ତୀ ଆୟତରୁ ଜଣାପଡୁଛି ଯେ ବୈକୁଣ୍ଠବାସୀଙ୍କ ଆକାଶ ଓ ପୃଥିବୀ ସର୍ବଦା ଟିକି ରହିଥିବ ଓ ସେମାନଙ୍କ ପୁରସ୍କାର କଦାପି ନିଃଶେଷ ହେବ ନାହିଁ ।

୧୧୩. ସୁତରାଂ (ହେ ରସୁଲ !) ତୁମେ ଓ ତୁମ ସହିତ ଯେଉଁମାନେ (ଆମ ପ୍ରତି) ମନୋନିବେଶ କରିଛନ୍ତି, ଯେପରି ତୁମକୁ ଆଦେଶ ଦିଆଯାଇଅଛି (ସେହିପରି ଭାବେ) ସତ୍ ମାର୍ଗରେ ସ୍ଥିର ରହନ୍ତୁ; ଏବଂ (ହେ ବିଶ୍ୱାସକାରୀମାନେ !) ତୁମେମାନେ କଦାପି ସୀମା ଅତିକ୍ରମ କର ନାହିଁ; ଯାହା କିଛି ତୁମେମାନେ କରୁଅଛ ତାହା ସେ ଦେଖୁଛନ୍ତି ।

فَاسْتَقِمْ كَمَآ أُمِرْتَ وَمَنْ تَابَ مَعَكَ وَلَا تَطْغَوْا ۚ إِنَّهُۥ بِمَا تَعْمَلُونَ بَصِيرٌ ﴿١١٣﴾

୧୧୪. ଏବଂ ଯେଉଁମାନେ ଅତ୍ୟାଗ୍ର (ପନ୍ଥା ଅବଲମ୍ବନ) କରିଛନ୍ତି ତୁମେମାନେ ସେମାନଙ୍କ ଆଡକୁ ଢଳି ଯାଅ ନାହିଁ; ନୋହିଲେ (ନରକ) ଅଗ୍ନି ତୁମମାନଙ୍କୁ (ମଧ୍ୟ) ସ୍ପର୍ଶ କରିବ ଏବଂ (ସେତେବେଳେ) ଅଲ୍ଲାହ୍‌ଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ବନ୍ଧୁ (ଓ ସାହାଯ୍ୟକାରୀ) ନ ଥିବେ ଏବଂ ତୁମମାନଙ୍କୁ (କୌଣସି) ସହାୟତା ପ୍ରାପ୍ତ ହେବ ନାହିଁ ।

وَلَا تَرْكَنُوٓا إِلَى ٱلَّذِينَ ظَلَمُوا فَتَمَسَّكُمُ ٱلنَّارُ وَمَا لَكُم مِّن دُونِ ٱللَّهِ مِنْ أَوْلِيَآءَ ثُمَّ لَا تُنصَرُونَ ﴿١١٤﴾

୧୧୫. ଏବଂ ତୁମେମାନେ ଦିବସର ଦୁଇ ପ୍ରାନ୍ତରେ ତଥା ରାତ୍ରିର ବିଭିନ୍ନ ସମୟରେ ସୁସ୍ତୁରୁପେ ନମାଜ ପାଠ କର; ବାସ୍ତବରେ ପୁଣ୍ୟ କାର୍ଯ୍ୟଗୁଡିକ ପାପ କାର୍ଯ୍ୟଗୁଡିକୁ ଦୂର କରିଦିଏ; ଯେଉଁମାନେ (ଅଲ୍ଲାହ୍‌ଙ୍କୁ) ସ୍ମରଣ କରୁଥା'ନ୍ତି ଏହା (ଅର୍ଥାତ୍ ଅଲ୍ଲାହ୍‌ଙ୍କର ଶିକ୍ଷା) ସେମାନଙ୍କ ସକାଶେ ଏକ ଉପଦେଶ ।

وَأَقِمِ ٱلصَّلَوٰةَ طَرَفَيِ ٱلنَّهَارِ وَزُلَفًا مِّنَ ٱلَّيْلِ ۚ إِنَّ ٱلْحَسَنَٰتِ يُذْهِبْنَ ٱلسَّيِّـَٔاتِ ۚ ذَٰلِكَ ذِكْرَىٰ لِلذَّٰكِرِينَ ﴿١١٥﴾

୧୧୬. ଏବଂ ତୁମେ (ସାହସ ଓ) ଧୈର୍ଯ୍ୟ ଧାରଣ କର, କାରଣ ଅଲ୍ଲାହ୍ ପୁଣ୍ୟବାନ୍ ଲୋକମାନଙ୍କର ପୁରସ୍କାରକୁ କଦାପି ନଷ୍ଟ କରନ୍ତି ନାହିଁ ।

وَٱصْبِرْ فَإِنَّ ٱللَّهَ لَا يُضِيعُ أَجْرَ ٱلْمُحْسِنِينَ ﴿١١٦﴾

୧୧୭. ତୁମମାନଙ୍କ ପୂର୍ବବର୍ତ୍ତୀ (ଯୁଗରେ) ଯେଉଁ ସମ୍ପ୍ରଦାୟମାନ ଥିଲେ ସେମାନଙ୍କ ମଧ୍ୟରେ କାହିଁକି ଏପରି ବିଜ୍ଞ ବ୍ୟକ୍ତି ଆବିର୍ଭାବ ହୋଇ ନ ଥିଲେ ଯେଉଁମାନେ (ଲୋକମାନଙ୍କୁ) ଦେଶରେ ବିଶୃଙ୍ଖଳା ସୃଷ୍ଟି କରିବାରେ ପ୍ରତିରୋଧ କରିଥା'ନ୍ତେ ? ଅବଶ୍ୟ ଅଳ୍ପ କେତେକଙ୍କୁ ଛାଡି, ଯେଉଁମାନଙ୍କୁ ଆମେ (ସେମାନେ ନିଜେ ପାପ କାର୍ଯ୍ୟରୁ ନିବୃତ୍ତ ହୋଇଥିବା ଯୋଗୁଁ ତଥା ଅନ୍ୟମାନଙ୍କୁ ନିବୃତ୍ତ କରାଯାଇଥିବା ଯୋଗୁଁ) ରକ୍ଷା କରିଥିଲୁ, ଏବଂ ଯେଉଁ (ଅବଶିଷ୍ଟ) ମାନେ ଅତ୍ୟାଗ୍ର (ପନ୍ଥା ଅବଲମ୍ବନ) କରିଥିଲେ ସେମାନେ ସେଥିରେ (ଅର୍ଥାତ୍ ଧନ ସମ୍ପତ୍ତିରେ ) ନିମଗ୍ନ ହୋଇଥିଲେ ଯାହା ସେମାନଙ୍କୁ ପ୍ରଚୁର ପରିମାଣରେ ଦିଆ ହୋଇଥିଲା, ଏବଂ ସେମାନେ ଅପରାଧୀ ହୋଇଗଲେ ।

فَلَوْلَا كَانَ مِنَ ٱلْقُرُونِ مِن قَبْلِكُمْ أُولُوا بَقِيَّةٍ يَنْهَوْنَ عَنِ ٱلْفَسَادِ فِى ٱلْأَرْضِ إِلَّا قَلِيلًا مِّمَّنْ أَنجَيْنَا مِنْهُمْ ۗ وَٱتَّبَعَ ٱلَّذِينَ ظَلَمُوا مَآ أُتْرِفُوا فِيهِ وَكَانُوا مُجْرِمِينَ ﴿١١٧﴾

وَمَا كَانَ رَبُّكَ لِيُهْلِكَ الْقُرٰى بِظُلْمٍ وَّ اَهْلُهَا مُصْلِحُوْنَ ﴿١١٨﴾

୧୧୮. ଏବଂ ତୁମ୍ଭର ପାଳନକର୍ତ୍ତା କଦାପି ଏପରି ନୁହନ୍ତି ଯେ (ଦେଶର) ଜନବସତିଗୁଡ଼ିକର ବାସିନ୍ଦାମାନେ ସଂସ୍କାର (କାର୍ଯ୍ୟ) କରୁଥିବା ସତ୍ତ୍ୱେ ସେ ସେଗୁଡ଼ିକୁ ଧ୍ୱଂସ କରିଦେବେ ।

وَلَوْ شَآءَ رَبُّكَ لَجَعَلَ النَّاسَ اُمَّةً وَّاحِدَةً وَّلَا يَزَالُوْنَ مُخْتَلِفِيْنَ ﴿١١٩﴾

୧୧୯. ଏବଂ ଯଦି ତୁମ୍ଭ ପାଳନକର୍ତ୍ତା ନିଜର ଇଚ୍ଛା ବଳବତ୍ତର କରିଥା'ନ୍ତେ, ତେବେ ସେ ସମସ୍ତ ଲୋକଙ୍କୁ ଗୋଟିଏ ସମ୍ପ୍ରଦାୟଭୁକ୍ତ କରିଦିଅନ୍ତେ, ଏବଂ (ଯେହେତୁ ସେ ଏପରି ନ କରି ସେମାନଙ୍କୁ ନିଜ ବୁଦ୍ଧି ବଳରେ ମୀମାଂସା କରିବାକୁ ଛାଡ଼ି ଦେଇଥିଲେ) ସେମାନେ ସର୍ବଦା ଭିନ୍ନ ମତ ପୋଷଣ କରିବେ ।

اِلَّا مَنْ رَّحِمَ رَبُّكَ ۭ وَلِذٰلِكَ خَلَقَهُمْ ۭ وَتَمَّتْ كَلِمَةُ رَبِّكَ لَاَمْلَـئَنَّ جَهَنَّمَ مِنَ الْجِنَّةِ وَالنَّاسِ اَجْمَعِيْنَ ﴿١٢٠﴾

୧୨୦. (ଅବଶ୍ୟ) ସେମାନଙ୍କ ବ୍ୟତୀତ ଯେଉଁମାନଙ୍କ ପ୍ରତି ତୁମ୍ଭ ପାଳନକର୍ତ୍ତା କରୁଣା କରିଛନ୍ତି, ଏବଂ ଏଥି ସକାଶେ (ଅର୍ଥାତ୍ କରୁଣା ଲାଭର ଯୋଗ୍ୟତା ହାସଲ କରିବାକୁ) ସେ ସେମାନଙ୍କୁ ସୃଷ୍ଟି କରିଛନ୍ତି; ଏବଂ ତୁମ୍ଭ ପାଳନକର୍ତ୍ତାଙ୍କର ଏହି କଥନ ନିଶ୍ଚୟ ପରିପୂର୍ଣ୍ଣ ହେବ ଯେ ଆମେ (ଏହି ସବୁ) ଜିନ୍ ଓ ମାନବଙ୍କୁ ନେଇ (ଯେଉଁମାନେ ବିଭେଦର କାରଣ ହୋଇଛନ୍ତି) ନିଶ୍ଚୟ ନରକକୁ ପୂର୍ଣ୍ଣ କରିବୁ ।

وَكُلًّا نَّقُصُّ عَلَيْكَ مِنْ اَنْۢبَآءِ الرُّسُلِ مَا نُثَبِّتُ بِهٖ فُؤَادَكَ ۚ وَجَآءَكَ فِيْ هٰذِهِ الْحَقُّ وَمَوْعِظَةٌ وَّذِكْرٰى لِلْمُؤْمِنِيْنَ ﴿١٢١﴾

୧୨୧. ଏବଂ ତୁମ୍ଭର ମନକୁ ଦୃଢ଼ କରିବା ସକାଶେ ଆମେ ରସୁଲମାନଙ୍କର ସମସ୍ତ ବିଶିଷ୍ଟ ଘଟଣାକୁ ତୁମ୍ଭ ନିକଟରେ ବର୍ଣ୍ଣନା କରୁଅଛୁ; ଏବଂ ଏଥିରେ (ଅର୍ଥାତ୍ ଏହି ସୁରାରେ) ସେ ସମସ୍ତ ବିଷୟ ତୁମ୍ଭ ପ୍ରତି ଅବତୀର୍ଣ୍ଣ ହୋଇଛି ଯାହା ସତ୍ୟ ଓ ତତ୍ତ୍ୱଜ୍ଞାନରେ ପରିପୂର୍ଣ୍ଣ, ଏବଂ ଏହା ଉପଦେଶାତ୍ମକ ଅଟେ ତଥା ବିଶ୍ୱାସକାରୀମାନଙ୍କୁ ନିଜର କର୍ତ୍ତବ୍ୟ ସମ୍ବନ୍ଧରେ ସ୍ମରଣ କରାଇଥାଏ ।

وَقُلْ لِّلَّذِيْنَ لَا يُؤْمِنُوْنَ اعْمَلُوْا عَلٰى مَكَانَتِكُمْ ۭ اِنَّا عٰمِلُوْنَ ﴿١٢٢﴾

୧୨୨. ଏବଂ ଯେଉଁମାନେ ବିଶ୍ୱାସ କରୁ ନାହାନ୍ତି ତୁମ୍ଭେ (ସେମାନଙ୍କୁ) କୁହ, "ତୁମେମାନେ ନିଜ ପରିସ୍ଥିତି ମୁତାବକ କାର୍ଯ୍ୟ କର, ଆମେ ମଧ୍ୟ (ନିଜର ପରିସ୍ଥିତି ମୁତାବକ) କାର୍ଯ୍ୟ କରିବୁ ।"

وَانْتَظِرُوْا ۚ اِنَّا مُنْتَظِرُوْنَ ﴿١٢٣﴾

୧୨୩. "ଏବଂ ତୁମେମାନେ ଅପେକ୍ଷା କର, ଆମେ ମଧ୍ୟ ଅପେକ୍ଷା କରୁଅଛୁ ।"

وَلِلّٰهِ غَيْبُ السَّمٰوٰتِ وَالْاَرْضِ وَاِلَيْهِ يُرْجَعُ الْاَمْرُ كُلُّهٗ فَاعْبُدْهُ وَتَوَكَّلْ عَلَيْهِ ۭ وَمَا رَبُّكَ بِغَافِلٍ عَمَّا تَعْمَلُوْنَ ﴿١٢٤﴾

୧୨୪. ଏବଂ ଆକାଶ ଓ ପୃଥିବୀର ଅଦୃଶ୍ୟ ବିଷୟ କେବଳ ଅଲ୍ଲାହଙ୍କୁ ଜଣା, ଏବଂ (ପରିଣାମ ଦୃଷ୍ଟିରୁ) ସମସ୍ତ ବିଷୟ ତାହାଙ୍କ ନିକଟକୁ ଫେରିବ; ସୁତରାଂ ତୁମ୍ଭେ ତାହାଙ୍କର ଉପାସନା କର ଓ ତାହାଙ୍କ ଉପରେ ଭରସା କର, ଏବଂ ତୁମେମାନେ ଯାହା କିଛି କର୍ମ କରୁଅଛ ସେ ସଂକ୍ରାନ୍ତରେ ତୁମମାନଙ୍କ ପାଳନକର୍ତ୍ତା ଆଦୌ ଅପରିଜ୍ଞାତ ନୁହନ୍ତି ।

ركوعاتها سُورَةُ يُوسُفَ مَكِّيَّةٌ (١٢) اٰياتها

# ୟୁସୁଫ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସମିଲ୍ଲାହ ସମେତ ୧୧୨ ଗୋଟି ଆୟତ ଓ ୧୨ ଟି ରୁକୁ ଅଛି।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି)।

الٓرٰ تِلْكَ اٰيٰتُ الْكِتٰبِ الْمُبِيْنِ ②

୨. ଅଲିଫ-ଲାମ-ରା; ଏଗୁଡିକ (ସତ୍ୟକୁ) ପ୍ରକାଶ କରୁଥିବା ଗ୍ରନ୍ଥର ଆୟତ।

اِنَّاۤ اَنْزَلْنٰهُ قُرْءٰنًا عَرَبِيًّا لَّعَلَّكُمْ تَعْقِلُوْنَ ③

୩. ଆମ୍ଭେ ଏହାକୁ ସ୍ପଷ୍ଟ ଭାଷାରେ ବାରମ୍ବାର ଆବୃତ୍ତି ହେଉଥିବା ଗ୍ରନ୍ଥ ରୂପେ ଅବତୀର୍ଣ୍ଣ କରିଅଛୁ, ଯେପରିକି ତୁମେମାନେ ବୁଝିପାରିବ।

نَحْنُ نَقُصُّ عَلَيْكَ اَحْسَنَ الْقَصَصِ بِمَاۤ اَوْحَيْنَاۤ اِلَيْكَ هٰذَا الْقُرْاٰنَ ۖ وَاِنْ كُنْتَ مِنْ قَبْلِهٖ لَمِنَ الْغٰفِلِيْنَ ④

୪. ଆମ୍ଭେ ତୁମ୍ଭ ନିକଟରେ (ପ୍ରତ୍ୟେକ ବିଷୟକୁ) ସର୍ବୋତ୍ତମ ରୀତିରେ ବର୍ଣ୍ଣନା କରୁଅଛୁ, କାରଣ ଆମ୍ଭେ ଏହି କୋରାନକୁ ତୁମ୍ଭ ପ୍ରତି (ସତ୍ୟ ସମ୍ବଳିତ କରି) ଓହି ମାଧ୍ୟମରେ ଅବତୀର୍ଣ୍ଣ କରିଅଛୁ; ଏବଂ (ସତ୍ୟ ସଂକ୍ରାନ୍ତରେ) ଯେଉଁମାନେ[୧] ଅଜ୍ଞ ଥିଲେ ତୁମେ ଏଥିପୂର୍ବରୁ ସେମାନଙ୍କ ମଧ୍ୟରେ ସାମିଲ ଥିଲ।

اِذْ قَالَ يُوْسُفُ لِاَبِيْهِ يٰۤاَبَتِ اِنِّيْ رَاَيْتُ اَحَدَ عَشَرَ كَوْكَبًا وَّالشَّمْسَ وَالْقَمَرَ رَاَيْتُهُمْ لِيْ سٰجِدِيْنَ ⑤

୫. (ତୁମେ ସେହି ସମୟକୁ ସ୍ମରଣ କର) ଯେତେବେଳେ ୟୁସୁଫ ନିଜ ପିତାଙ୍କୁ କହିଥିଲେ, "ହେ ଆମ୍ଭର ପିତା! (ବିଶ୍ୱାସ କରନ୍ତୁ ଯେ) ଆମ୍ଭେ ଏଗାର ଗୋଟି ନକ୍ଷତ୍ର ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ (ସ୍ୱପ୍ନରେ) ଦେଖିଅଛୁ; (ଏବଂ ଆହୁରି ଆଶ୍ଚର୍ଯ୍ୟଜନକ ଘଟଣା ହେଉଛି ଯେ) ଆମ୍ଭେ ସେମାନଙ୍କୁ ନିଜ ସମ୍ମୁଖରେ ସିଜଦା କରୁଥିବା ଦେଖିଅଛୁ।"

قَالَ يٰبُنَيَّ لَا تَقْصُصْ رُءْيَاكَ عَلٰۤى اِخْوَتِكَ فَيَكِيْدُوْا لَكَ كَيْدًا ؕ اِنَّ الشَّيْطٰنَ لِلْاِنْسَانِ عَدُوٌّ مُّبِيْنٌ ⑥

୬. ସେ କହିଲେ, "ହେ ଆମ୍ଭର ପ୍ରିୟ ପୁତ୍ର! ନିଜର ଏହି ସ୍ୱପ୍ନ ବିଷୟ ତୁମ୍ଭ ଭାଇମାନଙ୍କ ନିକଟରେ ବର୍ଣ୍ଣନା କର ନାହିଁ; ନଚେତ୍ ସେମାନେ (ନିଶ୍ଚୟ) ତୁମ୍ଭ ବିପକ୍ଷରେ କୌଣସି ନା କୌଣସି (ଶତ୍ରୁତାମୂଳକ) ଷଡ଼ଯନ୍ତ୍ର କରିବେ; ବାସ୍ତବରେ ସଇତାନ ମନୁଷ୍ୟର ପ୍ରକାଶ୍ୟ ଶତ୍ରୁ।"

---

୧. ହଜରତ ମହମ୍ମଦଙ୍କ ନିକଟରେ ହଜରତ ୟୁସୁଫଙ୍କର ବିଶଦ ବିବରଣୀ ଅବତୀର୍ଣ୍ଣ ହେବା ମୂଳରେ ଯେଉଁ ରହସ୍ୟ ଅଛି ତାହା ହେଉଛି ପ୍ରଥମୋକ୍ତ ବ୍ୟକ୍ତିଙ୍କ ଜୀବଦଶାରେ ଶେଷୋକ୍ତ ବ୍ୟକ୍ତିଙ୍କ ଜୀବନରେ ଘଟିଥିବା ବିଷୟଗୁଡ଼ିକର ପୁନରାବୃତ୍ତି ହେବା ଅଭିପ୍ରେତ ଥିଲା।

୭. ''ଏବଂ (ତୁମେ ଯେପରି ସ୍ୱପ୍ନରେ ଦେଖିଅଛ) ସେହିପରି ତୁମର ପାଳନକର୍ତ୍ତା ତୁମଙ୍କୁ ମନୋନୀତ କରିବେ ଏବଂ ତୁମଙ୍କୁ (ଆଧ୍ୟାତ୍ମିକ) ଜ୍ଞାନ ପ୍ରଦାନ କରିବେ ଏବଂ ତୁମ ପ୍ରତି ତଥା ୟାକୁବଙ୍କର (ପ୍ରକୃତ) ସନ୍ତାନମାନଙ୍କ ପ୍ରତି (ସେହିପରି) ନିଜର ଅନୁଗ୍ରହକୁ ସମ୍ପୂର୍ଣ୍ଣ କରିବେ ଯେପରି ସେ ଏହା ପୂର୍ବରୁ ତୁମର ଦୁଇ ପୂର୍ବ ପୁରୁଷ ଇବ୍ରାହିମ ଓ ଇସହାକଙ୍କ ପ୍ରତି ସମ୍ପୂର୍ଣ୍ଣ କରିଥିଲେ; ବାସ୍ତବରେ ତୁମର ପାଳନକର୍ତ୍ତା ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।''

وَكَذٰلِكَ يَجْتَبِيكَ رَبُّكَ وَيُعَلِّمُكَ مِنْ تَأْوِيلِ الْأَحَادِيثِ وَيُتِمُّ نِعْمَتَهُ عَلَيْكَ وَعَلٰى اٰلِ يَعْقُوبَ كَمَا أَتَمَّهَا عَلٰى أَبَوَيْكَ مِنْ قَبْلُ إِبْرٰهِيمَ وَإِسْحٰقَ ۚ إِنَّ رَبَّكَ عَلِيمٌ حَكِيمٌ ۝

ରୁ: ୨

୮. ୟୁସୁଫ ଓ ତାହାଙ୍କ ଭାଇମାନଙ୍କ ବୃତ୍ତାନ୍ତରେ (ସତ୍ୟ) ଅନୁସନ୍ଧିତ୍ସୁମାନଙ୍କ ସକାଶେ କେତେଗୁଡିଏ ନିଦର୍ଶନ ରହିଅଛି ।

لَقَدْ كَانَ فِي يُوسُفَ وَإِخْوَتِهِ اٰيٰتٌ لِلسَّائِلِينَ ۝

୯. ଯେତେବେଳେ ସେମାନେ (ଅର୍ଥାତ୍ ୟୁସୁଫଙ୍କ ଭାଇମାନେ[୧] ପରସ୍ପରକୁ) କହିଲେ, ''ବାସ୍ତବରେ ୟୁସୁଫ ଓ ତାହାର ଭାଇ ଆମମାନଙ୍କ ତୁଳନାରେ ଆମମାନଙ୍କ ପିତାଙ୍କ ନିକଟରେ ଅଧିକ ପ୍ରିୟ ଅଟନ୍ତି; ଅଥଚ ଆମେମାନେ ଏକ ସଙ୍ଗଠିତ ଦଳ; ( ଏ ସଂକ୍ରାନ୍ତରେ) ଆମମାନଙ୍କ ପିତା ସୁସ୍ପଷ୍ଟ ଭ୍ରମରେ (ପଡି) ଅଛନ୍ତି ।''

إِذْ قَالُوا لَيُوسُفُ وَأَخُوهُ أَحَبُّ إِلٰى أَبِينَا مِنَّا وَنَحْنُ عُصْبَةٌ ۖ إِنَّ أَبَانَا لَفِي ضَلٰلٍ مُبِينٍ ۝

୧୦. ''(ଏଥିପାଇଁ ଏକେତ) ୟୁସୁଫଙ୍କୁ ହତ୍ୟାକର ବା ତାହାଙ୍କୁ ଅନ୍ୟ କୌଣସି (ଦୂର) ଦେଶକୁ ତଡିଦିଅ, (ଯେବି ଏହା କରିବ ତେବେ) ତୁମମାନଙ୍କ ପିତାଙ୍କ ଧ୍ୟାନ କେବଳ ତୁମମାନଙ୍କ ପାଇଁ ଉଦ୍ଦିଷ୍ଟ ହେବ, ଏବଂ ( ଏ ସଂକ୍ରାନ୍ତରେ ଭୟଭୀତ ହେବାର ଆବଶ୍ୟକତା ନାହିଁ କାରଣ) ଏହାପରେ ତୁମେମାନେ (ଅନୁତାପ କରି ପୁନରାୟ) ଏକ ଧର୍ମନିଷ୍ଠ ଦଳ ହୋଇପାରିବ ।''

اقْتُلُوا يُوسُفَ أَوِ اطْرَحُوهُ أَرْضًا يَخْلُ لَكُمْ وَجْهُ أَبِيكُمْ وَتَكُونُوا مِنْ بَعْدِهِ قَوْمًا صٰلِحِينَ ۝

୧୧. (ଏଥି ଉତ୍ତାରୁ) ସେମାନଙ୍କ ମଧ୍ୟରୁ ଜଣେ କହିଲେ, ''ତୁମେ ୟୁସୁଫଙ୍କୁ ହତ୍ୟା କର ନାହିଁ, ଏବଂ ଯଦି ତୁମମାନଙ୍କୁ କିଛି କରିବାକୁ ହୁଏ, ତେବେ ତାହାଙ୍କୁ (କୌଣସି) ବାମ୍ପାର ନିମ୍ନଦେଶକୁ ଫିଙ୍ଗି ଦିଅ; କୌଣସି ଯାତ୍ରୀଦଳର କେହି ବ୍ୟକ୍ତି ତାହାଙ୍କୁ (ଦେଖି) ଉଠାଇ ନେବେ (ଫଳରେ ହତ୍ୟା ନ କରି ମଧ୍ୟ ତୁମମାନଙ୍କର ଉଦ୍ଦେଶ୍ୟ ସାଧିତ ହେବ) ।''

قَالَ قَائِلٌ مِنْهُمْ لَا تَقْتُلُوا يُوسُفَ وَأَلْقُوهُ فِي غَيٰبَتِ الْجُبِّ يَلْتَقِطْهُ بَعْضُ السَّيَّارَةِ إِنْ كُنْتُمْ فٰعِلِينَ ۝

---

୧. ହଜରତ ୟାକୁବ୍‌ଙ୍କ ପତ୍ନୀ ରାଚେଲଙ୍କ ଗର୍ଭରୁ ବନୟାମିନ୍ ଓ ହଜରତ୍ ୟୁସୁଫ ଜନ୍ମ ଗ୍ରହଣ କରିଥିଲେ ଏବଂ ଅନ୍ୟ ଦଶଜଣ ସେମାନଙ୍କର ସାବତ ଭାଇ ଥିଲେ ।

୧୨. (ସୁତରାଂ) ସେମାନେ (ପିତାଙ୍କ ନିକଟକୁ ଯାଇ) କହିଲେ, "ହେ ଆମମାନଙ୍କର ପିତା! (ଆମମାନଙ୍କ ସମ୍ବନ୍ଧରେ) ଆପଣଙ୍କର କ'ଣ (ଆଶଙ୍କା) ଅଛି ଯେ ଆପଣ ୟୁସୁଫଙ୍କ ସଂକ୍ରାନ୍ତରେ ଆମମାନଙ୍କୁ (ଆଦୌ) ବିଶ୍ୱାସ କରୁ ନାହାନ୍ତି, ଯଦିଚ ଆମେମାନେ ତାହାଙ୍କ ପ୍ରତି (ଆନ୍ତରିକ ଭାବରେ) ଶୁଭାକାଂକ୍ଷୀ ଅଟୁ ?"

قَالُوْا يٰۤاَبَانَا مَا لَكَ لَا تَاْمَنَّا عَلٰى يُوْسُفَ وَاِنَّا لَهٗ لَنٰصِحُوْنَ ﴿۱۲﴾

୧୩. "କାଲି ତାହାକୁ ଆମମାନଙ୍କ ସଙ୍ଗରେ (ଭ୍ରମଣ କରିବାପାଇଁ ବାହାରକୁ) ପଠାନ୍ତୁ; ସେ (ସେଠାରେ) ବାହାରେ ଖାଇ (ପିଇ) ବୁଲିବ ଓ ଖେଳିବ ଏବଂ ଆମେମାନେ ତାହାର ସୁରକ୍ଷା କରିବୁ ।"

اَرْسِلْهُ مَعَنَا غَدًا يَّرْتَعْ وَيَلْعَبْ وَاِنَّا لَهٗ لَحٰفِظُوْنَ ﴿۱۳﴾

୧୪. ସେ (ଅର୍ଥାତ୍ ୟାକୁବ) କହିଲେ, "ତୁମେମାନେ ତାହାଙ୍କୁ ସଙ୍ଗରେ ଘେନିଯିବା ବାସ୍ତବରେ ଆମ୍ଭଙ୍କୁ ଚିନ୍ତିତ କରୁଅଛି, ଏବଂ ଆମ୍ଭେ ( ଏ ବିଷୟରେ ମଧ୍ୟ) ଭୟ କରୁଅଛୁ ଯେ କାଳେ ତୁମେମାନେ ତାହା ପ୍ରତି ଧ୍ୟାନ ନ ଦେଇଥିବାବେଳେ ତାହାକୁ ହେଟାବାଘ ଖାଇଯିବ ।"

قَالَ اِنِّيْ لَيَحْزُنُنِيْۤ اَنْ تَذْهَبُوْا بِهٖ وَاَخَافُ اَنْ يَّاْكُلَهُ الذِّئْبُ وَاَنْتُمْ عَنْهُ غٰفِلُوْنَ ﴿۱۴﴾

୧୫. ସେମାନେ କହିଲେ, "ଆମେମାନେ ଏକ ଶକ୍ତିଶାଳୀ ଦଳ ଥିବାବେଳେ ଯଦି ତାହାକୁ ହେଟାବାଘ ଖାଇଯାଏ, ତେବେ (ଆମେମାନେ ଅଲ୍ଲାହଙ୍କ ନାମରେ ଶପଥ ପୂର୍ବକ କହୁଅଛୁ ଯେ) ବାସ୍ତବରେ ଆମେମାନେ ହିଁ କ୍ଷତିଗ୍ରସ୍ତ ହେବୁ ।"

قَالُوْا لَئِنْ اَكَلَهُ الذِّئْبُ وَنَحْنُ عُصْبَةٌ اِنَّاۤ اِذًا لَّخٰسِرُوْنَ ﴿۱۵﴾

୧୬. ତତ୍ପରେ ସେମାନେ ତାହାଙ୍କୁ (ସଙ୍ଗରେ) ନେଇଗଲେ, ଓ ତାହାଙ୍କୁ ଏକ ବାମ୍ପୀର ନିମ୍ନଦେଶକୁ ଫିଙ୍ଗି ଦେବାକୁ ସର୍ବସମ୍ମତ ନିଷ୍ପତ୍ତି କଲେ; ଏବଂ ଆମ୍ଭେ ତାହାଙ୍କ ନିକଟରେ ଓହି (ମାଧ୍ୟମରେ ସୁସମାଗ୍ୱର) ପ୍ରଦାନ କରିଥିଲୁ ଯେ ତୁମ୍ଭେ (ସୁରକ୍ଷିତ ରହିବ ଓ) ସେମାନଙ୍କୁ ସେମାନଙ୍କର ଏହି କାର୍ଯ୍ୟ ସଂକ୍ରାନ୍ତରେ ଅବଗତ କରାଇବ ଓ ସେମାନେ ( ଏ ବିଷୟ) ଜାଣି ନ ଥିଲେ ।

فَلَمَّا ذَهَبُوْا بِهٖ وَاَجْمَعُوْۤا اَنْ يَّجْعَلُوْهُ فِيْ غَيٰبَتِ الْجُبِّ ۚ وَاَوْحَيْنَاۤ اِلَيْهِ لَتُنَبِّئَنَّهُمْ بِاَمْرِهِمْ هٰذَا وَهُمْ لَا يَشْعُرُوْنَ ﴿۱۶﴾

୧୭. ଏବଂ ରାତ୍ରି ସମୟକୁ ସେମାନେ କାନ୍ଦି କାନ୍ଦି ନିଜ ପିତାଙ୍କ ନିକଟକୁ ଆସିଥିଲେ ।

وَجَآءُوْۤ اَبَاهُمْ عِشَآءً يَّبْكُوْنَ ﴿۱۷﴾

୧୮. (ଏବଂ) କହିଲେ, "ହେ ଆମମାନଙ୍କ ପିତା! (ବିଶ୍ୱାସକର) ୟୁସୁଫଙ୍କୁ ଆମମାନଙ୍କ ଜିନିଷପତ୍ର ନିକଟରେ ଛାଡି ଆମେମାନେ (ଖେଳିବାକୁ ଏବଂ) ଜଣେ ଜଣକୁ ଟପି ଆଗକୁ ଦୌଡିବାକୁ ଲାଗିଲୁ; ଫଳରେ (ଏପରି ହେଲା ଯେ) ତାହାକୁ ଏକ ହେଟାବାଘ ଖାଇଗଲା; ଏବଂ ଆମେମାନେ ( ଏ ବିଷୟରେ) ସତ୍ୟବାଦୀ ଥିଲେ ମଧ୍ୟ ତୁମ୍ଭେ ଆମମାନଙ୍କୁ ବିଶ୍ୱାସ କରିବ ନାହିଁ (ବୋଲି ଆମେ ଜାଣୁ) ।"

قَالُوْا يٰۤاَبَانَاۤ اِنَّا ذَهَبْنَا نَسْتَبِقُ وَتَرَكْنَا يُوْسُفَ عِنْدَ مَتَاعِنَا فَاَكَلَهُ الذِّئْبُ ۚ وَمَاۤ اَنْتَ بِمُؤْمِنٍ لَّنَا وَلَوْ كُنَّا صٰدِقِيْنَ ﴿۱۸﴾

وَجَآءُوْ عَلٰى قَمِيْصِهٖ بِدَمٍ كَذِبٍ ۗ قَالَ بَلْ سَوَّلَتْ لَكُمْ اَنْفُسُكُمْ اَمْرًا ۗ فَصَبْرٌ جَمِيْلٌ ۗ وَاللّٰهُ الْمُسْتَعَانُ عَلٰى مَا تَصِفُوْنَ ⑰

୧୯. ଏବଂ (ପିତାଙ୍କ ବିଶ୍ୱାସ ଜନ୍ମାଇବା ପାଇଁ) ସେମାନେ ତାହାଙ୍କ (ଅର୍ଥାତ୍ ୟୁସୁଫଙ୍କ) ଜାମାରେ କୃତ୍ରିମ ରକ୍ତ ଲଗାଇ ଆଣିଥିଲେ; (ଏହାଦେଖି) ସେ କହିଲେ, "(ଏହା କଦାପି ଠିକ୍) ନୁହେଁ, ବରଂ ତୁମମାନଙ୍କର ପ୍ରବୃତ୍ତି ତୁମମାନଙ୍କ ସକାଶେ ଏପରି ଏକ (ମନ୍ଦ) ବିଷୟକୁ ତୁମମାନଙ୍କ ନିକଟରେ ସୁଶୋଭିତ କରି ଦେଖାଇଅଛି (ଯାହା ତୁମେ କରିସାରିଛ); ବର୍ତ୍ତମାନ ଉତ୍ତମରୂପେ ଧୈର୍ଯ୍ୟ ଧରିବା (ଆମ ପକ୍ଷରେ ଉଚିତ ହେବ) ଏବଂ ତୁମେମାନେ ଯାହା ବର୍ଣ୍ଣନା କରୁଅଛ ତାହା ସକାଶେ ଅଲ୍ଲାହଙ୍କର ସାହାଯ୍ୟ ଭିକ୍ଷା କରାଯାଇପାରେ (ବସ୍ତୁତଃ ତାହାଙ୍କର ହିଁ ସାହାଯ୍ୟ ଭିକ୍ଷା କରାଯିବ) ।"

وَجَآءَتْ سَيَّارَةٌ فَاَرْسَلُوْا وَارِدَهُمْ فَاَدْلٰى دَلْوَهٗ ۗ قَالَ يٰبُشْرٰى هٰذَا غُلٰمٌ ۗ وَاَسَرُّوْهُ بِضَاعَةً ۗ وَاللّٰهُ عَلِيْمٌۢ بِمَا يَعْمَلُوْنَ ⑳

୨୦. ଏବଂ (ସେହି ସମୟରେ) ଏକ ଯାତ୍ରୀଦଳ ଆସିଲେ, ଏବଂ ସେମାନେ ନିଜର ଜଳବାହକଙ୍କୁ (ବାମ୍ପା ନିକଟକୁ) ପଠାଇଲେ; ଏବଂ ସେ (ଉକ୍ତ ବାମ୍ପା ନିକଟକୁ ଯାଇ) ନିଜ ବାଲ୍‌ଟି ପକାଇଲା (ଏବଂ ସେହି ବାମ୍ପା ମଧ୍ୟରେ ଥିବା ଏକ ପିଲା ତାହା ଦୃଷ୍ଟିରେ ପଡିବାରୁ) ସେ (ଯାତ୍ରୀଦଳକୁ) କହିଲା, "ହେ (ଲୋକମାନେ !) ଏକ ସୁସମାଚାର (ଶୁଣ), ମୋତେ ଗୋଟିଏ ପିଲା ମିଳିଛି;" ଏବଂ ସେ (ଯାତ୍ରୀ)ମାନେ ତାହାଙ୍କୁ ଏକ ପଣ୍ୟଦ୍ରବ୍ୟ ରୂପେ ଲୁଚାଇ ଦେଲେ; ଏବଂ ସେମାନେ ଯାହା କିଛି କରୁଥିଲେ ଅଲ୍ଲାହ ତାହାକୁ ଭଲରୂପେ ଜାଣୁଥିଲେ ।

وَشَرَوْهُ بِثَمَنٍۭ بَخْسٍ دَرَاهِمَ مَعْدُوْدَةٍ ۚ وَكَانُوْا فِيْهِ مِنَ الزّٰهِدِيْنَ ㉑

୨୧. ଏବଂ (ୟୁସୁଫଙ୍କ ଭାଇମାନେ ଏ ବିଷୟ ଜାଣିବା ପରେ) ସେମାନେ ତାହାଙ୍କୁ (ନିଜର ଭୃତ୍ୟ କହି ଯାତ୍ରୀଦଳକୁ) ଅଳ୍ପ ମୂଲ୍ୟରେ[୧] ବିକ୍ରୟ କରିଦେଲେ ଏବଂ ସେମାନେ ତାହାଙ୍କଠାରୁ (ଅର୍ଥାତ୍ ତାହାଙ୍କୁ ବିକ୍ରୟ କରି) ଲାଭ ଉଠାଇବାକୁ ଆଗ୍ରହୀ ନ ଥିଲେ ।

ରୁ: ୩

وَقَالَ الَّذِى اشْتَرٰىهُ مِنْ مِّصْرَ لِامْرَاَتِهٖۤ اَكْرِمِىْ مَثْوٰىهُ عَسٰۤى اَنْ يَّنْفَعَنَاۤ اَوْ نَتَّخِذَهٗ وَلَدًا ۗ وَكَذٰلِكَ مَكَّنَّا لِيُوْسُفَ فِى الْاَرْضِ ۖ وَلِنُعَلِّمَهٗ مِنْ تَاْوِيْلِ

୨୨. ଏବଂ ମିଶରର (ବାସିନ୍ଦାମାନଙ୍କ ମଧ୍ୟରୁ) ଯେଉଁ ବ୍ୟକ୍ତି ତାହାଙ୍କୁ କ୍ରୟ କରିଥିଲେ, ସେ ତାହାଙ୍କ ପତ୍ନୀଙ୍କୁ କହିଲେ, "ଏହାପାଇଁ ସମ୍ମାନଜନକ ବାସସ୍ଥାନ ପ୍ରସ୍ତୁତ କର; ଆଶା ଅଛି ଯେ ଏ (ବାଳକ) ଆମମାନଙ୍କ ପାଇଁ ଲାଭଦାୟକ (ସାବ୍ୟସ୍ତ) ହେବ, ବା ଆମେ ତାହାକୁ (ନିଜର) ପୁତ୍ର ରୂପେ ଗ୍ରହଣ କରିବା;" ଏବଂ ଏହିପରିଭାବେ ଆମେ ୟୁସୁଫଙ୍କୁ ସେହି ଦେଶରେ (ମର୍ଯ୍ୟାଦା ଓ) ପ୍ରତିଷ୍ଠା ପ୍ରଦାନ କଲୁ, ଏବଂ (ଆମେ ତାହାଙ୍କୁ ଏପରି ସମ୍ମାନଜନକ ସ୍ଥାନ) ଏଥିଯୋଗୁଁ (ପ୍ରଦାନ କଲୁ)

୧. ସେମାନେ ତାଙ୍କୁ ଦେଶରୁ ବିତାଡ଼ିତ କରିବା ଉଦ୍ଦେଶ୍ୟରେ ଅଳ୍ପ ମୂଲ୍ୟରେ ବିକ୍ରି କରିଥିଲେ ଅନ୍ୟଥା ସେମାନଙ୍କର ଧନ ଲୋଭ ନଥିଲା ।

الْاَحَادِيْثِ ؕ وَ اللّٰهُ غَالِبٌ عَلٰۤى اَمْرِهٖ وَ لٰكِنَّ اَكْثَرَ النَّاسِ لَا يَعْلَمُوْنَ ﴿۲۲﴾

ଯେପରି କି ଆମ୍ଭେ ତାହାଙ୍କୁ (ଆଧ୍ୟାତ୍ମିକ) ଜ୍ଞାନ (ଅର୍ଥାତ୍ ସ୍ୱପ୍ନର ତାତ୍ପର୍ଯ୍ୟ ସମ୍ବନ୍ଧରେ ଜ୍ଞାନ) ପ୍ରଦାନ କରିବୁ; ଏବଂ ଅଲ୍ଲାହ ନିଜ କାର୍ଯ୍ୟ ଉପରେ (ସମ୍ପୂର୍ଣ୍ଣ) ପରାକ୍ରମୀ ଅଟନ୍ତି କିନ୍ତୁ ଅଧିକାଂଶ ଲୋକ (ଏହା) ଜାଣନ୍ତି ନାହିଁ।

وَ لَمَّا بَلَغَ اَشُدَّهٗۤ اٰتَيْنٰهُ حُكْمًا وَّ عِلْمًا ؕ وَ كَذٰلِكَ نَجْزِى الْمُحْسِنِيْنَ ﴿۲۳﴾

୨୩. ଏବଂ ସେ ପ୍ରାପ୍ତବୟସ୍କ ହେବାରୁ, ଆମ୍ଭେ ତାହାଙ୍କୁ ମୀମାଂସା (କରିବା ଶକ୍ତି) ଓ (ସ୍ୱତନ୍ତ୍ର) ଜ୍ଞାନ ପ୍ରଦାନ କଲୁ; ଏବଂ (ପ୍ରକୃତ) ପୁଣ୍ୟବାନ୍ ଲୋକମାନଙ୍କୁ ଆମ୍ଭେ ଏହିପରି ପୁରସ୍କାର ପ୍ରଦାନ କରିଥାଉ।

وَ رَاوَدَتْهُ الَّتِىْ هُوَ فِىْ بَيْتِهَا عَنْ نَّفْسِهٖ وَ غَلَّقَتِ الْاَبْوَابَ وَ قَالَتْ هَيْتَ لَكَ ؕ قَالَ مَعَاذَ اللّٰهِ اِنَّهٗ رَبِّىْۤ اَحْسَنَ مَثْوَاىَ ؕ اِنَّهٗ لَا يُفْلِحُ الظّٰلِمُوْنَ ﴿۲۴﴾

୨୪. ଏବଂ ଯେଉଁ (ମହିଳାଙ୍କ) ଗୃହରେ ସେ (ରହୁ)ଥିଲେ, ସେ ତାହାଙ୍କ ସହିତ ତାହାଙ୍କ ଇଚ୍ଛା ବିରୁଦ୍ଧରେ (ଏକ) କର୍ଯ୍ୟ କରାଇବାକୁ ଇଚ୍ଛା କରିଥିଲା, ଓ (ସେହି ଗୃହର) ସମସ୍ତ ଦ୍ୱାର ବନ୍ଦ କରିଦେଇ କହିଲା, ''(ମୋ ନିକଟକୁ) ଆସ,'' ସେ କହିଲେ, ''(ଏପରି କାର୍ଯ୍ୟ ବିରୁଦ୍ଧରେ ଆମ୍ଭେ) ଅଲ୍ଲାହଙ୍କର ଆଶ୍ରୟ ଭିକ୍ଷା କରୁଅଛୁ; ସେ ନିଶ୍ଚିତ ରୂପେ ଆମ୍ଭର ପାଳନକର୍ତ୍ତା; ସେ ହିଁ ଆମ୍ଭପାଇଁ ଉତ୍ତମ ବାସସ୍ଥାନ ପ୍ରସ୍ତୁତ କରିଛନ୍ତି;'' ପ୍ରକୃତ ବିଷୟ ହେଉଛି ଯେ ଅତ୍ୟାଚାରୀମାନେ କୃତକାର୍ଯ୍ୟ ହୁଅନ୍ତି ନାହିଁ।

وَ لَقَدْ هَمَّتْ بِهٖ ۚ وَ هَمَّ بِهَا لَوْ لَاۤ اَنْ رَّاٰ بُرْهَانَ رَبِّهٖ ؕ كَذٰلِكَ لِنَصْرِفَ عَنْهُ السُّوْٓءَ وَ الْفَحْشَآءَ ؕ اِنَّهٗ مِنْ عِبَادِنَا الْمُخْلَصِيْنَ ﴿۲۵﴾

୨୫. ଏବଂ ସେ (ମହିଳା) ତାହାଙ୍କ ସମ୍ବନ୍ଧରେ ନିଜର ସଙ୍କଳ୍ପକୁ ଦୃଢ଼ୀଭୂତ କରିଥିଲା, ଏବଂ ସେ (ୟୁସୁଫ) ମଧ୍ୟ (ତାହା କବଳରୁ ରକ୍ଷା ପାଇବା ପାଇଁ) ତା' ସଂକ୍ରାନ୍ତରେ ନିଜର ସଙ୍କଳ୍ପକୁ ଦୃଢ଼ୀଭୂତ କରିଥିଲେ; ଏବଂ ଯଦି ସେ ନିଜର ପାଳନକର୍ତ୍ତାଙ୍କର ସୁସ୍ପଷ୍ଟ ପ୍ରମାଣ ଦେଖି ନ ଥା'ନ୍ତେ (ତାହାହେଲେ ସେ ଏପରି ଦୃଢ଼ତା ଅବଲମ୍ବନ କରିପାରି ନ ଥା'ନ୍ତେ); ଏହିପରି ହେଲା, ଯଦ୍ୱାରା କି ଆମ୍ଭେ ତାହାଙ୍କଠାରୁ ପାପ ଓ ଅଶ୍ଳୀଳତାକୁ ଦୂର କରି ଦେବୁ; ସେ ନିଃସନ୍ଦେହରେ ଆମ୍ଭର ମନୋନୀତ (ତଥା ପବିତ୍ର) ଭକ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ।

وَ اسْتَبَقَا الْبَابَ وَ قَدَّتْ قَمِيْصَهٗ مِنْ دُبُرٍ وَّ اَلْفَيَا سَيِّدَهَا لَدَا الْبَابِ ؕ قَالَتْ مَا جَزَآءُ مَنْ اَرَادَ بِاَهْلِكَ سُوْٓءًا اِلَّاۤ اَنْ يُّسْجَنَ اَوْ عَذَابٌ اَلِيْمٌ ﴿۲۶﴾

୨୬. ଏବଂ ସେମାନେ (ଦୁହେଁ) ଦ୍ୱାର ଆଡ଼କୁ ଦୌଡ଼ିଲେ, ଏବଂ (ଏହି ଦୌଡ଼ାଦୌଡ଼ି ବେଳେ) ସେ (ମହିଳା) ତାହାଙ୍କ ଜାମାକୁ ପଛରୁ ଚିରିଦେଲା, ଏବଂ (ଯେତେବେଳେ ସେମାନେ ଏହିପରି ଭାବରେ ଦ୍ୱାର ନିକଟରେ ପହଞ୍ଚିଲେ) ସେମାନେ ତା' ସ୍ୱାମୀକୁ ଦ୍ୱାର ନିକଟରେ (ଦଣ୍ଡାୟମାନ ହୋଇଥିବା) ଦେଖିଲେ; (ତହୁଁ) ସେ (ମହିଳା ନିଜର ସ୍ୱାମୀଙ୍କୁ) କହିଲା, ''ଯେ (ବ୍ୟକ୍ତି) ଆପଣଙ୍କର ପତ୍ନୀ ସହିତ ବ୍ୟଭିଚାର (କରିବାକୁ) ଇଚ୍ଛା କରେ ତାହାପାଇଁ କାରାବାସ ବା ଅନ୍ୟ କୌଣସି ଯନ୍ତ୍ରଣାଦାୟକ ଶାସ୍ତି ବ୍ୟତୀତ ଅନ୍ୟ କୌଣସି ଦଣ୍ଡ ଉଚିତ ହେବ ନାହିଁ।''

୨୭. ୟୁସୁଫ କହିଲେ, "ପ୍ରକୃତରେ ତାହା ନୁହେଁ, ବରଂ ସେ ଆମ ଇଚ୍ଛା ବିରୁଦ୍ଧରେ (ଏକ) କାର୍ଯ୍ୟ କରାଇବାକୁ ଇଚ୍ଛା କରିଥିଲା," ଏବଂ ତା' (ଅର୍ଥାତ୍ ସେ ମହିଳାର) ପରିବାର ମଧ୍ୟରୁ ଜଣେ ସାକ୍ଷୀ ସାକ୍ଷ୍ୟ ଦେଇଥିଲେ, "ଏହି ମହିଳାର ପରିଧେୟ ନଷ୍ଟ ନ ହୋଇ ସେହି ବ୍ୟକ୍ତିର ପରିଧେୟ ନଷ୍ଟ ହୋଇଥିବାରୁ ଯଦି ତାହାଙ୍କ ଜାମା ଆଗପଟୁ ଚିରାଯାଇଥାଏ, ତେବେ ଉକ୍ତ ମହିଳା ସତ୍ୟ କହୁଛି ଏବଂ ସେ (ପୁରୁଷ) ନିଶ୍ଚିତ ରୂପେ ମିଥ୍ୟାବାଦୀ ଅଟେ ।"

قَالَ هِيَ رَاوَدَتْنِي عَنْ نَفْسِي وَشَهِدَ شَاهِدٌ مِنْ أَهْلِهَا إِنْ كَانَ قَمِيصُهُ قُدَّ مِنْ قُبُلٍ فَصَدَقَتْ وَهُوَ مِنَ الْكَاذِبِينَ ﴿٢٧﴾

୨୮. "ଏବଂ ଯଦି ତା'ର (ଅର୍ଥାତ୍ ସେ ପୁରୁଷର) ଜାମା ପଛପଟୁ ଚିରା ଯାଇଥାଏ, ତେବେ ସେ (ମହିଳା) ମିଥ୍ୟା କହୁଛି ଓ ସେ (ପୁରୁଷ) ନିଶ୍ଚିତ ରୂପେ ସତ୍ୟବାଦୀ ଅଟେ ।"

وَإِنْ كَانَ قَمِيصُهُ قُدَّ مِنْ دُبُرٍ فَكَذَبَتْ وَهُوَ مِنَ الصَّادِقِينَ ﴿٢٨﴾

୨୯. ସୁତରାଂ ଯେତେବେଳେ ସେ (ମହିଳାର ସ୍ୱାମୀ) ତାହାଙ୍କ ଜାମା ପଛପଟୁ ଚିରା ଯାଇଥିବାର ଦେଖିଲେ, ସେ (ନିଜ ପତ୍ନୀକୁ) କହିଲେ, "ଏ (କଳହ) ବାସ୍ତବରେ ତୁମ ଚତୁରତାରୁ (ଜାତ) ହୋଇଅଛି; ତୁମ ମହିଳାମାନଙ୍କର ଚତୁରତା ଅତ୍ୟନ୍ତ ଗୁରୁତର ।"

فَلَمَّا رَأَى قَمِيصَهُ قُدَّ مِنْ دُبُرٍ قَالَ إِنَّهُ مِنْ كَيْدِكُنَّ إِنَّ كَيْدَكُنَّ عَظِيمٌ ﴿٢٩﴾

୩୦. "ହେ ୟୁସୁଫ ! ତୁମେ ଏହାକୁ (ଅର୍ଥାତ୍ ଉକ୍ତ ମହିଳାର କୁକର୍ମକୁ) କ୍ଷମାକର, ଏବଂ (ହେ ନାରୀ !) ତୁମେ ନିଜ ଅପରାଧ ପାଇଁ କ୍ଷମା ଭିକ୍ଷା କର; ବାସ୍ତବରେ ତୁମେ ଅତ୍ୟାଗ୍ରହୀ (ତଥା ଦୋଷୀ) ମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।"

يُوسُفُ أَعْرِضْ عَنْ هَٰذَا ۚ وَاسْتَغْفِرِي لِذَنْبِكِ ۖ إِنَّكِ كُنْتِ مِنَ الْخَاطِئِينَ ﴿٣٠﴾

ରୁ: ୪

୩୧. ଏବଂ ସେହି ସହରର କେତେକ ମହିଳା (ପରସ୍ପରକୁ) କହିଲେ, "ଅଜିଜଙ୍କ [୧] ପତ୍ନୀ ନିଜର ଭୃତ୍ୟ ସହିତ ତାହାର ଇଚ୍ଛା ବିରୁଦ୍ଧରେ (ମନ୍ଦ) କାର୍ଯ୍ୟ କରାଇବାକୁ ଇଚ୍ଛା କରୁଅଛି; ତାହାଙ୍କ ପ୍ରେମ ତାହାର ହୃଦୟକୁ ଗଭୀର ଭାବରେ ସମ୍ମୋହିତ କରିଅଛି; ଆମେମାନେ (ଏ ସଂକ୍ରାନ୍ତରେ) ତାହାକୁ ସ୍ପଷ୍ଟ ବିପଥଗାମୀନୀ ଥିବାର ଦେଖୁଅଛୁ ।"

وَقَالَ نِسْوَةٌ فِي الْمَدِينَةِ امْرَأَتُ الْعَزِيزِ تُرَاوِدُ فَتَاهَا عَنْ نَفْسِهِ ۖ قَدْ شَغَفَهَا حُبًّا ۖ إِنَّا لَنَرَاهَا فِي ضَلَالٍ مُبِينٍ ﴿٣١﴾

---

୧. ମିଶରର ପ୍ରଶାସନରେ ଥିବା ଏକ ଉଚ୍ଚ ପଦ ଯାହା ମନ୍ତ୍ରୀପଦ ସହିତ ସମାନ ।

୩୨. ଏବଂ ଯେତେବେଳେ ସେ (ମହିଳା)ସେମାନଙ୍କର ଏହି କୁତ୍ସାମୂଳକ ସମ୍ବାଦ ଶୁଣିଲା, ସେତେବେଳେ ସେ ସେମାନଙ୍କୁ (ନିମନ୍ତ୍ରଣ) ବାର୍ତ୍ତା ପଠାଇଲା, ଏବଂ ସେମାନଙ୍କ ପାଇଁ ଏକ (ସ୍ୱତନ୍ତ୍ର) ବେଦି ପ୍ରସ୍ତୁତ କରାଇଲା ଓ (ସେମାନେ ଆସିବାପରେ) ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ (ଗୋଟିଏ ଲେଖାଏଁ ଫଳକଟା) ଛୁରୀ ଦେଲା ଏବଂ (ୟୁସୁଫଙ୍କୁ) ସେମାନଙ୍କ ସାମନାକୁ ଆସିବାକୁ କହିଲା; ସୁତରାଂ ଯେତେବେଳେ ସେମାନେ ତାହାଙ୍କୁ ଦେଖିଲେ, ସେତେବେଳେ ସେମାନେ ତାହାଙ୍କୁ ଏକ ମହାନ୍ ବ୍ୟକ୍ତି ବୋଲି ଉପଲବ୍ଧି କଲେ, ଏବଂ (ତାହାଙ୍କୁ ଦେଖିବା ପରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ) ନିଜ ନିଜ ହାତକୁ କାମୁଡି[୧] ପକାଇଲେ ଏବଂ କହିଲେ, ''(ଏ ବ୍ୟକ୍ତି କେବଳ) ଅଲ୍ଲାହଙ୍କ ଭୟରେ (ମନ୍ଦକାର୍ଯ୍ୟ କରିବାରୁ) ନିବୃତ୍ତ ରହିଥିଲେ, ଏ ମନୁଷ୍ୟ ନୁହନ୍ତି, ଏ ତ ଜଣେ ସମ୍ମାନାସ୍ପଦ ଦେବଦୂତ ।''

فَلَمَّا سَمِعَتْ بِمَكْرِهِنَّ أَرْسَلَتْ إِلَيْهِنَّ وَأَعْتَدَتْ لَهُنَّ مُتَّكَأً وَآتَتْ كُلَّ وَاحِدَةٍ مِّنْهُنَّ سِكِّينًا وَقَالَتِ اخْرُجْ عَلَيْهِنَّ ۖ فَلَمَّا رَأَيْنَهُ أَكْبَرْنَهُ وَقَطَّعْنَ أَيْدِيَهُنَّ وَقُلْنَ حَاشَ لِلَّهِ مَا هَٰذَا بَشَرًا إِنْ هَٰذَا إِلَّا مَلَكٌ كَرِيمٌ ﴿٣٢﴾

୩୩. ସେ (ମହିଳା ଏହାପରେ) ସେମାନଙ୍କୁ କହିଲା, ''ଏ ସେହି ବ୍ୟକ୍ତି ଯାହାଙ୍କ ସଂକ୍ରାନ୍ତରେ ତୁମେମାନେ ମୋତେ ଆକ୍ଷେପ କରୁଥିଲ; ଏବଂ ମୁଁ ତାହାଙ୍କ ସହିତ ତାହାଙ୍କ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରିବାକୁ ନିଶ୍ଚୟ ଚେଷ୍ଟା କରିଥିଲି, ତଥାପି ସେ ତହିଁରୁ (ନିଜକୁ) ରକ୍ଷା କରିଥିଲେ; ଏବଂ ମୁଁ ତାହାଙ୍କୁ ଯେଉଁ ବିଷୟରେ ଆଦେଶ ଦେଇଅଛି ଯଦି ସେ ତାହା ନ କରନ୍ତି, ତେବେ ନିଶ୍ଚୟ ତାହାଙ୍କୁ କାରାରୁଦ୍ଧ କରାଯିବ ଏବଂ ସେ ନିଶ୍ଚିତ ରୂପେ ଅପମାନିତ ହେବେ ।''

قَالَتْ فَذَٰلِكُنَّ الَّذِي لُمْتُنَّنِي فِيهِ ۖ وَلَقَدْ رَاوَدتُّهُ عَن نَّفْسِهِ فَاسْتَعْصَمَ ۖ وَلَئِن لَّمْ يَفْعَلْ مَا آمُرُهُ لَيُسْجَنَنَّ وَلَيَكُونًا مِّنَ الصَّاغِرِينَ ﴿٣٣﴾

୩୪. (ଏହା ଶୁଣି ପ୍ରାର୍ଥନାପୂର୍ବକ) ସେ କହିଲେ, ''ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭଙ୍କୁ ସେ ଯେଉଁ ବିଷୟ ପ୍ରତି ନିମନ୍ତ୍ରଣ କରୁଛନ୍ତି ତାହା ତୁଳନାରେ କାରାଗାରକୁ ଯିବା ଆମ୍ଭ ପକ୍ଷରେ ଅଧିକ ଶ୍ରେୟସ୍କର; ଏବଂ ଯଦି ତୁମ୍ଭେ ସେମାନଙ୍କ ଚକ୍ରାନ୍ତକୁ (ଅର୍ଥାତ୍ ତଜ୍ଜନିତ କୁପରିଣାମକୁ) ଆମ୍ଭ ନିକଟରୁ ଅପସାରଣ ନ କରିବ, ତେବେ ଆମ୍ଭେ ସେମାନଙ୍କ ପ୍ରତି ଅନୁରକ୍ତ ହୋଇଯିବୁ, ଏବଂ ନିର୍ବୋଧମାନଙ୍କ[୨] ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯିବୁ ।''

قَالَ رَبِّ السِّجْنُ أَحَبُّ إِلَيَّ مِمَّا يَدْعُونَنِي إِلَيْهِ ۖ وَإِلَّا تَصْرِفْ عَنِّي كَيْدَهُنَّ أَصْبُ إِلَيْهِنَّ وَأَكُن مِّنَ الْجَاهِلِينَ ﴿٣٤﴾

---

୧. ହଜରତ ୟୁସୁଫ୍‌ଙ୍କର ଋଷିପ୍ରତିମ ଓ ସୌମ୍ୟ ମୁଖଶ୍ରୀକୁ ଅବଲୋକନ କରି ଉପସ୍ଥିତ ମହିଳାମାନେ ଏପରି ଚକିତ ହୋଇଗଲେ ଯେ ସେମାନଙ୍କ ମଧ୍ୟରୁ କେତେକ ନିଜର ସ୍ଥିତିକୁ ଭୁଲିଗଲେ ଓ ଛୁରୀରେ ନିଜ ନିଜ ହାତ କାଟି ପକାଇଲେ । ଏଠାରେ ହାତ କାଟିଦେବା ଅର୍ଥ ମଧ୍ୟ ଅଙ୍ଗୁଠିର ଅଗ୍ରଭାଗକୁ ଦାନ୍ତରେ କାମୁଡିବା ଯାହା ଆଶ୍ଚର୍ଯ୍ୟ ହେବାର ଅବସ୍ଥାକୁ ସୂଚାଏ ।

୨. ଅର୍ଥାତ୍ ତୁମ୍ଭ ସହାୟତାକ୍ରମେ ସୁରକ୍ଷିତ ରହିପାରିବି ଅନ୍ୟଥା ନିର୍ବୋଧ ବ୍ୟକ୍ତିମାନଙ୍କ ସଦୃଶ କାର୍ଯ୍ୟ କରିବି ।

୩୫. ଅତଏବ ତାହାଙ୍କ ପାଳନକର୍ତ୍ତା ତାହାଙ୍କର ପ୍ରାର୍ଥନା ଶୁଣିଥିଲେ, ଓ ସେମାନଙ୍କ ଚକ୍ରାନ୍ତ (ଜନିତ କୁପରିଣାମକୁ) ତାହାଙ୍କଠାରୁ ଅପସାରଣ କରିଥିଲେ; ବାସ୍ତବରେ ସେ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

فَاسْتَجَابَ لَهُ رَبُّهُ فَصَرَفَ عَنْهُ كَيْدَهُنَّ ۚ إِنَّهُ هُوَ السَّمِيعُ الْعَلِيمُ ﴿٣٥﴾

୩୬. ତତ୍ପରେ ସେମାନେ (ଅର୍ଥାତ୍ ନେତୃସ୍ଥାନୀୟ ବ୍ୟକ୍ତିମାନେ) ସେହି ଆଭାସଗୁଡିକୁ ଅନୁଭବ କଲା ପରେ ସ୍ଥିର କଲେ ଯେ (ଦୁର୍ନାମ ଦୂରୀକରଣ ଉଦ୍ଦେଶ୍ୟରେ ଅନ୍ତତଃ) କିଛିକାଳ ପାଇଁ ତାହାଙ୍କୁ କାରାରୁଦ୍ଧ କରିବା ଉଚିତ ।

ثُمَّ بَدَا لَهُم مِّن بَعْدِ مَا رَأَوُا الْآيَاتِ لَيَسْجُنُنَّهُ حَتَّىٰ حِينٍ ﴿٣٦﴾

ରୁ: ୫

୩୭. ଏବଂ ତାହାଙ୍କ ସହିତ କାରାଗାରରେ ଅନ୍ୟ ଦୁଇଜଣ ଯୁବକ ପ୍ରବେଶ କଲେ ଯେଉଁମାନଙ୍କ ମଧ୍ୟରୁ ଜଣେ (ତାହାଙ୍କୁ) କହିଲା, "ମୁଁ (ସ୍ୱପ୍ନରେ) ନିଜକୁ ଅଙ୍ଗୁରରୁ ରସ ନିର୍ଗତ କରୁଥିବାର ଦେଖିଅଛି;"ଏବଂ ଅପର (ବ୍ୟକ୍ତି) କହିଲା, "ମୁଁ ସ୍ୱପ୍ନରେ ନିଜକୁ ନିଜେ ମୁଣ୍ଡ ଉପରେ ରୁଟି ବହନ କରିଥିବାର ଦେଖିଅଛି ଯହିଁରୁ ପକ୍ଷୀମାନେ ଖାଉଛନ୍ତି. " (ଏବଂ ସେ ଦୁହେଁ ଯୁସୁଫଙ୍କୁ ପଚାରିଲେ), "ଆପଣ ଆମମାନଙ୍କୁ ଏହାର ପ୍ରକୃତ ଅର୍ଥ ସଂକ୍ରାନ୍ତରେ ଅବଗତ କରାନ୍ତୁ; ଆମେମାନେ ଆପଣଙ୍କୁ ନିଶ୍ଚୟ ପୁଣ୍ୟବାନ୍ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ (ଥିବାର) ମନେ କରୁଛୁ ।"

وَدَخَلَ مَعَهُ السِّجْنَ فَتَيَانِ ۖ قَالَ أَحَدُهُمَا إِنِّي أَرَانِي أَعْصِرُ خَمْرًا ۖ وَقَالَ الْآخَرُ إِنِّي أَرَانِي أَحْمِلُ فَوْقَ رَأْسِي خُبْزًا تَأْكُلُ الطَّيْرُ مِنْهُ ۖ نَبِّئْنَا بِتَأْوِيلِهِ ۖ إِنَّا نَرَاكَ مِنَ الْمُحْسِنِينَ ﴿٣٧﴾

୩୮. ସେ କହିଲେ, "(ଏ ଓଳିର) ଖାଦ୍ୟ ତୁମମାନଙ୍କ ନିକଟକୁ ଆସିବା ପୂର୍ବରୁ ଆମେ ତୁମମାନଙ୍କୁ ଏହାର (ଅର୍ଥାତ୍ ଏହି ସ୍ୱପ୍ନର) ପ୍ରକୃତ ଅର୍ଥ ଜଣାଇ ଦେବୁ, ଆମର ପାଳନକର୍ତ୍ତା ଆମକୁ ଜ୍ଞାନ ପ୍ରଦାନ କରିଥିବାରୁ ଏହା (ଅର୍ଥାତ୍ ସ୍ୱପ୍ନର ପ୍ରକୃତ ଅର୍ଥ ପ୍ରକାଶ କରିବା କ୍ଷମତା ଆମଠାରେ) ଅଛି; ଯେଉଁମାନେ ଅଲ୍ଲାହ୍‌ଙ୍କ ଉପରେ ବିଶ୍ୱାସ କରନ୍ତି ନାହିଁ ଓ ପରକାଳକୁ (ମଧ୍ୟ) ଅସ୍ୱୀକାର କରନ୍ତି, ଆମେ ସେମାନଙ୍କର ଧର୍ମକୁ ପରିତ୍ୟାଗ କରିଅଛୁ ।"

قَالَ لَا يَأْتِيكُمَا طَعَامٌ تُرْزَقَانِهِ إِلَّا نَبَّأْتُكُمَا بِتَأْوِيلِهِ قَبْلَ أَن يَأْتِيَكُمَا ۚ ذَٰلِكُمَا مِمَّا عَلَّمَنِي رَبِّي ۚ إِنِّي تَرَكْتُ مِلَّةَ قَوْمٍ لَّا يُؤْمِنُونَ بِاللَّهِ وَهُم بِالْآخِرَةِ هُمْ كَافِرُونَ ﴿٣٨﴾

୩୯. "ଏବଂ ଆମେ ଆମର ପିତୃ-ପିତାମହ ଅର୍ଥାତ୍ ଇବ୍ରାହିମ ଓ ଇସହାକ ଓ ୟାକୁବଙ୍କର ପନ୍ଥାକୁ ଅନୁସରଣ କରିଅଛୁ; ଅଲ୍ଲାହ୍‌ଙ୍କ ସହିତ ଅନ୍ୟ କାହାରିକୁ ସମକକ୍ଷ କରିବାକୁ ଆମର ଅଧିକାର ନାହିଁ; ଏହା (ଅର୍ଥାତ୍ ଏକେଶ୍ୱରବାଦ ସଂକ୍ରାନ୍ତ ଶିକ୍ଷା) ଆମମାନଙ୍କ ପ୍ରତି ତଥା ଅନ୍ୟମାନଙ୍କ ପ୍ରତି ଅଲ୍ଲାହ୍‌ଙ୍କର (ଅନ୍ୟତମ ସ୍ୱତନ୍ତ୍ର) ଅନୁଗ୍ରହ; କିନ୍ତୁ ଅଧିକାଂଶ ଲୋକ (ତାହାଙ୍କ ଅନୁଗ୍ରହ ପାଇଁ) କୃତଜ୍ଞତା ଜ୍ଞାପନ କରନ୍ତି ନାହିଁ ।"

وَاتَّبَعْتُ مِلَّةَ آبَائِي إِبْرَاهِيمَ وَإِسْحَاقَ وَيَعْقُوبَ ۚ مَا كَانَ لَنَا أَن نُّشْرِكَ بِاللَّهِ مِن شَيْءٍ ۚ ذَٰلِكَ مِن فَضْلِ اللَّهِ عَلَيْنَا وَعَلَى النَّاسِ وَلَٰكِنَّ أَكْثَرَ النَّاسِ لَا يَشْكُرُونَ ﴿٣٩﴾

୪୦. "ହେ ଆମ୍ଭର କାରାଗାରର ସଙ୍ଗୀ ଦ୍ୱୟ ! କ'ଣ (ପରସ୍ପର ମଧ୍ୟରେ) ବିରୋଧଭାବ ପୋଷଣ କରୁଥିବା ପ୍ରଭୁମାନେ ଉତ୍ତମ, ନା ଏକ (ଓ) ମହାପରାକ୍ରମୀ ଅଲ୍ଲାହ୍ ଉତ୍ତମ ?"

يَـٰصَـٰحِبَيِ ٱلسِّجْنِ ءَأَرْبَابٌ مُّتَفَرِّقُونَ خَيْرٌ أَمِ ٱللَّهُ ٱلْوَٰحِدُ ٱلْقَهَّارُ ﴿٤٠﴾

୪୧. "ତୁମେମାନେ ତାହାଙ୍କୁ ପରିତ୍ୟାଗ କରି କେବଳ (ଏପରି) କେତେକ (କାଳ୍ପନିକ) ନାମ ଛଡା ଅନ୍ୟ କାହାର ଉପାସନା କରୁନାହଁ ଯାହାକୁ ତୁମେମାନେ ଓ ତୁମମାନଙ୍କର ପିତୃ-ପିତାମହମାନେ ଗଢିଅଛ, (ଓ) ଅଲ୍ଲାହ୍ ତାହାଙ୍କ ସଂକ୍ରାନ୍ତରେ (ତୁମମାନଙ୍କ ସପକ୍ଷରେ) କୌଣସି ପ୍ରମାଣ ଅବତୀର୍ଣ୍ଣ କରି ନାହାନ୍ତି ; (ମନେରଖ) ନିଷ୍ପତ୍ତି କରିବା (କ୍ଷମତା) ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାର ଅଧିକାରଭୁକ୍ତ ନୁହେଁ; ଏବଂ ତାହାଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା ନ କରିବାକୁ ସେ ହିଁ ଆଦେଶ ଦେଇଛନ୍ତି ; ଏହା ହିଁ ପ୍ରକୃତ ଧର୍ମ, ମାତ୍ର ଅଧିକାଂଶ ଲୋକ (ଏହା) ଜାଣନ୍ତି ନାହିଁ ।"

مَا تَعْبُدُونَ مِن دُونِهِۦٓ إِلَّآ أَسْمَآءً سَمَّيْتُمُوهَآ أَنتُمْ وَءَابَآؤُكُم مَّآ أَنزَلَ ٱللَّهُ بِهَا مِن سُلْطَـٰنٍ ۚ إِنِ ٱلْحُكْمُ إِلَّا لِلَّهِ ۚ أَمَرَ أَلَّا تَعْبُدُوٓا۟ إِلَّآ إِيَّاهُ ۚ ذَٰلِكَ ٱلدِّينُ ٱلْقَيِّمُ وَلَـٰكِنَّ أَكْثَرَ ٱلنَّاسِ لَا يَعْلَمُونَ ﴿٤١﴾

୪୨. "ହେ ଆମ୍ଭର କାରାଗାରର ସଙ୍ଗୀ ଦ୍ୱୟ ! (ବର୍ତ୍ତମାନ ନିଜ ନିଜ ସ୍ୱପ୍ନର ଅର୍ଥ ଶୁଣ), ତୁମମାନଙ୍କ ମଧ୍ୟରୁ ଜଣେ ନିଜ ମୁନିବଙ୍କୁ ମଦ୍ୟପାନ କରାଇବ, ଏବଂ ଅନ୍ୟଜଣକୁ ଶୂଳିରେ ଚଢାଇ ହତ୍ୟା କରାଯିବ; ଏହାପରେ ପକ୍ଷୀମାନେ ତାହାର ମୁଣ୍ଡରୁ (ମାଂସ ଆଦି) ଖାଇବେ; (ଅତଏବ) ତୁମେମାନେ ଯେଉଁ ବିଷୟ ସଂକ୍ରାନ୍ତରେ ପଚାରୁଅଛ ତାହାର ନିଷ୍ପତ୍ତି କରିଦିଆଯାଇଛି ।"

يَـٰصَـٰحِبَيِ ٱلسِّجْنِ أَمَّآ أَحَدُكُمَا فَيَسْقِى رَبَّهُۥ خَمْرًا ۖ وَأَمَّا ٱلْـَٔاخَرُ فَيُصْلَبُ فَتَأْكُلُ ٱلطَّيْرُ مِن رَّأْسِهِۦ ۚ قُضِىَ ٱلْأَمْرُ ٱلَّذِى فِيهِ تَسْتَفْتِيَانِ ﴿٤٢﴾

୪୩. ଏବଂ ସେମାନଙ୍କ ମଧ୍ୟରୁ ଯେ ମୁକ୍ତ ହେବ ବୋଲି ୟୁସୁଫ ମନେ କରିଥିଲେ ତାକୁ କହିଲେ, "ତୁମେ ନିଜ ମୁନିବଙ୍କ ନିକଟରେ ଆମ ବିଷୟରେ କହିବ;" କିନ୍ତୁ ସଇତାନ (ମୁକ୍ତି-ପ୍ରାପ୍ତ ବନ୍ଦୀଙ୍କୁ) ତାଙ୍କର ମୁନିବଙ୍କ ନିକଟରେ ଏ ବିଷୟ କହିବାକୁ ଭୁଲାଇ ଦେଇଥିଲା, ଫଳରେ ୟୁସୁଫ କିଛି ବର୍ଷ କାରାଗାରରେ ପଡି ରହିଲେ ।

وَقَالَ لِلَّذِى ظَنَّ أَنَّهُۥ نَاجٍ مِّنْهُمَا ٱذْكُرْنِى عِندَ رَبِّكَ فَأَنسَىٰهُ ٱلشَّيْطَـٰنُ ذِكْرَ رَبِّهِۦ فَلَبِثَ فِى ٱلسِّجْنِ بِضْعَ سِنِينَ ﴿٤٣﴾ ع

## ରୁ ୬

୪୪. ଏବଂ ସମ୍ରାଟ (କିଛିକାଳ ପରେ ନିଜ ପାରିଷଦମାନଙ୍କୁ) କହିଲେ, "ମୁଁ (ସ୍ୱପ୍ନରେ) ଏପରି ସାତଗୋଟି ହୃଷ୍ଟପୁଷ୍ଟ ଗାଈ ଦେଖିଅଛି ଯାହାକୁ ସାତଗୋଟି ଦୁର୍ବଳ ଗାଈ ଖାଉଛନ୍ତି, ଏବଂ ସାତଗୋଟି ସବୁଜ ଶସ୍ୟଗୁଚ୍ଛ ଓ ଅନ୍ୟ କେତେଗୋଟି ଶୁଷ୍କ (ଶସ୍ୟଗୁଚ୍ଛ ମଧ୍ୟ ଦେଖିଅଛି); ହେ ମୁଖ୍ୟ ପାରିଷଦମାନେ ! ଯଦି ତୁମେମାନେ ସ୍ୱପ୍ନର ଅର୍ଥ କରୁଥାଅ; ତେବେ ମୋତେ ମୋ ସ୍ୱପ୍ନର ଯଥାର୍ଥ ଅର୍ଥ କୁହ ।"

وَقَالَ ٱلْمَلِكُ إِنِّىٓ أَرَىٰ سَبْعَ بَقَرَٰتٍ سِمَانٍ يَأْكُلُهُنَّ سَبْعٌ عِجَافٌ وَسَبْعَ سُنۢبُلَـٰتٍ خُضْرٍ وَأُخَرَ يَابِسَـٰتٍ ۖ يَـٰٓأَيُّهَا ٱلْمَلَأُ أَفْتُونِى فِى رُءْيَـٰىَ إِن كُنتُمْ لِلرُّءْيَا تَعْبُرُونَ ﴿٤٤﴾

قَالُوْٓا اَضْغَاثُ اَحْلَامٍ ۚ وَمَا نَحْنُ بِتَاْوِيْلِ الْاَحْلَامِ بِعٰلِمِيْنَ ﴿٤٥﴾

୪୫. ସେମାନେ କହିଲେ, "ଏହା ଏକ ବିଭ୍ରାନ୍ତିକର ସ୍ୱପ୍ନ ଏବଂ ଆମେମାନେ ଏପରି ବିଭ୍ରାନ୍ତିକର ସ୍ୱପ୍ନର ପ୍ରକୃତ ରହସ୍ୟ ଜାଣୁନାହିଁ ।"

وَقَالَ الَّذِيْ نَجَا مِنْهُمَا وَادَّكَرَ بَعْدَ اُمَّةٍ اَنَا اُنَبِّئُكُمْ بِتَاْوِيْلِهٖ فَاَرْسِلُوْنِ ﴿٤٦﴾

୪୬. ଏବଂ ସେ (ଦୁଇବନ୍ଦୀ)ମାନଙ୍କ ମଧ୍ୟରୁ ଯେ ମୁକ୍ତ ହୋଇଥିଲେ ଏବଂ ବହୁକାଳ ପରେ (ୟୁସୁଫଙ୍କ ସହିତ ହୋଇଥିବା କଥୋପକଥନକୁ) ସ୍ମରଣ କରି କହିଲା, "ମୁଁ ତୁମମାନଙ୍କୁ ଏହାର ପ୍ରକୃତ ରହସ୍ୟ ଜଣାଇବି; ସୁତରାଂ ତୁମେମାନେ ( ଏ ସଂକ୍ରାନ୍ତରେ ଅବଗତ ହେବାପାଇଁ) ମୋତେ ପ୍ରେରଣ କର ।"

يُوْسُفُ اَيُّهَا الصِّدِّيْقُ اَفْتِنَا فِيْ سَبْعِ بَقَرٰتٍ سِمَانٍ يَّاْكُلُهُنَّ سَبْعٌ عِجَافٌ وَّسَبْعِ سُنْۢبُلٰتٍ خُضْرٍ وَّاُخَرَ يٰبِسٰتٍ ۙ لَّعَلِّيْٓ اَرْجِعُ اِلَى النَّاسِ لَعَلَّهُمْ يَعْلَمُوْنَ ﴿٤٧﴾

୪୭. (ଏବଂ ସେ ୟୁସୁଫଙ୍କ ନିକଟକୁ ଯାଇ କହିଲା), "ହେ ୟୁସୁଫ ! ହେ ସତ୍ୟବାଦୀ ! ମୋତେ (ଆପଣ ସ୍ୱପ୍ନରେ ଦେଖିଥିବା) ସେହି ସାତଗୋଟି ହୃଷ୍ଟପୁଷ୍ଟ ଗାଈଙ୍କୁ ସାତଗୋଟି ଦୁର୍ବଳ (ଗାଈ) ଖାଇବା କଥା ସାତଗୋଟି ସବୁଜ ଓ ଅନ୍ୟ କେତେ ଗୋଟି ଶୁଷ୍କ ଶସ୍ୟଗୁଚ୍ଛର ଭାବାର୍ଥ ଜଣାଇଦିଅ, ଯେପରି ମୁଁ ସେହି ଲୋକମାନଙ୍କ ନିକଟକୁ ଫେରିଯିବି ଫଳରେ (ସ୍ୱପ୍ନର ଭାବାର୍ଥ) ସେମାନେ ଜାଣିପାରିବେ ।"

قَالَ تَزْرَعُوْنَ سَبْعَ سِنِيْنَ دَاَبًا ۚ فَمَا حَصَدْتُّمْ فَذَرُوْهُ فِيْ سُنْۢبُلِهٖٓ اِلَّا قَلِيْلًا مِّمَّا تَاْكُلُوْنَ ﴿٤٨﴾

୪୮. ସେ କହିଲେ, "ତୁମେମାନେ କ୍ରମାନ୍ୱୟରେ ସାତବର୍ଷ କଠିନ ଶ୍ରମକରି କୃଷି (କାର୍ଯ୍ୟ) କରିବ; ତା'ପରେ (ଏହି ସମୟ ମଧ୍ୟରେ) ଯାହା ତୁମେମାନେ ଅମଳ କରିଥିବ ତାହାର ଅଳ୍ପ ପରିମାଣ ଖାଇବାପାଇଁ ରଖି ଅବଶିଷ୍ଟକୁ ଶସ୍ୟଗୁଚ୍ଛ ଆକାରରେ ରହିବାକୁ ଦିଅ ।"

ثُمَّ يَاْتِيْ مِنْۢ بَعْدِ ذٰلِكَ سَبْعٌ شِدَادٌ يَّاْكُلْنَ مَا قَدَّمْتُمْ لَهُنَّ اِلَّا قَلِيْلًا مِّمَّا تُحْصِنُوْنَ ﴿٤٩﴾

୪୯. "ପୁଣି ଏହାପରେ ସାତଗୋଟି ଭୀଷଣ (ଅଭାବର) ବର୍ଷ ଆସିବ; ତୁମେମାନେ ସେମାନଙ୍କ ପାଇଁ ପୂର୍ବରୁ ଯାହା ସଞ୍ଚିତ କରିଥିବ ତାହାର ସ୍ୱଳ୍ପ ପରିମାଣ ବ୍ୟତୀତ ସେମାନେ ଅବଶିଷ୍ଟ (ଶସ୍ୟ) କୁ ଖାଇଯିବେ ।"

ثُمَّ يَاْتِيْ مِنْۢ بَعْدِ ذٰلِكَ عَامٌ فِيْهِ يُغَاثُ النَّاسُ وَفِيْهِ يَعْصِرُوْنَ ﴿٥٠﴾ ع

୫୦. "ପୁନର୍ବାର ଏହାପରେ (ଏପରି) ଏକ ବର୍ଷ ଆସିବ ଯେତେବେଳେ (ଅଲ୍ଲାହ୍) ଲୋକମାନଙ୍କର ପ୍ରାର୍ଥନା ଶୁଣିବେ ଏବଂ ସେମାନଙ୍କ ଅବସ୍ଥା ସ୍ୱଚ୍ଛଳ ହେବ ଏବଂ ସେମାନେ ପରସ୍ପର ମଧ୍ୟରେ ଉପହାର[1] ଆଦାନ ପ୍ରଦାନ କରିବେ ।"

---

୧. ମୂଳ ଶବ୍ଦ 'ୟାସେରୁନ୍' ଅର୍ଥ : (କ) ଚିପୁଡ଼ିବା, (ଖ) ଉପହାର ଦେବା । ବହୁବର୍ଷର ମରୁଡ଼ି ପରେ ଯେତେବେଳେ ପ୍ରଚୁର ଫସଲ ଉତ୍ପନ୍ନ ହେଲା ସେତେବେଳେ ଲୋକମାନେ ଆନନ୍ଦିତ ହେବା ସ୍ୱାଭାବିକ । ଏପରି ଅବସ୍ଥାରେ ଜଣେ ଅନ୍ୟକୁ ଉପହାର ଦେବା ମଧ୍ୟ ଏକ ସ୍ୱାଭାବିକ ଘଟଣା । ତେଣୁ ୟାସେରୁନ୍‌ର ଦ୍ୱିତୀୟ ଅର୍ଥ ଏଠାରେ ପ୍ରଯୋଜ୍ୟ ।

ରୁ: ୭

୫୧. ଏବଂ ସମ୍ରାଟ ( ଏ ବିଷୟ ଶୁଣି ସେମାନଙ୍କୁ) କହିଲେ, "ତୁମେ ତାହାଙ୍କୁ ମୋ ନିକଟକୁ ଘେନି ଆସ;" ଏହାପରେ ଯେତେବେଳେ (ସମ୍ରାଟଙ୍କର) ବାର୍ତ୍ତାବହ ତାହାଙ୍କ ନିକଟକୁ ଆସିଲା, ସେତେବେଳେ ସେ (ଅର୍ଥାତ୍ ୟୁସୁଫ ତାହାକୁ) କହିଲେ, "ତୁମେ ତୁମର ମୁନିବଙ୍କ ପାଖକୁ ଫେରିଯାଅ ଓ ତାହାଙ୍କୁ ପଚ୍ଚର ଯେ ଯେଉଁ ମହିଳାମାନେ ନିଜ ନିଜ ହାତ କାମୁଡିଥିଲେ ସେମାନଙ୍କ ଅବସ୍ଥା (ବର୍ତ୍ତମାନ) କିପରି ଅଛି ?" ଆମ ପାଳନକର୍ତ୍ତା ସେମାନଙ୍କ ଷଡଯନ୍ତ୍ରକୁ ବାସ୍ତବରେ ଭଲରୂପେ ଜାଣନ୍ତି ।

وَقَالَ الْمَلِكُ ائْتُونِي بِهِ ۖ فَلَمَّا جَاءَهُ الرَّسُولُ قَالَ ارْجِعْ إِلَىٰ رَبِّكَ فَاسْأَلْهُ مَا بَالُ النِّسْوَةِ اللَّاتِي قَطَّعْنَ أَيْدِيَهُنَّ ۚ إِنَّ رَبِّي بِكَيْدِهِنَّ عَلِيمٌ ﴿٥١﴾

୫୨. ସେ (ସମ୍ରାଟ ଏହା ଶୁଣି) ସେ (ମହିଳା) ମାନଙ୍କୁ ପଚ୍ଚରିଲେ, "ତୁମର ସେ ବ୍ୟାପାର (ପ୍ରକୃତରେ) କ'ଣ ଥିଲା ଯେତେବେଳେ ତୁମେମାନେ ୟୁସୁଫଙ୍କ ଇଚ୍ଛା ବିରୁଦ୍ଧରେ (ଏକ ମନ୍ଦ) କାର୍ଯ୍ୟ କରାଇବାକୁ ଚେଷ୍ଟା କରିଥିଲ ?'[୧] ସେମାନେ କହିଲେ, "ଅଲ୍ଲାହଙ୍କ ଭୟରେ (ମନ୍ଦ କାର୍ଯ୍ୟ କରିବାରୁ) ସେ ନିବୃତ୍ତ ରହିଥିଲେ, ଆମେମାନେ ତାହାଙ୍କଠାରେ କୌଣସି ପ୍ରକାର ମନ୍ଦ କାର୍ଯ୍ୟ ଦେଖିବାକୁ ପାଇ ନ ଥିଲୁ;" (ଏହାଶୁଣି) ଅଜିଜଙ୍କ ପତ୍ନୀ କହିଲେ, "ବର୍ତ୍ତମାନ ଭଲଭାବରେ ସତ୍ୟ ପ୍ରକାଶିତ ହୋଇଅଛି; ମୁଁ ହିଁ ତାହାଙ୍କ ସହିତ ତାହାଙ୍କ ଇଚ୍ଛା ବିରୁଦ୍ଧରେ (ମନ୍ଦ) କାର୍ଯ୍ୟ କରାଇବାକୁ ଚେଷ୍ଟା କରିଥିଲି, ଏବଂ ସେ ହିଁ ବାସ୍ତବରେ ସତ୍ୟବାଦୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।"

قَالَ مَا خَطْبُكُنَّ إِذْ رَاوَدتُّنَّ يُوسُفَ عَن نَّفْسِهِ ۚ قُلْنَ حَاشَ لِلَّهِ مَا عَلِمْنَا عَلَيْهِ مِن سُوءٍ ۚ قَالَتِ امْرَأَتُ الْعَزِيزِ الْآنَ حَصْحَصَ الْحَقُّ أَنَا رَاوَدتُّهُ عَن نَّفْسِهِ وَإِنَّهُ لَمِنَ الصَّادِقِينَ ﴿٥٢﴾

୫୩. (ୟୁସୁଫ କହିଲେ), "ଆମ୍ଭେ ଯେ ଅଜିଜଙ୍କ ଅନୁପସ୍ଥିତିରେ ବିଶ୍ୱାସଘାତକତା କରିନାହୁଁ ଏ ବିଷୟ ତାହାଙ୍କୁ ଅବଗତ କରାଇବା ସକାଶେ ଏହା କହିଥିଲୁ; ଏବଂ (ଅମ୍ଭର ବିଶ୍ୱାସ) ବିଶ୍ୱାସଘାତକମାନଙ୍କ ଷଡଯନ୍ତ୍ରକୁ ଅଲ୍ଲାହ ସଫଳ କରାନ୍ତି ନାହିଁ ।"

ذَٰلِكَ لِيَعْلَمَ أَنِّي لَمْ أَخُنْهُ بِالْغَيْبِ وَأَنَّ اللَّهَ لَا يَهْدِي كَيْدَ الْخَائِنِينَ ﴿٥٣﴾

୧. ସେହି ମହିଳାମାନେ କୁକର୍ମ ସଂପାଦନ କରାଇବା ଚାହୁଁନଥିଲେ ବରଂ ହଜରତ ୟୁସୁଫଙ୍କ ମାଲିକଙ୍କର ପତ୍ନୀ ଏହା ଇଚ୍ଛା କରିଥିଲେ । ସେମାନେ ମାଲିକଙ୍କ ପତ୍ନୀଙ୍କର ସଙ୍ଗିନୀ ହୋଇଥିବାରୁ ସତ୍ୟ ସାକ୍ଷ୍ୟ ଦେଲେ ନାହିଁ ଯାହା ଫଳରେ ସେମାନେ ମଧ୍ୟ ଅପରାଧିନୀ ସାବ୍ୟସ୍ତ ହେଲେ ।

## ଭାଗ— ୧୩

୫୪. "ଏବଂ ଆମ୍ଭେ ନିଜକୁ (ପ୍ରତ୍ୟେକ ପ୍ରକାର ତ୍ରୁଟିରୁ) ଦୋଷମୁକ୍ତ ବୋଲି କହୁ ନାହୁଁ ; କାରଣ ଆମ୍ଭର ପାଳନକର୍ତ୍ତା ଯାହାଙ୍କ ପ୍ରତି କରୁଣା କରନ୍ତି ସେମାନଙ୍କ ବ୍ୟତୀତ ଅନ୍ୟମାନଙ୍କୁ କୁକର୍ମ କରିବା ପାଇଁ (ମଣିଷ) ମନ ପ୍ରବର୍ତ୍ତାଏ ; ବାସ୍ତବରେ ଆମ୍ଭର ପାଳନକର୍ତ୍ତା ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।"

وَمَآ أُبَرِّئُ نَفْسِىٓ ۚ إِنَّ ٱلنَّفْسَ لَأَمَّارَةٌۢ بِٱلسُّوٓءِ إِلَّا مَا رَحِمَ رَبِّىٓ ۚ إِنَّ رَبِّى غَفُورٌ رَّحِيمٌ ﴿٥٤﴾

୫୫. ଏବଂ ସମ୍ରାଟ ଆଦେଶ ଦେଲେ, "ତାହାଙ୍କୁ (ଅର୍ଥାତ୍ ୟୁସୁଫଙ୍କୁ) ମୋ ସମୀପକୁ ଆଣ ତାହାହେଲେ ମୁଁ ତାଙ୍କୁ କେବଳ ନିଜ ପାଇଁ ନିୟୋଜିତ କରିପାରିବି ;" (ଯେତେବେଳେ ୟୁସୁଫ ତାହାଙ୍କ ନିକଟକୁ ଆସିଲେ) ଏବଂ ସମ୍ରାଟ ତାହାଙ୍କ ସହିତ ବାର୍ତ୍ତାଳାପ କଲେ, (ସେ ତାହାଙ୍କୁ ସବୁ ପ୍ରକାର ଉପଯୁକ୍ତ ମନେ କରି) କହିଲେ, "ତୁମେ ଆଜି ଠାରୁ ମୋ ନିକଟରେ ଜଣେ ସମ୍ମାନିତ ଓ ବିଶ୍ୱାସଯୋଗ୍ୟ ବ୍ୟକ୍ତି (ଭାବରେ ଗଣ୍ୟ) ହେବ ।"

وَقَالَ ٱلْمَلِكُ ٱئْتُونِى بِهِۦٓ أَسْتَخْلِصْهُ لِنَفْسِى ۖ فَلَمَّا كَلَّمَهُۥ قَالَ إِنَّكَ ٱلْيَوْمَ لَدَيْنَا مَكِينٌ أَمِينٌ ﴿٥٥﴾

୫୬. (ଏଥି ଉତ୍ତାରୁ ୟୁସୁଫ) କହିଲେ, "ଆମ୍ଭଙ୍କୁ ଦେଶର ରାଜକୋଷର ଅଧ୍ୟକ୍ଷ ନିଯୁକ୍ତ କର ; କାରଣ ଆମ୍ଭେ ନିଶ୍ଚିତରୂପେ (ରାଜକୋଷର) ଉତ୍ତମ ତତ୍ତ୍ୱାବଧାରକ ଓ (ତାହାକୁ କିପରି ବ୍ୟୟ କରାଯିବ ସେ ବିଷୟରେ ଭଲ ଭାବରେ) ଅଭିଜ୍ଞ ।"

قَالَ ٱجْعَلْنِى عَلَىٰ خَزَآئِنِ ٱلْأَرْضِ ۖ إِنِّى حَفِيظٌ عَلِيمٌ ﴿٥٦﴾

୫୭. ଏବଂ ଏହିପରି (ଉପଯୁକ୍ତ ପରିସ୍ଥିତି ସୃଷ୍ଟି କରି) ଆମ୍ଭେ ୟୁସୁଫଙ୍କୁ (ସେହି) ଦେଶରେ ଏକ କ୍ଷମତା ସମ୍ପନ୍ନ ପଦ ପ୍ରଦାନ କରିଥିଲୁ ; ସେ ନିଜ ଇଚ୍ଛାନୁସାରେ ଯେକୌଣସି ସ୍ଥାନରେ ଅବସ୍ଥାନ କରୁଥିଲେ ; ଆମ୍ଭେ ଯାହାକୁ ଇଚ୍ଛା କରୁ (ଏହି ସଂସାରରେ) ତାହା ପ୍ରତି ନିଜର କରୁଣା ପ୍ରଦାନ କରିଥାଉ, ଏବଂ ଆମ୍ଭେ ପୁଣ୍ୟବାନ୍ ବ୍ୟକ୍ତିମାନଙ୍କର ପୁରସ୍କାରକୁ ନଷ୍ଟ କରୁ ନାହୁଁ ।

وَكَذَٰلِكَ مَكَّنَّا لِيُوسُفَ فِى ٱلْأَرْضِ يَتَبَوَّأُ مِنْهَا حَيْثُ يَشَآءُ ۚ نُصِيبُ بِرَحْمَتِنَا مَن نَّشَآءُ ۖ وَلَا نُضِيعُ أَجْرَ ٱلْمُحْسِنِينَ ﴿٥٧﴾

୫୮. ଏବଂ (ଏହି ସାଂସାରିକ ପୁରସ୍କାର ବ୍ୟତୀତ) ଭବିଷ୍ୟତ (ଜୀବନର) ପୁରସ୍କାର ବିଶ୍ୱାସକାରୀ ଓ ଧର୍ମଭୀରୁମାନଙ୍କ ପାଇଁ ଏହା ଠାରୁ (ଢେର) ଅଧିକ ହେବ ।

وَلَأَجْرُ ٱلْـَٔاخِرَةِ خَيْرٌ لِّلَّذِينَ ءَامَنُوا۟ وَكَانُوا۟ يَتَّقُونَ ﴿٥٨﴾

ରୁ :୮

୫୯. ଏବଂ (ଏହି ଦୁର୍ଭିକ୍ଷ ସମୟରେ) ୟୁସୁଫଙ୍କର ଭାଇମାନେ (ମଧ୍ୟ ଏଠାକୁ) ଆସି ତାହାଙ୍କ ସମୀପରେ ଉପସ୍ଥିତ ହେଲେ ; ଏବଂ ସେ ସେମାନଙ୍କୁ ଦେଖିବା ମାତ୍ରେ ଚିହ୍ନି ପାରିଲେ, କିନ୍ତୁ ସେମାନେ ତାହାଙ୍କୁ ଚିହ୍ନି ପାରିଲେ ନାହିଁ ।

وَجَآءَ إِخْوَةُ يُوسُفَ فَدَخَلُوا۟ عَلَيْهِ فَعَرَفَهُمْ وَهُمْ لَهُۥ مُنكِرُونَ ٥٩

୬୦. ଏବଂ ଯେତେବେଳେ ସେ ସେମାନଙ୍କୁ ସେମାନଙ୍କର ଜିନିଷପତ୍ର ଦେଇ (ପ୍ରତ୍ୟାବର୍ତ୍ତନ କରିବାକୁ) ପ୍ରସ୍ତୁତ କରାଇଲେ ସେତେବେଳେ ସେ (ସେମାନଙ୍କୁ) କହିଲେ, ''ତୁମମାନଙ୍କ ପିତାଙ୍କ ଔରସରୁ ଜାତ ତୁମର ଯେଉଁ ଭାଇ ଜଣକ ଅଛି ତାହାକୁ (ଏଥର ନିଜ ସହିତ) ଆମ୍ଭ ନିକଟକୁ ଆଣିବ ; କ'ଣ ତୁମେମାନେ ଦେଖୁ ନାହଁ ଯେ ଆମ୍ଭେ କିପରି (ଶସ୍ୟ) ମାପ ପାତ୍ରକୁ ପୂର୍ଣ୍ଣକରି ଦେଉଅଛୁ ଏବଂ ଆମ୍ଭେ ଜଣେ ସର୍ବଶ୍ରେଷ୍ଠ ଅତିଥି-ପରାୟଣ ?''

وَلَمَّا جَهَّزَهُم بِجَهَازِهِمْ قَالَ ٱئْتُونِى بِأَخٍ لَّكُم مِّنْ أَبِيكُمْ أَلَا تَرَوْنَ أَنِّىٓ أُوفِى ٱلْكَيْلَ وَأَنَا۠ خَيْرُ ٱلْمُنزِلِينَ ٦٠

୬୧. ''ଏବଂ ଯଦି ତୁମେମାନେ ତାହାକୁ ଆମ୍ଭ ନିକଟକୁ ନ ଆଣିବ, ତେବେ (ବୁଝି ରଖ ଯେ) ତୁମମାନଙ୍କୁ ମାପ କରି ଦେବା ପାଇଁ ଆମ୍ଭ ନିକଟରେ କିଛି ନ ଥିବ, ଏବଂ ତୁମେମାନେ ଆମ୍ଭ ନିକଟକୁ ଆସିବ ନାହିଁ ।''

فَإِن لَّمْ تَأْتُونِى بِهِۦ فَلَا كَيْلَ لَكُمْ عِندِى وَلَا تَقْرَبُونِ ٦١

୬୨. ସେମାନେ କହିଲେ, ''ଆମେମାନେ ନିଶ୍ଚୟ ତା' ସମ୍ବନ୍ଧରେ ତାହାର ପିତାଙ୍କୁ ପ୍ରବର୍ତ୍ତାଇବା ପାଇଁ ଚେଷ୍ଟା କରିବୁ ଏବଂ ଆମେମାନେ ନିଶ୍ଚୟ ଏହା କରିବୁ ।''

قَالُوا۟ سَنُرَٰوِدُ عَنْهُ أَبَاهُ وَإِنَّا لَفَٰعِلُونَ ٦٢

୬୩. ଏବଂ ସେ ନିଜର ଭୃତ୍ୟମାନଙ୍କୁ କହିଲେ, ''ସେମାନଙ୍କ ବସ୍ତା ଭିତରେ ସେମାନେ ଦେଇଥିବା ମୂଲ୍ୟ ରଖିଦିଅ ; ସମ୍ଭବତଃ ଯେତେବେଳେ ସେମାନେ ନିଜ ଘରକୁ ଫେରିଯିବେ, ସେତେବେଳେ ଏହା ଜାଣି ପାରିବେ ; ତାହାହେଲେ (ଏହି କାରଣରୁ) ସମ୍ଭବତଃ ସେମାନେ ପୁଣି ଥରେ ଆସିବେ ।''

وَقَالَ لِفِتْيَٰنِهِ ٱجْعَلُوا۟ بِضَٰعَتَهُمْ فِى رِحَالِهِمْ لَعَلَّهُمْ يَعْرِفُونَهَآ إِذَا ٱنقَلَبُوٓا۟ إِلَىٰٓ أَهْلِهِمْ لَعَلَّهُمْ يَرْجِعُونَ ٦٣

୬୪. ସୁତରାଂ ସେମାନେ ନିଜ ପିତାଙ୍କ ନିକଟକୁ ଫେରି ଯାଇ କହିଲେ, ''ହେ ଆମମାନଙ୍କର ପିତା ! ଆମମାନଙ୍କୁ (ଭବିଷ୍ୟତରେ) ଆଉ ଶସ୍ୟ ମିଳିବ ନାହିଁ ; ତେଣୁ ଆମମାନଙ୍କ ସହିତ ଆମ ଭାଇ (ବିନୟାମିନ)କୁ ପ୍ରେରଣ କଲେ ଆମେମାନେ ଶସ୍ୟ ପାଇ ପାରିବୁ ; ଏବଂ ଆମେମାନେ ନିଶ୍ଚୟ ତାହାର ସୁରକ୍ଷା କରିବୁ ।''

فَلَمَّا رَجَعُوٓا۟ إِلَىٰٓ أَبِيهِمْ قَالُوا۟ يَٰٓأَبَانَا مُنِعَ مِنَّا ٱلْكَيْلُ فَأَرْسِلْ مَعَنَآ أَخَانَا نَكْتَلْ وَإِنَّا لَهُۥ لَحَٰفِظُونَ ٦٤

୬୫. ସେ କହିଲେ, "କ'ଣ ଆମେ ତାହାକୁ ତୁମ ଦାୟିତ୍ୱରେ ଛାଡ଼ି ପାରିବୁ ଯାହାର ପରିଣାମ ତାହା ହିଁ ହେବ ଯାହା ଏହା ପୂର୍ବରୁ ତାହାର ଅନ୍ୟ ଭାଇ ପ୍ରତି ତୁମ ଦାୟିତ୍ୱରେ ଛାଡ଼ିବା ଫଳରେ ହୋଇଥିଲା ? ସୁତରାଂ ଆମେ ଅବଶ୍ୟ ତାହାକୁ ତୁମ ଦାୟିତ୍ୱରେ ଛାଡ଼ି ଦେଉଅଛୁ ; କିନ୍ତୁ (ବିଶ୍ୱାସ କରୁଅଛୁ ଯେ ତୁମ ପରିବର୍ତ୍ତେ) ଅଲ୍ଲାହ ହିଁ ସର୍ବୋତ୍କୃଷ୍ଟ ତତ୍ତ୍ୱାବଧାରକ, ଏବଂ ସେ ହିଁ ସର୍ବୋତ୍କୃଷ୍ଟ କରୁଣାମୟ ।"

قَالَ هَلْ اٰمَنُكُمْ عَلَيْهِ اِلَّا كَمَآ اَمِنْتُكُمْ عَلٰٓى اَخِيْهِ مِنْ قَبْلُ ۗ فَاللّٰهُ خَيْرٌ حٰفِظًا ۪ وَّهُوَ اَرْحَمُ الرّٰحِمِيْنَ ﴿٦٥﴾

୬୬. ଏବଂ ଯେତେବେଳେ ସେମାନେ ନିଜର ଜିନିଷପତ୍ର ଖୋଲିଲେ ସେତେବେଳେ ଦେଖିଲେ ଯେ ସେମାନଙ୍କ ଧନ ସେମାନଙ୍କୁ ଫେରାଇ ଦିଆଯାଇଅଛି ; (ଏଣୁ) ସେମାନେ କହିଲେ, "ହେ ଆମମାନଙ୍କର ପିତା ! (ଏହାଠାରୁ ଅଧିକ) ଆମମାନଙ୍କର ଆଉ କ'ଣ ଲୋଡ଼ା ? (ଦେଖନ୍ତୁ) ଏହା ଆମର ଧନ, (ଅଥଚ) ଏହା ଆମକୁ ଫେରାଇ ଦିଆ ଯାଇଅଛି ; ଏବଂ (ଯଦି ଆମର ଭାଇ ଆମମାନଙ୍କ ସହିତ ଯିବ ତେବେ) ଆମେମାନେ ନିଜ ପରିବାର ପାଇଁ ଖାଦ୍ୟ ସାମଗ୍ରୀ ଆଣି ପାରିବୁ ; ଏବଂ (ସବୁ ପ୍ରକାରେ) ନିଜ ଭାଇର ସୁରକ୍ଷା କରି ପାରିବୁ ଏବଂ ଏକ ଓଟ ବୋଝେଇ (ଶସ୍ୟ) ଅଧିକ ଆଣିବୁ ; ଏହି ପରିମାଣ (ଶସ୍ୟ ଆମମାନଙ୍କୁ ମାଗଣାରେ ଦାନ ସ୍ୱରୂପ) ସହଜରେ ମିଳିବ ।"

وَلَمَّا فَتَحُوْا مَتَاعَهُمْ وَجَدُوْا بِضَاعَتَهُمْ رُدَّتْ اِلَيْهِمْ ۗ قَالُوْا يٰٓاَبَانَا مَا نَبْغِيْ ۗ هٰذِهٖ بِضَاعَتُنَا رُدَّتْ اِلَيْنَا ۚ وَنَمِيْرُ اَهْلَنَا وَنَحْفَظُ اَخَانَا وَنَزْدَادُ كَيْلَ بَعِيْرٍ ۗ ذٰلِكَ كَيْلٌ يَّسِيْرٌ ﴿٦٦﴾

୬୭. ସେ କହିଲେ, "ଯେ ପର୍ଯ୍ୟନ୍ତ ତୁମେମାନେ ଆମ ନିକଟରେ ଅଲ୍ଲାହଙ୍କର (ନିର୍ଦ୍ଧାରିତ) ଶପଥ ନ କରିବ ଯେ ତୁମେମାନେ ନିଜେ ବିପଦରେ ନ ପଡ଼ିଲେ ତାହାକୁ ନିଶ୍ଚୟ ଆମ ନିକଟକୁ ଫେରାଇ ଆଣିବ, ସେ ପର୍ଯ୍ୟନ୍ତ ଆମେ କଦାପି ତାହାକୁ ତୁମମାନଙ୍କ ସହିତ ପଠାଇବୁ ନାହିଁ ;" ତା'ପରେ ଯେତେବେଳେ ସେମାନେ ତାହାଙ୍କୁ ନିଜର ଦୃଢ଼ ପ୍ରତିଶ୍ରୁତି ଦେଲେ, ସେତେବେଳେ ସେ କହିଲେ, "ଯାହା କିଛି ଆମେ (ବର୍ତ୍ତମାନ) କହୁଅଛୁ ଅଲ୍ଲାହ ତାହା ଲକ୍ଷ୍ୟ କରୁଛନ୍ତି ।"

قَالَ لَنْ اُرْسِلَهٗ مَعَكُمْ حَتّٰى تُؤْتُوْنِ مَوْثِقًا مِّنَ اللّٰهِ لَتَاْتُنَّنِيْ بِهٖٓ اِلَّآ اَنْ يُّحَاطَ بِكُمْ ۚ فَلَمَّآ اٰتَوْهُ مَوْثِقَهُمْ قَالَ اللّٰهُ عَلٰى مَا نَقُوْلُ وَكِيْلٌ ﴿٦٧﴾

୬୮. ଏବଂ ସେ କହିଲେ, "ହେ ଆମର ପୁତ୍ରମାନେ ! ତୁମେମାନେ ଏକତ୍ରିତ ହୋଇ ସହରର ଗୋଟିଏ ଦ୍ୱାର ମଧ୍ୟରେ ପ୍ରବେଶ କରିବ ନାହିଁ ; ବରଂ ତୁମେମାନେ ଭିନ୍ନ ଭିନ୍ନ[୧] ଦ୍ୱାର ମଧ୍ୟ ଦେଇ ଭିତରକୁ ପ୍ରବେଶ କରିବ ; ଏବଂ ଅଲ୍ଲାହଙ୍କ କବଳରୁ ତୁମମାନଙ୍କୁ (ରକ୍ଷା କରିବା ପାଇଁ) ଆମେ କୌଣସି ସାହାଯ୍ୟ କରିପାରିବୁ ନାହିଁ ; ନିଷ୍ପତ୍ତି କରିବା ଅଲ୍ଲାହଙ୍କର ଆୟତ୍ତାଧୀନ ; ଆମେ ତାହାଙ୍କ ଉପରେ ହିଁ ନିର୍ଭର କରୁ ; ଏବଂ ସମସ୍ତ ନିର୍ଭରକାରୀ ତାହାଙ୍କ ଉପରେ ନିର୍ଭର କରିବା ଉଚିତ ।"

وَقَالَ يٰبَنِيَّ لَا تَدْخُلُوْا مِنْۢ بَابٍ وَّاحِدٍ وَّادْخُلُوْا مِنْ اَبْوَابٍ مُّتَفَرِّقَةٍ ؕ وَمَاۤ اُغْنِيْ عَنْكُمْ مِّنَ اللّٰهِ مِنْ شَيْءٍ ؕ اِنِ الْحُكْمُ اِلَّا لِلّٰهِ ؕ عَلَيْهِ تَوَكَّلْتُ ۚ وَعَلَيْهِ فَلْيَتَوَكَّلِ الْمُتَوَكِّلُوْنَ ۝٦٨

୬୯. ଏବଂ ଯେତେବେଳେ ସେମାନଙ୍କ ପିତାଙ୍କ ନିର୍ଦ୍ଦେଶିତ ପନ୍ଥା ଅନୁସାରେ ସେମାନେ (ସହର ମଧ୍ୟରେ) ପ୍ରବେଶ କଲେ, (ସେତେବେଳେ ଯେଉଁଥି ପାଇଁ ସେମାନଙ୍କୁ ଏପରି ନିର୍ଦ୍ଦେଶ ଦିଆ ଯାଇଥିଲା ସେହି ଉଦ୍ଦେଶ୍ୟ ପୂରଣ ହୋଇଗଲା) କିନ୍ତୁ ଏହା ଅଲ୍ଲାହଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କର କୌଣସି ଉପକାରରେ ଆସିଲା ନାହିଁ ; ଅବଶ୍ୟ ଯାକୁବଙ୍କ ମନରେ ଥିବା ଇଚ୍ଛା ଏହା ଦ୍ୱାରା କେବଳ ପୂରଣ ହେଲା ; ଏବଂ ଯେହେତୁ ଆମେ ତାହାଙ୍କୁ (ଅର୍ଥାତ୍ ଯାକୁବଙ୍କୁ) ଜ୍ଞାନ ପ୍ରଦାନ କରିଥିଲୁ ; ତେଣୁ ସେ ଅତ୍ୟନ୍ତ ଜ୍ଞାନବାନ୍ ଥିଲେ ; କିନ୍ତୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ ।

وَلَمَّا دَخَلُوْا مِنْ حَيْثُ اَمَرَهُمْ اَبُوْهُمْ ؕ مَا كَانَ يُغْنِيْ عَنْهُمْ مِّنَ اللّٰهِ مِنْ شَيْءٍ اِلَّا حَاجَةً فِيْ نَفْسِ يَعْقُوْبَ قَضٰىهَا ؕ وَاِنَّهٗ لَذُوْ عِلْمٍ لِّمَا عَلَّمْنٰهُ وَلٰكِنَّ اَكْثَرَ النَّاسِ لَا يَعْلَمُوْنَ ۝٦٩

ରୁ : ୯

୭୦. ଏବଂ ଯେତେବେଳେ ସେମାନେ ଯୁସୁଫଙ୍କ ସମୀପରେ ଉପସ୍ଥିତ ହେଲେ, ସେତେବେଳେ ସେ ନିଜ ଭାଇକୁ ନିଜ ନିକଟରେ ସ୍ଥାନ ଦେଲେ ଓ କହିଲେ, "ଆମେ ହିଁ ତୁମର ଭାଇ ; ସୁତରାଂ ଯାହାକିଛି ସେମାନେ କରି ଆସିଛନ୍ତି ସେଥିପାଇଁ ତୁମେ ଦୁଃଖିତ ହୁଅ ନାହିଁ ।"

وَلَمَّا دَخَلُوْا عَلٰى يُوْسُفَ اٰوٰۤى اِلَيْهِ اَخَاهُ قَالَ اِنِّيْۤ اَنَا اَخُوْكَ فَلَا تَبْتَئِسْ بِمَا كَانُوْا يَعْمَلُوْنَ ۝٧٠

୧. କେତେକ ଟୀକାକାର କହନ୍ତି ଯେ ଦୃଷ୍ଟିପାତରୁ ରକ୍ଷା ପାଇବା ପାଇଁ ଏପରି ନିର୍ଦ୍ଦେଶ ଦିଆଯାଇଥିଲା । କିନ୍ତୁ ଆମ ମତରେ ତାହା ଯଥାର୍ଥ ନୁହେଁ । ଯେତେବେଳେ ହଜରତ ଯାକୁବ ସମସ୍ତ ବୃତ୍ତାନ୍ତ ଶୁଣିବାକୁ ପାଇଲେ ତାଙ୍କର ଦୃଢ଼ ବିଶ୍ୱାସ ହେଲା ଯେ ଶସ୍ୟ ବିତରଣକାରୀ ବ୍ୟକ୍ତି ଯୁସୁଫଙ୍କ ବ୍ୟତୀତ ଅନ୍ୟ କେହି ନୁହେଁ । ଅନ୍ୟଥା ଫିରଔନର ଜଣେ ମନ୍ତ୍ରୀ ଯୁସୁଫଙ୍କ ଭାଇ ବନୟାମିନଙ୍କୁ ସଂଗରେ ଆଣିବା ପାଇଁ କାହିଁକି ଜୋର ଦେଇଥାଆନ୍ତେ । ତେଣୁ ହଜରତ ଯାକୁବ ସେମାନଙ୍କୁ ଅଲଗା ଅଲଗା ଦ୍ୱାର ଦେଇ ସହର ମଧ୍ୟରେ ପ୍ରବେଶ କରିବାକୁ ପରାମର୍ଶ ଦେଇଥିଲେ ତା'ହେଲେ ସେହି ରାଜ୍ୟର ସୈନ୍ୟମାନେ ବନୟାମିନଙ୍କୁ ଅନ୍ୟାନ୍ୟ ଭାଇଙ୍କ ପୂର୍ବରୁ ହଜରତ ଯୁସୁଫଙ୍କ ସହିତ ସାକ୍ଷାତ୍ କରାଇ ପାରିବେ ଓ ଦୁଇ ଭାଇ ପରସ୍ପରର ଅବସ୍ଥା ବିଷୟରେ ଅବଗତ ହୋଇପାରିବେ । ହଜରତ ଯାକୁବଙ୍କର ଏହି ଉଦ୍ଦେଶ୍ୟ ସଫଳ ହୋଇଥିଲା ଯାହା ପରବର୍ତ୍ତୀ ଆୟତ—୬୯ରୁ ପ୍ରତ୍ୟୟ ହେଉଛି ।

فَلَمَّا جَهَّزَهُمْ بِجَهَازِهِمْ جَعَلَ السِّقَايَةَ فِي رَحْلِ أَخِيهِ ثُمَّ أَذَّنَ مُؤَذِّنٌ أَيَّتُهَا الْعِيرُ إِنَّكُمْ لَسَارِقُونَ ﴿٧١﴾

୭୧. ତତ୍ପରେ ଯେତେବେଳେ ସେ ସେମାନଙ୍କୁ ସେମାନଙ୍କ ଜିନିଷପତ୍ର ଦେଇ (ପ୍ରତ୍ୟାବର୍ତ୍ତନ ଉଦ୍ଦେଶ୍ୟରେ) ପ୍ରସ୍ତୁତ କରାଇଲେ, ସେତେବେଳେ ସେ ତାହାଙ୍କ ନିଜ ଭାଇ ବସ୍ତାରେ[1] (ଏକ ଜଳପାନ) ପାତ୍ର ରଖି ଦେଲେ ; ତା'ପରେ (ଏପରି ଘଟିଲା ଯେ) ଜଣେ ଘୋଷଣାକାରୀ ଘୋଷଣା କରି କହିଲା, "ହେ ଯାତ୍ରୀଦଳ ! ତୁମେମାନେ ପ୍ରକୃତରେ ଚୋର ।"

قَالُوا وَأَقْبَلُوا عَلَيْهِمْ مَاذَا تَفْقِدُونَ ﴿٧٢﴾

୭୨. ସେମାନେ (ଉକ୍ତ ଘୋଷଣାକାରୀଙ୍କୁ ସମ୍ବୋଧନ କରି) କହିଲେ, "ତୁମମାନଙ୍କର କ'ଣ ହଜିଯାଇଛି ?"

قَالُوا نَفْقِدُ صُوَاعَ الْمَلِكِ وَلِمَنْ جَاءَ بِهِ حِمْلُ بَعِيرٍ وَأَنَا بِهِ زَعِيمٌ ﴿٧٣﴾

୭୩. ସେମାନେ କହିଲେ, "ଆମେମାନେ ରାଜାଙ୍କର ଶସ୍ୟ ମାପିବା ପାତ୍ର[2] ପାଉଁ ନାହୁଁ ; ଏବଂ ଯେ ତାହାକୁ (ଖୋଜି) ଆଣିଦେବ ତାହାକୁ ଏକ ଓଟ ବୋଝେଇ ପରିମାଣର ଶସ୍ୟ (ପୁରସ୍କାର ସ୍ୱରୂପ) ଦିଆଯିବ," ଏବଂ (ଘୋଷଣାକାରୀ ପୁନଶ୍ଚ କହିଲା ଯେ), "ମୁଁ ଏହାର (ଅର୍ଥାତ୍ ପୁରସ୍କାର ପ୍ରଦାନର) ଦାୟିତ୍ୱ ନେଉଛି ।"

قَالُوا تَاللَّهِ لَقَدْ عَلِمْتُمْ مَا جِئْنَا لِنُفْسِدَ فِي الْأَرْضِ وَمَا كُنَّا سَارِقِينَ ﴿٧٤﴾

୭୪. ସେମାନେ କହିଲେ, "ଅଲ୍ଲାହଙ୍କର ରାଣ, ତୁମେମାନେ ଜାଣ ଯେ ଆମେମାନେ ଏ ଦେଶରେ ଅଶାନ୍ତି ସୃଷ୍ଟି କରିବାକୁ ଆସି ନାହୁଁ, ଓ ଆମେମାନେ ଚୋର ନୋହୁଁ ।"

قَالُوا فَمَا جَزَاؤُهُ إِنْ كُنْتُمْ كَاذِبِينَ ﴿٧٥﴾

୭୫. ସେମାନେ (ଅର୍ଥାତ୍ ରାଜକର୍ମଚାରୀମାନେ) କହିଲେ, "ଯଦି ତୁମେମାନେ ମିଥ୍ୟାବାଦୀ (ପ୍ରମାଣିତ) ହୁଅ, ତେବେ ଏଥି ପାଇଁ ଶାସ୍ତି କ'ଣ ହେବ ?"

قَالُوا جَزَاؤُهُ مَنْ وُجِدَ فِي رَحْلِهِ فَهُوَ جَزَاؤُهُ كَذَٰلِكَ نَجْزِي الظَّالِمِينَ ﴿٧٦﴾

୭୬. ସେମାନେ (ଅର୍ଥାତ୍ ୟୁସୁଫଙ୍କ ଭାଇମାନେ) କହିଲେ, "ଏହାର ଶାସ୍ତି ହେଉଛି ଯେ ଯାହାର ବସ୍ତାରୁ ତାହା ମିଳିବ ସେ ନିଜେ (ଜୋରିମାନା ସ୍ୱରୂପ) ତାହାର ବିନିମୟ ହେବ ; ଆମେମାନେ ଦୋଷୀମାନଙ୍କୁ ଏହିପରି ଶାସ୍ତି ପ୍ରଦାନ କରୁ ।"

---

୧. ବନୟାମିନଙ୍କୁ ଜଡ଼ିତ କରାଇବା ଲକ୍ଷ୍ୟରେ ଏପରି କରାଯାଇଥିଲା କହିବା ଯଥାର୍ଥ ନୁହେଁ ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ହଜରତ ୟୁସୁଫ ଜଳପାନ କରିବା ପାଇଁ ଗୋଟିଏ ପାତ୍ର ମାଗିଥିଲେ କିନ୍ତୁ ପରେ ସେହି ପାତ୍ରକୁ ଅଲକ୍ଷ୍ୟରେ ବସ୍ତା ଭିତରେ ପକାଇଦେଲେ । ପ୍ରତୀତ ହେଉଛି ହଜରତ ୟୁସୁଫ କ୍ଳାନ୍ତି ଅନୁଭବ କରିବାରୁ ପିଇବା ପାଇଁ ଜଳ ମଗାଇଥିଲେ । ଭୃତ୍ୟ ଜଳ ଆଣି ଦେବା ପରେ ସେ ଜଳ ପାନ କଲେ ମାତ୍ର ପାତ୍ରଟିକୁ ଭୁଲ୍‌ରେ ବସ୍ତା ଭିତରେ ରଖିଦେଲେ । ତତ୍କାଳୀନ ଜଳପାନ ପାତ୍ର ମାପ ପାତ୍ର ଆକାରରେ ମଧ୍ୟ ବ୍ୟବହୃତ ହେଉଥିଲା । ଏବେ ବି ମାପ ପାତ୍ର ରୂପେ ବ୍ୟବହୃତ କେତେକ ପାତ୍ର ଜଳପାନ ପାତ୍ର ରୂପେ ବ୍ୟବହାର କରାଯାଉଛି ।

୨. କେତେକ ଭାଷ୍ୟକାର କହନ୍ତି ଯେ ତାହା ଜଳପାନ ପାତ୍ର କିନ୍ତୁ ମାପପାତ୍ର ବିଷୟରେ ଘୋଷଣା କରାଯାଇଥିଲା । ବୋଧ ହେଉଛି ହଜରତ ୟୁସୁଫ ଜଳପାନ ପାତ୍ର ରଖିବାକୁ ଚାହିଁଥିଲେ କିନ୍ତୁ ଭୁଲବଶତଃ ମାପପାତ୍ର ରହିଗଲା । ତଥାପି ଏହି ସ୍ପଷ୍ଟୀକରଣ ଯଥାର୍ଥ ମନେ ହେଉନାହିଁ । ମୂଳ ଶବ୍ଦ 'ସୁୱାଅ' ଉଭୟ ଜଳପାନ ପାତ୍ର ଓ ମାପପାତ୍ର ଅର୍ଥରେ ବ୍ୟବହୃତ ହୋଇଥାଏ । ତେଣୁ ଅନୁବାଦ ମଧ୍ୟ ଉଭୟ ପାଇଁ ହୋଇପାରେ ।

୭୭. ତା'ପରେ ସେ (ଘୋଷଣାକାରୀ) ତାହାଙ୍କ ଭାଇଙ୍କର ବସ୍ତା(ଖୋଜ କରିବା) ପୂର୍ବରୁ ସେ (ଅନ୍ୟ ଭାଇମାନଙ୍କର ବସ୍ତା (ଖୋଜ କରିବା) ଆରମ୍ଭ କଲେ; ଏହା ପରେ ତାହାଙ୍କ ଭାଇଙ୍କ ବସ୍ତା (ଖୋଜ କଲେ ଓ ସେଥି) ମଧ୍ୟରୁ ତାହାକୁ ବାହାରକଲେ; ଏହିପରି ଭାବରେ ଆମେ (ଅର୍ଥାତ୍ ଅଲ୍ଲାହ) ୟୁସୁଫଙ୍କ ପାଇଁ ଏକ କୌଶଳ (ଉଦ୍‌ଭାବନ) କଲୁ; ତା'ନ ହେଲେ ସେ ରାଜାଙ୍କ ବିଧାନ ଅନୁସାରେ ନିଜ ଭାଇଙ୍କୁ ଅଲ୍ଲାହଙ୍କ କୌଶଳ ବିନା ଅଟକାଇ ପାରି ନ ଥା'ନ୍ତେ; ଆମେ ଯାହାକୁ ପସନ୍ଦ କରୁ (ତାହାର) ପଦ ମର୍ଯ୍ୟାଦା ଉନ୍ନତ କରୁ; ଏବଂ (ବାସ୍ତବରେ) ପ୍ରତ୍ୟେକ ଜ୍ଞାନବାନ୍‌ଙ୍କର ଉର୍ଦ୍ଧ୍ୱରେ ଜଣେ ଅଧିକ ଜ୍ଞାନବାନ୍ ଅଛନ୍ତି ।

فَبَدَاَ بِاَوۡعِيَتِهِمۡ قَبۡلَ وِعَآءِ اَخِيۡهِ ثُمَّ اسۡتَخۡرَجَهَا مِنۡ وِّعَآءِ اَخِيۡهِ ؕ كَذٰلِكَ كِدۡنَا لِيُوۡسُفَ ؕ مَا كَانَ لِيَاۡخُذَ اَخَاهُ فِىۡ دِيۡنِ الۡمَلِكِ اِلَّاۤ اَنۡ يَّشَآءَ اللّٰهُ ؕ نَرۡفَعُ دَرَجٰتٍ مَّنۡ نَّشَآءُ ؕ وَفَوۡقَ كُلِّ ذِىۡ عِلۡمٍ عَلِيۡمٌ ﴿۷۷﴾

୭୮. ସେମାନେ (ଅର୍ଥାତ୍ ୟୁସୁଫଙ୍କର ଅନ୍ୟ ଭାଇମାନେ) କହିଲେ, "ଯଦି ସେ ଚୋରି କରିଥାଏ, (ଏହା ବିଚିତ୍ର ନୁହେଁ କାରଣ) ଏହାର ଜଣେ ଭାଇ ମଧ୍ୟ ଏଥି ପୂର୍ବରୁ ଚୋରି କରିଅଛି." କିନ୍ତୁ ୟୁସୁଫ (ଏହା ଶୁଣି ନିଜ ମନ କଥା) ମନରେ ଗୋପନ ରଖିଲେ, ଏବଂ ଏହାକୁ ସେମାନଙ୍କ ନିକଟରେ ପ୍ରକାଶ କଲେ ନାହିଁ ; (ଅବଶ୍ୟ ମନରେ) କହିଲେ, "ତୁମେମାନେ ଅତ୍ୟନ୍ତ ହୀନ ପ୍ରବୃତ୍ତିର ଅଟ ; ଏବଂ ତୁମେମାନେ ଯାହା କିଛି କହୁଅଛ ତାହା ଅଲ୍ଲାହ ଭଲ ରୂପେ ଜାଣନ୍ତି ।"

قَالُوۡۤا اِنۡ يَّسۡرِقۡ فَقَدۡ سَرَقَ اَخٌ لَّهٗ مِنۡ قَبۡلُ ۚ فَاَسَرَّهَا يُوۡسُفُ فِىۡ نَفۡسِهٖ وَلَمۡ يُبۡدِهَا لَهُمۡ ۚ قَالَ اَنۡتُمۡ شَرٌّ مَّكَانًا ۚ وَاللّٰهُ اَعۡلَمُ بِمَا تَصِفُوۡنَ ﴿۷۸﴾

୭୯. ସେମାନେ କହିଲେ, "ହେ ମହାଭାଗ ! ତାହାର ଜଣେ ଅତ୍ୟନ୍ତ ବୃଦ୍ଧ ପିତା ଅଛନ୍ତି ; (ତାହାଙ୍କୁ ପୁତ୍ର ବିଚ୍ଛେଦ ଦୁଃଖରୁ ରକ୍ଷା କରିବା ସକାଶେ) ଆପଣ ତାହା ପରିବର୍ତ୍ତେ ଆମମାନଙ୍କ ମଧ୍ୟରୁ ଜଣକୁ ଅଟକାଇ ରଖନ୍ତୁ ; ବାସ୍ତବିକ ଆମେମାନେ ଆପଣଙ୍କୁ ହିତକାରୀମାନଙ୍କ ମଧ୍ୟରେ ଗଣ୍ୟ କରୁଅଛୁ ।"

قَالُوۡا يٰۤاَيُّهَا الۡعَزِيۡزُ اِنَّ لَهٗۤ اَبًا شَيۡخًا كَبِيۡرًا فَخُذۡ اَحَدَنَا مَكَانَهٗ ۚ اِنَّا نَرٰٮكَ مِنَ الۡمُحۡسِنِيۡنَ ﴿۷۹﴾

---

୧. ଭୃତ୍ୟମାନେ ମଧ୍ୟ ବୁଝି ପାରିଥିଲେ ଯେ ବନୟାମିନ ହଜରତ ୟୁସୁଫଙ୍କ ଦୃଷ୍ଟିରେ ଅଧିକ ସମ୍ମାନାସ୍ପଦ ଓ ପ୍ରିୟ ଥିଲେ । ତେଣୁ ସେମାନେ ସମସ୍ତଙ୍କ ପରେ ତାଙ୍କ ବସ୍ତାକୁ ଖୋଜ କରିଥିଲେ । ଅଲ୍ଲାହ ହଜରତ ୟୁସୁଫଙ୍କୁ ଭୁଲାଇ ଦେଇ ମାପପାତ୍ରକୁ, ଯାହାକି ଜଳପାନ ପାତ୍ର ଭାବେ ବ୍ୟବହାର କରାଯାଏ, ତାଙ୍କ ଭାଇ ବସ୍ତା ଭିତରେ ରଖାଇ ଦେଲେ । ଏହା ହଜରତ ୟୁସୁଫଙ୍କର ଯୋଜନା ନ ଥିଲା ବରଂ ଅଲ୍ଲାହଙ୍କର ଥିଲା । ସେଥିଯୋଗୁଁ ଅଲ୍ଲାହ କହୁଛନ୍ତି ଯେ ୟୁସୁଫଙ୍କ ପାଇଁ ସେ ନିଜେ ଏପରି କୌଶଳ କରିଥିଲେ ଯଦ୍ୱାରା ସେ ନିଜ ଭାଇକୁ ଅଟକାଇ ରଖିପାରିବେ, ଅନ୍ୟଥା ସେ ଦେଶର ଆଇନ ଅନୁସାରେ ବିନା ଦୋଷରେ ସେ ନିଜ ଭାଇକୁ ଅଟକାଇ ପାରିନଥାନ୍ତେ । ଅତଏବ, ଏହି ଆୟତରୁ ପ୍ରମାଣିତ ହେଉଛି ଯେ ହଜରତ ୟୁସୁଫ ପ୍ରତାରଣା କରିନାହାନ୍ତି ବରଂ ଅଲ୍ଲାହ ତାହାଙ୍କୁ ଭୁଲାଇ ଦେଇଛନ୍ତି । ଏହି କାର୍ଯ୍ୟ ଦ୍ୱାରା ତାଙ୍କ ଭାଇଙ୍କର କୌଣସି କ୍ଷତି ହୋଇନଥିଲା ବରଂ ସେ ମନ୍ତ୍ରୀମାନଙ୍କ ଗହଣରେ ରହି ପାରିଲେ ଓ ସେମାନଙ୍କ ସଦୃଶ ମର୍ଯ୍ୟାଦା ପାଇଲେ ।

୨. ଗୋଟିଏ ପାପ ଅନ୍ୟ ଗୋଟିଏ ପାପ କରିବାକୁ ପ୍ରବର୍ତ୍ତାଏ ହଜରତ ୟୁସୁଫଙ୍କର ସାବତ ଭାଇମାନେ ତାଙ୍କୁ ପ୍ରଥମେ ମାରିଦେବାକୁ ବସିଥିଲେ । ବର୍ତ୍ତମାନ ସେମାନେ ନିର୍ଲଜ୍ଜ ଭାବେ ତାଙ୍କୁ ଚୋର ବୋଲି କହୁଛନ୍ତି । ଯେହେତୁ ତାଙ୍କ ସାନ ଭାଇ ସେମାନଙ୍କ ସହିତ ଆସି ଥିଲେ ତେଣୁ କାଳେ ୟୁସୁଫ ସେମାନଙ୍କୁ ପଚାରିବେ ଯେ ସେମାନେ କାହିଁକି ବଡ଼ ଭାଇକୁ ଆଣି ନାହାନ୍ତି ; ସେଥିଯୋଗୁଁ ସେମାନେ ଏହି ଆଶଙ୍କାରେ ୟୁସୁଫଙ୍କୁ ଚୋର ବୋଲି କହିଥିଲେ ।

୩. ସେମାନେ ବନୟାମିନଙ୍କୁ କେବଳ ଚୋର ବୋଲି କହି ନ ଥିଲେ ବରଂ ନିଜ ଭାଇ ରୂପେ ମଧ୍ୟ ତାଙ୍କୁ ସ୍ୱୀକାର କରି ନ ଥିଲେ ।

୮୦. ସେ କହିଲେ, "ଆମେ ଯାହା ନିକଟରୁ ନିଜର ଜିନିଷ ପାଇଅଛୁ ତାହା ବ୍ୟତୀତ ଅନ୍ୟକୁ ଅଟକାଇ ରଖିବାରୁ ଅଲ୍ଲାହ ଆମକୁ ନିବୃତ୍ତ କରନ୍ତୁ ; ଯଦି ଆମେ ଏପରି କରୁ, ତେବେ ବାସ୍ତବିକ ଆମେ ଅତ୍ୟାଚାରୀମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ) ହେବୁ ।"

قَالَ مَعَاذَ اللّٰهِ اَنْ نَّاْخُذَ اِلَّا مَنْ وَّجَدْنَا مَتَاعَنَا عِنْدَهٗۤ ۙ اِنَّاۤ اِذًا لَّظٰلِمُوْنَ ﴿٨٠﴾

ରୁ : ୧୦

୮୧. ତା'ପରେ ଯେତେବେଳେ ସେମାନେ ତାଙ୍କ ଠାରୁ (ଅର୍ଥାତ୍ ୟୁସୁଫଙ୍କ ଠାରୁ) ନିରାଶ ହୋଇଗଲେ, ସେତେବେଳେ ସେମାନେ ପରସ୍ପର ମଧ୍ୟରେ ବିଚାର ବିମର୍ଶ କରିବାକୁ (ଲୋକମାନଙ୍କ ନିକଟରୁ) ଦୂରେଇ ଗଲେ ; ସେମାନଙ୍କ ମୁଖ୍ୟ କହିଲେ, "କ'ଣ ତୁମମାନଙ୍କୁ ଜଣା ନାହିଁ ଯେ ତୁମମାନଙ୍କ ପିତା ଅଲ୍ଲାହଙ୍କ ନାମରେ ତୁମମାନଙ୍କଠାରୁ ଦୃଢ ପ୍ରତିଶ୍ରୁତି ନେଇଛନ୍ତି ; ଏବଂ ଏଥିପୂର୍ବରୁ ତୁମେମାନେ ୟୁସୁଫଙ୍କ ସଂକ୍ରାନ୍ତରେ ମଧ୍ୟ ସୀମାଲଙ୍ଘନ କରିଅଛ, ତେଣୁ ଯେ ପର୍ଯ୍ୟନ୍ତ ମୋର ପିତା ମୋତେ ଅନୁମତି ନ ଦିଅନ୍ତି ବା ଅଲ୍ଲାହ ମୋ ସପକ୍ଷରେ କୌଣସି ନିଷ୍ପତ୍ତି କରି ନାହାନ୍ତି, ମୁଁ ଏ ଦେଶ ପରିତ୍ୟାଗ କରିବି ନାହିଁ; ଏବଂ ସେ (ଅଲ୍ଲାହ) ହିଁ ସମସ୍ତ ନିଷ୍ପତ୍ତିକାରୀଙ୍କ ମଧ୍ୟରେ ଶ୍ରେଷ୍ଠ ।"

فَلَمَّا اسْتَيْـَٔسُوْا مِنْهُ خَلَصُوْا نَجِيًّا ؕ قَالَ كَبِيْرُهُمْ اَلَمْ تَعْلَمُوْۤا اَنَّ اَبَاكُمْ قَدْ اَخَذَ عَلَيْكُمْ مَّوْثِقًا مِّنَ اللّٰهِ وَمِنْ قَبْلُ مَا فَرَّطْتُّمْ فِيْ يُوْسُفَ ۚ فَلَنْ اَبْرَحَ الْاَرْضَ حَتّٰى يَاْذَنَ لِيْۤ اَبِيْۤ اَوْ يَحْكُمَ اللّٰهُ لِيْ ۚ وَهُوَ خَيْرُ الْحٰكِمِيْنَ ﴿٨١﴾

୮୨. "ତୁମେମାନେ ନିଜ ପିତାଙ୍କ ନିକଟକୁ ଫେରି ଯାଅ ଏବଂ (ତାହାଙ୍କୁ) କୁହ, "ହେ ଆମମାନଙ୍କର ପିତା ! ତୁମର (କନିଷ୍ଠ) ପୁତ୍ର ନିଶ୍ଚୟ ଚୋରି କରିଅଛି ଏବଂ ଆମେମାନେ ଯାହା ଜାଣୁ ତାହା ହିଁ କହୁଅଛୁ ; ଏବଂ ଆମେମାନେ ଅଦୃଶ୍ୟ ବିଷୟର ରକ୍ଷକ ନୋହୁ ।"

اِرْجِعُوْۤا اِلٰۤى اَبِيْكُمْ فَقُوْلُوْا يٰۤاَبَانَاۤ اِنَّ ابْنَكَ سَرَقَ ۚ وَمَا شَهِدْنَاۤ اِلَّا بِمَا عَلِمْنَا وَمَا كُنَّا لِلْغَيْبِ حٰفِظِيْنَ ﴿٨٢﴾

୮୩. "ଏବଂ ଆମେମାନେ ଯେଉଁ ସହରରେ ଥିଲୁ ସେଠାକାର ଲୋକମାନଙ୍କୁ ତଥା ଯେଉଁ ଯାତ୍ରୀଦଳ ସହିତ ଆମେମାନେ ଫେରି ଆସିଛୁ ସେମାନଙ୍କୁ ପଚାରି ବୁଝନ୍ତୁ ; ଏବଂ ବାସ୍ତବରେ ଆମେମାନେ ସତ୍ୟ କହୁଅଛୁ ।"

وَسْـَٔلِ الْقَرْيَةَ الَّتِيْ كُنَّا فِيْهَا وَالْعِيْرَ الَّتِيْۤ اَقْبَلْنَا فِيْهَا ؕ وَاِنَّا لَصٰدِقُوْنَ ﴿٨٣﴾

୮୪. ସେ (ଅର୍ଥାତ୍ ୟାକୁବ) କହିଲେ, "(ଏ ବିଷୟ ଠିକ୍) ନୁହେଁ, ତୁମମାନଙ୍କର ପ୍ରବୃତ୍ତି ତୁମମାନଙ୍କ ନିକଟରେ କୌଣସି ଘଟଣାକୁ ସୁଶୋଭିତ[1] କରି ଦେଖାଇଛି ; ତେଣୁ ବର୍ତ୍ତମାନ ମୋ ପକ୍ଷରେ ଉତ୍ତମରୂପେ ଧୈର୍ଯ୍ୟ ଧାରଣ କରିବା ଶ୍ରେୟସ୍କର ; ଅଲ୍ଲାହ ସେ ସମସ୍ତଙ୍କୁ ମୋ ନିକଟକୁ ନେଇ ଆସିବା (କିଛି) ଅସମ୍ଭବ ନୁହେଁ ; ସେ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।"

قَالَ بَلْ سَوَّلَتْ لَكُمْ اَنْفُسُكُمْ اَمْرًا ؕ فَصَبْرٌ جَمِيْلٌ ؕ عَسَى اللّٰهُ اَنْ يَّاْتِيَنِيْ بِهِمْ جَمِيْعًا ؕ اِنَّهٗ هُوَ الْعَلِيْمُ الْحَكِيْمُ ﴿٨٤﴾

୧. ବିନୟାମିନଙ୍କ ପ୍ରତି ଶତ୍ରୁତା ଆଚରଣ କରୁଥିବାରୁ ଏକ ସାଧାରଣ ଘଟଣା ପାଇଁ ସେମାନେ ତାଙ୍କୁ ଚୋର ବୋଲି କହିଥିଲେ ।

وَتَوَلّٰى عَنْهُمْ وَقَالَ يٰۤاَسَفٰى عَلٰى يُوْسُفَ وَابْيَضَّتْ عَيْنٰهُ مِنَ الْحُزْنِ فَهُوَ كَظِيْمٌ ﴿٨٤﴾

୮୪. ଏବଂ ସେ ସେମାନଙ୍କ ଠାରୁ ନିଜ ମୁହଁ ଫେରାଇ ନେଲେ ଓ (ଅନ୍ୟତ୍ର ଯାଇ ପ୍ରାର୍ଥନା କଲେ ଓ) କହିଲେ, "(ହେ ଅଲ୍ଲାହ !) ଯୁସୁଫଙ୍କ ସଂକ୍ରାନ୍ତରେ ମୁଁ ପୁଣି ଗୁହାରି କରୁଛି ;" ଏବଂ ଦୁଃଖରେ ତାହାଙ୍କ ଚକ୍ଷୁ ଲୋତକରେ ପୂର୍ଣ୍ଣ[୧] ହୋଇଗଲା, କିନ୍ତୁ ସେ ନିଜ ଦୁଃଖକୁ (ସର୍ବଦା ନିଜ ଅନ୍ତରରେ) ଚାପି ରଖୁଥିଲେ ।

قَالُوْا تَاللّٰهِ تَفْتَؤُا تَذْكُرُ يُوْسُفَ حَتّٰى تَكُوْنَ حَرَضًا اَوْ تَكُوْنَ مِنَ الْهٰلِكِيْنَ ﴿٨٥﴾

୮୫. ସେମାନେ କହିଲେ, "ଅଲ୍ଲାହଙ୍କର ରାଣ, (ଯାହା ଜଣା ପଡୁଛି) ତୁମେ ରୋଗଗ୍ରସ୍ତ ନ ହେବା ପର୍ଯ୍ୟନ୍ତ ବା ମୃତ୍ୟୁବରଣ ନ କରିବା ପର୍ଯ୍ୟନ୍ତ ଯୁସୁଫଙ୍କୁ ସ୍ମରଣ କରୁଥିବ ।"

قَالَ اِنَّمَاۤ اَشْكُوْا بَثِّيْ وَحُزْنِيْۤ اِلَى اللّٰهِ وَاَعْلَمُ مِنَ اللّٰهِ مَا لَا تَعْلَمُوْنَ ﴿٨٦﴾

୮୬. ସେ କହିଲେ, "ମୁଁ ନିଜର ବ୍ୟାକୁଳତା ଓ ଦୁଃଖର ଗୁହାରି ଅଲ୍ଲାହଙ୍କ ସମୀପରେ କରୁଅଛି, ଏବଂ ମୁଁ ଅଲ୍ଲାହଙ୍କ ଠାରୁ ଯେଉଁ ବିଷୟରେ ଅବଗତ ଅଛି ତୁମେମାନେ ତାହା ଜାଣ ନାହିଁ ।"

يٰبَنِيَّ اذْهَبُوْا فَتَحَسَّسُوْا مِنْ يُّوْسُفَ وَاَخِيْهِ وَلَا تَايْـَٔسُوْا مِنْ رَّوْحِ اللّٰهِ ۗ اِنَّهٗ لَا يَايْـَٔسُ مِنْ رَّوْحِ اللّٰهِ اِلَّا الْقَوْمُ الْكٰفِرُوْنَ ﴿٨٧﴾

୮୭. "ହେ ମୋର ପୁତ୍ରମାନେ ! ତୁମେମାନେ ଯାଅ ଓ ଯୁସୁଫ ଓ ତାଙ୍କ ଭାଇଙ୍କ ସମ୍ବନ୍ଧରେ ଅନୁସନ୍ଧାନ କର ଓ ଅଲ୍ଲାହଙ୍କ କୃପାରୁ ନିରାଶ ହୁଅ ନାହିଁ; ବାସ୍ତବରେ ଅବିଶ୍ୱାସକାରୀମାନଙ୍କ ବ୍ୟତୀତ ଅନ୍ୟ କେହି ଅଲ୍ଲାହଙ୍କ କୃପାରୁ ନିରାଶ ହୁଏ ନାହିଁ ।"

فَلَمَّا دَخَلُوْا عَلَيْهِ قَالُوْا يٰۤاَيُّهَا الْعَزِيْزُ مَسَّنَا وَاَهْلَنَا الضُّرُّ وَجِئْنَا بِبِضَاعَةٍ مُّزْجٰىةٍ فَاَوْفِ لَنَا الْكَيْلَ وَتَصَدَّقْ عَلَيْنَا ؕ اِنَّ اللّٰهَ يَجْزِي الْمُتَصَدِّقِيْنَ ﴿٨٨﴾

୮୮. ତା'ପରେ ଯେତେବେଳେ ସେମାନେ (ଫେରିଯାଇ) ତାଙ୍କ (ଅର୍ଥାତ୍ ଯୁସୁଫଙ୍କ) ସମ୍ମୁଖରେ ଉପସ୍ଥିତ ହେଲେ ସେତେବେଳେ (ସେମାନେ) କହିଲେ, "ମହାଭାଗ ! ଆମେମାନେ ଓ ଆମର ପରିବାରବର୍ଗ ଅଭାବଗ୍ରସ୍ତ ହୋଇଅଛୁ, ଏବଂ ଆମେମାନେ ସ୍ୱଳ୍ପ ଧନ ଆଣିଅଛୁ ; ସୁତରାଂ ଆପଣ ଆମମାନଙ୍କୁ (ଦୟାକରି ଆମ ଚାହିଦା ମୁତାବକ ପୂର୍ଣ୍ଣ ପରିମାଣରେ) ଶସ୍ୟ ପ୍ରଦାନ କରନ୍ତୁ ; ଏବଂ ଦାନ ସ୍ୱରୂପ (କିଛି ଅଧିକା) ଦିଅନ୍ତୁ ; ବାସ୍ତବିକ ଅଲ୍ଲାହ ଦାନଶୀଳମାନଙ୍କୁ ଉତ୍ତମ ପୁରସ୍କାର ପ୍ରଦାନ କରନ୍ତି ।"

قَالَ هَلْ عَلِمْتُمْ مَّا فَعَلْتُمْ بِيُوْسُفَ وَاَخِيْهِ اِذْ اَنْتُمْ جٰهِلُوْنَ ﴿٨٩﴾

୮୯. ସେ କହିଲେ, "କ'ଣ ତୁମମାନଙ୍କର (ନିଜର ସେହି ବ୍ୟବହାର) ମନେ ଅଛି ଯାହା ତୁମେମାନେ ଯୁସୁଫ ଓ ତାହାଙ୍କ ଭାଇ ସହିତ କରିଥିଲ, ଯେତେବେଳେ କି ତୁମେମାନେ (ନିଜ କର୍ମର କୁପରିଣାମ ସମ୍ବନ୍ଧରେ) ଅଜ୍ଞ ଥିଲ ?"

---

୧. ଭାଷ୍ୟକାରମାନେ "ଓବ୍ ୟଜ୍ଜଜତ୍ ଅଏନାହୁ ମିନଲ ହୁଜ୍‌ନେ"ର ଅନୁବାଦ 'ଚକ୍ଷୁ ଶ୍ୱେତ ହୋଇଯିବା' ବା 'ଚକ୍ଷୁ ପଥର ପାଲଟିଯିବା' କରିଛନ୍ତି । କିନ୍ତୁ ଅଭିଧାନରେ ବାକ୍ୟାଂଶର ଅର୍ଥ ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇଯିବା ମଧ୍ୟ ଉଲ୍ଲେଖ କରାଯାଇଛି ଏବଂ ସେହି ଅର୍ଥକୁ ଏଠାରେ ଗ୍ରହଣ କରାଯାଇଛି । ଜଣେ ନବିଙ୍କ ସମ୍ମାନ ଦୃଷ୍ଟିରୁ ଆମେ କରିଥିବା ଅନୁବାଦ ଅଧିକ ଶ୍ରେୟସ୍କର, କାରଣ ହଜରତ ୟାକୁବ ଅଲ୍ଲାହଙ୍କ ନିକଟରେ ପ୍ରାର୍ଥନା କଲାବେଳେ ତାଙ୍କ ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇ ଯାଉଥିଲା । ହଜରତ ମହମ୍ମଦ ମଧ୍ୟ ଏହିଭଳି ପ୍ରାର୍ଥନା କରୁଥିଲେ ।

قَالُوٓا۟ أَءِنَّكَ لَأَنتَ يُوسُفُ ۖ قَالَ أَنَا۠ يُوسُفُ وَهَـٰذَآ أَخِى ۖ قَدْ مَنَّ ٱللَّهُ عَلَيْنَآ ۖ إِنَّهُۥ مَن يَتَّقِ وَيَصْبِرْ فَإِنَّ ٱللَّهَ لَا يُضِيعُ أَجْرَ ٱلْمُحْسِنِينَ ﴿٩١﴾

୯୧. ସେମାନେ କହିଲେ, ''କ'ଣ ପ୍ରକୃତରେ ଆପଣ (ହିଁ) ଯୁସୁଫ ଅଟନ୍ତି ?'' ସେ କହିଲେ, ''ଆମ୍ଭେ ହିଁ ଯୁସୁଫ ଏବଂ ଏ ଆମ୍ଭର ଭାଇ; ଅଲ୍ଲାହ ଆମ୍ଭମାନଙ୍କ ପ୍ରତି କୃପା କରିଛନ୍ତି ; ବାସ୍ତବରେ ଯେ ଧର୍ମଭୀରୁତା ଅବଲମ୍ବନ କରେ ଓ ଧୈର୍ଯ୍ୟ ଧାରଣ କରେ ତେବେ ଅଲ୍ଲାହ ଏପରି ହିତକାରୀ ବ୍ୟକ୍ତିମାନଙ୍କର ପୁରସ୍କାରକୁ କେବେ ହେଁ ନଷ୍ଟ କରନ୍ତି ନାହିଁ ।''

قَالُوا۟ تَٱللَّهِ لَقَدْ ءَاثَرَكَ ٱللَّهُ عَلَيْنَا وَإِن كُنَّا لَخَـٰطِـِٔينَ ﴿٩٢﴾

୯୨. ସେମାନେ କହିଲେ, ''ଅଲ୍ଲାହଙ୍କ ରାଣ ! ବାସ୍ତବିକ ଅଲ୍ଲାହ ଆପଣଙ୍କୁ ଆମ୍ଭମାନଙ୍କ ତୁଳନାରେ ଶ୍ରେଷ୍ଠତା ପ୍ରଦାନ କରିଛନ୍ତି, ଏବଂ ନିଃସନ୍ଦେହ ଆମେମାନେ ଦୋଷୀ ଥିଲୁ ।''

قَالَ لَا تَثْرِيبَ عَلَيْكُمُ ٱلْيَوْمَ ۖ يَغْفِرُ ٱللَّهُ لَكُمْ ۖ وَهُوَ أَرْحَمُ ٱلرَّٰحِمِينَ ﴿٩٣﴾

୯୩. ସେ କହିଲେ, ''ଆଜି ତୁମ୍ଭମାନଙ୍କ ଉପରେ କୌଣସି ଦୋଷାରୋପ [୧] (କରା) ହେବ ନାହିଁ ; ଏବଂ ଅଲ୍ଲାହ ତୁମ୍ଭମାନଙ୍କୁ କ୍ଷମା ପ୍ରଦାନ କରିବେ ; ଏବଂ ସେ କରୁଣା ପ୍ରଦାନକାରୀମାନଙ୍କ ତୁଳନାରେ ସର୍ବାପେକ୍ଷା ଅଧିକ କରୁଣାକାରୀ ଅଟନ୍ତି ।''

ٱذْهَبُوا۟ بِقَمِيصِى هَـٰذَا فَأَلْقُوهُ عَلَىٰ وَجْهِ أَبِى يَأْتِ بَصِيرًا وَأْتُونِى بِأَهْلِكُمْ أَجْمَعِينَ ﴿٩٤﴾

୯୪. ''ତୁମେମାନେ ଆମ୍ଭର ଏହି କୁର୍ତ୍ତାକୁ ନେଇଯାଅ ଓ ଏହାକୁ ଆମ୍ଭର ପିତାଙ୍କ ସମ୍ମୁଖରେ ରଖ ; ସେ (ଏତଦ୍ଵାରା ଆମ୍ଭ ସଂକ୍ରାନ୍ତରେ) ସକଳ ବିଷୟରେ ଅବଗତ [୨] ହୋଇଯିବେ ; ଏବଂ ତୁମେମାନେ ନିଜର ସମସ୍ତ ପରିବାରବର୍ଗଙ୍କୁ ଆମ୍ଭ ନିକଟକୁ ନେଇ ଆସ ।''

ରୁ : ୧୧

وَلَمَّا فَصَلَتِ ٱلْعِيرُ قَالَ أَبُوهُمْ إِنِّى لَأَجِدُ رِيحَ يُوسُفَ ۖ لَوْلَآ أَن تُفَنِّدُونِ ﴿٩٥﴾

୯୫. ଏବଂ ଯେତେବେଳେ ଯାତ୍ରୀଦଳ (ମିଶର) ପରିତ୍ୟାଗ କଲେ, ସେତେବେଳେ ସେମାନଙ୍କ ପିତା (ଲୋକମାନଙ୍କୁ) କହିଲେ, ''ତୁମେମାନେ ଆମ୍ଭଙ୍କୁ ମିଥ୍ୟାବାଦୀ ମନେ କଲେ ମଧ୍ୟ ଆମ୍ଭେ (କହିବୁ ଯେ) ଯୁସୁଫଙ୍କର ସୁଗନ୍ଧ ପାଉଅଛୁ ।''

قَالُوا۟ تَٱللَّهِ إِنَّكَ لَفِى ضَلَـٰلِكَ ٱلْقَدِيمِ ﴿٩٦﴾

୯୬. ସେମାନେ କହିଲେ, ''ଅଲ୍ଲାହଙ୍କ ରାଣ ! ତୁମ୍ଭେ ବାସ୍ତବିକ ନିଜର ପୁରାତନ ଭ୍ରମରେ (ପଡ଼ି) ଅଛ ।''

---

୧. ଏଠାରେ ଇତିହାସ ପୃଷ୍ଠାର ସେହି ଘଟଣାକୁ ଲକ୍ଷ୍ୟ କରିବା ଉଚିତ ଯାହା ମକ୍କା ବିଜୟ ପରେ ହଜରତ୍ ମହମ୍ମଦ ଓ ଅକରମା ମଧ୍ୟରେ ଘଟିଥିଲା । ହଜରତ ମହମ୍ମଦ ଯେପରି କ୍ଷମା-ପ୍ରଦାନ କରିଥିଲେ ତାହା ନିଃସନ୍ଦେହରେ ହଜରତ ଯୁସୁଫଙ୍କ କ୍ଷମାଦାନ ଠାରୁ ଉତ୍କୃଷ୍ଟ, କାରଣ ହଜରତ ଯୁସୁଫ ନିଜ ପିତାଙ୍କ ପୁତ୍ରମାନଙ୍କୁ କ୍ଷମା ଦେଇଥିବା ସ୍ଥଳେ ହଜରତ ମହମ୍ମଦ ନିଜର ନିଷ୍ଠୁରତମ ଶତ୍ରୁର ପୁତ୍ରକୁ କ୍ଷମା ଦେଇଥିଲେ ।

୨. କେତେକ ଭାଷ୍ୟକାରଙ୍କ ମତରେ ସେମାନେ ହଜରତ ୟାକୁବଙ୍କ ମୁହଁ ଉପରେ ଜାମାଟିକୁ ପକାଇ ଦେବାରୁ ସେ ଦେଖିପାରିଲେ । ପ୍ରକୃତ ବିଷୟ ହେଉଛି, ହଜରତ ଯୁସୁଫ ବିଶ୍ଵାସ କରୁଥିଲେ ଯେ ତାଙ୍କ ପିତା ସେହି ଜାମାକୁ ଅବଶ୍ୟ ମନେ ରଖିଥିବେ ଯାହାକୁ ସେ ବନ୍ଦୀ ହେବାର ଅବ୍ୟବହିତ ପୂର୍ବରୁ ପରିଧାନ କରୁଥିଲେ । ସେ ଆହୁରି ମଧ୍ୟ ବିଶ୍ଵାସ କରୁଥିଲେ ଯେ ଯେତେବେଳେ ଏହି ଜାମା ହଜରତ ୟାକୁବଙ୍କ ସମ୍ମୁଖରେ ରଖାଯିବ ସେତେବେଳେ ସେ ନିଶ୍ଚୟ ବୁଝି ପାରିବେ ଯେ ତାହା ଯୁସୁଫଙ୍କର ପୁରୁଣା ଜାମା ଓ ସେ ବଞ୍ଚିଛନ୍ତି ।

୯୭. ତା'ପରେ ଯେତେବେଳେ (ୟୁସୁଫଙ୍କ ସନ୍ଧାନ ବହନ କରି) ସୁସମାଚାରଦାତା (ୟାକୁବଙ୍କ ନିକଟରେ) ଉପସ୍ଥିତ ହେଲା, ସେ ତାହାକୁ (ଅର୍ଥାତ୍ ସେହି କୁର୍ତ୍ତାକୁ) ତାହାଙ୍କ ସମ୍ମୁଖରେ ରଖିଦେଲା, ଯଦ୍ଦ୍ୱାରା ସେ ସକଳ ବିଷୟ ବୁଝି ପାରିଲେ, ଏବଂ କହିଲେ, "ଆମେ କ'ଣ ତୁମମାନଙ୍କୁ କହି ନ ଥିଲୁ ଯେ ଆମେ ଅଲ୍ଲାହଙ୍କ ଠାରୁ (ଅବଗତ ହୋଇ) ଯାହା ଜାଣୁ ତୁମେମାନେ ତାହା ଜାଣ ନାହିଁ ।"

فَلَمَّآ اَنۡ جَآءَ الۡبَشِيۡرُ اَلۡقٰىهُ عَلٰى وَجۡهِهٖ فَارۡتَدَّ بَصِيۡرًا ۚ قَالَ اَلَمۡ اَقُلۡ لَّـكُمۡ ۚ اِنِّىۡۤ اَعۡلَمُ مِنَ اللّٰهِ مَا لَا تَعۡلَمُوۡنَ ۞

୯୮. ସେମାନେ (ଅର୍ଥାତ୍ ୟୁସୁଫଙ୍କ ଭାଇମାନେ) କହିଲେ, "ହେ ଆମମାନଙ୍କର ପିତା ! ଆପଣ ଆମମାନଙ୍କ ପାପ ପାଇଁ ଆମମାନଙ୍କ ସକାଶେ (ଅଲ୍ଲାହଙ୍କ ଠାରେ) କ୍ଷମାଭିକ୍ଷା କରନ୍ତୁ ; ଆମେମାନେ ପ୍ରକୃତରେ ଦୋଷୀ ।"

قَالُوۡا يٰۤاَبَانَا اسۡتَغۡفِرۡ لَنَا ذُنُوۡبَنَاۤ اِنَّا كُنَّا خٰطِــِٕيۡنَ ۞

୯୯. ସେ କହିଲେ, "ଆମେ ନିଶ୍ଚୟ ନିଜ ପାଳନକର୍ତ୍ତାଙ୍କ ନିକଟରେ ତୁମମାନଙ୍କ ସକାଶେ କ୍ଷମାଭିକ୍ଷା କରିବୁ ; ବାସ୍ତବିକ ସେ ହିଁ ଅଶେଷ କ୍ଷମାଶୀଳ (ଓ) ସଦା କରୁଣାମୟ ।"

قَالَ سَوۡفَ اَسۡتَغۡفِرُ لَـكُمۡ رَبِّىۡ ؕ اِنَّهٗ هُوَ الۡغَفُوۡرُ الرَّحِيۡمُ ۞

୧୦୦. ତା'ପରେ ଯେତେବେଳେ ସେମାନେ (ସମସ୍ତେ) ୟୁସୁଫଙ୍କ ନିକଟରେ ପହଞ୍ଚିଲେ, ସେତେବେଳେ ସେ (ଅର୍ଥାତ୍ ୟୁସୁଫ) ନିଜ ପିତାମାତାଙ୍କୁ (ସମ୍ବର୍ଦ୍ଧନା ପୂର୍ବକ) ନିଜ ପାଖରେ[୧] ସ୍ଥାନ ଦେଲେ, ଏବଂ କହିଲେ, "ତୁମେ ସମସ୍ତେ (ନିରାପଦରେ) ମିଶରକୁ ଆସ ଓ ଅଲ୍ଲାହ ଚାହିଁଲେ (ତୁମେମାନେ ସେଠାରେ) ଶାନ୍ତିରେ ବାସ କରିବ ।"

فَلَمَّا دَخَلُوۡا عَلٰى يُوۡسُفَ اٰوٰۤى اِلَيۡهِ اَبَوَيۡهِ وَقَالَ ادۡخُلُوۡا مِصۡرَ اِنۡ شَآءَ اللّٰهُ اٰمِنِيۡنَ ۞

୧୦୧. ଏବଂ ସେ ନିଜ ପିତାମାତାଙ୍କୁ ନିଜ ରାଜକୀୟ ଆସନ ଉପରେ ବସାଇଲେ, ଏବଂ ସେମାନେ ସମସ୍ତେ ଏହି କାରଣରୁ (ଅଲ୍ଲାହଙ୍କ ଠାରେ କୃତଜ୍ଞତା ଜ୍ଞାପନ-ପୂର୍ବକ) ସିଜଦା କଲେ ; ଏବଂ ସେ (ଅର୍ଥାତ୍ ୟୁସୁଫ) କହିଲେ, "ହେ ଆମର ପିତା ! ଏହା ହିଁ ଆମ ପୂର୍ବ ସ୍ୱପ୍ନର ଅର୍ଥ[୨]; ଆମର ପାଳନକର୍ତ୍ତା ଏହାକୁ ସତ୍ୟରେ ପରିଣତ କରିଛନ୍ତି ; ଏବଂ ସେ ଆମ ପ୍ରତି ଅନୁଗ୍ରହ କରିଛନ୍ତି, କାରଣ ସେ ଆମକୁ (ପ୍ରଥମେ) କାରାଗାରରୁ ବାହାର କଲେ, ଏବଂ (ତତ୍ପରେ ଆମକୁ ଏହି ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନରେ ପ୍ରତିଷ୍ଠିତ କରି) ତୁମମାନଙ୍କୁ ଜଙ୍ଗଲ

وَرَفَعَ اَبَوَيۡهِ عَلَى الۡعَرۡشِ وَخَرُّوۡا لَهٗ سُجَّدًا ۚ وَقَالَ يٰۤاَبَتِ هٰذَا تَاۡوِيۡلُ رُءۡيَاىَ مِنۡ قَبۡلُ قَدۡ جَعَلَهَا رَبِّىۡ حَقًّا ؕ وَقَدۡ اَحۡسَنَ بِىۡۤ اِذۡ اَخۡرَجَنِىۡ مِنَ السِّجۡنِ وَجَآءَ بِكُمۡ مِّنَ الۡبَدۡوِ مِنۡۢ بَعۡدِ اَنۡ نَّزَغَ

[୧] 'ପିତାମାତାଙ୍କୁ ନିଜ ପାଖରେ ସ୍ଥାନ ଦେଲେ'ର ଅର୍ଥ ସେ ଆଦର ଅଭ୍ୟର୍ଥନା କରିବା ଉଦ୍ଦେଶ୍ୟରେ ବାହାରକୁ ଯାଇ ତାଙ୍କ ସହିତ ସାକ୍ଷାତ୍ କଲେ । ଯେପରି କହନ୍ତି : ନଦୀ ବହୁ ଅଛି । କିନ୍ତୁ ପ୍ରକୃତରେ ନଦୀ ବହେ ନାହିଁ, ତାହା ସ୍ଥିର ଥାଏ, ଜଳ ବହି ଯାଉଥାଏ ।

[୨] ହଜରତ ୟୁସୁଫ ସ୍ୱପ୍ନରେ ଦେଖିଥିଲେ ଯେ ଚନ୍ଦ୍ର, ସୂର୍ଯ୍ୟ ଓ ନକ୍ଷତ୍ର ତାଙ୍କରି ଯୋଗୁଁ ସିଜଦା କରୁଛନ୍ତି । ଯେତେବେଳେ ସେମାନେ ହଜରତ ୟୁସୁଫଙ୍କୁ ପାଇଲେ ଓ ତାଙ୍କୁ ଉଚ୍ଚ ଆସନରେ ଅଧିଷ୍ଠିତ ହୋଇଥିବାର ଦେଖିଲେ ସେତେବେଳେ ସେମାନେ ଆନନ୍ଦରେ ଅଲ୍ଲାହଙ୍କୁ ସିଜଦା କରିବାରୁ ଉପରୋକ୍ତ ସ୍ୱପ୍ନ ସତ୍ୟ ସାବ୍ୟସ୍ତ ହୋଇଥିଲା ।

(ଅଞ୍ଚଳ)ରୁ (ବାହାର କରି ଆମ ନିକଟକୁ ସେତେବେଳେ) ଆଣିଲେ ଯେତେବେଳେ ସଇତାନ ଆମର ଓ ଆମର ଭାଇମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିଥିଲା ; ଆମର ପାଳନକର୍ତ୍ତା ଯାହାକୁ ଇଚ୍ଛା ତାହା ପ୍ରତି ଦୟାଶୀଳ ହୁଅନ୍ତି ; ବାସ୍ତବିକ ସେ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।"

الشَّيْطٰنُ بَيْنِيْ وَبَيْنَ اِخْوَتِيْ اِنَّ رَبِّيْ لَطِيْفٌ لِّمَا يَشَآءُ اِنَّهٗ هُوَ الْعَلِيْمُ الْحَكِيْمُ ﴿١٠١﴾

୧୦୨. ହେ ଆମର ପାଳନକର୍ତ୍ତା ! "ତୁମେ ଆମକୁ କ୍ଷମତାର ଏକ ଅଂଶ (ମଧ୍ୟ) ପ୍ରଦାନ କରିଅଛ, ଓ ସ୍ୱପ୍ନର ଅର୍ଥ କରିବାର କିଛି ଜ୍ଞାନ ମଧ୍ୟ ଆମକୁ ଦେଇଅଛ ; ହେ ଆକାଶ ଓ ପୃଥିବୀର ସୃଷ୍ଟିକର୍ତ୍ତା ! ତୁମେ ହିଁ ଇହକାଳ ଓ ପରକାଳରେ ଆମର ସାହାଯ୍ୟକାରୀ ; (ଆମର ମୃତ୍ୟୁ ସମୟ ଉପସ୍ଥିତ ହେବା ସମୟରେ) ଆମକୁ ତୁମର ସମ୍ପୂର୍ଣ୍ଣ ଆଜ୍ଞାବହ ଭାବରେ ମୃତ୍ୟୁ ପ୍ରଦାନ କର ; ଏବଂ ଆମକୁ ଧର୍ମନିଷ୍ଠ ଲୋକମାନଙ୍କ ସହିତ ସମ୍ମିଳିତ କର ।"

رَبِّ قَدْ اٰتَيْتَنِيْ مِنَ الْمُلْكِ وَعَلَّمْتَنِيْ مِنْ تَاْوِيْلِ الْاَحَادِيْثِ فَاطِرَ السَّمٰوٰتِ وَالْاَرْضِ اَنْتَ وَلِيّٖ فِي الدُّنْيَا وَالْاٰخِرَةِ تَوَفَّنِيْ مُسْلِمًا وَّاَلْحِقْنِيْ بِالصّٰلِحِيْنَ ﴿١٠٢﴾

୧୦୩. (ହେ ଆମର ରସୁଲ !) ଏହା (ଅର୍ଥାତ୍ ଏହି ବୃତ୍ତାନ୍ତ)[1] ଅଜ୍ଞାତ ସମାଚାର ମଧ୍ୟରେ ଅନ୍ତର୍ଭୁକ୍ତ ; ଆମେ ଏହାକୁ ତୁମ ନିକଟରେ ଓହି (ମାଧ୍ୟମରେ ପ୍ରକାଶ) କରୁଅଛୁ ; ଏବଂ ଯେତେବେଳେ ସେମାନେ (ଅର୍ଥାତ୍ ତୁମର ଶତ୍ରୁମାନେ ତୁମ ବିରୁଦ୍ଧରେ) ଚକ୍ରାନ୍ତ କରି ପରସ୍ପର ମଧ୍ୟରେ ଏକମତ ହୋଇଥିଲେ, ସେତେବେଳେ ତୁମେ ସେମାନଙ୍କ ନିକଟରେ (ଉପସ୍ଥିତ) ନ ଥିଲ ।

ذٰلِكَ مِنْ اَنْۢبَآءِ الْغَيْبِ نُوْحِيْهِ اِلَيْكَ وَمَا كُنْتَ لَدَيْهِمْ اِذْ اَجْمَعُوْا اَمْرَهُمْ وَهُمْ يَمْكُرُوْنَ ﴿١٠٣﴾

୧୦୪. ଏବଂ (ସମସ୍ତେ ସତ୍‌ପଥଗାମୀ ହୁଅନ୍ତୁ ବୋଲି) ତୁମେ (ଯେତେ) ଇଚ୍ଛା କଲେ ମଧ୍ୟ ଅଧିକାଂଶ ଲୋକ ବିଶ୍ୱାସ କରିବେ ନାହିଁ ।

وَمَآ اَكْثَرُ النَّاسِ وَلَوْ حَرَصْتَ بِمُؤْمِنِيْنَ ﴿١٠٤﴾

୧୦୫. ଏବଂ ତୁମେ ଏଥିପାଇଁ (ଅର୍ଥାତ୍ ଧର୍ମ ଶିକ୍ଷା ପାଇଁ) ସେମାନଙ୍କ ଠାରୁ କୌଣସି ପ୍ରତିଦାନ ମାଗୁ ନାହଁ ; ଏହା ସମଗ୍ର ମାନବ ସମାଜ ପାଇଁ ଏକ ଅନୁଯୋଗ ।

ع وَمَا تَسْـَٔلُهُمْ عَلَيْهِ مِنْ اَجْرٍ اِنْ هُوَ اِلَّا ذِكْرٌ لِّلْعٰلَمِيْنَ ﴿١٠٥﴾

---

୧. ଅର୍ଥାତ୍ ଏହା ଏକ କାହାଣୀ ନୁହେଁ ବରଂ ଏକ ଭବିଷ୍ୟବାଣୀ । ହଜରତ୍ ମହମ୍ମଦଙ୍କ ପକ୍ଷରେ ମଧ୍ୟ ଏହିପରି ଘଟିବାକୁ ଥିଲା ଓ ତାହା ବାସ୍ତବରେ ଘଟିଥିଲା ।

ରୁ : ୧୨

୧୦୬. ଏବଂ ଆକାଶ ଓ ପୃଥିବୀରେ ଅନେକ ନିଦର୍ଶନ ରହିଅଛି ଯାହା ନିକଟରୁ ଏମାନେ ବିମୁଖ ହୋଇ ଚାଲି ଯାଆନ୍ତି।

وَكَاَيِّنْ مِّنْ اٰيَةٍ فِى السَّمٰوٰتِ وَالْاَرْضِ يَمُرُّوْنَ عَلَيْهَا وَهُمْ عَنْهَا مُعْرِضُوْنَ ﴿۱۰۶﴾

୧୦୭. ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଲ୍ଲାହଙ୍କର ସମକକ୍ଷ ସ୍ଥିର ନ କରି (ତାହାଙ୍କ ଉପରେ) ବିଶ୍ୱାସ କରନ୍ତି ନାହିଁ।

وَمَا يُؤْمِنُ اَكْثَرُهُمْ بِاللّٰهِ اِلَّا وَهُمْ مُّشْرِكُوْنَ ﴿۱۰۷﴾

୧୦୮. ସେମାନଙ୍କ ପ୍ରତି ଅଲ୍ଲାହଙ୍କ ଠାରୁ କଠିନ ଶାସ୍ତିର ଆଗମନ ବିଷୟରେ ବା ସେମାନେ ଅବଗତ ନ ଥିବା ବେଳେ ସେମାନଙ୍କ ନିକଟରେ ସେହି ମୁହୂର୍ତ୍ତର ହଠାତ୍ ଉପସ୍ଥିତି ସଂକ୍ରାନ୍ତରେ (ଯାହା ନେଇ ଆଗରୁ ଜଣାଇ ଦିଆଯାଇଛି) କ'ଣ ସେମାନେ (ସୁରକ୍ଷିତ ଓ) ନିର୍ଭୀକ ଅଟନ୍ତି ?

اَفَاَمِنُوْٓا اَنْ تَاْتِيَهُمْ غَاشِيَةٌ مِّنْ عَذَابِ اللّٰهِ اَوْ تَاْتِيَهُمُ السَّاعَةُ بَغْتَةً وَّهُمْ لَا يَشْعُرُوْنَ ﴿۱۰۸﴾

୧୦୯. ତୁମେ କୁହ, "ଏହା ହିଁ ଆମର ପନ୍ଥା[୧], ଆମେ ଅଲ୍ଲାହଙ୍କ ଆଡକୁ ଡାକୁଅଛୁ ; ଆମେ ଓ ଆମର ପ୍ରକୃତ ଅନୁଗାମୀମାନେ ସୁନିଶ୍ଚିତ ଜ୍ଞାନ[୨] ଉପରେ ପ୍ରତିଷ୍ଠିତ ; ଏବଂ ଅଲ୍ଲାହ ହିଁ (ଅତି) ପବିତ୍ର ; ଏବଂ ଆମେ ମୁସରିକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନୋହୁଁ।"

وقف النبي صلى الله عليه وسلم

قُلْ هٰذِهٖ سَبِيْلِىْٓ اَدْعُوْٓا اِلَى اللّٰهِ ۣ عَلٰى بَصِيْرَةٍ اَنَا وَمَنِ اتَّبَعَنِىْ ؕ وَسُبْحٰنَ اللّٰهِ وَمَآ اَنَا مِنَ الْمُشْرِكِيْنَ ﴿۱۰۹﴾

୧୧୦. ଏବଂ ତୁମ ପୂର୍ବରୁ (ମଧ୍ୟ) ଆମେ (ମାନବ ସମାଜକୁ ସତ୍‌ପଥ ପ୍ରଦର୍ଶିତ କରିବା ପାଇଁ ସର୍ବଦା) ଏହି (ପୃଥିବୀର) ବସତିମାନଙ୍କରେ ବାସ କରୁଥିବା ଯେଉଁ ପୁରୁଷମାନଙ୍କ ପ୍ରତି ଓହି ପ୍ରେରଣ କରୁଥିଲୁ (ସେମାନଙ୍କୁ ବାର୍ତ୍ତାବହ ରୂପେ ପଠାଉଥିଲୁ ; କ'ଣ ସେମାନେ ଭୂପୃଷ୍ଠରେ ବିଚରଣ କରି ଦେଖୁ ନାହାନ୍ତି ଯେ (ରସୁଲମାନଙ୍କୁ ଅବଜ୍ଞା କରିବା ହେତୁ) ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କର ପରିଣାମ କ'ଣ ହେଲା ; ଏବଂ ଯେଉଁମାନେ ଧର୍ମଭୀରୁ ସେମାନଙ୍କ ପାଇଁ ପରକାଳର ବାସସ୍ଥାନ ନିଶ୍ଚିତରୂପେ ଉତ୍କୃଷ୍ଟତର ; ତଥାପି କ'ଣ ତୁମେମାନେ ବୁଝିପାରୁ ନାହିଁ ?

وَمَآ اَرْسَلْنَا مِنْ قَبْلِكَ اِلَّا رِجَالًا نُّوْحِىْٓ اِلَيْهِمْ مِّنْ اَهْلِ الْقُرٰى ؕ اَفَلَمْ يَسِيْرُوْا فِى الْاَرْضِ فَيَنْظُرُوْا كَيْفَ كَانَ عَاقِبَةُ الَّذِيْنَ مِنْ قَبْلِهِمْ ؕ وَلَدَارُ الْاٰخِرَةِ خَيْرٌ لِّلَّذِيْنَ اتَّقَوْا ؕ اَفَلَا تَعْقِلُوْنَ ﴿۱۱۰﴾

---

୧. ଆମର ପନ୍ଥା ହେଉଛି ସତ୍‌ପଥ ପ୍ରଦର୍ଶନ କରାଇବା, ବଳ ପ୍ରୟୋଗ କରିବା ନୁହେଁ।

୨. ଅର୍ଥାତ୍ ପ୍ରତ୍ୟେକ ବିଷୟକୁ ପ୍ରମାଣ ବଳରେ ସ୍ୱୀକାର କରୁଅଛୁ; କାଳ୍ପନିକ ବା ମନଗଢ଼ା କଥା ଉପରେ ବିଶ୍ୱାସ କରୁନାହୁଁ

حَتّٰۤى اِذَا اسْتَيْـَٔسَ الرُّسُلُ وَظَنُّوْۤا اَنَّهُمْ قَدْ كُذِبُوْا جَآءَهُمْ نَصْرُنَا ۙ فَنُجِّيَ مَنْ نَّشَآءُ ؕ وَلَا يُرَدُّ بَاْسُنَا عَنِ الْقَوْمِ الْمُجْرِمِيْنَ ﴿۱۱۱﴾

୧୧୧. ଏବଂ ଯେତେବେଳେ (ଏକ ପକ୍ଷରେ) ରସୁଲମାନେ (ନିଜ ସମ୍ପ୍ରଦାୟ ଠାରୁ) ନିରାଶ[୧] ହୋଇଗଲେ ଓ (ଅନ୍ୟ ପକ୍ଷରେ) ସେ (ମୁସରିକ)ମାନଙ୍କର ଦୃଢବିଶ୍ୱାସ ହୋଇଗଲା ଯେ ସେମାନଙ୍କୁ (ଓହି ନାମରେ) ମିଥ୍ୟା କଥା କୁହାଯାଉଛି, ସେତେବେଳେ ସେ (ରସୁଲ)ମାନଙ୍କ ନିକଟରେ ଆମର ସାହାଯ୍ୟ ଉପସ୍ଥିତ ହେଲା ; ଏବଂ ଯେଉଁମାନଙ୍କୁ ଆମ୍ଭେ ରକ୍ଷା କରିବାକୁ ଇଚ୍ଛା କରୁଥିଲୁ (ସେମାନଙ୍କୁ) ରକ୍ଷା କଲୁ ; ଏବଂ ଅପରାଧୀମାନଙ୍କ ଠାରୁ ଆମର ଶାସ୍ତି ଟଳିବ ନାହିଁ।

لَقَدْ كَانَ فِيْ قَصَصِهِمْ عِبْرَةٌ لِّاُولِي الْاَلْبَابِ ؕ مَا كَانَ حَدِيْثًا يُّفْتَرٰى وَلٰكِنْ تَصْدِيْقَ الَّذِيْ بَيْنَ يَدَيْهِ وَتَفْصِيْلَ كُلِّ شَيْءٍ وَّهُدًى وَّرَحْمَةً لِّقَوْمٍ يُّؤْمِنُوْنَ ﴿۱۱۲﴾ ع

୧୧୨. ଏ (ଲୋକ)ମାନଙ୍କ ବୃତ୍ତାନ୍ତରେ ଜ୍ଞାନବନ୍ତମାନଙ୍କ ପାଇଁ ଏକ ଶିକ୍ଷା (ଦୃଷ୍ଟାନ୍ତ ରୂପେ) ରହିଅଛି ; ଏହା କଳ୍ପିତ ବିଷୟ ନୁହେଁ ; ବରଂ ଯାହା ଏହା ପୂର୍ବରୁ ଥିଲା ତାହାର ସତ୍ୟତାକୁ ଏହା ପ୍ରତିପାଦିତ କରୁଅଛି ଏବଂ ଏହା ସକଳ ବିଷୟକୁ ବିସ୍ତୃତଭାବରେ ବ୍ୟାଖ୍ୟା କରେ, ଏବଂ ଯେଉଁମାନେ ବିଶ୍ୱାସ କରନ୍ତି (ଏହା) ସେମାନଙ୍କ ପାଇଁ ଏକ ସତ୍‌ପଥ ପ୍ରଦର୍ଶକ (ଓ) କରୁଣା ଅଟେ।

---

୧. କେତେକ ଟୀକାକାରଙ୍କ ମତରେ ଏହି ଆୟତର ପ୍ରଥମାଂଶର ଅର୍ଥ ହେଉଛି– 'ଯେବେ ରସୁଲ ଅଲ୍ଲାହଙ୍କ ଶାସ୍ତି ପ୍ରେରଣ ସମ୍ବନ୍ଧରେ ନିରାଶ ହୋଇଗଲେ', କିନ୍ତୁ ଆମ ମତରେ ଏହାର ଅର୍ଥ ହେଉଛି – 'ଯେବେ ରସୁଲ ଲୋକମାନଙ୍କ ବିଶ୍ୱାସ ସ୍ଥାପନ ସମ୍ବନ୍ଧରେ ନିରାଶ ହୋଇଗଲେ'। ଏହି ଆୟତର ପରବର୍ତ୍ତୀ ଅଂଶରୁ ପ୍ରତୀତ ହେଉଛି ଯେ ବିଶ୍ୱାସକାରୀମାନେ ମଧ୍ୟ ଦୃଢ଼ ବିଶ୍ୱାସ କରିଥିଲେ ଯେ ସେମାନଙ୍କୁ ଯାହା କୁହାଯାଉଛି ବା ଶୁଣାଇ ଦିଆଯାଉଛି ତାହା 'ଓହି' ବା ଦିବ୍ୟବାଣୀ ନୁହେଁ ବରଂ ତାଙ୍କର ମନଗଢ଼ା କଥା। ଏପରି କହିବା ପରେ ହିଁ ଅଲ୍ଲାହଙ୍କଠାରୁ ସହାୟତା ମିଳିଥିଲା।

سُوْرَةُ الرَّعْدِ مَكِّيَّةٌ (١٣)

# ଅଲ–ରାଦ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୪୪ ଗୋଟି ଆୟତ ଓ ୬ ଗୋଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି)

الٓمّٓرٰ ۚ تِلْكَ اٰيٰتُ الْكِتٰبِ ؕ وَالَّذِيْٓ اُنْزِلَ اِلَيْكَ مِنْ رَّبِّكَ الْحَقُّ وَلٰكِنَّ اَكْثَرَ النَّاسِ لَا يُؤْمِنُوْنَ ②

୨. ଅଲିଫ-ଲାମ-ମିମ-ରା[୧]; ଏଗୁଡ଼ିକ ଆଦର୍ଶ ଗ୍ରନ୍ଥର ଆୟତ ; ଏବଂ ଯେଉଁ ବାଣୀ ତୁମ ପାଳନକର୍ତ୍ତାଙ୍କ ନିକଟରୁ ତୁମ ପ୍ରତି ଅବତୀର୍ଣ୍ଣ ହୋଇଛି ତାହା ନିରାଟ ସତ୍ୟ ଅଟେ ; କିନ୍ତୁ ଅଧିକାଂଶ ଲୋକ ବିଶ୍ୱାସ କରନ୍ତି ନାହିଁ ।

اَللّٰهُ الَّذِيْ رَفَعَ السَّمٰوٰتِ بِغَيْرِ عَمَدٍ تَرَوْنَهَا ثُمَّ اسْتَوٰى عَلَى الْعَرْشِ وَسَخَّرَ الشَّمْسَ وَالْقَمَرَ ؕ كُلٌّ يَّجْرِيْ لِاَجَلٍ مُّسَمًّى ؕ يُدَبِّرُ الْاَمْرَ يُفَصِّلُ الْاٰيٰتِ لَعَلَّكُمْ بِلِقَآءِ رَبِّكُمْ تُوْقِنُوْنَ ③

୩. ସେ ହି ଅଲ୍ଲାହ ଯେ ବିନା ସ୍ତମ୍ଭରେ ଆକାଶକୁ ଟେକି ଧରିଛନ୍ତି ଯେପରିକି ତୁମେମାନେ ଦେଖୁଅଛ ; ତା'ପରେ ସେ ସିଂହାସନ ଉପରେ ପ୍ରତିଷ୍ଠିତ ହୋଇଛନ୍ତି ; ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି ; ଏବଂ ପ୍ରତ୍ୟେକ (ଗ୍ରହ ନକ୍ଷତ୍ର) ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ପ୍ରଦକ୍ଷିଣ କରୁଛନ୍ତି ; ସେ (ଅଲ୍ଲାହ) ପ୍ରତ୍ୟେକ ବିଷୟକୁ ପରିଚାଳିତ କରୁଛନ୍ତି ; ଏବଂ ନିଜର ନିଦର୍ଶନଗୁଡ଼ିକୁ ସ୍ପଷ୍ଟ ଭାବରେ ବର୍ଣ୍ଣନା କରୁଛନ୍ତି, ଯଦ୍ଦ୍ୱାରା ତୁମେମାନେ ନିଜ ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ୍ କରିବାରେ ବିଶ୍ୱାସ କରିବ ।

وَهُوَ الَّذِيْ مَدَّ الْاَرْضَ وَجَعَلَ فِيْهَا رَوَاسِيَ وَاَنْهٰرًا ؕ وَمِنْ كُلِّ الثَّمَرٰتِ جَعَلَ فِيْهَا زَوْجَيْنِ اثْنَيْنِ يُغْشِي الَّيْلَ النَّهَارَ ؕ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّتَفَكَّرُوْنَ ④

୪. ଏବଂ ସେ ହି ଭୂପୃଷ୍ଠକୁ ବିସ୍ତାରିତ କରିଛନ୍ତି ଏବଂ ତନ୍ମଧ୍ୟରେ (ଦୃଢ଼ ଭାବରେ ସ୍ଥାପିତ) ପର୍ବତ ଓ ନଦୀମାନ ସୃଷ୍ଟି କରିଛନ୍ତି ; ଏବଂ ତନ୍ମଧ୍ୟରେ ସେ ଫଳଗୁଡ଼ିକୁ ମାଈ–ଅଣ୍ଡିରା ଭାବରେ ଯୋଡ଼ି ଯୋଡ଼ି କରି ସୃଷ୍ଟି କରିଛନ୍ତି ; ସେ ହିଁ ରାତ୍ରି ଦ୍ୱାରା ଦିବସକୁ ଆଚ୍ଛନ୍ନ କରନ୍ତି ; ଯେଉଁମାନେ ଚିନ୍ତାଶୀଳ (ବ୍ୟକ୍ତି) ସେମାନଙ୍କ ପାଇଁ (ନିଃସନ୍ଦେହରେ) ଏଥିରେ ଅନେକ ନିଦର୍ଶନ ରହିଅଛି ।

---

୧. ପୂର୍ବବର୍ତ୍ତୀ ତିନି ଗୋଟି ଅଧ୍ୟାୟ 'ଅଲିଫ୍ ଲାମ୍ ରା' ସଂକ୍ଷେପାକ୍ଷରରୁ ଆରମ୍ଭ ହୋଇଛି ଅଥଚ ଏହି ଅଧ୍ୟାୟର ଆରମ୍ଭରେ 'ଅଲିଫ୍ ଲାମ୍ ମିମ୍ ରା' ସଂକ୍ଷେପାକ୍ଷର ରହିଅଛି । କାରଣ ଏହି ଅଧ୍ୟାୟର ବିଷୟବସ୍ତୁ ପୂର୍ବ ତିନି ଅଧ୍ୟାୟର ବିଷୟବସ୍ତୁ ଠାରୁ ପୃଥକ୍ ଅଛି । ଆଲୋଚ୍ୟ ସଂକ୍ଷେପାକ୍ଷରର ଅର୍ଥ 'ଆମେ ଅଲ୍ଲାହ ସର୍ବଜ୍ଞ ଓ ଦ୍ରଷ୍ଟା ।'

୫. ଏବଂ ପୃଥିବୀରେ ପରସ୍ପରର ସନ୍ନିହିତ ଭୂଭାଗମାନ ରହିଅଛି ; ଏବଂ ବିଭିନ୍ନ ପ୍ରକାର ଅଙ୍ଗୁର ବଗିଚ୍ଚ ଓ ଶସ୍ୟ କ୍ଷେତ୍ର ତଥା ଖଜୁରି ଗଛ ଅଛି ; (ତନ୍ମଧ୍ୟରୁ କେତେକ) ଗୋଟିଏ ଗୋଟିଏ ମୂଳରୁ ଏକାଧିକ ଉତ୍ପନ୍ନ ହେଉଥିବା ଗଛ ଓ (ଅନ୍ୟ କେତେକ) ଗୋଟିଏ ମୂଳରୁ ଅନେକ ଉତ୍ପନ୍ନ ହେଉ ନ ଥିବା ଗଛ, ଯେଉଁଗୁଡିକୁ ଏକା ଜଳ ଦ୍ୱାରା ସିଞ୍ଚନ କରାଯାଏ ; ଏବଂ (ଏହା ସତ୍ତ୍ୱେ) ଆମ୍ଭେ ଫଳ ଦୃଷ୍ଟିରୁ ଗୋଟିକୁ ଅନ୍ୟ ଉପରେ ପ୍ରାଧାନ୍ୟ ଦେଇଥାଉ ; ଏଥିରେ ଜ୍ଞାନବନ୍ତ ଲୋକମାନଙ୍କ ପାଇଁ ଅନେକ ନିଦର୍ଶନ ରହିଅଛି ।

وَفِي الْاَرْضِ قِطَعٌ مُّتَجٰوِرٰتٌ وَّجَنّٰتٌ مِّنْ اَعْنَابٍ وَّزَرْعٌ وَّنَخِيْلٌ صِنْوَانٌ وَّغَيْرُ صِنْوَانٍ يُّسْقٰى بِمَآءٍ وَّاحِدٍ ۙ وَنُفَضِّلُ بَعْضَهَا عَلٰى بَعْضٍ فِي الْاُكُلِ ۗ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّعْقِلُوْنَ ۝

୬. ଏବଂ ଯଦି ତୁମ୍ଭେ (ସତ୍ୟର ଅମାନ୍ୟକାରୀଙ୍କ ସଂକ୍ରାନ୍ତରେ) ଆଶ୍ଚର୍ଯ୍ୟ ହେଉଥାଅ, ତାହାହେଲେ ସେମାନଙ୍କର ଏପରି କହିବା ଯେ ଯେବେ ଆମେମାନେ (ମରିବା ପରେ) ମାଟିରେ ପରିଣତ ହୋଇଯିବୁ, ତେବେ କ'ଣ ସତରେ ଆମେମାନେ ପୁଣି ନୂତନ ଜନ୍ମ ଲାଭ କରିବୁ ? (ଏ ବିଷୟ) ତୁମ କଥାରୁ ମଧ୍ୟ ଅଧିକ ଆଶ୍ଚର୍ଯ୍ୟଜନକ ଅଟେ, ଏମାନେ ହିଁ ନିଜ ପାଳନକର୍ତ୍ତାଙ୍କୁ ଅମାନ୍ୟ କରିଛନ୍ତି ; ଏବଂ ଏମାନଙ୍କ ବେକରେ ଶିକୁଳି ପଡିବ, ଓ ଏମାନେ (ନରକ) ଅଗ୍ନିର ଅଧିବାସୀ ହେବେ, ଏବଂ ସେଥିରେ ବାସ କରୁଥିବେ ।

وَاِنْ تَعْجَبْ فَعَجَبٌ قَوْلُهُمْ ءَاِذَا كُنَّا تُرٰبًا ءَاِنَّا لَفِيْ خَلْقٍ جَدِيْدٍ ۬ؕ اُولٰٓئِكَ الَّذِيْنَ كَفَرُوْا بِرَبِّهِمْ ۚ وَاُولٰٓئِكَ الْاَغْلٰلُ فِيْٓ اَعْنَاقِهِمْ ۚ وَاُولٰٓئِكَ اَصْحٰبُ النَّارِ ۚ هُمْ فِيْهَا خٰلِدُوْنَ ۝

୭. ଏବଂ ସେମାନେ ହିତ ପରିବର୍ତ୍ତେ ଅହିତକୁ ଶୀଘ୍ର ଡାକି ଆଣିବା ପାଇଁ ତୁମ ନିକଟରେ ଦାବି କରୁଛନ୍ତି ; ଯଦ୍ୟପି ସେମାନଙ୍କ ପୂର୍ବରୁ (ଏପରି ଲୋକମାନଙ୍କ ପ୍ରତି ସମସ୍ତ ପ୍ରକାର) ଦୃଷ୍ଟାନ୍ତ-ମୂଳକ ଶାସ୍ତି ଆସି ସାରିଛି ; ଏବଂ ନିଃସନ୍ଦେହରେ ତୁମର ପାଳନକର୍ତ୍ତା ଲୋକମାନଙ୍କୁ ସେମାନଙ୍କର ଅତ୍ୟାଚାର ସତ୍ତ୍ୱେ କ୍ଷମା ପ୍ରଦାନ କରିଥା'ନ୍ତି ; ଏବଂ (ସେହିପରି) ତୁମର ପାଳନକର୍ତ୍ତା ବାସ୍ତବରେ କଠୋର ଶାସ୍ତିଦାତା (ମଧ୍ୟ) ଅଟନ୍ତି ।

وَيَسْتَعْجِلُوْنَكَ بِالسَّيِّئَةِ قَبْلَ الْحَسَنَةِ وَقَدْ خَلَتْ مِنْ قَبْلِهِمُ الْمَثُلٰتُ ؕ وَاِنَّ رَبَّكَ لَذُوْ مَغْفِرَةٍ لِّلنَّاسِ عَلٰى ظُلْمِهِمْ ۚ وَاِنَّ رَبَّكَ لَشَدِيْدُ الْعِقَابِ ۝

୮. ଏବଂ ଯେଉଁମାନେ ଅବଜ୍ଞା କରିଛନ୍ତି ସେମାନେ କହନ୍ତି, "କାହିଁକି ତାଙ୍କ ପ୍ରତି ତାଙ୍କ ପାଳନକର୍ତ୍ତାଙ୍କ ଠାରୁ କୌଣସି ନିଦର୍ଶନ ଅବତୀର୍ଣ୍ଣ ହୋଇ ନାହିଁ ?" (ଅଥଚ) ତୁମ୍ଭେ କେବଳ ସତର୍କକାରୀ ଅଟ ; ଏବଂ ପ୍ରତ୍ୟେକ ଜାତି ପାଇଁ (ଅଲ୍ଲାହଙ୍କ ଠାରୁ) ଜଣେ ଲେଖାଏଁ ପଥ ପ୍ରଦର୍ଶକ (ପ୍ରେରିତ ହୋଇ) ଅଛନ୍ତି ।

وَيَقُوْلُ الَّذِيْنَ كَفَرُوْا لَوْلَآ اُنْزِلَ عَلَيْهِ اٰيَةٌ مِّنْ رَّبِّهٖ ؕ اِنَّمَآ اَنْتَ مُنْذِرٌ وَّلِكُلِّ قَوْمٍ هَادٍ ۝ ع

ରୁ : ୨

୯. ପ୍ରତ୍ୟେକ ସ୍ତ୍ରୀ ଜାତି ଯାହା (ଗର୍ଭରେ) ଧାରଣା କରେ, ଏବଂ ଯାହାକୁ ଜରାୟୁ ଅଗ୍ରାହ୍ୟ କରି (ଫିଙ୍ଗି) ଦିଏ ଓ ଯାହାକୁ

اَللّٰهُ يَعْلَمُ مَا تَحْمِلُ كُلُّ اُنْثٰى وَمَا تَغِيْضُ الْاَرْحَامُ

وَمَا تَزْدَادُ ۚ وَكُلُّ شَيْءٍ عِنْدَهُ بِمِقْدَارٍ ⑨

ସେମାନେ ବୃଦ୍ଧି କରାନ୍ତି, ତାହାକୁ ଅଲ୍ଲାହ ଜାଣନ୍ତି; ଏବଂ ପ୍ରତ୍ୟେକ ବିଷୟ ତାହାଙ୍କ ନିକଟରେ ଆବଶ୍ୟକତା ଅନୁସାରେ ଅଛି ।

عَالِمُ الْغَيْبِ وَالشَّهَادَةِ الْكَبِيرُ الْمُتَعَالِ ⑩

୧୦. ସେ ପରୋକ୍ଷ ଓ ପ୍ରତ୍ୟକ୍ଷ (ଉଭୟ)କୁ ଜାଣନ୍ତି ; ସେ ହିଁ ମହାନ୍ (ଓ) ଗୌରବମୟ ।

سَوَاءٌ مِنْكُمْ مَنْ أَسَرَّ الْقَوْلَ وَمَنْ جَهَرَ بِهِ وَمَنْ هُوَ مُسْتَخْفٍ بِاللَّيْلِ وَسَارِبٌ بِالنَّهَارِ ⑪

୧୧. ତୁମମାନଙ୍କ ମଧ୍ୟରୁ ଯେ କଥାକୁ ଗୋପନ ରଖେ ଓ ଯେ ତାହାକୁ ପ୍ରକାଶ କରେ, ଏବଂ ଯେ ରାତ୍ରିରେ ଲୁଚି ରହେ ଓ ଦିବସରେ ବିଚରଣ କରେ ସେ ସମସ୍ତେ (ଅଲ୍ଲାହଙ୍କ ଦୃଷ୍ଟିରେ) ସମାନ ।

لَهُ مُعَقِّبَاتٌ مِنْ بَيْنِ يَدَيْهِ وَمِنْ خَلْفِهِ يَحْفَظُونَهُ مِنْ أَمْرِ اللَّهِ ۗ إِنَّ اللَّهَ لَا يُغَيِّرُ مَا بِقَوْمٍ حَتَّىٰ يُغَيِّرُوا مَا بِأَنْفُسِهِمْ ۗ وَإِذَا أَرَادَ اللَّهُ بِقَوْمٍ سُوءًا فَلَا مَرَدَّ لَهُ ۚ وَمَا لَهُمْ مِنْ دُونِهِ مِنْ وَالٍ ⑫

୧୨. ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ) ତରଫରୁ ଏହାଙ୍କ (ଅର୍ଥାତ୍ ଏହି ରସୁଲଙ୍କ) ପାଇଁ ଏହାଙ୍କ ସମ୍ମୁଖରେ ଓ ଏହାଙ୍କ ପଶ୍ଚାତ୍ ଭାଗରେ (ଦେବଦୂତମାନଙ୍କର) ଏକ ଗୋଷ୍ଠୀ ଅବସ୍ଥାପିତ ହୋଇ ରହିଛନ୍ତି ଯେଉଁମାନେ ଅଲ୍ଲାହଙ୍କ ଆଦେଶ ଅନୁସାରେ ତାହାଙ୍କର ସୁରକ୍ଷା କରୁଛନ୍ତି; ଅଲ୍ଲାହ କଦାପି କୌଣସି ସମ୍ପ୍ରଦାୟର ଅବସ୍ଥାରେ (ସେ ପର୍ଯ୍ୟନ୍ତ) ପରିବର୍ତ୍ତନ କରନ୍ତି ନାହିଁ ଯେ ପର୍ଯ୍ୟନ୍ତ କି ସେମାନେ ନିଜ ଅନ୍ତରର ଅବସ୍ଥାକୁ ପରିବର୍ତ୍ତନ[1] କରି ନାହାନ୍ତି; ଏବଂ ଯେତେବେଳେ ଅଲ୍ଲାହ କୌଣସି ସମ୍ପ୍ରଦାୟ ସଂକ୍ରାନ୍ତରେ ଶାସ୍ତି (ପ୍ରଦାନ କରିବାକୁ) ନିଷ୍ପତ୍ତି କରନ୍ତି, ସେତେବେଳେ କେହି ଏହାକୁ ଟଳାଇ ପାରିବେ ନାହିଁ, ଏବଂ ତାହାଙ୍କ ବ୍ୟତୀତ ସେମାନଙ୍କର ଅନ୍ୟ କେହି ସହାୟକ ନାହାନ୍ତି ।

هُوَ الَّذِي يُرِيكُمُ الْبَرْقَ خَوْفًا وَطَمَعًا وَيُنْشِئُ السَّحَابَ الثِّقَالَ ⑬

୧୩. ସେ ହିଁ ଭୟ ଓ ଆଶା (ସଞ୍ଚାର କରିବା) ପାଇଁ ତୁମମାନଙ୍କୁ ବିଜୁଳି (ର ଝଲକ) ଦେଖାନ୍ତି, ଏବଂ ଘନ ମେଘ ସୃଷ୍ଟି କରନ୍ତି ।

وَيُسَبِّحُ الرَّعْدُ بِحَمْدِهِ وَالْمَلَائِكَةُ مِنْ خِيفَتِهِ وَيُرْسِلُ الصَّوَاعِقَ فَيُصِيبُ بِهَا مَنْ يَشَاءُ وَهُمْ يُجَادِلُونَ فِي اللَّهِ وَهُوَ شَدِيدُ الْمِحَالِ ⑭

୧୪. ଏବଂ ବଜ୍ର ନିନାଦ[2] ତାହାଙ୍କର ପ୍ରଶଂସା (କରିବା) ସଙ୍ଗେ ମହିମାଗାନ କରେ ଏବଂ ଦେବଦୂତମାନେ ମଧ୍ୟ ଭୟରେ (ସେହିପରି କରନ୍ତି) ; ଏବଂ ସେ ବଜ୍ର ମଧ୍ୟ ପ୍ରେରଣ କରନ୍ତି ଏବଂ ତଦ୍ୱାରା ଯାହାକୁ ଇଚ୍ଛା ଆଘାତ କରନ୍ତି ; ତଥାପି ସେମାନେ ଅଲ୍ଲାହଙ୍କ ସଂକ୍ରାନ୍ତରେ କଳହ କରନ୍ତି, ଅଥଚ ସେ କଠୋର ଶାସ୍ତିଦାତା ।

---

୧. ୮:୫୪ ର ଟୀକା ଦ୍ରଷ୍ଟବ୍ୟ ।

୨. କେତେକ ଭାଷ୍ୟକାରଙ୍କ ମତରେ 'ରାଦ୍' ଏକ ଦେବଦୂତଙ୍କ ନାମ କିନ୍ତୁ ଏହା ଯଥାର୍ଥ ନୁହେଁ । ରାଦ୍ ଅର୍ଥ 'ବଜ୍ରନିନାଦ' । ବଜ୍ର ନିନାଦ ମଧ୍ୟ ଅଲ୍ଲାହଙ୍କର ଗୁଣଗାନ କରେ । ଏଠାରେ ଦେବଦୂତମାନଙ୍କ ବିଷୟ ଅଯଥାରେ ଉତ୍ଥାପନ କରାଯାଇଛି ।

لَهٗ دَعْوَةُ الْحَقِّ ؕ وَ الَّذِیْنَ یَدْعُوْنَ مِنْ دُوْنِهٖ لَا یَسْتَجِیْبُوْنَ لَهُمْ بِشَیْءٍ اِلَّا كَبَاسِطِ كَفَّیْهِ اِلَی الْمَآءِ لِیَبْلُغَ فَاهُ وَ مَا هُوَ بِبَالِغِهٖ ؕ وَ مَا دُعَآءُ الْكٰفِرِیْنَ اِلَّا فِیْ ضَلٰلٍ ﴿۱۵﴾

୧୫. (ସାହାଯ୍ୟାର୍ଥେ) ଏକମାତ୍ର ସାର୍ଥକ ସମ୍ବୋଧନ ହେଉଛି ତାହା ଯାହା ତାଙ୍କୁ (ଅର୍ଥାତ୍ ଅଲ୍ଲାହ୍‌ଙ୍କୁ) ସମ୍ବୋଧିତ ହୁଏ ; ଏବଂ ସେମାନେ ତାହାଙ୍କ ବ୍ୟତୀତ ଯେଉଁମାନଙ୍କୁ ସମ୍ବୋଧନ କରନ୍ତି ସେମାନେ ତାଙ୍କ (ପ୍ରାର୍ଥନାର) କୌଣସି ଉତ୍ତର ଦିଅନ୍ତି ନାହିଁ ; କିନ୍ତୁ (ସେମାନଙ୍କ ପ୍ରାର୍ଥନା କରିବା ଏପରି ଅଟେ) ଯେପରି କୌଣସି ବ୍ୟକ୍ତି ନିଜ ହସ୍ତ ଦ୍ୱୟକୁ ଜଳ ପ୍ରତି ପ୍ରସାରିତ କରୁଥାଏ ଅଥଚ ତାହା ତା' ନିକଟରେ ପହଞ୍ଚେ ନାହିଁ ; ଏବଂ ଅବିଶ୍ୱାସକାରୀମାନଙ୍କର (ଚିତ୍କାର ଓ) ପ୍ରାର୍ଥନା ନିଷ୍ଫଳ ହେବ ।

وَ لِلّٰهِ یَسْجُدُ مَنْ فِی السَّمٰوٰتِ وَ الْاَرْضِ طَوْعًا وَّ كَرْهًا وَّ ظِلٰلُهُمْ بِالْغُدُوِّ وَ الْاٰصَالِ ﴿۱۶﴾

୧୬. ଏବଂ ଆକାଶ ଓ ପୃଥିବୀରେ ଯାହା କିଛି ଅଛି ସେ ସବୁ ଓ ସେମାନଙ୍କର ଛାୟା ମଧ୍ୟ ସ୍ୱେଚ୍ଛାରେ ବା ଅନିଚ୍ଛାରେ ସକାଳେ ଓ ସନ୍ଧ୍ୟାରେ ଅଲ୍ଲାହ୍‌ଙ୍କୁ ହିଁ ସିଜଦା[୧] କରନ୍ତି ।

قُلْ مَنْ رَّبُّ السَّمٰوٰتِ وَ الْاَرْضِ ؕ قُلِ اللّٰهُ ؕ قُلْ اَفَاتَّخَذْتُمْ مِّنْ دُوْنِهٖۤ اَوْلِیَآءَ لَا یَمْلِكُوْنَ لِاَنْفُسِهِمْ نَفْعًا وَّ لَا ضَرًّا ؕ قُلْ هَلْ یَسْتَوِی الْاَعْمٰی وَ الْبَصِیْرُ ۬ۙ اَمْ هَلْ تَسْتَوِی الظُّلُمٰتُ وَ النُّوْرُ ۬ۚ اَمْ جَعَلُوْا لِلّٰهِ شُرَكَآءَ خَلَقُوْا كَخَلْقِهٖ فَتَشَابَهَ الْخَلْقُ عَلَیْهِمْ ؕ قُلِ اللّٰهُ خَالِقُ كُلِّ شَیْءٍ وَّ هُوَ الْوَاحِدُ الْقَهَّارُ ﴿۱۷﴾

୧୭. ତୁମେ ସେମାନଙ୍କୁ ପଚାର, "ଆକାଶ ଓ ପୃଥିବୀର ପାଳନକର୍ତ୍ତା କିଏ ?" (ସେମାନେ ଏହାର କ'ଣ ଉତ୍ତର ଦେବେ), ତୁମେ (ନିଜେ ହିଁ) କହିଦିଅ, "ଅଲ୍ଲାହ୍" ; (ପୁନଶ୍ଚ) ତୁମେ (ସେମାନଙ୍କୁ) କୁହ, "କ'ଣ ତଥାପି ତୁମେମାନେ ତାହାଙ୍କ ପରିବର୍ତ୍ତେ ଏପରି ସାହାଯ୍ୟକାରୀ ମନୋନୀତ କରିଅଛ ଯେଉଁମାନେ ନିଜର କୌଣସି ଲାଭ କରିବାକୁ ବା କ୍ଷତିର ପ୍ରତିରୋଧ କରିବାକୁ ସକ୍ଷମ ନୁହନ୍ତି ?" (ତୁମେ ସେମାନଙ୍କୁ) କୁହ, "କ'ଣ ଚକ୍ଷୁହୀନ ଓ ଚକ୍ଷୁଷ୍ମାନ୍ ସମାନ (ହୋଇ ପାରନ୍ତି) ବା କ'ଣ ଅନ୍ଧକାର ଓ ଆଲୋକ ସମାନ (ହୋଇ ପାରେ) ?" କ'ଣ ସେମାନେ ଅଲ୍ଲାହ୍‌ଙ୍କର ଏପରି ସମକକ୍ଷ ମନୋନୀତ କରିଛନ୍ତି ଯେଉଁମାନେ ତାହାଙ୍କ ସଦୃଶ ସୃଷ୍ଟି କରିଛନ୍ତି ଯାହା ଫଳରେ (ଉଭୟ) ସୃଷ୍ଟି ସେମାନଙ୍କୁ ଅନୁରୂପ ପ୍ରତୀତ ହେଉଅଛି ? (ତୁମେ ସେମାନଙ୍କୁ) କୁହ, "ଅଲ୍ଲାହ୍ (ହିଁ) ସକଳ ବିଷୟରେ ସୃଷ୍ଟିକର୍ତ୍ତା ଏବଂ ସେ ହିଁ ଅଦ୍ୱିତୀୟ (ଓ) ପ୍ରଭୁତ୍ୱଶାଳୀ ।"

اَنْزَلَ مِنَ السَّمَآءِ مَآءً فَسَالَتْ اَوْدِیَةٌۢ بِقَدَرِهَا فَاحْتَمَلَ السَّیْلُ زَبَدًا رَّابِیًا ؕ وَ مِمَّا یُوْقِدُوْنَ عَلَیْهِ فِی النَّارِ ابْتِغَآءَ حِلْیَةٍ اَوْ مَتَاعٍ زَبَدٌ مِّثْلُهٗ

୧୮. ସେ ଆକାଶରୁ ଜଳ ବୃଷ୍ଟି କରାନ୍ତି ; ତା'ପରେ (ଏଥିରୁ) ଅନେକ ଉପତ୍ୟକା ନିଜ ଆୟତନ ଅନୁସାରେ ପ୍ରବାହିତ ହୁଅନ୍ତି ; ତା'ପରେ ସେହି ବନ୍ୟା (ଜଳ) ଫୁଲି ଉଠିଥିବା ଫେଣକୁ ବହନ କରେ ; ଏବଂ ଅଳଙ୍କାର ଓ ଗୃହ ଉପକରଣ ତିଆରି କରିବା ପାଇଁ ଯାହାକୁ (ଅର୍ଥାତ୍ ଯେଉଁ ଧାତୁକୁ) ସେମାନେ ନିଆଁରେ ତରଳାନ୍ତି ତହିଁରେ ମଧ୍ୟ ଅନୁରୂପ ଫେଣ ଥାଏ ; ଏହିପରି ଭାବରେ ଅଲ୍ଲାହ୍ ସତ୍ୟ ଓ

---

୧. ମନୁଷ୍ୟ ସଦୃଶ ସିଜଦା କରିବା ଏହାର ଅର୍ଥ ନୁହେଁ । ସିଜଦା କରିବା ଅର୍ଥ ଆଜ୍ଞା ପାଳନ କରିବା । ଏହି ଆୟତର ଅଭିପ୍ରାୟ ହେଉଛି ଯେ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ବିଧାତାଙ୍କ ପ୍ରାକୃତିକ ନିୟମ ଅନୁସାରେ ଅଲ୍ଲାହ୍‌ଙ୍କ ଆଜ୍ଞା ପାଳନରେ ରତ ଥାଏ

ଅସତ୍ୟ (ମଧ୍ୟରେ ଥିବା ପ୍ରଭେଦ)କୁ ବର୍ଣ୍ଣନା କରନ୍ତି ; ତା'ପରେ ଫେଣ ସବୁ ଫିଙ୍ଗା ହୋଇ ନଷ୍ଟ ହୋଇଯାଏ, ଏବଂ ଯାହା ମାନବ-ସମାଜ ପାଇଁ ଲାଭଦାୟକ ତାହା ଭୂପୃଷ୍ଠରେ[୧] ରହିଯାଏ ; ଅଲ୍ଲାହ ସକଳ ବିଷୟକୁ ଏହି ରୂପେ (ସ୍ପଷ୍ଟ ଭାବରେ) ବର୍ଣ୍ଣନା କରନ୍ତି[୨]।

كَذٰلِكَ يَضْرِبُ اللّٰهُ الْحَقَّ وَالْبَاطِلَ ۬ۥ فَاَمَّا الزَّبَدُ فَيَذْهَبُ جُفَآءً ۚ وَاَمَّا مَا يَنْفَعُ النَّاسَ فَيَمْكُثُ فِى الْاَرْضِ ؕ كَذٰلِكَ يَضْرِبُ اللّٰهُ الْاَمْثَالَ ۝١٨

୧୯. ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ଆଜ୍ଞାପାଳନ କରନ୍ତି ସେମାନଙ୍କ ପାଇଁ ସଫଳତା ରହିଛି ; ଏବଂ ଯେଉଁମାନେ ତାହାଙ୍କ ଆଜ୍ଞାପାଳନ କରନ୍ତି ନାହିଁ, (ସେମାନଙ୍କର ଅବସ୍ଥା ଏପରି ହେବ ଯେ) ଯାହାକିଛି ଭୂପୃଷ୍ଠରେ ଅଛି ଯଦି (ସେ ସବୁ) ସେମାନଙ୍କର ହୁଅନ୍ତା ଓ ତାହା ସହିତ ଅନୁରୂପ (ପରିଣାମ ମଧ୍ୟ) ଯୋଗ କରାଯାଆନ୍ତା, ତେବେ ସେମାନେ ଏହି ସବୁକୁ ଦେଇ (ନିଜକୁ ଶାସ୍ତିରୁ) ରକ୍ଷା କରିବା ପାଇଁ ଚେଷ୍ଟା କରନ୍ତେ ; ସେମାନଙ୍କ ପାଇଁ ମନ୍ଦ (ପରିଣତି ଯୁକ୍ତ) ହିସାବ (ନିୟତ) ଅଛି, ଏବଂ ସେମାନଙ୍କର ବାସସ୍ଥାନ ନରକ ଅଟେ ; ଏବଂ ବାସ କରିବା ପାଇଁ ତାହା ଅତ୍ୟନ୍ତ ନିକୃଷ୍ଟ (ସ୍ଥାନ)।

لِلَّذِيْنَ اسْتَجَابُوْا لِرَبِّهِمُ الْحُسْنٰى ؕ وَالَّذِيْنَ لَمْ يَسْتَجِيْبُوْا لَهٗ لَوْ اَنَّ لَهُمْ مَّا فِى الْاَرْضِ جَمِيْعًا وَّمِثْلَهٗ مَعَهٗ لَافْتَدَوْا بِهٖ ؕ اُولٰٓئِكَ لَهُمْ سُوْٓءُ الْحِسَابِ ۬ۙ وَمَاْوٰىهُمْ جَهَنَّمُ ؕ وَبِئْسَ الْمِهَادُ ۝١٩

ରୁ : ୩

୨୦. ତୁମ ପାଳନକର୍ତ୍ତାଙ୍କ ଠାରୁ ତୁମ ପ୍ରତି ଯାହା ଅବତୀର୍ଣ୍ଣ ହୋଇଅଛି, ତାହା ସମ୍ପୂର୍ଣ୍ଣ ସତ୍ୟ ବୋଲି ଯେଉଁ ବ୍ୟକ୍ତି ଜାଣେ, କ'ଣ ସେ ଜଣେ ଅନ୍ଧ ସଙ୍ଗେ ସମାନ ହୋଇପାରେ ? (ନା, କାରଣ) ବୁଦ୍ଧିମାନ୍ (ବ୍ୟକ୍ତି)ମାନେ ହିଁ ଉପଦେଶ ଗ୍ରହଣ କରନ୍ତି।

اَفَمَنْ يَّعْلَمُ اَنَّمَآ اُنْزِلَ اِلَيْكَ مِنْ رَّبِّكَ الْحَقُّ كَمَنْ هُوَ اَعْمٰى ؕ اِنَّمَا يَتَذَكَّرُ اُولُوا الْاَلْبَابِ ۝٢٠

୨୧. (ସେମାନେ) ଏପରି ବ୍ୟକ୍ତି ଯେଉଁମାନେ ଅଲ୍ଲାହଙ୍କ (ସହିତ କରିଥିବା) ଅଙ୍ଗୀକାରକୁ ପାଳନ କରନ୍ତି ଓ ଏହାକୁ ଭଙ୍ଗ କରନ୍ତି ନାହିଁ।

الَّذِيْنَ يُوْفُوْنَ بِعَهْدِ اللّٰهِ وَلَا يَنْقُضُوْنَ الْمِيْثَاقَ ۝٢١

୨୨. ଏବଂ ଯେଉଁ ସମ୍ପର୍କମାନଙ୍କୁ ସ୍ଥାପନ କରିବା ନିମନ୍ତେ ଅଲ୍ଲାହ ଆଦେଶ ଦେଇଛନ୍ତି, ଯେଉଁମାନେ ତାହାକୁ ସର୍ବଦା ସ୍ଥାପନ କରନ୍ତି ଓ ନିଜ ପାଳନକର୍ତ୍ତାଙ୍କୁ ଭୟ କରନ୍ତି ଓ ମନ୍ଦ (ପରିଣତି ଯୁକ୍ତ) ହିସାବ ସଂକ୍ରାନ୍ତରେ ଭୟଭୀତ ରହନ୍ତି ;

وَالَّذِيْنَ يَصِلُوْنَ مَآ اَمَرَ اللّٰهُ بِهٖٓ اَنْ يُّوْصَلَ وَيَخْشَوْنَ رَبَّهُمْ وَيَخَافُوْنَ سُوْٓءَ الْحِسَابِ ۝٢٢

୧. ଅର୍ଥାତ୍ ଅଲ୍ଲାହଙ୍କ ତରଫରୁ ବିପତ୍ତି ଆଗମନର ଫଳ ସ୍ୱରୂପ ଯେଉଁମାନେ ଲାଭଦାୟକ ହେବେ କେବଳ ସେହିମାନେ ସୁରକ୍ଷିତ ରହିବେ। ଯେଉଁ ଲୋକମାନେ ଅକାମୀ ଓ ଦୁଷ୍ଟ, ସେମାନଙ୍କୁ ଫିଙ୍ଗି ଦିଆଯିବ ଅର୍ଥାତ୍ ଧ୍ୱଂସ କରି ଦିଆଯିବ।

୨. ଅର୍ଥାତ୍ ଅଲ୍ଲାହ ପ୍ରମାଣ ଦ୍ୱାରା ଓ କାର୍ଯ୍ୟ ଦ୍ୱାରା ସତ୍ୟ ଓ ଅସତ୍ୟ ମଧ୍ୟରେ ପାର୍ଥକ୍ୟ ଦର୍ଶାଇଥାଆନ୍ତି।

୨୩. ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ପ୍ରସନ୍ନତା ଲାଭ ପାଇଁ (ସଙ୍କଟ ସମୟରେ) ଧୈର୍ଯ୍ୟ ଧାରଣ କରନ୍ତି, ଓ ସୁଚାରୁରୂପେ ନମାଜ ପାଠ କରନ୍ତି, ଏବଂ ଆମେ ସେମାନଙ୍କୁ ଯାହା କିଛି ଦେଇଅଛୁ ସେଥିରୁ ପ୍ରକାଶ୍ୟରେ ଓ ଗୋପନରେ (ଆମ ଉଦ୍ଦେଶ୍ୟରେ) ବ୍ୟୟ କରନ୍ତି, ଓ ସତ୍‌କର୍ମ ଦ୍ୱାରା ଅସତ୍ କର୍ମକୁ ଦୂର କରନ୍ତି, ସେହିମାନଙ୍କ ପାଇଁ ଏହି ଗୃହ (ଉତ୍କୃଷ୍ଟ) ପରିଣାମ ସ୍ୱରୂପ ରହିଅଛି ;

وَالَّذِيْنَ صَبَرُوا ابْتِغَآءَ وَجْهِ رَبِّهِمْ وَاَقَامُوا الصَّلٰوةَ وَاَنْفَقُوْا مِمَّا رَزَقْنٰهُمْ سِرًّا وَّعَلَانِيَةً وَّيَدْرَءُوْنَ بِالْحَسَنَةِ السَّيِّئَةَ اُولٰٓئِكَ لَهُمْ عُقْبَى الدَّارِ ﴿٢٣﴾

୨୪. ଅର୍ଥାତ୍ ଚିରସ୍ଥାୟୀ ବାସୋପଯୋଗୀ ଉଦ୍ୟାନ, ଯହିଁରେ ସେମାନେ ପ୍ରବେଶ କରିବେ ; ଏବଂ ସେମାନଙ୍କ ପୂର୍ବପୁରୁଷ ଓ ସେମାନଙ୍କ ପତ୍ନୀ ଓ ସେମାନଙ୍କ ସନ୍ତାନମାନଙ୍କ ମଧ୍ୟରୁ ଯେଉଁମାନେ ପୁଣ୍ୟବାନ୍ (ସେମାନେ ମଧ୍ୟ ତହିଁରେ ପ୍ରବେଶ କରିବେ) ; ଏବଂ ଦେବଦୂତମାନେ ପ୍ରତ୍ୟେକ ଦ୍ୱାରରୁ ସେମାନଙ୍କ ନିକଟକୁ ଆସିବେ,

جَنّٰتُ عَدْنٍ يَّدْخُلُوْنَهَا وَمَنْ صَلَحَ مِنْ اٰبَآئِهِمْ وَاَزْوَاجِهِمْ وَذُرِّيّٰتِهِمْ وَالْمَلٰٓئِكَةُ يَدْخُلُوْنَ عَلَيْهِمْ مِّنْ كُلِّ بَابٍ ﴿٢٤﴾

୨୫. (ଏବଂ କହିବେ) "ତୁମମାନଙ୍କ ପ୍ରତି ଶାନ୍ତି (ବର୍ଷଣ) ହେଉ, କାରଣ ତୁମେମାନେ ଧୈର୍ଯ୍ୟ ଧାରଣ କରିଥିଲ ; ସୁତରାଂ (ଏବେ ଦେଖ ଯେ ତୁମମାନଙ୍କ ନିମନ୍ତେ) ଏହି ଗୃହ ପରିଣାମ ଦୃଷ୍ଟିରୁ କେତେ ଉତ୍ତମ !"

سَلٰمٌ عَلَيْكُمْ بِمَا صَبَرْتُمْ فَنِعْمَ عُقْبَى الدَّارِ ﴿٢٥﴾

୨୬. ଏବଂ ଯେଉଁମାନେ (ଅଲ୍ଲାଃଙ୍କ ସହିତ କରିଥିବା) ଦୃଢ଼ ଅଙ୍ଗୀକାରକୁ ସ୍ୱୀକୃତି ଦେବା ପରେ ଭଙ୍ଗ କରନ୍ତି, ଓ ଯେଉଁ ସମ୍ପର୍କ ସ୍ଥାପନ କରିବାକୁ ଅଲ୍ଲାଃ ଆଦେଶ ଦେଇଥିଲେ ତାହାକୁ ଖଣ୍ଡ ବିଖଣ୍ଡ କରନ୍ତି, ଓ ଭୂପୃଷ୍ଠରେ ବିଶୃଙ୍ଖଳା (ସୃଷ୍ଟି) କରନ୍ତି ସେମାନଙ୍କ ପାଇଁ (ଅଲ୍ଲାଃଙ୍କ ତରଫରୁ) ଅଭିଶାପ ଓ ଏକ ନିକୃଷ୍ଟ ବାସସ୍ଥାନ ନିୟତ ଅଛି ।

وَالَّذِيْنَ يَنْقُضُوْنَ عَهْدَ اللّٰهِ مِنْ بَعْدِ مِيْثَاقِهٖ وَيَقْطَعُوْنَ مَآ اَمَرَ اللّٰهُ بِهٖٓ اَنْ يُّوْصَلَ وَيُفْسِدُوْنَ فِى الْاَرْضِ اُولٰٓئِكَ لَهُمُ اللَّعْنَةُ وَلَهُمْ سُوْٓءُ الدَّارِ ﴿٢٦﴾

୨୭. ଅଲ୍ଲାଃ ଯାହାପାଇଁ ଇଚ୍ଛା କରନ୍ତି ତାହାପାଇଁ ଜୀବିକାକୁ ପ୍ରଶସ୍ତ କରନ୍ତି ଓ ଯାହାପାଇଁ ଇଚ୍ଛା ତାହାପାଇଁ ସଂକୁଚିତ କରନ୍ତି ; ଏବଂ ସେମାନେ ଏହି ଜୀବନରେ ହିଁ ଆନନ୍ଦ ଅନୁଭବ କରୁଛନ୍ତି ; ଅଥଚ ଏହି ପାର୍ଥିବ ଜୀବନ ପରକାଳ ତୁଳନାରେ ଏକ କ୍ଷଣିକ ସାମଗ୍ରୀ ଭିନ୍ନ ଅନ୍ୟକିଛି ନୁହେଁ ।

اَللّٰهُ يَبْسُطُ الرِّزْقَ لِمَنْ يَّشَآءُ وَيَقْدِرُ وَفَرِحُوْا بِالْحَيٰوةِ الدُّنْيَا وَمَا الْحَيٰوةُ الدُّنْيَا فِى الْاٰخِرَةِ اِلَّا مَتَاعٌ ﴿٢٧﴾ ع ٣

ରୁ : ୪

୨୮. ଏବଂ ଅବିଶ୍ୱାସକାରୀମାନେ କହନ୍ତି, "କାହିଁକି ତାହାଙ୍କ ପ୍ରତି ତାହାଙ୍କ ପାଳନକର୍ତ୍ତାଙ୍କଠାରୁ କୌଣସି ନିଦର୍ଶନ ଅବତୀର୍ଣ୍ଣ ହୋଇନାହିଁ ?" ତୁମେ କୁହ, "ଅଲ୍ଲାହ ଯାହାକୁ ଚାହାନ୍ତି ତାହାକୁ ବିନାଶ କରିଦିଅନ୍ତି ଓ ଯେ (ତାହାଙ୍କ ପ୍ରତି) ମନୋନିବେଶ କରନ୍ତି ତାହାଙ୍କୁ ନିଜ ତରଫରୁ (ସତ୍) ପଥ ପ୍ରଦର୍ଶନ କରନ୍ତି।"

وَيَقُولُ الَّذِينَ كَفَرُوا لَوْلَآ أُنزِلَ عَلَيْهِ ءَايَةٌ مِّن رَّبِّهِۦ ۗ قُلْ إِنَّ اللَّهَ يُضِلُّ مَن يَشَآءُ وَيَهْدِىٓ إِلَيْهِ مَنْ أَنَابَ ﴿٢٨﴾

୨୯. ଅର୍ଥାତ୍ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ଯେଉଁମାନଙ୍କର ହୃଦୟ ଅଲ୍ଲାହଙ୍କୁ ସ୍ମରଣ କରି ସନ୍ତୋଷ ଲାଭ କରେ (ସେମାନଙ୍କୁ ହିଁ ସତ୍‌ପଥ ପ୍ରଦର୍ଶନ କରନ୍ତି) ; ସୁତରାଂ ମନେରଖ ଯେ ଅଲ୍ଲାହଙ୍କ ସ୍ମରଣରେ ହିଁ ହୃଦୟ ସନ୍ତୋଷ ଲାଭ କରେ।

الَّذِينَ ءَامَنُوا وَتَطْمَئِنُّ قُلُوبُهُم بِذِكْرِ اللَّهِ ۗ أَلَا بِذِكْرِ اللَّهِ تَطْمَئِنُّ الْقُلُوبُ ﴿٢٩﴾

୩୦. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ପୁଣ୍ୟ କାର୍ଯ୍ୟ କରିଛନ୍ତି ସେମାନଙ୍କ ପାଇଁ ପରମ ଆନନ୍ଦ ଅଛି ତଥା ପ୍ରତ୍ୟାବର୍ତ୍ତନ ସକାଶେ ଉତ୍କୃଷ୍ଟ ସ୍ଥାନ (ନିୟତ) ରହିଛି।

الَّذِينَ ءَامَنُوا وَعَمِلُوا الصَّٰلِحَٰتِ طُوبَىٰ لَهُمْ وَحُسْنُ مَـَٔابٍ ﴿٣٠﴾

୩୧. ଏ (ପ୍ରକାରର ପୁରସ୍କାର ଲାଭ କରିବା) ନିମନ୍ତେ, ଆମେ ତୁମକୁ ଏପରି ଏକ ସମ୍ପ୍ରଦାୟ ନିକଟକୁ (ରସୁଲ ଭାବରେ) ପ୍ରେରଣ କରିଅଛୁ, ଯାହା ପୂର୍ବରୁ ଅନେକ ସମ୍ପ୍ରଦାୟ (ଆଗନ୍ତୁକର ପ୍ରତୀକ୍ଷା କରି କରି) ବିଦାୟ ନେଇଛନ୍ତି, ଯଦ୍ୱାରା କି ଆମେ ଯାହା ତୁମ ପ୍ରତି ଓହି (ମାଧ୍ୟମରେ ପ୍ରେରଣ) କରିଅଛୁ ତାହାକୁ ତୁମେ ସେମାନଙ୍କୁ ପାଠ କରି ଶୁଣାଇବ, କାରଣ ସେମାନେ ଦୟାବାନ୍ (ଅଲ୍ଲାହ)ଙ୍କର (କୃପାକୁ) ପ୍ରତ୍ୟାଖ୍ୟାନ କରୁଛନ୍ତି ; ତୁମେ କୁହ, "ସେ ହିଁ ଆମର ପାଳନକର୍ତ୍ତା ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ଆମେ ତାହାଙ୍କ ଉପରେ ଭରସା କରୁ ଏବଂ ସର୍ବଦା ତାହାଙ୍କ ପ୍ରତି ମନୋନିବେଶ କରୁ।"

كَذَٰلِكَ أَرْسَلْنَٰكَ فِىٓ أُمَّةٍ قَدْ خَلَتْ مِن قَبْلِهَآ أُمَمٌ لِّتَتْلُوَا۟ عَلَيْهِمُ الَّذِىٓ أَوْحَيْنَآ إِلَيْكَ وَهُمْ يَكْفُرُونَ بِالرَّحْمَٰنِ ۚ قُلْ هُوَ رَبِّى لَآ إِلَٰهَ إِلَّا هُوَ عَلَيْهِ تَوَكَّلْتُ وَإِلَيْهِ مَتَابِ ﴿٣١﴾

୩୨. ଏବଂ ଯଦି ଏପରି କୌଣସି କୋରାନ ଥାଆନ୍ତା ଯଦ୍ୱାରା (ନିଦର୍ଶନ ସ୍ୱରୂପ) ପର୍ବତଗୁଡ଼ିକୁ (ସ୍ୱସ୍ଥାନରୁ ଅପସାରିତ କରି) ଚାଳିତ କରାଯାଆନ୍ତା ବା ଯଦ୍ୱାରା ଭୂପୃଷ୍ଠକୁ (ଖଣ୍ଡ) ବିଖଣ୍ଡିତ କରାଯାଆନ୍ତା ବା ଯଦ୍ୱାରା ମୃତ ବ୍ୟକ୍ତି ସହିତ କଥାବାର୍ତ୍ତା କରାଯାଆନ୍ତା (ତେବେ କ'ଣ ସେ ଲୋକମାନେ ଏଥିରେ ବିଶ୍ୱାସ କରିବେ ? କଦାପି ନୁହେଁ,) ବରଂ (ବିଶ୍ୱାସ କରିବା ବିଷୟରେ) ନିଷ୍ପତ୍ତି ସମ୍ପୂର୍ଣ୍ଣତଃ ଅଲ୍ଲାହଙ୍କ ହସ୍ତରେ ଅଛି ;

وَلَوْ أَنَّ قُرْءَانًا سُيِّرَتْ بِهِ الْجِبَالُ أَوْ قُطِّعَتْ بِهِ الْأَرْضُ أَوْ كُلِّمَ بِهِ الْمَوْتَىٰ ۗ بَل لِّلَّهِ الْأَمْرُ جَمِيعًا ۗ أَفَلَمْ يَا۟يْـَٔسِ الَّذِينَ ءَامَنُوٓا۟ أَن لَّوْ يَشَآءُ اللَّهُ لَهَدَى

النَّاسَ جَمِيعًا ۗ وَلَا يَزَالُ الَّذِينَ كَفَرُوا تُصِيبُهُم بِمَا صَنَعُوا قَارِعَةٌ أَوْ تَحُلُّ قَرِيبًا مِّن دَارِهِمْ حَتَّىٰ يَأْتِيَ وَعْدُ اللَّهِ ۚ إِنَّ اللَّهَ لَا يُخْلِفُ الْمِيعَادَ ۝

ତେବେ କ'ଣ ଯେଉଁମାନେ ବିଶ୍ୱାସ କରିଛନ୍ତି ସେମାନଙ୍କୁ ଜଣା ନାହିଁ[1] ଯେ ଯଦି ଅଲ୍ଲାହ ଇଚ୍ଛା କରନ୍ତେ ତାହାହେଲେ ସମସ୍ତଙ୍କୁ ସତ୍‌ପଥ ପ୍ରଦର୍ଶନ କରାନ୍ତେ ? ଏବଂ (ହେ ରସୁଲ !) ଯେଉଁମାନେ ତୁମକୁ ଅସ୍ୱୀକାର କରିଛନ୍ତି ସେମାନଙ୍କ ଏହି କାର୍ଯ୍ୟ ଯୋଗୁଁ ଅଲ୍ଲାହଙ୍କର (ଅନ୍ତିମ) ପ୍ରତିଶ୍ରୁତି[2] (ଅର୍ଥାତ୍ ମକ୍କା ବିଜୟ) ପୂରଣ ନ ହେବା ପର୍ଯ୍ୟନ୍ତ ସେମାନଙ୍କ ପ୍ରତି ସର୍ବଦା କୌଣସି ନା କୌଣସି ଭୟଙ୍କର ବିପତ୍ତି ଆସୁଥିବ[3] ବା ସେମାନଙ୍କ ଗୃହ ନିକଟରେ ଅବତୀର୍ଣ୍ଣ ହେଉଥିବ ; (ବାସ୍ତବରେ) ଅଲ୍ଲାହ ଆଦୌ ଏହି ପ୍ରତିଶ୍ରୁତିର ବିରୁଦ୍ଧାଚରଣ କରିବେ ନାହିଁ ।

وَلَقَدِ اسْتُهْزِئَ بِرُسُلٍ مِّن قَبْلِكَ فَأَمْلَيْتُ لِلَّذِينَ كَفَرُوا ثُمَّ أَخَذْتُهُمْ ۖ فَكَيْفَ كَانَ عِقَابِ ۝

୩୩. ତୁମ ପୂର୍ବରୁ (ମଧ୍ୟ) ରସୁଲମାନଙ୍କୁ ଉପହାସ କରାଯାଇଥିଲା ; ପରନ୍ତୁ ଆମେ ଅବିଶ୍ୱାସକାରୀମାନଙ୍କୁ କିଛି କାଳ ପାଇଁ ଅବକାଶ ପ୍ରଦାନ କରିଥିଲୁ ; ତା'ପରେ ଆମେ ସେମାନଙ୍କୁ ଧ୍ୱଂସ କରିଥିଲୁ ; ବର୍ତ୍ତମାନ ଦେଖ ! ଆମର ଶାସ୍ତି କିପରି (କଠୋର) ଥିଲା ।

أَفَمَنْ هُوَ قَائِمٌ عَلَىٰ كُلِّ نَفْسٍ بِمَا كَسَبَتْ ۗ وَجَعَلُوا لِلَّهِ شُرَكَاءَ قُلْ سَمُّوهُمْ ۚ أَمْ تُنَبِّئُونَهُ بِمَا لَا يَعْلَمُ فِي الْأَرْضِ أَم بِظَاهِرٍ مِّنَ الْقَوْلِ ۗ بَلْ زُيِّنَ لِلَّذِينَ كَفَرُوا مَكْرُهُمْ وَصُدُّوا عَنِ السَّبِيلِ ۗ وَمَن يُضْلِلِ اللَّهُ فَمَا لَهُ مِنْ هَادٍ ۝

୩୪. ତେବେ କ'ଣ ସେ ଯେ କି ପ୍ରତ୍ୟେକ ବ୍ୟକ୍ତିର କର୍ମ ଉପରେ ଦୃଷ୍ଟି ରଖିଥା'ନ୍ତି (ସେମାନଙ୍କୁ ପଚାରିବେ ନାହିଁ ?) ଏବଂ ସେମାନେ ତ ଅଲ୍ଲାହଙ୍କର ଅନେକ ସମକକ୍ଷ ସ୍ଥିର କରିଛନ୍ତି ; (ସେମାନଙ୍କୁ) କୁହ, "ତୁମେମାନେ ସେହି (ତଥାକଥିତ ଉପାସ୍ୟ) ମାନଙ୍କର ନାମ ପ୍ରକାଶ କର ; ବା କ'ଣ ତୁମେମାନେ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହଙ୍କୁ) ଏପରି କୌଣସି ବିଷୟ ଜଣାଇବ ଯାହା ପୃଥିବୀରେ ଅଛି ଅଥଚ ସେ ଜାଣନ୍ତି ନାହିଁ ? ବା ତୁମେମାନେ କେବଳ (ଫମ୍ପା) କଥା କହୁଅଛ ?" ବରଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନଙ୍କ ପାଇଁ ସେମାନଙ୍କ ଅଭିସନ୍ଧିକୁ ସୁଶୋଭିତ କରି ଦର୍ଶାଇ ଦିଆଯାଇଛି ଏବଂ ସେମାନଙ୍କୁ ସତ୍‌ପଥରୁ ଅପସାରିତ କରାଯାଇଛି ; ଏବଂ ଅଲ୍ଲାହ ଯାହାକୁ ବିନାଶ କରନ୍ତି ତାହାକୁ କେହି ପଥ ପ୍ରଦର୍ଶନ କରାଇପାରିବେ ନାହିଁ ।

لَّهُمْ عَذَابٌ فِي الْحَيَاةِ الدُّنْيَا ۖ وَلَعَذَابُ الْآخِرَةِ أَشَقُّ ۖ وَمَا لَهُم مِّنَ اللَّهِ مِن وَاقٍ ۝

୩୫. ସେମାନଙ୍କ ପାଇଁ ଏହି ପାର୍ଥିବ ଜୀବନରେ ଏକ ଶାସ୍ତି (ନିୟତ) ଅଛି ; ଏବଂ ପରକାଳର ଶାସ୍ତି ବାସ୍ତବରେ ଅଧିକ କଠୋର ହେବ; ଏବଂ ସେମାନଙ୍କୁ ଅଲ୍ଲାହଙ୍କ (ଶାସ୍ତି) ଠାରୁ କେହି ରକ୍ଷା କରିପାରିବେ ନାହିଁ ।

---

୧. 'ୟାଅସ'ର ସାଧାରଣ ଅର୍ଥ ନିରାଶ ହେବା । ଏହାର ଅନ୍ୟତମ ଅର୍ଥ ଜାଣିବା, ଯାହା ଏଠାରେ ପ୍ରଯୋଜ୍ୟ ।

୨. ଅର୍ଥାତ୍ ଅବିଶ୍ୱାସକାରୀଙ୍କ ପ୍ରତି ଶାସ୍ତି ପରେ ଶାସ୍ତି ପ୍ରେରିତ ହେବ ଏବଂ ସେମାନଙ୍କ ଉପରେ ଗୋଟିଏ ସୈନ୍ୟ ଦଳ ପରେ ଅନ୍ୟ ଗୋଟିଏ ସୈନ୍ୟ ଦଳ ଆକ୍ରମଣ କରିବେ ତଥା ଅନ୍ତିମ ଦଳ ସେମାନଙ୍କ ଗୃହ ନିକଟରେ ପହଞ୍ଚିବେ ଅର୍ଥାତ୍ ମକ୍କା ଆକ୍ରମଣ କରିବେ ।

୩. ଅର୍ଥାତ୍ ତୁମର ସୈନ୍ୟବାହିନୀ ଥରକୁ ଥର ମକ୍କା ଆଡ଼କୁ ଆଗେଇ ଯିବ ଓ ତାହାର ନିକଟବର୍ତ୍ତୀ ହେବ ।

୩୬. ଧର୍ମଭୀରୁମାନଙ୍କୁ ଯେଉଁ ବୈକୁଣ୍ଠର ପ୍ରତିଶ୍ରୁତି ଦିଆଯାଇଛି ତାହାର ଦୃଷ୍ଟାନ୍ତ ହେଉଛି ଯେ ତାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ, ତାହାର ଫଳ ଓ ତାହାର ଛାୟା ଚିରସ୍ଥାୟୀ ହେବ, ଏହା ହିଁ ଧର୍ମଭୀରୁମାନଙ୍କର ପୁରସ୍କାର ଏବଂ ଅବିଶ୍ୱାସକାରୀମାନଙ୍କର ପ୍ରତିଫଳ (ନରକ) ଅଗ୍ନି ହେବ ।

مَثَلُ الْجَنَّةِ الَّتِيْ وُعِدَ الْمُتَّقُوْنَ ۭ تَجْرِيْ مِنْ تَحْتِهَا الْاَنْهٰرُ ۭ اُكُلُهَا دَاۗىِٕمٌ وَّظِلُّهَا ۭ تِلْكَ عُقْبَى الَّذِيْنَ اتَّقَوْا ڰ وَّعُقْبَى الْكٰفِرِيْنَ النَّارُ ٣٦

୩୭. ଏବଂ ଆମେ ଯେଉଁମାନଙ୍କୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଅଛୁ ସେମାନେ ତୁମ ପ୍ରତି ଯାହା ଅବତୀର୍ଣ୍ଣ ହୋଇଅଛି ସେଥିରେ ଆନନ୍ଦିତ ହୁଅନ୍ତି; ଏବଂ ସେହି (ଭିନ୍ନ) ଗୋଷ୍ଠୀମାନଙ୍କ ମଧ୍ୟରେ ଏପରି କେତେକ (ମଧ୍ୟ) ଅଛନ୍ତି ଯେଉଁମାନେ କି ଏହାର କେତେକ ଅଂଶକୁ ପ୍ରତ୍ୟାଖ୍ୟାନ କରିଥା'ନ୍ତି ; ତୁମେ କୁହ, ''ଆମକୁ କେବଳ ଅଲ୍ଲାଃଙ୍କ ଉପାସନା କରିବାକୁ ଓ ତାହାଙ୍କ ସହିତ ଅନ୍ୟକୁ ସମକକ୍ଷ ନ କରିବାକୁ ଆଦେଶ ଦିଆଯାଉଅଛି ; ଆମେ ତୁମମାନଙ୍କୁ ତାହାଙ୍କ ଆଡ଼କୁ ଡାକୁଅଛୁ ଏବଂ ଆମେ ତାହାଙ୍କ ପ୍ରତି ମନୋନିବେଶ କରୁଅଛୁ ।''

وَالَّذِيْنَ اٰتَيْنٰهُمُ الْكِتٰبَ يَفْرَحُوْنَ بِمَآ اُنْزِلَ اِلَيْكَ وَمِنَ الْاَحْزَابِ مَنْ يُّنْكِرُ بَعْضَهٗ ۭ قُلْ اِنَّمَآ اُمِرْتُ اَنْ اَعْبُدَ اللّٰهَ وَلَآ اُشْرِكَ بِهٖ ۭ اِلَيْهِ اَدْعُوْا وَاِلَيْهِ مَاٰبِ ٣٧

୩୮. ଏବଂ ଏହିପରି ଭାବରେ ଆମେ ଏହାକୁ (ଅର୍ଥାତ୍ ପବିତ୍ର କୋରାନକୁ) ଏକ ସବିସ୍ତାର ଆଦେଶ ଭାବରେ ଅବତୀର୍ଣ୍ଣ କରିଅଛୁ ; ଏବଂ ଯଦି ତୁମେ ଏହି ଜ୍ଞାନ ହାସଲ କରିବା ପରେ ମଧ୍ୟ ଏହି (ଅବିଶ୍ୱାସକାରୀ)ମାନଙ୍କର ଅନୁସରଣ କର, ତେବେ ଅଲ୍ଲାଃଙ୍କ ବିରୁଦ୍ଧରେ ତୁମର କେହି ବନ୍ଧୁ ବା ରକ୍ଷାକାରୀ (ହେବେ) ନାହିଁ ।

وَكَذٰلِكَ اَنْزَلْنٰهُ حُكْمًا عَرَبِيًّا ۭ وَلَىِٕنِ اتَّبَعْتَ اَهْوَاۗءَهُمْ بَعْدَ مَا جَاۗءَكَ مِنَ الْعِلْمِ ۙ مَا لَكَ مِنَ اللّٰهِ مِنْ وَّلِيٍّ وَّلَا وَاقٍ ٣٨ ع

ରୁ : ୬

୩୯. ଏବଂ ଆମେ ନିଶ୍ଚିତରୂପେ ତୁମ ପୂର୍ବରୁ ଅନେକ ରସୁଲ ପଠାଇଥିଲୁ ; ଏବଂ ସେମାନଙ୍କୁ ପତ୍ନୀ ଏବଂ ସନ୍ତାନ ମଧ୍ୟ ପ୍ରଦାନ କରିଥିଲୁ ; ଏବଂ କୌଣସି ରସୁଲଙ୍କ ପକ୍ଷରେ ଅଲ୍ଲାଃଙ୍କ ବିନା ଆଦେଶରେ (ନିଜ ସମ୍ପ୍ରଦାୟ ପାଇଁ) କୌଣସି ନିଦର୍ଶନ ଆଣିବା ସମ୍ଭବ ନଥିଲା ; ପ୍ରତ୍ୟେକ କାର୍ଯ୍ୟ ସକାଶେ ଏକ ଧାର୍ଯ୍ୟ ଅବଧି ରହିଛି ।

وَلَقَدْ اَرْسَلْنَا رُسُلًا مِّنْ قَبْلِكَ وَجَعَلْنَا لَهُمْ اَزْوَاجًا وَّذُرِّيَّةً ۭ وَمَا كَانَ لِرَسُوْلٍ اَنْ يَّاْتِيَ بِاٰيَةٍ اِلَّا بِاِذْنِ اللّٰهِ ۭ لِكُلِّ اَجَلٍ كِتَابٌ ٣٩

୪୦. ଅଲ୍ଲାଃ ଯାହାକୁ ଇଚ୍ଛା କରନ୍ତି ତାହାକୁ ଲୋପ କରି ଦିଅନ୍ତି ଓ (ଯାହାକୁ ଇଚ୍ଛା ତାହାକୁ) ପ୍ରତିଷ୍ଠିତ କରନ୍ତି, ଏବଂ ତାହାଙ୍କ ନିକଟରେ ସକଳ ଆଦେଶର ଉତ୍ସ ରହିଅଛି ।

يَمْحُوا اللّٰهُ مَا يَشَاۗءُ وَيُثْبِتُ ښ وَعِنْدَهٗٓ اُمُّ الْكِتٰبِ ٤٠

୪୧. ଏବଂ ଆମେ ସେମାନଙ୍କୁ ଯେଉଁ ଶାସ୍ତି (ପ୍ରେରଣ କରିବା) ସଂକ୍ରାନ୍ତରେ ଅଙ୍ଗୀକାର କରିଅଛୁ ଯଦି ଆମେ ତାହାର କୌଣସି ଅଂଶ (ତୁମ ଜୀବଦଶାରେ) ତୁମ ନିକଟରେ ପ୍ରଦର୍ଶନ କରୁ (ତେବେ ତୁମେ ମଧ୍ୟ ଏହାର ପରିଣାମ ଦେଖିପାରିବ) ଏବଂ (ଯଦି) ଆମେ ତୁମଙ୍କୁ ମୃତ୍ୟୁ ପ୍ରଦାନ କରୁ, (ତେବେ ମୃତ୍ୟୁ ପରେ ତୁମେ ଏହାର ସତ୍ୟତା ଜାଣିପାରିବ କାରଣ) ତୁମର ଦାୟିତ୍ୱ କେବଳ (ଆମର ଆଦେଶ ଓ ସମାଚାର) ପହଞ୍ଚାଇ ଦେବା, ଓ ତାହାର ହିସାବ ନେବା ଆମର ଦାୟିତ୍ୱ ।

وَإِن مَّا نُرِيَنَّكَ بَعْضَ الَّذِى نَعِدُهُمْ أَوْ نَتَوَفَّيَنَّكَ فَإِنَّمَا عَلَيْكَ الْبَلَٰغُ وَعَلَيْنَا الْحِسَابُ ﴿٤١﴾

୪୨. ଏବଂ କ'ଣ ସେମାନେ ଦେଖି ପାରୁ ନାହାନ୍ତି ଯେ ଆମେ (ଅବିଶ୍ୱାସକାରୀମାନଙ୍କ) ରାଜ୍ୟକୁ ଚତୁର୍ଦ୍ଦିଗରୁ କ୍ରମେ କ୍ରମେ ସଙ୍କୁଚିତ[୧] କରୁଅଛୁ ? ଏବଂ ଅଲ୍ଲାହ ନିଷ୍ପତ୍ତି କରିଥା'ନ୍ତି ଏବଂ ତାହାଙ୍କ ନିଷ୍ପତ୍ତିକୁ କେହି ବଦଳାଇ ପାରନ୍ତି ନାହିଁ, ଏବଂ ସେ ହିସାବ ନେବାରେ ଦ୍ରୁତ ଅଟନ୍ତି ।

أَوَلَمْ يَرَوْا أَنَّا نَأْتِى الْأَرْضَ نَنقُصُهَا مِنْ أَطْرَافِهَا ۚ وَاللَّهُ يَحْكُمُ لَا مُعَقِّبَ لِحُكْمِهِۦ ۚ وَهُوَ سَرِيعُ الْحِسَابِ ﴿٤٢﴾

୪୩. ଏବଂ ସେମାନଙ୍କ ପୂର୍ବରୁ ଯେଉଁମାନେ ଥିଲେ ସେମାନେ ମଧ୍ୟ (ରସୁଲମାନଙ୍କ ବିରୁଦ୍ଧରେ) ଚକ୍ରାନ୍ତ କରିଥିଲେ ; (କିନ୍ତୁ ତାହା ବ୍ୟର୍ଥ ହେଲା) ଅତଏବ କୌଶଳ କରିବା ସମ୍ପୂର୍ଣ୍ଣତଃ ଅଲ୍ଲାହଙ୍କର ଅଧିକାରଭୁକ୍ତ ; ପ୍ରତ୍ୟେକ ବ୍ୟକ୍ତି ଯାହା କିଛି କରେ ତାହା ସେ (ଅଲ୍ଲାହ) ଜାଣନ୍ତି ; ଏବଂ ଏହି ଅବିଶ୍ୱାସକାରୀମାନେ ଶୀଘ୍ର ଜାଣି ପାରିବେ ଯେ ପୁରସ୍କାର ସ୍ୱରୂପ ସେ (ସୁନ୍ଦର) ଅନ୍ତିମ ବାସସ୍ଥାନ କାହା ପାଇଁ ରହିଅଛି ।

وَقَدْ مَكَرَ الَّذِينَ مِن قَبْلِهِمْ فَلِلَّهِ الْمَكْرُ جَمِيعًا ۖ يَعْلَمُ مَا تَكْسِبُ كُلُّ نَفْسٍ ۗ وَسَيَعْلَمُ الْكُفَّٰرُ لِمَنْ عُقْبَى الدَّارِ ﴿٤٣﴾

୪୪. ଏବଂ ଯେଉଁମାନେ ତୁମଙ୍କୁ ପ୍ରତ୍ୟାଖ୍ୟାନ କରିଛନ୍ତି ସେମାନେ କହନ୍ତି, "ତୁମେ ଅଲ୍ଲାହଙ୍କ ପ୍ରେରିତ (ରସୁଲ) ନୁହଁ ;" ତୁମେ (ସେମାନଙ୍କୁ) କୁହ, "ଆମ ଓ ତୁମମାନଙ୍କ ମଧ୍ୟରେ ଅଲ୍ଲାହ ସାକ୍ଷୀ ହିସାବରେ ଯଥେଷ୍ଟ ; ଏବଂ (ସେହିପରି) ସେ (ବ୍ୟକ୍ତି) ମଧ୍ୟ (ସାକ୍ଷୀ ଅଟେ) ଯାହାଙ୍କ ନିକଟରେ ଏହି ଧର୍ମ ଗ୍ରନ୍ଥ ସମ୍ବନ୍ଧରେ ଜ୍ଞାନ ଅଛି ।"

وَيَقُولُ الَّذِينَ كَفَرُوا لَسْتَ مُرْسَلًا ۚ قُلْ كَفَىٰ بِاللَّهِ شَهِيدًۢا بَيْنِى وَبَيْنَكُمْ وَمَنْ عِندَهُۥ عِلْمُ الْكِتَٰبِ ﴿٤٤﴾

୧. ଏକ ପକ୍ଷରେ ଦେଶର ସାମାନ୍ତ ମୁସଲମାନମାନଙ୍କ କରଗତ ହେଉଛି ଓ ଅନ୍ୟ ପକ୍ଷରେ ପ୍ରଭାବଶାଳୀ ତଥା ପ୍ରମୁଖ ବଂଶର ଯୁବକମାନେ ଯଥା– ଉମର ବିନ୍ ଆସ୍, ଖାଲିଦ୍ ବିନ୍ ୱଲିଦ୍, ହଜରତ୍ ଉମର, ହଜରତ ଅଲି ଇତ୍ୟାଦି ଇସଲାମ ଧର୍ମରେ ଦୀକ୍ଷିତ ହେଉଛନ୍ତି ।



# ଇବ୍ରାହିମ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୫୩ ଗୋଟି ଆୟତ ଓ ୭ ଗୋଟି ରୁକୁ ଅଛି ।)

١. بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

الٓرٰ ۚ كِتٰبٌ اَنْزَلْنٰهُ اِلَيْكَ لِتُخْرِجَ النَّاسَ مِنَ الظُّلُمٰتِ اِلَى النُّوْرِ ۙ بِاِذْنِ رَبِّهِمْ اِلٰى صِرَاطِ الْعَزِيْزِ الْحَمِيْدِ ②

୨. ଅଲିଫ -ଲାମ -ରା ; ଏହା ଏକ (ଧର୍ମ) ଗ୍ରନ୍ଥ ଅଟେ ଯାହା ଆମେ ତୁମ ନିକଟରେ ଏଥିସକାଶେ ଅବତୀର୍ଣ୍ଣ କରୁଅଛୁ ଯେ ତୁମେ ମାନବ—ସମାଜକୁ ସେମାନଙ୍କ ପାଳନକର୍ତ୍ତାଙ୍କ ଆଦେଶ ଅନୁଯାୟୀ ଅନ୍ଧକାର ମଧ୍ୟରୁ ବାହାର କରି ଆଲୋକ ଆଡ଼କୁ ଅର୍ଥାତ୍ ପରାକ୍ରାନ୍ତ ଓ ପ୍ରଶଂସିତ ପ୍ରଭୁଙ୍କ ମାର୍ଗ ଆଡ଼କୁ ଘେନି ଆସିବ ।

اللّٰهِ الَّذِيْ لَهٗ مَا فِي السَّمٰوٰتِ وَمَا فِي الْاَرْضِ ۗ وَوَيْلٌ لِّلْكٰفِرِيْنَ مِنْ عَذَابٍ شَدِيْدِ ③

୩. ଯାହା କିଛି ଆକାଶରେ ଅଛି ଓ ଯାହା କିଛି ପୃଥିବୀରେ ଅଛି ତାହା (ସେହି ପରାକ୍ରମୀ ଓ ପ୍ରଶଂସିତ) ଅଲ୍ଲାହଙ୍କର ; ଏବଂ ଯେ ଅବିଶ୍ୱାସ କରେ ତାହା ପାଇଁ କଠୋର ଶାସ୍ତି (ନିୟତ) ଅଛି ।

الَّذِيْنَ يَسْتَحِبُّوْنَ الْحَيٰوةَ الدُّنْيَا عَلَى الْاٰخِرَةِ وَيَصُدُّوْنَ عَنْ سَبِيْلِ اللّٰهِ وَيَبْغُوْنَهَا عِوَجًا ۗ اُولٰٓئِكَ فِيْ ضَلٰلٍ ۢ بَعِيْدٍ ④

୪. ଯେଉଁମାନେ ପରକାଳ ଅପେକ୍ଷା ଏହି ପାର୍ଥିବ ଜୀବନ ପ୍ରତି ଗୁରୁତ୍ୱ ଆରୋପ କରନ୍ତି ଏବଂ ଅଲ୍ଲାହଙ୍କ ପଥରୁ (ଅନ୍ୟମାନଙ୍କୁ) ପ୍ରତିରୋଧ କରନ୍ତି ଓ ତାହାକୁ କୁଟିଳତା-ପୂର୍ବକ (ହାସଲ କରିବା) ଚାହାନ୍ତି, ସେମାନେ ବହୁଦୂର ପର୍ଯ୍ୟନ୍ତ ପଥଭ୍ରଷ୍ଟ ହୋଇ ଯାଇଛନ୍ତି ।

وَمَآ اَرْسَلْنَا مِنْ رَّسُوْلٍ اِلَّا بِلِسَانِ قَوْمِهٖ لِيُبَيِّنَ لَهُمْ ۗ فَيُضِلُّ اللّٰهُ مَنْ يَّشَآءُ وَيَهْدِيْ مَنْ يَّشَآءُ ۗ وَهُوَ الْعَزِيْزُ الْحَكِيْمُ ⑤

୫. ଏବଂ ଆମେ ପ୍ରତ୍ୟେକ ରସୁଲଙ୍କୁ ତାହାଙ୍କ ନିଜ ସମ୍ପ୍ରଦାୟର ଭାଷାରେ (ଓହି ପ୍ରଦାନ କରି) ପ୍ରେରଣ କରିଅଛୁ ଯେପରିକି ସେ ସେମାନଙ୍କୁ (ଆମର ବାର୍ତ୍ତା) ସ୍ପଷ୍ଟ ଭାବରେ ବର୍ଣ୍ଣନା କରି ପାରିବେ ; ତା'ପରେ ଅଲ୍ଲାହ ଯାହାକୁ ଇଚ୍ଛା ତାହାକୁ ବିନାଶ କରନ୍ତି ଓ ଯାହାକୁ (କୃତକାର୍ଯ୍ୟ କରିବାକୁ) ଇଚ୍ଛା, ତାହାକୁ ଗନ୍ତବ୍ୟସ୍ଥଳ ପର୍ଯ୍ୟନ୍ତ ପହଞ୍ଚାଇ ଦିଅନ୍ତି ; ଏବଂ ସେ ହିଁ ମହାନ୍ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

وَلَقَدْ اَرْسَلْنَا مُوْسٰى بِاٰيٰتِنَآ اَنْ اَخْرِجْ قَوْمَكَ مِنَ الظُّلُمٰتِ اِلَى النُّوْرِ ۙ وَذَكِّرْهُمْ بِاَيّٰىمِ اللّٰهِ ؕ اِنَّ فِىْ ذٰلِكَ لَاٰيٰتٍ لِّكُلِّ صَبَّارٍ شَكُوْرٍ ٦

୬. ଏବଂ (ତୁମ ପୂର୍ବରୁ) ଆମେ ମୁସାଙ୍କୁ ଆମର ନିଦର୍ଶନ ସହିତ (ଏହି ଆଦେଶ ପ୍ରଦାନ କରି) ପ୍ରେରଣ କରିଥିଲୁ ଯେ ତୁମେ ନିଜ ସମ୍ପ୍ରଦାୟକୁ ଅନ୍ଧକାର ମଧ୍ୟରୁ ବାହାର କରି ଆଲୋକ ଆଡକୁ ଘେନି ଯାଅ ଏବଂ ସେମାନଙ୍କୁ ଅଲ୍ଲାଃଙ୍କର ପୁରସ୍କାର ଓ ଶାସ୍ତି ସଂକ୍ରାନ୍ତରେ ସ୍ମରଣ କରାଅ ; (କାରଣ) ନିଃସନ୍ଦେହରେ ଏଥିରେ ପ୍ରତ୍ୟେକ ଧୈର୍ଯ୍ୟବାନ୍ ଓ କୃତଜ୍ଞ ବ୍ୟକ୍ତିଙ୍କ ସକାଶେ ନିଦର୍ଶନମାନ ରହିଅଛି ।

وَاِذْ قَالَ مُوْسٰى لِقَوْمِهِ اذْكُرُوْا نِعْمَةَ اللّٰهِ عَلَيْكُمْ اِذْ اَنْجٰىكُمْ مِّنْ اٰلِ فِرْعَوْنَ يَسُوْمُوْنَكُمْ سُوْٓءَ الْعَذَابِ وَيُذَبِّحُوْنَ اَبْنَآءَكُمْ وَيَسْتَحْيُوْنَ نِسَآءَكُمْ ؕ وَفِىْ ذٰلِكُمْ بَلَآءٌ مِّنْ رَّبِّكُمْ عَظِيْمٌ ٧

୭. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ମୁସା ନିଜ ସମ୍ପ୍ରଦାୟକୁ କହିଥିଲେ, "(ହେ ଆମର ସମ୍ପ୍ରଦାୟ !) ତୁମେମାନେ ନିଜ ପ୍ରତି (ପ୍ରଦତ୍ତ) ଅଲ୍ଲାଃଙ୍କ କୃପାକୁ ସ୍ମରଣ କର ; ଯେତେବେଳେ ସେ ତୁମମାନଙ୍କୁ ଫିରଔନର ସହଚରମାନଙ୍କ କବଳରୁ ଏପରି ପରିସ୍ଥିତିରୁ ରକ୍ଷା କରିଥିଲେ ଯେତେବେଳେ ସେମାନେ ତୁମମାନଙ୍କୁ ଭୀଷଣ ଯନ୍ତ୍ରଣା ଦେଉଥିଲେ, ତୁମମାନଙ୍କର ପୁତ୍ରମାନଙ୍କୁ ହତ୍ୟା କରୁଥିଲେ ଓ ତୁମମାନଙ୍କ ନାରୀମାନଙ୍କୁ ଜୀବିତ ରଖୁଥିଲେ ; ଏବଂ ତହିଁରେ ତୁମମାନଙ୍କ ପାଳନକର୍ତ୍ତାଙ୍କଠାରୁ (ତୁମମାନଙ୍କ ପାଇଁ) ଏକ ମହାନ୍ ପରୀକ୍ଷା ରହିଥିଲା ।"

ରୁ : ୨

وَاِذْ تَاَذَّنَ رَبُّكُمْ لَئِنْ شَكَرْتُمْ لَاَزِيْدَنَّكُمْ وَلَئِنْ كَفَرْتُمْ اِنَّ عَذَابِىْ لَشَدِيْدٌ ٨

୮. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ତୁମମାନଙ୍କ ପାଳନକର୍ତ୍ତା (ରସୁଲଙ୍କ ମାଧ୍ୟମରେ ଘୋଷଣା କରିଥିଲେ ଯେ (ହେ ଲୋକମାନେ !) ଯଦି ତୁମେମାନେ କୃତଜ୍ଞ ହେବ, ତେବେ ଆମେ ତୁମମାନଙ୍କୁ ଆହୁରି ଅଧିକ (କୃପା) ପ୍ରଦାନ କରିବୁ ଏବଂ ଯଦି ତୁମେମାନେ ଅକୃତଜ୍ଞ ହେବ, ତେବେ (ମନେରଖ) ଆମର ଶାସ୍ତି ନିଶ୍ଚୟ କଠୋରତର ।

وَقَالَ مُوْسٰٓى اِنْ تَكْفُرُوْٓا اَنْتُمْ وَمَنْ فِى الْاَرْضِ جَمِيْعًا ۙ فَاِنَّ اللّٰهَ لَغَنِىٌّ حَمِيْدٌ ٩

୯. ଏବଂ ମୁସା (ନିଜ ସମ୍ପ୍ରଦାୟକୁ) ଏହା (ମଧ୍ୟ) କହିଥିଲେ, "ଯଦି ତୁମେମାନେ ଓ ପୃଥିବୀରେ ବାସ କରୁଥିବା ଅନ୍ୟମାନେ ସମସ୍ତେ ଅବିଶ୍ୱାସ କର, ତେବେ (ଏଥିରେ ଅଲ୍ଲାଃଙ୍କର କୌଣସି କ୍ଷତି ହେବ ନାହିଁ, କାରଣ) ଅଲ୍ଲାଃ ହିଁ ବାସ୍ତବରେ ପର୍ଯ୍ୟାପ୍ତ (ଓ) ପ୍ରଶଂସିତ ।

اَلَمْ يَاْتِكُمْ نَبَؤُا الَّذِيْنَ مِنْ قَبْلِكُمْ قَوْمِ نُوْحٍ وَّعَادٍ

୧୦. କ'ଣ ତୁମମାନଙ୍କ ନିକଟରେ ତୁମମାନଙ୍କ ପୂର୍ବଜ ଅର୍ଥାତ୍ ନୂହ, ଆଦ ଓ ସମୁଦଙ୍କ ସମ୍ପ୍ରଦାୟ ତଥା ସେମାନଙ୍କ ପରବର୍ତ୍ତୀ (ସମ୍ପ୍ରଦାୟ)ଙ୍କ ସଂକ୍ରାନ୍ତରେ (ଲୋମହର୍ଷଣକାରୀ)

وَثَمُوْدَ ۬ۛ وَالَّذِيْنَ مِنْۢ بَعْدِهِمْ ۛؕ لَا يَعْلَمُهُمْ اِلَّا اللّٰهُ ؕ جَآءَتْهُمْ رُسُلُهُمْ بِالْبَيِّنٰتِ فَرَدُّوْۤا اَيْدِيَهُمْ فِيْۤ اَفْوَاهِهِمْ وَقَالُوْۤا اِنَّا كَفَرْنَا بِمَاۤ اُرْسِلْتُمْ بِهٖ وَاِنَّا لَفِيْ شَكٍّ مِّمَّا تَدْعُوْنَنَاۤ اِلَيْهِ مُرِيْبٍ ۝١٠

ସମାଚାର ପହଞ୍ଚି ନାହିଁ ? (ସେମାନେ ଏପରି ଧ୍ୱସ୍ତବିଧ୍ୱସ୍ତ ହେଲେ ଯେ ବର୍ତ୍ତମାନ) ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କେହି ସେମାନଙ୍କ ବିଷୟରେ ଜାଣନ୍ତି ନାହିଁ. ଯେତେବେଳେ ସେମାନଙ୍କର ରସୁଲ ସେମାନଙ୍କ ନିକଟକୁ ଆମର ସ୍ପଷ୍ଟ ନିଦର୍ଶନ ସହିତ ଆସିଲେ (ସେତେବେଳେ) ସେମାନେ ତାହାଙ୍କ କଥା ମାନିଲେ ନାହିଁ ଓ କହିଲେ, ''ଯାହା (ଅର୍ଥାତ୍ ଯେଉଁ ଶିକ୍ଷା) ସହିତ ତୁମେ ପ୍ରେରିତ ହୋଇଅଛ ତାହାକୁ ଆମେମାନେ ପ୍ରତ୍ୟାଖ୍ୟାନ କରିଅଛୁ, ଏବଂ ଯେଉଁ ବିଷୟ ପ୍ରତି ତୁମେ ଆମମାନଙ୍କୁ ଡାକୁଅଛ ସେ ସଂକ୍ରାନ୍ତରେ ଆମେମାନେ ଏକ ଉଦ୍‌ବେଗଜନକ ସନ୍ଦେହରେ ପଡିଅଛୁ ।''

قَالَتْ رُسُلُهُمْ اَفِي اللّٰهِ شَكٌّ فَاطِرِ السَّمٰوٰتِ وَالْاَرْضِ ؕ يَدْعُوْكُمْ لِيَغْفِرَ لَكُمْ مِّنْ ذُنُوْبِكُمْ وَيُؤَخِّرَكُمْ اِلٰۤى اَجَلٍ مُّسَمًّى ؕ قَالُوْۤا اِنْ اَنْتُمْ اِلَّا بَشَرٌ مِّثْلُنَا ؕ تُرِيْدُوْنَ اَنْ تَصُدُّوْنَا عَمَّا كَانَ يَعْبُدُ اٰبَآؤُنَا فَاْتُوْنَا بِسُلْطٰنٍ مُّبِيْنٍ ۝١١

୧୧. ସେମାନଙ୍କ ରସୁଲମାନେ (ସେମାନଙ୍କୁ) କହିଲେ, ''ଆକାଶ ଓ ପୃଥିବୀର ସୃଷ୍ଟିକର୍ତ୍ତା ଅଲ୍ଲାହ୍‌ଙ୍କ ସମ୍ପର୍କରେ କ'ଣ ତୁମମାନଙ୍କର କିଛି ସନ୍ଦେହ ଅଛି ? ସେ ତୁମମାନଙ୍କୁ ଏଥି ସକାଶେ ଡାକୁଛନ୍ତି ଯେ ସେ ତୁମମାନଙ୍କର କେତେକ[୧] ପାପକୁ ମୋଚନ କରିବେ ଓ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ତୁମମାନଙ୍କୁ ଅବକାଶ ଦେବେ ;'' ସେମାନେ କହିଲେ, ''ତୁମେ ତ ଆମମାନଙ୍କ ସଦୃଶ ଏକ ମାନବ ଅଟ ; ଆମମାନଙ୍କ ପିତୃ-ପିତାମହମାନେ ଯାହାଙ୍କର ଉପାସନା କରୁଥିଲେ କ'ଣ ତୁମେ ଆମମାନଙ୍କୁ ତହିଁରୁ ବାରଣ କରିବାକୁ ଇଚ୍ଛା କରୁଅଛ ? ସୁତରାଂ (ଯେଦି ଏ ବିଷୟରେ ତୁମେ ସତ୍ୟ ଉପରେ ପ୍ରତିଷ୍ଠିତ ଥାଅ ତେବେ) ଆମମାନଙ୍କ ନିକଟରେ କୌଣସି ସ୍ପଷ୍ଟ ନିଦର୍ଶନ ଉପସ୍ଥାପିତ କର ।''

قَالَتْ لَهُمْ رُسُلُهُمْ اِنْ نَّحْنُ اِلَّا بَشَرٌ مِّثْلُكُمْ وَلٰكِنَّ اللّٰهَ يَمُنُّ عَلٰى مَنْ يَّشَآءُ مِنْ عِبَادِهٖ ؕ وَمَا كَانَ لَنَاۤ اَنْ نَّاْتِيَكُمْ بِسُلْطٰنٍ اِلَّا بِاِذْنِ اللّٰهِ ؕ وَعَلَى اللّٰهِ فَلْيَتَوَكَّلِ الْمُؤْمِنُوْنَ ۝١٢

୧୨. ସେମାନଙ୍କର ରସୁଲମାନେ ସେମାନଙ୍କୁ କହିଲେ, ''(ଏହା ସତ୍ୟ ଅଟେ ଯେ) ଆମେ ତୁମମାନଙ୍କ ସଦୃଶ ମାନବ ଅଟୁ ; (ଏହା ମଧ୍ୟ ସତ୍ୟ ଅଟେ ଯେ) ଅଲ୍ଲାହ୍ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ତାହା ପ୍ରତି (ସ୍ୱତନ୍ତ୍ର) କୃପା ପ୍ରଦାନ କରିଥା'ନ୍ତି ; ଏବଂ ଅଲ୍ଲାହ୍‌ଙ୍କ ବିନା ଆଦେଶରେ ତୁମମାନଙ୍କ ନିକଟକୁ କୌଣସି ନିଦର୍ଶନ ଆଣିବା ଆମମାନଙ୍କ ଆୟତ୍ତାଧୀନ ନୁହେଁ ; ଏବଂ ବିଶ୍ୱାସକାରୀମାନେ ଅଲ୍ଲାହ୍‌ଙ୍କ ଉପରେ ହିଁ ଭରସା କରିବା ଉଚିତ ।''

---

୧. ଆୟତରେ ବ୍ୟବହୃତ 'କେତେକ' ଶବ୍ଦ ଏହା ବୁଝାଉ ନାହିଁ ଯେ ଅଲ୍ଲାହ୍ କେବଳ କେତେକ ପାପକୁ କ୍ଷମା କରନ୍ତି ଓ ଅନ୍ୟଗୁଡ଼ିକୁ କ୍ଷମା କରନ୍ତି ନାହିଁ । ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେହେତୁ କେତେକ ପାପ ସହିତ ମନୁଷ୍ୟମାନେ ସଂପୃକ୍ତ ତେଣୁ ଯେପର୍ଯ୍ୟନ୍ତ ସେମାନେ ଅନ୍ୟ ଲୋକମାନଙ୍କ ଠାରୁ କ୍ଷମାଭିକ୍ଷା ନ କରନ୍ତି ସେପର୍ଯ୍ୟନ୍ତ ସେହି ପାପକୁ କ୍ଷମା କରାଯାଏ ନାହିଁ । ଅବଶ୍ୟ ଯଦି ଅପରାଧୀ କ୍ଷମାଭିକ୍ଷା କରେ ଓ ସେହି ପାପ ପାଇଁ ଲଜ୍ଜିତ ହୁଏ ତେବେ ଅଲ୍ଲାହ୍ ସ୍ୱୟଂ ନିଜ ଭକ୍ତମାନଙ୍କ ମନରେ ପ୍ରେରଣା ଦିଅନ୍ତି ଯେ ସେମାନେ ସେମାନଙ୍କ ପ୍ରତି ଅତ୍ୟାଚାର କରିଥିବା ଲୋକମାନଙ୍କୁ କ୍ଷମା ପ୍ରଦାନ କରି ଅଲ୍ଲାହ୍‌ଙ୍କର ଅଧିକ କୃପା ଲାଭ କରନ୍ତୁ । ଏହା ଏକ ଶସ୍ତା ଓ ସୁଲଭ କାରବାର ହୋଇଥିବାରୁ ସେମାନେ ଏହାକୁ ଗ୍ରହଣ କରିବାକୁ ଆଗଭର ହୋଇଥା'ନ୍ତି ।

୧୩. "ଏବଂ ଆମେମାନେ କାହିଁକି ଅଲ୍ଲାହଙ୍କ ଉପରେ ଭରସା କରିବୁ ନାହିଁ ଯେତେବେଳେ କି ସେ ଆମମାନଙ୍କୁ ଆମମାନଙ୍କର (ଉଚିତ) ପଥ ଦର୍ଶାଇଛନ୍ତି ? ଏବଂ ତୁମେମାନେ ଆମମାନଙ୍କୁ ଯେଉଁ ଯନ୍ତ୍ରଣା ଦେଇ ଚାଲିଛ ତାହା ଆମେମାନେ ନିଶ୍ଚୟ ଧୈର୍ଯ୍ୟର ସହିତ ସହ୍ୟ କରିବୁ ; ଏବଂ ଯେଉଁମାନେ ଭରସା କରନ୍ତି ସେମାନେ ଅଲ୍ଲାହଙ୍କ ଉପରେ ହିଁ ଭରସା କରିବା ଉଚିତ ।"

وَمَا لَنَآ اَلَّا نَتَوَكَّلَ عَلَى اللّٰهِ وَقَدْ هَدٰنَا سُبُلَنَا ؕ وَلَنَصْبِرَنَّ عَلٰى مَآ اٰذَيْتُمُوْنَا ؕ وَعَلَى اللّٰهِ فَلْيَتَوَكَّلِ الْمُتَوَكِّلُوْنَ ﴿۱۳﴾

ରୁ : ୩

୧୪. ଏବଂ ଅବିଶ୍ୱାସକାରୀମାନେ ସେମାନଙ୍କ (ସମୟର) ରସୁଲମାନଙ୍କୁ କହିଲେ, "ତୁମେମାନେ ଆମମାନଙ୍କ ଧର୍ମକୁ ଫେରି ନ ଆସିଲେ ଆମେମାନେ ନିଶ୍ଚୟ ତୁମମାନଙ୍କୁ ନିଜ ଦେଶରୁ ବିତାଡିତ କରିବୁ ;" ଏଥିଯୋଗୁଁ ସେମାନଙ୍କର ପାଳନକର୍ତ୍ତା ସେମାନଙ୍କ ପ୍ରତି ଓହି ପ୍ରେରଣ କଲେ ଯେ ଆମେ ନିଶ୍ଚୟ ଏହି ଅତ୍ୟାଚାରୀମାନଙ୍କୁ ଧ୍ୱଂସ କରିଦେବୁ ।

وَقَالَ الَّذِيْنَ كَفَرُوْا لِرُسُلِهِمْ لَنُخْرِجَنَّكُمْ مِّنْ اَرْضِنَآ اَوْ لَتَعُوْدُنَّ فِيْ مِلَّتِنَا ؕ فَاَوْحٰۤى اِلَيْهِمْ رَبُّهُمْ لَنُهْلِكَنَّ الظّٰلِمِيْنَ ﴿۱۴﴾

୧୫. ଏବଂ (ସେମାନଙ୍କୁ ଧ୍ୱଂସ କରି ଆମେ) ସେମାନଙ୍କ ପରେ ନିଶ୍ଚୟ ତୁମମାନଙ୍କୁ ଏହି ଭୂପୃଷ୍ଠରେ ଅବସ୍ଥାପିତ କରିବୁ ; ଏହା (ଅର୍ଥାତ୍ ଏହି ପ୍ରତିଶ୍ରୁତି) ସେମାନଙ୍କ ପାଇଁ ଅଭିପ୍ରେତ ଯେଉଁମାନେ ଆମର ପଦସ୍ଥାନକୁ ଭୟ କରନ୍ତି ଓ ଆମର ଚେତାବନୀ ପ୍ରତି ଭୀତତ୍ରସ୍ତ ହୁଅନ୍ତି ।

وَلَنُسْكِنَنَّكُمُ الْاَرْضَ مِنْۢ بَعْدِهِمْ ؕ ذٰلِكَ لِمَنْ خَافَ مَقَامِيْ وَخَافَ وَعِيْدِ ﴿۱۵﴾

୧୬. ଏବଂ ସେମାନେ (ନିଜ) ବିଜୟ ସକାଶେ ପ୍ରାର୍ଥନା କଲେ ଓ (ପରିଣାମ ସ୍ୱରୂପ) ପ୍ରତ୍ୟେକ ଉଦ୍ଧତ ଓ (ସତ୍ୟର) ବିରୁଦ୍ଧାଚାରୀ ବିଫଳ ହେଲେ ।

وَاسْتَفْتَحُوْا وَخَابَ كُلُّ جَبَّارٍ عَنِيْدٍ ﴿۱۶﴾

୧୭. ପୁନଶ୍ଚ (ଏହି ପାର୍ଥିବ ଶାସ୍ତି ପରେ) ତାହା ପାଇଁ ନରକ ଅଛି ଏବଂ (ସେଠାରେ) ତାହାକୁ ଉତ୍ତପ୍ତ ଜଳ ପାନ କରିବାକୁ ଦିଆଯିବ ।

مِّنْ وَّرَآئِهٖ جَهَنَّمُ وَيُسْقٰى مِنْ مَّآءٍ صَدِيْدٍ ﴿۱۷﴾

୧୮. ସେ ତାହାକୁ ଅଳ୍ପ ଅଳ୍ପ କରି ପାନ କରିବ ଓ ତାହାକୁ ସହଜରେ ଢୋକି ପାରିବ ନାହିଁ ; ଏବଂ ପ୍ରତ୍ୟେକ ପାର୍ଶ୍ୱରୁ ତାହା ନିକଟରେ ମୃତ୍ୟୁ ଉପସ୍ଥିତ ହେବ, ଅଥଚ ସେ ମରିବ ନାହିଁ ; ଏବଂ ଏହା ବ୍ୟତୀତ ମଧ୍ୟ ତାହା ପାଇଁ ଏକ କଠୋର ଶାସ୍ତି ରହିଅଛି ।

يَّتَجَرَّعُهٗ وَلَا يَكَادُ يُسِيْغُهٗ وَيَاْتِيْهِ الْمَوْتُ مِنْ كُلِّ مَكَانٍ وَّمَا هُوَ بِمَيِّتٍ ؕ وَمِنْ وَّرَآئِهٖ عَذَابٌ غَلِيْظٌ ﴿۱۸﴾

مَثَلُ الَّذِيْنَ كَفَرُوْا بِرَبِّهِمْ اَعْمَالُهُمْ كَرَمَادِ ٱشْتَدَّتْ بِهِ الرِّيْحُ فِيْ يَوْمٍ عَاصِفٍ ۖ لَا يَقْدِرُوْنَ مِمَّا كَسَبُوْا عَلٰى شَيْءٍ ۚ ذٰلِكَ هُوَ الضَّلٰلُ الْبَعِيْدُ ⑲

୧୯. ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ (ଆଦେଶ)ର ଅମାନ୍ୟ କରିଛନ୍ତି ସେମାନଙ୍କ କର୍ମ ଏପରି ଭସ୍ମ ସଦୃଶ ଅଟେ ଯାହାକୁ ଏକ ବାତ୍ୟାକାଳୀନ ବତାସ ଜୋରରେ ଉଡାଇ ନିଏ ; ସେମାନେ ଯାହାକିଛି ଅର୍ଜନ କରିଛନ୍ତି ତାହାର କୌଣସି ଅଂଶ ସେମାନଙ୍କର ହସ୍ତଗତ ହେବ ନାହିଁ ; (ବାସ୍ତବିକ) ଏହା ହିଁ ସମ୍ପୂର୍ଣ୍ଣ ନୈରାଶ୍ୟ ଅଟେ ।

اَلَمْ تَرَ اَنَّ اللّٰهَ خَلَقَ السَّمٰوٰتِ وَالْاَرْضَ بِالْحَقِّ ۚ اِنْ يَّشَاْ يُذْهِبْكُمْ وَيَاْتِ بِخَلْقٍ جَدِيْدٍ ⑳

୨୦. କ'ଣ ତୁମେ ଲକ୍ଷ୍ୟ କରୁ ନାହଁ ଯେ ଅଲ୍ଲାହ ଆକାଶ ଓ ପୃଥିବୀକୁ ସତ୍ୟ ଓ ତତ୍ତ୍ୱ ଅନୁସାରେ ସୃଷ୍ଟି କରିଛନ୍ତି ; ଯଦି ସେ ଇଚ୍ଛା କରିବେ, ତେବେ ତୁମମାନଙ୍କୁ ବିନାଶ କରିବେ ଓ (ତୁମମାନଙ୍କ ସ୍ଥାନରେ) ଏକ ନୂତନ (ମାନବ-ସମାଜ) ସୃଷ୍ଟି କରିବେ ।

وَّمَا ذٰلِكَ عَلَى اللّٰهِ بِعَزِيْزٍ ㉑

୨୧. ଏବଂ ଏହା ଅଲ୍ଲାହଙ୍କ ପକ୍ଷରେ (ଆଦୌ) କଷ୍ଟକର ନୁହେଁ ।

وَبَرَزُوْا لِلّٰهِ جَمِيْعًا فَقَالَ الضُّعَفٰٓؤُا لِلَّذِيْنَ اسْتَكْبَرُوْٓا اِنَّا كُنَّا لَكُمْ تَبَعًا فَهَلْ اَنْتُمْ مُّغْنُوْنَ عَنَّا مِنْ عَذَابِ اللّٰهِ مِنْ شَيْءٍ ۚ قَالُوْا لَوْ هَدٰىنَا اللّٰهُ لَهَدَيْنٰكُمْ ۚ سَوَآءٌ عَلَيْنَآ اَجَزِعْنَآ اَمْ صَبَرْنَا مَا لَنَا مِنْ مَّحِيْصٍ ㉒

୨୨. ଏବଂ ସେମାନେ ସମସ୍ତେ ଅଲ୍ଲାହଙ୍କ ସମ୍ମୁଖରେ ଉପସ୍ଥିତ ହେବେ ; ସେତେବେଳେ ସେମାନଙ୍କ ମଧ୍ୟରୁ ଦୁର୍ବଳ (ବ୍ୟକ୍ତି)ମାନେ ଅହଙ୍କାରୀ (ବ୍ୟକ୍ତି)ମାନଙ୍କୁ କହିବେ, "ଆମେମାନେ ତ ତୁମମାନଙ୍କର ଅନୁଗାମୀ ଥିଲୁ ; ସୁତରାଂ କ'ଣ ବର୍ତ୍ତମାନ ତୁମେମାନେ ଆମମାନଙ୍କ ପାଇଁ ଅଲ୍ଲାହଙ୍କ ଶାସ୍ତିରୁ କିଛି ଅଂଶ ଦୂରୀଭୂତ କରି ପାରିବ ?" ସେମାନେ କହିବେ, "ଯଦି ଅଲ୍ଲାହ ଆମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇଥା'ନ୍ତେ, ତେବେ ଆମେମାନେ ତୁମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇଥା'ନ୍ତୁ ; (କିନ୍ତୁ ଏହି ପରିସ୍ଥିତିରେ) ଆମମାନଙ୍କର ଅଧୈର୍ଯ୍ୟ ହେବା ବା ଧୈର୍ଯ୍ୟ ଧରିବା, (ଉଭୟ) ଆମମାନଙ୍କ ପକ୍ଷରେ ସମାନ ; ଆମମାନଙ୍କ ପକ୍ଷରେ ରକ୍ଷା ପାଇବା ପାଇଁ କୌଣସି ପନ୍ଥା ନାହିଁ ।"

ରୁ : ୪

وَقَالَ الشَّيْطٰنُ لَمَّا قُضِيَ الْاَمْرُ اِنَّ اللّٰهَ وَعَدَكُمْ وَعْدَ الْحَقِّ وَوَعَدْتُّكُمْ فَاَخْلَفْتُكُمْ ۖ وَمَا كَانَ لِيَ عَلَيْكُمْ مِّنْ سُلْطٰنٍ اِلَّآ اَنْ دَعَوْتُكُمْ فَاسْتَجَبْتُمْ لِيْ ۚ

୨୩. ଏବଂ ଯେତେବେଳେ ସମସ୍ତ ବିଷୟ ନିଷ୍ପତ୍ତି ହୋଇଯିବ, ସେତେବେଳେ ସଇତାନ (ଲୋକମାନଙ୍କୁ) କହିବ, "ଅଲ୍ଲାହ ନିଶ୍ଚୟ ତୁମମାନଙ୍କ ସହିତ ଦୃଢ଼ ଅଙ୍ଗୀକାର କରିଥିଲେ, ଏବଂ ମୁଁ (ମଧ୍ୟ) ତୁମମାନଙ୍କ ସହିତ (ଏକ) ଅଙ୍ଗୀକାର କରିଥିଲି, କିନ୍ତୁ ମୁଁ ତୁମମାନଙ୍କ ପ୍ରତି ତାହା ପାଳନ କରି ନାହିଁ ; ଏବଂ ମୋର ତୁମମାନଙ୍କ ଉପରେ କୌଣସି ଅଧିକାର ନ ଥିଲା ; ଅବଶ୍ୟ ମୁଁ ତୁମମାନଙ୍କୁ ମୋ ନିକଟକୁ ଡାକିଥିଲି ଓ ତୁମେମାନେ ମୋ କଥା ମାନି ଯାଇଥିଲ ; ସୁତରାଂ

فَلَا تَلُوْمُوْنِيْ وَلُوْمُوْٓا اَنْفُسَكُمْ مَآ اَنَا بِمُصْرِخِكُمْ وَمَآ اَنْتُمْ بِمُصْرِخِيَّ اِنِّيْ كَفَرْتُ بِمَآ اَشْرَكْتُمُوْنِ مِنْ قَبْلُ اِنَّ الظّٰلِمِيْنَ لَهُمْ عَذَابٌ اَلِيْمٌ ﴿٢٣﴾

ତୁମେମାନେ (ବର୍ତ୍ତମାନ) ମୋତେ ନିନ୍ଦା କର ନାହିଁ, ବରଂ ନିଜକୁ ନିନ୍ଦା କର ; (ବର୍ତ୍ତମାନ) ମୁଁ ତୁମମାନଙ୍କର ଅଭିଯୋଗ ଶୁଣି ପାରିବି ନାହିଁ ; କି ତୁମେମାନେ ମୋ ଅଭିଯୋଗ ଶୁଣି ପାରିବ ନାହିଁ ; ତୁମେମାନେ ଯେ ମୋତେ (ଅଲ୍ଲାହଙ୍କ ସହିତ) ସମକକ୍ଷ ସ୍ଥିର କରିଥିଲ, ତୁମମାନଙ୍କର ଏ ବିଷୟକୁ ମୁଁ ପୂର୍ବରୁ ଅସ୍ୱୀକାର କରି ସାରିଛି ;" (ଏ ସଂକ୍ରାନ୍ତରେ ଅଲ୍ଲାହ କହିଲେ ଏ ପ୍ରକାର ମୁସରିକ) ଅତ୍ୟାଚାରୀମାନଙ୍କ ସକାଶେ ନିଶ୍ଚୟ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

وَاُدْخِلَ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَا بِاِذْنِ رَبِّهِمْ تَحِيَّتُهُمْ فِيْهَا سَلٰمٌ ﴿٢٤﴾

୨୪. ଏବଂ ଯେଉଁମାନେ ବିଶ୍ୱାସ କରିଥା'ନ୍ତି ଏବଂ ସତ୍ (ଓ ଯଥାର୍ଥ) କର୍ମ କରିଥା'ନ୍ତି ସେମାନଙ୍କୁ ସେମାନଙ୍କ ପାଳନକର୍ତ୍ତାଙ୍କ ଆଦେଶ ଅନୁସାରେ ଏପରି ବୈକୁଣ୍ଠରେ ପ୍ରବିଷ୍ଟ କରାଯିବ ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ, ଏବଂ ସେମାନେ ସେଠାରେ ସର୍ବଦା ବାସ କରିବେ ; ସେଠାରେ ସେମାନଙ୍କର (ପରସ୍ପର ପାଇଁ ଏହି) ପ୍ରାର୍ଥନା ହେବ : "(ତୁମ ପ୍ରତି) ଶାନ୍ତି ହେଉ ।"

اَلَمْ تَرَ كَيْفَ ضَرَبَ اللّٰهُ مَثَلًا كَلِمَةً طَيِّبَةً كَشَجَرَةٍ طَيِّبَةٍ اَصْلُهَا ثَابِتٌ وَّفَرْعُهَا فِي السَّمَآءِ ﴿٢٥﴾

୨୫. କ'ଣ ତୁମେ ଦେଖି ନାହିଁ ଯେ ଅଲ୍ଲାହ କିପରି ଏକ ଉତ୍ତମ ବାଣୀ ସଂକ୍ରାନ୍ତରେ ପ୍ରକୃତ ଘଟଣା ବର୍ଣ୍ଣନା କରିଛନ୍ତି ? ତାହା ଏକ ଉତ୍ତମ ବୃକ୍ଷ ସଦୃଶ ଯାହାର ଚେର (ଦୃଢ଼ ଭାବରେ) ସୁପ୍ରତିଷ୍ଠିତ ଓ ଯାହାର (ପ୍ରତ୍ୟେକ) ଶାଖା ଆକାଶର ଉଚ୍ଚତା ପର୍ଯ୍ୟନ୍ତ (ଲମ୍ବି ଯାଇ) ଅଛି ।

تُؤْتِيْٓ اُكُلَهَا كُلَّ حِيْنٍ بِاِذْنِ رَبِّهَا وَيَضْرِبُ اللّٰهُ الْاَمْثَالَ لِلنَّاسِ لَعَلَّهُمْ يَتَذَكَّرُوْنَ ﴿٢٦﴾

୨୬. ତାହା ନିଜ ପାଳନକର୍ତ୍ତାଙ୍କ ଆଦେଶ ଅନୁସାରେ ସର୍ବଦା ନିଜର (ସଦ୍ୟ)[୧] ଫଳ ପ୍ରଦାନ କରୁଥାଏ ; ଏବଂ ଅଲ୍ଲାହ ଲୋକମାନଙ୍କ ପାଇଁ (ସେମାନଙ୍କର ଆବଶ୍ୟକ) ସମସ୍ତ ବିଷୟ ବର୍ଣ୍ଣନା କରନ୍ତି ଯେପରିକି ସେମାନେ ଶିକ୍ଷା ଲାଭ କରିବେ ।

وَمَثَلُ كَلِمَةٍ خَبِيْثَةٍ كَشَجَرَةٍ خَبِيْثَةِ اِجْتُثَّتْ مِنْ فَوْقِ الْاَرْضِ مَا لَهَا مِنْ قَرَارٍ ﴿٢٧﴾

୨୭. ଏବଂ ମନ୍ଦବାଣୀର ଦୃଷ୍ଟାନ୍ତ ମନ୍ଦ ବୃକ୍ଷ ସଦୃଶ ଯାହାକୁ ଭୂମିରୁ ଉପାଡି[୨] (ଫିଙ୍ଗି) ଦିଆ ଯାଇଥାଏ ଓ ଯାହାର ସ୍ଥାୟିତ୍ୱ ନ ଥାଏ ।

---

୧. ଏହି ଆୟତରେ ଇସଲାମ ଧର୍ମକୁ ଏକ ପବିତ୍ର ବୃକ୍ଷ ରୂପେ ତୁଳନା କରାଯାଇ କୁହାଯାଇଛି ଯେ ସେଥିରେ ସର୍ବଦା ଧର୍ମପ୍ରାଣ ବ୍ୟକ୍ତିମାନେ ଜନ୍ମ ଗ୍ରହଣ କରୁଥିବେ ଅଥଚ ଅନ୍ୟାନ୍ୟ ଧର୍ମରେ ଏହା ଆଉ ଘଟିବ ନାହିଁ କାରଣ ସେଗୁଡିକ ଦୁଷ୍ଟବୃକ୍ଷରେ ପରିଣତ ହୋଇଯାଇଛନ୍ତି ଫଳରେ ଅଲ୍ଲାହଙ୍କ ସହିତ ସେମାନଙ୍କ ସଂପର୍କ ସମାପ୍ତ ହୋଇଛି ।

୨. ଅର୍ଥାତ୍ ପ୍ରାକୃତିକ ଖାଦ୍ୟ ମିଳିବା ଶେଷ ହୋଇଯାଇଥିବାରୁ ତାହା କ୍ରମେ କ୍ରମେ ଶୁଖିଯାଉଛି ।

يُثَبِّتُ اللّٰهُ الَّذِيْنَ اٰمَنُوْا بِالْقَوْلِ الثَّابِتِ فِي الْحَيٰوةِ الدُّنْيَا وَفِي الْاٰخِرَةِ ۚ وَيُضِلُّ اللّٰهُ الظّٰلِمِيْنَ ۙ وَيَفْعَلُ اللّٰهُ مَا يَشَآءُ ۝٢٨

୨୮. ଯେଉଁମାନେ ବିଶ୍ୱାସ କରିଛନ୍ତି ସେମାନଙ୍କୁ ଅଲ୍ଲାହ୍ ଏହି ସୁପ୍ରତିଷ୍ଠିତ ବାଣୀ ମାଧ୍ୟମରେ ଇହକାଳରେ ତଥା ପରକାଳରେ ଦୃଢ଼ତା ପ୍ରଦାନ କରନ୍ତି ଏବଂ ଅଲ୍ଲାହ୍ ଅତ୍ୟାଚାରୀମାନଙ୍କୁ ଧ୍ୱଂସ କରନ୍ତି ଓ ଅଲ୍ଲାହ୍ ଯାହା ଇଚ୍ଛା କରନ୍ତି ତାହା କରିଥା'ନ୍ତି ।

ରୁ : ୫

اَلَمْ تَرَ اِلَى الَّذِيْنَ بَدَّلُوْا نِعْمَتَ اللّٰهِ كُفْرًا وَّاَحَلُّوْا قَوْمَهُمْ دَارَ الْبَوَارِ ۝٢٩

୨୯. କ'ଣ ତୁମେ ସେମାନଙ୍କୁ (ଅର୍ଥାତ୍ ସେମାନଙ୍କ ଅବସ୍ଥାକୁ ଧ୍ୟାନ ଦେଇ) ଦେଖୁ ନାହିଁ ଯେଉଁମାନେ ଅକୃତଜ୍ଞତାବଶତଃ ଅଲ୍ଲାହ୍‌ଙ୍କର କୃପାକୁ ପରିବର୍ତ୍ତନ କରିଦେଲେ ଏବଂ (ନିଜେ ଧ୍ୱଂସ ହେବା ସଙ୍ଗେ ସଙ୍ଗେ) ନିଜ ସମ୍ପ୍ରଦାୟକୁ (ମଧ୍ୟ) ଧ୍ୱଂସ ଗୃହ ମଧ୍ୟକୁ ନିକ୍ଷେପ କଲେ ?

جَهَنَّمَ ۚ يَصْلَوْنَهَا ۚ وَبِئْسَ الْقَرَارُ ۝٣٠

୩୦. ଅର୍ଥାତ୍ ନରକ ମଧ୍ୟକୁ ; ସେମାନେ ସେଠାରେ ପ୍ରବେଶ କରିବେ ; ଏବଂ (ବାସ କରିବା ପାଇଁ) ତାହା ଅତ୍ୟନ୍ତ ମନ୍ଦସ୍ଥାନ ଅଟେ ।

وَجَعَلُوْا لِلّٰهِ اَنْدَادًا لِّيُضِلُّوْا عَنْ سَبِيْلِهٖ ۗ قُلْ تَمَتَّعُوْا فَاِنَّ مَصِيْرَكُمْ اِلَى النَّارِ ۝٣١

୩୧. ଏବଂ ସେମାନେ ଅଲ୍ଲାହ୍‌ଙ୍କର ସମମର୍ଯ୍ୟାଦା-ସମ୍ପନ୍ନ ସମକକ୍ଷ (ଉପାସ୍ୟ) ସ୍ଥିର କରିଛନ୍ତି ଯଦ୍ୱାରା (ସେମାନେ ଲୋକମାନଙ୍କୁ) ତାହାଙ୍କ ପଥରୁ ବିଭ୍ରାନ୍ତ କରିବେ ; (ତୁମେ) କୁହ, ''(କିଛି ଦିନ) ପାର୍ଥିବ ଲାଭ ଭୋଗ କର ; ତା'ପରେ ନିଶ୍ଚୟ ତୁମମାନଙ୍କୁ (ନରକ) ଅଗ୍ନି ଆଡ଼କୁ ଅଗ୍ରସର ହେବାକୁ ପଡ଼ିବ ।''

قُلْ لِّعِبَادِيَ الَّذِيْنَ اٰمَنُوْا يُقِيْمُوا الصَّلٰوةَ وَيُنْفِقُوْا مِمَّا رَزَقْنٰهُمْ سِرًّا وَّعَلَانِيَةً مِّنْ قَبْلِ اَنْ يَّاْتِيَ يَوْمٌ لَّا بَيْعٌ فِيْهِ وَلَا خِلٰلٌ ۝٣٢

୩୨. (ହେ ରସୁଲ !) ତୁମେ ଆମର ବିଶ୍ୱାସକାରୀ ଭକ୍ତମାନଙ୍କୁ କୁହ, ''ସେହି ଦିନର ଆଗମନ ପୂର୍ବରୁ, ଯେଉଁଥିରେ କୌଣସି କ୍ରୟବିକ୍ରୟ ହେବ ନାହିଁ କି କୌଣସି ବନ୍ଧୁତା ହେବ ନାହିଁ, ସେମାନେ ଉତ୍ତମରୂପେ ନମାଜ ପାଠ କରନ୍ତୁ ଓ ସେମାନଙ୍କୁ ଆମେ ଯାହା କିଛି ପ୍ରଦାନ କରିଅଛୁ ତନ୍ମଧ୍ୟରୁ ଗୋପନରେ ଓ ପ୍ରକାଶ୍ୟରେ (ଆମ ଉଦ୍ଦେଶ୍ୟରେ) ବ୍ୟୟ କରନ୍ତୁ ।''

اَللّٰهُ الَّذِيْ خَلَقَ السَّمٰوٰتِ وَالْاَرْضَ وَاَنْزَلَ مِنَ السَّمَآءِ مَآءً فَاَخْرَجَ بِهٖ مِنَ الثَّمَرٰتِ رِزْقًا لَّكُمْ ۚ وَسَخَّرَ لَكُمُ الْفُلْكَ لِتَجْرِيَ فِي الْبَحْرِ بِاَمْرِهٖ ۚ وَسَخَّرَ لَكُمُ الْاَنْهٰرَ ۝٣٣

୩୩. ସେ ହିଁ ଅଲ୍ଲାହ୍ ଯେ କି ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ; ଏବଂ ମେଘରୁ ଜଳ ବର୍ଷଣ କରି ତଦ୍ୱାରା ତୁମମାନଙ୍କ ଜୀବନଧାରଣ ପାଇଁ ଫଳମାନ ଉପୁଜାଇଛନ୍ତି ; ଏବଂ ସେ ନୌକାମାନଙ୍କୁ (ପରିଚାଳିତ କରୁଥିବା ବାୟୁକୁ) ତୁମମାନଙ୍କ ସେବାରେ ବିନା ପାରିତୋଷିକରେ ନିଯୁକ୍ତ କରିଛନ୍ତି ଯଦ୍ୱାରା ସେଗୁଡ଼ିକ ତାହାଙ୍କ ଆଦେଶ ଅନୁସାରେ ସମୁଦ୍ରରେ ଚାଳିତ ହେବେ, ଏବଂ ସେ (ସେହିପରି) ନଦୀମାନଙ୍କୁ (ମଧ୍ୟ) ବିନା ପାରିତୋଷିକରେ ତୁମମାନଙ୍କ ସେବାରେ ନିଯୁକ୍ତ କରିଛନ୍ତି ।

وَسَخَّرَ لَكُمُ الشَّمْسَ وَالْقَمَرَ دَآئِبَيْنِ ۚ وَسَخَّرَ لَكُمُ الَّيْلَ وَالنَّهَارَ ۝٣٤

୩୪. ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ (ମଧ୍ୟ) ତୁମମାନଙ୍କ ସେବାରେ ନିଯୁକ୍ତ କରିଛନ୍ତି ଏବଂ ଉଭୟେ ନିରନ୍ତର ଭାବରେ (ନିଜର) କାର୍ଯ୍ୟ ସମ୍ପାଦନ କରୁଛନ୍ତି ; ଏବଂ ସେ ରାତ୍ରି ଓ ଦିନକୁ (ମଧ୍ୟ) ବିନା ପାରିତୋଷିକରେ ତୁମମାନଙ୍କ ସେବାରେ ନିଯୁକ୍ତ କରିଛନ୍ତି ।

وَاٰتٰكُمْ مِّنْ كُلِّ مَا سَاَلْتُمُوْهُ ۚ وَاِنْ تَعُدُّوْا نِعْمَتَ اللّٰهِ لَا تُحْصُوْهَا ۚ اِنَّ الْاِنْسَانَ لَظَلُوْمٌ كَفَّارٌ ۝٣٥

୩୫. ଏବଂ ତୁମେମାନେ ତାହାଙ୍କ ଠାରୁ ଯାହା କିଛି ଭିକ୍ଷା କରିଅଛ ସେ ସବୁ ତୁମମାନଙ୍କୁ ପ୍ରଦାନ କରିଛନ୍ତି ; ଏବଂ ଯଦି ତୁମେମାନେ ଅଲ୍ଲାହଙ୍କର କୃପାକୁ ଗଣନା କରିବ, ତେବେ ତା'ର ସଂଖ୍ୟା ନିରୂପଣ କରି ପାରିବ ନାହିଁ ; ବାସ୍ତବରେ ମଣିଷ ହି ଅତ୍ୟନ୍ତ ଅତ୍ୟାଚାରୀ (ଓ) କୃତଘ୍ନ ।

ରୁ : ୬

وَاِذْ قَالَ اِبْرٰهِيْمُ رَبِّ اجْعَلْ هٰذَا الْبَلَدَ اٰمِنًا وَّاجْنُبْنِيْ وَبَنِيَّ اَنْ نَّعْبُدَ الْاَصْنَامَ ۝٣٦

୩୬. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଇବ୍ରାହିମ (ପ୍ରାର୍ଥନା– ପୂର୍ବକ) କହିଥିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଏହି ସହରକୁ (ଅର୍ଥାତ୍ ମକ୍କାକୁ) ଶାନ୍ତି ପ୍ରଦାୟକ (ସ୍ଥାନ) କରିଦିଅ, ଏବଂ ଆମ୍ଭଙ୍କୁ ଓ ଆମ୍ଭର ସନ୍ତାନମାନଙ୍କୁ ମୂର୍ତ୍ତି ପୂଜାରୁ ରକ୍ଷାକର ।"

رَبِّ اِنَّهُنَّ اَضْلَلْنَ كَثِيْرًا مِّنَ النَّاسِ ۚ فَمَنْ تَبِعَنِيْ فَاِنَّهٗ مِنِّيْ ۚ وَمَنْ عَصَانِيْ فَاِنَّكَ غَفُوْرٌ رَّحِيْمٌ ۝٣٧

୩୭. "ହେ ଆମ୍ଭର ପାଳନକର୍ତ୍ତା ! ବାସ୍ତବରେ ସେମାନେ (ଅର୍ଥାତ୍ ଏହି ମୂର୍ତ୍ତିମାନେ) ଅନେକ ଲୋକଙ୍କୁ ପଥଭ୍ରଷ୍ଟ କରିଛନ୍ତି ; ସୁତରାଂ ଯେ ଆମ୍ଭର ଅନୁସରଣ କରିବ, ସେ ହି ଆମ୍ଭର ; ଓ ଯେ ଆମ୍ଭଙ୍କୁ ଅମାନ୍ୟ କରିବ (ତା' ସଂକ୍ରାନ୍ତରେ ଆମ୍ଭର ଗୁହାରି ହେଉଛି ଯେ ତୁମେ ତାହାକୁ କ୍ଷମା ପ୍ରଦାନ କର, କାରଣ) ତୁମେ ହି ବାସ୍ତବିକ ଅତ୍ୟନ୍ତ କ୍ଷମାଶୀଳ (ଓ) କରୁଣାମୟ ।"

رَبَّنَآ اِنِّيْٓ اَسْكَنْتُ مِنْ ذُرِّيَّتِيْ بِوَادٍ غَيْرِ ذِيْ زَرْعٍ عِنْدَ بَيْتِكَ الْمُحَرَّمِ ۙ رَبَّنَا لِيُقِيْمُوا الصَّلٰوةَ فَاجْعَلْ اَفْئِدَةً مِّنَ النَّاسِ تَهْوِيْٓ اِلَيْهِمْ وَارْزُقْهُمْ مِّنَ الثَّمَرٰتِ لَعَلَّهُمْ يَشْكُرُوْنَ ۝٣٨

୩୮. "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭେ ନିଜ ସନ୍ତାନମାନଙ୍କ ମଧ୍ୟରୁ କେତେକଙ୍କୁ ତୁମ୍ଭର ପବିତ୍ର ଗୃହ ନିକଟରେ ଏକ ଅନାବାଦୀ ଉପତ୍ୟକାରେ ଅବସ୍ଥାପିତ କରିଅଛୁ ; ହେ ଆମ୍ଭର ପାଳନକର୍ତ୍ତା ! (ଆମ୍ଭେ ଏଥିଯୋଗୁଁ ଏହିପରି କରିଅଛୁ) ଯଦ୍ଦ୍ୱାରା ସେମାନେ ସୁଚାରୁରୂପେ ନମାଜ ପାଠ କରିବେ ; ସୁତରାଂ ତୁମେ ଲୋକମାନଙ୍କ ହୃଦୟକୁ ସେମାନଙ୍କ ପ୍ରତି ଆନତ କର ଏବଂ ସେମାନଙ୍କୁ ବିଭିନ୍ନ ପ୍ରକାର ଫଳ ମାଧ୍ୟମରେ ଜୀବିକା ପ୍ରଦାନ କର ଯଦ୍ଦ୍ୱାରା ସେମାନେ (ସର୍ବଦା ତୁମ୍ଭ ନିକଟରେ) କୃତଜ୍ଞ ରହିବେ ।"

୩୯. "ହେ ଆମର ପାଳନକର୍ତ୍ତା ! ଯାହାକିଛି ଆମେମାନେ ଗୋପନ ରଖୁ ଓ ଯାହାକିଛି ଆମେମାନେ ପ୍ରକାଶ କରୁ ; ତୁମେ ନିଶ୍ଚୟ ସେ ସବୁ ଜାଣ, ଏବଂ ଆକାଶ ଓ ପୃଥିବୀର କୌଣସି ବିଷୟ ଅଲ୍ଲାହ୍‌ଙ୍କ ନିକଟରେ ଲୁକ୍କାୟିତ ରହିପାରେ ନାହିଁ ।"

رَبَّنَآ إِنَّكَ تَعْلَمُ مَا نُخْفِي وَمَا نُعْلِنُ ۗ وَمَا يَخْفَىٰ عَلَى اللَّهِ مِن شَيْءٍ فِي الْأَرْضِ وَلَا فِي السَّمَآءِ

୪୦. "ସମସ୍ତ (ପ୍ରକାର) ପ୍ରଶଂସାର ପାତ୍ର ଅଲ୍ଲାହ୍ ହିଁ ଅଟନ୍ତି ଯେ କି (ଆମର) ବାର୍ଦ୍ଧକ୍ୟ ସତ୍ତ୍ୱେ ଆମକୁ ଇସମାଇଲ ଓ ଇସହାକ (ନାମକ ଦୁଇଗୋଟି ପୁତ୍ର) ପ୍ରଦାନ କରିଛନ୍ତି ; ନିଃସନ୍ଦେହରେ ଆମର ପାଳନକର୍ତ୍ତା ପ୍ରାର୍ଥନା ଶ୍ରବଣକାରୀ ।"

الْحَمْدُ لِلَّهِ الَّذِي وَهَبَ لِي عَلَى الْكِبَرِ إِسْمَاعِيلَ وَإِسْحَاقَ ۚ إِنَّ رَبِّي لَسَمِيعُ الدُّعَآءِ

୪୧. "ହେ ଆମର ପାଳନକର୍ତ୍ତା ! ଆମକୁ ଓ ଆମର ସନ୍ତାନମାନଙ୍କୁ (ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ) ସୁଚାରୁରୂପେ ନମାଜ ସମ୍ପାଦନକାରୀ କର ; ହେ ଆମର ପାଳନକର୍ତ୍ତା ! (ଆମମାନଙ୍କ ପ୍ରତି କୃପା କର ଏବଂ) ଆମର ପ୍ରାର୍ଥନା ଗ୍ରହଣ କର ।"

رَبِّ اجْعَلْنِي مُقِيمَ الصَّلَوٰةِ وَمِن ذُرِّيَّتِي ۚ رَبَّنَا وَتَقَبَّلْ دُعَآءِ

୪୨. "ହେ ଆମର ପାଳନକର୍ତ୍ତା ! ଯେଉଁଦିନ ହିସାବ ନିଆଯିବ ସେ ଦିନ ଆମକୁ ଆମର ପିତାମାତାଙ୍କୁ ତଥା ସମସ୍ତ ବିଶ୍ୱାସକାରୀଙ୍କୁ କ୍ଷମା ପ୍ରଦାନ କର ।"

رَبَّنَا اغْفِرْ لِي وَلِوَالِدَيَّ وَلِلْمُؤْمِنِينَ يَوْمَ يَقُومُ الْحِسَابُ

ରୁ : ୭

୪୩. ଏବଂ ଏହି (ମକ୍କାବାସୀ) ଅତ୍ୟାଚାରୀମାନେ ଯାହା କିଛି କରୁଛନ୍ତି ଏ ବିଷୟରେ ତୁମେ ଅଲ୍ଲାହ୍‌ଙ୍କୁ କଦାପି ଅଜ୍ଞ ମନେ କର ନାହିଁ ; ସେ ସେମାନଙ୍କୁ କେବଳ ସେହି ଦିନ ପର୍ଯ୍ୟନ୍ତ ଅବକାଶ ଦେଇଛନ୍ତି ଯେଉଁ ଦିନ (ସେମାନଙ୍କର) ଚକ୍ଷୁ (ବିସ୍ମୟରେ) ବିସ୍ଫାରିତ ହୋଇ ରହିବ ।

وَلَا تَحْسَبَنَّ اللَّهَ غَافِلًا عَمَّا يَعْمَلُ الظَّالِمُونَ ۚ إِنَّمَا يُؤَخِّرُهُمْ لِيَوْمٍ تَشْخَصُ فِيهِ الْأَبْصَارُ

୪୪. ସେମାନେ ନିଜ ମସ୍ତକ ଉତ୍ତୋଳନ କରି ଭୟରେ ଦୌଡ଼ିବେ, ଏବଂ ନିଜ ପ୍ରତି ସେମାନଙ୍କର ଦୃଷ୍ଟି ଫେରିବ ନାହିଁ, (ଏବଂ) ସେମାନଙ୍କର ଅନ୍ତର (ଆଶା) ଶୂନ୍ୟ ହେବ ।

مُهْطِعِينَ مُقْنِعِي رُءُوسِهِمْ لَا يَرْتَدُّ إِلَيْهِمْ طَرْفُهُمْ ۖ وَأَفْئِدَتُهُمْ هَوَآءٌ

୪୫. ଏବଂ ତୁମେ ସେମାନଙ୍କୁ ସେହିଦିନ ସଂକ୍ରାନ୍ତରେ ସତର୍କ କରାଅ ଯେଉଁଦିନ ସେମାନଙ୍କୁ ଉକ୍ତ (ପ୍ରତିଶ୍ରୁତ) ଶାସ୍ତି କବଳିତ କରିବ, ଏବଂ (ସେତେବେଳେ) ଅତ୍ୟାଚାରୀମାନେ କହିବେ, "ହେ ଆମର ପାଳନକର୍ତ୍ତା ! ଆମମାନଙ୍କୁ କିଛି କାଳ ପାଇଁ ଅବକାଶ ପ୍ରଦାନ କର ; ଆମେମାନେ ତୁମ ତରଫରୁ ଆସିଥିବା ଆମନ୍ତ୍ରଣକୁ ଗ୍ରହଣ କରିବୁ ଓ (ତୁମ) ରସୁଲମାନଙ୍କର ଅନୁସରଣ କରିବୁ ;" (ଯାହାର ସେମାନେ ଉତ୍ତର ପାଇବେ) "କ'ଣ ତୁମେମାନେ ପୂର୍ବରୁ ଶପଥ କରି ନଥିଲ ଯେ ତୁମମାନଙ୍କର କୌଣସି ପତନ (ହେବ) ନାହିଁ ?"

وَأَنذِرِ النَّاسَ يَوْمَ يَأْتِيهِمُ الْعَذَابُ فَيَقُولُ الَّذِينَ ظَلَمُوا رَبَّنَآ أَخِّرْنَآ إِلَىٰٓ أَجَلٍ قَرِيبٍ نُّجِبْ دَعْوَتَكَ وَنَتَّبِعِ الرُّسُلَ ۗ أَوَلَمْ تَكُونُوٓا أَقْسَمْتُم مِّن قَبْلُ مَا لَكُم مِّن زَوَالٍ

୪୬. "ଅଥଚ ତୁମେମାନେ ସେମାନଙ୍କ ଗୃହକୁ ନିଜର ଗୃହ ରୂପେ ବ୍ୟବହାର କରୁଅଛ ଯେଉଁମାନେ (ତୁମମାନଙ୍କ ପୂର୍ବରୁ) ନିଜ ପ୍ରତି ଅତ୍ୟାଚାର କରିଥିଲେ, ଏବଂ ଏହା ତୁମମାନଙ୍କ ନିକଟରେ ସୁସ୍ପଷ୍ଟ ହୋଇଯାଇଥିଲା ଯେ ଆମେ ସେମାନଙ୍କ ସହିତ କିପରି ବ୍ୟବହାର କରିଥିଲୁ ; ଏବଂ ଆମେ ତୁମମାନଙ୍କ ସକାଶେ ସମସ୍ତ ବିଷୟ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ ।"

وَسَكَنْتُمْ فِي مَسَٰكِنِ الَّذِينَ ظَلَمُوٓا أَنفُسَهُمْ وَتَبَيَّنَ لَكُمْ كَيْفَ فَعَلْنَا بِهِمْ وَضَرَبْنَا لَكُمُ الْأَمْثَالَ ﴿٤٦﴾

୪୭. ଏବଂ ସେମାନେ ନିଜର ଚକ୍ରାନ୍ତ କରିଥିଲେ ; କିନ୍ତୁ ସେମାନଙ୍କର ଚକ୍ରାନ୍ତକୁ ବିଫଳ କରିବା ଅଲ୍ଲାହ୍‌ଙ୍କୁ ଜଣାଥିଲା ;[୧] ଯଦିଓ ସେମାନଙ୍କର ଚକ୍ରାନ୍ତ ଏପରି ଥିଲା ଯେ ତଦ୍ୱାରା ପର୍ବତ (ମଧ୍ୟ ନିଜ ସ୍ଥାନରୁ) ଟଳି ଯିବ ।

وَقَدْ مَكَرُوا مَكْرَهُمْ وَعِندَ اللَّهِ مَكْرُهُمْ وَإِن كَانَ مَكْرُهُمْ لِتَزُولَ مِنْهُ الْجِبَالُ ﴿٤٧﴾

୪୮. ସୁତରାଂ ତୁମେ କଦାପି ଏପରି ମନେ କର ନାହିଁ ଯେ ଅଲ୍ଲାହ୍ ତାହାଙ୍କ ରସୁଲମାନଙ୍କ ସହିତ କରିଥିବା ଅଙ୍ଗୀକାରର ବିରୁଦ୍ଧାଚରଣ କରିବେ ; ନିଃସନ୍ଦେହରେ ଅଲ୍ଲାହ୍ ହିଁ ପରାକ୍ରମୀ (ଓ କୁକର୍ମର) ପ୍ରତିବିଧାନ କର୍ତ୍ତା ।

فَلَا تَحْسَبَنَّ اللَّهَ مُخْلِفَ وَعْدِهِۦ رُسُلَهُۥٓ إِنَّ اللَّهَ عَزِيزٌ ذُو انتِقَامٍ ﴿٤٨﴾

୪୯. (ଏପରି ଦିନ ନିଶ୍ଚୟ ଆସିବ) ଯେଉଁଦିନ (ଏହି) ଆକାଶ ଓ ପୃଥିବୀ ପରିବର୍ତ୍ତିତ ହୋଇ ଅନ୍ୟ ଆକାଶ ଓ ପୃଥିବୀ ସ୍ଥାପିତ ହେବ, ଏବଂ ଏମାନେ ଅଦ୍ୱିତୀୟ(ଓ)ଅତି ପରାକ୍ରମୀ ଅଲ୍ଲାହ୍‌ଙ୍କ ସମକ୍ଷରେ ଉପସ୍ଥିତ ହେବେ ।

يَوْمَ تُبَدَّلُ الْأَرْضُ غَيْرَ الْأَرْضِ وَالسَّمَٰوَٰتُ وَبَرَزُوا لِلَّهِ الْوَٰحِدِ الْقَهَّارِ ﴿٤٩﴾

୫୦. ଏବଂ ସେ ଦିନ ତୁମେ ଉକ୍ତ ଅପରାଧୀମାନଙ୍କୁ ଶିକୁଳିରେ ବନ୍ଧା ହୋଇଥିବାର ଦେଖିବ ।

وَتَرَى الْمُجْرِمِينَ يَوْمَئِذٍ مُّقَرَّنِينَ فِي الْأَصْفَادِ ﴿٥٠﴾

୫୧. ସେମାନଙ୍କ ପରିଧାନ (ସତେ ଯେପରି) ପିଚୁରୁ ତିଆରି (କଳା ରଙ୍ଗର) ହେବ ଏବଂ (ନରକର) ଅଗ୍ନି ସେମାନଙ୍କ ମୁଖ ମଣ୍ଡଳକୁ ଆଚ୍ଛାଦିତ କରିବ ।

سَرَابِيلُهُم مِّن قَطِرَانٍ وَتَغْشَىٰ وُجُوهَهُمُ النَّارُ ﴿٥١﴾

୫୨. (ଏହା ଏଥି ସକାଶେ ହେବ) ଯଦ୍ଦ୍ୱାରା ଅଲ୍ଲାହ୍ ପ୍ରତ୍ୟେକ ବ୍ୟକ୍ତିକୁ ସେ ଯାହା (ନିଜ ପାଇଁ) ଅର୍ଜନ କରିଥିବ ତାହାର ପ୍ରତିଦାନ ଦେବେ ; ନିଃସନ୍ଦେହରେ ଅଲ୍ଲାହ୍ ଅତି ଶୀଘ୍ର ହିସାବ ନିଅନ୍ତି ।

لِيَجْزِيَ اللَّهُ كُلَّ نَفْسٍ مَّا كَسَبَتْ إِنَّ اللَّهَ سَرِيعُ الْحِسَابِ ﴿٥٢﴾

୫୩. ଏହା (ଅର୍ଥାତ୍ ଉପରୋକ୍ତ ବର୍ଣ୍ଣନା) ମାନବ ସମାଜ ପାଇଁ ଯଥେଷ୍ଟ ଓ ଏଥି ନିମନ୍ତେ ମଧ୍ୟ (ଯଥେଷ୍ଟ) ଯେ (ଏହା ଦ୍ୱାରା) ସେମାନଙ୍କୁ (ଆଗତ ଶାସ୍ତି ସଂକ୍ରାନ୍ତରେ) ସତର୍କ କରାଯିବ, ଏବଂ ସେମାନେ ଜାଣି ପାରିବେ ଯେ ଅଲ୍ଲାହ୍ ହିଁ ଏକମାତ୍ର ପ୍ରକୃତ ଉପାସ୍ୟ, ଏବଂ ଜ୍ଞାନବନ୍ତ ଲୋକମାନେ ଏଥିରୁ ଉପଦେଶ ଗ୍ରହଣ କରିପାରିବେ ।

هَٰذَا بَلَٰغٌ لِّلنَّاسِ وَلِيُنذَرُوا بِهِۦ وَلِيَعْلَمُوٓا أَنَّمَا هُوَ إِلَٰهٌ وَٰحِدٌ وَلِيَذَّكَّرَ أُولُوا الْأَلْبَابِ ﴿٥٣﴾

[୧] ଅର୍ଥାତ୍ ଭୁଲି ଯାଇ ନାହାନ୍ତି ବରଂ ଅଲ୍ଲାହ୍ ଏହାକୁ ଭଲ ଭାବରେ ମନେ ରଖିଛନ୍ତି ।

## ଭାଗ—୧୪

سُوْرَةُ الْحِجْرِ مَكِّيَّةٌ (١٥)

# ଅଲ୍ ହିଜର

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୦୦ ଗୋଟି ଆୟତ ଓ ୬ ଗୋଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

الٓرٰ تِلْكَ اٰيٰتُ الْكِتٰبِ وَ قُرْاٰنٍ مُّبِيْنٍ ②

୨. ଅଲିଫ୍-ଲାମ୍-ରା; ଏଗୁଡ଼ିକ ଏକ (ପରିପୂର୍ଣ୍ଣ) ଗ୍ରନ୍ଥ ଓ ସୁସ୍ପଷ୍ଟ କୋରାନର ଆୟତ ।

رُبَمَا يَوَدُّ الَّذِيْنَ كَفَرُوْا لَوْ كَانُوْا مُسْلِمِيْنَ ③

୩. ଯେଉଁ ଲୋକମାନେ (ଏହି ଗ୍ରନ୍ଥକୁ) ଅସ୍ୱୀକାର କରିଛନ୍ତି, ସେମାନେ ଅନେକ ସମୟରେ ଇଚ୍ଛା କରନ୍ତି ଯେ ସେମାନେ (ମଧ୍ୟ) ଏହାର ଆଜ୍ଞାପାଳନକାରୀ ହୋଇଥା'ନ୍ତେ କି ?

ذَرْهُمْ يَاْكُلُوْا وَ يَتَمَتَّعُوْا وَ يُلْهِهِمُ الْاَمَلُ فَسَوْفَ يَعْلَمُوْنَ ④

୪. ତୁମେ ସେମାନଙ୍କୁ ଖାଇବା ପିଇବା ଓ ଅସ୍ଥାୟୀ ସାମଗ୍ରୀରୁ ଲାଭ ଉଠାଇବାରେ ବ୍ୟସ୍ତ ରହିବାକୁ ଛାଡ଼ିଦିଅ ଏବଂ (ସେମାନଙ୍କୁ ଛାଡ଼ିଦିଅ ଯେପରି ସେମାନଙ୍କର ବୃଥାଆଶା ସେମାନଙ୍କୁ ପ୍ରତାରିତ କରୁଥାଉ, କାରଣ ସେମାନେ ଶୀଘ୍ର (ବାସ୍ତବତାକୁ) ଜାଣିପାରିବେ ।

وَ مَاۤ اَهْلَكْنَا مِنْ قَرْيَةٍ اِلَّا وَ لَهَا كِتَابٌ مَّعْلُوْمٌ ⑤

୫. ଏବଂ କୌଣସି ସହର ସଂକ୍ରାନ୍ତରେ (ପୂର୍ବରୁ) ନିଷ୍ପତ୍ତି ହୋଇ ନ ଥିଲେ, ଆମେ ତାହାକୁ କେବେ ଧ୍ୱଂସ କରି ନାହୁଁ ।

مَا تَسْبِقُ مِنْ اُمَّةٍ اَجَلَهَا وَ مَا يَسْتَاْخِرُوْنَ ⑥

୬. କୌଣସି ସମ୍ପ୍ରଦାୟ ନିଜ (ବିନାଶର) ଧାର୍ଯ୍ୟ ସମୟକୁ ଅତିକ୍ରମ କରିପାରିବ ନାହିଁ ବା ତାହାର ପଛରେ ରହି (ରକ୍ଷାପାଇ) ପାରିବ ନାହିଁ ।

وَ قَالُوْا يٰۤاَيُّهَا الَّذِيْ نُزِّلَ عَلَيْهِ الذِّكْرُ اِنَّكَ لَمَجْنُوْنٌ ⑦

୭. ଏବଂ ସେ (ଅବିଶ୍ୱାସକାରୀ) ମାନେ କହିଲେ, ''ହେ ସେ ବ୍ୟକ୍ତି ! ଯାହାଙ୍କ ପ୍ରତି ଏହି ଉପଦେଶ ଅବତୀର୍ଣ୍ଣ ହୋଇଅଛି, ତୁମେ ବାସ୍ତବରେ (ଜଣେ) ପାଗଳ ।''

لَوْ مَا تَاْتِيْنَا بِالْمَلٰٓئِكَةِ اِنْ كُنْتَ مِنَ الصّٰدِقِيْنَ ⑧

୮. ''ଯଦି ତୁମେ ସତ୍ୟବାଦୀ ହୋଇଥାଅ ତେବେ କାହିଁକି ଆମମାନଙ୍କ ନିକଟକୁ ଦେବଦୂତମାନଙ୍କୁ ଆଣୁନାହଁ ?''

୯. (କ'ଣ ସେମାନେ ଜାଣନ୍ତି ନାହିଁ ଯେ) ଆମେ ଦେବଦୂତମାନଙ୍କୁ ସତ୍ୟ ସହିତ ପ୍ରେରଣ କରିଥାଉ, ଏବଂ (ଯେତେବେଳେ ସେମାନଙ୍କୁ ଅବିଶ୍ୱାସକାରୀମାନଙ୍କ ନିକଟକୁ ପ୍ରେରଣ କରୁ) ସେତେବେଳେ ସେ (ଅବିଶ୍ୱାସକାରୀ)ମାନଙ୍କୁ ଆଦୌ ଅବକାଶ ଦିଆଯାଏ ନାହିଁ ।

مَا نُنَزِّلُ الْمَلٰٓئِكَةَ اِلَّا بِالْحَقِّ وَمَا كَانُوْٓا اِذًا مُّنْظَرِيْنَ ﴿٩﴾

୧୦. ବାସ୍ତବରେ ଆମେ ହିଁ ଏହି ଉପଦେଶ (ଅର୍ଥାତ୍ ପବିତ୍ର କୋରାନ) ଅବତୀର୍ଣ୍ଣ କରିଅଛୁ ଏବଂ ଆମେ ନିଶ୍ଚୟ ଏହାର ସଂରକ୍ଷଣ କରିବୁ ।

اِنَّا نَحْنُ نَزَّلْنَا الذِّكْرَ وَاِنَّا لَهٗ لَحٰفِظُوْنَ ﴿١٠﴾

୧୧. ଏବଂ ଆମେ ପୂର୍ବବର୍ତ୍ତୀ ସମ୍ପ୍ରଦାୟମାନଙ୍କ ମଧ୍ୟରେ ତୁମ ପୂର୍ବରୁ ରସୁଲ ପ୍ରେରଣ କରିଥିଲୁ ।

وَلَقَدْ اَرْسَلْنَا مِنْ قَبْلِكَ فِيْ شِيَعِ الْاَوَّلِيْنَ ﴿١١﴾

୧୨. ଏବଂ ସେମାନଙ୍କ ନିକଟକୁ ଏପରି କେହି ରସୁଲ ଆସି ନ ଥିଲେ ଯାହାକୁ ସେମାନେ ପରିହାସ କରି ନ ଥିଲେ ।

وَمَا يَاْتِيْهِمْ مِّنْ رَّسُوْلٍ اِلَّا كَانُوْا بِهٖ يَسْتَهْزِءُوْنَ ﴿١٢﴾

୧୩ ଏହିପରି ଆମେ ଏହାକୁ (ଅର୍ଥାତ୍ ପରିହାସ କରିବା ମନୋବୃତ୍ତିକୁ) ଅପରାଧୀମାନଙ୍କ ହୃଦୟରେ ପ୍ରବିଷ୍ଟ କରାଉ ।

كَذٰلِكَ نَسْلُكُهٗ فِيْ قُلُوْبِ الْمُجْرِمِيْنَ ﴿١٣﴾

୧୪. ସେମାନେ ଏଥିରେ (ଅର୍ଥାତ୍ ପବିତ୍ର କୋରାନରେ) ବିଶ୍ୱାସ କରନ୍ତି ନାହିଁ ଅଥଚ ପୂର୍ବବର୍ତ୍ତୀ ଲୋକମାନଙ୍କ ସଂକ୍ରାନ୍ତରେ ଅଲ୍ଲାହଙ୍କର ଦୃଷ୍ଟାନ୍ତ ରହିଛି ।

لَا يُؤْمِنُوْنَ بِهٖ وَقَدْ خَلَتْ سُنَّةُ الْاَوَّلِيْنَ ﴿١٤﴾

୧୫. ଏବଂ ଯଦି ଆମେ ସେମାନଙ୍କ ସକାଶେ ଚିହ୍ନିବା ପାଇଁ କୌଣସି ଦ୍ୱାର ଉନ୍ମୁକ୍ତ କରିଦେଉ ଓ ତଦ୍ଦ୍ୱାରା ସେମାନେ (ଲାଭବାନ୍ ହୋଇ) ବାସ୍ତବତାକୁ ଉପଲବ୍ଧି କରନ୍ତେ—

وَلَوْ فَتَحْنَا عَلَيْهِمْ بَابًا مِّنَ السَّمَآءِ فَظَلُّوْا فِيْهِ يَعْرُجُوْنَ ﴿١٥﴾

୧୬. ତଥାପି ସେମାନେ (ନିଶ୍ଚୟ) କହନ୍ତେ, "ଆମମାନଙ୍କ ଆଖିରେ ପରଦା ପକାଯାଇଛି (ନ ହେଲେ ବାସ୍ତବତା କିଛି ନାହିଁ,) ବରଂ ଆମମାନଙ୍କୁ ଘୁଣି କରାଯାଇଛି ।"

لَقَالُوْٓا اِنَّمَا سُكِّرَتْ اَبْصَارُنَا بَلْ نَحْنُ قَوْمٌ مَّسْحُوْرُوْنَ ﴿١٦﴾

ରୁ : ୨

୧୭. ଏବଂ ଆମେ ବାସ୍ତବରେ ଆକାଶରେ (ନକ୍ଷତ୍ରପୁଞ୍ଜଙ୍କର) କକ୍ଷମାନ ଗଢିଅଛୁ, ଏବଂ ଆମେ ତାହାକୁ ଦର୍ଶକମାନଙ୍କ ସକାଶେ ସୁଶୋଭିତ କରିଅଛୁ ।

وَلَقَدْ جَعَلْنَا فِي السَّمَآءِ بُرُوْجًا وَّزَيَّنّٰهَا لِلنّٰظِرِيْنَ ﴿١٧﴾

୧୮. ଏବଂ ଆମେ ତାହାକୁ ପ୍ରତ୍ୟେକ ବହିଷ୍କୃତ ସଇତାନ (ଅର୍ଥାତ୍ ଦୁରାଗ୍ରହୀ ଓ ତିରସ୍କୃତ ବ୍ୟକ୍ତିର ପ୍ରଭାବ) ଠାରୁ ସୁରକ୍ଷିତ କରିଅଛୁ ।

وَحَفِظْنٰهَا مِنْ كُلِّ شَيْطٰنٍ رَّجِيْمٍ ﴿١٨﴾

୧୯. କିନ୍ତୁ ଯେଉଁ ବ୍ୟକ୍ତି ଗୋପନରେ (ଅଲ୍ଲାହ୍‌ଙ୍କ ବାଣୀରୁ) କୌଣସି କଥା ଶ୍ରବଣ କରେ (ଓ ତାହାକୁ ବିକୃତ କରି ପ୍ରସାରିତ କରେ) ତେବେ ତା'ପଛରେ ଏକ ଉଜ୍ଜ୍ୱଳ ଅଗ୍ନିଶିଖା[୧] ଧାବମାନ ହୁଏ ।

إِلَّا مَنِ اسْتَرَقَ السَّمْعَ فَأَتْبَعَهُ شِهَابٌ مُّبِينٌ ﴿١٩﴾

୨୦. ଏବଂ ଆମ୍ଭେ ପୃଥିବୀକୁ ବିସ୍ତାରିତ କରିଅଛୁ ଓ ତନ୍ମଧ୍ୟରେ ସୁଦୃଢ଼ ପର୍ବତମାନ ସ୍ଥାପନ କରିଅଛୁ ତଥା ତନ୍ମଧ୍ୟରେ ପ୍ରତ୍ୟେକ ପ୍ରକାରର ଆବଶ୍ୟକ ଦ୍ରବ୍ୟ (ଉଚିତ ଅନୁପାତରେ ସୃଷ୍ଟିକରି) ବୃଦ୍ଧି କରିଅଛୁ ।

وَالْأَرْضَ مَدَدْنَاهَا وَأَلْقَيْنَا فِيهَا رَوَاسِيَ وَأَنبَتْنَا فِيهَا مِن كُلِّ شَيْءٍ مَّوْزُونٍ ﴿٢٠﴾

୨୧. ଏବଂ ଆମ୍ଭେ ତନ୍ମଧ୍ୟରେ ତୁମମାନଙ୍କ ସକାଶେ ତଥା ତୁମେମାନେ ଯେଉଁମାନଙ୍କୁ ଜୀବିକା ପ୍ରଦାନ କରୁନାହଁ ସେମାନଙ୍କ ସକାଶେ ଜୀବନ ନିର୍ବାହ ସାମଗ୍ରୀ ସୃଷ୍ଟି କରିଅଛୁ ।

وَجَعَلْنَا لَكُمْ فِيهَا مَعَايِشَ وَمَن لَّسْتُمْ لَهُ بِرَازِقِينَ ﴿٢١﴾

୨୨. ଏପରି କୌଣସି ଦ୍ରବ୍ୟ ନାହିଁ ଯାହାର (ଅସରନ୍ତି) ଭଣ୍ଡାର ଆମ୍ଭ ନିକଟରେ ନାହିଁ କିନ୍ତୁ ଆମ୍ଭେ ଏହାକୁ ଏକ ନିର୍ଦ୍ଧାରିତ ପରିମାଣରେ ପ୍ରେରଣ କରିଥାଉ ।

وَإِن مِّن شَيْءٍ إِلَّا عِندَنَا خَزَائِنُهُ وَمَا نُنَزِّلُهُ إِلَّا بِقَدَرٍ مَّعْلُومٍ ﴿٢٢﴾

୨୩. ଏବଂ ଆମ୍ଭେ (ଜଳୀୟବାଷ୍ପ) ବହନକାରୀ ବାୟୁ ପ୍ରେରଣ କରୁ ଏବଂ (ସେମାନଙ୍କ ମାଧ୍ୟମରେ) ଆମ୍ଭେ ମେଘରୁ ଜଳ ବୃଷ୍ଟି କରାଉ, ତାପରେ ତୁମମାନଙ୍କୁ ତାହା ପାନ କରିବାକୁ ଦେଉ, ଏବଂ ତୁମେ ନିଜେ ତାହାକୁ ମହଜୁଦ[୨] କରିପାରି ନ ଥା'ନ୍ତ (କିନ୍ତୁ ଏହି ରୂପେ ଆମ୍ଭେ ତାହାକୁ ମହଜୁଦ କରି ଅଛୁ) ।

وَأَرْسَلْنَا الرِّيَاحَ لَوَاقِحَ فَأَنزَلْنَا مِنَ السَّمَاءِ مَاءً فَأَسْقَيْنَاكُمُوهُ وَمَا أَنتُمْ لَهُ بِخَازِنِينَ ﴿٢٣﴾

୨୪. ଏବଂ ନିଶ୍ଚିତ ରୂପେ ଆମ୍ଭେ ଜୀବନ ଦାନ କରୁ ଓ ମୃତ୍ୟୁପ୍ରଦାନ କରୁ ଏବଂ ଆମ୍ଭେ ହିଁ (ସମସ୍ତଙ୍କର) ଦାୟାଦ ।

وَإِنَّا لَنَحْنُ نُحْيِي وَنُمِيتُ وَنَحْنُ الْوَارِثُونَ ﴿٢٤﴾

୨୫. ଏବଂ ଆମ୍ଭେ ତୁମମାନଙ୍କ ମଧ୍ୟରୁ ଅଗ୍ରଗାମୀମାନଙ୍କୁ ଜାଣୁ ଓ ଆମ୍ଭେ (ସେହିପରି ତୁମମାନଙ୍କ ମଧ୍ୟରୁ) ପଶ୍ଚାଦ୍‌ଗାମୀ ମାନଙ୍କୁ (ମଧ୍ୟ) ଜାଣୁ ।

وَلَقَدْ عَلِمْنَا الْمُسْتَقْدِمِينَ مِنكُمْ وَلَقَدْ عَلِمْنَا الْمُسْتَأْخِرِينَ ﴿٢٥﴾

୨୬. ଏବଂ ନିଶ୍ଚିତ ରୂପେ ତୁମର ପାଳନକର୍ତ୍ତା ହିଁ ସେମାନଙ୍କୁ ଏକତ୍ରିତ କରିବେ; ବାସ୍ତବରେ ସେ ହିଁ ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞ ।

وَإِنَّ رَبَّكَ هُوَ يَحْشُرُهُمْ إِنَّهُ حَكِيمٌ عَلِيمٌ ﴿٢٦﴾

---

୧. ଅର୍ଥାତ୍ ଯେଉଁ ପବିତ୍ର କୋରାନ ଅବତୀର୍ଣ୍ଣ ହୋଇଛି ତାହାର କିଛି ଅଂଶକୁ ନେଇ ନିର୍ଲଜ୍ଜ ଅବିଶ୍ୱାସକାରୀମାନେ ଲୋକମାନଙ୍କ ମଧ୍ୟରେ ଏପରି ପ୍ରସାର ଓ ପ୍ରଚାର କରନ୍ତି ଯେପରି ବିରୋଧୀମାନେ ଉତ୍ତେଜିତ ହେବେ କିନ୍ତୁ ଅଲ୍ଲାହ୍ ସେମାନଙ୍କ ଦୁରାଚାରକୁ ଲକ୍ଷ୍ୟ କରୁଛନ୍ତି । ଯେତେବେଳେ କୌଣସି ବ୍ୟକ୍ତି ଏପରି କରେ ସେତେବେଳେ ସେ ତା'ର ଦୁରାଚାରକୁ ପ୍ରକାଶ କରିଦେବା ପାଇଁ ଏପରି ଅଲୌକିକ ଆଲୋକ ସର୍ଜନା କରନ୍ତି ଯଦ୍ୱାରା ସେମାନଙ୍କ ପ୍ରତାରଣା ଉନ୍ମୋଚିତ ହୁଏ ଓ ସେହି ଦୁରାଚାରୀ ନିହତ ହୁଏ ।

୨. ଅର୍ଥାତ୍ ମେଘମାଳାକର୍ତ୍ତୃକ ମଧୁର ଜଳ ସୁରକ୍ଷିତ ହୋଇଥାଏ । ଯଦି ଏପରି ହେଉନଥା'ନ୍ତା ତେବେ ନଦୀ, ନାଳ ସୃଷ୍ଟି ହୋଇନଥା'ନ୍ତା କି କୂପରେ ମଧୁର ଜଳ ସୁରକ୍ଷିତ ହୁଅନ୍ତା ନାହିଁ । ଅନ୍ୟଥା ଲୋକମାନେ ଶୋଷରେ ମରିଯାଆନ୍ତେ ଓ ଜମିବାଡ଼ି ଶୁଖିଯାଆନ୍ତା ।

ରୁ : ୩

୨୭. ଏବଂ ବାସ୍ତବରେ ଆମ୍ଭେ ମାନବକୁ ସ୍ଥିର ପଙ୍କରୁ ଜାତ ଧ୍ୱନି ସୃଷ୍ଟିକାରୀ ଶୁଷ୍କ ମୃତ୍ତିକାରୁ ସୃଷ୍ଟି କରିଅଛୁ ।[୧]

وَلَقَدْ خَلَقْنَا الْإِنْسَانَ مِنْ صَلْصَالٍ مِّنْ حَمَإٍ مَّسْنُوْنٍ ۝٢٧

୨୮. ଏବଂ (ଏହା) ପୂର୍ବରୁ ଜିନ୍ନମାନଙ୍କୁ ପ୍ରବଳ ବିସ୍ଫୋଟକ ଅଗ୍ନିରୁ ସୃଷ୍ଟି କରିଅଛୁ ।

وَالْجَآنَّ خَلَقْنٰهُ مِنْ قَبْلُ مِنْ نَّارِ السَّمُوْمِ ۝٢٨

୨୯. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ତୁମ ପାଳନକର୍ତ୍ତା ଦେବଦୂତମାନଙ୍କୁ କହିଥିଲେ, "ଆମ୍ଭେ ସ୍ଥିର ପଙ୍କରୁ ଜାତ ଧ୍ୱନିସୃଷ୍ଟିକାରୀ ଶୁଷ୍କ ମୃତ୍ତିକାରୁ ମାନବକୁ ସୃଷ୍ଟି କରିବାକୁ ଯାଉଛୁ ।"

وَإِذْ قَالَ رَبُّكَ لِلْمَلٰٓئِكَةِ إِنِّيْ خَالِقٌۢ بَشَرًا مِّنْ صَلْصَالٍ مِّنْ حَمَإٍ مَّسْنُوْنٍ ۝٢٩

୩୦. "ସୁତରାଂ ଯେତେବେଳେ ଆମ୍ଭେ ତାହାକୁ ସମ୍ପୂର୍ଣ୍ଣ ରୂପେ ଗଢ଼ିଦେବୁ ଓ ତା' (ଅନ୍ତର) ମଧ୍ୟରେ ନିଜର ଆତ୍ମା (ଅର୍ଥାତ୍ ବାଣୀ) ପ୍ରବିଷ୍ଟ କରାଇବୁ, ସେତେବେଳେ ତୁମେମାନେ ସମସ୍ତେ ତାହାଙ୍କ ସହିତ[୨] ସିଜଦାରେ (ଅଲ୍ଲାହଙ୍କ ସମୀପରେ) ପଡ଼ିଯିବ ।"

فَإِذَا سَوَّيْتُهٗ وَنَفَخْتُ فِيْهِ مِنْ رُّوْحِيْ فَقَعُوْا لَهٗ سٰجِدِيْنَ ۝٣٠

୩୧. ତେଣୁ ସମସ୍ତ ଦେବଦୂତ (ତାହାଙ୍କ ସହିତ ଅଲ୍ଲାହଙ୍କୁ) ସିଜଦା କଲେ—

فَسَجَدَ الْمَلٰٓئِكَةُ كُلُّهُمْ أَجْمَعُوْنَ ۝٣١

୩୨. କିନ୍ତୁ ଇବଲିସ ବ୍ୟତୀତ; (କାରଣ) ସେ (ପ୍ରକୃତ) ସିଜଦାକାରୀମାନଙ୍କ ସଙ୍ଗରେ ସିଜଦା କରିବାକୁ ଅସ୍ୱୀକାର କରିଥିଲା ।

إِلَّآ إِبْلِيْسَ أَبٰٓى أَنْ يَّكُوْنَ مَعَ السّٰجِدِيْنَ ۝٣٢

୩୩. (ସୁତରାଂ ଅଲ୍ଲାହ) କହିଲେ, "ହେ ଇବ୍ଲିସ ! ତୋର ଏପରି କ'ଣ ହୋଇଛି ଯେ ତୁ (ପ୍ରକୃତ) ସିଜଦାକାରୀମାନଙ୍କ ସଙ୍ଗରେ ସାମିଲ ହେଉନାହୁଁ ?"

قَالَ يٰٓإِبْلِيْسُ مَا لَكَ أَلَّا تَكُوْنَ مَعَ السّٰجِدِيْنَ ۝٣٣

୩୪. ସେ କହିଲା, "ମୁଁ ଏପରି ନୁହେଁ ଯେ ଏଭଳି ଜଣେ ମାନବର ପଦାଙ୍କ ଅନୁସରଣ କରି ଆଜ୍ଞାବହ ହେବି ଯାହାକୁ ତୁମେ ପଙ୍କରୁ ଜାତ ଧ୍ୱନିସୃଷ୍ଟିକାରୀ ଶୁଷ୍କ ମୃତ୍ତିକାରୁ ସୃଷ୍ଟି କରିଅଛ ।"

قَالَ لَمْ أَكُنْ لِّأَسْجُدَ لِبَشَرٍ خَلَقْتَهٗ مِنْ صَلْصَالٍ مِّنْ حَمَإٍ مَّسْنُوْنٍ ۝٣٤

୩୫. (ଅଲ୍ଲାହ) କହିଲେ, ("ଯଦି ତୋର ଭାବନା ଏପରି) ତେବେ ତୁ ଏଠାରୁ ବାହାରି ଯା, କାରଣ ବାସ୍ତବରେ ତୋତେ ବହିଷ୍କୃତ କରାଯାଇଅଛି ।"

قَالَ فَاخْرُجْ مِنْهَا فَإِنَّكَ رَجِيْمٌ ۝٣٥

---

୧. ସାଧାରଣତଃ ବଡ଼ ଲୋକମାନଙ୍କଠାରେ ଅଧିକ କ୍ରୋଧ ଦୃଷ୍ଟିଗୋଚର ହୁଏ ଏବଂ ସେମାନେ ସ୍ୱଭାବତଃ ନିଜ ବିରୁଦ୍ଧରେ କୌଣସି ବିଷୟ ଶୁଣିପାରନ୍ତି ନାହିଁ ।

୨. ଏଠାରେ କେତେକ ଭାଷ୍ୟକାର ହଜରତ ଆଦମଙ୍କୁ ସିଜଦା କରାଯିବା ବିଷୟ ଉଲ୍ଲେଖ କରିଛନ୍ତି । କିନ୍ତୁ ଏହା ପବିତ୍ର କୋରାନର ଶିକ୍ଷାର ପରିପନ୍ଥୀ । ତେଣୁ ଆମେ ଏଠାରେ ଆଦମଙ୍କ ସହିତ ସିଜଦା କର ବୋଲି ଅନୁବାଦ କରିଛୁ ଅର୍ଥାତ୍ ଆଦମ ଯେପରି ଏକ ଅଲ୍ଲାହଙ୍କର ଉପାସନା କରନ୍ତି ତୁମେମାନେ ମଧ୍ୟ ସେହିପରି ଏକ ଅଲ୍ଲାହଙ୍କର ଉପାସନା କର ।

୩୬. "ଏବଂ (ମନେରଖ) ବିଚାର ଦିବସ ପର୍ଯ୍ୟନ୍ତ ତୋ ଉପରେ (ଆମ୍ଭର) ଅଭିଶାପ ରହିଥିବ ।"

وَإِنَّ عَلَيْكَ اللَّعْنَةَ إِلَىٰ يَوْمِ الدِّينِ ﴿٣٥﴾

୩୭. ସେ କହିଲା, "ହେ ମୋର ପାଳନକର୍ତ୍ତା ! (ଯଦି ତୁମେ ମୋ ପ୍ରତି ଶୀଘ୍ର ଶାସ୍ତିବିଧାନ କରୁନାହିଁ) ତେବେ ସେମାନଙ୍କ ପୁନରୁତ୍‌ଥାନ ଦିବସ ପର୍ଯ୍ୟନ୍ତ ମୋତେ ଅବକାଶ ଦିଅ[୧] ।"

قَالَ رَبِّ فَأَنظِرْنِي إِلَىٰ يَوْمِ يُبْعَثُونَ ﴿٣٦﴾

୩୮. (ଅଲ୍ଲାହ) କହିଲେ, "ନିଶ୍ଚୟ ତୁ ଅବକାଶପ୍ରାପ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ରହିବୁ ।"

قَالَ فَإِنَّكَ مِنَ الْمُنظَرِينَ ﴿٣٧﴾

୩୯. "ସେହି ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ" ଯାହା ସଂକ୍ରାନ୍ତରେ ଉପରେ ବର୍ଣ୍ଣିତ ହୋଇଅଛି ।

إِلَىٰ يَوْمِ الْوَقْتِ الْمَعْلُومِ ﴿٣٨﴾

୪୦. ସେ କହିଲା, "ହେ ମୋର ପାଳନକର୍ତ୍ତା ! ଯେହେତୁ ତୁମେ ମୋତେ ପଥଭ୍ରଷ୍ଟ ନିରୂପଣ କରିଅଛ, ତେଣୁ ମୁଁ ନିଶ୍ଚୟ ସେମାନଙ୍କ ସକାଶେ ପୃଥିବୀରେ (ପଥଭ୍ରଷ୍ଟତାକୁ) ସୁଶୋଭିତ କରି ପ୍ରଦର୍ଶିତ କରିବି ଏବଂ ସେ ସମସ୍ତଙ୍କୁ ପଥଭ୍ରଷ୍ଟ କରାଇବି ।"

قَالَ رَبِّ بِمَا أَغْوَيْتَنِي لَأُزَيِّنَنَّ لَهُمْ فِي الْأَرْضِ وَلَأُغْوِيَنَّهُمْ أَجْمَعِينَ ﴿٣٩﴾

୪୧. "ଅବଶ୍ୟ ସେମାନଙ୍କ ମଧ୍ୟରୁ ତୁମର ମନୋନୀତ ଭକ୍ତମାନଙ୍କ ବ୍ୟତୀତ, (କାରଣ ସେମାନେ ମୋ ପ୍ରତାରଣାର ବଶବର୍ତ୍ତୀ ହେବେ ନାହିଁ ଓ ରକ୍ଷା ପାଇଯିବେ) ।"

إِلَّا عِبَادَكَ مِنْهُمُ الْمُخْلَصِينَ ﴿٤٠﴾

୪୨. (ଅଲ୍ଲାହ) କହିଲେ, "ଆମ୍ଭ ନିକଟକୁ ଆସିବାର ଏହା ହିଁ ସରଳ ମାର୍ଗ" ।

قَالَ هَٰذَا صِرَاطٌ عَلَيَّ مُسْتَقِيمٌ ﴿٤١﴾

୪୩. "ଆମ୍ଭର ଭକ୍ତମାନଙ୍କ ଉପରେ କେବେ ହେଁ ତୋ'ର କର୍ତ୍ତୃତ୍ୱ ରହିବ ନାହିଁ; ଅବଶ୍ୟ ସେମାନଙ୍କ ବ୍ୟତୀତ ଯେଉଁମାନେ ନିଜେ ପଥଭ୍ରଷ୍ଟ ହୋଇ ତୋ'ର ଅନୁସରଣ କରିବେ ।"

إِنَّ عِبَادِي لَيْسَ لَكَ عَلَيْهِمْ سُلْطَانٌ إِلَّا مَنِ اتَّبَعَكَ مِنَ الْغَاوِينَ ﴿٤٢﴾

୪୪. ବାସ୍ତବରେ ନରକ ହିଁ ସେ ସମସ୍ତଙ୍କର ଅଙ୍ଗୀକୃତ (ବାସ) ସ୍ଥାନ ।

وَإِنَّ جَهَنَّمَ لَمَوْعِدُهُمْ أَجْمَعِينَ ﴿٤٣﴾

୪୫. ତାହାର ସାତ ଗୋଟି ଦ୍ୱାର ଅଛି (ଏବଂ ତାହାର) ପ୍ରତ୍ୟେକ ଦ୍ୱାର ପାଇଁ ସେ (ଅବିଶ୍ୱାସକାରୀ)ମାନଙ୍କ ମଧ୍ୟରୁ ଏକ ନିର୍ଦ୍ଦିଷ୍ଟ ଅଂଶ[୨] ଉଦ୍ଦିଷ୍ଟ ।

لَهَا سَبْعَةُ أَبْوَابٍ لِّكُلِّ بَابٍ مِّنْهُمْ جُزْءٌ مَّقْسُومٌ ﴿٤٤﴾

୪୬. ଧର୍ମଭୀରୁମାନେ ନିଶ୍ଚୟ ଉଦ୍ୟାନ ଓ ଝରଣା (ଯୁକ୍ତ ସ୍ଥାନ) ମଧ୍ୟରେ ରହିବେ ।

إِنَّ الْمُتَّقِينَ فِي جَنَّاتٍ وَعُيُونٍ ﴿٤٥﴾

---

୧. ୭:୧୫ ର ଟୀକା ଦ୍ରଷ୍ଟବ୍ୟ ।

୨. ଏଠାରେ 'ଜୁଜ୍‌ଉନ' ଶବ୍ଦ ବ୍ୟବହାର କରାଯାଇଛି । ଯେହେତୁ ନରକକୁ ଗୋଟିଏ ଦଳ ଯିବାର ଥିଲା ତେଣୁ ଆମେ ଏଠାରେ 'ଏକ ନିର୍ଦ୍ଦିଷ୍ଟ ଅଂଶ' ଅନୁବାଦ କରିଅଛୁ ଓ ଏହା ଯଥାର୍ଥ ।

| | |
|---|---|
| ୪୬. (ସେମାନଙ୍କୁ କୁହାଯିବ) ,"ତୁମେମାନେ ଶାନ୍ତିରେ ଓ ନିର୍ଭୟରେ ତନ୍ମଧ୍ୟରେ ପ୍ରବେଶ କର ।" | اُدْخُلُوْهَا بِسَلٰمٍ اٰمِنِيْنَ ﴿٤٦﴾ |
| ୪୮. ଏବଂ ସେମାନଙ୍କ ଅନ୍ତର ମଧ୍ୟରେ ଯାହା କିଛି ବିଦ୍ୱେଷ ଥିବ ଆମେ ତାହାକୁ ଦୂର କରିବୁ, ସେମାନେ ଭାଇ ଭାଇ ହୋଇ (ବୈକୁଣ୍ଠରେ) ରହିବେ ଓ ପରସ୍ପର ମୁହାଁମୁହିଁ ହୋଇ ପଲଙ୍କରେ ବସିଥିବେ । | وَنَزَعْنَا مَا فِيْ صُدُوْرِهِمْ مِّنْ غِلٍّ اِخْوَانًا عَلٰى سُرُرٍ مُّتَقٰبِلِيْنَ ﴿٤٧﴾ |
| ୪୯. ସେଠାରେ ସେମାନଙ୍କୁ କ୍ଳାନ୍ତି ସ୍ପର୍ଶ କରିବ ନାହିଁ କି ସେମାନଙ୍କୁ ସେଠାରୁ କେବେ ହେଁ ବିତାଡ଼ିତ କରାଯିବ ନାହିଁ । | لَا يَمَسُّهُمْ فِيْهَا نَصَبٌ وَّمَا هُمْ مِّنْهَا بِمُخْرَجِيْنَ ﴿٤٨﴾ |
| ୫୦. (ହେ ବାର୍ତ୍ତାବହ !) ଆମର ଭକ୍ତମାନଙ୍କୁ ସୂଚାଇ ଦିଅ ଯେ ଆମେ ନିଶ୍ଚୟ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ । | نَبِّئْ عِبَادِيْٓ اَنِّيْٓ اَنَا الْغَفُوْرُ الرَّحِيْمُ ﴿٤٩﴾ |
| ୫୧. ଏବଂ (ଏହା ମଧ୍ୟ ଯେ ବାସ୍ତବରେ) ଆମର ଶାସ୍ତି ଯନ୍ତ୍ରଣାଦାୟକ ଅଟେ । | وَاَنَّ عَذَابِيْ هُوَ الْعَذَابُ الْاَلِيْمُ ﴿٥٠﴾ |
| ୫୨. ଏବଂ ସେମାନଙ୍କୁ ଇବ୍ରାହିମଙ୍କ ଅତିଥିମାନଙ୍କ ସଂକ୍ରାନ୍ତରେ (ମଧ୍ୟ) ସୂଚନା ଦିଅ । | وَنَبِّئْهُمْ عَنْ ضَيْفِ اِبْرٰهِيْمَ ﴿٥١﴾ |
| ୫୩. ଯେତେବେଳେ ସେମାନେ ତାହାଙ୍କ ନିକଟକୁ ଆସି ସଲାମ କଲେ, ସେ (ଇବ୍ରାହିମ) କହିଲେ, "ଆମେ (ତୁମମାନଙ୍କ ଆଗମନ ଯୋଗୁଁ) ଭୟଭୀତ ହେଉଅଛୁ ।" | اِذْ دَخَلُوْا عَلَيْهِ فَقَالُوْا سَلٰمًا ۗ قَالَ اِنَّا مِنْكُمْ وَجِلُوْنَ ﴿٥٢﴾ |
| ୫୪. ସେମାନେ କହିଲେ, "ତୁମେ ଭୟଭୀତ ହୁଅ ନାହିଁ; ଆମେ ତୁମକୁ ଏକ ଅତି ଜ୍ଞାନବନ୍ତ ପୁତ୍ର ସଂକ୍ରାନ୍ତରେ ସୁସମାଗ୍ଭର ଦେଉଅଛୁ ।" | قَالُوْا لَا تَوْجَلْ اِنَّا نُبَشِّرُكَ بِغُلٰمٍ عَلِيْمٍ ﴿٥٣﴾ |
| ୫୫. ସେ କହିଲେ, "ଆମକୁ ବାର୍ଦ୍ଧକ୍ୟ ସ୍ପର୍ଶ କରିଥିବା ସତ୍ତ୍ୱେ କ'ଣ ତୁମେମାନେ ଏପରି ସୁସମାଗ୍ଭର ଦେଉଅଛ ?" ଅତଏବ (କୁହ), "କେଉଁ କାରଣରୁ ତୁମେମାନେ (ଏହି) ସୁସମାଗ୍ଭର ଦେଉଅଛ ?" | قَالَ اَبَشَّرْتُمُوْنِيْ عَلٰٓى اَنْ مَّسَّنِيَ الْكِبَرُ فَبِمَ تُبَشِّرُوْنَ ﴿٥٤﴾ |
| ୫୬. ସେମାନେ କହିଲେ, "ଆମେମାନେ ତୁମକୁ ସତ୍ୟ ସୁସମାଗ୍ଭର ଦେଉଅଛୁ; ସୁତରାଂ ତୁମେ ନିରାଶ ହୁଅ ନାହିଁ ।" | قَالُوْا بَشَّرْنٰكَ بِالْحَقِّ فَلَا تَكُنْ مِّنَ الْقٰنِطِيْنَ ﴿٥٥﴾ |
| ୫୭. ସେ କହିଲେ, "(ଆମେ କାହିଁକି ନିରାଶ ହେବୁ) ପଥଭ୍ରଷ୍ଟମାନଙ୍କ ବ୍ୟତୀତ ଆଉ କିଏ ନିଜର ପାଳନକର୍ତ୍ତାଙ୍କ କୃପାରୁ ନିରାଶ ହୋଇଥାଏ ?" | قَالَ وَمَنْ يَّقْنَطُ مِنْ رَّحْمَةِ رَبِّهٖٓ اِلَّا الضَّآلُّوْنَ ﴿٥٦﴾ |
| ୫୮. ସେ (ପୁନର୍ବାର) କହିଲେ, "ହେ ସମ୍ବାଦଦାତାଗଣ ! ତୁମମାନଙ୍କର ମୁଖ୍ୟ କାର୍ଯ୍ୟ କ'ଣ (ଯେଉଁଥିପାଇଁ ତୁମେମାନେ ପ୍ରେରିତ ହୋଇଅଛ) ?" | قَالَ فَمَا خَطْبُكُمْ اَيُّهَا الْمُرْسَلُوْنَ ﴿٥٧﴾ |

୫୯. ସେମାନେ କହିଲେ, ''ଆମେମାନେ ଏକ ଅପରାଧୀ ସମ୍ପ୍ରଦାୟ ପ୍ରତି (ସେମାନଙ୍କ ବିନାଶ ନିମିତ୍ତ) ପ୍ରେରିତ ହୋଇଅଛୁ ।''

قَالُوْٓا اِنَّآ اُرْسِلْنَآ اِلٰى قَوْمٍ مُّجْرِمِيْنَ ۙ﴿٥٩﴾

୬୦. ''କେବଳ ଲୁତଙ୍କ ଅନୁଗାମୀମାନଙ୍କ ବ୍ୟତୀତ, (କାରଣ) ସେ ସମସ୍ତଙ୍କୁ ଆମେମାନେ ରକ୍ଷା କରିବୁ ।''

اِلَّآ اٰلَ لُوْطٍ ؕ اِنَّا لَمُنَجُّوْهُمْ اَجْمَعِيْنَ ۙ﴿٦٠﴾

୬୧. ''(କିନ୍ତୁ) ତାହାଙ୍କ ପତ୍ନୀଙ୍କ ସଂକ୍ରାନ୍ତରେ ଆମେମାନେ ଅନୁମାନ କରୁଅଛୁ ଯେ ସେ ପଶ୍ଚାଦ୍‌ବର୍ତ୍ତୀ (ତଥା ଧ୍ୱଂସାଭିମୁଖୀ) ବ୍ୟକ୍ତିମାନଙ୍କର ଅନ୍ତର୍ଗତ ହେବ ।''

اِلَّا امْرَاَتَهٗ قَدَّرْنَآ ۙ اِنَّهَا لَمِنَ الْغٰبِرِيْنَ ﴿٦١﴾

ରୁ:୫

୬୨. ତପରେ ଯେତେବେଳେ ସେ (ଦେବଦୂତ)ମାନେ ଲୁତ (ଓ ତାହା)ଙ୍କ ଅନୁଗାମୀମାନଙ୍କ ନିକଟରେ ପହଞ୍ଚିଲେ,

فَلَمَّا جَآءَ اٰلَ لُوْطِ ِۨ الْمُرْسَلُوْنَ ۙ﴿٦٢﴾

୬୩. ସେ (ସେମାନଙ୍କୁ) କହିଲେ, ''ଆପଣମାନେ ଏହି ଅଞ୍ଚଳରେ ଅପରିଚିତ [୧] ଜଣା ପଡୁଛନ୍ତି ।''

قَالَ اِنَّكُمْ قَوْمٌ مُّنْكَرُوْنَ ﴿٦٣﴾

୬୪. ସେମାନେ କହିଲେ, ''(ପ୍ରକୃତ) କଥା ହେଉଛି ଯେ ଆମେମାନେ ତୁମ ନିକଟକୁ ସେ (ଶାସ୍ତି) ସଂକ୍ରାନ୍ତରେ ସମାଚାର ନେଇ ଆସିଅଛୁ ଯାହା ସଂକ୍ରାନ୍ତରେ ଏମାନେ ସନ୍ଦେହ କରୁଛନ୍ତି ।''

قَالُوْا بَلْ جِئْنٰكَ بِمَا كَانُوْا فِيْهِ يَمْتَرُوْنَ ﴿٦٤﴾

୬୫. ''ଏବଂ ଆମେମାନେ ତୁମ ନିକଟକୁ ନିଶ୍ଚିତ ସମାଚାର ଆଣିଅଛୁ; ଏବଂ ଆମେମାନେ ବାସ୍ତବରେ ସତ୍ୟବାଦୀ ଅଟୁ ।''

وَاَتَيْنٰكَ بِالْحَقِّ وَاِنَّا لَصٰدِقُوْنَ ﴿٦٥﴾

୬୬. ସୁତରାଂ ତୁମେ ରାତ୍ରିର ଶେଷ ପ୍ରହରରେ (ଯେ କୌଣସି ସମୟରେ) ନିଜ ପରିବାରବର୍ଗକୁ ନେଇ (ଏଠାରୁ) ଚାଲିଯାଅ, ଏବଂ ନିଜେ ସେମାନଙ୍କ ପଛେ ପଛେ ଯାଅ; ଏବଂ ତୁମମାନଙ୍କ ମଧ୍ୟରୁ କେହି ପଛକୁ ଫେରି ନ ଦେଖୁ, [୨] ଏବଂ ଯେଉଁଠାକୁ [୩] ଯିବାପାଇଁ ତୁମମାନଙ୍କୁ ଆଦେଶ ଦିଆ ଯାଉଅଛି (ସମସ୍ତେ ସେଠାକୁ) ଚାଲିଯାଅ ।''

فَاَسْرِ بِاَهْلِكَ بِقِطْعٍ مِّنَ الَّيْلِ وَاتَّبِعْ اَدْبَارَهُمْ وَلَا يَلْتَفِتْ مِنْكُمْ اَحَدٌ وَّامْضُوْا حَيْثُ تُؤْمَرُوْنَ ﴿٦٦﴾

୬୭. ଏବଂ ଆମେ ସେମାନଙ୍କୁ ସ୍ପଷ୍ଟଭାବରେ ଏହି ବିଷୟ ସୂଚାଇ ଦେଇଥିଲୁ ଯେ ପ୍ରଭାତ ହେବା ମାତ୍ରେ ଏହି (ଲୋକ)ମାନଙ୍କର ମୂଳୋତ୍ପାଟନ କରି ଦିଆଯିବ ।

وَقَضَيْنَآ اِلَيْهِ ذٰلِكَ الْاَمْرَ اَنَّ دَابِرَ هٰٓؤُلَآءِ مَقْطُوْعٌ مُّصْبِحِيْنَ ﴿٦٧﴾

---

୧. ଏଠାରେ 'ମୁନ୍‌କର' ଶବ୍ଦ ଅପରିଚିତ ଅର୍ଥରେ ବ୍ୟବହୃତ ହୋଇଛି । ସେହି ଅର୍ଥ ଅଭିଧାନ ଦ୍ୱାରା ସମର୍ଥିତ ।

୨. ଏହି ଆଦେଶ ଦ୍ୱାରା ବାସ୍ତବରେ ହଜରତ ଲୁତଙ୍କ ପରିବାର ପ୍ରତି ଦୟା ପ୍ରଦର୍ଶନ କରାଯାଇଛି । କାରଣ ଯଦି ସେମାନେ ମୁହଁ ମୋଡ଼ି ପଛକୁ ଦେଖିବେ ତେବେ ସମ୍ଭବତଃ ବିବାହିତ କନ୍ୟା ଓ ଜାମାତାଙ୍କ ଯୋଗୁଁ ସେମାନଙ୍କ ମନ ପରିବର୍ତ୍ତିତ ହୋଇଯିବ ।

୩. ଅର୍ଥାତ୍ ବାର୍ତ୍ତାବାହକମାନେ ତୁମମାନଙ୍କୁ ଯେଉଁସ୍ଥାନକୁ ଯିବା ପାଇଁ କହିବେ ତୁମେମାନେ ସେଠାକୁ ଚାଲିଯାଅ । ତାହା ହିଁ ଆମର ଅଭିଳାଷ ।

| | |
|---|---|
| ୬୮. ଏବଂ ଏହି ସହରର ଲୋକମାନେ ଆନନ୍ଦ ଉଲ୍ଲାସ-[୧] ପୂର୍ବକ ତାହାଙ୍କ (ଅର୍ଥାତ୍ ଲୁତଙ୍କ) ନିକଟକୁ (ଏହି ଉଦ୍ଦେଶ୍ୟରେ) ଆସିଲେ (ଯେ ଏବେ ତାହାଙ୍କୁ ଧରିବାର ସୁଯୋଗ ମିଳିଅଛି) । | وَجَآءَ اَهْلُ الْمَدِيْنَةِ يَسْتَبْشِرُوْنَ ۝ |
| ୬୯. ସେ (ସେମାନଙ୍କୁ) କହିଲେ, "ଏମାନେ ଆମ୍ଭର ଅତିଥି ଅଟନ୍ତି, ସୁତରାଂ ତୁମେମାନେ (ସେମାନଙ୍କୁ ଭୟଭୀତ କରି) ଆମ୍ଭଙ୍କୁ ଅପମାନିତ କରାଅ ନାହିଁ ।" | قَالَ اِنَّ هٰٓؤُلَآءِ ضَيْفِيْ فَلَا تَفْضَحُوْنِ ۝ |
| ୭୦. "ଏବଂ ଅଲ୍ଲାହଙ୍କୁ ଭୟ କର ଓ ଆମ୍ଭଙ୍କୁ ଅପମାନିତ କର ନାହିଁ ।" | وَاتَّقُوا اللّٰهَ وَلَا تُخْزُوْنِ ۝ |
| ୭୧. ସେମାନେ କହିଲେ, "କ'ଣ ଆମେମାନେ ଯେ କୌଣସି ଫାଲ୍ତୁ ଲୋକଙ୍କୁ ନିଜ ପାଖରେ ରଖିବାକୁ ତୁମ୍ଭଙ୍କୁ ବାରଣ କରି ନ ଥିଲୁ ?" | قَالُوْٓا اَوَلَمْ نَنْهَكَ عَنِ الْعٰلَمِيْنَ ۝ |
| ୭୨. ସେ କହିଲେ, "ଯଦି ତୁମମାନଙ୍କୁ (ଆମ୍ଭ ବିରୁଦ୍ଧରେ) କିଛି (କାର୍ଯ୍ୟାନୁଷ୍ଠାନ) କରିବାକୁ ଥାଏ ତେବେ ଆମ୍ଭର ଏହି କନ୍ୟାମାନେ (ତୁମେମାନଙ୍କ ନିକଟରେ) [୨] ଅଛନ୍ତି (ଯେଉଁମାନେ ଜାମିନ ଭାବରେ ଯଥେଷ୍ଟ) ।" | قَالَ هٰٓؤُلَآءِ بَنٰتِيْٓ اِنْ كُنْتُمْ فٰعِلِيْنَ ۝ |
| ୭୩. (ହେ ମହମ୍ମଦ !) ତୁମ୍ଭ ଜୀବନର ରାଣ, ବାସ୍ତବରେ (ତୁମ୍ଭର) ଏ (ବିରୋଧୀ)ମାନେ (ସେହିମାନଙ୍କ ସଦୃଶ) ପାଗଳାମିର ବଶବର୍ତ୍ତୀ ହୋଇ ବିଭ୍ରାନ୍ତ ହେଉଛନ୍ତି । | لَعَمْرُكَ اِنَّهُمْ لَفِيْ سَكْرَتِهِمْ يَعْمَهُوْنَ ۝ |
| ୭୪. ତପରେ ସୂର୍ଯ୍ୟୋଦୟ ହୁଅନ୍ତେ ସେହି (ଅଙ୍ଗୀକୃତ) ଶାସ୍ତି ସେ (ଲୁତ ସମ୍ପ୍ରଦାୟର ଲୋକ)ମାନଙ୍କୁ କବଳିତ କରିଥିଲା । | فَاَخَذَتْهُمُ الصَّيْحَةُ مُشْرِقِيْنَ ۝ |
| ୭୫. ସୁତରାଂ ଆମ୍ଭେ (ଭୂମିକମ୍ପ ଦ୍ୱାରା)ଏହି ସହରର ଉପର ସ୍ତରକୁ ତାହାର ତଳ ସ୍ତରରେ ପରିଣତ କରିଦେଲୁ; [୩] ଏବଂ ସେମାନଙ୍କ ଉପରେ ମୃତ୍ତିକାରୁ ନିର୍ମିତ ଶିଳା ବୃଷ୍ଟି କରିଥିଲୁ । | فَجَعَلْنَا عَالِيَهَا سَافِلَهَا وَاَمْطَرْنَا عَلَيْهِمْ حِجَارَةً مِّنْ سِجِّيْلٍ ۝ |
| ୭୬. ବାସ୍ତବରେ ଏଥିରେ (ଅର୍ଥାତ୍ ଏହି ବର୍ଣ୍ଣନାରେ) ବିଜ୍ଞ ବ୍ୟକ୍ତିଙ୍କ ପାଇଁ (ଅନେକ) ନିଦର୍ଶନ ରହିଅଛି । | اِنَّ فِيْ ذٰلِكَ لَاٰيٰتٍ لِّلْمُتَوَسِّمِيْنَ ۝ |

୧. ଏହା ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ ଉଭୟ ପବିତ୍ର କୋରାନ ଓ ବାଇବେଲ୍ ଅନୁସାରେ ସେମାନେ ସେହି ଅତିଥିମାନଙ୍କୁ ଘରକୁ ନ ଆଣିବା ପାଇଁ ଲୁତଙ୍କୁ କହୁଥିଲେ । କିନ୍ତୁ ହଜରତ ଲୁତ ଅତିଶୟ ଅତିଥି ସତ୍କାରକ ଥିଲେ । ତେଣୁ ଯେତେବେଳେ ସେମାନଙ୍କ ବାରଣ ସତ୍ତ୍ୱେ ସେ ଅତିଥିମାନଙ୍କୁ ଘରକୁ ଆଣିଲେ ସେତେବେଳେ ତାଙ୍କ ଜାତିର ଲୋକମାନେ ଏହି କାରଣରୁ ଆନନ୍ଦରେ ଦଉଡ଼ି ଆସିଲେ ଯେ ବର୍ତ୍ତମାନ ଲୁତ ସେମାନଙ୍କ ଆୟତ୍ତାଧୀନ ହୋଇଛନ୍ତି ଓ ତାଙ୍କୁ ଶାସ୍ତି ଦେବା ପାଇଁ ସୁଯୋଗ ମିଳିଗଲା ।

୨. ୧୧:୭୯ ର ଟୀକା ଦ୍ରଷ୍ଟବ୍ୟ ।

୩. ଅର୍ଥାତ୍ ଭୂମିକମ୍ପ ଦ୍ୱାରା ଭୂପୃଷ୍ଠ ଓଲଟ ପାଲଟ ହୋଇଗଲା ।

وَإِنَّهَا لَبِسَبِيلٍ مُّقِيمٍ ٧٧

୭୭. ଏବଂ ତାହା (ଏକ ଅପରିଚିତ ସ୍ଥାନ ନୁହେଁ ବରଂ) ଏକ ସ୍ଥାୟୀ ମାର୍ଗ ଉପରେ ଅବସ୍ଥିତ [୧] ।

إِنَّ فِي ذَٰلِكَ لَآيَةً لِّلْمُؤْمِنِينَ ٧٨

୭୮. ବାସ୍ତବରେ ଏଥିରେ ବିଶ୍ୱାସକାରୀମାନଙ୍କ (ଉପକାର) ପାଇଁ ଏକ ନିଦର୍ଶନ ରହିଅଛି ।

وَإِن كَانَ أَصْحَابُ الْأَيْكَةِ لَظَالِمِينَ ٧٩

୭୯. ଏବଂ ବାସ୍ତବରେ ଅଏକା [୨] ନିବାସୀମାନେ (ଅର୍ଥାତ୍ ସୁଏବଙ୍କ ସମ୍ପ୍ରଦାୟ) ମଧ୍ୟ ଅତ୍ୟାଚାରୀ ଥିଲେ ।

فَانتَقَمْنَا مِنْهُمْ وَإِنَّهُمَا لَبِإِمَامٍ مُّبِينٍ ٨٠

୮୦. ସୁତରାଂ ଆମେ ଏମାନଙ୍କୁ ମଧ୍ୟ (ଏହି ପରି ଭାବରେ କଠିନ) ଶାସ୍ତି ଦେଇଥିଲୁ ଓ ଏହି ଉଭୟ (ସ୍ଥାନ) ଏକ ରାଜପଥ ନିକଟରେ ପୋତା ହୋଇରହିଛି ।

ରୁ:୬

وَلَقَدْ كَذَّبَ أَصْحَابُ الْحِجْرِ الْمُرْسَلِينَ ٨١

୮୧. ଏବଂ ବାସ୍ତବରେ ହିଜରବାସୀମାନେ [୩] (ମଧ୍ୟ ଆମର) ରସୁଲମାନଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ ।

وَآتَيْنَاهُمْ آيَاتِنَا فَكَانُوا عَنْهَا مُعْرِضِينَ ٨٢

୮୨. ଏବଂ ସେମାନଙ୍କୁ (ମଧ୍ୟ) ଆମେ (ପ୍ରତ୍ୟେକ ପ୍ରକାରର) ନିଦର୍ଶନ ପ୍ରଦାନ କରିଥିଲୁ, କିନ୍ତୁ ସେମାନେ ଏଥିପ୍ରତି ବିମୁଖ ହୋଇଥିଲେ ।

وَكَانُوا يَنْحِتُونَ مِنَ الْجِبَالِ بُيُوتًا آمِنِينَ ٨٣

୮୩. ଏବଂ ସେମାନେ ପାହାଡର କେତେକ ଅଂଶକୁ କାଟି ଗୃହ ନିର୍ମାଣ କରି ନିରାପଦରେ ରହୁଥିଲେ ।

فَأَخَذَتْهُمُ الصَّيْحَةُ مُصْبِحِينَ ٨٤

୮୪. କିନ୍ତୁ ପ୍ରଭାତରେ ଶାସ୍ତି ସେମାନଙ୍କୁ କବଳିତ କରିଥିଲା ।

فَمَا أَغْنَىٰ عَنْهُم مَّا كَانُوا يَكْسِبُونَ ٨٥

୮୫. ଏବଂ ସେମାନେ ଯାହା କିଛି ଉପାର୍ଜନ କରିଥିଲେ (ସେତେବେଳେ) ତାହା ସେମାନଙ୍କ ପାଇଁ ଲାଭପ୍ରଦ ହେଲାନାହିଁ ।

وَمَا خَلَقْنَا السَّمَاوَاتِ وَالْأَرْضَ وَمَا بَيْنَهُمَا إِلَّا بِالْحَقِّ ۗ وَإِنَّ السَّاعَةَ لَآتِيَةٌ ۖ فَاصْفَحِ الصَّفْحَ الْجَمِيلَ ٨٦

୮୬. ଏବଂ ଆମେ ଆକାଶ ଓ ପୃଥିବୀକୁ ତଥା ତନ୍ମଧ୍ୟରେ ଯାହା କିଛି ଅଛି ସେଗୁଡ଼ିକୁ ସତ୍ୟ (ଓ ତତ୍ତ୍ୱ) ସହିତ ସୃଷ୍ଟି କରିଅଛୁ; ଏବଂ ସେହି (ନିର୍ଦ୍ଧାରିତ) ସମୟ ନିଶ୍ଚୟ ଉପସ୍ଥିତ ହେବ; ସୁତରାଂ ତୁମେ (ସେମାନଙ୍କ ଅତ୍ୟାଚାରକୁ ଉଦାର ଭାବରେ) କ୍ଷମାକର ।

إِنَّ رَبَّكَ هُوَ الْخَلَّاقُ الْعَلِيمُ ٨٧

୮୭. ବାସ୍ତବରେ ତୁମର ପାଳନକର୍ତ୍ତା ମହାନ୍ ସ୍ରଷ୍ଟା (ଓ) ସର୍ବଜ୍ଞ ।

---

୧. ହେଜାଜରୁ ସିରିୟା ଯିବା ମାର୍ଗରେ ଲୁତଙ୍କ ବାସସ୍ଥାନ ଅବସ୍ଥିତ ଥିଲା ।

୨. 'ଅଏକା' ହଜରତ୍ ସୁଏବଙ୍କ ଜାତିର ଅନ୍ୟ ଏକ ନାମ । ଅଏକାର ଆଉ ଗୋଟିଏ ଅର୍ଥ ହେଉଛି ଘନ ଅରଣ୍ୟ । ତାହା ଏପରି ଅରଣ୍ୟ ଯେଉଁଠାରେ ବହୁଳ ଭାବରେ କୋଳି ଆଦି ଗଛ ଥାଏ । ପ୍ରତୀତ ହେଉଛି, ମଦୟନ ନିକଟରେ ଏକ ଘନ ଅରଣ୍ୟ ଥିଲା ଓ ସେଠାରେ ଏ ପ୍ରକାର ଅନେକ ଗଛ ଥିଲା । ସେଥିଯୋଗୁଁ ମଦୟନ ନିବାସୀଙ୍କୁ 'ଅସହାବେ ଅଏକା' କୁହାଯାଏ ।

୩. 'ହିଜ୍ର' ଅର୍ଥ ଏପରି ପରିସର ବା ଦୁର୍ଗ ବା ନଗର ଯାହାର ଚତୁର୍ଦିଗରେ ପଥର ନିର୍ମିତ ପ୍ରାଚୀର ଥାଏ । 'ଅସହାବୁଲ ହିଜ୍ର' ଅର୍ଥ ସମୁଦ ବା ସ୍ୱାଲେହଙ୍କ ଜାତିର ନଗର । ଏହାକୁ ଏଥିପକାଶେ ହିଜ୍ର କୁହାଯାଏ ଯେହେତୁ ସେହି ନଗରର ଚତୁର୍ଦିଗରେ ସୁଦୃଢ଼ ପ୍ରାଚୀର ଥିଲା ।

وَلَقَدْ اٰتَيْنٰكَ سَبْعًا مِّنَ الْمَثَانِيْ وَالْقُرْاٰنَ الْعَظِيْمَ ﴿٨٨﴾

୮୮. ଏବଂ ବାସ୍ତବରେ ଆମେ ତୁମକୁ ବାରମ୍ବାର ଆବୃତ୍ତି[୧] କରାଯାଉଥିବା ସାତ ଗୋଟି (ଆୟତ) ତଥା ମହାନ୍ କୋରାନ (ଗ୍ରନ୍ଥ) ପ୍ରଦାନ କରିଅଛୁ ।

لَا تَمُدَّنَّ عَيْنَيْكَ اِلٰى مَا مَتَّعْنَا بِهٖۤ اَزْوَاجًا مِّنْهُمْ وَلَا تَحْزَنْ عَلَيْهِمْ وَاخْفِضْ جَنَاحَكَ لِلْمُؤْمِنِيْنَ ﴿٨٩﴾

୮୯. ତୁମେ ସେମାନଙ୍କ ମଧ୍ୟରେ ଥିବା ସେହି ସହଯୋଗୀମାନଙ୍କ ଆଡ଼କୁ ଚକ୍ଷୁ ବିସ୍ତାରିତ[୨] କରି ଦେଖ ନାହିଁ ଯେଉଁମାନଙ୍କୁ ଆମେ ସାମୟିକ (ଲାଭଦାୟକ) ସାମଗ୍ରୀ ପ୍ରଦାନ କରିଅଛୁ, ଏବଂ ସେମାନଙ୍କ (ବିନାଶ) ପାଇଁ ଦୁଃଖିତ ହୁଅ ନାହିଁ; ଏବଂ ବିଶ୍ୱାସକାରୀମାନଙ୍କ ଉପରେ ନିଜର (ସଦୟ) ବାହୁକୁ ଅବନତ କରି ରଖ ।

وَقُلْ اِنِّيْۤ اَنَا النَّذِيْرُ الْمُبِيْنُ ﴿٩٠﴾

୯୦. ଏବଂ ତୁମେ କୁହ, "ଆମେ ବାସ୍ତବରେ ଜଣେ ପ୍ରକାଶ୍ୟ ସଚେତକ ଅଟୁ ।"

كَمَاۤ اَنْزَلْنَا عَلَى الْمُقْتَسِمِيْنَ ﴿٩١﴾

୯୧. କାରଣ ଆମେ ସେମାନଙ୍କ ପ୍ରତି (ଶାସ୍ତି) ପ୍ରେରଣ କରିଥିଲୁ ଯେଉଁମାନେ ନିଜେ ବିଭକ୍ତ[୩] ହୋଇଥିଲେ;

الَّذِيْنَ جَعَلُوا الْقُرْاٰنَ عِضِيْنَ ﴿٩٢﴾

୯୨. ଯେଉଁମାନେ (ପବିତ୍ର) କୋରାନକୁ ବିଖଣ୍ଡିତ କରିଥିଲେ (ଓ ଏହାକୁ ମିଥ୍ୟାର[୪] ଏକ ସମାହାର ବୋଲି ଘୋଷଣା କରିଥିଲେ);

---

୧. ଅର୍ଥାତ୍ ସୁରା ଫାତିହା, ଯାହାର ଆୟତଗୁଡ଼ିକ ବାରମ୍ବାର ଆବୃତ୍ତି କରାଯାଏ । ମୂଳ ଶବ୍ଦ 'ମସାନୀ'କୁ ଲକ୍ଷ୍ୟ କଲେ ଜଣାଯିବ ଯେ ଏହି ଆୟତ୍‌କୁ ବିଭିନ୍ନ ପ୍ରକାରେ ଅନୁବାଦ କରାଯାଇପାରେ : (କ) ଆମେ ତୁମକୁ ଏପରି ସାତଗୋଟି ଆୟତ ପ୍ରଦାନ କରିଅଛୁ ଯହିଁରେ ସମ୍ପୂର୍ଣ୍ଣରୂପେ ଅଲ୍ଲାହଙ୍କର ସ୍ତୁତି-ଗାନ କରାଯାଇଛି; (ଖ) ତୁମକୁ ଏପରି ସାତଗୋଟି ଆୟତ ପ୍ରଦାନ କରାଯାଇଛି ଯହିଁରେ ଅଲ୍ଲାହ ଓ ତାହାଙ୍କ ଦ୍ୱାରା ସୃଷ୍ଟ ପ୍ରାଣୀଜଗତ ମଧ୍ୟରେ ଥିବା ସମ୍ପର୍କ ସମ୍ବନ୍ଧରେ ସବିସ୍ତାର ଚର୍ଚ୍ଚା କରାଯାଇଛି ।

୨. ଅର୍ଥାତ୍ ହେ ନବି ! ଅବିଶ୍ୱାସକାରୀମାନଙ୍କ ଧନକୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଦେଖ ନାହିଁ । କାରଣ ସେମାନଙ୍କ ପାଇଁ ବିନାଶକୁ ଅନିବାର୍ଯ୍ୟ କରାଯାଇଛି । ସୁତରାଂ ଏହି ଧନ ସେମାନଙ୍କ ସକାଶେ ଲାଭଦାୟକ ହେବ ନାହିଁ କି ତୁମେ ସେମାନଙ୍କ ସକାଶେ ଦୁଃଖିତ ହେବା ସେମାନଙ୍କ ପକ୍ଷରେ ଲାଭଦାୟକ ହେବ ନାହିଁ । ତେଣୁ ତୁମେ ଏହି ଭାବନାକୁ ମନ ଭିତରୁ ଫିଙ୍ଗି ଦିଅ ।

୩. ଅର୍ଥାତ୍ ହିଜରତ ସମୟରେ ।

୪. 'ଯେକିନ୍' ଅର୍ଥ : (କ) ଖଣ୍ଡ; (ଖ) ମିଥ୍ୟା । ପ୍ରାକ୍ତନ ଅନୁବାଦକମାନେ ପ୍ରଥମ ଅର୍ଥକୁ ଗ୍ରହଣ କରିଥିବା ବେଳେ ଏଠାରେ ଦ୍ୱିତୀୟ ଅର୍ଥ ପ୍ରଯୋଜ୍ୟ ।

| | |
|---|---|
| ୯୩. ଅତଏବ ତୁମ ପାଳନକର୍ତ୍ତାଙ୍କ ରାଣ ! ଆମେ ନିଶ୍ଚୟ ସେ ସମସ୍ତଙ୍କୁ ଉତ୍ତରଦାୟୀ କରିବୁ– | فَوَرَبِّكَ لَنَسْـَٔلَنَّهُمْ أَجْمَعِينَ ﴿٩٢﴾ |
| ୯୪. ସେ କାର୍ଯ୍ୟ ସଂକ୍ରାନ୍ତରେ, ଯାହା ସେମାନେ କରୁଥିଲେ । | عَمَّا كَانُوا يَعْمَلُونَ ﴿٩٣﴾ |
| ୯୫. ସୁତରାଂ ତୁମଙ୍କୁ ଯେଉଁ ବିଷୟରେ ଆଦେଶ ଦିଆଯାଇଅଛି ତାହାକୁ ସ୍ପଷ୍ଟ ଭାବରେ (ଲୋକମାନଙ୍କୁ) ଜଣାଇ ଦିଅ, ଏବଂ ଏହି ମୁସରିକମାନଙ୍କ ଠାରୁ ଦୂରେଇ ରୁହ । | فَاصْدَعْ بِمَا تُؤْمَرُ وَأَعْرِضْ عَنِ الْمُشْرِكِينَ ﴿٩٤﴾ |
| ୯୬. ଆମେ ବାସ୍ତବରେ ତୁମଙ୍କୁ ସେହି ପରିହାସକାରୀଙ୍କ (ଚକ୍ରାନ୍ତ)ଠାରୁ ସୁରକ୍ଷିତ ରଖିବୁ; | إِنَّا كَفَيْنَٰكَ الْمُسْتَهْزِءِينَ ﴿٩٥﴾ |
| ୯୭. ଯେଉଁମାନେ ଅଲ୍ଲାହଙ୍କ ସହିତ ଅନ୍ୟ କେତେକଙ୍କୁ ଉପାସ୍ୟ ସ୍ଥିର କରୁଛନ୍ତି; ସୁତରାଂ ସେମାନେ ଶୀଘ୍ର (ଏହାର ପରିଣାମ) ଜାଣିପାରିବେ । | الَّذِينَ يَجْعَلُونَ مَعَ اللَّهِ إِلَٰهًا ءَاخَرَ ۚ فَسَوْفَ يَعْلَمُونَ ﴿٩٦﴾ |
| ୯୮. ଏବଂ ଆମେ ନିଶ୍ଚୟ ଜାଣୁ ଯେ ସେମାନେ ଯାହା କିଛି କହୁଛନ୍ତି ସେଥିଯୋଗୁଁ ତୁମର ହୃଦୟ ସଙ୍କୁଚିତ ହେଉଅଛି । | وَلَقَدْ نَعْلَمُ أَنَّكَ يَضِيقُ صَدْرُكَ بِمَا يَقُولُونَ ﴿٩٧﴾ |
| ୯୯. ସୁତରାଂ ତୁମେ ପ୍ରଶଂସା-ପୂର୍ବକ ନିଜ ପାଳନକର୍ତ୍ତାଙ୍କର ଗୁଣ ଗାନକର ଓ (ତାହାଙ୍କର) ସମ୍ପୂର୍ଣ୍ଣ ଆଜ୍ଞା ପାଳନକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ । | فَسَبِّحْ بِحَمْدِ رَبِّكَ وَكُن مِّنَ السَّٰجِدِينَ ﴿٩٨﴾ |
| ୧୦୦. ଏବଂ ମୃତ୍ୟୁ ସମୟର ଆଗମନ ପର୍ଯ୍ୟନ୍ତ ନିଜ ପାଳନକର୍ତ୍ତାଙ୍କର ଉପାସନା କରୁଥାଅ । | وَاعْبُدْ رَبَّكَ حَتَّىٰ يَأْتِيَكَ الْيَقِينُ ﴿٩٩﴾ |

سُورَةُ النَّحْلِ مَكِّيَّةٌ (١٦)

# ଅଲ—ନହଲ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୨୯ଟି ଆୟତ ଓ ୧୬ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧ ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

اَتٰۤى اَمْرُ اللّٰهِ فَلَا تَسْتَعْجِلُوْهُ ؕ سُبْحٰنَهٗ وَتَعٰلٰى عَمَّا يُشْرِكُوْنَ ②

୨. (ହେ ଅବିଶ୍ବାସକାରୀମାନେ !) ଅଲ୍ଲାହ୍‌ଙ୍କର ଆଦେଶ ଆଗତପ୍ରାୟ; ତେଣୁ ଏହା ସମ୍ବନ୍ଧରେ ଅଧୈର୍ଯ୍ୟ ହୁଅ ନାହିଁ; ସେ ହିଁ ପବିତ୍ର ଓ ସେମାନେ ସିର୍କ ସଂକ୍ରାନ୍ତରେ ଯାହା କିଛି କହୁଛନ୍ତି ସେ ତହିଁରୁ ବହୁ ଉର୍ଦ୍ଧ୍ୱରେ ।

يُنَزِّلُ الْمَلٰٓئِكَةَ بِالرُّوْحِ مِنْ اَمْرِهٖ عَلٰى مَنْ يَّشَآءُ مِنْ عِبَادِهٖۤ اَنْ اَنْذِرُوْۤا اَنَّهٗ لَاۤ اِلٰهَ اِلَّاۤ اَنَا فَاتَّقُوْنِ ③

୩. ସେ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହାଙ୍କୁ ପସନ୍ଦ କରନ୍ତି ସେମାନଙ୍କ ନିକଟକୁ ଦେବଦୂତମାନଙ୍କୁ (ତାହାଙ୍କ) ବାଣୀ ସହିତ ଅବତୀର୍ଣ୍ଣ କରନ୍ତି, (ଏବଂ ରସୁଲମାନଙ୍କୁ ନିର୍ଦ୍ଦେଶ ଦିଅନ୍ତି) "ଲୋକମାନଙ୍କୁ ଅବଗତ କରାଅ ଯେ ଆମ୍ଭ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ତେଣୁ ଆମ୍ଭଙ୍କୁ ହିଁ ଭୟକର ।"

خَلَقَ السَّمٰوٰتِ وَالْاَرْضَ بِالْحَقِّ ؕ تَعٰلٰى عَمَّا يُشْرِكُوْنَ ④

୪. ସେ ଆକାଶ ଓ ପୃଥିବୀକୁ ସତ୍ୟ (ଓ ତତ୍ତ୍ୱ) ସହିତ ସୃଷ୍ଟି କରିଛନ୍ତି; ସେ ସେମାନଙ୍କ ସିର୍କ ସଂକ୍ରାନ୍ତ ଚିନ୍ତାଧାରା ଠାରୁ ବହୁ ଉର୍ଦ୍ଧ୍ୱରେ ।

خَلَقَ الْاِنْسَانَ مِنْ نُّطْفَةٍ فَاِذَا هُوَ خَصِيْمٌ مُّبِيْنٌ ⑤

୫. ସେ ମନୁଷ୍ୟକୁ ଏକ ତୁଚ୍ଛ ଶୁକ୍ରବିନ୍ଦୁରୁ ସୃଷ୍ଟି କରିଛନ୍ତି; କିନ୍ତୁ ସେ (ନିଜକୁ ଏତେ ବଡ଼ ମନେ କରେ ଯେ ଆମ୍ଭ ସଂକ୍ରାନ୍ତରେ) ପ୍ରକାଶ୍ୟ କଳହକାରୀ ହୋଇଯାଏ ।

وَالْاَنْعَامَ خَلَقَهَا ۚ لَكُمْ فِيْهَا دِفْءٌ وَّمَنَافِعُ وَمِنْهَا تَاْكُلُوْنَ ⑥

୬. ଏବଂ ସେ ଚତୁଷ୍ପଦ ପ୍ରାଣୀକୁ ଏପରି ଗଢ଼ିଛନ୍ତି ଯେ ସେମାନଙ୍କ ଠାରେ ତୁମମାନଙ୍କ ସକାଶେ ଉଷ୍ଣ ସାମଗ୍ରୀ ତଥା ଅନ୍ୟାନ୍ୟ ଉପକାର ରହିଅଛି ଏବଂ ତୁମେମାନେ ସେମାନଙ୍କ (ମାଂସ)ର କିଛି ଅଂଶ ଭକ୍ଷଣ କର ।

وَلَكُمْ فِيْهَا جَمَالٌ حِيْنَ تُرِيْحُوْنَ وَحِيْنَ تَسْرَحُوْنَ ⑦

୭. ଏବଂ ଯେତେବେଳେ ତୁମେମାନେ ସେମାନଙ୍କୁ ସନ୍ଧ୍ୟା ସମୟରେ ଚରାଇ (ଗୃହାଭିମୁଖୀ) ଫେରାଇ ଆଣ ଓ ଏହିପରି ଯେତେବେଳେ ତୁମେମାନେ ସେମାନଙ୍କୁ (ପ୍ରଭାତରେ) ଚରାଇବା ପାଇଁ (ସ୍ୱଚ୍ଛନ୍ଦରେ) ଛାଡ଼ିଦିଅ ସେତେବେଳେ ସେଥିରେ (ତୁମମାନଙ୍କ ସକାଶେ) ଏକ ପ୍ରକାର ସୌନ୍ଦର୍ଯ୍ୟ (ତଥା ଗୌରବ)ର ସାମଗ୍ରୀ ରହିଥାଏ ।

وَتَحْمِلُ اَثْقَالَكُمْ اِلٰى بَلَدٍ لَّمْ تَكُوْنُوْا بٰلِغِيْهِ اِلَّا بِشِقِّ الْاَنْفُسِ ۭ اِنَّ رَبَّكُمْ لَرَءُوْفٌ رَّحِيْمٌ ⑧

୮. ଏବଂ ସେମାନେ ତୁମମାନଙ୍କ ଭାର ବହନ କରି ସେହି (ଦୂରବର୍ତ୍ତୀ) ସ୍ଥାନକୁ ନେଇଯା'ନ୍ତି ଯେଉଁ ସ୍ଥାନକୁ ତୁମେମାନେ ନିଜେ ଅକ୍ଳେଶରେ ନେଇ ପାରିବ ନାହିଁ; ବାସ୍ତବରେ ତୁମମାନଙ୍କର ପାଳନକର୍ତ୍ତା ଅତ୍ୟନ୍ତ ସ୍ନେହଶୀଳ (ଓ) ସଦା କରୁଣାମୟ ।

وَّالْخَيْلَ وَالْبِغَالَ وَالْحَمِيْرَ لِتَرْكَبُوْهَا وَزِيْنَةً ۭ وَيَخْلُقُ مَا لَا تَعْلَمُوْنَ ⑨

୯. ଏବଂ ସେ ଘୋଡ଼ା, ଖଚର ଓ ଗଧମାନଙ୍କୁ (ମଧ୍ୟ) ତୁମମାନଙ୍କ ଆରୋହଣ ତଥା ଶୋଭା ବର୍ଦ୍ଧନ ସକାଶେ (ସୃଷ୍ଟି କରିଛନ୍ତି); ଏବଂ ସେ (ତୁମମାନଙ୍କ ଆରୋହଣ ସକାଶେ ଭବିଷ୍ୟତରେ ଉତ୍କୃଷ୍ଟତର ଯାନବାହନ [୧] ମଧ୍ୟ) ସୃଷ୍ଟି କରିବେ ଯାହା ତୁମେମାନେ (ବର୍ତ୍ତମାନ) ଜାଣନାହିଁ ।

وَعَلَى اللّٰهِ قَصْدُ السَّبِيْلِ وَمِنْهَا جَاۗىِٕرٌ ۭ وَلَوْ شَاۗءَ لَهَدٰىكُمْ اَجْمَعِيْنَ ⑩

୧୦. ଏବଂ (ତୁମମାନଙ୍କୁ) ଧର୍ମର ସରଳ ପଥ (ଦେଖାଇବା ମଧ୍ୟ) ଅଲ୍ଲାହଙ୍କ ଦାୟିତ୍ୱ ଅଟେ ଏବଂ (ଏହାର ଆବଶ୍ୟକତା ଏଥିଯୋଗୁଁ ଯେ) ତନ୍ମଧ୍ୟରେ କେତେକ ବକ୍ର (ପଥ) ରହିଅଛି; ଏବଂ ଯଦି ସେ ଇଚ୍ଛା କରନ୍ତେ ତେବେ ସମସ୍ତଙ୍କୁ ସତ୍‌ପଥ ପ୍ରଦର୍ଶନ କରାନ୍ତେ ।

هُوَ الَّذِيْٓ اَنْزَلَ مِنَ السَّمَاۗءِ مَاۗءً لَّكُمْ مِّنْهُ شَرَابٌ وَّمِنْهُ شَجَرٌ فِيْهِ تُسِيْمُوْنَ ⑪

୧୧. ସେ (ଅଲ୍ଲାହ) ହିଁ ତୁମମାନଙ୍କ ସକାଶେ ମେଘରୁ ଜଳ ବୃଷ୍ଟି କରାନ୍ତି; ତହିଁରେ ତୁମମାନଙ୍କ ପିଇବା ପାଇଁ (ଜଳ) ଅଛି ଓ ସେଥିରୁ ବୃକ୍ଷଲତା (ସୃଷ୍ଟି)ହୁଏ ଯହିଁରେ ତୁମେମାନେ (ପଶୁମାନଙ୍କୁ) ଚରାଅ ।

يُنْۢبِتُ لَكُمْ بِهِ الزَّرْعَ وَالزَّيْتُوْنَ وَالنَّخِيْلَ وَالْاَعْنَابَ وَمِنْ كُلِّ الثَّمَرٰتِ ۭ اِنَّ فِيْ ذٰلِكَ لَاٰيَةً لِّقَوْمٍ يَّتَفَكَّرُوْنَ ⑫

୧୨. ସେ ଏହାଦ୍ୱାରା ତୁମମାନଙ୍କ ପାଇଁ ଶସ୍ୟ, ଜଇତୁନ୍, ଖଜୁରି ଓ ଅଙ୍ଗୁର ତଥା (ଅନ୍ୟାନ୍ୟ) ପ୍ରତ୍ୟେକ ପ୍ରକାର ଫଳ ଜାତ କରାନ୍ତି; ଯେଉଁମାନେ ଭାବିଚିନ୍ତି କାର୍ଯ୍ୟ କରନ୍ତି ସେମାନଙ୍କ ସକାଶେ ଏଥିରେ ବାସ୍ତବରେ ଏକ (ସୁସ୍ପଷ୍ଟ) ନିଦର୍ଶନ ରହିଅଛି ।

وَسَخَّرَ لَكُمُ الَّيْلَ وَالنَّهَارَ ۙ وَالشَّمْسَ وَالْقَمَرَ ۭ وَالنُّجُوْمُ مُسَخَّرٰتٌۢ بِاَمْرِهٖ ۭ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّعْقِلُوْنَ ⑬

୧୩. ଏବଂ ସେ ରାତି ଓ ଦିନକୁ ତଥା ସୂର୍ଯ୍ୟ ଓ ଚନ୍ଦ୍ରକୁ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି ଏବଂ ତାହାଙ୍କ ଆଦେଶାନୁସାରେ (ଅନ୍ୟାନ୍ୟ ଗ୍ରହ ଓ) ନକ୍ଷତ୍ରମାନ ମଧ୍ୟ (ତୁମମାନଙ୍କ) ସେବାରେ ରତ ଅଛନ୍ତି; ଯେଉଁମାନେ ବୁଦ୍ଧିମତାର ସହ କାର୍ଯ୍ୟ କରୁଛନ୍ତି ସେମାନଙ୍କ ସକାଶେ ଏଥିରେ ବାସ୍ତବରେ ଅନେକ ନିଦର୍ଶନ ରହିଅଛି ।

---

୧. ଏଠାରେ ପରିଷ୍କାର ଭାବରେ ରେଳଗାଡ଼ି, ପାଣିଜାହାଜ, ଉଡ଼ାଜାହାଜ ଓ ମୋଟର ଆଦି ଯାନ ବିଷୟରେ ଭବିଷ୍ୟବାଣୀ ଅଛି ।

وَمَا ذَرَاَ لَكُمْ فِي الْاَرْضِ مُخْتَلِفًا اَلْوَانُهٗ ۗ اِنَّ فِيْ ذٰلِكَ لَاٰيَةً لِّقَوْمٍ يَّذَّكَّرُوْنَ ⑭

୧୪. ଏବଂ ଯେଉଁ ବିଭିନ୍ନ ପ୍ରକାରର ବସ୍ତୁ ସେ ତୁମମାନଙ୍କ ସକାଶେ ଭୂପୃଷ୍ଠରେ ସୃଷ୍ଟି କରିଛନ୍ତି (ଯାହା ତୁମମାନଙ୍କ କାର୍ଯ୍ୟରେ ଲାଗେ) ତହିଁରେ ସେହି ଲୋକମାନଙ୍କ ପାଇଁ ବାସ୍ତବିକ ଏକ ନିଦର୍ଶନ ରହିଅଛି ଯେଉଁମାନେ ଉପଦେଶ ଗ୍ରହଣ କରନ୍ତି ।

وَهُوَ الَّذِيْ سَخَّرَ الْبَحْرَ لِتَاْكُلُوْا مِنْهُ لَحْمًا طَرِيًّا وَّتَسْتَخْرِجُوْا مِنْهُ حِلْيَةً تَلْبَسُوْنَهَا ۚ وَتَرَى الْفُلْكَ مَوَاخِرَ فِيْهِ وَلِتَبْتَغُوْا مِنْ فَضْلِهٖ وَلَعَلَّكُمْ تَشْكُرُوْنَ ⑮

୧୫. ଏବଂ ସେ ସମୁଦ୍ରକୁ ମଧ୍ୟ (ତୁମମାନଙ୍କ) ସେବାରେ ନିୟୋଜିତ କରିଛନ୍ତି ଯଦ୍ଦ୍ୱାରା ତୁମେମାନେ ତହିଁରୁ (ମାଛର) ସଦ୍ୟ ମାଂସ ଭକ୍ଷଣ କର, ଏବଂ ତହିଁରୁ ଅଳଙ୍କାର (ସାମଗ୍ରୀମାନ) ସଂଗ୍ରହ କର ଯାହାକୁ ତୁମେମାନେ ପରିଧାନ କର; ଏବଂ ତନ୍ମଧ୍ୟରେ ଜଳଯାନ ଗୁଡ଼ିକ ଜଳ ବିଦୀର୍ଣ୍ଣ କରି (ଦ୍ରୁତବେଗରେ) ଗତି କରୁଥିବାର ତୁମେ ଦେଖୁଅଛ, (ଯଦ୍ଦ୍ୱାରା ତୁମେମାନେ ଜଳଯାତ୍ରା କରିପାରିବ) ଏବଂ ଯଦ୍ଦ୍ୱାରା ତୁମେମାନେ ତାହାଙ୍କର ଅନ୍ୟ କେତେକ ଅନୁଗ୍ରହ (ମଧ୍ୟ) ସନ୍ଧାନ କରିବ ଏବଂ (ତାଙ୍କର) କୃତଜ୍ଞତା ଜ୍ଞାପନ କରିବ ।

وَاَلْقٰى فِي الْاَرْضِ رَوَاسِيَ اَنْ تَمِيْدَ بِكُمْ وَاَنْهٰرًا وَّسُبُلًا لَّعَلَّكُمْ تَهْتَدُوْنَ ⑯

୧୬. ଏବଂ ସେ ଭୂପୃଷ୍ଠରେ (ସୁଦୃଢ଼) ପର୍ବତ ସ୍ଥାପନ କରିଛନ୍ତି ଯେପରିକି ତାହା ତୁମମାନଙ୍କୁ ଧାରଣ କରିପାରିବ ଏବଂ ସେ ତୁମମାନଙ୍କ ସକାଶେ ଅନେକ ନଦୀ (ପ୍ରବାହିତ କରାଇଛନ୍ତି) ଓ ଅନେକ (ସ୍ଥଳ) ପଥ (ସୃଷ୍ଟି) କରିଛନ୍ତି ଯଦ୍ଦ୍ୱାରା ତୁମେମାନେ (ନିଜର ଗନ୍ତବ୍ୟ ସ୍ଥଳ ପର୍ଯ୍ୟନ୍ତ ସହଜରେ) ପଥ ପାଇପାରିବ ।

وَعَلٰمٰتٍ ۗ وَبِالنَّجْمِ هُمْ يَهْتَدُوْنَ ⑰

୧୭. ଏବଂ (ଏତଦ୍‌ବ୍ୟତୀତ ସେ) ଅନ୍ୟ ଚିହ୍ନ ମଧ୍ୟ (ସ୍ଥାପନ କରିଛନ୍ତି) ଏବଂ ନକ୍ଷତ୍ରମାନଙ୍କ ଦ୍ୱାରା ମଧ୍ୟ ସେମାନେ ସଠିକ୍ ପଥ ପାଇ ପାରନ୍ତି ।

اَفَمَنْ يَّخْلُقُ كَمَنْ لَّا يَخْلُقُ ۗ اَفَلَا تَذَكَّرُوْنَ ⑱

୧୮. ତେବେ (କୁହ), ''ଯେ ସୃଷ୍ଟିକରେ କ'ଣ ସେ ତାହା ସଦୃଶ ହୋଇପାରେ ଯେ (କିଛି) ସୃଷ୍ଟି କରେ ନାହିଁ ? କ'ଣ ତଥାପି ତୁମେମାନେ ବୁଝି ପାରୁନାହଁ ?''

وَاِنْ تَعُدُّوْا نِعْمَةَ اللّٰهِ لَا تُحْصُوْهَا ۗ اِنَّ اللّٰهَ لَغَفُوْرٌ رَّحِيْمٌ ⑲

୧୯. ଏବଂ ଯଦି ତୁମେମାନେ ଅଲ୍ଲାହ୍‌ଙ୍କର କୃପାକୁ ଗଣନା କରିବାକୁ ଚେଷ୍ଟା କରିବ ତେବେ ତୁମେମାନେ ତାହାକୁ (କଦାପି) ଗଣନା କରିପାରିବ ନାହିଁ; ବାସ୍ତବରେ ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَاللّٰهُ يَعْلَمُ مَا تُسِرُّوْنَ وَمَا تُعْلِنُوْنَ ⑳

୨୦. ତୁମେମାନେ ଯାହାକିଛି ଗୋପନ କର ଓ ତୁମେମାନେ ଯାହା କିଛି ପ୍ରକାଶ କର ଅଲ୍ଲାହ୍ ତାହା ଜାଣନ୍ତି ।

وَالَّذِيْنَ يَدْعُوْنَ مِنْ دُوْنِ اللّٰهِ لَا يَخْلُقُوْنَ شَيْـًٔا وَّهُمْ يُخْلَقُوْنَ ㉑

୨୧. ଏବଂ ଅଲ୍ଲାହ୍‌ଙ୍କ ବ୍ୟତୀତ ସେମାନେ ଯେଉଁସବୁ (ମିଥ୍ୟା ଉପାସ୍ୟ)ଙ୍କୁ ଡାକନ୍ତି ସେମାନେ କିଛି ସୃଷ୍ଟି କରିପାରନ୍ତି ନାହିଁ; ଅଥଚ ସେମାନେ ନିଜେ ସୃଷ୍ଟ ହୋଇଛନ୍ତି ।

୨୨. ସେମାନେ (ସମସ୍ତେ) ମୃତ, ଜୀବିତ ନୁହନ୍ତି; ଏବଂ ସେମାନେ (ଏହା ମଧ୍ୟ) ଜାଣନ୍ତି ନାହିଁ ଯେ ସେମାନେ କେବେ ଉତ୍‌ଥିତ ହେବେ ।

أَمْوَاتٌ غَيْرُ أَحْيَاءٍ ۖ وَمَا يَشْعُرُونَ أَيَّانَ يُبْعَثُونَ ﴿٢٢﴾

ରୁ:୩

୨୩. (ସୁତରାଂ ଭଲଭାବରେ ମନେରଖ ଯେ) ତୁମମାନଙ୍କର ଉପାସ୍ୟ (ଅଲ୍ଲାହ) ଏକମାତ୍ର ଉପାସ୍ୟ; ଏବଂ ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ହୃଦୟ (ସତ୍ୟକୁ) ଜାଣେ ନାହିଁ ଏବଂ ସେମାନେ ଅହଙ୍କାରୀ ।

إِلَٰهُكُمْ إِلَٰهٌ وَاحِدٌ ۚ فَالَّذِينَ لَا يُؤْمِنُونَ بِالْآخِرَةِ قُلُوبُهُم مُّنكِرَةٌ وَهُم مُّسْتَكْبِرُونَ ﴿٢٣﴾

୨୪. ଏହା ନିଃସନ୍ଦେହ ଯେ ସେମାନେ ଯାହା କିଛି ଗୋପନ କରନ୍ତି ଓ ଯାହା କିଛି ପ୍ରକାଶ କରନ୍ତି ଅଲ୍ଲାହ (ସେ ବିଷୟ) ଜାଣନ୍ତି; ସେ ଅହଙ୍କାରୀମାନଙ୍କୁ ଆଦୌ ପସନ୍ଦ କରନ୍ତି ନାହିଁ ।

لَا جَرَمَ أَنَّ اللَّهَ يَعْلَمُ مَا يُسِرُّونَ وَمَا يُعْلِنُونَ ۚ إِنَّهُ لَا يُحِبُّ الْمُسْتَكْبِرِينَ ﴿٢٤﴾

୨୫. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ତୁମମାନଙ୍କ ପାଳନକର୍ତ୍ତା ଯାହା (ବାଣୀ) ଅବତୀର୍ଣ୍ଣ କରିଛନ୍ତି ତାହା କିପରି (ମହତ୍ତ୍ୱପୂର୍ଣ୍ଣ) ଅଟେ ? ସେମାନେ କହନ୍ତି, ''ଏହା (ଅଲ୍ଲାହଙ୍କର ବାଣୀ ନୁହେଁ ବରଂ) ପୂର୍ବବର୍ତ୍ତୀ ଲୋକମାନଙ୍କର କାହାଣୀ ଅଟେ ।''

وَإِذَا قِيلَ لَهُم مَّاذَا أَنزَلَ رَبُّكُمْ ۙ قَالُوا أَسَاطِيرُ الْأَوَّلِينَ ﴿٢٥﴾

୨୬. (ପରିଣାମ ସ୍ୱରୂପ) ସେମାନେ କୟାମତ ଦିନ ନିଜର ବୋଝ ସମ୍ପୂର୍ଣ୍ଣରୂପେ ବହନ କରିବେ ତଥା ସେହି ନିର୍ବୋଧମାନଙ୍କ ବୋଝ ମଧ୍ୟ, ଯେଉଁମାନଙ୍କୁ ସେମାନେ ପଥଭ୍ରଷ୍ଟ କରାନ୍ତି; ମନେରଖ ! ସେମାନେ ଯେଉଁ ବୋଝ ବହନ କରୁଛନ୍ତି ତାହା ଅତ୍ୟନ୍ତ ମନ୍ଦ ଅଟେ ।

لِيَحْمِلُوا أَوْزَارَهُمْ كَامِلَةً يَوْمَ الْقِيَامَةِ ۙ وَمِنْ أَوْزَارِ الَّذِينَ يُضِلُّونَهُم بِغَيْرِ عِلْمٍ ۗ أَلَا سَاءَ مَا يَزِرُونَ ﴿٢٦﴾

ରୁ:୪

୨୭. ଯେଉଁମାନେ ସେମାନଙ୍କ ପୂର୍ବରୁ ଥିଲେ ସେମାନେ (ମଧ୍ୟ ତତ୍କାଳୀନ ରସୁଲମାନଙ୍କ ବିରୁଦ୍ଧରେ) ଚକ୍ରାନ୍ତ କରିଥିଲେ, ଯାହାର ଫଳସ୍ୱରୂପ ଅଲ୍ଲାହ ସେମାନଙ୍କ ଚକ୍ରାନ୍ତକୁ ସମୂଳେ ଧ୍ୱଂସ କରିଥିଲେ, ଯଦ୍ୱାରା ସେମାନଙ୍କ ଉପରେ ଛାତ ନିପତିତ ହୋଇଥିଲା; ଏବଂ ସେମାନଙ୍କ ପ୍ରତି ଏହି ଶାସ୍ତି କେଉଁଠାରୁ ଆସିଲା ତାହା ସେମାନେ ମଧ୍ୟ ଜାଣି ନ ଥିଲେ ।

قَدْ مَكَرَ الَّذِينَ مِن قَبْلِهِمْ فَأَتَى اللَّهُ بُنْيَانَهُم مِّنَ الْقَوَاعِدِ فَخَرَّ عَلَيْهِمُ السَّقْفُ مِن فَوْقِهِمْ وَأَتَاهُمُ الْعَذَابُ مِنْ حَيْثُ لَا يَشْعُرُونَ ﴿٢٧﴾

୨୮. ତା'ପରେ କୟାମତ ଦିନ ସେ ସେମାନଙ୍କୁ ଅପମାନିତ କରିବେ ଓ କହିବେ, ''ଆମର ସମକକ୍ଷ (ଉପାସ୍ୟ)ମାନେ କାହାନ୍ତି ଯେଉଁମାନଙ୍କ ଯୋଗୁଁ ତୁମେମାନେ (ଆମର ରସୁଲମାନଙ୍କର) ଶତ୍ରୁତା (ଓ ବିରୁଦ୍ଧାଚରଣ) କରୁଥିଲ ?'' ଯେଉଁମାନଙ୍କୁ ଜ୍ଞାନ ପ୍ରଦାନ କରାଯାଇଥିବ ସେମାନେ

ثُمَّ يَوْمَ الْقِيَامَةِ يُخْزِيهِمْ وَيَقُولُ أَيْنَ شُرَكَائِيَ الَّذِينَ كُنتُمْ تُشَاقُّونَ فِيهِمْ ۚ قَالَ الَّذِينَ أُوتُوا

(ସେତେବେଳେ) କହିବେ, "ଆଜି ନିଶ୍ଚିତରୂପେ ଅବିଶ୍ୱାସକାରୀମାନଙ୍କ ପ୍ରତି ଅପମାନ ଓ ଦୁର୍ଦ୍ଦଶା (ଉପସ୍ଥିତ) ହେବ ।"

الْعِلْمَ اِنَّ الْخِزْيَ الْيَوْمَ وَالسُّوْٓءَ عَلَى الْكٰفِرِيْنَ ۝

୨୯. ଯେଉଁ (ଅବିଶ୍ୱାସକାରୀ)ମାନେ ନିଜ ପ୍ରତି ଅତ୍ୟାଗ୍ଭର କରୁଥିବା ଅବସ୍ଥାରେ ଦେବଦୂତମାନେ ସେମାନଙ୍କର ପ୍ରାଣ ହରଣ କରନ୍ତି ସେମାନେ ଆତ୍ମସମର୍ପଣ କରି କହିବେ, "ଆମେମାନେ କୌଣସି କୁକର୍ମ କରୁ ନ ଥିଲୁ;" (ସେତେବେଳେ ସେମାନଙ୍କୁ କୁହାଯିବ) "ଏପରି ନୁହେଁ; ବରଂ (ପକ୍ଷାନ୍ତରେ) ଯାହାକିଛି ତୁମେମାନେ କରୁଥିଲ ବାସ୍ତବିକ ଅଲ୍ଲାହ୍ ତାହାକୁ ଭଲଭାବରେ ଜାଣନ୍ତି ।"

الَّذِيْنَ تَتَوَفّٰىهُمُ الْمَلٰٓئِكَةُ ظَالِمِيْٓ اَنْفُسِهِمْ فَاَلْقَوُا السَّلَمَ مَا كُنَّا نَعْمَلُ مِنْ سُوْٓءٍ بَلٰٓى اِنَّ اللّٰهَ عَلِيْمٌ بِمَا كُنْتُمْ تَعْمَلُوْنَ ۝

୩୦. ସୁତରାଂ ତୁମେମାନେ ନରକର ଦ୍ୱାରମାନ ଦେଇ ସେଠାରେ ସର୍ବଦା ବାସ କରିବା ପାଇଁ ପ୍ରବେଶ କର, କାରଣ ଅହଙ୍କାରୀମାନଙ୍କର ବାସ ସ୍ଥାନ ଅତ୍ୟନ୍ତ ମନ୍ଦ ଅଟେ ।

فَادْخُلُوْٓا اَبْوَابَ جَهَنَّمَ خٰلِدِيْنَ فِيْهَا فَلَبِئْسَ مَثْوَى الْمُتَكَبِّرِيْنَ ۝

୩୧. ଏବଂ (ଯେତେବେଳେ) ଧର୍ମଭୀରୁମାନଙ୍କୁ କୁହାଗଲା, ତୁମମାନଙ୍କ ପାଳନକର୍ତ୍ତା ଯାହା (ଅର୍ଥାତ୍ ଯେଉଁ ବାଣୀ) ଅବତୀର୍ଣ୍ଣ କରିଛନ୍ତି ତାହା କିପରି (ଗୌରବମୟ) ଅଟେ ?" ସେମାନେ ଉତ୍ତର ଦେଲେ, "(ବାସ୍ତବିକ ଏହା) ଅତି ଉତ୍ତମ;" ଯେଉଁମାନେ ସତ୍‌କର୍ମ (ର ମାର୍ଗ ଅବଲମ୍ବନ) କରନ୍ତି ସେମାନଙ୍କ ପାଇଁ ଇହକାଳରେ କଲ୍ୟାଣ ରହିଅଛି, ଏବଂ (ସେମାନଙ୍କ ପାଇଁ) ପରକାଳର ବାସସ୍ଥାନ ଆହୁରି ଉତ୍କୃଷ୍ଟ ହେବ; ଏବଂ ଧର୍ମଭୀରୁମାନଙ୍କର ବାସସ୍ଥାନ ବାସ୍ତବରେ ଅତି ଉତ୍ତମ ଅଟେ ।

وَقِيْلَ لِلَّذِيْنَ اتَّقَوْا مَاذَآ اَنْزَلَ رَبُّكُمْ قَالُوْا خَيْرًا لِلَّذِيْنَ اَحْسَنُوْا فِيْ هٰذِهِ الدُّنْيَا حَسَنَةٌ وَلَدَارُ الْاٰخِرَةِ خَيْرٌ وَلَنِعْمَ دَارُ الْمُتَّقِيْنَ ۝

୩୨. ସେମାନେ ଚିରସ୍ଥାୟୀ ଉଦ୍ୟାନମାନଙ୍କ ମଧ୍ୟରେ ପ୍ରବେଶ କରିବେ ଯାହାର ନିମ୍ନଦେଶରେ ଝରଣାମାନ ପ୍ରବାହିତ ହେଉଥିବ ସେମାନେ ଯାହା ଇଚ୍ଛା କରିବେ ସେଠାରେ ତାହା ମିଳିବ, (ମନେରଖ) ଏହିପରି ଭାବରେ ଅଲ୍ଲାହ୍ ଧର୍ମଭୀରୁମାନଙ୍କୁ ପୁରସ୍କାର ପ୍ରଦାନ କରିଥା'ନ୍ତି ।

جَنّٰتُ عَدْنٍ يَّدْخُلُوْنَهَا تَجْرِيْ مِنْ تَحْتِهَا الْاَنْهٰرُ لَهُمْ فِيْهَا مَا يَشَآءُوْنَ كَذٰلِكَ يَجْزِي اللّٰهُ الْمُتَّقِيْنَ ۝

୩୩. ଯେଉଁ (ଧର୍ମଭୀରୁ)ମାନେ ଶୁଦ୍ଧପୂତ ଥିବା ଅବସ୍ଥାରେ ଦେବଦୂତମାନେ ଏହା କହି ସେମାନଙ୍କର ପ୍ରାଣ ହରଣ କରନ୍ତି, "ତୁମମାନଙ୍କ ପ୍ରତି ଶାନ୍ତି ହେଉ; ତୁମେମାନେ ନିଜ (ସତ୍) କର୍ମର ବିନିମୟରେ ବୈକୁଣ୍ଠରେ ପ୍ରବେଶ କର ।"

الَّذِيْنَ تَتَوَفّٰىهُمُ الْمَلٰٓئِكَةُ طَيِّبِيْنَ يَقُوْلُوْنَ سَلٰمٌ عَلَيْكُمُ ادْخُلُوا الْجَنَّةَ بِمَا كُنْتُمْ تَعْمَلُوْنَ ۝

୩୪. ଏ (ଅବିଶ୍ୱାସକାରୀ) ମାନେ ଏହା ବ୍ୟତୀତ କେଉଁ ବିଷୟର ପ୍ରତୀକ୍ଷା କରୁଛନ୍ତି ଯେ ଦେବଦୂତମାନେ (ଶାସ୍ତି ସହିତ) ସେମାନଙ୍କ ନିକଟକୁ ଆସନ୍ତୁ ବା ତୁମ ପାଳନକର୍ତ୍ତାଙ୍କ

هَلْ يَنْظُرُوْنَ اِلَّآ اَنْ تَاْتِيَهُمُ الْمَلٰٓئِكَةُ اَوْ يَاْتِيَ

اَمْرُ رَبِّكَ ۭ كَذٰلِكَ فَعَلَ الَّذِيْنَ مِنْ قَبْلِهِمْ ۭ وَمَا ظَلَمَهُمُ اللّٰهُ وَلٰكِنْ كَانُوْٓا اَنْفُسَهُمْ يَظْلِمُوْنَ ۝٣٤

(ନିଷ୍ପତ୍ତିମୂଳକ) ଆଦେଶ ଆସୁ ? ଏହିପରି ଭାବରେ ସେମାନଙ୍କର ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ କରିଥିଲେ; ଏବଂ ଅଲ୍ଲାହ ସେମାନଙ୍କ ପ୍ରତି କୌଣସି ଅତ୍ୟାଚାର କରି ନ ଥିଲେ, ବରଂ ସେମାନେ (ନିଜେ) ନିଜ ପ୍ରତି ଅତ୍ୟାଚାର କରୁଥିଲେ ।

فَاَصَابَهُمْ سَيِّاٰتُ مَا عَمِلُوْا وَحَاقَ بِهِمْ مَّا كَانُوْا بِهٖ يَسْتَهْزِءُوْنَ ۝٣٥

୩୫. ସୁତରାଂ ସେମାନଙ୍କ (ପାପ) କାର୍ଯ୍ୟର (ପରିଣାମ ସ୍ୱରୂପ) ଶାସ୍ତି ସେମାନଙ୍କୁ କବଳିତ କରିଥିଲା; ଏବଂ ଯେଉଁ (ଶାସ୍ତିର ସମାଚାର) ବିଷୟରେ ସେମାନେ ଉପହାସ କରୁଥିଲେ ତାହା ସେମାନଙ୍କୁ ପରିବେଷ୍ଟିତ କରିଥିଲା (ଓ ବିନାଶ କରିଥିଲା) ।

ରୁ:୫

وَقَالَ الَّذِيْنَ اَشْرَكُوْا لَوْ شَآءَ اللّٰهُ مَا عَبَدْنَا مِنْ دُوْنِهٖ مِنْ شَيْءٍ نَّحْنُ وَلَآ اٰبَآؤُنَا وَلَا حَرَّمْنَا مِنْ دُوْنِهٖ مِنْ شَيْءٍ ۭ كَذٰلِكَ فَعَلَ الَّذِيْنَ مِنْ قَبْلِهِمْ ۚ فَهَلْ عَلَي الرُّسُلِ اِلَّا الْبَلٰغُ الْمُبِيْنُ ۝٣٦

୩୬. ଏବଂ ମୁସରିକମାନେ କହନ୍ତି, "ଯଦି ଅଲ୍ଲାହ ଇଚ୍ଛା କରିଥା'ନ୍ତେ ତେବେ ଆମେମାନେ ବା ଆମମାନଙ୍କର ପିତୃପିତାମହମାନେ ତାହାଙ୍କ ବ୍ୟତୀତ ଅନ୍ୟ କାହାର ଉପାସନା କରି ନ ଥା'ନ୍ତେ କି ତାହାଙ୍କ ବିନା (ଆଦେଶରେ) କୌଣସି ବସ୍ତୁକୁ ଆମେମାନେ ସ୍ଥିର କରି ନ ଥାଆନ୍ତୁ;" ସେମାନଙ୍କର ପୂର୍ବବର୍ତ୍ତୀମାନେ (ମଧ୍ୟ ସତ୍ୟର ବିରୁଦ୍ଧାଚରଣ କରି) ଏହିପରି କରିଥିଲେ; ତେବେ ରସୁଲମାନଙ୍କର (ଅଲ୍ଲାହଙ୍କର) ବାର୍ତ୍ତା ପହଞ୍ଚାଇ ଦେବା ବ୍ୟତୀତ ଆଉ କି ଦାୟିତ୍ୱ ଅଛି ?

وَلَقَدْ بَعَثْنَا فِيْ كُلِّ اُمَّةٍ رَّسُوْلًا اَنِ اعْبُدُوا اللّٰهَ وَاجْتَنِبُوا الطَّاغُوْتَ ۚ فَمِنْهُمْ مَّنْ هَدَى اللّٰهُ وَمِنْهُمْ مَّنْ حَقَّتْ عَلَيْهِ الضَّلٰلَةُ ۭ فَسِيْرُوْا فِي الْاَرْضِ فَانْظُرُوْا كَيْفَ كَانَ عَاقِبَةُ الْمُكَذِّبِيْنَ ۝٣٧

୩୭. ଏବଂ ବାସ୍ତବରେ ଆମେ ପ୍ରତ୍ୟେକ ଜାତିରେ (ଏହି ଆଦେଶ ସହିତ କୌଣସି ନା କୌଣସି) ରସୁଲ ପ୍ରେରଣ କରିଅଛୁ, "(ହେ ଲୋକମାନେ !) ତୁମେମାନେ ଅଲ୍ଲାହଙ୍କର ଉପାସନା କର ଓ ପ୍ରତ୍ୟେକ ସୀମାଲଂଘନକାରୀ ଠାରୁ ଦୂରେଇ ରୁହ;" ଏହାପରେ ସେମାନଙ୍କ ମଧ୍ୟରୁ କେତେକ ଏପରି (ଉତ୍ତମ ସାବ୍ୟସ୍ତ) ହେଲେ ଯେ ସେମାନଙ୍କୁ ଅଲ୍ଲାହ ସତ୍‌ପଥଗାମୀ କରାଇଥିଲେ ଓ (ସେମାନଙ୍କ ମଧ୍ୟରୁ) କେତେକ ଏପରି ହେଲେ ଯେଉଁମାନଙ୍କ ପ୍ରତି ବିନାଶ ଧାର୍ଯ୍ୟ ହୋଇଥିଲା; ସୁତରାଂ ତୁମେମାନେ ପୃଥିବୀରେ ଭ୍ରମଣ କରି ଦେଖ ଯେ (ରସୁଲମାନଙ୍କ ପ୍ରତି) ମିଥ୍ୟା ଆରୋପ [୧] କରିଥିବା ବ୍ୟକ୍ତିମାନଙ୍କର ପରିଣାମ କିପରି ହୋଇଥିଲା ।

اِنْ تَحْرِصْ عَلٰي هُدٰىهُمْ فَاِنَّ اللّٰهَ لَا يَهْدِيْ مَنْ يُّضِلُّ وَمَا لَهُمْ مِّنْ نّٰصِرِيْنَ ۝٣٨

୩୮. (ହେ ରସୁଲ !) ଯଦି ତୁମେ ସେ (ଲୋକ)ମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇବାର ପ୍ରବଳ ଇଚ୍ଛା ପୋଷଣ କରୁଥାଅ, ତେବେ (ମନେରଖ) ଯେଉଁମାନେ (ଅନ୍ୟମାନଙ୍କୁ ଜାଣିଶୁଣି) ବିପଥଗାମୀ କରାନ୍ତି ସେମାନଙ୍କୁ ଅଲ୍ଲାହ କଦାପି ସତ୍‌ପଥ ପ୍ରଦର୍ଶନ କରାନ୍ତି ନାହିଁ; ଏବଂ ସେମାନଙ୍କର କୌଣସି ସାହାଯ୍ୟକାରୀ ନାହାନ୍ତି ।

୧. ଆୟତ ଅନ୍ତର୍ଗତ 'ତାଗୁତ' ଅର୍ଥ : (କ) ଦୁରାଚାରୀ; (ଖ) ଲୋକମାନଙ୍କୁ ସତ୍‌ପଥରୁ ବିଚ୍ୟୁତ କରୁଥିବା ବ୍ୟକ୍ତି

୩୯. ଏବଂ ସେମାନେ ଅଲ୍ଲାହ୍‌ଙ୍କ ନାମରେ ଦୃଢତାର ସହ ଶପଥ କରନ୍ତି ଯେ ଯିଏ ମୃତ୍ୟୁଲାଭ କରିଅଛି ତାହାକୁ ଅଲ୍ଲାହ୍ (ପୁନର୍ବାର କଦାପି) ଜୀବିତ କରିବେ ନାହିଁ; (କିନ୍ତୁ ପ୍ରକୃତରେ) ଏପରି ନୁହେଁ, ଏହା (ଏପରି ଏକ) ପ୍ରତିଶ୍ରୁତି ଅଟେ ଯାହା (ପୂରଣ) କରିବାକୁ ସେ (ଅଲ୍ଲାହ୍) ଦାୟୀ ଅଟନ୍ତି; କିନ୍ତୁ ଅଧିକାଂଶ ଲୋକ (ଏହି ବାସ୍ତବତାକୁ) ଜାଣନ୍ତି ନାହିଁ—

وَاَقْسَمُوْا بِاللّٰهِ جَهْدَ اَيْمَانِهِمْ ۙ لَا يَبْعَثُ اللّٰهُ مَنْ يَّمُوْتُ ۚ بَلٰى وَعْدًا عَلَيْهِ حَقًّا وَّلٰكِنَّ اَكْثَرَ النَّاسِ لَا يَعْلَمُوْنَ ﴿۳۹﴾

୪୦. ସେ (ସେମାନଙ୍କୁ ପୁନର୍ବାର ଏଥି ସକାଶେ ଜୀବିତ କରିବେ ଯେ) ସେମାନଙ୍କ ନିକଟରେ ଏହାକୁ (ଅର୍ଥାତ୍ ବାସ୍ତବତାକୁ) ପ୍ରକାଶ କରିଦେବେ ଯାହା ସଂକ୍ରାନ୍ତରେ ସେମାନେ (ଆଜି) ଭିନ୍ନମତ ପୋଷଣ କରୁଅଛନ୍ତି, ଏବଂ ଯେଉଁମାନେ ଅବିଶ୍ୱାସ କରୁଅଛନ୍ତି ସେମାନେ ନିଜେ ମିଥ୍ୟାବାଦୀ ଥିଲେ ବୋଲି ଜାଣିପାରିବେ ।

لِيُبَيِّنَ لَهُمُ الَّذِيْ يَخْتَلِفُوْنَ فِيْهِ وَلِيَعْلَمَ الَّذِيْنَ كَفَرُوْٓا اَنَّهُمْ كَانُوْا كٰذِبِيْنَ ﴿۴۰﴾

୪୧. ଯେତେବେଳେ ଆମେ କୌଣସି ବିଷୟ କରିବାକୁ ଇଚ୍ଛା କରୁ ସେତେବେଳେ ଆମେ ସେ ସଂକ୍ରାନ୍ତରେ କେବଳ କହିଥାଉ, ''ହୋଇଯାଅ'' ଏବଂ ତାହା ହୋଇଯାଏ ।

اِنَّمَا قَوْلُنَا لِشَيْءٍ اِذَآ اَرَدْنٰهُ اَنْ نَّقُوْلَ لَهٗ كُنْ فَيَكُوْنُ ﴿۴۱﴾ ع

ରୁ:୬

୪୨. ଏବଂ ଯେଉଁମାନେ ଅତ୍ୟାଗ୍ରିତ ହେବା ପରେ ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟରେ ହିଜରତ କରିଛନ୍ତି, ଆମେ ନିଶ୍ଚୟେ ସେମାନଙ୍କୁ ପୃଥିବୀରେ ଉତ୍ତମ ସ୍ଥାନ ପ୍ରଦାନ କରିବୁ ଏବଂ ପରକାଳର ପୁରସ୍କାର ଆହୁରି ଉତ୍କୃଷ୍ଟ ହେବ; ହାୟ ! ଏ (ଅବଜ୍ଞାକାରୀ)ମାନେ ଏହାକୁ ଜାଣି ପାରନ୍ତେ କି !

وَالَّذِيْنَ هَاجَرُوْا فِي اللّٰهِ مِنْۢ بَعْدِ مَا ظُلِمُوْا لَنُبَوِّئَنَّهُمْ فِي الدُّنْيَا حَسَنَةً ۭ وَلَاَجْرُ الْاٰخِرَةِ اَكْبَرُ ۘ لَوْ كَانُوْا يَعْلَمُوْنَ ﴿۴۲﴾

୪୩. ଯେଉଁମାନେ (ଅତ୍ୟାଗ୍ରିତ ହେବା ସତ୍ତ୍ୱେ ଧର୍ମରେ) ଅଟଳ ରହିଛନ୍ତି ଓ (ସର୍ବଦା) ନିଜ ପାଳନକର୍ତ୍ତାଙ୍କ ଉପରେ ଭରସା କରିଛନ୍ତି ।

الَّذِيْنَ صَبَرُوْا وَعَلٰي رَبِّهِمْ يَتَوَكَّلُوْنَ ﴿۴۳﴾

୪୪. ଏବଂ ଆମେ ତୁମ ପୂର୍ବରୁ (ମଧ୍ୟ ସର୍ବଦା) ପୁରୁଷମାନଙ୍କୁ ହିଁ ରସୁଲ ରୂପେ ପ୍ରେରଣ କରିଥିଲୁ ଓ ଆମେ ସେମାନଙ୍କ ପ୍ରତି ଓହି ପ୍ରେରଣ କରିଥିଲୁ; ଏବଂ (ହେ ଅବିଶ୍ୱାସକାରୀମାନେ !) ଯଦି ତୁମେମାନେ (ଏହା) ଜାଣ ନାହିଁ, ତେବେ ଯେଉଁମାନେ ଏହି (ଧର୍ମ) ଗ୍ରନ୍ଥମାନଙ୍କ ସଂକ୍ରାନ୍ତରେ ଜ୍ଞାନ ରଖନ୍ତି ସେମାନଙ୍କୁ (ଏ ବିଷୟରେ) ପ୍ରଶ୍ନ କର (ତାହାହେଲେ ସତ୍ୟ ପ୍ରକଟିତ ହେବ);

وَمَآ اَرْسَلْنَا مِنْ قَبْلِكَ اِلَّا رِجَالًا نُّوْحِيْٓ اِلَيْهِمْ فَسْــَٔلُوْٓا اَهْلَ الذِّكْرِ اِنْ كُنْتُمْ لَا تَعْلَمُوْنَ ﴿۴۴﴾

୪୫. (ଆମେ ଆମର ରସୁଲମାନଙ୍କୁ) ସୁସ୍ପଷ୍ଟ ନିଦର୍ଶନ ଓ ଧର୍ମଗ୍ରନ୍ଥ ସହିତ (ପ୍ରେରଣ କରିଥିଲୁ); ଏବଂ ଆମେ ତୁମ ପ୍ରତି ଏହି (ପୂର୍ଣ୍ଣାଙ୍ଗ ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ କରିଅଛୁ ଯଦ୍ୱାରା ତୁମେ

بِالْبَيِّنٰتِ وَالزُّبُرِ ۭ وَاَنْزَلْنَآ اِلَيْكَ الذِّكْرَ لِتُبَيِّنَ

لِلنَّاسِ مَا نُزِّلَ إِلَيْهِمْ وَلَعَلَّهُمْ يَتَفَكَّرُونَ ۝٤٤

ମାନବ ସମାଜକୁ (ଅଲ୍ଲାହ୍‌ଙ୍କ ଆଦେଶ) ଯାହା (ତୁମ ମାଧ୍ୟମରେ) ସେମାନଙ୍କ ପାଇଁ ପ୍ରେରିତ ହୋଇଛି ତାହା ସ୍ପଷ୍ଟଭାବରେ ବ୍ୟାଖ୍ୟାନ କରିବ, ଏବଂ ତାହାଦ୍ୱାରା ସେମାନେ (ଏ ବିଷୟରେ) ଚିନ୍ତା କରିବେ ।

أَفَأَمِنَ الَّذِينَ مَكَرُوا السَّيِّئَاتِ أَنْ يَخْسِفَ اللَّهُ بِهِمُ الْأَرْضَ أَوْ يَأْتِيَهُمُ الْعَذَابُ مِنْ حَيْثُ لَا يَشْعُرُونَ ۝٤٥

୪୬. ତେବେ କ'ଣ ଯେଉଁମାନେ (ତୁମ ବିରୁଦ୍ଧରେ) ହୀନ ଚକ୍ରାନ୍ତ କରୁଛନ୍ତି ସେମାନେ ନିଶ୍ଚିତ ଅଛନ୍ତି ଯେ ଅଲ୍ଲାହ୍ ସେମାନଙ୍କୁ (ନିଜ) ଦେଶରେ ଲାଞ୍ଛିତ (ଓ ଅପମାନିତ) କରିବେ ନାହିଁ ବା ସେହି ଶାସ୍ତି (ଯାହା ସଂକ୍ରାନ୍ତରେ ସମାଗ୍ରର ଦିଆ ଯାଇଅଛି ତାହା) ସେମାନଙ୍କ ପ୍ରତି ଅଜ୍ଞାତାରେ ଆସିବ ନାହିଁ ।

أَوْ يَأْخُذَهُمْ فِي تَقَلُّبِهِمْ فَمَا هُمْ بِمُعْجِزِينَ ۝٤٦

୪୭. ଅଥବା ସେ ସେମାନଙ୍କୁ ସେମାନଙ୍କ ଯାତ୍ରା କାଳରେ ବିନାଶ କରିବେ ନାହିଁ ; ସୁତରାଂ (ସେମାନେ ମନେ ରଖିବା ଉଚିତ ଯେ) ସେମାନେ (ଅଲ୍ଲାହ୍‌ଙ୍କ ଉଦ୍ଦେଶ୍ୟକୁ କଦାପି) ପଣ୍ଡ କରି ପାରିବେ ନାହିଁ ।

أَوْ يَأْخُذَهُمْ عَلَىٰ تَخَوُّفٍ فَإِنَّ رَبَّكُمْ لَرَءُوفٌ رَحِيمٌ ۝٤٧

୪୮. ଅଥବା ସେ ସେମାନଙ୍କୁ କ୍ରମଶଃ କ୍ଷୟ କରି ଧ୍ୱଂସ କରିବେ ନାହିଁ ? କାରଣ ତୁମମାନଙ୍କର ପାଳନକର୍ତ୍ତା (ବିଶ୍ୱାସକାରୀମାନଙ୍କ ପ୍ରତି) ବାସ୍ତବରେ ଅତ୍ୟନ୍ତ ସ୍ନେହଶୀଳ (ଓ) ସଦା କରୁଣାମୟ ।

أَوَلَمْ يَرَوْا إِلَىٰ مَا خَلَقَ اللَّهُ مِنْ شَيْءٍ يَتَفَيَّأُ ظِلَالُهُ عَنِ الْيَمِينِ وَالشَّمَائِلِ سُجَّدًا لِلَّهِ وَهُمْ دَاخِرُونَ ۝٤٨

୪୯. ତେବେ କ'ଣ ସେ (ଅବିଶ୍ୱାସକାରୀ)ମାନେ ଲାଞ୍ଛିତ ହେବା ସତ୍ତ୍ୱେ ଅଲ୍ଲାହ୍‌ଙ୍କ ସମୀପରେ (ନମ୍ରତା ସହକାରେ) ନତମସ୍ତକ ହୋଇ ଯାହା କିଛି ଅଲ୍ଲାହ୍ ସୃଷ୍ଟି କରିଛନ୍ତି ଲକ୍ଷ୍ୟ କରୁନାହାନ୍ତି ଯେ ସେଗୁଡ଼ିକର ଛାୟା ଦକ୍ଷିଣ ଓ ବାମ ପାର୍ଶ୍ୱରୁ ସ୍ଥାନ ପରିବର୍ତ୍ତନ [୧] କରୁଅଛି; (ଅତଏବ ଏହିରୂପେ ହଜରତ ମହମ୍ମଦଙ୍କର ଛାୟାର ବୃଦ୍ଧି ଘଟିବ) ଏବଂ ସେ (ଅବିଶ୍ୱାସକାରୀ)ମାନେ ଲାଞ୍ଛିତ ହେବେ ।

وَلِلَّهِ يَسْجُدُ مَا فِي السَّمَاوَاتِ وَمَا فِي الْأَرْضِ مِنْ دَابَّةٍ وَالْمَلَائِكَةُ وَهُمْ لَا يَسْتَكْبِرُونَ ۝٤٩

୫୦. ଏବଂ ଯାହା କିଛି ଆକାଶରେ ଅଛି ଓ ଯେଉଁସବୁ ପ୍ରାଣୀ ପୃଥିବୀରେ ଅଛନ୍ତି ତଥା ଦେବଦୂତମାନେ ମଧ୍ୟ ଅଲ୍ଲାହ୍‌ଙ୍କ ସମୀପରେ ନତମସ୍ତକ ହୁଅନ୍ତି ଓ ସେମାନେ ଅହଙ୍କାର କରନ୍ତି ନାହିଁ ।

يَخَافُونَ رَبَّهُمْ مِنْ فَوْقِهِمْ وَيَفْعَلُونَ مَا يُؤْمَرُونَ ۝٥٠

୫୧. ସେମାନେ ନିଜର ପରାକ୍ରାନ୍ତ ପାଳନକର୍ତ୍ତାଙ୍କୁ ଭୟ କରନ୍ତି ଓ ସେମାନଙ୍କୁ ଯାହା ଆଦେଶ କରାଯାଏ ତାହାକୁ ପାଳନ କରନ୍ତି ।

---

୧. ଏଠାରେ ଜଣାଇ ଦିଆଯାଇଛି ଯେ ଯେପରି ପ୍ରାକୃତିକ ନିୟମ ଅନୁସାରେ ଛାୟାର ହ୍ରାସ ବୃଦ୍ଧି ଘଟୁଥାଏ, ଏପରିକି ସମୟ କ୍ରମେ ତାହା ସଂପୂର୍ଣ୍ଣରୂପେ ସଂକୁଚିତ ହୋଇଯାଏ, ସେହିପରି ଅବସ୍ଥା ମକ୍କାର ଅବିଶ୍ୱାସକାରୀମାନଙ୍କର ହେବ । ସେମାନଙ୍କ ପ୍ରଭାବ, ପ୍ରତିଷ୍ଠା, ଯଶ ଓ କୀର୍ତ୍ତି ଛାୟା ସଦୃଶ ହ୍ରାସ ପାଇ ନିଃଶେଷ ହୋଇଯିବ । କିନ୍ତୁ ଅନ୍ୟ ପକ୍ଷରେ ହଜରତ ମହମ୍ମଦଙ୍କ ଛାୟା କ୍ରମଶଃ ବୃଦ୍ଧି ପାଉଥିବ, ଯାହା ଫଳରେ ଅବିଶ୍ୱାସକାରୀମାନେ ଲାଞ୍ଛିତ ହେବେ ।

ରୁ:୭

୫୨. ଏବଂ ଅଲ୍ଲାହ (ପ୍ରତ୍ୟେକ ସମ୍ପ୍ରଦାୟକୁ ସବୁବେଳେ ଏହା) କହିଛନ୍ତି, "ତୁମେମାନେ ଦୁଇଗୋଟି ଉପାସ୍ୟ ଗ୍ରହଣ କରନାହିଁ, ସେ ହିଁ ଏକମାତ୍ର (ଉପାସ୍ୟ); ସୁତରାଂ ଆମ୍ଭକୁ ହିଁ ଭୟକର"।

وَقَالَ اللّٰهُ لَا تَتَّخِذُوْٓا اِلٰهَيْنِ اثْنَيْنِ اِنَّمَا هُوَ اِلٰهٌ وَّاحِدٌ فَاِيَّايَ فَارْهَبُوْنِ ۝

୫୩. ଏବଂ ଯାହା କିଛି ଆକାଶରେ ଓ ପୃଥିବୀରେ ଅଛି ସେ ସବୁ ତାଙ୍କର ଅଧିକାରଭୁକ୍ତ ଓ ସେ ହିଁ ସର୍ବଦା ଧର୍ମର ଅଧ୍ୟକ୍ଷ; ତେବେ କ'ଣ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟକୁ ନିଜର ସଂରକ୍ଷକ ରୂପେ ଗ୍ରହଣ କରିବ ?

وَلَهٗ مَا فِي السَّمٰوٰتِ وَالْاَرْضِ وَلَهُ الدِّيْنُ وَاصِبًا اَفَغَيْرَ اللّٰهِ تَتَّقُوْنَ ۝

୫୪. ଏବଂ ତୁମମାନଙ୍କ ନିକଟରେ ଯାହା କିଛି ଆଶୀର୍ବାଦ ରହିଅଛି, ତାହା ଅଲ୍ଲାହଙ୍କ ତରଫରୁ ଅଟେ; ଏବଂ ଯେବେ ତୁମମାନଙ୍କ ଉପରେ (କୌଣସି ଅଭାବ ଓ) ଦୁଃଖ ନିପତିତ ହୁଏ ତେବେ (ସେତେବେଳେ ମଧ୍ୟ) ତୁମେମାନେ ତାହାଙ୍କ ନିକଟରେ (ସାହାଯ୍ୟ ପାଇଁ) ଗୁହାରି କର ।

وَمَا بِكُمْ مِّنْ نِّعْمَةٍ فَمِنَ اللّٰهِ ثُمَّ اِذَا مَسَّكُمُ الضُّرُّ فَاِلَيْهِ تَجْـَٔرُوْنَ ۝

୫୫. ତା'ପରେ ଯେତେବେଳେ ସେ ତୁମମାନଙ୍କ ନିକଟରୁ ସେହି ଦୁଃଖ ଦୂର କରିଦିଅନ୍ତି ସେତେବେଳେ ତୁମମାନଙ୍କ ମଧ୍ୟରୁ କେତେକ ତତ୍କ୍ଷଣାତ୍ (ଅନ୍ୟକୁ) ନିଜ ପାଳନକର୍ତ୍ତାଙ୍କ ସମକକ୍ଷ( ଉପାସ୍ୟ) ସ୍ଥିର କରିବାକୁ ଲାଗନ୍ତି ।

ثُمَّ اِذَا كَشَفَ الضُّرَّ عَنْكُمْ اِذَا فَرِيْقٌ مِّنْكُمْ بِرَبِّهِمْ يُشْرِكُوْنَ ۝

୫୬. ଫଳରେ ଯାହା କିଛି ଆମ୍ଭେ ସେମାନଙ୍କୁ ପ୍ରଦାନ କରିଥାଉ ସେମାନେ ତାହାକୁ ଅସ୍ୱୀକାର କରିଥାଆନ୍ତି; ଅତଏବ ତୁମେମାନେ ଅସ୍ଥାୟୀ (ଓ ସାମୟିକ ଦ୍ରବ୍ୟରୁ) ସୁଖ ଭୋଗ କର, କିନ୍ତୁ ତୁମେମାନେ (ଏହାର ପରିଣାମ ବିଷୟରେ ମଧ୍ୟ) ଶୀଘ୍ର ଅବଗତ ହେବ ।

لِيَكْفُرُوْا بِمَآ اٰتَيْنٰهُمْ فَتَمَتَّعُوْا فَسَوْفَ تَعْلَمُوْنَ ۝

୫୭. ଏବଂ ଆମ୍ଭେ ସେମାନଙ୍କୁ ଯାହା କିଛି ପ୍ରଦାନ କରିଅଛୁ ତହିଁରୁ ଏକ ଅଂଶ ସେମାନେ (ନିଜର) ସେହି (ତଥାକଥିତ ଉପାସ୍ୟ) ମାନଙ୍କ ସକାଶେ ନିର୍ଦ୍ଦିଷ୍ଟ କରି ଦିଅନ୍ତି ଯେଉଁମାନଙ୍କ (ବାସ୍ତବତା) ସଂକ୍ରାନ୍ତରେ ସେମାନଙ୍କର କୌଣସି ଜ୍ଞାନ ନାହିଁ; ଅଲ୍ଲାହଙ୍କର ରାଣ, ତୁମେମାନେ ଯାହା କିଛି (ମିଥ୍ୟା) ନିଜେ ରଚନା କରୁଅଛ ସେ ବିଷୟରେ (ଦିନେ) ତୁମକୁ ନିଶ୍ଚୟ କୈଫିୟତ୍ ଦେବାକୁ ପଡ଼ିବ ।

وَيَجْعَلُوْنَ لِمَا لَا يَعْلَمُوْنَ نَصِيْبًا مِّمَّا رَزَقْنٰهُمْ تَاللّٰهِ لَتُسْـَٔلُنَّ عَمَّا كُنْتُمْ تَفْتَرُوْنَ ۝

୫୮. ଏବଂ ସେମାନେ ଅଲ୍ଲାହଙ୍କର କନ୍ୟା ଥିବାର କହୁଛନ୍ତି; (ମନେରଖ) ସେ (ଏ ବିଷୟରେ) ପବିତ୍ର; ଏବଂ (ମଜା କଥା ହେଉଛି) ସେ (ଅବିଶ୍ୱାସକାରୀ)ମାନଙ୍କୁ ତାହା ହିଁ ମିଳେ ଯାହା ସେମାନେ ଚାହୁଁଛନ୍ତି (ଅର୍ଥାତ୍ ପୁତ୍ର ସନ୍ତାନ) ।

وَيَجْعَلُوْنَ لِلّٰهِ الْبَنٰتِ سُبْحٰنَهٗ وَلَهُمْ مَّا يَشْتَهُوْنَ ۝

୫୯. ଏବଂ (ପ୍ରକାରାନ୍ତରେ) ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରିକୁ କନ୍ୟା (ଜନ୍ମ) ହେବାର ସମାଚାର ପ୍ରାପ୍ତ ହୁଏ ସେତେବେଳେ ତାହାର ମୁଖମଣ୍ଡଳ କଳା ପଡ଼ିଯାଏ ଓ ସେ ଅତ୍ୟନ୍ତ ଦୁଃଖିତ ହୁଏ ।

وَإِذَا بُشِّرَ أَحَدُهُم بِالْأُنثَىٰ ظَلَّ وَجْهُهُ مُسْوَدًّا وَهُوَ كَظِيمٌ ﴿٥٩﴾

୬୦. (ଏବଂ) ଯେଉଁ ବିଷୟରେ ତାହାକୁ ସମାଚାର ଦିଆଯାଇ ଥାଏ ତାହାକୁ ଅଶୁଭ ମନେକରି ଲୋକମାନଙ୍କ ଠାରୁ ନିଜକୁ ଲୁଚାଇ ରଖେ; (ଏବଂ ଚିନ୍ତା କରେ ଯେ) ସେ ଏପରି ଲାଞ୍ଛନା ସତ୍ତ୍ୱେ ତାହାକୁ (ଜୀବିତ) ରଖିବ କି ମାଟିରେ ପୋତି ପକାଇବ; (ମନେରଖ) ସେମାନେ ଯାହାକିଛି ସିଦ୍ଧାନ୍ତ କରୁଛନ୍ତି ତାହା ଅତ୍ୟନ୍ତ ମନ୍ଦ ଅଟେ ।

يَتَوَارَىٰ مِنَ الْقَوْمِ مِن سُوءِ مَا بُشِّرَ بِهِ ۚ أَيُمْسِكُهُ عَلَىٰ هُونٍ أَمْ يَدُسُّهُ فِي التُّرَابِ ۗ أَلَا سَاءَ مَا يَحْكُمُونَ ﴿٦٠﴾

୬୧. ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କର ଅବସ୍ଥା ମନ୍ଦ ସହିତ ତୁଳନୀୟ ଅଥଚ ଅଲ୍ଲାଃଙ୍କର ଗୁଣ (ଓ ଗାରିମା) ମହାନ୍ ଏବଂ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

لِلَّذِينَ لَا يُؤْمِنُونَ بِالْآخِرَةِ مَثَلُ السَّوْءِ ۖ وَلِلَّهِ الْمَثَلُ الْأَعْلَىٰ ۚ وَهُوَ الْعَزِيزُ الْحَكِيمُ ﴿٦١﴾ ع

ରୁ:୮

୬୨. ଏବଂ ଯଦି ଅଲ୍ଲାଃ ଲୋକମାନଙ୍କୁ ସେମାନଙ୍କ ଅତ୍ୟାଚାର ପାଇଁ (ତୁରନ୍ତ) ଦଣ୍ଡ ବିଧାନ କରନ୍ତେ (ଓ ଅନୁତାପ କରିବାପାଇଁ ଅବସର ନ ଦିଅନ୍ତେ) ତେବେ ସେ ଏଠାରେ କୌଣସି ପ୍ରାଣୀକୁ (ଜୀବିତ) ଛାଡ଼ନ୍ତେ ନାହିଁ; କିନ୍ତୁ ସେ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ (ନିଜକୁ ସୁଧାରିବା ପାଇଁ) ସେମାନଙ୍କୁ ଅବସର ଦିଅନ୍ତି; ତା'ପରେ ଯେତେବେଳେ ସେମାନଙ୍କ (ଶାସ୍ତି) ସମୟ ଉପସ୍ଥିତ ହୁଏ ସେତେବେଳେ ସେମାନେ ଗୋଟିଏ ମୁହୂର୍ତ୍ତ ପଛକୁ ବା ଆଗକୁ ଯାଇ (ନିଜକୁ ରକ୍ଷାକରି) ପାରିବେ ନାହିଁ ।

وَلَوْ يُؤَاخِذُ اللَّهُ النَّاسَ بِظُلْمِهِم مَّا تَرَكَ عَلَيْهَا مِن دَابَّةٍ وَلَٰكِن يُؤَخِّرُهُمْ إِلَىٰ أَجَلٍ مُّسَمًّى ۖ فَإِذَا جَاءَ أَجَلُهُمْ لَا يَسْتَأْخِرُونَ سَاعَةً ۖ وَلَا يَسْتَقْدِمُونَ ﴿٦٢﴾

୬୩. ଏବଂ ସେମାନେ ଅଲ୍ଲାଃଙ୍କ ପାଇଁ ସେ ବସ୍ତୁ ନିର୍ଦ୍ଦିଷ୍ଟ କରନ୍ତି ଯାହା ସେମାନେ (ନିଜ ପାଇଁ) ଅପସନ୍ଦ କରନ୍ତି; ଏବଂ ସେମାନଙ୍କର ଜିହ୍ୱା (ଅତ୍ୟନ୍ତ ସାହସର ସହିତ) ମିଥ୍ୟା କହେ ଯେ ସେମାନେ ନିଶ୍ଚୟ କଲ୍ୟାଣ ପ୍ରାପ୍ତ ହେବେ; (କିନ୍ତୁ) ଏହା ନିଃସନ୍ଦେହ ଯେ ସେମାନଙ୍କ ପାଇଁ (ନରକ) ଅଗ୍ନି ରହିଅଛି ଏବଂ ସେମାନଙ୍କୁ (ତହିଁରେ) ଛାଡ଼ି ଦିଆଯିବ ।

وَيَجْعَلُونَ لِلَّهِ مَا يَكْرَهُونَ وَتَصِفُ أَلْسِنَتُهُمُ الْكَذِبَ أَنَّ لَهُمُ الْحُسْنَىٰ ۖ لَا جَرَمَ أَنَّ لَهُمُ النَّارَ وَأَنَّهُم مُّفْرَطُونَ ﴿٦٣﴾

୬୪. ଅଲ୍ଲାଃଙ୍କର ରାଣ, ଆମେ ତୁମ ପୂର୍ବରୁ ସମସ୍ତ ଜାତିପାଇଁ ରସୁଲ ପ୍ରେରଣ କରିଥିଲୁ; କିନ୍ତୁ ସଇତାନ ସେମାନଙ୍କୁ ସେମାନଙ୍କର (କୁ)କର୍ମକୁ ସୁଶୋଭିତ କରି ଦେଖାଇଲା; ସୁତରାଂ ସେ ଆଜି ସେମାନଙ୍କର ପୃଷ୍ଠପୋଷକ ହୋଇଅଛି (ଏବଂ ସେମାନେ ତାହାର ଅନୁସରଣ କରୁଛନ୍ତି), ଏବଂ ସେମାନଙ୍କ ପାଇଁ ଏକ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି ।

تَاللَّهِ لَقَدْ أَرْسَلْنَا إِلَىٰ أُمَمٍ مِّن قَبْلِكَ فَزَيَّنَ لَهُمُ الشَّيْطَانُ أَعْمَالَهُمْ فَهُوَ وَلِيُّهُمُ الْيَوْمَ وَلَهُمْ عَذَابٌ أَلِيمٌ ﴿٦٤﴾

وَمَآ اَنۡزَلۡنَا عَلَيۡكَ الۡكِتٰبَ اِلَّا لِتُبَيِّنَ لَهُمُ الَّذِى اخۡتَلَفُوۡا فِيۡهِ‌ۙ وَهُدًى وَّرَحۡمَةً لِّقَوۡمٍ يُّؤۡمِنُوۡنَ ﴿۶۵﴾

୬୫. ଏବଂ ଆମେ ଏହି (ଧର୍ମ)ଗ୍ରନ୍ଥକୁ ତୁମ ନିକଟରେ ଏଥି ସକାଶେ ଅବତୀର୍ଣ୍ଣ କରିଅଛୁ ଯେ ଯେଉଁ ବିଷୟରେ ସେମାନେ (ପରସ୍ପର ମଧ୍ୟରେ ) ବିବାଦ କରୁଛନ୍ତି, ଏହା (ଅର୍ଥାତ୍ ଏହି ଗ୍ରନ୍ଥ) ତାହାକୁ ସେମାନଙ୍କ ନିକଟରେ ସୁସ୍ପଷ୍ଟ କରିଦେବ; ଏବଂ ଯେଉଁମାନେ (ଏହି ଗ୍ରନ୍ଥରେ) ବିଶ୍ୱାସ କରନ୍ତି ସେମାନଙ୍କ ପାଇଁ ଏହା ଏକ ସତ୍‌ପଥ ଓ କରୁଣା( ର ଆଧାର) ଅଟେ ।

وَاللّٰهُ اَنۡزَلَ مِنَ السَّمَآءِ مَآءً فَاَحۡيَا بِهِ الۡاَرۡضَ بَعۡدَ مَوۡتِهَا‌ ؕ اِنَّ فِىۡ ذٰ لِكَ لَاٰيَةً لِّقَوۡمٍ يَّسۡمَعُوۡنَ ﴿۶۶﴾ ع

୬୬. ଏବଂ ଅଲ୍ଲାହ ହି ଆକାଶରୁ ଜଳ ବର୍ଷଣ କରିଛନ୍ତି; ଏବଂ ତଦ୍ୱାରା ଭୂପୃଷ୍ଠକୁ ତାହା ମୃତ ହେବା ପରେ (ପୁନର୍ବାର) ଜୀବିତ କରିଛନ୍ତି; ଯେଉଁମାନେ (ସତ୍ୟ କଥାକୁ) ଶ୍ରବଣ କରନ୍ତି (ଓ ତାହାକୁ ଗ୍ରହଣ କରନ୍ତି) ବାସ୍ତବରେ ସେମାନଙ୍କ ପାଇଁ ଏଥିରେ ଏକ (ମହାନ୍) ନିଦର୍ଶନ ରହିଅଛି ।

ରୁ: ୯

وَاِنَّ لَـكُمۡ فِى الۡاَنۡعَامِ لَعِبۡرَةً‌ ؕ نُسۡقِيۡكُمۡ مِّمَّا فِىۡ بُطُوۡنِهٖ مِنۡۢ بَيۡنِ فَرۡثٍ وَّدَمٍ لَّبَنًا خَالِصًا سَآئِغًا لِّلشّٰرِبِيۡنَ ﴿۶۷﴾

୬୭. ଏବଂ ବାସ୍ତବରେ ତୁମମାନଙ୍କ ସକାଶେ ଚତୁଷ୍ପଦ ପ୍ରାଣୀମାନଙ୍କ ଠାରେ (ମଧ୍ୟ) ଶିକ୍ଷାଲାଭ କରିବାର ମାଧ୍ୟମ ରହିଅଛି; (କ'ଣ ତୁମେମାନେ ଦେଖିପାରୁ ନାହଁ ଯେ) ସେମାନଙ୍କ ଉଦର ମଧ୍ୟରେ ଯାହା କିଛି (ମଳ ଆଦି ଭର୍ତ୍ତି ହୋଇ) ରହିଅଛି ଏଥିରୁ ଅର୍ଥାତ୍ ଗୋବର ଓ ରକ୍ତ ମଧ୍ୟରୁ ଆମେ ତୁମମାନଙ୍କ ପାନ କରିବା ସକାଶେ ବିଶୁଦ୍ଧ ଦୁଗ୍ଧର ବ୍ୟବସ୍ଥା କରିଥାଉ ଯାହା ପାନକାରୀମାନଙ୍କ ସକାଶେ ତୃପ୍ତିକର ଓ ସ୍ୱାଦିଷ୍ଟ ଅଟେ ।

وَمِنۡ ثَمَرٰتِ النَّخِيۡلِ وَالۡاَعۡنَابِ تَتَّخِذُوۡنَ مِنۡهُ سَكَرًا وَّرِزۡقًا حَسَنًا‌ ؕ اِنَّ فِىۡ ذٰ لِكَ لَاٰيَةً لِّقَوۡمٍ يَّعۡقِلُوۡنَ ﴿۶۸﴾

୬୮. ଏବଂ ଖଜୁରି ଫଳ ଓ ଅଙ୍ଗୁରରୁ ତୁମେମାନେ ସୁରା ତଥା ସ୍ୱାସ୍ଥ୍ୟକର ଖାଦ୍ୟ ପ୍ରସ୍ତୁତ କରିଥାଅ; ଯେଉଁମାନେ ବୁଦ୍ଧିମତା ସହକାରେ କାର୍ଯ୍ୟ କରନ୍ତି ନିଶ୍ଚୟ ସେମାନଙ୍କ ସକାଶେ ଏଥିରେ ଏକ (ମହାନ୍) ନିଦର୍ଶନ ରହିଅଛି ।

وَاَوۡحٰى رَبُّكَ اِلَى النَّحۡلِ اَنِ اتَّخِذِىۡ مِنَ الۡجِبَالِ بُيُوۡتًا وَّمِنَ الشَّجَرِ وَمِمَّا يَعۡرِشُوۡنَ ﴿۶۹﴾

୬୯. ଏବଂ ତୁମମାନଙ୍କର ପାଳନକର୍ତ୍ତା ମହୁମାଛିକୁ ଆଦେଶ ଦେଇଛନ୍ତି, "ତୁ ପର୍ବତ ଓ ବୃକ୍ଷମାନଙ୍କରେ, ତଥା (ଅଙ୍ଗୁର ଆଦି ଲତା ସକାଶେ) ସେ (ଲୋକ)ମାନେ ଯେଉଁ ଭାଡ଼ି ତିଆରି କରନ୍ତି ତହିଁରେ ନିଜର ଗୃହ ନିର୍ମାଣ କର ।"

ثُمَّ كُلِىۡ مِنۡ كُلِّ الثَّمَرٰتِ فَاسۡلُكِىۡ سُبُلَ رَبِّكِ ذُلُلًا‌ ؕ يَخۡرُجُ مِنۡۢ بُطُوۡنِهَا شَرَابٌ مُّخۡتَلِفٌ اَلۡوَانُهٗ فِيۡهِ شِفَآءٌ لِّلنَّاسِ‌ ؕ اِنَّ فِىۡ ذٰ لِكَ لَاٰيَةً لِّقَوۡمٍ يَّتَفَكَّرُوۡنَ ﴿۷۰﴾

୭୦. "ତା'ପରେ ପ୍ରତ୍ୟେକ (ପ୍ରକାର)ଫଳରୁ କିଛି ଖା ଏବଂ ନିଜ ପାଳନକର୍ତ୍ତାଙ୍କ ପଥକୁ ଅକ୍ଲେଶରେ ଅନୁସରଣ କର;" ଏ (ମହୁମାଛି)ମାନଙ୍କ ଉଦର ମଧ୍ୟରୁ ବିଭିନ୍ନ ରଙ୍ଗର ଏକ ପାନୀୟ ନିର୍ଗତ [୧] ହୁଏ; ତହିଁରେ ଲୋକମାନଙ୍କ ସକାଶେ ଆରୋଗ୍ୟ (କାରକ ଗୁଣ) ରହିଅଛି; ଯେଉଁମାନେ ବୁଝି ବିଚାରି କାର୍ଯ୍ୟ କରନ୍ତି ସେମାନଙ୍କ ସକାଶେ ଏଥିରେ ବାସ୍ତବରେ ଅନେକ ନିଦର୍ଶନ ରହିଅଛି ।

---

୧. ଅର୍ଥାତ୍ ମହୁ ଯାହା ଅନେକ ବ୍ୟାଧିର ମହୌଷଧି ।

وَاللّٰهُ خَلَقَكُمْ ثُمَّ يَتَوَفّٰىكُمْ ۙ وَمِنْكُمْ مَّنْ يُّرَدُّ اِلٰۤى اَرْذَلِ الْعُمُرِ لِكَيْ لَا يَعْلَمَ بَعْدَ عِلْمٍ شَيْـًٔا ؕ اِنَّ اللّٰهَ عَلِيْمٌ قَدِيْرٌ ۟

୭୧. ଏବଂ ଅଲ୍ଲାହ ତୁମମାନଙ୍କୁ ସୃଷ୍ଟି କରିଛନ୍ତି; ତା'ପରେ ସେ ତୁମମାନଙ୍କର ପ୍ରାଣ ହରଣ କରନ୍ତି ଏବଂ ତୁମମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନଙ୍କୁ ଜୀବନର ନିକୃଷ୍ଟତମ ଅବସ୍ଥାରେ ପହଞ୍ଚାଇ ଦିଆଯାଏ ଯାହା ଫଳରେ ସେମାନେ ଜ୍ଞାନବନ୍ତ ଥିବା ସତ୍ତ୍ୱେ ଅଜ୍ଞାନୀ ହୋଇଯା'ନ୍ତି; ଅଲ୍ଲାହ ବାସ୍ତବରେ ତତ୍ତ୍ୱଜ୍ଞ (ଓ) ସର୍ବଶକ୍ତିମାନ୍ ।

ରୁ : ୧୦

وَاللّٰهُ فَضَّلَ بَعْضَكُمْ عَلٰى بَعْضٍ فِي الرِّزْقِ ۚ فَمَا الَّذِيْنَ فُضِّلُوْا بِرَآدِّيْ رِزْقِهِمْ عَلٰى مَا مَلَكَتْ اَيْمَانُهُمْ فَهُمْ فِيْهِ سَوَآءٌ ؕ اَفَبِنِعْمَةِ اللّٰهِ يَجْحَدُوْنَ ۟

୭୨. ଏବଂ ଅଲ୍ଲାହ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଅପେକ୍ଷା ଜୀବିକାରେ ସମୃଦ୍ଧି ପ୍ରଦାନ କରିଛନ୍ତି; ଏବଂ ଯେଉଁମାନଙ୍କୁ ଶ୍ରେଷ୍ଠତା ପ୍ରଦାନ କରାଯାଇଛି ସେମାନେ ନିଜ (ଦେଖଲରେ ଥିବା) ଜୀବିକାକୁ (କୌଣସି ପ୍ରକାରେ ମଧ୍ୟ) ସେ (ଲୋକ)ମାନଙ୍କୁ ଫେରସ୍ତ କରିବେ ନାହିଁ ଯେଉଁମାନଙ୍କୁ ସେମାନଙ୍କ ଦକ୍ଷିଣ ହସ୍ତ ଅଧିକାର କରିଛି (ଅର୍ଥାତ୍ ଯେଉଁମାନେ ସେମାନଙ୍କ ଅଧୀନସ୍ଥ ଅଟନ୍ତି) ଯାହା ଫଳରେ ସେମାନେ ସେଥିରେ ସମାନ (ଅଂଶୀଦାର) ହୋଇଯିବେ; ତେବେ କ'ଣ (ଏହି ବାସ୍ତବତାକୁ ଜାଣିବା ସତ୍ତ୍ୱେ) ସେମାନେ ଅଲ୍ଲାହଙ୍କ ଅନୁଗ୍ରହକୁ ଅସ୍ୱୀକାର କରୁଛନ୍ତି ?

وَاللّٰهُ جَعَلَ لَكُمْ مِّنْ اَنْفُسِكُمْ اَزْوَاجًا وَّجَعَلَ لَكُمْ مِّنْ اَزْوَاجِكُمْ بَنِيْنَ وَحَفَدَةً وَّرَزَقَكُمْ مِّنَ الطَّيِّبٰتِ ؕ اَفَبِالْبَاطِلِ يُؤْمِنُوْنَ وَبِنِعْمَتِ اللّٰهِ هُمْ يَكْفُرُوْنَ ۟ۙ

୭୩. ଏବଂ ଅଲ୍ଲାହ ତୁମମାନଙ୍କ ମଧ୍ୟରୁ ତୁମମାନଙ୍କ ସକାଶେ ପତ୍ନୀ [୧] ଗଢିଛନ୍ତି; ଏବଂ ସେ ତୁମମାନଙ୍କ ପତ୍ନୀମାନଙ୍କ ଠାରୁ ତୁମମାନଙ୍କ ସକାଶେ ପୁତ୍ର ଓ ପୌତ୍ରମାନଙ୍କୁ ସୃଷ୍ଟି କରିଛନ୍ତି ଏବଂ ସେ ତୁମମାନଙ୍କୁ ସମସ୍ତ (ପ୍ରକାର) ବିଶୁଦ୍ଧ ବସ୍ତୁରୁ ଜୀବିକା ପ୍ରଦାନ କରିଛନ୍ତି; କ'ଣ ତେବେ (ମଧ୍ୟ) ଏକ କ୍ଷୟଶୀଳ ବସ୍ତୁ ପ୍ରତି ସେମାନେ ବିଶ୍ୱାସ ସ୍ଥାପନ କରିବେ ଏବଂ ଅଲ୍ଲାହଙ୍କର ଅନୁଗ୍ରହକୁ ସେମାନେ ଅସ୍ୱୀକାର କରିବେ ?

وَيَعْبُدُوْنَ مِنْ دُوْنِ اللّٰهِ مَا لَا يَمْلِكُ لَهُمْ رِزْقًا مِّنَ السَّمٰوٰتِ وَالْاَرْضِ شَيْـًٔا وَّلَا يَسْتَطِيْعُوْنَ ۟ۚ

୭୪. ଏବଂ ସେମାନେ ଅଲ୍ଲାହଙ୍କୁ ପରିତ୍ୟାଗ କରି ଏପରି ସତ୍ତାର ଉପାସନା କରନ୍ତି ଯେଉଁମାନଙ୍କର ଆକାଶ ଓ ପୃଥିବୀରୁ ସେମାନଙ୍କୁ କିଛି ଦେବାପାଇଁ କୌଣସି ସାମର୍ଥ୍ୟ ନାହିଁ କି ସେମାନେ ତାହା ପାଇ ପାରିବେ ନାହିଁ ।

فَلَا تَضْرِبُوْا لِلّٰهِ الْاَمْثَالَ ؕ اِنَّ اللّٰهَ يَعْلَمُ وَاَنْتُمْ لَا تَعْلَمُوْنَ ۟

୭୫. ସୁତରାଂ (ହେ ମୁସରିକ ସମ୍ପ୍ରଦାୟ ! ତୁମେମାନେ) ଅଲ୍ଲାହଙ୍କ ସଂକ୍ରାନ୍ତରେ ମନଗଢା କଥା କୁହ ନାହିଁ; ବାସ୍ତବରେ ଅଲ୍ଲାହ (ସବୁକିଛି) ଜାଣନ୍ତି ଓ ତୁମେମାନେ (ମୋଟେ) ଜାଣ ନାହିଁ ।

---

୧. ତୁମମାନଙ୍କର ପତ୍ନୀମାନେ ଏକାକି ପିତାମାତାଙ୍କର ସନ୍ତାନ ଯେଉଁମାନେ ତୁମମାନଙ୍କ ସଦୃଶ ମାନବ । ତେଣୁ ସେମାନଙ୍କ ମନୋଭାବ ଓ ତୁମମାନଙ୍କ ମନୋଭାବ ମଧ୍ୟରେ ସାଦୃଶ୍ୟ ରହିଛି ।

ضَرَبَ اللّٰهُ مَثَلًا عَبْدًا مَّمْلُوْكًا لَّا يَقْدِرُ عَلٰى شَيْءٍ وَّمَنْ رَّزَقْنٰهُ مِنَّا رِزْقًا حَسَنًا فَهُوَ يُنْفِقُ مِنْهُ سِرًّا وَّجَهْرًا هَلْ يَسْتَوٗنَ اَلْحَمْدُ لِلّٰهِ بَلْ اَكْثَرُهُمْ لَا يَعْلَمُوْنَ ﴿٧٥﴾

୭୬. ଅଲ୍ଲାହ (ତୁମମାନଙ୍କୁ ବୁଝାଇବା ଉଦ୍ଦେଶ୍ୟରେ) ଦୃଷ୍ଟାନ୍ତ ସ୍ୱରୂପ ଏପରି ଏକ ବ୍ୟକ୍ତିର ଅବସ୍ଥା ସଂକ୍ରାନ୍ତରେ ବର୍ଣ୍ଣନା କରୁଛନ୍ତି ଯେ କ୍ରୀତଦାସ (ତଥା) ଯାହାର କୌଣସି ବିଷୟରେ (ମଧ୍ୟ) ସାମର୍ଥ୍ୟ ନାହିଁ (ଏବଂ ଅନ୍ୟପକ୍ଷରେ ସେ ବ୍ୟକ୍ତିର ଅବସ୍ଥା) ଯାହାକୁ ଆମ୍ଭେ (ଅଲ୍ଲାହ) ନିଜ ସମୀପରୁ ଉତ୍ତମ ଜୀବିକା ପ୍ରଦାନ କରିଅଛୁ ଏବଂ ସେ ତନ୍ମଧ୍ୟରୁ ଗୋପନରେ ଓ ପ୍ରକାଶ୍ୟରେ (ମଧ୍ୟ ଆମ୍ଭ ପଥରେ) ବ୍ୟୟ କରେ; କ'ଣ ସେ ଉଭୟ (ପ୍ରକାର ବ୍ୟକ୍ତିମାନେ) ସମାନ ହୋଇପାରନ୍ତି ? (କଦାପି ନୁହେଁ) ଅଲ୍ଲାହ ହିଁ ସକଳ ପ୍ରଶଂସାର ପାତ୍ର; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ (ଲୋକ) ଜାଣନ୍ତି ନାହିଁ ।

وَضَرَبَ اللّٰهُ مَثَلًا رَّجُلَيْنِ اَحَدُهُمَآ اَبْكَمُ لَا يَقْدِرُ عَلٰى شَيْءٍ وَّهُوَ كَلٌّ عَلٰى مَوْلٰىهُ اَيْنَمَا يُوَجِّهْهُّ لَا يَاْتِ بِخَيْرٍ هَلْ يَسْتَوِيْ هُوَ وَمَنْ يَّاْمُرُ بِالْعَدْلِ وَهُوَ عَلٰى صِرَاطٍ مُّسْتَقِيْمٍ ﴿٧٦﴾

୭୭. ଏବଂ ଅଲ୍ଲାହ ଦୃଷ୍ଟାନ୍ତ ସ୍ୱରୂପ (ଅନ୍ୟ) ଦୁଇଜଣ ବ୍ୟକ୍ତିଙ୍କ ଅବସ୍ଥା (ମଧ୍ୟ) ବର୍ଣ୍ଣନା କରୁଛନ୍ତି ଯେଉଁମାନଙ୍କ ମଧ୍ୟରୁ ଜଣେ ମୂକ ଓ ଯାହାର କୌଣସି ବିଷୟରେ ସାମର୍ଥ୍ୟ ନାହିଁ ଏବଂ ସେ ନିଜ ମାଲିକ ଉପରେ ଏକ (ଅନାବଶ୍ୟକ) ବୋଝ ଅଟେ; ତାହାକୁ (ତାହାର ମାଲିକ) ଯେଉଁଠାକୁ ପଠାଇଲେ ମଧ୍ୟ ସେ କୌଣସି କଲ୍ୟାଣ (ଉପାର୍ଜନ କରି) ଆଣେ ନାହିଁ; ତେବେ କ'ଣ ସେ (ବ୍ୟକ୍ତି) ଏପରି ବ୍ୟକ୍ତିର ସମାନ ହୋଇପାରେ ଯେ ନ୍ୟାୟ କରିବାକୁ ଆଦେଶ ଦେଇଥାଏ ଓ ସ୍ୱୟଂ ସରଳ ପଥରେ (ପ୍ରତିଷ୍ଠିତ) ଥାଏ ?

ରୁ: ୧୧

وَلِلّٰهِ غَيْبُ السَّمٰوٰتِ وَالْاَرْضِ وَمَآ اَمْرُ السَّاعَةِ اِلَّا كَلَمْحِ الْبَصَرِ اَوْ هُوَ اَقْرَبُ اِنَّ اللّٰهَ عَلٰى كُلِّ شَيْءٍ قَدِيْرٌ ﴿٧٧﴾

୭୮. ଏବଂ ଆକାଶ ଓ ପୃଥିବୀର ଗୂଢ ରହସ୍ୟ ଅଲ୍ଲାହଙ୍କ ଠାରେ ରହିଅଛି, ଏବଂ ଏହି (ଅଙ୍ଗୀକୃତ) ସମୟ (ର ଆଗମନ) ତ ଏହିପରି ଅଟେ ଯେପରି ଆଖିର ପଲକ ପଡ଼ିବା, ବରଂ ଏହା (ତା'ଠାରୁ ମଧ୍ୟ) ନିକଟତର (ସମୟରେ ଘଟିବ); ବାସ୍ତବରେ ଅଲ୍ଲାହ ସବୁକିଛି କରିବାକୁ ପୂର୍ଣ୍ଣରୂପେ ସକ୍ଷମ ।

وَاللّٰهُ اَخْرَجَكُمْ مِّنْۢ بُطُوْنِ اُمَّهٰتِكُمْ لَا تَعْلَمُوْنَ شَيْـًٔا وَّجَعَلَ لَكُمُ السَّمْعَ وَالْاَبْصَارَ وَالْاَفْـِٕدَةَ لَعَلَّكُمْ تَشْكُرُوْنَ ﴿٧٨﴾

୭୯. ଏବଂ ଅଲ୍ଲାହ ତୁମମାନଙ୍କୁ ତୁମମାନଙ୍କ ମାତୃଗର୍ଭରୁ ଏପରି ଅବସ୍ଥାରେ ଜନ୍ମ ଦେଇଥିଲେ ଯେ (ସେତେବେଳେ) ତୁମେମାନେ କିଛି ଜାଣି ନ ଥିଲ; ଏବଂ ସେ ତୁମମାନଙ୍କ ସକାଶେ କର୍ଣ୍ଣ, ଚକ୍ଷୁ ଓ ହୃଦୟ ସୃଷ୍ଟି କରିଛନ୍ତି ଯଦ୍ଦ୍ୱାରା କି ତୁମେମାନେ କୃତଜ୍ଞତା ଜ୍ଞାପନ କରିବ ।

اَلَمْ يَرَوْا اِلَى الطَّيْرِ مُسَخَّرٰتٍ فِيْ جَوِّ السَّمَآءِ مَا يُمْسِكُهُنَّ اِلَّا اللّٰهُ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يُّؤْمِنُوْنَ ﴿٧٩﴾

୮୦. କ'ଣ ସେମାନେ ପକ୍ଷୀମାନଙ୍କୁ ଆକାଶ ମଣ୍ଡଳରେ (ଅଲ୍ଲାହଙ୍କ ବିଧାନରେ) ନିୟନ୍ତ୍ରଣାଧୀନ ଥିବାର ଲକ୍ଷ୍ୟ କରୁ ନାହାନ୍ତି ସେମାନଙ୍କୁ - ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି (ତୁମମାନଙ୍କ ଉପରେ ପଡ଼ିବା ଓ ଝାମ୍ପ ଦେବାରୁ) ଅଟକାଇ ରଖି ନାହାନ୍ତି; ଯେଉଁମାନେ ବିଶ୍ୱାସ କରନ୍ତି ସେମାନଙ୍କ ପାଇଁ ଏଥିରେ ନିଶ୍ଚିତ ରୂପେ ଅନେକ ନିଦର୍ଶନ ରହିଅଛି ।

୮୧. ଏବଂ ଅଲ୍ଲାହ ତୁମମାନଙ୍କର ଗୃହକୁ ତୁମମାନଙ୍କ ସକାଶେ ଏକ ଆଶ୍ରୟସ୍ଥଳ କରିଛନ୍ତି, ଏବଂ ସେ ଚତୁଷ୍ପଦ ପ୍ରାଣୀମାନଙ୍କ ଚମଡ଼ାରୁ ମଧ୍ୟ ତୁମମାନଙ୍କ ପାଇଁ ଏପରି ଗୃହ ନିର୍ମାଣ କରିଛନ୍ତି ଯାହା ଯାତ୍ରା ସମୟରେ ତୁମମାନଙ୍କୁ ହାଲୁକା ବୋଧହୁଏ ଓ ଅବସ୍ଥାନ ସମୟରେ ମଧ୍ୟ (ଉପଯୋଗୀ ହୁଏ); ଏବଂ (ସେ ତୁମମାନଙ୍କ ସକାଶେ) ସେମାନଙ୍କ ସୂକ୍ଷ୍ମ ଓ ସ୍ଥୂଳ ପଶମରୁ ତଥା ଲୋମରୁ (ବ୍ୟବହାର ଉପଯୋଗୀ) ସ୍ଥାୟୀ ଓ ଅସ୍ଥାୟୀ ସାମଗ୍ରୀମାନ (ତିଆରି କରିବାର ବ୍ୟବସ୍ଥା କରିଛନ୍ତି)।

وَاللّٰهُ جَعَلَ لَكُمْ مِّنْ بُيُوْتِكُمْ سَكَنًا وَّجَعَلَ لَكُمْ مِّنْ جُلُوْدِ الْاَنْعَامِ بُيُوْتًا تَسْتَخِفُّوْنَهَا يَوْمَ ظَعْنِكُمْ وَيَوْمَ اِقَامَتِكُمْ ۙ وَمِنْ اَصْوَافِهَا وَاَوْبَارِهَا وَاَشْعَارِهَاۤ اَثَاثًا وَّمَتَاعًا اِلٰى حِيْنٍ ﴿٨١﴾

୮୨. ଏବଂ ଅଲ୍ଲାହ ଯାହା କିଛି ସୃଷ୍ଟି କରିଛନ୍ତି ତନ୍ମଧ୍ୟରୁ ତୁମମାନଙ୍କ ପାଇଁ କେତେକ ଛାୟାପ୍ରଦ ବସ୍ତୁ (ସୃଷ୍ଟି) କରିଛନ୍ତି (ଫଳରେ ତୁମେମାନେ ବିଶ୍ରାମ କରିପାରିବ) ଏବଂ ପର୍ବତମାନଙ୍କ ମଧ୍ୟରେ ତୁମମାନଙ୍କ ପାଇଁ ଆଶ୍ରୟସ୍ଥଳ ଗଢ଼ିଛନ୍ତି ଏବଂ ତୁମମାନଙ୍କୁ ଉତ୍ତାପରୁ [୧] ରକ୍ଷା କରିବା ପାଇଁ ବିଭିନ୍ନ ପ୍ରକାରର ପୋଷାକ ତଥା ଯୁଦ୍ଧରୁ ରକ୍ଷା କରିବା ପାଇଁ ସାଞ୍ଜୁ ତିଆରି କରିଛନ୍ତି; ଏହିପରି ଭାବରେ ସେ ତୁମମାନଙ୍କ ପ୍ରତି ନିଜର କୃପା ସମ୍ପୂର୍ଣ୍ଣ କରନ୍ତି ଯଦ୍ଦ୍ୱାରା କି ତୁମେମାନେ (ତାହାଙ୍କ ନିକଟରେ) ସମ୍ପୂର୍ଣ୍ଣ ରୂପେ ଆତ୍ମ ସମର୍ପଣ କରିବ।

وَاللّٰهُ جَعَلَ لَكُمْ مِّمَّا خَلَقَ ظِلٰلًا وَّجَعَلَ لَكُمْ مِّنَ الْجِبَالِ اَكْنَانًا وَّجَعَلَ لَكُمْ سَرَابِيْلَ تَقِيْكُمُ الْحَرَّ وَسَرَابِيْلَ تَقِيْكُمْ بَاْسَكُمْ ؕ كَذٰلِكَ يُتِمُّ نِعْمَتَهٗ عَلَيْكُمْ لَعَلَّكُمْ تُسْلِمُوْنَ ﴿٨٢﴾

୮୩. ଅତଏବ ଯଦି ସେମାନେ (ଏବେ ବି) ଫେରି ଯାଆନ୍ତି ତେବେ (ଏଥିଯୋଗୁ ହେ ନବି ! ତୁମ ପ୍ରତି ଦୋଷାରୋପ କରାଯିବ ନାହିଁ କାରଣ ) କେବଳ ପ୍ରକାଶ୍ୟ ଭାବରେ (ବାର୍ତ୍ତା) ପହଞ୍ଚାଇ ଦେବା ତୁମର କର୍ତ୍ତବ୍ୟ।

فَاِنْ تَوَلَّوْا فَاِنَّمَا عَلَيْكَ الْبَلٰغُ الْمُبِيْنُ ﴿٨٣﴾

୮୪. ସେମାନେ ଅଲ୍ଲାହଙ୍କ କୃପା ବିଷୟରେ (ସମ୍ପୂର୍ଣ୍ଣ) ଅବଗତ ଅଛନ୍ତି, ତଥାପି ସେମାନେ ଏହାକୁ ଅସ୍ୱୀକାର କରୁଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ତ ଅଧିକାଂଶ କୃତଘ୍ନ ଅଟନ୍ତି।

ରୁ:୧୨

يَعْرِفُوْنَ نِعْمَتَ اللّٰهِ ثُمَّ يُنْكِرُوْنَهَا وَاَكْثَرُهُمُ الْكٰفِرُوْنَ ﴿٨٤﴾

୮୫. ଏବଂ (ସେହି ଦିନକୁ ମଧ୍ୟ ସ୍ମରଣ କର) ଯେଉଁ ଦିନ ଆମେ ପ୍ରତ୍ୟେକ ଜାତିରେ ଜଣେ ଲେଖାଏଁ ସାକ୍ଷୀ ଛିଡ଼ା କରାଇବୁ, ସେତେବେଳେ ଅବିଶ୍ୱାସକାରୀମାନଙ୍କୁ (ଆପତ୍ତି କରିବାକୁ) ଅନୁମତି ଦିଆଯିବ ନାହିଁ କି ସେମାନଙ୍କର କୌଣସି ଆପତ୍ତିକୁ ଗ୍ରହଣ କରାଯିବ ନାହିଁ।

وَيَوْمَ نَبْعَثُ مِنْ كُلِّ اُمَّةٍ شَهِيْدًا ثُمَّ لَا يُؤْذَنُ لِلَّذِيْنَ كَفَرُوْا وَلَا هُمْ يُسْتَعْتَبُوْنَ ﴿٨٥﴾

୮୬. ଏବଂ ଯେତେବେଳେ ଅତ୍ୟାଚାରୀମାନେ ଏହି (ପ୍ରତିଶ୍ରୁତ) ଶାସ୍ତିକୁ ଦେଖିବେ ସେତେବେଳେ ଏହାକୁ (ଅର୍ଥାତ୍ ଏହି ଶାସ୍ତିକୁ) ହ୍ରାସ କରାଯିବ ନାହିଁ କି ସେମାନଙ୍କୁ ଅବକାଶ ଦିଆଯିବ ନାହିଁ।

وَاِذَا رَاَ الَّذِيْنَ ظَلَمُوا الْعَذَابَ فَلَا يُخَفَّفُ عَنْهُمْ وَلَا هُمْ يُنْظَرُوْنَ ﴿٨٦﴾

---

୧. ଏଠାରେ କେବଳ ଉତ୍ତାପ ବିଷୟରେ ଉଲ୍ଲେଖ କରାଯାଇଛି। କିନ୍ତୁ ଆରବୀ ଭାଷା-ଶୈଳୀ ଅନୁସାରେ ଏହି ଆୟତର ଅର୍ଥ, ଅଲ୍ଲାହ ଏପରି ବସ୍ତ୍ର ତିଆରି କରିଛନ୍ତି ଯାହା ଉଭୟ ଉତ୍ତାପ ଓ ଶୀତରୁ ରକ୍ଷା କରେ।

୮୭. ଏବଂ ଯେତେବେଳେ ମୁସରିକମାନେ ନିଜର (ତଥାକଥିତ) [୧] ଉପାସ୍ୟମାନଙ୍କୁ ଦେଖିବେ ସେତେବେଳେ କହିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଏମାନେ ଆମମାନଙ୍କର (ସ୍ୱରଚିତ) ଉପାସ୍ୟ ଅଟନ୍ତି ଯେଉଁମାନଙ୍କୁ ଆମେମାନେ ତୁମଙ୍କୁ ପରିତ୍ୟାଗ କରି ଡାକୁଥିଲୁ." ତା'ପରେ ସେ (ତଥାକଥିତ ଉପାସ୍ୟ) ମାନେ ସେମାନଙ୍କୁ ଉତ୍ତର ଦେବେ, "ତୁମେମାନେ ବାସ୍ତବରେ ମିଥ୍ୟାବାଦୀ ଅଟ ।"

وَاِذَا رَاَ الَّذِیۡنَ اَشۡرَکُوۡا شُرَکَآءَهُمۡ قَالُوۡا رَبَّنَا هٰۤؤُلَآءِ شُرَکَآؤُنَا الَّذِیۡنَ کُنَّا نَدۡعُوۡا مِنۡ دُوۡنِکَ ۚ فَاَلۡقَوۡا اِلَیۡهِمُ الۡقَوۡلَ اِنَّکُمۡ لَکٰذِبُوۡنَ ﴿۸۷﴾

୮୮. ଏବଂ (ଏହି ପରିସ୍ଥିତିକୁ ଲକ୍ଷ୍ୟକରି) ସେ (ଅତ୍ୟାଚାରୀ)ମାନେ ସେଦିନ ଅଲ୍ଲାହଙ୍କ ସମୀପରେ (ନିଜେ) ଆତ୍ମସମର୍ପଣ କରିଥିବାର ପ୍ରକାଶ କରିବେ ଏବଂ ସେମାନେ ଯେଉଁସବୁ ମିଥ୍ୟା ରଚନା କରୁଥିଲେ ତାହା ସେଦିନ (ସେମାନଙ୍କ ସ୍ମୃତିପଟରୁ) ଅନ୍ତର୍ଦ୍ଧାନ ହୋଇଯିବ ।

وَاَلۡقَوۡا اِلَی اللّٰهِ یَوۡمَئِذِ ۣالسَّلَمَ وَضَلَّ عَنۡهُمۡ مَّا کَانُوۡا یَفۡتَرُوۡنَ ﴿۸۸﴾

୮୯. ଯେଉଁମାନେ (ନିଜେ) ଅବିଶ୍ୱାସ କରୁଥିଲେ ଓ (ଅନ୍ୟମାନଙ୍କୁ) ଅଲ୍ଲାହଙ୍କ ପଥରୁ ପ୍ରତିରୋଧ କରୁଥିଲେ, ଆମ୍ଭେ ସେମାନଙ୍କୁ ଏହି ଶାସ୍ତି ଠାରୁ ବଳି ଆଉ ଏକ ଶାସ୍ତି ଦେବୁ, କାରଣ ସେମାନେ (ସର୍ବଦା) ବିଶୃଙ୍ଖଳା କରୁଥିଲେ;

اَلَّذِیۡنَ کَفَرُوۡا وَصَدُّوۡا عَنۡ سَبِیۡلِ اللّٰهِ زِدۡنٰهُمۡ عَذَابًا فَوۡقَ الۡعَذَابِ بِمَا کَانُوۡا یُفۡسِدُوۡنَ ﴿۸۹﴾

୯୦. ଏବଂ (ସେହି ଦିନକୁ ମଧ୍ୟ ସ୍ମରଣ କର) ଯେଉଁଦିନ ଆମ୍ଭେ ପ୍ରତ୍ୟେକ ଜାତିରେ ସେମାନଙ୍କ ବିରୁଦ୍ଧରେ ସେମାନଙ୍କ ମଧ୍ୟରୁ ଜଣେ ସାକ୍ଷୀ ଛିଡ଼ା କରାଇବୁ, ଏବଂ (ହେ ରସୁଲ !) ତୁମଙ୍କୁ ମଧ୍ୟ ଆମ୍ଭେ ଏମାନଙ୍କ ବିରୁଦ୍ଧରେ ସାକ୍ଷୀ ରୂପେ ଆଣିବୁ; ଏବଂ ପ୍ରତ୍ୟେକ ବିଷୟକୁ ସ୍ପଷ୍ଟଭାବରେ ବର୍ଣ୍ଣନା କରିବା ସକାଶେ ଓ (ସମସ୍ତଙ୍କୁ) ସତ୍‌ପଥ ପ୍ରଦର୍ଶିତ କରିବା ତଥା (ସେମାନଙ୍କ ପ୍ରତି) କୃପା ପ୍ରଦର୍ଶନ କରିବା ସକାଶେ ଏବଂ ସମ୍ପୂର୍ଣ୍ଣ ଆତ୍ମସମର୍ପଣକାରୀମାନଙ୍କୁ ସୁସମାଚାର ଦେବା ସକାଶେ ଆମ୍ଭେ ଏହି (ଧର୍ମ) ଗ୍ରନ୍ଥକୁ ଅବତୀର୍ଣ୍ଣ କରିଅଛୁ ।

وَیَوۡمَ نَبۡعَثُ فِیۡ کُلِّ اُمَّۃٍ شَهِیۡدًا عَلَیۡهِمۡ مِّنۡ اَنۡفُسِهِمۡ وَجِئۡنَا بِکَ شَهِیۡدًا عَلٰی هٰۤؤُلَآءِ ؕ وَنَزَّلۡنَا عَلَیۡکَ الۡکِتٰبَ تِبۡیَانًا لِّکُلِّ شَیۡءٍ وَّهُدًی وَّرَحۡمَۃً وَّبُشۡرٰی لِلۡمُسۡلِمِیۡنَ ﴿۹۰﴾

ରୁ: ୧୩

୯୧. ବାସ୍ତବରେ ଅଲ୍ଲାହ ନ୍ୟାୟ ବିଚାର କରିବାକୁ ତଥା (ଅନ୍ୟର) ହିତ ସାଧନ କରିବାକୁ ଏବଂ ଆତ୍ମୀୟ ସ୍ୱଜନମାନଙ୍କ ସଦୃଶ (ଅନ୍ୟମାନଙ୍କୁ ସାହାଯ୍ୟ) କରିବାକୁ ଆଦେଶ ଦେଉଛନ୍ତି; ଏବଂ (ପ୍ରତ୍ୟେକ ପ୍ରକାର) ନିର୍ଲଜ୍ଜତା ଓ ଅଶୋଭନୀୟ ବିଷୟ ତଥା ବିଦ୍ରୋହ କରିବାକୁ ବାରଣ କରୁଛନ୍ତି; ସେ ତୁମମାନଙ୍କୁ (ଏଥି ନିମନ୍ତେ) ଉପଦେଶ ଦେଇଛନ୍ତି ଯଦ୍ଦ୍ୱାରା ତୁମେମାନେ ବୁଝିପାରିବ ।

اِنَّ اللّٰهَ یَاۡمُرُ بِالۡعَدۡلِ وَالۡاِحۡسَانِ وَاِیۡتَآیِٔ ذِی الۡقُرۡبٰی وَیَنۡهٰی عَنِ الۡفَحۡشَآءِ وَالۡمُنۡکَرِ وَالۡبَغۡیِ ۚ یَعِظُکُمۡ لَعَلَّکُمۡ تَذَکَّرُوۡنَ ﴿۹۱﴾

---

୧. ଏଠାରେ କେବଳ 'ଶୋରକା ଅହୁମ' ଶବ୍ଦାବଳୀ ଅଛି । କିନ୍ତୁ ଯେହେତୁ ପବିତ୍ର କୋରାନରେ ଉଲ୍ଲେଖ ଅଛି ଯେ ଅଲ୍ଲାହଙ୍କର କେହି ସମକକ୍ଷ ନାହିଁ, ତେଣୁ ବନ୍ଧନୀ ମଧ୍ୟରେ ତଥାକଥିତ ଶବ୍ଦ ଅଧିକ କିଆଯାଇଛି ଯାହା କୋରାନର ପ୍ରକୃତ ମର୍ମକୁ ବୁଝାଉଛି ।

وَاَوۡفُوۡا بِعَهۡدِ اللّٰهِ اِذَا عٰهَدۡتُّمۡ وَلَا تَنۡقُضُوا الۡاَيۡمَانَ بَعۡدَ تَوۡكِيۡدِهَا وَقَدۡ جَعَلۡتُمُ اللّٰهَ عَلَيۡكُمۡ كَفِيۡلًا ؕ اِنَّ اللّٰهَ يَعۡلَمُ مَا تَفۡعَلُوۡنَ ۝٩٢

୯୨. ଏବଂ ଯେବେ ତୁମେମାନେ ଅଲ୍ଲାହ୍‌ଙ୍କ ସହିତ କୌଣସି ଅଙ୍ଗୀକାର କରିଥାଅ ତେବେ ସେହି ଅଙ୍ଗୀକାରକୁ ପାଳନ କର, ଏବଂ ଅଲ୍ଲାହ୍‌ଙ୍କୁ ନିଜର ଜାମିନ ରୂପେ ଗ୍ରହଣ କରି ଦୃଢ଼ ଶପଥ କରିବା ପରେ ତାହାକୁ ଭଙ୍ଗ କର ନାହିଁ; ତୁମେମାନେ ଯାହା କିଛି କରୁଅଛ ବାସ୍ତବରେ ଅଲ୍ଲାହ୍ ତାହାକୁ ଜାଣନ୍ତି ।

وَلَا تَكُوۡنُوۡا كَالَّتِىۡ نَقَضَتۡ غَزۡلَهَا مِنۡۢ بَعۡدِ قُوَّةٍ اَنۡكَاثًا ؕ تَتَّخِذُوۡنَ اَيۡمَانَكُمۡ دَخَلًاۢ بَيۡنَكُمۡ اَنۡ تَكُوۡنَ اُمَّةٌ هِىَ اَرۡبٰى مِنۡ اُمَّةٍ ؕ اِنَّمَا يَبۡلُوۡكُمُ اللّٰهُ بِهٖ ؕ وَلَيُبَيِّنَنَّ لَـكُمۡ يَوۡمَ الۡقِيٰمَةِ مَا كُنۡتُمۡ فِيۡهِ تَخۡتَلِفُوۡنَ ۝٩٣

୯୩. ଏବଂ ସେହି ନାରୀ ସଦୃଶ ହୁଅ ନାହିଁ ଯେ ନିଜେ କାଟିଥିବା ସୂତାକୁ ତାହା ଟାଣ ହେବା ପରେ ଛିଣ୍ଡାଇ ଖଣ୍ଡ ଖଣ୍ଡ କରିଦିଏ; ଏବଂ (ଏହିପରି ଭାବରେ) କାଳେ କୌଣସି ସମ୍ପ୍ରଦାୟ ଅନ୍ୟ ସମ୍ପ୍ରଦାୟ ତୁଳନାରେ ଅଧିକ ଶକ୍ତିଶାଳୀ ହୋଇଯିବ ଏହି ଭୟରେ, ତୁମେମାନେ ପ୍ରତାରଣା–ପୂର୍ବକ ନିଜର ଶପଥକୁ ପରସ୍ପର ମଧ୍ୟରେ ପ୍ରଭାବ ବିସ୍ତାର କରିବାର ଏକ ମାଧ୍ୟମ ରୂପେ ଗ୍ରହଣ କରୁଅଛ; ତଦ୍ଦ୍ୱାରା ଅଲ୍ଲାହ୍ ତୁମମାନଙ୍କୁ କେବଳ ପରୀକ୍ଷା କରୁଛନ୍ତି ଏବଂ ଯେଉଁ ବିଷୟରେ ତୁମମାନଙ୍କର ମତ ପାର୍ଥକ୍ୟ ରହିଛି କୟାମତ ଦିନ ସେ ସବୁକୁ ତୁମମାନଙ୍କ ନିକଟରେ ନିଶ୍ଚୟ ପ୍ରକାଶ[୧] କରିଦେବେ ।

وَلَوۡ شَآءَ اللّٰهُ لَجَـعَلَـكُمۡ اُمَّةً وَّاحِدَةً وَّلٰـكِنۡ يُّضِلُّ مَنۡ يَّشَآءُ وَيَهۡدِىۡ مَنۡ يَّشَآءُ ؕ وَلَـتُسۡـئَـلُنَّ عَمَّا كُنۡتُمۡ تَعۡمَلُوۡنَ ۝٩٤

୯୪. ଏବଂ ଯଦି ଅଲ୍ଲାହ୍ ଇଚ୍ଛା କରିଥା'ନ୍ତେ ତେବେ ସେ ତୁମମାନଙ୍କୁ ଗୋଟିଏ ସମ୍ପ୍ରଦାୟ କରି ଦେଇଥାଆନ୍ତେ; କିନ୍ତୁ (ସେ ଏପରି କରନ୍ତି ନାହିଁ ବରଂ) ଯେ (ପଥଭ୍ରଷ୍ଟ ହେବାକୁ) ଇଚ୍ଛା କରେ ସେ ତାହାକୁ ପଥଭ୍ରଷ୍ଟ କରାନ୍ତି ଏବଂ ଯେ (ସତ୍‌ପଥଗାମୀ ହେବାକୁ) ଇଚ୍ଛା କରେ ସେ ତାହାକୁ ସତ୍‌ପଥଗାମୀ କରନ୍ତି; ଏବଂ ଯାହା କିଛି ତୁମେମାନେ କରୁଅଛ ସେ ସଂକ୍ରାନ୍ତରେ (କୟାମତ ଦିନ) ତୁମମାନଙ୍କୁ ପ୍ରଶ୍ନ କରାଯିବ ।

وَلَا تَتَّخِذُوۡۤا اَيۡمَانَكُمۡ دَخَلًاۢ بَيۡنَكُمۡ فَتَزِلَّ قَدَمٌۢ بَعۡدَ ثُبُوۡتِهَا وَتَذُوۡقُوا السُّۤوۡءَ بِمَا صَدَدْتُّمۡ عَنۡ سَبِيۡلِ اللّٰهِ ۚ وَلَـكُمۡ عَذَابٌ عَظِيۡمٌ ۝٩٥

୯୫. ଏବଂ ତୁମେମାନେ ନିଜର ଶପଥକୁ ପରସ୍ପର ମଧ୍ୟରେ ପ୍ରତାରଣାର ଏକ ମାଧ୍ୟମ ରୂପେ ଗ୍ରହଣ କର ନାହିଁ; ନଚେତ୍ (ତୁମମାନଙ୍କ) ପାଦ ଦୃଢ଼ଭାବରେ ପ୍ରତିଷ୍ଠିତ ହେବା ପରେ (ପୁନର୍ବାର) ସ୍ଖଳିତ ହେବ, ଏବଂ ତୁମମାନଙ୍କୁ କୁପରିଣାମ ଭୋଗ କରିବାକୁ ହେବ, କାରଣ ତୁମେମାନେ (ଏହିପରି ଭାବରେ ଅନ୍ୟମାନଙ୍କୁ ମଧ୍ୟ) ଅଲ୍ଲାହ୍‌ଙ୍କ ପଥରୁ ପ୍ରତିରୋଧ କରିଥିଲ; ଏବଂ ତୁମମାନଙ୍କ ପ୍ରତି କଠିନ ଶାସ୍ତି (ଅବତୀର୍ଣ୍ଣ) ହେବ ।

---

୧. ଅର୍ଥାତ୍ ତୁମମାନଙ୍କ ନିକଟରେ ସତ୍ୟ ଓ ଅସତ୍ୟ ମଧ୍ୟରେ ଥିବା ପାର୍ଥକ୍ୟ ଉନ୍ମୋଚିତ ହୋଇଯିବ ।

୯୬. ଏବଂ ତୁମେମାନେ ଅଲ୍ଲାଃଙ୍କ ସହିତ କରିଥିବା ଅଙ୍ଗୀକାର ବଦଳରେ ତୁଚ୍ଛ ମୂଲ୍ୟ (ବିଶିଷ୍ଟ ବସ୍ତୁ) ଗ୍ରହଣ କର ନାହିଁ; ଯଦି ତୁମମାନଙ୍କର ବୁଦ୍ଧି ଥାଏ, ତେବେ ବୁଝିପାରିବ ଯେ ଯାହା ଅଲ୍ଲାଃଙ୍କ ନିକଟରେ ଅଛି ତାହା ବାସ୍ତବରେ ତୁମମାନଙ୍କ ସକାଶେ (ତା'ଠାରୁ) ଉତ୍କୃଷ୍ଟତର ।

وَلَا تَشْتَرُوا بِعَهْدِ اللَّهِ ثَمَنًا قَلِيلًا ۚ إِنَّمَا عِنْدَ اللَّهِ هُوَ خَيْرٌ لَكُمْ إِنْ كُنْتُمْ تَعْلَمُونَ ﴿٩٦﴾

୯୭. ତୁମମାନଙ୍କ ନିକଟରେ ଯାହା କିଛି ଅଛି ତାହା ଶେଷ ହୋଇଯିବ, ଅର୍ଥାତ୍ ଅଲ୍ଲାଃଙ୍କ ନିକଟରେ ଯାହା କିଛି ଅଛି ତାହା ଚିରସ୍ଥାୟୀ ଅଟେ; ଏବଂ ଯେଉଁମାନେ ଧୈର୍ଯ୍ୟଶୀଳ ଥିଲେ, ଆମେ ସେମାନଙ୍କୁ ନିଶ୍ଚୟ ସେମାନଙ୍କ ଉତ୍କୃଷ୍ଟ କାର୍ଯ୍ୟ ଅନୁସାରେ ପୁରସ୍କାର ପ୍ରଦାନ କରିବୁ ।

مَا عِنْدَكُمْ يَنْفَدُ ۖ وَمَا عِنْدَ اللَّهِ بَاقٍ ۗ وَلَنَجْزِيَنَّ الَّذِينَ صَبَرُوا أَجْرَهُمْ بِأَحْسَنِ مَا كَانُوا يَعْمَلُونَ ﴿٩٧﴾

୯୮. ପୁରୁଷ ହେଉ ବା ନାରୀ, ଯେ କେହି ବିଶ୍ୱାସକାରୀ ଥାଇ ପୁଣ୍ୟ ଓ ଯଥାର୍ଥ କାର୍ଯ୍ୟ କରିବ ଆମେ ନିଶ୍ଚୟ ତାହାକୁ ଏକ ପବିତ୍ର ଜୀବନ ଦାନ କରିବୁ; ଏବଂ ଆମେ ସେମାନଙ୍କୁ ସେମାନଙ୍କ ଉତ୍କୃଷ୍ଟ କର୍ମ ଅନୁସାରେ ପୁରସ୍କାର ଦେବୁ ।

مَنْ عَمِلَ صَالِحًا مِنْ ذَكَرٍ أَوْ أُنْثَىٰ وَهُوَ مُؤْمِنٌ فَلَنُحْيِيَنَّهُ حَيَاةً طَيِّبَةً ۖ وَلَنَجْزِيَنَّهُمْ أَجْرَهُمْ بِأَحْسَنِ مَا كَانُوا يَعْمَلُونَ ﴿٩٨﴾

୯୯. ଯେତେବେଳେ ତୁମେ କୋରାନ ଆବୃତ୍ତି କର ସେତେବେଳେ ବହିଷ୍କୃତ ସଇତାନ ଠାରୁ (ରକ୍ଷା ପାଇବା ପାଇଁ) ଅଲ୍ଲାଃଙ୍କ ଶରଣ ଭିକ୍ଷା କର ।

فَإِذَا قَرَأْتَ الْقُرْآنَ فَاسْتَعِذْ بِاللَّهِ مِنَ الشَّيْطَانِ الرَّجِيمِ ﴿٩٩﴾

୧୦୦. ଯେଉଁମାନେ ବିଶ୍ୱାସ କରନ୍ତି ଓ ନିଜ ପାଳନକର୍ତ୍ତାଙ୍କ ଉପରେ ନିର୍ଭର କରନ୍ତି ବାସ୍ତବରେ ସେମାନଙ୍କ ଉପରେ ତାହାର କୌଣସି ଆଧିପତ୍ୟ ନାହିଁ ।

إِنَّهُ لَيْسَ لَهُ سُلْطَانٌ عَلَى الَّذِينَ آمَنُوا وَعَلَىٰ رَبِّهِمْ يَتَوَكَّلُونَ ﴿١٠٠﴾

୧୦୧. ଯେଉଁମାନେ ତା' ସହିତ ବନ୍ଧୁତା କରନ୍ତି ଏବଂ ଯେଉଁମାନେ ତା'ଯୋଗୁଁ ସିର୍କ କରିଥା'ନ୍ତି, କେବଳ ସେହିମାନଙ୍କ ଉପରେ ତାହାର ଆଧିପତ୍ୟ ରହେ ।

إِنَّمَا سُلْطَانُهُ عَلَى الَّذِينَ يَتَوَلَّوْنَهُ وَالَّذِينَ هُمْ بِهِ مُشْرِكُونَ ﴿١٠١﴾

ରୁ:୧୪

୧୦୨. ଏବଂ ଯେତେବେଳେ ଆମେ କୌଣସି ନିଦର୍ଶନ ବଦଳରେ ଅନ୍ୟ କୌଣସି ନିଦର୍ଶନ ଆଣିଥାଉ ଏବଂ (ଏଥିରେ କ'ଣ ସନ୍ଦେହ ଅଛି ଯେ) ଅଲ୍ଲାଃ ଯାହା କିଛି ଅବତୀର୍ଣ୍ଣ କରନ୍ତି ତାହାକୁ (ଅର୍ଥାତ୍ ତାହାର ଆବଶ୍ୟକତାକୁ) ସେ ଉତ୍ତମରୂପେ ଜାଣନ୍ତି, ସେତେବେଳେ ସେମାନେ କହନ୍ତି, ''ତୁମେ ମିଥ୍ୟା ରଚନାକାରୀ;'' (ବସ୍ତୁତଃ ତାହା ଏପରି) ନୁହେଁ, ବରଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଜାଣନ୍ତି ନାହିଁ ।

وَإِذَا بَدَّلْنَا آيَةً مَكَانَ آيَةٍ ۙ وَاللَّهُ أَعْلَمُ بِمَا يُنَزِّلُ قَالُوا إِنَّمَا أَنْتَ مُفْتَرٍ ۚ بَلْ أَكْثَرُهُمْ لَا يَعْلَمُونَ ﴿١٠٢﴾

୧୦୩. ତୁମେ (ସେହି ଅଭିଯୋଗକାରୀମାନଙ୍କୁ) କୁହ, ''ପବିତ୍ର ଆତ୍ମା ଏହାକୁ ତୁମ ପାଳନକର୍ତ୍ତାଙ୍କ ଠାରୁ ସତ୍ୟ (ଓ ତତ୍ତ୍ୱ) ସହିତ ଅବତୀର୍ଣ୍ଣ କରିଛନ୍ତି ଯଦ୍ୱାରା ଯେଉଁମାନେ ବିଶ୍ୱାସ

قُلْ نَزَّلَهُ رُوحُ الْقُدُسِ مِنْ رَبِّكَ بِالْحَقِّ لِيُثَبِّتَ

الَّذِينَ آمَنُوا وَهُدًى وَبُشْرَىٰ لِلْمُسْلِمِينَ ﴿١٠٢﴾

କରିଛନ୍ତି ସେମାନଙ୍କୁ ସେ (ବିଶ୍ୱାସ ଉପରେ) ସର୍ବଦା ସୁପ୍ରତିଷ୍ଠିତ କରିପାରିବେ, ଏବଂ ଏହା ଆଜ୍ଞାପାଳନକାରୀମାନଙ୍କ ସକାଶେ ଏକ ମାର୍ଗଦର୍ଶକ ଓ ସୁସମାଚାର ଅଟେ ।

وَلَقَدْ نَعْلَمُ أَنَّهُمْ يَقُولُونَ إِنَّمَا يُعَلِّمُهُ بَشَرٌ ۗ لِّسَانُ الَّذِي يُلْحِدُونَ إِلَيْهِ أَعْجَمِيٌّ وَهَٰذَا لِسَانٌ عَرَبِيٌّ مُّبِينٌ ﴿١٠٣﴾

୧୦୪. ଏବଂ ଆମ୍ଭେ ନିଶ୍ଚିତ ରୂପେ ଜାଣୁ ଯେ ସେମାନେ କହନ୍ତି (ଯେ ଏହା ଅଲ୍ଲାହଙ୍କ ପ୍ରେରିତ ଓହି ନୁହେଁ ବରଂ) ଏହାକୁ ଜଣେ ମନୁଷ୍ୟ ଶିକ୍ଷା ଦେଉଅଛି; (କିନ୍ତୁ ସେମାନେ ବୁଝିପାରୁ ନାହାନ୍ତି ଯେ) ଯେଉଁ ବ୍ୟକ୍ତି ପ୍ରତି ସେମାନେ ସଙ୍କେତ କରୁଛନ୍ତି (ଏବଂ ସେମାନଙ୍କ ମନୋଭାବ ଯାହାଙ୍କ ପ୍ରତି ଇଙ୍ଗିତ ଦେଉଅଛି) ତାହାଙ୍କର ଭାଷା ଅଣ-ଆରବୀ ଅଟେ ଏବଂ ଏହା (ଅର୍ଥାତ୍ କୋରାନର ଭାଷା) ସୁସ୍ପଷ୍ଟ ଆରବୀ ଭାଷା ଅଟେ ।

إِنَّ الَّذِينَ لَا يُؤْمِنُونَ بِآيَاتِ اللَّهِ لَا يَهْدِيهِمُ اللَّهُ وَلَهُمْ عَذَابٌ أَلِيمٌ ﴿١٠٤﴾

୧୦୫. ଯେଉଁମାନେ ଅଲ୍ଲାହଙ୍କର ନିଦର୍ଶନମାନଙ୍କରେ ବିଶ୍ୱାସ କରନ୍ତି ନାହିଁ, ଅଲ୍ଲାହ ସେମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାନ୍ତି ନାହିଁ, ଏବଂ ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

إِنَّمَا يَفْتَرِي الْكَذِبَ الَّذِينَ لَا يُؤْمِنُونَ بِآيَاتِ اللَّهِ ۖ وَأُولَٰئِكَ هُمُ الْكَاذِبُونَ ﴿١٠٥﴾

୧୦୬. ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନମାନଙ୍କରେ ବିଶ୍ୱାସ କରନ୍ତି ନାହିଁ ସେହିମାନେ ହିଁ ମିଥ୍ୟା ରଚନା କରନ୍ତି ଓ ସେମାନେ ହିଁ ପକ୍କା ମିଥ୍ୟାବାଦୀ ଅଟନ୍ତି ।

مَن كَفَرَ بِاللَّهِ مِن بَعْدِ إِيمَانِهِ إِلَّا مَنْ أُكْرِهَ وَقَلْبُهُ مُطْمَئِنٌّ بِالْإِيمَانِ وَلَٰكِن مَّن شَرَحَ بِالْكُفْرِ صَدْرًا فَعَلَيْهِمْ غَضَبٌ مِّنَ اللَّهِ وَلَهُمْ عَذَابٌ عَظِيمٌ ﴿١٠٦﴾

୧୦୭. ଯେଉଁ ଲୋକମାନେ ନିଜେ ବିଶ୍ୱାସ କରିବା ପରେ ଅଲ୍ଲାହଙ୍କୁ ଅବିଶ୍ୱାସ କରନ୍ତି— (ଅବଶ୍ୟ) ସେମାନଙ୍କ ବ୍ୟତୀତ ଯେଉଁମାନଙ୍କୁ (ଅବିଶ୍ୱାସ କରିବା ପାଇଁ) ବାଧ୍ୟ କରାଯାଏ, ଯଦିଓ ସେମାନଙ୍କ ହୃଦୟ ବିଶ୍ୱାସ ଯୋଗୁଁ ପରିତୃପ୍ତ ଥାଏ— ଅବଶ୍ୟ ଯେଉଁମାନେ (ନିଜ) ହୃଦୟକୁ ଅବିଶ୍ୱାସ ନିମନ୍ତେ ଉନ୍ମୁକ୍ତ ରଖିଥାଆନ୍ତି ସେମାନଙ୍କ ପ୍ରତି ଅଲ୍ଲାହଙ୍କ ପ୍ରକୋପ ଅବତୀର୍ଣ୍ଣ ହେବ; ଏବଂ ସେମାନଙ୍କ ପାଇଁ କଠିନ ଶାସ୍ତି (ନିୟତ) ଅଛି ।

ذَٰلِكَ بِأَنَّهُمُ اسْتَحَبُّوا الْحَيَاةَ الدُّنْيَا عَلَى الْآخِرَةِ وَأَنَّ اللَّهَ لَا يَهْدِي الْقَوْمَ الْكَافِرِينَ ﴿١٠٧﴾

୧୦୮. ଏବଂ ଏହା ଏଥିଯୋଗୁଁ ହେବ ଯେ ସେମାନେ ପରକାଳ ଅପେକ୍ଷା ଇହକାଳକୁ ଅଧିକ ପସନ୍ଦ କରନ୍ତି, ଏବଂ (ଏଥିଯୋଗୁଁ ହେବ ଯେ) ଅଲ୍ଲାହ ଅବିଶ୍ୱାସକାରୀମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାନ୍ତି ନାହିଁ ।

أُولَٰئِكَ الَّذِينَ طَبَعَ اللَّهُ عَلَىٰ قُلُوبِهِمْ وَسَمْعِهِمْ وَأَبْصَارِهِمْ ۖ وَأُولَٰئِكَ هُمُ الْغَافِلُونَ ﴿١٠٨﴾

୧୦୯. ଏମାନେ ସେଭଳି ବ୍ୟକ୍ତି ଯେଉଁମାନଙ୍କ (ଅବିଶ୍ୱାସ ହେତୁ ସେମାନଙ୍କ) ହୃଦୟ, କର୍ଣ୍ଣ ଓ ଚକ୍ଷୁ ଉପରେ ଅଲ୍ଲାହ ମୋହର ମାରି ଦେଇଛନ୍ତି; ଏମାନେ ହିଁ (ପକ୍କା) ଅମନୋଯୋଗୀ ।

لَا جَرَمَ اَنَّهُمْ فِي الْاٰخِرَةِ هُمُ الْخٰسِرُوْنَ ۝١١٠

୧୧୦. ଏଥିରେ କୌଣସି ସନ୍ଦେହ ନାହିଁ ଯେ ସେମାନେ ପରଲୋକରେ ଅଧିକ କ୍ଷତିଗ୍ରସ୍ତ ହେବେ ।

ثُمَّ اِنَّ رَبَّكَ لِلَّذِيْنَ هَاجَرُوْا مِنْۢ بَعْدِ مَا فُتِنُوْا ثُمَّ جٰهَدُوْا وَصَبَرُوْٓا اِنَّ رَبَّكَ مِنْۢ بَعْدِهَا لَغَفُوْرٌ رَّحِيْمٌ ۝١١١ ع

୧୧୧. ଏବଂ ତୁମ୍ଭର ପାଳନକର୍ତ୍ତା ବାସ୍ତବରେ ସେହିମାନଙ୍କ ପାଇଁ ଯେଉଁମାନେ କି ନିର୍ଯ୍ୟାତିତ ହେବାପରେ ହିଜରତ କରିଛନ୍ତି, ତା'ପରେ ଜେହାଦ କରିଛନ୍ତି ଓ (ନିଜ ଅଙ୍ଗୀକାରରେ) ସୁଦୃଢ଼ ରହିଛନ୍ତି,ବସ୍ତୁତଃ ତୁମ୍ଭ ପାଳନକର୍ତ୍ତା ଏହା ପରେ (ଅର୍ଥାତ୍ ଏହି ସର୍ତ୍ତର ପାଳନପରେ) ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ (ସାବ୍ୟସ୍ତ) ହେବେ ।

ରୁ:୧୫

يَوْمَ تَاْتِيْ كُلُّ نَفْسٍ تُجَادِلُ عَنْ نَّفْسِهَا وَتُوَفّٰى كُلُّ نَفْسٍ مَّا عَمِلَتْ وَهُمْ لَا يُظْلَمُوْنَ ۝١١٢

୧୧୨. (ଏହି ପୁରସ୍କାର ବିଶେଷ ଭାବରେ ସେହିଦିନ ପ୍ରକାଶିତ ହେବ) ଯେଉଁଦିନ ପ୍ରତ୍ୟେକ ବ୍ୟକ୍ତି ନିଜ ସଂକ୍ରାନ୍ତରେ ଯୁକ୍ତି ଉପସ୍ଥାପନ କରି ଉପସ୍ଥିତ ହେବ, ଏବଂ ପ୍ରତ୍ୟେକ ବ୍ୟକ୍ତି ଯାହାକିଛି କରୁଥିବ ତାହାକୁ ସମ୍ପୂର୍ଣ୍ଣ ରୂପେ (ତାହାର ପୁରସ୍କାର) ପ୍ରଦାନ କରାଯିବ; ଏବଂ ସେମାନଙ୍କ ପ୍ରତି(କୌଣସି ପ୍ରକାର) ଅନ୍ୟାୟ କରାଯିବ ନାହିଁ ।

وَضَرَبَ اللّٰهُ مَثَلًا قَرْيَةً كَانَتْ اٰمِنَةً مُّطْمَئِنَّةً يَّاْتِيْهَا رِزْقُهَا رَغَدًا مِّنْ كُلِّ مَكَانٍ فَكَفَرَتْ بِاَنْعُمِ اللّٰهِ فَاَذَاقَهَا اللّٰهُ لِبَاسَ الْجُوْعِ وَالْخَوْفِ بِمَا كَانُوْا يَصْنَعُوْنَ ۝١١٣

୧୧୩. ଏବଂ ଅଲ୍ଲାହ (ତୁମମାନଙ୍କୁ ବୁଝାଇବା ପାଇଁ ଏପରି) ଗୋଟିଏ ସହରର [1] ଅବସ୍ଥା (ବିଷୟରେ) ବର୍ଣ୍ଣନା କରୁଛନ୍ତି ଯହିଁରେ (ପ୍ରତ୍ୟେକ ପ୍ରକାର) ଶାନ୍ତି ଓ ନିରାପତ୍ତା ଥିଲା ଓ ତାହା ନିକଟକୁ ପ୍ରତ୍ୟେକ ସ୍ଥାନରୁ ପ୍ରଚୁର ପରିମାଣରେ ଜୀବନ ନିର୍ବାହ ସାମଗ୍ରୀ ଆସୁଥିଲା; ତା'ପରେ ସେ ସହରର ଲୋକମାନେ ଅଲ୍ଲାହଙ୍କ ଅନୁଗ୍ରହ ପ୍ରତି ଅକୃତଜ୍ଞ ହେଲେ; ଏଥିଯୋଗୁଁ ଅଲ୍ଲାହ ସେମାନଙ୍କ ପ୍ରତି ସେମାନଙ୍କ (ମନ୍ଦ) କର୍ମ ହେତୁ କ୍ଷୁଧା ଓ ଭୟ ଅବତୀର୍ଣ୍ଣ କଲେ ଯାହା ସେମାନଙ୍କୁ ଆବୃତ କରିଥିଲା ।

وَلَقَدْ جَآءَهُمْ رَسُوْلٌ مِّنْهُمْ فَكَذَّبُوْهُ فَاَخَذَهُمُ الْعَذَابُ وَهُمْ ظٰلِمُوْنَ ۝١١٤

୧୧୪. ଏବଂ ବସ୍ତୁତଃ ସେମାନଙ୍କ ମଧ୍ୟରୁ ସେମାନଙ୍କ ନିକଟକୁ (ଆମ୍ଭର) ଜଣେ ରସୁଲ ଆସିଥିଲେ, କିନ୍ତୁ ସେମାନେ ତାହାଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ; ସୁତରାଂ ସେମାନେ ଅତ୍ୟାଚାର କରୁଥିବାବେଳେ (ଆମ୍ଭର) ଶାସ୍ତି ସେମାନଙ୍କୁ କବଳିତ କରିଥିଲା ।

فَكُلُوْا مِمَّا رَزَقَكُمُ اللّٰهُ حَلٰلًا طَيِّبًا وَّاشْكُرُوْا نِعْمَتَ اللّٰهِ اِنْ كُنْتُمْ اِيَّاهُ تَعْبُدُوْنَ ۝١١٥

୧୧୫. ଅତଏବ ଅଲ୍ଲାହ ତୁମମାନଙ୍କୁ ଯେଉଁ ବୈଧ ଓ ବିଶୁଦ୍ଧ ଦ୍ରବ୍ୟ ପ୍ରଦାନ କରିଛନ୍ତି ତନ୍ମଧ୍ୟରୁ ଭକ୍ଷଣ କର, ଏବଂ ଯଦି ତୁମେମାନେ ଅଲ୍ଲାହଙ୍କର ଉପାସନା କରୁଥାଅ, ତେବେ ତାହାଙ୍କର ଅନୁଗ୍ରହ ପାଇଁ କୃତଜ୍ଞତା ପ୍ରକାଶ କର ।

---

୧. ଅର୍ଥାତ୍ ଆଦରଣୀୟ ମକ୍କା ନଗର ।

إِنَّمَا حَرَّمَ عَلَيْكُمُ الْمَيْتَةَ وَالدَّمَ وَلَحْمَ الْخِنْزِيرِ وَمَا أُهِلَّ لِغَيْرِ اللَّهِ بِهِ ۖ فَمَنِ اضْطُرَّ غَيْرَ بَاغٍ وَلَا عَادٍ فَإِنَّ اللَّهَ غَفُورٌ رَحِيمٌ ﴿١١٦﴾

୧୧୬. ସେ ତୁମମାନଙ୍କ ସକାଶେ କେବଳ ମୃତଜୀବ, ରକ୍ତ ଓ ଶୂକର ମାଂସ ତଥା ଯେଉଁ (ପ୍ରତ୍ୟେକ) ବସ୍ତୁ ଉପରେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟର ନାମ ଉଚ୍ଚାରିତ ହୋଇଥାଏ ତାହାକୁ ଅବୈଧ କରିଛନ୍ତି; କିନ୍ତୁ ଯେଉଁ ବ୍ୟକ୍ତି କାମନାର ବଶବର୍ତ୍ତୀ ନ ହୋଇ କି ସୀମା ଅତିକ୍ରମ ନ କରି (ଏଥି ମଧ୍ୟରୁ କୌଣସିଟିକୁ) ଖାଇବାକୁ ବାଧ୍ୟ ହୁଏ, ତେବେ (ମନେରଖ) ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَلَا تَقُولُوا لِمَا تَصِفُ أَلْسِنَتُكُمُ الْكَذِبَ هَٰذَا حَلَالٌ وَهَٰذَا حَرَامٌ لِتَفْتَرُوا عَلَى اللَّهِ الْكَذِبَ ۚ إِنَّ الَّذِينَ يَفْتَرُونَ عَلَى اللَّهِ الْكَذِبَ لَا يُفْلِحُونَ ﴿١١٧﴾

୧୧୭. ଏବଂ ଜିହ୍ୱାର ମିଥ୍ୟା ବର୍ଣ୍ଣନା ଯୋଗୁଁ ତୁମେମାନେ ଗୋଟିକୁ ବୈଧ ଓ ଗୋଟିକୁ ଅବୈଧ ବୋଲି କୁହ ନାହିଁ, ତୁମେମାନେ ଅଲ୍ଲାହ୍‌ଙ୍କ ପ୍ରତି ମିଥ୍ୟା ଆରୋପକାରୀ ହୋଇଯିବ, ଯେଉଁମାନେ ଅଲ୍ଲାହ୍‌ଙ୍କ ପ୍ରତି ମିଥ୍ୟା ଆରୋପ କରନ୍ତି ସେମାନେ କେବେ ହେଁ କୃତକାର୍ଯ୍ୟ ହୁଅନ୍ତି ନାହିଁ ।

مَتَاعٌ قَلِيلٌ وَلَهُمْ عَذَابٌ أَلِيمٌ ﴿١١٨﴾

୧୧୮. (ଇହ ଜଗତ) ଏକ କ୍ଷଣସ୍ଥାୟୀ ଉପଭୋଗ ମାତ୍ର, ଏବଂ (ଏପରି ମିଥ୍ୟା ଆରୋପ ଯୋଗୁଁ) ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ଅଛି ।

وَعَلَى الَّذِينَ هَادُوا حَرَّمْنَا مَا قَصَصْنَا عَلَيْكَ مِنْ قَبْلُ ۖ وَمَا ظَلَمْنَاهُمْ وَلَٰكِنْ كَانُوا أَنْفُسَهُمْ يَظْلِمُونَ ﴿١١٩﴾

୧୧୯. ଏବଂ ଯେଉଁମାନେ ଇହୁଦୀ ଧର୍ମ ଗ୍ରହଣ କରିଥିଲେ ସେମାନଙ୍କ ପାଇଁ ଆମେ ଏହା ପୂର୍ବରୁ ସେ (ସମସ୍ତ) ବସ୍ତୁକୁ ଅବୈଧ କରିଥିଲୁ ଯେଉଁ ବିଷୟରେ ଆମେ ତୁମ ନିକଟରେ ବର୍ଣ୍ଣନା କରିଅଛୁ; ଏବଂ ଆମେ (ଏହି ଆଦେଶ ପ୍ରଦାନ କରି) ସେମାନଙ୍କ ପ୍ରତି (କୌଣସି) ଅନ୍ୟାୟ କରି ନ ଥିଲୁ, ବରଂ ସେମାନେ (ଏହି ଆଦେଶ ଲଂଘନ କରି) ନିଜ ପ୍ରତି ଅନ୍ୟାୟ କରିଥିଲେ ।

ثُمَّ إِنَّ رَبَّكَ لِلَّذِينَ عَمِلُوا السُّوءَ بِجَهَالَةٍ ثُمَّ تَابُوا مِنْ بَعْدِ ذَٰلِكَ وَأَصْلَحُوا إِنَّ رَبَّكَ مِنْ بَعْدِهَا لَغَفُورٌ رَحِيمٌ ﴿١٢٠﴾ ع

୧୨୦. ତା'ପରେ (ମନେରଖ !) ଯେଉଁମାନେ ଅଜ୍ଞତା ବଶତଃ (କୌଣସି) କୁକର୍ମ କରିଛନ୍ତି ଓ ଏହାପରେ ଅନୁତାପ କରି (ନିଜକୁ) ସୁଧାରି ନିଅନ୍ତି, ତେବେ ନିଶ୍ଚୟ ଏହାପରେ (ଅର୍ଥାତ୍ ଉପରୋକ୍ତ ସର୍ତ୍ତପାଳନ କରିବା ପରେ) ତୁମ ପାଳନକର୍ତ୍ତା ସେମାନଙ୍କ ସକାଶେ ଅତ୍ୟନ୍ତ କ୍ଷମାଶୀଳ (ଓ ) ସଦା କରୁଣାମୟ (ସାବ୍ୟସ୍ତ) ହେବେ ।

ରୁ: ୧୬

إِنَّ إِبْرَاهِيمَ كَانَ أُمَّةً قَانِتًا لِلَّهِ حَنِيفًا وَلَمْ يَكُ مِنَ الْمُشْرِكِينَ ﴿١٢١﴾

୧୨୧. ବାସ୍ତବରେ ଇବ୍ରାହିମ ସର୍ବଗୁଣ ସମ୍ପନ୍ନ, ଅଲ୍ଲାହ୍‌ଙ୍କର ଅନୁଗତ ଓ ସର୍ବଦା ଆଜ୍ଞାପାଳନକାରୀ ଥିଲେ, ଏବଂ ସେ ମୁସରିକ ନ ଥିଲେ ।

شَاكِرًا لِأَنْعُمِهِ ۚ اجْتَبَاهُ وَهَدَاهُ إِلَىٰ صِرَاطٍ مُسْتَقِيمٍ ﴿١٢٢﴾

୧୨୨. (ସେ) ତାହାଙ୍କ (ଅର୍ଥାତ୍ ଅଲ୍ଲାହ୍‌ଙ୍କ) ଅନୁଗ୍ରହ ପ୍ରତି କୃତଜ୍ଞ ଥିଲେ; ସେ (ଅଲ୍ଲାହ୍) ତାହାଙ୍କୁ ମନୋନୀତ କରିଥିଲେ ଓ ଏକ ସରଳ ମାର୍ଗ ପ୍ରତି ତାହାଙ୍କୁ ପଥ ପ୍ରଦର୍ଶନ କରିଥିଲେ ।

وَاٰتَيۡنٰهُ فِى الدُّنۡيَا حَسَنَةً ؕ وَاِنَّهٗ فِى الۡاٰخِرَةِ لَمِنَ الصّٰلِحِيۡنَ ؕ ﴿١٢٣﴾

୧୨୩. ଏବଂ ଆମେ ତାହାଙ୍କୁ ଇହକାଳରେ ସାଫଲ୍ୟ ପ୍ରଦାନ କରିଥିଲୁ, ଏବଂ ସେ ପରକାଳରେ ନିଶ୍ଚୟ ଧର୍ମନିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବେ ।

ثُمَّ اَوۡحَيۡنَاۤ اِلَيۡكَ اَنِ اتَّبِعۡ مِلَّةَ اِبۡرٰهِيۡمَ حَنِيۡفًا ؕ وَمَا كَانَ مِنَ الۡمُشۡرِكِيۡنَ ﴿١٢٤﴾

୧୨୪. ସୁତରାଂ (ହେ ରସୁଲ !) ଆମେ ତୁମ ପ୍ରତି ଓହି ମାଧ୍ୟମରେ ଆଦେଶ ପ୍ରଦାନ କରିଅଛୁ ଯେ (ତୁମେ) ସମ୍ପୂର୍ଣ୍ଣ ଆଜ୍ଞାପାଳନକାରୀ ଇବ୍ରାହିମଙ୍କ ପନ୍ଥା ଅନୁସରଣ କର, ଏବଂ (ହେ ମକ୍କାବାସୀମାନେ ! ତୁମେମାନେ ଅବଗତ ଅଛ ଯେ) ସେ ମୁସରିକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନ ଥିଲେ ।

اِنَّمَا جُعِلَ السَّبۡتُ عَلَى الَّذِيۡنَ اخۡتَلَفُوۡا فِيۡهِ ؕ وَاِنَّ رَبَّكَ لَيَحۡكُمُ بَيۡنَهُمۡ يَوۡمَ الۡقِيٰمَةِ فِيۡمَا كَانُوۡا فِيۡهِ يَخۡتَلِفُوۡنَ ﴿١٢٥﴾

୧୨୫. ସବତ (ଲଂଘନ ସଂକ୍ରାନ୍ତ ଶାସ୍ତି) କେବଳ ସେହିମାନଙ୍କ ସକାଶେ ନିର୍ଦ୍ଧାରିତ ହୋଇଥିଲା ଯେଉଁମାନେ ଏ ବିଷୟରେ (ଅର୍ଥାତ୍ ଇବ୍ରାହିମଙ୍କ ପନ୍ଥା ସଂକ୍ରାନ୍ତରେ) ବିଭେଦ ସୃଷ୍ଟି କରିଥିଲେ, ଏବଂ ଯେଉଁ ବିଷୟରେ ସେମାନେ ବିଭେଦ କରୁଥିଲେ କୟାମତ ଦିନ ତୁମ ପାଳନକର୍ତ୍ତା ନିଶ୍ଚୟ ତାହା ନିଷ୍ପତ୍ତି କରିବେ ।

اُدۡعُ اِلٰى سَبِيۡلِ رَبِّكَ بِالۡحِكۡمَةِ وَالۡمَوۡعِظَةِ الۡحَسَنَةِ وَجَادِلۡهُمۡ بِالَّتِىۡ هِىَ اَحۡسَنُ ؕ اِنَّ رَبَّكَ هُوَ اَعۡلَمُ بِمَنۡ ضَلَّ عَنۡ سَبِيۡلِهٖ وَهُوَ اَعۡلَمُ بِالۡمُهۡتَدِيۡنَ ﴿١٢٦﴾

୧୨୬. (ହେ ରସୁଲ !) ତୁମେ (ଲୋକମାନଙ୍କୁ) ସଜ୍ଞାନ ଓ ସତ୍ ଉପଦେଶ ମାଧ୍ୟମରେ ନିଜ ପାଳନକର୍ତ୍ତାଙ୍କ ପଥ ଆଡକୁ ଡାକ, ଏବଂ ସେମାନଙ୍କ ସହିତ (ମତଭେଦ ସଂକ୍ରାନ୍ତରେ) ଏପରି ରୀତିରେ ଯୁକ୍ତି-ତର୍କ କର ଯାହା ସର୍ବୋତ୍ତମ ଅଟେ; ବାସ୍ତବରେ ତୁମର ପାଳନକର୍ତ୍ତା ସେମାନଙ୍କୁ ଭଲଭାବରେ ଜାଣନ୍ତି ଯେଉଁମାନେ ତାହାଙ୍କ ପଥରୁ ବିଚ୍ୟୁତ ହୋଇଅଛନ୍ତି, ତଥା ଯେଉଁମାନେ ସତ୍‌ପଥଗାମୀ ହୋଇଛନ୍ତି ସେମାନଙ୍କୁ ମଧ୍ୟ ଭଲଭାବରେ ଜାଣନ୍ତି ।

وَاِنۡ عَاقَبۡتُمۡ فَعَاقِبُوۡا بِمِثۡلِ مَا عُوۡقِبۡتُمۡ بِهٖ ؕ وَلَئِنۡ صَبَرۡتُمۡ لَهُوَ خَيۡرٌ لِّلصّٰبِرِيۡنَ ﴿١٢٧﴾

୧୨୭. ଏବଂ ଯଦି ତୁମେମାନେ (ଅତ୍ୟାଗ୍ରହୀମାନଙ୍କ ପ୍ରତି) ଶାସ୍ତି ବିଧାନ କର, ତେବେ ସେତିକି ଶାସ୍ତି ବିଧାନ କର ଯେତିକି ତୁମେମାନେ ଅତ୍ୟାଗ୍ରହିତ ହୋଇଅଛ;ଏବଂ ଯଦି ତୁମେମାନେ ଧୈର୍ଯ୍ୟ ଧାରଣ କରିବ ତେବେ ତାହା ନିଶ୍ଚୟ ଧୈର୍ଯ୍ୟବାନ୍ ବ୍ୟକ୍ତିମାନଙ୍କ ସକାଶେ ସର୍ବୋତ୍ତମ ହେବ ।

وَاصۡبِرۡ وَمَا صَبۡرُكَ اِلَّا بِاللّٰهِ وَلَا تَحۡزَنۡ عَلَيۡهِمۡ وَلَا تَكُ فِىۡ ضَيۡقٍ مِّمَّا يَمۡكُرُوۡنَ ﴿١٢٨﴾

୧୨୮. ଏବଂ (ହେ ରସୁଲ !) ତୁମେ ଧୈର୍ଯ୍ୟ ଧାରଣ କର, ଏବଂ ତୁମର ଧୈର୍ଯ୍ୟ ଧାରଣ କରିବା ଅଲ୍ଲାହଙ୍କ (ସହାୟତା) ମାଧ୍ୟମରେ (ସମ୍ଭବ) ହୋଇପାରେ; ଏବଂ ତୁମେ ସେମାନଙ୍କ (ଅବସ୍ଥା) ପାଇଁ ଦୁଃଖିତ ହୁଅ ନାହିଁ; ଏବଂ ସେମାନେ ଯେଉଁ ଚକ୍ରାନ୍ତ କରୁଛନ୍ତି ସେଥିଯୋଗୁଁ ବ୍ୟଥିତ ହୁଅ ନାହିଁ ।

اِنَّ اللّٰهَ مَعَ الَّذِيۡنَ اتَّقَوْا وَّالَّذِيۡنَ هُمۡ مُّحۡسِنُوۡنَ ﴿١٢٩﴾

୧୨୯. ଏବଂ (ମନେରଖ ଯେ) ଯେଉଁମାନେ ଧର୍ମଭୀରୁ ଓ ଯେଉଁମାନେ ସତ୍‌କାର୍ଯ୍ୟ କରନ୍ତି ବାସ୍ତବରେ ଅଲ୍ଲାହ ସେହିମାନଙ୍କ ସହିତ ଥାଆନ୍ତି ।

## ଭାଗ—୧୫




# ବନି ଇସ୍ରାଇଲ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାଃ ସମେତ ୧୧୨ ଗୋଟି ଅୟତ ଓ ୧୨ ଗୋଟି ରୁକୁ ଅଛି ।)

المنزل الجزء ١٥

بِسْمِ اللّٰهِ الرَّحْمٰنِ الرَّحِيْمِ ①

سُبْحٰنَ الَّذِیْٓ اَسْرٰی بِعَبْدِهٖ لَيْلًا مِّنَ الْمَسْجِدِ الْحَرَامِ اِلَی الْمَسْجِدِ الْاَقْصَا الَّذِیْ بٰرَكْنَا حَوْلَهٗ لِنُرِيَهٗ مِنْ اٰيٰتِنَا ؕ اِنَّهٗ هُوَ السَّمِيْعُ الْبَصِيْرُ ②

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାଃଙ୍କ ନାମ ନେଇ (ପାଠ କରୁଅଛି) ।

୨. ସେ (ଅଲ୍ଲାଃ) ହି ପବିତ୍ର ଯେ ରାତ୍ରିକାଳରେ ନିଜ ଭକ୍ତଙ୍କୁ ପବିତ୍ର ମସଜିଦ ଠାରୁ (ସେହି) ଦୂରବର୍ତ୍ତୀ ମସଜିଦ ପର୍ଯ୍ୟନ୍ତ ; ଯାହାର ପରିପାର୍ଶ୍ୱକୁ ଆମେ ମଙ୍ଗଳମୟ କରିଅଛୁ, (ଏଥିଯୋଗୁଁ) ଘେନି ଯାଇଥିଲେ ଯଦ୍ଦ୍ୱାରା ଆମେ ତାହାଙ୍କୁ ନିଜର କେତେକ ନିଦର୍ଶନ ପ୍ରଦର୍ଶିତ କରାଇବୁ ; ବାସ୍ତବରେ ସେ ହିଁ (ନିଜ ଭକ୍ତମାନଙ୍କର ପ୍ରାର୍ଥନାକୁ) ଉତ୍ତମ ରୂପେ ଶୁଣନ୍ତି ଓ (ସେମାନଙ୍କ ଅବସ୍ଥାକୁ) ଭଲ ଭାବରେ ଲକ୍ଷ୍ୟ କରନ୍ତି ।

وَاٰتَيْنَا مُوْسَی الْكِتٰبَ وَجَعَلْنٰهُ هُدًی لِّبَنِیْٓ اِسْرَآءِيْلَ اَلَّا تَتَّخِذُوْا مِنْ دُوْنِیْ وَكِيْلًا ③

୩. ଏବଂ ଆମେ ମୁସାଙ୍କୁ (ତୌରାତ) ଗ୍ରନ୍ଥ ପ୍ରଦାନ କରିଥିଲୁ, ଏବଂ ଆମେ ତାହାଙ୍କୁ ଇସ୍ରାଇଲୀୟ ସନ୍ତାନମାନଙ୍କ ସକାଶେ ପଥ ପ୍ରଦର୍ଶନ କରିଥିଲୁ, ଏବଂ (ସେଥିରେ ସେମାନଙ୍କୁ ଆଦେଶ ଦେଇଥିଲୁ ଯେ) ତୁମେମାନେ ଆମ ବ୍ୟତୀତ ଅନ୍ୟ କାହାକୁ (ନିଜର) କାର୍ଯ୍ୟ ସମ୍ପାଦନକାରୀ ରୂପେ ଗ୍ରହଣ କର ନାହିଁ ।

ذُرِّيَّةَ مَنْ حَمَلْنَا مَعَ نُوْحٍ ؕ اِنَّهٗ كَانَ عَبْدًا شَكُوْرًا ④

୪. (ଏବଂ ଆଉ ମଧ୍ୟ କହିଥିଲେ ଯେ) ହେ ସେମାନଙ୍କର ସନ୍ତାନ ! ଯେଉଁମାନଙ୍କୁ ଆମେ ନୁହଙ୍କ ସହ (ନୌକାରେ) ଆରୋହଣ କରାଇଥିଲୁ (ମନେରଖ ଯେ) ସେ (ନୁହ) ବାସ୍ତବରେ (ଆମର) ଅତ୍ୟନ୍ତ କୃତଜ୍ଞ ଭକ୍ତ ଥିଲେ ; (ସୁତରାଂ ତୁମେମାନେ ମଧ୍ୟ କୃତଜ୍ଞ ହୁଅ) ।

وَقَضَيْنَآ اِلٰی بَنِیْٓ اِسْرَآءِيْلَ فِی الْكِتٰبِ لَتُفْسِدُنَّ فِی الْاَرْضِ مَرَّتَيْنِ وَلَتَعْلُنَّ عُلُوًّا كَبِيْرًا ⑤

୫. ଏବଂ ଆମେ ଏହି (ଧର୍ମ) ଗ୍ରନ୍ଥରେ ଇସ୍ରାଇଲୀୟ ସନ୍ତାନମାନଙ୍କୁ ଏ ବିଷୟ (ସ୍ପଷ୍ଟ ଭାବରେ) ସୂଚାଇ ଦେଇଥିଲୁ ଯେ ନିଶ୍ଚୟ ତୁମେମାନେ ଭୂପୃଷ୍ଠରେ ଦୁଇଥର ବିଶୃଙ୍ଖଳା ସୃଷ୍ଟି କରିବ, ଏବଂ ଅତ୍ୟନ୍ତ ଔଦ୍ଧତ୍ୟ ପ୍ରକାଶ କରିବ ।

فَإِذَا جَآءَ وَعْدُ أُولٰىهُمَا بَعَثْنَا عَلَيْكُمْ عِبَادًا لَّنَآ أُولِىْ بَأْسٍ شَدِيْدٍ فَجَاسُوْا خِلٰلَ الدِّيَارِ ۚ وَكَانَ وَعْدًا مَّفْعُوْلًا ⑥

୬. ସୁତରାଂ ଯେତେବେଳେ ଏହି ଦୁଇ (ଥର ବିଶୃଙ୍ଖଳା) ମଧ୍ୟରୁ ପ୍ରଥମ ପ୍ରତିଶ୍ରୁତି (ପୂରଣ ହେବା ସମୟ) ଉପସ୍ଥିତ ହେଲା ସେତେବେଳେ ଆମେ (ତୁମମାନଙ୍କୁ ଦମନ କରିବାକୁ) ତୁମମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ପାରଙ୍ଗମ [1] କେତେକ ଭକ୍ତଙ୍କୁ ପ୍ରେରଣ କରିଥିଲୁ, ଏବଂ ସେମାନେ ତୁମମାନଙ୍କ ଗୃହ ମଧ୍ୟରେ ପ୍ରବେଶ କରିଥିଲେ, ଏବଂ ଏହି ପ୍ରତିଶ୍ରୁତି (ନିଶ୍ଚିତ ରୂପେ) ପୂରଣ ହେବାର ଥିଲା ।

ثُمَّ رَدَدْنَا لَكُمُ الْكَرَّةَ عَلَيْهِمْ وَأَمْدَدْنٰكُمْ بِأَمْوَالٍ وَّبَنِيْنَ وَجَعَلْنٰكُمْ أَكْثَرَ نَفِيْرًا ⑦

୭. (ତା'ପରେ) ପୁଣି ଆମେ ତୁମମାନଙ୍କୁ [2] (ଶତ୍ରୁ ବିରୁଦ୍ଧରେ) ଆକ୍ରମଣ କରିବା ପାଇଁ ଶକ୍ତି ପ୍ରଦାନ କରିଥିଲୁ, ଏବଂ ଆମେ ଧନସମ୍ପଦ ତଥା ସନ୍ତାନସନ୍ତତିଙ୍କ ଦ୍ୱାରା ତୁମମାନଙ୍କୁ ସାହାଯ୍ୟ କରିଥିଲୁ ଏବଂ ଆମେ ତୁମମାନଙ୍କୁ ଦଳଗତ ଭାବରେ ମଧ୍ୟ (ପୂର୍ବାପେକ୍ଷା) ଅଧିକ ସଂଖ୍ୟକ କରିଥିଲୁ ।

إِنْ أَحْسَنْتُمْ أَحْسَنْتُمْ لِأَنْفُسِكُمْ ۗ وَإِنْ أَسَأْتُمْ فَلَهَا ۚ فَإِذَا جَآءَ وَعْدُ الْاٰخِرَةِ لِيَسُوْٓءُا وُجُوْهَكُمْ وَلِيَدْخُلُوا الْمَسْجِدَ كَمَا دَخَلُوْهُ أَوَّلَ مَرَّةٍ وَّلِيُتَبِّرُوْا مَا عَلَوْا تَتْبِيْرًا ⑧

୮. (ମନେରଖ) ଯଦି ତୁମେମାନେ ଉପକାର କରିବ, ତେବେ ତୁମେମାନେ ନିଜର ହିଁ ଉପକାର କରିବ ; ଏବଂ ଯଦି ତୁମେମାନେ ଅପକାର କରିବ ତେବେ ତାହା ନିଜ ପାଇଁ (ହିଁ କରିବ); ସୁତରାଂ ଯେତେବେଳେ ଦ୍ୱିତୀୟ ପ୍ରତିଶ୍ରୁତି [3] (ପୂରଣ ହେବା ସମୟ) ଉପସ୍ଥିତ ହେଲା ଯଦ୍ଦ୍ୱାରାକି ସେମାନେ (ଅର୍ଥାତ୍ ତୁମମାନଙ୍କର ଶତ୍ରୁମାନେ) ତୁମମାନଙ୍କର ସମ୍ମାନାସ୍ପଦ ଲୋକମାନଙ୍କ ସଙ୍ଗେ ଦୁର୍ବ୍ୟବହାର କରିବେ, ଏବଂ ମସଜିଦରେ ଏଭଳି ପ୍ରବେଶ କରିବେ ଯେଭଳି ପ୍ରଥମ ଥର ତହିଁରେ ପ୍ରବେଶ କରିଥିଲେ, ଏବଂ ଯାହା ଉପରେ ସେମାନେ ବିଜୟ ଲାଭ କରିବେ ତାହାକୁ (ସମୂଳେ) ଧ୍ୱଂସ କରିଦେବେ । (ସେତେବେଳେ ଏଗୁଡ଼ିକ ପାଳନ ମଧ୍ୟ ହେଲା) ।

---

୧. ଏହା ବାବିଲନର ସମ୍ରାଟ ନେବୁସ୍ବଦନେଜାରଙ୍କ ଆକ୍ରମଣ ବିଷୟକ ବୃତ୍ତାନ୍ତ । ସେ ପାଲେଷ୍ଟାଇନ ଆକ୍ରମଣ କରି ସଦକିୟଃଙ୍କୁ ପରାଜିତ କରି ତାଙ୍କ ଆଖି ଫୁଟାଇ ଦେଇଥିଲେ (କିଙ୍ଗସ୍, ଅଧ୍ୟାୟ ୨୫ ଦ୍ରଷ୍ଟବ୍ୟ) ।

୨. ଏଠାରେ ମେଦ ଓ ପାରସ୍ୟର ସମ୍ରାଟଙ୍କ ବୃତ୍ତାନ୍ତ ଉଲ୍ଲେଖ କରାଯାଇଛି ଯେ କି ବାବିଲନ ଆକ୍ରମଣ କରି ନେବୁସ୍ବଦନେଜାରଙ୍କ ବଂଶଧରମାନଙ୍କୁ ଧ୍ୱଂସ କରି ଦେଇଥିଲେ ଓ ଇସ୍ରାଇଲୀୟମାନଙ୍କ ସହିତ ଗୁପ୍ତରେ ସନ୍ଧି କରିଥିଲେ । ପରେ ସେ ଏହି ସନ୍ଧି ଅନୁସାରେ ଅବତାର ନହିମିୟଃଙ୍କ ମାଧ୍ୟମରେ ଜେରୁଜାଲେମ ସ୍ଥିତ ଧର୍ମପୀଠ 'ବୈତୁଲ ମୁକଦସ'କୁ ପୁନଃ ପ୍ରତିଷ୍ଠା କରାଇଥିଲେ । (Nehemiah: Ch. 1&2 ଦ୍ରଷ୍ଟବ୍ୟ)

୩. ଏପରି ଧ୍ୱଂସଲୀଳା ଦ୍ୱିତୀୟବାର ହେବ ବୋଲି ଯାହା କୁହାଯାଇଥିଲା ତାହା ହେଉଛି ରୋମର ରାଜକୁମାର ଟାଇଟସଙ୍କର ପାଲେଷ୍ଟାଇନ ଆକ୍ରମଣ । ଯେହେତୁ ତାଙ୍କୁ ଜଣାଇ ଦିଆଯାଇଥିଲା ଯେ ଇହୁଦୀମାନେ ରୋମ ବିରୁଦ୍ଧରେ ବିଦ୍ରୋହ କରିପାରନ୍ତି, ତେଣୁ ସେ ପାଲେଷ୍ଟାଇନ ଆକ୍ରମଣ କରିଥିଲେ । ଏହା ଯୀଶୁଙ୍କୁ କ୍ରୁଶବିଦ୍ଧ କରାଯିବାର ସତୁରି ବର୍ଷ ପର ଏକ ଘଟଣା । (Encyclopaedia Britanica, Under word 'Jew') ସେହି ସମୟରେ ଟାଇଟସ ଜେରୁଜେଲମସ୍ଥ 'ବୈତୁଲ ମୁକଦସ୍' ପ୍ରତି ଘୋର ଅପମାନ କରିଥିଲେ ଓ ସେହି ଧର୍ମପୀଠ ଭିତରେ ଶୁକର ବଳି ଦେଇଥିଲେ ।

୯. ତୁମମାନଙ୍କ ପାଳନକର୍ତ୍ତା ତୁମମାନଙ୍କ ପ୍ରତି (ଏବେ ମଧ୍ୟ) ଦୟା ପ୍ରଦର୍ଶନ କରିପାରନ୍ତି, କିନ୍ତୁ ଯଦି ତୁମେମାନେ (ପୁନର୍ବାର ନିଜର ଭ୍ରମାତ୍ମକ ନୀତି ଅନୁସରଣ କରିବାକୁ) ପ୍ରତ୍ୟାବର୍ତ୍ତନ କରିବ, ତେବେ ଆମ୍ଭେ ମଧ୍ୟ (ନିଜର ଶାସ୍ତି ପ୍ରଦାନ କରିବାକୁ) ପ୍ରତ୍ୟାବର୍ତ୍ତନ କରିବୁ, ଏବଂ (ମନେରଖ ଯେ) ଆମ୍ଭେ ନରକକୁ ଅବିଶ୍ୱାସକାରୀମାନଙ୍କ ସକାଶେ କାରାଗାର ରୂପେ ଗଢ଼ିଅଛୁ ।

وقف لازم عَسٰى رَبُّكُمْ اَنْ يَّرْحَمَكُمْ ۚ وَاِنْ عُدْتُّمْ عُدْنَا ۘ وَجَعَلْنَا جَهَنَّمَ لِلْكٰفِرِيْنَ حَصِيْرًا ﴿٩﴾

୧୦. ବାସ୍ତବରେ ଏହି କୋରାନ ଏପରି (ଦିଗକୁ) ପଥ ପ୍ରଦର୍ଶନ କରାଉଛି ଯାହା ସବୁଠାରୁ ଅଧିକ ଯଥାର୍ଥ, ଏବଂ ସତ୍‌କର୍ମ କରୁଥିବା ବିଶ୍ୱାସକାରୀମାନଙ୍କୁ ସୁସମାଚାର ପ୍ରଦାନ କରୁଅଛି ଯେ ସେମାନଙ୍କ ନିମନ୍ତେ ମହାନ୍ ପୁରସ୍କାର ରହିଅଛି ।

اِنَّ هٰذَا الْقُرْاٰنَ يَهْدِيْ لِلَّتِيْ هِيَ اَقْوَمُ وَيُبَشِّرُ الْمُؤْمِنِيْنَ الَّذِيْنَ يَعْمَلُوْنَ الصّٰلِحٰتِ اَنَّ لَهُمْ اَجْرًا كَبِيْرًا ۙ﴿١٠﴾

୧୧. ଏବଂ (ପବିତ୍ର କୋରାନରେ ଆହୁରି ମଧ୍ୟ ଚେତାବନୀ ଦିଆ ଯାଇଅଛି କି) ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ପାଇଁ ଆମ୍ଭେ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରିଅଛୁ ।

وَّاَنَّ الَّذِيْنَ لَا يُؤْمِنُوْنَ بِالْاٰخِرَةِ اَعْتَدْنَا لَهُمْ عَذَابًا اَلِيْمًا ۧ﴿١١﴾

ରୁ: ୨

୧୨. ଏବଂ ମନୁଷ୍ୟ ଅସତ୍ କାର୍ଯ୍ୟ ପାଇଁ ଏପରି ଉତ୍ସାହିତ ହୋଇ ପ୍ରାର୍ଥନା କରେ ସତେ ଯେପରି ସେ ସତ୍ କାର୍ଯ୍ୟ ପାଇଁ ପ୍ରାର୍ଥନା କରୁଥିଲା ; ଏବଂ ବାସ୍ତବରେ ମନୁଷ୍ୟ (ପ୍ରକୃତି) ଚଞ୍ଚଳ ଅଟେ ।

وَيَدْعُ الْاِنْسَانُ بِالشَّرِّ دُعَآءَهٗ بِالْخَيْرِ ۭ وَكَانَ الْاِنْسَانُ عَجُوْلًا ﴿١٢﴾

୧୩. ଏବଂ ଆମ୍ଭେ ରାତ୍ରି ଓ ଦିବସକୁ ଦୁଇଗୋଟି ନିଦର୍ଶନ ସ୍ୱରୂପ ଗଢ଼ିଅଛୁ ; ଏପରି ଭାବେ ଯେ ଆମ୍ଭେ ରାତ୍ରି ନିଦର୍ଶନର ପ୍ରଭାବକୁ ଲୋପ କରିଦେଲୁ, ଏବଂ ଦିବସର ନିଦର୍ଶନକୁ ଦର୍ଶନ ଉପଯୋଗୀ କରି ଗଢ଼ିଦେଲୁ, ଯେପରିକି ତୁମେମାନେ ନିଜ ପାଳନକର୍ତ୍ତାଙ୍କ ଅନୁଗ୍ରହକୁ ଅନ୍ୱେଷଣ କରିବ ଓ (ସହଜରେ) ବର୍ଷର ଗଣନା ଓ ହିସାବ ସଂକ୍ରାନ୍ତରେ ଅବଗତ ହୋଇ ପାରିବ ; ଏବଂ ଆମ୍ଭେ ପ୍ରତ୍ୟେକ ବିଷୟକୁ ଅତ୍ୟନ୍ତ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ ।

وَجَعَلْنَا الَّيْلَ وَالنَّهَارَ اٰيَتَيْنِ فَمَحَوْنَآ اٰيَةَ الَّيْلِ وَجَعَلْنَآ اٰيَةَ النَّهَارِ مُبْصِرَةً لِّتَبْتَغُوْا فَضْلًا مِّنْ رَّبِّكُمْ وَلِتَعْلَمُوْا عَدَدَ السِّنِيْنَ وَالْحِسَابَ ۭ وَكُلَّ شَيْءٍ فَصَّلْنٰهُ تَفْصِيْلًا ﴿١٣﴾

୧୪. ଏବଂ ଆମ୍ଭେ ପ୍ରତ୍ୟେକ ମନୁଷ୍ୟର ଗଳାରେ ତାହାର ଭାଗ୍ୟକୁ [୧] ବାନ୍ଧି ଦେଇଅଛୁ ; ଏବଂ ଆମ୍ଭେ କୟାମତ ଦିନ ତାହାର (କର୍ମର) ଏକ ପୁସ୍ତକ ପ୍ରସ୍ତୁତ କରି ତା' ସମ୍ମୁଖରେ ରଖିଦେବୁ ଯାହାକୁ ସେ (ସମ୍ପୂର୍ଣ୍ଣ) ଉନ୍ମୁକ୍ତ ଥିବାର ଦେଖିବାକୁ ପାଇବ ।

وَكُلَّ اِنْسَانٍ اَلْزَمْنٰهُ طٰۗىِٕرَهٗ فِيْ عُنُقِهٖ ۭ وَنُخْرِجُ لَهٗ يَوْمَ الْقِيٰمَةِ كِتٰبًا يَّلْقٰىهُ مَنْشُوْرًا ﴿١٤﴾

୧. ମୂଳ ଶବ୍ଦ 'ତାଏର' ଅର୍ଥ : (କ) ପକ୍ଷୀ (ଖ) କର୍ମ । ଅନୁବାଦରେ ଦ୍ୱିତୀୟ ଅର୍ଥଟି ଗ୍ରହଣ କରାଯାଇଛି ଓ ଏଠାରେ ତାହା ପ୍ରଯୋଜ୍ୟ । ଗଳାରେ ଭାଗ୍ୟ ପତ୍ରିକାକୁ ବାନ୍ଧି ଦିଆଯିବାର ଅର୍ଥ, ସେ ଶାସ୍ତିରୁ ରକ୍ଷା ପାଇପାରିବ ନାହିଁ ।

اِقْرَاْ كِتٰبَكَ ؕ كَفٰى بِنَفْسِكَ الْيَوْمَ عَلَيْكَ حَسِيْبًا ؕ﴿۱۵﴾

୧୫. (ଏବଂ ତାକୁ କୁହାଯିବ) "ନିଜ ପୁସ୍ତକକୁ (ନିଜେ) ପାଠକର ; ଆଜି ତୁମେ ନିଜେ ହି ନିଜର ହିସାବ ନେବା ପାଇଁ ଯଥେଷ୍ଟ ।"

مَنِ اهْتَدٰى فَاِنَّمَا يَهْتَدِىْ لِنَفْسِهٖ ۚ وَمَنْ ضَلَّ فَاِنَّمَا يَضِلُّ عَلَيْهَا ؕ وَلَا تَزِرُ وَازِرَةٌ وِّزْرَ اُخْرٰى ؕ وَمَا كُنَّا مُعَذِّبِيْنَ حَتّٰى نَبْعَثَ رَسُوْلًا ﴿۱۶﴾

୧୬. (ସୁତରାଂ ମନେରଖ) ଯେ ସତ୍‌ପଥ ଗ୍ରହଣ କରିବ, ତାର ସତ୍‌ପଥଗାମୀ ହେବା ନିଜ ପାଇଁ ଲାଭଦାୟକ ହେବ ; ଏବଂ ଯେ (ଏହି ଉପଦେଶକୁ ରଦ୍ଦ କରି) ବିପଥଗାମୀ ହେବ, ତା'ର ବିପଥଗାମୀ ହେବା ତା' ନିଜ ବିରୁଦ୍ଧରେ ହିଁ ଯିବ ଏବଂ କୌଣସି ଭାରବାହୀ ପ୍ରାଣୀ[1] ଅନ୍ୟର ଭାର ବହନ କରିବ ନାହିଁ ; ଏବଂ ଆମେ (କୌଣସି ସମ୍ପ୍ରଦାୟ ପ୍ରତି) ଜଣେ ରସୁଲ ପ୍ରେରଣ ନ କରିବା ପର୍ଯ୍ୟନ୍ତ କୌଣସି ଶାସ୍ତି ପ୍ରଦାନ କରୁନାହୁଁ ।

وَاِذَاۤ اَرَدْنَاۤ اَنْ نُّهْلِكَ قَرْيَةً اَمَرْنَا مُتْرَفِيْهَا فَفَسَقُوْا فِيْهَا فَحَقَّ عَلَيْهَا الْقَوْلُ فَدَمَّرْنٰهَا تَدْمِيْرًا ﴿۱۷﴾

୧୭. ଏବଂ ଆମେ ଯେତେବେଳେ କୌଣସି ସହରକୁ ଧ୍ୱଂସ କରିବାକୁ ଇଚ୍ଛା କରୁ ସେତେବେଳେ (ପ୍ରଥମେ) ଆମେ ସେଠାକାର ସ୍ୱଚ୍ଛଳ ବ୍ୟକ୍ତିମାନଙ୍କୁ (ପୁଣ୍ୟ[2] କରିବା ପାଇଁ) ଆଦେଶ ଦେଇଥାଉ ; କିନ୍ତୁ (ପକ୍ଷାନ୍ତରେ) ସେମାନେ ସେଠାରେ ଅବଜ୍ଞା କରିଥାଆନ୍ତି ; ଏହାପରେ ଏହି ସହର ସଂକ୍ରାନ୍ତରେ ଆମର ବାଣୀ ସତ୍ୟ ସାବ୍ୟସ୍ତ ହୁଏ ଓ ଆମେ ତାହାକୁ ସମ୍ପୂର୍ଣ୍ଣ ଭାବରେ ଧ୍ୱଂସ କରିଦେଉ ।

وَكَمْ اَهْلَكْنَا مِنَ الْقُرُوْنِ مِنْۢ بَعْدِ نُوْحٍ ؕ وَكَفٰى بِرَبِّكَ بِذُنُوْبِ عِبَادِهٖ خَبِيْرًاۢ بَصِيْرًا ﴿۱۸﴾

୧୮. ଏବଂ (ଏହି ନିୟମ ଅନୁସାରେ) ଆମେ ନୁହଙ୍କ (ସମ୍ପ୍ରଦାୟକୁ ଓ ଏହା) ପରେ (ଗୋଟିଏ ପରେ ଗୋଟିଏ) ଅନେକ ସମ୍ପ୍ରଦାୟକୁ ଧ୍ୱଂସ କରିଅଛୁ ; ଏବଂ ତୁମର ପାଳନକର୍ତ୍ତା ନିଜ ଭକ୍ତମାନଙ୍କ ପାପ ସଂକ୍ରାନ୍ତରେ (ଉତ୍ତମ ରୂପେ) ଅବଗତ ଅଛନ୍ତି ; ଏବଂ (ସେମାନଙ୍କୁ) ଉତ୍ତମ ରୂପେ ନିରୀକ୍ଷଣ କରନ୍ତି ।

مَنْ كَانَ يُرِيْدُ الْعَاجِلَةَ عَجَّلْنَا لَهٗ فِيْهَا مَا نَشَآءُ لِمَنْ نُّرِيْدُ ثُمَّ جَعَلْنَا لَهٗ جَهَنَّمَ ۚ يَصْلٰىهَا مَذْمُوْمًا مَّدْحُوْرًا ﴿۱۹﴾

୧୯. ଏବଂ ଯେଉଁ ବ୍ୟକ୍ତି କେବଳ ଇହ-ଜଗତକୁ କାମନା କରେ, ଆମେ ତାହାକୁ ଆମ ଇଚ୍ଛା ଅନୁସାରେ ଏଠାରେ ଶୀଘ୍ର କେତେକ (ପାର୍ଥିବ) ସୁବିଧା ପ୍ରଦାନ କରିଥାଉ ; ଏହାପରେ ଆମେ ତା'ପାଇଁ ନରକ (ର ଶାସ୍ତି) ନିର୍ଦ୍ଦିଷ୍ଟ କରିଥାଉ ; ସେଥିରେ ସେ ଦୋଷାରୋପିତ ଓ ତିରସ୍କୃତ ହୋଇ ପ୍ରବେଶ କରେ ।

---

୧. ଯେଉଁ ବ୍ୟକ୍ତି ଉତ୍ତରଦାୟୀ, କେବଳ ସେ ନିଜ ପାଇଁ ଦାୟୀ ରହିବ, ଅନ୍ୟ ପାଇଁ ନୁହେଁ ।

୨. ଟୀକାକାରମାନେ ଏହି ଆୟତର ଭ୍ରମାତ୍ମକ ଅର୍ଥ କରିଛନ୍ତି । କିନ୍ତୁ ହଜରତ ଇବ୍ନ ଅବାସ ଯେଉଁ ବ୍ୟାଖ୍ୟା କରିଛନ୍ତି ତଦ୍ୱାରା ଆରୋପିତ ସମସ୍ତ ଅଭିଯୋଗ ଦୂର ହୋଇଯାଉଛି । ତେଣୁ ତାଙ୍କୁ ଅନୁସରଣ କରି ଏହି ଆୟତର ଅନୁବାଦ କରାଯାଇଛି ।

୨୦. ଏବଂ ଯେଉଁମାନେ [1] ବିଶ୍ୱାସ ପୂର୍ବକ ପରକାଳର କାମନା କରନ୍ତି ଓ ସେଥିପାଇଁ ତଦନୁଯାୟୀ ପ୍ରଚେଷ୍ଟା କରନ୍ତି, ତେବେ (ମନେରଖ) ଏହିପରି ବ୍ୟକ୍ତିମାନଙ୍କ ପ୍ରଚେଷ୍ଟା ଆଦୃତ ହୁଏ।

وَمَنْ اَرَادَ الْاٰخِرَةَ وَسَعٰى لَهَا سَعْيَهَا وَهُوَ مُؤْمِنٌ فَاُولٰٓئِكَ كَانَ سَعْيُهُمْ مَّشْكُوْرًا ﴿٢٠﴾

୨୧. ଆମେ ସମସ୍ତଙ୍କୁ ସାହାଯ୍ୟ ପ୍ରଦାନ କରୁ, ଏମାନଙ୍କୁ ମଧ୍ୟ (ଅର୍ଥାତ୍ ଧର୍ମପ୍ରେମୀମାନଙ୍କୁ) ଓ ସେମାନଙ୍କୁ ମଧ୍ୟ (ଅର୍ଥାତ୍ ସଂସାର-ପ୍ରେମୀମାନଙ୍କୁ) ଏବଂ (ଏହି ସାହାଯ୍ୟ) ତୁମ ପାଳନକର୍ତ୍ତାଙ୍କ ପ୍ରଦତ୍ତ ଦାନ ; ଏବଂ ତୁମ ପାଳନକର୍ତ୍ତାଙ୍କ ଦାନରୁ (କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ) ବଞ୍ଚିତ କରାଯାଏ ନାହିଁ।

كُلًّا نُّمِدُّ هٰٓؤُلَآءِ وَهٰٓؤُلَآءِ مِنْ عَطَآءِ رَبِّكَ ۚ وَمَا كَانَ عَطَآءُ رَبِّكَ مَحْظُوْرًا ﴿٢١﴾

୨୨. ଦେଖ ! ଆମେ କିପରି ଭାବରେ (ସାଂସାରିକ ସାମଗ୍ରୀ ଦୃଷ୍ଟିରୁ) ଏମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଉପରେ ପ୍ରାଧାନ୍ୟ ପ୍ରଦାନ କରିଅଛୁ ; ଏବଂ ପରକାଳ (ଜୀବନ) ବାସ୍ତବରେ ଏହାଠାରୁ ଅଧିକ ମର୍ଯ୍ୟାଦାପୂର୍ଣ୍ଣ ଓ ଅଧିକ ଉତ୍କୃଷ୍ଟ ହେବ।

اُنْظُرْ كَيْفَ فَضَّلْنَا بَعْضَهُمْ عَلٰى بَعْضٍ ۚ وَلَلْاٰخِرَةُ اَكْبَرُ دَرَجٰتٍ وَّاَكْبَرُ تَفْضِيْلًا ﴿٢٢﴾

୨୩. ସୁତରାଂ ଅଲ୍ଲାହଙ୍କ ସହିତ ଅନ୍ୟ କୌଣସି ଉପାସ୍ୟ ସ୍ଥିର କର ନାହିଁ, ନୋହିଲେ ତୁମେ ଦୋଷାରୋପିତ ହୋଇ (ଅଲ୍ଲାହଙ୍କ) ସହାୟତାରୁ ବଞ୍ଚିତ ହୋଇ ରହିଯିବ।

لَا تَجْعَلْ مَعَ اللّٰهِ اِلٰهًا اٰخَرَ فَتَقْعُدَ مَذْمُوْمًا مَّخْذُوْلًا ﴿٢٣﴾ ع ٢

ରୁ:୩

୨୪. ତୁମ ପାଳନକର୍ତ୍ତା (ଏ ବିଷୟରେ) ଚେତାବନୀ-ପୂର୍ବକ ଆଦେଶ ଦେଇଛନ୍ତି ଯେ ତୁମେମାନେ ତାହାଙ୍କ ବ୍ୟତୀତ କାହାରି ଉପାସନା କରନାହିଁ, ଏବଂ ପିତାମାତାଙ୍କ ସହିତ ଉତ୍ତମ ବ୍ୟବହାର କର ; ଯଦି ତୁମ ଜୀବିତାବସ୍ଥାରେ ସେ ଦୁଇଜଣଙ୍କ ମଧ୍ୟରୁ ଜଣଙ୍କର ବା ଉଭୟଙ୍କର ବାର୍ଦ୍ଧକ୍ୟ ଆସିଯାଏ, ତେବେ ସେମାନଙ୍କ ପ୍ରତି (ସେମାନଙ୍କ କୌଣସି କଥାରେ ଅସନ୍ତୋଷ ପ୍ରକାଶ କରି) କୌଣସି କଟୁ ମନ୍ତବ୍ୟ [2] ପ୍ରକାଶ କର ନାହିଁ କି ସେମାନଙ୍କୁ ଭର୍ତ୍ସନା କରନାହିଁ ଓ ସେମାନଙ୍କ ସହ (ସର୍ବଦା) କୋମଳ ବଚନରେ କଥାବାର୍ତ୍ତା କର।

وَقَضٰى رَبُّكَ اَلَّا تَعْبُدُوْٓا اِلَّآ اِيَّاهُ وَبِالْوَالِدَيْنِ اِحْسَانًا ۚ اِمَّا يَبْلُغَنَّ عِنْدَكَ الْكِبَرَ اَحَدُهُمَآ اَوْ كِلٰهُمَا فَلَا تَقُلْ لَّهُمَآ اُفٍّ وَّلَا تَنْهَرْهُمَا وَقُلْ لَّهُمَا قَوْلًا كَرِيْمًا ﴿٢٤﴾

୨୫. ଏବଂ ଦୟାପରବଶ ହୋଇ ସେମାନଙ୍କ ସମ୍ମୁଖରେ ବିନୀତ ମନୋଭାବ ପୋଷଣ କର, ଏବଂ (ସେମାନଙ୍କ ପାଇଁ ପ୍ରାର୍ଥନା-ପୂର୍ବକ) କୁହ, "ହେ ମୋର ପାଳନକର୍ତ୍ତା, ! ସେମାନଙ୍କ ପ୍ରତି କରୁଣା ପ୍ରଦାନ କର, କାରଣ ସେମାନେ ମୋର ଶୈଶବାବସ୍ଥାରେ ଲାଳନ ପାଳନ କରିଥିଲେ"।

وَاخْفِضْ لَهُمَا جَنَاحَ الذُّلِّ مِنَ الرَّحْمَةِ وَقُلْ رَّبِّ ارْحَمْهُمَا كَمَا رَبَّيٰنِيْ صَغِيْرًا ﴿٢٥﴾

୧. ଆରବୀ 'ମନ୍' ଶବ୍ଦ ଉଭୟ ଏକ ବଚନ ଓ ବହୁବଚନରେ ବ୍ୟବହୃତ ହୁଏ। ଏଠାରେ ସେହି ଶବ୍ଦକୁ ବହୁବଚନରେ ବ୍ୟବହାର କରାଯାଇଛି।

୨. ପବିତ୍ର କୋରାନର କେତେକ ସ୍ଥାନରେ ହଜରତ ମହମ୍ମଦଙ୍କୁ ସମ୍ବୋଧନ କରାଯାଇଥିଲେ ମଧ୍ୟ ପ୍ରକୃତରେ ସେପରି ସମ୍ବୋଧନ ତାଙ୍କ ଅନୁଗାମୀମାନଙ୍କ ସକାଶେ ଉଦ୍ଦିଷ୍ଟ। କାରଣ ଏଠାରେ ଏହି ଆଦେଶଟି ପିତାମାତାଙ୍କ ସହିତ ସଂପୃକ୍ତ ଅଥଚ ହଜରତ ମହମ୍ମଦଙ୍କର ପିତା ତାଙ୍କ ଜନ୍ମ ପୂର୍ବରୁ ଓ ମାତା ତାଙ୍କ ଶୈଶବାବସ୍ଥାରେ ପ୍ରାଣତ୍ୟାଗ କରିଥିଲେ।

رَبُّكُمْ اَعْلَمُ بِمَا فِيْ نُفُوْسِكُمْ اِنْ تَكُوْنُوْا صٰلِحِيْنَ فَاِنَّهٗ كَانَ لِلْاَوَّابِيْنَ غَفُوْرًا ۝۲۶

୨୬. ତୁମମାନଙ୍କ ପାଳନକର୍ତ୍ତା ତୁମମାନଙ୍କ ଅନ୍ତରରେ ଯାହା କିଛି ଅଛି ତାହା ଉତ୍ତମ ରୂପେ ଜାଣନ୍ତି ; ଯଦି ତୁମେମାନେ ପୁଣ୍ୟବାନ୍ ହେବ, ତେବେ (ମନେରଖ ଯେ) ସେ (ତାଙ୍କ ପ୍ରତି) ବାରମ୍ବାର ମନୋନିବେଶ କରୁଥିବା ବ୍ୟକ୍ତିଙ୍କ ପ୍ରତି ଅତ୍ୟନ୍ତ କ୍ଷମାଶୀଳ ।

وَاٰتِ ذَا الْقُرْبٰى حَقَّهٗ وَالْمِسْكِيْنَ وَابْنَ السَّبِيْلِ وَلَا تُبَذِّرْ تَبْذِيْرًا ۝۲۷

୨୭. ଏବଂ ନିକଟ ସମ୍ପର୍କୀୟ (ଆତ୍ମୀୟ ସ୍ୱଜନ)ଙ୍କୁ ଏବଂ ଦରିଦ୍ର ଓ ପଥିକଙ୍କୁ ସେମାନଙ୍କ ପ୍ରାପ୍ୟ ପ୍ରଦାନ କର, ଏବଂ କୌଣସି ପ୍ରକାରେ ଅପବ୍ୟୟ କରନାହିଁ ।

اِنَّ الْمُبَذِّرِيْنَ كَانُوْٓا اِخْوَانَ الشَّيٰطِيْنِ ۭ وَكَانَ الشَّيْطٰنُ لِرَبِّهٖ كَفُوْرًا ۝۲۸

୨୮. ବାସ୍ତବରେ ଅପବ୍ୟବୟକାରୀମାନେ ସଇତାନର ଭାଇ ଅଟନ୍ତି, ଏବଂ ସଇତାନ ଆପଣା ପାଳନକର୍ତ୍ତାଙ୍କର ଅତ୍ୟନ୍ତ ଅକୃତଜ୍ଞ ଅଟେ ।

وَاِمَّا تُعْرِضَنَّ عَنْهُمُ ابْتِغَاۗءَ رَحْمَةٍ مِّنْ رَّبِّكَ تَرْجُوْهَا فَقُلْ لَّهُمْ قَوْلًا مَّيْسُوْرًا ۝۲۹

୨୯. ଏବଂ ଯଦି ତୁମେ ତୁମ ପାଳନକର୍ତ୍ତାଙ୍କ ଠାରୁ ସ୍ୱ ଆଶାନୁରୂପ କୌଣସି ମହାନ୍ କରୁଣା ଲାଭ କରିବା ଉଦ୍ଦେଶ୍ୟରେ ସେ (ଆତ୍ମୀୟ ସ୍ୱଜନ) ମାନଙ୍କ ପ୍ରତି ବିମୁଖ[୧] ହୁଅ, (ତେବେ ଏପରି ଅବସ୍ଥାରେ ବିମୁଖ ହେବା ନ୍ୟାଯ୍ୟ ଅଟେ, କିନ୍ତୁ) ତଥାପି ସେମାନଙ୍କ ସହିତ ମଧୁର ବ୍ୟବହାର କର ।

وَلَا تَجْعَلْ يَدَكَ مَغْلُوْلَةً اِلٰى عُنُقِكَ وَلَا تَبْسُطْهَا كُلَّ الْبَسْطِ فَتَقْعُدَ مَلُوْمًا مَّحْسُوْرًا ۝۳۰

୩୦. (କୃପଣତା ପୂର୍ବକ) ତୁମେ ବେକ ଉପରେ ହାତ ବାନ୍ଧି ବସ ନାହିଁ କି (ଅଧିକ ବ୍ୟୟ କରିବା ପାଇଁ) ତାହାକୁ ସଂପୂର୍ଣ୍ଣ ପ୍ରସାରିତ କର ନାହିଁ, ନଚେତ୍ ତୁମେ ନିନ୍ଦିତ ହୋଇ ବା କ୍ଲାନ୍ତ ହୋଇ ବସି ପଡ଼ିବ ।

اِنَّ رَبَّكَ يَبْسُطُ الرِّزْقَ لِمَنْ يَّشَاۗءُ وَيَقْدِرُ ۭ اِنَّهٗ كَانَ بِعِبَادِهٖ خَبِيْرًۢا بَصِيْرًا ۝۳۱ ع

୩୧. ତୁମର ପାଳନକର୍ତ୍ତା ଯାହା ପାଇଁ ଇଚ୍ଛା କରନ୍ତି ତାହା ପାଇଁ ଜୀବିକାକୁ ପ୍ରସାରିତ କରନ୍ତି, ଓ (ଯାହା ପାଇଁ ଇଚ୍ଛା) ସଙ୍କୁଚିତ କରନ୍ତି ; ବାସ୍ତବରେ ସେ ନିଜ ଭକ୍ତମାନଙ୍କୁ (ଅର୍ଥାତ୍ ସେମାନଙ୍କ ଅବସ୍ଥାକୁ) ଜାଣନ୍ତି, (ଓ ସେମାନଙ୍କୁ) ଲକ୍ଷ୍ୟ କରୁଥା'ନ୍ତି ।

ରୁ:୪

وَلَا تَقْتُلُوْٓا اَوْلَادَكُمْ خَشْيَةَ اِمْلَاقٍ ۭ نَحْنُ نَرْزُقُهُمْ وَاِيَّاكُمْ ۭ اِنَّ قَتْلَهُمْ كَانَ خِطْاً كَبِيْرًا ۝۳۲

୩୨. ଏବଂ ତୁମେମାନେ ଦାରିଦ୍ର୍ୟ ଭୟରେ ନିଜ ସନ୍ତାନମାନଙ୍କୁ ହତ୍ୟା କର ନାହିଁ ; ଆମେ ହିଁ ସେମାନଙ୍କୁ ଓ ତୁମମାନଙ୍କୁ ଜୀବିକା ପ୍ରଦାନ କରିଥାଉ ; ସେମାନଙ୍କୁ ହତ୍ୟା କରିବା ମହାପାପ ।

---

୧. ଅର୍ଥାତ୍ ନିଜ ନିକଟ ସଂପର୍କୀୟମାନଙ୍କ ପ୍ରତି ଧ୍ୟାନ ନ ଦେଇ ମୁହଁ ଫେରାଇନେବା ଯେପରି କୃପଣତା ଯୋଗୁଁ ନ ହୁଏ ବରଂ ଏଥିଯୋଗୁଁ ହେଉ ଯେ ଆମେ ଅଲ୍ଲାହଙ୍କ ଠାରୁ ଉତ୍ତରୋତ୍ତର ଉନ୍ନତି ସମ୍ବନ୍ଧରେ ପ୍ରାର୍ଥନା କରୁଅଛୁ ଏବଂ ଆଶା କରୁଅଛୁ ଯେ ଆମେ ତାହା ଅବଶ୍ୟ ପାଇବୁ । ଇଚ୍ଛା ନ ଥିଲେ ମଧ୍ୟ ଆମେ ସେପର୍ଯ୍ୟନ୍ତ ବାଧ୍ୟ ହୋଇ ମୁହଁ ଫେରାଇ ନେଉଛୁ ।

وَلَا تَقْرَبُوا الزِّنٰٓى اِنَّهٗ كَانَ فَاحِشَةً ۗ وَسَآءَ سَبِيْلًا ﴿٣٢﴾

୩୩. ଏବଂ (ତୁମେମାନେ) ବ୍ୟଭିଚାରର ନିକଟବର୍ତ୍ତୀ (ମଧ୍ୟ) ହୁଅ ନାହିଁ ; ବାସ୍ତବରେ ତାହା ପ୍ରକାଶ୍ୟ ଅଶ୍ଳୀଳତା ଓ ଅତ୍ୟନ୍ତ ମନ୍ଦ ପଥ ଅଟେ ।

وَلَا تَقْتُلُوا النَّفْسَ الَّتِيْ حَرَّمَ اللّٰهُ اِلَّا بِالْحَقِّ ۗ وَمَنْ قُتِلَ مَظْلُوْمًا فَقَدْ جَعَلْنَا لِوَلِيِّهٖ سُلْطٰنًا فَلَا يُسْرِفْ فِّي الْقَتْلِ ۗ اِنَّهٗ كَانَ مَنْصُوْرًا ﴿٣٣﴾

୩୪. ଏବଂ ଯେଉଁ ଜୀବକୁ (ହତ୍ୟା କରିବାକୁ) ଅଲ୍ଲାହ୍ ଅବୈଧ ସାବ୍ୟସ୍ତ କରିଛନ୍ତି ତାହାକୁ ନ୍ୟାୟସଙ୍ଗତ କାରଣ ବିନା ହତ୍ୟା କର ନାହିଁ ; ଏବଂ ଯେଉଁ ବ୍ୟକ୍ତିକୁ ଅନ୍ୟାୟପୂର୍ବକ ହତ୍ୟା କରାଯାଏ, ଆମ୍ଭେ ତାହାର ଉତ୍ତରାଧିକାରୀଙ୍କୁ (ପ୍ରତିଶୋଧ) ଅଧିକାର ପ୍ରଦାନ କରିଅଛୁ ; ସୁତରାଂ (ଆମ୍ଭର ନିର୍ଦ୍ଦେଶ ହେଉଛି ଯେ ହତ୍ୟାକାରୀକୁ) ସେ ହତ୍ୟା କରିବା ସକାଶେ (ଆମ୍ଭ ଦ୍ୱାରା ନିର୍ଦ୍ଧାରିତ କରାଯାଇଥିବା) ସୀମା ଲଂଘନ ନ କରୁ ; (ଯେଦି ସେ ସୀମା ମଧ୍ୟରେ ରହିବ) ତେବେ ଆମ୍ଭର ସହାୟତା ନିଶ୍ଚୟ ଲାଭ କରିବ ।

وَلَا تَقْرَبُوْا مَالَ الْيَتِيْمِ اِلَّا بِالَّتِيْ هِيَ اَحْسَنُ حَتّٰى يَبْلُغَ اَشُدَّهٗ ۖ وَاَوْفُوْا بِالْعَهْدِ ۚ اِنَّ الْعَهْدَ كَانَ مَسْئُوْلًا ﴿٣٤﴾

୩୫. ଯେଉଁ ପନ୍ଥା (ଅନାଥ ସକାଶେ) ଉତ୍ତମ, ତଦ୍‌ଭିନ୍ନ ଅନ୍ୟ ପ୍ରକାର (ପନ୍ଥାରେ) (କୌଣସି) ଅନାଥ ସାବାଳକ ନ ହେବା ପର୍ଯ୍ୟନ୍ତ ତୁମେମାନେ ତାହାର ଧନ ସମ୍ପତ୍ତିର ନିକଟବର୍ତ୍ତୀ ହୁଅ ନାହିଁ, ଏବଂ (ନିଜର) ଅଙ୍ଗୀକାରକୁ ପାଳନ କର ; (କାରଣ) ପ୍ରତ୍ୟେକ ଅଙ୍ଗୀକାର ସମ୍ବନ୍ଧରେ (ଦିନେ ନା ଦିନେ) ନିଶ୍ଚୟ ପ୍ରଶ୍ନ କରାଯିବ ।

وَاَوْفُوا الْكَيْلَ اِذَا كِلْتُمْ وَزِنُوْا بِالْقِسْطَاسِ الْمُسْتَقِيْمِ ۗ ذٰلِكَ خَيْرٌ وَّاَحْسَنُ تَاْوِيْلًا ﴿٣٥﴾

୩୬. ଏବଂ ଯେତେବେଳେ ତୁମେମାନେ ମାପି କରି ଦିଅ ସେତେବେଳେ ପୂର୍ଣ୍ଣମାତ୍ରାରେ ମାପି କରିଦିଅ, ଓ ଓଜନ କଲାବେଳେ ଠିକ୍ ତରାଜୁରେ ଓଜନ କର ; ଏ ବିଷୟ ଅଧିକ ଉତ୍କୃଷ୍ଟ ଓ ପରିଣାମ ଦୃଷ୍ଟିରୁ ସର୍ବୋତ୍କୃଷ୍ଟ ।

وَلَا تَقْفُ مَا لَيْسَ لَكَ بِهٖ عِلْمٌ ۗ اِنَّ السَّمْعَ وَالْبَصَرَ وَالْفُؤَادَ كُلُّ اُولٰٓئِكَ كَانَ عَنْهُ مَسْئُوْلًا ﴿٣٦﴾

୩୭. ଏବଂ ଯେଉଁ ବିଷୟରେ ତୁମର ଜ୍ଞାନ ନାହିଁ ତାହାର ଅନୁସରଣ କର ନାହିଁ ; (କାରଣ) କାନ, ଆଖି ଓ ହୃଦୟ ଏସବୁ ବିଷୟରେ (ତୁମକୁ) ପଚରାଯିବ ।

وَلَا تَمْشِ فِي الْاَرْضِ مَرَحًا ۚ اِنَّكَ لَنْ تَخْرِقَ الْاَرْضَ وَلَنْ تَبْلُغَ الْجِبَالَ طُوْلًا ﴿٣٧﴾

୩୮. ଏବଂ ପୃଥିବୀ ପୃଷ୍ଠରେ ଉଦ୍ଧତ ଭାବରେ ଚାଲନାହିଁ, କାରଣ ତୁମେ ଏପରି ଭାବରେ ଦେଶର ଶେଷ ସୀମାରେ [1] ପହଞ୍ଚି ପାରିବ ନାହିଁ କି ନେତୃତ୍ୱର [2] ଶିଖର ଦେଶରେ ପହଞ୍ଚି ପାରିବ ନାହିଁ ।

كُلُّ ذٰلِكَ كَانَ سَيِّئُهٗ عِنْدَ رَبِّكَ مَكْرُوْهًا ﴿٣٨﴾

୩୯. ଏ (ଆଦେଶ)ମାନଙ୍କ ମଧ୍ୟରୁ ପ୍ରତ୍ୟେକ (କାର୍ଯ୍ୟ)ର ମନ୍ଦ ରୂପକୁ ତୁମର ପାଳନକର୍ତ୍ତା ପସନ୍ଦ କରନ୍ତି ନାହିଁ ।

---

୧. ମୂଳ ଶବ୍ଦ 'ତଖରିକା' ଅର୍ଥ : (କ) ଚିରିବା (ଖ) ଶେଷ ସୀମାରେ ପହଞ୍ଚିବା ।

୨. ମୂଳ ଶବ୍ଦ 'ଜେବାଲ'ର ଅନ୍ୟତମ ଅର୍ଥ ନେତା ବା ଦଳପତି । ଅହଙ୍କାର-ପୂର୍ବକ ବା ଦମ୍ଭ ପ୍ରକାଶ କରି ଚାଲିଲେ ଜଣେ ଅନ୍ୟମାନଙ୍କ ଠାରୁ ଛାଡ଼ି ପାଇପାରିବ ନାହିଁ କି ବିଦ୍ୱାନ ବା ଦଳପତି ହିସାବରେ ଗଣ୍ୟ ହେବ ନାହିଁ ।

ذٰلِكَ مِمَّآ اَوْحٰٓى اِلَيْكَ رَبُّكَ مِنَ الْحِكْمَةِ ۗ وَلَا تَجْعَلْ مَعَ اللّٰهِ اِلٰهًا اٰخَرَ فَتُلْقٰى فِىْ جَهَنَّمَ مَلُوْمًا مَّدْحُوْرًا ﴿٤٠﴾

୪୦. ଏହା (ଅର୍ଥାତ୍ ଏହି ଗରିମାମୟ ଶିକ୍ଷା) ସେହି ଜ୍ଞାନ ଓ ତତ୍ତ୍ୱର ଏକ ଅଂଶ ଯାହାକୁ ତୁମର ପାଳନକର୍ତ୍ତା ଓହି ମାଧ୍ୟମରେ ତୁମ ପ୍ରତି ଅବତୀର୍ଣ୍ଣ କରିଛନ୍ତି ; ଏବଂ ତୁମେ ଅଲ୍ଲାଃଙ୍କ ସହିତ କୌଣସି ଉପାସ୍ୟ ସ୍ଥିର କର ନାହିଁ, ନଚେତ୍ ତୁମେ ନିନ୍ଦିତ ଓ ଭର୍ତ୍ସିତ ହୋଇ ନରକ ମଧ୍ୟକୁ ନିକ୍ଷିପ୍ତ ହେବ ।

اَفَاَصْفٰىكُمْ رَبُّكُمْ بِالْبَنِيْنَ وَاتَّخَذَ مِنَ الْمَلٰٓئِكَةِ اِنَاثًا ۗ اِنَّكُمْ لَتَقُوْلُوْنَ قَوْلًا عَظِيْمًا ﴿٤١﴾

୪୧. ତେବେ କ'ଣ ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କ ସକାଶେ ପୁତ୍ର ସନ୍ତାନମାନଙ୍କୁ ନିର୍ଦ୍ଦିଷ୍ଟ କରିଛନ୍ତି, ଓ ନିଜ ପାଇଁ ଦେବଦୂତମାନଙ୍କ ମଧ୍ୟରୁ କେତେକଙ୍କୁ (ନିଜର) କନ୍ୟା ରୂପେ ଗ୍ରହଣ କରିଛନ୍ତି ? ବାସ୍ତବରେ ତୁମେମାନେ (ଏକ) ବଡ଼ (ବିପଜ୍ଜନକ) କଥା କହୁଅଛ ।

ରୁ:୫

وَلَقَدْ صَرَّفْنَا فِىْ هٰذَا الْقُرْاٰنِ لِيَذَّكَّرُوْا ۗ وَمَا يَزِيْدُهُمْ اِلَّا نُفُوْرًا ﴿٤٢﴾

୪୨. ଏବଂ ଆମେ ଏହି ପବିତ୍ର କୋରାନରେ (ପ୍ରତ୍ୟେକ ବିଷୟକୁ) ବାରମ୍ବାର ଏଥି ସକାଶେ ବର୍ଣ୍ଣନା କରିଅଛୁ ଯେ ସେମାନେ (ଏଥିରୁ) ଶିକ୍ଷା ଲାଭ କରିବେ ; କିନ୍ତୁ (ଏହା ସତ୍ତ୍ୱେ) ତାହା ସେମାନଙ୍କର ଘୃଣାକୁ ହି ବୃଦ୍ଧି କରୁଅଛି ।

قُلْ لَّوْ كَانَ مَعَهٗٓ اٰلِهَةٌ كَمَا يَقُوْلُوْنَ اِذًا لَّابْتَغَوْا اِلٰى ذِى الْعَرْشِ سَبِيْلًا ﴿٤٣﴾

୪୩. ତୁମେ କୁହ, "ଯଦି ସେମାନଙ୍କ କହିବା ଅନୁସାରେ ତାହାଙ୍କ (ଅର୍ଥାତ୍ ଅଲ୍ଲାଃଙ୍କ) ସହିତ (ସମକକ୍ଷ) କୌଣସି ଉପାସ୍ୟ ଥାଆନ୍ତେ, ତେବେ ସେମାନେ (ଅର୍ଥାତ୍ ମୁସ୍ରିକମାନେ ଏହି ତଥାକଥିତ ଉପାସ୍ୟମାନଙ୍କ ସହାୟତାରେ) ସିଂହାସନର ଅଧିକାରୀ (ଅଲ୍ଲାଃ)ଙ୍କ ପର୍ଯ୍ୟନ୍ତ ପହଞ୍ଚିବା ପାଇଁ କୌଣସି ପଥ ଅବଶ୍ୟ ଅନ୍ୱେଷଣ କରିପାରନ୍ତେ ।

سُبْحٰنَهٗ وَتَعٰلٰى عَمَّا يَقُوْلُوْنَ عُلُوًّا كَبِيْرًا ﴿٤٤﴾

୪୪. ସେ ପବିତ୍ର, ଓ ସେ (ମୁସରିକ)ମାନେ ଯାହା କହନ୍ତି ସେ ତା'ଠାରୁ ବହୁ ଊର୍ଦ୍ଧ୍ୱରେ ।

تُسَبِّحُ لَهُ السَّمٰوٰتُ السَّبْعُ وَالْاَرْضُ وَمَنْ فِيْهِنَّ ۗ وَاِنْ مِّنْ شَىْءٍ اِلَّا يُسَبِّحُ بِحَمْدِهٖ وَلٰكِنْ لَّا تَفْقَهُوْنَ تَسْبِيْحَهُمْ ۗ اِنَّهٗ كَانَ حَلِيْمًا غَفُوْرًا ﴿٤٥﴾

୪୫. ସପ୍ତ ଆକାଶ ଓ ଭୂପୃଷ୍ଠ ଏବଂ ଯେଉଁମାନେ ତନ୍ମଧ୍ୟରେ (ବାସକରୁ) ଅଛନ୍ତି ସେମାନେ ତାହାଙ୍କର ଗୁଣଗାନ କରୁଛନ୍ତି ; ଓ (ପୃଥିବୀର) ପ୍ରତ୍ୟେକ ବସ୍ତୁ ପ୍ରଶଂସାପୂର୍ବକ ତାହାଙ୍କର ଗୁଣ ଗାନ କରୁଛନ୍ତି ; କିନ୍ତୁ ତୁମେମାନେ ଏମାନଙ୍କ ଗୁଣଗାନକୁ ବୁଝିପାରୁ ନାହଁ ; ବାସ୍ତବରେ ସେ ହିଁ ଉଦାର ଓ ଅତ୍ୟନ୍ତ କ୍ଷମାଶୀଳ ।

وَاِذَا قَرَاْتَ الْقُرْاٰنَ جَعَلْنَا بَيْنَكَ وَبَيْنَ الَّذِيْنَ لَا يُؤْمِنُوْنَ بِالْاٰخِرَةِ حِجَابًا مَّسْتُوْرًا ﴿٤٦﴾

୪୬. ଏବଂ ଯେତେବେଳେ ତୁମେ କୋରାନ ପାଠ କର, ସେତେବେଳେ ଆମେ ତୁମ ମଧ୍ୟରେ ଓ ଯେଉଁମାନେ ପରକାଳ ଉପରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ମଧ୍ୟରେ ଏକ ଅଦୃଶ୍ୟ ଆବରଣ ସ୍ଥାପନ କରୁ ।

وَّجَعَلْنَا عَلٰى قُلُوْبِهِمْ اَكِنَّةً اَنْ يَّفْقَهُوْهُ وَفِيْٓ اٰذَانِهِمْ وَقْرًا ۭ وَاِذَا ذَكَرْتَ رَبَّكَ فِي الْقُرْاٰنِ وَحْدَهٗ وَلَّوْا عَلٰٓي اَدْبَارِهِمْ نُفُوْرًا ۝

୪୭. ଏବଂ ଆମ୍ଭେ ସେମାନଙ୍କ ହୃଦୟରେ ଅନେକ ଆବରଣ ପକାଇ ଦେଉ, ଓ ସେମାନଙ୍କ କାନକୁ ବଧିର କରିଦେଉ ଯେପରିକି ସେମାନେ ଏହାକୁ (ଅର୍ଥାତ୍ ଏହି ସତ୍ୟକୁ) ବୁଝିପାରିବେ[୧] ନାହିଁ, ଏବଂ ଯେତେବେଳେ ତୁମ୍ଭେ କୋରାନରେ (ବର୍ଣ୍ଣିତ) ନିଜର ଏକମାତ୍ର ପାଳନକର୍ତ୍ତାଙ୍କୁ ସ୍ମରଣ କର ସେତେବେଳେ ସେମାନେ ଘୃଣାରେ ନିଜ ମୁହଁ ମୋଡ଼ି ଚାଲିଯାନ୍ତି ।

نَحْنُ اَعْلَمُ بِمَا يَسْتَمِعُوْنَ بِهٖٓ اِذْ يَسْتَمِعُوْنَ اِلَيْكَ وَاِذْ هُمْ نَجْوٰٓى اِذْ يَقُوْلُ الظّٰلِمُوْنَ اِنْ تَتَّبِعُوْنَ اِلَّا رَجُلًا مَّسْحُوْرًا ۝

୪୮. ଏବଂ ଯେତେବେଳେ ସେମାନେ ତୁମ୍ଭ କଥା ଶୁଣୁଥାନ୍ତି, ସେତେବେଳେ ଯେଉଁ ଉଦ୍ଦେଶ୍ୟରେ ସେମାନେ ତୁମ୍ଭ କଥା ଶୁଣୁଥାନ୍ତି, ତାହାକୁ ଆମ୍ଭେ ଉତ୍ତମ ରୂପେ ଜାଣୁ ; ଏବଂ ଯେତେବେଳେ ସେମାନେ ପରସ୍ପର ମଧ୍ୟରେ ଗୋପନ ଆଲୋଚନା କରୁଥାନ୍ତି (ସେ ବିଷୟରେ ମଧ୍ୟ ଆମ୍ଭେ ଜାଣୁ) ; ଏବଂ ଯେତେବେଳେ ସେହି ଅତ୍ୟାଚାରୀମାନେ (ପରସ୍ପରକୁ) କହୁଥାନ୍ତି ଯେ ତୁମ୍ଭେମାନେ ଜଣେ ପ୍ରତାରକର ଅନୁସରଣ କରୁଅଛ (ସେତେବେଳେ ତାହା ମଧ୍ୟ ଆମ୍ଭେ ଶୁଣୁ) ।

اُنْظُرْ كَيْفَ ضَرَبُوْا لَكَ الْاَمْثَالَ فَضَلُّوْا فَلَا يَسْتَطِيْعُوْنَ سَبِيْلًا ۝

୪୯. ଲକ୍ଷ୍ୟକର, ସେମାନେ ତୁମ୍ଭ ସଂକ୍ରାନ୍ତରେ କିପରି (ମନଗଢ଼ା) କଥା କହୁଛନ୍ତି ଯାହା ଫଳରେ ସେମାନେ ପଥଭ୍ରଷ୍ଟ ହୋଇଛନ୍ତି ଓ ସେମାନେ (ସୁପଥଗାମୀ ହେବା ପାଇଁ ବର୍ତ୍ତମାନ) କୌଣସି ପଥ ପାଇ ପାରିବେ ନାହିଁ ।

وَقَالُوْٓا ءَاِذَا كُنَّا عِظَامًا وَّرُفَاتًا ءَاِنَّا لَمَبْعُوْثُوْنَ خَلْقًا جَدِيْدًا ۝

୫୦. ଏବଂ ସେମାନେ (ଏହା ମଧ୍ୟ) କୁହନ୍ତି ଯେ ଯେତେବେଳେ ଆମ୍ଭେମାନେ (ମରି) ହାଡ଼ରେ ପରିଣତ ହୋଇଯିବୁ ଓ କିଛି କାଳ ପରେ କ୍ଷୟ-ପ୍ରାପ୍ତ ହୋଇ ହାଡ଼ରେ ଚୂର୍ଣ୍ଣ ହୋଇଯିବୁ, ସେତେବେଳେ କ'ଣ ପ୍ରକୃତରେ ଆମମାନଙ୍କୁ ଏକ ନୂତନ ସୃଷ୍ଟି ରୂପେ ପୁନରୁତ୍ଥିତ କରାଯିବ ?

قُلْ كُوْنُوْا حِجَارَةً اَوْ حَدِيْدًا ۝

୫୧. ତୁମ୍ଭେ (ସେମାନଙ୍କୁ) କୁହ ଯେ ତୁମ୍ଭେମାନେ ପଥର ହୋଇଯାଅ ବା ଲୁହା ହୋଇଯାଅ ;

اَوْ خَلْقًا مِّمَّا يَكْبُرُ فِيْ صُدُوْرِكُمْ ۚ فَسَيَقُوْلُوْنَ مَنْ يُّعِيْدُنَا ۭ قُلِ الَّذِيْ فَطَرَكُمْ اَوَّلَ مَرَّةٍ ۚ

୫୨. ବା ଏପରି କୌଣସି ସୃଷ୍ଟି (କରାଯାଇଥିବା ପଦାର୍ଥ ହୋଇଯାଅ) ଯାହା ତୁମମାନଙ୍କ ମତରେ ଏହାଠାରୁ ମଧ୍ୟ କଠିନତର, (ତଥାପି ତୁମମାନଙ୍କୁ ପୁନର୍ବାର ଜୀବିତ କରାଯିବ ; ଏହାଶୁଣି ସେମାନେ ନିଶ୍ଚୟ କହିବେ ଯେ କିଏ ଆମମାନଙ୍କୁ ପୁନରାୟ (ସଶରୀରେ ଜୀବିତ କରି) ଆଣିବ ? ତୁମ୍ଭେ କୁହ, "ଯେ ତୁମମାନଙ୍କୁ ପ୍ରଥମ ଥର ସୃଷ୍ଟି

---

୧. ଯେହେତୁ ସେମାନଙ୍କ ଅନ୍ତର କଳୁଷିତ ହୋଇଯାଇଛି ତେଣୁ ଆମେମାନେ ସେମାନଙ୍କୁ ଇସ୍‌ଲାମ୍ ଧର୍ମ ଗ୍ରହଣ କରିବାରେ ବାଧା ଦେଉଅଛୁ ଅନ୍ୟଥା ସେମାନଙ୍କ କୁକାର୍ଯ୍ୟ ଯୋଗୁଁ ଇସଲାମ ବଦନାମ ହୋଇଯିବ ।

فَسَيُنْغِضُونَ إِلَيْكَ رُءُوسَهُمْ وَيَقُولُونَ مَتَىٰ هُوَ ۖ قُلْ عَسَىٰ أَنْ يَكُونَ قَرِيبًا ۝٥٢

କରିଥିଲେ." ତତ୍ପରେ ସେମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ତୁମ୍ଭ ଆଡ଼କୁ ଅବଶ୍ୟ ମୁଣ୍ଡ ହଲାଇ କହିବେ, "ଏହା କେବେ ଘଟିବ ?" (ଯେତେବେଳେ ସେମାନେ ଏପରି କହିବେ) ତୁମେ କୁହ, "ହୁଏତ, ତାହା (ଅର୍ଥାତ୍ ସେ ସମୟ) ଅତି ନିକଟବର୍ତ୍ତୀ ।"

يَوْمَ يَدْعُوكُمْ فَتَسْتَجِيبُونَ بِحَمْدِهِ وَتَظُنُّونَ إِنْ لَبِثْتُمْ إِلَّا قَلِيلًا ۝٥٣

୫୩. (ଏହି ଅଙ୍ଗୀକାର [୨] ସେହି ଦିନ ପାଳିତ ହେବ) ଯେଉଁଦିନ ସେ ତୁମମାନଙ୍କୁ ଡାକିବେ ସେତେବେଳେ ତୁମେମାନେ ତାହାଙ୍କର ପ୍ରଶଂସା ପୂର୍ବକ ତାହାଙ୍କର ଆଜ୍ଞା ପାଳନ କରିବ (ଏବଂ ତତ୍କ୍ଷଣାତ୍ ଉପସ୍ଥିତ ହେବ), ଏବଂ ତୁମେ ଧାରଣା କରିବ ଯେ ତୁମେମାନେ (ସଂସାରରେ) ଅତି ଅଳ୍ପ ସମୟ ପାଇଁ ଅବସ୍ଥାନ କରିଥିଲ ।

ରୁ:୬

وَقُلْ لِعِبَادِي يَقُولُوا الَّتِي هِيَ أَحْسَنُ ۚ إِنَّ الشَّيْطَانَ يَنْزَغُ بَيْنَهُمْ ۚ إِنَّ الشَّيْطَانَ كَانَ لِلْإِنْسَانِ عَدُوًّا مُبِينًا ۝٥٤

୫୪. ଏବଂ ତୁମେ ଆମର ଭକ୍ତମାନଙ୍କୁ କୁହ (ଯେ ସେମାନେ) ସେହି କଥା କୁହନ୍ତୁ ଯାହା ଅଧିକ ଉତ୍ତମ ; (କାରଣ) ସଇତାନ ବାସ୍ତବରେ ସେମାନଙ୍କ ମଧ୍ୟରେ ବିବାଦ ସୃଷ୍ଟିକରେ ; ସଇତାନ ମନୁଷ୍ୟର ପ୍ରକାଶ୍ୟ ଶତ୍ରୁ ଅଟେ ।

رَبُّكُمْ أَعْلَمُ بِكُمْ ۖ إِنْ يَشَأْ يَرْحَمْكُمْ أَوْ إِنْ يَشَأْ يُعَذِّبْكُمْ ۚ وَمَا أَرْسَلْنَاكَ عَلَيْهِمْ وَكِيلًا ۝٥٥

୫୫. ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କୁ ଉତ୍ତମ ରୂପେ ଜାଣନ୍ତି ; ଯଦି ସେ ଇଚ୍ଛା କରିବେ ତୁମମାନଙ୍କ ପ୍ରତି କରୁଣା ପ୍ରଦର୍ଶନ କରିବେ ; ଏବଂ ଯଦି ସେ ଇଚ୍ଛା କରିବେ ତେବେ ତୁମମାନଙ୍କୁ ଶାସ୍ତି ପ୍ରଦାନ କରିବେ ; ଏବଂ (ହେ ରସୁଲ!) ଆମେ ତୁମଙ୍କୁ ସେମାନଙ୍କ ପାଇଁ ତତ୍ତ୍ୱାବଧାରକ ରୂପେ ପ୍ରେରଣ କରିନାହୁଁ ।

وَرَبُّكَ أَعْلَمُ بِمَنْ فِي السَّمَاوَاتِ وَالْأَرْضِ ۗ وَلَقَدْ فَضَّلْنَا بَعْضَ النَّبِيِّينَ عَلَىٰ بَعْضٍ ۖ وَآتَيْنَا دَاوُودَ زَبُورًا ۝٥٦

୫୬. ଏବଂ ଯାହା କିଛି ଆକାଶ ଓ ପୃଥିବୀରେ ଅଛି ତୁମର ପାଳନକର୍ତ୍ତା ତାହାକୁ ଭଲ ଭାବରେ ଜାଣନ୍ତି ; ଏବଂ ଆମେ ନିଶ୍ଚୟ ନବିମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟମାନଙ୍କ ଉପରେ ପ୍ରାଧାନ୍ୟ ପ୍ରଦାନ କରିଅଛୁ, ଏବଂ ଦାଉଦଙ୍କୁ ଆମେ ଜବୁର [୩] (ଧର୍ମଗ୍ରନ୍ଥ) ପ୍ରଦାନ କରିଥିଲୁ ।

---

୧. ପ୍ରତୀତ ହେଉଛି ଏହି ଆୟତ ସାଂସାରିକ ବିନାଶ ଓ ତତ୍ପରବର୍ତ୍ତୀ ଜୀବନ ସହିତ ସଂପୃକ୍ତ . କାରଣ ପରକାଳ ଜୀବନ ଯେ ନିକଟବର୍ତ୍ତୀ ହୋଇଗଲାଣି ସେ ସମ୍ବନ୍ଧରେ ଅବିଶ୍ୱାସକାରୀମାନେ ଆଦୌ ବୁଝି ପାରୁନଥିଲେ କି ବର୍ତ୍ତମାନ ହାଡ଼ସବୁ ଚୂର୍ଣ୍ଣବିଚୂର୍ଣ୍ଣ ହେବା ସମୟ ଆସିନଥିଲା । ଅତଏବ ଏଠାରେ ଏହି ପାର୍ଥିବ ଜୀବନର ରାଜନୈତିକ ବା ଜାତୀୟ ମୃତ୍ୟୁ ତଥା ଦ୍ୱିତୀୟବାର ଉନ୍ନତି ଅଭିପ୍ରେତ ।

୨. ଏଠାରେ ବସ୍ତୁତଃ ଆରବବାସୀ ଇସଲାମ ଧର୍ମ ଗ୍ରହଣ କରି ନୂତନ ଜୀବନ ପାଇବା ଓ ଉନ୍ନତି କରିବା ବିଷୟରେ ଉଲ୍ଲେଖ ଅଛି ।

୩. କେତେକ 'ଜବୁର'କୁ ଶରିୟତ୍ ପୁସ୍ତକ ମନେ କରୁଛନ୍ତି । କିନ୍ତୁ ଅଭିଧାନରେ ଜବୁର ଅର୍ଥ 'ଖଣ୍ଡ' ଲେଖା ଅଛି । ଅତଏବ ଅଳ୍ପ ଅଳ୍ପ କରି ବା ଛୋଟ ଛୋଟ ଭାଗରେ ବିଭକ୍ତ କରି ଉପଦେଶ ଦେବା ଜବୁର ଶବ୍ଦର ଅର୍ଥାନ୍ତର୍ଗତ । ଜବୁରକୁ ଅନୁଧ୍ୟାନ କଲେ ତାହା ସେପରି ଏକ ପୁସ୍ତକ ହୋଇଥିବା ପ୍ରତୀତ ହେବ ।

قُلِ ادْعُوا الَّذِينَ زَعَمْتُم مِّن دُونِهِ فَلَا يَمْلِكُونَ
كَشْفَ الضُّرِّ عَنكُمْ وَلَا تَحْوِيلًا ۝٥٧

୫୭. ତୁମେ (ସେମାନଙ୍କୁ) କୁହ, "ତୁମେମାନେ ଯେଉଁ ଲୋକମାନଙ୍କ ସଂକ୍ରାନ୍ତରେ (ଅଲ୍ଲାହଙ୍କ ବ୍ୟତୀତ ଉପାସ୍ୟ ବୋଲି) ଦାବି କରୁଅଛ ସେମାନଙ୍କୁ (ତୁମମାନଙ୍କର ସହାୟତା ପାଇଁ) ଡାକ ; (ତାହାହେଲେ ତୁମେମାନେ ଜାଣି ପାରିବ ଯେ) ତୁମମାନଙ୍କର କଷ୍ଟ ଦୂର କରିବା ପାଇଁ ସେମାନଙ୍କର କୌଣସି ଶକ୍ତି ନାହିଁ କି (ତୁମମାନଙ୍କ ଅବସ୍ଥାରେ) କୌଣସି ପରିବର୍ତ୍ତନ ଆଣିବା ପାଇଁ (ସେମାନଙ୍କର କ୍ଷମତା ନାହିଁ) ।

أُولَٰئِكَ الَّذِينَ يَدْعُونَ يَبْتَغُونَ إِلَىٰ رَبِّهِمُ الْوَسِيلَةَ
أَيُّهُمْ أَقْرَبُ وَيَرْجُونَ رَحْمَتَهُ وَيَخَافُونَ عَذَابَهُ
إِنَّ عَذَابَ رَبِّكَ كَانَ مَحْذُورًا ۝٥٨

୫୮. ସେମାନେ ଯେଉଁମାନଙ୍କୁ ଡାକନ୍ତି ସେମାନେ[୧] ମଧ୍ୟ ନିଜର ପାଳନକର୍ତ୍ତାଙ୍କ ସାନ୍ନିଧ୍ୟ ଲାଭ କରିବା ପାଇଁ ପନ୍ଥା ଅନ୍ବେଷଣ କରୁଥାନ୍ତି (ଅର୍ଥାତ୍ ଲକ୍ଷ୍ୟ କରୁଥାନ୍ତି) ଯେ କିଏ ଅଲ୍ଲାହଙ୍କର ଅଧିକ ନିକଟବର୍ତ୍ତୀ ଅଟେ (ଯଦ୍ଦ୍ବାରା କି ଆମେମାନେ ତାହାଙ୍କର ସହାୟତା ଲାଭ କରିବୁ) ଏବଂ ସେମାନେ ସର୍ବଦା ତାହାଙ୍କ କରୁଣାର ଆଶାୟୀ ଥାଆନ୍ତି, ଓ ତାହାଙ୍କ ଶାସ୍ତିକୁ ଭୟ କରୁଥାଆନ୍ତି ; ବାସ୍ତବିକ ତୁମ ପାଳନକର୍ତ୍ତାଙ୍କ ଶାସ୍ତି ଏପରି ଅଟେ ଯାହାକୁ ଭୟ କରାଯାଏ ।

وَإِن مِّن قَرْيَةٍ إِلَّا نَحْنُ مُهْلِكُوهَا قَبْلَ يَوْمِ الْقِيَامَةِ
أَوْ مُعَذِّبُوهَا عَذَابًا شَدِيدًا كَانَ ذَٰلِكَ فِي الْكِتَابِ
مَسْطُورًا ۝٥٩

୫୯. ଏବଂ (ଭୂପୃଷ୍ଠରେ)[୨] ଏପରି କୌଣସି ଜନବସତି ନାହିଁ ଯାହାକୁ ଆମେ କୟାମତ ଦିନର ପୂର୍ବରୁ ଧ୍ୱଂସ କରି ନ ଦେବୁ, ଅଥବା ଏହାକୁ କଠୋର ଶାସ୍ତି ପ୍ରଦାନ ନ କରିବୁ ; ଏହା (ବିଧିର) ବିଧାନ ରୂପେ ଲିପିବଦ୍ଧ ହୋଇଅଛି ।

وَمَا مَنَعَنَا أَن نُّرْسِلَ بِالْآيَاتِ إِلَّا أَن كَذَّبَ بِهَا
الْأَوَّلُونَ وَآتَيْنَا ثَمُودَ النَّاقَةَ مُبْصِرَةً فَظَلَمُوا
بِهَا وَمَا نُرْسِلُ بِالْآيَاتِ إِلَّا تَخْوِيفًا ۝٦٠

୬୦. (କ'ଣ) ଆମର ନିଦର୍ଶନଗୁଡ଼ିକ ପ୍ରେରଣ ନ କରିବା ଉଦ୍ଦେଶ୍ୟ ଏହା ବ୍ୟତୀତ ଅନ୍ୟ କିଛି ହୋଇପାରେ ଯେ ପୂର୍ବବର୍ତ୍ତୀ ଲୋକମାନେ (ଏଗୁଡ଼ିକ ପ୍ରତି) ମିଥ୍ୟା ଆରୋପ କରିଥିଲେ (ଏବଂ ସେଥିରୁ କୌଣସି ଲାଭ ପାଇ ନଥିଲେ, କିନ୍ତୁ ନିଦର୍ଶନ ପ୍ରେରଣ ନ କରିବା ପାଇଁ ଏହା ଏକ କାରଣ ନୁହେଁ) ; ସୁତରାଂ (ଯେତେବେଳେ) ଆମେ ସମୁଦ (ସମ୍ପ୍ରଦାୟ)କୁ ଏକ ପ୍ରକାଶ୍ୟ ନିଦର୍ଶନ ସ୍ୱରୂପ ଗୋଟିଏ ମାଈ ଓଟ ପ୍ରଦାନ କଲୁ, ସେତେବେଳେ ସେମାନେ ତାହା ପ୍ରତି ଅତ୍ୟାଚାର କଲେ ; ଏବଂ ଆମେ ନିଦର୍ଶନଗୁଡ଼ିକୁ ଭୟଭୀତ କରାଇବା ଲକ୍ଷ୍ୟରେ ହିଁ ପ୍ରେରଣ କରୁ ।

---

୧. ପ୍ରତୀତ ହେଉଛି ଏଠାରେ ମନଗଢ଼ା ବା ତଥାକଥିତ ଉପାସ୍ୟ ଅର୍ଥ ସେହି ନବି ବା ଦେବଦୂତ, ଯାହାଙ୍କୁ ମୁସରିକ୍‌ମାନେ ଅଲ୍ଲାହଙ୍କର ସମକକ୍ଷ ମଣୁଛନ୍ତି । ଅନ୍ୟଥା ମୂର୍ତ୍ତି ବା ସାଧାରଣ ଲୋକମାନଙ୍କୁ ଏହି ଆୟତ ସଂଶ୍ଳିଷ୍ଟ କରୁନାହିଁ ।

୨. ଅନ୍ତିମ ଯୁଗରେ ସାରା ବିଶ୍ୱରେ ଅଲ୍ଲାହଙ୍କର ଶାସ୍ତି ଅବତୀର୍ଣ୍ଣ ହେବା ସମ୍ବନ୍ଧରେ ଏଠାରେ ଭବିଷ୍ୟବାଣୀ ଅଛି । ହଜରତ ଇସାଙ୍କ ଉକ୍ତି ଅନୁସାରେ ଗୋଟିଏ ଜାତି ଅନ୍ୟ ଜାତି ଉପରେ ଚଢ଼ଉ କରିବ ଏବଂ ପବିତ୍ର କୋରାନ ଅନୁସାରେ (୭୯:୭-୮ ଦ୍ରଷ୍ଟବ୍ୟ) ବିପତ୍ତି ପରେ ବିପତ୍ତି ଆସିବ ତଥା ଏପରି ନିରନ୍ତର ଭାବରେ ଆସିବ ଯେ ମାନବ ସମାଜ ଆଶ୍ଚର୍ଯ୍ୟ ଓ ଆତଙ୍କିତ ହୋଇପଡ଼ିବ ।

وَاِذْ قُلْنَا لَكَ اِنَّ رَبَّكَ اَحَاطَ بِالنَّاسِ ؕ وَمَا جَعَلْنَا الرُّءْيَا الَّتِيْٓ اَرَيْنٰكَ اِلَّا فِتْنَةً لِّلنَّاسِ وَالشَّجَرَةَ الْمَلْعُوْنَةَ فِي الْقُرْاٰنِ ؕ وَنُخَوِّفُهُمْ ۙ فَمَا يَزِيْدُهُمْ اِلَّا طُغْيَانًا كَبِيْرًا ﴿٦١﴾

୬୧. ଏବଂ ଯେତେବେଳେ ଆମେ ତୁମକୁ କହିଥିଲୁ (ଯେ) ତୁମର ପାଳନକର୍ତ୍ତା ଏହି ଲୋକମାନଙ୍କୁ ନିଶ୍ଚିତ ରୂପେ ବିନାଶ କରି (ବାର ନିଷ୍ପତ୍ତି ଗ୍ରହଣ କରିଛନ୍ତି ; (ତଥାପି ସେମାନେ ଭାଗ୍ୟବାନ୍ ହେଲେ ନାହିଁ) ଏବଂ ଅଲୌକିକ ସ୍ୱପ୍ନ ମାଧ୍ୟମରେ ଆମେ ତୁମକୁ ଯାହା କିଛି ଦେଖାଇଥିଲୁ ତାହାକୁ ଏବଂ କୋରାନ ବର୍ଣ୍ଣିତ ସେହି ଅଭିଶପ୍ତ ବୃକ୍ଷକୁ [୧] ଆମେ କେବଳ ଲୋକମାନଙ୍କ ପରୀକ୍ଷା ପାଇଁ ସୃଷ୍ଟି କରିଥିଲୁ ; ଏବଂ ଆମେ ସେମାନଙ୍କୁ ଭୟଭୀତ କରାଉଛୁ ସତ୍ତ୍ୱେ ଏହା ସେମାନଙ୍କୁ ଏକ ବିପଜ୍ଜନକ ବିଦ୍ରୋହରେ ଅଗ୍ରସର କରାଉଛି ।

ରୁ:୪

وَاِذْ قُلْنَا لِلْمَلٰٓئِكَةِ اسْجُدُوْا لِاٰدَمَ فَسَجَدُوْٓا اِلَّآ اِبْلِيْسَ ؕ قَالَ ءَاَسْجُدُ لِمَنْ خَلَقْتَ طِيْنًا ﴿٦٢﴾

୬୨. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ ଦେବଦୂତମାନଙ୍କୁ କହିଥିଲୁ ଯେ ତୁମେମାନେ ଆଦମଙ୍କ ସହିତ (ସମ୍ମିଳିତ ହୋଇ) ସିଜଦା କର, ସେତେବେଳେ ସେମାନେ (ଏହି ଆଦେଶ ଅନୁସାରେ ଆଦମଙ୍କ ସହିତ ମିଳିତ ଭାବରେ) ସିଜଦା କରିଥିଲେ ; କିନ୍ତୁ ଇବଲିସ (କରି ନଥିଲା) ସେ କହିଥିଲା, "ତୁମେ ଯାହାକୁ ମୃତ୍ତିକାରୁ ସୃଷ୍ଟି କରିଅଛ କ'ଣ ମୁଁ ତା'ସହିତ (ମିଶି) ସିଜଦା କରିବି ?"

قَالَ اَرَءَيْتَكَ هٰذَا الَّذِيْ كَرَّمْتَ عَلَيَّ ؗ لَئِنْ اَخَّرْتَنِ اِلٰى يَوْمِ الْقِيٰمَةِ لَاَحْتَنِكَنَّ ذُرِّيَّتَهٗٓ اِلَّا قَلِيْلًا ﴿٦٣﴾

୬୩. ସେ (ପୁଣି) କହିଲା, "(ହେ ଅଲ୍ଲାହ୍ ! ତୁମେ) କହ, କ'ଣ ଏ ସେହି ଯାହାକୁ ତୁମେ ମୋ ଉପରେ ପ୍ରାଧାନ୍ୟ ଦେଇଅଛ ? ଯଦି ତୁମେ ମୋତେ କୟାମତ ଦିନ ପର୍ଯ୍ୟନ୍ତ ଅବସର ଦେବ ତେବେ ଅଳ୍ପ କେତେକଙ୍କୁ ଛାଡ଼ି, ମୁଁ ତାହାଙ୍କର ଅନ୍ୟ (ସମସ୍ତ) ସନ୍ତାନ-ସନ୍ତତିଙ୍କୁ ନିଜର ବଶବର୍ତ୍ତୀ କରାଇବି ।"

قَالَ اذْهَبْ فَمَنْ تَبِعَكَ مِنْهُمْ فَاِنَّ جَهَنَّمَ جَزَآؤُكُمْ جَزَآءً مَّوْفُوْرًا ﴿٦٤﴾

୬୪. (ଅଲ୍ଲାହ୍) କହିଲେ, "ଯା (ବାହାରି ଯା) କାରଣ ତୋର ଓ ସେମାନଙ୍କ ମଧ୍ୟରୁ ଯେ ତୋର ଅନୁସରଣ କରିବ, (ତାହାର ମଧ୍ୟ) ଶାସ୍ତି ନରକ ହେବ ; (ଏବଂ ଏହା ହିଁ) ପରିପୂର୍ଣ୍ଣ ପ୍ରତିଫଳ ।"

---

୧. ଆରବୀ 'ଶଜରା' ଅର୍ଥ : (କ) ବଂଶ (ଖ) ଜାତି । ସେହିପରି ବଂଶ ବା ବଂଶଧରମାନଙ୍କ ନାମାବଳୀକୁ 'ଶଜର-ଏ-ନସବ' କହନ୍ତି । ଏହି ଶବ୍ଦର ଅର୍ଥ ମଧ୍ୟ ଶଜର-ଏ-ନସବ ଅର୍ଥାତ୍ ବଂଶବୃକ୍ଷ । ଯେହେତୁ ପବିତ୍ର କୋରାନ୍‌ରେ ଇହୁଦୀମାନଙ୍କୁ ଲାଞ୍ଛିତ କରାଯାଇଥିଲା, ତେଣୁ ଏଠାରେ ସେମାନଙ୍କ କଥା ବର୍ଣ୍ଣନା କରାଯାଇଛି ।

ଏଠାରେ ସ୍ୱପ୍ନ ଓ ଅଭିଶପ୍ତ ବୃକ୍ଷ, ଉଭୟ ବିଷୟକୁ ଏକତ୍ରିତ ବର୍ଣ୍ଣନା କରାଯାଇଛି । ଫଳରେ ବର୍ଣ୍ଣିତ ବିଷୟ ସ୍ପଷ୍ଟ ଭାବରେ ବୁଝାପଡୁଛି, କାରଣ ସ୍ୱପ୍ନକୁ ଏହି ଅଧ୍ୟାୟରେ 'ଅସ୍ରା' ଘଟଣା ସମ୍ବନ୍ଧରେ ବର୍ଣ୍ଣନା କରଯାଇଛି । ଅସ୍ରା ତତ୍ତ୍ୱବସ୍ତୁରେ ଏପରି ଏକ ଯାତ୍ରାକୁ ବୁଝାଏ ଯାହା ଇହୁଦୀମାନଙ୍କ ଧର୍ମପୀଠ ପାଲେଷ୍ଟାଇନ ତରଫକୁ କରାହୋଇଥିଲା । ଅଭିଶପ୍ତ ବୃକ୍ଷ ମଧ୍ୟ ଇହୁଦୀମାନଙ୍କୁ ବୁଝାଉଛି । ତେଣୁ ଉଭୟ ବିଷୟକୁ ଏକତ୍ରିତ ବର୍ଣ୍ଣନା କରିବାରୁ ଗୋଟିଏ ଘଟଣା ଅନ୍ୟ ଗୋଟିଏ ଘଟଣାର ପ୍ରକୃତ ତଥ୍ୟକୁ ପ୍ରକଟ କରିଅଛି । ହଜରତ୍ ମୁସା ଓ ହଜରତ ମହମ୍ମଦଙ୍କର ଇସ୍ରା ବା ଆଧ୍ୟାତ୍ମିକ ରାତ୍ରିକାଳୀନ ଯାତ୍ରା ଥିଲା ଗୋଟିଏ କିସଫର (୧୭:୨ ଦ୍ରଷ୍ଟବ୍ୟ) । ପାର୍ଥିବ ଶରୀର ଧାରଣ କରି ଏହା ସଂପନ୍ନ କରାଯାଇ ନ ଥିଲା । ଏହା ଏକ ଦିବ୍ୟ ଅନୁଭୂତି । ଏହି ଦୃଷ୍ଟିକୋଣ ଉଭୟ ପବିତ୍ର କୋରାନ ଓ ବାଇବେଲ ଦ୍ୱାରା ସମର୍ଥିତ ।

୬୫. "ଏବଂ (ଆମେ କହିଲୁ ଯାଅ) ଏମାନଙ୍କ ମଧ୍ୟରୁ ଯାହା ଉପରେ ତୋର ବଳ ପାଏ ନିଜ ସ୍ୱର ଦ୍ୱାରା ପ୍ରଲୁବ୍ଧ କରି (ନିଜ ଆଡ଼କୁ) ଡାକ, ଏବଂ ସେମାନଙ୍କ ବିରୁଦ୍ଧରେ ନିଜର ଅଶ୍ୱମାନଙ୍କୁ ଓ ମନୁଷ୍ୟମାନଙ୍କୁ ପରିଚାଳିତ କର, ଏବଂ (ସେମାନଙ୍କ) ଧନସମ୍ପତ୍ତି ଓ ସନ୍ତାନ-ସନ୍ତତିଙ୍କ ମଧ୍ୟରେ ସେମାନଙ୍କର ଅଂଶୀଦାର ହୁଅ, ଏବଂ ସେମାନଙ୍କୁ (ମିଥ୍ୟା) ପ୍ରତିଶ୍ରୁତି ପ୍ରଦାନ କର ; (ତା'ପରେ ନିଜ ପ୍ରଚେଷ୍ଟାର ପରିଣାମ ଲକ୍ଷ୍ୟ କର) ;" ଏବଂ ଶଇତାନର ପ୍ରତିଶ୍ରୁତି କେବଳ ପ୍ରତାରଣା ନିମନ୍ତେ ଅଟେ ।

وَاسْتَفْزِزْ مَنِ اسْتَطَعْتَ مِنْهُمْ بِصَوْتِكَ وَأَجْلِبْ عَلَيْهِمْ بِخَيْلِكَ وَرَجِلِكَ وَشَارِكْهُمْ فِي الْأَمْوَالِ وَالْأَوْلَادِ وَعِدْهُمْ ۚ وَمَا يَعِدُهُمُ الشَّيْطَانُ إِلَّا غُرُورًا ٦٥

୬୬. ଯେଉଁମାନେ ଆମର ଭକ୍ତ, ସେମାନଙ୍କ ଉପରେ ତୋ'ର ଆଦୌ କୌଣସି ଆଧିପତ୍ୟ ନାହିଁ, ଏବଂ (ହେ ଆମର ଭକ୍ତମାନେ !) ତୁମମାନଙ୍କର ପାଳନକର୍ତ୍ତା କାର୍ଯ୍ୟ ସମ୍ପାଦନ କରିବାରେ (ତୁମମାନଙ୍କ ପକ୍ଷରେ) ଯଥେଷ୍ଟ ।

إِنَّ عِبَادِي لَيْسَ لَكَ عَلَيْهِمْ سُلْطَانٌ ۚ وَكَفَىٰ بِرَبِّكَ وَكِيلًا ٦٦

୬୭. (ହେ ଆମର ଭକ୍ତମାନେ !) ସେ ହିଁ ତୁମମାନଙ୍କର ପାଳନକର୍ତ୍ତା ଯେ କି ତୁମମାନଙ୍କ ସକାଶେ ସମୁଦ୍ରରେ ପୋତ ଚାଳିତ କରାନ୍ତି, ଯଦ୍ଦ୍ୱାରା ତୁମେମାନେ ତାହାଙ୍କର କୃପା ସନ୍ଧାନ କରିପାରିବ, ସେ ବାସ୍ତବରେ ତୁମମାନଙ୍କ ପ୍ରତି ସଦା କରୁଣାମୟ ।

رَبُّكُمُ الَّذِي يُزْجِي لَكُمُ الْفُلْكَ فِي الْبَحْرِ لِتَبْتَغُوا مِنْ فَضْلِهِ ۚ إِنَّهُ كَانَ بِكُمْ رَحِيمًا ٦٧

୬୮. ଏବଂ ଯେତେବେଳେ ସମୁଦ୍ର ମଧ୍ୟରେ (ଝଡ଼ ତୋଫାନ ସୃଷ୍ଟି ହେବା ଯୋଗୁଁ) ତୁମମାନଙ୍କ ପ୍ରତି ବିପଦ ଦେଖାଦିଏ, ସେତେବେଳେ ତାହାଙ୍କ ବ୍ୟତୀତ ତୁମେମାନେ ଅନ୍ୟ ଯେଉଁମାନଙ୍କୁ ଡାକ, ସେମାନେ (ତୁମମାନଙ୍କ ମନରୁ) ଅଦୃଶ୍ୟ ହୋଇଯାଆନ୍ତି ; ତା'ପରେ ଯେତେବେଳେ ସେ ତୁମମାନଙ୍କୁ ରକ୍ଷା କରି (ନିରାପଦରେ) ସ୍ଥଳଭାଗକୁ ନେଇ ଆସନ୍ତି, ସେତେବେଳେ ତୁମେମାନେ (ତାହାଙ୍କ ଠାରୁ) ବିମୁଖ ହୋଇଥାଅ ; ଏବଂ ମନୁଷ୍ୟ ଅତ୍ୟନ୍ତ ଅକୃତଜ୍ଞ ଅଟେ ।

وَإِذَا مَسَّكُمُ الضُّرُّ فِي الْبَحْرِ ضَلَّ مَنْ تَدْعُونَ إِلَّا إِيَّاهُ ۖ فَلَمَّا نَجَّاكُمْ إِلَى الْبَرِّ أَعْرَضْتُمْ ۚ وَكَانَ الْإِنْسَانُ كَفُورًا ٦٨

୬୯. ତାହାହେଲେ କ'ଣ ତୁମେମାନେ ନିଜକୁ ଏଥିରୁ ନିରାପଦ ମନେକରୁଅଛ ଯେ ସେ ତୁମମାନଙ୍କୁ ସ୍ଥଳଭାଗର ତଟଦେଶରେ (ମାଟିରେ) ଧସେଇ ପାରିବେ ନାହିଁ ବା ତୁମମାନଙ୍କ ପ୍ରତି ବାଲିଝଡ଼ ପ୍ରେରଣ କରିପାରିବେ ନାହିଁ ଯେତେବେଳେ କି ତୁମେମାନେ ନିଜ ପାଇଁ କୌଣସି ସାହାଯ୍ୟକାରୀ ପାଇବ ନାହିଁ ।

أَفَأَمِنْتُمْ أَنْ يَخْسِفَ بِكُمْ جَانِبَ الْبَرِّ أَوْ يُرْسِلَ عَلَيْكُمْ حَاصِبًا ثُمَّ لَا تَجِدُوا لَكُمْ وَكِيلًا ٦٩

୭୦. ଅଥବା ତୁମେମାନେ କ'ଣ ନିଜକୁ ଏଥିରୁ ନିରାପଦ ମନେ କରୁଅଛ ଯେ ସେ ତୁମମାନଙ୍କୁ ପୁନର୍ବାର ତାହା ମଧ୍ୟକୁ (ଅର୍ଥାତ୍ ସାଗର ମଧ୍ୟକୁ) ଫେରାଇ ନେଇ ତୁମମାନଙ୍କ

أَمْ أَمِنْتُمْ أَنْ يُعِيدَكُمْ فِيهِ تَارَةً أُخْرَىٰ فَيُرْسِلَ

ପ୍ରତି ଏକ ତୀବ୍ର ଝଡ଼ ପ୍ରେରଣ କରି ତୁମମାନଙ୍କର ଅବିଶ୍ୱାସ ହେତୁ ତୁମମାନଙ୍କୁ ପାଣିରେ ବୁଡ଼ାଇ ପାରିବେ ନାହିଁ ? ଯେତେବେଳେ କି ଏଥି ସକାଶେ ତୁମେମାନେ ଆମ ବିରୁଦ୍ଧରେ ନିଜର କୌଣସି ସାହାଯ୍ୟକାରୀ ପାଇବ ନାହିଁ ।

عَلَيْكُمْ قَاصِفًا مِّنَ الرِّيْحِ فَيُغْرِقَكُمْ بِمَا كَفَرْتُمْ ثُمَّ لَا تَجِدُوْا لَكُمْ عَلَيْنَا بِهٖ تَبِيْعًا ۝٧٠

୭୧. ଏବଂ ଆମେ ଆଦମ ସନ୍ତାନମାନଙ୍କୁ (ଅର୍ଥାତ୍ ମାନବ ଜାତିକୁ ଯଥେଷ୍ଟ) ସମ୍ମାନ ପ୍ରଦାନ କରିଅଛୁ, ଏବଂ ସେମାନଙ୍କ ପାଇଁ ସ୍ଥଳଭାଗ ଓ ଜଳଭାଗରେ ପରିବହନର ବ୍ୟବସ୍ଥା କରିଅଛୁ, ଏବଂ ସେମାନଙ୍କୁ ପବିତ୍ର ବସ୍ତୁମାନଙ୍କରୁ ଜୀବିକା ପ୍ରଦାନ କରିଅଛୁ, ଏବଂ ଯେଉଁ ପ୍ରାଣୀଜଗତ ଆମେ ସୃଷ୍ଟି କରିଅଛୁ, ସେମାନଙ୍କ ମଧ୍ୟରେ ଅନେକଙ୍କ ଉପରେ ଆମେ ଏମାନଙ୍କୁ ପ୍ରାଧାନ୍ୟ ପ୍ରଦାନ କରିଅଛୁ ।

وَلَقَدْ كَرَّمْنَا بَنِيْٓ اٰدَمَ وَحَمَلْنٰهُمْ فِي الْبَرِّ وَالْبَحْرِ وَرَزَقْنٰهُمْ مِّنَ الطَّيِّبٰتِ وَفَضَّلْنٰهُمْ عَلٰى كَثِيْرٍ مِّمَّنْ خَلَقْنَا تَفْضِيْلًا ۝٧١

ରୁ: ୮

୭୨. ଏବଂ (ସେହି ସମୟକୁ ସ୍ମରଣ କର) ଯେଉଁଦିନ ଆମେ ପ୍ରତ୍ୟେକ ଗୋଷ୍ଠୀକୁ ସେମାନଙ୍କ ନେତାଙ୍କ ସହିତ ଡାକିବୁ ; ଏହାପରେ ଯେଉଁମାନଙ୍କୁ ଦକ୍ଷିଣ ହସ୍ତରେ[୧] ସେମାନଙ୍କ (କର୍ମ) ପୁସ୍ତକ ଦିଆଯିବ, ସେମାନେ (ଅତି ଆନନ୍ଦରେ) ନିଜ ପୁସ୍ତକ ପାଠ କରିବେ ; ଏବଂ ସେମାନଙ୍କ ଉପରେ ତିଳେମାତ୍ର ଅତ୍ୟାଚାର କରାଯିବ ନାହିଁ ।

يَوْمَ نَدْعُوْا كُلَّ اُنَاسٍۭ بِاِمَامِهِمْ ۚ فَمَنْ اُوْتِيَ كِتٰبَهٗ بِيَمِيْنِهٖ فَاُولٰٓئِكَ يَقْرَءُوْنَ كِتٰبَهُمْ وَلَا يُظْلَمُوْنَ فَتِيْلًا ۝٧٢

୭୩. ଏବଂ ଯେ ଏଠାରେ (ଅର୍ଥାତ୍ ସଂସାରରେ) ଅନ୍ଧ[୨] ହୋଇଥିବ ସେ ପରକାଳରେ ମଧ୍ୟ ଅନ୍ଧ ହେବ (ଏହିପରି ଭାବରେ ସେ) ନିଜ ପନ୍ଥାରେ ସମସ୍ତଙ୍କ ଠାରୁ ଅଧିକ ପଥଭ୍ରଷ୍ଟ ହୋଇଥିବ ।

وَمَنْ كَانَ فِيْ هٰذِهٖٓ اَعْمٰى فَهُوَ فِي الْاٰخِرَةِ اَعْمٰى وَاَضَلُّ سَبِيْلًا ۝٧٣

୭୪. ଆମେ ତୁମ ପ୍ରତି ଓହି ମାଧ୍ୟମରେ ଯାହା ଅବତୀର୍ଣ୍ଣ କରିଅଛୁ ସେଥିଯୋଗୁଁ ସେମାନେ ତୁମକୁ (କଠିନ) ଶାସ୍ତିରେ ଜଡ଼ିତ କରାଇବାର ସମ୍ଭାବନା ଥିଲା ଯଦ୍ଦ୍ୱାରା ତୁମେ (ସେମାନଙ୍କୁ ଡରି) ଏହା ବ୍ୟତୀତ ଅନ୍ୟ କିଛି (ନିଜେ) ରଚନା କରି (ତାହାକୁ) ଆମ ପ୍ରତି ଉଦ୍ଦିଷ୍ଟ କରି ଦିଅନ୍ତ ; ଏବଂ ଯେବି ତୁମେ ଏପରି କରିଥାନ୍ତ, ତେବେ) ଏପରି ଅବସ୍ଥାରେ ସେମାନେ ତୁମକୁ (ନିଜର) ଅନ୍ତରଙ୍ଗ ବନ୍ଧୁ ରୂପେ ଗ୍ରହଣ କରିଥାନ୍ତେ ।

وَاِنْ كَادُوْا لَيَفْتِنُوْنَكَ عَنِ الَّذِيْٓ اَوْحَيْنَآ اِلَيْكَ لِتَفْتَرِيَ عَلَيْنَا غَيْرَهٗ ۖ وَاِذًا لَّاتَّخَذُوْكَ خَلِيْلًا ۝٧٤

---

୧. ଦକ୍ଷିଣ ହସ୍ତ ଆଶୀର୍ବାଦର ଓ ବାମ ହସ୍ତ ଶାସ୍ତିର ପ୍ରତୀକ । ଶରୀର ଗଠନରେ ଦକ୍ଷିଣ ପାର୍ଶ୍ୱର କେତେକ ପ୍ରାଧାନ୍ୟ ଅଛି । ଦକ୍ଷିଣ ହସ୍ତ ମଧ୍ୟ ଶକ୍ତି ଓ ସାମର୍ଥ୍ୟକୁ ସୂଚାଏ (୬୯:୪୬ ଦ୍ରଷ୍ଟବ୍ୟ) ।

୨. ଏଠାରେ ପ୍ରକାଶ୍ୟ ଅନ୍ଧତ୍ୱ ଅଭିପ୍ରେତ ନୁହେଁ ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେଉଁ ବ୍ୟକ୍ତି ନିଜର ଜ୍ଞାନ ଓ ଅନ୍ତର୍ଦୃଷ୍ଟି ଦ୍ୱାରା କୌଣସି କାର୍ଯ୍ୟ ହାସଲ କରିପାରିନାହିଁ ସେ ପରକାଳରେ ମଧ୍ୟ ଆଧ୍ୟାତ୍ମିକ ଦୃଷ୍ଟି ଲାଭ କରିବାରୁ ବଞ୍ଚିତ ହେବ ଓ ଅଲ୍ଲାହଙ୍କ ଦର୍ଶନ ପାଇପାରିବ ନାହିଁ । ଅତଏବ ଏଠାରେ ଆଧ୍ୟାତ୍ମିକ ଅନ୍ଧତ୍ୱ ହିଁ ଅଭିପ୍ରେତ ।

وَ لَوْلَآ اَنْ ثَبَّتْنٰكَ لَقَدْ كِدْتَّ تَرْكَنُ اِلَيْهِمْ شَيْـًٔا قَلِيْلًا ﴿۷۵﴾

୭୫. ଏବଂ ଯଦି ଆମେ ତୁମକୁ (ପବିତ୍ର କୋରାନ ପ୍ରଦାନ କରି) ଶକ୍ତିଶାଳୀ କରି ନଥାନ୍ତୁ, ତେବେ ମଧ୍ୟ ତୁମେ ସେମାନଙ୍କ ପ୍ରତି ଅଳ୍ପ କେତେକ ବିଷୟରେ ଢଳି ଥାଆନ୍ତ (କିନ୍ତୁ ବର୍ତ୍ତମାନ ଆମର ବାଣୀ ତୁମକୁ ପ୍ରକୃତ ମାର୍ଗ ପ୍ରଦର୍ଶନ କରାଇଛି)।

اِذًا لَّاَذَقْنٰكَ ضِعْفَ الْحَيٰوةِ وَضِعْفَ الْمَمَاتِ ثُمَّ لَا تَجِدُ لَكَ عَلَيْنَا نَصِيْرًا ﴿۷۶﴾

୭୬. କିନ୍ତୁ ଯଦି; (ସେମାନଙ୍କ ଧାରଣା ଅନୁସାରେ ତୁମେ ମିଥ୍ୟା ରଚନାକାରୀ ହୋଇଥାନ୍ତ) ତାହାହେଲେ ଆମେ ତୁମକୁ ଏହି ଜୀବନରେ କଠିନ ଶାସ୍ତି ଓ ମୃତ୍ୟୁ ପରେ କଠିନ ଶାସ୍ତି ଆସ୍ୱାଦନ କରାଇଥାନ୍ତୁ ; (ଏବଂ) ତା'ପରେ ତୁମେ ଆମ ବିରୁଦ୍ଧରେ ନିଜର କୌଣସି ସାହାଯ୍ୟକାରୀ ପାଇ ନଥାନ୍ତ।

وَاِنْ كَادُوْا لَيَسْتَفِزُّوْنَكَ مِنَ الْاَرْضِ لِيُخْرِجُوْكَ مِنْهَا وَاِذًا لَّا يَلْبَثُوْنَ خِلٰفَكَ اِلَّا قَلِيْلًا ﴿۷۷﴾

୭୭. ଏବଂ ବସ୍ତୁତଃ ସେମାନେ ତୁମକୁ ଏହି ଦେଶରୁ ବିତାଡ଼ିତ କରିବା ପାଇଁ ବିଭିନ୍ନ ପନ୍ଥା ଅବଲମ୍ବନ କରୁଛନ୍ତି ଯଦ୍ଵାରା ସେମାନେ ତୁମକୁ ଭୟଭୀତ କରାଇ ଦେଶରୁ ବହିଷ୍କାର କରିବେ ; କିନ୍ତୁ (ସେପରି ଅବସ୍ଥାରେ) ସେମାନେ (ନିଜେ) ତୁମ ପରେ ଅଳ୍ପ ସମୟ ମାତ୍ର (ନିରାପଦ) ରହିବେ (ଏବଂ ଶୀଘ୍ର ଧ୍ୱଂସ ପାଇବେ)।

سُنَّةَ مَنْ قَدْ اَرْسَلْنَا قَبْلَكَ مِنْ رُّسُلِنَا وَلَا تَجِدُ لِسُنَّتِنَا تَحْوِيْلًا ﴿۷۸﴾

୭୮. ଏହି ନୀତି ଆମର ସେହି ନୀତି ସଦୃଶ ହେବ ଯାହା ଆମେ ତୁମର ପୂର୍ବବର୍ତ୍ତୀ ଆମ ରସୁଲମାନଙ୍କ (ସମ୍ପ୍ରଦାୟ) ପ୍ରତି ଅବଲମ୍ବନ କରିଥିଲୁ ; ଏବଂ ତୁମେ ଆମର ନୀତିରେ କୌଣସି ପରିବର୍ତ୍ତନ ଦେଖିବାକୁ ପାଇବ ନାହିଁ।

ରୁ:୯

اَقِمِ الصَّلٰوةَ لِدُلُوْكِ الشَّمْسِ اِلٰى غَسَقِ الَّيْلِ وَ قُرْاٰنَ الْفَجْرِ اِنَّ قُرْاٰنَ الْفَجْرِ كَانَ مَشْهُوْدًا ﴿۷۹﴾

୭୯. ସୂର୍ଯ୍ୟାସ୍ତ ପରଠାରୁ ରାତ୍ରିର ଘନ ଅନ୍ଧକାର ପର୍ଯ୍ୟନ୍ତ (ବିଭିନ୍ନ ସମୟରେ) ତୁମେ ସୁଚାରୁରୂପେ ନମାଜ ପାଠ କର ଏବଂ ପ୍ରଭାତରେ (ପବିତ୍ର କୋରାନର) ଆବୃତ୍ତି ମଧ୍ୟ (କର) ; ପ୍ରଭାତରେ (କୋରାନ) ଆବୃତ୍ତି କରିବା ବାସ୍ତବରେ (ଅଲ୍ଲାହଙ୍କ ନିକଟରେ) ଏକ ଗ୍ରହଣଯୋଗ୍ୟ କର୍ମ ଅଟେ।

وَمِنَ الَّيْلِ فَتَهَجَّدْ بِهٖ نَافِلَةً لَّكَ عَسٰٓى اَنْ يَّبْعَثَكَ رَبُّكَ مَقَامًا مَّحْمُوْدًا ﴿۸۰﴾

୮୦. ଏବଂ ରାତ୍ରିରେ ମଧ୍ୟ କିଛି ସମୟ ନିଦ୍ରା ଯିବା ପରେ ତୁମେ ଏହା (ଅର୍ଥାତ୍ ଏହି କୋରାନ ପାଠ କରି ତହଜ୍ଜୁଦ ନମାଜ) ଦ୍ୱାରା ରାତ୍ରି ଜାଗରଣ କର, ଏହା ତୁମ ପାଇଁ ଏକ ଅତିରିକ୍ତ ପୁରସ୍କାର ସ୍ୱରୂପ ଅଟେ ; (ଏ ରୂପେ) ତୁମର ପାଳନକର୍ତ୍ତା ତୁମକୁ ଏକ ପ୍ରଶଂସିତ ସ୍ଥାନରେ ପ୍ରତିଷ୍ଠିତ କରିବାର ଖୁବ୍ ସମ୍ଭାବନା ରହିଛି।

୮୧. ଏବଂ କୁହ, "ହେ ଆମର ପାଳନକର୍ତ୍ତା ! ଆମର (ମକ୍କା ସହର ମଧ୍ୟରେ ପୁନର୍ବାର) ପ୍ରବେଶକୁ ସତ୍-ପ୍ରବେଶ[୧] କରାଅ ଓ (ମକ୍କା ସହରରୁ) ପ୍ରସ୍ଥାନକୁ ସତ୍-ପ୍ରସ୍ଥାନ କରାଅ, ଏବଂ ଆମ ପାଇଁ ତୁମ ନିକଟରୁ ଜଣେ ସାହାଯ୍ୟକାରୀ (ଓ) ସାକ୍ଷୀ[୨] ପ୍ରଦାନ କର ।

وَقُل رَّبِّ أَدْخِلْنِي مُدْخَلَ صِدْقٍ وَأَخْرِجْنِي مُخْرَجَ صِدْقٍ وَاجْعَل لِّي مِن لَّدُنكَ سُلْطَانًا نَّصِيرًا ﴿٨١﴾

୮୨. ଏବଂ (ସେମାନଙ୍କୁ) କୁହ, "ସତ୍ୟ ଆସିଯାଇଛି ଓ ଅସତ୍ୟ ଲୋପ ହୋଇଅଛି ; ବାସ୍ତବରେ ଅସତ୍ୟ ହିଁ ଲୋପ ପାଇଥାଏ ।"

وَقُلْ جَاءَ الْحَقُّ وَزَهَقَ الْبَاطِلُ ۚ إِنَّ الْبَاطِلَ كَانَ زَهُوقًا ﴿٨٢﴾

୮୩. ଏବଂ ଆମେ କୋରାନରୁ କ୍ରମେ କ୍ରମେ ଏପରି (ଶିକ୍ଷା) ଅବତୀର୍ଣ୍ଣ କରୁଅଛୁ ଯାହା ବିଶ୍ୱାସକାରୀମାନଙ୍କ ସକାଶେ ଆରୋଗ୍ୟକାରୀ ଓ କରୁଣାମୟ ଅଟେ ; ଏବଂ ଏହା ଅତ୍ୟାଚାରୀମାନଙ୍କୁ କେବଳ ଅଧିକ କ୍ଷତିଗ୍ରସ୍ତ କରାଇଥାଏ ।

وَنُنَزِّلُ مِنَ الْقُرْآنِ مَا هُوَ شِفَاءٌ وَرَحْمَةٌ لِّلْمُؤْمِنِينَ ۙ وَلَا يَزِيدُ الظَّالِمِينَ إِلَّا خَسَارًا ﴿٨٣﴾

୮୪. ଏବଂ ଯେତେବେଳେ ଆମେ ମନୁଷ୍ୟକୁ ଅନୁଗୃହୀତ କରୁ, ସେତେବେଳେ ସେ ବିମୁଖ ହୋଇ ନିଜକୁ ଦୂରେଇ ନିଏ, ଏବଂ ଯେତେବେଳେ ତାହାକୁ ଦୁଃଖ ସ୍ପର୍ଶକରେ, ସେତେବେଳେ ସେ ଅତ୍ୟନ୍ତ ନିରାଶ ହୁଏ ।

وَإِذَا أَنْعَمْنَا عَلَى الْإِنسَانِ أَعْرَضَ وَنَأَىٰ بِجَانِبِهِ ۖ وَإِذَا مَسَّهُ الشَّرُّ كَانَ يَئُوسًا ﴿٨٤﴾

୮୫. ତୁମେ (ସେମାନଙ୍କୁ) କୁହ, "(ଆମମାନଙ୍କ ମଧ୍ୟରୁ) ପ୍ରତ୍ୟେକ (ଦଳ) ନିଜ ନିଜ ସ୍ୱଭାବ ଅନୁସାରେ କାର୍ଯ୍ୟ କରୁଛନ୍ତି ; ସୁତରାଂ (ନିଜ ପାଳନକର୍ତ୍ତାଙ୍କ ନିଷ୍ପତ୍ତି ଉପରେ ଛାଡ଼ିଦିଅ କାରଣ) ଯେଉଁ ବ୍ୟକ୍ତି ଅଧିକତର ସତ୍‌ପଥରେ ଅଛି ତୁମର ପାଳନକର୍ତ୍ତା ତାହାକୁ ଉତ୍ତମ ରୂପେ ଜାଣନ୍ତି ; (ତେଣୁ ତାହାଙ୍କର ନିଷ୍ପତ୍ତି ଦ୍ୱାରା ସତ୍ୟର ପରିପ୍ରକାଶ ନିଶ୍ଚୟ ଘଟିବ) ।

قُلْ كُلٌّ يَعْمَلُ عَلَىٰ شَاكِلَتِهِ فَرَبُّكُمْ أَعْلَمُ بِمَنْ هُوَ أَهْدَىٰ سَبِيلًا ﴿٨٥﴾ ع ٩

ରୁ:୧୦

୮୬. ଏବଂ ସେମାନେ ତୁମକୁ ଆତ୍ମା ସମ୍ବନ୍ଧରେ ପ୍ରଶ୍ନ କରୁଛନ୍ତି ; ତୁମେ (ସେମାନଙ୍କୁ) କୁହ, "ଆତ୍ମା ଆମର ପାଳନକର୍ତ୍ତାଙ୍କ ଆଦେଶରୁ (ସୃଷ୍ଟି) ହୋଇଅଛି, ଏବଂ ତୁମକୁ ଏ (ସମ୍ପର୍କରେ) ଅତି ଅଳ୍ପ ଜ୍ଞାନ ପ୍ରଦାନ କରାଯାଇଅଛି ।"

وَيَسْأَلُونَكَ عَنِ الرُّوحِ ۖ قُلِ الرُّوحُ مِنْ أَمْرِ رَبِّي وَمَا أُوتِيتُم مِّنَ الْعِلْمِ إِلَّا قَلِيلًا ﴿٨٦﴾

---

୧. ହଜରତ ମହମ୍ମଦ ଅବଶ୍ୟ ପ୍ରଥମେ ମକ୍କାରୁ ଚାଲିଯାଇଥିଲେ ଓ ପରେ ମଦିନାରେ ପ୍ରବେଶ କରିଥିଲେ । କିନ୍ତୁ ଅଲ୍ଲାହ ପ୍ରବେଶ କରିବା ବିଷୟକୁ ପ୍ରଥମେ ଓ ଚାଲିଯିବା ବିଷୟକୁ ଏହାପରେ ବର୍ଣ୍ଣନା କରିଛନ୍ତି । ଏଠାରେ ପ୍ରବେଶ କରିବା ଅର୍ଥ ମଦିନାରେ ପ୍ରବେଶ କରିବା ନୁହେଁ ବରଂ ମକ୍କା ଜୟଲାଭ କଲା ପରେ ସେଠାରେ ପୁନଃପ୍ରବେଶ କରିବା ଅଭିପ୍ରେତ । ଏହିପରି ଭାବରେ ଅଲ୍ଲାହ ହଜରତ ମହମ୍ମଦଙ୍କୁ ସେହି ଦୁଃଖରୁ ପରିତ୍ରାଣ କରିଥିଲେ ଯାହା ସେ ମକ୍କା ଛାଡ଼ିବା ଯୋଗୁଁ ହୋଇଥିବ । ମକ୍କା ଛାଡ଼ିବା ସମୟରେ ହିଁ ତାଙ୍କୁ ଓହି ମାଧ୍ୟମରେ ସୂଚିତ କରାଯାଇଥିଲା ଯେ ସେ ପୁନର୍ବାର ମକ୍କାକୁ ଫେରିବେ ।

୨. ଏଠାରେ ହଜରତ ଅବୁବକରଙ୍କ ବିଷୟ ସୂଚାଯାଇଛି ଏବଂ ଏକ ପ୍ରାର୍ଥନା ଶିଖାଇ ଦିଆଯାଇଛି ଯେ 'ହେ ଅଲ୍ଲାହ ! ଆମକୁ ନିଜ ସମୀପରୁ ଜଣେ ସଚ୍ଚୋଟ ସାକ୍ଷୀ ଓ ସାହାଯ୍ୟକାରୀ ପ୍ରଦାନ କର' ।

୮୭. ଏବଂ ଆମେ ଇଚ୍ଛା କଲେ ଯାହା କିଛି ତୁମ୍ଭ ପ୍ରତି ଓହି ମାଧ୍ୟମରେ ପ୍ରେରଣ କରିଅଛୁ ତାହାକୁ ନିଶ୍ଚୟ ନେଇଯିବୁ;[୧] ଏହାପରେ ତୁମେ ଏ ସଂକ୍ରାନ୍ତରେ ଆମ୍ଭ ବିରୁଦ୍ଧରେ କୌଣସି ସାହାଯ୍ୟକାରୀ ପାଇବ ନାହିଁ।

وَلَئِنْ شِئْنَا لَنَذْهَبَنَّ بِالَّذِيْٓ اَوْحَيْنَآ اِلَيْكَ ثُمَّ لَا تَجِدُ لَكَ بِهٖ عَلَيْنَا وَكِيْلًا ﴿۸۷﴾

୮୮. କେବଳ ତୁମ୍ଭର ପାଳନକର୍ତ୍ତାଙ୍କ ବିଶେଷ କରୁଣା ଥିଲେ (ଏହା ପ୍ରତ୍ୟାବର୍ତ୍ତିତ ହେବ, କିନ୍ତୁ ଏ ପବିତ୍ର କୋରାନ ବିଲୁପ୍ତ ହେବ ନାହିଁ କାରଣ) ତୁମ୍ଭ ପ୍ରତି ତୁମ୍ଭ ପାଳନକର୍ତ୍ତାଙ୍କର ନିଶ୍ଚିତ ଭାବରେ (ଅଶେଷ) କୃପା ରହିଅଛି।

اِلَّا رَحْمَةً مِّنْ رَّبِّكَ ۭ اِنَّ فَضْلَهٗ كَانَ عَلَيْكَ كَبِيْرًا ﴿۸۸﴾

୮୯. ତୁମେ (ସେମାନଙ୍କୁ) କୁହ, "ଯଦି ସମସ୍ତ ମାନବ ଓ ଜିନ୍ନ୍ ଏହି (ପବିତ୍ର) କୋରାନର ଅନୁରୂପ (ଗ୍ରନ୍ଥ) ଆଣିବାକୁ ଏକତ୍ରିତ ହୁଅନ୍ତି ଓ ସେମାନେ ପରସ୍ପରକୁ ସାହାଯ୍ୟ କରନ୍ତି, ତଥାପି ସେମାନେ ଏହାର ଅନୁରୂପ ଆଣି ପାରିବେ ନାହିଁ।

قُلْ لَّىِٕنِ اجْتَمَعَتِ الْاِنْسُ وَالْجِنُّ عَلٰٓي اَنْ يَّاْتُوْا بِمِثْلِ هٰذَا الْقُرْاٰنِ لَا يَاْتُوْنَ بِمِثْلِهٖ وَلَوْ كَانَ بَعْضُهُمْ لِبَعْضٍ ظَهِيْرًا ﴿۸۹﴾

୯୦. ଏବଂ ଆମେ ଏହି ପବିତ୍ର କୋରାନରେ ବାସ୍ତବିକ ପ୍ରତ୍ୟେକ (ଆବଶ୍ୟକ) ବିଷୟକୁ ବିଭିନ୍ନ ପ୍ରଣାଳୀରେ ବର୍ଣ୍ଣନା କରିଅଛୁ, କିନ୍ତୁ ଅଧିକାଂଶ ଲୋକ (ଏ ସଂକ୍ରାନ୍ତରେ) ଅବଜ୍ଞା (ମୂଳକ ପନ୍ଥା ଗ୍ରହଣ) କରି ପ୍ରତ୍ୟେକ ବିଷୟକୁ ପ୍ରତ୍ୟାଖ୍ୟାନ କରିଛନ୍ତି।

وَلَقَدْ صَرَّفْنَا لِلنَّاسِ فِيْ هٰذَا الْقُرْاٰنِ مِنْ كُلِّ مَثَلٍ ۡ فَاَبٰٓى اَكْثَرُ النَّاسِ اِلَّا كُفُوْرًا ﴿۹۰﴾

୯୧. ଏବଂ ସେମାନେ କହନ୍ତି ଯେ ଆମେମାନେ କଦାପି ତୁମ୍ଭର (କୌଣସି) କଥା ମାନିବୁ ନାହିଁ ଯେ ପର୍ଯ୍ୟନ୍ତ ତୁମେ ଆମମାନଙ୍କ ପାଇଁ ଭୂମିରୁ କୌଣସି ଝରଣା ନିର୍ଗତ ନ କରାଇବ।

وَقَالُوْا لَنْ نُّؤْمِنَ لَكَ حَتّٰى تَفْجُرَ لَنَا مِنَ الْاَرْضِ يَنْۢبُوْعًا ﴿۹۱﴾

୯୨. ଅଥବା ତୁମ୍ଭର ଖଜୁରି ଓ ଅଙ୍ଗୁରର ଏକ ଉଦ୍ୟାନ ଥିବ ଏବଂ ତନ୍ମଧ୍ୟରେ ତୁମେ ଅନେକ ଝରଣା ପ୍ରବାହିତ ନ କରାଇବ ।

اَوْ تَكُوْنَ لَكَ جَنَّةٌ مِّنْ نَّخِيْلٍ وَّعِنَبٍ فَتُفَجِّرَ الْاَنْهٰرَ خِلٰلَهَا تَفْجِيْرًا ﴿۹۲﴾

୯୩. ଅଥବା ତୁମ୍ଭ ଦାବି ଅନୁସାରେ ତୁମେ ଆମମାନଙ୍କ ଉପରେ ଆକାଶକୁ ଖଣ୍ଡ (ବିଖଣ୍ଡ)[୨] କରି ନିକ୍ଷେପ ନ କରିବ ଅଥବା ଅଲ୍ଲାହ ଓ ଦେବଦୂତମାନଙ୍କୁ (ଆମମାନଙ୍କ) ସମ୍ମୁଖରେ ଦଣ୍ଡାୟମାନ ନ କରାଇବ।

اَوْ تُسْقِطَ السَّمَاۗءَ كَمَا زَعَمْتَ عَلَيْنَا كِسَفًا اَوْ تَاْتِيَ بِاللّٰهِ وَالْمَلٰۗىِٕكَةِ قَبِيْلًا ﴿۹۳﴾

---

୧. ଏଠାରେ ଏକ ଭବିଷ୍ୟବାଣୀର ସୂଚନା ଦିଆଯାଇଛି। ସମୟ ଆସିବ ଯେତେବେଳେ କୋରାନର ଶିକ୍ଷା ଧରାପୃଷ୍ଠରୁ ଉଠିଯିବ ଅର୍ଥାତ୍ ଇସଲାମ ଧର୍ମର ସାରକଥା ଓ ଅନ୍ତରାତ୍ମା ଅଦୃଶ୍ୟ ହୋଇଯିବ ଏବଂ ଅଧିକାଂଶ ତଥାକଥିତ ମୁସଲମାନ ଧର୍ମ-ପଣ୍ଡିତମାନେ ନିଜକୁ ଯେତେ ବଡ଼ ଦାବି କରୁଥିଲେ ମଧ୍ୟ ତାହାକୁ ପୁନଃପ୍ରତିଷ୍ଠା କରିପାରିବେ ନାହିଁ।

୨. ଅର୍ଥାତ୍ ଶାସ୍ତି। ବିଶଦ ବିବରଣୀ ପାଇଁ ୩୪:୧୦ ଦ୍ରଷ୍ଟବ୍ୟ।

ଅَوْ يَكُونَ لَكَ بَيْتٌ مِّن زُخْرُفٍ أَوْ تَرْقَىٰ فِي السَّمَاءِ وَلَن نُّؤْمِنَ لِرُقِيِّكَ حَتَّىٰ تُنَزِّلَ عَلَيْنَا كِتَابًا نَّقْرَؤُهُ ۗ قُلْ سُبْحَانَ رَبِّي هَلْ كُنتُ إِلَّا بَشَرًا رَّسُولًا ﴿٩٣﴾

୯୪. ଅଥବା ତୁମ୍ଭର କୌଣସି ସ୍ୱର୍ଣ୍ଣ ନିର୍ମିତ ଗୃହ ଥିବ ବା ତୁମେ ଆକାଶକୁ ଆରୋହଣ[1] କରିବ, ଏବଂ ଆମେମାନେ ତୁମ୍ଭର (ଆକାଶକୁ) ଆରୋହଣ କରିବା ସତ୍ତ୍ୱେ ବିଶ୍ୱାସ କରିବୁ ନାହିଁ,ଯେ ପର୍ଯ୍ୟନ୍ତ ତୁମେ ଆରୋହଣ କରିବା ପରେ ଆମମାନଙ୍କ ପାଇଁ କୌଣସି (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ ନ କରିବ ଯାହାକୁ ଆମେମାନେ (ନିଜେ) ପାଠ କରିବୁ ; ତୁମେ (ସେମାନଙ୍କୁ) କୁହ, "ଆମ୍ଭର ପାଳନକର୍ତ୍ତା (ଏପରି ଅଯଥା କଥା କହନ୍ତି ନାହିଁ, ବରଂ ସେ) ପବିତ୍ର ଅଟନ୍ତି ; ଆମେ (ତ) କେବଳ ମାନବ[2] (ରୂପୀ) ରସୁଲ ଅଟୁ (ତେଣୁ ସଶରୀରେ ଆକାଶକୁ ଯିବା ଅସମ୍ଭବ) ।"

ରୁ:୧୧

وَمَا مَنَعَ النَّاسَ أَن يُؤْمِنُوا إِذْ جَاءَهُمُ الْهُدَىٰ إِلَّا أَن قَالُوا أَبَعَثَ اللَّهُ بَشَرًا رَّسُولًا ﴿٩٤﴾

୯୫. ଏବଂ ସେ ଲୋକମାନଙ୍କ ନିକଟକୁ ଆସିଥିବା ଉପଦେଶ ସଂକ୍ରାନ୍ତରେ ବିଶ୍ୱାସ କରିବାକୁ କେବଳ ଏହି ବିଷୟ ନିଷିଦ୍ଧ କରିଅଛି ଯେ ସେମାନେ କହନ୍ତି, "କ'ଣ ଅଲ୍ଲାହ ଜଣେ ମାନବକୁ ରସୁଲ ରୂପେ ପ୍ରେରଣ କରିଛନ୍ତି ?"

قُل لَّوْ كَانَ فِي الْأَرْضِ مَلَائِكَةٌ يَمْشُونَ مُطْمَئِنِّينَ لَنَزَّلْنَا عَلَيْهِم مِّنَ السَّمَاءِ مَلَكًا رَّسُولًا ﴿٩٥﴾

୯୬. ତୁମେ (ସେମାନଙ୍କୁ) କୁହ, "ଯଦି ଭୂପୃଷ୍ଠରେ ରହି ଦେବଦୂତମାନେ ନିର୍ବିଘ୍ନରେ ଚଳପ୍ରଚଳ ହେଉଥା'ନ୍ତେ, ତେବେ ଆମେ ନିଶ୍ଚୟ ସେମାନଙ୍କ ପ୍ରତି ଆକାଶରୁ କୌଣସି ଦେବଦୂତଙ୍କୁ ରସୁଲ ରୂପେ ପ୍ରେରଣ କରିଥା'ନ୍ତୁ ।"

قُلْ كَفَىٰ بِاللَّهِ شَهِيدًا بَيْنِي وَبَيْنَكُمْ ۚ إِنَّهُ كَانَ بِعِبَادِهِ خَبِيرًا بَصِيرًا ﴿٩٦﴾

୯୭. ତୁମେ (ସେମାନଙ୍କୁ) କୁହ, "ଆମ ମଧ୍ୟରେ ଓ ତୁମମାନଙ୍କ ମଧ୍ୟରେ ସାକ୍ଷୀ ସ୍ୱରୂପ ଅଲ୍ଲାହ ହିଁ ଯଥେଷ୍ଟ ; ସେ ନିଜ ଭକ୍ତମାନଙ୍କୁ ଉତ୍ତମ ରୂପେ ଜାଣନ୍ତି ଓ ସବୁ କିଛି ଦେଖନ୍ତି ।"

وَمَن يَهْدِ اللَّهُ فَهُوَ الْمُهْتَدِ ۖ وَمَن يُضْلِلْ فَلَن تَجِدَ لَهُمْ أَوْلِيَاءَ مِن دُونِهِ ۖ وَنَحْشُرُهُمْ يَوْمَ الْقِيَامَةِ عَلَىٰ وُجُوهِهِمْ عُمْيًا وَبُكْمًا وَصُمًّا ۖ مَّأْوَاهُمْ جَهَنَّمُ ۖ كُلَّمَا خَبَتْ زِدْنَاهُمْ سَعِيرًا ﴿٩٧﴾

୯୮. ଏବଂ ଯାହାକୁ ଅଲ୍ଲାହ ସତ୍‌ପଥ ପ୍ରଦର୍ଶନ କରନ୍ତି, ସେ ହି ସତ୍‌ପଥରେ ଥାଏ ; ଏବଂ ଯାହାକୁ ସେ ବିପଥଗାମୀ କରାନ୍ତି, ତୁମେ (ତାହା ପାଇଁ) ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ) ପରିବର୍ତ୍ତେ କୌଣସି ସାହାଯ୍ୟକାରୀ ପାଇବ ନାହିଁ ; ଏବଂ କୟାମତ ଦିନ ଆମେ ସେମାନଙ୍କୁ ସେମାନଙ୍କ ଉଦ୍ଦେଶ୍ୟ ମୁତାବକ ଅନ୍ଧ, ମୂକ ଓ ବଧିର ଅବସ୍ଥାରେ ଏକତ୍ରିତ କରିବୁ ; ଏମାନଙ୍କର ବାସସ୍ଥାନ ନରକ ହେବ ; ଯେତେବେଳେ ଏହା (ଅର୍ଥାତ୍ ନରକାଗ୍ନି) ନିସ୍ତେଜ ହୋଇ ଯାଉଥିବ ସେତେବେଳେ (ନରକ) ଅଗ୍ନିକୁ ସେମାନଙ୍କ ପାଇଁ ପ୍ରଜ୍ୱଳିତ କରାହେବ ।

---

୧. ଏହି ଆୟତରୁ ସ୍ପଷ୍ଟ ଜଣାପଡୁଛି ଯେ 'ମେରାଜ' ବିଷୟକ ଅଲୌକିକ ଘଟଣା ଅବିଶ୍ୱାସକାରୀଙ୍କ ବିଶ୍ୱାସ ପାଇଁ ପର୍ଯ୍ୟାପ୍ତ ନଥିଲା । ସେମାନେ ଏହି ବିଷୟ ଉପରେ ଅଡ଼ି ବସିଥିଲେ ଯେ ଆକାଶ ଉପରକୁ ଯିବା ବିଷୟକୁ ଆମେ ସେତେବେଳେ ମାନିବୁ ଯେତେବେଳେ ସେ ଏକ ଗ୍ରନ୍ଥ ମଧ୍ୟ ଅବତରଣ କରାଇ ଆଣିବେ ଯାହାକୁ ଆମେ ନିଜେ ଛୁଇଁପାରିବୁ, ଦେଖିପାରିବୁ ଓ ପଢ଼ିପାରିବୁ ଅନ୍ୟଥା ସେ ଆକାଶକୁ ଯାଇଥିଲେ ବୋଲି କେବଳ କହିଦେଲେ ଏହା ଆମ ପାଇଁ ଯଥେଷ୍ଟ ହେବ ନାହିଁ ।

୨. ଅର୍ଥାତ୍ ମାନବଦେହଧାରୀ ରସୁଲ ଆକାଶକୁ ଯାଇପାରିବ ନାହିଁ । ଆଶ୍ଚର୍ଯ୍ୟର କଥା ହେଉଛି ଯେ ଏହା ସତ୍ତ୍ୱେ ମୁସଲମାନମାନେ ହଜରତ ଈସାଙ୍କୁ ପାର୍ଥିବ ଦେହରେ ଆକାଶରେ ଥିବାର ସ୍ୱୀକାର କରୁଛନ୍ତି ଅଥଚ ପବିତ୍ର କୋରାନ ଅନୁସାରେ ସେ ଥିଲେ ଜଣେ ମାନବଦେହଧାରୀ ରସୁଲ ।

ذٰلِكَ جَزَآؤُهُمْ بِاَنَّهُمْ كَفَرُوْا بِاٰيٰتِنَا وَقَالُوْٓا ءَاِذَا كُنَّا عِظَامًا وَّرُفَاتًا ءَاِنَّا لَمَبْعُوْثُوْنَ خَلْقًا جَدِيْدًا

୯୯ . ଏହା (ଅର୍ଥାତ୍ ନରକାଗ୍ନି) ସେମାନଙ୍କ (କର୍ମର) ପ୍ରତିଫଳ ; କାରଣ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲେ ଓ କହିଥିଲେ, "ଯେତେବେଳେ ଆମେମାନେ (ମଲା ପରେ) ହାଡ଼ରେ ପରିଣତ ହୋଇଯିବୁ ଓ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବୁ, ସେତେବେଳେ କ'ଣ ବାସ୍ତବରେ ଆମମାନଙ୍କୁ (ପୁନର୍ଜୀବିତ କରାଯାଇ) ଏକ ନୂତନ ସୃଷ୍ଟି ରୂପେ ଉତ୍ଥିତ କରାହେବ ?"

اَوَلَمْ يَرَوْا اَنَّ اللّٰهَ الَّذِيْ خَلَقَ السَّمٰوٰتِ وَالْاَرْضَ قَادِرٌ عَلٰٓى اَنْ يَّخْلُقَ مِثْلَهُمْ وَجَعَلَ لَهُمْ اَجَلًا لَّا رَيْبَ فِيْهِ ؕ فَاَبَى الظّٰلِمُوْنَ اِلَّا كُفُوْرًا

୧୦୦. ତେବେ କ'ଣ ସେମାନେ (ଏ ପର୍ଯ୍ୟନ୍ତ) ବୁଝି ପାରିଲେ ନାହିଁ ଯେ ଅଲ୍ଲାହ୍, ଯିଏ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ସେ ସେମାନଙ୍କ ସଦୃଶ (ନୂତନ ମାନବ ମଧ୍ୟ) ସୃଷ୍ଟି କରିବାକୁ ସକ୍ଷମ ? ଏବଂ ଏହା ନିଃସନ୍ଦେହ ଯେ ସେ ସେମାନଙ୍କ ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ସ୍ଥିର କରିଛନ୍ତି, ତଥାପି ଏହି ଅତ୍ୟାଚାରୀମାନେ କେବଳ ଅବିଶ୍ୱାସର ପନ୍ଥା ଅବଲମ୍ବନ କରିଛନ୍ତି ।

قُلْ لَّوْ اَنْتُمْ تَمْلِكُوْنَ خَزَآئِنَ رَحْمَةِ رَبِّيْٓ اِذًا لَّاَمْسَكْتُمْ خَشْيَةَ الْاِنْفَاقِ ؕ وَكَانَ الْاِنْسَانُ قَتُوْرًا

୧୦୧ . ତୁମେ (ସେମାନଙ୍କୁ) କୁହ, "ଯଦି ତୁମେମାନେ ଆମ୍ଭ ପାଳନକର୍ତ୍ତାଙ୍କର (ଅସରନ୍ତି) କୃପା ଭଣ୍ଡାରର ଅଧିକାରୀ ହୋଇଥା'ନ୍ତ, ତେବେ ତୁମେମାନେ (ତାହା) ଖର୍ଚ୍ଚ ହୋଇଯିବା ଭୟରେ ନିଶ୍ଚୟ (ତାହାକୁ) ଅଟକାଇ ରଖନ୍ତ, ଏବଂ ମନୁଷ୍ୟ ଅତିଶୟ କୃପଣ ଅଟେ ।

وَلَقَدْ اٰتَيْنَا مُوْسٰى تِسْعَ اٰيٰتٍ ۢ بَيِّنٰتٍ فَسْـَٔلْ بَنِيْٓ اِسْرَآءِيْلَ اِذْ جَآءَهُمْ فَقَالَ لَهٗ فِرْعَوْنُ اِنِّيْ لَاَظُنُّكَ يٰمُوْسٰى مَسْحُوْرًا

୧୦୨ : ଏବଂ ଆମ୍ଭେ ମୁସାଙ୍କୁ ନଅ ଗୋଟି[୧] ଉଜ୍ଜ୍ୱଳ ନିଦର୍ଶନ ପ୍ରଦାନ କରିଥିଲୁ ; ସୁତରାଂ ତୁମେ ଇସ୍ରାଇଲୀୟ ସନ୍ତାନମାନଙ୍କୁ (ଏ ବିଷୟରେ) ପଚାର ; ଯେତେବେଳେ ସେ (ଅର୍ଥାତ୍ ମୁସା) ସେମାନଙ୍କ (ଅର୍ଥାତ୍ ମିଶରବାସୀଙ୍କ) ନିକଟକୁ ଆସିଥିଲେ, ସେତେବେଳେ ଫିରଔନ ତାହାଙ୍କୁ କହିଥିଲା, "ହେ ମୁସା ! ମୁଁ ବସ୍ତୁତଃ ତୁମଙ୍କୁ ଜଣେ ପ୍ରତାରିତ ବ୍ୟକ୍ତି ବୋଲି ମନେ କରୁଅଛି ।"

قَالَ لَقَدْ عَلِمْتَ مَآ اَنْزَلَ هٰٓؤُلَآءِ اِلَّا رَبُّ السَّمٰوٰتِ وَالْاَرْضِ بَصَآئِرَ ۚ وَاِنِّيْ لَاَظُنُّكَ يٰفِرْعَوْنُ مَثْبُوْرًا

୧୦୩ . ସେ ଉତ୍ତର ଦେଲେ, "ତୁମେ ଅବଶ୍ୟ ଜାଣ ଯେ ଏ (ନିଦର୍ଶନ) ଗୁଡ଼ିକୁ କେବଳ ଆକାଶ ଓ ପୃଥିବୀର ପାଳନକର୍ତ୍ତା ଆଲୋକ ପ୍ରଦାୟକ ଭାବରେ ଅବତୀର୍ଣ୍ଣ କରିଛନ୍ତି ; ଏବଂ ହେ ଫିରଔନ ! ଆମ୍ଭେ ତୁମ୍ଭ ସମ୍ବନ୍ଧରେ ବିଶ୍ୱାସ କରୁଅଛୁ ଯେ ତୁମେ (ନିଜ ମନ୍ଦ ଅଭିଳାଷରେ) ନିଶ୍ଚୟ ଅସଫଳ ଓ ନିରାଶ ହେବ ।"

---

୧. ଅର୍ଥାତ୍ (କ) ଲାଠି (ଖ) ହାତ ଧଳା ପଡ଼ିଯିବା (ଗ) ମରୁଡ଼ି (ଘ) ଫସଲହାନି (ଙ) ଝଡ଼ (ଚ) ପଙ୍ଗପାଳ (ଛ) ଉକୁଣି (ଜ) ବେଙ୍ଗ (ଝ) ରକ୍ତ । ଏଗୁଡ଼ିକ କୋରାନ ବର୍ଣ୍ଣିତ ନିଦର୍ଶନ । (୭ : ୧୩୪ ଦ୍ରଷ୍ଟବ୍ୟ)

فَاَرَادَ اَنْ يَّسْتَفِزَّهُمْ مِّنَ الْاَرْضِ فَاَغْرَقْنٰهُ وَمَنْ مَّعَهٗ جَمِيْعًا ﴿١٠٤﴾

୧୦୪. ତେଣୁ ସେ ସେମାନଙ୍କୁ (ଅର୍ଥାତ୍ ମୁସା ଓ ତାହାଙ୍କ ସମ୍ପ୍ରଦାୟଙ୍କୁ) ଦେଶରୁ ବିତାଡ଼ିତ କରିବାକୁ ଇଚ୍ଛା କରିଥିଲା ; ପରିଣାମ ସ୍ୱରୂପ, ଆମେ ତାହାକୁ ଓ ତାହାର ସାଥୀମାନଙ୍କୁ ଜଳରେ ବୁଡ଼ାଇ ଦେଲୁ ।

وَّقُلْنَا مِنْۢ بَعْدِهٖ لِبَنِيْٓ اِسْرَآءِيْلَ اسْكُنُوا الْاَرْضَ فَاِذَا جَآءَ وَعْدُ الْاٰخِرَةِ جِئْنَا بِكُمْ لَفِيْفًا ﴿١٠٥﴾

୧୦୫. ତା' (ବୁଡ଼ି ମରିବା) ପରେ ଆମେ ଇସ୍ରାଇଲୀୟ ସନ୍ତାନମାନଙ୍କୁ କହିଲୁ, "ତୁମେମାନେ ଏହି (ପ୍ରତିଶ୍ରୁତ ପାଲେଷ୍ଟାଇନ) ଦେଶରେ (ନିର୍ଭୟରେ) ବାସ କର ; ତା'ପରେ ଯେତେବେଳେ (ମୁସଲମାନମାନଙ୍କ ସକାଶେ) ଦ୍ୱିତୀୟ ଥରେ[1] (ଶାସ୍ତି ବିଷୟକ) ଅଂଗୀକାର (ପାଳିତ ହେବା ସମୟ) ଉପସ୍ଥିତ ହେବ, ସେତେବେଳେ ଆମେ ତୁମମାନଙ୍କୁ ସବୁଆଡୁ ଏକତ୍ରିତ କରି ସେଠାକୁ ନେଇ ଆସିବୁ ।"

وَبِالْحَقِّ اَنْزَلْنٰهُ وَبِالْحَقِّ نَزَلَ ؕ وَمَآ اَرْسَلْنٰكَ اِلَّا مُبَشِّرًا وَّنَذِيْرًا ﴿١٠٦﴾ وقف لازم

୧୦୬. ଏବଂ ଆମେ ଏହାକୁ (ଅର୍ଥାତ୍ କୋରାନକୁ) ସତ୍ୟ (ଓ ତତ୍ତ୍ୱ) ସହିତ ଅବତୀର୍ଣ୍ଣ କରିଅଛୁ, ଏବଂ ଏହା ସତ୍ୟ (ଓ ତତ୍ତ୍ୱ) ସମ୍ବଳିତ ହୋଇ ଅବତୀର୍ଣ୍ଣ ହୋଇଅଛି, ଏବଂ ଆମେ ତୁମଙ୍କୁ କେବଳ ସୁସମାଚାରଦାତା ଓ ସତର୍କକାରୀ ରୂପେ ପ୍ରେରଣ କରିଅଛୁ ।

وَقُرْاٰنًا فَرَقْنٰهُ لِتَقْرَاَهٗ عَلَى النَّاسِ عَلٰى مُكْثٍ وَّنَزَّلْنٰهُ تَنْزِيْلًا ﴿١٠٧﴾

୧୦୭. ଏବଂ ଆମେ କୋରାନକୁ ଖଣ୍ଡ ଖଣ୍ଡ କରି ପ୍ରକାଶ କରିଅଛୁ ଯେପରି ତୁମେ ଏହାକୁ ଆସ୍ତେ (ଓ ସହଜରେ) ଲୋକମାନଙ୍କ ନିକଟରେ ପାଠକରି ଶୁଣାଇ ପାରିବ, ଏବଂ ଆମେ ଏହାକୁ କ୍ରମଶଃ ଅବତୀର୍ଣ୍ଣ କରିଅଛୁ ।

قُلْ اٰمِنُوْا بِهٖٓ اَوْ لَا تُؤْمِنُوْا ؕ اِنَّ الَّذِيْنَ اُوْتُوا الْعِلْمَ مِنْ قَبْلِهٖٓ اِذَا يُتْلٰى عَلَيْهِمْ يَخِرُّوْنَ لِلْاَذْقَانِ سُجَّدًا ﴿١٠٨﴾

୧୦୮. ଏବଂ ତୁମେ (ସେମାନଙ୍କୁ) କୁହ, "ତୁମେମାନେ ଏହା ପ୍ରତି ବିଶ୍ୱାସ କର ବା ନକର, ଏହା (ଅବତୀର୍ଣ୍ଣ ହେବା) ପୂର୍ବରୁ ଯେଉଁମାନଙ୍କୁ (ଏ ସଂକ୍ରାନ୍ତରେ) ଜ୍ଞାନ ପ୍ରଦାନ କରାଯାଇ ଥିଲା, ସେମାନଙ୍କ ନିକଟରେ ଏହାକୁ ଆବୃତ୍ତି କରାଯିବା ବେଳେ ସେମାନେ (ଏହାକୁ ଶ୍ରବଣ କରି) ସମ୍ପୂର୍ଣ୍ଣ ଆଜ୍ଞାବହ ଭାବରେ ନତମସ୍ତକ[2] ହୋଇ ସିଜଦାରେ ପଡ଼ି ଯାଆନ୍ତି ।

---

୧. ଏହି ଆୟତରେ 'ପ୍ରତିଶ୍ରୁତ ଦେଶ' ଅର୍ଥ ପାଲେଷ୍ଟାଇନ । ଏଠାରେ ପ୍ରଥମେ 'ୱାଦୁଲ୍ ଆଖେରତ୍' (ଶେଷ ପ୍ରତିଶ୍ରୁତି) ଉଲ୍ଲେଖ କରାଯାଇଛି ଯାହାକି ଇହୁଦୀମାନଙ୍କୁ ସଂପୃକ୍ତ କରୁଛି । ଏହାପରେ ଯେହେତୁ ପୁନରାୟ ସେହି ଶବ୍ଦାବଳୀର ଉଲ୍ଲେଖ ଅଛି ତେଣୁ ସୁସ୍ପଷ୍ଟଭାବରେ ଜଣାପଡୁଛି ଯେ ଏହା ଏପରି ଅନ୍ୟ ଏକ ପ୍ରତିଶ୍ରୁତି ଯାହାକି ମୁସଲମାନମାନଙ୍କ ସଂକ୍ରାନ୍ତରେ ହୋଇପାରେ । ସେହିହେତୁ ଆମେ ବନ୍ଧନୀ ମଧ୍ୟରେ 'ମୁସଲମାନ' ଶବ୍ଦ ରଖିଅଛୁ । ପ୍ରାକ୍ତନ ଟୀକାକାରମାନେ ମଧ୍ୟ ଏ ବିଷୟ ଦର୍ଶାଇଛନ୍ତି । (ଫତହୁଲ୍ ବୟାନ୍ ଦ୍ରଷ୍ଟବ୍ୟ । ଏହା ବାସ୍ତବରେ ଅଲ୍ଲାମା ସୁକାନୀଙ୍କ ଦ୍ୱାରା ରଚିତ) ।

ବସ୍ତୁତଃ ଇହୁଦୀମାନଙ୍କୁ ତୃତୀୟ ଥର ପାଇଁ ପାଲେଷ୍ଟାଇନ ଅଣାଯିବ । ବେଲଫୋର ଘୋଷଣା ଅନୁଯାୟୀ ସାରା ପୃଥିବୀର ବିଭିନ୍ନ ସ୍ଥାନରୁ ଇହୁଦୀମାନଙ୍କୁ ଅଣାଯାଇ ତଥାକଥିତ ଇସ୍ରାଏଲ ରାଜ୍ୟ ଗଠିତ ହୋଇଛି ଓ ଆଲୋଚ୍ୟ ଭବିଷ୍ୟବାଣୀର ସତ୍ୟତା ପ୍ରମାଣିତ ହୋଇଛି ।

୨. ଆରବୀ ଭାଷାଶୈଳୀରେ ଏଠାରେ 'ମୁଖ' ଶବ୍ଦର ପ୍ରୟୋଗ କରାଯାଇଛି । କାରଣ ସିଜ୍‌ଦା କରିବାକୁ ଆରବୀ ଭାଷାରେ ମୁଖ ଅବନତ କରିବା କୁହାଯାଏ । କିନ୍ତୁ ଓଡ଼ିଆ ଭାଷାରେ ମସ୍ତକ ଅବନତ କରିବା ପ୍ରୟୋଗ କଲେ ପ୍ରକୃତ ଅର୍ଥ ବୁଝି ହେବ । ତେଣୁ ଅନୁବାଦରେ ତଦନୁସାରେ 'ନତମସ୍ତକ' ଶବ୍ଦ ପ୍ରୟୋଗ କରାଯାଇଛି ।

وَيَقُولُونَ سُبْحٰنَ رَبِّنَآ إِن كَانَ وَعْدُ رَبِّنَا لَمَفْعُولًا ﴿١٠٩﴾

୧୦୯. ଏବଂ (ସେମାନେ) କହନ୍ତି, "ଆମମାନଙ୍କ ପାଳନକର୍ତ୍ତା ପବିତ୍ର ; ଏବଂ ଆମମାନଙ୍କ ପାଳନକର୍ତ୍ତାଙ୍କର ଅଂଗୀକାର ଅବଶ୍ୟ [1] ପାଳିତ ହେବ ।

وَيَخِرُّونَ لِلْأَذْقَانِ يَبْكُونَ وَيَزِيدُهُمْ خُشُوعًا ﴿١١٠﴾ السجدة

୧୧୦. ଏବଂ ଯେତେବେଳେ ସେମାନେ ନତମସ୍ତକ ହୋଇ (ସିଜଦାରେ) ପଡ଼ି ଯାଆନ୍ତି, ସେତେବେଳେ କାନ୍ଦିବାକୁ ଲାଗନ୍ତି, ଏବଂ ଏହା (ଅର୍ଥାତ୍ କୋରାନ) ସେମାନଙ୍କର ବିନମ୍ରତାକୁ (ଆହୁରି) ବୃଦ୍ଧି କରେ ।

قُلِ ادْعُوا اللّٰهَ أَوِ ادْعُوا الرَّحْمٰنَ أَيًّا مَّا تَدْعُوا فَلَهُ الْأَسْمَآءُ الْحُسْنٰى وَلَا تَجْهَرْ بِصَلَاتِكَ وَلَا تُخَافِتْ بِهَا وَابْتَغِ بَيْنَ ذٰلِكَ سَبِيلًا ﴿١١١﴾

୧୧୧. ତୁମେ (ସେମାନଙ୍କୁ) [2] କୁହ, "ତୁମେମାନେ (ତାହାକୁ) ଅଲ୍ଲାହ୍ ନାମରେ ଡାକ ବା ରହମାନ ନାମରେ, ଯେଉଁ ନାମରେ ତୁମେମାନେ ଡାକିଲେ ମଧ୍ୟ ସକଳ ଉତ୍କୃଷ୍ଟ (ଗୁଣବାଚକ) ନାମ ତାହାଙ୍କ ସକାଶେ ଉଦ୍ଦିଷ୍ଟ ;" ଏବଂ ତୁମେ ନିଜ ପ୍ରାର୍ଥନା ଉଚ୍ଚ ସ୍ୱରରେ କର ନାହିଁ କି (ଅତି) ନିମ୍ନ ସ୍ୱରରେ କର ନାହିଁ, ବରଂ ମଧ୍ୟମ [3] ପନ୍ଥା ଅବଲମ୍ବନ କର ।

وَقُلِ الْحَمْدُ لِلّٰهِ الَّذِي لَمْ يَتَّخِذْ وَلَدًا وَلَمْ يَكُن لَّهُ شَرِيكٌ فِي الْمُلْكِ وَلَمْ يَكُن لَّهُ وَلِيٌّ مِّنَ الذُّلِّ وَكَبِّرْهُ تَكْبِيرًا ﴿١١٢﴾

୧୧୨. ତୁମେ (ସମସ୍ତଙ୍କୁ) କୁହ, "ଅଲ୍ଲାହ୍ ହି ସକଳ ପ୍ରଶଂସାର ପାତ୍ର ଯେ (କି ନିଜ ପାଇଁ କୌଣସି ପୁତ୍ର) ସନ୍ତାନ ଗ୍ରହଣ କରି ନାହାନ୍ତି କି ତାଙ୍କ ରାଜତ୍ୱରେ ତାଙ୍କର କେହି ଅଂଶୀଦାର ନାହିଁ ; ଏବଂ ସେ ଏପରି ଦୁର୍ବଳ ନୁହନ୍ତି ଯେ ତାହାଙ୍କ ପାଇଁ କୌଣସି (ସାହାଯ୍ୟକାରୀ) ବନ୍ଧୁର ଆବଶ୍ୟକତା ଅଛି, (ବସ୍ତୁତଃ ଯେ ତାହାଙ୍କର ବନ୍ଧୁ, ସେ ହିଁ ତାହାଙ୍କ-ଠାରୁ ସାହାଯ୍ୟ ପାଇଥାଏ) ;" ଏବଂ ଉତ୍ତମ ରୂପେ ତାହାଙ୍କର ମହିମା ଗାନ କର ।

---

୧. ଏଥିରୁ ଜଣାପଡୁଛି ଯେ ଯେଉଁ ଇହୁଦୀମାନେ ପବିତ୍ର କୋରାନରେ ବିଶ୍ୱାସ କରନ୍ତି ସେମାନେ ପାଲେଷ୍ଟାଇନକୁ ଫେରିଆସିବେ ବୋଲି ମଧ୍ୟ ବିଶ୍ୱାସ କରନ୍ତି ।

୨. ଅର୍ଥାତ୍ ଖ୍ରୀଷ୍ଟିୟାନମାନେ । ସେମାନେ ଇହୁଦୀମାନଙ୍କର ଅଂଶବିଶେଷ । ସେମାନେ ଅଲ୍ଲାହ୍‌ଙ୍କୁ 'ରହମାନ' ଅର୍ଥାତ୍ ଅଶେଷ ଦୟାବାନ୍ ବୋଲି ଗ୍ରହଣ କରନ୍ତି ନାହିଁ । ତେଣୁ ସେମାନଙ୍କ ଗ୍ରନ୍ଥରେ 'ବିସମିଲ୍ଲାହ୍' ଶବ୍ଦର ଉଲ୍ଲେଖ ଥିଲେ ମଧ୍ୟ ରହମାନ ଶବ୍ଦର ଉଲ୍ଲେଖ ନାହିଁ । ସେମାନେ ସେହି ଶବ୍ଦଟିକୁ ଏଥିଯୋଗୁଁ ଲୋପ କରିଦେଇଛନ୍ତି ଯେ ତାହା 'କଫାରା' ଅର୍ଥାତ୍ ପ୍ରାୟଶ୍ଚିତ ମତବାଦର ପରିପନ୍ଥୀ ।

୩. ଖୁବ୍ ଉଚ୍ଚ ସ୍ୱରରେ ପ୍ରାର୍ଥନା କରିବାକୁ ଏଥିଯୋଗୁଁ ମନା କରାଯାଇଛି । ତଦ୍ୱାରା ପ୍ରାର୍ଥନା ଲୋକଦେଖାଣିଆ ହୋଇ ଯାଇପାରେ । ସେହିପରି ଅତ୍ୟନ୍ତ ନିମ୍ନ ସ୍ୱରରେ ପ୍ରାର୍ଥନା କରିବାକୁ ଏଥିଯୋଗୁଁ ମନା କରାଯାଇଛି ଯେ ଅତି ଧୀର ସ୍ୱରରେ ପାଠକଲେ ଭୁଲ ହୋଇଯିବାର ସମ୍ଭାବନା ଅଛି ଏବଂ ଏତଦ୍ୱାରା ପ୍ରାର୍ଥନାକାରୀର ଧ୍ୟାନ ବିକ୍ଷିପ୍ତ ହୋଇଯିବାର ମଧ୍ୟ ସମ୍ଭାବନା ଅଛି ।

سُوْرَةُ الْكَهْفِ مَكِّيَّةٌ (١٨)

## ଅଲ— କହଫ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୧୧୧ଟି ଆୟତ ଓ ୧୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

اَلْحَمْدُ لِلّٰهِ الَّذِيْٓ اَنْزَلَ عَلٰى عَبْدِهِ الْكِتٰبَ وَلَمْ يَجْعَلْ لَّهٗ عِوَجًا ②

୨. ଅଲ୍ଲାହ୍ ହିଁ ସକଳ ପ୍ରଶଂସାର ପାତ୍ର ଯେ (ଏହି ଧର୍ମ) ଗ୍ରନ୍ଥ ନିଜ ଭକ୍ତଙ୍କ ପ୍ରତି ଅବତୀର୍ଣ୍ଣ କରିଛନ୍ତି ଏବଂ ସେ ଏଥିରେ କୌଣସି କୁଟିଳତା ରଖି ନାହାନ୍ତି ।

قَيِّمًا لِّيُنْذِرَ بَاْسًا شَدِيْدًا مِّنْ لَّدُنْهُ وَيُبَشِّرَ الْمُؤْمِنِيْنَ الَّذِيْنَ يَعْمَلُوْنَ الصّٰلِحٰتِ اَنَّ لَهُمْ اَجْرًا حَسَنًا ③

୩. (ଏବଂ ସେ ଏହାକୁ) ସତ୍ୟ ଉପରେ ଆଧାରିତ ଓ ଉଚିତ ଦିଗ୍‌ଦର୍ଶନକାରୀ ଭାବରେ ଅବତୀର୍ଣ୍ଣ କରିଛନ୍ତି, ଯଦ୍ଦ୍ୱାରା ଏହା (ଲୋକମାନଙ୍କୁ) ତାହାଙ୍କ (ଅର୍ଥାତ୍ ଅଲ୍ଲାହ୍‌ଙ୍କ) ତରଫରୁ ପ୍ରେରିତ ଏକ କଠୋର ଶାସ୍ତି ସମ୍ବନ୍ଧରେ ଅବଗତ କରାଇବ, ଓ ଯେଉଁ ବିଶ୍ୱାସକାରୀମାନେ ସତ୍ କର୍ମ କରନ୍ତି ସେମାନଙ୍କୁ ସୁସମାଚାର ପ୍ରଦାନ କରିବ ଯେ ସେମାନଙ୍କ ପାଇଁ (ଅଲ୍ଲାହ୍‌ଙ୍କ ତରଫରୁ) ଉତ୍ତମ ପୁରସ୍କାର ରହିଅଛି ।

مّٰكِثِيْنَ فِيْهِ اَبَدًا ④

୪. ସେମାନେ ସେଠାରେ (ଅର୍ଥାତ୍ ବୈକୁଣ୍ଠରେ) ସର୍ବଦା ରହିବେ ।

وَّيُنْذِرَ الَّذِيْنَ قَالُوا اتَّخَذَ اللّٰهُ وَلَدًا ⑤

୫. ଏବଂ (ଏହାକୁ ଏଥି ସକାଶେ ଅବତୀର୍ଣ୍ଣ କରିଛନ୍ତି ଯେ) ଏହା ସେହି ଲୋକମାନଙ୍କୁ (ଆଗାମୀ ଶାସ୍ତି ସମ୍ବନ୍ଧରେ) ସତର୍କ କରିବ ଯେଉଁମାନେ କହନ୍ତି ଯେ ଅଲ୍ଲାହ୍ (ଅମୁକ ବ୍ୟକ୍ତିଙ୍କୁ) ନିଜର ପୁତ୍ର (ରୂପେ) ଗ୍ରହଣ କରିଛନ୍ତି ।

مَا لَهُمْ بِهٖ مِنْ عِلْمٍ وَّلَا لِاٰبَآئِهِمْ ؕ كَبُرَتْ كَلِمَةً تَخْرُجُ مِنْ اَفْوَاهِهِمْ ؕ اِنْ يَّقُوْلُوْنَ اِلَّا كَذِبًا ⑥

୬. ଏ ବିଷୟରେ ସେମାନଙ୍କର ତ କୌଣସି ଜ୍ଞାନ ନାହିଁ କି ସେମାନଙ୍କ ପୂର୍ବ ପୁରୁଷମାନଙ୍କର (ମଧ୍ୟ କୌଣସି ଜ୍ଞାନ ନ ଥିଲା) ; ସେମାନେ ଯାହା କହୁଛନ୍ତି ତାହା ଏକ ବଡ଼ (ବିପଜ୍ଜନକ) ବିଷୟ ଅଟେ ; (ବରଂ) ସେମାନେ କେବଳ ମିଥ୍ୟା କହୁଛନ୍ତି ;

فَلَعَلَّكَ بَاخِعٌ نَّفْسَكَ عَلٰٓى اٰثَارِهِمْ اِنْ لَّمْ يُؤْمِنُوْا بِهٰذَا الْحَدِيْثِ اَسَفًا ⑦

୭. (ହେ ମହମ୍ମଦ !) ଯଦି ସେମାନେ ଏହି ମହାନ୍ ବାଣୀ ଉପରେ ବିଶ୍ୱାସ ନ କରନ୍ତି, ତେବେ (କ'ଣ) ତୁମେ ସେମାନଙ୍କ ଦୁଃଖରେ ଖୁବ୍ ଚିନ୍ତିତ ହୋଇ ନିଜ ଜୀବନକୁ ଧ୍ୱଂସ ମୁଖକୁ ଟାଣି ନେବ !

إِنَّا جَعَلْنَا مَا عَلَى الْأَرْضِ زِينَةً لَّهَا لِنَبْلُوَهُمْ أَيُّهُمْ أَحْسَنُ عَمَلًا ⑧

୮. ଯାହା କିଛି ଭୂପୃଷ୍ଠରେ ଅଛି ତାହାକୁ ଆମେ ବାସ୍ତବରେ ଏହାର ସୌନ୍ଦର୍ଯ୍ୟ ସକାଶେ ସୃଷ୍ଟି କରିଅଛୁ ଯଦ୍ୱାରା ଆମେ ସେମାନଙ୍କୁ (ଅର୍ଥାତ୍ ଭୂପୃଷ୍ଠବାସୀଙ୍କୁ) ପରୀକ୍ଷା କରିବୁ ଯେ ସେମାନଙ୍କ ମଧ୍ୟରେ ସବୁଠାରୁ ଭଲ କାମ କିଏ କରୁଛି ।

وَإِنَّا لَجَاعِلُونَ مَا عَلَيْهَا صَعِيدًا جُرُزًا ⑨

୯. ଏବଂ ଯାହା କିଛି ଏଠାରେ (ଅର୍ଥାତ୍ ଏହି ଭୂପୃଷ୍ଠରେ) ଅଛି ତାହାକୁ ନିଶ୍ଚୟ ଆମେ (ଦିନେ) ଧ୍ୱଂସ କରି ଟାଙ୍ଗରା ଭୂମିରେ ପରିଣତ କରିଦେବୁ ।

أَمْ حَسِبْتَ أَنَّ أَصْحَابَ الْكَهْفِ وَالرَّقِيمِ كَانُوا مِنْ آيَاتِنَا عَجَبًا ⑩

୧୦. ତେବେ କ'ଣ ତୁମେ ମନେ କରୁଅଛ ଯେ ଗୁମ୍ଫାବାସୀମାନେ ଓ ଲିପିବାସୀମାନେ ଆମର ନିଦର୍ଶନଗୁଡ଼ିକ ମଧ୍ୟରୁ କୌଣସି ବିସ୍ମୟକର ନିଦର୍ଶନ ଥିଲେ (ଯାହାଙ୍କର ଦୃଷ୍ଟାନ୍ତ ପୁନର୍ବାର କେବେହେଲେ ମିଳିବ ନାହିଁ) ।

إِذْ أَوَى الْفِتْيَةُ إِلَى الْكَهْفِ فَقَالُوا رَبَّنَا آتِنَا مِن لَّدُنكَ رَحْمَةً وَهَيِّئْ لَنَا مِنْ أَمْرِنَا رَشَدًا ⑪

୧୧. ଯେତେବେଳେ ସେହି ଯୁବକମାନେ ପ୍ରଶସ୍ତ ଗୁମ୍ଫାରେ ଆଶ୍ରୟ ଗ୍ରହଣ କରିଥିଲେ ଓ (ପ୍ରାର୍ଥନାପୂର୍ବକ) କହିଥିଲେ, "ହେ ଆମମାନଙ୍କ ପାଳନକର୍ତ୍ତା ! ଆମମାନଙ୍କୁ ତୁମ ସମୀପରୁ କୃପା ପ୍ରଦାନ କର, ଓ ଏ ବିଷୟରେ ଆମମାନଙ୍କୁ ଉପଯୁକ୍ତ ମାର୍ଗ ପ୍ରଦର୍ଶନ କର।"

فَضَرَبْنَا عَلَىٰ آذَانِهِمْ فِي الْكَهْفِ سِنِينَ عَدَدًا ⑫

୧୨. ତେଣୁ ଆମେ ସେହି ପ୍ରଶସ୍ତ ଗୁମ୍ଫା ମଧ୍ୟରେ କେତେକ ବର୍ଷ ପାଇଁ ସେମାନଙ୍କୁ (ବାହ୍ୟ ଜଗତ ବିଷୟରେ) ଶୁଣିବାରୁ ବଞ୍ଚିତ କରିଥିଲୁ ।

ثُمَّ بَعَثْنَاهُمْ لِنَعْلَمَ أَيُّ الْحِزْبَيْنِ أَحْصَىٰ لِمَا لَبِثُوا أَمَدًا ⑬ ع

୧୩. ତା'ପରେ ଆମେ ସେମାନଙ୍କୁ ଉତ୍ଥିତ କଲୁ ଯଦ୍ୱାରା କି ଆମେ ଜାଣି ପାରିବୁ ଯେ ସେମାନେ ଯେତେ କାଳ (ସେଠାରେ) ରହିଥିଲେ ତାହାକୁ (ଖ୍ରୀଷ୍ଟ-ଧର୍ମାବଲମ୍ବୀ) ଦୁଇ ଗୋଷ୍ଠୀ ମଧ୍ୟରୁ କେଉଁ ଗୋଷ୍ଠୀ ଅଧିକ ମନେ ରଖିପାରିଛି ।

ରୁ: ୨

نَحْنُ نَقُصُّ عَلَيْكَ نَبَأَهُم بِالْحَقِّ ۚ إِنَّهُمْ فِتْيَةٌ آمَنُوا بِرَبِّهِمْ وَزِدْنَاهُمْ هُدًى ⑭

୧୪. (ବର୍ତ୍ତମାନ) ଆମେ ସେମାନଙ୍କର ପ୍ରକୃତ ବୃତ୍ତାନ୍ତ ସଠିକ ରୂପେ ତୁମ ନିକଟରେ ବର୍ଣ୍ଣନା କରୁଅଛୁ, ସେମାନେ କେତେଜଣ ଯୁବକ ଥିଲେ ଯେଉଁମାନେ କି ନିଜ ପାଳନକର୍ତ୍ତାଙ୍କ ପ୍ରତି (ପ୍ରକୃତ) ବିଶ୍ୱାସ କରିଥିଲେ, ଏବଂ ଆମେ ସେମାନଙ୍କୁ ସତ୍‌ପଥରେ (ଅଧିକ) ଅଗ୍ରସର କରାଇଥିଲୁ ।

وَرَبَطْنَا عَلَىٰ قُلُوبِهِمْ إِذْ قَامُوا فَقَالُوا رَبُّنَا رَبُّ

୧୫. ଏବଂ ଯେତେବେଳେ ସେମାନେ (ନିଜ ଦେଶ ପରିତ୍ୟାଗ କରିବାକୁ) ବାହାରିଲେ, ସେତେବେଳେ ଆମେ ସେମାନଙ୍କ ମନକୁ ଦୃଢ଼ କରିଥିଲୁ, ତା'ପରେ ସେମାନେ (ପରସ୍ପରକୁ) କହିଲେ, "ସେ ହିଁ ଆମମାନଙ୍କର ପାଳନକର୍ତ୍ତା

السَّمٰوٰتِ وَالْاَرْضِ لَنْ نَّدْعُوَا۟ مِنْ دُوْنِهٖۤ اِلٰهًا لَّقَدْ قُلْنَاۤ اِذًا شَطَطًا ⑮

ଯେ କି ଆକାଶ ଓ ପୃଥିବୀର ପାଳନକର୍ତ୍ତା, ଆମେମାନେ ତାହାଙ୍କ ବ୍ୟତୀତ ଅନ୍ୟ କୌଣସି ଉପାସ୍ୟକୁ କଦାପି ଡାକିବୁ ନାହିଁ ; ଏପରି କଲେ ଆମେମାନେ ଏକ ସତ୍ୟ ବହିର୍ଭୂତ କଥା କହିବୁ ।"

هٰۤؤُلَآءِ قَوْمُنَا اتَّخَذُوْا مِنْ دُوْنِهٖۤ اٰلِهَةً ؕ لَوْ لَا يَاْتُوْنَ عَلَيْهِمْ بِسُلْطٰنٍۭ بَيِّنٍ ؕ فَمَنْ اَظْلَمُ مِمَّنِ افْتَرٰى عَلَى اللّٰهِ كَذِبًا ⑯

୧୬. ଏହି ଲୋକମାନେ (ଅର୍ଥାତ୍ ଆମମାନଙ୍କର ସମ୍ପ୍ରଦାୟ) ପ୍ରକୃତ ଉପାସ୍ୟକୁ ପରିତ୍ୟାଗ କରି (ନିଜ ପାଇଁ) ଅନ୍ୟ (ଉପାସ୍ୟ)କୁ ଗ୍ରହଣ କରିଛନ୍ତି ; ସେମାନେ କାହିଁକି ସେମାନଙ୍କ (ସତ୍ୟତା) ସପକ୍ଷରେ ପ୍ରକାଶ୍ୟ ପ୍ରମାଣ ଦେଉନାହାନ୍ତି ? ତେବେ (ସେମାନେ କାହିଁକି ବୁଝିପାରୁ ନାହାନ୍ତି ଯେ) ଯେଉଁ ବ୍ୟକ୍ତି ଅଲ୍ଲାହଙ୍କ ପ୍ରତି ମିଥ୍ୟା ଆରୋପ କରେ ତା' ଅପେକ୍ଷା ଅଧିକ ଅତ୍ୟାଚାରୀ (ଆଉ) କିଏ ହୋଇପାରେ ?

وَاِذِ اعْتَزَلْتُمُوْهُمْ وَمَا يَعْبُدُوْنَ اِلَّا اللّٰهَ فَاْوٗۤا اِلَى الْكَهْفِ يَنْشُرْ لَكُمْ رَبُّكُمْ مِّنْ رَّحْمَتِهٖ وَيُهَيِّئْ لَكُمْ مِّنْ اَمْرِكُمْ مِّرْفَقًا ⑰

୧୭. ଏବଂ ଯେତେବେଳେ ତୁମେମାନେ ସେମାନଙ୍କ-ଠାରୁ ତଥା ଅଲ୍ଲାହଙ୍କ ବ୍ୟତୀତ ସେମାନେ ଯାହାଙ୍କର ଉପାସନା କରୁଛନ୍ତି ତାହାଙ୍କ—ଠାରୁ ସମ୍ପର୍କ ଛିନ୍ନ କରିଅଛ, ତେବେ (ବର୍ତ୍ତମାନ) ତୁମେମାନେ ଏହି ପ୍ରଶସ୍ତ ପାର୍ବତ୍ୟ ଆଶ୍ରୟ ସ୍ଥଳରେ ବସିଥାଅ ; (ଯେଦି ସେପରି କରିବ ତେବେ) ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କ ସକାଶେ ତାହାଙ୍କର କୃପା (ଦ୍ୱାର) ଉନ୍ମୁକ୍ତ କରିବେ ଏବଂ ତୁମମାନଙ୍କ ସକାଶେ ଏଥିରେ (ଅର୍ଥାତ୍ ଏ ବିଷୟରେ) ସହଜସାଧ୍ୟ ବ୍ୟବସ୍ଥା କରିଦେବେ ।

وَتَرَى الشَّمْسَ اِذَا طَلَعَتْ تَّزٰوَرُ عَنْ كَهْفِهِمْ ذَاتَ الْيَمِيْنِ وَاِذَا غَرَبَتْ تَّقْرِضُهُمْ ذَاتَ الشِّمَالِ وَهُمْ فِيْ فَجْوَةٍ مِّنْهُ ؕ ذٰلِكَ مِنْ اٰيٰتِ اللّٰهِ ؕ مَنْ يَّهْدِ اللّٰهُ فَهُوَ الْمُهْتَدِ ۚ وَمَنْ يُّضْلِلْ فَلَنْ تَجِدَ لَهٗ وَلِيًّا مُّرْشِدًا ⑱ ع

୧୮. ଏବଂ ତୁମେ ଦେଖୁଅଛ ଯେ, ଯେତେବେଳେ ସୂର୍ଯ୍ୟ ଉଦୟ ହୁଏ, ସେତେବେଳେ ତାହା ସେମାନଙ୍କ ପ୍ରଶସ୍ତ ଗୁମ୍ଫାର [୧] ଦକ୍ଷିଣ ପାର୍ଶ୍ୱ ଦେଇ ଗତି କରେ ; ଏବଂ ଯେତେବେଳେ ଅସ୍ତ ହୁଏ, ସେତେବେଳେ ବାମ ପାର୍ଶ୍ୱ ଦେଇ ଗତିକରେ ; ଏବଂ ସେମାନେ ଏହି ଗୁମ୍ଫା ମଧ୍ୟରେ ଏକ ବିସ୍ତୀର୍ଣ୍ଣ ସ୍ଥାନରେ (ରହୁ) ଥିଲେ ; ଏ ବିଷୟ ଅଲ୍ଲାହଙ୍କର (ସହାୟତା ରୂପୀ) ନିଦର୍ଶନଗୁଡ଼ିକ ମଧ୍ୟରୁ (ଅନ୍ୟତମ ନିଦର୍ଶନ) ଅଟେ ; ଯାହାଙ୍କୁ ଅଲ୍ଲାହ (ସତ୍)ପଥ ପ୍ରଦର୍ଶିତ କରାନ୍ତି ସେ ହିଁ ସତ୍‌ପଥ ପ୍ରାପ୍ତ ହୁଏ ; ଏବଂ ସେ ଯାହାକୁ ପଥଭ୍ରଷ୍ଟ କରାନ୍ତି, ତୁମେ ତାହା ପାଇଁ ପଥ-ପ୍ରଦର୍ଶକ ରୂପେ କଦାପି କୌଣସି ବନ୍ଧୁ ପାଇବ ନାହିଁ ।

୧. ଅର୍ଥାତ୍ ସେହି 'କହଫ' ବା ଗୁମ୍ଫା ଏପରି ସ୍ଥିତ ଥିଲା ଯେ ସକାଳେ ସୂର୍ଯ୍ୟ ତା'ର ଦକ୍ଷିଣ ପାର୍ଶ୍ୱରେ ଓ ସନ୍ଧ୍ୟାରେ ବାମ ପାର୍ଶ୍ୱରେ ଗତି କରୁଥିଲା ।

ରୁ:୩

୧୯. ଏବଂ ତୁମେ ସେମାନଙ୍କୁ ଜାଗ୍ରତ ମନେ କରୁଅଛ, ଅଥଚ ସେମାନେ ନିଦ୍ରିତ ରହିଛନ୍ତି ; ଏବଂ ଆମେ ସେମାନଙ୍କୁ [1] ଦକ୍ଷିଣ ଦିଗକୁ ତଥା ବାମ ଦିଗକୁ ଘୁରାଇବୁ ; ଏବଂ ସେମାନଙ୍କର କୁକୁର [2] ମଧ୍ୟ (ସେମାନଙ୍କ ସହିତ) ଦ୍ୱାର ଦେଶରେ (ସମ୍ମୁଖ) ପାଦ ଦ୍ୱୟକୁ ବିସ୍ତାରିତ କରି (ବସିଥିବ ; ଯଦି ତୁମେ ସେମାନଙ୍କ ଅବସ୍ଥା ବିଷୟରେ ଅବଗତ ହୋଇଥାନ୍ତ, ତେବେ ତୁମେ ପୃଷ୍ଠଭଙ୍ଗ କରି ସେମାନଙ୍କ ନିକଟରୁ ପଳାୟନ [3] କରିଥା'ନ୍ତ, ଏବଂ ତୁମେ ସେମାନଙ୍କ ପ୍ରତି ଭୟଭୀତ ହୋଇଥା'ନ୍ତ ।

وَ تَحْسَبُهُمْ اَيْقَاظًا وَّ هُمْ رُقُوْدٌ ۖ وَّ نُقَلِّبُهُمْ ذَاتَ الْيَمِيْنِ وَ ذَاتَ الشِّمَالِ ۖ وَ كَلْبُهُمْ بَاسِطٌ ذِرَاعَيْهِ بِالْوَصِيْدِ ؕ لَوِ اطَّلَعْتَ عَلَيْهِمْ لَوَلَّيْتَ مِنْهُمْ فِرَارًا وَّ لَمُلِئْتَ مِنْهُمْ رُعْبًا ﴿١٩﴾

୨୦. ଏବଂ ଏହିପରି ଭାବରେ ଆମେ ସେମାନଙ୍କୁ (ଦୟନୀୟ ଅବସ୍ଥାରୁ) ଉତ୍‌ଥିତ କରିଥିଲୁ ; ତେଣୁ ସେମାନେ (ଆଶ୍ଚର୍ଯ୍ୟାନ୍ୱିତ ହୋଇ) ପରସ୍ପରକୁ ପ୍ରଶ୍ନ କରିଥିଲେ ; ସେମାନଙ୍କ ମଧ୍ୟରୁ ଜଣେ ପଚାରିଲା, "ତୁମେମାନେ ଏଠାରେ କେତେ କାଳ ଅବସ୍ଥାନ କରିଅଛ ?" ସେମାନେ କହିଲେ, "ଆମେମାନେ ଗୋଟିଏ ଦିନ ବା (ଗୋଟିଏ) ଦିନର କିଛି ଅଂଶ ରହିଅଛୁ," ସେମାନେ (ଅର୍ଥାତ୍ ଅନ୍ୟମାନେ) କହିଲେ, "ତୁମେମାନେ ଯେତେ ସମୟ (ଏଠାରେ) ରହିଅଛ ତାହା ତୁମମାନଙ୍କ ପାଳନକର୍ତ୍ତା ଭଲ ରୂପେ ଜାଣନ୍ତି," ସୁତରାଂ (ଏ ପ୍ରକାର ଆଲୋଚନାକୁ ତ୍ୟାଗ କରି) ତୁମମାନଙ୍କ ମଧ୍ୟରୁ ଜଣକୁ ଏହି ପୁରାତନ ମୁଦ୍ରା [4] ପ୍ରଦାନ କରି ଏହି ସହରକୁ ପ୍ରେରଣ କର ; ସେ (ଯାଇ ସେଠାରେ) ଦେଖୁ ଯେ ଏଥିରେ (ଅର୍ଥାତ୍ ଏହି ସହରରେ) କାହାର ଶସ୍ୟ ସର୍ବୋତ୍କୃଷ୍ଟ ଅଟେ ; ତା'ପରେ (ଯାହାର ଶସ୍ୟ ସର୍ବୋତ୍କୃଷ୍ଟ) ସେ ସେଥିରୁ ତୁମମାନଙ୍କ ପାଇଁ କିଛି ଖାଦ୍ୟସାମଗ୍ରୀ ନେଇ ଆସୁ ; ଏବଂ ସେ ସତର୍କତାର ସହିତ (ଲୋକମାନଙ୍କ) ଗୁପ୍ତ ବିଷୟ ସମ୍ବନ୍ଧରେ ଜାଣିବାକୁ ଚେଷ୍ଟା କରୁ ଓ ତୁମମାନଙ୍କ ସଂକ୍ରାନ୍ତରେ କାହାରିକୁ (କୌଣସି ବିଷୟ) ଜାଣିବାକୁ (ସୁଯୋଗ) ନ ଦେଉ ।

وَ كَذٰلِكَ بَعَثْنٰهُمْ لِيَتَسَآءَلُوْا بَيْنَهُمْ ؕ قَالَ قَآئِلٌ مِّنْهُمْ كَمْ لَبِثْتُمْ ؕ قَالُوْا لَبِثْنَا يَوْمًا اَوْ بَعْضَ يَوْمٍ ؕ قَالُوْا رَبُّكُمْ اَعْلَمُ بِمَا لَبِثْتُمْ ؕ فَابْعَثُوْۤا اَحَدَكُمْ بِوَرِقِكُمْ هٰذِهٖۤ اِلَى الْمَدِيْنَةِ فَلْيَنْظُرْ اَيُّهَاۤ اَزْكٰى طَعَامًا فَلْيَاْتِكُمْ بِرِزْقٍ مِّنْهُ وَ لْيَتَلَطَّفْ وَ لَا يُشْعِرَنَّ بِكُمْ اَحَدًا ﴿٢٠﴾

نصف القرآن

---

୧. ଅର୍ଥାତ୍ ଗୁମ୍ଫାବାସୀମାନେ ପୃଥିବୀର ସବୁ ଅଞ୍ଚଳରେ ବ୍ୟାପିଯିବେ ଏବଂ ଏପରି ବ୍ୟାପି ଯାଇଥିବା ଜାତି ହେଉଛନ୍ତି ଇଉରୋପୀୟ ଖ୍ରୀଷ୍ଟିୟାନମାନେ । ତେଣୁ ଏଠାରେ ଗୁମ୍ଫାବାସୀ ସେହି ଖ୍ରୀଷ୍ଟିୟାନମାନଙ୍କୁ ବୁଝାଉଛି ।

୨. ପୋଷା କୁକୁରମାନେ ଘର ଜଗିବା ପାଇଁ ବାହାରେ ଶୋଇଥିବା ବେଳେ ଆଗ ଗୋଡ଼ ଦୁଇଟିକୁ ଭୂଇଁ ଉପରେ ଲମ୍ବେଇ ଶୋଇଥାଆନ୍ତି । ଇଉରୋପୀୟମାନେ ବହୁସଂଖ୍ୟକ କୁକୁର ପୋଷିଥିବାରୁ ଏଠାରେ ସେ ବିଷୟର ସୂଚନା ଦିଆଯାଇଛି ।

୩. ଅର୍ଥାତ୍ ପଶ୍ଚିମାଞ୍ଚଳ ଓ ଉତ୍ତରାଞ୍ଚଳର ଲୋକମାନେ ପୂର୍ବାଞ୍ଚଳ ଓ ଦକ୍ଷିଣାଞ୍ଚଳର ଲୋକମାନଙ୍କଠାରୁ ଏପରି ଦୂରେଇ ରହିବେ ଯେ ବିନାନୁମତିରେ ସେମାନଙ୍କ ଘରକୁ ଯିବା ପୂର୍ବାଞ୍ଚଳ ଲୋକମାନଙ୍କ ପକ୍ଷରେ ଅସମ୍ଭବ ହେବ ।

୪. ଅର୍ଥାତ୍ ଯେତେବେଳେ ଗୁମ୍ଫାବାସୀଙ୍କ ନିକଟରେ ଧରାପୃଷ୍ଠର ଇତିହାସ ସୁସ୍ପଷ୍ଟ ହୋଇଗଲା ଏବଂ ସେମାନେ ଅପେକ୍ଷାକୃତ କିଛି ଶାନ୍ତି ହାସଲ କଲେ ସେତେବେଳେ ସେମାନେ ନିଜ ମଧ୍ୟରୁ କେତେକଙ୍କୁ ନିଜର ପୁରୁଣା ମୁଦ୍ରା ଦେଇ ଖାଦ୍ୟସାମଗ୍ରୀ କିଣିବାକୁ ପଠାଇଲେ ।

إِنَّهُمْ إِن يَظْهَرُوا عَلَيْكُمْ يَرْجُمُوكُمْ أَوْ يُعِيدُوكُمْ فِي مِلَّتِهِمْ وَلَن تُفْلِحُوا إِذًا أَبَدًا ﴿٢٠﴾

୨୧. କାରଣ ଯଦି ସେମାନେ ତୁମମାନଙ୍କ ଉପରେ ବିଜୟ ଲାଭ କରିବେ, ତେବେ ତୁମମାନଙ୍କୁ ନିଶ୍ଚୟ ଶିଳାଘାତ କରି ଧ୍ୱଂସ କରି ଦେବେ କିମ୍ବା ତୁମମାନଙ୍କୁ (ବଳାତ୍କାର-ପୂର୍ବକ) ସେମାନଙ୍କ ଧର୍ମକୁ ଫେରାଇ ଆଣିବେ ; ଏବଂ ଏପରି ପରିସ୍ଥିତିରେ ତୁମେମାନେ କଦାପି କୃତକାର୍ଯ୍ୟ ହୋଇପାରିବ ନାହିଁ ।

وَكَذَٰلِكَ أَعْثَرْنَا عَلَيْهِمْ لِيَعْلَمُوا أَنَّ وَعْدَ اللَّهِ حَقٌّ وَأَنَّ السَّاعَةَ لَا رَيْبَ فِيهَا إِذْ يَتَنَازَعُونَ بَيْنَهُمْ أَمْرَهُمْ فَقَالُوا ابْنُوا عَلَيْهِم بُنْيَانًا رَّبُّهُمْ أَعْلَمُ بِهِمْ قَالَ الَّذِينَ غَلَبُوا عَلَىٰ أَمْرِهِمْ لَنَتَّخِذَنَّ عَلَيْهِم مَّسْجِدًا ﴿٢١﴾

୨୨. ଏବଂ ଏହିପରି ଭାବରେ ଆମେ (ଲୋକମାନଙ୍କୁ) ସେମାନଙ୍କ (ଅବସ୍ଥା) ସଂକ୍ରାନ୍ତରେ ଅବଗତ କରାଇଥିଲୁ ଯେପରି ସେମାନେ ଜାଣିପାରିବେ ଯେ ଅଲ୍ଲାହ୍‌ଙ୍କର ଅଙ୍ଗୀକାର ଅବଶ୍ୟ ପାଳିତ ହୁଏ, ଏବଂ ସେହି (ନିୟତ) ସମୟ (ର ଆଗମନ) ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ ; (ଏବଂ ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ସେମାନେ ସେମାନଙ୍କ କାର୍ଯ୍ୟ ସମ୍ବନ୍ଧରେ ପରସ୍ପର ମଧ୍ୟରେ ଆଲୋଚନା କରି (ଜଣେ ଅନ୍ୟକୁ) କହିଲେ, "ତୁମେମାନେ ସେମାନଙ୍କ (ବାସସ୍ଥାନ) ଉପରେ ଏକ ଭବନ ନିର୍ମାଣ କର," ସେମାନଙ୍କର ପାଳନକର୍ତ୍ତା ସେମାନଙ୍କୁ ଭଲ ଭାବରେ ଜାଣିଥିଲେ ; (ପରିଶେଷରେ) ଯେଉଁମାନେ ନିଜ ଶକ୍ତିରେ ବିଜୟ ହାସଲ କଲେ ସେମାନେ କହିଲେ, "ଆମେମାନେ ସେମାନଙ୍କ (ବାସସ୍ଥଳୀ) ଉପରେ (ଏକ) ଉପାସନା ଗୃହ [୧] ନିର୍ମାଣ କରିବୁ ।"

سَيَقُولُونَ ثَلَاثَةٌ رَّابِعُهُمْ كَلْبُهُمْ وَيَقُولُونَ خَمْسَةٌ سَادِسُهُمْ كَلْبُهُمْ رَجْمًا بِالْغَيْبِ وَيَقُولُونَ سَبْعَةٌ وَثَامِنُهُمْ كَلْبُهُمْ قُل رَّبِّي أَعْلَمُ

୨୩. (ଯେଉଁମାନେ ପ୍ରକୃତ ଘଟଣା ଜାଣିନାହାନ୍ତି ସେମାନଙ୍କ ମଧ୍ୟରୁ) କେତେକ (ଅନୁମାନ କରି) କହିବେ ଯେ ସେମାନେ (କେବଳ) ତିନି (ଜଣ) ଥିଲେ ; ସେମାନଙ୍କ ସହିତ ସେମାନଙ୍କ କୁକୁର ଚତୁର୍ଥ (ପ୍ରାଣୀ) ଥିଲା ; ଓ (ପୁଣି କେବେ) କହିବେ ଯେ (ସେମାନେ) ପାଞ୍ଚ (ଜଣ) ଥିଲେ, ସେମାନଙ୍କ ସହିତ ସେମାନଙ୍କ କୁକୁର ଷଷ୍ଠ (ପ୍ରାଣୀ) ଥିଲା, ଏବଂ (ସେମାନଙ୍କ ମଧ୍ୟରୁ କେତେକ) କହିବେ ଯେ (ସେମାନେ) ସାତ [୨] (ଜଣ) ଥିଲେ, ସେମାନଙ୍କ ସହିତ ସେମାନଙ୍କ କୁକୁର [୩] ଅଷ୍ଟମ (ପ୍ରାଣୀ) ଥିଲା ; ତୁମେ (ସେମାନଙ୍କୁ) କୁହ, "ଆମ୍ଭର

୧. ଏଠାରେ ମସଜିଦ ଅର୍ଥ ଖ୍ରୀଷ୍ଟିୟାନମାନଙ୍କ ଉପାସନା ଗୃହ ବା ଗୀର୍ଜା । ଏବେ ବି ଭୂଗର୍ଭସ୍ଥ ସମାଧିସ୍ଥାନ (Catacomb) ର ଦ୍ୱାରଦେଶରେ ଗୀର୍ଜା ନିର୍ମାଣ କରାଯାଇଛି । ଆଲୋଚ୍ୟ ଗୁମ୍ଫାବାସୀମାନେ ଭୂଗର୍ଭସ୍ଥ ସମାଧି ଭିତରେ ରହୁଥିଲେ ।

୨. ଏଠାରେ ପୁରାତନ ଗୁମ୍ଫାଗୁଡ଼ିକର ବିଭିନ୍ନ କୋଠରୀ ସମ୍ବନ୍ଧରେ ଏକ ବିବରଣୀ ଅଛି । ଗୋଟିଏ କୋଠରୀର ଶିଳାଲେଖରୁ ଜଣାପଡ଼େ ଯେ ସେଠାରେ ତିନି ଜଣ ଆଶ୍ରୟ ନେଇଥିଲେ । ଅନ୍ୟ ଗୋଟିଏ କୋଠରୀରୁ ଜଣାଯାଏ ଯେ ସେଠାରେ ସାତ ଜଣ ଆଶ୍ରୟ ନେଇଥିଲେ । ଏହି ରୂପେ ବିଭିନ୍ନ କୋଠରୀ ବିଷୟରେ ବିଭିନ୍ନ ସଂଖ୍ୟା ଜଣାପଡୁଛି ।

୩. ଅର୍ଥାତ୍ ଗୁମ୍ଫାବାସୀ ଖ୍ରୀଷ୍ଟିୟାନମାନଙ୍କ ସହିତ ସର୍ବତ୍ର କୁକୁର ଥିବାର ଦେଖାଯାଇଛି ।

بِعِدَّتِهِمْ مَّا يَعْلَمُهُمْ إِلَّا قَلِيلٌ ۗ فَلَا تُمَارِ فِيهِمْ إِلَّا مِرَآءً ظَاهِرًا ۖ وَلَا تَسْتَفْتِ فِيهِم مِّنْهُمْ أَحَدًا ﴿٢٣﴾

ପାଳନକର୍ତ୍ତା ସେମାନଙ୍କ (ପ୍ରକୃତ) ଗଣନା ସଂକ୍ରାନ୍ତରେ ଉତ୍ତମ ରୂପେ ଅବଗତ ଅଛନ୍ତି ; ଅଳ୍ପ କେତେକଙ୍କୁ [1] ଛାଡ଼ି ଅନ୍ୟ କେହି ସେମାନଙ୍କ ସମ୍ବନ୍ଧରେ ଅବଗତ ନୁହନ୍ତି ; ସୁତରାଂ ତୁମେ ସେମାନଙ୍କ ସହିତ ଦୃଢ଼ ଯୁକ୍ତି ବ୍ୟତୀତ ଅନ୍ୟ କୌଣସି ଯୁକ୍ତି କରନାହିଁ ; ଏବଂ ସେମାନଙ୍କ ସଂକ୍ରାନ୍ତରେ ସେମାନଙ୍କ ମଧ୍ୟରୁ କାହାରିକୁ ପ୍ରକୃତ ଘଟଣା ସମ୍ବନ୍ଧରେ ପ୍ରଶ୍ନ କରନାହିଁ ।

ରୁ :୪

وَلَا تَقُولَنَّ لِشَا۟ىْءٍ إِنِّى فَاعِلٌ ذَٰلِكَ غَدًا ﴿٢٤﴾

୨୪. ଏବଂ ତୁମେ [2] କୌଣସି ବିଷୟରେ (ଦାବି କରି) କଦାପି କୁହ ନାହିଁ ଯେ ଆମେ ନିଶ୍ଚୟ କାଲି ଏହା (ଅର୍ଥାତ୍ ଏହି କାର୍ଯ୍ୟ) କରିବୁ ।

إِلَّآ أَن يَشَآءَ ٱللَّهُ ۚ وَٱذْكُر رَّبَّكَ إِذَا نَسِيتَ وَقُلْ عَسَىٰٓ أَن يَهْدِيَنِ رَبِّى لِأَقْرَبَ مِنْ هَٰذَا رَشَدًا ﴿٢٥﴾

୨୫. ହଁ (ସେହିପରି ଭାବରେ କରିବି) ଯେପରି ଅଲ୍ଲାହ ଇଚ୍ଛା କରିବେ ; ଏବଂ ଯେତେବେଳେ ତୁମେ (ଏହାକୁ) ଭୁଲିଯାଅ ସେତେବେଳେ ନିଜ ପାଳନକର୍ତ୍ତାଙ୍କୁ ସ୍ମରଣ କର ଓ କୁହ, ''ଆମର (ସମ୍ପୂର୍ଣ୍ଣ) ବିଶ୍ୱାସ ଅଛି ଯେ ଆମର ପାଳନକର୍ତ୍ତା ଆମକୁ ତହିଁରେ (ଅର୍ଥାତ୍ ସେହି ମାର୍ଗରେ) ପରିଚାଳିତ କରିବେ ଯାହା ସତ୍‌ପଥର ପ୍ରାପ୍ତି ସକାଶେ ଅଧିକ ନିକଟବର୍ତ୍ତୀ ହେବ ।

وَلَبِثُوا۟ فِى كَهْفِهِمْ ثَلَٰثَ مِا۟ئَةٍ سِنِينَ وَٱزْدَادُوا۟ تِسْعًا ﴿٢٦﴾

୨୬. ଏବଂ (କେତେକ କହନ୍ତି) ସେମାନେ ନିଜର ସେହି ପ୍ରଶସ୍ତ ଆଶ୍ରୟ ସ୍ଥଳରେ ତିନି ଶତ [3] ବର୍ଷ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ ଏବଂ ସେମାନେ (ତତ୍‌ସହିତ) ଅଧିକ ନଅ ବର୍ଷ ଯୋଗ କରିଥିଲେ ।

---

୧. ଆଶ୍ଚର୍ଯ୍ୟର କଥା, ପବିତ୍ର କୋରାନରେ ଲିପିବଦ୍ଧ ହୋଇଛି ଯେ ଅସହାବେ କହଫ (ଅର୍ଥାତ୍ ଗୁମ୍ଫାବାସୀ)ଙ୍କ ବିଷୟ ଅତ୍ୟଳ୍ପ ଲୋକ ଜାଣିଥିଲେ । କିନ୍ତୁ ବିଭିନ୍ନ ଟୀକାଟିପ୍ପଣୀରୁ ପ୍ରତୀତ ହେଉଛି ଯେ ସେମାନଙ୍କ ସଂଖ୍ୟା ବିଷୟ ଛୋଟ ଛୋଟ ପିଲାଙ୍କୁ ମଧ୍ୟ ଜଣାଥିଲା ।

୨. ଅର୍ଥାତ୍ ମୁସଲମାନମାନେ ନିଜ ବାହୁବଳରେ ଏହି ଗୁମ୍ଫାବାସୀ ଖ୍ରୀଷ୍ଟିୟାନ ଜାତିଙ୍କ ମୁକାବିଲା କରିପାରିବେ ନାହିଁ । ବରଂ ଅଲ୍ଲାହଙ୍କ ସହାୟତା କ୍ରମେ ତାହା କରିପାରିବେ । ତେଣୁ ଯେତେବେଳେ ସେମାନଙ୍କର ମୁକାବିଲା କରିବା ସମୟ ଆସିବ ସେତେବେଳେ ସେମାନେ ଏପରି କରିଦେବେ ବା ସେପରି କରିଦେବେ ବୋଲି ବଡ଼ ବଡ଼ କଥା କହିବା ଉଚିତ ନୁହେଁ । ସେମାନଙ୍କ ପକ୍ଷରେ ଏହା ଅବଶ୍ୟ କହିବା ଉଚିତ ହେବ କି ଯଦି ଅଲ୍ଲାହ ଚାହିଁବେ ତେବେ ସେମାନେ ଏହିପରି ଭାବରେ ପ୍ରତିପକ୍ଷଙ୍କର ମୁକାବିଲା କରିପାରିବେ । କେତେକ ଟୀକାକାର ଏଠାରେ ଅନେକଗୁଡ଼ିଏ ଅସଂପୃକ୍ତ କାହାଣୀ ବର୍ଣ୍ଣନା କରିଛନ୍ତି । କିନ୍ତୁ ଏଠାରେ ଯେପରି ଭାବେ ବ୍ୟାଖ୍ୟା କରାଯାଇଛି ତହିଁରୁ ସମସ୍ତ ଅଧ୍ୟାୟର ଏକ ବାସ୍ତବ ଚିତ୍ର ସୁବିଦିତ ହେଉଛି ।

୩. ଇତିହାସରୁ ଜଣାପଡୁଛି ଯେ ବିଭିନ୍ନ ସମୟରେ ଓ ବିଭିନ୍ନ ସ୍ଥାନରେ ଖ୍ରୀଷ୍ଟିୟାନମାନଙ୍କ ପ୍ରତି ଅତ୍ୟାଚାର କରାଯାଇଥିଲା । ଥରେ ସେମାନଙ୍କ ଉପରେ ରୋମରେ ବହୁ ଅତ୍ୟାଚାର କରାଯାଇଥିଲା ଓ ଆଉ ଥରେ ଅଲେକ୍‌ଜାଣ୍ଡ୍ରିଆରେ ସେମାନଙ୍କ ଉପରେ ମଧ୍ୟ ଅତ୍ୟାଚାର କରାଯାଇଥିଲା । ସେହିସବୁ ଅତ୍ୟାଚାର ଦୃଷ୍ଟିରୁ ସେମାନେ କେବେ ଦୀର୍ଘ ସମୟ ପର୍ଯ୍ୟନ୍ତ ଓ ଅନ୍ୟ କେବେ ସ୍ୱଳ୍ପ ସମୟ ପର୍ଯ୍ୟନ୍ତ ଗୁମ୍ଫା ମଧ୍ୟରେ ଲୁଚି ରହିବାକୁ ବାଧ୍ୟ ହୋଇଥିଲେ । ଲୋକମାନେ ଅଜ୍ଞାନତାବଶତଃ ବିଭିନ୍ନ ସମୟରେ ହୋଇଥିବା ସେହିସବୁ ଅତ୍ୟାଚାରକୁ ଅବିଚ୍ଛିନ୍ନ ଓ ସ୍ଥାୟୀ ଅତ୍ୟାଚାର ବୋଲି ଭାବିଲେ ଓ ସେଗୁଡ଼ିକୁ ଏଭଳି ଆନୁମାନିକ ଓ କାଳ୍ପନିକ ରୂପଦେବାକୁ ଲାଗିଲେ ଯାହା ଏଠାରେ ଖଣ୍ଡନ କରାଯାଇଛି । ଅଧିକନ୍ତୁ ଏଠାରେ ସ୍ପଷ୍ଟ କରିଦିଆଯାଇଛି ଯେ ଘଟଣାଗୁଡ଼ିକ ବିଭିନ୍ନ ସମୟରେ ଘଟିଥିବାରୁ ଟୀକାକାରମାନେ ଏପ୍ରକାର ଅନୁମାନ କରିଛନ୍ତି । ପ୍ରକୃତପକ୍ଷେ ଆଲୋଚ୍ୟ ଜାତି ଉପରେ ସେହି ଭୟାବହ ସମୟ କିପରି ବିତିଥିଲା ତାହା କେବଳ ଅଲ୍ଲାହ ହିଁ ଜାଣନ୍ତି ।

قُلِ اللّٰهُ اَعْلَمُ بِمَا لَبِثُوْا لَهٗ غَيْبُ السَّمٰوٰتِ وَالْاَرْضِ اَبْصِرْ بِهٖ وَاَسْمِعْ مَا لَهُمْ مِّنْ دُوْنِهٖ مِنْ وَّلِيٍّ وَّلَا يُشْرِكُ فِيْ حُكْمِهٖٓ اَحَدًا ﴿٢٧﴾

୨୭. ତୁମେ (ସେମାନଙ୍କୁ) କୁହ, "ସେମାନେ ଯେତେଦିନ (ଗୁମ୍ଫା ମଧ୍ୟରେ) ରହିଥିଲେ ତାହା ଅଲ୍ଲାହ ହି ଉତ୍ତମ ରୂପେ ଜାଣନ୍ତି; ଆକାଶ ଓ ପୃଥିବୀର ଗୂଢ଼ ରହସ୍ୟ ତାଙ୍କୁ ହି ଜଣା; ସେ ଉତ୍ତମ ରୂପେ ଦେଖି ପାରନ୍ତି ଓ ଭଲ ଭାବରେ ଶୁଣି ପାରନ୍ତି; ଏବଂ ତାହାଙ୍କ ବ୍ୟତୀତ ସେମାନଙ୍କର ଅନ୍ୟ କେହି ସାହାଯ୍ୟକାରୀ ନାହାନ୍ତି, ଏବଂ ସେ ନିଜ ଆଦେଶ (ଓ ନିଷ୍ପତ୍ତି) ସଂକ୍ରାନ୍ତରେ କାହାକୁ ଅଂଶୀଦାର କରନ୍ତି ନାହିଁ।

وَاتْلُ مَآ اُوْحِيَ اِلَيْكَ مِنْ كِتَابِ رَبِّكَ لَا مُبَدِّلَ لِكَلِمٰتِهٖ وَلَنْ تَجِدَ مِنْ دُوْنِهٖ مُلْتَحَدًا ﴿٢٨﴾

୨୮. ଏବଂ ତୁମ ପାଳନକର୍ତ୍ତାଙ୍କ ଗ୍ରନ୍ଥରୁ ଯାହା ତୁମ ପ୍ରତି ଓହି (ମାଧ୍ୟମରେ ପ୍ରେରିତ) ହୁଏ, ତୁମେ ତାହାକୁ ଆବୃତ୍ତି କର (ଓ ଲୋକମାନଙ୍କୁ ଶୁଣାଅ); ତାହାଙ୍କ ବାଣୀକୁ କେହି ପରିବର୍ତ୍ତନ କରି ପାରିବେ ନାହିଁ, ଓ ତାହାଙ୍କୁ ପରିତ୍ୟାଗ କରି ତୁମେ କୌଣସି ଆଶ୍ରୟ ସ୍ଥଳ ପାଇବ ନାହିଁ।

وَاصْبِرْ نَفْسَكَ مَعَ الَّذِيْنَ يَدْعُوْنَ رَبَّهُمْ بِالْغَدٰوةِ وَالْعَشِيِّ يُرِيْدُوْنَ وَجْهَهٗ وَلَا تَعْدُ عَيْنٰكَ عَنْهُمْ تُرِيْدُ زِيْنَةَ الْحَيٰوةِ الدُّنْيَا وَلَا تُطِعْ مَنْ اَغْفَلْنَا قَلْبَهٗ عَنْ ذِكْرِنَا وَاتَّبَعَ هَوٰىهُ وَكَانَ اَمْرُهٗ فُرُطًا ﴿٢٩﴾

୨୯. ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ପ୍ରସନ୍ନତା ଲାଭ କରିବା ସକାଶେ ସକାଳେ ଓ ସନ୍ଧ୍ୟାରେ ତାହାଙ୍କୁ ଡାକନ୍ତି, ତୁମେ ସେମାନଙ୍କ ସଙ୍ଗରେ ରୁହ ଓ ପାର୍ଥିବ ଜୀବନରେ ସୁଖ ଲାଭ କରିବା ସକାଶେ ସେମାନଙ୍କ ଠାରୁ ନିଜର ଦୃଷ୍ଟି ଫେରାଇ [1]ନିଅ ନାହିଁ; ଏବଂ ଆମେ ଯାହାର ହୃଦୟକୁ ଆମର ସ୍ମରଣ କରିବାରୁ ଅମନୋଯୋଗୀ କରିଅଛୁ ଏବଂ ଯେ ନିଜ କୁପ୍ରବୃତ୍ତିକୁ ଅନୁସରଣ କରୁଅଛି, ଓ ଯାହାର କାର୍ଯ୍ୟକଳାପ ସୀମା ଲଂଘନ କରିଅଛି, (ତୁମେ) ତାହାର ଆଜ୍ଞାବହ ହୁଅ ନାହିଁ।

وَقُلِ الْحَقُّ مِنْ رَّبِّكُمْ فَمَنْ شَآءَ فَلْيُؤْمِنْ وَّمَنْ شَآءَ فَلْيَكْفُرْ اِنَّآ اَعْتَدْنَا لِلظّٰلِمِيْنَ نَارًا اَحَاطَ بِهِمْ سُرَادِقُهَا وَاِنْ يَّسْتَغِيْثُوْا يُغَاثُوْا بِمَآءٍ كَالْمُهْلِ يَشْوِي الْوُجُوْهَ بِئْسَ الشَّرَابُ وَسَآءَتْ مُرْتَفَقًا ﴿٣٠﴾

୩୦. ଏବଂ (ତୁମେ ଲୋକମାନଙ୍କୁ) କୁହ, "ଏହି ସତ୍ୟ ତୁମ ପାଳନକର୍ତ୍ତାଙ୍କ ତରଫରୁ ହି (ଆସି) ଅଛି; ସୁତରାଂ ଯାହାର ଇଚ୍ଛା ସେ (ଏହାକୁ) ବିଶ୍ୱାସ କରୁ ଓ ଯାହାର ଇଚ୍ଛା ସେ (ଏହାକୁ) ପ୍ରତ୍ୟାଖ୍ୟାନ କରୁ; (କିନ୍ତୁ ମନେରଖ ଯେ) ଆମେ ଅତ୍ୟାଚାରୀମାନଙ୍କ ସକାଶେ ବାସ୍ତବରେ ଏକ ଅଗ୍ନି ପ୍ରସ୍ତୁତ କରି ରଖିଅଛୁ ଯାହାର (ଲେଲିହାନ) ଶିଖା ସେମାନଙ୍କୁ ବେଢ଼ି ରହିଅଛି; ଏବଂ ଯଦି ସେମାନେ ଜଳ ପାଇଁ ଗୁହାରି କରିବେ, ତେବେ ସେମାନଙ୍କ ଗୁହାରି ଏପରି ଜଳ ଦ୍ୱାରା ପୂର୍ଣ୍ଣ କରାହେବ ଯାହା ତରଳ ତମ୍ବା ସଦୃଶ ହୋଇଥିବ ଏବଂ (ତାହା ସେମାନଙ୍କ) ମୁଖମଣ୍ଡଳକୁ ଦଗ୍ଧ କରି ପକାଇବ; ତାହା ଅତ୍ୟନ୍ତ ଭୟଙ୍କର ପାନୀୟ; ଏବଂ ତାହା (ଅର୍ଥାତ୍ ଅଗ୍ନି) ଅତି ମନ୍ଦ ବାସସ୍ଥାନ ଅଟେ।

୧. ଅର୍ଥାତ୍ ହଜରତ ମହମ୍ମଦଙ୍କ ସହଚରମାନଙ୍କର ବଳିଦାନକୁ ଭୁଲି ଯାଅ ନାହିଁ।

إِنَّ الَّذِينَ آمَنُوا وَعَمِلُوا الصَّالِحَاتِ إِنَّا لَا نُضِيعُ أَجْرَ مَنْ أَحْسَنَ عَمَلًا ﴿٣١﴾

୩୧. (ଅବଶ୍ୟ) ଯେଉଁମାନେ ବିଶ୍ୱାସ କରିଛନ୍ତି ଏବଂ ପୁଣ୍ୟ (ତଥା ଉଚିତ) କର୍ମ କରିଛନ୍ତି (ସେମାନେ ନିଶ୍ଚୟ ଉତ୍ତମ ପୁରସ୍କାର ପାଇବେ) ; ଏବଂ ଯେଉଁମାନେ ଉତ୍ତମ କର୍ମ କରନ୍ତି ଆମ୍ଭେ ସେମାନଙ୍କ ପୁରସ୍କାରକୁ କଦାପି ନଷ୍ଟ କରୁନାହିଁ ।

أُولَٰئِكَ لَهُمْ جَنَّاتُ عَدْنٍ تَجْرِي مِنْ تَحْتِهِمُ الْأَنْهَارُ يُحَلَّوْنَ فِيهَا مِنْ أَسَاوِرَ مِنْ ذَهَبٍ وَيَلْبَسُونَ ثِيَابًا خُضْرًا مِنْ سُنْدُسٍ وَإِسْتَبْرَقٍ مُتَّكِئِينَ فِيهَا عَلَى الْأَرَائِكِ ۚ نِعْمَ الثَّوَابُ وَحَسُنَتْ مُرْتَفَقًا ﴿٣٢﴾

୩୨. (ହଁ) ସେମାନଙ୍କ ପାଇଁ ହିଁ ବାସୋପଯୋଗୀ ଚିରସ୍ଥାୟୀ ସ୍ୱର୍ଗୋଦ୍ୟାନମାନ (ନିୟତ) ଅଛି ଯାହାର ନିମ୍ନ ଦେଶରେ ଝରଣାମାନ ପ୍ରବାହିତ ହେଉଥିବ ; ସେମାନଙ୍କ ପାଇଁ ତନ୍ମଧ୍ୟରୁ ସ୍ୱର୍ଣ୍ଣ କଙ୍କଣ ସଦୃଶ ଅଳଙ୍କାର ତିଆରି କରାଯିବ ଓ ସେମାନେ ସୂକ୍ଷ୍ମ ଓ (କାରୁକାର୍ଯ୍ୟ ଖଚିତ) ଓଜନଦାର ରେଶମୀ ବସ୍ତ୍ର ପରିଧାନ କରିବେ ; (ସେମାନେ) ସେଠାରେ ସଜ୍ଜିତ ପଲଙ୍କ ଉପରେ ତକିଆ ଦେଇ ବସିଥିବେ ; ଏବଂ ଏହା କିପରି ଉତ୍ତମ ପୁରସ୍କାର ଏବଂ ଏହା କିପରି ଉତ୍କୃଷ୍ଟ ଆଶ୍ରୟସ୍ଥଳୀ ଅଟେ !

ରୁ: ୫

وَاضْرِبْ لَهُمْ مَثَلًا رَجُلَيْنِ جَعَلْنَا لِأَحَدِهِمَا جَنَّتَيْنِ مِنْ أَعْنَابٍ وَحَفَفْنَاهُمَا بِنَخْلٍ وَجَعَلْنَا بَيْنَهُمَا زَرْعًا ﴿٣٣﴾

୩୩. ଏବଂ ତୁମ୍ଭେ ସେମାନଙ୍କ ସମ୍ମୁଖରେ ସେହି ଦୁଇଜଣଙ୍କ[୧] ଦୃଷ୍ଟାନ୍ତ ବର୍ଣ୍ଣନା କର ଯେଉଁମାନଙ୍କ ମଧ୍ୟରୁ ଜଣକୁ ଆମ୍ଭେ ଦୁଇଗୋଟି ଅଙ୍ଗୁର ଉଦ୍ୟାନ[୨] ଦେଇଥିଲୁ, ଏବଂ ଆମ୍ଭେ ତାହାକୁ ଖଜୁରି ବୃକ୍ଷ ଦ୍ୱାରା ପରିବେଷ୍ଟିତ କରିଥିଲୁ, ଏବଂ ଏହି (ଦୁଇ ଉଦ୍ୟାନ)ମାନଙ୍କ ମଧ୍ୟରେ ଆମ୍ଭେ ଶସ୍ୟ କ୍ଷେତ୍ର ମଧ୍ୟ ସୃଷ୍ଟି କରିଥିଲୁ ;

كِلْتَا الْجَنَّتَيْنِ آتَتْ أُكُلَهَا وَلَمْ تَظْلِمْ مِنْهُ شَيْئًا ۚ وَفَجَّرْنَا خِلَالَهُمَا نَهَرًا ﴿٣٤﴾

୩୪. ଉକ୍ତ ଦୁଇ ଉଦ୍ୟାନ (ପ୍ରଚୁର) ଫଳ ପ୍ରଦାନ କରିଥିଲା, ଏବଂ ଏଥିରେ କୌଣସି ପ୍ରକାର ଊଣା ହୋଇ ନଥିଲା, ଏବଂ ଆମ୍ଭେ ସେମାନଙ୍କ ମଧ୍ୟରେ ଏକ ଝରଣା[୩] ପ୍ରବାହିତ କରିଥିଲୁ ;

وَكَانَ لَهُ ثَمَرٌ فَقَالَ لِصَاحِبِهِ وَهُوَ يُحَاوِرُهُ أَنَا أَكْثَرُ مِنْكَ مَالًا وَأَعَزُّ نَفَرًا ﴿٣٥﴾

୩୫. ଏବଂ ତହିଁରୁ ପ୍ରଚୁର (ପରିମାଣରେ) ଫଳ (ଉତ୍ପାଦିତ) ହେଉଥିଲା ; ଏଥିଯୋଗୁ ସେ ନିଜ ସାଥୀକୁ[୪] କଥା ପ୍ରସଙ୍ଗରେ (ସଗର୍ବେ) କହିଲା, "ତୁମ ତୁଳନାରେ ମୋର ଧନ ଅଧିକ ଓ ଅନୁଚର ଦୃଷ୍ଟିରୁ ମୁଁ ଅଧିକ ବଳବାନ୍ ।"

---

୧. ଅର୍ଥାତ୍ ମୁସଲମାନ ସଂପ୍ରଦାୟ ଓ ଖ୍ରୀଷ୍ଟିୟାନ ସଂପ୍ରଦାୟ ।

୨. ଅର୍ଥାତ୍ ଇସ୍ରାଇଲୀୟମାନଙ୍କୁ ପ୍ରାପ୍ତହେବା ପାର୍ଥିବ ଧନସମ୍ପତ୍ତି ଓ ସନ୍ତାନସନ୍ତତି । ଏଠାରେ ଖ୍ରୀଷ୍ଟିୟାନମାନଙ୍କର ଦୁଇଟି ଗୋଷ୍ଠୀ ସମ୍ବନ୍ଧରେ ଉଲ୍ଲେଖ ଅଛି ଏବଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଖ୍ରୀଷ୍ଟିୟାନମାନଙ୍କର ପ୍ରଥମ ଉନ୍ନତିଲାଭ ପରେ ସେମାନଙ୍କ ପାଇଁ ଏକ ଦୁର୍ଦ୍ଦିନ ଆସିବ ଓ ଏହାପରେ ସେମାନେ ପୁଣିଥରେ ସାଂସାରିକ ଉନ୍ନତି ପଥରେ ଅଗ୍ରସର ହେବେ ।

୩. ଏଠାରେ 'ଝରଣା' ଶବ୍ଦରୁ ହଜରତ ମହମ୍ମଦଙ୍କ ଯୁଗ ଅଭିପ୍ରେତ । ତାଙ୍କରି ମାଧ୍ୟମରେ ହଜରତ ମୁସା ଓ ହଜରତ ଈସାଙ୍କ ବାସ୍ତବ ଶିକ୍ଷାର କିୟଦଂଶ ଏଯାବତ୍ ଅମର ରହିପାରିଲା ।

୪. ପରିଶେଷରେ ଖ୍ରୀଷ୍ଟିୟାନମାନେ ଉନ୍ନତି କରିଥିଲେ ଓ ମୁସଲମାନମାନଙ୍କୁ ଚିଡ଼ାଉଥିଲେ ଯେ ସେମାନଙ୍କ ସଂପ୍ରଦାୟ ଅଧିକ ଶକ୍ତିଶାଳୀ ।

وَدَخَلَ جَنَّتَهُ وَهُوَ ظَالِمٌ لِّنَفْسِهِ ۚ قَالَ مَآ أَظُنُّ أَن تَبِيدَ هَٰذِهِۦٓ أَبَدًا ﴿٣٦﴾

୩୬. ଏବଂ (ଏକଦା) ସେ ନିଜ ଆତ୍ମା ପ୍ରତି ଅତ୍ୟାଚାର କରି ଆପଣା ଉଦ୍ୟାନ ମଧ୍ୟରେ ପ୍ରବେଶ କରିଥିଲା, ଓ ସେ ତାହାର ସାଥୀକୁ କହିଲା, "ମୁଁ ଭାବୁନାହିଁ ଯେ ଏହା କେବେ ନଷ୍ଟ ହୋଇଯିବ;"

وَمَآ أَظُنُّ ٱلسَّاعَةَ قَآئِمَةً وَلَئِن رُّدِدتُّ إِلَىٰ رَبِّى لَأَجِدَنَّ خَيْرًا مِّنْهَا مُنقَلَبًا ﴿٣٧﴾

୩୭. "ଏବଂ ମୁଁ ଭାବୁ ନାହିଁ ଯେ ସେହି (ଅଙ୍ଗୀକୃତ) ସମୟ କେବେ ଉପସ୍ଥିତ ହେବ ; ଏବଂ ଯଦି କେବେ ମୋତେ ମୋର ପାଳନକର୍ତ୍ତାଙ୍କ ନିକଟକୁ ଫେରାଇ ଦିଆଯାଏ, ତେବେ ମୁଁ (ସେଠାରେ ମଧ୍ୟ) ନିଶ୍ଚୟ ଏହା ଅପେକ୍ଷା ଉତ୍କୃଷ୍ଟ ଆଶ୍ରୟସ୍ଥଳ ପାଇବି ।"

قَالَ لَهُۥ صَاحِبُهُۥ وَهُوَ يُحَاوِرُهُۥٓ أَكَفَرْتَ بِٱلَّذِى خَلَقَكَ مِن تُرَابٍ ثُمَّ مِن نُّطْفَةٍ ثُمَّ سَوَّىٰكَ رَجُلًا ﴿٣٨﴾

୩୮. ତାହାର ସାଥୀ ବାଦାନୁବାଦ କ୍ରମେ କହିଲା, "କ'ଣ ତୁମେ ତାହାଙ୍କୁ ପ୍ରତ୍ୟାଖ୍ୟାନ କରିଅଛ ଯେ କି ତୁମକୁ (ପ୍ରଥମେ) ମାଟିରୁ ଓ ଏହାପରେ ଏକ ଶୁକ୍ର ବିନ୍ଦୁରୁ ସୃଷ୍ଟିକରି ଏକ ପୂର୍ଣ୍ଣାଙ୍ଗ ମାନବ ରୂପେ ଗଢ଼ିଛନ୍ତି ?"

لَّٰكِنَّا۠ هُوَ ٱللَّهُ رَبِّى وَلَآ أُشْرِكُ بِرَبِّىٓ أَحَدًا ﴿٣٩﴾

୩୯. "କିନ୍ତୁ (ମୋର ବିଶ୍ୱାସ) ଅଲ୍ଲାହ ହିଁ ମୋର ପାଳନକର୍ତ୍ତା, ଏବଂ ମୁଁ ଅନ୍ୟ କାହାରିକୁ ମୋ ପାଳନକର୍ତ୍ତାଙ୍କ ସମକକ୍ଷ (ମନେ) କରୁନାହିଁ ।"

وَلَوْلَآ إِذْ دَخَلْتَ جَنَّتَكَ قُلْتَ مَا شَآءَ ٱللَّهُ لَا قُوَّةَ إِلَّا بِٱللَّهِ ۚ إِن تَرَنِ أَنَا۠ أَقَلَّ مِنكَ مَالًا وَوَلَدًا ﴿٤٠﴾

୪୦. ଏବଂ ଯେତେବେଳେ ତୁମେ ନିଜ ଉଦ୍ୟାନ ମଧ୍ୟରେ ପ୍ରବେଶ କଲ ସେତେବେଳେ ତୁମେ କାହିଁକି ନ କହିଲ ଯେ (ତାହାହିଁ ହେବ) ଯାହା ଅଲ୍ଲାହ ଇଚ୍ଛା କରିବେ ; କାରଣ ସକଳ ଶକ୍ତି ଅଲ୍ଲାହଙ୍କର (କୃପା ମାଧ୍ୟମରେ ହାସଲ କରାଯାଇ ଥାଏ); ଯଦି ତୁମେ ମୋତେ ତୁମ ଅପେକ୍ଷା ଧନ ଓ ସନ୍ତାନ ଦୃଷ୍ଟିରୁ ନିକୃଷ୍ଟ ମନେ କରୁଥାଅ;

فَعَسَىٰ رَبِّىٓ أَن يُؤْتِيَنِ خَيْرًا مِّن جَنَّتِكَ وَيُرْسِلَ عَلَيْهَا حُسْبَانًا مِّنَ ٱلسَّمَآءِ فَتُصْبِحَ صَعِيدًا زَلَقًا ﴿٤١﴾

୪୧. ତେବେ ଖୁବ୍ ସମ୍ଭବ ଯେ ମୋର[୧] ପାଳନକର୍ତ୍ତା ମୋତେ ତୁମ ଉଦ୍ୟାନ ଅପେକ୍ଷା କୌଣସି ଉତ୍କୃଷ୍ଟ ଉଦ୍ୟାନ ପ୍ରଦାନ କରିବେ, ଏବଂ ଏହା (ଅର୍ଥାତ୍ ତୁମ ଉଦ୍ୟାନ) ଉପରେ ଆକାଶରୁ ବଜ୍ରପାତ କରିବେ ଯଦ୍ୱାରା ତାହା ଏକ (ଗଛ ଲତା) ଶୂନ୍ୟ ଟାଙ୍ଗରା ଭୂମିରେ ପରିଣତ ହୋଇଯିବ ।

أَوْ يُصْبِحَ مَآؤُهَا غَوْرًا فَلَن تَسْتَطِيعَ لَهُۥ طَلَبًا ﴿٤٢﴾

୪୨. ଅଥବା ତାହାର ଜଳ ଶୁଷ୍କ[୨] ହୋଇଯିବ, ପୁଣି ତୁମେ (ଅର୍ଥାତ୍ ଇସଲାମର ଶତ୍ରୁ) ତାହାକୁ ସନ୍ଧାନ କରିବାର (ମଧ୍ୟ) ଶକ୍ତି ପାଇବ ନାହିଁ ।

---

୧. ଏଠାରେ ଇସଲାମ ସମ୍ବନ୍ଧରେ ଏକ ଭବିଷ୍ୟବାଣୀ ଅଛି । ପ୍ରକାଶ୍ୟରେ ଦୁର୍ବଳ ଦେଖାଯାଉଥିଲେ ମଧ୍ୟ ଏହି ଧର୍ମ ପ୍ରତିଷ୍ଠା ଲାଭ କରିବ ଏବଂ ଅନ୍ୟ ପକ୍ଷରେ ଇହୁଦୀ ଓ ଖ୍ରୀଷ୍ଟିୟାନ ସଂପ୍ରଦାୟର ଉଦ୍ୟାନଗୁଡ଼ିକ ଅଲୌକିକ ଅଗ୍ନି ଦ୍ୱାରା ଧ୍ୱଂସ ହୋଇଯିବ ।

୨. ଅର୍ଥାତ୍ ଦିବ୍ୟବାଣୀର ପରମ୍ପରା ନିଃଶେଷ ହୋଇଯିବ ।

وَأُحِيطَ بِثَمَرِهِ فَأَصْبَحَ يُقَلِّبُ كَفَّيْهِ عَلَىٰ مَا أَنفَقَ فِيهَا وَهِيَ خَاوِيَةٌ عَلَىٰ عُرُوشِهَا وَيَقُولُ يَا لَيْتَنِي لَمْ أُشْرِكْ بِرَبِّي أَحَدًا ﴿٤٣﴾

୪୩. ଏବଂ ତାହାର ସବୁ ଫଳ ନଷ୍ଟ କରି ଦିଆଗଲା, ଏବଂ ତାହା (ଅର୍ଥାତ୍ ଗଛଗୁଡ଼ିକ) ଭାଡ଼ି ସହିତ ତଳେ ପଡ଼ିଥିବା ଅବସ୍ଥାକୁ ଦେଖି ସେ (ଉଦ୍ୟାନ ମାଲିକ) ତାହା ପାଇଁ ଯେଉଁ ବ୍ୟୟ କରିଥିଲା ସେଥିଯୋଗୁ ସେ ନିଜ ହାତ ଦୁଇଟିକୁ ମଳିବାକୁ ଲାଗିଲା ଏବଂ କହିଲା, "ହାୟ ! ମୁଁ ନିଜ ପାଳନକର୍ତ୍ତାଙ୍କ ସହିତ ଅନ୍ୟ କାହାକୁ ସମକକ୍ଷ କରି ନଥାନ୍ତି କି ?"

وَلَمْ تَكُن لَّهُ فِئَةٌ يَنصُرُونَهُ مِن دُونِ اللَّهِ وَمَا كَانَ مُنتَصِرًا ﴿٤٤﴾

୪୪. ଏବଂ (ସେତେବେଳେ) ଅଲ୍ଲାହ୍‌ଙ୍କ ବିରୁଦ୍ଧରେ କୌଣସି ଗୋଷ୍ଠୀ ତାହାକୁ ସାହାଯ୍ୟ କରିବାକୁ ନଥିଲେ, ଏବଂ ସେ (ଏଥି ସକାଶେ ନିଜେ) କୌଣସି ପ୍ରତିଶୋଧ ମଧ୍ୟ ନେଇ ପାରିଲା ନାହିଁ ।

هُنَالِكَ الْوَلَايَةُ لِلَّهِ الْحَقِّ ۚ هُوَ خَيْرٌ ثَوَابًا وَخَيْرٌ عُقْبًا ﴿٤٥﴾

୪୫. ଏପରି ସ୍ଥଳେ ଅଲ୍ଲାହ୍‌ଙ୍କ ସହାୟତା ହିଁ (ଫଳପ୍ରଦ) ହୋଇଥାଏ ଯେ କି ପ୍ରକୃତ ଉପାସ୍ୟ ; ଏବଂ ସେ ପ୍ରତିଦାନ ଦେବାରେ ସର୍ବୋତ୍କୃଷ୍ଟ ଏବଂ (ସୁ)ପରିଣାମ (ସୃଷ୍ଟି କରିବା) ଦୃଷ୍ଟିରୁ ମଧ୍ୟ ସର୍ବୋତ୍କୃଷ୍ଟ ।

ରୁ:୬

وَاضْرِبْ لَهُم مَّثَلَ الْحَيَاةِ الدُّنْيَا كَمَاءٍ أَنزَلْنَاهُ مِنَ السَّمَاءِ فَاخْتَلَطَ بِهِ نَبَاتُ الْأَرْضِ فَأَصْبَحَ هَشِيمًا تَذْرُوهُ الرِّيَاحُ ۗ وَكَانَ اللَّهُ عَلَىٰ كُلِّ شَيْءٍ مُّقْتَدِرًا ﴿٤٦﴾

୪୬. ଏବଂ ତୁମେ ସେମାନଙ୍କ ନିକଟରେ ଏହି ପାର୍ଥିବ ଜୀବନର ଦୃଷ୍ଟାନ୍ତ ସ୍ପଷ୍ଟ ଭାବରେ ବର୍ଣ୍ଣନା କର ; (ତାହା) ସେପରି ଜଳ ସଦୃଶ ଯାହା ଆମେ ଆକାଶରୁ ବର୍ଷଣ କରାଉ, ଏବଂ ତାପରେ ତହିଁରେ ଭୂମିଜ ଉଦ୍ଭିଦ ମିଶିଯାଏ, ଏବଂ (ପରିଶେଷରେ) ତାହା ଶୁଖିଲା କୁଟା ପରି ହୋଇ ଚୂନା ହୋଇଯାଏ ଯାହାକୁ ବାୟୁ ଉଡ଼ାଇ ନିଏ ; ଏବଂ ପ୍ରତ୍ୟେକ ବିଷୟରେ ଅଲ୍ଲାହ୍ ସର୍ବଶକ୍ତିମାନ୍ ଅଟନ୍ତି ।

الْمَالُ وَالْبَنُونَ زِينَةُ الْحَيَاةِ الدُّنْيَا ۖ وَالْبَاقِيَاتُ الصَّالِحَاتُ خَيْرٌ عِندَ رَبِّكَ ثَوَابًا وَخَيْرٌ أَمَلًا ﴿٤٧﴾

୪୭. ଧନ ସମ୍ପତ୍ତି ଓ ସନ୍ତାନ ସନ୍ତତି ଏହି ପାର୍ଥିବ ଜୀବନର ସୌନ୍ଦର୍ଯ୍ୟ ଅଟନ୍ତି ; ଏବଂ ତିଷ୍ଠି ରହୁଥିବା ସତ୍ (ଓ ଉଚିତ) କାର୍ଯ୍ୟଗୁଡ଼ିକ (ଯାହା ଉପରୋକ୍ତ ଧନ ସମ୍ପତ୍ତି ଓ ସନ୍ତାନ ସନ୍ତତିଙ୍କ ମାଧ୍ୟମରେ ହାସଲ କରାଯାଏ ତାହା) ତୁମ ପାଳନକର୍ତ୍ତାଙ୍କ ନିକଟରେ ପୁରସ୍କାର ଦୃଷ୍ଟିରୁ ଉତ୍କୃଷ୍ଟତର ତଥା (ଭବିଷ୍ୟତ) ଆଶା ଦୃଷ୍ଟିରୁ (ମଧ୍ୟ) ଉତ୍କୃଷ୍ଟତର ।

وَيَوْمَ نُسَيِّرُ الْجِبَالَ وَتَرَى الْأَرْضَ بَارِزَةً وَحَشَرْنَاهُمْ فَلَمْ نُغَادِرْ مِنْهُمْ أَحَدًا ﴿٤٨﴾

୪୮. ଏବଂ ଯେଉଁଦିନ ଆମେ ପର୍ବତମାଳାକୁ ସ୍ୱସ୍ଥାନରୁ ଅପସାରିତ କରିବୁ, ଏବଂ ତୁମେ ପୃଥିବୀବାସୀଙ୍କୁ (ପରସ୍ପର ବିରୁଦ୍ଧରେ ଯୁଦ୍ଧ କରିବା ନିମନ୍ତେ) ବାହାରୁ ଥିବାର ଦେଖିବ, ଏବଂ ଆମେ ସେମାନଙ୍କୁ ଏକତ୍ରିତ [୧] କରିବୁ ଏବଂ ସେମାନଙ୍କ ମଧ୍ୟରୁ କାହାରିକୁ (ଜୀବନ୍ତ) ଛାଡ଼ିବୁ ନାହିଁ ; (ସେହିଦିନ ଏହାର ଉତ୍ତମ ପରିଣାମ ଦୃଷ୍ଟିଗୋଚର ହେବ) ।

୧. ଅର୍ଥାତ୍ ଧନବାନ୍ ଦୁରାଚାରୀମାନଙ୍କ ମଧ୍ୟରେ ଥିଲା । (୬:୧୨୯ ଟୀକା ଦ୍ରଷ୍ଟବ୍ୟ) ।

وَعُرِضُوا عَلٰى رَبِّكَ صَفًّا ۭ لَقَدْ جِئْتُمُوْنَا كَمَا خَلَقْنٰكُمْ اَوَّلَ مَرَّةٍ ۡ بَلْ زَعَمْتُمْ اَلَّنْ نَّجْعَلَ لَكُمْ مَّوْعِدًا ﴿٤٩﴾

୪୯. ଏବଂ ସେମାନଙ୍କୁ ଧାଡ଼ି କରି ତୁମ ପାଳନକର୍ତ୍ତାଙ୍କ ସମୀପରେ ଉପସ୍ଥିତ କରାଯିବ ; (ଏବଂ ସେମାନଙ୍କୁ କୁହାଯିବ ଯେ) ଦେଖ, ତୁମେମାନେ ଏପରି ଦୁର୍ବଳ ଅବସ୍ଥାରେ ଆମ ସମୀପକୁ ଆସିଅଛ ଯେଉଁ ଅବସ୍ଥାରେ ଆମେ ତୁମମାନଙ୍କୁ ପ୍ରଥମ ଥର ସୃଷ୍ଟି କରିଥିଲୁ, (ଏବଂ ତୁମେମାନେ ଏପରି ଆଶା ପୋଷଣ କରି ନ ଥିଲ), ବରଂ ତୁମମାନଙ୍କର ଦାବି ଥିଲା ଯେ ଆମେ ତୁମମାନଙ୍କ ସକାଶେ ଆମର ଅଙ୍ଗୀକାର (ପୂର୍ଣ୍ଣ କରିବା) ପାଇଁ କୌଣସି ସମୟ ଧାର୍ଯ୍ୟ କରିବୁ ନାହିଁ ।

وَوُضِعَ الْكِتٰبُ فَتَرَى الْمُجْرِمِيْنَ مُشْفِقِيْنَ مِمَّا فِيْهِ وَيَقُوْلُوْنَ يٰوَيْلَتَنَا مَالِ هٰذَا الْكِتٰبِ لَا يُغَادِرُ صَغِيْرَةً وَّلَا كَبِيْرَةً اِلَّآ اَحْصٰهَا ۚ وَوَجَدُوْا مَا عَمِلُوْا حَاضِرًا ۭ وَلَا يَظْلِمُ رَبُّكَ اَحَدًا ﴿٥٠﴾ ع

୫୦. ଏବଂ ସେମାନଙ୍କ (କର୍ମ) ପୁସ୍ତକ (ସେମାନଙ୍କ ସମ୍ମୁଖରେ) ଉପସ୍ଥାପିତ କରାଯିବ ; ସେତେବେଳେ ସେଥିରେ (ଅର୍ଥାତ୍ ସେ ପୁସ୍ତକରେ) ଯାହା (ଲେଖା) ଥିବ ସେଥି ସକାଶେ ତୁମେ ଏହି ଅପରାଧୀମାନଙ୍କୁ ଭୟଭୀତ ହେଉଥିବାର ଦେଖିବ ; ଏବଂ (ସେତେବେଳେ) ସେମାନେ କହିବେ, "ହାୟ, ଆମମାନଙ୍କର ବିନାଶ ! (ଆମ ସମ୍ମୁଖରେ ହିଁ ଦଣ୍ଡାୟମାନ) ; ଏହା କିପରି ପୁସ୍ତକ ଯେ, ଏହା କୌଣସି କ୍ଷୁଦ୍ର କର୍ମ ବା ବୃହତ୍ କର୍ମକୁ ଲିପିବଦ୍ଧ ନକରି ଛାଡ଼ି ନାହିଁ ;" ଏବଂ ସେମାନେ ଯାହା କିଛି କରିଥିବେ ସେ ସମସ୍ତଙ୍କୁ ନିଜ ସମ୍ମୁଖରେ ବିଦ୍ୟମାନ ଥିବାର ପାଇବେ ; ଏବଂ ତୁମ ପାଳନକର୍ତ୍ତା କାହାରି ଉପରେ ଅତ୍ୟାଚାର କରନ୍ତି ନାହିଁ ।

ରୁ:୭

وَاِذْ قُلْنَا لِلْمَلٰٓئِكَةِ اسْجُدُوْا لِاٰدَمَ فَسَجَدُوْٓا اِلَّآ اِبْلِيْسَ ۭ كَانَ مِنَ الْجِنِّ فَفَسَقَ عَنْ اَمْرِ رَبِّهٖ ۭ اَفَتَتَّخِذُوْنَهٗ وَذُرِّيَّتَهٗٓ اَوْلِيَاۗءَ مِنْ دُوْنِيْ وَهُمْ لَكُمْ عَدُوٌّ ۭ بِئْسَ لِلظّٰلِمِيْنَ بَدَلًا ﴿٥١﴾

୫୧. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ ଦେବଦୂତମାନଙ୍କୁ କହିଥିଲୁ, "(ତୁମେମାନେ) ଆଦମଙ୍କ ସହିତ (ମିଳିତ ଭାବରେ) ସିଜ୍‌ଦା କର ;" ସେତେବେଳେ (ଏହି ଆଦେଶ ଅନୁସାରେ) ଇବଲିସ ବ୍ୟତୀତ ଅନ୍ୟସମସ୍ତେ ସିଜ୍‌ଦା କଲେ ; ସେ ଜିନ୍‌ମାନଙ୍କ[୧] ମଧ୍ୟରୁ ଥିଲା, ତେଣୁ ସେ (ଆପଣା ପ୍ରବୃତ୍ତି ଅନୁସାରେ) ନିଜ ପାଳନକର୍ତ୍ତାଙ୍କ ଆଦେଶର ଅବଜ୍ଞା କରିଥିଲା ; (ହେ ଆମର ଭକ୍ତମାନେ !) କ'ଣ ତୁମେମାନେ ଆମଙ୍କୁ ପରିତ୍ୟାଗ କରି ତାହାକୁ ଓ ତାହାର ବଂଶଧରମାନଙ୍କୁ (ନିଜର) ବନ୍ଧୁ ରୂପେ ଗ୍ରହଣ କରିବ, ଯଦିଚ ସେମାନେ ତୁମମାନଙ୍କର ଶତ୍ରୁ ଅଟନ୍ତି ? ସେ (ଇବଲିସ) ଅତ୍ୟାଚାରୀମାନଙ୍କ ପାଇଁ ଅତ୍ୟନ୍ତ ମନ୍ଦ ପ୍ରତିଫଳ ରୂପେ ପ୍ରମାଣିତ ହୋଇଅଛି ।

---

୧. ଅର୍ଥାତ୍ ଏକ ଯୁଦ୍ଧକ୍ଷେତ୍ରରେ । ଅନ୍ୟ ଭାଷାରେ, ସେତେବେଳେ ସବୁ ଜାତି ପରସ୍ପର ମଧ୍ୟରେ ଚୁକ୍ତି କରି ଏକ ବିଶ୍ୱଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଯିବେ ।

୫୨. ଆମ୍ଭେ ଆକାଶ ଓ ପୃଥିବୀର ସୃଷ୍ଟି (ସମୟରେ) ବା ସେମାନଙ୍କ ନିଜ ସୃଷ୍ଟି ସମୟରେ, ସେମାନଙ୍କୁ ହାଜର କରାଇ ନ ଥିଲୁ ; ଏବଂ ଆମ୍ଭେ ବିଭ୍ରାନ୍ତକାରୀମାନଙ୍କୁ (ନିଜର) ସାହାଯ୍ୟକାରୀ ଭାବରେ ଗ୍ରହଣ କରିପାରି ନଥାନ୍ତୁ ।

مَآ اَشۡهَدۡتُّهُمۡ خَلۡقَ السَّمٰوٰتِ وَ الۡاَرۡضِ وَلَا خَلۡقَ اَنۡفُسِهِمۡ ۪ وَ مَا كُنۡتُ مُتَّخِذَ الۡمُضِلِّيۡنَ عَضُدًا ﴿٥٢﴾

୫୩. ଏବଂ (ସେହି ସମୟକୁ ସ୍ମରଣ କର) ଯେଉଁଦିନ ସେ (ମହାନ୍ ପାଳନକର୍ତ୍ତା ମୁସରିକମାନଙ୍କୁ) କହିବେ, "ବର୍ତ୍ତମାନ ତୁମେମାନେ ଆମ୍ଭର (ସେହି) ସମକକ୍ଷ (ଉପାସ୍ୟ)ମାନଙ୍କୁ ଡାକ ଯେଉଁମାନଙ୍କ ସଂକ୍ରାନ୍ତରେ (ସେମାନେ ଆମ୍ଭ ସହିତ ସମକକ୍ଷ ବୋଲି) ତୁମେମାନେ ଦାବି କରୁଥିଲ" ; ସେତେବେଳେ ସେମାନେ ସେମାନଙ୍କୁ ଡାକିବେ, କିନ୍ତୁ ସେମାନେ ସେମାନଙ୍କୁ (କୌଣସି) ଉତ୍ତର ଦେବେ ନାହିଁ ; ଏବଂ ଆମ୍ଭେ ସେମାନଙ୍କ (ଓ ସେମାନଙ୍କ କପୋଳକଳ୍ପିତ ଉପାସ୍ୟମାନଙ୍କ) ମଧ୍ୟରେ ଏକ ପ୍ରତିବନ୍ଧକ (ସୃଷ୍ଟି) କରିଦେବୁ ।

وَ يَوۡمَ يَقُوۡلُ نَادُوۡا شُرَكَآءِيَ الَّذِيۡنَ زَعَمۡتُمۡ فَدَعَوۡهُمۡ فَلَمۡ يَسۡتَجِيۡبُوۡا لَهُمۡ وَ جَعَلۡنَا بَيۡنَهُمۡ مَّوۡبِقًا ﴿٥٣﴾

୫୪. ଏବଂ ଅପରାଧୀମାନେ ଏହି ଅଗ୍ନିକୁ ଦେଖିବୁଝିପାରିବେ ଯେ ସେମାନେ ତନ୍ମଧ୍ୟରେ ପଡ଼ିବେ ଏବଂ ସେମାନେ ସେଠାରୁ ପଛ ଘୁଞ୍ଚା ଦେବା ପାଇଁ କୌଣସି ସ୍ଥାନ ପାଇବେ ନାହିଁ ।

وَ رَاَ الۡمُجۡرِمُوۡنَ النَّارَ فَظَنُّوۡۤا اَنَّهُمۡ مُّوَاقِعُوۡهَا وَ لَمۡ يَجِدُوۡا عَنۡهَا مَصۡرِفًا ﴿٥٤﴾

ରୁ:୮

୫୫. ଏବଂ ଆମ୍ଭେ ନିଶ୍ଚୟ (ମାନବ–ସମାଜ ପାଇଁ) ଏହି କୋରାନରେ ପ୍ରତ୍ୟେକ (ଆବଶ୍ୟକ) ବିଷୟକୁ ବିଭିନ୍ନ ପ୍ରଣାଳୀରେ ବର୍ଣ୍ଣନା କରିଅଛୁ, (ଅଥଚ) ମାନବ ସମସ୍ତଙ୍କ ଠାରୁ ଅଧିକ ତର୍କପ୍ରିୟ ।

وَ لَقَدۡ صَرَّفۡنَا فِيۡ هٰذَا الۡقُرۡاٰنِ لِلنَّاسِ مِنۡ كُلِّ مَثَلٍ ؕ وَ كَانَ الۡاِنۡسَانُ اَكۡثَرَ شَيۡءٍ جَدَلًا ﴿٥٥﴾

୫୬. ଏବଂ ଏହି ଲୋକମାନଙ୍କ ନିକଟକୁ ଯେତେବେଳେ ସତ୍ ଉପଦେଶ ଆସିଥିଲା, ସେତେବେଳେ ଏହା ପ୍ରତି ବିଶ୍ୱାସ କରିବାରେ ଓ ନିଜ ପାଳନକର୍ତ୍ତାଙ୍କ ଠାରୁ କ୍ଷମାଭିକ୍ଷା କରିବାରେ କେବଳ ଏହି କଥା ବାଧା ଦେଇଥିଲା ଯେ (ସେମାନେ କହିଥିଲେ) ପୂର୍ବବର୍ତ୍ତୀ ଲୋକମାନଙ୍କ (ଅବସ୍ଥା) ଭଳି ଅବସ୍ଥା ସେମାନଙ୍କ ଉପରେ (ମଧ୍ୟ) ଆସୁ ବା ସେମାନଙ୍କ ସମ୍ମୁଖରେ ଶାସ୍ତି ଉପସ୍ଥିତ ହେଉ ।

وَ مَا مَنَعَ النَّاسَ اَنۡ يُّؤۡمِنُوۡۤا اِذۡ جَآءَهُمُ الۡهُدٰى وَ يَسۡتَغۡفِرُوۡا رَبَّهُمۡ اِلَّاۤ اَنۡ تَاۡتِيَهُمۡ سُنَّةُ الۡاَوَّلِيۡنَ اَوۡ يَاۡتِيَهُمُ الۡعَذَابُ قُبُلًا ﴿٥٦﴾

୫୭. ଏବଂ ଆମ୍ଭେ ରସୁଲମାନଙ୍କୁ କେବଳ ସୁସମାଚାର ଦାତା ଓ (ଶାସ୍ତି ସଂକ୍ରାନ୍ତରେ) ସତର୍କକାରୀ ଭାବରେ ପ୍ରେରଣ କରିଥାଉ, ଏବଂ ଯେଉଁମାନେ ଅବିଶ୍ୱାସ କରିଥାନ୍ତି, ସେମାନେ ମିଥ୍ୟାକୁ ଅବଲମ୍ବନ କରି ଏଥିସକାଶେ କଳହ କରନ୍ତି ଯେ ଏହା ଦ୍ୱାରା ସତ୍ୟକୁ ଲୋପ କରିଦେବେ, ଏବଂ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ତଥା ସତର୍କୀକରଣକୁ ପରିହାସ କରନ୍ତି ।

وَ مَا نُرۡسِلُ الۡمُرۡسَلِيۡنَ اِلَّا مُبَشِّرِيۡنَ وَ مُنۡذِرِيۡنَ ۚ وَ يُجَادِلُ الَّذِيۡنَ كَفَرُوۡا بِالۡبَاطِلِ لِيُدۡحِضُوۡا بِهِ الۡحَقَّ وَ اتَّخَذُوۡۤا اٰيٰتِيۡ وَ مَاۤ اُنۡذِرُوۡا هُزُوًا ﴿٥٧﴾

وَمَنْ اَظْلَمُ مِمَّنْ ذُكِّرَ بِاٰيٰتِ رَبِّهٖ فَاَعْرَضَ عَنْهَا وَنَسِيَ مَا قَدَّمَتْ يَدٰهُ ؕ اِنَّا جَعَلْنَا عَلٰى قُلُوْبِهِمْ اَكِنَّةً اَنْ يَّفْقَهُوْهُ وَفِيْۤ اٰذَانِهِمْ وَقْرًا ؕ وَاِنْ تَدْعُهُمْ اِلَى الْهُدٰى فَلَنْ يَّهْتَدُوْۤا اِذًا اَبَدًا ۝

୫୮. ଏବଂ ତାହା ଅପେକ୍ଷା ଅଧିକ କିଏ ଅତ୍ୟାଚାରୀ (ହୋଇପାରେ) ଯାହାକୁ ତାହାର ପାଳନକର୍ତ୍ତାଙ୍କ ନିଦର୍ଶନ ଦ୍ୱାରା ସ୍ମରଣ କରାଇ ଦିଆଯାଇଥିଲେ ମଧ୍ୟ ସେ ସେଥିରୁ ବିମୁଖ ହୋଇଯାଏ, ଏବଂ ତାହାର ହସ୍ତ ଦ୍ୱୟ ଯାହା କିଛି (ଅପକର୍ମ ଉପାର୍ଜନ) କରି ପ୍ରେରଣ କରିଛନ୍ତି ତାହାକୁ ଭୁଲିଯାଏ ? ସେମାନଙ୍କ ହୃଦୟ ଉପରେ ବାସ୍ତବରେ ଆମେ ଅନେକ ଆବରଣ ପକାଇଅଛୁ ଯେପରି କି ସେମାନେ ଏହା ବୁଝି[୧] ନ ପାରନ୍ତୁ, ଏବଂ ସେମାନଙ୍କ କର୍ଣ୍ଣକୁ ବଧିର କରିଅଛୁ ; ଏବଂ ଯଦି ତୁମେ ସେମାନଙ୍କୁ ସତ୍‌ପଥ ଆଡ଼କୁ ଡାକିବ ତେବେ (ସେମାନେ ତୁମ ପ୍ରତି ଏତେ ଈର୍ଷାନ୍ୱିତ ହେବେ ଯେ) ଏପରି ଅବସ୍ଥାରେ ସେମାନେ ସେହି ସତ୍‌ପଥକୁ କଦାପି ଗ୍ରହଣ କରିବେ ନାହିଁ ।

وَرَبُّكَ الْغَفُوْرُ ذُو الرَّحْمَةِ ؕ لَوْ يُؤَاخِذُهُمْ بِمَا كَسَبُوْا لَعَجَّلَ لَهُمُ الْعَذَابَ ؕ بَلْ لَّهُمْ مَّوْعِدٌ لَّنْ يَّجِدُوْا مِنْ دُوْنِهٖ مَوْئِلًا ۝

୫୯. ଏବଂ ତୁମର ପାଳନକର୍ତ୍ତା ଅତ୍ୟନ୍ତ କ୍ଷମାଶୀଳ ଓ ସଦା କରୁଣାମୟ ; ଏବଂ ଯଦି ସେ ସେମାନଙ୍କ (କୁ)କର୍ମ ଯୋଗୁଁ ସେମାନଙ୍କୁ ବିନାଶ କରିବାକୁ ଇଚ୍ଛା କରନ୍ତେ, ତେବେ ସେ ସେମାନଙ୍କ ପ୍ରତି ତତ୍‌କ୍ଷଣାତ୍ ଶାସ୍ତି ପ୍ରେରଣ କରନ୍ତେ ; କିନ୍ତୁ ସେ ସେପରି କରନ୍ତି ନାହିଁ, ବରଂ ସେମାନଙ୍କ ପାଇଁ ଏକ ସମୟ ନିର୍ଦ୍ଧାରିତ ହୋଇଅଛି ଯହିଁରୁ ତ୍ରାହି ପାଇବା ପାଇଁ ସେମାନେ କୌଣସି ଆଶ୍ରୟସ୍ଥଳ କଦାପି ପାଇବେ ନାହିଁ ।

وَتِلْكَ الْقُرٰۤى اَهْلَكْنٰهُمْ لَمَّا ظَلَمُوْا وَجَعَلْنَا لِمَهْلِكِهِمْ مَّوْعِدًا ۝

୬୦. ଏବଂ ସେହି ସହରଗୁଡ଼ିକୁ ଯାହାକୁ ଆମେ ସେମାନଙ୍କ (ଅଧିବାସୀମାନଙ୍କ) ଅତ୍ୟାଚାର ଯୋଗୁଁ ଧ୍ୱଂସ କରିଥିଲୁ, ଏବଂ ଆମେ ସେଗୁଡ଼ିକର ଧ୍ୱଂସ ପାଇଁ ପୂର୍ବରୁ ଏକ ସମୟ ନିର୍ଦ୍ଧାରିତ କରିଥିଲୁ (ଯଦ୍ୱାରା କି ସେମାନେ ଇଚ୍ଛା କରିଥିଲେ, ଅନୁତାପ କରି ପାରି ଥାଆନ୍ତେ) ।

ରୁ: ୯

وَاِذْ قَالَ مُوْسٰى لِفَتٰىهُ لَاۤ اَبْرَحُ حَتّٰۤى اَبْلُغَ مَجْمَعَ الْبَحْرَيْنِ اَوْ اَمْضِيَ حُقُبًا ۝

୬୧. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ ମୁସା ନିଜ ଯୁବକ (ସହଚର)[୨] କୁ କହିଥିଲେ, "ଆମେ ଦୁଇ ସାଗରର ମିଳନ ସ୍ଥଳରେ[୩] ନ ପହଞ୍ଚିବା ପର୍ଯ୍ୟନ୍ତ (ଯେଉଁ ମାର୍ଗର ଆମେ ଅନୁସରଣ କରୁଅଛୁ) ତହିଁରୁ ବିରତ ହେବୁ ନାହିଁ, ଯଦ୍ୟପି ଆମକୁ ସେଥିପାଇଁ ବହୁ ଯୁଗ ପର୍ଯ୍ୟନ୍ତ ଯାତ୍ରା କରିବାକୁ ପଡ଼ିପାରେ ।"

---

୧. (୧୭:୪୭ର ଟୀକା ଦ୍ରଷ୍ଟବ୍ୟ) ।

୨. ଅର୍ଥାତ୍ ଯୀଶୁଖ୍ରୀଷ୍ଟ, କାରଣ ସେ ହଜରତ ମୁସାଙ୍କ ପଥର ପଥିକ ଥିଲେ ।

୩. ଏଠାରେ ସେହି ଯୁଗ ବିଷୟରେ ସୂଚନା ଦିଆଯାଇଛି ଯେବେ ହଜରତ ମୁସାଙ୍କ ଯୁଗ ସମାପ୍ତ ହେଲା ଓ ହଜରତ ମହମ୍ମଦଙ୍କ ଯୁଗ ଆରମ୍ଭ ହେଲା । ଦୁଇ ଯୁଗର ମଧ୍ୟବର୍ତ୍ତୀ କାଳରେ ହଜରତ ଈସା (ଯୀଶୁ) ଆସିଥିଲେ । କିନ୍ତୁ ସେ ଥିଲେ ହଜରତ ମୁସାଙ୍କ ଅଧସ୍ତନ ଜଣେ ନବି ।

فَلَمَّا بَلَغَا مَجْمَعَ بَيْنِهِمَا نَسِيَا حُوتَهُمَا فَاتَّخَذَ سَبِيلَهُ فِي الْبَحْرِ سَرَبًا ﴿٦٢﴾

୬୨. ତା'ପରେ ଯେତେବେଳେ ସେମାନେ ସେହି (ଦୁଇ ସାଗରର) [1] ମିଳନ ସ୍ଥଳରେ ପହଞ୍ଚିଲେ, ସେତେବେଳେ ସେମାନେ ନିଜ (ସହିତ ଆଣିଥିବା) ମାଛକୁ [2] ଭୁଲିଗଲେ, ଯାହାଫଳରେ ସେ (ମାଛ) ଦ୍ରୁତ ଗତିରେ ସାଗର ମଧ୍ୟକୁ ଚାଲିଗଲା ।

فَلَمَّا جَاوَزَا قَالَ لِفَتٰىهُ اٰتِنَا غَدَآءَنَا لَقَدْ لَقِيْنَا مِنْ سَفَرِنَا هٰذَا نَصَبًا ﴿٦٣﴾

୬୩. ତା'ପରେ ଯେତେବେଳେ ସେମାନେ ସେଠାରୁ ଅଗ୍ରସର [3] ହେଲେ, ସେତେବେଳେ ସେ (ମୁସା ନିଜ) ଯୁବକ (ସହଚର)କୁ କହିଲେ, ''ଆମ୍ଭଙ୍କୁ ଆମ୍ଭର ପ୍ରାତଃ ଭୋଜନ ପ୍ରଦାନ କର, କାରଣ ଆମେ ବାସ୍ତବରେ ଏହି ଯାତ୍ରା ଯୋଗୁଁ କ୍ଳାନ୍ତ ହୋଇଅଛୁ ।''

قَالَ اَرَءَيْتَ اِذْ اَوَيْنَآ اِلَى الصَّخْرَةِ فَاِنِّيْ نَسِيْتُ الْحُوْتَ وَمَآ اَنْسٰنِيْهُ اِلَّا الشَّيْطٰنُ اَنْ اَذْكُرَهٗ وَاتَّخَذَ سَبِيْلَهٗ فِي الْبَحْرِ عَجَبًا ﴿٦٤﴾

୬୪. ସେ କହିଲା, ''କୁହନ୍ତୁ (ଏବେ କ'ଣ ହେବ) ଯେତେବେଳେ ଆମେମାନେ (ବିଶ୍ରାମ ଉଦ୍ଦେଶ୍ୟରେ) ସେହି ପଥର ଚଟାଣ [4] ଉପରେ ଥିଲେ, ସେତେବେଳେ ମୁଁ ମାଛ ବିଷୟ ଭୁଲିଗଲି, ଏବଂ ଏହା ସଇତାନ ବ୍ୟତୀତ ଅନ୍ୟ କେହି ମୋତେ ଭୁଲାଇ ନାହିଁ, ଓ ସେ (ମାଛ) ସାଗର ମଧ୍ୟକୁ ବିଚିତ୍ର ପ୍ରକାରେ ପଳାଇଗଲା ।''

قَالَ ذٰلِكَ مَا كُنَّا نَبْغِ فَارْتَدَّا عَلٰٓى اٰثَارِهِمَا قَصَصًا ﴿٦٥﴾

୬୫. ସେ କହିଲେ, ''ଏହା ହିଁ ସେହି (ସ୍ଥାନ), ଯାହା ଆମେ ଖୋଜୁଥିଲେ,'' ତା'ପରେ ସେମାନେ ନିଜ ପାଦ ଚିହ୍ନକୁ ଅନୁସରଣ [5] କରି ପ୍ରତ୍ୟାବର୍ତ୍ତନ କଲେ ।

---

୧. ଅର୍ଥାତ୍ ଯେବେ ହଜରତ ମୁସାଙ୍କ ଅଧସ୍ତନ ନବି ହଜରତ ଇସାଙ୍କ ଯୁଗ ହଜରତ ମହମ୍ମଦଙ୍କ ଯୁଗ ସହିତ ମିଳିତ ହେଲା ତେବେ ହଜରତ ମୁସାଙ୍କ ସମ୍ପ୍ରଦାୟ ଓ ହଜରତ ଇସାଙ୍କ ସଂପ୍ରଦାୟ ନିଜ ନିଜ ଉପାସନାପାଠର ଅସଲ ଉଦ୍ଦେଶ୍ୟକୁ ଭୁଲି ଯାଇଥିଲେ । ଯେବେ ଖ୍ରୀଷ୍ଟିୟାନମାନେ ଉପାସନାର ଉଦ୍ଦେଶ୍ୟକୁ ହରାଇ ବସିଲେ ତେବେ ଦେବଦୂତମାନେ ଜାଣିପାରିଲେ ଯେ ଅନ୍ତିମ ଅଙ୍ଗୀକୃତ ଯୁଗପୁରୁଷଙ୍କ ଆଗମନ ସମୟ ଉପନୀତ ହେଲାଣି । ତେଣୁ ସେମାନେ ଅଲ୍ଲାହଙ୍କ ଆଦେଶକ୍ରମେ ହଜରତ ମହମ୍ମଦଙ୍କ ନିକଟକୁ ଆସିବାକୁ ଲାଗିଲେ ।

୨. ଆରବୀ 'ହୁତ୍' ଶବ୍ଦର ଅର୍ଥ ମାଛ । ଏହି ଶବ୍ଦକୁ ଉପାସନା-ପାଠ ବୁଝାଯାଏ । କାରଣ ସ୍ୱପ୍ନରେ ମାଛ ଦେଖିଲେ ତାହା ପୁଣ୍ୟବାନ୍ ଲୋକମାନଙ୍କର ଉପାସନା ପାଠକୁ ବୁଝାଏ ।

୩. ଏହା ହଜରତ ମୁସାଙ୍କ 'ମେରାଜ' ଅର୍ଥାତ୍ ଅତି ସୂକ୍ଷ୍ମ ତନ୍ଦ୍ରାବସ୍ଥାର ଦୃଶ୍ୟ ସମ୍ବନ୍ଧିତ ଏକ ଘଟଣା । ଏଥିରେ ସେ ନିଜର ଭାବୀ ଅଧସ୍ତନ ନବି ଯୀଶୁଙ୍କୁ ତଥା ତାଙ୍କ ସ୍ଥାନ ଗ୍ରହଣ କରିବାକୁ ଉଦ୍ଦିଷ୍ଟ ରସୁଲ ହଜରତ ମହମ୍ମଦଙ୍କୁ ମଧ୍ୟ ଦେଖିଥିଲେ ।

୪. ଯେତେବେଳେ ଉନ୍ନତି କରିବାର ବିଭିନ୍ନ ସାଧନ ହସ୍ତଗତ ହେବାପରେ ସେହି ସଂପ୍ରଦାୟ ଭୋଗବିଳାସରେ ଲିପ୍ତ ହେଲେ ସେତେବେଳେ ସେମାନେ ଉପାସନାପାଠର ଅସଲ ଉଦ୍ଦେଶ୍ୟକୁ ମଧ୍ୟ ହରାଇ ବସିଲେ ।

୫. ଅର୍ଥାତ୍ ଏପରି ଭବିଷ୍ୟବାଣୀ ଛାଡ଼ିଗଲେ ଯାହା ହଜରତ ମହମ୍ମଦଙ୍କ ଆବିର୍ଭାବ ସମ୍ପର୍କରେ ସୂଚିତ କରୁଥିଲା, ଯଦ୍ଦ୍ୱାରା ତାଙ୍କ ସଂପ୍ରଦାୟ ଉକ୍ତ ଭବିଷ୍ୟବାଣୀ ଯୋଗୁଁ ସତର୍କ ରହିବ ।

୬୬. ତା'ପରେ ସେମାନେ (ସେଠାରେ) ଆମର (ମନୋନୀତ) ଭକ୍ତମାନଙ୍କ ମଧ୍ୟରୁ ଏପରି ଜଣେ ଭକ୍ତକୁ[1] ପାଇଥିଲେ ଯାହାଙ୍କ ପ୍ରତି ଆମେ ନିଜ ସମୀପରୁ କରୁଣା (ସ୍ୱଭାବ) ପ୍ରଦାନ କରିଥିଲୁ, ଏବଂ ତାହାକୁ ଆମେ ନିଜଠାରୁ (ସ୍ୱତନ୍ତ୍ର) ଜ୍ଞାନ (ମଧ୍ୟ) ପ୍ରଦାନ କରିଥିଲୁ ।

فَوَجَدَا عَبْدًا مِّنْ عِبَادِنَآ اٰتَيْنٰهُ رَحْمَةً مِّنْ عِنْدِنَا وَعَلَّمْنٰهُ مِنْ لَّدُنَّا عِلْمًا ﴿٦٦﴾

୬୭. ମୁସା ତାଙ୍କୁ କହିଲେ, "କ'ଣ ଆମେ ଏଥିପାଇଁ ଆପଣଙ୍କ ଅନୁସରଣ କରିପାରୁ ଯେ ଯେଉଁ ଜ୍ଞାନ ଆପଣଙ୍କୁ ପ୍ରଦାନ କରାଯାଇଛି ତନ୍ମଧ୍ୟରୁ ଆମକୁ କିଛି ସତ୍‌ଜ୍ଞାନ ଶିକ୍ଷା ଦେବେ ?"

قَالَ لَهٗ مُوْسٰى هَلْ اَتَّبِعُكَ عَلٰٓى اَنْ تُعَلِّمَنِ مِمَّا عُلِّمْتَ رُشْدًا ﴿٦٧﴾

୬୮. ସେ (ଆଧ୍ୟାତ୍ମିକ ପୁରୁଷ) କହିଲେ, "ତୁମେ ଆମ ସହିତ ରହି କଦାପି ଧୈର୍ଯ୍ୟ ଧାରଣ କରି ପାରିବ ନାହିଁ ।"

قَالَ اِنَّكَ لَنْ تَسْتَطِيْعَ مَعِيَ صَبْرًا ﴿٦٨﴾

୬୯. ଏବଂ ଯେଉଁ ବିଷୟର ତତ୍ତ୍ୱ ସମ୍ବନ୍ଧରେ ତୁମର (କୌଣସି) ଧାରଣା ନାହିଁ, ତୁମେ ସେ ବିଷୟରେ କିପରି ଧୈର୍ଯ୍ୟ ଧାରଣ କରିପାରିବ ?

وَكَيْفَ تَصْبِرُ عَلٰى مَا لَمْ تُحِطْ بِهٖ خُبْرًا ﴿٦٩﴾

୭୦. ସେ କହିଲେ, "ଯଦି ଅଲ୍ଲାହ ଇଚ୍ଛା କରିବେ, ତେବେ ତୁମେ ଆମକୁ ଧୈର୍ଯ୍ୟବାନ୍ ପାଇବ, ଓ ଆମେ କୌଣସି ବିଷୟରେ ଆପଣଙ୍କର ଅବଜ୍ଞା କରିବୁ ନାହିଁ ।"

قَالَ سَتَجِدُنِيْٓ اِنْ شَآءَ اللّٰهُ صَابِرًا وَّلَآ اَعْصِيْ لَكَ اَمْرًا ﴿٧٠﴾

୭୧. ସେ (ଆଧ୍ୟାତ୍ମିକ ପୁରୁଷ) କହିଲେ, "ଯଦି ତୁମେ ଆମର ଅନୁସରଣ କରିବ ତେବେ, ଯେ ପର୍ଯ୍ୟନ୍ତ ଆମେ ତୁମକୁ କୌଣସି ବିଷୟ ସଂକ୍ରାନ୍ତରେ କିଛି ନ କହୁ ସେ ପର୍ଯ୍ୟନ୍ତ ତୁମେ ଆମକୁ ସେ ସଂକ୍ରାନ୍ତରେ କୌଣସି ପ୍ରଶ୍ନ ପଚାରିବ ନାହିଁ ।"

قَالَ فَاِنِ اتَّبَعْتَنِيْ فَلَا تَسْـَٔلْنِيْ عَنْ شَيْءٍ حَتّٰٓى اُحْدِثَ لَكَ مِنْهُ ذِكْرًا ﴿٧١﴾

---

୧. ଅର୍ଥାତ୍ ହଜରତ ମହମ୍ମଦ, ଯାହାଙ୍କର ଦର୍ଶନ ହଜରତ ମୁସା ମେରାଜ ମାଧ୍ୟମରେ ଲାଭ କରିଥିଲେ ।

ରୁ:୧୦

୭୨. ତା'ପରେ ସେମାନେ ସେଠାରୁ ଅଗ୍ରସର ହେଲେ, ଏବଂ ଯେତେବେଳେ ସେମାନେ ନୌକାରେ ଆରୋହଣ କଲେ, ସେତେବେଳେ ସେ (ଆଧ୍ୟାତ୍ମିକ ପୁରୁଷ) ତହିଁରେ ଛିଦ୍ର କରିଦେଲେ ; ଏଥିଯୋଗୁଁ ସେ (ମୁସା) କହିଲେ, "କ'ଣ ଆପଣ ଏହାର ଆରୋହୀମାନଙ୍କୁ ଜଳମଗ୍ନ କରାଇବା ସକାଶେ ଏଥିରେ ଛିଦ୍ର କରିଛନ୍ତି ? ଆପଣ ବାସ୍ତବରେ ଏକ ଅନୁଚିତ କାର୍ଯ୍ୟ କରିଛନ୍ତି ।"

فَانْطَلَقَا ۗ حَتّٰۤى اِذَا رَكِبَا فِى السَّفِيْنَةِ خَرَقَهَا ؕ قَالَ اَخَرَقْتَهَا لِتُغْرِقَ اَهْلَهَا ۚ لَقَدْ جِئْتَ شَيْـًٔا اِمْرًا ﴿۷۲﴾

୭୩. ସେ (ଆଧ୍ୟାତ୍ମିକ ପୁରୁଷ) କହିଲେ, "କ'ଣ ଆମେ (ତୁମକୁ) କହି ନ ଥିଲୁ ଯେ ତୁମେ ଆମ ସହିତ ରହି କଦାପି ଧୈର୍ଯ୍ୟ ଧାରଣ କରିପାରିବ ନାହିଁ ?"

قَالَ اَلَمْ اَقُلْ اِنَّكَ لَنْ تَسْتَطِيْعَ مَعِىَ صَبْرًا ﴿۷۳﴾

୭୪. ସେ (ମୁସା) କହିଲେ, "ଏଥର ଆପଣ ଆମର ଦୋଷ ଧରନ୍ତୁ ନାହିଁ, କାରଣ ଆମେ (ଆପଣଙ୍କ ନିର୍ଦ୍ଦେଶକୁ) ଭୁଲି ଯାଇଥିଲୁ, ଏବଂ ଆପଣ ଆମର (ଏହି) ତ୍ରୁଟି ଯୋଗୁଁ ଆମ ପ୍ରତି କଠୋର ହୁଅନ୍ତୁ ନାହିଁ ।"

قَالَ لَا تُؤَاخِذْنِىْ بِمَا نَسِيْتُ وَلَا تُرْهِقْنِىْ مِنْ اَمْرِىْ عُسْرًا ﴿۷۴﴾

୭୫. ଏହାପରେ ସେମାନେ (ଦୁହେଁ) ସେଠାରୁ ଅଗ୍ରସର ହେଲେ, ପରିଶେଷରେ ଯେତେବେଳେ ସେମାନେ ଜଣେ ବାଳକକୁ[୧] ଭେଟିଲେ, ସେତେବେଳେ ସେ (ଆଧ୍ୟାତ୍ମିକ ପୁରୁଷ) ତାହାକୁ ହତ୍ୟା କଲେ ; ଏଥିଯୋଗୁଁ ସେ (ମୁସା) କହିଲେ, "କ'ଣ (ଏହା ସତ୍ୟ ନୁହେଁ ଯେ) ଆପଣ ଜଣେ ନିଷ୍ପାପ (ଓ ନିରୀହ) ବ୍ୟକ୍ତିକୁ ଯେ କି କାହାରିକୁ ହତ୍ୟା କରି ନାହିଁ (ଅଯଥାରେ) ହତ୍ୟା କଲେ ? ଆପଣ ବାସ୍ତବରେ ଏକ ଜଘନ୍ୟ କାର୍ଯ୍ୟ କରିଛନ୍ତି ।"

فَانْطَلَقَا ۗ حَتّٰۤى اِذَا لَقِيَا غُلٰمًا فَقَتَلَهٗ ۙ قَالَ اَقَتَلْتَ نَفْسًا زَكِيَّةً ۢ بِغَيْرِ نَفْسٍ ؕ لَقَدْ جِئْتَ شَيْـًٔا نُّكْرًا ﴿۷۵﴾

---

୧. ସ୍ୱପ୍ନଫଳ ଅନୁସାରେ 'ଯୁବକ' ଆନନ୍ଦ ଓ ଶକ୍ତିକୁ ସୂଚିତ କରେ । ସୁତରାଂ ତାକୁ ହତ୍ୟା କରିବାର ଅର୍ଥ ହେଉଛି ଯେ ହଜରତ ମହମ୍ମଦ ଏପରି ବିଷୟକୁ ନିଷେଧ କରିଛନ୍ତି ଯାହା ଆନନ୍ଦ ଓ ଶକ୍ତି ସୃଷ୍ଟି କରେ । ମଦ୍ୟପାନ ଓ ଜୁଆଖେଳ ଆଦି କାର୍ଯ୍ୟ ସେଭଳି ବିଷୟର ଅନ୍ତର୍ଗତ । ଇସଲାମ ଧର୍ମରେ ଲଟେରି ଓ ବୀମା କାରବାରକୁ ନିଷେଧ କରାଯାଇଥିବାରୁ ଆନନ୍ଦ ଓ ଐଶ୍ୱର୍ଯ୍ୟକୁ କୁଠାରାଘାତ କରାଯାଉଛି ବୋଲି ଆଜିକାଲି ମୁସଲମାନମାନେ ମଧ୍ୟ ଆପତ୍ତି କରୁଛନ୍ତି ।

## ଭାଗ-୧୬

୭୬. ସେ (ଆଧ୍ୟାତ୍ମିକ ପୁରୁଷ) କହିଲେ, "କ'ଣ ଆମ୍ଭେ ତୁମକୁ କହି ନ ଥିଲୁ ଯେ ତୁମେ ଆମ୍ଭ ସହିତ ରହି କଦାପି ଧୈର୍ଯ୍ୟ ଧାରଣ କରି ପାରିବ ନାହିଁ ?"

قَالَ اَلَمْ اَقُلْ لَّكَ اِنَّكَ لَنْ تَسْتَطِيْعَ مَعِيَ صَبْرًا ۝٧٦

୭୭. ସେ (ମୁସା) କହିଲେ, "ଯଦି ଏହାପରେ ଆମ୍ଭେ କୌଣସି ବିଷୟ ସଂକ୍ରାନ୍ତରେ ଆପଣଙ୍କୁ ପ୍ରଶ୍ନ କରିବୁ ତେବେ ଆପଣ ଆମକୁ (ଆଉ) ନିଜ ସଙ୍ଗରେ ରଖିବେ ନାହିଁ ; (ଏବଂ ସେପରି ପରିସ୍ଥିତିରେ ଆମ୍ଭ ବିଗ୍ୱର ଅନୁସାରେ) ଆପଣ ନିଶ୍ଚୟ ଆମକୁ କ୍ଷମା ପ୍ରଦାନ କରିବାର ଶେଷ ସୀମାରେ ପହଞ୍ଚି ସାରିଥିବେ ।"

قَالَ اِنْ سَاَلْتُكَ عَنْ شَيْءٍۭ بَعْدَهَا فَلَا تُصٰحِبْنِيْ ۚ قَدْ بَلَغْتَ مِنْ لَّدُنِّيْ عُذْرًا ۝٧٧

୭୮. ତା'ପରେ ସେମାନେ (ସେଠାରୁ) ଅଗ୍ରସର ହୋଇ ଏକ ସହରର ବାସିନ୍ଦାମାନଙ୍କ ନିକଟରେ ପହଞ୍ଚିଲେ ଓ ସେମାନେ [୧]ସେଠାକାର ବାସିନ୍ଦାମାନଙ୍କୁ ଖାଇବାକୁ ମାଗିଲେ, କିନ୍ତୁ ସେମାନେ ସେମାନଙ୍କୁ (ନିଜର) ଅତିଥି ଭାବରେ ଗ୍ରହଣ କରିବାକୁ ଅସ୍ୱୀକାର କରିଦେଲେ ; ତା'ପରେ ସେମାନେ ସେଠାରେ ଏକ ପତନୋନ୍ମୁଖୀ ପ୍ରାଚୀର ଦେଖିବାକୁ ପାଇଲେ ; ସେ (ଆଧ୍ୟାତ୍ମିକ ପୁରୁଷ) ତାହାକୁ ମରାମତି କରିଦେଲେ ; (ଏହାପରେ ମୁସା) କହିଲେ, "ଯଦି ଆପଣ ଇଚ୍ଛା କରିଥା'ନ୍ତେ ତେବେ ନିଶ୍ଚୟ ଏଥିପାଇଁ କିଛି ପାରିଶ୍ରମିକ ଗ୍ରହଣ କରିପାରିଥାନ୍ତେ ।"

فَانْطَلَقَا ٝ حَتّٰٓى اِذَآ اَتَيَآ اَهْلَ قَرْيَةِ ِۨاسْتَطْعَمَآ اَهْلَهَا فَاَبَوْا اَنْ يُّضَيِّفُوْهُمَا فَوَجَدَا فِيْهَا جِدَارًا يُّرِيْدُ اَنْ يَّنْقَضَّ فَاَقَامَهٗ ۭ قَالَ لَوْ شِئْتَ لَتَّخَذْتَ عَلَيْهِ اَجْرًا ۝٧٨

୭୯. ସେ (ଆଧ୍ୟାତ୍ମିକ ପୁରୁଷ) କହିଲେ, "ଏହା ହିଁ ତୁମ ଓ ଆମ୍ଭ ମଧ୍ୟରେ ବିଚ୍ଛେଦ (ସମୟ) ଅଟେ ; ଯେଉଁ ବିଷୟରେ ତୁମେ ଧୈର୍ଯ୍ୟ ଧାରଣ କରି ପାରିଲ ନାହିଁ ସେ ବିଷୟରେ ଆମ୍ଭେ ବର୍ତ୍ତମାନ ତୁମକୁ ଏହାର ତାତ୍ପର୍ଯ୍ୟ ସଂକ୍ରାନ୍ତରେ ଅବଗତ କରାଉଛୁ ।"

قَالَ هٰذَا فِرَاقُ بَيْنِيْ وَبَيْنِكَ ۚ سَاُنَبِّئُكَ بِتَاْوِيْلِ مَا لَمْ تَسْتَطِعْ عَّلَيْهِ صَبْرًا ۝٧٩

---

[୧] ଏଠାରେ ସୂଚାଯାଇଛି ଯେ ହଜରତ ମହଜାଦ ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କୁ ସହଯୋଗ କରିବାକୁ ନିବେଦନ କରିବେ । କିନ୍ତୁ ସେମାନେ ଏପରି କରିବାକୁ ମନାକରି ଦେବେ । ଇତିହାସ ଏ ବିଷୟର ମୂକସାକ୍ଷୀ ।

୮୦. "(ସେହି) ନୌକାଟି [୧] ସାଗରରେ କାର୍ଯ୍ୟରତ କେତେକ ଦରିଦ୍ର ବ୍ୟକ୍ତିଙ୍କର ଥିଲା ; ଏବଂ ସେମାନଙ୍କ ସମ୍ମୁଖରେ (ସାଗରର ଅନ୍ୟ ପାର୍ଶ୍ୱରେ) ଜଣେ ଅତ୍ୟାଚାରୀ [୨] ରାଜା ଥିଲା ଯେ କି ପ୍ରତ୍ୟେକ ନୌକାକୁ ବଳପୂର୍ବକ ଛଡାଇ ନେଉଥିଲା ; ତେଣୁ ଆମେ ତାହାକୁ (ଛିଦ୍ର କରି) ଦୋଷଯୁକ୍ତ କରିବାକୁ ମନସ୍ଥ କରିଥିଲୁ ।"

أَمَّا السَّفِينَةُ فَكَانَتْ لِمَسَاكِينَ يَعْمَلُونَ فِي الْبَحْرِ فَأَرَدْتُ أَنْ أَعِيبَهَا وَكَانَ وَرَاءَهُمْ مَلِكٌ يَأْخُذُ كُلَّ سَفِينَةٍ غَصْبًا ۝٨٠

୮୧. "ଏବଂ ସେହି ବାଳକ (ବିଷୟକ ହତ୍ୟା ଘଟଣା)ର ତାତ୍ପର୍ଯ୍ୟ ଏହି ଯେ ତାହାର ପିତାମାତା [୩] ଉଭୟ,ବିଶ୍ୱାସକାରୀ ଥିଲେ ; ଏଣୁ (ତା'ର ସ୍ୱଭାବ ଦେଖି) ଆମେ ଆଶଙ୍କା କଲୁ ଯେ, ସେ (ବଡ଼ ହୋଇ) ସେମାନଙ୍କ ପ୍ରତି ଅବାଧ୍ୟତା ଓ ଅବଜ୍ଞାର ଦୋଷ ଲଦି ନ ଦେଉ ।"

وَأَمَّا الْغُلَامُ فَكَانَ أَبَوَاهُ مُؤْمِنَيْنِ فَخَشِينَا أَنْ يُرْهِقَهُمَا طُغْيَانًا وَكُفْرًا ۝٨١

୮୨. "ସୁତରାଂ ଆମେ ଇଚ୍ଛା କଲୁ ଯେ ସେମାନଙ୍କ ପାଳନକର୍ତ୍ତା ଏହି ପୁତ୍ର ବଦଳରେ ଏପରି ପୁତ୍ର ସେମାନଙ୍କୁ ଦେଇଦେବେ ଯେ କି ପବିତ୍ରତା ଓ କରୁଣା (ତଥା ନ୍ୟାୟ) ଦୃଷ୍ଟିରୁ ତା'ଠାରୁ ଉତ୍କୃଷ୍ଟତର ହେବ ।"

فَأَرَدْنَا أَنْ يُبْدِلَهُمَا رَبُّهُمَا خَيْرًا مِنْهُ زَكَاةً وَأَقْرَبَ رُحْمًا ۝٨٢

---

୧. ଏଠାରେ ଦରିଦ୍ର ଲୋକ ଅର୍ଥ ମୁସଲମାନମାନେ । ସେମାନେ କୋମଳ ହୃଦୟର ଥିଲେ । ନୌକାଟିରେ ରନ୍ଧ୍ର କରି ଦେବାର ଉଦ୍ଦେଶ୍ୟ ହେଉଛି ଯେ ସେମାନେ ଆପଣା ଧନ ଦରିଦ୍ରମାନଙ୍କ ସକାଶେ ଜକାତ ଆଦି ମାଧ୍ୟମରେ ବ୍ୟୟ କରିବେ ।

୨. ଅର୍ଥାତ୍ ରୋମ୍ ଓ ପାରସ୍ୟର ସମ୍ରାଟ । ସେମାନେ ଆରବ ଆକ୍ରମଣ ନ କରିବାର ଉଦ୍ଦେଶ୍ୟ ହେଉଛି ଯେ ତାହା ଏକ ଦରିଦ୍ର ଦେଶ ଓ ମରୁଭୂମିରେ ପରିପୂର୍ଣ୍ଣ । ଅଲ୍ଲାହ ଏହି ଦେଶକୁ ହଜରତ ମହମ୍ମଦଙ୍କ ସକାଶେ ସୁରକ୍ଷିତ ରଖିଥିଲେ ।

୩. ଏଠାରେ ଆରବୀ 'ଗୁଲାମ' ଶବ୍ଦର ଅନୁବାଦ ବାଳକ । ସ୍ୱପ୍ନରେ ବାଳକ ଦୃଶ୍ୟ ହେଲେ ତାହା ଅକ୍ଷମତା, ଶକ୍ତି ଓ ପାଶବିକ ଉତ୍ତେଜନାକୁ ସୂଚାଏ । ଏହି ତ୍ରିବିଧ ଗୁଣ ପ୍ରତ୍ୟେକ ମନୁଷ୍ୟଠାରେ ପରିଲକ୍ଷିତ ହୁଏ । ଏଠାରେ 'ବାଳକ', 'ପିତାମାତା', 'ବିଶ୍ୱାସକାରୀ' ଆଦି ଶବ୍ଦର ଆଳଙ୍କାରିକ ପ୍ରୟୋଗ କରାଯାଇଛି । ଏଠାରେ 'ପିତାମାତା' ହେଉଛି ମନୁଷ୍ୟର ଶରୀର ଓ ଆତ୍ମା । କାରଣ ଯେଉଁ ଉତ୍ସରୁ ବା ପିତାମାତାଙ୍କ ଠାରୁ ସମସ୍ତ ନୈତିକ ଗୁଣର ଉଦ୍ଭବ ହୁଏ,ତାହା ହେଉଛି ମନୁଷ୍ୟର ଶରୀର ଓ ଆତ୍ମା । ତାହାକୁ ଏଠାରେ 'ବିଶ୍ୱାସକାରୀ' ଭାବରେ ବର୍ଣ୍ଣନା କରାଯାଇଛି । ଇସଲାମ ମତରେ ସ୍ୱଭାବତଃ ମନୁଷ୍ୟ ସଦ୍‌ଗୁଣ ପ୍ରତି ସଦା ଆନତ । ଏହି ବିଶ୍ୱାସକାରୀମାନେ କୁପ୍ରବୃତ୍ତି ଦ୍ୱାରା ପାପ କାର୍ଯ୍ୟପ୍ରତି ଆକୃଷ୍ଟ ହୋଇଥା'ନ୍ତି । ଏଠାରେ ସେହି କୁପ୍ରବୃତ୍ତିକୁ 'ବାଳକ' ଭାବରେ ବର୍ଣ୍ଣନା କରାଯାଇଛି ।

ପୁନଶ୍ଚ 'ଗୁଲାମ' ଶବ୍ଦର ତାତ୍ପର୍ଯ୍ୟ ହେଉଛି ଗତି, ଶକ୍ତି ଓ ପାଶବିକ ବଳ ଯାହାକି ପ୍ରତ୍ୟେକ ମନୁଷ୍ୟ ଠାରେ ଦୃଷ୍ଟିଗୋଚର ହୁଏ, ଯେହେତୁ ଏହା ଭୌତିକ ନୁହେଁ ବରଂ ଅପ୍ରକାଶ ବିଷୟ ତେଣୁ ସେହି ସବୁ ଗୁଣଯୁକ୍ତ ପିତାମାତା ମଧ୍ୟ ତଦନୁରୂପ ହେବା ସ୍ୱାଭାବିକ । ଏହି ଦୃଷ୍ଟିକୋଣରୁ ଚିନ୍ତା କଲେ ଜଣାଯିବ ଯେ ଉପରୋକ୍ତ ଶକ୍ତି ଶରୀର ଓ ଆତ୍ମାରୁ ସୃଷ୍ଟି ହୁଏ । ଅତଏବ ବିଶ୍ୱାସକାରୀ ଏ ସବୁର ପିତାମାତା ବୋଲି କହିବା ଅର୍ଥ ନିଃସନ୍ଦେହରେ ଆତ୍ମା ଓ ମସ୍ତିଷ୍କର ଉତ୍ତରୋତ୍ତର ଉନ୍ନତି ହେବା ପାଇଁ ଚରିତ୍ରରେ ପ୍ରଚୁର ଉପାଦାନ ଖଞ୍ଜା ଯାଇଛି । ବଡ଼ ବଡ଼ ଓ କଠିନ କାର୍ଯ୍ୟ କରିବା ପାଇଁ ମନୁଷ୍ୟକୁ ସାମର୍ଥ୍ୟ ପ୍ରଦାନ କରାଯାଇଛି ତଥା ବିପତ୍ତି ସହ୍ୟ କରିବାକୁ ସାହସ । କିନ୍ତୁ ଏ ସବୁ ମନୁଷ୍ୟକୁ ଏଥିସକାଶେ ଦିଆଯାଇଛି ଯେ ସେ ଅଲ୍ଲାହଙ୍କର ସାନ୍ନିଧ୍ୟ ଲାଭ କରିପାରିବ । ଯଦି ଏହି ସମସ୍ତ ଶକ୍ତିକୁ ଅନିୟନ୍ତ୍ରିତ ଅବସ୍ଥାରେ ଛାଡ଼ି ଦିଆଯାଏ ତେବେ ସେସବୁ ମନୁଷ୍ୟକୁ ଅବଜ୍ଞା କରିବାପାଇଁ ଅନୁପ୍ରାଣିତ କରେ ଓ ତାହାର ସର୍ବନାଶ କରେ । ସୁତରାଂ ଅଲ୍ଲାହ ଆଲୋଚ୍ୟ ତିନି ଗୋଟି ଶକ୍ତିକୁ ହଜରତ ମହମ୍ମଦଙ୍କ ଜ୍ୟୋତି ଦ୍ୱାରା ଅର୍ଥାତ୍ ଇସଲାମୀୟ ଶରିୟତ ମାଧ୍ୟମରେ ବିନାଶ କରାଇଲେ, ଯାହା ଫଳରେ ଏଥିଉତ୍ତାରୁ ଯେ କୌଣସି ପ୍ରେରଣା ତା'ମଧ୍ୟରେ ଜାଗ୍ରତ ହେବ; ତାହା ପୁଣ୍ୟକାର୍ଯ୍ୟର ପରିସର ମଧ୍ୟରେ କାର୍ଯ୍ୟକାରୀ ହେବ, (ତୋଚିରୁଲ୍ ଅନ୍‌ଆମ ଦ୍ରଷ୍ଟବ୍ୟ) ।

୮୩. "ଏବଂ ଉକ୍ତ ପ୍ରାଚୀର[1] ସେହି ସହରର ଦୁଇଗୋଟି ଅନାଥ ବାଳକଙ୍କର ଥିଲା ; ଏବଂ ତାହା ତଳେ ସେମାନଙ୍କର କେତେକ ଧନ ସମ୍ପଦ (ପୋତା ହୋଇ) ଥିଲା ଏବଂ ସେମାନଙ୍କ ପିତା (ଜଣେ) ଧର୍ମନିଷ୍ଠ (ବ୍ୟକ୍ତି) ଥିଲା ; ଏଥିପାଇଁ ତୁମର ପାଳନକର୍ତ୍ତା ଇଚ୍ଛା କରିଥିଲେ ଯେ ସେମାନେ ସାବାଳକ ହୋଇ ଆପଣା ଧନ ସମ୍ପତ୍ତିକୁ (ନିଜେ) ବାହାର କରନ୍ତୁ, ତୁମ ପାଳନକର୍ତ୍ତାଙ୍କ ସମୀପରୁ (ସେମାନଙ୍କ ପ୍ରତି) ବିଶେଷ କରୁଣା ପ୍ରଦାନ କରାଯାଇଛି, ଏବଂ ଏହି କାର୍ଯ୍ୟ ଆମେ ନିଜ ଇଚ୍ଛାର ବଶବର୍ତ୍ତୀ ହୋଇ[2] କରିନାହୁଁ; ଏହା ହିଁ ଏ ବିଷୟର ତାତ୍ପର୍ଯ୍ୟ ଯେଉଁ ବିଷୟରେ ତୁମେ ଧୈର୍ଯ୍ୟ ଧାରଣ କରି ପାରିଲ ନାହିଁ ।"

وَاَمَّا الْجِدَارُ فَكَانَ لِغُلٰمَيْنِ يَتِيْمَيْنِ فِى الْمَدِيْنَةِ وَكَانَ تَحْتَهٗ كَنْزٌ لَّهُمَا وَكَانَ اَبُوْهُمَا صَالِحًا ۚ فَاَرَادَ رَبُّكَ اَنْ يَّبْلُغَآ اَشُدَّهُمَا وَيَسْتَخْرِجَا كَنْزَهُمَا ۖ رَحْمَةً مِّنْ رَّبِّكَ ۚ وَمَا فَعَلْتُهٗ عَنْ اَمْرِىْ ؕ ذٰلِكَ تَاْوِيْلُ مَا لَمْ تَسْطِعْ عَّلَيْهِ صَبْرًا ؕ﴿۸۳﴾

ରୁ : ୧୧

୮୪. ଏବଂ ସେମାନେ ତୁମକୁ ଜୁଲକରନୈନଙ୍କ[3] ସମ୍ବନ୍ଧରେ ପ୍ରଶ୍ନ କରୁଛନ୍ତି ; ତୁମେ (ସେମାନଙ୍କୁ) କୁହ, "ଆମେ ନିଶ୍ଚୟ ତାହାଙ୍କ ସମ୍ବନ୍ଧରେ ତୁମ୍ଭ ନିକଟରେ କିଛି ବର୍ଣ୍ଣନା କରିବୁ ।"

وَيَسْـَٔلُوْنَكَ عَنْ ذِى الْقَرْنَيْنِ ؕ قُلْ سَاَتْلُوْا عَلَيْكُمْ مِّنْهُ ذِكْرًا ﴿۸۴﴾

୮୫. ଆମେ ବାସ୍ତବରେ ତାହାଙ୍କୁ ଏହି ଭୂପୃଷ୍ଠରେ ଆଧିପତ୍ୟ ପ୍ରଦାନ କରିଥିଲୁ ଏବଂ ଆମେ ତାହାଙ୍କୁ ପ୍ରତ୍ୟେକ ବିଷୟର (ହାସଲ ପାଇଁ) ପନ୍ଥା ପ୍ରଦାନ କରିଥିଲୁ ।

اِنَّا مَكَّنَّا لَهٗ فِى الْاَرْضِ وَاٰتَيْنٰهُ مِنْ كُلِّ شَىْءٍ سَبَبًا ﴿۸۵﴾

୮୬. ତା'ପରେ ସେ ଏକ (ନିର୍ଦ୍ଦିଷ୍ଟ) ମାର୍ଗରେ ଅଗ୍ରସର ହେଲେ ।

فَاَتْبَعَ سَبَبًا ﴿۸۶﴾

---

୧. ଏଠାରେ 'ପ୍ରାଚୀର' ଶବ୍ଦ ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କ ମହାପୁରୁଷ ହଜରତ ଇସା ଓ ହଜରତ ମୁସାଙ୍କୁ ବୁଝାଉଛି । ସେହିପରି 'ତାଙ୍କ ପିତା'ର ଅର୍ଥ ହଜରତ ଇବ୍ରାହିମ । 'କନ୍‌ଜ'ର ଅର୍ଥ ସେହି ଜ୍ଞାନମୂଳକ ଧନ ଯାହାକୁ ଉଭୟ ଇହୁଦୀ ଓ ଖ୍ରୀଷ୍ଟିୟାନ ସୁରକ୍ଷିତ ରଖିଥିଲେ । କିନ୍ତୁ ସେମାନେ ଉପଯୁକ୍ତ ଧ୍ୟାନ ନ ଦେବାରୁ ତାହା ବିନଷ୍ଟ ହୋଇ ଯିବାର ଆଶଙ୍କା ଥିଲା, ଫଳରେ ହଜରତ ମହମ୍ମଦ ସେହି ଧନ ଅର୍ଥାତ୍ ବାଇବେଲର ବାଣୀକୁ ସୁରକ୍ଷିତ କରିଥିଲେ । ଅତଏବ ଯେତେବେଳେ ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କର ଚେତା ପଶିବ ସେତେବେଳେ ସେମାନେ ତହିଁରୁ ଲାଭବାନ୍ ହେବା ସଙ୍ଗେ ସଙ୍ଗେ ହଜରତ ମହମ୍ମଦଙ୍କ ଉପରେ ବିଶ୍ୱାସ କରିବେ ।

୨. ଅର୍ଥାତ୍ ଅଲ୍ଲାହଙ୍କ ଓହି ମାଧ୍ୟମରେ କରିଅଛି ।

୩. ଜୁଲକରନୈନ ଖୋରସର ସମ୍ରାଟ ଥିଲେ । ମେଡ଼ିଆ ଓ ପାରସ୍ୟ ମଧ୍ୟ ତାହାଙ୍କ ଶାସନାଧୀନ ଥିଲା । ନିମ୍ନୋକ୍ତ କାରଣରୁ ତାଙ୍କୁ ଜୁଲ୍‌କରନୈନ ରୂପେ ଅଭିହିତ କରାଯାଇଛି । ଦାନିୟାଲ ନବି ତାଙ୍କ ସମ୍ବନ୍ଧରେ ଏକ ସ୍ୱପ୍ନ ଦେଖି ଥିଲେ ଯେ ଦୁଇ ଶିଙ୍ଗ ଥିବା ଗୋଟିଏ ମେଣ୍ଢା ରାସ୍ତା ଉପରେ ଠିଆ ହୋଇଛି । ତା'ସମ୍ବନ୍ଧରେ ଦେବଦୂତ କହିଲେ ଯେ ସେ ହେଉଛି ମେଡ଼ିଆ ଓ ପାରସ୍ୟର ସମ୍ରାଟ । (Daniel. Ch. 8/20-21 ଦ୍ରଷ୍ଟବ୍ୟ) । ବସ୍ତୁତଃ ଜୁଲକରନୈନ ମେଡ଼ିଆ ଓ ପାରସ୍ୟର ଜଣେ ରାଜାଙ୍କର ବର୍ଣ୍ଣାନାତ୍ମକ ନାମ । ପବିତ୍ର କୋରାନରେ ତାଙ୍କ ବିଷୟରେ ଯେଉଁ ବର୍ଣ୍ଣନା ରହିଛି ସେଥିରୁ ଜଣାଯାଏ ଯେ, ସମ୍ଭବତଃ ସେ ହେଉଛନ୍ତି ମେଡ଼ିଆ ଓ ପାରସ୍ୟର ଅନ୍ୟତମ ସମ୍ରାଟ ସାଇରସ ।

୮୭. ଏପରିକି ଯେତେବେଳେ ସେ ସୂର୍ଯ୍ୟାସ୍ତ ହେବା ସ୍ଥାନରେ ପହଞ୍ଚିଲେ, ସେତେବେଳେ ସେ ତାହାକୁ ଆବିଲ[୧] ଜଳରାଶି ମଧ୍ୟରେ ଅସ୍ତ ହେଉଥିବାର ଦେଖିଲେ ଏବଂ ତାହା ନିକଟରେ ସେ ଗୋଟିଏ ସମ୍ପ୍ରଦାୟକୁ[୨] (ବସବାସ କରୁଥିବାର) ଦେଖିଲେ ; ଆମେ କହିଲୁ, "ହେ ଜୁଲକରନୈନ ! ତୁମେ ସେମାନଙ୍କୁ ଶାସ୍ତି ପ୍ରଦାନ କରିପାର ବା ସେମାନଙ୍କ ସହିତ ଉତ୍ତମ ବ୍ୟବହାର କରିପାର ।"

حَتّٰۤی اِذَا بَلَغَ مَغۡرِبَ الشَّمۡسِ وَجَدَهَا تَغۡرُبُ فِیۡ عَیۡنٍ حَمِئَۃٍ وَّ وَجَدَ عِنۡدَهَا قَوۡمًا ۬ؕ قُلۡنَا یٰذَا الۡقَرۡنَیۡنِ اِمَّاۤ اَنۡ تُعَذِّبَ وَ اِمَّاۤ اَنۡ تَتَّخِذَ فِیۡهِمۡ حُسۡنًا ﴿۸۷﴾

୮୮. ସେ କହିଲେ, "ଯେ ଅତ୍ୟାଚାର କରିବ, ଆମେ ତାହାକୁ ନିଶ୍ଚୟ ଶାସ୍ତି ପ୍ରଦାନ କରିବୁ ; ତା'ପରେ ତାହାକୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ପ୍ରତ୍ୟାବର୍ତ୍ତିତ କରାହେବ, ଏବଂ ସେ ତାହାକୁ କଠୋର ଶାସ୍ତି ପ୍ରଦାନ କରିବେ ।"

قَالَ اَمَّا مَنۡ ظَلَمَ فَسَوۡفَ نُعَذِّبُهٗ ثُمَّ یُرَدُّ اِلٰی رَبِّهٖ فَیُعَذِّبُهٗ عَذَابًا نُّکۡرًا ﴿۸۸﴾

୮୯. ଏବଂ ଯେ ବିଶ୍ୱାସ କରିବ ଓ ସତ୍‌କାର୍ଯ୍ୟ କରିବ ତାହାପାଇଁ (ଅଲ୍ଲାହଙ୍କ ନିକଟରେ) ଉତ୍ତମ ପୁରସ୍କାର (ନିୟତ) ଅଛି ; ଏବଂ ଆମେ (ମଧ୍ୟ) ନିଶ୍ଚୟ ତା'ପାଇଁ ନିଜ ଆଦେଶରେ ସହଜସାଧ୍ୟ କଥା କହିବୁ ।

وَ اَمَّا مَنۡ اٰمَنَ وَ عَمِلَ صَالِحًا فَلَهٗ جَزَآءَ ۨ الۡحُسۡنٰی ۚ وَ سَنَقُوۡلُ لَهٗ مِنۡ اَمۡرِنَا یُسۡرًا ﴿۸۹﴾

୯୦. ତା ପରେ ସେ (ଅନ୍ୟ) ଏକ ମାର୍ଗରେ ଅଗ୍ରସର ହେଲେ ।

ثُمَّ اَتۡبَعَ سَبَبًا ﴿۹۰﴾

୯୧. ଯେତେବେଳେ ସେ ସୂର୍ଯ୍ୟୋଦୟ ସ୍ଥାନରେ ପହଞ୍ଚିଲେ, ସେତେବେଳେ ସେ ତାହାକୁ ଏପରି ଏକ ସମ୍ପ୍ରଦାୟ[୩] ଉପରେ ଉଦୟ ହେବାର ଦେଖିବାକୁ ପାଇଲେ ଯେଉଁମାନଙ୍କ ସକାଶେ ଆମେ ଏହା (ଅର୍ଥାତ୍ ସେମାନଙ୍କ ଓ ସୂର୍ଯ୍ୟ) ମଧ୍ୟରେ କୌଣସି ଆଢୁଆଳ[୪] ରଖି ନ ଥିଲୁ ।

حَتّٰۤی اِذَا بَلَغَ مَطۡلِعَ الشَّمۡسِ وَجَدَهَا تَطۡلُعُ عَلٰی قَوۡمٍ لَّمۡ نَجۡعَلۡ لَّهُمۡ مِّنۡ دُوۡنِهَا سِتۡرًا ﴿۹۱﴾

୯୨. (ଘଟଣାଟି) ଠିକ୍ ଏହିପରି ; ଏବଂ ଆମେ ତାହାଙ୍କ ସମସ୍ତ ବିଷୟ ସଂକ୍ରାନ୍ତରେ ଭଲ ରୂପେ ଅବଗତ ଅଛୁ ।

کَذٰلِکَ ؕ وَ قَدۡ اَحَطۡنَا بِمَا لَدَیۡهِ خُبۡرًا ﴿۹۲﴾

---

୧. ଏହାର ଅର୍ଥ କୃଷ୍ଣସାଗର ଅଞ୍ଚଳ, ଯେଉଁ ସ୍ଥାନକୁ ଜୁଲ୍‌କରନୈନ ଯାଇଥିଲେ । କୃଷ୍ଣସାଗରର ଜଳ କୃଷ୍ଣବର୍ଣ୍ଣ ହୋଇ ଥିବାରୁ ତାହା ଗୋଳିଆ ଦେଖାଯାଏ ।

୨. ସେଠାରେ ବାସ କରୁଥିବା ଲୋକମାନେ ମେଡ଼ିଆ ଓ ପାରସ୍ୟର ସଫଳତା ପରେ, ଅନ୍ୟ ଜାତିର ଲୋକମାନଙ୍କ ସହିତ ମିଳିତ ହୋଇ ଖୋରସ ଉପରେ ଆକ୍ରମଣ କରିଥିଲେ । ଖୋରସର ସମ୍ରାଟ ଜୁଲକରନୈନ ମଧ୍ୟ ସେମାନଙ୍କ ଉପରେ ପ୍ରତି-ଆକ୍ରମଣ କରି ସେମାନଙ୍କୁ ନିଜର ଶାସନାଧୀନ କରିଥିଲେ ।

୩. ଅର୍ଥାତ୍ କୃଷ୍ଣସାଗରର ପୂର୍ବରେ ଅବସ୍ଥିତ ଆଫଗାନିସ୍ଥାନ ଓ ବେଲୁଚିସ୍ଥାନ ଉପରେ ଜୁଲକରନୈନ ବିଜୟ ହାସଲ କରିଥିଲେ ।

୪. ଅର୍ଥାତ୍ ବୃକ୍ଷହୀନ ପ୍ରାନ୍ତରରେ ବାସ କରୁଥିବା ଲୋକମାନେ ।

୯୩. ପୁଣି ସେ (ଅନ୍ୟ) ଏକ ମାର୍ଗରେ ଅଗ୍ରସର ହେଲେ ।

ثُمَّ اَتْبَعَ سَبَبًا ۝٩٣

୯୪. ଏପରିକି ଯେତେବେଳେ ସେ ଦୁଇଗୋଟି ପର୍ବତର ମଧ୍ୟବର୍ତ୍ତୀ ସ୍ଥାନରେ ପହଞ୍ଚିଲେ, ସେତେବେଳେ ସେ ସେଠାରେ ଏପରି ଏକ ସମ୍ପ୍ରଦାୟକୁ ଦେଖିବାକୁ ପାଇଲେ ଯେଉଁମାନେ ତାହାଙ୍କ କଥା ଅତି ଅଳ୍ପ ବୁଝି ପାରୁଥିଲେ ।

حَتّٰٓى اِذَا بَلَغَ بَيْنَ السَّدَّيْنِ وَجَدَ مِنْ دُوْنِهِمَا قَوْمًا ۙ لَّا يَكَادُوْنَ يَفْقَهُوْنَ قَوْلًا ۝٩٤

୯୫. ସେମାନେ କହିଲେ, "ହେ ଜୁଲକରନେନ ! ବାସ୍ତବରେ ୟାଜୁଜ ଓ ମାଜୁଜ ଭୂପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରୁଛନ୍ତି ; ସୁତରାଂ କ'ଣ ଆମେମାନେ ଆପଣଙ୍କ ପାଇଁ କିଛି ମାହାସୁଲ ଏହି ସର୍ତ୍ତରେ ଧାର୍ଯ୍ୟ କରିଦେବୁ ଯେ ଆପଣ ଆମମାନଙ୍କ ଓ ସେମାନଙ୍କ ମଧ୍ୟରେ ଏକ ପ୍ରତିବନ୍ଧ ସ୍ଥାପନ କରିଦେବେ ?"

قَالُوْا يٰذَا الْقَرْنَيْنِ اِنَّ يَاْجُوْجَ وَمَاْجُوْجَ مُفْسِدُوْنَ فِى الْاَرْضِ فَهَلْ نَجْعَلُ لَكَ خَرْجًا عَلٰٓى اَنْ تَجْعَلَ بَيْنَنَا وَبَيْنَهُمْ سَدًّا ۝٩٥

୯୬. ସେ କହିଲେ, "ଏ (ପ୍ରକାର କାର୍ଯ୍ୟ) ସଂକ୍ରାନ୍ତରେ ଆମର ପାଳନକର୍ତ୍ତା ଆମକୁ ଯେଉଁ ଶକ୍ତି ପ୍ରଦାନ କରିଛନ୍ତି ତାହା (ଶତ୍ରୁମାନଙ୍କ ସମ୍ବଳ ଅପେକ୍ଷା) ଉତ୍କୃଷ୍ଟତର ; ସୁତରାଂ ତୁମେମାନେ ଆମକୁ ସାଧ୍ୟାନୁସାରେ ସହାୟତା କର, ତାହାହେଲେ ଆମେ ତୁମମାନଙ୍କ ଓ ସେମାନଙ୍କ ମଧ୍ୟରେ ଏକ ପ୍ରାଚୀର ନିର୍ମାଣ କରିଦେବୁ ।"

قَالَ مَا مَكَّنِّىْ فِيْهِ رَبِّىْ خَيْرٌ فَاَعِيْنُوْنِىْ بِقُوَّةٍ اَجْعَلْ بَيْنَكُمْ وَبَيْنَهُمْ رَدْمًا ۝٩٦

୯୭. ତୁମେମାନେ ଆମକୁ ଲୌହପିଣ୍ଡ[1] ଦିଅ ; ପରିଶେଷରେ (ସେହି ପ୍ରାଚୀର ନିର୍ମିତ ହେବାକୁ ଲାଗିଲା) ଯେତେବେଳେ ସେ ଉକ୍ତ (ପର୍ବତର) ଶିଖର ଦ୍ୱୟର ମଧ୍ୟବର୍ତ୍ତୀ (ଶୂନ୍ୟ) ସ୍ଥାନକୁ (ଉକ୍ତ ପ୍ରାଚୀର ଦ୍ୱାରା ସଂଯୁକ୍ତ କରି) ସମାନ[2] କରିଦେଲେ, ସେତେବେଳେ ସେ (ସେମାନଙ୍କୁ) କହିଲେ, "ବର୍ତ୍ତମାନ ଏହା ଉପରେ ଅଗ୍ନି ଉତ୍ତପ୍ତ କର ;"

اٰتُوْنِىْ زُبَرَ الْحَدِيْدِ ۗ حَتّٰٓى اِذَا سَاوٰى بَيْنَ الصَّدَفَيْنِ قَالَ انْفُخُوْا ۗ حَتّٰٓى اِذَا جَعَلَهٗ نَارًا ۙ قَالَ اٰتُوْنِىْٓ اُفْرِغْ

---

୧. ଯେହେତୁ ଧାତୁରେ ପ୍ରାଚୀର ନିର୍ମାଣ କରାଯିବାକୁ ଅଛି ତେଣୁ ସେଠାକାର ଲୋକମାନଙ୍କୁ ଧାତୁ ଯୋଗାଇବାକୁ ହେବ ଓ ଅବଶିଷ୍ଟ କାର୍ଯ୍ୟ ଅର୍ଥାତ୍ ନିର୍ମାଣ ଆଦି କାର୍ଯ୍ୟ ତାଙ୍କ ଲୋକମାନେ କରିବେ ।

୨. ଜୁଲକରନେନ ଯେଉଁ ଠାରେ ପ୍ରାଚୀର ନିର୍ମାଣ କରାଇଲେ ତା'ର ଏକ ପାର୍ଶ୍ୱରେ କାସ୍ପିୟାନ ସାଗର ଓ ଅନ୍ୟ ପାର୍ଶ୍ୱରେ କକେସସ୍ ପର୍ବତମାଳା ଅବସ୍ଥିତ । ଏ ଦୁଇଟି ଦୁଇ ପାର୍ଶ୍ୱରୁ ଏକ ପ୍ରତିବନ୍ଧକ ରୂପେ କାର୍ଯ୍ୟ କରୁଥିଲା । କେବଳ ମଧ୍ୟବର୍ତ୍ତୀ ଅଞ୍ଚଳ ଅସୁରକ୍ଷିତ ଥିଲା । ଏଠାରେ ପ୍ରଶ୍ନ ହେଉଛି, ଏକ ପାର୍ଶ୍ୱରେ ସାଗର ଓ ଅନ୍ୟ ପାର୍ଶ୍ୱରେ ପର୍ବତମାଳା ଥିବା ବେଳେ ସେମାନଙ୍କ ମଧ୍ୟରେ ସମାନତା ସୃଷ୍ଟି କରାଯିବାର ତାତ୍ପର୍ଯ୍ୟ କ'ଣ ? ଏଠାରେ ସମାନତା ଅର୍ଥ ମଧ୍ୟବର୍ତ୍ତୀ ଉନ୍ମୁକ୍ତ ପ୍ରାନ୍ତରକୁ ପ୍ରାଚୀର ଦ୍ୱାରା ପରିବେଷ୍ଟିତ କରାଇବା ଫଳରେ ଶତ୍ରୁପକ୍ଷ ସାଗର ଓ ପର୍ବତମାଳାକୁ ଲଙ୍ଘି ଆସି ପାରିବେ ନାହିଁ । ତେଣୁ ଏହି ପ୍ରକାର ପ୍ରତିବନ୍ଧକ ଥିବା ଦୃଷ୍ଟିରୁ ଉଭୟ ସମାନ ।

عَلَيْهِ قِطْرًا ﴿٩٧﴾

ଯେତେବେଳେ ସେ ଏହାକୁ ଅଗ୍ନିସମ ଉତ୍ତପ୍ତ କରିଦେଲେ, ସେତେବେଳେ (ସେ) କହିଲେ, "(ବର୍ତ୍ତମାନ) ମୋତେ ତରଳ ତମ୍ବା (ଆଣି) ଦିଅ (ଯାହାକୁ) ମୁଁ ତା'ଉପରେ ଢାଳି ଦେବି।"

فَمَا اسْطَاعُوا أَنْ يَظْهَرُوهُ وَمَا اسْتَطَاعُوا لَهُ نَقْبًا ﴿٩٨﴾

୯୮. ସୁତରାଂ (ଯେତେବେଳେ ସେହି ପ୍ରାଚୀର ନିର୍ମିତ ହୋଇଗଲା) ସେମାନେ (ଅର୍ଥାତ୍ ଉକ୍ତ ୟାଜୁଜ ଓ ମାଜୁଜ) ଏହା ଉପରେ ଆରୋହଣ କରି ପାରିଲେ ନାହିଁ କି ସେଥିରେ କୌଣସି ଛିଦ୍ର କରି ପାରିଲେ ନାହିଁ।

قَالَ هٰذَا رَحْمَةٌ مِّنْ رَّبِّيْ فَإِذَا جَاءَ وَعْدُ رَبِّيْ جَعَلَهُ دَكَّاءَ وَكَانَ وَعْدُ رَبِّيْ حَقًّا ﴿٩٩﴾

୯୯. (ଏହାପରେ) ସେ କହିଲେ, "ଏହା (କେବଳ) ଆମ୍ଭର ପାଳନକର୍ତ୍ତାଙ୍କର ବିଶେଷ କୃପା ଯୋଗୁଁ (ସମ୍ଭବପର) ହୋଇଛି ; ପୁନଶ୍ଚ ଯେତେବେଳେ (ଏକ ବିଶ୍ୱବ୍ୟାପକ ଶାନ୍ତି ସଂକ୍ରାନ୍ତରେ) ଆମ୍ଭର ପାଳନକର୍ତ୍ତାଙ୍କ ଅଙ୍ଗୀକାର (ପାଳିତ ହେବା ସମୟ) ଉପସ୍ଥିତ ହେବ, ସେତେବେଳେ ସେ ଏହାକୁ (ଅର୍ଥାତ୍ ଉକ୍ତ ପ୍ରାଚୀରକୁ ଭାଙ୍ଗି) ଧୂଳିସାତ୍ କରିଦେବେ ; ଏବଂ ଆମ୍ଭର ପାଳନକର୍ତ୍ତାଙ୍କ ଅଙ୍ଗୀକାର (ବସ୍ତୁତଃ) ସତ୍ୟ ଅଟେ।"

وَتَرَكْنَا بَعْضَهُمْ يَوْمَئِذٍ يَّمُوْجُ فِيْ بَعْضٍ وَّنُفِخَ فِي الصُّوْرِ فَجَمَعْنٰهُمْ جَمْعًا ﴿١٠٠﴾

୧୦୦. ଏବଂ (ଯେଉଁ ଦିନ ଉକ୍ତ ଅଙ୍ଗୀକାର ପାଳିତ ହେବା ସମୟ ଉପସ୍ଥିତ ହେବ) ସେହିଦିନ ଆମେ ସେମାନଙ୍କୁ ପରସ୍ପର ବିରୁଦ୍ଧରେ [1]ସଂଘର୍ଷରେ ଲିପ୍ତ (ଥିବା ଅବସ୍ଥାରେ) ଛାଡି ଦେବୁ ଏବଂ ବିଗୁଲ ବଜାଇ ଦିଆଯିବ ; ଏହାପରେ ଆମେ ସେମାନଙ୍କୁ ଏକତ୍ରିତ କରାଇବୁ।

وَّعَرَضْنَا جَهَنَّمَ يَوْمَئِذٍ لِّلْكٰفِرِيْنَ عَرْضًا ﴿١٠١﴾

୧୦୧. ଏବଂ ଆମେ ସେ ଦିନ ନରକକୁ ଅବିଶ୍ୱାସକାରୀ ମାନଙ୍କର ଠିକ୍ ସମ୍ମୁଖକୁ ଘେନି ଆସିବୁ –

---

୧. ଅର୍ଥାତ୍ ଶେଷ ଯୁଗରେ ୟାଜୁଜ୍ ଓ ମାଜୁଜ ପରସ୍ପର ମଧ୍ୟରେ ଯୁଦ୍ଧ କରିବେ। ବାଇବେଲରେ ରୁଷିଆକୁ ୟାଜୁଜ ଓ ବ୍ରିଟେନକୁ ମାଜୁଜ ରୂପେ ଅଭିହିତ କରାଯାଇଛି (Ezekiel : Ch. 39 ଦ୍ରଷ୍ଟବ୍ୟ)। ୟୁରୋପ ତଥା ବ୍ରିଟିଶ ବଂଶୋଦ୍ଭବ ଆମେରିକାବାସୀଙ୍କ ସହିତ ରୁଷିଆର ଯୁଦ୍ଧ ପ୍ରସ୍ତୁତି ସର୍ବଦା ଜାରି ରହିଛି।

١٠١. (ସେହି ଅବିଶ୍ୱାସକାରୀମାନଙ୍କ ସମ୍ମୁଖକୁ) ଯେଉଁମାନଙ୍କର ଚକ୍ଷୁ ଆମର ଅନୁସ୍ମାରକ (କୋରାନ) ସମ୍ବନ୍ଧରେ (ଅମନୋଯୋଗୀ ହୋଇ) ପରଦା ଅନ୍ତରାଳରେ ରହିଥିଲା ଏବଂ ଯେଉଁମାନଙ୍କର ଶ୍ରବଣ କରିବାର ସାମର୍ଥ୍ୟ (ମଧ୍ୟ) ନଥିଲା ।

الَّذِيْنَ كَانَتْ اَعْيُنُهُمْ فِيْ غِطَآءٍ عَنْ ذِكْرِيْ وَكَانُوْا لَا يَسْتَطِيْعُوْنَ سَمْعًا ﴿١٠١﴾

ରୁ :୧୨

୧୦୩. (ତେବେ ଏ ସମସ୍ତ ଦେଖିବା ପରେ ମଧ୍ୟ) କ'ଣ ଅବିଶ୍ୱାସକାରୀମାନେ ମନେ କରୁଛନ୍ତି ଯେ ସେମାନେ ଆମଙ୍କୁ ଛାଡି ଆମର ଭକ୍ତମାନଙ୍କୁ ସାହାଯ୍ୟକାରୀ ରୂପେ ଗ୍ରହଣ କରିପାରିବେ ? ଆମେ ଅବିଶ୍ୱାସକାରୀମାନଙ୍କ ସକାଶେ ନରକକୁ ପ୍ରତିଫଳ ସ୍ୱରୂପ ପ୍ରସ୍ତୁତ କରିଅଛୁ ।

اَفَحَسِبَ الَّذِيْنَ كَفَرُوْٓا اَنْ يَّتَّخِذُوْا عِبَادِيْ مِنْ دُوْنِيْٓ اَوْلِيَآءَ ۭ اِنَّآ اَعْتَدْنَا جَهَنَّمَ لِلْكٰفِرِيْنَ نُزُلًا ﴿١٠٢﴾

୧୦୪. ତୁମେ (ସେମାନଙ୍କୁ) କୁହ, ''ଯେଉଁମାନେ ନିଜ କର୍ମ ଦୃଷ୍ଟିରୁ ଅଧିକ କ୍ଷତିଗ୍ରସ୍ତ ହେବେ ସେମାନଙ୍କ ସଂକ୍ରାନ୍ତରେ କ'ଣ ଆମେ ତୁମମାନଙ୍କୁ ଅବଗତ କରାଇବୁ ?''

قُلْ هَلْ نُنَبِّئُكُمْ بِالْاَخْسَرِيْنَ اَعْمَالًا ﴿١٠٣﴾

୧୦୫. "(ସେମାନେ ଏପରି ଲୋକ) ଯେଉଁମାନଙ୍କର (ସମସ୍ତ) ଉଦ୍ୟମ ଏହି ପାର୍ଥିବ ଜୀବନରେ ହିଁ ନଷ୍ଟ ହୋଇଯାଇ ଅଛି ଏବଂ ସେମାନେ ମନେ କରୁଛନ୍ତି ଯେ ସେମାନେ ଉତ୍ତମ କାର୍ଯ୍ୟ କରୁଛନ୍ତି ।''

اَلَّذِيْنَ ضَلَّ سَعْيُهُمْ فِي الْحَيٰوةِ الدُّنْيَا وَهُمْ يَحْسَبُوْنَ اَنَّهُمْ يُحْسِنُوْنَ صُنْعًا ﴿١٠٤﴾

୧୦୬. ସେମାନେ ହିଁ ନିଜ ପାଳନକର୍ତ୍ତାଙ୍କ ନିଦର୍ଶନଗୁଡିକୁ ଓ ତାହାଙ୍କ ସହିତ ସାକ୍ଷାତ୍‌କୁ ଅସ୍ୱୀକାର କରୁଛନ୍ତି, ଏଥିଯୋଗୁଁ ସେମାନଙ୍କ (ସମସ୍ତ) କର୍ମ (ଏହି ସଂସାରରେ) ବୃଥା ହୋଇଯାଇଛି ; ଅତଏବ କୟାମତ ଦିନ ଆମେ ସେମାନଙ୍କ ପ୍ରତି କୌଣସି ଗୁରୁତ୍ୱ ଦେବୁ ନାହିଁ ।

اُولٰۗىِٕكَ الَّذِيْنَ كَفَرُوْا بِاٰيٰتِ رَبِّهِمْ وَلِقَاۗىِٕهٖ فَحَبِطَتْ اَعْمَالُهُمْ فَلَا نُقِيْمُ لَهُمْ يَوْمَ الْقِيٰمَةِ وَزْنًا ﴿١٠٥﴾

୧୦୭. ନରକ ହିଁ ସେମାନଙ୍କର ପ୍ରତିଫଳ ହେବ, କାରଣ ସେମାନେ ଅବିଶ୍ୱାସ (ପନ୍ଥା) ଗ୍ରହଣ କରିଥିଲେ, ଏବଂ ଆମର ନିଦର୍ଶନଗୁଡିକ ପ୍ରତି ଓ ରସୁଲମାନଙ୍କ ପ୍ରତି ପରିହାସ କରିଥିଲେ ।

ذٰلِكَ جَزَآؤُهُمْ جَهَنَّمُ بِمَا كَفَرُوْا وَاتَّخَذُوْٓا اٰيٰتِيْ وَرُسُلِيْ هُزُوًا ﴿١٠٦﴾

୧୦୮. ଯେଉଁମାନେ ବିଶ୍ୱାସ କରିଛନ୍ତି ଏବଂ ସତ୍ (ଓ ସମୁଚିତ) କାର୍ଯ୍ୟ କରିଛନ୍ତି, ବାସ୍ତବରେ ସେମାନଙ୍କର ବାସସ୍ଥାନ 'ଫିର୍‌ଦୌଶ'(ନାମକ)ବୈକୁଣ୍ଠ ହେବ ।

اِنَّ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ كَانَتْ لَهُمْ جَنّٰتُ الْفِرْدَوْسِ نُزُلًا ﴿١٠٧﴾

୧୦୯. ସେମାନେ ସେଠାରେ ଚିରକାଳ ବାସ କରିବେ ଓ ସେଠାରୁ ଅପସାରିତ ହେବା ଇଚ୍ଛା କରିବେ ନାହିଁ ।

خٰلِدِيْنَ فِيْهَا لَا يَبْغُوْنَ عَنْهَا حِوَلًا ﴿١٠٨﴾

୧୧୦. ତୁମେ (ସେମାନଙ୍କୁ) କୁହ, "ଯଦି ଆମ ପାଳନକର୍ତ୍ତାଙ୍କ ବାଣୀସମୂହ (ଲେଖାଯିବା) ପାଇଁ (ପ୍ରତ୍ୟେକ) ସମୁଦ୍ର କାଳିରେ ପରିଣତ ହୋଇଯାଆନ୍ତା, ତେବେ ଆମ ପାଳନକର୍ତ୍ତାଙ୍କ ବାଣୀଗୁଡିକ ଶେଷ ହେବା ପୂର୍ବରୁ (ପ୍ରତ୍ୟେକ) ସମୁଦ୍ର (ର ଜଳରାଶି) ଶେଷ ହୋଇଯାଆନ୍ତା, ଯଦିଚ ଆମେ ତାହାକୁ ବୃଦ୍ଧି କରିବା ସକାଶେ ସେତିକି (ପରିମାଣ ଜଳ ସମୁଦ୍ର ମଧ୍ୟକୁ ପୁନରାୟ) ନିକ୍ଷେପ କରନ୍ତୁ ।"

قُلْ لَّوْ كَانَ الْبَحْرُ مِدَادًا لِّكَلِمٰتِ رَبِّيْ لَنَفِدَ الْبَحْرُ قَبْلَ اَنْ تَنْفَدَ كَلِمٰتُ رَبِّيْ وَلَوْ جِئْنَا بِمِثْلِهٖ مَدَدًا ﴿١٠٩﴾

୧୧୧. ତୁମେ (ସେମାନଙ୍କୁ) କୁହ, "ଆମେ ତୁମମାନଙ୍କ ସଦୃଶ ଜଣେ ମାନବ ମାତ୍ର, (କେବଳ ଏତିକି ପ୍ରଭେଦ ଯେ) ଆମ ପ୍ରତି ଓହି ପ୍ରେରିତ ହେଉଅଛି ଯେ ଏକମାତ୍ର ଉପାସ୍ୟ (ଅଲ୍ଲାହ)ହିଁ ତୁମମାନଙ୍କର (ପ୍ରକୃତ) ଉପାସ୍ୟ ; ସୁତରାଂ ଯେଉଁ ବ୍ୟକ୍ତି ନିଜ ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ୍ କରିବାର ଆଶା ରଖିଥାଏ ତାହା ପକ୍ଷରେ ସତ୍ (ଓ ସମୁଚିତ) କର୍ମ ସମ୍ପାଦନ କରିବା ଉଚିତ ଏବଂ ସେ ନିଜ ପାଳନକର୍ତ୍ତାଙ୍କ ଉପାସନାରେ (ଅନ୍ୟ) କାହାକୁ ସମକକ୍ଷ (ମନେ) ନ କରୁ ।

قُلْ اِنَّمَآ اَنَا بَشَرٌ مِّثْلُكُمْ يُوْحٰٓى اِلَيَّ اَنَّمَآ اِلٰهُكُمْ اِلٰهٌ وَّاحِدٌ ۚ فَمَنْ كَانَ يَرْجُوْا لِقَآءَ رَبِّهٖ فَلْيَعْمَلْ عَمَلًا صَالِحًا وَّلَا يُشْرِكْ بِعِبَادَةِ رَبِّهٖٓ اَحَدًا ﴿١١٠﴾

سُوْرَةُ مَرْيَمَ مَكِّيَّةٌ (١٩) آيَاتُهَا

# ମରିୟମ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୯୯ଟି ଆୟତ ଓ ୬ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁ ଅଛି) ।

كٓهٰيٰعٓصٓ ②

୨. କାଫ-ହା-ୟା-ଆଇନ-ସ୍ୱାଦ[1] ।

ذِكْرُ رَحْمَتِ رَبِّكَ عَبْدَهٗ زَكَرِيَّا ③

୩. (ଏହି ଅଧ୍ୟାୟରେ) ତୁମ ପାଳନକର୍ତ୍ତାଙ୍କ (ସେହି) କୃପା-ରୂପକ ବୃତ୍ତାନ୍ତ (ରହିଅଛି) ଯାହା ସେ ନିଜ ଭକ୍ତ ଜକରିୟାଙ୍କ ପ୍ରତି (ଏପରି ସମୟରେ) କରିଥିଲେ,

اِذْ نَادٰى رَبَّهٗ نِدَآءً خَفِيًّا ④

୪. ଯେତେବେଳେ ସେ ନିଜ ପାଳନକର୍ତ୍ତାଙ୍କୁ ନିମ୍ନ ସ୍ୱରରେ ଡାକିଥିଲେ,

قَالَ رَبِّ اِنِّيْ وَهَنَ الْعَظْمُ مِنِّيْ وَاشْتَعَلَ الرَّاْسُ شَيْبًا وَّلَمْ اَكُنْۢ بِدُعَآئِكَ رَبِّ شَقِيًّا ⑤

୫. (ଓ) ସେ କହିଲେ, "ହେ ଆମ୍ଭ ପାଳନକର୍ତ୍ତା ! (ଆମ୍ଭର ଅବସ୍ଥା ଏପରି ଯେ) ଆମ୍ଭର ସମସ୍ତ ଅସ୍ଥି ଦୁର୍ବଳ ହୋଇଯାଇଛି, ଏବଂ ବାର୍ଦ୍ଧକ୍ୟ ଯୋଗୁଁ ଆମ୍ଭ ମସ୍ତକରେ କେଶରାଶି ଶୁକ୍ଳ ହୋଇ ଉଜ୍ଜ୍ୱଳ ହୋଇଅଛି ଏବଂ ହେ ଆମ୍ଭର ପାଳନକର୍ତ୍ତା ! ତୁମ୍ଭଙ୍କୁ ପ୍ରାର୍ଥନା କରି ଆମ୍ଭେ କେବେହେଲେ ବ୍ୟର୍ଥ (ବା ନିରାଶ) ହୋଇନାହୁଁ ।"

وَاِنِّيْ خِفْتُ الْمَوَالِيَ مِنْ وَّرَآءِيْ وَكَانَتِ امْرَاَتِيْ عَاقِرًا فَهَبْ لِيْ مِنْ لَّدُنْكَ وَلِيًّا ⑥

୬. "ଏବଂ ବାସ୍ତବରେ ଆମ୍ଭେ ଆମ୍ଭ (ମୃତ୍ୟୁ) ପରେ ନିଜ ବନ୍ଧୁବାନ୍ଧବଙ୍କ (ବ୍ୟବହାର) ସମ୍ବନ୍ଧରେ ଆଶଙ୍କା କରୁଅଛୁ ; ଏବଂ ଆମ୍ଭର ପତ୍ନୀ ବନ୍ଧ୍ୟା ଅଟେ ; ସୁତରାଂ ତୁମେ ଆମ୍ଭଙ୍କୁ ନିଜ ସମୀପରୁ ଜଣେ (ପୁତ୍ରରୂପକ) ବନ୍ଧୁ ପ୍ରଦାନ କର ,"

---

୧. ଏହି ସଂକ୍ଷେପାକ୍ଷର ଯେଉଁ ପାଞ୍ଚ ଗୋଟି ଅକ୍ଷରର ସମଷ୍ଟି ସେଗୁଡ଼ିକ ହେଉଛି– 'କାଫ୍, ହା, ୟା, ଅଇନ୍, ସ୍ୱାଦ' । 'କାଫ୍'ରୁ କାଫି (ଯଥେଷ୍ଟ), 'ହା'ରୁ ହାଦୀ (ପଥ ପ୍ରଦର୍ଶକ), 'ୟା'ରୁ ଏକ ସମ୍ବୋଧନସୂଚକ ଶବ୍ଦ 'ହେ', 'ଅଇନ୍'ରୁ ଅଲିମ (ସର୍ବଜ୍ଞ), 'ସ୍ୱାଦ'ରୁ ସାଦିକ (ସତ୍ୟବାଦୀ) ଶବ୍ଦମାନ ନିଷ୍ପନ୍ନ ହୋଇଛି । ଆଲୋଚ୍ୟ ଅକ୍ଷରଗୁଡ଼ିକର ସମ୍ପୂର୍ଣ୍ଣରୂପ ଏହିପରି– ଅନ୍‌ତା କାଫିନ୍, ଅନ୍‌ତା ହାଦୀନ୍, (ୟା ଅଲିମୋ) ୟା ଆଲିମୋ, ୟା ସାଦିକୋ (ଅର୍ଥାତ୍ ହେ ସର୍ବଜ୍ଞ ଓ ସତ୍ୟବାଦୀ ପ୍ରଭୁ ! ତୁମେ ହି ଯଥେଷ୍ଟ ଓ ତୁମେ ହି ସତ୍ୟବାଦୀ) । ଏହି ଅକ୍ଷର ସମୂହ ଦ୍ୱାରା ବସ୍ତୁତଃ ଖ୍ରୀଷ୍ଟିୟାନ ମତବାଦକୁ ଖଣ୍ଡନ କରାଯାଇଛି । ହଜରତ ମହମ୍ମଦଙ୍କ ପିଉସୀ ଝିଅ ଭଉଣୀ ହଜରତ ଉମ୍ମେ ହାନିଙ୍କ ଠାରୁ ଉଦ୍ଧୃତ ହୋଇ ଏହି ଅର୍ଥ ଫତହୁଲ୍ ବୟାନ୍‌ରେ ଲିପିବଦ୍ଧ ହୋଇଛି ।

୭. "ଯେ କି ଆମର ଦାୟାଦ ହେବେ ଏବଂ ୟାକୁବଙ୍କ ବଂଶର ମଧ୍ୟ ଦାୟାଦ ହେବେ ; (ଏବଂ ଆମଙ୍କୁ ବଂଶାନୁକ୍ରମେ ଯେଉଁ ଆଧ୍ୟାତ୍ମିକ ଆଶୀର୍ବାଦ ମିଳିଅଛି ତାହାର ମଧ୍ୟ ଦାୟାଦ ହେବେ) ; ଏବଂ ହେ ଆମ ପାଳନକର୍ତ୍ତା ! ତାହାଙ୍କୁ ନିଜର ପସନ୍ଦଯୋଗ୍ୟ କର ।"

يَّرِثُنِيْ وَيَرِثُ مِنْ اٰلِ يَعْقُوْبَ ۖ وَاجْعَلْهُ رَبِّ رَضِيًّا ۝

୮. (ପ୍ରତ୍ୟୁତ୍ତରରେ ଅଲ୍ଲାହ କହିଲେ) "ହେ ଜକ୍ରିୟା ! ଆମେ ତୁମଙ୍କୁ ଏକ ପୁତ୍ର ସନ୍ତାନ ସମ୍ବନ୍ଧରେ ସୁସମାଚାର ଦେଉଅଛୁ ; (ସେ ବୟଃପ୍ରାପ୍ତ ହେବ ଏବଂ) ତାହାର ନାମ (ଅଲ୍ଲାହଙ୍କ ତରଫରୁ) ୟହିୟା ହେବ ; ଏହା ପୂର୍ବରୁ ଆମେ କାହାରିକୁ ଏହି ନାମରେ ନାମିତ କରିନାହୁଁ ।"

يٰزَكَرِيَّآ اِنَّا نُبَشِّرُكَ بِغُلٰمِ ۣ اسْمُهٗ يَحْيٰى ۙ لَمْ نَجْعَلْ لَّهٗ مِنْ قَبْلُ سَمِيًّا ۝

୯. (ଜକ୍ରିୟା) କହିଲେ, "ହେ ଆମର ପାଳନକର୍ତ୍ତା ! ଆମ ଘରେ କିପରି ପୁତ୍ର ସନ୍ତାନ ଜାତ ହେବ ଯେତେବେଳେ ଆମର ପତ୍ନୀ ବନ୍ଧ୍ୟା ଅଟେ ଏବଂ ଆମେ ବାର୍ଦ୍ଧକ୍ୟର ଚରମ ସୀମାରେ ଉପସ୍ଥିତ ହୋଇଅଛୁ ?"

قَالَ رَبِّ اَنّٰى يَكُوْنُ لِيْ غُلٰمٌ وَّكَانَتِ امْرَاَتِيْ عَاقِرًا وَّقَدْ بَلَغْتُ مِنَ الْكِبَرِ عِتِيًّا ۝

୧୦. (ଦେବଦୂତ) କହିଲେ, "(ତୁମେ ଯେପରି କହୁଅଛ) ତାହା ସେହିପରି ଅଟେ ; (କିନ୍ତୁ) ତୁମର ପାଳନକର୍ତ୍ତା କହୁଛନ୍ତି ଯେ ଏହା ତାହାଙ୍କ ପକ୍ଷରେ ସହଜସାଧ୍ୟ ଅଟେ ଏବଂ ଆମେ ତୁମଙ୍କୁ ଏଥି ପୂର୍ବରୁ ସୃଷ୍ଟି କରିଥିଲୁ ଯେତେବେଳେ କି ତୁମର କିଛି (ଅସ୍ତିତ୍ୱ) ନଥିଲା ।"

قَالَ كَذٰلِكَ ۚ قَالَ رَبُّكَ هُوَ عَلَيَّ هَيِّنٌ وَّقَدْ خَلَقْتُكَ مِنْ قَبْلُ وَلَمْ تَكُ شَيْـًٔا ۝

୧୧. (ଜକ୍ରିୟା) କହିଲେ, "ହେ ଆମର ପାଳନକର୍ତ୍ତା ! ଆମ ସକାଶେ କୌଣସି ଆଦେଶ ପ୍ରଦାନ କର ;" (ଅଲ୍ଲାହ) କହିଲେ, "ତୁମ ପାଇଁ ଏହି ଆଦେଶ ଦିଆଯାଉଅଛି ଯେ ତୁମେ ଲୋକମାନଙ୍କ ସହିତ କ୍ରମାଗତ ତିନି ରାତ୍ରି ପର୍ଯ୍ୟନ୍ତ କଥାବାର୍ତ୍ତା କର ନାହିଁ ।"

قَالَ رَبِّ اجْعَلْ لِّيْٓ اٰيَةً ۚ قَالَ اٰيَتُكَ اَلَّا تُكَلِّمَ النَّاسَ ثَلٰثَ لَيَالٍ سَوِيًّا ۝

୧୨. ଏହାପରେ ସେ (ଜକ୍ରିୟା) ଉପାସନା ପ୍ରକୋଷ୍ଠରୁ ବାହାରି ନିଜ ସମ୍ପ୍ରଦାୟ ନିକଟକୁ ଗଲେ ଓ ସେମାନଙ୍କୁ ନିମ୍ନ ସ୍ୱରରେ ସଙ୍କେତ ମାଧ୍ୟମରେ କହିଲେ ଯେ ଦିବାରାତ୍ର ଅଲ୍ଲାହଙ୍କର ଗୁଣଗାନ କରୁଥାଅ ।

فَخَرَجَ عَلٰى قَوْمِهٖ مِنَ الْمِحْرَابِ فَاَوْحٰٓى اِلَيْهِمْ اَنْ سَبِّحُوْا بُكْرَةً وَّعَشِيًّا ۝

يَٰيَحْيَىٰ خُذِ ٱلْكِتَٰبَ بِقُوَّةٍ ۖ وَءَاتَيْنَٰهُ ٱلْحُكْمَ صَبِيًّا ﴿١٣﴾

୧୩. (ଏହାପରେ ୟହିୟା ଜନ୍ମ ଲାଭ କଲେ ଓ ଆମେ ତାହାକୁ କହିଲୁ), ''ହେ ୟହିୟା ! ତୁମେ (ଅଲ୍ଲାହ୍‌ଙ୍କ) ଗ୍ରନ୍ଥକୁ ଦୃଢତା ସହକାରେ ଧାରଣ କର'' ଏବଂ ଶୈଶବ ଅବସ୍ଥାରେ ଆମେ ତାହାଙ୍କୁ ତତ୍ତ୍ୱଜ୍ଞାନ ପ୍ରଦାନ କରିଥିଲୁ ।

وَحَنَانًا مِّن لَّدُنَّا وَزَكَوٰةً ۖ وَكَانَ تَقِيًّا ﴿١٤﴾

୧୪. ଏବଂ (ଏ ବିଷୟ) ଆମ ସମୀପରୁ ତାହାଙ୍କ ପକ୍ଷରେ ଦୟା ସ୍ୱରୂପ ଥିଲା ଏବଂ ଏହା ତାହାଙ୍କୁ ପବିତ୍ର କରିବା ସକାଶେ ଥିଲା ; ଏବଂ ସେ ଅତ୍ୟନ୍ତ ଧର୍ମଭୀରୁ ଥିଲେ ।

وَبَرًّۢا بِوَٰلِدَيْهِ وَلَمْ يَكُن جَبَّارًا عَصِيًّا ﴿١٥﴾

୧୫. ଏବଂ ସେ ନିଜ ପିତାମାତାଙ୍କ ସହିତ ଉତ୍ତମ ବ୍ୟବହାର କରୁଥିଲେ ; ଏବଂ ସେ ଉଦ୍ଧତ ଓ ଅବାଧ୍ୟ ନଥିଲେ ।

وَسَلَٰمٌ عَلَيْهِ يَوْمَ وُلِدَ وَيَوْمَ يَمُوتُ وَيَوْمَ يُبْعَثُ حَيًّا ﴿١٦﴾

୧୬. ଏବଂ ଯେତେବେଳେ ସେ [1]ଜନ୍ମ ଗ୍ରହଣ କରିଥିଲେ, ସେତେବେଳେ ମଧ୍ୟ ତାହାଙ୍କ ପ୍ରତି ଶାନ୍ତି ଥିଲା, ଏବଂ ଯେତେବେଳେ ସେ ମୃତ୍ୟୁ ବରଣ କରିବେ ଓ ଯେତେବେଳେ ତାହାଙ୍କୁ ପୁନର୍ଜୀବିତ କରାଯାଇ ଉତ୍‌ଥିତ କରାଯିବ (ସେତେବେଳେ ମଧ୍ୟ ତାହାଙ୍କ ଉପରେ ଶାନ୍ତି ରହିବ) ।

ରୁ : ୨

وقف لازم وَٱذْكُرْ فِى ٱلْكِتَٰبِ مَرْيَمَ إِذِ ٱنتَبَذَتْ مِنْ أَهْلِهَا مَكَانًا شَرْقِيًّا ﴿١٧﴾

୧୭. ଏବଂ (ଏହି) ଗ୍ରନ୍ଥରେ ମରିୟମଙ୍କ (ସଂକ୍ରାନ୍ତରେ) ଯେଉଁ ବୃତ୍ତାନ୍ତ ଅଛି ତୁମେ ତାହା ବର୍ଣ୍ଣନା କର ; (ବିଶେଷତଃ ସେହି ବୃତ୍ତାନ୍ତ) ଯେତେବେଳେ ସେ ନିଜ ପରିବାରର ଲୋକମାନଙ୍କଠାରୁ ପୂର୍ବ ଦିଗସ୍ଥ ଏକ ସ୍ଥାନକୁ ଚାଲି ଯାଇଥିଲେ ।

فَٱتَّخَذَتْ مِن دُونِهِمْ حِجَابًا فَأَرْسَلْنَآ إِلَيْهَا رُوحَنَا فَتَمَثَّلَ لَهَا بَشَرًا سَوِيًّا ﴿١٨﴾

୧୮. ଏବଂ (ସେ ନିଜ ମଧ୍ୟରେ ଓ) ସେମାନଙ୍କ ମଧ୍ୟରେ ଏକ ପରଦା ସ୍ଥାପନ କରିଥିଲେ (ଅର୍ଥାତ୍ ସେମାନଙ୍କଠାରୁ ସମ୍ପର୍କ ଛିନ୍ନ କରି ନିଜକୁ ଲୁକ୍କାୟିତ ରଖିଲେ) ; ସେତେବେଳେ ଆମେ ତାହାଙ୍କ ନିକଟକୁ ଆମର ବାର୍ତ୍ତାବାହକ ଦେବଦୂତ (ଜିବ୍ରାଇଲ)ଙ୍କୁ ପ୍ରେରଣ କରିଥିଲୁ ଏବଂ ସେ ତାହାଙ୍କ ସମ୍ମୁଖରେ ଏକ ପୂର୍ଣ୍ଣାଙ୍ଗ ମାନବ ଆକୃତି ଧାରଣ କରି ଉପସ୍ଥିତ ହେଲେ ।

---

୧. ଏହି ଅଧ୍ୟାୟର ଆୟତ ସଂ. ୩୪ରେ ଯୀଶୁଙ୍କ ବିଷୟରେ ମଧ୍ୟ ଅନୁରୂପ ବର୍ଣ୍ଣନା ଅଛି ଯେ ଯେତେବେଳେ ସେ ଜନ୍ମ ଗ୍ରହଣ କରିବେ ସେତେବେଳେ ତାଙ୍କ ପ୍ରତି ଶାନ୍ତି ପ୍ରେରିତ ହେବ ଏବଂ ଯେତେବେଳେ ସେ ମୃତ୍ୟୁବରଣ କରିବେ ସେତେବେଳେ ମଧ୍ୟ ତାଙ୍କ ପ୍ରତି ଶାନ୍ତି ପ୍ରେରିତ ହେବ । ଏ ରୂପ ବର୍ଣ୍ଣନାକୁ ଖ୍ରୀଷ୍ଟିୟାନ୍‌ମାନେ ଯୀଶୁଙ୍କର ଶ୍ରେଷ୍ଠତା ପ୍ରତିପାଦିତ କରୁଛନ୍ତି । କିନ୍ତୁ ସେମାନଙ୍କର ମନେରଖିବା ଉଚିତ ଯେ ଅଲ୍ଲାହ୍ ହଜରତ ୟହିୟାଙ୍କ ସମ୍ବନ୍ଧରେ ମଧ୍ୟ ହଜରତ ଜକ୍ରିୟାଙ୍କୁ ଅନୁରୂପ ବିଷୟ କହିଥିଲେ । ଯଦି ଏହାକୁ ଶ୍ରେଷ୍ଠତା ମନେ କରାଯିବ ତେବେ ଯୀଶୁଙ୍କ ଉପରେ ୟହିୟାଙ୍କ ଶ୍ରେଷ୍ଠତା ମଧ୍ୟ ପ୍ରତିପାଦିତ ହେଉଅଛି ।

୧୯. (ମରିୟମ ତାହାଙ୍କୁ) କହିଲେ, ''ଯଦି ତୁମେ ଧର୍ମଭୀରୁ ହୋଇଥାଅ, ତେବେ ମୁଁ ତୁମଠାରୁ ଅଶେଷ ଦୟାବାନ୍ ଅଲ୍ଲାହଙ୍କର ଶରଣ ଭିକ୍ଷା କରୁଅଛି ।''

قَالَتۡ اِنِّیۡۤ اَعُوۡذُ بِالرَّحۡمٰنِ مِنۡكَ اِنۡ كُنۡتَ تَقِیًّا ﴿۱۹﴾

୨୦. (ପ୍ରତ୍ୟୁତ୍ତରରେ ଦେବଦୂତ) କହିଲେ, ''ମୁଁ କେବଳ ତୁମ ପାଳନକର୍ତ୍ତାଙ୍କର ପ୍ରେରିତ ବାର୍ତ୍ତାବହ ଅଟେ ; ଯଦ୍ଦ୍ୱାରା କି ମୁଁ ତୁମକୁ (ଅଲ୍ଲାହଙ୍କର ଓହି ଅନୁସାରେ) ଏକ ପବିତ୍ର ପୁତ୍ର (ସମ୍ବନ୍ଧରେ ସୁସମାଚାର) ପ୍ରଦାନ କରିବି (ଯେ କି ପୂର୍ଣ୍ଣବୟସ୍କ ହେବ) ।''

قَالَ اِنَّمَاۤ اَنَا رَسُوۡلُ رَبِّكِ ٭ۖ لِاَهَبَ لَكِ غُلٰمًا زَكِیًّا ﴿۲۰﴾

୨୧. (ମରିୟମ) କହିଲେ, ''ମୋର କିପରି ପୁତ୍ର ସନ୍ତାନ ହେବ ଯେତେବେଳେ କି ମୋତେ କୌଣସି ପୁରୁଷ ସ୍ପର୍ଶ କରି ନାହିଁ, ଏବଂ ମୁଁ କେବେ ହେଲେ ବ୍ୟଭିଚାରରେ ଲିପ୍ତ ହୋଇ ନାହିଁ ।''

قَالَتۡ اَنّٰی یَكُوۡنُ لِیۡ غُلٰمٌ وَّ لَمۡ یَمۡسَسۡنِیۡ بَشَرٌ وَّ لَمۡ اَكُ بَغِیًّا ﴿۲۱﴾

୨୨. (ଦେବଦୂତ) କହିଲେ, ''(ବିଷୟଟି) ସେହିପରି ଅଟେ (ଯେପରି ତୁମେ କହିଲ)'' କିନ୍ତୁ ତୁମ ପାଳନକର୍ତ୍ତା ଏହା କହିଛନ୍ତି, ''ଏହା ଆମ୍ଭପକ୍ଷରେ ସହଜସାଧ୍ୟ [୧] ଏବଂ ଏତଦ୍ଦ୍ୱାରା ଆମ୍ଭେ ତାହାଙ୍କୁ ଲୋକମାନଙ୍କ ସକାଶେ ଏକ ନିଦର୍ଶନ ସ୍ୱରୂପ ଓ ନିଜ କରୁଣାର ମାଧ୍ୟମ କରିବୁ ଏବଂ ଏହି ବିଷୟ (ଆମ୍ଭ ଦ୍ୱାରା) ନିର୍ଦ୍ଧାରିତ ହୋଇସାରିଛି ।''

قَالَ كَذٰلِكِ ۚ قَالَ رَبُّكِ هُوَ عَلَیَّ هَیِّنٌ ۚ وَ لِنَجۡعَلَهٗۤ اٰیَةً لِّلنَّاسِ وَ رَحۡمَةً مِّنَّا ۚ وَ كَانَ اَمۡرًا مَّقۡضِیًّا ﴿۲۲﴾

୨୩. ତା'ପରେ ସେ ତାହାଙ୍କୁ ଗର୍ଭରେ ଧାରଣ କଲେ, ଏବଂ ତାହାଙ୍କୁ ନେଇ ସେ ଏକ ଦୂରବର୍ତ୍ତୀ ସ୍ଥାନକୁ ଗମନ କଲେ ।

فَحَمَلَتۡهُ فَانۡتَبَذَتۡ بِهٖ مَكَانًا قَصِیًّا ﴿۲۳﴾

୨୪. ସୁତରାଂ (ଯେତେବେଳେ ସେ ସେଠାରେ ପହଞ୍ଚିଲେ) ପ୍ରସବ ଯନ୍ତ୍ରଣା ତାଙ୍କୁ ଗୋଟିଏ ଖଜୁରି ଗଛ ଆଡକୁ ନେଇଗଲା ; (ଯେତେବେଳେ ମରିୟମଙ୍କର ବିଶ୍ୱାସ ହେଲା ଯେ ତାହାଙ୍କ ଗର୍ଭରୁ ଏକ ସନ୍ତାନ ଜାତ ହେବ, ସେତେବେଳେ ସେ ଲୋକମାନଙ୍କ ପରିହାସ ବିଷୟରେ ଚିନ୍ତିତ ହୋଇ) କହି ଉଠିଲେ, ''ହାୟ ! ମୁଁ ଏହା ପୂର୍ବରୁ ମରିଯାଆନ୍ତି କି ! ଏବଂ ମୋର ସ୍ମୃତିକୁ ବିଲୁପ୍ତ କରାଯାଆନ୍ତା କି !''

فَاَجَآءَهَا الۡمَخَاضُ اِلٰی جِذۡعِ النَّخۡلَةِ ۚ قَالَتۡ یٰلَیۡتَنِیۡ مِتُّ قَبۡلَ هٰذَا وَ كُنۡتُ نَسۡیًا مَّنۡسِیًّا ﴿۲۴﴾

---

୧. ସମ୍ପ୍ରତି ୟୁରୋପର କେତେକ ଚିକିତ୍ସକ ଘୋଷଣା କରିଛନ୍ତି ଯେ ଜଣେ ଅବିବାହିତା ମହିଳାଙ୍କ ଗର୍ଭରୁ ସନ୍ତାନ ଜନ୍ମ ହେବା କେବଳ ସମ୍ଭବ ନୁହେଁ ବରଂ ସେମାନେ ଚିକିତ୍ସା ଶାସ୍ତ୍ରକୁ ଭିତ୍ତିକରି ପ୍ରମାଣ ସ୍ୱରୂପ କେତେକ ଦୃଷ୍ଟାନ୍ତ ମଧ୍ୟ ଦେଇଛନ୍ତି ।

୨୫. ତା'ପରେ (ଦେବଦୂତ ପର୍ବତର) ନିମ୍ନ ଦେଶରୁ ତାହାଙ୍କୁ ଡାକି କହିଲେ, "( ହେ ନାରୀ !) ଦୁଃଖିତ ହୁଅ ନାହିଁ ; ଅଲ୍ଲାହ ତୁମର ନିମ୍ନ ଦେଶରେ [୧] ଏକ ଝରଣା ପ୍ରବାହିତ କରିଛନ୍ତି ; (ତେଣୁ ତାହା ନିକଟକୁ ଯାଇ ନିଜକୁ ଓ ନିଜ ସନ୍ତାନକୁ ପରିଷ୍କାର କର) ।"

فَنَادٰىهَا مِنْ تَحْتِهَآ اَلَّا تَحْزَنِىْ قَدْ جَعَلَ رَبُّكِ تَحْتَكِ سَرِيًّا ﴿٢٥﴾

୨୬. "ଏବଂ ତୁମେ ଖଜୁରି ଗଛର ବାହୁଙ୍ଗାକୁ ଧରି ନିଜ ଆଡକୁ ହଲାଇ ଦିଅ, ତାହା ତୁମ ପାଇଁ ସଦ୍ୟପକ୍ୱ ଫଳ ବୃଷ୍ଟି କରିବ ।"

وَهُزِّىْٓ اِلَيْكِ بِجِذْعِ النَّخْلَةِ تُسٰقِطْ عَلَيْكِ رُطَبًا جَنِيًّا ﴿٢٦﴾

୨୭. "ତୁମେ ତାହାକୁ ଖାଅ ଓ (ଝରଣାରୁ) ଜଳପାନ କର, (ଏବଂ ନିଜେ ସ୍ନାନ କରି ଶିଶୁକୁ ସ୍ନାନ କରାଇ) ନିଜ ଚକ୍ଷୁକୁ ଶୀତଳ କର ; ତାପରେ ଯଦି ତୁମେ କୌଣସି ପୁରୁଷକୁ ଦେଖିବ, ତେବେ (ସଂକେତପୂର୍ବକ) କହିବ ଯେ ମୁଁ ଅଶେଷ ଦୟାବାନ୍ (ଅଲ୍ଲାହ)ଙ୍କ ଉଦ୍ଦେଶ୍ୟରେ ଉପବାସ ବ୍ରତ ପାଳନ କରିଅଛି ; ସୁତରାଂ ଆଜି ମୁଁ କୌଣସି ଲୋକ ସହିତ କଥା କହିବି ନାହିଁ [୨] ।"

فَكُلِىْ وَاشْرَبِىْ وَقَرِّىْ عَيْنًا ۚ فَاِمَّا تَرَيِنَّ مِنَ الْبَشَرِ اَحَدًا ۙ فَقُوْلِىْٓ اِنِّىْ نَذَرْتُ لِلرَّحْمٰنِ صَوْمًا فَلَنْ اُكَلِّمَ الْيَوْمَ اِنْسِيًّا ﴿٢٧﴾

୨୮. ଏହାପରେ ସେ ତାହାଙ୍କୁ (ଅର୍ଥାତ୍ ସେହି ପୁତ୍ରଙ୍କୁ) ଆରୋହଣ [୩] କରାଇ ନିଜ ସମ୍ପ୍ରଦାୟ ନିକଟକୁ ଆଣିଲେ ; ସେମାନେ କହିଲେ, "ହେ ମରିୟମ ! ତୁମେ ଅତ୍ୟନ୍ତ ମନ୍ଦ କାର୍ଯ୍ୟ କରିଅଛ ।"

فَاَتَتْ بِهٖ قَوْمَهَا تَحْمِلُهٗ ۗ قَالُوْا يٰمَرْيَمُ لَقَدْ جِئْتِ شَيْـًٔا فَرِيًّا ﴿٢٨﴾

---

୧. ବାଇବେଲ୍‌ରୁ ଓ ପାଲେଷ୍ଟାଇନର ଭୂଗୋଳ ପୁସ୍ତକରୁ ପ୍ରତୀତ ହେଉଛି ଯେ ଯେତେବେଳେ ହଜରତ ମରିୟମ୍ ପୁତ୍ରସନ୍ତାନ ଲାଭ କଲେ ସେତେବେଳେ ତାଙ୍କର ଭାବୀ ସ୍ୱାମୀ ତାଙ୍କୁ ବେଥେଲହମ୍‌କୁ ନେଇ ଯାଉଥିଲେ । ସେତେବେଳେ ବେଥେଲହମ୍ ଏକ ପାହାଡ଼ ଉପରେ ସ୍ଥିତ ଥିଲା ଓ ତାହାର ନିମ୍ନଦେଶରେ ଏକ ସ୍ରୋତ ପ୍ରବାହିତ ହେଉଥିଲା । ସେହି ତରଫରୁ ଜଣେ ଦେବଦୂତ ହଜରତ ମରିୟମ୍‌ଙ୍କୁ ଡାକି ଥିଲେ ।

୨. ଅର୍ଥାତ୍ ଏହି ରୂପେ ଉପବାସ କରି ଲୋକମାନଙ୍କ ଅଯଥା ପ୍ରଶ୍ନବାଣରୁ ନିଜକୁ ରକ୍ଷାକର ।

୩. ମୂଳ ଶବ୍ଦ 'ତହମିଲୋହୁ'ର ସାଧାରଣ ଅର୍ଥ ବହନ କରି ନେବା, କିନ୍ତୁ ପବିତ୍ର କୋରାନ ଓ ଅଭିଧାନରୁ ଜଣାପଡୁଛି ଯେ ଏହାର ଅନ୍ୟତମ ଅର୍ଥ ଆରୋହଣ କରାଇ ନେବା । ତେଣୁ ଶେଷୋକ୍ତ ଅର୍ଥ ଏଠାରେ ନିଆଯାଇଛି (୯:୯୨ ଦ୍ରଷ୍ଟବ୍ୟ) । ଏଠାରେ କୁହାଯାଇଛି ଯେ ଯେବେ ଯୀଶୁ ବୟଃପ୍ରାପ୍ତ ହେଲେ ଓ ତାଙ୍କୁ ଅଲ୍ଲାହଙ୍କ ତରଫରୁ ନବି ପଦ ମିଳିଲା ତେବେ ତାଙ୍କ ମାତା ତାଙ୍କୁ ସଙ୍ଗରେ ଧରି ନିଜ ସମ୍ପ୍ରଦାୟର ଲୋକମାନଙ୍କ ପାଖକୁ ଆସିଲେ ।

୨୯. "ହେ ହାରୁନର ଭଉଣୀ[1] ! ତୁମର ପିତା ମନ୍ଦ ବ୍ୟକ୍ତି ନଥିଲେ ଏବଂ ତୁମର ମାତା ମଧ୍ୟ ବ୍ୟଭିଚାରିଣୀ ନଥିଲେ ।"

يَٰٓأُخْتَ هَٰرُونَ مَا كَانَ أَبُوكِ ٱمْرَأَ سَوْءٍ وَمَا كَانَتْ أُمُّكِ بَغِيًّا ﴿٢٩﴾

୩୦. ଏହାପରେ ସେ ତାହାଙ୍କ (ପ୍ରତି ଅର୍ଥାତ୍ ଉକ୍ତ ଶିଶୁ) ପ୍ରତି ଇଙ୍ଗିତ କରିଥିଲେ ; ସେମାନେ କହିଲେ, "ଆମେମାନେ ତା' ସହିତ କିପରି କଥାବାର୍ତ୍ତା କରିବୁ ଯେ କି (ଗତ କାଲି ସୁଦ୍ଧା) ଦୋଳିରେ ଝୁଲୁଥିବା ଏକ ଶିଶୁ ଥିଲା ।"

فَأَشَارَتْ إِلَيْهِ ۖ قَالُوا۟ كَيْفَ نُكَلِّمُ مَن كَانَ فِى ٱلْمَهْدِ صَبِيًّا ﴿٣٠﴾

୩୧. (ଏହା ଶୁଣି ମରିୟମନନ୍ଦନ) କହିଲେ, "ଆମେ ଅଲ୍ଲାହଙ୍କର ଭକ୍ତ ଅଟୁ ଏବଂ ସେ ଆମକୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଛନ୍ତି, ଏବଂ ଆମକୁ ନବି ନିଯୁକ୍ତ କରିଛନ୍ତି ।"

قَالَ إِنِّى عَبْدُ ٱللَّهِ ءَاتَىٰنِىَ ٱلْكِتَٰبَ وَجَعَلَنِى نَبِيًّا ﴿٣١﴾

୩୨. "ଏବଂ ଆମେ ଯେଉଁଠାରେ ଥିଲେ ମଧ୍ୟ ସେ ଆମକୁ ମଙ୍ଗଳମୟ କରିଛନ୍ତି ଏବଂ ଜୀବିତ ଥିବା ପର୍ଯ୍ୟନ୍ତ ଆମକୁ ନମାଜ ଓ ଜକାତର ନିର୍ଦ୍ଦେଶ ଦେଇଛନ୍ତି ।"

وَجَعَلَنِى مُبَارَكًا أَيْنَ مَا كُنتُ وَأَوْصَٰنِى بِٱلصَّلَوٰةِ وَٱلزَّكَوٰةِ مَا دُمْتُ حَيًّا ﴿٣٢﴾

୩୩. "ଏବଂ ସେ ଆମକୁ ନିଜ ମାତାଙ୍କ ପ୍ରତି ସଦ୍‌ବ୍ୟବହାରକାରୀ ରୂପେ ଗଢିଛନ୍ତି ଏବଂ ଆମକୁ ଉଦ୍ଧତ ଓ ଅବାଧ୍ୟ କରି ନାହାନ୍ତି ।"

وَبَرًّۢا بِوَٰلِدَتِى وَلَمْ يَجْعَلْنِى جَبَّارًا شَقِيًّا ﴿٣٣﴾

୩୪. "ଏବଂ ଯେଉଁଦିନ ଆମେ ଜନ୍ମ ଲାଭ କରିଥିଲୁ ସେ ଦିନ ମଧ୍ୟ ଆମ ପ୍ରତି ଶାନ୍ତି ଅବତୀର୍ଣ୍ଣ ହୋଇଥିଲା ଏବଂ ଯେଉଁଦିନ ଆମେ ମୃତ୍ୟୁବରଣ କରିବୁ ଓ ଯେଉଁଦିନ ଆମକୁ ପୁନର୍ଜୀବିତ କରାଇ ଉତ୍‌ଥିତ କରାଯିବ (ସେଦିନ ମଧ୍ୟ ଆମ ପ୍ରତି ଶାନ୍ତି ଅବତୀର୍ଣ୍ଣ ହେବ) ।"

وَٱلسَّلَٰمُ عَلَىَّ يَوْمَ وُلِدتُّ وَيَوْمَ أَمُوتُ وَيَوْمَ أُبْعَثُ حَيًّا ﴿٣٤﴾

୩୫. ଏ ହେଉଛନ୍ତି (ପ୍ରକୃତରେ) ମରିୟମନନ୍ଦନ ଇସା ; ଏହା ହିଁ ସତ୍ୟ ଘଟଣା ଯାହା ସମ୍ପର୍କରେ ସେମାନଙ୍କର ମତ ପାର୍ଥକ୍ୟ ଅଛି ।

ذَٰلِكَ عِيسَى ٱبْنُ مَرْيَمَ ۚ قَوْلَ ٱلْحَقِّ ٱلَّذِى فِيهِ يَمْتَرُونَ ﴿٣٥﴾

---

୧. ହଜରତ ମରିୟମଙ୍କୁ ହାରୁନଙ୍କ ଭଉଣୀ ବୋଲି କୁହାଯାଇଛି । ଖ୍ରୀଷ୍ଟିୟାନମାନେ ଆକ୍ଷେପ କରନ୍ତି ଯେ ପବିତ୍ର କୋରାନ ଅଜ୍ଞତାର ବଶବର୍ତ୍ତୀ ହୋଇ ହଜରତ ଇସାଙ୍କ ମାତାଙ୍କୁ ସେହି ମରିୟମ୍ ବୋଲି ସ୍ଥିର କରିଛି ଯେ କି ହଜରତ ମୁସା ଓ ହଜରତ ହାରୁନଙ୍କର ଭଉଣୀ ଥିଲେ । କିନ୍ତୁ ସେମାନଙ୍କ ଆକ୍ଷେପ ସେମାନଙ୍କ ନିଜ ଅଜ୍ଞତାକୁ ହିଁ ପ୍ରକଟିତ କରୁଅଛି । ନିଜ ପୂର୍ବଜମାନଙ୍କ ନାମ ଅନୁସାରେ ସନ୍ତାନ-ସନ୍ତତିଙ୍କ ନାମ ରଖିବା ଏକ ସର୍ବଜନ ଆଦୃତ ପରମ୍ପରା । ଯଦି ହଜରତ ମରିୟମଙ୍କର କୌଣସି ଭାଇଙ୍କ ନାମ ହାରୁନ ହୋଇଥିବ ତେବେ ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ତାଙ୍କୁ ମୁସାଙ୍କ ଭାଇ ରୂପେ ଆଖ୍ୟାୟିତ କରିବା ସ୍ୱୟଂ ଖ୍ରୀଷ୍ଟିୟାନମାନଙ୍କର କଳ୍ପନା-ପ୍ରସୂତ । ପବିତ୍ର କୋରାନରେ ଏପରି ଲେଖା ହୋଇ ନାହିଁ । ଅନୁରୂପ ପ୍ରଶ୍ନ ହଜରତ ମହମ୍ମଦଙ୍କୁ ମଧ୍ୟ ପଚରା ଯାଇଥିଲା ଓ ସେ ଅନୁରୂପ ଉତ୍ତର ମଧ୍ୟ ଦେଇଥିଲେ । (ଫତହୁଲ୍ ବୟାନ : ଗ୍ରନ୍ଥ ଖଣ୍ଡ ୬, ପୃଷ୍ଠା ୧୬ ଦ୍ରଷ୍ଟବ୍ୟ)

୩୬. ଅଲ୍ଲାହ ନିଜ ପାଇଁ କାହାରିକୁ ପୁତ୍ର ରୂପେ ଗ୍ରହଣ କରିବା ତାହାଙ୍କ ମର୍ଯ୍ୟାଦାର ପରିପନ୍ଥୀ ଅଟେ ; ସେ ଏ ବିଷୟରୁ ପବିତ୍ର, ଯେତେବେଳେ ସେ କୌଣସି ବିଷୟ (କରିବା)ର ନିଷ୍ପତ୍ତି କରନ୍ତି, ସେତେବେଳେ କହନ୍ତି (ଯେ ଏପରି) 'ହୋଇଯାଅ' ଏବଂ ତାହା (ସେପରି) ହୋଇଯାଏ ; (ତେଣୁ ତାଙ୍କ ସାହାଯ୍ୟ ପାଇଁ ଜଣକୁ ପୁତ୍ର ରୂପେ ଗ୍ରହଣ କରିବାର କ'ଣ ଆବଶ୍ୟକତା ଅଛି ?)

مَا كَانَ لِلّٰهِ اَنْ يَّتَّخِذَ مِنْ وَّلَدٍ سُبْحٰنَهٗ ؕ اِذَا قَضٰى اَمْرًا فَاِنَّمَا يَقُوْلُ لَهٗ كُنْ فَيَكُوْنُ ؕ ﴿۳۶﴾

୩୭. (ଇସା କହିଥିଲେ), "ଅଲ୍ଲାହ ଆମର ପାଳନକର୍ତ୍ତା ଓ ତୁମମାନଙ୍କର ମଧ୍ୟ ପାଳନକର୍ତ୍ତା ; ତେଣୁ (ତୁମେମାନେ) ତାହାଙ୍କର ଉପାସନା କର ; ଏହା ହିଁ ସରଳ ପଥ ।"

وَاِنَّ اللّٰهَ رَبِّىْ وَرَبُّكُمْ فَاعْبُدُوْهُ ؕ هٰذَا صِرَاطٌ مُّسْتَقِيْمٌ ﴿۳۷﴾

୩୮. କିନ୍ତୁ ବିଭିନ୍ନ ଗୋଷ୍ଠୀ ପରସ୍ପର ମଧ୍ୟରେ ଭିନ୍ନ ମତ ପୋଷଣ କରିଥିଲେ (ଏବଂ ସତ୍ୟକୁ ପରିତ୍ୟାଗ କରିଥିଲେ) ; ସୁତରାଂ ଯେଉଁମାନେ ଏକ ମହାନ୍ ଦିବସରେ ଉପସ୍ଥିତ ହେବା ନେଇ ଅସ୍ୱୀକାର କରନ୍ତି ସେମାନଙ୍କ ପ୍ରତି ଶାସ୍ତି ଅବତୀର୍ଣ୍ଣ ହେବ ।

فَاخْتَلَفَ الْاَحْزَابُ مِنْۢ بَيْنِهِمْ ۚ فَوَيْلٌ لِّلَّذِيْنَ كَفَرُوْا مِنْ مَّشْهَدِ يَوْمٍ عَظِيْمٍ ﴿۳۸﴾

୩୯. ଯେଉଁଦିନ ସେମାନେ ଆମ ସମୀପରେ ଉପସ୍ଥିତ ହେବେ ସେଦିନ ସେମାନଙ୍କ ଶ୍ରବଣଶକ୍ତି ଅତି ପ୍ରଖର ହେବ ଓ ଦୃଷ୍ଟିଶକ୍ତି (ମଧ୍ୟ) ଅତି ସ୍ପଷ୍ଟ ହେବ, କିନ୍ତୁ ସେହି ଅତ୍ୟାଚାରୀମାନେ ଆଜି ସୁସ୍ପଷ୍ଟ ଭାବରେ ବିଭ୍ରାନ୍ତ ହୋଇଛନ୍ତି ।

اَسْمِعْ بِهِمْ وَاَبْصِرْ ۙ يَوْمَ يَاْتُوْنَنَا لٰكِنِ الظّٰلِمُوْنَ الْيَوْمَ فِىْ ضَلٰلٍ مُّبِيْنٍ ﴿۳۹﴾

୪୦. ଏବଂ ସେମାନଙ୍କୁ ସେହି ଦିନ (ଅର୍ଥାତ୍ କୟାମତ) ସମ୍ବନ୍ଧରେ ଚେତାବନୀ ଦିଅ ଯେଉଁଦିନ (ସେମାନଙ୍କୁ ଦୁଃଖ ଓ) ନୈରାଶ୍ୟ ଘୋଟିଥିବ ଏବଂ (ସେମାନଙ୍କର) ସକଳ ବିଷୟ ନିଷ୍ପତ୍ତି ହୋଇଯିବ ; କିନ୍ତୁ ବର୍ତ୍ତମାନ ସେମାନେ ଅମନୋଯୋଗୀ ହୋଇ ରହିଛନ୍ତି, ଓ ବିଶ୍ୱାସ କରୁନାହାନ୍ତି ।

وَاَنْذِرْهُمْ يَوْمَ الْحَسْرَةِ اِذْ قُضِىَ الْاَمْرُ ۘ وَهُمْ فِىْ غَفْلَةٍ وَّهُمْ لَا يُؤْمِنُوْنَ ﴿۴۰﴾

୪୧. ଏବଂ ଆମ୍ଭେ ନିଶ୍ଚୟ (ସମଗ୍ର) ଭୂପୃଷ୍ଠର ଓ ଯେଉଁମାନେ ତାହା ଉପରେ ବାସ କରନ୍ତି ସେମାନଙ୍କର ଉତ୍ତରାଧିକାରୀ ଅଟୁ ; ଏବଂ (ପରିଶେଷରେ) ସମସ୍ତଙ୍କୁ ଆମ ନିକଟକୁ ଫେରାଇ ନିଆଯିବ ।

اِنَّا نَحْنُ نَرِثُ الْاَرْضَ وَمَنْ عَلَيْهَا وَاِلَيْنَا يُرْجَعُوْنَ ﴿۴۱﴾

ରୁ :୩

୪୨. ଏବଂ ତୁମେ (ପବିତ୍ର କୋରାନ) ଗ୍ରନ୍ଥ ଅନୁସାରେ ଇବ୍ରାହିମଙ୍କ ବିଷୟ ବର୍ଣ୍ଣନା କର ; ସେ ବାସ୍ତବରେ ଜଣେ ସତ୍ୟ-ନିଷ୍ଠ ବ୍ୟକ୍ତି ଓ ନବି ଥିଲେ ।

وَاذْكُرْ فِي الْكِتٰبِ اِبْرٰهِيْمَ ۬ اِنَّهٗ كَانَ صِدِّيْقًا نَّبِيًّا ﴿۴۲﴾

୪୩. ଏବଂ (ତୁମେ ସେହି ସମୟକୁ ମଧ୍ୟ ସ୍ମରଣ କରି ଲୋକମାନଙ୍କ ନିକଟରେ ବର୍ଣ୍ଣନା କର) ଯେତେବେଳେ ସେ (ଇବ୍ରାହିମ) ନିଜ ପିତାଙ୍କୁ କହିଥିଲେ, "ହେ ଆମ୍ଭର ପିତା ! ଯେଉଁମାନେ କିଛି ଶୁଣି ପାରନ୍ତି ନାହିଁ ବା ଦେଖି ପାରନ୍ତି ନାହିଁ ବା ତୁମର କୌଣସି ଦୁଃଖ ଦୂର କରିବାରେ ସକ୍ଷମ ନୁହନ୍ତି, ତୁମେ କାହିଁକି ସେ ସବୁର ଉପାସନା କରୁଅଛ ?"

اِذْ قَالَ لِاَبِيْهِ يٰۤاَبَتِ لِمَ تَعْبُدُ مَا لَا يَسْمَعُ وَلَا يُبْصِرُ وَلَا يُغْنِيْ عَنْكَ شَيْـًٔا ﴿۴۳﴾

୪୪. "ହେ ଆମ୍ଭର ପିତା ! ଆମ୍ଭଙ୍କୁ ଏକ ବିଶେଷ ଜ୍ଞାନ ପ୍ରଦାନ କରାଯାଇଅଛି ଯାହା ତୁମକୁ ମିଳି ନାହିଁ ; ସୁତରାଂ (ଆମେ ତୁମର ପୁତ୍ର ହେବା ସତ୍ତ୍ୱେ) ତୁମେ ଆମ୍ଭଙ୍କୁ ଅନୁସରଣ କର, ଆମେ ତୁମକୁ ସତ୍‌ପଥ ପ୍ରଦର୍ଶନ କରାଇବୁ ।"

يٰۤاَبَتِ اِنِّيْ قَدْ جَآءَنِيْ مِنَ الْعِلْمِ مَا لَمْ يَاْتِكَ فَاتَّبِعْنِيْۤ اَهْدِكَ صِرَاطًا سَوِيًّا ﴿۴۴﴾

୪୫. "ହେ ଆମ୍ଭର ପିତା ! ସଇତାନର ଉପାସନା କର ନାହିଁ ; ସଇତାନ ବାସ୍ତବିକ ଦୟାବାନ୍ ଅଲ୍ଲାହ୍‌ଙ୍କର ଅବାଧ୍ୟ ଅଟେ ।"

يٰۤاَبَتِ لَا تَعْبُدِ الشَّيْطٰنَ ؕ اِنَّ الشَّيْطٰنَ كَانَ لِلرَّحْمٰنِ عَصِيًّا ﴿۴۵﴾

୪୬. "ହେ ଆମ୍ଭର ପିତା ! ଆମେ ଭୟ କରୁଅଛୁ ଯେ (ତୁମର ଅବାଧ୍ୟତା ଯୋଗୁଁ) ତୁମକୁ ଦୟାବାନ୍ ଅଲ୍ଲାହ୍‌ଙ୍କର ଶାସ୍ତି କବଳିତ ନ କରୁ, ଯାହା ଫଳରେ ତୁମେ ସଇତାନର ବନ୍ଧୁ ହୋଇଯିବ ।"

يٰۤاَبَتِ اِنِّيْۤ اَخَافُ اَنْ يَّمَسَّكَ عَذَابٌ مِّنَ الرَّحْمٰنِ فَتَكُوْنَ لِلشَّيْطٰنِ وَلِيًّا ﴿۴۶﴾

୪୭. (ଏହାଶୁଣି ଇବ୍ରାହିମଙ୍କ ପିତା) କହିଲେ, "ହେ ଇବ୍ରାହିମ ! କ'ଣ ତୁମେ ଆମ ଉପାସ୍ୟମାନଙ୍କ ପ୍ରତି ବିମୁଖ ହେଉଅଛ ? (ତେଣୁ) ଯଦି ତୁମେ ବିରତ ନ ହେବ, ତେବେ ମୁଁ ତୁମକୁ ନିଶ୍ଚୟ ଶିଳାଘାତ କରି ନିଃଶେଷ କରିଦେବି ଏବଂ (ଏହା ତୁମ ପକ୍ଷରେ ଶ୍ରେୟସ୍କର ହେବ ଯେ) ତୁମେ ବର୍ତ୍ତମାନ କିଛି ସମୟ ପାଇଁ ମୋ ନିକଟରୁ ଦୂରେଇ ଯାଅ, (ଅନ୍ୟଥା କ୍ରୋଧାନ୍ୱିତ ହୋଇ ମୁଁ ଯେପରି ତୁମର କୌଣସି କ୍ଷତି କରି ନ ଦିଏ) ।"

قَالَ اَرَاغِبٌ اَنْتَ عَنْ اٰلِهَتِيْ يٰۤاِبْرٰهِيْمُ ۚ لَئِنْ لَّمْ تَنْتَهِ لَاَرْجُمَنَّكَ وَاهْجُرْنِيْ مَلِيًّا ﴿۴۷﴾

୪୮. (ଏହାଶୁଣି ଇବ୍ରାହିମ) କହିଲେ, "ତୁମେ ଶାନ୍ତିରେ ରହିଥାଅ, (ଏହି ଅଭିଳାଷ ସହିତ ଆମେ ତୁମଠାରୁ ଦୂରେଇ ଯାଉଛୁ) ଆମେ ନିଜ ପାଳନକର୍ତ୍ତାଙ୍କ ନିକଟରେ ନିଶ୍ଚୟ ତୁମ ପାଇଁ କ୍ଷମା ପ୍ରାର୍ଥନା କରିବୁ ; ସେ ଆମ ପ୍ରତି ଅତ୍ୟନ୍ତ ଅନୁଗ୍ରହଶୀଳ ଅଟନ୍ତି ।"

قَالَ سَلٰمٌ عَلَيْكَ ۚ سَاَسْتَغْفِرُ لَكَ رَبِّيْ ؕ اِنَّهٗ كَانَ بِيْ حَفِيًّا ﴿٤٨﴾

୪୯. "ଏବଂ (ହେ ପିତା !) ଆମେ ତୁମକୁ ଓ ଅଲ୍ଲାହଙ୍କ ବ୍ୟତୀତ ତୁମେ ଯାହାଙ୍କୁ ଡାକୁଅଛ ସେ ସମସ୍ତଙ୍କୁ ପରିତ୍ୟାଗ କରିବୁ ଏବଂ ଆମେ କେବଳ ନିଜ ପାଳନକର୍ତ୍ତାଙ୍କ ସମୀପରେ ହିଁ ପ୍ରାର୍ଥନା କରିବୁ ; (ଏବଂ) ଆମେ ନିଜ ପାଳନକର୍ତ୍ତାଙ୍କ ସମୀପରେ ପ୍ରାର୍ଥନା କରିବା ହେତୁ ନିରାଶ ହେବୁ ନାହିଁ ।"

وَاَعْتَزِلُكُمْ وَمَا تَدْعُوْنَ مِنْ دُوْنِ اللّٰهِ وَاَدْعُوْا رَبِّيْ ۖ عَسٰۤى اَلَّاۤ اَكُوْنَ بِدُعَآءِ رَبِّيْ شَقِيًّا ﴿٤٩﴾

୫୦. ତା'ପରେ ଯେତେବେଳେ (ଇବ୍ରାହିମ) ସେମାନଙ୍କଠାରୁ ଓ ଅଲ୍ଲାହଙ୍କ ବ୍ୟତୀତ ସେମାନେ ଯେଉଁମାନଙ୍କର ଉପାସନା କରୁଥିଲେ ସେମାନଙ୍କଠାରୁ ବିଚ୍ଛିନ୍ନ ହୋଇ ଚାଲିଗଲେ, ସେତେବେଳେ ଆମେ ତାହାଙ୍କୁ ଇସହାକ ଓ (ଇସହାକଙ୍କ ଅନ୍ତେ) ୟାକୁବଙ୍କୁ ଅର୍ପଣ କରିଥିଲୁ, ଏବଂ ସେ ସମସ୍ତଙ୍କୁ ଆମେ ନବି ନିଯୁକ୍ତ କରିଥିଲୁ ।

فَلَمَّا اعْتَزَلَهُمْ وَمَا يَعْبُدُوْنَ مِنْ دُوْنِ اللّٰهِ ۙ وَهَبْنَا لَهٗۤ اِسْحٰقَ وَيَعْقُوْبَ ؕ وَكُلًّا جَعَلْنَا نَبِيًّا ﴿٥٠﴾

୫୧. ଏବଂ ଆମେ ସେମାନଙ୍କୁ ନିଜ କରୁଣାର ଏକ (ବୃହତ୍) ଅଂଶ ପ୍ରଦାନ କରିଥିଲୁ ଏବଂ ଆମେ ସେମାନଙ୍କୁ ଉଚ୍ଚ-କୋଟୀର ଚିରସ୍ଥାୟୀ ସୁଖ୍ୟାତି ପ୍ରଦାନ କରିଥିଲୁ ।

وَوَهَبْنَا لَهُمْ مِّنْ رَّحْمَتِنَا وَجَعَلْنَا لَهُمْ لِسَانَ صِدْقٍ عَلِيًّا ﴿٥١﴾ ع

ରୁ : ୪

୫୨. ଏବଂ ତୁମେ (ପବିତ୍ର କୋରାନ)[୧] ଗ୍ରନ୍ଥ ଅନୁସାରେ ମୁସାଙ୍କ ବିଷୟ ବର୍ଣ୍ଣନା କର ; ବାସ୍ତବରେ ସେ ଆମର ମନୋନୀତ (ଭକ୍ତ) ଥିଲେ ଏବଂ ରସୁଲ ତଥା ନବି ଥିଲେ ।

وَاذْكُرْ فِي الْكِتٰبِ مُوْسٰۤى ۟ اِنَّهٗ كَانَ مُخْلَصًا وَّكَانَ رَسُوْلًا نَّبِيًّا ﴿٥٢﴾

୫୩. ଏବଂ ଆମେ ମୁସାଙ୍କୁ ତୁର (ପର୍ବତ)ର ଦକ୍ଷିଣ ପାର୍ଶ୍ୱରୁ ଡାକିଥିଲୁ ଏବଂ ଆମେ ତାହାଙ୍କୁ ସ୍ୱ ବାର୍ତ୍ତାଳାପ ଦ୍ୱାରା ନିକଟବର୍ତ୍ତୀ କରାଇଲୁ ।

وَنَادَيْنٰهُ مِنْ جَانِبِ الطُّوْرِ الْاَيْمَنِ وَقَرَّبْنٰهُ نَجِيًّا ﴿٥٣﴾

---

୧. ଅର୍ଥାତ୍ ପବିତ୍ର କୋରାନରେ ତାଙ୍କ ବିଷୟରେ ଏକ ଶୁଦ୍ଧ ବର୍ଣ୍ଣନା ଅଛି ଅଥଚ ବାଇବେଲର ବର୍ଣ୍ଣନା ଅଶୁଦ୍ଧ ଓ ଅତିରଞ୍ଜିତ । ସେଥିପାଇଁ ପବିତ୍ର କୋରାନ ପକ୍ଷରେ ସଂସ୍କାର କାର୍ଯ୍ୟ ଆବଶ୍ୟକ ହେଲା, ଯଦ୍ୱାରା ପ୍ରକୃତ ଓ ଶୁଦ୍ଧ ଘଟଣାମାନ ଲୋକଲୋଚନକୁ ଆସି ପାରିବ, ଅନ୍ୟଥା ବାଇବେଲର ବିବରଣୀ ଦ୍ୱାରା ଲୋକମାନେ ବିଭ୍ରାନ୍ତ ହେବେ ।

୫୪. ଏବଂ ଆମେ ତାହାଙ୍କୁ (ଅର୍ଥାତ୍ ମୁସାଙ୍କୁ) ନିଜ କରୁଣା ଦ୍ଵାରା ତାହାଙ୍କ ଭାଇ ହାରୁନଙ୍କୁ ନବି (ନିଯୁକ୍ତ) କରି (ସାହାଯ୍ୟକାରୀ ଭାବେ) ତାଙ୍କୁ ପ୍ରଦାନ କରିଥିଲୁ ।

وَوَهَبْنَا لَهٗ مِنْ رَّحْمَتِنَآ اَخَاهُ هٰرُوْنَ نَبِيًّا ﴿٥٤﴾

୫୫. ଏବଂ ତୁମେ (ପବିତ୍ର କୋରାନ) ଗ୍ରନ୍ଥ ଅନୁସାରେ ଇସମାଇଲଙ୍କ ବିଷୟ ମଧ୍ୟ ବର୍ଣ୍ଣନା କର ; ସେ ମଧ୍ୟ ବାସ୍ତବରେ ନିଜ ଅଙ୍ଗୀକାରରେ ନିଷ୍ଠାପର ଥିଲେ, ଏବଂ ରସୁଲ (ଓ) ନବି ଥିଲେ ।

وَاذْكُرْ فِى الْكِتٰبِ اِسْمٰعِيْلَ اِنَّهٗ كَانَ صَادِقَ الْوَعْدِ وَكَانَ رَسُوْلًا نَّبِيًّا ﴿٥٥﴾

୫୬. ଏବଂ ସେ ନିଜ ପରିବାର ଲୋକମାନଙ୍କୁ ନମାଜ ଓ ଜକାତ ବିଷୟରେ ନିର୍ଦ୍ଦେଶ ଦେଉଥିଲେ, ଏବଂ ନିଜ ପାଳନକର୍ତ୍ତାଙ୍କ ନିକଟରେ ପସନ୍ଦଯୋଗ୍ୟ (ବ୍ୟକ୍ତି) ଥିଲେ ।

وَكَانَ يَاْمُرُ اَهْلَهٗ بِالصَّلٰوةِ وَالزَّكٰوةِ وَكَانَ عِنْدَ رَبِّهٖ مَرْضِيًّا ﴿٥٦﴾

୫୭. ଏବଂ ତୁମେ (ପବିତ୍ର କୋରାନ) ଗ୍ରନ୍ଥ ଅନୁସାରେ ଇଦ୍ରିସଙ୍କ ବିଷୟ ବର୍ଣ୍ଣନା କର ; ସେ ମଧ୍ୟ ସତ୍ୟନିଷ୍ଠ ନବି ଥିଲେ ।

وَاذْكُرْ فِى الْكِتٰبِ اِدْرِيْسَ اِنَّهٗ كَانَ صِدِّيْقًا نَّبِيًّا ﴿٥٧﴾

୫୮. ଏବଂ ଆମେ ତାହାଙ୍କୁ ଏକ ଅତି ଉଚ୍ଚ ସ୍ଥାନକୁ ଉନ୍ନୀତ କରିଥିଲୁ ।

وَّرَفَعْنٰهُ مَكَانًا عَلِيًّا ﴿٥٨﴾

୫୯. ଏ ସମସ୍ତେ ଏପରି ନବି ଥିଲେ ଯେଉଁମାନଙ୍କୁ ଅଲ୍ଲାହ ପୁରସ୍କୃତ କରିଥିଲେ ; ସେ (ନବି)ମାନଙ୍କ ମଧ୍ୟରୁ ଯେଉଁମାନେ କି ଆଦମଙ୍କ ସନ୍ତାନ ଥିଲେ, ଏବଂ ଯେଉଁମାନେ ସେହି ଲୋକମାନଙ୍କର ସନ୍ତାନ ଥିଲେ ଯେଉଁମାନଙ୍କୁ ଆମେ ନୁହଙ୍କ ସହିତ ନୌକାରେ ଆରୋହଣ କରାଇ ରକ୍ଷା କରିଥିଲୁ, ଏବଂ ଇବ୍ରାହିମ ଓ ଇସ୍ରାଇଲ (ଅର୍ଥାତ୍ ଯାକୁବ)ଙ୍କ (ସନ୍ତାନ ଥିଲେ) ଏବଂ (ଏମାନେ) ସେମାନଙ୍କ ମଧ୍ୟରୁ ଥିଲେ,ଯେଉଁମାନଙ୍କୁ କି ଆମେ ସତ୍ପଥ ପ୍ରଦର୍ଶିତ କରାଇଥିଲୁ ଓ ନିଜ ପାଇଁ ମନୋନୀତ କରିଥିଲୁ ; (ଏବଂ) ଯେତେବେଳେ ସେମାନଙ୍କ ନିକଟରେ ଦୟାବାନ୍ ଅଲ୍ଲାହଙ୍କ ବାଣୀ ପାଠ କରାଯାଉଥିଲା ସେତେବେଳେ ସେମାନେ କାନ୍ଦି କାନ୍ଦି ସିଜଦାରେ ପଡ଼ିଯାଉଥିଲେ ।

اُولٰٓئِكَ الَّذِيْنَ اَنْعَمَ اللّٰهُ عَلَيْهِمْ مِّنَ النَّبِيّٖنَ مِنْ ذُرِّيَّةِ اٰدَمَ وَمِمَّنْ حَمَلْنَا مَعَ نُوْحٍ وَّمِنْ ذُرِّيَّةِ اِبْرٰهِيْمَ وَاِسْرَآءِيْلَ وَمِمَّنْ هَدَيْنَا وَاجْتَبَيْنَا اِذَا تُتْلٰى عَلَيْهِمْ اٰيٰتُ الرَّحْمٰنِ خَرُّوْا سُجَّدًا وَّبُكِيًّا ﴿٥٩﴾

୬୦. ଏହାପରେ ସେମାନଙ୍କ ଉତ୍ତାରୁ ଏପରି ବଂଶଧରମାନେ (ସେମାନଙ୍କ ଉତ୍ତରାଧିକାରୀ ହୋଇ) ଆସିଲେ ଯେଉଁମାନେ ନମାଜକୁ ପରିତ୍ୟାଗ କରିଥିଲେ, ଏବଂ କୁପ୍ରବୃତ୍ତିର ଅନୁସରଣ କରିଥିଲେ ; ସୁତରାଂ ସେମାନେ ଶୀଘ୍ର (ହିଁ) ବିପଥଗାମୀ ହୋଇଯିବେ ।

فَخَلَفَ مِنْ بَعْدِهِمْ خَلْفٌ أَضَاعُوا الصَّلٰوةَ وَاتَّبَعُوا الشَّهَوٰتِ فَسَوْفَ يَلْقَوْنَ غَيًّا ﴿٦٠﴾

୬୧. ଅବଶ୍ୟ ଯେଉଁମାନେ ଅନୁତାପ କରିବେ ଓ ବିଶ୍ୱାସ କରିବେ ଏବଂ ସତ୍‌କାର୍ଯ୍ୟ କରିବେ ସେହିମାନେ ହିଁ ବୈକୁଣ୍ଠରେ ପ୍ରବେଶ କରିବେ ଏବଂ ସେମାନଙ୍କ ପ୍ରତି କୌଣସି ପ୍ରକାର ଅତ୍ୟାଚାର କରାଯିବ ନାହିଁ ।

إِلَّا مَنْ تَابَ وَاٰمَنَ وَعَمِلَ صَالِحًا فَأُولٰٓئِكَ يَدْخُلُونَ الْجَنَّةَ وَلَا يُظْلَمُونَ شَيْئًا ﴿٦١﴾

୬୨. ତାହା ଏପରି ଚିରସ୍ଥାୟୀ (ବୈକୁଣ୍ଠ) ଯାହା ସଂକ୍ରାନ୍ତରେ ଦୟାବାନ୍ (ଅଲ୍ଲାହ୍) ତାଙ୍କ ଭକ୍ତ-ମାନଙ୍କ ସକାଶେ ଏପରି ସମୟରେ ଅଙ୍ଗୀକାର କରିଛନ୍ତି ଯେତେବେଳେ ତାହା ସେମାନଙ୍କ ଦୃଷ୍ଟି ଅନ୍ତରାଳରେ [1]ରହିଅଛି ; ଅଲ୍ଲାହ୍‌ଙ୍କ ଅଙ୍ଗୀକାର ନିଶ୍ଚୟ ପୂର୍ଣ୍ଣ ହେବ ।

جَنّٰتِ عَدْنِ ِالَّتِي وَعَدَ الرَّحْمٰنُ عِبَادَهُ بِالْغَيْبِ ۚ إِنَّهُ كَانَ وَعْدُهُ مَأْتِيًّا ﴿٦٢﴾

୬୩. ସେମାନେ ସେଠାରେ (ଅର୍ଥାତ୍ ସେହି ବୈକୁଣ୍ଠରେ) କୌଣସି ଅଯଥା କଥା ଶୁଣିବେ ନାହିଁ, ବରଂ କେବଳ ଶାନ୍ତି (ସମ୍ଭାଷଣ ଶୁଣିବେ) ; ଏବଂ ସେଠାରେ ସେମାନଙ୍କୁ ସକାଳେ ଓ ସନ୍ଧ୍ୟାରେ ଜୀବିକା ପ୍ରାପ୍ତ ହେବ ।

لَا يَسْمَعُونَ فِيهَا لَغْوًا إِلَّا سَلٰمًا ۖ وَلَهُمْ رِزْقُهُمْ فِيهَا بُكْرَةً وَّعَشِيًّا ﴿٦٣﴾

୬୪. ଏହା ହିଁ ସେହି ବୈକୁଣ୍ଠ, ଯାହାର ଉତ୍ତରାଧିକାରୀ ଆମ୍ଭେ ନିଜ ଭକ୍ତମାନଙ୍କ ମଧ୍ୟରୁ ସେହିମାନଙ୍କୁ କରିବୁ ଯେଉଁମାନେ ଧର୍ମଭୀରୁ ହୋଇଥିବେ ।

تِلْكَ الْجَنَّةُ الَّتِي نُورِثُ مِنْ عِبَادِنَا مَنْ كَانَ تَقِيًّا ﴿٦٤﴾

୬୫. ଏବଂ (ଦେବଦୂତମାନେ ସେମାନଙ୍କୁ କହିବେ), "ଆମେମାନେ କେବଳ ତୁମ ପାଳନକର୍ତ୍ତାଙ୍କ ଆଦେଶ ମୁତାବକ ହିଁ ଅବତୀର୍ଣ୍ଣ ହେଉ ; ଏବଂ ଯାହା କିଛି ଆମମାନଙ୍କ ସମ୍ମୁଖରେ ଅଛି ଓ ଯାହାକିଛି ଆମମାନଙ୍କ ପଶ୍ଚାତ୍‌ରେ ଅଛି ଓ ଯାହା କିଛି ଏହି ଦୁଇ ମଝିରେ ଅଛି ସେ ସବୁ ତାହାଙ୍କର ; ଏବଂ ତୁମ ପାଳନକର୍ତ୍ତା (କୌଣସି ବିଷୟକୁ) ଭୁଲି ଯାଆନ୍ତି ନାହିଁ ।"

وَمَا نَتَنَزَّلُ إِلَّا بِأَمْرِ رَبِّكَ ۚ لَهُ مَا بَيْنَ أَيْدِينَا وَمَا خَلْفَنَا وَمَا بَيْنَ ذٰلِكَ ۚ وَمَا كَانَ رَبُّكَ نَسِيًّا ﴿٦٥﴾

---

୧. ଏହି ଆୟତରୁ ପ୍ରତୀତ ହେଉଛି ଯେ ଏହାର ସମ୍ବନ୍ଧ ମୁସଲମାନମାନଙ୍କ ଉନ୍ନତି ସହିତ ସଂଶ୍ଳିଷ୍ଟ, ଅନ୍ୟଥା ପରଲୋକଗତ ସ୍ୱର୍ଗର ବିବରଣ ବିଷୟକ ଜ୍ଞାନ ମୁସଲମାନମାନଙ୍କୁ ସାଂସାରିକ ଜୀବନରେ କେବେ ହେଁ ମିଳି ନ ଥା'ନ୍ତା ।

୬୬. ସେ ଆକାଶ ଓ ପୃଥିବୀ ତଥା ତାହା ମଧ୍ୟରେ ଯାହା କିଛି ଅଛି ସେ ସବୁର ପାଳନକର୍ତ୍ତା, ସୁତରାଂ (ହେ ମୁସଲମାନମାନେ !) ତାହାଙ୍କର ଉପାସନା କର ଏବଂ ତାହାଙ୍କ ଉପାସନାରେ ସର୍ବଦା ପ୍ରତିଷ୍ଠିତ ରୁହ, କ'ଣ ତୁମେମାନେ ଆଉ କାହାକୁ ତାହାଙ୍କ ସମ ଗୁଣସମ୍ପନ୍ନ ଥିବାର ଜାଣିଛ ?

رَبُّ السَّمٰوٰتِ وَالْاَرْضِ وَ مَا بَيْنَهُمَا فَاعْبُدْهُ وَاصْطَبِرْ لِعِبَادَتِهٖ هَلْ تَعْلَمُ لَهٗ سَمِيًّا ﴿۶۶﴾

ରୁ : ୪

୬୭. ଏବଂ ମନୁଷ୍ୟ (ସର୍ବଦା) କହୁଥିବ ଯେ ମୁଁ ମୃତ୍ୟୁବରଣ କରିବା ପରେ କ'ଣ ପ୍ରକୃତରେ ମୋତେ ପୁନର୍ଜୀବିତ କରାଇ ଉତ୍‌ଥିତ କରାହେବ ?

وَ يَقُوْلُ الْاِنْسَانُ ءَاِذَا مَا مِتُّ لَسَوْفَ اُخْرَجُ حَيًّا ﴿۶۷﴾

୬୮. କ'ଣ ମନୁଷ୍ୟର ଏହା ମନେ ନାହିଁ ଯେ ଆମେ ତାହାଙ୍କୁ ଏଥି ପୂର୍ବରୁ (ସେତେବେଳେ) ସୃଷ୍ଟି କରିଥିଲୁ ଯେତେବେଳେ କି ତାହାର କୌଣସି ଅସ୍ତିତ୍ୱ ନଥିଲା ?

اَوَلَا يَذْكُرُ الْاِنْسَانُ اَنَّا خَلَقْنٰهُ مِنْ قَبْلُ وَ لَمْ يَكُ شَيْـًٔا ﴿۶۸﴾

୬୯. ସୁତରାଂ ତୁମ ପାଳନକର୍ତ୍ତାଙ୍କ ରାଣ, ଆମେ ସେମାନଙ୍କୁ ଓ ସଇତାନମାନଙ୍କୁ (ମଧ୍ୟ ପୁନର୍ବାର) ଉତ୍‌ଥିତ କରିବୁ ଏବଂ ତା'ପରେ ସେ ସମସ୍ତଙ୍କୁ ନରକର ଚତୁଃପାର୍ଶ୍ୱରେ ଆଣ୍ଠୁମାଡ଼ି ରହିଥିବା (ଅର୍ଥାତ୍ ବିନୀତ ଭାବରେ ପ୍ରାର୍ଥନା କରୁଥିବା) ଅବସ୍ଥାରେ ଉପସ୍ଥିତ କରାଇବୁ ।

فَوَرَبِّكَ لَنَحْشُرَنَّهُمْ وَالشَّيٰطِيْنَ ثُمَّ لَنُحْضِرَنَّهُمْ حَوْلَ جَهَنَّمَ جِثِيًّا ﴿۶۹﴾

୭୦. ତା'ପରେ ଆମେ ପ୍ରତ୍ୟେକ ଦଳରୁ ଏପରି ଲୋକମାନଙ୍କୁ ଅଲଗା କରିଦେବୁ ଯେଉଁମାନେ ଦୟାବାନ୍ (ଅଲ୍ଲାହ)ଙ୍କର ପରମ ଶତ୍ରୁ ଥିଲେ ।

ثُمَّ لَنَنْزِعَنَّ مِنْ كُلِّ شِيْعَةٍ اَيُّهُمْ اَشَدُّ عَلَى الرَّحْمٰنِ عِتِيًّا ﴿۷۰﴾

୭୧. ଏବଂ ଆମେ ଭଲଭାବରେ ଜାଣୁ ଯେ ସେମାନଙ୍କ ମଧ୍ୟରୁ କେଉଁମାନେ ନରକରେ ନିକ୍ଷିପ୍ତ ହେବା ପାଇଁ ଅଧିକ ଯୋଗ୍ୟ ।

ثُمَّ لَنَحْنُ اَعْلَمُ بِالَّذِيْنَ هُمْ اَوْلٰى بِهَا صِلِيًّا ﴿۷۱﴾

୭୨. ଏବଂ ତୁମମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଏଥିରେ (ଅର୍ଥାତ୍ ନରକରେ) [୧] ନିକ୍ଷିପ୍ତ ହେବ ; ଏହା ଆଲ୍ଲାହ୍‌ଙ୍କର ଏକ ଦୃଢ଼ ଅଙ୍ଗୀକାର ଯାହା ଅବଶ୍ୟ ପାଳିତ ହେବ ।

وَإِنْ مِّنْكُمْ إِلَّا وَارِدُهَا كَانَ عَلَىٰ رَبِّكَ حَتْمًا مَّقْضِيًّا ﴿٧١﴾

୭୩. ଏବଂ ଆମେ ଧର୍ମଭୀରୁମାନଙ୍କୁ ରକ୍ଷା କରିବୁ ଏବଂ ଅତ୍ୟାଚାରୀମାନଙ୍କୁ ତନ୍ମଧ୍ୟରେ ଆଣ୍ଠୁମାଡି ପଡି ରହିଥିବା ଅବସ୍ଥାରେ ଛାଡି ଦେବୁ ।

ثُمَّ نُنَجِّي الَّذِينَ اتَّقَوْا وَّنَذَرُ الظّٰلِمِينَ فِيهَا جِثِيًّا ﴿٧٢﴾

୭୪. ଏବଂ ଯେତେବେଳେ ସେମାନଙ୍କୁ ଆମର ସୁସ୍ପଷ୍ଟ ବାଣୀ ପାଠ କରି ଶୁଣାଇ ଦିଆଯାଏ, ସେତେବେଳେ ଅବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ କହନ୍ତି, "(କୁହ) ଆମମାନଙ୍କର ଦୁଇ ଦଳ ମଧ୍ୟରେ କେଉଁଦଳ ପଦମର୍ଯ୍ୟାଦା ଦୃଷ୍ଟିରୁ ଅଧିକ ଓ କିଏ ସଖାମାନଙ୍କ ଦୃଷ୍ଟିରୁ ଅଧିକ ଶ୍ରେଷ୍ଠ ।"

وَإِذَا تُتْلَىٰ عَلَيْهِمْ اٰيٰتُنَا بَيِّنٰتٍ قَالَ الَّذِينَ كَفَرُوا لِلَّذِينَ اٰمَنُوٓا أَيُّ الْفَرِيقَيْنِ خَيْرٌ مَّقَامًا وَّأَحْسَنُ نَدِيًّا ﴿٧٣﴾

୭୫. ଏବଂ ଆମେ ସେମାନଙ୍କ ପୂର୍ବରୁ ଏପରି ଅନେକ ଯୁଗର ଲୋକମାନଙ୍କୁ ଧ୍ୱଂସ କରିଅଛୁ ଯେଉଁମାନେ ଧନ ସମ୍ପତ୍ତି ଦୃଷ୍ଟିରୁ ଓ ବାହ୍ୟ ଚାକଚକ୍ୟ ଦୃଷ୍ଟିରୁ ସେମାନଙ୍କଠାରୁ ଉତ୍‌କୃଷ୍ଟତର ଥିଲେ ।

وَكَمْ أَهْلَكْنَا قَبْلَهُمْ مِّنْ قَرْنٍ هُمْ أَحْسَنُ أَثَاثًا وَّرِءْيًا ﴿٧٤﴾

୭୬. ତୁମେ କୁହ, "ଯେଉଁ ବ୍ୟକ୍ତି ବିଭ୍ରାନ୍ତି ମଧ୍ୟରେ (ପଡି) ରହିଅଛି ତାହାକୁ ଦୟାବାନ୍ (ଆଲ୍ଲାହ୍) କିଛି କାଳ ପାଇଁ ଅବସର ଦେଇଥାନ୍ତି ଏପରିକି ଯେତେବେଳେ ସେହି ଲୋକମାନଙ୍କ ସମ୍ମୁଖରେ ଉକ୍ତ ପ୍ରତିଶ୍ରୁତ ଶାସ୍ତି ଉପସ୍ଥିତ ହେବ, ହୁଏତ ତାହା ପାର୍ଥିବ ଶାସ୍ତି ହୋଇପାରେ ବା ଚୂଡାନ୍ତ ବିନାଶ ସମୟ ହୋଇପାରେ, ସେତେବେଳେ ସେମାନେ ହୃଦୟଙ୍ଗମ କରିବେ ଯେ କେଉଁ ବ୍ୟକ୍ତି ଅବସ୍ଥା ଦୃଷ୍ଟିରୁ ନିକୃଷ୍ଟତର ଓ ଦଳବଳ ଦୃଷ୍ଟିରୁ ଦୁର୍ବଳ ।"

قُلْ مَنْ كَانَ فِي الضَّلٰلَةِ فَلْيَمْدُدْ لَهُ الرَّحْمٰنُ مَدًّا ۚ حَتّٰىٓ إِذَا رَأَوْا مَا يُوعَدُونَ إِمَّا الْعَذَابَ وَإِمَّا السَّاعَةَ فَسَيَعْلَمُونَ مَنْ هُوَ شَرٌّ مَّكَانًا وَّأَضْعَفُ جُنْدًا ﴿٧٥﴾

---

୧. ପବିତ୍ର କୋରାନରୁ ଦୁଇ ଗୋଟି ନରକ ଥିବାର ପ୍ରତୀତ ହେଉଛି : ଗୋଟିଏ ଏହି ସଂସାରରେ ଓ ଅନ୍ୟଟି ପରଲୋକରେ । ପ୍ରତ୍ୟେକ ବ୍ୟକ୍ତି ନରକକୁ ଯିବା ବିଷୟରେ ଯାହା କୁହାଯାଇଛି ତା'ର ଅର୍ଥ ନୁହେଁ ଯେ ବିଶ୍ୱାସକାରୀମାନେ ମଧ୍ୟ ନରକକୁ ଯିବେ; ବରଂ ଏହାର ପ୍ରକୃତ ଅର୍ଥ ହେଉଛି ଯେ ବିଶ୍ୱାସକାରୀମାନେ ଏହି ସଂସାରରେ ନରକ ଯନ୍ତ୍ରଣା ଭୋଗ କରନ୍ତି ଅର୍ଥାତ୍ ଅବିଶ୍ୱାସକାରୀମାନେ ସେମାନଙ୍କୁ ବିଭିନ୍ନ ପ୍ରକାର ଦୁଃଖ କଷ୍ଟ ଦେଇ ଥାଆନ୍ତି, ଅନ୍ୟଥା ପବିତ୍ର କୋରାନ ଦୃଷ୍ଟିରୁ ବିଶ୍ୱାସକାରୀ ପରଲୋକର ନରକ ମଧ୍ୟକୁ କେବେ ହେଲେ ଯିବେ ନାହିଁ, କାରଣ ପବିତ୍ର କୋରାନରେ ଏହା ମଧ୍ୟ ଲେଖା ଅଛି ଯେ ବିଶ୍ୱାସକାରୀମାନେ ନରକ ଠାରୁ ଏତେ ଦୂରରେ ରହିବେ ଯେ ସେମାନେ ସେଠାକାର ସ୍ୱର ମଧ୍ୟ ଶୁଣିବାକୁ ପାଇବେ ନାହିଁ । ଅତଏବ 'ବିଶ୍ୱାସକାରୀମାନେ ନରକକୁ ଯିବେ' ଏହି କଥାର ମର୍ମ ହେଉଛି— ସେମାନେ ପୃଥିବୀରେ ଦୁଃଖଯନ୍ତ୍ରଣା ଭୋଗ କରିବେ । ହଜରତ ମହାମ୍ମଦ ଜ୍ୱରକୁ ମଧ୍ୟ ନରକାଗ୍ନି ବୋଲି ସାବ୍ୟସ୍ତ କରିଛନ୍ତି (ଫତହୁଲ୍ ବୟାନ୍ : ଗ୍ରନ୍ଥ ଖଣ୍ଡ ୬, ପୃଷ୍ଠା ୩୬ ଦ୍ରଷ୍ଟବ୍ୟ) ।

୭୭. "ଏବଂ ଅଲ୍ଲାହ ସତ୍‌ପଥଗାମୀ ଲୋକମାନଙ୍କୁ ସତ୍‌ପଥରେ ଅଗ୍ରସର କରାନ୍ତି, ଏବଂ ଚିରସ୍ଥାୟୀ ପୁଣ୍ୟ କାର୍ଯ୍ୟ ତୁମ ପାଳନକର୍ତ୍ତାଙ୍କ ନିକଟରେ ପୁରସ୍କାର ଦୃଷ୍ଟିରୁ ତଥା ପରିଣାମ ଦୃଷ୍ଟିରୁ ଉତ୍‌କୃଷ୍ଟତର ।"

وَيَزِيدُ اللَّهُ الَّذِينَ اهْتَدَوْا هُدًى ۗ وَالْبَاقِيَاتُ الصَّالِحَاتُ خَيْرٌ عِنْدَ رَبِّكَ ثَوَابًا وَخَيْرٌ مَرَدًّا ﴿٧٧﴾

୭୮. କ'ଣ ତୁମେ ସେହି ବ୍ୟକ୍ତିର ଅବସ୍ଥାକୁ ଲକ୍ଷ୍ୟ କରିନାହଁ ଯେ କି ଆମର, ନିଦର୍ଶନଗୁଡ଼ିକୁ ଅବିଶ୍ୱାସ କରେ ଓ କହେ, "ନିଶ୍ଚୟ ମୋତେ ବହୁତ [1] ଧନ ସମ୍ପତ୍ତି ଓ ସନ୍ତାନ-ସନ୍ତତି ପ୍ରଦାନ କରାଯିବ ।"

أَفَرَأَيْتَ الَّذِي كَفَرَ بِآيَاتِنَا وَقَالَ لَأُوتَيَنَّ مَالًا وَوَلَدًا ﴿٧٨﴾

୭୯. କ'ଣ ସେ ଅଦୃଷ୍ଟ ବିଷୟରେ ଅବଗତ ହୋଇଛି ବା ଦୟାବାନ୍ (ଅଲ୍ଲାହଙ୍କ) ଠାରୁ କୌଣସି ଅଙ୍ଗୀକାର ହାସଲ କରିଅଛି ?

أَطَّلَعَ الْغَيْبَ أَمِ اتَّخَذَ عِنْدَ الرَّحْمَٰنِ عَهْدًا ﴿٧٩﴾

୮୦. ତାହା କଦାପି ସମ୍ଭବ ନୁହେଁ ; [2] ଆମେ ତାହାର ଏହି ବକ୍ତବ୍ୟକୁ ଲିପିବଦ୍ଧ କରିବୁ ଏବଂ ତାହାର ଶାସ୍ତିକୁ ବୃଦ୍ଧି କରିବୁ ।

كَلَّا ۚ سَنَكْتُبُ مَا يَقُولُ وَنَمُدُّ لَهُ مِنَ الْعَذَابِ مَدًّا ﴿٨٠﴾

୮୧. ଏବଂ ଯେଉଁ (ବକ୍ତବ୍ୟ) ସଂକ୍ରାନ୍ତରେ ସେ ଗର୍ବ [3] କରୁଅଛି ଆମେ ତାହାର ଉତ୍ତରାଧିକାରୀ, ଏବଂ ସେ ଆମ ନିକଟରେ ଏକାକୀ ଉପସ୍ଥିତ ହେବ ।

وَنَرِثُهُ مَا يَقُولُ وَيَأْتِينَا فَرْدًا ﴿٨١﴾

୮୨. ଏବଂ ସେମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଅନେକ ଉପାସ୍ୟଙ୍କୁ ଏହି ଆଶାରେ ଗ୍ରହଣ କରିଛନ୍ତି ଯେ ସେମାନେ ସେମାନଙ୍କ ପାଇଁ ଗୌରବ (ଓ କ୍ଷମତା)ର କାରଣ ହେବେ ।

وَاتَّخَذُوا مِنْ دُونِ اللَّهِ آلِهَةً لِيَكُونُوا لَهُمْ عِزًّا ﴿٨٢﴾

୮୩. ଏପରି କଦାପି ହେବ ନାହିଁ ; ସେ (ଉପାସ୍ୟ)ମାନେ ଦିନେ ସେମାନଙ୍କ ଉପାସନାକୁ ଅସ୍ୱୀକାର କରିବେ ଓ ସେମାନଙ୍କର ବିରୋଧୀ ହୋଇଯିବେ ।

كَلَّا ۚ سَيَكْفُرُونَ بِعِبَادَتِهِمْ وَيَكُونُونَ عَلَيْهِمْ ضِدًّا ﴿٨٣﴾

---

୧. ଏଠାରେ ଖ୍ରୀଷ୍ଟିୟାନମାନଙ୍କ ବିଷୟ ବର୍ଣ୍ଣନା କରାଯାଇଛି । ସେମାନଙ୍କ ବିଶ୍ୱାସ ମୁତାବକ ଯୀଶୁଙ୍କ ଆଗମନ ପରେ ମୃତ୍ୟୁର ପରମ୍ପରା ନିଃଶେଷ ହୋଇଯିବ ଓ ଖ୍ରୀଷ୍ଟିୟାନମାନେ ଚିରସ୍ଥାୟୀ ଜୀବନ ଲାଭ କରିବେ ଅର୍ଥାତ୍ ସେମାନେ ସମ୍ପ୍ରତି ଯେଉଁ ଉନ୍ନତି କରିଛନ୍ତି ତାହା କୟାମତ ପର୍ଯ୍ୟନ୍ତ ଅକ୍ଷୟ ରହିବ ।

୨. ଖ୍ରୀଷ୍ଟିୟାନମାନଙ୍କର ଏହି ମନ୍ତବ୍ୟ ସମ୍ପୂର୍ଣ୍ଣ ଭ୍ରମାତ୍ମକ କାରଣ ସେମାନେ ମଲେ ନିଶ୍ଚୟ ଦଣ୍ଡିତ ହେବେ ଓ ସଂସାରରେ ଜୀବିତ ରହିଲେ ଅଲ୍ଲାହ ସେମାନଙ୍କୁ ଦଣ୍ଡ ଦେବାପାଇଁ କୌଣସି ନା କୌଣସି ଉପାୟ ଅବଶ୍ୟ ବାହାର କରିବେ ।

ଯେଉଁ ଧନସମ୍ପଦ ସମ୍ବନ୍ଧରେ ସେମାନେ ଗର୍ବ କରୁଛନ୍ତି ଦିନେ ଅଲ୍ଲାହ ସେମାନଙ୍କ ଠାରୁ ସେଗୁଡ଼ିକୁ ଛଡ଼ାଇ ନେଇ ନିଜ ଧର୍ମନିଷ୍ଠ ଭକ୍ତମାନଙ୍କୁ ଦେଇ ଦେବେ । ବସ୍ତୁତଃ ଏଠାରେ ଇସଲାମର ଉନ୍ନତି ବିଷୟରେ ଭବିଷ୍ୟବାଣୀ ରହିଅଛି ।

ରୁ : ୬

୮୪. କ'ଣ ତୁମେ ଜାଣି ନାହିଁ ଯେ ଆମେ ଅବିଶ୍ୱାସକାରୀମାନଙ୍କୁ ପ୍ରରୋଚିତ କରିବା ପାଇଁ ସଇତାନମାନଙ୍କୁ ପ୍ରେରଣ କରିଅଛୁ ?

اَلَمْ تَرَ اَنَّاۤ اَرْسَلْنَا الشَّيٰطِيْنَ عَلَى الْكٰفِرِيْنَ تَؤُزُّهُمْ اَزًّا ﴿۸۳﴾

୮୫. ସୁତରାଂ ତୁମେ ସେମାନଙ୍କ ବିରୁଦ୍ଧରେ ତୁରନ୍ତ କୌଣସି ପଦକ୍ଷେପ ନିଅ ନାହିଁ ; ଆମେ ସେମାନଙ୍କ ବିନାଶ ସମୟକୁ ହିସାବ କରି ରଖିଅଛୁ ।

فَلَا تَعْجَلْ عَلَيْهِمْ ؕ اِنَّمَا نَعُدُّ لَهُمْ عَدًّا ﴿۸۴﴾

୮୬. ଯେଉଁ ଦିନ ଆମେ ଧର୍ମଭୀରୁମାନଙ୍କୁ (ପୁନର୍ଜୀବିତ କରାଇ ସମ୍ମାନିତ ଅତିଥି ରୂପେ) ଦୟାବାନ୍ (ଅଲ୍ଲାହ)ଙ୍କ ନିକଟରେ ଏକତ୍ରିତ କରାଇବୁ ;

يَوْمَ نَحْشُرُ الْمُتَّقِيْنَ اِلَى الرَّحْمٰنِ وَفْدًا ﴿۸۵﴾

୮୭. ଏବଂ (ଆମେ) ଅପରାଧୀମାନଙ୍କୁ ନରକ ଆଡକୁ ତଡି ନେବୁ ;

وَّنَسُوْقُ الْمُجْرِمِيْنَ اِلٰى جَهَنَّمَ وِرْدًا ﴿۸۶﴾

୮୮. (ସେ ଦିନ) ଯେଉଁ ବ୍ୟକ୍ତି ଦୟାବାନ୍ (ଅଲ୍ଲାହଙ୍କ)ଠାରୁ ପ୍ରତିଶ୍ରୁତି ହାସଲ କରିଥିବ ତାହା ବ୍ୟତୀତ ଅନ୍ୟ କାହାରି ସୁପାରିଶ କରିବାକୁ କ୍ଷମତା ନଥିବ ।

لَا يَمْلِكُوْنَ الشَّفَاعَةَ اِلَّا مَنِ اتَّخَذَ عِنْدَ الرَّحْمٰنِ عَهْدًا ﴿۸۷﴾

୮୯. ଏବଂ ସେମାନେ କହନ୍ତି ଯେ ଦୟାବାନ୍ (ଅଲ୍ଲାହ) ପୁତ୍ର ଗ୍ରହଣ କରିଛନ୍ତି ।

وَقَالُوا اتَّخَذَ الرَّحْمٰنُ وَلَدًا ﴿۸۸﴾

୯୦. (ତୁମେ କୁହ), "ତୁମେମାନେ ଏକ ଗୁରୁତର ବିଷୟ କହୁଅଛ ।"

لَقَدْ جِئْتُمْ شَيْئًا اِدًّا ﴿۸۹﴾

୯୧. (ତୁମମାନଙ୍କର ଏପରି କହିବା ଦ୍ୱାରା) ଏହା ଖୁବ୍ ସମ୍ଭବ ଯେ ଆକାଶ ଭାଙ୍ଗି ପଡିବ ଓ ଭୂପୃଷ୍ଠ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବ, ଏବଂ ପର୍ବତ ଗୁଡିକ ଖଣ୍ଡବିଖଣ୍ଡ ହୋଇଯିବ ।

تَكَادُ السَّمٰوٰتُ يَتَفَطَّرْنَ مِنْهُ وَتَنْشَقُّ الْاَرْضُ وَتَخِرُّ الْجِبَالُ هَدًّا ﴿۹۰﴾

୯୨. କାରଣ ସେମାନେ ଦୟାବାନ୍ (ଅଲ୍ଲାହ)ଙ୍କ ପାଇଁ ପୁତ୍ର (ଗ୍ରହଣ କରିଥିବା) ନିର୍ଣ୍ଣୟ କରିଛନ୍ତି ।

اَنْ دَعَوْا لِلرَّحْمٰنِ وَلَدًا ﴿۹۱﴾

୯୩. ଦୟାବାନ୍ (ଅଲ୍ଲାହ) ନିଜ ପାଇଁ କାହାରିକୁ ପୁତ୍ର ରୂପେ ଗ୍ରହଣ କରିବା ତାହାଙ୍କ ମର୍ଯ୍ୟାଦାର ପରିପନ୍ଥୀ ଅଟେ ।

وَمَا يَنْۢبَغِيْ لِلرَّحْمٰنِ اَنْ يَّتَّخِذَ وَلَدًا ﴿۹۲﴾

୯୪. (କାରଣ) ଯେ କେହି ଆକାଶ ଓ ପୃଥିବୀରେ ଅଛି ସେ ଦୟାବାନ୍ (ଅଲ୍ଲାହ୍)ଙ୍କ ସମୀପରେ କ୍ରୀତଦାସ ରୂପେ ଉପସ୍ଥିତ ହେବ ।

إِنْ كُلُّ مَنْ فِي السَّمٰوٰتِ وَالْأَرْضِ إِلَّا آتِي الرَّحْمٰنِ عَبْدًا ﴿٩٤﴾

୯୫. ସେ (ଅଲ୍ଲାହ୍) ସେମାନଙ୍କୁ ପରିବେଷ୍ଟିତ କରିଛନ୍ତି ଓ ସେମାନଙ୍କୁ ଗଣନା କରି ରଖିଛନ୍ତି ।

لَقَدْ أَحْصٰهُمْ وَعَدَّهُمْ عَدًّا ﴿٩٥﴾

୯୬. ଏବଂ କୟାମତ ଦିନ ସେମାନେ ପ୍ରତ୍ୟେକେ ଜଣ ଜଣ କରି [1]ତାହାଙ୍କ ନିକଟରେ ଉପସ୍ଥିତ ହେବେ ।

وَكُلُّهُمْ آتِيهِ يَوْمَ الْقِيٰمَةِ فَرْدًا ﴿٩٦﴾

୯୭. ବାସ୍ତବରେ ଯେଉଁମାନେ ବିଶ୍ୱାସ ସ୍ଥାପନ କରିଛନ୍ତି ଓ (ଯେଉଁମାନେ) ସତ୍ କାର୍ଯ୍ୟ କରିଛନ୍ତି, ସେମାନଙ୍କ ସକାଶେ ଦୟାବାନ୍ (ଅଲ୍ଲାହ୍ ଗଭୀର) ପ୍ରେମ[2] ସଂସ୍ଥିତ କରିବେ ।

إِنَّ الَّذِينَ آمَنُوا وَعَمِلُوا الصّٰلِحٰتِ سَيَجْعَلُ لَهُمُ الرَّحْمٰنُ وُدًّا ﴿٩٧﴾

୯୮. ସୁତରାଂ (ହେ ମହମ୍ମଦ !) ଆମେ ଏହାକୁ (ଅର୍ଥାତ୍ ପବିତ୍ର କୋରାନକୁ) ତୁମ ଭାଷାରେ ଏଥିଯୋଗୁଁ ସରଳ କରି ଅବତୀର୍ଣ୍ଣ କରିଅଛୁ ଯେ ତୁମେ ତଦ୍ଦ୍ୱାରା ଧର୍ମଭୀରୁମାନଙ୍କୁ ସୁସମାଗ୍ରର ପ୍ରଦାନ କରିବ ଓ ତଦ୍ଦ୍ୱାରା କଳହ ପ୍ରିୟ ସମ୍ପ୍ରଦାୟକୁ ସଚେତନ କରାଇବ ।

فَإِنَّمَا يَسَّرْنٰهُ بِلِسَانِكَ لِتُبَشِّرَ بِهِ الْمُتَّقِينَ وَتُنْذِرَ بِهِ قَوْمًا لُدًّا ﴿٩٨﴾

୯୯. ଏବଂ ଆମେ ସେମାନଙ୍କ ପୂର୍ବରୁ କେତେ ଯେ ସମ୍ପ୍ରଦାୟକୁ ବିନାଶ କରିଅଛୁ, କ'ଣ ତୁମେ ସେମାନଙ୍କ ମଧ୍ୟରୁ କାହାରି କୌଣସି ଚିହ୍ନବର୍ଣ୍ଣ ପାଉଅଛ ବା ସେମାନଙ୍କ ସ୍ୱର ଶବ୍ଦ ଶୁଣୁଅଛ ?

وَكَمْ أَهْلَكْنَا قَبْلَهُمْ مِنْ قَرْنٍ هَلْ تُحِسُّ مِنْهُمْ مِنْ أَحَدٍ أَوْ تَسْمَعُ لَهُمْ رِكْزًا ﴿٩٩﴾

---

୧. ଏହି ଆୟତରୁ ପ୍ରମାଣିତ ହେଉଛି ଯେ ଏଠାରେ ସାଂସାରିକ ଶାସ୍ତି ବ୍ୟତୀତ ପରକାଳର ଶାସ୍ତି ବିଷୟରେ ମଧ୍ୟ ବର୍ଣ୍ଣନା କରାଯାଇଛି । ପ୍ରତ୍ୟେକ ବ୍ୟକ୍ତି ନିଜ କର୍ମାନୁସାରେ ଫଳ ଭୋଗ କରିବ, ଅବଶ୍ୟ ଯଦି 'ଜଣ ଜଣ କରି' ର ଅର୍ଥ ବିଭିନ୍ନ ସମ୍ପ୍ରଦାୟ ହେବ ତେବେ ଏହି ଆୟତ ସାଂସାରିକ ଶାସ୍ତି ପ୍ରତି ମଧ୍ୟ ପ୍ରଯୋଜ୍ୟ ।

୨. ଏଠାରେ 'ଉଦ୍' ଶବ୍ଦ ବ୍ୟବହୃତ ହୋଇଛି । ଉଦ୍ ସେହି ପ୍ରେମକୁ ବୁଝାଏ ଯାହା ମନ ମଧ୍ୟରେ ଏକ କୀଳା ପରି ପୋତା ହୋଇଥାଏ । ସୁତରାଂ ଆରବୀ ଭାଷା ଦୃଷ୍ଟିରୁ ଏହି ଆୟତର ଅର୍ଥ ହେବ : (କ) ବିଶ୍ୱାସକାରୀଙ୍କ ମନରେ ଅଲ୍ଲାହ୍ ନିଜ ପ୍ରେମକୁ କୀଳା ପରି ପୋତି ଦେବେ, (ଖ) ନିଜ ମନରେ ବିଶ୍ୱାସକାରୀଙ୍କ ପ୍ରେମକୁ କୀଳାପରି ପୋତିଦେବେ (ଗ) ବିଶ୍ୱାସକାରୀଙ୍କ ମନରେ ଜନସମାଜର ପ୍ରେମକୁ କୀଳାପରି ପୋତି ଦେବେ ଓ ପରିଣାମରେ ମାନବ-ସମାଜର ମନ ଭିତରେ ମୁସଲମାନମାନଙ୍କ ପ୍ରତି ପ୍ରେମଭାବ କୀଳାପରି ପୋତି ହୋଇଯିବ । ଏ ବିଷୟକ ଏକ ଦୃଷ୍ଟାନ୍ତ ରୋମ୍ ବିଜୟ ଘଟଣାରୁ ଦେଖିବାକୁ ମିଳୁଛି । ଗୋଟିଏ ଘଟଣାରେ ଯେତେବେଳେ ଖ୍ରୀଷ୍ଟିୟାନ ସୈନ୍ୟ ବାହିନୀ ବହୁ ସଂଖ୍ୟାରେ ଦ୍ରୁତ ଗତିରେ ଆଗକୁ ଆଗକୁ ମାଡ଼ି ଚାଲିଲେ ଓ ମୁସଲମାନମାନେ ଭାବିଲେ ଯେ ସେମାନେ ଆଉ ଖ୍ରୀଷ୍ଟିୟାନ ସୈନ୍ୟବାହିନୀର ମୁକାବିଲା କରିପାରିବେ ନାହିଁ ସେତେବେଳେ ମୁସଲମାନମାନେ ଟିକସ ଆକାରରେ ଯେଉଁ ଧନ ଅସୁଲ କରିଥିଲେ ସେସବୁ ଧନକୁ ସେଠାକାର ଲୋକମାନଙ୍କୁ ଫେରାଇ ଦେଲେ । ଏହାର ପ୍ରଭାବ ସେଠାକାର ଇହୁଦୀ ଓ ଖ୍ରୀଷ୍ଟିୟାନମାନଙ୍କ ଉପରେ ଏପରି ଭାବେ ପଡ଼ିଲା ଯେ ସେମାନେ କାନ୍ଦି କାନ୍ଦି ମୁସଲମାନ ସୈନ୍ୟବାହିନୀକୁ ବିଦାୟ ଦେଲେ । ସେଠାକାର ପାଦ୍ରୀ ଓ ଅନ୍ୟାନ୍ୟ ଲୋକ ମୁସଲମାନଙ୍କ ପ୍ରତ୍ୟାବର୍ତ୍ତନ ସମ୍ବନ୍ଧରେ ଅଲ୍ଲାହ୍ଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ବସ୍ତୁତଃ ଇହୁଦୀମାନେ ଅତିଶୟ ପ୍ରଭାବିତ ହୋଇଥିଲେ ଓ ଘୋଷଣା କରିଥିଲେ ଯେ ସେମାନଙ୍କ ପ୍ରାଣନାଶ ହେଲେ ମଧ୍ୟ ସେମାନେ ଖ୍ରୀଷ୍ଟିୟାନ ସୈନ୍ୟବାହିନୀକୁ ସହର ମଧ୍ୟରେ ପ୍ରବେଶ କରିବାକୁ ସୁଯୋଗ ଦେବେ ନାହିଁ । (ଫତହୁଲ ବଲଦାନ ବିଲାଜରି : ପୃଷ୍ଠା ୧୪୩) । ନିଃସନ୍ଦେହରେ ହଜରତ ଇସାଙ୍କ ପ୍ରେମ ସଂକ୍ରାନ୍ତ ଶିକ୍ଷା ଠାରୁ ଇସଲାମର ସେହି ଶିକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ଓ ଉଭୟ ଶିକ୍ଷା ମଧ୍ୟରେ ଆକାଶ ଓ ପାତାଳର ପାର୍ଥକ୍ୟ ରହିଅଛି ।

سُوْرَةُ طٰهٰ مَكِّيَّةٌ (٢٠)

# ତା-ହା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସ୍ମିଲ୍ଲାହ୍ ସମେତ ୧୩୬ଟି ଆୟତ ଓ ୮ଟି ରୁକୁ ଅଛି।)

୧. ଅଶେଷ ଦୟାବାନ୍(ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି)।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ତା-ହା[1]।

طٰهٰ ②

୩. ଆମେ ତୁମ ପ୍ରତି ଏହି କୋରାନକୁ ଏଥି ସକାଶେ ଅବତୀର୍ଣ୍ଣ କରିନାହୁଁ ଯେ ତୁମେ ଦୁଃଖର ସମ୍ମୁଖୀନ ହେବ।

مَآ اَنْزَلْنَا عَلَيْكَ الْقُرْاٰنَ لِتَشْقٰٓى ③

୪. ଯେ (ଅଲ୍ଲାହ୍‌ଙ୍କୁ) ଭୟ କରେ ଏହା ତା'ପାଇଁ ଏକ ସଦୁପଦେଶ ମାତ୍ର,

اِلَّا تَذْكِرَةً لِّمَنْ يَّخْشٰى ④

୫. ଯେ ଭୂପୃଷ୍ଠ ଓ ଉଚ୍ଚ ଆକାଶ ସୃଷ୍ଟି କରିଛନ୍ତି (ଏହା) ତାହାଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଅଛି।

تَنْزِيْلًا مِّمَّنْ خَلَقَ الْاَرْضَ وَالسَّمٰوٰتِ الْعُلٰى ⑤

୬. (ସେ) ଦୟାବାନ୍ (ଅଲ୍ଲାହ୍) ସିଂହାସନ ଉପରେ ସୁପ୍ରତିଷ୍ଠିତ ଅଛନ୍ତି।

اَلرَّحْمٰنُ عَلَى الْعَرْشِ اسْتَوٰى ⑥

---

୧. ଏହା ସଂକ୍ଷେପାକ୍ଷରର ଅନ୍ତର୍ଗତ ନୁହେଁ ବରଂ ଆରବର ବିଭିନ୍ନ ଗୋଷ୍ଠୀ ମଧ୍ୟରେ ଏହି ଶବ୍ଦର ପ୍ରଚଳିତ ଅର୍ଥ ହେଉଛି, 'ସମ୍ପୂର୍ଣ୍ଣ ଶକ୍ତିଶାଳୀ ପୁରୁଷ' (ଫତହୁଲ୍ ବୟାନ୍ ଦ୍ରଷ୍ଟବ୍ୟ)। 'ସମ୍ପୂର୍ଣ୍ଣ ଶକ୍ତିଶାଳୀ ପୁରୁଷ' ଶବ୍ଦାବଳୀ ନିମ୍ନୋକ୍ତ ବିଷୟକୁ ସୂଚାଏ : ପୌରୁଷର ସମସ୍ତ ଲକ୍ଷଣ ଯଥା ବୀରତା, ଧୀରତା, ଦାନଶୀଳତା ଓ ସମ୍ପୂର୍ଣ୍ଣ ଇନ୍ଦ୍ରିୟଦମନ ହଜରତ ମହମ୍ମଦଙ୍କ ଠାରେ ଦେଖିବାକୁ ମିଳେ। ଯେତେବେଳେ ତାଙ୍କ ନିକଟରେ ପ୍ରଥମ ଇଲହାମ ବା ଦିବ୍ୟବାଣୀ ଅବତୀର୍ଣ୍ଣ ହେଲା ଓ ସେ କିଞ୍ଚିତ୍ ଭୟଭୀତ ହୋଇଗଲେ ସେତେବେଳେ ତାଙ୍କ ଧର୍ମପତ୍ନୀ ହଜରତ ଖଦିଜା ଏ ବିଷୟ ଶୁଣି ଓ ତାଙ୍କର ଏପରି ଅବସ୍ଥାକୁ ଲକ୍ଷ୍ୟ କରି ମନ୍ତବ୍ୟ ପ୍ରକାଶ କରିଥିଲେ ଯେ ହଜରତ ମହମ୍ମଦଙ୍କର ଏପରି ଆଶଙ୍କା ଭ୍ରମାତ୍ମକ ଅଟେ। ସେ କହିଥିଲେ ଯେ ଅଲ୍ଲାହ୍ ତାଙ୍କୁ ଆଦୌ ଅପମାନିତ କରିବେ ନାହିଁ, କାରଣ ସେ ସର୍ବଦା ବନ୍ଧୁବାନ୍ଧବଙ୍କ ପ୍ରତି ସଦ୍‌ବ୍ୟବହାର କରନ୍ତି, ଅତିଥି ସତ୍କାର କରନ୍ତି, ଯେଉଁ ସବୁ ସଦ୍‌ଗୁଣ ଧରାପୃଷ୍ଠରୁ ବିଲୀନ ହୋଇଛି ସେଗୁଡ଼ିକୁ ପୁନଃପ୍ରତିଷ୍ଠା କରନ୍ତି ଏବଂ ଯଦି କେହି ବିନା ଦୋଷରେ ଅପରାଧରେ ଜଡ଼ିତ ହୁଏ ତେବେ ସେ ତାକୁ ସାହାଯ୍ୟ କରନ୍ତି (ହଦିସ୍ ବୁଖାରି ଦ୍ରଷ୍ଟବ୍ୟ)। ଜଣେ ଲୋକର ସବୁଠାରୁ ବଡ଼ ସାକ୍ଷୀ ହେଉଛି ତା'ର ଧର୍ମପତ୍ନୀ, କାରଣ ସେ ତା'ର ପ୍ରତ୍ୟେକଟି ଅବସ୍ଥାକୁ ସର୍ବଦା ଲକ୍ଷ୍ୟ କରୁଥାଏ। ଏହା ହିଁ ସର୍ବୋତ୍କୃଷ୍ଟ ଓ ବିଶ୍ୱସନୀୟ ସାକ୍ଷ୍ୟ। ଅତଏବ ଏଥିରୁ ପ୍ରମାଣିତ ହେଉଛି ଯେ ହଜରତ ମହମ୍ମଦ ବାସ୍ତବରେ 'ତା—ହା' ଥିଲେ ଅର୍ଥାତ୍ ଜଣେ ସର୍ବଗୁଣ-ସମ୍ପନ୍ନ ପୁରୁଷ। ଜଣେ ଉଚ୍ଚକୋଟୀର ପୁରୁଷଙ୍କ ନିକଟରେ ଯେଉଁ ସବୁ ଗୁଣ ରହିବା ଆବଶ୍ୟକ ସେସବୁ ସର୍ବୋତ୍କୃଷ୍ଟ ଭାବରେ ତାଙ୍କ ଠାରେ ବିଦ୍ୟମାନ ଥିଲା। (୩୩: ୨୨ ଓ ୬୮ : ୫ ଦ୍ରଷ୍ଟବ୍ୟ।)

୭. ଯାହା କିଛି ଆକାଶ ଓ ପୃଥିବୀରେ ଅଛି ଏବଂ ଯାହା କିଛି ଏ ଦୁଇଗୋଟି ମଧ୍ୟରେ ଅଛି ତଥା ଯାହା କିଛି ଆର୍ଦ୍ର ମୃତ୍ତିକା ତଳେ ଅଛି ସେ ସବୁ ତାହାଙ୍କର ।

لَهٗ مَا فِي السَّمٰوٰتِ وَمَا فِي الْاَرْضِ وَمَا بَيْنَهُمَا وَمَا تَحْتَ الثَّرٰى ۝٧

୮. ଏବଂ ଯଦି ତୁମେ ଉଚ୍ଚ ସ୍ୱରରେ କୁହ ତେବେ ତାହା ମଧ୍ୟ ସେ ଶୁଣନ୍ତି ଓ ଯଦି (ତୁମେ) ନିମ୍ନ ସ୍ୱରରେ କୁହ ତାହା ମଧ୍ୟ ସେ ଶୁଣନ୍ତି, କାରଣ ସେ ଗୋପନ କଥା ଜାଣନ୍ତି ଓ ଯାହା ଅତି ଗୋପନ ତାହା ମଧ୍ୟ (ସେ ଜାଣନ୍ତି) ।

وَاِنْ تَجْهَرْ بِالْقَوْلِ فَاِنَّهٗ يَعْلَمُ السِّرَّ وَاَخْفٰى ۝٨

୯. ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ତାହାଙ୍କର ଅନେକ ଉତ୍ତମ (ଗୁଣ ବାଚକ) ନାମ ଅଛି ।

اَللّٰهُ لَآ اِلٰهَ اِلَّا هُوَ لَهُ الْاَسْمَآءُ الْحُسْنٰى ۝٩

୧୦. ଏବଂ କ'ଣ ତୁମ ନିକଟକୁ ମୁସାଙ୍କ ବୃତ୍ତାନ୍ତ ଆସିଅଛି ?

وَهَلْ اَتٰىكَ حَدِيْثُ مُوْسٰى ۝١٠ وقف لازم

୧୧. ଯେତେବେଳେ ସେ ଏକ ଅଗ୍ନି [୧] ଦେଖିଲେ, ସେତେବେଳେ ସେ ନିଜ ପରିବାର ବର୍ଗଙ୍କୁ କହିଲେ, "(ନିଜ ସ୍ଥାନରେ) ଅପେକ୍ଷା କର, ଆମେ ଏକ ଅଗ୍ନି ଦେଖୁଅଛୁ, ସମ୍ଭବତଃ ଆମେ ସେଠାକୁ ଯାଇ ତନ୍ମଧ୍ୟରୁ ତୁମମାନଙ୍କ ପାଇଁ ଏକ ଜଳନ୍ତା ଅଙ୍ଗାର [୨] ଆଣିପାରୁ ବା ସେହି ଅଗ୍ନିଠାରେ (ନିଜ ସକାଶେ କୌଣସି ଆଧ୍ୟାତ୍ମିକ) ଉପଦେଶ ହାସଲ କରିପାରୁ ।"

اِذْ رَاٰ نَارًا فَقَالَ لِاَهْلِهِ امْكُثُوْٓا اِنِّيْٓ اٰنَسْتُ نَارًا لَّعَلِّيْٓ اٰتِيْكُمْ مِّنْهَا بِقَبَسٍ اَوْ اَجِدُ عَلَى النَّارِ هُدًى ۝١١

୧୨. ତା'ପରେ ଯେତେବେଳେ ସେ ତାହା ନିକଟରେ ପହଞ୍ଚିଲେ, ସେତେବେଳେ ସେ ଏକ ଡାକ [୩] ଶୁଣିଲେ, "ହେ ମୁସା !"

فَلَمَّآ اَتٰىهَا نُوْدِيَ يٰمُوْسٰى ۝١٢

---

୧. 'ଏକ ଅଗ୍ନି' ଶବ୍ଦାବଳୀରୁ ପ୍ରତୀତ ହେଉଛି ଯେ ହଜରତ ମୁସା ସ୍ୱୟଂ ଏହାକୁ ଏକ 'କଶଫ୍' ବା ଅଲୌକିକ ସ୍ୱପ୍ନ ମନେ କରୁଥିଲେ, କାରଣ ଯଦି ତାହା ଏକ ସାଧାରଣ ଅଗ୍ନି ହୋଇ ଥାଆନ୍ତା ତେବେ ସେ ତାକୁ 'ଏକ ଅଗ୍ନି' କହି ନ ଥାଆନ୍ତେ ବରଂ କେବଳ 'ଅଗ୍ନି' କହି ଥା'ନ୍ତେ । ପ୍ରକୃତ ପକ୍ଷେ ତାଙ୍କୁ ଏକ ଜ୍ୟୋତି ଦୃଷ୍ଟିଗୋଚର ହୋଇଥିଲା ଯାହା ଅଗ୍ନିରୂପୀ ଥିଲା । ସେ ଅନୁଭବ କରିଥିଲେ ଯେ ତାଙ୍କୁ ଯାହା କିଛି ଦୃଷ୍ଟି ଗୋଚର ହେଉଛି ତାହା ଅଲ୍ଲାହଙ୍କର ଏକ ଦୀପ୍ତି । ଏଥିଉତ୍ତାରୁ ସେ ବନ୍ଧୁ ବାନ୍ଧବମାନଙ୍କୁ ସେହି ଅଗ୍ନି ଦେଖିଥିବା କହି ଥିଲେ ।

୨. ଯେହେତୁ ସେହି ଦୃଶ୍ୟ ଅଗ୍ନି ରୂପରେ ଥିଲା ତେଣୁ ସେ ବିଷୟକ ସମସ୍ତ ଶବ୍ଦ ଆଳଙ୍କାରିକ ଆକାରରେ ବର୍ଣ୍ଣିତ ହୋଇଅଛି ଅର୍ଥାତ୍ ଯଦି ଏହି ଦୀପ୍ତି କୌଣସି ବ୍ୟକ୍ତି ବିଶେଷଙ୍କ ସକାଶେ ଉଦ୍ଦିଷ୍ଟ, ତେବେ ସେ ନିଜେ ସତ୍‌ପଥ ପ୍ରାପ୍ତ ହେବେ ଏବଂ ଯଦି ଏହି ଦୀପ୍ତି କୌଣସି ସମ୍ପ୍ରଦାୟ ପାଇଁ ଉଦ୍ଦିଷ୍ଟ, ତେବେ ସେହି ସମ୍ପ୍ରଦାୟଙ୍କ ପାଇଁ ସେ ସୁସ୍ପଷ୍ଟ ଉପଦେଶ ଓ ଶିକ୍ଷାର ସାଧନ ଆଣିବେ ଯଦ୍ଦ୍ୱାରା ସେମାନେ ଲାଭବାନ୍ ହେବେ ।

୩. ଏହାର ଅର୍ଥ ନୁହେଁ ଯେ ଅଲ୍ଲାହ ଅଗ୍ନି ମଧ୍ୟରେ ଥିଲେ ବରଂ ଏହାର ଅର୍ଥ ହେଉଛି ଅଲ୍ଲାହ ହିଁ ସେହି ଅଗ୍ନି ଦୃଶ୍ୟର ପ୍ରଦର୍ଶନକାରୀ ଥିଲେ ।

୧୩. "ଆମେ ହିଁ ତୁମର ପାଳନକର୍ତ୍ତା ; ସୁତରାଂ ତୁମେ ନିଜର ଜୋତା ଦୁଇଟି [1] ଉତାରି ଦିଅ, କାରଣ ତୁମେ ପବିତ୍ର "ତୁଓ୍ୱା" ଉପତ୍ୟକାରେ ଅଛ ।"

إِنِّيٓ أَنَا رَبُّكَ فَاخْلَعْ نَعْلَيْكَ إِنَّكَ بِالْوَادِ الْمُقَدَّسِ طُوًى ⑬

୧୪. "ଏବଂ ଆମେ ତୁମକୁ (ନିଜ ପାଇଁ) ମନୋନୀତ କରିଅଛୁ ; ସୁତରାଂ ତୁମ ପ୍ରତି ଯାହା ଓହି କରାଯାଉଅଛି ତୁମେ ତାହା ଶୁଣ (ଏବଂ ତଦନୁସାରେ କାର୍ଯ୍ୟକର) ।"

وَأَنَا اخْتَرْتُكَ فَاسْتَمِعْ لِمَا يُوحَىٰ ⑭

୧୫. "ଆମେ ବାସ୍ତବରେ ଅଲ୍ଲାହ ଅଟୁ, ଆମ ବ୍ୟତିରେକେ ଅନ୍ୟ କେହି ଉପାସ୍ୟ ନାହିଁ ; ସୁତରାଂ ତୁମେ ଆମର ହିଁ ଉପାସନା କର, ଏବଂ ଆମର ସ୍ମରଣ ସକାଶେ ନମାଜ ପାଠ କର ।"

إِنَّنِيٓ أَنَا اللَّهُ لَآ إِلَٰهَ إِلَّآ أَنَا فَاعْبُدْنِي وَأَقِمِ الصَّلَوٰةَ لِذِكْرِيٓ ⑮

୧୬. "ବାସ୍ତବରେ ସେହି (କୟାମତ) ସମୟ ଆସୁଅଛି ; ଆମେ ଶୀଘ୍ର ତାହାକୁ ପ୍ରକାଶ କରିଦେବୁ ଯଦ୍ଦ୍ୱାରା କି ପ୍ରତ୍ୟେକ ବ୍ୟକ୍ତିକୁ ନିଜ କର୍ମ ଅନୁଯାୟୀ ପୁରସ୍କାର ପ୍ରଦାନ କରାଯିବ ।"

إِنَّ السَّاعَةَ ءَاتِيَةٌ أَكَادُ أُخْفِيهَا لِتُجْزَىٰ كُلُّ نَفْسٍۭ بِمَا تَسْعَىٰ ⑯

୧୭. "ସୁତରାଂ ଯେ ସେଥିରେ (ଅର୍ଥାତ୍ କୟାମତ ସଂକ୍ରାନ୍ତରେ) ବିଶ୍ୱାସ କରେ ନାହିଁ ଏବଂ ନିଜ ପ୍ରବୃତ୍ତିକୁ ଅନୁସରଣ କରୁଥାଏ ସେ ଯେପରି ତୁମକୁ ସେ (କୟାମତ) ସଂକ୍ରାନ୍ତରେ ବିଶ୍ୱାସ କରିବାକୁ ଅଟକାଇ ନ ଦେଉ, ଯାହା ଫଳରେ ତୁମେ ଧ୍ୱଂସ ହୋଇଯିବ ।"

فَلَا يَصُدَّنَّكَ عَنْهَا مَن لَّا يُؤْمِنُ بِهَا وَاتَّبَعَ هَوَىٰهُ فَتَرْدَىٰ ⑰

୧୮. ଏବଂ (ଆମେ ସେତେବେଳେ ମୁସାଙ୍କୁ କହିଲୁ), "ହେ ମୁସା ! ତୁମର ଦକ୍ଷିଣ ହସ୍ତରେ କ'ଣ ଅଛି ?"

وَمَا تِلْكَ بِيَمِينِكَ يَٰمُوسَىٰ ⑱

୧୯. (ସେ) କହିଲେ, "ଏହା ଆମର ଲାଠି, ଆମେ ଏହା ଉପରେ ଭରା ଦେଉ ଏବଂ ଏହା ସାହାଯ୍ୟରେ ନିଜ ଛେଳିମାନଙ୍କ ପାଇଁ (ଗଛରୁ) ପତ୍ର ତୋଳୁ ଏବଂ ଏହା ଛଡା ଆମ ସକାଶେ ଏଥିରେ ବହୁ ପ୍ରଚ୍ଛନ୍ନ ଉପଯୋଗିତା ରହିଅଛି ।"

قَالَ هِيَ عَصَايَ أَتَوَكَّؤُا عَلَيْهَا وَأَهُشُّ بِهَا عَلَىٰ غَنَمِي وَلِيَ فِيهَا مَـَٔارِبُ أُخْرَىٰ ⑲

---

୧. ଏଠାରେ 'ଜୋତା' ସାଂସାରିକ ସମ୍ବନ୍ଧକୁ ବୁଝାଉଛି । ବନ୍ଧୁବାନ୍ଧବ ହୋଇଥିଲେ ବା ନିଜ ଜାତିର ହୋଇଥିଲେ ସାଂସାରିକ ସମ୍ବନ୍ଧ ସ୍ଥାପିତ ହୁଏ । ସମ୍ବନ୍ଧ ଦୁଇ କିସମର, ଯାହାକୁ ଦୁଇ ଗୋଟି ଜୋତା ଶବ୍ଦର ପ୍ରୟୋଗ ମାଧ୍ୟମରେ ଦର୍ଶାଯାଇଛି ।

୨୦. ଅଲ୍ଲାହ୍ କହିଲେ, "ହେ ମୁସା ! ଏହି ଲାଠିକୁ ତଳେ ପକାଇ ଦିଅ ।"

قَالَ أَلْقِهَا يٰمُوْسٰى ﴿٢٠﴾

୨୧. ତେଣୁ ସେ ଏହାକୁ ତଳେ ପକାଇ ଦେଲେ ; (ଏହାପରେ) ସେ ହଠାତ୍ ଦେଖିବାକୁ ପାଇଲେ ଯେ ତାହା ଏକ ସାପ ହୋଇ ଦୌଡୁଅଛି ।[୧]

فَأَلْقٰىهَا فَإِذَا هِيَ حَيَّةٌ تَسْعٰى ﴿٢١﴾

୨୨. ଏହାପରେ (ଅଲ୍ଲାହ୍) କହିଲେ, "ଏହାକୁ ଧରି ପକାଅ ଓ ଭୟ କର ନାହିଁ ; ଆମେ ଏହାକୁ ପୁଣି ତାହାର ପୂର୍ବ ଅବସ୍ଥାକୁ ଫେରାଇ ଆଣିବୁ ।"

قَالَ خُذْهَا وَلَا تَخَفْ سَنُعِيْدُهَا سِيْرَتَهَا الْأُوْلٰى ﴿٢٢﴾

୨୩. "ଏବଂ ନିଜ ହାତକୁ କାଖ ତଳେ ଚାପି ରଖ, (ଏବଂ) ଯେତେବେଳେ ତୁମେ ଏହାକୁ ବାହାର କରିବ, ସେତେବେଳେ ଏହା ଶୁଭ୍ର ହୋଇଯିବ ; ଅଥଚ ରୋଗାକ୍ରାନ୍ତ [୨]ହୋଇ ନଥିବ ; ଏହା ଆଉ ଏକ ନିଦର୍ଶନ (ହେବ) ।"

وَاضْمُمْ يَدَكَ إِلٰى جَنَاحِكَ تَخْرُجْ بَيْضَآءَ مِنْ غَيْرِ سُوْٓءٍ اٰيَةً أُخْرٰى ﴿٢٣﴾

୨୪. (ଆମେ ଏହାକୁ ଏଥିପାଇଁ କରିବୁ) "ଯେପରି କି ଏହାର ପରିଣାମ ସ୍ୱରୂପ ଆମେ ତୁମଙ୍କୁ ନିଜର ବୃହତ୍ତର ନିଦର୍ଶନମାନ ଦେଖାଉ ।

لِنُرِيَكَ مِنْ اٰيٰتِنَا الْكُبْرٰى ﴿٢٤﴾

୨୫. "ତୁମେ ଫିରଔନ ନିକଟକୁ ଯାଅ, କାରଣ ସେ ସୀମା ଲଂଘନ କରିଅଛି ।"

اِذْهَبْ إِلٰى فِرْعَوْنَ إِنَّهُ طَغٰى ﴿٢٥﴾

ରୁ : ୨

୨୬. (ମୁସା) କହିଲେ, "ହେ ଆମର ପାଳନକର୍ତ୍ତା ! ଆମର ହୃଦୟକୁ ପ୍ରଶସ୍ତ କର ।"

قَالَ رَبِّ اشْرَحْ لِيْ صَدْرِيْ ﴿٢٦﴾

---

୧. ପ୍ରକୃତରେ ସେହି ଲାଠି ଏକ ସର୍ପରେ ପରିଣତ ହୋଇ ନ ଥିଲା ବରଂ ତାହା ସର୍ପ ସଦୃଶ ପ୍ରତୀତ ହୋଇଥିଲା (୭:୧୦୮, ୭:୧୧୮ ଓ ଟୀକା, ତଥା ୨୭:୧୧ ଓ ଟୀକା ଦ୍ରଷ୍ଟବ୍ୟ) ।

୨. କୁଷ୍ଠରୋଗ ଯୋଗୁଁ 'ହାତ ଶୁଭ୍ର ହୋଇଯିବା' ବିଷୟରେ ତୌରାତରେ ଯେଉଁ ବର୍ଣ୍ଣନା କରାଯାଇଛି (Exodus 4.7 ଦ୍ରଷ୍ଟବ୍ୟ) ତାହା ଏକ ଅନ୍ୟାୟ । ପବିତ୍ର କୋରାନ ତୌରାତର ଏକ ପ୍ରତିଦ୍ୱନ୍ଦ୍ୱୀ ଗ୍ରନ୍ଥ ଏବଂ ଇସ୍ରାଇଲୀୟ ସନ୍ତାନ (ଅର୍ଥାତ୍ ବନୁ ଇସମାଇଲ)ମାନଙ୍କ ମଧ୍ୟରୁ ଜଣେକ ବ୍ୟକ୍ତିଙ୍କ ଉପରେ ତାହା ଅବତୀର୍ଣ୍ଣ ହୋଇଛି ତଥା ହଜରତ ମୁସାଙ୍କ ପ୍ରତି କରାଯାଇଥିବା ଦୋଷାରୋପକୁ ଖଣ୍ଡନ କରିବା ସଙ୍ଗେ ସଙ୍ଗେ ଦୃଢ଼ତା ସହକାରେ ପ୍ରକାଶ କରୁଛି ଯେ ତାଙ୍କ ହାତ ରୋଗଗ୍ରସ୍ତ ହୋଇ ଶୁଭ୍ର ହୋଇଯାଇ ନ ଥିଲା । ସୁତରାଂ ଇହୁଦୀ ଓ ଖ୍ରୀଷ୍ଟିୟାନମାନେ ଏହି ପାର୍ଥକ୍ୟକୁ ଲକ୍ଷ୍ୟ କରି ତଥା ନିଜର ଭ୍ରମାତ୍ମକ ବକ୍ତବ୍ୟ ପ୍ରତି ଧ୍ୟାନ ଦେଇ ଲଜ୍ଜିତ ହେବା ଶ୍ରେୟସ୍କର ।

୨୬. "ଏବଂ ଯେଉଁ କର୍ତ୍ତବ୍ୟ ଆମ୍ଭ ପାଇଁ ଉଦ୍ଦିଷ୍ଟ, ତାହାର ସମ୍ପାଦନ ଆମ୍ଭ ପାଇଁ ସହଜସାଧ୍ୟ କର ।"

وَيَسِّرْ لِيْٓ اَمْرِيْ ۝٢٦

୨୮. "ଏବଂ ଆମ୍ଭ ଜିଭରେ କୌଣସି ଗଣ୍ଠି ଥିଲେ ତାହାକୁ ଫିଟାଇ ଦିଅ ।"

وَاحْلُلْ عُقْدَةً مِّنْ لِّسَانِيْ ۝٢٧

୨୯. "ଯେପରି ସେ (ଲୋକ)ମାନେ ଆମ୍ଭ କଥା ସହଜରେ ବୁଝି ପାରିବେ ।"

يَفْقَهُوْا قَوْلِيْ ۝٢٨

୩୦. "ଏବଂ ଆମ୍ଭର ପରିବାର ମଧ୍ୟରୁ ଆମ୍ଭଙ୍କୁ ଜଣେ ସହାୟକ ପ୍ରଦାନ କର,"

وَاجْعَلْ لِّيْ وَزِيْرًا مِّنْ اَهْلِيْ ۝٢٩

୩୧. "(ଅର୍ଥାତ୍) ହାରୁନଙ୍କୁ ; ଯେ ଆମ୍ଭର ଭାଇ ;"

هٰرُوْنَ اَخِي ۝٣٠

୩୨. "ତାହାଙ୍କ ଦ୍ୱାରା ଆମ୍ଭର ଶକ୍ତିକୁ ସୁଦୃଢ଼ କର ।"

اشْدُدْ بِهٖٓ اَزْرِيْ ۝٣١

୩୩. "ଏବଂ ତାହାଙ୍କୁ ଆମ୍ଭ କାର୍ଯ୍ୟରେ ସହଯୋଗୀ କର ।"

وَاَشْرِكْهُ فِيْٓ اَمْرِيْ ۝٣٢

୩୪. "ତାହା ହେଲେ ଆମ୍ଭେ ଉଭୟ ଅଧିକ ପରିମାଣରେ ତୁମ୍ଭର ଗୁଣଗାନ କରିପାରିବୁ ।"

كَيْ نُسَبِّحَكَ كَثِيْرًا ۝٣٣

୩୫. "ଏବଂ ତୁମ୍ଭଙ୍କୁ ଅଧିକ ସ୍ମରଣ କରିପାରିବୁ ।"

وَّنَذْكُرَكَ كَثِيْرًا ۝٣٤

୩୬. "ତୁମ୍ଭେ ଆମ୍ଭଙ୍କୁ ତ ଭଲ ଭାବରେ ଦେଖୁଅଛ ।"

اِنَّكَ كُنْتَ بِنَا بَصِيْرًا ۝٣٥

୩୭. (ଅଲ୍ଲାହ) କହିଲେ, "ହେ ମୁସା ! ତୁମ୍ଭେ ଯାହା ଭିକ୍ଷା କରିଅଛ ତାହା ତୁମ୍ଭକୁ ଦିଆଯାଇଛି ।"

قَالَ قَدْ اُوْتِيْتَ سُؤْلَكَ يٰمُوْسٰى ۝٣٦

୩୮. "ଏବଂ (ଏଥିପୂର୍ବରୁ) ଆମ୍ଭେ ଆଉ ଥରେ ମଧ୍ୟ ତୁମ୍ଭ ପ୍ରତି ଅନୁଗ୍ରହ କରିଅଛୁ ।"

وَلَقَدْ مَنَنَّا عَلَيْكَ مَرَّةً اُخْرٰٓى ۝٣٧

إِذْ أَوْحَيْنَآ إِلَىٰٓ أُمِّكَ مَا يُوحَىٰٓ ﴿٣٩﴾

୩୯. "ଯେତେବେଳେ କି ଆମ୍ଭେ ତୁମ୍ଭ ମାତାଙ୍କ ପ୍ରତି ଓହି ମାଧ୍ୟମରେ ସେ ସମସ୍ତ ଅବତୀର୍ଣ୍ଣ କରିଥିଲୁ ଯାହା (ସେପରି ଅବସ୍ଥାରେ) ଅବତୀର୍ଣ୍ଣ [1]କରିବା ଆବଶ୍ୟକ ଥିଲା ।"

أَنِ ٱقْذِفِيهِ فِى ٱلتَّابُوتِ فَٱقْذِفِيهِ فِى ٱلْيَمِّ فَلْيُلْقِهِ ٱلْيَمُّ بِٱلسَّاحِلِ يَأْخُذْهُ عَدُوٌّ لِّى وَعَدُوٌّ لَّهُۥ ۚ وَأَلْقَيْتُ عَلَيْكَ مَحَبَّةً مِّنِّى وَلِتُصْنَعَ عَلَىٰ عَيْنِىٓ ﴿٤٠﴾ وقف لازم

୪୦. "(ତାହା ହେଉଛି) ଏହାଙ୍କୁ (ଅର୍ଥାତ୍ ମୁସାଙ୍କୁ) ସିନ୍ଦୁକରେ ରଖି ନଦୀରେ ଭସାଇ ଦିଅ ଏବଂ ଆମ୍ଭ ଆଦେଶ ଅନୁସାରେ ନଦୀ ଏହାଙ୍କୁ କୂଳରେ ପହଞ୍ଚାଇ ଦେବ ; (ତା' ହେଲେ) ଏହାଙ୍କୁ ସେହି ବ୍ୟକ୍ତି ନେଇଯିବ ଯେ କି ଆମ୍ଭର ଓ ଏହାଙ୍କର (ଅର୍ଥାତ୍ ମୁସାଙ୍କର) ମଧ୍ୟ ଶତ୍ରୁ[2] ; ଏବଂ ଆମ୍ଭେ ତୁମ୍ଭ ପ୍ରତି ନିଜଠାରୁ ପ୍ରୀତି ଅବତୀର୍ଣ୍ଣ କରିଥିଲୁ (ଅର୍ଥାତ୍ ତୁମ୍ଭ ପ୍ରତି ଲୋକମାନଙ୍କର ହୃଦୟରେ ପ୍ରେମଭାବ ଜାଗ୍ରତ କରାଇ ଥିଲୁ) ; ଯାହା ଫଳରେ ତୁମେ ଆମ୍ଭ ଦୃଷ୍ଟି ସମ୍ମୁଖରେ ଲାଳିତ-ପାଳିତ ହୋଇଥିଲ ।"

إِذْ تَمْشِىٓ أُخْتُكَ فَتَقُولُ هَلْ أَدُلُّكُمْ عَلَىٰ مَن يَكْفُلُهُۥ ۖ فَرَجَعْنَٰكَ إِلَىٰٓ أُمِّكَ كَىْ تَقَرَّ عَيْنُهَا وَلَا تَحْزَنَ ۚ وَقَتَلْتَ نَفْسًا فَنَجَّيْنَٰكَ مِنَ ٱلْغَمِّ وَفَتَنَّٰكَ فُتُونًا ۚ فَلَبِثْتَ سِنِينَ فِىٓ أَهْلِ مَدْيَنَ ثُمَّ جِئْتَ عَلَىٰ قَدَرٍ يَٰمُوسَىٰ ﴿٤١﴾

୪୧. (ଏହା ସେତେବେଳେ ଘଟିଲା) ଯେତେବେଳେ ତୁମ୍ଭର ଭଉଣୀ (ନଦୀ କଡେ କଡେ ସିନ୍ଦୁକ ସଙ୍ଗରେ) ଯାଉଥିଲେ ଓ କହୁଥିଲେ, "ହେ ଲୋକମାନେ ! କ'ଣ ମୁଁ ତୁମମାନଙ୍କୁ ଏପରି ଜଣେ ମହିଳାର ଠିକଣା ବତାଇଦେବି ଯେ ଏହାଙ୍କୁ ଲାଳନ-ପାଳନ କରିବ ?" ଏବଂ ଏହିପରି ଭାବରେ ଆମ୍ଭେ ତୁମ୍ଭଙ୍କୁ ତୁମ୍ଭ ମାତାଙ୍କ ନିକଟକୁ ଫେରାଇ ଆଣିଲୁ, ଯଦ୍ଦ୍ୱାରା ତାହାଙ୍କର ନୟନ ଶୀତଳ ହେବ ଓ ସେ ଦୁଃଖିତ ହେବେ ନାହିଁ ; ଏବଂ (ହେ ମୁସା !) ତୁମେ ଜଣେ ବ୍ୟକ୍ତିଙ୍କୁ ହତ୍ୟା କରିଥିଲ ; ତା'ପରେ ଆମ୍ଭେ ତୁମ୍ଭଙ୍କୁ ଏହି ଦୁଃଖରୁ ମୁକ୍ତି ପ୍ରଦାନ କରିଥିଲୁ ଏବଂ ଆମ୍ଭେ ତୁମ୍ଭଙ୍କୁ ଅନ୍ୟ କେତେକ ପରୀକ୍ଷାରେ ସମ୍ମୁଖୀନ କରାଇ ଭଲ ଭାବରେ ପରୀକ୍ଷା କରିଥିଲୁ ; (ଏହାପରେ) ତୁମେ ଅନେକ ବର୍ଷ ମଦୟନ-ବାସୀଙ୍କ ସହିତ ରହିଥିଲ ; ତା ପରେ ହେ ମୁସା ! (କ୍ରମଶଃ) ତୁମେ ସେହି ବୟସରେ ପଦାର୍ପଣ କଲ ଯାହା ଆମ୍ଭ କାର୍ଯ୍ୟ ପାଇଁ ଉପଯୁକ୍ତ ।

୧. ୟୁରୋପର କେତେକ ବିଦ୍ୱାନ୍ ହଜରତ ମହମ୍ମଦଙ୍କ ପ୍ରତି ଦୋଷାରୋପ କରି କହିଛନ୍ତି ଯେ ସେ ମଦିନାକୁ ଯିବା ପରେ ଇହୁଦୀମାନଙ୍କ ଠାରୁ ବାଇବେଲ ବର୍ଣ୍ଣିତ ଘଟଣାଗୁଡ଼ିକୁ ଶୁଣି ସେଗୁଡ଼ିକୁ କୋରାନରେ ଲିପିବଦ୍ଧ କରାଇଛନ୍ତି । ବସ୍ତୁତଃ ହଜରତ ଇସାଙ୍କ ସମ୍ବନ୍ଧରେ ଏକ ବିଶଦ ବିବରଣୀ ଅଧ୍ୟାୟ 'ମରିୟମ'ରେ ଏବଂ ହଜରତ ମୁସାଙ୍କ ସମ୍ବନ୍ଧରେ ଏକ ବିଶଦ ବିବରଣୀ ଅଧ୍ୟାୟ 'ତା—ହା'ରେ ଅଛି । ଏ ଉଭୟ ଅଧ୍ୟାୟ ଇସଲାମର ପ୍ରାରମ୍ଭିକ କାଳରେ ଅବତୀର୍ଣ୍ଣ ହୋଇଛି (ହଦିସ୍ ବୁଖାରି ଦ୍ରଷ୍ଟବ୍ୟ) । ତେଣୁ ସେ ମଦିନାର ଇହୁଦୀମାନଙ୍କ ଠାରୁ ଏସବୁ ଶୁଣି ବର୍ଣ୍ଣନା କରିଛନ୍ତି ବୋଲି ହେଉଥିବା ଦୋଷାରୋପ ନିଃସନ୍ଦେହରେ ତ୍ରୁଟିପୂର୍ଣ୍ଣ ବରଂ ସେ ଇହୁଦୀମାନଙ୍କ ସହିତ ଦେଖା ସାକ୍ଷାତ୍ ହେବାର ବହୁ ପୂର୍ବରୁ ତାଙ୍କୁ ଅଲ୍ଲାହ ଏ ସମସ୍ତ ଘଟଣା ସମ୍ପର୍କରେ ଅବଗତ କରାଇଥିଲେ ।

୨. ଅବଶ୍ୟ ଏହି ଆୟତରେ 'ଅଦୁଉ' ଶବ୍ଦ ଦୁଇ ଥର ବ୍ୟବହୃତ ହୋଇଛି ; କିନ୍ତୁ ଓଡ଼ିଆ ଅନୁବାଦରେ ଏହାର ପ୍ରୟୋଗ ଥରେ କରାଗଲେ ତାହା ଯଥେଷ୍ଟ ହେବ । ତେଣୁ ଆମେ ଦ୍ୱିତୀୟ 'ଅଦୁଉ'ର ଅନୁବାଦ କରି ପ୍ରଥମଟି ଛାଡ଼ି ଦେଇଛୁ ।

୪୨. ଏବଂ ଆମେ ତୁମକୁ ନିଜ(ର କାର୍ଯ୍ୟ) ପାଇଁ(କ୍ରମଶଃ ଆଧ୍ୟାତ୍ମିକ ଉନ୍ନତି ପ୍ରଦାନ କରି) ମନୋନୀତ କଲୁ ।

وَاصْطَنَعْتُكَ لِنَفْسِيْ

୪୩. (ସୁତରାଂ ତୁମେ ଉପଯୁକ୍ତ ବୟସରେ ପହଞ୍ଚିଲା ପରେ ଆମେ ତୁମକୁ କହିଲୁ) "ତୁମେ ଓ ତୁମର ଭାଇ, ଆମର ନିଦର୍ଶନମାନଙ୍କ ସହିତ ଗମନ କର, ଓ ଆମକୁ ସ୍ମରଣ କରିବାରେ ଅବହେଳା କର ନାହିଁ ।"

اِذْهَبْ اَنْتَ وَاَخُوْكَ بِاٰيٰتِيْ وَلَا تَنِيَا فِيْ ذِكْرِيْ

୪୪. "ତୁମେ ଦୁହେଁ ଫିରଔନ ନିକଟକୁ ଗମନ କର କାରଣ ସେ ସବୁ ସୀମାକୁ ଲଂଘନ କରି ଯାଇଛି ।"

اِذْهَبَآ اِلٰى فِرْعَوْنَ اِنَّهٗ طَغٰى

୪୫. "ଏବଂ ତୁମେ ଦୁହେଁ ତାହା ସହିତ ନମ୍ର ଭାବରେ ବାକ୍ୟାଳାପ କର ; ସମ୍ଭବତଃ ସେ ବୁଝିପାରିବ ବା (ଆମକୁ) ଭୟ କରିବ ।"

فَقُوْلَا لَهٗ قَوْلًا لَّيِّنًا لَّعَلَّهٗ يَتَذَكَّرُ اَوْ يَخْشٰى

୪୬. ଉଭୟେ କହିଲେ, "ହେ ଆମର ପାଳନକର୍ତ୍ତା ! ଆମେ ଭୟ କରୁଅଛୁ ଯେ ସେ ଆମ ପ୍ରତି ଅତ୍ୟାଚାର କରିବ କିମ୍ବା ଆମ ପ୍ରତି ସୀମାତିରିକ୍ତ କଠୋର ହେବ ।"

قَالَا رَبَّنَآ اِنَّنَا نَخَافُ اَنْ يَّفْرُطَ عَلَيْنَآ اَوْ اَنْ يَّطْغٰى

୪୭. (ଅଲ୍ଲାହ) କହିଲେ, "ତୁମେ ଦୁହେଁ ଆଦୌ ଭୟ କର ନାହିଁ ; ଆମେ ତୁମମାନଙ୍କ ସଙ୍ଗରେ ରହିଅଛୁ ; ଆମେ (ତୁମମାନଙ୍କର ପ୍ରାର୍ଥନା) ଶୁଣୁଅଛୁ ଏବଂ (ତୁମମାନଙ୍କର ଅବସ୍ଥା ମଧ୍ୟ) ଦେଖୁଅଛୁ ।"

قَالَ لَا تَخَافَآ اِنَّنِيْ مَعَكُمَآ اَسْمَعُ وَاَرٰى

୪୮. ସୁତରାଂ ତୁମେ ଦୁହେଁ ତା'ନିକଟକୁ ଗମନ କର ଏବଂ ତାକୁ କୁହ, "ଆମେ ଦୁହେଁ ତୁମ ପାଳନକର୍ତ୍ତାଙ୍କର ରସୂଲ ଅଟୁ ; ସୁତରାଂ ଆମମାନଙ୍କ ସହିତ ଇସ୍ରାଇଲୀୟ ସନ୍ତାନମାନଙ୍କୁ ପ୍ରେରଣ କର, ଓ ସେମାନଙ୍କୁ ଯନ୍ତ୍ରଣା ଦିଅ ନାହିଁ ; ଆମେ ତୁମ ନିକଟକୁ ତୁମ ପାଳନକର୍ତ୍ତାଙ୍କଠାରୁ ଏକ ମହାନ୍ ନିଦର୍ଶନ ଘେନି ଆସିଅଛୁ ଏବଂ (ତୁମକୁ ଜଣାଇ ଦେଉଅଛୁ କି) ଯେ କେହି (ଆମଦ୍ୱାରା ଆନୀତ) ସତ୍‌ପଥର ଅନୁସରଣ କରିବ (ଅଲ୍ଲାହଙ୍କ ସମୀପରୁ) ତାହା ପ୍ରତି ଶାନ୍ତି ଅବତୀର୍ଣ୍ଣ ହେବ ।"

فَاْتِيٰهُ فَقُوْلَآ اِنَّا رَسُوْلَا رَبِّكَ فَاَرْسِلْ مَعَنَا بَنِيْٓ اِسْرَآءِيْلَ ۙ وَلَا تُعَذِّبْهُمْ ۭ قَدْ جِئْنٰكَ بِاٰيَةٍ مِّنْ رَّبِّكَ ۭ وَالسَّلٰمُ عَلٰي مَنِ اتَّبَعَ الْهُدٰى

୪୯. "ଆମ ପ୍ରତି ଏହି ଅବତୀର୍ଣ୍ଣ ହୋଇଅଛି କି ଯେ କେହି ଅଲ୍ଲାହଙ୍କ ନିଦର୍ଶନକୁ ପ୍ରତ୍ୟାଖ୍ୟାନ କରିବ ଓ ମୁହଁ ମୋଡ଼ି ଚାଲିଯିବ, ତାହା ପ୍ରତି ଶାସ୍ତି ବିଧାନ କରାଯିବ ।"

اِنَّا قَدْ اُوْحِيَ اِلَيْنَآ اَنَّ الْعَذَابَ عَلٰي مَنْ كَذَّبَ وَتَوَلّٰى

୪୦. (ଫିରଔନ) କହିଲା, "ହେ ମୁସା ! କିଏ ତୁମ ଦୁହିଁଙ୍କର ପାଳନକର୍ତ୍ତା ?"

قَالَ فَمَنْ رَّبُّكُمَا يٰمُوْسٰى ۝

୪୧. (ମୁସା) କହିଲେ,"ସେ ହିଁ ଆମର ପାଳନକର୍ତ୍ତା,ଯେ ପ୍ରତ୍ୟେକ ବସ୍ତୁକୁ (ଆବଶ୍ୟକତା ଅନୁଯାୟୀ) ଅଙ୍ଗ ପ୍ରଦାନ କରିଛନ୍ତି ଏବଂ ତଦ୍ଦ୍ୱାରା କାର୍ଯ୍ୟ ସମ୍ପାଦନ ପାଇଁ ମାର୍ଗ ପ୍ରଦର୍ଶନ କରାଇଛନ୍ତି ।"

قَالَ رَبُّنَا الَّذِيْٓ اَعْطٰى كُلَّ شَيْءٍ خَلْقَهٗ ثُمَّ هَدٰى ۝

୪୨. (ଫିରଔନ) କହିଲା,"ଯେବି ଏହି ବିଷୟଟି ଠିକ୍ ତେବେ ପୂର୍ବବର୍ତ୍ତୀ ଲୋକମାନଙ୍କର ଅବସ୍ଥା କ'ଣ ଥିଲା ? (ଅର୍ଥାତ୍ ସେମାନେ ଏ ସମସ୍ତ ବିଷୟ ଜାଣି ନ ଥିବାରୁ ସେମାନଙ୍କର ପରିଣାମ କ'ଣ ହେବ ?)"

قَالَ فَمَا بَالُ الْقُرُوْنِ الْاُوْلٰى ۝

୪୩. (ମୁସା) କହିଲେ, "ଆମ ପାଳନକର୍ତ୍ତା ସେମାନଙ୍କ ସମ୍ବନ୍ଧରେ ଜାଣନ୍ତି ; ସେମାନଙ୍କ ଅବସ୍ଥା ତାହାଙ୍କ ଗ୍ରନ୍ଥରେ ସୁରକ୍ଷିତ ହୋଇ ରହିଅଛି ; ଆମର ପାଳନକର୍ତ୍ତା ଭୁଲ କରନ୍ତି ନାହିଁ ବା ଭୁଲି ଯାଆନ୍ତି ନାହିଁ ।"

قَالَ عِلْمُهَا عِنْدَ رَبِّيْ فِيْ كِتٰبٍ ۚ لَا يَضِلُّ رَبِّيْ وَلَا يَنْسَى ۝

୫୪. (ସେ ହିଁ) ଯେ ତୁମମାନଙ୍କ ସକାଶେ ଏହି ଭୂପୃଷ୍ଠକୁ ଶଯ୍ୟା ସଦୃଶ ଗଠନ କରିଛନ୍ତି, ଏବଂ ତୁମମାନଙ୍କ ସକାଶେ ତନ୍ମଧ୍ୟରେ ରାସ୍ତା ତିଆରି କରିଛନ୍ତି, ଏବଂ ଆକାଶରୁ ଜଳ ବୃଷ୍ଟି କରିଛନ୍ତି ; ପୁଣି (ତୁମେ ସେମାନଙ୍କୁ ଏହା ମଧ୍ୟ କୁହ ଯେ) ଆମେ ଏହି ଜଳ ଦ୍ୱାରା ବିଭିନ୍ନ ପ୍ରକାର ଉଦ୍ଭିଦର ଯୋଡ଼ା ସୃଷ୍ଟି କରିଅଛୁ ।

الَّذِيْ جَعَلَ لَكُمُ الْاَرْضَ مَهْدًا وَّسَلَكَ لَكُمْ فِيْهَا سُبُلًا وَّاَنْزَلَ مِنَ السَّمَآءِ مَآءً ۗ فَاَخْرَجْنَا بِهٖٓ اَزْوَاجًا مِّنْ نَّبَاتٍ شَتّٰى ۝

୫୫. ସୁତରାଂ ତୁମେ (ନିଜେ) ମଧ୍ୟ ଖାଅ ଓ ନିଜର ପଶୁମାନଙ୍କୁ ମଧ୍ୟ ଚରାଅ ; ଏଥିରେ ବୁଦ୍ଧିମାନ୍ ବ୍ୟକ୍ତିମାନଙ୍କ ପାଇଁ ଅନେକ ନିଦର୍ଶନ ରହିଛି ।

كُلُوْا وَارْعَوْا اَنْعَامَكُمْ ۗ اِنَّ فِيْ ذٰلِكَ لَاٰيٰتٍ لِّاُولِي النُّهٰى ۝

ରୁ :୩

୫୬. ଆମେ ଏଥିରୁ (ଅର୍ଥାତ୍ ଏହି ଭୂପୃଷ୍ଠରୁ) ତୁମମାନଙ୍କୁ ସୃଷ୍ଟି କରିଅଛୁ ଓ ତୁମମାନଙ୍କୁ ଫେରାଇ ଦେବୁ ଏବଂ ଏଥିମଧ୍ୟରୁ (ହିଁ) ତୁମମାନଙ୍କୁ ଦ୍ୱିତୀୟ ବାର ଉତ୍ଥିତ କରିବୁ ।

مِنْهَا خَلَقْنٰكُمْ وَفِيْهَا نُعِيْدُكُمْ وَمِنْهَا نُخْرِجُكُمْ تَارَةً اُخْرٰى ۝

୫୭. ଏବଂ ଆମେ ତାହାକୁ (ଅର୍ଥାତ୍ ଫିରଔନକୁ) ନିଜର ପ୍ରତ୍ୟେକ ପ୍ରକାର ନିଦର୍ଶନ ଦେଖାଇଥିଲୁ, କିନ୍ତୁ (ଏହା ସତ୍ତ୍ୱେ) ସେ ସେଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରିଥିଲା ଓ ଅସ୍ୱୀକାର କରିଥିଲା ।

وَلَقَدْ اَرَيْنٰهُ اٰيٰتِنَا كُلَّهَا فَكَذَّبَ وَاَبٰى ۝٥٧

୫୮. ସେ କହିଲା, "ହେ ମୁସା ! କ'ଣ ତୁମେ ଏଥି ସକାଶେ ମୋ ନିକଟକୁ ଆସିଅଛ ଯେ ନିଜର ଯାଦୁ ଶକ୍ତି ବଳରେ ଆମମାନଙ୍କୁ ଆମ ଦେଶରୁ ବିତାଡ଼ିତ କରିବ ?"

قَالَ اَجِئْتَنَا لِتُخْرِجَنَا مِنْ اَرْضِنَا بِسِحْرِكَ يٰمُوْسٰى ۝٥٨

୫୯. "(ଯେବି ଏପରି ହୋଇଥାଏ) ତେବେ ମୁଁ ମଧ୍ୟ ତୁମ ବିରୁଦ୍ଧରେ ସେହିପରି ଯାଦୁ ଶକ୍ତି ପ୍ରୟୋଗ କରିବି ; ସୁତରାଂ ଆମମାନଙ୍କ ଓ ତୁମ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ (ଓ ସମୟ) ସ୍ଥିର କର ; ତହିଁରୁ ଆମେମାନେ ବା ତୁମେ (କେହି ହେଲେ) ପଶ୍ଚାତ୍‌ପଦ ହେବେ ନାହିଁ ; ସେହି ସ୍ଥାନ (ଏପରି ହେଉ ଯାହାକି) ଆମମାନଙ୍କ (ନିମନ୍ତେ) ତଥା ତୁମ ନିମନ୍ତେ ସମାନ ହେଉ ।"

فَلَنَاْتِيَنَّكَ بِسِحْرٍ مِّثْلِهٖ فَاجْعَلْ بَيْنَنَا وَبَيْنَكَ مَوْعِدًا لَّا نُخْلِفُهٗ نَحْنُ وَلَاۤ اَنْتَ مَكَانًا سُوًى ۝٥٩

୬୦. (ଏହାପରେ ମୁସା) କହିଲେ, "ତୁମମାନଙ୍କର (ଓ ଆମମାନଙ୍କର) ଏକତ୍ରିତ ହେବାର ଦିନ (ତୁମମାନଙ୍କର) ପର୍ବ ଦିନ ହେଉ ଏବଂ ସୂର୍ଯ୍ୟ ଉପରକୁ ଉଠିବା ପରେ ସମସ୍ତଙ୍କୁ ଏକତ୍ରିତ କରାଯାଉ ।"

قَالَ مَوْعِدُكُمْ يَوْمُ الزِّيْنَةِ وَاَنْ يُّحْشَرَ النَّاسُ ضُحًى ۝٦٠

୬୧. ଏହାପରେ ଫିରଔନ ପୃଷ୍ଠ-ଭଙ୍ଗ କରି ଚାଲିଗଲା ଓ ଯଥା ସମ୍ଭବ ଯୋଜନା ପ୍ରସ୍ତୁତ କଲା ପରେ ପୁନର୍ବାର (ମୁସାଙ୍କ ନିକଟରେ) ଉପସ୍ଥିତ ହେଲା ।

فَتَوَلّٰى فِرْعَوْنُ فَجَمَعَ كَيْدَهٗ ثُمَّ اَتٰى ۝٦١

୬୨. ମୁସା ସେମାନଙ୍କୁ କହିଲେ, "ହେ ଲୋକମାନେ ! ତୁମମାନଙ୍କର ସର୍ବନାଶ ହେଉ ; ଅଲ୍ଲାହଙ୍କ ପ୍ରତି ମିଥ୍ୟା ଆରୋପ କର ନାହିଁ ; ଏପରି ହେଉ ଯେ ସେ ତୁମମାନଙ୍କୁ ଶାସ୍ତି ଦ୍ୱାରା ଧ୍ୱଂସ କରି ଦିଅନ୍ତୁ ; ଏବଂ ଯେ କେହି (ଅଲ୍ଲାହଙ୍କ ପ୍ରତି) ମିଥ୍ୟା ଆରୋପ କରେ ସେ ଅକୃତକାର୍ଯ୍ୟ ହୁଏ ।"

قَالَ لَهُمْ مُّوْسٰى وَيْلَكُمْ لَا تَفْتَرُوْا عَلَى اللّٰهِ كَذِبًا فَيُسْحِتَكُمْ بِعَذَابٍ ۚ وَقَدْ خَابَ مَنِ افْتَرٰى ۝٦٢

୬୩. ଏହା ଶୁଣି ସେମାନେ (ଅର୍ଥାତ୍ ଫିରଔନ ଓ ତାହାର ସଙ୍ଗୀମାନେ) ପରସ୍ପର ମଧ୍ୟରେ ତର୍କବିତର୍କ କଲେ ଓ ଗୁପ୍ତ ମନ୍ତ୍ରଣା କରିବାକୁ ଲାଗିଲେ ।

فَتَنَازَعُوْۤا اَمْرَهُمْ بَيْنَهُمْ وَاَسَرُّوا النَّجْوٰى ۝٦٣

قَالُوْٓا اِنْ هٰذٰنِ لَسٰحِرٰنِ يُرِيْدٰنِ اَنْ يُّخْرِجٰكُمْ مِّنْ اَرْضِكُمْ بِسِحْرِهِمَا وَيَذْهَبَا بِطَرِيْقَتِكُمُ الْمُثْلٰى ﴿٦٤﴾

୬୪. ସେମାନେ କହିଲେ, "ଏ ଦୁହେଁ (ଅର୍ଥାତ୍ ମୁସା ଓ ହାରୁନ) ବାସ୍ତବରେ ଏପରି ଯାଦୁକର ଅଟନ୍ତି ଯେଉଁମାନେ ନିଜ ଯାଦୁ ଶକ୍ତି ବଳରେ ତୁମମାନଙ୍କୁ ନିଜ ଦେଶରୁ ବିତାଡ଼ିତ କରି ତୁମମାନଙ୍କର ଆଦର୍ଶ ଧର୍ମକୁ ନଷ୍ଟ କରିଦେବାକୁ ଚାହାନ୍ତି ।"

فَاَجْمِعُوْا كَيْدَكُمْ ثُمَّ ائْتُوْا صَفًّا ۚ وَقَدْ اَفْلَحَ الْيَوْمَ مَنِ اسْتَعْلٰى ﴿٦٥﴾

୬୫. "ସୁତରାଂ ତୁମେମାନେ ମଧ୍ୟ ନିଜର ଯୋଜନା ପ୍ରସ୍ତୁତ କର ଓ ସମସ୍ତେ ଦଳବଦ୍ଧ ଭାବରେ ଆସ ଏବଂ ଆଜି ଯେ ଜୟଲାଭ କରିବ ସେ ନିଶ୍ଚୟ କୃତକାର୍ଯ୍ୟ ହେବ ।"

قَالُوْا يٰمُوْسٰٓى اِمَّآ اَنْ تُلْقِيَ وَاِمَّآ اَنْ نَّكُوْنَ اَوَّلَ مَنْ اَلْقٰى ﴿٦٦﴾

୬୬. (ଏହା ଶୁଣି ଯେଉଁମାନେ ମୁସାଙ୍କ ବିପକ୍ଷରେ ଏକତ୍ରିତ ହୋଇଥିଲେ) ସେମାନେ କହିଲେ, "ହେ ମୁସା ! ତୁମେ ପ୍ରଥମେ ପକାଇବ କି ଆମେମାନେ ପ୍ରଥମେ ପକାଇବୁ ?"

قَالَ بَلْ اَلْقُوْا ۚ فَاِذَا حِبَالُهُمْ وَعِصِيُّهُمْ يُخَيَّلُ اِلَيْهِ مِنْ سِحْرِهِمْ اَنَّهَا تَسْعٰى ﴿٦٧﴾

୬୭. (ମୁସା) କହିଲେ, "ତୁମେମାନେ ପ୍ରଥମେ ପକାଅ ;" ତା ପରେ ସେମାନଙ୍କ ଲାଠି ଓ ଦଉଡ଼ି (ସେମାନଙ୍କ ଯାଦୁଶକ୍ତି ବଳରେ) ଧାବମାନ ହେବା ଭଳି ମୁସାଙ୍କୁ ଦେଖାଗଲା ।

فَاَوْجَسَ فِيْ نَفْسِهٖ خِيْفَةً مُّوْسٰى ﴿٦٨﴾

୬୮. ଏବଂ ମୁସାଙ୍କ ମନରେ ଭୟ ସଂଚ୍ଚରିତ ହେଲା ।

قُلْنَا لَا تَخَفْ اِنَّكَ اَنْتَ الْاَعْلٰى ﴿٦٩﴾

୬୯. ସେତେବେଳେ ଆମେ ମୁସାଙ୍କୁ ଓହି ମାଧ୍ୟମରେ କହିଲୁ, "(ହେ ମୁସା !) ଭୟକର ନାହିଁ, କାରଣ ତୁମେ ହିଁ ବିଜୟୀ ହେବ ।"

وَاَلْقِ مَا فِيْ يَمِيْنِكَ تَلْقَفْ مَا صَنَعُوْا ۗ اِنَّمَا صَنَعُوْا كَيْدُ سٰحِرٍ ۗ وَلَا يُفْلِحُ السَّاحِرُ حَيْثُ اَتٰى ﴿٧٠﴾

୭୦. "ଏବଂ ଯାହା କିଛି ତୁମ ଦକ୍ଷିଣ ହସ୍ତରେ ଅଛି ତାହାକୁ ଭୂମିରେ ପକାଇ ଦିଅ ; ସେମାନେ ଯାହା କିଛି କରିଛନ୍ତି ସେ ସବୁକୁ ତାହା ଗ୍ରାସ କରିବ (ଅର୍ଥାତ୍ ପ୍ରକୃତ ରହସ୍ୟ ଉନ୍ମୋଚିତ ହେବ) ; ସେମାନେ ଯାହାକିଛି କରିଛନ୍ତି ତାହା କେବଳ ଯାଦୁକରମାନଙ୍କର କୌଶଳ ; ଏବଂ ଯାଦୁକର ଯେ କୌଣସି ତରଫରୁ ଆସିଲେ ମଧ୍ୟ (ଅଲ୍ଲାହଙ୍କ ବିପକ୍ଷରେ) କୃତକାର୍ଯ୍ୟ ହୋଇପାରିବ ନାହିଁ ।"

فَاُلْقِيَ السَّحَرَةُ سُجَّدًا قَالُوْٓا اٰمَنَّا بِرَبِّ هٰرُوْنَ وَمُوْسٰى ﴿٧١﴾

୭୧. ଅତଏବ (ମୁସା ନିଜର ଲାଠି ପକାଇ ଦେବା ପରେ ଫିରଔନ ଡକାଇଥିବା) ଯାଦୁକରମାନେ (ନିଜର ଅପାରଗତାକୁ ହୃଦୟଙ୍ଗମ କଲା ପରେ) ସିଜଦାରେ ପଡ଼ିଗଲେ ଓ କହିଲେ, "ଆମେମାନେ ହାରୁନ ଓ ମୁସାଙ୍କ ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ କରୁଅଛୁ ।"

قَالَ اٰمَنْتُمْ لَهٗ قَبْلَ اَنْ اٰذَنَ لَكُمْ ۭ اِنَّهٗ لَكَبِيْرُكُمُ الَّذِيْ عَلَّمَكُمُ السِّحْرَ ۚ فَلَاُقَطِّعَنَّ اَيْدِيَكُمْ وَاَرْجُلَكُمْ مِّنْ خِلَافٍ وَّلَاُوصَلِّبَنَّكُمْ فِيْ جُذُوْعِ النَّخْلِ ۡ وَلَتَعْلَمُنَّ اَيُّنَآ اَشَدُّ عَذَابًا وَّاَبْقٰى ﴿٧١﴾

୭୨. (ଏହା ଦେଖି ଫିରଔନ) କହିଲା, "କ'ଣ ତୁମେମାନେ ମୁଁ ଆଦେଶ ଦେବା ପୂର୍ବରୁ ତାହାଙ୍କ ଉପରେ ବିଶ୍ୱାସ କରୁଅଛ ? (ଏଥିରୁ ଜଣାପଡୁଛି ଯେ) ସେ ତୁମମାନଙ୍କର ନେତା ଅଟନ୍ତି ଯେ କି ତୁମମାନଙ୍କୁ ଏହି କୌଶଳ ଶିଖାଇଛନ୍ତି ; ସୁତରାଂ (ତୁମେମାନେ ମୋର) ବିରୁଦ୍ଧାଚରଣ କରିଥିବା ଯୋଗୁଁ ମୁଁ ତୁମମାନଙ୍କର ହାତ ଓ ଗୋଡକୁ କାଟି ଦେବି, ଏବଂ ତୁମମାନଙ୍କୁ ଖଜୁରି ଗଛର ଗଣ୍ଡିରେ ବାନ୍ଧି ନିଶ୍ଚୟ ଶୂଳି ଦେଇ ଦେବି ; ଏବଂ ତୁମେମାନେ ଜାଣିପାରିବ ଯେ ଆମମାନଙ୍କ ମଧ୍ୟରେ କିଏ ଅଧିକ କଠୋର ଓ ଅଧିକ ସ୍ଥାୟୀ ଦଣ୍ଡ ବିଧାନ କରିପାରେ ।"

قَالُوْا لَنْ نُّؤْثِرَكَ عَلٰى مَا جَآءَنَا مِنَ الْبَيِّنٰتِ وَالَّذِيْ فَطَرَنَا فَاقْضِ مَآ اَنْتَ قَاضٍ ۭ اِنَّمَا تَقْضِيْ هٰذِهِ الْحَيٰوةَ الدُّنْيَا ﴿٧٢﴾

୭୩. ସେ (ଯାଦୁକର) ମାନେ କହିଲେ, "ଯେଉଁ (ସ୍ପଷ୍ଟ) ନିଦର୍ଶନମାନ ଆମମାନଙ୍କ ନିକଟରେ ଉପସ୍ଥିତ ହୋଇଅଛି ତାହା ତୁଳନାରେ ଏବଂ ଯେ ଆମମାନଙ୍କୁ ସୃଷ୍ଟି କରିଛନ୍ତି ତାହାଙ୍କ ତୁଳନାରେ ଆମେମାନେ କଦାପି ତୁମକୁ ପ୍ରାଧାନ୍ୟ ଦେଇପାରିବୁ ନାହିଁ ; ସୁତରାଂ ତୁମର ଯାହା ସାମର୍ଥ୍ୟ ଅଛି ପ୍ରୟୋଗ କର ; ତୁମେ କେବଳ ଏହି ପାର୍ଥିବ ଜୀବନକୁ ଶେଷ କରିଦେଇପାର ।"

اِنَّآ اٰمَنَّا بِرَبِّنَا لِيَغْفِرَ لَنَا خَطٰيٰنَا وَمَآ اَكْرَهْتَنَا عَلَيْهِ مِنَ السِّحْرِ ۭ وَاللّٰهُ خَيْرٌ وَّاَبْقٰى ﴿٧٣﴾

୭୪. "ଆମେମାନେ ନିଜ ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ କରିଅଛୁ ଯଦ୍ଦ୍ୱାରା କି ସେ ଆମମାନଙ୍କର ପାପକୁ କ୍ଷମା ଦେବେ ଏବଂ ସେହି ପ୍ରତାରଣା (ପୂର୍ଣ୍ଣ ପ୍ରତିଦ୍ୱନ୍ଦ୍ୱିତା)କୁ ମଧ୍ୟ କ୍ଷମା ଦେବେ ଯାହା କରିବାକୁ ତୁମେ ଆମମାନଙ୍କୁ ବାଧ୍ୟ କରିଥିଲ ; ଏବଂ ଅଲ୍ଲାହ ହିଁ ସର୍ବଶ୍ରେଷ୍ଠ ଓ ଚିର-ବିରାଜମାନ ।"

اِنَّهٗ مَنْ يَّاْتِ رَبَّهٗ مُجْرِمًا فَاِنَّ لَهٗ جَهَنَّمَ ۭ لَا يَمُوْتُ فِيْهَا وَلَا يَحْيٰى ﴿٧٤﴾

୭୫. ବସ୍ତୁତଃ ଯେ କେହି ନିଜ ପାଳନକର୍ତ୍ତାଙ୍କ ସମୀପରେ ଅପରାଧୀ ଭାବରେ ଉପସ୍ଥିତ ହୁଏ ତାହାକୁ ନିଶ୍ଚିତ ରୂପେ ନରକ ପ୍ରାପ୍ତ ହୁଏ ; ସେ ସେଠାରେ ମରେ [୧]ନାହିଁ କି ବଞ୍ଚି ରହେ ନାହିଁ ।

وَمَنْ يَّاْتِهٖ مُؤْمِنًا قَدْ عَمِلَ الصّٰلِحٰتِ فَاُولٰۗىِٕكَ لَهُمُ الدَّرَجٰتُ الْعُلٰى ﴿٧٥﴾

୭୬. ଏବଂ ଯେ କେହି ସତ୍‌କର୍ମ ସମ୍ପାଦନ କରି ବିଶ୍ୱାସକାରୀ ଭାବରେ ତାହାଙ୍କ ନିକଟରେ ଉପସ୍ଥିତ ହେବ ସେପରି ପ୍ରତ୍ୟେକ ବ୍ୟକ୍ତିକୁ ଉଚ୍ଚ ମର୍ଯ୍ୟାଦା ପ୍ରାପ୍ତ ହେବ ;

---

୧. ମୃତ୍ୟୁ ହିଁ ମଣିଷକୁ ଯନ୍ତ୍ରଣାରୁ ମୁକ୍ତି ଦେଇଥାଏ । କିନ୍ତୁ ପାପୀମାନେ ନରକରେ ନ ମରି ଯନ୍ତ୍ରଣାରେ ସଢ଼ୁ ଥିବେ ।

جَنّٰتُ عَدْنٍ تَجْرِيْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَا ۗ وَ ذٰلِكَ جَزٰٓؤُا مَنْ تَزَكّٰى ۝٧٧

୭୭. (ସେ ମର୍ଯ୍ୟାଦା ହେଉଛି) ଚିରସ୍ଥାୟୀ ଉଦ୍ୟାନ, ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ ; ଏବଂ ସେମାନେ ତନ୍ମଧ୍ୟରେ ବାସ କରୁଥିବେ ; ଏବଂ ଯେଉଁମାନେ ପବିତ୍ରତା ଅବଲମ୍ବନ କରନ୍ତି ସେମାନଙ୍କ ସକାଶେ ଏହା ହିଁ ନ୍ୟାଯ୍ୟ ପୁରସ୍କାର ଅଟେ ।

وَ لَقَدْ اَوْحَيْنَآ اِلٰى مُوْسٰٓى ۙ اَنْ اَسْرِ بِعِبَادِيْ فَاضْرِبْ لَهُمْ طَرِيْقًا فِي الْبَحْرِ يَبَسًا ۙ لَّا تَخٰفُ دَرَكًا وَّ لَا تَخْشٰى ۝٧٨

୭୮. ଏବଂ ଆମେ ମୁସାଙ୍କୁ ଓହି (ମାଧ୍ୟମରେ ନିର୍ଦ୍ଦେଶ) ଦେଇଥିଲୁ ଯେ ଆମର ଭକ୍ତମାନଙ୍କୁ (ଅର୍ଥାତ୍ ନିଜ ସମ୍ପ୍ରଦାୟକୁ) ରାତ୍ରିର ଅନ୍ଧକାର ମଧ୍ୟରେ ନେଇ ଚାଲିଯାଅ ; ଏହାପରେ ସେମାନଙ୍କୁ ସାଗର ମଧ୍ୟରେ ଏକ ଶୁଷ୍କ ପଥ ଦେଖାଅ ; (ଯେପରିକି) ତୁମମାନଙ୍କୁ କେହି ପଛରୁ ଆସି ଧରିବାର ଭୟ ନଥିବ ବା ତୁମମାନଙ୍କର (ସାଗର ଦ୍ୱାରା ବିନାଶ ହୋଇଯିବାର) ଭୟ ନଥିବ ; (ଏଥି ଉତ୍ତାରୁ ମୁସା ନିଜ ସମ୍ପ୍ରଦାୟ ସହିତ ସାଗର ଅଭିମୁଖେ ଗମନ କଲେ) ।

فَاَتْبَعَهُمْ فِرْعَوْنُ بِجُنُوْدِهٖ فَغَشِيَهُمْ مِّنَ الْيَمِّ مَا غَشِيَهُمْ ۝٧٩

୭୯. ଏବଂ ଫିରଔନ ନିଜ ସୈନ୍ୟବାହିନୀ ସହିତ ସେମାନଙ୍କର ଅନୁଧାବନ କଲା ଏବଂ ସାଗର (ଜଳ) ତାହାକୁ ଓ ତାର ସାଥୀମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ଆବୃତ କରିଦେଲା ।

وَ اَضَلَّ فِرْعَوْنُ قَوْمَهٗ وَ مَا هَدٰى ۝٨٠

୮୦. ଏବଂ ଫିରଔନ ନିଜ ସମ୍ପଦାୟକୁ ପଥଭ୍ରଷ୍ଟ କରିଥିଲା ଓ ସତ୍‌ପଥ ପ୍ରଦର୍ଶନ କରି ନ ଥିଲା ।

يٰبَنِيْٓ اِسْرَآءِيْلَ قَدْ اَنْجَيْنٰكُمْ مِّنْ عَدُوِّكُمْ وَ وٰعَدْنٰكُمْ جَانِبَ الطُّوْرِ الْاَيْمَنَ وَ نَزَّلْنَا عَلَيْكُمُ الْمَنَّ وَ السَّلْوٰى ۝٨١

୮୧. "ହେ ଇସ୍ରାଇଲୀୟ ସନ୍ତାନମାନେ ! ଆମେ ତୁମମାନଙ୍କୁ ତୁମମାନଙ୍କ ଶତ୍ରୁ କବଳରୁ ମୁକ୍ତି ପ୍ରଦାନ କରିଥିଲୁ ଏବଂ ଆମେ (ଏହାପରେ) ତୁର ପର୍ବତର ଦକ୍ଷିଣପାର୍ଶ୍ୱରେ ତୁମମାନଙ୍କ ସହିତ ଏକ (ସର୍ତ୍ତମୂଳକ) ଅଙ୍ଗୀକାର [୧] କରିଥିଲୁ ; ଏବଂ ତୁମମାନଙ୍କ ପ୍ରତି ମନ୍ନା ଓ ସଲୱା ଅବତୀର୍ଣ୍ଣ କରିଥିଲୁ (ଯଦ୍ଦ୍ୱାରା ତୁମମାନଙ୍କ ପାଇଁ ଖାଦ୍ୟର ବ୍ୟବସ୍ଥା ହୋଇପାରିବ) ।"

كُلُوْا مِنْ طَيِّبٰتِ مَا رَزَقْنٰكُمْ وَ لَا تَطْغَوْا فِيْهِ فَيَحِلَّ

୮୨. (ଏବଂ ନିର୍ଦ୍ଦେଶ ଦେଇଥିଲୁ ଯେ) ଆମେ ତୁମମାନଙ୍କୁ ଯାହା କିଛି ପ୍ରଦାନ କରିଅଛୁ ତନ୍ମଧ୍ୟରୁ ଶୁଦ୍ଧ ବସ୍ତୁକୁ ଖାଅ ;

---

୧. ସେହି ଅଙ୍ଗୀକାର ଅନୁଯାୟୀ ଯଦି ଇସ୍ରାଇଲୀୟମାନେ ତୌରାତ ବର୍ଣ୍ଣିତ ଆଦେଶ ଉପରେ ଦୃଢ଼ ରହିବେ ତେବେ ଅଲ୍ଲାହ ସେମାନଙ୍କୁ କଲ୍ୟାଣ ପ୍ରଦାନ କରିବେ । କିନ୍ତୁ ଇସ୍ରାଇଲୀୟମାନଙ୍କର ଗୋଟିଏ ଭାଗ ଅର୍ଥାତ୍ ଖ୍ରୀଷ୍ଟିୟାନମାନେ ନିର୍ଦ୍ଧାରିତ ଆଦେଶ ମଧ୍ୟରୁ ସବତ ସଂକ୍ରାନ୍ତ ଆଦେଶକୁ ପରିହାର କରିଥିଲେ । ଏହି ପରିହାର ବିଷୟକୁ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ବିଦ୍ୱାନ୍‌ମାନେ ମଧ୍ୟ ସ୍ୱୀକାର କରୁଛନ୍ତି । ରୋମର ଜଣେ ସମ୍ରାଟଙ୍କ କହିବା ଅନୁସାରେ ଖ୍ରୀଷ୍ଟିୟାନମାନେ ଶନିବାରକୁ ସବତ ଦିବସ ରୂପେ ପାଳନ ନ କରି ତା'ବଦଳରେ ରବିବାରକୁ ସବତ ଦିବସ ରୂପେ ପାଳନ କରିବା ସ୍ଥିର କରିଥିଲେ । ଇହୁଦୀମାନେ ପ୍ରକାରାନ୍ତରେ ଉକ୍ତ ଅଙ୍ଗୀକାରକୁ ଏହିପରି ଭଙ୍ଗ କରିଥିଲେ ଯେ ସେମାନେ ପ୍ରଥମେ ଉଜ୍‌ରା ନବିଙ୍କୁ ଅଲ୍ଲାହ ବୋଲି ଧାର୍ଯ୍ୟ କରିଥିଲେ । ଦ୍ୱିତୀୟତଃ ସାଧାରଣ ଜନତାଙ୍କ ବିଷୟ ଦୂରେ ଥାଉ, ସେମାନେ ହଜରତ ମହମ୍ମଦଙ୍କୁ ହତ୍ୟା କରିବାକୁ ମଧ୍ୟ ବାରମ୍ବାର ଉଦ୍ୟମ କରିଥିଲେ ଅଥଚ ତାହାଙ୍କ ଆଗମନର ପ୍ରତିଶ୍ରୁତି ତୌରାତ ଗ୍ରନ୍ଥରେ ଲିପିବଦ୍ଧ ହୋଇଅଛି । କେବଳ ସେତିକି ନୁହେଁ ସେମାନେ ତାଙ୍କ ପୂର୍ବରୁ ହଜରତ ଇସାଙ୍କୁ ମଧ୍ୟ ହତ୍ୟା କରିବାକୁ ଉଦ୍ୟମ କରିଥିଲେ ।

عَلَيْكُمْ غَضَبِيْ ۚ وَمَنْ يَّحْلِلْ عَلَيْهِ غَضَبِيْ فَقَدْ هَوٰى ﴿٨١﴾

ଏବଂ ଏ (ଖାଦ୍ୟ) ସଂକ୍ରାନ୍ତରେ ସୀମାଲଙ୍ଘନ କର ନାହିଁ. ତୁମମାନଙ୍କ ଉପରେ ଆମ୍ଭର ପ୍ରକୋପ ଅବତୀର୍ଣ୍ଣ ହୋଇଯାଉ ଏବଂ ଯାହା ପ୍ରତି ଆମ୍ଭର ପ୍ରକୋପ ଅବତୀର୍ଣ୍ଣ ହୁଏ ସେ ନିଶ୍ଚୟ ଧ୍ୱଂସ ହୁଏ ।

وَاِنِّيْ لَغَفَّارٌ لِّمَنْ تَابَ وَاٰمَنَ وَعَمِلَ صَالِحًا ثُمَّ اهْتَدٰى ﴿٨٢﴾

୮୩. "ଏବଂ ଯେଉଁ ବ୍ୟକ୍ତି ଅନୁତାପ କରେ ଓ ବିଶ୍ୱାସ କରେ ଓ (ଏହାପରେ) ଉଚିତ କର୍ମ କରି ସତ୍‌ପଥ ପ୍ରାପ୍ତ ହୁଏ ତେବେ ଆମେ ତାହାର (ବଡ଼ ବଡ଼) ପାପକୁ କ୍ଷମା କରିଥାଉ ।"

وَمَآ اَعْجَلَكَ عَنْ قَوْمِكَ يٰمُوْسٰى ﴿٨٣﴾

୮୪. ଏବଂ (ଆମେ କହିଲୁ), "ହେ ମୁସା ! ତୁମେ ନିଜ ସମ୍ପ୍ରଦାୟକୁ ପରିତ୍ୟାଗ କରି କାହିଁକି ଏତେ ଶୀଘ୍ର ଆସିଅଛ ?"

قَالَ هُمْ اُولَآءِ عَلٰٓى اَثَرِيْ وَعَجِلْتُ اِلَيْكَ رَبِّ لِتَرْضٰى ﴿٨٤﴾

୮୫. (ମୁସା) କହିଲେ, "ସେମାନେ ଆମକୁ ଅନୁଧାବନ କରୁଛନ୍ତି ; ଏବଂ ହେ ଆମ୍ଭର ପାଳନକର୍ତ୍ତା ! ଆମେ ଏଥିସକାଶେ ତୁମ ନିକଟକୁ ଶୀଘ୍ର ଆସିଅଛୁ ଯାହା ଫଳରେ ତୁମେ (ଆମ୍ଭର ଏହି କାର୍ଯ୍ୟ ସକାଶେ) ସନ୍ତୁଷ୍ଟ ହେବ ।"

قَالَ فَاِنَّا قَدْ فَتَنَّا قَوْمَكَ مِنْۢ بَعْدِكَ وَاَضَلَّهُمُ السَّامِرِيُّ ﴿٨٥﴾

୮୬. (ଅଲ୍ଲାହ) କହିଲେ, "ଆମେ ତୁମ ଅନୁପସ୍ଥିତିରେ ତୁମ ସମ୍ପ୍ରଦାୟକୁ ଏକ ପରୀକ୍ଷାର ସମ୍ମୁଖୀନ କରାଇଥିଲୁ ; ଏବଂ ସାମେରି ସେମାନଙ୍କୁ ପଥଭ୍ରଷ୍ଟ କରାଇଛି ।"

فَرَجَعَ مُوْسٰٓى اِلٰى قَوْمِهٖ غَضْبَانَ اَسِفًا ۚ قَالَ يٰقَوْمِ اَلَمْ يَعِدْكُمْ رَبُّكُمْ وَعْدًا حَسَنًا ۚ اَفَطَالَ عَلَيْكُمُ الْعَهْدُ اَمْ اَرَدْتُّمْ اَنْ يَّحِلَّ عَلَيْكُمْ غَضَبٌ مِّنْ رَّبِّكُمْ فَاَخْلَفْتُمْ مَّوْعِدِيْ ﴿٨٦﴾

୮୭. ଏଥିଯୋଗୁଁ ମୁସା ନିଜ ସମ୍ପ୍ରଦାୟ ନିକଟକୁ କ୍ରୋଧାନ୍ୱିତ ହୋଇ ମନଦୁଃଖରେ ଫେରିଗଲେ ଏବଂ (ନିଜ ସମ୍ପ୍ରଦାୟକୁ) କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! କ'ଣ ତୁମମାନଙ୍କ ପାଳନକର୍ତ୍ତା ତୁମମାନଙ୍କ ସହିତ ଏକ ଉତ୍ତମ ଅଙ୍ଗୀକାର କରି ନ ଥିଲେ ; କ'ଣ ସେହି ଅଙ୍ଗୀକାର ପୂର୍ଣ୍ଣ ହେବାରେ ଅଧିକ ବିଳମ୍ବ ହୋଇ ଯାଇଥିଲା ବା କ'ଣ ତୁମେମାନେ ଇଚ୍ଛା କରୁଥିଲ ଯେ ତୁମମାନଙ୍କ ପ୍ରତି କୌଣସି ପ୍ରକୋପ ଅବତୀର୍ଣ୍ଣ ହେଉ ; ତେଣୁ ତୁମେମାନେ ଆମ (ସହିତ ହୋଇଥିବା) ଅଙ୍ଗୀକାରକୁ ଭଙ୍ଗ କଲ ?"

قَالُوْا مَآ اَخْلَفْنَا مَوْعِدَكَ بِمَلْكِنَا وَلٰكِنَّا حُمِّلْنَآ اَوْزَارًا مِّنْ زِيْنَةِ الْقَوْمِ فَقَذَفْنٰهَا فَكَذٰلِكَ اَلْقَى السَّامِرِيُّ ﴿٨٧﴾

୮୮. ସେମାନେ କହିଲେ, "ଆମେମାନେ ତୁମ (ସହିତ ହୋଇଥିବା) ଅଙ୍ଗୀକାରକୁ ସ୍ୱେଚ୍ଛାରେ ଭଙ୍ଗ କରି ନାହୁଁ ; ବରଂ (ଫିରଔନ) ସମ୍ପ୍ରଦାୟର ଯେଉଁ ଅଳଙ୍କାର ବୋଝ ଆମମାନଙ୍କ ଉପରେ ଲଦି ଦିଆଯାଇଥିଲା ତାହାକୁ ଆମେମାନେ ଫିଙ୍ଗି ଦେଇଥିଲୁ ଏବଂ ଏହିପରି ଭାବରେ ସାମେରି ମଧ୍ୟ ଏହାକୁ ଫିଙ୍ଗି ଦେଇଥିଲା ।"

୮୯. ତା'ପରେ ସେ (ସାମେରି) ସେମାନଙ୍କ ପାଇଁ (ଅର୍ଥାତ୍ ଆମମାନଙ୍କ ପାଇଁ) ଏକ ବାଛୁରୀ ନିର୍ମାଣ କଲା ଯାହା କେବଳ ଏକ ପ୍ରତିମୂର୍ତ୍ତି ହିଁ ଥିଲା, ଯହିଁରୁ ଏକ ଅର୍ଥହୀନ [୧] ସ୍ୱର ବାହାରୁଥିଲା, (ଅର୍ଥାତ୍ ତାହା ପ୍ରକୃତ ବାଛୁରୀ ନଥିଲା) ; ଏହା ପରେ (ସେ ଓ ତା'ର ସାଥୀମାନେ) କହିଲେ, "ଏହା ତୁମମାନଙ୍କର ଓ ମୁସାଙ୍କର ଉପାସ୍ୟ ଅଟେ ; ସେ ଏହାକୁ ଭୁଲି (ପଛରେ ଛାଡ଼ି) ଯାଇଛନ୍ତି ।"

فَاَخْرَجَ لَهُمْ عِجْلًا جَسَدًا لَّهٗ خُوَارٌ فَقَالُوْا هٰذَآ اِلٰهُكُمْ وَاِلٰهُ مُوْسٰى ۥ فَنَسِيَ ﴿٨٩﴾

୯୦. (ନିଃସନ୍ଦେହରେ ସାମେରି ଓ ତା'ର ସାଥୀମାନେ ଏପରି କହିଥିଲେ) କିନ୍ତୁ କ'ଣ ସେମାନେ ନିଜେ ଦେଖିପାରୁ ନଥିଲେ ଯେ ସେହି ବାଛୁରୀ ସେମାନଙ୍କ କୌଣସି କଥାର କୌଣସି ଉତ୍ତର ଦେଉ ନାହିଁ ଓ ସେମାନଙ୍କର କିଛି ଲାଭ ବା କ୍ଷତି କରି ପାରୁ ନାହିଁ ?

اَفَلَا يَرَوْنَ اَلَّا يَرْجِعُ اِلَيْهِمْ قَوْلًا ۙ وَّلَا يَمْلِكُ لَهُمْ ضَرًّا وَّلَا نَفْعًا ﴿٩٠﴾

ରୁ : ୫

୯୧. ଏବଂ ହାରୁନ (ମୁସାଙ୍କର ପ୍ରତ୍ୟାବର୍ତ୍ତନ ପୂର୍ବରୁ) ସେମାନଙ୍କୁ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ତୁମମାନଙ୍କୁ ଏହାଦ୍ୱାରା (ଅର୍ଥାତ୍ ସେହି ବାଛୁରୀ ଦ୍ୱାରା) ପରୀକ୍ଷା କରାଯାଉଅଛି ; ଏବଂ ତୁମମାନଙ୍କର ପାଳନକର୍ତ୍ତା ତ ଅଶେଷ ଦୟାବାନ୍ (ଅଲ୍ଲାହ) ଅଟନ୍ତି ; ସୁତରାଂ ଆମ୍ଭଙ୍କୁ ଅନୁସରଣ କର ଓ ଆମ୍ଭ ଆଦେଶ ପାଳନ କର (ଏବଂ ଅଲ୍ଲାହଙ୍କ ସହିତ ଅନ୍ୟକୁ ସମକକ୍ଷ କର ନାହିଁ) ।"

وَلَقَدْ قَالَ لَهُمْ هٰرُوْنُ مِنْ قَبْلُ يٰقَوْمِ اِنَّمَا فُتِنْتُمْ بِهٖ ۚ وَاِنَّ رَبَّكُمُ الرَّحْمٰنُ فَاتَّبِعُوْنِيْ وَاَطِيْعُوْٓا اَمْرِيْ ﴿٩١﴾

୯୨. (କିନ୍ତୁ ସେହି ଅବାଧ୍ୟ ଲୋକମାନେ) କହିଲେ, "ମୁସା ଆମମାନଙ୍କ ନିକଟକୁ ପ୍ରତ୍ୟାବର୍ତ୍ତନ ନ କରିବା ପର୍ଯ୍ୟନ୍ତ ଆମେମାନେ ଏହାର ଉପାସନା କରିବାରୁ ବିରତ ହେବୁ ନାହିଁ ।"

قَالُوْا لَنْ نَّبْرَحَ عَلَيْهِ عٰكِفِيْنَ حَتّٰى يَرْجِعَ اِلَيْنَا مُوْسٰى ﴿٩٢﴾

୯୩. (ମୁସା ପ୍ରତ୍ୟାବର୍ତ୍ତନ କରି ହାରୁନଙ୍କୁ) କହିଲେ, "ହେ ହାରୁନ ! ଯେତେବେଳେ ତୁମେ ନିଜ ସମ୍ପ୍ରଦାୟକୁ ପଥଭ୍ରଷ୍ଟ ହେଉଥିବାର ଦେଖିଲ, ସେତେବେଳେ କିଏ ତୁମକୁ ବାରଣ କରିଥିଲା—"

قَالَ يٰهٰرُوْنُ مَا مَنَعَكَ اِذْ رَاَيْتَهُمْ ضَلُّوْٓا ﴿٩٣﴾

[୧] ୭ : ୧୪୯ର ଟୀକା ଦ୍ରଷ୍ଟବ୍ୟ ।

୯୪. ''ଯେ ତୁମେ ଆମର ପଦାଙ୍କ ଅନୁସରଣ କରିବ ନାହିଁ ? ତାହାହେଲେ କ'ଣ ତୁମେ ଆମର ଆଦେଶ ଅମାନ୍ୟ କଲ ?''

أَلَّا تَتَّبِعَنِ ۖ أَفَعَصَيْتَ أَمْرِي ﴿٩٣﴾

୯୫. (ହାରୁନ) କହିଲେ, ''ହେ ଆମ ମାତୃନନ୍ଦନ ! (ତୁମେ) ଆମର ଦାଢ଼ି ବା ମୁଣ୍ଡ (ବାଳ) ଧରି ଟାଣ ନାହିଁ; ଆମେ ତ ଏଥି ସକାଶେ ଭୟଭୀତ ହୋଇଥିଲୁ ଯେ କାଳେ ତୁମେ ଏପରି କହିବ କି ଆମେ ଇସ୍ରାଇଲୀୟ ସନ୍ତାନମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିଦେଇଛୁ ଓ ତୁମ କଥାରେ ଧ୍ୟାନ ଦେଇ ନାହୁଁ ।''

قَالَ يَبْنَؤُمَّ لَا تَأْخُذْ بِلِحْيَتِي وَلَا بِرَأْسِي ۖ إِنِّي خَشِيتُ أَنْ تَقُولَ فَرَّقْتَ بَيْنَ بَنِي إِسْرَاءِيلَ وَلَمْ تَرْقُبْ قَوْلِي ﴿٩٤﴾

୯୬. (ଏହାପରେ ମୁସା ସାମେରିକୁ ସମ୍ବୋଧନ କରି) କହିଲେ, ''ହେ ସାମେରି ! ତୁମର କ'ଣ କହିବାକୁ ଅଛି ?''

قَالَ فَمَا خَطْبُكَ يَسَامِرِيُّ ﴿٩٥﴾

୯୭. ସେ କହିଲା, ''ସେମାନେ ଯାହା ଦେଖି ନଥିଲେ ମୁଁ ତାହା ଦେଖିଅଛି ; ଏବଂ ମୁଁ ଏହି ରସୁଲ (ମୁସା)ଙ୍କ କଥାରୁ କିଛି ଗ୍ରହଣ [1] କଲି (ଓ କିଛି କଲି ନାହିଁ) ; ତା'ପରେ ମୁଁ (ଯେଉଁ ବିଷୟକୁ ଗ୍ରହଣ କରିଥିଲି ସୁଯୋଗ ପାଇବାରୁ) ତାହାକୁ ମଧ୍ୟ ପରିତ୍ୟାଗ କଲି ; ଏବଂ ମୋର ମନ ଏହାକୁ ହିଁ ମୋତେ ଶୋଭନୀୟ କରି ଦେଖାଇଥିଲା ।''

قَالَ بَصُرْتُ بِمَا لَمْ يَبْصُرُوا بِهِ فَقَبَضْتُ قَبْضَةً مِنْ أَثَرِ الرَّسُولِ فَنَبَذْتُهَا وَكَذَٰلِكَ سَوَّلَتْ لِي نَفْسِي ﴿٩٦﴾

୯୮. (ମୁସା) କହିଲେ, ''ତାହାହେଲେ ତୁମେ ଯାଅ. ଇହଜଗତରେ ତୁମ ପାଇଁ ଶାସ୍ତି ହେଉଛି ଯେ ତୁମେ ଏଠାରେ ସମସ୍ତଙ୍କୁ କହି ବୁଲିଥିବ 'ମୋତେ ସ୍ପର୍ଶ କର ନାହିଁ' ; (କାରଣ ମୁସା ମୋତେ କଳୁଷିତ ସାବ୍ୟସ୍ତ କରିଛନ୍ତି) ; '' ଏବଂ (ମୁସା ସାମେରିକୁ ଏହା ମଧ୍ୟ କହିଲେ). ''ତୁମ ପାଇଁ (ଶାସ୍ତିର) ସମୟ ନିର୍ଦ୍ଧାରିତ ହୋଇଅଛି ଯାହାକୁ ତୁମେ ଟଳାଇ ପାରିବ

قَالَ فَاذْهَبْ فَإِنَّ لَكَ فِي الْحَيَوٰةِ أَنْ تَقُولَ لَا مِسَاسَ ۖ وَإِنَّ لَكَ مَوْعِدًا لَنْ تُخْلَفَهُ ۖ وَانْظُرْ

---

୧. ଟୀକାକାରମାନଙ୍କ କଥନ ଅନୁସାରେ ସାମେରି: ଦେବଦୂତ ଜିବ୍ରାଇଲଙ୍କୁ ଦେଖିଥିବାର ପ୍ରକାଶ କରିଥିଲା । ସେ ପୁଣି କହିଥିଲା ଯେ ସେ ତାଙ୍କ ଘୋଡ଼ାର ଖୁରାଲଗା ମାଟିକୁ ଉଠାଇ ନେଇ ତହିଁରେ ବାଛୁରୀ ଗଢ଼ିଥିଲା । କିନ୍ତୁ ପବିତ୍ର କୋରାନରେ 'ରସୁଲ' ଶବ୍ଦ ପ୍ରୟୋଗ କରାଯାଇଛି, ଯହିଁରୁ ହଜରତ ମୁସା ଅଭିପ୍ରେତ । ସାମେରୀ ଏତିକି ମାତ୍ର କହିଥିଲା ଯେ ସେ ଆଦ୍ୟରେ ହଜରତ ମୁସାଙ୍କ ଉପଦେଶକୁ ଗ୍ରହଣ କରିଥିଲେ ମଧ୍ୟ ଯେତେବେଳେ ସେ ଏପରି ଏକ ସୁଯୋଗ ପାଇଲା ଯେ ତା'ର ଯୋଜନାକୁ ବିଫଳ କରିବାପାଇଁ ହଜରତ ମୁସା ସେଠାରେ ଉପସ୍ଥିତ ନାହାନ୍ତି ସେତେବେଳେ ସେ ତାଙ୍କ ଉପଦେଶକୁ ପିଙ୍ଗି ଦେଇ ସେହି କାର୍ଯ୍ୟ କରିଥିଲା ।

ବସ୍ତୁତଃ ଇସ୍ରାଇଲୀୟମାନେ ବହୁ ବର୍ଷ ଧରି ମିଶରବାସୀଙ୍କର ଦାସ ହୋଇ ରହିଥିଲେ । ଫଳରେ ସେମାନେ ମିଶରବାସୀଙ୍କ ପ୍ରଥା, ପରମ୍ପରା, ଚଳଣି ଓ କର୍ମକର୍ମାଣିର ଅନୁସରଣ କରୁଥିଲେ । ତତ୍କାଳୀନ ମିଶରବାସୀ ଗୋ-ପୂଜା କରୁଥିବାରୁ ଇସ୍ରାଇଲୀୟମାନଙ୍କର ମଧ୍ୟ ଗୋ-ଜାତି ପ୍ରତି ଅତ୍ୟନ୍ତ ଶ୍ରଦ୍ଧା ଥିଲା ।

ନାହିଁ; ଏବଂ ତୁମେ ନିଜ ଉପାସ୍ୟକୁ ଲକ୍ଷ୍ୟକର ଯାହା ସମ୍ମୁଖରେ (ବସି) ତୁମେ ତାହାର ଉପାସନା କରୁଥିଲ ; ଆମେ ଏହାକୁ ପୋଡ଼ି ଦେବୁ [1] ଓ ଏହାକୁ (ଅର୍ଥାତ୍ ଏହାର ପାଉଁଶକୁ) ସାଗରରେ ନିକ୍ଷେପ କରିବୁ ।"

إِلَىٰ إِلَٰهِكَ الَّذِي ظَلْتَ عَلَيْهِ عَاكِفًا لَّنُحَرِّقَنَّهُ ثُمَّ لَنَنسِفَنَّهُ فِي الْيَمِّ نَسْفًا ﴿٩٨﴾

୯୯. "ଅଲ୍ଲାହ୍ ହିଁ ତୁମମାନଙ୍କର ଉପାସ୍ୟ ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ଏବଂ ସେ ସମସ୍ତ ବିଷୟକୁ ଜାଣନ୍ତି ।"

إِنَّمَا إِلَٰهُكُمُ اللَّهُ الَّذِي لَا إِلَٰهَ إِلَّا هُوَ ۚ وَسِعَ كُلَّ شَيْءٍ عِلْمًا ﴿٩٩﴾

୧୦୦. (ହେ ମହମ୍ମଦ !) ଏହିପରି ଭାବରେ ଆମେ ତୁମ ନିକଟରେ ପୂର୍ବବର୍ତ୍ତୀ ଲୋକମାନଙ୍କର ବୃତ୍ତାନ୍ତ ବର୍ଣ୍ଣନା କରୁ ଏବଂ ଆମେ ତୁମକୁ ନିଜ ସମୀପରୁ ଅନୁସ୍ମାରକ (ଅର୍ଥାତ୍ ଏହି ପବିତ୍ର କୋରାନ) ପ୍ରଦାନ କରିଅଛୁ ।

كَذَٰلِكَ نَقُصُّ عَلَيْكَ مِنْ أَنبَاءِ مَا قَدْ سَبَقَ ۚ وَقَدْ آتَيْنَاكَ مِن لَّدُنَّا ذِكْرًا ﴿١٠٠﴾

୧୦୧. ଯେ ଏଥିରୁ ବିମୁଖ ହେବ ବାସ୍ତବିକ ସେ କୟାମତ ଦିନ ଏକ ଗୁରୁ ଭାର ବହନ କରିବ ।

مَّنْ أَعْرَضَ عَنْهُ فَإِنَّهُ يَحْمِلُ يَوْمَ الْقِيَامَةِ وِزْرًا ﴿١٠١﴾

୧୦୨. ଏହି ଲୋକମାନେ ଏପରି ଅବସ୍ଥାରେ ବହୁ ସମୟ ପର୍ଯ୍ୟନ୍ତ ରହିବେ ; ଏବଂ କୟାମତ ଦିନ ଏହା (ଅର୍ଥାତ୍ ଏହି ପାପ ଭାର) ଆହୁରି ଦୁର୍ବିସହ ହୋଇପଡ଼ିବ ।

خَالِدِينَ فِيهِ ۖ وَسَاءَ لَهُمْ يَوْمَ الْقِيَامَةِ حِمْلًا ﴿١٠٢﴾

୧୦୩. ଯେଉଁଦିନ କି ବିଗୁଲ ଫୁଙ୍କାଯିବ, ଓ ସେହି ଦିନ ଆମେ ଅପରାଧୀ ମାନଙ୍କୁ ଏପରି ଅବସ୍ଥାରେ ଏକତ୍ରିତ କରାଇବୁ ଯେ ସେମାନଙ୍କର ଚକ୍ଷୁ ନୀଳବର୍ଣ୍ଣ [2] ଧାରଣ କରିଥିବ ।

يَوْمَ يُنفَخُ فِي الصُّورِ ۚ وَنَحْشُرُ الْمُجْرِمِينَ يَوْمَئِذٍ زُرْقًا ﴿١٠٣﴾

---

୧. ଖ୍ରୀଷ୍ଟିୟାନ ଲେଖକମାନେ ସାଧାରଣତଃ ଆପତ୍ତି କରି ଥାଆନ୍ତି ଯେ ଯେହେତୁ ସେହି ବାଛୁରୀ ସୁନାରେ ତିଆରି ହୋଇଥିଲା ତେଣୁ ତାହା ପୋଡ଼ି ପାଉଁଶ ହୋଇ ପାରିବ ନାହିଁ । ଏହାର ଉତ୍ତରରେ କେବଳ ଏତିକି କୁହା ଯାଇପାରେ ଯେ ଯେହେତୁ ସାମେରି ଲୋକମାନଙ୍କୁ ପ୍ରତାରିତ କରିବା ଚାହୁଁଥିଲା ତେଣୁ ସେ ସେହି ବାଛୁରୀ ମୂର୍ତ୍ତିର ମୁହଁରେ ଓ ପଚ୍ଛପଟେ କାଠର ଆବରଣ ଲଗାଇ ଥିଲା ଯେପରି କି ତା'ଭିତରେ ଦେଇ ପବନ ଯିବା ଆସିବା କଲେ ଶବ୍ଦ ବାହାରିବ । ସୁତରାଂ ଯେତେବେଳେ ସେହି ମୂର୍ତ୍ତିକୁ ପୋଡ଼ି ଦିଆଗଲା ସେତେବେଳେ ସେହି ଆବରଣ ମଧ୍ୟ ପୋଡ଼ି ପାଉଁଶ ହୋଇଗଲା, ଯାହାକୁ ହଜରତ ମୁସା ସୁନାଖଣ୍ଡ ସମେତ ନଦୀକୁ ଫୋପାଡ଼ି ଦେଲେ ।

୨. ଅର୍ଥାତ୍ ୟୁରୋପୀୟମାନେ, କାରଣ ସେମାନଙ୍କ ଚକ୍ଷୁର ବର୍ଣ୍ଣ ନୀଳ । ପରବର୍ତ୍ତୀ ଆୟତରେ ଜଣାଇ ଦିଆଯାଇଛି ଯେ ସେମାନଙ୍କର ଉନ୍ନତି ଲାଭ ହେବା ପରେ ଯେତେବେଳେ ଅବନତିର ସମୟ ଆସିବ ସେତେବେଳେ ସେମାନେ କହିବେ : 'ଆମେ ତ କେବଳ ଦଶ ରହିଅଛୁ' ଅର୍ଥାତ୍ ଦଶ ଶତାବ୍ଦୀ ରହିଅଛୁ । ବସ୍ତୁତଃ ସେମାନଙ୍କ ଉନ୍ନତିର ସମୟ ସେତିକି ହିଁ ହେଉଛି ।

يَّتَخَافَتُوْنَ بَيْنَهُمْ اِنْ لَّبِثْتُمْ اِلَّا عَشْرًا ﴿١٠٤﴾

୧୦୪. ସେମାନେ ନିମ୍ନ ସ୍ୱରରେ ପରସ୍ପର ମଧ୍ୟରେ ଆଲୋଚନା କରିବେ ଯେ ତୁମେମାନେ କେବଳ ଦଶ (ଶତାବ୍ଦୀ ପାଇଁ ପୃଥିବୀରେ ପ୍ରଭୁତ୍ୱ ବିସ୍ତାର କରି) ରହିଅଛ ।

نَحْنُ اَعْلَمُ بِمَا يَقُوْلُوْنَ اِذْ يَقُوْلُ اَمْثَلُهُمْ طَرِيْقَةً اِنْ لَّبِثْتُمْ اِلَّا يَوْمًا ﴿١٠٥﴾

୧୦୫. ସେମାନେ (ପରସ୍ପର ମଧ୍ୟରେ) ଯାହା ଆଲୋଚନା କରିବେ ତାହା ଆମେ ଭଲ ଭାବରେ ଜାଣୁ, ଯେବେ ସେମାନଙ୍କ ମଧ୍ୟରେ ଥିବା ସର୍ବାଧିକ ଧର୍ମନିଷ୍ଠ ବ୍ୟକ୍ତିମାନେ କହିବେ, "ତୁମେମାନେ କେବଳ ସ୍ୱଳ୍ପ କାଳ [୧] ପାଇଁ ରହିଅଛ ।"

ରୁ : ୬

وَيَسْـَٔلُوْنَكَ عَنِ الْجِبَالِ فَقُلْ يَنْسِفُهَا رَبِّيْ نَسْفًا ﴿١٠٦﴾

୧୦୬. ଏବଂ ସେମାନେ ତୁମକୁ ପର୍ବତଗୁଡ଼ିକ [୨] ସଂକ୍ରାନ୍ତରେ ପ୍ରଶ୍ନ କରୁଛନ୍ତି, ତୁମେ କୁହ, "ଆମର ପାଳନ କର୍ତ୍ତା ସେମାନଙ୍କୁ ଉପାଡ଼ି ଫିଙ୍ଗି ଦେବେ ।"

فَيَذَرُهَا قَاعًا صَفْصَفًا ﴿١٠٧﴾

୧୦୭. "ଏବଂ ସେଗୁଡ଼ିକୁ ଏପରି ଏକ ଟାଙ୍ଗରା ସମତଳ ଭୂମିରେ ପରିଣତ କରିଦେବେ ।"

لَّا تَرٰى فِيْهَا عِوَجًا وَّلَآ اَمْتًا ﴿١٠٨﴾

୧୦୮. "ତୁମେ ସେଥିରେ କୌଣସି ବାଙ୍କ ଦେଖିବ ନାହିଁ କି ଖାଲ ଢିପ ଦେଖିବ ନାହିଁ ।"

يَوْمَئِذٍ يَّتَّبِعُوْنَ الدَّاعِيَ لَا عِوَجَ لَهٗ ۚ وَخَشَعَتِ الْاَصْوَاتُ لِلرَّحْمٰنِ فَلَا تَسْمَعُ اِلَّا هَمْسًا ﴿١٠٩﴾

୧୦୯. ସେଦିନ ଲୋକମାନେ ଆହ୍ୱାନକାରୀଙ୍କର ଅନୁସରଣ କରିବେ ଯାହାଙ୍କ ନୀତି ଶିକ୍ଷାରେ [୩] କୌଣସି ବକ୍ରତା ନଥିବ ; ଏବଂ ଅଶେଷ ଦୟାବାନ୍ (ଅଲ୍ଲାହ)ଙ୍କ (ସ୍ୱର) ତୁଳନାରେ (ଲୋକମାନଙ୍କର) ସ୍ୱର କ୍ଷୀଣ [୪] ହୋଇଯିବ ; ସୁତରାଂ ସେତେବେଳେ ତୁମେ ମୃଦୁ ଗୁଞ୍ଜନ ଭିନ୍ନ ଅନ୍ୟ କିଛି ଶୁଣିବ ନାହିଁ ।

---

୧. ଶାନ୍ତି ଅବତୀର୍ଣ୍ଣ ହେବା ବେଳେ ପ୍ରଗତି ଓ ଆନନ୍ଦର ସମୟ ଅତି ଅଳ୍ପ ବୋଧହୁଏ. ଏ ବିଷୟରେ ଆଲୋଚ୍ୟ ଆୟତରେ ସୂଚନା ଦିଆଯାଇଛି ।

୨. ଅର୍ଥାତ୍ ବଡ଼ ଲୋକ ବା କ୍ଷମତାଶାଳୀ ବ୍ୟକ୍ତି ।

୩. ଅର୍ଥାତ୍ ଯେତେବେଳେ ଅନ୍ୟାନ୍ୟ ଜାତିର ସର୍ବନାଶ ହେବା ପ୍ରାରମ୍ଭ ହେବ ଏବଂ ପର୍ବତ ସଦୃଶ ମଜଭୁତ୍ ଜାତି ସବୁ ଧୂଳିସାତ୍ ହୋଇଯିବେ ସେତେବେଳେ ସେମାନେ କେବଳ ସେହି ନବିଙ୍କ ଉପଦେଶକୁ ଗ୍ରହଣ କରିବେ ଯାହାଙ୍କ ଶିକ୍ଷାରେ କୌଣସି ଦୋଷତ୍ରୁଟି ନ ଥିବ ; ସେ ହେଉଛନ୍ତି ହଜରତ ମହମ୍ମଦ । ଏହି ଶିକ୍ଷା ଦୋଷତ୍ରୁଟିହୀନ ହୋଇଥିବା ପବିତ୍ର କୋରାନର ବହୁ ସ୍ଥାନରେ ବର୍ଣ୍ଣନା କରାଯାଇଛି ।

୪. ଅର୍ଥାତ୍ ଭୟଭୀତ ହୋଇଥିବା ଫଳରେ ସେମାନଙ୍କ ସ୍ୱର କ୍ଷୀଣ ହୋଇଯିବ ।

يَوْمَئِذٍ لَّا تَنفَعُ الشَّفَاعَةُ إِلَّا مَنْ أَذِنَ لَهُ الرَّحْمَٰنُ وَرَضِيَ لَهُ قَوْلًا ﴿١١٠﴾

୧୧୦. ସେଦିନ କାହାରି ପାଇଁ ମଧ୍ୟ ସୁପାରିଶ [1]ଲାଭପ୍ରଦ ହେବ ନାହିଁ, କେବଳ ତା'ବ୍ୟତୀତ ଯାହା ପକ୍ଷରେ ଦୟାବାନ୍ (ଅଲ୍ଲାହ) ସୁପାରିଶ କରିବାର ଅନୁମତି ଦେବେ ଏବଂ ଯାହା ପକ୍ଷରେ କଥା କୁହାଯିବାକୁ ସେ ପସନ୍ଦ କରିବେ ।

يَعْلَمُ مَا بَيْنَ أَيْدِيهِمْ وَمَا خَلْفَهُمْ وَلَا يُحِيطُونَ بِهِ عِلْمًا ﴿١١١﴾

୧୧୧. ଯାହା ସେମାନଙ୍କ ପରେ (ଘଟିବାର) ଅଛି ଓ ଯାହା ସେମାନଙ୍କ ପୂର୍ବରୁ (ଘଟି) ଅଛି ସେ ତାହାକୁ ଜାଣନ୍ତି ଏବଂ ସେମାନେ ନିଜ ଜ୍ଞାନ ବଳରେ ତାହାଙ୍କର (ଅର୍ଥାତ୍ ଅଲ୍ଲାହଙ୍କର ଜ୍ଞାନକୁ) କଳନା କରି ପାରିବେ ନାହିଁ ।

وَعَنَتِ الْوُجُوهُ لِلْحَيِّ الْقَيُّومِ وَقَدْ خَابَ مَنْ حَمَلَ ظُلْمًا ﴿١١٢﴾

୧୧୨. ଏବଂ (ସେହିଦିନ) ଚିରଞ୍ଜୀବୀ ଓ ଚିରସ୍ଥାୟୀ (ଅଲ୍ଲାହ)ଙ୍କ ସମ୍ମୁଖରେ ସମସ୍ତ ନେତୃ–ସ୍ଥାନୀୟ ବ୍ୟକ୍ତିମାନେ (ସସମ୍ମାନେ) ନଇଁ ପଡ଼ିବେ ; ଏବଂ ଯେ ଅତ୍ୟାଚାର କରିବ ସେ ବିଫଳ ହେବ ।

وَمَن يَعْمَلْ مِنَ الصَّالِحَاتِ وَهُوَ مُؤْمِنٌ فَلَا يَخَافُ ظُلْمًا وَلَا هَضْمًا ﴿١١٣﴾

୧୧୩. ଏବଂ ଯେ କେହି (ସମୟର ଆବଶ୍ୟକତା ଅନୁସାରେ ଉତ୍ତମ) କାର୍ଯ୍ୟ କରିଥିବ ଓ ବିଶ୍ୱାସକାରୀ ମଧ୍ୟ ଥିବ, ସେ କୌଣସି ପ୍ରକାର ଅନ୍ୟାୟ ବା କ୍ଷତିର ଆଶଙ୍କା କରିବ ନାହିଁ ।

وَكَذَٰلِكَ أَنزَلْنَاهُ قُرْآنًا عَرَبِيًّا وَصَرَّفْنَا فِيهِ مِنَ الْوَعِيدِ لَعَلَّهُمْ يَتَّقُونَ أَوْ يُحْدِثُ لَهُمْ ذِكْرًا ﴿١١٤﴾

୧୧୪. ଏବଂ ଏହିପରି ଭାବରେ ଆମେ ଏହି ଗ୍ରନ୍ଥକୁ ଆରବୀ ଭାଷାରେ କୋରାନ ଆକାରରେ ଅବତୀର୍ଣ୍ଣ କରିଅଛୁ ଏବଂ ଏଥିରେ ଆମେ ବିଭିନ୍ନ କିସମର ଚେତାବନୀ ସୁସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ ଯେପରି କି ସେମାନେ ଧର୍ମଭୀରୁତା ଅବଲମ୍ବନ କରିବେ ଅଥବା (ଏହି କୋରାନ) ସେମାନଙ୍କ ପାଇଁ (ଅଲ୍ଲାହଙ୍କୁ) ସ୍ମରଣ କରିବାର ପ୍ରେରଣା (ନୂତନ ଭାବେ) ସୃଷ୍ଟି କରିବ ।

---

୧. ଏହି ଆୟତରେ ଖ୍ରୀଷ୍ଟିୟାନମାନେ ଯୀଶୁଙ୍କୁ ସୁପାରିଶକାରୀ ମନେ କରୁଥିବା ତଥ୍ୟକୁ ଖଣ୍ଡନ କରାଯାଇଛି । ବସ୍ତୁତଃ ଏଠାରେ ହଜରତ ମହମ୍ମଦଙ୍କୁ ସୁପାରିଶକାରୀ ବୋଲି ଘୋଷଣା କରାଯାଇଛି, କାରଣ ସେ ରହମାନ (ଅର୍ଥାତ୍ ଅଶେଷ ଦୟାବାନ୍ ଅଲ୍ଲାହ)ଙ୍କ ଉପରେ ବିଶ୍ୱାସ କରିବା ସଂକ୍ରାନ୍ତରେ ଗୁରୁତ୍ୱ ଦେଉଛନ୍ତି । ତାଙ୍କ ସୁପାରିଶ କରିବା କାର୍ଯ୍ୟକୁ ପବିତ୍ର କୋରାନ ମଧ୍ୟ ବିଧିସଙ୍ଗତ ଧାର୍ଯ୍ୟ କରିଛି । କିନ୍ତୁ ଖ୍ରୀଷ୍ଟ ଧର୍ମାବଲମ୍ବୀମାନେ ଏ ବିଷୟରେ ବିରୋଧ କରି ଅଲ୍ଲାହଙ୍କୁ 'ରହମାନ' ସ୍ୱୀକାର କରୁ ନାହାନ୍ତି ଫଳରେ ଏହି ଆୟତରେ କେବଳ ହଜରତ ମହମ୍ମଦଙ୍କୁ ସୁପାରିଶ କରିବା ପାଇଁ ଅନୁମତି ଦିଆଯାଇଛି ।

୧୧୫. ସୁତରାଂ ଅଲ୍ଲାହ ହିଁ ଅଧିପତି, ଉଚ୍ଚ ମର୍ଯ୍ୟାଦା ସମ୍ପନ୍ନ ଓ ଚିରସ୍ଥାୟୀ ଅଟନ୍ତି ; ଏବଂ (ଓହି ମାଧ୍ୟମରେ) କୋରାନ (ସମ୍ପୂର୍ଣ୍ଣ ରୂପେ) ଅବତୀର୍ଣ୍ଣ ହେବା ପୂର୍ବରୁ ତୁମେ ଏ ସଂକ୍ରାନ୍ତରେ ବ୍ୟଗ୍ର ହୁଅ ନାହିଁ ଏବଂ କୁହ, ''ହେ ଆମର ପାଳନକର୍ତ୍ତା ! ଆମର ଜ୍ଞାନ ବୃଦ୍ଧି କର ।''

فَتَعٰلَى اللّٰهُ الْمَلِكُ الْحَقُّ ۚ وَلَا تَعْجَلْ بِالْقُرْاٰنِ مِنْ قَبْلِ اَنْ يُّقْضٰٓى اِلَيْكَ وَحْيُهٗ ۫ وَقُلْ رَّبِّ زِدْنِيْ عِلْمًا ﴿۱۱۵﴾

୧୧୬. ଏବଂ ଏଥିପୂର୍ବରୁ ଆମେ ଆଦମଙ୍କ ଠାରୁ (ଗୋଟିଏ ବିଷୟରେ ସତର୍କ କରାଇ) ଅଙ୍ଗୀକାର ଗ୍ରହଣ କରିଥିଲୁ କିନ୍ତୁ ସେ ଏହା ପାସୋରି ଦେଇଥିଲେ, ଏବଂ ଆମେ ଭଲ ଭାବେ (କାର୍ଯ୍ୟ ପରେ) ଦେଖିଲୁ ଯେ ତାହାଙ୍କ ମନରେ ଆମର ଆଦେଶ ଲଙ୍ଘନ କରିବା ସଂକ୍ରାନ୍ତରେ କୌଣସି ଦୃଢ ସଂକଳ୍ପ ନଥିଲା ।

وَلَقَدْ عَهِدْنَآ اِلٰٓى اٰدَمَ مِنْ قَبْلُ فَنَسِيَ وَلَمْ نَجِدْ لَهٗ عَزْمًا ﴿۱۱۶﴾

ରୁ :୬

୧୧୭. ଏବଂ (ଏହା ମଧ୍ୟ ସ୍ମରଣ କର) ଯେତେବେଳେ ଆମେ ଦେବଦୂତମାନଙ୍କୁ କହିଲୁ, ''ଆଦମଙ୍କୁ (ସୃଷ୍ଟି କରିଥିବାରୁ) ତୁମେମାନେ କୃତଜ୍ଞତା ସ୍ୱରୂପ (ଆମଙ୍କୁ) ସିଜଦା କର,'' ସେତେବେଳେ ଇବଲିସ ବ୍ୟତୀତ ଅନ୍ୟ ସମସ୍ତେ ସିଜଦା କରିଥିଲେ,(ଏବଂ) ସେ ପ୍ରତ୍ୟାଖ୍ୟାନ କରିଥିଲା ।

وَاِذْ قُلْنَا لِلْمَلٰٓئِكَةِ اسْجُدُوْا لِاٰدَمَ فَسَجَدُوْٓا اِلَّآ اِبْلِيْسَ ؕ اَبٰى ﴿۱۱۷﴾

୧୧୮. ଏଥିଯୋଗୁଁ ଆମେ (ଆଦମଙ୍କୁ) କହିଲୁ, ''ହେ ଆଦମ ! ଏ (ଇବଲିସ) ନିଶ୍ଚୟ ତୁମର ଓ ତୁମ (ପତ୍ନୀ ତଥା) ସଙ୍ଗୀମାନଙ୍କର ଶତ୍ରୁ ଅଟେ ; ତେଣୁ ସେ ତୁମ ଉଭୟ (ଗୋଷ୍ଠୀ)ଙ୍କୁ ଏହି ବୈକୁଣ୍ଠରୁ ବିତାଡ଼ିତ କରି ନ ଦେଉ ଅନ୍ୟଥା ତୁମେ (ଓ ତୁମର ପ୍ରତ୍ୟେକ ସଙ୍ଗୀ) ବିପଦରେ ପଡ଼ିଯିବ ।''

فَقُلْنَا يٰٓاٰدَمُ اِنَّ هٰذَا عَدُوٌّ لَّكَ وَلِزَوْجِكَ فَلَا يُخْرِجَنَّكُمَا مِنَ الْجَنَّةِ فَتَشْقٰى ﴿۱۱۸﴾

୧୧୯. ''ଏଠାରେ [୧] (ଅର୍ଥାତ୍ ଏହି ବୈକୁଣ୍ଠରେ) ତୁମେ (ଓ ତୁମର ସଙ୍ଗୀମାନେ) କେବେ କ୍ଷୁଧାର୍ତ୍ତ ହେବ ନାହିଁ କି ଉଲଗ୍ନ ରହିବ ନାହିଁ ।''

اِنَّ لَكَ اَلَّا تَجُوْعَ فِيْهَا وَلَا تَعْرٰى ﴿۱۱۹﴾

୧୨୦. ''ଏବଂ ତୁମେ (ସେଠାରେ) ତୃଷାର୍ତ୍ତ ହେବ ନାହିଁ କି ରୌଦ୍ର ତାପରେ କଷ୍ଟ ପାଇବ ନାହିଁ ।''

وَاَنَّكَ لَا تَظْمَؤُا فِيْهَا وَلَا تَضْحٰى ﴿۱۲۰﴾

---

୧. ପ୍ରତୀତ ହେଉଛି, ଏହା ହିଁ ସର୍ବପ୍ରଥମ ଶିକ୍ଷା ଯାହା ହଜରତ ଆଦମଙ୍କୁ ପ୍ରଦାନ କରାଯାଇଥିଲା । ସେଥିରେ ନିର୍ଦ୍ଦେଶ ଥିଲା ଯେ ତାଙ୍କ ଶାସନ ବ୍ୟବସ୍ଥା ଏପରି ହେବା ଆବଶ୍ୟକ ଯାହାର ଫଳସ୍ୱରୂପ ସେହି ରାଜ୍ୟର କୌଣସି ବ୍ୟକ୍ତି ଭୋକ ଉପାସରେ ସଡ଼ିବେ ନାହିଁ କି ଲଙ୍ଗଳା ହୋଇ ରହିବେ ନାହିଁ ।

فَوَسْوَسَ اِلَيْهِ الشَّيْطٰنُ قَالَ يٰٓاٰدَمُ هَلْ اَدُلُّكَ عَلٰى شَجَرَةِ الْخُلْدِ وَمُلْكٍ لَّا يَبْلٰى ﴿١٢١﴾

୧୨୧. କିନ୍ତୁ ସଇତାନ ତାହାଙ୍କୁ କୁମନ୍ତ୍ରଣା ଦେଇ କହିଲେ,[1] "ହେ ଆଦମ ! କ'ଣ ମୁଁ ତୁମଙ୍କୁ ଏପରି ଏକ ବୃକ୍ଷର ସନ୍ଧାନ ଦେବି ଯାହା ଚିରହରିତ୍ ଏବଂ ଏପରି ଏକ ରାଜତ୍ୱ (ସଂକ୍ରାନ୍ତରେ ସନ୍ଧାନ) ଦେବି ଯାହା କ୍ଷୟ ହେବ ନାହିଁ ?

فَاَكَلَا مِنْهَا فَبَدَتْ لَهُمَا سَوْاٰتُهُمَا وَطَفِقَا يَخْصِفٰنِ عَلَيْهِمَا مِنْ وَّرَقِ الْجَنَّةِ ۫ وَعَصٰٓى اٰدَمُ رَبَّهٗ فَغَوٰى ﴿١٢٢﴾

୧୨୨. ସୁତରାଂ ସେମାନେ ଉଭୟେ (ଅର୍ଥାତ୍ ଆଦମ ଓ ତାହାଙ୍କର ସଙ୍ଗୀ) ସେହି ବୃକ୍ଷରୁ କିଛି (ଫଳ) ଭକ୍ଷଣ କଲେ ଯାହା ଫଳରେ କି ସେ ଦୁହିଁଙ୍କର ଦୁର୍ବଳତା (ଅର୍ଥାତ୍ ନଗ୍ନତା) ସେମାନଙ୍କ ପ୍ରତି ପ୍ରକଟିତ ହେଲା, ଏବଂ ସେ ଦୁହେଁ ନିଜକୁ ବୈକୁଣ୍ଠର ସୁନ୍ଦର ସାମଗ୍ରୀ [2](ଅର୍ଥାତ୍ ସତ୍କର୍ମ) ଦ୍ୱାରା ଆବୃତ କରିବାକୁ ଲାଗିଲେ ; ଏବଂ ଆଦମ ନିଜ ପାଳନକର୍ତ୍ତାଙ୍କର ଅବଜ୍ଞା କଲେ, ତେଣୁ ସେ ସତ୍ମାର୍ଗରୁ ବିଭ୍ରାନ୍ତ ହେଲେ ।

ثُمَّ اجْتَبٰهُ رَبُّهٗ فَتَابَ عَلَيْهِ وَهَدٰى ﴿١٢٣﴾

୧୨୩. ତା'ପରେ ତାଙ୍କ ପାଳନକର୍ତ୍ତା ତାହାଙ୍କୁ ମନୋନୀତ କରି ତାହାଙ୍କ ପ୍ରତି କୃପା ଦୃଷ୍ଟି ପ୍ରଦାନ କଲେ ଓ ତାଙ୍କୁ ସତ୍ ପଥ ପ୍ରଦର୍ଶିତ କରିଥିଲେ ।

قَالَ اهْبِطَا مِنْهَا جَمِيْعًا ۢ بَعْضُكُمْ لِبَعْضٍ عَدُوٌّ ۚ فَاِمَّا يَاْتِيَنَّكُمْ مِّنِّيْ هُدًى ۙ فَمَنِ اتَّبَعَ هُدَايَ فَلَا يَضِلُّ وَلَا يَشْقٰى ﴿١٢٤﴾

୧୨୪. (ଅଲ୍ଲାହ) କହିଲେ, "ତୁମେ ଉଭୟ (ଗୋଷ୍ଠୀ) ଏଠାରୁ ବାହାରି ଯାଅ ; ତୁମମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କର ଶତ୍ରୁ ହେବେ ; ସୁତରାଂ ଯଦି ଆମଠାରୁ ତୁମମାନଙ୍କ ନିକଟକୁ ସଦୁପଦେଶ ଆସିବ ତେବେ ଯେ କେହି ଆମର ସଦୁପଦେଶକୁ ଅନୁସରଣ କରିବ ସେ କଦାପି ପଥଭ୍ରଷ୍ଟ ହେବ ନାହିଁ କି ବିନାଶପ୍ରାପ୍ତ ହେବ ନାହିଁ ।"

وَمَنْ اَعْرَضَ عَنْ ذِكْرِيْ فَاِنَّ لَهٗ مَعِيْشَةً ضَنْكًا وَّنَحْشُرُهٗ يَوْمَ الْقِيٰمَةِ اَعْمٰى ﴿١٢٥﴾

୧୨୫. "ଏବଂ ଆମେ ସ୍ମରଣ କରାଇବା ସତ୍ତ୍ୱେ ଯେ କେହି ବିମୁଖ ହେବ ସେ ଦୁଃଖଦାୟକ ଜୀବନ ଲାଭ କରିବ, ଏବଂ କୟାମତ ଦିନ ଆମେ ତାହାକୁ ଅନ୍ଧ ଭାବରେ ଉଠାଇବୁ ।"

---

୧. ୭ : ୨୧ର ଟୀକା ଦ୍ରଷ୍ଟବ୍ୟ ।

୨. ୭ : ୨୩ର ଟୀକା ଦ୍ରଷ୍ଟବ୍ୟ ।

قَالَ رَبِّ لِمَ حَشَرْتَنِيٓ أَعْمَىٰ وَقَدْ كُنتُ بَصِيرًا ﴿١٢٥﴾

୧୨୬. (ଯାହା ହେତୁ) ସେ କହିବ, "ହେ ମୋର ପାଳନକର୍ତ୍ତା ! ତୁମେ କାହିଁକି ମୋତେ ଅନ୍ଧ ଭାବରେ ଉଠାଇଲ ଅଥଚ ମୁଁ (ପୂର୍ବରୁ) ଭଲ ଭାବରେ ଦେଖି ପାରୁଥିଲି ?"

قَالَ كَذَٰلِكَ أَتَتْكَ ءَايَٰتُنَا فَنَسِيتَهَا ۖ وَكَذَٰلِكَ ٱلْيَوْمَ تُنسَىٰ ﴿١٢٦﴾

୧୨୭. (ଏଥିଉତ୍ତାରୁ) ଅଲ୍ଲାହ କହିବେ, "ତୁମ ନିକଟକୁ ମଧ୍ୟ ଆମର ନିଦର୍ଶନମାନ ଆସିଥିଲା ; ଯାହାକୁ ତୁମେ ପାସୋରି ଦେଇଥିଲ ; ସୁତରାଂ ଆଜି (ଅଲ୍ଲାହଙ୍କର କୃପା ବିତରଣ କାଳରେ) ତୁମେ ମଧ୍ୟ ପରିତ୍ୟକ୍ତ ହେବ ।"

وَكَذَٰلِكَ نَجْزِى مَنْ أَسْرَفَ وَلَمْ يُؤْمِنۢ بِـَٔايَٰتِ رَبِّهِۦ ۚ وَلَعَذَابُ ٱلْءَاخِرَةِ أَشَدُّ وَأَبْقَىٰٓ ﴿١٢٧﴾

୧୨୮. ଏବଂ ଯେ କେହି (ଅଲ୍ଲାହଙ୍କ ବ୍ୟବସ୍ଥିତ ବିଧାନରୁ) ସୀମା ଲଂଘନ କରେ ଓ ନିଜ ପାଳନକର୍ତ୍ତାଙ୍କ ନିଦର୍ଶନ ଗୁଡିକରେ ବିଶ୍ୱାସ କରେ ନାହିଁ ତାହାକୁ ଆମେ ଏହିପରି ପ୍ରତିଫଳ ଦେଉ; (ଏହା ତ କେବଳ ପାର୍ଥିବ ଅବସ୍ଥା) ଏବଂ ପରକାଳର ଶାସ୍ତି ଏହାଠାରୁ କଠୋରତର ଓ ବହୁକାଳ ସ୍ଥାୟୀ ହେବ ।

أَفَلَمْ يَهْدِ لَهُمْ كَمْ أَهْلَكْنَا قَبْلَهُم مِّنَ ٱلْقُرُونِ يَمْشُونَ فِى مَسَٰكِنِهِمْ ۗ إِنَّ فِى ذَٰلِكَ لَءَايَٰتٍ لِّأُو۟لِى ٱلنُّهَىٰ ﴿١٢٨﴾

୧୨୯. ତାହାହେଲେ କ'ଣ ସେମାନଙ୍କୁ ଏଥିରୁ ଶିକ୍ଷା ମିଳିଲା ନାହିଁ ଯେ ସେମାନଙ୍କ ପୂର୍ବବର୍ତ୍ତୀ ଅନେକ ସମ୍ପ୍ରଦାୟକୁ ଆମେ ଧ୍ୱଂସ କରିଅଛୁ ଯାହାଙ୍କର ନିବାସସ୍ଥାନରେ ଏମାନେ ଚଳପ୍ରଚଳ ହେଉଛନ୍ତି ? ବୁଦ୍ଧିମାନ୍ ଲୋକମାନଙ୍କ ସକାଶେ ଏଥିରେ ନିଦର୍ଶନ ମାନ ରହିଅଛି ।

ରୁ : ୮

وَلَوْلَا كَلِمَةٌ سَبَقَتْ مِن رَّبِّكَ لَكَانَ لِزَامًا وَأَجَلٌ مُّسَمًّى ﴿١٢٩﴾

୧୩୦. ଏବଂ ଯଦି ତୁମ ପାଳନକର୍ତ୍ତାଙ୍କଠାରୁ ପୂର୍ବରୁ ଗୋଟିଏ ବିଷୟ ବୃତାନ୍ତ ହୋଇ ନଥାନ୍ତା ଓ ସମୟ ମଧ୍ୟ ନିର୍ଦ୍ଦିଷ୍ଟ ହୋଇ ନଥାନ୍ତା, ତେବେ (ସେମାନଙ୍କ ପାଇଁ ଏହି) ଶାସ୍ତି ଚିରସ୍ଥାୟୀ ହୋଇଥାନ୍ତା ।

فَٱصْبِرْ عَلَىٰ مَا يَقُولُونَ وَسَبِّحْ بِحَمْدِ رَبِّكَ قَبْلَ طُلُوعِ ٱلشَّمْسِ وَقَبْلَ غُرُوبِهَا ۖ وَمِنْ ءَانَآئِ ٱلَّيْلِ فَسَبِّحْ وَأَطْرَافَ ٱلنَّهَارِ لَعَلَّكَ تَرْضَىٰ ﴿١٣٠﴾

୧୩୧. ସୁତରାଂ ଏମାନେ ଯାହାକିଛି କହୁଛନ୍ତି ସେଥିପାଇଁ ତୁମେ ଧୈର୍ଯ୍ୟ ଧାରଣ କର, ଏବଂ ସୂର୍ଯ୍ୟୋଦୟ ପୂର୍ବରୁ ତଥା ଅସ୍ତ ହେବା ପୂର୍ବରୁ ପ୍ରଶଂସା-ପୂର୍ବକ ତୁମ ପାଳନକର୍ତ୍ତାଙ୍କର ଗୁଣଗାନ କର ; ଏବଂ ରାତ୍ରିର ବିଭିନ୍ନ ଭାଗରେ ତଥା ଦିବସର ପ୍ରତ୍ୟେକ ଭାଗରେ ତାହାଙ୍କର ଗୁଣଗାନ କର ଯାହା ଫଳରେ (ତାହାଙ୍କ କୃପା ଲାଭ କରି) ତୁମେ ତୃପ୍ତ ହେବ ।

୧୩୨. ଏବଂ ଆମେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଯାହା କିଛି ପାର୍ଥିବ ଜୀବନରେ ଚାକଚକ୍ୟ ପ୍ରଦାନ କରିଅଛୁ ତୁମେ ନିଜ ଦୃଷ୍ଟି ବିସ୍ତାରିତ କରି ଦେଖ ନାହିଁ ; (କାରଣ ସେଗୁଡିକ ସେମାନଙ୍କୁ ଏଥି ସକାଶେ ପ୍ରଦାନ କରାଯାଇଅଛି ଯେ) ତଦ୍ଦ୍ୱାରା ଆମେ ସେମାନଙ୍କୁ ପରୀକ୍ଷା କରିବୁ ଏବଂ ତୁମ ପାଳନକର୍ତ୍ତାଙ୍କର ପ୍ରଦତ୍ତ ଜୀବିକା ସର୍ବୋତ୍କୃଷ୍ଟ ଓ ସ୍ଥାୟୀ ଅଟେ ।

وَلَا تَمُدَّنَّ عَيْنَيْكَ إِلَىٰ مَا مَتَّعْنَا بِهِۦٓ أَزْوَٰجًا مِّنْهُمْ زَهْرَةَ ٱلْحَيَوٰةِ ٱلدُّنْيَا لِنَفْتِنَهُمْ فِيهِ ۚ وَرِزْقُ رَبِّكَ خَيْرٌ وَأَبْقَىٰ ﴿١٣١﴾

୧୩୩. ଏବଂ ତୁମେ ଆପଣା ଲୋକମାନଙ୍କୁ ନମାଜ ପାଠ କରିବା ପାଇଁ ତାଗିଦ କର ଏବଂ ତୁମେ ନିଜେ ମଧ୍ୟ ଏଥିରେ ଦୃଢ ରୁହ ; ଏବଂ ଆମେ ତୁମଠାରୁ ଜୀବିକା ଜିଜ୍ଞାସା କରୁ ନାହୁଁ ବରଂ ଆମେ ତୁମଙ୍କୁ ଜୀବିକା ପ୍ରଦାନ କରୁ ଏବଂ ଧର୍ମଭୀରୁତାର ପୁରସ୍କାର ହିଁ ଉତ୍କୃଷ୍ଟତର ।

وَأْمُرْ أَهْلَكَ بِٱلصَّلَوٰةِ وَٱصْطَبِرْ عَلَيْهَا ۖ لَا نَسْـَٔلُكَ رِزْقًا ۖ نَّحْنُ نَرْزُقُكَ ۗ وَٱلْعَٰقِبَةُ لِلتَّقْوَىٰ ﴿١٣٢﴾

୧୩୪. ଏବଂ ସେମାନେ କହନ୍ତି, "ସେ କାହିଁକି ଆମମାନଙ୍କ ନିକଟକୁ ନିଜ ପାଳନକର୍ତ୍ତାଙ୍କଠାରୁ କୌଣସି ନିଦର୍ଶନ ଆଣୁ ନାହାନ୍ତି ?" କଣ ସେମାନଙ୍କ ନିକଟକୁ ଏପରି ନିଦର୍ଶନ ଆସି ନାହିଁ ଯାହା କି ପୂର୍ବବର୍ତ୍ତୀ (ଧର୍ମ) ଗ୍ରନ୍ଥ ମାନଙ୍କରେ ବର୍ଣ୍ଣିତ ହୋଇଅଛି ?

وَقَالُوا۟ لَوْلَا يَأْتِينَا بِـَٔايَةٍ مِّن رَّبِّهِۦٓ ۚ أَوَلَمْ تَأْتِهِم بَيِّنَةُ مَا فِى ٱلصُّحُفِ ٱلْأُولَىٰ ﴿١٣٣﴾

୧୩୫. ଏବଂ ଯଦି ଆମେ ସେମାନଙ୍କୁ ଏହା ପୂର୍ବରୁ (ଅର୍ଥାତ୍ ଏହି ରସୁଲଙ୍କ ଆଗମନ ପୂର୍ବରୁ) କୌଣସି ଶାସ୍ତି ଦ୍ୱାରା ଧ୍ୱଂସ କରିଥାନ୍ତୁ, ତେବେ ସେମାନେ କହିଥାନ୍ତେ, "ହେ ଆମର ପାଳନକର୍ତ୍ତା ! ତୁମେ ଆମମାନଙ୍କ ପ୍ରତି କାହିଁକି କୌଣସି ରସୁଲ ପ୍ରେରଣ କଲ ନାହିଁ, (ଯଦି ତୁମେ ସେପରି କରିଥା'ନ୍ତ) ତେବେ ଆମେମାନେ ଅପମାନିତ ଓ ଲାଞ୍ଛିତ ହେବା ପୂର୍ବରୁ ତୁମର ନିଦର୍ଶନଗୁଡିକୁ ଅନୁସରଣ କରିଥା'ନ୍ତୁ ।"

وَلَوْ أَنَّآ أَهْلَكْنَٰهُم بِعَذَابٍ مِّن قَبْلِهِۦ لَقَالُوا۟ رَبَّنَا لَوْلَآ أَرْسَلْتَ إِلَيْنَا رَسُولًا فَنَتَّبِعَ ءَايَٰتِكَ مِن قَبْلِ أَن نَّذِلَّ وَنَخْزَىٰ ﴿١٣٤﴾

୧୩୬. (ତୁମେ) କୁହ, "ପ୍ରତ୍ୟେକ ବ୍ୟକ୍ତି ନିଜ ପରିଣାମର ପ୍ରତୀକ୍ଷା କରୁଛନ୍ତି ; ସୁତରାଂ ତୁମେମାନେ ମଧ୍ୟ (ନିଜ ପରିଣାମକୁ) ପ୍ରତୀକ୍ଷା କର ; ଏବଂ ତୁମେମାନେ ଶୀଘ୍ର ଜାଣି ପାରିବ ଯେ କେଉଁ ବ୍ୟକ୍ତି ସରଳ ଓ ସତ୍‌ପଥର ଅନୁସରଣ କରୁଅଛି (ଓ କିଏ କରୁନାହିଁ) ।"

قُلْ كُلٌّ مُّتَرَبِّصٌ فَتَرَبَّصُوا۟ ۖ فَسَتَعْلَمُونَ مَنْ أَصْحَٰبُ ٱلصِّرَٰطِ ٱلسَّوِىِّ وَمَنِ ٱهْتَدَىٰ ﴿١٣٥﴾

سُوْرَةُ الْاَنْبِيَاۗءِ مَكِّيَّةٌ (٢١)

## ଅଲ-ଅନ୍‌ବିୟା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୧୩ ଟି ଆୟତ ଓ ୭ଟି ରୁକୁ ଅଛି)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

୨. ଲୋକମାନଙ୍କଠାରୁ ସେମାନଙ୍କ ହିସାବ ନେବାର ସମୟ ନିକଟବର୍ତ୍ତୀ ହୋଇଅଛି, ତଥାପି ସେମାନେ ଅମନୋଯୋଗୀ ହୋଇ ବିମୁଖ ହେଉଛନ୍ତି ।

୩. ଯେତେବେଳେ ସେମାନଙ୍କ ନିକଟକୁ ସେମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ କୌଣସି ନୂତନ ଉପଦେଶ ଆସେ, ସେତେବେଳେ ସେମାନେ ତାହାକୁ ଶୁଣନ୍ତି ଓ ପରିହାସ କରନ୍ତି ।

୪. ସେମାନଙ୍କ ମନ ଉଦାସୀନତାର ବଶବର୍ତ୍ତୀ ହୋଇଅଛି, ଏବଂ ସେହି ଅତ୍ୟାଚାରୀମାନେ ଗୁପ୍ତ ମନ୍ତ୍ରଣା କରନ୍ତି (ଓ କହନ୍ତି), "ଏ (ବ୍ୟକ୍ତି) ତୁମମାନଙ୍କ ସଦୃଶ ଜଣେ ମନୁଷ୍ୟ ଅଟେ; ତାହାହେଲେ କ'ଣ ତୁମେମାନେ ଜାଣିଶୁଣି ତାଙ୍କ ପ୍ରତାରଣାର ବଶବର୍ତ୍ତୀ ହେଉଅଛ ?"

୫. (ଏହା ଶୁଣି ହଜରତ ମହମ୍ମଦ) କହିଲେ, "ଆକାଶ ଓ ପୃଥିବୀରେ ଯେଉଁ ବିଷୟ କୁହାଯାଏ, ଆମର ପାଳନକର୍ତ୍ତା ସେ ସବୁ ଜାଣନ୍ତି; ଏବଂ ସେ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।"

୬. ବରଂ ସେ (ବିରୋଧୀ)ମାନେ ଏହା ମଧ୍ୟ କହିଲେ, "ଏ (ବାଣୀ) ବିଭ୍ରାନ୍ତକର ସ୍ୱପ୍ନ, ବରଂ ସେ ନିଜେ ଏହାକୁ ଜାଣିଶୁଣି ରଚନା କରିଛନ୍ତି; ବରଂ ସେ ଜଣେ କବି ସ୍ୱଭାବର ଲୋକ, ଯାହାଙ୍କର ମନ ମଧ୍ୟରେ ବିଭିନ୍ନ ପ୍ରକାର ଚିନ୍ତାଧାରାର ଉଦ୍ରେକ ହେଉଥାଏ; ସୁତରାଂ ସେ ଆମମାନଙ୍କ ନିକଟକୁ କୌଣସି ନିଦର୍ଶନ ନେଇ ଆସନ୍ତୁ ଯେପରି ପୂର୍ବବର୍ତ୍ତୀ ରସୁଲମାନେ [୧] ନିଦର୍ଶନ ସହିତ ପ୍ରେରିତ ହୋଇଥିଲେ ।"

بِسْمِ اللّٰهِ الرَّحْمٰنِ الرَّحِيْمِ ﴿١﴾

اِقْتَرَبَ لِلنَّاسِ حِسَابُهُمْ وَهُمْ فِيْ غَفْلَةٍ مُّعْرِضُوْنَ ﴿٢﴾

مَا يَاْتِيْهِمْ مِّنْ ذِكْرٍ مِّنْ رَّبِّهِمْ مُّحْدَثٍ اِلَّا اسْتَمَعُوْهُ وَهُمْ يَلْعَبُوْنَ ﴿٣﴾

لَاهِيَةً قُلُوْبُهُمْ ۭ وَاَسَرُّوا النَّجْوَى ڰ الَّذِيْنَ ظَلَمُوْا ڰ هَلْ هٰذَآ اِلَّا بَشَرٌ مِّثْلُكُمْ ۚ اَفَتَاْتُوْنَ السِّحْرَ وَاَنْتُمْ تُبْصِرُوْنَ ﴿٤﴾

قٰلَ رَبِّيْ يَعْلَمُ الْقَوْلَ فِي السَّمَاۗءِ وَالْاَرْضِ ۡ وَهُوَ السَّمِيْعُ الْعَلِيْمُ ﴿٥﴾

بَلْ قَالُوْٓا اَضْغَاثُ اَحْلَامٍۢ بَلِ افْتَرٰىهُ بَلْ هُوَ شَاعِرٌ ښ فَلْيَاْتِنَا بِاٰيَةٍ كَمَآ اُرْسِلَ الْاَوَّلُوْنَ ﴿٦﴾

---

୧. ମକ୍କାବାସୀ ଅବିଶ୍ୱାସକାରୀମାନେ ହଜରତ ମହମ୍ମଦଙ୍କ ଆବିର୍ଭାବ ବିଷୟକ ସିଦ୍ଧାନ୍ତକୁ ସ୍ୱୀକାର କରୁ ନ ଥିଲେ । ତାଙ୍କର ଏହି ଆପତ୍ତିକୁ ବ୍ୟଙ୍ଗାତ୍ମକ ରୀତିରେ ବର୍ଣ୍ଣନା କରାଯାଇଛି । ଏହାର ତାତ୍ପର୍ଯ୍ୟ ହେଉଛି— ସେମାନେ ହଜରତ ମହମ୍ମଦଙ୍କୁ ପଚାରୁଛନ୍ତି ଯେ ଯେତେବେଳେ କି ପୂର୍ବତନ ରସୁଲମାନେ ବିଭିନ୍ନ ପ୍ରକାର ନିଦର୍ଶନ ଆଣିଥିବା ସେ ନିଜେ କହୁଛନ୍ତି ସେତେବେଳେ ସେ କାହିଁକି କୌଣସି ନିଦର୍ଶନ ଆଣୁ ନାହାନ୍ତି ।

୭. ଏମାନଙ୍କ ପୂର୍ବରୁ ଯେଉଁ ଯେଉଁ ଜନବସତିଗୁଡ଼ିକୁ ଆମେ ଧ୍ୱଂସ କରି ଦେଇଥିଲୁ ସେଥିରୁ ମଧ୍ୟ କେହି ବିଶ୍ୱାସ କରି ନ ଥିଲେ; ତେବେ ଏମାନେ କ'ଣ ବିଶ୍ୱାସ କରିବେ ?

مَآ اٰمَنَتْ قَبْلَهُمْ مِّنْ قَرْيَةٍ اَهْلَكْنٰهَا ۚ اَفَهُمْ يُؤْمِنُوْنَ ٦

୮. ଏବଂ ତୁମ ପୂର୍ବରୁ (ମଧ୍ୟ ସବୁବେଳେ) ଆମେ କେବଳ ପୁରୁଷଙ୍କୁ ରସୁଲ ନିଯୁକ୍ତ କରି ପ୍ରେରଣ କରୁଥିଲୁ ଓ ସେମାନଙ୍କ ପ୍ରତି ଆମେ ଓହି ପ୍ରେରଣ କରିଥିଲୁ; (ହେ ଅବିଶ୍ୱାସକାରୀମାନେ !) ଯଦି ତୁମେମାନେ ଏହା ଜାଣି ନ ଥାଅ, ତେବେ ଗ୍ରନ୍ଥଧାରୀମାନଙ୍କୁ (ଏ ବିଷୟ) ପଚାର ।

وَمَآ اَرْسَلْنَا قَبْلَكَ اِلَّا رِجَالًا نُّوْحِيْٓ اِلَيْهِمْ فَسْـَٔلُوْٓا اَهْلَ الذِّكْرِ اِنْ كُنْتُمْ لَا تَعْلَمُوْنَ ٨

୯. ଏବଂ ଆମେ ରସୁଲ-ମାନଙ୍କୁ ଏପରି କୌଣସି ଶରୀର ପ୍ରଦାନ କରି ନ ଥିଲୁ ଯେ ସେମାନେ ଖାଦ୍ୟ ଖାଉ ନ ଥିଲେ; ଏବଂ ସେମାନେ ଅସାଧାରଣ ପରମାୟୁ-ପ୍ରାପ୍ତ ବ୍ୟକ୍ତି ମଧ୍ୟ ନ ଥିଲେ ।

وَمَا جَعَلْنٰهُمْ جَسَدًا لَّا يَاْكُلُوْنَ الطَّعَامَ وَمَا كَانُوْا خٰلِدِيْنَ ٩

୧୦. ଏବଂ ଆମେ ସେମାନଙ୍କ ସହିତ ଯେଉଁ ଅଙ୍ଗୀକାର କରିଥିଲୁ ତାହାକୁ ସମ୍ପୂର୍ଣ୍ଣ କରିଥିଲୁ; ଏବଂ ସେମାନଙ୍କୁ ଓ ସେମାନଙ୍କ ବ୍ୟତୀତ ଅନ୍ୟ ଯେଉଁମାନଙ୍କୁ (ଆମେ) ଇଚ୍ଛା କଲୁ (ଶତ୍ରୁମାନଙ୍କ କବଳରୁ) ରକ୍ଷା କରିଥିଲୁ; ଏବଂ ସୀମା-ଲଂଘନକାରୀଙ୍କୁ ଧ୍ୱଂସ କରିଥିଲୁ ।

ثُمَّ صَدَقْنٰهُمُ الْوَعْدَ فَاَنْجَيْنٰهُمْ وَمَنْ نَّشَآءُ وَاَهْلَكْنَا الْمُسْرِفِيْنَ ١٠

୧୧. ଆମେ ତୁମମାନଙ୍କ ପ୍ରତି ଏପରି ଏକ ଗ୍ରନ୍ଥ ଅବତୀର୍ଣ୍ଣ କରିଅଛୁ ଯହିଁରେ ତୁମମାନଙ୍କ ନିମନ୍ତେ ସମୃଦ୍ଧିର ସାମଗ୍ରୀ ରହିଅଛି; ତାହାହେଲେ କ'ଣ ତୁମେମାନେ ବୁଝି ପାରୁନାହଁ ?

لَقَدْ اَنْزَلْنَآ اِلَيْكُمْ كِتٰبًا فِيْهِ ذِكْرُكُمْ ۚ اَفَلَا تَعْقِلُوْنَ ١١

ରୁ : ୨

୧୨. ଏବଂ କେତେ ଯେ ଜନବସତିକୁ ଆମେ ଧ୍ୱଂସ କରିଦେଲୁ ଯେହେତୁ ସେମାନେ ଅତ୍ୟାଚାର କରୁଥିଲେ ଏବଂ ଆମେ ସେମାନଙ୍କ ପରେ ଅନ୍ୟ ଏକ ସମ୍ପ୍ରଦାୟକୁ ସୃଷ୍ଟି କରିଥିଲୁ ।

وَكَمْ قَصَمْنَا مِنْ قَرْيَةٍ كَانَتْ ظَالِمَةً وَّاَنْشَاْنَا بَعْدَهَا قَوْمًا اٰخَرِيْنَ ١٢

୧୩. ତା'ପରେ ଯେତେବେଳେ ସେ (ଧ୍ୱଂସାଭିମୁଖୀ ଲୋକ)ମାନେ ଆମର ଶାସ୍ତିକୁ ଅନୁଭବ କଲେ, ସେତେବେଳେ ସେମାନେ (ସେଥିରୁ ରକ୍ଷା ପାଇବା ପାଇଁ) ପଳାୟନ କରିବାକୁ ଲାଗିଲେ ।

فَلَمَّآ اَحَسُّوْا بَاْسَنَآ اِذَا هُمْ مِّنْهَا يَرْكُضُوْنَ ١٣

୧୪. (ଆମେ କହିଲୁ), "ପଳାୟନ କର ନାହିଁ, ଏବଂ ଯେଉଁ ସାମଗ୍ରୀମାନ ମାଧ୍ୟମରେ ତୁମେମାନେ ଆରାମଦାୟକ ଜୀବନ ଯାପନ କରୁଥିଲ (ସେହି ଦିଗକୁ) ତଥା ନିଜ ବାସଗୃହ ଆଡକୁ ଫେରିଯାଅ; ଯଦ୍ଦ୍ୱାରା କି ତୁମମାନଙ୍କୁ ଆପଣା କର୍ମ ସଂକ୍ରାନ୍ତରେ ପ୍ରଶ୍ନ କରାଯାଇ ପାରିବ ।"

لَا تَرْكُضُوْا وَارْجِعُوْٓا اِلٰى مَآ اُتْرِفْتُمْ فِيْهِ وَمَسٰكِنِكُمْ لَعَلَّكُمْ تُسْـَٔلُوْنَ ١٤

୧୫. ସେମାନେ ଉତ୍ତର ଦେଲେ, "ହାୟ ! ଆମେମାନେ (ସାରା ଜୀବନ) ଅତ୍ୟାଚାର ହିଁ କରୁଥିଲୁ ।"

قَالُوْا يٰوَيْلَنَآ اِنَّا كُنَّا ظٰلِمِيْنَ ⑮

୧୬. ଆମେ ସେମାନଙ୍କୁ ଏକ କର୍ତ୍ତିତ ଶସ୍ୟ କ୍ଷେତ୍ର ସଦୃଶ କରି ତାହାର ସମସ୍ତ ଶୋଭା ନଷ୍ଟ ନ କରିବା ପର୍ଯ୍ୟନ୍ତ ସେମାନେ ଏହିପରି ବିଳାପ କରି ଚାଲିଥିଲେ ।

فَمَا زَالَتْ تِّلْكَ دَعْوٰىهُمْ حَتّٰى جَعَلْنٰهُمْ حَصِيْدًا خٰمِدِيْنَ ⑯

୧୭. ଏବଂ ଆମେ ଆକାଶ ଓ ପୃଥିବୀକୁ ତଥା ଯାହା କିଛି ସେମାନଙ୍କ ମଧ୍ୟରେ ଅଛି ତାହାକୁ ବୃଥା କ୍ରୀଡ଼ା-କୌତୁକ ଉଦ୍ଦେଶ୍ୟରେ ସୃଷ୍ଟି କରି ନାହୁଁ (ବରଂ ସେମାନଙ୍କ ସୃଷ୍ଟିରେ ଗୂଢ଼ ରହସ୍ୟ ଥିଲା) ।

وَمَا خَلَقْنَا السَّمَآءَ وَالْاَرْضَ وَمَا بَيْنَهُمَا لٰعِبِيْنَ ⑰

୧୮. ଯଦି ଆମେ ଆମୋଦ-ପ୍ରମୋଦ କରିବାକୁ ଇଚ୍ଛା[1] କରିଥା'ନ୍ତୁ, ତେବେ ଆମେ ତାହାର ବ୍ୟବସ୍ଥା ନିଜ ପାଖରେ କରିଥା'ନ୍ତୁ ।

لَوْ اَرَدْنَآ اَنْ نَّتَّخِذَ لَهْوًا لَّاتَّخَذْنٰهُ مِنْ لَّدُنَّآ ۖ اِنْ كُنَّا فٰعِلِيْنَ ⑱

୧୯. ପରନ୍ତୁ ଆମେ ସତ୍ୟକୁ ଅସତ୍ୟ ଉପରେ ନିକ୍ଷେପ କରୁ, ଯାହା ତାହାର ମୁଣ୍ଡ ଫଟାଇ ଦିଏ ଓ ସେ (ଅସତ୍ୟ) ତୁରନ୍ତ ହିଁ ପଳାୟନ କରେ (ଅର୍ଥାତ୍ ଅସତ୍ୟ ସତ୍ୟ ଦ୍ୱାରା ବିଲୁପ୍ତ ହୁଏ); ଏବଂ ତୁମେମାନେ ଯାହା କହୁଅଛ ତାହା ଅତ୍ୟନ୍ତ ପରିତାପର ବିଷୟ ।

بَلْ نَقْذِفُ بِالْحَقِّ عَلَى الْبَاطِلِ فَيَدْمَغُهٗ فَاِذَا هُوَ زَاهِقٌ ۚ وَلَكُمُ الْوَيْلُ مِمَّا تَصِفُوْنَ ⑲

୨୦. ଏବଂ ଯେ କେହି ଆକାଶ ଓ ପୃଥିବୀରେ ଅଛନ୍ତି ସେମାନେ ସବୁ ତାହାଙ୍କର; ଏବଂ ଯେଉଁମାନେ ତାହାଙ୍କ ନିକଟରେ ଅଛନ୍ତି ସେମାନେ ତାହାଙ୍କ ଉପାସନାରୁ ବିମୁଖ ହୁଅନ୍ତି ନାହିଁ କି ଥକି ଯାଆନ୍ତି ନାହିଁ ।

وَلَهٗ مَنْ فِي السَّمٰوٰتِ وَالْاَرْضِ ۗ وَمَنْ عِنْدَهٗ لَا يَسْتَكْبِرُوْنَ عَنْ عِبَادَتِهٖ وَلَا يَسْتَحْسِرُوْنَ ⑳

୨୧. ସେମାନେ ଦିବାରାତ୍ର ତାହାଙ୍କର ଗୁଣ ଗାନ କରନ୍ତି ଓ ସେଥିରୁ ନିବୃତ୍ତ ହୁଅନ୍ତି ନାହିଁ ।

يُسَبِّحُوْنَ الَّيْلَ وَالنَّهَارَ لَا يَفْتُرُوْنَ ㉑

୨୨. ତେବେ କ'ଣ ସେମାନେ ଭୂପୃଷ୍ଠରୁ ଏପରି ଉପାସ୍ୟମାନଙ୍କୁ ଗ୍ରହଣ କରିଛନ୍ତି ଯେଉଁମାନେ ସୃଷ୍ଟି କରନ୍ତି ?

اَمِ اتَّخَذُوْٓا اٰلِهَةً مِّنَ الْاَرْضِ هُمْ يُنْشِرُوْنَ ㉒

୨୩. ଯଦି ଏହି ଦୁଇଟିରେ (ଅର୍ଥାତ୍ ଆକାଶ ଓ ପୃଥିବୀରେ) ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ[2] ଥାଆନ୍ତେ, ତେବେ ଉଭୟ ଧ୍ୱଂସ ହୋଇ ଯାଆନ୍ତେ; ସୁତରାଂ ସିଂହାସନର ଅଧିକାରୀ ଅଲ୍ଲାହ ସମସ୍ତ ତ୍ରୁଟିରୁ ତଥା ସେମାନେ ଯାହା (ଆରୋପ କରି) କହନ୍ତି ତହିଁରୁ ପବିତ୍ର ।

لَوْ كَانَ فِيْهِمَآ اٰلِهَةٌ اِلَّا اللّٰهُ لَفَسَدَتَا ۚ فَسُبْحٰنَ اللّٰهِ رَبِّ الْعَرْشِ عَمَّا يَصِفُوْنَ ㉓

---

୧. ଅର୍ଥାତ୍ କାହିଁକି ଯୀଶୁଙ୍କୁ ସଂସାରକୁ ପଠାନ୍ତେ ; ସେ ତାଙ୍କୁ ନିଜ ପାଖରେ ରଖି ପାରିଥା'ନ୍ତେ ।

୨. ଅର୍ଥାତ୍ ଏକାଧିକ ଉପାସ୍ୟ ଆବଶ୍ୟକ ହେଉଥିଲେ ଯଦ୍ୱାରା ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ନୂଆ ନୂଆ ସୌରଜଗତ ମଧ୍ୟ ସୃଷ୍ଟିକରି ଥାଆନ୍ତେ ଅନ୍ୟଥା ସେମାନଙ୍କ ମଧ୍ୟରୁ କେହି ଉପାସ୍ୟ ବୋଲି ସ୍ୱୀକୃତ ହୋଇପାରି ନ ଥା'ନ୍ତେ । ଯଦି ଏକାଧିକ ସୌରଜଗତ ଥାଆନ୍ତା ତେବେ ବିଭିନ୍ନ ପ୍ରକାର ପ୍ରାକୃତିକ ନିୟମ ମଧ୍ୟ ଥାଆନ୍ତା, ଫଳରେ ପୃଥିବୀ ବିପଦଗ୍ରସ୍ତ ହୋଇ ଧ୍ୱଂସ ହୋଇଯାଆନ୍ତା ।

لَا يُسْـَٔلُ عَمَّا يَفْعَلُ وَهُمْ يُسْـَٔلُوْنَ ﴿٢٤﴾

୨୪. ସେ ଯାହା କିଛି କରନ୍ତି ସେ ବିଷୟରେ ତାହାଙ୍କୁ ପ୍ରଶ୍ନ କରାହେବ ନାହିଁ, ଅଥଚ ସେ (ଲୋକ)ମାନଙ୍କୁ ପ୍ରଶ୍ନ କରାହେବ ।

اَمِ اتَّخَذُوْا مِنْ دُوْنِهٖٓ اٰلِهَةً ۭ قُلْ هَاتُوْا بُرْهَانَكُمْ ۚ هٰذَا ذِكْرُ مَنْ مَّعِيَ وَذِكْرُ مَنْ قَبْلِيْ ۭ بَلْ اَكْثَرُهُمْ لَا يَعْلَمُوْنَ ۙ الْحَقَّ فَهُمْ مُّعْرِضُوْنَ ﴿٢٥﴾

୨୫. ତେବେ କ'ଣ ସେମାନେ ତାହାଙ୍କ ବ୍ୟତୀତ ଅନ୍ୟ ଉପାସ୍ୟ ଗ୍ରହଣ କରିଛନ୍ତି ? (ତୁମେ) କୁହ, "ନିଜ ପ୍ରମାଣ ଉପସ୍ଥାପନ କର; ଯେଉଁମାନେ ଆମ୍ଭ ସହିତ ଅଛନ୍ତି ଓ ଯେଉଁମାନେ ଆମ୍ଭ ପୂର୍ବରୁ ଥିଲେ[1] ସେମାନଙ୍କ ପାଇଁ ଏହା (ଅର୍ଥାତ୍ ଏହି ପବିତ୍ର କୋରାନ) ଏକ ସମ୍ମାନ (ର ଉତ୍ସ) ଅଟେ." କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ସତ୍ୟକୁ ଚିହ୍ନନ୍ତି ନାହିଁ ସେଥିଯୋଗୁଁ ସେଥିରୁ ବିମୁଖ ହୁଅନ୍ତି ।

وَمَآ اَرْسَلْنَا مِنْ قَبْلِكَ مِنْ رَّسُوْلٍ اِلَّا نُوْحِيْٓ اِلَيْهِ اَنَّهٗ لَآ اِلٰهَ اِلَّآ اَنَا فَاعْبُدُوْنِ ﴿٢٦﴾

୨୬. ଏବଂ ଆମ୍ଭେ ତୁମ୍ଭ ପୂର୍ବରୁ ଯେତେ ଜଣ ରସୁଲ ପ୍ରେରଣ କରିଅଛୁ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଆମ୍ଭେ ଏହି ଓହି କରିଥିଲୁ ଯେ ବାସ୍ତବରେ ଆମ୍ଭେ ହିଁ ଏକମାତ୍ର ଉପାସ୍ୟ ଅଟୁ, ସୁତରାଂ ଆମ୍ଭର ଉପାସନା କର ।

وَقَالُوا اتَّخَذَ الرَّحْمٰنُ وَلَدًا سُبْحٰنَهٗ ۭ بَلْ عِبَادٌ مُّكْرَمُوْنَ ۙ﴿٢٧﴾

୨୭. ଏବଂ (ସେହି ଲୋକମାନେ) କହନ୍ତି, "ଦୟାବାନ୍ (ଅଲ୍ଲାହ) ପୁତ୍ର ଗ୍ରହଣ କରିଛନ୍ତି, " (ସେମାନଙ୍କର ଏହି କଥା ଠିକ୍ ନୁହେଁ); ସେ ତ ସମସ୍ତ ତ୍ରୁଟିରୁ ପବିତ୍ର; ବାସ୍ତବତା ଏହି ଯେ (ସେମାନେ ଯେଉଁମାନଙ୍କୁ ଅଲ୍ଲାହଙ୍କର ପୁତ୍ର-ସନ୍ତାନ ବୋଲି ଅଭିହିତ କରନ୍ତି) ସେମାନେ ଅଲ୍ଲାହଙ୍କର କତିପୟ ଭକ୍ତ ଅଟନ୍ତି ଯେଉଁମାନଙ୍କୁ (ଅଲ୍ଲାହଙ୍କ ତରଫରୁ) ସମ୍ମାନ ପ୍ରାପ୍ତ ହୋଇଅଛି ।

لَا يَسْبِقُوْنَهٗ بِالْقَوْلِ وَهُمْ بِاَمْرِهٖ يَعْمَلُوْنَ ﴿٢٨﴾

୨୮. ସେମାନେ ଅଲ୍ଲାହଙ୍କର କଥା ଉପରେ ଗୋଟିଏ ହେଲେ ଶବ୍ଦ ଅଧିକ କହନ୍ତି ନାହିଁ, ଏବଂ ସେମାନେ (କେବଳ) ତାହାଙ୍କର ଆଦେଶ ମୁତାବକ କାର୍ଯ୍ୟ କରନ୍ତି ।

يَعْلَمُ مَا بَيْنَ اَيْدِيْهِمْ وَمَا خَلْفَهُمْ وَلَا يَشْفَعُوْنَ ۙ اِلَّا لِمَنِ ارْتَضٰى وَهُمْ مِّنْ خَشْيَتِهٖ مُشْفِقُوْنَ ﴿٢٩﴾

୨୯. ଯାହା କିଛି ସେମାନଙ୍କର ଭବିଷ୍ୟତରେ ଘଟିବାର ଅଛି ଓ ଯାହା କିଛି ସେମାନଙ୍କର ଅତୀତରେ ଘଟିଅଛି ତାହାକୁ ସେ (ଅଲ୍ଲାହ) ଜାଣନ୍ତି; ଏବଂ ସେ ଯାହା ପ୍ରତି ସନ୍ତୁଷ୍ଟ ତାହାଙ୍କ ବ୍ୟତୀତ ଅନ୍ୟ କାହାରି ପାଇଁ ସେମାନେ ସୁପାରିଶ କରନ୍ତି ନାହିଁ, ଏବଂ ତାହାଙ୍କ ଭୟରେ ପ୍ରକମ୍ପିତ ହୁଅନ୍ତି ।

وَمَنْ يَّقُلْ مِنْهُمْ اِنِّيْٓ اِلٰهٌ مِّنْ دُوْنِهٖ فَذٰلِكَ نَجْزِيْهِ جَهَنَّمَ ۭ كَذٰلِكَ نَجْزِي الظّٰلِمِيْنَ ﴿٣٠﴾ ع

୩୦. ଏବଂ ସେମାନଙ୍କ ମଧ୍ୟରୁ ଯେ କେହି କହିବ, "ମୁଁ ହିଁ ଅଲ୍ଲାହଙ୍କ ପରିବର୍ତ୍ତେ ଉପାସ୍ୟ ଅଟେ," ଆମ୍ଭେ ତାହାକୁ ନରକରେ ନିକ୍ଷେପ କରିବୁ; ଏବଂ ଆମ୍ଭେ ଅତ୍ୟାଚାରୀମାନଙ୍କୁ ଏହିପରି ପ୍ରତିଫଳ ପ୍ରଦାନ କରିଥାଉ ।

[1] ହଜରତ ମହମ୍ମଦଙ୍କ ପୂର୍ବବର୍ତ୍ତୀ ରସୁଲମାନଙ୍କ ପ୍ରତି ସେମାନଙ୍କ ନିଜ ନିଜ ସମ୍ପ୍ରଦାୟର ଲୋକମାନେ ଯେଉଁ ସବୁ ଦୋଷାରୋପ କରିଥିଲେ ପବିତ୍ର କୋରାନରେ ସେ ସବୁକୁ ଖଣ୍ଡନ କରାଯାଇ ସେହି ରସୁଲମାନଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦାନ କରାଯାଇଛି । ଅତଏବ ପବିତ୍ର କୋରାନ ହିଁ ସେମାନଙ୍କ ସମ୍ମାନର ଉତ୍ସ ।

ରୁ :୩

୩୧. କ'ଣ ଅବିଶ୍ୱାସକାରୀମାନେ ଏହା ଲକ୍ଷ୍ୟ କରି ନାହାନ୍ତି ଯେ ଉଭୟ ଆକାଶ ଓ ପୃଥିବୀ ଅବରୁଦ୍ଧ ହୋଇ ରହିଥିଲା; ସୁତରାଂ ଆମ୍ଭେ ତାହାକୁ ଉନ୍ମୁକ୍ତ [୧] କରି ଦେଲୁ; ଏବଂ ଆମ୍ଭେ ଜଳ ଦ୍ୱାରା ପ୍ରତ୍ୟେକ ସଜୀବକୁ ଜୀବନ ପ୍ରଦାନ କଲୁ; ଏହା ସତ୍ତ୍ୱେ କ'ଣ ସେମାନେ ବିଶ୍ୱାସ କରିବେ ନାହିଁ ?

أَوَلَمْ يَرَ الَّذِينَ كَفَرُوا أَنَّ السَّمٰوٰتِ وَالْأَرْضَ كَانَتَا رَتْقًا فَفَتَقْنٰهُمَا ۖ وَجَعَلْنَا مِنَ الْمَاءِ كُلَّ شَيْءٍ حَيٍّ ۖ أَفَلَا يُؤْمِنُونَ ۝٣١

୩୨. ଏବଂ ଆମ୍ଭେ ଭୂପୃଷ୍ଠରେ ଏଥି ସକାଶେ ସୁଦୃଢ ପର୍ବତମାନ ପ୍ରତିଷ୍ଠିତ କରିଅଛୁ ଯଦ୍ୱାରା ତାହା (ଅର୍ଥାତ୍ ଭୂପୃଷ୍ଠ) ସେ (ଭୂପୃଷ୍ଠବାସୀ)ମାନଙ୍କ ସହ ଭୂକମ୍ପରେ ଗ୍ରସ୍ତ ନ ହୁଏ; ଏବଂ ଆମ୍ଭେ ତହିଁରେ ପ୍ରଶସ୍ତ ପଥମାନ ମଧ୍ୟ ତିଆରି କରିଅଛୁ ଯଦ୍ୱାରା ଏ ଲୋକମାନେ (ବିଭିନ୍ନ ସ୍ଥାନକୁ) ଯାତାୟାତ କରିପାରିବେ ।

وَجَعَلْنَا فِي الْأَرْضِ رَوَاسِيَ أَنْ تَمِيدَ بِهِمْ وَجَعَلْنَا فِيهَا فِجَاجًا سُبُلًا لَعَلَّهُمْ يَهْتَدُونَ ۝٣٢

୩୩. ଏବଂ ଆମ୍ଭେ ଆକାଶକୁ (ସୁରକ୍ଷାର ମାଧ୍ୟମ ସ୍ୱରୂପ) ଏକ ସୁଦୃଢ଼ ଗମ୍ବୁଜ ରୂପେ ଗଢିଅଛୁ; ତଥାପି ସେମାନେ ଏହି (ସ୍ୱର୍ଗୀୟ) ନିଦର୍ଶନ-ଗୁଡ଼ିକରୁ ବିମୁଖ ହେଉଛନ୍ତି ।

وَجَعَلْنَا السَّمَاءَ سَقْفًا مَحْفُوظًا ۖ وَهُمْ عَنْ آيَاتِهَا مُعْرِضُونَ ۝٣٣

୩୪. ଏବଂ ସେ ହିଁ ରାତ୍ରି ଓ ଦିବସକୁ ତଥା ସୂର୍ଯ୍ୟ ଓ ଚନ୍ଦ୍ରକୁ ସୃଷ୍ଟି କରିଛନ୍ତି; ଏ ସବୁ (ଗ୍ରହ ନକ୍ଷତ୍ର) ନିଜ ନିଜ କକ୍ଷରେ ନିର୍ବିଘ୍ନରେ ପରିକ୍ରମା କରୁଛନ୍ତି ।

وَهُوَ الَّذِي خَلَقَ اللَّيْلَ وَالنَّهَارَ وَالشَّمْسَ وَالْقَمَرَ ۖ كُلٌّ فِي فَلَكٍ يَسْبَحُونَ ۝٣٤

୩୫. ଏବଂ ଆମ୍ଭେ ତୁମ୍ଭ ପୂର୍ବରୁ କୌଣସି ମାନବକୁ ଅମରତ୍ୱ (ଅର୍ଥାତ୍ ଅସ୍ୱାଭାବିକ ବୟସ ପ୍ରଦାନ) କରିନାହୁଁ; ତାହା ହେଲେ ଯଦି ତୁମ୍ଭେ ମୃତ୍ୟୁବରଣ କରିବ, କ'ଣ ସେମାନେ (ଏଠାରେ) ଅମର ହୋଇ ରହିବେ ?

وَمَا جَعَلْنَا لِبَشَرٍ مِنْ قَبْلِكَ الْخُلْدَ ۖ أَفَإِنْ مِتَّ فَهُمُ الْخَالِدُونَ ۝٣٥

୩୬. ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ଆସ୍ୱାଦନ କରିବ; ଓ ଆମ୍ଭେ ତୁମମାନଙ୍କୁ ଭଲ ଓ ମନ୍ଦ ଅବସ୍ଥା ମାଧ୍ୟମରେ ପରୀକ୍ଷା କରିବୁ; ଏବଂ ଅବଶେଷରେ ତୁମମାନଙ୍କୁ ଆମ୍ଭ ନିକଟକୁ ଫେରାଇ ଅଣାଯିବ ।

كُلُّ نَفْسٍ ذَائِقَةُ الْمَوْتِ ۗ وَنَبْلُوكُمْ بِالشَّرِّ وَالْخَيْرِ فِتْنَةً ۖ وَإِلَيْنَا تُرْجَعُونَ ۝٣٦

---

୧. ଅର୍ଥାତ୍ ଅଲ୍ଲାହ ଓହି ପ୍ରେରଣ ନ କରିବା ପର୍ଯ୍ୟନ୍ତ ଆକାଶ ଓ ପୃଥିବୀ ପକ୍ଷରେ ଶିକ୍ଷାଲାଭର କୌଣସି ସାଧନ ନ ଥିଲା । କିନ୍ତୁ ଯେତେବେଳେ ଅଲ୍ଲାହ ତାହାକୁ ଉନ୍ମୋଚିତ କରିଦେଲେ ଓ ଓହି ବା ଦିବ୍ୟବାଣୀ ପ୍ରେରଣ କଲେ ସେତେବେଳେ ଯାଇ ଶିକ୍ଷାର ସାଧନ ସୃଷ୍ଟି ହେଲା ଏବଂ ଏହା ପ୍ରତିପାଦିତ ହେଲା ଯେ ଦିବ୍ୟବାଣୀ ବ୍ୟତିରେକେ ଜୀବନର କୌଣସି ମୂଲ୍ୟ ନାହିଁ । ତେଣୁ ଏମାନେ ତଥାପି ବିଶ୍ୱାସ କରୁ ନ ଥିବା ଏକ ଆଶ୍ଚର୍ଯ୍ୟଜନକ ବିଷୟ ।

ଆଧୁନିକ ବିଜ୍ଞାନ ପ୍ରମାଣିତ କରିଅଛି ଯେ ଯେବେ ବି କୌଣସି ସୌରଜଗତ ସୃଷ୍ଟି ହେଉଛି ତେବେ ପ୍ରଥମେ ତାହା ଏକ ପେଣ୍ଡୁଭଳି ଗୋଲାକାର ଭାବରେ ସୃଷ୍ଟି ହେଉଛି, ପରେ ଆଭ୍ୟନ୍ତରୀଣ ଘୂର୍ଣ୍ଣନ ଯୋଗୁଁ ଏହାର ବିଭିନ୍ନ ପାର୍ଶ୍ୱ ବହୁ ଦୂରକୁ ନିକ୍ଷିପ୍ତ ହେଉଛି । ଫଳରେ ଏକ ନୂତନ ମଣ୍ଡଳର ସୃଷ୍ଟି ହେଉଛି, ଯାହା କି ନିଜ ଅକ୍ଷର ଚତୁଃପାର୍ଶ୍ୱରେ ଘୂରୁଛି । ଏହିପରି ଭାବରେ ଏକ ନୂତନ ସୌରଜଗତର ସୃଷ୍ଟି ହେଉଛି ।

୩୭. ଏବଂ ଯେତେବେଳେ ଅବିଶ୍ୱାସକାରୀମାନେ ତୁମକୁ ଦେଖନ୍ତି, ସେତେବେଳେ ତୁମକୁ ତୁଚ୍ଛ ମନେ କରି କହନ୍ତି, "କ'ଣ ଏ ସେହି ବ୍ୟକ୍ତି, ଯେ ତୁମମାନଙ୍କ ଉପାସ୍ୟମାନଙ୍କ ସମ୍ବନ୍ଧରେ କୁତ୍ସା ରଟନା କରନ୍ତି ?" ଅଥଚ ସେମାନେ ନିଜେ ଦୟାବାନ୍ (ଅଲ୍ଲାଃ)ଙ୍କ ବର୍ଣ୍ଣନାକୁ ଅସ୍ୱୀକାର କରନ୍ତି ।

وَإِذَا رَآكَ الَّذِينَ كَفَرُوا إِن يَتَّخِذُونَكَ إِلَّا هُزُوًا ۖ أَهَٰذَا الَّذِي يَذْكُرُ آلِهَتَكُمْ وَهُم بِذِكْرِ الرَّحْمَٰنِ هُمْ كَافِرُونَ ﴿٣٧﴾

୩୮. ମନୁଷ୍ୟଙ୍କୁ ଚଞ୍ଚଳ ସ୍ୱଭାବ ବିଶିଷ୍ଟ କରି ସୃଷ୍ଟି କରାଯାଇଛି; (ସୁତରାଂ ମନେରଖ) ଆମେ (ଅଲ୍ଲାଃ) ତୁମମାନଙ୍କୁ ନିଜର ନିଦର୍ଶନମାନ ଦେଖାଇବୁ; ତେଣୁ ତୁମେମାନେ ଚଞ୍ଚଳତାର ବଶବର୍ତ୍ତୀ ହୁଅ ନାହିଁ ।

خُلِقَ الْإِنسَانُ مِنْ عَجَلٍ ۚ سَأُرِيكُمْ آيَاتِي فَلَا تَسْتَعْجِلُونِ ﴿٣٨﴾

୩୯. ଏବଂ (ଏହା ଶୁଣି) ସେମାନେ କହନ୍ତି, "ଯଦି ତୁମେମାନେ (ଅର୍ଥାତ୍ ମୁସଲମାନମାନେ) ସତ୍ୟବାଦୀ ହୋଇଥାଅ, ତେବେ ଏହି ଅଙ୍ଗୀକାର କେବେ ପୂରଣ ହେବ ?"

وَيَقُولُونَ مَتَىٰ هَٰذَا الْوَعْدُ إِن كُنتُمْ صَادِقِينَ ﴿٣٩﴾

୪୦. ଯଦି ଅବିଶ୍ୱାସକାରୀମାନେ ସେହି ସମୟକୁ ଜାଣି ପାରନ୍ତେ ଯେତେବେଳେ ସେମାନେ ନିଜ ମୁଖମଣ୍ଡଳରୁ ଓ ନିଜ ପିଠିରୁ ଅଗ୍ନିକୁ ଅପସାରଣ କରି ପାରିବେ ନାହିଁ ଏବଂ ସେମାନଙ୍କୁ କାହାରିଠାରୁ ସହାୟତା ମିଳିବ ନାହିଁ (ତେବେ ସେମାନେ ଏପରି ଗର୍ବ କରନ୍ତେ ନାହିଁ) ।

لَوْ يَعْلَمُ الَّذِينَ كَفَرُوا حِينَ لَا يَكُفُّونَ عَن وُجُوهِهِمُ النَّارَ وَلَا عَن ظُهُورِهِمْ وَلَا هُمْ يُنصَرُونَ ﴿٤٠﴾

୪୧. କିନ୍ତୁ (ସେ ଶାସ୍ତି) ସେମାନଙ୍କ ନିକଟରେ ଅକସ୍ମାତ୍ ଉପସ୍ଥିତ ହେବ ଓ ସେମାନଙ୍କୁ ସ୍ତମ୍ଭୀଭୂତ କରିଦେବ; ସୁତରାଂ ଏହାକୁ ଅପସାରିତ କରିବା ସକାଶେ ସେମାନଙ୍କର କୌଣସି ଶକ୍ତି ନ ଥିବ କି ସେମାନେ କୌଣସି ଅବକାଶ ପାଇବେ ନାହିଁ ।

بَلْ تَأْتِيهِم بَغْتَةً فَتَبْهَتُهُمْ فَلَا يَسْتَطِيعُونَ رَدَّهَا وَلَا هُمْ يُنظَرُونَ ﴿٤١﴾

୪୨. ଏବଂ ତୁମ ପୂର୍ବବର୍ତ୍ତୀ ରସୁଲମାନଙ୍କୁ ମଧ୍ୟ ବିଦ୍ରୂପ କରାଯାଇଥିଲା; କିନ୍ତୁ ପରିଣାମରେ ଯେଉଁମାନେ ସେମାନଙ୍କୁ ବିଦ୍ରୂପ କରିଥିଲେ, ସେମାନେ ଯେଉଁ ବିଷୟରେ ବିଦ୍ରୂପ କରିଥିଲେ ସେହି ବିଷୟ ସେମାନଙ୍କୁ କବଳିତ କରିଥିଲା ।

وَلَقَدِ اسْتُهْزِئَ بِرُسُلٍ مِّن قَبْلِكَ فَحَاقَ بِالَّذِينَ سَخِرُوا مِنْهُم مَّا كَانُوا بِهِ يَسْتَهْزِئُونَ ﴿٤٢﴾ ع

ରୁ :୪

୪୩. ତୁମେ କୁହ, "କିଏ ତୁମମାନଙ୍କୁ ରାତ୍ରିରେ ଏବଂ ଦିବସରେ ଦୟାବାନ୍ (ଅଲ୍ଲାଃ)ଙ୍କ କବଳରୁ ରକ୍ଷା କରିପାରିବ ?" କିନ୍ତୁ (ବସ୍ତୁତଃ) ସେମାନେ ନିଜ ପାଳନକର୍ତ୍ତାଙ୍କ ସ୍ମରଣରୁ ବିମୁଖ ହେଉଛନ୍ତି ।

قُلْ مَن يَكْلَؤُكُم بِاللَّيْلِ وَالنَّهَارِ مِنَ الرَّحْمَٰنِ ۗ بَلْ هُمْ عَن ذِكْرِ رَبِّهِم مُّعْرِضُونَ ﴿٤٣﴾

୪୪. କ'ଣ ସେମାନଙ୍କ ସପକ୍ଷରେ କୌଣସି (ପ୍ରକୃତ) ଉପାସ୍ୟ ଅଛନ୍ତି ଯେ କି ସେମାନଙ୍କୁ ଆମ ଶାସ୍ତିରୁ ରକ୍ଷା କରିପାରିବେ ? ସେ (ଉପାସ୍ୟ) ମାନେ ତ ନିଜର ସୁରକ୍ଷା କରିପାରିବେ ନାହିଁ କି ଆମ ବିପକ୍ଷରେ କେହି ସେମାନଙ୍କୁ ସାହାଯ୍ୟ କରିପାରିବ ନାହିଁ ।

أَمْ لَهُمْ آلِهَةٌ تَمْنَعُهُم مِّن دُونِنَا ۚ لَا يَسْتَطِيعُونَ نَصْرَ أَنفُسِهِمْ وَلَا هُم مِّنَّا يُصْحَبُونَ ﴿٤٤﴾

بَلْ مَتَّعْنَا هٰٓؤُلَآءِ وَاٰبَآءَهُمْ حَتّٰى طَالَ عَلَيْهِمُ الْعُمُرُ ؕ اَفَلَا يَرَوْنَ اَنَّا نَاْتِى الْاَرْضَ نَنْقُصُهَا مِنْ اَطْرَافِهَا ؕ اَفَهُمُ الْغٰلِبُوْنَ ﴿۴۴﴾

୪୫. ବସ୍ତୁତଃ ଆମେ ସେମାନଙ୍କୁ ଓ ସେମାନଙ୍କ ପିତୃ ପିତାମହ-ମାନଙ୍କୁ ବହୁତ ଧନ ସମ୍ପଦ ପ୍ରଦାନ କରିଥିଲୁ ଏପରିକି ସେମାନଙ୍କ ପ୍ରତି ଏକ ଦୀର୍ଘ ଅବଧି ଅତିବାହିତ ହୋଇଯାଇଥିଲା; ତାହାହେଲେ କ'ଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ଆମେ ସେମାନଙ୍କ ଦେଶ ଆଡକୁ ଅଗ୍ରସର ହେଉଛୁ ଏବଂ ଏହାର ସୀମାକୁ[୧] ସଙ୍କୁଚିତ କରି ଚାଲିଛୁ; ତାହା ହେଲେ କ'ଣ ସେମାନେ (ଏହା ସତ୍ତ୍ୱେ) ବିଜୟ ଲାଭ କରିବେ ?

قُلْ اِنَّمَآ اُنْذِرُكُمْ بِالْوَحْىِ ۖ وَلَا يَسْمَعُ الصُّمُّ الدُّعَآءَ اِذَا مَا يُنْذَرُوْنَ ﴿۴۵﴾

୪୬. ତୁମେ (ସେମାନଙ୍କୁ) କୁହ, "ଆମେ ତୁମମାନଙ୍କୁ ଐଶୀ ମାଧ୍ୟମରେ ସତର୍କ କରୁଅଛୁ;" ଏବଂ ଯେତେବେଳେ (ଆଧ୍ୟାତ୍ମିକତା ଶୂନ୍ୟ) ବଧିରମାନଙ୍କୁ ସତର୍କ କରାଯାଏ ସେମାନେ (କୌଣସି) ଡାକ ଶୁଣି ପାରନ୍ତି ନାହିଁ ।

وَلَئِنْ مَّسَّتْهُمْ نَفْحَةٌ مِّنْ عَذَابِ رَبِّكَ لَيَقُوْلُنَّ يٰوَيْلَنَآ اِنَّا كُنَّا ظٰلِمِيْنَ ﴿۴۶﴾

୪୭. ଏବଂ ଯଦି ତୁମ ପାଳନକର୍ତ୍ତାଙ୍କ ଶାସ୍ତିର ଧାସ କିଞ୍ଚିତ୍ ପରିମାଣରେ ସେମାନଙ୍କୁ ସ୍ପର୍ଶ କରେ, ତେବେ ସେମାନେ ନିଶ୍ଚୟ କହିବେ, "ହାୟ ! ଆମମାନଙ୍କର ଦୁର୍ଭାଗ୍ୟ ! ବାସ୍ତବରେ ଆମେମାନେ ଅତ୍ୟାଚାର ହିଁ କରୁଥିଲୁ ।"

وَنَضَعُ الْمَوَازِيْنَ الْقِسْطَ لِيَوْمِ الْقِيٰمَةِ فَلَا تُظْلَمُ نَفْسٌ شَيْـًٔا ؕ وَاِنْ كَانَ مِثْقَالَ حَبَّةٍ مِّنْ خَرْدَلٍ اَتَيْنَا بِهَا ؕ وَكَفٰى بِنَا حٰسِبِيْنَ ﴿۴۷﴾

୪୮. ଏବଂ ଆମେ କୟାମତ ଦିନ ଏପରି (ନ୍ୟାୟସଙ୍ଗତ) ତୁଳାଦଣ୍ଡ ସ୍ଥାପନ କରିବୁ ଯଦ୍ଦ୍ୱାରା କୌଣସି ବ୍ୟକ୍ତିଙ୍କ ପ୍ରତି ତିଳେ ମାତ୍ର ଅନ୍ୟାୟ କରାହେବ ନାହିଁ; ଏବଂ ତାହା ସୋରିଷ ପରିମାଣର (କର୍ମ) ହେଲେ ମଧ୍ୟ ଆମେ ତାହା (ହିସାବ)କୁ ଆଣିବୁ; ଏବଂ ଆମେ ହିସାବ ଗ୍ରହଣ କରିବାପାଇଁ ଯଥେଷ୍ଟ ।

وَلَقَدْ اٰتَيْنَا مُوْسٰى وَهٰرُوْنَ الْفُرْقَانَ وَضِيَآءً وَّذِكْرًا لِّلْمُتَّقِيْنَ ﴿۴۸﴾

୪୯. ଏବଂ ଆମେ ମୁସା ଓ ହାରୁନଙ୍କୁ ପାର୍ଥକ୍ୟ-ସୂଚକ ନିଦର୍ଶନ ଓ ଜ୍ୟୋତି ପ୍ରଦାନ କରିଥିଲୁ ଓ ଧର୍ମଭୀରୁ-ମାନଙ୍କ ସକାଶେ ଏକ ଅନୁସ୍ମାରକ ପ୍ରଦାନ କରିଥିଲୁ ।

الَّذِيْنَ يَخْشَوْنَ رَبَّهُمْ بِالْغَيْبِ وَهُمْ مِّنَ السَّاعَةِ مُشْفِقُوْنَ ﴿۴۹﴾

୫୦. ଯେଉଁ (ଧର୍ମଭୀରୁ)ମାନେ ନିଜ ପାଳନକର୍ତ୍ତାଙ୍କୁ ଗୋପନରେ (ମଧ୍ୟ) ଭୟ କରନ୍ତି ଏବଂ ଯେଉଁମାନେ ବିଗ୍ରହ ଦିବସର ନିର୍ଦ୍ଧାରିତ ସମୟକୁ ମଧ୍ୟ ଭୟ କରନ୍ତି;

وَهٰذَا ذِكْرٌ مُّبٰرَكٌ اَنْزَلْنٰهُ ؕ اَفَاَنْتُمْ لَهٗ مُنْكِرُوْنَ ﴿۵۰﴾

୫୧. ଏବଂ ଏହା (ଅର୍ଥାତ୍ ପବିତ୍ର କୋରାନ) ଏପରି ଏକ ଆଶୀର୍ବାଦପୂର୍ଣ୍ଣ ଅନୁସ୍ମାରକ ଅଟେ ଯାହା ଆମେ (ସମସ୍ତ ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥର ଗୁଣାବଳୀକୁ ଏକତ୍ରିତ କରି) ଅବତୀର୍ଣ୍ଣ କରିଅଛୁ; ତାହା ହେଲେ କ'ଣ ତୁମେମାନେ ଏପରି ଗ୍ରନ୍ଥକୁ ପ୍ରତ୍ୟାଖ୍ୟାନ କରୁଅଛ ?

---

୧. ଅର୍ଥାତ୍ ଦେଶର ସୀମାନ୍ତ ତଥା ନୂଆ ନୂଆ ବଂଶଧର ମସଲମାନମାନଙ୍କର ଅଧୀନ ହେଉଥା'ନ୍ତି ।

ରୁ :୫

୫୨. ଏବଂ ଆମେ ଏହା ପୂର୍ବରୁ ଇବ୍ରାହିମଙ୍କୁ ଉତ୍ତମ ଦକ୍ଷତା ଓ ଯୋଗ୍ୟତା ପ୍ରଦାନ କରିଥିଲୁ ଏବଂ ଆମେ ତାହାଙ୍କ ଅଭ୍ୟନ୍ତର ସମ୍ବନ୍ଧରେ ଭଲ ଭାବରେ ଅବଗତ ଥିଲୁ ।

وَ لَقَدْ اٰتَيْنَآ اِبْرٰهِيْمَ رُشْدَهٗ مِنْ قَبْلُ وَ كُنَّا بِهٖ عٰلِمِيْنَ ۝٥٢

୫୩. ଯେତେବେଳେ ସେ ନିଜର ପିତା ଓ ନିଜର ସମ୍ପ୍ରଦାୟକୁ କହିଥିଲେ, "ଏ ଗୁଡ଼ିକ କି ମୂର୍ତ୍ତି ଯାହାଙ୍କ ସମ୍ମୁଖରେ ତୁମେମାନେ ବସିଅଛ ?"

اِذْ قَالَ لِاَبِيْهِ وَ قَوْمِهٖ مَا هٰذِهِ التَّمَاثِيْلُ الَّتِيْٓ اَنْتُمْ لَهَا عٰكِفُوْنَ ۝٥٣

୫୪. ସେମାନେ କହିଲେ, "ଆମେମାନେ ଆମ ପିତୃପିତାମହଙ୍କୁ ଦେଖିଥିଲୁ ଯେ ସେମାନେ ଏମାନଙ୍କର ଉପାସନା କରୁଥିଲେ ।"

قَالُوْا وَجَدْنَآ اٰبَآءَنَا لَهَا عٰبِدِيْنَ ۝٥٤

୫୫. ସେ (ଇବ୍ରାହିମ) କହିଲେ, "ତାହା ହେଲେ ତୁମେମାନେ ଓ ତୁମମାନଙ୍କର ପିତୃ-ପିତାମହମାନେ ସ୍ପଷ୍ଟ ରୂପେ ପଥଭ୍ରଷ୍ଟ ହୋଇଥିଲେ ।"

قَالَ لَقَدْ كُنْتُمْ اَنْتُمْ وَ اٰبَآؤُكُمْ فِيْ ضَلٰلٍ مُّبِيْنٍ ۝٥٥

୫୬. ସେମାନେ କହିଲେ, "(ତାହାହେଲେ) କ'ଣ ତୁମେ ଆମମାନଙ୍କ ପାଖକୁ ଏକ ପ୍ରକୃତ ତଥ୍ୟ ଆଣିଅଛ ନା ଆମମାନଙ୍କ ସହିତ ପରିହାସ କରୁଅଛ ?"

قَالُوْٓا اَجِئْتَنَا بِالْحَقِّ اَمْ اَنْتَ مِنَ اللّٰعِبِيْنَ ۝٥٦

୫୭. ସେ କହିଲେ, "ପ୍ରକୃତ ବିଷୟ ହେଉଛି ଯେ ତୁମମାନଙ୍କର ପାଳନକର୍ତ୍ତା ଆକାଶ ଓ ପୃଥିବୀର ପାଳନକର୍ତ୍ତା, ସେ ହିଁ ଏମାନଙ୍କୁ ସୃଷ୍ଟି କରିଛନ୍ତି; ଏବଂ ଆମେ ଏ ସଂକ୍ରାନ୍ତରେ ତୁମମାନଙ୍କ ନିକଟରେ ସାକ୍ଷୀ ଅଛୁ ।"

قَالَ بَلْ رَّبُّكُمْ رَبُّ السَّمٰوٰتِ وَ الْاَرْضِ الَّذِيْ فَطَرَهُنَّ ۖ وَ اَنَا عَلٰى ذٰلِكُمْ مِّنَ الشّٰهِدِيْنَ ۝٥٧

୫୮. ଏବଂ ସେ କହିଲେ, "ଅଲ୍ଲାହଙ୍କ ରାଣ, ଯେତେବେଳେ ତୁମେମାନେ ପିଠି ଫେରାଇ ଚାଲିଯିବ, ସେତେବେଳେ ଆମେ ତୁମମାନଙ୍କ ମୂର୍ତ୍ତିଗୁଡ଼ିକ ବିରୁଦ୍ଧରେ ଉପଯୁକ୍ତ ବ୍ୟବସ୍ଥା ଗ୍ରହଣ କରିବୁ ।"

وَ تَاللّٰهِ لَاَكِيْدَنَّ اَصْنَامَكُمْ بَعْدَ اَنْ تُوَلُّوْا مُدْبِرِيْنَ ۝٥٨

୫୯. ଏହାପରେ ସେ ସେଗୁଡ଼ିକ ମଧ୍ୟରୁ ସର୍ବବୃହତ୍ (ମୂର୍ତ୍ତି)କୁ ଛାଡ଼ି ଅନ୍ୟଗୁଡ଼ିକୁ ଖଣ୍ଡବିଖଣ୍ଡ କରିଦେଲେ ଯେପରିକି ସେମାନେ (ପୁଣିଥରେ) ତାହା ନିକଟକୁ ଆସିବେ ।

فَجَعَلَهُمْ جُذٰذًا اِلَّا كَبِيْرًا لَّهُمْ لَعَلَّهُمْ اِلَيْهِ يَرْجِعُوْنَ ۝٥٩

୬୦. (ଏହାଦେଖି) ସେମାନେ କହିଲେ, "କିଏ ଆମମାନଙ୍କର ଉପାସ୍ୟମାନଙ୍କ ସହିତ ଏପରି କର୍ମ କରିଅଛି ? ଯେ ଏପରି କରିଅଛି, ସେ ନିଶ୍ଚୟ ଅତ୍ୟାଚାରୀମାନଙ୍କ ମଧ୍ୟରୁ ଅଟେ ।"

قَالُوْا مَنْ فَعَلَ هٰذَا بِاٰلِهَتِنَآ اِنَّهٗ لَمِنَ الظّٰلِمِيْنَ ۝٦٠

୬୧. (ଅନ୍ୟ କେତେକ) କହିଲେ, "ଆମେମାନେ ଇବ୍ରାହିମ ନାମକ ଜଣେ ଯୁବକଙ୍କୁ ଏ (ମୂର୍ତ୍ତି)ମାନଙ୍କ (ଦୁର୍ବଳତା) ସମ୍ବନ୍ଧରେ ସମାଲୋଚନା କରୁଥିବାର ଶୁଣିଅଛୁ ।"

قَالُوْا سَمِعْنَا فَتًى يَّذْكُرُهُمْ يُقَالُ لَهٗٓ اِبْرٰهِيْمُ ۝٦١

୬୨. (ଏହା ଶୁଣି ନେତୃସ୍ଥାନୀୟ ଲୋକମାନେ) କହିଲେ, "(ଯେ ଯଦି ବାସ୍ତବରେ ଏପରି ହୋଇଥାଏ ତେବେ) ତାହାଙ୍କୁ ଲୋକମାନଙ୍କ ସମ୍ମୁଖକୁ ଅଣାଯାଉ, ହୁଏତ ସେମାନେ (ଏ ବିଷୟରେ) କୌଣସି ନିଷ୍ପତ୍ତି କରିବେ।"

قَالُوْا فَأْتُوْا بِهٖ عَلٰٓى اَعْيُنِ النَّاسِ لَعَلَّهُمْ يَشْهَدُوْنَ ﴿٦٢﴾

୬୩. ସେମାନେ (ଏହାପରେ) କହିଲେ, "ହେ ଇବ୍ରାହିମ ! କ'ଣ ତୁମେ ଆମମାନଙ୍କ ଉପାସ୍ୟମାନଙ୍କ ସହିତ ଏପରି କର୍ମ କରିଅଛ ?"

قَالُوْٓا ءَاَنْتَ فَعَلْتَ هٰذَا بِاٰلِهَتِنَا يٰٓاِبْرٰهِيْمُ ﴿٦٣﴾

୬୪. (ଇବ୍ରାହିମ) କହିଲେ, "(ଅବଶ୍ୟ) କେହି ଜଣେ ନିଶ୍ଚୟ ଏପରି କର୍ମ କରିଅଛି; ଏ ଯେଉଁ ସର୍ବବୃହତ୍ ମୂର୍ତ୍ତି (ତୁମମାନଙ୍କ) ସମ୍ମୁଖରେ ଦଣ୍ଡାୟମାନ ଅଛି; ଯଦି ସେମାନେ କଥା କହିପାରିବେ, ତେବେ ସେମାନଙ୍କୁ (ଅର୍ଥାତ୍ ସେ ବଡ଼ ମୂର୍ତ୍ତିକୁ ଏବଂ ଅନ୍ୟ ମୂର୍ତ୍ତିଗୁଡ଼ିକୁ ମଧ୍ୟ) ପଚାରି ବୁଝ।"

قَالَ بَلْ فَعَلَهٗ ۖ كَبِيْرُهُمْ هٰذَا فَسْـَٔلُوْهُمْ اِنْ كَانُوْا يَنْطِقُوْنَ ﴿٦٤﴾

୬୫. ଏହାପରେ ସେମାନେ ନିଜ ମୁଖ୍ୟ ବ୍ୟକ୍ତିମାନଙ୍କର[୧] ଧ୍ୟାନ ଆକର୍ଷଣ କରି କହିଲେ, "ବାସ୍ତବରେ ତୁମେମାନେ ହିଁ ଅତ୍ୟାଚାରୀ।"

فَرَجَعُوْٓا اِلٰٓى اَنْفُسِهِمْ فَقَالُوْٓا اِنَّكُمْ اَنْتُمُ الظّٰلِمُوْنَ ﴿٦٥﴾

୬୬. ଏହାପରେ ସେମାନଙ୍କର ମସ୍ତକ ଅବନତ ହୋଇଗଲା, (ଅର୍ଥାତ୍ ସେମାନେ ନିରୁତ୍ତର ହେଲେ) ଓ ସେମାନେ କହିଲେ, "ତୁମେ ଜାଣ ଯେ ଏ (ମୂର୍ତ୍ତି)ମାନେ କଥା କହନ୍ତି ନାହିଁ।"

ثُمَّ نُكِسُوْا عَلٰى رُءُوْسِهِمْ ۚ لَقَدْ عَلِمْتَ مَا هٰٓؤُلَآءِ يَنْطِقُوْنَ ﴿٦٦﴾

୬୭. ଇବ୍ରାହିମ କହିଲେ, "ତାହାହେଲେ କ'ଣ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ (ଏପରିବସ୍ତୁ)ମାନଙ୍କର ଉପାସନା କରୁଅଛ ଯେଉଁମାନେ ତୁମର କୌଣସି ଲାଭ କରନ୍ତି ନାହିଁ କି କ୍ଷତି କରନ୍ତି ନାହିଁ ?"

قَالَ اَفَتَعْبُدُوْنَ مِنْ دُوْنِ اللّٰهِ مَا لَا يَنْفَعُكُمْ شَيْـًٔا وَّلَا يَضُرُّكُمْ ﴿٦٧﴾

୬୮. "ତୁମମାନଙ୍କୁ ଓ ଅଲ୍ଲାହଙ୍କ ବ୍ୟତୀତ ତୁମେମାନେ ଯାହାଙ୍କର ଉପାସନା କରୁଅଛ ସେମାନଙ୍କୁ ଧିକ୍; କ'ଣ ତୁମେମାନେ ବୁଦ୍ଧିମତାର ସହିତ କାର୍ଯ୍ୟ କରୁନାହଁ ?"

اُفٍّ لَّكُمْ وَلِمَا تَعْبُدُوْنَ مِنْ دُوْنِ اللّٰهِ ۗ اَفَلَا تَعْقِلُوْنَ ﴿٦٨﴾

୬୯. (ଏଥିଯୋଗୁଁ ସେମାନେ କ୍ରୋଧାନ୍ୱିତ ହୋଇ) କହିଲେ, "ଯଦି ତୁମେମାନେ କିଛି କରିବାକୁ ଇଚ୍ଛା କରୁଥାଅ, ତେବେ ଏହି ବ୍ୟକ୍ତିଙ୍କୁ ପୋଡ଼ିଦିଅ ଓ ନିଜ ଉପାସ୍ୟମାନଙ୍କୁ ସାହାଯ୍ୟ କର।"

قَالُوْا حَرِّقُوْهُ وَانْصُرُوْٓا اٰلِهَتَكُمْ اِنْ كُنْتُمْ فٰعِلِيْنَ ﴿٦٩﴾

୭୦. ଏଣୁ ଆମେ କହିଥିଲୁ, "ହେ ଅଗ୍ନି ! ତୁମେ ଇବ୍ରାହିମଙ୍କ ସକାଶେ ଶୀତଳ ହୋଇଯାଅ ଓ ତାହାଙ୍କ ପାଇଁ ଶାନ୍ତିଦାୟକ ହୋଇଯାଅ।"

قُلْنَا يٰنَارُ كُوْنِيْ بَرْدًا وَّسَلٰمًا عَلٰٓى اِبْرٰهِيْمَ ﴿٧٠﴾

[୧] ଆରବୀ ଶବ୍ଦ 'ଅନଫୁସ୍' 'ନଫସ୍'ର ବହୁବଚନ। ନଫସ୍ ଅର୍ଥ ଆତ୍ମା। ଯେହେତୁ କୌଣସି ସମ୍ପ୍ରଦାୟର ଆତ୍ମା ହେଉଛି ସେହି ସମ୍ପ୍ରଦାୟର ମୁଖ୍ୟ ବ୍ୟକ୍ତି, ତେଣୁ ଅନଫୁସ୍‌ର ଅନୁବାଦ 'ମୁଖ୍ୟବ୍ୟକ୍ତିମାନଙ୍କର' ବୋଲି କରାଯାଇଛି।

୭୧. ଏବଂ ସେମାନେ ତାହାଙ୍କ ସହିତ ମନ୍ଦ ଆଚରଣ କରିବାକୁ ଇଚ୍ଛା କରିଥିଲେ, ମାତ୍ର ଆମେ ସେମାନଙ୍କୁ ବିଫଳ କରାଇଥିଲୁ ।

وَأَرَادُوا بِهِ كَيْدًا فَجَعَلْنَاهُمُ الْأَخْسَرِينَ ﴿٧١﴾

୭୨. ଏବଂ ଆମେ ତାହାଙ୍କୁ ଓ ଲୁତଙ୍କୁ ମଧ୍ୟ ମୁକ୍ତି ପ୍ରଦାନ କରି ଏପରି ଏକ ଭୂଭାଗକୁ ଘେନି ଆସିଥିଲୁ ଯହିଁରେ ଆମେ ସମଗ୍ର ବିଶ୍ୱପାଇଁ ଆଶୀର୍ବାଦ (ଗଚ୍ଛିତ) ରଖିଥିଲୁ ।

وَنَجَّيْنَاهُ وَلُوطًا إِلَى الْأَرْضِ الَّتِي بَارَكْنَا فِيهَا لِلْعَالَمِينَ ﴿٧٢﴾

୭୩. ଏବଂ ଆମେ ତାହାଙ୍କୁ ଇସହାକ, ଓ ପୌତ୍ର ରୂପେ ୟାକୁବଙ୍କୁ ପ୍ରଦାନ କରିଥିଲୁ, ଏବଂ ସମସ୍ତଙ୍କୁ ଧର୍ମନିଷ୍ଠ କରିଥିଲୁ ।

وَوَهَبْنَا لَهُ إِسْحَاقَ وَيَعْقُوبَ نَافِلَةً ۖ وَكُلًّا جَعَلْنَا صَالِحِينَ ﴿٧٣﴾

୭୪. ଏବଂ ଆମେ ସେମାନଙ୍କୁ (ଲୋକମାନଙ୍କର ଆଧ୍ୟାତ୍ମିକ) ମୁଖ୍ୟ ନିଯୁକ୍ତ କରିଥିଲୁ; ସେମାନେ ଆମର ଆଦେଶ ଅନୁସାରେ ସେ (ଲୋକ)ମାନଙ୍କୁ ସତ୍‌ପଥ ପ୍ରଦର୍ଶିତ କରାଉଥିଲେ, ଏବଂ ପୁଣ୍ୟ କାର୍ଯ୍ୟ କରିବାକୁ, ସୁସ୍ୱରୂପେ ନମାଜ ପାଠ କରିବାକୁ ଓ ଜକାତ ଦେବାକୁ ଆମେ ସେମାନଙ୍କୁ ଓହି (ମାଧ୍ୟମରେ ନିର୍ଦ୍ଦେଶ) କରିଥିଲୁ; ଏବଂ ସେ ସମସ୍ତେ ଆମର ଉପାସନାକାରୀ ଭକ୍ତ ଥିଲେ ।

وَجَعَلْنَاهُمْ أَئِمَّةً يَهْدُونَ بِأَمْرِنَا وَأَوْحَيْنَا إِلَيْهِمْ فِعْلَ الْخَيْرَاتِ وَإِقَامَ الصَّلَاةِ وَإِيتَاءَ الزَّكَاةِ ۖ وَكَانُوا لَنَا عَابِدِينَ ﴿٧٤﴾

୭୫. ଏବଂ ଆମେ ଲୁତଙ୍କୁ ବିଗ୍ରହ[୧] (କରିବା ଶକ୍ତି) ଓ ଜ୍ଞାନ ପ୍ରଦାନ କରିଥିଲୁ, ଏବଂ ତାହାଙ୍କୁ ସେହି ସହରରୁ ମୁକ୍ତି ପ୍ରଦାନ କରିଥିଲୁ ଯେଉଁଠାରେ ଅତ୍ୟନ୍ତ ଘୃଣ୍ୟ କାର୍ଯ୍ୟ ହେଉଥିଲା;ବାସ୍ତବରେ ସେମାନେ (ଏକ) ଅତିଶୟ ମନ୍ଦ ଜାତି ଥିଲେ ଅର୍ଥାତ୍ ଅମାନ୍ୟକାରୀ ଥିଲେ ।

وَلُوطًا آتَيْنَاهُ حُكْمًا وَعِلْمًا وَنَجَّيْنَاهُ مِنَ الْقَرْيَةِ الَّتِي كَانَتْ تَعْمَلُ الْخَبَائِثَ ۗ إِنَّهُمْ كَانُوا قَوْمَ سَوْءٍ فَاسِقِينَ ﴿٧٥﴾

୭୬. ଏବଂ ଆମେ ତାହାଙ୍କୁ (ଅର୍ଥାତ୍ ଲୁତଙ୍କୁ) ଆମର କରୁଣା ମଧ୍ୟକୁ ଘେନି ଆସିଥିଲୁ; ସେ ବାସ୍ତବରେ ଧର୍ମନିଷ୍ଠମାନଙ୍କ ମଧ୍ୟରେ ଥିଲେ ।

وَأَدْخَلْنَاهُ فِي رَحْمَتِنَا ۖ إِنَّهُ مِنَ الصَّالِحِينَ ﴿٧٦﴾

ରୁ :୬

୭୭. ଏବଂ (ସ୍ମରଣ କର) ଯେତେବେଳେ ନୁହ ଏହା ପୂର୍ବରୁ (ଆମଙ୍କୁ) ଡାକିଥିଲେ, ଏବଂ ଆମେ ତାହାଙ୍କୁ ଓ ତାଙ୍କ ପରିବାରବର୍ଗଙ୍କୁ ଏକ ବଡ଼ ବିପତ୍ତିରୁ ମୁକ୍ତି ଦେଇଥିଲୁ ।

وَنُوحًا إِذْ نَادَىٰ مِنْ قَبْلُ فَاسْتَجَبْنَا لَهُ فَنَجَّيْنَاهُ وَأَهْلَهُ مِنَ الْكَرْبِ الْعَظِيمِ ﴿٧٧﴾

---

[୧] ମୂଳ ଶବ୍ଦ 'ହୁକ୍ମ୍'ର ତାତ୍ପର୍ଯ୍ୟ ଏହି ଯେ ସେମାନଙ୍କୁ ଏପରି ଜ୍ଞାନ ପ୍ରଦାନ କରାଗଲା ଯଦ୍ୱାରା ସେମାନେ ଲୋକମାନଙ୍କ ମଧ୍ୟରେ ବିଚାର କରିପାରୁ ଥିଲେ । ଯଦିଚ ଏହି ଶବ୍ଦର ସାଧାରଣ ଅର୍ଥ 'ଶାସନ' କିନ୍ତୁ ଏଠାରେ ସେହି ଅର୍ଥ ପ୍ରଯୋଜ୍ୟ ନୁହେଁ, କାରଣ ହଜରତ ଲୁତଙ୍କୁ ତାଙ୍କ ସମ୍ପ୍ରଦାୟ ବିତାଡ଼ିତ କରିଥିଲେ । ତେଣୁ ଯଦି ସେ ଶାସନକର୍ତ୍ତା ହୋଇ ଥାଆନ୍ତେ ତେବେ ତାଙ୍କ ସମ୍ପ୍ରଦାୟ ତାଙ୍କୁ ବିତାଡ଼ିତ କରି ପାରି ନ ଥା'ନ୍ତେ ।

୭୮. ଏବଂ ଆମ୍ଭେ ତାହାଙ୍କୁ (ଅର୍ଥାତ୍ ନୂହଙ୍କୁ) ସେହି ସମ୍ପ୍ରଦାୟ ବିରୁଦ୍ଧରେ ସାହାଯ୍ୟ କରିଥିଲୁ ଯେଉଁମାନେ ଆମ୍ଭର ନିଦର୍ଶନଗୁଡ଼ିକ ପ୍ରତି ମିଥ୍ୟା ଆରୋପ କରିଥିଲେ; ବାସ୍ତବରେ ତାହା ଏକ ଅତିଶୟ ମନ୍ଦ ସମ୍ପ୍ରଦାୟ ଥିଲା; ତେଣୁ ଆମ୍ଭେ ସେ ସମସ୍ତଙ୍କୁ ଜଳମଗ୍ନ କରାଇ ଦେଲୁ ।

وَنَصَرْنٰهُ مِنَ الْقَوْمِ الَّذِيْنَ كَذَّبُوْا بِاٰيٰتِنَا ۗ اِنَّهُمْ كَانُوْا قَوْمَ سَوْءٍ فَاَغْرَقْنٰهُمْ اَجْمَعِيْنَ ۝٧٨

୭୯. ଏବଂ (ସ୍ମରଣ କର) ଦାଉଦ ଓ ସୁଲେମାନଙ୍କୁ ଯେତେବେଳେ କି ଉଭୟେ ଏପରି ଏକ ଶସ୍ୟ କ୍ଷେତ୍ର-ଜନିତ କଳହ ସଂକ୍ରାନ୍ତରେ ନିଷ୍ପତ୍ତି କରୁଥିଲେ ଯାହାକୁ ଏକ ସମ୍ପ୍ରଦାୟର ସାଧାରଣ ଲୋକମାନେ[1] ଖାଇ ଦେଇଥିଲେ (ଅର୍ଥାତ୍ ନଷ୍ଟ କରି ଦେଇଥିଲେ); ଆମ୍ଭେ ସେମାନଙ୍କ ନିଷ୍ପତ୍ତିର ପ୍ରତ୍ୟକ୍ଷଦର୍ଶୀ ଥିଲୁ ।

وَدَاوٗدَ وَسُلَيْمٰنَ اِذْ يَحْكُمٰنِ فِى الْحَرْثِ اِذْ نَفَشَتْ فِيْهِ غَنَمُ الْقَوْمِ ۚ وَكُنَّا لِحُكْمِهِمْ شٰهِدِيْنَ ۝٧٩

୮୦. ଆମ୍ଭେ ସୁଲେମାନଙ୍କୁ ପ୍ରକୃତ ଘଟଣା ବୁଝାଇ ଦେଇଥିଲୁ ଏବଂ ସମସ୍ତଙ୍କୁ ବିଗ୍ରହ (କରିବା ଶକ୍ତି) ଓ ଜ୍ଞାନ ପ୍ରଦାନ କରିଥିଲୁ; ଏବଂ ଆମ୍ଭେ ଦାଉଦଙ୍କ ସହିତ ପର୍ବତବାସୀମାନଙ୍କୁ ଓ ପକ୍ଷୀମାନଙ୍କୁ ମଧ୍ୟ କାର୍ଯ୍ୟରେ ନିୟୋଜିତ କରିଥିଲୁ; ଏବଂ ସେମାନେ ସମସ୍ତେ ପ୍ରଭୁଙ୍କର (ଅର୍ଥାତ୍ ଅଲ୍ଲାହଙ୍କର) ମହିମା ଗାନ କରୁଥିଲେ; ଏବଂ ଆମ୍ଭେ ଏ ସବୁ କରିବା ପାଇଁ ସକ୍ଷମ ଥିଲୁ ।

فَفَهَّمْنٰهَا سُلَيْمٰنَ ۚ وَكُلًّا اٰتَيْنَا حُكْمًا وَّعِلْمًا ۫ وَّسَخَّرْنَا مَعَ دَاوٗدَ الْجِبَالَ يُسَبِّحْنَ وَالطَّيْرَ ۭ وَكُنَّا فٰعِلِيْنَ ۝٨٠

୮୧. ଏବଂ ଆମ୍ଭେ ତାହାଙ୍କୁ ଏକ ପୋଷାକ (ଅର୍ଥାତ୍ ସାଞ୍ଜୁ) ତିଆରି କରିବା ଶିଖାଇଥିଲୁ ଯଦ୍ଦ୍ୱାରା କି ତାହା ତୁମମାନଙ୍କୁ ଯୁଦ୍ଧ ସମୟରେ ରକ୍ଷା କରିବ; ଅତଏବ କ'ଣ ତୁମେମାନେ କୃତଜ୍ଞ ହେବ ?

وَعَلَّمْنٰهُ صَنْعَةَ لَبُوْسٍ لَّكُمْ لِتُحْصِنَكُمْ مِّنْۢ بَاْسِكُمْ ۚ فَهَلْ اَنْتُمْ شٰكِرُوْنَ ۝٨١

୮୨. ଏବଂ ଆମ୍ଭେ ସୁଲେମାନଙ୍କ ପକ୍ଷରେ ଦ୍ରୁତଗାମୀ ବାୟୁକୁ ତାହାଙ୍କର ବଶବର୍ତ୍ତୀ କରିଥିଲୁ ଯାହା ତାହାଙ୍କ ଆଦେଶ ଅନୁଯାୟୀ ଏପରି ଭୂଭାଗ ଆଡ଼କୁ ପ୍ରବାହିତ[2] ହେଉଥିଲା ଯହିଁରେ ଆମ୍ଭେ କଲ୍ୟାଣ (ରଚ୍ଛିତ) ରଖିଥିଲୁ ଏବଂ ଆମ୍ଭେ ସବୁ ବିଷୟକୁ ଜାଣୁ ।

وَلِسُلَيْمٰنَ الرِّيْحَ عَاصِفَةً تَجْرِيْ بِاَمْرِهٖٓ اِلَى الْاَرْضِ الَّتِيْ بٰرَكْنَا فِيْهَا ۭ وَكُنَّا بِكُلِّ شَيْءٍ عٰلِمِيْنَ ۝٨٢

---

୧. ମୂଳ ଶବ୍ଦ 'ଗନମ୍' ଅର୍ଥ ଛେଳି, ମେଣ୍ଢା । ରୂଢ଼ି ପ୍ରୟୋଗ ଫଳରେ ଏହା ସାଧାରଣ ଜନତାଙ୍କୁ ବୁଝାଏ । ଓଡ଼ିଆ ଭାଷାରେ ମଧ୍ୟ ଅନୁରୂପ ରୂଢ଼ି ପ୍ରୟୋଗ ବିରଳ ନୁହେଁ । ପ୍ରକୃତ ପକ୍ଷେ ଏହାର ଅର୍ଥ ହେଉଛି ପ୍ରତିବେଶୀ ରାଜ୍ୟର ଚୋର ଓ ଡକାୟତମାନେ, ଯେଉଁମାନେ କି ହଜରତ ସୁଲେମାନ ଓ ହଜରତ ଦାଉଦଙ୍କ ଦେଶବାସୀଙ୍କର ଅନିଷ୍ଟ କରୁଥିଲେ ।

୨. ହଜରତ ସୁଲେମାନଙ୍କ ଜାହାଜ ସିରିଆର ଉତ୍ତରାଞ୍ଚଳରୁ ସାମଗ୍ରୀ ବହନ କରି ଦକ୍ଷିଣାଞ୍ଚଳକୁ ଅର୍ଥାତ୍ ପାଲେଷ୍ଟାଇନକୁ ଆସୁଥିଲା । ଏଠାରେ ସେ ବିଷୟରେ ସୂଚନା ଦିଆଯାଇଛି ।

୮୩. ଏବଂ ଏପରି କେତେକ ଦୁରାଗ୍ରହୀ [୧] ବ୍ୟକ୍ତି ଥିଲେ ଯେଉଁମାନେ ତାହାଙ୍କ ପାଇଁ ସାଗର ମଧ୍ୟରେ ବୁଡ଼ାଳିର କାର୍ଯ୍ୟ କରୁଥିଲେ, ଏବଂ ଏତଦ୍‌ବ୍ୟତୀତ ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ କରୁଥିଲେ; ଏବଂ ଆମେ ହିଁ ସେମାନଙ୍କ ନିମନ୍ତେ ରକ୍ଷାକାରୀ ଥିଲୁ ।

وَ مِنَ الشَّيٰطِيۡنِ مَنۡ يَّغُوۡصُوۡنَ لَهٗ وَيَعۡمَلُوۡنَ عَمَلًا دُوۡنَ ذٰلِكَ ۚ وَكُنَّا لَهُمۡ حٰفِظِيۡنَ ۙ﴿۸۳﴾

୮୪. ଏବଂ (ସ୍ମରଣ କର) ଯେତେବେଳେ ଅୟୁବ ନିଜ ପାଳନକର୍ତ୍ତାଙ୍କୁ ଚିତ୍କାର କରି କହିଥିଲେ, ''ଆମ୍ଭଙ୍କୁ ଯନ୍ତ୍ରଣା କବଳିତ କରିଅଛି ଏବଂ (ହେ ଅଲ୍ଲାହ୍! )ତୁମେ ହିଁ ସମସ୍ତ ଦୟାବାନ୍‌ଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଦୟାବାନ୍ ।''

وَاَيُّوۡبَ اِذۡ نَادٰى رَبَّهٗۤ اَنِّىۡ مَسَّنِىَ الضُّرُّ وَاَنۡتَ اَرۡحَمُ الرّٰحِمِيۡنَ ۚ﴿۸۴﴾

୮୫. ତେଣୁ ଆମେ ତାହାଙ୍କ ପ୍ରାର୍ଥନା ଶୁଣିଲୁ ଓ ସେ ଯେଉଁ ଯନ୍ତ୍ରଣା ପାଉଥିଲେ ତାହାକୁ ଦୂର କରିଦେଲୁ, ଓ ତାହାଙ୍କୁ ତାଙ୍କ ପରିବାର ମଧ୍ୟ ପ୍ରଦାନ କରିଥିଲୁ, ଏବଂ ଏତଦ୍‌ବ୍ୟତୀତ ନିଜ ସମୀପରୁ କରୁଣା ସ୍ୱରୂପ ଆହୁରି (ଅନେକ) ପ୍ରଦାନ କରିଥିଲୁ, ଏବଂ ଆମେ ଏହି ଘଟଣାକୁ ଉପାସନାକାରୀମାନଙ୍କ ସକାଶେ ଏକ ଶିକ୍ଷାଦାୟକ (ଘଟଣା) କରିଥିଲୁ ।

فَاسۡتَجَبۡنَا لَهٗ فَكَشَفۡنَا مَا بِهٖ مِنۡ ضُرٍّ وَّاٰتَيۡنٰهُ اَهۡلَهٗ وَمِثۡلَهُمۡ مَّعَهُمۡ رَحۡمَةً مِّنۡ عِنۡدِنَا وَذِكۡرٰى لِلۡعٰبِدِيۡنَ ﴿۸۵﴾

୮୬. ଏବଂ ଇସମାଇଲ, ଇଦ୍ରିସ ଓ ଜୁଲକିଫଲଙ୍କୁ [୨] ମଧ୍ୟ (ସ୍ମରଣ କର); ଏ ସମସ୍ତେ ଧୈର୍ଯ୍ୟଶୀଳ ଥିଲେ ।

وَاِسۡمٰعِيۡلَ وَاِدۡرِيۡسَ وَذَا الۡكِفۡلِ ؕ كُلٌّ مِّنَ الصّٰبِرِيۡنَ ۚ﴿۸۶﴾

୮୭. ଏବଂ ଆମେ ସେ ସମସ୍ତଙ୍କୁ ନିଜ କରୁଣା ମଧ୍ୟକୁ ଘେନି ଆସିଥିଲୁ ଏବଂ ସେମାନେ ସମସ୍ତେ ଧର୍ମନିଷ୍ଠ ଥିଲେ ।

وَاَدۡخَلۡنٰهُمۡ فِىۡ رَحۡمَتِنَا ؕ اِنَّهُمۡ مِّنَ الصّٰلِحِيۡنَ ﴿۸۷﴾

୮୮. ଏବଂ ଜୁନ୍‌ନୁନ୍ (ଅର୍ଥାତ୍ ୟୁନୁସଙ୍କୁ ମଧ୍ୟ ସ୍ମରଣ କର); ଯେତେବେଳେ ସେ କ୍ରୋଧାନ୍ୱିତ ହୋଇ ଚାଲିଗଲେ, ସେତେବେଳେ ତାହାଙ୍କ ମନରେ ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ଆମେ ତାହାଙ୍କୁ ହଇରାଣ [୩] କରିବୁ ନାହିଁ; ସୁତରାଂ ସେ ବିପଦ

وَذَا النُّوۡنِ اِذۡ ذَّهَبَ مُغَاضِبًا فَظَنَّ اَنۡ لَّنۡ نَّقۡدِرَ عَلَيۡهِ فَنَادٰى فِى الظُّلُمٰتِ اَنۡ لَّاۤ اِلٰهَ اِلَّاۤ اَنۡتَ

---

୧. ପବିତ୍ର କୋରାନରେ 'ସଇତାନ' ଶବ୍ଦ ବିଦ୍ରୋହୀ ଓ ଦୁରାଚାରୀଙ୍କ ପାଇଁ ପ୍ରୟୋଗ କରାଯାଇଛି । ଏଠାରେ ମଧ୍ୟ ଅନୁରୂପ ଅର୍ଥରେ ତାହା ପ୍ରୟୋଗ ହୋଇଛି । ପାରସ୍ୟ ଉପସାଗର କୂଳରେ ବାସ କରୁଥିବା ଅହଙ୍କାରୀ ଲୋକମାନେ ହଜରତ ସୁଲେମାନଙ୍କ ସେବାରେ ନିୟୋଜିତ ଥାଇ ତାଙ୍କ ପାଇଁ ବହେରିନ ଓ ମସକଟ ଅଞ୍ଚଳରେ ପ୍ରଚୁର ପରିମାଣରେ ମିଳୁଥିବା ମୁକ୍ତା ସଂଗ୍ରହ କରୁଥିଲେ ।

୨. ଏଠାରେ ହଜରତ ଇସମାଇଲ, ହଜରତ ଇଦ୍ରିସ୍ ଓ ହଜରତ ଜୁଲକିଫଲଙ୍କ ବିଷୟ ଏକତ୍ର ବର୍ଣ୍ଣନା କରାଯାଇଛି ଅଥଚ ଏମାନେ ବିଭିନ୍ନ ଯୁଗର ନବି ଥିଲେ । ଏପରି ବର୍ଣ୍ଣନାର ଉଦ୍ଦେଶ୍ୟ ହେଉଛି ଯେ ଏମାନେ ସମସ୍ତେ ଏପରି ନବି ଥିଲେ ଯେଉଁମାନଙ୍କୁ କୌଣସି ନୂତନ ଧର୍ମବିଧାନ ବା ଶରିୟତ୍ ଦିଆଯାଇ ନ ଥିଲା ଓ ସମସ୍ତେ ବହୁ ବହୁ ବିପତ୍ତିର ଶିକାର ହୋଇ ଥିଲେ । ତେଣୁ ପବିତ୍ର କୋରାନରେ ମଧ୍ୟ ସେମାନଙ୍କ ଅସୀମ ଧୈର୍ଯ୍ୟଶୀଳତାକୁ ମାନ୍ୟତା ପ୍ରଦାନ କରାଯାଇଛି । ଏହି କାରଣରୁ ପରବର୍ତ୍ତୀ ଆୟତରେ ଜୁନ୍‌ନୁନ୍ ବା ୟୁନୁସ ନବିଙ୍କ ବିଷୟ ମଧ୍ୟ ପାଖାପାଖି ବର୍ଣ୍ଣନା କରାଯାଇଛି । କେତେକ ଟୀକାକାରଙ୍କ ମତରେ ବାଇବେଲ୍ ବର୍ଣ୍ଣିତ ଇଜିକିଲ୍ **(Ezekiel)** ନବିଙ୍କ ଆରବୀ ନାମ ହେଉଛି ଜୁଲକିଫଲ୍ ।

୩. କେତେକ ଅନୁବାଦକ ଭୁଲ୍‌ରେ 'ଲନ୍ ନକ୍‌ଦେରା ଅଲୈହି' ଶବ୍ଦାବଳୀର ଅର୍ଥ ଏହପରି ଭାବରେ କରିଛନ୍ତି— 'ୟୁନୁସ ବୁଝି ପାରିଲେ ଯେ ଆମେ ତାହାଙ୍କୁ ଧରିପାରିବୁ ନାହିଁ ।' ଏହା ଅବଶ୍ୟ ଅବିଶ୍ୱାସକାରୀମାନଙ୍କର ଚିନ୍ତାଧାରା । କିନ୍ତୁ ଅଭିଧାନଭୁକ୍ତ ଅର୍ଥ ଅନୁସାରେ 'କଦରା ଅଲୈହି'ର ଅର୍ଥ ହଇରାଣ କରିବା । ବସ୍ତୁତଃ ଏଠାରେ ଏହି ଅର୍ଥ ପ୍ରଯୋଜ୍ୟ, ଅର୍ଥାତ୍ ହଜରତ ୟୁନୁସ୍‌ଙ୍କର ବିଶ୍ୱାସ ଥିଲା ଯେ ଆମେ ଏହି ଘଟଣାଦ୍ୱାରା ତାଙ୍କୁ ହଇରାଣ କରିବାକୁ ମନସ୍ଥ କରିନାହୁଁ ବରଂ ତାଙ୍କୁ ସମ୍ମାନିତ କରିବା ଇଚ୍ଛା କରୁ । ତେଣୁ ଏହି ଅନୁବାଦ ଜଣେ ନବିଙ୍କ କ୍ଷେତ୍ରରେ ଅଧିକ ସମୀଚୀନ ଓ ଗ୍ରହଣୀୟ ।

سُبْحٰنَكَ ۖۗ اِنِّیْ كُنْتُ مِنَ الظّٰلِمِیْنَ ﴿٨٨﴾

ସମୟରେ ଆମ୍ଭଙ୍କୁ ଡାକିଲେ (ଓ କହିଲେ), "ତୁମ୍ଭ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହାନ୍ତି; ତୁମେ ହିଁ ପବିତ୍ର; ଆମ୍ଭେ ବାସ୍ତବରେ ଅତ୍ୟାଚାରୀମାନଙ୍କ ମଧ୍ୟରେ ଥିଲୁ।"

فَاسْتَجَبْنَا لَهٗ ۙ وَ نَجَّیْنٰهُ مِنَ الْغَمِّ ؕ وَ كَذٰلِكَ نُـْۨجِی الْمُؤْمِنِیْنَ ﴿٨٩﴾

୮୯. ଅତଏବ ଆମ୍ଭେ ତାହାଙ୍କ ପ୍ରାର୍ଥନା ଶୁଣିଲୁ ଓ ତାହାଙ୍କୁ ଦୁଃଖରୁ ମୁକ୍ତି ଦେଲୁ ଏବଂ ଆମ୍ଭେ ଏହିପରି ଭାବରେ ବିଶ୍ୱାସକାରୀମାନଙ୍କୁ ମୁକ୍ତି ପ୍ରଦାନ କରିଥାଉ।

وَ زَكَرِیَّاۤ اِذْ نَادٰی رَبَّهٗ رَبِّ لَا تَذَرْنِیْ فَرْدًا وَّ اَنْتَ خَیْرُ الْوٰرِثِیْنَ ۚ﴿٩٠﴾

୯୦. ଏବଂ ଜକ୍ରିୟାଙ୍କୁ [1] (ସ୍ମରଣ କର); ଯେତେବେଳେ ସେ ନିଜ ପାଳନକର୍ତ୍ତାଙ୍କୁ ଡାକି କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭଙ୍କୁ ଏକାକୀ ଛାଡ଼ିଦିଅ ନାହିଁ, ଏବଂ ତୁମେ ହିଁ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ।"

فَاسْتَجَبْنَا لَهٗ ۫ وَ وَهَبْنَا لَهٗ یَحْیٰی وَ اَصْلَحْنَا لَهٗ زَوْجَهٗ ؕ اِنَّهُمْ كَانُوْا یُسٰرِعُوْنَ فِی الْخَیْرٰتِ وَ یَدْعُوْنَنَا رَغَبًا وَّ رَهَبًا ؕ وَ كَانُوْا لَنَا خٰشِعِیْنَ ﴿٩١﴾

୯୧. ଏବଂ ଆମ୍ଭେ ତାହାଙ୍କ ପ୍ରାର୍ଥନା ଶୁଣି ତାହାଙ୍କୁ ୟହିୟା ପ୍ରଦାନ କରିଥିଲୁ ଓ ତାହାଙ୍କ ପତ୍ନୀଙ୍କୁ ତାହାଙ୍କ ସକାଶେ ସୁସ୍ଥ କରିଥିଲୁ; ସେମାନେ ସମସ୍ତେ ପୁଣ୍ୟ (ଅର୍ଜନ) କରିବାରେ ତତ୍‌ପର ଥିଲେ, ଏବଂ ଆମ୍ଭଙ୍କୁ ପ୍ରେମ ଓ ଭୟ ସହିତ ଡାକୁଥିଲେ, ଏବଂ ଆମ୍ଭ ସକାଶେ ବିନମ୍ର ଜୀବନ ଯାପନ କରୁଥିଲେ।

وَ الَّتِیْۤ اَحْصَنَتْ فَرْجَهَا فَنَفَخْنَا فِیْهَا مِنْ رُّوْحِنَا وَ جَعَلْنٰهَا وَ ابْنَهَاۤ اٰیَةً لِّلْعٰلَمِیْنَ ﴿٩٢﴾

୯୨. ଏବଂ ସେହି ନାରୀଙ୍କୁ (ଅର୍ଥାତ୍ ମରିୟମଙ୍କୁ ସ୍ମରଣ କର),ଯେ ନିଜର ସତୀତ୍ୱକୁ ସୁରକ୍ଷିତ ରଖିଥିଲେ; ତେଣୁ ଆମ୍ଭେ ତାହାଙ୍କ ପ୍ରତି ଆମ୍ଭର କେତେକ ବାଣୀ ଅବତୀର୍ଣ୍ଣ କରିଥିଲୁ ଏବଂ ତାହାଙ୍କୁ ଓ ତାହାଙ୍କ ପୁତ୍ରଙ୍କୁ ସଂସାର ପାଇଁ ଏକ ନିଦର୍ଶନ [2] କରିଥିଲୁ।

اِنَّ هٰذِهٖۤ اُمَّتُكُمْ اُمَّةً وَّاحِدَةً ۖۗ وَّ اَنَا رَبُّكُمْ فَاعْبُدُوْنِ ﴿٩٣﴾

୯୩. ତୁମମାନଙ୍କର ଏହି ସମ୍ପ୍ରଦାୟ ଗୋଟିଏ ସମ୍ପ୍ରଦାୟ ଅଟେ; ଏବଂ ଆମ୍ଭେ ତୁମମାନଙ୍କର ପାଳନକର୍ତ୍ତା ଅଟୁ; ସୁତରାଂ ତୁମେମାନେ ଆମ୍ଭର ହିଁ ଉପାସନା କର।

---

୧. ହଜରତ ଜକ୍ରିୟାଙ୍କ ବିଷୟ ଏଠାରେ ଏଥିପାଇଁ ବର୍ଣ୍ଣନା କରାଯାଇଛି ଯେ ତାଙ୍କ ପରେ ହଜରତ ମରିୟମ ଓ ତାଙ୍କ ପୁତ୍ରଙ୍କ ବିଷୟ ବର୍ଣ୍ଣିତ ହୋଇଛି। ସେମାନେ ଜକ୍ରିୟାଙ୍କର ସମସାମୟିକ ଓ ବନ୍ଧୁବାନ୍ଧବ ଥିଲେ।

୨. ଏଠାରେ ହଜରତ ମରିୟମଙ୍କ ବିଷୟ ସୂଚାଯାଇଛି। ଦୁର୍ଭାଗ୍ୟବଶତଃ କେତେକ ମୁସଲମାନ ଭାବି ନେଲେ ଯେ ହଜରତ ମରିୟମ ଓ ହଜରତ ଇସାଙ୍କ ଭିନ୍ନ ଅନ୍ୟ କୌଣସି ବ୍ୟକ୍ତି ନିଦର୍ଶନ ନ ଥିଲେ। ଅଥଚ ପବିତ୍ର କୋରାନର ପ୍ରତ୍ୟେକ ଅଂଶ 'ଆୟତ' ବା ନିଦର୍ଶନ ଭାବରେ ଅଭିହିତ। ଅତଏବ ହଜରତ ମହମ୍ମଦ, ଯାହାଙ୍କ ପ୍ରତି ସମଗ୍ର କୋରାନ ଅବତୀର୍ଣ୍ଣ ହୋଇଛି ସେ, ସମସ୍ତ ନିଦର୍ଶନର ଭଣ୍ଡାର ଥିଲେ।

୯୪. ଏବଂ ସେ (ନବି ବିରୋଧୀ)ମାନେ ନିଜର ଧର୍ମକୁ ଖଣ୍ଡ ବିଖଣ୍ଡ (କରି ନିଜ ଅବସ୍ଥାକୁ ସୁହାଇଲା ଭଳି ଖଣ୍ଡକୁ ଗ୍ରହଣ) କରିଛନ୍ତି;[୧] ଅଥଚ ସେମାନେ ସମସ୍ତେ ଆମ୍ଭ ନିକଟକୁ ଫେରି ଆସିବେ ।

وَتَقَطَّعُوٓا أَمۡرَهُم بَيۡنَهُمۡۖ كُلٌّ إِلَيۡنَا رَٰجِعُونَ ﴿٩٣﴾

ରୁ :୭

୯୫. ସୁତରାଂ ଯେ ଉଚିତ କର୍ମ କରିବ ଏବଂ ତତ୍‌ସହିତ ବିଶ୍ୱାସକାରୀ ମଧ୍ୟ ହୋଇଥିବ ତେବେ ତାହାର ପ୍ରଚେଷ୍ଟାକୁ ନାକଚ କରାଯିବ ନାହିଁ ଏବଂ ଆମେ ତାହାର ପୁଣ୍ୟ କର୍ମଗୁଡ଼ିକୁ ଲିପିବଦ୍ଧ କରି ରଖିବୁ ।

فَمَن يَعۡمَلۡ مِنَ ٱلصَّٰلِحَٰتِ وَهُوَ مُؤۡمِنٞ فَلَا كُفۡرَانَ لِسَعۡيِهِۦ وَإِنَّا لَهُۥ كَٰتِبُونَ ﴿٩٤﴾

୯୬. ଏବଂ ପ୍ରତ୍ୟେକ ସହର , ଯାହାକୁ ଆମେ ଧ୍ୱଂସ କରିଅଛୁ, ସେଗୁଡ଼ିକ ସଂକ୍ରାନ୍ତରେ ନିଷ୍ପତ୍ତି କରାଯାଇଛି ଯେ ସେଠାକାର ବାସିନ୍ଦାମାନେ ଏହି ସଂସାରକୁ ଆଉ ଫେରି ଆସିବେ ନାହିଁ[୨] ।

وَحَرَٰمٌ عَلَىٰ قَرۡيَةٍ أَهۡلَكۡنَٰهَآ أَنَّهُمۡ لَا يَرۡجِعُونَ ﴿٩٥﴾

୯୭. ଏପରିକି[୩] ଯେତେବେଳେ ୟାଜୁଜ ଓ ମାଜୁଜଙ୍କ ପାଇଁ ଦ୍ୱାର ଉନ୍ମୁକ୍ତ କରାହେବ ଏବଂ ସେମାନେ ପ୍ରତ୍ୟେକ ପର୍ବତ ଓ ସାଗରର ତରଙ୍ଗମାଳାକୁ ଅତିକ୍ରମ କରି ସଂସାରରେ ବ୍ୟାପିଯିବେ ।

حَتَّىٰٓ إِذَا فُتِحَتۡ يَأۡجُوجُ وَمَأۡجُوجُ وَهُم مِّن كُلِّ حَدَبٖ يَنسِلُونَ ﴿٩٦﴾

୯୮. ଏବଂ (ଅଲ୍ଲାହ୍‌ଙ୍କର) ସତ୍ୟ ଅଙ୍ଗୀକାର ନିକଟବର୍ତ୍ତୀ ହେବ, ଯେତେବେଳେ ଅବିଶ୍ୱାସକାରୀମାନଙ୍କର ଚକ୍ଷୁ ବିସ୍ମୟରେ ବିସ୍ଫାରିତ[୪] ହୋଇଯିବ ଏବଂ ସେମାନେ କହିବେ, ''ହାୟ ! ଆମମାନଙ୍କର କି ଦୁର୍ଭାଗ୍ୟ ! ଆମେମାନେ ଏହି ଦିବସ ସଂକ୍ରାନ୍ତରେ ଅତିଶୟ ଅମନୋଯୋଗୀ ଥିଲୁ; ବରଂ ଆମେମାନେ ହିଁ ଅତ୍ୟାଚାରୀ ଥିଲୁ ।''

وَٱقۡتَرَبَ ٱلۡوَعۡدُ ٱلۡحَقُّ فَإِذَا هِيَ شَٰخِصَةٌ أَبۡصَٰرُ ٱلَّذِينَ كَفَرُواْ يَٰوَيۡلَنَا قَدۡ كُنَّا فِي غَفۡلَةٖ مِّنۡ هَٰذَا بَلۡ كُنَّا ظَٰلِمِينَ ﴿٩٧﴾

୧. ଅର୍ଥାତ୍ କେତେକ ଧର୍ମୀୟ ନେତା ମୂଳ ସମ୍ପ୍ରଦାୟରୁ ସ୍ୱେଚ୍ଛାରେ ବିଚ୍ଛିନ୍ନ ହୋଇ ବିଭିନ୍ନ ଗୋଷ୍ଠୀ ଗଢ଼ନ୍ତି ଓ ତଦ୍ୱାରା ଲାଭବାନ୍ ହୁଅନ୍ତି । ସମ୍ପ୍ରତି ଇସଲାମ ଧର୍ମରେ ମଧ୍ୟ ସେହିପରି କେତେକ ବ୍ୟକ୍ତି ନିଜର ବ୍ୟକ୍ତିତ୍ୱ ଜାହିର କରିବା ଉଦ୍ଦେଶ୍ୟରେ ଭିନ୍ନ ଭିନ୍ନ ଗୋଷ୍ଠୀ ଗଢ଼ିଛନ୍ତି । ତନ୍ମଧ୍ୟରୁ କେତେକ ଜମିଅତୁଲ ଉଲେମା, ନଦଅତୁଲ ଉଲେମା, ହନଫି, ବରେଲୁଇ ଓ ଅହଲେ ହଦିସ ନାମରେ ଅଭିହିତ । ବାହ୍ୟତଃ ସେହି ସବୁ ଗୋଷ୍ଠୀ ଇସଲାମର ଶକ୍ତି ଓ ସମ୍ମାନ ବୃଦ୍ଧି ନିମିତ୍ତ କାର୍ଯ୍ୟରତ ଥିବାର ପ୍ରତୀତ ହେଉ ଥିଲେ ମଧ୍ୟ ପ୍ରକୃତରେ ସେ ସବୁ ନିଜର ତଥା ନିଜ ନେତାମାନଙ୍କର ଶକ୍ତି ଓ ସମ୍ମାନ ବୃଦ୍ଧି ପାଇଁ ଉଦ୍ୟମ କରୁଛନ୍ତି । ପରିଣାମରେ ସେମାନଙ୍କ ନିଜ ମଧ୍ୟରେ ମତାନ୍ତର ଓ ମନାନ୍ତର ହେଉଛି ଓ ସେମାନେ ଏଭଳି କେତେକ ବିଶ୍ୱାସ ଓ ମତବାଦର ଅନୁସରଣ କରୁଛନ୍ତି ଯହିଁରେ ପରସ୍ପର ବିରୋଧୀ ଶିକ୍ଷା ରହିଅଛି ।

୨. ମୃତ ବ୍ୟକ୍ତି ପୁନର୍ବାର ସଂସାରକୁ ପ୍ରତ୍ୟାବର୍ତ୍ତନ ନ କରିବା ହେଉଛି ଇସ୍‌ଲାମ୍‌ର ଏକ ଅଲଙ୍ଘନୀୟ ଆଧ୍ୟାତ୍ମିକ ବିଧାନ । ଜଣେ ଲୋକ ଏଇ ସଂସାରରୁ ଥରେ ବିଦାୟ ନେଲେ ସେ ଚିରକାଳ ପାଇଁ ବିଦାୟ ନେଇ ଥାଏ (୨୩: ୧୦୦–୧୦୧ ଦ୍ରଷ୍ଟବ୍ୟ) ।

୩. ଏଠାରେ ଏହା ଅଭିପ୍ରେତ ନୁହେଁ ଯେ ୟାଜୁଜ ଓ ମାଜୁଜଙ୍କ ପୂର୍ବବର୍ତ୍ତୀ ଜାତି-ସମୂହ ଜୀବିତ ହୋଇଯିବେ ବରଂ ଏହାର ଅର୍ଥ ହେଉଛି, ଯେତେବେଳେ ୟାଜୁଜ ଓ ମାଜୁଜ ସାରା ସଂସାରରେ ବ୍ୟାପି ଯିବେ ସେତେବେଳେ ମରଣୋନ୍ମୁଖ ଜାତିମାନଙ୍କର ପୁନର୍ବାର ସ୍ଫୁର୍ତ୍ତି ଓ ସ୍ୱାଭିମାନ ଉଦ୍ରେକ ହେବ ତଥା ସେମାନଙ୍କ ମଧ୍ୟରେ ପୁନର୍ଜାଗରଣ ଦେଖା ଦେବ । ସମ୍ପ୍ରତି ତାହା ହିଁ ହେଉଛି ।

୪. ଅର୍ଥାତ୍ ଅବିଶ୍ୱାସକାରୀମାନଙ୍କ ମଧ୍ୟରୁ ଯେଉଁମାନେ ଭାବୁଛନ୍ତି ଯେ ସେମାନେ ମରଣୋନ୍ମୁଖ ଜାତିକୁ ସବୁଦିନ ପାଇଁ ନିଃଶେଷ କରି ଦେଇଛନ୍ତି, ଯେତେବେଳେ ସେମାନେ ଉପର ବର୍ଣ୍ଣିତ ଜାତିକୁ ପୁନର୍ଜୀବିତ ହୋଇ ଉନ୍ନତି କରୁଥିବା ଦେଖିବେ ସେତେବେଳେ ସେମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯିବେ ।

୯୯. (ସେତେବେଳେ ସେମାନଙ୍କୁ କୁହାଯିବ) ବାସ୍ତବରେ ତୁମେମାନେ ଓ ଅଲ୍ଲାଃଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କର ଉପାସନା କରୁଅଛ ସେମାନେ ସମସ୍ତେ ନରକର ଇନ୍ଧନ ହେବେ, ଓ ତୁମେମାନେ ସମସ୍ତେ ଏହା ମଧ୍ୟକୁ ପ୍ରବେଶ କରିବ ।

إِنَّكُمْ وَمَا تَعْبُدُونَ مِن دُونِ ٱللَّهِ حَصَبُ جَهَنَّمَ أَنتُمْ لَهَا وَٰرِدُونَ ﴿٩٩﴾

୧୦୦. ଏବଂ ଯଦି ଏ (ତଥାକଥିତ ଉପାସ୍ୟ) ମାନେ ବାସ୍ତବରେ ଉପାସ୍ୟ ହୋଇଥା'ନ୍ତେ, ତେବେ ଏ ଲୋକମାନେ କାହିଁକି ନରକ ମଧ୍ୟକୁ[୧] ନିକ୍ଷିପ୍ତ ହୁଅନ୍ତେ ? ଏବଂ ସେମାନେ ସେଥି ମଧ୍ୟରେ ବହୁକାଳ ପଡି ରହିଥିବେ ।

لَوْ كَانَ هَٰٓؤُلَآءِ ءَالِهَةً مَّا وَرَدُوهَا ۖ وَكُلٌّ فِيهَا خَٰلِدُونَ ﴿١٠٠﴾

୧୦୧. ସେମାନେ ସେଠାରେ ଚିତ୍କାର କରୁଥିବେ ଓ ସେଠାରେ (କାହାରି ଉପଦେଶର) କଥା[୨] ଶୁଣିପାରିବେ ନାହିଁ ।

لَهُمْ فِيهَا زَفِيرٌ وَهُمْ فِيهَا لَا يَسْمَعُونَ ﴿١٠١﴾

୧୦୨. ବାସ୍ତବରେ ଯେଉଁମାନଙ୍କ ସଂକ୍ରାନ୍ତରେ ଆମ୍ଭ ନିକଟରୁ ଉତ୍ତମ ବ୍ୟବହାର ସମ୍ବନ୍ଧରେ ଅଙ୍ଗୀକାର କରାଯାଇଛି ସେମାନଙ୍କୁ ଏହି ନରକଠାରୁ ଦୂରରେ ରଖାଯିବ ।

إِنَّ ٱلَّذِينَ سَبَقَتْ لَهُم مِّنَّا ٱلْحُسْنَىٰٓ أُو۟لَٰٓئِكَ عَنْهَا مُبْعَدُونَ ﴿١٠٢﴾

୧୦୩. ସେମାନେ ଏଠାକାର ସ୍ୱର ଶବ୍ଦ ମଧ୍ୟ ଶ୍ରବଣ କରିବେ ନାହିଁ; ଏବଂ ସେମାନଙ୍କର ମନ ଯାହା ଚାହୁଁଥିଲା ସେମାନେ ସେହି ଅବସ୍ଥାରେ ସର୍ବଦା ରହିବେ ।

لَا يَسْمَعُونَ حَسِيسَهَا ۖ وَهُمْ فِى مَا ٱشْتَهَتْ أَنفُسُهُمْ خَٰلِدُونَ ﴿١٠٣﴾

୧୦୪. ଭୀଷଣ ବ୍ୟସ୍ତତା ସମୟ ମଧ୍ୟ ସେମାନଙ୍କୁ ଦୁଃଖିତ କରିପାରିବ ନାହିଁ, ଏବଂ ଦେବଦୂତମାନେ ସେମାନଙ୍କୁ ସାକ୍ଷାତ୍ କରିବେ ଓ କହିବେ, ''ଏହା ହିଁ ତୁମମାନଙ୍କର ସେହି ଦିନ, ଯାହା ସଂକ୍ରାନ୍ତରେ ତୁମମାନଙ୍କ ସହିତ ଅଙ୍ଗୀକାର କରାଯାଇଥିଲା ।''

لَا يَحْزُنُهُمُ ٱلْفَزَعُ ٱلْأَكْبَرُ وَتَتَلَقَّىٰهُمُ ٱلْمَلَٰٓئِكَةُ هَٰذَا يَوْمُكُمُ ٱلَّذِى كُنتُمْ تُوعَدُونَ ﴿١٠٤﴾

---

୧. ପରଲୋକର ନରକ ଅବଶ୍ୟ ଦୃଷ୍ଟିଗୋଚର ହୁଏ ନାହିଁ କିନ୍ତୁ ଏହି ଆୟତରେ ସେ ବିଷୟ ଅବିଶ୍ୱାସକାରୀମାନଙ୍କୁ ଭଲ ଭାବରେ ବୁଝାଇ ଦିଆଯାଇଛି । ତେଣୁ ଏଠାରେ ନରକର ଅର୍ଥ ପବିତ୍ର କୋରାନ ଅବତୀର୍ଣ୍ଣ ହେବା ପରେ ସେମାନଙ୍କ ପ୍ରାପ୍ୟ ଅପମାନ ଏବଂ ସେହି ଅପମାନ ସେମାନଙ୍କୁ ଦୀର୍ଘକାଳ ପର୍ଯ୍ୟନ୍ତ ଜଡ଼ିତ କରି ରଖିବା ଅଭିପ୍ରେତ ଥିଲା । ପୃଥିବୀର ଇତିହାସ ଏହାର ମୂକସାକ୍ଷୀ ।

୨. ଅର୍ଥାତ୍ ସେତେବେଳକୁ ବିଶ୍ୱାସ କରିବାରେ ଆଉ କୌଣସି ଲାଭ ହେବ ନାହିଁ ।

يَوْمَ نَطْوِى السَّمَآءَ كَطَيِّ السِّجِلِّ لِلْكُتُبِ ؕ كَمَا بَدَاْنَاۤ اَوَّلَ خَلْقٍ نُّعِيْدُهٗ ؕ وَعْدًا عَلَيْنَا ؕ اِنَّا كُنَّا فٰعِلِيْنَ ﴿١٠٥﴾

୧୦୫. ଯେଉଁଦିନ ଆମେ ଆକାଶକୁ ଏପରି ଗୁଡ଼ାଇ ନେବୁ[1] ଯେପରି ଲେଖା (କାଗଜ) ଫର୍ଦ୍ଦ ଗୁଡ଼ିକୁ ଲିପିକାର ଗୁଡ଼ାଇ ନେଇଯାଏ; ଯେପରି ଆଦ୍ୟରେ ଆମେ ତୁମମାନଙ୍କୁ ସୃଷ୍ଟି କରିଥିଲୁ ସେହିପରି ଆମେ ତାହାର ପୁନରାବୃତ୍ତି[2] କରିବୁ; ଏହାକୁ ଆମେ ନିଜ ପାଇଁ ଅନିବାର୍ଯ୍ୟ କରିଅଛୁ; ତେଣୁ ଆମେ ଏହିପରି କରିବାକୁ ମନସ୍ଥ କରିଅଛୁ ।

وَلَقَدْ كَتَبْنَا فِى الزَّبُوْرِ مِنْۢ بَعْدِ الذِّكْرِ اَنَّ الْاَرْضَ يَرِثُهَا عِبَادِىَ الصّٰلِحُوْنَ ﴿١٠٦﴾

୧୦୬. ଏବଂ ଆମେ ଜବୁର (ଧର୍ମଗ୍ରନ୍ଥ)ରେ କେତେକ ଉପଦେଶ ପ୍ରଦାନ କଲା ପରେ ଏହା ଲିପିବଦ୍ଧ କରିଅଛୁ ଯେ ଆମର ଧର୍ମନିଷ୍ଠ ଭକ୍ତମାନେ ହିଁ ଏ (ପବିତ୍ର) ଭୂଖଣ୍ଡର[3] ଉତ୍ତରାଧିକାରୀ ହେବେ ।

اِنَّ فِىْ هٰذَا لَبَلٰغًا لِّقَوْمٍ عٰبِدِيْنَ ؕ ﴿١٠٧﴾

୧୦୭. ଏଥିରେ (ଅର୍ଥାତ୍ ଏହି ବୃତ୍ତାନ୍ତରେ) ସେହି ସମ୍ପ୍ରଦାୟ ପାଇଁ ଏକ ସମାଚାର[4] ରହିଅଛି ଯେଉଁମାନେ ଉପାସନା କରନ୍ତି ।

وَمَاۤ اَرْسَلْنٰكَ اِلَّا رَحْمَةً لِّلْعٰلَمِيْنَ ﴿١٠٨﴾

୧୦୮. ଏବଂ (ହେ ମହମ୍ମଦ !) ଆମେ ତୁମକୁ ଦାରା ସଂସାର ପାଇଁ କେବଳ କରୁଣା[5] ରୂପେ ଗଢ଼ି ପ୍ରେରଣ କରିଅଛୁ ।

قُلْ اِنَّمَا يُوْحٰۤى اِلَىَّ اَنَّمَاۤ اِلٰهُكُمْ اِلٰهٌ وَّاحِدٌ ۚ فَهَلْ اَنْتُمْ مُّسْلِمُوْنَ ﴿١٠٩﴾

୧୦୯. ତୁମେ କୁହ, "ଆମ ପ୍ରତି 'ଓହି' (ମାଧ୍ୟମରେ) କେବଳ ଏହା (ଆଦେଶ) ହେଉଅଛି ଯେ ତୁମମାନଙ୍କର ଉପାସ୍ୟ (ଅଲ୍ଲାହ୍) ଏକମାତ୍ର ଉପାସ୍ୟ; ତା'ହେଲେ କ'ଣ ତୁମେମାନେ ଏ ବିଷୟ ଗ୍ରହଣ କରିବ ?"

---

୧. 'ଗୁଡ଼ାଇ ନେବୁ'ର ଅର୍ଥ ନିମ୍ନମତେ ହୋଇପାରେ : (କ) ବଡ଼ ବଡ଼ ଓ କ୍ଷମତାଶାଳୀ ସାମ୍ରାଜ୍ୟ ଧ୍ୱଂସପାଇ ନୂତନ ସାମ୍ରାଜ୍ୟ ପ୍ରତିଷ୍ଠିତ ହେବ, (ଖ) ହଜରତ ମହମ୍ମଦଙ୍କ ମାଧ୍ୟମରେ ବିରାଟ ଓ ଅଭୂତପୂର୍ବ ପରିବର୍ତ୍ତନମାନ ଘଟିବ, (ଗ) ପୁରାତନ ବ୍ୟବସ୍ଥା ଲୋପ ପାଇ ତା'ସ୍ଥାନରେ ନୂତନ ବ୍ୟବସ୍ଥା ପ୍ରଚଳିତ ହେବ ।

୨. ବିଦ୍ୟମାନ ଜଗତକୁ ଧ୍ୱଂସ କରାଯିବ ଓ ନୂଆ ନୂଆ ଜାତି ସୃଷ୍ଟି ହେବେ ତଥା ସେମାନେ ପ୍ରଗତି କରିବେ । ଅନ୍ଧକାର ମହାଦେଶ ନାମରେ ଖ୍ୟାତ ଆଫ୍ରିକା ଏହାର ଜ୍ୱଳନ୍ତ ଉଦାହରଣ ।

୩. ଅର୍ଥାତ୍ ପାଲେଷ୍ଟାଇନ ।

୪. ଅର୍ଥାତ୍ ମୁସଲମାନମାନେ ଏଥିରୁ ଏହି ଶିକ୍ଷାଲାଭ କରିବା ସମୀଚୀନ ହେବ ଯେ ଯଦି ସେମାନେ ପାଲେଷ୍ଟାଇନ ଫେରିବାକୁ ଇଚ୍ଛୁକ ତେବେ ସେମାନେ ସଦାଚାରୀ ହୁଅନ୍ତୁ ।

୫. ଅବଶ୍ୟ ଶେଷ ଯୁଗରେ ଇହୁଦୀମାନେ ପାଲେଷ୍ଟାଇନ ଉପରେ ଥରେ ନିଜର ଆଧିପତ୍ୟ ବିସ୍ତାର କରିବେ କିନ୍ତୁ ମୁସଲମାନମାନେ ଏ ସଂକ୍ରାନ୍ତରେ ନିରାଶ ହେବା ଉଚିତ ନୁହେଁ କାରଣ ସେମାନଙ୍କ ନବି କରୁଣାର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ସଂସାରରେ ଆବିର୍ଭୂତ ହୋଇଛନ୍ତି । ତାଙ୍କ ସହିତ ସମ୍ପର୍କ ସ୍ଥାପନ କଲେ ସେମାନେ କ୍ଷତିଗ୍ରସ୍ତ ହେବେ ନାହିଁ ।

فَإِنْ تَوَلَّوْا فَقُلْ آذَنْتُكُمْ عَلَىٰ سَوَاءٍ ۖ وَإِنْ أَدْرِي أَقَرِيبٌ أَمْ بَعِيدٌ مَا تُوعَدُونَ ﴿١١٠﴾

୧୧୦. ଏହାପରେ ଯଦି ସେମାନେ ମୁହଁ ମୋଡି ଗୁଲିଯାଆନ୍ତି, ତେବେ (ସେମାନଙ୍କୁ) କୁହ, ''ଆମ୍ଭେ ତୁମମାନଙ୍କୁ (ଅର୍ଥାତ୍ ଉଭୟ ବିଶ୍ୱାସକାରୀ ଓ ଅବିଶ୍ୱାସକାରୀମାନଙ୍କୁ) ସମାନ ଭାବରେ ସତର୍କ କରାଇ ଦେଇଅଛୁ ଏବଂ ତୁମମାନଙ୍କୁ ଯେଉଁ ବିଷୟରେ ପ୍ରତିଶ୍ରୁତି ଦିଆଯାଇଥିଲା ତାହା ନିକଟବର୍ତ୍ତୀ କି ଦୂରବର୍ତ୍ତୀ ତାହା ଆମ୍ଭେ ଜାଣୁନାହିଁ ।''

إِنَّهُ يَعْلَمُ الْجَهْرَ مِنَ الْقَوْلِ وَيَعْلَمُ مَا تَكْتُمُونَ ﴿١١١﴾

୧୧୧. ''ସେ (ଅଲ୍ଲାହ) ପ୍ରକାଶ୍ୟ କଥାକୁ ଜାଣନ୍ତି, ଓ ତୁମେମାନେ ଯାହା ଲୁକ୍କାୟିତ କର ତାହାକୁ ମଧ୍ୟ ଜାଣନ୍ତି ।''

وَإِنْ أَدْرِي لَعَلَّهُ فِتْنَةٌ لَكُمْ وَمَتَاعٌ إِلَىٰ حِينٍ ﴿١١٢﴾

୧୧୨. ''ଏବଂ ଆମ୍ଭେ ଜାଣୁନାହିଁ ଯେ ତାହା (ଅର୍ଥାତ୍ ଉପରୋକ୍ତ ବିଷୟ) ତୁମମାନଙ୍କ ପାଇଁ ଏକ ପରୀକ୍ଷା ଅଟେ କି କିଛି କାଳ ପର୍ଯ୍ୟନ୍ତ ତୁମମାନଙ୍କୁ ଲାଭଦାୟକ ହେବା ପାଇଁ ଉଦ୍ଦିଷ୍ଟ ।''

قٰلَ رَبِّ احْكُمْ بِالْحَقِّ ۗ وَرَبُّنَا الرَّحْمَٰنُ الْمُسْتَعَانُ عَلَىٰ مَا تَصِفُونَ ﴿١١٣﴾

୧୧୩. (ଉପରୋକ୍ତ ଓହିର ଆଗମନ ପରେ ହଜରତ ମହମ୍ମଦ) କହିଥିଲେ, ''ହେ ଆମ୍ଭର ପାଳନକର୍ତ୍ତା ! ତୁମେ ସତ୍ୟ (ଓ ନ୍ୟାୟ) ଅନୁସାରେ ନିଷ୍ପତ୍ତି[1] କର; ଏବଂ ଆମ୍ଭର ପାଳନକର୍ତ୍ତା ଅଶେଷ ଦୟାବାନ୍ ଅଟନ୍ତି; ଏବଂ (ହେ ଅବିଶ୍ୱାସକାରୀମାନେ !) ତୁମେମାନେ ଯାହା କହୁଅଛ ତାହା ବିରୁଦ୍ଧରେ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ)ଠାରୁ ହିଁ ସାହାଯ୍ୟ ଭିକ୍ଷା କରାଯାଏ ।''

---

୧. ଏହି ଆୟତରେ ଅଲ୍ଲାହ ହଜରତ ମହମ୍ମଦଙ୍କ ମୁହଁରେ ପୂର୍ବରୁ ମୁସଲମାନମାନଙ୍କ ପାଇଁ ପ୍ରାର୍ଥନା କରାଇଛନ୍ତି । ସେତେବେଳେ ହଜରତ ମହମ୍ମଦ ମୁସଲମାନମାନଙ୍କୁ ପାଲେଷ୍ଟାଇନ ଫେରାଇ ଦେବାକୁ ଓ ତାଙ୍କ ନିଜର ସତ୍ୟତା ପ୍ରମାଣିତ କରାଇବାକୁ ଅଲ୍ଲାହଙ୍କ ନିକଟରେ ପ୍ରାର୍ଥନା କରିଥିଲେ । ଆମମାନଙ୍କର ପୂର୍ଣ୍ଣ ବିଶ୍ୱାସ ରହିଅଛି ଯେ ହଜରତ ମହମ୍ମଦଙ୍କ ପ୍ରାର୍ଥନା କେବେହେଲେ ନାକଚ କରାଯିବ ନାହିଁ ବରଂ ସେହି ପ୍ରାର୍ଥନା ଗୃହୀତ ହେବା ବିଷୟ ଲୋକମାନେ ସ୍ୱଚକ୍ଷୁରେ ଦେଖିପାରିବେ । ଇସ୍ରାଇଲ ସକାଶେ ଋଷିଆ ବା ଆମେରିକା କେହି ଲାଭଦାୟକ ସାବ୍ୟସ୍ତ ହେବେ ନାହିଁ ।

سُوْرَةُ الْحَجِّ مَدَنِيَّةٌ (٢٢)

# ଅଲ—ହଜ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୭୯ଟି ଆୟତ ଓ ୧୦ ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

يٰۤاَيُّهَا النَّاسُ اتَّقُوْا رَبَّكُمْ ۚ اِنَّ زَلْزَلَةَ السَّاعَةِ شَيْءٌ عَظِيْمٌ ②

୨. ହେ ଲୋକମାନେ ! ତୁମେମାନେ ନିଜ ପାଳନକର୍ତ୍ତାଙ୍କୁ ଭୟକର, କାରଣ ବାସ୍ତବରେ ସେହି (ମୀମାଂସାକାରୀ ସମୟର) ଭୂମିକମ୍ପ[1] ଅତିଶୟ ଗୁରୁତର ବିଷୟ ।

يَوْمَ تَرَوْنَهَا تَذْهَلُ كُلُّ مُرْضِعَةٍ عَمَّاۤ اَرْضَعَتْ وَتَضَعُ كُلُّ ذَاتِ حَمْلٍ حَمْلَهَا وَتَرَى النَّاسَ سُكٰرٰى وَمَا هُمْ بِسُكٰرٰى وَلٰكِنَّ عَذَابَ اللّٰهِ شَدِيْدٌ ③

୩. ସେହିଦିନ ତୁମେମାନେ ଦେଖିବାକୁ ପାଇବ ଯେ ପ୍ରତ୍ୟେକ ସ୍ତନ୍ୟପାନ କରାଉଥିବା ନାରୀ ଯାହାକୁ ସ୍ତନ୍ୟପାନ କରାଉଥିବ ତାହାକୁ (ଭୟରେ) ପାସୋରି ପକାଇବ ଏବଂ ପ୍ରତ୍ୟେକ ଗର୍ଭବତୀ ନାରୀ ନିଜର ଗର୍ଭପାତ କରାଇବ, ଏବଂ ତୁମେ ଲୋକମାନଙ୍କୁ ଉନ୍ମତ୍ତପ୍ରାୟ ଦେଖିବ ଅଥଚ ସେମାନେ ଉନ୍ମତ୍ତ ହୋଇ ନ ଥିବେ; କିନ୍ତୁ ଅଲ୍ଲାହଙ୍କର ଶାସ୍ତି ଅତ୍ୟନ୍ତ କଠୋର ହେବ ।

وَمِنَ النَّاسِ مَنْ يُّجَادِلُ فِي اللّٰهِ بِغَيْرِ عِلْمٍ وَّيَتَّبِعُ كُلَّ شَيْطٰنٍ مَّرِيْدٍ ④

୪. ଏବଂ ଲୋକମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କ ସମ୍ବନ୍ଧରେ କିଛି ନ ଜାଣି ମଧ୍ୟ ତର୍କ କରନ୍ତି, (ଏବଂ ପ୍ରତ୍ୟେକ) ପଥଭ୍ରଷ୍ଟ ଓ ଦୁରାଗ୍ରହୀର ଅନୁସରଣ କରନ୍ତି ।

كُتِبَ عَلَيْهِ اَنَّهٗ مَنْ تَوَلَّاهُ فَاَنَّهٗ يُضِلُّهٗ وَيَهْدِيْهِ اِلٰى عَذَابِ السَّعِيْرِ ⑤

୫. (ଅଥଚ) ସେହି (ପଥଭ୍ରଷ୍ଟ ଓ ଦୁରାଗ୍ରହୀ) ମାନଙ୍କ ସମ୍ବନ୍ଧରେ ନିଷ୍ପତ୍ତି ହୋଇଅଛି ଯେ ଯେଉଁ ବ୍ୟକ୍ତି ଏହିପରି ଲୋକମାନଙ୍କ ମଧ୍ୟରୁ କାହାରି ସହିତ ବନ୍ଧୁତା ସ୍ଥାପନ କରିବ (ତେବେ) ସେ (ପଥଭ୍ରଷ୍ଟ ଓ ଦୁରାଗ୍ରହୀ) ତାହାକୁ ମଧ୍ୟ ପଥଭ୍ରଷ୍ଟ କରାଇବ ଏବଂ (ତାହାକୁ) ନରକର ଶାସ୍ତି ଆଡ଼କୁ ଘେନିଯିବ ।

يٰۤاَيُّهَا النَّاسُ اِنْ كُنْتُمْ فِيْ رَيْبٍ مِّنَ الْبَعْثِ فَاِنَّا خَلَقْنٰكُمْ مِّنْ تُرَابٍ ثُمَّ مِنْ نُّطْفَةٍ ثُمَّ مِنْ عَلَقَةٍ ثُمَّ مِنْ مُّضْغَةٍ مُّخَلَّقَةٍ وَّغَيْرِ مُخَلَّقَةٍ لِّنُبَيِّنَ

୬. ହେ ଲୋକମାନେ ! ଯଦି ତୁମେମାନେ ପୁନରୁତ୍ଥିତ ହେବା ସମ୍ବନ୍ଧରେ ସନ୍ଦେହ କରୁଥାଅ ତେବେ (ମନେରଖ) ଆମେ ତୁମମାନଙ୍କୁ ପ୍ରଥମେ ମାଟିରୁ ସୃଷ୍ଟି କରିଥିଲୁ, ଏବଂ ଏହାପରେ ବୀର୍ଯ୍ୟ କଣିକାରୁ, ତତ୍ପରେ କ୍ରମଶଃ ଅଭିବୃଦ୍ଧି କରି ଏପରି ଏକ ଅବସ୍ଥାରୁ ଯାହାର କି ଘନୀଭୂତ ରକ୍ତ ଭଳି ଲାଖି ରହିବାର ସ୍ୱଭାବ ଥିଲା; କିଛି କାଳ ପାଇଁ ତାହା ଏକ ସମ୍ପୂର୍ଣ୍ଣ

୧. ଅର୍ଥାତ୍ ଅନ୍ତିମ ମହାବିପତ୍ତି, ଯଦ୍ୱାରା ସାଂସାରିକ ଜୀବନ ସମାପ୍ତ ହୋଇଯିବ ।

ମାଂସ ପିଣ୍ଡ ଆକାରରେ ଓ (ଅନ୍ୟ) କିଛି କାଳପାଇଁ ତାହା ଏକ ଅସମ୍ପୂର୍ଣ୍ଣ ମାଂସ ପିଣ୍ଡ ଆକାରରେ ରହିଥିଲା; ଯେପରିକି ଆମେ ତୁମମାନଙ୍କ ନିକଟରେ (ପ୍ରକୃତ ତଥ୍ୟ) ପ୍ରକାଶ କରିଦେଉ; ଏବଂ ଆମେ ଯାହାକୁ ଇଚ୍ଛା କରୁ ତାହାକୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଗର୍ଭାଶୟ ମଧ୍ୟରେ ସ୍ଥାପନ କରୁ; ଏବଂ ଏହା ପରେ ଆମେ ତୁମମାନଙ୍କୁ (ଗର୍ଭାଶୟରୁ) ଏକ ଶିଶୁ ରୂପେ ବହିର୍ଗତ କରାଉ; (ଏହିପରି କ୍ରମ ବୃଦ୍ଧି କରିଥାଉ) ଯାହା ଫଳରେ ତୁମେମାନେ ସମ୍ପୂର୍ଣ୍ଣ ସବଳ (ବୟସ୍କ) ହୁଅ; ତୁମମାନଙ୍କ ମଧ୍ୟରୁ ଏପରି କେତେକ ଅଛନ୍ତି ଯେଉଁମାନେ ସେମାନଙ୍କ ସ୍ୱାଭାବିକ ବୟସରେ ଉପସ୍ଥିତ ହୋଇ ମୃତ୍ୟୁବରଣ କରନ୍ତି, ଓ ଅନ୍ୟ କେତେକ ନିଜର ଚରମ ବାର୍ଦ୍ଧକ୍ୟ ଅବସ୍ଥାରେ ଉପନୀତ ହୁଅନ୍ତି, ଯାହା ଫଳରେ ସେମାନେ ପ୍ରଚୁର ଜ୍ଞାନ ହାସଲ କରିବା ପରେ ସମ୍ପୂର୍ଣ୍ଣ ଜ୍ଞାନ ହରାଇ ବସନ୍ତି; ଏବଂ ତୁମେମାନେ ପୃଥିବୀ (ପୃଷ୍ଠ)କୁ ଲକ୍ଷ୍ୟ କରୁଅଛ ଯେ ତାହା (ସେମୟେ ସମୟେ) ନିଜର ସମସ୍ତ ଶକ୍ତି ହରାଇ ବସେ, ଏହାପରେ ଯେତେବେଳେ ଆମେ ତା ଉପରେ ଜଳ ବୃଷ୍ଟି କରାଉ, ସେତେବେଳେ ତାହା ଆଲୋଡ଼ିତ ହୁଏ ଓ ତାହାର ଅଭିବୃଦ୍ଧି ଘଟେ ଓ ତାହା ସକଳ ପ୍ରକାରର ସୁନ୍ଦର ଉଦ୍ଭିଦ ଉପୁଜାଏ ।

نُكُمْ وَ نُقِرُّ فِي الْاَرْحَامِ مَا نَشَاۤءُ اِلٰۤى اَجَلٍ مُّسَمًّى ثُمَّ نُخْرِجُكُمْ طِفْلًا ثُمَّ لِتَبْلُغُوْۤا اَشُدَّكُمْ ۚ وَ مِنْكُمْ مَّنْ يُّتَوَفّٰى وَ مِنْكُمْ مَّنْ يُّرَدُّ اِلٰۤى اَرْذَلِ الْعُمُرِ لِكَيْلَا يَعْلَمَ مِنْۢ بَعْدِ عِلْمٍ شَيْـًٔا ؕ وَ تَرَى الْاَرْضَ هَامِدَةً فَاِذَاۤ اَنْزَلْنَا عَلَيْهَا الْمَآءَ اهْتَزَّتْ وَ رَبَتْ وَ اَنْۢبَتَتْ مِنْ كُلِّ زَوْجٍۭ بَهِيْجٍ ۝٦

୭. ଏ ସବୁ ଏଥିସକାଶେ ଘଟେ ଯେ ଅଲ୍ଲାହ ହିଁ ଚିର ସତ୍ୟ (ଓ ଶାଶ୍ୱତ), ଏବଂ ସେ ମୃତକୁ ଜୀବିତ କରନ୍ତି, ଓ ସେ ସମସ୍ତ ବିଷୟ କରିବାକୁ ସକ୍ଷମ ।

ذٰلِكَ بِاَنَّ اللّٰهَ هُوَ الْحَقُّ وَ اَنَّهٗ يُحْيِ الْمَوْتٰى وَ اَنَّهٗ عَلٰى كُلِّ شَيْءٍ قَدِيْرٌ ۝٧

୮. ଏବଂ ପ୍ରତ୍ୟେକ ବସ୍ତୁ ପାଇଁ ଯେଉଁ ସମୟ ନିର୍ଦ୍ଧାରିତ ହୋଇଛି ତାହା ଯେ ନିଶ୍ଚୟ ଆସିବ ଏଥିରେ କୌଣସି ସନ୍ଦେହ ନାହିଁ, ଏବଂ ଯେଉଁମାନେ କବର ମଧ୍ୟରେ ଅଛନ୍ତି ଅଲ୍ଲାହ ନିଶ୍ଚୟ ସେମାନଙ୍କୁ ପୁନରୁତ୍ଥିତ କରାଇବେ ।

وَّ اَنَّ السَّاعَةَ اٰتِيَةٌ لَّا رَيْبَ فِيْهَا ۙ وَ اَنَّ اللّٰهَ يَبْعَثُ مَنْ فِي الْقُبُوْرِ ۝٨

୯. ଏବଂ ଏପରି କେତେକ ଲୋକ ଅଛନ୍ତି ଯେଉଁମାନଙ୍କ ପାଖରେ କୌଣସି ଜ୍ଞାନ, କୌଣସି ଉପଦେଶ ଓ କୌଣସି ଆଲୋକ ପ୍ରଦାୟିନୀ (ଧର୍ମ) ଗ୍ରନ୍ଥ ନ ଥାଇ ମଧ୍ୟ ସେମାନେ ଅଲ୍ଲାହଙ୍କ ସଂକ୍ରାନ୍ତରେ ଏପରି ଭାବେ ତର୍କ କରନ୍ତି ଯେ,

وَ مِنَ النَّاسِ مَنْ يُّجَادِلُ فِي اللّٰهِ بِغَيْرِ عِلْمٍ وَّ لَا هُدًى وَّ لَا كِتٰبٍ مُّنِيْرٍ ۝٩

୧୦. (ସେମାନେ ଗର୍ବରେ) ନିଜ ମୁହଁ ମୋଡ଼ିଥା'ନ୍ତି ଯଦ୍ଦ୍ୱାରା କି ସେମାନେ ଅଲ୍ଲାହଙ୍କ ପଥରୁ ଲୋକମାନଙ୍କୁ ବିପଥଗାମୀ କରାଇବେ; ଏପରି ଲୋକମାନଙ୍କ ସକାଶେ ଏହି ସଂସାରରେ ଅପମାନ ରହିଅଛି, ଏବଂ କୟାମତ ଦିନ ମଧ୍ୟ ଆମେ ସେମାନଙ୍କୁ ଜଳନ୍ତା ଶାସ୍ତି ପ୍ରଦାନ କରିବୁ ।

ثَانِيَ عِطْفِهٖ لِيُضِلَّ عَنْ سَبِيْلِ اللّٰهِ ؕ لَهٗ فِي الدُّنْيَا خِزْيٌ وَّ نُذِيْقُهٗ يَوْمَ الْقِيٰمَةِ عَذَابَ الْحَرِيْقِ ۝١٠

ذٰلِكَ بِمَا قَدَّمَتْ يَدٰكَ وَاَنَّ اللّٰهَ لَيْسَ بِظَلَّامٍ لِّلْعَبِيْدِ ﴿١١﴾

୧୧. ତୁମେମାନେ ଯାହାକିଛି ପୂର୍ବରୁ ନିଜ ହାତରେ କରିଅଛ ସେଥିଯୋଗୁଁ ଏହା ଘଟିବ ଏବଂ (ଏହା ମଧ୍ୟ ଜଣାପଡ଼ିବ ଯେ) ଅଲ୍ଲାହ ନିଜର ଭକ୍ତମାନଙ୍କ ପ୍ରତି ଆଦୌ କୌଣସି ପ୍ରକାର ଅତ୍ୟାଚାର କରନ୍ତି ନାହିଁ ।

ରୁ : ୨

وَمِنَ النَّاسِ مَنْ يَّعْبُدُ اللّٰهَ عَلٰى حَرْفٍ ۚ فَاِنْ اَصَابَهٗ خَيْرُ اِۨطْمَاَنَّ بِهٖ ۚ وَاِنْ اَصَابَتْهُ فِتْنَةُ اِۨنْقَلَبَ عَلٰى وَجْهِهٖ ۚ خَسِرَ الدُّنْيَا وَالْاٰخِرَةَ ۗ ذٰلِكَ هُوَ الْخُسْرَانُ الْمُبِيْنُ ﴿١٢﴾

୧୨. ଏବଂ ଲୋକମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ ଇଚ୍ଛା ନ କରି ମଧ୍ୟ ଅଲ୍ଲାହଙ୍କର ଉପାସନା କରନ୍ତି; ସୁତରାଂ ଯଦି ସେମାନଙ୍କର କୌଣସି କଲ୍ୟାଣ ହୁଏ, ତେବେ ସେମାନେ ସେଥିରେ ଆନନ୍ଦିତ ହୁଅନ୍ତି; ଏବଂ ଯଦି ସେମାନଙ୍କ ପ୍ରତି କୌଣସି ଦୁଃଖ ଉପସ୍ଥିତ ହୁଏ, ତେବେ ସେମାନେ ସିଧା ମୁହଁ ମୋଡ଼ି ଚାଲିଯାଆନ୍ତି; ସେମାନେ ଏହି ସଂସାରରେ ତଥା ପରକାଳରେ କ୍ଷତିଗ୍ରସ୍ତ ହୁଅନ୍ତି, ଏବଂ ଏହା ହିଁ ସୁସ୍ପଷ୍ଟ କ୍ଷତି ।

يَدْعُوْا مِنْ دُوْنِ اللّٰهِ مَا لَا يَضُرُّهٗ وَمَا لَا يَنْفَعُهٗ ۗ ذٰلِكَ هُوَ الضَّلٰلُ الْبَعِيْدُ ﴿١٣﴾

୧୩. ସେମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଏପରି ବସ୍ତୁକୁ ଡାକନ୍ତି ଯାହା ସେମାନଙ୍କର କୌଣସି କ୍ଷତି କରିପାରିବ ନାହିଁ କି ଲାଭ କରି ପାରିବ ନାହିଁ; ଏବଂ ଏହା ହିଁ ନିକୃଷ୍ଟ ଧରଣର ପଥଭ୍ରାନ୍ତି ।

يَدْعُوْا لَمَنْ ضَرُّهٗ اَقْرَبُ مِنْ نَّفْعِهٖ ۗ لَبِئْسَ الْمَوْلٰى وَلَبِئْسَ الْعَشِيْرُ ﴿١٤﴾

୧୪. ସେମାନେ ତାହାକୁ ଡାକନ୍ତି ଯାହାର କ୍ଷତି (ତାହାର) ଲାଭ ଅପେକ୍ଷା ଅଧିକ ନିକଟ; ଏପରି ପ୍ରଭୁ ଅତିଶୟ ମନ୍ଦ, ଏବଂ ଏପରି ସଙ୍ଗୀ (ମଧ୍ୟ) ଅତିଶୟ ମନ୍ଦ ।

اِنَّ اللّٰهَ يُدْخِلُ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ ۗ اِنَّ اللّٰهَ يَفْعَلُ مَا يُرِيْدُ ﴿١٥﴾

୧୫. ଯେଉଁ ବିଶ୍ୱାସକାରୀମାନେ ସମୁଚିତ କର୍ମ କରନ୍ତି, ଅଲ୍ଲାହ ନିଶ୍ଚୟ ସେମାନଙ୍କୁ ଏପରି ଉଦ୍ୟାନରେ ପ୍ରବେଶ କରାଇବେ ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ; ବାସ୍ତବରେ ଅଲ୍ଲାହ ଯାହା ଇଚ୍ଛା କରନ୍ତି ତାହା ହିଁ କରିଥା'ନ୍ତି ।

مَنْ كَانَ يَظُنُّ اَنْ لَّنْ يَّنْصُرَهُ اللّٰهُ فِى الدُّنْيَا وَالْاٰخِرَةِ فَلْيَمْدُدْ بِسَبَبٍ اِلَى السَّمَآءِ ثُمَّ لْيَقْطَعْ فَلْيَنْظُرْ هَلْ يُذْهِبَنَّ كَيْدُهٗ مَا يَغِيْظُ ﴿١٦﴾

୧୬. ଯେଉଁ ବ୍ୟକ୍ତି ଏହା ବିଶ୍ୱାସ କରୁଥାଏ ଯେ ଅଲ୍ଲାହ ତାହାଙ୍କୁ (ଅର୍ଥାତ୍ ହଜରତ ମହମ୍ମଦଙ୍କୁ) ଇହକାଳରେ ବା ପରକାଳରେ କଦାପି ସାହାଯ୍ୟ କରିବେ ନାହିଁ; ତେବେ ସେ ଗୋଟିଏ (ଦଉଡ଼ି) କୁ ଆକାଶ ପର୍ଯ୍ୟନ୍ତ ନେଇଯାଉ (ଏବଂ ସେଥିରେ ଚଢ଼ିଯାଉ), ତା'ପରେ ତାହାକୁ କାଟି ଦେଉ,[୧] ତା'ପରେ ସେ ଦେଖୁ ଯେ ଯେଉଁ ବିଷୟ (ଅର୍ଥାତ୍ ହଜରତ ମହମ୍ମଦଙ୍କ ଐଶ୍ୱରିକ ସାହାଯ୍ୟ ଓ ବିଜୟ) ତାକୁ କ୍ରୋଧାନ୍ୱିତ କରୁଛି କ'ଣ ତାହାକୁ ତା'ର କୌଶଳ ଦୂର କରିଛି ?

୧. ଅର୍ଥାତ୍ ଭୂ-ପୃଷ୍ଠରେ ନିପତିତ ହୋଇ ମୃତ୍ୟୁବରଣ କରିବ କାରଣ ତାହାର ଆଶା କଦାପି ପୂରଣ ହେବ ନାହିଁ । ସୁତରାଂ ତା'ର ମୃତ୍ୟୁ ହିଁ ତାକୁ ନିରାଶ ହେବାରୁ ରକ୍ଷା କରିବ ।

୧୬. ଏବଂ ଏହିପରି ଭାବରେ ଆମେ ଏହାକୁ (ଅର୍ଥାତ୍ ପବିତ୍ର କୋରାନକୁ) ପ୍ରକାଶ୍ୟ ନିଦର୍ଶନ ରୂପେ ରଚନା କରି ଅବତୀର୍ଣ୍ଣ କରିଅଛୁ, ଏବଂ ଅଲ୍ଲାହ ଯାହା ସଂକ୍ରାନ୍ତରେ ଇଛା କରନ୍ତି ବାସ୍ତବରେ ତାହାକୁ ହିଁ ପ୍ରକୃତ ମାର୍ଗ ପ୍ରଦର୍ଶନ କରନ୍ତି ।

وَكَذٰلِكَ اَنۡزَلۡنٰهُ اٰيٰتٍۭ بَيِّنٰتٍ ۙ وَّاَنَّ اللّٰهَ يَهۡدِىۡ مَنۡ يُّرِيۡدُ ۝١٦

୧୮. ବାସ୍ତବରେ ଯେଉଁମାନେ (ହଜରତ ମହମ୍ମଦଙ୍କ ଉପରେ) ବିଶ୍ୱାସ ସ୍ଥାପନ କରିଛନ୍ତି ଏବଂ ଯେଉଁମାନେ ଇହୁଦୀ ହୋଇଗଲେ ତଥା ଯେଉଁମାନେ ସାବି, ଖ୍ରୀଷ୍ଟିୟାନ ଓ ମଜୁସୀ ଅଟନ୍ତି ଏବଂ ଯେଉଁମାନେ ଅଲ୍ଲାହଙ୍କ (ସହିତ ଅନ୍ୟକୁ) ସମକକ୍ଷ ମାନନ୍ତି, ଅଲ୍ଲାହ ନିଶ୍ଚୟ କୟାମତ ଦିନ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରିଦେବେ; ବାସ୍ତବରେ ଅଲ୍ଲାହ ହିଁ ପ୍ରତ୍ୟେକ ବିଷୟର ପର୍ଯ୍ୟବେକ୍ଷକ ।

اِنَّ الَّذِيۡنَ اٰمَنُوۡا وَالَّذِيۡنَ هَادُوۡا وَالصّٰبِـِٕـيۡنَ وَالنَّصٰرٰى وَالۡمَجُوۡسَ وَالَّذِيۡنَ اَشۡرَكُوۡۤا ۖ اِنَّ اللّٰهَ يَفۡصِلُ بَيۡنَهُمۡ يَوۡمَ الۡقِيٰمَةِ ؕ اِنَّ اللّٰهَ عَلٰى كُلِّ شَىۡءٍ شَهِيۡدٌ ۝١٧

୧୯. (ହେ ଇସଲାମ ବିରୋଧୀ ମାନବ !) କ'ଣ ତୁମେ ଲକ୍ଷ୍ୟ କରୁନାହଁ କି ଯେ କେହି ଆକାଶରେ ଅଛି ସେ ଅଲ୍ଲାହଙ୍କର ଆଜ୍ଞାପାଳନ କରୁଅଛି; ଏବଂ ସେହିପରି ଭାବେ ଯେ କେହି ଭୂପୃଷ୍ଠରେ ଅଛି; ଓ (ସେହିପରି) ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ପର୍ବତ, ବୃକ୍ଷ, ଜୀବଜନ୍ତୁ ଓ ଅଧିକାଂଶ ମନୁଷ୍ୟ ମଧ୍ୟ (ତାହାଙ୍କର ଆଜ୍ଞାପାଳନ କରୁଛନ୍ତି) ? କିନ୍ତୁ ଲୋକମାନଙ୍କ ମଧ୍ୟରୁ ଏପରି ଏକ ବୃହତ୍ ଗୋଷ୍ଠୀ ଅଛି ଯାହାଙ୍କ ସଂକ୍ରାନ୍ତରେ (ସେମାନଙ୍କ ଅବଜ୍ଞା ହେତୁ) ଶାସ୍ତିର ନିଷ୍ପତ୍ତି ହୋଇଅଛି; ଏବଂ ଯାହାକୁ ଅଲ୍ଲାହ ଲାଞ୍ଛିତ କରନ୍ତି ତାହାକୁ କେହି ସମ୍ମାନ ଦେଇପାରେ ନାହିଁ; ବାସ୍ତବିକ ଅଲ୍ଲାହ ଯାହା ଇଛା କରନ୍ତି ତାହା କରିଥାନ୍ତି ।

اَلَمۡ تَرَ اَنَّ اللّٰهَ يَسۡجُدُ لَهٗ مَنۡ فِى السَّمٰوٰتِ وَمَنۡ فِى الۡاَرۡضِ وَالشَّمۡسُ وَالۡقَمَرُ وَالنُّجُوۡمُ وَالۡجِبَالُ وَالشَّجَرُ وَالدَّوَآبُّ وَكَثِيۡرٌ مِّنَ النَّاسِ ؕ وَكَثِيۡرٌ حَقَّ عَلَيۡهِ الۡعَذَابُ ؕ وَمَنۡ يُّهِنِ اللّٰهُ فَمَا لَهٗ مِنۡ مُّكۡرِمٍ ؕ اِنَّ اللّٰهَ يَفۡعَلُ مَا يَشَآءُ ۝١٨

୨୦. ଏ ଦୁଇଟି ପରସ୍ପର-[1]ବିରୋଧୀ ଗୋଷ୍ଠୀ ଏପରି ଅଟନ୍ତି ଯେଉଁମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ସମ୍ବନ୍ଧରେ କଳହ କରୁଥା'ନ୍ତି; ସୁତରାଂ ଯେଉଁମାନେ (ଅଲ୍ଲାହଙ୍କର ଉପରୋକ୍ତ ଗୁଣାବଳୀ ସଂକ୍ରାନ୍ତରେ) ଅବିଶ୍ୱାସ କରିଛନ୍ତି, ସେମାନଙ୍କ ସକାଶେ ଅଗ୍ନି (ନିର୍ମିତ) ବସ୍ତ୍ର ପ୍ରସ୍ତୁତ କରାହେବ, ଏବଂ ସେମାନଙ୍କ ମସ୍ତକ ଉପରେ ଉତ୍ତପ୍ତ ଜଳ ଢଳାହେବ ।

هٰذٰنِ خَصۡمٰنِ اخۡتَصَمُوۡا فِىۡ رَبِّهِمۡ ۖ فَالَّذِيۡنَ كَفَرُوۡا قُطِّعَتۡ لَهُمۡ ثِيَابٌ مِّنۡ نَّارٍ ؕ يُصَبُّ مِنۡ فَوۡقِ رُءُوۡسِهِمُ الۡحَمِيۡمُ ۝١٩

୨୧. ଫଳରେ ଏହି ଉତ୍ତପ୍ତ ଜଳ ଯୋଗୁଁ ଯାହା କିଛି ସେମାନଙ୍କ ଉଦର ମଧ୍ୟରେ ଅଛି ତାହା ବିଗଳିତ ହେବ, ଓ ସେମାନଙ୍କ ଚର୍ମ ମଧ୍ୟ (ବିଗଳିତ ହେବ) ।

يُصۡهَرُ بِهٖ مَا فِىۡ بُطُوۡنِهِمۡ وَالۡجُلُوۡدُ ۝٢٠

୨୨. ଏବଂ ସେମାନଙ୍କ(ଶାସ୍ତି) ପାଇଁ ଲୁହା ହାତୁଡ଼ି ପ୍ରସ୍ତୁତ କରାହେବ) ।

وَلَهُمۡ مَّقَامِعُ مِنۡ حَدِيۡدٍ ۝٢١

---

୧. ଅର୍ଥାତ୍ ବିଶ୍ୱାସକାରୀ ଓ ଅବିଶ୍ୱାସକାରୀ ।

كُلَّمَآ اَرَادُوْٓا اَنْ يَّخْرُجُوْا مِنْهَا مِنْ غَمٍّ اُعِيْدُوْا فِيْهَا ۗ وَ ذُوْقُوْا عَذَابَ الْحَرِيْقِ ﴿٢٣﴾

୨୩. ଯେତେବେଳେ ସେମାନେ ଦୁଃଖ ଓ ଦୁଶ୍ଚିନ୍ତା ଯୋଗୁଁ ଏହି ଶାସ୍ତିରୁ ପଳାୟନ କରିବାର ଚେଷ୍ଟା କରିବେ, ସେତେବେଳେ ସେମାନଙ୍କୁ ପୁନରାୟ ସେଠାକୁ ଫେରାଇ ଦିଆଯିବ; (ଏବଂ କୁହାଯିବ), ''ତୁମେମାନେ ଦହନକାରୀ ଶାସ୍ତି ଭୋଗ କରୁଥାଅ।''

ରୁ :୩

اِنَّ اللّٰهَ يُدْخِلُ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ يُحَلَّوْنَ فِيْهَا مِنْ اَسَاوِرَ مِنْ ذَهَبٍ وَّلُؤْلُؤًا ۭ وَلِبَاسُهُمْ فِيْهَا حَرِيْرٌ ﴿٢٤﴾

୨୪. ଯେଉଁ (ବିଶ୍ୱାସକାରୀ)ମାନେ ଉଚିତ କର୍ମ କରୁଛନ୍ତି ନିଶ୍ଚୟ ଅଲ୍ଲାଃ ସେମାନଙ୍କୁ ଏପରି ଉଦ୍ୟାନରେ ଅବସ୍ଥାପିତ କରିବେ ଯାହାର (ଛାୟା) ତଳେ ଝରଣା ପ୍ରବାହିତ ହେଉଥିବ; ସେଠାରେ ସେମାନଙ୍କୁ ସ୍ୱର୍ଣ୍ଣ ଓ ମୁକ୍ତା ଖଚିତ କଙ୍କଣ ପିନ୍ଧାଇ ଦିଆଯିବ, ଏବଂ ସେମାନଙ୍କ ପରିଧାନ ରେଶମର ହୋଇଥିବ।

وَهُدُوْٓا اِلَى الطَّيِّبِ مِنَ الْقَوْلِ ۚ وَهُدُوْٓا اِلٰى صِرَاطِ الْحَمِيْدِ ﴿٢٥﴾

୨୫. ଏବଂ ସେମାନଙ୍କୁ ପବିତ୍ର ବିଷୟ ପ୍ରତି ପଥ ପ୍ରଦର୍ଶିତ କରାହେବ, ଏବଂ ପ୍ରଶଂସନୀୟ କାର୍ଯ୍ୟପନ୍ଥା ସଂକ୍ରାନ୍ତରେ ନିର୍ଦ୍ଦେଶ ଦିଆଯିବ।

اِنَّ الَّذِيْنَ كَفَرُوْا وَيَصُدُّوْنَ عَنْ سَبِيْلِ اللّٰهِ وَالْمَسْجِدِ الْحَرَامِ الَّذِيْ جَعَلْنٰهُ لِلنَّاسِ سَوَآءَ ۨالْعَاكِفُ فِيْهِ وَالْبَادِ ۭ وَمَنْ يُّرِدْ فِيْهِ بِاِلْحَادٍۢ بِظُلْمٍ نُّذِقْهُ مِنْ عَذَابٍ اَلِيْمٍ ﴿٢٦﴾

୨୬. (କିନ୍ତୁ) ଯେଉଁମାନେ ଅବିଶ୍ୱାସକାରୀ ଅଟନ୍ତି ଓ ଅଲ୍ଲାଃଙ୍କ ମାର୍ଗରୁ ତଥା ଅଲ୍ଲାଃଙ୍କର ପବିତ୍ର ଗୃହ, ଯାହାକୁ ଆମେ ସମଗ୍ର ମାନବ ଜାତିର କଲ୍ୟାଣ ସକାଶେ ଗଢ଼ିଅଛୁ, ସେଠାକୁ ଯିବାରେ (ଲୋକମାନଙ୍କୁ) ବାଧା ଦିଅନ୍ତି; (ଅଥଚ ତାହାକୁ ଆମେ ସମସ୍ତ ମାନବ ସମାଜ ପାଇଁ ଗଢ଼ିଅଛୁ); ସେମାନଙ୍କ ପାଇଁ ମଧ୍ୟ (ଗଢ଼ିଅଛୁ) ଯେଉଁମାନେ ଏହା ମଧ୍ୟରେ ବସିରହି ଅଲ୍ଲାଃଙ୍କର ଉପାସନା କରନ୍ତି ଏବଂ ସେମାନଙ୍କ ପାଇଁ ମଧ୍ୟ ଯେଉଁମାନେ ଜଙ୍ଗଲରେ ବାସ କରନ୍ତି; ଏବଂ ଯେଉଁ ବ୍ୟକ୍ତି ତହିଁରେ ଅତ୍ୟାଗ୍ରହପୂର୍ବକ କୁଟିଳତା ସୃଷ୍ଟି କରିବାକୁ ଇଚ୍ଛା କରିବ ଆମେ ତାହାକୁ ଯନ୍ତ୍ରଣାଦାୟକ ଶାସ୍ତି ପ୍ରଦାନ କରିବୁ।

ରୁ :୪

وَاِذْ بَوَّاْنَا لِاِبْرٰهِيْمَ مَكَانَ الْبَيْتِ اَنْ لَّا تُشْرِكْ بِيْ شَيْـًٔا وَّطَهِّرْ بَيْتِيَ لِلطَّاۗىِٕفِيْنَ وَالْقَاۗىِٕمِيْنَ وَالرُّكَّعِ السُّجُوْدِ ﴿٢٧﴾

୨୭. ଏବଂ (ସ୍ମରଣ କର) ଯେତେବେଳେ ଆମେ ଇବ୍ରାହିମଙ୍କୁ ଅଲ୍ଲାଃଙ୍କ ଗୃହ (ଅର୍ଥାତ୍ କା'ବା) ଠାରେ ଅବସ୍ଥାନ କରିବା ପାଇଁ ସୁଯୋଗ ଦେଲୁ (ଓ କହିଲୁ), ''ଆମ ସହିତ କୌଣସି ବସ୍ତୁକୁ ସମକକ୍ଷ କର ନାହିଁ, ଓ ଆମ ଗୃହକୁ ପରିକ୍ରମାକାରୀମାନଙ୍କ ସକାଶେ, ଦଣ୍ଡାୟମାନ ହୋଇ ଉପାସନା କରୁଥିବା ବ୍ୟକ୍ତିମାନଙ୍କ ସକାଶେ ତଥା ରୁକୁ ଓ ସିଜଦା[1] କରୁଥିବା ବ୍ୟକ୍ତିମାନଙ୍କ ସକାଶେ ପବିତ୍ର ରଖ।''

---

୧. ଏଠାରେ ନମାଜର ଏକ ଚିତ୍ର ଦିଆଯାଇଛି ଯହିଁରେ କିୟାମ, ରୁକୁ, ସିଜଦା ଆଦି କର୍ମ କରାଯାଏ।

୨୮. ''ଏବଂ ଲୋକମାନଙ୍କ ମଧ୍ୟରେ ଘୋଷଣା କର ଯେ ସେମାନେ ହଜ ଉଦ୍ଦେଶ୍ୟରେ ତୁମ ନିକଟକୁ ଚାଲି ଚାଲି ଓ ଏପରି ବାହନରେ ଆସନ୍ତୁ ଯାହା ଦୀର୍ଘ ଯାତ୍ରା ଯୋଗୁଁ ଶୀର୍ଣ୍ଣ ହୋଇ ଯାଇଥିବ ଓ ଦୂରଦୂରାନ୍ତରୁ ଗଭୀର ପଥ ଅତିକ୍ରମ କରି ଆସିଥିବ ।''

وَأَذِّنْ فِي النَّاسِ بِالْحَجِّ يَأْتُوكَ رِجَالًا وَعَلَىٰ كُلِّ ضَامِرٍ يَأْتِينَ مِنْ كُلِّ فَجٍّ عَمِيقٍ ٢٨

୨୯. ''ଯେପରିକି ସେ (ତୀର୍ଥ ଯାତ୍ରୀ) ମାନେ ସେହି ଲାଭକୁ ଲକ୍ଷ୍ୟ କରିପାରିବେ ଯାହା ସେମାନଙ୍କ ସକାଶେ (ନିର୍ଦ୍ଦିଷ୍ଟ) ରହିଅଛି; ଏବଂ କେତେକ ନିର୍ଦ୍ଦିଷ୍ଟ ଦିନମାନଙ୍କରେ ଅଲ୍ଲାଃଙ୍କୁ ସେହି କୃପାଯୋଗୁଁ ସ୍ମରଣ କରନ୍ତୁ ଯାହା ଆମେ (ଅଲ୍ଲାଃ) ସେମାନଙ୍କୁ ବିଭିନ୍ନ ପ୍ରକାର ବଡ ବଡ ଚତୁଃଷ୍ପଦ ପ୍ରାଣୀରୂପେ ଦେଇଅଛୁ; ଅତଏବ, ସେମାନେ ସେ (ପ୍ରାଣୀ)ମାନଙ୍କର ମାଂସ ଖାଆନ୍ତୁ ଏବଂ ବିପନ୍ନ ଓ ଦୀନ ଦରିଦ୍ରଙ୍କୁ ଖୁଆନ୍ତୁ ।''

لِيَشْهَدُوا مَنَافِعَ لَهُمْ وَيَذْكُرُوا اسْمَ اللَّهِ فِي أَيَّامٍ مَعْلُومَاتٍ عَلَىٰ مَا رَزَقَهُمْ مِنْ بَهِيمَةِ الْأَنْعَامِ ۖ فَكُلُوا مِنْهَا وَأَطْعِمُوا الْبَائِسَ الْفَقِيرَ ٢٩

୩୦. ''ତା'ପରେ ସେମାନେ ନିଜକୁ ପରିଷ୍କାର ପରିଚ୍ଛନ୍ନ କରନ୍ତୁ, ଓ ନିଜର ବ୍ରତ ପାଳନ କରନ୍ତୁ, ଓ (ଏହାପରେ) ପୁରାତନ ଗୃହ (କା'ବା)ର ପରିକ୍ରମା କରନ୍ତୁ ।''

ثُمَّ لْيَقْضُوا تَفَثَهُمْ وَلْيُوفُوا نُذُورَهُمْ وَلْيَطَّوَّفُوا بِالْبَيْتِ الْعَتِيقِ ٣٠

୩୧. ପ୍ରକୃତ କଥା ହେଉଛି ଯେ ଯେଉଁ ବ୍ୟକ୍ତି ଅଲ୍ଲାଃଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ କରାଯାଇଥିବା ସମ୍ମାନିତ ସ୍ଥାନଗୁଡ଼ିକୁ ସମ୍ମାନ ପ୍ରଦର୍ଶନ କରେ, ତେବେ ଏହା ଅଲ୍ଲାଃଙ୍କ ନିକଟରେ ତାହାପାଇଁ କଲ୍ୟାଣକର ଅଟେ; ଏବଂ (ହେ ବିଶ୍ୱାସକାରୀମାନେ !) ତୁମମାନଙ୍କ ସକାଶେ (ସମସ୍ତ) ଚତୁଃଷ୍ପଦ ପ୍ରାଣୀଙ୍କୁ ବୈଧ କରାଯାଇଛି ସେହିମାନଙ୍କ ବ୍ୟତୀତ ଯେଉଁମାନଙ୍କୁ କୋରାନରେ ଅବୈଧ ଘୋଷଣା କରାଯାଇଛି; ତେଣୁ ତୁମେମାନେ ପିତୁଳା ପୂଜାରୁ ନିଜକୁ ରକ୍ଷା କର ଓ ମିଥ୍ୟା କହିବାରୁ ନିଜକୁ ନିବୃତ୍ତ କର,

ذَٰلِكَ وَمَنْ يُعَظِّمْ حُرُمَاتِ اللَّهِ فَهُوَ خَيْرٌ لَهُ عِنْدَ رَبِّهِ ۗ وَأُحِلَّتْ لَكُمُ الْأَنْعَامُ إِلَّا مَا يُتْلَىٰ عَلَيْكُمْ ۖ فَاجْتَنِبُوا الرِّجْسَ مِنَ الْأَوْثَانِ وَاجْتَنِبُوا قَوْلَ الزُّورِ ٣١

୩୨. ଏହିପରି ନିଜର ଉପାସନା ଓ ଆଜ୍ଞାନୁବର୍ତ୍ତିତାକୁ କେବଳ ଅଲ୍ଲାଃଙ୍କ ସକାଶେ ନିର୍ଦ୍ଦିଷ୍ଟ କର, ଏବଂ ତାହାଙ୍କ ସହିତ କାହାକୁ ସମକକ୍ଷ କର ନାହିଁ; ଏବଂ ଯେ ଅଲ୍ଲାଃଙ୍କ ସହିତ କାହାରିକୁ ସମକକ୍ଷ କରେ, ସେ ଆକାଶରୁ ପତିତ ହୁଏ, ଓ ପକ୍ଷୀମାନେ ତାହାକୁ ଝାମ୍ପି ନେଇ ଯାଆନ୍ତି, ଓ ବାୟୁ ତାହାକୁ ଅନ୍ୟତ୍ର ନିକ୍ଷେପ କରେ ।

حُنَفَاءَ لِلَّهِ غَيْرَ مُشْرِكِينَ بِهِ ۚ وَمَنْ يُشْرِكْ بِاللَّهِ فَكَأَنَّمَا خَرَّ مِنَ السَّمَاءِ فَتَخْطَفُهُ الطَّيْرُ أَوْ تَهْوِي بِهِ الرِّيحُ فِي مَكَانٍ سَحِيقٍ ٣٢

୩୩. ପ୍ରକୃତ କଥା ହେଉଛି ଯେ ଯେଉଁ ବ୍ୟକ୍ତି ଅଲ୍ଲାଃଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ କରାଯାଇଥିବା ନିଦର୍ଶନଗୁଡ଼ିକ ପ୍ରତି ସମ୍ମାନପ୍ରଦର୍ଶନ କରିବ, ତାହା (ଅର୍ଥାତ୍ ସେହି କର୍ମ) ଆନ୍ତରିକ ଧର୍ମଭୀରୁତା ରୂପେ ବିବେଚିତ ହେବ ।

ذَٰلِكَ وَمَنْ يُعَظِّمْ شَعَائِرَ اللَّهِ فَإِنَّهَا مِنْ تَقْوَى الْقُلُوبِ ٣٣

لَكُمْ فِيْهَا مَنَافِعُ اِلٰٓى اَجَلٍ مُّسَمًّى ثُمَّ مَحِلُّهَآ اِلَى الْبَيْتِ الْعَتِيْقِ ﴿٣٤﴾

୩୪. ମନେରଖ ତୁମମାନଙ୍କୁ ଏଥିରୁ (ଅର୍ଥାତ୍ ଏହି କୁର୍ବାନି ପଶୁରୁ) ଏକ ନିର୍ଦ୍ଦିଷ୍ଟ କାଳ ପାଇଁ ଲାଭ ହାସଲ କରିବା ବିଧେୟ ଅଟେ. ତା'ପରେ ଏ (ପଶୁ)ମାନଙ୍କୁ ଅଲ୍ଲାହଙ୍କର (ସେହି) ପୁରାତନ ଗୃହ ପର୍ଯ୍ୟନ୍ତ ଘେନିଯିବା ଉଚିତ ହେବ ।

ରୁ :୫

وَلِكُلِّ اُمَّةٍ جَعَلْنَا مَنْسَكًا لِّيَذْكُرُوا اسْمَ اللّٰهِ عَلٰى مَا رَزَقَهُمْ مِّنْۢ بَهِيْمَةِ الْاَنْعَامِ فَاِلٰهُكُمْ اِلٰهٌ وَّاحِدٌ فَلَهٗٓ اَسْلِمُوْا وَبَشِّرِ الْمُخْبِتِيْنَ ﴿٣٥﴾

୩୫. ଏବଂ ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଆମ୍ଭେ କୁର୍ବାନିର ଏକ ପଦ୍ଧତି ନିର୍ଦ୍ଧାରଣ କରିଅଛୁ ଯଦ୍ଦ୍ୱାରାକି ସେମାନଙ୍କୁ ଅଲ୍ଲାହ ଯେଉଁ ସବୁ ଚତୁଃଷ୍ପଦ ପ୍ରାଣୀ ଦେଇଛନ୍ତି ସେମାନେ (ହଲାଲ କରିବା ବେଳେ) ତାହା ଉପରେ ଅଲ୍ଲାହଙ୍କର ନାମ ଉଚ୍ଚାରଣ କରିବେ; (ସୁତରାଂ ମନେରଖ ଯେ) ତୁମମାନଙ୍କର ଅଲ୍ଲାହ ଏକମାତ୍ର ଅଲ୍ଲାହ ଅଟନ୍ତି; ଅତଏବ ତୁମେମାନେ ତାହାଙ୍କ ନିକଟରେ ଆତ୍ମସମର୍ପଣ କର; ଏବଂ ଯେଉଁମାନେ (ଅଲ୍ଲାହଙ୍କ ସମୀପରେ) ବିନମ୍ରତା ପ୍ରକାଶ କରନ୍ତି ସେମାନଙ୍କୁ ସୁସମାଚାର ପ୍ରଦାନ କର ।

الَّذِيْنَ اِذَا ذُكِرَ اللّٰهُ وَجِلَتْ قُلُوْبُهُمْ وَالصّٰبِرِيْنَ عَلٰى مَآ اَصَابَهُمْ وَالْمُقِيْمِي الصَّلٰوةِ وَمِمَّا رَزَقْنٰهُمْ يُنْفِقُوْنَ ﴿٣٦﴾

୩୬. (ଏପରି ଲୋକମାନଙ୍କୁ ସୁସମାଚାର ଦିଅ) ଯେଉଁମାନଙ୍କ ହୃଦୟ ସେମାନଙ୍କ ସମ୍ମୁଖରେ ଅଲ୍ଲାହଙ୍କର ନାମ ଉଚ୍ଚାରଣ ହେବା ମାତ୍ରେ ଭକ୍ତିମିଶ୍ରିତ ଭୟରେ ପ୍ରକମ୍ପିତ ହୁଏ; ଏବଂ ସେମାନଙ୍କୁ ମଧ୍ୟ (ସୁସମାଚାର ଦିଅ) ଯେଉଁମାନେ ନିଜ ପ୍ରତି ବିପଦବେଳେ ଧୈର୍ଯ୍ୟ ଧରନ୍ତି, ଓ ସୁବ୍ୟବସ୍ଥରୂପେ ନମାଜ ପାଠ କରନ୍ତି, ଏବଂ ଯାହା କିଛି ଆମ୍ଭେ ସେମାନଙ୍କୁ ପ୍ରଦାନ କରିଅଛୁ (ଆମ୍ଭର ସନ୍ତୋଷ ବିଧାନପାଇଁ) ତହିଁରୁ ବ୍ୟୟ କରିଥା'ନ୍ତି ।

وَالْبُدْنَ جَعَلْنٰهَا لَكُمْ مِّنْ شَعَآئِرِ اللّٰهِ لَكُمْ فِيْهَا خَيْرٌ فَاذْكُرُوا اسْمَ اللّٰهِ عَلَيْهَا صَوَآفَّ فَاِذَا وَجَبَتْ جُنُوْبُهَا فَكُلُوْا مِنْهَا وَاَطْعِمُوا الْقَانِعَ وَالْمُعْتَرَّ كَذٰلِكَ سَخَّرْنٰهَا لَكُمْ لَعَلَّكُمْ تَشْكُرُوْنَ ﴿٣٧﴾

୩୭. ଏବଂ ଆମ୍ଭେ (କୁର୍ବାନି ପାଇଁ ଉଦ୍ଦିଷ୍ଟ) ଓଟମାନଙ୍କୁ ମଧ୍ୟ ତୁମମାନଙ୍କ ସକାଶେ ସମ୍ମାନଯୋଗ୍ୟ (ଓ ନିଦର୍ଶନ) ସ୍ୱରୂପ (ସୃଷ୍ଟି) କରିଅଛୁ; ତହିଁରେ ତୁମମାନଙ୍କ ସକାଶେ ଅଶେଷ କଲ୍ୟାଣ ରହିଅଛି; ତେଣୁ ସେମାନଙ୍କୁ ଧାଡିରେ ଠିଆ କରାଇ (ହଲାଲ କରିବାବେଳେ) ସେମାନଙ୍କ ଉପରେ ଅଲ୍ଲାହଙ୍କ ନାମ ଉଚ୍ଚାରଣ କର; ତାପରେ ଯେତେବେଳେ ସେମାନେ (ନିହତ ହୋଇ) ଭୂମିରେ ପଡିଯିବେ, ସେତେବେଳେ ତୁମେମାନେ ସେଥିରୁ (ଅର୍ଥାତ୍ ସେମାନଙ୍କ ମାଂସରୁ) ନିଜେ ମଧ୍ୟ ଖାଅ ଏବଂ ଅଳ୍ପରେ ସନ୍ତୁଷ୍ଟ ଦରିଦ୍ରମାନଙ୍କୁ ଓ ଭିକ୍ଷୁକମାନଙ୍କୁ ଖୁଆଅ; ଏହିପରି ଭାବରେ ଆମ୍ଭେ ସେ ପ୍ରାଣୀମାନଙ୍କୁ ତୁମମାନଙ୍କ କଲ୍ୟାଣ ସକାଶେ ରଚିଅଛୁ ଯଦ୍ଦ୍ୱାରାକି ତୁମେମାନେ କୃତଜ୍ଞ ହେବ ।

لَنْ يَّنَالَ اللّٰهَ لُحُوْمُهَا وَلَا دِمَآؤُهَا وَلٰكِنْ يَّنَالُهُ التَّقْوٰى مِنْكُمْ ۗ كَذٰلِكَ سَخَّرَهَا لَكُمْ لِتُكَبِّرُوا اللّٰهَ عَلٰى مَا هَدٰىكُمْ ۗ وَبَشِّرِ الْمُحْسِنِيْنَ ۝٣٨

୩୮. (ମନେରଖ) ସେମାନଙ୍କର ମାଂସ ଓ ରକ୍ତ କଦାପି ଅଲ୍ଲାହ୍‌ଙ୍କ ନିକଟରେ ପହଞ୍ଚେ ନାହିଁ; କିନ୍ତୁ ତୁମମାନଙ୍କ ଆନ୍ତରିକ ଧର୍ମଭୀରୁତା ତାହାଙ୍କ ନିକଟରେ ପହଞ୍ଚେ; (ବସ୍ତୁତଃ) ଏହିପରି ଭାବେ ଅଲ୍ଲାହ୍ ସେମାନଙ୍କୁ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି; ଯାହା ଫଳରେ କି ତୁମେମାନେ ଅଲ୍ଲାହ୍‌ଙ୍କର ମହିମାଗାନ କରିବ, କାରଣ ସେ ତୁମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇଛନ୍ତି; ଏବଂ (ଇସଲାମ ଧର୍ମ ବିଧିବିଧାନ-ଗୁଡ଼ିକୁ ସମ୍ପୂର୍ଣ୍ଣ ରୂପେ ପାଳନ କରୁଥିବା) ପୁଣ୍ୟବାନ୍‌ମାନଙ୍କୁ ତୁମେ ସୁସମାଚାର ପ୍ରଦାନ କର ।

اِنَّ اللّٰهَ يُدٰفِعُ عَنِ الَّذِيْنَ اٰمَنُوْا ۗ اِنَّ اللّٰهَ لَا يُحِبُّ كُلَّ خَوَّانٍ كَفُوْرٍ ۝٣٩

୩୯. ବାସ୍ତବରେ ଯେଉଁମାନେ ବିଶ୍ୱାସ କରିଥା'ନ୍ତି ଅଲ୍ଲାହ୍ ସେମାନଙ୍କୁ (ବିପଦରୁ) ରକ୍ଷା କରିଥା'ନ୍ତି; ଏବଂ ଅଲ୍ଲାହ୍ ବାସ୍ତବରେ ପ୍ରତ୍ୟେକ ବିଶ୍ୱାସଘାତକ (ଓ) କୃତଘ୍ନମାନଙ୍କୁ ପସନ୍ଦ କରନ୍ତି ନାହିଁ ।

ରୁ : ୬

اُذِنَ لِلَّذِيْنَ يُقٰتَلُوْنَ بِاَنَّهُمْ ظُلِمُوْا ۗ وَاِنَّ اللّٰهَ عَلٰى نَصْرِهِمْ لَقَدِيْرُ ۝٤٠

୪୦. ଯେଉଁମାନଙ୍କ ସହିତ (ବିନା କାରଣରେ) ଯୁଦ୍ଧ କରାଯାଏ, ସେମାନଙ୍କୁ ମଧ୍ୟ (ଯୁଦ୍ଧ [1] କରିବା ପାଇଁ) ଅନୁମତି ଦିଆଯାଉଅଛି, କାରଣ ସେମାନଙ୍କ ପ୍ରତି ଅତ୍ୟାଚାର କରାଯାଇଛି, ଏବଂ ବାସ୍ତବିକ ଅଲ୍ଲାହ୍ ସେମାନଙ୍କୁ ସାହାଯ୍ୟ କରିବାକୁ ସମର୍ଥ ।

الَّذِيْنَ اُخْرِجُوْا مِنْ دِيَارِهِمْ بِغَيْرِ حَقٍّ اِلَّآ اَنْ يَّقُوْلُوْا رَبُّنَا اللّٰهُ ۗ وَلَوْلَا دَفْعُ اللّٰهِ النَّاسَ بَعْضَهُمْ بِبَعْضٍ لَّهُدِّمَتْ صَوَامِعُ وَبِيَعٌ وَّصَلَوٰتٌ وَّمَسٰجِدُ يُذْكَرُ فِيْهَا اسْمُ اللّٰهِ كَثِيْرًا ۗ وَلَيَنْصُرَنَّ اللّٰهُ مَنْ يَّنْصُرُهٗ ۗ اِنَّ اللّٰهَ لَقَوِيٌّ عَزِيْزٌ ۝٤١

୪୧. ଏମାନେ (ସେହି ଲୋକ) ଯେଉଁମାନଙ୍କୁ ସେମାନଙ୍କ ଗୃହରୁ କେବଳ 'ଅଲ୍ଲାହ୍ ଆମମାନଙ୍କର ପାଳନକର୍ତ୍ତା ଅଟନ୍ତି' କହିବାରୁ କୌଣସି ଯୁକ୍ତିସଙ୍ଗତ କାରଣ ନ ଥାଇ ବିତାଡ଼ିତ କରାଗଲା; ଏବଂ ଯଦି ଅଲ୍ଲାହ୍ ଏହି (ଅବିଶ୍ୱାସକାରୀ) ମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଦ୍ୱାରା (ଦୁଷ୍କାମିରୁ) ଦୂରେଇ ନ ରଖନ୍ତେ, ତେବେ ଆଶ୍ରମ, ଗିର୍ଜା, (ଇହୁଦୀମାନଙ୍କ) ଉପାସନା ଗୃହ ଓ ମସଜିଦମାନଙ୍କୁ ଯେଉଁଠାରେ ଅଲ୍ଲାହ୍‌ଙ୍କ ନାମ ବହୁଳ ଭାବରେ ନିଆଯାଏ, ଧ୍ୱଂସ କରି ଦିଆଯାଆନ୍ତା; ଏବଂ ଅଲ୍ଲାହ୍ ସେହିମାନଙ୍କୁ ସାହାଯ୍ୟ କରିବେ, ଯେଉଁମାନେ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହ୍‌ଙ୍କ ଧର୍ମକୁ) ସାହାଯ୍ୟ କରିବେ; ବାସ୍ତବିକ ଅଲ୍ଲାହ୍ ଅତ୍ୟନ୍ତ ବଳବାନ୍ (ଓ) ପରାକ୍ରମୀ ।

---

୧. ଜିହାଦ୍ ସଂକ୍ରାନ୍ତରେ ପବିତ୍ର କୋରାନରେ ଯେଉଁ କେତୋଟି ସୂକ୍ତି ଅଛି ତନ୍ମଧ୍ୟରେ ଏହା ପ୍ରଥମ ସୂକ୍ତି, ଯହିଁରେ ଆତ୍ମରକ୍ଷାର୍ଥ ମୁସଲମାନମାନଙ୍କୁ ଅସ୍ତ୍ରଧାରଣ କରିବାକୁ ଅନୁମତି ଦିଆଯାଇଛି । ପରବର୍ତ୍ତୀ ଆୟତଗୁଡ଼ିକରେ ଜିହାଦ କିପରି ଓ କେଉଁ ପରିସ୍ଥିତିରେ ହେବ ତଥା କେଉଁ ସମୟ ପର୍ଯ୍ୟନ୍ତ ଜାରି ରଖାଯିବ ତା'ର ବିଶଦ ବିବରଣୀ ଉଲ୍ଲିଖିତ ହୋଇଛି । ଜିହାଦର ପ୍ରଥମ ଓ ପ୍ରମୁଖ ଉଦ୍ଦେଶ୍ୟ ହେଉଛି– ଧର୍ମବିଶ୍ୱାସ ଓ ଧର୍ମ ଉପାସନାରେ ସ୍ୱାଧୀନତା ପ୍ରଦାନ ସକାଶେ, ନିଜ ନିଜ ଦେଶ ଓ ମର୍ଯ୍ୟାଦାକୁ ତଥା ଯେ କୌଣସି ଧର୍ମାବଲମ୍ବୀଙ୍କ ଧର୍ମପୀଠକୁ ରକ୍ଷା କରିବା ନିମିତ୍ତ ଏବଂ ଅହେତୁକ ଆକ୍ରମଣ ବିରୁଦ୍ଧରେ ଅସ୍ତ୍ରଧାରଣ କରିବା ।

୪୨. ଏମାନେ (ଅର୍ଥାତ୍ ହିଜରତକାରୀ ମୁସଲମାନମାନେ) ସେହି ଲୋକ ଅଟନ୍ତି ଯେଉଁମାନଙ୍କୁ ଯଦି ଆମ୍ଭେ ଏହି ସଂସାରରେ ଶକ୍ତି ପ୍ରଦାନ କରିବୁ, ତେବେ ସେମାନେ ସୁବ୍ୟବସ୍ଥରୂପେ ନମାଜ ପାଠ କରିବେ ଓ ଜକାତ ଦେବେ ଏବଂ ସତ୍ କାର୍ଯ୍ୟପାଇଁ ଆଦେଶ ଦେବେ ଓ ଅସତ୍ କାର୍ଯ୍ୟରୁ ବାରଣ କରିବେ; ଏବଂ ସମସ୍ତ କାର୍ଯ୍ୟର ପରିଣାମ ଅଲ୍ଲାହଙ୍କ ଠାରେ ରହିଅଛି ।

ٱلَّذِينَ إِن مَّكَّنَّٰهُمْ فِى ٱلْأَرْضِ أَقَامُوا۟ ٱلصَّلَوٰةَ وَءَاتَوُا۟ ٱلزَّكَوٰةَ وَأَمَرُوا۟ بِٱلْمَعْرُوفِ وَنَهَوْا۟ عَنِ ٱلْمُنكَرِ ۗ وَلِلَّهِ عَٰقِبَةُ ٱلْأُمُورِ ﴿٤٢﴾

୪୩. ଏବଂ ଯଦି ସେମାନେ (ଅର୍ଥାତ୍ ତୁମର ଶତ୍ରୁମାନେ) ତୁମ ପ୍ରତି ମିଥ୍ୟା ଆରୋପ କରୁଛନ୍ତି, ତେବେ ସେମାନଙ୍କ ପୂର୍ବରୁ ନୂହଙ୍କ ସମ୍ପ୍ରଦାୟ ଏବଂ ଆଦ ଓ ସମୁଦଙ୍କର (ଗୋଷ୍ଠୀ) ମଧ୍ୟ,

وَإِن يُكَذِّبُوكَ فَقَدْ كَذَّبَتْ قَبْلَهُمْ قَوْمُ نُوحٍ وَعَادٌ وَثَمُودُ ﴿٤٣﴾

୪୪. ଏବଂ ଇବ୍ରାହିମଙ୍କ ସମ୍ପ୍ରଦାୟ ଓ ଲୁତଙ୍କ ସମ୍ପ୍ରଦାୟ ମଧ୍ୟ,

وَقَوْمُ إِبْرَٰهِيمَ وَقَوْمُ لُوطٍ ﴿٤٤﴾

୪୫. ଏବଂ ମଦୟନର ଅଧିବାସୀମାନେ ମଧ୍ୟ (ନିଜ ନିଜ ରସୁଲମାନଙ୍କ ପ୍ରତି) ମିଥ୍ୟା ଆରୋପ କରିଥିଲେ; ଏବଂ ମୁସାଙ୍କୁ ମଧ୍ୟ ମିଥ୍ୟାବାଦୀ ବୋଲି ଦୋଷାରୋପ କରାଯାଇଥିଲା; ଅତଏବ ଆମ୍ଭେ ଅବିଶ୍ୱାସକାରୀମାନଙ୍କୁ କିଛି (ସମୟ ପାଇଁ) ଅବସର ଦେଇଥିଲୁ; ତା'ପରେ ଆମ୍ଭେ ସେମାନଙ୍କୁ କବଳିତ କରିଥିଲୁ; (ସୁତରାଂ ଚିନ୍ତା କର) ଆମଙ୍କୁ ପ୍ରତ୍ୟାଖ୍ୟାନ କରିବାର ପରିଣାମ କିପରି ଭୟାବହ ହୋଇଥିଲା !

وَأَصْحَٰبُ مَدْيَنَ ۖ وَكُذِّبَ مُوسَىٰ فَأَمْلَيْتُ لِلْكَٰفِرِينَ ثُمَّ أَخَذْتُهُمْ ۖ فَكَيْفَ كَانَ نَكِيرِ ﴿٤٥﴾

୪୬. ଏବଂ ଏପରି ଅନେକ ଜନବସତି ଅଛି ଯାହାକୁ ଆମ୍ଭେ ଏପରି ଅବସ୍ଥାରେ ଧ୍ୱଂସ କରିଥିଲୁ ଯେତେବେଳେ କି ସେଠାକାର ଅଧିବାସୀମାନେ ଅତ୍ୟାଚାର କରୁଥିଲେ; ଆଜି ସେମାନଙ୍କ (ଗୃହର) ଛାତ ସବୁ ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି; ଏବଂ ଅନେକ କୂପ ପରିତ୍ୟକ୍ତ ହୋଇ ପଡ଼ି ରହିଅଛି ଓ ଅନେକ ସୁଉଚ୍ଚ ଦୁର୍ଗ ଧ୍ୱଂସ ହୋଇଯାଇଛି ।

فَكَأَيِّن مِّن قَرْيَةٍ أَهْلَكْنَٰهَا وَهِىَ ظَالِمَةٌ فَهِىَ خَاوِيَةٌ عَلَىٰ عُرُوشِهَا وَبِئْرٍ مُّعَطَّلَةٍ وَقَصْرٍ مَّشِيدٍ ﴿٤٦﴾

୪୭. ତେବେ କ'ଣ ସେମାନେ ଭୂପୃଷ୍ଠରେ ଭ୍ରମଣ କରି ଦେଖୁନାହାନ୍ତି ଯଦ୍ୱାରାକି ସେମାନଙ୍କୁ ଏପରି ହୃଦୟ ପ୍ରାପ୍ତ ହୋଇଯିବ ଯାହାଦ୍ୱାରା ସେମାନେ (ଏହି ସବୁ ବିଷୟ) ବୁଝିପାରିବେ ଏବଂ ଏପରି କର୍ଣ୍ଣ ପ୍ରାପ୍ତ ହେବ ଯାହାଦ୍ୱାରା ସେମାନେ (ସେ ସବୁ) ଶୁଣିପାରିବେ, କାରଣ ସତ୍ୟ ଏହି ଯେ ବାହ୍ୟ ଚକ୍ଷୁଗୁଡ଼ିକ ଅନ୍ଧ ନୁହନ୍ତି ବରଂ ବକ୍ଷ ମଧ୍ୟରେ ଥିବା ହୃଦୟ ଅନ୍ଧ ଅଟେ ।

أَفَلَمْ يَسِيرُوا۟ فِى ٱلْأَرْضِ فَتَكُونَ لَهُمْ قُلُوبٌ يَعْقِلُونَ بِهَآ أَوْ ءَاذَانٌ يَسْمَعُونَ بِهَا ۖ فَإِنَّهَا لَا تَعْمَى ٱلْأَبْصَٰرُ وَلَٰكِن تَعْمَى ٱلْقُلُوبُ ٱلَّتِى فِى ٱلصُّدُورِ ﴿٤٧﴾

୪୮. ଏବଂ ସେମାନେ ତୁମ୍ଭ ନିକଟରେ ଶାସ୍ତି ଭିକ୍ଷା କରିବାରେ ବ୍ୟଗ୍ରତା ପ୍ରକାଶ କରୁଛନ୍ତି; କିନ୍ତୁ ଅଲ୍ଲାହ୍ ତାହାଙ୍କର ଅଙ୍ଗୀକାରକୁ କଦାପି ଭଙ୍ଗ କରନ୍ତି ନାହିଁ; ଏବଂ ତୁମ୍ଭ ପାଳନକର୍ତ୍ତାଙ୍କ ନିକଟରେ (ଗୋଟିଏ) ଗୋଟିଏ ଦିବସ ତୁମମାନଙ୍କ ଗଣନା ଅନୁସାରେ ସହସ୍ର ବର୍ଷ ସଙ୍ଗେ ସମାନ ହୁଏ ।

وَيَسْتَعْجِلُوْنَكَ بِالْعَذَابِ وَلَنْ يُّخْلِفَ اللّٰهُ وَعْدَهٗ ؕ وَاِنَّ يَوْمًا عِنْدَ رَبِّكَ كَاَلْفِ سَنَةٍ مِّمَّا تَعُدُّوْنَ ﴿٤٨﴾

୪୯. ଏବଂ ଏପରି ଅନେକ ଜନବସତି ଅଛି ଯେଉଁମାନଙ୍କୁ ଆମ୍ଭେ (ପ୍ରଥମେ) ଅବ୍ୟାହତି ଦେଇଥିଲୁ, ଯଦିଚ ସେମାନେ ଅତ୍ୟାଚାରୀ କରୁଥିଲେ; ଏହାପରେ ଆମ୍ଭେ ସେମାନଙ୍କୁ କବଳିତ କରିଥିଲୁ, ଏବଂ ଆମ୍ଭ ନିକଟକୁ ସମସ୍ତଙ୍କୁ ଫେରି ଆସିବାକୁ ହେବ ।

وَكَاَيِّنْ مِّنْ قَرْيَةٍ اَمْلَيْتُ لَهَا وَهِيَ ظَالِمَةٌ ثُمَّ اَخَذْتُهَا ۚ وَاِلَيَّ الْمَصِيْرُ ﴿٤٩﴾

ରୁ : ୭

୫୦. ତୁମ୍ଭେ କୁହ, "ହେ ଲୋକମାନେ ! ଆମ୍ଭେ ତୁମମାନଙ୍କ ନିକଟକୁ କେବଳ ଜଣେ ସଚେତକ ଭାବରେ ଆସିଅଛୁ ।"

قُلْ يٰۤاَيُّهَا النَّاسُ اِنَّمَاۤ اَنَا لَكُمْ نَذِيْرٌ مُّبِيْنٌ ﴿٥٠﴾

୫୧. ତେଣୁ ଯେଉଁମାନେ ବିଶ୍ୱାସ କରିବେ ଏବଂ (ତଦନୁଯାୟୀ) ଉଚିତ କର୍ମ କରିବେ, ସେମାନଙ୍କୁ (ଅଲ୍ଲାହ୍‌ଙ୍କ ତରଫରୁ) କ୍ଷମା ଓ ସମ୍ମାନଜନକ ଜୀବିକା ପ୍ରାପ୍ତ ହେବ ।

فَالَّذِيْنَ اٰمَنُوْا وَعَمِلُوا الصّٰلِحٰتِ لَهُمْ مَّغْفِرَةٌ وَّرِزْقٌ كَرِيْمٌ ﴿٥١﴾

୫୨. ଏବଂ ଯେଉଁମାନେ ଆମ୍ଭର ନିଦର୍ଶନଗୁଡ଼ିକ ସଂକ୍ରାନ୍ତରେ ଆମ୍ଭଙ୍କୁ ବିଫଳ କରିବାପାଇଁ ଚେଷ୍ଟା କଲେ, ସେମାନେ ନରକରେ ନିକ୍ଷିପ୍ତ ହେବେ ।

وَالَّذِيْنَ سَعَوْا فِيْۤ اٰيٰتِنَا مُعٰجِزِيْنَ اُولٰٓئِكَ اَصْحٰبُ الْجَحِيْمِ ﴿٥٢﴾

୫୩. ଏବଂ ଆମ୍ଭେ ତୁମ୍ଭ ପୂର୍ବରୁ [1]ଯେତେ ରସୁଲ ବା ନବି ପ୍ରେରଣ କରିଥିଲୁ ଯେତେବେଳେ ସେମାନେ କୌଣସି (ସଂସ୍କାର କରିବାକୁ) ଇଚ୍ଛା କରୁଥିଲେ, ସେତେବେଳେ ସଇତାନ ସେମାନଙ୍କ ଇଚ୍ଛା ବିରୁଦ୍ଧରେ ବାଧା ସୃଷ୍ଟି କରୁଥିଲା; କିନ୍ତୁ ସଇତାନ ଯାହା (ବାଧାବିଘ୍ନ) ସୃଷ୍ଟି କରେ ଅଲ୍ଲାହ୍ ସେଗୁଡ଼ିକୁ ଅପସାରଣ କରି ଦିଅନ୍ତି; ଏବଂ (ତା'ପରେ ଅଲ୍ଲାହ୍) ନିଜର ନିଦର୍ଶନ ଗୁଡ଼ିକୁ ସୁପ୍ରତିଷ୍ଠିତ କରାନ୍ତି; ଏବଂ ଅଲ୍ଲାହ୍ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَمَاۤ اَرْسَلْنَا مِنْ قَبْلِكَ مِنْ رَّسُوْلٍ وَّلَا نَبِيٍّ اِلَّاۤ اِذَا تَمَنّٰۤى اَلْقَى الشَّيْطٰنُ فِيْۤ اُمْنِيَّتِهٖ ۚ فَيَنْسَخُ اللّٰهُ مَا يُلْقِى الشَّيْطٰنُ ثُمَّ يُحْكِمُ اللّٰهُ اٰيٰتِهٖ ؕ وَاللّٰهُ عَلِيْمٌ حَكِيْمٌ ﴿٥٣﴾

୫୪. (ପରିଣାମ ସ୍ୱରୂପ) ସଇତାନ ଯେଉଁ ସବୁ (ବାଧାବିଘ୍ନ) ସୃଷ୍ଟି କରେ ସେଗୁଡ଼ିକ ସେହି ଲୋକମାନଙ୍କ ସକାଶେ ପରୀକ୍ଷା ସ୍ୱରୂପ ଅଟେ; ଯେଉଁମାନଙ୍କ ହୃଦୟ

لِّيَجْعَلَ مَا يُلْقِى الشَّيْطٰنُ فِتْنَةً لِّلَّذِيْنَ فِيْ

[1] କେତେକ ଭାଷ୍ୟକାରଙ୍କ ମତରେ ଯେବେ ବି କୌଣସି ନବି କିଛି ଆବୃତ୍ତି କରୁଥିଲେ ସଇତାନ ସେଥିରେ କିଛି ଯୋଡ଼ି ଦେଉଥିଲା । ଅବଶ୍ୟ ସେମାନେ ଯୀଶୁଙ୍କ କ୍ଷେତ୍ରରେ ଏହାକୁ ସ୍ୱୀକାର କରୁନାହାନ୍ତି । ଏପରି ମନ୍ତବ୍ୟ ନବିମାନଙ୍କ ମର୍ଯ୍ୟାଦାର ପରିପନ୍ଥୀ । ସେମାନଙ୍କ ପ୍ରତି, ବିଶେଷତଃ ସର୍ବଶ୍ରେଷ୍ଠ ନବି ହଜରତ ମହମ୍ମଦଙ୍କ ପ୍ରତି, ଏହା ଏକ ଅପମାନ । ଏଠାରେ କେବଳ ଏତିକି ବର୍ଣ୍ଣନା କରାଯାଇଛି ଯେ ନବିମାନେ ଯୋଜନା କରନ୍ତି ଅଥଚ ସଇତାନ ତାହାକୁ ଭଣ୍ଡୁର କରିବାକୁ ଉଦ୍ୟମ କରେ । ଅଲ୍ଲାହ୍ ଅବଶ୍ୟ ନବିମାନଙ୍କର ମନୋବାଞ୍ଛା ପୂରଣ କରିଥା'ନ୍ତି, ଫଳରେ ସଇତାନ ଅସଫଳ ହୁଏ । ଏହା ହିଁ ଯଥାର୍ଥ । ବସ୍ତୁତଃ ପ୍ରତ୍ୟେକ ନବି ସଫଳ ହୋଇଥା'ନ୍ତି ଏବଂ ହଜରତ ମହମ୍ମଦ ସର୍ବାଧିକ ସଫଳତା ଲାଭ କରିଛନ୍ତି ।

قُلُوبِهِم مَّرَضٌ وَالْقَاسِيَةِ قُلُوبُهُمْ ۗ وَإِنَّ الظَّالِمِينَ لَفِي شِقَاقٍ بَعِيدٍ ﴿٥٤﴾

ବ୍ୟାଧିଗ୍ରସ୍ତ ଓ ଯେଉଁମାନଙ୍କ ହୃଦୟ କଠିନ; ଏବଂ ବାସ୍ତବରେ ଅତ୍ୟାଚାରୀମାନେ (ଅଲ୍ଲାଃଙ୍କ ପ୍ରତ୍ୟେକ କଥାର) ପ୍ରବଳ ବିରୁଦ୍ଧାଚରଣ କରିବାପାଇଁ ଅତି ବସିଥାନ୍ତି।

وَلِيَعْلَمَ الَّذِينَ أُوتُوا الْعِلْمَ أَنَّهُ الْحَقُّ مِن رَّبِّكَ فَيُؤْمِنُوا بِهِ فَتُخْبِتَ لَهُ قُلُوبُهُمْ ۗ وَإِنَّ اللَّهَ لَهَادِ الَّذِينَ آمَنُوا إِلَىٰ صِرَاطٍ مُّسْتَقِيمٍ ﴿٥٥﴾

୫୫. (ଏ ସବୁ ଏହି କାରଣରୁ ହୋଇଥାଏ ଯେ) ଯେଉଁମାନେ ଜ୍ଞାନ ଲାଭ କରିଛନ୍ତି ସେମାନେ ଜାଣିପାରିବେ ଯେ ଏହା (ଅର୍ଥାତ୍ ପବିତ୍ର କୋରାନ) ତୁମ ପାଳନକର୍ତ୍ତାଙ୍କ ତରଫରୁ ଏକ ବିରାଟ ସତ୍ୟ (ଗ୍ରନ୍ଥ) ଅଟେ, ତାହାହେଲେ ସେମାନେ ଏଥିରେ ବିଶ୍ୱାସ କରିବେ ଓ ସେମାନଙ୍କର ହୃଦୟ ତାହାଙ୍କ ନିକଟରେ ବିନୀତ ହେବ; ଏବଂ ଅଲ୍ଲାଃ ବିଶ୍ୱାସକାରୀମାନଙ୍କୁ ନିଶ୍ଚୟ ସରଳପଥ ପ୍ରଦର୍ଶନ କରାଇବେ।

وَلَا يَزَالُ الَّذِينَ كَفَرُوا فِي مِرْيَةٍ مِّنْهُ حَتَّىٰ تَأْتِيَهُمُ السَّاعَةُ بَغْتَةً أَوْ يَأْتِيَهُمْ عَذَابُ يَوْمٍ عَقِيمٍ ﴿٥٦﴾

୫୬. ଏବଂ ହଠାତ୍ ସେମାନଙ୍କ ସମ୍ମୁଖରେ ସେହି (ବିନାଶ) ସମୟ ଉପସ୍ଥିତ ନ ହେବା ପର୍ଯ୍ୟନ୍ତ ବା ସେହି ବିନାଶ କାଳର ଶାସ୍ତି ସେମାନଙ୍କ ସମ୍ମୁଖରେ ଉପସ୍ଥିତ ନ ହେବା ପର୍ଯ୍ୟନ୍ତ ଅବିଶ୍ୱାସକାରୀ-ମାନଙ୍କର ଏ (କୋରାନ) ସଂକ୍ରାନ୍ତରେ ସନ୍ଦେହ ମୋଚନ ହେବ ନାହିଁ।

الْمُلْكُ يَوْمَئِذٍ لِّلَّهِ يَحْكُمُ بَيْنَهُمْ ۚ فَالَّذِينَ آمَنُوا وَعَمِلُوا الصَّالِحَاتِ فِي جَنَّاتِ النَّعِيمِ ﴿٥٧﴾

୫୭. ସେ ଦିନର ସମସ୍ତ ରାଜତ୍ୱ ଅଲ୍ଲାଃଙ୍କର ହେବ; ସେ ସେମାନଙ୍କ ମଧ୍ୟରେ ମୀମାଂସା କରିବେ; ସୁତରାଂ ଯେଉଁମାନେ ବିଶ୍ୱାସ କରି ଉଚିତ କର୍ମ ମଧ୍ୟ କରୁଥିବେ ସେମାନେ ଆଶୀର୍ବାଦପୂର୍ଣ୍ଣ (ସ୍ୱର୍ଗ) ଉଦ୍ୟାନରେ ବାସ କରିବେ।

ରୁ : ୮

وَالَّذِينَ كَفَرُوا وَكَذَّبُوا بِآيَاتِنَا فَأُولَٰئِكَ لَهُمْ عَذَابٌ مُّهِينٌ ﴿٥٨﴾ ع

୫୮. ଏବଂ ଯେଉଁମାନେ ଅବିଶ୍ୱାସ କରନ୍ତି ଓ ଆମର ନିଦର୍ଶନ ଗୁଡ଼ିକୁ ପ୍ରତ୍ୟାଖ୍ୟାନ କରନ୍ତି, ସେମାନଙ୍କ ପାଇଁ ଏକ ଅପମାନଜନକ ଶାସ୍ତି (ନିର୍ଦ୍ଦିଷ୍ଟ) ରହିଅଛି।

وَالَّذِينَ هَاجَرُوا فِي سَبِيلِ اللَّهِ ثُمَّ قُتِلُوا أَوْ مَاتُوا لَيَرْزُقَنَّهُمُ اللَّهُ رِزْقًا حَسَنًا ۚ وَإِنَّ اللَّهَ لَهُوَ خَيْرُ الرَّازِقِينَ ﴿٥٩﴾

୫୯. ଏବଂ ଯେଉଁମାନେ ଅଲ୍ଲାଃଙ୍କ ଉଦ୍ଦେଶ୍ୟରେ ହିଜରତ କରି ତା'ପରେ ନିହତ ହୁଅନ୍ତି ବା ସ୍ୱାଭାବିକ ମୃତ୍ୟୁବରଣ କରନ୍ତି ଅଲ୍ଲାଃ ସେମାନଙ୍କୁ ଅତ୍ୟୁତ୍ତମ ପୁରସ୍କାର ପ୍ରଦାନ କରିବେ; ଅଲ୍ଲାଃ ପୁରସ୍କାର ପ୍ରଦାନକାରୀମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ।

لَيُدْخِلَنَّهُم مُّدْخَلًا يَرْضَوْنَهُ ۗ وَإِنَّ اللَّهَ لَعَلِيمٌ حَلِيمٌ ﴿٦٠﴾

୬୦. ସେ ନିଶ୍ଚୟ ସେମାନଙ୍କୁ ଏପରି ସ୍ଥାନରେ ପ୍ରବେଶ କରାଇବେ ଯାହା ସେମାନଙ୍କର ପସନ୍ଦଯୋଗ୍ୟ ହେବ; ଏବଂ ବାସ୍ତବିକ ଅଲ୍ଲାଃ ହିଁ ସର୍ବଜ୍ଞ (ଓ) ସହନଶୀଳ।

ذَٰلِكَ ۖ وَمَنْ عَاقَبَ بِمِثْلِ مَا عُوقِبَ بِهِ ثُمَّ بُغِيَ

୬୧. ଏହି ବିଷୟ ଏହିପରି ଅଟେ; ଏବଂ ଯେଉଁ ବ୍ୟକ୍ତି (ପ୍ରତିଶୋଧ ସ୍ୱରୂପ) ସେତିକି ଶାସ୍ତି ଦିଏ ଯେତିକି ତାହାକୁ ପୀଡ଼ା ଦିଆଯାଇଥିଲା, ଏବଂ ଯଦି ଏହା ସତ୍ତ୍ୱେ (ତାହାର ଶତ୍ରୁ)

عَلَيْهِ لَيَنْصُرَنَّهُ اللّٰهُ ۗ اِنَّ اللّٰهَ لَعَفُوٌّ غَفُوْرٌ ٦١

ପୁନର୍ବାର ତାହାକୁ ଆକ୍ରମଣ କରେ, ତେବେ ଅଲ୍ଲାହ ନିଶ୍ଚୟ ତାହାକୁ ସାହାଯ୍ୟ କରିବେ; ବାସ୍ତବିକ ଅଲ୍ଲାହ (ପାପ) ମାର୍ଜନାକାରୀ(ଓ)ଅତ୍ୟନ୍ତ କ୍ଷମାଶୀଳ ।

ذٰلِكَ بِاَنَّ اللّٰهَ يُوْلِجُ الَّيْلَ فِي النَّهَارِ وَيُوْلِجُ النَّهَارَ فِي الَّيْلِ وَاَنَّ اللّٰهَ سَمِيْعٌ بَصِيْرٌ ٦٢

୬୨. ଏହା (ଅର୍ଥାତ୍ ଏହି ଶାସ୍ତି ଓ ପୁରସ୍କାର ପ୍ରଦାନର ପରମ୍ପରା) ଏଥି ସକାଶେ ପ୍ରଚଳିତ ଅଛି ଯଦ୍ଦ୍ୱାରା ଏହା ପ୍ରମାଣିତ ହୋଇଯିବ ଯେ ଅଲ୍ଲାହ ରାତ୍ରିକୁ ଦିବସରେ ପରିଣତ କରନ୍ତି; ଓ ଦିବସକୁ ରାତ୍ରିରେ ପରିଣତ କରନ୍ତି; ଏବଂ ବାସ୍ତବିକ ଅଲ୍ଲାହ ହି ମହାନ୍ ଶ୍ରୋତା (ଓ) ମହାନ୍ ଦ୍ରଷ୍ଟା ।

ذٰلِكَ بِاَنَّ اللّٰهَ هُوَ الْحَقُّ وَاَنَّ مَا يَدْعُوْنَ مِنْ دُوْنِهٖ هُوَ الْبَاطِلُ وَاَنَّ اللّٰهَ هُوَ الْعَلِيُّ الْكَبِيْرُ ٦٣

୬୩. ଏହା ଏଥି ସକାଶେ ହୁଏ, କାରଣ ଅଲ୍ଲାହ ହି ଚିର-ସତ୍ୟ (ଓ ଶାଶ୍ୱତ) ଏବଂ ତାହାଙ୍କ ପରିବର୍ତ୍ତେ ସେମାନେ ଯାହାକୁ ଡାକନ୍ତି ତାହା ଅସତ୍ୟ (ଓ ବିନାଶଶୀଳ), ଏବଂ ଅଲ୍ଲାହ ସମସ୍ତଙ୍କ ଅପେକ୍ଷା ଊର୍ଦ୍ଧ୍ୱରେ(ଓ)ମହାନ୍ ।

اَلَمْ تَرَ اَنَّ اللّٰهَ اَنْزَلَ مِنَ السَّمَآءِ مَآءً فَتُصْبِحُ الْاَرْضُ مُخْضَرَّةً ۗ اِنَّ اللّٰهَ لَطِيْفٌ خَبِيْرٌ ٦٤

୬୪. କ'ଣ ତୁମେ ଲକ୍ଷ୍ୟ କରୁନାହିଁ ଯେ ଅଲ୍ଲାହ ଆକାଶରୁ ଜଳ ବୃଷ୍ଟି କରନ୍ତି ଯଦ୍ଦ୍ୱାରା ଭୂମି ଶସ୍ୟଶ୍ୟାମଳା ହୋଇଯାଏ ? ବାସ୍ତବିକ ଅଲ୍ଲାହ ରହସ୍ୟମୟ(ଓ)ସର୍ବବିଦିତ ।

لَهٗ مَا فِي السَّمٰوٰتِ وَمَا فِي الْاَرْضِ ۗ وَاِنَّ اللّٰهَ لَهُوَ الْغَنِيُّ الْحَمِيْدُ ٦٥ ع

୬୫. ଯାହାକିଛି ଆକାଶରେ ଅଛି, ଯାହା କିଛି ପୃଥିବୀରେ ଅଛି ସେ ସବୁ ତାହାଙ୍କର; ଏବଂ ଅଲ୍ଲାହ ହି ଆତ୍ମନିର୍ଭରଶୀଳ (ଓ) ପ୍ରଶଂସନୀୟ ।

ରୁ : ୯

اَلَمْ تَرَ اَنَّ اللّٰهَ سَخَّرَ لَكُمْ مَّا فِي الْاَرْضِ وَالْفُلْكَ تَجْرِيْ فِي الْبَحْرِ بِاَمْرِهٖ ۗ وَيُمْسِكُ السَّمَآءَ اَنْ تَقَعَ عَلَى الْاَرْضِ اِلَّا بِاِذْنِهٖ ۗ اِنَّ اللّٰهَ بِالنَّاسِ لَرَءُوْفٌ رَّحِيْمٌ ٦٦

୬୬. କ'ଣ ତୁମେ ଲକ୍ଷ୍ୟ କରୁ ନାହିଁ ଯେ ଯାହାକିଛି ପୃଥିବୀରେ ଅଛି ସେ ସବୁକୁ ଅଲ୍ଲାହ ତୁମମାନଙ୍କ ସେବାରେ ପାରିଶ୍ରମିକ ବିନା ନିୟୋଜିତ କରିଛନ୍ତି, ଏବଂ ତାହାଙ୍କ ଆଦେଶ ଅନୁସାରେ ସାଗର ବକ୍ଷରେ ଜାହାଜ ପରିଚାଳିତ ହୁଏ ? ଏବଂ ସେ ଆକାଶକୁ[୧] ଧରି ରଖିଛନ୍ତି ଯେପରିକି ତାହା ତାଙ୍କ ଆଦେଶ ବିନା ପୃଥିବୀ ଉପରେ ପଡ଼ି ନ ଯାଏ; ବାସ୍ତବିକ ଅଲ୍ଲାହ ଲୋକମାନଙ୍କ ପ୍ରତି ଅତ୍ୟନ୍ତ ଦୟାଶୀଳ (ଓ) କରୁଣାମୟ ।

وَهُوَ الَّذِيْٓ اَحْيَاكُمْ ثُمَّ يُمِيْتُكُمْ ثُمَّ يُحْيِيْكُمْ ۗ اِنَّ الْاِنْسَانَ لَكَفُوْرٌ ٦٧

୬୭. ସେ ହି ତୁମମାନଙ୍କୁ ଜୀବନ ପ୍ରଦାନ କରିଛନ୍ତି; ତା'ପରେ ତୁମମାନଙ୍କର ମୃତ୍ୟୁ ଘଟାଇବେ, ପୁନର୍ବାର ତୁମମାନଙ୍କୁ ଜୀବିତ କରାଇବେ; ବାସ୍ତବିକ ମାନବ ଅତିଶୟ କୃତଘ୍ନ ଅଟେ ।

لِكُلِّ اُمَّةٍ جَعَلْنَا مَنْسَكًا هُمْ نَاسِكُوْهُ فَلَا يُنَازِعُنَّكَ

୬୮. ଆମେ ପ୍ରତ୍ୟେକ ସମ୍ପ୍ରଦାୟ ପାଇଁ ଏକ ଉପାସନା ପଦ୍ଧତି ନିର୍ଦ୍ଧାରିତ କରିଅଛୁ ଯାହାକୁ ସେମାନେ ପାଳନ କରିଥାଆନ୍ତି; ତେଣୁ ସେମାନେ ତୁମ ସହିତ ଏହି (ଇସଲାମୀୟ

୧. ଅର୍ଥାତ୍ ଶାସ୍ତି ବିରୁଦ୍ଧରେ ପ୍ରତିବନ୍ଧକ ସ୍ଥାପନ କରାଯାଇଛି କାରଣ ଅଲ୍ଲାହଙ୍କ ବିନା ଆଦେଶରେ ସଂସାରରେ ଶାସ୍ତି ନିପତିତ ହେବ ନାହିଁ ।

ଉପାସନା) ପଦ୍ଧତି ସଂକ୍ରାନ୍ତରେ ତର୍କ ନ କରନ୍ତୁ, (କାରଣ ଏହା ଅଲ୍ଲାହ୍‌ଙ୍କ ଦ୍ୱାରା ନିର୍ଦ୍ଧାରିତ ହୋଇଅଛି), ଏବଂ ତୁମେ ସେମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ଆଡ଼କୁ ଡାକ ଯେହେତୁ ତୁମେ ସତ୍‌ପଥରେ ରହିଅଛ ।

فِي الْأَمْرِ وَادْعُ إِلَىٰ رَبِّكَ ۖ إِنَّكَ لَعَلَىٰ هُدًى مُّسْتَقِيمٍ ۝٦٨

୬୯. ଏବଂ ଯଦି ସେମାନେ ତୁମ ସହିତ ତର୍କ କରନ୍ତି, ତେବେ (ସେମାନଙ୍କୁ) କୁହ, "ଅଲ୍ଲାହ୍ ତୁମମାନଙ୍କ କର୍ମ ସମ୍ବନ୍ଧରେ ଭଲଭାବରେ ଅବଗତ ଅଛନ୍ତି ।"

وَإِن جَادَلُوكَ فَقُلِ اللَّهُ أَعْلَمُ بِمَا تَعْمَلُونَ ۝٦٩

୭୦. ତୁମେମାନେ ଯେଉଁ ବିଷୟରେ ବିବାଦ କରୁଅଛ, ଅଲ୍ଲାହ୍ କୟାମତ ଦିନ ସେ ବିଷୟରେ (ତୁମମାନଙ୍କ ଓ ଆମ୍ଭ ମଧ୍ୟରେ) ମୀମାଂସା କରିଦେବେ ।

اللَّهُ يَحْكُمُ بَيْنَكُمْ يَوْمَ الْقِيَامَةِ فِيمَا كُنتُمْ فِيهِ تَخْتَلِفُونَ ۝٧٠

୭୧. (ହେ ମହମ୍ମଦ !) କ'ଣ ତୁମେ ଜାଣ ନାହିଁ ଯେ ଯାହାକିଛି ଆକାଶ ଓ ପୃଥିବୀରେ ଅଛି ତାହାକୁ ଅଲ୍ଲାହ୍ ଜାଣନ୍ତି ? ଏସବୁ ଏକ ଗ୍ରନ୍ଥରେ ଲିପିବଦ୍ଧ ହୋଇ ରହିଅଛି; ଏହିପରି ଭାବରେ (କୌଣସି ବିଧାନକୁ ସୁରକ୍ଷିତ) କରିବା ଅଲ୍ଲାହ୍‌ଙ୍କ ପକ୍ଷରେ ସହଜସାଧ୍ୟ ।

أَلَمْ تَعْلَمْ أَنَّ اللَّهَ يَعْلَمُ مَا فِي السَّمَاءِ وَالْأَرْضِ ۗ إِنَّ ذَٰلِكَ فِي كِتَابٍ ۚ إِنَّ ذَٰلِكَ عَلَى اللَّهِ يَسِيرٌ ۝٧١

୭୨. ଏବଂ ସେମାନେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଏପରି ବସ୍ତୁର ଉପାସନା କରନ୍ତି ଯାହା ସମ୍ବନ୍ଧରେ ସେ କୌଣସି ପ୍ରମାଣ ଅବତୀର୍ଣ୍ଣ କରି ନାହାନ୍ତି; ଏବଂ ଯାହା ସମ୍ବନ୍ଧରେ ସେମାନଙ୍କର କୌଣସି ପ୍ରକାର ଜ୍ଞାନ ନାହିଁ; ଏବଂ ଅତ୍ୟାଚାରୀମାନଙ୍କର କେହି ସାହାଯ୍ୟକାରୀ ହେବେ ନାହିଁ ।

وَيَعْبُدُونَ مِن دُونِ اللَّهِ مَا لَمْ يُنَزِّلْ بِهِ سُلْطَانًا وَمَا لَيْسَ لَهُم بِهِ عِلْمٌ ۗ وَمَا لِلظَّالِمِينَ مِن نَّصِيرٍ ۝٧٢

୭୩. ଏବଂ ଯେତେବେଳେ ସେମାନଙ୍କ ନିକଟରେ ଆମ୍ଭର ପ୍ରକାଶ୍ୟ ନିଦର୍ଶନଗୁଡ଼ିକ ପାଠ କରାଯାଏ, ସେତେବେଳେ ତୁମେ ଅବିଶ୍ୱାସକାରୀମାନଙ୍କ ମୁଖମଣ୍ଡଳରେ (ସ୍ପଷ୍ଟ ଭାବରେ) ବିତୃଷ୍ଣା (ଭାବ) ଦେଖିବାକୁ ପାଇବ; ଯେଉଁମାନେ ସେମାନଙ୍କ ନିକଟରେ ଆମ୍ଭର ନିଦର୍ଶନଗୁଡ଼ିକ ପାଠ କରି ଶୁଣାନ୍ତି ସେମାନେ ସେମାନଙ୍କ ଉପରେ ଆକ୍ରମଣ କରିବାକୁ ଉଦ୍ୟତ ହୁଅନ୍ତି; ତୁମେ କୁହ, "କ'ଣ ଆମେ ତୁମମାନଙ୍କୁ ଏହି ଅବସ୍ଥାଠାରୁ ଅଧିକ ମନ୍ଦ ଅବସ୍ଥା ସଂକ୍ରାନ୍ତରେ ସୂଚିତ କରିବୁ ? (ତାହା ହେଉଛି) ନରକର ଅଗ୍ନି; ଅଲ୍ଲାହ୍ ଅବିଶ୍ୱାସକାରୀମାନଙ୍କ ସହିତ ଏହି ଅଙ୍ଗୀକାର କରିଛନ୍ତି, ଏବଂ ତାହା ଅତ୍ୟନ୍ତ ମନ୍ଦସ୍ଥାନ ।"

وَإِذَا تُتْلَىٰ عَلَيْهِمْ آيَاتُنَا بَيِّنَاتٍ تَعْرِفُ فِي وُجُوهِ الَّذِينَ كَفَرُوا الْمُنكَرَ ۖ يَكَادُونَ يَسْطُونَ بِالَّذِينَ يَتْلُونَ عَلَيْهِمْ آيَاتِنَا ۗ قُلْ أَفَأُنَبِّئُكُم بِشَرٍّ مِّن ذَٰلِكُمُ ۗ النَّارُ وَعَدَهَا اللَّهُ الَّذِينَ كَفَرُوا ۖ وَبِئْسَ الْمَصِيرُ ۝٧٣

ରୁ : ୧୦

୭୪. ହେ ଲୋକମାନେ ! ତୁମମାନଙ୍କୁ ଏକ ଦୃଷ୍ଟାନ୍ତ ଦିଆଯାଉଅଛି, ତାହାକୁ ଧ୍ୟାନପୂର୍ବକ ଶୁଣ; ତୁମେମାନେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଯାହାକୁ ଡାକୁଅଛ ସେମାନେ ସମସ୍ତେ

يَا أَيُّهَا النَّاسُ ضُرِبَ مَثَلٌ فَاسْتَمِعُوا لَهُ ۚ إِنَّ

ଏକଜୁଟ ହେଲେ ମଧ୍ୟ ଗୋଟିଏ ମାଛି ସୃଷ୍ଟି କରିପାରିବେ ନାହିଁ; ବରଂ ଯଦି ଗୋଟିଏ ମାଛି ସେମାନଙ୍କ ସମ୍ମୁଖରୁ କୌଣସି ବସ୍ତୁକୁ ଝାମ୍ପି ନେଇଯାଏ, ତେବେ ସେମାନେ (ତାହାଠାରୁ) ସେହି ବସ୍ତୁକୁ ଛଡ଼ାଇ ଆଣିପାରିବେନାହିଁ; ଏହି ପ୍ରାର୍ଥନାକାରୀ ଓ ଯାହାଙ୍କୁ ପ୍ରାର୍ଥନା କରାଯାଏ (ସେ ଉଭୟ) କେତେ ଦୁର୍ବଳ !

الَّذِينَ تَدْعُونَ مِن دُونِ اللَّهِ لَن يَخْلُقُوا ذُبَابًا وَلَوِ اجْتَمَعُوا لَهُ ۖ وَإِن يَسْلُبْهُمُ الذُّبَابُ شَيْئًا لَّا يَسْتَنقِذُوهُ مِنْهُ ۚ ضَعُفَ الطَّالِبُ وَالْمَطْلُوبُ ﴿٧٤﴾

୭୫. ସେମାନେ ଅଲ୍ଲାହ୍‌ଙ୍କ (ଗୁଣାବଳୀ)ର ଯଥାର୍ଥ ଧାରଣା କରିପାରି ନାହାନ୍ତି; ଅଲ୍ଲାହ୍ ହିଁ ବଳବାନ୍ (ଓ) ଅତ୍ୟନ୍ତ ପରାକ୍ରମୀ ।

مَا قَدَرُوا اللَّهَ حَقَّ قَدْرِهِ ۗ إِنَّ اللَّهَ لَقَوِيٌّ عَزِيزٌ ﴿٧٥﴾

୭୬. ଅଲ୍ଲାହ୍ ଦେବଦୂତମାନଙ୍କ ମଧ୍ୟରୁ ଓ ଲୋକମାନଙ୍କ ମଧ୍ୟରୁ ରସୁଲ ମନୋନୀତ କରନ୍ତି; ବାସ୍ତବିକ ଅଲ୍ଲାହ୍ (ପ୍ରାର୍ଥନାର) ଅତିଶୟ ଶ୍ରବଣକାରୀ (ଓ ପରିସ୍ଥିତିର) ପରିପୂର୍ଣ୍ଣ ଦ୍ରଷ୍ଟା ।

اللَّهُ يَصْطَفِي مِنَ الْمَلَائِكَةِ رُسُلًا وَمِنَ النَّاسِ ۚ إِنَّ اللَّهَ سَمِيعٌ بَصِيرٌ ﴿٧٦﴾

୭୭. ଯାହା କିଛି ସେମାନଙ୍କ ସମ୍ମୁଖରେ ଅଛି ତାହା ସେ ଜାଣନ୍ତି ଓ ଯାହାକିଛି ସେମାନେ ପୂର୍ବରୁ କରିଛନ୍ତି ତାହା ମଧ୍ୟ ଜାଣନ୍ତି; ଏବଂ ସବୁ ବିଷୟ ତାହାଙ୍କ ନିକଟକୁ ଫେରାଇ ଅଣାଯାଏ ।

يَعْلَمُ مَا بَيْنَ أَيْدِيهِمْ وَمَا خَلْفَهُمْ ۗ وَإِلَى اللَّهِ تُرْجَعُ الْأُمُورُ ﴿٧٧﴾

୭୮. ହେ ବିଶ୍ୱାସକାରୀମାନେ ! ତୁମେମାନେ (ଅଲ୍ଲାହ୍‌ଙ୍କ ସମ୍ମୁଖରେ) ରୁକୁ (ଅର୍ଥାତ୍ ମସ୍ତକ ଅବନତ) କର, ସିଜଦା କର ଏବଂ ନିଜ ପାଳନକର୍ତ୍ତାଙ୍କ ଉପାସନା କର ଓ ପୁଣ୍ୟକାର୍ଯ୍ୟ କର ତାହାହେଲେ ତୁମେମାନେ ନିଜ (ଜୀବନର) ଲକ୍ଷ୍ୟକୁ ପାଇପାରିବ ।

يَا أَيُّهَا الَّذِينَ آمَنُوا ارْكَعُوا وَاسْجُدُوا وَاعْبُدُوا رَبَّكُمْ وَافْعَلُوا الْخَيْرَ لَعَلَّكُمْ تُفْلِحُونَ ۩ ﴿٧٨﴾

୭୯. ଏବଂ ଅଲ୍ଲାହ୍‌ଙ୍କ ମାର୍ଗରେ ପରିପୂର୍ଣ୍ଣ ଉଦ୍ୟମ କର; କାରଣ ସେ ହିଁ ତୁମମାନଙ୍କୁ ମନୋନୀତ କରିଛନ୍ତି; ଏବଂ ଧର୍ମ ସଂକ୍ରାନ୍ତରେ ତୁମମାନଙ୍କ ସକାଶେ କୌଣସି ପ୍ରକାର ଜଟିଳତା ରଖିନାହାନ୍ତି; (ହେ ବିଶ୍ୱାସକାରୀମାନେ !) ତୁମମାନଙ୍କର (ଆଧ୍ୟାତ୍ମିକ) ପିତା ଇବ୍ରାହିମଙ୍କର ଧର୍ମକୁ (ଅନୁସରଣ କର କାରଣ) ଅଲ୍ଲାହ୍ ଏହି ଧର୍ମଗ୍ରନ୍ଥରେ ଓ ଏହାର ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥମାନଙ୍କରେ ତୁମମାନଙ୍କୁ ମୁସଲମାନ[୧] ନାମରେ ଅଭିହିତ କରିଛନ୍ତି; ତାହାହେଲେ ସେହି ରସୁଲ ତୁମମାନଙ୍କ ପାଇଁ ସାକ୍ଷୀ ରହିବେ ଓ ତୁମେମାନେ ଅବଶିଷ୍ଟ ଲୋକମାନଙ୍କ ପାଇଁ ସାକ୍ଷୀ ରହିବ; ସୁତରାଂ ସୁବ୍ୟବସ୍ଥିତରୂପେ ନମାଜ ପାଠ କର ଓ ଜକାତ ଦିଅ ତଥା ଅଲ୍ଲାହ୍‌ଙ୍କୁ ଦୃଢ଼ଭାବରେ ଧାରଣ କର; ସେ ହିଁ ତୁମମାନଙ୍କର ପ୍ରଭୁ; ବସ୍ତୁତଃ ସେ ହିଁ ଉତ୍ତମ ପ୍ରଭୁ ଓ ଉତ୍ତମ ସାହାଯ୍ୟକାରୀ ।

وَجَاهِدُوا فِي اللَّهِ حَقَّ جِهَادِهِ ۚ هُوَ اجْتَبَاكُمْ وَمَا جَعَلَ عَلَيْكُمْ فِي الدِّينِ مِنْ حَرَجٍ ۚ مِّلَّةَ أَبِيكُمْ إِبْرَاهِيمَ ۚ هُوَ سَمَّاكُمُ الْمُسْلِمِينَ مِن قَبْلُ وَفِي هَٰذَا لِيَكُونَ الرَّسُولُ شَهِيدًا عَلَيْكُمْ وَتَكُونُوا شُهَدَاءَ عَلَى النَّاسِ ۚ فَأَقِيمُوا الصَّلَاةَ وَآتُوا الزَّكَاةَ وَاعْتَصِمُوا بِاللَّهِ هُوَ مَوْلَاكُمْ ۖ فَنِعْمَ الْمَوْلَىٰ وَنِعْمَ النَّصِيرُ ﴿٧٩﴾

---

୧. ଏହା ତୌରାତ ବର୍ଣ୍ଣିତ ଇସାୟାହ୍‌ଙ୍କ ଏକ ଭବିଷ୍ୟବାଣୀ । (**Isaiah, 62: 2** ଦ୍ରଷ୍ଟବ୍ୟ) ।

سُورَةُ الْمُؤْمِنُونَ مَكِّيَّةٌ (٢٣)

## ଭାଗ – ୧୮

# ଅଲ – ମୁମିନୁନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୧୯ ଟି ଅୟତ ଓ ୬ ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍(ଓ)ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

قَدْ اَفْلَحَ الْمُؤْمِنُوْنَ ②

୨. (ସମ୍ପୂର୍ଣ୍ଣ) ବିଶ୍ୱାସକାରୀମାନେ ନିଜର (ଅଭିଳଷିତ) ଲକ୍ଷ୍ୟ ହାସଲ କରିଛନ୍ତି ;

الَّذِيْنَ هُمْ فِيْ صَلَاتِهِمْ خٰشِعُوْنَ ③

୩. ସେ (ବିଶ୍ୱାସକାରୀ) ମାନେ, ଯେଉଁମାନେ ଆପଣା ନମାଜ ପାଠରେ ବିନୟ ଭାବ ପୋଷଣ କରନ୍ତି ;

وَالَّذِيْنَ هُمْ عَنِ اللَّغْوِ مُعْرِضُوْنَ ④

୪. ଯେଉଁମାନେ ଅଯଥା ବିଷୟମାନଙ୍କରୁ ଦୂରେଇ ରହନ୍ତି;

وَالَّذِيْنَ هُمْ لِلزَّكٰوةِ فٰعِلُوْنَ ⑤

୫. ଯେଉଁମାନେ (ନିୟମାନୁସାରେ) ଜକାତ ଦିଅନ୍ତି;

وَالَّذِيْنَ هُمْ لِفُرُوْجِهِمْ حٰفِظُوْنَ ⑥

୬. ଓ ଯେଉଁମାନେ ନିଜ ଗୁପ୍ତାଙ୍ଗଗୁଡିକୁ ସୁରକ୍ଷିତ ରଖନ୍ତି;

اِلَّا عَلٰٓى اَزْوَاجِهِمْ اَوْ مَا مَلَكَتْ اَيْمَانُهُمْ فَاِنَّهُمْ غَيْرُ مَلُوْمِيْنَ ⑦

୭. ସେମାନଙ୍କ ନିଜ ପତ୍ନୀ ବା ସେମାନଙ୍କ ଦକ୍ଷିଣ ହସ୍ତ [1] ଯେଉଁମାନଙ୍କୁ ଅଧିକାର କରିଅଛି ତାହାଙ୍କ ବ୍ୟତୀତ; ଅତଏବ ଏପରି ଲୋକମାନଙ୍କୁ କୌଣସି ପ୍ରକାରେ ଲାଞ୍ଛିତ କରାଯିବ ନାହିଁ ।

فَمَنِ ابْتَغٰى وَرَآءَ ذٰلِكَ فَاُولٰٓئِكَ هُمُ الْعٰدُوْنَ ⑧

୮. ଏବଂ ଯେ କେହି ଏତଦ୍‌ଭିନ୍ନ ଅନ୍ୟ କୌଣସି ବିଷୟ ଇଚ୍ଛା କରିବେ, ତେବେ ସେପରି ଲୋକମାନେ ହିଁ ସୀମାଲଙ୍ଘନକାରୀ ହେବେ,

وَالَّذِيْنَ هُمْ لِاَمٰنٰتِهِمْ وَعَهْدِهِمْ رٰعُوْنَ ⑨

୯. ଏବଂ ସେହି ଲୋକମାନେ (ଅର୍ଥାତ୍ ସମ୍ପୂର୍ଣ୍ଣ ବିଶ୍ୱାସକାରୀମାନେ), ଯେଉଁମାନେ ନିଜର ଅମାନତ ଓ ନିଜର ଅଙ୍ଗୀକାରଗୁଡିକ ପ୍ରତି ସଜାଗ ଥା'ନ୍ତି,

وَالَّذِيْنَ هُمْ عَلٰى صَلَوٰتِهِمْ يُحَافِظُوْنَ ⑩

୧୦. ଏବଂ ଯେଉଁମାନେ ନିଜ ନମାଜ (ପାଠ) କୁ ସୁରକ୍ଷିତ ରଖନ୍ତି;

اُولٰٓئِكَ هُمُ الْوٰرِثُوْنَ ⑪

୧୧. ସେହିମାନେ ହିଁ ପ୍ରକୃତ ଉତ୍ତରାଧିକାରୀ,

---

୧. ଅର୍ଥାତ୍ ତୁମେମାନେ ଯୁଦ୍ଧ ଉତ୍ତାରୁ ଯେଉଁ ଯେଉଁ ମହିଳାଙ୍କୁ କରଗତ କରିଅଛ ଏବଂ ଯେଉଁମାନେ ସ୍ୱୟଂ ସ୍ୱାଧୀନତା ହାସଲ କରି ନାହାନ୍ତି କି ସେମାନଙ୍କୁ କେହି ମୁକ୍ତ କରି ନାହାନ୍ତି, ସେହି ମହିଳାମାନେ ।

الَّذِينَ يَرِثُونَ الْفِرْدَوْسَ هُمْ فِيهَا خَالِدُونَ ﴿١٢﴾

୧୨. ଯେଉଁମାନେ କି ଫିରଦୌସ (ନାମକ ବୈକୁଣ୍ଠ) ର ଉତ୍ତରାଧିକାରୀ ହେବେ; ସେମାନେ ସେଠାରେ ସର୍ବଦା ରହିଥିବେ ।

وَلَقَدْ خَلَقْنَا الْإِنْسَانَ مِنْ سُلَالَةٍ مِنْ طِينٍ ﴿١٣﴾

୧୩. ଏବଂ ଆମେ ମନୁଷ୍ୟକୁ ଓଦା ମାଟିର ସାର ଅଂଶରୁ ସୃଷ୍ଟି କଲୁ ।

ثُمَّ جَعَلْنَاهُ نُطْفَةً فِي قَرَارٍ مَكِينٍ ﴿١٤﴾

୧୪. ତା'ପରେ ଆମେ ତାହାକୁ ଏକ ନିରାପଦ ସ୍ଥାନରେ ବୀର୍ଯ୍ୟ କଣିକା ସ୍ୱରୂପ ସ୍ଥାପନ କଲୁ ।

ثُمَّ خَلَقْنَا النُّطْفَةَ عَلَقَةً فَخَلَقْنَا الْعَلَقَةَ مُضْغَةً فَخَلَقْنَا الْمُضْغَةَ عِظَامًا فَكَسَوْنَا الْعِظَامَ لَحْمًا ثُمَّ أَنْشَأْنَاهُ خَلْقًا آخَرَ ۚ فَتَبَارَكَ اللَّهُ أَحْسَنُ الْخَالِقِينَ ﴿١٥﴾

୧୫. ତା'ପରେ ବୀର୍ଯ୍ୟ କଣିକାକୁ କ୍ରମଶଃ ଅଭିବୃଦ୍ଧି କରି ଏପରି ଆକୃତି ପ୍ରଦାନ କଲୁ ଯେ ତାହା ଲାଖି ରହିବା ସ୍ୱଭାବର ଘନୀଭୂତ ରକ୍ତ ଭଳି ହୋଇଗଲା, ଏହାପରେ ସେହି ଘନୀଭୂତ ରକ୍ତ ଭଳି ଲାଖି ରହିବା ସ୍ୱଭାବର ବସ୍ତୁକୁ ମାଂସ ପିଣ୍ଡୁଳାରେ ପରିଣତ କଲୁ; ଏହାପରେ ସେହିମାଂସ ପିଣ୍ଡୁଳାକୁ ଆମେ ଅସ୍ଥି ଆକାରରେ ପରିବର୍ତ୍ତନ କରିଦେଲୁ; ଏହାପରେ ସେହି ଅସ୍ଥିଗୁଡିକ ଉପରେ ଆମେ ମାଂସ ଆଚ୍ଛାଦିତ କଲୁ, ଏହାପରେ ତାହାକୁ ଅନ୍ୟ ଏକ ଆକାରରେ[୧] ପରିବର୍ତ୍ତନ କଲୁ; (ଅର୍ଥାତ୍ ମନୁଷ୍ୟର ଆକୃତିକୁ ସମ୍ପୂର୍ଣ୍ଣ କରିଦେଲୁ); ସୁତରାଂ ସେ ଅଲ୍ଲାହ ହି ଅତ୍ୟନ୍ତ ମଙ୍ଗଳମୟ, ଯେ କି ସର୍ବଶ୍ରେଷ୍ଠ ସୃଷ୍ଟିକର୍ତ୍ତା ।

ثُمَّ إِنَّكُمْ بَعْدَ ذَٰلِكَ لَمَيِّتُونَ ﴿١٦﴾

୧୬. ଏହାପରେ ତୁମେମାନେ ନିଶ୍ଚୟ ମୃତ୍ୟୁ ଲାଭ କରିବ ।

ثُمَّ إِنَّكُمْ يَوْمَ الْقِيَامَةِ تُبْعَثُونَ ﴿١٧﴾

୧୭. ଏହାପରେ ତୁମେମାନେ ନିଶ୍ଚୟ କୟାମତ ଦିନ ଉତ୍ଥିତ ହେବ ।

وَلَقَدْ خَلَقْنَا فَوْقَكُمْ سَبْعَ طَرَائِقَ وَمَا كُنَّا عَنِ الْخَلْقِ غَافِلِينَ ﴿١٨﴾

୧୮. ଏବଂ ଆମେ ତୁମମାନଙ୍କ ଉପରେ (ଆଧ୍ୟାତ୍ମିକ ଉନ୍ନତି ପାଇଁ ସାତଗୋଟି) ପଥ ସୃଷ୍ଟି କରିଅଛୁ, ଏବଂ ଆମେ ନିଜ ସୃଷ୍ଟି ସମ୍ବନ୍ଧରେ ଅମନୋଯୋଗୀ ନାହୁଁ ।

وَأَنْزَلْنَا مِنَ السَّمَاءِ مَاءً بِقَدَرٍ فَأَسْكَنَّاهُ فِي الْأَرْضِ ۖ وَإِنَّا عَلَىٰ ذَهَابٍ بِهِ لَقَادِرُونَ ﴿١٩﴾

୧୯. ଏବଂ ଆମେ ଆକାଶରୁ ଏକ ନିର୍ଦ୍ଦିଷ୍ଟ ପରିମାଣରେ ଜଳ ବର୍ଷଣ କଲୁ; ତା'ପରେ ଆମେ ତାହାକୁ ଭୂପୃଷ୍ଠରେ ରଖିଲୁ; ଏବଂ ଆମେ ତାହାକୁ ଉଠାଇ ନେବାପାଇଁ ମଧ୍ୟ ସକ୍ଷମ ।

فَأَنْشَأْنَا لَكُمْ بِهِ جَنَّاتٍ مِنْ نَخِيلٍ وَأَعْنَابٍ لَكُمْ فِيهَا فَوَاكِهُ كَثِيرَةٌ وَمِنْهَا تَأْكُلُونَ ﴿٢٠﴾

୨୦. ତା'ପରେ ଆମେ ତଦ୍ୱାରା ତୁମମାନଙ୍କ ପାଇଁ ଖଜୁରି ଓ ଅଙ୍ଗୁର ବଗିଚ୍ଚ ସୃଷ୍ଟି କଲୁ; ସେଥିରେ ତୁମମାନଙ୍କ ସକାଶେ ଅନେକ ଫଳ (ସୃଷ୍ଟି ହୋଇ) ଅଛି, ଓ ସେଥିରୁ ତୁମେମାନେ ଖାଉଅଛ ।

---

୧. ଅର୍ଥାତ୍ ପୂର୍ଣ୍ଣାଙ୍ଗ ମାନବ ଶରୀର ପ୍ରଦାନ କଲେ ।

୨୧. ଏବଂ (ଆମେ ତୁମମାନଙ୍କ ସକାଶେ) ସିନାଇ ପର୍ବତରେ ଉଠୁଥିବା ଏପରି ବୃକ୍ଷ ମଧ୍ୟ [୧] (ସୃଷ୍ଟି କରିଅଛୁ), ଯହିଁରେ ତେଲ ଥାଏ ଓ ଭୋଜନକାରୀଙ୍କ ନିମନ୍ତେ ବ୍ୟଞ୍ଜନ ମଧ୍ୟ ଥାଏ।

وَشَجَرَةً تَخْرُجُ مِنْ طُوْرِ سَيْنَآءَ تَنْۢبُتُ بِالدُّهْنِ وَصِبْغٍ لِّلْاٰكِلِيْنَ ﴿٢١﴾

୨୨. ଏବଂ ଚତୁଷ୍ପଦ ପ୍ରାଣୀମାନଙ୍କ ମଧ୍ୟରେ ତୁମମାନଙ୍କ ସକାଶେ ଏକ ମହାନ୍ ଶିକ୍ଷା ରହିଅଛି; ଆମେ ସେଥିରୁ ଯାହା ସେମାନଙ୍କ ଉଦର ମଧ୍ୟରେ ଅଛି (ଅର୍ଥାତ୍ ଦୁଗ୍ଧ) ତୁମମାନଙ୍କୁ ପାନ କରାଇ ଥାଉ; ଏବଂ ସେ (ଚତୁଷ୍ପଦ ପ୍ରାଣୀ) ମାନଙ୍କ ମଧ୍ୟରେ ତୁମମାନଙ୍କ ସକାଶେ ଅନେକ ଉପକାରିତା ରହିଅଛି ଏବଂ ତୁମେମାନେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ଖାଇଥାଅ।

وَاِنَّ لَكُمْ فِى الْاَنْعَامِ لَعِبْرَةً ؕ نُسْقِيْكُمْ مِّمَّا فِىْ بُطُوْنِهَا وَلَكُمْ فِيْهَا مَنَافِعُ كَثِيْرَةٌ وَّمِنْهَا تَاْكُلُوْنَ ﴿٢٢﴾

୨୩. ଏବଂ ତୁମେମାନେ ସେମାନଙ୍କ ଉପରେ ଓ ନୌକା ଉପରେ ଆରୋହଣ କରିଥାଅ।

وَعَلَيْهَا وَعَلَى الْفُلْكِ تُحْمَلُوْنَ ﴿٢٣﴾

ରୁ : ୨

୨୪. ଏବଂ ଆମେ ନୁହଙ୍କୁ ତାହାଙ୍କ ସମ୍ପ୍ରଦାୟ ପ୍ରତି ପ୍ରେରଣ କରିଥିଲୁ; ଏବଂ ସେ କହିଥିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ଅଲ୍ଲାହ୍‌ଙ୍କର ଉପାସନା କର; ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ; ତା'ହେଲେ କ'ଣ ତୁମେମାନେ ତାହାଙ୍କୁ ଭୟ କରୁ ନାହଁ ?"

وَلَقَدْ اَرْسَلْنَا نُوْحًا اِلٰى قَوْمِهٖ فَقَالَ يٰقَوْمِ اعْبُدُوا اللّٰهَ مَا لَكُمْ مِّنْ اِلٰهٍ غَيْرُهٗ ؕ اَفَلَا تَتَّقُوْنَ ﴿٢٤﴾

୨୫. ଏଥି ଉତ୍ତାରୁ ତାଙ୍କ ସମ୍ପ୍ରଦାୟର ଅବିଶ୍ୱାସକାରୀମାନଙ୍କ ମୁଖ୍ୟ (ବ୍ୟକ୍ତି) ମାନେ କହିଥିଲେ, "ଏହି ବ୍ୟକ୍ତି ତୁମମାନଙ୍କସଦୃଶ ଜଣେ ମନୁଷ୍ୟ ମାତ୍ର; ଓ ତୁମମାନଙ୍କ ଉପରେ ପ୍ରାଧାନ୍ୟ ବିସ୍ତାର କରିବାକୁ ଇଚ୍ଛା କରୁଅଛି; ଯଦି ଅଲ୍ଲାହ୍ (ରସୁଲ ପ୍ରେରଣ କରିବାକୁ) ଇଚ୍ଛା କରିଥା'ନ୍ତେ, ତେବେ ଦେବଦୂତମାନଙ୍କୁ ପ୍ରେରଣ କରିଥା'ନ୍ତେ; ଆମେମାନେ ନିଜ ପୂର୍ବ ପିତୃପିତାମହଙ୍କ ସମୟରେ ଏପରି କୌଣସି ଘଟଣା ଘଟିଥିବାର ଶୁଣି ନାହୁଁ।

فَقَالَ الْمَلَؤُا الَّذِيْنَ كَفَرُوْا مِنْ قَوْمِهٖ مَا هٰذَآ اِلَّا بَشَرٌ مِّثْلُكُمْ ۙ يُرِيْدُ اَنْ يَّتَفَضَّلَ عَلَيْكُمْ ؕ وَلَوْ شَآءَ اللّٰهُ لَاَنْزَلَ مَلٰٓئِكَةً ۖۚ مَّا سَمِعْنَا بِهٰذَا فِىْٓ اٰبَآئِنَا الْاَوَّلِيْنَ ﴿٢٥﴾

୨୬. "ଏ ତ ପାଗଳାମିର ବଶବର୍ତ୍ତୀ ହୋଇଥିବା ଜଣେ ମନୁଷ୍ୟ ମାତ୍ର; ସୁତରାଂ ଏହାର ପରିଣାମ ବିଷୟରେ କିଛିକାଳ ଅପେକ୍ଷା କର।"

اِنْ هُوَ اِلَّا رَجُلٌۢ بِهٖ جِنَّةٌ فَتَرَبَّصُوْا بِهٖ حَتّٰى حِيْنٍ ﴿٢٦﴾

୨୭. (ନୁହ) କହିଥିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭଙ୍କୁ ସାହାଯ୍ୟ କର, କାରଣ ସେମାନେ ଆମ୍ଭଙ୍କୁ ମିଥ୍ୟାବାଦୀ ମନେ କରୁଛନ୍ତି।"

قَالَ رَبِّ انْصُرْنِىْ بِمَا كَذَّبُوْنِ ﴿٢٧﴾

୧. ଅର୍ଥାତ୍ ଜଇତୁନ୍ ବୃକ୍ଷ। ଏହାର ତେଲ ଖାଦ୍ୟ ଆକାରରେ ବ୍ୟବହୃତ ହୁଏ।

୨୮. ତେଣୁ ଆମେ ତାହାଙ୍କୁ ଓହି ମାଧ୍ୟମରେ ଆଦେଶ କରିଥିଲୁ ଯେ ଆମ ଚକ୍ଷୁ ସମ୍ମୁଖରେ ଓ ଆମର ଓହି ଅନୁସାରେ ନୌକା (ଯାହା ନେଇ ଆମେ ଆଦେଶ ଦେଇଥିଲୁ) ନିର୍ମାଣ କର; ଅତଏବ ଯେତେବେଳେ ଆମର ଆଦେଶ ଉପସ୍ଥିତ ହେବ ଏବଂ ଭୂତଳର· ଜଳସ୍ରୋତ ଉଦ୍‌ଗତ ହେବ, ସେତେବେଳେ (ଆମ ଆଦେଶ ମୁତାବକ) ପ୍ରତ୍ୟେକ ମାଈ ଓ ଅଣ୍ଡିରା ପ୍ରାଣୀଙ୍କ ମଧ୍ୟରୁ ଦୁଇଟି ଲେଖାଁଏ ଯୋଡା, ଏବଂ ଯେଉଁମାନଙ୍କ ବିରୁଦ୍ଧରେ ପୂର୍ବରୁ ଆମର ଆଦେଶ ଉପସ୍ଥିତ ହୋଇଅଛି ସେମାନଙ୍କ ବ୍ୟତୀତ, ନିଜ ପରିବାରବର୍ଗଙ୍କୁ ଏଥିରେ ଆରୋହଣ କରାଅ; ଏବଂ ଯେଉଁମାନେ ଅତ୍ୟାଚାର କରିଛନ୍ତି ସେମାନଙ୍କ ସମ୍ବନ୍ଧରେ ଆମକୁ କିଛି କୁହ ନାହିଁ; କାରଣ ସେମାନଙ୍କୁ ନିଶ୍ଚୟ ଜଳମଗ୍ନ କରାହେବ ।

فَأَوْحَيْنَآ إِلَيْهِ أَنِ ٱصْنَعِ ٱلْفُلْكَ بِأَعْيُنِنَا وَوَحْيِنَا فَإِذَا جَآءَ أَمْرُنَا وَفَارَ ٱلتَّنُّورُ فَٱسْلُكْ فِيهَا مِن كُلٍّ زَوْجَيْنِ ٱثْنَيْنِ وَأَهْلَكَ إِلَّا مَن سَبَقَ عَلَيْهِ ٱلْقَوْلُ مِنْهُمْ وَلَا تُخَٰطِبْنِى فِى ٱلَّذِينَ ظَلَمُوٓا إِنَّهُم مُّغْرَقُونَ ٢٨

୨୯. ଅତଏବ ଯେତେବେଳେ ତୁମେ ଓ ତୁମର ସାଥୀମାନେ ନୌକାରେ ଭଲଭାବରେ ବସିପଡ଼ିବ, ସେତେବେଳେ ତୁମମାନଙ୍କ ମଧ୍ୟରୁ ପ୍ରତ୍ୟେକ କୁହ, "ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ପାଇଁ ଉଦ୍ଦିଷ୍ଟ ଯେ କି ଆମମାନଙ୍କୁ ଅତ୍ୟାଚାରୀ ସମ୍ପ୍ରଦାୟଠାରୁ ମୁକ୍ତି ପ୍ରଦାନ କରିଛନ୍ତି ।"

فَإِذَا ٱسْتَوَيْتَ أَنتَ وَمَن مَّعَكَ عَلَى ٱلْفُلْكِ فَقُلِ ٱلْحَمْدُ لِلَّهِ ٱلَّذِى نَجَّىٰنَا مِنَ ٱلْقَوْمِ ٱلظَّٰلِمِينَ ٢٩

୩୦. ଏବଂ (ନୌକାରୁ ଅବତରଣ କରିବା ସମୟରେ) କୁହ, "ହେ ଆମର ପାଳନକର୍ତ୍ତା ! ତୁମେ ଆମକୁ (ଏହି ନୌକାରୁ) ଏପରି ଅବସ୍ଥାରେ ଅବତରଣ କରାଅ ଯେପରିକି ଆମ ଉପରେ ପ୍ରଚୁର ପରିମାଣରେ ଆଶୀର୍ବାଦ ଅବତୀର୍ଣ୍ଣ ହେଉଥିବ; ଏବଂ ତୁମେ ହିଁ ସମସ୍ତ ଅବତରଣ କରାଉଥିବା ଲୋକମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ।"

وَقُل رَّبِّ أَنزِلْنِى مُنزَلًا مُّبَارَكًا وَأَنتَ خَيْرُ ٱلْمُنزِلِينَ ٣٠

୩୧. ବାସ୍ତବରେ ଏଥିରେ ଅନେକ ନିଦର୍ଶନ ରହିଅଛି; ଏବଂ ଆମେ ନିଶ୍ଚିତ ରୂପେ ସର୍ବଦା ଲୋକମାନଙ୍କୁ ପରୀକ୍ଷାରେ ଅବତରଣ କରାଇଥାଉ ।

إِنَّ فِى ذَٰلِكَ لَءَايَٰتٍ وَإِن كُنَّا لَمُبْتَلِينَ ٣١

୩୨. ପୁଣି ଆମେ ସେମାନଙ୍କ ପରେ ଅନେକ ସମ୍ପ୍ରଦାୟ ସୃଷ୍ଟି କରିଥିଲୁ ।

ثُمَّ أَنشَأْنَا مِنۢ بَعْدِهِمْ قَرْنًا ءَاخَرِينَ ٣٢

୩୩. ଏବଂ ଆମେ ସେମାନଙ୍କ ମଧ୍ୟରେ ସେମାନଙ୍କ ମଧ୍ୟରୁ (ଏହି ବାର୍ତ୍ତା ପ୍ରଦାନ କରି) ରସୁଲ ପ୍ରେରଣ କରିଥିଲୁ ଯେ ଅଲ୍ଲାହଙ୍କର ଉପାସନା କର; ତାହାଙ୍କ ବ୍ୟତୀତ ତୁମମାନଙ୍କର ଅନ୍ୟ କେହି ଉପାସ୍ୟ ନାହିଁ; ତା'ହେଲେ କ'ଣ ତୁମେମାନେ ତାହାଙ୍କ ମାଧ୍ୟମରେ ନିଜକୁ ଧ୍ୱଂସ ମୁଖରୁ ରକ୍ଷା କରିବ ନାହିଁ ?

فَأَرْسَلْنَا فِيهِمْ رَسُولًا مِّنْهُمْ أَنِ ٱعْبُدُوا ٱللَّهَ مَا لَكُم مِّنْ إِلَٰهٍ غَيْرُهُۥٓ أَفَلَا تَتَّقُونَ ٣٣ ع

ରୁ: ୩

| | |
|---|---|
| ୩୪. ଏବଂ ଏହି (ନୂତନ ରସୁଲଙ୍କ) ସମ୍ପ୍ରଦାୟ ମଧ୍ୟରୁ ଯେଉଁମାନେ ଅବିଶ୍ୱାସ କରିଥିଲେ ଓ ମୃତ୍ୟୁପରେ ଅଲ୍ଲାହଙ୍କ ସହିତ ମିଳନକୁ ଅସ୍ୱୀକାର କରିଥିଲେ ଓ ଯେଉଁମାନଙ୍କୁ ଆମେ ଏହି ପାର୍ଥିବ ଜୀବନରେ ଧନବାନ୍ କରିଥିଲୁ ସେମାନଙ୍କ ମୁଖ୍ୟମାନେ କହିଲେ, "ଏ ତ ତୁମମାନଙ୍କ ଭଳି ଜଣେ ମନୁଷ୍ୟ ମାତ୍ର; ତୁମେମାନେ ଯାହା (ଖାଦ୍ୟଦ୍ରବ୍ୟ) ଖାଉଅଛ ସେ ତହିଁରୁ ହି ଖାଉଅଛି ଏବଂ ତୁମେମାନେ ଯାହା (ପାନୀୟ) ପିଉଅଛ ସେ ତହିଁରୁ ହିଁ ପିଉଅଛି ।" | وَقَالَ الْمَلَأُ مِنْ قَوْمِهِ الَّذِينَ كَفَرُوا وَكَذَّبُوا بِلِقَاءِ الْآخِرَةِ وَأَتْرَفْنَاهُمْ فِي الْحَيَاةِ الدُّنْيَا مَا هَٰذَا إِلَّا بَشَرٌ مِثْلُكُمْ يَأْكُلُ مِمَّا تَأْكُلُونَ مِنْهُ وَيَشْرَبُ مِمَّا تَشْرَبُونَ ﴿٣٤﴾ |
| ୩୫. "ଏବଂ ଯଦି ତୁମେମାନେ ତୁମମାନଙ୍କ ଭଳି ଜଣେ ମନୁଷ୍ୟ କଥା ମାନିବ, ତେବେ ତୁମେମାନେ ନିଶ୍ଚୟ କ୍ଷତିଗ୍ରସ୍ତମାନଙ୍କ ମଧ୍ୟରେ ଅନ୍ତର୍ଗତ ହେବ ।" | وَلَئِنْ أَطَعْتُمْ بَشَرًا مِثْلَكُمْ إِنَّكُمْ إِذًا لَخَاسِرُونَ ﴿٣٥﴾ |
| ୩୬. "କ'ଣ ସେ ତୁମମାନଙ୍କୁ ପ୍ରତିଶ୍ରୁତି ଦେଉଛନ୍ତି ଯେ ଯେବେ ତୁମେମାନେ ମୃତ୍ୟୁ ଲାଭ କରିବ ଓ ମାଟି ହୋଇଯିବ ତଥା ହାଡ଼ରେ ପରିଣତ ହୋଇଯିବ, ତେବେ ତୁମମାନଙ୍କୁ (ଜୀବିତ କରାଯାଇ) ବାହାର କରାହେବ ?" | أَيَعِدُكُمْ أَنَّكُمْ إِذَا مِتُّمْ وَكُنْتُمْ تُرَابًا وَعِظَامًا أَنَّكُمْ مُخْرَجُونَ ﴿٣٦﴾ |
| ୩୭. "ଯେଉଁ ବିଷୟରେ ତୁମମାନଙ୍କୁ ପ୍ରତିଶ୍ରୁତି ଦିଆଯାଉଛି ତାହା (ତୁମମାନଙ୍କ ବୁଦ୍ଧିର ବାହାରେ) ଓ ଗ୍ରହଣଯୋଗ୍ୟ ନୁହେଁ ।" | هَيْهَاتَ هَيْهَاتَ لِمَا تُوعَدُونَ ﴿٣٧﴾ |
| ୩୮. "ଆମମାନଙ୍କ ଏହି ପାର୍ଥିବ ଜୀବନ ହି ପ୍ରକୃତ ଜୀବନ; ଆମେମାନେ କେବେ ମୃତ ଅବସ୍ଥାରେ ଥାଉ ତ ଅନ୍ୟ କେବେ ଜୀବିତ ଅବସ୍ଥାରେ; ଏବଂ ଆମେମାନେ ମରିବା ପରେ କେବେ ହେଁ ପୁନର୍ବାର ଉତ୍‌ଥିତ ହେବୁ ନାହିଁ ।" | إِنْ هِيَ إِلَّا حَيَاتُنَا الدُّنْيَا نَمُوتُ وَنَحْيَا وَمَا نَحْنُ بِمَبْعُوثِينَ ﴿٣٨﴾ |
| ୩୯. "ସେ ତ (କେବଳ) ଜଣେ ମାତ୍ର ବ୍ୟକ୍ତି; ସେ ଅଲ୍ଲାହଙ୍କ ସଂକ୍ରାନ୍ତରେ ମିଥ୍ୟା ବର୍ଣ୍ଣନା କରୁଛନ୍ତି; ଏବଂ ଆମେମାନେ ତାହାଙ୍କୁ କେବେ ହେଲେ ମାନିବୁ ନାହିଁ ।" | إِنْ هُوَ إِلَّا رَجُلٌ افْتَرَىٰ عَلَى اللَّهِ كَذِبًا وَمَا نَحْنُ لَهُ بِمُؤْمِنِينَ ﴿٣٩﴾ |
| ୪୦. (ତେଣୁ) ସେ କହିଲେ, "ହେ ଆମର ପାଳନକର୍ତ୍ତା ! ଆମକୁ ସାହାଯ୍ୟ କର, କାରଣ ସେମାନେ ଆମକୁ ମିଥ୍ୟାବାଦୀ ମନେ କରୁଛନ୍ତି ।" | قَالَ رَبِّ انْصُرْنِي بِمَا كَذَّبُونِ ﴿٤٠﴾ |
| ୪୧. (ଏଥି ଉତ୍ତାରୁ ଅଲ୍ଲାହ) କହିଲେ, "ଏ (ଲୋକ) ମାନେ ଅଳ୍ପ ସମୟ ମଧ୍ୟରେ ହି ଲଜ୍ଜିତ ହେବେ ।" | قَالَ عَمَّا قَلِيلٍ لَيُصْبِحُنَّ نَادِمِينَ ﴿٤١﴾ |

فَأَخَذَتْهُمُ الصَّيْحَةُ بِالْحَقِّ فَجَعَلْنٰهُمْ غُثَآءً ۚ فَبُعْدًا لِّلْقَوْمِ الظّٰلِمِيْنَ ﴿٤٢﴾

୪୨. ଏବଂ ଯେଉଁ ଶାସ୍ତି ସଂକ୍ରାନ୍ତରେ ସତ୍ୟ ସମାଚାର ଦିଆଯାଇଥିଲା ତାହା ସେମାନଙ୍କୁ କବଳିତ କରିଥିଲା ଏବଂ ଆମେ ସେମାନଙ୍କୁ ଅଳିଆ ଆବର୍ଜନାରେ ପରିଣତ କରିଦେଲୁ; ଏବଂ (ଦେବଦୂତମାନଙ୍କୁ ଆଦେଶ ଦେଲୁ ଯେ) ଅତ୍ୟାଚାରୀମାନଙ୍କ ସକାଶେ ଅଲ୍ଲାହଙ୍କର ଅଭିଶାପ (ନିର୍ଦ୍ଧାରଣ କର) ।

ثُمَّ أَنْشَأْنَا مِنْ بَعْدِهِمْ قُرُوْنًا اٰخَرِيْنَ ﴿٤٣﴾

୪୩. ଏହାପରେ ଆମେ ସେମାନଙ୍କ ଉତ୍ତାରୁ ଅନ୍ୟ କେତେକ ସମ୍ପ୍ରଦାୟ ସୃଷ୍ଟି କରିଥିଲୁ ।

مَا تَسْبِقُ مِنْ أُمَّةٍ أَجَلَهَا وَمَا يَسْتَأْخِرُوْنَ ﴿٤٤﴾

୪୪. କୌଣସି ଜାତି ନିଜ ନିର୍ଦ୍ଧାରିତ ଅବଧିରୁ ଆଗକୁ ଯାଇ ପାରେ ନାହିଁ କି ଏହାର ପଛରେ ରହି (ବଞ୍ଚିଯାଇ) ପାରେ ନାହିଁ ।

ثُمَّ أَرْسَلْنَا رُسُلَنَا تَتْرَا ۖ كُلَّمَا جَآءَ أُمَّةً رَّسُوْلُهَا كَذَّبُوْهُ فَأَتْبَعْنَا بَعْضَهُمْ بَعْضًا وَّجَعَلْنٰهُمْ أَحَادِيْثَ ۚ فَبُعْدًا لِّقَوْمٍ لَّا يُؤْمِنُوْنَ ﴿٤٥﴾

୪୫. ତା'ପରେ ଆମେ ଆମର ରସୁଲମାନଙ୍କୁ ଜଣକ ପରେ ଜଣେ ପ୍ରେରଣ କରିଥିଲୁ; ଯେତେବେଳେ ମଧ୍ୟ କୌଣସି ସମ୍ପ୍ରଦାୟ ନିକଟକୁ ସେମାନଙ୍କର ରସୁଲ ଆସୁଥିଲେ, ସେମାନେ ତାହାଙ୍କୁ ମିଥ୍ୟାବାଦୀ ବୋଲି ମନେ କରୁଥିଲେ; ତେଣୁ ଆମେ ସେମାନଙ୍କ ମଧ୍ୟରୁ କେତେକଙ୍କ ପଛରେ କେତେକଙ୍କୁ (ଧ୍ୱଂସ ମୁଖକୁ) ପଠାଇ ଦେଲୁ; ଏବଂ ଆମେ ସେ ସମସ୍ତଙ୍କୁ ପ୍ରାଚୀନ କାହାଣୀରେ[୧] ପରିଣତ କରି ଦେଲୁ; ଏବଂ (ସେମାନଙ୍କ ସଂକ୍ରାନ୍ତରେ ଦେବଦୂତମାନଙ୍କୁ ଆଦେଶ ଦେଲୁ ଯେ) ଅବିଶ୍ୱାସକାରୀମାନଙ୍କ ସକାଶେ ଅଲ୍ଲାହଙ୍କର ଅଭିଶାପ (ନିର୍ଦ୍ଧାରଣ କର) ।

ثُمَّ أَرْسَلْنَا مُوْسٰى وَأَخَاهُ هٰرُوْنَ ۙ بِاٰيٰتِنَا وَسُلْطٰنٍ مُّبِيْنٍ ﴿٤٦﴾

୪୬. ଏହାପରେ ଆମେ ମୁସା ଓ ତାହାଙ୍କ ଭାଇ ହାରୁନଙ୍କୁ ଆମର ନିଦର୍ଶନ ଓ ପ୍ରକାଶ୍ୟ ପ୍ରାଧିକାର ପ୍ରଦାନ କରି ପ୍ରେରଣ କରିଥିଲୁ;

إِلٰى فِرْعَوْنَ وَمَلَا۟ئِهٖ فَاسْتَكْبَرُوْا وَكَانُوْا قَوْمًا عَالِيْنَ ﴿٤٧﴾

୪୭. ଫିରଔନ ଓ ତାହାର ମୁଖ୍ୟମାନଙ୍କ ନିକଟକୁ; କିନ୍ତୁ ସେମାନେ ଗର୍ବ କରିଥିଲେ; ଏବଂ ସେମାନେ ଦୁର୍ବୃତ୍ତ ସମ୍ପ୍ରଦାୟ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଗଲେ ।

فَقَالُوْٓا أَنُؤْمِنُ لِبَشَرَيْنِ مِثْلِنَا وَقَوْمُهُمَا لَنَا عٰبِدُوْنَ ﴿٤٨﴾

୪୮. ତା'ପରେ ସେମାନେ କହିଲେ, ''କ'ଣ ଆମେମାନେ ନିଜ ଭଳି ଦୁଇଜଣ ମନୁଷ୍ୟଙ୍କ ଉପରେ ବିଶ୍ୱାସ କରିବୁ ? ଅଥଚ ସେ ଦୁହିଁଙ୍କ ସମ୍ପ୍ରଦାୟ ଆମମାନଙ୍କର ଭୃତ୍ୟ ।''

فَكَذَّبُوْهُمَا فَكَانُوْا مِنَ الْمُهْلَكِيْنَ ﴿٤٩﴾

୪୯. ତେଣୁ ସେମାନେ ସେ ଦୁହିଁଙ୍କୁ (ଅର୍ଥାତ୍ ମୁସା ଓ ହାରୁନଙ୍କୁ) ମିଥ୍ୟାବାଦୀ ବୋଲି କହିଥିଲେ; ଫଳରେ ସେମାନେ ମଧ୍ୟ ବିନାଶପ୍ରାପ୍ତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଗଲେ ।

---

୧. ଅର୍ଥାତ୍ ସଂସାରରେ ସେମାନଙ୍କ ଚିହ୍ନ ବର୍ଣ୍ଣ ବାକି ରହିଲା ନାହିଁ ।

وَلَقَدْ اٰتَيْنَا مُوْسَى الْكِتٰبَ لَعَلَّهُمْ يَهْتَدُوْنَ ﴿٥٠﴾

୫୦. ଏବଂ ଆମ୍ଭେ ମୁସାଙ୍କୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଥିଲୁ (ଯୋହା ସେମାନେ ସମସ୍ତେ ଅବଗତ ଥିଲେ) ଯେପରିକି ସେମାନେ ସତ୍‌ପଥ ପ୍ରାପ୍ତ ହେବେ ।

وَجَعَلْنَا ابْنَ مَرْيَمَ وَاُمَّهٗۤ اٰيَةً وَّاٰوَيْنٰهُمَاۤ اِلٰى رَبْوَةٍ ذَاتِ قَرَارٍ وَّمَعِيْنٍ ﴿٥١﴾

୫୧. ଏବଂ ଆମ୍ଭେ ମରିୟମ-ନନ୍ଦନ ଓ ତାହାଙ୍କ ମାତାଙ୍କୁ ଏକ ନିଦର୍ଶନ (ସ୍ୱରୂପ) କରିଥିଲୁ; ଏବଂ ଆମ୍ଭେ ସେ ଦୁହିଁଙ୍କୁ ଏପରି ଏକ ଉଚ୍ଚ ସ୍ଥାନରେ [୧] ଆଶ୍ରୟ ଦେଇଥିଲୁ ଯାହା ବାସୋପଯୋଗୀ ଓ ଯହିଁରେ ପ୍ରବାହିତ ଝରଣା ମଧ୍ୟ ଥିଲା ।

ରୁ: ୪

يٰۤاَيُّهَا الرُّسُلُ كُلُوْا مِنَ الطَّيِّبٰتِ وَاعْمَلُوْا صَالِحًا ۗ اِنِّيْ بِمَا تَعْمَلُوْنَ عَلِيْمٌ ﴿٥٢﴾

୫୨. (ଏବଂ ଆମ୍ଭେ କହିଲୁ), "ହେ ରସୁଲମାନେ ! ବିଶୁଦ୍ଧ ସାମଗ୍ରୀଗୁଡିକ ମଧ୍ୟରୁ ଖାଅ ଓ ଉଚିତ କର୍ମ କର; ଏବଂ ତୁମେମାନେ ଯାହା କରୁଅଛ ତାହାକୁ ଆମ୍ଭେ ଜାଣୁ ।"

وَاِنَّ هٰذِهٖۤ اُمَّتُكُمْ اُمَّةً وَّاحِدَةً وَّاَنَا رَبُّكُمْ فَاتَّقُوْنِ ﴿٥٣﴾

୫୩. "ଏବଂ ତୁମମାନଙ୍କର (ଅର୍ଥାତ୍ ଅବତାରମାନଙ୍କର) ଏହି ଗୋଷ୍ଠୀ [୨] ଏକମାତ୍ର ଗୋଷ୍ଠୀ [୩], ଏବଂ ଆମ୍ଭେ ହିଁ ତୁମମାନଙ୍କର ପାଳନକର୍ତ୍ତା; ସୁତରାଂ (ବିନାଶରୁ ରକ୍ଷା ପାଇବା ସକାଶେ ଆମ୍ଭଙ୍କୁ ହିଁ ଭୟ କର ଓ) ଆମ୍ଭଙ୍କୁ ସଂରକ୍ଷକ ରୂପେ ଗ୍ରହଣ କର ।"

فَتَقَطَّعُوْۤا اَمْرَهُمْ بَيْنَهُمْ زُبُرًا ۗ كُلُّ حِزْبٍۢ بِمَا لَدَيْهِمْ فَرِحُوْنَ ﴿٥٤﴾

୫୪. ତା' ପରେ ସେମାନେ (ଅର୍ଥାତ୍ ଅବିଶ୍ୱାସକାରୀମାନେ) ନିଜ ଭିତରେ ଧର୍ମ ବିଧାନଗୁଡିକୁ ଖଣ୍ଡ ଖଣ୍ଡ କରି ଦେଇଥିଲେ, ଏବଂ ପ୍ରତ୍ୟେକ ଗୋଷ୍ଠୀ ନିଜ ପାଇଁ ଯେଉଁ ଖଣ୍ଡକ ଗ୍ରହଣ କଲା ସେଥି ସକାଶେ ଗର୍ବ କରିବାକୁ ଲାଗିଲା ।

فَذَرْهُمْ فِيْ غَمْرَتِهِمْ حَتّٰى حِيْنٍ ﴿٥٥﴾

୫୫. ତେଣୁ ତୁମ୍ଭେ ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ସେମାନଙ୍କ ଅମନୋଯୋଗୀ ମଧ୍ୟରେ ପଡି ରହିବାକୁ ଦିଅ ।

اَيَحْسَبُوْنَ اَنَّمَا نُمِدُّهُمْ بِهٖ مِنْ مَّالٍ وَّبَنِيْنَ ﴿٥٦﴾ نُسَارِعُ لَهُمْ فِى الْخَيْرٰتِ ۗ بَلْ لَّا يَشْعُرُوْنَ ﴿٥٧﴾

୫୬./୫୭. କ'ଣ ସେମାନେ ଭାବୁଛନ୍ତି ଯେ ଆମ୍ଭର ସେମାନଙ୍କୁ ଧନ ସମ୍ପତ୍ତି ଓ ସନ୍ତାନ-ସନ୍ତତି ଦ୍ୱାରା ସାହାଯ୍ୟ କରିବା ସେମାନଙ୍କୁ ପୁଣ୍ୟକାର୍ଯ୍ୟରେ ଅଗ୍ରସର କରାଇବାପାଇଁ ଉଦ୍ଦିଷ୍ଟ ? ନା (ଏପରି ନୁହେଁ), ବରଂ ସେମାନେ (ପ୍ରକୃତ ଅବସ୍ଥା) ବୁଝି ପାରୁନାହାନ୍ତି ।

اِنَّ الَّذِيْنَ هُمْ مِّنْ خَشْيَةِ رَبِّهِمْ مُّشْفِقُوْنَ ﴿٥٨﴾

୫୮. ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ଭୟରେ ପ୍ରକମ୍ପିତ ହୁଅନ୍ତି,

---

୧. ଇତିହାସରୁ ପ୍ରତିପାଦିତ ହେଉଛି ଯେ ସେହି ଉଚ୍ଚସ୍ଥାନ ହେଉଛି କାଶ୍ମୀର । ଏହା ସପକ୍ଷରେ ବାଇବେଲ୍‌ରୁ ତଥା ଇହୁଦୀ ଓ ହିନ୍ଦୁମାନଙ୍କ ଇତିହାସରୁ ଅନେକ ପ୍ରମାଣ ମିଳୁଛି ।

୨. ଏଠାରେ 'ଉମ୍ମତ' ଅର୍ଥ ଜାତି ନୁହେଁ ବରଂ ଗୋଷ୍ଠୀ ।

୩. ଅର୍ଥାତ୍ ସମସ୍ତ ରସୁଲ ଗୋଟିଏ ଗୋଷ୍ଠୀର ଅଂଶ ବିଶେଷ । ସେମାନଙ୍କ ମଧ୍ୟରେ ବଡ଼ ସାନ ରହିଥିବାର ଚିନ୍ତା କରିବା ଯଥାର୍ଥ ନୁହେଁ । ପବିତ୍ର କୋରାନରେ ବର୍ଣ୍ଣନା କରାଯାଇଛି ଯେ ଅଲ୍ଲାହ ରସୁଲମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ରଖି ନାହାନ୍ତି (2:286 ଦ୍ରଷ୍ଟବ୍ୟ) ; ସେମାନେ ସମସ୍ତେ ଗୋଟିଏ ଉତ୍ସରୁ ଆସିଛନ୍ତି । ସେମାନଙ୍କ ମୂଳ ଶିକ୍ଷା ଉଣା ଅଧିକେ ଏକ ଓ ଅଭିନ୍ନ । ସେମାନେ ଏକେଶ୍ୱରବାଦ ଓ ବିଶ୍ୱ-ଭ୍ରାତୃତ୍ୱର ପ୍ରତିଷ୍ଠା କରିବା ସକାଶେ ଆସିଥିଲେ ।

୫୯. ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ନିଦର୍ଶନଗୁଡ଼ିକ ଉପରେ ବିଶ୍ୱାସ କରନ୍ତି,

وَالَّذِينَ هُمْ بِآيَاتِ رَبِّهِمْ يُؤْمِنُونَ ﴿٥٩﴾

୬୦. ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ସହିତ କାହାରିକୁ ସମକକ୍ଷ କରନ୍ତି ନାହିଁ;

وَالَّذِينَ هُمْ بِرَبِّهِمْ لَا يُشْرِكُونَ ﴿٦٠﴾

୬୧. ଏବଂ ଯେଉଁମାନେ (ଅଲ୍ଲାହ୍‌ଙ୍କ ପ୍ରଦତ୍ତ) ଧନକୁ (ପ୍ରଥମେ ପାଇବା ଯୋଗ୍ୟ ବ୍ୟକ୍ତିଙ୍କୁ) ପ୍ରଦାନ କରୁଥା'ନ୍ତି, ଓ ଯେଉଁମାନଙ୍କର ହୃଦୟ ଏହି ବିଷୟରେ ଭୟରେ ପ୍ରକମ୍ପିତ ହେଉଥାଏ ଯେ ଦିନେ ସେମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରିବାକୁ ହେବ;

وَالَّذِينَ يُؤْتُونَ مَا آتَوْا وَقُلُوبُهُمْ وَجِلَةٌ أَنَّهُمْ إِلَىٰ رَبِّهِمْ رَاجِعُونَ ﴿٦١﴾

୬୨. ଏହି ଲୋକମାନେ ହିଁ ସତ୍‌କର୍ମ କରିବାରେ ତତ୍ପର, ଏବଂ ସେମାନେ ହିଁ ଜଣେ ଅନ୍ୟଠାରୁ (ସତ୍‌କର୍ମ କରିବାରେ) ଆଗେଇ ଯାଉଥା'ନ୍ତି।

أُولَٰئِكَ يُسَارِعُونَ فِي الْخَيْرَاتِ وَهُمْ لَهَا سَابِقُونَ ﴿٦٢﴾

୬୩. ଏବଂ ଆମ୍ଭେ କୌଣସି ଜୀବକୁ ତାହାର ସାଧ୍ୟ ଅପେକ୍ଷା ଅଧିକ ଭାରାକ୍ରାନ୍ତ କରିନାହୁଁ ଏବଂ ଆମ୍ଭ ନିକଟରେ ଏକ କର୍ମ-ବିବରଣୀ ପୁସ୍ତିକା ଅଛି ଯାହା ସତ୍ୟ (ଘଟଣା) ବର୍ଣ୍ଣନା କରେ; ଏବଂ ସେମାନଙ୍କ ପ୍ରତି କୌଣସି ଅତ୍ୟାଚାର କରାହେବ ନାହିଁ।

وَلَا نُكَلِّفُ نَفْسًا إِلَّا وُسْعَهَا وَلَدَيْنَا كِتَابٌ يَنْطِقُ بِالْحَقِّ وَهُمْ لَا يُظْلَمُونَ ﴿٦٣﴾

୬୪. କିନ୍ତୁ ସେମାନଙ୍କ ହୃଦୟ ଏହି ଶିକ୍ଷା ବିଷୟରେ ଅମନୋଯୋଗୀ ହୋଇଅଛି ଏବଂ ଏତଦ୍‌ବ୍ୟତୀତ ସେମାନଙ୍କର ଆହୁରି ଅନେକ(କୁ) କର୍ମ ଅଛି ଯାହା ସେମାନେ କରୁଛନ୍ତି।

بَلْ قُلُوبُهُمْ فِي غَمْرَةٍ مِنْ هَٰذَا وَلَهُمْ أَعْمَالٌ مِنْ دُونِ ذَٰلِكَ هُمْ لَهَا عَامِلُونَ ﴿٦٤﴾

୬୫. ଏପରିକି ଯେତେବେଳେ ଆମ୍ଭେ ସେମାନଙ୍କ ମଧ୍ୟରୁ ସ୍ୱଚ୍ଛଳ ବ୍ୟକ୍ତିମାନଙ୍କୁ ଶାସ୍ତିର କବଳିତ କରୁ, ସେତେବେଳେ ସେମାନେ ହଠାତ୍ ସାହାଯ୍ୟ ଭିକ୍ଷା କରନ୍ତି।

حَتَّىٰ إِذَا أَخَذْنَا مُتْرَفِيهِمْ بِالْعَذَابِ إِذَا هُمْ يَجْأَرُونَ ﴿٦٥﴾

୬୬. (ସେତେବେଳେ ଆମ୍ଭେ ସେମାନଙ୍କୁ କହୁ), "ଆଜି ସାହାଯ୍ୟ ଭିକ୍ଷା କର ନାହିଁ; ତୁମେମାନେ ଆମ୍ଭ ନିକଟରୁ କୌଣସି ସାହାଯ୍ୟ ପାଇବ ନାହିଁ।"

لَا تَجْأَرُوا الْيَوْمَ إِنَّكُمْ مِنَّا لَا تُنْصَرُونَ ﴿٦٦﴾

୬୭./୬୮. "ଆମ୍ଭର ନିଦର୍ଶନଗୁଡ଼ିକ ତୁମମାନଙ୍କ ନିକଟରେ ପାଠ କରାଯାଉଥିଲା; କିନ୍ତୁ ତୁମେମାନେ ବେଖାତିର ଭାବ ପ୍ରକାଶ କରି ଅଯଥା କଥା କହି ମୁହଁ ମୋଡ଼ି ଫେରି ଯାଉଥିଲ।"

قَدْ كَانَتْ آيَاتِي تُتْلَىٰ عَلَيْكُمْ فَكُنْتُمْ عَلَىٰ أَعْقَابِكُمْ تَنْكِصُونَ ﴿٦٧﴾

مُسْتَكْبِرِينَ بِهِ سَامِرًا تَهْجُرُونَ ﴿٦٨﴾

୬୯. (ଏବଂ) କ'ଣ ସେମାନେ ସେହି (କୋରାନ) ବାଣୀ ସଂକ୍ରାନ୍ତରେ ଚିନ୍ତା କରୁ ନାହାନ୍ତି ? ଅଥବା କ'ଣ ସେମାନଙ୍କୁ ତାହା (ଅର୍ଥାତ୍ ସେହି ପ୍ରତିଶ୍ରୁତି)ମିଳିଅଛି ଯାହା ସେମାନଙ୍କ ପିତୃ-ପିତାମହମାନଙ୍କୁ ମିଳି ନ ଥିଲା ?

أَفَلَمْ يَدَّبَّرُوا الْقَوْلَ أَمْ جَاءَهُمْ مَا لَمْ يَأْتِ آبَاءَهُمُ الْأَوَّلِينَ ﴿٦٩﴾

୭୦. (ଅଥବା) କ'ଣ ସେମାନେ ନିଜ ରସୁଲଙ୍କୁ ଚିହ୍ନି ପାରି ନାହାନ୍ତି ? ଯାହାଫଳରେ ସେମାନେ ତାହାଙ୍କୁ ପ୍ରତ୍ୟାଖ୍ୟାନ କରୁଛନ୍ତି ?

أَمْ لَمْ يَعْرِفُوا رَسُولَهُمْ فَهُمْ لَهُ مُنْكِرُونَ ﴿٧٠﴾

୭୧. କ'ଣ ସେମାନେ କହୁଛନ୍ତି ଯେ ତାହାଙ୍କଠାରେ ପାଗଳାମି ଅଛି ? (କିନ୍ତୁ ଏପରି ନୁହେଁ); ବରଂ ସେ ତାହାଙ୍କ ନିକଟକୁ ସତ୍ୟ ସହିତ ଆସିଛନ୍ତି, ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ସତ୍ୟକୁ ନାପସନ୍ଦ କରନ୍ତି ।

أَمْ يَقُولُونَ بِهٖ جِنَّةٌ ۚ بَلْ جَآءَهُمْ بِالْحَقِّ وَاَكْثَرُهُمْ لِلْحَقِّ كٰرِهُونَ ﴿٧١﴾

୭୨. ଏବଂ ଯଦି ସତ୍ୟ ସେମାନଙ୍କ ପ୍ରବୃତ୍ତିର ଅନୁସରଣ କରନ୍ତା, ତେବେ ଆକାଶ ଓ ପୃଥିବୀ ଓ ସେ ଉଭୟଙ୍କ ମଧ୍ୟରେ ଯେଉଁମାନେ ବାସ କରୁଛନ୍ତି ଧ୍ୱଂସ ହୋଇଯାଆନ୍ତେ; ପ୍ରକୃତରେ ଆମେ ସେମାନଙ୍କ ନିକଟକୁ ସେମାନଙ୍କ ସମ୍ମାନର ବସ୍ତୁ ଆଣିଅଛୁ, ଏବଂ ସେମାନେ ନିଜ ସମ୍ମାନର ବସ୍ତୁଠାରୁ ବିମୁଖ ହେଉଛନ୍ତି ।

وَلَوِ اتَّبَعَ الْحَقُّ اَهْوَآءَهُمْ لَفَسَدَتِ السَّمٰوٰتُ وَالْاَرْضُ وَمَنْ فِيهِنَّ ۚ بَلْ اَتَيْنٰهُمْ بِذِكْرِهِمْ فَهُمْ عَنْ ذِكْرِهِمْ مُّعْرِضُونَ ﴿٧٢﴾

୭୩. କ'ଣ ତୁମେ ସେମାନଙ୍କଠାରୁ କୌଣସି ପୁରସ୍କାର ଲୋଡୁଅଛ ? (ଏପରି ହୋଇ ନ ପାରେ) କାରଣ ତୁମ ପାଳନକର୍ତ୍ତାଙ୍କ ପ୍ରଦତ୍ତ ପୁରସ୍କାର ସର୍ବୋତ୍କୃଷ୍ଟ ଓ ସେ ସର୍ବୋତ୍କୃଷ୍ଟ ଜୀବିକା ପ୍ରଦାନକାରୀ ।

اَمْ تَسْـَٔلُهُمْ خَرْجًا فَخَرَاجُ رَبِّكَ خَيْرٌ ۖ وَّهُوَ خَيْرُ الرّٰزِقِينَ ﴿٧٣﴾

୭୪. ଏବଂ ବାସ୍ତବରେ ତୁମେ ସେମାନଙ୍କୁ ସରଳପଥ ଆଡକୁ ଡାକୁଅଛ ।

وَاِنَّكَ لَتَدْعُوهُمْ اِلٰى صِرَاطٍ مُّسْتَقِيمٍ ﴿٧٤﴾

୭୫. ଏବଂ ଯେଉଁମାନେ ପରକାଳ ଉପରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ହିଁ ପଥଚ୍ୟୁତ ହୁଅନ୍ତି ।

وَاِنَّ الَّذِينَ لَا يُؤْمِنُونَ بِالْاٰخِرَةِ عَنِ الصِّرَاطِ لَنٰكِبُونَ ﴿٧٥﴾

୭୬. ଏବଂ ଯଦି ଆମେ ସେମାନଙ୍କ ପ୍ରତି କରୁଣା କରୁ ଓ ସେମାନେ ଯେଉଁ ଦୁଃଖ ପାଉଛନ୍ତି ତାହାକୁ ଦୂର କରୁ, ତେବେ ସେମାନେ ନିଜ ମନ୍ଦ ଆଚରଣରେ ଆହୁରି ଅଗ୍ରସର ହେବେ ।

وَلَوْ رَحِمْنٰهُمْ وَكَشَفْنَا مَا بِهِمْ مِّنْ ضُرٍّ لَّلَجُّوا فِي طُغْيَانِهِمْ يَعْمَهُونَ ﴿٧٦﴾

୭୭. ଏବଂ ଆମେ ସେମାନଙ୍କୁ କଠୋର ଶାସ୍ତି ଦ୍ୱାରା କବଳିତ କରି ରଖିଅଛୁ; ତଥାପି ସେମାନେ ନିଜ ପାଳନକର୍ତ୍ତାଙ୍କ ନିକଟରେ ବିନମ୍ର ହେଲେ ନାହିଁ କି କାକୁତି ମିନତି କଲେ ନାହିଁ ।

وَلَقَدْ اَخَذْنٰهُمْ بِالْعَذَابِ فَمَا اسْتَكَانُوا لِرَبِّهِمْ وَمَا يَتَضَرَّعُونَ ﴿٧٧﴾

୭୮. ଏପରିକି ଯେବେ ଆମେ ସେମାନଙ୍କ ସକାଶେ କଠୋର ଶାସ୍ତିର ଦ୍ୱାର ଉନ୍ମୁକ୍ତ କରିଦେବୁ, ତେବେ ସେମାନେ ନିରାଶ ହୋଇ ବସିରହିବେ ।

حَتّٰٓى اِذَا فَتَحْنَا عَلَيْهِمْ بَابًا ذَا عَذَابٍ شَدِيدٍ اِذَا هُمْ فِيهِ مُبْلِسُونَ ﴿٧٨﴾

ରୁ: ୫

୭୯. ଏବଂ ସେ (ଅଲ୍ଲାହ) ହିଁ ତୁମମାନଙ୍କ ସକାଶେ କାନ, ଆଖି ଓ ହୃଦୟ ସୃଷ୍ଟି କରିଛନ୍ତି; କିନ୍ତୁ ତୁମେମାନେ ଆଦୌ କୃତଜ୍ଞତା ପ୍ରକାଶ କରୁନାହଁ ।

وَهُوَ الَّذِيٓ اَنْشَاَ لَكُمُ السَّمْعَ وَالْاَبْصَارَ وَالْاَفْـِٕدَةَ ۚ قَلِيلًا مَّا تَشْكُرُونَ ﴿٧٩﴾

୮୦. ଏବଂ ସେ ହିଁ ତୁମମାନଙ୍କୁ ଭୂପୃଷ୍ଠରେ ବିସ୍ତାରିତ କରିଛନ୍ତି, ଓ ତୁମେମାନେ ତାହାଙ୍କ ନିକଟରେ ଏକତ୍ରିତ ହେବ ।

وَهُوَ الَّذِي ذَرَاَكُمْ فِي الْاَرْضِ وَاِلَيْهِ تُحْشَرُونَ ﴿٨٠﴾

୮୧. ଏବଂ ସେ ହିଁ ତୁମମାନଙ୍କୁ ଜୀବନ ଦାନ କରନ୍ତି ଓ ମୃତ୍ୟୁ ପ୍ରଦାନ କରିବେ, ଏବଂ ରାତି ଓ ଦିନର ପର୍ଯ୍ୟାୟକ୍ରମେ ଆଗମନ ତାହାଙ୍କର ଆୟତ୍ତାଧୀନ; ତେବେ କ'ଣ ତୁମେମାନେ ବୁଝିପାରୁନାହିଁ ?

وَهُوَ الَّذِیْ یُحْیٖ وَیُمِیْتُ وَلَهُ اخْتِلَافُ الَّیْلِ وَالنَّهَارِ اَفَلَا تَعْقِلُوْنَ ﴿۸۱﴾

୮୨. ବାସ୍ତବତା ଏହି ଯେ ସେମାନେ ସେହି କଥା କହୁଛନ୍ତି ଯାହା ସେମାନଙ୍କର ପୂର୍ବଜମାନେ କହୁଥିଲେ ।

بَلْ قَالُوْا مِثْلَ مَا قَالَ الْاَوَّلُوْنَ ﴿۸۲﴾

୮୩. ସେମାନେ କହିଲେ, "ଯେତେବେଳେ ଆମେମାନେ ମୃତ୍ୟୁ ବରଣ କରିବୁ ଏବଂ ମାଟି ହୋଇଯିବୁ ଓ ହାଡ଼ରେ ପରିଣତ ହେବୁ, କ'ଣ ସେତେବେଳେ ଆମେମାନେ ପୁନର୍ବାର ଉତ୍‌ଥିତ ହେବୁ ?"

قَالُوْۤا ءَاِذَا مِتْنَا وَكُنَّا تُرَابًا وَّعِظَامًا ءَاِنَّا لَمَبْعُوْثُوْنَ ﴿۸۳﴾

୮୪. ଏହା ପୂର୍ବରୁ ଆମମାନଙ୍କ ସହିତ ଓ ଆମମାନଙ୍କ ପିତୃପିତାମହମାନଙ୍କ ସହିତ ଏହି କଥାର ଅଙ୍ଗୀକାର କରାଯାଇଥିଲା (କିନ୍ତୁ ଏପରି ହେଲା ନାହିଁ); ଏହା ପ୍ରାଚୀନକାଳର କାହାଣୀ ମାତ୍ର ।

لَقَدْ وُعِدْنَا نَحْنُ وَاٰبَآؤُنَا هٰذَا مِنْ قَبْلُ اِنْ هٰذَاۤ اِلَّاۤ اَسَاطِیْرُ الْاَوَّلِیْنَ ﴿۸۴﴾

୮୫. ତୁମେ କୁହ, "ଯଦି ତୁମେମାନେ ଜାଣ ତେବେ ଏ ସମସ୍ତ ପୃଥିବୀ ଏବଂ ଯାହାକିଛି ଏଥି ମଧ୍ୟରେ ଅଛି, ସେଗୁଡ଼ିକ କାହାର ?"

قُلْ لِّمَنِ الْاَرْضُ وَمَنْ فِیْهَاۤ اِنْ كُنْتُمْ تَعْلَمُوْنَ ﴿۸۵﴾

୮୬. ସେମାନେ ନିଶ୍ଚୟ (ଉତ୍ତରରେ) କହିବେ, "ଅଲ୍ଲାହଙ୍କର"; ଏଥି ଉତ୍ତାରୁ ତୁମେ କୁହ, "ତାହାହେଲେ ତୁମେମାନେ କାହିଁକି ବୁଦ୍ଧିମତାର ସହିତ କାର୍ଯ୍ୟ କରିବ ନାହିଁ ?"

سَیَقُوْلُوْنَ لِلّٰهِ قُلْ اَفَلَا تَذَكَّرُوْنَ ﴿۸۶﴾

୮୭. (ପୁଣି ତୁମେ ସେମାନଙ୍କୁ) କୁହ, "କିଏ ସପ୍ତ ଆକାଶର ପାଳନକର୍ତ୍ତା ଓ କିଏ ମହାନ୍ ସିଂହାସନର ଅଧିକାରୀ ?"

قُلْ مَنْ رَّبُّ السَّمٰوٰتِ السَّبْعِ وَرَبُّ الْعَرْشِ الْعَظِیْمِ ﴿۸۷﴾

୮୮. ସେମାନେ ତତ୍‌କ୍ଷଣାତ୍ କହିବେ, "(ସେ ସବୁ) ଅଲ୍ଲାହଙ୍କର"; ତୁମେ କୁହ, "ତାହାହେଲେ କ'ଣ ତୁମେମାନେ (ତାହାଙ୍କ ପ୍ରକୋପରୁ) ରକ୍ଷା ପାଇବାପାଇଁ ଚେଷ୍ଟା କରିବ ନାହିଁ ?"

سَیَقُوْلُوْنَ لِلّٰهِ قُلْ اَفَلَا تَتَّقُوْنَ ﴿۸۸﴾

୮୯. ତୁମେ କୁହ, "କାହା ହାତରେ ପ୍ରତ୍ୟେକ ବିଷୟର କର୍ତ୍ତୃତ୍ୱ ରହିଅଛି ଓ କିଏ ସମସ୍ତଙ୍କୁ ଶରଣ ପ୍ରଦାନ କରୁଛି ? ତାହାଙ୍କ ଶାସ୍ତି ବିରୁଦ୍ଧରେ କେହି କାହାକୁ ଶରଣ ଦେଇପାରିବ ନାହିଁ; ଯଦି ତୁମେମାନେ ଜାଣ (ତେବେ ଏହା ବୁଝି ପାରିବ) ।"

قُلْ مَنْۢ بِیَدِهٖ مَلَكُوْتُ كُلِّ شَیْءٍ وَّهُوَ یُجِیْرُ وَلَا یُجَارُ عَلَیْهِ اِنْ كُنْتُمْ تَعْلَمُوْنَ ﴿۸۹﴾

୯୦. ସେମାନେ (ଉପରୋକ୍ତ ପ୍ରଶ୍ନ ଶୁଣିବାପରେ) ତତ୍‌କ୍ଷଣାତ୍ କହିବେ, "(ସେ ସବୁ) ଅଲ୍ଲାହଙ୍କର;" ତୁମେ କୁହ, "ତାହାହେଲେ ତୁମେମାନେ କିପରି ପ୍ରତାରିତ ହେଉଅଛ ?"

سَیَقُوْلُوْنَ لِلّٰهِ قُلْ فَاَنّٰی تُسْحَرُوْنَ ﴿۹۰﴾

بَلْ اَتَيْنٰهُمْ بِالْحَقِّ وَاِنَّهُمْ لَكٰذِبُوْنَ ﴿٩١﴾

୯୧. ପ୍ରକୃତରେ ଆମେ ସେମାନଙ୍କ ନିକଟକୁ ସତ୍ୟ ଆଣିଅଛୁ, ଏବଂ ସେମାନେ ଏହାର ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରୁଅଛନ୍ତି ।

مَا اتَّخَذَ اللّٰهُ مِنْ وَّلَدٍ وَّمَا كَانَ مَعَهٗ مِنْ اِلٰهٍ اِذًا لَّذَهَبَ كُلُّ اِلٰهٍۭ بِمَا خَلَقَ وَلَعَلَا بَعْضُهُمْ عَلٰى بَعْضٍ سُبْحٰنَ اللّٰهِ عَمَّا يَصِفُوْنَ ﴿٩٢﴾

୯୨. ଅଲ୍ଲାହ କାହାରିକୁ ସନ୍ତାନ ରୂପେ ଗ୍ରହଣ କରିନାହାନ୍ତି, ଏବଂ ତାହାଙ୍କ ସହିତ ଅନ୍ୟ କେହି ଉପାସ୍ୟ ନାହାନ୍ତି; (ଏପରି ହୋଇଥିଲେ) ପ୍ରତ୍ୟେକ ଉପାସ୍ୟ ନିଜର ସୃଷ୍ଟ ବସ୍ତୁଗୁଡିକୁ ପୃଥକ୍ କରି ନେଇ ଯାଆନ୍ତା ଏବଂ ସେ (ଉପାସ୍ୟ)ମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କ ଉପରେ ଆକ୍ରମଣ କରିଦିଅନ୍ତେ; ସେମାନେ ଯାହା କିଛି (ଅଲ୍ଲାହଙ୍କ ସମ୍ବନ୍ଧରେ) ବର୍ଣ୍ଣନା କରୁଛନ୍ତି ଅଲ୍ଲାହ ସେଥିରୁ ପବିତ୍ର ।

عٰلِمِ الْغَيْبِ وَالشَّهَادَةِ فَتَعٰلٰى عَمَّا يُشْرِكُوْنَ ﴿٩٣﴾

୯୩. ସେ ଉଭୟ ଅଦୃଷ୍ଟ ଓ ଦୃଷ୍ଟ (ବିଷୟଗୁଡିକୁ) ଜାଣନ୍ତି; ସୁତରାଂ ସେମାନେ ଯାହାଙ୍କୁ (ତାହାଙ୍କର) ସମକକ୍ଷ ସ୍ଥିର କରୁଛନ୍ତି, ସେ ସେମାନଙ୍କଠାରୁ ବହୁ ଊର୍ଦ୍ଧ୍ୱରେ ।

ରୁ: ୬

قُلْ رَّبِّ اِمَّا تُرِيَنِّيْ مَا يُوْعَدُوْنَ ﴿٩٤﴾

୯୪. ତୁମେ କୁହ, "ହେ ଆମର ପାଳନକର୍ତ୍ତା ! ଯେଉଁ ବିଷୟରେ ସେମାନଙ୍କ ସହିତ ଅଙ୍ଗୀକାର କରାଯାଉଛି, ଯଦି ତାହା ତୁମେ ଆମକୁ ଆମ ଜୀବଦ୍ଦଶାରେ ଦେଖାଇଦିଅ;"

رَبِّ فَلَا تَجْعَلْنِيْ فِي الْقَوْمِ الظّٰلِمِيْنَ ﴿٩٥﴾

୯୫. "ତେବେ ହେ ଆମର ପାଳନକର୍ତ୍ତା ! ତୁମେ ଆମ୍ଭକୁ ଅତ୍ୟାଚାରୀ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ କରନାହିଁ ।"

وَاِنَّا عَلٰٓى اَنْ نُّرِيَكَ مَا نَعِدُهُمْ لَقٰدِرُوْنَ ﴿٩٦﴾

୯୬. ଏବଂ ଯେଉଁ ବିଷୟରେ ସେମାନଙ୍କ ସହିତ ଅଙ୍ଗୀକାର କରାହୋଇଛି, ଆମେ ତୁମକୁ ତାହା ଦେଖାଇବାକୁ [1]ସମର୍ଥ ।

اِدْفَعْ بِالَّتِيْ هِيَ اَحْسَنُ السَّيِّئَةَ نَحْنُ اَعْلَمُ بِمَا يَصِفُوْنَ ﴿٩٧﴾

୯୭. ତୁମେ (ସେମାନଙ୍କ) ମନ୍ଦ କଥାକୁ ଉତ୍ତମ କଥାଦ୍ୱାରା ଦୂର କର; ସେମାନେ ଯାହାକିଛି କହନ୍ତି ଆମେ ତାହାକୁ ଭଲରୂପେ ଜାଣୁ ।

وَقُلْ رَّبِّ اَعُوْذُ بِكَ مِنْ هَمَزٰتِ الشَّيٰطِيْنِ ﴿٩٨﴾

୯୮. ଏବଂ ତୁମେ କୁହ, "ହେ ଆମର ପାଳନକର୍ତ୍ତା ! ଆମେ ଦୁରାଚାରୀ (ଲୋକ) ମାନଙ୍କ ଦୁରାଚାରରୁ ତୁମର ଶରଣ ଭିକ୍ଷା କରୁଅଛୁ ।"

---

୧. ଅର୍ଥାତ୍ ତୁମ ଜୀବଦ୍ଦଶାରେ ଶାସ୍ତି ବିଷୟକ ସେହି ପ୍ରତିଶ୍ରୁତିକୁ କାର୍ଯ୍ୟକାରୀ କରାଇବୁ ।

وَأَعُوذُ بِكَ رَبِّ أَن يَحْضُرُونِ ۝

୯୯. "ଏବଂ ହେ ଆମର ପାଳନକର୍ତ୍ତା ! କାଳେ ସେମାନେ ଆମ ନିକଟରେ ଉପସ୍ଥିତ ହୋଇଯିବେ,ସେଥିପାଇଁ ଆମେ ତୁମର ଶରଣ ଭିକ୍ଷା କରୁଅଛୁ ।"

حَتَّىٰٓ إِذَا جَآءَ أَحَدَهُمُ ٱلْمَوْتُ قَالَ رَبِّ ٱرْجِعُونِ ۝

୧୦୦. "ଏବଂ ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରି ମୃତ୍ୟୁ (ସମୟ) ନିକଟବର୍ତ୍ତୀ ହେବ, (ସେତେବେଳେ) ସେ କହିବ, "ହେ ମୋର ପାଳନକର୍ତ୍ତା ! ମୋତେ (ସଂସାରକୁ) ଫେରାଇଦିଅ (ମୋତେ ଫେରାଇଦିଅ , ମୋତେ ଫେରାଇ ଦିଅ)",

لَعَلِّىٓ أَعْمَلُ صَٰلِحًا فِيمَا تَرَكْتُ ۚ كَلَّآ ۚ إِنَّهَا كَلِمَةٌ هُوَ قَآئِلُهَا ۖ وَمِن وَرَآئِهِم بَرْزَخٌ إِلَىٰ يَوْمِ يُبْعَثُونَ ۝

୧୦୧. "ଯଦ୍ଦ୍ୱାରା କି ମୁଁ ଯେଉଁସ୍ଥାନକୁ ଛାଡି ଆସିଅଛି ସେଠାରେ ଉଚିତ କାର୍ଯ୍ୟ କରିବି;"ଏପରି କଦାପି ହେବ ନାହିଁ; ସେମାନେ ଯାହା କିଛି କହୁଛନ୍ତି ତାହା କେବଳ ମୁହଁର କଥା; ଏବଂ ସେମାନେ ପୁନର୍ବାରଉତ୍‌ଥିତହେବା ପର୍ଯ୍ୟନ୍ତ ସେମାନଙ୍କ ପଛରେ ଏକ ପ୍ରତିବନ୍ଧକ [୧] ରହିଅଛି, (ତେଣୁ ସେମାନେ ପୃଥିବୀକୁ ଜୀବିତ ଅବସ୍ଥାରେ ଫେରିବେ ନାହିଁ) ।

فَإِذَا نُفِخَ فِى ٱلصُّورِ فَلَآ أَنسَابَ بَيْنَهُمْ يَوْمَئِذٍ وَلَا يَتَسَآءَلُونَ ۝

୧୦୨. ତା' ପରେ ଯେତେବେଳେ ବିଗୁଲ ଫୁଙ୍କାଯିବ ସେଦିନ ସେମାନଙ୍କ ମଧ୍ୟରେ କୌଣସି ଆତ୍ମୀୟତା ରହିବ ନାହିଁ କି ସେମାନେ ପରସ୍ପରର ଅବସ୍ଥା ବିଷୟରେ ଜିଜ୍ଞାସା କରିବେ ନାହିଁ ।

فَمَن ثَقُلَتْ مَوَٰزِينُهُۥ فَأُو۟لَٰٓئِكَ هُمُ ٱلْمُفْلِحُونَ ۝

୧୦୩. ସୁତରାଂ ଯେଉଁମାନଙ୍କ ପୁଣ୍ୟର ଓଜନଭାରୀ ହେବ, ସେମାନେ ସଫଳତା ଲାଭ କରିବେ ।

وَمَنْ خَفَّتْ مَوَٰزِينُهُۥ فَأُو۟لَٰٓئِكَ ٱلَّذِينَ خَسِرُوٓا۟ أَنفُسَهُمْ فِى جَهَنَّمَ خَٰلِدُونَ ۝

୧୦୪. ଏବଂ ଯେଉଁମାନଙ୍କ (ପୁଣ୍ୟର) ଓଜନ ହାଲୁକା ହେବ, ସେମାନେ କ୍ଷତିଗ୍ରସ୍ତ ହେବେ ( ଓ ନିଜର ବିନାଶ କରିବେ), ଓ ନରକରେ ରହିବେ ।

تَلْفَحُ وُجُوهَهُمُ ٱلنَّارُ وَهُمْ فِيهَا كَٰلِحُونَ ۝

୧୦୫. ଅଗ୍ନି ସେମାନଙ୍କ ମୁଖମଣ୍ଡଳକୁ ଦହନ କରିବ ଏବଂ ସେମାନେ ତାହା ମଧ୍ୟରେ ବିଷାଦରେ କବଳିତ ହେବେ ।

---

୧. ପୁନରୁତ୍‌ଥାନ ଦିବସରେ ସଂସାରକୁ ଫେରିଆସିବା ଏହି ଆୟତର ଅଭିପ୍ରାୟ ନୁହେଁ, ବରଂ ସେଦିନ ପରଲୋକରେ ଅନ୍ତିମ ପର୍ଯ୍ୟାୟ ଆରମ୍ଭ ହେବ । ତେଣୁ ଫେରିଆସିବାର ପ୍ରଶ୍ନ ହିଁ ନାହିଁ । ସେହିଦିନ ପର୍ଯ୍ୟନ୍ତ ସଂସାରକୁ ସେମାନଙ୍କ ଆତ୍ମାଗୁଡ଼ିକର ଫେରିବା ବାଟରେ ଅଲଂଘ୍ୟ ପ୍ରତିବନ୍ଧକ ସୃଷ୍ଟି କରୁଛନ୍ତି ଅର୍ଥାତ୍ ମୃତବ୍ୟକ୍ତି ଜୀବିତ ହୋଇ ପୁନର୍ବାର ସଂସାରକୁ ଫେରିବ ନାହିଁ । ଅତଏବ ନବି ଓ ଧର୍ମନିଷ୍ଠ ବ୍ୟକ୍ତିମାନେ ମୃତ ବ୍ୟକ୍ତିକୁ ଜୀବନ ଦାନ କରୁଥିବା ତତ୍ତ୍ୱକୁ ଯେଉଁମାନେ ବିଶ୍ୱାସ କରନ୍ତି ବର୍ତ୍ତମାନ ସେମାନଙ୍କର ଚିନ୍ତା କରିବା ସମୟ ଆସିଯାଇଛି ।

୧୦୬. (ଏବଂ ସେମାନଙ୍କୁ କୁହାଯିବ), "କ'ଣ ତୁମମାନଙ୍କ ସମୀପରେ ଆମର ନିଦର୍ଶନମାନ ପାଠ କରାଯାଉ ନଥିଲା ଏବଂ ତୁମେମାନେ ସେଗୁଡିକୁ ଅସ୍ୱୀକାର କରୁ ନ ଥିଲ ?"

أَلَمْ تَكُنْ آيَاتِي تُتْلَىٰ عَلَيْكُمْ فَكُنْتُمْ بِهَا تُكَذِّبُونَ ﴿١٠٥﴾

୧୦୭. ସେମାନେ କହିବେ, "ହେ ଆମର ପାଳନକର୍ତ୍ତା ! ଆମର ଦୁର୍ଭାଗ୍ୟ ଆମ ଉପରେ ବିଜୟ ଲାଭ କରିଥିଲା, ଏବଂ ଆମେମାନେ ଏକ ପଥଭ୍ରଷ୍ଟ ସମ୍ପ୍ରଦାୟ ଥିଲୁ ।"

قَالُوا رَبَّنَا غَلَبَتْ عَلَيْنَا شِقْوَتُنَا وَكُنَّا قَوْمًا ضَالِّينَ ﴿١٠٦﴾

୧୦୮. "ହେ ଆମର ପାଳନକର୍ତ୍ତା ! ଆମମାନଙ୍କୁ ଏଥିରୁ (ଅର୍ଥାତ୍ ନରକରୁ) ବାହାର କର; ଏହାପରେ ଯଦି ଆମେମାନେ ପୁନର୍ବାର (ପାପରେ) ଜଡ଼ିତ ହେବୁ, ତେବେ ଆମେମାନେ ଅତ୍ୟାଚାରୀ (ଦୋଷୀ) ହେବୁ ।"

رَبَّنَا أَخْرِجْنَا مِنْهَا فَإِنْ عُدْنَا فَإِنَّا ظَالِمُونَ ﴿١٠٧﴾

୧୦୯. (ଅଲ୍ଲାହ) କହିବେ, "ଦୂର ହୁଅ, ନରକ ମଧ୍ୟକୁ ଯାଅ ଏବଂ ଆମ ସହିତ କଥାବାର୍ତ୍ତା କର ନାହିଁ ।"

قَالَ اخْسَئُوا فِيهَا وَلَا تُكَلِّمُونِ ﴿١٠٨﴾

୧୧୦. କଥା ଏହିକି ଯେ ଆମର ଭକ୍ତମାନଙ୍କ ମଧ୍ୟରେ ଏପରି ଏକ ଦଳ ଥିଲେ ଯେଉଁମାନେ କହୁଥିଲେ, "ହେ ଆମମାନଙ୍କର ପାଳନକର୍ତ୍ତା! ଆମେମାନେ ବିଶ୍ୱାସ କରିଅଛୁ; ସୁତରାଂ ତୁମେ ଆମମାନଙ୍କୁ କ୍ଷମାକର ଓ ଆମମାନଙ୍କ ପ୍ରତି କରୁଣା କର, ଏବଂ ତୁମେ ସମସ୍ତ କରୁଣାମୟଙ୍କ ମଧ୍ୟରେ ଶ୍ରେଷ୍ଠ ।"

إِنَّهُ كَانَ فَرِيقٌ مِنْ عِبَادِي يَقُولُونَ رَبَّنَا آمَنَّا فَاغْفِرْ لَنَا وَارْحَمْنَا وَأَنْتَ خَيْرُ الرَّاحِمِينَ ﴿١٠٩﴾

୧୧୧. "କିନ୍ତୁ ତୁମେମାନେ ସେମାନଙ୍କୁ ପରିହାସ କଲ ଏପରିକି ସେମାନେ (ତୁମମାନଙ୍କ ପରିହାସର ପାତ୍ର ହୋଇ) ତୁମମାନଙ୍କୁ ଆମ ସ୍ମରଣରୁ ଭୁଲାଇ ଦେଲେ ଏବଂ ତୁମେମାନେ ସେମାନଙ୍କୁ ସର୍ବଦା ପରିହାସ କରି ଚାଲିଲ ।"

فَاتَّخَذْتُمُوهُمْ سِخْرِيًّا حَتَّىٰ أَنْسَوْكُمْ ذِكْرِي وَكُنْتُمْ مِنْهُمْ تَضْحَكُونَ ﴿١١٠﴾

୧୧୨. "ସେମାନେ ଧୈର୍ଯ୍ୟଧାରଣ କରିଥିବାରୁ ଆଜି ଆମେ ସେମାନଙ୍କୁ (ଉପଯୁକ୍ତ) ପୁରସ୍କାର ପ୍ରଦାନ କରିବୁ ; ସେମାନେ ନିଶ୍ଚୟ କୃତକାର୍ଯ୍ୟ ହେବେ ।"

إِنِّي جَزَيْتُهُمُ الْيَوْمَ بِمَا صَبَرُوا أَنَّهُمْ هُمُ الْفَائِزُونَ ﴿١١١﴾

୧୧୩. ଏହାପରେ ସେ (ଅଲ୍ଲାହ) କହିବେ, "ତୁମେମାନେ ପୃଥିବୀରେ କେତେ ବର୍ଷ ରହିଥିଲ ?"

قَالَ كَمْ لَبِثْتُمْ فِي الْأَرْضِ عَدَدَ سِنِينَ ﴿١١٢﴾

قٰلُوْا لَبِثْنَا يَوْمًا اَوْ بَعْضَ يَوْمٍ فَسْـَٔلِ الْعَآدِّيْنَ ﴿١١٤﴾

୧୧୪. ସେମାନେ କହିବେ, "ଆମେମାନେ ଗୋଟିଏ ଦିନ ବା ଦିନର କିଛି ଅଂଶ (ଭୂପୃଷ୍ଠରେ) ରହିଥିଲୁ; ତୁମେ ଗଣନାକାରୀଙ୍କୁ ପଚାର।"

قٰلَ اِنْ لَّبِثْتُمْ اِلَّا قَلِيْلًا لَّوْ اَنَّكُمْ كُنْتُمْ تَعْلَمُوْنَ ﴿١١٥﴾

୧୧୫. (ଏ ସଂକ୍ରାନ୍ତରେ ଅଲ୍ଲାହ୍) କହିବେ, "ତୁମେମାନେ ଅତ୍ୟଳ୍ପ [1] ସମୟ ରହିଥିଲ, ଯଦି ତୁମେମାନେ ବୁଝିପାରନ୍ତ"।

اَفَحَسِبْتُمْ اَنَّمَا خَلَقْنٰكُمْ عَبَثًا وَّ اَنَّكُمْ اِلَيْنَا لَا تُرْجَعُوْنَ ﴿١١٦﴾

୧୧୬. "କ'ଣ ତୁମେମାନେ ଏହା ଭାବୁଥିଲ ଯେ ଆମେ ତୁମମାନଙ୍କୁ ବିନା ଉଦ୍ଦେଶ୍ୟରେ ସୃଷ୍ଟି କରିଥିଲୁ ଓ ତୁମେମାନେ ଆମ ନିକଟକୁ ଫେରିବ ନାହିଁ ?"

فَتَعٰلَى اللّٰهُ الْمَلِكُ الْحَقُّ ۚ لَاۤ اِلٰهَ اِلَّا هُوَ ۚ رَبُّ الْعَرْشِ الْكَرِيْمِ ﴿١١٧﴾

୧୧୭. ସୁତରାଂ ଅଲ୍ଲାହ୍ ହିଁ ଅତ୍ୟନ୍ତ ଗୌରବମୟ, ପ୍ରକୃତ ଅଧିପତି; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ସେ ହିଁ ସମ୍ମାନିତ ସିଂହାସନର ଅଧିକାରୀ।

وَمَنْ يَّدْعُ مَعَ اللّٰهِ اِلٰهًا اٰخَرَ ۙ لَا بُرْهَانَ لَهٗ بِهٖ ۙ فَاِنَّمَا حِسَابُهٗ عِنْدَ رَبِّهٖ ۗ اِنَّهٗ لَا يُفْلِحُ الْكٰفِرُوْنَ ﴿١١٨﴾

୧୧୮. ଏବଂ ଯେ କେହି ଅଲ୍ଲାହ୍‌ଙ୍କ ବ୍ୟତୀତ କୌଣସି ଉପାସ୍ୟକୁ ଡାକେ, ଯାହା ସମ୍ବନ୍ଧରେ (ତାହା ନିକଟରେ) କୌଣସି ପ୍ରମାଣ ନାହିଁ, ତେବେ ତାହାର ହିସାବ ତାହାର ପାଳନକର୍ତ୍ତାଙ୍କ ନିକଟରେ ରହିଅଛି; ପ୍ରକୃତରେ ଅବିଶ୍ୱାସକାରୀମାନେ କେବେ ହେଁ କୃତକାର୍ଯ୍ୟ ହେବେ ନାହିଁ।

ع وَقُلْ رَّبِّ اغْفِرْ وَارْحَمْ وَاَنْتَ خَيْرُ الرّٰحِمِيْنَ ﴿١١٩﴾

୧୧୯. ଏବଂ ତୁମେ କୁହ, "ହେ ଆମର ପାଳନକର୍ତ୍ତା ! ତୁମେ କ୍ଷମାକର, ଦୟା କର; ଏବଂ ତୁମେ ହିଁ ଦୟାବାନ୍‌ମାନଙ୍କ ମଧ୍ୟରେ ସର୍ବୋତ୍କୃଷ୍ଟ।"

---

୧. ଅର୍ଥାତ୍ ପରଲୋକର ଜୀବନ ତୁଳନାରେ ଇହଲୋକର ଜୀବନ ଅତି ଅଳ୍ପ। ପୁନଶ୍ଚ ଏହା ଦୁଃଖମୟ ହୋଇଥିବାରୁ ଆହୁରି ଅଳ୍ପ ଜଣା ପଡ଼େ।

سُورَةُ النُّورِ مَدَنِيَّةٌ

# ଅଲ - ନୁର

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୬୫ ଗୋଟି ଆୟତ ଓ ୯ ଗୋଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

سُوْرَةٌ اَنْزَلْنٰهَا وَفَرَضْنٰهَا وَاَنْزَلْنَا فِيْهَآ اٰيٰتٍ بَيِّنٰتٍ لَّعَلَّكُمْ تَذَكَّرُوْنَ ②

୨. (ଏହା) ଏପରି ଏକ ଅଧ୍ୟାୟ ଯାହା ଆମେ ଅବତୀର୍ଣ୍ଣ କରିଅଛୁ ଏବଂ ଏହାକୁ (ପାଳନକରିବା) ଆମେ ଅନିବାର୍ଯ୍ୟ ସ୍ଥିର କରିଅଛୁ, ଏବଂ ଏଥିରେ ଆମେ ଆମର ପ୍ରକାଶ୍ୟ ଆଦେଶମାନ ବର୍ଣ୍ଣନା କରିଅଛୁ ଯେପରିକି ତୁମେମାନେ ଉପଦେଶ ହାସଲ କରିବ ।

اَلزَّانِيَةُ وَالزَّانِيْ فَاجْلِدُوْا كُلَّ وَاحِدٍ مِّنْهُمَا مِائَةَ جَلْدَةٍ ۖ وَّلَا تَاْخُذْكُمْ بِهِمَا رَاْفَةٌ فِيْ دِيْنِ اللّٰهِ اِنْ كُنْتُمْ تُؤْمِنُوْنَ بِاللّٰهِ وَالْيَوْمِ الْاٰخِرِ ۚ وَلْيَشْهَدْ عَذَابَهُمَا طَآئِفَةٌ مِّنَ الْمُؤْمِنِيْنَ ③

୩. ବ୍ୟଭିଗ୍ରରିଣୀ ମହିଳା ଓ ବ୍ୟଭିଗ୍ରରୀ ପୁରୁଷ (ଦୋଷୀ ସାବ୍ୟସ୍ତ ହେଲେ) ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଶହେ କୋରଡ଼ା ମାର; ଏବଂ ଯଦି ତୁମେମାନେ ଅଲ୍ଲାହ ଓ ଅନ୍ତିମ ଦିବସ ଉପରେ ବିଶ୍ୱାସ କରୁଥାଅ,ତେବେ ଅଲ୍ଲାହଙ୍କ ଆଦେଶ ପାଳନ କରିବାରେ ତୁମେମାନେ ଏ ଉଭୟ ଶ୍ରେଣୀର ଦୋଷୀଙ୍କ ପ୍ରତି ଦୟା ପ୍ରଦର୍ଶନ କର ନାହିଁ; ଏବଂ ଏ ଉଭୟଙ୍କର ଦଣ୍ଡ ଭୋଗକୁ ବିଶ୍ୱାସକାରୀଙ୍କର ଏକ ଗୋଷ୍ଠୀ ଦେଖିବା ଉଚିତ ।

اَلزَّانِيْ لَا يَنْكِحُ اِلَّا زَانِيَةً اَوْ مُشْرِكَةً ۫ وَّالزَّانِيَةُ لَا يَنْكِحُهَآ اِلَّا زَانٍ اَوْ مُشْرِكٌ ۚ وَحُرِّمَ ذٰلِكَ عَلَى الْمُؤْمِنِيْنَ ④

୪. ଜଣେ ବ୍ୟଭିଗ୍ରରୀ (ପୁରୁଷ) ଜଣେ ବ୍ୟଭିଗ୍ରରିଣୀ (ମହିଳା) ବା ମୁସରିକ ମହିଳାଙ୍କ ବ୍ୟତୀତ ଅନ୍ୟ କାହାରି ସହିତ ସହବାସ କରେ ନାହିଁ, ଏବଂ ଜଣେ ବ୍ୟଭିଗ୍ରରିଣୀ (ମହିଳା)ଜଣେ ବ୍ୟଭିଗ୍ରରୀ (ପୁରୁଷ) ବା ମୁସ୍ରିକ ପୁରୁଷ ବ୍ୟତୀତ ଅନ୍ୟ କାହାରି ସହିତ ସହବାସ କରେ ନାହିଁ; ଏବଂ ବିଶ୍ୱାସକାରୀମାନଙ୍କ ସକାଶେ ଏହାକୁ ଅବୈଧ କରାଯାଇଛି ।

---

୧. 'ନିକାହ୍' ସାଧାରଣତଃ ସେହି ଘୋଷଣାକୁ ବୁଝାଏ ଯାହା ଇସଲାମୀୟ ଶରିୟତ ଅନୁସାରେ ଜଣେ ପୁରୁଷ ଓ ଜଣେ ମହିଳାଙ୍କୁ ଏକତ୍ର କରାଇଥାଏ । କିନ୍ତୁ ଆରବୀ ଭାଷାରେ ଏହା ପ୍ରାୟଶଃ ସହବାସକୁ ବୁଝାଏ । ଏହି ଅର୍ଥକୁ ଧ୍ୟାନ ନ ଦେଇ କେତେକ ଲୋକ ଏହି ଆୟତର ହାସ୍ୟାସ୍ପଦ ଅର୍ଥ କରିଛନ୍ତି ଅଥଚ ଏହାର ସରଳ ଅର୍ଥ ହେଉଛି– ଯେବେ କୌଣସି ପୁରୁଷ କୌଣସି ବ୍ୟଭିଗ୍ରରିଣୀ ସହ ସମ୍ଭୋଗ କରିବ ତେବେ ସେ ନିଶ୍ଚୟ ବ୍ୟଭିଚାରୀ ବୋଲାଇବ; ସେ କଦାପି ତା'ର ପତି ହେବ ନାହିଁ । ଯଦି ସେ ପତି ହୋଇଥାଏ ତେବେ ସେହି ମହିଳା ବ୍ୟଭିଚାରିଣୀ ନୁହେଁ । ବିପରୀତ କ୍ରମେ,ଯେବେ କୌଣସି ମହିଳା କୌଣସି ବ୍ୟଭିଚାରୀ ସହ ସମ୍ଭୋଗ କରିବ ତେବେ ତାହା ବ୍ୟଭିଚାର ହିଁ ବୋଲାଇବ । ଯେତେବେଳେ କୌଣସି ମହିଳା ନିଜ ପତି ଭିନ୍ନ ଅନ୍ୟ କୌଣସି ପୁରୁଷ ସହ ସମ୍ଭୋଗ କରିବ ସେତେବେଳେ ତାହା କେବଳ ବ୍ୟଭିଚାର ରୂପେ ଅଭିହିତ ହେବ ଏବଂ ପୁରୁଷ ଓ ମହିଳା ଯଥାକ୍ରମେ ବ୍ୟଭିଚାରୀ ଓ ବ୍ୟଭିଚରିଣୀ ବୋଲାଇବେ । ଏହି ଆୟତର ଅନୁବାଦରେ ଏକ ସରଳ ଅର୍ଥକୁ ବିକୃତ କରାଯାଇଛି । ଏତଦ୍‌ବ୍ୟତୀତ, ଜଣେ ବ୍ୟଭିଚାରିଣୀଙ୍କୁ ଜଣେ ବ୍ୟଭିଚାରୀଙ୍କ ଭିନ୍ନ ଅନ୍ୟ କେହି ବିବାହ କରନ୍ତି ନାହିଁ ଭାବିବା ଅସ୍ୱାଭାବିକ । ବ୍ୟଭିଚାରିଣୀଙ୍କୁ ସାଧାରଣ ଲୋକ ବିବାହ କରିଥିବା ସମ୍ବନ୍ଧରେ ଅନେକ ପ୍ରମାଣ ରହିଅଛି । ଏପରି ଅନେକ ଲୋକ ଅଛନ୍ତି ଯେଉଁମାନେ ବାରାଙ୍ଗନାମାନଙ୍କୁ ଶୋଭନୀୟ ଜୀବନ ଯାପନ କରିବାର ସୁଯୋଗ ଦେବା ପାଇଁ ସେମାନଙ୍କୁ ବିବାହ କରିଥା'ନ୍ତି । ପରେ ସେମାନେ ଅନୁତାପ କରି ନିଜକୁ ସୁଧାରି ନେଉଥିଲେ ମଧ୍ୟ ବିବାହ ପର୍ଯ୍ୟନ୍ତ ସେମାନେ ବ୍ୟଭିଚାରିଣୀ ବୋଲାନ୍ତି ।

୫. ଏବଂ ଯେଉଁମାନେ ସତୀ ନାରୀଙ୍କ ପ୍ରତି ଅପବାଦ ଆରୋପ କରନ୍ତି ଓ ଚାରିଜଣ ସାକ୍ଷୀ ଯୋଗାଡ଼ ନ କରନ୍ତି, ତେବେ ଶାସ୍ତି ସ୍ୱରୂପ ସେମାନଙ୍କୁ ଅଶୀ କୋରଡ଼ା ମାଡ଼ ଦିଅ ଓ ସେମାନଙ୍କ ସାକ୍ଷ୍ୟକୁ କଦାପି ଗ୍ରହଣ କର ନାହିଁ, ଏବଂ ସେମାନେ (ଏପରି କର୍ମଯୋଗୁଁ ଇସଲାମୀୟ ବିଧାନର) ଲଘଂନକାରୀ ଅଟନ୍ତି ,

وَالَّذِيْنَ يَرْمُوْنَ الْمُحْصَنٰتِ ثُمَّ لَمْ يَاْتُوْا بِاَرْبَعَةِ شُهَدَآءَ فَاجْلِدُوْهُمْ ثَمٰنِيْنَ جَلْدَةً وَّلَا تَقْبَلُوْا لَهُمْ شَهَادَةً اَبَدًا ۚ وَاُولٰٓئِكَ هُمُ الْفٰسِقُوْنَ ۝٥

୬. (କେବଳ) ସେମାନଙ୍କ ବ୍ୟତୀତ ଯେଉଁମାନେ ଏହାପରେ ଅନୁତାପ କରିବେ ଓ (ନିଜକୁ) ସଂଶୋଧନ କରିବେ, ଅତଏବ(ସେମାନଙ୍କ ଏପରି କାର୍ଯ୍ୟପ୍ରତି) ଅଲ୍ଲାହ ବାସ୍ତବିକ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

اِلَّا الَّذِيْنَ تَابُوْا مِنْۢ بَعْدِ ذٰلِكَ وَاَصْلَحُوْا ۚ فَاِنَّ اللّٰهَ غَفُوْرٌ رَّحِيْمٌ ۝٦

୭. ଏବଂ ଯେଉଁମାନେ ନିଜ ପତ୍ନୀମାନଙ୍କ ପ୍ରତି (ବ୍ୟଭିଚାରମୂଳକ) ଅପବାଦ ଆରୋପ କରନ୍ତି, ଓ ସେମାନଙ୍କ ନିକଟରେ ନିଜ ବ୍ୟତୀତ ଅନ୍ୟ କେହି ସାକ୍ଷୀ ନାହାନ୍ତି, ତେବେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଅଲ୍ଲାହଙ୍କ (ନାମରେ) ଶପଥ ନେଇ ଚାରିଥର ସାକ୍ଷ୍ୟ ଦେବ (ଓ ପ୍ରତ୍ୟେକଥର ସାକ୍ଷ୍ୟରେ କହିବ)ଯେ ସେ ସତ୍ୟବାଦୀ ଅଟେ ।

وَالَّذِيْنَ يَرْمُوْنَ اَزْوَاجَهُمْ وَلَمْ يَكُنْ لَّهُمْ شُهَدَآءُ اِلَّآ اَنْفُسُهُمْ فَشَهَادَةُ اَحَدِهِمْ اَرْبَعُ شَهٰدٰتٍۢ بِاللّٰهِ ۙ اِنَّهٗ لَمِنَ الصّٰدِقِيْنَ ۝٧

୮. ଏବଂ ପଞ୍ଚମଥର (ସାକ୍ଷ୍ୟରେ କହିବ)ଯେ ଯଦି ସେ ମିଥ୍ୟାବାଦୀ, ତେବେ ତା' ଉପରେ ଅଲ୍ଲାହଙ୍କର ଅଭିଶାପ ପଡୁ ।

وَالْخَامِسَةُ اَنَّ لَعْنَتَ اللّٰهِ عَلَيْهِ اِنْ كَانَ مِنَ الْكٰذِبِيْنَ ۝٨

୯. ଏବଂ ସେହି ପତ୍ନୀ (ଯାହା ପ୍ରତି ତାହାର ପତି ଦୋଷାରୋପ କରିଥାଏ) ଯଦି ଅଲ୍ଲାହଙ୍କ ନାମରେ ଚାରିଥର ଶପଥପୂର୍ବକ କହିବ ଯେ ସେ (ଅର୍ଥାତ୍ ତାହାର ପତି) ମିଥ୍ୟାବାଦୀ ଅଟେ, ତେବେ ସେ ନିଜ ଉପରୁ ଦଣ୍ଡକୁ ଏଡ଼ିଦେଇ ପାରିବ ।

وَيَدْرَؤُا عَنْهَا الْعَذَابَ اَنْ تَشْهَدَ اَرْبَعَ شَهٰدٰتٍۢ بِاللّٰهِ ۙ اِنَّهٗ لَمِنَ الْكٰذِبِيْنَ ۝٩

୧୦. ଏବଂ ପଞ୍ଚମ ଥର (ଏପରି ଶପଥ କରୁ) ଯେ ଯଦି ସେ (ଅର୍ଥାତ୍ ତାହାର ପତି)ସତ୍ୟବାଦୀ, ତେବେ ତାହା ପ୍ରତି (ଅର୍ଥାତ୍ ମହିଳା ପ୍ରତି) ଅଲ୍ଲାହଙ୍କର ପ୍ରକୋପ ଅବତୀର୍ଣ୍ଣ ହେଉ ।

وَالْخَامِسَةَ اَنَّ غَضَبَ اللّٰهِ عَلَيْهَآ اِنْ كَانَ مِنَ الصّٰدِقِيْنَ ۝١٠

୧୧. ଏବଂ ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନ ଥାଆନ୍ତା, ଏବଂ ଅଲ୍ଲାହ ଅତ୍ୟନ୍ତ କୃପାଶୀଳ (ଓ) ତତ୍ତ୍ୱଜ୍ଞ ହୋଇ ନ ଥା'ନ୍ତେ (ତେବେ ତୁମେମାନେ ଧ୍ୱଂସ ମୁଖରେ ନିପତିତ ହୋଇଥାଆନ୍ତ ) ।

وَلَوْلَا فَضْلُ اللّٰهِ عَلَيْكُمْ وَرَحْمَتُهٗ وَاَنَّ اللّٰهَ تَوَّابٌ حَكِيْمٌ ۝١١ ع

ରୁ: ୨

୧୨. ବାସ୍ତବରେ ଯେଉଁମାନେ ଏକ ଗୁରୁତର ଅପବାଦ ଆରୋପ କରିଥିଲେ ସେମାନେ ତୁମମାନଙ୍କ ମଧ୍ୟରେ ଥିବା ଏକ ଗୋଷ୍ଠୀ ଅଟନ୍ତି; ତୁମେମାନେ ଏହାକୁ ନିଜ ପାଇଁ ମନ୍ଦ ବୋଲି ବିଚାର କର ନାହିଁ; ବରଂ ତାହା ତୁମମାନଙ୍କ ପାଇଁ ଅତି

اِنَّ الَّذِيْنَ جَآءُوْ بِالْاِفْكِ عُصْبَةٌ مِّنْكُمْ ۚ لَا تَحْسَبُوْهُ شَرًّا لَّكُمْ ۚ بَلْ هُوَ خَيْرٌ لَّكُمْ ۚ لِكُلِّ امْرِئٍ مِّنْهُمْ مَّا اكْتَسَبَ

مِنَ الْاِثْمِ ۚ وَالَّذِیْ تَوَلّٰی کِبْرَهٗ مِنْهُمْ لَهٗ عَذَابٌ عَظِیْمٌ ⑪

ଉତ୍ତମ ଥିଲା (କାରଣ ଏତଦ୍ବାରା ତୁମେମାନେ ଏକ ତତ୍ତ୍ୱ ସମ୍ବଳିତ ଶିକ୍ଷା ପ୍ରାପ୍ତ ହେଲ); ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଯେତିକି ପାପ କରିଥିବ ତାହାକୁ ସେତିକି (ପରିମାଣ) ଶାସ୍ତି ମିଳିବ; ଏବଂ ଯେଉଁ ବ୍ୟକ୍ତି ଏହି ପାପର ବୃହତ୍ ଅଂଶ ପାଇଁ ଦାୟୀ ଥିଲା ତାହାକୁ କଠିନ ଶାସ୍ତି ମିଳିବ ।

لَوْلَاۤ اِذْ سَمِعْتُمُوْهُ ظَنَّ الْمُؤْمِنُوْنَ وَالْمُؤْمِنٰتُ بِاَنْفُسِهِمْ خَیْرًا ۙ وَّقَالُوْا هٰذَاۤ اِفْكٌ مُّبِیْنٌ ⑬

୧୩. ଯେତେବେଳେ ତୁମେମାନେ ଏ ବିଷୟ ଶୁଣିଥିଲ, ସେତେବେଳେ ବିଶ୍ୱାସକାରୀ ପୁରୁଷମାନେ ଓ ବିଶ୍ୱାସକାରିଣୀ ନାରୀମାନେ ନିଜ ସମ୍ପ୍ରଦାୟ ସଂକ୍ରାନ୍ତରେ କାହିଁକି ଉତ୍ତମ ଧାରଣା ପୋଷଣ କଲେ ନାହିଁ, ଓ କହିଲେ ନାହିଁ ଯେ ଏହା ଏକ ଗୁରୁତର ମିଥ୍ୟା ଆରୋପ ଅଟେ ?

لَوْلَا جَآءُوْ عَلَیْهِ بِاَرْبَعَةِ شُهَدَآءَ ۚ فَاِذْ لَمْ یَاْتُوْا بِالشُّهَدَآءِ فَاُولٰٓئِكَ عِنْدَ اللّٰهِ هُمُ الْكٰذِبُوْنَ ⑭

୧୪. ଏବଂ କାହିଁକି ସେହି ଲୋକମାନେ (ଯେଉଁମାନେ ଏହା ପ୍ରମାଣିତ କରିବାପାଇଁ ଏହି ମିଥ୍ୟା ଆରୋପ କରିଥିଲେ) ସେ ବିଷୟରେ ଚାରିଜଣ ସାକ୍ଷୀ ଆଣିଲେ ନାହିଁ ? ଯେହେତୁ ସେମାନେ ସାକ୍ଷୀ ଆଣିଲେ ନାହିଁ, ତେଣୁ ଅଲ୍ଲାହ୍‌ଙ୍କ ନିଷ୍ପତ୍ତି ଅନୁଯାୟୀ ସେମାନେ ମିଥ୍ୟାବାଦୀ ଅଟନ୍ତି ।

وَلَوْلَا فَضْلُ اللّٰهِ عَلَیْكُمْ وَرَحْمَتُهٗ فِی الدُّنْیَا وَالْاٰخِرَةِ لَمَسَّكُمْ فِیْ مَاۤ اَفَضْتُمْ فِیْهِ عَذَابٌ عَظِیْمٌ ⑮

୧୫. ଏବଂ ଯଦି ଇହକାଳ ଓ ପରକାଳରେ ଅଲ୍ଲାହ୍‌ଙ୍କର କୃପା ଓ କରୁଣା ତୁମମାନଙ୍କ ପ୍ରତି ନ ଥା'ନ୍ତା, ତେବେ ତୁମେମାନେ ଯେଉଁ କାର୍ଯ୍ୟରେ ଜଡ଼ିତ ହୋଇଯାଇଥିଲ ସେଥିପାଇଁ ତୁମ— ମାନଙ୍କୁ କଠିନ ଶାସ୍ତି ମିଳିଥା'ନ୍ତା ।

اِذْ تَلَقَّوْنَهٗ بِاَلْسِنَتِكُمْ وَتَقُوْلُوْنَ بِاَفْوَاهِكُمْ مَّا لَیْسَ لَكُمْ بِهٖ عِلْمٌ وَّتَحْسَبُوْنَهٗ هَیِّنًا ۖ وَّهُوَ عِنْدَ اللّٰهِ عَظِیْمٌ ⑯

୧୬. କାରଣ ତୁମେମାନେ ଜଣେ ଅନ୍ୟ ମୁହଁରୁ ଏହି ମିଥ୍ୟା ବିଷୟ ଶିଖିବାକୁ ଲାଗିଲ, ଏବଂ ଯେଉଁ ବିଷୟରେ ତୁମମାନଙ୍କର କୌଣସି ଜ୍ଞାନ ନ ଥିଲା ସେହି ବିଷୟକୁ ତୁମେମାନେ ନିଜ ମୁହଁରେ କହିବାକୁ ଲାଗିଲ (ଫଳରେ ଅଲ୍ଲାହ୍ ତୁମମାନଙ୍କ ଉପରେ ଅସନ୍ତୁଷ୍ଟ ହେଲେ); ଏବଂ ତୁମେମାନେ ଏହି ବିଷୟକୁ ସାଧାରଣ ମନେ କରୁଥିଲ, କିନ୍ତୁ ଅଲ୍ଲାହ୍‌ଙ୍କ ନିକଟରେ ତାହା ଅତ୍ୟନ୍ତ ଗୁରୁତର ଥିଲା ।

وَلَوْلَاۤ اِذْ سَمِعْتُمُوْهُ قُلْتُمْ مَّا یَكُوْنُ لَنَاۤ اَنْ نَّتَكَلَّمَ بِهٰذَا ۖ سُبْحٰنَكَ هٰذَا بُهْتَانٌ عَظِیْمٌ ⑰

୧୭. ଏବଂ ଯେତେବେଳେ ତୁମେମାନେ ଏହା ଶୁଣିଥିଲ, ସେତେବେଳେ କାହିଁକି ତୁମେମାନେ ତୁରନ୍ତ କହିଲ ନାହିଁ ଯେ ଏପରି କଥାର ପୁନରାବୃତ୍ତି ଆମମାନଙ୍କ ପକ୍ଷେ ଉଚିତ ନୁହେଁ; (ହେ ଅଲ୍ଲାହ୍ !) ତୁମେ ହିଁ ପବିତ୍ର; ଏହା ଏକ ଗୁରୁତର ଅପବାଦ ।

یَعِظُكُمُ اللّٰهُ اَنْ تَعُوْدُوْا لِمِثْلِهٖۤ اَبَدًا اِنْ كُنْتُمْ مُّؤْمِنِیْنَ ⑱

୧୮. ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ, ତେବେ ଅଲ୍ଲାହ୍ ତୁମମାନଙ୍କ ଏପରି କଥା ପୁନରାୟ କରିବାକୁ ସବୁଦିନ ପାଇଁ ନିଷେଧ କରୁଛନ୍ତି ।

୧୯. ଏବଂ ଅଲ୍ଲାହ ତୁମମାନଙ୍କ ସକାଶେ ନିଜର ଆଦେଶଗୁଡିକୁ ବର୍ଣ୍ଣନା କରୁଛନ୍ତି; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَيُبَيِّنُ اللّٰهُ لَكُمُ الْاٰيٰتِ ۗ وَاللّٰهُ عَلِيْمٌ حَكِيْمٌ ﴿١٩﴾

୨୦. ବାସ୍ତବରେ ଯେଉଁମାନେ ଇଚ୍ଛା କରନ୍ତି ଯେ ବିଶ୍ୱାସକାରୀମାନଙ୍କ ମଧ୍ୟରେ ଅଶ୍ଳୀଳତା [୧] ବ୍ୟାପି ଯାଉ ସେମାନଙ୍କ ପାଇଁ ଇହକାଳରେ ଓ ପରକାଳରେ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି; ଏବଂ ଅଲ୍ଲାହ (ତାହା) ଜାଣନ୍ତି ଅଥଚ ତୁମେମାନେ ଜାଣ ନାହିଁ ।

اِنَّ الَّذِيْنَ يُحِبُّوْنَ اَنْ تَشِيْعَ الْفَاحِشَةُ فِي الَّذِيْنَ اٰمَنُوْا لَهُمْ عَذَابٌ اَلِيْمٌ ۙ فِي الدُّنْيَا وَالْاٰخِرَةِ ۗ وَاللّٰهُ يَعْلَمُ وَاَنْتُمْ لَا تَعْلَمُوْنَ ﴿٢٠﴾

୨୧. ଏବଂ ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନ ଥା'ନ୍ତା ଏବଂ ଯଦି ଅଲ୍ଲାହ ଅତିଶୟ ସ୍ନେହଶୀଳ(ଓ) କରୁଣାମୟ ହୋଇ ନ ଥା'ନ୍ତେ (ତେବେ ତୁମେମାନେ କ୍ଷତିଗ୍ରସ୍ତ ହୋଇଥା'ନ୍ତ) ।

وَلَوْلَا فَضْلُ اللّٰهِ عَلَيْكُمْ وَرَحْمَتُهٗ وَاَنَّ اللّٰهَ رَءُوْفٌ رَّحِيْمٌ ﴿٢١﴾

ରୁ: ୩

୨୨. ହେ ବିଶ୍ୱାସକାରୀମାନେ ! ସଇତାନର ପଦାଙ୍କ ଅନୁସରଣ କର ନାହିଁ; ଏବଂ ଯେ କେହି ସଇତାନର ପଦାଙ୍କ ଅନୁସରଣ କରେ (ସେ ଜାଣିରଖୁ ଯେ) ସଇତାନ ଅଶ୍ଳୀଳତା ଓ ଅଶୋଭନୀୟ କାର୍ଯ୍ୟ ସମ୍ବନ୍ଧରେ ଆଦେଶ ଦିଏ; ଏବଂ ଯଦି ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର କୃପା ଓ କରୁଣା ନ ଥାଆନ୍ତା, ତେବେ ତୁମମାନଙ୍କ ମଧ୍ୟରେ କେବେବି କେହି ପବିତ୍ର ହୁଅନ୍ତା ନାହିଁ; କିନ୍ତୁ ଅଲ୍ଲାହ ଯାହାକୁ ଇଚ୍ଛା କରନ୍ତି ତାହାକୁ ପବିତ୍ର କରିଥା'ନ୍ତି; ଏବଂ ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

يٰۤاَيُّهَا الَّذِيْنَ اٰمَنُوْا لَا تَتَّبِعُوْا خُطُوٰتِ الشَّيْطٰنِ ۗ وَمَنْ يَّتَّبِعْ خُطُوٰتِ الشَّيْطٰنِ فَاِنَّهٗ يَاْمُرُ بِالْفَحْشَآءِ وَالْمُنْكَرِ ۗ وَلَوْلَا فَضْلُ اللّٰهِ عَلَيْكُمْ وَرَحْمَتُهٗ مَا زَكٰى مِنْكُمْ مِّنْ اَحَدٍ اَبَدًا ۙ وَّلٰكِنَّ اللّٰهَ يُزَكِّيْ مَنْ يَّشَآءُ ۗ وَاللّٰهُ سَمِيْعٌ عَلِيْمٌ ﴿٢٢﴾

୨୩. ଏବଂ ତୁମମାନଙ୍କ ମଧ୍ୟରୁ (ଧର୍ମରେ ଓ ସଂସାରରେ)ଶ୍ରେଷ୍ଠ ଓ ସ୍ୱଚ୍ଛଳ ବ୍ୟକ୍ତିମାନେ ଶପଥ କରନ୍ତୁ ନାହିଁ ଯେ ନିଜ ନିକଟ ସମ୍ପର୍କୀୟ ଓ ଦରିଦ୍ର ଏବଂ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ହିଜରତକାରୀମାନଙ୍କୁ ସାହାଯ୍ୟ କରିବେ ନାହିଁ; ଏବଂ ସେମାନଙ୍କୁ କ୍ଷମା କରିବା ଓ ମାର୍ଜନା କରିବା ଉଚିତ; କ'ଣ ତୁମେମାନେ ଇଚ୍ଛା କରୁନାହିଁ ଯେ ଅଲ୍ଲାହ ତୁମମାନଙ୍କ ତ୍ରୁଟି ମାର୍ଜନା କରନ୍ତୁ ? ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَلَا يَاْتَلِ اُولُوا الْفَضْلِ مِنْكُمْ وَالسَّعَةِ اَنْ يُّؤْتُوْۤا اُولِي الْقُرْبٰى وَالْمَسٰكِيْنَ وَالْمُهٰجِرِيْنَ فِيْ سَبِيْلِ اللّٰهِ ۖۚ وَلْيَعْفُوْا وَلْيَصْفَحُوْا ۗ اَلَا تُحِبُّوْنَ اَنْ يَّغْفِرَ اللّٰهُ لَكُمْ ۗ وَاللّٰهُ غَفُوْرٌ رَّحِيْمٌ ﴿٢٣﴾

୨୪. ଯେଉଁ ବ୍ୟକ୍ତିମାନେ ସତୀ ନାରୀମାନଙ୍କ ପ୍ରତି ଦୋଷାରୋପ କରନ୍ତି, ଯେଉଁ (ନାରୀ) ମାନେ କି (ଦୁଷ୍କୃତକାରୀମାନଙ୍କ ଦୁଷ୍କର୍ମ ସଂକ୍ରାନ୍ତରେ କିଛି) ଜାଣି ନ ଥାନ୍ତି ଓ

اِنَّ الَّذِيْنَ يَرْمُوْنَ الْمُحْصَنٰتِ الْغٰفِلٰتِ الْمُؤْمِنٰتِ

୧. ଅନୁସନ୍ଧାନ ନ କରି ଅଶ୍ଳୀଳ ବା ଅଶୋଭନୀୟ ଅପବାଦ ଦେବା ଓ ତାହାକୁ ପ୍ରସାର କରାଇବା ଦ୍ୱାରା ଲୋକମାନଙ୍କ ମଧ୍ୟରେ ଅଶୋଭନୀୟ କାର୍ଯ୍ୟ ପ୍ରତି ଘୃଣାଭାବ ହ୍ରାସ ହୁଏ ଓ କେତେକ ଲୋକ ଏତଦ୍ୱାରା ନିଜର ବାହାଦୁରି ଦେଖାଇଥା'ନ୍ତି ।

ବିଶ୍ୱାସକାରିଣୀ ଥା'ନ୍ତି ସେହି (ବ୍ୟକ୍ତି) ମାନେ ଇହକାଳ ଓ ପରକାଳରେ ଅଭିଶପ୍ତ ହେବେ, ଏବଂ ସେମାନଙ୍କୁ ଗୁରୁତର ଶାସ୍ତି ଦିଆଯିବ ।

لُعِنُوا فِي الدُّنْيَا وَالْآخِرَةِ ۖ وَلَهُمْ عَذَابٌ عَظِيمٌ ﴿٢٤﴾

୨୫. ସେମାନେ ଯାହା କରିଥିଲେ ସେ ସଂକ୍ରାନ୍ତରେ ସେ ଦିନ ସେମାନଙ୍କର ଜିଭ, ସେମାନଙ୍କର ହାତ ଓ ସେମାନଙ୍କର ଗୋଡ଼ ସେମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ଦେବେ ।

يَوْمَ تَشْهَدُ عَلَيْهِمْ أَلْسِنَتُهُمْ وَأَيْدِيهِمْ وَأَرْجُلُهُمْ بِمَا كَانُوا يَعْمَلُونَ ﴿٢٥﴾

୨୬. ସେଦିନ ଅଲ୍ଲାଃ ସେମାନଙ୍କୁ ସେମାନଙ୍କର ଯଥାର୍ଥ ପ୍ରତିଫଳ ପ୍ରଦାନ କରିବେ, ଏବଂ ସେମାନେ ଜାଣିପାରିବେ ଯେ ଅଲ୍ଲାଃ ହିଁ ସମ୍ପୂର୍ଣ୍ଣ ସତ୍ୟ, ତାହା ଏପରି ସତ୍ୟ ଯାହା ନିଜେ ପ୍ରକାଶିତ ହୁଏ ।

يَوْمَئِذٍ يُوَفِّيهِمُ اللَّهُ دِينَهُمُ الْحَقَّ وَيَعْلَمُونَ أَنَّ اللَّهَ هُوَ الْحَقُّ الْمُبِينُ ﴿٢٦﴾

୨୭. ମନ୍ଦ [୧] ବିଷୟ ମନ୍ଦ ପୁରୁଷଙ୍କ ପାଇଁ, ଓ ମନ୍ଦ ପୁରୁଷ ମନ୍ଦ ବିଷୟ ପାଇଁ; ଏବଂ ଉତ୍ତମ ବିଷୟ ଉତ୍ତମ ପୁରୁଷଙ୍କ ପାଇଁ; ଓ ଉତ୍ତମ ପୁରୁଷ ଉତ୍ତମ ବିଷୟ ପାଇଁ; (ଶତ୍ରୁମାନେ) ଯେଉଁ ବିଷୟ କହୁଛନ୍ତି ଏସବୁ ଲୋକ ସେଥିରୁ ପବିତ୍ର; ଏମାନଙ୍କ ପାଇଁ କ୍ଷମା ଓ ସମ୍ମାନଜନକ ଜୀବିକା (ନିର୍ଦ୍ଦିଷ୍ଟ) ରହିଅଛି ।

الْخَبِيثَاتُ لِلْخَبِيثِينَ وَالْخَبِيثُونَ لِلْخَبِيثَاتِ ۖ وَالطَّيِّبَاتُ لِلطَّيِّبِينَ وَالطَّيِّبُونَ لِلطَّيِّبَاتِ ۚ أُولَٰئِكَ مُبَرَّءُونَ مِمَّا يَقُولُونَ ۖ لَهُمْ مَغْفِرَةٌ وَرِزْقٌ كَرِيمٌ ﴿٢٧﴾

ରୁ: ୪

୨୮. ହେ ବିଶ୍ୱାସକାରୀମାନେ ! ତୁମେମାନେ ସ୍ୱଗୃହ ବ୍ୟତୀତ ଅନ୍ୟଗୃହରେ ସେ ପର୍ଯ୍ୟନ୍ତ ପ୍ରବେଶ କର ନାହିଁ ଯେ ପର୍ଯ୍ୟନ୍ତ ଅନୁମତି ପାଇ ନାହିଁ ଓ (ଗୃହରେ ପ୍ରବେଶ କରିବା ପୂର୍ବରୁ) ସେ ଗୃହବାସୀମାନଙ୍କୁ ସଲାମ କହି ନାହିଁ; ଏହା ତୁମମାନଙ୍କ ପକ୍ଷରେ ଉତ୍ତମ ହେବ ଓ ପରିଣାମରେ ତୁମେମାନେ (ସର୍ବଦା ଉତ୍ତମ କଥା) ମନେ ରଖିପାରିବ ।

يَا أَيُّهَا الَّذِينَ آمَنُوا لَا تَدْخُلُوا بُيُوتًا غَيْرَ بُيُوتِكُمْ حَتَّىٰ تَسْتَأْنِسُوا وَتُسَلِّمُوا عَلَىٰ أَهْلِهَا ۚ ذَٰلِكُمْ خَيْرٌ لَكُمْ لَعَلَّكُمْ تَذَكَّرُونَ ﴿٢٨﴾

୨୯. ଏବଂ ଯଦି ସେହି ଗୃହରେ ତୁମେମାନେ କାହାରିକୁ ନ ପାଅ, ତେବେ ତୁମେମାନେ ସେଠାରେ ପ୍ରବେଶ କର ନାହିଁ ଯେ ପର୍ଯ୍ୟନ୍ତ ତୁମମାନଙ୍କୁ (ଗୃହବାସୀଙ୍କ ତରଫରୁ) ଅନୁମତି ମିଳି ନାହିଁ; ଏବଂ ଯଦି (କେହି ଗୃହରେ ଥାଏ ଓ) ତୁମମାନଙ୍କୁ କୁହାଯାଏ ଯେ ବର୍ତ୍ତମାନ ଫେରିଯାଅ, ତାହାହେଲେ ତୁମେମାନେ ଫେରିଯାଅ; ଏହା ତୁମମାନଙ୍କ ପକ୍ଷରେ ଅଧିକ ପବିତ୍ର ହେବ; ଏବଂ ଅଲ୍ଲାଃ ତୁମମାନଙ୍କ କାର୍ଯ୍ୟକୁ ଉତ୍ତମରୂପେ ଜାଣନ୍ତି ।

فَإِنْ لَمْ تَجِدُوا فِيهَا أَحَدًا فَلَا تَدْخُلُوهَا حَتَّىٰ يُؤْذَنَ لَكُمْ ۖ وَإِنْ قِيلَ لَكُمُ ارْجِعُوا فَارْجِعُوا ۖ هُوَ أَزْكَىٰ لَكُمْ ۚ وَاللَّهُ بِمَا تَعْمَلُونَ عَلِيمٌ ﴿٢٩﴾

---

୧. ସାଧାରଣତଃ କେତେକ ଟୀକାକାର ଏହି ଆୟତର ବ୍ୟାଖ୍ୟା କରିବାକୁ ଯାଇ ଉଲ୍ଲେଖ କରିଛନ୍ତି ଯେ ମନ୍ଦ ପୁରୁଷଙ୍କ ପାଇଁ ମନ୍ଦ ମହିଳା ଓ ମନ୍ଦ ମହିଳାଙ୍କ ପାଇଁ ମନ୍ଦ ପୁରୁଷ ନିର୍ଦ୍ଦିଷ୍ଟ ରହିଛନ୍ତି । କିନ୍ତୁ ଆମ ମତରେ ଏହା ଠିକ୍ ନୁହେଁ । ପବିତ୍ର କୋରାନ୍‌ରେ କେବଳ ଏତିକି ମାତ୍ର ନିର୍ଦ୍ଦେଶ ଦିଆଯାଇଛି ଯେ ଯେଉଁମାନେ ସତ୍ କାର୍ଯ୍ୟ କରୁଥିବା ବିଷୟରେ ବହୁ ଲୋକ ଜାଣନ୍ତି ସେମାନଙ୍କ ପ୍ରତି ବ୍ୟଭିଚାର ଆରୋପ କର ନାହିଁ । ବସ୍ତୁତଃ ଯେଉଁ ପୁରୁଷ ଓ ଯେଉଁ ମହିଳାର ପ୍ରକୃତି ଉତ୍ତମ ଥିବାର ଅନେକଙ୍କୁ ଜଣା, ସେମାନେ ନିଶ୍ଚୟ ଉତ୍ତମ କାର୍ଯ୍ୟ କରିବେ ।

୩୦. ତୁମମାନଙ୍କ ପକ୍ଷରେ ଏପରି ଗୃହରେ ପ୍ରବେଶ କରିବାରେ କୌଣସି ପାପ ନାହିଁ ଯେଉଁଠାରେ କେହି ରହୁନାହାନ୍ତି ଓ ତୁମମାନଙ୍କର ଜିନିଷପତ୍ର ତହିଁରେ ଅଛି; ଏବଂ ତୁମେମାନେ ଯାହା ପ୍ରକାଶ କରୁଅଛ ଓ ତୁମେମାନେ ଯାହା ଗୋପନ ରଖୁଅଛ, ଅଲ୍ଲାହ ତାହା ଜାଣନ୍ତି ।

لَيْسَ عَلَيْكُمْ جُنَاحٌ أَنْ تَدْخُلُوا بُيُوتًا غَيْرَ مَسْكُونَةٍ فِيهَا مَتَاعٌ لَكُمْ وَاللَّهُ يَعْلَمُ مَا تُبْدُونَ وَمَا تَكْتُمُونَ ۝٣٠

୩୧. ତୁମେ ବିଶ୍ୱାସକାରୀ ପୁରୁଷମାନଙ୍କୁ କୁହ ଯେ ସେମାନେ ନିଜ ଚକ୍ଷୁ ଅବନତ କରି ରଖନ୍ତୁ ଏବଂ ନିଜର ଗୁପ୍ତାଙ୍ଗଗୁଡିକୁ ସୁରକ୍ଷିତ କରନ୍ତୁ; ଏହା ସେମାନଙ୍କ ପାଇଁ ଅତିଶୟ ପବିତ୍ର ହେବ; ସେମାନେ ଯାହା କିଛି କରୁଛନ୍ତି ଅଲ୍ଲାହ ତାହା ଉତ୍ତମ ରୂପେ ଜାଣନ୍ତି ।

قُلْ لِلْمُؤْمِنِينَ يَغُضُّوا مِنْ أَبْصَارِهِمْ وَيَحْفَظُوا فُرُوجَهُمْ ذَٰلِكَ أَزْكَىٰ لَهُمْ إِنَّ اللَّهَ خَبِيرٌ بِمَا يَصْنَعُونَ ۝٣١

୩୨. ଏବଂ ବିଶ୍ୱାସକାରିଣୀ ନାରୀମାନଙ୍କୁ କୁହ ଯେ ସେମାନେ ନିଜ ଚକ୍ଷୁକୁ ଅବନତ କରି ରଖନ୍ତୁ ଏବଂ ନିଜର ଗୁପ୍ତାଙ୍ଗଗୁଡିକୁ ସୁରକ୍ଷିତ କରନ୍ତୁ, ଏବଂ ଯାହା ସ୍ୱୟଂ ପ୍ରକାଶିତ ହୁଏ ତାହା ବ୍ୟତୀତ ନିଜର ଅନ୍ୟ ସୌନ୍ଦର୍ଯ୍ୟକୁ ପ୍ରକାଶ ନ କରନ୍ତୁ ଏବଂ ନିଜ ବକ୍ଷସ୍ଥଳକୁ ନିଜ ଓଢଣୀ [୧] ଦ୍ୱାରା ଆବୃତ କରନ୍ତୁ; ଏବଂ ସେମାନେ ନିଜ ପତି ବା ନିଜ ପିତା ବା ନିଜ ପତିଙ୍କ ପିତା ବା ନିଜର ପୁତ୍ର ବା ନିଜ ପତିଙ୍କର ପୁତ୍ର ବା ନିଜର ଭାଇ ବା ନିଜ ଭାଇଙ୍କ ପୁତ୍ର ବା ନିଜ ଭଉଣୀଙ୍କ ପୁତ୍ର ବା ନିଜ (ଉତ୍ତମ) ସଙ୍ଗିନୀ ବା ନିଜ ଅଧୀନସ୍ଥ ଦାସୀ ବା ନିଜ ଅଧୀନସ୍ଥ ଅପ୍ରାପ୍ତବୟସ୍କ ଦାସ ବା ଏପରି ବାଳକ ଯେଉଁମାନଙ୍କର ନାରୀମାନଙ୍କ ଗୋପନୀୟ ବିଷୟାଦି ସଂକ୍ରାନ୍ତରେ କୌଣସି ଜ୍ଞାନ ନାହିଁ କେବଳ ଏମାନଙ୍କ ବ୍ୟତୀତ ଅନ୍ୟ କାହାରି ସମ୍ମୁଖରେ ନିଜର ସୌନ୍ଦର୍ଯ୍ୟକୁ ପ୍ରକାଶକରନ୍ତୁ ନାହିଁ; ଏବଂ ନିଜ ପାଦକୁ ଏଥି ନିମନ୍ତେ ଭୂମି ଉପରେ ଜୋରରେ) କଷ୍ଟି ନ ଚାଲନ୍ତୁ ଯଦ୍ୱାରାକି ଯେଉଁ

وَقُلْ لِلْمُؤْمِنَاتِ يَغْضُضْنَ مِنْ أَبْصَارِهِنَّ وَيَحْفَظْنَ فُرُوجَهُنَّ وَلَا يُبْدِينَ زِينَتَهُنَّ إِلَّا مَا ظَهَرَ مِنْهَا وَلْيَضْرِبْنَ بِخُمُرِهِنَّ عَلَىٰ جُيُوبِهِنَّ وَلَا يُبْدِينَ زِينَتَهُنَّ إِلَّا لِبُعُولَتِهِنَّ أَوْ آبَائِهِنَّ أَوْ آبَاءِ بُعُولَتِهِنَّ أَوْ أَبْنَائِهِنَّ أَوْ أَبْنَاءِ بُعُولَتِهِنَّ أَوْ إِخْوَانِهِنَّ أَوْ بَنِي إِخْوَانِهِنَّ أَوْ بَنِي أَخَوَاتِهِنَّ أَوْ نِسَائِهِنَّ أَوْ مَا مَلَكَتْ أَيْمَانُهُنَّ أَوِ التَّابِعِينَ غَيْرِ أُولِي الْإِرْبَةِ مِنَ الرِّجَالِ أَوِ الطِّفْلِ الَّذِينَ لَمْ يَظْهَرُوا عَلَىٰ عَوْرَاتِ

---

୧. ସମୁଚିତ ଜ୍ଞାନର ଅଭାବରୁ ଅନେକ ଲୋକଙ୍କର, ଏପରିକି କେତେକ ମୁସଲମାନଙ୍କ ମନରେ 'ପରଦା' ସମ୍ବନ୍ଧରେ ବହୁ ଭ୍ରାନ୍ତ ଧାରଣା ରହିଅଛି । ଏ ବିଷୟରେ ପବିତ୍ର କୋରାନର **24:32, 24:59, 33:33–34** ଓ **33–60** ଅବଶ୍ୟ ପଠନୀୟ । ଏ ସମ୍ବନ୍ଧରେ ନିମ୍ନୋକ୍ତ ନିର୍ଦ୍ଦେଶମାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

(କ) ଯେବେ ମୁସଲମାନ ମହିଳାମାନେ ବାହାରକୁ ବାହାରିବେ ତେବେ ସେମାନେ ନିଜର ମସ୍ତକ ଓ ବକ୍ଷକୁ ଢାଙ୍କିଲା ଭଳି ଏପରି ଏକ ପରିଧାନ ବ୍ୟବହାର କରିବେ ଯାହା ମସ୍ତକରୁ ତଳକୁ ବକ୍ଷ ପର୍ଯ୍ୟନ୍ତ ଲମ୍ବିଥିବ, ଫଳରେ ସେମାନଙ୍କୁ କେହି ଏକ ଲୟରେ ଚାହିଁଲେ ସେମାନଙ୍କର ମନସ୍ତାପ ହେବ ନାହିଁ କି କୌଣସି ସନ୍ଦେହଜନକ ବ୍ୟକ୍ତି ସେମାନଙ୍କୁ ଉତ୍ପୀଡିତ ବା ହରକତ କରିପାରିବ ନାହିଁ । (ଖ) ପରସ୍ପରକୁ ଭେଟିଲା ବେଳେ ପୁରୁଷ ଓ ମହିଳା ଉଭୟେ ନିଜ ନିଜ ଦୃଷ୍ଟିକୁ ସଂଯତ କରି ରଖିବେ । (ଗ) ନିହାତି ଆବଶ୍ୟକ ନ ହେଲେ ମହିଳାମାନେ ବାହାରକୁ ଯିବେ ନାହିଁ । (ଘ) ଗୃହକର୍ତ୍ତାଙ୍କ ଶୟନ କକ୍ଷକୁ ଚାକରାଣୀଙ୍କ ଅବାଧ ପ୍ରବେଶ ନିଷିଦ୍ଧ, ଏପରିକି କେତେକ ନିର୍ଦ୍ଦିଷ୍ଟ ସମୟରେ ପିତାମାତାଙ୍କ ବ୍ୟକ୍ତିଗତ କୋଠରୀ ଭିତରକୁ ପିଲାମାନେ ମଧ୍ୟ ପ୍ରବେଶ କରିବା ନିଷିଦ୍ଧ । (ଙ) କେତେକ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ବ୍ୟତୀତ ଅନ୍ୟମାନଙ୍କ ସାମନାରେ ବା ପାଖରେ କୌଣସି ମହିଳା ନିଜ ଶରୀର, ପରିଧାନ ବା ଅଳଙ୍କାରର ସୌନ୍ଦର୍ଯ୍ୟ ପ୍ରଦର୍ଶିତ କରିବେ ନାହିଁ । (ଚ) ଘର ବାହାରେ କାର୍ଯ୍ୟ କରୁଥିବା ମହିଳା ଅବଶ୍ୟ ନିଜ ମୁଖମଣ୍ଡଳକୁ ଆବୃତ କରିବା ଦରକାର ନାହିଁ । କିନ୍ତୁ ଦୃଷ୍ଟି ନିକ୍ଷେପ କରିବାରେ ସଂଯମତା ଅବଲମ୍ବନ କରିବା ଓ ନିଜ ସୌନ୍ଦର୍ଯ୍ୟକୁ ଅନାବୃତ ନ କରିବା ବିଧେୟ । ଭିନ୍ନ ଭିନ୍ନ ବୃତ୍ତି, ପରମ୍ପରା ଓ ପରିସ୍ଥିତି ଦୃଷ୍ଟିରୁ ଦେହର କେତେକ ଅଂଶ ଅନାବୃତ ରହିବା ସ୍ୱାଭାବିକ । ତେଣୁ ସେହି କାରଣରୁ ପରଦା ସଂକ୍ରାନ୍ତ ତତ୍ତ୍ୱ ପରିବର୍ତ୍ତନ ସାପେକ୍ଷ ।

ٱلنِّسَآءِ ۖ وَلَا يَضْرِبْنَ بِأَرْجُلِهِنَّ لِيُعْلَمَ مَا يُخْفِينَ مِن زِينَتِهِنَّ ۚ وَتُوبُوٓا۟ إِلَى ٱللَّهِ جَمِيعًا أَيُّهَ ٱلْمُؤْمِنُونَ لَعَلَّكُمْ تُفْلِحُونَ ﴿٣٢﴾

ସୌନ୍ଦର୍ଯ୍ୟକୁ ସେମାନେ ଲୁକ୍କାୟିତ କରୁଛନ୍ତି ତାହା ପ୍ରକାଶିତ ହୋଇଯାଉ; ଏବଂ ହେ ବିଶ୍ୱାସକାରୀମାନେ ! (ତୁମେମାନେ) ସମସ୍ତେ ଅଲ୍ଲାହଙ୍କ ପ୍ରତି ମନୋଯୋଗୀ ହୁଅ, ତାହାହେଲେ ତୁମେମାନେ କୃତକାର୍ଯ୍ୟ ହୋଇପାରିବ ।

وَأَنكِحُوا۟ ٱلْأَيَٰمَىٰ مِنكُمْ وَٱلصَّٰلِحِينَ مِنْ عِبَادِكُمْ وَإِمَآئِكُمْ ۚ إِن يَكُونُوا۟ فُقَرَآءَ يُغْنِهِمُ ٱللَّهُ مِن فَضْلِهِۦ ۗ وَٱللَّهُ وَٰسِعٌ عَلِيمٌ ﴿٣٣﴾

୩୩. ଏବଂ ତୁମମାନଙ୍କ ମଧ୍ୟରେ ଯେଉଁମାନେ ବିଧବା ତଥା ତୁମମାନଙ୍କ ଦାସ ଓ ଦାସୀମାନଙ୍କ ମଧ୍ୟରେ ଯେଉଁମାନେ ଚରିତ୍ରବାନ୍, ସେମାନଙ୍କୁ ବିବାହ କରାଇ ଦିଅ; ଯଦି ସେମାନେ ଦରିଦ୍ର ହୋଇଥାଆନ୍ତି, ତେବେ ଅଲ୍ଲାହ ନିଜ କୃପାବଳରେ ସେମାନଙ୍କୁ ଧନବାନ୍ କରିଦେବେ;ଏବଂ ଅଲ୍ଲାହ ହିଁ ଅତ୍ୟନ୍ତ ଦାନଶୀଳ (ଓ) ସର୍ବଜ୍ଞ ।

وَلْيَسْتَعْفِفِ ٱلَّذِينَ لَا يَجِدُونَ نِكَاحًا حَتَّىٰ يُغْنِيَهُمُ ٱللَّهُ مِن فَضْلِهِۦ ۗ وَٱلَّذِينَ يَبْتَغُونَ ٱلْكِتَٰبَ مِمَّا مَلَكَتْ أَيْمَٰنُكُمْ فَكَاتِبُوهُمْ إِنْ عَلِمْتُمْ فِيهِمْ خَيْرًا ۖ وَءَاتُوهُم مِّن مَّالِ ٱللَّهِ ٱلَّذِىٓ ءَاتَىٰكُمْ ۚ وَلَا تُكْرِهُوا۟ فَتَيَٰتِكُمْ عَلَى ٱلْبِغَآءِ إِنْ أَرَدْنَ تَحَصُّنًا لِّتَبْتَغُوا۟ عَرَضَ ٱلْحَيَوٰةِ ٱلدُّنْيَا ۚ وَمَن يُكْرِههُّنَّ فَإِنَّ ٱللَّهَ مِنۢ بَعْدِ إِكْرَٰهِهِنَّ غَفُورٌ رَّحِيمٌ ﴿٣٤﴾

୩୪. ଏବଂ ଯେଉଁମାନଙ୍କର ବିବାହ ନିମିତ୍ତ ସାମର୍ଥ୍ୟ ନାହିଁ ସେମାନେ ପବିତ୍ରତା ଅବଲମ୍ବନ କରନ୍ତୁ ଏପରିକି ଅଲ୍ଲାହ ସେମାନଙ୍କୁ ନିଜ କୃପା ବଳରେ ଧନବାନ୍ କରିଦିଅନ୍ତୁ; ଏବଂ ତୁମମାନଙ୍କର ଦାସଦାସୀମାନଙ୍କ ମଧ୍ୟରୁ ଯେଉଁମାନେ (ନିଜ ସ୍ୱାଧୀନତା ସକାଶେ) ଚୁକ୍ତିବଦ୍ଧ ହେବାପାଇଁ ଇଚ୍ଛା କରନ୍ତି, ଯଦି ତୁମେ ସେମାନଙ୍କଠାରେ ଭଲଗୁଣ [୧] ଦେଖ, ତେବେ ସେମାନଙ୍କ ସହିତ ଚୁକ୍ତିବଦ୍ଧ ହୁଅ; ଏବଂ ଯେଦି ସେମାନଙ୍କଠାରେ ସମ୍ପୂର୍ଣ୍ଣ ପରିମାଣ ଧନ ନ ଥାଏ, ତେବେ) ଅଲ୍ଲାହ ତୁମମାନଙ୍କୁ ଦେଇଥିବା ଧନର କିଛି ଅଂଶ ଦିଅ (ଫଳରେ ସେମାନେ ସ୍ୱାଧୀନ ହେବା ସମ୍ଭବ ହେବ); ଏବଂ ଯଦି ତୁମମାନଙ୍କର ଦାସୀମାନେ [୨] ସଚ୍ଚରିତ୍ରା ରହିବାକୁ ଇଚ୍ଛା କରନ୍ତି, ତେବେ ତୁମେମାନେ ପାର୍ଥିବ ଜୀବନରେ [୩] ଲାଭବାନ୍ ହେବା ଉଦ୍ଦେଶ୍ୟରେ ସେମାନଙ୍କୁ ବ୍ୟଭିଚାର ପାଇଁ ବାଧ୍ୟ କର ନାହିଁ; ଏବଂ ଯଦି କେହି ସେମାନଙ୍କୁ ବାଧ୍ୟ କରେ, ତେବେ ସେମାନଙ୍କୁ ଏପରି ବାଧ୍ୟ କରାଯିବା ପରେ, [୪] ଅଲ୍ଲାହ (ସେମାନଙ୍କ ପ୍ରତି) ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ହେବେ ।

---

୧. ଅର୍ଥାତ୍ ଅପବ୍ୟୟକାରୀ ନୁହେଁ କି ଛତରା ନୁହେଁ । କିନ୍ତୁ ଯଦି ଜଣେ ମୁନିବ ଏ ବିଷୟରେ ପ୍ରସ୍ତୁତ ନୁହେଁ, ତେବେ ଜଣେ ଦାସ ବିଚାରପତିଙ୍କ ଜରିଆରେ ନିଜର ସ୍ୱତନ୍ତ୍ରତା ହାସଲ କରିପାରେ କାରଣ ସ୍ୱତନ୍ତ୍ରତା ତା'ର ଜନ୍ମଗତ ଅଧିକାର ।

୨. ଯଦି ଦାସୀମାନେ ବିବାହ କରିବାକୁ ଇଚ୍ଛୁକ ତେବେ ସେମାନଙ୍କୁ ବାଧା ଦିଅ ନାହିଁ,ଅନ୍ୟଥା ତା'ର ପରିଣାମ ପାପାଚାର ଓ ବ୍ୟଭିଚାର ଆଡ଼କୁ ବାଟ କଢ଼େଇ ନେବ ।

୩. ଅର୍ଥାତ୍ ସ୍ତ୍ରୀ ଲୋକମାନଙ୍କୁ ଦାସୀ ଭାବରେ ରଖି ନିଜ ଘରର ଚାକର ସମସ୍ୟାର ସମାଧାନ କର ନାହିଁ ।

୪. ଅର୍ଥାତ୍ ପବିତ୍ର କୋରାନର ନିର୍ଦ୍ଦେଶ ଅନୁଯାୟୀ ବିବାହ କର । ଯଦି କୌଣସି ମାଲିକ ବାଧା ଦେବ, ତେବେ ସେ ସେହି ପାପରେ ଭାଗୀ ହେବ, ଅଥଚ ସେହି ସ୍ତ୍ରୀ ଲୋକ ଭାଗୀ ହେବ ନାହିଁ ।

୩୫. ଏବଂ ଆମ୍ଭେ ତୁମମାନଙ୍କ ପ୍ରତି ପ୍ରକାଶ୍ୟ ନିଦର୍ଶନମାନ ଅବତୀର୍ଣ୍ଣ କରିଅଛୁ, ଏବଂ ଯେଉଁମାନେ ତୁମମାନଙ୍କ ପୂର୍ବରୁ ଗ୍ଭଲି ଯାଇଛନ୍ତି ସେମାନଙ୍କ ଅବସ୍ଥା (ଦୃଷ୍ଟାନ୍ତ ସ୍ୱରୂପ) ମଧ୍ୟ ବର୍ଣ୍ଣନା କରିଅଛୁ, ଏବଂ ଧର୍ମଭୀରୁମାନଙ୍କ ସକାଶେ ଉପଦେଶମୂଳକ ବିଷୟ ମଧ୍ୟ ବର୍ଣ୍ଣନା କରିଅଛୁ ।

وَلَقَدْ أَنْزَلْنَا إِلَيْكُمْ آيَاتٍ مُبَيِّنَاتٍ وَمَثَلًا مِنَ الَّذِينَ خَلَوْا مِنْ قَبْلِكُمْ وَمَوْعِظَةً لِلْمُتَّقِينَ ۝٣٥

ରୁ : ୪

୩୬. ଅଲ୍ଲାହ ହି ଆକାଶ ଓ ପୃଥିବୀର ଜ୍ୟୋତି [୧], ତାହାଙ୍କ ଜ୍ୟୋତିର ସ୍ୱରୂପ [୨] କାଚକୁରା ଉପରେ ଥିବା ଏକ ପ୍ରଦୀପ ସଦୃଶ, ଯେଉଁ ପ୍ରଦୀପ ଏକ ବୃତ୍ତାକାର କାଚ ମଧ୍ୟରେ ଅବସ୍ଥିତ, ଏବଂ ସେହି ବୃତ୍ତାକାର କାଚ ନକ୍ଷତ୍ର ସଦୃଶ ଦୀପ୍ତିମାନ୍ ହେଉଅଛି; ତାହା ଜୈତୁନ ନାମକ ଏପରି ଏକ ମଙ୍ଗଳମୟ ବୃକ୍ଷ (ତୈଳ) ଦ୍ୱାରା ପ୍ରଜ୍ୱଳିତ ହେଉଅଛି ଯାହା [୩] ପୂର୍ବାଞ୍ଚଳର ନୁହେଁ କି ପଶ୍ଚିମାଞ୍ଚଳର ନୁହେଁ; ଯାହାର ତୈଳ ଅଗ୍ନି ସଂଯୋଗ ନ ହେଉଣୁ ପ୍ରଜ୍ୱଳିତ ହୋଇ ଉଠେ, (ଏହି ପ୍ରଦୀପ) ଅନେକ ଜ୍ୟୋତିର ସମାହାର ବୋଧ ହେଉଛି; ଅଲ୍ଲାହ ଯାହାକୁ ଇଚ୍ଛା କରନ୍ତି ତାହାକୁ ନିଜ ଜ୍ୟୋତି ପ୍ରତି ସତ୍‌ମାର୍ଗ ପ୍ରଦର୍ଶିତ କରାନ୍ତି; ଏବଂ ଅଲ୍ଲାହ ଲୋକମାନଙ୍କ (ସମସ୍ତ ଅତ୍ୟାବଶ୍ୟକ) ବିଷୟମାନ ବର୍ଣ୍ଣନା କରନ୍ତି, ଏବଂ ଅଲ୍ଲାହ ସବୁ ବିଷୟକୁ ଭଲଭାବରେ ଜାଣନ୍ତି ।

اللّٰهُ نُورُ السَّمٰوٰتِ وَالْأَرْضِ ۚ مَثَلُ نُورِهٖ كَمِشْكٰوةٍ فِيهَا مِصْبَاحٌ ۖ الْمِصْبَاحُ فِي زُجَاجَةٍ ۖ الزُّجَاجَةُ كَأَنَّهَا كَوْكَبٌ دُرِّيٌّ يُوقَدُ مِنْ شَجَرَةٍ مُبٰرَكَةٍ زَيْتُونَةٍ لَا شَرْقِيَّةٍ وَلَا غَرْبِيَّةٍ ۙ يَكَادُ زَيْتُهَا يُضِيءُ وَلَوْ لَمْ تَمْسَسْهُ نَارٌ ۚ نُورٌ عَلٰى نُورٍ ۗ يَهْدِي اللّٰهُ لِنُورِهٖ مَنْ يَشَاءُ ۚ وَيَضْرِبُ اللّٰهُ الْأَمْثَالَ لِلنَّاسِ ۗ وَاللّٰهُ بِكُلِّ شَيْءٍ عَلِيمٌ ۝٣٦

୩୭. ଏହା (ଅର୍ଥାତ୍ ଏହି ପ୍ରଦୀପମାନ) [୪] ସେପରି ଗୃହମାନଙ୍କରେ ରହିଛି ଯେଉଁ ଗୃହମାନଙ୍କୁ ଉନ୍ନତ କରାଯିବା ପାଇଁ ଅଲ୍ଲାହ ଆଦେଶ କରିଛନ୍ତି, ଓ ଯେଉଁଠାରେ ଅଲ୍ଲାହଙ୍କର ନାମ ସ୍ମରଣ କରାଯାଏ, ଓ ଯେଉଁଠାରେ ସକାଳେ ଓ ସନ୍ଧ୍ୟାରେ ତାହାଙ୍କର ମହିମାଗାନ କରାଯାଉଥାଏ ।

فِي بُيُوتٍ أَذِنَ اللّٰهُ أَنْ تُرْفَعَ وَيُذْكَرَ فِيهَا اسْمُهٗ ۙ يُسَبِّحُ لَهٗ فِيهَا بِالْغُدُوِّ وَالْآصَالِ ۝٣٧

---

୧. ଅଲ୍ଲାହଙ୍କ ସହ ସମ୍ପର୍କ ସ୍ଥାପନ କଲେ ହି ସମସ୍ତ ପ୍ରକାର କଲ୍ୟାଣ ସାଧିତ ହେବ ।

୨. ଯେଉଁ ଶିକ୍ଷା ଅଲ୍ଲାହଙ୍କ ଠାରୁ ପ୍ରେରିତ ତାହାକୁ ଅନ୍ୟ ଶିକ୍ଷା ସହିତ ତୁଳନା କରିବା ଅର୍ଥ ଗୋଟିଏ ମାଟି ଦୀପକୁ ଏକ ପ୍ରତିବିମ୍ବକ ଲାଗି ଥିବା ଦୀପ ସହିତ ତୁଳନା କରିବା ।

୩. ପୂର୍ବ ଓ ପଶ୍ଚିମ ସହିତ ସମ୍ବନ୍ଧ ନଥିବା ବୃକ୍ଷର ଅର୍ଥ ଏପରି ଶିକ୍ଷା ଯହିଁରେ ପୂର୍ବାଞ୍ଚଳ ଲୋକମାନଙ୍କୁ ପ୍ରାଧାନ୍ୟ ଦିଆଯାଇ ନାହିଁ କି ପଶ୍ଚିମାଞ୍ଚଳ ଲୋକଙ୍କୁ ପ୍ରାଧାନ୍ୟ ଦିଆଯାଇ ନାହିଁ । ଏହା ହି ପବିତ୍ର କୋରାନ ବର୍ଣ୍ଣିତ ଶିକ୍ଷା ।

୪. ଅଲ୍ଲାହଙ୍କ ଜ୍ୟୋତିର ପ୍ରମାଣ ଏହି ଯେ ଯେଉଁ ଘରେ ଏହି ଜ୍ୟୋତି ଅର୍ଥାତ୍ ପବିତ୍ର କୋରାନର ଶିକ୍ଷା ଥିବ ସେହି ଘର ଲୋକେ ସଂସାରରେ ସମ୍ମାନ ଲାଭ କରିବେ ଓ ସେମାନେ ସେଠାରେ ସର୍ବଦା ଅଲ୍ଲାହଙ୍କର ଉପାସନା କରୁଥିବେ ।

ରِجَالٌ لَّا تُلْهِيهِمْ تِجَارَةٌ وَلَا بَيْعٌ عَن ذِكْرِ اللَّهِ وَإِقَامِ الصَّلَاةِ وَإِيتَاءِ الزَّكَاةِ ۙ يَخَافُونَ يَوْمًا تَتَقَلَّبُ فِيهِ الْقُلُوبُ وَالْأَبْصَارُ ﴿٣٨﴾

୩୮. (ଏହି ମହିମାଗାନ କରୁଥିବା) ଏପରି କେତେକ ପୁରୁଷ ଅଛନ୍ତି ଯେଉଁମାନଙ୍କୁ ବାଣିଜ୍ୟ ବ୍ୟବସାୟ ବା କ୍ରୟବିକ୍ରୟ ଅଲ୍ଲାହଙ୍କ ସ୍ମରଣରୁ ଓ ସୁସ୍ଥିରୂପେ ନମାଜପାଠରୁ ଓ ଜକାତ ଦାନରୁ ଅମନୋଯୋଗୀ କରିପାରେ ନାହିଁ; ସେମାନେ ସେହିଦିନ ପ୍ରତି ଭୟଭୀତ ହେଉଛନ୍ତି ଯେଉଁଦିନ ହୃଦୟ ଓ ଚକ୍ଷୁ ଓଲଟପାଲଟ ହୋଇଯିବ ।

لِيَجْزِيَهُمُ اللَّهُ أَحْسَنَ مَا عَمِلُوا وَيَزِيدَهُم مِّن فَضْلِهِ ۗ وَاللَّهُ يَرْزُقُ مَن يَشَاءُ بِغَيْرِ حِسَابٍ ﴿٣٩﴾

୩୯. ପରିଣାମ ସ୍ୱରୂପ ଅଲ୍ଲାହ ସେମାନଙ୍କୁ ସେମାନଙ୍କ କର୍ମର ଉତ୍କୃଷ୍ଟ ପୁରସ୍କାର ଦେବେ, ଏବଂ ନିଜ କୃପାରୁ ସେମାନଙ୍କୁ ଆହୁରି ଅଧିକ (ଧନ ଓ ସନ୍ତାନ) ପ୍ରଦାନ କରିବେ; ଏବଂ ଅଲ୍ଲାହ ଯାହାକୁ ଇଚ୍ଛା କରନ୍ତି ତାହାକୁ ଅପରିମିତ ଜୀବିକା ପ୍ରଦାନ କରନ୍ତି ।

وَالَّذِينَ كَفَرُوا أَعْمَالُهُمْ كَسَرَابٍ بِقِيعَةٍ يَحْسَبُهُ الظَّمْآنُ مَاءً حَتَّىٰ إِذَا جَاءَهُ لَمْ يَجِدْهُ شَيْئًا وَوَجَدَ اللَّهَ عِندَهُ فَوَفَّاهُ حِسَابَهُ ۗ وَاللَّهُ سَرِيعُ الْحِسَابِ ﴿٤٠﴾

୪୦. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନଙ୍କ କର୍ମ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତରରେ ଦୃଷ୍ଟିଗୋଚର ହେଉଥିବା ମରୀଚିକା ସଦୃଶ ଯାହାକୁ ତୃଷାର୍ତ୍ତ ଜଳ ବୋଲି ମନେ କରେ, ଏପରିକି ଯେତେବେଳେ ସେ ତାହା ପାଖରେ ପହଞ୍ଚେ ସେତେବେଳେ (ସେ) ସେଠାରେ କିଛି ପାଏ ନାହିଁ; ଏବଂ ସେ ଅଲ୍ଲାହଙ୍କୁ ଆପଣା ନିକଟରେ ଦେଖିବାକୁ ପାଏ; ସେତେବେଳେ ଅଲ୍ଲାହ ସମ୍ପୂର୍ଣ୍ଣରୂପେ ତାହାର ହିସାବ ନିକାଶ କରନ୍ତି; ଓ ହିସାବ ନିକାଶ କରିବାରେ ଅଲ୍ଲାହ ଅତୀବ କ୍ଷିପ୍ର ।

أَوْ كَظُلُمَاتٍ فِي بَحْرٍ لُّجِّيٍّ يَغْشَاهُ مَوْجٌ مِّن فَوْقِهِ مَوْجٌ مِّن فَوْقِهِ سَحَابٌ ۚ ظُلُمَاتٌ بَعْضُهَا فَوْقَ بَعْضٍ إِذَا أَخْرَجَ يَدَهُ لَمْ يَكَدْ يَرَاهَا ۗ وَمَن لَّمْ يَجْعَلِ اللَّهُ لَهُ نُورًا فَمَا لَهُ مِن نُّورٍ ﴿٤١﴾

୪୧. ଅଥବା (ସେହି ଅବିଶ୍ୱାସକାରୀମାନଙ୍କ କର୍ମ-ସମୂହର ଅବସ୍ଥା) ଏକ ଗଭୀର ସାଗର ବକ୍ଷରେ ଆଚ୍ଛାଦିତ ଅନ୍ଧକାର ସଦୃଶ; ଯେଉଁଠାରେ ଲହରି ଉପରେ ଲହରି ଉତ୍‌ଥିତ ହେଉଥାଏ ଏବଂ ସେସବୁ ଉପରେ ମେଘମାଳା ରହିଥାଏ; (ଏହା ଏପରି ଅନ୍ଧକାରମୟ ଥାଏ ଯେ) ଅନ୍ଧକାର ସ୍ତର ସ୍ତର ହୋଇ ଆଚ୍ଛାଦିତ ହୋଇଥାଏ; ଯେତେବେଳେ କୌଣସି ବ୍ୟକ୍ତି ନିଜ ହାତ ବାହାର କରେ ସେ ତାହାକୁ (ଚେଷ୍ଟା କରି ମଧ୍ୟ) ଦେଖିପାରେ ନାହିଁ; ଏବଂ ଯାହାକୁ ଅଲ୍ଲାହ ଜ୍ୟୋତି ପ୍ରଦାନ ନ କରନ୍ତି, ତାହାକୁ କୌଣସି ସ୍ଥାନରୁ ଜ୍ୟୋତି ପ୍ରାପ୍ତ ହୁଏ ନାହିଁ ।

ରୁ: ୬

أَلَمْ تَرَ أَنَّ اللَّهَ يُسَبِّحُ لَهُ مَن فِي السَّمَاوَاتِ وَالْأَرْضِ وَالطَّيْرُ صَافَّاتٍ ۖ كُلٌّ قَدْ عَلِمَ صَلَاتَهُ وَتَسْبِيحَهُ ۗ وَاللَّهُ عَلِيمٌ بِمَا يَفْعَلُونَ ﴿٤٢﴾

୪୨. କ'ଣ ତୁମେ ଲକ୍ଷ୍ୟ କରୁନାହଁ ଯେ ସେ ହି ଅଲ୍ଲାହ ଯାହାଙ୍କର ଆକାଶ ଓ ପୃଥିବୀରେ ବାସ କରୁଥିବା ସମସ୍ତେ ମହିମାଗାନ କରୁଛନ୍ତି, ଏବଂ ପକ୍ଷୀମାନେ ଧାଡିବାନ୍ଧି ତାହାଙ୍କ ସମ୍ମୁଖରେ ଉପସ୍ଥିତ ଅଛନ୍ତି ? ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ (ନିଜ ନିଜ) ଉପାସନା (ପଦ୍ଧତି) ଓ ମହିମାଗାନକୁ ଜାଣନ୍ତି; ଏବଂ ସେମାନେ ଯାହା କିଛି କରୁଛନ୍ତି ଅଲ୍ଲାହ ତାହାକୁ ଭଲରୂପେ ଜାଣନ୍ତି ।

୪୩. ଆକାଶ ଓ ପୃଥିବୀର ଆଧିପତ୍ୟ ଅଲ୍ଲାହଙ୍କର, ଏବଂ ଅଲ୍ଲାହଙ୍କ ନିକଟକୁ ସମସ୍ତଙ୍କୁ ଫେରିଯିବାକୁ ହେବ ।

وَلِلّٰهِ مُلْكُ السَّمٰوٰتِ وَالْاَرْضِ ۚ وَاِلَى اللّٰهِ الْمَصِيْرُ ﴿٤٣﴾

୪୪. କ'ଣ ତୁମେ ଲକ୍ଷ୍ୟ କରୁନାହିଁ ଯେ ଅଲ୍ଲାହ ମେଘମାଳାକୁ ଧୀରେ ଧୀରେ ପରିଚାଳିତ କରାନ୍ତି; ପରେ ସେଗୁଡିକର ଏକତ୍ରୀକରଣ କରାନ୍ତି, ତା'ପରେ ସେଗୁଡିକୁ ସ୍ତର ସ୍ତର (କରି ଘନୀଭୂତ) କରାନ୍ତି; ତା' ପରେ ତୁମେ ତନ୍ମଧ୍ୟରୁ ଜଳବର୍ଷଣ ହେବା ଦେଖ ? ଏବଂ ସେ ମେଘମାଳାରୁ ବୃହଦାକାର ବସ୍ତୁ ବର୍ଷଣ କରାନ୍ତି ଯହିଁରେ କେତେକ କୁଆପଥର ସଦୃଶ ହୋଇଥାଏ; ଏବଂ ସେଗୁଡିକୁ ଯାହା ଉପରେ ଇଚ୍ଛା କରନ୍ତି ତାହା ପ୍ରତି ନିକ୍ଷେପ କରନ୍ତି, ଏବଂ ଯାହାକୁ ଇଚ୍ଛା କରନ୍ତି ତାହାକୁ ସେଥିରୁ ନିବାରିତ କରନ୍ତି; ତାହାର ବିଜୁଳିର ଆଲୋକ କେତେକଙ୍କୁ ଦୃଷ୍ଟିହୀନ କରିଦେବା ଅତି ସମ୍ଭବପର ।

اَلَمْ تَرَ اَنَّ اللّٰهَ يُزْجِيْ سَحَابًا ثُمَّ يُؤَلِّفُ بَيْنَهٗ ثُمَّ يَجْعَلُهٗ رُكَامًا فَتَرَى الْوَدْقَ يَخْرُجُ مِنْ خِلٰلِهٖ ۚ وَيُنَزِّلُ مِنَ السَّمَآءِ مِنْ جِبَالٍ فِيْهَا مِنْۢ بَرَدٍ فَيُصِيْبُ بِهٖ مَنْ يَّشَآءُ وَيَصْرِفُهٗ عَنْ مَّنْ يَّشَآءُ ۗ يَكَادُ سَنَا بَرْقِهٖ يَذْهَبُ بِالْاَبْصَارِ ﴿٤٤﴾

୪୫. ଏବଂ ଅଲ୍ଲାହ ରାତି ଓ ଦିନର ଆବର୍ତ୍ତନ କରାନ୍ତି; ଏଥିରେ ବୁଦ୍ଧିମାନ୍ ଲୋକମାନଙ୍କ ପାଇଁ ମହାନ୍ ଶିକ୍ଷା ରହିଅଛି ।

يُقَلِّبُ اللّٰهُ الَّيْلَ وَالنَّهَارَ ۗ اِنَّ فِيْ ذٰلِكَ لَعِبْرَةً لِّاُولِي الْاَبْصَارِ ﴿٤٥﴾

୪୬. ଏବଂ ଅଲ୍ଲାହ ପ୍ରତ୍ୟେକ ବିଚରଣକାରୀ ପ୍ରାଣୀଙ୍କୁ ଜଳରୁ ସୃଷ୍ଟି କରିଛନ୍ତି; (ସେମାନଙ୍କ ମଧ୍ୟରୁ) କେତେକ ପେଟରେ ଭରାଦେଇ ଚାଲନ୍ତି ଏବଂ ଅନ୍ୟ କେତେକ(ସେମାନଙ୍କ) ଦୁଇ ପାଦ ସାହାଯ୍ୟରେ ଚାଲନ୍ତି, ଏବଂ ଅନ୍ୟ କେତେକ (ସେମାନଙ୍କ) ଚାରିପାଦରେ ଚାଲନ୍ତି; ଅଲ୍ଲାହ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି; ଏବଂ ଅଲ୍ଲାହ ପ୍ରତ୍ୟେକ ବିଷୟ କରିବାକୁ ସକ୍ଷମ ।

وَاللّٰهُ خَلَقَ كُلَّ دَآبَّةٍ مِّنْ مَّآءٍ ۚ فَمِنْهُمْ مَّنْ يَّمْشِيْ عَلٰى بَطْنِهٖ ۚ وَمِنْهُمْ مَّنْ يَّمْشِيْ عَلٰى رِجْلَيْنِ ۚ وَمِنْهُمْ مَّنْ يَّمْشِيْ عَلٰۤى اَرْبَعٍ ۗ يَخْلُقُ اللّٰهُ مَا يَشَآءُ ۗ اِنَّ اللّٰهَ عَلٰى كُلِّ شَيْءٍ قَدِيْرٌ ﴿٤٦﴾

୪୭. ଆମେ ପ୍ରକାଶ୍ୟ ନିଦର୍ଶନମାନ ଅବତୀର୍ଣ୍ଣ କରିଅଛୁ; ଏବଂ ଅଲ୍ଲାହ ଯାହାକୁ ପସନ୍ଦ କରନ୍ତି ତାହାକୁ ସରଳ ପଥରେ ପରିଚାଳିତ କରାନ୍ତି ।

لَقَدْ اَنْزَلْنَاۤ اٰيٰتٍ مُّبَيِّنٰتٍ ۗ وَاللّٰهُ يَهْدِيْ مَنْ يَّشَآءُ اِلٰى صِرَاطٍ مُّسْتَقِيْمٍ ﴿٤٧﴾

୪୮. ଏବଂ ସେମାନେ କହନ୍ତି, ''ଆମେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ ସ୍ଥାପନ କରିଅଛୁ; ଏବଂ ଆମେମାନେ ଆନୁଗତ୍ୟ ସ୍ୱୀକାର କରିଅଛୁ ; ଏହାପରେ ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ (ବିମୁଖ ହୋଇ) ଫେରିଯାଏ; ଏବଂ ଏପରି ଲୋକମାନେ ଆଦୌ ବିଶ୍ୱାସକାରୀ ନୁହନ୍ତି ।

وَيَقُوْلُوْنَ اٰمَنَّا بِاللّٰهِ وَبِالرَّسُوْلِ وَاَطَعْنَا ثُمَّ يَتَوَلّٰى فَرِيْقٌ مِّنْهُمْ مِّنْۢ بَعْدِ ذٰلِكَ ۗ وَمَاۤ اُولٰٓئِكَ بِالْمُؤْمِنِيْنَ ﴿٤٨﴾

୪୯. ଏବଂ ଯେତେବେଳେ ସେମାନଙ୍କୁ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ନିକଟକୁ ଏହି କାରଣରୁ ଡକାଯାଏ ଯେ ସେ (ରସୁଲ) ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରିଦେବେ, ସେତେବେଳେ ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ ବିମୁଖ ହୋଇ ଚାଲିଯାଏ ।

وَاِذَا دُعُوْۤا اِلَى اللّٰهِ وَرَسُوْلِهٖ لِيَحْكُمَ بَيْنَهُمْ اِذَا فَرِيْقٌ مِّنْهُمْ مُّعْرِضُوْنَ ﴿٤٩﴾

୫୦. ଏବଂ ଯଦି କୌଣସି ବିଷୟ ସେମାନଙ୍କ ସପକ୍ଷରେ ଯାଏ, ତେବେ ସେମାନେ ତୁରନ୍ତ ଆନୁଗତ୍ୟ ପ୍ରକାଶ କରି ଆସିଯାଆନ୍ତି ।

وَإِن يَكُن لَّهُمُ الْحَقُّ يَأْتُوا إِلَيْهِ مُذْعِنِينَ ﴿٥٠﴾

୫୧. ତାହାହେଲେ କ'ଣ ସେମାନଙ୍କ ହୃଦୟରେ କୌଣସି ବ୍ୟାଧି ଅଛି ବା ସେମାନେ ସନ୍ଦେହରେ ପଡିଛନ୍ତି ବା ସେମାନେ ଭୟ କରୁଛନ୍ତି ଯେ ଅଲ୍ଲାହ ଓ ତାହାଙ୍କ ରସୁଲ ସେମାନଙ୍କ ପ୍ରତି ଅତ୍ୟାଚାର କରିବେ ? କଦାପି ଏପରି ନୁହେଁ, ବରଂ ସେମାନେ ନିଜେ ଅତ୍ୟାଚାରୀ ।

أَفِي قُلُوبِهِم مَّرَضٌ أَمِ ارْتَابُوا أَمْ يَخَافُونَ أَن يَحِيفَ اللَّهُ عَلَيْهِمْ وَرَسُولُهُ ۚ بَلْ أُولَٰئِكَ هُمُ الظَّالِمُونَ ﴿٥١﴾

ରୁ: ୭

୫୨. ଯେତେବେଳେ ବିଶ୍ୱାସକାରୀମାନଙ୍କୁ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ନିକଟକୁ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରାଯିବା ପାଇଁ ଡକାଯାଏ, ସେତେବେଳେ ସେମାନେ ଉତ୍ତର ଦିଅନ୍ତି, "ଆମେମାନେ ଶୁଣିଲୁ ଓ ଆଜ୍ଞା ପାଳନ କଲୁ;" ଏବଂ ସେମାନେ ହିଁ କୃତକାର୍ଯ୍ୟ ହୁଅନ୍ତି ।

إِنَّمَا كَانَ قَوْلَ الْمُؤْمِنِينَ إِذَا دُعُوا إِلَى اللَّهِ وَرَسُولِهِ لِيَحْكُمَ بَيْنَهُمْ أَن يَقُولُوا سَمِعْنَا وَأَطَعْنَا ۚ وَأُولَٰئِكَ هُمُ الْمُفْلِحُونَ ﴿٥٢﴾

୫୩. ଏବଂ ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ଆଜ୍ଞା ପାଳନ କରନ୍ତି ଓ ଅଲ୍ଲାହଙ୍କୁ ଭୟ କରନ୍ତି ଓ ତାହାଙ୍କ ଧର୍ମଭୀରୁତା ଅବଲମ୍ବନ କରନ୍ତି,ସେମାନେ ହିଁ ସଫଳ ମନୋରଥ ହୁଅନ୍ତି ।

وَمَن يُطِعِ اللَّهَ وَرَسُولَهُ وَيَخْشَ اللَّهَ وَيَتَّقْهِ فَأُولَٰئِكَ هُمُ الْفَائِزُونَ ﴿٥٣﴾

୫୪. ଏବଂ ସେମାନେ ଅଲ୍ଲାହଙ୍କ ନାମରେ ଦୃଢ ଶପଥ କରନ୍ତି ଯେ, ଯଦି ତୁମ୍ଭେ ସେମାନଙ୍କୁ ଆଦେଶ ଦେବ, ତେବେ ସେମାନେ ନିଶ୍ଚୟ ନିଜ ଗୃହରୁ ତତ୍‌କ୍ଷଣାତ୍ ବାହାରି ଆସିବେ; କୁହ, "ଶପଥ କର ନାହିଁ; ଯେଉଁ ଆନୁଗତ୍ୟ ସାର୍ବଜନିକ ଆନୁଗତ୍ୟ ଭାବେ ପରିଚିତ ତାହାକୁ (ଅବଲମ୍ବନ କରିବାକୁ) ହିଁ ଆମ୍ଭେ ତୁମମାନଙ୍କୁ ଆଦେଶ କରୁଅଛୁ; ତୁମେମାନେ ଯାହା କରୁଅଛ ବାସ୍ତବରେ ଅଲ୍ଲାହ ସେ ବିଷୟରେ ଅବଗତ ଅଛନ୍ତି ।"

وَأَقْسَمُوا بِاللَّهِ جَهْدَ أَيْمَانِهِمْ لَئِنْ أَمَرْتَهُمْ لَيَخْرُجُنَّ ۖ قُل لَّا تُقْسِمُوا ۖ طَاعَةٌ مَّعْرُوفَةٌ ۚ إِنَّ اللَّهَ خَبِيرٌ بِمَا تَعْمَلُونَ ﴿٥٤﴾

୫୫. (ତୁମ୍ଭେ) କୁହ, "ଅଲ୍ଲାହଙ୍କର ଆଜ୍ଞା ପାଳନକର ଓ ତାହାଙ୍କ ରସୁଲଙ୍କର ଆଜ୍ଞାପାଳନ କର;" ଯଦି ସେମାନେ (ବିମୁଖ ହୋଇ) ଫେରିଯାନ୍ତି, ତେବେ ତାହାଙ୍କ (ଅର୍ଥାତ୍ ରସୁଲଙ୍କ) ଉପରେ କେବଳ ସେହି ଦାୟିତ୍ୱ ଅଛି ଯାହା ତାହାଙ୍କ ଉପରେ ନ୍ୟସ୍ତ କରାଯାଇଛି ; ଏବଂ ତୁମମାନଙ୍କ ଉପରେ ସେହି ଦାୟିତ୍ୱ ଅଛି ଯାହା ତୁମମାନଙ୍କ ଉପରେ ନ୍ୟସ୍ତ କରାଯାଇଛି; ଏବଂ ଯଦି ତୁମେମାନେ ତାଙ୍କର ଆଜ୍ଞାପାଳନ କରିବ, ତେବେ ସତ୍‌ପଥ ପ୍ରାପ୍ତ ହେବ; ଏବଂରସୁଲଙ୍କର ଦାୟିତ୍ୱ ହେଉଛି କେବଳ ବାର୍ତ୍ତାକୁ ଭଲଭାବରେ ପହଞ୍ଚାଇ ଦେବା ।

قُلْ أَطِيعُوا اللَّهَ وَأَطِيعُوا الرَّسُولَ ۖ فَإِن تَوَلَّوْا فَإِنَّمَا عَلَيْهِ مَا حُمِّلَ وَعَلَيْكُم مَّا حُمِّلْتُمْ ۖ وَإِن تُطِيعُوهُ تَهْتَدُوا ۚ وَمَا عَلَى الرَّسُولِ إِلَّا الْبَلَاغُ الْمُبِينُ ﴿٥٥﴾

وَعَدَ اللّٰهُ الَّذِيْنَ اٰمَنُوْا مِنْكُمْ وَعَمِلُوا الصّٰلِحٰتِ لَيَسْتَخْلِفَنَّهُمْ فِي الْاَرْضِ كَمَا اسْتَخْلَفَ الَّذِيْنَ مِنْ قَبْلِهِمْ ۪ وَلَيُمَكِّنَنَّ لَهُمْ دِيْنَهُمُ الَّذِي ارْتَضٰى لَهُمْ وَلَيُبَدِّلَنَّهُمْ مِّنْۢ بَعْدِ خَوْفِهِمْ اَمْنًا ؕ يَعْبُدُوْنَنِيْ لَا يُشْرِكُوْنَ بِيْ شَيْـًٔا ؕ وَمَنْ كَفَرَ بَعْدَ ذٰلِكَ فَاُولٰٓئِكَ هُمُ الْفٰسِقُوْنَ ﴿٥٦﴾

୫୬. ତୁମମାନଙ୍କ ମଧ୍ୟରୁ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ଉଚିତ କର୍ମ କରୁଛନ୍ତି ସେମାନଙ୍କ ସହିତ ଅଲ୍ଲାହ ଅଙ୍ଗୀକାର କରିଛନ୍ତି ଯେ ସେ ସେମାନଙ୍କୁ ଭୂପୃଷ୍ଠରେ ଖଲିଫା[1] କରିବେ ଯେପରି ସେ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କୁ ଖଲିଫା[2] କରିଥିଲେ; ଏବଂ ଯେଉଁ ଧର୍ମକୁ ସେ ସେମାନଙ୍କ ପାଇଁ ପସନ୍ଦ କରିଛନ୍ତି ସେ ସେମାନଙ୍କ ପାଇଁ ତାହାକୁ ଦୃଢଭାବରେ ସ୍ଥାପନ କରିଦେବେ; ଏବଂ ସେମାନଙ୍କ ଭୟପ୍ରଦ ଅବସ୍ଥାକୁ ପରେ ସେ ସେମାନଙ୍କ ପାଇଁ ଶାନ୍ତିପ୍ରଦ ଅବସ୍ଥାରେ ପରିଣତ କରିଦେବେ; ସେମାନେ ଆମର ଉପାସନା କରିବେ,(ଓ) କୌଣସି ବସ୍ତୁକୁ ଆମର ସମକକ୍ଷ କରିବେ ନାହିଁ; ଏବଂ ଯେଉଁମାନେ ଏହାପରେ ମଧ୍ୟ ଅମାନ୍ୟ କରିବେ, ସେମାନେ ଅବଜ୍ଞାକାରୀମାନଙ୍କ ମଧ୍ୟରେ ଗଣ୍ୟ ହେବେ ।

وَاَقِيْمُوا الصَّلٰوةَ وَاٰتُوا الزَّكٰوةَ وَاَطِيْعُوا الرَّسُوْلَ لَعَلَّكُمْ تُرْحَمُوْنَ ﴿٥٧﴾

୫୭. ଏବଂ ତୁମେମାନେ ସମସ୍ତେ ସୁସ୍ଥିରରୂପେ ନମାଜପାଠ କର, ଓ ଜକାତ ପ୍ରଦାନ କର ଓ ଏହି ରସୁଲଙ୍କର ଆଜ୍ଞାପାଳନ କର,ଯେପରିକି ତୁମମାନଙ୍କ ପ୍ରତି କରୁଣା କରାଯିବ ।

لَا تَحْسَبَنَّ الَّذِيْنَ كَفَرُوْا مُعْجِزِيْنَ فِي الْاَرْضِ ۚ وَمَاْوٰىهُمُ النَّارُ ؕ وَلَبِئْسَ الْمَصِيْرُ ﴿٥٨﴾ ع

୫୮. ତୁମେମାନେ କଦାପି (ଏପରି) ଧାରଣା କରନାହିଁ ଯେ ଅବିଶ୍ୱାସକାରୀମାନେ ଏହି ପୃଥିବୀରେ ଆମ୍ଭଙ୍କୁ ଆମ୍ଭ ଯୋଜନାରୁ ବିଫଳ କରିଦେବେ; ଏବଂ ସେମାନଙ୍କର ବାସସ୍ଥାନ ନରକ ଅଟେ; ଏବଂ ତାହା ଅତ୍ୟନ୍ତ ମନ୍ଦ ବାସସ୍ଥାନ ।

ରୁ: ୮

يٰۤاَيُّهَا الَّذِيْنَ اٰمَنُوْا لِيَسْتَاْذِنْكُمُ الَّذِيْنَ مَلَكَتْ اَيْمَانُكُمْ وَالَّذِيْنَ لَمْ يَبْلُغُوا الْحُلُمَ مِنْكُمْ ثَلٰثَ مَرّٰتٍ ؕ مِنْ قَبْلِ صَلٰوةِ الْفَجْرِ وَحِيْنَ تَضَعُوْنَ ثِيَابَكُمْ

୫୯. ହେ ବିଶ୍ୱାସକାରୀମାନେ ! ଯେଉଁମାନଙ୍କୁ ତୁମର ଦକ୍ଷିଣ ହସ୍ତ ଅଧିକାର କରିଅଛି (ଅର୍ଥାତ୍ ଯେଉଁମାନେ ତୁମମାନଙ୍କର ଦାସ) ଓ ଯେଉଁମାନେ ଅଦ୍ୟାବଧି ପ୍ରାପ୍ତବୟସ୍କ ହୋଇ ନାହାନ୍ତି, ସେମାନେ ସକାଳ ନମାଜ ପୂର୍ବରୁ, ଦ୍ୱିପ୍ରହର ସମୟରେ ଯେତେବେଳେ ତୁମେମାନେ ନିଜର ପରିଧାନ ବାହାର କରି (ବିଶ୍ରାମ କରୁ) ଥାଅ, ଓ ଏସା (ଅର୍ଥାତ୍ ରାତ୍ରିକାଳୀନ) ନମାଜ

---

[1] ଯଦିଚ ଶବ୍ଦଟି ସାଧାରଣ ତଥାପି ଏହାର ତାତ୍ପର୍ଯ୍ୟ ହେଉଛି ଯେ ଅଲ୍ଲାହ ତୁମମାନଙ୍କ ଭିତରୁ ଖଲିଫା ନିଯୁକ୍ତ କରିବେ । ଆରବୀ ଭାଷା ଶୈଳୀରେ ସମୟେ ସମୟେ ଗୋଟିଏ ଶବ୍ଦ ସାଧାରଣ ହୋଇଥିଲେ ମଧ୍ୟ ତାହା ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିକୁ ବୁଝାଏ । ସେହିପରି ସମୟେ ସମୟେ ଜଣେ ବ୍ୟକ୍ତିଙ୍କ ବିଷୟ ବର୍ଣ୍ଣନା କରାଯାଉ ଥିଲେ ମଧ୍ୟ ଏହା ଏକ ଗୋଷ୍ଠୀକୁ ବୁଝାଏ ।

[2] ପୂର୍ବ କାଳରେ ଲୋକମାନଙ୍କ ମଧ୍ୟରେ ଯେଉଁ ଖିଲାଫତ ପ୍ରଥା ପ୍ରଚଳିତ ଥିଲା ତାହା ଜଣେ ବ୍ୟକ୍ତିବିଶେଷଙ୍କ ସହିତ ସଂପୃକ୍ତ ଥିଲା । ଏ ପ୍ରକାର ଖିଲାଫତ ହଜରତ ମୁସା ଓ ହଜରତ ଇସାଙ୍କ ପରେ ପ୍ରଚଳିତ ହୋଇଥିଲା । ଅତଏବ ଏହି ଦୃଷ୍ଟାନ୍ତ ଦ୍ୱାରା ଏହା ସ୍ପଷ୍ଟ ହୋଇଯାଉଛି ଯେ ଆଲୋଚ୍ୟ ଖିଲାଫତ ବଂଶାନୁକ୍ରମିକ ନୁହେଁ କି ଏଥିରେ କାହାର ଜନ୍ମଗତ ଅଧିକାର ନାହିଁ ବରଂ ଏହା ନିର୍ବାଚନ ମାଧ୍ୟମରେ ହେବ । ଯେହେତୁ ଖ୍ରୀଷ୍ଟିୟାନ ପାଦ୍ରୀମାନଙ୍କ ପକ୍ଷରେ ବିବାହ କରିବା ନୀତି ବିରୁଦ୍ଧ, ତେଣୁ ସେମାନଙ୍କ କ୍ଷେତ୍ରରେ ବଂଶାନୁକ୍ରମିକ ବା ଜନ୍ମଗତ ଖିଲାଫତର ପ୍ରଶ୍ନ ହିଁ ଉଠୁ ନାହିଁ । ଇହୁଦୀମାନଙ୍କ ଭିତରେ ଯେଉଁ ଖିଲାଫତ କଥା ପ୍ରଚଳିତ ଥିଲା ତାହା ମୁଖ୍ୟତଃ ଐଶୀବାଣୀ ବା ଇଲହାମ୍ ମାଧ୍ୟମରେ ଚାଲୁ ରହିଥିଲା । ଉଦାହରଣ ସ୍ୱରୂପ ୟୁସା ହଜରତ ଇବ୍ରାହିମଙ୍କର ଖଲିଫା ଥିଲେ ଓ ହଜରତ ଦାଉଦ ହଜରତ ମୁସାଙ୍କର ଖଲିଫା ଥିଲେ ଓ ତାଙ୍କ ନିକଟକୁ ଐଶୀବାଣୀ ପ୍ରେରିତ ହେଉଥିଲା ।

ପରେ; ଏହିପରି ତିନିଗୋଟି ସମୟରେ ଅନୁମତି ନେଇ ଭିତରେ ପ୍ରବେଶ କରିବା ବିଧେୟ; ଏହି ତିନିଗୋଟି ସମୟ ତୁମମାନଙ୍କ ସକାଶେ ଏକାନ୍ତତାର ସମୟ; ଏହି (ତିନିଗୋଟି) ସମୟ ବ୍ୟତୀତ ଅନ୍ୟ ସମୟରେ (ଭିତରକୁ ଯିବା ଆସିବା କରିବାରେ) ତୁମମାନଙ୍କ ପକ୍ଷରେ ବା ସେମାନଙ୍କ ପକ୍ଷରେ ଦୋଷାବହ ନୁହେଁ, କାରଣ ତୁମମାନଙ୍କ ମଧ୍ୟରୁ କେତେକ, ଅନ୍ୟ କେତେକଙ୍କ ନିକଟକୁ ଆବଶ୍ୟକତା ଅନୁଯାୟୀ ପ୍ରାୟ ଯିବା ଆସିବା କରିଥା'ନ୍ତି; ଏହିପରି ଅଲ୍ଲାହ ନିଜର ଆଦେଶଗୁଡିକୁ ସ୍ପଷ୍ଟଭାବରେ ବର୍ଣ୍ଣନା କରନ୍ତି; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

مِّنَ الظَّهِيرَةِ وَمِن بَعْدِ صَلَاةِ الْعِشَاءِ ۚ ثَلَاثُ عَوْرَاتٍ لَّكُمْ ۚ لَيْسَ عَلَيْكُمْ وَلَا عَلَيْهِمْ جُنَاحٌ بَعْدَهُنَّ ۚ طَوَّافُونَ عَلَيْكُم بَعْضُكُمْ عَلَىٰ بَعْضٍ ۚ كَذَٰلِكَ يُبَيِّنُ اللَّهُ لَكُمُ الْآيَاتِ ۗ وَاللَّهُ عَلِيمٌ حَكِيمٌ ﴿٥٩﴾

୬୦. ଏବଂ ଯେତେବେଳେ ତୁମମାନଙ୍କ ସନ୍ତାନ-ସନ୍ତତି ପ୍ରାପ୍ତବୟସ୍କ ହେବେ, ସେତେବେଳେ ସେହିପରି ଭାବରେ ଅନୁମତି ନେବା ଉଚିତ ଯେପରି ଏହା ପୂର୍ବରୁ (ପ୍ରାପ୍ତ ବୟସ୍କ) ଲୋକମାନେ ଅନୁମତି ନେଉଥିଲେ; ଏହିପରି ଅଲ୍ଲାହ ତୁମମାନଙ୍କ ପାଇଁ ନିଜର ଆଦେଶଗୁଡିକୁ ବର୍ଣ୍ଣନା କରନ୍ତି; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَإِذَا بَلَغَ الْأَطْفَالُ مِنكُمُ الْحُلُمَ فَلْيَسْتَأْذِنُوا كَمَا اسْتَأْذَنَ الَّذِينَ مِن قَبْلِهِمْ ۚ كَذَٰلِكَ يُبَيِّنُ اللَّهُ لَكُمْ آيَاتِهِ ۗ وَاللَّهُ عَلِيمٌ حَكِيمٌ ﴿٦٠﴾

୬୧. ଏବଂ ଯେଉଁ ମହିଳାମାନେ [୧] ବୃଦ୍ଧା ହୋଇ ଯାଇଛନ୍ତି ଓ (ଯାହାଙ୍କର) ବିବାହ କରିବାର ଆଉ ଆଶା ନାହିଁ, [୨] ସେମାନେ ନିଜ ସୌନ୍ଦର୍ଯ୍ୟକୁ ପ୍ରଦର୍ଶିତ ନ କରି ନିଜର (ବାହ୍ୟ) ପରିଧାନକୁ ବାହାର କରି ରଖିଦେଲେ (ସେଥିରେ) କୌଣସି ଦୋଷ ନାହିଁ; ଏବଂ ଏଥିରୁ ନିବୃତ୍ତ ହେବା ସେମାନଙ୍କ ପକ୍ଷରେ ଉତ୍ତମ ହେବ, ଏବଂ ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَالْقَوَاعِدُ مِنَ النِّسَاءِ اللَّاتِي لَا يَرْجُونَ نِكَاحًا فَلَيْسَ عَلَيْهِنَّ جُنَاحٌ أَن يَضَعْنَ ثِيَابَهُنَّ غَيْرَ مُتَبَرِّجَاتٍ بِزِينَةٍ ۖ وَأَن يَسْتَعْفِفْنَ خَيْرٌ لَّهُنَّ ۗ وَاللَّهُ سَمِيعٌ عَلِيمٌ ﴿٦١﴾

୬୨. ଅନ୍ଧ, [୩] ଛୋଟା ବା ପୀଡିତ ଲୋକମାନଙ୍କ ପକ୍ଷରେ ବା ତୁମମାନଙ୍କ ପକ୍ଷରେ ସ୍ୱଗୃହରୁ ବା ନିଜ ପିତୃପିତାମହଙ୍କ ଗୃହରୁ ବା ନିଜମାତାମାନଙ୍କ (ଅର୍ଥାତ୍ ମାତାମହଙ୍କ) ଗୃହରୁ, ବା ନିଜର ଭାଇମାନଙ୍କ ଗୃହରୁ, ବା ନିଜ ଭଉଣୀମାନଙ୍କ ଗୃହରୁ, ବା ନିଜ ପିତୃବ୍ୟମାନଙ୍କ ଗୃହରୁ, ବା ନିଜ ପିଉସୀମାନଙ୍କ ଗୃହରୁ, ବା ନିଜ ମାମୁଁମାନଙ୍କ ଗୃହରୁ, ବା ନିଜ ମାଉସୀମାନଙ୍କ ଗୃହରୁ, ବା ଯାହାର ଜିନିଷପତ୍ରର ରକ୍ଷଣାବେକ୍ଷଣ ତୁମ ଦାୟିତ୍ୱରେ ଅଛି ସେଠାରୁ, ବା ନିଜ ବନ୍ଧୁମାନଙ୍କ ଗୃହରୁ କୌଣସି ବସ୍ତୁ ଖାଇବାରେ କୌଣସି କ୍ଷତି ନାହିଁ; (ସେହିପରି) ତୁମେମାନେ

لَّيْسَ عَلَى الْأَعْمَىٰ حَرَجٌ وَلَا عَلَى الْأَعْرَجِ حَرَجٌ وَلَا عَلَى الْمَرِيضِ حَرَجٌ وَلَا عَلَىٰ أَنفُسِكُمْ أَن تَأْكُلُوا مِن بُيُوتِكُمْ أَوْ بُيُوتِ آبَائِكُمْ أَوْ بُيُوتِ أُمَّهَاتِكُمْ أَوْ بُيُوتِ إِخْوَانِكُمْ أَوْ بُيُوتِ أَخَوَاتِكُمْ أَوْ بُيُوتِ أَعْمَامِكُمْ أَوْ بُيُوتِ عَمَّاتِكُمْ أَوْ بُيُوتِ أَخْوَالِكُمْ أَوْ بُيُوتِ خَالَاتِكُمْ

୧. ଅର୍ଥାତ୍ ବୃଦ୍ଧାମାନଙ୍କ ପକ୍ଷରେ ପର୍ଦ୍ଦା ଆଢୁଆଳରେ ରହିବା ଅନିବାର୍ଯ୍ୟ ନୁହେଁ । ଯଦି ସେମାନେ ବାହାରେ ବୁଲିବାକୁ ବାଧ୍ୟ ନୁହନ୍ତି ଓ ସ୍ୱେଚ୍ଛାରେ ଘରେ ବସି ରହନ୍ତି ତେବେ ଏ ବିଷୟ ଅଲ୍ଲାହଙ୍କୁ ଅଧିକ ପସନ୍ଦଯୋଗ୍ୟ ହୋଇଥାଏ ।

୨. ଅର୍ଥାତ୍ ଯେଉଁମାନେ ବିବାହ କରିବାକୁ ଆଉ ଉପଯୁକ୍ତ ନୁହନ୍ତି । ଏହାର ତାତ୍ପର୍ଯ୍ୟ ହେଉଛି, ସେମାନେ ଏପରି ବୟସରେ ପଦାର୍ପଣ କରିଛନ୍ତି ଯେ ଆଉ ଥରେ ବିବାହ କରିବା ବିଷୟରେ ଆଦୌ ଧାରଣା କରିପାରୁ ନାହାନ୍ତି ।

୩. ଇହୁଦୀମାନଙ୍କ ଶିକ୍ଷାନୁସାରେ ଅନ୍ଧ, ଛୋଟା ଓ ଯେଉଁ ବ୍ୟକ୍ତିଠାରେ କ୍ଷୁଣ ଅଛି ସେପରି ବ୍ୟକ୍ତିଙ୍କୁ ଅପବିତ୍ର ବୋଲି ଗଣନା କରାଯାଏ । ପବିତ୍ର କୋରାନରେ ଏହା ଭ୍ରମାତ୍ମକ ବୋଲି ଉଲ୍ଲେଖ କରାଯାଇଛି ।

أَوْ مَا مَلَكْتُم مَّفَاتِحَهُ أَوْ صَدِيقِكُمْ ۚ لَيْسَ عَلَيْكُمْ جُنَاحٌ أَن تَأْكُلُوا جَمِيعًا أَوْ أَشْتَاتًا ۚ فَإِذَا دَخَلْتُم بُيُوتًا فَسَلِّمُوا عَلَىٰ أَنفُسِكُمْ تَحِيَّةً مِّنْ عِندِ اللَّهِ مُبَارَكَةً طَيِّبَةً ۚ كَذَٰلِكَ يُبَيِّنُ اللَّهُ لَكُمُ الْآيَاتِ لَعَلَّكُمْ تَعْقِلُونَ ﴿٦٢﴾ ع

ମିଳିତଭାବରେ ଖାଅ ବା ପୃଥକ୍ ଭାବରେ ଖାଅ, ତୁମମାନଙ୍କର କୌଣସି ଦୋଷ ନାହିଁ; ଅତଏବ ଯେତେବେଳେ ତୁମେମାନେ ଗୃହରେ ପ୍ରବେଶ କର, ସେତେବେଳେ ତୁମ ଆତ୍ମୀୟସ୍ୱଜନ ବା ବନ୍ଧୁମାନଙ୍କୁ 'ସଲାମ' କର; ଏହା ଅଲ୍ଲାହ୍‌ଙ୍କ ତରଫରୁ ଏକ କଲ୍ୟାଣକାରୀ ପବିତ୍ର ଆଶୀର୍ବାଦ ଅଟେ; ଏହିପରି ଅଲ୍ଲାହ୍ ନିଜର ଆଦେଶଗୁଡିକୁ ତୁମମାନଙ୍କୁ ସ୍ପଷ୍ଟଭାବରେ ବର୍ଣ୍ଣନା କରିଥା'ନ୍ତି ଯେପରି କି ତୁମେମାନେ ବୁଦ୍ଧିମତା ସହକାରେ କାର୍ଯ୍ୟ କରିବ ।

ରୁ : ୯

إِنَّمَا الْمُؤْمِنُونَ الَّذِينَ آمَنُوا بِاللَّهِ وَرَسُولِهِ وَإِذَا كَانُوا مَعَهُ عَلَىٰ أَمْرٍ جَامِعٍ لَّمْ يَذْهَبُوا حَتَّىٰ يَسْتَأْذِنُوهُ ۚ إِنَّ الَّذِينَ يَسْتَأْذِنُونَكَ أُولَٰئِكَ الَّذِينَ يُؤْمِنُونَ بِاللَّهِ وَرَسُولِهِ ۚ فَإِذَا اسْتَأْذَنُوكَ لِبَعْضِ شَأْنِهِمْ فَأْذَن لِّمَن شِئْتَ مِنْهُمْ وَاسْتَغْفِرْ لَهُمُ اللَّهَ ۚ إِنَّ اللَّهَ غَفُورٌ رَّحِيمٌ ﴿٦٣﴾

୬୩. କେବଳ ସେହିମାନେ ବିଶ୍ୱାସକାରୀ ବୋଲାଇବାକୁ ଯୋଗ୍ୟ ଯେଉଁମାନେ ଅଲ୍ଲାହ୍ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କରନ୍ତି, ଏବଂ ଯେତେବେଳେ କୌଣସି ସାର୍ବଜନିକ କାର୍ଯ୍ୟ ଉପଲକ୍ଷେ ତାହାଙ୍କ (ଅର୍ଥାତ୍ ରସୁଲଙ୍କ) ନିକଟରେ ବସିଥାଆନ୍ତି, ସେତେବେଳେ ତାହାଙ୍କ ବିନା ଅନୁମତିରେ ଉଠି ଚାଲିଯାଆନ୍ତି ନାହିଁ; ଏବଂ ଯେଉଁମାନେ ଅନୁମତି ନେଇ ଯାଆନ୍ତି ସେହିମାନେ ହିଁ ଅଲ୍ଲାହ୍ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କରିଥାଆନ୍ତି; ସୁତରାଂ ଯେତେବେଳେ ସେମାନେ ନିଜର କୌଣସି ଜରୁରି କାର୍ଯ୍ୟ ଉପଲକ୍ଷେ ତୁମର ଅନୁମତି ପ୍ରାର୍ଥନା କରନ୍ତି, ସେତେବେଳେ ତୁମେ ସେମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା କର, ତାହାକୁ ଅନୁମତି ପ୍ରଦାନ କର, ଏବଂ ସେମାନଙ୍କ ପାଇଁ ଅଲ୍ଲାହ୍‌ଙ୍କ ଠାରୁ କ୍ଷମା ପ୍ରାର୍ଥନା କର; ଏବଂ ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

لَا تَجْعَلُوا دُعَاءَ الرَّسُولِ بَيْنَكُمْ كَدُعَاءِ بَعْضِكُم بَعْضًا ۚ قَدْ يَعْلَمُ اللَّهُ الَّذِينَ يَتَسَلَّلُونَ مِنكُمْ لِوَاذًا ۚ فَلْيَحْذَرِ الَّذِينَ يُخَالِفُونَ عَنْ أَمْرِهِ أَن تُصِيبَهُمْ فِتْنَةٌ أَوْ يُصِيبَهُمْ عَذَابٌ أَلِيمٌ ﴿٦٤﴾

୬୪. (ହେ ବିଶ୍ୱାସକାରୀମାନେ !) ତୁମେମାନେ ଏପରି ମନେକର ନାହିଁ ଯେ ରସୁଲ ତୁମମାନଙ୍କ ମଧ୍ୟରୁ କାହାରିକୁ ଡାକିବା ତୁମେମାନେ ପରସ୍ପରକୁ ଡାକିବା ସହିତ ସମାନ; ତୁମମାନଙ୍କ ମଧ୍ୟରୁ ଯେଉଁମାନେ (ଆଲୋଚନା ସ୍ଥଳରୁ) ଲୁଚି ପଳାଇ ଯାଆନ୍ତି ସେମାନଙ୍କୁ ଅଲ୍ଲାହ୍ ଭଲରୂପେ ଜାଣନ୍ତି; ସୁତରାଂ ଯେଉଁମାନେ ତାହାଙ୍କ ଆଦେଶର ବିରୁଦ୍ଧାଚରଣ କରନ୍ତି ସେମାନେ ସତର୍କ ହେବା ଉଚିତ ଯେ ଅଲ୍ଲାହ୍‌ଙ୍କ ତରଫରୁ ସେମାନଙ୍କ ପ୍ରତି କୌଣସି ବିପଦ ପହଞ୍ଚି ନ ଯାଉ ବା ସେମାନଙ୍କ ପ୍ରତି କୌଣସି ଯନ୍ତ୍ରଣାଦାୟକ ଶାସ୍ତି ଉପସ୍ଥିତ ହୋଇ ନ ଯାଉ ।

أَلَا إِنَّ لِلَّهِ مَا فِي السَّمَاوَاتِ وَالْأَرْضِ ۖ قَدْ يَعْلَمُ مَا أَنتُمْ عَلَيْهِ وَيَوْمَ يُرْجَعُونَ إِلَيْهِ فَيُنَبِّئُهُم بِمَا عَمِلُوا ۗ وَاللَّهُ بِكُلِّ شَيْءٍ عَلِيمٌ ﴿٦٥﴾ ع

୬୫. ଶୁଣ ! ଯାହାକିଛି ଆକାଶ ଓ ପୃଥିବୀରେ ରହିଅଛି ସେସବୁ ଅଲ୍ଲାହ୍‌ଙ୍କର; ବାସ୍ତବିକ ସେ (ଅଲ୍ଲାହ୍) ତୁମମାନଙ୍କ ଅବସ୍ଥା ଭଲରୂପେ ଜାଣନ୍ତି; ଏବଂ ଯେଉଁଦିନ ସେମାନଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆଯିବ, ସେମାନେ ଯାହାକିଛି କରିଛନ୍ତି ସେ ସେମାନଙ୍କୁ ତାହା ଜଣାଇ ଦେବେ; ଏବଂ ଅଲ୍ଲାହ୍ ସକଳ ବିଷୟକୁ ଉତ୍ତମରୂପେ ଜାଣନ୍ତି ।

سُوْرَةُ الْفُرْقَانِ مَكِّيَّةٌ (٢٥)

# ଅଲ – ଫୁରକାନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୭୮ ଟି ଆୟତ ଓ ୬ ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ସେ ହିଁ ପରମ ମଙ୍ଗଳମୟ, ଯେ ନିଜ ଭକ୍ତଙ୍କ ପ୍ରତି ଫୁରକାନ[୧] ଅବତୀର୍ଣ୍ଣ କରିଛନ୍ତି, ଯଦ୍ଦ୍ୱାରା କି ସେ ସମସ୍ତ ଜଗତ ସକାଶେ ସଚେତକ ହେବେ ।

تَبٰرَكَ الَّذِيْ نَزَّلَ الْفُرْقَانَ عَلٰى عَبْدِهٖ لِيَكُوْنَ لِلْعٰلَمِيْنَ نَذِيْرَا ②

୩. ସେ (ହିଁ ଅଲ୍ଲାହ) ଯାହାଙ୍କ ନିୟନ୍ତ୍ରଣରେ ଆକାଶ ଓ ପୃଥିବୀର ଆଧିପତ୍ୟ ରହିଅଛି ଏବଂ ସେ କାହାକୁ ନିଜର ପୁତ୍ର ରୂପେ ଗ୍ରହଣ କରିନାହାନ୍ତି; ଏବଂ ତାହାଙ୍କର ଆଧିପତ୍ୟରେ କେହି ଅଂଶୀଦାର ନୁହନ୍ତି; ଏବଂ ସେ ହିଁ ସକଳ ବସ୍ତୁକୁ ସୃଷ୍ଟି କରିଛନ୍ତି, ଏବଂ ତାହା ପାଇଁ ଏକ ନିର୍ଦ୍ଦିଷ୍ଟ ସୀମା ନିରୂପଣ କରିଛନ୍ତି ।

الَّذِيْ لَهٗ مُلْكُ السَّمٰوٰتِ وَالْاَرْضِ وَلَمْ يَتَّخِذْ وَلَدًا وَّلَمْ يَكُنْ لَّهٗ شَرِيْكٌ فِي الْمُلْكِ وَخَلَقَ كُلَّ شَيْءٍ فَقَدَّرَهٗ تَقْدِيْرًا ③

୪. ଏବଂ ସେମାନେ ତାହାଙ୍କ ପରିବର୍ତ୍ତେ (ଏପରି) ଉପାସ୍ୟ ଗ୍ରହଣ କରିଛନ୍ତି ଯେଉଁମାନେ କିଛି ସୃଷ୍ଟି କରିପାରନ୍ତି ନାହିଁ ବରଂ ସେମାନେ ନିଜେ ସୃଷ୍ଟି କରା ହୋଇଛନ୍ତି ଏବଂ ଯେଉଁମାନଙ୍କର ନିଜର କୌଣସି ଲାଭ ବା କ୍ଷତି କରିପାରିବାର ଶକ୍ତି ନାହିଁ କି ସେମାନଙ୍କର ନିଜ ମୃତ୍ୟୁ ବା ଜୀବନ ବା ପୁନରୁତ୍‌ଥାନ ସଂକ୍ରାନ୍ତରେ କୌଣସି କ୍ଷମତା ନାହିଁ ।

وَاتَّخَذُوْا مِنْ دُوْنِهٖۤ اٰلِهَةً لَّا يَخْلُقُوْنَ شَيْـًٔا وَّهُمْ يُخْلَقُوْنَ وَلَا يَمْلِكُوْنَ لِاَنْفُسِهِمْ ضَرًّا وَّلَا نَفْعًا وَّلَا يَمْلِكُوْنَ مَوْتًا وَّلَا حَيٰوةً وَّلَا نُشُوْرًا ④

---

୧. ଅର୍ଥାତ୍ ତାହା ଏପରି ଶିକ୍ଷା ଯାହା ସତ୍ୟ ଓ ଅସତ୍ୟ ମଧ୍ୟରେ ଥିବା ପାର୍ଥକ୍ୟକୁ ସୁସ୍ପଷ୍ଟ କରିଦିଏ ।

୫. ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ଏହା ମିଥ୍ୟା ବ୍ୟତୀତ ଅନ୍ୟ କିଛି ନୁହେଁ ଯାହା ସେ ନିଜେ ରଚନା କରିଛନ୍ତି, ଓ ଏହାକୁ ରଚନା କରିବାରେ ଅନ୍ୟଲୋକମାନେ [1] ତାହାଙ୍କୁ ସାହାଯ୍ୟ କରିଛନ୍ତି;' ସୁତରାଂ ଏ ଲୋକମାନେ (ଏପରି କହି) ଏକ ମସ୍ତବଡ ଅନ୍ୟାୟ କରିଛନ୍ତି ଓ ଘୋର ମିଥ୍ୟା କହିଛନ୍ତି ।

وَقَالَ الَّذِينَ كَفَرُوا إِنْ هَٰذَا إِلَّا إِفْكٌ افْتَرَاهُ وَأَعَانَهُ عَلَيْهِ قَوْمٌ آخَرُونَ ۖ فَقَدْ جَاءُوا ظُلْمًا وَزُورًا ٥

୬. ଏବଂ ସେମାନେ କହନ୍ତି, "ଏହା (ଅର୍ଥାତ୍ ପବିତ୍ର କୋରାନ) ପୁରାତନ କାହାଣୀ, ଯାହା ସେ ଅନ୍ୟ କାହାରି ସାହାଯ୍ୟରେ) ଲେଖାଇ ନେଇଛନ୍ତି; ଏବଂ ବର୍ତ୍ତମାନ ତାହା ସକାଳେ ଓ ସନ୍ଧ୍ୟାରେ ତାହାଙ୍କ ନିକଟରେ ପାଠ କରାଯାଉଛି (ଯେପରିକି ସେ କୋରାନ ଗ୍ରନ୍ଥକୁ ଉତ୍ତମ ରୂପେ ଲେଖାଇ ପାରିବେ) ।

وَقَالُوا أَسَاطِيرُ الْأَوَّلِينَ اكْتَتَبَهَا فَهِيَ تُمْلَىٰ عَلَيْهِ بُكْرَةً وَأَصِيلًا ٦

୭. ତୁମେ କୁହ, "ସେ (ଅଲ୍ଲାହ) ହିଁ ଏହାକୁ ଅବତୀର୍ଣ୍ଣ କରିଛନ୍ତି ଯେ ଆକାଶ ଓ ପୃଥିବୀର ରହସ୍ୟ ସଂକ୍ରାନ୍ତରେ ଅବଗତ ଅଛନ୍ତି; ବାସ୍ତବିକ ସେ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।"

قُلْ أَنْزَلَهُ الَّذِي يَعْلَمُ السِّرَّ فِي السَّمَاوَاتِ وَالْأَرْضِ ۚ إِنَّهُ كَانَ غَفُورًا رَحِيمًا ٧

୮. ଏବଂ ସେମାନେ କହନ୍ତି, " ଏ କିପରି ରସୁଲ ଯେ କି ଖାଦ୍ୟ ମଧ୍ୟ ଖାଉଛନ୍ତି ଓ ବଜାରରେ ମଧ୍ୟ ବୁଲୁଛନ୍ତି ? କାହିଁକି ତାଙ୍କ ନିକଟକୁ ଦେବଦୂତ ପ୍ରେରିତ ହୋଇ ନାହାନ୍ତି ଯେ କି ତାହାଙ୍କ ସହିତ ମିଶି ଲୋକମାନଙ୍କୁ ସତର୍କ କରାନ୍ତେ ?"

وَقَالُوا مَالِ هَٰذَا الرَّسُولِ يَأْكُلُ الطَّعَامَ وَيَمْشِي فِي الْأَسْوَاقِ ۙ لَوْلَا أُنْزِلَ إِلَيْهِ مَلَكٌ فَيَكُونَ مَعَهُ نَذِيرًا ٨

୯. "ଅଥବା ତାହାଙ୍କ ନିକଟକୁ ଧନ ଭଣ୍ଡାର ପ୍ରେରିତ ହୋଇଥା'ନ୍ତା, ବା ତାହାଙ୍କର ଏପରି ଏକ ଉଦ୍ୟାନ ଥା'ନ୍ତା ଯହିଁରୁ ସେ (ଫଳ) ଖାଉଥା'ନ୍ତେ;" ଏବଂ ଅତ୍ୟାଚାରୀମାନେ କହନ୍ତି, "ତୁମେମାନେ ଏପରି ଜଣେ ବ୍ୟକ୍ତିର ଅନୁସରଣ କରୁଅଛ ଯାହାକୁ ଖାଦ୍ୟ ଖୁଆ ଯାଉଅଛି [2] ।"

أَوْ يُلْقَىٰ إِلَيْهِ كَنْزٌ أَوْ تَكُونُ لَهُ جَنَّةٌ يَأْكُلُ مِنْهَا ۚ وَقَالَ الظَّالِمُونَ إِنْ تَتَّبِعُونَ إِلَّا رَجُلًا مَسْحُورًا ٩

୧୦. ଦେଖ ! ସେମାନେ ତୁମ୍ଭ ସମ୍ବନ୍ଧରେ କିପରି କଥାମାନ ଗଢୁଛନ୍ତି; ଏବଂ ସେମାନେ ପଥଭ୍ରଷ୍ଟ ହୋଇସାରିଛନ୍ତି ; ସୁତରାଂ ସେମାନେ (ଉଚିତ କଥା କହିବାପାଇଁ) କୌଣସି ପଥ ପାଉ ନାହାନ୍ତି ।

انْظُرْ كَيْفَ ضَرَبُوا لَكَ الْأَمْثَالَ فَضَلُّوا فَلَا يَسْتَطِيعُونَ سَبِيلًا ١٠ ع

[1] ଏହି ଆରୋପ ସମ୍ବନ୍ଧରେ ପବିତ୍ର କୋରାନରେ ଅନ୍ୟତ୍ର ଉତ୍ତର ଦିଆଯାଇଛି ଯେ ଯଦି ତୁମ ପକ୍ଷରେ ସମ୍ଭବ ତେବେ ପବିତ୍ର କୋରାନର ଅନୁରୂପ, ଏପରିକି ଏହାର ଯେକୌଣସି ସୁରା ବା ଆୟତର ଅନୁରୂପ, ରଚନା କର । ତୁମ ସାହାଯ୍ୟାର୍ଥେ ସବୁ ମଣିଷ ଓ ଜିନ୍ନମାନଙ୍କୁ ତୁମେମାନେ ନିୟୋଜିତ କଲେ ମଧ୍ୟ ବିଫଳ ହେବ ।

[2] 'ମସହୁର' ଅର୍ଥ ଏପରି ବ୍ୟକ୍ତି ଯାହାକୁ ଭୋଜନ ଅର୍ପଣ କରାଯାଏ, ଅର୍ଥାତ୍ ଲୋକମାନେ ଭିକ୍ଷ ଦେବା ଉଦ୍ଦେଶ୍ୟରେ ତାହାଙ୍କୁ ସାହାଯ୍ୟ କରିଥା'ନ୍ତି ।

ରୁ: ୨

୧୧. ସେ ହି ମଙ୍ଗଳମୟ ଅଲ୍ଲାହ; ସେ ଇଚ୍ଛା କଲେ ତୁମପାଇଁ ତାହା (ଅର୍ଥାତ୍ ସେମାନଙ୍କ କଳ୍ପିତ ଉଦ୍ୟାନ)ଠାରୁ ଅଧିକ ଉତ୍ତମ ଉଦ୍ୟାନମାନ [୧] ସୃଷ୍ଟି କରି ଦେବେ ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥିବ, ଓ ତୁମପାଇଁ ସୁଉଚ୍ଚ ପ୍ରାସାଦ ନିର୍ମାଣ କରିଦେବେ ।

تَبٰرَكَ الَّذِيْٓ اِنْ شَآءَ جَعَلَ لَكَ خَيْرًا مِّنْ ذٰلِكَ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ ۙ وَيَجْعَلْ لَّكَ قُصُوْرًا ﴿۱۱﴾

୧୨. ବାସ୍ତବତା ଏହି ଯେ ସେମାନେ ସେହି (ପ୍ରଳୟ) ସମୟକୁ ଅସ୍ୱୀକାର କରୁଛନ୍ତି, ଏବଂ ଯେଉଁମାନେ ଏହି (ପ୍ରଳୟ) ସମୟକୁ ଅସ୍ୱୀକାର କରନ୍ତି ଆମ୍ଭେ ସେମାନଙ୍କ ସକାଶେ ଏକ ଜ୍ୱଳନ୍ତ ଅଗ୍ନିର ଶାସ୍ତି ପ୍ରସ୍ତୁତ କରି ରଖିଅଛୁ ।

بَلْ كَذَّبُوْا بِالسَّاعَةِ ۣ وَاَعْتَدْنَا لِمَنْ كَذَّبَ بِالسَّاعَةِ سَعِيْرًا ﴿۱۲﴾

୧୩. ଯେତେବେଳେ ସେ (ନରକ) ସେମାନଙ୍କୁ ଦୂରରୁ ଦେଖିବ, ସେତେବେଳେ ସେମାନେ ତାହାର ପ୍ରଚଣ୍ଡ ଓ (ଆସନ୍ନ) ବିପଜ୍ଜନକ ଗର୍ଜନ ଶୁଣିବେ ।

اِذَا رَاَتْهُمْ مِّنْ مَّكَانٍۭ بَعِيْدٍ سَمِعُوْا لَهَا تَغَيُّظًا وَّزَفِيْرًا ﴿۱۳﴾

୧୪. ଏବଂ ଯେତେବେଳେ ସେମାନେ ଏହାର ଏକ ସଂକୀର୍ଣ୍ଣ ସ୍ଥାନରେ ଦଉଡ଼ିରେ ବନ୍ଧାହୋଇ ନିକ୍ଷିପ୍ତ ହେବେ, ସେତେବେଳେ ସେମାନେ ନିଜର ମୃତ୍ୟୁ କାମନା କରିବେ ।

وَاِذَآ اُلْقُوْا مِنْهَا مَكَانًا ضَيِّقًا مُّقَرَّنِيْنَ دَعَوْا هُنَالِكَ ثُبُوْرًا ﴿۱۴﴾

୧୫. (ସେତେବେଳେ ଦେବଦୂତମାନେ ସେମାନଙ୍କୁ କହିବେ) ଆଜି ତୁମେମାନେ ଥରେ ମରିବାପାଇଁ କାମନା କର ନାହିଁ; ବରଂ ବାରମ୍ବାର ମରିବା ପାଇଁ ଇଚ୍ଛା କର (କାରଣ ତୁମମାନଙ୍କ ପ୍ରତି ବାରମ୍ବାର ଶାସ୍ତି ଉପସ୍ଥିତ ହେବ)।

لَا تَدْعُوا الْيَوْمَ ثُبُوْرًا وَّاحِدًا وَّادْعُوْا ثُبُوْرًا كَثِيْرًا ﴿۱۵﴾

୧୬. ତୁମେ ସେମାନଙ୍କୁ କୁହ, "ଏ (ପରିଣାମ) ଉତ୍ତମ ଅଟେ କି ଚିରସ୍ଥାୟୀ ବୈକୁଣ୍ଠ (ଉତ୍ତମ ଅଟେ) ଯାହା ସଂକ୍ରାନ୍ତରେ ଧର୍ମଭୀରୁମାନଙ୍କୁ ପ୍ରତିଶ୍ରୁତି ଦିଆଯାଇଛି ? ତାହା ସେମାନଙ୍କ ପାଇଁ (ଉଚିତ) ପୁରସ୍କାର ଓ ଅନ୍ତିମ ବାସସ୍ଥାନ ହେବ ।"

قُلْ اَذٰلِكَ خَيْرٌ اَمْ جَنَّةُ الْخُلْدِ الَّتِيْ وُعِدَ الْمُتَّقُوْنَ ۭ كَانَتْ لَهُمْ جَزَاۗءً وَّمَصِيْرًا ﴿۱۶﴾

---

୧. ଏପରି ହେଲା ଯେ ଯେଉଁମାନେ ହଜରତ ମହମ୍ମଦଙ୍କର ସାଧାରଣ ସେବକ ଥିଲେ ସେମାନଙ୍କୁ ମଧ୍ୟ ପାରସ୍ୟ ଓ ରୋମ ସାମ୍ରାଜ୍ୟର ବିଭିନ୍ନ ଉଦ୍ୟାନ ପ୍ରାପ୍ତ ହୋଇଥିଲା ।

୧୭. ସେମାନେ ଯାହା ଇଚ୍ଛା କରିବେ ତାହା ସେଠାରେ ପାଇବେ; ସେମାନେ ସେଠାରେ ସର୍ବଦା ବାସ କରିବେ; ଏହା ଏପରି ଏକ ପ୍ରତିଶ୍ରୁତି ଯାହାକୁ ପୂରଣ କରିବା ତୁମ୍ଭ ପାଳନକର୍ତ୍ତାଙ୍କ ପକ୍ଷରେ ଅନିବାର୍ଯ୍ୟ ଅଟେ ।

لَهُمْ فِيهَا مَا يَشَآءُونَ خٰلِدِينَ ۚ كَانَ عَلٰى رَبِّكَ وَعْدًا مَّسْـُٔولًا ﴿١٧﴾

୧୮. ଏବଂ ଯେଉଁଦିନ ସେ ସେମାନଙ୍କୁ ଓ ସେମାନଙ୍କର ଅସତ୍ୟ ଉପାସ୍ୟମାନଙ୍କୁ ନିଜ ସମୀପରେ ଏକତ୍ରିତ କରାଇ ପ୍ରଶ୍ନ କରିବେ, "କ'ଣ ତୁମେମାନେ ଆମ୍ଭର ଏହି ଭକ୍ତମାନଙ୍କୁ ପଥଭ୍ରଷ୍ଟ କରାଇଥିଲ, ବା ସେମାନେ ନିଜେ ସତ୍‌ପଥରୁ ବିଚ୍ୟୁତ ହୋଇଥିଲେ ?"

وَيَوْمَ يَحْشُرُهُمْ وَمَا يَعْبُدُونَ مِنْ دُونِ اللّٰهِ فَيَقُولُ ءَاَنْتُمْ اَضْلَلْتُمْ عِبَادِي هٰٓؤُلَآءِ اَمْ هُمْ ضَلُّوا السَّبِيلَ ﴿١٨﴾

୧୯. (ସେତେବେଳେ) ସେମାନେ ଉତ୍ତର ଦେବେ, "ତୁମ୍ଭେ ପବିତ୍ର; ତୁମ୍ଭ ପରିବର୍ତ୍ତେ ଅନ୍ୟକୁ ନିଜର ସାହାଯ୍ୟକାରୀ ଭାବେ ଗ୍ରହଣ କରିବାକୁ ଆମମାନଙ୍କର କୌଣସି ଅଧିକାର ନ ଥିଲା; କିନ୍ତୁ ତୁମ୍ଭେ ସେ (ଲୋକ) ମାନଙ୍କୁ ଓ ସେମାନଙ୍କ ପୂର୍ବପୁରୁଷମାନଙ୍କୁ ସାଂସାରିକ ସୁଖ-ସମ୍ପଦ ପ୍ରଦାନ କରିଥିଲ ଯଦ୍ଦ୍ୱାରା ସେମାନେ (ତୁମ୍ଭର) ସ୍ମରଣକୁ ପାସୋରି ଦେଇଥିଲେ ଏବଂ ଧ୍ୱଂସାଭିମୁଖୀ ସମ୍ପ୍ରଦାୟ ହୋଇଗଲେ ।"

قَالُوا سُبْحٰنَكَ مَا كَانَ يَنْبَغِي لَنَآ اَنْ نَّتَّخِذَ مِنْ دُونِكَ مِنْ اَوْلِيَآءَ وَلٰكِنْ مَّتَّعْتَهُمْ وَاٰبَآءَهُمْ حَتّٰى نَسُوا الذِّكْرَ ۚ وَكَانُوا قَوْمًا بُورًا ﴿١٩﴾

୨୦. ସୁତରାଂ (ଆଲ୍ଲାହ୍ ଅବିଶ୍ୱାସକାରୀମାନଙ୍କୁ କହିବେ), "ଏହି ଅସତ୍ୟ ଉପାସ୍ୟମାନେ ତୁମମାନଙ୍କର କଥାକୁ ମିଥ୍ୟା ସାବ୍ୟସ୍ତ କରିଛନ୍ତି : ତେଣୁ ତୁମେମାନେ ଆଜି ଶାସ୍ତିକୁ ପରିହାର କରିପାରିବ ନାହିଁ କି କୌଣସି ସାହାଯ୍ୟ ହାସଲ କରିପାରିବ ନାହିଁ; ଏବଂ ତୁମମାନଙ୍କ ମଧ୍ୟରେ ଯେ ଅତ୍ୟାଚାରୀ ଆମ୍ଭେ ତାହାକୁ କଠୋର ଶାସ୍ତି ପ୍ରଦାନ କରିବୁ ।"

فَقَدْ كَذَّبُوكُمْ بِمَا تَقُولُونَ ۙ فَمَا تَسْتَطِيعُونَ صَرْفًا وَّلَا نَصْرًا ۚ وَمَنْ يَّظْلِمْ مِّنْكُمْ نُذِقْهُ عَذَابًا كَبِيرًا ﴿٢٠﴾

୨୧. ଏବଂ ତୁମ୍ଭ ପୂର୍ବରୁ ଆମ୍ଭେ ଯେତେ ରସୁଲ ପ୍ରେରଣ କରିଥିଲୁ ସେମାନେ ସମସ୍ତେ ଖାଦ୍ୟ ଖାଉଥିଲେ ଓ ବଜାରରେ ଚଳପ୍ରଚଳ ହେଉଥିଲେ; ଏବଂ ଆମ୍ଭେ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ପାଇଁ ପରୀକ୍ଷାର ମାଧ୍ୟମ କରିଅଛୁ, (ଏହା ଜାଣିବା ପାଇଁ) ଯେ କ'ଣ ତୁମେ (ମୁସଲମାନ) ମାନେ ଧୈର୍ଯ୍ୟ ଧାରଣ କରି ପାରୁଛ (କି ନାହିଁ) ? ଏବଂ (ହେ ମୁସଲମାନମାନେ !) ତୁମମାନଙ୍କର ପାଳନକର୍ତ୍ତା (ପରିସ୍ଥିତିକୁ) ଉତ୍ତମ ରୂପେ ଲକ୍ଷ୍ୟ କରିଥା'ନ୍ତି ।

وَمَآ اَرْسَلْنَا قَبْلَكَ مِنَ الْمُرْسَلِينَ اِلَّآ اِنَّهُمْ لَيَاْكُلُونَ الطَّعَامَ وَيَمْشُونَ فِي الْاَسْوَاقِ ۗ وَجَعَلْنَا بَعْضَكُمْ لِبَعْضٍ فِتْنَةً ۗ اَتَصْبِرُونَ ۚ وَكَانَ رَبُّكَ بَصِيرًا ﴿٢١﴾ ع

## ଭାଗ—୧୯

ରୁ:୩

୨୨. ଏବଂ ଯେଉଁମାନେ ଆମ୍ଭ ସହିତ ସାକ୍ଷାତ୍ କରିବା ଆଶା କରନ୍ତି ନାହିଁ, (ସେମାନେ) କହନ୍ତି, "କାହିଁକି ଆମମାନଙ୍କ ନିକଟକୁ ଦେବଦୂତମାନେ ପ୍ରେରିତ ହୋଇନାହାନ୍ତି ବା କାହିଁକି ଆମେମାନେ ନିଜ ପାଳନକର୍ତ୍ତାଙ୍କୁ ସ୍ୱଚକ୍ଷୁରେ ଦେଖୁନାହୁଁ ?" ସେମାନେ ନିଜ ମନ ଭିତରେ ନିଜକୁ ଖୁବ୍ ବଡ଼ ମନେ କରୁଛନ୍ତି ଓ ବିଦ୍ରୋହ କରିବାରେ ବହୁ ଦୂର ଅଗ୍ରସର ହୋଇଛନ୍ତି ।

وَقَالَ الَّذِينَ لَا يَرْجُونَ لِقَاءَنَا لَوْلَا أُنزِلَ عَلَيْنَا الْمَلَائِكَةُ أَوْ نَرَىٰ رَبَّنَا ۗ لَقَدِ اسْتَكْبَرُوا فِي أَنفُسِهِمْ وَعَتَوْ عُتُوًّا كَبِيرًا ﴿٢١﴾

୨୩. (କ'ଣ ସେମାନେ ଜାଣନ୍ତି ନାହିଁ ଯେ) ଯେଉଁଦିନ (ସେମାନେ) ଦେବଦୂତମାନଙ୍କୁ ଦେଖିବେ ସେଦିନ ଅପରାଧୀମାନଙ୍କୁ କୌଣସି ସୁସମ୍ବାଦ ପ୍ରାପ୍ତ ହେବ ନାହିଁ ; ଏବଂ (ସେମାନେ ବିଚଳିତ ହୋଇ) କହିବେ, "ଆମମାନଙ୍କଠାରୁ ଦୂରେଇ ରହ ;"

يَوْمَ يَرَوْنَ الْمَلَائِكَةَ لَا بُشْرَىٰ يَوْمَئِذٍ لِّلْمُجْرِمِينَ وَيَقُولُونَ حِجْرًا مَّحْجُورًا ﴿٢٢﴾

୨୪. ଏବଂ ସେମାନେ କରିଥିବା ପ୍ରତ୍ୟେକ ପ୍ରକାରର କର୍ମ ପ୍ରତି ଆମ୍ଭେ ଧ୍ୟାନ ଦେଲୁ ଏବଂ ତାହାକୁ ବିକ୍ଷିପ୍ତ କରି ବାୟୁରେ ଭାସମାନ ଅଣୁ [୧] ସଦୃଶ କରିଦେଲୁ ।

وَقَدِمْنَا إِلَىٰ مَا عَمِلُوا مِنْ عَمَلٍ فَجَعَلْنَاهُ هَبَاءً مَّنثُورًا ﴿٢٣﴾

୨୫. ସେଦିନ ବୈକୁଣ୍ଠବାସୀମାନେ ବାସସ୍ଥାନ ଦୃଷ୍ଟିରୁ ଭଲରେ ଥିବେ ଓ (ସେମାନେ) ବିଶ୍ରାମସ୍ଥାନ ଦୃଷ୍ଟିରୁ ମଧ୍ୟ ଉତ୍ତମ ସ୍ଥାନରେ ଥିବେ ।

أَصْحَابُ الْجَنَّةِ يَوْمَئِذٍ خَيْرٌ مُّسْتَقَرًّا وَأَحْسَنُ مَقِيلًا ﴿٢٤﴾

୨୬. ଏବଂ (ସେହିଦିନକୁ ସ୍ମରଣ କର) ଯେଉଁଦିନ ଆକାଶ ବିଦୀର୍ଣ୍ଣ ହେବ ଏବଂ ମେଘମାଳା ମସ୍ତକ ଉପରେ ଭାସମାନ (ଅବସ୍ଥାରେ) ଥିବ ଓ ଦେବଦୂତମାନଙ୍କୁ ବାରମ୍ବାର ଅବତୀର୍ଣ୍ଣ କରାହେବ,

وَيَوْمَ تَشَقَّقُ السَّمَاءُ بِالْغَمَامِ وَنُزِّلَ الْمَلَائِكَةُ تَنزِيلًا ﴿٢٥﴾

୨୭. ସେଦିନ ଆଧିପତ୍ୟ ପ୍ରକୃତରେ ଦୟାବାନ୍ (ଅଲ୍ଲାହ)ଙ୍କର ନିୟନ୍ତ୍ରଣାଧୀନ ଥିବା ଦୃଷ୍ଟିଗୋଚର ହେବ, ଏବଂ ଅବିଶ୍ୱାସକାରୀମାନଙ୍କ ସକାଶେ (ସେହି ଦିନ) ଅତ୍ୟନ୍ତ କଠୋର ହେବ ।

الْمُلْكُ يَوْمَئِذٍ الْحَقُّ لِلرَّحْمَٰنِ ۚ وَكَانَ يَوْمًا عَلَى الْكَافِرِينَ عَسِيرًا ﴿٢٦﴾

୨୮. ଏବଂ ସେଦିନ ଅତ୍ୟାଚାରୀ ନିଜ ହାତକୁ କାମୁଡ଼ି କହିବ, "ହାୟ ! ମୁଁ ରସୁଲଙ୍କର ପଥ ଅନୁସରଣ କରିଥାଆନ୍ତି କି !"

وَيَوْمَ يَعَضُّ الظَّالِمُ عَلَىٰ يَدَيْهِ يَقُولُ يَا لَيْتَنِي اتَّخَذْتُ مَعَ الرَّسُولِ سَبِيلًا ﴿٢٧﴾

---

୧. ମୂଳ ଶବ୍ଦ 'ହବାଅନ୍' ଅର୍ଥ ହାଲୁକା ଓ ସୂକ୍ଷ୍ମ ଅଣୁ ଯାହାକି ବେଳେ ବେଳେ ପବନରେ ଉଡୁଥିବା ଦେଖାଯାଏ । ଅତଏବ ଏହି ଆୟତର ତାତ୍ପର୍ଯ୍ୟ ହେଉଛି ଯେ ଅଲ୍ଲାହ ସେମାନଙ୍କୁ ଏତେ ଓ ଏପରି ଚୂର୍ଣ୍ଣ ଦେବେ ଯେ ତାଙ୍କର ଚୂର୍ଣ୍ଣ ବିଚୂର୍ଣ୍ଣ କ୍ଷୁଦ୍ରାଂଶଗୁଡ଼ିକ ପବନରେ ଉଡ଼ିବାକୁ ଲାଗିବ ଓ ସେମାନଙ୍କ ବନ୍ଧୁମାନେ ସେଗୁଡ଼ିକୁ ଏକାଠି କରି ପାରିବେ ନାହିଁ ।

يٰوَيْلَتٰى لَيْتَنِىْ لَمْ اَتَّخِذْ فُلَانًا خَلِيْلًا ﴿٢٩﴾

୨୯. "ହେ ଦୁର୍ଭାଗ୍ୟ ! ମୁଁ ଅମୁକ (ବ୍ୟକ୍ତି)ଙ୍କୁ ବନ୍ଧୁଭାବେ ଗ୍ରହଣ କରି ନ ଥା'ନ୍ତି କି ?"

لَقَدْ اَضَلَّنِىْ عَنِ الذِّكْرِ بَعْدَ اِذْ جَآءَنِىْ ؕ وَكَانَ الشَّيْطٰنُ لِلْاِنْسَانِ خَذُوْلًا ﴿٣٠﴾

୩୦. "ଯେଉଁ ଅନୁସ୍ମାରକ ମୋ ନିକଟକୁ (ରସୁଲଙ୍କ ଜରିଆରେ) ଆସିଥିଲା ସେ ତହିଁରୁ ମୋତେ ଅମନୋଯୋଗୀ କରାଇଥିଲା ;" ଏବଂ ସଇତାନ ପରିଶେଷରେ ମନୁଷ୍ୟକୁ ଏକାକୀ ଛାଡ଼ି ଚାଲିଯାଏ ।

وَقَالَ الرَّسُوْلُ يٰرَبِّ اِنَّ قَوْمِى اتَّخَذُوْا هٰذَا الْقُرْاٰنَ مَهْجُوْرًا ﴿٣١﴾

୩୧. ଏବଂ ରସୁଲ କହିବେ, "ହେ ଆମର ପାଳନକର୍ତ୍ତା ! ଆମ ସମ୍ପ୍ରଦାୟ ତ ଏହି କୋରାନକୁ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରିଦେଇଅଛି ।"

وَكَذٰلِكَ جَعَلْنَا لِكُلِّ نَبِىٍّ عَدُوًّا مِّنَ الْمُجْرِمِيْنَ ؕ وَكَفٰى بِرَبِّكَ هَادِيًا وَّنَصِيْرًا ﴿٣٢﴾

୩୨. ଏବଂ ଏହିପରି ଭାବରେ ଆମ୍ଭେ ଅପରାଧୀମାନଙ୍କ ମଧ୍ୟରୁ ସମସ୍ତ ନବିଙ୍କ ପାଇଁ ଶତ୍ରୁ ସୃଷ୍ଟି କରିଅଛୁ ; ଏବଂ ତୁମ୍ଭର ପାଳନକର୍ତ୍ତା ସତ୍‌ପଥ ପ୍ରଦର୍ଶନ କରାଇବା ଓ ସାହାଯ୍ୟ ଦେବା ଦୃଷ୍ଟିରୁ ଯଥେଷ୍ଟ ।

وَقَالَ الَّذِيْنَ كَفَرُوْا لَوْلَا نُزِّلَ عَلَيْهِ الْقُرْاٰنُ جُمْلَةً وَّاحِدَةً ۛۚ كَذٰلِكَ ۛۚ لِنُثَبِّتَ بِهٖ فُؤَادَكَ وَرَتَّلْنٰهُ تَرْتِيْلًا ﴿٣٣﴾

୩୩. ଏବଂ ଅବିଶ୍ୱାସକାରୀମାନେ କହୁଛନ୍ତି, "କାହିଁକି କୋରାନକୁ ତାହାଙ୍କ (ଅର୍ଥାତ୍ ଏହି ନବିଙ୍କ) ପ୍ରତି ଏକସଙ୍ଗେ ଅବତୀର୍ଣ୍ଣ କରାଗଲା ନାହିଁ ?" ସେମାନଙ୍କ ବକ୍ତବ୍ୟ ଗୋଟିଏ ଦୃଷ୍ଟିରୁ ଠିକ୍ (କିନ୍ତୁ ଆମ୍ଭେ ଏହାକୁ ବିଭିନ୍ନ ଅଧ୍ୟାୟରେ ଓ ବିଭିନ୍ନ ସମୟରେ ଏଥିଯୋଗୁଁ (ଅବତୀର୍ଣ୍ଣ କରିଅଛୁ) ଯେ ଆମ୍ଭେ ଏହା ଜରିଆରେ ତୁମ୍ଭର ହୃଦୟକୁ ସୁଦୃଢ଼[1] କରିବୁ ଏବଂ ଆମ୍ଭେ ଏହାକୁ ସୁବିନ୍ୟସ୍ତ କରିଅଛୁ ।

وَلَا يَاْتُوْنَكَ بِمَثَلٍ اِلَّا جِئْنٰكَ بِالْحَقِّ وَاَحْسَنَ تَفْسِيْرًا ﴿٣٤﴾

୩୪. ଏବଂ (ତୁମ୍ଭ କଥାର ଖଣ୍ଡନ ପାଇଁ) ସେମାନେ ଯାହାକିଛି ବି କଥା କହନ୍ତି ଆମ୍ଭେ ତାହାର ଉତ୍ତରରେ ଏକ ଯଥାର୍ଥ କଥା ବର୍ଣ୍ଣନା କରିଦେଉ ଏବଂ ତାହାର ଉତ୍ତମ କାରଣ ଦର୍ଶାଇ ଦେଉ ।

اَلَّذِيْنَ يُحْشَرُوْنَ عَلٰى وُجُوْهِهِمْ اِلٰى جَهَنَّمَ ۙ اُولٰٓئِكَ شَرٌّ مَّكَانًا وَّاَضَلُّ سَبِيْلًا ﴿٣٥﴾ ع

୩୫. ଯେଉଁ ଲୋକମାନେ ନିଜ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ ନରକ ଆଡ଼କୁ ନିଆଯିବେ ସେମାନଙ୍କ ବାସସ୍ଥାନ ଅତି ମନ୍ଦ ହେବ ଏବଂ ସେମାନେ ଅତ୍ୟନ୍ତ ପଥଭ୍ରଷ୍ଟ ହେବେ ।

---

୧. ପବିତ୍ର କୋରାନକୁ ଅଳ୍ପ ଅଳ୍ପ କରି ଅବତରଣ କରାଇବାର ଉଦ୍ଦେଶ୍ୟ ହେଉଛି ଯେ ପ୍ରଥମତଃ ସବୁ ମୁସଲମାନ ଏହାକୁ ସହଜରେ କଣ୍ଠସ୍ଥ କରି ପାରିବେ ଏବଂ ଦ୍ୱିତୀୟତଃ ଯେତେବେଳେ ଗୋଟିଏ ଅଧ୍ୟାୟରେ ବର୍ଣ୍ଣିତ ଭବିଷ୍ୟବାଣୀ ସତ୍ୟ ସାବ୍ୟସ୍ତ ହେଉଥିଲା ସେତେବେଳେ ଅନ୍ୟ ଅଧ୍ୟାୟରେ ଏ ବିଷୟରେ ସୂଚନା ଦିଆଯାଇ ପାରୁଥିଲା, ଫଳରେ ହଜରତ ମହମ୍ମଦ ଓ ତାଙ୍କ ଅନୁଗାମୀ ତଥା ସାଥୀମାନଙ୍କର ମନ ଆହୁରି ମଜଭୁତ ହୋଇ ଯାଉଥିଲା । ସବୁଗୁଡ଼ିକ ଅଧ୍ୟାୟ ଏକାଠି ଓ ଏକ ସମୟରେ ଅବତୀର୍ଣ୍ଣ ହୋଇଥିଲେ ଉପର ବର୍ଣ୍ଣିତ ଉଭୟ ଉଦ୍ଦେଶ୍ୟ ସଫଳ ହୋଇନଥା'ନ୍ତା ।

ରୁ:୪

୩୬. ଏବଂ ଆମେ ମୁସାଙ୍କୁ ଏକ (ସ୍ରୋତ ଧର୍ମୀ) ଗ୍ରନ୍ଥ ପ୍ରଦାନ କରିଥିଲୁ ଓ ଆମେ ତାହାଙ୍କ ସହିତ ତାଙ୍କ ଭାଇ ହାରୁନଙ୍କୁ ମଧ୍ୟ (ତାହାଙ୍କର) ସହକାରୀ ନିଯୁକ୍ତ କରି ପ୍ରେରଣ କରିଥିଲୁ ।

وَلَقَدْ اٰتَيْنَا مُوْسَى الْكِتٰبَ وَجَعَلْنَا مَعَهٗۤ اَخَاهُ هٰرُوْنَ وَزِيْرًا ﴿٣٦﴾

୩୭. ଏବଂ ଆମେ (ସେମାନଙ୍କୁ) କହିଥିଲୁ, "ତୁମେ ଦୁହେଁ ସେହି ସମ୍ପ୍ରଦାୟ ନିକଟକୁ ଗମନ କର ଯେଉଁମାନେ ଆମର ନିଦର୍ଶନଗୁଡ଼ିକୁ ଅସ୍ୱୀକାର କରିଛନ୍ତି ;" ତା'ପରେ (ସେମାନେ ଅଲ୍ଲାହଙ୍କର ବାଣୀ ପ୍ରଚାର କରିବା ପରେ) ଆମେ ସେ (ମିଥ୍ୟାବାଦୀ) ମାନଙ୍କୁ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରି ଦେଇଥିଲୁ ।

فَقُلْنَا اذْهَبَاۤ اِلَى الْقَوْمِ الَّذِيْنَ كَذَّبُوْا بِاٰيٰتِنَا ؕ فَدَمَّرْنٰهُمْ تَدْمِيْرًا ﴿٣٧﴾

୩୮. ଏବଂ ଯେତେବେଳେ ନୂହଙ୍କ ସମ୍ପ୍ରଦାୟ ରସୁଲମାନଙ୍କୁ ଅସ୍ୱୀକାର କରିଥିଲେ ଆମେ ସେତେବେଳେ ସେମାନଙ୍କୁ ଜଳମଗ୍ନ କରାଇଲୁ ଓ ଆମେ ସେମାନଙ୍କୁ ଲୋକମାନଙ୍କ ପାଇଁ ଏକ ନିଦର୍ଶନ କରିଦେଲୁ ; ଏବଂ ଆମେ ଅତ୍ୟାଚାରୀମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରି ରଖିଅଛୁ ।

وَقَوْمَ نُوْحٍ لَّمَّا كَذَّبُوا الرُّسُلَ اَغْرَقْنٰهُمْ وَجَعَلْنٰهُمْ لِلنَّاسِ اٰيَةً ؕ وَاَعْتَدْنَا لِلظّٰلِمِيْنَ عَذَابًا اَلِيْمًا ﴿٣٨﴾

୩୯. ଏବଂ ଆମେ ଆଦଙ୍କୁ ଓ ସମୁଦଙ୍କୁ ତଥା କୂପ ନିକଟରେ ବାସ କରୁଥିବା ଲୋକମାନଙ୍କୁ[୨] ଓ ସେମାନଙ୍କ ମଧ୍ୟବର୍ତ୍ତୀ କାଳରେ ବାସ କରୁଥିବା ଅନେକ ସମ୍ପ୍ରଦାୟଙ୍କୁ ମଧ୍ୟ (ଧ୍ୱଂସ କରିଥିଲୁ) ।

وَّعَادًا وَّثَمُوْدَاۡ وَاَصْحٰبَ الرَّسِّ وَقُرُوْنًا بَيْنَ ذٰلِكَ كَثِيْرًا ﴿٣٩﴾

୪୦. ଏବଂ ଆମେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ସମ୍ପ୍ରଦାୟକୁ ଦୃଷ୍ଟାନ୍ତ ଦେଇ ସତର୍କ କରିଥିଲୁ ଏବଂ (ଅବୁଝା ହେବାରୁ ସେ) ସମସ୍ତଙ୍କୁ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ କରିଥିଲୁ ।

وَكُلًّا ضَرَبْنَا لَهُ الْاَمْثَالَ ۫ وَكُلًّا تَبَّرْنَا تَتْبِيْرًا ﴿٤٠﴾

୪୧. ଏବଂ ଏ (ଅବିଶ୍ୱାସକାରୀ ମକ୍କାବାସୀ)ମାନେ ସେହି[୧] ଜନବସତି ପାର୍ଶ୍ୱଦେଇ ଯାତାୟାତ କରିଛନ୍ତି ଯାହା ଉପରେ ଆମେ ଏକ ପୀଡ଼ାଦାୟକ ବୃଷ୍ଟି କରିଥିଲୁ; କ'ଣ ସେମାନେ ଏହାକୁ (ଅର୍ଥାତ୍ ଏହି ଜନବସତିର ଧ୍ୱଂସାବଶେଷକୁ) ଲକ୍ଷ୍ୟ କରୁ ନାହାନ୍ତି ? ପ୍ରକୃତରେ ସେମାନେ ପୁନରୁତ୍‌ଥିତ ହେବାର ଆଶା ହିଁ କରୁ ନ ଥିଲେ

وَلَقَدْ اَتَوْا عَلَى الْقَرْيَةِ الَّتِيْۤ اُمْطِرَتْ مَطَرَ السَّوْءِ ؕ اَفَلَمْ يَكُوْنُوْا يَرَوْنَهَا ۚ بَلْ كَانُوْا لَا يَرْجُوْنَ نُشُوْرًا ﴿٤١﴾

---

୧. ଏ ସଂକ୍ରାନ୍ତରେ ଟୀକାକାରମାନଙ୍କ ମଧ୍ୟରେ ଅନେକ ମତ ପାର୍ଥକ୍ୟ ରହିଅଛି । କିନ୍ତୁ ଏହି ଆୟତରୁ ପ୍ରତୀତ ହେଉଛି ଯେ ଆଲୋଚ୍ୟ ସଂପ୍ରଦାୟ ସମୁଦ ସଂପ୍ରଦାୟର ଏକ ପରବର୍ତ୍ତୀ ସଂପ୍ରଦାୟ । 'ବହରେ ମୋହିତ୍' ନାମକ ପୁସ୍ତକରେ ଏହି ମତକୁ ସମର୍ଥନ କରାଯାଇଛି କାରଣ ଏଥିରେ ଇବ୍ନ ଅବ୍ବାସଙ୍କ ଉକ୍ତି ଲିପିବଦ୍ଧ ଅଛି । ତାଙ୍କ ମତରେ ଏହି ସଂପ୍ରଦାୟ ସମୁଦ ସଂପ୍ରଦାୟର ଅଂଶବିଶେଷ,ଯେହେତୁ ସମୁଦ ସଂପ୍ରଦାୟ ଆଦ ସଂପ୍ରଦାୟର ଶେଷାଂଶ, ସେଥିଲାଗି ଏହା ପ୍ରତୀତ ହେଉଛି ଯେ ହଜରତ ଇସମାଇଲଙ୍କ ବଂଶଧରମାନେ ଆରବ ଜଗତରେ ବ୍ୟାପିଯିବା ପୂର୍ବରୁ ଏମାନେ ନିଜର ସମୟ ବ୍ୟୟିତ କରିଛନ୍ତି । ଯେବେ ହଜରତ ଇସମାଇଲଙ୍କ ବଂଶଧରମାନେ ସାରା ଆରବରେ ବ୍ୟାପିଗଲେ ତେବେ ସେମାନେ ଉତ୍ତରକୁ ପାଲେଷ୍ଟାଇନ ଆଦିକୁ ଆଗେଇ ଚାଲିଲେ । ଏହି ତଥ୍ୟ ଧ୍ୱଂସାବଶେଷମାନଙ୍କରୁ ମଧ୍ୟ ପ୍ରମାଣିତ ହେଉଛି ।

୨. ଅର୍ଥାତ୍ ଲୁତ ସଂପ୍ରଦାୟ ।

୪୨. ଏବଂ ଯେତେବେଳେ ସେମାନେ ତୁମକୁ ଦେଖନ୍ତି ସେତେବେଳେ ତୁମକୁ କେବଳ ଏକ ପରିହାସର ସାମଗ୍ରୀ ମନେ କରନ୍ତି ; (ଏବଂ କହନ୍ତି), "କ'ଣ ଅଲ୍ଲାଃ ଏହି ଲୋକକୁ ରସୁଲ କରି ପ୍ରେରଣ କରିଛନ୍ତି ?"

وَإِذَا رَأَوْكَ إِنْ يَتَّخِذُونَكَ إِلَّا هُزُوًا ۖ أَهَٰذَا الَّذِي بَعَثَ اللَّهُ رَسُولًا ﴿٤٢﴾

୪୩. ଏବଂ ଯଦି ଆମେମାନେ ନିଜ ଉପାସ୍ୟମାନଙ୍କ ପ୍ରତି ଦୃଢ଼ତା ସହକାରେ ସଂଶ୍ଳିଷ୍ଟ ରହି ନ ଥା'ନ୍ତୁ, ତେବେ ଏ (ବ୍ୟକ୍ତି) ତ ଆମମାନଙ୍କୁ ବିଭ୍ରାନ୍ତ କରି ଦେଇଥା'ନ୍ତା ; ଏବଂ ଯେତେବେଳେ ସେମାନେ ଶାସ୍ତିକୁ (ସ୍ୱଚକ୍ଷୁରେ) ଦେଖିବେ, ସେତେବେଳେ ସେମାନେ ନିଶ୍ଚୟ ପ୍ରକୃତ ଘଟଣା ଜାଣି ପାରିବେ ଯେ କିଏ ନିଜ ପନ୍ଥାରେ ଅଧିକ ବିଭ୍ରାନ୍ତ ଥିଲା ।

إِنْ كَادَ لَيُضِلُّنَا عَنْ آلِهَتِنَا لَوْلَا أَنْ صَبَرْنَا عَلَيْهَا ۚ وَسَوْفَ يَعْلَمُونَ حِينَ يَرَوْنَ الْعَذَابَ مَنْ أَضَلُّ سَبِيلًا ﴿٤٣﴾

୪୪. (ହେ ରସୁଲ !) କ'ଣ ତୁମେ ସେହି ବ୍ୟକ୍ତିର ଅବସ୍ଥାକୁ ଲକ୍ଷ୍ୟ କରିଅଛ ଯେ ନିଜ କୁପ୍ରବୃତ୍ତିକୁ ଉପାସ୍ୟ ରୂପେ ଗ୍ରହଣ କରିଅଛି ? କ'ଣ ତୁମେ ସେହି ବ୍ୟକ୍ତିର ଅଭିଭାବକ (ଯେ ତୁମେ ତାହାକୁ ପଥଭ୍ରଷ୍ଟ ହେବାରୁ ବଳପୂର୍ବକ ନିବୃତ୍ତ କରାଇ ପାରିବ ?)

أَرَأَيْتَ مَنِ اتَّخَذَ إِلَٰهَهُ هَوَاهُ أَفَأَنْتَ تَكُونُ عَلَيْهِ وَكِيلًا ﴿٤٤﴾

୪୫. କ'ଣ ତୁମେ ମନେ କରୁଅଛ ଯେ ସେମାନଙ୍କ ମଧ୍ୟରୁ ଅଧିକାଂଶ (ତୁମ କଥା) ଶୁଣନ୍ତି ଓ ବୁଝନ୍ତି ? ସେମାନେ ତ କେବଳ ପଶୁ ସଦୃଶ ; ବରଂ ଆଚରଣ ଦୃଷ୍ଟିରୁ ସେମାନଙ୍କଠାରୁ ମଧ୍ୟ ନିକୃଷ୍ଟତର ।

أَمْ تَحْسَبُ أَنَّ أَكْثَرَهُمْ يَسْمَعُونَ أَوْ يَعْقِلُونَ ۚ إِنْ هُمْ إِلَّا كَالْأَنْعَامِ ۖ بَلْ هُمْ أَضَلُّ سَبِيلًا ﴿٤٥﴾

**ରୁ:୫**

୪୬. କ'ଣ ତୁମେ ଜାଣିନାହଁ ଯେ କିପରି ଭାବରେ ତୁମର ପାଳନକର୍ତ୍ତା ଛାୟାକୁ ବୃଦ୍ଧି କରିଥା'ନ୍ତି ଏବଂ ଯଦି ସେ ଇଚ୍ଛା କରିଥା'ନ୍ତେ ତାହାକୁ ଗୋଟିଏ ସ୍ଥାନରେ ସ୍ଥିର କରିଦେଇ ଥା'ନ୍ତେ ; ତା'ପରେ ଆମେ ସୂର୍ଯ୍ୟକୁ [୧] ତାହାର ଏକ ସୂଚକ ରୂପେ ସ୍ଥାପନ କରିଅଛୁ ।

أَلَمْ تَرَ إِلَىٰ رَبِّكَ كَيْفَ مَدَّ الظِّلَّ وَلَوْ شَاءَ لَجَعَلَهُ سَاكِنًا ثُمَّ جَعَلْنَا الشَّمْسَ عَلَيْهِ دَلِيلًا ﴿٤٦﴾

୪୭. ତା'ପରେ ଆମେ ତାହାକୁ ଧୀରେଧୀରେ [୨] ନିଜ ଆଡ଼କୁ ଆକର୍ଷଣ କରୁ ।

ثُمَّ قَبَضْنَاهُ إِلَيْنَا قَبْضًا يَسِيرًا ﴿٤٧﴾

---

୧. ସୂର୍ଯ୍ୟଙ୍କ ଅବସ୍ଥାନ ଅନୁସାରେ ଛାୟାର ଗତି ଓ ସ୍ଥିତିରେ ପରିବର୍ତ୍ତନ ଘଟୁଥାଏ । ଏଠାରେ ଅନ୍ୟ ଯେଉଁ ବିଷୟରେ ସୂଚନା ଦିଆଯାଇଛି ତାହା ହେଉଛି : ହଜରତ ମହମ୍ମଦ ଅଲ୍ଲାଃଙ୍କ ତରଫରୁ ଆସିଥିବା ପ୍ରକୃତ ଅବତାର ହୋଇଥିବାରୁ ତାହାଙ୍କର ଛାୟା ସର୍ବଦା ବଢୁଅଛି ଯାହାର ଅର୍ଥ ତାହାଙ୍କର ଉତ୍ତରୋତ୍ତର ଉନ୍ନତି ହେଉଛି । ସେ ଅଲ୍ଲାଃଙ୍କ ପ୍ରେରିତ ବାର୍ତ୍ତାବହ ହୋଇ ନ ଥିଲେ ଉନ୍ନତି ସମ୍ଭବ ହୁଅନ୍ତା ନାହିଁ । ଅନ୍ୟ ପକ୍ଷରେ ତାଙ୍କର ଉତ୍ତରୋତ୍ତର ଉନ୍ନତି ଏହା ମଧ୍ୟ ପ୍ରମାଣ କରୁଅଛି ଯେ ସେ ନିଶ୍ଚିତ ରୂପେ ଅଲ୍ଲାଃଙ୍କ ପ୍ରେରିତ ଯୁଗପୁରୁଷ ।

୨. ଅର୍ଥାତ୍ ସନ୍ଧ୍ୟାର ଅନ୍ଧକାରାଚ୍ଛନ୍ନ ଛାୟା କ୍ରମଶଃ ଲୋପ ପାଏ । ଏହି ନିୟମ ମଧ୍ୟ ଆଧ୍ୟାତ୍ମିକ ସାମ୍ରାଜ୍ୟ ପ୍ରତି ପ୍ରଯୋଜ୍ୟ ଅର୍ଥାତ୍ ଯେତେବେଳେ କୌଣସି ଅବିଶ୍ୱାସକାରୀ ସଂପ୍ରଦାୟ ଅବନତି ଦିଗରେ ଗତି କରେ ତେବେ ତା'ର ପ୍ରଭାବ ପ୍ରତିବେଶୀ ସଂପ୍ରଦାୟ ଉପରୁ ମଧ୍ୟ ଲୋପ ପାଇବାକୁ ବସେ । ପରିଶେଷରେ ସେହି ଅବନତି ସମୟ ମଧ୍ୟରେ ଅର୍ଥାତ୍ ରାତିର ଅନ୍ଧକାର ମଧ୍ୟରେ କ୍ରମଶଃ ସେହି ଛାୟା ସଂପୂର୍ଣ୍ଣ ଲୁପ୍ତ ହୋଇଯାଏ ।

୪୮. ଏବଂ ସେ ହିଁ ରାତ୍ରିକୁ ତୁମମାନଙ୍କ ସକାଶେ ଆବରଣ ସ୍ୱରୂପ ଗଢ଼ିଛନ୍ତି, ଓ ବିଶ୍ରାମ ସକାଶେ ନିଦ୍ରା, ଓ ବିକାଶ ତଥା ଉନ୍ନତି ସାଧନ ନିମନ୍ତେ ଦିବସକୁ ଗଢ଼ିଛନ୍ତି ।

وَهُوَ الَّذِىْ جَعَلَ لَكُمُ الَّيْلَ لِبَاسًا وَّالنَّوْمَ سُبَاتًا وَّجَعَلَ النَّهَارَ نُشُوْرًا ﴿٤٨﴾

୪୯. ଏବଂ ସେ (ଅଲ୍ଲାହ) ହିଁ ନିଜ କରୁଣା (ପ୍ରଦାନ କରିବା)ପୂର୍ବରୁ ବାୟୁକୁ ସୁସମାଚାର ଦେବାପାଇଁ ପ୍ରେରଣ କରନ୍ତି, ଓ ଆମ୍ଭେ ମେଘମାଳାରୁ [୧] (ଶୁଦ୍ଧ ଓ) ପବିତ୍ର ଜଳ ବର୍ଷଣ କରାଉ ;

وَهُوَ الَّذِىْٓ اَرْسَلَ الرِّيٰحَ بُشْرًاۢ بَيْنَ يَدَىْ رَحْمَتِهٖ ۚ وَاَنْزَلْنَا مِنَ السَّمَآءِ مَآءً طَهُوْرًا ﴿٤٩﴾

୫୦. ଯଦ୍ଦ୍ୱାରା କି ତାହା ମାଧ୍ୟମରେ ନିର୍ଜୀବ ଭୂପୃଷ୍ଠକୁ ସଜୀବ କରାଇବୁ, ଏବଂ ଏହି ରୂପେ ତାହା ଦ୍ୱାରା ନିଜ ସୃଷ୍ଟ ଚତୁଷ୍ପଦ ପ୍ରାଣୀମାନଙ୍କୁ ଓ ଅନେକ ଲୋକମାନଙ୍କର ତୃଷା ନିବାରଣ କରାଇବୁ ।

لِّنُحْـِۧىَ بِهٖ بَلْدَةً مَّيْتًا وَّنُسْقِيَهٗ مِمَّا خَلَقْنَآ اَنْعَامًا وَّاَنَاسِىَّ كَثِيْرًا ﴿٥٠﴾

୫୧. ଏବଂ ଆମ୍ଭେ ଏହାକୁ (ଅର୍ଥାତ୍ ଏହି ଜଳକୁ) ସେମାନଙ୍କ ମଧ୍ୟରେ ଏପରି ବିସ୍ତାରିତ କରିଅଛୁ ଯେ ସେମାନେ (ତଦ୍ଦ୍ୱାରା) ଉପଦେଶ ଗ୍ରହଣ କରିବେ ; କିନ୍ତୁ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଅବିଶ୍ୱାସ ବ୍ୟତୀତ ଅନ୍ୟ କିଛି ଗ୍ରହଣ କରନ୍ତି ନାହିଁ ।

وَلَقَدْ صَرَّفْنٰهُ بَيْنَهُمْ لِيَذَّكَّرُوْا ۖ فَاَبٰٓى اَكْثَرُ النَّاسِ اِلَّا كُفُوْرًا ﴿٥١﴾

୫୨. ଏବଂ ଆମ୍ଭେ ଇଚ୍ଛା କରିଥିଲେ ପ୍ରତ୍ୟେକ ଜନବସତିରେ ଜଣେ (ଲେଖାଏଁ) ସଚେତକ (ନବି) ପ୍ରେରଣ କରିଥା'ନ୍ତୁ ।

وَلَوْ شِئْنَا لَبَعَثْنَا فِىْ كُلِّ قَرْيَةٍ نَّذِيْرًا ۖ﴿٥٢﴾

୫୩. ସୁତରାଂ ତୁମ୍ଭେ ଅବିଶ୍ୱାସକାରୀମାନଙ୍କ କଥା [୨] ମାନ ନାହିଁ ଏବଂ ଏହା(ଅର୍ଥାତ୍ କୋରାନ) ମାଧ୍ୟମରେ ସେମାନଙ୍କ ବିରୁଦ୍ଧରେ ବଡ଼ ଜେହାଦ (ଅର୍ଥାତ୍ ପ୍ରବଳଉଦ୍ୟମ) କର ।

فَلَا تُطِعِ الْكٰفِرِيْنَ وَجَاهِدْهُمْ بِهٖ جِهَادًا كَبِيْرًا ﴿٥٣﴾

---

୧. ଆରବୀ 'ସମା'ର ଅନ୍ୟତମ ଅର୍ଥ ମେଘ ।

୨. କେତେକ ଟୀକାକାର କହନ୍ତି ଆଲୋଚ୍ୟ ପ୍ରସଙ୍ଗରେ ଅଧ୍ୟାୟ ୧୦୯ ର ପଙ୍କ୍ତି—୩ ପ୍ରଥମ ପ୍ରକଟିତ ଆଦେଶ । ଅଥଚ ଏହି ଅଧ୍ୟାୟ (ଫୁରକାନ୍) ମଧ୍ୟ ମକ୍କାରେ ଅବତୀର୍ଣ୍ଣ ହୋଇଛି । ଏହି ଆୟତରେ ଅବିଶ୍ୱାସକାରୀମାନଙ୍କ କଥା ନ ମାନିବାକୁ ଓ କୋରାନ ମାଧ୍ୟମରେ ସେମାନଙ୍କ ତତ୍ତ୍ୱକୁ ଖଣ୍ଡନ କରିବାକୁ ସ୍ପଷ୍ଟ ରୂପେ ନିର୍ଦ୍ଦେଶ ଦିଆଯାଇଛି । ଉଲ୍ଲିଖିତ ଅଧ୍ୟାୟ- ୧୦୯ ନିମ୍ନୋକ୍ତ କାରଣରୁ ଅବତୀର୍ଣ୍ଣ ହୋଇଥିଲା । ମକ୍କାବାସୀ ଅବିଶ୍ୱାସକାରୀମାନେ ଏକ ପ୍ରସ୍ତାବ ଦେଇଥିଲେ ଯେ ଯେବେ ମୁସଲମାନମାନେ ମଝିରେ ମଝିରେ ସେମାନଙ୍କ ଉପାସ୍ୟମାନଙ୍କର ଉପାସନା କରିବେ ତେବେ ସେମାନେ ମଧ୍ୟ ଅଲ୍ଲାହଙ୍କର ଉପାସନା କରିବାକୁ ପ୍ରସ୍ତୁତ ହୋଇଯିବେ, ଏପରି ଭାବିବା ଭୁଲ । ସେହିପରି ହଜରତ ମହମ୍ମଦ ନିଜେ ଭାବିଚିନ୍ତି ଓ ଅଲ୍ଲାହଙ୍କ ଠାରୁ ନିର୍ଦ୍ଦେଶ ଆଣି ଉତ୍ତର ଦେବେ ବୋଲି ଭାବିବା ମଧ୍ୟ ଭୁଲ । ଯେବେ ଏହି ଅଧ୍ୟାୟରେ ଓ ମକ୍କାରେ ଅବତୀର୍ଣ୍ଣ ପବିତ୍ର କୋରାନର ଅନେକ ଆୟତରେ ଏହାର ଉତ୍ତର ଲିପିବଦ୍ଧ ଅଛି ତେବେ ହଜରତ ମହମ୍ମଦଙ୍କ ପାଇଁ ଏ ବିଷୟରେ ଭାବିବାର ବା ମହଲତ ମାଗିବାର ପ୍ରଶ୍ନ ହିଁ କାହିଁ ? ପବିତ୍ର କୋରାନରେ ଅବିଶ୍ୱାସକାରୀମାନଙ୍କ ଧର୍ମ ଗ୍ରହଣ ନ କରିବାକୁ ସ୍ପଷ୍ଟ ଭାବରେ ନିର୍ଦ୍ଦେଶ ଦିଆଯାଇଛି । ଅନ୍ୟ ପକ୍ଷରେ କୋରାନ ଅନ୍ତର୍ଗତ ଶିକ୍ଷା ସାହାଯ୍ୟରେ ସେମାନଙ୍କ ଶିକ୍ଷାକୁ ନିଃଶେଷ କରିବାକୁ ହେବ ।

୫୪. ଏବଂ ସେ ହିଁ ଦୁଇ ସମୁଦ୍ରକୁ[୧] ପ୍ରବାହିତ କରିଛନ୍ତି, ତନ୍ମଧ୍ୟରୁ ଗୋଟିଏ ଅତି ମଧୁର[୨] ଓ ଅନ୍ୟଟି ଲବଣାକ୍ତ (ଓ) ତିକ୍ତ ଏବଂ ସେ ଏ ଦୁଇ ମଧ୍ୟରେ ଏକ ପ୍ରତିବନ୍ଧକ ସୃଷ୍ଟି କରିଛନ୍ତି ଏବଂ ଏପରି ଅବସ୍ଥା କରିଛନ୍ତି ଯେ ଗୋଟିଏ ଅନ୍ୟ ଠାରୁ ପୃଥକ୍[୩] ରହିଅଛି, (ଫଳରେ) ମିଳିତ ହେଉ ନାହାନ୍ତି ।

وَهُوَ الَّذِىْ مَرَجَ الْبَحْرَيْنِ هٰذَا عَذْبٌ فُرَاتٌ وَّ هٰذَا مِلْحٌ اُجَاجٌ ۚ وَجَعَلَ بَيْنَهُمَا بَرْزَخًا وَّحِجْرًا مَّحْجُوْرًا ۝

୫୫. ଏବଂ ସେ (ଅଲ୍ଲାହ) ହିଁ ଜଳରୁ[୪] ମନୁଷ୍ୟ ସୃଷ୍ଟି କରିଛନ୍ତି ; ତେଣୁ କେବେକେବେ ତାହାକୁ ନସବ (ଅର୍ଥାତ୍ ପୈତୃକ ବଂଶାବଳୀ) ଓ କେବେକେବେ ସିହର (ଅର୍ଥାତ୍ ଶ୍ୱଶୁରାଳୟର ବଂଶାବଳୀ ଦ୍ୱାରା ଆବଦ୍ଧ) କରିଛନ୍ତି ; ଏବଂ ତୁମର ପାଳନକର୍ତ୍ତା ସର୍ବଶକ୍ତିମାନ୍ ।

وَهُوَ الَّذِىْ خَلَقَ مِنَ الْمَآءِ بَشَرًا فَجَعَلَهٗ نَسَبًا وَّ صِهْرًا ؕ وَكَانَ رَبُّكَ قَدِيْرًا ۝

୫୬. ଏବଂ ସେ (ଅବିଶ୍ୱାସକାରୀ)ମାନେ ଅଲ୍ଲାହଙ୍କ ପରିବର୍ତ୍ତେ ସେମାନଙ୍କ ଉପାସନା କରୁଛନ୍ତି ଯେଉଁମାନେ କି ସେମାନଙ୍କର କୌଣସି ଲାଭ ବା କ୍ଷତି କରିପାରନ୍ତି ନାହିଁ ; ଏବଂ ଅବିଶ୍ୱାସକାରୀ ସର୍ବଦା ନିଜ ପାଳନକର୍ତ୍ତାଙ୍କ ବିରୁଦ୍ଧାଚରଣ କରେ ।

وَيَعْبُدُوْنَ مِنْ دُوْنِ اللّٰهِ مَا لَا يَنْفَعُهُمْ وَلَا يَضُرُّهُمْ ؕ وَكَانَ الْكَافِرُ عَلٰى رَبِّهٖ ظَهِيْرًا ۝

୫୭. ଏବଂ ଆମେ ତୁମକୁ କେବଳ ଜଣେ ସୁସମାଚାରଦାତା ଓ ସଚେତକ ରୂପେ ପ୍ରେରଣ କରିଅଛୁ ।

وَمَاۤ اَرْسَلْنٰكَ اِلَّا مُبَشِّرًا وَّ نَذِيْرًا ۝

୫୮. ତୁମେ (ସେମାନଙ୍କୁ) କୁହ, "ଆମେ ତୁମମାନଙ୍କଠାରୁ ଏଥିପାଇଁ (ଅର୍ଥାତ୍ ଅଲ୍ଲାହଙ୍କ ବାର୍ତ୍ତା ପହଞ୍ଚାଇ ଦେବାପାଇଁ) କୌଣସି ପାରିଶ୍ରମିକ[୫] ଲୋଡୁ ନାହୁଁ ; ଅବଶ୍ୟ ଯଦି କୌଣସି

قُلْ مَاۤ اَسْـَٔلُكُمْ عَلَيْهِ مِنْ اَجْرٍ اِلَّا مَنْ شَآءَ اَنْ

---

୧. ମୂଳ ଶବ୍ଦ 'ବହର୍' ଉଭୟ ସମୁଦ୍ର ଓ ନଦୀ ଅର୍ଥରେ ପ୍ରୟୋଗ କରାଯାଏ । ପ୍ରକୃତପକ୍ଷେ ଏଠାରେ ବିଭିନ୍ନ ଧର୍ମକୁ ତୁଳନା କରାଯାଇଛି । କୌଣସି ଧର୍ମର ଶିକ୍ଷା ଉତ୍କୃଷ୍ଟ ହୋଇଥାଏ ତ ଅନ୍ୟ କୌଣସି ଧର୍ମର ଶିକ୍ଷା ନିକୃଷ୍ଟ । ଆଲୋଚ୍ୟ ଆୟତରେ ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲିଖିତ ଅଛି ଯେ ସମୁଦ୍ର ଜଳ କେତେ ତିକ୍ତ ଓ କଟୁ, ଅଥଚ ନଦୀ ସମୁଦ୍ରରେ ପଡ଼ିଲେ ମଧ୍ୟ ତା' ଜଳ ମଧୁର । ଏହା ହିଁ ଅଲ୍ଲାହଙ୍କର ଯୋଜନା ଯଦ୍ଦ୍ୱାରା ନଦୀ ଜଳ ସର୍ବଦା ମଧୁର ହୁଏ ଓ ସମୁଦ୍ର ଜଳ ତିକ୍ତ ଓ କଟୁ ହୋଇଥାଏ, କାରଣ ନଦୀ ବର୍ଷା ଜଳରୁ ବା ବରଫ ତରଳିବାରୁ ସୃଷ୍ଟି ହୁଏ । ମାତ୍ର ସମୁଦ୍ର ଗର୍ଭରେ ଅନେକ ଲବଣ ପାହାଡ଼ ରହିଅଛି । ଏହି ରୂପେ ଅଲ୍ଲାହଙ୍କ ତରଫରୁ ପ୍ରେରିତ ଶିକ୍ଷା ସ୍ୱଭାବତଃ ମଧୁର । ଅନ୍ୟ ପକ୍ଷରେ ବହୁ କାଳରୁ ସଂସାରରେ ରହି ଆସିଥିବା ଶିକ୍ଷା ପୁନଃ ପୁନଃ ଦିବ୍ୟବାଣୀ ରୂପକ ଜଳ ଦ୍ୱାରା ସିକ୍ତ ନ ହେଲେ ତାହା ସମୁଦ୍ର ଜଳ ସଦୃଶ ତିକ୍ତ ଓ କଟୁ ହେବା ଅବଶ୍ୟମ୍ଭାବୀ ।

୨. ଏଠାରେ ମଧୁର ଅର୍ଥଜ୍ଞାପକ ଦୁଇଟି ଶବ୍ଦ 'ଅଜବୁନ୍' ଓ 'ଫୁରାତୁନ' ପ୍ରୟୋଗ କରାଯାଇଛି । ତେଣୁ ଆମେ ଅନୁବାଦରେ ଅତି ମଧୁର ଶବ୍ଦାବଳୀ ବ୍ୟବହାର କରିଛୁ ।

୩. ନଦୀ ଓ ସମୁଦ୍ର ମିଳିତ ହେଉଥିଲେ ମଧ୍ୟ ଅଲ୍ଲାହ ଏପରି ବ୍ୟବସ୍ଥା କରିଛନ୍ତି ଯେ ନଦୀ ଜଳ ତିକ୍ତ ବା କଟୁ ହୁଏ ନାହିଁ କି ସମୁଦ୍ର ଜଳ ମଧୁର ହୁଏ ନାହିଁ ।

୪. ଅର୍ଥାତ୍ ବୀର୍ଯ୍ୟ ।

୫. ଏହି ଆୟତରେ ସ୍ପଷ୍ଟ ଭାବରେ ବର୍ଣ୍ଣନା କରାଯାଇଛି ଯେ ବଳ ପ୍ରୟୋଗ କରି ଧର୍ମ ପ୍ରଚାର କରିବା ଅନ୍ୟାୟ । ପୁନଶ୍ଚ ସ୍ପଷ୍ଟ ଭାବରେ କୁହାଯାଇଛି ଯେ ହଜରତ ମହମ୍ମଦ ଇସଲାମ ଧର୍ମର ପ୍ରଚାର ପାଇଁ କୌଣସି ପାରିତୋଷିକ ଲୋଡ଼ୁ ନାହାନ୍ତି । ଯଦି କେହି ମନରେ ଇସଲାମ ଧର୍ମର ସତ୍ୟତାକୁ ସ୍ୱୀକାର କରି ନିଜ ଇଚ୍ଛାନୁସାରେ ଏହି ଧର୍ମରେ ଦୀକ୍ଷିତ ହେବ ତେବେ ତାହା ହେବ ତାଙ୍କର ପାରିତୋଷିକ । ସେ ଏ ବିଷୟରେ ଜୋର ଜବରଦସ୍ତି କରିବାକୁ ଇଚ୍ଛା କରୁ ନାହାନ୍ତି କି କରିପାରିବେ ନାହିଁ । ଏ ପ୍ରକାର ଶିକ୍ଷା ଥିବା ସତ୍ତ୍ୱେ ଯେଉଁମାନେ କହନ୍ତି ଯେ ଇସଲାମ୍ ତରବାରି ମାଧ୍ୟମରେ ପ୍ରଚାରିତ ଓ ପ୍ରସାରିତ ହୋଇଛି, ସେମାନେ ପ୍ରକୃତରେ ଅନ୍ୟାୟ କରୁଛନ୍ତି ଓ ସାମ୍ପ୍ରତିକ୍ରାନ୍ତ ଦୋଷାରୋପ କରୁଛନ୍ତି । କ'ଣ ପୃଥିବୀରେ ଏପରି କୌଣସି ଧର୍ମ ଅଛି ଯାହା ନିଜ ପ୍ରଚାର ସମ୍ବନ୍ଧରେ ଏଭଳି ସ୍ପଷ୍ଟ ଭାବରେ ବିବେକ ସ୍ୱାଧୀନତା ଓ ବିଚାର ସ୍ୱାଧୀନତା ସପକ୍ଷରେ ମତବ୍ୟକ୍ତ କରୁଅଛି ?

يَتَّخِذَ اِلٰى رَبِّهٖ سَبِيْلًا ﴿۵۸﴾

ବ୍ୟକ୍ତି ସ୍ୱଇଚ୍ଛାରେ ନିଜ ପାଳନକର୍ତ୍ତାଙ୍କ ପଥ ଅନୁସରଣ କରିବାକୁ ଇଚ୍ଛା କରେ ତେବେ ତାହା କରିପାରେ (ତାହା ହିଁ ଆମ୍ଭର ପାରିତୋଷିକ) ।"

وَتَوَكَّلْ عَلَى الْحَيِّ الَّذِيْ لَا يَمُوْتُ وَسَبِّحْ بِحَمْدِهٖ ۚ وَكَفٰى بِهٖ بِذُنُوْبِ عِبَادِهٖ خَبِيْرًا ﴿۵۹﴾

୫୯. ଏବଂ ତୁମ୍ଭେ ତାହାଙ୍କ ଉପରେ ବିଶ୍ୱାସ କର ଯେ ଜୀବନ୍ତ (ଓ ଅନ୍ୟଙ୍କୁ ଜୀବିତ ରଖନ୍ତି) ଏବଂ ଅମର ; ଏବଂ (ତୁମ୍ଭେ) ତାହାଙ୍କୁ ପ୍ରଶଂସା କରିବା ସଙ୍ଗେସଙ୍ଗେ ତାହାଙ୍କର ମହିମା ଗାନ କର ; ଏବଂ ସେ ନିଜ ଭକ୍ତମାନଙ୍କର ପାପ ସଂକ୍ରାନ୍ତରେ ଭଲଭାବରେ ଅବଗତ ଅଛନ୍ତି ।

اِلَّذِيْ خَلَقَ السَّمٰوٰتِ وَالْاَرْضَ وَمَا بَيْنَهُمَا فِيْ سِتَّةِ اَيَّامٍ ثُمَّ اسْتَوٰى عَلَى الْعَرْشِ ۚ اَلرَّحْمٰنُ فَسْـَٔلْ بِهٖ خَبِيْرًا ﴿۶۰﴾

୬୦. ସେ ହିଁ ଆକାଶ ଓ ପୃଥିବୀକୁ ଏବଂ ଏ ଉଭୟ ମଧ୍ୟରେ ଯାହାକିଛି ଅଛି ତାହାକୁ ଛଅଗୋଟି ଅବଧି ମଧ୍ୟରେ ସୃଷ୍ଟି କରିଛନ୍ତି, ଏବଂ ଏହାପରେ ସେ ସିଂହାସନ ଉପରେ ସୁପ୍ରତିଷ୍ଠିତ ହୋଇଛନ୍ତି ; ସେ ହିଁ ଅଶେଷ ଦୟାବାନ୍ ; ସୁତରାଂ (ହେ ମାନବ !) ତୁମ୍ଭେ ତାହାଙ୍କ ସଂକ୍ରାନ୍ତରେ ଯଦି କୌଣସି ପ୍ରଶ୍ନ କରିବାକୁ ଇଚ୍ଛା କର, ତେବେ ଯେ ଅବଗତ ଅଛନ୍ତି ତାହାଙ୍କୁ ପ୍ରଶ୍ନ କର ।

وَاِذَا قِيْلَ لَهُمُ اسْجُدُوْا لِلرَّحْمٰنِ قَالُوْا وَمَا الرَّحْمٰنُ ۗ اَنَسْجُدُ لِمَا تَاْمُرُنَا وَزَادَهُمْ نُفُوْرًا ﴿۶۱﴾

୬୧. ଏବଂ ଯେତେବେଳେ ସେମାନଙ୍କୁ ଦୟାବାନ୍ (ଅଲ୍ଲାହ୍)ଙ୍କ ସମ୍ମୁଖରେ ସିଜଦା କରିବାକୁ କୁହାଯାଏ, ସେତେବେଳେ ସେମାନେ କହନ୍ତି, "କିଏ ସେହି ଦୟାବାନ୍ ? କ'ଣ ଆମେମାନେ ତାହାଙ୍କୁ ସିଜଦା କରିବୁ ଯାହାଙ୍କୁ ତୁମ୍ଭେ (ସିଜଦା କରିବାକୁ) ଆଦେଶ ଦେବ ?" ଏବଂ ଏହା ସେମାନଙ୍କର ଘୃଣାଭାବକୁ ଅଧିକ ବୃଦ୍ଧି କରାଏ ।

ରୁ:୬

تَبٰرَكَ الَّذِيْ جَعَلَ فِي السَّمَآءِ بُرُوْجًا وَّجَعَلَ فِيْهَا سِرٰجًا وَّقَمَرًا مُّنِيْرًا ﴿۶۲﴾

୬୨. ସେ ହିଁ ପରମ ମଙ୍ଗଳମୟ ଯେ ଆକାଶରେ ନକ୍ଷତ୍ରମଣ୍ଡଳ ନିର୍ମାଣ କରିଛନ୍ତି ଏବଂ ତନ୍ମଧ୍ୟରେ ଏକ ଦୀପ୍ତିମାନ୍ ପ୍ରଦୀପ[୨] ଓ ଜ୍ୟୋତିପ୍ରଦାୟକ ଚନ୍ଦ୍ର ସ୍ଥାପନ କରିଛନ୍ତି ।

وَهُوَ الَّذِيْ جَعَلَ الَّيْلَ وَالنَّهَارَ خِلْفَةً لِّمَنْ اَرَادَ اَنْ يَّذَّكَّرَ اَوْ اَرَادَ شُكُوْرًا ﴿۶۳﴾

୬୩. ପରସ୍ପରକୁ ଅନୁସରଣ କରୁଥିବା ରାତି ଓ ଦିନକୁ ସେ ହିଁ ଏପରି ବ୍ୟକ୍ତି(ର ହିତ) ପାଇଁ ସୃଷ୍ଟି କରିଛନ୍ତି ଯେ ଉପଦେଶ ଗ୍ରହଣ କରିବାକୁ ଓ କୃତଜ୍ଞତା ପ୍ରକାଶ କରିବାକୁ ଇଚ୍ଛା କରେ ।

---

୧. ଅର୍ଥାତ୍ ହଜରତ ମହମ୍ମଦ, ଯାହାଙ୍କୁ ଅଲ୍ଲାହ୍ ସ୍ୱଗୁଣାବଳୀ ସମ୍ବନ୍ଧରେ ଓହି ମାଧ୍ୟମରେ ଜ୍ଞାନ ପ୍ରଦାନ କରିଛନ୍ତି ।

୨. ଆରବୀ 'ସିରାଜ୍' ଶବ୍ଦର ଅର୍ଥ ପ୍ରଦୀପ । ଯେପରି ସୂର୍ଯ୍ୟର ନିଜର ଆଲୋକ ଅଛି ସେହିପରି ଦୀପରେ ତେଲ ପକାଇବା ପରେ ତାହାର ନିଜର ଆଲୋକ ପ୍ରକାଶମାନ ହୁଏ । କିନ୍ତୁ ଚନ୍ଦ୍ରର ନିଜର କୌଣସି ଆଲୋକ ନାହିଁ । ସେ ସୂର୍ଯ୍ୟଠାରୁ ଆଲୋକ ଗ୍ରହଣ କରି ପ୍ରକାଶମାନ ହୁଏ । ଏଥିଯୋଗୁଁ ଅନ୍ୟତ୍ର 'କମର୍'କୁ ଜ୍ୟୋତି ରୂପେ ଆଖ୍ୟାୟିତ କରାଯାଇଛି କାରଣ ତାହା ଆଲୋକ ପ୍ରଦାନ କରୁଥିଲେ ମଧ୍ୟ ସେହି ଆଲୋକ ଅନ୍ୟଠାରୁ ସଂଗୃହୀତ (୧୦:୬ ଦ୍ରଷ୍ଟବ୍ୟ) ।

୬୪. ଏବଂ ଦୟାବାନ୍‌ଙ୍କର (ପ୍ରକୃତ) ଭକ୍ତ ସେହିମାନେ ଯେଉଁମାନେ ଭୂପୃଷ୍ଠରେ ବିନୀତ ଭାବରେ [1] ଚାଲନ୍ତି, ଏବଂ ଯେତେବେଳେ ଅଜ୍ଞ ବ୍ୟକ୍ତିମାନେ ସେମାନଙ୍କୁ ସମ୍ବୋଧନ କରନ୍ତି ସେମାନେ (ସେମାନଙ୍କ ସହିତ କଳହ ନ କରି) କହନ୍ତି, "ଆମେମାନେ ତୁମମାନଙ୍କ ଶାନ୍ତି ସକାଶେ ପ୍ରାର୍ଥନା କରୁଅଛୁ।"

وَعِبَادُ الرَّحْمٰنِ الَّذِيْنَ يَمْشُوْنَ عَلَى الْاَرْضِ هَوْنًا وَّاِذَا خَاطَبَهُمُ الْجٰهِلُوْنَ قَالُوْا سَلٰمًا ﴿٦٤﴾

୬୫. ଏବଂ ସେମାନେ (ଦୟାବାନ୍‌ଙ୍କ ପ୍ରକୃତ ଭକ୍ତ) ମଧ୍ୟ, ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ଉଦ୍ଦେଶ୍ୟରେ ସିଜଦା କରୁଥିବା ଏବଂ ଦଣ୍ଡାୟମାନ ଥିବା ଅବସ୍ଥାରେ ରାତ୍ରି ଅତିବାହିତ କରନ୍ତି,

وَالَّذِيْنَ يَبِيْتُوْنَ لِرَبِّهِمْ سُجَّدًا وَّقِيَامًا ﴿٦٥﴾

୬୬. ଏବଂ ସେ (ଭକ୍ତ)ମାନେ କହନ୍ତି, "ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କଠାରୁ ନରକର ଶାସ୍ତିକୁ ଦୂରେଇ ଦିଅ ; ଏଠାକାର ଶାସ୍ତି ବାସ୍ତବିକ ଅତ୍ୟନ୍ତ ଯନ୍ତ୍ରଣାଦାୟକ।"

وَالَّذِيْنَ يَقُوْلُوْنَ رَبَّنَا اصْرِفْ عَنَّا عَذَابَ جَهَنَّمَ ۖ اِنَّ عَذَابَهَا كَانَ غَرَامًا ﴿٦٦﴾

୬୭. "ତାହା ଅସ୍ଥାୟୀ ଓ ସ୍ଥାୟୀ ବାସସ୍ଥାନ ରୂପେ ନିକୃଷ୍ଟ ଅଟେ।"

اِنَّهَا سَآءَتْ مُسْتَقَرًّا وَّمُقَامًا ﴿٦٧﴾

୬୮. ଏବଂ ସେ (ଭକ୍ତ)ମାନେ ବ୍ୟୟ କରିବା ସମୟରେ ଅପବ୍ୟୟ କରନ୍ତି ନାହିଁ କି କୃପଣତା କରନ୍ତି ନାହିଁ ; ଏବଂ ସେମାନେ (ବ୍ୟୟ କରିବାରେ) ଏକ ମଧ୍ୟମ ପନ୍ଥା ଅନୁସରଣ କରନ୍ତି ।

وَالَّذِيْنَ اِذَآ اَنْفَقُوْا لَمْ يُسْرِفُوْا وَلَمْ يَقْتُرُوْا وَكَانَ بَيْنَ ذٰلِكَ قَوَامًا ﴿٦٨﴾

୬୯. ଏବଂ ସେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାକୁ ଉପାସ୍ୟ ରୂପେ ଡାକନ୍ତି ନାହିଁ ; ଏବଂ କୌଣସି ନ୍ୟାୟସଂଗତ କାରଣ ନଥାଇ, ସେମାନେ ଏପରି କାହାରିକୁ ହତ୍ୟା କରନ୍ତି ନାହିଁ ଯାହାକୁ ଅଲ୍ଲାହ୍ ନିରାପତ୍ତା ପ୍ରଦାନ କରିଛନ୍ତି ; ଏବଂ (ସେମାନେ) ବ୍ୟଭିଚାର କରନ୍ତି ନାହିଁ ; ଏବଂ ଯେ କେହି ଏପରି କାର୍ଯ୍ୟ କରିବ ସେ ତା'ର ପାପର ଶାସ୍ତି ପାଇବ ।

وَالَّذِيْنَ لَا يَدْعُوْنَ مَعَ اللّٰهِ اِلٰهًا اٰخَرَ وَلَا يَقْتُلُوْنَ النَّفْسَ الَّتِيْ حَرَّمَ اللّٰهُ اِلَّا بِالْحَقِّ وَلَا يَزْنُوْنَ ۚ وَمَنْ يَّفْعَلْ ذٰلِكَ يَلْقَ اَثَامًا ﴿٦٩﴾

୭୦. କୟାମତ ଦିନ ତାହାର ଶାସ୍ତିକୁ ବୃଦ୍ଧି କରାଯିବ, ଏବଂ ସେ ସେଠାରେ ଲାଞ୍ଛିତ ଅବସ୍ଥାରେ ରହିବ ।

يُّضٰعَفْ لَهُ الْعَذَابُ يَوْمَ الْقِيٰمَةِ وَيَخْلُدْ فِيْهٖ مُهَانًا ۖ ﴿٧٠﴾

୭୧. କିନ୍ତୁ ଯେଉଁମାନେ ଅନୁତାପ କରନ୍ତି ଓ ବିଶ୍ୱାସ କରନ୍ତି ଓ ବିଶ୍ୱାସ ଅନୁସାରେ (ସତ୍) କାର୍ଯ୍ୟ କରନ୍ତି, ଏପରି ଲୋକମାନଙ୍କର ପାପକୁ ଅଲ୍ଲାହ୍ ପୁଣ୍ୟରେ ପରିବର୍ତ୍ତନ କରିଦେବେ ; ଏବଂ ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

اِلَّا مَنْ تَابَ وَاٰمَنَ وَعَمِلَ عَمَلًا صَالِحًا فَاُولٰٓئِكَ يُبَدِّلُ اللّٰهُ سَيِّاٰتِهِمْ حَسَنٰتٍ ۗ وَكَانَ اللّٰهُ غَفُوْرًا رَّحِيْمًا ﴿٧١﴾

୧. ଅର୍ଥାତ୍ ଅହଙ୍କାର ପ୍ରଦର୍ଶନ କରନ୍ତି ନାହିଁ।

୭୨. ଏବଂ ଯେ ଅନୁତାପ କରେ ଓ ସେହି ମୁତାବକ କାର୍ଯ୍ୟ କରେ, ତେବେ ସେହି ବ୍ୟକ୍ତି ପ୍ରକୃତରେ ଅଲ୍ଲାହ୍‌ଙ୍କ ପ୍ରତି ଅବନତ ହୁଏ ।

وَمَنْ تَابَ وَعَمِلَ صَالِحًا فَإِنَّهُ يَتُوبُ إِلَى اللَّهِ مَتَابًا ﴿٧٢﴾

୭୩. ଏବଂ ସେମାନେ ମଧ୍ୟ (ଅଲ୍ଲାହ୍‌ଙ୍କର ଭକ୍ତ ଅଟନ୍ତି) ଯେଉଁମାନେ ମିଥ୍ୟା ସାକ୍ଷ୍ୟ ଦିଅନ୍ତି ନାହିଁ, ଏବଂ ନିରର୍ଥକ ବିଷୟର ପାର୍ଶ୍ୱ ଦେଇ ଯିବାବେଳେ (ସେଥିରେ ଅଂଶ ଗ୍ରହଣ ନ କରି) ଭଦ୍ର ଭାବେ ଚାଲିଯାଆନ୍ତି ।

وَالَّذِينَ لَا يَشْهَدُونَ الزُّورَ وَإِذَا مَرُّوا بِاللَّغْوِ مَرُّوا كِرَامًا ﴿٧٣﴾

୭୪. ଏବଂ ସେମାନେ ମଧ୍ୟ (ଅଲ୍ଲାହ୍‌ଙ୍କର ଭକ୍ତ ଅଟନ୍ତି) ଯେଉଁମାନଙ୍କୁ ଅଲ୍ଲାହ୍‌ଙ୍କର ନିଦର୍ଶନମାନ ଯେତେବେଳେ ସ୍ମରଣ କରାଇ ଦିଆଯାଏ, ସେତେବେଳେ ସେମାନେ ସେଗୁଡ଼ିକ ପ୍ରତି ବଧିର ଓ ଅନ୍ଧ ସଦୃଶ ବ୍ୟବହାର କରନ୍ତି ନାହିଁ ।

وَالَّذِينَ إِذَا ذُكِّرُوا بِآيَاتِ رَبِّهِمْ لَمْ يَخِرُّوا عَلَيْهَا صُمًّا وَعُمْيَانًا ﴿٧٤﴾

୭୫. ଏବଂ ସେମାନେ ମଧ୍ୟ ସେହି ଦୟାବାନ୍‌ଙ୍କର ଭକ୍ତ ଅଟନ୍ତି ଯେଉଁମାନେ କହନ୍ତି, "ହେ ଆମମାନଙ୍କର ପାଳନକର୍ତ୍ତା ! ନିଜର ପତ୍ନୀ ଓ ସନ୍ତାନସନ୍ତତିଙ୍କ ତରଫରୁ ଆମମାନଙ୍କର ଚକ୍ଷୁକୁ ଶୀତଳତା ପ୍ରଦାନ କର ଏବଂ ଆମମାନଙ୍କୁ ଧର୍ମଭୀରୁମାନଙ୍କର ଇମାମ [୧] (ଅର୍ଥାତ୍ ନେତା) କର ।"

وَالَّذِينَ يَقُولُونَ رَبَّنَا هَبْ لَنَا مِنْ أَزْوَاجِنَا وَذُرِّيَّاتِنَا قُرَّةَ أَعْيُنٍ وَاجْعَلْنَا لِلْمُتَّقِينَ إِمَامًا ﴿٧٥﴾

୭୬. ଏପରି ଲୋକମାନେ ପୁଣ୍ୟକାର୍ଯ୍ୟରେ ଦୃଢ଼ ରହିଥିବା ଯୋଗୁଁ ସେମାନଙ୍କୁ (ବୈକୁଣ୍ଠରେ) ଉଚ୍ଚ ପ୍ରକୋଷ୍ଠ ପ୍ରଦାନ କରାଯିବ, ଏବଂ ସେଠାରେ ସେମାନଙ୍କୁ ଆଶୀର୍ବାଦ ଓ ଶାନ୍ତିର ସନ୍ଦେଶ ମିଳିବ ।

أُولَٰئِكَ يُجْزَوْنَ الْغُرْفَةَ بِمَا صَبَرُوا وَيُلَقَّوْنَ فِيهَا تَحِيَّةً وَسَلَامًا ﴿٧٦﴾

୭୭. ସେମାନେ ସେଠାରେ ସର୍ବଦା ରହିବେ ; ସେହି ବୈକୁଣ୍ଠ ଅସ୍ଥାୟୀ ଓ ସ୍ଥାୟୀ ବିଶ୍ରାମସ୍ଥଳୀ ରୂପେ ଉତ୍ତମ ଅଟେ ।

خَالِدِينَ فِيهَا حَسُنَتْ مُسْتَقَرًّا وَمُقَامًا ﴿٧٧﴾

୭୮. (ହେ ରସୁଲ ! ତୁମ୍ଭେ ସେମାନଙ୍କୁ) କୁହ, "ଯଦି ତୁମେମାନେ ପ୍ରାର୍ଥନା (ଓ କ୍ଷମାଭିକ୍ଷା) ନକର, ତେବେ ଆମର ପାଳନକର୍ତ୍ତା ତୁମମାନଙ୍କୁ ଖାତିର କରନ୍ତି ନାହିଁ ; ସୁତରାଂ ତୁମେମାନେ (ଅଲ୍ଲାହ୍‌ଙ୍କ ବାର୍ତ୍ତାକୁ) ପ୍ରତ୍ୟାଖ୍ୟାନ କରିଥିବାରୁ ତାହାଙ୍କର ଶାସ୍ତି ତୁମମାନଙ୍କୁ ଜାବୁଡ଼ି ଧରିବ ।"

قُلْ مَا يَعْبَأُ بِكُمْ رَبِّي لَوْلَا دُعَاؤُكُمْ فَقَدْ كَذَّبْتُمْ فَسَوْفَ يَكُونُ لِزَامًا ﴿٧٨﴾

୧. ଅର୍ଥାତ୍ ଆମମାନଙ୍କ ପରିବାର ଓ ବଂଶଧର ଆମମାନଙ୍କୁ ଅନୁସରଣ କରନ୍ତୁ ଓ ଧର୍ମଭୀରୁତା ଅବଲମ୍ବନ କରନ୍ତୁ । ସେମାନେ ଆମମାନଙ୍କର କେବଳ ରକ୍ତ ସଂପର୍କ ହୋଇଥିବାରୁ ପକ୍ଷ ସମର୍ଥନ ନ କରନ୍ତୁ ।

سُوْرَةُ الشُّعَرَآءِ مَكِّيَّةٌ (٢٦)

# ଅଲ—ଶୋଓରା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୨୨୮ ଟି ଆୟତ ଓ ୧୧ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

طٰسٓمٓ ②

୨. ତା—ସିନ— ମୀମ[1] ।

تِلْكَ اٰيٰتُ الْكِتٰبِ الْمُبِيْنِ ③

୩. ଏହି ଆୟତ୍‌ଗୁଡ଼ିକ ସେହି ଗ୍ରନ୍ଥର ଅନ୍ତର୍ଗତ ଯାହା (ବିଷୟବସ୍ତୁକୁ) ସୁସ୍ପଷ୍ଟ ଭାବରେ ବର୍ଣ୍ଣନା କରେ ।

لَعَلَّكَ بَاخِعٌ نَّفْسَكَ اَلَّا يَكُوْنُوْا مُؤْمِنِيْنَ ④

୪. ସେମାନେ କାହିଁକି ବିଶ୍ୱାସ[2] କରୁ ନାହାନ୍ତି ସେଥିପାଇଁ ସମ୍ଭବତଃ ତୁମେ ନିଜ ଜୀବନକୁ ବିନାଶମୁଖୀ କରାଇବ ।

اِنْ نَّشَاْ نُنَزِّلْ عَلَيْهِمْ مِّنَ السَّمَآءِ اٰيَةً فَظَلَّتْ اَعْنَاقُهُمْ لَهَا خٰضِعِيْنَ ⑤

୫. ଯଦି ଆମେ ଇଚ୍ଛା କରନ୍ତୁ, ତେବେ ଆକାଶରୁ ସେମାନଙ୍କ ପ୍ରତି ଏପରି ଏକ ନିଦର୍ଶନ ଅବତୀର୍ଣ୍ଣ କରନ୍ତୁ ଯାହା ସମ୍ମୁଖରେ ସେମାନଙ୍କର ମସ୍ତକ ଅବନତ ହୁଅନ୍ତା ।

وَمَا يَاْتِيْهِمْ مِّنْ ذِكْرٍ مِّنَ الرَّحْمٰنِ مُحْدَثٍ اِلَّا كَانُوْا عَنْهُ مُعْرِضِيْنَ ⑥

୬. ଏବଂ ଦୟାବାନ୍(ଅଲ୍ଲାହ୍)ଙ୍କଠାରୁ ଯେତେବେଳେ ମଧ୍ୟ କୌଣସି ନୂତନ ଅନୁସ୍ମାରକ ଆସେ ଲୋକମାନେ ତହିଁରୁ ବିମୁଖ ହୁଅନ୍ତି[3] ।

فَقَدْ كَذَّبُوْا فَسَيَاْتِيْهِمْ اَنْۢبٰٓؤُا مَا كَانُوْا بِهٖ يَسْتَهْزِءُوْنَ ⑦

୭. ସୁତରାଂ ସେମାନେ (ଅଲ୍ଲାହ୍‌ଙ୍କର ନିଦର୍ଶନଗୁଡ଼ିକ ପ୍ରତି) ମିଥ୍ୟା ଆରୋପ କରିଥିବାରୁ ଯେଉଁ ବିଷୟରେ ସେମାନେ ପରିହାସ କରୁଥିଲେ ତାହାର ବାସ୍ତବତା ସେମାନଙ୍କ ନିକଟରେ ନିଶ୍ଚୟ ସୁସ୍ପଷ୍ଟ ହୋଇଯିବ ।

اَوَلَمْ يَرَوْا اِلَى الْاَرْضِ كَمْ اَنْۢبَتْنَا فِيْهَا مِنْ كُلِّ زَوْجٍ كَرِيْمٍ ⑧

୮. କ'ଣ ସେମାନେ ଭୂପୃଷ୍ଠକୁ ଲକ୍ଷ୍ୟ କରୁନାହାନ୍ତି ଯେ ଆମେ ସେଥିରେ ବିଭିନ୍ନ ପ୍ରକାରର ଭଲ ଭଲ ଯୋଡ଼ା ସୃଷ୍ଟି କରିଅଛୁ ?

---

୧. ଅର୍ଥାତ୍ ତାହେର (ପବିତ୍ର), ସମୀ (ମହାନ୍ ଶ୍ରୋତା), ମଜିଦ (ଗୌରବମୟ) ଅଲ୍ଲାହ୍ ଏହି ଅଧ୍ୟାୟକୁ ଅବତୀର୍ଣ୍ଣ କରିଛନ୍ତି । ଏହି ଅଧ୍ୟାୟରେ ହୃଦୟର ପବିତ୍ରତା, କିପରି ପ୍ରାର୍ଥନା ମଞ୍ଜୁର କରାଯାଏ, ଶ୍ରେଷ୍ଠତା ଲାଭ କରିବାର ପନ୍ଥା କ'ଣ, ସେ ସବୁ ବିଷୟରେ ବର୍ଣ୍ଣନା କରାଯାଇଛି ।

୨. ଅର୍ଥାତ୍ ଅବିଶ୍ୱାସୀ ଲୋକମାନେ ସତ୍ୟକୁ ଗ୍ରହଣ କରୁ ନ ଥିବାରୁ ତୁମର ପବିତ୍ର ହୃଦୟ ବ୍ୟାକୁଳ ହେଉଅଛି ଏବଂ ସେମାନେ ମଧ୍ୟ ସତ୍ ପଥ ପାଆନ୍ତୁ ବୋଲି ତୁମେ ଇଚ୍ଛା କରୁଅଛ ।

୩. ଯେହେତୁ ନବିମାନଙ୍କୁ ସ୍ୱୀକାର ନ କରିବା ପରମ୍ପରା ପ୍ରାରମ୍ଭରୁ ଚଳି ଆସୁଛି ତେଣୁ ଅଲ୍ଲାହ୍ ଏପରି ନିଦର୍ଶନ ଦେଖାନ୍ତି ନାହିଁ ଯଦ୍ୱାରା ଲୋକମାନେ ବାଧ୍ୟ ହୋଇ ବିଶ୍ୱାସ କରିବେ । କାରଣ ଯଦି ସେ ଏପରି କରିବେ ତେବେ ସେ କେତେକ ନବିଙ୍କ ପ୍ରତି ପକ୍ଷପାତ ବିଚାର କରୁଥିବା ପ୍ରମାଣିତ ହେବ । ତେଣୁ ସେ ଏପରି କରନ୍ତି ନାହିଁ ।

୯. ଏଥିରେ ଏକ ମହାନ୍ ନିଦର୍ଶନ[୧] ରହିଅଛି, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରନ୍ତି ନାହିଁ ;

إِنَّ فِي ذَٰلِكَ لَآيَةً ۖ وَمَا كَانَ أَكْثَرُهُم مُّؤْمِنِينَ ⑨

୧୦. ଏବଂ ତୁମ୍ଭର ପାଳନକର୍ତ୍ତା ବାସ୍ତବରେ ପରାକ୍ରମୀ (ଓ) ସଦା କରୁଣାମୟ ଅଟନ୍ତି ।

وَإِنَّ رَبَّكَ لَهُوَ الْعَزِيزُ الرَّحِيمُ ⑩

ରୁ:୨

୧୧. ଏବଂ (ସ୍ମରଣ କର) ଯେତେବେଳେ ତୁମ୍ଭର ପାଳନକର୍ତ୍ତା ମୁସାଙ୍କୁ ଡାକି କହିଥିଲେ, "(ଅତ୍ୟାଚାରୀ ଫିରଔନ) ସମ୍ପ୍ରଦାୟ ନିକଟକୁ ଯାଅ ।"

وَإِذْ نَادَىٰ رَبُّكَ مُوسَىٰ أَنِ ائْتِ الْقَوْمَ الظَّالِمِينَ ⑪

୧୨. ଏବଂ ସେମାନଙ୍କୁ ପଚାର, "କ'ଣ ସେମାନେ (ଅଲ୍ଲାହଙ୍କୁ) ଭୟ କରୁନାହାନ୍ତି ?"

قَوْمَ فِرْعَوْنَ ۚ أَلَا يَتَّقُونَ ⑫

୧୩. ସେ (ଉତ୍ତରରେ) କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭେ ଆଶଙ୍କା କରୁଅଛୁ ଯେ ସେମାନେ ଆମ୍ଭଙ୍କୁ ମିଥ୍ୟାବାଦୀ ମଣିବେ ।"

قَالَ رَبِّ إِنِّي أَخَافُ أَن يُكَذِّبُونِ ⑬

୧୪. "ଏବଂ ଆମ୍ଭର ବକ୍ଷ ସଂକୀର୍ଣ୍ଣତା ବୋଧ କରୁଅଛି ଓ ଆମ୍ଭ ଜିହ୍ୱାରୁ ଭଲଭାବେ କଥା ବାହାରୁ ନାହିଁ ; ସୁତରାଂ (ଆମ୍ଭ ସହିତ) ହାରୁନଙ୍କୁ ମଧ୍ୟ ପ୍ରେରଣ କର ।"

وَيَضِيقُ صَدْرِي وَلَا يَنطَلِقُ لِسَانِي فَأَرْسِلْ إِلَىٰ هَارُونَ ⑭

୧୫. "ଏବଂ ଆମ୍ଭ ବିରୁଦ୍ଧରେ [୨] ସେମାନଙ୍କର ଏକ ଅଭିଯୋଗ ମଧ୍ୟ ଅଛି ; ଏବଂ ଆମ୍ଭେ ଆଶଙ୍କା [୩] କରୁଅଛୁ ଯେ ସେମାନେ ଆମ୍ଭଙ୍କୁ ହତ୍ୟା କରିଦେବେ ।"

وَلَهُمْ عَلَيَّ ذَنبٌ فَأَخَافُ أَن يَقْتُلُونِ ⑮

---

୧. ଅର୍ଥାତ୍ ଏ ଲୋକମାନେ ଇସଲାମ ଧର୍ମ ଗ୍ରହଣ ନ କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ପ୍ରାକୃତିକ ନିୟମରୁ ଏହା ପ୍ରତୀତ ହେଉଛି ଯେ ଅଲ୍ଲାହ ପ୍ରତ୍ୟେକ ବସ୍ତୁର ଯୋଡ଼ି ତିଆରି କରିଛନ୍ତି । ପୁଣ୍ୟବାନ୍ ପାଇଁ ପୁଣ୍ୟବାନ୍ ଓ ପାପୀ ପାଇଁ ପାପୀ ଯୋଡ଼ି ଗଢ଼ା ଯାଉଛି । ହଜରତ ମହମ୍ମଦଙ୍କ ପବିତ୍ର ସ୍ଥିତି ସକାଶେ ମଧ୍ୟ ଅଲ୍ଲାହ ପବିତ୍ର ଯୋଡ଼ି ସୃଷ୍ଟି କରିଛନ୍ତି । ସେମାନେ ହେଲେ ହଜରତ ଅବୁବକର, ହଜରତ ଉମର, ହଜରତ ଉସମାନ, ହଜରତ ଅଲି ଓ ଅନ୍ୟାନ୍ୟ ବିଶିଷ୍ଟ ସହଚର । ସେମାନଙ୍କ ଉପରେ ଅଲ୍ଲାହ ସନ୍ତୁଷ୍ଟ ଥିବାର ମଧ୍ୟ ପ୍ରକାଶ କରିଛନ୍ତି । ଅବିଶ୍ୱାସକାରୀମାନଙ୍କ ଅନ୍ତରରେ ଶତ୍ରୁତା ଓ କାଳିମା ଥିବା ବେଳେ ଯଦି ସେମାନେ ଇସଲାମ ଧର୍ମ ଗ୍ରହଣ କରିଥା'ନ୍ତେ ତେବେ ଜଣେ ପବିତ୍ର ଓ ପୁଣ୍ୟବାନ୍ ବ୍ୟକ୍ତିଙ୍କୁ ଅପବିତ୍ର, ପାପୀ ଓ ଦୁରାଚାରୀ ସଙ୍ଗୀ ବା ଯୋଡ଼ି ମିଳିଛି ବୋଲି ବ୍ୟାଖ୍ୟା କରାଯାଇ ଥାଆନ୍ତା । ଅବଶ୍ୟ ହଜରତ ଅବୁବକର ଆଦି ଅନ୍ୟାନ୍ୟ ସହଚର ପ୍ରଥମେ ଅବିଶ୍ୱାସକାରୀ ଥିଲେ କିନ୍ତୁ ସେମାନଙ୍କ ଅନ୍ତରାତ୍ମା ପବିତ୍ର ଥିଲା । ହଜରତ ଅଲି ଏତେ ଛୋଟ ଥିଲେ ଯେ ସେତେବେଳେ ତାଙ୍କ ପ୍ରତି ଧର୍ମ ବିଧାନଗୁଡ଼ିକ ବାଧ୍ୟତାମୂଳକ ଭାବରେ ଗଣ୍ୟ ହେଉ ନଥିଲା । ତେଣୁ ଉପରୋକ୍ତ ବ୍ୟକ୍ତିମାନଙ୍କର ବିଶ୍ୱାସସ୍ଥାପନ କରିବା ଏହି ପ୍ରମାଣର ବିରୁଦ୍ଧାଚରଣ କରୁନାହିଁ ।

୨. ଏଠାରେ ଏକ ଦୋଷାରୋପ ବିଷୟରେ ସୂଚିତ କରାଯାଇଛି । ତାହା ହେଉଛି ହଜରତ ମୁସା ଅଜ୍ଞାତରେ ଜଣେ ବ୍ୟକ୍ତିଙ୍କୁ ହତ୍ୟା କରିଥିଲେ ।

୩. ଏହାର ଅର୍ଥ ନୁହେଁ ଯେ ତାହାଙ୍କୁ ହତ୍ୟା କରାଯିବ ବୋଲି ସେ ଭୟଭୀତ ହୋଇଥିଲେ; ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ କାଳେ ସେମାନେ କ୍ରୋଧାନ୍ୱିତ ହୋଇ ତାଙ୍କର ବାର୍ତ୍ତା ଶୁଣିବା ପୂର୍ବରୁ ତାହାଙ୍କୁ ହତ୍ୟା କରିଦେବେ ଓ ଏଥିରୁ ବଞ୍ଚିତ ହେବେ, ସେଥିପାଇଁ ସେ ଭୟଭୀତ ହୋଇଥିଲେ ।

୧୬. (ଅଲ୍ଲାହ) କହିଲେ,"ଏପରି କଦାପି ହେବନାହିଁ; ସୁତରାଂ ତୁମେ ଦୁହେଁ ଆମ ଆଦେଶ ଅନୁସାରେ ଆମର ନିଦର୍ଶନଗୁଡ଼ିକ ସହିତ ଅଗ୍ରସର ହୁଅ; ଆମେ ତୁମମାନଙ୍କ ସହିତ ଥିବୁ ଓ (ତୁମମାନଙ୍କର ପ୍ରାର୍ଥନା) ଶୁଣୁଥିବୁ[୧]।"

قَالَ كَلَّا ۚ فَاذْهَبَا بِآيَاتِنَا ۖ إِنَّا مَعَكُمْ مُسْتَمِعُونَ ﴿١٦﴾

୧୭. ସୁତରାଂ (ତୁମେମାନେ) ଫିରଓନ ନିକଟକୁ ଯାଅ ଓ ତାହାକୁ କୁହ,"ଆମେ ସମଗ୍ର ଜଗତର ପାଳନକର୍ତ୍ତା (ଅଲ୍ଲାହ)ଙ୍କ ଦ୍ୱାରା ପ୍ରେରିତ ହୋଇଅଛୁ।"

فَأْتِيَا فِرْعَوْنَ فَقُولَا إِنَّا رَسُولُ رَبِّ الْعَالَمِينَ ﴿١٧﴾

୧୮. "(ଆମେ ଏଥିସକାଶେ ଆସିଅଛୁ) ଯେ (ତୁମେ) ଆମମାନଙ୍କ ସହିତ ଇସ୍ରାଇଲୀୟ ସନ୍ତାନମାନଙ୍କୁ ପ୍ରେରଣ କର।"

أَنْ أَرْسِلْ مَعَنَا بَنِي إِسْرَائِيلَ ﴿١٨﴾

୧୯. (ଏଥି ଉତ୍ତାରୁ ଫିରଓନ) କହିଲା,"(ହେ ମୁସା!) କ'ଣ ମୁଁ ତୁମକୁ ଶୈଶବ ଅବସ୍ଥାରେ ପାଳନ କରି ନାହିଁ ଓ ତୁମେ ଆମମାନଙ୍କ ମଧ୍ୟରେ ନିଜ ଜୀବନର ବହୁବର୍ଷ ଅତିବାହିତ କରିନାହିଁ?"

قَالَ أَلَمْ نُرَبِّكَ فِينَا وَلِيدًا وَلَبِثْتَ فِينَا مِنْ عُمُرِكَ سِنِينَ ﴿١٩﴾

୨୦. "ଏବଂ ତୁମେ ସେହି କାର୍ଯ୍ୟ ମଧ୍ୟ କରିଅଛ ଯାହା ତୁମେ ହିଁ କରିଥିଲ, ଏବଂ ତୁମେ (ମୋ ଅନୁଗ୍ରହ ପ୍ରତି) କୃତଘ୍ନ ଅଟ।"

وَفَعَلْتَ فَعْلَتَكَ الَّتِي فَعَلْتَ وَأَنْتَ مِنَ الْكَافِرِينَ ﴿٢٠﴾

୨୧. (ମୁସା) କହିଲେ, "(ଯେଉଁ କାର୍ଯ୍ୟ ବିଷୟରେ ତୁମେ ସଙ୍କେତ ଦେଉଅଛ) ସେହି କାର୍ଯ୍ୟ ଆମେ ସେତେବେଳେ କରିଥିଲୁ ଯେତେବେଳେ (ତାହାର) ବାସ୍ତବତା ଆମକୁ ଜଣା ନଥିଲା।"

قَالَ فَعَلْتُهَا إِذًا وَأَنَا مِنَ الضَّالِّينَ ﴿٢١﴾

୨୨. "ସୁତରାଂ ଏହା ଫଳରେ ଯେତେବେଳେ ଆମକୁ ତୁମଠାରୁ ଭୟ କରିବା ଅନୁଭୂତ ହେଲା ସେତେବେଳେ ଆମେ ତୁମ ନିକଟରୁ ପଳାୟନ କଲୁ; ଏହାପରେ ଆମର ପାଳନକର୍ତ୍ତା ଆମକୁ (ନବି ପଦ ଅର୍ପଣ କରି) ଆଦେଶ[୨] ପ୍ରଦାନ କରିଥିଲେ ଓ ଆମକୁ ରସୁଲମାନଙ୍କ ମଧ୍ୟରେ (ଏକ ରସୁଲ ରୂପେ) ଅନ୍ତର୍ଭୁକ୍ତ କରିଥିଲେ।"

فَفَرَرْتُ مِنْكُمْ لَمَّا خِفْتُكُمْ فَوَهَبَ لِي رَبِّي حُكْمًا وَجَعَلَنِي مِنَ الْمُرْسَلِينَ ﴿٢٢﴾

୨୩. ଏବଂ (ଆମକୁ ଶୈଶବାବସ୍ଥାରେ ପାଳନ କରିଥିବା ହେତୁ) ତୁମେ ଯେଉଁ ଅନୁଗ୍ରହ ସଂକ୍ରାନ୍ତରେ ଆକ୍ଷେପ କରୁଅଛ ତାହାର ପ୍ରତିବଦଳରେ କ'ଣ ତୁମେ ଇସ୍ରାଇଲୀୟ ସମ୍ପ୍ରଦାୟକୁ କ୍ରୀତଦାସ ଭାବେ ରଖିଅଛ?

وَتِلْكَ نِعْمَةٌ تَمُنُّهَا عَلَيَّ أَنْ عَبَّدْتَ بَنِي إِسْرَائِيلَ ﴿٢٣﴾

୧. ଏହି ଆୟତରେ 'ତା-ସିନ-ମୀମ'କୁ ଆଦ୍ୟରେ ଲିପିବଦ୍ଧ କରାଯିବାର ଉଦ୍ଦେଶ୍ୟ ସୂଚାଯାଇଛି ଯେ ଅଲ୍ଲାହ ନିଜ ଭକ୍ତମାନଙ୍କ ଗୁହାରି ସବୁବେଳେ ଶୁଣୁଥା'ନ୍ତି।

୨. ନବି ପଦରେ ଅଧିଷ୍ଠିତ ହେବା ପ୍ରମାଣିତ କରୁଅଛି ଯେ ହଜରତ ମହମ୍ମଦ ଜାଣିଶୁଣି କୌଣସି ଅନିଷ୍ଟ କରି ନ ଥିଲେ; ତା କରିଥିଲେ, ଅଲ୍ଲାହ ତାଙ୍କୁ ଉଚ୍ଚ ପଦବୀ ପ୍ରଦାନ କରି ନ ଥା'ନ୍ତେ।

قَالَ فِرْعَوْنُ وَمَا رَبُّ الْعٰلَمِيْنَ ﴿٢٤﴾

୨୪. ଏଥି ଉତ୍ତାରୁ ଫିରଔନ (ଲଜ୍ଜିତ ହୋଇ) କହିଲା, "ଏ ସମସ୍ତ ଜଗତର ପାଳନକର୍ତ୍ତା କିଏ ' (ଯାହାଙ୍କ ତରଫରୁ ପ୍ରେରିତ ହୋଇଥିବା ତୁମେ ଦାବି କରୁଅଛ) ?"

قَالَ رَبُّ السَّمٰوٰتِ وَالْاَرْضِ وَمَا بَيْنَهُمَا ؕ اِنْ كُنْتُمْ مُّوْقِنِيْنَ ﴿٢٥﴾

୨୫. (ମୁସା) କହିଲେ, "ଯଦି ତୁମର ବିଶ୍ୱାସ କରିବାକୁ ଇଚ୍ଛା ଥାଏ, ତେବେ ଆକାଶ ଓ ପୃଥିବୀ ଓ ଏ ଦୁହିଙ୍କ ମଧ୍ୟରେ ଯାହାକିଛି ଅଛି ସେ ତାହାର ପାଳନକର୍ତ୍ତା ।"

قَالَ لِمَنْ حَوْلَهٗۤ اَلَا تَسْتَمِعُوْنَ ﴿٢٦﴾

୨୬. (ଏହାପରେ) ଫିରଔନ ନିଜ ପାଖରେ ଥିବା ଲୋକମାନଙ୍କୁ କହିଲା, "(ମୁସା ଯାହା କହୁଛି) କ'ଣ ତୁମେ ଶୁଣୁ ନାହଁ ?"

قَالَ رَبُّكُمْ وَرَبُّ اٰبَآئِكُمُ الْاَوَّلِيْنَ ﴿٢٧﴾

୨୭. ମୁସା (ନିଜର ପୂର୍ବ ବକ୍ତବ୍ୟକୁ ବୁଝାଇ) କହିଲେ, "ସେ ହିଁ ତୁମମାନଙ୍କର ପାଳନକର୍ତ୍ତା ଓ ତୁମମାନଙ୍କ ପୂର୍ବପୁରୁଷଙ୍କର ମଧ୍ୟ ପାଳନକର୍ତ୍ତା ।"

قَالَ اِنَّ رَسُوْلَكُمُ الَّذِيْۤ اُرْسِلَ اِلَيْكُمْ لَمَجْنُوْنٌ ﴿٢٨﴾

୨୮. (ଏହାପରେ ଫିରଔନ) କହିଲା, "(ହେ ଲୋକମାନେ !) ତୁମମାନଙ୍କର ଏହି ରସୁଲ ଯେ ତୁମମାନଙ୍କ ନିକଟକୁ ପ୍ରେରିତ ହୋଇ ଅଛି ସେ ନିଶ୍ଚିତ ରୂପେ ପାଗଳ[୧] ।"

قَالَ رَبُّ الْمَشْرِقِ وَالْمَغْرِبِ وَمَا بَيْنَهُمَا ؕ اِنْ كُنْتُمْ تَعْقِلُوْنَ ﴿٢٩﴾

୨୯. (ମୁସା ବୁଝିପାରିଲେ ଯେ ସେ ବିଷୟଟିକୁ ଏଡ଼ି ଦେବାକୁ ଚାହୁଁଛି ତେଣୁ ସେ) କହିଲେ, "ସେ ହିଁ ପୂର୍ବ ଓ ପଶ୍ଚିମ ଏବଂ ଯାହା କିଛି ଏ ଉଭୟ ମଧ୍ୟରେ ରହିଅଛି ତାହାର ପାଳନକର୍ତ୍ତା; ତୁମେ ବୁଦ୍ଧି ପ୍ରୟୋଗ କର (ତେବେ ଏହା ଜାଣି ପାରିବ) ।"

قَالَ لَئِنِ اتَّخَذْتَ اِلٰهًا غَيْرِيْ لَاَجْعَلَنَّكَ مِنَ الْمَسْجُوْنِيْنَ ﴿٣٠﴾

୩୦. (ଏହାପରେ ରାଗାନ୍ୱିତ[୨] ହୋଇ ଫିରଔନ) କହିଲା, "ଯଦି ମୋ ବ୍ୟତୀତ ତୁମେ ଅନ୍ୟ କାହାକୁ ଉପାସ୍ୟ ରୂପେ ଗ୍ରହଣ କରିବ ତେବେ ମୁଁ ତୁମକୁ କାରାରୁଦ୍ଧ କରିବି ।"

قَالَ اَوَلَوْ جِئْتُكَ بِشَيْءٍ مُّبِيْنٍ ﴿٣١﴾

୩୧. (ମୁସା) କହିଲେ, "କ'ଣ ତୁମେ ଆମକୁ ଏପରି ପରିସ୍ଥିତିରେ ମଧ୍ୟ (କାରାରୁଦ୍ଧ କରିବ) ଯଦି ଆମେ (ସତ୍ୟର) ଉନ୍ମୋଚନ ପାଇଁ କୌଣସି (ଅଲୌକିକ) ବିଷୟ ତୁମ ନିକଟରେ ଉପସ୍ଥାପିତ କରିବୁ ?"

---

୧. ଏହାର ଉଦ୍ଦେଶ୍ୟ ନୁହେଁ ଯେ 'ମୁଁ ପ୍ରଶ୍ନ କ'ଣ କରୁଛି ଓ ସେ ତା'ର କ'ଣ ଉତ୍ତର ଦେଉଛି', ବରଂ ଏହାର ପ୍ରକୃତ ମର୍ମ ହେଉଛି– ଫିରଔନ ଯେଉଁ ବିଷୟରେ ନିଜର ବିରୋଧଭାବ ପ୍ରକାଶ କରିଛି ସେ ବିଷୟରେ ମଧ୍ୟ ହଜରତ ମୁସା ଆପଣା ମତ ବ୍ୟକ୍ତ କରିବାକୁ ଭୟ କରିନାହାନ୍ତି । ତେଣୁ ତା' କହିବା ଅନୁସାରେ ଏହା ପାଗଳାମିର ଲକ୍ଷଣ ।

୨. ଯଦି ଫିରଔନ ନିଜକୁ ସେପରି ପାଳନକର୍ତ୍ତା ବୋଲି ଦାବି କରିଥା'ନ୍ତା ତେବେ ତା' ନିଜ ଜାତିର ଲୋକମାନେ ତା'ଉପରେ ଅସନ୍ତୁଷ୍ଟ ହୋଇଥା'ନ୍ତେ, କାରଣ ସେହି ଲୋକମାନେ ନକ୍ଷତ୍ର ଉପାସକ ଥିଲେ ।

୩୨. (ଏହାପରେ ଫିରଔନ) କହିଲା, "ଯଦି ତୁମେ ସତ୍ୟବାଦୀ ହୋଇଥାଅ ତେବେ ତାହା ଉପସ୍ଥିତ କରାଅ।"

قَالَ فَأْتِ بِهٖٓ اِنْ كُنْتَ مِنَ الصّٰدِقِيْنَ ۝٣١

୩୩. ସୁତରାଂ ସେ (ମୁସା) ନିଜର ଲାଠି (ଭୂମି ଉପରେ) ପକାଇ ଦେଲେ ; ତତ୍‌କ୍ଷଣାତ୍ (ଫିରଔନର ଲୋକମାନେ ଦେଖିଲେ ଯେ) ଏହା ଏକ ଦୃଶ୍ୟମାନ ଅଜଗର ହୋଇଗଲା।

فَاَلْقٰى عَصَاهُ فَاِذَا هِيَ ثُعْبَانٌ مُّبِيْنٌ ۝٣٢

୩୪. ଏବଂ ସେ ନିଜ ହାତ (କାଖ ତଳୁ ଉଠାଇ) ବାହାର କରିବାରୁ ସମସ୍ତ ଦର୍ଶକ ହଠାତ୍ ଦେଖିବାକୁ ପାଇଲେ ଯେ ତାହା ସମ୍ପୂର୍ଣ୍ଣ ଶୁଭ୍ର।

وَّنَزَعَ يَدَهٗ فَاِذَا هِيَ بَيْضَآءُ لِلنّٰظِرِيْنَ ۝٣٣

ରୁ:୩

୩୫. ଏହାପରେ ଫିରଔନ ନିଜ ପାଖରେ ଥିବା ନେତୃସ୍ଥାନୀୟ ଲୋକମାନଙ୍କୁ କହିଲା, "ନିଶ୍ଚୟ ଏ ଜଣେ ଦକ୍ଷ ଯାଦୁକର।"

قَالَ لِلْمَلَاِ حَوْلَهٗٓ اِنَّ هٰذَا لَسٰحِرٌ عَلِيْمٌ ۝٣٤

୩୬. "ସେ ନିଜ ଯାଦୁ ବଳରେ ତୁମମାନଙ୍କୁ ନିଜ ଦେଶରୁ ବିତାଡ଼ିତ କରିବାକୁ ଇଚ୍ଛା କରୁଛି ; ତେବେ କୁହ, ତୁମମାନଙ୍କର ମତାମତ କ'ଣ ?"

يُّرِيْدُ اَنْ يُّخْرِجَكُمْ مِّنْ اَرْضِكُمْ بِسِحْرِهٖ ۖ فَمَاذَا تَاْمُرُوْنَ ۝٣٥

୩୭. ସେମାନେ କହିଲେ, "ତାହାକୁ ଓ ତାହାର ଭାଇକୁ (କିଛିଦିନ) ଅବସର ଦିଅ ଏବଂ ବିଭିନ୍ନ ସହରକୁ ଦୂତ ପଠାଅ।"

قَالُوْٓا اَرْجِهْ وَاَخَاهُ وَابْعَثْ فِي الْمَدَآئِنِ حٰشِرِيْنَ ۝٣٦

୩୮. "(ସେମାନେ) ଯେଉଁମାନେ ତୁମ ନିକଟକୁ ଦକ୍ଷ ଓ ଅଭିଜ୍ଞ ଯାଦୁକରଙ୍କୁ ଘେନି ଆସିବେ।"

يَاْتُوْكَ بِكُلِّ سَحَّارٍ عَلِيْمٍ ۝٣٧

୩୯. ଏଥି ଉତ୍ତାରୁ ସମସ୍ତ ଯାଦୁକରଙ୍କୁ ଏକ ନିର୍ଦ୍ଦିଷ୍ଟ ଦିନ ଏକତ୍ରିତ କରାଗଲା।

فَجُمِعَ السَّحَرَةُ لِمِيْقَاتِ يَوْمٍ مَّعْلُوْمٍ ۝٣٨

୪୦. ଏବଂ ଲୋକମାନଙ୍କୁ କୁହାଗଲା, "କ'ଣ ତୁମେମାନେ ସମସ୍ତେ (ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ) ଏକତ୍ରିତ ହେବାକୁ ପ୍ରସ୍ତୁତ ଅଛ ?"

وَّقِيْلَ لِلنَّاسِ هَلْ اَنْتُمْ مُّجْتَمِعُوْنَ ۝٣٩

୪୧. "ତାହାହେଲେ ଯଦି ଯାଦୁକରମାନେ ବିଜୟୀ ହେବେ, ଆମେମାନେ ସେମାନଙ୍କ କହିବା ଅନୁସାରେ ପରିଚାଳିତ ହେବା।"

لَعَلَّنَا نَتَّبِعُ السَّحَرَةَ اِنْ كَانُوْا هُمُ الْغٰلِبِيْنَ ۝٤٠

୪୨. ସୁତରାଂ ଯେତେବେଳେ ଯାଦୁକରମାନେ ଉପସ୍ଥିତ ହେଲେ, ସେତେବେଳେ ସେମାନେ ଫିରଔନକୁ କହିଲେ, "ଯଦି ଆମେମାନେ ବିଜୟୀ ହେବୁ ତେବେ ଆମମାନଙ୍କୁ କ'ଣ କିଛି ପୁରସ୍କାର ମିଳିବ ?"

فَلَمَّا جَآءَ السَّحَرَةُ قَالُوْا لِفِرْعَوْنَ اَئِنَّ لَنَا لَاَجْرًا اِنْ كُنَّا نَحْنُ الْغٰلِبِيْنَ ۝٤١

୪୩. (ଫିରଔନ) କହିଲା "ହଁ, ବରଂ ଏପରି ପରିସ୍ଥିତିରେ ତୁମେମାନେ ଦରବାରରେ (ଆମର) ପାଖ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।"

قَالَ نَعَمْ وَإِنَّكُمْ إِذًا لَّمِنَ الْمُقَرَّبِينَ ﴿٤٣﴾

୪୪. ଏହାପରେ ମୁସା ସେମାନଙ୍କୁ କହିଲେ, "ତୁମେମାନେ ଯେଉଁ ଉପାୟ[୧] ଅବଲମ୍ବନ କରିବାକୁ ଚାହୁଁଛ ତାହା କର ।"

قَالَ لَهُم مُّوسَىٰ أَلْقُوا مَا أَنتُم مُّلْقُونَ ﴿٤٤﴾

୪୫. ତା'ପରେ ସେମାନେ ନିଜର ଦଉଡ଼ି ଓ ଲାଠିଗୁଡ଼ିକୁ ଭୂମି ଉପରେ ଫୋପାଡ଼ି ଦେଲେ ଓ କହିଲେ, "ଫିରଔନଙ୍କ ସମ୍ମାନର ରାଣ ; ଆମେମାନେ ନିଶ୍ଚୟ ବିଜୟୀ ହେବୁ ।"

فَأَلْقَوْا حِبَالَهُمْ وَعِصِيَّهُمْ وَقَالُوا بِعِزَّةِ فِرْعَوْنَ إِنَّا لَنَحْنُ الْغَالِبُونَ ﴿٤٥﴾

୪୬. ତାପରେ ମୁସା ମଧ୍ୟ ନିଜ ଲାଠିକୁ ଫୋପାଡ଼ିଦେଲେ ; ତତ୍କ୍ଷଣାତ୍ ତାହା ସେମାନଙ୍କ ମିଥ୍ୟାକୁ ଧୂଳିସାତ୍ କରିଦେଲା ।

فَأَلْقَىٰ مُوسَىٰ عَصَاهُ فَإِذَا هِيَ تَلْقَفُ مَا يَأْفِكُونَ ﴿٤٦﴾

୪୭. ସେତେବେଳେ ଯାଦୁକରମାନେ (ଅଲ୍ଲାହଙ୍କ ସମୀପରେ) ସିଜଦାରେ ପଡ଼ିଥିଲେ ।

فَأُلْقِيَ السَّحَرَةُ سَاجِدِينَ ﴿٤٧﴾

୪୮. (ଏବଂ) ସେମାନେ କହିଲେ, "ଆମେମାନେ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କରୁଅଛୁ,"

قَالُوا آمَنَّا بِرَبِّ الْعَالَمِينَ ﴿٤٨﴾

୪୯. "ଯେ କି ମୁସା ଓ ହାରୁନଙ୍କର ପାଳନକର୍ତ୍ତା ମଧ୍ୟ ଅଟନ୍ତି ।"

رَبِّ مُوسَىٰ وَهَارُونَ ﴿٤٩﴾

୫୦. ଏଥିଯୋଗୁଁ ଫିରଔନ୍ (ବିରକ୍ତ ହୋଇ) କହିଲା, "କ'ଣ ମୁଁ ଆଦେଶ ଦେବା ପୂର୍ବରୁ ତୁମେମାନେ ବିଶ୍ୱାସ କରିନେଲ ? ଏ (ବ୍ୟକ୍ତି) ନିଶ୍ଚୟ ତୁମମାନଙ୍କର ନେତା ଯେ କି ତୁମମାନଙ୍କୁ ଯାଦୁ ଶିଖାଇଛି ; ଅତଏବ ତୁମେମାନେ ଶୀଘ୍ର (ନିଜର ପରିଣାମ) ଜାଣିପାରିବ ; ମୋର ବିରୁଦ୍ଧାଚରଣ କରିଥିବା ହେତୁ ମୁଁ ତୁମମାନଙ୍କର ହାତ ଓ ଗୋଡ଼କୁ କାଟି ପକାଇବି ଓ ତୁମ ସମସ୍ତଙ୍କୁ ଶୂଳିରେ ଚଢ଼ାଇବି ।"

قَالَ آمَنتُمْ لَهُ قَبْلَ أَنْ آذَنَ لَكُمْ إِنَّهُ لَكَبِيرُكُمُ الَّذِي عَلَّمَكُمُ السِّحْرَ فَلَسَوْفَ تَعْلَمُونَ لَأُقَطِّعَنَّ أَيْدِيَكُمْ وَأَرْجُلَكُم مِّنْ خِلَافٍ وَلَأُصَلِّبَنَّكُمْ أَجْمَعِينَ ﴿٥٠﴾

୫୧. ସେମାନେ କହିଲେ, "ଏଥିରେ କୌଣସି କ୍ଷତି ନାହିଁ ; ପରିଶେଷରେ ଆମକୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ହିଁ ଫେରିବାକୁ ହେବ ।"

قَالُوا لَا ضَيْرَ إِنَّا إِلَىٰ رَبِّنَا مُنقَلِبُونَ ﴿٥١﴾

---

୧. ମୂଳ ଶବ୍ଦ 'ଅଲ୍‌କା' ଅର୍ଥ ଏପରି ନିକ୍ଷେପ ଯାହାକୁ ଅନ୍ୟମାନେ ଦେଖି ପାରିବେ ନାହିଁ । ଏହି ଶବ୍ଦ ସାଧାରଣତଃ ନିକ୍ଷେପ ଅର୍ଥରେ ପ୍ରୟୋଗ କରାଯାଏ । ଏଠାରେ ଏହାର ପ୍ରକୃତ ମର୍ମ ହେଉଛି– ଯାହା କିଛି ଅନ୍ତର ମଧ୍ୟରେ ଅଛି ତାହା ସମ୍ମୁଖକୁ ଘେନି ଆସ ତାହାହେଲେ ସମସ୍ତେ ଦେଖି ପାରିବେ ।

୨. ଏହି ଆୟତର ଶେଷାଂଶ ଓ ସୁରା ଆରାଫର ଆୟତ ସଂଖ୍ୟା ୧୧୮ ର ଶେଷାଂଶ ଅଭିନ୍ନ । କିନ୍ତୁ ଅନୁବାଦରେ ସମାନ ଭାଷା ପ୍ରୟୋଗ କରାଯାଇ ନ ଥିଲେ ମଧ୍ୟ ବାସ୍ତବରେ ଉଭୟ ଅନୁବାଦର ମର୍ମ ସମାନ ।

୫୨. "ଆମେ ଆଶାକରୁଛୁ ଯେ ଆମମାନଙ୍କର ପାଳନକର୍ତ୍ତା ଆମର ପାପକୁ ଏଥି ସକାଶେ କ୍ଷମା କରିଦେବେ ଯେ ଆମେମାନେ ବିଶ୍ୱାସକାରୀଙ୍କ ମଧ୍ୟରେ ସର୍ବପ୍ରଥମ ଥିଲୁ ।"

إِنَّا نَطْمَعُ أَنْ يَغْفِرَ لَنَا رَبُّنَا خَطٰيٰنَآ أَنْ كُنَّآ أَوَّلَ الْمُؤْمِنِينَ ﴿٥٢﴾

ରୁ:୪

୫୩. ଏବଂ ଆମେ ମୁସାଙ୍କୁ ଓହି କରିଥିଲୁ ଯେ ଆମର ଭକ୍ତମାନଙ୍କୁ ରାତାରାତି ନେଇ ଚାଲିଯାଅ ; ନିଶ୍ଚୟ ତୁମମାନଙ୍କର ପଶ୍ଚାଦ୍ଧାବନ କରାହେବ ।

وَأَوْحَيْنَآ إِلٰى مُوسٰىٓ أَنْ أَسْرِ بِعِبَادِيٓ إِنَّكُمْ مُّتَّبَعُونَ ﴿٥٣﴾

୫୪. ଏହାପରେ ଫିରଔନ ଲୋକମାନଙ୍କୁ ଏକତ୍ରିତ କରିବା ଉଦ୍ଦେଶ୍ୟରେ ସହରମାନଙ୍କ ଆଡ଼କୁ ଦୂତ ପଠାଇଲା ।

فَأَرْسَلَ فِرْعَوْنُ فِي الْمَدَآئِنِ حٰشِرِينَ ﴿٥٤﴾

୫୫. (ଏହା କହି ଯେ) "ଏହି (ଇସ୍ରାଇଲୀୟ ସନ୍ତାନ)ମାନେ ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ;"

إِنَّ هٰٓؤُلَآءِ لَشِرْذِمَةٌ قَلِيلُونَ ﴿٥٥﴾

୫୬. "ଏହା ସତ୍ତ୍ୱେ ସେମାନେ ଆମମାନଙ୍କୁ ରାଗାନ୍ୱିତ କରୁଛନ୍ତି ;"

وَإِنَّهُمْ لَنَا لَغَآئِظُونَ ﴿٥٦﴾

୫୭. "ଏବଂ ଆମେମାନେ ଏକ ସଜାଗ ଓ ବୃହତ୍ ଗୋଷ୍ଠୀ ; (ତେଣୁ ଆମେମାନେ ସେମାନଙ୍କର ପ୍ରତିରୋଧ କରିବା ଉଚିତ ) ।"

وَإِنَّا لَجَمِيعٌ حٰذِرُونَ ﴿٥٧﴾

୫୮. ତେଣୁ ଆମେ ସେମାନଙ୍କୁ (ଅର୍ଥାତ୍ ଫିରଔନ ସମ୍ପ୍ରଦାୟକୁ) ଉଦ୍ୟାନ ଓ ଝରଣା ଥିବା ସ୍ଥାନରୁ ଉଚ୍ଛେଦ କରିଥିଲୁ ;

فَأَخْرَجْنٰهُمْ مِّنْ جَنّٰتٍ وَّعُيُونٍ ﴿٥٨﴾

୫୯. ତଥା ଧନସମ୍ପଦ ଓ ସମ୍ମାନଜନକ ସ୍ଥାନରୁ (ମଧ୍ୟ ଉଚ୍ଛେଦ କରିଥିଲୁ) ।

وَّكُنُوزٍ وَّمَقَامٍ كَرِيمٍ ﴿٥٩﴾

୬୦. ଏହିପରି ହେଲା ; ଏବଂ ଆମେ ଇସ୍ରାଇଲୀୟ ସନ୍ତାନମାନଙ୍କୁ ଏ ସମସ୍ତ ବିଷୟର ଉତ୍ତରାଧିକାରୀ[୧] କରିଥିଲୁ ।

كَذٰلِكَ وَأَوْرَثْنٰهَا بَنِيٓ إِسْرَآءِيلَ ﴿٦٠﴾

୬୧. ତା'ପରେ ପ୍ରଭାତ ସମୟରେ ସେମାନେ (ଅର୍ଥାତ୍ ଫିରଔନ ଓ ତାହାର ଲୋକମାନେ ଇସ୍ରାଇଲୀୟ ସମ୍ପ୍ରଦାୟକୁ ପ୍ରତିରୋଧ କରିବା ସକାଶେ) ସେମାନଙ୍କର ପଶ୍ଚାଦ୍ଧାବନ କଲେ ।

فَأَتْبَعُوهُمْ مُّشْرِقِينَ ﴿٦١﴾

---

୧. ଅର୍ଥାତ୍ ସେ ଇସ୍ରାଇଲୀୟ ସନ୍ତାନମାନଙ୍କୁ ଏପରି ଏକ ଦେଶକୁ ଘେନି ଆସିଲେ ଯେଉଁଠାରେ ସମସ୍ତ ପ୍ରକାର ବସ୍ତୁ ଉପଲବ୍ଧ ହେଉଥିଲା । ସେଠାରେ ଉଦ୍ୟାନ, ଝରଣା, ଧନ ସମ୍ପତ୍ତି ଆଦି ସବୁ କିଛି ଥିଲା । ତାହା ଥିଲା ପାଲେଷ୍ଟାଇନ ନାମକ ଏକ ଦେଶ । ବସ୍ତୁତଃ ଫିରଔନ ଜଳମଗ୍ନ ହେବା ପରେ ଇସ୍ରାଇଲୀୟମାନେ ମିଶରର ଶାସନକର୍ତ୍ତା ହୋଇ ନ ଥିଲେ ।

୬୨. ତା'ପରେ ଯେତେବେଳେ ଉଭୟଗୋଷ୍ଠୀ ପରସ୍ପରର ସମ୍ମୁଖୀନ ହେଲେ , ସେତେବେଳେ ମୁସାଙ୍କ ଅନୁଗାମୀମାନେ କହିଲେ, "ଆମେମାନେ ଧରା ପଡ଼ିଗଲୁ ।"

فَلَمَّا تَرَآءَ الْجَمْعٰنِ قَالَ اَصْحٰبُ مُوْسٰۤى اِنَّا لَمُدْرَكُوْنَ ﴿٦٢﴾

୬୩. (ମୁସା) କହିଲେ, "ଏପରି କଦାପି ହେବନାହିଁ ; ଆମର ପାଳନକର୍ତ୍ତା ଆମ ସହିତ ଅଛନ୍ତି ଓ ସେ ଆମକୁ ସଫଳତାର ପଥ ପ୍ରଦର୍ଶନ କରାଇବେ ।"

قَالَ كَلَّا ۚ اِنَّ مَعِىَ رَبِّىْ سَيَهْدِيْنِ ﴿٦٣﴾

୬୪. ଏହାପରେ ଆମେ ମୁସାଙ୍କୁ ଓହି ମାଧ୍ୟମରେ ଜଣାଇଲୁ, "ନିଜ ଲାଠି ଦ୍ବାରା ସାଗର (ଜଳ)କୁ ଆଘାତ କର ;" ତଦ୍ଦ୍ବାରା ସାଗର (ଜଳ) ଦୁଇଭାଗ ହୋଇଗଲା, ଏବଂ ତାହାର ପ୍ରତ୍ୟେକ ଭାଗ ଏକ ବୃହତ୍ ସ୍ତୂପ ସଦୃଶ ଦୃଷ୍ଟିଗୋଚର ହେଲା ।

فَاَوْحَيْنَاۤ اِلٰى مُوْسٰۤى اَنِ اضْرِبْ بِّعَصَاكَ الْبَحْرَ ؕ فَانْفَلَقَ فَكَانَ كُلُّ فِرْقٍ كَالطَّوْدِ الْعَظِيْمِ ﴿٦٤﴾

୬୫. ଏବଂ ସେତେବେଳେ ଆମେ ଅନ୍ୟ ଗୋଷ୍ଠୀକୁ (ଅର୍ଥାତ୍ ଫିରଔନର ଲୋକମାନଙ୍କୁ) ନିକଟକୁ ନେଇ ଆସିଲୁ ।

وَاَزْلَفْنَا ثَمَّ الْاٰخَرِيْنَ ﴿٦٥﴾

୬୬. ଏବଂ ମୁସା ଓ ତାହାଙ୍କର ଅନୁଗାମୀମାନଙ୍କୁ ରକ୍ଷା କରିଥିଲୁ ।

وَاَنْجَيْنَا مُوْسٰى وَمَنْ مَّعَهٗۤ اَجْمَعِيْنَ ﴿٦٦﴾

୬୭. ଏବଂ ଆମେ ଅନ୍ୟ ଗୋଷ୍ଠୀକୁ ଜଳମଗ୍ନ କରି ବୁଡ଼ାଇ ଦେଲୁ ।

ثُمَّ اَغْرَقْنَا الْاٰخَرِيْنَ ﴿٦٧﴾

୬୮. ବାସ୍ତବିକ ଏଥିରେ (ଅର୍ଥାତ୍ ଏହି ଘଟଣାରେ) ଏକ ବଡ଼ ନିଦର୍ଶନ ରହିଅଛି ; କିନ୍ତୁ ଏ (ଅମାନ୍ୟକାରୀ) ମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ବାସ କରନ୍ତି ନାହିଁ ।

اِنَّ فِىْ ذٰلِكَ لَاٰيَةً ؕ وَمَا كَانَ اَكْثَرُهُمْ مُّؤْمِنِيْنَ ﴿٦٨﴾

୬୯. ଏବଂ ତୁମର ପାଳନକର୍ତ୍ତା ବାସ୍ତବରେ ପରାକ୍ରମୀ (ଓ) ସଦା କରୁଣାମୟ ।

وَاِنَّ رَبَّكَ لَهُوَ الْعَزِيْزُ الرَّحِيْمُ ﴿٦٩﴾ ع

ରୁ :୫

୭୦. ଏବଂ ସେମାନଙ୍କୁ ଇବ୍ରାହିମଙ୍କ ବୃତ୍ତାନ୍ତ ପାଠ କରି ଶୁଣାଅ ।

وَاتْلُ عَلَيْهِمْ نَبَاَ اِبْرٰهِيْمَ ﴿٧٠﴾ وقف لازم

୭୧. ଯେତେବେଳେ ସେ ନିଜ ପିତା ଓ ନିଜ ସମ୍ପ୍ରଦାୟକୁ କହିଲେ, "ତୁମେମାନେ କାହାର ଉପାସନା କରୁଅଛ ?"

اِذْ قَالَ لِاَبِيْهِ وَقَوْمِهٖ مَا تَعْبُدُوْنَ ﴿٧١﴾

୭୨. ସେମାନେ କହିଲେ, "ଆମେମାନେ ପିତୁଳା ପୂଜା କରୁ, ଓ ସେମାନଙ୍କ ନିକଟରେ ବସି ରହିଥାଉ ।"

قَالُوْا نَعْبُدُ اَصْنَامًا فَنَظَلُّ لَهَا عٰكِفِيْنَ ﴿٧٢﴾

୭୩. (ଏହା ଶୁଣି ଇବ୍ରାହିମ) କହିଲେ, "ଯେତେବେଳେ ତୁମେମାନେ ସେମାନଙ୍କୁ ଡାକୁଥାଅ କ'ଣ ସେତେବେଳେ ସେମାନେ (ତୁମମାନଙ୍କର ଡାକ) ଶୁଣନ୍ତି ?"

قَالَ هَلْ يَسْمَعُوْنَكُمْ اِذْ تَدْعُوْنَ ﴿٧٣﴾

୭୪. "ଅଥବା ସେମାନେ କ'ଣ ତୁମମାନଙ୍କର କୌଣସି ଲାଭ ବା କ୍ଷତି କରୁଛନ୍ତି ?"

اَوۡ یَنۡفَعُوۡنَکُمۡ اَوۡ یَضُرُّوۡنَ ﴿۷۳﴾

୭୫. ସେମାନେ କହିଲେ, "ଏପରି ନୁହଁ ; କିନ୍ତୁ ଆମେମାନେ ନିଜ ପିତୃପିତାମହଙ୍କୁ ଏପରି କରୁଥିବାର ଦେଖି ଆସିଛୁ ।"

قَالُوۡا بَلۡ وَجَدۡنَاۤ اٰبَآءَنَا کَذٰلِکَ یَفۡعَلُوۡنَ ﴿۷۴﴾

୭୬. ସେ କହିଲେ, "କ'ଣ ତୁମେମାନେ ଜାଣିଅଛ ଯେ ତୁମେମାନେ ଯାହାର ଉପାସନା କରୁଅଛ,

قَالَ اَفَرَءَیۡتُمۡ مَّا کُنۡتُمۡ تَعۡبُدُوۡنَ ﴿۷۵﴾

୭୭. "ତୁମେମାନେ ତଥା ତୁମମାନଙ୍କ ପୂର୍ବରୁ ତୁମମାନଙ୍କର ପିତୃପିତାମହମାନେ ମଧ୍ୟ ;"

اَنۡتُمۡ وَ اٰبَآؤُکُمُ الۡاَقۡدَمُوۡنَ ﴿۷۶﴾

୭୮. "ସମସ୍ତ ଜଗତର ପାଳନକର୍ତ୍ତାଙ୍କ ବ୍ୟତୀତ, ସେମାନେ ସମସ୍ତେ ଆମର ବିନାଶ ଇଚ୍ଛା କରୁଛନ୍ତି ;"

فَاِنَّهُمۡ عَدُوٌّ لِّیۡۤ اِلَّا رَبَّ الۡعٰلَمِیۡنَ ﴿۷۷﴾

୭୯. "ଯେ ଆମକୁ ସୃଷ୍ଟି କରିଛନ୍ତି ଓ (ଏହି ହେତୁ) ସେ ହିଁ ଆମକୁ ସତ୍‌ପଥ ପ୍ରଦର୍ଶନ କରାଇବେ ।"

الَّذِیۡ خَلَقَنِیۡ فَهُوَ یَهۡدِیۡنِ ﴿۷۸﴾

୮୦. "ଏବଂ ସେ ହିଁ ଆମକୁ ଖାଦ୍ୟ ଖୁଆନ୍ତି ଓ ଜଳପାନ କରାନ୍ତି ।"

وَ الَّذِیۡ هُوَ یُطۡعِمُنِیۡ وَ یَسۡقِیۡنِ ﴿۷۹﴾

୮୧. "ଏବଂ ଯେତେବେଳେ ଆମେ ରୋଗାକ୍ରାନ୍ତ ହେଉ ସେତେବେଳେ ସେ ଆମକୁ ଆରୋଗ୍ୟ ପ୍ରଦାନ କରନ୍ତି ।"

وَ اِذَا مَرِضۡتُ فَهُوَ یَشۡفِیۡنِ ﴿۸۰﴾

୮୨. "ଏବଂ ସେ ହିଁ ଆମକୁ ମୃତ୍ୟୁ ପ୍ରଦାନ କରିବେ, ଓ ପୁନର୍ବାର ଜୀବିତ କରାଇବେ ।"

وَ الَّذِیۡ یُمِیۡتُنِیۡ ثُمَّ یُحۡیِیۡنِ ﴿۸۱﴾

୮୩. "ଏବଂ ସେ ଏପରି ଅଟନ୍ତି ଯେ ଆମେ ଆଶା ପୋଷଣ କରୁଅଛୁ କି ସେ ବିଚାର ଦିବସରେ ଆମର ତ୍ରୁଟି ମାର୍ଜନା କରିଦେବେ ।"

وَ الَّذِیۡۤ اَطۡمَعُ اَنۡ یَّغۡفِرَ لِیۡ خَطِیۡٓـَٔتِیۡ یَوۡمَ الدِّیۡنِ ﴿۸۲﴾

୮୪. "ହେ ଆମର ପାଳନକର୍ତ୍ତା ! ଆମକୁ ସମୁଚିତ ଶିକ୍ଷା ପ୍ରଦାନ କର ଏବଂ (ଆମକୁ) ଧର୍ମନିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ କର ।"

رَبِّ هَبۡ لِیۡ حُکۡمًا وَّ اَلۡحِقۡنِیۡ بِالصّٰلِحِیۡنَ ﴿۸۳﴾

୮୫. "ଏବଂ ଆଗାମୀ ଲୋକମାନଙ୍କ ମଧ୍ୟରେ ଆମକୁ ଚିରସ୍ଥାୟୀ ଖ୍ୟାତି ପ୍ରଦାନ କର ।"

وَ اجۡعَلۡ لِّیۡ لِسَانَ صِدۡقٍ فِی الۡاٰخِرِیۡنَ ﴿۸۴﴾

୮୬. "ଏବଂ ଆମକୁ ଆଶୀର୍ବାଦଭରା ବୈକୁଣ୍ଠର ଉତ୍ତରାଧିକାରୀ ମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ) କର ।"

وَ اجۡعَلۡنِیۡ مِنۡ وَّرَثَةِ جَنَّةِ النَّعِیۡمِ ﴿۸۵﴾

୮୭. "ଏବଂ ଆମ ପିତାଙ୍କୁ କ୍ଷମାକର ; କାରଣ ସେ ପଥଭ୍ରଷ୍ଟମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ) ଥିଲେ ।"

وَ اغۡفِرۡ لِاَبِیۡۤ اِنَّهٗ کَانَ مِنَ الضَّآلِّیۡنَ ﴿۸۶﴾

୮୮. "ଏବଂ ଯେଉଁଦିନ ଲୋକମାନଙ୍କୁ ପୁନର୍ଜୀବିତ କରି ଉତ୍ଥିତ କରାହେବ ସେଦିନ ଆମ୍ଭଙ୍କୁ ଅପମାନିତ କର ନାହିଁ ;"

وَلَا تُخْزِنِيْ يَوْمَ يُبْعَثُوْنَ ﴿٨٨﴾

୮୯. "ଯେଉଁଦିନ କି କୌଣସି ଧନସମ୍ପତ୍ତି ଲାଭଦାୟକ ହେବନାହିଁ କି ପୁତ୍ର ସନ୍ତାନ ;"

يَوْمَ لَا يَنْفَعُ مَالٌ وَّلَا بَنُوْنَ ﴿٨٩﴾

୯୦. "(ଅବଶ୍ୟ ସେ ଲାଭବାନ୍ ହେବ) ଯେ ଅଲ୍ଲାହ୍‌ଙ୍କ ନିକଟରେ ଏକ ସୁସ୍ଥ (ଅର୍ଥାତ୍ ବିନୀତ) ହୃଦୟ ସହ ଉପସ୍ଥିତ ହେବ ;"

اِلَّا مَنْ اَتَى اللّٰهَ بِقَلْبٍ سَلِيْمٍ ﴿٩٠﴾

୯୧. ଏବଂ ଯେଉଁଦିନ ବୈକୁଣ୍ଠକୁ ଧର୍ମଭୀରୁମାନଙ୍କର ନିକଟତର କରାହେବ ।

وَاُزْلِفَتِ الْجَنَّةُ لِلْمُتَّقِيْنَ ﴿٩١﴾

୯୨. ଏବଂ ପଥଭ୍ରଷ୍ଟମାନଙ୍କ ପାଇଁ ନରକର ପରଦାକୁ ଖୋଲି ଦିଆଯିବ ।

وَبُرِّزَتِ الْجَحِيْمُ لِلْغٰوِيْنَ ﴿٩٢﴾

୯୩. ଏବଂ ସେମାନଙ୍କୁ କୁହାଯିବ, "କାହାନ୍ତି ସେମାନେ ଯେଉଁମାନଙ୍କୁ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ତୁମେମାନେ ପୂଜା କରୁଥିଲ ?"

وَقِيْلَ لَهُمْ اَيْنَمَا كُنْتُمْ تَعْبُدُوْنَ ﴿٩٣﴾

୯୪. "କ'ଣ ସେମାନେ ତୁମମାନଙ୍କୁ ସାହାଯ୍ୟ କରିପାରିବେ ବା ତୁମମାନଙ୍କୁ କୌଣସି ଶାସ୍ତି ଦେଇପାରିବେ ?"

مِنْ دُوْنِ اللّٰهِ هَلْ يَنْصُرُوْنَكُمْ اَوْ يَنْتَصِرُوْنَ ﴿٩٤﴾

୯୫. ସୁତରାଂ ସେତେବେଳେ ସେମାନଙ୍କୁ (ଅର୍ଥାତ୍ ସେହି ତଥାକଥିତ ଉପାସ୍ୟ ଓ ଅବିଶ୍ୱାସକାରୀମାନଙ୍କୁ) ଏବଂ ପଥଭ୍ରଷ୍ଟ ବ୍ୟକ୍ତିମାନଙ୍କୁ ତହିଁରେ ତଳମୁହାଁ କରି ନିକ୍ଷେପ କରାହେବ ।

فَكُبْكِبُوْا فِيْهَا هُمْ وَالْغَاوٗنَ ﴿٩٥﴾

୯୬. ଏବଂ ଇବଲିସର ସୈନ୍ୟବାହିନୀର ସମସ୍ତଙ୍କୁ (ମଧ୍ୟ ନିକ୍ଷେପ କରାଯିବ) ।

وَجُنُوْدُ اِبْلِيْسَ اَجْمَعُوْنَ ﴿٩٦﴾

୯୭. ସେମାନେ ଯେତେବେଳେ ପରସ୍ପର ମଧ୍ୟରେ ଏଠାରେ (ଅର୍ଥାତ୍ ନରକରେ) କଳହରେ ରତ ଥିବେ, ସେତେବେଳେ କହିବେ,

قَالُوْا وَهُمْ فِيْهَا يَخْتَصِمُوْنَ ﴿٩٧﴾

୯୮. "ଅଲ୍ଲାହ୍‌ଙ୍କର ରାଣ ; ଆମେମାନେ ପ୍ରକାଶ୍ୟ ଭ୍ରାନ୍ତିଗ୍ରସ୍ତ ହୋଇଥିଲୁ,"

تَاللّٰهِ اِنْ كُنَّا لَفِيْ ضَلٰلٍ مُّبِيْنٍ ﴿٩٨﴾

୯୯. "ଯେତେବେଳେ କି ଆମେମାନେ ତୁମମାନଙ୍କୁ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ସହ ସମକକ୍ଷ କରୁଥିଲୁ ।"

اِذْ نُسَوِّيْكُمْ بِرَبِّ الْعٰلَمِيْنَ ﴿٩٩﴾

୧୦୦. "ଏବଂ ଆମମାନଙ୍କୁ ଅପରାଧୀମାନେ ହିଁ ପଥଭ୍ରଷ୍ଟ କରାଇଥିଲେ ।"

وَمَا اَضَلَّنَا اِلَّا الْمُجْرِمُوْنَ ﴿١٠٠﴾

୧୦୧. "ସୁତରାଂ (ଆଜି) ଆମମାନଙ୍କର କେହି ସୁପାରିଶକାରୀ ନାହିଁ ।"

فَمَا لَنَا مِنْ شَافِعِيْنَ ﴿١٠١﴾

وَلَا صَدِيقٍ حَمِيمٍ ﴿١٠١﴾

୧୦୨. "ଅଥବା ଆମମାନଙ୍କର କେହି ସମବେଦନଶୀଳ ବନ୍ଧୁ ନାହାନ୍ତି ।"

فَلَوْ أَنَّ لَنَا كَرَّةً فَنَكُونَ مِنَ الْمُؤْمِنِينَ ﴿١٠٢﴾

୧୦୩. "ସୁତରାଂ ଯଦି ଆମମାନଙ୍କର (ସଂସାରକୁ) ପ୍ରତ୍ୟାବର୍ତ୍ତନ କରିବାର ସାମର୍ଥ୍ୟ ଥାଆନ୍ତା ତେବେ ଆମେମାନେ (ପ୍ରତ୍ୟାବର୍ତ୍ତନ କରି) ନିଶ୍ଚୟ ବିଶ୍ୱାସକାରୀମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ) ହୋଇ ଯାଆନ୍ତୁ ।"

إِنَّ فِي ذَٰلِكَ لَآيَةً ۖ وَمَا كَانَ أَكْثَرُهُمْ مُؤْمِنِينَ ﴿١٠٣﴾

୧୦୪. ଏଥିରେ (ଅର୍ଥାତ୍ ଏହି ଘଟଣାରେ) ନିଶ୍ଚିତ ରୂପେ ଏକ ବଡ଼ ନିଦର୍ଶନ ରହିଅଛି, କିନ୍ତୁ ସେ (ଅବିଶ୍ୱାସକାରୀ)ମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରନ୍ତି ନାହିଁ ।

وَإِنَّ رَبَّكَ لَهُوَ الْعَزِيزُ الرَّحِيمُ ﴿١٠٤﴾

୧୦୫. ଏବଂ ବାସ୍ତବରେ ତୁମ ପାଳନକର୍ତ୍ତା ପରାକ୍ରମୀ (ଓ) ସଦା କରୁଣାମୟ ।

ରୁ:୬

كَذَّبَتْ قَوْمُ نُوحٍ الْمُرْسَلِينَ ﴿١٠٥﴾

୧୦୬. ନୂହଙ୍କ ସମ୍ପ୍ରଦାୟ (ନିଜ) ରସୁଲମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ।[୧]

إِذْ قَالَ لَهُمْ أَخُوهُمْ نُوحٌ أَلَا تَتَّقُونَ ﴿١٠٦﴾

୧୦୭. ଯେତେବେଳେ ସେମାନଙ୍କୁ ସେମାନଙ୍କ ଭାଇ ନୂହ କହିଲେ, "କ'ଣ ତୁମେମାନେ ଧର୍ମଭୀରୁତା ଅବଲମ୍ବନ କରିବ ନାହିଁ ?"

إِنِّي لَكُمْ رَسُولٌ أَمِينٌ ﴿١٠٧﴾

୧୦୮. "ଆମେ ତୁମମାନଙ୍କ ପ୍ରତି ଜଣେ ବିଶ୍ୱସ୍ତ ରସୁଲ ଭାବେ ଆସିଅଛୁ,"

فَاتَّقُوا اللَّهَ وَأَطِيعُونِ ﴿١٠٨﴾

୧୦୯. "ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମର ଆଜ୍ଞାବହ ହୁଅ ।"

وَمَا أَسْأَلُكُمْ عَلَيْهِ مِنْ أَجْرٍ ۖ إِنْ أَجْرِيَ إِلَّا عَلَىٰ رَبِّ الْعَالَمِينَ ﴿١٠٩﴾

୧୧୦. "ଏବଂ ଆମେ ଏଥିପାଇଁ (ଅର୍ଥାତ୍ ଏହି କାର୍ଯ୍ୟ ପାଇଁ) କୌଣସି ପାରିତୋଷିକ ଲୋଡୁନାହୁଁ; ଆମର ପାରିତୋଷିକ କେବଳ ସମଗ୍ର ଜଗତର ପାଳନକର୍ତ୍ତାଙ୍କଠାରେ ରହିଅଛି ।"

فَاتَّقُوا اللَّهَ وَأَطِيعُونِ ﴿١١٠﴾

୧୧୧. "ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମର ଆଜ୍ଞାବହ ହୁଅ ।"

---

୧. ଏଠାରେ କେବଳ ହଜରତ ନୂହଙ୍କ ବୃତ୍ତାନ୍ତ ଅଛି, କିନ୍ତୁ ରସୁଲମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ବର୍ଣ୍ଣନା କରାଯାଇଛି । ସୁତରାଂ ହଜରତ ନୂହଙ୍କୁ ରସୁଲମାନଙ୍କର ପ୍ରତୀକ ଏଥିଯୋଗୁଁ କୁହାଯାଇଛି ଯେ ତାଙ୍କର ସମସ୍ତ ରସୁଲଙ୍କ ସହିତ ସାମଞ୍ଜସ୍ୟ ଅଛି । ଅତଏବ ଜଣେ ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରିବା ଅର୍ଥ ସବୁ ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରିବା. ଅଥବା ଏଥିଯୋଗୁଁ କୁହାଯାଉଛି ଯେ ନୂହଙ୍କ ସଂପ୍ରଦାୟରେ ତାହାଙ୍କ ଅଧୀନସ୍ଥ ହୋଇ ଅନେକ ରସୁଲ ଆସିଛନ୍ତି ।

୧୧୨. ସେ (ଅବିଶ୍ୱାସକାରୀ)ମାନେ କହିଲେ, "କ'ଣ ଆମେମାନେ ତୁମ ପ୍ରତି ବିଶ୍ୱାସ କରିବୁ ଯେତେବେଳେ କି ଅତ୍ୟନ୍ତ ନୀଚ ଲୋକମାନେ ତୁମର ଅନୁଗାମୀ ହୋଇଛନ୍ତି।"

قَالُوْٓا اَنُؤْمِنُ لَكَ وَ اتَّبَعَكَ الْاَرْذَلُوْنَ ﴿١١٢﴾

୧୧୩. ସେ କହିଲେ, "ସେମାନଙ୍କର ଅନ୍ତର୍ନିହିତ କର୍ମ କେଉଁପରି ତାହା ଆମେ କିପରି ଜାଣିବୁ ?"

قَالَ وَمَا عِلْمِىْ بِمَا كَانُوْا يَعْمَلُوْنَ ﴿١١٣﴾

୧୧୪. "ଯଦି ତୁମେ ବୁଝିପାରିବ, ତେବେ ତାହାର ହିସାବ କରିବା ଦାୟିତ୍ୱ ଆମ ପାଳନକର୍ତ୍ତାଙ୍କର ଅଟେ।"

اِنْ حِسَابُهُمْ اِلَّا عَلٰى رَبِّىْ لَوْ تَشْعُرُوْنَ ﴿١١٤﴾

୧୧୫. "ଯେଉଁ ବ୍ୟକ୍ତି ବିଶ୍ୱାସକାରୀ ଭାବରେ ଆମ ନିକଟକୁ ଆସେ ତାହାକୁ ବିତାଡ଼ିତ କରିବା ଆମର କର୍ତ୍ତବ୍ୟ ନୁହେଁ।"

وَمَآ اَنَا بِطَارِدِ الْمُؤْمِنِيْنَ ﴿١١٥﴾

୧୧୬. "ଆମେ ତ ପ୍ରକାଶ୍ୟ ସଚେତକ ମାତ୍ର।"

اِنْ اَنَا اِلَّا نَذِيْرٌ مُّبِيْنٌ ﴿١١٦﴾

୧୧୭. ସେ (ଅବିଶ୍ୱାସକାରୀ)ମାନେ କହିଲେ, "ହେ ନୂହ ! ଯଦି ତୁମେ ବିରତ ନ ହେବ, ତେବେ ତୁମେ ଶିଳାଘାତ କରି ମାରି ଦିଆଯିବା (ଲୋକ)ମାନଙ୍କ ମଧ୍ୟରୁ ଜଣେ ହୋଇଯିବ (ଅର୍ଥାତ୍ ଆମେ ତୁମଙ୍କୁ ଶିଳାଘାତ କରି ମାରି ଦେବୁ)।"

قَالُوْا لَئِنْ لَّمْ تَنْتَهِ يٰنُوْحُ لَتَكُوْنَنَّ مِنَ الْمَرْجُوْمِيْنَ ﴿١١٧﴾

୧୧୮. (ଏହା ଶୁଣି ନୂହ) କହିଲେ, "ହେ ଆମର ପାଳନକର୍ତ୍ତା ! ଆମ ସମ୍ପ୍ରଦାୟ ଆମଙ୍କୁ ମିଥ୍ୟାବାଦୀ ମନେ କରିଛନ୍ତି।"

قَالَ رَبِّ اِنَّ قَوْمِىْ كَذَّبُوْنِ ﴿١١٨﴾

୧୧୯. "ସୁତରାଂ ତୁମେ ଆମ ଓ ସେମାନଙ୍କ ମଧ୍ୟରେ ବୃତ୍ତାନ୍ତ ନିଷ୍ପତ୍ତି କର, ଏବଂ ଆମଙ୍କୁ ଓ ଆମର ସହଚର ବିଶ୍ୱାସକାରୀ ମାନଙ୍କୁ (ଶତ୍ରୁ କବଳରୁ) ରକ୍ଷା କର।"

فَافْتَحْ بَيْنِىْ وَبَيْنَهُمْ فَتْحًا وَّ نَجِّنِىْ وَمَنْ مَّعِىَ مِنَ الْمُؤْمِنِيْنَ ﴿١١٩﴾

୧୨୦. ସୁତରାଂ ଆମେ ତାହାଙ୍କୁ ଏବଂ ତାହାଙ୍କ ସହିତ ଯେଉଁମାନେ ବିଶ୍ୱାସ କରିଥିଲେ ସେମାନଙ୍କୁ ଏକ ସମ୍ପୂର୍ଣ୍ଣ ବୋଝେଇ ନୌକା ସାହାଯ୍ୟରେ (ବିପଦରୁ) ରକ୍ଷା କରିଥିଲୁ।

فَاَنْجَيْنٰهُ وَمَنْ مَّعَهٗ فِى الْفُلْكِ الْمَشْحُوْنِ ﴿١٢٠﴾

୧୨୧. ତା'ପରେ ଅବଶିଷ୍ଟ ଲୋକଙ୍କୁ ଜଳମଗ୍ନ କରାଇଥିଲୁ।

ثُمَّ اَغْرَقْنَا بَعْدُ الْبٰقِيْنَ ﴿١٢١﴾

୧୨୨. ତହିଁରେ ଏକ ଅତି ବଡ଼ ନିଦର୍ଶନ ଥିଲା ; କିନ୍ତୁ ସେ (ଅବିଶ୍ୱାସକାରୀ) ମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ।

اِنَّ فِىْ ذٰلِكَ لَاٰيَةً ۗ وَمَا كَانَ اَكْثَرُهُمْ مُّؤْمِنِيْنَ ﴿١٢٢﴾

୧୨୩. ଏବଂ ତୁମ ପାଳନକର୍ତ୍ତା ହିଁ ପରାକ୍ରମୀ (ଓ) ସଦା କରୁଣାମୟ।

وَاِنَّ رَبَّكَ لَهُوَ الْعَزِيْزُ الرَّحِيْمُ ﴿١٢٣﴾

ରୁ:୭

୧୨୪. (ଏହିପରି ଭାବରେ) ଆଦ (ସମ୍ପ୍ରଦାୟ) ମଧ୍ୟ ରସୁଲମାନଙ୍କୁ[1] ପ୍ରତ୍ୟାଖ୍ୟାନ କରିଥିଲେ ।

كَذَّبَتْ عَادُ ۨالْمُرْسَلِيْنَ ﴿١٢٣﴾

୧୨୫. ଯେତେବେଳେ ସେମାନଙ୍କୁ ସେମାନଙ୍କ ଭାଇ ହୁଦ କହିଲେ, "କ'ଣ ତୁମେମାନେ ଧର୍ମଭୀରୁତା ଅବଲମ୍ବନ କରିବ ନାହିଁ ?"

اِذْ قَالَ لَهُمْ اَخُوْهُمْ هُوْدٌ اَلَا تَتَّقُوْنَ ﴿١٢٤﴾

୧୨୬. "ଆମେ ତୁମମାନଙ୍କ ପ୍ରତି ଜଣେ ବିଶ୍ୱସ୍ତ ରସୁଲ ଭାବେ ଆସିଅଛୁ ।"

اِنِّيْ لَكُمْ رَسُوْلٌ اَمِيْنٌ ﴿١٢٥﴾

୧୨୭. "ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମର ଆଜ୍ଞାବହ ହୁଅ ।"

فَاتَّقُوا اللّٰهَ وَاَطِيْعُوْنِ ﴿١٢٦﴾

୧୨୮. "ଏବଂ ଆମେ ଏଥିପାଇଁ (ଅର୍ଥାତ୍ ଏହି କାର୍ଯ୍ୟ ପାଇଁ) ତୁମଠାରୁ କୌଣସି ପାରିତୋଷିକ ଲୋଡୁ ନାହୁଁ ; ଆମର ପାରିତୋଷିକ କେବଳ ସମସ୍ତ ଜଗତର ପାଳନକର୍ତ୍ତାଙ୍କଠାରେ ରହିଅଛି (ଯେ ଆମକୁ ପ୍ରେରଣ କରିଛନ୍ତି) ।"

وَمَاۤ اَسْـَٔلُكُمْ عَلَيْهِ مِنْ اَجْرٍ ۚ اِنْ اَجْرِيَ اِلَّا عَلٰى رَبِّ الْعٰلَمِيْنَ ﴿١٢٧﴾

୧୨୯. "କ'ଣ ତୁମେମାନେ ନିରର୍ଥକ କର୍ମ କରି ପ୍ରତ୍ୟେକ ଉଚ୍ଚସ୍ଥାନରେ (ସ୍ମୃତି) ସୌଧ ନିର୍ମାଣ କରୁଅଛ ?"

اَتَبْنُوْنَ بِكُلِّ رِيْعٍ اٰيَةً تَعْبَثُوْنَ ﴿١٢٨﴾

୧୩୦. "ଏବଂ ତୁମେମାନେ ଶିଳ୍ପ ପ୍ରତିଷ୍ଠା କରୁଅଛ ଯଦ୍ଦ୍ୱାରାକି ତୁମେମାନେ ଚିରସ୍ଥାୟୀ ହୋଇ ରହିବ ।"

وَتَتَّخِذُوْنَ مَصَانِعَ لَعَلَّكُمْ تَخْلُدُوْنَ ﴿١٢٩﴾

୧୩୧. "ଏବଂ ଯେତେବେଳେ ତୁମେମାନେ (କାହାରିକୁ) କବଳିତ କର ସେତେବେଳେ ତୁମେମାନେ ଅତ୍ୟାଚାରୀ ସଦୃଶ କବଳିତ କରିଥାଅ ।"

وَاِذَا بَطَشْتُمْ بَطَشْتُمْ جَبَّارِيْنَ ﴿١٣٠﴾

୧୩୨. "ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମର ଆଜ୍ଞାବହ ହୁଅ ।"

فَاتَّقُوا اللّٰهَ وَاَطِيْعُوْنِ ﴿١٣١﴾

୧୩୩. "ଏବଂ (ପୁନର୍ବାର ଆମେ କହୁଅଛୁ ଯେ) ତାହାଙ୍କୁ ଭୟ କର ଯେ ତୁମମାନଙ୍କୁ ଏପରି ସାମଗ୍ରୀମାନ ଦ୍ୱାରା ସହାୟତା କରିଛନ୍ତି ଯେଉଁଗୁଡ଼ିକୁ ତୁମେମାନେ ଜାଣ ।"

وَاتَّقُوا الَّذِيْۤ اَمَدَّكُمْ بِمَا تَعْلَمُوْنَ ﴿١٣٢﴾

---

୧. ପବିତ୍ର କୋରାନର ଅନେକ ଆୟତରେ ଜଣେ ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରିବା ଅର୍ଥ ସବୁ ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରିବା ସାବ୍ୟସ୍ତ କରାଯାଇଛି । ଏଥିରୁ ସୂଚନା ମିଳୁଛି ଯେ ଅବତାରଙ୍କ ପାଇଁ ଉଦ୍ଦିଷ୍ଟ ଓ ନିର୍ଦ୍ଦିଷ୍ଟ ମାର୍ଗରେ ସବୁ ଅବତାର ଆସନ୍ତି । ସୁତରାଂ ଯେବେ ସେହି ମାର୍ଗ ଥିବାବେଳେ କୌଣସି ରସୁଲଙ୍କୁ ପ୍ରତ୍ୟାଖ୍ୟାନ କରାଯାଏ ତେବେ ଏଥିରୁ ସିଦ୍ଧାନ୍ତ କରାଯିବ ଯେ ଯଦି କୌଣସି ପ୍ରତ୍ୟାଖ୍ୟାନକାରୀ ପୂର୍ବରୁ ଅନ୍ୟ କୌଣସି ରସୁଲଙ୍କ ସମୟରେ ଜୀବିତ ଥାଆନ୍ତା ତେବେ ସେ ତାହାଙ୍କୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଥାଆନ୍ତା, କାରଣ ଯେଉଁସବୁ ଯୁକ୍ତି ଓ ପ୍ରମାଣ ତତ୍କାଳୀନ ରସୁଲଙ୍କ ସତ୍ୟତା ସମ୍ବନ୍ଧରେ ଥିଲା ସେହିସବୁ ଯୁକ୍ତି ଓ ପ୍ରମାଣ ବର୍ତ୍ତମାନର ରସୁଲଙ୍କ ସତ୍ୟତା ସାବ୍ୟସ୍ତ ପାଇଁ ମଧ୍ୟ ଅଛି ।

أَمَدَّكُمْ بِأَنْعَامٍ وَّبَنِيْنَ ﴿١٣٤﴾ وَجَنّٰتٍ وَّعُيُوْنٍ ﴿١٣٥﴾

୧୩୪/୧୩୫. "ସେ ତୁମମାନଙ୍କୁ ଚତୁଷ୍ପଦ ପ୍ରାଣୀ ଓ ପୁତ୍ରସନ୍ତାନ, ଏବଂ ଉଦ୍ୟାନ ଓ ଝରଣାମାନ ପ୍ରଦାନ କରି ସାହାଯ୍ୟ କରିଛନ୍ତି ।"

إِنِّيْٓ أَخَافُ عَلَيْكُمْ عَذَابَ يَوْمٍ عَظِيْمٍ ﴿١٣٦﴾

୧୩୬. "ଆମେ ତୁମମାନଙ୍କ ପ୍ରତି ଏକ ଦିବସର ଭୟଙ୍କର ଶାସ୍ତି ଅବତୀର୍ଣ୍ଣ ହେବା ସଂକ୍ରାନ୍ତରେ ଭୟ କରୁଅଛୁ ।"

قَالُوْا سَوَآءٌ عَلَيْنَآ أَوَعَظْتَ أَمْ لَمْ تَكُنْ مِّنَ الْوٰعِظِيْنَ ﴿١٣٧﴾

୧୩୭. ସେମାନେ କହିଲେ, "ତୁମର ଉପଦେଶ ଦେବା ବା ନ ଦେବା ଆମମାନଙ୍କ ପାଇଁ ସମାନ ।"

إِنْ هٰذَآ إِلَّا خُلُقُ الْأَوَّلِيْنَ ﴿١٣٨﴾

୧୩୮. [୧] "(କାରଣ ଯାହା ଆମେମାନେ କରୁଅଛୁ) ତାହା ପୂର୍ବବର୍ତ୍ତୀ ଲୋକମାନଙ୍କ ସମୟରୁ ଚଳି ଆସୁଅଛି ।"

وَمَا نَحْنُ بِمُعَذَّبِيْنَ ﴿١٣٩﴾

୧୩୯. "ଏବଂ ଆମମାନଙ୍କ ପ୍ରତି (ଆଦୌ) ଶାସ୍ତି ଉପସ୍ଥିତ ହେବନାହିଁ ।"

فَكَذَّبُوْهُ فَأَهْلَكْنٰهُمْ إِنَّ فِيْ ذٰلِكَ لَاٰيَةً وَمَا كَانَ أَكْثَرُهُمْ مُّؤْمِنِيْنَ ﴿١٤٠﴾

୧୪୦. "ସୁତରାଂ ସେ (ଅବିଶ୍ୱାସକାରୀ) ମାନେ ତାହାଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ, ଏବଂ ଆମେ ସେମାନଙ୍କୁ ଧ୍ୱଂସ କରିଦେଲୁ ; ଏହି ଘଟଣାରେ ଏକ ବହୁତ ବଡ଼ ନିଦର୍ଶନ ରହିଅଛି ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସକାରୀ ହେଲେ ନାହିଁ ।

وَإِنَّ رَبَّكَ لَهُوَ الْعَزِيْزُ الرَّحِيْمُ ﴿١٤١﴾

୧୪୧. ଏବଂ ତୁମ ପାଳନକର୍ତ୍ତା ବାସ୍ତବରେ ପରାକ୍ରମୀ (ଓ) ସଦା କରୁଣାମୟ ।

ରୁ:୮

كَذَّبَتْ ثَمُوْدُ الْمُرْسَلِيْنَ ﴿١٤٢﴾

୧୪୨. ଏହିପରି ଭାବରେ ସମୁଦ (ସମ୍ପ୍ରଦାୟ) ମଧ୍ୟ ରସୁଲମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ।

إِذْ قَالَ لَهُمْ أَخُوْهُمْ صٰلِحٌ أَلَا تَتَّقُوْنَ ﴿١٤٣﴾

୧୪୩. ଯେତେବେଳେ ସେମାନଙ୍କୁ ସେମାନଙ୍କ ଭାଇ ସ୍ୱାଲେହ କହିଲେ, "କ'ଣ ତୁମେମାନେ ଧର୍ମଭୀରୁତା ଅବଲମ୍ବନ କରିବ ନାହିଁ ?"

إِنِّيْ لَكُمْ رَسُوْلٌ أَمِيْنٌ ﴿١٤٤﴾

୧୪୪. "ଆମେ ତୁମମାନଙ୍କ ପ୍ରତି ଜଣେ ବିଶ୍ୱସ୍ତ ରସୁଲ ଭାବେ ପ୍ରେରିତ ହୋଇଅଛୁ ।"

فَاتَّقُوا اللّٰهَ وَأَطِيْعُوْنِ ﴿١٤٥﴾

୧୪୫. "ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମର ଆଜ୍ଞାବହ ହୁଅ ।"

---

୧. 'ବହରେ ମୁହିତ୍'ରେ ମଧ୍ୟ ଅନୁରୂପ ଅର୍ଥ ଲିପିବଦ୍ଧ ଅଛି । ଏହାର ତାତ୍ପର୍ଯ୍ୟ ନୁହେଁ ଯେ ତୁମେ ଯେପରି ଉପଦେଶ ଦେଉଥିଲ ଅନ୍ୟମାନେ ମଧ୍ୟ ସେହିପରି ଦେଉଥିଲେ । ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ତୁମେ ଯେଉଁ ବିଷୟ କରିବାକୁ ଆମମାନଙ୍କୁ ବାରଣ କରୁଅଛ, ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ ସେ ସବୁ କରୁଥିଲେ (ଅଲ୍ଲାମା ଅବୁ ହୟୟାନ ପ୍ରଣୀତ ବହରେ ମୁହିତ୍, ଗ୍ରନ୍ଥ ଖଣ୍ଡ ୭ : ପୃଷ୍ଠା ୩୪ ଦ୍ରଷ୍ଟବ୍ୟ) । ତେଣୁ ଯଦି ସେମାନେ ସୁରକ୍ଷିତ ରହିଥିଲେ ତେବେ ଆମେ କାହିଁକି ରହିବୁ ନାହିଁ ?

وَمَآ اَسْـَٔلُكُمْ عَلَيْهِ مِنْ اَجْرٍ ۚ اِنْ اَجْرِيَ اِلَّا عَلٰى رَبِّ الْعٰلَمِيْنَ ﴿١٤٦﴾

୧୪୬. "ଏବଂ ଆମ୍ଭେ ଏଥିପାଇଁ (ଅର୍ଥାତ୍ ଏହି କାର୍ଯ୍ୟ ପାଇଁ) ତୁମମାନଙ୍କ ଠାରୁ କୌଣସି ପାରିତୋଷିକ ଲୋଡୁ ନାହୁଁ ; ଆମ୍ଭର ପାରିତୋଷିକ ତ ସମସ୍ତ ଜଗତର ପାଳନକର୍ତ୍ତାଙ୍କଠାରେ ରହିଅଛି (ଯେ ଆମ୍ଭଙ୍କୁ ପ୍ରେରଣ କରିଛନ୍ତି) ।"

اَتُتْرَكُوْنَ فِيْ مَا هٰهُنَآ اٰمِنِيْنَ ﴿١٤٧﴾

୧୪୭. "କ'ଣ (ତୁମେମାନେ ମନେ କରୁଅଛ ଯେ) ଯାହାକିଛି ଏଠାରେ ଅଛି ତୁମମାନଙ୍କୁ ତହିଁରେ ନିରାପଦରେ (ଜୀବନ ଯାପନ କରିବାକୁ) ଛାଡ଼ି ଦିଆଯିବ ?"

فِيْ جَنّٰتٍ وَّعُيُوْنٍ ﴿١٤٨﴾

୧୪୮. "ଅର୍ଥାତ୍ ଉଦ୍ୟାନ ଓ ଝରଣା ମଧ୍ୟରେ,"

وَّزُرُوْعٍ وَّنَخْلٍ طَلْعُهَا هَضِيْمٌ ﴿١٤٩﴾

୧୪୯. "ଏବଂ ଶସ୍ୟ (ଶ୍ୟାମଳ) କ୍ଷେତ୍ର ମାନଙ୍କରେ, ଓ ଏପରି ଖଜୁରି ଗଛମାନଙ୍କରେ ଯାହା ଫଳ ଭରି ରହିଥିବା ଯୋଗୁଁ ଭାଙ୍ଗି ପଡୁଛି ।"

وَتَنْحِتُوْنَ مِنَ الْجِبَالِ بُيُوْتًا فٰرِهِيْنَ ﴿١٥٠﴾

୧୫୦. "ଏବଂ ତୁମେମାନେ ପର୍ବତ ଖନନ କରି (ନିଜର ବଡ଼ିମା ଦେଖାଇବା ସକାଶେ) ଗର୍ବିତ ହୋଇ ଗୃହ ନିର୍ମାଣ କରୁଅଛ ।"

فَاتَّقُوا اللّٰهَ وَاَطِيْعُوْنِ ﴿١٥١﴾

୧୫୧. "ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମ୍ଭର ଆଜ୍ଞାବହ ହୁଅ ।"

وَلَا تُطِيْعُوْٓا اَمْرَ الْمُسْرِفِيْنَ ﴿١٥٢﴾

୧୫୨. "ଏବଂ ସୀମାଲଙ୍ଘନକାରୀଙ୍କ ଆଦେଶ ମାନ ନାହିଁ ,"

الَّذِيْنَ يُفْسِدُوْنَ فِي الْاَرْضِ وَلَا يُصْلِحُوْنَ ﴿١٥٣﴾

୧୫୩. "ଯେଉଁମାନେ ଭୂପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରନ୍ତି ଓ ଶାନ୍ତି ସ୍ଥାପନ କରନ୍ତି ନାହିଁ ।"

قَالُوْٓا اِنَّمَآ اَنْتَ مِنَ الْمُسَحَّرِيْنَ ﴿١٥٤﴾

୧୫୪. ଏଥି ଉତ୍ତାରୁ ସେ ୧ (ଅବିଶ୍ୱାସକାରୀ)ମାନେ କହିଲେ, "ତୁମ୍ଭଙ୍କୁ କେବଳ ଖାଇବାକୁ ଦିଆଯାଉଛି ।"

مَآ اَنْتَ اِلَّا بَشَرٌ مِّثْلُنَا ۚۖ فَاْتِ بِاٰيَةٍ اِنْ كُنْتَ مِنَ الصّٰدِقِيْنَ ﴿١٥٥﴾

୧୫୫. "ତୁମେ ଆମମାନଙ୍କ ସଦୃଶ ଏକ ମାନବ ; ସୁତରାଂ ଯଦି ତୁମେ ସତ୍ୟବାଦୀ ହୋଇଥାଅ, ତେବେ କୌଣସି ନିଦର୍ଶନ ପ୍ରକାଶ କର ।"

قَالَ هٰذِهٖ نَاقَةٌ لَّهَا شِرْبٌ وَّلَكُمْ شِرْبُ يَوْمٍ مَّعْلُوْمٍ ﴿١٥٦﴾

୧୫୬. ସେ କହିଲେ, "ଏହା ଏକ ମାଈ ଓଟ ; ଦିନେ ତା'ପାଇଁ ଘାଟରେ ପାଣି ପିଇବା ନିର୍ଦ୍ଧାରିତ ହୋଇଅଛି ଓ ଦିନେ ତୁମମାନଙ୍କ ପାଇଁ ପାଣି ନେବା ନିର୍ଦ୍ଧାରିତ ହୋଇଅଛି ।"

---

୧. 'ସହ୍‌ହର'ର ଗୋଟିଏ ଅର୍ଥ ଖାଇବାକୁ ଦେବା । ପ୍ରାୟ ପ୍ରତ୍ୟେକ ଅବତାରଙ୍କ ପ୍ରତି ଦୋଷାରୋପ କରାଯାଇଛି ଯେ ଲୋକମାନେ ତାଙ୍କୁ ଲାଞ୍ଚ ଦେଇ କାର୍ଯ୍ୟରେ ନିୟୋଜିତ କରିଥା'ନ୍ତି । ହଜରତ ସୁଏବଙ୍କ ପ୍ରତି ମଧ୍ୟ ଅନୁରୂପ ଦୋଷାରୋପ କରାଯାଇ ଥିଲା (ଏହି ଅଧ୍ୟାୟର ଆୟତ ୧୮୬ ଦ୍ରଷ୍ଟବ୍ୟ) । ବସ୍ତୁତଃ କୌଣସି ଅବତାର ନିଜେ କିଛି କହନ୍ତି ନାହିଁ; ତାଙ୍କ ପଛରୁ ଅନ୍ୟ କୌଣସି ଶକ୍ତି ଏପରି କହୁଥାଏ । ସେହି ଶକ୍ତି ତାଙ୍କୁ ଧନ ସମ୍ପତ୍ତି ଦେଇ ସାମର୍ଥ୍ୟ ଦାନ କରୁଥାଏ । ତେଣୁ ସେ ଜଣେ ଅଭିକର୍ତ୍ତା ମାତ୍ର । ଅନୁରୂପ ଦୋଷାରୋପ ମଧ୍ୟ ହଜରତ ମହମ୍ମଦଙ୍କ ପ୍ରତି କରାଯାଇ ଥିଲା । ସମ୍ପ୍ରତି ମୌଲବୀ ବେଶଧାରୀ କେତେକ ବ୍ୟକ୍ତି ମଧ୍ୟ ହଜରତ ମିର୍ଜା ଗୁଲାମ ଅହମଦଙ୍କ ପ୍ରତି ଏ ପ୍ରକାର ଦୋଷାରୋପ କରୁଛନ୍ତି ।

୧୫୬. "ଏବଂ ତୁମେମାନେ ତାହାର କୌଣସି କ୍ଷତି କର ନାହିଁ ନଚେତ୍ ଏକ ଦିବସର ଭୟଙ୍କର ଶାସ୍ତି ତୁମମାନଙ୍କୁ କବଳିତ କରିବ ।"

وَلَا تَمَسُّوهَا بِسُوٓءٍ فَيَأْخُذَكُمْ عَذَابُ يَوْمٍ عَظِيمٍ ﴿١٥٦﴾

୧୫୮. କିନ୍ତୁ (ଏହା ଶୁଣିବା ସତ୍ତ୍ୱେ) ସେମାନେ ତାହାର ଗୋଡ଼ି କାଟିଦେଲେ, ଏବଂ (ପରେ ଏଥିଯୋଗୁଁ) ଲଜ୍ଜିତ ହେଲେ ।

فَعَقَرُوهَا فَأَصْبَحُوا نَـٰدِمِينَ ﴿١٥٧﴾

୧୫୯. ତା'ପରେ ସେମାନଙ୍କୁ (ସେହି ଅଙ୍ଗୀକୃତ) ଶାସ୍ତି କବଳିତ କରିଥିଲା ; ବାସ୍ତବରେ ତହିଁରେ ଏକ ଅତି ବଡ଼ ନିଦର୍ଶନ ରହିଥିଲା ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସକାରୀ ହେଲେ ନାହିଁ ।

فَأَخَذَهُمُ الْعَذَابُ ۗ إِنَّ فِى ذَٰلِكَ لَءَايَةً ۖ وَمَا كَانَ أَكْثَرُهُم مُّؤْمِنِينَ ﴿١٥٨﴾

୧୬୦. ଏବଂ ତୁମ ପାଳନକର୍ତ୍ତା ବାସ୍ତବରେ ପରାକ୍ରମୀ (ଓ) ସଦା କରୁଣାମୟ ।

وَإِنَّ رَبَّكَ لَهُوَ الْعَزِيزُ الرَّحِيمُ ﴿١٥٩﴾

ରୁ:୯

୧୬୧. ଏହିପରି ଭାବରେ ଲୁତଙ୍କ ସମ୍ପ୍ରଦାୟ ମଧ୍ୟ ରସୁଲମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ।

كَذَّبَتْ قَوْمُ لُوطٍ الْمُرْسَلِينَ ﴿١٦٠﴾

୧୬୨. ଯେତେବେଳେ ସେମାନଙ୍କୁ ସେମାନଙ୍କ ଭାଇ ଲୁତ କହିଲେ, "କ'ଣ ତୁମେମାନେ ଧର୍ମଭୀରୁତା ଅବଲମ୍ବନ କରିବ ନାହିଁ ?"

إِذْ قَالَ لَهُمْ أَخُوهُمْ لُوطٌ أَلَا تَتَّقُونَ ﴿١٦١﴾

୧୬୩. "ଆମେ ତୁମମାନଙ୍କ ପ୍ରତି ଜଣେ ବିଶ୍ୱସ୍ତ ରସୁଲ ଭାବେ ପ୍ରେରିତ ହୋଇଅଛୁ ।"

إِنِّى لَكُمْ رَسُولٌ أَمِينٌ ﴿١٦٢﴾

୧୬୪. "ସୁତରାଂ ଅଲ୍ଲାହଙ୍କୁ ଭୟକର ଓ ଆମର ଅଜ୍ଞାବହ ହୁଅ ।"

فَاتَّقُوا اللَّهَ وَأَطِيعُونِ ﴿١٦٣﴾

୧୬୫. "ଆମେ ଏଥିପାଇଁ (ଅର୍ଥାତ୍ ଏହି କାର୍ଯ୍ୟ ପାଇଁ) ତୁମମାନଙ୍କ ଠାରୁ କୌଣସି ପାରିତୋଷିକ ଲୋଡୁନାହୁଁ ; ଆମର ପାରିତୋଷିକ ତ ସମସ୍ତ ଜଗତର ପାଳନକର୍ତ୍ତାଙ୍କଠାରେ ରହିଅଛି ।"

وَمَآ أَسْـَٔلُكُمْ عَلَيْهِ مِنْ أَجْرٍ ۖ إِنْ أَجْرِىَ إِلَّا عَلَىٰ رَبِّ الْعَـٰلَمِينَ ﴿١٦٤﴾

୧୬୬. "କ'ଣ ସମସ୍ତ ପ୍ରାଣୀମାନଙ୍କ ମଧ୍ୟରୁ ତୁମେ ନିଜ ପାଇଁ ପୁରୁଷମାନଙ୍କୁ ମନୋନୀତ କରିଅଛ ?"

أَتَأْتُونَ الذُّكْرَانَ مِنَ الْعَـٰلَمِينَ ﴿١٦٥﴾

୧୬୭. "ଏବଂ ତୁମେ ସେମାନଙ୍କୁ ପରିତ୍ୟାଗ କରୁଅଛ ଯେଉଁମାନଙ୍କୁ ତୁମର ପାଳନକର୍ତ୍ତା ତୁମମାନଙ୍କ ପତ୍ନୀରୂପେ ସୃଷ୍ଟି କରିଛନ୍ତି, (ତୁମେମାନେ ଯେ କେବଳ ଏପରି କର୍ମ କରୁଅଛ ତାହା ନୁହେଁ ; ବରଂ (ପ୍ରକୃତରେ) ତୁମେମାନେ (ମାନବିକ ପ୍ରବୃତ୍ତି ସଂକ୍ରାନ୍ତ) ଚାହିଦାଗୁଡ଼ିକୁ ସବୁମନ୍ତେ ଲଙ୍ଘନ କରୁଥିବା ସମ୍ପ୍ରଦାୟ ।"

وَتَذَرُونَ مَا خَلَقَ لَكُمْ رَبُّكُم مِّنْ أَزْوَٰجِكُم ۚ بَلْ أَنتُمْ قَوْمٌ عَادُونَ ﴿١٦٦﴾

୧୬୮. ସେମାନେ କହିଲେ, "ହେ ଲୁତ ! ଯଦି ତୁମେ ବିରତ ନ ହୁଅ ତେବେ ତୁମେ ଦେଶାନ୍ତର କରାଯାଇଥିବା (ଲୋକ)ମାନଙ୍କ ମଧ୍ୟରୁ (ଜଣେ) ହୋଇଯିବ ।"

قَالُوا لَئِن لَّمْ تَنتَهِ يَا لُوطُ لَتَكُونَنَّ مِنَ الْمُخْرَجِينَ (١٦٧)

୧୬୯. ଲୁତ କହିଲେ, "ଆମେ ତୁମମାନଙ୍କ କାର୍ଯ୍ୟକୁ ବାସ୍ତବରେ ଘୃଣା କରୁଅଛୁ ।"

قَالَ إِنِّي لِعَمَلِكُم مِّنَ الْقَالِينَ (١٦٨)

୧୭୦. "ହେ ଆମର ପାଳନକର୍ତ୍ତା !! ଆମଙ୍କୁ ଓ ଆମର ପରିବାରବର୍ଗଙ୍କୁ ସେମାନଙ୍କ କାର୍ଯ୍ୟରୁ ରକ୍ଷା କର ।"

رَبِّ نَجِّنِي وَأَهْلِي مِمَّا يَعْمَلُونَ (١٦٩)

୧୭୧. ସୁତରାଂ ଆମେ ତାହାଙ୍କୁ ଓ ତାହାଙ୍କ ପରିବାରବର୍ଗଙ୍କୁ, ସମସ୍ତଙ୍କୁ ରକ୍ଷା କଲୁ,

فَنَجَّيْنَاهُ وَأَهْلَهُ أَجْمَعِينَ (١٧٠)

୧୭୨. କେବଳ ଜଣେ ବୃଦ୍ଧାଙ୍କ ବ୍ୟତୀତ, ଯେ କି ପଛରେ ରହିଥିବା ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥିଲା ।

إِلَّا عَجُوزًا فِي الْغَابِرِينَ (١٧١)

୧୭୩. (ଲୁତଙ୍କୁ ରକ୍ଷା କରି) ତା'ପରେ ଆମେ ଅନ୍ୟ ସମସ୍ତଙ୍କୁ ଧ୍ୱଂସ କରିଦେଲୁ ।

ثُمَّ دَمَّرْنَا الْآخَرِينَ (١٧٢)

୧୭୪. ଏବଂ ଆମେ ସେମାନଙ୍କ ଉପରେ (ଶିଳା) ବୃଷ୍ଟି କରିଥିଲୁ ; ଏବଂ ଯେଉଁମାନଙ୍କୁ (ଅଲ୍ଲାହଙ୍କ ତରଫରୁ) ସଚେତନ କରାଇ ଦିଆଯାଏ (ଅଥଚ ସେମାନେ ନିବୃତ୍ତ ହୁଅନ୍ତି ନାହିଁ) ସେମାନଙ୍କ ଉପରେ ବର୍ଷଣକାରୀ ବର୍ଷା ଅତି ଭୟଙ୍କର ହୁଏ ।

وَأَمْطَرْنَا عَلَيْهِم مَّطَرًا فَسَاءَ مَطَرُ الْمُنذَرِينَ (١٧٣)

୧୭୫. ଏହି ଘଟଣାରେ ବାସ୍ତବିକ ଏକ ବଡ଼ ନିଦର୍ଶନ ରହିଥିଲା, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସକାରୀ ହେଲେ ନାହିଁ ।

إِنَّ فِي ذَٰلِكَ لَآيَةً ۖ وَمَا كَانَ أَكْثَرُهُم مُّؤْمِنِينَ (١٧٤)

୧୭୬. ଏବଂ ତୁମ ପାଳନକର୍ତ୍ତା ବାସ୍ତବରେ ପରାକ୍ରମୀ (ଓ) ସଦା କରୁଣାମୟ ।

وَإِنَّ رَبَّكَ لَهُوَ الْعَزِيزُ الرَّحِيمُ (١٧٥)

ରୁ: ୧୦

୧୭୭. ଅରଣ୍ୟବାସୀମାନେ[୧] ମଧ୍ୟ ରସୁଲମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ।

كَذَّبَ أَصْحَابُ لْـَٔيْكَةِ الْمُرْسَلِينَ (١٧٦)

୧୭୮. ଯେତେବେଳେ ସେମାନଙ୍କୁ ସୋଏବ କହିଲେ, "କ'ଣ ତୁମେମାନେ ଧର୍ମଭୀରୁତା ଅବଲମ୍ବନ କରିବ ନାହିଁ ?"

إِذْ قَالَ لَهُمْ شُعَيْبٌ أَلَا تَتَّقُونَ (١٧٧)

୧୭୯. "ଆମେ ତୁମମାନଙ୍କ ପ୍ରତି ଜଣେ ବିଶ୍ୱସ୍ତ ରସୁଲ ଭାବେ ଆସିଅଛୁ ।"

إِنِّي لَكُمْ رَسُولٌ أَمِينٌ (١٧٨)

---

୧. ୧୫ : ୭୯ ଦ୍ରଷ୍ଟବ୍ୟ ।

୧୮୦. "ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମର ଆଜ୍ଞାବହ ହୁଅ ।"[1]

فَاتَّقُوا اللّٰهَ وَاَطِيْعُوْنِ ۝١٨٠

୧୮୧. "ଏବଂ ଆମେ ଏଥିପାଇଁ (ଅର୍ଥାତ୍ ଏହି କାର୍ଯ୍ୟ ପାଇଁ) ତୁମମାନଙ୍କ ଠାରୁ କୌଣସି ପାରିତୋଷିକ ଲୋଡୁ ନାହୁଁ ; ଆମର ପାରିତୋଷିକ ତ ସମସ୍ତ ଜଗତର ପାଳନକର୍ତ୍ତାଙ୍କଠାରେ ରହିଅଛି (ଯେ ଆମକୁ ପ୍ରେରଣ କରିଛନ୍ତି ) ।"

وَمَآ اَسْـَٔلُكُمْ عَلَيْهِ مِنْ اَجْرٍ ۚ اِنْ اَجْرِيَ اِلَّا عَلٰى رَبِّ الْعٰلَمِيْنَ ۝١٨١

୧୮୨. "(ହେ ଲୋକମାନେ !) ମାପ ପାତ୍ର ସମ୍ପୂର୍ଣ୍ଣ ରୂପେ (ଭର୍ତ୍ତିକରି) ଦିଅ, ଏବଂ ଅନ୍ୟର କ୍ଷତି କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ."

اَوْفُوا الْكَيْلَ وَلَا تَكُوْنُوْا مِنَ الْمُخْسِرِيْنَ ۝١٨٢

୧୮୩. "ଏବଂ ଠିକ୍ ତରାଜୁରେ ଓଜନ କର ";

وَزِنُوْا بِالْقِسْطَاسِ الْمُسْتَقِيْمِ ۝١٨٣

୧୮୪. "ଏବଂ ଲୋକମାନଙ୍କୁ ସେମାନଙ୍କର (ପ୍ରାପ୍ୟ) ଦ୍ରବ୍ୟ କମ କରି ଦିଅ ନାହିଁ, ଓ ଦୁର୍ନୀତି କରି ଭୂପୃଷ୍ଠରେ ଆଦୌ ବିଶୃଙ୍ଖଳା ସୃଷ୍ଟି କରନାହିଁ ।"

وَلَا تَبْخَسُوا النَّاسَ اَشْيَآءَهُمْ وَلَا تَعْثَوْا فِي الْاَرْضِ مُفْسِدِيْنَ ۝١٨٤

୧୮୫. "ଏବଂ ଯେ ତୁମମାନଙ୍କୁ ଓ ତୁମମାନଙ୍କର ପୂର୍ବବର୍ତ୍ତୀ ପ୍ରାଣୀମାନଙ୍କୁ ସୃଷ୍ଟି କରିଛନ୍ତି ତାହାଙ୍କୁ ଭୟ କର ।"

وَاتَّقُوا الَّذِيْ خَلَقَكُمْ وَالْجِبِلَّةَ الْاَوَّلِيْنَ ۝١٨٥

୧୮୬. (ଏହା ଶୁଣି ତାହାଙ୍କ ସଂପ୍ରଦାୟର) ଲୋକମାନେ କହିଲେ, "ତୁମେ ଏପରି (ବ୍ୟକ୍ତି), ଯାହାକୁ ଖାଇବାକୁ ଦିଆଯାଉଅଛି ।"

قَالُوْٓا اِنَّمَآ اَنْتَ مِنَ الْمُسَحَّرِيْنَ ۝١٨٦

୧୮୭. "ଏବଂ ତୁମେ ଆମମାନଙ୍କ ସଦୃଶ ଜଣେ ମାନବ ମାତ୍ର, ଏବଂ ବାସ୍ତବରେ ଆମେ ତୁମକୁ ମିଥ୍ୟାବାଦୀ ମନେ କରୁଛୁ ।"

وَمَآ اَنْتَ اِلَّا بَشَرٌ مِّثْلُنَا وَاِنْ نَّظُنُّكَ لَمِنَ الْكٰذِبِيْنَ ۝١٨٧

୧୮୮. "ସୁତରାଂ ଯଦି ତୁମେ ସତ୍ୟବାଦୀ ହୋଇଥାଅ, ତେବେ ଆମମାନଙ୍କ ଉପରେ ମେଘମାଳାର ଏକ ଅଂଶ ନିପତିତ କରାଅ ।"

فَاَسْقِطْ عَلَيْنَا كِسَفًا مِّنَ السَّمَآءِ اِنْ كُنْتَ مِنَ الصّٰدِقِيْنَ ۝١٨٨

୧୮୯. (ଏଥି ଉତ୍ତାରୁ ସୋଏବ) କହିଲେ, "ଆମର ପାଳନକର୍ତ୍ତା ତୁମମାନଙ୍କ କାର୍ଯ୍ୟକଳାପକୁ ଭଲଭାବରେ ଜାଣନ୍ତି ।"

قَالَ رَبِّيْٓ اَعْلَمُ بِمَا تَعْمَلُوْنَ ۝١٨٩

---

[1] ଏଥି ପୂର୍ବରୁ ବହୁ ସ୍ଥାନରେ ଧର୍ମଭୀରୁତା ଅବଲମ୍ବନ କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ଏହି ଅଧ୍ୟାୟରେ 'ଫାତ୍ତକୁଲ୍ଲାହା ଓ ଅତୀଉନ' ଅର୍ଥାତ୍ 'ଅଲ୍ଲାହଙ୍କୁ ଭୟ କର ଓ ଆମର ଆଜ୍ଞାବହ ହୁଅ' ବାକ୍ୟାଂଶର ପୁନରାବୃତ୍ତି କରାଯାଇଛି । ବସ୍ତୁତଃ ସବୁ ଧର୍ମର ମୌଳିକ ଶିକ୍ଷା ହେଉଛି ଏକେଶ୍ୱରବାଦ ଓ ତାତ୍କାଳିକ ଅବତାରଙ୍କର ଆଜ୍ଞା ପାଳନ । ଆଲୋଚ୍ୟ ଆୟତରେ ସୂଚାଯାଇଛି ଯେ ଅଲ୍ଲାହଙ୍କ ପ୍ରତି ଧର୍ମଭୀରୁତା ପାଳନ ସେତେବେଳେ ଯାଇ ପରିପୂର୍ଣ୍ଣ ହେବ ଯେତେବେଳେ ତାତ୍କାଳିକ ଅବତାରଙ୍କର ଆଜ୍ଞା ପାଳିତ ହେବ, କାରଣ ତାଙ୍କ ମାଧ୍ୟମରେ ଅଲ୍ଲାହଙ୍କର ଇଚ୍ଛାକୁ ଜାଣି ହେବ ।

୧୯୦. କିନ୍ତୁ (ସେ ବୁଝାଇବା ସତ୍ତ୍ୱେ)ସେମାନେ ତାହାଙ୍କୁ ମିଥ୍ୟାବାଦୀ ବୋଲି କହିଥିଲେ ; ତେଣୁ ସେମାନଙ୍କୁ ଅନ୍ଧକାରମୟ ଦିବସର ଶାସ୍ତି (ଅର୍ଥାତ୍ ପ୍ରବଳ ନିରବଚ୍ଛିନ୍ନ ବୃଷ୍ଟିରୂପକ ଶାସ୍ତି) କବଳିତ କରିଥିଲା ; ତାହା ବାସ୍ତବରେ ଏକ ଭୟଙ୍କର ଦିବସର ଶାସ୍ତି ଥିଲା ।

فَكَذَّبُوهُ فَأَخَذَهُمْ عَذَابُ يَوْمِ الظُّلَّةِ ۚ إِنَّهُ كَانَ عَذَابَ يَوْمٍ عَظِيمٍ ﴿١٨٩﴾

୧୯୧. ଏହି ଘଟଣାରେ ଏକ ବଡ଼ ନିଦର୍ଶନ ରହିଥିଲା, ଏବଂ (ଏହା ଦେଖିବା ସତ୍ତ୍ୱେ) ସେ (ଅବିଶ୍ୱାସକାରୀ) ମାନଙ୍କ ମଧ୍ୟରୁ ଅଧିକାଂଶ ବିଶ୍ୱାସକାରୀ ହେଲେ ନାହିଁ ।

إِنَّ فِي ذَٰلِكَ لَآيَةً ۖ وَمَا كَانَ أَكْثَرُهُمْ مُؤْمِنِينَ ﴿١٩٠﴾

୧୯୨. ଏବଂ ତୁମ୍ଭ ପାଳନକର୍ତ୍ତା ବାସ୍ତବରେ ପରାକ୍ରମୀ (ଓ) ସଦା କରୁଣାମୟ ।

وَإِنَّ رَبَّكَ لَهُوَ الْعَزِيزُ الرَّحِيمُ ﴿١٩١﴾

ରୁ:୧୧

୧୯୩. ଏବଂ ବାସ୍ତବରେ ଏହା (ଅର୍ଥାତ୍ ପବିତ୍ର କୋରାନ) ସମସ୍ତ ଜଗତର ପାଳନକର୍ତ୍ତାଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଅଛି ।

وَإِنَّهُ لَتَنْزِيلُ رَبِّ الْعَالَمِينَ ﴿١٩٢﴾

୧୯୪. ଏହାକୁ ବହନ କରି ଜଣେ ବିଶ୍ୱସ୍ତ ବାର୍ତ୍ତାବାହକ ଦେବଦୂତ (ଅର୍ଥାତ୍ ଜିବ୍ରାଇଲ) ଅବତୀର୍ଣ୍ଣ ହୋଇଛନ୍ତି,

نَزَلَ بِهِ الرُّوحُ الْأَمِينُ ﴿١٩٣﴾

୧୯୫. ତୁମ୍ଭ ହୃଦୟରେ, ଯଦ୍ଦ୍ୱାରା ତୁମ୍ଭେ ସତର୍କକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।

عَلَىٰ قَلْبِكَ لِتَكُونَ مِنَ الْمُنْذِرِينَ ﴿١٩٤﴾

୧୯୬. (ଏହାକୁ ଜିବ୍ରାଇଲ ଅଲ୍ଲାହଙ୍କ ଆଦେଶ ଅନୁଯାୟୀ) ସୁସ୍ପଷ୍ଟ ଆରବୀ ଭାଷାରେ (ଅବତୀର୍ଣ୍ଣ କରିଛନ୍ତି) ।

بِلِسَانٍ عَرَبِيٍّ مُبِينٍ ﴿١٩٥﴾

୧୯୭. ଏବଂ ବାସ୍ତବିକ ଏହାର ବର୍ଣ୍ଣନା ପୂର୍ବବର୍ତ୍ତୀ (ଧର୍ମ) ଗ୍ରନ୍ଥରେ ମଧ୍ୟ ଉଲ୍ଲିଖିତ ଅଛି ।

وَإِنَّهُ لَفِي زُبُرِ الْأَوَّلِينَ ﴿١٩٦﴾

୧୯୮. କ'ଣ ସେମାନଙ୍କ ପକ୍ଷରେ ଏହି ନିଦର୍ଶନ ଯଥେଷ୍ଟ ନୁହେଁ ଯେ ଏହାକୁ (ଅର୍ଥାତ୍ କୋରାନକୁ) ଇସ୍ରାଇଲୀୟ ବିଦ୍ୱାନ୍‌ମାନେ ମଧ୍ୟ ଜାଣିଛନ୍ତି[1] ?

أَوَلَمْ يَكُنْ لَهُمْ آيَةً أَنْ يَعْلَمَهُ عُلَمَاءُ بَنِي إِسْرَائِيلَ ﴿١٩٧﴾

୧୯୯. ଏବଂ ଯଦି ଆମ୍ଭେ ଏହାକୁ କୌଣସି ଅଣ-ଆରବବାସୀଙ୍କ ପ୍ରତି ଅବତୀର୍ଣ୍ଣ କରିଥାନ୍ତୁ,

وَلَوْ نَزَّلْنَاهُ عَلَىٰ بَعْضِ الْأَعْجَمِينَ ﴿١٩٨﴾

୨୦୦. ଏବଂ ସେ ଏହାକୁ ସେ (ଅବିଶ୍ୱାସକାରୀ) ମାନଙ୍କ ନିକଟରେ ପାଠ କରି ଥାଆନ୍ତା, ତେବେ ସେମାନେ କଦାପି ଏହା ଉପରେ ବିଶ୍ୱାସ କରି ନଥା'ନ୍ତେ ।

فَقَرَأَهُ عَلَيْهِمْ مَا كَانُوا بِهِ مُؤْمِنِينَ ﴿١٩٩﴾

---

୧. ସେମାନେ ଭାବୁଥିଲେ ଯେ ଏହି କୋରାନ ଗ୍ରନ୍ଥ ଇସ୍ରାଇଲୀୟ ନବିମାନଙ୍କ ପ୍ରଦତ୍ତ ଭବିଷ୍ୟବାଣୀର ଅନୁକୂଳ ।

كَذٰلِكَ سَلَكْنٰهُ فِيْ قُلُوْبِ الْمُجْرِمِيْنَ ۝٢٠٠

୨୦୧. ଏହିପରି ଭାବରେ ଆମେ ଅପରାଧୀମାନଙ୍କ ହୃଦୟରେ ଏହାକୁ (ଅର୍ଥାତ୍ ଏପରି କଥାକୁ) ପ୍ରବେଶ କରାଇ ଥାଉ ।

لَا يُؤْمِنُوْنَ بِهٖ حَتّٰى يَرَوُا الْعَذَابَ الْاَلِيْمَ ۝٢٠١

୨୦୨. (ସୁତରାଂ) ସେମାନେ ଯନ୍ତ୍ରଣାଦାୟକ ଶାସ୍ତିକୁ ନ ଦେଖିବା ପର୍ଯ୍ୟନ୍ତ ଏଥିରେ ବିଶ୍ୱାସ କରିବେ ନାହିଁ ।

فَيَاْتِيَهُمْ بَغْتَةً وَّهُمْ لَا يَشْعُرُوْنَ ۝٢٠٢

୨୦୩. ସୁତରାଂ ତାହା (ଅର୍ଥାତ୍ ସେହି ଶାସ୍ତି) ସେମାନଙ୍କ ଅଜାଣତରେ ସେମାନଙ୍କ ନିକଟରେ ହଠାତ୍ ଉପସ୍ଥିତ ହେବ,

فَيَقُوْلُوْا هَلْ نَحْنُ مُنْظَرُوْنَ ۝٢٠٣

୨୦୪. ଏବଂ ସେତେବେଳେ ସେମାନେ କହିବେ, ''କ'ଣ ଆମମାନଙ୍କୁ ଅବସର ମିଳିପାରିବ ?''

اَفَبِعَذَابِنَا يَسْتَعْجِلُوْنَ ۝٢٠٤

୨୦୫. ତେବେ (କୁହ) କ'ଣ ଏହି ଲୋକମାନେ ଆମର ଶାସ୍ତି ତ୍ୱରାନ୍ୱିତ ହେବା ଚାହୁଁଥିଲେ ?

اَفَرَءَيْتَ اِنْ مَّتَّعْنٰهُمْ سِنِيْنَ ۝٢٠٥

୨୦୬. କ'ଣ ତୁମେ ବିଶ୍ୱାସ କରୁନାହଁ ଯେ ଯଦି ଆମେ ସେମାନଙ୍କୁ ବହୁବର୍ଷ ଧରି ସାଂସାରିକ ଲାଭ ପ୍ରଦାନ କରିଥାନ୍ତ,

ثُمَّ جَآءَهُمْ مَّا كَانُوْا يُوْعَدُوْنَ ۝٢٠٦

୨୦୭. ତା'ପରେ ସେମାନଙ୍କ ନିକଟରେ ତାହା (ଅର୍ଥାତ୍ ସେହି ଶାସ୍ତି) ଉପସ୍ଥିତ ହୋଇଥା'ନ୍ତା ଯାହାର ଅଙ୍ଗୀକାର ସେମାନଙ୍କୁ କରା ହୋଇଥିଲା ,

مَآ اَغْنٰى عَنْهُمْ مَّا كَانُوْا يُمَتَّعُوْنَ ۝٢٠٧

୨୦୮. ତେବେ ଯାହାକିଛି ମଧ୍ୟ ସେମାନଙ୍କୁ ଦିଆ ଯାଇଥିଲା ତାହା ସେମାନଙ୍କର ଏହି ଶାସ୍ତିକୁ ଅପସାରିତ କରି ପାରି ନଥା'ନ୍ତା ।

وَمَآ اَهْلَكْنَا مِنْ قَرْيَةٍ اِلَّا لَهَا مُنْذِرُوْنَ ۝٢٠٨

୨୦୯. ଏବଂ ଆମେ କୌଣସି ଜନବସତିକୁ ସଚେତକ ପ୍ରେରଣ ନ କରି ଧ୍ୱଂସ କରିନାହୁଁ ।

ذِكْرٰى ۛ وَمَا كُنَّا ظٰلِمِيْنَ ۝٢٠٩

୨୧୦. ଏଥି ନିମନ୍ତେ କରାଗଲା ଯେ ସେମାନଙ୍କୁ ଉପଦେଶ ପ୍ରାପ୍ତ ହେବ, ଓ ଆମେ ଅତ୍ୟାଚାରୀ ନୋହୁଁ ।

وَمَا تَنَزَّلَتْ بِهِ الشَّيٰطِيْنُ ۝٢١٠

୨୧୧. ଏବଂ ସଇତାନମାନେ ଏହାକୁ (ଅର୍ଥାତ୍ କୋରାନକୁ) ନେଇ ଅବତୀର୍ଣ୍ଣ ହୋଇ ନାହାନ୍ତି ।

وَمَا يَنْۢبَغِيْ لَهُمْ وَمَا يَسْتَطِيْعُوْنَ ۝٢١١

୨୧୨. ଏବଂ ଏହି କାର୍ଯ୍ୟ ପାଇଁ ସେମାନେ ଯୋଗ୍ୟ ନଥିଲେ କି ଏହା କରିବାକୁ ସେମାନଙ୍କର ସାମର୍ଥ୍ୟ ନଥିଲା ।

إِنَّهُمْ عَنِ السَّمْعِ لَمَعْزُولُونَ ﴿٢١٣﴾

୨୧୩. ବାସ୍ତବରେ (ଅଲ୍ଲାହ୍‌ଙ୍କ ବାଣୀ) ଶୁଣିବାରୁ ସେମାନଙ୍କୁ ବଞ୍ଚିତ କରାଯାଇଅଛି ।

فَلَا تَدْعُ مَعَ اللَّهِ إِلَٰهًا آخَرَ فَتَكُونَ مِنَ الْمُعَذَّبِينَ ﴿٢١٤﴾

୨୧୪. ସୁତରାଂ ତୁମେ ଅଲ୍ଲାହ୍‌ଙ୍କ ସହିତ ଅନ୍ୟ କୌଣସି ଉପାସ୍ୟଙ୍କୁ ଡାକ ନାହିଁ ; ନଚେତ୍ ତୁମେ ଶାସ୍ତିଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।

وَأَنذِرْ عَشِيرَتَكَ الْأَقْرَبِينَ ﴿٢١٥﴾

୨୧୫. ଏବଂ ତୁମେ (ସର୍ବପ୍ରଥମେ) ନିଜର ଅତି ନିକଟ ସମ୍ପର୍କୀୟମାନଙ୍କୁ ଭୟ ପ୍ରଦର୍ଶନ କରାଅ ।

وَاخْفِضْ جَنَاحَكَ لِمَنِ اتَّبَعَكَ مِنَ الْمُؤْمِنِينَ ﴿٢١٦﴾

୨୧୬. ଏବଂ ଯେଉଁମାନେ ତୁମ ନିକଟକୁ ବିଶ୍ୱାସକାରୀ ହୋଇ ଆସିବେ ତୁମେ ସେମାନଙ୍କ ପ୍ରତି ନିଜର ଶ୍ରଦ୍ଧାପୂର୍ଣ୍ଣ ହସ୍ତ ପ୍ରସାରଣ କର ।

فَإِنْ عَصَوْكَ فَقُلْ إِنِّي بَرِيءٌ مِّمَّا تَعْمَلُونَ ﴿٢١٧﴾

୨୧୭. ଏହାପରେ ଯଦି ସେମାନେ ତୁମଙ୍କୁ (ପୁଣି) ଅବଜ୍ଞା କରନ୍ତି, ତେବେ କହିଦିଅ ଯେ ତୁମେମାନେ ଯାହା କରୁଅଛ ମୁଁ ତହିଁରୁ (ଦାୟିତ୍ୱ) ମୁକ୍ତ ଅଟେ ।

وَتَوَكَّلْ عَلَى الْعَزِيزِ الرَّحِيمِ ﴿٢١٨﴾

୨୧୮. ଏବଂ ପରାକ୍ରମୀ (ଓ) କରୁଣାମୟଙ୍କ ଉପରେ ଭରସା କର,

الَّذِي يَرَاكَ حِينَ تَقُومُ ﴿٢١٩﴾

୨୧୯. ଯେ କି ତୁମଙ୍କୁ ସେତେବେଳେ ଲକ୍ଷ୍ୟ କରନ୍ତି ଯେତେବେଳେ ତୁମେ (ଏକାକୀ ନମାଜ ପାଇଁ) ଦଣ୍ଡାୟମାନ ହୁଅ ।

وَتَقَلُّبَكَ فِي السَّاجِدِينَ ﴿٢٢٠﴾

୨୨୦. ଏବଂ ସେତେବେଳେ ମଧ୍ୟ (ଲକ୍ଷ୍ୟ କରନ୍ତି) ଯେତେବେଳେ ତୁମେ (ସାମୂହିକ ନମାଜ ଉଦ୍ଦେଶ୍ୟରେ) ସିଜଦା କରୁଥିବା ଗୋଷ୍ଠୀଙ୍କ ମଧ୍ୟରେ ଚଳପ୍ରଚଳ ହେଉଥାଅ ।

إِنَّهُ هُوَ السَّمِيعُ الْعَلِيمُ ﴿٢٢١﴾

୨୨୧. ବାସ୍ତବରେ ସେ (ଅଲ୍ଲାହ୍)ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

---

୧. କେତେକ ଟୀକାକାର ଭୁଲ୍‌ରେ ମତବ୍ୟକ୍ତ କରିଛନ୍ତି ଯେ ହଜରତ ମହମ୍ମଦ ପୁରୁଷାନୁକ୍ରମେ ଉପାସନାକାରୀମାନଙ୍କ ଔରସରୁ ଜାତ ଅଥଚ ସ୍ୱୟଂ ହଜରତ ମହମ୍ମଦ ନିଜର କେତେକ ବର୍ଷୀୟାନ୍ ବ୍ୟକ୍ତିଙ୍କୁ ମୁସରିକ ସାବ୍ୟସ୍ତ କରିଛନ୍ତି । ତେଣୁ ସେ ଉପାସନାକାରୀମାନଙ୍କ ଔରସରୁ ଜାତ ବୋଲି ଏହି ଆୟତ ବୁଝାଉ ନାହିଁ, ବରଂ ସେ ଉପାସନାକାରୀ ସହଚର ଗୋଷ୍ଠୀଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିବା ବୁଝାଉଛି ।

هَلْ اُنَبِّئُكُمْ عَلٰى مَنْ تَنَزَّلُ الشَّيٰطِيْنُ ﴿٢٢٢﴾

୨୨୨. କ'ଣ ଆମେ ତୁମଙ୍କୁ ଜଣାଇବୁ ଯେ କାହା ନିକଟରେ ସଇତାନମାନେ ଅବତରଣ କରନ୍ତି ?

تَنَزَّلُ عَلٰى كُلِّ اَفَّاكٍ اَثِيْمٍ ﴿٢٢٣﴾

୨୨୩. (ସେମାନେ) ପ୍ରତ୍ୟେକ ମିଥ୍ୟାବାଦୀ ପାପୀ ନିକଟରେ ଅବତରଣ କରନ୍ତି ।

يُّلْقُوْنَ السَّمْعَ وَاَكْثَرُهُمْ كٰذِبُوْنَ ﴿٢٢٤﴾

୨୨୪. ସେମାନେ (ଆକାଶ ଆଡ଼କୁ) ନିଜ କାନ ଡେରନ୍ତି, ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ମିଥ୍ୟାବାଦୀ ଅଟନ୍ତି ।

وَالشُّعَرَآءُ يَتَّبِعُهُمُ الْغَاوٗنَ ﴿٢٢٥﴾

୨୨୫. ଏବଂ କବିମାନଙ୍କ ଗୋଷ୍ଠୀ ଏପରି ଅଟେ ଯେ, ଯେଉଁମାନେ ତାହାଙ୍କୁ ଅନୁସରଣ କରନ୍ତି ସେମାନେ ପଥଭ୍ରଷ୍ଟ ହୁଅନ୍ତି ।[1]

اَلَمْ تَرَ اَنَّهُمْ فِيْ كُلِّ وَادٍ يَّهِيْمُوْنَ ﴿٢٢٦﴾

୨୨୬. କ'ଣ ତୁମେ (ଏବେ ବି) ବୁଝିପାରୁ ନାହଁ ଯେ ସେ (କବି)ମାନେ ଲକ୍ଷ୍ୟହୀନ[2] ଭାବରେ ପ୍ରତ୍ୟେକ ପ୍ରାନ୍ତରରେ ଘୂରି ବୁଲନ୍ତି ?

وَاَنَّهُمْ يَقُوْلُوْنَ مَا لَا يَفْعَلُوْنَ ﴿٢٢٧﴾

୨୨୭. ଏବଂ ସେମାନେ ଯାହା କହନ୍ତି ତାହା କରନ୍ତି ନାହିଁ ।

اِلَّا الَّذِيْنَ اٰمَنُوْا وَعَمِلُوا الصّٰلِحٰتِ وَذَكَرُوا اللّٰهَ كَثِيْرًا وَّانْتَصَرُوْا مِنْۢ بَعْدِ مَا ظُلِمُوْا ؕ وَسَيَعْلَمُ الَّذِيْنَ ظَلَمُوْۤا اَيَّ مُنْقَلَبٍ يَّنْقَلِبُوْنَ ﴿٢٢٨﴾

୨୨୮. (କବିମାନଙ୍କ ମଧ୍ୟରୁ) ସେମାନଙ୍କ ବ୍ୟତୀତ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସତ୍‌କର୍ମ କରନ୍ତି ଏବଂ ଯେଉଁମାନେ (ନିଜ କବିତା ମାଧ୍ୟମରେ) ଅଲ୍ଲାହଙ୍କୁ ଅଧିକତର ସ୍ମରଣ କରନ୍ତି, ଏବଂ (ଯେଦି ନିନ୍ଦାଗାନ କରନ୍ତି ତେବେ ପ୍ରାରମ୍ଭରୁ ତାହା କରନ୍ତି ନାହିଁ ବରଂ) ଅତ୍ୟାଚାରିତ ହେବା ପରେ (ସମୁଚିତ) ପ୍ରତିଶୋଧ ଗ୍ରହଣ କରନ୍ତି, ଏବଂ ଅତ୍ୟାଚାରୀମାନେ ଶୀଘ୍ର ଜାଣି ପାରିବେ ଯେ କେଉଁ ସ୍ଥାନ ଆଡ଼କୁ ସେମାନଙ୍କୁ ଫେରି ଯିବାକୁ ପଡ଼ିବ ।

---

୧. ଅର୍ଥାତ୍ ହଜରତ ମହମ୍ମଦଙ୍କ ଅନୁଗାମୀମାନେ ପୁଣ୍ୟବାନ୍ ଓ ଧର୍ମଭୀରୁ ଅଟନ୍ତି । ତେଣୁ ଜଣାଗଲା ଯେ ସେ ଜଣେ କବି ନୁହନ୍ତି ।

୨. ଅର୍ଥାତ୍ କବିମାନଙ୍କର ଲେଖନୀ ଗୋଟିଏ ବିଷୟବସ୍ତୁରେ ସୀମିତ ହୋଇ ରହେ ନାହିଁ, ବରଂ ଯେଉଁ ଯେଉଁ ବିଷୟବସ୍ତୁ ସେମାନଙ୍କ ଚିନ୍ତା ବା ଭାବନା ମଧ୍ୟକୁ ଆସେ ସେଗୁଡ଼ିକୁ ସେମାନେ ନିଜ କବିତା ମଧ୍ୟରେ ସ୍ଥାନ ଦେଉଥାଆନ୍ତି । ବସ୍ତୁତଃ ସେମାନେ କଳ୍ପନାବିଳାସୀ । ସେମାନଙ୍କର ଅଭିପ୍ରାୟ ଉଦ୍ଦେଶ୍ୟ ବିଷୟବସ୍ତୁର କ୍ରମିକ ବର୍ଣ୍ଣନା ନୁହେଁ, ବରଂ ତାହାକୁ ଛନ୍ଦୋଯୁକ୍ତ କରିବା । ସୁତରାଂ ଏହି ଆୟତରେ ଏକ ଭବିଷ୍ୟବାଣୀର ସୂଚନା ଦିଆଯାଇଛି ଯେ ଆଗାମୀ ଦିନର କବିତା ଛନ୍ଦୋଯୁକ୍ତ କବିତା ହେବ । ଉର୍ଦ୍ଦୁ, ଫାର୍ସୀ ଆଦି ଭାଷାର କବିମାନେ ଛନ୍ଦୋଯୁକ୍ତ କବିତା ରଚନା କରିଛନ୍ତି । ବସ୍ତୁତଃ ଯେତେବେଳେ ଏହି ଆୟତ ଅବତୀର୍ଣ୍ଣ ହୋଇଥିଲା, ସେତେବେଳକୁ ଆରବ ଦେଶୀୟ କବିମାନେ ବାସ୍ତବ ଛନ୍ଦୋଯୁକ୍ତ କବିତାର ରଚନା ଆରମ୍ଭ କରି ନଥିଲେ ।




# ଅଲ—ନମଲ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସ୍‌ମିଲ୍ଲାହ ସମେତ ୯୪ଟି ଆୟତ ଓ ୭ଟି ରୁକୁ ଅଛି।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି)।

طٰسٓ تِلْكَ اٰيٰتُ الْقُرْاٰنِ وَكِتَابٍ مُّبِيْنٍ ②

୨. ତା—ସିନ; ଏହାର ଆୟତଗୁଡ଼ିକ କୋରାନ ତଥା ଯୁକ୍ତିସଂଗତ (ଧର୍ମ) ଗ୍ରନ୍ଥର ଅଂଶବିଶେଷ;

هُدًى وَّبُشْرٰى لِلْمُؤْمِنِيْنَ ③

୩. (ଯାହା) ବିଶ୍ୱାସକାରୀମାନଙ୍କ ସକାଶେ ସତ୍‌ପଥ ପ୍ରଦର୍ଶନ ଓ ସୁସମାଚାର (ପାଇଁ ଉଦ୍ଦିଷ୍ଟ)।

الَّذِيْنَ يُقِيْمُوْنَ الصَّلٰوةَ وَيُؤْتُوْنَ الزَّكٰوةَ وَهُمْ بِالْاٰخِرَةِ هُمْ يُوْقِنُوْنَ ④

୪. (ଏପରି ବିଶ୍ୱାସକାରୀମାନେ) ଯେଉଁମାନେ ସମବେତ ହୋଇ ନମାଜ ପାଠ କରନ୍ତି ଓ ଜକାତ ଦିଅନ୍ତି, ଏବଂ ପରକାଳ ଜୀବନରେ ଦୃଢ଼ ବିଶ୍ୱାସ କରନ୍ତି।

اِنَّ الَّذِيْنَ لَا يُؤْمِنُوْنَ بِالْاٰخِرَةِ زَيَّنَّا لَهُمْ اَعْمَالَهُمْ فَهُمْ يَعْمَهُوْنَ ⑤

୫. ଯେଉଁ ଲୋକମାନେ ପରକାଳର ଜୀବନ ସଂକ୍ରାନ୍ତରେ ବିଶ୍ୱାସ କରନ୍ତି ନାହିଁ, ଆମ୍ଭେ ସେମାନଙ୍କ ନିକଟରେ ସେମାନଙ୍କ କର୍ମଗୁଡ଼ିକୁ ଶୋଭନୀୟ କରି ଦେଖାଉଅଛୁ; ତେଣୁ ସେମାନେ ବିଭ୍ରାନ୍ତ ହୋଇ ଘୂରି ବୁଲୁଛନ୍ତି।

اُولٰٓئِكَ الَّذِيْنَ لَهُمْ سُوْٓءُ الْعَذَابِ وَهُمْ فِى الْاٰخِرَةِ هُمُ الْاَخْسَرُوْنَ ⑥

୬. ସେମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି; ଏବଂ ସେମାନେ ପରକାଳର ଜୀବନରେ ସର୍ବାଧିକ କ୍ଷତିଗ୍ରସ୍ତ ହେବେ।

وَاِنَّكَ لَتُلَقَّى الْقُرْاٰنَ مِنْ لَّدُنْ حَكِيْمٍ عَلِيْمٍ ⑦

୭. ଏବଂ ତୁମକୁ କୋରାନ (ଗ୍ରନ୍ଥ) ନିଶ୍ଚିତ ରୂପେ ତାହାଙ୍କଠାରୁ ପ୍ରାପ୍ତ ହେଉଅଛି, ଯେ ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞ।

---

୧. ଏହାର ତାତ୍ପର୍ଯ୍ୟ ନୁହେଁ ଯେ ଅଲ୍ଲାହ ସେମାନଙ୍କ କୁକାର୍ଯ୍ୟଗୁଡ଼ିକୁ ସୁଶୋଭିତ କରି ଦେଖାଇବେ; ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ପ୍ରାକୃତିକ ନିୟମ ଅନୁସାରେ ଯେବେ କୌଣସି ବ୍ୟକ୍ତି ସତ୍‌ପଥ ପରିତ୍ୟାଗ କରି ଅସତ୍ ପଥକୁ ଗ୍ରହଣ କରେ, ତେବେ ସେ ନିଜେ ଏଭଳି ମିଛ କହି କହି ଆନନ୍ଦିତ ହେଉଥାଏ ଯେପରି ସେ ଗ୍ରହଣ କରିଥିବା ପଥ ହିଁ ଉତ୍ତମ ପଥ। ବାସ୍ତବରେ ଏହା ମନୁଷ୍ୟକୃତ କାର୍ଯ୍ୟକଳାପର ସ୍ୱାଭାବିକ ପରିଣାମ। କୋରାନ ଶାସ୍ତ୍ରର ପରିଭାଷା ଅନୁସାରେ ତାହା ଅଲ୍ଲାହଙ୍କ ସହିତ ସଂଶ୍ଳିଷ୍ଟ ଥିବା କୁହାଯାଇଛି। କାରଣ ଅଲ୍ଲାହ ହିଁ ପ୍ରକୃତି ଓ ସ୍ୱଭାବର ସ୍ରଷ୍ଟା। ଯଦି ଏପରି ପରିସ୍ଥିତିରେ ସେହି ଲୋକର ଦୋଷ କେଉଁଠାରେ ବୋଲି ପଚରାଯିବ, ତେବେ ତା'ର ଉତ୍ତର ଏହି ରୂପେ ଦିଆଯାଇ ପାରିବ— ପବିତ୍ର କୋରାନର ଅନେକ ସ୍ଥାନରେ ଉଲ୍ଲେଖ କରାଯାଇଛି ଯେ ଅଲ୍ଲାହ ଯାହା କହିଥାଆନ୍ତି ସେ ତାହାର ପ୍ରମାଣ ମଧ୍ୟ ଦେଉଥାଆନ୍ତି। ଯେହେତୁ ଏହି ଅଧ୍ୟାୟର ଆଦ୍ୟରେ ପବିତ୍ର କୋରାନକୁ ଏକ ପ୍ରାମାଣିକ ଶାସ୍ତ୍ର କୁହାଯାଇଛି ତେଣୁ ଯଦିଚ ମଣିଷ କୁକର୍ମ କରିବା ବେଳେ ତା'ର କୁକର୍ମ ତାକୁ ସୁନ୍ଦର ଦେଖାଯାଏ, ତଥାପି ବିଭିନ୍ନ ପ୍ରମାଣ ତଥା ତା'ର ସ୍ୱଭାବ ତାକୁ ସତର୍କ କରାଉଥାଏ ଯେ ସେ ବାସ୍ତବରେ ଅସତ୍ ପଥରେ ପରିଚାଳିତ ହେଉଛି।

୮. (ସ୍ମରଣକର) ଯେତେବେଳେ ମୁସା ନିଜ ପରିବାରଙ୍କୁ କହିଲେ, "ଆମେ ଏକ ଅଗ୍ନି ଦେଖୁଅଛୁ ; ଆମେ ନିଶ୍ଚୟ ତୁମମାନଙ୍କ ନିକଟକୁ ସେହି (ଅଗ୍ନି)ଠାରୁ କୌଣସି (ମହାନ୍) ସମାଚାର ଆଣିବୁ, କିମ୍ବା ତୁମମାନଙ୍କ ନିକଟକୁ ଏକ ଜଳନ୍ତା ଅଙ୍ଗାର ଆଣିବୁ, ତାହାହେଲେ ତୁମେମାନେ ଉତ୍ତାପ ପାଇପାରିବ ।"

إِذْ قَالَ مُوسَىٰ لِأَهْلِهِ إِنِّي آنَسْتُ نَارًا سَآتِيكُمْ مِنْهَا بِخَبَرٍ أَوْ آتِيكُمْ بِشِهَابٍ قَبَسٍ لَعَلَّكُمْ تَصْطَلُونَ ⑧

୯. ତା'ପରେ ଯେତେବେଳେ ସେ ତାହା ନିକଟରେ ପହଞ୍ଚିଲେ (ସେତେବେଳେ) ତାହାଙ୍କୁ ସମ୍ବୋଧନ[୨] କରି କୁହାଗଲା, "ଯେ କେହି ଏହି ଅଗ୍ନି ମଧ୍ୟରେ ଓ ଏହାର ଚତୁଃପାର୍ଶ୍ୱରେ ଅଛି ତାହାଙ୍କୁ ଆଶୀର୍ବାଦ ପ୍ରଦାନ କରାଯାଇଛି ; ଏବଂ ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହ ହିଁ ପବିତ୍ର ।"

فَلَمَّا جَاءَهَا نُودِيَ أَنْ بُورِكَ مَنْ فِي النَّارِ وَمَنْ حَوْلَهَا وَسُبْحَانَ اللَّهِ رَبِّ الْعَالَمِينَ ⑨

୧୦. "ହେ ମୁସା ! ବାସ୍ତବରେ ଆମେ ହିଁ ଅଲ୍ଲାହ,[୩] ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।"

يَا مُوسَىٰ إِنَّهُ أَنَا اللَّهُ الْعَزِيزُ الْحَكِيمُ ⑩

---

୧. ଏହି ଆୟତର ତାତ୍ପର୍ଯ୍ୟ ହେଉଛି ଯେ ନବି ପଦ ପାଇବାର ଅଳ୍ପ ଦିନ ଭିତରେ ହଜରତ ମୁସା 'ଏକ ଅଗ୍ନି' ଅବଲୋକନ କରିଥିଲେ । ସେ ତହିଁରୁ ବୁଝିଥିଲେ ଯେ ତାଙ୍କ ନିକଟକୁ ଓହି ବା ଦିବ୍ୟବାଣୀ ପ୍ରେରିତ ହେବା ସମୟ ଆସନ୍ନ । ଯଦି ପ୍ରକୃତରେ ତାହା ପାର୍ଥିବ ଅଗ୍ନି ହୋଇଥା'ନ୍ତା ତେବେ 'ଏକ ଅଗ୍ନି' ଶବ୍ଦଗୁଡ଼ିକ ପ୍ରୟୋଗ କରାନଯାଇ କେବଳ 'ଅଗ୍ନି' ଶବ୍ଦର ପ୍ରୟୋଗ ହୋଇଥା'ନ୍ତା । ଯେହେତୁ ସେ ଜାଣିଥିଲେ ଯେ ଏହା ଏକ ଦିବ୍ୟ ପ୍ରଦର୍ଶନ, ତେଣୁ ସେ ନିଜ ବନ୍ଧୁବାନ୍ଧବଙ୍କୁ ଅବଗତ କରାଇଥିଲେ ଯେ ଅଲ୍ଲାହଙ୍କର ଜ୍ୟୋତି ପ୍ରକଟିତ ହେବାର ସମ୍ଭାବନା ଅଛି । ତାଙ୍କ ଉକ୍ତି ଅନୁସାରେ– 'ମୁଁ ସେଠାକୁ ଯାଉଛି, ସେହି ଜ୍ୟୋତି ଯଦି କେବଳ ମୋ ପାଇଁ ଉଦ୍ଦିଷ୍ଟ ଥିବ ତେବେ ମୁଁ ଏହି ମହତ୍ତ୍ୱପୂର୍ଣ୍ଣ ସମାଚାର ତୁମମାନଙ୍କୁ ଅର୍ଥାତ୍ ମୋ ପତ୍ନୀ ଓ ବନ୍ଧୁମାନଙ୍କୁ ଫେରିଆସି ଶୁଣାଇବି; ଯଦି ସେହି ଜ୍ୟୋତି ମୋ ଜାତି ବା ଦେଶ ପାଇଁ ଉଦ୍ଦିଷ୍ଟ ଥିବ ତେବେ ଏକ ଜଳନ୍ତ ଅଙ୍ଗାର ଅର୍ଥାତ୍ ଏପରି ଜ୍ୟୋତିଷ୍ମାନ୍ ଶିକ୍ଷା ଆଣିବି ଯାହା ଅନ୍ୟମାନଙ୍କ ମନରେ ଅଲ୍ଲାହଙ୍କ ପ୍ରେମ ସଞ୍ଚାର କରାଇବ; ଫଳରେ ତୁମେମାନେ ମଧ୍ୟ ଲାଭବାନ୍ ହେବ ।' ହଜରତ ମହମ୍ମଦ ଯେଉଁ ଦୃଶ୍ୟ ହେରା ଗୁମ୍ଫାରେ ଦେଖିଥିଲେ ତାହାକୁ ମଧ୍ୟ ପ୍ରଥମେ ସେ ନିଜ ପତ୍ନୀ ଖଦିଜାଙ୍କୁ ଓ ତାଙ୍କର ଅନ୍ୟାନ୍ୟ ବନ୍ଧୁବାନ୍ଧବଙ୍କୁ ଅବଗତ କରାଇଥିଲେ । ଏଥିରୁ ତାଙ୍କର ହଜରତ ମୁସାଙ୍କ ସହ ସାମଞ୍ଜସ୍ୟ ଥିବା ପ୍ରମାଣିତ ହେଉଛି ।

୨. ସେହି ଅଗ୍ନି ମଧ୍ୟରେ ଅଲ୍ଲାହଙ୍କର ଅସ୍ତିତ୍ୱ ଥିବା ବିଷୟରେ ଯେଉଁମାନେ ବିଶ୍ୱାସ କରନ୍ତି ସେମାନଙ୍କ ମତକୁ ଏହି ଆୟତରେ ଖଣ୍ଡନ କରାଯାଇଛି, କାରଣ ଅଲ୍ଲାହ ହିଁ ସକଳ କଲ୍ୟାଣ ପ୍ରଦାନ କରନ୍ତି ଅଥଚ ଅନ୍ୟ କେହି ତାହାଙ୍କୁ କଲ୍ୟାଣ ଦାନ କରନ୍ତି ନାହିଁ । ଅତଏବ ଏହି ଦୃଶ୍ୟ ମାଧ୍ୟମରେ ଜଣାଇ ଦିଆଯାଇଛି ଯେ ହଜରତ୍ ମୁସା ତଥା ଅଗ୍ନିର ଚମତ୍କାର ଦ୍ୱାରା ଅଲ୍ଲାହଙ୍କ ଅସ୍ତିତ୍ୱ ପ୍ରଦର୍ଶିତ ହେଉଛି । 'ଅଲ୍ଲାହ ହିଁ ପବିତ୍ର' ବାକ୍ୟାଂଶରେ ମଧ୍ୟ ଅଲ୍ଲାହ ଅଗ୍ନି ମଧ୍ୟରେ ଥିବା ତଥ୍ୟ ଅପ୍ରମାଣିତ ହୋଇଛି । କାରଣ ଯେତେବେଳେ ଅଲ୍ଲାହଙ୍କୁ ସମସ୍ତ ଜଗତର ପାଳନକର୍ତ୍ତା ରୂପେ ବର୍ଣ୍ଣନା କରାଯାଇଛି ସେତେବେଳେ ତାହାଙ୍କୁ କିପରି ସୀମିତ କରାଯାଇ ପାରିବ ? ପୁନଶ୍ଚ ତାହାଙ୍କୁ ପବିତ୍ର ବୋଲି ଆଖ୍ୟାୟିତ କରିବା ଫଳରେ ସେ କୌଣସି ପ୍ରକାର ଦେହ ଧାରଣ କରିବା ସମ୍ବନ୍ଧରେ କଳ୍ପନା କରାଯିବା ଏକ ଅବାନ୍ତର କଥା । ତାଙ୍କୁ ଏ ପ୍ରକାର କାଳ୍ପନିକ ମତବାଦର ଊର୍ଦ୍ଧ୍ୱରେ ସ୍ଥାପନ କରାଯାଇ ପବିତ୍ର ସାବ୍ୟସ୍ତ କରାଯାଇଛି ।

୩. ଅଗ୍ନି ମଧ୍ୟରେ ଅଲ୍ଲାହ ରହିଥିଲେ ବୋଲି ଅର୍ଥ କରାଯିବା ସମୀଚୀନ ନୁହେଁ । ବରଂ ଏହାର ଅର୍ଥ ହେଉଛି, ହଜରତ୍ ମୁସାଙ୍କୁ ଦୈବବାଣୀ ମାଧ୍ୟମରେ ଜଣାଇ ଦିଆଯାଇଥିଲା ଯେ 'ଦେଖ ! ଆମର ଜ୍ୟୋତି ପ୍ରତ୍ୟେକ ବସ୍ତୁରେ ପ୍ରକଟିତ ହେଉଛି ।' ଏହା ଅଗ୍ନିରୁ, ତା' ନିକଟବର୍ତ୍ତୀ ବସ୍ତୁସମୂହରୁ, ଲାଠିରୁ ତଥା ସର୍ପରୂପୀ ଅଲୌକିକ ଆକୃତିରୁ ମଧ୍ୟ ପ୍ରକଟିତ ହେଉଛି । ସୁତରାଂ ଅଗ୍ନି ମଧ୍ୟରେ ଅଲ୍ଲାହ ରହିଥିଲେ ବୋଲି କହିବା ପବିତ୍ର କୋରାନ ଦୃଷ୍ଟିରୁ ତଥା ବୁଦ୍ଧିମତା ଦୃଷ୍ଟିରୁ ଅସମୀଚୀନ; ବରଂ ଯେଉଁ ଦୃଶ୍ୟ ଏହି ଅଗ୍ନି ବା ଲାଠି ବା ସର୍ପ ମାଧ୍ୟମରେ ପ୍ରଦର୍ଶିତ ହୋଇଥିଲା, ସେ ସମସ୍ତ ଦୃଶ୍ୟ ମନୁଷ୍ୟଙ୍କୁ ଅଲ୍ଲାହଙ୍କର ସାନ୍ନିଧ୍ୟ ପ୍ରଦାନ କରୁଥିଲା; ବସ୍ତୁତଃ ତା' ମଧ୍ୟରେ ଅଲ୍ଲାହ ରହି ନ ଥିଲେ ।

୧୧. "ତୁମେ ନିଜର ଲାଠିକୁ ଫୋପାଡ଼ି ଦିଅ." ତା'ପରେ ଯେତେବେଳେ ସେ ତାହାକୁ ଏକ କ୍ଷୁଦ୍ର ସର୍ପ ସଦୃଶ ଆନ୍ଦୋଳିତ ହେଉଥିବାର ଦେଖିଲେ, ସେତେବେଳେ ସେ ବୁଲିପଡ଼ି ଦଉଡ଼ିବାକୁ ଲାଗିଲେ ଓ ପଛକୁ ଫେରି ଚାହିଁଲେ ନାହିଁ; (ସେତେବେଳେ ଆମ୍ଭେ କହିଲୁ) "ହେ ମୁସା ! ଭୟ କର ନାହିଁ; ଆମ୍ଭ ସମୀପରେ ରସୁଲମାନେ ଭୟଭୀତ ହୁଅନ୍ତି ନାହିଁ।"[1]

وَاَلْقِ عَصَاكَ ۚ فَلَمَّا رَاٰهَا تَهْتَزُّ كَاَنَّهَا جَآنٌّ وَّلّٰى مُدْبِرًا وَّلَمْ يُعَقِّبْ ۚ يٰمُوْسٰى لَا تَخَفْ ۗ اِنِّىْ لَا يَخَافُ لَدَىَّ الْمُرْسَلُوْنَ ﴿١١﴾

୧୨. ପରନ୍ତୁ ଯେ ଅତ୍ୟାଚାର କରେ ଓ ପୁନଶ୍ଚ ସେହି ଅତ୍ୟାଚାରକୁ ପରିତ୍ୟାଗ କରି ସତ୍କାର୍ଯ୍ୟ କରେ, ଆମ୍ଭେ ନିଶ୍ଚୟ (ତାହା ନିମନ୍ତେ) ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।[2]

اِلَّا مَنْ ظَلَمَ ثُمَّ بَدَّلَ حُسْنًا ۢ بَعْدَ سُوْٓءٍ فَاِنِّىْ غَفُوْرٌ رَّحِيْمٌ ﴿١٢﴾

୧୩. ଏବଂ ତୁମେ ନିଜ ବକ୍ଷସ୍ଥଳରେ ଥିବା ପରିଧାନ ମଧ୍ୟରେ ନିଜ ହାତ ଭର୍ତ୍ତିକର, ଓ ତାହା ରୋଗଗ୍ରସ୍ତ ନ ଥାଇ ଶୁଭ୍ର ହୋଇ ବାହାରିବ ; ଏହା ସେହି ନଅଗୋଟି ନିଦର୍ଶନର[3]

وَاَدْخِلْ يَدَكَ فِىْ جَيْبِكَ تَخْرُجْ بَيْضَآءَ مِنْ غَيْرِ

[1] ଏଠାରେ 'ଜାନ୍ନୁନ' ଶବ୍ଦକୁ କ୍ଷୁଦ୍ର ସର୍ପ ଅର୍ଥରେ ପ୍ରୟୋଗ କରାଯାଇଛି । ଅନ୍ୟତ୍ର ପବିତ୍ର କୋରାନରେ ବ୍ୟବହୃତ 'ସୋବାନ' ଶବ୍ଦ ବୃହତ ସର୍ପକୁ ବୁଝାଉଛି । ଅନ୍ୟ ସ୍ଥାନରେ ବ୍ୟବହୃତ 'ହୟୟତୁନ୍' ସାଧାରଣ ସର୍ପ ଅର୍ଥରେ ପ୍ରୟୋଗ କରାଯାଇଛି । କେତେକ ନିର୍ବୋଧଙ୍କ ମତରେ ଏହା ଦ୍ବିଧାତ୍ମକ, ଅଥଚ ଯେଉଁଠାରେ 'କ୍ଷୁଦ୍ରସର୍ପ' ଶବ୍ଦମାନ ପ୍ରୟୋଗ କରାଯାଇଛି ସେଠାରେ କୁହାଯାଇଛି ଯେ ତାହା କ୍ଷୁଦ୍ର ସର୍ପ ସଦୃଶ ଆନ୍ଦୋଳିତ ହେଉଥିଲା । ପ୍ରକୃତପକ୍ଷେ କ୍ଷୁଦ୍ର ସର୍ପ ଶବ୍ଦାବଳୀ ତା'ର ତୀବ୍ର ଗତି ଯୋଗୁଁ ଓ ବୃହତ୍ ସର୍ପ ଶବ୍ଦାବଳୀ ତା'ର ବୃହତ୍ ଆକାର ଯୋଗୁଁ ତଥା ସାଧାରଣ ସର୍ପ ଶବ୍ଦାବଳୀ ସର୍ପଜାତିକୁ ସୂଚାଇବା ସକାଶେ ପ୍ରୟୋଗ କରାଯାଇଛି । ଅତଏବ ସ୍ଥଳ ବିଶେଷରେ ଭିନ୍ନ ଭିନ୍ନ ଶବ୍ଦ ପ୍ରୟୋଗ କରାଯିବା ସ୍ବାଭାବିକ ।

[2] ପୂର୍ବରୁ ଆଲୋଚନା କରାଯାଇଛି ଯେ କେତେକ ସ୍ଥାନରେ ନବିଙ୍କୁ ସମ୍ବୋଧନ କରା ଯାଇଥିଲେ ମଧ୍ୟ ପ୍ରକୃତରେ ତାଙ୍କ ସଂପ୍ରଦାୟ ଅଭିପ୍ରେତ । ଏଠାରେ ମଧ୍ୟ ପୂର୍ବବର୍ତ୍ତୀ ଆୟତରେ ଅଲ୍ଲାହ କହିଛନ୍ତି ଯେ ନବି ତାହାଙ୍କୁ ଭୟ କରନ୍ତି ନାହିଁ । ଅଥଚ ଆଲୋଚ୍ୟ ଆୟତରେ ଉଲ୍ଲେଖ କରାଯାଇଛି ଯେ ଯେଉଁ ବ୍ୟକ୍ତି ଅତ୍ୟାଚାର କରି ପରେ ଏହାକୁ ପରିତ୍ୟାଗ କରିବ ଓ ପୁଣ୍ୟକାର୍ଯ୍ୟ କରିବ ତାହାକୁ ଅଲ୍ଲାହ କ୍ଷମା ଦେବେ । ତେଣୁ ଏହା ନବିମାନଙ୍କ ପ୍ରତି ପ୍ରଯୋଜ୍ୟ ନୁହେଁ । ଅତଏବ ମନେରଖିବାକୁ ହେବ ଯେ ଏଠାରେ ନବିମାନଙ୍କର ଅନୁଗାମୀମାନଙ୍କୁ ଉପଦେଶ ଦିଆଯାଇଛି, କାରଣ ସେମାନେ ହିଁ ନବିମାନଙ୍କର ଉତ୍ତର ପୁରୁଷ । ସେମାନଙ୍କ ମଧ୍ୟରୁ କେତେକ ଅବଶ୍ୟ ପ୍ରଥମରୁ ଅବିଶ୍ବାସକାରୀ ଥା'ନ୍ତି ଓ ପରେ ବିଶ୍ବାସକାରୀ ହୋଇଯା'ନ୍ତି ।

[3] ଫିରଔନ ଓ ତା'ର ଦେଶବାସୀଙ୍କ ପାଇଁ ଅଲ୍ଲାହ ଯେଉଁ ନଅ ଗୋଟି ନିଦର୍ଶନ ପ୍ରଦର୍ଶନ କରିଥିଲେ ତନ୍ମଧ୍ୟରୁ ଅନ୍ୟତମ ହେଉଛି— ନିଜ ହାତକୁ କାଖ ତଳେ ପୂରାଇ ବାହାର କରିଆଣିଲେ ତାହା ଧଳା ଦେଖାଯିବ ଅଥଚ ତାହା ରୋଗଗ୍ରସ୍ତ ହୋଇ ଧଳା ହୋଇନଥିବ (୧୭:୧୦୨ ର ଟୀକା ଦ୍ରଷ୍ଟବ୍ୟ) ।

ଆରବୀ ଭାଷାର ରୂଢ଼ି ପ୍ରୟୋଗ ମୁତାବକ 'ହାତ' ଭାଇବନ୍ଧୁ ଓ ଜାତି ବା ସଂପ୍ରଦାୟକୁ ବୁଝାଏ । ଏହାର ଅର୍ଥ : 'ହେ ମୁସା ! ନିଜ ସଂପ୍ରଦାୟକୁ ନିଜ ସହିତ ବାନ୍ଧି ରଖ । ଫଳରେ ତୁମ ସଂପର୍କରେ ଆସି ତଥା ଉପଦେଶ ଶୁଣି ସେମାନେ ପୁଣ୍ୟବାନ୍, ନିଷ୍କଳଙ୍କ ଓ ସଦାଚାରୀ ହେବେ ତଥା ସେମାନଙ୍କ ଠାରେ କୌଣସି ଦୋଷତ୍ରୁଟି ରହିବ ନାହିଁ ।' ପ୍ରକଟ ହେଉଛି, ହଜରତ୍ ମୁସାଙ୍କ ଆଗମନ ପୂର୍ବରୁ ତାଙ୍କ ସଂପ୍ରଦାୟ ବହୁ ଦୋଷତ୍ରୁଟିର ଶିକାର ହୋଇଥିଲା । ସେମାନେ ହଜରତ ଇବ୍ରାହିମଙ୍କର ଶିକ୍ଷାକୁ ଭୁଲି ଯାଇଥିଲେ । ପରେ ସେମାନେ ହଜରତ ମୁସାଙ୍କ ଗହଣରେ ରହିବାରୁ ସେମାନଙ୍କ ମଧ୍ୟରୁ ବହୁ ଲୋକ ମହାଯୋଗୀରେ ପରିଣତ ହୋଇଥିଲେ । କିନ୍ତୁ ତାଙ୍କ ଅବର୍ତ୍ତମାନରେ ସେମାନେ ପଥଭ୍ରଷ୍ଟ ହୋଇ ଯାଉଥିଲେ ଏପରିକି ସେ ଅଳ୍ପ ସମୟ ପାଇଁ ପାହାଡ଼ ଉପରକୁ ଯାଇଥିବା ବେଳେ ବାଛୁରୀକୁ ଉପାସ୍ୟ ରୂପେ ଗ୍ରହଣ କରି ପୂଜା କରିବାକୁ ଲାଗିଲେ ।

ଝଡ଼ ଥିଲା ଅନ୍ୟତମ ନିଦର୍ଶନ ଯାହା ସେମାନଙ୍କ ପ୍ରତି ଲୋହିତ ସାଗରରେ ପ୍ରେରିତ ହେଉଥିଲା ଓ ଏଥିରେ ଫିରଔନ ଓ ତାହାର ସୈନ୍ୟବାହିନୀ ଜଳମଗ୍ନ ହୋଇଥିଲେ । ସେହି ଝଡ଼ ଏପରି ପ୍ରଚଣ୍ଡ ଥିଲା ଯେ ସମୁଦ୍ରର ଜଳ ଭୂମି ଉପରୁ ଦୂରେଇ ଯାଇ ସେହି ଭୂମି ଦୃଶ୍ୟ ହୋଇଥିଲା । ଏହା ଦେଖି ଯେତେବେଳେ ହଜରତ ମୁସା ପାରି ହୋଇ ଚାଲିଗଲେ ସେତେବେଳେ ଫିରଔନ ତାଙ୍କର ଅନୁଧାବନ କଲା, ମାତ୍ର ଜଳରାଶି ପ୍ରତ୍ୟାବର୍ତ୍ତନ କରିବାରୁ ସେ ନିଜ ସୈନ୍ୟବାହିନୀ ସହିତ ଜଳମଗ୍ନ ହେଲା ।

سُوْٓءٍ فِيْ تِسْعِ اٰيٰتٍ اِلٰى فِرْعَوْنَ وَقَوْمِهٖ ۭ اِنَّهُمْ كَانُوْا قَوْمًا فٰسِقِيْنَ ⑬

ଅନ୍ତର୍ଗତ, ଯାହା ଫିରଔନ ଓ ତାହାର ସମ୍ପ୍ରଦାୟ ପ୍ରତି ପ୍ରେରିତ ହେବ ; ବାସ୍ତବରେ ସେମାନେ ଅମାନ୍ୟକାରୀ ସମ୍ପ୍ରଦାୟ ଅଟନ୍ତି ।

فَلَمَّا جَاۗءَتْهُمْ اٰيٰتُنَا مُبْصِرَةً قَالُوْا هٰذَا سِحْرٌ مُّبِيْنٌ ⑭

୧୪. ସୁତରାଂ ଯେତେବେଳେ ସେମାନଙ୍କ ନିକଟରେ ଆମର ଚକ୍ଷୁ-ଉନ୍ମେଷକ ନିଦର୍ଶନମାନ ଉପସ୍ଥିତ ହେଲା, ସେତେବେଳେ ସେମାନେ କହିଲେ, "ଏହା ଏକ ପ୍ରକାଶ୍ୟ କୁହୁକ ଅଟେ ।"

وَجَحَدُوْا بِهَا وَاسْتَيْقَنَتْهَآ اَنْفُسُهُمْ ظُلْمًا وَّعُلُوًّا ۭ فَانْظُرْ كَيْفَ كَانَ عَاقِبَةُ الْمُفْسِدِيْنَ ⑮

୧୫. ଏବଂ ସେମାନଙ୍କ ଅନ୍ତର (ଏହାର ସତ୍ୟତାକୁ) ସ୍ୱୀକାର କରିଥିଲେ ମଧ୍ୟ ସେମାନେ ଅଡ଼ିବସି ଅନ୍ୟାୟ ଭାବରେ ଓ ଅହଂକାର–ପୂର୍ବକ ଏହାକୁ ପ୍ରତ୍ୟାଖ୍ୟାନ କଲେ ; ସୁତରାଂ ଲକ୍ଷ୍ୟକର ଯେ ବିଶୃଙ୍ଖଳା ସୃଷ୍ଟି କରୁଥିବା ଲୋକମାନଙ୍କ ପରିଣାମ କିପରି (ଭୟାବହ) ହୋଇଥାଏ ।

**ରୁ: ୨**

وَلَقَدْ اٰتَيْنَا دَاوٗدَ وَسُلَيْمٰنَ عِلْمًا ۚ وَقَالَا الْحَمْدُ لِلّٰهِ الَّذِيْ فَضَّلَنَا عَلٰي كَثِيْرٍ مِّنْ عِبَادِهِ الْمُؤْمِنِيْنَ ⑯

୧୬. ଏବଂ ଆମେ ଦାଉଦ ଓ ସୁଲେମାନଙ୍କୁ ଜ୍ଞାନ ପ୍ରଦାନ କରିଥିଲୁ, ଏବଂ ସେ ଦୁହେଁ କହିଲେ, "ଅଲ୍ଲାହ ହି ସମସ୍ତ ପ୍ରଶଂସାର ଅଧିକାରୀ ଯେ ଆମମାନଙ୍କୁ ତାଙ୍କର ଅନେକ ବିଶ୍ୱାସକାରୀ ଭକ୍ତଙ୍କ ଉପରେ ପ୍ରାଧାନ୍ୟ ପ୍ରଦାନ କରିଛନ୍ତି ।"

وَوَرِثَ سُلَيْمٰنُ دَاوٗدَ وَقَالَ يٰٓاَيُّهَا النَّاسُ عُلِّمْنَا مَنْطِقَ الطَّيْرِ وَاُوْتِيْنَا مِنْ كُلِّ شَيْءٍ ۭ اِنَّ هٰذَا لَهُوَ الْفَضْلُ الْمُبِيْنُ ⑰

୧୭. ଏବଂ ସୁଲେମାନ ଦାଉଦଙ୍କ ଉତ୍ତରାଧିକାରୀ ହୋଇଥିଲେ ଓ ସେ କହିଲେ, "ହେ ଲୋକମାନେ ! ଆମକୁ ପକ୍ଷୀମାନଙ୍କର[1] ଭାଷା ଶିଖାଯାଇଛି ଏବଂ ଆମକୁ ପ୍ରତ୍ୟେକ ପ୍ରକାର ପ୍ରୟୋଜନୀୟ ଦ୍ରବ୍ୟ (ଅର୍ଥାତ୍ ଶିକ୍ଷା) ଦିଆଯାଇଅଛି ; ଏହା (ଅଲ୍ଲାହଙ୍କର) ପ୍ରକାଶ୍ୟ ଅନୁଗ୍ରହ ।"

وَحُشِرَ لِسُلَيْمٰنَ جُنُوْدُهٗ مِنَ الْجِنِّ وَالْاِنْسِ وَالطَّيْرِ فَهُمْ يُوْزَعُوْنَ ⑱

୧୮. ଏବଂ (ଏକଦା) ସୁଲେମାନଙ୍କ ସମ୍ମୁଖରେ ତାହାଙ୍କ (ଅଧୀନସ୍ଥ) ଜିନ୍ନ ଓ ମନୁଷ୍ୟ ଓ ପକ୍ଷୀମାନଙ୍କୁ ନେଇ ତାଙ୍କର ସୈନ୍ୟଦଳକୁ ଶ୍ରେଣୀବଦ୍ଧ ଭାବେ ଏକତ୍ରିତ କରାହୋଇଥିଲା, (ତା'ପରେ ସେମାନଙ୍କୁ ଅଗ୍ରସର ହେବାପାଇଁ ଆଦେଶ ଦିଆଯାଇଥିଲା) ।

---

୧. ଏଠାରେ ପକ୍ଷୀ ଅର୍ଥ ଆଧ୍ୟାତ୍ମିକ ଆକାଶରେ ଉଡ଼ି ପାରୁଥିବା ଅଲ୍ଲାହଙ୍କର ଭକ୍ତ ।

حَتّٰۤى اِذَاۤ اَتَوْا عَلٰى وَادِ النَّمْلِ ۙ قَالَتْ نَمْلَةٌ يّٰۤاَيُّهَا النَّمْلُ ادْخُلُوْا مَسٰكِنَكُمْ ۚ لَا يَحْطِمَنَّكُمْ سُلَيْمٰنُ وَجُنُوْدُهٗ ۙ وَهُمْ لَا يَشْعُرُوْنَ ﴿١٩﴾

୧୯. ଏପରିକି ଯେତେବେଳେ ସେମାନେ ନମଲ[୧] (ନାମକ) ଉପତ୍ୟକାରେ ପହଞ୍ଚିଲେ, ସେତେବେଳେ ନମଲ ସମ୍ପ୍ରଦାୟର ଜଣେକ ବ୍ୟକ୍ତି କହିଲା, "ହେ ନମଲ ସମ୍ପ୍ରଦାୟ ! (ତୁମେମାନେ) ନିଜନିଜ ଗୃହ ମଧ୍ୟକୁ ଚାଲିଯାଅ, ନଚେତ୍ ସୁଲେମାନ ଓ ତାହାଙ୍କ ସୈନ୍ୟଦଳ (ତୁମମାନଙ୍କ ଅବସ୍ଥା) ଜାଣି ନ ପାରି ତୁମମାନଙ୍କୁ ଚକଟି ପକାଇବେ ।"[୨]

فَتَبَسَّمَ ضَاحِكًا مِّنْ قَوْلِهَا وَقَالَ رَبِّ اَوْزِعْنِىْۤ اَنْ اَشْكُرَ نِعْمَتَكَ الَّتِىْۤ اَنْعَمْتَ عَلَىَّ وَعَلٰى وَالِدَىَّ وَاَنْ اَعْمَلَ صَالِحًا تَرْضٰىهُ وَاَدْخِلْنِىْ بِرَحْمَتِكَ فِىْ عِبَادِكَ الصّٰلِحِيْنَ ﴿٢٠﴾

୨୦. ତତ୍ପରେ ସେ (ସୁଲେମାନ) ତାହାର କଥା ଶୁଣି ହସିଲେ ଓ କହିଲେ, "ହେ ଆମର ପାଳନକର୍ତ୍ତା ! ତୁମେ ଆମ୍ଭଙ୍କୁ ସାମର୍ଥ୍ୟ ଦିଅ ଯେପରି କି ତୁମେ ଆମ ପ୍ରତି, ଓ ଆମ ପିତାଙ୍କ ପ୍ରତି କରିଥିବା କୃପା ନିମନ୍ତେ ଆମେ କୃତଜ୍ଞତା ଜ୍ଞାପନ କରି ପାରିବୁ, ଏବଂ ଏପରି ଉଚିତ କାର୍ଯ୍ୟ କରିପାରିବୁ ଯାହା ତୁମେ ପସନ୍ଦ କରିବ, ଏବଂ (ହେ ଅଲ୍ଲାହ !) ତୁମେ ଆମ୍ଭଙ୍କୁ ନିଜ କରୁଣା ସାହାଯ୍ୟରେ ତୁମର ସତ୍ୟନିଷ୍ଠ ଭକ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ କର ।"

وَتَفَقَّدَ الطَّيْرَ فَقَالَ مَا لِىَ لَاۤ اَرَى الْهُدْهُدَ ۖ اَمْ كَانَ مِنَ الْغَآئِبِيْنَ ﴿٢١﴾

୨୧. ଏବଂ ସେ ସବୁ ପକ୍ଷୀଙ୍କୁ ପର୍ଯ୍ୟବେକ୍ଷଣ କରି ପଚାରିଲେ, "ଆମେ କାହିଁକି ହୁଦହୁଦକୁ[୩] ଦେଖୁନାହୁଁ ? ତେବେ କ'ଣ ସେ (ଜାଣିଶୁଣି) ଅନୁପସ୍ଥିତ ଅଛି ?"

لَاُعَذِّبَنَّهٗ عَذَابًا شَدِيْدًا اَوْ لَاَاذْبَحَنَّهٗۤ اَوْ لَيَاْتِيَنِّىْ بِسُلْطٰنٍ مُّبِيْنٍ ﴿٢٢﴾

୨୨. "ଯଦି ସେ (ନିଜ ଅନୁପସ୍ଥିତି ସଂକ୍ରାନ୍ତରେ) ଆମ ନିକଟରେ କୌଣସି ସ୍ପଷ୍ଟ ପ୍ରମାଣ ଉପସ୍ଥାପନ ନ କରିବ, ତେବେ ଆମେ ନିଶ୍ଚୟ ତାହାକୁ କଠୋର ଶାସ୍ତି ଦେବୁ ବା ତାହାକୁ ହତ୍ୟା କରିବୁ !"

---

୧. ସମୁଦ୍ର କୂଳରେ ଜେରୁଜେଲମ ପାର୍ଶ୍ୱରେ ବା ତା' ନିକଟରେ ଦାମସ୍କସକୁ ହିଜାଜ ଯିବା ବାଟରେ ଶହେ ମାଇଲ ଦୂରରେ ଅବସ୍ଥିତ ଏକ ଉପତ୍ୟକାର ନାମ ନମଲ । ଏଠାରେ ହଜରତ ସୁଲେମାନଙ୍କ ସମୟ ପର୍ଯ୍ୟନ୍ତ ଆରବ ଓ ମଦୟନର ଅନେକ ଗୋଷ୍ଠୀ ବାସ କରୁଥିଲେ । (ପାଲେଷ୍ଟାଇନ୍ ଓ ସିରିଆର ପ୍ରାଚୀନ ଓ ଅର୍ବାଚୀନ ମାନଚିତ୍ର ତଥା ନେଲସନ୍ସ ଏନ୍-ସାଇକ୍ଲୋପିଡ଼ିଆ ଦ୍ରଷ୍ଟବ୍ୟ) । ସେଠାରେ ନମଲ ନାମକ ସଂପ୍ରଦାୟ ମଧ୍ୟ ବାସ କରୁଥିଲା । ଏହି ଆୟତରୁ ଏହା ମଧ୍ୟ ପ୍ରତୀତ ହେଉଛି ଯେ ହଜରତ ସୁଲେମାନଙ୍କ ସଂପ୍ରଦାୟ ଜ୍ଞାତସାରରେ କାହାରି କ୍ଷତି କରୁ ନ ଥିଲେ, ବରଂ ଯେବେ ବି କୌଣସି ସଂପ୍ରଦାୟ ଶକ୍ତିହୀନ ଥିବାର ସେମାନେ ଜାଣୁଥିଲେ ତେବେ ସେମାନେ ସେହି ସଂପ୍ରଦାୟକୁ ରକ୍ଷା କରିବାକୁ ଚେଷ୍ଟା କରୁଥିଲେ ।

୨. ଅର୍ଥାତ୍ ବନ୍ୟ ଓ ଅସଭ୍ୟ ସଂପ୍ରଦାୟର ଲୋକମାନେ ଜାଣିଥିଲେ ଯେ ହଜରତ ସୁଲେମାନ ଜାଣିଶୁଣି ସେମାନଙ୍କର କୌଣସି କ୍ଷତି କରିବେ ନାହିଁ (ପୂର୍ବବର୍ତ୍ତୀ ଆୟତ ଦ୍ରଷ୍ଟବ୍ୟ) ।

୩. କେତେକ ଓଦମୀ ରାଜାଙ୍କ ନାମ ହୁଦଦ୍ ଥିଲା । ଆରବବାସୀମାନେ ଏହି ନାମକୁ ନିଜ ଉଚ୍ଚାରଣ ଅନୁସାରେ ହୁଦ୍‌ହୁଦ୍ କହୁଥିଲେ । ଏହି ନାମ ଇସମାଇଲ ବଂଶଜ ଲୋକମାନଙ୍କ ମଧ୍ୟରେ ସାଧାରଣ ଭାବରେ ପ୍ରଚଳିତ ଥିଲା । ହଜରତ୍ ସୁଲେମାନଙ୍କ ରାଜସଭାରେ ହୁଦ୍‌ହୁଦ୍ ନାମକ ଜଣେ ପ୍ରଖ୍ୟାତ ବ୍ୟକ୍ତି ଥିଲେ । ଯେତେବେଳେ ହଜରତ ସୁଲେମାନ ମୁଆବ ନାମକ ଜଣେ ବରିଷ୍ଠ ଯନ୍ତ୍ରୀଙ୍କୁ ତା' ଚକ୍ରାନ୍ତ ଯୋଗୁଁ ହତ୍ୟା କରାଇଲେ, ସେତେବେଳେ କଥିତ ହୁଦ୍‌ହୁଦ୍ ମୃତ୍ୟୁ ଭୟରେ ମିଶର ଦେଶକୁ ପଳାୟନ କଲେ । ପରେ ସେ ନିଜେ କ୍ଷମା ପ୍ରାର୍ଥନା କରିବାରୁ ଓ ତାଙ୍କ ପାଇଁ ଅନ୍ୟମାନେ ସୁପାରିଶ କରିବାରୁ ସେ ହଜରତ ସୁଲେମାନଙ୍କ ନିକଟକୁ ଫେରି ଆସିଲେ । (**Jewish Encyclopaedia** ଦ୍ରଷ୍ଟବ୍ୟ) । ଯେହେତୁ ହୁଦ୍‌ହୁଦ୍ ନାମ ସେତେବେଳେ ବହୁଳ ଭାବରେ ପ୍ରଚଳିତ ଥିଲା ତେଣୁ ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ନାମ ମଧ୍ୟ ହୁଦ୍ ହୁଦ୍ ଥାଇପାରେ । ଅନ୍ୟ ପକ୍ଷରେ ଆରବୀ ଭାଷାରେ ଏକ ପକ୍ଷୀର ନାମ ହୁଦ୍‌ହୁଦ୍ ଥିବାରୁ ଭାଷ୍ୟକାରମାନେ ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ ଏହା ଭାବିନେଲେ ଯେ ଏଠାରେ ସେହି ପକ୍ଷୀ ବିଷୟର ବର୍ଣ୍ଣନା ଅଛି ।

୨୩. ସୁତରାଂ ସେ କିଛି ସମୟ ଅପେକ୍ଷା କଲେ, (ଇତି ମଧ୍ୟରେ ହୁଦହୁଦ ଉପସ୍ଥିତ ହେଲା) ଓ ସେ (ହୁଦହୁଦ) କହିଲା, "ତୁମର ଯେଉଁ ବିଷୟରେ ଜ୍ଞାନ ନାହିଁ ମୁଁ ତାହା ହାସଲ କରିଅଛି, ମୁଁ 'ସବା' (ସମ୍ପ୍ରଦାୟର ଅଞ୍ଚଳ)ରୁ ତୁମ ନିକଟକୁ ଏକ ନିଶ୍ଚିତ ସମାଚାର ଆଣିଅଛି ।"

فَمَكَثَ غَيْرَ بَعِيدٍ فَقَالَ أَحَطتُ بِمَا لَمْ تُحِطْ بِهِۦ وَجِئْتُكَ مِن سَبَإٍۭ بِنَبَإٍ يَقِينٍ ﴿٢٣﴾

୨୪. "(ତା ହେଉଛି) ମୁଁ (ସେଠାରେ ଏପରି) ଏକ ମହିଳାଙ୍କୁ[୧] ଦେଖିଛି ଯେ ସେମାନଙ୍କ (ସମ୍ପ୍ରଦାୟ) ଉପରେ ରାଜତ୍ୱ କରୁଅଛି, ଏବଂ ତାହାଙ୍କୁ ସମସ୍ତ ପ୍ରକାର ସାମଗ୍ରୀ ପ୍ରଦାନ କରାହୋଇଛି ଏବଂ ତାହାଙ୍କର ଏକ ବୃହତ୍ ସିଂହାସନ ଅଛି ।"

إِنِّى وَجَدتُّ ٱمْرَأَةً تَمْلِكُهُمْ وَأُوتِيَتْ مِن كُلِّ شَىْءٍ وَلَهَا عَرْشٌ عَظِيمٌ ﴿٢٤﴾

୨୫. "ଏବଂ ମୁଁ ତାଙ୍କୁ ଓ ତାଙ୍କ ସମ୍ପ୍ରଦାୟକୁ ଅଲ୍ଲାହଙ୍କ ପରିବର୍ତ୍ତେ ସୂର୍ଯ୍ୟଙ୍କୁ ସିଜଦା କରୁଥିବାର ଦେଖିଲି ; ଏବଂ ସଇତାନ ସେମାନଙ୍କ କାର୍ଯ୍ୟକୁ ସେମାନଙ୍କ ନିକଟରେ ଶୋଭନୀୟ କରି ଦେଖାଇଅଛି, ଏବଂ ସେମାନଙ୍କୁ ସତ୍‌ପଥରୁ ପ୍ରତିରୋଧ କରିଅଛି[୨] ; ଏଥିଯୋଗୁଁ ସେମାନେ ସତ୍‌ପଥ ପାଉ ନାହାନ୍ତି ।"

وَجَدتُّهَا وَقَوْمَهَا يَسْجُدُونَ لِلشَّمْسِ مِن دُونِ ٱللَّهِ وَزَيَّنَ لَهُمُ ٱلشَّيْطَٰنُ أَعْمَٰلَهُمْ فَصَدَّهُمْ عَنِ ٱلسَّبِيلِ فَهُمْ لَا يَهْتَدُونَ ﴿٢٥﴾

୨୬. "ଏବଂ ସେହି ଅଲ୍ଲାହଙ୍କୁ ସିଜଦା ନ କରିବା ପାଇଁ ସେମାନେ ଅଡ଼ି ବସିଛନ୍ତି, ଯେ ଆକାଶ ଓ ପୃଥିବୀର ସମସ୍ତ ଗୋପନୀୟ ବିଷୟକୁ ପ୍ରକାଶିତ କରନ୍ତି, ଏବଂ ଯାହାକିଛି (ପରିକଳ୍ପନା) ତୁମେମାନେ ଗୋପନ କରୁଅଛ ଓ ପ୍ରକାଶ କରୁଅଛ ତାହା ସେ ଜାଣନ୍ତି ।"

أَلَّا يَسْجُدُوا۟ لِلَّهِ ٱلَّذِى يُخْرِجُ ٱلْخَبْءَ فِى ٱلسَّمَٰوَٰتِ وَٱلْأَرْضِ وَيَعْلَمُ مَا تُخْفُونَ وَمَا تُعْلِنُونَ ﴿٢٦﴾

୨୭. "(ଅଥଚ) ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ, ସେ ହିଁ ମହାନ୍ ସିଂହାସନର ଅଧିକାରୀ ।"

ٱللَّهُ لَآ إِلَٰهَ إِلَّا هُوَ رَبُّ ٱلْعَرْشِ ٱلْعَظِيمِ ۩ ﴿٢٧﴾

୨୮. (ଏଥି ଉତ୍ତାରୁ ସୁଲେମାନ) କହିଲେ, "ଆମେ ଦେଖିବୁ ଯେ ତୁ ସତ କହୁଛୁ କି ତୁ ମିଥ୍ୟାବାଦୀମାନଙ୍କ ମଧ୍ୟରେ ଅଛୁ ।"

قَالَ سَنَنظُرُ أَصَدَقْتَ أَمْ كُنتَ مِنَ ٱلْكَٰذِبِينَ ﴿٢٨﴾

୨୯. "ତୁ ଆମର ଏହି ପତ୍ରକୁ ଘେନି ଯା ଓ ସେମାନଙ୍କ (ଅର୍ଥାତ୍ ସବା ସମ୍ପ୍ରଦାୟ) ଆଗରେ ତାହାକୁ ଉପସ୍ଥାପନ କର ; ଏହାପରେ (ସସମ୍ମାନେ) ପଛକୁ ଘୁଞ୍ଚି (ଠିଆ ହୋଇ) ଯା ଓ ସେମାନେ କି ଉତ୍ତର ଦେଉଛନ୍ତି ଲକ୍ଷ୍ୟ କର ।"

ٱذْهَب بِّكِتَٰبِى هَٰذَا فَأَلْقِهْ إِلَيْهِمْ ثُمَّ تَوَلَّ عَنْهُمْ فَٱنظُرْ مَاذَا يَرْجِعُونَ ﴿٢٩﴾

---

୧. ଅର୍ଥାତ୍ ସବାର ରାଣୀ ।

୨. ସଇତାନ ଲୋକମାନଙ୍କୁ ବଳପୂର୍ବକ ସତ୍‌ପଥରୁ ପ୍ରତିରୋଧ କରେ ବୋଲି ଅର୍ଥ କରିବା ସମୀଚୀନ ନୁହେଁ, ବରଂ ଆମେମାନେ ପୂର୍ବରୁ ଅନେକ ସ୍ଥାନରେ ଉଲ୍ଲେଖ କରିଅଛୁ ଯେ ଆରବୀ ଭାଷାରେ ସଇତାନର ଅର୍ଥ ସତ୍‌ପଥରୁ ଦୂରେଇ ରହୁଥିବା ବା ଦୂରକୁ ଠେଲି ଦେଉଥିବା ଲୋକ । ଏଠାରେ ମଧ୍ୟ ସେହି ଅର୍ଥ ଅଭିପ୍ରେତ । ଶରିୟତର ବିପରୀତ ବା ବୁଦ୍ଧିର ପରିପନ୍ଥୀ ଯେଉଁ ବିଷୟକୁ ମଣିଷର ପ୍ରକୃତି ଘୃଣା କରେ ସଇତାନମାନେ ସେଗୁଡ଼ିକୁ ଲୋକମାନଙ୍କ ନିକଟରେ ସୁଶୋଭିତ କରି ଦେଖାଇଥା'ନ୍ତି ।

قَالَتْ يٰۤاَيُّهَا الْمَلَؤُا اِنِّيْۤ اُلْقِيَ اِلَيَّ كِتٰبٌ كَرِيْمٌ ٣٠

୩୦. (ସେ ଏପରି କରିବା ପରେ) ସେ (ରାଣୀ) କହିଲେ, "ହେ ମୋର ପାରିଷଦମାନେ ! ମୋ ନିକଟରେ ଏକ ସମ୍ମାନିତ ପତ୍ର ଉପସ୍ଥାପନ କରାଯାଇଛି ।"

اِنَّهٗ مِنْ سُلَيْمٰنَ وَاِنَّهٗ بِسْمِ اللّٰهِ الرَّحْمٰنِ الرَّحِيْمِ ٣١

୩୧. "(ଯାହାର ବିଷୟବସ୍ତୁରୁ ପ୍ରତୀତ ହେଉଛି ଯେ) ଏହି ପତ୍ର ସୁଲେମାନଙ୍କଠାରୁ ଆସିଅଛି ; ଏଥିରେ ଲେଖାଅଛି ଯେ 'ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ ଆରମ୍ଭ କରୁଅଛି ;'[୧]

اَلَّا تَعْلُوْا عَلَيَّ وَاْتُوْنِيْ مُسْلِمِيْنَ ٣٢ ع

୩୨. (ଏବଂ ଏଥିରେ କୁହାଯାଇଛି ),"ଆମ୍ଭ ବିରୁଦ୍ଧରେ ସୀମା ଲଂଘନ କରନାହିଁ, ଏବଂ ଆଜ୍ଞାବହ ହୋଇ ଆମ୍ଭ ସମୀପରେ ଉପସ୍ଥିତ ହୁଅ ।"

ରୁ:୩

قَالَتْ يٰۤاَيُّهَا الْمَلَؤُا اَفْتُوْنِيْ فِيْۤ اَمْرِيْ ۚ مَا كُنْتُ قَاطِعَةً اَمْرًا حَتّٰى تَشْهَدُوْنِ ٣٣

୩୩. ଏହାପରେ ସେ (ରାଣୀ) କହିଲେ, " ହେ ମୁଖ୍ୟ ପାରିଷଦମାନେ ! ତୁମେମାନେ ମୋତେ ଏହି ବିଷୟରେ ନିଜର ଉଚିତ ପରାମର୍ଶ ପ୍ରଦାନ କର, କାରଣ ତୁମମାନଙ୍କ ଉପସ୍ଥିତି (ଓ ପରାମର୍ଶ) ବିନା ମୁଁ କୌଣସି ନିଷ୍ପତ୍ତି କରେ ନାହିଁ ।"

قَالُوْا نَحْنُ اُولُوْا قُوَّةٍ وَّاُولُوْا بَاْسٍ شَدِيْدٍ ۙ۬ وَّالْاَمْرُ اِلَيْكِ فَانْظُرِيْ مَاذَا تَاْمُرِيْنَ ٣٤

୩୪. (ପାରିଷଦମାନେ) କହିଲେ, "ଆମେମାନେ ଅତ୍ୟନ୍ତ ଶକ୍ତିଶାଳୀ ଓ ଯୋଦ୍ଧା, ଏବଂ (ଅନ୍ତିମ) ନିଷ୍ପତ୍ତି ଆପଣଙ୍କ ହସ୍ତରେ ରହିଅଛି ; ସୁତରାଂ ବିଚାର କରନ୍ତୁ ଯେ ଆପଣ କି ଆଦେଶ ପ୍ରଦାନ କରିବା ଇଚ୍ଛା କରୁଛନ୍ତି (ଆମେମାନେ ଅବଶ୍ୟ ତାହା ପାଳନ କରିବୁ) ।"

قَالَتْ اِنَّ الْمُلُوْكَ اِذَا دَخَلُوْا قَرْيَةً اَفْسَدُوْهَا وَجَعَلُوْۤا اَعِزَّةَ اَهْلِهَاۤ اَذِلَّةً ۚ وَكَذٰلِكَ يَفْعَلُوْنَ ٣٥

୩୫. ସେ (ରାଣୀ) କହିଲେ, "ଯେତେବେଳେ ରାଜାମାନେ କୌଣସି ଦେଶରେ ପ୍ରବେଶ କରନ୍ତି (ସେତେବେଳେ) ତାହାକୁ ଧ୍ୱଂସବିଧ୍ୱସ୍ତ କରିଦିଅନ୍ତି, ଏବଂ ସେଠାକାର ବାସିନ୍ଦାମାନଙ୍କ ମଧ୍ୟରୁ ସମ୍ଭ୍ରାନ୍ତ ଲୋକମାନଙ୍କୁ ଅପମାନିତ କରନ୍ତି ଏବଂ ସେମାନେ ସର୍ବଦା ଏହି ପ୍ରକାରର (କାର୍ଯ୍ୟ) କରିଥା'ନ୍ତି ।"

---

୧. ଏହି ଆୟତରେ ବ୍ୟବହୃତ 'ବିସମିଲ୍ଲାହ୍...' ବାକ୍ୟାଂଶ ସମ୍ବନ୍ଧରେ କେତେକ ଖ୍ରୀଷ୍ଟିୟାନ ଟୀକାକାର ଅହେତୁକ ଦୋଷାରୋପ କରିଛନ୍ତି ଯେ ପ୍ରାକ୍ତନ ଧର୍ମଶାସ୍ତ୍ରଗୁଡ଼ିକରୁ ଏହି ବାକ୍ୟାଂଶ ସଂଗ୍ରହ କରାଯାଇଛି । ଏହି ବାକ୍ୟାଂଶ ଅନ୍ୟ କେତେକ ଧର୍ମଶାସ୍ତ୍ରରେ ଥିବାରୁ ତାହାକୁ ପବିତ୍ର କୋରାନ ମଧ୍ୟକୁ ସଂଗ୍ରହ କରି ଅଣାଯାଇ ଥିବାର ଅନୁମାନ କରିବା ଏକ ସାମାନ୍ୟ ଓ ଦୁର୍ବଳ ଯୁକ୍ତି । ଯଦି ଏପରି ଯୁକ୍ତି କିଛି ପ୍ରମାଣ କରୁଥାଏ ତେବେ ତା' ହେଉଛି, ସବୁ ଧର୍ମଶାସ୍ତ୍ର ଗୋଟିଏ ଉତ୍ସରୁ ସୃଷ୍ଟ । ପକ୍ଷାନ୍ତରେ ଏହି ଅଭିବ୍ୟକ୍ତିଟି ଯେପରି ବ୍ୟବହୃତ ହୋଇଛି ଅନ୍ୟ କୌଣସି ଶାସ୍ତ୍ରରେ ସେପରି ବ୍ୟବହୃତ ହୋଇ ନାହିଁ । ଇସଲାମ ଧର୍ମର ଆବିର୍ଭାବ ପୂର୍ବରୁ ଆରବବାସୀମାନେ ଏହାକୁ କେବେ ହେଁ ବ୍ୟବହାର କରିନଥିଲେ, ବରଂ ଏହି ଅଭିବ୍ୟକ୍ତିରେ ବ୍ୟବହୃତ 'ଅଶେଷ ଦୟାବାନ୍' (ଅର୍ଥାତ୍ ଅର-ରହମାନ) ପ୍ରତି ସେମାନଙ୍କର ଅସୂୟା ରହିଥିଲା (୨୫:୬୧ ଦ୍ରଷ୍ଟବ୍ୟ) ।

୩୬. [1]"(ମୁଁ ନିଷ୍ପତ୍ତି କରିଅଛି ଯେ) ମୁଁ ତାହାଙ୍କ ନିକଟକୁ ଏହି ଉପହାର ପଠାଇବି ; ତା'ପରେ ଦେଖିବି ଯେ ମୋର ଦୂତମାନେ କଣ ଉତ୍ତର ଘେନି ଫେରୁଛନ୍ତି ।"

وَإِنِّي مُرْسِلَةٌ إِلَيْهِم بِهَدِيَّةٍ فَنَاظِرَةٌ بِمَ يَرْجِعُ الْمُرْسَلُونَ ٣٦

୩୭. ତା'ପରେ ଯେତେବେଳେ ସେହି ଉପହାର ସୁଲେମାନଙ୍କ ନିକଟରେ ଉପସ୍ଥାପନ କରାଗଲା (ସେତେବେଳେ) ସେ କହିଲେ, "କ'ଣ ତୁମେମାନେ ଆମ୍ଭଙ୍କୁ ଧନସମ୍ପଦ ଦ୍ବାରା ସାହାଯ୍ୟ କରିବାକୁ ଇଚ୍ଛା କରୁଅଛ ? ଯେଦି ଏପରି ହୋଇଥାଏ, ତେବେ ମନେରଖ ଯେ) ଅଲ୍ଲାହ ଆମ୍ଭଙ୍କୁ ଯାହା ପ୍ରଦାନ କରିଛନ୍ତି ତାହା ତୁମମାନଙ୍କୁ ଦିଆଯାଇଥିବା (ସାମଗ୍ରୀ) ଅପେକ୍ଷା ଅଧିକ ଉତ୍କୃଷ୍ଟ, ଏବଂ (ବୋଧ ହେଉଛି ଯେ) ତୁମେମାନେ ତୁମମାନଙ୍କ ଉପହାର ସଂକ୍ରାନ୍ତରେ ଗର୍ବିତ ଅଟ ।"

فَلَمَّا جَاءَ سُلَيْمَانَ قَالَ أَتُمِدُّونَنِ بِمَالٍ فَمَا آتَانِيَ اللَّهُ خَيْرٌ مِّمَّا آتَاكُم بَلْ أَنتُم بِهَدِيَّتِكُمْ تَفْرَحُونَ ٣٧

୩୮. "(ହେ ହୁଦହୁଦ !) ତୁ ସେମାନଙ୍କ ନିକଟକୁ ଫେରି ଯା ; ଏବଂ (ତାହାଙ୍କୁ କହି ଦେ ଯେ) ଆମେ ଏକ ବିରାଟ ସୈନ୍ୟବାହିନୀ ସହିତ ସେମାନଙ୍କ ନିକଟରେ ଉପସ୍ଥିତ ହେବୁ ; (ତାହା) ଏପରି ଏକ ସୈନ୍ୟବାହିନୀ ଯାହାକୁ ପ୍ରତିରୋଧ କରିବା ପାଇଁ ସେମାନଙ୍କର ସାମର୍ଥ୍ୟ ନଥିବ, ଏବଂ (ସେମାନଙ୍କ ଉପରେ ବିଜୟଲାଭ କରିବା ପରେ) ଆମେ ସେମାନଙ୍କୁ ଏପରି ଅବସ୍ଥାରେ ସେଠାରୁ ବହିଷ୍କାର କରିଦେବୁ ଯେ ସେମାନେ (ନିଜର ରାଜକୀୟ) ସମ୍ମାନ ହରାଇ ବସିଥିବେ ।"

ارْجِعْ إِلَيْهِمْ فَلَنَأْتِيَنَّهُم بِجُنُودٍ لَّا قِبَلَ لَهُم بِهَا وَلَنُخْرِجَنَّهُم مِّنْهَا أَذِلَّةً وَهُمْ صَاغِرُونَ ٣٨

୩୯. ତା'ପରେ ସେ (ସୁଲେମାନ) କହିଲେ, "ହେ ପାରିଷଦବର୍ଗ ! ସେମାନେ ବଶ୍ୟତା ସ୍ବୀକାର କରି ଆମ୍ଭ ନିକଟରେ ଉପସ୍ଥିତ ହେବା ପୂର୍ବରୁ କିଏ ତୁମମାନଙ୍କ ମଧ୍ୟରୁ ତାହାର ସିଂହାସନ (ର ପ୍ରତିରୂପ)କୁ ଆମ୍ଭ ନିକଟକୁ ଘେନିଆସି ପାରିବ ?"

قَالَ يَا أَيُّهَا الْمَلَأُ أَيُّكُمْ يَأْتِينِي بِعَرْشِهَا قَبْلَ أَن يَأْتُونِي مُسْلِمِينَ ٣٩

୪୦. (ପାର୍ବତ୍ୟ ସମ୍ପ୍ରଦାୟର) ଜଣେ ପ୍ରତାପଶାଳୀ ମୁଖ୍ୟ କହିଲେ, "ଆପଣ ଏହି ସ୍ଥାନ ପରିତ୍ୟାଗ କରିବା ପୂର୍ବରୁ ମୁଁ ତାହାକୁ (ଅର୍ଥାତ୍ ସେହି ସିଂହାସନକୁ) ଘେନି ଆସିବି ; ଏବଂ ମୁଁ ଏ ବିଷୟରେ ଶକ୍ତିଶାଳୀ ଓ ବିଶ୍ବସ୍ତ ।"

قَالَ عِفْرِيتٌ مِّنَ الْجِنِّ أَنَا آتِيكَ بِهِ قَبْلَ أَن تَقُومَ مِن مَّقَامِكَ وَإِنِّي عَلَيْهِ لَقَوِيٌّ أَمِينٌ ٤٠

୧. ପ୍ରାଚୀନ କାଳରେ କେତେକ ରାଜା ଅନ୍ୟାନ୍ୟ ପରାକ୍ରମଶାଳୀ ରାଜାଙ୍କୁ ଲାଞ୍ଚ ବା ଉପଢୌକନ ଦେଇ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାରୁ ସେମାନଙ୍କୁ ନିବୃତ୍ତ କରାଉଥିଲେ । ଯେତେବେଳେ ହଜରତ ସୁଲେମାନଙ୍କ ପାଖରେ ରାଣୀ ବିଲକିସ୍‌ଙ୍କର ଉପଢୌକନ ପହଞ୍ଚିଲା ସେ ବୁଝି ପାରିଲେ ଯେ ରାଣୀ ତାଙ୍କୁ ଅସଦାଚାରୀ ସ୍ଥିର କରିଛନ୍ତି, ତେଣୁ ସେ ତାଙ୍କର ଏପରି କାର୍ଯ୍ୟ ପାଇଁ ନିଜର ଅସନ୍ତୋଷ ପ୍ରକାଶ କରିଥିଲେ ।

قَالَ الَّذِیْ عِنْدَهٗ عِلْمٌ مِّنَ الْکِتٰبِ اَنَا اٰتِیْکَ بِهٖ قَبْلَ اَنْ یَّرْتَدَّ اِلَیْکَ طَرْفُکَ ؕ فَلَمَّا رَاٰهُ مُسْتَقِرًّا عِنْدَهٗ قَالَ هٰذَا مِنْ فَضْلِ رَبِّیْ ۖ لِیَبْلُوَنِیْٓ ءَاَشْکُرُ اَمْ اَکْفُرُ ؕ وَمَنْ شَکَرَ فَاِنَّمَا یَشْکُرُ لِنَفْسِهٖ ۚ وَمَنْ کَفَرَ فَاِنَّ رَبِّیْ غَنِیٌّ کَرِیْمٌ ﴿٤١﴾

୪୧. (ଏଥି ଉତ୍ତାରୁ ଅଲ୍ଲାହଙ୍କ) ଗ୍ରନ୍ଥ ଉପରେ ଜ୍ଞାନ ହାସଲ କରିଥିବା ଜଣେ ବ୍ୟକ୍ତି[1] କହିଲେ, "ତୁମେ ପଲକ ପକାଇବା ପୂର୍ବରୁ ମୁଁ ତୁମ ନିକଟକୁ ତାହାକୁ (ଅର୍ଥାତ୍ ସେହି ସିଂହାସନକୁ) ଘେନି ଆସିବି"; ସୁତରାଂ ଯେତେବେଳେ ସେ (ସୁଲେମାନ) ତାହାକୁ ନିଜ ପାଖରେ ରଖା ହୋଇଥିବାର ଦେଖିଲେ (ସେତେବେଳେ) ସେ କହିଲେ, "ଏହା ଆମ ପାଳନକର୍ତ୍ତାଙ୍କ କୃପା ଯୋଗୁଁ ହୋଇଅଛି ଯଦ୍ଦ୍ୱାରା କି ସେ ଆମକୁ ପରୀକ୍ଷା କରିବେ ଯେ ଆମେ କୃତଜ୍ଞତା ଜ୍ଞାପନ କରୁଅଛୁ କି ଅକୃତଜ୍ଞ ହେଉଅଛୁ ; ଏବଂ ଯେ କୃତଜ୍ଞତା ଜ୍ଞାପନ କରେ ସେ ନିଜର ହିତ ପାଇଁ ହିଁ ଏପରି କରେ, ଏବଂ ଯେ ଅକୃତଜ୍ଞ ହୁଏ ତେବେ (ମନେରଖ ଯେ) ଆମର ପାଳନକର୍ତ୍ତା ବାସ୍ତବରେ ସ୍ୱୟଂ-ପର୍ଯ୍ୟାପ୍ତ (ଓ) ଅତ୍ୟନ୍ତ ଦାନଶୀଳ ।"

قَالَ نَکِّرُوْا لَهَا عَرْشَهَا نَنْظُرْ اَتَهْتَدِیْٓ اَمْ تَکُوْنُ مِنَ الَّذِیْنَ لَا یَهْتَدُوْنَ ﴿٤٢﴾

୪୨. (ପୁଣି) ସେ କହିଲେ, "ତାହା ପାଇଁ (ଅର୍ଥାତ୍ ସେହି ରାଣୀ ପାଇଁ) ତା ସିଂହାସନକୁ ନିକୃଷ୍ଟ[2] କରି ଦେଖାଅ, (ତାହାହେଲେ ଆମେ ଦେଖିବୁ ଯେ) କ'ଣ ସେ ସତ୍‌ପଥଗାମିନୀ ହେଉଛି ଅଥବା ସେମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେଉଛି ଯେଉଁମାନେ ସତ୍‌ପଥ ପାଆନ୍ତି ନାହିଁ ?"

فَلَمَّا جَآءَتْ قِیْلَ اَهٰکَذَا عَرْشُکِ ؕ قَالَتْ کَاَنَّهٗ هُوَ ۚ وَاُوْتِیْنَا الْعِلْمَ مِنْ قَبْلِهَا وَکُنَّا مُسْلِمِیْنَ ﴿٤٣﴾

୪୩. ସୁତରାଂ ଯେତେବେଳେ ସେ ଆସିଲା, (ସେତେବେଳେ ତାକୁ) କୁହାଗଲା, "କ'ଣ ତୁମର ସିଂହାସନ ଏପରି ଅଟେ ?" ସେ କହିଲା, "ଏପରି ଜଣା ପଡୁଛି ଯେ ଏହା ସେହି (ସିଂହାସନ) ଅଟେ ; ଏବଂ ଆମେମାନେ ଏଥିପୂର୍ବରୁ (ଏ ବିଷୟରେ) ଅବଗତ ହୋଇଥିଲୁ ; ଏବଂ ଆମେମାନେ (ତୁମର) ଆଜ୍ଞାବହ ହୋଇସାରିଥିଲୁ ।"

وَصَدَّهَا مَا کَانَتْ تَّعْبُدُ مِنْ دُوْنِ اللّٰهِ ؕ اِنَّهَا کَانَتْ مِنْ قَوْمٍ کٰفِرِیْنَ ﴿٤٤﴾

୪୪. ଏବଂ ସୁଲେମାନ ତାହାକୁ ଅଲ୍ଲାହଙ୍କ ପରିବର୍ତ୍ତେ ଅନ୍ୟର ଉପାସନା କରିବାରୁ ନିବୃତ୍ତ କରିଥିଲେ ; ବାସ୍ତବରେ ସେ ଅବିଶ୍ୱାସକାରୀ ସମ୍ପ୍ରଦାୟ ମଧ୍ୟରୁ ଥିଲା ।

---

୧. ଯେହେତୁ ଏହା ଥିଲା ଇହୁଦୀମାନଙ୍କ ଦେଶ, ତେଣୁ ଇବ୍ରାନୀ ବିଦ୍ୱାନଙ୍କୁ ଜଣାଥିଲା ଯେ ଇହୁଦୀମାନେ ତାଙ୍କ ପାଇଁ ଅତିଶୀଘ୍ର କାର୍ଯ୍ୟ କରିବେ । ସୁତରାଂ ସେ ଇଫ୍ରିତ ନାମକ ସଭାସଦଙ୍କୁ ପ୍ରଥମେ ସେହି ରାଣୀଙ୍କ ସିଂହାସନ ନେଇ ଆସିବା ପାଇଁ ଅଙ୍ଗୀକାର କରାଇ କହିଥିଲେ ଯେ ସେ ଅତିଶୀଘ୍ର ସେହି ସିଂହାସନକୁ ପେଶ୍ କରିବେ । ବିଭିନ୍ନ ଭାଷାରେ 'ପଲକ ପକାଇବା' ଅଭିବ୍ୟକ୍ତି ଶୀଘ୍ରତାକୁ ବୁଝାଏ । ତେଣୁ ଏଠାରେ ତାହାକୁ ଆକ୍ଷରିକ ଅର୍ଥରେ ନ ବୁଝି ଶୀଘ୍ରତା ଅର୍ଥରେ ବ୍ୟବହୃତ ହୋଇଥିବା ବୁଝିବାକୁ ହେବ ।

୨. ଅର୍ଥାତ୍ ଏପରି ସିଂହାସନ ନିର୍ମାଣ କର ଯାହା ସେହି ରାଣୀଙ୍କ ସିଂହାସନ ଠାରୁ ଉତ୍କୃଷ୍ଟ ହେବ ଏବଂ ରାଣୀଙ୍କ ସିଂହାସନ ଏକ ସାଧାରଣ ସିଂହାସନ ଭାବେ ପ୍ରତୀତ ହେବ ।

୪୫. ତାହାକୁ କୁହାଗଲା, ''ପ୍ରାସାଦରେ ପ୍ରବେଶ କର ;'' ସୁତରାଂ ଯେତେବେଳେ ସେ ଏହାକୁ ଦେଖିଲା, (ସେତେବେଳେ) ସେ ଏହାକୁ ଏକ ଗଭୀର ଜଳାଶୟ ମନେ କରି ବ୍ୟତିବ୍ୟସ୍ତ ହୋଇଗଲା ; ଏହାପରେ ସୁଲେମାନ କହିଲେ, ''ଏହା ତ କାଚ-ଖଚିତ ଏକ ପ୍ରାସାଦ ;'' ଏଥି ଉତ୍ତାରୁ ସେ (ରାଣୀ) କହିଲା, ''ହେ ମୋର ପାଳନକର୍ତ୍ତା ! ମୁଁ ନିଜ ପ୍ରତି ଅତ୍ୟାଚାର କରିଅଛି ; ଏବଂ ମୁଁ ସୁଲେମାନଙ୍କ ସହିତ ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହଙ୍କ ଉପରେ ବିଶ୍ୱାସ ସ୍ଥାପନ କରୁଅଛି ।'' [୧]

قِيْلَ لَهَا ادْخُلِي الصَّرْحَ فَلَمَّا رَاَتْهُ حَسِبَتْهُ لُجَّةً وَّكَشَفَتْ عَنْ سَاقَيْهَا قَالَ اِنَّهٗ صَرْحٌ مُّمَرَّدٌ مِّنْ قَوَارِيْرَ قَالَتْ رَبِّ اِنِّيْ ظَلَمْتُ نَفْسِيْ وَاَسْلَمْتُ مَعَ سُلَيْمٰنَ لِلّٰهِ رَبِّ الْعٰلَمِيْنَ ﴿٤٥﴾

ରୁ:୪

୪୬. ଏବଂ ଆମେ ସମୁଦ (ସମ୍ପ୍ରଦାୟ) ପ୍ରତି ସେମାନଙ୍କ ଭାଇ ସ୍ୱାଲେହଙ୍କୁ ନିଶ୍ଚୟ ରସୁଲ ଭାବରେ ପ୍ରେରଣ କରିଥିଲୁ ; (ସେ କହିଲେ), ''ଆଲ୍ଲାହଙ୍କର ଉପାସନା କର ;'' ଏବଂ (ଏହା ଶୁଣିବା ସଙ୍ଗେସଙ୍ଗେ) ସେମାନେ ଦୁଇଟି ଦଳରେ ବିଭକ୍ତ ହୋଇ ପରସ୍ପର ମଧ୍ୟରେ କଳହ କରିବାକୁ ଲାଗିଲେ ।

وَلَقَدْ اَرْسَلْنَاۤ اِلٰى ثَمُوْدَ اَخَاهُمْ صٰلِحًا اَنِ اعْبُدُوا اللّٰهَ فَاِذَا هُمْ فَرِيْقٰنِ يَخْتَصِمُوْنَ ﴿٤٦﴾

୪୭. ସେ (ସ୍ୱାଲେହ) କହିଲେ, ''ହେ ଆମର ସମ୍ପ୍ରଦାୟ ! ତୁମେମାନେ ଭଲ ଅବସ୍ଥାର ଆଗମନ ପୂର୍ବରୁ ମନ୍ଦ ଅବସ୍ଥା ପାଇଁ କାହିଁକି ତତ୍ପର ହେଉଅଛ ? କ'ଣ ତୁମେମାନେ ନିଜ ପାପ ପାଇଁ ଅଲ୍ଲାହଙ୍କ ନିକଟରେ କ୍ଷମାପ୍ରାର୍ଥନା କରୁନାହଁ ଯଦ୍ୱାରା ତୁମମାନଙ୍କ ପ୍ରତି କରୁଣା ପ୍ରଦର୍ଶନ କରାଯିବ ।''

قَالَ يٰقَوْمِ لِمَ تَسْتَعْجِلُوْنَ بِالسَّيِّئَةِ قَبْلَ الْحَسَنَةِ لَوْ لَا تَسْتَغْفِرُوْنَ اللّٰهَ لَعَلَّكُمْ تُرْحَمُوْنَ ﴿٤٧﴾

୪୮. ସେମାନେ କହିଲେ, ''(ହେ ସ୍ୱାଲେହ !) ଆମେମାନେ ତୁମକୁ ଓ ତୁମର ସଙ୍ଗୀମାନଙ୍କୁ ଅମଙ୍ଗଳ-ସୂଚକ ମନେ କରୁଅଛୁ ;'' ସେ କହିଲେ, ''ତୁମର ଦୁର୍ଭାଗ୍ୟର କାରଣ ଅଲ୍ଲାହଙ୍କ ନିକଟରେ ରହିଅଛି, ବରଂ ବାସ୍ତବତା ଏହି ଯେ ତୁମେମାନେ ଏପରି ଏକ ସମ୍ପ୍ରଦାୟ ଯାହାଙ୍କୁ ପରୀକ୍ଷା କରାଯାଉଛି ।''

قَالُوا اطَّيَّرْنَا بِكَ وَبِمَنْ مَّعَكَ قَالَ طٰٓئِرُكُمْ عِنْدَ اللّٰهِ بَلْ اَنْتُمْ قَوْمٌ تُفْتَنُوْنَ ﴿٤٨﴾

୧. ହଜରତ ସୁଲେମାନ କୌଶଳ କରି ପାଣି ଉପରେ କାଚ ଲଗାଇ ଥିଲେ । ରାଣୀ ନିଜର ଭୁଲ୍ ବୁଝି ପାରିଲେ ଯେ ଯେପରି କାଚ ତଳେ ପାଣି ଦେଖାଯାଏ ସେହିପରି ସୂର୍ଯ୍ୟର ଜ୍ୟୋତି ଅଲ୍ଲାହଙ୍କର ହିଁ ଦାନ । ଅତଏବ ସୂର୍ଯ୍ୟଙ୍କୁ ପୂଜା କରିବା ଅସମୀଚୀନ । କାରଣ ଅଲ୍ଲାହ ହିଁ ଅଦ୍ୱିତୀୟ ଉପାସ୍ୟ ।

୨. ଅର୍ଥାତ୍ ତୁମେମାନେ ନିଜ ସଂପ୍ରଦାୟ ସକାଶେ ମଂଗଳକାରୀ ହେବ ନାହିଁ, ବରଂ ଅନିଷ୍ଟକାରୀ ସାବ୍ୟସ୍ତ ହେବ ।

୪୯. ଏବଂ ସହରରେ ନଅ ଜଣ ବ୍ୟକ୍ତି[1] ଥିଲେ ଯେଉଁମାନେ ଦେଶରେ ବିଶୃଙ୍ଖଳା ସୃଷ୍ଟି କରୁଥିଲେ, ଶାନ୍ତି ସ୍ଥାପନ କରୁ ନ ଥିଲେ ।

وَكَانَ فِي الْمَدِيْنَةِ تِسْعَةُ رَهْطٍ يُّفْسِدُوْنَ فِي الْاَرْضِ وَلَا يُصْلِحُوْنَ ﴿٤٩﴾

୫୦. ସେମାନେ କହିଲେ, "ତୁମେମାନେ ସମସ୍ତେ ଅଲ୍ଲାହଙ୍କ ନାମରେ ଶପଥ କର ଯେ ଆମେମାନେ ତାହାକୁ ଓ ତାହାର ପରିବାରକୁ ରାତ୍ରିକାଳରେ ଆକ୍ରମଣ କରିବୁ, ତା'ପରେ ଯେ କେହି (ତାହାଙ୍କ ହତ୍ୟାର ପ୍ରତିଶୋଧ ନେବାକୁ) ଆସିବ[2] ଆମେମାନେ ତାହାକୁ କହିବା ଯେ ଆମେମାନେ ତାହାଙ୍କ ପରିବାରର ବିନାଶ (ଘଟଣା) ଦେଖିନାହୁଁ, ଏବଂ ଆମେମାନେ ସତ୍ୟବାଦୀ ।"

قَالُوْا تَقَاسَمُوْا بِاللّٰهِ لَنُبَيِّتَنَّهٗ وَاَهْلَهٗ ثُمَّ لَنَقُوْلَنَّ لِوَلِيِّهٖ مَا شَهِدْنَا مَهْلِكَ اَهْلِهٖ وَاِنَّا لَصٰدِقُوْنَ ﴿٥٠﴾

୫୧. ଏବଂ ସେମାନେ ଏକ ଯୋଜନା କଲେ, ଏବଂ ଆମେ ମଧ୍ୟ ଏକ ଯୋଜନା କଲୁ ଯାହା ସେମାନେ ଜାଣି ନ ଥିଲେ ।

وَمَكَرُوْا مَكْرًا وَّمَكَرْنَا مَكْرًا وَّهُمْ لَا يَشْعُرُوْنَ ﴿٥١﴾

୫୨. ତା'ପରେ ଲକ୍ଷ୍ୟକର, ସେମାନଙ୍କ ଯୋଜନାର ପରିଣତି କ'ଣ ହେଲା ; ଆମେ ସେମାନଙ୍କୁ ଓ ସେମାନଙ୍କ ସମ୍ପ୍ରଦାୟକୁ ସମସ୍ତଙ୍କୁ ଧ୍ୱଂସ କରି ଦେଇଥିଲୁ ।

فَانْظُرْ كَيْفَ كَانَ عَاقِبَةُ مَكْرِهِمْ اَنَّا دَمَّرْنٰهُمْ وَقَوْمَهُمْ اَجْمَعِيْنَ ﴿٥٢﴾

୫୩. ସୁତରାଂ (ଦେଖ) ସେମାନଙ୍କ ଏହି ଗୃହଗୁଡ଼ିକ ସେମାନଙ୍କ ଅତ୍ୟାଚାର ଯୋଗୁଁ (କିପରି) ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି ; ଏଥିରେ ଜ୍ଞାନବନ୍ତ ସମ୍ପ୍ରଦାୟ ପାଇଁ ଏକ ବଡ଼ ନିଦର୍ଶନ ରହିଅଛି ।

فَتِلْكَ بُيُوْتُهُمْ خَاوِيَةًۢ بِمَا ظَلَمُوْا اِنَّ فِيْ ذٰلِكَ لَاٰيَةً لِّقَوْمٍ يَّعْلَمُوْنَ ﴿٥٣﴾

୫୪. ଏବଂ ଯେଉଁମାନେ ବିଶ୍ୱାସ କରିଥିଲେ ଓ ଧର୍ମଭୀରୁତା ଅବଲମ୍ବନ କରିଥିଲେ ସେମାନଙ୍କୁ ଆମେ ରକ୍ଷା କରିଥିଲୁ ।

وَاَنْجَيْنَا الَّذِيْنَ اٰمَنُوْا وَكَانُوْا يَتَّقُوْنَ ﴿٥٤﴾

୫୫. ଏବଂ (ଆମେ) ଲୁତଙ୍କୁ (ରସୁଲ ଭାବରେ ପ୍ରେରଣ କରିଥିଲୁ) ; ଯେତେବେଳେ କି ସେ ନିଜ ସମ୍ପ୍ରଦାୟକୁ କହିଥିଲେ, "କ'ଣ ତୁମେମାନେ ଜାଣିଶୁଣି ଦୁଷ୍କର୍ମ କରୁଅଛ ?"

وَلُوْطًا اِذْ قَالَ لِقَوْمِهٖۤ اَتَاْتُوْنَ الْفَاحِشَةَ وَاَنْتُمْ تُبْصِرُوْنَ ﴿٥٥﴾

---

୧. ଆରବୀ 'ରହତୁନ୍' ଅର୍ଥ : (କ) ଗୋଷ୍ଠୀ (ଖ) ସଂଖ୍ୟା । ଏଠାରେ ଦ୍ୱିତୀୟ ଅର୍ଥ ପ୍ରଯୋଜ୍ୟ ।

୨. ମୂଳ ଶବ୍ଦ 'ଓଲିଉନ୍' ଅର୍ଥ ଏପରି ବ୍ୟକ୍ତି ଯେ ଅନ୍ୟର କାର୍ଯ୍ୟ ପାଇଁ ଦାୟୀ ଓ ତାହାର ସହାୟକ । ସେହିପରି ଯେଉଁ ବ୍ୟକ୍ତି କାହାରି ମୃତ୍ୟୁ ପରେ ସେହି ବ୍ୟକ୍ତିର ନିହତ ହେବା ସମ୍ବନ୍ଧରେ ହତ୍ୟା ବିନିମୟରେ ଧନ ମାଗେ ତାହାକୁ ମଧ୍ୟ ଆରବୀ ଭାଷାରେ ଓଲିଉନ୍ କୁହାଯାଏ, କାରଣ ସେହିବ୍ୟକ୍ତି ନିହତ ବ୍ୟକ୍ତିର ହିତାକାଂକ୍ଷୀ ।

୫୬. କ'ଣ ତୁମେମାନେ ନାରୀମାନଙ୍କୁ ପରିତ୍ୟାଗ କରି ପୁରୁଷମାନଙ୍କ ନିକଟକୁ ସମ୍ଭୋଗ ଉଦ୍ଦେଶ୍ୟରେ ଆସୁଅଛ ? ବାସ୍ତବରେ ତୁମେମାନେ ଏକ ନିର୍ବୋଧ ସମ୍ପ୍ରଦାୟ ।"

أَئِنَّكُمْ لَتَأْتُونَ الرِّجَالَ شَهْوَةً مِّن دُونِ النِّسَاءِ ۚ بَلْ أَنتُمْ قَوْمٌ تَجْهَلُونَ ﴿٥٦﴾

୫୭. କିନ୍ତୁ ତାହାଙ୍କ ସମ୍ପ୍ରଦାୟର ଏକମାତ୍ର ଉତ୍ତର ଥିଲା, "(ହେ ଲୋକମାନେ !) ଲୁତଙ୍କ ପରିବାରବର୍ଗଙ୍କୁ ତୁମମାନଙ୍କ ସହରରୁ ବିତାଡ଼ିତ କର ; ସେମାନେ ଏପରି ଲୋକ ଯେଉଁମାନେ ଅତି ପବିତ୍ର ହେବାକୁ ଇଚ୍ଛା କରୁଛନ୍ତି ।"

فَمَا كَانَ جَوَابَ قَوْمِهِ إِلَّا أَن قَالُوا أَخْرِجُوا آلَ لُوطٍ مِّن قَرْيَتِكُمْ ۖ إِنَّهُمْ أُنَاسٌ يَتَطَهَّرُونَ ﴿٥٧﴾

୫୮. ପରିଣାମସ୍ୱରୂପ ଆମେ ତାହାଙ୍କ ପତ୍ନୀଙ୍କ ବ୍ୟତୀତ ତାହାଙ୍କୁ ଓ ତାହାଙ୍କ ପରିବାର ଲୋକମାନଙ୍କୁ ରକ୍ଷା କରିଥିଲୁ ; ଏବଂ ଆମେ ତାହାଙ୍କ ପତ୍ନୀଙ୍କୁ ପଶ୍ଚାଦବର୍ତ୍ତୀ[୧] ଲୋକମାନଙ୍କ ମଧ୍ୟରେ ପରିଗଣିତ କରିଥିଲୁ ।

فَأَنجَيْنَاهُ وَأَهْلَهُ إِلَّا امْرَأَتَهُ قَدَّرْنَاهَا مِنَ الْغَابِرِينَ ﴿٥٨﴾

୫୯. ଏବଂ ଆମେ ସେମାନଙ୍କ ଉପରେ ଏକ ବୃଷ୍ଟି ବର୍ଷଣ କରିଥିଲୁ ; ଏବଂ ଯେଉଁମାନଙ୍କୁ ଶାସ୍ତିର ସମାଚାର (ପୂର୍ବରୁ) ଦିଆଯାଇଥାଏ,ସେମାନଙ୍କ ପ୍ରତି ବର୍ଷଣ ଅତ୍ୟନ୍ତ ଭୟାବହ ହୁଏ ।

وَأَمْطَرْنَا عَلَيْهِم مَّطَرًا ۖ فَسَاءَ مَطَرُ الْمُنذَرِينَ ﴿٥٩﴾

ରୁ:୫

୬୦. ତୁମେ କୁହ, "ଆଲ୍ଲାହ ହିଁ ସମସ୍ତ ପ୍ରଶଂସାର ପାତ୍ର ; ଏବଂ ସେ ଯେଉଁ ଭକ୍ତ ମାନଙ୍କୁ ମନୋନୀତ କରିଥା'ନ୍ତି ସେମାନଙ୍କ ପ୍ରତି ସର୍ବଦା ଶାନ୍ତି ଅବତୀର୍ଣ୍ଣ ହୁଏ ; କ'ଣ ଆଲ୍ଲାହ ଉତ୍କୃଷ୍ଟ କି ସେ ସବୁ, ଯେଉଁମାନଙ୍କୁ ସେମାନେ ତାହାଙ୍କର ସମକକ୍ଷ (ମନେ) କରୁଛନ୍ତି ?"

قُلِ الْحَمْدُ لِلَّهِ وَسَلَامٌ عَلَىٰ عِبَادِهِ الَّذِينَ اصْطَفَىٰ ۗ آللَّهُ خَيْرٌ أَمَّا يُشْرِكُونَ ﴿٦٠﴾

୧. ଅର୍ଥାତ୍ ସେ ନିଜ କୁକର୍ମ ଯୋଗୁଁ ପଛରେ ରହିଯିବେ ବୋଲି ଜଣାପଡୁଥିଲା ।

## ଭାଗ-୨୦

أَمَّنْ خَلَقَ السَّمٰوٰتِ وَالْأَرْضَ وَأَنْزَلَ لَكُمْ مِّنَ السَّمَآءِ مَآءً ۚ فَأَنْۢبَتْنَا بِهٖ حَدَآئِقَ ذَاتَ بَهْجَةٍ ۚ مَا كَانَ لَكُمْ أَنْ تُنْۢبِتُوْا شَجَرَهَا ۗ ءَ إِلٰهٌ مَّعَ اللّٰهِ ۚ بَلْ هُمْ قَوْمٌ يَّعْدِلُوْنَ ﴿٦١﴾

୬୧. (କୁହ) ଆକାଶ ଓ ପୃଥିବୀକୁ କିଏ ସୃଷ୍ଟି କରିଛନ୍ତି ? ଏବଂ (କିଏ) ତୁମମାନଙ୍କ ସକାଶେ ମେଘମାଳାରୁ ଜଳ ବର୍ଷଣ କରାନ୍ତି ? ତା'ପରେ ଆମେ ଏହାଦ୍ୱାରା ସୁଶୋଭିତ ଉଦ୍ୟାନ ସୃଷ୍ଟି କରୁଅଛୁ ; ତୁମେମାନେ ସେହି ଉଦ୍ୟାନରେ ବୃକ୍ଷଗୁଡ଼ିକୁ ଉତ୍ପନ୍ନ କରାଇ ପାରି ନଥା'ନ୍ତ ; କ'ଣ ଅଲ୍ଲାଃଙ୍କ ସହିତ ଅନ୍ୟ କେହି ଉପାସ୍ୟ ଅଛନ୍ତି (ଯେ ସମସ୍ତ ସୃଷ୍ଟିକୁ ପରିଚାଳିତ କରୁଛନ୍ତି) ? କିନ୍ତୁ ଏ (ଅବିଶ୍ୱାସକାରୀ)ମାନେ ଏପରି ଏକ ସମ୍ପ୍ରଦାୟ ଯେଉଁମାନେ ତାହାଙ୍କ ସହିତ ଅନ୍ୟକୁ ସମକକ୍ଷ କରୁଛନ୍ତି ।

أَمَّنْ جَعَلَ الْأَرْضَ قَرَارًا وَّجَعَلَ خِلٰلَهَآ أَنْهٰرًا وَّجَعَلَ لَهَا رَوَاسِيَ وَجَعَلَ بَيْنَ الْبَحْرَيْنِ حَاجِزًا ۗ ءَ إِلٰهٌ مَّعَ اللّٰهِ ۚ بَلْ أَكْثَرُهُمْ لَا يَعْلَمُوْنَ ﴿٦٢﴾

୬୨. (କୁହ) କିଏ ଭୂପୃଷ୍ଠକୁ ବିଶ୍ରାମସ୍ଥଳୀ ରୂପେ ଗଢ଼ିଛନ୍ତି ଏବଂ ତନ୍ମଧ୍ୟରେ ନଦୀମାନ ପ୍ରବାହିତ କରାଇଛନ୍ତି, ସେମାନଙ୍କ (ହିତ) ପାଇଁ ପର୍ବତମାଳା ସ୍ଥାପନ କରିଛନ୍ତି ଏବଂ ଦୁଇ ସାଗର [1] (ଯେହିଁରୁ ଗୋଟିକର ଜଳ ମଧୁର ଓ ଅନ୍ୟଟିର ଲବଣାକ୍ତ) ମଧ୍ୟରେ ଏକ ପ୍ରତିବନ୍ଧକ ସୃଷ୍ଟି କରିଛନ୍ତି ? କ'ଣ ଅଲ୍ଲାଃଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ଅଛନ୍ତି ? କିନ୍ତୁ ବାସ୍ତବରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ ।

أَمَّنْ يُّجِيْبُ الْمُضْطَرَّ إِذَا دَعَاهُ وَيَكْشِفُ السُّوْٓءَ وَيَجْعَلُكُمْ خُلَفَآءَ الْأَرْضِ ۗ ءَ إِلٰهٌ مَّعَ اللّٰهِ ۚ قَلِيْلًا مَّا تَذَكَّرُوْنَ ﴿٦٣﴾

୬୩. (କୁହ) କିଏ ଦୁଃସ୍ଥ ଲୋକର ପ୍ରାର୍ଥନା ଶୁଣେ ? ଯେତେବେଳେ ସେ ତାହାଙ୍କୁ ପ୍ରାର୍ଥନା କରେ, ସେ ତାହାର ଦୁଃଖ ଦୂର କରନ୍ତି, ଏବଂ ସେ ତୁମମାନଙ୍କୁ (ଅର୍ଥାତ୍ ପ୍ରାର୍ଥନାକାରୀଙ୍କୁ ଦିନେ) ସମଗ୍ର ଭୂପୃଷ୍ଠର ଉତ୍ତରାଧିକାରୀ କରିଦେବେ ; (ତେବେ କୁହ) କ'ଣ ସେହି (ସର୍ବଶକ୍ତିମାନ୍) ଅଲ୍ଲାଃଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ଅଛନ୍ତି ? ତୁମେମାନେ ଆଦୌ [2] ଶିକ୍ଷା ଲାଭ କରୁନାହଁ ।

---

୧. ୨୫:୫୪ ର ଟୀକା ଦ୍ରଷ୍ଟବ୍ୟ ।

୨. 'କଲିଲ୍' ଶବ୍ଦ 'ନାହିଁ' ଅର୍ଥରେ ମଧ୍ୟ ପ୍ରଯୋଜ୍ୟ । ଦୃଷ୍ଟାନ୍ତ ସ୍ୱରୂପ ଯଦି ଆମେ କହୁ ଯେ 'ତୁମେ ଅତି ଅଳ୍ପ ମାନୁଛ' ତେବେ ତା'ର ଅର୍ଥ ହେବ, ତୁମେ ଆଦୌ ମାନୁ ନାହଁ ।

أَمَّنْ يَهْدِيكُمْ فِي ظُلُمٰتِ الْبَرِّ وَالْبَحْرِ وَمَنْ يُرْسِلُ الرِّيٰحَ بُشْرًا بَيْنَ يَدَيْ رَحْمَتِهٖ ۗ ءَ إِلٰهٌ مَّعَ اللّٰهِ ۗ تَعٰلَى اللّٰهُ عَمَّا يُشْرِكُوْنَ ﴿٦٤﴾

୬୪. (କୁହ) କିଏ ତୁମମାନଙ୍କୁ ସ୍ଥଳ ଭାଗରେ ଓ ଜଳ ଭାଗରେ ବିପଦମାନଙ୍କରେ ମୁକ୍ତିପଥ ପ୍ରଦର୍ଶନ କରାଏ, ଓ କିଏ ନିଜ କରୁଣା (ଅର୍ଥାତ୍ ବୃଷ୍ଟି) ପ୍ରଦାନ କରିବା ପୂର୍ବରୁ ବାୟୁକୁ ଶୁଭ ସୂଚନା ରୂପେ ପ୍ରେରଣ କରେ ? କ'ଣ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ଅଛନ୍ତି ? ତୁମେମାନେ ଅଲ୍ଲାହ୍‌ଙ୍କ ସହିତ ଯାହାଙ୍କୁ ସମକକ୍ଷ କରୁଅଛ ସେ ତାଠାରୁ ବହୁ ଉର୍ଦ୍ଧ୍ୱରେ ।

أَمَّنْ يَبْدَؤُا الْخَلْقَ ثُمَّ يُعِيْدُهٗ وَمَنْ يَرْزُقُكُمْ مِّنَ السَّمَآءِ وَالْأَرْضِ ۗ ءَ إِلٰهٌ مَّعَ اللّٰهِ ۗ قُلْ هَاتُوْا بُرْهَانَكُمْ إِنْ كُنْتُمْ صٰدِقِيْنَ ﴿٦٥﴾

୬୫. (କୁହ) ଯେ ପ୍ରଥମେ ସୃଷ୍ଟି କରନ୍ତି ଓ ଏହାପରେ ଏହି (ସୃଷ୍ଟି) ପ୍ରକ୍ରିୟାର ପୁନରାବୃତ୍ତି କରନ୍ତି ଓ ଯେ ମେଘମାଳାରୁ ଓ ଭୂପୃଷ୍ଠରୁ ତୁମମାନଙ୍କୁ ଜୀବିକା ପ୍ରଦାନ କରନ୍ତି କ'ଣ (ସେହି) ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ଅଛନ୍ତି ? ତୁମେ କୁହ, "ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ନିଜର ପ୍ରମାଣ ଉପସ୍ଥାପନ କର (ଯେ ତାହାଙ୍କ ସମକକ୍ଷ ଆହୁରି ଉପାସ୍ୟ ଅଛନ୍ତି) ।"

قُلْ لَّا يَعْلَمُ مَنْ فِي السَّمٰوٰتِ وَالْأَرْضِ الْغَيْبَ إِلَّا اللّٰهُ ۗ وَمَا يَشْعُرُوْنَ أَيَّانَ يُبْعَثُوْنَ ﴿٦٦﴾

୬୬.. (ତୁମେ) କୁହ, "ଆକାଶ ଓ ପୃଥିବୀରେ ଯେଉଁମାନେ ଅଛନ୍ତି ଅଲ୍ଲାହ୍‌ଙ୍କ ବ୍ୟତୀତ (ସେମାନଙ୍କ ମଧ୍ୟରୁ କେହି) ଅଦୃଶ୍ୟ ବିଷୟକୁ ଜାଣନ୍ତି ନାହିଁ ; ଏବଂ ସେମାନଙ୍କ ମଧ୍ୟରୁ କେହି ଜାଣନ୍ତି ନାହିଁ ଯେ ସେମାନଙ୍କୁ କେବେ (ପୁନର୍ବାର) ଜୀବିତ କରି ଉଠାହେବ ।"

بَلِ ادّٰرَكَ عِلْمُهُمْ فِي الْاٰخِرَةِ ۚ بَلْ هُمْ فِيْ شَكٍّ مِّنْهَا ۚ بَلْ هُمْ مِّنْهَا عَمُوْنَ ﴿٦٧﴾

୬୭. ବରଂ ପ୍ରକୃତ କଥା ଏହି ଯେ ପରକାଳ ଜୀବନ ସମ୍ବନ୍ଧରେ ସେମାନଙ୍କର ଜ୍ଞାନ ବିଲୁପ୍ତ ହୋଇଅଛି ; ବରଂ ସେମାନେ ଏ ବିଷୟରେ ସନ୍ଦେହରେ ପଡ଼ିଛନ୍ତି, ବରଂ ସେମାନେ ଏ ବିଷୟରେ ସମ୍ପୂର୍ଣ୍ଣ ଅନ୍ଧ ।

ରୁ:୬

وَقَالَ الَّذِيْنَ كَفَرُوْا ءَ إِذَا كُنَّا تُرٰبًا وَّاٰبَآؤُنَآ أَئِنَّا لَمُخْرَجُوْنَ ﴿٦٨﴾

୬୮. ଏବଂ ଅବିଶ୍ୱାସକାରୀମାନେ କହନ୍ତି "ଯେତେବେଳେ ଆମେମାନେ ଓ ଆମମାନଙ୍କ ପିତୃପିତାମହମାନେ ମାଟିରେ ପରିଣତ ହୋଇଥିବୁ କ'ଣ ସେତେବେଳେ ଆମମାନଙ୍କୁ ପୁନର୍ବାର (ଭୂମିରୁ) ଜୀବିତ କରି ଉଠାହେବ ?"

لَقَدْ وُعِدْنَا هٰذَا نَحْنُ وَاٰبَآؤُنَا مِنْ قَبْلُ ۙ إِنْ هٰذَآ إِلَّآ أَسَاطِيْرُ الْأَوَّلِيْنَ ﴿٦٩﴾

୬୯. "ଆମମାନଙ୍କୁ ଓ ଆମମାନଙ୍କ ପିତୃପିତାମହମାନଙ୍କୁ ଏହା ପୂର୍ବରୁ ଏହିପରି ପ୍ରତିଶ୍ରୁତି ଦିଆ ଯାଇଥିଲା ; କିନ୍ତୁ ଏହା ପୂର୍ବବର୍ତ୍ତୀ ଲୋକମାନଙ୍କ କାହାଣୀ ମାତ୍ର ଯୋହା କେବେହେଲେ ପୂରଣ ହୁଏ ନାହିଁ ।"

୭୦. ତୁମେ କୁହ, "ଭୂପୃଷ୍ଠରେ ଭ୍ରମଣ କର ଓ ଲକ୍ଷ୍ୟ କର ଯେ ଅପରାଧୀମାନଙ୍କର ପରିଣାମ କିପରି ହୋଇଥିଲା ।"

قُلْ سِيْرُوْا فِي الْاَرْضِ فَانْظُرُوْا كَيْفَ كَانَ عَاقِبَةُ الْمُجْرِمِيْنَ ۝

୭୧. ଏବଂ ତୁମେ ସେମାନଙ୍କ ପାଇଁ ଦୁଃଖ କର ନାହିଁ, ଏବଂ ସେମାନଙ୍କ ଚକ୍ରାନ୍ତ ଯୋଗୁଁ ମନକୁ ସଂକୀର୍ଣ୍ଣ କରନାହିଁ ।

وَلَا تَحْزَنْ عَلَيْهِمْ وَلَا تَكُنْ فِيْ ضَيْقٍ مِّمَّا يَمْكُرُوْنَ ۝

୭୨. ଏବଂ ସେମାନେ କହନ୍ତି, "ଯଦି ତୁମେ ସତ୍ୟବାଦୀ ହୋଇଥାଅ, ତେବେ ଏହି (ଶାସ୍ତି ବିଷୟକ) ପ୍ରତିଶ୍ରୁତି କେବେ ପୂରଣ ହେବ ?"

وَيَقُوْلُوْنَ مَتٰى هٰذَا الْوَعْدُ اِنْ كُنْتُمْ صٰدِقِيْنَ ۝

୭୩. ତୁମେ କୁହ, "ସମ୍ଭବତଃ ଯେଉଁ (ଶାସ୍ତି) ବିଷୟରେ ତୁମେମାନେ ବ୍ୟଗ୍ର ହେଉଅଛ, ତାହାର କିୟଦଂଶ ତୁମମାନଙ୍କୁ ଅନୁଧାବନ କରୁଅଛି ।"

قُلْ عَسٰۤى اَنْ يَّكُوْنَ رَدِفَ لَكُمْ بَعْضُ الَّذِيْ تَسْتَعْجِلُوْنَ ۝

୭୪. ଏବଂ ତୁମର ପାଳନକର୍ତ୍ତା ମାନବ ସମାଜ ପ୍ରତି ଅନୁଗ୍ରହଶୀଳ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ କୃତଜ୍ଞ ନୁହନ୍ତି ।

وَاِنَّ رَبَّكَ لَذُوْ فَضْلٍ عَلَى النَّاسِ وَلٰكِنَّ اَكْثَرَهُمْ لَا يَشْكُرُوْنَ ۝

୭୫. ଏବଂ ସେମାନଙ୍କ ଅନ୍ତର ଯାହାକିଛି ଗୋପନ ରଖେ ଓ ସେମାନେ ଯାହା କିଛି ପ୍ରକାଶ କରନ୍ତି ସେସବୁକୁ ତୁମର ପାଳନକର୍ତ୍ତା ଜାଣନ୍ତି ।

وَاِنَّ رَبَّكَ لَيَعْلَمُ مَا تُكِنُّ صُدُوْرُهُمْ وَمَا يُعْلِنُوْنَ ۝

୭୬. ଏବଂ ଆକାଶ ଓ ପୃଥିବୀରେ ଯାହା କିଛି ଗୋପନୀୟ ବିଷୟ ଅଛି ତାହା ଏକ ସୁସ୍ପଷ୍ଟ ଗ୍ରନ୍ଥରେ (ଲିପିବଦ୍ଧ ହୋଇ) ରହିଛି ।

وَمَا مِنْ غَآئِبَةٍ فِي السَّمَآءِ وَالْاَرْضِ اِلَّا فِيْ كِتٰبٍ مُّبِيْنٍ ۝

୭୭. ଯେଉଁ ବିଷୟମାନଙ୍କରେ ଇସ୍ରାଇଲୀୟ ସନ୍ତାନମାନେ ଭିନ୍ନ ମତ ପୋଷଣ କରୁଛନ୍ତି, ବାସ୍ତବିକ ଏହି କୋରାନ ସେମାନଙ୍କ ନିକଟରେ ସେପରି ଅଧିକାଂଶ ବିଷୟ ବର୍ଣ୍ଣନା କରୁଅଛି ।

اِنَّ هٰذَا الْقُرْاٰنَ يَقُصُّ عَلٰى بَنِيْۤ اِسْرَآءِيْلَ اَكْثَرَ الَّذِيْ هُمْ فِيْهِ يَخْتَلِفُوْنَ ۝

୭୮. ଏବଂ ନିଶ୍ଚୟ ତାହା ବିଶ୍ୱାସକାରୀମାନଙ୍କ ସକାଶେ ସତ୍‌ପଥ ପ୍ରଦର୍ଶନ ଓ କରୁଣା ।

وَاِنَّهٗ لَهُدًى وَّرَحْمَةٌ لِّلْمُؤْمِنِيْنَ ۝

୭୯. ଏବଂ ତୁମ ପାଳନକର୍ତ୍ତା ସେ (ଇସ୍ରାଇଲୀୟ)ମାନଙ୍କ ମଧ୍ୟରେ ନିଜ ଆଦେଶ (ଅର୍ଥାତ୍ କୋରାନ) ମାଧ୍ୟମରେ ମୀମାଂସା କରନ୍ତି, ଏବଂ ସେ ପରାକ୍ରମୀ (ଓ) ସର୍ବଜ୍ଞ ।

اِنَّ رَبَّكَ يَقْضِيْ بَيْنَهُمْ بِحُكْمِهٖ ۚ وَهُوَ الْعَزِيْزُ الْعَلِيْمُ ۝

فَتَوَكَّلْ عَلَى اللّٰهِ ۖ إِنَّكَ عَلَى الْحَقِّ الْمُبِينِ ⑧⓪

୮୦. ସୁତରାଂ ତୁମେ ଅଲ୍ଲାହଙ୍କ ଉପରେ ଭରସା କର ; ତୁମେ ନିଶ୍ଚିତ ରୂପେ ଏକ ଯୁକ୍ତି-ସଂଗତ ସତ୍ୟ ଉପରେ ପ୍ରତିଷ୍ଠିତ ରହିଅଛ ।

إِنَّكَ لَا تُسْمِعُ الْمَوْتَىٰ وَلَا تُسْمِعُ الصُّمَّ الدُّعَاءَ إِذَا وَلَّوْا مُدْبِرِينَ ⑧①

୮୧. ଯେତେବେଳେ ସେମାନେ ମୁହଁ ଫେରାଇ ଚାଲିଯାଆନ୍ତି, ସେତେବେଳେ ତୁମେ କଦାପି ମୃତ (ବ୍ୟକ୍ତି)ମାନଙ୍କୁ ଶୁଣାଇ ପାରିବ ନାହିଁ, ଏବଂ ବଧିରମାନଙ୍କୁ ମଧ୍ୟ (ନିଜର) ସ୍ୱର ଶୁଣାଇ ପାରିବ ନାହିଁ ।

وَمَا أَنْتَ بِهَادِي الْعُمْيِ عَنْ ضَلَالَتِهِمْ ۖ إِنْ تُسْمِعُ إِلَّا مَنْ يُؤْمِنُ بِآيَاتِنَا فَهُمْ مُسْلِمُونَ ⑧②

୮୨. ଏବଂ (ସେହିପରି) ତୁମେ ଅନ୍ଧମାନଙ୍କୁ ମଧ୍ୟ ସେମାନଙ୍କ ଅସତ୍ ପଥରୁ ରକ୍ଷା କରି ସତ୍‌ପଥ ପ୍ରଦର୍ଶନ କରାଇପାରିବ ନାହିଁ ; ଯେଉଁମାନେ ଆମ୍ଭର ନିଦର୍ଶନଗୁଡ଼ିକ ଉପରେ ବିଶ୍ୱାସ କରନ୍ତି ଓ (କାର୍ଯ୍ୟ କ୍ଷେତ୍ରରେ) ଆଜ୍ଞାବହ ହୁଅନ୍ତି, କେବଳ ସେମାନଙ୍କୁ ହିଁ ତୁମେ ଶୁଣାଇ ପାରିବ ।

وَإِذَا وَقَعَ الْقَوْلُ عَلَيْهِمْ أَخْرَجْنَا لَهُمْ دَابَّةً مِنَ الْأَرْضِ تُكَلِّمُهُمْ أَنَّ النَّاسَ كَانُوا بِآيَاتِنَا لَا يُوقِنُونَ ⑧③

୮୩. ଏବଂ ଯେତେବେଳେ ସେମାନଙ୍କ ବିନାଶ ସଂକ୍ରାନ୍ତ ଭବିଷ୍ୟବାଣୀ ପୂର୍ଣ୍ଣ ହେବ,ସେତେବେଳେ ଆମ୍ଭେ ସେମାନଙ୍କ ପାଇଁ ପୃଥିବୀ ମଧ୍ୟରୁ ଏପରି ଏକ କୀଟ [୧] ସୃଷ୍ଟି କରିବୁ ଯାହା ସେମାନଙ୍କୁ ଦଂଶନ କରିବ କାରଣ ଲୋକମାନେ ଆମ୍ଭର ନିଦର୍ଶନଗୁଡ଼ିକ ଉପରେ ବିଶ୍ୱାସ କରୁ ନଥିଲେ ।

ରୁ:୬

وَيَوْمَ نَحْشُرُ مِنْ كُلِّ أُمَّةٍ فَوْجًا مِمَّنْ يُكَذِّبُ بِآيَاتِنَا فَهُمْ يُوزَعُونَ ⑧④

୮୪. ଏବଂ (ସେହି ଦିନକୁ ସ୍ମରଣ କର) ଯେଉଁଦିନ ଆମ୍ଭର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରୁଥିବା ପ୍ରତ୍ୟେକ ସମ୍ପ୍ରଦାୟ ମଧ୍ୟରୁ ଏକ ବଡ଼ ଗୋଷ୍ଠୀକୁ ଏକତ୍ରିତ କରିବୁ, ତତ୍‌ପରେ ତାହାକୁ (ଉତ୍ତର ପ୍ରଦାନ କରିବା ନିମନ୍ତେ) ବିଭିନ୍ନ ଦଳରେ ବିଭକ୍ତ କରାହେବ ।

حَتَّىٰ إِذَا جَاءُوا قَالَ أَكَذَّبْتُمْ بِآيَاتِي وَلَمْ تُحِيطُوا بِهَا عِلْمًا أَمَّاذَا كُنْتُمْ تَعْمَلُونَ ⑧⑤

୮୫. ଏବଂ ଯେତେବେଳେ ସେମାନେ ତାହାଙ୍କ ନିକଟରେ ଉପସ୍ଥିତ ହେବେ, ସେତେବେଳେ ସେ ସେମାନଙ୍କୁ କହିବେ, "କଣ ତୁମେମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିଲ ଯେତେବେଳେ ସେଗୁଡ଼ିକ ସମ୍ବନ୍ଧରେ ତୁମେମାନେ ଜ୍ଞାନ ହାସଲ କରି (ନଥିଲ କି) ପୂର୍ଣ୍ଣ ତଥ୍ୟ ହାସଲ କରି ନଥିଲ ? [୨] ଅଥବା କୁହ, ତୁମେମାନେ (ଇସଲାମ ବିରୁଦ୍ଧରେ) କି ଚକ୍ରାନ୍ତ କରୁଥିଲ ?"

୧. ମୂଳ ଶବ୍ଦ 'ଦାବ୍‌ବା' ପ୍ଲେଗ ରୋଗ ଜୀବାଣୁକୁ ବୁଝାଏ । ଏହି ରୋଗର ପ୍ରାଦୁର୍ଭାବ ଶେଷ ଯୁଗରେ ହେବା ନେଇ ଭବିଷ୍ୟବାଣୀ ଅଛି (ଫେତହୁଲ୍ ବୟାନ୍, ସୁରା ନମଲ୍ : ପୃ : ୨୩୧ ଦ୍ରଷ୍ଟବ୍ୟ) । ମଣିଷ ଦେହ ଭିତରେ ଏହି ଜୀବାଣୁ ପ୍ରବେଶ କଲେ ହିଁ ସେ ମୃତ୍ୟୁ ମୁଖରେ ପଡ଼ିବ । ସେହିପରି ଅନ୍ୟ ଏକ ହଦିସରେ 'ନଗଫ୍' ନାମକ ରୋଗ ବ୍ୟାପିବାର ଭବିଷ୍ୟବାଣୀ ଅଛି (ହଦିସ୍ ମୁସଲିମ୍ ଦ୍ରଷ୍ଟବ୍ୟ) । ଉଭୟ ବିବରଣକୁ ଅନୁଧ୍ୟାନ କଲେ ଜଣାଯିବ ଯେ ଶେଷ ଯୁଗରେ ପ୍ଲେଗ ରୋଗର ସଂକ୍ରମଣ ହେବ ତଥା ଜୀବାଣୁ ଓ ଫୋଟକା ବା ଘା' ସହିତ ତାହାର ସମ୍ବନ୍ଧ ରହିବ ।

୨. ଅର୍ଥାତ୍ ସଂପୂର୍ଣ୍ଣ ରୂପେ ଜାଣି ନ କରି କେବଳ ନିଜ ସଂପ୍ରଦାୟର ନେତାମାନଙ୍କ ପ୍ରବର୍ଗନାରେ ଉତ୍ତେଜିତ ହୋଇଥିଲେ ।

୮୬. ଏବଂ ସେମାନଙ୍କ ଅତ୍ୟାଚାର ଯୋଗୁଁ ସେମାନଙ୍କ ବିରୁଦ୍ଧରେ କରାଯାଇ ଥିବା ଭବିଷ୍ୟବାଣୀ କାର୍ଯ୍ୟକାରୀ ହେବ, ଏବଂ ସେମାନେ କିଛି କହି [1]ପାରିବେ ନାହିଁ।

وَوَقَعَ الْقَوْلُ عَلَيْهِمْ بِمَا ظَلَمُوْا فَهُمْ لَا يَنْطِقُوْنَ ﴿٨٦﴾

୮୭. କ'ଣ ସେମାନଙ୍କୁ ଜଣା ନାହିଁ ଯେ ଆମେ ରାତିକୁ ସେମାନଙ୍କ ବିଶ୍ରାମ ପାଇଁ ସୃଷ୍ଟି କରିଅଛୁ, ଏବଂ ଦିନକୁ ଦୃଷ୍ଟିଶକ୍ତି ପ୍ରଦାନକାରୀ ଭାବରେ ସୃଷ୍ଟି କରିଅଛୁ? ଏଥିରେ ବାସ୍ତବିକ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ବଡ଼ ନିଦର୍ଶନ ରହିଅଛି।

اَلَمْ يَرَوْا اَنَّا جَعَلْنَا الَّيْلَ لِيَسْكُنُوْا فِيْهِ وَالنَّهَارَ مُبْصِرًا ۭ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يُّؤْمِنُوْنَ ﴿٨٧﴾

୮୮. ଏବଂ (ସେଦିନକୁ ମଧ୍ୟ ସ୍ମରଣ କର) ଯେଉଁଦିନ ବିଗୁଲ ଫୁଙ୍କାଯିବ; ଯାହା ଫଳରେ ଆକାଶ ଓ ପୃଥିବୀରେ ଯେକେହି ଥିବେ ସେମାନେ ସମସ୍ତେ ଭୟରେ ପ୍ରକମ୍ପିତ ହେବେ; ଅବଶ୍ୟ ସେମାନଙ୍କ ବ୍ୟତୀତ ଯେଉଁମାନଙ୍କୁ ଅଲ୍ଲାହ୍ (ଭୟରୁ ସଂରକ୍ଷିତ ରଖିବାକୁ) ଇଚ୍ଛା କରିବେ; ଏବଂ ସମସ୍ତେ ତାହାଙ୍କ ସମୀପକୁ ଆଜ୍ଞାବହ ଓ ବିନୀତ ହୋଇ ଆସିବେ।

وَيَوْمَ يُنْفَخُ فِي الصُّوْرِ فَفَزِعَ مَنْ فِي السَّمٰوٰتِ وَمَنْ فِي الْاَرْضِ اِلَّا مَنْ شَاۗءَ اللّٰهُ ۭ وَكُلٌّ اَتَوْهُ دٰخِرِيْنَ ﴿٨٨﴾

୮୯. ଏବଂ ତୁମେ ପର୍ବତମାଳାକୁ ସ୍ୱସ୍ଥାନରେ ସ୍ଥିର ରହିଥିବାର ଦେଖୁଅଛ, ଅଥଚ ସେଗୁଡ଼ିକ ମେଘମାଳା [2]ସଦୃଶ ଚଳମାନ ଅଟନ୍ତି, ଏହା ଅଲ୍ଲାହ୍‌ଙ୍କର କଳାକୃତି ଅଟେ ଯେ କି ପ୍ରତ୍ୟେକ ବସ୍ତୁକୁ ଦୃଢ଼ (ଓ ନିଖୁଣ) ଭାବରେ ଗଢ଼ିଛନ୍ତି; ସେ ତୁମମାନଙ୍କ କାର୍ଯ୍ୟ ସଂକ୍ରାନ୍ତରେ ଉତ୍ତମ ରୂପେ ଅବଗତ ଅଛନ୍ତି।

وَتَرَى الْجِبَالَ تَحْسَبُهَا جَامِدَةً وَّهِيَ تَمُرُّ مَرَّ السَّحَابِ ۭ صُنْعَ اللّٰهِ الَّذِيْٓ اَتْقَنَ كُلَّ شَيْءٍ ۭ اِنَّهٗ خَبِيْرٌۢ بِمَا تَفْعَلُوْنَ ﴿٨٩﴾

---

୧. ଅର୍ଥାତ୍ ବିରୁଦ୍ଧାଚରଣର କୌଣସି ପ୍ରମାଣ ପେଶ୍ କରି ପାରିବେ ନାହିଁ।

୨. ଏଠାରେ ପୃଥିବୀ ଘୁରୁଥିବାର ବର୍ଣ୍ଣନା ଅଛି, ପରନ୍ତୁ ପ୍ରାଚୀନ କାଳରେ ଭୂଗୋଳ ଶାସ୍ତ୍ରର ଲେଖକମାନେ ସୂର୍ଯ୍ୟଙ୍କୁ ଗତିଶୀଳ ଓ ପୃଥିବୀକୁ ଗତିହୀନ କହୁଥିଲେ।

ପର୍ବତକୁ ଗତିଶୀଳ କହିବାର ଅର୍ଥ ଏହି ଯେ ତାହା ପୃଥିବୀ ସଂଗରେ ଘୁରୁଥାଏ। କାରଣ ପୃଥିବୀକୁ ବାଦ୍ ଦେଇ ତାହାର ସ୍ଥିତି ବା ଗତି ନାହିଁ। ତାହା ସ୍ଥିର ଓ ଅଚଳ ଦୃଷ୍ଟିଗୋଚର ହେଉଥିଲେ ମଧ୍ୟ, ଯେପରି ମେଘମାଳା ସ୍ଥିର ଦେଖାଯାଉଥାଏ ଅଥଚ ପ୍ରକୃତରେ ତାହା ଅନବରତ ଚଳପ୍ରଚଳ ହେଉଥାଏ, ସେହିପରି ପର୍ବତ ମଧ୍ୟ ଗତିଶୀଳ। ଏଠାରେ ମେଘର ଦୃଷ୍ଟାନ୍ତ କେବଳ ଗତିଶୀଳତା ଉପଲକ୍ଷେ ଦିଆଯାଇଛି ଅନ୍ୟଥା ତାହାର ଗତିବିଧି ବା ବେଗ ଆଦି ସଂପର୍କରେ ଦିଆଯାଇ ନାହିଁ।

ପବିତ୍ର କୋରାନ ଯେଉଁ ଦେଶରେ ରଚିତ ସେହି ଦେଶରେ ପର୍ବତସବୁ ଚଳପ୍ରଚଳ ହେଉଥିବ ପରା ବୋଲି କେତେକ ଆକ୍ଷେପ କରି କହିଥାଆନ୍ତି, କିନ୍ତୁ ବାସ୍ତବରେ ସେମାନେ ଆରବୀ 'ଜେବାଲ' ଶବ୍ଦର ଅର୍ଥ ତଥା କୋରାନରେ ତାହାର ପ୍ରୟୋଗାତ୍ମକ ଶୈଳୀ ବିଷୟରେ ଚିନ୍ତା କରି ନାହାନ୍ତି। 'ଜେବାଲ' ଅର୍ଥ: (କ) ପର୍ବତ (ଖ) ନେତା ବା ମୁଖ୍ୟବ୍ୟକ୍ତି (ଗ) ମହାନ୍ ବ୍ୟକ୍ତି (ଘ) ପର୍ବତ-ନିବାସୀ (ଙ) ସୁଦୃଢ଼ ବସ୍ତୁ (ଚ) ରାଜ୍ୟ ଅନୁଶାସନ।

ପବିତ୍ର କୋରାନ୍‌ରେ ଏକେତ ସାଧାରଣ ଅର୍ଥରେ ଅଥବା ମୁଖ୍ୟ ବା ମହାନ୍ ବ୍ୟକ୍ତି ଅର୍ଥରେ ଏହି ଶବ୍ଦ ପ୍ରୟୋଗ କରାଯାଇଛି। ପ୍ରଥମୋକ୍ତ ଅର୍ଥରେ ଅନେକ ଭବିଷ୍ୟବାଣୀ ଲୁକ୍କାୟିତ ରହିଛି ଯାହା ପବିତ୍ର କୋରାନରେ ସମୟାନୁକ୍ରମେ ସତ୍ୟ ସାବ୍ୟସ୍ତ ହୋଇଛି ଓ ଭବିଷ୍ୟତରେ ମଧ୍ୟ ହେବ।

مَنْ جَآءَ بِالْحَسَنَةِ فَلَهٗ خَيْرٌ مِّنْهَا ۚ وَهُمْ مِّنْ فَزَعٍ يَّوْمَئِذٍ اٰمِنُوْنَ ﴿٩٠﴾

୯୦. ଯେ କେହି ସତ୍‌କାର୍ଯ୍ୟ କରିବ ତାହାକୁ ଏହାଠାରୁ ଉତ୍କୃଷ୍ଟତର ପୁରସ୍କାର ମିଳିବ, ଏବଂ ଏପରି ଲୋକମାନେ ସେଦିନ ଭୟରୁ ସଂରକ୍ଷିତ ରହିବେ ।

وَمَنْ جَآءَ بِالسَّيِّئَةِ فَكُبَّتْ وُجُوْهُهُمْ فِي النَّارِ ۗ هَلْ تُجْزَوْنَ اِلَّا مَا كُنْتُمْ تَعْمَلُوْنَ ﴿٩١﴾

୯୧. ଏବଂ ଯେଉଁମାନେ ଅସତ୍ କାର୍ଯ୍ୟ କରି ଅଲ୍ଲାହଙ୍କ ସମୀପରେ ଉପସ୍ଥିତ ହେବେ, ସେମାନଙ୍କର ନେତାମାନଙ୍କୁ ଅଧୋମୁଖ କରି ନରକରେ ନିପତିତ କରାହେବ ; ଏବଂ କୁହାଯିବ, "କ'ଣ ତୁମମାନଙ୍କ ଏହି ପ୍ରତିଫଳ ତୁମମାନଙ୍କର କାର୍ଯ୍ୟ ଅନୁଯାୟୀ ନୁହେଁ ?"

اِنَّمَاۤ اُمِرْتُ اَنْ اَعْبُدَ رَبَّ هٰذِهِ الْبَلْدَةِ الَّذِيْ حَرَّمَهَا وَلَهٗ كُلُّ شَيْءٍ ۫ وَّاُمِرْتُ اَنْ اَكُوْنَ مِنَ الْمُسْلِمِيْنَ ﴿٩٢﴾

୯୨. ଆମଙ୍କୁ କେବଳ ଏହି ଆଦେଶ ଦିଆଯାଇଛି ଯେ ଆମେ ଏହି (ମକ୍କା) ସହରର ପାଳନକର୍ତ୍ତାଙ୍କ ଉପାସନା କରିବୁ ଯେ ତାହାକୁ ପବିତ୍ର କରିଛନ୍ତି, ଏବଂ ପ୍ରତ୍ୟେକ ବିଷୟ ତାହାଙ୍କ ନିୟନ୍ତ୍ରଣାଧୀନ ; ଏବଂ ଆଜ୍ଞାବହମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବା ପାଇଁ ଆମଙ୍କୁ ଆଦେଶ ଦିଆଯାଇଛି ।

وَاَنْ اَتْلُوَا الْقُرْاٰنَ ۚ فَمَنِ اهْتَدٰى فَاِنَّمَا يَهْتَدِيْ لِنَفْسِهٖ ۚ وَمَنْ ضَلَّ فَقُلْ اِنَّمَاۤ اَنَا مِنَ الْمُنْذِرِيْنَ ﴿٩٣﴾

୯୩. ଏବଂ (ପୁନଶ୍ଚ ଆଦେଶ ଦିଆଯାଇଛି ଯେ) ଆମେ କୋରାନ ପାଠ କରି ଶୁଣାଇବୁ ; ସୁତରାଂ ଯେ ଏହାକୁ ଶୁଣି ସତ୍‌ପଥ ପ୍ରାପ୍ତ ହେବ, ତେବେ ତାହାର ଏହି ସତ୍‌ପଥ ପ୍ରାପ୍ତି କେବଳ ତା ନିଜ ପାଇଁ (ଲାଭଦାୟକ) ହେବ ; ଏବଂ ଯେ ଏହାକୁ ଶୁଣି ବିପଥଗାମୀ ହେବ, ତୁମେ ତାହାକୁ କୁହ ଯେ ଆମେ ଜଣେ ସଚେତକ ମାତ୍ର ।

وَقُلِ الْحَمْدُ لِلّٰهِ سَيُرِيْكُمْ اٰيٰتِهٖ فَتَعْرِفُوْنَهَا ۚ وَمَا رَبُّكَ بِغَافِلٍ عَمَّا تَعْمَلُوْنَ ﴿٩٤﴾

୯୪. ଏବଂ ଏହା ମଧ୍ୟ କୁହ ଯେ ଅଲ୍ଲାହ ହିଁ ସମସ୍ତ ପ୍ରଶଂସାର ପାତ୍ର ; ସେ ତୁମମାନଙ୍କୁ ନିଜର ନିଦର୍ଶନ ପ୍ରଦର୍ଶନ କରାଇବେ ଯଦ୍ୱାରା ତୁମେମାନେ ତାହାଙ୍କୁ ଚିହ୍ନିପାରିବ ; ଏବଂ ତୁମମାନଙ୍କ ପାଳନକର୍ତ୍ତା ତୁମମାନଙ୍କ କାର୍ଯ୍ୟ ସଂକ୍ରାନ୍ତରେ ଅମନୋଯୋଗୀ ନୁହନ୍ତି ।

سُوْرَةُ الْقَصَصِ مَكِّيَّةٌ (٢٨)

# ଅଲ-କସସ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୮୯ଟି ଆୟତ ଓ ୯ଟି ରୁକୁ ଅଛି) ।

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି ) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ତା—ସିନ—ମୀମ୍ ।

طٰسٓمّٓ ②

୩. ଏହା (ଅର୍ଥାତ୍ ଏହି ଆୟତଗୁଡ଼ିକ) ଯୁକ୍ତିସଂଗତ (ଧର୍ମ) ଗ୍ରନ୍ଥର ଆୟତମାନ ଅଟେ ।

تِلْكَ اٰيٰتُ الْكِتٰبِ الْمُبِيْنِ ③

୪. ବିଶ୍ୱାସକାରୀ ସମ୍ପ୍ରଦାୟର ହିତ ନିମନ୍ତେ ଆମେ ମୁସା ଓ ଫିରଔନଙ୍କ ସତ୍ୟ ବୃତ୍ତାନ୍ତ ତୁମ ନିକଟରେ ବର୍ଣ୍ଣନା କରୁଅଛୁ ।

نَتْلُوْا عَلَيْكَ مِنْ نَّبَاِ مُوْسٰى وَفِرْعَوْنَ بِالْحَقِّ لِقَوْمٍ يُّؤْمِنُوْنَ ④

୫. ଫିରଔନ (ନିଜ) ଦେଶରେ ଅହଙ୍କାର-ପୂର୍ବକ କାର୍ଯ୍ୟ କରୁଥିଲା ଏବଂ ସେଠାକାର ଅଧିବାସୀମାନଙ୍କୁ (ବିଭିନ୍ନ ଦଳରେ) ବିଭାଜିତ କରିଦେଇଥିଲା ; ଓ ସେ ସେମାନଙ୍କ ମଧ୍ୟରୁ ଗୋଟିଏ ଦଳକୁ ଦୁର୍ବଳ କରିବାକୁ ଇଚ୍ଛା କରୁଥିଲା ; (ଏପରିକି) ସେମାନଙ୍କ ପୁତ୍ର ସନ୍ତାନମାନଙ୍କୁ ହତ୍ୟା କରୁଥିଲା, ଓ ସେମାନଙ୍କ କନ୍ୟାମାନଙ୍କୁ ଜୀବିତ ରଖୁଥିଲା ; ଏବଂ ସେ ବାସ୍ତବିକ ବିଶୃଙ୍ଖଳାକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା ।

اِنَّ فِرْعَوْنَ عَلَا فِى الْاَرْضِ وَجَعَلَ اَهْلَهَا شِيَعًا يَّسْتَضْعِفُ طَآئِفَةً مِّنْهُمْ يُذَبِّحُ اَبْنَآءَهُمْ وَيَسْتَحْيٖ نِسَآءَهُمْ ۗ اِنَّهٗ كَانَ مِنَ الْمُفْسِدِيْنَ ⑤

୬. ଏବଂ ଆମେ ଇଚ୍ଛା କରିଥିଲୁ ଯେ ସେ ଯେଉଁମାନଙ୍କୁ ଦେଶରେ ଦୁର୍ବଳ ମନେ କରୁଥିଲା (ଆମେ) ସେମାନଙ୍କ ପ୍ରତି ଅନୁଗ୍ରହ ପ୍ରଦର୍ଶନ କରିବୁ ଓ ସେମାନଙ୍କୁ ଦଳପତି କରିବୁ ଓ ସେମାନଙ୍କୁ (ସମସ୍ତ କୃପାର) ଉତ୍ତରାଧିକାରୀ କରିବୁ ।

وَنُرِيْدُ اَنْ نَّمُنَّ عَلَى الَّذِيْنَ اسْتُضْعِفُوْا فِى الْاَرْضِ وَنَجْعَلَهُمْ اَئِمَّةً وَّنَجْعَلَهُمُ الْوٰرِثِيْنَ ⑥

୭. ଏବଂ ସେମାନଙ୍କୁ ଦେଶରେ ସୁଦୃଢ଼ କରିବୁ, ଏବଂ ଫିରଔନ ଓ ହାମାନ ତଥା ସେମାନଙ୍କ ସୈନ୍ୟବାହିନୀକୁ ତାହା ହି ଦେଖାଇବୁ ଯେଉଁ ବିଷୟରେ ସେମାନେ ଭୟଭୀତ ହୋଇ ରହିଛନ୍ତି ।

وَنُمَكِّنَ لَهُمْ فِى الْاَرْضِ وَنُرِىَ فِرْعَوْنَ وَهَامٰنَ وَجُنُوْدَهُمَا مِنْهُمْ مَّا كَانُوْا يَحْذَرُوْنَ ⑦

୮. ଏବଂ ଆମେ ମୁସାଙ୍କ ମାତାଙ୍କୁ ଓହି କରିଥିଲୁ ଯେ ତାହାଙ୍କୁ (ଅର୍ଥାତ୍ ମୁସାଙ୍କୁ) ସ୍ତନ୍ୟପାନ କରାଅ ; ଏବଂ ତୁମେ ଯେତେବେଳେ ତାହାଙ୍କ (ପ୍ରାଣ ନାଶ) ସଂକ୍ରାନ୍ତରେ ଆଶଙ୍କା କରିବ, ସେତେବେଳେ ତାହାଙ୍କୁ ନଦୀ (ବକ୍ଷ)ରେ ନିକ୍ଷେପ କରିବ ଏବଂ (ଏଥିପାଇଁ) ଭୟଭୀତ ହୁଅ ନାହିଁ କି କୌଣସି

وَاَوْحَيْنَآ اِلٰٓى اُمِّ مُوْسٰٓى اَنْ اَرْضِعِيْهِ ۚ فَاِذَا خِفْتِ

عَلَيْهِ فَأَلْقِيهِ فِي الْيَمِّ وَلَا تَخَافِي وَلَا تَحْزَنِي ۚ إِنَّا رَادُّوهُ إِلَيْكِ وَجَاعِلُوهُ مِنَ الْمُرْسَلِينَ ﴿٨﴾

ଅତୀତ ବିଷୟ ସକାଶେ ଦୁଃଖ କର ନାହିଁ ; ଆମ୍ଭେ ତାହାଙ୍କୁ ତୁମ ନିକଟକୁ ଫେରାଇ ଆଣିବୁ ଏବଂ ତାହାଙ୍କୁ ରସୁଲମାନଙ୍କ ମଧ୍ୟରେ ଜଣେ ରସୁଲ କରିବୁ ; (ଅନନ୍ତର ଏହି ଓହି ଅନୁସାରେ ମୁସାଙ୍କ ମାତା ତାହାଙ୍କୁ ନଦୀ ବକ୍ଷକୁ ନିକ୍ଷେପ କରିଥିଲେ) ।

فَالْتَقَطَهُ آلُ فِرْعَوْنَ لِيَكُونَ لَهُمْ عَدُوًّا وَحَزَنًا ۗ إِنَّ فِرْعَوْنَ وَهَامَانَ وَجُنُودَهُمَا كَانُوا خَاطِئِينَ ﴿٩﴾

୯. ଏହାପରେ ଫିରଔନ ପରିବାରର ଜଣେ ତାହାଙ୍କୁ (ଅର୍ଥାତ୍ ମୁସାଙ୍କୁ ନଦୀ ବକ୍ଷରୁ) ଉଠାଇ ନେଇଥିଲା, ଫଳରେ (ପରବର୍ତ୍ତୀ ସମୟରେ) ସେ ସେମାନଙ୍କର ଶତ୍ରୁ ସାବ୍ୟସ୍ତ ହୋଇଥିଲେ ତଥା ଦୁଃଖର କାରଣ ହୋଇଥିଲେ ; ଫିରଔନ ଓ ହାମାନ [୧] ତଥା ସେ ଉଭୟଙ୍କ ସୈନ୍ୟବାହିନୀ ଭ୍ରମରେ ପଡ଼ିଥିଲେ ।

وَقَالَتِ امْرَأَتُ فِرْعَوْنَ قُرَّتُ عَيْنٍ لِي وَلَكَ ۖ لَا تَقْتُلُوهُ عَسَىٰ أَنْ يَنْفَعَنَا أَوْ نَتَّخِذَهُ وَلَدًا وَهُمْ لَا يَشْعُرُونَ ﴿١٠﴾

୧୦. ଏବଂ ଫିରଔନର (ପରିବାରଭୁକ୍ତ ଜଣେ) ମହିଳା [୨] କହିଥିଲା, "ଏ ତୁମପାଇଁ ଓ ମୋ ପାଇଁ ନୟନ ଶୀତଳକ ଅଟେ, ଏହାକୁ ହତ୍ୟା କର ନାହିଁ ; ସମ୍ଭବତଃ ଏ ଦିନେ ଆମମାନଙ୍କର ଉପକାର କରିବ, ଅଥବା ଆମ୍ଭେ ତାହାକୁ ପୁତ୍ର ଭାବରେ ଗ୍ରହଣ କରିବା," ଏବଂ ସେମାନଙ୍କୁ ବାସ୍ତବତା [୩] ଜଣା ନ ଥିଲା ।

وَأَصْبَحَ فُؤَادُ أُمِّ مُوسَىٰ فَارِغًا ۖ إِنْ كَادَتْ لَتُبْدِي بِهِ لَوْلَا أَنْ رَبَطْنَا عَلَىٰ قَلْبِهَا لِتَكُونَ مِنَ الْمُؤْمِنِينَ ﴿١١﴾

୧୧. ଏବଂ ମୁସାଙ୍କ ମାତାଙ୍କ ହୃଦୟ (ଦୁଃଖ ଓ ଉତ୍କଣ୍ଠାରୁ) ମୁକ୍ତ ହୋଇଥିଲା ; ଯଦି ଆମ୍ଭେ ତାହାଙ୍କ ହୃଦୟକୁ ବିଶ୍ୱାସକାରୀ କରିବା ଲକ୍ଷ୍ୟରେ ସୁଦୃଢ଼ କରି ନଥାନ୍ତୁ, ତେବେ ହୁଏତ ସେ ଏ ଘଟଣାର ପ୍ରକୃତ ରହସ୍ୟ ଉନ୍ମୋଚନ କରି ଦେଇ ଥାଆନ୍ତେ ।

وَقَالَتْ لِأُخْتِهِ قُصِّيهِ ۖ فَبَصُرَتْ بِهِ عَنْ جُنُبٍ وَهُمْ لَا يَشْعُرُونَ ﴿١٢﴾

୧୨. ଏବଂ ସେ (ଅର୍ଥାତ୍ ମୁସାଙ୍କ ମାତା) ତାହାଙ୍କ (ଅର୍ଥାତ୍ ମୁସାଙ୍କ) ଭଉଣୀଙ୍କୁ କହିଲେ, "ତୁମେ ଏହାର ପଛେ ପଛେ ଯାଅ," ସୁତରାଂ ସେ ତାହାଙ୍କୁ ଦୂରରୁ ଲକ୍ଷ୍ୟ କରୁଥିଲା ; ଏବଂ ସେମାନେ (ଅର୍ଥାତ୍ ଫିରଔନର ଲୋକମାନେ ଏ ବିଷୟରେ କିଛି) ଜାଣି ପାରି ନଥିଲେ ।

---

୧. କେତେକଙ୍କ ମତରେ ହାମାନ ଫିରଔନର ଅନ୍ୟତମ ସଭାସଦ । ତେଣୁ ପାଦ୍ୟା ଦୃଷ୍ଟିରୁ ସୈନ୍ୟବାହିନୀକୁ ତା' ସହିତ ସଂଶ୍ଲିଷ୍ଟ କରାଯାଇଛି । ସମ୍ଭବତଃ ସେ ସେନାଧ୍ୟକ୍ଷ ଥିଲା ।

୨. ଏହି ମହିଳା ଫିରଔନର କନ୍ୟା ବୋଲି ଅଭିପ୍ରେତ । କୁହାଯାଇଛି, ଯେଉଁ ମହିଳା ହଜରତ ମୁସାଙ୍କୁ ନଦୀ କୂଳରେ ପାଇଲେ ସେ ଫିରଔନର କନ୍ୟା (Exodus 2:5 ଦ୍ରଷ୍ଟବ୍ୟ) । ଏକ ସୁନ୍ଦର ବାଳକ ପାଇବାକୁ ତା'ର ଇଚ୍ଛା ଥିଲା ।

୩. ଅର୍ଥାତ୍ ଅଲ୍ଲାହ ସେହି ବାଳକକୁ ଫିରଔନ ଓ ତା'ର ସଂପ୍ରଦାୟକୁ ବିନାଶ କରିବା ସକାଶେ ତାଙ୍କ ଗୃହରେ ରଖାଇଲେ ।

୧୩. ଏବଂ ଆମେ ଏହା ପୂର୍ବରୁ ମୁସାଙ୍କ ସକାଶେ ସ୍ତନ୍ୟପାନ କରାଉଥିବା ଧାତ୍ରୀମାନଙ୍କୁ ନିଷେଧ [୧] କରିଥିଲୁ ; ସୁତରାଂ ସେ (ଅର୍ଥାତ୍ ମୁସାଙ୍କ ଭଉଣୀ) କହିଥିଲେ, ''କ'ଣ ମୁଁ ତୁମମାନଙ୍କୁ ଏପରି ଏକ ପରିବାର ସଂକ୍ରାନ୍ତରେ ଜଣାଇବି ଯେ ଏହାକୁ ତୁମମାନଙ୍କ ପାଇଁ ଲାଳନ–ପାଳନ କରିବ ଏବଂ ସେମାନେ ତାହା ପକ୍ଷରେ ହିତାକାଂକ୍ଷୀ ସାବ୍ୟସ୍ତ ହେବେ ।''

وَحَرَّمْنَا عَلَيْهِ الْمَرَاضِعَ مِنْ قَبْلُ فَقَالَتْ هَلْ اَدُلُّكُمْ عَلٰٓى اَهْلِ بَيْتٍ يَّكْفُلُوْنَهٗ لَكُمْ وَهُمْ لَهٗ نٰصِحُوْنَ ﴿۱۳﴾

୧୪. ଏହିପରି ଭାବରେ ଆମେ ତାହାଙ୍କୁ ତାହାଙ୍କ ମାତାଙ୍କ ନିକଟକୁ ଫେରାଇ ନେଲୁ ଯେପରିକି ତାହାଙ୍କ ନୟନ ଶୀତଳ ହେବ, ଏବଂ ସେ ଦୁଃଖ କରିବେ ନାହିଁ, ଏବଂ ଜାଣିପାରିବେ ଯେ ଅଲ୍ଲାହଙ୍କ ପ୍ରତିଶ୍ରୁତି ସତ୍ୟ ଅଟେ ; କିନ୍ତୁ (ଅବିଶ୍ୱାସକାରୀମାନଙ୍କ ମଧ୍ୟରୁ) ଅଧିକାଂଶ ଏହା ଜାଣନ୍ତି ନାହିଁ ।

فَرَدَدْنٰهُ اِلٰٓى اُمِّهٖ كَيْ تَقَرَّ عَيْنُهَا وَلَا تَحْزَنَ وَلِتَعْلَمَ اَنَّ وَعْدَ اللّٰهِ حَقٌّ وَّلٰكِنَّ اَكْثَرَهُمْ لَا يَعْلَمُوْنَ ﴿۱۴﴾ ع

ରୁ: ୨

୧୫. ଏବଂ ଯେତେବେଳେ ସେ ନିଜ ପରିପକ୍ୱ ଯୌବନରେ [୨] ପଦାର୍ପଣ କଲେ ଓ (ନିଜ ଚାରିତ୍ରିକ ସ୍ଥିତି ଉପରେ) ସୁପ୍ରତିଷ୍ଠିତ ହୋଇଥିଲେ, ସେତେବେଳେ ଆମେ ତାହାଙ୍କୁ ତତ୍ତ୍ୱ ଓ ଜ୍ଞାନ ପ୍ରଦାନ କରିଥିଲୁ ; ଏବଂ ଆମେ ହିତକାରୀମାନଙ୍କୁ ଏହିପରି ଭାବରେ ପୁରସ୍କାର ପ୍ରଦାନ କରିଥାଉ ।

وَلَمَّا بَلَغَ اَشُدَّهٗ وَاسْتَوٰٓى اٰتَيْنٰهُ حُكْمًا وَّعِلْمًا ۭ وَكَذٰلِكَ نَجْزِى الْمُحْسِنِيْنَ ﴿۱۵﴾

୧୬. ଏବଂ ଦିନେ ସହରବାସୀମାନେ ଅସାବଧାନ [୩] (ଅର୍ଥାତ୍ ନିଦ୍ରିତ) ଅବସ୍ଥାରେ ଥିବାବେଳେ ସେ ସେହି ସହରରେ ପ୍ରବେଶ କରିଥିଲେ ; ସେ ସହରରେ ଦୁଇଜଣ ବ୍ୟକ୍ତିଙ୍କୁ ପରସ୍ପର ମଧ୍ୟରେ କଳହ କରୁଥିବା ଦେଖିଲେ ; ଜଣେ ତାହାଙ୍କ ବନ୍ଧୁମାନଙ୍କ ଗୋଷ୍ଠୀର ଥିଲା, ଓ ଅନ୍ୟ ଜଣେ ତାଙ୍କ ଶତ୍ରୁ ଗୋଷ୍ଠୀର ଥିଲା ; ତେଣୁ ଯେଉଁ ବ୍ୟକ୍ତି ତାହାଙ୍କ ଗୋଷ୍ଠୀର ଥିଲା, ସେ ଶତ୍ରୁପକ୍ଷର ଅନ୍ୟ ବ୍ୟକ୍ତି ବିରୁଦ୍ଧରେ ତାହାଙ୍କ ସାହାଯ୍ୟ ଭିକ୍ଷା କରିଥିଲା ; ଏହାପରେ ମୁସା ତାହାକୁ

وَدَخَلَ الْمَدِيْنَةَ عَلٰى حِيْنِ غَفْلَةٍ مِّنْ اَهْلِهَا فَوَجَدَ فِيْهَا رَجُلَيْنِ يَقْتَتِلٰنِ ۬ هٰذَا مِنْ شِيْعَتِهٖ وَهٰذَا مِنْ عَدُوِّهٖ ۚ فَاسْتَغَاثَهُ الَّذِيْ مِنْ شِيْعَتِهٖ

୧. ଏଥିରୁ ପ୍ରତୀତ ହେଉଛି ଯେ ହଜରତ ମୁସା ଯେଉଁ ବୋଝରେ ଥିଲେ ତାହା ଭାସି ଭାସି ନଦୀ କୂଳରେ ଲାଗିଲା ଓ ମୁସାଙ୍କ ଭଉଣୀ ସତର୍କତା ଅବଲମ୍ବନ–ପୂର୍ବକ ଧୀରେ ଧୀରେ ତା' ପଛରେ ଯାଉଥିଲେ । ଏହି ସମୟରେ ଫିରଔନର କନ୍ୟା କେତେକ ଦୁଗ୍ଧପାନକାରିଣୀଙ୍କୁ ଡାକିଲେ ଓ ହଜରତ ମୁସାଙ୍କୁ ଦୁଗ୍ଧପାନ କରାଇବାକୁ ଆଦେଶ ଦେଲେ । କିନ୍ତୁ ହଜରତ ମୁସା ସେମାନଙ୍କ ଠାରୁ ଦୁଗ୍ଧପାନ କରିବାକୁ ପ୍ରତ୍ୟାଖ୍ୟାନ କଲେ । ପରିଶେଷରେ ଏପରି ହେଲା ଯେ ଅଲ୍ଲାହଙ୍କ କୌଶଳ କ୍ରମେ ସେ ନିଜ ମାତାଙ୍କ ପାଖକୁ ଫେରି ଆସିଲେ ।

୨. ଅର୍ଥାତ୍ ଏପରି ବୟସରେ ପଦାର୍ପଣ କଲେ ଯେତେବେଳେ ଦିବ୍ୟବାଣୀର ଆଗମନ ହୁଏ । ବସ୍ତୁତଃ ଏହି ବୟସ ୩୦ ରୁ ୪୦ ବର୍ଷ ମଧ୍ୟରେ ବା ତା'ଠାରୁ ଅଧିକ ।

୩. ଅର୍ଥାତ୍ ନିଶ୍ଚିନ୍ତରେ ନିଜ ଗୃହରେ ଶୋଇଥିଲେ । ଏହା ଦ୍ୱିପ୍ରହର ହୋଇପାରେ ବା ମଧ୍ୟରାତ୍ର ହୋଇ ପାରେ ।

عَلَى الَّذِي مِنْ عَدُوِّهِ فَوَكَزَهُ مُوسَىٰ فَقَضَىٰ عَلَيْهِ
قَالَ هَٰذَا مِنْ عَمَلِ الشَّيْطَانِ إِنَّهُ عَدُوٌّ مُضِلٌّ مُبِينٌ ⑯

ଏକ ବିଧା ମାରିଥିଲେ, ଏବଂ ଏହା (ଅର୍ଥାତ୍ ସେହି ବିଧାଟ) ତା'ର ପ୍ରାଣ ନାଶ କରିଥିଲା ; ଏହାପରେ ମୁସା କହିଲେ ଯେ ଏସବୁ ଘଟଣା ସଇତାନରୂପୀ କାର୍ଯ୍ୟ [1] ଦ୍ବାରା ହୋଇଅଛି ; ସେ (ସଇତାନ ବିଶ୍ୱାସକାରୀଙ୍କର) ଶତ୍ରୁ ଓ (ତାହାଙ୍କ ଶାନ୍ତିପଥରୁ) ପ୍ରକାଶ୍ୟ ବିଭ୍ରାନ୍ତିକାରୀ ଅଟେ ।

قَالَ رَبِّ إِنِّي ظَلَمْتُ نَفْسِي فَاغْفِرْ لِي فَغَفَرَ لَهُ
إِنَّهُ هُوَ الْغَفُورُ الرَّحِيمُ ⑰

୧୭. ତତ୍‌ପରେ ମୁସା ପ୍ରାର୍ଥନା-ପୂର୍ବକ କହିଲେ, "ହେ ଆମ୍ଭ ପାଳନକର୍ତ୍ତା ! ଆମ୍ଭେ ନିଜ ଜୀବନକୁ ବିପଦଗ୍ରସ୍ତ କରାଇଛୁ, ସୁତରାଂ ତୁମ୍ଭେ ଆମ୍ଭର ଏହି କର୍ମ ଯୋଗୁଁ କ୍ଷମା ପ୍ରଦାନ କର, ତେଣୁ ସେ ତାହାଙ୍କୁ କ୍ଷମା କରିଥିଲେ ; ସେ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

قَالَ رَبِّ بِمَا أَنْعَمْتَ عَلَيَّ فَلَنْ أَكُونَ ظَهِيرًا
لِلْمُجْرِمِينَ ⑱

୧୮. ଏହାପରେ ମୁସା ପ୍ରାର୍ଥନାପୂର୍ବକ କହିଲେ, "ହେ ଆମ୍ଭ ପାଳନକର୍ତ୍ତା ! ଯେହେତୁ ତୁମ୍ଭେ ଆମ୍ଭ ପ୍ରତି ଅନୁଗ୍ରହ [2] ପ୍ରଦର୍ଶନ କରିଅଛ, ତେଣୁ ଆମ୍ଭେ କଦାପି କୌଣସି ଅପରାଧୀଙ୍କୁ ସାହାଯ୍ୟ କରିବୁ ନାହିଁ ।"

فَأَصْبَحَ فِي الْمَدِينَةِ خَائِفًا يَتَرَقَّبُ فَإِذَا الَّذِي
اسْتَنْصَرَهُ بِالْأَمْسِ يَسْتَصْرِخُهُ قَالَ لَهُ مُوسَىٰ
إِنَّكَ لَغَوِيٌّ مُبِينٌ ⑲

୧୯. ଏହାପରେ ଯେତେବେଳେ ସେ ସହରରେ ପ୍ରଭାତ ସମୟରେ ଶତ୍ରୁମାନଙ୍କୁ ଭୟକରି ଏବଂ (ସନ୍ତର୍ପଣରେ) ଇତସ୍ତତଃ ଚାହିଁ ଚାହିଁ ବାହାରିଲେ, ସେତେବେଳେ ଦେଖିଲେ ଯେ ଯେଉଁ ବ୍ୟକ୍ତି ଗତକାଲି ତାହାଙ୍କ ସାହାଯ୍ୟ ଭିକ୍ଷା କରିଥିଲା ସେ ପୁନର୍ବାର ତାହାଙ୍କୁ ସାହାଯ୍ୟ କରିବା ପାଇଁ ଚିତ୍କାର କରୁଅଛି ; ତେଣୁ ମୁସା ତାହାକୁ କହିଲେ, "ତୁ ବାସ୍ତବରେ ଜଣେ ପ୍ରକାଶ୍ୟ ପଥଭ୍ରଷ୍ଟ ବ୍ୟକ୍ତି ।"

فَلَمَّا أَنْ أَرَادَ أَنْ يَبْطِشَ بِالَّذِي هُوَ عَدُوٌّ لَهُمَا
قَالَ يَا مُوسَىٰ أَتُرِيدُ أَنْ تَقْتُلَنِي كَمَا قَتَلْتَ نَفْسًا
بِالْأَمْسِ إِنْ تُرِيدُ إِلَّا أَنْ تَكُونَ جَبَّارًا فِي الْأَرْضِ
وَمَا تُرِيدُ أَنْ تَكُونَ مِنَ الْمُصْلِحِينَ ⑳

୨୦. ଏବଂ ଯେତେବେଳେ ସେ ଉକ୍ତ ବ୍ୟକ୍ତିଙ୍କୁ [3] ଯେ କି ଉଭୟଙ୍କର ଶତ୍ରୁ ଥିଲା, ଧରିବାକୁ ମନସ୍ଥ କଲେ, ସେତେବେଳେ ସେ କହିଲା, "ହେ ମୁସା ! ତୁମ୍ଭେ କ'ଣ ମୋତେ ହତ୍ୟା କରିବାକୁ ଇଚ୍ଛା କରୁଅଛ ଯେପରି ଗତକାଲି ତୁମ୍ଭେ ଜଣକୁ ହତ୍ୟା କରିଥିଲ ? କ'ଣ ତୁମ୍ଭେ ଇଚ୍ଛା କରୁଅଛ ଯେ ଦେଶ ଭିତରେ ଦୁର୍ବଳମାନଙ୍କ ଉପରେ ଅତ୍ୟାଚାର କରିବ, ଓ ଶାନ୍ତି ପ୍ରତିଷ୍ଠାକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବା ତୁମ୍ଭର ଉଦ୍ଦେଶ୍ୟ ନୁହେଁ ।

---

୧. ଅର୍ଥାତ୍ ସଇତାନ ହଜରତ ମୁସାଙ୍କ ସଂପ୍ରଦାୟ ଓ ଫିରଔନର ସଂପ୍ରଦାୟକୁ ରଗେଇ ପରସ୍ପର ମଧ୍ୟରେ ଝଗଡ଼ା କରେଇ ଦେଲା । ଫଳରେ ସେ ନିଜ ସଂପ୍ରଦାୟର ଅତ୍ୟାଚାରିତ ବ୍ୟକ୍ତିଙ୍କୁ ସାହାଯ୍ୟ କଲେ ଓ ଫିରଔନର ଲୋକ ନିହତ ହେଲା ।

୨. ମୁସା କହିଲେ, 'ମୋତେ ଅତ୍ୟାଚାରିତ ବ୍ୟକ୍ତିର ସହାୟତା କରିବାକୁ ସୁଯୋଗ ମିଳିଛି । ତେଣୁ ମୁଁ କୃତଜ୍ଞତା ଜ୍ଞାପନ କରିବାକୁ ସର୍ବଦା ସେଭଳି ବ୍ୟକ୍ତିମାନଙ୍କର ସହାୟତା କରୁଥିବି ଅଥଚ, ଅତ୍ୟାଚାରୀମାନଙ୍କୁ କଦାପି ସାହାଯ୍ୟ କରିବି ନାହିଁ ।'

୩. ଯେଉଁ ବ୍ୟକ୍ତି ଇସ୍ରାଇଲୀୟମାନଙ୍କ ମଧ୍ୟରୁ ଥିଲା ସେ ଭୁଲରେ ଭାବିଲା ଯେ ହଜରତ ମୁସା ତାକୁ ମାରିଦେବେ । ତେଣୁ ସେ ଚିତ୍କାର କରି କହିଲା : 'କ'ଣ କାଲି ପରି ଆଜି ମଧ୍ୟ ତୁମେ ଜଣେ ଲୋକକୁ ହତ୍ୟା କରିବାକୁ ଇଚ୍ଛା କରୁଛ ?'

୨୧. ଏବଂ ଏହି ସମୟରେ ଜଣେ ବ୍ୟକ୍ତି ସହରର ସୁଦୂର ପ୍ରାନ୍ତରୁ ଦୌଡ଼ି ଆସି କହିଲା, "ହେ ମୁସା ! (ଦେଶର) ନେତୃସ୍ଥାନୀୟ ବ୍ୟକ୍ତିମାନେ ତୁମମାନଙ୍କୁ ହତ୍ୟାକରିବା ପାଇଁ ମନ୍ତ୍ରଣା କରୁଛନ୍ତି, [୧] ସୁତରାଂ (ମୋ କଥା ଶୁଣ ଓ) ଏହି ସହରରୁ ପଳାୟନ କର ; ମୁଁ ତୁମର ହିତାକାଂକ୍ଷୀମାନଙ୍କ ମଧ୍ୟରୁ ଅଟେ ।"

وَجَآءَ رَجُلٌ مِّنْ اَقْصَا الْمَدِيْنَةِ يَسْعٰى قَالَ يٰمُوْسٰٓى اِنَّ الْمَلَاَ يَاْتَمِرُوْنَ بِكَ لِيَقْتُلُوْكَ فَاخْرُجْ اِنِّيْ لَكَ مِنَ النّٰصِحِيْنَ ﴿٢١﴾

୨୨. ସୁତରାଂ ସେ ଉକ୍ତ ସହରରୁ ଭୟଭୀତ ହୋଇ ଓ ସତର୍କ ଦୃଷ୍ଟି ରଖି ଚାଲିଗଲେ ; ସେତେବେଳେ ସେ ପ୍ରାର୍ଥନାପୂର୍ବକ କହିଲେ, "ହେ ଆମର ପାଳନକର୍ତ୍ତା ! ଆମକୁ ଅତ୍ୟାଚାରୀ ସମ୍ପ୍ରଦାୟ ଠାରୁ ରକ୍ଷା କର ।"

فَخَرَجَ مِنْهَا خَآئِفًا يَّتَرَقَّبُ قَالَ رَبِّ نَجِّنِيْ مِنَ الْقَوْمِ الظّٰلِمِيْنَ ﴿٢٢﴾ ع

ରୁ:୩

୨୩. ଏବଂ ଯେତେବେଳେ ସେ ମଦୟନ [୨] (ସହର) ଆଡ଼କୁ ଚାଲିଲେ, ସେତେବେଳେ ସେ କହିଲେ, "ଆମର ବିଶ୍ୱାସ ଯେ ଆମର ପାଳନକର୍ତ୍ତା ଆମକୁ ସଠିକ ପଥ ପ୍ରଦର୍ଶନ କରାଇବେ ।"

وَلَمَّا تَوَجَّهَ تِلْقَآءَ مَدْيَنَ قَالَ عَسٰى رَبِّيْٓ اَنْ يَّهْدِيَنِيْ سَوَآءَ السَّبِيْلِ ﴿٢٣﴾

୨୪. ଏବଂ ଯେତେବେଳେ ସେ ମଦୟନ (ସହର)ର ଝରଣା ନିକଟରେ ପହଞ୍ଚିଲେ, ସେ ସେଠାରେ ଦଳେ ଲୋକଙ୍କୁ (ନିଜର ପଶୁମାନଙ୍କୁ) ଜଳପାନ କରାଉଥିବାର ଦେଖିଲେ ; ଏବଂ ସେମାନଙ୍କ ପଛରେ ଦୁଇଜଣ ମହିଳା [୩] ନିଜର ପଶୁମାନଙ୍କୁ (ଗେହଲିରୁ) ଦୂରେଇ ରଖୁଥିବାର ଦେଖିଲେ ; ମୁସା ସେମାନଙ୍କୁ କହିଲେ, "ତୁମମାନଙ୍କର ସମସ୍ୟା କ'ଣ ?" ସେ ଦୁହେଁ ଉତ୍ତର ଦେଲେ, "ଅନ୍ୟ ପଶୁପାଳକମାନେ ଚାଲି ନ ଯିବା ପର୍ଯ୍ୟନ୍ତ ଆମେମାନେ (ଆମର ପଶୁମାନଙ୍କୁ) ଜଳପାନ କରାଇପାରିବୁ ନାହିଁ; ଏବଂ ଆମର ପିତା ଅତ୍ୟନ୍ତ ବୃଦ୍ଧ ଅଟନ୍ତି (ଏଥି ସକାଶେ ସେ ଆମମାନଙ୍କ ସହିତ ଆସି ପାରିଲେ ନାହିଁ) ।"

وَلَمَّا وَرَدَ مَآءَ مَدْيَنَ وَجَدَ عَلَيْهِ اُمَّةً مِّنَ النَّاسِ يَسْقُوْنَ ۫ وَوَجَدَ مِنْ دُوْنِهِمُ امْرَاَتَيْنِ تَذُوْدٰنِ ۚ قَالَ مَا خَطْبُكُمَا ۭ قَالَتَا لَا نَسْقِيْ حَتّٰى يُصْدِرَ الرِّعَآءُ ٚ وَاَبُوْنَا شَيْخٌ كَبِيْرٌ ﴿٢٤﴾

---

୧. ଅର୍ଥାତ୍ କୌଣସି ମତେ ବିଗତ କାଲି ଘଟଣାର ଗୁଞ୍ଜରଣ ତାଙ୍କ କାନରେ ପଡ଼ି ଯାଇଛି । ସମ୍ଭବତଃ ହଜରତ ମୁସାଙ୍କ ମନୋଭାବ ସହିତ ସେହି ବ୍ୟକ୍ତିର ମନୋଭାବ ସମାନ ଥିଲା ଓ ସେହି ବ୍ୟକ୍ତି ତାହାଙ୍କର ବନ୍ଧୁ ଥିଲା ।

୨. ମିଶରରୁ ଇବ୍ରାନୀ ଅଞ୍ଚଳକୁ ଯିବା ବାଟରେ ମଦୟନ ସହର ପଡୁଥିଲା । ସେଠାରେ ସେତେବେଳେ ଆଦ ସଂପ୍ରଦାୟର ଆରବବାସୀ ରହୁଥିଲେ ।

୩. ପବିତ୍ର କୋରାନରେ ଦୁଇ ଜଣ ମହିଳାଙ୍କ ବିଷୟ ବର୍ଣ୍ଣନା କରାଯାଇଛି, ଅଥଚ ବାଇବେଲରେ ସାତ ଜଣ ବାଳିକାଙ୍କ ବିଷୟ ଉଲ୍ଲେଖ କରାଯାଇଛି **(Exodus 2:16 ଦ୍ରଷ୍ଟବ୍ୟ)** । ଯେହେତୁ ପରେ ବିବାହ ପ୍ରସଙ୍ଗ ଉତ୍ଥାପିତ ହେବାକୁ ଥିଲା ତେଣୁ ପବିତ୍ର କୋରାନରେ କେବଳ ବଡ଼ ବଡ଼ ବାଳିକାଙ୍କ ବିଷୟରେ ବର୍ଣ୍ଣନା ଅଛି ଓ ବାଇବେଲରେ ସବୁ ଛୋଟ ବଡ଼ ଭଉଣୀଙ୍କ ବିଷୟ କୁହାଯାଇଛି । ଫଳରେ ଦୁଇ ଶାସ୍ତ୍ରର ବର୍ଣ୍ଣନାରେ ସଂଖ୍ୟାଗତ ପାର୍ଥକ୍ୟ ଦେଖାଯାଉଛି ।

୨୫. ସୁତରାଂ ସେ, ସେ ଦୁହିଁଙ୍କ ସକାଶେ (ପଶୁମାନଙ୍କୁ) ଜଳ ପାନ କରାଇଲେ; ତା'ପରେ ସେ ଛାୟା ନିକଟକୁ ଫେରିଗଲେ ଓ କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ତୁମେ ନିଜ କଲ୍ୟାଣରୁ ଯାହା କିଛି ଆମ୍ଭ ପ୍ରତି ଅବତୀର୍ଣ୍ଣ କରିବ ଆମ୍ଭେ ତାହା ଉପରେ ନିର୍ଭରଶୀଳ ଅଟୁ ।"

فَسَقٰى لَهُمَا ثُمَّ تَوَلّٰۤى اِلَى الظِّلِّ فَقَالَ رَبِّ اِنِّیْ لِمَاۤ اَنْزَلْتَ اِلَیَّ مِنْ خَیْرٍ فَقِیْرٌ ﴿۲۵﴾

୨୬. ତା'ପରେ ସେ ଦୁଇଜଣ ମହିଳାଙ୍କ ମଧ୍ୟରୁ ଜଣେ ଲଜ୍ଜା ସହିତ ତାହାଙ୍କ ନିକଟକୁ ଆସିଲେ ଓ କହିଲେ, "ଆମ ପିତା ତୁମକୁ ଡାକୁଛନ୍ତି ଯଦ୍ଦ୍ୱାରା କି ସେ ଆମ ତରଫରୁ (ପଶୁମାନଙ୍କୁ) ଜଳପାନ କରାଇଥିବା ଯୋଗୁଁ ତୁମକୁ (ତାହାର) ପ୍ରତିଦାନ ଦେବେ ; ତା'ପରେ ଯେତେବେଳେ ସେ ତାଙ୍କ (ପିତାଙ୍କ) ନିକଟରେ ପହଞ୍ଚିଲେ ଏବଂ ତାହାଙ୍କ ନିକଟରେ ନିଜର ସମସ୍ତ ଘଟଣା ବର୍ଣ୍ଣନା କଲେ, ସେତେବେଳେ ସେ କହିଲେ, "ଭୟ କର ନାହିଁ ; ତୁମେ ବର୍ତ୍ତମାନ ଅତ୍ୟାଚାରୀ ସମ୍ପ୍ରଦାୟଙ୍କ କବଳରୁ ମୁକ୍ତି ପାଇଅଛ ।"

فَجَآءَتْهُ اِحْدٰىهُمَا تَمْشِیْ عَلَى اسْتِحْیَآءٍ ۫ قَالَتْ اِنَّ اَبِیْ یَدْعُوْكَ لِیَجْزِیَكَ اَجْرَ مَا سَقَیْتَ لَنَا ؕ فَلَمَّا جَآءَهٗ وَ قَصَّ عَلَیْهِ الْقَصَصَ ۙ قَالَ لَا تَخَفْ ٝ نَجَوْتَ مِنَ الْقَوْمِ الظّٰلِمِیْنَ ﴿۲۶﴾

୨୭.ଏହାପରେ ସେ ଦୁଇଜଣ (ମହିଳା)ଙ୍କ ମଧ୍ୟରୁ ଜଣେ କହିଲେ, "ହେ ମୋର ପିତା ! ତୁମେ ଏହାଙ୍କୁ (ଜଣେ) କର୍ମଚାରୀ ଭାବେ ନିଯୁକ୍ତ କର ; କାରଣ ଯେଉଁମାନଙ୍କୁ ତୁମେ କର୍ମଚାରୀ ରୂପେ ନିଯୁକ୍ତ କରିବ ସେମାନଙ୍କ ମଧ୍ୟରେ ସେ ବ୍ୟକ୍ତି ଉତ୍କୃଷ୍ଟ ହେବ ଯେ ବଳିଷ୍ଠ [୧] ଓ ବିଶ୍ୱସ୍ତ ।"

قَالَتْ اِحْدٰىهُمَا یٰۤاَبَتِ اسْتَاْجِرْهُ ۫ اِنَّ خَیْرَ مَنِ اسْتَاْجَرْتَ الْقَوِیُّ الْاَمِیْنُ ﴿۲۷﴾

୨୮. ଏହାପରେ ସେ (ଅର୍ଥାତ୍ ତାଙ୍କ ପିତା ମୁସାଙ୍କୁ) କହିଲେ, "ମୁଁ ମୋର ଏହି ଦୁଇଗୋଟି କନ୍ୟା ମଧ୍ୟରୁ ଜଣଙ୍କର ତୁମ ସହିତ (ଏହି ସର୍ତ୍ତରେ) ବିବାହ କରାଇବାକୁ ଇଚ୍ଛା କରୁଅଛି ଯେ ତୁମେ ଆଠ ବର୍ଷ ପର୍ଯ୍ୟନ୍ତ ମୋର ସେବା କରିବ, ସୁତରାଂ ଯଦି ତୁମେ (ଆଠ ବର୍ଷ ପରିବର୍ତ୍ତେ) ଦଶ ଅଙ୍କରେ ନିଜ ପ୍ରତିଶ୍ରୁତି ପୂରଣ କରିବ, ତେବେ ଏହା ତୁମର ଅନୁଗ୍ରହ ହେବ ; ଏବଂ ମୁଁ ତୁମକୁ ଭାରାକ୍ରାନ୍ତ କରିବା ଇଚ୍ଛା କରୁନାହିଁ ; ଯଦି ଅଲ୍ଲାହ ଇଚ୍ଛା କରିବେ ତେବେ ତୁମେ ମୋତେ ସଦାଚାରୀମାନଙ୍କ ମଧ୍ୟରେ ପାଇବ ।"

قَالَ اِنِّیْۤ اُرِیْدُ اَنْ اُنْكِحَكَ اِحْدَى ابْنَتَیَّ هٰتَیْنِ عَلٰۤى اَنْ تَاْجُرَنِیْ ثَمٰنِیَ حِجَجٍ ۚ فَاِنْ اَتْمَمْتَ عَشْرًا فَمِنْ عِنْدِكَ ۚ وَ مَاۤ اُرِیْدُ اَنْ اَشُقَّ عَلَیْكَ ؕ سَتَجِدُنِیْۤ اِنْ شَآءَ اللّٰهُ مِنَ الصّٰلِحِیْنَ ﴿۲۸﴾

---

୧. ସେ ବାଳିକାମାନେ ଅପରିଚିତ ଥାଇ ମଧ୍ୟ କାହିଁକି ହଜରତ ମୁସାଙ୍କର ପ୍ରଶଂସା କଲେ ବୋଲି ମନରେ ପ୍ରଶ୍ନ ଉଠୁଛି । ତା'ର ଉତ୍ତର ହେଉଛି– ଅନେକ ଚରାଳୀଙ୍କୁ ହଟେଇ ଝରଣାରୁ ପ୍ରଥମେ ପଶୁମାନଙ୍କୁ ଜଳପାନ କରାଇବା ବଳିଷ୍ଠ ବ୍ୟକ୍ତିଙ୍କର କାର୍ଯ୍ୟ । ପୁଣି ଜଳପାନ କରାଇବା ପରେ ଅନ୍ୟ ଦିଗକୁ ଯାଇ ଛାୟାରେ ବସିବା ବା ବାଳିକାମାନଙ୍କଠାରୁ ଧନ୍ୟବାଦ ଅର୍ପଣ ଆଶା ନ କରିବା ଜଣେ ସଙ୍କୋଚ ଓ ସଦାଚାରୀ ବ୍ୟକ୍ତିଙ୍କର ହିଁ କାର୍ଯ୍ୟ ହୋଇପାରେ । ଏ ଉଭୟ ବିଷୟକୁ ବିଚାର କରି ସେ ଦୁହେଁ ନିଷ୍ପତ୍ତି କରିଥିଲେ ଯେ ସେହି ବ୍ୟକ୍ତି ନିଶ୍ଚିତ ରୂପେ ସଙ୍କୋଚ ଓ ସଦାଚାରୀ ।

୨୯. (ଏହାପରେ ମୁସା) କହିଲେ, "ଏ ବିଷୟ ଆମ୍ଭ ଓ ତୁମ ମଧ୍ୟରେ ନିର୍ଦ୍ଧାରିତ ହେଲା ; ଏ ଦୁଇ ଅବଧି ମଧ୍ୟରୁ ଯାହାକୁ ମଧ୍ୟ ଆମ୍ଭେ ପୂରଣ କରିବୁ, ସେଥିସକାଶେ ଆମ୍ଭ ପ୍ରତି କୌଣସି ଦୋଷାରୋପ କରାଯିବ ନାହିଁ ; ଏବଂ ଯାହାକିଛି ଆମ୍ଭେ କହୁଅଛୁ ଅଲ୍ଲାହ ତାହାର ସାକ୍ଷୀ ଅଟନ୍ତି ।"

قَالَ ذٰلِكَ بَيْنِيْ وَبَيْنَكَ ۭ اَيَّمَا الْاَجَلَيْنِ قَضَيْتُ فَلَا عُدْوَانَ عَلَيَّ ۭ وَاللّٰهُ عَلٰي مَا نَقُوْلُ وَكِيْلٌ ۝٢٩ ع

ରୁ:୪

୩୦. ଯେତେବେଳେ ମୁସା ନିର୍ଦ୍ଧାରିତ ସମୟ ପୂରଣ କଲେ ଓ ନିଜ ପରିବାର (ଲୋକ) ସହିତ ଯାତ୍ରା କଲେ, ସେତେବେଳେ ସେ ତୁର ପର୍ବତ ଆଡୁ ଏକ ଅଗ୍ନି [୧] ଦେଖିଲେ ଓ ନିଜ ପରିବାର ଲୋକଙ୍କୁ କହିଲେ, "ତୁମେମାନେ ଏଠାରେ ଅପେକ୍ଷା କର ; ଆମ୍ଭେ ଏକ ଅଗ୍ନି ଦେଖିଅଛୁ ; ସମ୍ଭବତଃ ଆମ୍ଭେ ସେଠାରୁ ତୁମମାନଙ୍କ ସକାଶେ କୌଣସି (ଜରୁରି) ସମାଚାର ଆଣିବୁ ବା ଜଳନ୍ତା ଅଙ୍ଗାର ଆଣିବୁ ତାହାହେଲେ ତୁମେମାନେ ନିଜକୁ ସେକି ପାରିବ ।"

فَلَمَّا قَضٰى مُوْسَى الْاَجَلَ وَسَارَ بِاَهْلِهٖٓ اٰنَسَ مِنْ جَانِبِ الطُّوْرِ نَارًا ۚ قَالَ لِاَهْلِهِ امْكُثُوْٓا اِنِّىْٓ اٰنَسْتُ نَارًا لَّعَلِّيْٓ اٰتِيْكُمْ مِّنْهَا بِخَبَرٍ اَوْ جَذْوَةٍ مِّنَ النَّارِ لَعَلَّكُمْ تَصْطَلُوْنَ ۝٣٠

୩୧. ଏହାପରେ ଯେତେବେଳେ ସେ ତାହା ନିକଟରେ ପହଞ୍ଚିଲେ, ସେତେବେଳେ ସେହି ପବିତ୍ର ସ୍ଥାନର ଏକ ପବିତ୍ର ଭାଗରେ [୨] ଥିବା ଏକ ବୃକ୍ଷ ନିକଟରୁ ତାହାଙ୍କୁ (ଉଚ୍ଚ ସ୍ୱରରେ) କୁହାଗଲା, "ହେ ମୁସା ! ବାସ୍ତବିକ ଆମ୍ଭେ ହିଁ ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହ ।"

فَلَمَّآ اَتٰىهَا نُوْدِيَ مِنْ شَاطِئِ الْوَادِ الْاَيْمَنِ فِي الْبُقْعَةِ الْمُبٰرَكَةِ مِنَ الشَّجَرَةِ اَنْ يّٰمُوْسٰٓى اِنِّىْٓ اَنَا اللّٰهُ رَبُّ الْعٰلَمِيْنَ ۝٣١

୩୨. "ଏବଂ ତୁମେ ନିଜର ଲାଠି ନିକ୍ଷେପ କର ;" ସୁତରାଂ ଯେତେବେଳେ ସେ ଏହାକୁ ଏକ କ୍ଷୁଦ୍ର ସର୍ପ [୩] ସଦୃଶ ଚଳମାନ ହେଉଥିବାର ଦେଖିଲେ ସେ ବୁଲିପଡ଼ି ପଳାୟନ କଲେ ଏବଂ ପଛକୁ ଚାହିଁଲେ ନାହିଁ ; (ସେତେବେଳେ ତାହାଙ୍କୁ କୁହାଗଲା), "ହେ ମୁସା ! ଅଗ୍ରସର ହୁଅ ଓ ଭୟଭୀତ ହୁଅ ନାହିଁ ; ତୁମେ ନିଶ୍ଚୟ ସୁରକ୍ଷିତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।"

وَاَنْ اَلْقِ عَصَاكَ ۭ فَلَمَّا رَاٰهَا تَهْتَزُّ كَاَنَّهَا جَاۗنٌّ وَّلّٰى مُدْبِرًا وَّلَمْ يُعَقِّبْ ۭ يٰمُوْسٰٓي اَقْبِلْ وَلَا تَخَفْ ۣ اِنَّكَ مِنَ الْاٰمِنِيْنَ ۝٣٢

୩୩. "(ଏବଂ) ନିଜ ହସ୍ତକୁ ବକ୍ଷ ସ୍ଥଳରେ ଥିବା ପରିଧାନ ମଧ୍ୟରେ ଭର୍ତ୍ତିକର; ତାହା ବ୍ୟାଧିଗ୍ରସ୍ତ ନ ହୋଇ ଶୁଭ୍ର ହୋଇ ବାହାରିବ ଏବଂ ଭୟ ଯୋଗୁଁ ନିଜ ବାହୁକୁ (ଶରୀର ସହିତ)

اُسْلُكْ يَدَكَ فِيْ جَيْبِكَ تَخْرُجْ بَيْضَاۗءَ مِنْ غَيْرِ سُوْۗءٍ ۡ وَّاضْمُمْ اِلَيْكَ جَنَاحَكَ مِنَ الرَّهْبِ فَذٰنِكَ بُرْهَانٰنِ

୧. ୨୭:୮ ଦ୍ରଷ୍ଟବ୍ୟ ।

୨. 'ଅଏମନ୍'ର ଗୋଟିଏ ଅର୍ଥ କଲ୍ୟାଣକାରୀ । ଏହାର ଅଭିପ୍ରାୟ ହେଉଛି : ସେହି ଉପତ୍ୟକା ଯେପରି କଲ୍ୟାଣକାରୀ ଥିଲା ସେହି ବୃକ୍ଷର ପାର୍ଶ୍ୱବର୍ତ୍ତୀ ଭୂମି ମଧ୍ୟ ସେହିପରି କଲ୍ୟାଣକାରୀ ଥିଲା । ତାହା ଏପରି ଭୂମି ଯେଉଁଠାରୁ ଅଲ୍ଲାହଙ୍କର ସ୍ୱର ଶୁଣାଯାଇ ଥିଲା ଓ ସେଠାରେ ଅଲ୍ଲାହଙ୍କ ସୂକ୍ଷ୍ମ ଜ୍ୟୋତିକୁ ହଜରତ ମୁସା ଅବଲୋକନ କରିଥିଲେ ।

୩. ୨୭:୧୦ ଦ୍ରଷ୍ଟବ୍ୟ ।

ଟାପିଧର ;" ଏହି ଦୁଇଗୋଟି ନିଦର୍ଶନ (ଅନ୍ୟାନ୍ୟ ନିଦର୍ଶନ ସମେତ) ଫିରଔନ ଓ ତାହାର ପାରିଷଦମାନଙ୍କ ସକାଶେ ତୁମ୍ଭ ପାଳନକର୍ତ୍ତାଙ୍କ ତରଫରୁ ପ୍ରେରିତ ହୋଇଅଛି ; କାରଣ ସେମାନେ (ଏକ) ଅମାନ୍ୟକାରୀ ସମ୍ପ୍ରଦାୟ ।

مِنْ رَّبِّكَ إِلَىٰ فِرْعَوْنَ وَمَلَإِيْهِ ۚ إِنَّهُمْ كَانُوْا قَوْمًا فٰسِقِيْنَ ۝

୩୪. (ମୁସା) କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଆମ୍ଭେ ଫିରଔନ ସମ୍ପ୍ରଦାୟର ଜଣେ ବ୍ୟକ୍ତିଙ୍କୁ ହତ୍ୟା କରିଅଛୁ ; ତେଣୁ ଆମ୍ଭେ ଭୟ କରୁଅଛୁ ଯେ ସେମାନେ ଆମ୍ଭଙ୍କୁ ହତ୍ୟା କରିପାରନ୍ତି (ଏବଂ ତୁମ୍ଭର ବାର୍ତ୍ତା [୧] ସେମାନଙ୍କ ନିକଟରେ ପହଞ୍ଚି ପାରିବ ନାହିଁ) ।"

قَالَ رَبِّ إِنِّيْ قَتَلْتُ مِنْهُمْ نَفْسًا فَأَخَافُ أَنْ يَّقْتُلُوْنِ ۝

୩୫. "ଏବଂ ଆମ୍ଭର ଭାଇ ହାରୁନ କଥା କହିବାରେ ଆମ୍ଭ ଅପେକ୍ଷା ଅଧିକ ଧୁରନ୍ଧର ଅଟେ ; ସୁତରାଂ ତାହାଙ୍କୁ ଆମ୍ଭ ସହିତ ସାହାଯ୍ୟକାରୀ ଭାବରେ ପ୍ରେରଣ କର ; ଯଦ୍ଦ୍ୱାରାକି ସେ ଆମ୍ଭଙ୍କୁ ସମର୍ଥନ କରିବ ; ଆମ୍ଭେ ଭୟ କରୁଅଛୁ ଯେ ସେମାନେ ଆମ୍ଭଙ୍କୁ ମିଥ୍ୟାବାଦୀ ବୋଲି କହି ନ ଦିଅନ୍ତୁ ।"

وَأَخِيْ هٰرُوْنُ هُوَ أَفْصَحُ مِنِّيْ لِسَانًا فَأَرْسِلْهُ مَعِيَ رِدْءًا يُّصَدِّقُنِيْٓ ۖ إِنِّيْٓ أَخَافُ أَنْ يُّكَذِّبُوْنِ ۝

୩୬. (ଅଲ୍ଲାହ୍) କହିଲେ, "ଆମ୍ଭେ ତୁମ୍ଭର ଭାଇ ସହିତ ତୁମ୍ଭ ବାହୁକୁ ଦୃଢ଼ କରିବୁ ଏବଂ ତୁମ୍ଭ ଦୁହିଁଙ୍କ ବିଜୟଲାଭ ନିମନ୍ତେ (ଅନୁକୂଳ) ଅବସ୍ଥା ସୃଷ୍ଟି କରିବୁ ; ସୁତରାଂ ସେମାନେ ତୁମ୍ଭ ନିକଟରେ ପହଞ୍ଚି ପାରିବେ ନାହିଁ ; ଏବଂ ତୁମ୍ଭେ ଦୁହେଁ ତଥା ଯେଉଁମାନେ ତୁମ୍ଭର ଅନୁଗାମୀ ହେବେ ସେମାନେ ଆମ୍ଭ ନିଦର୍ଶନ ବଳରେ ବିଜୟୀ ହେବେ ।"

قَالَ سَنَشُدُّ عَضُدَكَ بِأَخِيْكَ وَنَجْعَلُ لَكُمَا سُلْطٰنًا فَلَا يَصِلُوْنَ إِلَيْكُمَا ۚ بِاٰيٰتِنَآ ۚ أَنْتُمَا وَمَنِ اتَّبَعَكُمَا الْغٰلِبُوْنَ ۝

୩୭. ସୁତରାଂ ଯେତେବେଳେ ମୁସା ଆମ୍ଭର ସୁସ୍ପଷ୍ଟ ନିଦର୍ଶନ ସହିତ ଆସିଲେ ସେତେବେଳେ ସେମାନେ (ଅର୍ଥାତ୍ ଫିରଔନର ଲୋକମାନେ) କହିଲେ, "ଏହା ଏକ ଗଢ଼ା ଯାଇଥିବା କୁହୁକ ଅଟେ ; ଆମେମାନେ ନିଜ ପୂର୍ବ ପୁରୁଷମାନଙ୍କ ଠାରୁ ଏପରି କଥା କେବେହେଁ ଶୁଣିନାହୁଁ ।"

فَلَمَّا جَآءَهُمْ مُّوْسٰى بِاٰيٰتِنَا بَيِّنٰتٍ قَالُوْا مَا هٰذَآ إِلَّا سِحْرٌ مُّفْتَرًى وَّمَا سَمِعْنَا بِهٰذَا فِيْٓ اٰبَآئِنَا الْأَوَّلِيْنَ ۝

୩୮. ଏବଂ ମୁସା କହିଲେ, "ଆମ୍ଭର ପାଳନକର୍ତ୍ତା ସେହି ବ୍ୟକ୍ତିଙ୍କୁ ଭଲ ଭାବରେ ଜାଣନ୍ତି ଯେ ତାହାଙ୍କ ତରଫରୁ ଉପଦେଶ ଆଣନ୍ତି ଏବଂ ତାହାଙ୍କୁ ମଧ୍ୟ (ଜାଣନ୍ତି) ଯାହାର ପରିଣାମ ଉତ୍ତମ ହେବ ; ବାସ୍ତବିକ ଅତ୍ୟାଚାରୀମାନେ କଦାପି କୃତକାର୍ଯ୍ୟ ହୁଅନ୍ତି ନାହିଁ ।"

وَقَالَ مُوْسٰى رَبِّيْٓ أَعْلَمُ بِمَنْ جَآءَ بِالْهُدٰى مِنْ عِنْدِهٖ وَمَنْ تَكُوْنُ لَهٗ عَاقِبَةُ الدَّارِ ۚ إِنَّهٗ لَا يُفْلِحُ الظّٰلِمُوْنَ ۝

୩୯. ଏବଂ ଫିରଔନ କହିଲା, "ହେ ପାରିଷଦମାନେ ! ମୋ ବ୍ୟତୀତ ତୁମ୍ଭମାନଙ୍କର ଅନ୍ୟ କେହି ଉପାସ୍ୟ ଥିବାର ମୋତେ ଜଣାନାହିଁ ; ସୁତରାଂ ହେ ହାମାନ ! ମୋ ପାଇଁ ଓଦା

وَقَالَ فِرْعَوْنُ يٰٓأَيُّهَا الْمَلَأُ مَا عَلِمْتُ لَكُمْ مِّنْ إِلٰهٍ غَيْرِيْ ۚ فَأَوْقِدْ لِيْ يٰهَامٰنُ عَلَى الطِّيْنِ فَاجْعَلْ

[୧] ନିଜ ଜୀବନ ପ୍ରତି ତାଙ୍କର ଭୟ ନ ଥିଲା ବରଂ ବାର୍ତ୍ତା ନ ପହଞ୍ଚିବାର ଭୟ ଥିଲା ।

ମାଟିରେ ଅଗ୍ନି ସଂଯୋଗ କର (ଅର୍ଥାତ୍ ଇଟା ତିଆରି କର) ତା'ପରେ ମୋ ପାଇଁ ଏକ (ଅତି ଉଚ୍ଚ) ଦୁର୍ଗ [୧] ନିର୍ମାଣ କର ; ସମ୍ଭବତଃ ତାହା ଉପରେ ଆରୋହଣ କରି ମୁଁ ମୁସାଙ୍କ ପ୍ରଭୁଙ୍କୁ ଅନ୍ବେଷଣ କରି ପାରିବି ; ଏବଂ ମୁଁ ତାହାଙ୍କୁ ମିଥ୍ୟାବାଦୀ ମନେ କରୁଅଛି ।"

لِيْ صَرْحًا لَّعَلِّيْٓ اَطَّلِعُ اِلٰٓى اِلٰهِ مُوْسٰى ۙ وَاِنِّيْ لَاَظُنُّهٗ مِنَ الْكٰذِبِيْنَ ﴿٣٩﴾

୪୦. ଏବଂ ସେ ଓ ତା'ର ସୈନ୍ୟବାହିନୀ ଯୁକ୍ତିସଙ୍ଗତ କାରଣ ବିନା ଦେଶରେ ସଗର୍ବେ କାର୍ଯ୍ୟ କରିଥିଲେ ; ଏବଂ ସେମାନେ ଭାବିଲେ ଯେ ସେମାନଙ୍କୁ ଆମ ନିକଟକୁ ଫେରାଇ ଅଣାଯିବ ନାହିଁ ।

وَاسْتَكْبَرَ هُوَ وَجُنُوْدُهٗ فِى الْاَرْضِ بِغَيْرِ الْحَقِّ وَظَنُّوْٓا اَنَّهُمْ اِلَيْنَا لَا يُرْجَعُوْنَ ﴿٤٠﴾

୪୧. ତେଣୁ ଆମେ ତାହାକୁ ଓ ତାହାର ସୈନ୍ୟବାହିନୀକୁ କବଳିତ କରି ସମୁଦ୍ରରେ [୨] ନିକ୍ଷେପ କରିଥିଲୁ ; ସୁତରାଂ ଦେଖ ଯେ ଅତ୍ୟାଚାରୀମାନଙ୍କର ପରିଣାମ କିପରି ହେଲା ।

فَاَخَذْنٰهُ وَجُنُوْدَهٗ فَنَبَذْنٰهُمْ فِى الْيَمِّ ۚ فَانْظُرْ كَيْفَ كَانَ عَاقِبَةُ الظّٰلِمِيْنَ ﴿٤١﴾

୪୨. ଏବଂ ଆମେ ସେମାନଙ୍କୁ ଦଳପତି କରିଥିଲୁ ଯେଉଁମାନେ (ଦଳପତି ହେବା ଯୋଗୁଁ ଗର୍ବର ବଶବର୍ତ୍ତୀ ହୋଇ) ଲୋକମାନଙ୍କୁ ନରକ ଆଡ଼କୁ ଡାକୁଥିଲେ ; ଏବଂ କୟାମତ ଦିନ ସେମାନଙ୍କୁ କୌଣସି ସାହାଯ୍ୟ କରାହେବ ନାହିଁ ।

وَجَعَلْنٰهُمْ اَىِٕمَّةً يَّدْعُوْنَ اِلَى النَّارِ ۚ وَيَوْمَ الْقِيٰمَةِ لَا يُنْصَرُوْنَ ﴿٤٢﴾

୪୩. ଏବଂ ଏହି ସଂସାରରେ ମଧ୍ୟ ଆମେ ସେମାନଙ୍କ ପ୍ରତି ଅଭିଶାପ ପ୍ରେରଣ କରିଥିଲୁ ; ଏବଂ କୟାମତ ଦିନ ମଧ୍ୟ ସେମାନେ ଦୁର୍ଦ୍ଦଶାଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବେ ।

وَاَتْبَعْنٰهُمْ فِيْ هٰذِهِ الدُّنْيَا لَعْنَةً ۚ وَيَوْمَ الْقِيٰمَةِ هُمْ مِّنَ الْمَقْبُوْحِيْنَ ﴿٤٣﴾ ع

ରୁ: ୪

୪୪. ଏବଂ ଆମେ ପୂର୍ବବର୍ତ୍ତୀ ସମ୍ପ୍ରଦାୟମାନଙ୍କୁ ଧ୍ୱଂସ କଲା ପରେ ଆମେ ମୁସାଙ୍କୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଥିଲୁ, ଯାହାର ଶିକ୍ଷା ଲୋକମାନଙ୍କୁ ଆଧ୍ୟାତ୍ମିକ ଦୃଷ୍ଟିଶକ୍ତି ପ୍ରଦାନ କରୁଥିଲା, ଓ ତାହା ସତ୍‌ପଥ ଓ କରୁଣାଦାୟକ ଥିଲା, ଏବଂ ଏଥି ସକାଶେ (ପ୍ରଦାନ କରାଯାଇଥିଲା) ଯେ ସେମାନେ ଶିକ୍ଷାଲାଭ କରନ୍ତୁ ।

وَلَقَدْ اٰتَيْنَا مُوْسَى الْكِتٰبَ مِنْۢ بَعْدِ مَآ اَهْلَكْنَا الْقُرُوْنَ الْاُوْلٰى بَصَآىِٕرَ لِلنَّاسِ وَهُدًى وَّرَحْمَةً لَّعَلَّهُمْ يَتَذَكَّرُوْنَ ﴿٤٤﴾

୧. ମିଶର ଲୋକମାନଙ୍କର ବିଶ୍ବାସ ଥିଲା ଯେ ଆକାଶୀୟ ଆତ୍ମା ଉଚ୍ଚ ସ୍ଥାନରେ ଅବତରଣ କରେ । ସେଥିପାଇଁ ସେମାନେ ଆଧ୍ୟାତ୍ମିକ କଳାକୌଶଳର ପ୍ରାପ୍ତି ନିମନ୍ତେ ଆକାଶଚୁମ୍ବୀ ପ୍ରାସାଦ ନିର୍ମାଣ କରୁଥିଲେ । ମିଶର ଦେଶର ସ୍ତୁପଗୁଡ଼ିକ ଏହି ବିଶ୍ବାସର ସ୍ମାରକ ।

୨. ମୂଳ ଶବ୍ଦ 'ୟମ୍ମ' ଅର୍ଥ : (କ) ନଦୀ (ଖ) ସମୁଦ୍ର । ଇତିହାସରୁ ଜଣାଯାଏ ଯେ ହଜରତ ମୁସା ଓ ଫିରଔନ ସେହି ସ୍ଥାନ ଅତିକ୍ରମ କରି ଯାଇଥିଲେ, ଯେଉଁ ସ୍ଥାନରେ ଲୋହିତ ସାଗର ସିନାଇ ନାମକ ପ୍ରାନ୍ତର ସହିତ ସଂଯୁକ୍ତ । ସୁତରାଂ ଆମେ ଏଠାରେ 'ୟମ୍ମ'ର ଅନୁବାଦ ସମୁଦ୍ର ରଖିଅଛୁ ।

وَمَا كُنْتَ بِجَانِبِ الْغَرْبِيِّ إِذْ قَضَيْنَآ إِلَىٰ مُوْسَى الْأَمْرَ وَمَا كُنْتَ مِنَ الشّٰهِدِيْنَ ﴿٤٥﴾

୪୫. ଏବଂ (ହେ ମହମ୍ମଦ ! ସେତେବେଳେ) ତୁମେ (ତୁର ପର୍ବତର) ପଶ୍ଚିମ ଦିଗରେ ନଥିଲ ଯେତେବେଳେ ଆମେ ମୁସାଙ୍କୁ (ଆଧ୍ୟାତ୍ମିକ ବାର୍ତ୍ତା ପ୍ରଚାର କରିବା) କାର୍ଯ୍ୟ[1] ସମର୍ପଣ କରିଥିଲୁ ଏବଂ (ସେତେବେଳେ) ତୁମେ ସାକ୍ଷୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ନଥିଲ ।

وَلٰكِنَّآ أَنْشَأْنَا قُرُوْنًا فَتَطَاوَلَ عَلَيْهِمُ الْعُمُرُ ۚ وَمَا كُنْتَ ثَاوِيًا فِيْٓ أَهْلِ مَدْيَنَ تَتْلُوْا عَلَيْهِمْ اٰيٰتِنَا ۙ وَلٰكِنَّا كُنَّا مُرْسِلِيْنَ ﴿٤٦﴾

୪୬. କିନ୍ତୁ ଆମେ (ମୁସାଙ୍କ ପରେ) ଅନେକ ସମ୍ପ୍ରଦାୟ ସୃଷ୍ଟି କରିଥିଲୁ ; ସୁତରାଂ ସେମାନଙ୍କର ପରମାୟୁ[2] ବୃଦ୍ଧି ହୋଇଥିଲା, (ଏବଂ ସେମାନେ ଭବିଷ୍ୟବାଣୀକୁ ପାଶୋରି ପକାଇଲେ) ; ଏବଂ ତୁମେ ମଦୟନବାସୀଙ୍କ[3] ସହିତ ରହୁ ନଥିଲ ଯେ ସେମାନଙ୍କ ସମ୍ମୁଖରେ ଆମର ନିଦର୍ଶନଗୁଡ଼ିକ ପଢ଼ି ଶୁଣାଇଥାନ୍ତ ; କିନ୍ତୁ ଆମେ ହିଁ ରସୁଲ[4] ପ୍ରେରଣକାରୀ ଅଟୁ ।

وَمَا كُنْتَ بِجَانِبِ الطُّوْرِ إِذْ نَادَيْنَا وَلٰكِنْ رَّحْمَةً مِّنْ رَّبِّكَ لِتُنْذِرَ قَوْمًا مَّآ أَتٰىهُمْ مِّنْ نَّذِيْرٍ مِّنْ قَبْلِكَ لَعَلَّهُمْ يَتَذَكَّرُوْنَ ﴿٤٧﴾

୪୭. ଏବଂ (ସେତେବେଳେ) ତୁମେ ତୁର ନିକଟରେ ନଥିଲ ଯେତେବେଳେ ଆମେ (ମୁସାଙ୍କୁ) ଆହ୍ୱାନ କରିଥିଲୁ ; କିନ୍ତୁ ଏସବୁ ତୁମର ପାଳନକର୍ତ୍ତାଙ୍କ ତରଫରୁ କରୁଣା ଅଟେ ଯେପରିକି ତୁମେ ସେହି ସମ୍ପ୍ରଦାୟକୁ ସଚେତନ କରାଇବ ଯେଉଁମାନଙ୍କ ନିକଟକୁ ତୁମ ପୂର୍ବରୁ କୌଣସି ସଚେତକ ଆସି ନଥିଲେ ଯଦ୍ୱାରା କି ସେମାନେ ଉପଦେଶ ପାଇଥା'ନ୍ତେ[5] ।

---

୧. ଏଠାରେ ହଜରତ ମହମ୍ମଦଙ୍କ ସମ୍ବନ୍ଧରେ ଯେଉଁ ଭବିଷ୍ୟବାଣୀରେ ବର୍ଣ୍ଣନା ରହିଅଛି ତା' ବିଷୟରେ ହଜରତ ମୁସାଙ୍କୁ ଜଣାଇ ଦିଆଯାଇଛି । ଏହି ଆୟତରେ ସେହି ବିଷୟ ପ୍ରତି ଇଙ୍ଗିତ କରାଯାଇଛି ଯେ 'ହେ ମହମ୍ମଦ ! ତୁମେ ତ ସେତେବେଳେ ନ ଥିଲ, ତେବେ ତୁମେ କିପରି ନିଜ ସମ୍ବନ୍ଧରେ ହଜରତ ମୁସାଙ୍କ ମାଧ୍ୟମରେ ଭବିଷ୍ୟବାଣୀ କରାଇନେଲ ?'

୨. ଅର୍ଥାତ୍ ହଜରତ ମୁସାଙ୍କ ଭବିଷ୍ୟବାଣୀ ଥିବା ସତ୍ତ୍ୱେ ଇହୁଦୀମାନଙ୍କର ପ୍ରତ୍ୟାଖ୍ୟାନ ଏଥିଯୋଗୁଁ ଯେ ସେମାନଙ୍କ ପରମାୟୁ ଦୀର୍ଘ ହୋଇଗଲା । ବସ୍ତୁତଃ ହଜରତ ମୁସାଙ୍କ ପରେ ଏକ ଦୀର୍ଘ ସମୟ ବିତି ଯାଇଛି; ଫଳରେ ଏମାନେ ଉକ୍ତ ଭବିଷ୍ୟବାଣୀକୁ ପାସୋରି ପକାଇଛନ୍ତି ।

୩. ହଜରତ ମୁସା ମଦୟନ ଆଡ଼କୁ ଦ୍ୱିତୀୟ ଥର ଯିବାବେଳକୁ ହଜରତ ମହମ୍ମଦଙ୍କ ବିଷୟରେ ଭବିଷ୍ୟବାଣୀ କରିଥିଲେ । ଏଥିଯୋଗୁଁ ପୁନର୍ବାର ମଦୟନ ବିଷୟରେ ବର୍ଣ୍ଣନା ଅଛି ।

୪. ଅର୍ଥାତ୍ ହଜରତ ମୁସାଙ୍କ ଧର୍ମଗ୍ରନ୍ଥରେ ହଜରତ ମହମ୍ମଦଙ୍କ ବିଷୟରେ ଭବିଷ୍ୟବାଣୀ ଅଛି । ତାଙ୍କ ଆବିର୍ଭାବର ବହୁ ପୂର୍ବରୁ ହଜରତ ମୁସା ଆସିଥିଲେ । ଅତଏବ ଏହା ପ୍ରମାଣ କରୁଅଛି ଯେ ଉକ୍ତ ଭବିଷ୍ୟବାଣୀଗୁଡ଼ିକ ଅଲ୍ଲାଙ୍କ ତରଫରୁ ହୋଇଛି, କାରଣ ତାଙ୍କ କହିବା ଅନୁସାରେ ହଜରତ ମୁସା ତାଙ୍କ ସମ୍ବନ୍ଧରେ ଏପରି ଭବିଷ୍ୟବାଣୀ କରିନାହାନ୍ତି କି ଯେତେବେଳେ ହଜରତ ମୁସା ମଦୟନ ଆଡ଼କୁ ଯାଇଥିଲେ ସେତେବେଳେ ହଜରତ ମହମ୍ମଦ ତାଙ୍କ ଗହଣରେ ନ ଥିଲେ । ସୁତରାଂ ହଜରତ ମହମ୍ମଦଙ୍କୁ ଯେଉଁ ନବିପଦ ପ୍ରାପ୍ତ ହୋଇଛି ତାହା କୌଣସି ଆପୋଷ ବୁଝାମଣା କାରଣରୁ ମିଳି ନାହିଁ, ବରଂ ଅଲ୍ଲାଙ୍କ ତରଫରୁ ମିଳିଛି । ବସ୍ତୁତଃ ଅଲ୍ଲା ହିଁ ରସୁଲମାନଙ୍କୁ ପ୍ରେରଣ କରିଥାଆନ୍ତି ।

୫. ଯଦ୍ୟପି ମକ୍କାବାସୀମାନେ ହଜରତ ଇବ୍ରାହିମଙ୍କ ବଂଶଧର ଥିଲେ କିନ୍ତୁ ସେ ବହୁ ଶତାବ୍ଦୀ ପୂର୍ବରୁ ଆସିଥିବାରୁ କୌଣସି ନୂତନ ନବି ଆବିର୍ଭାବ ହୋଇ ଅଲ୍ଲାଙ୍କ ଆଡ଼କୁ ସେମାନଙ୍କ ଧ୍ୟାନ ଆକର୍ଷଣ କରିବା ଆବଶ୍ୟକ ।

୪୮. ଏବଂ ଯଦି ଏପରି ଚିନ୍ତାଧାରା ନ ଥାନ୍ତା ଯେ ସେମାନଙ୍କର ସ୍ୱହସ୍ତକୃତ କର୍ମ ଯୋଗୁ ଯେତେବେଳେ କୌଣସି ବିପଦ ଆସିବ, ସେତେବେଳେ ସେମାନେ କହିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ କାହିଁକି ଆମମାନଙ୍କ ପ୍ରତି କୌଣସି ରସୁଲ ପ୍ରେରଣ କରି ନଥିଲ ଯଦ୍ୱାରା ଆମେମାନେ ତୁମ ନିଦର୍ଶନମାନଙ୍କର ଅନୁସରଣ କରିଥା'ନ୍ତୁ ଏବଂ ବିଶ୍ୱାସକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥା'ନ୍ତୁ ? (ତେବେ ସମ୍ଭବତଃ ଆମେ ତୁମଙ୍କୁ ରସୁଲ ରୂପେ ପ୍ରେରଣ କରି ନଥା'ନ୍ତୁ କିନ୍ତୁ ଅବିଶ୍ୱାସକାରୀମାନଙ୍କ ଯୁକ୍ତିକୁ ଖଣ୍ଡନ କରାଯିବା ଆବଶ୍ୟକ ଥିଲା ।)"

وَلَوْلَآ اَنْ تُصِيْبَهُمْ مُّصِيْبَةٌۢ بِمَا قَدَّمَتْ اَيْدِيْهِمْ فَيَقُوْلُوْا رَبَّنَا لَوْلَآ اَرْسَلْتَ اِلَيْنَا رَسُوْلًا فَنَتَّبِعَ اٰيٰتِكَ وَنَكُوْنَ مِنَ الْمُؤْمِنِيْنَ ﴿٤٨﴾

୪୯. ସୁତରାଂ ଯେତେବେଳେ ସେମାନଙ୍କ ନିକଟରେ ଆମ ତରଫରୁ ସତ୍ୟ ଉପସ୍ଥିତ ହେଲା ସେତେବେଳେ ସେମାନେ କହିଲେ, "କାହିଁକି ତାହାଙ୍କୁ (ଅର୍ଥାତ୍ ହଜରତ ମହମ୍ମଦଙ୍କୁ) ସେହିପରି ଶିକ୍ଷା ପ୍ରାପ୍ତ ହେଲା ନାହିଁ ଯେପରି (ହଜରତ) ମୁସାଙ୍କୁ ପ୍ରାପ୍ତ ହୋଇଥିଲା ?" କ'ଣ ସେମାନେ ଏଥି ପୂର୍ବରୁ ମୁସାଙ୍କ ଶିକ୍ଷାକୁ ପ୍ରତ୍ୟାଖ୍ୟାନ କରି ନ ଥିଲେ ? ସେମାନେ କହିଥିଲେ, "ଏ ଦୁହେଁ (ଅର୍ଥାତ୍ ମୁସା ଓ ହାରୁନ) ମସ୍ତବଡ଼ ଯାଦୁକର ଅଟନ୍ତି ଯେଉଁମାନେ ପରସ୍ପରକୁ ସାହାଯ୍ୟ କରୁଛନ୍ତି," ଏବଂ (ପୁନଶ୍ଚ) କହିଥିଲେ, "ଆମେମାନେ ଏମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କର ଦାବିକୁ ପ୍ରତ୍ୟାଖ୍ୟାନ କରୁଅଛୁ ।"

فَلَمَّا جَآءَهُمُ الْحَقُّ مِنْ عِنْدِنَا قَالُوْا لَوْلَآ اُوْتِيَ مِثْلَ مَآ اُوْتِيَ مُوْسٰىؕ اَوَلَمْ يَكْفُرُوْا بِمَآ اُوْتِيَ مُوْسٰى مِنْ قَبْلُۚ قَالُوْا سِحْرٰنِ تَظٰهَرَاۗ وَقَالُوْۤا اِنَّا بِكُلٍّ كٰفِرُوْنَ ﴿٤٩﴾

୫୦. ତୁମେ କୁହ, "(ଯଦି ମୁସା, ହାରୁନ ଓ ମହମ୍ମଦ ଏ ସମସ୍ତଙ୍କ ବାଣୀ ମିଥ୍ୟା ଅଟେ ତେବେ)ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ଅଲ୍ଲାହଙ୍କ ନିକଟରୁ ଏପରି ଏକ ଗ୍ରନ୍ଥ ଘେନି ଆସ ଯାହା ଏ ଦୁଇ ଗ୍ରନ୍ଥ (ଅର୍ଥାତ୍ ତୌରାତ ଓ କୋରାନ) ଅପେକ୍ଷା ଅଧିକ ଉପଦେଶଦାୟକ ହେବ, ତାହାହେଲେ ଆମେ ତାହାର ଅନୁସରଣ କରିବୁ ।"

قُلْ فَأْتُوْا بِكِتٰبٍ مِّنْ عِنْدِ اللّٰهِ هُوَ اَهْدٰى مِنْهُمَآ اَتَّبِعْهُ اِنْ كُنْتُمْ صٰدِقِيْنَ ﴿٥٠﴾

୫୧. କିନ୍ତୁ ଯଦି ସେମାନେ କୌଣସି ଉତ୍ତର ନ ଦିଅନ୍ତି, ତେବେ ଜାଣ ଯେ ସେମାନେ କେବଳ ନିଜ ପ୍ରବୃତ୍ତିର ଅନୁସରଣ କରୁଛନ୍ତି ; ଏବଂ ତାହାଠାରୁ କିଏ ଅଧିକ ପଥଭ୍ରଷ୍ଟ ଅଟେ ଯିଏ ଅଲ୍ଲାହଙ୍କ ସତ୍‌ପଥକୁ ପରିତ୍ୟାଗ କରି ନିଜ କୁପ୍ରବୃତ୍ତିର ଅନୁସରଣ କରେ ? ଅଲ୍ଲାହ ନିଶ୍ଚିତ ରୂପେ ଅତ୍ୟାଚାରୀ ସମ୍ପ୍ରଦାୟକୁ ସଫଳତାର ପଥ ପ୍ରଦର୍ଶନ କରାନ୍ତି ନାହିଁ ।

فَاِنْ لَّمْ يَسْتَجِيْبُوْا لَكَ فَاعْلَمْ اَنَّمَا يَتَّبِعُوْنَ اَهْوَآءَهُمْؕ وَمَنْ اَضَلُّ مِمَّنِ اتَّبَعَ هَوٰىهُ بِغَيْرِ هُدًى مِّنَ اللّٰهِؕ اِنَّ اللّٰهَ لَا يَهْدِى الْقَوْمَ الظّٰلِمِيْنَ ﴿٥١﴾

ରୁ:୬

୫୨. ଏବଂ ଆମେ ସେମାନଙ୍କ ସକାଶେ ନିରନ୍ତର ଭାବରେ ଓହି ପ୍ରେରଣ କରିଥିଲୁ ଯେପରିକି ସେମାନେ ଶିକ୍ଷା ଲାଭ କରନ୍ତୁ ।

وَلَقَدْ وَصَّلْنَا لَهُمُ الْقَوْلَ لَعَلَّهُمْ يَتَذَكَّرُونَ ﴿٥٢﴾

୫୩. ଯେଉଁମାନଙ୍କୁ ଆମେ ଏହା (ଅର୍ଥାତ୍ କୋରାନ ଗ୍ରନ୍ଥ) ପୂର୍ବରୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଥିଲୁ, ସେମାନେ ଏହା (ଅର୍ଥାତ୍ କୋରାନ ଗ୍ରନ୍ଥ) ଉପରେ (ଅନ୍ତରରେ) ବିଶ୍ୱାସ କରନ୍ତି [୧] ।

الَّذِينَ آتَيْنَاهُمُ الْكِتَابَ مِنْ قَبْلِهِ هُمْ بِهِ يُؤْمِنُونَ ﴿٥٣﴾

୫୪. ଏବଂ ଯେତେବେଳେ ସେମାନଙ୍କ ନିକଟରେ ଏହା ପାଠ କରାଯାଏ, ସେତେବେଳେ ସେମାନେ କହନ୍ତି, "ଆମେମାନେ ଏହା ଉପରେ ବିଶ୍ୱାସ କରୁଅଛୁ ; ଏହା ବାସ୍ତବିକ ଆମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ସତ୍ୟ ବାଣୀ ଅଟେ ; ଆମେମାନେ ଏହା ପୂର୍ବରୁ ମଧ୍ୟ ଆତ୍ମ-ସମର୍ପଣକାରୀ (ଅର୍ଥାତ୍ ମୁସଲମାନ) ଥିଲୁ ।"

وَإِذَا يُتْلَىٰ عَلَيْهِمْ قَالُوا آمَنَّا بِهِ إِنَّهُ الْحَقُّ مِنْ رَبِّنَا إِنَّا كُنَّا مِنْ قَبْلِهِ مُسْلِمِينَ ﴿٥٤﴾

୫୫. ସେମାନଙ୍କୁ ସେମାନଙ୍କ ଧୈର୍ଯ୍ୟ ହେତୁ ଦୁଇଥର [୨] ପ୍ରତିଦାନ ମିଳିବ ; ଏବଂ ସେମାନେ ପୁଣ୍ୟ ଦ୍ୱାରା ପାପର ମୁକାବିଲା କରନ୍ତି, ଏବଂ ଯାହା କିଛି ଆମେ ସେମାନଙ୍କୁ ପ୍ରଦାନ କରିଅଛୁ ତହିଁରୁ ବ୍ୟୟ କରନ୍ତି ।

أُولَٰئِكَ يُؤْتَوْنَ أَجْرَهُمْ مَرَّتَيْنِ بِمَا صَبَرُوا وَيَدْرَءُونَ بِالْحَسَنَةِ السَّيِّئَةَ وَمِمَّا رَزَقْنَاهُمْ يُنْفِقُونَ ﴿٥٥﴾

୫୬. ଏବଂ (ଇହୁଦୀମାନଙ୍କ ମଧ୍ୟରୁ ଯେଉଁମାନେ ମୁସଲମାନ ହୋଇଛନ୍ତି) ଯେତେବେଳେ (ସେମାନେ) କୌଣସି ଅଯଥା ବିଷୟ ଶୁଣନ୍ତି, ସେତେବେଳେ ତହିଁରୁ ବିମୁଖ ହୁଅନ୍ତି ଓ କହନ୍ତି, "(ହେ ଅବିଶ୍ୱାସକାରୀମାନେ !) ଆମମାନଙ୍କର କର୍ମ ଆମମାନଙ୍କ ସକାଶେ ଓ ତୁମମାନଙ୍କର କର୍ମ ତୁମମାନଙ୍କ ସକାଶେ; ତୁମମାନଙ୍କର ମଙ୍ଗଳ ହେଉ (ଅର୍ଥାତ୍ ଅଲ୍ଲାହ ତୁମମାନଙ୍କୁ ବିଶ୍ୱାସ କରିବାରେ ସହାୟତା କରନ୍ତୁ) ; ଆମେମାନେ ଅଜ୍ଞ ବ୍ୟକ୍ତିମାନଙ୍କ ସହିତ ସମ୍ପର୍କ ରଖିବା ପସନ୍ଦ କରୁନାହୁଁ ।"

وَإِذَا سَمِعُوا اللَّغْوَ أَعْرَضُوا عَنْهُ وَقَالُوا لَنَا أَعْمَالُنَا وَلَكُمْ أَعْمَالُكُمْ سَلَامٌ عَلَيْكُمْ لَا نَبْتَغِي الْجَاهِلِينَ ﴿٥٦﴾

୫୭. ବାସ୍ତବିକ ତୁମେ ଯାହାକୁ ପସନ୍ଦ କର ତାହାକୁ ସତ୍‌ପଥ ପ୍ରଦର୍ଶନ କରାଇ ପାରିବ ନାହିଁ, କିନ୍ତୁ ଅଲ୍ଲାହ ଯାହାକୁ ପସନ୍ଦ କରନ୍ତି ତାହାକୁ ସତ୍‌ପଥ [୩] ପ୍ରଦର୍ଶନ କରାନ୍ତି ; ଓ ସତ୍‌ପଥଗାମୀମାନଙ୍କୁ ଭଲ ରୂପେ ଜାଣନ୍ତି ।

إِنَّكَ لَا تَهْدِي مَنْ أَحْبَبْتَ وَلَٰكِنَّ اللَّهَ يَهْدِي مَنْ يَشَاءُ ۚ وَهُوَ أَعْلَمُ بِالْمُهْتَدِينَ ﴿٥٧﴾

---

୧. ଅର୍ଥାତ୍ ସେମାନେ ତୌରାତ ବର୍ଣ୍ଣିତ ପୂର୍ବବର୍ତ୍ତୀ ଶିକ୍ଷା ଉପରେ ସୁଦୃଢ଼ ରହିଲେ ଏବଂ ପବିତ୍ର କୋରାନ ଉପରେ ମଧ୍ୟ ବିଶ୍ୱାସ ସ୍ଥାପନ କଲେ ।

୨. ଅର୍ଥାତ୍ ଉଭୟ ଇହଲୋକରେ ଓ ପରଲୋକରେ ।

୩. ବଳପୂର୍ବକ କାହାରି ଉପରେ ଉପଦେଶ ଲଦି ଦେଇ ହେବ ନାହିଁ । ଯେ ଉପଦେଶ ଗ୍ରହଣ କରେ ତାକୁ ହିଁ ଉପଦେଶ ଦିଆଯାଏ । ଯେହେତୁ ଅଲ୍ଲାହ ଅନ୍ତରର କଥା ଜାଣନ୍ତି, ତେଣୁ ନିଜ ପାଖରେ ଉପଦେଶ ଦାନ କ୍ଷମତା ରଖିଛନ୍ତି ।

୫୮. ଏବଂ ସେମାନେ କହନ୍ତି, "ଯେଉଁ ଉପଦେଶ ତୁମ ପ୍ରତି ଅବତୀର୍ଣ୍ଣ ହେଉଅଛି ଯଦି ଆମେମାନେ ତାହାର ଅନୁସରଣ କରିବୁ, ତେବେ ନିଜ ଦେଶରୁ ଉତ୍ପାଟିତ [୧]ହେବୁ ;" (ତୁମେ କୁହ), "କ'ଣ ଆମେ ସେମାନଙ୍କୁ ସଂରକ୍ଷିତ ଓ ଶାନ୍ତିଦାୟକ ସ୍ଥାନରେ ଅବସ୍ଥାପିତ କରିନାହୁଁ ଯେଉଁଠାକୁ ସମସ୍ତ ପ୍ରକାର ଫଳ ଅଣାଯାଏ ?" ଏହା ଆମ ତରଫରୁ ଏକ ଅନୁଦାନ ସ୍ୱରୂପ, କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଜାଣନ୍ତି ନାହିଁ ।

وَقَالُوْٓا اِنْ نَّتَّبِعِ الْهُدٰى مَعَكَ نُتَخَطَّفْ مِنْ اَرْضِنَا ۭ اَوَلَمْ نُمَكِّنْ لَّهُمْ حَرَمًا اٰمِنًا يُّجْبٰٓى اِلَيْهِ ثَمَرٰتُ كُلِّ شَيْءٍ رِّزْقًا مِّنْ لَّدُنَّا وَلٰكِنَّ اَكْثَرَهُمْ لَا يَعْلَمُوْنَ ۝٥٨

୫୯. ଏବଂ ଆମେ ଅନେକ ବସତିକୁ ଧ୍ୱଂସ କରିଅଛୁ, ଯେଉଁମାନେ ନିଜର ଜୀବନଧାରଣ ସାମଗ୍ରୀ ଯୋଗୁଁ ଅହଙ୍କାରୀ ହୋଇଯାଇଥିଲେ ; (ସୁତରାଂ ଦେଖ) ଏସବୁ ସେମାନଙ୍କର ବସତି ଅଟେ ଯେଉଁଠାରେ ସେମାନଙ୍କ ଅନ୍ତେ କେହି ରହିଲେ ନାହିଁ ; ଏବଂ ଆମେ ହିଁ ସେମାନଙ୍କର ଉତ୍ତରାଧିକାରୀ ହୋଇଥିଲୁ ।

وَكَمْ اَهْلَكْنَا مِنْ قَرْيَةٍۢ بَطِرَتْ مَعِيْشَتَهَا ۚ فَتِلْكَ مَسٰكِنُهُمْ لَمْ تُسْكَنْ مِّنْۢ بَعْدِهِمْ اِلَّا قَلِيْلًا ۭ وَكُنَّا نَحْنُ الْوٰرِثِيْنَ ۝٥٩

୬୦. ଏବଂ ତୁମର ପାଳନକର୍ତ୍ତା ସେପର୍ଯ୍ୟନ୍ତ କୌଣସି ଦେଶକୁ ଧ୍ୱଂସ କରନ୍ତି ନାହିଁ ଯେପର୍ଯ୍ୟନ୍ତ ତାହାର କେନ୍ଦ୍ରସ୍ଥଳରେ ଏପରି ରସୁଲ ପ୍ରେରଣ କରି ନଥାନ୍ତି ଯେ କି ସେମାନଙ୍କ ନିକଟରେ ଆମର ନିଦର୍ଶନଗୁଡ଼ିକୁ ପଢ଼ି ଶୁଣାଇଥା'ନ୍ତି (କାରଣ ଏହା ନ୍ୟାୟର ପରିପନ୍ଥୀ), ଏବଂ କୌଣସି ଦେଶର ବାସିନ୍ଦାମାନେ ଅତ୍ୟାଚାରୀ ନ ହେବା ପର୍ଯ୍ୟନ୍ତ ଆମେ ସେଗୁଡ଼ିକୁ କଦାପି ଧ୍ୱଂସ କରୁନାହିଁ ।

وَمَا كَانَ رَبُّكَ مُهْلِكَ الْقُرٰى حَتّٰى يَبْعَثَ فِيْٓ اُمِّهَا رَسُوْلًا يَّتْلُوْا عَلَيْهِمْ اٰيٰتِنَا ۚ وَمَا كُنَّا مُهْلِكِي الْقُرٰٓى اِلَّا وَاَهْلُهَا ظٰلِمُوْنَ ۝٦٠

୬୧. ଏବଂ ଯାହାକିଛି ତୁମମାନଙ୍କୁ ପ୍ରଦାନ କରାଯାଇଛି ତାହା କେବଳ ସାଂସାରିକ ଜୀବନର ସୁଖସମ୍ପଦ ଓ ତାହାର ସୌନ୍ଦର୍ଯ୍ୟ ଅଟେ ; ଏବଂ ଯାହା ଅଲ୍ଲାହ୍‌ଙ୍କ ପାଖରେ ଅଛି ତାହା ଉତ୍ତମ ଓ ସ୍ଥାୟୀ ଅଟେ ; (ତାହାହେଲେ) କ'ଣ ତୁମେମାନେ ବୁଝିପାରୁ ନାହିଁ ?

وَمَآ اُوْتِيْتُمْ مِّنْ شَيْءٍ فَمَتَاعُ الْحَيٰوةِ الدُّنْيَا وَزِيْنَتُهَا ۚ وَمَا عِنْدَ اللّٰهِ خَيْرٌ وَّاَبْقٰى ۭ اَفَلَا تَعْقِلُوْنَ ۝٦١ ع

ରୁ:୬

୬୨. ଯେଉଁବ୍ୟକ୍ତିଙ୍କୁ ଆମେ ଉତ୍ତମ (ଅର୍ଥାତ୍ ପରକାଳ ଜୀବନର ସଫଳତା ସଂକ୍ରାନ୍ତରେ) ପ୍ରତିଶ୍ରୁତି ଦେଇଅଛୁ ଏବଂ ସେ ଏହାକୁ ପାଇବା ଅବସ୍ଥାରେ ଥାଏ, କ'ଣ (ସେ) ସେପରି ବ୍ୟକ୍ତି ସଦୃଶ ହୋଇପାରେ ଯାହାକୁ ଆମେ କେବଳ ସାଂସାରିକ ଜୀବନର କିଛି ସୁଖ–ସମ୍ପଦ ପ୍ରଦାନ କରିଅଛୁ ଓ ତାହାପରେ ତାହାକୁ କୟାମତ ଦିନ (ଅଲ୍ଲାହ୍‌ଙ୍କ ସମୀପରେ ଜବାବ ଦେବାକୁ) ଉପସ୍ଥିତ କରାଯିବ ?

اَفَمَنْ وَّعَدْنٰهُ وَعْدًا حَسَنًا فَهُوَ لَاقِيْهِ كَمَنْ مَّتَّعْنٰهُ مَتَاعَ الْحَيٰوةِ الدُّنْيَا ثُمَّ هُوَ يَوْمَ الْقِيٰمَةِ مِنَ الْمُحْضَرِيْنَ ۝٦٢

---

୧. ଅର୍ଥାତ୍ ଲୋକମାନେ ଆମର ସର୍ବନାଶ କରିଦେବେ ।

୬୩. ଏବଂ (ସ୍ମରଣ କର) ଯେଉଁଦିନ ସେ (ଅର୍ଥାତ୍ ଅଲ୍ଲାହ) ସେମାନଙ୍କୁ ଡାକିବେ ଏବଂ ପଚାରିବେ, "କାହାନ୍ତି ଆମର ସେହି ତଥାକଥିତ ସମକକ୍ଷମାନେ ଯେଉଁମାନଙ୍କୁ ତୁମେମାନେ ଆମ ପରିବର୍ତ୍ତେ ଉପାସ୍ୟ ନିରୂପିତ କରୁଥିଲ ?"

وَيَوْمَ يُنَادِيهِمْ فَيَقُولُ أَيْنَ شُرَكَائِيَ الَّذِينَ كُنْتُمْ تَزْعُمُونَ ﴿٦٢﴾

୬୪. (ସେତେବେଳେ) ଯେଉଁମାନଙ୍କ ସଂକ୍ରାନ୍ତରେ ଆମର ଶାସ୍ତି ବିଷୟକ ବାଣୀ ସାବ୍ୟସ୍ତ ହୋଇ ସାରିଥିବ [୧] ସେମାନେ କହିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଏମାନଙ୍କୁ ହିଁ ଆମେମାନେ ବିଭ୍ରାନ୍ତ କରିଥିଲୁ ; ଆମେମାନେ ସେମାନଙ୍କୁ ସେହିପରି ବିଭ୍ରାନ୍ତ କରିଥିଲୁ ଯେପରି ଆମେମାନେ ନିଜେ ବିଭ୍ରାନ୍ତ ହୋଇଥିଲୁ ; ଆଜି ତୁମ ନିକଟରେ ଆମେମାନେ ନିଜ ବିଭ୍ରାନ୍ତିରୁ ଦୋଷମୁକ୍ତ ହେବା ଘୋଷଣା କରୁଅଛୁ ; ସେମାନେ ଆମର ଉପାସନା କରୁ ନଥିଲେ, (ବରଂ ନିଜ ପ୍ରବୃତ୍ତିର ଅନୁସରଣ କରୁଥିଲେ )।"

قَالَ الَّذِينَ حَقَّ عَلَيْهِمُ الْقَوْلُ رَبَّنَا هَٰؤُلَاءِ الَّذِينَ أَغْوَيْنَا أَغْوَيْنَاهُمْ كَمَا غَوَيْنَا ۖ تَبَرَّأْنَا إِلَيْكَ ۖ مَا كَانُوا إِيَّانَا يَعْبُدُونَ ﴿٦٣﴾

୬୫. ଏବଂ କୁହାଯିବ, "ତୁମେମାନେ ନିଜ ଉପାସ୍ୟମାନଙ୍କୁ ଡାକ ;" ସୁତରାଂ ସେମାନେ ସେ (ଉପାସ୍ୟ)ମାନଙ୍କୁ ଡାକିବେ, କିନ୍ତୁ ସେମାନେ ସେମାନଙ୍କୁ (କୌଣସି) ଉତ୍ତର ଦେବେ ନାହିଁ ; ଏବଂ (ମୁସରିକମାନେ) ନିର୍ଦ୍ଧାରିତ ଶାସ୍ତି ଦେଖିବାକୁ ପାଇବେ ; ଆହା ! ସେମାନେ ସତ୍‌ପଥ ପାଇଥାଆନ୍ତେ କି !

وَقِيلَ ادْعُوا شُرَكَاءَكُمْ فَدَعَوْهُمْ فَلَمْ يَسْتَجِيبُوا لَهُمْ وَرَأَوُا الْعَذَابَ ۚ لَوْ أَنَّهُمْ كَانُوا يَهْتَدُونَ ﴿٦٤﴾

୬୬. ଏବଂ (ସେହି ଦିନକୁ ସ୍ମରଣ କର) ଯେଉଁଦିନ ଅଲ୍ଲାହ ସେମାନଙ୍କୁ ଡାକିବେ ଏବଂ କହିବେ, "ତୁମେମାନେ ରସୁଲମାନଙ୍କୁ (ସେମାନଙ୍କ ଉପଦେଶ ସଂକ୍ରାନ୍ତରେ) କି ଉତ୍ତର ଦେଇଥିଲ ?"

وَيَوْمَ يُنَادِيهِمْ فَيَقُولُ مَاذَا أَجَبْتُمُ الْمُرْسَلِينَ ﴿٦٥﴾

୬୭. ସେହି ଦିନ ସମସ୍ତ ବିଷୟ ସେମାନଙ୍କ ପାଇଁ ତମସାଚ୍ଛନ୍ନ ହୋଇଯିବ, ଓ ସେମାନେ ପରସ୍ପରକୁ କୌଣସି ପ୍ରଶ୍ନ ପଚାରିପାରିବେ ନାହିଁ ।

فَعَمِيَتْ عَلَيْهِمُ الْأَنْبَاءُ يَوْمَئِذٍ فَهُمْ لَا يَتَسَاءَلُونَ ﴿٦٦﴾

୬୮. କିନ୍ତୁ ଯେ ଅନୁତାପ କରିବ ଓ ବିଶ୍ୱାସ କରିବ ଓ ସମୁଚିତ କର୍ମ କରିବ, ସେ ସମ୍ଭବତଃ କୃତକାର୍ଯ୍ୟ ହେବା ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।

فَأَمَّا مَنْ تَابَ وَآمَنَ وَعَمِلَ صَالِحًا فَعَسَىٰ أَنْ يَكُونَ مِنَ الْمُفْلِحِينَ ﴿٦٧﴾

୬୯. ଏବଂ ତୁମର ପାଳନକର୍ତ୍ତା ଯାହା ଇଚ୍ଛା କରନ୍ତି ସୃଷ୍ଟି କରନ୍ତି ଓ ଯାହାକୁ ଇଚ୍ଛା କରନ୍ତି ମନୋନୀତ କରିନିଅନ୍ତି ; ସେମାନଙ୍କର ଏ ବିଷୟରେ କୌଣସି କର୍ତ୍ତୃତ୍ୱ ନାହିଁ ; ଅଲ୍ଲାହ ପବିତ୍ର ଓ ସେମାନଙ୍କର ସିର୍କ ବିଷୟକ କଥାରୁ ଊର୍ଦ୍ଧ୍ୱରେ ।

وَرَبُّكَ يَخْلُقُ مَا يَشَاءُ وَيَخْتَارُ ۗ مَا كَانَ لَهُمُ الْخِيَرَةُ ۚ سُبْحَانَ اللَّهِ وَتَعَالَىٰ عَمَّا يُشْرِكُونَ ﴿٦٨﴾

---

୧. ଅର୍ଥାତ୍ ମୃତ୍ୟୁ ପରେ ସେମାନେ ଏକେତ ନରକକୁ ଯାଇ ସାରିଥିବେ ଅଥବା ଏହି ସଂସାରରେ ସେମାନଙ୍କ ପ୍ରତି ଶାସ୍ତି ଅବତୀର୍ଣ୍ଣ ହୋଇ ସାରିଥିବ ।

وَرَبُّكَ يَعْلَمُ مَا تُكِنُّ صُدُوْرُهُمْ وَمَا يُعْلِنُوْنَ ۝

୭୦. ଏବଂ ଯାହାକିଛି ସେମାନେ ଅନ୍ତରରେ ଗୋପନ ରଖନ୍ତି ଓ ଯାହାକିଛି ସେମାନେ ପ୍ରକାଶ କରନ୍ତି, (ସେ ସବୁ) ତୁମର ପାଳନକର୍ତ୍ତା ଜାଣନ୍ତି ।

وَهُوَ اللّٰهُ لَآ اِلٰهَ اِلَّا هُوَ ۭ لَهُ الْحَمْدُ فِي الْاُوْلٰى وَالْاٰخِرَةِ ۡ وَلَهُ الْحُكْمُ وَاِلَيْهِ تُرْجَعُوْنَ ۝

୭୧. ବସ୍ତୁତଃ, ଅଲ୍ଲାହ୍‌ଙ୍କ ବ୍ୟକ୍ତିତ୍ୱ ଏପରି ଯେ ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନୁହନ୍ତି ; ସୃଷ୍ଟିର ଆଦ୍ୟରେ ମଧ୍ୟ ଓ ଅନ୍ତରେ ମଧ୍ୟ ସେ ହିଁ ପ୍ରଶଂସାର ପାତ୍ର ; ସମସ୍ତ (ପ୍ରକାର) ଆଧିପତ୍ୟ ତାହାଙ୍କର ନିୟନ୍ତ୍ରଣାଧୀନ ; ଏବଂ ତୁମ ସମସ୍ତଙ୍କୁ ତାହାଙ୍କ ନିକଟକୁ ଫେରିବାକୁ ହେବ ।

قُلْ اَرَءَيْتُمْ اِنْ جَعَلَ اللّٰهُ عَلَيْكُمُ الَّيْلَ سَرْمَدًا اِلٰى يَوْمِ الْقِيٰمَةِ مَنْ اِلٰهٌ غَيْرُ اللّٰهِ يَاْتِيْكُمْ بِضِيَاۗءٍ ۭ اَفَلَا تَسْمَعُوْنَ ۝

୭୨. ତୁମେ (ସେମାନଙ୍କୁ) କୁହ, "ଆମ୍ଭଙ୍କୁ ଜଣାଇ ଦିଅ ଯେ ଯଦି ଅଲ୍ଲାହ୍ କୟାମତ ପର୍ଯ୍ୟନ୍ତ ତୁମମାନଙ୍କ ସକାଶେ ରାତ୍ରିକୁ ଦୀର୍ଘ କରିଦିଅନ୍ତି, ତେବେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କିଏ ଅଛି ଯେ ତୁମମାନଙ୍କ ନିକଟକୁ ଆଲୋକ ଆଣି ଦେବ ?" ତଥାପି କ'ଣ ତୁମେମାନେ ଶୁଣି ପାରୁନାହିଁ ?

قُلْ اَرَءَيْتُمْ اِنْ جَعَلَ اللّٰهُ عَلَيْكُمُ النَّهَارَ سَرْمَدًا اِلٰى يَوْمِ الْقِيٰمَةِ مَنْ اِلٰهٌ غَيْرُ اللّٰهِ يَاْتِيْكُمْ بِلَيْلٍ تَسْكُنُوْنَ فِيْهِ ۭ اَفَلَا تُبْصِرُوْنَ ۝

୭୩. ତୁମେ (ସେମାନଙ୍କୁ) କୁହ, "ଆମ୍ଭଙ୍କୁ ଜଣାଇ ଦିଅ ଯେ ଯଦି ଅଲ୍ଲାହ୍ କୟାମତ ପର୍ଯ୍ୟନ୍ତ ତୁମମାନଙ୍କ ସକାଶେ ଦିନକୁ ଦୀର୍ଘ କରିଦିଅନ୍ତି, ତେବେ ଅଲ୍ଲାହ୍‌ଙ୍କ ବ୍ୟତୀତ କେଉଁ ଉପାସ୍ୟ ତୁମମାନଙ୍କ ନିକଟକୁ ରାତ୍ରିକୁ ଘେନି ଆସିବ ଯାହା ଫଳରେ କି ତୁମେମାନେ ଶାନ୍ତି ଲାଭ କରିବ ?" (ତଥାପି) କ'ଣ ତୁମେମାନେ ଦେଖିପାରୁ ନାହଁ ?

وَمِنْ رَّحْمَتِهٖ جَعَلَ لَكُمُ الَّيْلَ وَالنَّهَارَ لِتَسْكُنُوْا فِيْهِ وَلِتَبْتَغُوْا مِنْ فَضْلِهٖ وَلَعَلَّكُمْ تَشْكُرُوْنَ ۝

୭୪. ଏବଂ ଏହା ତାହାଙ୍କର ଅନୁଗ୍ରହ ଅଟେ ଯେ ସେ ତୁମମାନଙ୍କ ସକାଶେ ରାତି ଓ ଦିନ ସୃଷ୍ଟି କରିଛନ୍ତି, ଯଦ୍ଦ୍ୱାରା ତୁମେମାନେ ତହିଁରେ (ଅର୍ଥାତ୍ ରାତ୍ରିକାଳରେ) ଶାନ୍ତିଲାଭ କରିପାରିବ ଓ (ଦିନରେ) ତାହାଙ୍କର କୃପା (ଅର୍ଥାତ୍ ଜୀବିକା) ସନ୍ଧାନ କରିପାରିବ ଓ କୃତଜ୍ଞ ହେବ ।

وَيَوْمَ يُنَادِيْهِمْ فَيَقُوْلُ اَيْنَ شُرَكَاۗءِيَ الَّذِيْنَ كُنْتُمْ تَزْعُمُوْنَ ۝

୭୫. ଏବଂ ଯେଉଁଦିନ ସେ ସେମାନଙ୍କୁ ଡାକିବେ ଓ କହିବେ, "କାହାନ୍ତି ଆମର ସେହି ତଥାକଥିତ ସମକକ୍ଷମାନେ ଯେଉଁମାନଙ୍କୁ ତୁମେମାନେ ସେପରି (ଉପାସ୍ୟମାନେ) କରୁଥିଲ ?"

وَنَزَعْنَا مِنْ كُلِّ اُمَّةٍ شَهِيْدًا فَقُلْنَا هَاتُوْا بُرْهَانَكُمْ فَعَلِمُوْٓا اَنَّ الْحَقَّ لِلّٰهِ وَضَلَّ عَنْهُمْ مَّا كَانُوْا يَفْتَرُوْنَ ۝ ع

୭୬. ଏବଂ ଆମ୍ଭେ ପ୍ରତ୍ୟେକ ସମ୍ପ୍ରଦାୟରୁ ଜଣେ ଲେଖାଏଁ ସାକ୍ଷୀ ଉପସ୍ଥିତ କରାଇବୁ ଓ କହିବୁ, "ନିଜର ପ୍ରମାଣ ପେଶ କର" ; ସେତେବେଳେ ସେମାନେ ଜାଣିପାରିବେ ଯେ ସମ୍ପୂର୍ଣ୍ଣ ସତ୍ୟ ଅଲ୍ଲାହ୍‌ଙ୍କ ଠାରେ ରହିଅଛି ; ଏବଂ ସେମାନେ ଯେଉଁସବୁ ମିଥ୍ୟା ରଚନା କରୁଥିଲେ ତାହା ସେମାନଙ୍କ ଠାରୁ ଅପସରି ଯିବ ।

ରୁ:୮

୭୬. ବସ୍ତୁତଃ କାରୁନ ମୁସାଙ୍କ ସମ୍ପ୍ରଦାୟର ଅନ୍ତର୍ଗତ ଥିଲା, କିନ୍ତୁ ସେ ସେମାନଙ୍କ ବିରୁଦ୍ଧରେ [1] ଅତ୍ୟାଚାର କରିବାକୁ ଆଗଭର ହୋଇଥିଲା ; ଏବଂ ଆମେ ତାହାକୁ ଏତେ ଧନ ସମ୍ପଦ [2] ଦେଇଥିଲୁ ଯେ ତାହାର ଚାବିଗୁଡ଼ିକୁ [3] ଉଠାଇବା ଏକ



୧. ଅତ୍ୟାଚାରୀ ରାଜାମାନଙ୍କର ନୀତି ହେଉଛି ଯେ ସେମାନେ ଛୋଟ ଛୋଟ ପଦରେ ନିଜ ପ୍ରଜାମାନଙ୍କ ମଧ୍ୟରୁ ଏପରି ଲୋକଙ୍କୁ ନିଯୁକ୍ତି ଦେଇଥାନ୍ତି ଯେଉଁମାନେ ନିଜ ଲୋକମାନଙ୍କ ଉପରେ ସେମାନଙ୍କ ବରିଷ୍ଠ ଅଧିକାରୀଙ୍କ ଅପେକ୍ଷା ଅଧିକ ଅତ୍ୟାଚାର କରିପାରିବେ । ଇଂରେଜ ଶାସନ-କାଳକୁ ଲକ୍ଷ୍ୟ କଲେ ଜଣାଯିବ ଯେ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ବା ଜିଲା ମାଜିଷ୍ଟ୍ରେଟଙ୍କ ତୁଳନାରେ ସେମାନଙ୍କ ଅଧୀନସ୍ଥ ଭାରତୀୟ ଥାନାବାବୁ ଓ କନେଷ୍ଟବଳ ଅଥବା ରାଜସ୍ୱ ନିରୀକ୍ଷକ ଓ ତହସିଲଦାର ଅଧିକ ଅତ୍ୟାଚାର କରୁଥିଲେ । ଫିରଔନ ଏହି ନୀତିକୁ ଅନୁସରଣ କରି ଇସ୍ରାଇଲୀୟମାନଙ୍କୁ ରାଜସ୍ୱ କର୍ମଚାରୀ ଭାବେ ନିଯୁକ୍ତି ଦେଇଥିଲା ଏବଂ ସେହି କର୍ମଚାରୀମାନେ ନିଜ ଲୋକଙ୍କ ଉପରେ ଅଧିକ ଅତ୍ୟାଚାର କରୁଥିଲେ । ସେମାନେ ଏପରି କରିବାର କାରଣ ହେଉଛି ଯେ ଉକ୍ତ କର୍ମଚାରୀମାନେ ସେହି ରାଜାଙ୍କୁ ସନ୍ତୁଷ୍ଟ କରିବା ଚାହୁଁଥିଲେ, ତାହାହେଲେ ସେମାନେ ଉଚ୍ଚପଦରେ ଅଧିଷ୍ଠିତ ହୋଇ ପାରିବେ ।

୨. ସେହି ଧନ ତା'ର ବ୍ୟକ୍ତିଗତ ଧନ ନଥିଲା, ବରଂ ସେ ଫିରଔନର ବିତ୍ତ ବିଭାଗର ବା ରାଜକୋଷର ଅଧିକାରୀ ଥିଲା ଏବଂ ତା' ଅଧୀନରେ ସରକାରୀ ଧନ ରହୁଥିଲା । ହଜରତ ୟୁସୁଫ୍ ମଧ୍ୟ ତତ୍କାଳୀନ ଫିରଔନ ଅଧୀନରେ ଚାକିରି କରୁଥିଲେ । ବସ୍ତୁତଃ ଯେତେବେଳେ ହଜରତ ୟୁସୁଫଙ୍କୁ ବନ୍ଦୀଶାଳାରୁ ମୁକ୍ତି ଦିଆଗଲା, ତତ୍କାଳୀନ ମିଶର ସମ୍ରାଟ ତାହାଙ୍କୁ ନିଜ ଦରବାରରେ ଉଚ୍ଚ ପଦରେ ନିଯୁକ୍ତ କରିବାକୁ ଚାହିଁବାରୁ ସେ ବିତ୍ତ ବିଭାଗର ଅଧିକାରୀ ହେବାକୁ ନିଜର ଇଚ୍ଛା ପ୍ରକାଶ କରିଥିଲେ, କାରଣସ୍ୱରୂପ ସେ କହିଲେ ଯେ ତାଙ୍କୁ ଏହି ବିଦ୍ୟା ଭଲ ଭାବରେ ମାଲୁମ ଅଛି, ସେ ସମୁଚିତ ବ୍ୟୟ କରିବାରେ ନିପୁଣ ଓ ଧନର ଉପଯୁକ୍ତ ସଂରକ୍ଷକ (୧୨:୫୭ ଦ୍ରଷ୍ଟବ୍ୟ) । ଏଥିରୁ ଜଣାପଡୁଛି ଯେ ସେତେବେଳେ ମଧ୍ୟ ଇସ୍ରାଇଲୀୟମାନେ ବିତ୍ତୀୟ ବିଷୟରେ ବିଚକ୍ଷଣ ଥିଲେ ଓ ଏହି ବିଦ୍ୟାରେ ନିଜକୁ ଅନ୍ୟମାନଙ୍କ ତୁଳନାରେ ଅଧିକ ବିଚକ୍ଷଣ ମନେ କରୁଥିଲେ । ହଜରତ ୟୁସୁଫଙ୍କ ପରେ ମଧ୍ୟ ଏହି ଖ୍ୟାତି ଜାରି ରହିଥିଲା । ଏପରିକି ହଜରତ ମୁସାଙ୍କ ସମୟରେ ଫିରଔନ ସରକାର ମଧ୍ୟ ଇସ୍ରାଇଲୀୟମାନଙ୍କର ଏହି କଳାକୁ ସ୍ୱୀକାର କରିଥିଲେ ଏବଂ ସାଧାରଣ ଭାବରେ ସେମାନଙ୍କୁ ବିତ୍ତ ବିଭାଗ ଓ କୋଷାଗାରର ଦାୟିତ୍ୱ ଅର୍ପଣ କରିବା ଆରମ୍ଭ କରିଥିଲେ ।

୩. କେତେକ ଭାଷ୍ୟକାର ଏହି ଆୟତରୁ କାରୁନର ଧନସଂପଦ ସମ୍ବନ୍ଧରେ ଏକ ମନୋମୁଗ୍ଧକର କଳ୍ପନା କରିଛନ୍ତି ଅଥଚ ଏହି ଆୟତରୁ ପ୍ରତୀତ ହେଉଛି ଯେ କାରୁନ ଅବଶ୍ୟ ଜଣେ ଧନାଢ୍ୟ ବ୍ୟକ୍ତି ଥିଲା, ମାତ୍ର ତା' ନିକଟରେ କୁବେରପୁରୀର ଧନସଂପତ୍ତି ଥିବାର ପ୍ରମାଣ ନାହିଁ । ଏହି ଧନସଂପତ୍ତି ଯେଉଁ କୋଷଗୁଡ଼ିକରେ ଥିଲା ତାହାର ଚାବିକାଠିଗୁଡ଼ିକୁ ଉଠାଇବା ଅବଶ୍ୟ ଦୁର୍ବହ ହେଉଥିଲା । ଏହାକୁ ବ୍ୟାଖ୍ୟା କଲାବେଳେ ମନେ ରଖିବାକୁ ହେବ ଯେ ଆଲୋଚ୍ୟ ଧନସମ୍ପତ୍ତି ଥିଲା ସରକାରଙ୍କର । ସେହି ସମୟରେ ଯେତେବେଳେ ରାଜାମାନେ ଦେଶରେ ଗସ୍ତ କରୁଥିଲେ ସେତେବେଳେ ହଜାର ହଜାର ଓଟ ଉପରେ ଦୁଇ ଦୁଇଟି ବାକ୍ସରେ ସେହି ଧନକୁ ବହନ କରି ନେଇ ଯାଉଥିଲେ । ଯେତେବେଳେ ମୋଟର ଆଦି ଯାନ ନ ଥିଲା କି ଦେଶରେ ବିଭିନ୍ନ ସ୍ଥାନରେ ସରକାରୀ ଧନାଗାର ନ ଥିଲା । ତେଣୁ ରାଜାଙ୍କ ସହିତ ସେହି ଧନ ବୁହାହୋଇ ଯାଉଥିଲା । ବାଟରେ କର୍ମଚାରୀମାନଙ୍କୁ ବେତନ ବିତରଣ କରାଯାଉ ଥିଲା ଓ ରାଜାଦିଙ୍କ ଯନାଣେ ବାଟରେ ଖାଦ୍ୟପଦାର୍ଥ ଖରିଦ କରା ଯାଉ ଥିଲା । ମନେ କରାଯାଉ, ଯଦି ରାଜାଙ୍କ ଗହଣରେ ଦଶ ହଜାର କର୍ମଚାରୀ ଛଅ ମାସ ପାଇଁ ଦୌରା କରୁଥା'ନ୍ତି ତେବେ ଅନ୍ୟୂନ ତିନି ଚାରି ହଜାର ଓଟ ନିଶ୍ଚିତ ରୂପେ ସେମାନଙ୍କ ସହିତ ଯାଉଥିବେ । ଯଦି ପ୍ରତିଟି ଓଟ ଉପରେ ଦୁଇଟି ଲେଖାଏଁ ବାକ୍ସ ଲଦା ହେଉଥିବ ତେବେ ଛଅ ବା ଆଠ ହଜାର ଧନ ବାକ୍ସ ଯାଉଥିବ । ପ୍ରଥମତଃ ସେତେବେଳେ କାଠ ତିଆରି ଚାବିକାଠିର ବ୍ୟବହାର ଥିଲା । ଏବେ ବି ମକ୍କା ଓ ତାହାର ପାର୍ଶ୍ୱବର୍ତୀ ଅଞ୍ଚଳରେ ସେପରି ଚାବିକାଠି ବ୍ୟବହୃତ ହେଉଛି । ଦ୍ୱିତୀୟତଃ ଯଦି ପ୍ରତିଟି ବାକ୍ସରେ ସୁରକ୍ଷା ଦୃଷ୍ଟିରୁ ଦୁଇଟି ତାଲା ଲାଗିଥିବ, ତେବେ ହିସାବରେ ବାର ବା ଷୋଳ ହଜାର ଚାବିକାଠି ଆବଶ୍ୟକ ହେଉଛି । ଯଦି ପ୍ରତିଟି ଚାବିକାଠି ଅଧକିଲୋ ଓଜନର ହେବ ତେବେ ଚାବିକାଠି ଗୁଡ଼ିକର ଓଜନ ଛଅ ବା ଆଠ ହଜାର କିଲୋଗ୍ରାମ ହେବ ଯାହାକୁ କୋଡ଼ିଏ ପଚିଶି ଜଣ ବ୍ୟକ୍ତି ବହୁ କଷ୍ଟରେ ଉଠାଇ ପାରିବେ । ବିଶେଷତଃ ଯେତେବେଳେ ସେମାନଙ୍କୁ ନିରନ୍ତର ଦୀର୍ଘ ଯାତ୍ରା କରିବାକୁ ପଡୁଥିବ, ସେତେବେଳେ ଏହା ସେମାନଙ୍କ ପକ୍ଷରେ ଦୁର୍ବହ ହେଉଥିବ । ଅନ୍ୟ ଏକ ବିଷୟ ମଧ୍ୟ ମନେ ରଖିବାକୁ ହେବ ଯେ ଲୋକମାନେ ସେହି ଚାବିକାଠିଗୁଡ଼ିକୁ ବହନ କରୁଥିବାର ଉଲ୍ଲେଖ ନାହିଁ । ସେଗୁଡ଼ିକ ନିଶ୍ଚିତ ରୂପେ ଓଟ ଉପରେ ଲଦା ହୋଇ ଯାଉଥିବ । ଏଠାରେ କେବଳ ଏତିକି ଉଲ୍ଲେଖ ଅଛି ଯେ ଯଦି ଚାବିକାଠିଗୁଡ଼ିକୁ ଲୋକମାନେ ବହନ କରନ୍ତେ ତେବେ ସେଗୁଡ଼ିକ ଦଳେ ବଳିଷ୍ଠ ବ୍ୟକ୍ତିଙ୍କ ପକ୍ଷରେ ମଧ୍ୟ ଭାରି ହୁଅନ୍ତା । ଅର୍ଥାତ୍ ଦଶ ବାର ଜଣ ବ୍ୟକ୍ତିଙ୍କ ପକ୍ଷରେ ଏହା ଦୁର୍ବହ ହୁଅନ୍ତା । ଯଦି ଲୁହା ତିଆରି ଚାବିକାଠିର ପ୍ରଚଳନ ଥିବ, ତେବେ ସେତେବେଳେ ଯେଉଁ ତାଲା ତିଆରି କରାଯାଉ ଥିଲା, ସେଗୁଡ଼ିକ ମଧ୍ୟ ଓଜନଦାର ହେଉଥିଲା । ତେଣୁ ବାର ବା ଷୋଳ ହଜାର ଲୁହା ଚାବି କାଠି ମଧ୍ୟ ବାସ୍ତବରେ ଏତେ ଓଜନଦାର ହେଉଥିବ ଯେ ସେଗୁଡ଼ିକୁ ଦଶ ବାର ଜଣ ଲୋକ ବହୁ କଷ୍ଟରେ ଉଠାଉଥିବେ । କାରୁନ ଯେ ମିଶର ସମ୍ରାଟ୍ ଫିରଔନର ଧନାଗାର ଅଧିକାରୀ ଥିଲା, ତାହା ଏହି ବିଷୟରୁ ପ୍ରମାଣିତ ହେଉଛି ଯେ ସେ ନିଜ ଜାତିର ଲୋକମାନଙ୍କ ଉପରେ ଅତ୍ୟାଚାର କରୁଥିଲା । ବସ୍ତୁତଃ ଜଣେ ଲୋକ କେବଳ ଧନୀ ହେଲେ ଅନ୍ୟମାନଙ୍କ ଉପରେ ଅତ୍ୟାଚାର କରିପାରିବ ନାହିଁ ବରଂ ସରକାରୀ ପଦ ଧାରଣ କଲେ କରି ପାରିବ । ଅତଏବ ଏଠାରେ ଜଣେ ଧନାଢ୍ୟ କାରୁନ ବିଷୟରେ ବର୍ଣ୍ଣନା କରାଯାଇ ନାହିଁ ବରଂ ଏପରି ଜଣେ କାରୁନ ବିଷୟରେ ବର୍ଣ୍ଣନା କରାଯାଇଛି ଯେ କି ସରକାରୀ ଧନର ଦାୟିତ୍ୱରେ ଥିଲା ଏବଂ ଉଚ୍ଚ ପଦଧାରୀ ହୋଇଥିବାରୁ ଲୋକମାନଙ୍କ ଉପରେ ଅତ୍ୟାଚାର କରିବାର ସାମର୍ଥ୍ୟ ତା'ର ଥିଲା ।

ଶକ୍ତିଶାଳୀ ଦଳ ପକ୍ଷରେ ମଧ୍ୟ କଷ୍ଟସାଧ୍ୟ ଥିଲା; (ସ୍ମରଣ କର) ଯେତେବେଳେ ତାହାର ସମ୍ପ୍ରଦାୟର ଲୋକମାନେ ତାକୁ କହିଲେ, "ଏତେ ଗର୍ବିତ ହୁଅ ନାହିଁ; (କାରଣ) ଅଲ୍ଲାହ ବାସ୍ତବରେ ଗର୍ବୀ ଲୋକମାନଙ୍କୁ ପସନ୍ଦ କରନ୍ତି ନାହିଁ।"

الْقُوَّةِ ۖ إِذْ قَالَ لَهُ قَوْمُهُ لَا تَفْرَحْ ۖ إِنَّ اللَّهَ لَا يُحِبُّ الْفَرِحِينَ ﴿٧٦﴾

୭୮. "ଏବଂ ଯାହା କିଛି ଅଲ୍ଲାହ ତୁମକୁ ଦେଇଛନ୍ତି ତଦ୍ଦ୍ୱାରା ପରକାଳର ବାସସ୍ଥାନ ସନ୍ଧାନ କର, ଏବଂ ଏହି ସାଂସାରିକ ଜୀବନରେ ତୁମକୁ ଯେଉଁ ଅଂଶ ପ୍ରାପ୍ତ ହୋଇଅଛି ତାହାକୁ ମଧ୍ୟ ପାସୋରି ଦିଅ ନାହିଁ; (ଆମେମାନେ ତୁମକୁ ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ସାଂସାରିକ ସୁଖଭୋଗ କରିବାକୁ ବାରଣ କରୁନାହୁଁ), ଏବଂ ଯେପରି ଅଲ୍ଲାହ ତୁମ ପ୍ରତି ଅନୁଗ୍ରହ କରିଛନ୍ତି ତୁମେ ମଧ୍ୟ ଲୋକମାନଙ୍କ ପ୍ରତି ସେହିପରି ଅନୁଗ୍ରହ କର; ଏବଂ ଦେଶରେ ବିଶୃଙ୍ଖଳା ସୃଷ୍ଟି କରିବାକୁ ଚେଷ୍ଟା କରନାହିଁ; ଅଲ୍ଲାହ ନିଶ୍ଚିତ ରୂପେ ବିଶୃଙ୍ଖଳାକାରୀଙ୍କୁ ପସନ୍ଦ କରନ୍ତି ନାହିଁ।"

وَابْتَغِ فِيمَا آتَاكَ اللَّهُ الدَّارَ الْآخِرَةَ ۖ وَلَا تَنْسَ نَصِيبَكَ مِنَ الدُّنْيَا ۖ وَأَحْسِنْ كَمَا أَحْسَنَ اللَّهُ إِلَيْكَ ۖ وَلَا تَبْغِ الْفَسَادَ فِي الْأَرْضِ ۖ إِنَّ اللَّهَ لَا يُحِبُّ الْمُفْسِدِينَ ﴿٧٧﴾

୭୯. (କାରୁନ) କହିଲା, "ଏହିସବୁ (ମର୍ଯ୍ୟାଦା)[୧] ମୋତେ ଏପରି ଜ୍ଞାନବଳରେ ମିଳିଅଛି ଯାହା କେବଳ ମୁଁ ଲାଭ କରିଅଛି;" କ'ଣ ସେ ଜାଣି ନଥିଲା ଯେ ତାହା ପୂର୍ବରୁ ତା'ଠାରୁ ଅଧିକ ଶକ୍ତିଶାଳୀ ଓ ଅଧିକ ଧନଶାଳୀ ଅନେକ ଜାତିଙ୍କୁ ଅଲ୍ଲାହ ଧ୍ୱଂସ କରିଥିଲେ ? ଏବଂ ଅପରାଧୀମାନଙ୍କୁ[୨] (ଶାସ୍ତି ଦିଆଯିବା ବେଳେ) ସେମାନଙ୍କ ଅପରାଧ ସମ୍ବନ୍ଧରେ ପଚରା ଯାଏ ନାହିଁ।

قَالَ إِنَّمَا أُوتِيتُهُ عَلَىٰ عِلْمٍ عِنْدِي ۚ أَوَلَمْ يَعْلَمْ أَنَّ اللَّهَ قَدْ أَهْلَكَ مِنْ قَبْلِهِ مِنَ الْقُرُونِ مَنْ هُوَ أَشَدُّ مِنْهُ قُوَّةً وَأَكْثَرُ جَمْعًا ۚ وَلَا يُسْأَلُ عَنْ ذُنُوبِهِمُ الْمُجْرِمُونَ ﴿٧٨﴾

୮୦. (ଦିନେ) ସେ ନିଜ ସମ୍ପ୍ରଦାୟ ନିକଟରେ ଖୁବ୍ ଜାକଜମକ[୩] ସହିତ ବାହାରିଥିଲା; ଯେଉଁମାନେ ସାଂସାରିକ ସୁଖସମ୍ପଦ କାମନା କରୁଥିଲେ ସେମାନେ କହିଲେ, "କାରୁନଙ୍କୁ

فَخَرَجَ عَلَىٰ قَوْمِهِ فِي زِينَتِهِ ۖ قَالَ الَّذِينَ يُرِيدُونَ

୧. ଏହି ଆୟତର ପ୍ରଥମ ବାକ୍ୟାଂଶରୁ ପ୍ରମାଣିତ ହେଉଛି ଯେ କାରୁନ ଜଣେ ବରିଷ୍ଠ ଅଧିକାରୀ ଥିଲା ଓ ତା'ର ବୁଦ୍ଧି ବିଦ୍ୟା ବଳରେ ସେ ଉଚ୍ଚ ଆସନରେ ଅଧିଷ୍ଠିତ ହୋଇ ପାରିଥିଲା। ସେ ଥିଲା ସରକାରୀ ଧନାଗାର ଅଧିକାରୀ ବା ବିତ୍ତ ଅଧିକାରୀ। ଏହା ତା'ର ବ୍ୟକ୍ତିଗତ ସମ୍ପତ୍ତି ନୁହେଁ। ଯଦି ବ୍ୟକ୍ତିଗତ ସମ୍ପତ୍ତି ହୋଇଥା'ନ୍ତା ତେବେ ଏଠାରେ ଅବଶ୍ୟ ଉଲ୍ଲେଖ କରାଯାଇଥା'ନ୍ତା ଯେ ଅଲ୍ଲାହ ତା'ଠାରୁ ବଡ଼ ବଡ଼ ଧନୀଲୋକଙ୍କୁ ମଧ୍ୟ ଧ୍ୱଂସ କରି ସାରିଛନ୍ତି। କିନ୍ତୁ ଏଠାରେ କାରୁନ ସହିତ ଜାତି ଓ ଦେଶର ଧନ ସମ୍ପତ୍ତି ବିଷୟ ଉଲ୍ଲେଖ କରାଯାଇଛି। ତେଣୁ ଜଣାପଡୁଛି ଯେ ଜାତି ଓ ଦେଶର ଧନ ସମ୍ପତ୍ତି ମଧ୍ୟ କାରୁନର ଦଖଲରେ ଥିଲା ଅର୍ଥାତ୍ ସେ ସରକାରୀ କର୍ମଚାରୀ ଥିଲା। ତା'ର ବ୍ୟକ୍ତିଗତ ସମ୍ପତ୍ତି ବିଷୟ ଏଠାରେ ଉଲ୍ଲେଖ କରାଯାଇ ନାହିଁ।

୨. ଅର୍ଥାତ୍ ଅଲ୍ଲାହଙ୍କ ତରଫରୁ ଯେଉଁ ଶାସ୍ତି ଅବତୀର୍ଣ୍ଣ ହୁଏ ତାହା ପ୍ରାକୃତିକ; ଏହା ସାଂସାରିକ ଦଣ୍ଡ ବିଧାନ ସଦୃଶ ହୋଇ ନ ଥାଏ। ପ୍ରାକୃତିକ ଶାସ୍ତି ସ୍ୱୟଂ ଜଣାଇ ଦିଏ ଯେ ଅପରାଧୀ ଏହା ପାଇବାକୁ ହକଦାର ଥିଲା। ଉଦାହରଣ ସ୍ୱରୂପ, ଯଦି କୌଣସି ବ୍ୟକ୍ତି ସତ୍ୟକୁ ପ୍ରତ୍ୟାଖ୍ୟାନ କରିବା ଯୋଗୁଁ ସତ୍‌ପଥରୁ ବଞ୍ଚିତ ହୋଇଯାଏ ଅଥବା ମସ୍ତିଷ୍କ ବିନିଯୋଗ କରି କାମ ହାସଲ ନ କରେ, ବା ତାର ଚିନ୍ତାଶକ୍ତି ହ୍ରାସ ପାଏ ତେବେ ପୂର୍ବରୁ କାହିଁକି ତା'ର ଅପରାଧ ସମ୍ବନ୍ଧରେ ଅନୁସନ୍ଧାନ କରାଗଲା ନାହିଁ ବୋଲି କୁହାଯାଇ ପାରିବ ନାହିଁ। ପ୍ରତ୍ୟେକ ବ୍ୟକ୍ତି ବୁଝି ପାରିବ ଯେ ଅପରାଧୀର ଅପରାଧ ମୁତାବକ ତା' ପ୍ରତି ଶାସ୍ତିବିଧାନ କରାଯାଇଛି ଏବଂ ଶାସ୍ତି ଦିଆଯିବା ଘଟଣା ହିଁ ତା' କୁକାର୍ଯ୍ୟର ପ୍ରମାଣ।

୩. ଏଥିରୁ ପ୍ରମାଣ ମିଳୁଛି ଯେ ସେ ସରକାରୀ କର୍ମଚାରୀ ଥିଲା !

الْحَيٰوةَ الدُّنْيَا يٰلَيْتَ لَنَا مِثْلَ مَآ أُوْتِيَ قَارُوْنُ ۙ إِنَّهٗ لَذُوْ حَظٍّ عَظِيْمٍ ﴿٨٠﴾

ଯାହା ଦିଆଯାଇଛି ଆମମାନଙ୍କୁ ତାହା ମିଳନ୍ତା କି !'' ବାସ୍ତବିକ ତାହାକୁ (ସାଂସାରିକ ସୁଖ-ସମ୍ପଦର) ଏକ ବଡ଼ ଅଂଶ ପ୍ରାପ୍ତ ହୋଇଅଛି ।''

وَقَالَ الَّذِيْنَ أُوْتُوا الْعِلْمَ وَيْلَكُمْ ثَوَابُ اللّٰهِ خَيْرٌ لِّمَنْ اٰمَنَ وَعَمِلَ صَالِحًا ۚ وَلَا يُلَقّٰىهَآ إِلَّا الصّٰبِرُوْنَ ﴿٨١﴾

୮୧. ଏବଂ ଯେଉଁମାନଙ୍କୁ ଜ୍ଞାନ ପ୍ରଦାନ କରାଯାଇଥିଲା ସେମାନେ କହିଲେ , ''ତୁମମାନଙ୍କର ସର୍ବନାଶ ହେଉ ; ବିଶ୍ୱାସକାରୀ ଓ ବିଶ୍ୱାସ ମୁତାବକ କର୍ମ କରୁଥିବା ଲୋକମାନଙ୍କ ପାଇଁ ଅଲ୍ଲାଃଙ୍କ ତରଫରୁ ପ୍ରଦତ୍ତ ପୁରସ୍କାର [୧] ଅତିଶୟ ଉତ୍ତମ ଅଟେ, ଏବଂ ଏହା କେବଳ ଧୈର୍ଯ୍ୟବାନ୍ ଗୋଷ୍ଠୀ ହିଁ ପାଇଥାନ୍ତି ।''

فَخَسَفْنَا بِهٖ وَبِدَارِهِ الْأَرْضَ ۚ فَمَا كَانَ لَهٗ مِنْ فِئَةٍ يَّنْصُرُوْنَهٗ مِنْ دُوْنِ اللّٰهِ ۖ وَمَا كَانَ مِنَ الْمُنْتَصِرِيْنَ ﴿٨٢﴾

୮୨. ତା'ପରେ ଆମ୍ଭେ ତାହାକୁ ଓ ତାହାର ପରିବାରବର୍ଗଙ୍କୁ ଭୂଗର୍ଭରେ ଲୀନ କରିଦେଲୁ ; ଏବଂ ଏପରି କୌଣସି ଗୋଷ୍ଠୀ ବାହାରିଲା ନାହିଁ ଯେ କି ଅଲ୍ଲାଃଙ୍କ ବିରୁଦ୍ଧରେ ତାହାକୁ ସାହାଯ୍ୟ କରିବ, ଏବଂ କୌଣସି ଉପାୟରେ ମଧ୍ୟ ସେ (ନିଜ ଶତ୍ରୁଙ୍କ କବଳରୁ) ରକ୍ଷା ପାଇ ପାରିଲା ନାହିଁ ।

وَأَصْبَحَ الَّذِيْنَ تَمَنَّوْا مَكَانَهٗ بِالْأَمْسِ يَقُوْلُوْنَ وَيْكَاَنَّ اللّٰهَ يَبْسُطُ الرِّزْقَ لِمَنْ يَّشَآءُ مِنْ عِبَادِهٖ وَيَقْدِرُ ۚ لَوْلَآ أَنْ مَّنَّ اللّٰهُ عَلَيْنَا لَخَسَفَ بِنَا ۖ وَيْكَاَنَّهٗ لَا يُفْلِحُ الْكٰفِرُوْنَ ﴿٨٣﴾ ع

୮୩. ଏବଂ ଯେଉଁମାନେ ଗତକାଲି ଯାଏ ତାହାର ମର୍ଯ୍ୟାଦା ଲାଭ କରିବାକୁ କାମନା କରୁଥିଲେ , କହିବାକୁ ଲାଗିଲେ, ''ତୁମର ସର୍ବନାଶ ହେଉ,'' ବସ୍ତୁତଃ ଅଲ୍ଲାଃ ନିଜ ଭକ୍ତମାନଙ୍କ ମଧ୍ୟରୁ ଯେଉଁମାନଙ୍କ ନିମନ୍ତେ ଇଚ୍ଛା କରନ୍ତି ସେମାନଙ୍କର ଜୀବିକାକୁ ପ୍ରଶସ୍ତ କରିଥା'ନ୍ତି ଓ ଯେଉଁମାନଙ୍କ ନିମନ୍ତେ ଇଚ୍ଛା କରନ୍ତି (ଜୀବିକାକୁ) ସଙ୍କୁଚିତ କରିଥାନ୍ତି ; ଏବଂ ଯଦି ଅଲ୍ଲାଃ ଆମମାନଙ୍କ ପ୍ରତି ଅନୁଗ୍ରହ କରି ନଥା'ନ୍ତେ ;ତେବେ ସେ ଆମମାନଙ୍କୁ ମଧ୍ୟ ବିପଦଗ୍ରସ୍ତ କରାଇଥା'ନ୍ତେ; ତୁମର ସର୍ବନାଶ ହେଉ ; (ବାସ୍ତବିକ) ଅବିଶ୍ୱାସକାରୀମାନେ କଦାପି କୃତକାର୍ଯ୍ୟ ହୁଅନ୍ତି ନାହିଁ ।

ରୁ: ୯

تِلْكَ الدَّارُ الْاٰخِرَةُ نَجْعَلُهَا لِلَّذِيْنَ لَا يُرِيْدُوْنَ عُلُوًّا فِي الْأَرْضِ وَلَا فَسَادًا ۚ وَالْعَاقِبَةُ لِلْمُتَّقِيْنَ ﴿٨٤﴾

୮୪. ଯେଉଁମାନେ ଦେଶରେ ଅଯଥା ପ୍ରାଧାନ୍ୟ ଓ ବିଶୃଙ୍ଖଳା କାମନା କରନ୍ତି ନାହିଁ ଏହି ପରକାଳର ବାସସ୍ଥାନ ଆମ୍ଭେ ସେମାନଙ୍କ ସକାଶେ ସଂରକ୍ଷିତ କରିଥାଉ ଏବଂ ଅନ୍ତିମ ପରିଣାମ ସେହିମାନଙ୍କ ପାଇଁ (ଉତ୍ତମ), ଯେଉଁମାନେ ଧର୍ମଭୀରୁ ।

---

୧. ଏହି ଆୟତରୁ ମଧ୍ୟ ପ୍ରମାଣିତ ହେଉଛି ଯେ କଥିତ ଧନସମ୍ପତ୍ତି ତାକୁ ତା'ର ପଦମର୍ଯ୍ୟାଦା ଯୋଗୁଁ ମିଳିଥିଲା । ଯାହା ଆମ ପାଖରେ ଅଛି ତାହା ଅଲ୍ଲାଃଙ୍କର ଦାନ ବୋଲି ସାଧାରଣ ଭାବରେ କୁହାଯାଏ, ମାତ୍ର ଏଠାରେ ଯେଉଁ ଦୁଇଟି ସମ୍ପତ୍ତି କଥା କୁହାଯାଇଛି ତନ୍ମଧ୍ୟରୁ ଗୋଟିଏ ଅଲ୍ଲାଃଙ୍କ ଦ୍ୱାରା ପ୍ରଦତ୍ତ ଓ ଅନ୍ୟଟି ଅଲ୍ଲାଃଙ୍କ ଭିନ୍ନ ଅନ୍ୟ ଦ୍ୱାରା ପ୍ରଦତ୍ତ । ଏଥିଯୋଗୁଁ ଗୋଟିଏ ସମ୍ପତ୍ତି ସମ୍ବନ୍ଧରେ କହିବାକୁ ହେବ ଯେ ତାହା ସ୍ୱ-ଅର୍ଜିତ ନ ଥିଲା ବରଂ ଫିରଔନ ପ୍ରଦତ୍ତ ସମ୍ପତ୍ତି ଥିଲା ।

୮୫. ଯେଉଁ ବ୍ୟକ୍ତି ଉତ୍ତମ କାର୍ଯ୍ୟ କରିବ ତାହାକୁ ତାହାଠାରୁ ଉତ୍କୃଷ୍ଟ ପୁରସ୍କାର ମିଳିବ ; ଏବଂ ଯେଉଁ ବ୍ୟକ୍ତି ମନ୍ଦକାର୍ଯ୍ୟ କରିବ, ତେବେ ମନ୍ଦ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କୁ ସେମାନଙ୍କ କର୍ମ ଅନୁଯାୟୀ ପ୍ରତିଫଳ ପ୍ରଦାନ କରାଯିବ ।

مَنْ جَآءَ بِالْحَسَنَةِ فَلَهٗ خَيْرٌ مِّنْهَا ۚ وَمَنْ جَآءَ بِالسَّيِّئَةِ فَلَا يُجْزَى الَّذِيْنَ عَمِلُوا السَّيِّاٰتِ اِلَّا مَا كَانُوْا يَعْمَلُوْنَ ﴿٨٥﴾

୮୬. ଯେ (ଅଲ୍ଲାହ୍) ତୁମ୍ଭ ପ୍ରତି ଏହି କୋରାନର ଶିକ୍ଷା ବାଧ୍ୟତାମୂଳକ କରିଛନ୍ତି ସେ ନିଜେ ଶପଥପୂର୍ବକ କହୁଛନ୍ତି ଯେ ତୁମ୍ଭକୁ ଏହି ସ୍ଥାନ [୧] ଆଡ଼କୁ ଫେରାଇ ଆଣିବେ [୨] ଯେଉଁଠାକୁ ଲୋକମାନେ ବାରମ୍ବାର ଆସନ୍ତି ; ତୁମ୍ଭେ କୁହ, ''ଯେ ସତ୍‌ପଥରେ ପ୍ରତିଷ୍ଠିତ ଅଛି ତାହାକୁ ଓ ଯେ ସ୍ପଷ୍ଟ ଭାବରେ ବିଭ୍ରାନ୍ତ ହୋଇଅଛି ତାହାକୁ (ମଧ୍ୟ) ଆମର ପାଳନକର୍ତ୍ତା ଉତ୍ତମରୂପେ ଜାଣନ୍ତି ।''

اِنَّ الَّذِيْ فَرَضَ عَلَيْكَ الْقُرْاٰنَ لَرَآدُّكَ اِلٰى مَعَادٍ ۗ قُلْ رَّبِّيْٓ اَعْلَمُ مَنْ جَآءَ بِالْهُدٰى وَمَنْ هُوَ فِيْ ضَلٰلٍ مُّبِيْنٍ ﴿٨٦﴾

୮୭. ଏବଂ ତୁମ୍ଭେ ଆଶା କରି ନଥିଲ ଯେ ତୁମ୍ଭ ପ୍ରତି ଏକ ପୂର୍ଣ୍ଣାଙ୍ଗ (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ କରାହେବ ; କିନ୍ତୁ ତୁମ୍ଭ ପାଳନକର୍ତ୍ତାଙ୍କ ତରଫରୁ ଅନୁଗ୍ରହପୂର୍ବକ ଏପରି କରାହେଲା ; ସୁତରାଂ ତୁମ୍ଭେ କଦାପି ଅବିଶ୍ୱାସକାରୀମାନଙ୍କର ସାହାଯ୍ୟକାରୀ ହୁଅ ନାହିଁ ।

وَمَا كُنْتَ تَرْجُوْٓا اَنْ يُّلْقٰٓى اِلَيْكَ الْكِتٰبُ اِلَّا رَحْمَةً مِّنْ رَّبِّكَ فَلَا تَكُوْنَنَّ ظَهِيْرًا لِّلْكٰفِرِيْنَ ﴿٨٧﴾

୮୮. ଏବଂ ତୁମ୍ଭ ପ୍ରତି ଅଲ୍ଲାହ୍‌ଙ୍କ ନିଦର୍ଶନମାନ ଅବତୀର୍ଣ୍ଣ ହେଲା ପରେ ସେମାନଙ୍କ ମଧ୍ୟରୁ କେହି ଯେପରି ତୁମ୍ଭକୁ ଏଥିରୁ ବିମୁଖ ନ କରାଉ ; ଏବଂ ତୁମ୍ଭେ (ଲୋକମାନଙ୍କୁ) ନିଜ ପାଳନକର୍ତ୍ତାଙ୍କ ଆଡ଼କୁ ଡାକ, ଏବଂ ମୁସରିକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

وَلَا يَصُدُّنَّكَ عَنْ اٰيٰتِ اللّٰهِ بَعْدَ اِذْ اُنْزِلَتْ اِلَيْكَ وَادْعُ اِلٰى رَبِّكَ وَلَا تَكُوْنَنَّ مِنَ الْمُشْرِكِيْنَ ﴿٨٨﴾

୮୯. ଏବଂ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କୌଣସି ଉପାସ୍ୟକୁ ଡାକ ନାହିଁ ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହାନ୍ତି ; ସେ (ଅଲ୍ଲାହ୍) ଯାହା ପ୍ରତି ଦୃଷ୍ଟି ଦେଇଥାନ୍ତି ତାହା ବ୍ୟତୀତ ଅନ୍ୟ ସବୁ (ପାର୍ଥିବ) ବସ୍ତୁ ବିନାଶଶୀଳ ; [୩] ଆଦେଶ (ପ୍ରଦାନ) ତାହାଙ୍କର କର୍ତ୍ତୃତ୍ୱାଧୀନ ଅଟେ ; ଏବଂ ତୁମ୍ଭ ସମସ୍ତଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆଯିବ ।

وَلَا تَدْعُ مَعَ اللّٰهِ اِلٰهًا اٰخَرَ ۘ لَآ اِلٰهَ اِلَّا هُوَ ۗ كُلُّ شَيْءٍ هَالِكٌ اِلَّا وَجْهَهٗ ۗ لَهُ الْحُكْمُ وَاِلَيْهِ تُرْجَعُوْنَ ﴿٨٩﴾

୧. ମୂଳ ଶବ୍ଦ 'ଅଲ ମଆଦ' ଅର୍ଥ ଏପରି ସ୍ଥାନ ଯେଉଁଠାକୁ ଲୋକମାନେ ବାରମ୍ବାର ଫେରି ଆସନ୍ତି । ଏଠାରେ ଏହି ଶବ୍ଦ ମକ୍କାନଗରକୁ ବୁଝାଉଛି କାରଣ ହଜ ଓ ଉମରା ନାମକ ତୀର୍ଥାଟନରେ ଏଠାକୁ ବହୁସଂଖ୍ୟକ ଲୋକ ବହୁବାର ଆସିଥା'ନ୍ତି ।

୨. ଏଠାରେ ମକ୍କାବିଜୟ ସମ୍ବନ୍ଧରେ ସୂଚନା ଦିଆଯାଇଛି । ଏଠାରେ ହଜରତ ମହମ୍ମଦଙ୍କ ପ୍ରତ୍ୟାବର୍ତ୍ତନ ସମ୍ପର୍କିତ ଭବିଷ୍ୟବାଣୀର ଉଲ୍ଲେଖ ଅଛି । ଏହା କୋରାନ ବର୍ଣ୍ଣିତ ସିଦ୍ଧାନ୍ତ ହୋଇଥିବାରୁ ଯଦି ଏପରି ପ୍ରତ୍ୟାବର୍ତ୍ତନ ନ ଘଟିବ ତେବେ କୋରାନର ସତ୍ୟତା ଉପରେ ଏହା ଏକ କଳଙ୍କ ହେବ କାରଣ ଅଲ୍ଲାହ୍ କୋରାନ ବର୍ଣ୍ଣିତ ବିଧାନର ଶପଥ ନେଇ ଏ ପ୍ରକାର ପ୍ରତିଜ୍ଞା କରିଛନ୍ତି । ଏହା ଅବଶ୍ୟ ତାହାଙ୍କ ଅପାର କୃପାରୁ ନିଶ୍ଚୟ ସତ୍ୟ ସାବ୍ୟସ୍ତ ହେବ ।

୩. ଅର୍ଥାତ୍ ସମସ୍ତ ଭୌତିକ ପଦାର୍ଥ । ଏଠାରେ ସ୍ୱର୍ଗୀୟ ପଦାର୍ଥ ବା ଆଧ୍ୟାତ୍ମିକ ଜ୍ଞାନ ଅଭିପ୍ରେତ ନୁହେଁ କାରଣ ସେଗୁଡ଼ିକ ବିନାଶଶୀଳ ।

سُوْرَةُ الْعَنْكَبُوْتِ مَكِّيَّةٌ (٢٩)

# ଅଲ- ଅନକବୁତ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୭୦ଟି ଆୟତ ଓ ୭ଟି ରୁକୂ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

الٓمّٓ ②

୨. ଅଲିଫ—ଲାମ—ମୀମ ।

اَحَسِبَ النَّاسُ اَنْ يُّتْرَكُوْٓا اَنْ يَّقُوْلُوْٓا اٰمَنَّا وَهُمْ لَا يُفْتَنُوْنَ ③

୩. କ'ଣ (ଏହି ଯୁଗର) ଲୋକମାନେ ମନେ କରୁଛନ୍ତି ଯେ ସେମାନେ ବିଶ୍ୱାସ କରିଛନ୍ତି ବୋଲି କହିଦେଲେ ଯଥେଷ୍ଟ ହେବ (ଓ) ସେମାନଙ୍କୁ ଛାଡ଼ି ଦିଆଯିବ, ଏବଂ ସେମାନଙ୍କୁ ପରୀକ୍ଷା କରାଯିବ ନାହିଁ ) ?

وَلَقَدْ فَتَنَّا الَّذِيْنَ مِنْ قَبْلِهِمْ فَلَيَعْلَمَنَّ اللّٰهُ الَّذِيْنَ صَدَقُوْا وَلَيَعْلَمَنَّ الْكٰذِبِيْنَ ④

୪. ଅଥଚ ସେମାନଙ୍କର ପୂର୍ବବର୍ତ୍ତୀ ଲୋକମାନଙ୍କୁ ଆମେ ପରୀକ୍ଷା କରିଥିଲୁ (ଏବଂ ଆଜି ମଧ୍ୟ ସେ ସେହିପରି କରିବେ) ; ତେଣୁ ଯେଉଁମାନେ ସତ୍ୟବାଦୀ ଓ ଯେଉଁମାନେ ମିଥ୍ୟାବାଦୀ ଅଲ୍ଲାହ୍ ସେମାନଙ୍କୁ ପ୍ରକାଶ କରିଦେବେ ।

اَمْ حَسِبَ الَّذِيْنَ يَعْمَلُوْنَ السَّيِّاٰتِ اَنْ يَّسْبِقُوْنَا ؕ سَآءَ مَا يَحْكُمُوْنَ ⑤

୫. ଯେଉଁମାନେ ମନ୍ଦକାର୍ଯ୍ୟ କରୁଛନ୍ତି ସେମାନେ କ'ଣ ମନେ କରୁଛନ୍ତି ଯେ ସେମାନେ ଆମ ଶାସ୍ତିରୁ ରକ୍ଷା ପାଇଯିବେ ; ସେମାନଙ୍କ (ଏପରି) ବିଚାର ଅତିଶୟ ମନ୍ଦ ଅଟେ ।

مَنْ كَانَ يَرْجُوْا لِقَآءَ اللّٰهِ فَاِنَّ اَجَلَ اللّٰهِ لَاٰتٍ ؕ وَهُوَ السَّمِيْعُ الْعَلِيْمُ ⑥

୬. ଯେଉଁ ବ୍ୟକ୍ତି ଅଲ୍ଲାହ୍‌ଙ୍କ ସହିତ ସାକ୍ଷାତ୍ କରିବା ପାଇଁ ଆଶା ପୋଷଣ କରେ, ତେବେ (ତା'ର ଜାଣି ରଖିବା ଉଚିତ ଯେ) ଅଲ୍ଲାହ୍‌ଙ୍କ ଦ୍ୱାରା ନିର୍ଦ୍ଧାରିତ କରାଯାଇଥିବା ସମୟ ନିଶ୍ଚୟ ଉପସ୍ଥିତ ହେବ ; ଏବଂ ସେ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَمَنْ جَاهَدَ فَاِنَّمَا يُجَاهِدُ لِنَفْسِهٖ ؕ اِنَّ اللّٰهَ لَغَنِىٌّ عَنِ الْعٰلَمِيْنَ ⑦

୭. ଏବଂ ଯେଉଁ ବ୍ୟକ୍ତି ଅଲ୍ଲାହ୍‌ଙ୍କ ସକାଶେ ଚେଷ୍ଟା କରେ ସେ ପ୍ରକୃତରେ ନିଜ ପାଇଁ ଚେଷ୍ଟା କରେ ; ଅଲ୍ଲାହ୍ ସମଗ୍ର ଜଗତ ଠାରୁ ସ୍ୱାଧୀନ (ଏବଂ ସେମାନଙ୍କ ଉପାସନାର ଭିକ୍ଷାର୍ଥୀ ନୁହନ୍ତି) ।

وَالَّذِيْنَ اٰمَنُوْا وَعَمِلُوا الصّٰلِحٰتِ لَنُكَفِّرَنَّ عَنْهُمْ سَيِّاٰتِهِمْ وَلَنَجْزِيَنَّهُمْ اَحْسَنَ الَّذِىْ كَانُوْا يَعْمَلُوْنَ ⑧

୮. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ତଦନୁଯାୟୀ ସତ୍‌କର୍ମ କରିଛନ୍ତି, ଆମେ ସେମାନଙ୍କ ମନ୍ଦକାର୍ଯ୍ୟ-ଗୁଡ଼ିକୁ ସେମାନଙ୍କଠାରୁ ଦୂର କରିଦେବୁ, ଏବଂ ସେମାନେ ଯାହା କରୁଥିଲେ ତଦନୁସାରେ ଯାହା ଉତ୍ତମ ପୁରସ୍କାର ସେମାନଙ୍କର ପ୍ରାପ୍ୟ ହେଉଥିବ ତାହା ଆମେ ସେମାନଙ୍କୁ ପ୍ରଦାନ କରିବୁ ।

وَوَصَّيْنَا الْإِنْسَانَ بِوَالِدَيْهِ حُسْنًا ۖ وَإِنْ جَاهَدَاكَ لِتُشْرِكَ بِي مَا لَيْسَ لَكَ بِهِ عِلْمٌ فَلَا تُطِعْهُمَا ۚ إِلَيَّ مَرْجِعُكُمْ فَأُنَبِّئُكُمْ بِمَا كُنْتُمْ تَعْمَلُونَ ﴿٩﴾

୯. ଏବଂ ଆମେ ମନୁଷ୍ୟକୁ ନିଜ ପିତାମାତାଙ୍କ ସହିତ ସଦ୍‌ବ୍ୟବହାର କରିବାକୁ ଆଦେଶ ଦେଇଅଛୁ ; କିନ୍ତୁ ଯଦି ସେ ଦୁହେଁ ତୁମ ସହିତ ଏ ସଂକ୍ରାନ୍ତରେ ଯୁକ୍ତିତର୍କ କରନ୍ତି ଯେ ତୁମେ ଅନ୍ୟ କାହାକୁ ଆମର ସମକକ୍ଷ ନିରୂପଣ କର, ଅଥଚ ତୁମେ ତାହା ସଂକ୍ରାନ୍ତରେ କିଛି ଜାଣ ନାହିଁ, ତେବେ ତୁମେ ସେ ଦୁହିଁଙ୍କର ଆଜ୍ଞା ପାଳନ[1] କରନାହିଁ ; କାରଣ ତୁମ ସମସ୍ତଙ୍କୁ ଆମ ନିକଟକୁ ଫେରିବାକୁ ହେବ, ଓ ଆମେ ତୁମମାନଙ୍କୁ ତୁମମାନଙ୍କ (ଭଲ ଓ ମନ୍ଦ) କାର୍ଯ୍ୟ ସଂକ୍ରାନ୍ତରେ ଅବଗତ କରାଇବୁ ।

وَالَّذِينَ آمَنُوا وَعَمِلُوا الصَّالِحَاتِ لَنُدْخِلَنَّهُمْ فِي الصَّالِحِينَ ﴿١٠﴾

୧୦. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ତଦନୁଯାୟୀ ସେମାନେ ସତ୍‌କର୍ମ ମଧ୍ୟ କରିଛନ୍ତି, ଆମେ ସେମାନଙ୍କୁ ଧର୍ମନିଷ୍ଠ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ କରିବୁ ।

وَمِنَ النَّاسِ مَنْ يَقُولُ آمَنَّا بِاللَّهِ فَإِذَا أُوذِيَ فِي اللَّهِ جَعَلَ فِتْنَةَ النَّاسِ كَعَذَابِ اللَّهِ وَلَئِنْ جَاءَ نَصْرٌ مِنْ رَبِّكَ لَيَقُولُنَّ إِنَّا كُنَّا مَعَكُمْ ۚ أَوَلَيْسَ اللَّهُ بِأَعْلَمَ بِمَا فِي صُدُورِ الْعَالَمِينَ ﴿١١﴾

୧୧. ଏବଂ ଲୋକମାନଙ୍କ ମଧ୍ୟରେ (ଏପରି କେତେକ ଅଛନ୍ତି) ଯେଉଁମାନେ କହନ୍ତି, "ଆମେମାନେ ଅଲ୍ଲାହ୍‌ଙ୍କ ଉପରେ ବିଶ୍ୱାସ କରିଅଛୁ;" ତା'ପରେ ଯେତେବେଳେ ଅଲ୍ଲାହ୍‌ଙ୍କ ପାଇଁ ସେମାନଙ୍କୁ କଷ୍ଟ ସହ୍ୟ କରିବାକୁ ପଡ଼େ (ସେତେବେଳେ) ସେମାନେ ଲୋକମାନଙ୍କ ନିର୍ଯ୍ୟାତନାକୁ ଅଲ୍ଲାହ୍‌ଙ୍କ ନିର୍ଯ୍ୟାତନା ବୋଲି ମନେକରନ୍ତି; ଏବଂ ଯଦି ତୁମ ପାଳନକର୍ତ୍ତାଙ୍କ ନିକଟରୁ ସାହାଯ୍ୟ ଆସେ, ତେବେ (ସେମାନେ) କହନ୍ତି, "(ବସ୍ତୁତଃ) ଆମେମାନେ ମଧ୍ୟ ତୁମମାନଙ୍କ ସହିତ ରହିଥିଲୁ ;" (ତେବେ) କ'ଣ ସମଗ୍ର ଜଗତର ଲୋକମାନଙ୍କ ମନରେ ଯାହାକିଛି ଅଛି ଅଲ୍ଲାହ୍ ତାହା ଭଲ ଭାବରେ ଜାଣନ୍ତି ନାହିଁ ?

وَلَيَعْلَمَنَّ اللَّهُ الَّذِينَ آمَنُوا وَلَيَعْلَمَنَّ الْمُنَافِقِينَ ﴿١٢﴾

୧୨. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ଯେଉଁମାନେ କପଟବିଶ୍ୱାସୀ ଅଟନ୍ତି, ଅଲ୍ଲାହ୍ ସେମାନଙ୍କୁ ନିଶ୍ଚୟ ପ୍ରକାଶ କରିଦେବେ ।

وَقَالَ الَّذِينَ كَفَرُوا لِلَّذِينَ آمَنُوا اتَّبِعُوا سَبِيلَنَا وَلْنَحْمِلْ خَطَايَاكُمْ وَمَا هُمْ بِحَامِلِينَ مِنْ خَطَايَاهُمْ مِنْ شَيْءٍ ۖ إِنَّهُمْ لَكَاذِبُونَ ﴿١٣﴾

୧୩. ଏବଂ ଅବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ କହନ୍ତି, "ତୁମେମାନେ ଆମମାନଙ୍କର ଅନୁସରଣ କର ; ଆମେମାନେ ତୁମମାନଙ୍କର ପାପ (ଭାର) ବହନ କରିବୁ ;" ଅଥଚ ସେମାନେ ସେମାନଙ୍କ ପାପ (ଭାର) ବହନ କରିପାରିବେ ନାହିଁ ; ସେମାନେ ବାସ୍ତବରେ ମିଥ୍ୟାବାଦୀ ଅଟନ୍ତି ।

---

୧. ପିତାମାତାଙ୍କ ଆଜ୍ଞା ପାଳନ କରିବା ଅନିବାର୍ଯ୍ୟ । କିନ୍ତୁ ଅଲ୍ଲାହ୍‌ଙ୍କ ସହିତ ସମକକ୍ଷ ଉପାସ୍ୟ ଗ୍ରହଣ ସମ୍ବନ୍ଧରେ ତାଙ୍କ ଆଦେଶ ପାଳନ କରିବାକୁ ବାରଣ କରାଯାଇଛି ।

وَلَيَحْمِلُنَّ أَثْقَالَهُمْ وَأَثْقَالًا مَّعَ أَثْقَالِهِمْ وَلَيُسْأَلُنَّ يَوْمَ الْقِيٰمَةِ عَمَّا كَانُوْا يَفْتَرُوْنَ ﴿١٤﴾

୧୪. ପ୍ରକୃତରେ ସେମାନେ ନିଜ ଭାର ମଧ୍ୟ ବହନ କରିବେ ଓ ନିଜ ଭାର ବ୍ୟତୀତ ଅନ୍ୟମାନଙ୍କର ଭାର ମଧ୍ୟ ବହନ କରିବେ (ଯେଉଁମାନଙ୍କୁ ସେମାନେ ପ୍ରତାରିତ କରୁଛନ୍ତି) ; ଏବଂ କୟାମତ ଦିନ ସେମାନଙ୍କୁ ଏହି ମିଥ୍ୟା ରଚନା ସଂକ୍ରାନ୍ତରେ ପ୍ରଶ୍ନ କରାହେବ ।

ରୁ: ୨

وَلَقَدْ أَرْسَلْنَا نُوْحًا إِلٰى قَوْمِهٖ فَلَبِثَ فِيْهِمْ أَلْفَ سَنَةٍ إِلَّا خَمْسِيْنَ عَامًا فَأَخَذَهُمُ الطُّوْفَانُ وَهُمْ ظٰلِمُوْنَ ﴿١٥﴾

୧୫. ଏବଂ ଆମେ ନୁହଙ୍କୁ ତାହାଙ୍କ ସମ୍ପ୍ରଦାୟ ପ୍ରତି ପ୍ରେରଣ[୧] କରିଥିଲୁ ; ସୁତରାଂ ସେ ସେମାନଙ୍କ ମଧ୍ୟରେ ନଅଶହ ପଚାଶ ବର୍ଷ ରହିଥିଲେ ; ଏହାପରେ ତାହାଙ୍କ ସମ୍ପ୍ରଦାୟର ଲୋକମାନଙ୍କୁ ପ୍ରବଳ ବନ୍ୟା କବଳିତ କରିଥିଲା, ଏବଂ ସେମାନେ ଅତ୍ୟାଚାରୀ ଥିଲେ ।

فَأَنْجَيْنٰهُ وَأَصْحٰبَ السَّفِيْنَةِ وَجَعَلْنٰهَآ اٰيَةً لِّلْعٰلَمِيْنَ ﴿١٦﴾

୧୬. ସୁତରାଂ ଆମେ ତାହାଙ୍କୁ ଓ ତାହାଙ୍କ ନୌକାରେ ଆରୋହଣ କରିଥିବା ସଂଗୀମାନଙ୍କୁ ରକ୍ଷା କରିଥିଲୁ ; ଏବଂ ଆମେ ଏହି ଘଟଣାକୁ ସମଗ୍ର ଜାତିର ଲୋକମାନଙ୍କ ପାଇଁ ଏକ ନିଦର୍ଶନ କରିଦେଲୁ ।

وَإِبْرٰهِيْمَ إِذْ قَالَ لِقَوْمِهِ اعْبُدُوا اللّٰهَ وَاتَّقُوْهُ ذٰلِكُمْ خَيْرٌ لَّكُمْ إِنْ كُنْتُمْ تَعْلَمُوْنَ ﴿١٧﴾

୧୭. ଏବଂ (ଆମେ) ଇବ୍ରାହିମଙ୍କୁ (ମଧ୍ୟ ରସୁଲ ଭାବେ ପ୍ରେରଣ କରିଥିଲୁ) ; ଯେତେବେଳେ ସେ ନିଜ ସମ୍ପ୍ରଦାୟକୁ କହିଥିଲେ, "ଅଲ୍ଲାହଙ୍କର ଉପାସନା କର ଓ ତାହାଙ୍କୁ ଭୟକର ; ଯଦି ତୁମେମାନେ ଏହା ଜାଣ, ତେବେ ଏହା ତୁମମାନଙ୍କ ପକ୍ଷରେ ଅତି ଉତ୍ତମ ଅଟେ ।"

إِنَّمَا تَعْبُدُوْنَ مِنْ دُوْنِ اللّٰهِ أَوْثَانًا وَّتَخْلُقُوْنَ إِفْكًا إِنَّ الَّذِيْنَ تَعْبُدُوْنَ مِنْ دُوْنِ اللّٰهِ لَا يَمْلِكُوْنَ لَكُمْ رِزْقًا فَابْتَغُوْا عِنْدَ اللّٰهِ الرِّزْقَ وَاعْبُدُوْهُ وَاشْكُرُوْا لَهٗ إِلَيْهِ تُرْجَعُوْنَ ﴿١٨﴾

୧୮. ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟମାନଙ୍କର ଉପାସନା କରୁଅଛ, ଓ (ଧର୍ମ ସଂକ୍ରାନ୍ତରେ) ମିଥ୍ୟା କଥା ରଚନା କରୁଅଛ ; ଅଲ୍ଲାହଙ୍କ ବ୍ୟତୀତ ତୁମେମାନେ ଯେଉଁମାନଙ୍କର ଉପାସନା କରୁଅଛ ସେମାନେ ତୁମମାନଙ୍କୁ ଜୀବିକା ପ୍ରଦାନ କରିପାରିବେ ନାହିଁ ; ସୁତରାଂ ଅଲ୍ଲାହଙ୍କ ଠାରୁ ନିଜର ଜୀବିକା ଭିକ୍ଷାକର, ଏବଂ ତାହାଙ୍କର ଉପାସନା କର, ଓ ତାହାଙ୍କ ନିକଟରେ କୃତଜ୍ଞ ହୁଅ ; ଏବଂ ତୁମମାନଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆଯିବ ।

---

୧. ଏଠାରେ ନୁହଙ୍କ ବୟସ ଅଭିପ୍ରେତ ନୁହେଁ, ବରଂ ତାଙ୍କ ଶରିୟତର କାର୍ଯ୍ୟକାଳ ବା ତା'ଙ୍କ ସଂପ୍ରଦାୟର ସେହି ସମୟ ଅଭିପ୍ରେତ ଯେଉଁ ସମୟ ମଧ୍ୟରେ ସେମାନେ ସତ୍‌କାର୍ଯ୍ୟ କରୁଥିଲେ । ବହୁ ପୁରାତନ କାଳର ଅବତାର ଯଥା :—ନୁହ, ହୁଦ ଓ ସ୍ୱାଲେହ ଆଦିଙ୍କ ସଠିକ୍ ସମୟ ତଥା ସେମାନେ କେତେ ବର୍ଷ ଜୀବିତ ଥିଲେ ସେ ବିଷୟ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟମାନଙ୍କୁ ଅଜ୍ଞାତ ଥିବା ପବିତ୍ର କୋରାନରେ ଲେଖା ଅଛି (୧୪ : ୧୦ ଦ୍ରଷ୍ଟବ୍ୟ) । ଅନ୍ୟତ୍ର ପବିତ୍ର କୋରାନରେ ବର୍ଣ୍ଣନା କରାଯାଇଛି ଯେ ହଜରତ ଇବ୍ରାହିମ ହଜରତ ନୁହଙ୍କ ଅନୁଗାମୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ (୩୭:୮୪ ଦ୍ରଷ୍ଟବ୍ୟ) । ଅତଏବ ହଜରତ ନୁହଙ୍କ ପରମାୟୁ ପ୍ରଥମେ ହଜରତ ଇବ୍ରାହିମ୍‌ଙ୍କ ପର୍ଯ୍ୟନ୍ତ ବୃଦ୍ଧି ହେଲା; ପରେ ହଜରତ ୟୁସୁଫଙ୍କ ପର୍ଯ୍ୟନ୍ତ, ବରଂ ହଜରତ ମୁସାଙ୍କ ପର୍ଯ୍ୟନ୍ତ ଦୀର୍ଘ ହେଲା ।

୧୯. ଏବଂ ଯଦି ତୁମେମାନେ ଆମ୍ଭ ବାଣୀକୁ ମିଥ୍ୟା ମନେ କର, ତେବେ (ଏଥିରେ କୌଣସି ନୂତନତା ନାହିଁ) ତୁମମାନଙ୍କ ପୂର୍ବବର୍ତ୍ତୀ ସମ୍ପ୍ରଦାୟମାନେ ମଧ୍ୟ (ନିଜ ରସୁଲମାନଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲେ ; ଏବଂ କେବଳ ପ୍ରକାଶ୍ୟ ଭାବରେ (ବାର୍ତ୍ତା) ପହଞ୍ଚାଇ ଦେବା ରସୁଲମାନଙ୍କର କର୍ତ୍ତବ୍ୟ, (ଏଥିରେ ବାଧ୍ୟବାଧକତାର ପ୍ରଶ୍ନ ନାହିଁ )।

وَاِنْ تُكَذِّبُوْا فَقَدْ كَذَّبَ اُمَمٌ مِّنْ قَبْلِكُمْ ۗ وَمَا عَلَى الرَّسُوْلِ اِلَّا الْبَلٰغُ الْمُبِيْنُ ⑲

୨୦. କ'ଣ ସେମାନଙ୍କୁ ଜଣା ନାହିଁ ଯେ ଅଲ୍ଲାହ କିପରି ଭାବରେ ସୃଷ୍ଟିକୁ ପ୍ରଥମେ ଆରମ୍ଭ କରନ୍ତି ଏବଂ ଏହାପରେ ତାହାର ପୁନରାବୃତ୍ତି କରନ୍ତି ? ଏହି କାର୍ଯ୍ୟ ଅଲ୍ଲାହଙ୍କ ପକ୍ଷରେ ସହଜସାଧ୍ୟ ।

اَوَلَمْ يَرَوْا كَيْفَ يُبْدِئُ اللّٰهُ الْخَلْقَ ثُمَّ يُعِيْدُهٗ ۗ اِنَّ ذٰلِكَ عَلَى اللّٰهِ يَسِيْرٌ ⑳

୨୧. [1] ତୁମେ କୁହ, "ଭୂପୃଷ୍ଠର ଚତୁର୍ଦ୍ଦିଗରେ ଭ୍ରମଣ କରି ଦେଖ ଯେ ସେ (ଅଲ୍ଲାହ), [2] ସୃଷ୍ଟି କିପରି ଭାବେ ଆରମ୍ଭ କରିଥିଲେ ; ପୁଣି ମୃତ୍ୟୁପରେ ସେମାନଙ୍କୁ ଦ୍ୱିତୀୟ ଥର ଜୀବିତ କରି ଚାଲିଲେ"; ଏବଂ ଅଲ୍ଲାହ ବାସ୍ତବରେ ପ୍ରତ୍ୟେକ ବିଷୟ କରିବାକୁ ସକ୍ଷମ ।

قُلْ سِيْرُوْا فِي الْاَرْضِ فَانْظُرُوْا كَيْفَ بَدَاَ الْخَلْقَ ثُمَّ اللّٰهُ يُنْشِئُ النَّشْاَةَ الْاٰخِرَةَ ۗ اِنَّ اللّٰهَ عَلٰى كُلِّ شَيْءٍ قَدِيْرٌ ㉑

୨୨. ସେ ଯାହାକୁ ଇଚ୍ଛା [3] କରନ୍ତି (ତାହାକୁ) ଶାସ୍ତି ଦେଇଥାନ୍ତି ଓ ଯାହାକୁ ଇଚ୍ଛା କରନ୍ତି ତାହା ପ୍ରତି କରୁଣା କରିଥାନ୍ତି ; ଏବଂ ତାହାଙ୍କ ନିକଟକୁ ତୁମମାନଙ୍କୁ ଫେରାଇ ନିଆଯିବ ।

يُعَذِّبُ مَنْ يَّشَاۤءُ وَيَرْحَمُ مَنْ يَّشَاۤءُ ۚ وَاِلَيْهِ تُقْلَبُوْنَ ㉒

୨୩. ଏବଂ ତୁମେମାନେ ଅଲ୍ଲାହଙ୍କୁ ତାହାଙ୍କ ଇଚ୍ଛା ବିରୁଦ୍ଧରେ ପୃଥିବୀରେ କି ଆକାଶରେ (କାର୍ଯ୍ୟ କରିବାକୁ) ବାଧ୍ୟ କରି ପାରିବ ନାହିଁ ; ଏବଂ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର କେହି ବନ୍ଧୁ ବା ସାହାଯ୍ୟକାରୀ ନାହାନ୍ତି ।

وَمَاۤ اَنْتُمْ بِمُعْجِزِيْنَ فِي الْاَرْضِ وَلَا فِي السَّمَاۤءِ ۖ وَمَا لَكُمْ مِّنْ دُوْنِ اللّٰهِ مِنْ وَّلِيٍّ وَّلَا نَصِيْرٍ ㉓

---

୧. ଦେଶର ଚାରିଆଡ଼େ ବୁଲି ବୁଲି ଲୋକମାନଙ୍କର ଅବସ୍ଥା ଅନୁଧ୍ୟାନ କରିବାକୁ ପବିତ୍ର କୋରାନର ବିଭିନ୍ନ ଆୟତରେ ବର୍ଣ୍ଣନା କରାଯାଇଛି (୬:୧୨, ୧୨:୧୧୦, ୩୦:୧୦, ୩୫:୪୫ ଓ ୪୮:୮୩ ଦ୍ରଷ୍ଟବ୍ୟ) ଏବଂ ସୂଚିତ ପ୍ରାୟ ପ୍ରତ୍ୟେକ ଆୟତରେ ଗୋଟିଏ ଜାତିର ବିନାଶ ଓ ତା' ସ୍ଥାନରେ ଅନ୍ୟ ଗୋଟିଏ ଜାତିର ସୃଷ୍ଟି ସମ୍ବନ୍ଧରେ ଉଲ୍ଲେଖ ରହିଛି । ଏଠାରେ ବାସ୍ତବରେ ମୃତ୍ୟୁ ପର ପୁନରୁତ୍‌ଥାନ ସମ୍ବନ୍ଧରେ ଉଲ୍ଲେଖ ନାହିଁ; ବିଭିନ୍ନ ଜାତିର ଉତ୍‌ଥାନ ଓ ପତନ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି ।

୨. ଏଠାରେ ପରଲୋକର ଜୀବନ ସମ୍ବନ୍ଧରେ ବର୍ଣ୍ଣନା କରାଯାଇ ନାହିଁ ବରଂ ଇହଲୋକର ବର୍ଣ୍ଣନା ଅଛି । ଏହି ସଂସାରକୁ ମୃତ ବ୍ୟକ୍ତି ଜୀବିତ ହୋଇ ଫେରେ ନାହିଁ । ସୁତରାଂ ଏହି ଆୟତରୁ ସ୍ପଷ୍ଟ ପ୍ରମାଣ ମିଳୁଛି ଯେ ପ୍ରଥମ ଜନ୍ମର ଅର୍ଥ ଜାତିର ଉନ୍ନତି ଏବଂ ଦ୍ୱିତୀୟ ଜନ୍ମର ଅର୍ଥ ବିଜିତ ଜାତିର ଅବନତି ପରେ ସେମାନଙ୍କ ମଧ୍ୟରେ ପୁନର୍ଜାଗରଣ ସୃଷ୍ଟି କରାଇବା । ଏଠାରେ ପରକାଳର ଆଦୌ ଅସ୍ତିତ୍ୱ ନାହିଁ ବୋଲି ଅର୍ଥ କରିବା ଯଥାର୍ଥ ନୁହେଁ । ବରଂ ଆମର କହିବା କଥା ଯେ ଏହି ସଂସାରରେ ହିଁ ବିଭିନ୍ନ ଜାତିର ଉତ୍‌ଥାନ ପତନ ଘଟୁଥିବା ସଂପର୍କରେ ବର୍ଣ୍ଣନା କରାଯାଇଛି ।

୩. ଏହି ଗ୍ରନ୍ଥରେ ଅନ୍ୟତ୍ର ଉଲ୍ଲେଖ ଅଛି ଯେ ଯେଉଁ ବ୍ୟକ୍ତି ଶାସ୍ତି ପାଇବାକୁ ଯୋଗ୍ୟ କେବଳ ତାକୁ ହିଁ ଅଲ୍ଲାହ ଶାସ୍ତି ଦେଇଥା'ନ୍ତି । ସୁତରାଂ ଅଲ୍ଲାହ ନିଜର ଜ୍ଞାନ ବଳରେ ଯେଉଁ ଜାତି ବା ବ୍ୟକ୍ତିକୁ ଶାସ୍ତିଯୋଗ୍ୟ ସାବ୍ୟସ୍ତ କରାନ୍ତି ସେ ହିଁ ଶାସ୍ତି ପାଏ, ଅନ୍ୟଥା ସେ ଖାମଖିଆଲି ଭାବରେ କାହାରିକୁ ଶାସ୍ତି ଦିଅନ୍ତି ନାହିଁ ।

ରୁ:୩

୨୪. ଏବଂ ଯେଉଁମାନେ ଅଲ୍ଲାହ୍‌ଙ୍କ ନିଦର୍ଶନ ବିଷୟରେ ଓ ତାହାଙ୍କ ସହିତ ସାକ୍ଷାତ୍[୧] ବିଷୟରେ ଅବିଶ୍ୱାସ କରନ୍ତି ସେମାନେ ଏପରି ବ୍ୟକ୍ତି ଯେଉଁମାନେ ଆମର କରୁଣା ଲାଭରୁ ନିରାଶ ହୋଇଛନ୍ତି ; ଏବଂ ସେମାନଙ୍କୁ ହିଁ ଯନ୍ତ୍ରଣାଦାୟକ ଶାସ୍ତି ପ୍ରାପ୍ତ ହେବ ।

وَالَّذِيْنَ كَفَرُوْا بِاٰيٰتِ اللّٰهِ وَلِقَآىِٕهٖٓ اُولٰٓىِٕكَ يَىِٕسُوْا مِنْ رَّحْمَتِيْ وَاُولٰٓىِٕكَ لَهُمْ عَذَابٌ اَلِيْمٌ ﴿٢٤﴾

୨୫. ସୁତରାଂ ତାହାଙ୍କ (ଅର୍ଥାତ୍ ଇବ୍ରାହିମଙ୍କ) ସମ୍ପ୍ରଦାୟର ଉତ୍ତରଏହାଛଡ଼ା ଆଉ କିଛି ନଥିଲା ଯେ ସେମାନେ କହିଲେ, "ତାହାକୁ ହତ୍ୟାକର କିମ୍ବା ପୋଡ଼ି ଦିଅ ;" (ବସ୍ତୁତଃ ସେମାନେ ତାହାଙ୍କୁ ଅଗ୍ନିରେ ନିକ୍ଷେପ କରିଥିଲେ), କିନ୍ତୁ ଅଲ୍ଲାହ୍ ତାହାଙ୍କୁ ଅଗ୍ନିରୁ ଉଦ୍ଧାର କରିଥିଲେ ; ଏଥିରେ ବାସ୍ତବିକ ବିଶ୍ୱାସକାରୀ ସମ୍ପ୍ରଦାୟ ପାଇଁ ମହାନ୍ ନିଦର୍ଶନ ରହିଅଛି ।

فَمَا كَانَ جَوَابَ قَوْمِهٖٓ اِلَّآ اَنْ قَالُوا اقْتُلُوْهُ اَوْ حَرِّقُوْهُ فَاَنْجٰىهُ اللّٰهُ مِنَ النَّارِ ۭ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يُّؤْمِنُوْنَ ﴿٢٥﴾

୨୬. (ଇବ୍ରାହିମ) କହିଲେ, "ତୁମେମାନେ ସାଂସାରିକ ଜୀବନରେ ଅନ୍ୟ (ମୁସରିକ)ମାନଙ୍କ ସହିତ ସଦ୍‌ଭାବ[୨] ବୃଦ୍ଧି କରିବା ପାଇଁ ଅଲ୍ଲାହ୍‌ଙ୍କ ବ୍ୟତୀତ ପିତୁଳାମାନଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା କରିଅଛ ; ଏହାପରେ କୟାମତ ଦିନ ତୁମମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କର ପ୍ରତ୍ୟାଖ୍ୟାନ କରିବେ, ଏବଂ ତୁମମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କୁ ଅଭିଶାପ ଦେବେ ; ଏବଂ ନରକର ଅଗ୍ନି ତୁମମାନଙ୍କ ବାସସ୍ଥାନ ହେବ ; ଏବଂ ଯେଉଁମାନଙ୍କୁ ତୁମେମାନେ ସାହାଯ୍ୟକାରୀ ମନେ କରୁଅଛ ସେମାନଙ୍କ ମଧ୍ୟରୁ କେହି ତୁମମାନଙ୍କର ସାହାଯ୍ୟ ପାଇଁ ଆସିବେ ନାହିଁ ।"

وَقَالَ اِنَّمَا اتَّخَذْتُمْ مِّنْ دُوْنِ اللّٰهِ اَوْثَانًا ۙ مَّوَدَّةَ بَيْنِكُمْ فِي الْحَيٰوةِ الدُّنْيَا ۚ ثُمَّ يَوْمَ الْقِيٰمَةِ يَكْفُرُ بَعْضُكُمْ بِبَعْضٍ وَّيَلْعَنُ بَعْضُكُمْ بَعْضًا ۡ وَّمَاْوٰىكُمُ النَّارُ وَمَا لَكُمْ مِّنْ نّٰصِرِيْنَ ﴿٢٦﴾

୨୭. ଏବଂ ଏହାପରେ ଲୁତ ତାହାଙ୍କ ପ୍ରତି ବିଶ୍ୱାସ କରିଥିଲେ ; ଏବଂ (ଇବ୍ରାହିମ) କହିଲେ, "ଆମେ ନିଜ ପାଳନକର୍ତ୍ତାଙ୍କ ଉଦ୍ଦେଶ୍ୟରେ ଦେଶ ଛାଡ଼ି ଚାଲିଯିବୁ ; ବାସ୍ତବରେ ସେ ହିଁ ଅତ୍ୟନ୍ତ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।"

وقف لازم فَاٰمَنَ لَهٗ لُوْطٌ ۘ وَقَالَ اِنِّيْ مُهَاجِرٌ اِلٰى رَبِّيْ ۭ اِنَّهٗ هُوَ الْعَزِيْزُ الْحَكِيْمُ ﴿٢٧﴾

---

୧. ବାସ୍ତବରେ ବିଶ୍ୱାସକାରୀ ଭକ୍ତମାନଙ୍କୁ ଅଲ୍ଲାହ୍‌ଙ୍କ ସାକ୍ଷାତ୍ ମିଳୁଥାଏ ଅଥଚ ଅବିଶ୍ୱାସକାରୀମାନଙ୍କ ସହିତ ତାହା ଶାସ୍ତି ଆକାରରେ ପ୍ରକାଶିତ ହୁଏ । ଯେବେ ବି ସେମାନଙ୍କ ମନରେ ଲଜ୍ଜା ଜନ୍ମେ ତେବେ ତାହା କରୁଣା ଓ କ୍ଷମା ମାଧ୍ୟମରେ ପ୍ରକାଶିତ ହୋଇଥାଏ । ଅତଏବ ଏହି ଆୟତର ତାତ୍ପର୍ଯ୍ୟ ହେଉଛି, ଯେଉଁ ଲୋକମାନେ ଅଲ୍ଲାହ୍‌ଙ୍କ ସାକ୍ଷାତ୍‌କୁ ଅସ୍ୱୀକାର କରନ୍ତି ସେମାନେ ପ୍ରକୃତରେ ଭାବୁଛନ୍ତି ଯେ ଅଲ୍ଲାହ୍ ସେମାନଙ୍କୁ କଦାପି କ୍ଷମା କରିବେ ନାହିଁ ଓ ସେମାନଙ୍କ ପ୍ରତି ଦୟାପରବଶ ହୋଇ ନିଜର ଅଲୌକିକ ଶକ୍ତିକୁ ପ୍ରଦର୍ଶିତ କରିବେ ନାହିଁ । ବସ୍ତୁତଃ ଅଲ୍ଲାହ୍ ସେମାନଙ୍କ ବିଶ୍ୱାସ ମୁତାବିକ ସେମାନଙ୍କ ପ୍ରତି ବ୍ୟବହାର କରିଥାଆନ୍ତି ତଥା ସେମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଦେଇଥା'ନ୍ତି ।

୨. ଅର୍ଥାତ୍ ତୁମମାନଙ୍କ ଧର୍ମର ମୂଳଭିତ୍ତି ପ୍ରମାଣ ଉପରେ ଆଧାରିତ ନୁହେଁ ବରଂ ନିଜ ଜାତିର ଲୋକମାନଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରାଇବା । ସତ୍ୟ ଧର୍ମ ସର୍ବଦା ପ୍ରମାଣ ଉପରେ ପ୍ରତିଷ୍ଠିତ । ଅଲ୍ଲାହ୍ ପଛେ ଅସନ୍ତୁଷ୍ଟ ହୋଇ ଯାଆନ୍ତୁ କିନ୍ତୁ ଲୋକମାନେ ଅସନ୍ତୁଷ୍ଟ ନ ହୁଅନ୍ତୁ, ଏହି ଚିନ୍ତାଧାରା ଅବିଶ୍ୱାସକାରୀମାନଙ୍କ ଧର୍ମର ମୂଳଭିତ୍ତି । କିନ୍ତୁ ପରିଣାମରେ ଏପରି ସମୟ ଆସେ ଯେବେ ସେମାନଙ୍କୁ ସନ୍ତୁଷ୍ଟ କରିବା ସକାଶେ ଅବିଶ୍ୱାସକାରୀମାନେ ସତ୍ୟକୁ ମଧ୍ୟ ଅସ୍ୱୀକାର କରିଥା'ନ୍ତି; ଯଦ୍ଦ୍ୱାରା ସେହି ଲୋକମାନେ ହିଁ ଶତ୍ରୁ ପାଲଟନ୍ତି । ପରକାଳରେ ମଧ୍ୟ ଏପରି ସମୟ ଆସିବ ଯେତେବେଳେ ଏହି ସଂସାରର ବନ୍ଧୁମାନେ ଲାଭଦାୟକ ହେବେ ନାହିଁ ।

୨୮. ଏବଂ ଆମେ ତାହାଙ୍କୁ ଇସହାକ ଓ ଯାକୁବ ପ୍ରଦାନ କରିଥିଲୁ, ଏବଂ ତାହାଙ୍କ ବଂଶଜଙ୍କ ନିମନ୍ତେ ନବିପଦ ଓ (ଧର୍ମ) ଗ୍ରନ୍ଥ ସଂରକ୍ଷିତ କରିଥିଲୁ ଏବଂ ଆମେ ତାହାଙ୍କୁ (ଏହି) ସଂସାରରେ ମଧ୍ୟ ଏହାର ପୁରସ୍କାର ଦେଇଥିଲୁ ଏବଂ ପରକାଳରେ ମଧ୍ୟ ସେ ଧର୍ମନିଷ୍ଠମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବେ ।[1]

وَوَهَبْنَا لَهٗۤ اِسْحٰقَ وَيَعْقُوْبَ وَجَعَلْنَا فِيْ ذُرِّيَّتِهِ النُّبُوَّةَ وَالْكِتٰبَ وَاٰتَيْنٰهُ اَجْرَهٗ فِي الدُّنْيَا ۚ وَاِنَّهٗ فِي الْاٰخِرَةِ لَمِنَ الصّٰلِحِيْنَ ﴿٢٨﴾

୨୯. ଏବଂ ଲୁତଙ୍କୁ ମଧ୍ୟ (ଆମେ ରସୁଲ ଭାବେ ପ୍ରେରଣ କରିଥିଲୁ) ; ଯେତେବେଳେ ସେ ନିଜ ସମ୍ପ୍ରଦାୟକୁ କହିଥିଲେ, "ତୁମେମାନେ ଏପରି ନିନ୍ଦନୀୟ କାର୍ଯ୍ୟ କରୁଅଛ ଯାହା ତୁମମାନଙ୍କ ପୂର୍ବରୁ ସଂସାରରେ କେହି କରି ନଥିଲେ ।"

وَلُوْطًا اِذْ قَالَ لِقَوْمِهٖۤ اِنَّكُمْ لَتَاْتُوْنَ الْفَاحِشَةَ ۚ مَا سَبَقَكُمْ بِهَا مِنْ اَحَدٍ مِّنَ الْعٰلَمِيْنَ ﴿٢٩﴾

୩୦. କ'ଣ ତୁମେମାନେ (ନାରୀମାନଙ୍କୁ ପରିତ୍ୟାଗ କରି) ପୁରୁଷମାନଙ୍କ ନିକଟକୁ ଆସୁଅଛ ଓ ଡକାୟତି[2] କରୁଅଛ ଏବଂ ତୁମେମାନେ ନିଜ ସଭା ସମିତିରେ ନିନ୍ଦନୀୟ କାର୍ଯ୍ୟ କରୁଅଛ ? ପରନ୍ତୁ ତାହାଙ୍କ ସମ୍ପ୍ରଦାୟ (ଲୋକମାନଙ୍କ)ର ଏତଦ୍‌ଭିନ୍ନ ଅନ୍ୟ କୌଣସି ଉତ୍ତର ନଥିଲା ଯେ ସେମାନେ କହିଲେ, "ଯଦି ତୁମେ ସତ୍ୟବାଦୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥାଅ, ତେବେ ଆମମାନଙ୍କ ଉପରେ ଅଲ୍ଲାହଙ୍କର ଶାସ୍ତି ଅବତୀର୍ଣ୍ଣ କରାଅ ।"

اَئِنَّكُمْ لَتَاْتُوْنَ الرِّجَالَ وَتَقْطَعُوْنَ السَّبِيْلَ ۙ وَتَاْتُوْنَ فِيْ نَادِيْكُمُ الْمُنْكَرَ ۗ فَمَا كَانَ جَوَابَ قَوْمِهٖۤ اِلَّاۤ اَنْ قَالُوا ائْتِنَا بِعَذَابِ اللّٰهِ اِنْ كُنْتَ مِنَ الصّٰدِقِيْنَ ﴿٣٠﴾

୩୧. ଏଥି ଉତ୍ତାରୁ ଲୁତ କହିଲେ, "ହେ ଆମ୍ଭର ପାଳନକର୍ତ୍ତା ! ଦୁରାଚାରୀ ସମ୍ପ୍ରଦାୟଙ୍କ ବିରୁଦ୍ଧରେ ଆମ୍ଭର ସହାୟତା କର ।"

قَالَ رَبِّ انْصُرْنِيْ عَلَى الْقَوْمِ الْمُفْسِدِيْنَ ﴿٣١﴾

[1] ଏହି ଆୟତର ଶେଷ ବାକ୍ୟାଂଶକୁ ଲକ୍ଷ୍ୟ କଲେ ଜଣାଯିବ ଯେ ଅନ୍ତିମ ଯୁଗରେ ମଧ୍ୟ ଲୋକମାନେ ହଜରତ ଇବ୍ରାହିମଙ୍କୁ ଅଶେଷ ପୁଣ୍ୟବାନ୍ ମନେ କରିବେ । ଅତଏବ ଏହି ଅନ୍ତିମ ଯୁଗରେ ଯେଉଁ ଯେଉଁ ଧର୍ମ ଟିକି ରହିଛି ସେସବୁ ହଜରତ ଇବ୍ରାହିମଙ୍କୁ ସ୍ୱୀକାର କରୁଛନ୍ତି ଅର୍ଥାତ୍ ମୁସଲମାନ, ଇହୁଦୀ ଓ ଖ୍ରୀଷ୍ଟିୟାନ ସମସ୍ତେ ତାଙ୍କୁ ପୁଣ୍ୟବାନ୍ ବୋଲି ଗ୍ରହଣ କରିଛନ୍ତି । ଅନ୍ୟ ଅର୍ଥରେ ଏହି ଅନ୍ତିମ ଯୁଗରେ ବା କଳି ଯୁଗରେ ଯେବେ ହଜରତ ଇବ୍ରାହିମଙ୍କର ସ୍ୱରୂପ ପ୍ରକଟିତ ହେବ ତେବେ ତାହା ଅଲ୍ଲାହଙ୍କ ଦୃଷ୍ଟିରେ ଯୋଗ୍ୟ ହେବ ଏବଂ ଆକ୍ଷେପ କରୁଥିବା ବ୍ୟକ୍ତିମାନେ ଭୁଲ କରି ବସିବେ ।

[2] ଅର୍ଥାତ୍ ଯାତ୍ରୀମାନଙ୍କୁ ପରିହାସ ଓ ବିଦ୍ରୂପ କରୁଅଛ ବା ସେମାନଙ୍କ ଉପରେ ଅତ୍ୟାଚାର କରୁଅଛ ।

ରୁ:୪

وَلَمَّا جَآءَتْ رُسُلُنَآ إِبْرٰهِيمَ بِالْبُشْرٰى قَالُوٓا إِنَّا مُهْلِكُوٓا أَهْلِ هٰذِهِ الْقَرْيَةِ ۚ إِنَّ أَهْلَهَا كَانُوا ظٰلِمِينَ ﴿٣٢﴾

୩୨. ଏବଂ ଯେତେବେଳେ ଇବ୍ରାହିମଙ୍କ ନିକଟକୁ ଆମର ବାର୍ତ୍ତାବହମାନେ ସୁସମାଚାର[୧] ଆଣି କହିଲେ, "ଆମେମାନେ ଏହି ସହରକୁ ଧ୍ୱଂସ କରିବାକୁ ଯାଉଛୁ, କାରଣ ଏଠାକାର ବାସିନ୍ଦାମାନେ ଅତ୍ୟାଚାରୀ ଅଟନ୍ତି ।"

قَالَ إِنَّ فِيهَا لُوطًا ۚ قَالُوا نَحْنُ أَعْلَمُ بِمَنْ فِيهَا ۖ لَنُنَجِّيَنَّهُۥ وَأَهْلَهُۥٓ إِلَّا امْرَأَتَهُۥ كَانَتْ مِنَ الْغٰبِرِينَ ﴿٣٣﴾

୩୩. (ଇବ୍ରାହିମ ଉତ୍ତରରେ) କହିଲେ, "ଏଠାରେ ଲୁତ ମଧ୍ୟ ରହୁଛନ୍ତି"; ସେମାନେ କହିଲେ, "ଆମେମାନେ ଏଠାକାର ବାସିନ୍ଦାମାନଙ୍କୁ ଭଲ ଭାବରେ ଜାଣୁ, ଆମେମାନେ ତାହାଙ୍କୁ ଓ ପଶ୍ଚାଦ୍‌ବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବାକୁ ଥିବା ତାହାଙ୍କ ପତ୍ନୀଙ୍କ ବ୍ୟତୀତ ପରିବାରର ଅନ୍ୟମାନଙ୍କୁ ରକ୍ଷା କରିବୁ ।"

---

୧. ଏହି ଆୟତରେ ବର୍ଣ୍ଣନା କରାଯାଇଛି ଯେ ଇବ୍ରାହିମଙ୍କ ନିକଟକୁ ଆମ ରସୁଲ 'ବୁଶରା' ଆଣିଲେ । ଓଡ଼ିଆରେ ଏହା ସୁସମାଚାର ଅର୍ଥରେ ପ୍ରୟୋଗ କରାଯାଏ । ଅବଶ୍ୟ ପରେ ସେହି ରସୁଲ କହିଲେ ଯେ ସେ ଏହି ସହରକୁ ଧ୍ୱଂସ କରିଦେବେ ଯାହାକି ସ୍ପଷ୍ଟତଃ ଏକ ଅଶୁଭ ସମାଚାର । ବସ୍ତୁତଃ ଆରବୀ ଭାଷାରେ 'ବୁଶରା' ଅର୍ଥ ଏପରି ମୁଖ୍ୟ ବା ଗୁରୁତ୍ୱପୂର୍ଣ୍ଣ ସମାଚାର ଯାହାର ପ୍ରଭାବ ମୁଖମଣ୍ଡଳରେ ପ୍ରକଟିତ ହୋଇଯାଏ । ଅବଶ୍ୟ ଶୁଭ ସମାଚାର ପାଇଁ ଏହି ଶବ୍ଦ ପ୍ରୟୋଗ କରାଯାଏ ନାହିଁ, କିନ୍ତୁ ଯେହେତୁ ନବିମାନେ ନମ୍ର ସ୍ୱଭାବର ହୋଇଥା'ନ୍ତି ତେଣୁ ଇବ୍ରାହିମ୍ ଯେ ଅତ୍ୟନ୍ତ ନମ୍ର ସ୍ୱଭାବର ଥିଲେ ସେ ବିଷୟ ବିଶେଷ ଭାବରେ ପବିତ୍ର କୋରାନରେ ଉଲ୍ଲେଖ କରାଯାଇଛି । ଯେବେ ସେ ଶୁଣିବାକୁ ପାଇଲେ ଯେ ହଜରତ ଲୁତଙ୍କ ସହରବାସୀମାନେ ବିନଷ୍ଟ ହୋଇଯିବେ ତେବେ ଦୁଃଖରେ ତାଙ୍କ ମୁଖମଣ୍ଡଳର ରଂଗ ବଦଳି ଯାଇଥିଲା । ସେ ଦୁଃଖିତ ହେବାର ଅନ୍ୟତମ କାରଣ ହେଉଛି ଯେ ସେହି ସହରରେ କେବଳ ଅନେକ ଲୋକ ନଥିବେ ବରଂ ହଜରତ ଲୁତ ମଧ୍ୟ ରହିଥିବେ । ଏହି ପରିପ୍ରେକ୍ଷୀରେ ବାଇବେଲରେ ବର୍ଣ୍ଣନା କରାଯାଇଛି ଯେ ସେ ଅଲ୍ଲାହଙ୍କ ନିକଟରେ ଏହି ରୂପେ ପ୍ରାର୍ଥନାପୂର୍ବକ କହିଥିଲେ 'ହେ ଅଲ୍ଲାହ ! କ'ଣ ପୁଣ୍ୟବାନ୍ ଲୋକମାନେ ଥିବାବେଳେ ତୁମେ ଅସଦାଚାରୀ ଲୋକଙ୍କୁ ବିନଷ୍ଟ କରିଦେବ ? ଯଦି ସେଠାରେ ପଚାଶ ଜଣ ପୁଣ୍ୟବାନ୍ ଲୋକ ଥାଆନ୍ତି ଓ ଅବଶିଷ୍ଟ ଦୁରାଚାରୀ ଥାଆନ୍ତି ତେବେ କ'ଣ ସେହି ପଚାଶ ଜଣଙ୍କ ହିତାର୍ଥେ ତୁମେ ସେହି ଅବଶିଷ୍ଟ ଲୋକଙ୍କୁ ରକ୍ଷା କରିବ ନାହିଁ ?' ଅଲ୍ଲାହ ନିଜର ଦିବ୍ୟବାଣୀ ଦ୍ୱାରା ତାଙ୍କୁ ଜଣାଇଦେଲେ ଯେ ଯଦି ସହରେ ପଚାଶ ଜଣ ପୁଣ୍ୟବାନ୍ ଲୋକ ଥାଆନ୍ତି ତେବେ ସେମାନଙ୍କ ସକାଶେ ଅନ୍ୟମାନେ ନିଶ୍ଚୟ ରକ୍ଷା ପାଇବେ । ପଚାଶରୁ ସଂଖ୍ୟାକୁ ହ୍ରାସ କରି କରି ହଜରତ ଇବ୍ରାହିମ ଦଶ ପର୍ଯ୍ୟନ୍ତ ଆସିଲେ ଓ ଅଲ୍ଲାହଙ୍କଠାରୁ ପ୍ରତ୍ୟେକ ଥର ପ୍ରତିଶ୍ରୁତି ପାଇ ଚାଲିଲେ । ପରିଶେଷରେ ହଜରତ ଇବ୍ରାହିମ ବୁଝି ପାରିଲେ ଯେ ସେଠାରେ ଦଶ ଜଣ ମଧ୍ୟ ପୁଣ୍ୟବାନ୍ ଲୋକ ନାହାନ୍ତି । ତେଣୁ ସେ ନୀରବ ହୋଇଗଲେ (**Genesis** ଅଧ୍ୟାୟ ୧୮ ଦ୍ରଷ୍ଟବ୍ୟ) ।

କେତେକଙ୍କ ମତରେ ଏଠାରେ ବ୍ୟବହୃତ 'ରୁସୁଲୁନା'ର ଅର୍ଥ ଦେବଦୂତମାନେ । କିନ୍ତୁ ଏହା ଯଥାର୍ଥ ନୁହେଁ । ଏଠାରେ ରୁସୁଲୁନା ଶବ୍ଦ କେତେକ ପୁଣ୍ୟବାନ୍ ଲୋକଙ୍କ ପାଇଁ ଉଦ୍ଦିଷ୍ଟ । ସେମାନେ ଅଲ୍ଲାହଙ୍କଠାରୁ ଦିବ୍ୟବାଣୀ ପ୍ରାପ୍ତ ହେବା ପରେ ହଜରତ ଇବ୍ରାହିମଙ୍କ ନିକଟକୁ ଓ ପରେ ହଜରତ ଲୁତଙ୍କ ନିକଟକୁ ଆସିଥିଲେ । ଇବ୍ରାହିମ ନିଜ ଦେଶରୁ ହିଜରତ କରି ଚାଲିଯିବାକୁ କହିଥିବା ବିଷୟ ଏହା ପୂର୍ବରୁ ବର୍ଣ୍ଣନା କରାଯାଇଛି । ଇତିହାସରୁ ତଥା ତୌରାତରୁ ପ୍ରମାଣ ମିଳୁଛି ଯେ ହଜରତ ଇବ୍ରାହିମ ନିଜ ଦେଶ ଛାଡ଼ି ପାଲେଷ୍ଟାଇନ ଅଞ୍ଚଳକୁ ଆସିଥିଲେ ଓ ତାଙ୍କ ସହିତ ହଜରତ ଲୁତ ମଧ୍ୟ ଥିଲେ । ସେମାନେ କଥିତ ଅଞ୍ଚଳରେ ଅପରିଚିତ ଥିଲେ । ତେଣୁ ଅଲ୍ଲାହ ସେମାନଙ୍କ ମନୋବଳକୁ ସୁଦୃଢ଼ କରିବା ଉଦ୍ଦେଶ୍ୟରେ ସେଠାକାର କେତେକ ଲୋକଙ୍କୁ ଦିବ୍ୟବାଣୀ ମାଧ୍ୟମରେ ସେମାନଙ୍କ ନିକଟକୁ ଯିବା ପାଇଁ ଆଦେଶ ଦେଇଥିଲେ ଫଳରେ ସେମାନେ ଶାସ୍ତି ଅବତୀର୍ଣ୍ଣ ହେବା ସମୟରେ ନିଜକୁ ଅସହାୟ ମନେ କରିବେ ନାହିଁ । ହଜରତ ଲୁତଙ୍କୁ ଏକ ନିରାପଦ ସ୍ଥାନରେ ପହଞ୍ଚାଇ ଦେବା ମଧ୍ୟ ଅଲ୍ଲାହଙ୍କର ଆଉ ଏକ ଉଦ୍ଦେଶ୍ୟ ଥିଲା । ବାସ୍ତବରେ ଦେବଦୂତମାନେ ନିଜେ ଶାସ୍ତି ପ୍ରଦାନ କରନ୍ତି ନାହିଁ କିନ୍ତୁ ଅଲ୍ଲାହଙ୍କର ଶାସ୍ତି ପ୍ରଦାନ ବା ମୁକ୍ତି ପ୍ରଦାନ ସମ୍ବନ୍ଧରେ ସମାଚାର ଦେଇଥା'ନ୍ତି । ଅଦୃଷ୍ଟ ବିଷୟରେ ଯେଉଁମାନଙ୍କୁ ଅଲ୍ଲାହ ସମାଚାର ଦିଅନ୍ତି ସେମାନେ ମଧ୍ୟ ଅନ୍ୟକୁ ଆଗରୁ ଜଣାଇଥା'ନ୍ତି । ଅତଏବ ଏହି ନୀତି ଉଭୟ ଦେବଦୂତ ଓ ଆଲୋଚ୍ୟ ବ୍ୟକ୍ତିମାନଙ୍କ ପ୍ରତି ଲାଗୁ ହୋଇ ପାରିବ । ସଂକ୍ଷେପତଃ, ଅଲ୍ଲାହଙ୍କ ନିର୍ଦ୍ଦେଶ ଅନୁସାରେ ପ୍ରୋକ୍ତ ସମାଚାରଦାତାମାନେ ହଜରତ ଲୁତ ଓ ତାଙ୍କ ଅନୁଗାମୀମାନେ ପରିତ୍ରାଣ ପାଇବା ତଥା ତାଙ୍କ ବିରୋଧୀମାନଙ୍କ ନିଧନ ହେବା ସଂକ୍ରାନ୍ତରେ ଜଣାଇ ଦେଇଛନ୍ତି ।

୩୪. ଏବଂ ଯେତେବେଳେ ଆମର ବାର୍ତ୍ତାବହମାନେ ଲୁତଙ୍କ ନିକଟକୁ ଆସିଲେ, ସେତେବେଳେ ସେମାନଙ୍କ ଯୋଗୁଁ ସେ ଦୁଃଖିତ ହୋଇଥିଲେ ଓ ତାହାଙ୍କ ମନ ସଙ୍କୁଚିତ[୧] ହୋଇଗଲା ; ଏବଂ (ତାହାଙ୍କର ଏପରି ଅବସ୍ଥାକୁ ଲକ୍ଷ୍ୟକରି) ସେ (ବାର୍ତ୍ତାବହ) ମାନେ କହିଲେ, "କୌଣସି (ଭବିଷ୍ୟତ) ବିଷୟ ପାଇଁ ଭୟଭୀତ ହୁଅନାହିଁ କି (କୌଣସି ବିଗତ ଘଟଣା ପାଇଁ) ଦୁଃଖିତ ହୁଅ ନାହିଁ; ଆମେମାନେ ତୁମଙ୍କୁ ଓ ପଶ୍ଚାଦ୍‌ବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବାକୁ ଥିବା ତୁମର ପତ୍ନୀଙ୍କ ବ୍ୟତୀତ (ଅନ୍ୟ) ପରିବାର ବର୍ଗଙ୍କୁ ରକ୍ଷା କରିବୁ ।"

وَلَمَّآ اَنْ جَآءَتْ رُسُلُنَا لُوْطًا سِیْٓءَ بِهِمْ وَضَاقَ بِهِمْ ذَرْعًا وَّقَالُوْا لَا تَخَفْ وَلَا تَحْزَنْ اِنَّا مُنَجُّوْكَ وَاَهْلَكَ اِلَّا امْرَاَتَكَ كَانَتْ مِنَ الْغٰبِرِيْنَ ۝

୩୫. "ବାସ୍ତବରେ ଆମେମାନେ ଏହି ସହର ଉପରେ ସେମାନଙ୍କ ଅବଜ୍ଞା ହେତୁ ଶାସ୍ତି ଅବତୀର୍ଣ୍ଣ କରିବାକୁ ଯାଉଛୁ ।"

اِنَّا مُنْزِلُوْنَ عَلٰٓى اَهْلِ هٰذِهِ الْقَرْيَةِ رِجْزًا مِّنَ السَّمَآءِ بِمَا كَانُوْا يَفْسُقُوْنَ ۝

୩୬. ଏବଂ ଆମେ ଏହି ସହର (ବିଷୟକ ଘଟଣା) ମାଧ୍ୟମରେ ବୁଦ୍ଧିମାନ୍ ଲୋକମାନଙ୍କ ପାଇଁ ଏକ ପ୍ରକାଶ୍ୟ ନିଦର୍ଶନ ରଖିଅଛୁ ।

وَلَقَدْ تَّرَكْنَا مِنْهَآ اٰيَةً ۢ بَيِّنَةً لِّقَوْمٍ يَّعْقِلُوْنَ ۝

୩୭. ଏବଂ ଆମେ ମଦୟନବାସୀଙ୍କ ପ୍ରତି ସେମାନଙ୍କ ଭାଇ ସୁଏବଙ୍କୁ (ରସୁଲ ଭାବରେ ପ୍ରେରିତ କରିଥିଲୁ) ; ସେ କହିଥିଲେ, "ହେ ଆମର ସମ୍ପ୍ରଦାୟ ! ଅଲ୍ଲାହ୍‌ଙ୍କର ଉପାସନା କର, ଏବଂ ପରକାଳକୁ ମନେରଖ, ଓ ଏପରି ବିଶୃଙ୍ଖଳାଜନକ କାର୍ଯ୍ୟ କର ନାହିଁ ଯଦ୍ଦ୍ୱାରା ଦେଶରେ ତୁମମାନଙ୍କ କାର୍ଯ୍ୟ ଫଳରେ ବିଶୃଙ୍ଖଳା ଜାତ ହେବ ।"

وَاِلٰى مَدْيَنَ اَخَاهُمْ شُعَيْبًا ۙ فَقَالَ يٰقَوْمِ اعْبُدُوا اللّٰهَ وَارْجُوا الْيَوْمَ الْاٰخِرَ وَلَا تَعْثَوْا فِى الْاَرْضِ مُفْسِدِيْنَ ۝

୩୮. କିନ୍ତୁ ସେମାନେ ତାହାଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ ; ଏବଂ ଏକ ପ୍ରଚଣ୍ଡ ଭୂକମ୍ପଜନିତ ଶାସ୍ତି ସେମାନଙ୍କୁ କବଳିତ କରିଥିଲା, ଫଳରେ ସେମାନେ ନିଜ ଗୃହ ମଧ୍ୟରେ ମୁହଁମାଡ଼ି ପଡ଼ି ରହିଥିଲେ ।

فَكَذَّبُوْهُ فَاَخَذَتْهُمُ الرَّجْفَةُ فَاَصْبَحُوْا فِيْ دَارِهِمْ جٰثِمِيْنَ ۝

୩୯. ଏବଂ ଆଦ ଓ ସମୁଦ ସମ୍ପ୍ରଦାୟ ମଧ୍ୟ (ଏହିପରି ଶାସ୍ତିର କବଳିତ ହୋଇଥିଲେ) ; ଏବଂ (ହେ ମକ୍କାବାସୀମାନେ !) ତୁମମାନଙ୍କ ପାଇଁ ସେମାନଙ୍କର

وَعَادًا وَّثَمُوْدَا۟ وَقَدْ تَّبَيَّنَ لَكُمْ مِّنْ مَّسٰكِنِهِمْ ۗ وَزَيَّنَ

୧. ଏଠାରେ ଏହି ଅର୍ଥ ହେବ ନାହିଁ ଯେ ଅତିଥି ସତ୍କାର ବିଷୟରେ ହଜରତ ଲୁତଙ୍କୁ ଖରାପ ଲାଗିଥିଲା ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେହେତୁ ହଜରତ ଲୁତଙ୍କ ସଂପ୍ରଦାୟ କୌଣସି ଅପରିଚିତ ଲୋକଙ୍କୁ ଘରକୁ ନ ଆଣିବାକୁ ତାଙ୍କୁ କହିଥିଲେ, ତେଣୁ ସେ ଅତିଥିମାନଙ୍କୁ ଦେଖି ଦୁଃଖିତ ହୋଇଥିଲେ ଓ ତାଙ୍କ ମନ ଏଥି ସକାଶେ ଛୋଟ ହୋଇ ଯାଇ ଥିଲା ଯେ କାଳେ ତାଙ୍କ ସଂପ୍ରଦାୟ ତାଙ୍କୁ ଅତିଥି ସତ୍କାରରେ ବାଧା ଦେବ ଓ ପରିଣାମରେ ଅତିଥିମାନେ ଦୁଃଖଭୋଗ କରିବେ । ଅପରିଚିତ ବ୍ୟକ୍ତିଙ୍କୁ ଘରକୁ ନ ଆଣିବା ପାଇଁ ସେମାନେ ହଜରତ ଲୁତଙ୍କୁ ମନା କରିଥିବା ବିଷୟରେ ପଚାରିଛନ୍ତି (୧୫:୭୧ ଦ୍ରଷ୍ଟବ୍ୟ) । ସେତେବେଳେ ସହରଗୁଡ଼ିକ ଛୋଟ ଛୋଟ ହେଉଥିଲା ଓ ସେଗୁଡ଼ିକ ମଧ୍ୟରେ ଦୂରତା ଅଧିକ ରହୁଥିଲା । ତେଣୁ ଅପରିଚିତ ଲୋକଙ୍କୁ ଘରେ ସ୍ଥାନ ଦେବାରେ ଚୋରି ଡକାୟତିର ଆଶଙ୍କା ରହୁଥିଲା । ହଜରତ ଲୁତଙ୍କ ସହରର ଲୋକମାନେ ନିଜେ ଡକାୟତ ଥିଲେ ଓ ଅନ୍ୟଙ୍କୁ ତାହା ହିଁ ମନେ କରୁଥିଲେ । ସେ ଅତିଥି ସତ୍କାରକ ହୋଇଥିବାରୁ ସେଠାକାର ଲୋକମାନେ ଉପରୋକ୍ତ ଆଶଙ୍କାରେ ତାଙ୍କୁ ବାଧା ଦେଉଥିଲେ ।

لَهُمُ الشَّيْطٰنُ اَعْمَالَهُمْ فَصَدَّهُمْ عَنِ السَّبِيْلِ وَكَانُوْا مُسْتَبْصِرِيْنَ ۝٣٩

(ଧ୍ୱସ୍ତବିଧ୍ୱସ୍ତ) ବାସସ୍ଥାନର ଅବସ୍ଥା ପ୍ରକାଶମାନ ହୋଇ ରହିଅଛି; ଏବଂ ସଇତାନ୍[୧] ସେମାନଙ୍କୁ ସେମାନଙ୍କ କାର୍ଯ୍ୟ ସୁଶୋଭିତ କରି ଦେଖାଇଥିଲା, ଏବଂ ସେ ସେମାନଙ୍କୁ (ଅଲ୍ଲାହ୍‌ଙ୍କ ପଥରୁ) ପ୍ରତିରୋଧ କରିଥିଲା ; ଅଥଚ ସେମାନେ ଅତ୍ୟନ୍ତ ବିଜ୍ଞ ଥିଲେ ।

وَقَارُوْنَ وَفِرْعَوْنَ وَهَامٰنَ ۗ وَلَقَدْ جَآءَهُمْ مُّوْسٰى بِالْبَيِّنٰتِ فَاسْتَكْبَرُوْا فِي الْاَرْضِ وَمَا كَانُوْا سٰبِقِيْنَ ۝٤٠

୪୦. ଏବଂ କାରୁନ ଓ ଫିରଔନ ଓ ହାମାନଙ୍କୁ ମଧ୍ୟ (ଆମ୍ଭେ ଶାସ୍ତିର କବଳିତ କରିଥିଲୁ) ; ଏବଂ ମୁସା ସେମାନଙ୍କ ନିକଟକୁ ପ୍ରକାଶ୍ୟ ନିଦର୍ଶନମାନ ଆଣିଥିଲେ ; କିନ୍ତୁ ତଥାପି ସେମାନେ (ସ୍ୱୀକାର କଲେ ନାହିଁ) ଦେଶରେ ଅହଙ୍କାରୀ ଭାବରେ କାର୍ଯ୍ୟ କରିଥିଲେ, ଏବଂ (ଆମ୍ଭ ଶାସ୍ତିରୁ) ପଳାୟନ କରି ରକ୍ଷା ପାଇପାରିଲେ ନାହିଁ ।

فَكُلًّا اَخَذْنَا بِذَنْۢبِهٖ ۚ فَمِنْهُمْ مَّنْ اَرْسَلْنَا عَلَيْهِ حَاصِبًا ۚ وَمِنْهُمْ مَّنْ اَخَذَتْهُ الصَّيْحَةُ ۚ وَمِنْهُمْ مَّنْ خَسَفْنَا بِهِ الْاَرْضَ ۚ وَمِنْهُمْ مَّنْ اَغْرَقْنَا ۚ وَمَا كَانَ اللّٰهُ لِيَظْلِمَهُمْ وَلٰكِنْ كَانُوْٓا اَنْفُسَهُمْ يَظْلِمُوْنَ ۝٤١

୪୧. ସୁତରାଂ ଆମ୍ଭେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ସେମାନଙ୍କ ପାପ ଯୋଗୁଁ କବଳିତ କରିଥିଲୁ, ଆମ୍ଭେ ସେମାନଙ୍କ ମଧ୍ୟରୁ କେତେକଙ୍କ ଉପରେ ଶିଳାବୃଷ୍ଟି କରିଥିଲୁ ; ଏବଂ ଅନ୍ୟ କେତେକଙ୍କୁ ଅନ୍ୟ ପ୍ରକାରର କଠିନ ଶାସ୍ତି କବଳିତ କରିଥିଲା ; ଏବଂ ଅନ୍ୟ କେତେକଙ୍କୁ ଆମ୍ଭେ ଦେଶ ମଧ୍ୟରେ ଲାଞ୍ଛିତ କରାଇଥିଲୁ ; ଏବଂ ଅନ୍ୟ କେତେକଙ୍କୁ ଆମ୍ଭେ ପାଣିରେ ବୁଡ଼ାଇ (ମାରି) ଥିଲୁ; ଏବଂ ଅଲ୍ଲାହ୍ ସେମାନଙ୍କ ପ୍ରତି ଅତ୍ୟାଚାର କରି ନଥିଲେ, ବରଂ ସେମାନେ ନିଜେ ନିଜ ପ୍ରତି ଅତ୍ୟାଚାର କରିଥିଲେ ।

مَثَلُ الَّذِيْنَ اتَّخَذُوْا مِنْ دُوْنِ اللّٰهِ اَوْلِيَآءَ كَمَثَلِ الْعَنْكَبُوْتِ ۚ اِتَّخَذَتْ بَيْتًا ۗ وَاِنَّ اَوْهَنَ الْبُيُوْتِ لَبَيْتُ الْعَنْكَبُوْتِ ۘ لَوْ كَانُوْا يَعْلَمُوْنَ ۝٤٢

وقف لازم

୪୨. ଯେଉଁମାନେ ଅଲ୍ଲାହ୍‌ଙ୍କୁ ପରିତ୍ୟାଗ କରି ଅନ୍ୟ ବନ୍ଧୁ ଗ୍ରହଣ କରନ୍ତି ସେମାନଙ୍କ ଅବସ୍ଥା ମାଙ୍କଡ଼ସାର ଅବସ୍ଥା ଭଳି, ଯେ (ନିଜପାଇଁ) ଅବଶ୍ୟ ଏକ ଘର ତିଆରି କରେ ; କିନ୍ତୁ ଘରମାନଙ୍କ ମଧ୍ୟରେ ମାଙ୍କଡ଼ସାର ଘର ସର୍ବାପେକ୍ଷା ଦୁର୍ବଳ ; ହାୟ ! ଏମାନେ ଜାଣି ପାରନ୍ତେ କି !

اِنَّ اللّٰهَ يَعْلَمُ مَا يَدْعُوْنَ مِنْ دُوْنِهٖ مِنْ شَيْءٍ ۗ وَهُوَ الْعَزِيْزُ الْحَكِيْمُ ۝٤٣

୪୩. ଅଲ୍ଲାହ୍ ସେ ସମସ୍ତଙ୍କୁ ଜାଣନ୍ତି ଯାହାଙ୍କୁ ସେମାନେ ତାଙ୍କ ପରିବର୍ତ୍ତେ ଡାକନ୍ତି ; ଏବଂ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

وَتِلْكَ الْاَمْثَالُ نَضْرِبُهَا لِلنَّاسِ ۚ وَمَا يَعْقِلُهَآ اِلَّا الْعٰلِمُوْنَ ۝٤٤

୪୪. ଏବଂ ଆମ୍ଭେ ଏହି ଦୃଷ୍ଟାନ୍ତମାନ ଲୋକମାନଙ୍କ ପାଇଁ ବର୍ଣ୍ଣନା କରିଥାଉ, କିନ୍ତୁ ଜ୍ଞାନବନ୍ତମାନଙ୍କ ବ୍ୟତୀତ ଅନ୍ୟ କେହି ଏହାକୁ ବୁଝନ୍ତି ନାହିଁ ।

خَلَقَ اللّٰهُ السَّمٰوٰتِ وَالْاَرْضَ بِالْحَقِّ ۗ اِنَّ فِيْ ذٰلِكَ لَاٰيَةً لِّلْمُؤْمِنِيْنَ ۝٤٥ ع

୪୫. ଅଲ୍ଲାହ୍ ଆକାଶ ଓ ପୃଥିବୀକୁ ବିଶେଷ ଉଦ୍ଦେଶ୍ୟରେ ସୃଷ୍ଟି କରିଛନ୍ତି ; ଏଥିରେ ବିଶ୍ୱାସକାରୀମାନଙ୍କ ସକାଶେ ମହାନ୍ ନିଦର୍ଶନ ରହିଅଛି ।

---

୧. ଅର୍ଥାତ୍ ସେମାନେ ଦୀର୍ଘକାଳ ପର୍ଯ୍ୟନ୍ତ କୁକାର୍ଯ୍ୟ କରି ଆସୁଥିଲେ, ଏପରିକି ସେମାନେ ଏଥିରେ ଏଭଳି ଅଭ୍ୟସ୍ତ ହୋଇଗଲେ ଯେ ଉକ୍ତ କୁକାର୍ଯ୍ୟ ସେମାନଙ୍କୁ ସୁନ୍ଦର ପ୍ରତୀତ ହେଲା ।

## ଭାଗ- ୨୧

### ରୁ : ୫

୪୬. ଏହି (ଧର୍ମ) ଗ୍ରନ୍ଥ (କୋରାନ)ରେ ଯାହା କିଛି ତୁମ ପ୍ରତି ଓହି କରାଯାଇଛି ତାହାକୁ ପାଠକର (ଓ ଅନ୍ୟମାନଙ୍କୁ ଶୁଣାଅ), ଓ (ନିୟମାନୁସାରେ) ନମାଜ ପାଠକର ; ବାସ୍ତବରେ ନମାଜ ସମସ୍ତ ପ୍ରକାର ଅଶ୍ଳୀଳ ଓ ମନ୍ଦ କାର୍ଯ୍ୟରୁ ନିବୃତ୍ତ କରେ, ଏବଂ ଅଲ୍ଲାହ୍‌ଙ୍କୁ ସ୍ମରଣ କରିବା ସର୍ବୋତ୍କୃଷ୍ଟ କାର୍ଯ୍ୟ ; ଏବଂ ଅଲ୍ଲାହ୍ ତୁମମାନଙ୍କ କାର୍ଯ୍ୟ ଜାଣନ୍ତି ।

اُتْلُ مَآ اُوْحِيَ اِلَيْكَ مِنَ الْكِتٰبِ وَاَقِمِ الصَّلٰوةَ ۗ اِنَّ الصَّلٰوةَ تَنْهٰى عَنِ الْفَحْشَآءِ وَالْمُنْكَرِ ۗ وَلَذِكْرُ اللّٰهِ اَكْبَرُ ۗ وَاللّٰهُ يَعْلَمُ مَا تَصْنَعُوْنَ ۝

୪୭. ଏବଂ ଗ୍ରନ୍ଥଧାରୀମାନଙ୍କ ସହିତ ଉତ୍କୃଷ୍ଟ ଓ ସୁଦୃଢ଼ ପ୍ରମାଣ ବିନା ଯୁକ୍ତିତର୍କ କର ନାହିଁ ; କିନ୍ତୁ ସେମାନଙ୍କ ମଧ୍ୟରୁ ଯେଉଁମାନେ ଅତ୍ୟାଚାରୀ ସେମାନଙ୍କ ସହିତ (ଆଦୌ) ଯୁକ୍ତିତର୍କ କର ନାହିଁ (ଅବଶ୍ୟ ତୁମେମାନେ ସେମାନଙ୍କୁ ଆକ୍ଷେପମୂଳକ ଉତ୍ତର ଦେଇପାର) ; ଏବଂ ସେମାନଙ୍କୁ କୁହ, "ଯାହା ଆମମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଅଛି ତାହା ପ୍ରତି ଓ ଯାହା ତୁମମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଅଛି ତାହା ପ୍ରତି (ମଧ୍ୟ) ଆମେମାନେ ବିଶ୍ୱାସ କରୁଅଛୁ ; ଏବଂ ଆମମାନଙ୍କର ପ୍ରଭୁ ଓ ତୁମମାନଙ୍କର ପ୍ରଭୁ ଏକ ; ଏବଂ ଆମେମାନେ ତାହାଙ୍କର ଆଜ୍ଞାବହ ଅଟୁ ।"

وَلَا تُجَادِلُوْٓا اَهْلَ الْكِتٰبِ اِلَّا بِالَّتِيْ هِيَ اَحْسَنُ ۖ اِلَّا الَّذِيْنَ ظَلَمُوْا مِنْهُمْ وَقُوْلُوْٓا اٰمَنَّا بِالَّذِيْٓ اُنْزِلَ اِلَيْنَا وَاُنْزِلَ اِلَيْكُمْ وَاِلٰهُنَا وَاِلٰهُكُمْ وَاحِدٌ وَّنَحْنُ لَهٗ مُسْلِمُوْنَ ۝

୪୮. ଏବଂ ଆମେ ଏହିପରି ଭାବରେ ତୁମ ପ୍ରତି ଏହି ପରିପୂର୍ଣ୍ଣ (ଧର୍ମ) ଗ୍ରନ୍ଥ ଅବତୀର୍ଣ୍ଣ କରିଅଛୁ ; ତେଣୁ ଯେଉଁମାନଙ୍କୁ ଆମେ ଏହି (ଧର୍ମ) ଗ୍ରନ୍ଥ ପ୍ରଦାନ କରିଅଛୁ ସେମାନେ ଏଥିରେ ବିଶ୍ୱାସ କରୁଛନ୍ତି ଏବଂ ସେ (ଗ୍ରନ୍ଥଧାରୀ) ମାନଙ୍କ ମଧ୍ୟରୁ କେତେକ (ମଧ୍ୟ) ଏଥିରେ ବିଶ୍ୱାସ କରନ୍ତି ; ଏବଂ କେବଳ ଅବିଶ୍ୱାସକାରୀମାନେ ହିଁ ଆମର ନିଦର୍ଶନଗୁଡ଼ିକୁ ଜିଦ୍‌ଧରି ପ୍ରତ୍ୟାଖ୍ୟାନ କରନ୍ତି । [୧]

وَكَذٰلِكَ اَنْزَلْنَآ اِلَيْكَ الْكِتٰبَ ۗ فَالَّذِيْنَ اٰتَيْنٰهُمُ الْكِتٰبَ يُؤْمِنُوْنَ بِهٖ ۚ وَمِنْ هٰٓؤُلَآءِ مَنْ يُّؤْمِنُ بِهٖ ۗ وَمَا يَجْحَدُ بِاٰيٰتِنَآ اِلَّا الْكٰفِرُوْنَ ۝

୪୯ ଏବଂ ଏହା (ଅର୍ଥାତ୍ କୋରାନ) ଅବତୀର୍ଣ୍ଣ ହେବା ପୂର୍ବରୁ ତୁମେ କୌଣସି ଧର୍ମଗ୍ରନ୍ଥ ପାଠ କରୁ ନ ଥିଲ, କି ଲୋକମାନଙ୍କୁ ଶୁଣାଉ ନ ଥିଲ, କି ତାହାକୁ ନିଜ ଦକ୍ଷିଣ ହସ୍ତରେ ଲେଖୁ ନଥିଲ ; ଯଦି ଏପରି ହୋଇଥା'ନ୍ତା ତେବେ ମିଥ୍ୟା ଆରୋପକାରୀମାନେ ସନ୍ଦେହର ବଶବର୍ତ୍ତୀ ହୋଇଥା'ନ୍ତେ ।

وَمَا كُنْتَ تَتْلُوْا مِنْ قَبْلِهٖ مِنْ كِتٰبٍ وَّلَا تَخُطُّهٗ بِيَمِيْنِكَ اِذًا لَّارْتَابَ الْمُبْطِلُوْنَ ۝

---

୧. ଏଠାରେ 'କାଫିର' ଅର୍ଥ ମକ୍କାବାସୀ ନୁହେଁ । ଏହି ଶବ୍ଦ ପବିତ୍ର କୋରାନରେ ଗ୍ରନ୍ଥଧାରୀମାନଙ୍କ ସକାଶେ ମଧ୍ୟ ପ୍ରୟୋଗ କରାଯାଇଛି । (୯୮ : ୨ ଦ୍ରଷ୍ଟବ୍ୟ) । ଯଦି କେହି କୌଣସି ସତ୍ୟକୁ ପ୍ରତ୍ୟାଖ୍ୟାନ କରିବ, ତେବେ ସେ ମୁସରିକ୍ ହେବ ନାହିଁ, ବରଂ ଅମାନ୍ୟକାରୀ ବୋଲାଇବ ।

୫୦. କିନ୍ତୁ ଯେଉଁମାନଙ୍କୁ ଜ୍ଞାନ ପ୍ରଦାନ କରାଯାଇଅଛି ସେମାନଙ୍କ ହୃଦୟରେ[୧] ଏହା (ଅର୍ଥାତ୍ ଏହି କୋରାନ) ଏକ ପ୍ରକାଶ୍ୟ ନିଦର୍ଶନର ସମାହାର ; ଏବଂ ଅତ୍ୟାଚାରୀମାନଙ୍କ ବ୍ୟତୀତ ଅନ୍ୟ କେହି ଆମର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରନ୍ତି ନାହିଁ ।

بَلْ هُوَ اٰيٰتٌۢ بَيِّنٰتٌ فِيْ صُدُوْرِ الَّذِيْنَ اُوْتُوا الْعِلْمَ ۭ وَمَا يَجْحَدُ بِاٰيٰتِنَآ اِلَّا الظّٰلِمُوْنَ ۝

୫୧. ଏବଂ ସେମାନେ କହନ୍ତି, "କାହିଁକି ତାଙ୍କ ପାଳନକର୍ତ୍ତାଙ୍କ ତରଫରୁ ତାଙ୍କ ପ୍ରତି ନିଦର୍ଶନମାନ ଅବତୀର୍ଣ୍ଣ ହେଉନାହିଁ ?" (ତୁମେ) କୁହ, "ନିଦର୍ଶନଗୁଡ଼ିକ ତ ଅଲ୍ଲାହଙ୍କ ନିକଟରେ ରହିଅଛି, (ଏବଂ ସେ ଯଥା ସମୟରେ ତାହାକୁ ଅବତୀର୍ଣ୍ଣ କରିଥା'ନ୍ତି) ; ଏବଂ ଆମେ ଜଣେ ପ୍ରକାଶ୍ୟ ସଚେତକ ମାତ୍ର ।"

وَقَالُوْا لَوْلَآ اُنْزِلَ عَلَيْهِ اٰيٰتٌ مِّنْ رَّبِّهٖ ۭ قُلْ اِنَّمَا الْاٰيٰتُ عِنْدَ اللّٰهِ ۭ وَاِنَّمَآ اَنَا نَذِيْرٌ مُّبِيْنٌ ۝

୫୨ କ'ଣ ସେମାନଙ୍କ ପାଇଁ ଏହା ଯଥେଷ୍ଟ (ନିଦର୍ଶନ) ନ ଥିଲା ଯେ ଆମେ ତୁମ ପ୍ରତି ଏକ ପରିପୂର୍ଣ୍ଣ ଗ୍ରନ୍ଥ (ଅର୍ଥାତ୍ କୋରାନ) ଅବତୀର୍ଣ୍ଣ କରିଅଛୁ ଯାହା ସେମାନଙ୍କୁ ପାଠ କରି ଶୁଣାଇ ଦିଆଯାଉଛି ; ଏଥିରେ ବିଶ୍ୱାସକାରୀମାନଙ୍କ ପାଇଁ କରୁଣା ଓ ଉପଦେଶର ସାମଗ୍ରୀ ରହିଅଛି ।

اَوَلَمْ يَكْفِهِمْ اَنَّآ اَنْزَلْنَا عَلَيْكَ الْكِتٰبَ يُتْلٰى عَلَيْهِمْ ۭ اِنَّ فِيْ ذٰلِكَ لَرَحْمَةً وَّذِكْرٰى لِقَوْمٍ يُّؤْمِنُوْنَ ۝

ରୁ:୬

୫୩. ତୁମେ କୁହ, "ଆମ ଓ ତୁମମାନଙ୍କ ମଧ୍ୟରେ ନିଷ୍ପତ୍ତି କରିବା ସକାଶେ ଅଲ୍ଲାହ ସାକ୍ଷୀ ରୂପେ ଯଥେଷ୍ଟ ; ଏବଂ ଯାହା କିଛି ଆକାଶ ଓ ପୃଥିବୀରେ ଅଛି ତାହା ସେ ଜାଣନ୍ତି ; ଏବଂ ଯେଉଁମାନେ ମିଥ୍ୟାକୁ ଭିତ୍ତିକରି କାର୍ଯ୍ୟ କରନ୍ତି ଓ ଅଲ୍ଲାହଙ୍କ ଆଦେଶକୁ ଅମାନ୍ୟ କରନ୍ତି, ସେମାନେ ହିଁ କ୍ଷତିଗ୍ରସ୍ତ ହେବେ ।"

قُلْ كَفٰى بِاللّٰهِ بَيْنِيْ وَبَيْنَكُمْ شَهِيْدًا ۚ يَعْلَمُ مَا فِي السَّمٰوٰتِ وَالْاَرْضِ ۭ وَالَّذِيْنَ اٰمَنُوْا بِالْبَاطِلِ وَكَفَرُوْا بِاللّٰهِ ۙ اُولٰۗىِٕكَ هُمُ الْخٰسِرُوْنَ ۝

୫୪. ଏବଂ ସେମାନେ ଶାସ୍ତିର ତୁରନ୍ତ ଆଗମନ ସକାଶେ ତୁମ ନିକଟରେ ଇଚ୍ଛା ପ୍ରକାଶ କରୁଛନ୍ତି ; କିନ୍ତୁ ଯଦି (ସେଥିପାଇଁ) ଏକ ସମୟ ନିର୍ଦ୍ଦିଷ୍ଟ (କରାଯାଇ) ନ ଥାନ୍ତା, ତେବେ ସେମାନଙ୍କ ପ୍ରତି ଶାସ୍ତି ଆସି ଯାଇଥାନ୍ତା, ଏବଂ ବର୍ତ୍ତମାନ ଏହା ସେମାନଙ୍କ ନିକଟକୁ (ନିଶ୍ଚୟ ଆସିବ ଓ) ଅପ୍ରତ୍ୟାଶିତ ଭାବରେ ସେମାନଙ୍କ ଅଜାଣତରେ ଆସିବ ।

وَيَسْتَعْجِلُوْنَكَ بِالْعَذَابِ ۭ وَلَوْلَآ اَجَلٌ مُّسَمًّى لَّجَاۗءَهُمُ الْعَذَابُ ۭ وَلَيَاْتِيَنَّهُمْ بَغْتَةً وَّهُمْ لَا يَشْعُرُوْنَ ۝

---

୧. ଅର୍ଥାତ୍ ଇହୁଦୀମାନଙ୍କ ମଧ୍ୟରୁ ମୁସଲମାନ ଲୋକମାନଙ୍କ ହୃଦୟରେ ।

୫୫. (ଏବଂ) ସେମାନେ ଶାସ୍ତିକୁ ତୁରନ୍ତ [୧] ଆଣିବା ସକାଶେ ତୁମ୍ଭ ନିକଟରେ ଜିଦ୍ କରୁଛନ୍ତି ; ଏବଂ ନରକ ଅବିଶ୍ୱାସକାରୀମାନଙ୍କୁ ନିଶ୍ଚୟ ଧ୍ୱଂସ କରିବ ।

يَسْتَعْجِلُونَكَ بِالْعَذَابِ وَإِنَّ جَهَنَّمَ لَمُحِيطَةٌ بِالْكَافِرِينَ ﴿٥٥﴾

୫୬. ଯେଉଁଦିନ (ନରକର) ଶାସ୍ତି ସେ (ଅବିଶ୍ୱାସକାରୀ)ମାନଙ୍କୁ ଉର୍ଦ୍ଧ୍ୱରୁ ଆବୃତ କରିବ ଓ ପାଦତଳୁ ମଧ୍ୟ ସେମାନଙ୍କୁ ଘେରି ନେବ, ଓ (ସେହିଦିନ) ସେ (ଅଲ୍ଲାହ) କହିବେ, ''ତୁମେମାନେ ଆପଣା କର୍ମଫଳ ଆସ୍ୱାଦନ କର ।''

يَوْمَ يَغْشَاهُمُ الْعَذَابُ مِنْ فَوْقِهِمْ وَمِنْ تَحْتِ أَرْجُلِهِمْ وَيَقُولُ ذُوقُوا مَا كُنْتُمْ تَعْمَلُونَ ﴿٥٦﴾

୫୭. ହେ ଆମର ବିଶ୍ୱାସକାରୀ ଭକ୍ତମାନେ ! ଆମର ଭୂପୃଷ୍ଠ ପ୍ରଶସ୍ତ ସୁତରାଂ ତୁମେମାନେ ଆମର ହିଁ ଉପାସନା କର ।

يَا عِبَادِيَ الَّذِينَ آمَنُوا إِنَّ أَرْضِي وَاسِعَةٌ فَإِيَّايَ فَاعْبُدُونِ ﴿٥٧﴾

୫୮. ପ୍ରତ୍ୟେକ ପ୍ରାଣୀ ମୃତ୍ୟୁର ସ୍ୱାଦ ଆସ୍ୱାଦନ କରିବ ; ତା'ପରେ ଆମ୍ଭ ନିକଟକୁ ତୁମ (ସମସ୍ତ)ଙ୍କୁ ଫେରାଇ ଅଣାଯିବ ।

كُلُّ نَفْسٍ ذَائِقَةُ الْمَوْتِ ثُمَّ إِلَيْنَا تُرْجَعُونَ ﴿٥٨﴾

୫୯. ଏବଂ ଯେଉଁମାନେ ବିଶ୍ୱାସ କରନ୍ତି ଓ ତଦନୁସାରେ କର୍ମ ମଧ୍ୟ କରନ୍ତି, ଆମେ ସେମାନଙ୍କୁ ବୈକୁଣ୍ଠର ଉଚ୍ଚ ଭବନମାନଙ୍କରେ ସ୍ଥାନ ଦେବୁ, ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥିବ ; ସେମାନେ ଉକ୍ତ ବୈକୁଣ୍ଠରେ ସର୍ବଦା ବାସ କରିବେ ; ଏବଂ ସତ୍‌କର୍ମକାରୀମାନଙ୍କର ପୁରସ୍କାର ଉତ୍ତମ ଅଟେ ।

وَالَّذِينَ آمَنُوا وَعَمِلُوا الصَّالِحَاتِ لَنُبَوِّئَنَّهُمْ مِنَ الْجَنَّةِ غُرَفًا تَجْرِي مِنْ تَحْتِهَا الْأَنْهَارُ خَالِدِينَ فِيهَا ۚ نِعْمَ أَجْرُ الْعَامِلِينَ ﴿٥٩﴾

୬୦. (ସେ ବିଶ୍ୱାସକାରୀମାନଙ୍କ ପରିଣାମ ମଧ୍ୟ ଉତ୍ତମ ହେବ) ଯେଉଁମାନେ (ନିଜ ବିଶ୍ୱାସ ଓ କର୍ମରେ) ଦୃଢ଼ ରହନ୍ତି ଓ ନିଜ ପାଳନକର୍ତ୍ତାଙ୍କ ଉପରେ ଭରସା କରନ୍ତି ।

الَّذِينَ صَبَرُوا وَعَلَىٰ رَبِّهِمْ يَتَوَكَّلُونَ ﴿٦٠﴾

୬୧. ଏହି ସଂସାରରେ ଏପରି ଅନେକ ପ୍ରାଣୀ ଅଛନ୍ତି ଯେଉଁମାନେ (ମଣିଷ ପରି) ନିଜେ ନିଜର ଜୀବିକା ବହନ କରନ୍ତି ନାହିଁ ଅଲ୍ଲାହ ହିଁ ସେମାନଙ୍କୁ ଓ ତୁମମାନଙ୍କୁ ମଧ୍ୟ [୨] ଜୀବିକା ପ୍ରଦାନ କରିଥା'ନ୍ତି ; ଏବଂ ସେ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَكَأَيِّنْ مِنْ دَابَّةٍ لَا تَحْمِلُ رِزْقَهَا اللَّهُ يَرْزُقُهَا وَإِيَّاكُمْ ۚ وَهُوَ السَّمِيعُ الْعَلِيمُ ﴿٦١﴾

---

୧. ଅର୍ଥାତ୍ ଇହୁଦୀମାନଙ୍କ ମଧ୍ୟରୁ ଯେଉଁମାନେ ମୁସଲମାନ ହୋଇଥିଲେ ସେମାନେ ଅନ୍ତରରେ ଏହି ସତ୍ୟକୁ ସ୍ୱୀକାର କରିଛନ୍ତି ବୋଲି ଦାବିକୁ ବାରମ୍ବାର ବର୍ଣ୍ଣନା କରିବାରୁ ସ୍ପଷ୍ଟ ଜଣାପଡୁଛି ଯେ ତନ୍ମଧ୍ୟରୁ ଗୋଟିଏ ଦାବି ସାଂସାରିକ ଶାସ୍ତି ଓ ଅନ୍ୟଟି ପରକାଳର ଶାସ୍ତି ସମ୍ବନ୍ଧରେ ରହିଅଛି । ଗୋଟିଏ ଦାବିର ଲକ୍ଷ୍ୟ ଏହି ଯେ କାହିଁକି ତୁମ କହିବା ଅନୁସାରେ ଆମମାନଙ୍କ ପ୍ରତି ଏହି ସଂସାରରେ ଶାସ୍ତି ପ୍ରେରିତ ହେଉନାହିଁ ଏବଂ ଦ୍ୱିତୀୟ ଦାବି ହେଉଛି ଯେ ତୁମର ବିରୁଦ୍ଧାଚରଣ କରୁଥିବାରୁ ଆମେମାନେ କାହିଁକି ମରୁନାହୁଁ କି ନରକକୁ ଯାଉନାହୁଁ ? ଏଠାରେ ଦ୍ୱିତୀୟ ଦାବି ପରେ ନରକ ବିଷୟ ବର୍ଣ୍ଣନା କରାଯାଇଛି ଯାହାକି ପ୍ରଥମ ଦାବିରେ ନାହିଁ ।

୨. ଅର୍ଥାତ୍ ସାଧାରଣ ଭାବରେ ପ୍ରତ୍ୟେକ ମନୁଷ୍ୟ ନିଜ ଉପାର୍ଜନ ଦ୍ୱାରା ଜୀବିକା ନିର୍ବାହ କରିଥାଏ । କିନ୍ତୁ ଜୀବଜନ୍ତୁ ଓ ପଶୁ ତଥା ଛୋଟଛୋଟ କୀଟ ପତଙ୍ଗ ଘାସପତ୍ର ଖାଇ ଜୀବନ ଧାରଣ କରିଥା'ନ୍ତି; ଅତଏବ ସଜୀବମାନଙ୍କ ସକାଶେ ଜୀବିକା ବ୍ୟବସ୍ଥା କରାଯିବା ଦ୍ୱାରା ଏହା ପ୍ରମାଣିତ ହେଉଛି ଯେ ମନୁଷ୍ୟଙ୍କ ପାଇଁ ମଧ୍ୟ ଅଲ୍ଲାହ ହିଁ ଜୀବିକାର ବ୍ୟବସ୍ଥା କରିଥା'ନ୍ତି ଓ ମନୁଷ୍ୟମାନଙ୍କ ଉପାର୍ଜନ କେବଳ ଏକ ବାହାନା ।

୬୨. ଏବଂ ଯଦି ତୁମେ ସେମାନଙ୍କୁ ପ୍ରଶ୍ନ କର ଯେ ଆକାଶ ଓ ପୃଥିବୀର ସୃଷ୍ଟିକର୍ତ୍ତା କିଏ ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ କିଏ (ପାରିଶ୍ରମିକ [1] ବିନା) ମାନବ ସେବାରେ ନିୟୋଜିତ କରିଛି ; ତେବେ ସେମାନେ କହିବେ, ''ଅଲ୍ଲାହ'' ; ତାହାହେଲେ (ଏ ବିଷୟ ଜାଣିବା ସତ୍ତ୍ୱେ) ସେମାନେ କିପରି (ସତ୍‌ପଥରୁ) ବିଭ୍ରାନ୍ତ ହେଉଛନ୍ତି ?

وَلَئِنْ سَاَلْتَهُمْ مَّنْ خَلَقَ السَّمٰوٰتِ وَالْاَرْضَ وَسَخَّرَ الشَّمْسَ وَالْقَمَرَ لَيَقُوْلُنَّ اللّٰهُ ۚ فَاَنّٰى يُؤْفَكُوْنَ ﴿٦٢﴾

୬୩. ଅଲ୍ଲାହ ହିଁ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହା ପାଇଁ ଇଚ୍ଛା କରନ୍ତି ଜୀବିକା ପ୍ରଶସ୍ତ କରିଥା'ନ୍ତି, ଓ (ଯାହା ପାଇଁ ଇଚ୍ଛା କରନ୍ତି) ଏହାକୁ ସଙ୍କୁଚିତ କରିଥା'ନ୍ତି ; ଅଲ୍ଲାହ ବାସ୍ତବରେ ପ୍ରତ୍ୟେକ ବିଷୟରେ ଭଲ ରୂପେ ଅବଗତ ଅଛନ୍ତି ।

اَللّٰهُ يَبْسُطُ الرِّزْقَ لِمَنْ يَّشَآءُ مِنْ عِبَادِهٖ وَيَقْدِرُ لَهٗ ۗ اِنَّ اللّٰهَ بِكُلِّ شَيْءٍ عَلِيْمٌ ﴿٦٣﴾

୬୪. ଏବଂ ଯଦି ତୁମେ ସେମାନଙ୍କୁ ପ୍ରଶ୍ନକର ଯେ କିଏ ମେଘମାଳାରୁ ଜଳ ବର୍ଷଣ କରେ ଓ ତା'ପରେ ତଦ୍ୱାରା ଭୂପୃଷ୍ଠକୁ ତା'ର ମୃତ୍ୟୁ ପରେ ପୁନର୍ଜୀବିତ କରେ, ତେବେ ସେମାନେ କହିବେ, ''ନିଶ୍ଚିତ ରୂପେ ଅଲ୍ଲାହ (କରନ୍ତି) ;'' ତୁମେ କୁହ, ''ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ପାଇଁ ଉଦ୍ଦିଷ୍ଟ ;'' କିନ୍ତୁ ସେ (ଲୋକ)ମାନଙ୍କ ମଧ୍ୟରୁ ଅଧିକାଂଶ ଏହା ବୁଝି ପାରନ୍ତି ନାହିଁ ।

وَلَئِنْ سَاَلْتَهُمْ مَّنْ نَّزَّلَ مِنَ السَّمَآءِ مَآءً فَاَحْيَا بِهِ الْاَرْضَ مِنْ بَعْدِ مَوْتِهَا لَيَقُوْلُنَّ اللّٰهُ ۗ قُلِ الْحَمْدُ لِلّٰهِ ۗ بَلْ اَكْثَرُهُمْ لَا يَعْقِلُوْنَ ﴿٦٤﴾

ରୁ: ୭

୬୫. ଏବଂ ଏହି ସାଂସାରିକ ଜୀବନ ଏକ ଅବସର ବିନୋଦନ ଓ କ୍ରୀଡ଼ା କୌତୁକ ଛଡ଼ା ଅନ୍ୟ କିଛି ନୁହେ ; ଏବଂ ପରକାଳର ବାସସ୍ଥାନକୁ ହିଁ (ପ୍ରକୃତରେ) ବାସ୍ତବ ଜୀବନର ବାସସ୍ଥାନ ରୂପେ ଅଭିହିତ କରାଯାଇପାରେ ; ଆହା, ସେମାନେ ଏହା ଜାଣନ୍ତେ କି !

وَمَا هٰذِهِ الْحَيٰوةُ الدُّنْيَآ اِلَّا لَهْوٌ وَّلَعِبٌ ۗ وَاِنَّ الدَّارَ الْاٰخِرَةَ لَهِيَ الْحَيَوَانُ ۘ لَوْ كَانُوْا يَعْلَمُوْنَ ﴿٦٥﴾

୬୬. ଏବଂ ଯେତେବେଳେ ସେମାନେ ନୌକାରେ ଆରୋହଣ କରନ୍ତି, (ସେତେବେଳେ) ସେମାନେ ଅଲ୍ଲାହଙ୍କ ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ କରି ତାଙ୍କୁ ପ୍ରାର୍ଥନା କରନ୍ତି ; କିନ୍ତୁ ଯେତେବେଳେ ସେ ସେମାନଙ୍କୁ ରକ୍ଷାକରି ସ୍ଥଳଭାଗରେ ପହଞ୍ଚାଇ ଦିଅନ୍ତି, (ସେତେବେଳେ) ସେମାନେ ସହସା ପୁନର୍ବାର ସିର୍କ କରିବାକୁ ଲାଗନ୍ତି,

فَاِذَا رَكِبُوْا فِي الْفُلْكِ دَعَوُا اللّٰهَ مُخْلِصِيْنَ لَهُ الدِّيْنَ ۚ فَلَمَّا نَجّٰىهُمْ اِلَى الْبَرِّ اِذَا هُمْ يُشْرِكُوْنَ ﴿٦٦﴾

---

୧. ପାରିଶ୍ରମିକ ନ ଦେଇ କୌଣସି ଦିବ୍ୟ ଆଦେଶର ଅଧୀନ କରାଇ ସେବକରେ ନିୟୋଜିତ କରିବା ଅର୍ଥରେ 'ସଖ୍‌ଖର' ଶବ୍ଦର ପ୍ରୟୋଗ ।

୬୭. ଯଦ୍ୱାରାକି ଆମେ ସେମାନଙ୍କୁ ଯାହାକିଛି ଦେଇଅଛୁ ତାହାକୁ ପ୍ରତ୍ୟାଖ୍ୟାନ କରିଦେବେ, ଓ ପରିଣାମ ସ୍ୱରୂପ (ଅଲ୍ଲାଃ ସେମାନଙ୍କୁ ପରିତ୍ୟାଗ କରନ୍ତି ଓ) ସେମାନେ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ସାଂସାରିକ ସୁଖ ଭୋଗ କରନ୍ତି ; ଅତଏବ (ଦିନେ ଏ ପ୍ରକାର ଭୋଗ ବିଳାସର ସମାପ୍ତି ଘଟିବ ଏବଂ) ସେମାନେ ଶୀଘ୍ର (ପ୍ରକୃତ ପରିଣାମ) ଜାଣି ପାରିବେ ।

لِيَكْفُرُوا بِمَا آتَيْنَاهُمْ وَلِيَتَمَتَّعُوا فَسَوْفَ يَعْلَمُونَ

୬୮. କ'ଣ ସେମାନଙ୍କୁ ଜଣାନାହିଁ ଯେ ଆମେ 'ହରମ' (ଅର୍ଥାତ୍ ମକ୍କାଠ)କୁ ଶାନ୍ତିଧାମ କରିଅଛୁ, ଏବଂ ସେମାନଙ୍କ ଚତୁଃପାର୍ଶ୍ୱରୁ ଲୋକମାନଙ୍କୁ ଆକର୍ଷଣ କରାଯାଉଛି ; ତେବେ କ'ଣ ସେମାନେ ମିଥ୍ୟା ଉପରେ ବିଶ୍ୱାସ କରୁଛନ୍ତି ଓ ଅଲ୍ଲାଃଙ୍କ କୃପାକୁ ପ୍ରତ୍ୟାଖ୍ୟାନ କରୁଛନ୍ତି ?

أَوَلَمْ يَرَوْا أَنَّا جَعَلْنَا حَرَمًا آمِنًا وَيُتَخَطَّفُ النَّاسُ مِنْ حَوْلِهِمْ أَفَبِالْبَاطِلِ يُؤْمِنُونَ وَبِنِعْمَةِ اللَّهِ يَكْفُرُونَ

୬୯. ଏବଂ ସେ ବ୍ୟକ୍ତି ଅପେକ୍ଷା କିଏ ଅଧିକ ଅତ୍ୟାଚାରୀ ହୋଇପାରେ ଯେ ଅଲ୍ଲାଃଙ୍କ ପ୍ରତି ମିଥ୍ୟା[୧] ଆରୋପ କରେ, କିମ୍ବା ଯେତେବେଳେ ତାହା ନିକଟକୁ ସତ୍ୟ ବିଷୟ ଆସେ, (ସେତେବେଳେ) ସେ ତାହାକୁ ପ୍ରତ୍ୟାଖ୍ୟାନ କରେ ; କ'ଣ ଏପରି ଅବିଶ୍ୱାସକାରୀମାନଙ୍କ ବାସସ୍ଥାନ ନରକରେ ହେବା ଉଚିତ ନୁହେଁ ?

وَمَنْ أَظْلَمُ مِمَّنِ افْتَرَىٰ عَلَى اللَّهِ كَذِبًا أَوْ كَذَّبَ بِالْحَقِّ لَمَّا جَاءَهُ أَلَيْسَ فِي جَهَنَّمَ مَثْوًى لِلْكَافِرِينَ

୭୦. ଏବଂ ଯେଉଁମାନେ ଆମ ସହିତ ମିଳିତ ହେବା ପାଇଁ ଉଦ୍ୟମ କରନ୍ତି, ଆମେ ସେମାନଙ୍କୁ ନିଶ୍ଚୟ ଆମ ପଥରେ ପରିଚାଳିତ ହେବାକୁ ସୁଯୋଗ ଦେବୁ; ଏବଂ ଅଲ୍ଲାଃ ନିଶ୍ଚୟ ହିତକାରୀମାନଙ୍କ ସହିତ ଥା'ନ୍ତି ।

وَالَّذِينَ جَاهَدُوا فِينَا لَنَهْدِيَنَّهُمْ سُبُلَنَا وَإِنَّ اللَّهَ لَمَعَ الْمُحْسِنِينَ

---

୧. ଏକେତ ଜଣେ ଅଲ୍ଲାଃଙ୍କ ସମ୍ବନ୍ଧରେ ଜାଣିଶୁଣି ଏପରି ମିଥ୍ୟା ଆରୋପ କରେ ସତେ ଯେପରି ତାହା ସତ୍ୟ ଅଟେ । ଯାହା ତାଙ୍କ ଦିବ୍ୟବାଣୀରେ ଥାଏ, ଅଥଚ ବ୍ୟକ୍ତ କରାଯାଇ ନ ଥାଏ, ସେହି ବିଷୟକୁ ତାଙ୍କ ସହିତ ସଂଶ୍ଳିଷ୍ଟ କରାଯାଏ । ଅନ୍ୟ ଜଣେ ଅଲ୍ଲାଃଙ୍କ ସହିତ ଏପରି ଏକ ବିଷୟକୁ ଭୁଲରେ ସଂଶ୍ଳିଷ୍ଟ କରାନ୍ତି ଯାହା ସେ କୌଣସି ଧର୍ମଗ୍ରନ୍ଥରେ ମଧ୍ୟ ପ୍ରକାଶ କରି ନାହାନ୍ତି । ସୁତରାଂ ଶେଷୋକ୍ତ ବ୍ୟକ୍ତି ମଧ୍ୟ ମିଥ୍ୟା କହୁଅଛନ୍ତି ଓ ଏ ପ୍ରକାର ମିଥ୍ୟାର ମୂଳଭିତ୍ତି ମଧ୍ୟ ମିଥ୍ୟା ଉପରେ ଆଧାରିତ ।



## ଅଲ- ରୁମ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସମିଲ୍ଲାହ ସମେତ ୬୧ଟି ଆୟତ ଓ ୬ଟି ରୁକୁ ଅଛି।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି)।

الٓمّٓ ②

୨. ଅଲିଫ- ଲାମ- ମୀମ।

غُلِبَتِ الرُّوْمُ ③

୩. ରୋମବାସୀମାନେ ପରାଜିତ [୧] ହୋଇଛନ୍ତି,

فِيْٓ اَدْنَى الْاَرْضِ وَهُمْ مِّنْۢ بَعْدِ غَلَبِهِمْ سَيَغْلِبُوْنَ ④

୪. ନିକଟବର୍ତ୍ତୀ ଅଞ୍ଚଳରେ, ଏବଂ ସେମାନେ ପରାଜିତ ହେବାପରେ ପୁନର୍ବାର ଜୟଲାଭ କରିବେ,

فِيْ بِضْعِ سِنِيْنَ ۬ؕ لِلّٰهِ الْاَمْرُ مِنْ قَبْلُ وَمِنْۢ بَعْدُ ؕ وَيَوْمَئِذٍ يَّفْرَحُ الْمُؤْمِنُوْنَ ⑤

୫. କିଛି ବର୍ଷ ମଧ୍ୟରେ ; ଏହା ପୂର୍ବରୁ ଓ ଏହା ପରେ ମଧ୍ୟ ଅଲ୍ଲାହ୍‌ଙ୍କର ସାର୍ବଭୌମ ଅଧିକାର ରହିବ ; ଏବଂ ସେଦିନ ବିଶ୍ୱାସକାରୀମାନେ ଅତ୍ୟନ୍ତ ଆନନ୍ଦିତ ହେବେ,

بِنَصْرِ اللّٰهِ ؕ يَنْصُرُ مَنْ يَّشَآءُ ؕ وَهُوَ الْعَزِيْزُ الرَّحِيْمُ ⑥

୬. ଅଲ୍ଲାହ୍‌ଙ୍କର ସହାୟତା ଲାଭ କରି ; ଅଲ୍ଲାହ୍ ଯାହାଙ୍କୁ ପସନ୍ଦ କରନ୍ତି ତାହାଙ୍କୁ ସାହାଯ୍ୟ କରନ୍ତି ; ଓ ସେ ହିଁ ପରାକ୍ରମୀ (ଓ) ସଦା କରୁଣାମୟ।

وَعْدَ اللّٰهِ ؕ لَا يُخْلِفُ اللّٰهُ وَعْدَهٗ وَلٰكِنَّ اَكْثَرَ النَّاسِ لَا يَعْلَمُوْنَ ⑦

୭. ଏବଂ ଅଲ୍ଲାହ୍‌ଙ୍କର ଅଙ୍ଗୀକାରକୁ (ଭଲ ଭାବରେ ମନେ ରଖ) ; ଅଲ୍ଲାହ୍ ନିଜ ଅଙ୍ଗୀକାର ଭଙ୍ଗ କରନ୍ତି ନାହିଁ ; କିନ୍ତୁ ଅଧିକାଂଶ ଲୋକ ଏ ବିଷୟକୁ ବୁଝି ପାରନ୍ତି ନାହିଁ।

يَعْلَمُوْنَ ظَاهِرًا مِّنَ الْحَيٰوةِ الدُّنْيَا ۖۚ وَهُمْ عَنِ الْاٰخِرَةِ هُمْ غٰفِلُوْنَ ⑧

୮. ସେ ଲୋକମାନେ ସାଂସାରିକ ଜୀବନର ବାହ୍ୟ (ଚାକଚକ୍ୟ) ବିଷୟକୁ ଭଲ ଭାବରେ ଜାଣନ୍ତି, ଅଥଚ ପରକାଳ ସଂକ୍ରାନ୍ତରେ ସମ୍ପୂର୍ଣ୍ଣ ଅମନୋଯୋଗୀ ଅଛନ୍ତି।

---

୧. ଏହି ଆୟତର ଉଚ୍ଚାରଣ ଦୁଇପ୍ରକାର। ତେଣୁ ଉଚ୍ଚାରଣ ଅନୁସାରେ ଏହାର ଅର୍ଥ ମଧ୍ୟ ଦୁଇପ୍ରକାର, ଯଥା :—

(କ) ହିଜାଜ ନିକଟବର୍ତ୍ତୀ ଅଞ୍ଚଳରେ ଇରାନୀୟଙ୍କ ଦ୍ୱାରା ରୋମୀୟ ସେନା ପରାସ୍ତ ହେବା ପରେ ସେମାନେ ଆଉ ଥରେ ଶକ୍ତିଶାଳୀ ହେବେ ଓ ଇରାନ୍‌କୁ ପରାସ୍ତ କରିବେ। ଏହିପରି ଘଟିବାରୁ ଉପରୋକ୍ତ ଭବିଷ୍ୟବାଣୀ ସତ୍ୟ ସାବ୍ୟସ୍ତ ହେଲା ଅର୍ଥାତ୍ ପ୍ରଥମେ ରୋମୀୟମାନେ ପରାସ୍ତ ହେଲେ ମାତ୍ର ପରେ ପରେ ସେମାନେ ଇରାନକୁ ପରାସ୍ତ କଲେ। ବଦର ଯୁଦ୍ଧର ବିଜୟ ଅବସରରେ ଏହି ଖବର ମୁସଲମାନମାନଙ୍କ ନିକଟରେ ପହଞ୍ଚିଲା ଓ ଏହି ରୂପେ ସତ୍ୟ ସାବ୍ୟସ୍ତ ହେଲା।

(ଖ) ରୋମୀୟ ସୈନ୍ୟବାହିନୀ ଇରାନୀୟ ସୈନ୍ୟବାହିନୀ ଦ୍ୱାରା ନିକଟବର୍ତ୍ତୀ ଅଞ୍ଚଳରେ ପରାଜିତ ହୋଇଥିଲେ। କିନ୍ତୁ ପରାଜୟ ପରେ ସେମାନେ ପୁନର୍ବାର ଜୟଲାଭ କରିବେ। ଏହି ବିଜୟ ପରେ ସେମାନେ ଅନ୍ୟ ଏକ ଜାତି (ଅର୍ଥାତ୍ ମୁସଲମାନମାନଙ୍କ) ଦ୍ୱାରା ଦୟନୀୟ ଭାବରେ ପରାଜିତ ହେବେ। ବସ୍ତୁତଃ ସେମାନେ ହଜରତ ଉମରଙ୍କ ଦ୍ୱାରା ସେ ରୂପେ ପରାଜିତ ହୋଇଥିଲେ। ପଞ୍ଚମ ଥର ପାଇଁ ଏହି ଭବିଷ୍ୟବାଣୀ ସୁପ୍ରସିଦ୍ଧ ବିଜେତା ସୁଲତାନ ମହମ୍ମଦଙ୍କ ସମୟରେ ସତ୍ୟ ସାବ୍ୟସ୍ତ ହେଲା। ଯେପର୍ଯ୍ୟନ୍ତ ମୁସଲମାନମାନେ ସ୍ଥଳଭାଗରୁ ଆକ୍ରମଣ କରୁଥିଲେ ସେ ପର୍ଯ୍ୟନ୍ତ କନ୍‌ଷ୍ଟାଣ୍ଟିନୋପଲର ରାଜା ଜୟଲାଭ କରୁଥିଲେ। କିନ୍ତୁ ଯେତେବେଳେ ସୁଲତାନ ମହମ୍ମଦ ଜଳଭାଗରୁ କନ୍‌ଷ୍ଟାଣ୍ଟିନୋପଲ ଉପରେ ଆକ୍ରମଣ କଲେ ସେତେବେଳେ ଅଲ୍ଲାହ୍ ମୁସଲମାନମାନଙ୍କୁ ବିଜୟ ଦାନ କଲେ, ଫଳରେ ସେମାନେ କନ୍‌ଷ୍ଟାଣ୍ଟିନୋପଲ ମଧ୍ୟରେ ପ୍ରବେଶ କଲେ ଓ ତାହାକୁ ପ୍ରାୟ ଏକ ହଜାର ବର୍ଷ ହେଲା ଅଧିକାର କରି ରହିଛନ୍ତି।

أَوَلَمْ يَتَفَكَّرُوا فِي أَنْفُسِهِمْ مَا خَلَقَ اللَّهُ السَّمٰوٰتِ وَالْأَرْضَ وَمَا بَيْنَهُمَا إِلَّا بِالْحَقِّ وَأَجَلٍ مُسَمًّى وَإِنَّ كَثِيرًا مِنَ النَّاسِ بِلِقَاءِ رَبِّهِمْ لَكَافِرُونَ ٩

୯. କ'ଣ ସେମାନେ ନିଜ ମନରେ କେବେ ଚିନ୍ତା କରି ନାହାନ୍ତି ଯେ ଆକାଶ ଓ ପୃଥିବୀରେ ତଥା ଯାହାକିଛି ତନ୍ମଧ୍ୟରେ ଅଛି ତାହାକୁ ଅଲ୍ଲାହ କୌଣସି ତତ୍ତ୍ୱ ଅନୁସାରେ ଓ ଏକ ନିର୍ଦ୍ଦିଷ୍ଟ ଅବଧି ପାଇଁ ସୃଷ୍ଟି କରିଛନ୍ତି ? କିନ୍ତୁ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ନିଜ ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ୍ ସଂକ୍ରାନ୍ତରେ ବିଶ୍ୱାସ କରନ୍ତି ନାହିଁ ।

أَوَلَمْ يَسِيرُوا فِي الْأَرْضِ فَيَنْظُرُوا كَيْفَ كَانَ عَاقِبَةُ الَّذِينَ مِنْ قَبْلِهِمْ كَانُوا أَشَدَّ مِنْهُمْ قُوَّةً وَأَثَارُوا الْأَرْضَ وَعَمَرُوهَا أَكْثَرَ مِمَّا عَمَرُوهَا وَجَاءَتْهُمْ رُسُلُهُمْ بِالْبَيِّنٰتِ فَمَا كَانَ اللَّهُ لِيَظْلِمَهُمْ وَلٰكِنْ كَانُوا أَنْفُسَهُمْ يَظْلِمُونَ ١٠

୧୦. କ'ଣ ସେମାନେ ଭୂପୃଷ୍ଠରେ ବୁଲି ଦେଖିନାହାନ୍ତି ଯେ ଯେଉଁମାନେ ସେମାନଙ୍କ ପୂର୍ବବର୍ତ୍ତୀ ଲୋକ ଥିଲେ ସେମାନଙ୍କ ପରିଣାମ କିପରି ହୋଇଥିଲା ? ସେମାନେ ଏମାନଙ୍କ-ଠାରୁ ଅଧିକ ଶକ୍ତିଶାଳୀ ଥିଲେ, ଓ ସେମାନେ ଭୂମିକୁ ଉତ୍ତମ ରୂପେ ଚାଷ କରିଥିଲେ ଓ ତାହାକୁ ଏମାନଙ୍କ ଅପେକ୍ଷା ଅଧିକ ଜନାକୀର୍ଣ୍ଣ କରିଥିଲେ ; ଏବଂ ସେମାନଙ୍କ ରସୁଲ ସେମାନଙ୍କ ନିକଟକୁ ସ୍ପଷ୍ଟ ପ୍ରମାଣ ଘେନି ଆସିଥିଲେ, କାରଣ ସେମାନଙ୍କ ଉପରେ ଅତ୍ୟାଚାର କରିବା ଅଲ୍ଲାହଙ୍କ ମହିମା ଅନୁରୂପ ନଥିଲା, ବରଂ ସେମାନେ ନିଜେ ନିଜ ଉପରେ ଅତ୍ୟାଚାର କରୁଥିଲେ ।

ثُمَّ كَانَ عَاقِبَةَ الَّذِينَ أَسَاءُوا السُّوأَىٰ أَنْ كَذَّبُوا بِآيٰتِ اللَّهِ وَكَانُوا بِهَا يَسْتَهْزِءُونَ ١١ ع

୧୧. ତା'ପରେ ଯେଉଁମାନେ ମନ୍ଦକାର୍ଯ୍ୟ କରିଥିଲେ, ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରିଥିବା ଯୋଗୁଁ ସେମାନଙ୍କ ପରିଣାମ ମନ୍ଦ ହୋଇଥିଲା, ଏବଂ ସେମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ପରିହାସ କରୁଥିଲେ ।

ରୁ: ୨

اَللَّهُ يَبْدَؤُا الْخَلْقَ ثُمَّ يُعِيدُهُ ثُمَّ إِلَيْهِ تُرْجَعُونَ ١٢

୧୨. ଅଲ୍ଲାହ ସୃଷ୍ଟି ଆରମ୍ଭ ମଧ୍ୟ କରନ୍ତି ଓ ତା'ପରେ ଏହି ପରମ୍ପରାର ପୁନରାବୃତ୍ତି ମଧ୍ୟ କରିଥାଆନ୍ତି ; ଏହାପରେ ତୁମ ସମସ୍ତଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆଯିବ ।

وَيَوْمَ تَقُومُ السَّاعَةُ يُبْلِسُ الْمُجْرِمُونَ ١٣

୧୩. ଏବଂ ଯେଉଁଦିନ କୟାମତ ସମୟ ଆସିବ ସେଦିନ ଅପରାଧୀମାନେ ହତାଶ ହେବେ ।

وَلَمْ يَكُنْ لَهُمْ مِنْ شُرَكَائِهِمْ شُفَعٰٓؤُا وَكَانُوا بِشُرَكَائِهِمْ كٰفِرِينَ ١٤

୧୪. ଏବଂ ସେମାନେ ଯାହାଙ୍କୁ ଅଲ୍ଲାହଙ୍କର ସମକକ୍ଷ ମଣୁଥିଲେ ସେମାନଙ୍କ ମଧ୍ୟରୁ କେହି ସେମାନଙ୍କ ସୁପାରିଶକାରୀ ହେବ ନାହିଁ; ଏବଂ ସେମାନେ ନିଜର (କପୋଳକଳ୍ପିତ) ଉପାସ୍ୟମାନଙ୍କୁ ପ୍ରତ୍ୟାଖ୍ୟାନ କରିବେ ।

وَيَوْمَ تَقُومُ السَّاعَةُ يَوْمَئِذٍ يَتَفَرَّقُونَ ١٥

୧୫. ଏବଂ ଯେଉଁଦିନ କୟାମତ ସମୟ ଆସିବ ସେଦିନ ସେ (ମୁସରିକ)ମାନେ ପରସ୍ପରଠାରୁ ଅଲଗା ହୋଇଯିବେ ।

فَأَمَّا الَّذِينَ آمَنُوا وَعَمِلُوا الصّٰلِحٰتِ فَهُمْ فِي رَوْضَةٍ يُحْبَرُونَ ١٦

୧୬. ତା'ପରେ ଯେଉଁମାନେ ବିଶ୍ୱାସ କରିଥିବେ ଓ ନିଜ ବିଶ୍ୱାସ ଅନୁଯାୟୀ (ସତ୍) କର୍ମ କରିଥିବେ ସେମାନଙ୍କୁ (ବୃହତ୍) ଉଦ୍ୟାନରେ ସୁଖ ପ୍ରଦାନ କରାଯିବ ।

୧୭. ଏବଂ ଯେଉଁମାନେ ଅବିଶ୍ୱାସ କରିଥିବେ ତଥା ଆମର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରୁଥିବେ, ଏବଂ ପରକାଳ ଜୀବନକୁ ଅସ୍ୱୀକାର କରିଥିବେ, ସେମାନେ ଶାସ୍ତିର ସମ୍ମୁଖୀନ ହେବେ ।

وَاَمَّا الَّذِيْنَ كَفَرُوْا وَكَذَّبُوْا بِاٰيٰتِنَا وَلِقَآئِ الْاٰخِرَةِ فَاُولٰٓئِكَ فِي الْعَذَابِ مُحْضَرُوْنَ ⑰

୧୮. ସୁତରାଂ ତୁମେମାନେ ସନ୍ଧ୍ୟାର ଆଗମନ ବେଳେ ଓ ପ୍ରଭାତର ଆଗମନ ବେଳେ ଅଲ୍ଲାହ୍‌ଙ୍କର ଗୁଣଗାନ କର ।

فَسُبْحٰنَ اللّٰهِ حِيْنَ تُمْسُوْنَ وَحِيْنَ تُصْبِحُوْنَ ⑱

୧୯. ଏବଂ ଆକାଶ ଓ ପୃଥିବୀରେ ତାହାଙ୍କ ପାଇଁ ପ୍ରଶଂସା ରହିଅଛି, ଏବଂ ଅପରାହ୍ଣରେ ମଧ୍ୟ ତଥା ମଧ୍ୟାହ୍ନରେ ମଧ୍ୟ ତାହାଙ୍କର ଗୁଣଗାନ କର ।

وَلَهُ الْحَمْدُ فِي السَّمٰوٰتِ وَالْاَرْضِ وَعَشِيًّا وَّحِيْنَ تُظْهِرُوْنَ ⑲

୨୦. ସେ ସଜୀବକୁ ନିର୍ଜୀବରୁ ବାହାର କରନ୍ତି ଓ ନିର୍ଜୀବକୁ ସଜୀବରୁ ବାହାର କରନ୍ତି ଏବଂ ଭୂପୃଷ୍ଠକୁ ତା'ର ନିର୍ଜୀବତା ପରେ ସଜୀବ କରନ୍ତି; ଏବଂ ଏହିପରି ଭାବରେ ତୁମମାନଙ୍କୁ ମଧ୍ୟ (ମୃତ ଅବସ୍ଥାରୁ) ବାହାର କରାହେବ ।

يُخْرِجُ الْحَيَّ مِنَ الْمَيِّتِ وَيُخْرِجُ الْمَيِّتَ مِنَ الْحَيِّ وَيُحْيِ الْاَرْضَ بَعْدَ مَوْتِهَا ۭ وَكَذٰلِكَ تُخْرَجُوْنَ ⑳ ع

ରୁ:୩

୨୧. ଏବଂ ତାହାଙ୍କ ନିଦର୍ଶନଗୁଡ଼ିକ ମଧ୍ୟରୁ ଅନ୍ୟତମ (ନିଦର୍ଶନ) ହେଉଛି ଯେ ସେ ତୁମମାନଙ୍କୁ ମାଟିରୁ ସୃଷ୍ଟି କରିଛନ୍ତି; ଏବଂ ଏହି ସୃଷ୍ଟି ଫଳରେ ତୁମେମାନେ ମାନବ ହୋଇ (ସାରା ସଂସାରରେ) ବ୍ୟାପି ଯାଉଅଛ ।

وَمِنْ اٰيٰتِهٖٓ اَنْ خَلَقَكُمْ مِّنْ تُرَابٍ ثُمَّ اِذَآ اَنْتُمْ بَشَرٌ تَنْتَشِرُوْنَ ㉑

୨୨. ଏବଂ ତାହାଙ୍କ ନିଦର୍ଶନଗୁଡ଼ିକ ମଧ୍ୟରେ ଏହା ମଧ୍ୟ (ନିଦର୍ଶନ ରୂପେ) ରହିଛି ଯେ ସେ ତୁମମାନଙ୍କ ମଧ୍ୟରୁ ତୁମମାନଙ୍କ ସକାଶେ ଯୋଡ଼ା ସୃଷ୍ଟି କରିଛନ୍ତି ଯେପରିକି ତୁମେମାନେ (ସେମାନଙ୍କ ପ୍ରତି ଆସକ୍ତ ହୋଇ) ଶାନ୍ତି ଲାଭ କରିବ, ଏବଂ ସେ ତୁମମାନଙ୍କ ମଧ୍ୟରେ ପ୍ରୀତି ଓ କରୁଣାର ଭାବ ସ୍ଥାପନ କରିଛନ୍ତି; ଏଥିରେ ଚିନ୍ତାଶୀଳ ସମ୍ପ୍ରଦାୟ ପାଇଁ ମହାନ୍ ନିଦର୍ଶନ ରହିଅଛି ।

وَمِنْ اٰيٰتِهٖٓ اَنْ خَلَقَ لَكُمْ مِّنْ اَنْفُسِكُمْ اَزْوَاجًا لِّتَسْكُنُوْٓا اِلَيْهَا وَجَعَلَ بَيْنَكُمْ مَّوَدَّةً وَّرَحْمَةً ۭ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّتَفَكَّرُوْنَ ㉒

୨୩. ଏବଂ ତାହାଙ୍କ ନିଦର୍ଶନଗୁଡ଼ିକ ମଧ୍ୟରେ ଆକାଶ ଓ ପୃଥିବୀର ସୃଷ୍ଟି ଓ ତୁମମାନଙ୍କ ଭାଷା ଓ ବର୍ଣ୍ଣରେ ବିଭିନ୍ନତା ମଧ୍ୟ ରହିଛି; ଏଥିରେ ବିଜ୍ଞ ଲୋକମାନଙ୍କ ପାଇଁ ମହାନ୍ ନିଦର୍ଶନ ରହିଅଛି ।

وَمِنْ اٰيٰتِهٖ خَلْقُ السَّمٰوٰتِ وَالْاَرْضِ وَاخْتِلَافُ اَلْسِنَتِكُمْ وَاَلْوَانِكُمْ ۭ اِنَّ فِيْ ذٰلِكَ لَاٰيٰتٍ لِّلْعٰلِمِيْنَ ㉓

୨୪. ଏବଂ ତାହାଙ୍କ ନିଦର୍ଶନଗୁଡ଼ିକ ମଧ୍ୟରେ ରାତ୍ରି ଓ ଦିବସରେ ତୁମମାନଙ୍କର ଶୟନ ଓ ତାହାଙ୍କ କୃପା ଲାଭ ପାଇଁ ପରିଶ୍ରମ କରିବା ମଧ୍ୟ ରହିଛି ; ଏଥିରେ ଶ୍ରବଣକାରୀ ସମ୍ପ୍ରଦାୟ ସକାଶେ ମହାନ୍ ନିଦର୍ଶନ ରହିଅଛି ।

وَمِنْ اٰيٰتِهٖ مَنَامُكُمْ بِالَّيْلِ وَالنَّهَارِ وَابْتِغَآؤُكُمْ مِّنْ فَضْلِهٖ ۭ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّسْمَعُوْنَ ㉔

وَمِنْ اٰيٰتِهٖ يُرِيْكُمُ الْبَرْقَ خَوْفًا وَّطَمَعًا وَّيُنَزِّلُ مِنَ السَّمَآءِ مَآءً فَيُحْيٖ بِهِ الْاَرْضَ بَعْدَ مَوْتِهَا ۚ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّعْقِلُوْنَ ﴿۲۵﴾

୨୫. ଏବଂ ତାହାଙ୍କ ନିଦର୍ଶନଗୁଡ଼ିକ ମଧ୍ୟରେ ଏଗୁଡ଼ିକ ମଧ୍ୟ ରହିଛି ଯେ ସେ ତୁମମାନଙ୍କର ଭୟ ଓ ଆଶା ଜାଗ୍ରତ କରାଇବା ସକାଶେ ବିଜୁଳିକୁ [1] ଦେଖାନ୍ତି, ଓ ମେଘମାଳାରୁ ଜଳ ବର୍ଷଣ କରାନ୍ତି; ତା'ପରେ ଏହାଦ୍ୱାରା ଭୂପୃଷ୍ଠକୁ ତା'ର ନିର୍ଜୀବତା ପ୍ରାପ୍ତି ପରେ ସଜୀବ କରନ୍ତି; ଏଥିରେ ବୁଦ୍ଧିମାନ୍ ସମ୍ପ୍ରଦାୟ ପାଇଁ ମହାନ୍ ନିଦର୍ଶନ ରହିଅଛି ।

وَمِنْ اٰيٰتِهٖٓ اَنْ تَقُوْمَ السَّمَآءُ وَالْاَرْضُ بِاَمْرِهٖ ۗ ثُمَّ اِذَا دَعَاكُمْ دَعْوَةً ۖۗ مِّنَ الْاَرْضِ ۖ اِذَآ اَنْتُمْ تَخْرُجُوْنَ ﴿۲۶﴾

୨୬. ଏବଂ ଆକାଶ ଓ ପୃଥିବୀ ତାହାଙ୍କ ଆଦେଶରେ (ଦୃଢ଼ ଭାବରେ) ପ୍ରତିଷ୍ଠିତ ହୋଇ ରହିବା ତାହାଙ୍କ ନିଦର୍ଶନଗୁଡ଼ିକ ମଧ୍ୟରୁ (ଅନ୍ୟତମ ନିଦର୍ଶନ) ଅଟେ, ତା'ପରେ (ତାହାଙ୍କର ଏହି ନିଦର୍ଶନ ମଧ୍ୟ ପ୍ରକାଶିତ ହେବ ଯେ) ଯେତେବେଳେ ସେ ତୁମମାନଙ୍କୁ ଭୂମିରୁ ବହିର୍ଗତ ହେବା ସକାଶେ ଆହ୍ୱାନ କରିବେ, (ସେତେବେଳେ) ତୁମେମାନେ ତତ୍କ୍ଷଣାତ୍ ବହିର୍ଗତ ହେବ ।

وَلَهٗ مَنْ فِي السَّمٰوٰتِ وَالْاَرْضِ ۗ كُلٌّ لَّهٗ قٰنِتُوْنَ ﴿۲۷﴾

୨୭. ଏବଂ ଯେ କେହି ଆକାଶ ଓ ପୃଥିବୀରେ ରହିଛନ୍ତି ସେ ସମସ୍ତେ ତାହାଙ୍କର ଆଜ୍ଞାବହ ଅଟନ୍ତି ।

وَهُوَ الَّذِيْ يَبْدَؤُا الْخَلْقَ ثُمَّ يُعِيْدُهٗ وَهُوَ اَهْوَنُ عَلَيْهِ ۗ وَلَهُ الْمَثَلُ الْاَعْلٰى فِي السَّمٰوٰتِ وَالْاَرْضِ ۚ وَهُوَ الْعَزِيْزُ الْحَكِيْمُ ﴿۲۸﴾ ع

୨୮. ଏବଂ ସେ ସୃଷ୍ଟି ଆରମ୍ଭ କରନ୍ତି ଓ ତାହାକୁ ବାରମ୍ବାର ପୁନରାବୃତ୍ତି କରନ୍ତି; ଏବଂ ଏହି କାର୍ଯ୍ୟ ତାହାଙ୍କ ପକ୍ଷରେ ଅତି ସହଜ ଏବଂ ଆକାଶ ଓ ପୃଥିବୀରେ ତାହାଙ୍କର ମହିମା ସର୍ବୋଚ୍ଚ ଅଟେ; ଏବଂ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

ରୁ:୪

ضَرَبَ لَكُمْ مَّثَلًا مِّنْ اَنْفُسِكُمْ ۗ هَلْ لَّكُمْ مِّنْ مَّا مَلَكَتْ اَيْمَانُكُمْ مِّنْ شُرَكَآءَ فِيْ مَا رَزَقْنٰكُمْ فَاَنْتُمْ فِيْهِ سَوَآءٌ تَخَافُوْنَهُمْ كَخِيْفَتِكُمْ اَنْفُسَكُمْ ۗ كَذٰلِكَ

୨୯. ସେ ତୁମମାନଙ୍କୁ ବୁଝାଇବା ସକାଶେ ତୁମମାନଙ୍କ ମଧ୍ୟରୁ ଗୋଟିଏ ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି ; (ତା ହେଉଛି) ଯେଉଁ ଲୋକମାନଙ୍କ ଉପରେ ତୁମମାନଙ୍କର ଦକ୍ଷିଣ ହସ୍ତ ପ୍ରଭୁତ୍ୱ ହାସଲ କରିଛି, କ'ଣ ସେମାନଙ୍କ ମଧ୍ୟରୁ କେହି ଏଥିରେ (ଅର୍ଥାତ୍ ଧନ ସମ୍ପତ୍ତିରେ) ଯାହା ଆମ୍ଭେ ତୁମକୁ ଦେଇଅଛୁ, ତୁମମାନଙ୍କ ସହିତ ସମାନ ଅଂଶୀଦାର ମଧ୍ୟ ହୋଇପାରେ ଏପରିକି ତୁମେମାନେ ଉଭୟେ (ଅର୍ଥାତ୍ ମାଲିକ ଓ ଦାସ) ଏଥିରେ (ଅର୍ଥାତ୍ ଏହି ଧନ ସମ୍ପତ୍ତିରେ) ସମାନ

---

୧. ବିଜୁଳି ବର୍ଷାର ଅଗ୍ରଦୂତ, ଯାହା ପୃଥିବୀକୁ ଶସ୍ୟ ଶ୍ୟାମଳା କରାଏ । ବିଜୁଳି ବହୁ ଅନିଷ୍ଟକର କୀଟ ପତଙ୍ଗ ଓ ରୋଗ ଜୀବାଣୁକୁ ନଷ୍ଟ କରିଥାଏ । ପ୍ରକୃତିର ପ୍ରତ୍ୟେକ ଉପାଦାନ ନିଜର କାର୍ଯ୍ୟ ସମ୍ପାଦନ କରେ । ଏହି ତଥ୍ୟରେ ନିହିତ ଅଛି ଅଲ୍ଲାହଙ୍କ ଅସ୍ତିତ୍ୱର ତଥା ତାହାଙ୍କ ଜ୍ଞାନ ଓ ଶକ୍ତିର ପ୍ରମାଣ ।

نُفَصِّلُ الْاٰيٰتِ لِقَوْمٍ يَّعْقِلُوْنَ ﴿٢٩﴾

ହୋଇଯାଅ ? ଏବଂ ଏ (ଦାସ)ମାନଙ୍କୁ ତୁମେମାନେ ଏପରି ଭାବେ ଭୟ କର ଯେପରି ଭାବେ ତୁମେମାନେ ସ୍ୱୟଂ [1] ନିଜକୁ ଭୟ କରୁଅଛ ? ଆମେ ବୁଦ୍ଧିମାନ୍ ସମ୍ପ୍ରଦାୟ ପାଇଁ ନିଦର୍ଶନଗୁଡ଼ିକୁ ଏହିପରି ଭାବେ ସ୍ପଷ୍ଟରୂପେ ବର୍ଣ୍ଣନା କରିଥାଉ ।

بَلِ اتَّبَعَ الَّذِيْنَ ظَلَمُوْٓا اَهْوَآءَهُمْ بِغَيْرِ عِلْمٍ ۚ فَمَنْ يَّهْدِيْ مَنْ اَضَلَّ اللّٰهُ ۗ وَمَا لَهُمْ مِّنْ نّٰصِرِيْنَ ﴿٣٠﴾

୩୦. ବରଂ (ପ୍ରକୃତରେ) ଅତ୍ୟାଚାରୀମାନେ ଅଜ୍ଞାତସାରରେ ନିଜ ପ୍ରବୃତ୍ତିର ଅନୁସରଣ କରନ୍ତି; ଏବଂ ଯାହାକୁ ଅଲ୍ଲାହ ପଥଭ୍ରଷ୍ଟ କରନ୍ତି ତାହାକୁ (ଅନ୍ୟ) କିଏ ସତ୍‌ପଥ ପ୍ରଦର୍ଶନ କରାଇପାରିବ ? ଏବଂ ସେମାନଙ୍କର କେହି ସାହାଯ୍ୟକାରୀ ହେବେ ନାହିଁ ।

فَاَقِمْ وَجْهَكَ لِلدِّيْنِ حَنِيْفًا ۚ فِطْرَتَ اللّٰهِ الَّتِيْ فَطَرَ النَّاسَ عَلَيْهَا ۚ لَا تَبْدِيْلَ لِخَلْقِ اللّٰهِ ۚ ذٰلِكَ الدِّيْنُ الْقَيِّمُ ۙ وَلٰكِنَّ اَكْثَرَ النَّاسِ لَا يَعْلَمُوْنَ ﴿٣١﴾

୩୧. ସୁତରାଂ ତୁମେ କୌଣସି କୁଟିଳତା ନ ରଖି ନିଜର ସମ୍ପୂର୍ଣ୍ଣ ଧ୍ୟାନ କେବଳ ଧର୍ମ ପାଇଁ ସଂରକ୍ଷିତ କରିଦିଅ; ଏବଂ ଅଲ୍ଲାହଙ୍କ (ସୃଷ୍ଟ) ସେହି ପ୍ରକୃତିକୁ [2] ଅନୁସରଣ କର ଯାହା ଅନୁଯାୟୀ ସେ ମାନବ ଜାତିକୁ ସୃଷ୍ଟି କରିଛନ୍ତି; ଅଲ୍ଲାହଙ୍କ ସୃଷ୍ଟିରେ କୌଣସି ପରିବର୍ତ୍ତନ ହୁଏନାହିଁ; ଏହା ହିଁ ଚିରନ୍ତନ ସତ୍‌ଧର୍ମ; କିନ୍ତୁ ଅଧିକାଂଶ ଲୋକ (ଏହା) ଜାଣନ୍ତି ନାହିଁ ।

مُنِيْبِيْنَ اِلَيْهِ وَاتَّقُوْهُ وَاَقِيْمُوا الصَّلٰوةَ وَلَا تَكُوْنُوْا مِنَ الْمُشْرِكِيْنَ ﴿٣٢﴾

୩୨. (ସୁତରାଂ) ତୁମେ ସମସ୍ତେ ତାହାଙ୍କ ପ୍ରତି ଅବନତ ହୋଇ ପ୍ରକୃତିଗତ ଧର୍ମ ଗ୍ରହଣ କର, ଏବଂ ତାହାଙ୍କୁ ଭୟକର, ଓ ସୁଚାରୁରୂପେ ନମାଜ ପାଠ କର, ଓ ମୁସରିକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୁଅ ନାହିଁ ।

مِنَ الَّذِيْنَ فَرَّقُوْا دِيْنَهُمْ وَكَانُوْا شِيَعًا ۚ كُلُّ حِزْبٍۢ بِمَا لَدَيْهِمْ فَرِحُوْنَ ﴿٣٣﴾

୩୩. (ଅର୍ଥାତ୍) ସେହି (ମୁସରିକ)ମାନଙ୍କ [3] ମଧ୍ୟରେ ଯେଉଁମାନେ ନିଜ ଧର୍ମକୁ ଭାଗ ଭାଗ କରିଛନ୍ତି ଓ ବିଭିନ୍ନ ଗୋଷ୍ଠୀରେ ପରିଣତ ହୋଇଛନ୍ତି ଏବଂ ପ୍ରତ୍ୟେକ ଗୋଷ୍ଠୀ ଏହା ଭାବି ଆନନ୍ଦିତ ଯେ ଯାହା ତାଙ୍କ ନିକଟରେ ଅଛି ତାହା ହିଁ ଅଧିକ ଉତ୍କୃଷ୍ଟ [4] ।

---

୧. ଅର୍ଥାତ୍ ତୁମେମାନେ ସେମାନଙ୍କ ଠାରେ ଧନସମ୍ପତ୍ତି ନ୍ୟସ୍ତ କରିବା ପୂର୍ବରୁ ଯେପରି ନିଜ ଧନ ସମ୍ପତ୍ତିର ମାଲିକ ଥିଲ ଓ ନିଜ ଇଚ୍ଛାରେ ନିଜ ପାଇଁ ଖର୍ଚ୍ଚ କରୁଥିଲ କ'ଣ ତୁମେ ନିଜ ଚାକର-ବାକରଙ୍କୁ ସେତିକି ଅଧିକାର ମଧ୍ୟ ଦେଇଅଛ ଯାହାର ପରିଣାମ ସ୍ୱରୂପ ତୁମେମାନେ ଆଶଙ୍କା କରୁଅଛ ଯେ କାଳେ ସେମାନେ ତୁମମାନଙ୍କୁ ଖାଇବାକୁ ଦେବେ ନାହିଁ ଓ ଧନସମ୍ପତ୍ତି ଉପରେ ତୁମମାନଙ୍କର ଆଉ କର୍ତ୍ତୃତ୍ୱ ରହିବ ନାହିଁ ।

୨. ଅର୍ଥାତ୍ ଅଲ୍ଲାହ ଯାହା କିଛି ସରଳ ସ୍ୱଭାବ ମନୁଷ୍ୟ ଭିତରେ ସୃଷ୍ଟି କରିଛନ୍ତି ତାହା ସର୍ବଦା ତିଷ୍ଠି ରହିବ ; ତାହାକୁ କେହି ବଦଳାଇ ପାରିବେ ନାହିଁ ।

୩. ମୁସରିକମାନେ ପିତୁଳା, ଦେବଦୂତ, ଆତ୍ମାକୁ ଓ ମନୁଷ୍ୟମାନଙ୍କ ମଧ୍ୟରୁ କେତେକଙ୍କୁ ନିଜର ଉପାସ୍ୟ ସ୍ଥିର କରୁଥିବାରୁ ସେମାନେ କେବେ ହେଁ ଗୋଟିଏ କେନ୍ଦ୍ର–ବିନ୍ଦୁରେ ଏକତ୍ରିତ ହୋଇପାରିବେ ନାହିଁ । ଅଲ୍ଲାହ ଯେ ଏକ ଓ ଅଭିନ୍ନ ଏହି ତଥ୍ୟକୁ ଯେଉଁମାନେ ଗ୍ରହଣ କରନ୍ତି ସେମାନେ ଏକତ୍ରିତ ହୋଇ ପାରିବେ । ସେହିପରି ଯେଉଁମାନେ ନିଜକୁ ବିଭିନ୍ନ ଦେଶର ନାଗରିକ ବୋଲି କହନ୍ତି ସେମାନେ ମଧ୍ୟ ଏକତ୍ରିତ ହୋଇପାରିବେ ନାହିଁ । ସେମାନେ ନିଜକୁ ଗୋଟିଏ ଦେଶର ନାଗରିକ ବୋଲି ଦାବି କଲେ ହିଁ ଏକତ୍ରିତ ହୋଇପାରିବେ ।

୪. ଯେପରି ଏବେକାର ତଥାକଥିତ ପଣ୍ଡିତମାନେ କରିଥା'ନ୍ତି ।

وإذا مس الناس ضر دعوا ربهم منيبين إليه ثم إذا أذاقهم منه رحمة إذا فريق منهم بربهم يشركون ﴿٣٤﴾

୩୪. ଏବଂ ଯେତେବେଳେ ଲୋକମାନଙ୍କ ଉପରେ କୌଣସି ଦୁଃଖ ନିପତିତ ହୁଏ, (ସେତେବେଳେ) ସେମାନେ ନିଜ ପାଳନକର୍ତ୍ତାଙ୍କ ପ୍ରତି ଅବନତ ହୋଇ ତାହାଙ୍କୁ ଡାକନ୍ତି; ଏବଂ ଯେତେବେଳେ ସେମାନଙ୍କ ପ୍ରତି ତାହାଙ୍କ ତରଫରୁ କୌଣସି କରୁଣା ଉପସ୍ଥିତ ହୁଏ, (ସେତେବେଳେ) ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ନିଜ ପାଳନକର୍ତ୍ତାଙ୍କ ସହିତ ଅନ୍ୟକୁ ସମକକ୍ଷ କରନ୍ତି,

ليكفروا بما آتيناهم فتمتعوا فسوف تعلمون ﴿٣٥﴾

୩୫. ଯାହାର ଫଳ ଏହା ହୁଏ ଯେ ଆମ୍ଭେ ସେମାନଙ୍କୁ ଯାହା ଦେଇଥାଉ, କାର୍ଯ୍ୟତଃ ସେମାନେ ତାହାକୁ ପ୍ରତ୍ୟାଖ୍ୟାନ କରନ୍ତି; (ସେତେବେଳେ ସେମାନଙ୍କୁ କୁହାଯାଏ ସଂସାରରୁ) ଯାହା କିଛି ଲାଭ ହାସଲ କରିବା କଥା ତାହା କରି ନିଅ, କାରଣ ତୁମେମାନେ ଶୀଘ୍ର ନିଜର ପରିଣାମ ଜାଣି ପାରିବ ।

أم أنزلنا عليهم سلطانا فهو يتكلم بما كانوا به يشركون ﴿٣٦﴾

୩୬. କ'ଣ ଆମ୍ଭେ ସେମାନଙ୍କ ପାଇଁ (ସିର୍କ ସଂକ୍ରାନ୍ତ) ଏପରି କୌଣସି ଦଲିଲ ଅବତୀର୍ଣ୍ଣ କରିଅଛୁ ଯାହା ସିର୍କ ସଂକ୍ରାନ୍ତରେ ସେମାନେ କହୁଥିବା ବିଷୟକୁ ପ୍ରତିପାଦିତ କରୁଅଛି ?

وإذا أذقنا الناس رحمة فرحوا بها وإن تصبهم سيئة بما قدمت أيديهم إذا هم يقنطون ﴿٣٧﴾

୩୭. ଯେତେବେଳେ ଆମ୍ଭେ ଲୋକମାନଙ୍କ ସହିତ କରୁଣାପୂର୍ଣ୍ଣ ବ୍ୟବହାର କରିଥାଉ, (ସେତେବେଳେ) ସେମାନେ ସେଥିରେ ଆନନ୍ଦିତ ହୁଅନ୍ତି; ଏବଂ ଯଦି ସେମାନଙ୍କ ଅତୀତ କର୍ମ ଯୋଗୁ ସେମାନଙ୍କ ପ୍ରତି କୌଣସି ଦୁଃଖ ଉପସ୍ଥିତ ହୁଏ, ତେବେ ସେମାନେ ତତ୍କ୍ଷଣାତ୍ ନିରାଶ ହୋଇଯାଆନ୍ତି ।

أولم يروا أن الله يبسط الرزق لمن يشاء ويقدر إن في ذلك لآيات لقوم يؤمنون ﴿٣٨﴾

୩୮. କ'ଣ ସେମାନେ ଲକ୍ଷ୍ୟ କରିନାହାନ୍ତି ଯେ ଅଲ୍ଲାଃ ଯାହା ପାଇଁ ଇଚ୍ଛା କରନ୍ତି, ଜୀବିକା ପ୍ରଶସ୍ତ କରିଦିଅନ୍ତି, (ଓ ଯାହା ପାଇଁ ଇଚ୍ଛା କରନ୍ତି) ତାହାକୁ ସଂକୁଚିତ କରିଥାଆନ୍ତି; ଏଥିରେ ବିଶ୍ୱାସକାରୀ ଲୋକମାନଙ୍କ ପାଇଁ ଅନେକ ନିଦର୍ଶନ ରହିଅଛି ।

فآت ذا القربى حقه والمسكين وابن السبيل ذلك خير للذين يريدون وجه الله وأولئك هم المفلحون ﴿٣٩﴾

୩୯. ସୁତରାଂ (ଯେତେବେଳେ ଅଲ୍ଲାଃ ଜୀବିକାକୁ ପ୍ରଶସ୍ତ କରିଦିଅନ୍ତି, ସେତେବେଳେ ହେ କୋରାନର ଅନୁଗାମୀମାନେ !) ଆତ୍ମୀୟବର୍ଗଙ୍କୁ, ଦରିଦ୍ରମାନଙ୍କୁ ଓ ପଥିକମାନଙ୍କୁ ସେମାନଙ୍କ ପ୍ରାପ୍ୟ ପ୍ରଦାନ କର; [୧] ଯେଉଁମାନେ ଅଲ୍ଲାଃଙ୍କର ଅନୁଗ୍ରହ ଲାଭକରିବା ଇଚ୍ଛାକରନ୍ତି ଏହା ସେମାନଙ୍କ ପକ୍ଷରେ ଅତ୍ୟନ୍ତ ଉତ୍କୃଷ୍ଟ ଅଟେ, ଓ ସେହି ଲୋକମାନେ କୃତକାର୍ଯ୍ୟ ହେବେ ।

---

୧. ଏଠାରେ ମଧ୍ୟ ହଜରତ ମହମ୍ମଦଙ୍କୁ ନିର୍ଦ୍ଦେଶ ଦିଆଯାଉ ନାହିଁ, ବରଂ ତାଙ୍କ ଅନୁଗାମୀମାନଙ୍କୁ ଦିଆଯାଇଛି କାରଣ ସେ ପ୍ରାରମ୍ଭରୁ, ନିଜେ ଅଭାବଗ୍ରସ୍ତ ଥାଆନ୍ତୁ କି ସ୍ୱଚ୍ଛଳ ଥାଆନ୍ତୁ, ସମ୍ପର୍କୀୟମାନଙ୍କ କଥା ବୁଝୁଥିଲେ ଏବଂ ଦରିଦ୍ର ଓ ପଥିକମାନଙ୍କୁ ସାହାଯ୍ୟ କରୁଥିଲେ ।

୪୦. ଏବଂ ଯେଉଁ ଟଙ୍କା ତୁମେ ସୁଧ [୧] ପାଇବା ନିମନ୍ତେ ଦିଅ, ଯଦ୍ଦ୍ୱାରାକି ତାହା ଲୋକମାନଙ୍କ ଧନ ସହିତ ବୃଦ୍ଧି ପାଇବ, ସେ ଟଙ୍କା ଅଲ୍ଲାହ୍‌ଙ୍କ ସମୀପରେ ବୃଦ୍ଧି ପାଏ ନାହିଁ; ଏବଂ ଅଲ୍ଲାହ୍‌ଙ୍କର ଅନୁଗ୍ରହ ଲାଭକରିବା ସକାଶେ ଯାହାକିଛି ତୁମେମାନେ ଜକାତ ଆକାରରେ ପ୍ରଦାନ କର, (ତେବେ ମନେରଖ ଯେ) ଏଭଳି ଲୋକମାନେ ଅଲ୍ଲାହ୍‌ଙ୍କ ନିକଟରେ (ନିଜର ଧନ) ବୃଦ୍ଧି କରାଉଛନ୍ତି ।

وَمَآ اٰتَيْتُمْ مِّنْ رِّبًا لِّيَرْبُوَا۠ فِيْٓ اَمْوَالِ النَّاسِ فَلَا يَرْبُوْا عِنْدَ اللّٰهِ ۚ وَمَآ اٰتَيْتُمْ مِّنْ زَكٰوةٍ تُرِيْدُوْنَ وَجْهَ اللّٰهِ فَاُولٰٓئِكَ هُمُ الْمُضْعِفُوْنَ ۝

୪୧. ସେ ହିଁ ଅଲ୍ଲାହ୍ ଯେ ତୁମମାନଙ୍କୁ ସୃଷ୍ଟି କରିଛନ୍ତି ଓ ତତ୍‌ପରେ ସେ ତୁମମାନଙ୍କୁ ଜୀବିକା ପ୍ରଦାନ କରିଛନ୍ତି; ତା'ପରେ ସେ ତୁମମାନଙ୍କୁ ମୃତ୍ୟୁ ପ୍ରଦାନ କରିବେ, ଓ ତୁମମାନଙ୍କୁ ପୁନର୍ବାର ଜୀବିତ କରିବେ; କ'ଣ ତୁମମାନଙ୍କର (କପୋଳକଳ୍ପିତ) ଉପାସ୍ୟମାନଙ୍କ ମଧ୍ୟରେ ଏପରି କେହି ଅଛି ଯେ ଏହି କାର୍ଯ୍ୟର କୌଣସି ଅଂଶ ମଧ୍ୟ କରିପାରିବ ? ସେ ହିଁ ମହିମାବାନ୍, ଓ ସେମାନେ ତାହାଙ୍କ ସହିତ ଯେଉଁ (ଉପାସ୍ୟ) ମାନଙ୍କୁ ସମକକ୍ଷ କରୁଛନ୍ତି ସେଥିରୁ ସେ ଉର୍ଦ୍ଧ୍ୱରେ ।

اَللّٰهُ الَّذِيْ خَلَقَكُمْ ثُمَّ رَزَقَكُمْ ثُمَّ يُمِيْتُكُمْ ثُمَّ يُحْيِيْكُمْ ۗ هَلْ مِنْ شُرَكَآئِكُمْ مَّنْ يَّفْعَلُ مِنْ ذٰلِكُمْ مِّنْ شَيْءٍ ۗ سُبْحٰنَهٗ وَتَعٰلٰى عَمَّا يُشْرِكُوْنَ ۝

ରୁ: ୫

୪୨. (ଏ ଯୁଗରେ) ସ୍ଥଳ ଭାଗରେ ତଥା ଜଳ ଭାଗରେ ଲୋକମାନଙ୍କ କାର୍ଯ୍ୟ ଯୋଗୁଁ ବିଶୃଙ୍ଖଳା ଦେଖାଦେଇଛି; ଫଳରେ ଅଲ୍ଲାହ୍ ଲୋକମାନଙ୍କୁ ସେମାନଙ୍କ କର୍ମର କିଛି ଭାଗ ପାଇଁ (ଏହି ସଂସାରରେ) ଶାସ୍ତି ପ୍ରଦାନ କରିବେ ଯେପରିକି ସେମାନେ (ଅବଜ୍ଞା କରିବାରୁ) ବିରତ ହେବେ ।

ظَهَرَ الْفَسَادُ فِي الْبَرِّ وَالْبَحْرِ بِمَا كَسَبَتْ اَيْدِي النَّاسِ لِيُذِيْقَهُمْ بَعْضَ الَّذِيْ عَمِلُوْا لَعَلَّهُمْ يَرْجِعُوْنَ ۝

୪୩. ତୁମେ କୁହ, "ଦେଶରେ ଭ୍ରମଣ କର ଏବଂ ଲକ୍ଷ୍ୟକର ଯେ ତୁମର ପୂର୍ବବର୍ତ୍ତୀ ଲୋକମାନଙ୍କ ପରିଣାମ କିପରି ହୋଇଥିଲା; ସେମାନଙ୍କ ମଧ୍ୟରୁ ଅଧିକାଂଶ ମୁସରିକ ଥିଲେ ।"

قُلْ سِيْرُوْا فِي الْاَرْضِ فَانْظُرُوْا كَيْفَ كَانَ عَاقِبَةُ الَّذِيْنَ مِنْ قَبْلُ ۗ كَانَ اَكْثَرُهُمْ مُّشْرِكِيْنَ ۝

---

[୧] ପବିତ୍ର କୋରାନରେ ଦୁଇ ପ୍ରକାର ସୁଧ ବିଷୟର ବର୍ଣ୍ଣନା ଅଛି । ପ୍ରଥମତଃ ସେହି ସୁଧ କାରବାର ଯାହା ଦରିଦ୍ର ଲୋକମାନଙ୍କ ସହିତ କରାଯାଏ, ଏହା ମଧ୍ୟ ନିଷିଦ୍ଧ । କିନ୍ତୁ ଏହି ଆୟତରୁ ସ୍ପଷ୍ଟରୂପେ ପ୍ରତୀତ ହେଉଛି ଯେ ଏଠାରେ ସେହି ସୁଧ କାରବାର କଥା ଉଲ୍ଲେଖ କରାଯାଇଛି ଯାହା ଧନୀଲୋକଙ୍କ ସହିତ କରାଯାଏ ଯେପରି ସେମାନେ ବ୍ୟବସାୟରେ ପୁଞ୍ଜି ବିନିଯୋଗ କରିବେ ଏବଂ ପୁଞ୍ଜି ପ୍ରଦାନକାରୀ ବ୍ୟକ୍ତିଙ୍କର ଧନ ବୃଦ୍ଧି ପାଇବ । ଧନୀ ଲୋକଙ୍କୁ ବା କମ୍ପାନୀ ମାଲିକଙ୍କୁ ସୁଧରେ ଟଙ୍କା ଦେବା ବା ବ୍ୟାଙ୍କରେ ଧନ ବିନିଯୋଗ କରିବାକୁ ଇସଲାମ ଧର୍ମରେ ବାରଣ କରାଯାଇ ନାହିଁ ବୋଲି କେତେକ ମୁସଲମାନ ଭାବନ୍ତି ଅଥଚ ଏହି ଆୟତରେ ସ୍ପଷ୍ଟ ଭାବରେ ବ୍ୟାଖ୍ୟା କରାଯାଇଛି ଯେ ଏ ପ୍ରକାର ସୁଧ କାରବାର ମଧ୍ୟ ନିଷିଦ୍ଧ ହୋଇଛି । ଯଦି ଏଭଳି ଲୋକଙ୍କର ଅଭିମତ ଯଥାର୍ଥ ହୋଇଥା'ନ୍ତା ତେବେ ଏହି ଆୟତ ଅବତୀର୍ଣ୍ଣ ହେବାର କି ପ୍ରୟୋଜନ ଥିଲା ଏବଂ ଏହାର ଅଭିପ୍ରାୟ କ'ଣ ? ପବିତ୍ର କୋରାନକୁ ଯେ ଅବତୀର୍ଣ୍ଣ କରାଇଛନ୍ତି ସେ ହେଉଛନ୍ତି ଅନ୍ତର୍ଯ୍ୟାମୀ । ସେ ଏହା ମଧ୍ୟ ଜାଣନ୍ତି ଯେ ଏପରି ସମୟ ଆସିବ ଯେତେବେଳେ ଖୋଦ୍ ମୁସଲମାନମାନେ ସୁଧ କାରବାରକୁ ବୈଧ ସ୍ଥିର କରାଯିବା ପାଇଁ ପ୍ରୟାସ କରିବେ । ଅତଏବ ଆଗାମୀ ଦିନଗୁଡ଼ିକରେ ଯେଉଁ ସଂଶୟ ସୃଷ୍ଟି ହେବାର ସମ୍ଭାବନା ଅଛି ତାହାକୁ ଏହି ଆୟତ ଦୂର କରି ଦେଇଛି ।

ଏହି ଆୟତରେ ଜକାତ ଓ ସୁଧର ପାର୍ଥକ୍ୟକୁ ଦର୍ଶାଯାଇଛି । ଇସଲାମ ଜକାତ ମାଧ୍ୟମରେ ଦରିଦ୍ରମାନଙ୍କ ଦୁର୍ଭାଗ୍ୟକୁ ବଦଳାଇବା ଚାହୁଁଛି ଓ ତତ୍‌ସହିତ ସେମାନଙ୍କ ମର୍ଯ୍ୟାଦା ଓ ଆତ୍ମ-ସମ୍ମାନକୁ ସୁରକ୍ଷିତ କରିବାକୁ ପ୍ରୟାସ କରୁଛି । ପ୍ରକୃତପକ୍ଷେ ସୁଧ କାରବାର ଦରିଦ୍ରମାନଙ୍କ ଆର୍ଥିକ ଅବସ୍ଥାକୁ ସୁଧାରେ ନାହିଁ ବରଂ ଧନୀମାନଙ୍କୁ ଅଧିକ ଧନୀ କରାଏ ।

୪୪. ସୁତରାଂ ଅଲ୍ଲାଃଙ୍କ ନିକଟରୁ ସେହି ଅନିବାର୍ଯ୍ୟ ଦିନ ଉପସ୍ଥିତ ହେବା ପୂର୍ବରୁ ତୁମେ ଚିରନ୍ତନ ସତ୍‌ଧର୍ମ ଦିଗକୁ ନିଜର ଧ୍ୟାନ ଫେରାଇ ଆଣ; ସେହିଦିନ ସେ ବିଶ୍ୱାସକାରୀ ଓ ଅବିଶ୍ୱାସକାରୀମାନେ ପରସ୍ପର ଠାରୁ ପୃଥକ୍ ହୋଇଯିବେ ।[1]

فَأَقِمْ وَجْهَكَ لِلدِّينِ الْقَيِّمِ مِنْ قَبْلِ أَنْ يَأْتِيَ يَوْمٌ لَا مَرَدَّ لَهُ مِنَ اللَّهِ ۖ يَوْمَئِذٍ يَصَّدَّعُونَ ﴿٤٣﴾

୪୫. ଯେ ଅବିଶ୍ୱାସ କରୁଛି ସେ ଅବିଶ୍ୱାସର ଫଳ ଭୋଗ କରିବ; ଏବଂ ଯେ ନିଜ ବିଶ୍ୱାସ ଅନୁଯାୟୀ କର୍ମ କରୁଛି ସେ ନିଜର ହିତ ପାଇଁ ହିଁ ପ୍ରସ୍ତୁତି କରୁଅଛି,

مَنْ كَفَرَ فَعَلَيْهِ كُفْرُهُ ۖ وَمَنْ عَمِلَ صَالِحًا فَلِأَنْفُسِهِمْ يَمْهَدُونَ ﴿٤٤﴾

୪୬. ତାହାହେଲେ ଯେଉଁମାନେ ବିଶ୍ୱାସ କରିଥିବେ, ଓ ବିଶ୍ୱାସ ଅନୁଯାୟୀ କର୍ମ କରିଥିବେ, ଅଲ୍ଲାଃ ନିଜ ଅନୁଗ୍ରହରୁ ସେମାନଙ୍କୁ ପୁରସ୍କାର ପ୍ରଦାନ କରିବେ; ସେ ବସ୍ତୁତଃ ଅବିଶ୍ୱାସକାରୀମାନଙ୍କୁ ଭଲ ପାଆନ୍ତି ନାହିଁ ।

لِيَجْزِيَ الَّذِينَ آمَنُوا وَعَمِلُوا الصَّالِحَاتِ مِنْ فَضْلِهِ ۚ إِنَّهُ لَا يُحِبُّ الْكَافِرِينَ ﴿٤٥﴾

୪୭. ଏବଂ ତାହାଙ୍କ ନିଦର୍ଶନମାନଙ୍କ ମଧ୍ୟରୁ ଅନ୍ୟତମ ନିଦର୍ଶନ ହେଉଛି ଯେ ସେ ବାୟୁକୁ ସୁସମାଚାରଦାତା ରୂପେ ପ୍ରେରଣ କରିଥାନ୍ତି ଓ ସେ ଏଥିପାଇଁ ଏପରି କରିଥାନ୍ତି ଯଦ୍ୱାରା ସେ ତୁମମାନଙ୍କୁ ନିଜ ଅନୁଗ୍ରହ (ଫଳ) ଆସ୍ୱାଦନ କରାଇବେ; ଏବଂ ପୋତଗୁଡ଼ିକ ତାହାଙ୍କ ଆଦେଶରେ ପରିଚାଳିତ ହେବ, ଓ ତୁମେମାନେ ତାହାଙ୍କ କୃପାଲାଭ କରିପାରିବ, ତଥା ତୁମେମାନେ କୃତଜ୍ଞ ହେବ ।

وَمِنْ آيَاتِهِ أَنْ يُرْسِلَ الرِّيَاحَ مُبَشِّرَاتٍ وَلِيُذِيقَكُمْ مِنْ رَحْمَتِهِ وَلِتَجْرِيَ الْفُلْكُ بِأَمْرِهِ وَلِتَبْتَغُوا مِنْ فَضْلِهِ وَلَعَلَّكُمْ تَشْكُرُونَ ﴿٤٦﴾

୪୮. ଏବଂ ଆମେ ତୁମ ପୂର୍ବରୁ ଅନେକ ରସୁଲଙ୍କୁ ସେମାନଙ୍କ ସମ୍ପ୍ରଦାୟ ନିକଟକୁ ପ୍ରେରଣ କରିଥିଲୁ; ସୁତରାଂ ସେମାନେ ସେମାନଙ୍କ ନିକଟକୁ ସ୍ପଷ୍ଟ ପ୍ରମାଣ ଘେନି ଆସିଥିଲେ; ଏବଂ ଆମେ ଅପରାଧୀମାନଙ୍କ ଠାରୁ ସମୁଚିତ ପ୍ରତିଶୋଧ ନେଇଥିଲୁ; ଏବଂ ବିଶ୍ୱାସକାରୀମାନଙ୍କୁ ସହାୟତା କରିବା ଆମର କର୍ତ୍ତବ୍ୟ ଅଟେ ।

وَلَقَدْ أَرْسَلْنَا مِنْ قَبْلِكَ رُسُلًا إِلَىٰ قَوْمِهِمْ فَجَاءُوهُمْ بِالْبَيِّنَاتِ فَانْتَقَمْنَا مِنَ الَّذِينَ أَجْرَمُوا ۖ وَكَانَ حَقًّا عَلَيْنَا نَصْرُ الْمُؤْمِنِينَ ﴿٤٧﴾

୪୯. ଅଲ୍ଲାଃ ସେ ଅଟନ୍ତି ଯେ ବାୟୁକୁ ପ୍ରେରଣ କରନ୍ତି; ତା'ପରେ ସେହି ବାୟୁ ଜଳୀୟ ବାଷ୍ପ ପୂର୍ଣ୍ଣ ମେଘମାଳାକୁ ଉତ୍‌ଥିତ କରେ; ତା'ପରେ ସେ ଏହାକୁ ନିଜ ଇଚ୍ଛା ଅନୁସାରେ ଆକାଶରେ ବିସ୍ତାରିତ କରାନ୍ତି ଓ ସେଗୁଡ଼ିକୁ ଖଣ୍ଡ ଖଣ୍ଡ[2] କରାନ୍ତି; ଏବଂ ତୁମେମାନେ ତନ୍ମଧ୍ୟରୁ ଜଳବୃଷ୍ଟି ହେବା ଦେଖିବାକୁ ପାଅ; ତା'ପରେ ଯେତେବେଳେ ଅଲ୍ଲାଃ ସେହି ମେଘମାଳାକୁ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହା ଉପରେ ପ୍ରସନ୍ନ ହୁଅନ୍ତି ତାହା ଉପରେ ବର୍ଷଣ କରନ୍ତି, ସେତେବେଳେ ସେମାନେ (ହଠାତ୍) ଆନନ୍ଦିତ ହୋଇଉଠନ୍ତି ।

اللَّهُ الَّذِي يُرْسِلُ الرِّيَاحَ فَتُثِيرُ سَحَابًا فَيَبْسُطُهُ فِي السَّمَاءِ كَيْفَ يَشَاءُ وَيَجْعَلُهُ كِسَفًا فَتَرَى الْوَدْقَ يَخْرُجُ مِنْ خِلَالِهِ ۖ فَإِذَا أَصَابَ بِهِ مَنْ يَشَاءُ مِنْ عِبَادِهِ إِذَا هُمْ يَسْتَبْشِرُونَ ﴿٤٨﴾

୧. ଅର୍ଥାତ୍ ମୁସଲମାନମାନେ ବିଜୟୀ ହେବେ ଓ ନିଜର ଶାସନ ବ୍ୟବସ୍ଥାକୁ ପ୍ରଚଳନ କରାଇବେ । ଏ ବିଷୟ ସୁରା ଚୌବାର ଆୟତ ସଂଖ୍ୟା—୧ରେ ଉଲ୍ଲେଖ ଅଛି ।

୨. ଅର୍ଥାତ୍ ଗୋଟିଏ ମେଘକୁ ବହୁ ମେଘ ଖଣ୍ଡରେ ପରିଣତ କରିଥା'ନ୍ତି, ଫଳରେ ଏକ ବିସ୍ତୃତ ଅଞ୍ଚଳରେ ଜଳସେଚନ ହୋଇପାରିବ ।

୫୦. ଅଥଚ ସେମାନେ ଏହି (ଜଳ) ବର୍ଷଣ ପୂର୍ବରୁ ସମ୍ପୂର୍ଣ୍ଣ ନିରାଶ ହୋଇ ଯାଇଥିଲେ ।

وَاِنْ كَانُوْا مِنْ قَبْلِ اَنْ يُّنَزَّلَ عَلَيْهِمْ مِّنْ قَبْلِهٖ لَمُبْلِسِيْنَ ۝

୫୧. ସୁତରାଂ ଅଲ୍ଲାହଙ୍କ ଅନୁଗ୍ରହର ଚିହ୍ନମାନଙ୍କୁ ଲକ୍ଷ୍ୟକର ଯେ ସେ କିପରି ଭୂପୃଷ୍ଠକୁ, ତାହା ନିର୍ଜୀବ ହେବା ପରେ, ସଜୀବ କରାନ୍ତି ; ସେ ହିଁ (କୟାମତ ଦିନ) ମୃତମାନଙ୍କୁ ଜୀବିତ କରିବେ ; ଏବଂ ସେ ହିଁ (ଏ) ସକଳ ବିଷୟ କରିବାକୁ ସକ୍ଷମ ।

فَانْظُرْ اِلٰٓى اٰثٰرِ رَحْمَتِ اللّٰهِ كَيْفَ يُحْيِ الْاَرْضَ بَعْدَ مَوْتِهَا ؕ اِنَّ ذٰلِكَ لَمُحْيِ الْمَوْتٰى ۚ وَهُوَ عَلٰى كُلِّ شَيْءٍ قَدِيْرٌ ۝

୫୨. ଏବଂ ଯଦି ଆମେ ବାୟୁ ପରିଚାଳିତ କରିବୁ ଓ ସେମାନେ ଏହାକୁ (ଅର୍ଥାତ୍ ନିଜ ଶସ୍ୟକ୍ଷେତ୍ରକୁ) ହଳଦିଆ (ପଡ଼ି ଯାଇଥିବାର) ଦେଖିବେ, ତେବେ (ସେମାନେ ଏହି ଦୃଶ୍ୟ ଦେଖିବା ପରେ ଏଥିରୁ ଶିକ୍ଷାଲାଭ କରିବା ପରିବର୍ତ୍ତେ) ଅକୃତଜ୍ଞ ହୋଇଯିବେ ।

وَلَئِنْ اَرْسَلْنَا رِيْحًا فَرَاَوْهُ مُصْفَرًّا لَّظَلُّوْا مِنْۢ بَعْدِهٖ يَكْفُرُوْنَ ۝

୫୩. (ତେଣୁ ତୁମେ ସେମାନଙ୍କୁ ଏପରି ହେବାକୁ ଦିଅ) କାରଣ ତୁମେ ମୃତ ବ୍ୟକ୍ତିମାନଙ୍କୁ ଶୁଣାଇ ପାରିବ ନାହିଁ କି ବଧିର ବ୍ୟକ୍ତିମାନେ ମୁହଁ ଫେରାଇ ଚାଲିଯାଉଥିବା ବେଳେ ସେମାନଙ୍କୁ ଶୁଣାଇପାରିବ ନାହିଁ ।

فَاِنَّكَ لَا تُسْمِعُ الْمَوْتٰى وَلَا تُسْمِعُ الصُّمَّ الدُّعَآءَ اِذَا وَلَّوْا مُدْبِرِيْنَ ۝

୫୪. ଏବଂ ତୁମେ ଅନ୍ଧମାନଙ୍କୁ ସେମାନଙ୍କ ପଥ-ଭ୍ରଷ୍ଟତାରୁ ବାହାର କରି ସତ୍‌ପଥକୁ ଆଣିପାରିବ ନାହିଁ; ତୁମେ କେବଳ ସେହିମାନଙ୍କୁ ହିଁ ଶୁଣାଇ ପାରିବ ଯେଉଁମାନେ ଆମର ନିଦର୍ଶନଗୁଡ଼ିକ ପ୍ରତି ବିଶ୍ୱାସ କରନ୍ତି, ଏବଂ ସେମାନେ ହିଁ ଆଜ୍ଞା-ପାଳନକାରୀ ହୁଅନ୍ତି ।

وَمَآ اَنْتَ بِهٰدِ الْعُمْيِ عَنْ ضَلٰلَتِهِمْ ؕ اِنْ تُسْمِعُ اِلَّا مَنْ يُّؤْمِنُ بِاٰيٰتِنَا فَهُمْ مُّسْلِمُوْنَ ۝ ع

ରୁ:୬

୫୫. ଅଲ୍ଲାହ ହିଁ ସେ, ଯେ କି ତୁମମାନଙ୍କୁ ଏପରି ଅବସ୍ଥାରେ ସୃଷ୍ଟିକଲେ ଯେତେବେଳେ ତୁମମାନଙ୍କ ମଧ୍ୟରେ ଦୁର୍ବଳତା ପରିଲକ୍ଷିତ ହେଉଥିଲା, ଏବଂ ଦୁର୍ବଳତା ପରେ ତୁମମାନଙ୍କୁ ଶକ୍ତି ପ୍ରଦାନ କଲେ, ଏବଂ ଶକ୍ତି ପରେ (ପୁନଶ୍ଚ) ଦୁର୍ବଳତା ଓ ବାର୍ଦ୍ଧକ୍ୟ ଦେଲେ; ସେ ଯାହା ଇଚ୍ଛା କରନ୍ତି ତାହା ସୃଷ୍ଟି କରନ୍ତି; ସେ ହିଁ ସର୍ବଜ୍ଞ (ଓ) ସର୍ବ ଶକ୍ତିମାନ୍ ।

اَللّٰهُ الَّذِيْ خَلَقَكُمْ مِّنْ ضُعْفٍ ثُمَّ جَعَلَ مِنْۢ بَعْدِ ضُعْفٍ قُوَّةً ثُمَّ جَعَلَ مِنْۢ بَعْدِ قُوَّةٍ ضُعْفًا وَّشَيْبَةً ؕ يَخْلُقُ مَا يَشَآءُ ۚ وَهُوَ الْعَلِيْمُ الْقَدِيْرُ ۝

୫୬. ଏବଂ ଯେଉଁଦିନ ସେହି ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହେବ (ସେ ଦିନ) ଅପରାଧୀମାନେ ଶପଥ-ପୂର୍ବକ କହିବେ ଯେ ସେମାନେ କେବଳ ଦଣ୍ଡେ ମାତ୍ର [୧] (ଏହି ସଂସାରରେ) ଥିଲେ; ସେମାନେ ଏହିପରି ବାଚାଳ-ପ୍ରାୟ କଥା କହିଥାଆନ୍ତି ।

وَيَوْمَ تَقُومُ السَّاعَةُ يُقْسِمُ الْمُجْرِمُونَ ۙ مَا لَبِثُوا غَيْرَ سَاعَةٍ ۚ كَذَٰلِكَ كَانُوا يُؤْفَكُونَ ٥٦

୫୭. ଏବଂ ଯେଉଁମାନଙ୍କୁ ଜ୍ଞାନ ଓ ଧର୍ମ ବିଶ୍ୱାସ ପ୍ରଦାନ କରାଯାଇଅଛି, ସେମାନେ କହିବେ, "ତୁମେମାନେ ଅଲ୍ଲାହଙ୍କ ହିସାବ ମୁତାବକ ସେହିଦିନ ପର୍ଯ୍ୟନ୍ତ ପଡ଼ିରହିଥିଲ, ଯେଉଁଦିନ ତୁମମାନଙ୍କ ପୁନରଭ୍ୟୁଦୟ[୧] ପାଇଁ ନିର୍ଦ୍ଦିଷ୍ଟ କରାହୋଇଥିଲା, ଏବଂ (ମନେରଖ ଯେ) ଏହା ହିଁ ସେହି ପୁନରଭ୍ୟୁଦୟ[୨] ଦିବସ; ପରନ୍ତୁ ତୁମେ ଏହା ଜାଣ ନାହିଁ ।"

وَقَالَ الَّذِينَ أُوتُوا الْعِلْمَ وَالْإِيمَانَ لَقَدْ لَبِثْتُمْ فِي كِتَابِ اللَّهِ إِلَىٰ يَوْمِ الْبَعْثِ ۖ فَهَٰذَا يَوْمُ الْبَعْثِ وَلَٰكِنَّكُمْ كُنْتُمْ لَا تَعْلَمُونَ ٥٧

୫୮. ସୁତରାଂ ଆଜି ଅତ୍ୟାଚାରୀମାନଙ୍କର କୌଣସି ବାହାନା ଲାଭଦାୟକ ହେବନାହିଁ କି ସେମାନଙ୍କୁ କ୍ଷମାପ୍ରଦାନ କରାଯାଇ ଦ୍ୱାରଦେଶ ପର୍ଯ୍ୟନ୍ତ ଆସିବାକୁ ସୁଯୋଗ ଦିଆହେବ ନାହିଁ ।

فَيَوْمَئِذٍ لَا يَنْفَعُ الَّذِينَ ظَلَمُوا مَعْذِرَتُهُمْ وَلَا هُمْ يُسْتَعْتَبُونَ ٥٨

୫୯. ଏବଂ ଆମେ ମନୁଷ୍ୟମାନଙ୍କ ପାଇଁ ଏହି କୋରାନରେ ସମସ୍ତ ପ୍ରକାର (ବାସ୍ତବ) ଦୃଷ୍ଟାନ୍ତମାନ ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ; ଏବଂ ଯଦି ତୁମେ ସେମାନଙ୍କ ନିକଟକୁ କୌଣସି ନିଦର୍ଶନ ଘେନି ଆସିବ, ତେବେ ଅବିଶ୍ୱାସକାରୀମାନେ ନିଶ୍ଚୟ କହିବେ, "ତୁମେମାନେ କେବଳ ମିଥ୍ୟା କଥାଗୁଡ଼ିକୁ ଉପସ୍ଥାପନ କରୁଅଛ ।"

وَلَقَدْ ضَرَبْنَا لِلنَّاسِ فِي هَٰذَا الْقُرْآنِ مِنْ كُلِّ مَثَلٍ ۚ وَلَئِنْ جِئْتَهُمْ بِآيَةٍ لَيَقُولَنَّ الَّذِينَ كَفَرُوا إِنْ أَنْتُمْ إِلَّا مُبْطِلُونَ ٥٩

୬୦. ଏହିପରି ଭାବରେ ଅଲ୍ଲାହ ଅଜ୍ଞ ଲୋକମାନଙ୍କ ହୃଦୟରେ ମୋହର [୩] ଲଗାଇ ଦିଅନ୍ତି ।

كَذَٰلِكَ يَطْبَعُ اللَّهُ عَلَىٰ قُلُوبِ الَّذِينَ لَا يَعْلَمُونَ ٦٠

୬୧. ସୁତରାଂ (ହେ ମହମ୍ମଦ !) ତୁମେ ଧୈର୍ଯ୍ୟର ସହିତ (ନିଜ ଧର୍ମ ବିଶ୍ୱାସରେ) ଅଟଳ ରହ; ଅଲ୍ଲାହଙ୍କର ଅଙ୍ଗୀକାର ଅବଶ୍ୟ ପାଳିତ ହେବ ଏବଂ ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ ସେମାନେ ତୁମକୁ ପ୍ରତାରଣା କରି (ସ୍ୱସ୍ଥାନରୁ) ଯେପରି ବିଚ୍ୟୁତ ନ କରନ୍ତି ।

فَاصْبِرْ إِنَّ وَعْدَ اللَّهِ حَقٌّ ۖ وَلَا يَسْتَخِفَّنَّكَ الَّذِينَ لَا يُوقِنُونَ ٦١ ع

---

୧. ଏହି ଆୟତର ଭାଷାରୁ ଜଣାଯାଉଛି ଯେ ଏଠାରେ ପରଲୋକରେ ପୁନର୍ଜୀବନ ଲାଭକରିବା ବିଷୟ ବର୍ଣ୍ଣନା କରା ଯାଇନାହିଁ ବରଂ ଏ ସଂସାରରେ ଜାତୀୟ ଉନ୍ନତି ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି ।

୨. ଏଠାରେ ସୂଚାଯାଇଛି ଯେ ସେମାନେ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇଛନ୍ତି । ଇସଲାମର ଉନ୍ନତି ହେବା ପୂର୍ବରୁ ସେମାନଙ୍କର ଅନ୍ତିମ ବିନାଶ ହେବ ନାହିଁ ବରଂ ତାହା ଇସଲାମର ପୁନରୁତ୍ଥାନ ସମୟରେ ହେବ । ଏହାପରେ ଯେବେ ବି ସେମାନଙ୍କର ସେପରି ସର୍ବନାଶ ହେବ ତେବେ ସେମାନେ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଯେପରି ଗୌରବ ଓ ଉନ୍ନତିର ଚରମ ସୀମାରେ ପହଞ୍ଚି ପାରିଥିଲେ ଆଉ ସେପରି ପହଞ୍ଚି ପାରିବେ ନାହିଁ ।

୩. ଏହି ଆୟତରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ ଅଲ୍ଲାହ ଅକାରଣରେ କାହାରି ହୃଦୟରେ ମୋହର ଲଗାନ୍ତି ନାହିଁ । ପ୍ରଥମେ ମଣିଷ ମିଛ ପଛରେ ଧାଇଁବାକୁ ଲାଗେ । ଏହିପରି କିଛିକାଳ ଅତିବାହିତ ହେବା ପରେ ଯେତେବେଳେ ସେ ଅସତ୍‌କାର୍ଯ୍ୟକୁ ମଧ୍ୟ ସତ୍‌କାର୍ଯ୍ୟ ବୋଲି ଭାବେ ସେତେବେଳେ ତା'ହୃଦୟରେ ମୋହର ଲଗାଇ ଦିଆଯାଏ ।

سُوْرَةُ لُقْمٰنَ مَكِّيَّةٌ (٣١)

# ଲୁକମାନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୩୫ଟି ଆୟତ ଓ ୪ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମନେଇ (ପାଠ କରୁଅଛି) ।

الٓمّٓ ②

୨. ଅଲିଫ- ଲାମ-:ମୀମ ।

تِلْكَ اٰيٰتُ الْكِتٰبِ الْحَكِيْمِ ③

୩. ଏଗୁଡ଼ିକ ସେହି **ପୂର୍ଣ୍ଣଜ୍ଞ** ଗ୍ରନ୍ଥର ଆୟତସମୂହ ଯାହା ତତ୍ତ୍ୱ ସମ୍ବଳିତ ଅଟେ ।

هُدًى وَّ رَحْمَةً لِّلْمُحْسِنِيْنَ ④

୪. (ଏବଂ ଏହା) ନିଜ କର୍ତ୍ତବ୍ୟକୁ ସୁଚାରୁରୂପେ ପାଳନ କରୁଥିବା ଲୋକମାନଙ୍କ ପାଇଁ ସତ୍‌ପଥ ପ୍ରଦର୍ଶନ ଓ କରୁଣାର ଆଧାର ଅଟେ;

الَّذِيْنَ يُقِيْمُوْنَ الصَّلٰوةَ وَيُؤْتُوْنَ الزَّكٰوةَ وَ هُمْ بِالْاٰخِرَةِ هُمْ يُوْقِنُوْنَ ⑤

୫. ଯେଉଁମାନେ (ସୁଚାରୁରୂପେ) ନମାଜ ପାଠ କରନ୍ତି ଓ (ଦୀନ-ଦରିଦ୍ର-ମାନଙ୍କୁ) ଜକାତ ଦିଅନ୍ତି ଓ ପରକାଳରେ ବିଶ୍ୱାସ କରନ୍ତି,

اُولٰٓئِكَ عَلٰى هُدًى مِّنْ رَّبِّهِمْ وَ اُولٰٓئِكَ هُمُ الْمُفْلِحُوْنَ ⑥

୬. ଏହି ଲୋକମାନେ ନିଜ ପାଳନକର୍ତ୍ତାଙ୍କ ପ୍ରଦର୍ଶିତ ସତ୍‌ପଥ ଉପରେ ଦୃଢ଼ ଭାବରେ ପ୍ରତିଷ୍ଠିତ ଅଛନ୍ତି ଏବଂ ଏହିପରି ଲୋକମାନେ ହିଁ (ସବୁ କ୍ଷେତ୍ରରେ) କୃତକାର୍ଯ୍ୟ ହେବେ ।

وَ مِنَ النَّاسِ مَنْ يَّشْتَرِيْ لَهْوَ الْحَدِيْثِ لِيُضِلَّ عَنْ سَبِيْلِ اللّٰهِ بِغَيْرِ عِلْمٍ ۖ وَّ يَتَّخِذَهَا هُزُوًا ۭ اُولٰٓئِكَ لَهُمْ عَذَابٌ مُّهِيْنٌ ⑦

୭. ଏବଂ ଲୋକମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ (ନିଜର ଧନ ଅପବ୍ୟୟ କରି) ଖେଳ ତାମସାର କଥାଗୁଡ଼ିକୁ ଆହରଣ କରୁଥାନ୍ତି ଯେପରିକି (ସେଗୁଡ଼ିକ ମାଧ୍ୟମରେ) ଅଜ୍ଞ ଲୋକମାନଙ୍କୁ ଅଲ୍ଲାହଙ୍କ ପଥରୁ ବିଭ୍ରାନ୍ତ କରାଇବେ; ଏବଂ ଏହାକୁ (ଅର୍ଥାତ୍ ଅଲ୍ଲାହଙ୍କ ପ୍ରଦର୍ଶିତ ପଥକୁ) ପରିହାସ-ଯୋଗ୍ୟ ବିଷୟ କରିଥାନ୍ତି; ଏପରି ଲୋକମାନଙ୍କୁ ଅପମାନଜନକ ଶାସ୍ତି ମିଳିବ ।

وَاِذَا تُتْلٰى عَلَيْهِ اٰيٰتُنَا وَلّٰى مُسْتَكْبِرًا كَاَنْ لَّمْ يَسْمَعْهَا كَاَنَّ فِيْٓ اُذُنَيْهِ وَقْرًا ۚ فَبَشِّرْهُ بِعَذَابٍ اَلِيْمٍ ⑧

୮. ଏବଂ ଯେତେବେଳେ ଏପରି ଲୋକ ନିକଟରେ ଆମର ଆୟତଗୁଡ଼ିକ ପାଠ କରାଯାଏ, ସେତେବେଳେ ସେ ଗର୍ବର ସହିତ ଏପରି ବିମୁଖ ହୋଇ ଚାଲିଯାଏ ସତେ ଯେପରି ସେ କିଛି ଶୁଣିନାହିଁ; ସତେ ଯେପରି ତା କାନରେ ବଧିରତା ରହିଅଛି; ସୁତରାଂ ତାହାକୁ ଏକ ଯନ୍ତ୍ରଣାଦାୟକ ଶାସ୍ତି ବିଷୟରେ ସୂଚନା ଦିଅ ।

୯. ବାସ୍ତବରେ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ତଦନୁଯାୟୀ (ସତ୍) କର୍ମ କରିଛନ୍ତି ସେମାନଙ୍କୁ ଏପରି ଆନନ୍ଦମୟ (ସ୍ୱର୍ଗ) ଉଦ୍ୟାନ ପ୍ରାପ୍ତ ହେବ,

إِنَّ الَّذِينَ آمَنُوا وَعَمِلُوا الصَّالِحَاتِ لَهُمْ جَنَّاتُ النَّعِيمِ ﴿٩﴾

୧୦. ଯେଉଁଠାରେ ସେମାନେ ରହିଚାଲିବେ, ଏହା ଅଲ୍ଲାହଙ୍କ କୃତ ଦୃଢ଼ ଅଙ୍ଗୀକାର ଅଟେ; ଏବଂ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

خَالِدِينَ فِيهَا ۖ وَعْدَ اللَّهِ حَقًّا ۚ وَهُوَ الْعَزِيزُ الْحَكِيمُ ﴿١٠﴾

୧୧. ସେ ଆକାଶକୁ ବିନା ସ୍ତମ୍ଭରେ ସୃଷ୍ଟି କରିଛନ୍ତି ଯେପରିକି ତୁମେମାନେ ଦେଖୁଅଛ; ଏବଂ ସେ ଭୂପୃଷ୍ଠରେ ଏହି ଆଶଙ୍କା ଯୋଗୁଁ ଦୃଢ଼ ପର୍ବତମାନ ସ୍ଥାପନ କରିଛନ୍ତି ଯେ ସେଗୁଡ଼ିକ ଯେପରି ତୁମମାନଙ୍କ ସହିତ ଭୂକମ୍ପନର କବଳିତ ନ ହୁଅନ୍ତି, ଏବଂ ଏଥିରେ ସମସ୍ତ ପ୍ରକାର ଜୀବଜନ୍ତୁଙ୍କୁ ବିସ୍ତାରିତ କରିଛନ୍ତି, ଓ ମେଘମାଳାରୁ ଜଳ ବର୍ଷଣ କରୁଛନ୍ତି ଏବଂ ତନ୍ମଧ୍ୟରେ ପ୍ରତ୍ୟେକ ପ୍ରକାରର ଉତ୍ତମ[୧] ଯୋଡ଼ା ସୃଷ୍ଟି କରିଛନ୍ତି ।

خَلَقَ السَّمَاوَاتِ بِغَيْرِ عَمَدٍ تَرَوْنَهَا ۖ وَأَلْقَىٰ فِي الْأَرْضِ رَوَاسِيَ أَنْ تَمِيدَ بِكُمْ وَبَثَّ فِيهَا مِنْ كُلِّ دَابَّةٍ ۚ وَأَنْزَلْنَا مِنَ السَّمَاءِ مَاءً فَأَنْبَتْنَا فِيهَا مِنْ كُلِّ زَوْجٍ كَرِيمٍ ﴿١١﴾

୧୨. ଏହା ହିଁ ଅଲ୍ଲାହଙ୍କର ସୃଷ୍ଟି; ସୁତରାଂ ତୁମେମାନେ ଆମକୁ ଦେଖାଇ ଦିଅ ଯେ ତାଙ୍କ ଛଡ଼ା ଯେଉଁମାନଙ୍କୁ ତୁମେମାନେ ତାହାଙ୍କର ସମକକ୍ଷ ମଣୁଅଛ ସେମାନେ କ'ଣ ସୃଷ୍ଟି କରିଛନ୍ତି ? (ସେମାନେ କିଛି ସୃଷ୍ଟିକରି ନାହାନ୍ତି) ବରଂ ବାସ୍ତବତା ଏହିକି ଯେ ଅତ୍ୟାଚାରୀମାନେ ସ୍ପଷ୍ଟ ବିଭ୍ରାନ୍ତରେ ପଡ଼ି ରହିଛନ୍ତି ।

هَٰذَا خَلْقُ اللَّهِ فَأَرُونِي مَاذَا خَلَقَ الَّذِينَ مِنْ دُونِهِ ۚ بَلِ الظَّالِمُونَ فِي ضَلَالٍ مُبِينٍ ﴿١٢﴾

ରୁ : ୨

୧୩. ଏବଂ ଆମେ ଲୋକମାନଙ୍କୁ ତତ୍ତ୍ୱଜ୍ଞାନ ପ୍ରଦାନ କରିଥିଲୁ; ଏବଂ କହିଥିଲୁ ଯେ ଅଲ୍ଲାହଙ୍କ ଠାରେ କୃତଜ୍ଞତା ଜ୍ଞାପନ କର; ଏବଂ ଯେଉଁ ବ୍ୟକ୍ତି କୃତଜ୍ଞ ହୁଏ ସେ କୃତଜ୍ଞତାର ଫଳ ନିଜେ ପାଏ; ଓ ଯେ ଅକୃତଜ୍ଞ ହୁଏ (ସେ ମନେରଖିବା ଉଚିତ ଯେ) ଅଲ୍ଲାହଙ୍କର କୌଣସି କୃତଜ୍ଞତା ଲୋଡ଼ା ନାହିଁ (ଓ) ସେ ଅତ୍ୟନ୍ତ ପ୍ରଶଂସିତ ।

وَلَقَدْ آتَيْنَا لُقْمَانَ الْحِكْمَةَ أَنِ اشْكُرْ لِلَّهِ ۚ وَمَنْ يَشْكُرْ فَإِنَّمَا يَشْكُرُ لِنَفْسِهِ ۖ وَمَنْ كَفَرَ فَإِنَّ اللَّهَ غَنِيٌّ حَمِيدٌ ﴿١٣﴾

୧୪. ଏବଂ (ସ୍ମରଣକର) ଯେତେବେଳେ ଲୁକମାନ ଆପଣା ପୁତ୍ରକୁ ଉପଦେଶ ଦେଇ କହିଲେ, "ହେ ମୋର ପୁତ୍ର! ଅଲ୍ଲାହଙ୍କ ସହିତ କାହାରିକୁ ସମକକ୍ଷ କରନାହିଁ; ସିର୍କ କରିବା ବାସ୍ତବରେ ଏକ ମସ୍ତବଡ଼ ଅନ୍ୟାୟ ଅଟେ ।"

وَإِذْ قَالَ لُقْمَانُ لِابْنِهِ وَهُوَ يَعِظُهُ يَا بُنَيَّ لَا تُشْرِكْ بِاللَّهِ ۖ إِنَّ الشِّرْكَ لَظُلْمٌ عَظِيمٌ ﴿١٤﴾

୧. ମୂଳ ଶବ୍ଦ 'ଅମ୍ବଚନା'ର ଗୋଟିଏ ଅର୍ଥ ଉପୁଜାଇବା ଓ ଅନ୍ୟ ଗୋଟିଏ ଅର୍ଥ ବଢ଼ାଇବା । ପରେ 'ଯୋଡ଼ା' ବିଷୟ ବର୍ଣ୍ଣନା କରାଯାଇଥିବାରୁ ଏବଂ ପବିତ୍ର କୋରାନରେ ଯୋଡ଼ି ଶବ୍ଦ ପ୍ରାଣୀ ଓ ଉଦ୍ଭିଦ ଉଭୟ ପାଇଁ ପ୍ରୟୋଗ କରାଯାଇଥିବାରୁ ଅନୁବାଦରେ 'ତନ୍ମଧ୍ୟରେ ପ୍ରତ୍ୟେକ ପ୍ରକାର ଉତ୍ତମ ଯୋଡ଼ା ସୃଷ୍ଟି କରିଛନ୍ତି' ବାକ୍ୟାଂଶ ରଖାଯାଇଛି ।

وَوَصَّيْنَا الْإِنسَانَ بِوَالِدَيْهِ حَمَلَتْهُ أُمُّهُ وَهْنًا عَلَىٰ وَهْنٍ وَفِصَالُهُ فِي عَامَيْنِ أَنِ اشْكُرْ لِي وَلِوَالِدَيْكَ إِلَيَّ الْمَصِيرُ ⑮

୧୫. ଏବଂ[1] ଆମ୍ଭେ ମନୁଷ୍ୟକୁ ନିଜ ପିତାମାତାଙ୍କ ସଂକ୍ରାନ୍ତରେ (ଦୟା ପ୍ରଦର୍ଶନ କରିବା ପାଇଁ) ଦୃଢ଼ ଆଦେଶ ଦେଇଅଛୁ; (କାରଣ) ତାହାର ମାତା (ଏକ) ଦୁର୍ବଳତା ପରେ (ଅନ୍ୟ ଏକ) ଦୁର୍ବଳତାରେ ତାହାକୁ ବହନ କରିଥାଏ, ଏବଂ ଦୁଇବର୍ଷ[1] ପର୍ଯ୍ୟନ୍ତ ତାହାକୁ ସ୍ତନ୍ୟପାନ କରାଇଥାଏ; (ତେଣୁ) ଆମ୍ଭ ପ୍ରତି ଓ ଆପଣା ପିତାମାତାଙ୍କ ପ୍ରତି କୃତଜ୍ଞ ହୁଅ; (ମନେରଖ ଯେ ତୁମମାନଙ୍କୁ) ଆମ୍ଭ ନିକଟକୁ ଫେରିବାକୁ ହେବ ।

وَإِن جَاهَدَاكَ عَلَىٰ أَن تُشْرِكَ بِي مَا لَيْسَ لَكَ بِهِ عِلْمٌ فَلَا تُطِعْهُمَا وَصَاحِبْهُمَا فِي الدُّنْيَا مَعْرُوفًا وَاتَّبِعْ سَبِيلَ مَنْ أَنَابَ إِلَيَّ ثُمَّ إِلَيَّ مَرْجِعُكُمْ فَأُنَبِّئُكُم بِمَا كُنتُمْ تَعْمَلُونَ ⑯

୧୬. ଏବଂ ଯଦି ସେ ଦୁହେଁ ତୁମ ସହିତ ଏ ସଂକ୍ରାନ୍ତରେ ଯୁକ୍ତିତର୍କ କରନ୍ତି ଯେ ତୁମେ ଅନ୍ୟ କାହାକୁ ଆମ୍ଭର ସମକକ୍ଷ ନିରୂପଣ କର, ଅଥଚ ତୁମେ ତାହା ସଂକ୍ରାନ୍ତରେ କିଛି ଜାଣ ନାହିଁ; ତେବେ ତୁମେ ସେ ଦୁହିଁଙ୍କର ଆଜ୍ଞା-ପାଳନ କର ନାହିଁ; ଏବଂ (ଆଧ୍ୟାତ୍ମିକ ବ୍ୟାପାରରେ) ସେହି ବ୍ୟକ୍ତିର ଅନୁସରଣ କର ଯେ ଆମ୍ଭ ପ୍ରତି ଅନୁଗତ ଥାଏ; ଏବଂ ତୁମେ ସମସ୍ତେ ଆମ୍ଭ ନିକଟକୁ ପ୍ରତ୍ୟାବର୍ତ୍ତନ କରିବ; ସେତେବେଳେ ଆମ୍ଭେ ତୁମମାନଙ୍କୁ ତୁମମାନଙ୍କ କର୍ମ ସଂକ୍ରାନ୍ତରେ ଅବଗତ କରାଇବୁ ।

يَا بُنَيَّ إِنَّهَا إِن تَكُ مِثْقَالَ حَبَّةٍ مِّنْ خَرْدَلٍ فَتَكُن فِي صَخْرَةٍ أَوْ فِي السَّمَاوَاتِ أَوْ فِي الْأَرْضِ يَأْتِ بِهَا اللَّهُ إِنَّ اللَّهَ لَطِيفٌ خَبِيرٌ ⑰

୧୭. (ଲୁକମାନ) କହିଲେ, "ହେ ମୋର ପୁତ୍ର ! ଯଦି କୌଣସି କର୍ମ ସୋରିଷ ଦାନା ସଦୃଶ ମଧ୍ୟ ହୋଇଥାଏ, ଓ ତାହା ପଥର ଭିତରେ, ବା ଆକାଶରେ, ବା ଭୂପୃଷ୍ଠରେ ଲୁକ୍କାୟିତ ରହିଥାଏ, ତେବେ ଅଲ୍ଲାଃ ତାହାକୁ ପ୍ରକାଶ କରିଦେବେ; ଅଲ୍ଲାଃ ସୂକ୍ଷ୍ମଦର୍ଶୀ ଓ ସକଳ ବିଷୟରେ ଅବହିତ ଅଟନ୍ତି ।"

يَا بُنَيَّ أَقِمِ الصَّلَاةَ وَأْمُرْ بِالْمَعْرُوفِ وَانْهَ عَنِ الْمُنكَرِ وَاصْبِرْ عَلَىٰ مَا أَصَابَكَ إِنَّ ذَٰلِكَ مِنْ عَزْمِ الْأُمُورِ ⑱

୧୮. "ହେ ମୋର ପୁତ୍ର ! (ତୁମେ ସୁଚାରୁରୂପେ) ନମାଜ ପାଠ କର, ଏବଂ ଯଥୋଚିତ କାର୍ଯ୍ୟ ବିଷୟରେ ଆଦେଶ ଦିଅ, ଓ ମନ୍ଦ କାର୍ଯ୍ୟକୁ ନିଷେଧ କର; ଏବଂ ତୁମ ଉପରେ ଯାହା (ଦୁଃଖ କଷ୍ଟ) ପଡ଼େ ତାହାକୁ ଧୈର୍ଯ୍ୟ ସହକାରେ ସହ୍ୟକର; ଏହା ନିଶ୍ଚିତ ରୂପେ ଅତି ସାହସିକ କର୍ମମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।"

وَلَا تُصَعِّرْ خَدَّكَ لِلنَّاسِ وَلَا تَمْشِ فِي الْأَرْضِ مَرَحًا إِنَّ اللَّهَ لَا يُحِبُّ كُلَّ مُخْتَالٍ فَخُورٍ ⑲

୧୯. "ଏବଂ ଲୋକମାନଙ୍କ ଆଗରେ (ରାଗରେ) ନିଜ ଗାଲକୁ ଫୁଲାଅ ନାହିଁ, ଏବଂ ଭୂପୃଷ୍ଠରେ ଗର୍ବର ସହିତ ଚାଲ ନାହିଁ; ଏବଂ ବାସ୍ତବରେ ଅଲ୍ଲାଃ କୌଣସି ଆତ୍ମାଭିମାନୀ ଓ ଗର୍ବୀକୁ ପସନ୍ଦ କରନ୍ତି ନାହିଁ ।"

---

୧. ସୁରା ଅହକାଫ୍‌ରେ ବର୍ଣ୍ଣନା କରାଯାଇଛି ଯେ ଗୋଟିଏ ଶିଶୁ ତା' ମାଆ ପେଟରେ ଥିବା ଓ କ୍ଷୀର ଛାଡ଼ିବା ସମୟର ଅବସାନ ତିରିଶ ମାସରେ ହୁଏ (୪୬:୧୬ ଦ୍ରଷ୍ଟବ୍ୟ) । କିନ୍ତୁ ଏଠାରେ ଦୁଇବର୍ଷର ଉଲ୍ଲେଖ ଅଛି । ଏହାର ଉତ୍ତର ହେଉଛି, କେତେକ ଶିଶୁ ଶୀଘ୍ର ଜନ୍ମ ହୁଅନ୍ତି ଓ ଦୁର୍ବଳ ହୁଅନ୍ତି ଏବଂ ଅନ୍ୟ ପକ୍ଷରେ କେତେକ ଶିଶୁ ମାଆ ପେଟରେ ଅଧିକ ଦିନ ରହି ଜନ୍ମ ହୁଅନ୍ତି ଓ ବଳବାନ୍ ହୁଅନ୍ତି । ଅନ୍ୟତ୍ର ମଧ୍ୟ ଉଲ୍ଲେଖ କରାଯାଇଛି ଯେ ଯଦି କୌଣସି ଶିଶୁ ଦୁର୍ବଳ ହୋଇଥାଏ ତେବେ ତା'ର କ୍ଷୀରଖିଆ ସମୟକୁ ବଢ଼ାଇଦେବା ଦରକାର, ଫଳରେ ସେ ବଳବାନ୍ ହୋଇଯିବ ।

୧୦. ଏବଂ ନିଜ ଚଳପ୍ରଚଳରେ ମଧ୍ୟମ ପନ୍ଥା ଅବଲମ୍ବନ କର, ଓ ନିଜ ସ୍ୱରକୁ ମୃଦୁ କର; (କାରଣ) ଗଧର (ଉଚ୍ଚ) ସ୍ୱର ସମସ୍ତ ପ୍ରକାର ସ୍ୱର ମଧ୍ୟରେ କର୍କଶ ଅଟେ ।

وَاقْصِدْ فِيْ مَشْيِكَ وَاغْضُضْ مِنْ صَوْتِكَ ۚ إِنَّ أَنْكَرَ الْأَصْوَاتِ لَصَوْتُ الْحَمِيْرِ ﴿١٩﴾

ରୁ:୩

୨୧. କ'ଣ ତୁମେମାନେ ଲକ୍ଷ୍ୟ କରୁନାହଁ ଯେ ଯାହାକିଛି ଆକାଶ ଓ ପୃଥିବୀରେ ଅଛି ଅଲ୍ଲାହ ତାହାକୁ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି, ଓ ପ୍ରକାଶ୍ୟରେ ହେଉ ବା ଅପ୍ରକାଶ୍ୟରେ ହେଉ, ତୁମମାନଙ୍କ ପ୍ରତି ନିଜର ଅନୁଗ୍ରହ ବୃଷ୍ଟି କରିଛନ୍ତି ? ଏବଂ ଲୋକମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ ଜ୍ଞାନ, ମାର୍ଗ–ପ୍ରଦର୍ଶନ ଓ କୌଣସି ପ୍ରକାଶମାନ ଗ୍ରନ୍ଥର ପ୍ରମାଣ ବିନା ଅଲ୍ଲାହଙ୍କ ସଂକ୍ରାନ୍ତରେ ଯୁକ୍ତିତର୍କ କରିଥାଆନ୍ତି ।

أَلَمْ تَرَوْا أَنَّ اللّٰهَ سَخَّرَ لَكُمْ مَّا فِي السَّمٰوٰتِ وَمَا فِي الْأَرْضِ وَأَسْبَغَ عَلَيْكُمْ نِعَمَهٗ ظَاهِرَةً وَّبَاطِنَةً ۗ وَمِنَ النَّاسِ مَنْ يُّجَادِلُ فِي اللّٰهِ بِغَيْرِ عِلْمٍ وَّلَا هُدًى وَّلَا كِتٰبٍ مُّنِيْرٍ ﴿٢١﴾

୨୨. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଯାହାକିଛି ଅଲ୍ଲାହ ଅବତୀର୍ଣ୍ଣ କରିଛନ୍ତି ତାହାର ଅନୁସରଣ କର, (ସେତେବେଳେ)ସେମାନେ କହନ୍ତି, "ନା, ବରଂ ଆମେମାନେ ତାହାର ଅନୁସରଣ କରିବୁ ଯାହା ଆମମାନଙ୍କ ପିତୃପିତାମହମାନେ (ଅନୁସରଣ) କରୁଥିଲେ;" କ'ଣ ଯଦି ସଇତାନ (ସେମାନଙ୍କ ପିତୃପିତାମହମାନଙ୍କ ଜରିଆରେ) ସେମାନଙ୍କୁ ନରକ ଅଗ୍ନିର ଶାସ୍ତିଆଡ଼କୁ ଡାକୁଥାଏ, ତେବେ ମଧ୍ୟ (ସେମାନେ ଏହିପରି କରିବେ) ?

وَإِذَا قِيْلَ لَهُمُ اتَّبِعُوْا مَا أَنْزَلَ اللّٰهُ قَالُوْا بَلْ نَتَّبِعُ مَا وَجَدْنَا عَلَيْهِ اٰبَآءَنَا ۗ أَوَلَوْ كَانَ الشَّيْطٰنُ يَدْعُوْهُمْ إِلٰى عَذَابِ السَّعِيْرِ ﴿٢٢﴾

୨୩. ଏବଂ ଯେଉଁ ବ୍ୟକ୍ତି (ସମ୍ପୂର୍ଣ୍ଣ ଭାବରେ) ନିଜକୁ ଅଲ୍ଲାହଙ୍କ ନିକଟରେ ସମର୍ପଣ କରେ, ଓ ନିଜ କର୍ମରେ ମଧ୍ୟ ସମ୍ପୂର୍ଣ୍ଣ ଯତ୍ନଶୀଳ ଥାଏ, ସେ ବାସ୍ତବରେ ଏକ ମଜଭୁତ କଡ଼ାକୁ ଧାରଣ କରିଅଛି; ଏବଂ ଅଲ୍ଲାହଙ୍କ ନିକଟରେ ସକଳ କର୍ମର ପରିଣାମ ରହିଅଛି ।

وَمَنْ يُّسْلِمْ وَجْهَهٗٓ إِلَى اللّٰهِ وَهُوَ مُحْسِنٌ فَقَدِ اسْتَمْسَكَ بِالْعُرْوَةِ الْوُثْقٰى ۗ وَإِلَى اللّٰهِ عَاقِبَةُ الْأُمُوْرِ ﴿٢٣﴾

୨୪. ଏବଂ ଯେଉଁମାନେ ଅବିଶ୍ୱାସ କରନ୍ତି, ସେମାନଙ୍କ ଅବିଶ୍ୱାସ ଯୋଗୁଁ ତୁମେ ଦୁଃଖିତ ହୁଅ ନାହିଁ; ସେମାନଙ୍କୁ ପରିଶେଷରେ ଆମ ନିକଟକୁ ଫେରିବାକୁ ହେବ; ତା'ପରେ ଆମେ ସେମାନଙ୍କୁ ସେମାନଙ୍କ କର୍ମର ସତ୍ୟତା ସମ୍ପର୍କରେ ଅବହିତ କରାଇବୁ; ବାସ୍ତବରେ ଅଲ୍ଲାହ ଅନ୍ତରର ସବୁକଥା ଜାଣନ୍ତି ।

وَمَنْ كَفَرَ فَلَا يَحْزُنْكَ كُفْرُهٗ ۗ إِلَيْنَا مَرْجِعُهُمْ فَنُنَبِّئُهُمْ بِمَا عَمِلُوْا ۗ إِنَّ اللّٰهَ عَلِيْمٌۢ بِذَاتِ الصُّدُوْرِ ﴿٢٤﴾

୨୫. ଆମେ ସେମାନଙ୍କୁ କିଛି କାଳ ପର୍ଯ୍ୟନ୍ତ ସାଂସାରିକ ଲାଭ ପ୍ରଦାନ କରିବୁ; ତା'ପରେ ଆମେ ସେମାନଙ୍କୁ ବାଧ୍ୟ କରି କଠିନ ଶାସ୍ତି ଆଡ଼କୁ ଘେନି ଯିବୁ ।

نُمَتِّعُهُمْ قَلِيْلًا ثُمَّ نَضْطَرُّهُمْ إِلٰى عَذَابٍ غَلِيْظٍ ﴿٢٥﴾

୨୬. ଏବଂ ଯଦି ତୁମେ ସେମାନଙ୍କୁ ପଚାରିବ ଯେ କିଏ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି, ତେବେ ସେମାନେ ନିଶ୍ଚିତ ରୂପେ କହିବେ, ''ଅଲ୍ଲାହ''; ତୁମେ ସେମାନଙ୍କୁ କୁହ, ''ଅଲ୍ଲାହ ସମସ୍ତ ପ୍ରଶଂସାର ପାତ୍ର''; କିନ୍ତୁ ଏ (ଅବିଶ୍ୱାସକାରୀ)ମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ।

وَلَئِنْ سَأَلْتَهُمْ مَّنْ خَلَقَ السَّمٰوٰتِ وَالْاَرْضَ لَيَقُوْلُنَّ اللّٰهُ ۭ قُلِ الْحَمْدُ لِلّٰهِ ۭ بَلْ اَكْثَرُهُمْ لَا يَعْلَمُوْنَ ⑳

୨୭. ଯାହା କିଛି ଆକାଶ ଓ ପୃଥିବୀରେ ଅଛି, ତାହା ଅଲ୍ଲାହଙ୍କର; ଅଲ୍ଲାହ ନିଶ୍ଚିତ ରୂପେ ସେ, ଯେ କି ସ୍ୱୟଂ ପର୍ଯ୍ୟାପ୍ତ (ଓ) ସକଳ ପ୍ରଶଂସାର ପାତ୍ର।

لِلّٰهِ مَا فِي السَّمٰوٰتِ وَالْاَرْضِ ۭ اِنَّ اللّٰهَ هُوَ الْغَنِيُّ الْحَمِيْدُ ⑳

୨୮. ଏବଂ ଯଦି ପୃଥିବୀରେ ଥିବା ସମସ୍ତ ବୃକ୍ଷ କଲମରେ ପରିଣତ ହୋଇଯାଏ, ଓ ସମୁଦ୍ର କାଳିରେ ପରିପୂର୍ଣ୍ଣ ହୋଇଯାଏ, ଏବଂ ତା'ସହିତ ଆହୁରି ସାତଗୋଟି (କାଳିର) ସମୁଦ୍ରକୁ ମିଶାଇ ଦିଆଯାଏ, ତେବେ ମଧ୍ୟ ଅଲ୍ଲାହଙ୍କର ବାଣୀ (ଲିପିବଦ୍ଧକରି) ସମାପ୍ତ କରିହେବ ନାହିଁ, ଅଲ୍ଲାହ ହିଁ ନିଶ୍ଚିତ ରୂପେ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ।

وَلَوْ اَنَّ مَا فِي الْاَرْضِ مِنْ شَجَرَةٍ اَقْلَامٌ وَّالْبَحْرُ يَمُدُّهٗ مِنْ بَعْدِهٖ سَبْعَةُ اَبْحُرٍ مَّا نَفِدَتْ كَلِمٰتُ اللّٰهِ ۭ اِنَّ اللّٰهَ عَزِيْزٌ حَكِيْمٌ ⑳

୨୯. ତୁମମାନଙ୍କର ଜନ୍ମ ଓ ତୁମମାନଙ୍କର ପୁନରୁତ୍ଥାନ (ଅଲ୍ଲାହଙ୍କ ପକ୍ଷରେ) କେବଳ ଜଣେ ବ୍ୟକ୍ତିର ଜନ୍ମ ସଦୃଶ ଅଟେ; ଅଲ୍ଲାହ ବାସ୍ତବରେ ମହାନ୍ ଶ୍ରୋତା (ଓ) ମହାନ୍ ଦ୍ରଷ୍ଟା।

مَا خَلْقُكُمْ وَلَا بَعْثُكُمْ اِلَّا كَنَفْسٍ وَّاحِدَةٍ ۭ اِنَّ اللّٰهَ سَمِيْعٌ ۢ بَصِيْرٌ ⑳

୩୦. କ'ଣ ତୁମେ ଲକ୍ଷ୍ୟ କରିନାହଁ ଯେ ଅଲ୍ଲାହ ରାତିକୁ ଦିନ ମଧ୍ୟରେ ପ୍ରବେଶ କରାନ୍ତି; ଓ ଦିନକୁ ରାତି ମଧ୍ୟରେ ପ୍ରବେଶ କରାନ୍ତି, ଏବଂ ସେ ସୂର୍ଯ୍ୟ ଚନ୍ଦ୍ରକୁ ସେବାରେ ନିୟୋଜିତ କରିଛନ୍ତି; ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଏକ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ଗତି କରୁଥାନ୍ତି; ଏବଂ ଅଲ୍ଲାହ ତୁମମାନଙ୍କ କର୍ମ ସଂକ୍ରାନ୍ତରେ ଭଲ ଭାବରେ ଅବହିତ ଅଛନ୍ତି।

اَلَمْ تَرَ اَنَّ اللّٰهَ يُوْلِجُ الَّيْلَ فِي النَّهَارِ وَيُوْلِجُ النَّهَارَ فِي الَّيْلِ وَسَخَّرَ الشَّمْسَ وَالْقَمَرَ ۡ كُلٌّ يَّجْرِيْٓ اِلٰٓى اَجَلٍ مُّسَمًّى وَّاَنَّ اللّٰهَ بِمَا تَعْمَلُوْنَ خَبِيْرٌ ⑳

୩୧. ଏ ସମସ୍ତ ଏଥିଯୋଗୁଁ ହେଉଅଛି ଯେ ଅଲ୍ଲାହ ହିଁ ସତ୍ୟ ଓ ଚିରନ୍ତନ, ଏବଂ ଏଥିଯୋଗୁଁ ମଧ୍ୟ ଯେ ସେମାନେ ଯାହାକୁ ତାହାଙ୍କ ପରିବର୍ତ୍ତେ ଡାକୁଛନ୍ତି ସେ ସବୁ ମିଥ୍ୟା ଓ ବିନାଶଶୀଳ, ଏବଂ ଅଲ୍ଲାହ ବାସ୍ତବରେ ଅତି ଉଚ୍ଚ (ଓ) ମହାନ୍।

ذٰلِكَ بِاَنَّ اللّٰهَ هُوَ الْحَقُّ وَاَنَّ مَا يَدْعُوْنَ مِنْ دُوْنِهِ الْبَاطِلُ ۙ وَاَنَّ اللّٰهَ هُوَ الْعَلِيُّ الْكَبِيْرُ ⑳

ରୁ:୪

୩୨. କ'ଣ ତୁମେ ଲକ୍ଷ୍ୟକରୁ ନାହଁ ଯେ ଅଲ୍ଲାହ୍‌ଙ୍କ କୃପାରୁ[୧] ପୋତଗୁଡ଼ିକ ସାଗର ବକ୍ଷରେ ଚାଲୁଅଛି ଯେପରି କି ସେ ତୁମମାନଙ୍କୁ ନିଜର ନିଦର୍ଶନମାନ ପ୍ରଦର୍ଶନ କରାଇବେ ? ଏଥିରେ ପ୍ରତ୍ୟେକ ଧୈର୍ଯ୍ୟଶୀଳ ଓ କୃତଜ୍ଞ ବ୍ୟକ୍ତିଙ୍କ ପାଇଁ ଅନେକ ନିଦର୍ଶନ ରହିଅଛି ।

أَلَمْ تَرَ أَنَّ الْفُلْكَ تَجْرِي فِي الْبَحْرِ بِنِعْمَتِ اللَّهِ لِيُرِيَكُمْ مِنْ آيَاتِهِ ۚ إِنَّ فِي ذَٰلِكَ لَآيَاتٍ لِكُلِّ صَبَّارٍ شَكُورٍ ﴿٣٢﴾

୩୩. ଏବଂ ଯେତେବେଳେ ସେମାନଙ୍କୁ କୌଣସି ତରଙ୍ଗମାଳା ଛାୟା ସଦୃଶ ଆବୃତ କରେ ସେତେବେଳେ ସେମାନେ ଉପାସନାକୁ କେବଳ ଅଲ୍ଲାହ୍‌ଙ୍କ ପ୍ରତି ଉଦ୍ଦିଷ୍ଟ କରି ତାହାଙ୍କୁ ଡାକନ୍ତି; କିନ୍ତୁ ଯେତେବେଳେ ସେ ସେମାନଙ୍କୁ ରକ୍ଷାକରି ସ୍ଥଳଭାଗକୁ ଘେନି ଆସନ୍ତି, (ସେତେବେଳେ) ସେମାନଙ୍କ ମଧ୍ୟରୁ କେତେକ ମଧ୍ୟମ ପନ୍ଥା ଅବଲମ୍ବନ କରନ୍ତି (ଏବଂ ଅନ୍ୟ କେତେକ ସେହିଭଳି ଅତ୍ୟାଚାର ଓ ସିର୍କ କରିବାରେ ଲିପ୍ତ ହୁଅନ୍ତି) ; ଏବଂ କେବଳ ଅଙ୍ଗୀକାର ଭଙ୍ଗକାରୀ ଓ ଅକୃତଜ୍ଞ ବ୍ୟକ୍ତିମାନେ ଆମ୍ଭର ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରନ୍ତି ।

وَإِذَا غَشِيَهُمْ مَوْجٌ كَالظُّلَلِ دَعَوُا اللَّهَ مُخْلِصِينَ لَهُ الدِّينَ فَلَمَّا نَجَّاهُمْ إِلَى الْبَرِّ فَمِنْهُمْ مُقْتَصِدٌ ۚ وَمَا يَجْحَدُ بِآيَاتِنَا إِلَّا كُلُّ خَتَّارٍ كَفُورٍ ﴿٣٣﴾

୩୪. ହେ ଲୋକମାନେ ! ନିଜର ପାଳନକର୍ତ୍ତାଙ୍କୁ ଭୟକର ଏବଂ ଯେଉଁଦିନ କୌଣସି ବାପ ନିଜ ପୁଅକୁ ମଧ୍ୟ ସାହାଯ୍ୟ କରିପାରିବ ନାହିଁ, କି କୌଣସି ପୁଅ ନିଜ ବାପକୁ ସାହାଯ୍ୟ କରିପାରିବ ନାହିଁ ସେହି ଦିନକୁ ଭୟ କର; ଅଲ୍ଲାହ୍‌ଙ୍କର ଅଙ୍ଗୀକାର ଅବଶ୍ୟ ପୂରଣ ହେବ; ସୁତରାଂ ସାଂସାରିକ ଜୀବନ ତୁମମାନଙ୍କୁ ପ୍ରତାରିତ ନ କରୁ, ଏବଂ ପ୍ରତାରକ (ସଇତାନ) ତୁମମାନଙ୍କୁ ଅଲ୍ଲାହ୍‌ଙ୍କ ସଂକ୍ରାନ୍ତରେ ପ୍ରତାରିତ ନକରୁ ।

يَا أَيُّهَا النَّاسُ اتَّقُوا رَبَّكُمْ وَاخْشَوْا يَوْمًا لَا يَجْزِي وَالِدٌ عَنْ وَلَدِهِ وَلَا مَوْلُودٌ هُوَ جَازٍ عَنْ وَالِدِهِ شَيْئًا ۚ إِنَّ وَعْدَ اللَّهِ حَقٌّ ۖ فَلَا تَغُرَّنَّكُمُ الْحَيَاةُ الدُّنْيَا وَلَا يَغُرَّنَّكُمْ بِاللَّهِ الْغَرُورُ ﴿٣٤﴾

୩୫. ବାସ୍ତବରେ କୟାମତ ଦିବସର (ବା କୌଣସି ସମ୍ପ୍ରଦାୟର ବିନାଶ ବିଷୟକ) ଜ୍ଞାନ କେବଳ ଅଲ୍ଲାହ୍‌ଙ୍କ ଠାରେ ରହିଅଛି; ଏବଂ ସେ ଜଳ ବୃଷ୍ଟି କରିଥାନ୍ତି; ଏବଂ (ମାତୃ) ଗର୍ଭରେ ଯାହା ଅଛି ସେ ତାହା ଜାଣନ୍ତି, ଏବଂ କୌଣସି ବ୍ୟକ୍ତି ଜାଣେ ନାହିଁ ଯେ ଆଗାମୀ କାଲି ସେ କି କର୍ମ କରିବ, ଏବଂ କୌଣସି ବ୍ୟକ୍ତି ଜାଣେ ନାହିଁ ଯେ କେଉଁଠାରେ ମୃତ୍ୟୁଲାଭ କରିବ, ବାସ୍ତବରେ ଅଲ୍ଲାହ୍ ହିଁ ସର୍ବଜ୍ଞ (ଓ ସେ) ସବୁ ଖବର ରଖିଥା'ନ୍ତି ।

إِنَّ اللَّهَ عِنْدَهُ عِلْمُ السَّاعَةِ وَيُنَزِّلُ الْغَيْثَ وَيَعْلَمُ مَا فِي الْأَرْحَامِ ۖ وَمَا تَدْرِي نَفْسٌ مَاذَا تَكْسِبُ غَدًا ۖ وَمَا تَدْرِي نَفْسٌ بِأَيِّ أَرْضٍ تَمُوتُ ۚ إِنَّ اللَّهَ عَلِيمٌ خَبِيرٌ ﴿٣٥﴾

---

୧. 'କୃପା' ଅର୍ଥ ଏପରି ସାମଗ୍ରୀ ଯାହା ମଣିଷର କାମରେ ଲାଗେ ଓ ଯାହାକୁ ବହନ କରି ଜାହାଜ ଆଦି ଯାନ ବିଭିନ୍ନ ଦେଶକୁ ଯାଏ ।

سُوْرَةُ السَّجْدَةِ مَكِّيَّةٌ (٣٢)

# ଅଲ-ସଜଦା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ [illegible])

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ଅଲିଫ-ଲାମ-ମୀମ ।

الٓمّٓ ②

୩. ଏହି (ଧର୍ମ) ଗ୍ରନ୍ଥ (ଯାହାର ଏହା ଏକ ସୁରା ଅଟେ) ସମସ୍ତ ଜଗତର ପାଳନକର୍ତ୍ତାଙ୍କ ନିକଟରୁ ଅବତୀର୍ଣ୍ଣ ହେବା ଏକ ନିଶ୍ଚିତ ବିଷୟ ଯହିଁରେ କୌଣସି ସନ୍ଦେହ ନାହିଁ ।

تَنْزِيْلُ الْكِتٰبِ لَا رَيْبَ فِيْهِ مِنْ رَّبِّ الْعٰلَمِيْنَ ③

୪. କ'ଣ ସେମାନେ କହୁଛନ୍ତି ଯେ ସେହି ବ୍ୟକ୍ତି (ଅର୍ଥାତ୍ ହଜରତ ମହମ୍ମଦ) ଏହାକୁ ନିଜେ ରଚନା କରିଛନ୍ତି ? ଏପରି ନୁହେଁ, ବରଂ ଏହା ତୁମ ପାଳନକର୍ତ୍ତାଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଥିବା (ତଥା ଚିରସ୍ଥାୟୀ) ସତ୍ୟ (ଗ୍ରନ୍ଥ) ଅଟେ; ତାହାହେଲେ ଯେଉଁ ସମ୍ପ୍ରଦାୟ ନିକଟକୁ ତୁମ ପୂର୍ବରୁ କୌଣସି ରସୁଲ ଆସିନାହାନ୍ତି, ତୁମେ ସେମାନଙ୍କୁ ସଚେତନ କରିବ ଯଦ୍ଦ୍ୱାରା ସେମାନେ ସତ୍‌ପଥ ପାଇପାରିବେ ।

اَمْ يَقُوْلُوْنَ افْتَرٰىهُ ۚ بَلْ هُوَ الْحَقُّ مِنْ رَّبِّكَ لِتُنْذِرَ قَوْمًا مَّآ اَتٰىهُمْ مِّنْ نَّذِيْرٍ مِّنْ قَبْلِكَ لَعَلَّهُمْ يَهْتَدُوْنَ ④

୫. ସେ ହିଁ ଅଲ୍ଲାହ ଯେ ଆକାଶ ଓ ପୃଥିବୀକୁ ତଥା ସେ ଦୁଇଟି ମଧ୍ୟରେ ଯାହାକିଛି ଅଛି ସେ ସବୁକୁ ଛଅଗୋଟି[୧] ଅବଧିରେ ସୃଷ୍ଟି କରିଛନ୍ତି; ତା'ପରେ ସେ ସିଂହାସନ ଉପରେ ଦୃଢ଼ତାର ସହ ପ୍ରତିଷ୍ଠିତ ହେଲେ; ତୁମମାନଙ୍କର ତାହାଙ୍କ ବ୍ୟତୀତ ଅନ୍ୟ କେହି ପ୍ରକୃତ ବନ୍ଧୁ ବା ସୁପାରିଶକାରୀ ନାହାନ୍ତି; ତଥାପି କ'ଣ ତୁମେମାନେ ଉପଦେଶ ଗ୍ରହଣ କରିବ ନାହିଁ ?

اَللّٰهُ الَّذِيْ خَلَقَ السَّمٰوٰتِ وَالْاَرْضَ وَمَا بَيْنَهُمَا فِيْ سِتَّةِ اَيَّامٍ ثُمَّ اسْتَوٰى عَلَى الْعَرْشِ ۚ مَا لَكُمْ مِّنْ دُوْنِهٖ مِنْ وَّلِيٍّ وَّلَا شَفِيْعٍ ۚ اَفَلَا تَتَذَكَّرُوْنَ ⑤

---

୧. ଅର୍ଥାତ୍ ଛଅଗୋଟି ଯୁଗରେ ବା ଛଅଗୋଟି ବିଶିଷ୍ଟ ବିବର୍ତ୍ତନ ମଧ୍ୟଦେଇ ପୃଥିବୀର ସୃଷ୍ଟିହୋଇଛି । ପ୍ରତ୍ୟେକଟି ଯୁଗର ଦୈର୍ଘ୍ୟ କେତେ ଏଠାରେ ସେ ବିଷୟର ଉଲ୍ଲେଖ ନାହିଁ । ଆରବୀ 'ୟୋମ୍'ର ଗୋଟିଏ ଅର୍ଥ ଯୁଗ ବା କାଳାବଧି, ଯାହାକି ଲକ୍ଷ ଲକ୍ଷ ବା କୋଟିକୋଟି ବର୍ଷ ହୋଇପାରେ । ଲୋକମାନେ ଭୁଲରେ ୟୋମ୍‌ର ଅର୍ଥ ସୂର୍ଯ୍ୟୋଦୟ ଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସମୟକୁ ବୁଝିଛନ୍ତି । ବସ୍ତୁତଃ ଏହି ଆୟତର ଅଭିପ୍ରାୟ ହେଉଛି ଯେ ସେଭଳି ଛଅଗୋଟି ଯୁଗ ବା କାଳାବଧି ମଧ୍ୟରେ— ତାହା ଯେତେ ଦୀର୍ଘ ହୋଇଥାଉ ପଛେ— ପୃଥିବୀ ଓ ଆକାଶର ସୃଷ୍ଟି ହୋଇଛି ଏବଂ ସପ୍ତମ ଯୁଗରେ ସେହି ସୃଷ୍ଟି ସମ୍ପୂର୍ଣ୍ଣ ହୋଇଛି । ଯେତେବେଳେ ଅଲ୍ଲାହ ନିଜର 'ଅରଶ' ବା ସିଂହାସନ ଉପରୁ ନିଜ ବିଧିବିଧାନ ଅବତୀର୍ଣ୍ଣ କରାଇବା ଆରମ୍ଭ କଲେ ସେତେବେଳେ ବାସ୍ତବରେ ପ୍ରକାଶ୍ୟ ଭାବରେ ତାଙ୍କ ରାଜତ୍ୱ ସାକାର ହୋଇଥିଲା । ଏହିପରି ଭାବେ ସୃଷ୍ଟିର ଉଦ୍ଦେଶ୍ୟ ସଫଳ ହେଲା ।

୬. ସେ ଆକାଶରୁ ଭୂପୃଷ୍ଠ ପର୍ଯ୍ୟନ୍ତ ଆପଣା ଆଦେଶକୁ ନିଜ ଯୋଜନା ଅନୁସାରେ ପ୍ରତିଷ୍ଠିତ କରିବେ; ତା'ପରେ ତାହା ତାହାଙ୍କ ନିକଟକୁ ଏପରି ସମୟରେ ଉତ୍‌ଥିତ ହେବ ଯାହାର ପରିଣାମ ତୁମମାନଙ୍କର ଗଣନା ମୁତାବକ ଏକ ହଜାର [୧] ବର୍ଷ ଅଟେ ।

يُدَبِّرُ الْأَمْرَ مِنَ السَّمَآءِ إِلَى الْأَرْضِ ثُمَّ يَعْرُجُ إِلَيْهِ فِي يَوْمٍ كَانَ مِقْدَارُهُ أَلْفَ سَنَةٍ مِّمَّا تَعُدُّونَ ﴿٦﴾

୭. ସେ ହିଁ ଗୁପ୍ତ ଓ ପ୍ରକାଶ୍ୟ ବିଷୟ ଜାଣନ୍ତି; (ସେ) ପରାକ୍ରମୀ (ଓ) କରୁଣାମୟ [୨] ।

ذٰلِكَ عٰلِمُ الْغَيْبِ وَالشَّهَادَةِ الْعَزِيزُ الرَّحِيمُ ﴿٧﴾

୮. ସେ ଯାହାକିଛି ସୃଷ୍ଟି କରିଛନ୍ତି ତାହାକୁ ସର୍ବାଙ୍ଗ-ସୁନ୍ଦର କରି ସୃଷ୍ଟି କରିଛନ୍ତି ଏବଂ ମନୁଷ୍ୟକୁ ଆର୍ଦ୍ର ମୃତ୍ତିକାରୁ ସୃଷ୍ଟି କରିଛନ୍ତି ।

الَّذِيٓ أَحْسَنَ كُلَّ شَيْءٍ خَلَقَهُ وَبَدَأَ خَلْقَ الْإِنْسَانِ مِنْ طِينٍ ﴿٨﴾

୯. ତା'ପରେ ସେ ତାହାର ବଂଶଧରମାନଙ୍କୁ ଏକ ତୁଚ୍ଛ ତରଳ ପଦାର୍ଥର ନିର୍ଯ୍ୟାସରୁ ସୃଷ୍ଟି କରିଛନ୍ତି ।

ثُمَّ جَعَلَ نَسْلَهُ مِنْ سُلٰلَةٍ مِّنْ مَّآءٍ مَّهِينٍ ﴿٩﴾

୧୦. ତା'ପରେ ତାହାକୁ ସମ୍ପୂର୍ଣ୍ଣ ଶକ୍ତି ପ୍ରଦାନ କରିଛନ୍ତି; ଏବଂ ତହିଁରେ ନିଜ ତରଫରୁ ପ୍ରାଣ [୩] ସଞ୍ଚାର କରିଛନ୍ତି; ଏବଂ ତୁମମାନଙ୍କୁ ଶ୍ରବଣ ଶକ୍ତି, ଦୃଷ୍ଟି ଶକ୍ତି ଓ ବୋଧ ଶକ୍ତି ପ୍ରଦାନ କରିଛନ୍ତି; କିନ୍ତୁ ତୁମେମାନେ ଆଦୌ କୃତଜ୍ଞ ହେଉନାହଁ ।

ثُمَّ سَوّٰىهُ وَنَفَخَ فِيهِ مِنْ رُّوحِهٖ وَجَعَلَ لَكُمُ السَّمْعَ وَالْأَبْصَارَ وَالْأَفْـِٕدَةَ قَلِيلًا مَّا تَشْكُرُونَ ﴿١٠﴾

୧୧. ଏବଂ ସେମାନେ କହନ୍ତି, "ଯେତେବେଳେ ଆମେମାନେ ମାଟିରେ ବିଲୀନ ହୋଇଯିବୁ, ସେତେବେଳେ କ'ଣ ଆମମାନଙ୍କୁ ଏକ ନୂତନ ସୃଷ୍ଟି ରୂପେ ଉତ୍‌ଥିତ କରାହେବ ?" (ସେମାନେ ନିଜର ପୁନର୍ଜନ୍ମ ବିଷୟକୁ ଅସ୍ୱୀକାର କରୁନାହାନ୍ତି) ବରଂ ନିଜ ପାଳନକର୍ତ୍ତାଙ୍କ ସହିତ ସାକ୍ଷାତ୍‌କୁ ଅସ୍ୱୀକାର [୪] କରୁଛନ୍ତି ।

وَقَالُوٓا ءَإِذَا ضَلَلْنَا فِي الْأَرْضِ ءَإِنَّا لَفِي خَلْقٍ جَدِيدٍ ۚ بَلْ هُمْ بِلِقَآءِ رَبِّهِمْ كٰفِرُونَ ﴿١١﴾

---

୧. ବହାଇମାନେ ଏହି ଆୟତର ଭୁଲ୍ ବ୍ୟାଖ୍ୟା କରି ମୁସଲମାନମାନଙ୍କୁ ପ୍ରତାରିତ କରିଥାନ୍ତି । ସେମାନଙ୍କ ମତରେ ଇସଲାମ ଧର୍ମର ପରମାୟୁ ମାତ୍ର ଏକ ହଜାର ବର୍ଷ ଏବଂ ଏହାପରେ ତାହା ନିରସିତ ହୋଇଯିବ ଓ ତା' ସ୍ଥାନରେ ବହାଇ ଧର୍ମ. ପ୍ରବର୍ତ୍ତିତ ହେବ । କିନ୍ତୁ ଏହି ଆୟତରୁ ସ୍ପଷ୍ଟ ବୁଝାଯାଉଛି ଯେ ଇସଲାମ ଧର୍ମର ଶିକ୍ଷା ହଜାର ବର୍ଷରେ ଆକାଶକୁ ଆରୋହଣ କରିଯିବ । ଏହାର ଅର୍ଥ କଦାପି ନିରସିତ ହୋଇପାରିବ ନାହିଁ,ବରଂ ଏଠାରେ କୁହାଯାଇଛି ଯେ ହଜାର ବର୍ଷ ପର୍ଯ୍ୟନ୍ତ ମୁସଲମାନମାନେ କ୍ରମଶଃ ଦୁର୍ବଳ ହୋଇ ପଡୁଥିବେ । ଏହାପରେ ହଜରତ ମହମ୍ମଦଙ୍କ ଭବିଷ୍ୟବାଣୀ ଅନୁସାରେ ଇସଲାମ ଧର୍ମକୁ ପୁନଃସ୍ଥାପିତ କରିବା ସକାଶେ ଜଣେ ସଂସ୍କାରକ ଆସିବେ ଓ ସେ ଇସଲାମକୁ ଦୃଢ଼ୀଭୂତ କରିବେ । ବସ୍ତୁତଃ ପରବର୍ତ୍ତୀ ଆୟତ ସଂଖ୍ୟା—୧୦ରେ ଉଲ୍ଲେଖ କରାଯାଇଛି ଯେ ଆଲ୍ଲାହ୍ କେତେକଙ୍କୁ ମନୋନୀତ କରନ୍ତି ଓ ସେମାନଙ୍କୁ ଦିବ୍ୟବାଣୀ ପ୍ରଦାନ କରନ୍ତି ।

୨. ଅର୍ଥାତ୍ ସେ ଇସଲାମକୁ ପୁନର୍ଜୀବିତ କରିବେ ।

୩. ଅର୍ଥାତ୍ ଶରୀର ଗଠନ ସମ୍ପୂର୍ଣ୍ଣ ହେବାପରେ ଶରୀରଗତ ଆତ୍ମାକୁ ନିକ୍ଷେପ କରାଗଲା ଏବଂ ସମ୍ପୂର୍ଣ୍ଣ ଆଧ୍ୟାତ୍ମିକ ଚେତନା ଲାଭ କଲା ପରେ ତାହାଙ୍କ ନିକଟକୁ ଦିବ୍ୟବାଣୀ ପ୍ରେରଣ କରାଗଲା ।

୪. ଯଦି ମୃତ୍ୟୁ ପରେ ପୁନରୁତ୍‌ଥିତ ହେବା ସମ୍ବନ୍ଧରେ କେବଳ ଶିକ୍ଷା ଦିଆଯାଇଥା'ନ୍ତା ତେବେ ସେମାନେ ଆଗ୍ରହରେ ଏହାକୁ ଗ୍ରହଣ କରିଥା'ନ୍ତେ କିନ୍ତୁ ଯେହେତୁ ସମସ୍ତଙ୍କୁ ଆଲ୍ଲାହ୍‌ଙ୍କ ସମ୍ମୁଖରେ ଉପସ୍ଥାପିତ କରାହେବ ଓ ସେଠାରେ ପୁରସ୍କାର ବା ଦଣ୍ଡ ମିଳିବ, ଏହି ବିଷୟ ବର୍ଣ୍ଣିତ ହୋଇଥିବାରୁ ସେମାନେ ଏହାକୁ ପ୍ରତ୍ୟାଖ୍ୟାନ କରନ୍ତି ।

قُلْ يَتَوَفّٰىكُمْ مَّلَكُ الْمَوْتِ الَّذِيْ وُكِّلَ بِكُمْ ثُمَّ اِلٰى رَبِّكُمْ تُرْجَعُوْنَ ⑪

୧୨. (ତୁମେ) କୁହ, "ଯେଉଁ ମୃତ୍ୟୁର ଦେବଦୂତ ତୁମମାନଙ୍କ ସକାଶେ ନିୟୋଜିତ ହୋଇଛନ୍ତି (ସେ) ନିଶ୍ଚୟ ତୁମମାନଙ୍କର ପ୍ରାଣ ନାଶ କରିବେ; ଏହାପରେ ତୁମମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରାଇ ନିଆଯିବ ।"

ରୁ: ୨

وَلَوْ تَرٰٓى اِذِ الْمُجْرِمُوْنَ نَاكِسُوْا رُءُوْسِهِمْ عِنْدَ رَبِّهِمْ رَبَّنَآ اَبْصَرْنَا وَسَمِعْنَا فَارْجِعْنَا نَعْمَلْ صَالِحًا اِنَّا مُوْقِنُوْنَ ⑬

୧୩. ଏବଂ ଯଦି ତୁମେ ସେ ଅବସ୍ଥା ଜାଣିପାରନ୍ତ ଯେ ଯେତେବେଳେ ଅପରାଧୀମାନେ ନିଜ ପାଳନକର୍ତ୍ତାଙ୍କ ନିକଟରେ ନତମସ୍ତକ ଅବସ୍ଥାରେ ଦଣ୍ଡାୟମାନ ହୋଇଥିବେ, ଓ କହୁଥିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! (ତୁମେ ଯାହା କହିଥିଲ) ଆମେମାନେ (ତାହା) ଦେଖିଲୁ ଓ ଶୁଣିଲୁ; ଅତଏବ ତୁମେ ଆମମାନଙ୍କୁ ଫେରାଇଦିଅ ତାହାହେଲେ ଆମେମାନେ ତୁମ ଆଦେଶ ଅନୁଯାୟୀ (ସତ୍) କର୍ମ କରିବୁ; ବର୍ତ୍ତମାନ ଆମେମାନେ ତୁମ କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ କରିସାରିଛୁ ।"

وَلَوْ شِئْنَا لَاٰتَيْنَا كُلَّ نَفْسٍ هُدٰىهَا وَلٰكِنْ حَقَّ الْقَوْلُ مِنِّيْ لَاَمْلَـَٔنَّ جَهَنَّمَ مِنَ الْجِنَّةِ وَالنَّاسِ اَجْمَعِيْنَ ⑭

୧୪. ଏବଂ ଯଦି ଆମେ ଇଚ୍ଛା କରିଥାନ୍ତୁ, ତେବେ ପ୍ରତ୍ୟେକ ବ୍ୟକ୍ତିକୁ ତାହାର ଉଚିତ ମାର୍ଗ ପ୍ରଦର୍ଶନ କରାଇଥାନ୍ତୁ; କିନ୍ତୁ (ଅନ୍ୟାୟକାରୀଙ୍କ ସଂକ୍ରାନ୍ତରେ) ଆମର ବାଣୀ ସତ୍ୟ ସାବ୍ୟସ୍ତ ହେବାର ଥିଲା ଯେ ନରକକୁ ଆମେ ଜିନ୍ନ ଓ ମନୁଷ୍ୟଙ୍କ ଦ୍ୱାରା ପୂର୍ଣ୍ଣ କରିଦେବୁ ।

فَذُوْقُوْا بِمَا نَسِيْتُمْ لِقَآءَ يَوْمِكُمْ هٰذَا اِنَّا نَسِيْنٰكُمْ وَذُوْقُوْا عَذَابَ الْخُلْدِ بِمَا كُنْتُمْ تَعْمَلُوْنَ ⑮

୧୫. ସୁତରାଂ ଆଜି ଦିନର ସାକ୍ଷାତ୍‌କୁ ପାସୋରି ଦେବା ଯୋଗୁଁ ଓ ନିଜର କର୍ମ ଯୋଗୁଁ ଦୀର୍ଘ ସ୍ଥାୟୀ ଶାସ୍ତିର ସ୍ୱାଦ ଆସ୍ୱାଦନ କର; ଏବଂ (ମନେରଖ ଯେ) ଆମେ ତୁମମାନଙ୍କୁ ମଧ୍ୟ (ଆଜି) ପାସୋରି ଦେଇଛୁ ।

اِنَّمَا يُؤْمِنُ بِاٰيٰتِنَا الَّذِيْنَ اِذَا ذُكِّرُوْا بِهَا خَرُّوْا سُجَّدًا وَّسَبَّحُوْا بِحَمْدِ رَبِّهِمْ وَهُمْ لَا يَسْتَكْبِرُوْنَ ⑯

୧୬. କେବଳ ସେହିମାନେ ଆମ ନିଦର୍ଶନଗୁଡ଼ିକ ଉପରେ ବିଶ୍ୱାସ କରନ୍ତି, ଯେଉଁମାନଙ୍କୁ ସେଗୁଡ଼ିକ ସଂକ୍ରାନ୍ତରେ ସ୍ମରଣ କରାଇ ଦିଆଯିବା ବେଳେ ସେମାନେ ସିଜଦା କରି ଭୂମିରେ ପଡ଼ିଯାଆନ୍ତି, ଓ ନିଜ ପାଳନକର୍ତ୍ତାଙ୍କର ପ୍ରଶଂସା ଓ ଗୁଣଗାନ କରନ୍ତି, ଏବଂ ଗର୍ବ କରନ୍ତି ନାହିଁ ।

تَتَجَافٰى جُنُوْبُهُمْ عَنِ الْمَضَاجِعِ يَدْعُوْنَ رَبَّهُمْ خَوْفًا وَّطَمَعًا ۡ وَّمِمَّا رَزَقْنٰهُمْ يُنْفِقُوْنَ ﴿١٧﴾

୧୭. (ଓ) ସେ (ବିଶ୍ୱାସକାରୀ)ମାନଙ୍କ ଶରୀର ସେମାନଙ୍କ ଶେଯରୁ ପୃଥକ୍ ହୋଇଯାଏ (ଅର୍ଥାତ୍ ତହଜ୍ଜୁଦ ନମାଜ ପାଇଁ ସେମାନେ ଶଯ୍ୟା ତ୍ୟାଗ କରନ୍ତି); ଓ ସେମାନେ ନିଜ ପାଳନକର୍ତ୍ତାଙ୍କ ଶାସ୍ତିରୁ ରକ୍ଷା ପାଇବା ସକାଶେ ଓ ତାହାଙ୍କ କରୁଣା ଲାଭ କରିବା ସକାଶେ ତାହାଙ୍କୁ ଡାକନ୍ତି; ଏବଂ ଯାହାକିଛି ଆମେ ସେମାନଙ୍କୁ ଦେଇଅଛୁ ତହିଁରୁ (ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ବ୍ୟୟ କରନ୍ତି ।

فَلَا تَعْلَمُ نَفْسٌ مَّآ اُخْفِيَ لَهُمْ مِّنْ قُرَّةِ اَعْيُنٍ ۚ جَزَآءًۢ بِمَا كَانُوْا يَعْمَلُوْنَ ﴿١٨﴾

୧୮. ଏବଂ (ବାସ୍ତବରେ) କୌଣସି ବ୍ୟକ୍ତି ଏହା ଜାଣେ ନାହିଁ ଯେ ସେ (ବିଶ୍ୱାସକାରୀ)ମାନଙ୍କ ପାଇଁ ସେମାନଙ୍କ କର୍ମର ପୁରସ୍କାର ସ୍ୱରୂପ କି କି ନୟନ-ଶୀତଳକ ସାମଗ୍ରୀ ଲୁକ୍କାୟିତ ରଖାଯାଇଅଛି ।

اَفَمَنْ كَانَ مُؤْمِنًا كَمَنْ كَانَ فَاسِقًا ۗ لَا يَسْتَوٗنَ ﴿١٩﴾

୧୯. ଯେଉଁ ବ୍ୟକ୍ତି ବିଶ୍ୱାସକାରୀ ଅଟେ କ'ଣ ସେ ଅମାନ୍ୟକାରୀ ବ୍ୟକ୍ତି ସଦୃଶ ହୋଇପାରେ ? ଏପରି ଲୋକମାନେ କଦାପି ସମାନ ହୋଇ ନ ପାରନ୍ତି ।

اَمَّا الَّذِيْنَ اٰمَنُوْا وَعَمِلُوا الصّٰلِحٰتِ فَلَهُمْ جَنّٰتُ الْمَاْوٰى ۫ نُزُلًاۢ بِمَا كَانُوْا يَعْمَلُوْنَ ﴿٢٠﴾

୨୦. ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ତଦନୁଯାୟୀ (ଉଚିତ) କର୍ମ କରିଛନ୍ତି, ସେମାନଙ୍କୁ ବାସୋପଯୋଗୀ ବୈକୁଣ୍ଠ ମିଳିବ; ଏହା ସେମାନଙ୍କ କର୍ମାନୁଯାୟୀ ଆତିଥ୍ୟ ହେବ ।

وَاَمَّا الَّذِيْنَ فَسَقُوْا فَمَاْوٰىهُمُ النَّارُ ۭ كُلَّمَآ اَرَادُوْٓا اَنْ يَّخْرُجُوْا مِنْهَآ اُعِيْدُوْا فِيْهَا وَقِيْلَ لَهُمْ ذُوْقُوْا عَذَابَ النَّارِ الَّذِيْ كُنْتُمْ بِهٖ تُكَذِّبُوْنَ ﴿٢١﴾

୨୧. କିନ୍ତୁ ଯେଉଁମାନେ ଅମାନ୍ୟକାରୀ, ସେମାନଙ୍କୁ ରହିବା ପାଇଁ ନରକ ମିଳିବ; ଯେବେ ବି ସେମାନେ ତହିଁରୁ ବାହାରି ଯିବାକୁ ଇଚ୍ଛା କରିବେ, ସେମାନଙ୍କୁ ତା' ଭିତରକୁ ଫେରାଇ ଦିଆଯିବ, ଏବଂ ସେମାନଙ୍କୁ କୁହାଯିବ, "ଏବେ ନରକର ସେହି ଶାସ୍ତି ଆସ୍ୱାଦନ କର ଯାହାକୁ ତୁମେ ମିଥ୍ୟା ମଣୁଥିଲ ।"

وَلَنُذِيْقَنَّهُمْ مِّنَ الْعَذَابِ الْاَدْنٰى دُوْنَ الْعَذَابِ الْاَكْبَرِ لَعَلَّهُمْ يَرْجِعُوْنَ ﴿٢٢﴾

୨୨. ଏବଂ ଏହି ବୃହତ୍ ଶାସ୍ତିର ଆଗମନ ପୂର୍ବରୁ ଆମେ ସେମାନଙ୍କୁ (ଏହି ସଂସାରରେ) କ୍ଷୁଦ୍ର କ୍ଷୁଦ୍ର ଶାସ୍ତି ଆସ୍ୱାଦନ କରାଇବୁ, ଯେପରିକି ସେମାନେ (ଆମ ନିକଟକୁ) ଫେରି ଆସିବେ (ଓ ଅନୁତାପ କରି ପରକାଳ ଶାସ୍ତିରୁ ନିଜକୁ ରକ୍ଷା କରିବେ) ।

୨୩. ଏବଂ ଯାହାକୁ ତାହାର ପାଳନକର୍ତ୍ତାଙ୍କ ନିଦର୍ଶନଗୁଡ଼ିକୁ ସ୍ମରଣ କରାଇ ଦିଆଯାଏ, ତଥାପି ସେ ସେଥିରୁ ବିମୁଖ ହୁଏ ତା'ଠାରୁ ବଳି ଅଧିକ ଅତ୍ୟାଚାରୀ ଆଉ କିଏ ହୋଇପାରେ ? ଆମେ ନିଶ୍ଚୟ ଅପରାଧୀମାନଙ୍କ ଠାରୁ ପ୍ରତିଶୋଧ ନେବୁ ।

وَمَنْ اَظْلَمُ مِمَّنْ ذُكِّرَ بِاٰيٰتِ رَبِّهٖ ثُمَّ اَعْرَضَ عَنْهَا ؕ اِنَّا مِنَ الْمُجْرِمِيْنَ مُنْتَقِمُوْنَ ﴿۲۳﴾ ع

ରୁ:୩

୨୪. ଏବଂ ଆମେ ମୁସାଙ୍କୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରିଥିଲୁ; ଅତଏବ ତୁମେ ମଧ୍ୟ ଏକ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ପାଇବା ସଂକ୍ରାନ୍ତରେ ସନ୍ଦେହ କରନାହିଁ; ଏବଂ ଆମେ ଏହାକୁ ଇସ୍ରାଇଲୀୟ ସନ୍ତାନମାନଙ୍କ ସକାଶେ ସତ୍‌ପଥ ପ୍ରଦର୍ଶନକାରୀ କରିଥିଲୁ ।

وَلَقَدْ اٰتَيْنَا مُوْسَى الْكِتٰبَ فَلَا تَكُنْ فِيْ مِرْيَةٍ مِّنْ لِّقَآئِهٖ وَجَعَلْنٰهُ هُدًى لِّبَنِيْۤ اِسْرَآءِيْلَ ۚ ﴿۲۴﴾

୨୫. ଏବଂ ଯେହେତୁ ସେମାନେ ଧୈର୍ଯ୍ୟଧାରଣ[୧] କରିଥିଲେ, ଓ ସେମାନେ ଆମର ନିଦର୍ଶନମାନଙ୍କ ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ କରିଥିଲେ, ତେଣୁ ଆମେ ସେମାନଙ୍କ ମଧ୍ୟରୁ (ଏପରି) ଇମାମ୍[୨] ନିଯୁକ୍ତ କରିଥିଲୁ ଯେଉଁମାନେ ଆମର ଆଦେଶ ଅନୁସାରେ ଲୋକମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଉଥିଲେ ।

وَجَعَلْنَا مِنْهُمْ اَئِمَّةً يَّهْدُوْنَ بِاَمْرِنَا لَمَّا صَبَرُوْا ؕ وَكَانُوْا بِاٰيٰتِنَا يُوْقِنُوْنَ ﴿۲۵﴾

୨୬. ତୁମର ପାଳନକର୍ତ୍ତା ତ ସେ ଅଟନ୍ତି ଯେ କି (ଏହି ଅଲ୍ଲାହ୍‌ଙ୍କ ବାଣୀ ପ୍ରଚାର କରୁଥିବା ଲୋକମାନଙ୍କ ଓ) ସେ-(ଅମାନ୍ୟକାରୀ)ମାନଙ୍କ ମଧ୍ୟରେ କୟାମତ ଦିନ ପ୍ରତ୍ୟେକଟି ବିଷୟ ସମ୍ବନ୍ଧରେ ନିଷ୍ପତ୍ତି କରିବେ ଯେଉଁଥିରେ ସେମାନେ ଭିନ୍ନମତ ପୋଷଣ କରୁଥିଲେ ।

اِنَّ رَبَّكَ هُوَ يَفْصِلُ بَيْنَهُمْ يَوْمَ الْقِيٰمَةِ فِيْمَا كَانُوْا فِيْهِ يَخْتَلِفُوْنَ ﴿۲۶﴾

୨୭. କ'ଣ ସେମାନେ ଏହି ବିଷୟରୁ ଶିକ୍ଷା ଲାଭ କଲେ ନାହିଁ ଯେ ଆମେ ସେମାନଙ୍କ ପୂର୍ବରୁ ଅନେକ ଯୁଗର ଲୋକମାନଙ୍କୁ ଧ୍ୱଂସ କରିଅଛୁ; (ଏବଂ ବର୍ତ୍ତମାନ) ଏମାନେ ସେମାନଙ୍କ ଗୃହରେ ଚଳପ୍ରଚଳ ହେଉଛନ୍ତି ? ଏଥିରେ ବାସ୍ତବିକ ଅନେକ ନିଦର୍ଶନ ରହିଅଛି; କିନ୍ତୁ ସେମାନେ କ'ଣ (ତଥାପି) ଶୁଣୁନାହାନ୍ତି ?

اَوَلَمْ يَهْدِ لَهُمْ كَمْ اَهْلَكْنَا مِنْ قَبْلِهِمْ مِّنَ الْقُرُوْنِ يَمْشُوْنَ فِيْ مَسٰكِنِهِمْ ؕ اِنَّ فِيْ ذٰلِكَ لَاٰيٰتٍ ؕ اَفَلَا يَسْمَعُوْنَ ﴿۲۷﴾

---

୧. ଅର୍ଥାତ୍ ଯେବେ ବି ସଂସାରରେ ଭ୍ରଷ୍ଟାଚାର ବ୍ୟାପିଯାଏ ଓ ଧର୍ମର ଗ୍ଲାନି ହୁଏ ଏବଂ କେତେକ ଲୋକ ଧର୍ମ ପ୍ରଚାର ଆରମ୍ଭ କରନ୍ତି ତେବେ ଭ୍ରଷ୍ଟାଚାରୀ ଓ ଦୁରାଚାରୀମାନେ ପ୍ରଚାରକମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦିଅନ୍ତି । କିନ୍ତୁ ଏହା ସତ୍ତ୍ୱେ ସେମାନେ ଶିକ୍ଷାଦାନ ବା ପ୍ରଚାରରୁ ବିରତ ନ ହୋଇ ତହିଁରେ ସୁଦୃଢ଼ ରହନ୍ତି । ସେମାନେ ନିଶ୍ଚିତ ରୂପେ ଅତ୍ୟାଚାରର ଶିକାର ହୁଅନ୍ତି । ପରିଶେଷରେ ସେମାନଙ୍କର ଏଭଳି ତ୍ୟାଗକୁ ଲକ୍ଷ୍ୟ କରି ଅଲ୍ଲାହ୍ ସେମାନଙ୍କ ପ୍ରତି ଓହି ପ୍ରେରଣ କରନ୍ତି ଓ ସେମାନଙ୍କୁ ଇମାମ ନିଯୁକ୍ତ କରନ୍ତି । ଏଠାରେ ମଧ୍ୟ ତାହାହିଁ ହେଲା । ଅଲ୍ଲାହ୍ ସେମାନଙ୍କୁ ସେମାନଙ୍କ ସମୟର ଇମାମ ବା ଧର୍ମୀୟ ନେତା ରୂପେ ନିଯୁକ୍ତ କଲେ ଫଳରେ ଯେଉଁସବୁ କାର୍ଯ୍ୟ ସେମାନେ ନିଜ ରୁଚି ଓ ପସନ୍ଦ ମୁତାବକ କରୁଥିଲେ ଏବେ ଅଲ୍ଲାହ୍‌ଙ୍କ ଓହି ଅର୍ଥାତ୍ ଦିବ୍ୟବାଣୀ ଅନୁସାରେ ସେମାନେ ସେସବୁ କରିବେ । ବସ୍ତୁତଃ ସେପରି ବ୍ୟକ୍ତି ହିଁ ସ୍ୱର୍ଗୀୟ ପ୍ରଶାସନର ଜଣେ ଅଧିକାରୀ ।

୨. ଅର୍ଥାତ୍ ସେ ସଂସ୍କାରକ ଥିଲେ । ଲୋକମାନଙ୍କୁ ସତ୍‌ପଥ ଆଡ଼କୁ ଡାକିବା ପାଇଁ ତାଙ୍କ ନିକଟରେ ଅଲ୍ଲାହ୍‌ଙ୍କ ତରଫରୁ ଦିବ୍ୟ ବାଣୀ ଅବତୀର୍ଣ୍ଣ ହେଉଥିଲା ।

୨୮. କ'ଣ ସେମାନେ ଲକ୍ଷ୍ୟ କରିନାହାନ୍ତି ଯେ ଆମେ ଜଳକୁ ଏକ ଅନୁର୍ବର ଭୂମି ଆଡ଼କୁ ପ୍ରବାହିତ କରି ନେଇ ଯାଉ ଏବଂ ତଦ୍ଵାରା ଫସଲ ଉତ୍ପାଦନ କରାଉ; ଯହିଁରୁ ସେମାନଙ୍କ ପଶୁମାନେ, ଓ ସେମାନେ ନିଜେ ଖାଆନ୍ତି, (ତେବେ) କ'ଣ ସେମାନେ ଏହା ଦେଖୁନାହାନ୍ତି ?

أَوَلَمْ يَرَوْا أَنَّا نَسُوقُ الْمَاءَ إِلَى الْأَرْضِ الْجُرُزِ فَنُخْرِجُ بِهِ زَرْعًا تَأْكُلُ مِنْهُ أَنْعَامُهُمْ وَأَنْفُسُهُمْ أَفَلَا يُبْصِرُونَ ﴿٢٨﴾

୨୯. ଏବଂ ସେମାନେ କହନ୍ତି, "ଯଦି ତୁମେ ସତ୍ୟବାଦୀ ହୋଇଥାଅ ତେବେ କୁହ ଯେଉଁ ବିଜୟ[1] ସଂକ୍ରାନ୍ତରେ ତୁମେ କହୁଅଛ, ତାହା କେବେ ହେବ ?"

وَيَقُولُونَ مَتَىٰ هَٰذَا الْفَتْحُ إِنْ كُنْتُمْ صَادِقِينَ ﴿٢٩﴾

୩୦. ତୁମେ କୁହ, "ସେ ବିଜୟ[2] ଦିବସରେ ଅବିଶ୍ଵାସକାରୀମାନଙ୍କୁ ସେମାନଙ୍କ ବିଶ୍ଵାସ ଲାଭ ଦେବ ନାହିଁ, ଏବଂ ସେମାନଙ୍କୁ (କୌଣସି) ଅବସର ମଧ୍ୟ ଦିଆହେବ ନାହିଁ।"

قُلْ يَوْمَ الْفَتْحِ لَا يَنْفَعُ الَّذِينَ كَفَرُوا إِيمَانُهُمْ وَلَا هُمْ يُنْظَرُونَ ﴿٣٠﴾

୩୧. ସୁତରାଂ ତୁମେ ସେମାନଙ୍କ ଠାରୁ ମୁହଁ ଫେରାଇ ନିଅ, ଏବଂ (ସେମାନଙ୍କ ପରିଣାମକୁ) ପ୍ରତୀକ୍ଷାକର; ଏବଂ ସେମାନେ ମଧ୍ୟ ଏବେ (କିଛି କାଳ ପାଇଁ) ଆହୁରି ପ୍ରତୀକ୍ଷା କରିବେ ।

فَأَعْرِضْ عَنْهُمْ وَانْتَظِرْ إِنَّهُمْ مُنْتَظِرُونَ ﴿٣١﴾

---

୧. ଏଠାରେ 'ବିଜୟ' ଅବିଶ୍ଵାସକାରୀମାନଙ୍କର ସେହି ବିନାଶର ସମାଚାରକୁ ବୁଝାଉଛି ଯାହା ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ ପରକାଳର ଶାସ୍ତି ମିଳିବା ପୂର୍ବରୁ ଏହି ସଂସାରରେ ମଧ୍ୟ ସେମାନଙ୍କୁ ଶାସ୍ତି ଦିଆଯିବ, ତାହାହେଲେ ସେମାନେ ଉପଦେଶ ଗ୍ରହଣ କରିବାକୁ ଅବସର ପାଇ ପାରିବେ । ପୂର୍ବବର୍ତ୍ତୀ ଆୟତ ସଂଖ୍ୟା–୨୬ରେ ଉଲ୍ଲେଖ କରାଯାଇଛି ଯେ ସେମାନଙ୍କ ପୂର୍ବ ଯୁଗର ଲୋକମାନଙ୍କର ମଧ୍ୟ ସର୍ବନାଶ ହୋଇଥିଲା । ତାହାହେଲେ କ'ଣ ସେମାନେ ସେଥିରୁ ଶିକ୍ଷାଲାଭ କରୁ ନାହାନ୍ତି ଯେ ସେମାନଙ୍କର ମଧ୍ୟ ଦିନେ ନା ଦିନେ ପାଳି ପଡ଼ିବ ? ଯେବେ ସେହି ବିଗତ ଯୁଗର ଲୋକମାନଙ୍କ ରାଜ୍ୟ ସେମାନଙ୍କୁ ମିଳିଛି ତେବେ ସେମାନେ କୁକାର୍ଯ୍ୟ କରିବାରୁ ଯେପରି ଦଣ୍ଡ ଭୋଗ କରିଥିଲେ ତଦନୁରୂପ କର୍ମ କଲେ ଏବେକାର ଲୋକମାନଙ୍କୁ ମଧ୍ୟ ସେହିପରି ଦଣ୍ଡ ମିଳିବ ।

୨. ବିଜୟ ବେଳେ ଯେଉଁମାନେ ବିଶ୍ଵାସ ସ୍ଥାପନ କରନ୍ତି ସେମାନେ ଅବଶ୍ୟ ସାଂସାରିକ ଦୃଷ୍ଟିରୁ କିଛି ଲାଭବାନ୍ ହୁଅନ୍ତି ମାତ୍ର ସେମାନଙ୍କୁ ପରକାଳର ପୁରସ୍କାର ଅଳ୍ପ ମିଳେ । ଯଦି ସେମାନେ ସତ୍‌କର୍ମ କରିବାରେ ଅଗ୍ରସର ହେବେ ଓ ବିଳମ୍ବରେ ବିଶ୍ଵାସ କରିଥିବାରୁ ସେଥିପାଇଁ ପ୍ରାୟଶ୍ଚିତ କରିବେ ତେବେ ପରକାଳରେ ମଧ୍ୟ ସେମାନେ ଅଧିକ ପୁରସ୍କାର ପାଇବାକୁ ସମର୍ଥ ହେବେ ।

سُوْرَةُ الْاَحْزَابِ مَدَنِيَّةٌ (٣٣)

## ଅଲ-ଅହଜାବ

[illegible]

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

يٰۤاَيُّهَا النَّبِيُّ اتَّقِ اللّٰهَ وَلَا تُطِعِ الْكٰفِرِيْنَ وَالْمُنٰفِقِيْنَ ۗ اِنَّ اللّٰهَ كَانَ عَلِيْمًا حَكِيْمًا ②

୨. ହେ ନବି ! ଅଲ୍ଲାହ୍‌ଙ୍କୁ ଭୟକର, ଏବଂ ଅବିଶ୍ୱାସକାରୀ ଓ କପଟ ବିଶ୍ୱାସୀମାନଙ୍କ କଥା ମାନନାହିଁ; ଅଲ୍ଲାହ୍ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَّاتَّبِعْ مَا يُوْحٰۤى اِلَيْكَ مِنْ رَّبِّكَ ۗ اِنَّ اللّٰهَ كَانَ بِمَا تَعْمَلُوْنَ خَبِيْرًا ③

୩. ଏବଂ ଓହି ମାଧ୍ୟମରେ ତୁମ୍ଭ ପାଳନକର୍ତ୍ତାଙ୍କ ଠାରୁ ଯାହା ତୁମ୍ଭ ପ୍ରତି ଅବତୀର୍ଣ୍ଣ ହୋଇଅଛି (କେବଳ) ତାହାର ଅନୁସରଣ କର; ଅଲ୍ଲାହ୍ ତୁମ୍ଭ କାର୍ଯ୍ୟ ସଂକ୍ରାନ୍ତରେ ଭଲ ଭାବରେ ଅବଗତ ଅଛନ୍ତି ।

وَّتَوَكَّلْ عَلَى اللّٰهِ ۗ وَكَفٰى بِاللّٰهِ وَكِيْلًا ④

୪. ଏବଂ ଅଲ୍ଲାହ୍‌ଙ୍କ ଉପରେ ଭରସା କର; ଏବଂ ଅଲ୍ଲାହ୍ କାର୍ଯ୍ୟ ସମ୍ପାଦନକାରୀ ଭାବରେ ଯଥେଷ୍ଟ ।

مَا جَعَلَ اللّٰهُ لِرَجُلٍ مِّنْ قَلْبَيْنِ فِيْ جَوْفِهٖ ۚ وَمَا جَعَلَ اَزْوَاجَكُمُ الّٰٓـِٔيْ تُظٰهِرُوْنَ مِنْهُنَّ اُمَّهٰتِكُمْ ۚ وَمَا جَعَلَ اَدْعِيَآءَكُمْ اَبْنَآءَكُمْ ۗ ذٰلِكُمْ قَوْلُكُمْ بِاَفْوَاهِكُمْ ۗ وَاللّٰهُ يَقُوْلُ الْحَقَّ وَهُوَ يَهْدِى السَّبِيْلَ ⑤

୫. ଅଲ୍ଲାହ୍ କୌଣସି ବ୍ୟକ୍ତିର ବକ୍ଷ ମଧ୍ୟରେ ଦୁଇଗୋଟି ହୃଦୟ ସ୍ଥାପନ କରିନାହାନ୍ତି କି ତୁମମାନଙ୍କର ପତ୍ନୀମାନଙ୍କୁ ଯାହାଙ୍କୁ ତୁମେମାନେ (କେତେକ ସମୟରେ) ମାତା ବୋଲି ସମ୍ବୋଧନ କରିଥାଅ, ତୁମମାନଙ୍କର ମାତା କରିନାହାନ୍ତି କି ତୁମମାନଙ୍କ ପୋଷ୍ୟ ପୁତ୍ରମାନଙ୍କୁ ତୁମମାନଙ୍କର (ପ୍ରକୃତ) ପୁତ୍ର କରିନାହାନ୍ତି; ଏସବୁ ତୁମମାନଙ୍କର ମୌଖିକ କଥା ଅଟେ; ଏବଂ ଅଲ୍ଲାହ୍ ହିଁ ସତ୍ୟକଥା କହିଥାନ୍ତି, ଏବଂ ସେ ହିଁ ସତ୍‌ପଥ ପ୍ରଦର୍ଶନ କରାନ୍ତି ।

اُدْعُوْهُمْ لِاٰبَآئِهِمْ هُوَ اَقْسَطُ عِنْدَ اللّٰهِ ۚ فَاِنْ لَّمْ تَعْلَمُوْۤا اٰبَآءَهُمْ فَاِخْوَانُكُمْ فِى الدِّيْنِ وَمَوَالِيْكُمْ ۗ وَلَيْسَ عَلَيْكُمْ جُنَاحٌ فِيْمَاۤ اَخْطَاْتُمْ بِهٖ ۙ وَلٰكِنْ مَّا تَعَمَّدَتْ قُلُوْبُكُمْ ۗ وَكَانَ اللّٰهُ غَفُوْرًا رَّحِيْمًا ⑥

୬. ସୁତରାଂ ସେ(ପୋଷ୍ୟପୁତ୍ର)ମାନଙ୍କୁ ସେମାନଙ୍କ ପିତାଙ୍କ ନାମ ଅନୁସାରେ ଡାକ; ଏହା ଅଲ୍ଲାହ୍‌ଙ୍କ ଦୃଷ୍ଟିରେ ଅଧିକ ନ୍ୟାୟସଙ୍ଗତ କାର୍ଯ୍ୟ ଅଟେ; ଯଦି ସେମାନଙ୍କ ପିତା କିଏ ବୋଲି ତୁମେମାନେ ଜାଣି ନଥାଅ, ତେବେ ସେମାନେ ଧର୍ମ ଦୃଷ୍ଟିରୁ ତୁମମାନଙ୍କ ଭାଇ ଓ ବନ୍ଧୁ ଅଟନ୍ତି; ଏବଂ ଯାହାକିଛି ତୁମେମାନେ ଏ ସଂକ୍ରାନ୍ତରେ ଭୁଲବଶତଃ ପୂର୍ବରୁ କରିଥାଅ ସେଥିପାଇଁ ତୁମମାନଙ୍କର କିଛି ଦୋଷ ନାହିଁ; କିନ୍ତୁ ଯେଉଁ ବିଷୟରେ ତୁମେମାନେ ନିଜ ଅନ୍ତରରେ ଦୃଢ଼ ସଂକଳ୍ପ କରିଅଛ (ତାହା ଦଣ୍ଡନୀୟ ଅଟେ); ଏବଂ ଅଲ୍ଲାହ୍ (ପ୍ରତ୍ୟେକ ଅନୁତାପକାରୀଙ୍କ ସକାଶେ) ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ଅଟନ୍ତି ।

اَلنَّبِيُّ اَوْلٰى بِالْمُؤْمِنِيْنَ مِنْ اَنْفُسِهِمْ وَاَزْوَاجُهٗٓ اُمَّهٰتُهُمْ ۭ وَاُولُوا الْاَرْحَامِ بَعْضُهُمْ اَوْلٰى بِبَعْضٍ فِيْ كِتٰبِ اللّٰهِ مِنَ الْمُؤْمِنِيْنَ وَالْمُهٰجِرِيْنَ اِلَّآ اَنْ تَفْعَلُوْٓا اِلٰٓى اَوْلِيٰۗىِٕكُمْ مَّعْرُوْفًا ۭ كَانَ ذٰلِكَ فِي الْكِتٰبِ مَسْطُوْرًا ⑦

୭. ବିଶ୍ୱାସକାରୀମାନଙ୍କ ନିକଟରେ ସେମାନଙ୍କ ନିଜ ଜୀବନ ଅପେକ୍ଷା ନବି ଅଧିକ ନିକଟବର୍ତ୍ତୀ[1] , ଏବଂ ତାହାଙ୍କ ପତ୍ନୀମାନେ ସେମାନଙ୍କ ମାତା (ସଦୃଶ); ଏବଂ ରକ୍ତ ସମ୍ପର୍କୀୟମାନେ ପରସ୍ପର ମଧ୍ୟରେ (ଅଣ-ରକ୍ତ ସମ୍ପର୍କୀୟ) ବିଶ୍ୱାସକାରୀ ଓ ହିଜରତକାରୀମାନଙ୍କ ଅପେକ୍ଷା ଅଲ୍ଲାହ୍‌ଙ୍କ ଗ୍ରନ୍ଥ ଅନୁସାରେ ଅଧିକ ନିକଟବର୍ତ୍ତୀ; ଅବଶ୍ୟ (ଏହା ନ୍ୟାୟସଂଗତ ଯେ) ତୁମେମାନେ ନିଜ ବନ୍ଧୁମାନଙ୍କ ସହିତ ଉତ୍ତମ ବ୍ୟବହାର କର; ଏ ବିଷୟ (କୋରାନ) ଗ୍ରନ୍ଥରେ ଲିପିବଦ୍ଧ ହୋଇଅଛି ।

وَاِذْ اَخَذْنَا مِنَ النَّبِيّٖنَ مِيْثَاقَهُمْ وَمِنْكَ وَمِنْ نُّوْحٍ وَّاِبْرٰهِيْمَ وَمُوْسٰى وَعِيْسَى ابْنِ مَرْيَمَ ۠ وَاَخَذْنَا مِنْهُمْ مِّيْثَاقًا غَلِيْظًا ⑧

୮. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ଆମେ ନବିମାନଙ୍କ ଠାରୁ ସେମାନଙ୍କ ଉପରେ ନ୍ୟସ୍ତ ଏକ ସ୍ୱତନ୍ତ୍ର ବିଷୟରେ ଅଙ୍ଗୀକାର ଗ୍ରହଣ କରିଥିଲୁ ଏବଂ ତୁମଠାରୁ ମଧ୍ୟ (ଅଙ୍ଗୀକାର ଗ୍ରହଣ କରିଥିଲୁ) ଏବଂ ନୁହ, ଇବ୍ରାହିମ, ମୁସା ଓ ମରିୟମ-ନନ୍ଦନ ଇସାଙ୍କ ଠାରୁ ମଧ୍ୟ ଏବଂ ଆମେ ଏ ସମସ୍ତଙ୍କ ଠାରୁ ଏକ ଦୃଢ଼ ଅଙ୍ଗୀକାର[2] ଗ୍ରହଣ କରିଥିଲୁ;

لِّيَسْــَٔلَ الصّٰدِقِيْنَ عَنْ صِدْقِهِمْ ۚ وَاَعَدَّ لِلْكٰفِرِيْنَ عَذَابًا اَلِيْمًا ⑨

୯. ଯଦ୍ୱାରା କି ଅଲ୍ଲାହ୍ ସତ୍ୟବାଦୀମାନଙ୍କ ଠାରୁ ସେମାନଙ୍କ ସତ୍ୟ ସଂକ୍ରାନ୍ତରେ ପ୍ରଶ୍ନ ପଚାରି ପାରିବେ; ଏବଂ ଅବିଶ୍ୱାସକାରୀମାନଙ୍କ ସକାଶେ ସେ ଏକ ଯନ୍ତ୍ରଣାଦାୟକ ଶାସ୍ତି ପ୍ରସ୍ତୁତ କରିଛନ୍ତି ।

୧. ଏହାର ଅଭିପ୍ରାୟ ହେଉଛି ଯେ ନିଜ ବନ୍ଧୁବାନ୍ଧବମାନଙ୍କର ଯେଉଁ ଯେଉଁ ବିଷୟକୁ ଜଣାଇଦେବା ଜଣେ ବ୍ୟକ୍ତିଙ୍କ ପକ୍ଷରେ ଉଚିତ ନୁହେଁ ଏବଂ ଯେଉଁସବୁ ବିଷୟକୁ ଗୋପନ ରଖିବା ଉଚିତ, ତା' ଅତିରିକ୍ତ ନବିଙ୍କ ବିଷୟରେ ସାବଧାନତା ଅବଲମ୍ବନ କରିବା ମଧ୍ୟ ଆବଶ୍ୟକ । ସେଥିଯୋଗୁଁ ଅଲ୍ଲାହ୍ ନବିଙ୍କୁ ପିତା ଓ ତାହାଙ୍କ ପତ୍ନୀମାନଙ୍କୁ ମାତା ଧାର୍ଯ୍ୟ କରିଛନ୍ତି କାରଣ ଯଦି ନବି ଓ ତାଙ୍କ ପତ୍ନୀମାନଙ୍କୁ ଅନ୍ୟାନ୍ୟ ବିଶ୍ୱାସକାରୀଙ୍କ ତୁଳନାରେ ଉଚ୍ଚ ମର୍ଯ୍ୟାଦା ଦିଆ ନ ଯାଇଥା'ନ୍ତା ତେବେ ଯେଉଁ ଯେଉଁ ବିଷୟକୁ ଗୋପନ ରଖିବା ଅଭିପ୍ରେତ ଥିଲା ସେଗୁଡ଼ିକୁ ଗୁପ୍ତ ରଖାଯାଇ ନଥା'ନ୍ତା ଏବଂ ଯେଉଁ ଯେଉଁ ବିଷୟକୁ ପ୍ରକାଶ କରାଯିବା ଅଭିପ୍ରେତ ଥିଲା ସେଗୁଡ଼ିକ ମଧ୍ୟପ୍ରକାଶିତ ହେଉ ନଥା'ନ୍ତା । ଇତିହାସରୁ ପ୍ରମାଣ ମିଳୁଛି ଯେ ହଜରତ ମହମ୍ମଦଙ୍କ ପତ୍ନୀମାନେ ତାଙ୍କର କୌଣସି ବିଷୟକୁ ଗୁପ୍ତ ରଖିନାହାନ୍ତି । ମାତ୍ର ଏହାର ଅର୍ଥ ନୁହେଁ ଯେ ନବି ପାପକାର୍ଯ୍ୟ କରନ୍ତି ଯାହାକୁ ଗୁପ୍ତ ରଖାଯିବା ଅଭିପ୍ରେତ ବା ଆବଶ୍ୟକ । ବରଂ ଏହାର ପ୍ରକୃତ ଅଭିପ୍ରାୟ ହେଉଛି ଯେ ଯଦି ନବିଙ୍କର ଅନୁଗାମୀମାନେ ନବିଙ୍କ ଗୃହରେ ସେ କରୁଥିବା ସବୁକାର୍ଯ୍ୟ ସମ୍ବନ୍ଧରେ, ଯେଉଁଗୁଡ଼ିକୁ କି କେବଳ ତାଙ୍କ ପତ୍ନୀମାନଙ୍କ ବ୍ୟତୀତ ଅନ୍ୟ କେହି ଜାଣୁ ନଥିଲେ, ଅବଗତ ହେବେ ତେବେ ସେହି ଅନୁଗାମୀମାନେ ସେପରି କାର୍ଯ୍ୟକୁ ଅନୁକରଣ କରିବାକୁ ଚେଷ୍ଟାକରି ଅନେକ ଅସୁବିଧାରେ ଜଡ଼ିତ ହୋଇଯିବେ ।

୨. ଏଠାରେ ସୁରା ଆଲେ-ଇମ୍‌ରାନର ଆୟତ ସଂଖ୍ୟା–୮୨ ପ୍ରତି ସଙ୍କେତ ଦିଆଯାଇଛି ଯେ ପ୍ରତ୍ୟେକ ନବିଙ୍କୁ ତାଙ୍କ ଉତ୍ତରବର୍ତ୍ତୀ ନବିଙ୍କ ସମ୍ବନ୍ଧରେ ସୁସମାଚାର ଦିଆ ଯାଉଥିଲା ଏବଂ ତାଙ୍କ ଉପରେ ବିଶ୍ୱାସ କରିବା ତାଙ୍କ ଅନୁଗାମୀମାନଙ୍କ ପାଇଁ ଅନିବାର୍ଯ୍ୟ ସ୍ଥିର କରା ହୋଇଥିଲା ।

ରୁ: ୨

୧୦. ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କର ସେତେବେଳର କୃପାକୁ ସ୍ମରଣ କର ଯେତେବେଳେ ତୁମମାନଙ୍କ ଉପରକୁ କେତେକ ସୈନ୍ୟବାହିନୀ ମାଡ଼ି ଆସିଥିଲେ ଏବଂ ଆମେ ସେମାନଙ୍କ ବିରୁଦ୍ଧରେ ଏକ (ପ୍ରଖର) ବାୟୁ [୧] ପ୍ରେରଣ କରିଥିଲୁ ଏବଂ ଏପରି ସୈନ୍ୟବାହିନୀ ପ୍ରେରଣ କରିଥିଲୁ ଯାହାକୁ ତୁମେମାନେ ଦେଖିପାରି ନ ଥିଲ; ଏବଂ ଅଲ୍ଲାହ ତୁମମାନଙ୍କର କାର୍ଯ୍ୟକୁ ଭଲଭାବରେ ଲକ୍ଷ୍ୟ କରନ୍ତି ।

يَٰٓأَيُّهَا ٱلَّذِينَ ءَامَنُوا۟ ٱذْكُرُوا۟ نِعْمَةَ ٱللَّهِ عَلَيْكُمْ إِذْ جَآءَتْكُمْ جُنُودٌ فَأَرْسَلْنَا عَلَيْهِمْ رِيحًا وَجُنُودًا لَّمْ تَرَوْهَا ۚ وَكَانَ ٱللَّهُ بِمَا تَعْمَلُونَ بَصِيرًا ⑩

୧୧. ଏବଂ (ସେହି ସମୟକୁ ସ୍ମରଣ କର) ଯେତେବେଳେ ତୁମମାନଙ୍କ ଶତ୍ରୁମାନେ ତୁମମାନଙ୍କ ଊର୍ଦ୍ଧ୍ୱ ଦେଶରୁ (ଅର୍ଥାତ୍ ପର୍ବତ ତରଫରୁ) ଓ ନିମ୍ନ ଦେଶରୁ ମଧ୍ୟ ଆକ୍ରମଣ କରିଥିଲେ, ଏବଂ ଯେତେବେଳେ ଭୟରେ (ତୁମମାନଙ୍କର) ଚକ୍ଷୁ ବିସ୍ତାରିତ ହୋଇଯାଇଥିଲା, ଏବଂ ହୃଦୟ (ପ୍ରକମ୍ପିତ ହୋଇ) କଣ୍ଠ ପର୍ଯ୍ୟନ୍ତ ଆସି ଯାଇଥିଲା, ଏବଂ ତୁମେମାନେ ଅଲ୍ଲାହଙ୍କ ସଂକ୍ରାନ୍ତରେ ବିଭିନ୍ନ ପ୍ରକାର ସନ୍ଦେହର ବଶବର୍ତ୍ତୀ ହୋଇଥିଲ ।

إِذْ جَآءُوكُم مِّن فَوْقِكُمْ وَمِنْ أَسْفَلَ مِنكُمْ وَإِذْ زَاغَتِ ٱلْأَبْصَٰرُ وَبَلَغَتِ ٱلْقُلُوبُ ٱلْحَنَاجِرَ وَتَظُنُّونَ بِٱللَّهِ ٱلظُّنُونَا۠ ⑪

୧୨. ସେତେବେଳେ ବିଶ୍ୱାସକାରୀମାନଙ୍କୁ ଦୃଢ଼ ପରୀକ୍ଷାର ସମ୍ମୁଖୀନ କରାଯାଇଥିଲା, ଏବଂ ସେମାନଙ୍କୁ ଭୀଷଣ ଭାବରେ ଦୋହଲାଇ ଦିଆଯାଇଥିଲା ।

هُنَالِكَ ٱبْتُلِىَ ٱلْمُؤْمِنُونَ وَزُلْزِلُوا۟ زِلْزَالًا شَدِيدًا ⑫

୧୩. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ କପଟ-ବିଶ୍ୱାସୀମାନେ ଓ ଯେଉଁମାନଙ୍କ ହୃଦୟ ବ୍ୟାଧିଗ୍ରସ୍ତ ହୋଇଥିଲା ସେମାନେ କହିଥିଲେ, "ଅଲ୍ଲାହ ଓ ତାହାଙ୍କର ରସୁଲ ଆମମାନଙ୍କ ସହିତ କେବଳ ଏକ ମିଥ୍ୟା ଅଙ୍ଗୀକାର କରିଥିଲେ ।"

وَإِذْ يَقُولُ ٱلْمُنَٰفِقُونَ وَٱلَّذِينَ فِى قُلُوبِهِم مَّرَضٌ مَّا وَعَدَنَا ٱللَّهُ وَرَسُولُهُۥٓ إِلَّا غُرُورًا ⑬

୧୪. ଏବଂ ଯେତେବେଳେ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ଏହା ମଧ୍ୟ କହିଥିଲେ, "ହେ ମଦିନାବାସୀମାନେ ! [୨] (ବର୍ତ୍ତମାନ) ତୁମମାନଙ୍କ (ର ଉଦ୍ଧାର ପାଇବା) ସକାଶେ କୌଣସି ପଥନାହିଁ; ତେଣୁ ତୁମେ (ଇସଲାମ ଧର୍ମ) ପରିତ୍ୟାଗ

وَإِذْ قَالَت طَّآئِفَةٌ مِّنْهُمْ يَٰٓأَهْلَ يَثْرِبَ لَا مُقَامَ لَكُمْ فَٱرْجِعُوا۟ ۚ وَيَسْتَـْٔذِنُ فَرِيقٌ مِّنْهُمُ ٱلنَّبِىَّ يَقُولُونَ

୧. ଏଠାରେ ଅହଜାବ ଯୁଦ୍ଧ ବିଷୟର ବର୍ଣ୍ଣନା ଅଛି । ଏହି ଯୁଦ୍ଧ ହିଜ୍‌ରି ଅବ୍ଦର ପଞ୍ଚମ ବର୍ଷ ହୋଇଥିଲା । ଏଠାରେ ମୁସଲମାନମାନଙ୍କ ବିରୁଦ୍ଧରେ ସମଗ୍ର ଆରବ-ଜଗତ ଏକତ୍ରିତ ହୋଇଥିଲେ କିନ୍ତୁ ପ୍ରକୃତିର ଶକ୍ତି ସେମାନଙ୍କୁ ବିବ୍ରତ କରି ପକାଇବା ସଙ୍ଗେ ସଙ୍ଗେ ସେମାନଙ୍କର ମନୋବଳକୁ ମଧ୍ୟ ଭାଙ୍ଗି ଦେଇଥିଲା । ଯେଉଁଦିନ ଶତ୍ରୁ-ପକ୍ଷ ଆସନ୍ନ ବିଜୟ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଆସ୍ଥାବାନ୍ ହୋଇଥିଲେ ସେହିଦିନ ପ୍ରବଳ ବେଗରେ ବାୟୁ ପ୍ରବାହିତ ହୋଇଥିଲା ଓ ରାତ୍ରି ସମୟରେ ବିଭିନ୍ନ ଶିବିରର ଅଗ୍ନି ନିର୍ବାପିତ ହୋଇ ଯାଇଥିଲା । ଏପରି ଘଟଣାକୁ ତତ୍କାଳୀନ ଆରବୀୟମାନେ ଅଶୁଭ ବିଚାରୁଥିଲେ । ଫଳରେ ଏହି ଦୃଶ୍ୟ ଦେଖି ସେନାଧ୍ୟକ୍ଷମାନେ ପାଗଳପ୍ରାୟ ହୋଇଯାଇଥିଲେ ଏବଂ ନିଜ ନିଜ ଦଳକୁ ନେଇ ସେଠାରୁ ପଳାୟନ କରିଥିଲେ ଓ ମୁସଲମାନମାନେ ବର୍ତ୍ତି ଯାଇଥିଲେ ।

୨. ହିଜରତ ପୂର୍ବରୁ ମଦିନାର ନାମ 'ୟସରବ' ଥିଲା ।

إِنَّ بُيُوتَنَا عَوْرَةٌ ۛ وَمَا هِيَ بِعَوْرَةٍ ۛ إِن يُرِيدُونَ إِلَّا فِرَارًا ﴿١٤﴾

କର;'' ଏବଂ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ନବିଙ୍କ ଠାରୁ ଅନୁମତି ଭିକ୍ଷା କରି କହିଥିଲେ, ''ଆମମାନଙ୍କ ଗୃହ ଶତ୍ରୁମାନଙ୍କ ଘେର ମଧ୍ୟରେ ଅଛି;'' ଅଥଚ ସେଗୁଡ଼ିକ ଶତ୍ରୁମାନଙ୍କ ଘେର ମଧ୍ୟରେ ନ ଥିଲା; ସେମାନେ କେବଳ ପଳାୟନ କରିବାକୁ ଇଚ୍ଛା କରୁଥିଲେ ।

وَلَوْ دُخِلَتْ عَلَيْهِم مِّنْ أَقْطَارِهَا ثُمَّ سُئِلُوا الْفِتْنَةَ لَآتَوْهَا وَمَا تَلَبَّثُوا بِهَا إِلَّا يَسِيرًا ﴿١٥﴾

୧୫. ଏବଂ ଯଦି (ମଦିନାର) ବିଭିନ୍ନ ଦିଗରୁ ସେମାନଙ୍କୁ (ସୈନ୍ୟବାହିନୀ ଦ୍ବାରା) ଆକ୍ରମଣ କରାଯାଆନ୍ତା ଏବଂ ସେମାନଙ୍କୁ ଧର୍ମ ତ୍ୟାଗ କରିବା ପାଇଁ (ଅବିଶ୍ୱାସକାରୀମାନଙ୍କ ତରଫରୁ) କୁହାଯାଆନ୍ତା; ତାହାହେଲେ ସେମାନେ ନିଶ୍ଚୟ ଏହା ସ୍ୱୀକାର କରିନେଇ ଥାଆନ୍ତେ; କିନ୍ତୁ (ଏହାପରେ) ସେ (କପଟବିଶ୍ୱାସୀ)ମାନେ ସେଠାରେ ଖୁବ୍ ଅଳ୍ପ ସମୟ ରହିବାର ସୁଯୋଗ ପାଇବେ ।'[1]

وَلَقَدْ كَانُوا عَاهَدُوا اللَّهَ مِن قَبْلُ لَا يُوَلُّونَ الْأَدْبَارَ ۚ وَكَانَ عَهْدُ اللَّهِ مَسْئُولًا ﴿١٦﴾

୧୬. ଏବଂ ବାସ୍ତବରେ ସେ (କପଟବିଶ୍ୱାସୀ)ମାନେ ଏଥିପୂର୍ବରୁ ଅଲ୍ଲାହ୍‌ଙ୍କ ସହିତ ଅଙ୍ଗୀକାରବଦ୍ଧ ହୋଇଥିଲେ ଯେ ସେମାନେ କଦାପି ପୃଷ୍ଠଭଙ୍ଗ ଦେବେ ନାହିଁ (ଏବଂ ଦୃଢ଼ ରହିବେ); ଏବଂ ଅଲ୍ଲାହ୍‌ଙ୍କ ସହିତ କରାଯାଇଥିବା ଅଂଗୀକାର ସଂକ୍ରାନ୍ତରେ ନିଶ୍ଚୟ ପ୍ରଶ୍ନ କରାଯିବ ।

قُل لَّن يَنفَعَكُمُ الْفِرَارُ إِن فَرَرْتُم مِّنَ الْمَوْتِ أَوِ الْقَتْلِ وَإِذًا لَّا تُمَتَّعُونَ إِلَّا قَلِيلًا ﴿١٧﴾

୧୭. ତୁମେ (ସେମାନଙ୍କୁ) କୁହ, ''ଯଦି ତୁମେମାନେ ମୃତ୍ୟୁ ବା ହତ୍ୟାଠାରୁ ପଳାୟନ କରିବ, ତେବେ ତୁମମାନଙ୍କର ପଳାୟନ ତୁମମାନଙ୍କ ପାଇଁ କଦାପି ଲାଭପ୍ରଦ [2] ହେବ ନାହିଁ; ଏବଂ ଏପରି ପରିସ୍ଥିତିରେ ତୁମେମାନେ କୌଣସି ଲାଭ ପାଇବ ନାହିଁ ।''

قُلْ مَن ذَا الَّذِي يَعْصِمُكُم مِّنَ اللَّهِ إِنْ أَرَادَ بِكُمْ سُوءًا أَوْ أَرَادَ بِكُمْ رَحْمَةً ۚ وَلَا يَجِدُونَ لَهُم مِّن دُونِ اللَّهِ وَلِيًّا وَلَا نَصِيرًا ﴿١٨﴾

୧୮. ତୁମେ (ସେମାନଙ୍କୁ) କୁହ, ଯଦି ଅଲ୍ଲାହ୍ ତୁମମାନଙ୍କୁ ଶାସ୍ତି ଦେବାକୁ ଇଚ୍ଛା କରନ୍ତି, ତେବେ କିଏ ତୁମମାନଙ୍କୁ ଅଲ୍ଲାହ୍‌ଙ୍କ କବଳରୁ ରକ୍ଷାକରିବ ? ଅଥବା ଯଦି ସେ ତୁମମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରିବାକୁ ଇଚ୍ଛା କରନ୍ତି, (ତେବେ କିଏ ତୁମମାନଙ୍କୁ ତହିଁରୁ ବଞ୍ଚିତ କରିପାରିବ) ?'' ଏବଂ ସେମାନେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ନିଜ ପାଇଁ କାହାରିକୁ ପ୍ରକୃତ ବନ୍ଧୁ ବା ସାହାଯ୍ୟକାରୀ ପାଇବେ ନାହିଁ, (ଅର୍ଥାତ୍ ଯଦି କୌଣସି ସାହାଯ୍ୟ ମିଳିବ ତେବେ ଅଲ୍ଲାହ୍‌ଙ୍କ ଠାରୁ ହିଁ ମିଳିବ) ।

---

୧. ଅର୍ଥାତ୍ ଇସଲାମ ଧର୍ମ ପରିତ୍ୟାଗ କରିବା ସତ୍ତ୍ୱେ ଅବିଶ୍ୱାସକାରୀମାନେ ସେମାନଙ୍କୁ ନିର୍ବିଘ୍ନରେ ଛାଡ଼ି ଦେବେ ନାହିଁ କାରଣ ପ୍ରତ୍ୟେକ ମୁସଲମାନ ଏପରିକି ନାମମାତ୍ର ମୁସଲମାନଙ୍କ ବିରୁଦ୍ଧରେ ସେମାନଙ୍କ ମନରେ ବିଦ୍ୱେଷ ପୂରିରହିଛି ।

୨. ଅର୍ଥାତ୍ ଯଦି ତୁମେମାନେ ପଳାୟନ କରିବ ତେବେ ଏକେତ ଅବିଶ୍ୱାସକାରୀମାନେ ତୁମମାନଙ୍କୁ ହତ୍ୟା କରିବେ ଅଥବା ଅଲ୍ଲାହ୍ ଇସଲାମ ପକ୍ଷରେ ଶୀଘ୍ର ବିଜୟ ପ୍ରଦାନ କରିବେ ଏବଂ ମୁସଲମାନମାନେ ତୁମମାନଙ୍କୁ ଦଣ୍ଡ ଦେବେ । ଏ ବିଷୟ ପରବର୍ତ୍ତୀ ଆୟତରୁ ମଧ୍ୟ ସ୍ପଷ୍ଟ ହୋଇ ଯାଉଛି ।

୧୯. ଅଲ୍ଲାହ ସେମାନଙ୍କୁ ଭଲ ଭାବରେ ଜାଣନ୍ତି ଯେଉଁମାନେ ତୁମମାନଙ୍କ ମଧ୍ୟରୁ ଅନ୍ୟମାନଙ୍କୁ (ଜେହାଦ କାର୍ଯ୍ୟରେ) ଅବରୋଧ କରୁଥିଲେ ଏବଂ ନିଜ ଭାଇମାନଙ୍କୁ କହୁଥିଲେ ଯେ ଆମମାନଙ୍କ ନିକଟକୁ ଆସ; (ଏବଂ ଜେହାଦରେ ଯୋଗ ଦିଅ ନାହିଁ) ଏବଂ (ସେମାନେ) ନିଜେ ମଧ୍ୟ ଶତ୍ରୁ ବିରୁଦ୍ଧରେ ଆଦୌ ଯୁଦ୍ଧ କରୁ ନଥିଲେ ।

قَدْ يَعْلَمُ اللّٰهُ الْمُعَوِّقِيْنَ مِنْكُمْ وَالْقَآئِلِيْنَ لِاِخْوَانِهِمْ هَلُمَّ اِلَيْنَا ۚ وَلَا يَاْتُوْنَ الْبَاْسَ اِلَّا قَلِيْلًا ﴿١٩﴾

୨୦. ସେମାନେ ତୁମମାନଙ୍କ ସଂକ୍ରାନ୍ତରେ ଅତ୍ୟନ୍ତ କୃପଣ ଅଟନ୍ତି (ଅର୍ଥାତ୍ ସେମାନେ ତୁମମାନଙ୍କର ଆଦୌ ହିତାକାଂକ୍ଷୀ ନୁହନ୍ତି) ଏବଂ ଯେତେବେଳେ ସେମାନଙ୍କ ଉପରେ କୌଣସି ଭୟ (ସମୟ) ଉପସ୍ଥିତ ହୁଏ, ସେତେବେଳେ ତୁମେ ସେମାନଙ୍କୁ ଦେଖିବ ଯେ ସେମାନେ ତୁମ ଆଡ଼କୁ ଏପରି ଭାବରେ ଦେଖୁଛନ୍ତି ଯେ ସେମାନଙ୍କ ଆଖିଡୋଳା ସେହି ବ୍ୟକ୍ତି ସଦୃଶ ଘୂରୁଅଛି ଯେ କି ମୃତ୍ୟୁକାଳୀନ ମୂର୍ଚ୍ଛାର କବଳିତ ହୋଇଥାଏ ; କିନ୍ତୁ ଯେତେବେଳେ ଭୟ (ସମୟ) ଅପସାରିତ ହୋଇଯାଏ ସେତେବେଳେ ସେମାନେ ତୁମପ୍ରତି ତରବାରି ସଦୃଶ କଟୁ ମନ୍ତବ୍ୟ କରନ୍ତି; ସେମାନେ ପ୍ରତ୍ୟେକ ପ୍ରକାର ଉପକାର ସଂକ୍ରାନ୍ତରେ କୃପଣ; (ଓ ଇଚ୍ଛା କରନ୍ତି ଯେ ତାହା ତୁମଙ୍କୁ ପ୍ରାପ୍ତ ନ ହେଉ); ଏମାନେ (ବାସ୍ତବରେ) ବିଶ୍ୱାସ କରି ନଥିଲେ ; ସୁତରାଂ ଅଲ୍ଲାହ ସେମାନଙ୍କ (ଇସ୍‌ଲାମ ବିରୁଦ୍ଧ) ସମସ୍ତ ପ୍ରଚେଷ୍ଟାକୁ ବ୍ୟର୍ଥ କରିଦେଲେ; ଏବଂ ଅଲ୍ଲାହଙ୍କ ପକ୍ଷରେ ଏହା ଅତି ସହଜସାଧ୍ୟ ।

اَشِحَّةً عَلَيْكُمْ ۖ فَاِذَا جَآءَ الْخَوْفُ رَاَيْتَهُمْ يَنْظُرُوْنَ اِلَيْكَ تَدُوْرُ اَعْيُنُهُمْ كَالَّذِيْ يُغْشٰى عَلَيْهِ مِنَ الْمَوْتِ ۚ فَاِذَا ذَهَبَ الْخَوْفُ سَلَقُوْكُمْ بِاَلْسِنَةٍ حِدَادٍ اَشِحَّةً عَلَى الْخَيْرِ ۗ اُولٰٓئِكَ لَمْ يُؤْمِنُوْا فَاَحْبَطَ اللّٰهُ اَعْمَالَهُمْ ۗ وَكَانَ ذٰلِكَ عَلَى اللّٰهِ يَسِيْرًا ﴿٢٠﴾

୨୧. (ଏବଂ) ସେମାନେ ଆଶା ପୋଷଣ କରନ୍ତି ଯେ (ଅବିଶ୍ୱାସକାରୀଙ୍କ) ସୈନ୍ୟବାହିନୀ ଏବେ ମଧ୍ୟ ଫେରିଯାଇ ନ ଥିବ (କି) ! ଅଥଚ ଯଦି (ଅବିଶ୍ୱାସକାରୀଙ୍କ) ସୈନ୍ୟବାହିନୀ (ପୁନର୍ବାର) ଆସିଯାଏ, ତେବେ ସେମାନେ ଇଚ୍ଛା କରିବେ ଯେ ସେମାନେ ବେଦୁଇନମାନଙ୍କ ସହିତ ଯାଯାବର ଜୀବନ ଯାପନ କରି ରହିଥାଆନ୍ତେ କି ! ଏବଂ ତୁମମାନଙ୍କ ସଂକ୍ରାନ୍ତରେ ଲୋକମାନଙ୍କୁ ପଚାରୁଥାଆନ୍ତେ (ଯେ ତୁମେମାନେ ଜୀବିତ ଅଛ ନା ଧ୍ୱଂସ ପାଇଛ) ଏବଂ ଯଦି ସେମାନେ ତୁମମାନଙ୍କ ସହିତ ଥାଆନ୍ତେ ତେବେ ମଧ୍ୟ ତୁମମାନଙ୍କ ତରଫରୁ ଆଦୌ ଯୁଦ୍ଧ କରି ନ ଥାନ୍ତେ ।

يَحْسَبُوْنَ الْاَحْزَابَ لَمْ يَذْهَبُوْا ۚ وَاِنْ يَّاْتِ الْاَحْزَابُ يَوَدُّوْا لَوْ اَنَّهُمْ بَادُوْنَ فِى الْاَعْرَابِ يَسْاَلُوْنَ عَنْ اَنْۢبَآئِكُمْ ۗ وَلَوْ كَانُوْا فِيْكُمْ مَّا قٰتَلُوْٓا اِلَّا قَلِيْلًا ﴿٢١﴾

ରୁ:୩

୨୨. ତୁମମାନଙ୍କ ସକାଶେ (ଅର୍ଥାତ୍ ସେହି ଲୋକମାନଙ୍କ ସକାଶେ) ଯେଉଁମାନେ ଅଲ୍ଲାହ ଓ ଅନ୍ତିମ ଦିବସର ସାକ୍ଷାତ୍ ବିଷୟରେ ଆଶା ପୋଷଣ କରନ୍ତି ଓ ଅଲ୍ଲାହଙ୍କୁ ବହୁତ ସ୍ମରଣ କରନ୍ତି ଅଲ୍ଲାହଙ୍କ ରସୁଲଙ୍କ ଠାରେ ଉତ୍ତମ ଚରିତ୍ରର ଏକ ଉଚ୍ଚ ଆଦର୍ଶ ରହିଅଛି (ଯାହାକୁ ଅନୁସରଣ କରିବା ସେମାନଙ୍କ ପକ୍ଷରେ ଉଚିତ)।

لَقَدْ كَانَ لَكُمْ فِي رَسُولِ اللَّهِ أُسْوَةٌ حَسَنَةٌ لِمَنْ كَانَ يَرْجُو اللَّهَ وَالْيَوْمَ الْآخِرَ وَذَكَرَ اللَّهَ كَثِيرًا ﴿٢٢﴾

୨୩. ଅତଏବ ( ଦେଖ ) ଯେତେବେଳେ ପ୍ରକୃତ ବିଶ୍ୱାସକାରୀମାନେ ଆକ୍ରମଣକାରୀ ସୈନ୍ୟବାହିନୀକୁ ଦେଖିଲେ, ସେତେବେଳେ ସେମାନେ କହିଲେ, "ଏମାନେ ସେହି [1](ସୈନ୍ୟବାହିନୀ) ଯାହାଙ୍କ ସଂକ୍ରାନ୍ତରେ ଅଲ୍ଲାହ ଓ ତାହାଙ୍କର ରସୁଲ ଆମମାନଙ୍କ ଠାରେ ଅଂଗୀକାର କରିଥିଲେ; ଏବଂ ଅଲ୍ଲାହ ଓ ତାହାଙ୍କର ରସୁଲ ସମ୍ପୂର୍ଣ୍ଣ ସତ୍ୟ କହିଥିଲେ;" ଏବଂ ଏହା (ଅର୍ଥାତ୍ ଏହି ଘଟଣା) ସେମାନଙ୍କର ବିଶ୍ୱାସ ଓ ଆନୁଗତ୍ୟକୁ ବର୍ଦ୍ଧିତ କରିଥିଲା।

وَلَمَّا رَأَى الْمُؤْمِنُونَ الْأَحْزَابَ قَالُوا هَٰذَا مَا وَعَدَنَا اللَّهُ وَرَسُولُهُ وَصَدَقَ اللَّهُ وَرَسُولُهُ ۚ وَمَا زَادَهُمْ إِلَّا إِيمَانًا وَتَسْلِيمًا ﴿٢٣﴾

୨୪. ଏହି ବିଶ୍ୱାସକାରୀଙ୍କ ମଧ୍ୟରେ କେତେକ ଏପରି ଅଛନ୍ତି ଯେଉଁମାନେ ଅଲ୍ଲାହଙ୍କ ସହିତ କରିଥିବା ଅଂଗୀକାରକୁ ସତ୍ୟ ସାବ୍ୟସ୍ତ କରି (ଦେଖାଇ) ଥିଲେ ; ସେମାନଙ୍କ ମଧ୍ୟରୁ କେତେକ ସେମାନଙ୍କ ପ୍ରତିଜ୍ଞାକୁ ପାଳନ କରିଥିଲେ (ଅର୍ଥାତ୍ ଯୁଦ୍ଧ କରି ନିହତ ହୋଇଥିଲେ) ଏବଂ ସେମାନଙ୍କ ମଧ୍ୟରୁ ଅନ୍ୟ କେତେକ ଏପରି ଅଛନ୍ତି ଯେଉଁମାନେ ଏବେ ବି ଅପେକ୍ଷା କରୁଛନ୍ତି; ଏବଂ ସେମାନେ ନିଜ ସଂକଳ୍ପରେ କୌଣସି ଦୁର୍ବଳତା ପ୍ରକାଶ କରି ନଥିଲେ।

مِنَ الْمُؤْمِنِينَ رِجَالٌ صَدَقُوا مَا عَاهَدُوا اللَّهَ عَلَيْهِ ۖ فَمِنْهُمْ مَنْ قَضَىٰ نَحْبَهُ وَمِنْهُمْ مَنْ يَنْتَظِرُ ۖ وَمَا بَدَّلُوا تَبْدِيلًا ﴿٢٤﴾

୨୫. ପରିଣାମ ସ୍ୱରୂପ ଅଲ୍ଲାହ ଏପରି ସତ୍ୟବାଦୀମାନଙ୍କୁ ସେମାନଙ୍କ ସତ୍ୟବାଦିତାର ପୁରସ୍କାର ପ୍ରଦାନ କରିବେ ଏବଂ ଯଦି ଇଚ୍ଛା କରିବେ, ତେବେ କପଟ-ବିଶ୍ୱାସୀମାନଙ୍କୁ ଶାସ୍ତି ପ୍ରଦାନ କରିବେ, ବା ସେମାନଙ୍କ ପ୍ରତି କରୁଣା ପ୍ରଦର୍ଶନ କରିବେ; ବାସ୍ତବିକ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ।

لِيَجْزِيَ اللَّهُ الصَّادِقِينَ بِصِدْقِهِمْ وَيُعَذِّبَ الْمُنَافِقِينَ إِنْ شَاءَ أَوْ يَتُوبَ عَلَيْهِمْ ۚ إِنَّ اللَّهَ كَانَ غَفُورًا رَحِيمًا ﴿٢٥﴾

୨୬. ଏବଂ (ବାସ୍ତବରେ) ଅଲ୍ଲାହ ଅବିଶ୍ୱାସକାରୀମାନଙ୍କୁ ସେମାନଙ୍କ କ୍ରୋଧ ସମେତ (ମଦିନାରୁ) ଫେରାଇ ଦେଇଥିଲେ; ଏବଂ ସେମାନଙ୍କୁ କୌଣସି ପ୍ରକାର ଲାଭ ମିଳି ନଥିଲା; ଏବଂ ଅଲ୍ଲାହ ବିଶ୍ୱାସକାରୀମାନଙ୍କ ପକ୍ଷରୁ ନିଜେ ଯୁଦ୍ଧ କରିଥିଲେ; ଏବଂ ଅଲ୍ଲାହ ହିଁ ଶକ୍ତିଶାଳୀ (ଓ) ପରାକ୍ରମୀ।

وَرَدَّ اللَّهُ الَّذِينَ كَفَرُوا بِغَيْظِهِمْ لَمْ يَنَالُوا خَيْرًا ۚ وَكَفَى اللَّهُ الْمُؤْمِنِينَ الْقِتَالَ ۚ وَكَانَ اللَّهُ قَوِيًّا عَزِيزًا ﴿٢٦﴾

୧. ପବିତ୍ର କୋରାନରେ ଅହଜାବ ଯୁଦ୍ଧ ବିଷୟ ପ୍ରଥମରୁ ସୂଚାଇ ଦିଆଯାଇ ଥିଲା (୩୮:୧୨ ଓ ୫୪:୪୬ ଦ୍ରଷ୍ଟବ୍ୟ)। ଏଠାରେ ସେହି ଆକ୍ରମଣ ପ୍ରତି ସଙ୍କେତ ଦିଆଯାଇଛି।

୨୭. ଏବଂ ସେହି ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ଯେଉଁମାନେ ସେ (ଆକ୍ରମଣକାରୀ ଅବିଶ୍ୱାସକାରୀ)ମାନଙ୍କୁ ସାହାଯ୍ୟ କରିଥିଲେ, ସେ (ଅର୍ଥାତ୍ ଅଲ୍ଲାହ୍) ସେମାନଙ୍କୁ ସେମାନଙ୍କ ଦୁର୍ଗରୁ ବିତାଡ଼ିତ କରିଥିଲେ ଏବଂ ସେମାନଙ୍କ ମନରେ ଭୟ ସଞ୍ଚାର କରିଥିଲେ; ଯଦ୍ବାରା ତୁମେମାନେ ସେମାନଙ୍କ ମଧ୍ୟରୁ କେତେକଙ୍କୁ ହତ୍ୟା କରିବାକୁ ଓ ଅନ୍ୟମାନଙ୍କୁ ବନ୍ଦୀ କରିବାକୁ ସକ୍ଷମ ହୋଇଥିଲ ।

وَاَنْزَلَ الَّذِيْنَ ظَاهَرُوْهُمْ مِّنْ اَهْلِ الْكِتٰبِ مِنْ صَيَاصِيْهِمْ وَقَذَفَ فِيْ قُلُوْبِهِمُ الرُّعْبَ فَرِيْقًا تَقْتُلُوْنَ وَتَاْسِرُوْنَ فَرِيْقًا ﴿٢٧﴾

୨୮. ଏବଂ ସେ ତୁମମାନଙ୍କୁ ସେମାନଙ୍କର ଭୂମି ଓ ସେମାନଙ୍କ (ବାସ)ଗୃହ ଓ ସେମାନଙ୍କ ଧନସମ୍ପତ୍ତିର ଉତ୍ତରାଧିକାରୀ କରିଥିଲେ, ତଥା ସେହି ଭୂମି ଉପରେ ମଧ୍ୟ ଯାହା ଉପରେ ତୁମମାନଙ୍କର ପାଦ[1] ଅଦ୍ୟାବଧି ପଡ଼ି ନଥିଲା; ଏବଂ ଅଲ୍ଲାହ୍ ହିଁ ସକଳ ବିଷୟରେ ସର୍ବଶକ୍ତିମାନ୍ ।

وَاَوْرَثَكُمْ اَرْضَهُمْ وَدِيَارَهُمْ وَاَمْوَالَهُمْ وَاَرْضًا لَّمْ تَطَـُٔوْهَا ۚ وَكَانَ اللّٰهُ عَلٰى كُلِّ شَيْءٍ قَدِيْرًا ﴿٢٨﴾ ع

୨୯. ହେ ନବି ! (ତୁମେ) ନିଜ ପତ୍ନୀମାନଙ୍କୁ କୁହ, "ଯଦି ତୁମେମାନେ ସାଂସାରିକ ଜୀବନ ଓ ତାହାର ଶୋଭା କାମନା କରୁଅଛ, ତେବେ ଆସ, ଆମେ ତୁମମାନଙ୍କୁ କିଛି ସାଂସାରିକ ସାମଗ୍ରୀ ପ୍ରଦାନ କରି ତୁମମାନଙ୍କୁ ଉଚିତ ପନ୍ଥାରେ ବିଦାୟ କରିଦେବୁ ।"

يٰٓاَيُّهَا النَّبِيُّ قُلْ لِّاَزْوَاجِكَ اِنْ كُنْتُنَّ تُرِدْنَ الْحَيٰوةَ الدُّنْيَا وَزِيْنَتَهَا فَتَعَالَيْنَ اُمَتِّعْكُنَّ وَاُسَرِّحْكُنَّ سَرَاحًا جَمِيْلًا ﴿٢٩﴾

୩୦. କିନ୍ତୁ ଯଦି ତୁମେମାନେ ଅଲ୍ଲାହ୍ ଓ ତାହାଙ୍କର ରସୁଲ ଏବଂ ପରକାଳର ନିବାସ କାମନା କରୁଅଛ, ତେବେ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ସମ୍ପୂର୍ଣ୍ଣଭାବରେ ଇସଲାମ ଉପରେ ପ୍ରତିଷ୍ଠିତ ରହିବେ ଅଲ୍ଲାହ୍ ସେମାନଙ୍କ ସକାଶେ ଏକ ମହାନ୍ ପୁରସ୍କାର ନିର୍ଦ୍ଦିଷ୍ଟ କରି ରଖିଛନ୍ତି ।

وَاِنْ كُنْتُنَّ تُرِدْنَ اللّٰهَ وَرَسُوْلَهٗ وَالدَّارَ الْاٰخِرَةَ فَاِنَّ اللّٰهَ اَعَدَّ لِلْمُحْسِنٰتِ مِنْكُنَّ اَجْرًا عَظِيْمًا ﴿٣٠﴾

୩୧. ହେ ନବିଙ୍କର ପତ୍ନୀମାନେ ! ଯଦି ତୁମମାନଙ୍କ ମଧ୍ୟରୁ କେହି ଉଚ୍ଚ ନୈତିକତା ବିରୋଧୀ ଆଚରଣ କରେ,[2] ତେବେ ତାହାର ଶାସ୍ତିକୁ ଦ୍ୱିଗୁଣିତ କରାହେବ ; ଏବଂ ଏହା ଅଲ୍ଲାହ୍ଙ୍କ ପକ୍ଷରେ ସହଜସାଧ୍ୟ ।

يٰنِسَآءَ النَّبِيِّ مَنْ يَّاْتِ مِنْكُنَّ بِفَاحِشَةٍ مُّبَيِّنَةٍ يُّضٰعَفْ لَهَا الْعَذَابُ ضِعْفَيْنِ ۗ وَكَانَ ذٰلِكَ عَلَى اللّٰهِ يَسِيْرًا ﴿٣١﴾

---

୧. ଅର୍ଥାତ୍ ଖୈବର ଯୁଦ୍ଧ କ୍ଷେତ୍ର । ଏଠାରେ ଏକ ଭବିଷ୍ୟବାଣୀ ଅଛି ଯେ ଖୈବରଠାରେ ମୁସଲମାନମାନେ ଜୟଲାଭ କରିବେ । ଖୈବର ଯୁଦ୍ଧ ପୂର୍ବରୁ ତଥା ହୁଦବିୟା ସନ୍ଧି ପୂର୍ବରୁ ଅହଜାବ ଯୁଦ୍ଧ ହୋଇଥିଲା । କିନ୍ତୁ ଉପରିଉକ୍ତ ଭବିଷ୍ୟବାଣୀ ଅନୁସାରେ ସେହି ଦେଶ ମଧ୍ୟ ମୁସଲମାନମାନେ ଜୟଲାଭ କରିବେ । ବସ୍ତୁତଃ ତାହା ହିଁ ଘଟିଥିଲା । ଏହା ଏପରି ଏକ ସୁସ୍ପଷ୍ଟ ଭବିଷ୍ୟବାଣୀ ଯାହାକୁ ଶତ୍ରୁମାନେ ମଧ୍ୟ ଅସ୍ୱୀକାର କରି ପାରିବେ ନାହିଁ, କାରଣ କେତେକ ମୁଖ୍ୟ ଶତ୍ରୁ ମଧ୍ୟ ସ୍ୱୀକାର କରିଛନ୍ତି ଯେ ଅହଜାବ ଯୁଦ୍ଧର ବହୁବର୍ଷ ପରେ ଖୈବର ଯୁଦ୍ଧ ହୋଇଥିଲା ।

୨. ମୂଳ ଶବ୍ଦ 'ଫାହିଶା' ଅର୍ଥ ଏପରି ମନ୍ଦ କାର୍ଯ୍ୟ ଯହିଁରେ ପାପ ଦୃଶ୍ୟମାନ ହେବ । ଯେହେତୁ ନବିଙ୍କ ପତ୍ନୀମାନଙ୍କୁ ସବୁଠାରୁ ଅଧିକ ବା ସର୍ବୋତ୍ତମ ପୁଣ୍ୟ କାର୍ଯ୍ୟ କରିବାକୁ ଶିକ୍ଷା ଦିଆଯାଇଛି ତେଣୁ ଯଦି ସେମାନଙ୍କ ଦ୍ୱାରା ଏପରି କୌଣସି କାର୍ଯ୍ୟ ହୋଇଯାଏ ଯାହା ସର୍ବୋତ୍ତମ ପୁଣ୍ୟ ହୋଇ ନପାରେ ବରଂ ଏକ ସାଧାରଣ ପୁଣ୍ୟର ପଦବାଚ୍ୟ ହେବ । ତଥାପି ଆରବୀ ଭାଷାର ରୂଢ଼ି ଅନୁସାରେ ତାହା 'ଫାହିଶା' ଶବ୍ଦର ଅର୍ଥାନ୍ତର୍ଗତ ।

## ଭାଗ ୨୨

୩୨. ଏବଂ ତୁମମାନଙ୍କ ମଧ୍ୟରୁ ଯେକେହି ଅଲ୍ଲାହ ଓ ତାହାଙ୍କର ରସୁଲଙ୍କ ଆଜ୍ଞା ପାଳନ କରିବ ଏବଂ (ଏହି ଆଜ୍ଞା ପାଳନର ମର୍ଯ୍ୟାଦା ଅନୁସାରେ) ଉତ୍ତମ କାର୍ଯ୍ୟ କରିବ ତେବେ ଆମ୍ଭେ ତାହାକୁ ଦୁଇଗୁଣ ପୁରସ୍କାର ପ୍ରଦାନ କରିବୁ, ଏବଂ ଆମ୍ଭେ ଏପରି ପ୍ରତ୍ୟେକ (ପତ୍ନୀ)ଙ୍କ ସକାଶେ ସମ୍ମାନିତ ଜୀବିକା ପ୍ରସ୍ତୁତ କରିଅଛୁ ।

وَمَنْ يَّقْنُتْ مِنْكُنَّ لِلّٰهِ وَرَسُوْلِهٖ وَتَعْمَلْ صَالِحًا نُّؤْتِهَاۤ اَجْرَهَا مَرَّتَيْنِ ۙ وَاَعْتَدْنَا لَهَا رِزْقًا كَرِيْمًا ۝

୩୩. ହେ ନବିଙ୍କର ପତ୍ନୀମାନେ ! ଯଦି ତୁମେମାନେ ନିଜ ପଦମର୍ଯ୍ୟାଦାକୁ ବୁଝୁଥାଅ, ତେବେ ତୁମେମାନେ ସାଧାରଣ ମହିଳାମାନଙ୍କ ସଦୃଶ ନୁହଁ,ତେଣୁ ତୁମେମାନେ (ଅନ୍ୟମାନଙ୍କ ସହିତ) କୋମଳ ଭଙ୍ଗୀରେ କଥା କୁହ ନାହିଁ,ଅନ୍ୟଥାଏପରି ନହେଉ ଯେ ଯାହାର ଅନ୍ତର ବ୍ୟାଧିଗ୍ରସ୍ତ ସେ ତୁମମାନଙ୍କ ସଂକ୍ରାନ୍ତରେ ମନ୍ଦ ଅଭିଳାଷ ପୋଷଣ କରିବ ; ଏବଂ ସର୍ବଦା ଲୋକମାନଙ୍କୁ ପୁଣ୍ୟ କଥା କୁହ ।

يٰنِسَآءَ النَّبِيِّ لَسْتُنَّ كَاَحَدٍ مِّنَ النِّسَآءِ اِنِ اتَّقَيْتُنَّ فَلَا تَخْضَعْنَ بِالْقَوْلِ فَيَطْمَعَ الَّذِيْ فِيْ قَلْبِهٖ مَرَضٌ وَّقُلْنَ قَوْلًا مَّعْرُوْفًا ۝

୩୪. ଏବଂ (ତୁମେମାନେ) ନିଜ ଗୃହରେ ଅବସ୍ଥାନ କର, ଏବଂ ପୂର୍ବବର୍ତ୍ତୀ ଅଜ୍ଞ ଯୁଗର (ପରମ୍ପରା) ସଦୃଶ ନିଜର ସୌନ୍ଦର୍ଯ୍ୟକୁ (ଅନ୍ୟମାନଙ୍କ ଆଗରେ) ପ୍ରକାଶ କର ନାହିଁ ; ଏବଂ ସୁଚାରୁରୂପେ ନମାଜ ପାଠ କର, ଓ ଜକାତ ଦିଅ, ଏବଂ ଅଲ୍ଲାହ ଓ ତାହାଙ୍କର ରସୁଲଙ୍କର ଆଜ୍ଞା ପାଳନ କର ; ହେ (ରସୁଲଙ୍କ) ପରିବାର-ବର୍ଗ ! ଅଲ୍ଲାହ ତୁମମାନଙ୍କ ଠାରୁ ପ୍ରତ୍ୟେକ ପ୍ରକାର ଅପବିତ୍ରତାକୁ ଦୂର କରି ସମ୍ପୂର୍ଣ୍ଣ ଭାବରେ ପବିତ୍ର କରିବାକୁ ଇଚ୍ଛା କରୁଛନ୍ତି ।

وَقَرْنَ فِيْ بُيُوْتِكُنَّ وَلَا تَبَرَّجْنَ تَبَرُّجَ الْجَاهِلِيَّةِ الْاُوْلٰى وَاَقِمْنَ الصَّلٰوةَ وَاٰتِيْنَ الزَّكٰوةَ وَاَطِعْنَ اللّٰهَ وَرَسُوْلَهٗ ۗ اِنَّمَا يُرِيْدُ اللّٰهُ لِيُذْهِبَ عَنْكُمُ الرِّجْسَ اَهْلَ الْبَيْتِ وَيُطَهِّرَكُمْ تَطْهِيْرًا ۝

୩୫. ଏବଂ ତୁମମାନଙ୍କ ଗୃହରେ ଯାହା କିଛି ଅଲ୍ଲାଙ୍କର ନିଦର୍ଶନ ଓ ତତ୍ତ୍ୱ ବିଷୟରେ ଆବୃତ୍ତି କରାଯାଉଅଛି ତାହାକୁ ମନେ ରଖ ; ଅଲ୍ଲାହ ହିଁ ସୂକ୍ଷ୍ମଦର୍ଶୀ (ଓ) ସର୍ବଜ୍ଞାତା ।

وَاذْكُرْنَ مَا يُتْلٰى فِيْ بُيُوْتِكُنَّ مِنْ اٰيٰتِ اللّٰهِ وَالْحِكْمَةِ ۗ اِنَّ اللّٰهَ كَانَ لَطِيْفًا خَبِيْرًا ۝

ରୁ : ୪

୩୬. ବାସ୍ତବରେ ପ୍ରକୃତ ମୁସଲମାନ ପୁରୁଷ ଓ ମୁସଲମାନ ନାରୀ, ଏବଂ ସମ୍ପୂର୍ଣ୍ଣ ବିଶ୍ୱାସକାରୀ ପୁରୁଷ ଓ ସମ୍ପୂର୍ଣ୍ଣ ବିଶ୍ୱାସକାରିଣୀ ନାରୀ, ଏବଂ ସମ୍ପୂର୍ଣ୍ଣ ଆଜ୍ଞାପାଳନକାରୀ ପୁରୁଷ ଓ ସମ୍ପୂର୍ଣ୍ଣ ଆଜ୍ଞାପାଳନକାରିଣୀ ନାରୀ, ଏବଂ ସମ୍ପୂର୍ଣ୍ଣ ସତ୍ୟବାଦୀ ପୁରୁଷ ଓ ସମ୍ପୂର୍ଣ୍ଣ ସତ୍ୟବାଦିନୀ ନାରୀ, ଏବଂ ସମ୍ପୂର୍ଣ୍ଣ ଧୈର୍ଯ୍ୟଶୀଳ ପୁରୁଷ ଓ ସମ୍ପୂର୍ଣ୍ଣ ଧୈର୍ଯ୍ୟଶୀଳା ନାରୀ, ଏବଂ ସମ୍ପୂର୍ଣ୍ଣ ବିନୟ ପ୍ରଦର୍ଶନକାରୀ ପୁରୁଷ ଓ ସମ୍ପୂର୍ଣ୍ଣ ବିନୟ ପ୍ରଦର୍ଶନକାରିଣୀ ନାରୀ, ଏବଂ ପ୍ରକୃତରେ ଦାନ କରୁଥିବା

اِنَّ الْمُسْلِمِيْنَ وَالْمُسْلِمٰتِ وَالْمُؤْمِنِيْنَ وَالْمُؤْمِنٰتِ وَالْقٰنِتِيْنَ وَالْقٰنِتٰتِ وَالصّٰدِقِيْنَ وَالصّٰدِقٰتِ وَالصّٰبِرِيْنَ وَالصّٰبِرٰتِ وَالْخٰشِعِيْنَ وَالْخٰشِعٰتِ وَالْمُتَصَدِّقِيْنَ وَالْمُتَصَدِّقٰتِ وَالصَّآئِمِيْنَ وَالصّٰٓئِمٰتِ

وَالْحٰفِظِيْنَ فُرُوْجَهُمْ وَالْحٰفِظٰتِ وَالذّٰكِرِيْنَ اللّٰهَ كَثِيْرًا وَّالذّٰكِرٰتِ ۙ اَعَدَّ اللّٰهُ لَهُمْ مَّغْفِرَةً وَّاَجْرًا عَظِيْمًا ﴿٣٦﴾

ପୁରୁଷ ଓ ପ୍ରକୃତରେ ଦାନ କରୁଥିବା ନାରୀ, ଏବଂ ପ୍ରକୃତରେ ରୋଜା କରୁଥିବା ପୁରୁଷ ଓ ପ୍ରକୃତରେ ରୋଜା କରୁଥିବା ନାରୀ, ଏବଂ ନିଜ ଗୁପ୍ତାଙ୍ଗର ସମ୍ପୂର୍ଣ୍ଣ ସୁରକ୍ଷା କରୁଥିବା ପୁରୁଷ ଓ ନିଜ ଗୁପ୍ତାଙ୍ଗର ସମ୍ପୂର୍ଣ୍ଣ ସୁରକ୍ଷା କରୁଥିବା ନାରୀ, ଏବଂ ଅଲ୍ଲାହ୍‌ଙ୍କୁ ଅଧିକ ସ୍ମରଣ କରୁଥିବା ପୁରୁଷ ଓ ଅଲ୍ଲାହ୍‌ଙ୍କୁ ଅଧିକ ସ୍ମରଣ କରୁଥିବା ନାରୀ, ଏ ସମସ୍ତଙ୍କ ସକାଶେ ଅଲ୍ଲାହ୍‌ଙ୍କର କ୍ଷମା ଓ ମହାନ୍ ପୁରସ୍କାର ପ୍ରସ୍ତୁତ ରହିଅଛି ।

وَمَا كَانَ لِمُؤْمِنٍ وَّلَا مُؤْمِنَةٍ اِذَا قَضَى اللّٰهُ وَرَسُوْلُهٗۤ اَمْرًا اَنْ يَّكُوْنَ لَهُمُ الْخِيَرَةُ مِنْ اَمْرِهِمْ ؕ وَمَنْ يَّعْصِ اللّٰهَ وَرَسُوْلَهٗ فَقَدْ ضَلَّ ضَلٰلًا مُّبِيْنًا ﴿٣٧﴾

୩୭. ଏବଂ ଯେବେ ଅଲ୍ଲାହ୍ ଓ ତାହାଙ୍କ ରସୁଲ କୌଣସି ବିଷୟରେ କିଛି ନିଷ୍ପତ୍ତି କରନ୍ତି, ତେବେ କୌଣସି ବିଶ୍ୱାସକାରୀ ପୁରୁଷ ବା ବିଶ୍ୱାସକାରିଣୀ ନାରୀ ସ୍ୱଇଚ୍ଛାରେ ନିଜ ବିଷୟକୁ ନିଷ୍ପତ୍ତି କରିବା ଉଚିତ ନୁହେଁ ; ଏବଂ ଯେକେହି ଅଲ୍ଲାହ୍ ଓ ତାହାଙ୍କର ରସୁଲଙ୍କର ଅବଜ୍ଞା କରେ, ସେ ପ୍ରକାଶ୍ୟ ଭ୍ରାନ୍ତିରେ ନିପତିତ ହୁଏ ।

وَاِذْ تَقُوْلُ لِلَّذِيْۤ اَنْعَمَ اللّٰهُ عَلَيْهِ وَاَنْعَمْتَ عَلَيْهِ اَمْسِكْ عَلَيْكَ زَوْجَكَ وَاتَّقِ اللّٰهَ وَتُخْفِيْ فِيْ نَفْسِكَ

୩୮. ଏବଂ (ହେ ନବି ! ସେହି ସମୟକୁ ସ୍ମରଣ କର) ଯେତେବେଳେ ତୁମେ ସେହି ବ୍ୟକ୍ତିକୁ, ଯାହା ପ୍ରତି ଅଲ୍ଲାହ୍ ଓ ତୁମେ ପୁରସ୍କୃତ କରିଥିଲ, କହିଥିଲ ଯେ ନିଜ ପତ୍ନୀକୁ ଆପଣା ପାଖରେ ଅଟକାଇ ରଖ (ଓ ତଲାକ ଦିଅ ନାହିଁ) ଓ ଅଲ୍ଲାହ୍‌ଙ୍କୁ ଭୟ କର ; ଏବଂ ତୁମେ ନିଜ ମନରେ [୧] ଯାହା ଗୋପନ ରଖିବାକୁ ଇଚ୍ଛା କରୁଥିଲ, ଅଲ୍ଲାହ୍ ସେ ବିଷୟକୁ ପ୍ରକାଶ କରିବାକୁ

---

୧. କେତେକ ଭାଷ୍ୟକାର ଏକ ଜଘନ୍ୟ ମତବ୍ୟକ୍ତ କରିଛନ୍ତି ଯେ ହଜରତ ମହମ୍ମଦ ହଜରତ ଜୈନବଙ୍କୁ ବିବାହ କରିବାକୁ ମନସ୍ଥ କରିଥିଲେ । କିନ୍ତୁ କାଳେ ଲୋକମାନେ ବିଭ୍ରାନ୍ତ ହୋଇଯିବେ ସେଥିପାଇଁ ସେ ଏ ବିଷୟକୁ ଗୋପନ ରଖିଥିଲେ । ଏହା ଆଦୌ ଯଥାର୍ଥ ନୁହେଁ । ବସ୍ତୁତଃ ହଜରତ ମହମ୍ମଦ ଜାଣି ପାରିଥିଲେ ଯେ ହଜରତ ଜଏଦ ହଜରତ ଜୈନବଙ୍କୁ ତଲାକ ଦେବାକୁ ଇଚ୍ଛା କରୁଛନ୍ତି ଏବଂ ହଜରତ ମହମ୍ମଦ ଏ ବିଷୟକୁ ଗୁପ୍ତ ରଖି ତଥା ଅଲ୍ଲାହ୍‌ଙ୍କ ଦୃଷ୍ଟିରେ ତଲାକ ଦାନ ସ୍ପୃହଣୀୟ ନୁହେଁ ବୋଲି ଜାଣିଥିବାରୁ ହଜରତ ଜଏଦଙ୍କୁ ତଲାକ ନ ଦେବା ପାଇଁ ପରାମର୍ଶ ଦେଉଥିଲେ, ଅନ୍ୟଥା ଲୋକମାନେ ଭୁଲରେ ଭାବି ପାରନ୍ତି ଯେ ହଜରତ ମହମ୍ମଦ ଜଣେ ସଂଭ୍ରାନ୍ତ ବଂଶୀୟ ବାଳିକାକୁ ଜଣେ ମୁକ୍ତିପ୍ରାପ୍ତ କ୍ରୀତଦାସ ସହିତ ବିବାହ କରାଇ କିଛି ଭଲ କାମ କରିନାହାନ୍ତି, ବରଂ ବିଶୃଙ୍ଖଳାର ଦ୍ୱାର ଉନ୍ମୁକ୍ତ କରିଦେଇଛନ୍ତି । କେତେକ ପଣ୍ଡିତ ମତ ବ୍ୟକ୍ତ କରିଛନ୍ତି ଯେ ସ୍ୱୟଂ ଅଲ୍ଲାହ୍ ସ୍ୱର୍ଗରେ ହଜରତ ମହମ୍ମଦଙ୍କ ସହିତ ଜୈନବଙ୍କ ବିବାହ ସଂପୂର୍ଣ୍ଣ କରିଦେଇଛନ୍ତି । ଏଥି ଯୋଗୁଁ ସଂସାରରେ ତାହାଙ୍କର ବିବାହ କାର୍ଯ୍ୟ (ନିକାହ ପାଠ) ସଂପନ୍ନ ହେଲା ନାହିଁ । କିନ୍ତୁ ଏହା ଯଥାର୍ଥ ନୁହେଁ । ହଜରତ ମହମ୍ମଦଙ୍କ ସହିତ ହଜରତ ଜୈନବଙ୍କର ନିକାହ ପାଠ କରାଯାଇଥିବା ବିଷୟ ଇତିହାସରେ ମଧ୍ୟ ଉଲ୍ଲେଖ କରାଯାଇଛି ।
(ସିରତୁଲ ହଲବିୟାହ୍, ଗ୍ରନ୍ଥଖଣ୍ଡ ୩, ପୃ. ୩୪୦ ଦ୍ରଷ୍ଟବ୍ୟ) ।

مَا اللّٰهُ مُبْدِيْهِ وَتَخْشَى النَّاسَ ۚ وَاللّٰهُ اَحَقُّ اَنْ تَخْشٰىهُ ؕ فَلَمَّا قَضٰى زَيْدٌ مِّنْهَا وَطَرًا زَوَّجْنٰكَهَا لِكَيْ لَا يَكُوْنَ عَلَى الْمُؤْمِنِيْنَ حَرَجٌ فِيْٓ اَزْوَاجِ اَدْعِيَآئِهِمْ اِذَا قَضَوْا مِنْهُنَّ وَطَرًا ؕ وَكَانَ اَمْرُ اللّٰهِ مَفْعُوْلًا ﴿٣٨﴾

ଚାହୁଁ ଥିଲେ, ଏବଂ ତୁମେ ଲୋକମାନଙ୍କୁ ଭୟ କରୁଥିଲ ଅଥଚ ତୁମେ ଅଲ୍ଲାହ୍‌ଙ୍କୁ ଅଧିକ ଭୟ କରିବା କଥା ; ତା'ପରେ ଯେତେବେଳେ ଜଏଦ ତାଙ୍କ (ଅର୍ଥାତ୍ ସେ ମହିଳାଙ୍କ) ସଂକ୍ରାନ୍ତରେ ନିଜର ଇଛା ପୂରଣ କରିଥିଲେ (ଅର୍ଥାତ୍ ତଲାକ ଦେଇଦେଲେ), (ସେତେବେଳେ) ଆମେ ତୁମ ସହିତ ତାହାଙ୍କର ବିବାହ[୧] ସମ୍ପନ୍ନ କରାଇଥିଲୁ, ଯଦ୍ଦ୍ୱାରା ବିଶ୍ୱାସକାରୀମାନଙ୍କ ମନରେ ନିଜ ପୋଷ୍ୟପୁତ୍ରମାନଙ୍କ ପତ୍ନୀମାନଙ୍କୁ ତଲାକ ପରେ ବିବାହ କରିବା ବିଷୟରେ କୌଣସି ସଂକୋଚ ରହିବ ନାହିଁ ; ଏବଂ ଅଲ୍ଲାହ୍‌ଙ୍କ ଆଦେଶ ଅବଶ୍ୟ ପାଳିତ ହେବାର ଥିଲା ।

مَا كَانَ عَلَى النَّبِيِّ مِنْ حَرَجٍ فِيْمَا فَرَضَ اللّٰهُ لَهٗ ؕ سُنَّةَ اللّٰهِ فِي الَّذِيْنَ خَلَوْا مِنْ قَبْلُ ؕ وَكَانَ اَمْرُ اللّٰهِ قَدَرًا مَّقْدُوْرَا ﴿٣٩﴾

୩୯. ଏ ସଂକ୍ରାନ୍ତରେ ଅଲ୍ଲାହ୍ ଯାହା ଧାର୍ଯ୍ୟ କରିଛନ୍ତି ସେଥି-ନିମନ୍ତେ ନବିଙ୍କ କୌଣସି ଦୋଷ ନାହିଁ ; ଏହି ରୀତିକୁ ପୂର୍ବବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ସେ ପ୍ରଚଳନ କରିଥିଲେ ; ଓ ଅଲ୍ଲାଙ୍କ ଆଦେଶ ତ ଏକ ନିର୍ଦ୍ଧାରିତ ବିଷୟ ଅଟେ, (କେହି ତାହାକୁ ଅନ୍ୟଥା କରି ପାରିବ ନାହିଁ ।)

الَّذِيْنَ يُبَلِّغُوْنَ رِسٰلٰتِ اللّٰهِ وَيَخْشَوْنَهٗ وَلَا يَخْشَوْنَ اَحَدًا اِلَّا اللّٰهَ ؕ وَكَفٰى بِاللّٰهِ حَسِيْبًا ﴿٤٠﴾

୪୦. (ଏହି ପରମ୍ପରା ପୂର୍ବବର୍ତ୍ତୀ ନବିମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା) ଯେଉଁମାନେ ଅଲ୍ଲାହ୍‌ଙ୍କ ବାର୍ତ୍ତାକୁ ଲୋକମାନଙ୍କ ନିକଟରେ ପହଞ୍ଚାଉଥିଲେ ଓ ତାହାଙ୍କୁ ଭୟ କରୁଥିଲେ, ଓ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କାହାକୁ ଭୟ କରୁନଥିଲେ ; ଏବଂ ହିସାବ ନିକାଶ କରିବାରେ ଅଲ୍ଲାହ୍ ହିଁ ଯଥେଷ୍ଟ ।

---

୧. ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ହଜରତ ମହମ୍ମଦ ହଜରତ ଜୈନବଙ୍କ ସହିତ ବିବାହ କରିଥିବା ବିଷୟରେ ଇତିହାସରୁ ପ୍ରମାଣ ମିଳୁଛି । କିନ୍ତୁ ଏହି ଆୟତରେ 'ଜଓ୍ୱଜନାକହା' ଅଭିବ୍ୟକ୍ତିର ପ୍ରୟୋଗ ହୋଇଛି ଯାହାର ଅର୍ଥ 'ଆମେ ତୁମ ସହିତ ତାହାଙ୍କର ବିବାହ କରାଇଛୁ ।' ତେଣୁ ମନେ ରଖିବାକୁ ହେବ ଯେ ଆରବୀ ଭାଷାରେ ଯେଉଁ କାର୍ଯ୍ୟ ଅନ୍ୟ ଦ୍ୱାରା କରାଇବାର କୁହାଯାଏ ସେହି କାର୍ଯ୍ୟକୁ ତା'ସହିତ ସଂଯୁକ୍ତ କରାଯାଏ । ଯେହେତୁ ଦିବ୍ୟବାଣୀ ମାଧ୍ୟମରେ ଅଲ୍ଲାହ୍‌ଙ୍କ ତରଫରୁ ବିବାହ ପାଇଁ ଆଦେଶ ଦିଆ ଯାଇଥିଲା । ତେଣୁ ଏହି କାର୍ଯ୍ୟରେ ଅଲ୍ଲାହ୍ ହିଁ ସମ୍ପୃକ୍ତ ।

مَا كَانَ مُحَمَّدٌ اَبَآ اَحَدٍ مِّنْ رِّجَالِكُمْ وَلٰكِنْ رَّسُوْلَ اللّٰهِ وَخَاتَمَ النَّبِيّٖنَ ۗ وَكَانَ اللّٰهُ بِكُلِّ شَيْءٍ عَلِيْمًا ﴿٤١﴾ ع

୪୧. ମହମ୍ମଦ ତୁମମାନଙ୍କ ମଧ୍ୟରୁ କୌଣସି ପୁରୁଷର ପିତା ନ ଥିଲେ କି (ପିତା) ନାହାନ୍ତି (କି ପିତା ହେବେ ନାହିଁ) କିନ୍ତୁ (ସେ) ଅଲ୍ଲାହଙ୍କର ରସୁଲ ଅଟନ୍ତି, ବରଂ (ଏହାଠାରୁ ବଳି) ସେ ନବିମାନଙ୍କର ମୋହର [୧] ଅଟନ୍ତି, ଏବଂ ଅଲ୍ଲାହ ସବୁ ବିଷୟ ଭଲଭାବରେ ଜାଣନ୍ତି ।

ରୁ : ୬

يٰٓاَيُّهَا الَّذِيْنَ اٰمَنُوا اذْكُرُوا اللّٰهَ ذِكْرًا كَثِيْرًا ﴿٤٢﴾

୪୨. ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କୁ ବହୁତ ସ୍ମରଣ କର ;

وَّسَبِّحُوْهُ بُكْرَةً وَّاَصِيْلًا ﴿٤٣﴾

୪୩. ଏବଂ ସକାଳେ ଓ ସନ୍ଧ୍ୟାବେଳେ ତାହାଙ୍କର ଗୁଣଗାନ କର ।

---

୧. ଅର୍ଥାତ୍ କୌଣସି ବ୍ୟକ୍ତି ହଜରତ ମହମ୍ମଦଙ୍କ ଶିକ୍ଷା ମୁତାବକ କାର୍ଯ୍ୟ କରୁ ନ ଥିଲେ ଓ ସେ ନିଜେ ତାଙ୍କୁ ପ୍ରମାଣିତ କରୁ ନ ଥିଲେ ସେହି ବ୍ୟକ୍ତି ନବି ପଦ ବା ଓଲି ପଦ ପାଇପାରିବ ନାହିଁ । ଏଠାରେ କେତେକ ଭାଷ୍ୟକାର 'ଖାତମନ୍ ନବିଇନ୍'ର ଅର୍ଥ ଭୁଲରେ ସର୍ବଶେଷ ନବି କରିଛନ୍ତି । ବସ୍ତୁତଃ ତାହାର ଅର୍ଥ ନବି ମାନଙ୍କର ମୋହର ହେବା କଥା । ଅବଶ୍ୟ ଆମେ ଯେଉଁ ଅର୍ଥ କରିଛୁ, ସେମାନଙ୍କ କହିବା ଅନୁସାରେ ସେଥିରେ କିଛି ପାର୍ଥକ୍ୟ ଥିବା ଦୃଷ୍ଟିଗୋଚର ହେଉନାହିଁ କି ଆମ ସ୍ଥିତିରେ କିଛି ବିରୋଧାତ୍ମକ ଭାବ ପ୍ରକାଶ ପାଉନାହିଁ । ଯଦି ହଜରତ ମହମ୍ମଦଙ୍କ 'ମେରାଜ' ଘଟଣାକୁ ଲକ୍ଷ୍ୟ କରାଯିବ ତେବେ ମସନଦ ଅହମ୍ମଦ ବିନ ହମ୍ବଲ ଯେଉଁ ବିବରଣ ପ୍ରସ୍ତୁତ କରିଛନ୍ତି ତଦନୁସାରେ ହଜରତ ମହମ୍ମଦଙ୍କ ସ୍ଥାନ ନିମ୍ନମତେ ସ୍ଥିରୀକୃତ ହୋଇଛି—

| ସିଦରତୁଲ ମୁନତହା | ହଜରତ ମହମ୍ମଦ (ସ) |
|---|---|
| ସପ୍ତମ ସ୍ୱର୍ଗ | ହଜରତ ଇବ୍ରାହିମ (ଅ) |
| ଷଷ୍ଠ ସ୍ୱର୍ଗ | ହଜରତ ମୁସା (ଅ) |
| ପଞ୍ଚମ ସ୍ୱର୍ଗ | ହଜରତ ହାରୁନ (ଅ) |
| ଚତୁର୍ଥ ସ୍ୱର୍ଗ | ହଜରତ ଇଦ୍ରିସ (ଅ) |
| ତୃତୀୟ ସ୍ୱର୍ଗ | ହଜରତ ୟୁସୁଫ (ଅ) |
| ଦ୍ୱିତୀୟ ସ୍ୱର୍ଗ | ହଜରତ ଇସା (ଅ) |
| | ଓ ହଜରତ ୟହିୟା (ଅ) |
| ପ୍ରଥମ ସ୍ୱର୍ଗ | ହଜରତ ଆଦମ (ଅ) |
| ମର୍ତ୍ତ୍ୟ | ପୃଥିବୀ ନିବାସୀ |

ଏହି ତାଲିକାକୁ ଅନୁଧ୍ୟାନ କଲେ ଜଣାଯିବ ଯେ ଯେଉଁ ବ୍ୟକ୍ତି 'ପୃଥିବୀ ନିବାସୀ' ସ୍ତରରେ ଛିଡ଼ା ହେବ ସେ ପ୍ରଥମେ ହଜରତ ଆଦମଙ୍କୁ ଦେଖିବାକୁ ପାଇବ ଓ ସବା ଶେଷରେ ହଜରତ ମହମ୍ମଦଙ୍କୁ । ତେଣୁ ସବୁ ନବିଙ୍କ ଭିତରେ ସେ ହଜରତ ମହମ୍ମଦଙ୍କୁ ସର୍ବଶେଷ ନବି ବୋଲି ନିର୍ଦ୍ଧାରଣ କରିବ । ଏତଦ୍‌ବ୍ୟତୀତ ଯଦି ଆମେ ହଜରତ ମହମ୍ମଦଙ୍କ ଉକ୍ତି (ଅର୍ଥାତ୍ ହଦିସ୍)କୁ ଆଲୋଚନା କରିବା ତେବେ ପରିସ୍ଥିତି ସ୍ପଷ୍ଟ ହୋଇଯିବ । ତାଙ୍କ ଉକ୍ତି ଅନୁସାରେ ଯେତେବେଳେ ହଜରତ ଆଦମ ତଥାପି ଜନ୍ମ ହୋଇ ନ ଥିଲେ ସେତେବେଳେ ମଧ୍ୟ ସେ (ଅର୍ଥାତ୍ ହଜରତ ମହମ୍ମଦ) 'ଖାତମନ ନବିଇନ' ଥିଲେ । ପୁନଶ୍ଚ ନବିମାନଙ୍କ ବଂଶ-ବୃକ୍ଷରେ ହଜରତ ମହମ୍ମଦଙ୍କୁ ପଦମର୍ଯ୍ୟାଦା ଦୃଷ୍ଟିରୁ ସମସ୍ତଙ୍କ ଊର୍ଦ୍ଧ୍ୱରେ ସ୍ଥାନ ମିଳିଥିଲା । ସୁତରାଂ ଯେତେବେଳେ ହଜରତ ମହମ୍ମଦ 'ମେରାଜ' ଅବସରରେ ସର୍ବୋଚ୍ଚ ସ୍ଥାନକୁ ଗମନ କଲେ ସେତେବେଳେ 'ମହମଦୀୟ ସ୍ଥିତି' ନବି ପଦର ଅନ୍ତିମ ପାବଚ୍ଛ ନିର୍ଦ୍ଧାରିତ ହେଲା । ତେଣୁ ଆମେ କରିଥିବା ଅର୍ଥ ହିଁ ଯଥାର୍ଥ, ଅର୍ଥାତ୍ ନବିମାନଙ୍କ ମଧ୍ୟରେ ହଜରତ ମହମ୍ମଦଙ୍କ ସ୍ଥାନ ଓ ପାହ୍ୟା ସର୍ବୋଚ୍ଚ ।

୪୪. ସେ ହିଁ ତୁମମାନଙ୍କ ପ୍ରତି ନିଜ ଆଶୀର୍ବାଦ ପ୍ରେରଣ କରନ୍ତି, ଏବଂ ତାହାଙ୍କ ଦୂତମାନେ ମଧ୍ୟ ତୁମମାନଙ୍କ ସକାଶେ ପ୍ରାର୍ଥନା[୧] କରନ୍ତି, ଯଦ୍ଦ୍ବାରା କି (ପରିଣାମ ସ୍ୱରୂପ) ସେ ତୁମମାନଙ୍କୁ ଅନ୍ଧକାର ମଧ୍ୟରୁ ଆଲୋକ ଆଡ଼କୁ ଘେନି ଆସିବେ ; ଏବଂ ସେ ବିଶ୍ୱାସକାରୀମାନଙ୍କ ପ୍ରତି ସଦା କରୁଣାମୟ ।

هُوَ الَّذِي يُصَلِّي عَلَيْكُمْ وَمَلَائِكَتُهُ لِيُخْرِجَكُمْ مِنَ الظُّلُمَاتِ إِلَى النُّورِ ۚ وَكَانَ بِالْمُؤْمِنِينَ رَحِيمًا ﴿٤٤﴾

୪୫. ଯେଉଁଦିନ ସେମାନେ ତାହାଙ୍କୁ ସାକ୍ଷାତ୍ କରିବେ ସେଦିନ ସେମାନଙ୍କୁ ଆଶୀର୍ବାଦ ସ୍ୱରୂପ[୨] 'ଶାନ୍ତି'ର ଉପହାର ମିଳିବ ; ଏବଂ ସେ ସେମାନଙ୍କ ପାଇଁ ଏକ ସମ୍ମାନଜନକ ପୁରସ୍କାର ପ୍ରସ୍ତୁତ କରିବେ ।

تَحِيَّتُهُمْ يَوْمَ يَلْقَوْنَهُ سَلَامٌ ۚ وَأَعَدَّ لَهُمْ أَجْرًا كَرِيمًا ﴿٤٥﴾

୪୬. ହେ ନବି ! ଆମେ ତୁମକୁ (ଏହି ସଂସାର ପାଇଁ) ତତ୍ତ୍ୱାବଧାରକ[୩], (ବିଶ୍ୱାସକାରୀମାନଙ୍କ ପାଇଁ) ସୁସମାଚାରଦାତା ଓ (ଅବିଶ୍ୱାସକାରୀମାନଙ୍କ ପାଇଁ) ଭୟ ପ୍ରଦର୍ଶକ ଭାବେ ପ୍ରେରଣ କରିଅଛୁ,

يَا أَيُّهَا النَّبِيُّ إِنَّا أَرْسَلْنَاكَ شَاهِدًا وَمُبَشِّرًا وَنَذِيرًا ﴿٤٦﴾

୪୭/୪୮. ଏବଂ ଅଲ୍ଲାହ୍‌ଙ୍କ ଆଦେଶ ଅନୁସାରେ ତାହାଙ୍କ ଆଡ଼କୁ ଆହ୍ୱାନକାରୀ ଭାବରେ ଓ ଏକ ଦୀପ୍ତିମାନ ସୂର୍ଯ୍ୟଭାବରେ (ପ୍ରେରଣ କରିଅଛୁ) । ଏବଂ ବିଶ୍ୱାସକାରୀମାନଙ୍କୁ ସୁସମାଚାର ଦିଅ ଯେ ସେମାନଙ୍କୁ ଅଲ୍ଲାହ୍‌ଙ୍କ ନିକଟରୁ ମହାନ୍ କୃପା ପ୍ରାପ୍ତ ହେବ ।

وَدَاعِيًا إِلَى اللَّهِ بِإِذْنِهِ وَسِرَاجًا مُنِيرًا ﴿٤٧﴾

وَبَشِّرِ الْمُؤْمِنِينَ بِأَنَّ لَهُمْ مِنَ اللَّهِ فَضْلًا كَبِيرًا ﴿٤٨﴾

୪୯. ଏବଂ ଅବିଶ୍ୱାସକାରୀ ଓ କପଟବିଶ୍ୱାସୀମାନଙ୍କର କଥା ଆଦୌ ମାନ ନାହିଁ, ଏବଂ ସେମାନଙ୍କର ନିର୍ଯ୍ୟାତନାକୁ ଉପେକ୍ଷା କର, ଓ ଅଲ୍ଲାହ୍‌ଙ୍କ ଉପରେ ଭରସା କର ; ଏବଂ କାର୍ଯ୍ୟ ସମ୍ପାଦନ କରିବାରେ ଅଲ୍ଲାହ୍ ହିଁ ଯଥେଷ୍ଟ ।

وَلَا تُطِعِ الْكَافِرِينَ وَالْمُنَافِقِينَ وَدَعْ أَذَاهُمْ وَتَوَكَّلْ عَلَى اللَّهِ ۚ وَكَفَىٰ بِاللَّهِ وَكِيلًا ﴿٤٩﴾

---

୧. ଏଠାରେ ଆରବୀ ଭାଷାର କ୍ରିୟା ପଦ 'ୟୁସଲ୍ଲି' ପ୍ରୟୋଗ କରାଯାଇଛି । ଯେବେ ଏହାକୁ 'ଅଲ୍ଲାହ୍' ଶବ୍ଦ ସହିତ ପ୍ରୟୋଗ କରାଯାଏ ତେବେ ଏହି ଶବ୍ଦର ଅର୍ଥ କରୁଣା ପ୍ରଦାନ କରିବା ଏବଂ ଯେବେ ଦେବଦୂତ ବା ଅନ୍ୟ କୌଣସି ବ୍ୟକ୍ତି ସହିତ ପ୍ରୟୋଗ କରାଯାଏ ତେବେ ଏହାର ଅର୍ଥ ପ୍ରାର୍ଥନା କରିବା ବା କ୍ଷମା ପ୍ରାର୍ଥନା କରିବା ହୁଏ । ଏହି ପରିପ୍ରେକ୍ଷୀରେ ଏଠାରେ ଉଭୟ ଅର୍ଥର ପ୍ରୟୋଗ ହୋଇଛି, ଯାହା ଫଳରେ ଭାବାର୍ଥରେ କୌଣସି ତ୍ରୁଟି ରହୁନାହିଁ ।

୨. ଏହାର ଅଭିପ୍ରାୟ ହେଉଛି ଯେ ଯେତେବେଳେ ବିଶ୍ୱାସକାରୀମାନେ ମୃତ୍ୟୁ ପରେ ପୁନରୁତ୍‌ଥିତ ହେବେ, ସେତେବେଳେ ସେମାନଙ୍କ ସନ୍ତୁଷ୍ଟି ଓ ଆଶ୍ୱସ୍ତି ନିମନ୍ତେ ସେମାନଙ୍କ ନିକଟକୁ ଅଲ୍ଲାହ୍‌ଙ୍କ ତରଫରୁ ଶାନ୍ତି-ରୂପୀ ଆଶିଷର ଉପହାର ଅର୍ଥାତ୍ ଶାନ୍ତିର ସନ୍ଦେଶ ପ୍ରେରିତ ହେବ ଏବଂ ଏହି ଶାବ୍ଦିକ ଆଶିଷକୁ ସାକାର କରିବା ପାଇଁ ସେହି ସବୁ ବିଶ୍ୱାସକାରୀଙ୍କୁ ସମ୍ମାନ ପ୍ରଦାୟକ ସାମଗ୍ରୀ ଦିଆଯିବ ।

୩. 'ତତ୍ତ୍ୱାବଧାରକ' ଅର୍ଥ ଏହା ନୁହେଁ ଯେ ହଜରତ ମହମ୍ମଦ ସେମାନଙ୍କ ଉପରେ ଜଣେ ପୋଲିସ ଅଧିକାରୀ ଭାବରେ ନିଯୁକ୍ତ ହୋଇଛନ୍ତି । ପବିତ୍ର କୋରାନରେ ଉଲ୍ଲେଖ କରାଯାଇଛି ଯେ ତାଙ୍କୁ ସେପରି ଭାବରେ ନିଯୁକ୍ତି ଦିଆଯାଇ ନାହିଁ । ବସ୍ତୁତଃ ଏହାର ଅର୍ଥ ହେଉଛି ଯେ ନୀତିଗତ ଭାବରେ ସେ ସେମାନଙ୍କର ତତ୍ତ୍ୱାବଧାରକ,କିନ୍ତୁ ବଳ ପ୍ରୟୋଗ କରିବାକୁ ତାଙ୍କୁ ନିର୍ଦ୍ଦେଶ ଦିଆଯାଇ ନାହିଁ ।

୪. ଏଠାରେ ହଜରତ ମହମ୍ମଦଙ୍କୁ ଦୀପ୍ତିମାନ୍ ଦୀପ ବା ସୂର୍ଯ୍ୟ ରୂପେ ଅଖ୍ୟାୟିତ କରାଯାଇଛି । ଯେପରି ଚନ୍ଦ୍ର ସୂର୍ଯ୍ୟଠାରୁ ଆଲୋକ ପାଇ ଅନ୍ଧକାର ଦୂର କରେ,ସେହିପରି ହଜରତ ମହମ୍ମଦଙ୍କ ଆଲୋକରେ ଆଲୋକିତ ହୋଇ ଏପରି ଅନେକ ଲୋକ ଗଢ଼ାହେବେ ଯେଉଁମାନେ ସଂସାରକୁ ଆଲୋକ ପ୍ରଦାନ କରୁଥିବେ ।

୫୦. ହେ ବିଶ୍ୱାସକାରୀମାନେ ! ଯେବେ ତୁମେମାନେ ବିଶ୍ୱାସକାରିଣୀ ନାରୀମାନଙ୍କ ସହିତ ବିବାହ କର ଏବଂ ସେମାନଙ୍କୁ ସ୍ପର୍ଶ କରିବା ପୂର୍ବରୁ ତଲାକ ଦିଅ, ତେବେ ସେମାନଙ୍କ ଅପେକ୍ଷା–କରିବା ସମୟ (ଅର୍ଥାତ୍ ଇଦ୍‌ଦତ) ସମ୍ବନ୍ଧରେ ଦାବି କରିବା ପାଇଁ ତୁମମାନଙ୍କର କୌଣସି ଅଧିକାର ନାହିଁ ; ସୁତରାଂ ସେମାନଙ୍କ ପାଇଁ କିଛି ସାଂସାରିକ ଲାଭର ବ୍ୟବସ୍ଥା କରି ସେମାନଙ୍କୁ ଭଲଭାବରେ ବିଦାୟ ଦିଅ ।

يٰۤاَيُّهَا الَّذِيۡنَ اٰمَنُوۡۤا اِذَا نَكَحۡتُمُ الۡمُؤۡمِنٰتِ ثُمَّ طَلَّقۡتُمُوۡهُنَّ مِنۡ قَبۡلِ اَنۡ تَمَسُّوۡهُنَّ فَمَا لَـكُمۡ عَلَيۡهِنَّ مِنۡ عِدَّةٍ تَعۡتَدُّوۡنَهَا‌ ۚ فَمَتِّعُوۡهُنَّ وَسَرِّحُوۡهُنَّ سَرَاحًا جَمِيۡلًا ۝

୫୧. ହେ ନବି ! ଆମେ ତୁମ ସକାଶେ ତୁମର ସେହି ପତ୍ନୀମାନଙ୍କୁ ବୈଧ[୧] କରିଅଛୁ, ଯେଉଁମାନଙ୍କୁ ତୁମେ ସେମାନଙ୍କ ପ୍ରାପ୍ୟ ମହର ପ୍ରଦାନ କରିଅଛ ; ସେହିପରି ଭାବରେ ଭବିଷ୍ୟତରେ[୨] ସେହି ନାରୀମାନଙ୍କୁ, ଯେଉଁମାନଙ୍କୁ ଅଲ୍ଲାହ ଯୁଦ୍ଧ ପରେ ତୁମ୍ଭ ଅଧୀନକୁ ଆଣିଛନ୍ତି, ସେମାନଙ୍କ ମଧ୍ୟରୁ ଯେଉଁମାନେ ତୁମର ଦକ୍ଷିଣ ହସ୍ତର ଅଧୀନସ୍ଥ ହୋଇଛନ୍ତି, ଏବଂ ସେହିପରି ଭାବରେ ତୁମର ପିତୃବ୍ୟମାନଙ୍କ କନ୍ୟାମାନଙ୍କୁ, ଓ ତୁମର ପିଉସୀମାନଙ୍କ କନ୍ୟାମାନଙ୍କୁ, ଓ ତୁମର ମାମୁଁମାନଙ୍କ କନ୍ୟାମାନଙ୍କୁ ଓ ତୁମର ମାଉସୀମାନଙ୍କ କନ୍ୟାମାନଙ୍କୁ ଯେଉଁମାନେ କି ତୁମ ସହିତ ହିଜରତ କରିଛନ୍ତି, ଏବଂ ଏପରି ବିଶ୍ୱାସକାରିଣୀ ନାରୀମାନଙ୍କୁ ଯେ କି ନବିଙ୍କ ସକାଶେ ନିଜ ଜୀବନ ଉତ୍ସର୍ଗ କରିଛନ୍ତି; ଯଦି ନବି ସେମାନଙ୍କୁ

يٰۤاَيُّهَا النَّبِىُّ اِنَّاۤ اَحۡلَلۡنَا لَـكَ اَزۡوَاجَكَ الّٰتِىۡۤ اٰتَيۡتَ اُجُوۡرَهُنَّ وَمَا مَلَكَتۡ يَمِيۡنُكَ مِمَّاۤ اَفَآءَ اللّٰهُ عَلَيۡكَ وَبَنٰتِ عَمِّكَ وَبَنٰتِ عَمّٰتِكَ وَبَنٰتِ خَالِكَ وَبَنٰتِ خٰلٰتِكَ الّٰتِىۡ هَاجَرۡنَ مَعَكَ وَامۡرَاَةً مُّؤۡمِنَةً اِنۡ

୧. ପତିଙ୍କ ପାଇଁ ପତ୍ନୀ ନିଶ୍ଚିତରୂପେ ବୈଧ । ସେପରି ଅବସ୍ଥାରେ ହଜରତ ମହମ୍ମଦଙ୍କ ପତ୍ନୀମାନଙ୍କ ବିଷୟରେ ଏଠାରେ କାହିଁକି ଉଲ୍ଲେଖ କରାଯାଇଛି ? ଏହି ଅଧ୍ୟାୟର ଆୟତ ସଂଖ୍ୟା ୨୯ରେ ବର୍ଣ୍ଣନା କରାଯାଇଛି ଯେ ଯଦି ସେହି ପତ୍ନୀମାନଙ୍କ ମନରେ ସାଂସାରିକ ସୁଖ ସମ୍ପଦର ଅଭିଳାଷ ଅଛି ତେବେ ସେମାନଙ୍କୁ ତାହା ଦିଆଯିବା ପରେ ମୁକ୍ତ କରି ଦିଆଯିବ । ତେଣୁ ସେମାନଙ୍କ ବିଷୟ ଅନିଶ୍ଚିତ ହୋଇ ରହିଥିଲା । କିନ୍ତୁ ଏହି ଆୟତ ଅବତୀର୍ଣ୍ଣ ହେଲା ପରେ ମଧ୍ୟ କୌଣସି ପତ୍ନୀ ଏପରି କହି ନାହାନ୍ତି ଯେ ତାଙ୍କୁ ସାଂସାରିକ ସୁଖ ସମ୍ପଦ ଦିଆଯାଉ ଓ ମୁକ୍ତ କରାଯାଉ । ଏଥିରୁ ଜଣାପଡୁଛି ଯେ ସେହି ସବୁ ପତ୍ନୀଙ୍କ ମନରେ ଧର୍ମର ପ୍ରୀତି ରହିଥିଲା ଅଥଚ ସାଂସାରିକ ଅଭିଳାଷ ନଥିଲା । ଏଠାରେ ତାହା ହିଁ ଉଲ୍ଲିଖିତ ଅଛି ଯେ ସେମାନେ ମନ ମଧ୍ୟରେ ସାଂସାରିକ ସୁଖ ସମ୍ପଦକୁ ପରିତ୍ୟାଗ କରି ହଜରତ ମହମ୍ମଦଙ୍କ ଗହଣରେ ରହିବାକୁ ନିଷ୍ପତ୍ତି କରିଛନ୍ତି । ତେଣୁ ସେମାନେ ସବୁମତେ ହଜରତ ମହମ୍ମଦଙ୍କ ପାଇଁ ବୈଧ ଥିଲେ ।

୨. ଏହା କେବଳ ଏକ ଅନୁମତି, ଆଦେଶ ନୁହେଁ । ହଜରତ ମହମ୍ମଦ କାର୍ଯ୍ୟତଃ ଏଥିରୁ କୌଣସି ଲାଭ ଉଠାଇ ନାହାନ୍ତି । ଯଦି ହଜରତ ମାରିୟା କିବତିୟାଙ୍କ ଦୃଷ୍ଟାନ୍ତ ଦିଆଯିବ ତେବେ ତା'ର ଉତ୍ତର ଏହିପରି— ହଜରତ ମାରିୟା ହେଉଛନ୍ତି ଅନ୍ୟ ଏକ ଗୋଷ୍ଠୀର ମହିଳା । ଏହି ଆୟତରେ ଯୁଦ୍ଧବନ୍ଦିନୀମାନଙ୍କ ବିଷୟରେ ଉଲ୍ଲେଖ ଅଛି । ମିଶରର ଅଧିପତି ନିଜ ଦେଶର ପରମ୍ପରା ଅନୁସାରେ ହଜରତ ମାରିୟାଙ୍କୁ ଦାସୀ ଭାବରେ ହଜରତ ମହମ୍ମଦଙ୍କ ପାଖକୁ ପଠାଇଥିଲେ । ତେଣୁ ସେ ଏହି ଆୟତ ଅନ୍ତର୍ଭୁକ୍ତ ଆଦେଶର ପରିସର ବାହାରେ ଅଛନ୍ତି ଓ ତାଙ୍କ ସହିତ ମଧ୍ୟ ହଜରତ ମହମ୍ମଦଙ୍କ ବିବାହ ସମ୍ପନ୍ନ ହୋଇଥିବା ପ୍ରମାଣିତ ହେଉଛି ।

ବିବାହ କରିବାକୁ ଇଚ୍ଛା କରନ୍ତି, [୧] ତେବେ ସେମାନଙ୍କୁ ମଧ୍ୟ (ବୈଧ କରିଅଛୁ); ଏହି ଆଦେଶ [୨] କେବଳ ତୁମ୍ଭ ସକାଶେ ପ୍ରଯୋଜ୍ୟ; ଏହା ଅନ୍ୟ ବିଶ୍ଵାସକାରୀମାନଙ୍କ ସକାଶେ (ପ୍ରଯୋଜ୍ୟ) ନୁହେଁ; ଆମେ ତାହାକୁ ଉତ୍ତମ ରୂପେ ଜାଣୁ ଯାହାକୁ ଆମେ ସେ (ମୁସଲମାନ)ମାନଙ୍କ ପ୍ରତି ସେମାନଙ୍କ ପତ୍ନୀମାନଙ୍କ ଓ ସେମାନଙ୍କ ସଂକ୍ରାନ୍ତରେ ଧାର୍ଯ୍ୟ କରିଅଛୁ ଯଦ୍ଦ୍ଵାରା ତୁମ ପ୍ରତି (ଏହା ଲୋକମାନଙ୍କୁ ବୁଝାଇବାରେ) କୌଣସି ପ୍ରତିବନ୍ଧ ନ ହେଉ; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

وَهَبَتْ نَفْسَهَا لِلنَّبِيِّ إِنْ أَرَادَ النَّبِيُّ أَنْ يَسْتَنْكِحَهَا خَالِصَةً لَكَ مِنْ دُونِ الْمُؤْمِنِينَ قَدْ عَلِمْنَا مَا فَرَضْنَا عَلَيْهِمْ فِي أَزْوَاجِهِمْ وَمَا مَلَكَتْ أَيْمَانُهُمْ لِكَيْلَا يَكُونَ عَلَيْكَ حَرَجٌ وَكَانَ اللَّهُ غَفُورًا رَحِيمًا ﴿٥١﴾

୫୨. ତୁମେ ସେ (ପତ୍ନୀ)ମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ତାହାକୁ ଦୂରେଇ ଦେଇ ପାର, ଓ ଯାହାକୁ ଇଚ୍ଛା ନିଜ ପାଖରେ ରଖିପାର ; ଏବଂ ଏ (ପତ୍ନୀ)ମାନଙ୍କ ମଧ୍ୟରୁ ଯାହାକୁ ତୁମେ ଦୂରେଇ [୩] ଦେଇଛ ତାହାରିକୁ ନିଜ ପାଖକୁ ଘେନି ଆସିଲେ

تُرْجِي مَنْ تَشَاءُ مِنْهُنَّ وَتُؤْوِي إِلَيْكَ مَنْ تَشَاءُ وَمَنِ ابْتَغَيْتَ مِمَّنْ عَزَلْتَ فَلَا جُنَاحَ عَلَيْكَ ذَٰلِكَ

୧. ହଜରତ ମହମ୍ମଦ ସ୍ଵତନ୍ତ୍ରଭାବରେ ନିଜ ପାଇଁ ଏହି ଆୟତକୁ ଅବତୀର୍ଣ୍ଣ କରାଇଥିବାର ସେହି ବିରୋଧୀମାନେ ଯାହା କହୁଛନ୍ତି ତାହା ଯଥାର୍ଥ ନୁହେଁ ବୋଲି ଏହି ଆୟତରୁ ସ୍ପଷ୍ଟଭାବରେ ଜଣାପଡୁଛି, କାରଣ ଏଠାରେ ପରିଷ୍କାର ଭାବରେ ଉଲ୍ଲିଖିତ ଅଛି ଯେ ଆଲୋଚ୍ୟ ଆଦେଶ କେବଳ ହଜରତ ମହମ୍ମଦଙ୍କ ପାଇଁ ନୁହେଁ, ବରଂ ସବୁ ଅବତାରଙ୍କ ପାଇଁ ଅଭିପ୍ରେତ । ଅଧିକନ୍ତୁ ଯେଉଁ ସ୍ଥଳେ ଉଲ୍ଲେଖ କରାଯାଇଛି ଯେ ଏହି ଆଦେଶ ସ୍ଵତନ୍ତ୍ରଭାବେ ତୁମ ସକାଶେ ଅଛି ସେହି ସ୍ଥଳେ ପରେ ପରେ ମଧ୍ୟ ଉଲ୍ଲେଖ ଅଛି ଯେ ଏହି ଆଦେଶ ଅବଶିଷ୍ଟ ବିଶ୍ଵାସକାରୀମାନଙ୍କ ସକାଶେ ଦିଆଯାଇ ନାହିଁ । ତେଣୁ କେବଳ ଅବତାରମାନଙ୍କ ସକାଶେ– ସେମାନେ ଅତୀତର ହୋଇଥା'ନ୍ତୁ କି ଭବିଷ୍ୟତରେ ଆବିର୍ଭାବ ହେବାକୁ ଥାଆନ୍ତୁ– ଏହି ଆଦେଶ ଅଭିପ୍ରେତ ।

୨. ହଜରତ ମହମ୍ମଦ ଏପରି କୌଣସି ମହିଳାଙ୍କୁ ବିବାହ କରି ନାହାନ୍ତି । ଆଲୋଚ୍ୟ ଆଦେଶ କେବଳ ଅନୁମତି ଆକାରରେ ଦିଆଯାଇଛି । ଅବଶ୍ୟ ଶତ୍ରୁମାନେ ସମାଲୋଚନା କରିଥିଲେ ଯେ ହଜରତ ମହମ୍ମଦ ନିଜ ପାଇଁ ଏହି ଆୟତକୁ ଅବତରଣ କରାଇଛନ୍ତି । କିନ୍ତୁ ଯେତେବେଳେ ହଜରତ ମହମ୍ମଦ ଏହି ଆଦେଶକୁ କାର୍ଯ୍ୟକାରୀ କଲେ ନାହିଁ, ଶତ୍ରୁପକ୍ଷର ଲୋକମାନଙ୍କ ମୁହଁ ବନ୍ଦ ପଡ଼ିଗଲା ଓ ଏ ସଂକ୍ରାନ୍ତ ଅଭିଯୋଗ ସ୍ଵତଃ ବାତିଲ ହୋଇଗଲା । ପୁନଶ୍ଚ ଏହି ଅଧ୍ୟାୟର ଆୟତ ସଂଖ୍ୟା ୩ରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ ଏହି ଆଦେଶ କେବଳ କେତେକ ପତ୍ନୀଙ୍କ ସମ୍ବନ୍ଧରେ ହଜରତ ମହମ୍ମଦଙ୍କର ସୁରୁଚିପୂର୍ଣ୍ଣ ଚିନ୍ତାଧାରାକୁ ବ୍ୟକ୍ତ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ବସ୍ତୁତଃ ଏଥିରେ ନିଜ ପାଇଁ କୌଣସି ସ୍ଵତନ୍ତ୍ର ବ୍ୟବସ୍ଥା ପ୍ରଣୟନ କରାଯିବାକୁ ନଥିଲା ।

୩. ଏହି ଅଧ୍ୟାୟର ଆୟତ ସଂଖ୍ୟା ୨୯ରେ ଏହି ରୂପେ ବର୍ଣ୍ଣନା କରାଯାଇଛି– ହେ ନବି ! ତୁମେ ନିଜ ପତ୍ନୀମାନଙ୍କୁ କୁହ, "ଯଦି ତୁମେମାନେ ସାଂସାରିକ ଜୀବନ ଓ ତାହାର ଶୋଭା କାମନା କରୁଅଛ, ତେବେ ଆସ, ଆମେ ତୁମମାନଙ୍କୁ କିଛି ସାଂସାରିକ ସାମଗ୍ରୀ ପ୍ରଦାନ କରି ତୁମମାନଙ୍କୁ ଉଚିତ ପନ୍ଥାରେ ବିଦାୟ କରିଦେବୁ ।" କିନ୍ତୁ ଏହି ଆୟତରେ ଦର୍ଶାଯାଇଛି ଯେ ପତ୍ନୀମାନେ ନୀରବ ରହି ଏହି ସିଦ୍ଧାନ୍ତରେ ପହଞ୍ଚିଥିବାର ପ୍ରକାଶ କଲେ ଯେ ସାଂସାରିକ ସୁଖ ସମ୍ପଦ ଅପେକ୍ଷା ସେମାନେ ଧର୍ମକୁ ପ୍ରାଧାନ୍ୟ ଦେଇ ସନ୍ତୁଷ୍ଟ ଅଛନ୍ତି । ପତି-ପତ୍ନୀଙ୍କ ସମ୍ପର୍କରେ ଅନ୍ୟ ଏକ ଦିଗ ମଧ୍ୟ ଅଛି ଅର୍ଥାତ୍ ପତ୍ନୀ ନିଜକୁ ଯେତେ ପୁଣ୍ୟବତୀ ମନେ କରୁଥିଲେ ମଧ୍ୟ ପତି ତା'ଠାରେ ଏପରି କେତେକ ବିଷୟ ଦେଖିବାକୁ ପାଏ ଯାହା ପତ୍ନୀର ଅଧିକ ସଂସାର ପ୍ରୀତି ଥିବା ବା ସେ ସାଂସାରିକ ମାୟାରେ ଲିପ୍ତ ଥିବା ବିଷୟ ସେହି ପତି ହିଁ ଜାଣିପାରେ । ସେପରି ଅବସ୍ଥାରେ ସେ ତାକୁ ତଲାକ ଦେଇଦେଉ । ଏହି ଆୟତରେ ଏହା ହିଁ କୁହାଯାଇଛି ଯେ ଯେପରି ଜଣେ ପତ୍ନୀ ଟଙ୍କା ନେଇ ପୃଥକ୍ ହୋଇଯିବାକୁ ତା'ର ଅଧିକାର ଅଛି , ସେହିପରି ପତିର ମଧ୍ୟ ଅଧିକାର ଅଛି ଯେ ସେ ଧନ ପ୍ରଦାନ କରି ତାକୁ ପୃଥକ୍ କରିଦେଇ ପାରେ । ବସ୍ତୁତଃ ବିଷୟବସ୍ତୁ ଦୃଷ୍ଟିରୁ ଏହି ଦୁଇ ଆୟତ ପରସ୍ପରର ପରିପୂରକ । ଏହି ଆୟତ ଅବତୀର୍ଣ୍ଣ ହେବାପରେ ଯେହେତୁ, ହଜରତ ମହମ୍ମଦ ତାଙ୍କର କୌଣସି ପତ୍ନୀଙ୍କୁ ତଲାକ ଦେଇ ନାହାନ୍ତି ତେଣୁ ଜଣାଗଲା, ଯେପରି ଏହି ଅଧ୍ୟାୟର ଆୟତ ସଂଖ୍ୟା ୫୧ରୁ ପ୍ରମାଣିତ ହେଉଛି ଯେ ହଜରତ ମହମ୍ମଦଙ୍କର କୌଣସି ପତ୍ନୀ ଧର୍ମ ଅପେକ୍ଷା ସାଂସାରିକ ମୋହମାୟାକୁ ପ୍ରାଧାନ୍ୟ ଦେଇ ନାହାନ୍ତି, ସେହିପରି ହଜରତ ମହମ୍ମଦ ମଧ୍ୟ ଏହି ଆୟତ ଅବତୀର୍ଣ୍ଣ ହେବା ପରେ କୌଣସି ପତ୍ନୀଙ୍କୁ ତଲାକ ଦେଇ ନାହାନ୍ତି । ଅତଏବ ହଜରତ ମହମ୍ମଦଙ୍କ ନିର୍ଦ୍ଧାରଣ ଅନୁସାରେ ସେମାନେ ଉଚ୍ଚକୋଟୀର ଆଦର୍ଶ ପ୍ରଦର୍ଶନ କରିଛନ୍ତି । ଯଦ୍ୟପି ଅଲ୍ଲାହ ତାଙ୍କୁ ତଲାକ ଦେବାପାଇଁ ଅଧିକାର ଦେଇଥିଲେ ତଥାପି ତାଙ୍କ ପତ୍ନୀମାନଙ୍କ ଉଚ୍ଚକୋଟୀର ଆଦର୍ଶ ଯୋଗୁଁ ସେ ସେହି ଅଧିକାରକୁ କାର୍ଯ୍ୟକାରୀ କରିବାକୁ ସମୀଚୀନ ମନେ କଲେ ନାହିଁ ।

أَدْنَىٰٓ أَن تَقَرَّ أَعْيُنُهُنَّ وَلَا يَحْزَنَّ وَيَرْضَيْنَ بِمَآ ءَاتَيْتَهُنَّ كُلُّهُنَّ ۚ وَٱللَّهُ يَعْلَمُ مَا فِى قُلُوبِكُمْ ۚ وَكَانَ ٱللَّهُ عَلِيمًا حَلِيمًا ﴿٥٢﴾

ସେଥିରେ ତୁମର କୌଣସି ଦୋଷ ନାହିଁ ; ସମ୍ଭବତଃ (ଏପରି କରିବା ଫଳରେ) ସେମାନଙ୍କର ଚକ୍ଷୁ ଶୀତଳ ହେବ, ଏବଂ ସେମାନେ ଦୁଃଖିତ ହେବେ ନାହିଁ, ଏବଂ ଯାହାକିଛି ତୁମେ ସେମାନଙ୍କୁ ଦେଇଅଛ[1] ତହିଁରେ ସେମାନେ ସମସ୍ତେ ସନ୍ତୁଷ୍ଟ ହେବେ ; ଏବଂ ଅଲ୍ଲାହ୍ ତୁମମାନଙ୍କ ଅନ୍ତରରେ ଥିବା ପ୍ରତ୍ୟେକ ବିଷୟକୁ ଜାଣନ୍ତି, ଏବଂ ସେ ସର୍ବଜ୍ଞ (ଓ) ସହନଶୀଳ ।

لَّا يَحِلُّ لَكَ ٱلنِّسَآءُ مِنۢ بَعْدُ وَلَآ أَن تَبَدَّلَ بِهِنَّ مِنْ أَزْوَٰجٍ وَلَوْ أَعْجَبَكَ حُسْنُهُنَّ إِلَّا مَا مَلَكَتْ يَمِينُكَ ۗ وَكَانَ ٱللَّهُ عَلَىٰ كُلِّ شَىْءٍ رَّقِيبًا ﴿٥٣﴾ ع

୫୩. ତୁମ ପାଇଁ ଏହା ପରେ ଅଧିକ ନାରୀଙ୍କୁ ବିବାହ କରିବା ବୈଧ ନୁହେଁ ;[3] ଏବଂ ତୁମର[2] ଦକ୍ଷିଣ ହସ୍ତ ଅଧୀନସ୍ଥ ନାରୀ ମାନଙ୍କ ବ୍ୟତୀତ, ଅନ୍ୟମାନଙ୍କର ସୌନ୍ଦର୍ଯ୍ୟ ତୁମଙ୍କୁ ଅଧିକ ମୋହିତ କଲେ ମଧ୍ୟ ତୁମେ ବର୍ତ୍ତମାନର ପତ୍ନୀମାନଙ୍କ ପରିବର୍ତ୍ତେ ଅନ୍ୟ ପତ୍ନୀ ମଧ୍ୟ ଗ୍ରହଣ କରିବା ବୈଧ ନୁହେଁ ; ଏବଂ ଅଲ୍ଲାହ୍ ସକଳ ବିଷୟର ତତ୍ତ୍ୱାବଧାରକ ।

ରୁ : ୭

يَٰٓأَيُّهَا ٱلَّذِينَ ءَامَنُوا۟ لَا تَدْخُلُوا۟ بُيُوتَ ٱلنَّبِىِّ إِلَّآ أَن يُؤْذَنَ لَكُمْ إِلَىٰ طَعَامٍ غَيْرَ نَٰظِرِينَ إِنَىٰهُ وَلَٰكِنْ إِذَا دُعِيتُمْ فَٱدْخُلُوا۟ فَإِذَا طَعِمْتُمْ فَٱنتَشِرُوا۟ وَ

୫୪. ହେ ବିଶ୍ୱାସକାରୀମାନେ ! ତୁମେମାନେ ନବିଙ୍କ ଗୃହରେ କଦାପି ପ୍ରବେଶ କର ନାହିଁ, କେବଳ ଏହା ବ୍ୟତୀତ ଯେ ତୁମମାନଙ୍କୁ ଭୋଜନ ନିମନ୍ତେ ଡକାଯାଇଅଛି , ତାହା ମଧ୍ୟ ଏହି ସର୍ତ୍ତରେ ଯେ ତୁମେମାନେ ରନ୍ଧନ ଅପେକ୍ଷାରେ କି ଆଳାପ କରିବା ଇଚ୍ଛାରେ[4] ସେଠାରେ ବସିରୁହ ନାହିଁ ; ଅବଶ୍ୟ ଯେବେ ତୁମମାନଙ୍କୁ ଡକାଯାଏ, ତେବେ ନିଶ୍ଚୟ

---

୧. ହଜରତ ମହମ୍ମଦଙ୍କର ପତ୍ନୀମାନେ ତାଙ୍କ ସ୍ୱଭାବ ସମ୍ବନ୍ଧରେ ଭଲଭାବରେ ପରିଚିତ ଥିଲେ । ତେଣୁ ଯେତେବେଳେ ଅଲ୍ଲାହ୍ ତାଙ୍କ ଉପରେ ସେହି ବ୍ୟାପାରକୁ ନ୍ୟସ୍ତ କଲେ ସେତେବେଳେ ସେମାନେ ଏଥିଯୋଗୁଁ ଆନନ୍ଦିତ ହୋଇଥିଲେ ଯେ ଏବେ ଯାହା ହେବ ତାହା ନିଶ୍ଚିତ ରୂପେ ଯଥୋଚିତ ହେବ ।

୨. ପୂର୍ବ ଆୟତରେ ପ୍ରକାଶ୍ୟ ଅନୁମତି ଦିଆଯାଇଥିଲା ଯେ ହଜରତ ମହମ୍ମଦ ତାଙ୍କର ତତ୍କାଳୀନ ପତ୍ନୀମାନଙ୍କ ମଧ୍ୟରୁ ଯେକୌଣସି ପତ୍ନୀଙ୍କୁ ତଲାକ ଦେଇ ଅନ୍ୟ ବିବାହ କରିପାରିବେ । କିନ୍ତୁ ଏହି ଆୟତରେ ନିର୍ଦ୍ଦେଶ ଦିଆଯାଇଛି ଯେ ସେ ଉପସ୍ଥିତ ପତ୍ନୀମାନଙ୍କ ମଧ୍ୟରୁ କାହାରିକୁ ଛାଡ଼ି ପାରିବେ ନାହିଁ କି ଆଉ ଅଧିକ ବିବାହ କରି ପାରିବେ ନାହିଁ । ଏହା ପ୍ରକୃତରେ ପରସ୍ପର ବିରୋଧୀ ବିଷୟ ନୁହେଁ କାରଣ ଆମେ ପୂର୍ବରୁ କହିଅଛୁ ଯେ ହଜରତ ମହମ୍ମଦ ଯେପରି ଇଚ୍ଛା କରିବେ ସେହିପରି କରିପାରିବେ ବୋଲି ନିର୍ଦ୍ଦେଶ ଦିଆଯାଇଛି । ହଜରତ ମହମ୍ମଦଙ୍କ ଇଚ୍ଛା ଅନ୍ତର୍ଯ୍ୟାମୀ ଅଲ୍ଲାହ୍‌ଙ୍କୁ ଭଲ ରୂପେ ଜଣାଥିଲା । ତେଣୁ ଏଠାରେ ସେହି ଇଚ୍ଛା ବିଷୟରେ ବ୍ୟାଖ୍ୟା କରାଯାଇଛି । ଅତଏବ ଏହି ଦୁଇ ଆୟତରେ ପରସ୍ପର ବିରୋଧୀ କୌଣସି ବିଷୟ ନାହିଁ ।

ଅନ୍ୟ ଅର୍ଥରେ— 'ଏହା ପରେ'ରୁ ବୁଝାପଡୁଛି ଯେ ହିଜରତ (ଅର୍ଥାତ୍ ଦେଶତ୍ୟାଗ) କରିଥିବା ସମ୍ପର୍କୀୟା ମହିଳାମାନଙ୍କ ମଧ୍ୟରୁ ଯାହାଙ୍କ ସହିତ ତାଙ୍କର ବିବାହ ବୈଧ,ସେ ତାହାଙ୍କୁ ବିବାହ କରିପାରିବେ ଅଥଚ ସେମାନଙ୍କ ବ୍ୟତୀତ ଅନ୍ୟ କୌଣସି ମହିଳାଙ୍କୁ ବିବାହ କରି ପାରିବେ ନାହିଁ । ଏହି ରୂପେ ସେହି ଆଦେଶର ପରିସରକୁ ସୀମିତ କରାଯାଇଛି । ଏହା ଅବଶ୍ୟ ଏକ ଅନୁମତି, କିନ୍ତୁ ସେ ଏଥିରୁ କିଛି ଲାଭ ଉଠାଇ ନଥିଲେ ।

୩. ଏହି ଅନୁମତି ବିଷୟରେ ମଧ୍ୟ ପୂର୍ବରୁ ଉଲ୍ଲେଖ କରାଯାଇଛି ଯେ ଏହାକୁ ହଜରତ ମହମ୍ମଦ କାର୍ଯ୍ୟକାରୀ କରି ନଥିଲେ ।

୪. ଅର୍ଥାତ୍ ଉଚିତ ସମୟରେ ରସୁଲଙ୍କ ଗୃହ ମଧ୍ୟରେ ପ୍ରବେଶ କର । ଅସମୟରେ ପ୍ରବେଶ କରି ତାଙ୍କର ସମୟ ନଷ୍ଟ କର ନାହିଁ ।

لَا مُسْتَأْنِسِينَ لِحَدِيثٍ ۚ إِنَّ ذَٰلِكُمْ كَانَ يُؤْذِي النَّبِيَّ فَيَسْتَحْيِي مِنكُمْ ۖ وَاللَّهُ لَا يَسْتَحْيِي مِنَ الْحَقِّ ۚ وَإِذَا سَأَلْتُمُوهُنَّ مَتَاعًا فَاسْأَلُوهُنَّ مِن وَرَاءِ حِجَابٍ ۚ ذَٰلِكُمْ أَطْهَرُ لِقُلُوبِكُمْ وَقُلُوبِهِنَّ ۚ وَمَا كَانَ لَكُمْ أَن تُؤْذُوا رَسُولَ اللَّهِ وَلَا أَن تَنكِحُوا أَزْوَاجَهُ مِن بَعْدِهِ أَبَدًا ۚ إِنَّ ذَٰلِكُمْ كَانَ عِندَ اللَّهِ عَظِيمًا ﴿٥٣﴾

(ସେଠାକୁ) ଯାଅ ; ଏବଂ ଭୋଜନ କରିବା ପରେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କର [୧]; ଏପରି କାର୍ଯ୍ୟ (ଅର୍ଥାତ୍ ଅଯଥାରେ ବସିରହିବା ବା ବହୁପୂର୍ବରୁ ଆସିଯିବା) ନବିଙ୍କୁ ଅସୁବିଧାର ସମ୍ମୁଖୀନ କରାଏ ; କିନ୍ତୁ ସେ (ତୁମମାନଙ୍କର ନିଷ୍ଠା ଦେଖି) ତୁମମାନଙ୍କୁ ( ମନାକରିବାକୁ ) ଲଜ୍ଜାବୋଧ କରୁଥିଲେ ; କିନ୍ତୁ ଅଲ୍ଲାହ ସତ୍ୟ କଥା କହିବାକୁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ ; ଏବଂ ଯେତେବେଳେ ତୁମେମାନେ ସେମାନଙ୍କ ଠାରୁ (ଅର୍ଥାତ୍ ନବିଙ୍କ ପତ୍ନୀମାନଙ୍କ ଠାରୁ) କୌଣସି ସାମଗ୍ରୀ ମାଗ, ତେବେ ପରଦା ଆଢୁଆଳରୁ ମାଗ ; ଏହା ତୁମମାନଙ୍କ ହୃଦୟ ପାଇଁ ଓ ସେମାନଙ୍କ ହୃଦୟ ପାଇଁ ଉତ୍ତମ ଅଟେ ; ଏବଂ ଅଲ୍ଲାହଙ୍କ ରସୁଲଙ୍କୁ କଷ୍ଟଦେବା ତୁମମାନଙ୍କ ପକ୍ଷରେ ଉଚିତ ନୁହେଁ ; ଏବଂ ତାହାଙ୍କ ଅନ୍ତେ ତୁମେ ତାହାଙ୍କ ପତ୍ନୀମାନଙ୍କ ସହିତ ବିବାହ କରିବା ମଧ୍ୟ ଉଚିତ ନୁହେଁ ; ଏହା ଅଲ୍ଲାହଙ୍କ ଦୃଷ୍ଟିରେ ଅତ୍ୟନ୍ତ ଜଘନ୍ୟ ଅଟେ ।

إِن تُبْدُوا شَيْئًا أَوْ تُخْفُوهُ فَإِنَّ اللَّهَ كَانَ بِكُلِّ شَيْءٍ عَلِيمًا ﴿٥٤﴾

୫୫. ଯଦି ତୁମେମାନେ କୌଣସି ବିଷୟକୁ ପ୍ରକାଶ କର ବା ଗୁପ୍ତ ରଖ, ତେବେ ଅଲ୍ଲାହ ପ୍ରତ୍ୟେକ ବିଷୟକୁ ଭଲ ରୂପେ ଜାଣନ୍ତି ।

لَّا جُنَاحَ عَلَيْهِنَّ فِي آبَائِهِنَّ وَلَا أَبْنَائِهِنَّ وَلَا

୫୬. ନିଜ ପିତା ବା ନିଜ ପୁତ୍ର [୨] ବା ନିଜ ଭାଇ ବା ନିଜ ପୁତୁରା ବା ନିଜ ଭଣଜା ବା ନିଜ ସମ-ଗୋଷ୍ଠୀର ନାରୀମାନଙ୍କ

---

୧. 'କେବଳ ନବିଙ୍କ ଘରକୁ ବିନା ଅନୁମତିରେ ଖାଇବାକୁ ଯାଅ ନାହିଁ', ଏହା ଆୟତର ପ୍ରକୃତ ଉଦ୍ଦେଶ୍ୟ ନୁହେଁ ବରଂ ଏହାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ଏବଂ ଅନ୍ୟତ୍ର ମଧ୍ୟ ଉଲ୍ଲେଖ ଅଛି ଯେ ପ୍ରତ୍ୟେକ ମୁସଲମାନଙ୍କ ଗୃହରେ ବିନା ଅନୁମତିରେ ପ୍ରବେଶ କରିବା ଦୋଷାବହ । ଅତଏବ ଏହି ଆୟତରେ ଅନ୍ୟ ଯେଉଁ ନୂତନ ବିଷୟର ସୂଚନା ଦିଆଯାଇଛି ତା' ହେଉଛି ଯେହେତୁ ନବିଙ୍କୁ ବିଶ୍ୱାସକାରୀମାନଙ୍କର ପିତା ଓ ନବିଙ୍କ ପତ୍ନୀଙ୍କୁ ସେମାନଙ୍କର ମାତା ବୋଲି ସ୍ଥିର କରାଯାଇଛି, ତେଣୁ ଏଥିରୁ ଏହି ସିଦ୍ଧାନ୍ତ ହେଉଥିଲା ଯେ ନବିଙ୍କ ଗୃହରେ ବିନାନୁମତିରେ ପ୍ରବେଶ କରିବା ନ୍ୟାଯ୍ୟ ଅଟେ । କିନ୍ତୁ ଏହି ଆୟତ ମାଧ୍ୟମରେ ସେହି ପଥକୁ ବନ୍ଦ କରି ଦିଆଗଲା । ଦ୍ୱିତୀୟତଃ ପିଲାମାନେ ନିଜ ପିତାମାତାଙ୍କ ଘରେ ବହୁ ସମୟ ପର୍ଯ୍ୟନ୍ତ ବସି ରହନ୍ତି କିନ୍ତୁ ଯେହେତୁ ନବି ହେଉଛନ୍ତି ଆଧ୍ୟାତ୍ମିକ ପିତା ତେଣୁ ତାହାଙ୍କର ହଜାର ହଜାର ସନ୍ତାନ ଥାଇ ପାରନ୍ତି । କିନ୍ତୁ ଜଣେ ସାଧାରଣ ଲୋକର ଚାରିପାଞ୍ଚ ଜଣ ପିଲା ଥାଇ ପାରନ୍ତି । ତେଣୁ ସେପରି ଲୋକ ଘରେ ପିଲାମାନେ ଅଧିକ ବସି ରହିଲେ କୌଣସି ଅସୁବିଧା ବା କଷ୍ଟ ହୁଏ ନାହିଁ । କିନ୍ତୁ ଯଦି ନବିଙ୍କ ଘରେ ସବୁ ବିଶ୍ୱାସକାରୀ ପଶିବା ଆରମ୍ଭ କରି ଦିଅନ୍ତି ଓ ସେଠାରୁ କିଛି ଖାଇ ଦିଅନ୍ତି ଏବଂ ଏହାପରେ ପାଳି କରି ଆସିବା ଓ ବସିବା ଆରମ୍ଭ କରି ଦିଅନ୍ତି ତେବେ ଦିନ ପରେ ଦିନ ଏପରିକି ମାସ ପରେ ମାସ ବିତିଯିବ ଏବଂ ଏହିପରି ଭାବରେ ନବିଙ୍କ ପରିବାର ସମ୍ପୂର୍ଣ୍ଣ ବ୍ୟତିବ୍ୟସ୍ତ ହୋଇ ପଡ଼ିବ ଓ ଗୃହର ଶାନ୍ତି ନଷ୍ଟ ହୋଇଯିବ । ତେଣୁ ଏହି ଆୟତ ମାଧ୍ୟମରେ ନବିଙ୍କୁ କଷ୍ଟ ହେଲା ଭଳି ସବୁ ବିଷୟ ଉପରେ ପ୍ରତିବନ୍ଧକ ବ୍ୟବସ୍ଥା କରାଯାଇଛି ।

୨. ଏଠାରେ 'ପୁତ୍ର'ଶବ୍ଦ ଅଛି, ଅଥଚ ହଜରତ ମହମ୍ମଦଙ୍କର କୌଣସି ପତ୍ନୀଙ୍କ ପାଖରେ କୌଣସି ଯୁବକ ପୁତ୍ର ନ ଥିଲେ । ଏହାର ଉତ୍ତର ହେଉଛି, ବେଳେବେଳେ ସାଧାରଣ ଆଦେଶ ଦିଆଯାଏ, ମାତ୍ର ତହିଁରେ ବ୍ୟତିକ୍ରମ (Exception) ମଧ୍ୟ ଥାଏ । ଯେପରି ପବିତ୍ର କୋରାନରେ ଅଲ୍ଲାହ ଆଦେଶ ଦେଇଛନ୍ତି ଯେ ଯଦି ତୁମମାନଙ୍କ ମଧ୍ୟରୁ କାହାରି ପିତାମାତା ବୃଦ୍ଧ ହୋଇଯା'ନ୍ତି ତେବେ ସେମାନଙ୍କୁ 'ହେ ହାଁ' କର ନାହିଁ (୧୭:୨୪ ଦ୍ରଷ୍ଟବ୍ୟ), ଅଥଚ ମୁସଲମାନଙ୍କ ମଧ୍ୟରେ ଏପରି ଲକ୍ଷ ଲକ୍ଷ ଲୋକ ଅଛନ୍ତି ଯେଉଁମାନେ ସନ୍ତାନହୀନ । ତେଣୁ ଏଠାରେ କାହାକୁ ସମ୍ବୋଧନ କରାଯାଇଛି ? ତେବେ କ'ଣ ଏପରି ପରିସ୍ଥିତିରେ ଆମେ ସେହି ଆଦେଶକୁ ଅଯଥା ଆଦେଶ କହି ପାରିବା ? ପ୍ରକୃତ ପକ୍ଷେ ପ୍ରତ୍ୟେକ ଆଦେଶରେ ବ୍ୟତିକ୍ରମ ଥାଏ ଅର୍ଥାତ୍ ତାହା କେତେକଙ୍କ ପ୍ରତି ପ୍ରଯୋଜ୍ୟ ଓ ଅନ୍ୟ କେତେକଙ୍କ ପ୍ରତି ପ୍ରଯୋଜ୍ୟ ହୁଏ ନାହିଁ ଏବଂ ବେଳେ ବେଳେ ତାହା ସମସ୍ତଙ୍କ ପ୍ରତି ପ୍ରଯୋଜ୍ୟ ହୁଏ ।

ବା ନିଜ ଅଧୀନରେ ଥିବା ଦାସୀମାନଙ୍କ ସମ୍ମୁଖକୁ ଯିବାରେ ଏମାନଙ୍କ (ଅର୍ଥାତ୍ ରସୁଲଙ୍କ ପତ୍ନୀମାନଙ୍କ) ପକ୍ଷରେ କୌଣସି କଟକଣା ନାହିଁ ; ଏବଂ ଅଲ୍ଲାହଙ୍କୁ ଭୟକର , (କାରଣ) ଅଲ୍ଲାହ ପ୍ରତ୍ୟେକ ବିଷୟକୁ ଲକ୍ଷ୍ୟ କରୁଛନ୍ତି ।

إِخْوَانِهِنَّ وَلَآ أَبْنَآءِ إِخْوَانِهِنَّ وَلَآ أَبْنَآءِ أَخَوَاتِهِنَّ وَلَا نِسَآئِهِنَّ وَلَا مَا مَلَكَتْ أَيْمَانُهُنَّ ۗ وَاتَّقِينَ اللَّهَ ۚ إِنَّ اللَّهَ كَانَ عَلَىٰ كُلِّ شَيْءٍ شَهِيدًا ﴿٥٥﴾

୫୭. ଅଲ୍ଲାହ ବାସ୍ତବରେ ଏହି ନବିଙ୍କ [୧] ପ୍ରତି ନିଜର ଆଶୀର୍ବାଦ ଅବତୀର୍ଣ୍ଣ କରୁଛନ୍ତି ଏବଂ ତାହାଙ୍କ ଦେବଦୂତ ମଧ୍ୟ (ତାହାଙ୍କ ସକାଶେ ପ୍ରାର୍ଥନା କରୁଛନ୍ତି, ତେଣୁ) ହେ ବିଶ୍ୱାସକାରୀମାନେ ! ତୁମେମାନେ ମଧ୍ୟ ଏହି ନବିଙ୍କ ପ୍ରତି (ଅଲ୍ଲାହଙ୍କ) ଆଶୀର୍ବାଦ ଭିକ୍ଷାକର (ଅର୍ଥାତ୍ ଦରୁଦ ସରିଫ ପାଠ କର) ; ଓ ତାହାଙ୍କ ପାଇଁ ପ୍ରାର୍ଥନା କର ଓ ମନୋଯୋଗପୂର୍ବକ ତାହାଙ୍କ ପାଇଁ ଶାନ୍ତି ଭିକ୍ଷାକର ।

إِنَّ اللَّهَ وَمَلَٰٓئِكَتَهُۥ يُصَلُّونَ عَلَى النَّبِيِّ ۚ يَٰٓأَيُّهَا الَّذِينَ ءَامَنُوا صَلُّوا عَلَيْهِ وَسَلِّمُوا تَسْلِيمًا ﴿٥٦﴾

୫୮. ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କୁ ପୀଡା ଦିଅନ୍ତି, ଅଲ୍ଲାହ ସେମାନଙ୍କୁ ଇହକାଳରେ ଓ ପରକାଳରେ ତାହାଙ୍କ ସାମୀପ୍ୟ ଲାଭରୁ ବଞ୍ଚିତ କରିଦିଅନ୍ତି, ଏବଂ ସେ ସେମାନଙ୍କ ସକାଶେ ଅପମାନଜନକ ଶାସ୍ତି ପ୍ରସ୍ତୁତ କରିଛନ୍ତି ।

إِنَّ الَّذِينَ يُؤْذُونَ اللَّهَ وَرَسُولَهُۥ لَعَنَهُمُ اللَّهُ فِى الدُّنْيَا وَالْءَاخِرَةِ وَأَعَدَّ لَهُمْ عَذَابًا مُّهِينًا ﴿٥٧﴾

୫୯. ଏବଂ ଯେଉଁମାନେ ବିଶ୍ୱାସକାରୀ ପୁରୁଷ ଓ ବିଶ୍ୱାସକାରିଣୀ ନାରୀମାନଙ୍କୁ ବିନା ଦୋଷରେ ପୀଡା ଦିଅନ୍ତି, ସେମାନେ ନିଜ ଉପରେ ବିପଜ୍ଜନକ ମିଥ୍ୟା ଓ ପ୍ରକାଶ୍ୟ ପାପର ବୋଝ ବହନ କରନ୍ତି ।

وَالَّذِينَ يُؤْذُونَ الْمُؤْمِنِينَ وَالْمُؤْمِنَٰتِ بِغَيْرِ مَا اكْتَسَبُوا فَقَدِ احْتَمَلُوا بُهْتَٰنًا وَإِثْمًا مُّبِينًا ﴿٥٨﴾ ع

ରୁ : ୮

୬୦. ହେ ନବି ! ନିଜ ପତ୍ନୀମାନଙ୍କୁ ଓ ନିଜ କନ୍ୟାମାନଙ୍କୁ ଏବଂ ବିଶ୍ୱାସକାରୀମାନଙ୍କର ପତ୍ନୀମାନଙ୍କୁ କୁହ, "(ଯେତେବେଳେ ସେମାନେ ବାହାରକୁ ଯିବେ, ସେତେବେଳେ) ସେମାନେ ନିଜର ବଡ ଚାଦରକୁ [୨] ମୁଣ୍ଡ ଉପରେ ଦେଇ ବକ୍ଷସ୍ଥଳ ପର୍ଯ୍ୟନ୍ତ ଘୋଡାଇ ରଖିବେ ;" ଏପରି କରିବା ଫଳରେ ସେମାନଙ୍କୁ ଚିହ୍ନି [୩] ହେବ ଓ (ସେମାନଙ୍କୁ) ଇଙ୍ଗିତ କରା ହେବ ନାହିଁ ; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

يَٰٓأَيُّهَا النَّبِيُّ قُل لِّأَزْوَٰجِكَ وَبَنَاتِكَ وَنِسَآءِ الْمُؤْمِنِينَ يُدْنِينَ عَلَيْهِنَّ مِن جَلَٰبِيبِهِنَّ ۚ ذَٰلِكَ أَدْنَىٰٓ أَن يُعْرَفْنَ فَلَا يُؤْذَيْنَ ۗ وَكَانَ اللَّهُ غَفُورًا رَّحِيمًا ﴿٥٩﴾

---

୧. ଅର୍ଥାତ୍ ହଜରତ ମହମ୍ମଦ ।

୨. ଏଠାରେ ପରଦାର ସବିସ୍ତୃତ ବିବରଣ ଅଛି । ଆରବ ଦେଶର ମହିଳାମାନେ ବାହାରକୁ ଗଲେ ଖଣ୍ଡିଏ ଛୋଟ ଚଦର ନିଜ ବକ୍ଷ ଉପରେ ପକାଉ ଥିଲେ ଓ ଖଣ୍ଡିଏ ବଡ଼ ଚଦରକୁ ଓଢ଼ଣା ପରି ବ୍ୟବହାର କରୁଥିଲେ । ଅନୁରୂପ ରୀତି ପଞ୍ଜାବରେ ପ୍ରଚଳିତ ଅଛି । ଅଲ୍ଲାହଙ୍କ ଆଦେଶ ଅନୁସାରେ ଯେବେ ବି କୌଣସି ମହିଳା ବାହାରକୁ ଯିବ ତେବେ ସେ ମୁଣ୍ଡ ଉପରେ ପକାଉଥିବା ବସ୍ତ୍ରକୁ ମୁଣ୍ଡ ଉପରୁ ବକ୍ଷ ପର୍ଯ୍ୟନ୍ତ ପକାଇବ ଅର୍ଥାତ୍ ଓଢ଼ଣା ଏପରି ହେବ ଯେପରି ଚେହେରା ଖୋଲା ରହିବ ନାହିଁ । କେତେକ 'ପରଦା ନ କରିବା' ଅର୍ଥ ଏହି ଆୟତରୁ ବାହାର କରୁଛନ୍ତି ଅଥଚ ଏଠାରେ ପରଦା କରିବା ବିଷୟରେ ପରିଷ୍କାର ଭାବରେ ବୁଝାଇ ଦିଆଯାଇଛି ।

୩. ଅର୍ଥାତ୍ ପ୍ରତ୍ୟେକେ ଅବଗତ ହୁଅନ୍ତୁ ଯେ ସେହି ମହିଳା ହେଉଛି ଜଣେ ମୁସଲମାନ ମହିଳା ଏବଂ ଅଣ-ମୁସଲମାନ ମହିଳା ଭାବି ତାଙ୍କୁ କେହି ବିଦ୍ରୂପ ନକରୁ ।

୬୧. ଯଦି କପଟବିଶ୍ୱାସୀ ପୁରୁଷ ଓ ଯେଉଁମାନଙ୍କ ହୃଦୟ ବ୍ୟାଧିଗ୍ରସ୍ତ ସେମାନେ, ଓ ଯେଉଁମାନେ ମଦିନାରେ ମିଥ୍ୟା ଗୁଜବ ରଟନା କରନ୍ତି, (ସେମାନେ ତହିଁରୁ) ବିରତ ନ ହୁଅନ୍ତି, ତାହାହେଲେ ଆମେ (ଦିନେ) ତୁମଙ୍କୁ ସେମାନଙ୍କ ବିରୁଦ୍ଧରେ ଠିଆ କରାଇବୁ ; ତା'ପରେ ସେମାନେ ତୁମ ସହିତ ଏହି ସହରରେ ସ୍ୱଳ୍ପକାଳ ପାଇଁ ପ୍ରତିବେଶୀ ଭାବରେ ରହିବେ ।

لَئِنْ لَّمْ يَنْتَهِ الْمُنٰفِقُوْنَ وَالَّذِيْنَ فِيْ قُلُوْبِهِمْ مَّرَضٌ وَّالْمُرْجِفُوْنَ فِي الْمَدِيْنَةِ لَنُغْرِيَنَّكَ بِهِمْ ثُمَّ لَا يُجَاوِرُوْنَكَ فِيْهَآ اِلَّا قَلِيْلًا ﴿٦١﴾

୬୨. ଯେଉଁଠାରେ ମଧ୍ୟ ସେମାନେ ତୁମ ନିୟନ୍ତ୍ରଣ ମଧ୍ୟକୁ ଆସିବେ, ସେମାନଙ୍କୁ ଗିରଫ କରି ବଧ କରାଯିବା ଉଚିତ, କାରଣ ସେମାନେ ଅଲ୍ଲାହ୍‌ଙ୍କ ଦୟାରୁ ବଞ୍ଚିତ ହୋଇଛନ୍ତି ।

مَّلْعُوْنِيْنَ ۚ اَيْنَمَا ثُقِفُوْٓا اُخِذُوْا وَقُتِّلُوْا تَقْتِيْلًا ﴿٦٢﴾

୬୩. ତୁମମାନଙ୍କ ପୂର୍ବରୁ ଯେଉଁମାନେ ମୃତ୍ୟୁଲାଭ କରିଛନ୍ତି ସେମାନଙ୍କ ସମ୍ବନ୍ଧରେ ଅଲ୍ଲାହ୍‌ଙ୍କର ଏହି ବିଧାନ ପ୍ରଚଳିତ ଥିଲା (ସୁତରାଂ ତୁମେ ଏହାକୁ ଅବଲମ୍ବନ କର); ଏବଂ ତୁମେ କଦାପି ଅଲ୍ଲାହ୍‌ଙ୍କ ବିଧାନରେ କୌଣସି ପରିବର୍ତ୍ତନ ପାଇବ ନାହିଁ ।

سُنَّةَ اللّٰهِ فِي الَّذِيْنَ خَلَوْا مِنْ قَبْلُ ۚ وَلَنْ تَجِدَ لِسُنَّةِ اللّٰهِ تَبْدِيْلًا ﴿٦٣﴾

୬୪. ଲୋକମାନେ ତୁମଙ୍କୁ (ପ୍ରଳୟଙ୍କରୀ) ସମୟ ସଂକ୍ରାନ୍ତରେ ପ୍ରଶ୍ନ କରୁଛନ୍ତି ; ତୁମେ କୁହ, ''ଏହାର ଜ୍ଞାନ କେବଳ ଅଲ୍ଲାହ୍‌ଙ୍କ ନିକଟରେ ଅଛି ;'' ଏବଂ ତୁମଙ୍କୁ ଏ ବିଷୟରେ କ'ଣ ଜଣା ? ହୁଏତ ସେସମୟ ଖୁବ ନିକଟବର୍ତ୍ତୀ ଥାଇପାରେ ।

يَسْـَٔلُكَ النَّاسُ عَنِ السَّاعَةِ ۭ قُلْ اِنَّمَا عِلْمُهَا عِنْدَ اللّٰهِ ۭ وَمَا يُدْرِيْكَ لَعَلَّ السَّاعَةَ تَكُوْنُ قَرِيْبًا ﴿٦٤﴾

୬୫. ଅଲ୍ଲାହ୍ ବାସ୍ତବରେ ଅବିଶ୍ୱାସକାରୀମାନଙ୍କୁ ନିଜ ସାମୀପ୍ୟ ଲାଭ କରିବାରୁ ବଞ୍ଚିତ କରିଛନ୍ତି, ଏବଂ ସେମାନଙ୍କ ପାଇଁ ଏକ ଜ୍ୱଳନ୍ତ ଅଗ୍ନିର ଶାସ୍ତି ପ୍ରସ୍ତୁତ କରିଛନ୍ତି,

اِنَّ اللّٰهَ لَعَنَ الْكٰفِرِيْنَ وَاَعَدَّ لَهُمْ سَعِيْرًا ﴿٦٥﴾

୬୬. ଯହିଁରେ ସେମାନେ ସର୍ବଦା ରହିଥିବେ ; (ଏବଂ ସେଠାରେ) ସେମାନେ କୌଣସି ବନ୍ଧୁ ବା ସାହାଯ୍ୟକାରୀ ପାଇବେ ନାହିଁ ।

خٰلِدِيْنَ فِيْهَآ اَبَدًا ۚ لَا يَجِدُوْنَ وَلِيًّا وَّلَا نَصِيْرًا ﴿٦٦﴾

୬୭. ଯେଉଁଦିନ ସେମାନଙ୍କର ମୁଖ୍ୟମାନଙ୍କୁ ଅଗ୍ନି ମଧ୍ୟରେ ଓଲଟ ପାଲଟ କରାଯିବ ସେମାନେ କହିବେ, ''ହାୟ ! ଆମେମାନେ ଅଲ୍ଲାହ୍ ଓ ତାହାଙ୍କର ରସୁଲଙ୍କ ଆଜ୍ଞା ପାଳନ କରିଥାନ୍ତୁ କି !''

يَوْمَ تُقَلَّبُ وُجُوْهُهُمْ فِي النَّارِ يَقُوْلُوْنَ يٰلَيْتَنَآ اَطَعْنَا اللّٰهَ وَاَطَعْنَا الرَّسُوْلَا ﴿٦٧﴾

୬୮. ଏବଂ (ସାଧାରଣ ଲୋକମାନେ) କହିବେ, ''ହେ ଆମମାନଙ୍କର ପାଳନକର୍ତ୍ତା ! ଆମେମାନେ ନିଜର ମୁଖ୍ୟ ଓ ବଡ଼ ଲୋକମାନଙ୍କର ଆଜ୍ଞା ପାଳନ କରିଥିଲୁ ; ଏବଂ ସେମାନେ ଆମମାନଙ୍କୁ (ସତ୍) ପଥରୁ ବିଭ୍ରାନ୍ତ କରିଥିଲେ ।''

وَقَالُوْا رَبَّنَآ اِنَّآ اَطَعْنَا سَادَتَنَا وَكُبَرَاۗءَنَا فَاَضَلُّوْنَا السَّبِيْلَا ﴿٦٨﴾

୬୯. "ହେ ଆମମାନଙ୍କର ପାଳନକର୍ତ୍ତା ! ସେମାନଙ୍କୁ ଦୁଇଗୁଣ ଶାସ୍ତି ପ୍ରଦାନ କର ଏବଂ ସେମାନଙ୍କୁ ନିଜ କରୁଣାରୁ ବଞ୍ଚିତ କର ।"

رَبَّنَا آتِهِمْ ضِعْفَيْنِ مِنَ الْعَذَابِ وَالْعَنْهُمْ لَعْنًا كَبِيرًا ﴿٦٩﴾

ରୁ : ୯

୭୦. ହେ ବିଶ୍ୱାସକାରୀମାନେ ! ତୁମେମାନେ ସେମାନଙ୍କ ସଦୃଶ ହୁଅ ନାହିଁ ଯେଉଁମାନେ ମୁସାଙ୍କୁ ପୀଡ଼ା[1] ଦେଇଥିଲେ ; କିନ୍ତୁ ଅଲ୍ଲାହ ତାହାଙ୍କୁ ସେମାନଙ୍କ ଅପବାଦରୁ ମୁକ୍ତ ସାବ୍ୟସ୍ତ କରିଥିଲେ ; ଏବଂ ସେ ଅଲ୍ଲାହଙ୍କ ଦୃଷ୍ଟିରେ ଅତି ସମ୍ମାନିତ ଥିଲେ ।

يَا أَيُّهَا الَّذِينَ آمَنُوا لَا تَكُونُوا كَالَّذِينَ آذَوْا مُوسَىٰ فَبَرَّأَهُ اللَّهُ مِمَّا قَالُوا ۚ وَكَانَ عِندَ اللَّهِ وَجِيهًا ﴿٧٠﴾

୭୧. ହେ ବିଶ୍ୱାସକାରୀମାନେ ! ଅଲ୍ଲାହଙ୍କୁ ଭୟ କର, ଏବଂ ଏପରି କଥା କୁହ ଯାହା କୁଟିଳ ହୋଇ ନ ଥିବ ।

يَا أَيُّهَا الَّذِينَ آمَنُوا اتَّقُوا اللَّهَ وَقُولُوا قَوْلًا سَدِيدًا ﴿٧١﴾

୭୨. (ଯେଦି ତୁମେମାନେ ଏପରି କରିବ, ତେବେ) ଅଲ୍ଲାହ ତୁମମାନଙ୍କ କର୍ମକୁ ସଂଶୋଧନ କରିଦେବେ ଓ ତୁମମାନଙ୍କ ପାପକୁ କ୍ଷମାଦେବେ ; ଏବଂ ଯେଉଁ ବ୍ୟକ୍ତି ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଆଜ୍ଞା ପାଳନ କରେ, ସେ ମହାନ୍ ସଫଳତା ଲାଭ କରେ ।

يُصْلِحْ لَكُمْ أَعْمَالَكُمْ وَيَغْفِرْ لَكُمْ ذُنُوبَكُمْ ۗ وَمَن يُطِعِ اللَّهَ وَرَسُولَهُ فَقَدْ فَازَ فَوْزًا عَظِيمًا ﴿٧٢﴾

୭୩. ଆମ୍ଭେ (ଆଧ୍ୟାତ୍ମିକ ବିଧାନ ବିଷୟକ ଏହି) ଅମାନତକୁ ଆକାଶ, ପୃଥିବୀ ଓ ପର୍ବତ ନିକଟରେ ଉପସ୍ଥାପନ କରିଥିଲୁ, କିନ୍ତୁ ସେମାନେ ଏହାକୁ ବହନ କରିବାକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଏହାକୁ ଭୟ କରିଥିଲେ ; କିନ୍ତୁ ମନୁଷ୍ୟ ଏହାକୁ ବହନ କରିଥିଲା ; ପରିଣାମକୁ ଉପେକ୍ଷା କରି, ସେ ବାସ୍ତବରେ ନିଜ ପ୍ରତି ଅତ୍ୟାଚାର[2] କରିବାକୁ ସକ୍ଷମ ।

إِنَّا عَرَضْنَا الْأَمَانَةَ عَلَى السَّمَاوَاتِ وَالْأَرْضِ وَالْجِبَالِ فَأَبَيْنَ أَن يَحْمِلْنَهَا وَأَشْفَقْنَ مِنْهَا وَحَمَلَهَا الْإِنسَانُ ۖ إِنَّهُ كَانَ ظَلُومًا جَهُولًا ﴿٧٣﴾

୭୪. (ଆମ୍ଭେ ଏହି ଆଧ୍ୟାତ୍ମିକ ବିଧାନର ଭାର ନ୍ୟସ୍ତ କରିବାର) ପରିଣାମ ଏପରି ହେଲା ଯେ କପଟବିଶ୍ୱାସୀ ପୁରୁଷ ଓ କପଟବିଶ୍ୱାସିନୀ ନାରୀ, ଏବଂ ମୁସରିକ ପୁରୁଷ ଓ ମୁସରିକ ନାରୀମାନଙ୍କୁ ଅଲ୍ଲାହ ଶାସ୍ତି ପ୍ରଦାନ କଲେ ; ଓ ବିଶ୍ୱାସକାରୀ ପୁରୁଷ ଓ ବିଶ୍ୱାସକାରିଣୀ ନାରୀମାନଙ୍କ ପ୍ରତି କୃପା କଲେ ; ଏବଂ ଅଲ୍ଲାହ ହିଁ ପରମ କ୍ଷମାଶୀଳ (ଓ) ସଦା କରୁଣାମୟ ।

لِّيُعَذِّبَ اللَّهُ الْمُنَافِقِينَ وَالْمُنَافِقَاتِ وَالْمُشْرِكِينَ وَالْمُشْرِكَاتِ وَيَتُوبَ اللَّهُ عَلَى الْمُؤْمِنِينَ وَالْمُؤْمِنَاتِ ۗ وَكَانَ اللَّهُ غَفُورًا رَّحِيمًا ﴿٧٤﴾

---

[1] ହଜରତ ମୁସାଙ୍କ ଶତ୍ରୁମାନେ ତାହାଙ୍କ ନାମରେ ସେ ଜଣେ ନାରୀଙ୍କ ସହ ଅବୈଧ ଯୌନ ସମ୍ପର୍କ ରଖିବା, ହଜରତ ହାରୁନଙ୍କ ପ୍ରତି ଈର୍ଷାନ୍ୱିତ ହୋଇ ତାଙ୍କୁ ହତ୍ୟା କରିବାକୁ ଉଦ୍ୟମ କରିବା, କୁଷ୍ଠ ରୋଗରେ ପଡ଼ିବା, ମୂର୍ତ୍ତି ପୂଜା କରିବା ଆଦି ଅନେକ ଦୋଷାରୋପ କରି ତାହାଙ୍କୁ ବ୍ୟଥିତ କରିଥିଲେ ।

[2] ଅର୍ଥାତ୍ ସେ ନିଜ ମନ ଓ ଇନ୍ଦ୍ରିୟକୁ ଅବୈଧ ବିଷୟ ନ କରିବାକୁ ବାଧ୍ୟ କଲେ ।

سُوْرَةُ سَبَاٍ مَكِّيَّةٌ (٣٤)

# ଅଲ—ସବା

(ଏହି ସୂରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୫୫ଟି ଆୟତ ଓ ୬ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

اَلْحَمْدُ لِلّٰهِ الَّذِيْ لَهٗ مَا فِي السَّمٰوٰتِ وَمَا فِي الْاَرْضِ وَلَهُ الْحَمْدُ فِي الْاٰخِرَةِ ۭ وَهُوَ الْحَكِيْمُ الْخَبِيْرُ ②

୨. ସମସ୍ତ ପ୍ରଶଂସା ଅଲ୍ଲାଙ୍କ ପାଇଁ ଉଦ୍ଦିଷ୍ଟ ; ଏବଂ ଯାହାକିଛି ଆକାଶ ଓ ପୃଥିବୀରେ ରହିଅଛି (ସେ ସବୁ ମଧ୍ୟ) ତାହାଙ୍କର ଏବଂ (ଯେପରି ଆଦ୍ୟରେ ସେ ପ୍ରଶଂସାର ପାତ୍ର ଥିଲେ) ଅନ୍ତରେ ମଧ୍ୟ ସେ ପ୍ରଶଂସାର ପାତ୍ର ; ଏବଂ ସେ ହିଁ ତତ୍ତ୍ୱଜ୍ଞ[1] (ଓ) ସର୍ବଜ୍ଞାତା ।

يَعْلَمُ مَا يَلِجُ فِي الْاَرْضِ وَمَا يَخْرُجُ مِنْهَا وَمَا يَنْزِلُ مِنَ السَّمَاۗءِ وَمَا يَعْرُجُ فِيْهَا ۭ وَهُوَ الرَّحِيْمُ الْغَفُوْرُ ③

୩. ଯାହାକିଛି ଭୂମି ମଧ୍ୟରେ ପ୍ରବେଶ[2] କରେ ତାହାକୁ ସେ ଜାଣନ୍ତି ଓ ଯାହାକିଛି ସେଥିରୁ ବହିର୍ଗତ ହୁଏ ତାହାକୁ ମଧ୍ୟ ଜାଣନ୍ତି ତଥା ତାହାକୁ ମଧ୍ୟ ଯାହା ଆକାଶରୁ ଅବତରଣ କରେ ଓ ଯାହା ଆକାଶକୁ ଆରୋହଣ କରେ ; ଏବଂ ସେ ସଦା କରୁଣାମୟ (ଓ) କ୍ଷମାଶୀଳ ।

وَقَالَ الَّذِيْنَ كَفَرُوْا لَا تَاْتِيْنَا السَّاعَةُ ۭ قُلْ بَلٰى وَرَبِّيْ لَتَاْتِيَنَّكُمْ ۙ عٰلِمِ الْغَيْبِ ۚ لَا يَعْزُبُ عَنْهُ مِثْقَالُ ذَرَّةٍ فِي السَّمٰوٰتِ وَلَا فِي الْاَرْضِ وَلَآ اَصْغَرُ مِنْ ذٰلِكَ وَلَآ اَكْبَرُ اِلَّا فِيْ كِتٰبٍ مُّبِيْنٍ ④

୪. ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ଆମେମାନେ ନିଜ ସମ୍ପ୍ରଦାୟର ବିନାଶ ସମୟ ଦେଖିବୁ ନାହିଁ"[3] ; ତୁମେ କୁହ, "ଏପରି ନୁହେଁ ; ଆମକୁ ନିଜ ପାଳନକର୍ତ୍ତାଙ୍କ ରାଣ, ଯେ ଅଦୃଶ୍ୟ ବିଷୟକୁ ଜାଣନ୍ତି ; ଆକାଶ ଓ ପୃଥିବୀରେ ଥିବା କ୍ଷୁଦ୍ରତମ ଅଣୁ ହେଉ ବା ତା'ଠାରୁ କ୍ଷୁଦ୍ର' ବା ବୃହତ୍ ହେଉ, କେହି ତାହାଙ୍କ ଦୃଷ୍ଟିରୁ ଲୁକ୍କାୟିତ ରହେ ନାହିଁ ; (ସୁତରାଂ) ସେ ସମୟକୁ ତୁମେମାନେ ଅବଶ୍ୟ ଦେଖିବ, କାରଣ ଏସବୁ ଏକ ପ୍ରକାଶ୍ୟ ଗ୍ରନ୍ଥରେ ଲିପିବଦ୍ଧ ଅଛି ।"

لِّيَجْزِيَ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ ۭ اُولٰۗىِٕكَ لَهُمْ مَّغْفِرَةٌ وَّرِزْقٌ كَرِيْمٌ ⑤

୫. "ଏହି ସମୟ ଏଥି ସକାଶେ ଉପସ୍ଥିତ ହେବା ଅନିବାର୍ଯ୍ୟ) ଯଦ୍ୱାରା ଅଲ୍ଲାହ୍ ବିଶ୍ୱାସକାରୀ ଓ ବିଶ୍ୱାସ ଅନୁଯାୟୀ କାର୍ଯ୍ୟ କରୁଥିବା ଲୋକମାନଙ୍କୁ ସେମାନଙ୍କ ବିଶ୍ୱାସ ଓ କାର୍ଯ୍ୟ ଅନୁସାରେ ପୁରସ୍କାର ପ୍ରଦାନ କରିବେ ; ସେହି (ଲୋକ) ମାନଙ୍କ ପାଇଁ ସର୍ବଦା ଅଲ୍ଲାହ୍‌ଙ୍କ ତରଫରୁ କ୍ଷମା ଓ ସମ୍ମାନଜନକ ଜୀବିକା ରହିଅଛି ।"

---

୧. ଅର୍ଥାତ୍ ଭୂମି ଭିତରେ ଥିବା ପ୍ରାଣୀ ଓ ତହିଁରୁ ବାହାରୁଥିବା ପ୍ରାଣୀ ସମସ୍ତଙ୍କୁ ସେ ଜାଣନ୍ତି । ସେହିପରି ସେ ପତନୋନ୍ମୁଖୀ ଜାତିକୁ ମଧ୍ୟ ଜାଣନ୍ତି ଯେଉଁମାନେ କି ଉପରୁ ତଳକୁ ଖସି ପଡୁଥାନ୍ତି ଏବଂ ବିକାଶୋନ୍ମୁଖୀ ଜାତିକୁ ମଧ୍ୟ ଜାଣନ୍ତି ଯେଉଁମାନେ କି ତଳୁ ଉପରକୁ ଅର୍ଥାତ୍ ଭୂପୃଷ୍ଠରୁ ଆକାଶ ଆଡ଼କୁ ଅଗ୍ରସର ହେଉଥାନ୍ତି ।

୨. ଅର୍ଥାତ୍ ଅଲ୍ଲାହ୍ ନିଜ ବାଣୀ ଅବତୀର୍ଣ୍ଣ କରିବାରେ ଗୂଢ଼ତତ୍ତ୍ୱ ରଖିଛନ୍ତି କାରଣ ତାହା ଜରିଆରେ ମଣିଷ ସତ୍‌ପଥ ପାଇ ପାରିବ, ଅଲ୍ଲାହ୍‌ଙ୍କ ସହିତ ସମ୍ପର୍କ ସ୍ଥାପନ କରି ପାରିବ ଓ ପ୍ରତ୍ୟେକ ବିଷୟକୁ ଜାଣି ପାରିବ । ବସ୍ତୁତଃ ଅଲ୍ଲାହ୍ ଜାଣିଥିଲେ ଯେ ମଣିଷ ତାହାଙ୍କର ଶିକ୍ଷା ବିନା ପୂର୍ଣ୍ଣତା ଲାଭ କରିବ ପାରିବ ନାହିଁ ।

୩. ଅର୍ଥାତ୍ ଆମ ସମୟରେ ସେହିଦିନର ଆଗମନ ହେବ ନାହିଁ ।

وَالَّذِينَ سَعَوْ فِيٓ ءَايَٰتِنَا مُعَٰجِزِينَ أُو۟لَٰٓئِكَ لَهُمْ عَذَابٌ مِّن رِّجْزٍ أَلِيمٌ ﴿٦﴾

୬. ଏବଂ ଯେଉଁମାନେ ଆମର ନିଦର୍ଶନଗୁଡିକୁ ବିଫଳ କରିବାକୁ ଚେଷ୍ଟା କରୁଛନ୍ତି ; ସେମାନଙ୍କୁ ସେମାନଙ୍କ ପାପ ଯୋଗୁଁ ଯନ୍ତ୍ରଣାଦାୟକ ଶାସ୍ତି ମିଳିବ ।

وَيَرَى الَّذِينَ أُوتُوا الْعِلْمَ الَّذِيٓ أُنزِلَ إِلَيْكَ مِن رَّبِّكَ هُوَ الْحَقَّ وَيَهْدِيٓ إِلَىٰ صِرَاطِ الْعَزِيزِ الْحَمِيدِ ﴿٧﴾

୭. ଏବଂ ଯେଉଁମାନଙ୍କୁ ଜ୍ଞାନ ପ୍ରଦାନ କରାଯାଇଅଛି ସେମାନେ ତୁମ ପାଳନକର୍ତ୍ତାଙ୍କ ଠାରୁ ତୁମ ପ୍ରତି ଯାହା ଅବତୀର୍ଣ୍ଣ ହୋଇଅଛି ତାହାକୁ ସତ୍ୟ ବୋଲି ଜାଣନ୍ତି ଏବଂ ତାହା ପରାକ୍ରମୀ ଓ ପ୍ରଶଂସିତ (ଅଲ୍ଲାହ)ଙ୍କ ନିକଟକୁ ପଥ ପ୍ରଦର୍ଶନ କରେ ।

وَقَالَ الَّذِينَ كَفَرُوا هَلْ نَدُلُّكُمْ عَلَىٰ رَجُلٍ يُنَبِّئُكُمْ إِذَا مُزِّقْتُمْ كُلَّ مُمَزَّقٍ إِنَّكُمْ لَفِي خَلْقٍ جَدِيدٍ ﴿٨﴾

୮. ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ହେ ଲୋକମାନେ !) କ'ଣ ଆମେମାନେ ତୁମମାନଙ୍କୁ ଏପରି ଏକ ବ୍ୟକ୍ତି ଦେଖାଇବୁ ଯେ ତୁମମାନଙ୍କୁ ଏହା ଅବଗତ କରାଉଅଛି କି ତୁମେମାନେ (ମୃତ୍ୟୁପରେ) ଖଣ୍ଡବିଖଣ୍ଡ ହୋଇଯିବା ପରେ ପୁନର୍ବାର (ଯୋଡି ହୋଇ) ଏକ ନୂତନ ସୃଷ୍ଟି ଆକାରରେ ପରିବର୍ତ୍ତିତ ହୋଇଯିବ ?"

أَفْتَرَىٰ عَلَى اللَّهِ كَذِبًا أَم بِهِ جِنَّةٌ بَلِ الَّذِينَ لَا يُؤْمِنُونَ بِالْآخِرَةِ فِي الْعَذَابِ وَالضَّلَالِ الْبَعِيدِ ﴿٩﴾

୯. "କ'ଣ ସେହି ବ୍ୟକ୍ତି ଅଲ୍ଲାହଙ୍କ ସଂକ୍ରାନ୍ତରେ ମିଥ୍ୟା ରଚନା କରିଅଛି ବା ତାହାକୁ ପାଗଳାମି ଆକ୍ରାନ୍ତ କରିଛି ?" ଏପରି ନୁହେଁ, ବରଂ ଯେଉଁମାନେ ପରକାଳକୁ ବିଶ୍ୱାସ କରନ୍ତି ନାହି ସେମାନେ (ଏପରି ମନ୍ଦ ଭାବନା ଯୋଗୁଁ ଏବେଠାରୁ) ଶାସ୍ତି ଓ ବିପଜ୍ଜନକ ପଥଭ୍ରଷ୍ଟତାର କବଳିତ ହୋଇଛନ୍ତି ।

أَفَلَمْ يَرَوْا إِلَىٰ مَا بَيْنَ أَيْدِيهِمْ وَمَا خَلْفَهُم مِّنَ السَّمَاءِ وَالْأَرْضِ إِن نَّشَأْ نَخْسِفْ بِهِمُ الْأَرْضَ أَوْ نُسْقِطْ عَلَيْهِمْ كِسَفًا مِّنَ السَّمَاءِ إِنَّ فِي ذَٰلِكَ لَآيَةً لِّكُلِّ عَبْدٍ مُّنِيبٍ ﴿١٠﴾ ع

୧୦. ଆକାଶ ଓ ପୃଥିବୀର ଯାହାକିଛି ସେମାନଙ୍କ ସମ୍ମୁଖରେ ଓ ଯାହାକିଛି ସେମାନଙ୍କ ପଶ୍ଚାତରେ (ଘେରି ରହି) ଅଛି କ'ଣ ତାହାକୁ ସେମାନେ ଦେଖିପାରୁ ନାହାନ୍ତି ? ଯଦି ଆମେ ଇଚ୍ଛା କରୁ, ତେବେ ସେମାନଙ୍କୁ ସେମାନଙ୍କ ନିଜ ଦେଶରେ ବିପଦଗ୍ରସ୍ତ କରାଇବୁ ବା ସେମାନଙ୍କ ଉପରେ ମେଘର କିଛି ଅଂଶକୁ[1] ନିପତିତ କରାଇବୁ ; ଏଥିରେ ଅଲ୍ଲାହଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ କରୁଥିବା ପ୍ରତ୍ୟେକ ଭକ୍ତଙ୍କ ସକାଶେ ଏକ ନିଦର୍ଶନ ରହିଅଛି ।

---

୧ ଅର୍ଥାତ୍ ସେମାନଙ୍କ ଦେଶରେ କ୍ରମାଗତ ବର୍ଷା ହେଉ ଓ ସେମାନଙ୍କୁ ଧ୍ୱଂସ କରିଦେଉ ।

وَلَقَدْ اٰتَيْنَا دَاوٗدَ مِنَّا فَضْلًا ۗ يٰجِبَالُ اَوِّبِيْ مَعَهٗ وَالطَّيْرَ ۚ وَاَلَنَّا لَهُ الْحَدِيْدَ ﴿۱۱﴾

୧୧. ଏବଂ ଆମେ ଦାଉଦଙ୍କୁ ନିଜ ତରଫରୁ କୃପା ପ୍ରଦାନ କରିଥିଲୁ (ଓ କହିଥିଲୁ) "ହେ ପର୍ବତବାସୀ[1]ମାନେ ! ତୁମେମାନେ ଓ ହେ ପକ୍ଷୀମାନେ[2] ! ତୁମେମାନେ ମଧ୍ୟ ତାହାଙ୍କ ସହିତ ଅଲ୍ଲାହ୍‌ଙ୍କର ଗୁଣଗାନ କର ;" ଏବଂ ଆମେ ତାହାଙ୍କ ସକାଶେ ଲୁହାକୁ ନରମ କରି ଦେଇଥିଲୁ ।

اَنِ اعْمَلْ سٰبِغٰتٍ وَّقَدِّرْ فِي السَّرْدِ وَاعْمَلُوْا صَالِحًا ۗ اِنِّيْ بِمَا تَعْمَلُوْنَ بَصِيْرٌ ﴿۱۲﴾

୧୨. (ଏବଂ କହିଥିଲୁ ଯେ) ତୁମେ ପୂର୍ଣ୍ଣ ଆକାରର ସାଞ୍ଜୁମାନ ତିଆରି କର, ଓ ସେଗୁଡ଼ିକର କୁଣ୍ଡଳୀଗୁଡ଼ିକୁ ଛୋଟ ଆକାରରେ ଗଢ ; ଏବଂ (ହେ ଦାଉଦର ସହଚରମାନେ !) ନିଜ ବିଶ୍ୱାସ ମୁତାବକ କାର୍ଯ୍ୟ କର ; ଆମେ ତୁମମାନଙ୍କର କାର୍ଯ୍ୟକୁ ନିରୀକ୍ଷଣ କରୁଅଛୁ ।

وَلِسُلَيْمٰنَ الرِّيْحَ غُدُوُّهَا شَهْرٌ وَّرَوَاحُهَا شَهْرٌ ۚ وَاَسَلْنَا لَهٗ عَيْنَ الْقِطْرِ ۗ وَمِنَ الْجِنِّ مَنْ يَّعْمَلُ بَيْنَ يَدَيْهِ بِاِذْنِ رَبِّهٖ ۗ وَمَنْ يَّزِغْ مِنْهُمْ عَنْ اَمْرِنَا نُذِقْهُ مِنْ عَذَابِ السَّعِيْرِ ﴿۱۳﴾

୧୩. ଏବଂ (ଆମେ) ସୁଲେମାନଙ୍କୁ ଏପରି ବାୟୁ (ପ୍ରଦାନ କରିଥିଲୁ), ଯାହାର ପ୍ରଭାତକାଳୀନ ଯାତ୍ରା[3] ଏକ ମାସ ସଙ୍ଗେ ସମାନ ଥିଲା, ଏବଂ ସନ୍ଧ୍ୟାକାଳୀନ ଯାତ୍ରା ମଧ୍ୟ ଏକ ମାସ ସଙ୍ଗେ ସମାନ ଥିଲା ; ଏବଂ ଆମେ ତାହାଙ୍କ ପାଇଁ ତରଳ ତମ୍ବାର[4] ସ୍ରୋତ ପ୍ରବାହିତ କରାଇଥିଲୁ ; ଏବଂ ଆମେ ତାହାଙ୍କୁ ଜିନ୍‌ମାନଙ୍କର ଏକ ଗୋଷ୍ଠୀ ଅର୍ପଣ କରିଥିଲୁ ଯେଉଁମାନେ ତାହାଙ୍କ ପାଳନକର୍ତ୍ତାଙ୍କ ଆଦେଶ ଅନୁସାରେ ତାହାଙ୍କର ଆଜ୍ଞା ପାଳନ କରି କାର୍ଯ୍ୟ କରୁଥିଲେ ; ଏବଂ (ସେମାନଙ୍କୁ ଏହା ମଧ୍ୟ କହିଥିଲୁ ଯେ) ସେମାନଙ୍କ ମଧ୍ୟରୁ ଯେ କେହି ଆମ ଆଦେଶକୁ ଲଙ୍ଘନ କରିବ, ତା'କୁ ଆମେ ଏକ ଜ୍ୱଳନ୍ତ ଅଗ୍ନିର ଶାସ୍ତି ଦେବୁ ।

يَعْمَلُوْنَ لَهٗ مَا يَشَآءُ مِنْ مَّحَارِيْبَ وَتَمَاثِيْلَ وَجِفَانٍ

୧୪. ସେ ଯାହା ଇଚ୍ଛା କରୁଥିଲେ ସେ ଜିନ୍‌ମାନେ ତାହାଙ୍କ ସକାଶେ ନିର୍ମାଣ କରୁଥିଲେ ଅର୍ଥାତ୍ ଉପାସନା ଗୃହ ଓ ମୂର୍ତ୍ତି ଓ ଜଳଭଣ୍ଡାର ସଦୃଶ ବଡ ବଡ ପରାତ ଓ (ଏପରି) ବଡ (ଓ ଓଜନଦାର) ହଣ୍ଡା, ଯାହା ସର୍ବଦା ଚୁଲି ଉପରେ ସ୍ଥାପିତ ହୋଇ

---

୧. ପବିତ୍ର କୋରାନରେ 'ୟା ଜେବାଲୋ' ଅଭିବ୍ୟକ୍ତି ଅଛି ଯାହାର ଅର୍ଥ 'ହେ ପର୍ବତମାନ' ! କେତେକ ଭାଷ୍ୟକାର କହନ୍ତି ଯେ ହଜରତ ଦାଉଦଙ୍କ ସହିତ ପର୍ବତମାନେ ଉଚ୍ଚ ସ୍ୱରରେ ଅଲ୍ଲାହ୍‌ଙ୍କର ଗୁଣଗାନ କରୁଥିଲେ । କିନ୍ତୁ ସେମାନେ ଭୁଲି ଯାଉଛନ୍ତି ଯେ ହଜରତ ୟାକୁବଙ୍କ ପୁତ୍ରମାନେ ପିତାଙ୍କୁ କହିଥିଲେ ଯେ ଯଦି ଆମେମାନେ ମିଛ କହୁଛୁ ତେବେ ଆମେ ଯେଉଁ ସହରରେ ରହୁଛୁ ସେହି ସହରକୁ ପଚାର । (୧୨:୮୩ ଦ୍ରଷ୍ଟବ୍ୟ), କିନ୍ତୁ ସହର କେବେ କଥା କହେ ନାହିଁ । ତେଣୁ ଏହାର ପ୍ରକୃତ ଅର୍ଥ ହେଉଛି 'ସହରବାସୀ' । ସେହିପରି ଏଠାରେ 'ହେ ପର୍ବତମାନ'ର ଅର୍ଥ 'ହେ ପର୍ବତବାସୀମାନେ !' ତୁମେମାନେ ମଧ୍ୟ ହଜରତ ଦାଉଦଙ୍କ ଉପରେ ବିଶ୍ୱାସ କର ଓ ଅଲ୍ଲାହ୍‌ଙ୍କ ସ୍ତୁତି-ଗାନ କରିବାରେ ତାହାଙ୍କ ସହିତ ସମ୍ମିଳିତ ହୁଅ ।

୨. ଅର୍ଥାତ୍ ସଦାଚାରୀ ଲୋକମାନେ । ବିବରଣାର୍ଥ ୫:୧୧୧ର ଟୀକା ଦ୍ରଷ୍ଟବ୍ୟ ।

୩. ହଜରତ ସୁଲେମାନଙ୍କ ସାମ୍ରାଜ୍ୟ ଉତ୍ତର ସିରିୟାଠାରୁ ପୂର୍ବ ଭୂମଧ୍ୟ ସାଗରର କଡ଼େ କଡ଼େ ଲୋହିତ ସାଗରର ଦକ୍ଷିଣ ସୀମା ପର୍ଯ୍ୟନ୍ତ ଓ ଆରବ ସାଗରର କଡ଼େ କଡ଼େ ପାରସ୍ୟ ଉପସାଗର ପର୍ଯ୍ୟନ୍ତ ବିସ୍ତାରିତ ଥିଲା । ବସ୍ତୁତଃ ତାଙ୍କ ସମୟରେ ଧନ, ମାନ ଓ ଶକ୍ତି ଦୃଷ୍ଟିରୁ ଇସ୍ରାଇଲୀୟ ସାମ୍ରାଜ୍ୟ ଶୀର୍ଷ ସ୍ଥାନରେ ପହଞ୍ଚି ଥିଲା । ତାଙ୍କର ଅନେକ ବାଣିଜ୍ୟ ପୋତ ଥିଲା । ପାରସ୍ୟ ଉପସାଗରଠାରୁ ଅଫ୍ରିକିୟା ପର୍ଯ୍ୟନ୍ତ ବାୟୁ ପ୍ରବାହ ଅତି ଉତ୍ତମ ଥିଲା, ଫଳରେ ତାଙ୍କ ସମୟରେ ସାମୁଦ୍ରିକ ବାଣିଜ୍ୟ ଭଲ ଭାବରେ ହେଉଥିଲା ।

୪. ହଜରତ ସୁଲେମାନଙ୍କ ସମୟରେ ଶିଳ୍ପକଳା ଓ କାରିଗରି ବିଦ୍ୟାର ପ୍ରଭୂତ ଉନ୍ନତି ହୋଇଥିଲା । ସେହି ଯୁଗରେ ସେମାନେ ତମ୍ବା ତରଳାଇବାକୁ କାରଖାନା ସ୍ଥାପନ କରିବାରେ ସମର୍ଥ ହୋଇଥିଲେ । (ବିବରଣାର୍ଥ ୨୭:୪୦ର ଟୀକା ଦ୍ରଷ୍ଟବ୍ୟ)

ରହୁଥିଲା ; (ଏବଂ ଆମ୍ଭେ କହିଲୁ), "ହେ ଦାଉଦଙ୍କ ପରିବାରବର୍ଗ ! କୃତଜ୍ଞତା ସହକାରେ କାର୍ଯ୍ୟ କର ;" କିନ୍ତୁ ଆମର ଭକ୍ତମାନଙ୍କ ମଧ୍ୟରୁ ଅଳ୍ପ ସଂଖ୍ୟକ ଲୋକ କୃତଜ୍ଞ ହୁଅନ୍ତି ।

كَالْجَوَابِ وَقُدُوْرٍ رّٰسِيٰتٍ ۭ اِعْمَلُوْٓا اٰلَ دَاوٗدَ شُكْرًا ۭ وَقَلِيْلٌ مِّنْ عِبَادِيَ الشَّكُوْرُ ⑭

୧୫. ତା'ପରେ ଯେତେବେଳେ ଆମ୍ଭେ ତାହାଙ୍କ ମୃତ୍ୟୁର ଆଗମନ ସଂକ୍ରାନ୍ତରେ ନିଷ୍ପତ୍ତି କଲୁ, ସେତେବେଳେ ସେମାନଙ୍କୁ ତାହାଙ୍କ ମୃତ୍ୟୁ ବିଷୟରେ ଭୂମିର ଏପରି ଏକ କୀଟ[1] ଖବର ଦେଲା ଯେ ତାହାଙ୍କର (ଶାସନ) ଦଣ୍ଡକୁ ଖାଇ ଯାଉଥିଲା ; ଏବଂ ଯେତେବେଳେ ତାହା ପଡିଗଲା, ସେତେବେଳେ ଜିନ୍‌ମାନେ ଜାଣି ପାରିଲେ ଯେ ଯଦି ସେମାନଙ୍କର ଅଦୃଶ୍ୟ ବିଷୟର ଜ୍ଞାନ[2] ଥାଆନ୍ତା, ତେବେ ସେମାନେ ଅପମାନଜନକ ଶାସ୍ତିର କବଳିତ ହୋଇ ନ ଥାଆନ୍ତେ ।

فَلَمَّا قَضَيْنَا عَلَيْهِ الْمَوْتَ مَا دَلَّهُمْ عَلٰى مَوْتِهٖٓ اِلَّا دَابَّةُ الْاَرْضِ تَاْكُلُ مِنْسَاَتَهٗ ۚ فَلَمَّا خَرَّ تَبَيَّنَتِ الْجِنُّ اَنْ لَّوْ كَانُوْا يَعْلَمُوْنَ الْغَيْبَ مَا لَبِثُوْا فِي الْعَذَابِ الْمُهِيْنِ ⑮

୧୬. ସବା ପାଇଁ ତାହାଙ୍କ ନିଜ ଦେଶ ମଧ୍ୟରେ ଏକ ବଡ଼ ନିଦର୍ଶନ ରହିଥିଲା (ଓ ତାହା) ଦୁଇଗୋଟି ଉଦ୍ୟାନ ଆକାରରେ (ଥିଲା) ; ତନ୍ମଧ୍ୟରୁ ଗୋଟିଏ ଦକ୍ଷିଣ ପାର୍ଶ୍ୱରେ ଥିଲା ଓ ଅନ୍ୟଟି ବାମ ପାର୍ଶ୍ୱରେ ଥିଲା ; (ଆମ୍ଭେ ସେମାନଙ୍କୁ କହିଥିଲୁ ଯେ) ନିଜ ପାଳନକର୍ତ୍ତାଙ୍କ (ପ୍ରଦତ୍ତ) ଜୀବିକାରୁ ଖାଅ, ଏବଂ ତାହାଙ୍କୁ କୃତଜ୍ଞତା ଜ୍ଞାପନ କର ; (ତୁମମାନଙ୍କର) ସହର ସୁନ୍ଦର ଅଟେ ଏବଂ (ତୁମମାନଙ୍କର) ପାଳନକର୍ତ୍ତା ଅତ୍ୟନ୍ତ କ୍ଷମାଶୀଳ ।

لَقَدْ كَانَ لِسَبَاٍ فِيْ مَسْكَنِهِمْ اٰيَةٌ ۚ جَنَّتٰنِ عَنْ يَّمِيْنٍ وَّشِمَالٍ ڛ كُلُوْا مِنْ رِّزْقِ رَبِّكُمْ وَاشْكُرُوْا لَهٗ ۭ بَلْدَةٌ طَيِّبَةٌ وَّرَبٌّ غَفُوْرٌ ⑯

୧୭. ତାହା ସତ୍ତ୍ୱେ ସେମାନେ (ସତ୍ୟରୁ) ବିମୁଖ ହୋଇଥିଲେ ; ସେତେବେଳେ ଆମ୍ଭେ (ନିରାଶ ହୋଇ) ସେମାନଙ୍କ ଉପରେ ଏକ ପ୍ରଳୟଙ୍କରୀ ବନ୍ୟା ପ୍ରେରଣ କରିଥିଲୁ ଏବଂ ଆମ୍ଭେ ସେମାନଙ୍କର ଦୁଇଗୋଟି ଉତ୍କୃଷ୍ଟ ଉଦ୍ୟାନ ପରିବର୍ତ୍ତେ ସେମାନଙ୍କୁ ଏପରି ଦୁଇଗୋଟି ଉଦ୍ୟାନ ଦେଲୁ ଯାହାର ଫଳ ତିକ୍ତ ସ୍ୱାଦଯୁକ୍ତ ଥିଲା ଏବଂ ଯହିଁରେ ଝାଉଁ ଗଛ ଓ କେତୋଟି ମାତ୍ର ବରକୋଳି ଗଛ ଥିଲା ।

فَاَعْرَضُوْا فَاَرْسَلْنَا عَلَيْهِمْ سَيْلَ الْعَرِمِ وَبَدَّلْنٰهُمْ بِجَنَّتَيْهِمْ جَنَّتَيْنِ ذَوَاتَيْ اُكُلٍ خَمْطٍ وَّاَثْلٍ وَّشَيْءٍ مِّنْ سِدْرٍ قَلِيْلٍ ⑰

୧୮. ଆମ୍ଭେ ସେମାନଙ୍କୁ ଏହି ଦଣ୍ଡ ସେମାନଙ୍କର କୃତଘ୍ନତା ଯୋଗୁଁ ଦେଇଥିଲୁ ; ଏବଂ କୃତଘ୍ନମାନଙ୍କୁ ଆମ୍ଭେ ଏହିପରି ପ୍ରତିଫଳ ଦେଇଥାଉ ।

ذٰلِكَ جَزَيْنٰهُمْ بِمَا كَفَرُوْا ۭ وَهَلْ نُجٰزِيْٓ اِلَّا الْكَفُوْرَ ⑱

୧. ଅର୍ଥାତ୍ ହଜରତ ସୁଲେମାନଙ୍କ ଅଯୋଗ୍ୟ ପୁତ୍ର ଓ ଦାୟାଦ ରେହୋବୋମ । ସେ ଥିଲା ଏକ କୀଟ ସଦୃଶ । ସେ ଉତ୍ତମ ବ୍ୟକ୍ତି ନଥିଲା । ହଜରତ ସୁଲେମାନଙ୍କ ପରେ ଲୋକମାନେ ତା' ବ୍ୟବହାରରେ ଅସନ୍ତୁଷ୍ଟ ହୋଇ ପଡ଼ିଲେ ଓ ବିଦ୍ରୋହ କରିଥିଲେ (କିଙ୍ଗସ୍, ଅ. ୧୨' ଦ୍ରଷ୍ଟବ୍ୟ) ।

୨. ଯଦି ସେମାନେ ଜାଣିଥାନ୍ତେ ଯେ ହଜରତ ସୁଲେମାନଙ୍କ ସଦୃଶ ଶକ୍ତିଶାଳୀ ସମ୍ରାଟଙ୍କ ସାମ୍ରାଜ୍ୟ ମଧ୍ୟ ଦିନେ ଧ୍ୱଂସ ହୋଇଯିବ ତେବେ ସେମାନେ ସେହି ସ୍ୱାଧୀନତା ଦିବସର ପ୍ରତୀକ୍ଷାରେ ତାହାଙ୍କର ଆଜ୍ଞା ପାଳନ କରି ନ ଥା'ନ୍ତେ ।

وَجَعَلْنَا بَيْنَهُمْ وَبَيْنَ الْقُرَى الَّتِي بٰرَكْنَا فِيهَا قُرًى ظَاهِرَةً وَقَدَّرْنَا فِيهَا السَّيْرَ ۖ سِيرُوا فِيهَا لَيَالِيَ وَأَيَّامًا اٰمِنِينَ ⑲

୧୯. ଏବଂ ଆମ୍ଭେ ସେମାନଙ୍କ ମଧ୍ୟରେ ଓ ଆମ୍ଭର ଆଶୀର୍ବାଦ ଲାଭ କରିଥିବା ସେହି ବସତିମାନଙ୍କ ମଧ୍ୟରେ ଅନେକ ଜନବସତି ସ୍ଥାପନ କରିଥିଲୁ ଯାହା ପରସ୍ପରର ସମ୍ମୁଖୀନ ତଥା ନିକଟବର୍ତ୍ତୀ ଥିଲା ; ଏବଂ ଆମ୍ଭେ ଗୋଟିଏ ବସତିରୁ ଅନ୍ୟ ବସତି ପର୍ଯ୍ୟନ୍ତ ଗମନ କରିବା ଦୂରତା କମାଇ ଦେଇଥିଲୁ, ଏବଂ କହିଥିଲୁ ଯେ ରାତ୍ରିକାଳରେ ତଥା ଦିବସରେ, ତନ୍ମଧ୍ୟରେ ନିରାପଦରେ ଯାତ୍ରା କର ।

فَقَالُوا رَبَّنَا بٰعِدْ بَيْنَ أَسْفَارِنَا وَظَلَمُوا أَنْفُسَهُمْ فَجَعَلْنٰهُمْ أَحَادِيثَ وَمَزَّقْنٰهُمْ كُلَّ مُمَزَّقٍ ۚ إِنَّ فِي ذٰلِكَ لَاٰيٰتٍ لِكُلِّ صَبَّارٍ شَكُورٍ ⑳

୨୦. (କିନ୍ତୁ କୃତଜ୍ଞତା ଜ୍ଞାପନ କରିବା ପରିବର୍ତ୍ତେ) ସେମାନେ କହିଲେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କର ଯାତ୍ରାକୁ[୧] ସୁଦୀର୍ଘ କର (ଫଳରେ ଭ୍ରମଣର ଆନନ୍ଦ ମିଳିବ)"; ଏବଂ ସେମାନେ ନିଜ ପ୍ରତି ଅତ୍ୟାଚାର କରିଥିଲେ ; ତେଣୁ ଆମ୍ଭେ ସେମାନଙ୍କ ନାମ ଲୋପ କରି ଦେଇଥିଲୁ ; ଏବଂ ସେମାନଙ୍କୁ ପୂର୍ବକାଳର ଗଳ୍ପରେ ପରିଣତ କରିଦେଲୁ[୨] ଏବଂ (ସେମାନଙ୍କୁ) ଧ୍ୱଂସ କରି ଖଣ୍ଡବିଖଣ୍ଡ କରି ଦେଇଥିଲୁ ; ଏଥିରେ ପ୍ରତ୍ୟେକ ଧୈର୍ଯ୍ୟଶୀଳ ଓ କୃତଜ୍ଞ ଲୋକଙ୍କ ପାଇଁ ବଡ଼ ନିଦର୍ଶନ ରହିଅଛି ।

وَلَقَدْ صَدَّقَ عَلَيْهِمْ إِبْلِيسُ ظَنَّهُ فَاتَّبَعُوهُ إِلَّا فَرِيقًا مِنَ الْمُؤْمِنِينَ ㉑

୨୧. ଏବଂ ଇବଲିସ ସେମାନଙ୍କ ସମ୍ବନ୍ଧରେ ନିଜର ଚିନ୍ତାଧାରାକୁ ସତ୍ୟ ସାବ୍ୟସ୍ତ କରିଥିଲା, ଏବଂ ବିଶ୍ୱାସକାରୀମାନଙ୍କର ଗୋଟିଏ ଗୋଷ୍ଠୀକୁ ଛାଡ଼ି ଅବଶିଷ୍ଟ ଲୋକେ (ଅର୍ଥାତ୍ ଅବିଶ୍ୱାସକାରୀମାନେ) ତାହାର ଅନୁସରଣ କଲେ ।

وَمَا كَانَ لَهُ عَلَيْهِمْ مِنْ سُلْطٰنٍ إِلَّا لِنَعْلَمَ مَنْ يُؤْمِنُ بِالْاٰخِرَةِ مِمَّنْ هُوَ مِنْهَا فِي شَكٍّ ۗ وَرَبُّكَ عَلٰى كُلِّ شَيْءٍ حَفِيظٌ ㉒

୨୨. ଅଥଚ ସେମାନଙ୍କ ଉପରେ ତାହାକୁ (ଅର୍ଥାତ୍ ଇବଲିସର) କୌଣସି କର୍ତ୍ତୃତ୍ୱ ପ୍ରାପ୍ତ ହୋଇ ନ ଥିଲା ; ଏହା କେବଳ ଏଥି ସକାଶେ ହେଲା ଯେ ଯେଉଁମାନେ ପରକାଳ ଉପରେ ବିଶ୍ୱାସ କରିବାକୁ ଇଚ୍ଛା କରୁଛନ୍ତି ଆମ୍ଭେ ସେମାନଙ୍କୁ ଅନ୍ୟ ଯେଉଁମାନେ ଏ ବିଷୟରେ ସନ୍ଦେହ କରୁଛନ୍ତି ସେମାନଙ୍କ ଠାରୁ ସମୁନ୍ନତ କରି ସେମାନଙ୍କର ଆଭ୍ୟନ୍ତରୀଣ ରହସ୍ୟକୁ ଅନାବୃତ କରିଦେବୁ ; ଏବଂ ତୁମ୍ଭର ପାଳନକର୍ତ୍ତା ପ୍ରତ୍ୟେକ ବିଷୟର ତତ୍ତ୍ୱାବଧାରକ ଅଟନ୍ତି ।

---

୧. ହଜରତ ସୁଲେମାନଙ୍କ ବିଶାଳ ସାମ୍ରାଜ୍ୟ ତାଙ୍କ ଅନ୍ତେ ଖଣ୍ଡ ବିଖଣ୍ଡ ହୋଇଯିବାରୁ ଆରବ ଦେଶ ମଧ୍ୟ ସ୍ୱତନ୍ତ୍ର ହୋଇଗଲା । ସାମ୍ରାଜ୍ୟରେ ଅରାଜକତା ବ୍ୟାପି ଯାଇଥିଲା ଓ ସହରଗୁଡ଼ିକ ଧ୍ୱଂସ ହୋଇ ଯାଇଥିଲା, ଫଳରେ ଯାତ୍ରା ଦୀର୍ଘ ଓ କଷ୍ଟଦାୟକ ହୋଇଗଲା ।

୨. ଅର୍ଥାତ୍ ସେମାନଙ୍କ ଇତିହାସ ଏପରି ବିଲୁପ୍ତ ହୋଇଗଲା ଯେ ସେମାନଙ୍କ ଘଟଣାବଳୀ ଲୋକମାନଙ୍କୁ ଗଳ୍ପ ଭଳି ବୋଧ ହେଲା ।

قُلِ ادْعُوا الَّذِينَ زَعَمْتُمْ مِّنْ دُونِ اللَّهِ ۚ لَا يَمْلِكُونَ مِثْقَالَ ذَرَّةٍ فِي السَّمٰوٰتِ وَلَا فِي الْأَرْضِ وَمَا لَهُمْ فِيهِمَا مِنْ شِرْكٍ وَّمَا لَهُ مِنْهُمْ مِّنْ ظَهِيرٍ ﴿٢٣﴾

୨୩. ତୁମେ କୁହ, "ଯେଉଁ ଲୋକମାନଙ୍କୁ ତୁମେମାନେ ନିଜ ଚିନ୍ତାଧାରା ଅନୁସାରେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଡାକୁଅଛ, ସେମାନଙ୍କୁ (ନିଜର ସହାୟତା ନିମିତ୍ତ) ଡାକ, ସେମାନେ ଆକାଶ ଓ ପୃଥିବୀରେ ଏକ କ୍ଷୁଦ୍ର ଅଣୁ ସଦୃଶ କୌଣସି ବସ୍ତୁର ଆଦୌ ମାଲିକ ନୁହନ୍ତି, ଏବଂ ଏ ଦୁହିଙ୍କ (ମାଲିକାନା) ମଧ୍ୟରେ ସେମାନଙ୍କର କୌଣସି ଭାଗ ନାହିଁ କି ସେମାନଙ୍କ ମଧ୍ୟରୁ କେହି ତାହାଙ୍କର ସାହାଯ୍ୟକାରୀ ନାହାନ୍ତି।

وَلَا تَنْفَعُ الشَّفَاعَةُ عِنْدَهُ إِلَّا لِمَنْ أَذِنَ لَهُ ۚ حَتّٰى إِذَا فُزِّعَ عَنْ قُلُوبِهِمْ قَالُوا مَاذَا ۙ قَالَ رَبُّكُمْ ۖ قَالُوا الْحَقَّ ۚ وَهُوَ الْعَلِيُّ الْكَبِيرُ ﴿٢٤﴾

୨୪. ଏବଂ ସେ (ଅଲ୍ଲାହ୍) ଯାହାକୁ ସୁପାରିଶ କରିବାକୁ ଅନୁମତି ପ୍ରଦାନ କରିଛନ୍ତି [୧] (ତଥା ଯାହା ସଂକ୍ରାନ୍ତରେ ସୁପାରିଶ କରାଯିବାକୁ ଅନୁମତି ପ୍ରଦାନ କରାଯାଇଛି) ତାହାଙ୍କ ବ୍ୟତୀତ ଅନ୍ୟ କାହାରି ସୁପାରିଶ ତାହାଙ୍କ ନିକଟରେ ଫଳପ୍ରଦ ହେବ ନାହିଁ; ଏପରିକି ଯେତେବେଳେ ସେ (ଅନୁମତି ପ୍ରାପ୍ତ ବ୍ୟକ୍ତି)ମାନଙ୍କ ମନରୁ ଭୟ ଦୂରୀଭୂତ ହୁଏ, ସେତେବେଳେ ଅନ୍ୟମାନେ ସେମାନଙ୍କୁ କହନ୍ତି, "ବର୍ତ୍ତମାନ ତୁମମାନଙ୍କର ପାଳନକର୍ତ୍ତା ତୁମମାନଙ୍କୁ କ'ଣ କହିଲେ ?" ଏ ବିଷୟରେ ସେମାନେ କହିବେ, "ଯାହା କହିଲେ, ସତ୍ୟ ହିଁ କହିଲେ," ଏବଂ ସେ ହିଁ ମହାମହିମମୟ (ଓ) ଅତ୍ୟନ୍ତ କ୍ଷମତା-ସମ୍ପନ୍ନ [୨] ।

قُلْ مَنْ يَرْزُقُكُمْ مِّنَ السَّمٰوٰتِ وَالْأَرْضِ ۖ قُلِ اللَّهُ ۙ وَإِنَّا أَوْ إِيَّاكُمْ لَعَلٰى هُدًى أَوْ فِي ضَلٰلٍ مُّبِينٍ ﴿٢٥﴾

୨୫. ତୁମେ କୁହ, "(ହେ ଲୋକମାନେ !) ଆକାଶ ଓ ପୃଥିବୀରୁ ତୁମମାନଙ୍କୁ କିଏ ଜୀବିକା ପ୍ରଦାନ କରେ ?" (ଏବଂ ନିଜେ ଉତ୍ତର ସ୍ୱରୂପ) କୁହ, "ଅଲ୍ଲାହ୍ ; (ଆଉ କିଏ ?) ଏବଂ ଆମେ କିମ୍ବା ତୁମେମାନେ [୩] ସତ୍‌ପଥରେ ରହିଛୁ କିମ୍ବା ପ୍ରକାଶ୍ୟ ବିଭ୍ରାନ୍ତିରେ ପଡିରହିଛୁ ?"

୧. ଅର୍ଥାତ୍ ହଜରତ ମହମ୍ମଦ।

୨. ଯେହେତୁ ପୂର୍ବରୁ କୁହା ଯାଇଥିଲା ଯେ ଅବିଶ୍ୱାସକାରୀମାନଙ୍କ ପକ୍ଷରେ କେବେ ହେଁ ସୁପାରିଶ ମଞ୍ଜୁର କରାହେବ ନାହିଁ ଏବଂ ଏବେ କୁହାଗଲା ଯେ ସୁପାରିଶ ମଞ୍ଜୁର କରାହେବ, ତେଣୁ ଏ ଦୁଇଟି ବିଷୟରେ ପାର୍ଥକ୍ୟ ରହିଥିଲା। ସେହି କାରଣରୁ ଆଲୋଚ୍ୟ ଆୟତରେ ସେହି ପାର୍ଥକ୍ୟକୁ ଦୂର କରାଯାଇଛି। ଅଲ୍ଲାହ୍ କହୁଛନ୍ତି ଯେ ସୁପାରିଶ ଅବଶ୍ୟ ମଞ୍ଜୁର କରାହେବ କିନ୍ତୁ କେବଳ ସେହି ସୁପାରିଶ ମଞ୍ଜୁର କରାହେବ ଯାହାକୁ ଅଲ୍ଲାହ୍ ଅନୁମତି ଦେବେ। ଯେହେତୁ ସୁପାରିଶର ମଞ୍ଜୁରି ଆଦେଶ ଉପରେ ନିର୍ଭର କରେ, ତେଣୁ ଯାହାକୁ ସୁପାରିଶ କରିବାକୁ ଅନୁମତି ମିଳିବ ସେ ମଧ୍ୟ ବ୍ୟସ୍ତ ହୋଇଯିବ ଓ କହିବ ଯେ କାହିଁକି ମୋ ଜରିଆରେ ଏପରି ଅସାଧାରଣ କାର୍ଯ୍ୟ କରାଯାଉଛି। ସେତେବେଳେ ତାଙ୍କ ନିକଟବର୍ତ୍ତୀ ଅନ୍ୟାନ୍ୟ ଦେବଦୂତ ବା ଅନ୍ୟମାନେ ତାହାଙ୍କୁ ପଚାରିବେ ଯେ ତୁମକୁ ଅଲ୍ଲାହ୍ କେଉଁ ଗୂଢ଼ ରହସ୍ୟ ବିଷୟରେ ଅବଗତ କରାଇଛନ୍ତି ? ସେ କହିବେ, ପ୍ରକାଶ୍ୟରେ ଏହା ନ ହେବାଭଳି ଜଣା ପଡୁଛି, କିନ୍ତୁ ଯେହେତୁ ଏହା ଅଲ୍ଲାହ୍ କହିଛନ୍ତି ତେଣୁ ଏହା ନିଶ୍ଚୟ ଘଟିବ କାରଣ ଅଲ୍ଲାହ୍‌ଙ୍କ ମହିମା ଅତ୍ୟୁଚ୍ଚ ଓ ସେ ହିଁ ପ୍ରବଳ ପରାକ୍ରମୀ। ବସ୍ତୁତଃ ସମୟେ ସମୟେ ଯେଉଁ କାର୍ଯ୍ୟକୁ ନବି ଓ ଦେବଦୂତମାନେ ଅସମ୍ଭବ ମନେ କରୁଥା'ନ୍ତି ସେହି କାର୍ଯ୍ୟ ସମ୍ପାଦିତ ନ ହେବା ପର୍ଯ୍ୟନ୍ତ ତାହାଙ୍କର ମହିମା ଓ ତାହାଙ୍କର ପ୍ରବଳ ପରାକ୍ରମ ସଂକ୍ରାନ୍ତରେ ସୂଚନା ମିଳି ପାରିବ ନାହିଁ।

୩. ଏହି ଆୟତରେ ଦୁଇଟି ଦଳ ବିଷୟରେ ବର୍ଣ୍ଣନା କରାଯାଇଛି ଏବଂ ତତ୍‌ସହିତ ଉଭୟଙ୍କ ପ୍ରତିଫଳ ମଧ୍ୟ ଏକତ୍ର ବର୍ଣ୍ଣିତ ହୋଇଛି। ତେଣୁ ବର୍ତ୍ତମାନ ଅର୍ଥାନ୍ୱୟ କରାଯିବା ବେଳେ ପ୍ରଥମ ପ୍ରତିଫଳକୁ ପ୍ରଥମ ଦଳ ଆଡ଼କୁ ଓ ଦ୍ୱିତୀୟ ପ୍ରତିଫଳକୁ ଦ୍ୱିତୀୟ ଦଳ ଆଡ଼କୁ ଫେରାଇ ନିଆଯିବ ଏବଂ ଏହାର ଅର୍ଥ ଏପରି ହେବ ଯେ ମୁଁ ସତ୍‌ପଥ ଉପରେ ଅଛି ଓ ତୁମ ଭାଗ୍ୟରେ ପଥଭ୍ରଷ୍ଟତା ଅଛି।

୨୬. ତୁମେ କୁହ, "(ଯେଦି ତୁମମାନଙ୍କ ଚିନ୍ତାଧାରା ଅନୁସାରେ ଆମେମାନେ ଦୋଷୀ ଅଟୁ, ତେବେ) ଆମ୍ଭର ଦୋଷ ସମ୍ବନ୍ଧରେ ତୁମମାନଙ୍କୁ ପଚରାଯିବ ନାହିଁ କି ତୁମମାନଙ୍କ କାର୍ଯ୍ୟ ସମ୍ବନ୍ଧରେ ଆମମାନଙ୍କୁ ପଚରାଯିବ ନାହିଁ।"

قُلْ لَّا تُسْـَٔلُوْنَ عَمَّآ اَجْرَمْنَا وَلَا نُسْـَٔلُ عَمَّا تَعْمَلُوْنَ ۝٢٦

୨୭. (ଏବଂ ଏହା ମଧ୍ୟ) କୁହ, "ଆମମାନଙ୍କ ପାଳନକର୍ତ୍ତା ଦିନେ ତୁମମାନଙ୍କୁ ଓ ଆମମାନଙ୍କୁ (ଏକ ଯୁଦ୍ଧକ୍ଷେତ୍ରରେ) ଏକତ୍ରିତ କରିବେ; ତା'ପରେ ସତ୍ୟ ଓ ନ୍ୟାୟ ସହିତ ଆମମାନଙ୍କ ମଧ୍ୟରେ ନିଷ୍ପତ୍ତି କରିଦେବେ; ସେ ହିଁ ଶ୍ରେଷ୍ଠ ବିଚାରକ (ଓ) ସର୍ବଜ୍ଞ।"

قُلْ يَجْمَعُ بَيْنَنَا رَبُّنَا ثُمَّ يَفْتَحُ بَيْنَنَا بِالْحَقِّ ۭ وَهُوَ الْفَتَّاحُ الْعَلِيْمُ ۝٢٧

୨୮. କୁହ, "ତୁମେମାନେ ଯେଉଁମାନଙ୍କୁ ତାହାଙ୍କ ସହିତ ସମକକ୍ଷ କରୁଅଛ ଆମ୍ଭଙ୍କୁ ସେମାନଙ୍କୁ ଦେଖାଅ; (ତାହାଙ୍କ ସହିତ ସମକକ୍ଷ କରିବା) ଆଦୌ ଠିକ୍ ନୁହେଁ; କାରଣ ସତ୍ୟ ଏହି ଯେ ଅଲ୍ଲାହ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ।"

قُلْ اَرُوْنِيَ الَّذِيْنَ اَلْحَقْتُمْ بِهٖ شُرَكَاۗءَ كَلَّا ۭ بَلْ هُوَ اللّٰهُ الْعَزِيْزُ الْحَكِيْمُ ۝٢٨

୨୯. ଏବଂ ଆମ୍ଭେ ତୁମ୍ଭଙ୍କୁ ସମଗ୍ର ମାନବସମାଜ[1] ପାଇଁ (ବିଶ୍ୱାସକାରୀମାନଙ୍କୁ) ସୁସମାଚାର ପ୍ରଦାନ କରିବା ସକାଶେ ଓ (ଅବିଶ୍ୱାସକାରୀମାନଙ୍କୁ) ଚେତାବନୀ ଦେବା ସକାଶେ ରସୁଲ ସ୍ୱରୂପ ପ୍ରେରଣ କରିଅଛୁ; କିନ୍ତୁ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଏହି ସତ୍ୟକୁ ଜାଣନ୍ତି ନାହିଁ।

وَمَآ اَرْسَلْنٰكَ اِلَّا كَاۗفَّةً لِّلنَّاسِ بَشِيْرًا وَّنَذِيْرًا وَّلٰكِنَّ اَكْثَرَ النَّاسِ لَا يَعْلَمُوْنَ ۝٢٩

୩୦. ଏବଂ ସେମାନେ (ଉତ୍ତେଜିତ ହୋଇ) କହନ୍ତି, "ଯଦି ତୁମେ ସତ୍ୟବାଦୀ, ତେବେ ଏହି ପ୍ରତିଶ୍ରୁତି କେବେ ପୂରଣ ହେବ?"

وَيَقُوْلُوْنَ مَتٰى هٰذَا الْوَعْدُ اِنْ كُنْتُمْ صٰدِقِيْنَ ۝٣٠

୩୧. ତୁମେ କୁହ, "ତୁମମାନଙ୍କ ସକାଶେ ଗୋଟିଏ[2] ଦିନର ଅବଧି ଧାର୍ଯ୍ୟ ହୋଇଅଛି; ତୁମେମାନେ ତହିଁରୁ ଗୋଟିଏ ମୁହୂର୍ତ୍ତ ପଛରେ ରହିପାରିବ ନାହିଁ କି ଗୋଟିଏ ମୁହୂର୍ତ୍ତ ଆଗକୁ ଯାଇପାରିବ ନାହିଁ।"

قُلْ لَّكُمْ مِّيْعَادُ يَوْمٍ لَّا تَسْتَاْخِرُوْنَ عَنْهُ سَاعَةً وَّلَا تَسْتَقْدِمُوْنَ ۝٣١

୧. ମୂଳ ଆରବୀ ଶବ୍ଦର ଅର୍ଥ ହେଉଛି, କୌଣସି ବସ୍ତୁକୁ ଏପରି ଏକାଠି କରାଯାଉ ଯେ ତାହାର କୌଣସି ଅଂଶ ବାହାରକୁ ନ ରହୁ। ଏହି ଆୟତରେ ଏକ ବଳିଷ୍ଠ ପ୍ରମାଣ ରହିଅଛି ଯେ ଜଣେ ଇହୁଦୀ ହେଉ କି ଖ୍ରୀଷ୍ଟିୟାନ ବା ଅନ୍ୟ କୌଣସି ଧର୍ମାବଲମ୍ବୀ ହୋଇଥାଉ ଏବଂ କୟାମତ ପର୍ଯ୍ୟନ୍ତ ଯେକୌଣସି ଶତାବ୍ଦୀରେ ଜନ୍ମ ଗ୍ରହଣ କରିଥାଉ ପଛେ ସେ ହଜରତ ମହମ୍ମଦଙ୍କ ନବିପଦର ଅଧୀନ ଅଟେ। ଏପରି କୌଣସି ଦାବି, ତୌରାତ, ଇଞ୍ଜିଲ ବା ବେଦରେ ନାହିଁ। କେବଳ ହଜରତ ମହମ୍ମଦ ସବୁ ଧର୍ମ, ସବୁ ଜାତି ଓ ସବୁ ଯୁଗ ପାଇଁ ଆସିଥିବାର ଯେଉଁ ଦାବି କରିଛନ୍ତି ତାହା ଏହି ଆୟତରୁ ପ୍ରମାଣିତ ହେଉଛି। ପୂର୍ବତନ ନବିମାନେ ଯେଉଁସବୁ ଦାବି କରିଛନ୍ତି କୌଣସି ନବିଙ୍କର ଏପରି ବ୍ୟାପକ ଓ ପୂର୍ଣ୍ଣାଙ୍ଗ ଦାବି ନାହିଁ।

୨. ଗୋଟିଏ ଦିନର ଅର୍ଥ ଏକ ହଜାର ବର୍ଷ। ଅର୍ଥାତ୍ ହଦିସର ବର୍ଣ୍ଣନା ଅନୁସାରେ ଇସଲାମ ଧର୍ମର ଉନ୍ନତିର ପ୍ରଥମ ତିନିଶହ ବର୍ଷ ଏହି ଏକ ହଜାର ବର୍ଷ ସହିତ ମିଶାଇଲେ ଏହି ପ୍ରତିଶ୍ରୁତି ତ୍ରୟୋଦଶ ଶତାବ୍ଦୀ ହିଜ୍ରି ପର୍ଯ୍ୟନ୍ତ ଜାରି ରହିବ ଏବଂ ଚତୁର୍ଦ୍ଦଶ ଶତାବ୍ଦୀ ହିଜ୍ରିରେ ଇସଲାମ ଧର୍ମର ପୁନରୁତ୍‌ଥାନ ଆରମ୍ଭ ହେବ।

୩୨. ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ଆମେମାନେ ଏ କୋରାନକୁ ମାନୁନାହୁଁ କି ତା' ବିଷୟରେ କରାଯାଇଥିବା ଭିବିଷ୍ୟ-ବାଣୀଗୁଡିକୁ ମଧ୍ୟ ମାନୁନାହୁଁ ;" ଏବଂ ଯଦି ତୁମେ ଅତ୍ୟାଚାରୀମାନଙ୍କୁ ସେତେବେଳେ ଦେଖିବ ଯେତେବେଳେ ସେମାନେ ନିଜ ପାଳନକର୍ତ୍ତାଙ୍କ ସମ୍ମୁଖରେ ଠିଆ କରାହେବେ, ଏବଂ ସେମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କୁ ଦୋଷାରୋପ କରୁଥିବେ ଏବଂ ଦୁର୍ବଳ ଗୋଷ୍ଠୀ ଅହଂକାରୀ ଗୋଷ୍ଠୀ (ଭୁକ୍ତ ଲୋକମାନ)ଙ୍କୁ କହୁଥିବେ, "ଯଦି ତୁମେମାନେ ନ ଥା'ନ୍ତ, ତେବେ ଆମେମାନେ ନିଶ୍ଚୟ ବିଶ୍ୱାସ କରିଥା'ନ୍ତୁ।"

وَقَالَ الَّذِيْنَ كَفَرُوْا لَنْ نُّؤْمِنَ بِهٰذَا الْقُرْاٰنِ وَلَا بِالَّذِيْ بَيْنَ يَدَيْهِ ۗ وَلَوْ تَرٰٓى اِذِ الظّٰلِمُوْنَ مَوْقُوْفُوْنَ عِنْدَ رَبِّهِمْ ۚۖ يَرْجِعُ بَعْضُهُمْ اِلٰى بَعْضِ ِۨالْقَوْلَ ۚ يَقُوْلُ الَّذِيْنَ اسْتُضْعِفُوْا لِلَّذِيْنَ اسْتَكْبَرُوْا لَوْلَآ اَنْتُمْ لَكُنَّا مُؤْمِنِيْنَ ۝٣٢

୩୩. (ସେତେବେଳେ ଅହଂକାରୀ ଗୋଷ୍ଠୀ ଦୁର୍ବଳ ଗୋଷ୍ଠୀ (ଭୁକ୍ତ ଲୋକମାନ)ଙ୍କୁ ଉତ୍ତର ଦେବେ, "ଯେତେବେଳେ ତୁମମାନଙ୍କ ନିକଟକୁ ଉପଦେଶ ଆସିଥିଲା କ'ଣ ଆମେମାନେ ତୁମମାନଙ୍କୁ ତହିଁରୁ ନିବୃତ୍ତ କରିଥିଲୁ ? (ଏହା କଦାପି ନୁହେଁ), ବରଂ ତୁମେମାନେ ନିଜେ ଅପରାଧୀ ଥିଲ।"

قَالَ الَّذِيْنَ اسْتَكْبَرُوْا لِلَّذِيْنَ اسْتُضْعِفُوْٓا اَنَحْنُ صَدَدْنٰكُمْ عَنِ الْهُدٰى بَعْدَ اِذْ جَآءَكُمْ بَلْ كُنْتُمْ مُّجْرِمِيْنَ ۝٣٣

୩୪. ଏବଂ ଯେଉଁମାନଙ୍କୁ ଦୁର୍ବଳ ମନେ କରାଯାଉଥିଲା ସେମାନେ ଅହଂକାରୀ ଲୋକମାନଙ୍କୁ କହିବେ, "(ଆମେମାନେ ଏହିପରି ଭାବରେ ଅପରାଧୀ ହୋଇ ନଥିଲୁ) ; ବରଂ ତୁମମାନଙ୍କର ରାତି ଓ ଦିନର ଚକ୍ରାନ୍ତ ଆମମାନଙ୍କୁ ଏହିପରି କରିଥିଲା, ଯେତେବେଳେ ତୁମେମାନେ ଆମମାନଙ୍କୁ ଅଲ୍ଲାହଙ୍କ ଆଦେଶ ଅମାନ୍ୟ କରିବାକୁ ଓ ତାହାଙ୍କ ସହିତ (ଅନ୍ୟକୁ) ସମକକ୍ଷ କରିବାକୁ ଶିକ୍ଷା ଦେଉଥିଲ" ; ଏବଂ ଯେତେବେଳେ (ସେହି ଦୁଷ୍କର୍ମର ପରିଣାମ ସ୍ୱରୂପ) ସେମାନେ ଏକ ଭୟାବହ ଶାସ୍ତି ଦେଖିଲେ, (ସେତେବେଳେ ନିଜକୁ ବଡ ମନେ କରୁଥିଲେ) ସେମାନେ (ନିଜର) ଲଜ୍ଜାକୁ ଗୋପନ ରଖିବା ଆରମ୍ଭ କରିଥିଲେ [୧] ; ଏବଂ ସେମାନଙ୍କ ମଧ୍ୟରୁ ଯେଉଁମାନେ ପ୍ରକୃତ ଅବିଶ୍ୱାସକାରୀ, ସେମାନଙ୍କ ଗଳାରେ ଶିକୁଳି ପକାଯିବ ; (ଏବଂ ଏହି ଶାସ୍ତି ସେମାନଙ୍କ ଦୁଷ୍କର୍ମ ଅପେକ୍ଷା ଅଧିକ ହେବ ନାହିଁ ; ତାହାହେଲେ କ'ଣ ସେମାନେ ବୁଝିପାରୁ ନାହାନ୍ତି ଯେ) ସେମାନଙ୍କୁ ଯେଉଁ ଶାସ୍ତି ଦିଆହେବ ତାହା ସେମାନଙ୍କର କର୍ମ ଅନୁଯାୟୀ ହେବ।

وَقَالَ الَّذِيْنَ اسْتُضْعِفُوْا لِلَّذِيْنَ اسْتَكْبَرُوْا بَلْ مَكْرُ الَّيْلِ وَالنَّهَارِ اِذْ تَاْمُرُوْنَنَآ اَنْ نَّكْفُرَ بِاللّٰهِ وَنَجْعَلَ لَهٗٓ اَنْدَادًا ۗ وَاَسَرُّوا النَّدَامَةَ لَمَّا رَاَوُا الْعَذَابَ ۗ وَجَعَلْنَا الْاَغْلٰلَ فِيْٓ اَعْنَاقِ الَّذِيْنَ كَفَرُوْا ۗ هَلْ يُجْزَوْنَ اِلَّا مَا كَانُوْا يَعْمَلُوْنَ ۝٣٤

୩୫. ଏବଂ ଆମେ କୌଣସି ଜନବସତିକୁ ଏକ ସଚେତକ (ନବୀ) ପ୍ରେରଣ କରିନାହୁଁ ଯାହାର ଧନୀ ଲୋକମାନେ ଏହା କହି ନ ଥିଲେ ଯେ ତୁମେ ଯାହା ଘେନି ଆସିଅଛ ଆମେମାନେ ତାହାକୁ ପ୍ରତ୍ୟାଖ୍ୟାନ କରୁଅଛୁ।

وَمَآ اَرْسَلْنَا فِيْ قَرْيَةٍ مِّنْ نَّذِيْرٍ اِلَّا قَالَ مُتْرَفُوْهَآ ۙ اِنَّا بِمَآ اُرْسِلْتُمْ بِهٖ كٰفِرُوْنَ ۝٣٥

[୧] ଅର୍ଥାତ୍ ଆମେମାନେ ତ ଆନନ୍ଦିତ ଥିଲୁ ଯେ ଆମମାନଙ୍କୁ ଅଲ୍ଲାହଙ୍କର ସମକକ୍ଷ ସ୍ଥିର କରାଯାଇଛି କିନ୍ତୁ ଆଜି ଆମମାନଙ୍କୁ ଏକ କଠୋର ଶାସ୍ତି ମିଳୁଛି।

୩୬. ଏବଂ ସେମାନେ ଆହୁରି କହନ୍ତି, ''ଆମମାନଙ୍କର ତୁମ ଅପେକ୍ଷା ଅଧିକ ଧନ ସମ୍ପତ୍ତି ଓ ସନ୍ତାନସନ୍ତତି ଅଛି ; ଏବଂ ଆମମାନଙ୍କୁ କଦାପି ଶାସ୍ତି ଦିଆଯିବ ନାହିଁ ।''

وَقَالُوا نَحْنُ أَكْثَرُ أَمْوَالًا وَأَوْلَادًا وَمَا نَحْنُ بِمُعَذَّبِينَ ﴿٣٦﴾

୩୭. ତୁମେ କୁହ, ''ଆମ୍ଭର ପାଳନକର୍ତ୍ତା ଯାହା ପାଇଁ ଇଚ୍ଛା କରନ୍ତି ତାହା ପାଇଁ ଜୀବିକା (ର ଦ୍ୱାର) ଉନ୍ମୁକ୍ତ କରିଥାନ୍ତି ; ଏବଂ ଯାହା ପାଇଁ ଇଚ୍ଛା କରନ୍ତି ତାହା ପାଇଁ ସଂକୁଚିତ କରିଥା'ନ୍ତି ; କିନ୍ତୁ ଅଧିକାଂଶ ଲୋକ (ଏହା) ଜାଣନ୍ତି ନାହିଁ ।''.

قُلْ إِنَّ رَبِّي يَبْسُطُ الرِّزْقَ لِمَنْ يَشَاءُ وَيَقْدِرُ وَلَٰكِنَّ أَكْثَرَ النَّاسِ لَا يَعْلَمُونَ ﴿٣٧﴾

୩୮. ଏବଂ ତୁମମାନଙ୍କର ସମ୍ପତ୍ତି ଓ ତୁମମାନଙ୍କର ସନ୍ତାନସନ୍ତତି ଏପରି ବିଷୟ ନୁହେଁ ଯେ ତାହା ତୁମମାନଙ୍କୁ ଆମ୍ଭର ସମୀପବର୍ତ୍ତୀ କରାଇଦେବ ; ଅବଶ୍ୟ ଯେ (ବ୍ୟକ୍ତି) ବିଶ୍ୱାସ କରେ ଓ ତଦନୁଯାୟୀ ସମୁଚିତ କର୍ମ କରେ (ସେ ହିଁ ଆମ୍ଭର ସାମୀପ୍ୟ ଲାଭ କରେ) ଏହିପରି ଲୋକମାନଙ୍କୁ ହିଁ ସେମାନଙ୍କ ସତ୍‌କର୍ମ ହେତୁ ଅଧିକ ମାତ୍ରାରେ ପୁରସ୍କାର ମିଳିବ ; ଏବଂ ସେମାନେ ଉଚ୍ଚ ପ୍ରାସାଦମାନଙ୍କରେ ଶାନ୍ତିରେ ଜୀବନ ଯାପନ କରିବେ ।

وَمَا أَمْوَالُكُمْ وَلَا أَوْلَادُكُمْ بِالَّتِي تُقَرِّبُكُمْ عِنْدَنَا زُلْفَىٰ إِلَّا مَنْ آمَنَ وَعَمِلَ صَالِحًا فَأُولَٰئِكَ لَهُمْ جَزَاءُ الضِّعْفِ بِمَا عَمِلُوا وَهُمْ فِي الْغُرُفَاتِ آمِنُونَ ﴿٣٨﴾

୩୯. ଏବଂ ଯେଉଁମାନେ ଆମ୍ଭର ନିଦର୍ଶନମାନଙ୍କ ସମ୍ବନ୍ଧରେ ଆମ୍ଭକୁ ବିଫଳ କରିବାକୁ ପ୍ରଚେଷ୍ଟା କରୁଛନ୍ତି, ସେମାନଙ୍କୁ କଠିନ ଶାସ୍ତି ସମ୍ମୁଖରେ ଉପସ୍ଥିତ କରାଯିବ ।

وَالَّذِينَ يَسْعَوْنَ فِي آيَاتِنَا مُعَاجِزِينَ أُولَٰئِكَ فِي الْعَذَابِ مُحْضَرُونَ ﴿٣٩﴾

୪୦. (ଏବଂ) ତୁମେ କୁହ, ''ଆମ୍ଭର ପାଳନକର୍ତ୍ତା ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହା ପାଇଁ ଇଚ୍ଛା କରନ୍ତି ତାହା ପାଇଁ ଜୀବିକାକୁ ସୁପ୍ରଶସ୍ତ କରିଥା'ନ୍ତି ଓ ଯାହା ପାଇଁ ଇଚ୍ଛା କରନ୍ତି ତାହା ପାଇଁ ଜୀବିକାକୁ ସଂକୁଚିତ କରିଥା'ନ୍ତି ; ଏବଂ ଯାହା କିଛି ମଧ୍ୟ ତୁମେମାନେ ବ୍ୟୟ କରିବ, ସେ ଏହାର ଫଳ ନିଶ୍ଚୟ ପ୍ରଦାନ କରିବେ ; ଏବଂ ସେ ହିଁ ସମସ୍ତ ଜୀବିକାଦାତାଙ୍କ ମଧ୍ୟରେ ଶ୍ରେଷ୍ଠ ।''

قُلْ إِنَّ رَبِّي يَبْسُطُ الرِّزْقَ لِمَنْ يَشَاءُ مِنْ عِبَادِهِ وَيَقْدِرُ لَهُ ۚ وَمَا أَنْفَقْتُمْ مِنْ شَيْءٍ فَهُوَ يُخْلِفُهُ ۖ وَهُوَ خَيْرُ الرَّازِقِينَ ﴿٤٠﴾

୪୧. ଏବଂ ଯେଉଁଦିନ ସେ (ଅଲ୍ଲାହ) ସେ ସମସ୍ତଙ୍କୁ ଏକତ୍ରିତ କରିବେ, ତାହାପରେ ଦେବଦୂତମାନଙ୍କୁ କହିବେ, ''କ'ଣ ଏମାନେ ସେହି ଲୋକ ଯେଉଁମାନେ ତୁମମାନଙ୍କର ଉପାସନା କରୁଥିଲେ ?''

وَيَوْمَ يَحْشُرُهُمْ جَمِيعًا ثُمَّ يَقُولُ لِلْمَلَائِكَةِ أَهَٰؤُلَاءِ إِيَّاكُمْ كَانُوا يَعْبُدُونَ ﴿٤١﴾

୪୨. ସେମାନେ କହିବେ, "ତୁମେ ହି ପବିତ୍ର ; ସେମାନଙ୍କ ପରିବର୍ତ୍ତେ ବରଂ ତୁମେ ହି କେବଳ ଆମର ବନ୍ଧୁ ; (ସୁତରାଂ ଏପରି ନୁହେଁ, ଯେପରି ଅବିଶ୍ୱାସକାରୀମାନେ କହନ୍ତି,) ବରଂ ସେମାନେ ଜିନ୍ନ (ଅର୍ଥାତ୍ କପୋଳକଳ୍ପିତ ଓ ଲୁକ୍କାୟିତ ଅସ୍ତିତ୍ୱ)ମାନଙ୍କର ଉପାସନା କରୁଥିଲେ ; ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ସେ (ଜିନ୍ନ)ମାନଙ୍କ ଉପରେ ବିଶ୍ୱାସ କରୁଥିଲେ ।"

قَالُوْا سُبْحٰنَكَ اَنْتَ وَلِيُّنَا مِنْ دُوْنِهِمْ ۚ بَلْ كَانُوْا يَعْبُدُوْنَ الْجِنَّ ۚ اَكْثَرُهُمْ بِهِمْ مُّؤْمِنُوْنَ ﴿٤٢﴾

୪୩. ତେଣୁ ସେମାନଙ୍କୁ କୁହାଯିବ, "ଆଜି ତୁମମାନଙ୍କ ମଧ୍ୟରୁ କେହି କାହାରି ଲାଭ କରିପାରିବେ ନାହିଁ କି କ୍ଷତି କରିପାରିବେ ନାହିଁ ;" ଏବଂ ଆମେ ଅତ୍ୟାଚାରୀମାନଙ୍କୁ କହିବୁ, "ଯେଉଁ ନରକ ଅଗ୍ନିକୁ ତୁମେମାନେ ଅସ୍ୱୀକାର କରୁଥିଲ ତାହାର ଶାସ୍ତି ଆସ୍ୱାଦନ କର ।"

فَالْيَوْمَ لَا يَمْلِكُ بَعْضُكُمْ لِبَعْضٍ نَّفْعًا وَّلَا ضَرًّا ۚ وَنَقُوْلُ لِلَّذِيْنَ ظَلَمُوْا ذُوْقُوْا عَذَابَ النَّارِ الَّتِيْ كُنْتُمْ بِهَا تُكَذِّبُوْنَ ﴿٤٣﴾

୪୪. ଏବଂ ଯେତେବେଳେ ସେମାନଙ୍କ ସମ୍ମୁଖରେ ଆମର ସୁସ୍ପଷ୍ଟ ବାଣୀ ଆବୃତ୍ତି କରାଯାଏ, ସେତେବେଳେ ସେମାନେ କହନ୍ତି, "ଏ ଜଣେ ଏପରି ବ୍ୟକ୍ତି ଯେ କି ତୁମମାନଙ୍କର ପିତୃପୁରୁଷ ଯେଉଁମାନଙ୍କର ଉପାସନା କରୁଥିଲେ ସେମାନଙ୍କ ଉପାସନାରୁ ତୁମମାନଙ୍କୁ ନିବୃତ୍ତ କରିବାକୁ ଇଚ୍ଛା କରୁଅଛି ;" ଏବଂ କହନ୍ତି, "ଏ (କୋରାନ) ସ୍ୱରଚିତ ମିଥ୍ୟା ଭିନ୍ନ ଅନ୍ୟ କିଛି ନୁହେଁ ;" ଏବଂ ଯେତେବେଳେ ସମ୍ପୂର୍ଣ୍ଣ ସତ୍ୟ ସେମାନଙ୍କ ନିକଟରେ ଉପସ୍ଥିତ ହୁଏ, ସେତେବେଳେ ଅବିଶ୍ୱାସକାରୀମାନେ ବାଧ୍ୟ ହୋଇ କହନ୍ତି, "ଏହା ଏକ ପ୍ରକାଶ୍ୟ ପ୍ରତାରଣା[୧] ।"

وَاِذَا تُتْلٰى عَلَيْهِمْ اٰيٰتُنَا بَيِّنٰتٍ قَالُوْا مَا هٰذَآ اِلَّا رَجُلٌ يُّرِيْدُ اَنْ يَّصُدَّكُمْ عَمَّا كَانَ يَعْبُدُ اٰبَآؤُكُمْ ۚ وَقَالُوْا مَا هٰذَآ اِلَّآ اِفْكٌ مُّفْتَرًى ۗ وَقَالَ الَّذِيْنَ كَفَرُوْا لِلْحَقِّ لَمَّا جَآءَهُمْ ۙ اِنْ هٰذَآ اِلَّا سِحْرٌ مُّبِيْنٌ ﴿٤٤﴾

୪୫. ଏବଂ ଆମେ ସେମାନଙ୍କୁ (ସ୍ୱର୍ଗରୁ ଏପରି) କୌଣସି ପୁସ୍ତକ ଦେଇ ନାହୁଁ ଯାହାକୁ ସେମାନେ ପାଠ କରୁଛନ୍ତି (ଓ ତହିଁରେ ଏପରି ଅସଙ୍ଗତ ବିଷୟ ବର୍ଣ୍ଣନା କରାଯାଇଛି) ; ଏବଂ ଆମେ ତୁମ ପୂର୍ବରୁ ସେମାନଙ୍କ ନିକଟକୁ ଏପରି କୌଣସି ସଚେତକ ପ୍ରେରଣ କରିନାହୁଁ, (ଯେ ସେମାନଙ୍କୁ ଏପରି ଅସଙ୍ଗତ ବିଷୟରେ ଶିକ୍ଷା ଦେଇଅଛି) ।

وَمَآ اٰتَيْنٰهُمْ مِّنْ كُتُبٍ يَّدْرُسُوْنَهَا وَمَآ اَرْسَلْنَآ اِلَيْهِمْ قَبْلَكَ مِنْ نَّذِيْرٍ ﴿٤٥﴾

---

୧. ମୂଳ ଶବ୍ଦ 'ସିହିର୍' ଅର୍ଥ କୁହୁକ ବା ମନ ଭୁଲାଣିଆ କଥା । ତେଣୁ ଯେବେ ଅବିଶ୍ୱାସକାରୀମାନେ ଦେଖିବାକୁ ପାଆନ୍ତି ଯେ ପବିତ୍ର କୋରାନରେ ବର୍ଣ୍ଣିତ ପରିପୂର୍ଣ୍ଣ ସତ୍ୟ ଲୋକମାନଙ୍କୁ ଆକୃଷ୍ଟ କରୁଛି ତେବେ ସେମାନେ ନିଜ ନିଜ ସାଥୀମାନଙ୍କୁ ପ୍ରତାରିତ କରିବା ଉଦ୍ଦେଶ୍ୟରେ କହନ୍ତି ଯେ ହଜରତ ମହମ୍ମଦ ପ୍ରତାରଣାମୂଳକ ଭାଷା ବ୍ୟବହାର କରି କେତେକ ବିଷୟ କହୁଛନ୍ତି ଏବଂ ସେ ଜଣେ ମିଥ୍ୟାବାଦୀ ।

୪୬. ଏବଂ ସେମାନଙ୍କ ପୂର୍ବରୁ ଯେଉଁମାନେ ଥିଲେ ସେମାନେ ମଧ୍ୟ (ନିଜ ନିଜ ରସୁଲଙ୍କ ପ୍ରତି) ମିଥ୍ୟାରୋପ କରିଥିଲେ ; ଏବଂ ଆମ୍ଭେ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କୁ ଯେଉଁ ଶକ୍ତି ପ୍ରଦାନ କରିଥିଲୁ ଏ ଯୁଗର ଲୋକମାନଙ୍କୁ ତାହାର ଏକ ଦଶାଂଶ ମଧ୍ୟ ଦେଇ ନାହୁଁ ; କିନ୍ତୁ ଏହି ଲୋକମାନେ (ପୂର୍ବବର୍ତ୍ତୀ ଲୋକମାନଙ୍କ ତୁଳନାରେ ଅଧିକ ଲାଞ୍ଛିତ ହେବା ସତ୍ତ୍ୱେ ଓ ନିଜର ଶାସ୍ତିକୁ ଅବଲୋକନ କରିବା ସତ୍ତ୍ୱେ) ଆମ୍ଭର ରସୁଲମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ; ଅତଏବ (ଲକ୍ଷ୍ୟକର ଯେ ଏପରି ପରିସ୍ଥିତିରେ) ଆମ୍ଭଙ୍କୁ ପ୍ରତ୍ୟାଖ୍ୟାନ କରିବାର ପରିଣାମ (ଅର୍ଥାତ୍ ଶାସ୍ତି) କିପରି (ଭୟାବହ) ହୁଏ ।

وَكَذَّبَ الَّذِينَ مِنْ قَبْلِهِمْ وَمَا بَلَغُوا مِعْشَارَ مَا آتَيْنَاهُمْ فَكَذَّبُوا رُسُلِي فَكَيْفَ كَانَ نَكِيرِ ٤٦

୪୭. ତୁମ୍ଭେ କୁହ, "ଆମ୍ଭେ ତୁମମାନଙ୍କୁ ଗୋଟିଏ ବିଷୟରେ ଉପଦେଶ ଦେଉଅଛୁ ; (ଅନ୍ତତଃ ସେତିକି ଗ୍ରହଣ କର), ତାହା ହେଉଛି ଯେ ଅଲ୍ଲାହଙ୍କ ସମ୍ମୁଖରେ ଦୁଇ ଦୁଇ ଜଣ ହିସାବରେ ଓ ଜଣେ ଜଣେ ଲେଖାଏଁ ଦଣ୍ଡାୟମାନ ହୁଅ ଓ ଚିନ୍ତାକର ଯେ ତୁମମାନଙ୍କର ଏହି ସାଥୀ (ଅର୍ଥାତ୍ ରସୁଲ) ପାଗଳ ନୁହନ୍ତି ; ସେ କେବଳ ତୁମମାନଙ୍କୁ ଆସନ୍ନ ଶାସ୍ତି ସଂକ୍ରାନ୍ତରେ ସଚେତନକାରୀ (ବ୍ୟକ୍ତି) ଅଟନ୍ତି ।"

قُلْ إِنَّمَا أَعِظُكُمْ بِوَاحِدَةٍ أَنْ تَقُومُوا لِلَّهِ مَثْنَىٰ وَفُرَادَىٰ ثُمَّ تَتَفَكَّرُوا مَا بِصَاحِبِكُمْ مِنْ جِنَّةٍ إِنْ هُوَ إِلَّا نَذِيرٌ لَكُمْ بَيْنَ يَدَيْ عَذَابٍ شَدِيدٍ ٤٧

୪୮. ତୁମ୍ଭେ କୁହ, "ଆମ୍ଭେ ତୁମମାନଙ୍କ ଠାରୁ (ଧର୍ମପ୍ରଚାର ସକାଶେ) ଯାହାକିଛି ପାରିଶ୍ରମିକ ମାଗିଥିବୁ ତାହା ତୁମେମାନେ ନେଇ ନିଅ ; ଆମ୍ଭର ପାରିଶ୍ରମିକ କେବଳ ଅଲ୍ଲାହଙ୍କ ନିକଟରେ ଅଛି ; ଏବଂ ସେ ପ୍ରତ୍ୟେକ ବିଷୟକୁ ଲକ୍ଷ୍ୟ କରୁଛନ୍ତି ।"

قُلْ مَا سَأَلْتُكُمْ مِنْ أَجْرٍ فَهُوَ لَكُمْ إِنْ أَجْرِيَ إِلَّا عَلَى اللَّهِ وَهُوَ عَلَىٰ كُلِّ شَيْءٍ شَهِيدٌ ٤٨

୪୯. (ପୁନଶ୍ଚ ସେମାନଙ୍କୁ) କୁହ, "ଆମ୍ଭର ପାଳନକର୍ତ୍ତା ବାସ୍ତବିକ ସତ୍ୟ ମାଧ୍ୟମରେ ମିଥ୍ୟାକୁ ଖଣ୍ଡ ବିଖଣ୍ଡ କରୁଛନ୍ତି ; ଏବଂ ସେ ପ୍ରତ୍ୟେକ ଗୁପ୍ତ (ବିଷୟ)କୁ ଉତ୍ତମ ରୂପେ ଜାଣନ୍ତି ।"

قُلْ إِنَّ رَبِّي يَقْذِفُ بِالْحَقِّ عَلَّامُ الْغُيُوبِ ٤٩

୫୦. କୁହ, "ସମ୍ପୂର୍ଣ୍ଣ ସତ୍ୟ ଉପସ୍ଥିତ ହୋଇଅଛି ; ଏବଂ ମିଥ୍ୟା କୌଣସି ବସ୍ତୁକୁ ସୃଷ୍ଟିକରି ପାରେ ନାହିଁ କି କୌଣସି ମୃତ ବସ୍ତୁକୁ ପୁନର୍ଜୀବିତ କରିପାରେ ନାହିଁ [୧] ।"

قُلْ جَاءَ الْحَقُّ وَمَا يُبْدِئُ الْبَاطِلُ وَمَا يُعِيدُ ٥٠

---

୧. ଏହାର ଅଭିପ୍ରାୟ ହେଉଛି ଯେ ପ୍ରକୃତ ଓ ସଫଳ ଆନ୍ଦୋଳନ ସତ୍ୟରୁ ସୃଷ୍ଟ । ଯେକୌଣସି ପ୍ରକାର ସଫଳ ଆନ୍ଦୋଳନକୁ କୌଣସି ମିଥ୍ୟା ପରିଚାଳିତ କରିପାରେ ନାହିଁ କି ତାହା ସତ୍ୟର ମୁକାବିଲା କରିପାରେ ନାହିଁ । ଯେବେ ବି ସତ୍ୟର ଆଗମନ ହୁଏ ମିଥ୍ୟା ବିଲୀନ ହୁଏ (୧୭:୮୨ ଦ୍ରଷ୍ଟବ୍ୟ) । ସେତେବେଳେ ନିଜର ନିର୍ଜୀବ ଆନ୍ଦୋଳନକୁ ପୁନର୍ଜୀବିତ କରିବା ପାଇଁ ମିଥ୍ୟା ସକ୍ଷମ ହୋଇପାରେ ନାହିଁ ଅଥଚ ସତ୍ୟ ଏହା କରିବାକୁ ସମ୍ପୂର୍ଣ୍ଣ ସକ୍ଷମ, କାରଣ ସତ୍ୟ ହିଁ ମରିବା ପରେ ପୁନର୍ଜୀବିତ କରାଏ ଓ ନିଜ ଶତ୍ରୁମାନଙ୍କୁ ଅସଫଳ କରାଏ । ଇସଲାମର ପୁନରଭ୍ୟୁଦୟ ଏହାର ଚାକ୍ଷୁଷ ପ୍ରମାଣ ।

୫୧. ତୁମେ କୁହ, "ଯଦି ଆମେ ପଥଭ୍ରଷ୍ଟ ହୋଇଥାଉ, ତେବେ ଆମର ପଥଭ୍ରଷ୍ଟତାର କୁପରିଣାମ ଆମ ଉପରେ ହିଁ ନିପତିତ ହେବ ; ଏବଂ ଯଦି ଆମେ ସତ୍‌ପଥ ପ୍ରାପ୍ତ ହୋଇଥାଉ, ତେବେ ତାହା କେବଳ ଆମର ପାଳନକର୍ତ୍ତାଙ୍କ ତରଫରୁ ଅବତୀର୍ଣ୍ଣ ହୋଇଥିବା ଓହି ମାଧ୍ୟମରେ ; ସେ ବାସ୍ତବରେ ଅତ୍ୟଧିକ ପ୍ରାର୍ଥନା ଶୁଣନ୍ତି ଓ ଭକ୍ତଙ୍କ ନିକଟରେ ସର୍ବଦା ରହି ଥାଆନ୍ତି।"

قُلْ اِنْ ضَلَلْتُ فَاِنَّمَآ اَضِلُّ عَلٰى نَفْسِيْ ۚ وَاِنِ اهْتَدَيْتُ فَبِمَا يُوْحِيْٓ اِلَيَّ رَبِّيْ ۭ اِنَّهٗ سَمِيْعٌ قَرِيْبٌ ۝٥١

୫୨. ଏବଂ ଯଦି ତୁମେ ସେହି ପରିସ୍ଥିତିକୁ ଦେଖିବ ଯେତେବେଳେ ସେମାନେ (ଅଲ୍ଲାହଙ୍କ ଶାସ୍ତି ଯୋଗୁଁ) ଭୟଭୀତ ହୋଇଯିବେ ଏବଂ ସେମାନଙ୍କୁ ପଳାୟନ ପାଇଁ କୌଣସି ପଥ ମିଳିବ ନାହିଁ, ଏବଂ ଏକ ନିକଟବର୍ତ୍ତୀ ସ୍ଥାନରୁ ସେମାନଙ୍କୁ ଧରି ନିଆଯିବ ; (ସେତେବେଳେ ତୁମେ ଜାଣିପାରିବ ଯେ ସେମାନେ କିପରି ଭାବୁ ଥିଲେ)।

وَلَوْ تَرٰٓى اِذْ فَزِعُوْا فَلَا فَوْتَ وَاُخِذُوْا مِنْ مَّكَانٍ قَرِيْبٍ ۝٥٢

୫୩. ଏବଂ (ସେମାନେ) କହିବେ, "ଆମେମାନେ ଏଥିରେ (ଅର୍ଥାତ୍ କୋରାନ ଉପରେ) ବିଶ୍ୱାସ କରୁଅଛୁ" ; କିନ୍ତୁ ସେମାନେ ଏତେଦୂରକୁ ଚାଲିଯିବା ପରେ କିପରି ଏହାକୁ (ଅର୍ଥାତ୍ ବିଶ୍ୱାସକୁ) ଲାଭ କରିବା ସମ୍ଭବ ହୋଇ ପାରିବ ?

وَّقَالُوْٓا اٰمَنَّا بِهٖ ۚ وَاَنّٰى لَهُمُ التَّنَاوُشُ مِنْ مَّكَانٍۢ بَعِيْدٍ ۝٥٣

୫୪. ଏବଂ ସେମାନେ ଏଥିପୂର୍ବରୁ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ ଚିନ୍ତା ନ କରି ଏକ ଦୂରବର୍ତ୍ତୀ ସ୍ଥାନରୁ କେବଳ ଅନୁମାନପୂର୍ବକ ପ୍ରତିବାଦ କରୁଥିଲେ।

وَّقَدْ كَفَرُوْا بِهٖ مِنْ قَبْلُ ۚ وَيَقْذِفُوْنَ بِالْغَيْبِ مِنْ مَّكَانٍۢ بَعِيْدٍ ۝٥٤

୫୫. ଏବଂ ସେମାନଙ୍କ ମଧ୍ୟରେ ଏବଂ ସେମାନଙ୍କ ଆକାଂକ୍ଷା ମଧ୍ୟରେ ପ୍ରତିବନ୍ଧକ ସୃଷ୍ଟିକରି ଦିଆଗଲା, ଯେପରି ସେମାନଙ୍କ ସଦୃଶ ଲୋକମାନଙ୍କ ପାଇଁ ଏଥିପୂର୍ବରୁ କରାଯାଇଥିଲା ; ସେମାନେ ମଧ୍ୟ ଏପରି ଏକ ଉଦ୍‌ବେଗଜନକ ସନ୍ଦେହରେ ପଡ଼ିଥିଲେ।

وَحِيْلَ بَيْنَهُمْ وَبَيْنَ مَا يَشْتَهُوْنَ كَمَا فُعِلَ بِاَشْيَاعِهِمْ مِّنْ قَبْلُ ۭ اِنَّهُمْ كَانُوْا فِيْ شَكٍّ مُّرِيْبٍ ۝٥٥

سُورَةُ فَاطِرٍ مَكِّيَّةٌ (٣٥)

# ଅଲ—ଫାତିର

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୪୬ ଟି ଆୟତ ଓ ୫ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

اَلْحَمْدُ لِلّٰهِ فَاطِرِ السَّمٰوٰتِ وَالْاَرْضِ جَاعِلِ الْمَلٰٓئِكَةِ رُسُلًا اُولِيْٓ اَجْنِحَةٍ مَّثْنٰى وَثُلٰثَ وَرُبٰعَ ۭ يَزِيْدُ فِي الْخَلْقِ مَا يَشَاۗءُ ۭ اِنَّ اللّٰهَ عَلٰي كُلِّ شَيْءٍ قَدِيْرٌ ②

୨. ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ପାଇଁ (ଉଦ୍ଦିଷ୍ଟ) ଯେ କି ଆକାଶ ଓ ପୃଥିବୀର (ଏକ ନୂତନ ବ୍ୟବସ୍ଥା ଅନୁଯାୟୀ[1]) ସ୍ରଷ୍ଟା (ଏବଂ) ଦେବଦୂତମାନଙ୍କୁ ଏପରି ଅବସ୍ଥାରେ ରସୁଲ ଭାବରେ ପ୍ରେରଣ କରିଥା'ନ୍ତି ଯେତେବେଳେ କି ସେମାନଙ୍କର କେବେ ଦୁଇ ଦୁଇଟି ଓ ଅନ୍ୟ କେବେ ତିନି ତିନି ଓ ଚାରି ଚାରି ଗୋଟି[2] ପକ୍ଷ ଥାଏ; (ଏବଂ ସେହି ଦେବଦୂତମାନଙ୍କର ପକ୍ଷ) ସୃଷ୍ଟି କରିବାରେ ସେ (ଅଲ୍ଲାହ) ଯେତେ (ସଂଖ୍ୟକ) ଇଚ୍ଛା କରନ୍ତି ସେତେ ବୃଦ୍ଧି କରାନ୍ତି; ଅଲ୍ଲାହ ହିଁ ସକଳ ବିଷୟ କରିବାକୁ ସକ୍ଷମ ।

مَا يَفْتَحِ اللّٰهُ لِلنَّاسِ مِنْ رَّحْمَةٍ فَلَا مُمْسِكَ لَهَا ۚ وَمَا يُمْسِكْ ۙ فَلَا مُرْسِلَ لَهٗ مِنْۢ بَعْدِهٖ ۭ وَهُوَ الْعَزِيْزُ الْحَكِيْمُ ③

୩. ଯେଉଁ କରୁଣାଦାୟକ ସାମଗ୍ରୀକୁ ଅଲ୍ଲାହ ଲୋକମାନଙ୍କ ନିମନ୍ତେ ଉନ୍ମୁକ୍ତ କରନ୍ତି, ତାହାକୁ କେହି ସ୍ଥଗିତ କରିପାରିବ ନାହିଁ ଏବଂ ଯେଉଁ କରୁଣାଦାୟକ ସାମଗ୍ରୀକୁ ସେ ସ୍ଥଗିତ କରିଦିଅନ୍ତି, ତାହାକୁ କେହି ଉନ୍ମୁକ୍ତ କରି ପାରିବ ନାହିଁ; ଏବଂ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

يٰٓاَيُّهَا النَّاسُ اذْكُرُوْا نِعْمَتَ اللّٰهِ عَلَيْكُمْ ۭ هَلْ مِنْ خَالِقٍ غَيْرُ اللّٰهِ يَرْزُقُكُمْ مِّنَ السَّمَاۗءِ وَالْاَرْضِ ۭ لَآ اِلٰهَ اِلَّا هُوَ ڮ فَاَنّٰى تُؤْفَكُوْنَ ④

୪. ହେ ଲୋକମାନେ ! ଅଲ୍ଲାହଙ୍କର ଯେଉଁ କୃପା ତୁମମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଅଛି ତାହାକୁ ସ୍ମରଣ କର ; କ'ଣ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ସ୍ରଷ୍ଟା ଅଛନ୍ତି ଯେ କି ତୁମମାନଙ୍କୁ ଆକାଶ ଓ ପୃଥିବୀରୁ ଜୀବିକା ପ୍ରଦାନ କରୁଛନ୍ତି ? ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ତାହାହେଲେ ତୁମମାନଙ୍କୁ କେଉଁ ଦିଗକୁ ବିଭ୍ରାନ୍ତ କରି କେଉଁ ଆଡ଼କୁ ନିଆ ଯାଉଅଛି ?

---

୧. ମୂଳ ଶବ୍ଦ 'ଫାତିର' ଅର୍ଥ ସମ୍ପୂର୍ଣ୍ଣ ଭାବେ ଆରମ୍ଭରୁ ସୃଷ୍ଟି କରିବା । ଆକାଶ ଓ ପୃଥିବୀର ସୃଷ୍ଟି ପ୍ରଥମେ ହୋଇଥିଲା । ତେଣୁ ଦ୍ୱିତୀୟଗୋଟି ସୃଷ୍ଟିର ଉପଲକ୍ଷ ଓ ଫାତିର ଶବ୍ଦକୁ ଧ୍ୟାନ ଦେଇ ଅନୁବାଦରେ ବନ୍ଧନୀ ମଧ୍ୟରେ 'ଏକ ନୂତନ ବ୍ୟବସ୍ଥା ଅନୁଯାୟୀ' ଅଧିକା ଦିଆଯାଇଛି ।

୨. ଏଠାରେ ହଜରତ ମହମ୍ମଦଙ୍କ ପ୍ରତି ପ୍ରେରିତ 'ଓହି' ଉଚ୍ଚ ମର୍ଯ୍ୟାଦାସମ୍ପନ୍ନ ଥିବା କୁହାଯାଇଛି । ତାହାଙ୍କ ନିକଟକୁ ଏପରି ଦେବଦୂତ ଆସିବେ ଯେଉଁମାନେ ଅଲ୍ଲାହଙ୍କର ବିଭିନ୍ନ ଗୁଣକୁ ପ୍ରକଟିତ କରୁଥିବେ । ସେହି ଗୁଣ ଦୁଇ-ଦୁଇ, ତିନି-ତିନି ଓ ଚାରି-ଚାରି ହୋଇପାରେ । କେବଳ ସେତିକି ନୁହେଁ, ଅଲ୍ଲାହ ଚାହିଁଲେ, ପବିତ୍ର କୋରାନର ବାଣୀ ବହନ କରି ଆଣୁଥିବା ଦେବଦୂତଙ୍କ ପକ୍ଷଗୁଡ଼ିକର ସଂଖ୍ୟା ଅର୍ଥାତ୍ ଅଲ୍ଲାହଙ୍କର ସେହିସବୁ ଗୁଣ ଯାହା ସେ ପ୍ରକଟ କରୁଥିବେ, ବଢ଼ାଇ ଦେବେ ।

୫. ଯଦି ଏମାନେ ତୁମକୁ ମିଥ୍ୟାବାଦୀ ବୋଲି ଆକ୍ଷେପ କରୁଥାନ୍ତି, (ତେବେ ଏଥିରେ କିଛି ଯାଏ ଆସେ ନାହିଁ), କାରଣ ତୁମ ପୂର୍ବରୁ ଯେତେ ରସୁଲ ଆସିଥିଲେ ସେମାନଙ୍କୁ ମଧ୍ୟ ମିଥ୍ୟାବାଦୀ ବୋଲି ଆକ୍ଷେପ କରାଯାଇଥିଲା ; ଏବଂ (ନିଷ୍ପତ୍ତି ପାଇଁ) ସମସ୍ତ ବିଷୟ ଅଲ୍ଲାଃଙ୍କ ସମୀପରେ ହିଁ ପେଶ କରାହେବ ।

وَإِنْ يُكَذِّبُوكَ فَقَدْ كُذِّبَتْ رُسُلٌ مِّنْ قَبْلِكَ ۚ وَإِلَى اللّٰهِ تُرْجَعُ الْأُمُورُ ⑤

୬. ହେ ଲୋକମାନେ ! ଅଲ୍ଲାଃଙ୍କର ଅଙ୍ଗୀକାର ନିଶ୍ଚିତ ରୂପେ ସତ୍ୟ ଅଟେ ; ସୁତରାଂ ତୁମମାନଙ୍କୁ ସାଂସାରିକ ଜୀବନ ପ୍ରତାରିତ ନ କରୁ, ଏବଂ କୌଣସି ପ୍ରତାରିତ (ବ୍ୟକ୍ତି) ତୁମମାନଙ୍କୁ ଅଲ୍ଲାଃଙ୍କ ସମ୍ବନ୍ଧରେ ପ୍ରତାରିତ ନ କରୁ ।

يَا أَيُّهَا النَّاسُ إِنَّ وَعْدَ اللّٰهِ حَقٌّ فَلَا تَغُرَّنَّكُمُ الْحَيٰوةُ الدُّنْيَا ۖ وَلَا يَغُرَّنَّكُمْ بِاللّٰهِ الْغَرُورُ ⑥

୭. ବାସ୍ତବରେ ସଇତାନ ତୁମମାନଙ୍କର ଶତ୍ରୁ ; ସୁତରାଂ ତାହାକୁ ଶତ୍ରୁ ହିଁ ମନେକର ; ସେ ତାହାର ବନ୍ଧୁମାନଙ୍କୁ କେବଳ ଏଥି ସକାଶେ ଡାକୁଅଛି ଯେ ସେମାନେ ନରକବାସୀ ହୋଇଯାଆନ୍ତୁ ।

إِنَّ الشَّيْطٰنَ لَكُمْ عَدُوٌّ فَاتَّخِذُوهُ عَدُوًّا ۚ إِنَّمَا يَدْعُوا حِزْبَهُ لِيَكُونُوا مِنْ أَصْحٰبِ السَّعِيرِ ⑦

୮. ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନଙ୍କ ସକାଶେ କଠିନ ଶାସ୍ତି ନିୟତ ଅଛି ; ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଏବଂ ବିଶ୍ୱାସ ଅନୁସାରେ କର୍ମ ମଧ୍ୟ କରିଛନ୍ତି ସେମାନଙ୍କ ପାଇଁ କ୍ଷମା ଓ ମହାନ୍ ପୁରସ୍କାର ରହିଅଛି ।

اَلَّذِينَ كَفَرُوا لَهُمْ عَذَابٌ شَدِيدٌ ۖ وَالَّذِينَ آمَنُوا وَعَمِلُوا الصّٰلِحٰتِ لَهُمْ مَّغْفِرَةٌ وَأَجْرٌ كَبِيرٌ ⑧ ع

୯. କ'ଣ ଯେଉଁ ବ୍ୟକ୍ତି ପାଇଁ ତାହାର କୁକର୍ମ ସୁଶୋଭିତ କରି ଦେଖାଇ ଦିଆଯାଇଥାଏ ଓ ସେ ତାହାକୁ ଉତ୍ତମ ମନେ କରୁଥାଏ (ସେ ସତ୍‌ପଥ ପାଇ ପାରେ) ? ତେଣୁ ମନେ ରଖ ଅଲ୍ଲାଃ ଯାହାକୁ ଇଚ୍ଛା କରନ୍ତି (ଅର୍ଥାତ୍ ଏଥିପାଇଁ ଯେ ଉପଯୁକ୍ତ ବିବେଚିତ ହୁଏ) ତାହାକୁ ବିନାଶ କରିଥା'ନ୍ତି ଓ ଯାହାକୁ ଇଚ୍ଛା କରନ୍ତି (ଅର୍ଥାତ୍ ଏଥିପାଇଁ ଯେ ଉପଯୁକ୍ତ ବିବେଚିତ ହୁଏ) ତାହାକୁ ସଫଳତାର ପଥ ଦେଖାଇଥା'ନ୍ତି ; ସୁତରାଂ ସେମାନଙ୍କ ସକାଶେ ଦୁଃଖ ଓ ଶୋକ ଯୋଗୁଁ ତୁମର ଜୀବନ ବିନଷ୍ଟ ନ ହେଉ ; ଅଲ୍ଲାଃ ସେମାନଙ୍କ କାର୍ଯ୍ୟକୁ ଭଲ ରୂପେ ଜାଣନ୍ତି (ବାସ୍ତବରେ ଅଲ୍ଲାଃ କର୍ମାନୁସାରେ ଫଳ ପ୍ରଦାନ କରିଥା'ନ୍ତି) ।

أَفَمَنْ زُيِّنَ لَهُ سُوءُ عَمَلِهِ فَرَآهُ حَسَنًا ۖ فَإِنَّ اللّٰهَ يُضِلُّ مَنْ يَشَاءُ وَيَهْدِي مَنْ يَشَاءُ ۖ فَلَا تَذْهَبْ نَفْسُكَ عَلَيْهِمْ حَسَرٰتٍ ۚ إِنَّ اللّٰهَ عَلِيمٌ بِمَا يَصْنَعُونَ ⑨

୧୦. ଏବଂ ଅଲ୍ଲାଃ ହିଁ ବାୟୁ ପ୍ରେରଣ କରିଥା'ନ୍ତି ଯାହା ମେଘମାଳାକୁ ବହନ କରିଥାଏ ; ତା'ପରେ ଆମ୍ଭେ ତାହାକୁ ଏକ ମୃତ (ପ୍ରାୟ) ଦେଶ ଆଡକୁ ପ୍ରବାହିତ କରୁ ଏବଂ ତାହା ଦ୍ୱାରା ଅନାବାଦୀରେ ପରିଣତ ହୋଇଥିବା ଭୂମିକୁ ଆବାଦ କରୁ ; ଏହିପରି ମୃତ୍ୟୁପରେ ପୁନର୍ଜୀବିତ ହେବା ବିଧାନ ନିର୍ଦ୍ଦିଷ୍ଟ ଅଛି ।

وَاللّٰهُ الَّذِي أَرْسَلَ الرِّيٰحَ فَتُثِيرُ سَحَابًا فَسُقْنٰهُ إِلَىٰ بَلَدٍ مَّيِّتٍ فَأَحْيَيْنَا بِهِ الْأَرْضَ بَعْدَ مَوْتِهَا ۚ كَذٰلِكَ النُّشُورُ ⑩

୧୧. ଯେ କେହି ସମ୍ମାନ କାମନା କରେ ସେ ମନେ ରଖିବା ଉଚିତ ଯେ ସମସ୍ତ ସମ୍ମାନ ଅଲ୍ଲାହଙ୍କ ହସ୍ତରେ ରହିଅଛି ; ପବିତ୍ର କଥାମାନ ତାହାଙ୍କ ଆଡକୁ ଆରୋହଣ କରେ ଏବଂ ବିଶ୍ୱାସ ଅନୁସାରେ କର୍ମ ସେମାନଙ୍କୁ ଉନ୍ନତ କରିଥାଏ ; ଯେଉଁମାନେ (ତୁମ ବିପକ୍ଷରେ) କୁଚକ୍ରାନ୍ତ କରନ୍ତି ସେମାନଙ୍କ ପାଇଁ କଠିନ ଶାସ୍ତି ରହିଅଛି ; ଏବଂ ସେମାନଙ୍କ ଚକ୍ରାନ୍ତ ହିଁ ବ୍ୟର୍ଥ ହେବ ।

مَنْ كَانَ يُرِيْدُ الْعِزَّةَ فَلِلّٰهِ الْعِزَّةُ جَمِيْعًا ۭ اِلَيْهِ يَصْعَدُ الْكَلِمُ الطَّيِّبُ وَالْعَمَلُ الصَّالِحُ يَرْفَعُهٗ ۭ وَالَّذِيْنَ يَمْكُرُوْنَ السَّيِّاٰتِ لَهُمْ عَذَابٌ شَدِيْدٌ ۭ وَمَكْرُ اُولٰۗىِٕكَ هُوَ يَبُوْرُ ﴿١١﴾

୧୨. ଏବଂ ଅଲ୍ଲାହ ତୁମମାନଙ୍କୁ (ପ୍ରଥମେ) ମାଟିରୁ ସୃଷ୍ଟି କରିଛନ୍ତି ଓ ଏହାପରେ ଶୁକ୍ରବିନ୍ଦୁରୁ ; ଏହାପରେ ତୁମମାନଙ୍କୁ ଯୋଡା (ଅର୍ଥାତ୍ ପୁରୁଷ ଓ ସ୍ତ୍ରୀ) ରୂପେ ସୃଷ୍ଟି କରିଛନ୍ତି ; ଏବଂ ଅଲ୍ଲାହଙ୍କ ଅଜ୍ଞାତସାରରେ କୌଣସି ନାରୀ ଗର୍ଭବତୀ ହୁଏ ନାହିଁ କି ସନ୍ତାନ ପ୍ରସବ କରେ ନାହିଁ ; କୌଣସି ବ୍ୟକ୍ତିର ବୟସକୁ ବୃଦ୍ଧି କରାଯାଏ ନାହିଁ କି କାହାରି ବୟସ ହ୍ରାସ କରାଯାଏ ନାହିଁ ; କିନ୍ତୁ ଏହା ଏକ ନିର୍ଦ୍ଧାରିତ ନିୟମାନୁସାରେ ହୁଏ ; ବାସ୍ତବରେ ଏହା ଅଲ୍ଲାହଙ୍କ ପକ୍ଷରେ ସହଜସାଧ୍ୟ ।

وَاللّٰهُ خَلَقَكُمْ مِّنْ تُرَابٍ ثُمَّ مِنْ نُّطْفَةٍ ثُمَّ جَعَلَكُمْ اَزْوَاجًا ۭ وَمَا تَحْمِلُ مِنْ اُنْثٰى وَلَا تَضَعُ اِلَّا بِعِلْمِهٖ ۭ وَمَا يُعَمَّرُ مِنْ مُّعَمَّرٍ وَّلَا يُنْقَصُ مِنْ عُمُرِهٖٓ اِلَّا فِيْ كِتٰبٍ ۭ اِنَّ ذٰلِكَ عَلَى اللّٰهِ يَسِيْرٌ ﴿١٢﴾

୧୩. ଏବଂ ଏପରି ଦୁଇଗୋଟି ସାଗର (ବା ନଦୀ) କଦାପି ସମାନ ହୋଇ ନ ପାରେ ; (ଯେହିତୁ) ଗୋଟିକର ଜଳ ମଧୁର, । ରୁଚିକର ଓ ପାନୀୟ ସକାଶେ ସୁସ୍ୱାଦୁ ଓ (ଆଉ) ଗୋଟିକର ଜଳ ଲବଣାକ୍ତ ଓ ତିକ୍ତ ; (ଏହା ସତ୍ତ୍ୱେ) ତୁମେମାନେ ଏ ଦୁଇ ସାଗର (ବା ନଦୀ)ରୁ ସଦ୍ୟ ମାଂସ ଭକ୍ଷଣ କର, ଏବଂ ତନ୍ମଧ୍ୟରୁ ଅଳଙ୍କାର ଆକାରରେ ବ୍ୟବହାର ଯୋଗ୍ୟ ଦ୍ରବ୍ୟ (ଅର୍ଥାତ୍ ମୁକ୍ତା ଆଦି) ବାହାର କର, ଯାହା ତୁମେମାନେ ପରିଧାନ କର ; ଏବଂ ତୁମେମାନେ ପୋତମାନଙ୍କୁ ଲକ୍ଷ୍ୟ କରୁଅଛ ଯେ ସେଗୁଡିକ ତନ୍ମଧ୍ୟରେ ତରଙ୍ଗମାଳାକୁ ବିଦୀର୍ଣ୍ଣ କରି ଚାଲି ଯାଉଥାନ୍ତି ଯଦ୍ଦ୍ୱାରା ତୁମେମାନେ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କର) କୃପା ଅନ୍ୱେଷଣ କରି ପାରିବ ଓ ତୁମେମାନେ କୃତଜ୍ଞ ହୋଇପାରିବ ।

وَمَا يَسْتَوِي الْبَحْرٰنِ ڰ هٰذَا عَذْبٌ فُرَاتٌ سَاۗىِٕغٌ شَرَابُهٗ وَهٰذَا مِلْحٌ اُجَاجٌ ۭ وَمِنْ كُلٍّ تَاْكُلُوْنَ لَحْمًا طَرِيًّا وَّتَسْتَخْرِجُوْنَ حِلْيَةً تَلْبَسُوْنَهَا ۚ وَتَرَى الْفُلْكَ فِيْهِ مَوَاخِرَ لِتَبْتَغُوْا مِنْ فَضْلِهٖ وَلَعَلَّكُمْ تَشْكُرُوْنَ ﴿١٣﴾

୧୪. ସେ ରାତ୍ରିକୁ ଦିବସରେ ପ୍ରବେଶ କରାନ୍ତି ଓ ଦିବସକୁ ରାତ୍ରିରେ ପ୍ରବେଶ କରାନ୍ତି ; ଏବଂ ସେ ସୂର୍ଯ୍ୟ ଓ ଚନ୍ଦ୍ରକୁ (ସମସ୍ତ ଜୀବଜଗତ) ସେବାରେ ନିୟୋଜିତ କରିଛନ୍ତି ; ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଏକ ନିର୍ଦ୍ଦିଷ୍ଟ ଅବଧି ପର୍ଯ୍ୟନ୍ତ (ନିଜ କକ୍ଷରେ) ଘୂରୁଥା'ନ୍ତି ; ଅଲ୍ଲାହ ହିଁ ଏହିପରି (ଯେ କି) ତୁମମାନଙ୍କର ପାଳନକର୍ତ୍ତା ; ରାଜତ୍ୱ ତାହାଙ୍କର ; ଏବଂ ତାହାଙ୍କ ବ୍ୟତୀତ ତୁମେମାନେ ଯାହାଙ୍କୁ ଡାକୁଅଛ ସେମାନଙ୍କର ଖଜୁରି ମଞ୍ଜିର ଆବରଣ ସଦୃଶ (କ୍ଷୁଦ୍ର) ବସ୍ତୁର ମଧ୍ୟ ଅଧିକାର ନାହିଁ ।

يُوْلِجُ الَّيْلَ فِي النَّهَارِ وَيُوْلِجُ النَّهَارَ فِي الَّيْلِ ۙ وَسَخَّرَ الشَّمْسَ وَالْقَمَرَ ڮ كُلٌّ يَّجْرِيْ لِاَجَلٍ مُّسَمًّى ۭ ذٰلِكُمُ اللّٰهُ رَبُّكُمْ لَهُ الْمُلْكُ ۭ وَالَّذِيْنَ تَدْعُوْنَ مِنْ دُوْنِهٖ مَا يَمْلِكُوْنَ مِنْ قِطْمِيْرٍ ﴿١٤﴾

إِنْ تَدْعُوهُمْ لَا يَسْمَعُوا دُعَاءَكُمْ ۖ وَلَوْ سَمِعُوا مَا اسْتَجَابُوا لَكُمْ ۖ وَيَوْمَ الْقِيَامَةِ يَكْفُرُونَ بِشِرْكِكُمْ ۚ وَلَا يُنَبِّئُكَ مِثْلُ خَبِيرٍ ﴿١٥﴾

୧୫. ଯଦି ତୁମେମାନେ ସେମାନଙ୍କୁ ଡାକିବ, ତେବେ ସେମାନେ ତୁମମାନଙ୍କର ଡାକ କଦାପି ଶୁଣିବେ ନାହିଁ ; ଏବଂ ଶୁଣିଲେ ମଧ୍ୟ ତୁମମାନଙ୍କ ହିତାର୍ଥେ କିଛି କରିପାରିବେ ନାହିଁ ଏବଂ ତୁମେମାନେ ଅଲ୍ଲାହଙ୍କ ସହିତ ସମକକ୍ଷ କରିଥିବା ବିଷୟକୁ ସେମାନେ କୟାମତ ଦିନ ଅସ୍ୱୀକାର କରିବେ ; ଏବଂ ସର୍ବଜ୍ଞ (ଅଲ୍ଲାହ)ଙ୍କ ବ୍ୟତୀତ ତୁମଙ୍କୁ ଅନ୍ୟ କେହି ସୁସମାଚାର[୧] ଦେଇପାରିବେ ନାହିଁ ।

يَا أَيُّهَا النَّاسُ أَنْتُمُ الْفُقَرَاءُ إِلَى اللَّهِ ۖ وَاللَّهُ هُوَ الْغَنِيُّ الْحَمِيدُ ﴿١٦﴾

୧୬. ହେ ଲୋକମାନେ ! ତୁମେମାନେ ଅଲ୍ଲାହଙ୍କ ଉପରେ ନିର୍ଭରଶୀଳ ଅଥଚ ଅଲ୍ଲାହ କାହାରି ଉପରେ ନିର୍ଭରଶୀଳ ନୁହନ୍ତି ; ବରଂ ସେ ହିଁ ପ୍ରଶଂସିତ (ଅର୍ଥାତ୍ ଅନ୍ୟମାନଙ୍କର ଆବଶ୍ୟକତା ପୂରଣ କରିଥା'ନ୍ତି) ।

إِنْ يَشَأْ يُذْهِبْكُمْ وَيَأْتِ بِخَلْقٍ جَدِيدٍ ﴿١٧﴾

୧୭. ଯଦି ସେ ଇଚ୍ଛା କରିବେ, ତେବେ ତୁମ ସମସ୍ତଙ୍କୁ ଧ୍ୱଂସ କରିଦେବେ ଏବଂ (ପ୍ରତି ବଦଳରେ) ଏକ ନୂତନ ସୃଷ୍ଟିର ସର୍ଜନା କରିବେ ।

وَمَا ذَٰلِكَ عَلَى اللَّهِ بِعَزِيزٍ ﴿١٨﴾

୧୮. ଏହା ଅଲ୍ଲାହଙ୍କ ପକ୍ଷରେ ଆଦୌ କଷ୍ଟସାଧ୍ୟ ନୁହେଁ ।

وَلَا تَزِرُ وَازِرَةٌ وِزْرَ أُخْرَىٰ ۚ وَإِنْ تَدْعُ مُثْقَلَةٌ إِلَىٰ حِمْلِهَا لَا يُحْمَلْ مِنْهُ شَيْءٌ وَلَوْ كَانَ ذَا قُرْبَىٰ ۗ إِنَّمَا تُنْذِرُ الَّذِينَ يَخْشَوْنَ رَبَّهُمْ بِالْغَيْبِ وَأَقَامُوا الصَّلَاةَ ۚ وَمَنْ تَزَكَّىٰ فَإِنَّمَا يَتَزَكَّىٰ لِنَفْسِهِ ۚ وَإِلَى اللَّهِ الْمَصِيرُ ﴿١٩﴾

୧୯. ଏବଂ କୌଣସି ଭାରବାହୀ ପ୍ରାଣୀ ଅନ୍ୟର ଭାର ବହନ କରିପାରିବ ନାହିଁ ; ଏବଂ ଯଦି କୌଣସି ଭାରାକ୍ରାନ୍ତ (ପ୍ରାଣୀ) ନିଜ ଭାର ବହନ କରିବା ସକାଶେ ଅନ୍ୟ କାହାରିକୁ ଡାକେ, ତେବେ ଯେତେ ଆତ୍ମୀୟ ହେଲେ ମଧ୍ୟ ତାହାର ତିଳେମାତ୍ର ଭାର ବହନ କରାଯିବ ନାହିଁ ; ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଗୋପନରେ ଭୟ କରନ୍ତି ଓ (ନିୟମାନୁସାରେ) ନମାଜ ପାଠ କରନ୍ତି, ସେମାନଙ୍କୁ ତୁମେ କେବଳ ସତର୍କ କରାଇଥାଅ ; ଏବଂ ଯେ ନିଜକୁ ପବିତ୍ର କରାଏ, ସେ କେବଳ ନିଜ ଲାଭ ପାଇଁ ପବିତ୍ର ହୁଏ ; ଏବଂ ପରିଶେଷରେ ସମସ୍ତଙ୍କୁ ଅଲ୍ଲାହଙ୍କ ନିକଟକୁ ଫେରିବାକୁ ହେବ ।

وَمَا يَسْتَوِي الْأَعْمَىٰ وَالْبَصِيرُ ﴿٢٠﴾

୨୦. ଏବଂ ଚକ୍ଷୁହୀନ ଓ ଚକ୍ଷୁଷ୍ମାନ୍ ବ୍ୟକ୍ତି ସମାନ ହୋଇ ନ ପାରନ୍ତି ;

وَلَا الظُّلُمَاتُ وَلَا النُّورُ ﴿٢١﴾

୨୧. ଏବଂ ଅନ୍ଧକାର ଓ ଆଲୋକ (ସମାନ ହୋଇ ନ ପାରନ୍ତି) ;

وَلَا الظِّلُّ وَلَا الْحَرُورُ ﴿٢٢﴾

୨୨. ଏବଂ ଛାଇ ଓ ଖରା (ସମାନ ହୋଇ ନ ପାରନ୍ତି) ;

---

୧. ଅର୍ଥାତ୍ ହଜରତ ମହମ୍ମଦଙ୍କ ଭିନ୍ନ ଅନ୍ୟ ଯାହାଙ୍କ ନିକଟକୁ ଅଲ୍ଲାହଙ୍କ ଓହି ଓ ଇଲହାମ ପ୍ରେରିତ ହେଉଥିଲା ।

وَمَا يَسْتَوِي الْأَحْيَاءُ وَلَا الْأَمْوَاتُ ۚ إِنَّ اللَّهَ يُسْمِعُ مَنْ يَشَاءُ ۖ وَمَا أَنْتَ بِمُسْمِعٍ مَنْ فِي الْقُبُورِ ﴿٢٣﴾

୨୩. ଏବଂ ଜୀବିତ ଓ ମୃତ (ସମାନ ହୋଇ ନ ପାରନ୍ତି) ; ବାସ୍ତବରେ ଅଲ୍ଲାହ ଯାହା ପାଇଁ ଇଚ୍ଛା କରନ୍ତି ତାହାକୁ ଶୁଣାଇ ପାରନ୍ତି; କିନ୍ତୁ ତୁମେ ସେମାନଙ୍କୁ ଶୁଣାଇ ପାରିବ ନାହିଁ ଯେଉଁମାନେ କବର ମଧ୍ୟରେ ଅଛନ୍ତି ।

إِنْ أَنْتَ إِلَّا نَذِيرٌ ﴿٢٤﴾

୨୪. ତୁମେ ଜଣେ ସଚେତକ ମାତ୍ର ।

إِنَّا أَرْسَلْنَاكَ بِالْحَقِّ بَشِيرًا وَنَذِيرًا ۚ وَإِنْ مِنْ أُمَّةٍ إِلَّا خَلَا فِيهَا نَذِيرٌ ﴿٢٥﴾

୨୫. ଆମେ ତୁମକୁ ଏକ ଚିରସ୍ଥାୟୀ ସତ୍ୟ ସହିତ ଏକ ସୁସମାଚାରଦାତା ଓ ସଚେତକ କରି ପ୍ରେରଣ କରିଅଛୁ ; ଏବଂ ଏପରି କୌଣସି ସମ୍ପ୍ରଦାୟ ନାହିଁ ଯାହାଙ୍କ ନିକଟକୁ (ଅଲ୍ଲାହଙ୍କ ତରଫରୁ) କୌଣସି ସଚେତକ ଆସି ନାହାନ୍ତି ।

وَإِنْ يُكَذِّبُوكَ فَقَدْ كَذَّبَ الَّذِينَ مِنْ قَبْلِهِمْ جَاءَتْهُمْ رُسُلُهُمْ بِالْبَيِّنَاتِ وَبِالزُّبُرِ وَبِالْكِتَابِ الْمُنِيرِ ﴿٢٦﴾

୨୬. ଏବଂ ଯଦି ଏହି ଲୋକମାନେ ତୁମକୁ ମିଥ୍ୟାବାଦୀ ମନେ କରୁଥା'ନ୍ତି, ତେବେ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ (ଆପଣା କାଳର ରସୁଲମାନଙ୍କୁ) ମିଥ୍ୟାବାଦୀ ମନେ କରିଥିଲେ ; ସେମାନଙ୍କ ନିକଟକୁ ମଧ୍ୟ ସେମାନଙ୍କ ସମୟର ରସୁଲମାନେ ପ୍ରମାଣମାନ ଓ କେତେକ ଶିକ୍ଷା ସହିତ ଆସିଥିଲେ, ଏବଂ (ସେମାନଙ୍କ ମଧ୍ୟରୁ କେତେକ) ଜ୍ୟୋତି ପ୍ରଦାନକାରୀ (ଧର୍ମ) ଗ୍ରନ୍ଥ ସହିତ ଆସିଥିଲେ ।

ثُمَّ أَخَذْتُ الَّذِينَ كَفَرُوا ۖ فَكَيْفَ كَانَ نَكِيرِ ﴿٢٧﴾

୨୭. ତା'ପରେ ଆମେ ଅବିଶ୍ୱାସକାରୀମାନଙ୍କୁ (ସେମାନଙ୍କ ମିଥ୍ୟା ଆରୋପ ଯୋଗୁଁ ଶାସ୍ତିର) କବଳିତ କରିଥିଲୁ ; ତେଣୁ (ବର୍ତ୍ତମାନ ଦେଖ, ଏପରି ପରିସ୍ଥିତିରେ) ଆମକୁ ପ୍ରତ୍ୟାଖ୍ୟାନ କରିବାର ପରିଣାମ କିପରି (ଭୟାବହ) ହୁଏ ।

أَلَمْ تَرَ أَنَّ اللَّهَ أَنْزَلَ مِنَ السَّمَاءِ مَاءً فَأَخْرَجْنَا بِهِ ثَمَرَاتٍ مُخْتَلِفًا أَلْوَانُهَا ۚ وَمِنَ الْجِبَالِ جُدَدٌ بِيضٌ وَحُمْرٌ مُخْتَلِفٌ أَلْوَانُهَا وَغَرَابِيبُ سُودٌ ﴿٢٨﴾

୨୮. କ'ଣ ତୁମେ ଲକ୍ଷ୍ୟ କରି ନାହଁ ଯେ ଅଲ୍ଲାହ ମେଘରୁ ଜଳ ବୃଷ୍ଟି କରାନ୍ତି, ଏବଂ ଏହାଦ୍ୱାରା ଆମେ ବିଭିନ୍ନ ରଙ୍ଗର ଫଳ ଉତ୍ପାଦନ କରାଇଥାଉ ; ଏବଂ ପର୍ବତମାନଙ୍କ ମଧ୍ୟରେ ବିଭିନ୍ନ ରଙ୍ଗର ପର୍ବତ ଅଛି ଯୋହା ଏକ ଅନ୍ୟ ଠାରୁ ସ୍ୱତନ୍ତ୍ର : କେତେକ ଧଳା, କେତେକ ନାଲି, ବିଭିନ୍ନ ରଙ୍ଗର ଓ କେତେକ ମଧ୍ୟ ଗାଢ଼ କଳା ରଙ୍ଗ ବିଶିଷ୍ଟ ।

وَمِنَ النَّاسِ وَالدَّوَابِّ وَالْأَنْعَامِ مُخْتَلِفٌ أَلْوَانُهُ كَذَٰلِكَ ۗ إِنَّمَا يَخْشَى اللَّهَ مِنْ عِبَادِهِ الْعُلَمَاءُ ۗ إِنَّ اللَّهَ عَزِيزٌ غَفُورٌ ﴿٢٩﴾

୨୯. ଏବଂ (ସେହିପରି) ମନୁଷ୍ୟ, ଚତୁଷ୍ପଦ ପ୍ରାଣୀ ଓ (ଅନ୍ୟାନ୍ୟ) ଜୀବଜନ୍ତୁଙ୍କ ମଧ୍ୟରେ କେତେକ ଏପରି ଥାଆନ୍ତି ଯେ ସେମାନଙ୍କ ମଧ୍ୟରେ ପ୍ରତ୍ୟେକଙ୍କ ରଙ୍ଗ ପରସ୍ପରଠାରୁ ଭିନ୍ନ ଥାଏ ; (ଓ) ବାସ୍ତବତା (ମଧ୍ୟ) ଏହିପରି, ଭକ୍ତମାନଙ୍କ ମଧ୍ୟରେ ଯେଉଁମାନେ ଜ୍ଞାନୀ କେବଳ ସେହିମାନେ ତାହାଙ୍କୁ ଭୟ କରିଥା'ନ୍ତି ; ଅଲ୍ଲାହ ପରାକ୍ରମୀ (ଓ) ଅତ୍ୟନ୍ତ କ୍ଷମାଶୀଳ ।

୩୦. ବାସ୍ତବରେ ଯେଉଁମାନେ ଅଲ୍ଲାଃଙ୍କର (ଧର୍ମ) ଗ୍ରନ୍ଥକୁ ପାଠ କରନ୍ତି ଓ (ସମବେତ ହୋଇ) ନମାଜ ପାଠ କରନ୍ତି, ଏବଂ ଆମେ ସେମାନଙ୍କୁ ଯାହାକିଛି ଦେଇଅଛୁ ତହିଁରୁ ଗୋପନରେ ଓ ପ୍ରକାଶ୍ୟରେ ଖର୍ଚ୍ଚ କରନ୍ତି, ସେମାନେ ପ୍ରକୃତରେ ଏପରି ବ୍ୟବସାୟ [୧] ପାଇଁ ପ୍ରଚେଷ୍ଟା କରୁଛନ୍ତି ଯାହା କେବେହେଲେ ନଷ୍ଟ ହେବ ନାହିଁ।

إِنَّ الَّذِينَ يَتْلُونَ كِتَابَ اللَّهِ وَأَقَامُوا الصَّلَاةَ وَأَنْفَقُوا مِمَّا رَزَقْنَاهُمْ سِرًّا وَعَلَانِيَةً يَرْجُونَ تِجَارَةً لَنْ تَبُورَ ﴿٣٠﴾

୩୧. ଯେହେତୁ ପରିଣାମ ସ୍ୱରୂପ ଅଲ୍ଲାଃ ସେମାନଙ୍କୁ ସେମାନଙ୍କ କର୍ମର ସମ୍ପୂର୍ଣ୍ଣ ପୁରସ୍କାର ପ୍ରଦାନ କରିବେ, ଏବଂ ସେମାନଙ୍କୁ (ସେମାନଙ୍କ କର୍ମର ପୁରସ୍କାର ବ୍ୟତୀତ) ନିଜ କୃପାରୁ ଆହୁରି ଅଧିକ ପ୍ରଦାନ କରିବେ, (ଫଳରେ ସେମାନଙ୍କ ଅବସ୍ଥା ଏହି ସଂସାର ଅପେକ୍ଷା ମଧ୍ୟ ସହସ୍ର ଗୁଣରେ ଉତ୍କୃଷ୍ଟ ହେବ), କାରଣ ସେ (ଅଲ୍ଲାଃ) ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ଗୁଣଗ୍ରାହୀ।

لِيُوَفِّيَهُمْ أُجُورَهُمْ وَيَزِيدَهُمْ مِنْ فَضْلِهِ ۚ إِنَّهُ غَفُورٌ شَكُورٌ ﴿٣١﴾

୩୨. ଏବଂ ଆମେ ତୁମ ନିକଟକୁ ଓହି ମାଧ୍ୟମରେ ଏହି (କୋରାନ) ଗ୍ରନ୍ଥର ଯାହା ପ୍ରେରଣ କରିଅଛୁ ତାହା ସତ୍ୟ ଅଟେ, ଓ (ତାହା ସତ୍ୟ-ସାବ୍ୟସ୍ତ ହେବ ଓ) ତାହା ପୂର୍ବରୁ ଓହି ମାଧ୍ୟମରେ ଯାହା ଅବତୀର୍ଣ୍ଣ ହୋଇଅଛି ତାହାର ସତ୍ୟତା ପ୍ରତିପାଦନ କରିବ; ଏବଂ ଅଲ୍ଲାଃ ବାସ୍ତବରେ ନିଜ ଭକ୍ତମାନଙ୍କ ସଂକ୍ରାନ୍ତରେ ଅବଗତ ଥାଆନ୍ତି, ଓ ସେମାନଙ୍କ ଅବସ୍ଥାକୁ ନିରୀକ୍ଷଣ କରୁଥା'ନ୍ତି।

وَالَّذِي أَوْحَيْنَا إِلَيْكَ مِنَ الْكِتَابِ هُوَ الْحَقُّ مُصَدِّقًا لِمَا بَيْنَ يَدَيْهِ ۗ إِنَّ اللَّهَ بِعِبَادِهِ لَخَبِيرٌ بَصِيرٌ ﴿٣٢﴾

୩୩. (ଓହି ଅବତୀର୍ଣ୍ଣ ହେବା) ପରେ ଆମେ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ମନୋନୀତ କଲୁ ସେମାନଙ୍କୁ ଏହି (ଧର୍ମ) ଗ୍ରନ୍ଥର ଉତ୍ତରାଧିକାରୀ କଲୁ; ସୁତରାଂ ସେମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତି ଏପରି ଥିଲେ ଯେଉଁମାନେ କି ନିଜ ଜୀବନ ପ୍ରତି ଖୁବ୍ ଅତ୍ୟାଚାର କରିଥିଲେ ଓ ସେମାନଙ୍କ ମଧ୍ୟରୁ କେତେକ ମଧ୍ୟମ ପନ୍ଥୀ ଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅନ୍ୟ କେତେକ ଅଲ୍ଲାଃଙ୍କ ଆଦେଶ ଅନୁସାରେ ପୁଣ୍ୟ କାର୍ଯ୍ୟରେ ଅନ୍ୟମାନଙ୍କ ଅପେକ୍ଷା ଅଗ୍ରଣୀ ଥିଲେ; ଏହା (ଅଲ୍ଲାଃଙ୍କର) ପରମ ଅନୁଗ୍ରହ।

ثُمَّ أَوْرَثْنَا الْكِتَابَ الَّذِينَ اصْطَفَيْنَا مِنْ عِبَادِنَا ۖ فَمِنْهُمْ ظَالِمٌ لِنَفْسِهِ وَمِنْهُمْ مُقْتَصِدٌ وَمِنْهُمْ سَابِقٌ بِالْخَيْرَاتِ بِإِذْنِ اللَّهِ ۚ ذَٰلِكَ هُوَ الْفَضْلُ الْكَبِيرُ ﴿٣٣﴾

୩୪. (ପୁରସ୍କାର ସ୍ୱରୂପ ସେମାନେ ଲାଭ କରିବେ) ଚିରସ୍ଥାୟୀ ସ୍ୱର୍ଗୋଦ୍ୟାନ, ଯହିଁରେ ସେମାନେ ପ୍ରବେଶ କରିବେ,

جَنَّاتُ عَدْنٍ يَدْخُلُونَهَا يُحَلَّوْنَ فِيهَا مِنْ أَسَاوِرَ

---

୧. ଅର୍ଥାତ୍ ଅଲ୍ଲାଃଙ୍କ ସହିତ କରାଯିବା ବ୍ୟବସାୟ।

مِنْ ذَهَبٍ وَّلُؤْلُؤًا ۚ وَلِبَاسُهُمْ فِيهَا حَرِيرٌ ﴿٣٣﴾

(ଏବଂ) ସେଠାରେ ସେମାନଙ୍କୁ ସ୍ୱର୍ଣ୍ଣକଙ୍କଣ[1] ଓ ମୁକ୍ତା ନିର୍ମିତ ଅଳଙ୍କାରରେ ଅଭିଭୂଷିତ କରାହେବ ; ଏବଂ ସେଠାରେ ସେମାନଙ୍କ ପରିଧାନ ରେଶମର ହେବ ।

وَقَالُوا الْحَمْدُ لِلَّهِ الَّذِي أَذْهَبَ عَنَّا الْحَزَنَ ۖ إِنَّ رَبَّنَا لَغَفُورٌ شَكُورٌ ﴿٣٤﴾

୩୫. ଏବଂ ସେମାନେ କହିବେ, "ଅଲ୍ଲାହ ହିଁ ସମସ୍ତ ପ୍ରଶଂସାର ପାତ୍ର ଯେ ଆମମାନଙ୍କର (ସମସ୍ତ) ଦୁଃଖ ଦୂରୀଭୂତ କରିଛନ୍ତି ; ଏବଂ ବାସ୍ତବରେ ଆମମାନଙ୍କ ପାଳନକର୍ତ୍ତା ଅତ୍ୟନ୍ତ କ୍ଷମାଶୀଳ (ଓ) ଗୁଣଗ୍ରାହୀ ।"

الَّذِي أَحَلَّنَا دَارَ الْمُقَامَةِ مِن فَضْلِهِ لَا يَمَسُّنَا فِيهَا نَصَبٌ وَلَا يَمَسُّنَا فِيهَا لُغُوبٌ ﴿٣٥﴾

୩୬. "ଯେ ଆମମାନଙ୍କୁ ରହିବା ପାଇଁ ସ୍ୱକୃପାରୁ ଏପରି ସ୍ଥାନରେ ଅବସ୍ଥାପିତ କରିଛନ୍ତି ଯେଉଁଠାରେ ଆମମାନଙ୍କୁ କୌଣସି କଷ୍ଟ ବା କ୍ଳାନ୍ତି ସ୍ପର୍ଶ କରୁନାହିଁ ।"

وَالَّذِينَ كَفَرُوا لَهُمْ نَارُ جَهَنَّمَ لَا يُقْضَىٰ عَلَيْهِمْ فَيَمُوتُوا وَلَا يُخَفَّفُ عَنْهُم مِّنْ عَذَابِهَا ۚ كَذَٰلِكَ نَجْزِي كُلَّ كَفُورٍ ﴿٣٦﴾

୩୭. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନଙ୍କୁ ନରକର ଅଗ୍ନି ଦହନ କରିବ ; ସେମାନଙ୍କ ସକାଶେ ମୃତ୍ୟୁ ବିଷୟକ ନିଷ୍ପତ୍ତି ବୃତାନ୍ତ ହେବ ନାହିଁ ଯଦ୍ଦ୍ୱାରା ସେମାନେ ମୃତ୍ୟୁ ବରଣ କରିପାରିବେ କିମ୍ବା ସେମାନଙ୍କ ସକାଶେ ନରକର ଶାସ୍ତିକୁ ହ୍ରାସ କରାହେବ ନାହିଁ ; ଆମ୍ଭେ ପ୍ରତ୍ୟେକ କୃତଘ୍ନଙ୍କୁ ଏହିପରି ଭାବରେ ପ୍ରତିଫଳ ଦେଇଥାଉ ।

وَهُمْ يَصْطَرِخُونَ فِيهَا رَبَّنَا أَخْرِجْنَا نَعْمَلْ صَالِحًا غَيْرَ الَّذِي كُنَّا نَعْمَلُ ۚ أَوَلَمْ نُعَمِّرْكُم مَّا يَتَذَكَّرُ فِيهِ مَن تَذَكَّرَ وَجَاءَكُمُ النَّذِيرُ ۖ فَذُوقُوا فَمَا لِلظَّالِمِينَ مِن نَّصِيرٍ ﴿٣٧﴾

୩୮. ଏବଂ ସେମାନେ ସେ (ନରକ)ଠାରେ ଚିତ୍କାର କରିବେ (ଓ କହିବେ), "ହେ ଆମମାନଙ୍କ ପାଳନକର୍ତ୍ତା ! ଯଦି ଆମମାନଙ୍କୁ (ଏହି ନରକରୁ) ବାହାରକରି ଆଣିବ, ତେବେ ଆମେମାନେ ପୂର୍ବରୁ ଯେପରି (କୁକର୍ମ) କରୁଥିଲୁ ତାହା ପରିବର୍ତ୍ତେ (ବିଶ୍ୱାସକାରୀମାନଙ୍କ ସଦୃଶ) ପୁଣ୍ୟକର୍ମ କରିବୁ ;" (ଅଲ୍ଲାହ କହିବେ), "କ'ଣ ଆମ୍ଭେ ତୁମମାନଙ୍କୁ ସେତିକି ପରମାୟୁ ଦେଇ ନ ଥିଲୁ ଯେ ଯେଉଁ ସମୟ ମଧ୍ୟରେ ଉପଦେଶ ଗ୍ରହଣ କରିବାକୁ ଇଚ୍ଛୁକ ଥିବା ବ୍ୟକ୍ତି ଉପଦେଶ ଗ୍ରହଣ କରିପାରିଥାନ୍ତା ? ଏବଂ ତୁମମାନଙ୍କ ନିକଟକୁ ସଚେତକ ତ (ମଧ୍ୟ) ଆସିଥିଲେ (ଅଥଚ ତୁମେମାନେ ସେମାନଙ୍କ କଥା ମାନିଲ ନାହିଁ) ; ସୁତରାଂ (ବର୍ତ୍ତମାନ ଏହି) ଶାସ୍ତି ଆସ୍ୱାଦନ କର, କାରଣ ଅତ୍ୟାଚାରୀମାନଙ୍କର କେହି ସାହାଯ୍ୟକାରୀ ନାହାନ୍ତି ।"

إِنَّ اللَّهَ عَالِمُ غَيْبِ السَّمَاوَاتِ وَالْأَرْضِ ۚ إِنَّهُ عَلِيمٌ بِذَاتِ الصُّدُورِ ﴿٣٨﴾

୩୯. ଅଲ୍ଲାହ ଆକାଶ ଓ ପୃଥିବୀର ଗୁପ୍ତ ବିଷୟକୁ ଜାଣନ୍ତି ; ସେ ଅନ୍ତରର କଥାକୁ ମଧ୍ୟ ଭଲ ରୂପେ ଜାଣନ୍ତି ।

---

୧. ଏହା ଏକ ରୂପକ । ପ୍ରାଚୀନ କାଳରେ ରାଜାମାନେ ଯାହାକୁ ସମ୍ମାନିତ କରିବାକୁ ଚାହୁଁଥିଲେ ତାହାକୁ ମଣିମୁକ୍ତାର ହାର ବା ସ୍ୱର୍ଣ୍ଣ ଖଚିତ କଙ୍କଣ ପ୍ରଦାନ କରୁଥିଲେ । ସେପରି ବ୍ୟକ୍ତି ଏହାକୁ ନିଜେ ପିନ୍ଧୁଥିଲା ବା ନିଜ ପତ୍ନୀକୁ ଦେଇ ଦେଉଥିଲା । ଏଠାରେ ମଧ୍ୟ ସେହି ଦୃଷ୍ଟାନ୍ତ ଦିଆଯାଇଛି । ଯେବେ ବୈକୁଣ୍ଠବାସୀଙ୍କୁ କୌଣସି ପୁରସ୍କାର ମିଳିବ ତେବେ ଯେପରି ମଣିଷ ପାର୍ଥିବ ପୁରସ୍କାର ପାଇ ଆନନ୍ଦ ଲାଭ କରେ ସେହିପରି ସ୍ୱର୍ଗୀୟ ପୁରସ୍କାର ପାଇ ମଧ୍ୟ ଆନନ୍ଦ ଲାଭ କରିବ । ତାଙ୍କୁ ମିଳିଥିବା ପୁରସ୍କାରକୁ ଯଦି ସେ ନିଜ ବୈକୁଣ୍ଠବାସିନୀ ପତ୍ନୀମାନଙ୍କୁ ଦେଇ ଦେବ ତେବେ ସେଥିରେ କୌଣସି ଆପତ୍ତି କରାଯାଇ ପାରିବ ନାହିଁ । ଯଦି ଏପରି ହୁଏ ତାହା ଆଧ୍ୟାତ୍ମିକ ହାର ବୋଲି ଅର୍ଥ କରାଯିବ ତେବେ ତାହାକୁ ଜଣେ ପୁରୁଷ ମଧ୍ୟ ପରିଧାନ କରିପାରେ ।

هُوَ الَّذِيْ جَعَلَكُمْ خَلٰٓئِفَ فِي الْاَرْضِ ؕ فَمَنْ كَفَرَ فَعَلَيْهِ كُفْرُهٗ ؕ وَلَا يَزِيْدُ الْكٰفِرِيْنَ كُفْرُهُمْ عِنْدَ رَبِّهِمْ اِلَّا مَقْتًا ۚ وَلَا يَزِيْدُ الْكٰفِرِيْنَ كُفْرُهُمْ اِلَّا خَسَارًا ﴿۴۰﴾

୪୦. ସେ ହିଁ ତୁମମାନଙ୍କୁ ପୃଥିବୀରେ (ପୂର୍ବବର୍ତ୍ତୀ ଲୋକମାନଙ୍କର) ଉତ୍ତରାଧିକାରୀ କରିଛନ୍ତି ; ସୁତରାଂ ଯେ ଅବିଶ୍ୱାସ କରିବ, ସେ ନିଜେ ଅବିଶ୍ୱାସର ଫଳ ଭୋଗ କରିବ ; ଏବଂ ଅବିଶ୍ୱାସକାରୀମାନଙ୍କର ଅବିଶ୍ୱାସ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ସେମାନଙ୍କ ପ୍ରତି ଅସନ୍ତୋଷ ଭାବକୁ ହିଁ ବୃଦ୍ଧି କରାଇବ ; ଏବଂ ଅବିଶ୍ୱାସକାରୀମାନଙ୍କ ଅବିଶ୍ୱାସ ସେମାନଙ୍କୁ କେବଳ କ୍ଷତିଗ୍ରସ୍ତ କରାଏ ।

قُلْ اَرَءَيْتُمْ شُرَكَآءَكُمُ الَّذِيْنَ تَدْعُوْنَ مِنْ دُوْنِ اللّٰهِ ؕ اَرُوْنِيْ مَاذَا خَلَقُوْا مِنَ الْاَرْضِ اَمْ لَهُمْ شِرْكٌ فِي السَّمٰوٰتِ ۚ اَمْ اٰتَيْنٰهُمْ كِتٰبًا فَهُمْ عَلٰى بَيِّنَتٍ مِّنْهُ ۚ بَلْ اِنْ يَّعِدُ الظّٰلِمُوْنَ بَعْضُهُمْ بَعْضًا اِلَّا غُرُوْرًا ﴿۴۱﴾

୪୧. ତୁମେ କୁହ, "ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ ଯେଉଁ (କପୋଳକଳ୍ପିତ) ଉପାସ୍ୟମାନଙ୍କୁ ଡାକୁଅଛ, କ'ଣ ସେମାନଙ୍କୁ ତୁମେମାନେ ଦେଖିଅଛ ? ତାହାହେଲେ ସେମାନେ ଯାହାକିଛି ପୃଥିବୀରେ ସୃଷ୍ଟି କରିଛନ୍ତି ତାହା ଆମକୁ ଦେଖାଇ ଦିଅ ; କିମ୍ବା (କୁହ) ଆକାଶର ନିର୍ମାଣରେ କ'ଣ ସେମାନଙ୍କର କୌଣସି ଅଂଶ ଅଛି ? କିମ୍ବା କ'ଣ ଆମେ ସେମାନଙ୍କୁ କୌଣସି (ଧର୍ମ) ଗ୍ରନ୍ଥ ଦେଇଅଛୁ ଯେ ସେମାନେ ତହିଁରେ ବର୍ଣ୍ଣିତ (କୌଣସି) ପ୍ରମାଣ ନିଜ ପାଖରେ ରଖିଛନ୍ତି ?" (କୁହ ଏପରି ଆଦୌ ନୁହେଁ) ବରଂ ଅତ୍ୟାଚାରୀମାନେ ନିଜ ମଧ୍ୟରେ କେବଳ ପରସ୍ପରକୁ ପ୍ରତାରଣାମୂଳକ ଅଙ୍ଗୀକାର କରିଥା'ନ୍ତି ।

اِنَّ اللّٰهَ يُمْسِكُ السَّمٰوٰتِ وَالْاَرْضَ اَنْ تَزُوْلَا ۚ وَلَئِنْ زَالَتَآ اِنْ اَمْسَكَهُمَا مِنْ اَحَدٍ مِّنْۢ بَعْدِهٖ ؕ اِنَّهٗ كَانَ حَلِيْمًا غَفُوْرًا ﴿۴۲﴾

୪୨. ଅଲ୍ଲାହ ହିଁ ଆକାଶ ଓ ପୃଥିବୀକୁ ଧାରଣ କରିଛନ୍ତି, ଯେପରିକି ସେମାନେ ସ୍ଥାନଚ୍ୟୁତ ନ ହୁଅନ୍ତି ; ଏବଂ ଯଦି ସେମାନେ ସ୍ଥାନଚ୍ୟୁତ ହୁଅନ୍ତି, ତେବେ ଏହାପରେ ସେମାନଙ୍କୁ କେହି (ଧ୍ୱଂସମୁଖରୁ) ରକ୍ଷା କରିପାରିବେ ନାହିଁ ; ବାସ୍ତବରେ ସେ ହିଁ ଅତ୍ୟନ୍ତ ସହନଶୀଳ (ଓ) ଅତ୍ୟନ୍ତ କ୍ଷମାଶୀଳ ।

وَاَقْسَمُوْا بِاللّٰهِ جَهْدَ اَيْمَانِهِمْ لَئِنْ جَآءَهُمْ نَذِيْرٌ لَّيَكُوْنُنَّ اَهْدٰى مِنْ اِحْدَى الْاُمَمِ ۚ فَلَمَّا جَآءَهُمْ نَذِيْرٌ مَّا زَادَهُمْ اِلَّا نُفُوْرًا ﴿۴۳﴾

୪୩. ଏବଂ ସେମାନେ ଅଲ୍ଲାହଙ୍କ ନାମରେ ଦୃଢ଼ ଶପଥ କରନ୍ତି ଯେ ଯଦି ସେମାନଙ୍କ ନିକଟକୁ କୌଣସି ସତେତକ (ଅର୍ଥାତ୍ ନବୀ) ଆସନ୍ତି, ତେବେ ସେମାନେ (ସେମାନଙ୍କ ପୂର୍ବବର୍ତ୍ତୀ) ସମସ୍ତ ଲୋକମାନଙ୍କ ତୁଳନାରେ ଅଧିକ ସତ୍‌ପଥଗାମୀ ହୋଇଯିବେ ; କିନ୍ତୁ ଯେତେବେଳେ ସେମାନଙ୍କ ନିକଟକୁ ସତେତକ ଆସିଲେ (ସେତେବେଳେ) ତାହାଙ୍କର ଆଗମନ କେବଳ ସେମାନଙ୍କ ଘୃଣାଭାବ ବୃଦ୍ଧିର କାରଣ ହୋଇଥିଲା ।

ٱسْتِكْبَارًا فِى ٱلْأَرْضِ وَمَكْرَ ٱلسَّيِّئِ ۚ وَلَا يَحِيقُ ٱلْمَكْرُ ٱلسَّيِّئُ إِلَّا بِأَهْلِهِۦ ۚ فَهَلْ يَنظُرُونَ إِلَّا سُنَّتَ ٱلْأَوَّلِينَ ۚ فَلَن تَجِدَ لِسُنَّتِ ٱللَّهِ تَبْدِيلًا ۖ وَلَن تَجِدَ لِسُنَّتِ ٱللَّهِ تَحْوِيلًا ﴿٤٤﴾

୪୪. କାରଣ ସେମାନେ ଭୂପୃଷ୍ଠରେ ପ୍ରାଧାନ୍ୟ ବିସ୍ତାର କରିବାକୁ ଇଚ୍ଛା କରୁଥିଲେ ଏବଂ ମନ୍ଦ ଚକ୍ରାନ୍ତ କରିବାକୁ ଇଚ୍ଛା କରୁଥିଲେ ; ଏବଂ ମନ୍ଦ ଚକ୍ରାନ୍ତ ଚକ୍ରାନ୍ତକାରୀଙ୍କୁ ହିଁ ବିନାଶ କରେ ; ତେବେ କ'ଣ ସେମାନେ ପୂର୍ବବର୍ତ୍ତୀ ଲୋକମାନଙ୍କ (ପ୍ରତି ପ୍ରୟୋଗ କରାଯାଇଥିବା ଅଲ୍ଲାହଙ୍କ) ରୀତି (ଅର୍ଥାତ୍ ଶାସ୍ତିର ପ୍ରତୀକ୍ଷା କରୁଛନ୍ତି ? (ଏବଂ ତୁମେ ଲକ୍ଷ୍ୟକରିବ, ତେବେ) ତୁମେ ଅଲ୍ଲାହଙ୍କ ରୀତିରେ କେବେ କୌଣସି ପରିବର୍ତ୍ତନ ପାଇବ ନାହିଁ କି ଅଲ୍ଲାହଙ୍କ ରୀତି ଟଳୁଥିବାର ଦେଖିବ ନାହିଁ ।

أَوَلَمْ يَسِيرُوا۟ فِى ٱلْأَرْضِ فَيَنظُرُوا۟ كَيْفَ كَانَ عَٰقِبَةُ ٱلَّذِينَ مِن قَبْلِهِمْ وَكَانُوٓا۟ أَشَدَّ مِنْهُمْ قُوَّةً ۚ وَمَا كَانَ ٱللَّهُ لِيُعْجِزَهُۥ مِن شَىْءٍ فِى ٱلسَّمَٰوَٰتِ وَلَا فِى ٱلْأَرْضِ ۚ إِنَّهُۥ كَانَ عَلِيمًا قَدِيرًا ﴿٤٥﴾

୪୫. କ'ଣ ସେମାନେ ଭୂପୃଷ୍ଠରେ ଭ୍ରମଣ କରୁ ନାହାନ୍ତି ? (ଯଦି କରନ୍ତେ) ତେବେ ଦେଖିବାକୁ ପାଆନ୍ତେ ଯେ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କର ପରିଣାମ କିପରି ହୋଇଥିଲା ; ଅଥଚ ସେମାନେ ଏମାନଙ୍କ ଅପେକ୍ଷା ଅଧିକ ବଳବାନ୍ ଥିଲେ ; ଏବଂ ଆକାଶ ଓ ପୃଥିବୀରେ କୌଣସି ବିଷୟ ଅଲ୍ଲାହଙ୍କ ଇଚ୍ଛାକୁ ବ୍ୟର୍ଥ କରିପାରିବ ନାହିଁ ; ସେ ନିଶ୍ଚିତରୂପେ ସର୍ବଜ୍ଞ (ଓ) ସର୍ବଶକ୍ତିମାନ୍ ।

وَلَوْ يُؤَاخِذُ ٱللَّهُ ٱلنَّاسَ بِمَا كَسَبُوا۟ مَا تَرَكَ عَلَىٰ ظَهْرِهَا مِن دَآبَّةٍ وَلَٰكِن يُؤَخِّرُهُمْ إِلَىٰٓ أَجَلٍ مُّسَمًّى ۖ فَإِذَا جَآءَ أَجَلُهُمْ فَإِنَّ ٱللَّهَ كَانَ بِعِبَادِهِۦ بَصِيرًا ﴿٤٦﴾ ع

୪୬. ଏବଂ ଯଦି ଅଲ୍ଲାହ ଲୋକମାନଙ୍କୁ ସେମାନଙ୍କ କାର୍ଯ୍ୟଯୋଗୁଁ କୈଫିୟତ ମାଗିବା ଆରମ୍ଭ କରନ୍ତେ, ତେବେ ଭୂପୃଷ୍ଠରେ କୌଣସି ଜୀବକୁ ପରିତ୍ରାଣ ମିଳନ୍ତା ନାହିଁ ; କିନ୍ତୁ ସେ ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଅବସର ଦେଇଥା'ନ୍ତି ; ଏହାପରେ ଯେତେବେଳେ ସେମାନଙ୍କ ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହୁଏ, (ସେତେବେଳେ ସାବ୍ୟସ୍ତ ହୁଏ ଯେ) ଅଲ୍ଲାହ ନିଜ ଭକ୍ତମାନଙ୍କୁ ଭଲରୂପେ ନିରୀକ୍ଷଣ କରୁଥିଲେ ।




## ୟାସିନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୮୪ ଟି ଆୟତ ଓ ୫ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ୟା—ସୀନ । (ହେ ସୟଦ[୧] !)

يٰسٓ ②

୩. ଆମ୍ଭେ ତତ୍ତ୍ୱ ସମ୍ବଳିତ କୋରାନକୁ (ତୁମେ ସୟଦ ହୋଇଥିବାର) ପ୍ରମାଣ ସ୍ୱରୂପ ପେଶ୍ କରୁଅଛୁ ।

وَالْقُرْاٰنِ الْحَكِيْمِ ③

୪. ବାସ୍ତବିକ ତୁମେ ରସୁଲମାନଙ୍କ ମଧ୍ୟରେ ଅନ୍ତର୍ଗତ ।

اِنَّكَ لَمِنَ الْمُرْسَلِيْنَ ④

୫. (ଏବଂ) ସତ୍‌ପଥରେ (ଅଛ) ।

عَلٰى صِرَاطٍ مُّسْتَقِيْمٍ ⑤

୬. ପରାକ୍ରମୀ (ଓ) ଅତ୍ୟନ୍ତ କରୁଣାମୟ (ଅଲ୍ଲାହ)ଙ୍କ ତରଫରୁ (ଏହି କୋରାନ) ଅବତୀର୍ଣ୍ଣ ହୋଇଅଛି ;

تَنْزِيْلَ الْعَزِيْزِ الرَّحِيْمِ ⑥

୭. ଏଥି ସକାଶେ ଯେ ତୁମେ, ଯେଉଁମାନଙ୍କର ପିତୃପୁରୁଷମାନଙ୍କୁ ସଚେତନ କରାଯାଇ ନଥିଲା, ସେ ସମ୍ପ୍ରଦାୟମାନଙ୍କୁ ସଚେତନ କରାଅ ଏବଂ ସେମାନେ ଅମନୋଯୋଗୀ ରହିଥିଲେ ।

لِتُنْذِرَ قَوْمًا مَّآ اُنْذِرَ اٰبَآؤُهُمْ فَهُمْ غٰفِلُوْنَ ⑦

୮. ବାସ୍ତବିକ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ସମ୍ବନ୍ଧରେ ଆମର ବାଣୀ[୨] (ସତ୍ୟ) ସାବ୍ୟସ୍ତ ହୋଇଅଛି, ତେଣୁ ସେମାନେ ବିଶ୍ୱାସ କରୁନାହାନ୍ତି ।

لَقَدْ حَقَّ الْقَوْلُ عَلٰٓى اَكْثَرِهِمْ فَهُمْ لَا يُؤْمِنُوْنَ ⑧

---

୧. ମିଳିତ ସଂକ୍ଷେପାକ୍ଷର 'ୟା-ସିନ'ର ସିନ, ଇବ୍ନ ଅବ୍ବାସଙ୍କ ମତରେ, ସୟଦ ଶବ୍ଦରୁ ଆନୀତ, ଯାହାର ଅର୍ଥ ମାନବ, ପରିପୂର୍ଣ୍ଣ ମାନବ, ଆଦର୍ଶ ପୁରୁଷ ବା ଆଦର୍ଶ ଦଳପତି । ତେଣୁ 'ୟା ସିନ'ର ଅର୍ଥ ହେ ଆଦର୍ଶ ପୁରୁଷ ! ବା ହେ ଆଦର୍ଶ ଦଳପତି ! ବିଦ୍ୱାନମାନଙ୍କ ସର୍ବସମ୍ମତ ମତ ଅନୁସାରେ ସେହି ଆଦର୍ଶ ପୁରୁଷ ହେଉଛନ୍ତି ହଜରତ ମହମ୍ମଦ । ସେ ଯେ ପ୍ରକୃତରେ ଜଣେ ଆଦର୍ଶ ପୁରୁଷ, ଏହାର ପ୍ରମାଣ ପରବର୍ତ୍ତୀ ଆୟତଗୁଡ଼ିକରୁ ମିଳୁଛି ଏବଂ ସେହି ପ୍ରମାଣ ହେଉଛି ପବିତ୍ର କୋରାନ ।

୨. ଏହି ବାଣୀର ତାତ୍ପର୍ଯ୍ୟ ଆଲୋଚ୍ୟ ଅଧ୍ୟାୟର ଆୟତ ସଂଖ୍ୟା ୩୧ରେ ଏହି ରୂପେ ବର୍ଣ୍ଣନା କରାଯାଇଛି ଯେ ଯେବେ ବି ସେମାନଙ୍କ ପାଖକୁ କୌଣସି ରସୁଲ ଆସନ୍ତି ସେମାନେ ତାହାଙ୍କୁ ପ୍ରତ୍ୟାଖ୍ୟାନ କରନ୍ତି, ବିଦ୍ରୂପ କରନ୍ତି ଓ ଘୃଣା ଚକ୍ଷୁରେ ଦେଖନ୍ତି ।

إِنَّا جَعَلْنَا فِىٓ أَعْنَٰقِهِمْ أَغْلَٰلًا فَهِىَ إِلَى ٱلْأَذْقَانِ فَهُم مُّقْمَحُونَ ⑨

୯. ଆମ୍ଭେ ସେମାନଙ୍କ ଗଳାରେ ଶିକୁଳି[1] ପକାଇ ରଖିଛୁ ଯାହା ସେମାନଙ୍କ ଚିବୁକ ପର୍ଯ୍ୟନ୍ତ ପ୍ରସାରିତ ହୋଇ ରହିଛି ; ଏବଂ ସେମାନେ (ଦୁଃଖରୁ ପରିତ୍ରାଣ ପାଇବା ସକାଶେ ନିଜ) ଗଳାକୁ ଉପରକୁ ଉଠାଇଥା'ନ୍ତି ।

وَجَعَلْنَا مِنۢ بَيْنِ أَيْدِيهِمْ سَدًّا وَمِنْ خَلْفِهِمْ سَدًّا فَأَغْشَيْنَٰهُمْ فَهُمْ لَا يُبْصِرُونَ ⑩

୧୦. ଏବଂ ଆମ୍ଭେ ସେମାନଙ୍କ ସମ୍ମୁଖରେ ଏକ ପ୍ରତିବନ୍ଧକ[2] ସ୍ଥାପନ କରିଅଛୁ ଏବଂ ସେମାନଙ୍କ ପଶ୍ଚାତରେ ଏକ ପ୍ରତିବନ୍ଧକ ସ୍ଥାପନ କରିଅଛୁ ଏବଂ ସେମାନଙ୍କୁ ଆବୃତ[3] କରି ରଖିଅଛୁ ; ତେଣୁ ସେମାନେ ଦେଖିପାରୁ ନାହାନ୍ତି ।

وَسَوَآءٌ عَلَيْهِمْ ءَأَنذَرْتَهُمْ أَمْ لَمْ تُنذِرْهُمْ لَا يُؤْمِنُونَ ⑪

୧୧. ଏବଂ ତୁମର ଭୟଭୀତ କରାଇବା ନ କରାଇବା ସେମାନଙ୍କ ପାଇଁ ସମାନ, ସେମାନେ (ଯେ ପର୍ଯ୍ୟନ୍ତ ନିଜ ମନରେ ପରିବର୍ତ୍ତନ ନ ଆଣିବେ ସେପର୍ଯ୍ୟନ୍ତ) ବିଶ୍ୱାସ କରିବେ ନାହିଁ ।

إِنَّمَا تُنذِرُ مَنِ ٱتَّبَعَ ٱلذِّكْرَ وَخَشِىَ ٱلرَّحْمَٰنَ بِٱلْغَيْبِ فَبَشِّرْهُ بِمَغْفِرَةٍ وَأَجْرٍ كَرِيمٍ ⑫

୧୨. ତୁମେ କେବଳ ତାହାକୁ ସଚେତନ କରାଇ ପାରିବ ଯେ ସ୍ମାରକକୁ ଅନୁସରଣ କରେ ଏବଂ ଦୟାବନ୍ତ ଅଲ୍ଲାହଙ୍କୁ ଗୋପନରେ ମଧ୍ୟ ଭୟ କରେ ; ସୁତରାଂ ତୁମେ ସେପରି ବ୍ୟକ୍ତିକୁ ଏକ ମହାନ୍ କ୍ଷମା ଓ ସମ୍ମାନନୀୟ ପୁରସ୍କାର ସଂକ୍ରାନ୍ତ ସୁସମାଚାର ପ୍ରଦାନ କର ।

---

୧. ଏହି ଆୟତରେ ଉଲ୍ଲିଖିତ ହୋଇଛି ଯେ ଯେବେ ଧର୍ମ-ବିଧାନ ଅବତରିତ ହେଉ ନଥାଏ ତେବେ ଲୋକମାନେ ଅନେକ ମନଗଢ଼ା ରୀତି ନୀତିକୁ ଆପଣା ବେକରେ ହାର ଭଳି ଝୁଲାଇ ଥାଆନ୍ତି ଏବଂ ସେଗୁଡ଼ିକର ପାଳନ କ୍ରମଶଃ ଅଧିକ କଠୋର ହେଉଥାଏ । ଏପରିକି ମଣିଷ ପ୍ରତ୍ୟକ୍ଷ ବସ୍ତୁକୁ ମଧ୍ୟ ଦେଖି ପାରେ ନାହିଁ ଏବଂ ଉଲ୍ଲିଖିତ ରୀତିନୀତିରୁ ରକ୍ଷା ପାଇବା ପାଇଁ ସେ ନିଜ ଆଖି ବନ୍ଦ କରି ନିଜ ବେକକୁ ଉଠାଏ ଅର୍ଥାତ୍ ସେ ଯେ ଅନେକ ଅଯଥା ରୀତିନୀତିରେ ଲିପ୍ତ ହୋଇଛି ତାହା ସେ ଆଖି ଖୋଲି ଦେଖିପାରେ ନାହିଁ । କିନ୍ତୁ ଏହା ସତ୍ତ୍ୱେ ସେ ବେଳେ ବେଳେ ସେଥିରୁ ରକ୍ଷା ପାଇବା ପାଇଁ ମୁଣ୍ଡ ଟେକୁ ଥାଏ ଅର୍ଥାତ୍ ଲୁଚିଛପି ସେପରି ଅହିତକର ରୀତିନୀତିର କଷ୍ଟଦାୟକ ପ୍ରଭାବରୁ ପରିତ୍ରାଣ ପାଇବା ପାଇଁ ଚାହୁଁଥାଏ ।

୨. ଏକ ପକ୍ଷରେ ତା'ର ପତ୍ନୀ ଓ ସନ୍ତାନସନ୍ତତି ପରମ୍ପରା ନ ଛାଡ଼ିବା ପାଇଁ ତାକୁ ବାଧ୍ୟ କରନ୍ତି । ଉଦାହରଣ ସ୍ୱରୂପ ବିବାହ ଉତ୍ସବ ବେଳେ ପୁତ୍ର କହେ ଯେ ଅମୁକଙ୍କ ବିବାହରେ ଏପରି ରୋଶଣି ହୋଇଥିଲା, ଅମୁକ ସ୍ଥାନରୁ ବାଜାବାଲା ଆସିଥିଲେ ଓ ବରପକ୍ଷ ଏତେ ଟଙ୍କା ଖର୍ଚ୍ଚ କରିଥିଲେ । ତେଣୁ ମୋ ବିବାହରେ ମଧ୍ୟ ସେହିପରି କରାଯାଉ, ତାହାହେଲେ ବିବାହ ଉତ୍ସବ ଜାକଜମକପୂର୍ଣ୍ଣ ହେବ । ସେହିପରି ପତ୍ନୀ ମଧ୍ୟ ବିଭିନ୍ନ ପ୍ରକାର ପରମ୍ପରା ବିଷୟ କହେ । ଫଳରେ ଏସବୁ କଥା ଶୁଣି ତା'ର ଶ୍ୱାସ ରୁଦ୍ଧ ହୋଇଯାଏ । ଆଉ କେବେ କେବେ ପୁରୁଣାକାଳିଆ ବୁଢ଼ାମାନେ ନୂଆ କଥା ଗଢ଼ି ତାକୁ ପରମ୍ପରାର ଅନ୍ଧକାର ଗହ୍ୱର ମଧ୍ୟକୁ ଠେଲି ଦିଅନ୍ତି ଏବଂ ଯେବେ ବା ତା'ର କୌଣସି ସଦ୍‌ବୁଦ୍ଧି ଫେରେ ସେମାନେ ତାକୁ କାର୍ଯ୍ୟକାରୀ କରାଇବାକୁ ଦିଅନ୍ତି ନାହିଁ । ଏହିପରି ଭାବରେ ତା'ଉପରେ ଚାରିପଟୁ ଏତେ ଚାପ ପଡ଼େ ଯେ ସେ ଚିନ୍ତା କରିବାକୁ ମଧ୍ୟ ଅସମର୍ଥ ହୁଏ ।

୩. ମୂଳ ଶବ୍ଦ 'ଫଅଗ୍‌ଶୟନାହୁମ୍' ଅର୍ଥ 'ଆମ୍ଭେ ସେମାନଙ୍କୁ ଆବୃତ କରି ରଖିଅଛୁ' । ଯେହେତୁ ସକଳ ପରିଣାମ ଅଲ୍ଲାହଙ୍କ ନିୟନ୍ତ୍ରଣାଧୀନ ତେଣୁ ଅନେକ ସ୍ଥଳେ କର୍ମକୁ ମଧ୍ୟ ସେ ନିଜ ସହିତ ସମ୍ପୃକ୍ତ କରାନ୍ତି ଯଦ୍ଦ୍ୱାରା ମଣିଷ ବୁଝି ପାରିବ ଯେ ସେ ସ୍ୱେଚ୍ଛାରେ ନିଜ କୁକର୍ମରୁ ଦୂରେଇ ଯାଇ ପାରିବ ନାହିଁ ବରଂ ନିରନ୍ତର ଭାବରେ କୁକର୍ମ କରିବା ପରେ ତା'ପ୍ରତି ଅଲ୍ଲାହଙ୍କ ନିକଟରୁ ସ୍ୱାଭାବିକ ଶାସ୍ତି ପ୍ରେରିତ ହେବ ଏବଂ ସେ ନିଜ କୁକର୍ମ ରୂପକ ଜାଲରେ ଏପରି ଛନ୍ଦି ହୋଇଯିବ ଯେ ସେଥିରୁ ମୁକୁଳିବା ତା'ପକ୍ଷେ କଷ୍ଟକର ହେବ ।

୧୩. ଆମେ ହିଁ ମୃତ (ବ୍ୟକ୍ତି)ଙ୍କୁ ଜୀବିତ କରିଥାଉ ; ଏବଂ ସେମାନେ ଯାହାକିଛି ପରକାଳ ଜୀବନ ପାଇଁ ପ୍ରେରଣ କରନ୍ତି ଓ ଯାହାକିଛି କର୍ମ ସେମାନେ ସଂସାରରେ କରିଥିଲେ ତାହାର ଯାହା ଫଳ ହେବ ତାହାର ମଧ୍ୟ ଆମେ ହିସାବ ରଖିଥାଉ ଏବଂ ପ୍ରତ୍ୟେକ ବିଷୟକୁ ଆମେ ଏକ ପ୍ରକାଶ୍ୟ ଗ୍ରନ୍ଥରେ ଲିପିବଦ୍ଧ କରିଅଛୁ ।

إِنَّا نَحْنُ نُحْيِ الْمَوْتَىٰ وَنَكْتُبُ مَا قَدَّمُوا وَآثَارَهُمْ ۚ وَكُلَّ شَيْءٍ أَحْصَيْنَاهُ فِي إِمَامٍ مُبِينٍ ﴿١٣﴾

୧୪. ଏବଂ ତୁମେ ସେମାନଙ୍କ ନିକଟରେ ଏକ ସହରବାସୀମାନଙ୍କ ଦୃଷ୍ଟାନ୍ତ ବର୍ଣ୍ଣନା କର, ଯେତେବେଳେ କି ସେମାନଙ୍କ ନିକଟକୁ ସେମାନଙ୍କ ରସୁଲ ଆସିଥିଲେ ।

وَاضْرِبْ لَهُمْ مَثَلًا أَصْحَابَ الْقَرْيَةِ إِذْ جَاءَهَا الْمُرْسَلُونَ ﴿١٤﴾

୧୫. ଯେତେବେଳେ ଆମେ ସେମାନଙ୍କ ନିକଟକୁ ପ୍ରଥମେ ଦୁଇଜଣ ରସୁଲ ପ୍ରେରଣ କରିଥିଲୁ, ସେତେବେଳେ ସେମାନେ ସେ ଦୁହିଁଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ; ଏହାପରେ ଆମେ ଜଣେ ତୃତୀୟ ରସୁଲଙ୍କୁ ପ୍ରେରଣ କରି ପୂର୍ବବର୍ତ୍ତୀ ଦୁଇ ରସୁଲଙ୍କୁ ଶକ୍ତି ପ୍ରଦାନ କରିଥିଲୁ[୧]; ଏବଂ ଏ ସମସ୍ତେ (ନିଜ ସମ୍ପ୍ରଦାୟକୁ) କହିଲେ, "ଆମମାନେ ଏକ ବାର୍ତ୍ତାବହନ କରି ତୁମମାନଙ୍କ ନିକଟକୁ ତୁମମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ ପ୍ରେରିତ ହୋଇଅଛୁ ।"

إِذْ أَرْسَلْنَا إِلَيْهِمُ اثْنَيْنِ فَكَذَّبُوهُمَا فَعَزَّزْنَا بِثَالِثٍ فَقَالُوا إِنَّا إِلَيْكُمْ مُرْسَلُونَ ﴿١٥﴾

୧୬. ସେମାନେ ଉତ୍ତର ଦେଲେ, "ତୁମେମାନେ ଆମମାନଙ୍କ ଭଳି ମନୁଷ୍ୟ ମାତ୍ର ; ଏବଂ ଦୟାବନ୍ତ (ଅଲ୍ଲାହ୍) କୌଣସି ବିଷୟକୁ (ଓହି ସ୍ୱରୂପ) ଅବତୀର୍ଣ୍ଣ କରି ନାହାନ୍ତି ; ତୁମେମାନେ କେବଳ ମିଥ୍ୟା କହୁଅଛ ।"

قَالُوا مَا أَنْتُمْ إِلَّا بَشَرٌ مِثْلُنَا وَمَا أَنْزَلَ الرَّحْمَٰنُ مِنْ شَيْءٍ إِنْ أَنْتُمْ إِلَّا تَكْذِبُونَ ﴿١٦﴾

୧୭. ସେ (ରସୁଲ)ମାନେ କହିଲେ, "ଆମର ପାଳନକର୍ତ୍ତା ଏହା ଜାଣନ୍ତି ଯେ ଆମେମାନେ ତୁମମାନଙ୍କ ନିକଟକୁ ରସୁଲଭାବରେ ପ୍ରେରିତ ହୋଇଅଛୁ ।"

قَالُوا رَبُّنَا يَعْلَمُ إِنَّا إِلَيْكُمْ لَمُرْسَلُونَ ﴿١٧﴾

---

୧. ଅର୍ଥାତ୍ ସେହି ତୃତୀୟ ରସୁଲ ମଧ୍ୟ ଅନୁରୂପ ବିଷୟ କହୁଥିଲେ ; ଅନ୍ୟଥା ଯଦି ସେ କୌଣସି ନୂତନ ବିଷୟ କହିଥା'ନ୍ତେ ତେବେ ପୂର୍ବୋକ୍ତ ଦୁଇ ରସୁଲ ତାଙ୍କଠାରୁ କ'ଣ ବା ଶକ୍ତି ଓ ସମର୍ଥନ ପାଇଥା'ନ୍ତେ । ତେଣୁ ଏହି ଆୟତରୁ ପ୍ରମାଣିତ ହେଉଛି ଯେ କୌଣସି ଶରିୟତ୍ ବା ଧର୍ମବିଧାନ ସଙ୍ଗରେ ନ ଆଣି ମଧ୍ୟ ରସୁଲ ଆସି ପାରିବେ, କାରଣ ଯଦି ତାଙ୍କ ପୂର୍ବରୁ ଧର୍ମବିଧାନ ପ୍ରବର୍ତ୍ତନକାରୀ ରସୁଲ ଆସିଥିବେ ଓ ଅନୁରୂପ ବିଷୟ ବର୍ଣ୍ଣନା କରୁଥିବେ ତେବେ ଶେଷୋକ୍ତ ରସୁଲ ନିଜ ସମ୍ପ୍ରଦାୟକୁ ଉକ୍ତ ଧର୍ମବିଧାନର ଅନୁସରଣ ପାଇଁ କହି ପାରିବେ ଏବଂ ତତ୍‌ସଙ୍ଗେ ଜଣାଇ ଦେବେ ଯେ ସେ କୌଣସି ନୂତନ ଧର୍ମବିଧାନ ଘେନି ଆସି ନାହାନ୍ତି, ବରଂ ପୂର୍ବବର୍ତ୍ତୀ ଧର୍ମବିଧାନକୁ ସୁପ୍ରତିଷ୍ଠିତ କରିବା ପାଇଁ ଆସିଛନ୍ତି ।

وَمَا عَلَيْنَآ اِلَّا الْبَلٰغُ الْمُبِيْنُ ⑱

୧୮. "ଏବଂ ସୁସ୍ପଷ୍ଟଭାବରେ ବାର୍ତ୍ତା ପହଞ୍ଚାଇ ଦେବା କେବଳ ଆମର କର୍ତ୍ତବ୍ୟ ।"

قَالُوْٓا اِنَّا تَطَيَّرْنَا بِكُمْ ۚ لَىِٕنْ لَّمْ تَنْتَهُوْا لَنَرْجُمَنَّكُمْ وَلَيَمَسَّنَّكُمْ مِّنَّا عَذَابٌ اَلِيْمٌ ⑲

୧୯. (ଏଥି ଉତ୍ତାରୁ ଅବିଶ୍ୱାସକାରୀମାନେ) କହିଲେ, "ଆମମାନଙ୍କ ନିକଟକୁ ତୁମମାନଙ୍କର ଆଗମନକୁ ଆମେମାନେ ଏକ ଅଶୁଭ (ସଙ୍କେତ) ମନେ କରୁଅଛୁ ; ଏବଂ ଯଦି ତୁମେମାନେ (ନିଜ କଥାରୁ) ବିରତ ନ ହେବ, ତେବେ ଆମେମାନେ ତୁମମାନଙ୍କୁ ପ୍ରସ୍ତରାଘାତ କରି ହତ୍ୟା କରିବୁ, ଏବଂ ଆମମାନଙ୍କ ତରଫରୁ ତୁମମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ମିଳିବ ।"

قَالُوْا طَآىِٕرُكُمْ مَّعَكُمْ ۗ اَىِٕنْ ذُكِّرْتُمْ ۗ بَلْ اَنْتُمْ قَوْمٌ مُّسْرِفُوْنَ ⑳

୨୦. ସେ (ରସୁଲ)ମାନେ କହିଲେ, "ତୁମମାନଙ୍କର (ମନ୍ଦ)କର୍ମ ତୁମମାନଙ୍କ ସହିତ ରହିଅଛି ; (ତୁମେମାନେ ଯେଉଁଠାରେ ଥିଲେ ମଧ୍ୟ ତୁମମାନଙ୍କ ମନ୍ଦ କର୍ମର କୁପରିଣାମ ଅବଶ୍ୟ ପାଇବ) ; କ'ଣ ଆମେମାନେ ତୁମମାନଙ୍କୁ (ଭଲ କାମ ବିଷୟରେ) ସଚେତନ କରିଥିବା ହେତୁ ତୁମେମାନେ ଏପରି କହୁଅଛ ? ବସ୍ତୁତଃ, ତୁମେମାନେ ସୀମାଲଙ୍ଘନକାରୀ ସମ୍ପ୍ରଦାୟ (ତେଣୁ ନିଶ୍ଚୟ ଶାସ୍ତିଭୋଗ କରିବ) ।"

وَجَآءَ مِنْ اَقْصَا الْمَدِيْنَةِ رَجُلٌ يَّسْعٰى قَالَ يٰقَوْمِ اتَّبِعُوا الْمُرْسَلِيْنَ ㉑

୨୧. ଏବଂ ସହରର ଅପର ପାର୍ଶ୍ୱରୁ ଜଣେ ବ୍ୟକ୍ତି ଦୌଡ଼ି ଦୌଡ଼ି ଆସିଲା ଓ ସେ କହିଲା, "ହେ ମୋର ସମ୍ପ୍ରଦାୟ ! ରସୁଲମାନଙ୍କର ଅନୁସରଣ କର,"।

اتَّبِعُوْا مَنْ لَّا يَسْـَٔلُكُمْ اَجْرًا وَّهُمْ مُّهْتَدُوْنَ ㉒

୨୨. "ସେମାନଙ୍କର ଅନୁସରଣ କର, ଯେଉଁମାନେ କି ତୁମମାନଙ୍କ ଠାରୁ କୌଣସି ପୁରସ୍କାର ମାଗନ୍ତି ନାହିଁ ; ଏବଂ ଯେଉଁମାନେ ସତ୍‌ପଥ ପ୍ରାପ୍ତ ହୋଇଛନ୍ତି ।"

## ଭାଗ-୨୩

୨୩. ''ଏବଂ ଆମର ଏପରି କ'ଣ ହୋଇଛି ଯେ ଆମେ ତାହାଙ୍କର ଉପାସନା କରିବୁ ନାହିଁ ଯେ ଆମଙ୍କୁ ଜନ୍ମ ଦେଇଛନ୍ତି, ଏବଂ ତୁମ ସମସ୍ତଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆହେବ ।''

وَمَا لِيَ لَآ اَعْبُدُ الَّذِيْ فَطَرَنِيْ وَاِلَيْهِ تُرْجَعُوْنَ ۝٢٢

୨୪. ''କ'ଣ ଆମେ ତାହାଙ୍କ ବ୍ୟତୀତ ଅନ୍ୟ ଉପାସ୍ୟଙ୍କୁ ଗ୍ରହଣ କରି ପାରିବୁ ? ଯଦି ଦୟାବାନ୍ (ଅଲ୍ଲାହ) ଆମର କୌଣସି କ୍ଷତି କରିବାକୁ ଇଚ୍ଛା କରିବେ, ତେବେ ଏହି (ଉପାସ୍ୟ)ମାନଙ୍କ ସୁପାରିଶ ଆମ ପକ୍ଷରେ କିଛି ଲାଭଦାୟକ ହେବ ନାହିଁ କି ସେମାନେ ଆମଙ୍କୁ (ଏହି କ୍ଷତି ପାଇବାରୁ) ରକ୍ଷା କରି ପାରିବେ ନାହିଁ ।''

ءَاَتَّخِذُ مِنْ دُوْنِهٖٓ اٰلِهَةً اِنْ يُّرِدْنِ الرَّحْمٰنُ بِضُرٍّ لَّا تُغْنِ عَنِّيْ شَفَاعَتُهُمْ شَيْـًٔا وَّلَا يُنْقِذُوْنِ ۝٢٣

୨୫. ''(ଯେବି ଆମେ ଏପରି କରିବୁ, ତେବେ) ଆମେ ବାସ୍ତବରେ ପ୍ରକାଶ୍ୟ ଭ୍ରାନ୍ତିରେ ନିପତିତ ହେବୁ ।''

اِنِّيْٓ اِذًا لَّفِيْ ضَلٰلٍ مُّبِيْنٍ ۝٢٤

୨୬. ''ଆମେ ତୁମମାନଙ୍କ ପାଳନକର୍ତ୍ତାଙ୍କ ପ୍ରତି ବିଶ୍ୱାସ କରିଅଛୁ ; ସୁତରାଂ ଆମ କଥା ଶୁଣ ।''

اِنِّيْٓ اٰمَنْتُ بِرَبِّكُمْ فَاسْمَعُوْنِ ۝٢٥

୨୭. (ସେତେବେଳେ ତାହାଙ୍କୁ ଅଲ୍ଲାହଙ୍କ ତରଫରୁ) କୁହାଗଲା, ''ବୈକୁଣ୍ଠରେ ପ୍ରବେଶ କର ;'' (ଏହା ଶୁଣି) ସେ କହିଲେ, ''ହାୟ ! ଆମ ସମ୍ପ୍ରଦାୟ (ଆମ ପୁରସ୍କାର ବିଷୟରେ) ଜାଣିବାକୁ ପାଆନ୍ତେ କି ,''

قِيْلَ ادْخُلِ الْجَنَّةَ ۗ قَالَ يٰلَيْتَ قَوْمِيْ يَعْلَمُوْنَ ۝٢٦

୨୮. ''ଯେ କିପରି ଭାବରେ ଆମ ପାଳନକର୍ତ୍ତା ଆମଙ୍କୁ କ୍ଷମା ପ୍ରଦାନ କରିଛନ୍ତି ଓ ଆମଙ୍କୁ ସମ୍ମାନିତ ଗୋଷ୍ଠୀର ଅନ୍ତର୍ଭୁକ୍ତ କରିଛନ୍ତି ।''

بِمَا غَفَرَ لِيْ رَبِّيْ وَجَعَلَنِيْ مِنَ الْمُكْرَمِيْنَ ۝٢٧

୨୯. ଏବଂ ଏହାପରେ ଆମେ ତାହାଙ୍କ ସମ୍ପ୍ରଦାୟ ଉପରେ (ତାହାଙ୍କୁ ଧ୍ୱଂସ କରିବା ପାଇଁ) ଆକାଶରୁ କୌଣସି ସୈନ୍ୟବାହିନୀ ଅବତରଣ କରାଇ ନ ଥିଲୁ କି ଆମେ (ଏପରି ସୈନ୍ୟବାହିନୀ) ଅବତରଣ କରାଉ ନାହିଁ ।

وَمَآ اَنْزَلْنَا عَلٰى قَوْمِهٖ مِنْۢ بَعْدِهٖ مِنْ جُنْدٍ مِّنَ السَّمَاۗءِ وَمَا كُنَّا مُنْزِلِيْنَ ۝٢٨

୩୦. ସେମାନଙ୍କ ଉପରେ କେବଳ ଏକ ବିପଜ୍ଜନକ ଶାସ୍ତି ଆସିଲା, ଏବଂ ସେମାନେ ନିଜର ସମସ୍ତ ଗୌରବ ଓ ମର୍ଯ୍ୟାଦା ହରାଇ ବସିଲେ ।

اِنْ كَانَتْ اِلَّا صَيْحَةً وَّاحِدَةً فَاِذَا هُمْ خٰمِدُوْنَ ۝٢٩

୩୧. ହାୟ ! (ଅବୋ–ପ୍ରବଣ) ପ୍ରାଣୀମାନଙ୍କ ନିକଟକୁ ଯେବେ ବି କୌଣସି ରସୁଲ ଆସନ୍ତି, ସେତେବେଳେ ସେମାନେ ତାହାଙ୍କୁ ଘୃଣା ଚକ୍ଷୁରେ ଦେଖନ୍ତି (ଓ ଥଟ୍ଟା କରନ୍ତି) ।

يٰحَسْرَةً عَلَى الْعِبَادِ ۚ مَا يَاْتِيْهِمْ مِّنْ رَّسُوْلٍ اِلَّا كَانُوْا بِهٖ يَسْتَهْزِءُوْنَ ۝٣٠

أَلَمْ يَرَوْا كَمْ أَهْلَكْنَا قَبْلَهُمْ مِنَ الْقُرُونِ أَنَّهُمْ إِلَيْهِمْ لَا يَرْجِعُونَ ۝٣١

୩୨. କ'ଣ ସେମାନେ ଦେଖି ନାହାନ୍ତି ଯେ ସେମାନଙ୍କ ପୂର୍ବରୁ ଆମେ କେତେ ଯେ ଜନବସତିକୁ ଧ୍ୱଂସ କରି ଦେଇଅଛୁ, ଏବଂ (ଯୋହାଙ୍କୁ ଧ୍ୱଂସ କରାଯାଇଥିଲା) ସେମାନେ ଆଉ ଫେରିଲେ ନାହିଁ ।

وَإِنْ كُلٌّ لَمَّا جَمِيعٌ لَدَيْنَا مُحْضَرُونَ ۝٣٢

୩୩. ଏବଂ ଆମ ସମୀପରେ ସମସ୍ତଙ୍କୁ ନିଶ୍ଚୟ ହାଜର କରାହେବ ।

ରୁ : ୩

وَآيَةٌ لَهُمُ الْأَرْضُ الْمَيْتَةُ أَحْيَيْنَاهَا وَأَخْرَجْنَا مِنْهَا حَبًّا فَمِنْهُ يَأْكُلُونَ ۝٣٣

୩୪. ଏବଂ ସେ (ଅବିଶ୍ୱାସକାରୀ)ମାନଙ୍କ ସକାଶେ ମୃତ ଭୂପୃଷ୍ଠ ମଧ୍ୟ ଏକ ନିଦର୍ଶନ ଅଟେ ; ଆମେ ତାହାକୁ ଜୀବିତ କରୁ ଓ ସେଥିରୁ ଶସ୍ୟ ଉତ୍ପାଦନ କରୁ ଯହିଁରୁ ସେମାନେ ଖାଆନ୍ତି ।

وَجَعَلْنَا فِيهَا جَنَّاتٍ مِنْ نَخِيلٍ وَأَعْنَابٍ وَفَجَّرْنَا فِيهَا مِنَ الْعُيُونِ ۝٣٤

୩୫. ଏବଂ ଆମେ ଭୂପୃଷ୍ଠରେ ଖଜୁରି ଓ ଅଙ୍ଗୁରର ଉଦ୍ୟାନ ମଧ୍ୟ ସୃଷ୍ଟି କରିଅଛୁ ; ଓ ତନ୍ମଧ୍ୟରେ ଝରଣା ନିର୍ଗତ କରାଇଛୁ ;

لِيَأْكُلُوا مِنْ ثَمَرِهِ وَمَا عَمِلَتْهُ أَيْدِيهِمْ أَفَلَا يَشْكُرُونَ ۝٣٥

୩୬. ଯେପରି କି ସେମାନେ ଏହାର ଫଳରୁ (ଆବଶ୍ୟକତା ମୁତାବକ) ଖାଇବେ ; ଏବଂ ସେମାନଙ୍କ ହସ୍ତ ଏହାକୁ ଉପୁଜାଇ ନାହିଁ (ବରଂ ଆମେ ଉପୁଜାଇ ଅଛୁ) ; ତଥାପି କ'ଣ ସେମାନେ କୃତଜ୍ଞତା ଜ୍ଞାପନ କରିବେ ନାହିଁ ?

سُبْحَانَ الَّذِي خَلَقَ الْأَزْوَاجَ كُلَّهَا مِمَّا تُنْبِتُ الْأَرْضُ وَمِنْ أَنْفُسِهِمْ وَمِمَّا لَا يَعْلَمُونَ ۝٣٦

୩୭. ସେ ହିଁ ପବିତ୍ର,ଯେ କି ପ୍ରତ୍ୟେକ ବସ୍ତୁକୁ ଯୋଡ଼ା କରି ସୃଷ୍ଟି କରିଛନ୍ତି ; (ଅର୍ଥାତ୍) ଯାହା ଭୂପୃଷ୍ଠ ଉତ୍ପନ୍ନ କରେ ସେଥି ମଧ୍ୟରୁ ଓ ସେମାନଙ୍କ ନିଜ ମଧ୍ୟରୁ, ସେମାନେ ଯାହା ଜାଣି ନାହାନ୍ତି ତହିଁରୁ ମଧ୍ୟ ।

وَآيَةٌ لَهُمُ اللَّيْلُ نَسْلَخُ مِنْهُ النَّهَارَ فَإِذَا هُمْ مُظْلِمُونَ ۝٣٧

୩୮. ଏବଂ ସେମାନଙ୍କ ପାଇଁ ରାତ୍ରି ମଧ୍ୟ ଏକ ମହାନ୍ ନିଦର୍ଶନ ଅଟେ ; ଯହିଁରୁ ଆମେ ଦିବସକୁ ଆକର୍ଷିତ କରି ବାହାର କରିଥାଉ ; ଏହାପରେ ସେମାନେ ହଠାତ୍ ଅନ୍ଧକାର ମଧ୍ୟରେ ରହିଯାଆନ୍ତି ।

وَالشَّمْسُ تَجْرِي لِمُسْتَقَرٍّ لَهَا ذَٰلِكَ تَقْدِيرُ الْعَزِيزِ الْعَلِيمِ ۝٣٨

୩୯. ଏବଂ ସୂର୍ଯ୍ୟ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଆଡ଼କୁ ଗତି କରୁଅଛି ; ଏହା ପରାକ୍ରମୀ (ଓ ) ସର୍ବଜ୍ଞ (ଅଲ୍ଲାହ)ଙ୍କ ଦ୍ୱାରା ନିର୍ଦ୍ଧାରିତ ବିଧାନ ଅଟେ ।

وَالْقَمَرَ قَدَّرْنٰهُ مَنَازِلَ حَتّٰى عَادَ كَالْعُرْجُوْنِ الْقَدِيْمِ ﴿٣٩﴾

୪୦. ଏବଂ ଆମ୍ଭେ ଚନ୍ଦ୍ର ପାଇଁ ମଧ୍ୟ ବିଭିନ୍ନ ପର୍ଯ୍ୟାୟ ନିର୍ଦ୍ଦିଷ୍ଟ କରିଅଛୁ, ଏପରି କି ତାହା (ବିଭିନ୍ନ ପର୍ଯ୍ୟାୟ ମଧ୍ୟରେ ଗତିକରି) ଏକ ଖଜୁରି ଗଛର ପୁରାତନ ଶୁଷ୍କ ଶାଖା ସଦୃଶ[୧] (ବକ୍ର) ହୋଇ ପୁନର୍ବାର (ନିଜ ପୂର୍ବ ଅବସ୍ଥାକୁ) ଫେରି ଆସେ ।

لَا الشَّمْسُ يَنْۢبَغِيْ لَهَاۤ اَنْ تُدْرِكَ الْقَمَرَ وَلَا الَّيْلُ سَابِقُ النَّهَارِ ؕ وَكُلٌّ فِيْ فَلَكٍ يَّسْبَحُوْنَ ﴿٤٠﴾

୪୧. ସୂର୍ଯ୍ୟ ତାହାର ବାର୍ଷିକ ପରିକ୍ରମାର କୌଣସି ସମୟରେ ମଧ୍ୟ ଚନ୍ଦ୍ରର ନିକଟବର୍ତ୍ତୀ ହେବାକୁ ସମର୍ଥ ନୁହେଁ (କାରଣ ଯଦି ଏପରି ହେବ, ତେବେ ସୌରଜଗତ ଧ୍ୱସ୍ତବିଧ୍ୱସ୍ତ ହୋଇଯିବ) ଏବଂ ରାତ୍ରି (ଅର୍ଥାତ୍ ଚନ୍ଦ୍ର) ପ୍ରତିଯୋଗିତା କରି ଦିନ (ଅର୍ଥାତ୍ ସୂର୍ଯ୍ୟ)ର ନିକଟବର୍ତ୍ତୀ ହେବାକୁ ସମର୍ଥ[୨] ନୁହେଁ, ବରଂ ଏ ସମସ୍ତେ ଏକ ନିର୍ଦ୍ଦିଷ୍ଟ କକ୍ଷରେ ଅନାୟାସରେ ପ୍ରଦକ୍ଷିଣ କରୁଥା'ନ୍ତି ।

وَاٰيَةٌ لَّهُمْ اَنَّا حَمَلْنَا ذُرِّيَّتَهُمْ فِي الْفُلْكِ الْمَشْحُوْنِ ﴿٤١﴾

୪୨. ଏବଂ ସେମାନଙ୍କ ସକାଶେ ଏହା ମଧ୍ୟ ଏକ ନିଦର୍ଶନ ଅଟେ ଯେ ଆମ୍ଭେ ସେମାନଙ୍କ ବଂଶଧରମାନଙ୍କୁ ବୋଝେଇ ଜାହାଜମାନଙ୍କରେ ବହନ କରୁ ।

وَخَلَقْنَا لَهُمْ مِّنْ مِّثْلِهٖ مَا يَرْكَبُوْنَ ﴿٤٢﴾

୪୩. ଏବଂ ଆମ୍ଭେ ସେମାନଙ୍କ ପାଇଁ ଏହି ପ୍ରକାର ଅନ୍ୟ (ବସ୍ତୁ) ମଧ୍ୟ ସୃଷ୍ଟି କରିଅଛୁ ଯାହାକୁ ସେମାନେ ଯାନବାହନ ସଦୃଶ ବ୍ୟବହାର କରନ୍ତି ।

وَاِنْ نَّشَاْ نُغْرِقْهُمْ فَلَا صَرِيْخَ لَهُمْ وَلَا هُمْ يُنْقَذُوْنَ ﴿٤٣﴾

اِلَّا رَحْمَةً مِّنَّا وَمَتَاعًا اِلٰى حِيْنٍ ﴿٤٤﴾

୪୪./୪୫. ଏବଂ ଯଦି ଆମ୍ଭେ ଇଚ୍ଛା କରିବୁ, ତେବେ ସେମାନଙ୍କୁ (ବୁଡ଼ାଇ) ଧ୍ୱଂସ କରିଦେବୁ ; ଏହାପରେ ସେମାନଙ୍କ ଗୁହାରି ଶୁଣିବାକୁ କେହି ନ ଥିବେ ; ଏବଂ ଆମର କରୁଣା ବିନା ଅନ୍ୟ କୌଣସି ଉପାୟରେ ସେମାନଙ୍କୁ ରକ୍ଷା କରାଯିବ ନାହିଁ ; ଏବଂ ସେମାନେ କିଛିକାଳ ପାଇଁ ସାଂସାରିକ ଲାଭ ପାଇବେ ।

وَاِذَا قِيْلَ لَهُمُ اتَّقُوْا مَا بَيْنَ اَيْدِيْكُمْ وَمَا خَلْفَكُمْ لَعَلَّكُمْ تُرْحَمُوْنَ ﴿٤٥﴾

୪୬. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଯାହା କିଛି ତୁମମାନଙ୍କ ସମ୍ମୁଖରେ ଆସିବାକୁ ଅଛି ଓ ଯାହା କିଛି କର୍ମ ତୁମେମାନେ (ନିଜ) ପଛରେ ଛାଡ଼ି ଆସିଅଛ ତାହାର ପ୍ରତିଫଳକୁ ନିଜକୁ ରକ୍ଷାକର,[୩] ତାହା-ହେଲେ ତୁମମାନଙ୍କ ପ୍ରତି କରୁଣା କରାହେବ (ସେତେବେଳେ ସେମାନେ କିନ୍ତୁ ଏଥିରୁ ଶିକ୍ଷା ଲାଭ କରିବା ପରିବର୍ତ୍ତେ ଏହାକୁ ଅବଜ୍ଞା କରନ୍ତି ; ଫଳରେ ଲାଭବାନ୍ ହୁଅନ୍ତି ନାହିଁ) ।

୧. ଅର୍ଥାତ୍ ବାଳଚନ୍ଦ୍ରର ଆକାର ମୋଡ଼ି ହୋଇ ଯାଇଥିବା ଏକ ଗଛର ଶୁଖିଲା ଡାଳ ପରି ହୋଇଥାଏ ।

୨. ଏହି ଆୟତରୁ ପ୍ରତୀତ ହେଉଛି ଯେ ସୂର୍ଯ୍ୟ, ଚନ୍ଦ୍ର ଓ ଗ୍ରହମାନେ ପ୍ରାକୃତିକ ନିୟମର ଅଧ୍ୟଧୀନ ହୋଇ ସୂର୍ଯ୍ୟମଣ୍ଡଳରେ ବିନା ବାଧାରେ ନିଜ ନିଜ କକ୍ଷ ପଥରେ ପ୍ରଦକ୍ଷିଣ କରୁଥା'ନ୍ତି । ଏମାନଙ୍କ ମଧ୍ୟରୁ କେହି ନିର୍ଦ୍ଦିଷ୍ଟ ପଥରୁ ଅପସରି ଅନ୍ୟ ସହିତ ସଂଘର୍ଷ କରି ପାରିବ ନାହିଁ, କାରଣ ଏପରି ହେଲେ ସମଗ୍ର ସୂର୍ଯ୍ୟ ମଣ୍ଡଳ ଧ୍ୱସ୍ତବିଧ୍ୱସ୍ତ ହୋଇଯିବ ।

୩. ଅର୍ଥାତ୍ ଭବିଷ୍ୟତ ପାଇଁ ପ୍ରାର୍ଥନା କରି ଓ ବିଗତ କୃତ୍ୟ ପାଇଁ ଅନୁତାପ କରି ଦୟାର ଭାଜନ ହୁଅ ।

୪୭. ଏବଂ ସେମାନଙ୍କ ପାଳନକର୍ତ୍ତାଙ୍କର ନିଦର୍ଶନଗୁଡ଼ିକ ମଧ୍ୟରୁ ଯାହା କିଛି ଗୁରୁତ୍ୱପୂର୍ଣ୍ଣ ନିଦର୍ଶନ ପ୍ରକାଶିତ ହୁଏ ସେମାନେ ସେଥିରୁ ବିମୁଖ ହୁଅନ୍ତି ।

وَمَا تَأْتِيهِم مِّنْ آيَةٍ مِّنْ آيَاتِ رَبِّهِمْ إِلَّا كَانُوا عَنْهَا مُعْرِضِينَ ﴿٤٧﴾

୪୮. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଯାହା କିଛି ଅଲ୍ଲାହ ତୁମମାନଙ୍କୁ ଦେଇଛନ୍ତି ତହିଁରୁ ବ୍ୟୟ କର, ସେତେବେଳେ ଅବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ କହନ୍ତି, "କ'ଣ ଆମେମାନେ ସେପରି ଲୋକମାନଙ୍କୁ ଖୁଆଇବୁ ଯାହାଙ୍କୁ ଅଲ୍ଲାହ ଇଚ୍ଛା କଲେ ନିଜେ ଖୁଆଇ ପାରିଥା'ନ୍ତେ ; ତୁମେମାନେ (ଅଲ୍ଲାହଙ୍କ ଇଚ୍ଛା ବିରୁଦ୍ଧରେ ଶିକ୍ଷା ଦେଇ) ପ୍ରକାଶ୍ୟ ଭାବରେ ବିଭ୍ରାନ୍ତ ହୋଇଅଛ ।"

وَإِذَا قِيلَ لَهُمْ أَنفِقُوا مِمَّا رَزَقَكُمُ اللَّهُ قَالَ الَّذِينَ كَفَرُوا لِلَّذِينَ آمَنُوا أَنُطْعِمُ مَن لَّوْ يَشَاءُ اللَّهُ أَطْعَمَهُ إِنْ أَنتُمْ إِلَّا فِي ضَلَالٍ مُّبِينٍ ﴿٤٨﴾

୪୯. ଏବଂ ସେମାନେ କହନ୍ତି, "ଯଦି ତୁମେ ସତ୍ୟବାଦୀ ହୋଇ ଥାଅ, ତେବେ ଆମମାନଙ୍କୁ କୁହ, ସେ (ଶାସ୍ତିର) ଅଙ୍ଗୀକାର କେବେ ପୂରଣ ହେବ ?"

وَيَقُولُونَ مَتَىٰ هَٰذَا الْوَعْدُ إِن كُنتُمْ صَادِقِينَ ﴿٤٩﴾

୫୦. ଏବଂ ସେମାନେ କେବଳ ଏକ ଅକସ୍ମାତ୍ ଶାସ୍ତିର ପ୍ରତୀକ୍ଷା କରୁଛନ୍ତି ଯାହା ସେମାନଙ୍କୁ କବଳିତ କରିବ ଓ ସେମାନେ ସେତେବେଳେ (ପରସ୍ପର ମଧ୍ୟରେ) ଯୁକ୍ତିତର୍କ ହିଁ କରୁଥିବେ ।

مَا يَنظُرُونَ إِلَّا صَيْحَةً وَاحِدَةً تَأْخُذُهُمْ وَهُمْ يَخِصِّمُونَ ﴿٥٠﴾

୫୧. ସେତେବେଳେ ସେମାନେ ପରସ୍ପରକୁ ଉପଦେଶ ଦେଇ ପାରିବେ ନାହିଁ କି ନିଜ ପରିବାରବର୍ଗଙ୍କ ନିକଟକୁ ଫେରିଯାଇ (ସେମାନଙ୍କୁ ବୁଝାଇ) ପାରିବେ ନାହିଁ ।

فَلَا يَسْتَطِيعُونَ تَوْصِيَةً وَلَا إِلَىٰ أَهْلِهِمْ يَرْجِعُونَ ﴿٥١﴾

ରୁ : ୪

୫୨. ଏବଂ ବିଗୁଲ ବଜା ହେବ ; ଏବଂ ସେମାନେ ହଠାତ୍ କବରରୁ ଉଠି କରି ନିଜ ପାଳନକର୍ତ୍ତାଙ୍କ ନିକଟକୁ ଦୌଡ଼ିବାକୁ ଲାଗିବେ ।

وَنُفِخَ فِي الصُّورِ فَإِذَا هُم مِّنَ الْأَجْدَاثِ إِلَىٰ رَبِّهِمْ يَنسِلُونَ ﴿٥٢﴾

୫୩. ଏବଂ (ସେମାନେ ପରସ୍ପରକୁ) କହିବେ, "ସର୍ବନାଶ ! କିଏ ଆମମାନଙ୍କୁ କବରରୁ ଉଠାଇ ଆଣିଲା ?" ଏହା ତ ସେହି ବିଷୟ ଯାହା ଦୟାବାନ୍ (ଅଲ୍ଲାହ) ଆମମାନଙ୍କ ସହିତ ଅଙ୍ଗୀକାର କରିଥିଲେ ; ଏବଂ ରସୁଲମାନେ ଯାହା କହି ଥିଲେ (ବାସ୍ତବରେ) ସତ୍ୟ ହିଁ କହିଥିଲେ ।"

قَالُوا يَا وَيْلَنَا مَن بَعَثَنَا مِن مَّرْقَدِنَا ۜ هَٰذَا مَا وَعَدَ الرَّحْمَٰنُ وَصَدَقَ الْمُرْسَلُونَ ﴿٥٣﴾

୫୪. ଏହା ଏକ ଆକସ୍ମିକ ଶାସ୍ତି ହେବ ; ଯାହା ଫଳରେ ସେ ସମସ୍ତଙ୍କୁ ଏକତ୍ରିତ କରାଯାଇ ଆମ୍ଭ ସମୀପରେ ଉପସ୍ଥିତ କରାହେବ ।

إِن كَانَتْ إِلَّا صَيْحَةً وَاحِدَةً فَإِذَا هُمْ جَمِيعٌ لَّدَيْنَا مُحْضَرُونَ ﴿٥٤﴾

୫୫. ଏବଂ ସେଦିନ କୌଣସି ପ୍ରାଣୀ ପ୍ରତି ସାମାନ୍ୟତମ ଅନ୍ୟାୟ କରାହେବ ନାହିଁ ; ଏବଂ ତୁମମାନଙ୍କୁ ତୁମମାନଙ୍କ କର୍ମ ଅନୁଯାୟୀ ପୁରସ୍କାର ଦିଆ ହେବ ।

فَالْيَوْمَ لَا تُظْلَمُ نَفْسٌ شَيْـًٔا وَّلَا تُجْزَوْنَ اِلَّا مَا كُنْتُمْ تَعْمَلُوْنَ ﴿٥٥﴾

୫୬. ସେଦିନ ବୈକୁଣ୍ଠବାସୀ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ (ଅର୍ଥାତ୍ ଅଲ୍ଲାହ୍‌ଙ୍କ ସ୍ମରଣରେ ଲିପ୍ତ ରହିବେ, ଏବଂ ନିଜ ଅବସ୍ଥାକୁ ଦେଖି) ଆନନ୍ଦରେ ହସୁଥିବେ ।

اِنَّ اَصْحٰبَ الْجَنَّةِ الْيَوْمَ فِيْ شُغُلٍ فٰكِهُوْنَ ﴿٥٦﴾

୫୭. ସେମାନେ ଓ ସେମାନଙ୍କ ସାଥୀମାନେ ତକିଆ ଲଗାଇ ପଲଙ୍କମାନଙ୍କ ଉପରେ ବସି ଥିବେ, (ଏବଂ ଅଲ୍ଲାହ୍‌ଙ୍କ କରୁଣାର) ଛାୟା ତଳେ (ଥିବେ) ।

هُمْ وَاَزْوَاجُهُمْ فِيْ ظِلٰلٍ عَلَى الْاَرَآئِكِ مُتَّكِـُٔوْنَ ﴿٥٧﴾

୫୮. ସେମାନଙ୍କ ସକାଶେ ସେହି ବୈକୁଣ୍ଠରେ ଫଳ ଯୋଗାଇ ଦିଆଯିବ ଏବଂ ସେମାନେ ଯାହା କିଛି ମାଗିବେ ତାହା ସେମାନଙ୍କୁ ମିଳିବ ।

لَهُمْ فِيْهَا فَاكِهَةٌ وَّلَهُمْ مَّا يَدَّعُوْنَ ﴿٥٨﴾

୫୯. (ଏବଂ) ସେମାନଙ୍କୁ ସଲାମ ମାଧ୍ୟମରେ ସମ୍ବୋଧନ କରାହେବ, ଯାହା କରୁଣାମୟ ପାଳନକର୍ତ୍ତାଙ୍କ ତରଫରୁ ସେମାନଙ୍କ ପ୍ରତି ଏକ ଶୁଭେଚ୍ଛା ହେବ ।

سَلٰمٌ قَوْلًا مِّنْ رَّبٍّ رَّحِيْمٍ ﴿٥٩﴾

୬୦. ଏବଂ (ଆମେ କହିବୁ), "ହେ ଅପରାଧୀମାନେ ! ଆଜି ତୁମେମାନେ (ବିଶ୍ୱାସକାରୀମାନଙ୍କ ଠାରୁ) ଅଲଗା ହୋଇଯାଅ ।"

وَامْتَازُوا الْيَوْمَ اَيُّهَا الْمُجْرِمُوْنَ ﴿٦٠﴾

୬୧. "ହେ ଆଦମର ସନ୍ତାନମାନେ ! କ'ଣ ଆମେ ତୁମମାନଙ୍କ ପ୍ରତି ଏହି ଦାୟିତ୍ୱ ଆରୋପ କରି ନ ଥିଲୁ ଯେ ତୁମେମାନେ ସଇତାନର ଉପାସନା କର ନାହିଁ କାରଣ ସେ ତୁମମାନଙ୍କର ପ୍ରକାଶ୍ୟ ଶତ୍ରୁ ଅଟେ ।"

اَلَمْ اَعْهَدْ اِلَيْكُمْ يٰبَنِيْٓ اٰدَمَ اَنْ لَّا تَعْبُدُوا الشَّيْطٰنَ اِنَّهٗ لَكُمْ عَدُوٌّ مُّبِيْنٌ ﴿٦١﴾

୬୨. "ଏବଂ କେବଳ ଆମର ଉପାସନା କର, କାରଣ ଏହା ହିଁ ସରଳ ପଥ ।"

وَّاَنِ اعْبُدُوْنِيْ هٰذَا صِرَاطٌ مُّسْتَقِيْمٌ ﴿٦٢﴾

୬୩. "ଏବଂ ସଇତାନ ତୁମମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ବିନଷ୍ଟ କରିଅଛି ; କ'ଣ ତୁମେମାନେ ଏହା ବୁଝିପାରୁ ନାହଁ ?"

وَلَقَدْ اَضَلَّ مِنْكُمْ جِبِلًّا كَثِيْرًا اَفَلَمْ تَكُوْنُوْا تَعْقِلُوْنَ ﴿٦٣﴾

୪. ଏହା ସେହି ନରକ, ଯାହାର ପ୍ରତିଶ୍ରୁତି ତୁମମାନଙ୍କୁ ଦିଆଯାଇଥିଲା ।

هٰذِهٖ جَهَنَّمُ الَّتِيْ كُنْتُمْ تُوْعَدُوْنَ ﴿٦٤﴾

୬୫. "ନିଜ ଅବିଶ୍ୱାସ ଯୋଗୁଁ ଆଜି ତହିଁରେ ପ୍ରବେଶ କର ।"

اِصْلَوْهَا الْيَوْمَ بِمَا كُنْتُمْ تَكْفُرُوْنَ ﴿٦٥﴾

୬୬. ସେଦିନ ଆମେ (ସେମାନଙ୍କ ଅବିଶ୍ୱାସ ଯୋଗୁଁ) ସେମାନଙ୍କ ମୁହଁରେ ମୋହର ମାରି (ବନ୍ଦ କରି) ଦେବୁ (ଅର୍ଥାତ୍ କହିବା ଆବଶ୍ୟକ ହେବ ନାହିଁ), ଏବଂ ସେମାନଙ୍କ ହସ୍ତ ଆମ୍ଭ ସହିତ ବାର୍ତ୍ତାଳାପ କରିବ, ଏବଂ ସେମାନଙ୍କ ପାଦ ସେମାନଙ୍କ କର୍ମ ସଂକ୍ରାନ୍ତରେ ସାକ୍ଷ୍ୟ ଦେବ ।[1]

اَلْيَوْمَ نَخْتِمُ عَلٰۤى اَفْوَاهِهِمْ وَ تُكَلِّمُنَاۤ اَيْدِيْهِمْ وَ تَشْهَدُ اَرْجُلُهُمْ بِمَا كَانُوْا يَكْسِبُوْنَ ﴿٦٦﴾

୬୭. ଏବଂ ଯଦି ଆମେ ଇଛା କରିବୁ, ତେବେ ସେମାନଙ୍କ ଚକ୍ଷୁକୁ ଦୃଷ୍ଟିହୀନ କରିଦେବୁ ; ତତ୍ପରେ ସେମାନେ ନ ଦେଖି ଏକ ପଥ'ର ଅନ୍ୱେଷଣରେ ଅଗ୍ରସର ହେବେ ; କିନ୍ତୁ ଏପରି ଅବସ୍ଥାରେ ସେମାନେ କିପରି (ସତ୍ପଥ) ଦେଖି ପାରିବେ ।

وَلَوْ نَشَآءُ لَطَمَسْنَا عَلٰۤى اَعْيُنِهِمْ فَاسْتَبَقُوا الصِّرَاطَ فَاَنّٰى يُبْصِرُوْنَ ﴿٦٧﴾

୬୮. ଏବଂ ଯଦି ଆମେ ଇଛା କରିବୁ, ତେବେ ସେମାନେ ଯେଉଁଠାରେ ଅଛନ୍ତି ସେହିଠାରେ ହିଁ ସେମାନଙ୍କ ମର୍ଯ୍ୟାଦାକୁ କ୍ଷୁଣ୍ଣ କରିବୁ ; ତା'ପରେ ସେମାନେ ସେଠାରୁ ଅଗ୍ରସର ହେବାକୁ ସମର୍ଥ ହେବେ ନାହିଁ କି ପ୍ରତ୍ୟାବର୍ତ୍ତନ କରିବାକୁ ପଥପ୍ରାପ୍ତ ହେବେ ନାହିଁ ।

وَلَوْ نَشَآءُ لَمَسَخْنٰهُمْ عَلٰى مَكَانَتِهِمْ فَمَا اسْتَطَاعُوْا مُضِيًّا وَّلَا يَرْجِعُوْنَ ﴿٦٨﴾

ରୁ : ୪

୬୯. ଏବଂ ଯାହାକୁ ଆମେ ଅତି ଦୀର୍ଘ ଆୟୁ ପ୍ରଦାନ କରୁ, ତାହାର ଶାରୀରିକ ଶକ୍ତିକୁ ଆମେ କ୍ରମେ ଦୁର୍ବଳ କରିଥାଉ : କ'ଣ ସେମାନେ ଏହା ବୁଝିପାରୁ ନାହାନ୍ତି ?[2]

وَمَنْ نُّعَمِّرْهُ نُنَكِّسْهُ فِى الْخَلْقِ اَفَلَا يَعْقِلُوْنَ ﴿٦٩﴾

୭୦. ଏବଂ ଆମେ ଏହାକୁ (ଅର୍ଥାତ୍ ମହମ୍ମଦଙ୍କୁ) କବିତା ରଚନା କରିବା ଶିଖାଇ ନାହୁଁ ; ଏବଂ ଏହି କାର୍ଯ୍ୟ ତାହାଙ୍କ ମର୍ଯ୍ୟାଦାର ଅନୁରୂପ ନୁହେଁ ; ଏହି କୋରାନ ତ କେବଳ ଏକ ଉପଦେଶ ଓ ବାରମ୍ବାର ପଠନୋପଯୋଗୀ ଗ୍ରନ୍ଥ ଅଟେ ଯାହା (ସମସ୍ତ ବିଷୟକୁ ପ୍ରମାଣ ସହ) ବ୍ୟାଖ୍ୟାନ କରେ,

وَمَا عَلَّمْنٰهُ الشِّعْرَ وَمَا يَنْۢبَغِىْ لَهٗ اِنْ هُوَ اِلَّا ذِكْرٌ وَّقُرْاٰنٌ مُّبِيْنٌ ﴿٧٠﴾

---

୧. ଉଦାହରଣ ସ୍ୱରୂପ ଯୌନବ୍ୟାଧିରେ ବ୍ୟାଧିଗ୍ରସ୍ତ ଲୋକର ନାକ ଓ ଗଳାରେ ଏହାର ପ୍ରଭାବ ଦୃଶ୍ୟମାନ ହୋଇଥାଏ ଫଳରେ ତା'ର ଶରୀର କହି ଉଠେ ଯେ ସେହି ବ୍ୟକ୍ତି ବ୍ୟଭିଚାର କରିଛି ।

୨. ଇସ୍ରାଇଲୀୟ ଲୋକମାନେ ଅତି ଦୀର୍ଘ ପରମାୟୁ ଲାଭ କରିଛନ୍ତି । ବର୍ତ୍ତମାନ ସେମାନଙ୍କ ପତନର ସମୟ ଉପସ୍ଥିତ ହେଲାଣି, କାରଣ ଜାତିର ଦୃଷ୍ଟାନ୍ତ ମଧ୍ୟ ଲୋକମାନଙ୍କ ସଦୃଶ ହୋଇଥାଏ ।

୭୧. ଯଦ୍ଦ୍ୱାରା କି ଯେଉଁମାନେ ଜୀବିତ ରହିଛନ୍ତି (ଏହା) ସେମାନଙ୍କୁ ସତର୍କ କରାଇଦେବ, ଏବଂ ଅବିଶ୍ୱାସକାରୀଙ୍କ ସମ୍ବନ୍ଧରେ ଅଲ୍ଲାହ୍‌ଙ୍କର ନିଷ୍ପତ୍ତି ପୂର୍ଣ୍ଣ ହେବ ।

لِّيُنْذِرَ مَنْ كَانَ حَيًّا وَّ يَحِقَّ الْقَوْلُ عَلَى الْكٰفِرِيْنَ ۝٧١

୭୨. କ'ଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ଆମେ ସେମାନଙ୍କ ସକାଶେ ନିଜର ବିଶେଷ ଶକ୍ତି ଦ୍ୱାରା ଚତୁଷ୍ପଦ (ପ୍ରାଣୀ) ସୃଷ୍ଟି କରିଅଛୁ, ଓ ସେମାନେ ସେମାନଙ୍କର ମାଲିକ ହୋଇଛନ୍ତି ?

اَوَلَمْ يَرَوْا اَنَّا خَلَقْنَا لَهُمْ مِّمَّا عَمِلَتْ اَيْدِيْنَآ اَنْعَامًا فَهُمْ لَهَا مٰلِكُوْنَ ۝٧٢

୭୩. ଏବଂ ଆମେ ସେ ଚତୁଷ୍ପଦମାନଙ୍କୁ ସେମାନଙ୍କର ଅଧୀନ କରିଅଛୁ ; ସୁତରାଂ ସେମାନଙ୍କ ମଧ୍ୟରୁ କେତେକଙ୍କ ଉପରେ ସେମାନେ ଆରୋହଣ କରନ୍ତି ଓ (ଅନ୍ୟ) କେତେକଙ୍କୁ ଖାଆନ୍ତି ।

وَ ذَلَّلْنٰهَا لَهُمْ فَمِنْهَا رَكُوْبُهُمْ وَ مِنْهَا يَاْكُلُوْنَ ۝٧٣

୭୪. ଏବଂ ସେମାନଙ୍କ ଠାରୁ ବିଭିନ୍ନ ପ୍ରକାର ଲାଭ ପାଆନ୍ତି ଓ ପାନୀୟ ଦ୍ରବ୍ୟ ମଧ୍ୟ ପାଆନ୍ତି ; ତେବେ କ'ଣ ସେମାନେ କୃତଜ୍ଞତା ଜ୍ଞାପନ କରିବେ ନାହିଁ ?

وَ لَهُمْ فِيْهَا مَنَافِعُ وَمَشَارِبُ اَفَلَا يَشْكُرُوْنَ ۝٧٤

୭୫. ଏବଂ ସେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କେତେକଙ୍କୁ ଏଥିଯୋଗୁଁ ଉପାସ୍ୟ ରୂପେ ଗ୍ରହଣ କରିଛନ୍ତି ଯେ କାଳେ (ସେମାନେ) ସେମାନଙ୍କୁ ସାହାଯ୍ୟ କରିବେ ।

وَاتَّخَذُوْا مِنْ دُوْنِ اللّٰهِ اٰلِهَةً لَّعَلَّهُمْ يُنْصَرُوْنَ ۝٧٥

୭୬. ସେ (ଉପାସ୍ୟ)ମାନେ ସେମାନଙ୍କର କୌଣସି ସାହାଯ୍ୟ କରିପାରିବେ ନାହିଁ ; ବରଂ ସେମାନେ (ସାହାଯ୍ୟ ପରିବର୍ତ୍ତେ) ପକ୍ଷାନ୍ତରରେ ସେମାନଙ୍କ ବିରୁଦ୍ଧରେ ଦଳବଦ୍ଧ ହୋଇ ସାକ୍ଷ୍ୟ ପ୍ରଦାନ କରିବେ ।

لَا يَسْتَطِيْعُوْنَ نَصْرَهُمْ وَهُمْ لَهُمْ جُنْدٌ مُّحْضَرُوْنَ ۝٧٦

୭୭. ସୁତରାଂ ତୁମକୁ ସେମାନଙ୍କ କଥା ଦୁଃଖ ନ ଦେଉ ; ସେମାନେ ଯାହା ଗୋପନ ରଖୁଛନ୍ତି ତାହାକୁ ଓ ଯାହା ପ୍ରକାଶ କରୁଛନ୍ତି ତାହାକୁ ମଧ୍ୟ ଆମେ ଜାଣୁ ।

فَلَا يَحْزُنْكَ قَوْلُهُمْ اِنَّا نَعْلَمُ مَا يُسِرُّوْنَ وَمَا يُعْلِنُوْنَ ۝٧٧

୭୮. କ'ଣ ମନୁଷ୍ୟକୁ ଏହା ଜଣା ନାହିଁ ଯେ ଆମେ ତାହାକୁ ଏକ (ତୁଚ୍ଛ) ଶୁକ୍ର ବିନ୍ଦୁରୁ ସୃଷ୍ଟି କରିଅଛୁ ; କିନ୍ତୁ (ଜନ୍ମ ଲାଭ କରିବା ପରେ) ସେ ସହସା ଏକ ମହା କଳହକାରୀ ହୋଇଯାଏ ।

أَوَلَمْ يَرَ الْإِنسَانُ أَنَّا خَلَقْنَاهُ مِن نُّطْفَةٍ فَإِذَا هُوَ خَصِيمٌ مُّبِينٌ ﴿٧٧﴾

୭୯. ଏବଂ ସେ ଆମ୍ଭର ଅସ୍ତିତ୍ୱ ସମ୍ବନ୍ଧରେ କପୋଳକଳ୍ପିତ ବିଷୟ ରଚନା କରିଥାଏ ଏବଂ ନିଜ ସୃଷ୍ଟି ସମ୍ବନ୍ଧରେ ଭୁଲି ଯାଏ ; ଏବଂ କହେ ଯେ ଯେତେବେଳେ ହାଡ଼ ସବୁ ବିଗଳିତ ହୋଇଯିବ, ସେତେବେଳେ କିଏ ସେମାନଙ୍କୁ ଜୀବିତ କରାଇବ ?

وَضَرَبَ لَنَا مَثَلًا وَنَسِيَ خَلْقَهُ ۖ قَالَ مَن يُحْيِي الْعِظَامَ وَهِيَ رَمِيمٌ ﴿٧٨﴾

୮୦. ଏବଂ ତୁମେ କୁହ, "ଯେ ସେମାନଙ୍କୁ ପ୍ରଥମ ଥର ସୃଷ୍ଟି କରିଥିଲେ ସେ ହିଁ ସେମାନଙ୍କୁ ଜୀବିତ କରିବେ ; ଏବଂ ପ୍ରତ୍ୟେକ ସୃଷ୍ଟିର ଅବସ୍ଥା ସମ୍ବନ୍ଧରେ ସେ ଭଲଭାବେ ଅବଗତ ଅଛନ୍ତି ।

قُلْ يُحْيِيهَا الَّذِي أَنشَأَهَا أَوَّلَ مَرَّةٍ ۖ وَهُوَ بِكُلِّ خَلْقٍ عَلِيمٌ ﴿٧٩﴾

୮୧. "ସେ (ଅଲ୍ଲାହ), ଯେ କି ତୁମମାନଙ୍କ ସକାଶେ ସବୁଜ ବୃକ୍ଷରୁ ଅଗ୍ନି ସୃଷ୍ଟି କରିଛନ୍ତି, ଏବଂ ତୁମେମାନେ ତା'ସାହାଯ୍ୟରେ ଅଗ୍ନି ସଂଯୋଗ କର ।"

الَّذِي جَعَلَ لَكُم مِّنَ الشَّجَرِ الْأَخْضَرِ نَارًا فَإِذَا أَنتُم مِّنْهُ تُوقِدُونَ ﴿٨٠﴾

୮୨. "ଯେ ଆକାଶ ଓ ପୃଥିବୀ ସୃଷ୍ଟି କରିଛନ୍ତି କ'ଣ ତାଙ୍କର ସେମାନଙ୍କ ସଦୃଶ ଅନ୍ୟ ସୃଷ୍ଟିର ସର୍ଜନା କରିବାକୁ କ୍ଷମତା ନାହିଁ ?"(ସେ ଯେ ପୁନର୍ବାର ସୃଷ୍ଟି କରିବାକୁ ଅକ୍ଷମ) ଏପରି ଚିନ୍ତାଧାରା ଠିକ୍ ନୁହେଁ ; ବରଂ ସେ ଅନେକ ସୃଷ୍ଟିର ସ୍ରଷ୍ଟା (ଓ) ସର୍ବଜ୍ଞ ।

أَوَلَيْسَ الَّذِي خَلَقَ السَّمَاوَاتِ وَالْأَرْضَ بِقَادِرٍ عَلَىٰ أَن يَخْلُقَ مِثْلَهُم ۚ بَلَىٰ وَهُوَ الْخَلَّاقُ الْعَلِيمُ ﴿٨١﴾

୮୩. (ତାଙ୍କର କାର୍ଯ୍ୟକଳାପ ଏପରି ଯେ) ଯେତେବେଳେ ମଧ୍ୟ ସେ କୌଣସି ବସ୍ତୁ ସୃଷ୍ଟି କରିବାକୁ ଇଚ୍ଛା କରନ୍ତି, ସେତେବେଳେ ସେ ତା'ସମ୍ବନ୍ଧରେ କହି ଦିଅନ୍ତି ଯେ ଏହିପରି ହୋଇଯାଉ ଓ ତାହା ସେହିପରି ହୋଇଯାଏ ।

إِنَّمَا أَمْرُهُ إِذَا أَرَادَ شَيْئًا أَن يَقُولَ لَهُ كُن فَيَكُونُ ﴿٨٢﴾

୮୪. ସୁତରାଂ ସେ ହିଁ ପବିତ୍ର ,ଯାହାଙ୍କ ହସ୍ତରେ ସମସ୍ତ ବସ୍ତୁର ଆଧିପତ୍ୟ (ନ୍ୟସ୍ତ) ଅଛି ; ଯାହାଙ୍କ ନିକଟକୁ ତୁମ ସମସ୍ତଙ୍କୁ ଫେରାଇ ନିଆଯିବ ।

فَسُبْحَانَ الَّذِي بِيَدِهِ مَلَكُوتُ كُلِّ شَيْءٍ وَإِلَيْهِ تُرْجَعُونَ ﴿٨٣﴾

سُوْرَةُ الصّٰٓفّٰتِ مَكِّيَّةٌ (٣٧) اٰيَاتُهَا ١٨٢ رُكُوْعَاتُهَا ٥

## ଅଲ-ସାଫ୍ଫାତ

( ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ
୧୮୩ଟି ଆୟତ ଓ ୫ଟି ରୁକୁ ଅଛି )

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. (ଆମେ) ପ୍ରମାଣ ସ୍ୱରୂପ ସେହି (ଲୋକ)ମାନଙ୍କୁ ଉପସ୍ଥାପନ କରୁଅଛୁ ଯେଉଁମାନେ (ସତ୍ୟର ବିରୁଦ୍ଧାଚରଣ କରୁଥିବା ବ୍ୟକ୍ତିମାନଙ୍କ ସମ୍ମୁଖରେ) ଧାଡ଼ିବାନ୍ଧି [୧] ଠିଆ ହୋଇଛନ୍ତି ;

وَالصّٰٓفّٰتِ صَفًّا ②

୩. ଏବଂ ଯେଉଁମାନେ କୁକର୍ମ କରୁଥିବା ବ୍ୟକ୍ତିମାନଙ୍କୁ ଭର୍ତ୍ସନା କରନ୍ତି ;

فَالزّٰجِرٰتِ زَجْرًا ③

୪. ଏବଂ ଅଲ୍ଲାହଙ୍କ ବାଣୀ (ଅର୍ଥାତ୍ କୋରାନ) ଆବୃତ୍ତି କରି ଶୁଣାନ୍ତି ;

فَالتّٰلِيٰتِ ذِكْرًا ④

୫. ବାସ୍ତବରେ ତୁମମାନଙ୍କ ଉପାସ୍ୟ ଏକମାତ୍ର ଉପାସ୍ୟ ଅଟନ୍ତି ;

اِنَّ اِلٰهَكُمْ لَوَاحِدٌ ⑤

୬. (ସେ ହିଁ) ଆକାଶ ଓ ପୃଥିବୀର ଏବଂ ଯାହା କିଛି ସେ ଉଭୟ ମଧ୍ୟରେ ଅଛି ତାହାର ପାଳନକର୍ତ୍ତା ଏବଂ ଯେଉଁଠାରୁ ସମସ୍ତ ଆଲୋକ ଉଦ୍‌ଭାସିତ ହୁଏ ତାହାର ମଧ୍ୟ ପାଳନକର୍ତ୍ତା ।

رَبُّ السَّمٰوٰتِ وَالْاَرْضِ وَمَا بَيْنَهُمَا وَرَبُّ الْمَشَارِقِ ⑥

୭. ଆମେ ଆକାଶର ନିମ୍ନଭାଗକୁ ଗ୍ରହ ନକ୍ଷତ୍ରମାନଙ୍କ ଦ୍ୱାରା ସୁଶୋଭିତ କରିଅଛୁ ।

اِنَّا زَيَّنَّا السَّمَآءَ الدُّنْيَا بِزِيْنَةِ اِۨلْكَوَاكِبِ ⑦

୮. ଏବଂ ଆମେ ଏହାକୁ ପ୍ରତ୍ୟେକ ଦୁରାଚାରୀ ସଇତାନ ଠାରୁ ସୁରକ୍ଷିତ କରିଅଛୁ ।

وَحِفْظًا مِّنْ كُلِّ شَيْطٰنٍ مَّارِدٍ ⑧

୯. ସେ (ଦୁରାଚାରୀ ସଇତାନ)ମାନେ ବଳିଷ୍ଠ ବ୍ୟକ୍ତିମାନଙ୍କ (ଅର୍ଥାତ୍ ଦେବଦୂତମାନଙ୍କ) କଥା ଶୁଣିପାରନ୍ତି [୨] ନାହିଁ, ଏବଂ ସବୁ ଦିଗରୁ ସେମାନଙ୍କ ପ୍ରତି କୋରଡ଼ା ପ୍ରହାର କରାଯାଏ,

لَا يَسَّمَّعُوْنَ اِلَى الْمَلَاِ الْاَعْلٰى وَيُقْذَفُوْنَ مِنْ كُلِّ جَانِبٍ ⑨

୧୦. (ଫଳରେ) ସେମାନେ ବିତାଡ଼ିତ [୩] ହୁଅନ୍ତି, ଏବଂ ସେମାନଙ୍କ ସକାଶେ ଏକ ସ୍ଥାୟୀ ଶାସ୍ତି ରହିଅଛି ।

دُحُوْرًا وَّلَهُمْ عَذَابٌ وَّاصِبٌ ⑩

---

୧. ଅର୍ଥାତ୍ ହଜରତ ମହମ୍ମଦଙ୍କ ସାଥୀମାନେ । ସେମାନଙ୍କ ଜୀବନ ଚରିତ ସହିତ ମକ୍କାବାସୀ ଅବିଶ୍ୱାସକାରୀଙ୍କ ଜୀବନ ଚରିତକୁ ତୁଳନା କଲେ ଇସଲାମ ଧର୍ମର ଯଥାର୍ଥତା ପ୍ରତିପାଦିତ ହେବ ।

୨. ଅର୍ଥାତ୍ ବାସ୍ତବିକତାକୁ ପାଇ ପାରନ୍ତି ନାହିଁ, ସେମାନେ କେବଳ ଉପର ଠାଉରିଆ ଭାବରେ ଶୁଣୁଥା'ନ୍ତି ।

୩. ଅର୍ଥାତ୍ ସଇତାନ ସ୍ୱଭାବର ଲୋକମାନେ ଅବତାରଙ୍କୁ ପ୍ରେରିତ ଦିବ୍ୟବାଣୀ (ଇଲହାମ) କୁ ବିକୃତ କରି ଯେବେ ଲୋକମାନଙ୍କ ଆଗରେ ପ୍ରଚାର କରିବାକୁ ଚାହାନ୍ତି ତେବେ ଶୀଘ୍ର ଅଲ୍ଲାହଙ୍କର ଶାସ୍ତି ଅବତରଣ କରେ ଓ ସେମାନଙ୍କୁ କୋରଡ଼ା ମାଡ ଦେଇ ବିତାଡ଼ିତ କରାଯାଏ ।

୧୧. କିନ୍ତୁ ସେମାନଙ୍କ ମଧ୍ୟରୁ ଯେ କେହି ଦୁଷ୍ଟାମି [୧] କରି କୌଣସି କଥା ନେଇ ପଳାଇ ଯାଏ, ତେବେ ଏକ ଜ୍ୱଳନ୍ତ ଅଗ୍ନିଶିଖା ତାହାକୁ ଅନୁଧାବନ କରେ ।

إِلَّا مَنْ خَطِفَ الْخَطْفَةَ فَأَتْبَعَهُ شِهَابٌ ثَاقِبٌ ⑪

୧୨. ସୁତରାଂ ତୁମେ ସେମାନଙ୍କୁ ପଚାର ଯେ କ'ଣ ସୃଷ୍ଟି କରିବା ଦୃଷ୍ଟିରୁ ସେମାନଙ୍କୁ ସୃଷ୍ଟି କରିବା ଅଧିକ କଷ୍ଟ ସାଧ୍ୟ କି (ସେମାନଙ୍କ ବ୍ୟତୀତ ଯେଉଁ ସମଗ୍ର ଜଗତ) ଯାହାକୁ ଆମେ ସୃଷ୍ଟି କରିଅଛୁ ? ଆମେ ସେମାନଙ୍କୁ ଚିକିଟା ମାଟିରୁ ସୃଷ୍ଟି କରିଅଛୁ ।

فَاسْتَفْتِهِمْ أَهُمْ أَشَدُّ خَلْقًا أَمْ مَنْ خَلَقْنَا ۚ إِنَّا خَلَقْنَاهُمْ مِنْ طِينٍ لَازِبٍ ⑫

୧୩. ବରଂ ବାସ୍ତବତା ଏହି ଯେ ତୁମେ (ସେମାନଙ୍କ କଥାରେ) ଆଶ୍ଚର୍ଯ୍ୟାନ୍ୱିତ ହେଉଅଛ, ଏବଂ ସେମାନେ (ତୁମ କଥାକୁ) ତୁଚ୍ଛ ମଣୁଛନ୍ତି ।

بَلْ عَجِبْتَ وَيَسْخَرُونَ ⑬

୧୪. ଏବଂ ଯେତେବେଳେ ସେମାନଙ୍କୁ ଉପଦେଶ ଦିଆଯାଏ, ସେମାନେ ଉପଦେଶ ଗ୍ରହଣ କରନ୍ତି ନାହିଁ ।

وَإِذَا ذُكِّرُوا لَا يَذْكُرُونَ ⑭

୧୫. ଏବଂ ଯେବେ କୌଣସି ନିଦର୍ଶନ ଦେଖନ୍ତି ତେବେ ସେମାନେ ତାହାକୁ ପରିହାସ କରନ୍ତି ।

وَإِذَا رَأَوْا آيَةً يَسْتَسْخِرُونَ ⑮

୧୬. ଏବଂ କହନ୍ତି, "ଏହା ଏକ ପ୍ରକାଶ୍ୟ ପ୍ରତାରଣା ।"

وَقَالُوا إِنْ هَٰذَا إِلَّا سِحْرٌ مُبِينٌ ⑯

୧୭. "ଯେତେବେଳେ ଆମେମାନେ ମରିଯିବୁ ଓ ମାଟି ଓ ହାଡ଼ ହୋଇଯିବୁ କ'ଣ ସେତେବେଳେ ଆମମାନଙ୍କୁ ପୁନରୁତ୍‌ଥିତ କରାହେବ ?"

أَإِذَا مِتْنَا وَكُنَّا تُرَابًا وَعِظَامًا أَإِنَّا لَمَبْعُوثُونَ ⑰

୧୮. "ଏବଂ (ଏହିପରି ଭାବରେ) ଆମମାନଙ୍କ ପିତୃପିତାମହମାନଙ୍କୁ ମଧ୍ୟ ?"

أَوَآبَاؤُنَا الْأَوَّلُونَ ⑱

୧୯. ତୁମେ କୁହ, "ହଁ, ବରଂ ତୁମେମାନେ ଲାଞ୍ଛିତ ହେବ ।"

قُلْ نَعَمْ وَأَنْتُمْ دَاخِرُونَ ⑲

୨୦. ସେହି ସମୟ କେବଳ ଏକ ଧମକ (ସଦୃଶ), କାରଣ ଯେବେ (ସେହି ଧମକ ଦିଆ ହେବ) ସେମାନେ (ଜୀବିତ ହୋଇ) ଦେଖି ପାରିବେ ।

فَإِنَّمَا هِيَ زَجْرَةٌ وَاحِدَةٌ فَإِذَا هُمْ يَنْظُرُونَ ⑳

୨୧. ଏବଂ କହିବେ, "ହାୟ ! ଆମମାନଙ୍କର ଦୁର୍ଭାଗ୍ୟ, ଏହା ହିଁ ତ ବିଚାର ଦିବସ ।"

وَقَالُوا يَا وَيْلَنَا هَٰذَا يَوْمُ الدِّينِ ㉑

୨୨. (ଏବଂ ଅଲ୍ଲାହ୍‌ଙ୍କ ତରଫରୁ ଶୁଣାଇ ଦିଆଯିବ) ଏହା ହିଁ ସେହି ବିଚାର ଦିବସ, ଯାହାକୁ ତୁମେମାନେ ଅସ୍ୱୀକାର କରୁଥିଲ ।

هَٰذَا يَوْمُ الْفَصْلِ الَّذِي كُنْتُمْ بِهِ تُكَذِّبُونَ ㉒ ع

୧. ଅର୍ଥାତ୍ ବିରୋଧ କରି ଯଦି କୌଣସି ବ୍ୟକ୍ତି ପବିତ୍ର କୋରାନର କୌଣସି ଅଂଶକୁ ଏହି ଉଦ୍ଦେଶ୍ୟରେ ଉଠାଇ ନେବ ଯେ ସେ ତାହାକୁ ବିକୃତ କରି ତଦ୍ୱାରା ଲୋକମାନଙ୍କୁ ପ୍ରତାରିତ ଓ ବିଭ୍ରାନ୍ତ କରିବ ତେବେ ଅଲ୍ଲାହ୍ ସେପରି ଧୂର୍ତ୍ତ ଲୋକର ମୁହଁ ବନ୍ଦ କରିବାପାଇଁ ନିଜର ଏପରି ଭକ୍ତମାନଙ୍କୁ ନିଯୁକ୍ତି ଦିଅନ୍ତି ଯେଉଁମାନେ କୋରାନର ଶିକ୍ଷା ଦ୍ୱାରା ସେଭଳି ସଇତାନମାନଙ୍କୁ ନିରୁତ୍ତର କରିଥା'ନ୍ତି ।

ରୁ : ୨

୨୩./୨୪. (ଆମେ ଆମର ଦୂତମାନଙ୍କୁ କହିବୁ), "ଯେଉଁମାନେ ଅତ୍ୟାଚାର କରିଥିଲେ ସେମାନଙ୍କୁ, ଓ ସେମାନଙ୍କ ସହଚରମାନଙ୍କୁ ମଧ୍ୟ, ଓ ଅଲ୍ଲାହଙ୍କ ବ୍ୟତୀତ ସେମାନେ ଯେଉଁମାନଙ୍କର ଉପାସନା କରୁଥିଲେ, ସେମାନଙ୍କୁ ମଧ୍ୟ (ଜୀବିତ କରି) ଏକତ୍ରିତ କରାଅ, ଓ ତା'ପରେ ସେ ସମସ୍ତଙ୍କୁ ନରକପଥ ଆଡ଼କୁ ଘେନି ଯାଅ ।"

احْشُرُوا الَّذِينَ ظَلَمُوا وَأَزْوَاجَهُمْ وَمَا كَانُوا يَعْبُدُونَ ﴿٢٣﴾

مِن دُونِ اللَّهِ فَاهْدُوهُمْ إِلَىٰ صِرَاطِ الْجَحِيمِ ﴿٢٤﴾

୨୫. "ଏବଂ (ସେ ପର୍ଯ୍ୟନ୍ତ ଘେନି ଯାଇ) ସେମାନଙ୍କୁ ଠିଆ କରାଅ ; କାରଣ ସେମାନଙ୍କୁ ସେଠାରେ କେତେକ ପ୍ରଶ୍ନ କରାହେବ ।"

وَقِفُوهُمْ إِنَّهُم مَّسْئُولُونَ ﴿٢٥﴾

୨୬. (ଏବଂ ସେମାନଙ୍କୁ ପଚରା ଯିବ), "ତୁମମାନଙ୍କର କ'ଣ ହୋଇଛି ଯେ ତୁମେମାନେ ପରସ୍ପରକୁ ସାହଯ୍ୟ କରୁନାହଁ ?"

مَا لَكُمْ لَا تَنَاصَرُونَ ﴿٢٦﴾

୨୭. ବାସ୍ତବତା ଏହି ଯେ (ପରସ୍ପରକୁ ସାହାଯ୍ୟ କରିବା ଦୂରେ ଥାଉ) ସେମାନେ ସେଦିନ ସମ୍ପୂର୍ଣ୍ଣ ଭାବରେ ଆତ୍ମସମର୍ପଣ କରିବେ ।

بَلْ هُمُ الْيَوْمَ مُسْتَسْلِمُونَ ﴿٢٧﴾

୨୮. ଏବଂ ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ଅନ୍ୟ ସହିତ ଯୁକ୍ତିତର୍କ କରିବ ।

وَأَقْبَلَ بَعْضُهُمْ عَلَىٰ بَعْضٍ يَتَسَاءَلُونَ ﴿٢٨﴾

୨୯. (ଏବଂ ) ସେମାନଙ୍କୁ ସମ୍ବୋଧନ କରି କହିବ ଯେ ତୁମେମାନେ ସର୍ବଦା ଆମମାନଙ୍କର ଦକ୍ଷିଣ ପାର୍ଶ୍ୱରୁ [୧] ଆସୁଥିଲ ।

قَالُوا إِنَّكُمْ كُنتُمْ تَأْتُونَنَا عَنِ الْيَمِينِ ﴿٢٩﴾

୩୦. (ସେମାନଙ୍କର ତଥାକଥିତ ଉପାସ୍ୟମାନେ ଉତ୍ତରରେ) କହିବେ, "ଏପରି ନୁହେଁ, ବାସ୍ତବରେ ତୁମମାନଙ୍କ ଠାରେ ବିଶ୍ୱାସ(ରେ କୌଣସି ସତ୍ତା) ନ ଥିଲା ।"

قَالُوا بَل لَّمْ تَكُونُوا مُؤْمِنِينَ ﴿٣٠﴾

୩୧. "ଏବଂ ଆମମାନଙ୍କୁ ତୁମମାନଙ୍କ ଉପରେ କୌଣସି ଆଧିପତ୍ୟ ମିଳି ନ ଥିଲା ; ବରଂ ତୁମେମାନେ ଏକ ଦୁରାଚାରୀ ସମ୍ପ୍ରଦାୟ ଥିଲ ।"

وَمَا كَانَ لَنَا عَلَيْكُم مِّن سُلْطَانٍ بَلْ كُنتُمْ قَوْمًا طَاغِينَ ﴿٣١﴾

୩୨. "ଅତଏବ ଆଜି ସମସ୍ତଙ୍କ ସଂକ୍ରାନ୍ତରେ ଆମମାନଙ୍କ ପାଳନକର୍ତ୍ତାଙ୍କ କଥା (ସତ୍ୟ) ସାବ୍ୟସ୍ତ ହେଲା ଯେ ଆମମାନଙ୍କୁ (ଶାସ୍ତି) ଆସ୍ୱାଦନ କରିବାକୁ ହେବ ।

فَحَقَّ عَلَيْنَا قَوْلُ رَبِّنَا إِنَّا لَذَائِقُونَ ﴿٣٢﴾

୩୩. "ଏବଂ (ଏହା ଠିକ୍ ଯେ) ଆମେମାନେ ତୁମମାନଙ୍କୁ ପଥଭ୍ରଷ୍ଟ କରାଇଥିଲୁ କାରଣ ଆମେମାନେ ନିଜେ ପଥଭ୍ରଷ୍ଟ ଥିଲୁ ।"

فَأَغْوَيْنَاكُمْ إِنَّا كُنَّا غَاوِينَ ﴿٣٣﴾

---

୧. 'ଦକ୍ଷିଣ ପାର୍ଶ୍ୱରୁ' ଅଭିବ୍ୟକ୍ତି ଧର୍ମପାଇଁ ବ୍ୟବହୃତ ହୁଏ । ଏହାର ଅର୍ଥ ଧର୍ମର ଆବରଣରେ ନିଜକୁ ଆବୃତ କରି ଆମମାନଙ୍କୁ ପ୍ରତାରିତ କରିଥା'ନ୍ତି ।

فَاِنَّهُمْ يَوْمَئِذٍ فِى الْعَذَابِ مُشْتَرِكُوْنَ ﴿٣٣﴾

୩୪. ସୁତରାଂ (ପରିଣାମରେ) ସେଦିନ ସେ ସମସ୍ତେ ଶାସ୍ତିରେ ଭାଗୀ ହେବେ ।

اِنَّا كَذٰلِكَ نَفْعَلُ بِالْمُجْرِمِيْنَ ﴿٣٤﴾

୩୫. ଆମେ ଅପରାଧୀମାନଙ୍କ ସହିତ ଏହିପରି (ବ୍ୟବହାର) ହିଁ କରିଥାଉ ।

اِنَّهُمْ كَانُوْٓا اِذَا قِيْلَ لَهُمْ لَآ اِلٰهَ اِلَّا اللّٰهُ يَسْتَكْبِرُوْنَ ﴿٣٥﴾

୩୬. ଯେବେ ବି ସେମାନଙ୍କୁ କୁହାଯାଉଥିଲା ଯେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ, ସେତେବେଳେ ସେମାନେ ଗର୍ବ କରୁଥିଲେ ।

وَيَقُوْلُوْنَ اَئِنَّا لَتَارِكُوْٓا اٰلِهَتِنَا لِشَاعِرٍ مَّجْنُوْنٍ ﴿٣٦﴾

୩୭. ଏବଂ କହୁଥିଲେ, "କ'ଣ ଆମେମାନେ ନିଜ ଉପାସ୍ୟମାନଙ୍କୁ ଜଣେ କବି ଓ ବାତୁଳଙ୍କ କଥାରେ ପରିତ୍ୟାଗ କରିବୁ ?"

بَلْ جَآءَ بِالْحَقِّ وَصَدَّقَ الْمُرْسَلِيْنَ ﴿٣٧﴾

୩୮. ବାସ୍ତବତା ଏହି ଯେ ସେ (ଅର୍ଥାତ୍ ହଜରତ ମହମ୍ମଦ) ଏକ ପୂର୍ଣ୍ଣାଙ୍ଗ ସତ୍ୟ ସହିତ ଆସିଛନ୍ତି ଏବଂ ପୂର୍ବବର୍ତ୍ତୀ ସମସ୍ତ ରସୁଲଙ୍କୁ ସତ୍ୟ ନିରୂପିତ କରିଛନ୍ତି ।

اِنَّكُمْ لَذَآئِقُوا الْعَذَابِ الْاَلِيْمِ ﴿٣٨﴾

୩୯. (ହେ ଅବଜ୍ଞାକାରୀମାନେ !) ତୁମେମାନେ ନିଶ୍ଚୟ ଯନ୍ତ୍ରଣାଦାୟକ ଶାସ୍ତି ଆସ୍ୱାଦନ କରିବ ।

وَمَا تُجْزَوْنَ اِلَّا مَا كُنْتُمْ تَعْمَلُوْنَ ﴿٣٩﴾

୪୦. ଏବଂ ତୁମେମାନେ ଯାହା କିଛି କରୁଥିଲ ତଦନୁସାରେ ଶାସ୍ତି ପାଇବ,

اِلَّا عِبَادَ اللّٰهِ الْمُخْلَصِيْنَ ﴿٤٠﴾

୪୧. କିନ୍ତୁ ଯେଉଁମାନେ ଅଲ୍ଲାହଙ୍କର ମନୋନୀତ ଭକ୍ତ, (ସେମାନେ ଶାସ୍ତି ପାଇବେ ନାହିଁ) ;

اُولٰٓئِكَ لَهُمْ رِزْقٌ مَّعْلُوْمٌ ﴿٤١﴾

୪୨. (ବରଂ) ସେମାନଙ୍କୁ ଜ୍ଞାତ ଜୀବିକା[1] ମିଳିବ,

فَوَاكِهُ ۚ وَهُمْ مُّكْرَمُوْنَ ﴿٤٢﴾

فِىْ جَنّٰتِ النَّعِيْمِ ﴿٤٣﴾

୪୩./୪୪. (ଅର୍ଥାତ୍) ବିଭିନ୍ନ ପ୍ରକାର ଫଳ[2] ଏବଂ ସେମାନଙ୍କୁ ଆଶୀର୍ବାଦପୂର୍ଣ୍ଣ ଉଦ୍ୟାନରେ ସମ୍ମାନିତ କରାହେବ ।

عَلٰى سُرُرٍ مُّتَقٰبِلِيْنَ ﴿٤٤﴾

୪୫. ସେମାନେ ପଲଙ୍କଗୁଡ଼ିକ ଉପରେ ପରସ୍ପରର ସମ୍ମୁଖୀନ[3] ହୋଇ ବସିବେ ।

يُطَافُ عَلَيْهِمْ بِكَاْسٍ مِّنْ مَّعِيْنٍ ﴿٤٥﴾

୪୬. ପ୍ରବହମାନ ଝରଣାରୁ ଜଳପୂର୍ଣ୍ଣ ଗ୍ଲାସ୍ ସେମାନଙ୍କ ନିକଟକୁ ଅଣାଯିବ,

بَيْضَآءَ لَذَّةٍ لِّلشّٰرِبِيْنَ ﴿٤٦﴾

୪୭. ଏହା ସ୍ୱଚ୍ଛ ହେବ ଓ ପାନକାରୀମାନଙ୍କ ସକାଶେ ସୁସ୍ୱାଦୁ ହେବ ।

لَا فِيْهَا غَوْلٌ وَّلَا هُمْ عَنْهَا يُنْزَفُوْنَ ﴿٤٧﴾

୪୮. ତଦ୍ଦ୍ୱାରା ମୁଣ୍ଡବ୍ୟଥା ହେବ ନାହିଁ କି ତଦ୍ଦ୍ୱାରା ସେମାନଙ୍କର ଜ୍ଞାନ ନଷ୍ଟ ହେବ ନାହିଁ ।

---

୧. ଅର୍ଥାତ୍ ସେପରି ଜୀବିକା ନିର୍ବାହ ଯାହାର ଉଲ୍ଲେଖ ପବିତ୍ର କୋରାନର ଆୟତଗୁଡିକରେ ଅଛି ।

୨. ଅର୍ଥାତ୍ ସେମାନଙ୍କ କର୍ମର ଫଳ ।

୩. ଅର୍ଥାତ ଜଣେ ମୁସଲମାନ ଅନ୍ୟର ଶତ୍ରୁ ହେବ ନାହିଁ । ସେ ଅନ୍ୟଆଡ଼କୁ ମୁହଁ କରି ବସିବ ନାହିଁ କି ତା'ଠାରୁ ନିଜକୁ ଦୂରେଇ ରଖିବ ନାହିଁ ।

୪୯. ଏବଂ ସେମାନଙ୍କ ନିକଟରେ ସୁନୟନା ଓ ନତମୁଖୀ ନାରୀ ଥିବେ ।

وَعِنْدَهُمْ قٰصِرٰتُ الطَّرْفِ عِيْنٌ ﴿٤٩﴾

୫୦. ସତେ ଯେପରି ସେମାନେ ଆବରଣଯୁକ୍ତ ଡିମ୍ବ ।[୧]

كَاَنَّهُنَّ بَيْضٌ مَّكْنُوْنٌ ﴿٥٠﴾

୫୧. ଏହାପରେ ସେମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କୁ ପ୍ରଶ୍ନ କରିବାକୁ ଉଦ୍ୟତ ହେବେ ।

فَاَقْبَلَ بَعْضُهُمْ عَلٰى بَعْضٍ يَّتَسَآءَلُوْنَ ﴿٥١﴾

୫୨. ଏବଂ ସେମାନଙ୍କ ମଧ୍ୟରୁ କେହି ଜଣେ କହିବ, "ମୋର ଜଣେ ବନ୍ଧୁ ଥିଲା,"

قَالَ قَآئِلٌ مِّنْهُمْ اِنِّيْ كَانَ لِيْ قَرِيْنٌ ﴿٥٢﴾

୫୩. ସେ କହୁଥିଲା, "କ'ଣ ତୁମେ ମଧ୍ୟ (ପୁନରୁତ୍ଥାନ ବିଷୟକୁ) ସ୍ୱୀକାର କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଗତ ?"

يَّقُوْلُ اَئِنَّكَ لَمِنَ الْمُصَدِّقِيْنَ ﴿٥٣﴾

୫୪. (ଯଦି ଏହା ସତ୍ୟ ତେବେ ମୋତେ କୁହ), "କ'ଣ ଯେତେବେଳେ ଆମେମାନେ ମରିଯିବୁ ଏବଂ ମାଟି ଓ ହାଡ଼ ହୋଇଯିବୁ ସେତେବେଳେ ଆମମାନଙ୍କୁ ଆମମାନଙ୍କ କର୍ମର ପ୍ରତିଫଳ ପ୍ରଦାନ କରାଯିବ ?"

ءَاِذَا مِتْنَا وَكُنَّا تُرَابًا وَّعِظَامًا ءَاِنَّا لَمَدِيْنُوْنَ ﴿٥٤﴾

୫୫. ଏହାପରେ ସେ (ବିଶ୍ୱାସକାରୀ) ବ୍ୟକ୍ତି କହିବ, "(ତୁମମାନଙ୍କ ମଧ୍ୟରୁ କେହି ଜଣେ) ଚାହିଁ ଦେଖିବ କି (ସେହି ବ୍ୟକ୍ତି କିପରି ଅବସ୍ଥାରେ ଅଛି ) ?"

قَالَ هَلْ اَنْتُمْ مُّطَّلِعُوْنَ ﴿٥٥﴾

୫୬. ଏହାପରେ ସେ ନିଜେ ଅବସ୍ଥା ବୁଝିବାକୁ ପ୍ରୟାସ କରିବ ଏବଂ (ନିଜର ପାର୍ଥିବ) ସାଥୀକୁ ନରକ ମଧ୍ୟରେ ପଡ଼ିଥିବାର ଦେଖିବ ।

فَاطَّلَعَ فَرَاٰهُ فِيْ سَوَآءِ الْجَحِيْمِ ﴿٥٦﴾

୫୭. ଏହାପରେ ତାକୁ କହିବ, "ଅଲ୍ଲାହ୍‌ଙ୍କ ରାଣ ! ତୁମେ ମୋର ମଧ୍ୟ ସର୍ବନାଶ କରିବାକୁ ବସିଥିଲ ।"

قَالَ تَاللّٰهِ اِنْ كِدْتَّ لَتُرْدِيْنِ ﴿٥٧﴾

୫୮. "ଏବଂ ଯଦି ମୋର ପାଳନକର୍ତ୍ତାଙ୍କ ଅନୁଗ୍ରହ ନ ଥା'ନ୍ତା ତେବେ ଆଜି ମୁଁ ମଧ୍ୟ ନରକ ସମ୍ମୁଖରେ ହାଜର ହେବା ବ୍ୟକ୍ତିମାନଙ୍କ ମଧ୍ୟରେ ଥାଆନ୍ତି ।"

وَلَوْلَا نِعْمَةُ رَبِّيْ لَكُنْتُ مِنَ الْمُحْضَرِيْنَ ﴿٥٨﴾

୫୯/୬୦. (ହେ ନରକବାସୀ !) ବର୍ତ୍ତମାନ ତୁମେ କୁହ, "କ'ଣ ପ୍ରଥମ ମୃତ୍ୟୁକୁ ଛାଡ଼ି ଆମମାନଙ୍କ ପାଇଁ ଅନ୍ୟ କୌଣସି ମୃତ୍ୟୁ ନାହିଁ ? ଏବଂ ଆମମାନଙ୍କୁ କୌଣସି ଶାସ୍ତି ଦିଆଯିବ ନାହିଁ ?"

اَفَمَا نَحْنُ بِمَيِّتِيْنَ ﴿٥٩﴾

اِلَّا مَوْتَتَنَا الْاُوْلٰى وَمَا نَحْنُ بِمُعَذَّبِيْنَ ﴿٦٠﴾

୬୧. ନିଃସନ୍ଦେହରେ ଏହା (ବିଶ୍ୱାସକାରୀମାନଙ୍କ ପକ୍ଷରେ) ଏକ ମହାନ୍ ସଫଳତା ଅଟେ ।

اِنَّ هٰذَا لَهُوَ الْفَوْزُ الْعَظِيْمُ ﴿٦١﴾

---

୧. ଅର୍ଥାତ୍ ଅତ୍ୟନ୍ତ ସୁନ୍ଦର, ପବିତ୍ର ଓ ସ୍ୱଚ୍ଛ ।

୬୨. ଏବଂ କର୍ମଶୀଳମାନେ ଏହି (ସଫଳତାର) ଫଳ ଲାଭ କରିବା ସକାଶେ ପ୍ରଚେଷ୍ଟା କରିବା ଉଚିତ ।

لِمِثْلِ هٰذَا فَلْيَعْمَلِ الْعٰمِلُوْنَ ﴿٦٢﴾

୬୩. କ'ଣ ଏହି ଆତିଥ୍ୟ ଭଲ କି (ସିଜୁଜାତୀୟ) ଜକ୍କୁମ ଗଛ ଭଲ ?

اَذٰلِكَ خَيْرٌ نُّزُلًا اَمْ شَجَرَةُ الزَّقُّوْمِ ﴿٦٣﴾

୬୪. ଆମେ ଅତ୍ୟାଚାରୀମାନଙ୍କ ସକାଶେ ଏହାକୁ ଏକ ପରୀକ୍ଷାର ମାଧ୍ୟମ କରିଅଛୁ ।

اِنَّا جَعَلْنٰهَا فِتْنَةً لِّلظّٰلِمِيْنَ ﴿٦٤﴾

୬୫. ତାହା ଏପରି ଏକ ଗଛ ଯାହା ନରକର ନିମ୍ନ ଦେଶରେ ଜନ୍ମିଥାଏ ।

اِنَّهَا شَجَرَةٌ تَخْرُجُ فِيْٓ اَصْلِ الْجَحِيْمِ ﴿٦٥﴾

୬୬. ତାହାର ଫଳ ସାପର ମୁଣ୍ଡ ପରି ।

طَلْعُهَا كَاَنَّهٗ رُءُوْسُ الشَّيٰطِيْنِ ﴿٦٦﴾

୬୭. ସୁତରାଂ ସେମାନେ ଏହି ଗଛରୁ ଖାଇବେ ଓ ଏଥିରୁ ନିଜର ଉଦର ପୂର୍ଣ୍ଣ କରିବେ ।

فَاِنَّهُمْ لَاٰكِلُوْنَ مِنْهَا فَمَالِـُٔوْنَ مِنْهَا الْبُطُوْنَ ﴿٦٧﴾

୬୮. ଏବଂ ଏହା ବ୍ୟତୀତ ସେମାନଙ୍କ (ପାନୀୟ) ଜଳରେ ଅତ୍ୟନ୍ତ ଉତପ୍ତ ଜଳ ମିଶ୍ରିତ ହେବ ।

ثُمَّ اِنَّ لَهُمْ عَلَيْهَا لَشَوْبًا مِّنْ حَمِيْمٍ ﴿٦٨﴾

୬୯. ତା'ପରେ ସେ ସମସ୍ତଙ୍କୁ ନରକ ଆଡ଼କୁ ଫେରାଇ ନିଆଯିବ ।

ثُمَّ اِنَّ مَرْجِعَهُمْ لَاِلَى الْجَحِيْمِ ﴿٦٩﴾

୭୦. ସେମାନେ ନିଜ ପିତୃପିତାମହଙ୍କୁ ପଥଭ୍ରଷ୍ଟ ହୋଇଥିବାର ଦେଖିଲେ ।

اِنَّهُمْ اَلْفَوْا اٰبَآءَهُمْ ضَآلِّيْنَ ﴿٧٠﴾

୭୧. ଏବଂ ସେମାନେ ମଧ୍ୟ ସେମାନଙ୍କ ପଦାଙ୍କ ଅନୁଧାବନ କଲେ ।

فَهُمْ عَلٰٓى اٰثٰرِهِمْ يُهْرَعُوْنَ ﴿٧١﴾

୭୨. ଏବଂ ସେମାନଙ୍କ ପୂର୍ବରୁ ଅନେକ ପୂର୍ବତନ ସମ୍ପ୍ରଦାୟ ମଧ୍ୟ ପଥଭ୍ରଷ୍ଟ ହୋଇଛନ୍ତି ।

وَلَقَدْ ضَلَّ قَبْلَهُمْ اَكْثَرُ الْاَوَّلِيْنَ ﴿٧٢﴾

୭୩. ଏବଂ ଆମେ ସେମାନଙ୍କ ମଧ୍ୟରେ ରସୁଲ ପ୍ରେରଣ କରିଅଛୁ ।

وَلَقَدْ اَرْسَلْنَا فِيْهِمْ مُّنْذِرِيْنَ ﴿٧٣﴾

୭୪. ଅତଏବ ଦେଖ, ଯେଉଁମାନଙ୍କୁ ଭୟଭୀତ କରାଯାଇଥିଲା ସେମାନଙ୍କ ପରିଣାମ କିପରି ହେଲା ।

فَانْظُرْ كَيْفَ كَانَ عَاقِبَةُ الْمُنْذَرِيْنَ ﴿٧٤﴾

୭୫. କେବଳ ଅଲ୍ଲାହଙ୍କର ପ୍ରକୃତ ଭକ୍ତମାନଙ୍କ ବ୍ୟତୀତ ।

اِلَّا عِبَادَ اللّٰهِ الْمُخْلَصِيْنَ ﴿٧٥﴾ ع

ରୁ :୩

୭୬. ଏବଂ (ରସୁଲମାନଙ୍କ ମଧ୍ୟରୁ) ନୁହ ମଧ୍ୟ ଆମକୁ ଡାକିଥିଲେ ; ଏବଂ ଆମେ ଅତ୍ୟୁତ୍ତମ ଉତ୍ତର-ଦାତା ।

وَلَقَدْ نَادٰىنَا نُوْحٌ فَلَنِعْمَ الْمُجِيْبُوْنَ ﴿٧٦﴾

୭୭. ଏବଂ ଆମେ ତାଙ୍କୁ ଓ ତାଙ୍କର ପରିବାରବର୍ଗଙ୍କୁ ମଧ୍ୟ ଏକ ମହା ବ୍ୟତିବ୍ୟସ୍ତତାରୁ ମୁକ୍ତି ଦେଇଥିଲୁ ।

وَنَجَّيْنٰهُ وَاَهْلَهٗ مِنَ الْكَرْبِ الْعَظِيْمِ ﴿٧٧﴾

୭୮. ଏବଂ କେବଳ ତାଙ୍କର ସନ୍ତାନଙ୍କୁ ହିଁ (ସଂସାରରେ) ବାକି ରଖିଥିଲୁ ।

وَجَعَلْنَا ذُرِّيَّتَهٗ هُمُ الْبٰقِيْنَ ﴿٧٨﴾

୭୯. ଏବଂ ତାଙ୍କ ପରବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ତାହାଙ୍କ ସୁନାମ ବଜାୟ ରଖିଥିଲୁ ।

وَتَرَكْنَا عَلَيْهِ فِى الْاٰخِرِيْنَ ﴿٧٩﴾

୮୦. ସବୁ ସମ୍ପ୍ରଦାୟ ତରଫରୁ ନୁହଙ୍କ ପ୍ରତି ଶାନ୍ତିପ୍ରଦାୟକ ପ୍ରାର୍ଥନା ହେଉଅଛି ।

سَلٰمٌ عَلٰى نُوْحٍ فِى الْعٰلَمِيْنَ ﴿٨٠﴾

୮୧. ଆମେ ହିତକାରୀମାନଙ୍କୁ ଏହିପରି ଭାବରେ ପୁରସ୍କାର ଦେଇଥାଉ ।

اِنَّا كَذٰلِكَ نَجْزِى الْمُحْسِنِيْنَ ﴿٨١﴾

୮୨. ସେ ଆମର ବିଶ୍ୱାସକାରୀ ଭକ୍ତମାନଙ୍କ ମଧ୍ୟରେ ଥିଲେ ।

اِنَّهٗ مِنْ عِبَادِنَا الْمُؤْمِنِيْنَ ﴿٨٢﴾

୮୩. ଏବଂ ଅନ୍ୟମାନଙ୍କୁ ଆମେ ପାଣିରେ ବୁଡାଇଥିଲୁ ।

ثُمَّ اَغْرَقْنَا الْاٰخَرِيْنَ ﴿٨٣﴾

୮୪. ଏବଂ ଇବ୍ରାହିମ ମଧ୍ୟ ତାହାଙ୍କ ଗୋଷ୍ଠୀର ଥିଲେ ;

وَاِنَّ مِنْ شِيْعَتِهٖ لَاِبْرٰهِيْمَ ﴿٨٤﴾ وقف لازم

୮୫. ଯେତେବେଳେ ସେ ନିଜେ ପାଳନକର୍ତ୍ତାଙ୍କ ସମୀପରେ ଏପରି ଏକ ହୃଦୟ ସହିତ ଉପସ୍ଥିତ ହୋଇଥିଲେ ଯାହା (ପ୍ରତ୍ୟେକ ପ୍ରକାର ସିର୍କ ଓ ଅବିଶ୍ୱାସରୁ) ପବିତ୍ର ଥିଲା ;

اِذْ جَآءَ رَبَّهٗ بِقَلْبٍ سَلِيْمٍ ﴿٨٥﴾

୮୬. ଯେତେବେଳେ ସେ ନିଜ ପିତାଙ୍କୁ ମଧ୍ୟ ତଥା ନିଜ ସମ୍ପ୍ରଦାୟର ଲୋକମାନଙ୍କୁ ମଧ୍ୟ ପଚାରି ଥିଲେ, ''ତୁମେମାନେ କାହାର ଉପାସନା କରୁଅଛ ?''

اِذْ قَالَ لِاَبِيْهِ وَقَوْمِهٖ مَاذَا تَعْبُدُوْنَ ﴿٨٦﴾

୮୭. ''କ'ଣ ମିଥ୍ୟାର ? ଅର୍ଥାତ୍ ଅଲ୍ଲାହଙ୍କ ପରିବର୍ତ୍ତେ ଅନ୍ୟ ଉପାସ୍ୟମାନଙ୍କୁ ଲୋଡ଼ୁ ଅଛ ?''

اَئِفْكًا اٰلِهَةً دُوْنَ اللّٰهِ تُرِيْدُوْنَ ﴿٨٧﴾

୮୮. ''ଅତଏବ କୁହ, ସମସ୍ତ ଜଗତର ପାଳନକର୍ତ୍ତାଙ୍କ ସମ୍ପର୍କରେ ତୁମମାନଙ୍କର କି ଧାରଣା ଅଛି ?''

فَمَا ظَنُّكُمْ بِرَبِّ الْعٰلَمِيْنَ ﴿٨٨﴾

୮୯. ଏହାପରେ ସେ ନକ୍ଷତ୍ରମାନଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ ।

فَنَظَرَ نَظْرَةً فِى النُّجُوْمِ ﴿٨٩﴾

୯୦. ଏବଂ କହିଲେ, ''ଆମେ ଅସୁସ୍ଥତା [1] ବୋଧ କରୁଅଛୁ ।''

فَقَالَ اِنِّىْ سَقِيْمٌ ﴿٩٠﴾

୯୧. ତେଣୁ ସେମାନେ [2] ତାହାଙ୍କୁ ପରିତ୍ୟାଗ କରି ଚାଲିଗଲେ ।

فَتَوَلَّوْا عَنْهُ مُدْبِرِيْنَ ﴿٩١﴾

---

୧. ହଜରତ ଇବ୍ରାହିମ ନିଜର ସମ୍ପ୍ରଦାୟର ରୀତିନୀତି ଅନୁସାରେ ଗ୍ରହ ନକ୍ଷତ୍ରର ଗତିବିଧିରୁ ଏହା ଅନୁମାନ କରିଥିଲେ । ପବିତ୍ର କୋରାନରେ ଉଲ୍ଲେଖ ଅଛି ଯେ ସେ ଏଥିରେ ବିଶ୍ୱାସ କରୁ ନ ଥିଲେ, ଅଥଚ ସେମାନଙ୍କୁ ଇଙ୍ଗିତ କରାଇବା ଲକ୍ଷ୍ୟରେ ସେ ଏହା କହିଥିଲେ ଯେ ସେମାନଙ୍କ ଜ୍ୟୋତିଷ ଶାସ୍ତ୍ର ଅନୁସାରେ ସେ ରୋଗରେ ପଡ଼ିବାର ସମ୍ଭାବନା ଅଛି ସତ, ମାତ୍ର ତାଙ୍କୁ ଅଲ୍ଲାହ କି କି ଶକ୍ତି ପ୍ରଦାନ କରୁଛନ୍ତି ଓ ସେମାନଙ୍କୁ କିପରି ମିଥ୍ୟା ପ୍ରତିପନ୍ନ କରୁଛନ୍ତି ଏହା ସେମାନେ ନିଶ୍ଚୟ ଦେଖି ପାରିବେ ।

୨. କାରଣ ସେମାନେ ଗ୍ରହ ନକ୍ଷତ୍ରର ପ୍ରଭାବକୁ ସ୍ୱୀକାର କରୁଥିଲେ ।

فَرَاغَ اِلٰٓى اٰلِهَتِهِمْ فَقَالَ اَلَا تَاْكُلُوْنَ ۝٩٢

୯୨. ଏବଂ ସେ ମଧ୍ୟ ସେମାନଙ୍କ (ତଥାକଥିତ) ଉପାସ୍ୟମାନଙ୍କ ନିକଟକୁ ଗୋପନରେ ଗଲେ ଏବଂ ସେମାନଙ୍କୁ ଦେଖି କହିଲେ, ''କ'ଣ ତୁମେମାନେ କିଛି ଖାଉ ନାହଁ ?''

مَا لَكُمْ لَا تَنْطِقُوْنَ ۝٩٣

୯୩. ''ତୁମମାନଙ୍କର (ଏପରି) କ'ଣ ହୋଇଛି ଯେ ତୁମେମାନେ କଥା କହୁନାହଁ ?''

فَرَاغَ عَلَيْهِمْ ضَرْبًا بِالْيَمِيْنِ ۝٩٤

୯୪. ଏହାପରେ ସେ ନୀରବରେ ନିଜ ଦକ୍ଷିଣ ହସ୍ତରେ ସେମାନଙ୍କୁ ସାଙ୍ଘାତିକ ପ୍ରହାର କରିଥିଲେ ।

فَاَقْبَلُوْٓا اِلَيْهِ يَزِفُّوْنَ ۝٩٥

୯୫. ଯେତେବେଳେ (ଲୋକମାନେ ଏହା ଜାଣିବାକୁ ପାଇଲେ) ସେମାନେ ତାହାଙ୍କ ନିକଟକୁ ଦୌଡ଼ି ଆସିଲେ ।

قَالَ اَتَعْبُدُوْنَ مَا تَنْحِتُوْنَ ۝٩٦

୯୬. (ଇବ୍ରାହିମ ସେମାନଙ୍କୁ) କହିଲେ, ''କ'ଣ ତୁମେମାନେ ସ୍ୱହସ୍ତରେ ଯାହା ଗଢ଼ିଅଛ ତାହାକୁ ପୂଜା କରୁଅଛ ?''

وَاللّٰهُ خَلَقَكُمْ وَمَا تَعْمَلُوْنَ ۝٩٧

୯୭. ''ଅଥଚ ଅଲ୍ଲାହ ତୁମମାନଙ୍କୁ ସୃଷ୍ଟି କରିଛନ୍ତି ଓ ତୁମମାନଙ୍କ କର୍ମକୁ[୧] ମଧ୍ୟ ।''

قَالُوا ابْنُوْا لَهٗ بُنْيَانًا فَاَلْقُوْهُ فِى الْجَحِيْمِ ۝٩٨

୯୮. ସେ ସମସ୍ତେ କହିଲେ, ''ଏହାଙ୍କ ଚତୁଃପାର୍ଶ୍ୱରେ ଏକ ପ୍ରାଚୀର ନିର୍ମାଣ କର ; (ଓ ଏଥିରେ ଅଗ୍ନି ସଂଯୋଗ କର) ତା'ପରେ ତାହାଙ୍କୁ ଏହି ଜ୍ୱଳନ୍ତ ଅଗ୍ନିରେ ନିକ୍ଷେପ କର ।''

فَاَرَادُوْا بِهٖ كَيْدًا فَجَعَلْنٰهُمُ الْاَسْفَلِيْنَ ۝٩٩

୯୯. ଏବଂ ସେମାନେ ତାହାଙ୍କ ବିରୁଦ୍ଧରେ ଏକ (ହୀନ) କୌଶଳ କରିବାକୁ ଇଚ୍ଛା କରିଥିଲେ, କିନ୍ତୁ ଆମେ ସେମାନଙ୍କୁ ଅତିଶୟ ଲାଞ୍ଛିତ କରାଇଥିଲୁ ।

وَقَالَ اِنِّىْ ذَاهِبٌ اِلٰى رَبِّىْ سَيَهْدِيْنِ ۝١٠٠

୧୦୦. ଏବଂ ଇବ୍ରାହିମ କହିଲେ, ''ଆମେ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଯିବୁ ; ସେ ନିଶ୍ଚୟ ଆମ୍ଭକୁ (ସଫଳତାର) ମାର୍ଗ ପ୍ରଦର୍ଶନ କରାଇବେ ।''

رَبِّ هَبْ لِىْ مِنَ الصّٰلِحِيْنَ ۝١٠١

୧୦୧. (ଏବଂ କହିଲେ), ''ହେ ଆମର ପାଳନକର୍ତ୍ତା ! ଆମ୍ଭକୁ ଧର୍ମନିଷ୍ଠ ସନ୍ତାନ ପ୍ରଦାନ କର ।''

فَبَشَّرْنٰهُ بِغُلٰمٍ حَلِيْمٍ ۝١٠٢

୧୦୨. ତା'ପରେ ଆମେ ତାହାଙ୍କୁ ଏକ ସୁଧୀର ପୁତ୍ର ସନ୍ତାନର ସୁସମାଚାର ଦେଇଥିଲୁ ।

---

୧. ମଣିଷର ସମସ୍ତ କର୍ମ ବାଧ୍ୟବାଧକତାର ବଶବର୍ତ୍ତୀ ଅଟେ ବୋଲି ଅର୍ଥ କରିବା ଯଥାର୍ଥ ନୁହେଁ, ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେଉଁ ହାତ ଓ ଯେଉଁ ଗୋଡ଼ ସାହାଯ୍ୟରେ ମଣିଷ ବିଭିନ୍ନ କର୍ମ ସମ୍ପାଦନ କରିଥାଏ ତା' ହେଉଛି ଅଲ୍ଲାହଙ୍କର ଦାନ. ଅନ୍ୟଥା ଯଦି ଅଲ୍ଲାହ କୌଣସି କାର୍ଯ୍ୟକୁ ବଳପୂର୍ବକ କରାଇବା ଚାହାନ୍ତେ ତେବେ ସମଗ୍ର ମାନବ ସମାଜ ସତ୍‌ପଥ ପ୍ରାପ୍ତ ହୁଅନ୍ତା । ପାପ କରିବାକୁ ସେ ଆଦୌ ବାଧ୍ୟ କରନ୍ତି ନାହିଁ । ଯେହେତୁ ବଳପୂର୍ବକ ସତ୍‌କର୍ମ କରାଇବା ଲାଭ-ଦାୟକ ନୁହେଁ ତେଣୁ ସେ ସତ୍‌କର୍ମ କରିବାକୁ ମଧ୍ୟ କାହାରିକୁ ବାଧ୍ୟ କରନ୍ତି ନାହିଁ ।

فَلَمَّا بَلَغَ مَعَهُ السَّعْيَ قَالَ يٰبُنَيَّ اِنِّيْۤ اَرٰى فِي الْمَنَامِ اَنِّيْۤ اَذْبَحُكَ فَانْظُرْ مَاذَا تَرٰى ؕ قَالَ يٰۤاَبَتِ افْعَلْ مَا تُؤْمَرُ ۫ سَتَجِدُنِيْۤ اِنْ شَآءَ اللّٰهُ مِنَ الصّٰبِرِيْنَ ﴿١٠٣﴾

୧୦୩. ତା'ପରେ ଯେତେବେଳେ ସେହି ପୁତ୍ର ତାହାଙ୍କ ସହିତ ଦ୍ରୁତଗତିରେ ଚାଲିବାକୁ ସକ୍ଷମ ହେଲେ, ସେତେବେଳେ ସେ କହିଲେ, "ହେ ଆମର ପୁତ୍ର ! ଆମେ ତୁମଙ୍କୁ ସ୍ୱପ୍ନରେ,[1] ଦେଖିଅଛୁ ଯେ (ଯେତେ ଯେପରି) ଆମେ ତୁମଙ୍କୁ ଜବେହ କରୁଅଛୁ ; ସୁତରାଂ ତୁମେ ନିଷ୍ପତ୍ତି କର ଯେ ଏ ବିଷୟରେ ତୁମର ମତାମତ କ'ଣ ?" (ଏହା ଶୁଣି ପୁତ୍ର) କହିଲେ, "ହେ ଆମର ପିତା ! ଯାହା କିଛି ତୁମଙ୍କୁ (ଅଲ୍ଲାହ୍‌ଙ୍କ ତରଫରୁ) ଆଦେଶ ହୋଇଛି ତାହା କର ; ଅଲ୍ଲାହ୍ ଇଚ୍ଛାକଲେ ତୁମେ ଆମଙ୍କୁ ନିଜ ବିଶ୍ୱାସରେ ଅଟଳ ରହିଥିବାର ଦେଖିପାରିବ ।"

فَلَمَّاۤ اَسْلَمَا وَتَلَّهٗ لِلْجَبِيْنِ ﴿١٠٤﴾

୧୦୪. ଏହାପରେ ଯେତେବେଳେ ସେ ଦୁହେଁ ଅଲ୍ଲାହ୍‌ଙ୍କର ଆନୁଗତ୍ୟ ପ୍ରକାଶ କରିବାକୁ ଆଗଭର ହେଲେ ଓ ସେ (ପିତା) ତାହାଙ୍କୁ (ଅର୍ଥାତ୍ ଆତ୍ମସମର୍ପଣକାରୀ ପୁତ୍ରଙ୍କୁ ଭୂମିରେ) ମୁହଁମାଡ଼ି ଶୁଆଇ ଦେଲେ ।[2]

وَنَادَيْنٰهُ اَنْ يّٰۤاِبْرٰهِيْمُ ﴿١٠٥﴾

୧୦୫. ଏବଂ ଆମେ ତାଙ୍କୁ (ଅର୍ଥାତ୍ ଇବ୍ରାହିମଙ୍କୁ) ଡାକି କହିଲୁ, "ହେ ଇବ୍ରାହିମ !"

قَدْ صَدَّقْتَ الرُّءْيَا ۚ اِنَّا كَذٰلِكَ نَجْزِي الْمُحْسِنِيْنَ ﴿١٠٦﴾

୧୦୬. "ତୁମେ ନିଶ୍ଚିତରୂପେ ନିଜର ସ୍ୱପ୍ନକୁ ସତ୍ୟ ସାବ୍ୟସ୍ତ କରିଅଛ ;" ଆମେ ହିତକାରୀମାନଙ୍କୁ ଏହିପରି ଭାବରେ ପୁରସ୍କାର[3] ଦେଇଥାଉ ।

اِنَّ هٰذَا لَهُوَ الْبَلٰٓؤُا الْمُبِيْنُ ﴿١٠٧﴾

୧୦୭. ଏହା ଅବଶ୍ୟ ଏକ ସୁସ୍ପଷ୍ଟ ପରୀକ୍ଷା ଥିଲା ।

---

୧. ଏହି ସ୍ୱପ୍ନର ପ୍ରକୃତ ଅର୍ଥ ହେଉଛି ଯେ ତାଙ୍କୁ ମକ୍କାର ମରୁ ଅଞ୍ଚଳରେ ଛାଡି ଦିଆଯିବ, ଯାହା ଏକ ପ୍ରକାର ମୃତ୍ୟୁ ସହିତ ସମାନ; ଯଦିଓ ଏହି ସ୍ୱପ୍ନ ଫଳ ଅକ୍ଷରେ ଅକ୍ଷରେ ସତ ହେଲା ତଥାପି ଛୁରୀରେ ଜବେହ କରାଯିବା ଆକ୍ଷରିକଭାବେ ପୂର୍ଣ୍ଣ ହେଲା ନାହିଁ ।

୨. ହଜରତ ଇସମାଇଲଙ୍କୁ ମକ୍କାର ମରୁ ଅଞ୍ଚଳରେ ଛାଡ଼ିଦେବା ମୃତ୍ୟୁ ମୁଖକୁ ଠେଲି ଦେବା ସଙ୍ଗେ ସମାନ । ହଜରତ ଇସମାଇଲଙ୍କୁ ଜବେହ କରାଯିବା ଉଭୟ ପବିତ୍ର କୋରାନ ଓ ବାଇବେଲରୁ ପ୍ରମାଣିତ ହେଉ ନାହିଁ । ବାଇବେଲରେ ଲେଖାଅଛି ଯେ ହଜରତ ଇବ୍ରାହିମ ଯେତେବେଳେ ହଜରତ ଇସମାଇଲଙ୍କୁ ଜବେହ କରିବାକୁ ଉଦ୍ୟତ ହେଲେ ସେତେବେଳେ ତାଙ୍କୁ ଏକ ଅଲୌକିକ ଶବ୍ଦ ଶୁଣାଗଲା – 'ହେ ଇବ୍ରାହିମ ! ବାଳକ ଉପରେ ନିଜ ହାତକୁ କାର୍ଯ୍ୟକାରୀ କରାଅ ନାହିଁ କି ତାହାକୁ ଅନ୍ୟ କିଛି କର ନାହିଁ, କାରଣ ଆମେ ଏବେ ଜାଣିଗଲୁ ଯେ ତୁମେ ଆମକୁ ଭୟ କରୁଅଛ ।' ଏହା ପରେ ଯେତେବେଳେ ହଜରତ ଇବ୍ରାହିମ ପଛକୁ ଚାହିଁଲେ ସେଠାରେ ଗୋଟିଏ ମେଣ୍ଢା ଥିବାର ଦେଖିଲେ ଓ ସେ ତାଙ୍କୁ ଇସମାଇଲଙ୍କ ବଦଳରେ ଜବେହ କଲେ (**Gen. 22: 11– 14** ଦ୍ରଷ୍ଟବ୍ୟ ।)

ହଜରତ ଇସମାଇଲଙ୍କୁ ଛୁରୀରେ ଜବେହ କରାଯିବା ସମ୍ବନ୍ଧରେ ହଦିସରେ ମଧ୍ୟ କୁତ୍ରାପି ବର୍ଣ୍ଣନା ନାହିଁ ବରଂ ଏତିକି ବର୍ଣ୍ଣନା କରାଯାଇଛି ଯେ ହଜରତ ଇବ୍ରାହିମ ତାଙ୍କୁ ଓ ତାଙ୍କ ମାଆଙ୍କୁ ମକ୍କାରେ ଛାଡ଼ି ଆସିଥିଲେ ଓ ଏହା ପରେ ଯେତେବେଳେ ହଜରତ ଇସମାଇଲ ବଡ଼ ହୋଇ ଶିକାର କରିବାକୁ ସମର୍ଥ ହେଲେ ସେତେବେଳେ ହଜରତ ଇବ୍ରାହିମ୍ ପାଲେଷ୍ଟାଇନରୁ ତାଙ୍କୁ ସାକ୍ଷାତ କରିବା ପାଇଁ ସେଠାକୁ ଯାଇଥିଲେ ।

୩. କୁର୍ବାନି (ଅର୍ଥାତ୍ ବଳିଦାନ) ପାଇଁ ପ୍ରସ୍ତୁତ ହୋଇଗଲେ ଏବଂ ଏହି ରୂପେ ଅଲ୍ଲାହ୍ ଫଳସ୍ୱରୂପ ସେମାନଙ୍କୁ ସାନ୍ନିଧ୍ୟ ଲାଭ କରିବାର ସୁଯୋଗ ଦେଇଥିଲେ । ଏହା ହିଁ ହିତକାରୀମାନଙ୍କ ପୁରସ୍କାର ।

୧୦୮. ଏବଂ ଆମେ ଏକ ମହାନ୍ କୁର୍ବାନି (ଅର୍ଥାତ୍ ବଳିଦାନ) ମାଧ୍ୟମରେ ଏହାଙ୍କର (ଅର୍ଥାତ୍ ହଜରତ ଇସମାଇଲଙ୍କର) ମୁକ୍ତି ମୂଲ୍ୟ[୧] ପ୍ରଦାନ କରିଥିଲୁ ।

وَفَدَيْنٰهُ بِذِبْحٍ عَظِيْمٍ ۝١٠٨

୧୦୯. ଏବଂ ପରବର୍ତ୍ତୀ ସମ୍ପ୍ରଦାୟମାନଙ୍କ ମଧ୍ୟରେ ତାହାଙ୍କ ସୁନାମ ବଜାୟ ରଖିଥିଲୁ ।

وَتَرَكْنَا عَلَيْهِ فِي الْاٰخِرِيْنَ ۝١٠٩

୧୧୦. ଇବ୍ରାହିମଙ୍କ ପ୍ରତି ଶାନ୍ତି ଅବତୀର୍ଣ୍ଣ ହେଉଥାଉ ।

سَلٰمٌ عَلٰٓى اِبْرٰهِيْمَ ۝١١٠

୧୧୧. ଆମେ ହିତକାରୀମାନଙ୍କୁ ଏହିପରି ଭାବରେ ପୁରସ୍କାର ଦେଇଥାଉ ।

كَذٰلِكَ نَجْزِي الْمُحْسِنِيْنَ ۝١١١

୧୧୨. ସେ ବାସ୍ତବରେ ଆମର ବିଶ୍ୱାସକାରୀ ଭକ୍ତମାନଙ୍କ ମଧ୍ୟରେ ଥିଲେ ।

اِنَّهٗ مِنْ عِبَادِنَا الْمُؤْمِنِيْنَ ۝١١٢

୧୧୩. ଏବଂ ଆମେ ତାହାଙ୍କୁ ଇସହାକଙ୍କ ବିଷୟରେ ସୁସମାଚାର ଦେଇଥିଲୁ ଯେ କି ନବି ଥିଲେ, ଓ ଧର୍ମନିଷ୍ଠମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ ।

وَبَشَّرْنٰهُ بِاِسْحٰقَ نَبِيًّا مِّنَ الصّٰلِحِيْنَ ۝١١٣

୧୧୪. ଏବଂ ଆମେ ତାହାଙ୍କ (ଅର୍ଥାତ୍ ଇବ୍ରାହିମଙ୍କ) ପ୍ରତି ଓ ଇସହାକଙ୍କ ପ୍ରତି ଆଶୀର୍ବାଦ ପ୍ରେରଣ କରିଥିଲୁ; ଏବଂ ସେମାନଙ୍କ ସନ୍ତାନସନ୍ତତିଙ୍କ ମଧ୍ୟରୁ କେତେକ ସମ୍ପୂର୍ଣ୍ଣ ଅନୁଗତ ଥିଲେ ଓ ଅନ୍ୟ କେତେକ ନିଜ ପ୍ରତି ପ୍ରକାଶ୍ୟରେ ଅନ୍ୟାୟ କରୁଥିଲେ ।

وَبٰرَكْنَا عَلَيْهِ وَعَلٰٓى اِسْحٰقَ ۭ وَمِنْ ذُرِّيَّتِهِمَا مُحْسِنٌ وَّظَالِمٌ لِّنَفْسِهٖ مُبِيْنٌ ۝١١٤ ع

ରୁ : ୪

୧୧୫. ବାସ୍ତବରେ ଆମେ ମୁସା ଓ ହାରୁନଙ୍କ ପ୍ରତି ମଧ୍ୟ କୃପା କରିଅଛୁ ।

وَلَقَدْ مَنَنَّا عَلٰى مُوْسٰى وَهٰرُوْنَ ۝١١٥

୧୧୬. ଏବଂ ଆମେ ସେ ଦୁହିଁଙ୍କୁ ତଥା ସେମାନଙ୍କ ସମ୍ପ୍ରଦାୟକୁ ଏକ ଘୋର ଦୁଃଖ ଓ ବୋଝରୁ ମୁକ୍ତି ଦେଇଥିଲୁ ।

وَنَجَّيْنٰهُمَا وَقَوْمَهُمَا مِنَ الْكَرْبِ الْعَظِيْمِ ۝١١٦

---

୧. ଇସ୍ରାଇଲୀୟମାନେ କହନ୍ତି ଯେ ବଳିଦାନ ପାଇଁ ହଜରତ ଇସହାକଙ୍କୁ ମନୋନୀତ କରାଯାଇଥିଲା, କାରଣ ସେ ବୟୋଜ୍ୟେଷ୍ଠ ଥିଲେ । କିନ୍ତୁ ଏ ସମ୍ବନ୍ଧରେ ପବିତ୍ର କୋରାନରେ ହଜରତ ଇସମାଇଲଙ୍କ ନାମ ଉଲ୍ଲେଖ କରାଯାଇଛି ଓ ତାହା ଯଥାର୍ଥ । ଜ୍ୟେଷ୍ଠ ପୁତ୍ରକୁ ବଳି ଦିଆଯିବା ବିଷୟରେ ତଥା ହଜରତ ଇସମାଇଲ ଜ୍ୟେଷ୍ଠ ପୁତ୍ର ହୋଇଥିବା ବିଷୟରେ ବାଇବେଲରେ ମଧ୍ୟ ଲେଖା ଅଛି । ଅତଏବ ଯେଉଁଠାରେ ବଳିଦାନ ସମ୍ବନ୍ଧରେ ଉଲ୍ଲେଖ ଅଛି ସେହି ସ୍ଥଳେ ଇସମାଇଲଙ୍କୁ ହିଁ ବୁଝିବାକୁ ହେବ । ତେଣୁ ଯେତେବେଳେ ହଜରତ ଇସମାଇଲ ବଳି ପଡିବାକୁ ନିଜେ ଆଗଭର ହେଲେ ସେତେବେଳେ ଯେହେତୁ ସ୍ୱପ୍ନର ପ୍ରକୃତ ଉଦ୍ଦେଶ୍ୟ ଇସମାଇଲଙ୍କୁ ଏକ ଶୁଷ୍କ ମରୁ ଅଞ୍ଚଳରେ ଛାଡି ଦିଆଯିବାର ଥିଲା ତେଣୁ ଅଲ୍ଲାହ ଇଲହାମ କରିଆରେ ଜଣାଇ ଦେଇଥିଲେ ଯେ ପ୍ରକାଶ୍ୟ ହତ୍ୟା ତୁଳନାରେ ମରୁ ଅଞ୍ଚଳରେ ଥାଇ ସର୍ବଦା ଆସନ୍ନ ମୃତ୍ୟୁକୁ ଅପେକ୍ଷା କରିବା ଏକ ପ୍ରକୃଷ୍ଟ 'ଫିଦିୟା' ବା ମୁକ୍ତି ମୂଲ୍ୟ ହେବ । ଅଲ୍ଲାହ ଆହୁରି ମଧ୍ୟ ଜଣାଇଥିଲେ ଯେ ଯଦି ପିତାପୁତ୍ର ଉଭୟ ଏହି ପ୍ରସ୍ତାବରେ ସମ୍ମତି ପ୍ରଦାନ କରିବେ ତେବେ ତାହା ସେମାନଙ୍କୁ ତାହାଙ୍କର ସାନ୍ନିଧ୍ୟ ଲାଭ କରିବା ପାଇଁ ଏକ ସୁଯୋଗ ଦେବ ଏବଂ ସେପରି ପରିସ୍ଥିତିରେ ହଜରତ ଇବ୍ରାହିମ ନିଜ ପୁତ୍ରଙ୍କୁ ଜବେହ କରିଥିବା ଓ ହଜରତ ଇସମାଇଲ ଜବେହ ହେବାକୁ ସମ୍ମତ ହୋଇଥିବା ବିବେଚିତ ହେବ । ଏହି ଆଦେଶର ଅନ୍ୟତମ ଉଦ୍ଦେଶ୍ୟ ହେଉଛି ଜଘନ୍ୟ ନରବଳି ପ୍ରଥାର ବିଲୋପ ।

وَنَصَرْنٰهُمْ فَكَانُوْا هُمُ الْغٰلِبِيْنَ ﴿١١٦﴾

୧୧୭. ଏବଂ ଆମେ ସେ ସମସ୍ତଙ୍କୁ ସାହାଯ୍ୟ କରିଥିଲୁ ଯାହା ଫଳରେ ସେମାନେ ଜୟଲାଭ କରିଥିଲେ ।

وَاٰتَيْنٰهُمَا الْكِتٰبَ الْمُسْتَبِيْنَ ﴿١١٧﴾

୧୧୮. ଏବଂ ଆମେ ସେମାନଙ୍କୁ ଏକ ପୂର୍ଣ୍ଣାଙ୍ଗ (ଧର୍ମ) ଗ୍ରନ୍ଥ ଦେଇଥିଲୁ ଯହିଁରେ ସକଳ ଆଦେଶ ସ୍ପଷ୍ଟଭାବରେ ବର୍ଣ୍ଣିତ ହୋଇଥିଲା ।

وَهَدَيْنٰهُمَا الصِّرَاطَ الْمُسْتَقِيْمَ ﴿١١٨﴾

୧୧୯. ଏବଂ ଆମେ ସେ ଦୁହିଁଙ୍କୁ ସରଳ ପଥ ପ୍ରଦର୍ଶନ କରାଇଥିଲୁ ।

وَتَرَكْنَا عَلَيْهِمَا فِي الْاٰخِرِيْنَ ﴿١١٩﴾

୧୨୦. ଏବଂ ପରବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ସେମାନଙ୍କ ସୁନାମ ବଜାୟ ରଖିଥିଲୁ ।

سَلٰمٌ عَلٰى مُوْسٰى وَهٰرُوْنَ ﴿١٢٠﴾

୧୨୧. ମୁସା ଓ ହାରୁନଙ୍କ ପ୍ରତି ସର୍ବଦା ଶାନ୍ତି (ବର୍ଷଣ) ହେଉଥାଉ ।

اِنَّا كَذٰلِكَ نَجْزِي الْمُحْسِنِيْنَ ﴿١٢١﴾

୧୨୨. ଆମେ ଏହିପରି ଭାବରେ ହିତକାରୀମାନଙ୍କୁ ପୁରସ୍କାର ଦେଇଥାଉ ।

اِنَّهُمَا مِنْ عِبَادِنَا الْمُؤْمِنِيْنَ ﴿١٢٢﴾

୧୨୩. ସେ ଦୁହେଁ ଆମର ବିଶ୍ୱାସକାରୀ ଭକ୍ତ ଥିଲେ ।

وَاِنَّ اِلْيَاسَ لَمِنَ الْمُرْسَلِيْنَ ﴿١٢٣﴾

୧୨୪. ଏବଂ ଇଲିୟାସ ବାସ୍ତବରେ ରସୁଲମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ ।

اِذْ قَالَ لِقَوْمِهٖٓ اَلَا تَتَّقُوْنَ ﴿١٢٤﴾

୧୨୫. (ସ୍ମରଣକର) ଯେତେବେଳେ ସେ ନିଜ ସମ୍ପ୍ରଦାୟକୁ କହି ଥିଲେ, ''କ'ଣ ତୁମେମାନେ (ଅଲ୍ଲାହଙ୍କୁ) ଭୟ କରୁନାହିଁ ?''

اَتَدْعُوْنَ بَعْلًا وَّتَذَرُوْنَ اَحْسَنَ الْخَالِقِيْنَ ﴿١٢٥﴾

୧୨୬. ''କ'ଣ ତୁମେମାନେ ବା'ଲ (ଠାକୁର)ଙ୍କୁ ଡାକୁଅଛ ? ଏବଂ ସେହି ସର୍ବୋତ୍ତମ ସ୍ରଷ୍ଟାଙ୍କୁ ପରିତ୍ୟାଗ କରୁଅଛ ?''

اللّٰهَ رَبَّكُمْ وَرَبَّ اٰبَآئِكُمُ الْاَوَّلِيْنَ ﴿١٢٦﴾

୧୨୭. ''ଯେ ତୁମମାନଙ୍କର ପାଳନକର୍ତ୍ତା ଓ ତୁମମାନଙ୍କ ପିତୃପିତାମହଙ୍କର ମଧ୍ୟ ପାଳନକର୍ତ୍ତା ।''

فَكَذَّبُوْهُ فَاِنَّهُمْ لَمُحْضَرُوْنَ ﴿١٢٧﴾

୧୨୮. (ଏହା ଶୁଣି) ସେମାନଙ୍କ ସମ୍ପ୍ରଦାୟ ତାହାଙ୍କୁ ମିଥ୍ୟାବାଦୀ ବୋଲି କହି ଥିଲେ ; ସୁତରାଂ ସେମାନଙ୍କୁ ଶାସ୍ତି (ପାଇବା) ପାଇଁ ହାଜର କରାହେବ ।

اِلَّا عِبَادَ اللّٰهِ الْمُخْلَصِيْنَ ﴿١٢٨﴾

୧୨୯. (ଅବଶ୍ୟ) ଅଲ୍ଲାହଙ୍କର ପ୍ରକୃତ ଭକ୍ତମାନଙ୍କ ବ୍ୟତୀତ ; (ଯାହାଙ୍କ ପ୍ରତି ଶାସ୍ତି ବିଧାନ କରାହେବ ନାହିଁ) ।

وَتَرَكْنَا عَلَيْهِ فِي الْاٰخِرِيْنَ ﴿١٢٩﴾

୧୩୦. ଏବଂ ଆମେ ପରବର୍ତ୍ତୀ ଲୋକମାନଙ୍କ ମଧ୍ୟରେ ତାହାଙ୍କର (ଅର୍ଥାତ୍ ଇଲିୟାସଙ୍କର) ସୁନାମ ବଜାୟ ରଖିଥିଲୁ ।

سَلٰمٌ عَلٰٓى اِلْ يَاسِيْنَ ۝١٣١

୧୩୧. ଇଲିୟାସ ସମୂହଙ୍କ [୧] ପ୍ରତି ସଦା ସର୍ବଦା ଶାନ୍ତି (ବର୍ଷଣ) ହେଉଥାଉ ।

اِنَّا كَذٰلِكَ نَجْزِى الْمُحْسِنِيْنَ ۝١٣٢

୧୩୨. ଆମେ ଏହିପରି ଭାବରେ ହିତକାରୀମାନଙ୍କୁ ପୁରସ୍କାର ଦେଇଥାଉ ।

اِنَّهٗ مِنْ عِبَادِنَا الْمُؤْمِنِيْنَ ۝١٣٣

୧୩୩. ସେ (ଅର୍ଥାତ୍ ପ୍ରଥମ ଇଲିୟାସ) ଆମର ବିଶ୍ୱାସକାରୀ ଭକ୍ତମାନଙ୍କ ମଧ୍ୟରେ ଥିଲେ ।

وَاِنَّ لُوْطًا لَّمِنَ الْمُرْسَلِيْنَ ۝١٣٤

୧୩୪. ଏବଂ ଲୁତ ମଧ୍ୟ ବାସ୍ତବରେ ରସୁଲମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ ।

اِذْ نَجَّيْنٰهُ وَاَهْلَهٗٓ اَجْمَعِيْنَ ۝١٣٥
اِلَّا عَجُوْزًا فِى الْغٰبِرِيْنَ ۝١٣٦

୧୩୫ / ୧୩୬. (ଅତଏବ ସେହି ସମୟକୁ ସ୍ମରଣକର) ଯେତେବେଳେ ଆମେ ତାହାଙ୍କୁ ଓ ତାହାଙ୍କ ପରିବାରବର୍ଗଙ୍କୁ (କେବଳ) ଜଣେ ବୃଦ୍ଧାଙ୍କ ବ୍ୟତୀତ ଯେ କି ପଛରେ ରହିଯାଉଥିବା (ଲୋକ)ମାନଙ୍କ ମଧ୍ୟରେ (ସାମିଲ) ଥିଲା, ମୁକ୍ତି ପ୍ରଦାନ କରିଥିଲୁ ।

ثُمَّ دَمَّرْنَا الْاٰخَرِيْنَ ۝١٣٧

୧୩୭. ଏହାପରେ ଆମେ ଅବଶିଷ୍ଟ (ଲୋକ)ଙ୍କୁ ଧ୍ୱଂସ କରିଦେଲୁ ।

وَاِنَّكُمْ لَتَمُرُّوْنَ عَلَيْهِمْ مُّصْبِحِيْنَ ۝١٣٨
وَبِالَّيْلِ ۗ اَفَلَا تَعْقِلُوْنَ ۝١٣٩ ع

୧୩୮ / ୧୩୯. ଏବଂ ତୁମେମାନେ କେବେ କେବେ ସକାଳେ ଓ ଅନ୍ୟ କେବେ ସନ୍ଧ୍ୟାରେ ସେମାନଙ୍କ (ଧ୍ୱଂସାବଶେଷ) ପାର୍ଶ୍ୱ ଦେଇ ଯାତାୟାତ [୨] କରୁଥାଅ ; କ'ଣ ତଥାପି ତୁମେମାନେ ବୁଝିପାରୁ ନାହଁ ?

ରୁ : ୫

وَاِنَّ يُوْنُسَ لَمِنَ الْمُرْسَلِيْنَ ۝١٤٠

୧୪୦. ଏବଂ ୟୁନୁସ ମଧ୍ୟ ବାସ୍ତବରେ ରସୁଲମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ ।

اِذْ اَبَقَ اِلَى الْفُلْكِ الْمَشْحُوْنِ ۝١٤١

୧୪୧. (ସ୍ମରଣକର) ଯେତେବେଳେ ସେ ପଳାୟନ କରି ଏପରି ଏକ ନୌକା ନିକଟକୁ ଗଲେ ଯାହା ବୋଝେଇ [୩] ହୋଇ ସାରିଥିଲା ।

---

୧. ମୂଳ ଶବ୍ଦ 'ଇଲ୍‌ୟାସିନ୍' ଇଲିୟାସ ଶବ୍ଦର ବହୁବଚନ । ଇସଲାମୀୟ ଓ ଇସ୍ରାଇଲୀୟ ସାହିତ୍ୟରୁ ପ୍ରତୀତ ହେଉଛି ଯେ ତିନିଜଣ ଇଲିୟାସ ଥିଲେ: ଜଣେ ହଜରତ ମୁସାଙ୍କ ପୂର୍ବରୁ; ଜଣେ ହଜରତ ଯହିୟା, ଯେ କି ଭବିଷ୍ୟବାଣୀରେ ଇଲିୟାସ ନାମରେ ପରିଚିତ **(Matt. 11: 13–14** ଦ୍ରଷ୍ଟବ୍ୟ) ଓ ଅନ୍ୟ ଜଣେ ହଜରତ ସୟଦ ଅହମଦ ବରେଲୁଇ । ଯହିୟାଙ୍କୁ ଦ୍ୱିତୀୟ ଇଲିୟାସ ରୂପେ ମଧ୍ୟ ହଜରତ ଇସା ବର୍ଣ୍ଣନା କରିଛନ୍ତି । ଶେଷ ଇଲିୟାସ ମସିହ ମଉଦଙ୍କ ସମୟରେ ଆବିର୍ଭାବ ହେବା ବିଧି ନିର୍ଦ୍ଦିଷ୍ଟ ଥିଲା । ଯେପରି ହଜରତ ଇସାଙ୍କ ସକାଶେ ଯହିୟା, ସେହିପରି ମସିହ ମଉଦଙ୍କ ସକାଶେ ସୟଦ ଅହମଦ ବରେଲୁଇ, ଯାହାଙ୍କର କବର ହଜାରା ଜିଲା ଅନ୍ତର୍ଗତ ବାଲାକୋଟଠାରେ ଅବସ୍ଥିତ ।

୨. ୧୫:୭୭ ର ଟୀକା ଦ୍ରଷ୍ଟବ୍ୟ ।

୩. ୨୬:୧୨୦ ର ଟୀକା ଦ୍ରଷ୍ଟବ୍ୟ ।

فَسَاهَمَ فَكَانَ مِنَ الْمُدْحَضِينَ

୧୪୨. (ଏବଂ ସେମାନଙ୍କୁ ଝଡ଼ କବଳିତ କରିଥିଲା ଓ ସେମାନେ ଜଳମଗ୍ନ ହେବାର ଆଶଙ୍କା ଦେଖାଦେଲା), ସେତେବେଳେ ସେମାନେ (ଅନ୍ୟାନ୍ୟ ଆରୋହୀଙ୍କ ସହିତ ମିଶି) ଧର୍ମଗୁଳା ପକାଇଲେ, ଏବଂ (ଧର୍ମଗୁଳା ଜରିଆରେ ତାହାଙ୍କ ନାମ ବାହାରିବାରୁ ତଦନୁସାରେ) ତାହାଙ୍କୁ ଜଳରେ ନିକ୍ଷିପ୍ତ [୧] କରାଯିବାର (ସ୍ଥିର) ହେଲା ।

فَالْتَقَمَهُ الْحُوتُ وَهُوَ مُلِيمٌ

୧୪୩. ଏହାପରେ ସେ ନିଜକୁ ଭର୍ତ୍ସନା କରୁଥିବା ବେଳେ ତାହାଙ୍କୁ ଏକ ବଡ଼ ମାଛ ଗିଳିଦେଲା ।

فَلَوْلَا أَنَّهُ كَانَ مِنَ الْمُسَبِّحِينَ

୧୪୪. ଏବଂ ଯଦି ସେ (ଅଲ୍ଲାହ୍‌ଙ୍କର) ଗୁଣଗାନ କରୁଥିବା ଲୋକମାନଙ୍କ ମଧ୍ୟରେ ନ ଥାଆନ୍ତେ,

لَلَبِثَ فِي بَطْنِهِ إِلَىٰ يَوْمِ يُبْعَثُونَ

୧୪୫. ତେବେ ସେହି ମାଛ ପେଟରେ କୟାମତ ପର୍ଯ୍ୟନ୍ତ ପଡ଼ି ରହିଥା'ନ୍ତେ (ଅର୍ଥାତ୍ ମରି ଯାଇଥା'ନ୍ତେ) ।

فَنَبَذْنَاهُ بِالْعَرَاءِ وَهُوَ سَقِيمٌ

୧୪୬. ଏହାପରେ ଆମେ ତାହାଙ୍କୁ ଏକ ଖୋଲା ପଡ଼ିଆରେ ନିକ୍ଷିପ୍ତ [୨] କରିଥିଲୁ, ସେତେବେଳେ ସେ ପୀଡ଼ିତ ଥିଲେ ।

وَأَنْبَتْنَا عَلَيْهِ شَجَرَةً مِنْ يَقْطِينٍ

୧୪୭. ଏବଂ ଆମେ ତାହାଙ୍କ ପାର୍ଶ୍ୱରେ ଏକ ଲାଉ ଗଛ ଉତ୍ପନ୍ନ କରିଥିଲୁ ।

وَأَرْسَلْنَاهُ إِلَىٰ مِائَةِ أَلْفٍ أَوْ يَزِيدُونَ

୧୪୮. ଏବଂ ଆମେ ତାହାଙ୍କୁ ଏକ ଲକ୍ଷରୁ କିଞ୍ଚିତ୍ ଅଧିକ ଲୋକଙ୍କ ନିକଟକୁ ରସୁଲ ରୂପେ ପ୍ରେରଣ କରିଥିଲୁ ;

فَآمَنُوا فَمَتَّعْنَاهُمْ إِلَىٰ حِينٍ

୧୪୯. ଏବଂ ସେମାନେ ସମସ୍ତେ ବିଶ୍ୱାସ କରିଥିଲେ ; ଏବଂ ଆମେ ସେମାନଙ୍କୁ [୩] ଦୀର୍ଘକାଳ ପର୍ଯ୍ୟନ୍ତ ପାର୍ଥିବ ଲାଭ ପ୍ରଦାନ କରିଥିଲୁ ।

---

୧. ହଜରତ ୟୁନୁସ ନିନେଭାବାସୀଙ୍କ ନିକଟକୁ ଅବତାର ରୂପେ ପ୍ରେରିତ ହୋଇଥିଲେ କିନ୍ତୁ ସେମାନେ ତାଙ୍କୁ ଅସ୍ୱୀକାର କରିଥିଲେ । ତେଣୁ ଅଲ୍ଲାହ୍‌ଙ୍କଠାରୁ ସୂଚନା ପାଇ ସେମାନଙ୍କ ସର୍ବନାଶ ବିଷୟରେ ଭବିଷ୍ୟବାଣୀ ଶୁଣାଇଥିଲେ ଓ ନିଜେ ସେଠାରୁ ଚାଲି ଗଲେ । ଏହାପରେ ସର୍ବନାଶର କେତେକ ଲକ୍ଷଣ ଦୃଷ୍ଟିଗୋଚର ହେବାରୁ ସେଠାକାର ଲୋକମାନେ ଭୟଭୀତ ହୋଇ ତାଙ୍କୁ ସ୍ୱୀକାର କରିଥିଲେ । ଏଥିଯୋଗୁଁ ଅଲ୍ଲାହ୍ ସେମାନଙ୍କ ନିକଟରୁ ଆସନ୍ନ ଶାସ୍ତିକୁ ଅପସାରଣ କରି ଦେଇଥିଲେ ।

ମନେ ରଖିବାକୁ ହେବ ଯେ ଭୀତିପ୍ରଦ ଭବିଷ୍ୟବାଣୀରେ ତାହା ସାଧାରଣ ଭାବରେ ସର୍ତ୍ତହୀନ ଥିଲେ ମଧ୍ୟ ତଥାପି ସେଥିରେ କେତେକ ସର୍ତ୍ତ ଲୁକ୍କାୟିତ ଥାଏ,ଫଳରେ ଭୟର ପ୍ରଭାବ ଅଧିକ ହେବ ଓ ମଣିଷ ଅଲ୍ଲାହ୍‌ଙ୍କ ନିକଟରେ ବିନମ୍ରତାପୂର୍ବକ ଅବନତ ହେବ ।

ହଜରତ ୟୁନୁସ ଯେଉଁ ନୌକାରେ ନଦୀ ପାରି ହେଉଥିଲେ ସେହି ନଦୀରେ ବନ୍ୟାଜଳ ମାଡ଼ି ଆସିବାରୁ ନୌକାଟି ବୁଡ଼ି ଯିବାର ଆଶଙ୍କା ହୋଇଥିଲା । ତେଣୁ ନୌକାରୋହୀମାନେ ଭାଗ୍ୟଗୁଳା ପକାଇଲେ ଓ ଯୋଗକୁ ହଜରତ ୟୁନୁସଙ୍କ ନାମ ଉଠିଲା । ଏହାରି ଭିତ୍ତିରେ ପରମ୍ପରା ଅନୁସାରେ ତାଙ୍କୁ ନଦୀ ଭିତରକୁ ଫିଙ୍ଗି ଦିଆଗଲା । ଅନନ୍ତର ହଜରତ ୟୁନୁସଙ୍କୁ ଗୋଟିଏ ମାଛ ଗିଳି ଦେଲା । ତିନି ଦିନ ପରେ ସେହି ମାଛ ତାଙ୍କୁ ନଦୀ ତଟରେ ଏକ ବିଶାଳ ପ୍ରାନ୍ତରରେ ବମନ କରିଥିଲା ଓ ସେ ଜୀବିତ ଥିଲେ । କିଛିଦିନ ପରେ ସେ ନିଜ ଜାତିର ଲୋକମାନଙ୍କ ପାଖକୁ ଲେଉଟି ଆସିଲେ । ସେମାନେ ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ସାରିଥିଲେ । ତେଣୁ ସେ ସେମାନଙ୍କୁ ଉପଦେଶ ଦେବାକୁ ଲାଗିଲେ ।

୨. ଅର୍ଥାତ୍ ମାଛ ମନରେ ହଜରତ ୟୁନୁସଙ୍କୁ ବାନ୍ତି କରି ସ୍ଥଳଭାଗରେ ଫିଙ୍ଗି ଦେବାପାଇଁ ଏକ ଭାବନା ଉଦ୍ରେକ କରାଗଲା ।

୩. ଅର୍ଥାତ୍ ବିଶ୍ୱାସକାରୀଙ୍କୁ ।

୧୫୦. ସୁତରାଂ ତୁମେ ସେମାନଙ୍କୁ[1] ପଚାର, "କ'ଣ ତୁମମାନଙ୍କ ପାଳନକର୍ତ୍ତାଙ୍କର (କେବଳ) କନ୍ୟା ଅଛନ୍ତି ଓ ସେମାନଙ୍କର (କେବଳ) ପୁତ୍ର ଅଛନ୍ତି ?"

فَاسْتَفْتِهِمْ اَلِرَبِّكَ الْبَنَاتُ وَلَهُمُ الْبَنُوْنَ ﴿١٥٠﴾

୧୫୧. କ'ଣ ଆମେ (ଦେବ)ଦୂତମାନଙ୍କୁ ନାରୀ ରୂପେ ସୃଷ୍ଟି କରିଅଛୁ ? ଓ ସେମାନେ ସେମାନଙ୍କ ସୃଷ୍ଟି ସମ୍ବନ୍ଧରେ ସାକ୍ଷୀ ଅଛନ୍ତି ?

اَمْ خَلَقْنَا الْمَلٰٓئِكَةَ اِنَاثًا وَّهُمْ شٰهِدُوْنَ ﴿١٥١﴾

୧୫୨. ମନ ଦେଇ ଶୁଣ, ସେମାନେ ନିଜ ମନଗଢ଼ା ମିଥ୍ୟା ଯୋଗୁଁ ଏପରି କହୁଛନ୍ତି

اَلَآ اِنَّهُمْ مِّنْ اِفْكِهِمْ لَيَقُوْلُوْنَ ﴿١٥٢﴾

୧୫୩. ଯେ ଅଲ୍ଲାହଙ୍କର ମଧ୍ୟ ସନ୍ତାନସନ୍ତତି ଅଛନ୍ତି ; କିନ୍ତୁ ସେମାନେ ବାସ୍ତବରେ ମିଥ୍ୟାବାଦୀ ।

وَلَدَ اللّٰهُ وَاِنَّهُمْ لَكٰذِبُوْنَ ﴿١٥٣﴾

୧୫୪. କ'ଣ ସେ ପୁତ୍ରମାନଙ୍କୁ ପରିତ୍ୟାଗ କରି କନ୍ୟାମାନଙ୍କୁ ମନୋନୀତ କରିଛନ୍ତି ?[2]

اَصْطَفَى الْبَنَاتِ عَلَى الْبَنِيْنَ ﴿١٥٤﴾

୧୫୫. ତୁମମାନଙ୍କର କ'ଣ ହୋଇଛି ଯେ ତୁମେମାନେ ଏପରି ନିର୍ବୋଧତା ପୂର୍ଣ୍ଣ ବିଚାର କରୁଅଛ ?

مَا لَكُمْ كَيْفَ تَحْكُمُوْنَ ﴿١٥٥﴾

୧୫୬. କ'ଣ ତୁମେମାନେ ବୁଝିପାରୁନାହିଁ ?

اَفَلَا تَذَكَّرُوْنَ ﴿١٥٦﴾

୧୫୭. କ'ଣ ତୁମମାନଙ୍କ ନିକଟରେ କୌଣସି ସ୍ପଷ୍ଟ ପ୍ରମାଣ ଅଛି ?

اَمْ لَكُمْ سُلْطٰنٌ مُّبِيْنٌ ﴿١٥٧﴾

୧୫୮. ଯଦି ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ ନିଜର ସେହି (ଧର୍ମ) ଗ୍ରନ୍ଥ ଆଣ, ଯହିଁରେ ଏହା ଲିପିବଦ୍ଧ ଅଛି ।

فَاْتُوْا بِكِتٰبِكُمْ اِنْ كُنْتُمْ صٰدِقِيْنَ ﴿١٥٨﴾

୧୫୯. ଏବଂ ସେମାନେ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ) ଓ ଜିନ୍ନମାନଙ୍କ ମଧ୍ୟରେ ଜ୍ଞାତି ସମ୍ପର୍କ ସ୍ଥାପନ କରୁଛନ୍ତି, ଅଥଚ ଜିନ୍ନ ପଦବାଚ୍ୟ ସମ୍ପ୍ରଦାୟ ଏହା ଭଲରୂପେ ଜାଣନ୍ତି ଯେ (ସତ୍‌ପଥ ଅନୁସରଣ ନ କଲେ) ସେମାନଙ୍କୁ ମଧ୍ୟ (ଅଲ୍ଲାହଙ୍କ ନିକଟରେ ଶାସ୍ତି ଭୋଗ କରିବାକୁ) ପେଶ କରାହେବ ।

وَجَعَلُوْا بَيْنَهٗ وَبَيْنَ الْجِنَّةِ نَسَبًا ۗ وَلَقَدْ عَلِمَتِ الْجِنَّةُ اِنَّهُمْ لَمُحْضَرُوْنَ ﴿١٥٩﴾

---

୧. ଅର୍ଥାତ୍ ମକ୍କାର ଅବିଶ୍ୱାସକାରୀଙ୍କୁ ।

୨. ପୂର୍ବ ଆୟତରେ କୁହାଯାଇଛି, ଅବିଶ୍ୱାସକାରୀମାନେ ସ୍ଥିର କରି ସାରିଥିଲେ ଯେ ଅଲ୍ଲାହଙ୍କର ମଧ୍ୟ ପୁତ୍ର କନ୍ୟା ଅଛନ୍ତି । ପବିତ୍ର କୋରାନ-ର ବହୁସ୍ଥାନରେ ଉଲ୍ଲେଖ ଅଛି ଯେ ସେମାନେ ଅଲ୍ଲାହଙ୍କର କନ୍ୟା ଥିବା କହିଛନ୍ତି ଅର୍ଥାତ୍ ଦେବାଦେବୀ ଓ ଦେବଦୂତମାନଙ୍କୁ ଅଲ୍ଲାହଙ୍କର କନ୍ୟା ସ୍ଥିର କରିଛନ୍ତି । କିନ୍ତୁ ଏଠାରେ ଏକ ବିପରୀତ କଥା ଉଲ୍ଲେଖ ଅଛି । ଏହା ବିରୋଧାତ୍ମକ ନୁହେଁ । ବିଭିନ୍ନ ଶ୍ରେଣୀର ଅବିଶ୍ୱାସକାରୀ ଅଛନ୍ତି । ଖ୍ରୀଷ୍ଟିୟାନମାନେ ଯୀଶୁଙ୍କୁ ଓ ଇହୁଦୀମାନେ ଉଜେରଙ୍କୁ ଅଲ୍ଲାହଙ୍କର ପୁତ୍ର ସ୍ଥିର କରିଛନ୍ତି । ଭାରତ ଓ ଆରବର ପୌତ୍ତଳିକମାନେ ତାଙ୍କର କନ୍ୟା ଥିବା କହିଥା'ନ୍ତି । ଯେହେତୁ କେତେକ ପୁତ୍ର ଓ ଅନ୍ୟ କେତେକ କନ୍ୟା ସ୍ଥିର କରିଛନ୍ତି ତେଣୁ ଉଭୟଙ୍କୁ ରଦ କରିବା ସକାଶେ ଅନ୍ୟ ଆୟତରେ କୁହାଯାଇଛି ଯେ ସେମାନେ ପୁତ୍ର ବିଷୟ କହନ୍ତୁ ପଛେ, ଅବଶ୍ୟ ଏତିକି ମାନିଛନ୍ତି ଯେ ତାଙ୍କ ଘରେ ଉଭୟ ପୁତ୍ର ଓ କନ୍ୟା ଜନ୍ମ ହୋଇଛନ୍ତି । ଅଥଚ କୋରାନର ଉକ୍ତି ଅନୁଯାୟୀ ଯେତେବେଳେ ଅବିଶ୍ୱାସକାରୀମାନଙ୍କର ଗୋଟିଏ ମାତ୍ର କନ୍ୟା ଜନ୍ମ ହୁଏ – ଅନେକ ପୁତ୍ର ଥିଲେ ମଧ୍ୟ ସେମାନଙ୍କ ମୁହଁ କଳା ପଡିଯାଏ ।

سُبْحٰنَ اللّٰهِ عَمَّا يَصِفُوْنَ ﴿١٦٠﴾

୧୬୦. ସେମାନେ ଯାହା କିଛି ବର୍ଣ୍ଣନା କରୁଛନ୍ତି ଅଲ୍ଲାହ ତହିଁରୁ ପବିତ୍ର (ଅର୍ଥାତ୍ ଦେବଦୂତମାନେ ଅଲ୍ଲାହଙ୍କର କନ୍ୟା ନୁହନ୍ତି, ବରଂ ତାହାଙ୍କର ଉପାସନାକାରୀ ଭକ୍ତ)।

اِلَّا عِبَادَ اللّٰهِ الْمُخْلَصِيْنَ ﴿١٦١﴾

୧୬୧. ଅଲ୍ଲାହଙ୍କର ମନୋନୀତ ଭକ୍ତମାନଙ୍କ ବ୍ୟତୀତ (ଯେଉଁମାନେ ଏପରି କହନ୍ତି ନାହିଁ) ।

فَاِنَّكُمْ وَمَا تَعْبُدُوْنَ ﴿١٦٢﴾

୧୬୨. ସୁତରାଂ ତୁମେମାନେ ଓ ତୁମେମାନେ ଯାହାଙ୍କର ଉପାସନା କରୁଅଛ ସେମାନେ,

مَاۤ اَنْتُمْ عَلَيْهِ بِفٰتِنِيْنَ ﴿١٦٣﴾

୧୬୩. ଅଲ୍ଲାହଙ୍କ ବିରୁଦ୍ଧରେ କାହାରିକୁ ବିଭ୍ରାନ୍ତ କରିପାରିବ ନାହିଁ ।

اِلَّا مَنْ هُوَ صَالِ الْجَحِيْمِ ﴿١٦٤﴾

୧୬୪. କେବଳ ସେହି ହତଭାଗ୍ୟ ବ୍ୟତୀତ, ଯେ କି ନରକଗାମୀ ହେବ ।

وَمَا مِنَّاۤ اِلَّا لَهٗ مَقَامٌ مَّعْلُوْمٌ ﴿١٦٥﴾

୧୬୫. ଏବଂ ଆମ ସମସ୍ତଙ୍କ ସକାଶେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ରହିଅଛି ।

وَّاِنَّا لَنَحْنُ الصَّاۤفُّوْنَ ﴿١٦٦﴾

୧୬୬. ଏବଂ ଆମେ ସମସ୍ତେ [1] (ଅଲ୍ଲାହଙ୍କ ସମ୍ମୁଖରେ ) ଧାଡ଼ି ବାନ୍ଧି ଠିଆ ହୋଇଅଛୁ ।

وَاِنَّا لَنَحْنُ الْمُسَبِّحُوْنَ ﴿١٦٧﴾

୧୬୭. ଏବଂ ଆମେ ସମସ୍ତେ (ଅଲ୍ଲାହଙ୍କର) ପ୍ରଶଂସା ଗାନ କରୁ ।

وَاِنْ كَانُوْا لَيَقُوْلُوْنَ ﴿١٦٨﴾

୧୬୮. ଏବଂ ଏକଦା ଏହି (ମକ୍‌କାବାସୀ)ମାନେ କହୁଥିଲେ ଯେ,

لَوْ اَنَّ عِنْدَنَا ذِكْرًا مِّنَ الْاَوَّلِيْنَ ﴿١٦٩﴾

୧୬୯. ଯଦି ଆମମାନଙ୍କ ନିକଟକୁ ମଧ୍ୟ ପୂର୍ବବର୍ତ୍ତୀ ସମ୍ପ୍ରଦାୟଙ୍କ ଭଳି ରସୁଲ [2] ଆସନ୍ତେ,

لَكُنَّا عِبَادَ اللّٰهِ الْمُخْلَصِيْنَ ﴿١٧٠﴾

୧୭୦. ତେବେ ଆମେମାନେ ମଧ୍ୟ ଅଲ୍ଲାହଙ୍କର ମନୋନୀତ ଭକ୍ତ ହୋଇଯାଆନ୍ତୁ ।

فَكَفَرُوْا بِهٖ فَسَوْفَ يَعْلَمُوْنَ ﴿١٧١﴾

୧୭୧. ସୁତରାଂ ସେମାନେ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହଙ୍କୁ) ପ୍ରତ୍ୟାଖ୍ୟାନ କଲେ ; ଅତଏବ ଶୀଘ୍ର ସେମାନେ ନିଜର ପରିଣାମ ଜାଣିପାରିବେ ।

وَلَقَدْ سَبَقَتْ كَلِمَتُنَا لِعِبَادِنَا الْمُرْسَلِيْنَ ﴿١٧٢﴾

୧୭୨. ଏବଂ ଆମର ଭକ୍ତ ଅର୍ଥାତ୍ ଆମର ରସୁଲମାନଙ୍କ ସକାଶେ ଆମର ନିଷ୍ପତ୍ତି ପ୍ରଥମରୁ କରି ଦିଆଯାଇଛି ,

---

୧. ଅର୍ଥାତ୍ ହଜରତ ମହମ୍ମଦ ଓ ତାହାଙ୍କ ସାଥୀମାନେ, ଯେଉଁମାନେ କି ସାମୂହିକ ନମାଜ ପାଠ କରୁଥିଲେ ।

୨. ପବିତ୍ର କୋରାନରେ ମୂଳ ଶବ୍ଦ 'ଜିକିର୍' ରସୁଲ ଅର୍ଥରେ ମଧ୍ୟ ଆସିଛି ( ୬୫ : ୧୨ ଦ୍ରଷ୍ଟବ୍ୟ) ।

| | |
|---|---|
| ୧୭୩. (ତା'ହେଉଛି) ଯେ ସେମାନଙ୍କୁ ସାହାଯ୍ୟ କରାଯିବ ; | إِنَّهُمْ لَهُمُ الْمَنصُورُونَ ﴿١٧٣﴾ |
| ୧୭୪. ଏବଂ ଆମର ସୈନ୍ୟବାହିନୀ (ଅର୍ଥାତ୍ ବିଶ୍ୱାସକାରୀଙ୍କ ଗୋଷ୍ଠୀ) ହିଁ ଜୟଲାଭ କରିବ । | وَإِنَّ جُندَنَا لَهُمُ الْغَالِبُونَ ﴿١٧٤﴾ |
| ୧୭୫. ସୁତରାଂ ତୁମେ କିଛିକାଳ ପାଇଁ ସେମାନଙ୍କ ଠାରୁ ମୁହଁ ଫେରାଇ ନିଅ । | فَتَوَلَّ عَنْهُمْ حَتَّىٰ حِينٍ ﴿١٧٥﴾ |
| ୧୭୬. ଏବଂ ସେମାନଙ୍କୁ ଭଲ ଭାବରେ ନିରୀକ୍ଷଣ କରୁଥାଅ ; ସେମାନେ ମଧ୍ୟ ଶୀଘ୍ର (ନିଜର ପରିଣାମ) ଦେଖି ପାରିବେ । | وَأَبْصِرْهُمْ فَسَوْفَ يُبْصِرُونَ ﴿١٧٦﴾ |
| ୧୭୭. କ'ଣ ଏହି ଲୋକମାନେ ଆମର ଶାସ୍ତି ଶୀଘ୍ର ଚାହୁଛନ୍ତି ? | أَفَبِعَذَابِنَا يَسْتَعْجِلُونَ ﴿١٧٧﴾ |
| ୧୭୮. ସୁତରାଂ ଯେତେବେଳେ ତାହା ସେମାନଙ୍କ ଅଗଣାରେ ଅବତରଣ କରିବ, ସେତେବେଳେ ଯେଉଁ ସମ୍ପ୍ରଦାୟକୁ ଭୟଭୀତ କରାଯାଇଛି ସେମାନଙ୍କର ପ୍ରଭାତ ଅତିଶୟ ଦୁଃଖଦାୟକ ହେବ । | فَإِذَا نَزَلَ بِسَاحَتِهِمْ فَسَاءَ صَبَاحُ الْمُنذَرِينَ ﴿١٧٨﴾ |
| ୧୭୯. ଏବଂ (ଆମେ ପୁନଶ୍ଚ କହୁଅଛୁ ଯେ) କିଛିକାଳ ପର୍ଯ୍ୟନ୍ତ ସେମାନଙ୍କ ଠାରୁ ମୁହଁ ଫେରାଇ ନିଅ । | وَتَوَلَّ عَنْهُمْ حَتَّىٰ حِينٍ ﴿١٧٩﴾ |
| ୧୮୦. ଏବଂ ସେମାନଙ୍କ ଅବସ୍ଥା ନିରୀକ୍ଷଣ କରୁଥାଅ ; ସେମାନେ ମଧ୍ୟ ନିଶ୍ଚିତରୂପେ (ନିଜର ପରିଣାମ) ଦେଖିବେ । | وَأَبْصِرْ فَسَوْفَ يُبْصِرُونَ ﴿١٨٠﴾ |
| ୧୮୧. ତୁମର ପାଳନକର୍ତ୍ତା ସମସ୍ତ ସମ୍ମାନର ଅଧିକାରୀ ; ସେମାନେ ଯାହା ବର୍ଣ୍ଣନା କରୁଛନ୍ତି ତହିଁରୁ ସେ (ଉର୍ଦ୍ଧ୍ୱରେ ଓ) ପବିତ୍ର । | سُبْحَانَ رَبِّكَ رَبِّ الْعِزَّةِ عَمَّا يَصِفُونَ ﴿١٨١﴾ |
| ୧୮୨. ଏବଂ ରସୁଲମାନଙ୍କ ପ୍ରତି ସର୍ବଦା ଶାନ୍ତି ବୃଷ୍ଟି ହେଉଥିବ । | وَسَلَامٌ عَلَى الْمُرْسَلِينَ ﴿١٨٢﴾ |
| ୧୮୩. ଏବଂ ଅଲ୍ଲାହ୍ ହିଁ ସମସ୍ତ ପ୍ରଶଂସାର ପାତ୍ର, ଯେ କି ସମସ୍ତ ଜଗତର ପାଳନକର୍ତ୍ତା । | وَالْحَمْدُ لِلَّهِ رَبِّ الْعَالَمِينَ ﴿١٨٣﴾ ع |



## ସ୍ୱାଦ

( ଏହି ସୁରା ମକ୍‌କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୮୯ଟି ଆୟତ ଓ ୫ଟି ରୁକୁ ଅଛି । )

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ସ୍ୱାଦ [୧] ଆମେ ଏହି ଦାବୀ ସକାଶେ କୋରାନକୁ ପ୍ରମାଣ ସ୍ୱରୂପ ପେଶ କରୁଅଛୁ ଯହିଁରେ ସକଳ ଉପଦେଶ ପରିପୂର୍ଣ୍ଣ ରହିଅଛି ।

صٓ وَالْقُرْاٰنِ ذِی الذِّكْرِ ②

୩. କିନ୍ତୁ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନେ ଅହଙ୍କାର ମଧ୍ୟରେ ଲିପ୍ତ ରହିଛନ୍ତି ଏବଂ (ନିଜର ଅସତ୍ୟ ବିଷୟକୁ ସତ୍ୟ ସାବ୍ୟସ୍ତ କରିବା ପାଇଁ) ବିରୋଧ କରିବା ସେମାନଙ୍କର ଅଭ୍ୟାସ ଅଟେ ।

بَلِ الَّذِيْنَ كَفَرُوْا فِیْ عِزَّةٍ وَّشِقَاقٍ ③

୪. ଆମେ ସେମାନଙ୍କ ପୂର୍ବରୁ କେତେ ଯେ ସମ୍ପ୍ରଦାୟକୁ ଧ୍ୱଂସ କରିଦେଇଅଛୁ ; ଏ ବିଷୟରେ ସେମାନେ ଗୁହାରି କରିଥିଲେ, କିନ୍ତୁ ସେତେବେଳକୁ ଆଉ ମୁକ୍ତିର ସମୟ ନ ଥିଲା ।

كَمْ اَهْلَكْنَا مِنْ قَبْلِهِمْ مِّنْ قَرْنٍ فَنَادَوْا وَّلَاتَ حِيْنَ مَنَاصٍ ④

୫. ଏବଂ ସେମାନେ ଆଶ୍ଚର୍ଯ୍ୟ ହେଉଛନ୍ତି ଯେ ସେମାନଙ୍କ ନିକଟକୁ ସେମାନଙ୍କ (ସମ୍ପ୍ରଦାୟ) ମଧ୍ୟରୁ ହିଁ ଜଣେ ସଚେତକ ଆସିଛନ୍ତି ; ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ଏ ତ ଜଣେ ପ୍ରତାରକ (ଓ) ମିଥ୍ୟାବାଦୀ ।"

وَعَجِبُوْۤا اَنْ جَآءَهُمْ مُّنْذِرٌ مِّنْهُمْ وَقَالَ الْكٰفِرُوْنَ هٰذَا سٰحِرٌ كَذَّابٌ ⑤

୬. କ'ଣ ସେ ଅନେକ ଉପାସ୍ୟଙ୍କୁ ଗୋଟିଏ ଉପାସ୍ୟରେ [୨] ପରିଣତ କରିଛନ୍ତି ? ଏହା ଅତ୍ୟନ୍ତ ଆଶ୍ଚର୍ଯ୍ୟଜନକ ବିଷୟ ।

اَجَعَلَ الْاٰلِهَةَ اِلٰهًا وَّاحِدًا اِنَّ هٰذَا لَشَیْءٌ عُجَابٌ ⑥

୭. ଏବଂ ସେମାନଙ୍କ ମୁଖ୍ୟମାନେ କହିଲେ, "ଏଠାରୁ ଚାଲିଯାଅ, ଏବଂ ନିଜ ଉପାସ୍ୟମାନଙ୍କ ପ୍ରତି ଦୃଢ଼ ରୁହ ; ଏହା (ଅର୍ଥାତ୍ କୋରାନ ବର୍ଣ୍ଣିତ ଦାବି) ଏପରି ଏକ ବିଷୟ ଯହିଁରେ ନିଶ୍ଚୟ କିଛି ଚକ୍ରାନ୍ତ ଅଛି (ଅର୍ଥାତ୍ ଏହା ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ କୁହାଯାଇଛି) ।"

وَانْطَلَقَ الْمَلَاُ مِنْهُمْ اَنِ امْشُوْا وَاصْبِرُوْا عَلٰۤی اٰلِهَتِكُمْ اِنَّ هٰذَا لَشَیْءٌ يُّرَادُ ⑦

---

୧. 'ସ୍ୱାଦ' ଅର୍ଥ ସାଦିକ ଅର୍ଥାତ୍ ସତ୍ୟବାଦୀ । ଏହାର ଅର୍ଥ ଏହି କୋରାନକୁ ସତ୍ୟବାଦୀ ଅଲ୍ଲାହ ଅବତରଣ କରାଇଛନ୍ତି ।

୨. ସେମାନେ ଆଶ୍ଚର୍ଯ୍ୟାନ୍ୱିତ ହେଉଥିଲେ ଯେ ଯେବେ ଅନେକ ଉପାସ୍ୟ ରହିଛନ୍ତି, ଏ ବ୍ୟକ୍ତି, ଯେ ଏକେଶ୍ୱରବାଦର ପ୍ରଚାର କରୁଛି, ସମ୍ଭବତଃ ସବୁ ଉପାସ୍ୟଙ୍କୁ କାଟିକୁଟି ଗୋଟିଏ ଉପାସ୍ୟ ଗଢ଼ିଛି । ଏହି ରୂପେ ସେମାନେ ନିଜ ମୂର୍ଖତାକୁ ହଜରତ ମହମ୍ମଦଙ୍କ ଉପରେ ସଂଲଗ୍ନ କରୁଛନ୍ତି ।

مَا سَمِعْنَا بِهٰذَا فِي الْمِلَّةِ الْآخِرَةِ ۖ إِنْ هٰذَآ إِلَّا اخْتِلَاقٌ ⑧

୮. "ଆମେମାନେ ଏ (ପ୍ରକାର) ବିଷୟର ବର୍ଣ୍ଣନା ନିଜ ପୂର୍ବବର୍ତ୍ତୀ ସମ୍ପ୍ରଦାୟ ମଧ୍ୟରେ କେବେ ଶୁଣି ନାହୁଁ ; ଏହା ମିଥ୍ୟା ଛଡ଼ା ଅନ୍ୟ କିଛି ନୁହେଁ ।"

ءَأُنْزِلَ عَلَيْهِ الذِّكْرُ مِنْ بَيْنِنَا ۚ بَلْ هُمْ فِي شَكٍّ مِّنْ ذِكْرِي ۚ بَلْ لَّمَّا يَذُوقُوا عَذَابِ ⑨

୯. "କ'ଣ ଆମର ସାରା ସମ୍ପ୍ରଦାୟ ମଧ୍ୟରୁ କେବଳ ଏହାଙ୍କ ଉପରେ ଏହି ସ୍ମାରକ ଅବତୀର୍ଣ୍ଣ ହୋଇଅଛି ; ବାସ୍ତବରେ ଆମ ତରଫରୁ ସ୍ମାରକର ଅବତୀର୍ଣ୍ଣ ହୋଇଥିବା ନେଇ ହିଁ ସେମାନଙ୍କର ସନ୍ଦେହ ରହିଅଛି ; (ପ୍ରକୃତରେ ଏଥିରେ ସନ୍ଦେହ ନାହିଁ ଯେ ଏହାଙ୍କ ପ୍ରତି ସ୍ମାରକ ଅବତୀର୍ଣ୍ଣ ହୋଇଛି କି ହୋଇନାହିଁ) ବରଂ (ପ୍ରକୃତ କଥା ହେଉଛି ଯେ) ସେମାନେ ଅଦ୍ୟାବଧି ଶାସ୍ତି ଆସ୍ବାଦନ କରି ନାହାନ୍ତି (ସେଥିପାଇଁ ନିର୍ଭୟ ହୋଇ ଯାଇଛନ୍ତି )

أَمْ عِنْدَهُمْ خَزَائِنُ رَحْمَةِ رَبِّكَ الْعَزِيزِ الْوَهَّابِ ⑩

୧୦. ତୁମର ପାଳନକର୍ତ୍ତା ଯେ କି ପରାକ୍ରମୀ (ଓ) ଦାନଶୀଳ କ'ଣ ତାଙ୍କର କରୁଣାର ଭଣ୍ଡାର ସେମାନଙ୍କ ପାଖରେ ରହିଅଛି (ଯେ ସେମାନେ ଇଚ୍ଛାକଲେ ଦେଇ ଦେବେ ଓ ଇଚ୍ଛା ନ କଲେ ଦେବେ ନାହିଁ) ?

أَمْ لَهُمْ مُلْكُ السَّمٰوٰتِ وَالْأَرْضِ وَمَا بَيْنَهُمَا ۖ فَلْيَرْتَقُوا فِي الْأَسْبَابِ ⑪

୧୧. କ'ଣ ଆକାଶ ଓ ପୃଥିବୀରେ ତଥା ସେମାନଙ୍କ ମଧ୍ୟରେ ଯାହା କିଛି ଅଛି ସେ ସବୁର ଆଧିପତ୍ୟ ସେମାନଙ୍କ ଅଧୀନରେ ଅଛି ? ଯଦି ସେପରି ଅଛି, ତାହା ହେଲେ ସେମାନେ ଦଉଡ଼ି ସାହାଯ୍ୟରେ ଉପରକୁ ଚଢ଼ି ଯାଆନ୍ତୁ (ଏବଂ ଏପରି କୌଣସି ଅଲୌକିକ ପ୍ରମାଣ ଅର୍ଥାତ୍ ଲିପିବଦ୍ଧ ଗ୍ରନ୍ଥ ଘେନି ଆସନ୍ତୁ ଯାହାକୁ ଅବିଶ୍ବାସକାରୀମାନେ ପାଠ କରିପାରିବେ କାରଣ ସେମାନେ ମହମ୍ମଦଙ୍କ ଠାରୁ ଏ ରୂପ ଗ୍ରନ୍ଥ ଚାହୁଁ ଥିଲେ) ।[୧]

جُنْدٌ مَّا هُنَالِكَ مَهْزُومٌ مِّنَ الْأَحْزَابِ ⑫

୧୨. ଏକ (ଧର୍ମ-ଦ୍ରୋହୀ) ସୁସଂଗଠିତ[୨] ସୈନ୍ୟବାହିନୀ (ବିଷୟରେ ଆମେ ସୂଚନା ଦେଉଅଛୁ ଯାହା ମହମ୍ମଦଙ୍କ ଆସ୍ଥାନ ଉପରେ ଆକ୍ରମଣ କରିବ କିନ୍ତୁ) ପରିଶେଷରେ ସେଠାରୁ ପଳାୟନ କରିବ ।

كَذَّبَتْ قَبْلَهُمْ قَوْمُ نُوحٍ وَعَادٌ وَفِرْعَوْنُ ذُو الْأَوْتَادِ ⑬

୧୩. ସେମାନଙ୍କ ପୂର୍ବରୁ ନୁହଙ୍କର ସମ୍ପ୍ରଦାୟ ଏବଂ ଆଦ ସଂପ୍ରଦାୟ ତଥା ମହାପ୍ରତାପୀ ଫିରଔନ ମଧ୍ୟ (ରସୁଲମାନଙ୍କୁ) ମିଥ୍ୟାବାଦୀ ବୋଲି କହି ଥିଲେ ।

---

୧. ସୁରା 'ବନି ଇସ୍ରାଇଲ' ରେ ଅବିଶ୍ବାସକାରୀମାନଙ୍କର ଅନୁରୂପ ଆପତ୍ତି ଉଲ୍ଲେଖ ଅଛି (୧୭: ୯୪ ଦ୍ରଷ୍ଟବ୍ୟ) ।

୨. ଏଠାରେ ଅହଜାବ ଯୁଦ୍ଧ ବିଷୟକ ଭବିଷ୍ୟବାଣୀ ଅଛି । ଏହି ଆୟତ କେବଳ ଅହଜାବ ଯୁଦ୍ଧ ପୂର୍ବରୁ ନୁହେଁ ବରଂ ହିଜରତ ପୂର୍ବରୁ ଅବତୀର୍ଣ୍ଣ ହୋଇଥିଲା ଏବଂ ତହିଁରେ ଅବିଶ୍ବାସକାରୀମାନଙ୍କ ପରାଜୟର ସୂଚନା ଦିଆଯାଇଥିଲା ।

୧୪. ଏହିପରି ସମୁଦ ତଥା ଲୁତଙ୍କ ସମ୍ପ୍ରଦାୟ ଏବଂ ଐକାବାସୀମାନେ[1] ଓ (ମଧ୍ୟ ମିଥ୍ୟାବାଦୀ ବୋଲି କହିଥିଲେ) ଏମାନେ ସମସ୍ତେ ଏକ (ଧର୍ମଦ୍ରୋହୀ) ସୁସଂଗଠିତ ଗୋଷ୍ଠୀ ଥିଲେ ।

وَثَمُوْدُ وَقَوْمُ لُوْطٍ وَّاَصْحٰبُ لْـَٔيْكَةِ ۭ اُولٰۗىِٕكَ الْاَحْزَابُ ⑭

୧୫. ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ ରସୁଲମାନଙ୍କୁ ମିଥ୍ୟାବାଦୀ ବୋଲି ଆକ୍ଷେପ କରିଥିଲେ ; ତେଣୁ ପରିଶେଷରେ (ସେମାନଙ୍କ ପ୍ରତି) ଆମର ଶାସ୍ତି ଅନିବାର୍ଯ୍ୟ ହୋଇଥିଲା ।

اِنْ كُلٌّ اِلَّا كَذَّبَ الرُّسُلَ فَحَقَّ عِقَابِ ⑮

ରୁ : ୨

୧୬. ଏବଂ ଏହି ଲୋକମାନେ କେବଳ ଏକ ଆକସ୍ମିକ ଶାସ୍ତିର ପ୍ରତୀକ୍ଷା କରୁଛନ୍ତି ; ଯହିଁରେ କୌଣସି ବିଳମ୍ବ ହେବ ନାହିଁ ।

وَمَا يَنْظُرُ هٰٓؤُلَاۗءِ اِلَّا صَيْحَةً وَّاحِدَةً مَّا لَهَا مِنْ فَوَاقٍ ⑯

୧୭. ଏବଂ କହୁଛନ୍ତି, "ହେ ଆମମାନଙ୍କ ପାଳନକର୍ତ୍ତା ! ଆମମାନଙ୍କର ଯେତିକି ଭାଗ ଅଛି, ହିସାବ ଦିବସ ପୂର୍ବରୁ ଆମମାନଙ୍କୁ ଶୀଘ୍ର ସେତିକି ଦେଇଦିଅ ।"

وَقَالُوْا رَبَّنَا عَجِّلْ لَّنَا قِطَّنَا قَبْلَ يَوْمِ الْحِسَابِ ⑰

୧୮. ସେମାନେ ଯାହା କିଛି କହୁଛନ୍ତି ସେ ବିଷୟରେ ତୁମେ ଧୈର୍ଯ୍ୟ ସହକାରେ କାର୍ଯ୍ୟକର, ଏବଂ ଆମର ଭକ୍ତ ଦାଉଦଙ୍କୁ ମନେ ପକାଅ ଯେ କି ଅତ୍ୟନ୍ତ ପରାକ୍ରମୀ ଥିଲେ ; ବାସ୍ତବରେ ସେ (ଅଲ୍ଲାହଙ୍କ ପ୍ରତି) ସର୍ବଦା ଅନୁରକ୍ତ ଥିଲେ ।

اِصْبِرْ عَلٰي مَا يَقُوْلُوْنَ وَاذْكُرْ عَبْدَنَا دَاوٗدَ ذَا الْاَيْدِ ۚ اِنَّهٗٓ اَوَّابٌ ⑱

୧୯. ଆମେ ପର୍ବତ-ନିବାସୀମାନଙ୍କୁ ତାହାଙ୍କର ବଶବର୍ତ୍ତୀ କରାଇଥିଲୁ ଏବଂ ସେମାନେ ସକାଳେ ଓ ସନ୍ଧ୍ୟାରେ (ଅଲ୍ଲାହଙ୍କର) ପ୍ରଶଂସା ଗାନ କରୁଥିଲେ ।

اِنَّا سَخَّرْنَا الْجِبَالَ مَعَهٗ يُسَبِّحْنَ بِالْعَشِيِّ وَالْاِشْرَاقِ ⑲

୨୦. ଏବଂ ଉଚ୍ଚ-ଉଡ୍ଡନ୍ତ[2] ଲୋକମାନଙ୍କୁ ଏକତ୍ରିତ କରାଇ ତାହାଙ୍କ ସହିତ ନିୟୋଜିତ କରିଥିଲୁ ; ସେ ସମସ୍ତେ ଅଲ୍ଲାହଙ୍କର ଅନୁରକ୍ତ ଥିଲେ ।

وَالطَّيْرَ مَحْشُوْرَةً ۭ كُلٌّ لَّهٗٓ اَوَّابٌ ⑳

୨୧. ଏବଂ ଆମେ ତାହାଙ୍କ ଶାସନକୁ ଦୃଢ଼ କରିଥିଲୁ ଏବଂ ତାହାଙ୍କୁ ତତ୍ତ୍ୱ ଜ୍ଞାନ ଓ ନିଷ୍ପତ୍ତିମୂଳକ ବାକ୍‌ଶକ୍ତି ପ୍ରଦାନ କରିଥିଲୁ ।

وَشَدَدْنَا مُلْكَهٗ وَاٰتَيْنٰهُ الْحِكْمَةَ وَفَصْلَ الْخِطَابِ ㉑

୨୨. ଏବଂ କ'ଣ ତୁମେ ସେହି ଶତ୍ରୁମାନଙ୍କ ବିଷୟରେ ଜାଣିଅଛ ଯେଉଁମାନେ କାନ୍ଥ ଡେଇଁ ଭିତରେ ପ୍ରବେଶ କରିଥିଲେ ?

وَهَلْ اَتٰىكَ نَبَؤُا الْخَصْمِ ۘ اِذْ تَسَوَّرُوا الْمِحْرَابَ ㉒

---

୧. ୧୫: ୭୯ ର ଟୀକା ଦ୍ରଷ୍ଟବ୍ୟ ।

୨. ୩୪: ୧୧ ର ଟୀକା ଦ୍ରଷ୍ଟବ୍ୟ ।

إِذْ دَخَلُوا عَلَىٰ دَاوُدَ فَفَزِعَ مِنْهُمْ قَالُوا لَا تَخَفْ خَصْمَانِ بَغَىٰ بَعْضُنَا عَلَىٰ بَعْضٍ فَاحْكُم بَيْنَنَا بِالْحَقِّ وَلَا تُشْطِطْ وَاهْدِنَا إِلَىٰ سَوَاءِ الصِّرَاطِ ﴿٢٣﴾

୨୩. ଯେତେବେଳେ ସେମାନେ ଦାଉଦଙ୍କ ନିକଟକୁ ଆସି ଗଲେ, ସେ ସେମାନଙ୍କୁ ଭୟ କରିଥିଲେ ; ସେମାନେ କହିଲେ, ''ଭୟକର ନାହିଁ ; (ଆମେ ଦୁହେଁ) ଦୁଇ କଳହକାରୀ ବ୍ୟକ୍ତି ଅଛୁ ; ଆମମାନଙ୍କ ମଧ୍ୟରୁ ଜଣେ ଅନ୍ୟ ପ୍ରତି ଅତ୍ୟାଚାର କରୁଅଛି ; ତେଣୁ ତୁମେ ଆମମାନଙ୍କ ମଧ୍ୟରେ ନ୍ୟାୟପୂର୍ବକ ନିଷ୍ପତ୍ତି କରି ଦିଅ ଓ ଅନ୍ୟାୟ କର ନାହିଁ ଏବଂ ଆମମାନଙ୍କୁ ସରଳପଥ ପ୍ରଦର୍ଶନ କରାଅ ।''

إِنَّ هَٰذَا أَخِي لَهُ تِسْعٌ وَتِسْعُونَ نَعْجَةً وَلِيَ نَعْجَةٌ وَاحِدَةٌ فَقَالَ أَكْفِلْنِيهَا وَعَزَّنِي فِي الْخِطَابِ ﴿٢٤﴾

୨୪. ''ଏ ମୋର ଭାଇ ; ତାହାର ଅନେଶ୍ୱତଟି ମେଣ୍ଢା[୧] ଅଛନ୍ତି, ଓ ମୋର କେବଳ ଗୋଟିଏ ମେଣ୍ଢା ଅଛି ; ଏହା ସତ୍ତ୍ୱେ ସେ କହୁଛି, ଯେ 'ନିଜର ମେଣ୍ଢାଟିକୁ ମୋତେ ଦେଇ ଦିଅ' ଏବଂ ବାକ୍‌ଶକ୍ତି ଦ୍ୱାରା ମୋ ଉପରେ ଚାପ ପ୍ରୟୋଗ କରି ଚାଲିଛି ।''

قَالَ لَقَدْ ظَلَمَكَ بِسُؤَالِ نَعْجَتِكَ إِلَىٰ نِعَاجِهِ ۖ وَإِنَّ كَثِيرًا مِّنَ الْخُلَطَاءِ لَيَبْغِي بَعْضُهُمْ عَلَىٰ بَعْضٍ إِلَّا الَّذِينَ آمَنُوا وَعَمِلُوا الصَّالِحَاتِ وَقَلِيلٌ مَّا هُمْ ۗ وَظَنَّ دَاوُودُ أَنَّمَا فَتَنَّاهُ فَاسْتَغْفَرَ رَبَّهُ وَخَرَّ رَاكِعًا وَأَنَابَ ۩ ﴿٢٥﴾

୨୫. ଏଥି ଉତ୍ତାରୁ (ଦାଉଦ) କହିଲେ, ''ତୁମ ମେଣ୍ଢାକୁ ଦାବି କରିବା ଦ୍ୱାରା ସେ ତୁମ ପ୍ରତି ଅନ୍ୟାୟ[୨] କରିଅଛି ; ଯେଉଁମାନେ (ଅଲ୍ଲାହ୍‌ଙ୍କ ଉପରେ) ବିଶ୍ୱାସ କରନ୍ତି ଓ ନିଜ ବିଶ୍ୱାସ ମୁତାବକ କାର୍ଯ୍ୟ କରନ୍ତି, ସେମାନଙ୍କ ବ୍ୟତୀତ ଏପରି ଅନେକ ଅଂଶୀଦାର ଅଛନ୍ତି ଯେଉଁମାନେ ପରସ୍ପର ପ୍ରତି ଅନ୍ୟାୟ କରନ୍ତି ; ଏବଂ ଏ (ବିଶ୍ୱାସକାରୀ)ମାନଙ୍କ ସଂଖ୍ୟା ଅଳ୍ପ ;'' ଏବଂ ଦାଉଦଙ୍କର ବିଶ୍ୱାସ ହୋଇଗଲା ଯେ ଆମେ ତାହାଙ୍କୁ ପରୀକ୍ଷାର ସମ୍ମୁଖୀନ କରାଇଛୁ, ତେଣୁ ସେ ନିଜ ପାଳନକର୍ତ୍ତାଙ୍କ ଠାରେ କ୍ଷମା ପ୍ରାର୍ଥନା କରିବାକୁ ଲାଗିଲେ, ଏବଂ ଆନୁଗତ୍ୟ ପ୍ରକାଶ ପୂର୍ବକ ଭୂମିରେ ନିପତିତ ହେଲେ ଏବଂ (ଅଲ୍ଲାହ୍‌ଙ୍କ ପ୍ରତି) ଧ୍ୟାନ ଦେଲେ ।

---

୧. କେତେକ ଟୀକାକାର କହନ୍ତି ଯେ ହଜରତ ଦାଉଦଙ୍କର ୯୯ ଜଣ ପତ୍ନୀ ଥିଲେ କିନ୍ତୁ ତା' ସତ୍ତ୍ୱେ ଜଣେ ସେନାପତିଙ୍କ ପତ୍ନୀଙ୍କୁ ସେ ପସନ୍ଦ କରିଥିଲେ । ତେଣୁ ସେ ସେହି ସେନାପତିଙ୍କୁ ଏକ ବିପଜ୍ଜନକ ସ୍ଥାନକୁ ଏହି ଉଦ୍ଦେଶ୍ୟରେ ପଠାଇ ଦେଲେ ଯେପରି ସେ ସେଠାରେ ନିହତ ହେବେ । ପରେ ସେ ସେହି ଯୁଦ୍ଧ କ୍ଷେତ୍ରରେ ନିହତ ହୋଇଥିଲେ ଓ ହଜରତ ଦାଉଦ ତାଙ୍କ ପତ୍ନୀ ବତସେବାଙ୍କୁ ନିଜ କର୍ତ୍ତୃତ୍ୱାଧୀନ କରିଥିଲେ । ଅଲ୍ଲାହ୍ ତାଙ୍କୁ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଦେବଦୂତମାନଙ୍କୁ ପଠାଇଲେ ଓ ସେମାନେ ଏହି ମେଣ୍ଢା ଗପ ଗଢ଼ିଥିଲେ (**Holy Bible : II Samuel Ch. II** ଦ୍ରଷ୍ଟବ୍ୟ) । ପ୍ରକୃତରେ ହଜରତ ଦାଉଦଙ୍କର ରାଜତ୍ୱ ଦୀର୍ଘକାଳ ସ୍ଥିତିବାରୁ ଶତ୍ରୁମାନେ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବା ଆରମ୍ଭ କରିଦେଲେ ।

ଏପରିକି ଦୁଇଜଣ ଶତ୍ରୁ କାନ୍ଥ ଡେଇଁ ଘର ଭିତରେ ପଶିବାରେ ସକ୍ଷମ ହୋଇଗଲେ, କିନ୍ତୁ ସେମାନେ ହଜରତ ଦାଉଦଙ୍କୁ ଜାଗ୍ରତ ଓ ହୁସିଆର ଥିବାର ଦେଖି ଡରିଗଲେ ଓ ଭାବିଲେ ଯେ ଗୋଟିଏ ଡାକରାରେ ଦେହରକ୍ଷୀମାନେ ଜମା ହୋଇଯାଇ ପାରିବେ । ତେଣୁ ସେମାନେ ଏ ରୂପେ ଭୟଭୀତ ହୋଇ ତାଙ୍କୁ ଏକ ମନଗଢ଼ା କଥା କହିଲେ । ପ୍ରକୃତ ପକ୍ଷେ ସେମାନେ ହିଁ ଦାଉଦଙ୍କ ପ୍ରତି ଦୋଷାରୋପ କରିଥିଲେ ଯେ ସେ ଅଧିକ ଶକ୍ତିଶାଳୀ ହୋଇ ଆଖପାଖର ଗରିବ ଓ ସଂଖ୍ୟାଲଘୁ ଗୋଷ୍ଠୀକୁ ଗ୍ରାସ କରିଯାଉଛନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ହଜରତ ଦାଉଦଙ୍କ ରାଜ୍ୟ ଛୋଟ ଥିଲା ଓ ତାଙ୍କ ନିକଟବର୍ତ୍ତୀ ଗୋଷ୍ଠୀର ଲୋକମାନେ ଇରାକ ପର୍ଯ୍ୟନ୍ତ ବିସ୍ତାରିତ ହୋଇ ଯାଇଥିଲେ । ସେମାନଙ୍କ ସଂଖ୍ୟା ମଧ୍ୟ ହଜରତ ଦାଉଦଙ୍କ ଲୋକମାନଙ୍କ ତୁଳନାରେ ବହୁଗୁଣ ଅଧିକ ଥିଲା । ବସ୍ତୁତଃ ହଜରତ ଦାଉଦ ସେମାନଙ୍କ ଉପରେ କୌଣସି ପ୍ରକାର ଅତ୍ୟାଚାର କରୁ ନ ଥିଲେ ।

୨. ହଜରତ ଦାଉଦ ସେମାନଙ୍କୁ ଅବଶ୍ୟ ଭଲରୂପେ ଚିହ୍ନି ପାରିଲେ ଓ ମିଛ କହୁଥିବା ମଧ୍ୟ ବୁଝିଥିଲେ । ତା' ସତ୍ତ୍ୱେ ସେ ସେମାନଙ୍କ ପ୍ରତି ନ୍ୟାୟସଙ୍ଗତ ଓ ଉଚିତ ବିଚାର କରିଥିଲେ, ତଥାପି ସେ ନିଜ ନିୟନ୍ତ୍ରଣ ହରାଇ ବସିଲେଣି ବୋଲି ବୁଝି ପାରିଥିଲେ । ସେ ଆହୁରି ମଧ୍ୟ ବୁଝିଥିଲେ ଯେ ଏହି ଘଟଣା ମାଧ୍ୟମରେ ଅଲ୍ଲାହ୍ ତାଙ୍କୁ ଚେତାବନୀ ଦେଇଛନ୍ତି । ଫଳରେ ସେ ସଚେତନ ହେବା ସଙ୍ଗେ ସଙ୍ଗେ ଅଲ୍ଲାହ୍‌ଙ୍କର ଶରଣ ଭିକ୍ଷା କଲେ ।

فَغَفَرْنَا لَهٗ ذٰلِكَ ۗ وَاِنَّ لَهٗ عِنْدَنَا لَزُلْفٰى وَحُسْنَ مَاٰبٍ ۝٢٥

୨୬. ଯେତେବେଳେ ଆମେ ତାହାଙ୍କର ସକଳ ଦୁର୍ବଳତାକୁ[1] ଘୋଡ଼ାଇ ଦେଇଥିଲୁ, କାରଣ ଦାଉଦ ବାସ୍ତବରେ ଆମର ସାମିପ୍ୟ ଲାଭ କରିଥିଲେ ଏବଂ ଆମ ନିକଟରେ ତାହାଙ୍କୁ ଉତ୍ତମ ବାସସ୍ଥାନ ପ୍ରାପ୍ତ ହେବ[2] ।

يٰدَاوٗدُ اِنَّا جَعَلْنٰكَ خَلِيْفَةً فِى الْاَرْضِ فَاحْكُمْ بَيْنَ النَّاسِ بِالْحَقِّ وَلَا تَتَّبِعِ الْهَوٰى فَيُضِلَّكَ عَنْ سَبِيْلِ اللّٰهِ ۗ اِنَّ الَّذِيْنَ يَضِلُّوْنَ عَنْ سَبِيْلِ اللّٰهِ لَهُمْ عَذَابٌ شَدِيْدٌۢ بِمَا نَسُوْا يَوْمَ الْحِسَابِ ۝٢٦

୨୭. (ଏହାପରେ ଆମେ ଦାଉଦଙ୍କୁ କହିଥିଲୁ), "ହେ ଦାଉଦ ! ଆମେ ତୁମଙ୍କୁ ଭୂପୃଷ୍ଠରେ ଖଲିଫା ନିଯୁକ୍ତ କରିଅଛୁ ; ତେଣୁ ତୁମେ ଲୋକମାନଙ୍କ ମଧ୍ୟରେ ନ୍ୟାୟପୂର୍ବକ ବିଚାର କର ଏବଂ ନିଜ ପ୍ରବୃତ୍ତିର ଅନୁସରଣ କର ନାହିଁ ; ତାହା ତୁମଙ୍କୁ ଅଲ୍ଲାହଙ୍କ ପଥରୁ ବିଚ୍ୟୁତ କରିଦେବ ; ଯେଉଁମାନେ ଅଲ୍ଲାହଙ୍କ ପଥରୁ ବିଚ୍ୟୁତ ହୁଅନ୍ତି ସେମାନେ କଠିନ ଶାସ୍ତି ପାଆନ୍ତି, କାରଣ ସେମାନେ ବିଚାର ଦିବସକୁ ପାସୋରି ଦେଇଛନ୍ତି ।

ରୁ : ୩

وَمَا خَلَقْنَا السَّمَآءَ وَالْاَرْضَ وَمَا بَيْنَهُمَا بَاطِلًا ۗ ذٰلِكَ ظَنُّ الَّذِيْنَ كَفَرُوْا ۚ فَوَيْلٌ لِّلَّذِيْنَ كَفَرُوْا مِنَ النَّارِ ۝٢٧

୨୮. ଏବଂ ଆମେ ଆକାଶ ଓ ପୃଥିବୀରେ ଏବଂ ଯାହା କିଛି ସେ ଦୁହିଙ୍କ ମଧ୍ୟରେ ଅଛି ତାହାକୁ ଅକାରଣେ ନଷ୍ଟ ହୋଇଯିବା ନିମନ୍ତେ ସୃଷ୍ଟି କରିନାହୁଁ ; ଅବିଶ୍ୱାସକାରୀମାନଙ୍କର ଏହିପରି ଧାରଣା ଅଛି ; ସୁତରାଂ ଅବିଶ୍ୱାସକାରୀମାନେ (ନରକ) ଅଗ୍ନିର ଶାସ୍ତି ଦ୍ୱାରା ବିନାଶ ହେବେ ।

اَمْ نَجْعَلُ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ كَالْمُفْسِدِيْنَ فِى الْاَرْضِ ۖ اَمْ نَجْعَلُ الْمُتَّقِيْنَ كَالْفُجَّارِ ۝٢٨

୨୯. କ'ଣ ଆମେ ବିଶ୍ୱାସକାରୀମାନଙ୍କୁ ଓ ଯେଉଁମାନେ ବିଶ୍ୱାସ ମୁତାବକ କର୍ମ କରନ୍ତି ସେମାନଙ୍କୁ ଭୂପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରୁଥିବା ବ୍ୟକ୍ତିମାନଙ୍କ ସହିତ ସମାନ ମନେ କରିବୁ ? ଅଥବା କ'ଣ ଧର୍ମଭୀରୁମାନଙ୍କ ସହିତ ଦୁରାଚାରୀମାନଙ୍କୁ ସମାନ ମନେ କରିବୁ ?

كِتٰبٌ اَنْزَلْنٰهُ اِلَيْكَ مُبٰرَكٌ لِّيَدَّبَّرُوْٓا اٰيٰتِهٖ وَلِيَتَذَكَّرَ اُولُوا الْاَلْبَابِ ۝٢٩

୩୦. ଏ (କୋରାନ ଏପରି) ଏକ ଗ୍ରନ୍ଥ ଯାହାକୁ ଆମେ ତୁମ ପ୍ରତି ଅବତୀର୍ଣ୍ଣ କରିଅଛୁ ଯହିଁରେ ସମସ୍ତ ଗୁଣ ପରିପୂର୍ଣ୍ଣ ରହିଅଛି, ଯଦ୍ଦ୍ୱାରା କି ସେମାନେ ତାହାଙ୍କ ବାଣୀ ସଂକ୍ରାନ୍ତରେ ଧ୍ୟାନ ଦେବେ ଓ ଜ୍ଞାନବନ୍ତ (ଲୋକ)ମାନେ ଶିକ୍ଷାଲାଭ କରିପାରିବେ ।

وَوَهَبْنَا لِدَاوٗدَ سُلَيْمٰنَ ۗ نِعْمَ الْعَبْدُ ۗ اِنَّهٗٓ اَوَّابٌ ۝٣٠

୩୧. ଏବଂ ଆମେ ଦାଉଦଙ୍କୁ ସୁଲେମାନ ପ୍ରଦାନ କରିଥିଲୁ ; ଏବଂ ସେ ଜଣେ ଅତ୍ୟନ୍ତ ଉତ୍ତମ ଭକ୍ତ ଥିଲେ ; ଏବଂ ସେ (ଅଲ୍ଲାହଙ୍କ ପ୍ରତି) ଅତ୍ୟନ୍ତ ଅନୁରକ୍ତ ଥିଲେ ।

---

୧. ଏହି ଦୁର୍ବଳତା ଶାରୀରିକ, ଆଧ୍ୟାତ୍ମିକ ନୁହେଁ ।

୨. ଅଲ୍ଲାହ କହୁଛନ୍ତି ଯେ ଯଦି ପ୍ରକୃତରେ ହଜରତ ଦାଉଦ ପର ସ୍ତ୍ରୀକୁ ହରଣ କରିଥା'ନ୍ତେ ବା ଦୁର୍ବଳମାନଙ୍କ ଉପରେ ଅତ୍ୟାଚାର କରିଥା'ନ୍ତେ ତେବେ ସେ ନିଶ୍ଚୟ ଅଲ୍ଲାହଙ୍କ ପ୍ରେମରୁ ବଞ୍ଚିତ ହୋଇଥାଆନ୍ତେ ।

إِذْ عُرِضَ عَلَيْهِ بِالْعَشِيِّ الصَّٰفِنَٰتُ الْجِيَادُ ٣٢

୩୨. (ଏବଂ ସ୍ମରଣ କର) ଯେତେବେଳେ ତାହାଙ୍କ ସମ୍ମୁଖରେ ସନ୍ଧ୍ୟା ବେଳେ ଉତ୍କୃଷ୍ଟ ଧରଣର ଅଶ୍ୱମାନଙ୍କୁ ଉପସ୍ଥିତ କରାଗଲା.

فَقَالَ إِنِّيٓ أَحْبَبْتُ حُبَّ الْخَيْرِ عَن ذِكْرِ رَبِّي حَتَّىٰ تَوَارَتْ بِالْحِجَابِ ٣٣

୩୩. ସେତେବେଳେ ସେ କହିଲେ, ''ଆମେ ସଂସାରର ଉତ୍ତମ ବସ୍ତୁଗୁଡ଼ିକୁ ଏଥିସକାଶେ ଭଲ ପାଉଅଛୁ ଯେ ତାହା ଆମଙ୍କୁ ଆମ [1] ପାଳନକର୍ତ୍ତାଙ୍କୁ ସ୍ମରଣ କରାଇ ଥାଏ ;''ଏପରିକି ଅଶ୍ୱମାନେ ଦୃଷ୍ଟି ଅନ୍ତରାଳକୁ ଚାଲିଗଲେ ।''

رُدُّوهَا عَلَيَّ فَطَفِقَ مَسْحًا بِالسُّوقِ وَالْأَعْنَاقِ ٣٤

୩୪. (ଏବଂ ସେ କହିଲେ), ''ସେମାନଙ୍କୁ ଆମ ନିକଟକୁ ଫେରାଇ ଆଣ'' (ସେମାନେ ଆସିବା ପରେ) ସେ ସେମାନଙ୍କ ଗୋଡ଼ ଓ ବେକକୁ ଥାପୁଡ଼ିଲେ । [2]

وَلَقَدْ فَتَنَّا سُلَيْمَٰنَ وَأَلْقَيْنَا عَلَىٰ كُرْسِيِّهِۦ جَسَدًا ثُمَّ أَنَابَ ٣٥

୩୫. ଏବଂ ଆମେ ସୁଲେମାନଙ୍କୁ ପରୀକ୍ଷା କରିଥିଲୁ ଏବଂ ତାହାଙ୍କ ସିଂହାସନ ଉପରେ ଏକ ନିର୍ଜୀବ [3] ଦେହକୁ ଅବସ୍ଥାପିତ କରିବାକୁ ନିଷ୍ପତ୍ତି କରିଥିଲୁ ; (ତା'ପରେ ଯେତେବେଳେ ସେ ଏହି ବିଷୟକୁ ଆଧ୍ୟାତ୍ମିକ ଦୃଶ୍ୟ ଦ୍ୱାରା ଦେଖିଲେ) ସେତେବେଳେ ସେ ନିଜ ପାଳନକର୍ତ୍ତାଙ୍କ ପ୍ରତି ଧ୍ୟାନ ଦେଲେ ।

قَالَ رَبِّ اغْفِرْ لِي وَهَبْ لِي مُلْكًا لَّا يَنۢبَغِي لِأَحَدٍ مِّنۢ بَعْدِيٓ إِنَّكَ أَنتَ الْوَهَّابُ ٣٦

୩୬. ଏବଂ ସେ (ଅଲ୍ଲାହଙ୍କ ଠାରୁ ନିଜ ପୁତ୍ର ସଂକ୍ରାନ୍ତରେ ପ୍ରକୃତ ବିଷୟ ଜାଣିବା ପରେ) କହିଲେ, ''ହେ ଆମର ପାଳନକର୍ତ୍ତା ! ଆମର ଦୋଷଗୁଡ଼ିକୁ ଘୋଡ଼ାଇ ଦିଅ [illegible] ଆମଙ୍କୁ ଏପରି ରାଜତ୍ୱ [4] ପ୍ରଦାନ କର ଯାହା ଆମ ଅ[illegible] ଆମ ବଂଶଧରଙ୍କୁ ଉତ୍ତରାଧିକାର ସୂତ୍ରେ ନ ମିଳୁ ; ତୁମେ ହିଁ ବାସ୍ତବରେ ଅତ୍ୟନ୍ତ ଦାନଶୀଳ ।''

---

୧. କେତେକ ଭାଷ୍ୟକାର ବର୍ଣ୍ଣନା କରିଛନ୍ତି ଯେ ଘୋଡ଼ାଙ୍କୁ ଦେଖୁ ଦେଖୁ ନମାଜ ସମୟ ଅତିକ୍ରମ କରି ଯାଉଥିଲା. କିନ୍ତୁ ଏହା ଯଥାର୍ଥ ନୁହେଁ ବରଂ ଏହାର ଅର୍ଥ ହେଉଛି, ସେ ଅଲ୍ଲାହଙ୍କ ପ୍ରେମରେ ଏତେ ଜଡ଼ିତ ହୋଇ ଯାଇଥିଲେ ଯେ ସେ ଏଭଳି ଘୋଡ଼ା ଖରିଦ କରିଥିଲେ ଯେଉଁମାନଙ୍କ ସାହାଯ୍ୟରେ ସେ ଜିହାଦ କରିପାରିବେ । ଜଣେ ଅବତାରଙ୍କ ମର୍ଯ୍ୟାଦା ଦୃଷ୍ଟିରୁ ଏହି ବ୍ୟାଖ୍ୟା ଯଥାର୍ଥ । ଏତଦ୍‌ବ୍ୟତୀତ ତାଙ୍କ ସାମ୍ରାଜ୍ୟ ଯେପରି ବିଶାଳ ଥିଲା ତାଙ୍କ ସୈନ୍ୟବାହିନୀ ମଧ୍ୟ ସେହିପରି ଶକ୍ତିଶାଳୀ ଥିଲା ଓ ସୈନ୍ୟବାହିନୀରେ ଘୋଡ଼ସବାରମାନଙ୍କ ପାଇଁ ଘୋଡ଼ା ରହିବା ଆବଶ୍ୟକ ।

୨. ମୂଳ ଶବ୍ଦ 'ମସହ' ର ଅର୍ଥ ଆପୁଡ଼ିବା ଓ ହାଣି ଦେବା । ଯେହେତୁ କେତେକ ଭାଷ୍ୟକାର ପୂର୍ବରୁ ଏକ ଭୁଲ ବ୍ୟାଖ୍ୟା କରିଛନ୍ତି ତେଣୁ ସେମାନେ ଏଠାରେ ହାଣିଦେବା ଅର୍ଥକୁ ପ୍ରାଧାନ୍ୟ ଦେବାକୁ ବାଧ୍ୟ ହୋଇଛନ୍ତି ଅର୍ଥାତ୍ ସେମାନଙ୍କ ଅନୁବାଦ ଅନୁସାରେ ଘୋଡ଼ାମାନଙ୍କୁ ଫେରାଇ ଆଣି ରାଗରେ ଏଥିଯୋଗୁଁ ହାଣି ଦେଇଥିଲେ ଯେ ସେମାନଙ୍କୁ ଦେଖିବା ଯୋଗୁଁ ତାଙ୍କର ନମାଜ ସମୟ ଗଡ଼ି ଯାଇଥିଲା । ଏ ପ୍ରକାର କାର୍ଯ୍ୟ ଜଣେ ପାଗଳ ପକ୍ଷରେ ସମ୍ଭବ ହୋଇପାରେ, ନବିଙ୍କ ପକ୍ଷରେ ନୁହେଁ । ଅସଲ କଥା ହେଉଛି ହଜରତ ସୁଲେମାନ ଘୋଡ଼ାମାନଙ୍କୁ ଜିହାଦ ଉଦ୍ଦେଶ୍ୟରେ ପାଳି ଥିଲେ । ତେଣୁ ସେ ଘୋଡ଼ାଙ୍କୁ ତାଙ୍କ ପାଖକୁ ଫେରାଇ ଆଣିବାପାଇଁ କହିଥିଲେ ଓ ଘୋଡ଼ାମାନେ ଆସିବାରୁ ଆଦରରେ ସେମାନଙ୍କ ପିଠି ଥାପୁଡ଼େଇ ଥିଲେ ଓ କହିଥିଲେ ଯେ ସେ ଜିହାଦ ପାଇଁ ଉତ୍କୃଷ୍ଟ ଘୋଡ଼ା ପ୍ରସ୍ତୁତ କରି ରଖିଛନ୍ତି ।

୩. ଏହାର ପ୍ରକୃତ ମର୍ମ ହେଉଛି ହଜରତ ସୁଲେମାନଙ୍କ ଉତ୍ତରାଧିକାରୀ ଏପରି ଏକ ପୁତ୍ର ହେବ ଯାହାଠାରେ ଆଧ୍ୟାତ୍ମିକତା ନ ଥିବ ଓ ତା'ଠାରେ କେବଳ ପାର୍ଥିବ ପ୍ରବୃତ୍ତି ଶକ୍ତିଶାଳୀ ହୋଇ ରହିଥିବ ।

୪. ଏଠାରେ ରାଜତ୍ୱ ଅର୍ଥ ନବିପଦ ଅର୍ଥାତ୍ ଆଧ୍ୟାତ୍ମିକ ରାଜତ୍ୱ, ଯାହା ଉତ୍ତର ପୁରୁଷଙ୍କୁ ଅଲ୍ଲାହ ଦାନ ସ୍ୱରୂପ ପ୍ରଦାନ କରିଥା'ନ୍ତି । ଏହା ପିତାଙ୍କଠାରୁ ବଂଶାନୁକ୍ରମେ ମିଳେ ନାହିଁ । ଏଥିପାଇଁ ହଜରତ ସୁଲେମାନ ଆଧ୍ୟାତ୍ମିକ କୃପାର ଅଭିବୃଦ୍ଧି ସକାଶେ ପ୍ରାର୍ଥନା କରିଥିଲେ । ସାଂସାରିକ ଉନ୍ନତି, ଯାହା ସନ୍ତାନମାନଙ୍କ କର୍ତ୍ତୃକ ନଷ୍ଟ ହୋଇଯାଇପାରେ, ତାହାଙ୍କର ଲୋଡ଼ା ନାହିଁ ବୋଲି ମଧ୍ୟ ସେ ପ୍ରାର୍ଥନା କରିଥିଲେ ।

୩୭. ଏବଂ ଆମ୍ଭେ ବାୟୁକୁ ତାହାଙ୍କ ସେବାରେ ନିୟୋଜିତ କରିଥିଲୁ ; ଯାହା କି ତାହାଙ୍କ ଆଦେଶ ମୁତାବକ ଯେଉଁଠାକୁ ସେ ଯିବାକୁ ଇଚ୍ଛା କରୁଥିଲେ ସେଠାକୁ ମୃଦୁଗତିରେ ଚାଲୁଥିଲା.

فَسَخَّرْنَا لَهُ الرِّيحَ تَجْرِي بِأَمْرِهِ رُخَاءً حَيْثُ أَصَابَ ﴿٣٧﴾

୩୮. ଏହିପରି ଭାବରେ ଆମ୍ଭେ ଦୁରାଚାରୀ ସଇତାନମାନଙ୍କୁ ଅର୍ଥାତ୍ ସେମାନଙ୍କ ମଧ୍ୟରେ ଥିବା ଇଞ୍ଜିନିୟର ଓ ନିର୍ମାଣକାରୀମାନଙ୍କୁ ତଥା ବୁଡ଼ାଳିମାନଙ୍କୁ ତାହାଙ୍କ ସେବାରେ ନିୟୋଜିତ କରିଥିଲୁ ।

وَالشَّيَاطِينَ كُلَّ بَنَّاءٍ وَغَوَّاصٍ ﴿٣٨﴾

୩୯. ଏବଂ ଅନ୍ୟ କେତେକଙ୍କୁ ମଧ୍ୟ, ଯେଉଁମାନେ ଶିକୁଳିରେ[୧] ବନ୍ଧା ହୋଇ ରହୁଥିଲେ (ଅର୍ଥାତ୍ କ୍ରୀତଦାସମାନଙ୍କୁ) ।

وَآخَرِينَ مُقَرَّنِينَ فِي الْأَصْفَادِ ﴿٣٩﴾

୪୦. ଏହା ଆମ୍ଭର ଅସୁମାରି ଦାନ[୨] ଅଟେ ; ସୁତରାଂ ତୁମେ ସେହି ସମ୍ପ୍ରଦାୟ ପ୍ରତି ଅନୁଗ୍ରହ କର କିମ୍ବା ଆବଶ୍ୟକତା ଅନୁଯାୟୀ ସେମାନଙ୍କ ପ୍ରତି କଠୋର[୩] ହୁଅ ।

هَٰذَا عَطَاؤُنَا فَامْنُنْ أَوْ أَمْسِكْ بِغَيْرِ حِسَابٍ ﴿٤٠﴾

୪୧. ଏବଂ ସେ ଆମ୍ଭର ସାମୀପ୍ୟ ଲାଭ କରିଛନ୍ତି ଏବଂ ଆମ୍ଭ ନିକଟରେ ତାହାଙ୍କ ପାଇଁ ଉତ୍କୃଷ୍ଟ ବିଶ୍ରାମ ସ୍ଥାନ ରହିଅଛି ।

وَإِنَّ لَهُ عِندَنَا لَزُلْفَىٰ وَحُسْنَ مَآبٍ ﴿٤١﴾

ରୁ : ୪

୪୨. ଏବଂ ଆମ୍ଭର ଭକ୍ତ ଅୟୁବଙ୍କୁ ସ୍ମରଣ କର ; ଯେତେବେଳେ ସେ ନିଜର ପାଳନକର୍ତ୍ତାଙ୍କୁ ଡାକି କହିଲେ, ''ଆମ୍ଭଙ୍କୁ ଜଣେ ଅବିଶ୍ୱାସକାରୀ ଶତ୍ରୁ ଅତ୍ୟନ୍ତ କଠିନ ପୀଡ଼ା ଓ ଶାସ୍ତି ଦେଇଅଛି ।''

وَاذْكُرْ عَبْدَنَا أَيُّوبَ إِذْ نَادَىٰ رَبَّهُ أَنِّي مَسَّنِيَ الشَّيْطَانُ بِنُصْبٍ وَعَذَابٍ ﴿٤٢﴾

୪୩. (ଆମ୍ଭେ ତାହାଙ୍କୁ କହିଲୁ), ''ନିଜ ବାହନକୁ ଗୋଇଠି ମାର ; (ଓ ଅଗ୍ରସର ହୁଅ ; ଏଠାରେ ସ୍ନାନ ଉପଯୋଗୀ ଓ ପାନୀୟ ଉପଯୋଗୀ ଶୀତଳ ଜଳ ଅଛି ।

ارْكُضْ بِرِجْلِكَ ۖ هَٰذَا مُغْتَسَلٌ بَارِدٌ وَشَرَابٌ ﴿٤٣﴾

୪୪. ଏବଂ ଆମ୍ଭେ ତାହାଙ୍କୁ ତାଙ୍କର ପରିବାର ମଧ୍ୟ ଦେଲୁ ଏବଂ ନିଜ କରୁଣାରୁ ସେମାନଙ୍କ ସଦୃଶ ଆହୁରି ମଧ୍ୟ ଦେଇଥିଲୁ, ଏବଂ ବୁଦ୍ଧିମାନ୍ (ଲୋକ)ମାନଙ୍କ ସକାଶେ ଏକ ଉପଦେଶମୂଳକ ବିଷୟ ମଧ୍ୟ ପ୍ରଦାନ କଲୁ ।

وَوَهَبْنَا لَهُ أَهْلَهُ وَمِثْلَهُم مَّعَهُمْ رَحْمَةً مِّنَّا وَذِكْرَىٰ لِأُولِي الْأَلْبَابِ ﴿٤٤﴾

---

୧. ପ୍ରାଚୀନକାଳରେ ଦାସମାନଙ୍କୁ, ବିଶେଷତଃ ଯେଉଁମାନେ କି ସମୁଦ୍ରରେ କାର୍ଯ୍ୟରତ ଥାଆନ୍ତି, କାଳେ ସେମାନେ ଜାହାଜରୁ ଡେଇଁ ପଳାଇବେ ସେଥି ସକାଶେ ସେମାନଙ୍କୁ ଶିକୁଳିରେ ବାନ୍ଧି ରଖୁଥିଲେ । ରୋମ ଇତିହାସ ଏହାର ସୁସ୍ପଷ୍ଟ ପ୍ରମାଣ । ଏଠାରେ ନାବିକମାନଙ୍କ ବର୍ଣ୍ଣନା ଅଛି, କାରଣ ପର୍ବରୁ ନୌକା ବିଷୟ ଉଲ୍ଲେଖ କରାଯାଇଛି ଯାହା ବହୁଦୂର ପର୍ଯ୍ୟନ୍ତ ଗତି କରୁଥିଲା ।

୨. ଅର୍ଥାତ୍ ଅଲ୍ଲାହଙ୍କ କୃପାରୁ ତାଙ୍କୁ ଏପରି ଶକ୍ତିଶାଳୀ ନୌବହର ଓ ଦୁରାଗ୍ରହୀ ଜାତି ଉପରେ ଅଧିକାର ପ୍ରାପ୍ତ ହୋଇଥିଲା ।

୩. ଏଥିରୁ ଜଣାପଡୁଛି ଯେ ଯୁଦ୍ଧବନ୍ଦୀମାନଙ୍କ ପ୍ରତି ସେତିକି କଠୋରତା ଅବଲମ୍ବନ କରାଯାଇ ପାରିବ ଯେତିକି ସେମାନଙ୍କ ପଳାୟନକୁ ବାଧା ଦେଇପାରିବ । ଏହାଠାରୁ ଅଧିକ କଠୋରତା ଅନ୍ୟାୟ ହେବ ।

୪୫. ଏବଂ (ଅୟୁବଙ୍କୁ କହିଥିଲୁ), "ନିଜ ହାତରେ ପତ୍ରଯୁକ୍ତ [୧] ଗୋଟିଏ ଖଜୁରି ଡାଳ ନିଅ ଓ ଏହା ସାହାଯ୍ୟରେ ଦ୍ରୁତଗତିରେ ଯାତ୍ରା କର (ଅର୍ଥାତ୍ ଭାରବାହୀ ପଶୁମାନଙ୍କୁ ଏଥିରେ ପ୍ରହାର କରି ସେମାନଙ୍କୁ ଦଉଡ଼ାଇ ନିଅ) ଏବଂ ସତ୍ୟ ପରିବର୍ତ୍ତେ ମିଥ୍ୟା ପ୍ରତି ଆସକ୍ତ [୨] ହୁଅ ନାହିଁ ;" ଆମେ ତାହାଙ୍କୁ ଧୈର୍ଯ୍ୟବାନ୍ ପାଇଲୁ ; ସେ ଅତି ଉତ୍ତମ ଭକ୍ତ ଥିଲେ ; ବାସ୍ତବରେ ସେ (ଅଲ୍ଲାହଙ୍କ ପ୍ରତି) ଅତିଶୟ ଅନୁରକ୍ତ ଥିଲେ ।

وَخُذْ بِيَدِكَ ضِغْثًا فَاضْرِبْ بِّهٖ وَلَا تَحْنَثْ ۗ إِنَّا وَجَدْنٰهُ صَابِرًا ۗ نِعْمَ الْعَبْدُ ۗ إِنَّهٗٓ أَوَّابٌ ﴿٤٥﴾

୪୬. ଏବଂ ଆମର ଭକ୍ତ ଇବ୍ରାହିମ ଓ ଇସହାକ ଓ ୟାକୁବଙ୍କୁ ମନେପକାଅ ; ସେମାନେ କର୍ମବୀର ଓ ଦୂରଦର୍ଶୀ ଥିଲେ ।

وَاذْكُرْ عِبٰدَنَآ إِبْرٰهِيمَ وَإِسْحٰقَ وَيَعْقُوبَ أُولِي الْأَيْدِي وَالْأَبْصَارِ ﴿٤٦﴾

୪୭. ଆମେ ସେମାନଙ୍କୁ ଏକ ବିଶେଷ ଉଦ୍ଦେଶ୍ୟ ନିମନ୍ତେ ମନୋନୀତ କରିଥିଲୁ ; ଏବଂ ତାହା (ହେଉଛି ପରକାଳର) ପ୍ରକୃତ ବାସସ୍ଥାନର ସ୍ମରଣ ।

إِنَّآ أَخْلَصْنٰهُمْ بِخَالِصَةٍ ذِكْرَى الدَّارِ ﴿٤٧﴾

୪୮. ଏବଂ ସେମାନେ ଆମ୍ଭ ନିକଟରେ ମନୋନୀତ ଓ ଅତି ଉତ୍ତମ ବ୍ୟକ୍ତି ଥିଲେ ।

وَإِنَّهُمْ عِنْدَنَا لَمِنَ الْمُصْطَفَيْنَ الْأَخْيَارِ ﴿٤٨﴾

୪୯. ଏବଂ ଇସମାଇଲ [୩] ଓ ୟ ସିୟାହଙ୍କୁ ମନେପକାଅ ; ଏବଂ ଜୁଲକିଫଲଙ୍କୁ [୪] ମଧ୍ୟ ; ଏ ସମସ୍ତେ -ଆମର ଅତ୍ୟନ୍ତ ପୁଣ୍ୟବାନ୍ ଭକ୍ତମାନଙ୍କ ମଧ୍ୟରେ (ଅନ୍ତର୍ଭୁକ୍ତ) ଥିଲେ ।

وَاذْكُرْ إِسْمٰعِيلَ وَالْيَسَعَ وَذَا الْكِفْلِ ۗ وَكُلٌّ مِّنَ الْأَخْيَارِ ﴿٤٩﴾

୫୦. ଏହା (ଅର୍ଥାତ୍ ଏହି ବର୍ଣ୍ଣନା) ସେହି ଲୋକମାନଙ୍କ ପଦାଙ୍କ ଅନୁସରଣ କରିବା ପାଇଁ ଏକ ଅନୁସ୍ମାରକ ; ଏବଂ ଧର୍ମଭୀରୁମାନଙ୍କ ସକାଶେ ନିଶ୍ଚିତରୂପେ ଅତ୍ୟନ୍ତ ଉତ୍ତମ ଶ୍ରେଣୀର ବିଶ୍ରାମ ସ୍ଥାନ ନିୟତ ଅଛି.

هٰذَا ذِكْرٌ ۗ وَإِنَّ لِلْمُتَّقِينَ لَحُسْنَ مَاٰبٍ ﴿٥٠﴾

୫୧. (ଅର୍ଥାତ୍) ଚିରସ୍ଥାୟୀ (ସ୍ୱର୍ଗ) ଉଦ୍ୟାନ ଯାହାର ଦ୍ୱାର ସେମାନଙ୍କ ପାଇଁ ସଦା ଉନ୍ମୁକ୍ତ ରହିବ ।

جَنّٰتِ عَدْنٍ مُّفَتَّحَةً لَّهُمُ الْأَبْوَابُ ﴿٥١﴾

---

୧. ପର୍ବତ ନିବାସୀମାନେ ପତ୍ର ଥିବା ଲମ୍ବ ଡାଳରେ ଘୋଡ଼ାକୁ ପିଟି ପିଟି ଦଉଡ଼ାନ୍ତି । ଏଥିରେ ସେହି ବିଷୟର ବର୍ଣ୍ଣନା ଅଛି । ଏଥିରୁ ଜଣାପଡୁଛି ଯେ ହଜରତ ଅୟୁବ ପର୍ବତ ନିବାସୀ ଥିଲେ । ଭାଷ୍ୟ 'ଫତହୁଲବୟାନ' ରେ ଲିପିବଦ୍ଧ ହୋଇଛି ଯେ 'ଜିଗସ୍' ଅର୍ଥ ଖଜୁରି ଡାଳ (ଗ୍ରନ୍ଥ ଖଣ୍ଡ ୮, ପୃଷ୍ଠା ୧୧୭ ଦ୍ରଷ୍ଟବ୍ୟ) ।

୨. ମୂଳ ଶବ୍ଦ 'ହିନ୍‌ସ' ଅର୍ଥ ସତ୍ୟରୁ ଅସତ୍ୟ ଆଡ଼କୁ ଢଳିବା । ଏଠାରେ ସୂଚାଇ ଦିଆଯାଇଛି ଯେ ଶତ୍ରୁମାନେ ତୁମକୁ ସତ୍‌ପଥରୁ ବିଚ୍ୟୁତ କରାଇ ନିଜ ଆଡ଼କୁ ଆଣିବା ଚାହୁଁଛନ୍ତି କିନ୍ତୁ ଯଦିଓ ତୁମେ ସ୍ୱାଭାବିକଭାବେ ଏପରି କରିପାରିବ ନାହିଁ ତଥାପି ଶତ୍ରୁମାନେ ବିରୋଧ କରିବା ଫଳରେ ତୁମକୁ ଆଦେଶ ଦେଉଅଛୁ ଯେ ଆରୋହଣ କରି ଯାଅ ଓ ଗୋଇଠା ମାରି ବା ଡାଳରେ ପିଟି ପିଟି ପଶୁମାନଙ୍କୁ ଦଉଡାଇ ନିଅ ଅର୍ଥାତ୍ ଶୀଘ୍ର ଶତ୍ରୁମାନଙ୍କ ଦେଶ ତ୍ୟାଗ କର ଯେପରିକି ଶତ୍ରୁମାନେ ତୁମ ଉପରେ କୌଣସି ଅଧିକାର ସାବ୍ୟସ୍ତ ନ କରନ୍ତୁ ଏବଂ ତୁମେ ସେମାନଙ୍କ ନାସ୍ତିକତାରୁ, ଯେପରି ଆଧ୍ୟାତ୍ମିକ ଦୃଷ୍ଟିରୁ ସୁରକ୍ଷିତ ଅଟ ସେହିପରି ଶାରୀରିକ ଦୃଷ୍ଟିରୁ ମଧ୍ୟ, ସୁରକ୍ଷିତ ହୋଇଯିବ ।

୩. ୬: ୮୬ ର ଟୀକା ଦ୍ରଷ୍ଟବ୍ୟ ।

୪. ୨୧: ୮୬ ର ଟୀକା ଦ୍ରଷ୍ଟବ୍ୟ ।

مُتَّكِـِٔينَ فِيهَا يَدْعُونَ فِيهَا بِفَاكِهَةٍ كَثِيرَةٍ وَشَرَابٍ ﴿٥٢﴾

୫୨. ସେମାନେ ସେଠାରେ ତକିଆ ଲଗାଇ ବସିଥିବେ (ଓ) ସେମାନେ ସେଠାରେ ପ୍ରତ୍ୟେକ ପ୍ରକାରର ଫଳ, ଯାହା କି ପ୍ରଚୁର ପରିମାଣରେ ଉପଲବ୍ଧ ହେଉଥିବ ଚାହିଁବେ ଏବଂ ସେହିପରି ପାନୀୟ ମଧ୍ୟ।

وَعِنْدَهُمْ قٰصِرٰتُ الطَّرْفِ أَتْرَابٌ ﴿٥٣﴾

୫୩. ଏବଂ ସେମାନଙ୍କ ନିକଟରେ ନତମୁଖୀ ସମବୟସ୍କା ନାରୀମାନେ ଥିବେ।

هٰذَا مَا تُوعَدُونَ لِيَوْمِ الْحِسَابِ ﴿٥٤﴾

୫୪. ଏହା ଏପରି ବିଷୟ ଯାହା ତୁମମାନଙ୍କୁ କୟାମତ ଦିନ ମିଳିବ ବୋଲି ଅଙ୍ଗୀକାର କରାଯାଉଛି।

إِنَّ هٰذَا لَرِزْقُنَا مَا لَهُ مِنْ نَفَادٍ ﴿٥٥﴾

୫୫. ଏହା ଆମର ଅସରନ୍ତି ଜୀବିକା।

هٰذَا ۚ وَإِنَّ لِلطّٰغِينَ لَشَرَّ مَـَٔابٍ ﴿٥٦﴾

୫୬. ଏହା (ବିଶ୍ୱାସକାରୀମାନଙ୍କ ସକାଶେ ଏକ ଅଙ୍ଗୀକୃତ ବିଷୟ) ହେବ ; କିନ୍ତୁ ଦୁରାଚାରୀମାନଙ୍କ ନିମନ୍ତେ ଅତ୍ୟନ୍ତ ମନ୍ଦ ବାସସ୍ଥାନ ହେବ,

جَهَنَّمَ ۚ يَصْلَوْنَهَا ۚ فَبِئْسَ الْمِهَادُ ﴿٥٧﴾

୫୭. (ଅର୍ଥାତ୍) ନରକ ; ଯହିଁରେ ସେମାନେ ପ୍ରବେଶ କରିବେ ; ଏବଂ ତାହା ରହିବା ପାଇଁ ଅତ୍ୟନ୍ତ ମନ୍ଦସ୍ଥାନ ଅଟେ।

هٰذَا ۙ فَلْيَذُوقُوهُ حَمِيمٌ وَغَسَّاقٌ ﴿٥٨﴾

୫୮. ଏହା (ଅବିଶ୍ୱାସକାରୀମାନଙ୍କ ସକାଶେ ନିର୍ଦ୍ଦିଷ୍ଟ) ରହିଛି ; ସୁତରାଂ ସେମାନେ ତାହାକୁ ଆସ୍ୱାଦନ କରନ୍ତୁ, ଅର୍ଥାତ୍ ଉତ୍ତପ୍ତ ଜଳକୁ ଓ କ୍ଷତ ଧୌତ ଜଳକୁ।

وَآخَرُ مِنْ شَكْلِهِ أَزْوَاجٌ ﴿٥٩﴾

୫୯. ଏବଂ ଏହା (ଅର୍ଥାତ୍ ଏହି ଗୋଷ୍ଠୀ) ସଦୃଶ ଅନ୍ୟ କେତେକ ଗୋଷ୍ଠୀ ମଧ୍ୟ ଥିବେ (ଯେଉଁମାନଙ୍କ କର୍ମର ପରସ୍ପର ସହିତ ସାମଞ୍ଜସ୍ୟ ଥିବ)।

هٰذَا فَوْجٌ مُقْتَحِمٌ مَعَكُمْ ۚ لَا مَرْحَبًا بِهِمْ ۚ إِنَّهُمْ صَالُوا النَّارِ ﴿٦٠﴾

୬୦. (ସେମାନଙ୍କ ମଧ୍ୟରୁ ଗୋଟିଏ ଦଳ ଏକ ପୂର୍ବବର୍ତ୍ତୀ ଦଳ ପ୍ରତି ଇଙ୍ଗିତ-ପୂର୍ବକ କହିବ) ଏମାନେ ମଧ୍ୟ ଗୋଟିଏ ଗୋଷ୍ଠୀ ଯେଉଁମାନେ କି ତୁମମାନଙ୍କ ସଙ୍ଗରେ ନରକରେ ପ୍ରବେଶ କରିବେ ଓ ସେମାନଙ୍କୁ କେହି ସ୍ୱାଗତ କରିବାକୁ ନ ଥିବେ ; ସେମାନେ ନିଶ୍ଚୟ ନରକରେ ପ୍ରବେଶ କରିବେ।

قَالُوا بَلْ أَنْتُمْ ۖ لَا مَرْحَبًا بِكُمْ ۖ أَنْتُمْ قَدَّمْتُمُوهُ لَنَا ۖ فَبِئْسَ الْقَرَارُ ﴿٦١﴾

୬୧. (ଯେଉଁ ଗୋଷ୍ଠୀକୁ ଏହା କୁହାଯିବ) ସେମାନେ କହିବେ, "ଆମମାନଙ୍କ କଥା ଛାଡ଼ ; ତୁମେମାନେ ମଧ୍ୟ ଏପରି ଲୋକ ଯେଉଁମାନଙ୍କୁ 'ସ୍ୱାଗତ' କହିବା ପାଇଁ କେହି ନାହିଁ ; ତୁମେମାନେ (ଆମମାନଙ୍କୁ ଭୁଲାଇ) ଏହାକୁ (ଅର୍ଥାତ୍ ନରକକୁ) ଆମମାନଙ୍କ ସକାଶେ ଆଗରୁ [୧] ତିଆରି କରି ରଖିଅଛ ; ଏବଂ ତାହା ଅତ୍ୟନ୍ତ ମନ୍ଦ ବାସସ୍ଥାନ ଅଟେ।"

---

[୧] ଅର୍ଥାତ୍ ଏପରି କର୍ମ ଓ ବିଶ୍ୱାସ ଆମମାନଙ୍କ ନିକଟରେ ପେଶ କଲେ ଯାହାକୁ ଅବଲମ୍ବନ କରିବାରୁ ଆମମାନଙ୍କୁ ନରକର ଦ୍ୱାର ଦେଖିବାକୁ ପଡ଼ିଲା।

قَالُوْا رَبَّنَا مَنْ قَدَّمَ لَنَا هٰذَا فَزِدْهُ عَذَابًا ضِعْفًا فِي النَّارِ ﴿٦٢﴾

୬୨. (ଯେଉଁମାନଙ୍କୁ ଉପରୋକ୍ତ କଥା କୁହାଯିବ) ସେମାନେ କହିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଯେ କେହି (ତୁମ ଦୃଷ୍ଟିରେ) ଏହି ନରକକୁ ଆମମାନଙ୍କ ପାଇଁ ତିଆରି କରି ଅଛି, ତୁମେ ତାହାକୁ (ନରକ) ଅଗ୍ନିରେ ଅଧିକରୁ ଅଧିକ ଶାସ୍ତି ପ୍ରଦାନ କର ।"

وَقَالُوْا مَا لَنَا لَا نَرٰى رِجَالًا كُنَّا نَعُدُّهُمْ مِّنَ الْاَشْرَارِ ﴿٦٣﴾

୬୩. ଏବଂ (ସେତେବେଳେ ନରକ - ବାସୀମାନେ) କହିବେ, "ଆମମାନଙ୍କୁ କ'ଣ ହୋଇଛି ଯେ ଯେଉଁମାନଙ୍କୁ ଆମେମାନେ ମନ୍ଦ ବୋଲି ସାବ୍ୟସ୍ତ କରୁଥିଲୁ ଆଜି ସେମାନଙ୍କୁ ଦେଖିବାକୁ ପାଉନାହୁଁ ?"

اَتَّخَذْنٰهُمْ سِخْرِيًّا اَمْ زَاغَتْ عَنْهُمُ الْاَبْصَارُ ﴿٦٤﴾

୬୪. କ'ଣ ଆମେମାନେ (ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଏପରି ଭାବେ) ସେମାନଙ୍କୁ ତୁଚ୍ଛ ମନେ କରୁଥିଲୁ ନା ବର୍ତ୍ତମାନ ଆମମାନଙ୍କର ଦୃଷ୍ଟି ଭ୍ରମ ହୋଇଛି (ଯାହା ଫଳରେ କି ଆମେମାନେ ସେମାନଙ୍କୁ ଦେଖିପାରୁ ନାହୁଁ) ।

اِنَّ ذٰلِكَ لَحَقٌّ تَخَاصُمُ اَهْلِ النَّارِ ﴿٦٥﴾

୬୫. ନରକବାସୀମାନଙ୍କର ଏହି ଦ୍ୱନ୍ଦ୍ୱ ଏକ ସତ୍ୟ ବିଷୟ ଅଟେ, ଏବଂ ତାହା ହିଁ ହେବ ।

ରୁ : ୫

قُلْ اِنَّمَآ اَنَا مُنْذِرٌ ۖ وَّمَا مِنْ اِلٰهٍ اِلَّا اللّٰهُ الْوَاحِدُ الْقَهَّارُ ﴿٦٦﴾

୬୬. ତୁମେ (ସେମାନଙ୍କୁ) କୁହ, "ଆମେ କେବଳ ଜଣେ ସଚେତକ ; ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସେ ଅଦ୍ୱିତୀୟ (ଓ) ପରାକ୍ରମୀ ।"

رَبُّ السَّمٰوٰتِ وَالْاَرْضِ وَمَا بَيْنَهُمَا الْعَزِيْزُ الْغَفَّارُ ﴿٦٧﴾

୬୭. (ସେ) ଆକାଶ ଓ ପୃଥିବୀର ପାଳନକର୍ତ୍ତା ; ଏବଂ ଯାହା କିଛି ସେ ଦୁଇଟି ମଧ୍ୟରେ ଅଛି (ତାହାର ମଧ୍ୟ) ; ସେ ପରାକ୍ରମୀ, (ଅଥଚ) କ୍ଷମାଶୀଳ ।[୧]

قُلْ هُوَ نَبَؤٌا عَظِيْمٌ ﴿٦٨﴾

୬୮. ତୁମେ କୁହ, "ଏହା ଏକ ମହାନ୍ ସମାଚାର",

اَنْتُمْ عَنْهُ مُعْرِضُوْنَ ﴿٦٩﴾

୬୯. "(କିନ୍ତୁ) ତୁମେମାନେ ଏଥିରୁ ବିମୁଖ ହେଉଅଛ ।"

---

୧. ମଣିଷ ଯେତେବେଳେ କାହାରି ଉପରେ ବିଜୟ ଲାଭ କରେ ସେତେବେଳେ ସେ ନିଜ ଶତ୍ରୁମାନଙ୍କୁ ଧ୍ୱଂସ ବିଧ୍ୱସ୍ତ କରି ପକାଏ । କିନ୍ତୁ ଅଲ୍ଲାହ ପରାକ୍ରମୀ ହେଲେ ମଧ୍ୟ ଅତ୍ୟନ୍ତ କ୍ଷମାଶୀଳ । ଯଦିଚ ସବୁ ଅବିଶ୍ୱାସୀମାନେ ତାହାଙ୍କର ଆୟତ୍ତାଧୀନ ତଥାପି ସେ ସେମାନଙ୍କୁ ଢିଲା ଛାଡି ଦେଇଛନ୍ତି ଓ ଦଣ୍ଡ ଦେବାରେ ବିଳମ୍ବ କରିଥା'ନ୍ତି । ବସ୍ତୁତଃ ଏହି ଆୟତରେ ହଜରତ ମହମ୍ମଦଙ୍କର ଆଚରଣ ବର୍ଣ୍ଣନା କରାଯାଇଛି । ହଜରତ ମହମ୍ମଦଙ୍କର ଚରିତ୍ର ବିଷୟରେ ତାଙ୍କ ଧର୍ମପତ୍ନୀ ହଜରତ ଆୟେଶା କହନ୍ତି - ପବିତ୍ର କୋରାନରେ ଅଲ୍ଲାହଙ୍କର ଯେଉଁସବୁ ଗୁଣର ଚର୍ଚ୍ଚା କରାଯାଇଛି ସେ ସବୁ ହଜରତ ମହମ୍ମଦଙ୍କ ଠାରେ ଦୃଷ୍ଟିଗୋଚର ହେଉଥିଲା (ହଦିସ ବୁଖାରି ଦ୍ରଷ୍ଟବ୍ୟ) । ଅବଶ୍ୟ ଏହି ବାକ୍ୟ ଅଲ୍ଲାହଙ୍କ ସକାଶେ କୁହାଯାଇଛି, କିନ୍ତୁ ଏଥିରେ ହଜରତ ମହମ୍ମଦ ମଧ୍ୟ ଅଭିପ୍ରେତ । ମକ୍କା ବିଜୟ ପରେ ହଜରତ ମହମ୍ମଦଙ୍କ ପାଖରେ ଯେତେବେଳେ ସବୁ ଅବିଶ୍ୱାସକାରୀଙ୍କୁ — ଯେଉଁମାନେ କି ଦିନରାତି ତାଙ୍କୁ ଓ ତାଙ୍କ ଅନୁଗାମୀମାନଙ୍କୁ ଦୁଃଖ ଯନ୍ତ୍ରଣା ଦେଉଥିଲେ — ହାଜର କରାଗଲା ସେ କହିଲେ, ଆଜି ତୁମମାନଙ୍କ ମଧ୍ୟରୁ କାହାରି ଦୋଷ ଧରାଯିବ ନାହିଁ (ସିରତ ହଲବିୟା ଓ ଜୁରକାନି: ଗ୍ରନ୍ଥଖଣ୍ଡ ୨, ପୃଷ୍ଠା ୩୦୨ — ୩୦୩)

مَا كَانَ لِيَ مِنْ عِلْمٍ بِالْمَلَإِ الْأَعْلَىٰ إِذْ يَخْتَصِمُونَ ﴿٧٠﴾

୭୦. ଏବଂ "ଆମ୍ଭଙ୍କୁ ଉଚ୍ଚ ମର୍ଯ୍ୟାଦା – ସମ୍ପନ୍ନ ଦେବଦୂତମାନଙ୍କ ବିଷୟରେ କିଛି ଜଣା ନ ଥିଲା ଯେତେବେଳେ ସେମାନେ (ଏହି) ଯୁକ୍ତିତର୍କ କରୁଥିଲେ (ଯେ ବର୍ତ୍ତମାନ ଯୁଗରେ ଉପଦେଶ ଦେବା ସକାଶେ କେଉଁ ବ୍ୟକ୍ତି ଉପଯୁକ୍ତ)।"

إِنْ يُوحَىٰ إِلَيَّ إِلَّا أَنَّمَا أَنَا نَذِيرٌ مُبِينٌ ﴿٧١﴾

୭୧. "ଆମ୍ଭଙ୍କୁ ଓହି ମାଧ୍ୟମରେ କେବଳ ଏହା ଜଣାଇ ଦିଆଯାଉଅଛି ଯେ ଆମ୍ଭେ ଜଣେ ପ୍ରକାଶ୍ୟ ସଚେତକ (ଅର୍ଥାତ୍ ନବୀ) ଅଟୁ ।"

إِذْ قَالَ رَبُّكَ لِلْمَلَائِكَةِ إِنِّي خَالِقٌ بَشَرًا مِنْ طِينٍ ﴿٧٢﴾

୭୨. (ସ୍ମରଣ କର) ଯେତେବେଳେ ତୁମ୍ଭର ପାଳନକର୍ତ୍ତା ଦେବଦୂତମାନଙ୍କୁ କହିଲେ, "ଆମ୍ଭେ ଆର୍ଦ୍ର ମୃତ୍ତିକାରୁ ଏକ ମାନବ ସୃଷ୍ଟି କରିବୁ ।"

فَإِذَا سَوَّيْتُهُ وَنَفَخْتُ فِيهِ مِنْ رُوحِي فَقَعُوا لَهُ سَاجِدِينَ ﴿٧٣﴾

୭୩. ସୁତରାଂ ଯେତେବେଳେ ଆମ୍ଭେ ତାହାକୁ ସମ୍ପୂର୍ଣ୍ଣ କରିଦେବୁ ଓ ତାହା ମଧ୍ୟରେ ନିଜର ବାଣୀ ପ୍ରବେଶ କରାଇବୁ, ସେତେବେଳେ ତୁମେମାନେ ଆନୁଗତ୍ୟ ସ୍ବୀକାର କରି ତାହାଙ୍କ ସମ୍ମୁଖରେ ନିପତିତ ହୁଅ ।

فَسَجَدَ الْمَلَائِكَةُ كُلُّهُمْ أَجْمَعُونَ ﴿٧٤﴾

୭୪. ସୁତରାଂ ଦେବଦୂତମାନଙ୍କ ମଧ୍ୟରୁ ସମସ୍ତେ ତାହାଙ୍କ ଆନୁଗତ୍ୟ ସ୍ବୀକାର କରିଥିଲେ,

إِلَّا إِبْلِيسَ اسْتَكْبَرَ وَكَانَ مِنَ الْكَافِرِينَ ﴿٧٥﴾

୭୫. କେବଳ ଇବଲିସ ବ୍ୟତୀତ, ଯେ କି ଅହଙ୍କାର କରିଥିଲା, ଏବଂ ସେ ଆଦ୍ୟରୁ ହିଁ ଅବିଶ୍ବାସକାରୀ ଥିଲା ।

قَالَ يَا إِبْلِيسُ مَا مَنَعَكَ أَنْ تَسْجُدَ لِمَا خَلَقْتُ بِيَدَيَّ ۖ أَسْتَكْبَرْتَ أَمْ كُنْتَ مِنَ الْعَالِينَ ﴿٧٦﴾

୭୬. (ଅଲ୍ଲାହ ) କହିଲେ, "ହେ ଇବଲିସ ! ଆମ୍ଭେ ଯାହାକୁ ନିଜର ଦୁଇ ହସ୍ତ [1] ଦ୍ବାରା ଗଢ଼ି ଅଛୁ ତାହାର ଆନୁଗତ୍ୟ ସ୍ବୀକାର କରିବାକୁ କିଏ ତୁମକୁ ବାଧା ଦେଲା ? କ'ଣ ତୁମେ ନିଜକୁ ବଡ଼ ମନେ କଲ ନା ବାସ୍ତବରେ ତୁମେ ଆମ ଆଦେଶ ପାଳନ କରିବାର ଊର୍ଦ୍ଧ୍ବରେ ?"

قَالَ أَنَا خَيْرٌ مِنْهُ ۖ خَلَقْتَنِي مِنْ نَارٍ وَخَلَقْتَهُ مِنْ طِينٍ ﴿٧٧﴾

୭୭. ଇବଲିସ କହିଲା, "ମୁଁ ଅନ୍ତତଃ ଏହି ବ୍ୟକ୍ତି (ଅର୍ଥାତ୍ ଆଦମ୍) ଠାରୁ ଉତ୍କୃଷ୍ଟ ; (କାରଣ) ତୁମ୍ଭେ ମୋତେ ଅଗ୍ନିରୁ ସୃଷ୍ଟି [2] କରିଅଛ ଓ ତାହାକୁ ଆର୍ଦ୍ର ମୃତ୍ତିକାରୁ ସୃଷ୍ଟି କରିଅଛ ।"

قَالَ فَاخْرُجْ مِنْهَا فَإِنَّكَ رَجِيمٌ ﴿٧٨﴾

୭୮. ଏଥି ଉତ୍ତାରୁ (ଅଲ୍ଲାହ) କହିଲେ, "ଏଠାରୁ ବାହାରି ଯାଅ, କାରଣ ତୁମେ (ଆମ୍ଭ ଦରବାରରୁ) ବିତାଡ଼ିତ ହୋଇଅଛ ।"

---

୧. ଅର୍ଥାତ୍ ସବୁଗୁଣକୁ ତାଙ୍କ ଭିତରେ ଏକାଠି କରାଯାଇଛି ଯଦ୍ବାରା ତାଙ୍କ ମଧ୍ୟ ଦେଇ ଅଲ୍ଲାହଙ୍କ ଗୁଣାବଳୀ ପ୍ରକାଶିତ ହେବ ।

୨. ୭: ୧୩ ର ଟୀକା ଦ୍ରଷ୍ଟବ୍ୟ ।

୭୯. ଏବଂ ବିଚାର-ଦିବସ ପର୍ଯ୍ୟନ୍ତ ତୁମ ଉପରେ ଆମର ଅଭିଶାପ ପଡ଼ୁଥିବ ।

وَّاِنَّ عَلَيْكَ لَعْنَتِيْٓ اِلٰى يَوْمِ الدِّيْنِ ﴿٧٩﴾

୮୦. ଏହାପରେ ସେ କହିଲା, ''ହେ ମୋର ପାଳନକର୍ତ୍ତା ! (ଯଦି ଏହିପରି କରିବାକୁ ଅଛି), ତେବେ ସେମାନଙ୍କୁ ଜୀବିତ କରାଇ ପୁନରୁତ୍‌ଥିତ କରାଯିବା ପର୍ଯ୍ୟନ୍ତ ମୋତେ ଅବସର ଦିଅ ।''

قَالَ رَبِّ فَاَنْظِرْنِيْٓ اِلٰى يَوْمِ يُبْعَثُوْنَ ﴿٨٠﴾

୮୧. ଏହାପରେ (ଅଲ୍ଲାହ) କହିଲେ, ''(ଯଦି ତୁମର ଏପରି ଇଚ୍ଛାଥାଏ ତେବେ), ତୁମେ ନିଜକୁ ଅବସରପ୍ରାପ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥିବାର ଭାବିନିଅ ।''

قَالَ فَاِنَّكَ مِنَ الْمُنْظَرِيْنَ ﴿٨١﴾

୮୨. ''ଏହା (ଅର୍ଥାତ୍ ଏହି ଅବସର) ଏକ ସୁବିଦିତ ସମୟ ପର୍ଯ୍ୟନ୍ତ ହେବ'' ।

اِلٰى يَوْمِ الْوَقْتِ الْمَعْلُوْمِ ﴿٨٢﴾

୮୩./୮୪. ତା'ପରେ ସେ କହିଲା, ''ତୁମ ମର୍ଯ୍ୟାଦାର ରାଣ, ମୁଁ ସେମାନଙ୍କ ମଧ୍ୟରୁ ଅଳ୍ପ କେତେକ ଭକ୍ତଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ପଥଭ୍ରଷ୍ଟ କରାଇବି ।''

قَالَ فَبِعِزَّتِكَ لَاُغْوِيَنَّهُمْ اَجْمَعِيْنَ ﴿٨٣﴾

اِلَّا عِبَادَكَ مِنْهُمُ الْمُخْلَصِيْنَ ﴿٨٤﴾

୮୫. (ଅଲ୍ଲାହ) କହିଲେ, ''ଏହା ସତ୍ୟ ଓ ଆମେ ସତ୍ୟ ହିଁ ବର୍ଣ୍ଣନା କରିଥାଉ.''

قَالَ فَالْحَقُّ وَالْحَقَّ اَقُوْلُ ﴿٨٥﴾

୮୬. ''ଯେ ଆମେ ତୁମକୁ ଓ ଯେଉଁମାନେ ତୁମର ଅନୁସରଣ କରିବେ ସେମାନଙ୍କୁ ନେଇ ନରକ ପୂର୍ଣ୍ଣ କରିଦେବୁ ।''

لَاَمْلَـَٔنَّ جَهَنَّمَ مِنْكَ وَمِمَّنْ تَبِعَكَ مِنْهُمْ اَجْمَعِيْنَ ﴿٨٦﴾

୮୭. ତୁମେ କୁହ, ''ଆମେ ଏ (ପ୍ରଚାର) ବାବଦରେ ତୁମମାନଙ୍କ ଠାରୁ କୌଣସି ପ୍ରତିଦାନ ଚାହୁଁନାହୁଁ କି ଆମେ ଛଳନାମୟ କଥା କହିବାରେ ଅଭ୍ୟସ୍ତ ନୋହୁଁ ।''

قُلْ مَآ اَسْـَٔلُكُمْ عَلَيْهِ مِنْ اَجْرٍ وَّمَآ اَنَا مِنَ الْمُتَكَلِّفِيْنَ ﴿٨٧﴾

୮୮. ''ଏହା (ଅର୍ଥାତ୍ କୋରାନ) ସମସ୍ତ ଜଗତ ପାଇଁ ଏକ ଉପଦେଶ ପୂର୍ଣ୍ଣ ଗ୍ରନ୍ଥ ଅଟେ ।''

اِنْ هُوَ اِلَّا ذِكْرٌ لِّلْعٰلَمِيْنَ ﴿٨٨﴾

୮୯. ''ଏବଂ କିଛି କାଳ ପରେ ତୁମେମାନେ ଏହାର (ସତ୍ୟ) ସମାଚାରକୁ ଜାଣି ପାରିବ ।

وَلَتَعْلَمُنَّ نَبَاَهٗ بَعْدَ حِيْنٍ ﴿٨٩﴾

سُوْرَةُ الزُّمَرِ مَكِّيَّةٌ (٣٩)

## ଅଲ-ଜୁମର

( ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୭୬ଟି ଆୟତ ଓ ୮ଟି ରୁକୁ ଅଛି । )

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ଏହି ଗ୍ରନ୍ଥର ଅବତରଣ ଅଲ୍ଲାହଙ୍କ ନିକଟରୁ ହୋଇଅଛି, ଯେ କି ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

تَنْزِيْلُ الْكِتٰبِ مِنَ اللّٰهِ الْعَزِيْزِ الْحَكِيْمِ ②

୩. ଆମ୍ଭେ ଏହି ଗ୍ରନ୍ଥକୁ ତୁମ୍ଭ ପ୍ରତି ସମ୍ପୂର୍ଣ୍ଣ ସତ୍ୟ ସମ୍ବଳିତ କରି ଅବତୀର୍ଣ୍ଣ କରିଅଛୁ ; ସୁତରାଂ ଧର୍ମରେ ଅକୃତ୍ରିମ ନିଷ୍ଠା ରଖି ଅଲ୍ଲାହଙ୍କର ଉପାସନା କର ।

اِنَّآ اَنْزَلْنَآ اِلَيْكَ الْكِتٰبَ بِالْحَقِّ فَاعْبُدِ اللّٰهَ مُخْلِصًا لَّهُ الدِّيْنَ ③

୪. ଶୁଣ ; ବାସ୍ତବରେ କେବଳ ଅକୃତ୍ରିମ ଧର୍ମଭାବ ଯୋଗୁଁ ହି ଅଲ୍ଲାହଙ୍କର କୃପା ଲାଭ ହୋଇଥାଏ ; ଯେଉଁମାନେ ତାହାଙ୍କ ବ୍ୟତୀତ ଅନ୍ୟମାନଙ୍କୁ (ନିଜର) ବନ୍ଧୁ ଭାବରେ ଗ୍ରହଣ କରନ୍ତି (ଓ କହନ୍ତି) ଆମେମାନେ ସେମାନଙ୍କର ଉପାସନା କେବଳ ଏଥିଯୋଗୁଁ କରୁଅଛୁ ଯେ ସେମାନେ ଆମମାନଙ୍କୁ ଅଲ୍ଲାହଙ୍କର ନିକଟବର୍ତ୍ତୀ[1] କରାଇବେ, ସେମାନଙ୍କର ଯେଉଁ ବିଷୟରେ ମତଭେଦ ଅଛି, ଅଲ୍ଲାହ ସେମାନଙ୍କ ମଧ୍ୟରେ ସେ ବିଷୟରେ ନିଷ୍ପତ୍ତି କରିବେ ; ବାସ୍ତବରେ ଅଲ୍ଲାହ ମିଥ୍ୟାବାଦୀ ଓ ଅକୃତଜ୍ଞମାନଙ୍କୁ ସଫଳତାର ପଥ ଦେଖାନ୍ତି ନାହିଁ ।

اَلَا لِلّٰهِ الدِّيْنُ الْخَالِصُ ۗ وَالَّذِيْنَ اتَّخَذُوْا مِنْ دُوْنِهٖٓ اَوْلِيَآءَ ۘ مَا نَعْبُدُهُمْ اِلَّا لِيُقَرِّبُوْنَآ اِلَى اللّٰهِ زُلْفٰى ۗ اِنَّ اللّٰهَ يَحْكُمُ بَيْنَهُمْ فِيْ مَا هُمْ فِيْهِ يَخْتَلِفُوْنَ ۗ اِنَّ اللّٰهَ لَا يَهْدِيْ مَنْ هُوَ كٰذِبٌ كَفَّارٌ ④

وقف لازم

୫. ଯଦି ଅଲ୍ଲାହ ପୁତ୍ର ସନ୍ତାନ ଗ୍ରହଣ କରିବାକୁ ଇଚ୍ଛା କରନ୍ତେ ତେବେ ସେ ନିଜ ସୃଷ୍ଟି ମଧ୍ୟରୁ ଯାହାକୁ ଇଚ୍ଛା ତାହାକୁ ମନୋନୀତ କରନ୍ତେ, ସେ (ଏ ବିଷୟରେ) ପବିତ୍ର ; (ପ୍ରକୃତ ବିଷୟ ହେଉଛି ଯେ) ଅଲ୍ଲାହ ହି ଏକ (ଓ) ପ୍ରଭୁତ୍ୱଶାଳୀ ।

لَوْ اَرَادَ اللّٰهُ اَنْ يَّتَّخِذَ وَلَدًا لَّاصْطَفٰى مِمَّا يَخْلُقُ مَا يَشَآءُ ۙ سُبْحٰنَهٗ ۗ هُوَ اللّٰهُ الْوَاحِدُ الْقَهَّارُ ⑤

୬. ସେ ଆକାଶ ଓ ପୃଥିବୀକୁ ଏକ ଯଥାର୍ଥ ଉଦ୍ଦେଶ୍ୟ ରଖି ସୃଷ୍ଟି କରିଛନ୍ତି ; ସେ ରାତି ଦ୍ୱାରା ଦିନକୁ ଆଚ୍ଛାଦିତ କରାନ୍ତି, ଓ ଦିନ ଦ୍ୱାରା ରାତିକୁ ଆଚ୍ଛାଦିତ କରାନ୍ତି ; ଏବଂ ସେ ସୂର୍ଯ୍ୟ ଓ ଚନ୍ଦ୍ରକୁ ଏକ (ନିୟମର ବଶବର୍ତ୍ତୀ କରାଇ) କାର୍ଯ୍ୟରେ ନିୟୋଜିତ କରିଛନ୍ତି ; ଉଭୟଙ୍କ ମଧ୍ୟରୁ ପ୍ରତ୍ୟେକ ଏକ ନିର୍ଦ୍ଦିଷ୍ଟ ସମୟ ପାଇଁ (ନିଜ) କକ୍ଷରେ ଗତି କରନ୍ତି ; ଶୁଣ ! ସେ ଅତ୍ୟନ୍ତ ପରାକ୍ରମୀ (ଓ) କ୍ଷମାଶୀଳ ।

خَلَقَ السَّمٰوٰتِ وَالْاَرْضَ بِالْحَقِّ ۚ يُكَوِّرُ الَّيْلَ عَلَى النَّهَارِ وَيُكَوِّرُ النَّهَارَ عَلَى الَّيْلِ وَسَخَّرَ الشَّمْسَ وَالْقَمَرَ ۗ كُلٌّ يَّجْرِيْ لِاَجَلٍ مُّسَمًّى ۗ اَلَا هُوَ الْعَزِيْزُ الْغَفَّارُ ⑥

---

୧. ମଣିଷ ସର୍ବଦା ମିଥ୍ୟା ଉପାସ୍ୟ, ନିଜ କଳ୍ପିତ ଠାକୁର ଯଥା – ସାଧୁ, ସନ୍ଥ ତଥା ଧନ, କ୍ଷମତା ଓ ଆବେଗ ଆଦିର ଉପାସନା କରିବାକୁ ମନ ବଳାଇଥାଏ ଏବଂ ସେ ଉତ୍ତରାଧିକାର ସୂତ୍ରେ ପାଇଥିବା ବିଭିନ୍ନ ଧର୍ମବିଶ୍ୱାସ ଓ ପରମ୍ପରାକୁ ଅନ୍ଧଭାବେ ଅନୁସରଣ କରିଥାଏ ଓ ଭାବେ ଯେ ଏହି ସବୁ ଉପାସନା ଓ ବିଶ୍ୱାସ ଆଦି ତାକୁ ପରମେଶ୍ୱରଙ୍କୁ ବୁଝିବା ପାଇଁ ଓ ତାହାଙ୍କ ଅସ୍ତିତ୍ୱକୁ ହୃଦୟଙ୍ଗମ କରିବାପାଇଁ ସାହାଯ୍ୟ କରିବ ।

୭. ସେ ତୁମମାନଙ୍କୁ ଗୋଟିଏ ଜୀବରୁ ସୃଷ୍ଟି କରିଛନ୍ତି ; ତା'ପରେ ସେ ସେଥିରୁ ତାହାର ଯୋଡ଼ା ସୃଷ୍ଟି କରିଛନ୍ତି ; ଏବଂ ତୁମମାନଙ୍କ ସକାଶେ ଚତୁଷ୍ପଦ (ପ୍ରାଣୀ)ମାନଙ୍କ ମଧ୍ୟରୁ ଆଠ ଗୋଟି ଯୋଡ଼ା ସୃଷ୍ଟି କରିଛନ୍ତି ; ସେ ତୁମମାନଙ୍କୁ ତୁମମାନଙ୍କ ମାତୃଗର୍ଭରେ ଗୋଟିଏ ଜନ୍ମ ପରେ ଅନ୍ୟ ଜନ୍ମରେ ପରିବର୍ତ୍ତନ କରି ତ୍ରିବିଧ [୧] ଅନ୍ଧକାର ମଧ୍ୟରେ ଗତି କରାଇ ସୃଷ୍ଟି କରନ୍ତି ; ସେହି ଅଲ୍ଲାହ ତୁମମାନଙ୍କର ପାଳନକର୍ତ୍ତା ଓ ଆଧିପତ୍ୟ ତାହାଙ୍କ ଆୟତ୍ତାଧୀନ ; ସେ ହିଁ ଏକମାତ୍ର ଉପାସ୍ୟ ; ତାହାହେଲେ ତୁମମାନଙ୍କୁ କେଉଁ ଆଡ଼କୁ ଫେରାଇ ନିଆଯାଉଅଛି ?

خَلَقَكُمْ مِّنْ نَّفْسٍ وَّاحِدَةٍ ثُمَّ جَعَلَ مِنْهَا زَوْجَهَا وَاَنْزَلَ لَكُمْ مِّنَ الْاَنْعَامِ ثَمٰنِيَةَ اَزْوَاجٍ ۭ يَخْلُقُكُمْ فِيْ بُطُوْنِ اُمَّهٰتِكُمْ خَلْقًا مِّنْۢ بَعْدِ خَلْقٍ فِيْ ظُلُمٰتٍ ثَلٰثٍ ۭ ذٰلِكُمُ اللّٰهُ رَبُّكُمْ لَهُ الْمُلْكُ ۭ لَآ اِلٰهَ اِلَّا هُوَ ۚ فَاَنّٰى تُصْرَفُوْنَ ﴿٦﴾

୮. ଯଦି ତୁମେମାନେ ଅକୃତଜ୍ଞ ହେବ, ତେବେ ଅଲ୍ଲାହ ତୁମମାନଙ୍କ ଉପରେ ନିର୍ଭରଶୀଳ ନୁହନ୍ତି ; ଏବଂ ସେ ନିଜ ଭକ୍ତମାନଙ୍କ ସକାଶେ ଅକୃତଜ୍ଞତାକୁ କଦାପି ପସନ୍ଦ କରନ୍ତି ନାହିଁ ; ଏବଂ ଯଦି ତୁମେମାନେ କୃତଜ୍ଞ ହେବ, ତେବେ ସେ ତୁମମାନଙ୍କ ସକାଶେ ତାହାକୁ ପସନ୍ଦ କରିବେ ; ଏବଂ ଭାରବହନକାରୀ କୌଣସି ବ୍ୟକ୍ତି ଅନ୍ୟର ଭାର [୨] ବହନ କରିପାରିବ ନାହିଁ ; ଏବଂ ତୁମ ସମସ୍ତଙ୍କୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରି ଯିବାକୁ ହେବ ; ସେତେବେଳେ ସେ ତୁମମାନଙ୍କୁ ତୁମମାନଙ୍କ କର୍ମ ସଂକ୍ରାନ୍ତରେ ଅବହିତ କରାଇବେ ; ସେ ଅନ୍ତର ମଧ୍ୟରେ ଲୁକ୍‌କାୟିତ ଥିବା ବିଷୟକୁ ଜାଣନ୍ତି ।

اِنْ تَكْفُرُوْا فَاِنَّ اللّٰهَ غَنِيٌّ عَنْكُمْ ۟ وَلَا يَرْضٰى لِعِبَادِهِ الْكُفْرَ ۚ وَاِنْ تَشْكُرُوْا يَرْضَهُ لَكُمْ ۭ وَلَا تَزِرُ وَازِرَةٌ وِّزْرَ اُخْرٰى ۭ ثُمَّ اِلٰى رَبِّكُمْ مَّرْجِعُكُمْ فَيُنَبِّئُكُمْ بِمَا كُنْتُمْ تَعْمَلُوْنَ ۭ اِنَّهٗ عَلِيْمٌۢ بِذَاتِ الصُّدُوْرِ ﴿٧﴾

୯. ଏବଂ ଯେତେବେଳେ ମାନବକୁ କୌଣସି ଯନ୍ତ୍ରଣା ସ୍ପର୍ଶକରେ, ସେତେବେଳେ ସେ ନିଜ ପାଳନକର୍ତ୍ତାଙ୍କୁ ଧ୍ୟାନପୂର୍ବକ ପ୍ରାର୍ଥନା କରିଥାଏ, ତା'ପରେ ଯେତେବେଳେ ସେ ନିଜ ପାଖରୁ ମାନବ ପ୍ରତି କୃପା ପ୍ରଦାନ କରନ୍ତି, ସେତେବେଳେ (ସେହି) ମାନବ, ପୂର୍ବରୁ ଯେଉଁ ବିଷୟ ନିମନ୍ତେ ଅଲ୍ଲାହଙ୍କୁ ପ୍ରାର୍ଥନା କରୁଥିଲା ତାହାକୁ ଭୁଲିଯାଏ, ଏବଂ ଅଲ୍ଲାହଙ୍କ ସହିତ ଅନ୍ୟକୁ ସମକକ୍ଷ ନିରୂପିତ କରେ, ଯଦ୍ଦ୍ୱାରା ସେ ତାହାଙ୍କ ପଥରୁ (ଲୋକମାନଙ୍କୁ) ବିଭ୍ରାନ୍ତ କରିପାରିବ ; ତୁମେ କୁହ (ହେ ମାନବ !) ନିଜ ଅବିଶ୍ୱାସ ହେତୁ କିଛି ସମୟ ପାଇଁ ଲାଭବାନ୍ ହୁଅ ; ପରିଶେଷରେ ତୁମେ ନରକରେ ନିକ୍ଷିପ୍ତ ହେବ ।

وَاِذَا مَسَّ الْاِنْسَانَ ضُرٌّ دَعَا رَبَّهٗ مُنِيْبًا اِلَيْهِ ثُمَّ اِذَا خَوَّلَهٗ نِعْمَةً مِّنْهُ نَسِيَ مَا كَانَ يَدْعُوْٓا اِلَيْهِ مِنْ قَبْلُ وَجَعَلَ لِلّٰهِ اَنْدَادًا لِّيُضِلَّ عَنْ سَبِيْلِهٖ ۭ قُلْ تَمَتَّعْ بِكُفْرِكَ قَلِيْلًا ڰ اِنَّكَ مِنْ اَصْحٰبِ النَّارِ ﴿٨﴾

---

୧. ଛୁଆ ମାଆ ପେଟରେ ଥିବାବେଳେ ତିନି ଥର ତା' ପ୍ରତି ବିପଦ ଆସିବାର ସମ୍ଭାବନା ଥାଏ ଓ ସାମାନ୍ୟ ଅସାବଧାନତା ଫଳରେ ଗର୍ଭ ନଷ୍ଟ ହୋଇଯିବାର ଆଶଙ୍କା ଥାଏ । ଏହି କାଳାବଧିକୁ ତିନି ଗୋଟି ଅଂଶରେ ବିଭକ୍ତ କରାଯାଇପାରେ, ତା' ହେଉଛି — ଗର୍ଭ ଧାରଣର ପ୍ରଥମ ଦୁଇ ତିନି ମାସ, ତା' ପରେ ତିନିରୁ ପାଞ୍ଚ ମାସ ପର୍ଯ୍ୟନ୍ତ ଏବଂ ଅଷ୍ଟମ ମାସର ପ୍ରାରମ୍ଭରେ । ଏହି ତଥ୍ୟ ଆୟୁର୍ବିଜ୍ଞାନର ସିଦ୍ଧାନ୍ତ ଉପରେ ଆଧାରିତ ।

୨. ୬: ୧୬୫ ର ଟୀକା ଦ୍ରଷ୍ଟବ୍ୟ ।

୧୦. କ'ଣ ଯେଉଁ ବ୍ୟକ୍ତି ରାତ୍ରିକାଳରେ ସିଜଦା କରି ତଥା ଦଣ୍ଡାୟମାନ ହୋଇ ଆଜ୍ଞା ପାଳନର ଆଦର୍ଶ ଦେଖାଏ ଓ ପରକାଳକୁ ଭୟ କରେ, ଏବଂ ନିଜ ପାଳନକର୍ତ୍ତାଙ୍କ କରୁଣା (ପ୍ରାପ୍ତି) ଆଶାକରେ (ସେ ଅବିଶ୍ୱାସକାରୀ ସଦୃଶ ହୋଇପାରେ କି )? ତୁମେ କୁହ, ''କ'ଣ ଜ୍ଞାନବନ୍ତ ଓ ଅଜ୍ଞାନୀ ସମାନ ହୋଇପାରନ୍ତି ? କେବଳ ବୁଦ୍ଧିମାନ୍ ଲୋକମାନେ ହିଁ ଉପଦେଶ ଗ୍ରହଣ କରିଥା'ନ୍ତି ।''

أَمَّنْ هُوَ قَانِتٌ آنَاءَ اللَّيْلِ سَاجِدًا وَقَائِمًا يَحْذَرُ الْآخِرَةَ وَيَرْجُو رَحْمَةَ رَبِّهِ ۗ قُلْ هَلْ يَسْتَوِي الَّذِينَ يَعْلَمُونَ وَالَّذِينَ لَا يَعْلَمُونَ ۗ إِنَّمَا يَتَذَكَّرُ أُولُو الْأَلْبَابِ ⑩

ରୁ : ୨

୧୧. (ଏହିପରି) କୁହ, ''ହେ ଆମର ବିଶ୍ୱାସକାରୀ ଭକ୍ତମାନେ ! ନିଜ ପାଳନକର୍ତ୍ତାଙ୍କୁ ଭୟ କର ; ଯେଉଁମାନେ ଏହି ସଂସାରରେ (ଅଲ୍ଲାହଙ୍କର) ଆଦେଶାବଳୀକୁ ସମ୍ପୂର୍ଣ୍ଣରୂପେ ପାଳନ କରନ୍ତି ସେମାନଙ୍କ ସକାଶେ (ପରକାଳରେ) ଉତ୍ତମ ପୁରସ୍କାର ନିର୍ଦ୍ଦିଷ୍ଟ ରହିଅଛି ; ଏବଂ ଅଲ୍ଲାହଙ୍କର ପୃଥିବୀ ଖୁବ୍ ପ୍ରଶସ୍ତ [୧] ; ଧୈର୍ଯ୍ୟଶୀଳମାନଙ୍କୁ ସେମାନଙ୍କ ପୁରସ୍କାର ବିନା ହିସାବରେ ସମ୍ପୂର୍ଣ୍ଣ ଭାବରେ ଦିଆଯିବ ।

قُلْ يَا عِبَادِ الَّذِينَ آمَنُوا اتَّقُوا رَبَّكُمْ ۚ لِلَّذِينَ أَحْسَنُوا فِي هَٰذِهِ الدُّنْيَا حَسَنَةٌ ۗ وَأَرْضُ اللَّهِ وَاسِعَةٌ ۗ إِنَّمَا يُوَفَّى الصَّابِرُونَ أَجْرَهُمْ بِغَيْرِ حِسَابٍ ⑪

୧୨. ତୁମେ କୁହ, ''ଆମକୁ ଆଦେଶ ଦିଆଯାଇଅଛି ଯେ ଧର୍ମରେ ଅକୃତ୍ରିମ ନିଷ୍ଠା ରଖି ଅଲ୍ଲାହଙ୍କର ଉପାସନା କର ।''

قُلْ إِنِّي أُمِرْتُ أَنْ أَعْبُدَ اللَّهَ مُخْلِصًا لَهُ الدِّينَ ⑫

୧୩. ''ଏବଂ ଆମକୁ ଆଦେଶ ଦିଆଯାଇଛି ଯେ ଆମେ ସର୍ବଶ୍ରେଷ୍ଠ ଆଜ୍ଞାପାଳନକାରୀ ହେବୁ ।''

وَأُمِرْتُ لِأَنْ أَكُونَ أَوَّلَ الْمُسْلِمِينَ ⑬

୧୪. କୁହ , ''ଯଦି ଆମେ ନିଜ ପାଳନକର୍ତ୍ତାଙ୍କ ଆଜ୍ଞା ଲଙ୍ଘନ କରିବୁ, ତେବେ ଆମେ ସେହି ଭୟାବହ ଦିବସର ଶାସ୍ତିକୁ ଭୟ କରୁଅଛୁ ।''

قُلْ إِنِّي أَخَافُ إِنْ عَصَيْتُ رَبِّي عَذَابَ يَوْمٍ عَظِيمٍ ⑭

୧୫. (ଏବଂ ପୁଣି) କୁହ, ''ଆମେ ଅଲ୍ଲାହଙ୍କର ପ୍ରକୃତ ଆଜ୍ଞାପାଳନକାରୀ ଭାବରେ ତାହାଙ୍କର ଉପାସନା କରୁଅଛୁ ।''

قُلِ اللَّهَ أَعْبُدُ مُخْلِصًا لَهُ دِينِي ⑮

୧୬. ''ତେଣୁ (ଯେଦି ଏହା ତୁମମାନଙ୍କୁ ପସନ୍ଦ ହେଉ ନାହିଁ, ତେବେ) ତୁମେମାନେ ତାହାଙ୍କ ବ୍ୟତୀତ ଯାହାଙ୍କୁ ଇଚ୍ଛା (ତାହାଙ୍କୁ) ଉପାସନା କର'' ; (ଏବଂ ଏହା ମଧ୍ୟ) କୁହ, ''ଯେଉଁମାନେ ନିଜକୁ ଓ ନିଜର ସମ୍ପର୍କୀୟମାନଙ୍କୁ ମଧ୍ୟ କୟାମତ ଦିନ କ୍ଷତିଗ୍ରସ୍ତ କରିବେ, ସେହିମାନେ ପ୍ରକୃତରେ ସମ୍ପୂର୍ଣ୍ଣ କ୍ଷତିଗ୍ରସ୍ତ ବ୍ୟକ୍ତି ଅଟନ୍ତି ; ଶୁଣ ! ଏହା ହିଁ ପ୍ରକାଶ୍ୟ କ୍ଷତି ।''

فَاعْبُدُوا مَا شِئْتُمْ مِنْ دُونِهِ ۗ قُلْ إِنَّ الْخَاسِرِينَ الَّذِينَ خَسِرُوا أَنْفُسَهُمْ وَأَهْلِيهِمْ يَوْمَ الْقِيَامَةِ ۗ أَلَا ذَٰلِكَ هُوَ الْخُسْرَانُ الْمُبِينُ ⑯

୧. ଯଦି କୌଣସି ସ୍ଥାନରେ ବିଶ୍ୱାସକାରୀମାନେ ଦୁଃଖ କଷ୍ଟରେ ପଡନ୍ତି ତେବେ ସେହି ସ୍ଥାନ ଛାଡି ଅନ୍ୟତ୍ର ଚାଲିଯିବା ଦରକାର ।

୧୭. ସେମାନଙ୍କ ଊର୍ଦ୍ଧ୍ୱରେ ଅଗ୍ନିର ଆବରଣ ହେବ, ଓ ସେମାନଙ୍କ ନିମ୍ନରେ ମଧ୍ୟ ଅଗ୍ନିର ଆବରଣ ହେବ ; ଏହା ଏପରି ବସ୍ତୁ ଯଦ୍ୱାରା ଅଲ୍ଲାହ ନିଜ ଭକ୍ତମାନଙ୍କୁ ଭୟଭୀତ କରାଇଥା'ନ୍ତି ; ହେ ଆମ୍ଭର ଭକ୍ତମାନେ ! କେବଳ ଆମ୍ଭଙ୍କୁ ଭୟକର ।''

لَهُم مِّن فَوْقِهِمْ ظُلَلٌ مِّنَ النَّارِ وَمِن تَحْتِهِمْ ظُلَلٌ ۚ ذَٰلِكَ يُخَوِّفُ اللَّهُ بِهِ عِبَادَهُ ۚ يَا عِبَادِ فَاتَّقُونِ ﴿١٧﴾

୧୮. ଯେଉଁମାନେ ଦୁରାଚାରୀମାନଙ୍କର ଆଜ୍ଞାପାଳନ କରିବାରୁ ନିବୃତ୍ତ ହୁଅନ୍ତି ଏବଂ ଅଲ୍ଲାହଙ୍କ ପ୍ରତି ଅନୁରକ୍ତ ହୁଅନ୍ତି, ସେମାନଙ୍କ ସକାଶେ ମହାନ୍ ସୁସମାଚାର ରହିଅଛି ; ସୁତରାଂ ତୁମେ ଆମ୍ଭର ସେହି ଭକ୍ତମାନଙ୍କୁ ସୁସମାଚାର ଦିଅ ।

وَالَّذِينَ اجْتَنَبُوا الطَّاغُوتَ أَن يَعْبُدُوهَا وَأَنَابُوا إِلَى اللَّهِ لَهُمُ الْبُشْرَىٰ ۚ فَبَشِّرْ عِبَادِ ﴿١٨﴾

୧୯. ଯେଉଁମାନେ ଆମ୍ଭର ବାଣୀକୁ ଶ୍ରବଣ କରନ୍ତି ଏବଂ ତା'ପରେ ତନ୍ମଧ୍ୟରୁ ସର୍ବୋତ୍କୃଷ୍ଟ ଆଦେଶର ଅନୁସରଣ କରନ୍ତି, ସେହିମାନଙ୍କୁ ହିଁ ଅଲ୍ଲାହ ସତ୍‌ପଥ ପ୍ରଦାନ କରିଛନ୍ତି ଓ ସେହିମାନେ ହିଁ ବୁଦ୍ଧିମାନ୍ ।

الَّذِينَ يَسْتَمِعُونَ الْقَوْلَ فَيَتَّبِعُونَ أَحْسَنَهُ ۚ أُولَٰئِكَ الَّذِينَ هَدَاهُمُ اللَّهُ ۖ وَأُولَٰئِكَ هُمْ أُولُو الْأَلْبَابِ ﴿١٩﴾

୨୦. କ'ଣ ଯେଉଁ ବ୍ୟକ୍ତିଙ୍କ ସଂକ୍ରାନ୍ତରେ ଶାସ୍ତିର ଭବିଷ୍ୟତ ବାଣୀ ପୂରଣ ହୋଇଅଛି (ତାହାକୁ କେହି ରକ୍ଷା କରିପାରେ ?) ଏବଂ ଯେଉଁମାନେ ଅଗ୍ନିରେ ନିକ୍ଷିପ୍ତ ହେବେ, କ'ଣ ତୁମେ ସେମାନଙ୍କୁ ରକ୍ଷା କରିପାରିବ ?

أَفَمَنْ حَقَّ عَلَيْهِ كَلِمَةُ الْعَذَابِ أَفَأَنتَ تُنقِذُ مَن فِي النَّارِ ﴿٢٠﴾

୨୧. କିନ୍ତୁ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଭୟ କରନ୍ତି ସେମାନଙ୍କୁ ବହୁତଳ ବିଶିଷ୍ଟ ପ୍ରାସାଦ ତଥା ଏହାଠାରୁ ବଳୀ ଦୃଢ଼ ଭାବରେ ନିର୍ମିତ ବହୁତଳ ପ୍ରାସାଦମାନ ପ୍ରଦାନ କରାଯିବ ; ସେମାନଙ୍କ ପାଦଦେଶରେ ଝରଣାମାନ ପ୍ରବାହିତ ହେଉଥିବ ; ଏହା ଅଲ୍ଲାହଙ୍କର ଏକ ଦୃଢ଼ ଅଙ୍ଗୀକାର ଅଟେ ; (ଏବଂ) ଅଲ୍ଲାହ ନିଜ ଅଙ୍ଗୀକାରକୁ ଭଙ୍ଗ କରନ୍ତି ନାହିଁ ।

لَٰكِنِ الَّذِينَ اتَّقَوْا رَبَّهُمْ لَهُمْ غُرَفٌ مِّن فَوْقِهَا غُرَفٌ مَّبْنِيَّةٌ تَجْرِي مِن تَحْتِهَا الْأَنْهَارُ ۖ وَعْدَ اللَّهِ ۖ لَا يُخْلِفُ اللَّهُ الْمِيعَادَ ﴿٢١﴾

୨୨. କ'ଣ ତୁମେମାନେ ଦେଖୁନାହଁ ଯେ ଅଲ୍ଲାହ ଆକାଶରୁ ଜଳ ବୃଷ୍ଟି କରନ୍ତି, ତା'ପରେ ତାହାକୁ ଭୂପୃଷ୍ଠରୁ ଝରଣା ସୃଷ୍ଟିକରି ପ୍ରବାହିତ କରାନ୍ତି ; ଏହାପରେ ସେ ତା' ସାହାଯ୍ୟରେ ବିଭିନ୍ନ ରଙ୍ଗର ଫସଲ ଉପୁଜାନ୍ତି ; ତା'ପରେ ତାହା ପାଚି ଗଲେ ତୁମେ ତାହାକୁ ହଳଦିଆ ରଙ୍ଗର ଦେଖ ; ଏହାପରେ ଅଲ୍ଲାହ ତାହାକୁ କୁଟା ଓ ପାଳ ସଦୃଶ କରି ଦିଅନ୍ତି ; ଏଥିରେ ବୁଦ୍ଧିମାନ୍ ଲୋକମାନଙ୍କ ସକାଶେ ମହାନ୍ ଉପଦେଶ ରହିଅଛି ।

أَلَمْ تَرَ أَنَّ اللَّهَ أَنزَلَ مِنَ السَّمَاءِ مَاءً فَسَلَكَهُ يَنَابِيعَ فِي الْأَرْضِ ثُمَّ يُخْرِجُ بِهِ زَرْعًا مُّخْتَلِفًا أَلْوَانُهُ ثُمَّ يَهِيجُ فَتَرَاهُ مُصْفَرًّا ثُمَّ يَجْعَلُهُ حُطَامًا ۚ إِنَّ فِي ذَٰلِكَ لَذِكْرَىٰ لِأُولِي الْأَلْبَابِ ﴿٢٢﴾

ରୁ : ୩

୨୩. କ'ଣ ଅଲ୍ଲାହ ଯାହାର ହୃଦୟକୁ ଆତ୍ମସମର୍ପଣ ସକାଶେ ଉନ୍ମୁକ୍ତ କରିଛନ୍ତି, ଏବଂ ଯାହା ନିଜ ପାଳନକର୍ତ୍ତାଙ୍କ ତରଫରୁ ଜ୍ୟୋତି ଦ୍ୱାରା ପରିଚାଳିତ ହୋଇଅଛି (ସେ ତା' ସହିତ ସମାନ ହୋଇପାରେ ଯେ ଏପରି ନୁହେଁ) ? ସୁତରାଂ ସେମାନଙ୍କୁ ଧିକ୍, ଯେଉଁମାନଙ୍କ ହୃଦୟ ଅଲ୍ଲାହଙ୍କୁ ସ୍ମରଣ କରିବାରେ କଠିନତା ବୋଧ କରୁଅଛି ; ସେମାନେ ପ୍ରକାଶ୍ୟ ବିଭ୍ରାନ୍ତି ମଧ୍ୟରେ ରହିଛନ୍ତି ।

اَفَمَنْ شَرَحَ اللّٰهُ صَدْرَهٗ لِلْاِسْلَامِ فَهُوَ عَلٰى نُوْرٍ مِّنْ رَّبِّهٖ ۭ فَوَيْلٌ لِّلْقٰسِيَةِ قُلُوْبُهُمْ مِّنْ ذِكْرِ اللّٰهِ ۭ اُولٰۗىِٕكَ فِيْ ضَلٰلٍ مُّبِيْنٍ ۝٢٣

୨୪. ଅଲ୍ଲାହ ଉତ୍କୃଷ୍ଟରୁ ଉତ୍କୃଷ୍ଟତର ବିଷୟ ଅର୍ଥାତ୍ ସେହି ଗ୍ରନ୍ଥ ଅବତୀର୍ଣ୍ଣ କରିଛନ୍ତି ଯେଉଁଥିରେ ସାମଞ୍ଜସ୍ୟ [୧] ମଧ୍ୟ ରହିଅଛି, ଏବଂ ଏହାର ବିଷୟବସ୍ତୁ ଅତ୍ୟନ୍ତ ଉଚ୍ଚକୋଟୀର [୨] ; ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଭୟ କରନ୍ତି, ସେମାନେ ଏହାକୁ ଆବୃତ୍ତି କଲାବେଳେ ସେମାନଙ୍କ ଦେହର ଲୋମ ଟାଙ୍କୁରି ଉଠେ, ଏବଂ ତା'ପରେ ସେମାନଙ୍କ ଚର୍ମ ଓ ହୃଦୟ କୋମଳ ହୋଇ ଅଲ୍ଲାହଙ୍କ ସ୍ମରଣ ପ୍ରତି ଅବନତ ହୋଇଯାଏ ; ଏହା (ଅର୍ଥାତ୍ କୋରାନ) ଅଲ୍ଲାହଙ୍କ (ପ୍ରେରିତ) ସତ୍‌ପଥ ପ୍ରଦର୍ଶନ ଅଟେ (ଅର୍ଥାତ୍ କୋରାନରେ ଯେଉଁ ସତ୍‌ପଥ ପ୍ରଦର୍ଶନ ହୋଇଅଛି ତାହା ବାସ୍ତବରେ ଅଲ୍ଲାହଙ୍କ ଠାରୁ ପ୍ରାପ୍ତ) ; ଏହାଦ୍ୱାରା ସେ ଯାହାକୁ ଇଚ୍ଛା ତାହାକୁ ସତ୍‌ପଥ ପ୍ରଦର୍ଶନ କରାନ୍ତି ; ଏବଂ ଅଲ୍ଲାହ ଯାହାକୁ ପଥଭ୍ରଷ୍ଟ ସାବ୍ୟସ୍ତ କରାନ୍ତି ତାହାକୁ କେହି ସତ୍‌ପଥ ପ୍ରଦର୍ଶନ କରାଇ ପାରିବେ ନାହିଁ ।

اَللّٰهُ نَزَّلَ اَحْسَنَ الْحَدِيْثِ كِتٰبًا مُّتَشَابِهًا مَّثَانِيَ ڰ تَقْشَعِرُّ مِنْهُ جُلُوْدُ الَّذِيْنَ يَخْشَوْنَ رَبَّهُمْ ۚ ثُمَّ تَلِيْنُ جُلُوْدُهُمْ وَقُلُوْبُهُمْ اِلٰى ذِكْرِ اللّٰهِ ۭ ذٰلِكَ هُدَى اللّٰهِ يَهْدِيْ بِهٖ مَنْ يَّشَاۗءُ ۭ وَمَنْ يُّضْلِلِ اللّٰهُ فَمَا لَهٗ مِنْ هَادٍ ۝٢٤

୨୫. କ'ଣ ଯେଉଁ ବ୍ୟକ୍ତି କୟାମତ ଦିନର କଠିନ ଶାସ୍ତି (ଅର୍ଥାତ୍ ନରକ)ରୁ ରକ୍ଷା ପାଇବା ପାଇଁ ନିଜ ମୁଖମଣ୍ଡଳକୁ [୩]

اَفَمَنْ يَّتَّقِيْ بِوَجْهِهٖ سُوْۗءَ الْعَذَابِ يَوْمَ الْقِيٰمَةِ ۭ

୧. ଅର୍ଥାତ୍ ପବିତ୍ର କୋରାନରେ ଏପରି କେତେକ ପଙ୍‌କ୍ତି ଅଛି ଯାହାର ସାମଞ୍ଜସ୍ୟ ବାଇବେଲ ଓ ଅନ୍ୟାନ୍ୟ ଧର୍ମପୁସ୍ତକ ସହିତ ଅଛି ଏବଂ ଏହା ଅନ୍ୟ କେତେକ ନୂତନ ବିଷୟ ବର୍ଣ୍ଣନା କରୁଛି । ଏହି ଦୃଷ୍ଟିରୁ ପବିତ୍ର କୋରାନର ମହିମା ଅନନ୍ୟ ଓ ପୂର୍ବବର୍ତ୍ତୀ ଅନ୍ୟ କୌଣସି ଗ୍ରନ୍ଥ ତାହାର ମର୍ଯ୍ୟାଦା ସହିତ ସମାନ ହୋଇ ନ ପାରେ ।

୨. ମୂଳ ଶବ୍ଦ 'ମଖାନି' ଅର୍ଥ (କ) ମୋଡ଼ (ଖ) ଦୁଇଟି ତାରଯୁକ୍ତ ବାଦ୍ୟଯନ୍ତ୍ର , ଯାହା ସାଧାରଣତଃ ନଖ ଦ୍ୱାରା ବଜାଯାଏ । ନଖକୁ ଆରବୀ ଭାଷାରେ 'ଜୁଫର' କହନ୍ତି । ଏହା ଅପଭ୍ରଂଶ ହୋଇ ଜଫର (**Zafer**) ନାମକ ଏକ ବାଦ୍ୟଯନ୍ତ୍ର ଭାବେ ସୁପରିଚିତ । ଏଥିରୁ ଯେଉଁ ସ୍ୱର ବାହାରେ ତାହା ସୁଉଚ୍ଚ, ମଧୁର ଓ ମନୋମୁଗଧକର । ତେଣୁ ଏହି ଆୟତରେ ପବିତ୍ର କୋରାନର ଏହି ପ୍ରଶଂସା କରାଯାଇଛି ଯେ ପୂର୍ବବର୍ତ୍ତୀ ଧର୍ମଗ୍ରନ୍ଥ ତୁଳନାରେ ଏହାର ଶିକ୍ଷା ଅତ୍ୟନ୍ତ ମଧୁର ଓ ଗୌରବପୂର୍ଣ୍ଣ ।

୩. କେତେକ ସ୍ଥଳେ 'ଓଜହୁନ' ର ଅର୍ଥ ନେତା ବୋଲି ନିଆଯାଇଛି । ଏହି ଅର୍ଥକୁ ପାର୍ଥିବ ଶାସ୍ତି ସମ୍ବନ୍ଧରେ ମଧ୍ୟ ପ୍ରୟୋଗ କରାଯାଇପାରେ କାରଣ ସଂସାରରେ ମଣିଷ ନିଜ ସ୍ଥାନରେ ନିଜର ନେତାଙ୍କୁ ଶାସ୍ତି ଆଡ଼କୁ ଠେଲି ଦେଇପାରେ, କିନ୍ତୁ ପରକାଳରେ ସେ ଏହା କରିପାରିବ ନାହିଁ । ଆମେ ଏଠାରେ 'ଓଜହୁନ' ର ଅର୍ଥ ମୁଖମଣ୍ଡଳ ରଖିଅଛୁ ଯାହାର ଅଭିପ୍ରାୟ ହେଉଛି ଯେ କୟାମତ ଦିନ ଶାସ୍ତିର କଠୋରତା ହେତୁ ସେ ଅବିଶ୍ୱାସକାରୀମାନେ ଏପରି ହତଜ୍ଞାନ ଓ ପାଗଳ ହୋଇଯିବେ ଯେ ସେମାନେ ନିଜ ମୁଖମଣ୍ଡଳକୁ ରକ୍ଷା କରିବା ପରିବର୍ତ୍ତେ — ଯାହାକୁ ବାସ୍ତବରେ ରକ୍ଷା କରିବା କଥା — ତାହାକୁ ଶରୀରର ଅନ୍ୟାନ୍ୟ ଅଂଶକୁ ରକ୍ଷା କରିବା ପାଇଁ ଢାଲ ରୂପେ ବ୍ୟବହାର କରି ଅବଶିଷ୍ଟ ଶରୀରକୁ ପଛକୁ ହଟାଇ ନେବେ । ବସ୍ତୁତଃ ଅଲ୍ଲାହ ସେମାନଙ୍କ ଅନ୍ତରରେ ଏପରି ଇଚ୍ଛା ଉଦ୍ରେକ କରାଇବେ ଯେ ସେମାନଙ୍କୁ ଅବିଳମ୍ବେ ନରକ ଆଡ଼କୁ ଘୋଷାରି ନିଆହେବ ।

وَقِيلَ لِلظَّٰلِمِينَ ذُوقُوا۟ مَا كُنتُمْ تَكْسِبُونَ ۝٢٥

ଭଲ ଭାବରେ ବ୍ୟବହାର କରେ (ସେ ବୈକୁଣ୍ଠଗାମୀ ଲୋକମାନଙ୍କ ସହିତ ସମାନ ହୋଇପାରେ)? ; ଏବଂ ଅତ୍ୟାଚାରୀମାନଙ୍କୁ କୁହାଯିବ ଯେ ନିଜ କର୍ମଫଳ ଆସ୍ୱାଦନ କର ।

كَذَّبَ ٱلَّذِينَ مِن قَبْلِهِمْ فَأَتَىٰهُمُ ٱلْعَذَابُ مِنْ حَيْثُ لَا يَشْعُرُونَ ۝٢٦

୨୬. ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ (ଆମ ରସୁଲମାନଙ୍କୁ) ମିଥ୍ୟାବାଦୀ ବୋଲି କହି ସାରିଛନ୍ତି ; ଯୋହା ଫଳରେ) ସେମାନଙ୍କ ପ୍ରତି ଏପରି ସ୍ଥାନମାନଙ୍କରୁ ଶାସ୍ତି ଆସିଥିଲା ଯେ ସେମାନେ ତାହା ବୁଝି ପାରି ନ ଥିଲେ

فَأَذَاقَهُمُ ٱللَّهُ ٱلْخِزْىَ فِى ٱلْحَيَوٰةِ ٱلدُّنْيَا ۖ وَلَعَذَابُ ٱلْءَاخِرَةِ أَكْبَرُ ۚ لَوْ كَانُوا۟ يَعْلَمُونَ ۝٢٧

୨୭. ଏବଂ ଅଲ୍ଲାହ ସେମାନଙ୍କୁ ସାଂସାରିକ ଜୀବନର ଲାଞ୍ଛନା ମଧ୍ୟ ଦେଇଥିଲେ ; ଏବଂ ପରକାଳରେ ଯେଉଁ ଶାସ୍ତି ଦିଆଯିବ, ତାହା ଯଦି ସେମାନେ ବୁଝିପାରିବେ, ତେବେ ଏହାଠାରୁ ଅଧିକ ଭୟାବହ ହେବ ।

وَلَقَدْ ضَرَبْنَا لِلنَّاسِ فِى هَٰذَا ٱلْقُرْءَانِ مِن كُلِّ مَثَلٍ لَّعَلَّهُمْ يَتَذَكَّرُونَ ۝٢٨

୨୮. ଏବଂ ଆମେ ଏହି କୋରାନରେ ପ୍ରତ୍ୟେକ ପ୍ରକାର ବିଷୟର ବର୍ଣ୍ଣନା କରିଅଛୁ ଯେପରି କି ସେ (ଅବିଶ୍ୱାସକାରୀ) ମାନେ ଶିକ୍ଷାଲାଭ କରିପାରିବେ ।

قُرْءَانًا عَرَبِيًّا غَيْرَ ذِى عِوَجٍ لَّعَلَّهُمْ يَتَّقُونَ ۝٢٩

୨୯. ଆମେ ଏହି କୋରାନକୁ ରଚନା କରିଛୁ ଯାହା ଉଦ୍ଦେଶ୍ୟଗୁଡ଼ିକୁ ସ୍ପଷ୍ଟଭାବରେ ବର୍ଣ୍ଣନା କରେ ; ଏଥିରେ କୌଣସି ବକ୍ରତା ନାହି ; (ଏହା ଏଥିସକାଶେ ଅବତୀର୍ଣ୍ଣ ହୋଇଅଛି) ଯଦ୍ୱାରା ଲୋକମାନେ (ଅଲ୍ଲାହଙ୍କୁ) ଭୟ କରିବେ ।

ضَرَبَ ٱللَّهُ مَثَلًا رَّجُلًا فِيهِ شُرَكَآءُ مُتَشَٰكِسُونَ وَرَجُلًا سَلَمًا لِّرَجُلٍ هَلْ يَسْتَوِيَانِ مَثَلًا ۚ ٱلْحَمْدُ لِلَّهِ ۚ بَلْ أَكْثَرُهُمْ لَا يَعْلَمُونَ ۝٣٠

୩୦. ଅଲ୍ଲାହ ସେହି ବ୍ୟକ୍ତିର ଅବସ୍ଥାକୁ (ଶିକ୍ଷା ଲାଭ ପାଇଁ) ବର୍ଣ୍ଣନା କରୁଛନ୍ତି ଯାହାର ଅନେକ ମାଲିକ ଅଛନ୍ତି, ଯେଉଁମାନେ ପରସ୍ପର ମଧ୍ୟରେ ଭିନ୍ନମତ ପୋଷଣ କରନ୍ତି ; ଏବଂ ଅନ୍ୟ ଜଣେ ଏପରି ବ୍ୟକ୍ତି ଅଛି ଯେ କି ସମ୍ପୂର୍ଣ୍ଣ ଭାବରେ ଜଣଙ୍କର (ଅଧୀନସ୍ଥ) ; କ'ଣ ସେ ଦୁହେଁ [1] ନିଜ ନିଜ ଅବସ୍ଥାରେ ସମାନ ହୋଇପାରନ୍ତି ? ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ସକାଶେ (ଉଦ୍ଦିଷ୍ଟ) କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ ।

إِنَّكَ مَيِّتٌ وَإِنَّهُم مَّيِّتُونَ ۝٣١

୩୧. ତୁମେ ମଧ୍ୟ ଦିନେ ମୃତ୍ୟୁବରଣ କରିବ ଓ ସେମାନେ ମଧ୍ୟ ମୃତ୍ୟୁବରଣ କରିବେ ।

ثُمَّ إِنَّكُمْ يَوْمَ ٱلْقِيَٰمَةِ عِندَ رَبِّكُمْ تَخْتَصِمُونَ ۝٣٢

୩୨. ଏହାପରେ ତୁମେ ସମସ୍ତେ କୟାମତ ଦିନ ନିଜ ପାଳନକର୍ତ୍ତାଙ୍କ ସମ୍ମୁଖରେ ନିଜ ନିଜର (ଧର୍ମ) ବିଶ୍ୱାସ ଓ କର୍ମ ସମୂହକୁ ଉପସ୍ଥାପିତ କରିବ ।

---

୧. ଅର୍ଥାତ୍ ଏକେଶ୍ୱରବାଦୀ ଓ ଅନେକେଶ୍ୱରବାଦୀ ।

## ଭାଗ—୨୪

୩୩. ଏବଂ ତା'ଠାରୁ ଅଧିକ ଅତ୍ୟାଚାରୀ କିଏ ହୋଇପାରେ ଯେ ଅଲ୍ଲାହ୍‌ଙ୍କ ପ୍ରତି ମିଥ୍ୟା ଆରୋପ କରେ ଏବଂ ଯେବେ (ଅଲ୍ଲାହ୍‌ଙ୍କ ଠାରୁ ପ୍ରେରିତ) ସତ୍ୟ ତାହା ନିକଟରେ ଉପସ୍ଥିତ ହୁଏ ତାହାକୁ ମିଥ୍ୟା ମନେ କରେ ? କ'ଣ ନରକ ଅବିଶ୍ୱାସକାରୀମାନଙ୍କର ବାସସ୍ଥାନ ନୁହେଁ ?

فَمَنْ اَظْلَمُ مِمَّنْ كَذَبَ عَلَى اللّٰهِ وَكَذَّبَ بِالصِّدْقِ اِذْ جَآءَهٗ ۭ اَلَيْسَ فِيْ جَهَنَّمَ مَثْوًى لِّلْكٰفِرِيْنَ ۝

୩୪. ଏବଂ ସେପରି (ପ୍ରତ୍ୟେକ) ବ୍ୟକ୍ତି ଯେ ଅଲ୍ଲାହ୍‌ଙ୍କ ତରଫରୁ ସତ୍‌ଶିକ୍ଷା ଘେନି ଆସିଥାଏ, ଏବଂ ସେପରି (ପ୍ରତ୍ୟେକ) ବ୍ୟକ୍ତି ଯେ ଏହି ଶିକ୍ଷାର ସମର୍ଥନ କରେ, ଏହିମାନେ ହିଁ ଧର୍ମଭୀରୁ ।

وَالَّذِيْ جَآءَ بِالصِّدْقِ وَصَدَّقَ بِهٖٓ اُولٰۗىِٕكَ هُمُ الْمُتَّقُوْنَ ۝

୩୫. ସେମାନେ ଯାହା ଇଚ୍ଛା କରିବେ ସେମାନଙ୍କୁ (ତାହା) ନିଜ ପାଳନକର୍ତ୍ତାଙ୍କ ନିକଟରେ ମିଳିବ ; ହିତକାରୀମାନଙ୍କର ଏହା-ହିଁ ପୁରସ୍କାର ।

لَهُمْ مَّا يَشَاۗءُوْنَ عِنْدَ رَبِّهِمْ ۭ ذٰلِكَ جَزٰۗؤُا الْمُحْسِنِيْنَ ۝

୩୬. ଯଦ୍ଦ୍ୱାରାକି ଅଲ୍ଲାହ୍ ସେମାନଙ୍କ କର୍ମର ନିକୃଷ୍ଟ ଅଂଶକୁ ଦୂର କରିଦେବେ ; ଓ ସେମାନଙ୍କ କର୍ମ ମଧ୍ୟରେ ଯାହା ସର୍ବୋତ୍କୃଷ୍ଟ କର୍ମ ତଦନୁଯାୟୀ ସେମାନଙ୍କୁ ପୁରସ୍କାର ଦେବେ ।

لِيُكَفِّرَ اللّٰهُ عَنْهُمْ اَسْوَاَ الَّذِيْ عَمِلُوْا وَيَجْزِيَهُمْ اَجْرَهُمْ بِاَحْسَنِ الَّذِيْ كَانُوْا يَعْمَلُوْنَ ۝

୩୭. କ'ଣ ଅଲ୍ଲାହ୍ ନିଜ ଭକ୍ତ ପାଇଁ ଯଥେଷ୍ଟ ନୁହଁନ୍ତି ? ଏବଂ ସେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟମାନଙ୍କ ପ୍ରତି ତୁମକୁ ଭୟଭୀତ କରାଉଛନ୍ତି ; ଏବଂ ଅଲ୍ଲାହ୍ ଯାହାକୁ ପଥଭ୍ରଷ୍ଟ ମନେ କରନ୍ତି ତାହାକୁ କେହି ସତ୍‌ପଥ ଦେଖାଇ ପାରିବେ ନାହିଁ ।

اَلَيْسَ اللّٰهُ بِكَافٍ عَبْدَهٗ ۭ وَيُخَوِّفُوْنَكَ بِالَّذِيْنَ مِنْ دُوْنِهٖ ۭ وَمَنْ يُّضْلِلِ اللّٰهُ فَمَا لَهٗ مِنْ هَادٍ ۝

୩୮. ଏବଂ ଅଲ୍ଲାହ୍ ଯାହାକୁ ସତ୍‌ପଥ ଦେଖାଇବେ, ତାହାକୁ କେହି ପଥଭ୍ରଷ୍ଟ କରାଇ ପାରିବ ନାହିଁ ; କ'ଣ ଅଲ୍ଲାହ୍ ପରାକ୍ରମୀ ନୁହନ୍ତି ,(ଓ) ପ୍ରତିଶୋଧ[୧] ନେବାକୁ ସକ୍ଷମ ନୁହନ୍ତି ?

وَمَنْ يَّهْدِ اللّٰهُ فَمَا لَهٗ مِنْ مُّضِلٍّ ۭ اَلَيْسَ اللّٰهُ بِعَزِيْزٍ ذِي انْتِقَامٍ ۝

୩୯. ଏବଂ ଯଦି ତୁମେ ସେମାନଙ୍କୁ ପଚାରିବ, "ଆକାଶ ଓ ପୃଥିବୀକୁ କିଏ ସୃଷ୍ଟି କରିଅଛି ;" ତେବେ ସେମାନେ ନିଶ୍ଚୟ କହିବେ, "ଅଲ୍ଲାହ୍" ; ତୁମେ କୁହ, "କ'ଣ ତୁମମାନଙ୍କୁ ଜଣାଅଛି ଯେ ତୁମେମାନେ ଅଲ୍ଲାହ୍‌ଙ୍କ ବ୍ୟତୀତ କାହାକୁ

وَلَىِٕنْ سَاَلْتَهُمْ مَّنْ خَلَقَ السَّمٰوٰتِ وَالْاَرْضَ لَيَقُوْلُنَّ اللّٰهُ ۭ قُلْ اَفَرَءَيْتُمْ مَّا تَدْعُوْنَ مِنْ دُوْنِ

[୧] ଅବିଶ୍ୱାସକାରୀମାନେ ଅବଶ୍ୟ ଚେଷ୍ଟିତ ଥିଲେ ଯେ ବିଶ୍ୱାସକାରୀମାନେ କୌଣସି ମତେ ବିଭ୍ରାନ୍ତ ହୋଇଯା'ନ୍ତୁ, କିନ୍ତୁ ଶେଷୋକ୍ତ ବ୍ୟକ୍ତିମାନଙ୍କର ଉତ୍ସର୍ଗ ହେତୁ ଅଲ୍ଲାହ୍ ଇଚ୍ଛା କରୁଥିଲେ ଯେ ସେମାନଙ୍କର ଉତ୍ତରୋତ୍ତର ଉନ୍ନତି ହେଉ । ସେଥିପାଇଁ ଏହି ଆୟତରେ ସୂଚିତ ଦିଆଯାଇଛି ଯେ ଯେହେତୁ ଅଲ୍ଲାହ୍ ପରାକ୍ରମୀ, ତେଣୁ ତାହାଙ୍କ ଇଚ୍ଛା ହିଁ କାର୍ଯ୍ୟକାରୀ ହେବ ଓ ବିରୋଧୀମାନଙ୍କ ଇଚ୍ଛା ବିଫଳ ହେବ ।

ଡାକୁଅଛ ? ଯଦି ଅଲ୍ଲାଃ ଆମର କ୍ଷତି କରାଇବାକୁ ଇଚ୍ଛା କରିବେ, ତେବେ କ'ଣ ସେ (ମିଥ୍ୟା ଉପାସ୍ୟ)ମାନେ[1] ତାହାଙ୍କ ଦ୍ୱାରା ପ୍ରଦତ୍ତ କ୍ଷତିକୁ ଦୂରୀଭୂତ କରିପାରିବେ ? ଯଦି ଅଲ୍ଲାଃ ଆମପ୍ରତି କରୁଣାଦାନ କରିବାକୁ ଇଚ୍ଛା କରିବେ, ତେବେ କ'ଣ ସେ (ଉପାସ୍ୟ)ମାନେ ତାହାଙ୍କ କରୁଣାକୁ ଅବରୋଧ କରିପାରିବେ ?'' ତୁମେ କୁହ, ''ଅଲ୍ଲାଃ ଆମ ପାଇଁ ଯଥେଷ୍ଟ ;'' ସମସ୍ତ ଆସ୍ଥା—ସ୍ଥାପନକାରୀ ତାଙ୍କ ଉପରେ ଆସ୍ଥା ସ୍ଥାପନ କରନ୍ତି ।

اللّٰهِ اِنْ اَرَادَنِيَ اللّٰهُ بِضُرٍّ هَلْ هُنَّ كٰشِفٰتُ ضُرِّهٖۤ اَوْ اَرَادَنِيْ بِرَحْمَةٍ هَلْ هُنَّ مُمْسِكٰتُ رَحْمَتِهٖ ۗ قُلْ حَسْبِيَ اللّٰهُ ۗ عَلَيْهِ يَتَوَكَّلُ الْمُتَوَكِّلُوْنَ (٣٨)

୪୦. ତୁମେ କୁହ, ''ହେ ଆମର ସମ୍ପ୍ରଦାୟ ! ତୁମେମାନେ ସ୍ୱ ସ୍ୱ ସ୍ଥାନରେ କର୍ମ କର ; ଆମେ ମଧ୍ୟ (ସ୍ୱସ୍ଥାନରେ) କର୍ମ କରିବୁ ; ସୁତରାଂ ତୁମେମାନେ ନିଶ୍ଚୟ ଜାଣିପାରିବ,

قُلْ يٰقَوْمِ اعْمَلُوْا عَلٰى مَكَانَتِكُمْ اِنِّيْ عَامِلٌ ۚ فَسَوْفَ تَعْلَمُوْنَ ۙ (٤٠)

୪୧. (ଯେ) କାହା ପ୍ରତି ଏପରି ଶାସ୍ତି ଉପସ୍ଥିତ ହୁଏ ଯାହା ତାହାକୁ ଅପମାନିତ କରିଦିଏ ଏବଂ କାହାପ୍ରତି ସେହି ଶାସ୍ତି ଉପସ୍ଥିତ ହୁଏ ଯାହା ଚିରସ୍ଥାୟୀ ହୁଏ ।''

مَنْ يَّاْتِيْهِ عَذَابٌ يُّخْزِيْهِ وَيَحِلُّ عَلَيْهِ عَذَابٌ مُّقِيْمٌ (٤١)

୪୨. ଆମେ ତୁମ ପ୍ରତି (ଏହି) ଗ୍ରନ୍ଥ ବାସ୍ତବରେ ଲୋକମାନଙ୍କ କଲ୍ୟାଣ ସକାଶେ ସତ୍ୟ ଓ ତତ୍ତ୍ୱ ସହିତ ଅବତୀର୍ଣ୍ଣ କରିଅଛୁ ; ତେଣୁ ଯେ ସତ୍‌ପଥଗାମୀ ହେବ ସେ ହି ତାହାର ଲାଭ ହାସଲ କରିବ, ଏବଂ ଯେ ପଥଭ୍ରଷ୍ଟ ହେବ ସେ ନିଜ ପାଇଁ ହି ପଥଭ୍ରଷ୍ଟ ହେବ ; ଏବଂ ତୁମେ ସେମାନଙ୍କ ପାଇଁ ଅଭିଭାବକ ନିଯୁକ୍ତ ହୋଇ ନାହିଁ ।

اِنَّاۤ اَنْزَلْنَا عَلَيْكَ الْكِتٰبَ لِلنَّاسِ بِالْحَقِّ ۚ فَمَنِ اهْتَدٰى فَلِنَفْسِهٖ ۚ وَمَنْ ضَلَّ فَاِنَّمَا يَضِلُّ عَلَيْهَا ۚ وَمَاۤ اَنْتَ عَلَيْهِمْ بِوَكِيْلٍ (٤٢) ع

ରୁ : ୫

୪୩. ଅଲ୍ଲାଃ ପ୍ରତ୍ୟେକ ବ୍ୟକ୍ତିର ପ୍ରାଣକୁ ତାହାର ମୃତ୍ୟୁ ସମୟରେ କବଳିତ କରନ୍ତି ; ଏବଂ ଯାହାର ଏପର୍ଯ୍ୟନ୍ତ ମୃତ୍ୟୁ ହୋଇନାହିଁ ସେ (ତାହାର ପ୍ରାଣକୁ) ତାହାର ନିଦ୍ରିତାବସ୍ଥାରେ (କବଳିତ କରନ୍ତି) ; ଏବଂ ଏହାପରେ ସେ ଯାହାର ମୃତ୍ୟୁ ଆଦେଶ ଜାରି କରିଦିଅନ୍ତି, ତାହାର ପ୍ରାଣକୁ ଅଟକାଇ ରଖନ୍ତି, ଏବଂ ଅନ୍ୟକୁ ଏକ ନିର୍ଦ୍ଦିଷ୍ଟ ଅବଧି ପର୍ଯ୍ୟନ୍ତ ଫେରାଇ ଦିଅନ୍ତି ; ଏଥିରେ ଚିନ୍ତାଶୀଳ ସମ୍ପ୍ରଦାୟ ପାଇଁ ନିଦର୍ଶନମାନ ରହିଅଛି ।

اَللّٰهُ يَتَوَفَّى الْاَنْفُسَ حِيْنَ مَوْتِهَا وَالَّتِيْ لَمْ تَمُتْ فِيْ مَنَامِهَا ۚ فَيُمْسِكُ الَّتِيْ قَضٰى عَلَيْهَا الْمَوْتَ وَيُرْسِلُ الْاُخْرٰۤى اِلٰۤى اَجَلٍ مُّسَمًّى ۗ اِنَّ فِيْ ذٰلِكَ لَاٰيٰتٍ لِّقَوْمٍ يَّتَفَكَّرُوْنَ (٤٣)

୪୪. କ'ଣ ସେମାନେ ଅଲ୍ଲାଃଙ୍କ ବ୍ୟତୀତ (ଅନ୍ୟ) କେତେକ ସୁପାରିଶକାରୀଙ୍କୁ ଗ୍ରହଣ କରିଛନ୍ତି ? କୁହ ; ଯଦିଓ ସେମାନଙ୍କ ଆୟତ୍ତରେ କୌଣସି ଶକ୍ତି ନାହିଁ କି ସେମାନେ

اَمِ اتَّخَذُوْا مِنْ دُوْنِ اللّٰهِ شُفَعَآءَ ۗ قُلْ اَوَلَوْ كَانُوْا لَا يَمْلِكُوْنَ شَيْـًٔا وَّلَا يَعْقِلُوْنَ (٤٤)

୧. ମୂଳ ଶବ୍ଦ 'ହୁନ୍‌ନା' ସ୍ତ୍ରୀଲିଙ୍ଗବାଚକ ବହୁ ବଚନ ପାଇଁ ପ୍ରୟୋଗ କରାଯାଏ । ଏହି ଶବ୍ଦ ଏଥିଯୋଗୁଁ ପ୍ରୟୋଗ କରାଯାଇଛି ଯେହେତୁ ଅବିଶ୍ୱାସକାରୀମାନେ ଅଲ୍ଲାଃଙ୍କ ବ୍ୟତୀତ ଅନ୍ୟ ସମସ୍ତ ଉପାସ୍ୟଙ୍କୁ ନାରୀ ମନେ କରୁଥିଲେ ।

(କୌଣସି ପ୍ରକାରେ) କିଛି ବୁଝିପାରନ୍ତି ନାହିଁ (ଏହା ସତ୍ତ୍ୱେ କ'ଣ ତୁମେମାନେ ସେମାନଙ୍କୁ ସୁପାରିଶକାରୀ ଭାବରେ ଗ୍ରହଣ କରିବ ?)

୪୫. ତୁମେ କୁହ, "ସୁପାରିଶ କରିବାର ସକଳ ଅଧିକାର ଅଲ୍ଲାହଙ୍କର ଆୟତ୍ତାଧୀନ (ଯୋହାକୁ ଇଚ୍ଛା ସେ ଏହି ଅଧିକାର ପ୍ରଦାନ କରନ୍ତି) ; ଆକାଶ ଓ ପୃଥିବୀର ଆଧିପତ୍ୟ ତାହାଙ୍କର ; ଏବଂ ତୁମମାନଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆଯିବ ।"

قُلْ لِّلّٰهِ الشَّفَاعَةُ جَمِيْعًا ۭ لَهٗ مُلْكُ السَّمٰوٰتِ وَالْاَرْضِ ۭ ثُمَّ اِلَيْهِ تُرْجَعُوْنَ ۝

୪୬. ଏବଂ ଯେତେବେଳେ ଅଦ୍ୱିତୀୟ ଅଲ୍ଲାହଙ୍କ ବିଷୟରେ ଚର୍ଚ୍ଚା କରାଯାଏ, ସେତେବେଳେ ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ହୃଦୟ (ଏପରି ବ୍ୟାଖ୍ୟାନ ସଂକ୍ରାନ୍ତରେ) ଘୃଣାରେ[୧] ପୂରିଯାଏ ; ଏବଂ ଯେତେବେଳେ ଅଲ୍ଲାହଙ୍କ ତୁଳନାରେ ଅତ୍ୟନ୍ତ ତୁଚ୍ଛ ସେହି (ମିଥ୍ୟାଳ)ମାନଙ୍କ (ବିଷୟରେ) ଚର୍ଚ୍ଚା କରାଯାଏ, ସେତେବେଳେ ସେମାନେ ଅତ୍ୟନ୍ତ ଆନନ୍ଦିତ ହୁଅନ୍ତି ।

وَاِذَا ذُكِرَ اللّٰهُ وَحْدَهُ اشْمَاَزَّتْ قُلُوْبُ الَّذِيْنَ لَا يُؤْمِنُوْنَ بِالْاٰخِرَةِ ۚ وَاِذَا ذُكِرَ الَّذِيْنَ مِنْ دُوْنِهٖٓ اِذَا هُمْ يَسْتَبْشِرُوْنَ ۝

୪୭. ତୁମେ କୁହ, "ହେ ଅଲ୍ଲାହ ! ହେ ଆକାଶ ଓ ପୃଥିବୀର ସ୍ରଷ୍ଟା ! ଗୁପ୍ତ ଓ ପ୍ରକାଶ୍ୟ ବିଷୟର ଜ୍ଞାତା ! ତୁମେ ହିଁ ନିଜ ଭକ୍ତମାନଙ୍କ ମଧ୍ୟରେ ସେ ସବୁ ବିଷୟରେ ନିଷ୍ପତ୍ତି କରିଦେବ, ଯେଉଁ ବିଷୟରେ ସେମାନେ ମତଭେଦ କରୁଅଛନ୍ତି ।"

قُلِ اللّٰهُمَّ فَاطِرَ السَّمٰوٰتِ وَالْاَرْضِ عٰلِمَ الْغَيْبِ وَالشَّهَادَةِ اَنْتَ تَحْكُمُ بَيْنَ عِبَادِكَ فِيْ مَا كَانُوْا فِيْهِ يَخْتَلِفُوْنَ ۝

୪୮. ଏବଂ ଯଦି ଅତ୍ୟାଚାରୀ ଲୋକମାନେ ଭୂପୃଷ୍ଠରେ ଯାହା କିଛି ଅଛି ତାହାର ଅଧିକାରୀ ହୁଅନ୍ତେ, ଏପରିକି ଆହୁରି ସେତିକି ସେମାନଙ୍କ ପାଖରେ ଥାଆନ୍ତା, ତେବେ ସେମାନେ କୟାମତ ଦିନ ଶାସ୍ତିରୁ ରକ୍ଷା ପାଇବା ସକାଶେ ସେସବୁକୁ ମୁକ୍ତି ମୂଲ୍ୟ ସ୍ୱରୂପ ଦେଇ ଦିଅନ୍ତେ ; ଏବଂ ସେମାନଙ୍କର ଯେଉଁ ବିଷୟରେ ଧାରଣା ମଧ୍ୟ ନ ଥିଲା, ତାହା ଅଲ୍ଲାହଙ୍କ ତରଫରୁ ସେମାନଙ୍କ ନିକଟରେ ପ୍ରକାଶିତ ହେବ ।

وَلَوْ اَنَّ لِلَّذِيْنَ ظَلَمُوْا مَا فِي الْاَرْضِ جَمِيْعًا وَّمِثْلَهٗ مَعَهٗ لَافْتَدَوْا بِهٖ مِنْ سُوْۗءِ الْعَذَابِ يَوْمَ الْقِيٰمَةِ ۭ وَبَدَا لَهُمْ مِّنَ اللّٰهِ مَا لَمْ يَكُوْنُوْا يَحْتَسِبُوْنَ ۝

୪୯. ଏବଂ ସେମାନଙ୍କ ନିକଟରେ ସେମାନଙ୍କ କର୍ମର କୁପରିଣାମ ପ୍ରକାଶିତ ହେବ ଏବଂ ଯେଉଁ ଶାସ୍ତି ବିଷୟରେ ସେମାନେ ପରିହାସ କରୁଥିଲେ ତାହା ସେମାନଙ୍କୁ ପ୍ରତ୍ୟେକ ପାର୍ଶ୍ୱରୁ ପରିବେଷ୍ଟନ କରିବ ।

وَبَدَا لَهُمْ سَيِّاٰتُ مَا كَسَبُوْا وَحَاقَ بِهِمْ مَّا كَانُوْا بِهٖ يَسْتَهْزِءُوْنَ ۝

---

୧. ଅନେକେଶ୍ୱରବାଦୀମାନେ ଏକେଶ୍ୱରବାଦର ଆଲୋଚନା ପ୍ରତି ବିରକ୍ତି ପ୍ରକାଶ କରିଥା'ନ୍ତି ।

୫୦. ଏବଂ ଯେତେବେଳେ ମନୁଷ୍ୟର କୌଣସି ଅନିଷ୍ଟ ହୁଏ, ସେତେବେଳେ ସେ ଆମକୁ ଡାକ ପକାଏ ; ଏହାପରେ ଯେତେବେଳେ ଆମେ ତାହାକୁ ନିଜ ଠାରୁ କୌଣସି କୃପା ପ୍ରଦାନ କରୁ, ସେତେବେଳେ ସେ କହେ, ''ମୋତେ ଏହି କୃପା ନିଜ ଜ୍ଞାନ ବଳରେ ମିଳିଅଛି ;'' (ଏହା ଠିକ୍ ନୁହେଁ) ବରଂ ତାହାର ପ୍ରାପ୍ତି ଏକ ପରୀକ୍ଷା ସ୍ୱରୂପ ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହା ଜାଣନ୍ତି ନାହିଁ ।

فَإِذَا مَسَّ الْإِنْسَانَ ضُرٌّ دَعَانَا ثُمَّ إِذَا خَوَّلْنَاهُ نِعْمَةً مِنَّا قَالَ إِنَّمَا أُوتِيتُهُ عَلَىٰ عِلْمٍ ۚ بَلْ هِيَ فِتْنَةٌ وَلَٰكِنَّ أَكْثَرَهُمْ لَا يَعْلَمُونَ ﴿٥٠﴾

୫୧. ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ ଏହା କହୁଥିଲେ ; ଏହା ସତ୍ତ୍ୱେ, ସେମାନଙ୍କ କର୍ମ ସେମାନଙ୍କର କୌଣସି କାର୍ଯ୍ୟରେ ଲାଗିଲା ନାହିଁ ।

قَدْ قَالَهَا الَّذِينَ مِنْ قَبْلِهِمْ فَمَا أَغْنَىٰ عَنْهُمْ مَا كَانُوا يَكْسِبُونَ ﴿٥١﴾

୫୨. ବରଂ ସେମାନଙ୍କ କର୍ମର କୁପରିଣାମ ସେମାନଙ୍କୁ କବଳିତ କରିଥିଲା ; ଏବଂ ଏହି ଯୁଗର ଲୋକମାନଙ୍କ ମଧ୍ୟରୁ ଯେଉଁମାନେ ଅତ୍ୟାଚାରୀ, ସେମାନଙ୍କୁ ମଧ୍ୟ ସେମାନଙ୍କ କର୍ମର କୁପରିଣାମ କବଳିତ କରିବ ; ଏବଂ ସେମାନେ ଅଲ୍ଲାହ୍‌ଙ୍କ ପରିକଳ୍ପନାକୁ ବିଫଳ କରି ପାରିବେ ନାହିଁ ।

فَأَصَابَهُمْ سَيِّئَاتُ مَا كَسَبُوا ۚ وَالَّذِينَ ظَلَمُوا مِنْ هَٰؤُلَاءِ سَيُصِيبُهُمْ سَيِّئَاتُ مَا كَسَبُوا وَمَا هُمْ بِمُعْجِزِينَ ﴿٥٢﴾

୫୩. କ'ଣ ସେମାନଙ୍କୁ ଜଣାନାହିଁ ଯେ ଅଲ୍ଲାହ୍ ଯାହା ପାଇଁ ଇଚ୍ଛା ତାହାର ଜୀବିକାକୁ ପ୍ରଶସ୍ତ କରିଥା'ନ୍ତି, ଏବଂ (ଯାହା ପାଇଁ ଇଚ୍ଛା ତାହାର ଜୀବିକାକୁ) ସଂକୁଚିତ କରିଥା'ନ୍ତି ? ଏବଂ ଏଥିରେ ବିଶ୍ୱାସକାରୀ ସମ୍ପ୍ରଦାୟ ସକାଶେ ମହାନ୍ ନିଦର୍ଶନମାନ ରହିଅଛି ।

أَوَلَمْ يَعْلَمُوا أَنَّ اللَّهَ يَبْسُطُ الرِّزْقَ لِمَنْ يَشَاءُ وَيَقْدِرُ ۚ إِنَّ فِي ذَٰلِكَ لَآيَاتٍ لِقَوْمٍ يُؤْمِنُونَ ﴿٥٣﴾

ରୁ : ୬

୫୪. ତୁମେ (ଆମ ତରଫରୁ ସେମାନଙ୍କୁ) କୁହ, ''ହେ ଆମର ଭକ୍ତମାନେ ! ଯେଉଁମାନେ ନିଜ ପ୍ରତି (ପାପ କରି) ଅତ୍ୟାଚାର କରିଛନ୍ତି , (ସେମାନେ) ଅଲ୍ଲାହ୍‌ଙ୍କ କରୁଣାରୁ ନିରାଶ ହୁଅନ୍ତୁ ନାହିଁ ; ଅଲ୍ଲାହ୍ ସକଳ ପାପକୁ କ୍ଷମା କରିଥା'ନ୍ତି ; ସେ ହିଁ କ୍ଷମାଶୀଳ (ଓ) ସଦା କରୁଣାମୟ ।''

قُلْ يَا عِبَادِيَ الَّذِينَ أَسْرَفُوا عَلَىٰ أَنْفُسِهِمْ لَا تَقْنَطُوا مِنْ رَحْمَةِ اللَّهِ ۚ إِنَّ اللَّهَ يَغْفِرُ الذُّنُوبَ جَمِيعًا ۚ إِنَّهُ هُوَ الْغَفُورُ الرَّحِيمُ ﴿٥٤﴾

୫୫. ''ଏବଂ ତୁମେମାନେ ସମସ୍ତେ ନିଜ ପାଳନକର୍ତ୍ତାଙ୍କ ପ୍ରତି ଅବନତ ହୁଅ, ଏବଂ ଯେଉଁ ଶାସ୍ତି ଅବତୀର୍ଣ୍ଣ ହେବା ପରେ ତୁମମାନଙ୍କୁ ସାହାଯ୍ୟ କରିବାକୁ କେହି ନ ଥିବେ, ତାହା ତୁମମାନଙ୍କ ପ୍ରତି ଅବତୀର୍ଣ୍ଣ ହେବା ପୂର୍ବରୁ ତୁମେମାନେ ତାହାଙ୍କର ସମ୍ପୂର୍ଣ୍ଣ ଆଜ୍ଞାପାଳନକାରୀ ହୋଇଯାଅ ।''

وَأَنِيبُوا إِلَىٰ رَبِّكُمْ وَأَسْلِمُوا لَهُ مِنْ قَبْلِ أَنْ يَأْتِيَكُمُ الْعَذَابُ ثُمَّ لَا تُنْصَرُونَ ﴿٥٥﴾

୫୬. ''ଏବଂ ତୁମମାନଙ୍କ ପ୍ରତି ତୁମମାନଙ୍କ ଅଜ୍ଞାତସାରରେ ଅକସ୍ମାତ୍ ଶାସ୍ତି ଉପସ୍ଥିତ ହେବା ପୂର୍ବରୁ ଯାହାକିଛି ତୁମମାନଙ୍କ ପ୍ରତି ଅବତୀର୍ଣ୍ଣ ହୋଇଛି ତନ୍ମଧ୍ୟରୁ (ନିଜ ଅବସ୍ଥା ଅନୁସାରେ) ସବୁଠାରୁ ଉତ୍କୃଷ୍ଟ[୧] ଆଦେଶକୁ ପାଳନ କର ;

وَاتَّبِعُوْٓا اَحْسَنَ مَآ اُنْزِلَ اِلَيْكُمْ مِّنْ رَّبِّكُمْ مِّنْ قَبْلِ اَنْ يَّاْتِيَكُمُ الْعَذَابُ بَغْتَةً وَّاَنْتُمْ لَا تَشْعُرُوْنَ ﴿٥٦﴾

୫୭. ''ଏଥି ନିମନ୍ତେ ଯେ କାଳେ ତୁମମାନଙ୍କ ମଧ୍ୟରୁ କେହି କହିବ ଯେ ହାୟ ! ମୋର ଦୁଃଖ, ମୁଁ ଅଲ୍ଲାଃଙ୍କ ସଂକ୍ରାନ୍ତରେ (ନିଜ କର୍ତ୍ତବ୍ୟରେ) ଅବହେଳା କରୁଥିଲି ଏବଂ ମୁଁ ତ (ଅଲ୍ଲାଃଙ୍କ ବାଣୀକୁ) ତୁଚ୍ଛ ମନେ କରୁଥିଲି ।''

اَنْ تَقُوْلَ نَفْسٌ يّٰحَسْرَتٰى عَلٰى مَا فَرَّطْتُّ فِيْ جَنْۢبِ اللّٰهِ وَاِنْ كُنْتُ لَمِنَ السّٰخِرِيْنَ ﴿٥٧﴾

୫୮. ''କିମ୍ବା ଅନ୍ୟ କେହି ଏହା କହିବ ଯେ ଯଦି ଅଲ୍ଲାଃ ମୋତେ (ବଳପୂର୍ବକ) ସତ୍‌ପଥ ପ୍ରଦର୍ଶନ କରିଥା'ନ୍ତେ, ତାହାହେଲେ ମୁଁ ମଧ୍ୟ ଧର୍ମଭୀରୁମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥାଆନ୍ତି ।''

اَوْ تَقُوْلَ لَوْ اَنَّ اللّٰهَ هَدٰىنِيْ لَكُنْتُ مِنَ الْمُتَّقِيْنَ ﴿٥٨﴾

୫୯. କିମ୍ବା ଶାସ୍ତିକୁ ଦେଖିଲାବେଳେ (ଏହା) କହିବ ଯେ ଯଦି ମୋତେ ଫେରିଯିବାର ସୁଯୋଗ ମିଳନ୍ତା, ତେବେ ମୁଁ (ମଧ୍ୟ) ହିତକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯା'ନ୍ତି ।''

اَوْ تَقُوْلَ حِيْنَ تَرَى الْعَذَابَ لَوْ اَنَّ لِيْ كَرَّةً فَاَكُوْنَ مِنَ الْمُحْسِنِيْنَ ﴿٥٩﴾

୬୦. (ଅଲ୍ଲାଃ କହିବେ, ଏପରି) କଦାପି ନୁହେଁ, ବରଂ ତୁମ ନିକଟକୁ ଆମର ନିଦର୍ଶନମାନ ଆସି ସାରିଥିଲା ; ଏହା ସତ୍ତ୍ୱେ ତୁମେ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲ, ଓ ଅହଙ୍କାର କରିଥିଲ, ଏବଂ ଅବିଶ୍ୱାସକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯାଇଥିଲ ।

بَلٰى قَدْ جَآءَتْكَ اٰيٰتِيْ فَكَذَّبْتَ بِهَا وَاسْتَكْبَرْتَ وَكُنْتَ مِنَ الْكٰفِرِيْنَ ﴿٦٠﴾

୬୧. ଯେଉଁମାନେ ଅଲ୍ଲାଃଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ, ତୁମେ ସେମାନଙ୍କୁ କୟାମତ ଦିନ ଦେଖିବ ଯେ ସେମାନଙ୍କ ମୁଖ ମଣ୍ଡଳ କଳା ପଡ଼ି ଯାଇଥିବ ; (ତାହାହେଲେ) କ'ଣ ଅହଙ୍କାରୀମାନଙ୍କର ବାସସ୍ଥାନ ନରକ ନୁହେଁ ?

وَيَوْمَ الْقِيٰمَةِ تَرَى الَّذِيْنَ كَذَبُوْا عَلَى اللّٰهِ وُجُوْهُهُمْ مُّسْوَدَّةٌ ۭ اَلَيْسَ فِيْ جَهَنَّمَ مَثْوًى لِّلْمُتَكَبِّرِيْنَ ﴿٦١﴾

୬୨. ଏବଂ (ଅଲ୍ଲାଃ) ଧର୍ମଭୀରୁମାନଙ୍କୁ ସେମାନଙ୍କ ପଦମର୍ଯ୍ୟାଦା ଅନୁଯାୟୀ ସଫଳତା ପ୍ରଦାନ କରି (ସେମାନଙ୍କୁ) ପ୍ରତ୍ୟେକ ପ୍ରକାର ଦୁଃଖରୁ ମୁକ୍ତି ଦେବେ ; ସେମାନଙ୍କୁ କୌଣସି ପୀଡ଼ା ସ୍ପର୍ଶ କରିବ ନାହିଁ କି ସେମାନେ (ଅତୀତର ତ୍ରୁଟି ଯୋଗୁଁ) ଦୁଃଖିତ ହେବ ନାହିଁ ।

وَيُنَجِّي اللّٰهُ الَّذِيْنَ اتَّقَوْا بِمَفَازَتِهِمْ لَا يَمَسُّهُمُ السُّوْٓءُ وَلَا هُمْ يَحْزَنُوْنَ ﴿٦٢﴾

୬୩. ଅଲ୍ଲାଃ ସମସ୍ତ ବସ୍ତୁର ସ୍ରଷ୍ଟା ଓ ସକଳ ବିଷୟର ତତ୍ତ୍ୱାବଧାରକ ।

اَللّٰهُ خَالِقُ كُلِّ شَيْءٍ ۡ وَّهُوَ عَلٰى كُلِّ شَيْءٍ وَّكِيْلٌ ﴿٦٣﴾

---

୧. ଅର୍ଥାତ୍ ଅଧିକରୁ ଅଧିକ ଯେତେ ସୁଯୋଗ ମିଳିବ ତଦନୁଯାୟୀ କାର୍ଯ୍ୟ କରିଯିବାକୁ ଉଦ୍ୟମ କର ।

لَهٗ مَقَالِيۡدُ السَّمٰوٰتِ وَالۡاَرۡضِ‌ؕ وَالَّذِيۡنَ كَفَرُوۡا بِاٰيٰتِ اللّٰهِ اُولٰٓـئِكَ هُمُ الۡخٰسِرُوۡنَ ﴿۶۳﴾

୬୪. ଆକାଶ ଓ ପୃଥିବୀର ଚାବିକାଠି ତାହାଙ୍କର କରଗତ ; ଏବଂ ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ପ୍ରତ୍ୟାଖ୍ୟାନ କରନ୍ତି ; ସେହିମାନେ କ୍ଷତିଗ୍ରସ୍ତ ହୁଅନ୍ତି ।

ରୁ : ୭

قُلۡ اَفَغَيۡرَ اللّٰهِ تَاۡمُرُوۡٓنِّىۡۤ اَعۡبُدُ اَيُّهَا الۡجٰهِلُوۡنَ ﴿۶۴﴾

୬୫. ତୁମେ କୁହ, ''ହେ ମୂର୍ଖମାନେ ! କ'ଣ ତୁମେମାନେ ଆମ୍ଭଙ୍କୁ ଆଦେଶ ଦେଉଅଛ ଯେ ଆମେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟର ଉପାସନା କରିବୁ ?''

وَلَقَدۡ اُوۡحِىَ اِلَيۡكَ وَاِلَى الَّذِيۡنَ مِنۡ قَبۡلِكَ‌ۚ لَئِنۡ اَشۡرَكۡتَ لَيَحۡبَطَنَّ عَمَلُكَ وَلَتَكُوۡنَنَّ مِنَ الۡخٰسِرِيۡنَ ﴿۶۵﴾

୬୬. ଅଥଚ ଅଲ୍ଲାହଙ୍କ ତରଫରୁ ତୁମ ପ୍ରତି ଓ ତୁମର ପୂର୍ବବର୍ତ୍ତୀ (ନବି)ମାନଙ୍କ ପ୍ରତି ଏହି ପ୍ରେରଣ କରାଯାଇଅଛି, (ଏବଂ ପ୍ରତ୍ୟେକ ନବିଙ୍କୁ କୁହାଯାଇଥିଲା ଯେ) ''ଯଦି ତୁମେ ସିର୍କ କରିବ, ତେବେ ତୁମର ସମସ୍ତ କାର୍ଯ୍ୟ ବ୍ୟର୍ଥ ହୋଇଯିବ, ଏବଂ ତୁମେ କ୍ଷତିଗ୍ରସ୍ତ (ଲୋକ)ମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବ ।''

بَلِ اللّٰهَ فَاعۡبُدۡ وَكُنۡ مِّنَ الشّٰكِرِيۡنَ ﴿۶۶﴾

୬୭. (ତେଣୁ ଏପରି କର ନାହିଁ ବରଂ ଅଲ୍ଲାହଙ୍କର ଉପାସନା କର ଓ କୃତଜ୍ଞ (ଭକ୍ତ)ମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯାଅ ।

وَمَا قَدَرُوا اللّٰهَ حَقَّ قَدۡرِهٖ ‌ۖ وَالۡاَرۡضُ جَمِيۡعًا قَبۡضَتُهٗ يَوۡمَ الۡقِيٰمَةِ وَالسَّمٰوٰتُ مَطۡوِيّٰتٌۢ بِيَمِيۡنِهٖ‌ؕ سُبۡحٰنَهٗ وَتَعٰلٰى عَمَّا يُشۡرِكُوۡنَ ﴿۶۷﴾

୬୮. ଏବଂ ସେମାନେ ଅଲ୍ଲାହଙ୍କ ଗୁଣାବଳୀ ସଂକ୍ରାନ୍ତରେ ସଠିକ୍ ଧାରଣା କରିପାରିଲେ ନାହିଁ ; ଅଥଚ ସମଗ୍ର ଭୂପୃଷ୍ଠ ତାହାଙ୍କ କର୍ତ୍ତୃତ୍ୱାଧୀନ, ଏବଂ ଆକାଶ (ଓ ପୃଥିବୀ ଉଭୟ) କୟାମତ ଦିନ ଗୁଡ଼େଇ[୧] ହୋଇ ତାହାଙ୍କ ଦକ୍ଷିଣ ହସ୍ତରେ ଥିବ ; ସେ ହିଁ ପବିତ୍ର ଓ ସେମାନଙ୍କ ସିର୍କ ବିଷୟକ ବିଶ୍ୱାସର ବହୁ ଊର୍ଦ୍ଧ୍ୱରେ ।

وَنُفِخَ فِى الصُّوۡرِ فَصَعِقَ مَنۡ فِى السَّمٰوٰتِ وَمَنۡ فِى الۡاَرۡضِ اِلَّا مَنۡ شَآءَ اللّٰهُ‌ؕ ثُمَّ نُفِخَ فِيۡهِ اُخۡرٰى فَاِذَا هُمۡ قِيَامٌ يَّنۡظُرُوۡنَ ﴿۶۸﴾

୬୯. ଏବଂ ବିଗୁଲ ଫୁଙ୍କାଯିବା ବେଳେ ଯେ କେହି ମଧ୍ୟ ଆକାଶ ଓ ପୃଥିବୀରେ ଅଛି ସେ ଚେତାଶୂନ୍ୟ ହୋଇଯିବ ; ଅବଶ୍ୟ ଅଲ୍ଲାହ ଯାହାକୁ ଇଚ୍ଛା କରିବେ କେବଳ ତାହା ବ୍ୟତୀତ ; ତା'ପରେ ଦ୍ୱିତୀୟଥର ବିଗୁଲ ଫୁଙ୍କା ଯିବ ; ଏବଂ ହଠାତ୍ ସେମାନେ ସମସ୍ତେ (ନିଜ ସଂକ୍ରାନ୍ତରେ ନିଷ୍ପତ୍ତି ପାଇଁ ପ୍ରତୀକ୍ଷା—ପୂର୍ବକ ଦଣ୍ଡାୟମାନ ହେବେ ।

---

୧. 'ଗୁଡ଼େଇ ହେବା' ଅଭିବ୍ୟକ୍ତିର ତାତ୍ପର୍ଯ୍ୟ ହେଉଛି ଯେ ଯେବେ ମଣିଷ କୌଣସି ବସ୍ତୁକୁ ଗୁଡ଼େଇ ନିଏ ତେବେ ତାହା ତା' ହାତରୁ ଖସି ଯାଏ ନାହିଁ । ଉଦାହରଣ ସ୍ୱରୂପ ଯଦି କୌଣସି ଲୋକ ବାଲିକୁ ହାତମୁଠାରେ ଧରେ ଓ ତାହାକୁ ଚାପ ଦିଏ ତେବେ ତାହା ହାତମୁଠାରୁ ବାହାରକୁ ଗଳିଯିବ, କିନ୍ତୁ ଯଦି ସେ ତୂଳାକୁ ହାତରେ ଗୁଡ଼ାଇ ଧରେ ତେବେ ତାହାକୁ ଯେତେ ଚାପ ପ୍ରୟୋଗ କଲେ ମଧ୍ୟ ତାହା ବାହାରକୁ ଖସି ନ ଯାଇ ହାତମୁଠାରେ ହିଁ ରହିଥାଏ । ଅତଏବ ଦକ୍ଷିଣ ହସ୍ତରେ ଗୁଡ଼େଇ ହୋଇ ରହିଥିବାର ପ୍ରକୃତ ଅଭିପ୍ରାୟ ଏହି ଯେ ଯେହେତୁ ଦକ୍ଷିଣ ହସ୍ତ ଶକ୍ତିର ପ୍ରତୀକ, ତେଣୁ ଉଭୟ ଆକାଶ ଓ ପୃଥିବୀ ତାହାଙ୍କର ସମ୍ପୂର୍ଣ୍ଣ କରଗତ ହୋଇଥିବ ।

وَاَشْرَقَتِ الْاَرْضُ بِنُوْرِ رَبِّهَا وَوُضِعَ الْكِتٰبُ وَجِايْٓءَ بِالنَّبِيّٖنَ وَالشُّهَدَآءِ وَقُضِيَ بَيْنَهُمْ بِالْحَقِّ وَهُمْ لَا يُظْلَمُوْنَ ۝

୭୦. ଏବଂ ଭୂପୃଷ୍ଠ ନିଜ ପାଳନକର୍ତ୍ତାଙ୍କ ଜ୍ୟୋତିରେ ଉଦ୍ଭାସିତ ହୋଇଯିବ ; ଏବଂ (ସେମାନଙ୍କ କର୍ମ) ପୁସ୍ତକ ଉପସ୍ଥାପିତ କରା ହେବ, ଏବଂ ନବିମାନଙ୍କୁ ଓ ଅନ୍ୟାନ୍ୟ ସାକ୍ଷୀମାନଙ୍କୁ ହାଜର କରାହେବ, ତତ୍‌ପରେ ସେ ସମସ୍ତ (ଲୋକ)ଙ୍କ ମଧ୍ୟରେ ନ୍ୟାୟ-ପୂର୍ବକ ନିଷ୍ପତ୍ତି କରାହେବ ଓ ସେମାନଙ୍କ ପ୍ରତି (କୌଣସି) ଅନ୍ୟାୟ କରାହେବ ନାହିଁ ।

ରୁ : ୮

ع وَوُفِّيَتْ كُلُّ نَفْسٍ مَّا عَمِلَتْ وَهُوَ اَعْلَمُ بِمَا يَفْعَلُوْنَ ۝

୭୧. ଏବଂ ପ୍ରତ୍ୟେକ ବ୍ୟକ୍ତି ଯାହା କରିଥିବ ତଦନୁଯାୟୀ ତାହାକୁ ପୂର୍ଣ୍ଣମାତ୍ରାରେ (ପ୍ରତିଦାନ) ଦିଆଯିବ ; ଏବଂ ସେ (ଅଲ୍ଲାହ୍) ତାହାଙ୍କ କର୍ମ ସଂକ୍ରାନ୍ତରେ ସମ୍ପୂର୍ଣ୍ଣରୂପେ ଅବହିତ ଅଛନ୍ତି ,

وَسِيْقَ الَّذِيْنَ كَفَرُوْٓا اِلٰى جَهَنَّمَ زُمَرًا ۗ حَتّٰٓى اِذَا جَآءُوْهَا فُتِحَتْ اَبْوَابُهَا وَقَالَ لَهُمْ خَزَنَتُهَآ اَلَمْ يَأْتِكُمْ رُسُلٌ مِّنْكُمْ يَتْلُوْنَ عَلَيْكُمْ اٰيٰتِ رَبِّكُمْ وَيُنْذِرُوْنَكُمْ لِقَآءَ يَوْمِكُمْ هٰذَا ۗ قَالُوْا بَلٰى وَلٰكِنْ حَقَّتْ كَلِمَةُ الْعَذَابِ عَلَى الْكٰفِرِيْنَ ۝

୭୨. ଓ ଅବିଶ୍ୱାସକାରୀମାନଙ୍କୁ ନରକ ଆଡକୁ ଦଳ ଦଳ କରି ତଡ଼ି ନିଆହେବ ; ଏପରି କି ଯେତେବେଳେ ସେମାନେ ତାହା ନିକଟରେ ପହଞ୍ଚିବେ, ସେତେବେଳେ ତା'ର ଦ୍ୱାର ଉନ୍ମୁକ୍ତ କରି ଦିଆଯିବ, ଏବଂ ସେ (ଅବିଶ୍ୱାସକାରୀ)ମାନଙ୍କୁ ସେଠାକାର ରକ୍ଷୀମାନେ କହିବେ, ''କ'ଣ ତୁମମାନଙ୍କ ନିକଟକୁ ତୁମମାନଙ୍କ ସମ୍ପ୍ରଦାୟ ମଧ୍ୟରୁ ରସୁଲ ଆସି ନଥିଲେ, ଯେଉଁମାନେ କି ତୁମମାନଙ୍କ ନିକଟରେ ତୁମମାନଙ୍କ ପାଳନକର୍ତ୍ତାଙ୍କ ନିଦର୍ଶନମାନ ପାଠ କରି ଶୁଣାଉ ଥିଲେ ଓ ଆଜି ଦିନର ସାକ୍ଷାତ୍ ସମ୍ବନ୍ଧରେ ତୁମମାନଙ୍କୁ ସଚେତନ କରାଉ ନ ଥିଲେ,'' ସେମାନେ କହିବେ, ''ହଁ, ଏପରି ହୋଇଥିଲା ; କିନ୍ତୁ ଅବିଶ୍ୱାସକାରୀମାନଙ୍କ ସଂକ୍ରାନ୍ତରେ ଶାସ୍ତି ବିଷୟକ ଭବିଷ୍ୟବାଣୀ ସାବ୍ୟସ୍ତ ହେବାର ଥିଲା ;'' (ଅର୍ଥାତ୍ ଯେହେତୁ ଆମେମାନେ ଅବିଶ୍ୱାସକାରୀ ଥିଲୁ , ତେଣୁ ଆମେମାନେ ରସୁଲମାନଙ୍କୁ କିପରି ଗ୍ରହଣ କରିଥା'ନ୍ତୁ ?) ।

قِيْلَ ادْخُلُوْٓا اَبْوَابَ جَهَنَّمَ خٰلِدِيْنَ فِيْهَا ۚ فَبِئْسَ مَثْوَى الْمُتَكَبِّرِيْنَ ۝

୭୩. ସେମାନଙ୍କୁ କୁହାଯିବ, ''ନରକର ଦ୍ୱାର ଦେଇ ପ୍ରବେଶ କର, (ଏପରି ଅବସ୍ଥାରେ ତୁମମାନଙ୍କୁ) ସେଠାରେ ଦୀର୍ଘକାଳ ରହିବାକୁ ହେବ ; ଅତଏବ ଅହଙ୍କାରୀମାନଙ୍କ ବାସସ୍ଥାନ ଅତ୍ୟନ୍ତ ମନ୍ଦ ଅଟେ ।''

୭୪. ଏବଂ ଯେଉଁମାନେ ଧର୍ମଭୀରୁତା ଅବଲମ୍ବନ କରୁଥିଲେ ସେମାନଙ୍କୁ ବୈକୁଣ୍ଠ ଆଡ଼କୁ ଦଳ ଦଳ କରି ଠେଲି[୧] ନିଆ ହେବ ; ଏପରିକି ଯେତେବେଳେ ସେମାନେ ବୈକୁଣ୍ଠ ନିକଟରେ ପହଞ୍ଚିବେ, ସେତେବେଳେ ତାହାର ଦ୍ୱାର ଉନ୍ମୁକ୍ତ କରାହେବ, ଏବଂ ସେଠାକାର ରକ୍ଷୀମାନେ ସେମାନଙ୍କୁ କହିବେ, ''ତୁମମାନଙ୍କ ପ୍ରତି ସର୍ବଦା ଶାନ୍ତି ହେଉ ; ତୁମେମାନେ ଅତ୍ୟନ୍ତ ଉତ୍ତମ ଅବସ୍ଥାରେ ଉପନୀତ ହୋଇଅଛ ; ସୁତରାଂ ଏଠାରେ (ଅର୍ଥାତ୍ ଏହି ବୈକୁଣ୍ଠରେ) ଏହି ବିଚାର ସହ ପ୍ରବେଶ କର ଯେ ତୁମେମାନେ ଏଠାରେ ଚିରକାଳ ରହିବ ।''

وَ سِيْقَ الَّذِيْنَ اتَّقَوْا رَبَّهُمْ اِلَى الْجَنَّةِ زُمَرًا ؕ حَتّٰۤى اِذَا جَآءُوْهَا وَ فُتِحَتْ اَبْوَابُهَا وَ قَالَ لَهُمْ خَزَنَتُهَا سَلٰمٌ عَلَيْكُمْ طِبْتُمْ فَادْخُلُوْهَا خٰلِدِيْنَ ۝

୭୫. ଏବଂ ସେମାନେ କହିବେ, ''ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ପାଇଁ (ଉଦ୍ଦିଷ୍ଟ), ଯେ ଆମମାନଙ୍କ ସହିତ ନିଜର ଅଙ୍ଗୀକାରକୁ ପୂରଣ କରିଛନ୍ତି ; ଏବଂ ଆମମାନଙ୍କୁ ଏହି ସ୍ଥାନର ଉତ୍ତରାଧିକାରୀ କରିଛନ୍ତି ; ଆମେମାନେ ବୈକୁଣ୍ଠରେ ଯେଉଁଠାରେ ଇଚ୍ଛା ରହିବୁ ;'' ଅତଏବ (ସାବ୍ୟସ୍ତ ହେଲା ଯେ) ସମ୍ପୂର୍ଣ୍ଣଭାବରେ ସତ୍‌କର୍ମ କରୁଥିବା ଲୋକମାନଙ୍କର ପୁରସ୍କାର ଅତି ଉତ୍ତମ ।

وَ قَالُوا الْحَمْدُ لِلّٰهِ الَّذِيْ صَدَقَنَا وَعْدَهٗ وَ اَوْرَثَنَا الْاَرْضَ نَتَبَوَّاُ مِنَ الْجَنَّةِ حَيْثُ نَشَآءُ ۚ فَنِعْمَ اَجْرُ الْعٰمِلِيْنَ ۝

୭୬. ଏବଂ ତୁମେ ସେହିଦିନ ଦେବଦୂତମାନଙ୍କୁ ଦେଖିବ ଯେ ସେମାନେ ସିଂହାସନର ଚତୁଃପାର୍ଶ୍ୱରେ ଧାଡ଼ି ବାନ୍ଧି ନିଜ ପାଳନକର୍ତ୍ତାଙ୍କର ପ୍ରଶଂସା ସହ ଗୁଣଗାନ ମଧ୍ୟ କରୁଥିବେ ; ଏବଂ ସେ (ଲୋକ)ମାନଙ୍କ ମଧ୍ୟରେ ସମ୍ପୂର୍ଣ୍ଣଭାବରେ ନ୍ୟାୟପୂର୍ବକ ନିଷ୍ପତ୍ତି କରାହେବ ; ଏବଂ କୁହାଯିବ, ''ସମସ୍ତ ପ୍ରଶଂସା ଅଲ୍ଲାହଙ୍କର, ଯେ ସମସ୍ତ ଜଗତର ପାଳନକର୍ତ୍ତା ।''

وَ تَرَى الْمَلٰٓئِكَةَ حَآفِّيْنَ مِنْ حَوْلِ الْعَرْشِ يُسَبِّحُوْنَ بِحَمْدِ رَبِّهِمْ ۚ وَ قُضِيَ بَيْنَهُمْ بِالْحَقِّ وَ قِيْلَ الْحَمْدُ لِلّٰهِ رَبِّ الْعٰلَمِيْنَ ۝

୧. ବୈକୁଣ୍ଠରେ ପ୍ରବେଶ କରିବା ବ୍ୟକ୍ତି ଅବଶ୍ୟ ଦୌଡ଼ିକରି ସେଠାକୁ ଚାଲିଯିବ । କିନ୍ତୁ ଏଠାରେ ତାକୁ ସେଠାକୁ ଠେଲି ନିଆଯିବ ବୋଲି ଉଲ୍ଲେଖ କରାଯାଇଛି । ଏହି ଶବ୍ଦର ପ୍ରୟୋଗ ଏଥିଯୋଗୁଁ ହୋଇଛି ଯେହେତୁ ଫଳାଫଳ ଜଣା ନ ପଡ଼ିବା ପର୍ଯ୍ୟନ୍ତ ପ୍ରତ୍ୟେକେ ସାବଧାନତାସହକାରେ ଅଗ୍ରସର ହେଉଥିବେ, ତେଣୁ ଦେବଦୂତମାନେ ବୈକୁଣ୍ଠବାସୀଙ୍କୁ ଶୀଘ୍ର ଶୀଘ୍ର ସେଠାକୁ ନେଇଯିବେ ।

سُوْرَةُ الْمُؤْمِن مَكِّيَّةٌ (٤٠)

## ଅଲ– ମୁମିନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୮୬ଟି ଆୟତ ଓ ୯ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

حٰمٓ ②

୨. ହା–ମୀମ [୧]

تَنْزِيْلُ الْكِتٰبِ مِنَ اللّٰهِ الْعَزِيْزِ الْعَلِيْمِ ③

୩. ଏହି ଗ୍ରନ୍ଥ ପରାକ୍ରମଶାଳୀ (ଓ) ସର୍ବଜ୍ଞ ଅଲ୍ଲାହଙ୍କ ତରଫରୁ ଅବତୀର୍ଣ୍ଣ ହୋଇଅଛି ,

غَافِرِ الذَّنْۢبِ وَقَابِلِ التَّوْبِ شَدِيْدِ الْعِقَابِ ذِى الطَّوْلِ لَآ اِلٰهَ اِلَّا هُوَ اِلَيْهِ الْمَصِيْرُ ④

୪. ଯେ କି ପାପ ମୋଚନକାରୀ ଓ ଅନୁତାପଗ୍ରହଣକାରୀ (ଏବଂ ଏଥିଯୋଗୁଁ ପ୍ରଶଂସାର ପାତ୍ର ଅଟନ୍ତି) ; ଶାସ୍ତି ପ୍ରଦାନ କରିବାରେ କଠୋର [୨] , ଅତ୍ୟନ୍ତ ଅନୁଗ୍ରହ-ପରାୟଣ ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ତାହାଙ୍କ ନିକଟକୁ ଫେରିଯିବାକୁ ହେବ ।

مَا يُجَادِلُ فِيْٓ اٰيٰتِ اللّٰهِ اِلَّا الَّذِيْنَ كَفَرُوْا فَلَا يَغْرُرْكَ تَقَلُّبُهُمْ فِى الْبِلَادِ ⑤

୫. ଅବିଶ୍ୱାସକାରୀମାନଙ୍କ ବ୍ୟତୀତ ଅନ୍ୟ କେହି ବ୍ୟକ୍ତି ଅଲ୍ଲାହଙ୍କ ନିଦର୍ଶନଗୁଡିକ ସଂକ୍ରାନ୍ତରେ ବିବାଦାତ୍ମକ ଯୁକ୍ତିତର୍କ କରନ୍ତି ନାହିଁ; ସୁତରାଂ ସେମାନଙ୍କର ବିଭିନ୍ନ ଦେଶରେ (ବାଣିଜ୍ୟ ଆଦି ସକାଶେ ଅବାଧରେ) ଚଳପ୍ରଚଳ ହେବା ଯେପରି ତୁମକୁ ପ୍ରତାରିତ ନ କରୁ (କାରଣ ସେମାନଙ୍କ କର୍ମ ସେମାନଙ୍କ ବିନାଶର ହେତୁ ହେବ) ।

كَذَّبَتْ قَبْلَهُمْ قَوْمُ نُوْحٍ وَّالْاَحْزَابُ مِنْۢ بَعْدِهِمْ وَهَمَّتْ كُلُّ اُمَّةٍۢ بِرَسُوْلِهِمْ لِيَاْخُذُوْهُ وَجٰدَلُوْا بِالْبَاطِلِ لِيُدْحِضُوْا بِهِ الْحَقَّ فَاَخَذْتُهُمْ فَكَيْفَ

୬. ସେମାନଙ୍କ ପୂର୍ବବର୍ତ୍ତୀ ସମ୍ପ୍ରଦାୟମାନେ ମଧ୍ୟ (ନିଜ ରସୁଲମାନଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲେ ; ନୁହଙ୍କ ସମ୍ପ୍ରଦାୟ ମଧ୍ୟ ; ଏବଂ ସେମାନଙ୍କ ପରେ ଅନ୍ୟାନ୍ୟ ବିଭିନ୍ନ ସମ୍ପ୍ରଦାୟ (ଯେଉଁମାନେ ନିଜ ନବିମାନଙ୍କ ବିରୁଦ୍ଧରେ ଦଳ ବାନ୍ଧିଥିଲେ) ଏବଂ ପ୍ରତ୍ୟେକ ସମ୍ପ୍ରଦାୟ ନିଜ ରସୁଲଙ୍କ ବିଷୟରେ ମନସ୍ଥ କରିଥିଲେ ଯେ ତାହାଙ୍କୁ ଗିରଫ କରିବେ ଓ ମିଥ୍ୟା ପ୍ରମାଣ ସହିତ ଯୁକ୍ତିତର୍କ କରିବାକୁ ଆରମ୍ଭ କଲେ

---

୧. ହମିଦ ଓ ମଜିଦ ସ୍ଥାନରେ 'ହା – ମୀମ' ସଂକ୍ଷେପାକ୍ଷର ଆସିଛି । ପ୍ରଥମ ଶବ୍ଦର ଅର୍ଥ ଯିଏ ପ୍ରଶଂସା ବା ସ୍ତୁତିର ଯୋଗ୍ୟ ଓ ଦ୍ୱିତୀୟ ଶବ୍ଦର ଅର୍ଥ ଯିଏ ମହିମାମୟ ।

୨. ଅଲ୍ଲାହ ଅବଶ୍ୟ ପରମ କ୍ଷମାଶୀଳ ତଥାପି ତାହାଙ୍କ ଶାସ୍ତି କଠୋରତମ, ଅର୍ଥାତ୍ ତାହାଙ୍କ ଶାସ୍ତି ମାନବ – ପ୍ରଦତ୍ତ ଶାସ୍ତି ସଦୃଶ ନୁହେଁ ।

كَانَ عِقَابِ ٦

ଯେପରିକି ସେମାନେ ନିଜ ବିତଣ୍ଡା ତର୍କ ଦ୍ୱାରା ସତ୍ୟକୁ ସ୍ଥାନଚ୍ୟୁତ କରାଇବେ ; ତେଣୁ ଆମେ ସେମାନଙ୍କୁ କବଳିତ କଲୁ : (ବର୍ତ୍ତମାନ କୁହ) ଆମର ଶାସ୍ତି କିପରି ହୋଇଥିଲା ।

وَكَذٰلِكَ حَقَّتْ كَلِمَتُ رَبِّكَ عَلَى الَّذِيْنَ كَفَرُوْٓا اَنَّهُمْ اَصْحٰبُ النَّارِ ٧

୭. ଏବଂ ଏହିପରି ଭାବରେ ଅବିଶ୍ୱାସକାରୀମାନଙ୍କ ସମ୍ବନ୍ଧରେ ତୁମ୍ଭ ପାଳନକର୍ତ୍ତାଙ୍କ ବିଚାର ସତ୍ୟ ସାବ୍ୟସ୍ତ ହେଲା ଯେ ସେମାନେ ନରକବାସୀ ଅଟନ୍ତି ।

اَلَّذِيْنَ يَحْمِلُوْنَ الْعَرْشَ وَمَنْ حَوْلَهٗ يُسَبِّحُوْنَ بِحَمْدِ رَبِّهِمْ وَيُؤْمِنُوْنَ بِهٖ وَيَسْتَغْفِرُوْنَ لِلَّذِيْنَ اٰمَنُوْا ۚ رَبَّنَا وَسِعْتَ كُلَّ شَيْءٍ رَّحْمَةً وَّعِلْمًا فَاغْفِرْ لِلَّذِيْنَ تَابُوْا وَاتَّبَعُوْا سَبِيْلَكَ وَقِهِمْ عَذَابَ الْجَحِيْمِ ٨

୮. ଯେଉଁ (ଦେବଦୂତ)ମାନେ (ଅଲ୍ଲାଃଙ୍କ) ସିଂହାସନକୁ ବହନ କରିଛନ୍ତି ଏବଂ ଯେଉଁମାନେ ଏହାର ଚତୁଃପାର୍ଶ୍ୱରେ ରହିଛନ୍ତି, ସେମାନେ ନିଜ ପାଳନକର୍ତ୍ତାଙ୍କ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାହାଙ୍କର ମହିମା ଗାନ କରୁଛନ୍ତି, ଏବଂ ଏହା (ଅର୍ଥାତ୍ ଏହି ପ୍ରଶଂସା) ପ୍ରତି ସମ୍ପୂର୍ଣ୍ଣ ବିଶ୍ୱାସ କରୁଛନ୍ତି, ଏବଂ ବିଶ୍ୱାସକାରୀମାନଙ୍କ ସକାଶେ କ୍ଷମାଭିକ୍ଷା କରୁଛନ୍ତି ; (ଏବଂ କହୁଛନ୍ତି), "ହେ ଆମମାନଙ୍କର ପାଳନକର୍ତ୍ତା ! ପ୍ରତ୍ୟେକ ବସ୍ତୁକୁ ତୁମେ ନିଜ କରୁଣା ଓ ଜ୍ଞାନ ବଳରେ ପରିବେଷ୍ଟିତ କରିଅଛ ; ସୁତରାଂ ଅନୁତାପକାରୀମାନଙ୍କୁ ଓ ତୁମର ପଥ ଅନୁସରଣକାରୀମାନଙ୍କୁ କ୍ଷମା କର ଓ ସେମାନଙ୍କୁ ନରକର ଶାସ୍ତିରୁ ରକ୍ଷାକର ।"

رَبَّنَا وَاَدْخِلْهُمْ جَنّٰتِ عَدْنِ ِالَّتِيْ وَعَدْتَّهُمْ وَمَنْ صَلَحَ مِنْ اٰبَآئِهِمْ وَاَزْوَاجِهِمْ وَذُرِّيّٰتِهِمْ ۚ اِنَّكَ اَنْتَ الْعَزِيْزُ الْحَكِيْمُ ٩

୯. "ହେ ଆମମାନଙ୍କର ପାଳନକର୍ତ୍ତା ! ସେମାନଙ୍କୁ ଏବଂ ସେମାନଙ୍କ ପିତୃପିତାମହମାନଙ୍କୁ ଓ ସେମାନଙ୍କ ପତ୍ନୀମାନଙ୍କୁ ତଥା ସେମାନଙ୍କ ସନ୍ତାନସନ୍ତତିମାନଙ୍କ ମଧ୍ୟରୁ ଯେଉଁମାନେ ପୁଣ୍ୟବାନ୍ ସେମାନଙ୍କୁ ମଧ୍ୟ ଚିରସ୍ଥାୟୀ ବୈକୁଣ୍ଠରେ ପ୍ରବେଶ କରାଅ, ଯାହା ସମ୍ବନ୍ଧରେ ତୁମେ ସେମାନଙ୍କୁ ପ୍ରତିଶ୍ରୁତି ଦେଇଅଛ ; ଏବଂ ତୁମେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।"

وَقِهِمُ السَّيِّاٰتِ ۚ وَمَنْ تَقِ السَّيِّاٰتِ يَوْمَئِذٍ فَقَدْ رَحِمْتَهٗ ۚ وَذٰلِكَ هُوَ الْفَوْزُ الْعَظِيْمُ ١٠

୧୦. "ଏବଂ ତୁମେ ସେମାନଙ୍କୁ ସବୁପ୍ରକାର ଦୁଃଖରୁ ମୁକ୍ତି ଦିଅ ; ଏବଂ ଯାହାକୁ ତୁମେ ସେହିଦିନ ଦୁଃଖରୁ ସୁରକ୍ଷିତ ରଖିବ ବାସ୍ତବରେ ତୁମେ ତାହାପ୍ରତି ଦୟାକରିବ ; ଏବଂ ଏହା ବାସ୍ତବରେ ଏକ ମହାନ୍ ସଫଳତା ।"

ରୁ : ୨

اِنَّ الَّذِيْنَ كَفَرُوْا يُنَادَوْنَ لَمَقْتُ اللّٰهِ اَكْبَرُ مِنْ مَّقْتِكُمْ اَنْفُسَكُمْ اِذْ تُدْعَوْنَ اِلَى الْاِيْمَانِ فَتَكْفُرُوْنَ ١١

୧୧. ଏବଂ (ମୃତ୍ୟୁପରେ) ଅବିଶ୍ୱାସକାରୀଙ୍କୁ ନିଶ୍ଚୟ କୁହାଯିବ, "ଆଜି ତୁମେମାନେ ନିଜକୁ ଯେତିକି ମାତ୍ରାରେ ଘୃଣା ଚକ୍ଷୁରେ ଦେଖୁଅଛ (ତୁମମାନଙ୍କ ପ୍ରତି) ଅଲ୍ଲାଃଙ୍କର ଘୃଣା ତାହା ଅପେକ୍ଷା ବହୁତ ଅଧିକ ; (ସ୍ମରଣ କର) ଯେତେବେଳେ ତୁମମାନଙ୍କୁ ଧର୍ମବିଶ୍ୱାସ ଆଡକୁ ଡକାଯାଉଥିଲା, ସେତେବେଳେ ତୁମେମାନେ ପ୍ରତ୍ୟାଖ୍ୟାନ କରୁଥିଲ ।"

قَالُوْا رَبَّنَآ اَمَتَّنَا اثْنَتَيْنِ وَاَحْيَيْتَنَا اثْنَتَيْنِ فَاعْتَرَفْنَا بِذُنُوْبِنَا فَهَلْ اِلٰى خُرُوْجٍ مِّنْ سَبِيْلٍ ﴿١٢﴾

୧୨. ସେମାନେ କହିବେ, "ହେ ଆମମାନଙ୍କ ପାଳନକର୍ତ୍ତା ! ତୁମେ ଆମମାନଙ୍କୁ ଦୁଇଥର ମୃତ୍ୟୁ ପ୍ରଦାନ କରିଅଛ, ଓ ଦୁଇଥର[୧] ଜୀବନ ଦାନ କରିଅଛ ; ତେଣୁ ଆମେମାନେ ନିଜର ଦୋଷ ସ୍ୱୀକାର କରୁଅଛୁ" ; ଅତଏବ (ତୁମେ କୁହ),"ବର୍ତ୍ତମାନ (ଏଥିରୁ) ବର୍ତ୍ତିବାର କିଛି ଉପାୟ ଅଛି କି ?"

ذٰلِكُمْ بِاَنَّهٗٓ اِذَا دُعِيَ اللّٰهُ وَحْدَهٗ كَفَرْتُمْ ۚ وَاِنْ يُّشْرَكْ بِهٖ تُؤْمِنُوْا ۚ فَالْحُكْمُ لِلّٰهِ الْعَلِيِّ الْكَبِيْرِ ﴿١٣﴾

୧୩. ତୁମମାନଙ୍କ ଏହି ଅବସ୍ଥା ଏଥିଯୋଗୁଁ ହୋଇଅଛି ଯେ ଯେତେବେଳେ କେବଳ ଅଲ୍ଲାହଙ୍କୁ ଡକା ଯାଉଥିଲା, ସେତେବେଳେ ତୁମେମାନେ ପ୍ରତ୍ୟାଖ୍ୟାନ କରୁଥିଲ, ଏବଂ ଯେତେବେଳେ ତାହାଙ୍କର କୌଣସି ସମକକ୍ଷ ସ୍ଥିର କରାଯାଉଥିଲା, ସେତେବେଳେ ତୁମେମାନେ ବିଶ୍ୱାସ କରୁଥିଲ ; ସୁତରାଂ (ଆଜି ପ୍ରମାଣିତ ହେଲା ଯେ) ସକଳ ଆଧିପତ୍ୟ ସେହି ଅତ୍ୟୁଚ୍ଚ(ଓ)ମହାନ୍ ଅଲ୍ଲାହଙ୍କ ଠାରେ ନ୍ୟସ୍ତ ।

هُوَ الَّذِيْ يُرِيْكُمْ اٰيٰتِهٖ وَيُنَزِّلُ لَكُمْ مِّنَ السَّمَآءِ رِزْقًا ۚ وَمَا يَتَذَكَّرُ اِلَّا مَنْ يُّنِيْبُ ﴿١٤﴾

୧୪. ସେ ହିଁ ତୁମମାନଙ୍କୁ ନିଜର ନିଦର୍ଶନ ଦେଖାନ୍ତି, ଓ ଆକାଶରୁ ତୁମମାନଙ୍କ ସକାଶେ ଜୀବିକା ପ୍ରେରଣ କରନ୍ତି ; ଏବଂ ଯେ ଅଲ୍ଲାହଙ୍କ ପ୍ରତି ଅନୁଗତ ହୁଏ, ସେ ହିଁ କେବଳ ଉପଦେଶ ଗ୍ରହଣ କରେ ।

فَادْعُوا اللّٰهَ مُخْلِصِيْنَ لَهُ الدِّيْنَ وَلَوْ كَرِهَ الْكٰفِرُوْنَ ﴿١٥﴾

୧୫. ଧର୍ମରେ ଅକୃତ୍ରିମ ନିଷ୍ଠା ରଖି ଅଲ୍ଲାହଙ୍କର ଉପାସନା କର, ଯଦ୍ୟପି ଅବିଶ୍ୱାସକାରୀମାନେ ଏହାକୁ ନାପସନ୍ଦ କରନ୍ତି ।

رَفِيْعُ الدَّرَجٰتِ ذُو الْعَرْشِ ۚ يُلْقِي الرُّوْحَ مِنْ اَمْرِهٖ عَلٰى مَنْ يَّشَآءُ مِنْ عِبَادِهٖ لِيُنْذِرَ يَوْمَ التَّلَاقِ ﴿١٦﴾

୧୬. (ସେ) ଉଚ୍ଚ ମର୍ଯ୍ୟାଦା ସମ୍ପନ୍ନ (ଓ) ସିଂହାସନର ଅଧିକାରୀ ; (ସେ) ନିଜ ଆଦେଶ ଦ୍ୱାରା ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହା ପାଇଁ ଇଚ୍ଛା କରନ୍ତି ତାହା ପ୍ରତି ନିଜର ବାଣୀ ପ୍ରେରଣ କରନ୍ତି, ଯଦ୍ଦ୍ୱାରା ସେ (ଭକ୍ତମାନଙ୍କୁ ଅଲ୍ଲାହଙ୍କ ସହିତ) ସାକ୍ଷାତ୍ ଦିନ ସଂକ୍ରାନ୍ତରେ ଭୟଭୀତ କରାଇବେ ।

يَوْمَ هُمْ بٰرِزُوْنَ ۚ لَا يَخْفٰى عَلَى اللّٰهِ مِنْهُمْ شَيْءٌ ۚ لِمَنِ الْمُلْكُ الْيَوْمَ ۚ لِلّٰهِ الْوَاحِدِ الْقَهَّارِ ﴿١٧﴾

୧୭. ଯେଉଁଦିନ ସେ ସମସ୍ତେ (ଅଲ୍ଲାହଙ୍କ ସମ୍ମୁଖରେ) ହାଜର ହେବେ (ସେଦିନ) ସେମାନଙ୍କର କୌଣସି ବିଷୟ ଅଲ୍ଲାହଙ୍କ ନିକଟରେ ଗୁପ୍ତ ରହିବ ନାହିଁ ; ସେ ଦିନର ରାଜତ୍ୱ କିଏ ହାସଲ କରିବ ? (କେବଳ) ଅଲ୍ଲାହ, ଯେ ଅଦ୍ୱିତୀୟ (ଓ) ପରାକ୍ରମଶାଳୀ ।

---

୧. ମଣିଷ ଜନ୍ମ ହେବା ପୂର୍ବରୁ ଯେଉଁ ଅବସ୍ଥାରେ ଥାଏ ତାହା ଏକ ପ୍ରକାର ମୃତ୍ୟୁ, ଓ ଜୀବନର ଅବସାନ ହେଲେ ତାହା ଦ୍ୱିତୀୟ ମୃତ୍ୟୁ ;ସେହିପରି ଜନ୍ମହେବା ଓ ମୃତ୍ୟୁପରେ ପୁନରୁତ୍‌ଥିତ ହେବା ଦୁଇଗୋଟି ଜୀବନ ସଙ୍ଗେ ତୁଳନୀୟ ।

ପବିତ୍ର କୋରାନରୁ ଜଣାପଡୁଛି ଯେ ଏହି ସଂସାରରେ ସୁଯୋଗମାନ ରହିଅଛି ଅର୍ଥାତ୍ ମଣିଷ ନିଜ ସମୟର ଅବତାରଙ୍କୁ ସ୍ୱୀକାର କରି ଅନୁତାପ କଲେ ଅତୀତର ସବୁ ପାପରୁ ମୁକ୍ତ ହେବ । ଦ୍ୱିତୀୟ ସୁଯୋଗ ମୃତ୍ୟୁ ପରେ ଅଛି ଅର୍ଥାତ୍ ଅଲ୍ଲାହ ଯେଉଁ ଅବତାର ଓ ଦେବଦୂତମାନଙ୍କୁ ଅନ୍ୟ ପାଇଁ ସୁପାରିଶ କରିବାକୁ ଅନୁମତି ଦେବେ ସେମାନେ ସେହି ଲୋକପାଇଁ ସୁପାରିଶ କରି ତାହାକୁ ରକ୍ଷା କରି ପାରନ୍ତି (ହଦିସ ତିରମିଜି ଦ୍ରଷ୍ଟବ୍ୟ) ।

ٱلْيَوْمَ تُجْزَىٰ كُلُّ نَفْسٍۭ بِمَا كَسَبَتْ ۚ لَا ظُلْمَ ٱلْيَوْمَ ۚ إِنَّ ٱللَّهَ سَرِيعُ ٱلْحِسَابِ ⑱

୧୮. ସେଦିନ ପ୍ରତ୍ୟେକଙ୍କୁ ତାହାର କର୍ମର ପ୍ରତିଦାନ ଦିଆଯିବ, (ଏବଂ) ସେଦିନ କୌଣସି ପ୍ରକାର ଅନ୍ୟାୟ କରାହେବ ନାହିଁ; ଅଲ୍ଲାହ ଅତି ଶୀଘ୍ର[୧] ହିସାବ ନେଇଥା'ନ୍ତି।

وَأَنذِرْهُمْ يَوْمَ ٱلْءَازِفَةِ إِذِ ٱلْقُلُوبُ لَدَى ٱلْحَنَاجِرِ كَـٰظِمِينَ ۚ مَا لِلظَّـٰلِمِينَ مِنْ حَمِيمٍ وَلَا شَفِيعٍ يُطَاعُ ⑲

୧୯. ଏବଂ ତୁମେ ସେମାନଙ୍କୁ ସେହିଦିନ ପ୍ରତି ଭୟଭୀତ କରାଅ, ଯାହା ନିକଟରୁ ନିକଟତର ହେଉଅଛି ଯେବେ କି ହୃଦୟ ଦୁଃଖରେ ପରିପୂର୍ଣ୍ଣ ହୋଇ ମୁଖ ଗହ୍ବର ପର୍ଯ୍ୟନ୍ତ ଆସିଯିବ; ଅତ୍ୟାଚାରୀମାନଙ୍କର ସେଦିନ ଏପରି କୌଣସି ବନ୍ଧୁ ନ ଥିବେ କି ସୁପାରିଶକାରୀ ନଥିବେ ଯାହାଙ୍କ କଥା ଗ୍ରାହ୍ୟ ହେବ।

يَعْلَمُ خَآئِنَةَ ٱلْأَعْيُنِ وَمَا تُخْفِى ٱلصُّدُورُ ⑳

୨୦. ଅଲ୍ଲାହ ଚକ୍ଷୁର[୨] ବିଶ୍ଵାସଘାତକତାକୁ ମଧ୍ୟ ଜାଣନ୍ତି ଏବଂ ଯାହା ହୃଦୟରେ ଗୋପନ ଅଛି ତାହାକୁ ମଧ୍ୟ।

وَٱللَّهُ يَقْضِى بِٱلْحَقِّ ۖ وَٱلَّذِينَ يَدْعُونَ مِن دُونِهِۦ لَا يَقْضُونَ بِشَىْءٍ ۗ إِنَّ ٱللَّهَ هُوَ ٱلسَّمِيعُ ٱلْبَصِيرُ ㉑

୨୧. ଏବଂ ଅଲ୍ଲାହ (ସର୍ବଦା) ନ୍ୟାୟପୂର୍ବକ ନିଷ୍ପତ୍ତି କରନ୍ତି; କିନ୍ତୁ ସେମାନେ ତାହାଙ୍କ ବ୍ୟତୀତ ଯେଉଁମାନଙ୍କୁ ଡାକନ୍ତି ସେମାନେ କୌଣସି ନିଷ୍ପତ୍ତି କରନ୍ତି ନାହିଁ; ଅଲ୍ଲାହ ହିଁ ବାସ୍ତବରେ ମହାନ୍ ଶ୍ରୋତା (ଓ) ମହାନ୍ ଦ୍ରଷ୍ଟା।

ରୁ : ୩

أَوَلَمْ يَسِيرُوا۟ فِى ٱلْأَرْضِ فَيَنظُرُوا۟ كَيْفَ كَانَ عَـٰقِبَةُ ٱلَّذِينَ كَانُوا۟ مِن قَبْلِهِمْ ۚ كَانُوا۟ هُمْ أَشَدَّ مِنْهُمْ قُوَّةً وَءَاثَارًا فِى ٱلْأَرْضِ فَأَخَذَهُمُ ٱللَّهُ بِذُنُوبِهِمْ وَمَا كَانَ لَهُم مِّنَ ٱللَّهِ مِن وَاقٍ ㉒

୨୨. କ'ଣ ସେ ଲୋକମାନେ ଭୂପୃଷ୍ଠରେ ଭ୍ରମଣ କରି ନାହାନ୍ତି ଯାହାଫଳରେ ସେମାନେ ଲକ୍ଷ୍ୟ କରି ପାରନ୍ତେ ଯେ ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କର ପରିଣାମ କିପରି ହୋଇଥିଲା? ସେମାନେ ଏମାନଙ୍କ ଅପେକ୍ଷା ଶକ୍ତି ଦୃଷ୍ଟିରୁ ଓ (ଭୂପୃଷ୍ଠରେ) ଛାଡି ଯାଇଥିବା[୩] ଧ୍ଵଂସାବଶେଷ ଦୃଷ୍ଟିରୁ ଶ୍ରେଷ୍ଠତର ଥିଲେ; ତଥାପି ଅଲ୍ଲାହ ସେମାନଙ୍କୁ ସେମାନଙ୍କ ପାପ ଯୋଗୁଁ ଧ୍ଵଂସ କରିଦେଲେ, ଏବଂ କେହି ସେମାନଙ୍କୁ ଅଲ୍ଲାହଙ୍କ କବଳରୁ ରକ୍ଷା କରିବା ପାଇଁ (କେହୁ ହୋଇ) ନ ଥିଲେ।

ذَٰلِكَ بِأَنَّهُمْ كَانَت تَّأْتِيهِمْ رُسُلُهُم بِٱلْبَيِّنَـٰتِ فَكَفَرُوا۟ فَأَخَذَهُمُ ٱللَّهُ ۚ إِنَّهُۥ قَوِىٌّ شَدِيدُ ٱلْعِقَابِ ㉓

୨୩. ଏହା (ଅର୍ଥାତ୍ ଏହି ଦୟନୀୟ ଅବସ୍ଥା) ଏଥିଯୋଗୁଁ ହୋଇଥିଲା ଯେ ସେମାନଙ୍କ ନିକଟକୁ ସେମାନଙ୍କ ରସୁଲମାନେ ପ୍ରକାଶ୍ୟ ନିଦର୍ଶନମାନ ସହିତ ଆସୁଥିଲେ, ଅଥଚ ସେମାନେ (ସର୍ବଦା) ଅବିଶ୍ଵାସ କରୁଥିଲେ; ସୁତରାଂ ଅଲ୍ଲାହ ମଧ୍ୟ ସେମାନଙ୍କୁ ବିନାଶ କରିଦେଲେ; ସେ ଅତ୍ୟନ୍ତ ବଳୀୟାନ୍ (ଓ) ଶାସ୍ତି ଦେବାରେ କଠୋର।

---

୧. ଏହାର ଅର୍ଥ ନୁହେଁ ଯେ ଅସତ୍ କର୍ମ ପାଇଁ ଖୁବ୍ ଶୀଘ୍ର ଶାସ୍ତି ମିଳେ, ବରଂ ଏହାର ପ୍ରକୃତ ଅର୍ଥ ହେଉଛି ଯେ ଅଲ୍ଲାହ ହିସାବ ନେବାରେ ଅତ୍ୟନ୍ତ କ୍ଷିପ୍ର। ଫଳରେ ତୁରନ୍ତ ପୁରସ୍କାର ପ୍ରଦାନର ମୂଳଦୂଆ ପଡିଯାଏ।

୨. ଅର୍ଥାତ୍ କୁଦୃଷ୍ଟି ବା କ୍ରୋଧ ବା ଘୃଣାରେ କାହାରିକୁ ଦେଖିବା, ଯାହାକୁ ମଣିଷ ଭୟ ବା ଲଜ୍ଜା ଯୋଗୁଁ ଭାଷାରେ ପ୍ରକାଶ କରିପାରେ ନାହିଁ।

୩. ଅର୍ଥାତ୍ ସେମାନଙ୍କ ଦୁର୍ଗ ଓ ପ୍ରାସାଦର ଧ୍ଵଂସାବଶେଷ ପ୍ରମାଣିତ କରୁଅଛି ଯେ ଏହି ଲୋକମାନେ ସେହିସବୁ କଳା କୌଶଳ ହାସଲ କରିପାରି ନ ଥିଲେ, ଯାହା ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନେ ହାସଲ କରିଥିଲେ।

୨୪. ଏବଂ ଆମେ ମୁସାଙ୍କୁ ମଧ୍ୟ ନିଜର ନିଦର୍ଶନ ଓ ପ୍ରକାଶ୍ୟ ପ୍ରାଧିକାର ସହିତ ପ୍ରେରଣ କରିଥିଲୁ,

وَلَقَدْ اَرْسَلْنَا مُوْسٰى بِاٰيٰتِنَا وَسُلْطٰنٍ مُّبِيْنٍ ﴿٢٤﴾

୨୫. ଫିରଔନ, ହାମାନ ଓ କାରୁନଙ୍କ[୧] ନିକଟକୁ ; କିନ୍ତୁ ସେମାନେ କହିଥିଲେ, ''ଏହି ବ୍ୟକ୍ତି ଜଣେ ପ୍ରତାରକ (ଓ) ମିଥ୍ୟାବାଦୀ ।''

اِلٰى فِرْعَوْنَ وَهَامٰنَ وَقَارُوْنَ فَقَالُوْا سٰحِرٌ كَذَّابٌ ﴿٢٥﴾

୨୬. ସୁତରାଂ ଯେତେବେଳେ ସେ (ମୁସା) ଆମ ନିକଟରୁ ସତ୍ୟ ଘେନି ସେମାନଙ୍କ ନିକଟକୁ ଆସିଥିଲେ, ସେତେବେଳେ ସେମାନେ କହିଥିଲେ, ''ଯେଉଁମାନେ ବିଶ୍ୱାସ କରି ତାହାଙ୍କ ସହିତ ସାମିଲ ହୋଇଛନ୍ତି ସେମାନଙ୍କ ପୁତ୍ରମାନଙ୍କୁ ହତ୍ୟା କର, ଓ ସେମାନଙ୍କ ନାରୀମାନଙ୍କୁ ଜୀବିତ ରଖ ;'' ଏବଂ ଅବିଶ୍ୱାସକାରୀମାନଙ୍କର ଚକ୍ରାନ୍ତ (ସର୍ବଦା) ବିଫଳ ହୋଇଥାଏ[୨] ।

فَلَمَّا جَآءَهُمْ بِالْحَقِّ مِنْ عِنْدِنَا قَالُوا اقْتُلُوْٓا اَبْنَآءَ الَّذِيْنَ اٰمَنُوْا مَعَهٗ وَاسْتَحْيُوْا نِسَآءَهُمْ ۭ وَمَا كَيْدُ الْكٰفِرِيْنَ اِلَّا فِيْ ضَلٰلٍ ﴿٢٦﴾

୨୭. ଏବଂ ଫିରଔନ କହିଲା, ''ମୁସାଙ୍କୁ ହତ୍ୟା କରିବାକୁ ମୋତେ ବାଧା[୩] ଦିଅ ନାହିଁ ; ଏବଂ ସେ (ନିଜକୁ ରକ୍ଷା କରିବା ପାଇଁ) ତାହାଙ୍କ ପାଳନକର୍ତ୍ତାଙ୍କୁ ଡାକନ୍ତୁ ; ମୁଁ ଏଥି ନିମନ୍ତେ ଭୟ କରୁଅଛି ଯେ କାଳେ ସେ ତୁମମାନଙ୍କୁ ଧର୍ମାନ୍ତରିତ କରିଦେବେ ବା ଦେଶରେ ବିଶୃଙ୍ଖଳା ସୃଷ୍ଟି କରିଦେବେ ।''

وَقَالَ فِرْعَوْنُ ذَرُوْنِيْٓ اَقْتُلْ مُوْسٰى وَلْيَدْعُ رَبَّهٗ ۚ اِنِّيْٓ اَخَافُ اَنْ يُّبَدِّلَ دِيْنَكُمْ اَوْ اَنْ يُّظْهِرَ فِي الْاَرْضِ الْفَسَادَ ﴿٢٧﴾

୨୮. ଏହାପରେ ମୁସା କହିଲେ, ''ଯେଉଁ ଅହଙ୍କାରୀମାନେ ହିସାବ ଦିବସ ଉପରେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କ ଦୁଷ୍କୃତିରୁ ଆମେ ନିଜର ପାଳନକର୍ତ୍ତା ଓ ତୁମମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ଆଶ୍ରୟ ଭିକ୍ଷା କରିଅଛୁ ।''

وَقَالَ مُوْسٰٓى اِنِّيْ عُذْتُ بِرَبِّيْ وَرَبِّكُمْ مِّنْ كُلِّ مُتَكَبِّرٍ لَّا يُؤْمِنُ بِيَوْمِ الْحِسَابِ ﴿٢٨﴾ ع

ରୁ : ୪

୨୯. ଏବଂ ଫିରଔନର ଲୋକମାନଙ୍କ ମଧ୍ୟରୁ ଯେଉଁ ବ୍ୟକ୍ତି ବିଶ୍ୱାସକାରୀ ଥିଲା, କିନ୍ତୁ ବିଶ୍ୱାସକୁ ଗୋପନୀୟ ରଖିଥିଲା, ସେ କହିଲା, ''(ହେ ଲୋକମାନେ) କ'ଣ ତୁମେମାନେ ଜଣେ ଲୋକକୁ କେବଳ ଏଥି ସକାଶେ ହତ୍ୟା

وَقَالَ رَجُلٌ مُّؤْمِنٌ ۖ مِّنْ اٰلِ فِرْعَوْنَ يَكْتُمُ اِيْمَانَهٗٓ اَتَقْتُلُوْنَ رَجُلًا اَنْ يَّقُوْلَ رَبِّيَ اللّٰهُ وَقَدْ جَآءَكُمْ

୧. ହାମାନ ମିଶରର ରାଜା ଫିରଔନର ମୁଖ୍ୟ ଇଞ୍ଜିନିୟର ଥିବାରୁ ସମ୍ଭବତଃ ସେ ଅତ୍ୟନ୍ତ ସମ୍ମାନାସ୍ପଦ ବ୍ୟକ୍ତି ରୂପେ ଗଣ୍ୟ ହେଉଥିଲା । କାରୁନ ନାମକ ଜଣେ ଇସ୍ରାଇଲୀୟ ଧନାଗାର ଦାୟିତ୍ୱରେ ନିଯୁକ୍ତ ହୋଇଥିଲା ଓ ସେ ମଧ୍ୟ ଜଣେ ପ୍ରଭାବଶାଳୀ ବ୍ୟକ୍ତି ଥିଲା । ଏହି କାରଣରୁ ତିନି ଜଣଙ୍କ ନାମ ଏକତ୍ରିତ ଭାବରେ ବର୍ଣ୍ଣିତ ହୋଇଛି ।

୨. ସାଧାରଣଭାବରେ ଦେଖିଲେ କେବେ କେବେ ଏପରି ପ୍ରତୀତ ହୁଏ ଯେ ନବିଙ୍କ ତୁଳନାରେ ଅବିଶ୍ୱାସକାରୀମାନଙ୍କ କୌଶଳ ସଫଳ ହେଉଛି । କିନ୍ତୁ ଏହା ଖୁବ୍ କମ ସମୟରେ ଘଟିଥାଏ ଓ ତାହା କ୍ଷଣସ୍ଥାୟୀ ମଧ୍ୟ । ଯେଉଁ ସଫଳତା ଚିରସ୍ଥାୟୀ ତାହା ହିଁ ପ୍ରକୃତ ସଫଳତା । ଅବିଶ୍ୱାସକାରୀମାନଙ୍କୁ କେବେ ହେଁ ଚିରସ୍ଥାୟୀ ସଫଳତା ମିଳେ ନାହିଁ । ଅନ୍ୟ ପକ୍ଷରେ ନବିମାନଙ୍କୁ ଓ ସେମାନଙ୍କ ଅନୁଗାମୀମାନଙ୍କୁ ଏଭଳି ସଫଳତା ମିଳେ ।

୩. ଅର୍ଥାତ୍ ମୁଁ ଏବେ ମୁସାଙ୍କୁ ହତ୍ୟା କରିବାକୁ ପ୍ରସ୍ତୁତ ହୋଇଛି; ତେଣୁ କୌଣସି ପ୍ରତିକୂଳ ପ୍ରସ୍ତାବ ଦିଅ ନାହିଁ ।

بِالْبَيِّنٰتِ مِنْ رَّبِّكُمْ ۭ وَاِنْ يَّكُ كَاذِبًا فَعَلَيْهِ كَذِبُهٗ ۚ وَاِنْ يَّكُ صَادِقًا يُّصِبْكُمْ بَعْضُ الَّذِيْ يَعِدُكُمْ ۭ اِنَّ اللّٰهَ لَا يَهْدِيْ مَنْ هُوَ مُسْرِفٌ كَذَّابٌ ﴿٢٩﴾

କରିବ ଯେହେତୁ ସେ କହୁଛି ଯେ ଅଲ୍ଲାହ (ହିଁ) ମୋର ପାଳନକର୍ତ୍ତା, ଅଥଚ ସେ ତୁମମାନଙ୍କ ପାଳନକର୍ତ୍ତାଙ୍କ ନିକଟରୁ ପ୍ରକାଶ୍ୟ ନିଦର୍ଶନମାନ ମଧ୍ୟ ଆଣିଅଛି ; ଏବଂ ଯଦି ସେ ମିଥ୍ୟାବାଦୀ ହୋଇଥାଏ, ତେବେ ତାହାର ମିଥ୍ୟାର ବୋଝ ତାହାରି ଉପରେ ପଡିବ ; ଏବଂ ଯଦି ସେ ସତ୍ୟବାଦୀ ହୋଇଥାଏ, ତେବେ ତୁମମାନଙ୍କ ସଂକ୍ରାନ୍ତରେ ସେ କରିଥିବା କେତେକ (ଭୟପ୍ରଦ) ଭବିଷ୍ୟବାଣୀ ଅବଶ୍ୟ ପୂର୍ଣ୍ଣ ହେବ ; ଅଲ୍ଲାହ ସୀମାଲଙ୍ଘନକାରୀ ଓ ମିଥ୍ୟାବାଦୀକୁ କଦାପି କୃତକାର୍ଯ୍ୟ କରାନ୍ତି ନାହିଁ ।[୧] ।

يٰقَوْمِ لَكُمُ الْمُلْكُ الْيَوْمَ ظٰهِرِيْنَ فِى الْاَرْضِ ۡ فَمَنْ يَّنْصُرُنَا مِنْۢ بَاْسِ اللّٰهِ اِنْ جَآءَنَا ۭ قَالَ فِرْعَوْنُ مَآ اُرِيْكُمْ اِلَّا مَآ اَرٰى وَمَآ اَهْدِيْكُمْ اِلَّا سَبِيْلَ الرَّشَادِ ﴿٣٠﴾

୩୦. "ହେ ଆମର ସମ୍ପ୍ରଦାୟ ! ଆଜି ତୁମମାନଙ୍କର ଏପରି ରାଜତ୍ୱ ଅଛି ଯାହା ଫଳରେ ତୁମେମାନେ ଦେଶରେ ଆଧିପତ୍ୟ ବିସ୍ତାର କରିଛ ; ତେଣୁ କୁହ ଯଦି ଆମମାନଙ୍କ ଉପରେ ଅଲ୍ଲାହଙ୍କର ଶାସ୍ତି ଅବତୀର୍ଣ୍ଣ ହେବ, ତେବେ କିଏ ତାହା ବିରୁଦ୍ଧରେ ଆମମାନଙ୍କୁ ସାହାଯ୍ୟ କରିବ ?" ଫିରଔନ କହିଲା, "ମୋତେ ଯାହା ଠିକ୍ ଜଣାପଡୁଛି ମୁଁ ତାହା ହିଁ ତୁମମାନଙ୍କୁ କହୁଅଛି ; ଏବଂ ମୁଁ ତୁମମାନଙ୍କୁ କେବଳ ସତ୍‌ପଥ ପ୍ରଦର୍ଶନ କରୁଅଛି ।"

وَقَالَ الَّذِيْٓ اٰمَنَ يٰقَوْمِ اِنِّىْٓ اَخَافُ عَلَيْكُمْ مِّثْلَ يَوْمِ الْاَحْزَابِ ﴿٣١﴾

୩୧. ଏବଂ ଯେଉଁ ବ୍ୟକ୍ତି (ବସ୍ତୁତଃ) ବିଶ୍ୱାସ କରିଥିଲା ସେ କହିଲା, "ହେ ମୋର ସମ୍ପ୍ରଦାୟ ! ପୂର୍ବବର୍ତ୍ତୀ ବଡ ବଡ ସମ୍ପ୍ରଦାୟର ବିନାଶ ଦିବସ ଭଳି ତୁମମାନଙ୍କର ବିନାଶ ଦିବସ ସମ୍ବନ୍ଧରେ ମୁଁ ଭୟ କରୁଅଛି ।"

مِثْلَ دَاْبِ قَوْمِ نُوْحٍ وَّعَادٍ وَّثَمُوْدَ وَالَّذِيْنَ مِنْۢ بَعْدِهِمْ ۭ وَمَا اللّٰهُ يُرِيْدُ ظُلْمًا لِّلْعِبَادِ ﴿٣٢﴾

୩୨. "ଯେପରି ନୂହଙ୍କ ସମ୍ପ୍ରଦାୟ, ଆଦ ଓ ସମୁଦଙ୍କ (ସମ୍ପ୍ରଦାୟ) ଏବଂ ସେମାନଙ୍କ ପରବର୍ତ୍ତୀ ଲୋକମାନଙ୍କ ପ୍ରତି ହୋଇଥିଲା ଏବଂ ଅଲ୍ଲାହ ନିଜ ଭକ୍ତମାନଙ୍କ ପ୍ରତି ଅନ୍ୟାୟ କରିବାକୁ ଚାହାନ୍ତି ନାହିଁ ।"

وَيٰقَوْمِ اِنِّىْٓ اَخَافُ عَلَيْكُمْ يَوْمَ التَّنَادِ ﴿٣٣﴾

୩୩. "ଏବଂ ହେ ଆମର ସମ୍ପ୍ରଦାୟ ! ମୁଁ ତୁମମାନଙ୍କ ସଂକ୍ରାନ୍ତରେ ସେହି ବିନାଶ ଦିବସ ସମ୍ବନ୍ଧରେ ଭୟ କରୁଅଛି ଯେଉଁ ଦିନ ଲୋକମାନେ ପରସ୍ପରକୁ ସାହାଯ୍ୟ ପାଇଁ ଡାକ ପକାଇବେ ।"

يَوْمَ تُوَلُّوْنَ مُدْبِرِيْنَ ۚ مَا لَكُمْ مِّنَ اللّٰهِ مِنْ عَاصِمٍ ۚ وَمَنْ يُّضْلِلِ اللّٰهُ فَمَا لَهٗ مِنْ هَادٍ ﴿٣٤﴾

୩୪. "ଯେଉଁଦିନ ତୁମେମାନେ ପଛଘୁଞ୍ଚା ଦେଇ (ଅଲ୍ଲାହଙ୍କ ସୈନ୍ୟବାହିନୀ ସମ୍ମୁଖରୁ) ପଳାୟନ କରିବ ; ଏବଂ ଅଲ୍ଲାହଙ୍କ ବିରୁଦ୍ଧରେ ତୁମମାନଙ୍କୁ ରକ୍ଷା କରିବା ପାଇଁ କେହି ନଥିବେ, ଏବଂ ଯାହାକୁ ଅଲ୍ଲାହ ପଥଭ୍ରଷ୍ଟ ବୋଲି ନିରୂପିତ କରନ୍ତି ତାହାକୁ କେହି ସତ୍‌ପଥ ପ୍ରଦର୍ଶନ କରାଇ ପାରିବ ନାହିଁ ।"

୧. ଏହାର ଅର୍ଥ ନୁହେଁ ଯେ ଯେଉଁ ବ୍ୟକ୍ତି ଅଧିକ ମିଛ କହେ ସେ ତାଙ୍କୁ ସଫଳ କରାନ୍ତି ନାହିଁ, ବରଂ ଆରବୀ ଭାଷାରେ ଅତିଶୟୋକ୍ତି ପାଇଁ ନାଣି — ବାଚକ ଶବ୍ଦ ପ୍ରୟୋଗ କରାଯାଏ ଏବଂ ଏହାର ଉଦ୍ଦେଶ୍ୟ ହେଉଛି ଯେ ଏ ପ୍ରକାର ଛୋଟ ଛୋଟ ବିଷୟକୁ ମଧ୍ୟ ସହ୍ୟ କରାଯିବ ନାହିଁ ।

ଓ୫. ଏବଂ ଏଥିପୂର୍ବରୁ ୟୁସୁଫ ତୁମମାନଙ୍କ ନିକଟକୁ ସ୍ପଷ୍ଟ ପ୍ରମାଣମାନ ସହିତ ଆସିଥିଲେ ; କିନ୍ତୁ ସେ ଯାହାକିଛି ତୁମମାନଙ୍କ ନିକଟକୁ ଆଣିଥିଲେ ସେ ବିଷୟରେ ତୁମେମାନେ ସନ୍ଦେହରେ ରହିଲ ଏପରିକି, ଯେତେବେଳେ ସେ ମୃତ୍ୟୁ ଲଭିଲେ ତୁମେମାନେ (ନିରାଶ ହୋଇ) କହିବାକୁ ଲାଗିଲ, "ଅଲ୍ଲାହ ତାହାଙ୍କ ପରେ[1] (ଅନ୍ୟ) କୌଣସି ରସୁଲଙ୍କୁ ପ୍ରେରଣ କରିବେ ନାହିଁ ;" ଏହିପରି ଅଲ୍ଲାହ ପ୍ରତ୍ୟେକ ସୀମାଲଙ୍ଘନକାରୀ ଓ ସନ୍ଦେହକାରୀଙ୍କୁ ପଥଭ୍ରଷ୍ଟ ସାବ୍ୟସ୍ତ କରାନ୍ତି

وَلَقَدْ جَآءَكُمْ يُوسُفُ مِنْ قَبْلُ بِالْبَيِّنٰتِ فَمَا زِلْتُمْ فِيْ شَكٍّ مِّمَّا جَآءَكُمْ بِهٖ ۖ حَتّٰٓى إِذَا هَلَكَ قُلْتُمْ لَنْ يَّبْعَثَ اللّٰهُ مِنْۢ بَعْدِهٖ رَسُوْلًا ۚ كَذٰلِكَ يُضِلُّ اللّٰهُ مَنْ هُوَ مُسْرِفٌ مُّرْتَابٌ ۝٣٥

ଓ୬. ଯେଉଁମାନେ, ସେମାନଙ୍କ ନିକଟକୁ (ଅଲ୍ଲାହଙ୍କ ଠାରୁ) କୌଣସି ପ୍ରମାଣ ଆସି ନ ଥାଇ (ମଧ୍ୟ) ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକ ସଂକ୍ରାନ୍ତରେ ଯୁକ୍ତିତର୍କ କରନ୍ତି (ସେମାନେ ଜାଣି ରଖିବା ଉଚିତ ଯେ) ତାହା ଅଲ୍ଲାହଙ୍କ ନିକଟରେ ଓ ବିଶ୍ୱାସକାରୀମାନଙ୍କ ନିକଟରେ ଅତ୍ୟନ୍ତ ମନ୍ଦ ଅଟେ ; ଏହିପରି ଅଲ୍ଲାହ ପ୍ରତ୍ୟେକ ଅହଙ୍କାରୀ ଉଦ୍ଧତ ମାନବର ସମଗ୍ର[2] ହୃଦୟ ଉପରେ ମୋହର ଲଗାଇ ଦିଅନ୍ତି ।

الَّذِيْنَ يُجَادِلُوْنَ فِيْٓ اٰيٰتِ اللّٰهِ بِغَيْرِ سُلْطٰنٍ اَتٰىهُمْ ۖ كَبُرَ مَقْتًا عِنْدَ اللّٰهِ وَعِنْدَ الَّذِيْنَ اٰمَنُوْا ۖ كَذٰلِكَ يَطْبَعُ اللّٰهُ عَلٰى كُلِّ قَلْبِ مُتَكَبِّرٍ جَبَّارٍ ۝٣٦

ଓ୭. ଏବଂ ଫିରଔନ କହିଲା, "ହେ ହାମାନ ! ମୋ ପାଇଁ ଏକ ପ୍ରାସାଦ ନିର୍ମାଣକର ଯେପରିକି ମୁଁ ସେହି ପଥରେ ପହଞ୍ଚି ପାରିବି,"

وَقَالَ فِرْعَوْنُ يٰهَامٰنُ ابْنِ لِيْ صَرْحًا لَّعَلِّيْٓ اَبْلُغُ الْاَسْبَابَ ۝٣٧

ଓ୮. "ଯାହାକି ଆକାଶମଣ୍ଡଳର ପଥ ; ଏବଂ ଏହିପରି ଭାବରେ ମୁସାଙ୍କ ଉପାସ୍ୟଙ୍କୁ ଦେଖିପାରିବି, କାରଣ ମୁଁ ତାଙ୍କୁ ମିଥ୍ୟାବାଦୀ ମନେ କରୁଅଛି"; ଏବଂ ଏହିପରି ଫିରଔନର କୁକର୍ମଗୁଡ଼ିକୁ ତାହା ନିକଟରେ ଶୋଭନୀୟ କରି ଦେଖାଇ ଦିଆଗଲା, ଏବଂ (ନିଜ ଅବଜ୍ଞା ହେତୁ) ତାକୁ ଯଥାର୍ଥ ମାର୍ଗରୁ ବାଧା ଦିଆଯାଇଥିଲା ;ଏବଂ ଫିରଔନର ଚକ୍ରାନ୍ତ ବିଫଳତା ରୂପରେ ହିଁ ପ୍ରକାଶିତ ହେବାର ଥିଲା ।

اَسْبَابَ السَّمٰوٰتِ فَاَطَّلِعَ اِلٰٓى اِلٰهِ مُوْسٰى وَاِنِّيْ لَاَظُنُّهٗ كَاذِبًا ۚ وَكَذٰلِكَ زُيِّنَ لِفِرْعَوْنَ سُوْٓءُ عَمَلِهٖ وَصُدَّ عَنِ السَّبِيْلِ ۚ وَمَا كَيْدُ فِرْعَوْنَ اِلَّا فِيْ تَبَابٍ ۝٣٨

---

୧. ଯେପରି ଏବେ ମଧ୍ୟ ସାଧାରଣ ମୁସଲମାନ କହନ୍ତି ଯେ ହଜରତ ମହମ୍ମଦଙ୍କ ପରେ ଆଉ କୌଣସି ଅବତାର ଆସିବେ ନାହିଁ ।

୨. ସାଧାରଣ ଭାବରେ ଏହି ଶବ୍ଦର ଅର୍ଥ ନିମ୍ନମତେ ହେବା ଦରକାର — ପ୍ରତ୍ୟେକ ଅହଙ୍କାରୀ ହୃଦୟରେ ଅଲ୍ଲାହ ମୋହର ମାରି ଦିଅନ୍ତି । କିନ୍ତୁ ପବିତ୍ର କୋରାନରେ ଉଲ୍ଲେଖ କରାଯାଇଛି ଯେ ଅଲ୍ଲାହ ଅହଙ୍କାରୀର ସମଗ୍ର ହୃଦୟରେ ମୋହର ଲଗାଇ ଦିଅନ୍ତି । ବସ୍ତୁତଃ ପବିତ୍ର କୋରାନରେ ଶବ୍ଦର ଏପରି ପ୍ରୟୋଗ ଅତୁଳନୀୟ କାରଣ ପ୍ରତ୍ୟେକ ଅହଙ୍କାରୀର ହୃଦୟରେ ମୋହର ମରାଗଲେ ସେହି ବିଷୟ ଜଣାପଡ଼ନ୍ତା ନାହିଁ ଯାହା ଅହଙ୍କାରୀର ସମଗ୍ର ହୃଦୟରେ ମରାଗଲେ ଜଣାପଡ଼େ, କାରଣ ଏହି ଦ୍ୱିତୀୟ ଅର୍ଥରୁ ଯେଉଁ ପରିଣାମର ସୂଚନା ମିଳୁଛି ତା' ହେଉଛି ଶିକ୍ଷାଲାଭ କରିବାର ମାର୍ଗ ବହୁବିଧ ଅଟେ । ଜଣେ ବିଭ୍ରାନ୍ତ ବ୍ୟକ୍ତି ମଧ୍ୟ ଶିକ୍ଷା ଲାଭର କୌଣସି ନା କୌଣସି ମାର୍ଗ ପାଇ ଯାଇପାରେ । କିନ୍ତୁ ଯିଏ ସମ୍ପୂର୍ଣ୍ଣରୂପେ ଅହଙ୍କାରୀ, ତା' ପାଇଁ ଶିକ୍ଷାଲାଭର ସମସ୍ତ ମାର୍ଗ ବନ୍ଦ ହୋଇଯାଇଥାଏ ଓ ତା' ହୃଦୟର ପ୍ରତ୍ୟେକ ଅଂଶରେ ମୋହର ବସିଯାଏ ଓ ତା' ପାଇଁ କୌଣସି ମାର୍ଗ ଆଉ ଉନ୍ମୁକ୍ତ ହୋଇ ରହେ ନାହିଁ ।

ରୁ : ୫

୩୯. ଏବଂ ଯେଉଁ ବ୍ୟକ୍ତି ବିଶ୍ୱାସ କରିଥିଲା ; ସେ କହିଲା, "ହେ ମୋର ସମ୍ପ୍ରଦାୟ ! ମୋତେ ଅନୁସରଣ କର ; ମୁଁ ତୁମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇବି ।"

وَقَالَ الَّذِيٓ اٰمَنَ يٰقَوۡمِ اتَّبِعُوۡنِ اَهۡدِكُمۡ سَبِيۡلَ الرَّشَادِ ۚ

୪୦. "ହେ ମୋର ସମ୍ପ୍ରଦାୟ ! ଏହି ପାର୍ଥିବ ଜୀବନ କେବଳ ଏକ ସ୍ୱଳ୍ପ ଦିବସୀୟ ଲାଭ ଅଟେ, ଏବଂ ପରକାଳର ଜୀବନ ହିଁ ନିଶ୍ଚିତ ରୂପେ ସ୍ଥାୟୀ ରହଣି ଅଟେ ।"

يٰقَوۡمِ اِنَّمَا هٰذِهِ الۡحَيٰوةُ الدُّنۡيَا مَتَاعٌ ۫ وَّاِنَّ الۡاٰخِرَةَ هِيَ دَارُ الۡقَرَارِ

୪୧. "ଯେ ମନ୍ଦକର୍ମ କରିବ ତାହାକୁ ତଦନୁଯାୟୀ ପ୍ରତିଫଳ ମିଳିବ ; ଏବଂ ଯେ କେହି ବିଶ୍ୱାସ ମୁତାବକ କାର୍ଯ୍ୟ କରିବ, ସେ ପୁରୁଷ ହେଉ କି ନାରୀ, ଯଦି ସେ ପ୍ରକୃତ ବିଶ୍ୱାସକାରୀ ହୋଇଥିବ, ତେବେ ସେ ଓ ତାହାଙ୍କ ସମଧର୍ମୀ ଲୋକମାନେ ବୈକୁଣ୍ଠରେ ପ୍ରବେଶ କରିବେ, ଏବଂ ସେମାନଙ୍କୁ ସେଠାରେ ଅଗଣିତ ପୁରସ୍କାର ଦିଆଯିବ ।"

مَنۡ عَمِلَ سَيِّئَةً فَلَا يُجۡزٰٓى اِلَّا مِثۡلَهَا ۚ وَمَنۡ عَمِلَ صَالِحًا مِّنۡ ذَكَرٍ اَوۡ اُنۡثٰى وَهُوَ مُؤۡمِنٌ فَاُولٰٓئِكَ يَدۡخُلُوۡنَ الۡجَنَّةَ يُرۡزَقُوۡنَ فِيۡهَا بِغَيۡرِ حِسَابٍ

୪୨. "ଏବଂ ହେ ମୋର ସମ୍ପ୍ରଦାୟ ! ମୋର ମଧ୍ୟ କି ବିଚିତ୍ର ଦଶା ଯେ ମୁଁ ତୁମମାନଙ୍କୁ ମୁକ୍ତି ଆଡକୁ ଡାକୁଅଛି, ଅଥଚ ତୁମେମାନେ ମୋତେ (ନରକ) ଅଗ୍ନି ଆଡକୁ ଡାକୁଅଛ ?"

وَيٰقَوۡمِ مَا لِيۡٓ اَدۡعُوۡكُمۡ اِلَى النَّجٰوةِ وَتَدۡعُوۡنَنِيۡٓ اِلَى النَّارِ ؕ

୪୩. "ତୁମେମାନେ ମୋତେ ଏଥିସକାଶେ ଡାକୁଅଛ ଯେ ମୁଁ ଅଲ୍ଲାହ୍‌ଙ୍କୁ ଅବିଶ୍ୱାସ କରିବି ଏବଂ ଯେ ତାହାଙ୍କର ସମକକ୍ଷ ବୋଲି ମୁଁ ମୋତେ ଜାଣିନାହିଁ, ତାହାକୁ ତାହାଙ୍କର (ଅର୍ଥାତ୍ ଅଲ୍ଲାହ୍‌ଙ୍କର) ସମକକ୍ଷ ନିରୂପିତ କରିବି ; ଏବଂ ମୁଁ ତୁମମାନଙ୍କୁ ଜଣେ ପରାକ୍ରମୀ (ଓ) କ୍ଷମାଶୀଳ (ଅଲ୍ଲାହ୍)ଙ୍କ ଆଡକୁ ଡାକୁଅଛି ।"

تَدۡعُوۡنَنِيۡ لِاَكۡفُرَ بِاللّٰهِ وَاُشۡرِكَ بِهٖ مَا لَيۡسَ لِيۡ بِهٖ عِلۡمٌ ۫ وَّاَنَا اَدۡعُوۡكُمۡ اِلَى الۡعَزِيۡزِ الۡغَفَّارِ

୪୪. "ଏଥିରେ କୌଣସି ସନ୍ଦେହ ନାହିଁ ଯେ ତୁମେମାନେ ମୋତେ ତାହାଙ୍କ ଆଡକୁ ଡାକୁଅଛ ଯାହାଙ୍କର ଇହଲୋକରେ ବା ପରଲୋକରେ କୌଣସି (ପ୍ରଭାବଶାଳୀ) ଡାକ ନାମ ନାହିଁ ; ଏବଂ ଆମ ସମସ୍ତଙ୍କୁ ଅଲ୍ଲାହ୍‌ଙ୍କ ଆଡକୁ ହିଁ ଫେରିଯିବାକୁ ହେବ, ଏବଂ ଏହା ଯେ ସୀମାଲଙ୍ଘନକାରୀମାନେ ନରକବାସୀ ହେବେ ।"

لَا جَرَمَ اَنَّمَا تَدۡعُوۡنَنِيۡٓ اِلَيۡهِ لَيۡسَ لَهٗ دَعۡوَةٌ فِي الدُّنۡيَا وَلَا فِي الۡاٰخِرَةِ وَاَنَّ مَرَدَّنَاۤ اِلَى اللّٰهِ وَاَنَّ الۡمُسۡرِفِيۡنَ هُمۡ اَصۡحٰبُ النَّارِ

୪୫. "ସୁତରାଂ ମୁଁ ତୁମମାନଙ୍କୁ ଯାହାକିଛି ଉପଦେଶ ଦେଉଅଛି ତୁମେମାନେ ତାହାକୁ ଶୀଘ୍ର ମନେପକାଇବ ; ଏବଂ (ମୁଁ ତୁମମାନଙ୍କର ଧମକକୁ ଭୟକରୁ ନାହିଁ) ମୁଁ ନିଜ ବ୍ୟାପାର ଅଲ୍ଲାହ୍‌ଙ୍କୁ ସମର୍ପଣ କରୁଅଛି ; ଅଲ୍ଲାହ୍ ବାସ୍ତବରେ (ନିଜ) ଭକ୍ତମାନଙ୍କ ପ୍ରତି ଦୃଷ୍ଟି ରଖିଥାନ୍ତି ।"

فَسَتَذۡكُرُوۡنَ مَاۤ اَقُوۡلُ لَكُمۡ ؕ وَاُفَوِّضُ اَمۡرِيۡٓ اِلَى اللّٰهِ ؕ اِنَّ اللّٰهَ بَصِيۡرٌۢ بِالۡعِبَادِ

فَوَقٰىهُ اللّٰهُ سَيِّاٰتِ مَا مَكَرُوْا وَحَاقَ بِاٰلِ فِرْعَوْنَ سُوْٓءُ الْعَذَابِ ﴿٤٦﴾

୪୬. ଏହାପରେ ଅଲ୍ଲାହ୍ ତାହାକୁ (ଅର୍ଥାତ୍ ସେହି ବିଶ୍ୱାସକାରୀ ବ୍ୟକ୍ତିକୁ) ସେ (ଅବିଶ୍ୱାସକାରୀ)ମାନଙ୍କ ଚକ୍ରାନ୍ତର ମନ୍ଦ ପରିଣାମରୁ ରକ୍ଷା କରିଥିଲେ, ଏବଂ ଫିରଔନର ଲୋକମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଚତୁଃପାର୍ଶ୍ୱରୁ ଘେରି ନେଇଥିଲା,

اَلنَّارُ يُعْرَضُوْنَ عَلَيْهَا غُدُوًّا وَّعَشِيًّا ۚ وَيَوْمَ تَقُوْمُ السَّاعَةُ ۟ اَدْخِلُوْٓا اٰلَ فِرْعَوْنَ اَشَدَّ الْعَذَابِ ﴿٤٧﴾

୪୭. ଅର୍ଥାତ୍ ଅଗ୍ନି, ଯାହା ସମୀପରେ ସେମାନେ ଦିନ ଓ ରାତି ଉପସ୍ଥାପିତ ହେଉଅଛନ୍ତି ; ଏବଂ ଯେତେବେଳେ ନିର୍ଦ୍ଦିଷ୍ଟ ସମୟ ଉପସ୍ଥିତ ହେବ, (ସେତେବେଳେ ଦେବଦୂତମାନଙ୍କୁ କୁହାଯିବ ଯେ) ଫିରଔନର ଲୋକମାନଙ୍କୁ କଠିନ ଶାସ୍ତି ମଧ୍ୟରେ ପ୍ରବେଶ କରାଅ ।

وَاِذْ يَتَحَآجُّوْنَ فِي النَّارِ فَيَقُوْلُ الضُّعَفٰٓؤُا لِلَّذِيْنَ اسْتَكْبَرُوْٓا اِنَّا كُنَّا لَكُمْ تَبَعًا فَهَلْ اَنْتُمْ مُّغْنُوْنَ عَنَّا نَصِيْبًا مِّنَ النَّارِ ﴿٤٨﴾

୪୮. ଏବଂ (ସେହି ସମୟକୁ ମଧ୍ୟ ସ୍ମରଣ କର) ଯେତେବେଳେ (ଫିରଔନର ସାଥୀମାନେ ପରସ୍ପର ମଧ୍ୟରେ) ଅଗ୍ନିରେ ଥାଇ ଯୁକ୍ତିତର୍କ କରୁଥିବେ, ଏବଂ ସେମାନଙ୍କ ମଧ୍ୟରୁ ଦୁର୍ବଳ (ଲୋକ)ମାନେ ଗର୍ବୀ ଲୋକମାନଙ୍କୁ କହୁଥିବେ, "ଆମେମାନେ ତୁମମାନଙ୍କର ଅନୁସରଣ କରୁଥିଲୁ ; ସୁତରାଂ କ'ଣ ତୁମେମାନେ ଆମମାନଙ୍କୁ ଆଜି (ନରକ) ଅଗ୍ନି-ଜନିତ ଶାସ୍ତିର କୌଣସି ଅଂଶରୁ ରକ୍ଷା କରିପାରିବ ?"

قَالَ الَّذِيْنَ اسْتَكْبَرُوْٓا اِنَّا كُلٌّ فِيْهَآ ۙ اِنَّ اللّٰهَ قَدْ حَكَمَ بَيْنَ الْعِبَادِ ﴿٤٩﴾

୪୯. ଗର୍ବୀ ଲୋକମାନେ କହିବେ, "ଆମେମାନେ ସମସ୍ତେ ଏହି ଶାସ୍ତିରେ କବଳିତ ହୋଇଅଛୁ ; ଅଲ୍ଲାହ୍ ନିଜ ଭକ୍ତମାନଙ୍କ ମଧ୍ୟରେ ଯେଉଁ ନିଷ୍ପତ୍ତି କରିବାର ଥିଲା (ତାହା ସେ) କରିସାରିଛନ୍ତି ।"

وَقَالَ الَّذِيْنَ فِي النَّارِ لِخَزَنَةِ جَهَنَّمَ ادْعُوْا رَبَّكُمْ يُخَفِّفْ عَنَّا يَوْمًا مِّنَ الْعَذَابِ ﴿٥٠﴾

୫୦. ଏବଂ ନରକବାସୀମାନେ ନରକର ରକ୍ଷୀମାନଙ୍କୁ କହିବେ, "ତୁମେ ତୁମର ପାଳନକର୍ତ୍ତାଙ୍କୁ ପ୍ରାର୍ଥନା କର ଯେ ସେ ଏହି ଶାସ୍ତିକୁ ଆମମାନଙ୍କ ସକାଶେ କିଛି ସମୟ ପାଇଁ ହ୍ରାସ କରନ୍ତୁ ।"

قَالُوْٓا اَوَلَمْ تَكُ تَاْتِيْكُمْ رُسُلُكُمْ بِالْبَيِّنٰتِ ۭ قَالُوْا بَلٰى ۭ قَالُوْا فَادْعُوْا ۚ وَمَا دُعٰۗؤُا الْكٰفِرِيْنَ اِلَّا فِيْ ضَلٰلٍ ﴿٥١﴾

୫୧. ସେମାନେ କହିବେ, "କ'ଣ ତୁମମାନଙ୍କ ନିକଟକୁ ତୁମମାନଙ୍କ ରସୁଲମାନେ ପ୍ରମାଣମାନ ନେଇ ଆସି ନଥିଲେ ?" ସେମାନେ କହିବେ, "ହଁ, ଅବଶ୍ୟ (ଆସିଥିଲେ) ;" ଏହାପରେ ସେ (ରକ୍ଷୀ)ମାନେ କହିବେ ; "ବର୍ତ୍ତମାନ ତୁମେମାନେ (ଯେତେ ଇଚ୍ଛା) ଡାକୁଥାଅ ;" ଏବଂ ଅବିଶ୍ୱାସକାରୀମାନଙ୍କ ପ୍ରାର୍ଥନା ବୃଥା ହିଁ ହୋଇଥାଏ ।

ରୁ : ୬

୫୨. ଆମ୍ଭେ ଆମ୍ଭର ରସୁଲମାନଙ୍କୁ ଓ ସେମାନଙ୍କ ଉପରେ ବିଶ୍ୱାସ କରିଥିବା ଲୋକମାନଙ୍କୁ ନିଶ୍ଚୟ ଏହି ସଂସାରରେ ମଧ୍ୟ ସାହାଯ୍ୟ କରିବୁ ଏବଂ ସେହିଦିନ ମଧ୍ୟ, ଯେଉଁଦିନ ସାକ୍ଷୀମାନେ ଦଣ୍ଡାୟମାନ ହେବେ,

إِنَّا لَنَنْصُرُ رُسُلَنَا وَالَّذِينَ آمَنُوا فِي الْحَيٰوةِ الدُّنْيَا وَيَوْمَ يَقُومُ الْأَشْهَادُ ﴿٥٢﴾

୫୩. ଯେଉଁଦିନ ଅତ୍ୟାଚାରୀମାନଙ୍କୁ ସେମାନଙ୍କ ଆପତ୍ତି କୌଣସି ଲାଭ ଦେବ ନାହିଁ, ଏବଂ ସେମାନଙ୍କ ଉପରେ (ଅଲ୍ଲାହଙ୍କର) ଅଭିଶାପ ଅବତୀର୍ଣ୍ଣ ହେବ, ଏବଂ ସେମାନଙ୍କ (ରହିବା ପାଇଁ) ମନ୍ଦ ବାସସ୍ଥାନ ମିଳିବ ।

يَوْمَ لَا يَنْفَعُ الظّٰلِمِينَ مَعْذِرَتُهُمْ وَلَهُمُ اللَّعْنَةُ وَلَهُمْ سُوْءُ الدَّارِ ﴿٥٣﴾

୫୪. ଏବଂ ବାସ୍ତବରେ ଆମ୍ଭେ ମୁସାଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇଥିଲୁ, ଓ ଇସ୍ରାଇଲୀୟ ସନ୍ତାନମାନଙ୍କୁ (ଏହି ଧର୍ମ) ଗ୍ରନ୍ଥ (ଅର୍ଥାତ୍ ତୌରାତ)ର ଉତ୍ତରାଧିକାରୀ କରିଥିଲୁ,

وَلَقَدْ آتَيْنَا مُوسَى الْهُدٰى وَأَوْرَثْنَا بَنِي إِسْرَآءِيلَ الْكِتٰبَ ﴿٥٤﴾

୫୫. ଯାହା ବୁଦ୍ଧିମାନ୍ ଲୋକମାନଙ୍କ ସକାଶେ ସତ୍‌ପଥ ଓ ଉପଦେଶର ଆଧାର ହୋଇଥିଲା ।

هُدًى وَذِكْرٰى لِأُولِي الْأَلْبَابِ ﴿٥٥﴾

୫୬. ସୁତରାଂ ତୁମେ ଧୈର୍ଯ୍ୟ ଧର ; ଅଲ୍ଲାହଙ୍କ ଅଙ୍ଗୀକାର ଅବଶ୍ୟ ସତ୍ୟ (ଓ ତାହା ପୂରଣ ହେବ) ; ଏବଂ ସେମାନେ ତୁମ ପ୍ରତି ଯେଉଁ ଅପରାଧ କରିଛନ୍ତି ସେଥିପାଇଁ ତୁମେ ସେମାନଙ୍କ ସକାଶେ କ୍ଷମା ଭିକ୍ଷା କର ; ଏବଂ ସନ୍ଧ୍ୟା ବେଳେ ଓ ସକାଳେ ପ୍ରଶଂସାର ସହିତ ନିଜ ପାଳନକର୍ତ୍ତାଙ୍କ ଗୁଣଗାନ କର ।

فَاصْبِرْ إِنَّ وَعْدَ اللّٰهِ حَقٌّ وَاسْتَغْفِرْ لِذَنْبِكَ وَسَبِّحْ بِحَمْدِ رَبِّكَ بِالْعَشِيِّ وَالْإِبْكَارِ ﴿٥٦﴾

୫୭. ଯେଉଁମାନେ ସେମାନଙ୍କ ନିକଟକୁ (ଅଲ୍ଲାହଙ୍କ ଠାରୁ) କୌଣସି ପ୍ରମାଣ ଆସି ନ ଥାଇ (ମଧ୍ୟ) ଅଲ୍ଲାହଙ୍କ ନିଦର୍ଶନମାନଙ୍କ ସଂକ୍ରାନ୍ତରେ ଯୁକ୍ତିତର୍କ କରନ୍ତି, ସେମାନଙ୍କ ହୃଦୟରେ ଏପରି ବଡ ବଡ ଅଭିଳାଷ ରହିଅଛି, ଯେଉଁଗୁଡିକୁ ସେମାନେ କଦାପି ପ୍ରାପ୍ତ ହେବେ ନାହିଁ ; ସୁତରାଂ ଅଲ୍ଲାହଙ୍କର ଶରଣ ଭିକ୍ଷା କରୁଥାଅ ; ସେ ହିଁ ମହାନ୍ ଶ୍ରୋତା (ଓ) ମହାନ୍ ଦ୍ରଷ୍ଟା ।

إِنَّ الَّذِينَ يُجَادِلُونَ فِي آيٰتِ اللّٰهِ بِغَيْرِ سُلْطٰنٍ أَتٰهُمْ إِنْ فِي صُدُورِهِمْ إِلَّا كِبْرٌ مَا هُمْ بِبَالِغِيهِ فَاسْتَعِذْ بِاللّٰهِ إِنَّهُ هُوَ السَّمِيعُ الْبَصِيرُ ﴿٥٧﴾

୫୮. ଆକାଶ ଓ ପୃଥିବୀର ସୃଷ୍ଟି ମାନବ ଜାତିର ସୃଷ୍ଟି ଠାରୁ ଅଧିକ ମହାନ୍, କିନ୍ତୁ ଅଧିକାଂଶ ଲୋକେ ଏହା ଜାଣନ୍ତି ନାହିଁ ।

لَخَلْقُ السَّمٰوٰتِ وَالْأَرْضِ أَكْبَرُ مِنْ خَلْقِ النَّاسِ وَلٰكِنَّ أَكْثَرَ النَّاسِ لَا يَعْلَمُونَ ﴿٥٨﴾

୫୯. ଏବଂ ଚକ୍ଷୁହୀନ ଓ ଚକ୍ଷୁଷ୍ମାନ୍ (ବ୍ୟକ୍ତି) ସମାନ ନୁହନ୍ତି, ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ବିଶ୍ୱାସ ଅନୁଯାୟୀ କର୍ମ କରିଛନ୍ତି ସେମାନେ ମନ୍ଦ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କ ସହିତ (ସମାନ ନୁହନ୍ତି) ; ତୁମେମାନେ ଆଦୌ ଉପଦେଶ ଗ୍ରହଣ କରୁନାହିଁ ।

وَمَا يَسْتَوِي الْأَعْمٰى وَالْبَصِيرُ وَالَّذِينَ آمَنُوا وَعَمِلُوا الصّٰلِحٰتِ وَلَا الْمُسِيءُ قَلِيلًا مَا تَتَذَكَّرُونَ ﴿٥٩﴾

୬୦. ଏବଂ ଏହା ନିଃସଂଦେହ ଯେ ବିନାଶକାଳ[୧] ନିଶ୍ଚୟ ଆସିବ ; ତଥାପି ଅଧିକାଂଶ ଲୋକେ ବିଶ୍ୱାସ କରନ୍ତି ନାହିଁ ।

إِنَّ السَّاعَةَ لَآتِيَةٌ لَّا رَيْبَ فِيهَا وَلَٰكِنَّ أَكْثَرَ النَّاسِ لَا يُؤْمِنُونَ ﴿٦٠﴾

୬୧. ଏବଂ ତୁମମାନଙ୍କ ପାଳନକର୍ତ୍ତା କହନ୍ତି, "ଆମକୁ ଡାକ ; ଆମେ ତୁମମାନଙ୍କ ପ୍ରାର୍ଥନା ଶୁଣିବୁ ; ଯେଉଁମାନେ ଆମର ଉପାସନା ସଂକ୍ରାନ୍ତରେ ଅହଙ୍କାର କରନ୍ତି ସେମାନେ ନିଶ୍ଚୟ ଅପମାନିତ ହୋଇ ନରକରେ ପ୍ରବେଶ କରିବେ ।"

وَقَالَ رَبُّكُمُ ادْعُونِي أَسْتَجِبْ لَكُمْ إِنَّ الَّذِينَ يَسْتَكْبِرُونَ عَنْ عِبَادَتِي سَيَدْخُلُونَ جَهَنَّمَ دَاخِرِينَ ﴿٦١﴾ ع

ରୁ : ୬

୬୨. ସେ ହିଁ ଅଲ୍ଲାହ ଯେ ତୁମମାନଙ୍କ ସକାଶେ ରାତ୍ରିକୁ ସୃଷ୍ଟି କରିଛନ୍ତି ଯେପରିକି ତୁମେମାନେ ତା ମଧ୍ୟରେ ବିଶ୍ରାମ କରିବ, ଓ ଦିବସକୁ ଦେଖିପାରିବା ସକାଶେ ସୃଷ୍ଟି କରିଛନ୍ତି ; ଅଲ୍ଲାହ ଲୋକମାନଙ୍କ ପ୍ରତି ଅତିଶୟ କୃପାଳୁ କିନ୍ତୁ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ କୃତଜ୍ଞତା ଜ୍ଞାପନ କରନ୍ତି ନାହିଁ ।

اللَّهُ الَّذِي جَعَلَ لَكُمُ اللَّيْلَ لِتَسْكُنُوا فِيهِ وَالنَّهَارَ مُبْصِرًا إِنَّ اللَّهَ لَذُو فَضْلٍ عَلَى النَّاسِ وَلَٰكِنَّ أَكْثَرَ النَّاسِ لَا يَشْكُرُونَ ﴿٦٢﴾

୬୩. ସେ ଅଲ୍ଲାହ ତୁମମାନଙ୍କର ପାଳନକର୍ତ୍ତା ଅଟନ୍ତି, ଯେ ପ୍ରତ୍ୟେକ ବିଷୟକୁ ସୃଷ୍ଟି କରିଛନ୍ତି, ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ତେଣୁ କୁହ ତ ଭଲା, ତୁମମାନଙ୍କୁ କେଉଁ ଆଡକୁ ଫେରାଇ ନିଆଯାଉଛି ।

منزل ذَٰلِكُمُ اللَّهُ رَبُّكُمْ خَالِقُ كُلِّ شَيْءٍ لَّا إِلَٰهَ إِلَّا هُوَ فَأَنَّىٰ تُؤْفَكُونَ ﴿٦٣﴾

୬୪. ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନଗୁଡ଼ିକୁ ଜିଦ୍‌ଧରି ଅସ୍ୱୀକାର କରନ୍ତି ସେମାନଙ୍କୁ ଏହିପରି ଭାବରେ ଅଜ୍ଞାନତା ଆଡକୁ ଫେରାଇ ନିଆଯାଏ ।

كَذَٰلِكَ يُؤْفَكُ الَّذِينَ كَانُوا بِآيَاتِ اللَّهِ يَجْحَدُونَ ﴿٦٤﴾

୬୫. (ଅଥଚ) ସେ ହିଁ ଅଲ୍ଲାହ ଯେ ତୁମମାନଙ୍କ ସକାଶେ ପୃଥିବୀକୁ ବିଶ୍ରାମସ୍ଥଳ ଭାବେ ଗଢିଛନ୍ତି ଏବଂ (ସୁରକ୍ଷା ପାଇଁ) ଆକାଶକୁ ଏକ ଚାନ୍ଦୁଆ ସଦୃଶ (ଗଢିଛନ୍ତି), ଏବଂ ସେ ତୁମମାନଙ୍କୁ ବିଭିନ୍ନ ପ୍ରକାର ଶକ୍ତି ପ୍ରଦାନ କରିଛନ୍ତି, ଏବଂ ସେହି ଶକ୍ତିକୁ ଉତ୍ତମାନ-ସମ୍ପନ୍ନ ଓ ବଳିଷ୍ଠ କରି ଗଢିଛନ୍ତି, ଏବଂ ତୁମମାନଙ୍କୁ ବିଶୁଦ୍ଧ ଜୀବିକା ପ୍ରଦାନ କରିଛନ୍ତି ; ସେ ହିଁ ଅଲ୍ଲାହ ଯେ କି ତୁମମାନଙ୍କର ପାଳନକର୍ତ୍ତା ; ସୁତରାଂ ସମଗ୍ର ଜଗତର ପାଳନକର୍ତ୍ତା ଅଲ୍ଲାହ ଅତ୍ୟନ୍ତ କଲ୍ୟାଣମୟ ଅଟନ୍ତି ।

اللَّهُ الَّذِي جَعَلَ لَكُمُ الْأَرْضَ قَرَارًا وَالسَّمَاءَ بِنَاءً وَصَوَّرَكُمْ فَأَحْسَنَ صُوَرَكُمْ وَرَزَقَكُم مِّنَ الطَّيِّبَاتِ ذَٰلِكُمُ اللَّهُ رَبُّكُمْ فَتَبَارَكَ اللَّهُ رَبُّ الْعَالَمِينَ ﴿٦٥﴾

---

୧. ଏଠାରେ 'ଅସ୍‌ସାଅତ' ଶବ୍ଦରୁ ପାର୍ଥିବ ବିନାଶର ସମୟ ଅଭିପ୍ରେତ ହୋଇପାରେ ତଥା ଅନ୍ତିମ ସମୟର ମଧ୍ୟ । କିନ୍ତୁ ଯେହେତୁ ପାର୍ଥିବ ବିନାଶର ସମୟ ଅବିଶ୍ୱାସକାରୀମାନଙ୍କୁ ଦୃଷ୍ଟିଗୋଚର ହୋଇପାରେ ତେଣୁ ପ୍ରଥମୋକ୍ତ ଅର୍ଥକୁ ମୁଖ୍ୟ ମନେ କରାଯିବା ଆବଶ୍ୟକ ଏବଂ ଯେହେତୁ ଅନ୍ତିମ ସମୟର ବିନାଶ ଦୃଷ୍ଟିଗୋଚର ହୋଇପାରେ ନାହିଁ ତେଣୁ ଏହାକୁ ଗୌଣ ମନେ କରାଯିବା ଆବଶ୍ୟକ ।

هُوَ الْحَيُّ لَآ اِلٰهَ اِلَّا هُوَ فَادْعُوْهُ مُخْلِصِيْنَ لَهُ الدِّيْنَ ۚ اَلْحَمْدُ لِلّٰهِ رَبِّ الْعٰلَمِيْنَ ﴿٦٦﴾

୬୬. ସେ ଜୀବନ୍ତ (ଓ ଅନ୍ୟ ମାନଙ୍କୁ ଜୀବନ ଦାନ କରିଥା'ନ୍ତି) ; ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସୁତରାଂ ଧର୍ମରେ ଅକୃତ୍ରିମ ନିଷ୍ଠା ରଖି ତାହାଙ୍କର ଉପାସନା କର ; ସକଳ ପ୍ରଶଂସା ଅଲ୍ଲାହଙ୍କ ପାଇଁ, ଯେ ସମସ୍ତ ଜଗତର ପାଳନକର୍ତ୍ତା ।

قُلْ اِنِّيْ نُهِيْتُ اَنْ اَعْبُدَ الَّذِيْنَ تَدْعُوْنَ مِنْ دُوْنِ اللّٰهِ لَمَّا جَآءَنِيَ الْبَيِّنٰتُ مِنْ رَّبِّيْ ۫ وَاُمِرْتُ اَنْ اُسْلِمَ لِرَبِّ الْعٰلَمِيْنَ ﴿٦٧﴾

୬୭. ତୁମେ କୁହ, "ଅଲ୍ଲାହଙ୍କ ବ୍ୟତୀତ ତୁମେମାନେ ଯାହାଙ୍କୁ ଡାକୁଅଛ ଆମକୁ ତାହାଙ୍କର ଉପାସନା କରିବା ସକାଶେ ବାରଣ କରାଯାଇଅଛି ; ବିଶେଷତଃ ଯେତେବେଳେ କି ଆମ ନିକଟକୁ ଆମ ପାଳନକର୍ତ୍ତାଙ୍କ ଠାରୁ ସ୍ପଷ୍ଟ ନିଦର୍ଶନମାନ ମଧ୍ୟ ଆସିସାରିଛି ; ଏବଂ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ଠାରେ ଆତ୍ମସମର୍ପଣ କରିବାକୁ ଆମକୁ ଆଦେଶ ଦିଆଯାଇଅଛି ।

هُوَ الَّذِيْ خَلَقَكُمْ مِّنْ تُرَابٍ ثُمَّ مِنْ نُّطْفَةٍ ثُمَّ مِنْ عَلَقَةٍ ثُمَّ يُخْرِجُكُمْ طِفْلًا ثُمَّ لِتَبْلُغُوْٓا اَشُدَّكُمْ ثُمَّ لِتَكُوْنُوْا شُيُوْخًا ۚ وَمِنْكُمْ مَّنْ يُّتَوَفّٰى مِنْ قَبْلُ وَلِتَبْلُغُوْٓا اَجَلًا مُّسَمًّى وَّلَعَلَّكُمْ تَعْقِلُوْنَ ﴿٦٨﴾

୬୮. ସେ ହି ତୁମମାନଙ୍କୁ (ପ୍ରଥମ ପର୍ଯ୍ୟାୟରେ) ମାଟିରୁ ସୃଷ୍ଟି କରିଛନ୍ତି ; ତା'ପରେ (ଦ୍ୱିତୀୟ ପର୍ଯ୍ୟାୟରେ) ଶୁକ୍ର ବିନ୍ଦୁରୁ ; ତାପରେ (ତୃତୀୟ ପର୍ଯ୍ୟାୟରେ) ଏକ ରକ୍ତ ପିଣ୍ଡରୁ ; ତାପରେ (ତହିଁରୁ) ତୁମମାନଙ୍କୁ ଏକ ଶିଶୁ ରୂପେ ଗଢି ବାହାର କରାନ୍ତି ; ତାପରେ ତୁମେମାନେ (କ୍ରମଶଃ ବୃଦ୍ଧି ପ୍ରାପ୍ତ ହୋଇ) ନିଜ ଯୌବନରେ ପଦାର୍ପଣ କର ; ତାପରେ ତୁମେମାନେ ନିଜ ବାର୍ଦ୍ଧକ୍ୟରେ ଉପନୀତ ହୁଅ ; ଏବଂ ଏହା ପୂର୍ବରୁ (ଅର୍ଥାତ୍ ବାର୍ଦ୍ଧକ୍ୟ ଆସିବା ପୂର୍ବରୁ) ତୁମମାନଙ୍କ ମଧ୍ୟରୁ କେତେକଙ୍କର ପ୍ରାଣ ନାଶ କରାଯାଇଥାଏ ; ଏବଂ ସେ ଏହା ଏଥି ସକାଶେ କରିଥା'ନ୍ତି ଯଦ୍ୱାରା ତୁମେମାନେ ତୁମମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ସମୟରେ ଉପନୀତ ହେବ, ଏବଂ ତୁମେମାନେ ତଦ୍ୱାରା (ଏହି ଅବସର କାଳରେ ଲାଭ ହାସଲ କରିବା ସକାଶେ) ବୁଦ୍ଧିମତାର ସହ କାର୍ଯ୍ୟ କରିବ ।

هُوَ الَّذِيْ يُحْيٖ وَيُمِيْتُ ۚ فَاِذَا قَضٰٓى اَمْرًا فَاِنَّمَا يَقُوْلُ لَهٗ كُنْ فَيَكُوْنُ ﴿٦٩﴾

୬୯. ଅଲ୍ଲାହ ହି ଜୀବନ ଦାନ କରନ୍ତି ଓ ମୃତ୍ୟୁ ଦିଅନ୍ତି ; ସୁତରାଂ ଯେତେବେଳେ ସେ କୌଣସି ବିଷୟ ନିଷ୍ପତ୍ତି କରିଦିଅନ୍ତି, ସେତେବେଳେ ସେ ବିଷୟରେ କହନ୍ତି, "ହୋଇଯାଅ" ଓ ତାହା ହୋଇଯାଏ ।

ରୁ : ୮

اَلَمْ تَرَ اِلَى الَّذِيْنَ يُجَادِلُوْنَ فِيْٓ اٰيٰتِ اللّٰهِ ۭ اَنّٰى يُصْرَفُوْنَ ﴿٧٠﴾

୭୦. କ'ଣ ତୁମେ ସେ (ଲୋକ)ମାନଙ୍କୁ ଲକ୍ଷ୍ୟ କରି ନାହଁ ଯେଉଁମାନେ ଅଲ୍ଲାହଙ୍କ ନିଦର୍ଶନଗୁଡିକ ସଂକ୍ରାନ୍ତରେ କଳହ କରନ୍ତି ? ସେମାନଙ୍କୁ କେଉଁ ଆଡକୁ ଫେରାଇ ନିଆଯାଉଛି ?

୭୧. ଏହି (ପ୍ରକାର) ଲୋକମାନେ ଆମର (ଧର୍ମ) ଗ୍ରନ୍ଥକୁ ଓ ଆମର ରସୁଲ ଯେଉଁ ବାଣୀ ଆଣିଛନ୍ତି ତାହାକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଛନ୍ତି ; ସୁତରାଂ ସେମାନେ ଶୀଘ୍ର ନିଜର ପରିଣାମକୁ ଜାଣି ପାରିବେ ।

الَّذِيْنَ كَذَّبُوْا بِالْكِتٰبِ وَ بِمَآ اَرْسَلْنَا بِهٖ رُسُلَنَا ۛ فَسَوْفَ يَعْلَمُوْنَ ﴿۷۱﴾

୭୨. ଯେତେବେଳେ ସେମାନଙ୍କ ଗଳାରେ ଲୌହ ବଳୟ ଓ ଶିକୁଳି ପଡିବ ; ଏବଂ ସେମାନଙ୍କୁ ଟଣାଯିବ,

اِذِ الْاَغْلٰلُ فِيْۤ اَعْنَاقِهِمْ وَالسَّلٰسِلُ ؕ يُسْحَبُوْنَ ﴿۷۲﴾

୭୩. ଉତପ୍ତ ଜଳ ମଧ୍ୟକୁ ; ତା'ପରେ (ନରକ) ଅଗ୍ନିରେ ସେମାନଙ୍କୁ ନିକ୍ଷିପ୍ତ କରାଯିବ ।

فِي الْحَمِيْمِ ۙ ثُمَّ فِي النَّارِ يُسْجَرُوْنَ ﴿۷۳﴾

୭୪/୭୫. ତା'ପରେ ସେମାନଙ୍କୁ କୁହାଯିବ, "ସେ (ଉପାସ୍ୟ)ମାନେ କାହାନ୍ତି ଯେଉଁ-ମାନଙ୍କୁ ତୁମେମାନେ ଅଲ୍ଲାହଙ୍କ ବ୍ୟତୀତ (ତାହାଙ୍କ) ସମକକ୍ଷ କରୁଥିଲ ?" ସେମାନେ କହିବେ, "ସେମାନେ ବର୍ତ୍ତମାନ ଆମମାନଙ୍କ ନିକଟରୁ ଅଦୃଶ୍ୟ ହୋଇଯାଇଛନ୍ତି ;" (ପୁଣି କହିବେ), "ଏପରି ନୁହେଁ, ବାସ୍ତବରେ ଆମେମାନେ ଏହା ପୂର୍ବରୁ କାହାରିକୁ ଅଲ୍ଲାହଙ୍କର ସମକକ୍ଷ କରୁ ହିଁ ନ ଥିଲୁ ;" ଏହିପରି ଭାବରେ ଅଲ୍ଲାହ ଅବିଶ୍ୱାସକାରୀମାନଙ୍କୁ ପଥଭ୍ରଷ୍ଟ କରାନ୍ତି ।"

ثُمَّ قِيْلَ لَهُمْ اَيْنَ مَا كُنْتُمْ تُشْرِكُوْنَ ﴿۷۴﴾ مِنْ دُوْنِ اللّٰهِ ؕ قَالُوْا ضَلُّوْا عَنَّا بَلْ لَّمْ نَكُنْ نَّدْعُوْا مِنْ قَبْلُ شَيْـًٔا ؕ كَذٰلِكَ يُضِلُّ اللّٰهُ الْكٰفِرِيْنَ ﴿۷۵﴾

୭୬. "ଏହା ହିଁ (ସତ୍ୟ) ଅଟେ ଯେଉଁ କାରଣରୁ ତୁମେମାନେ କୌଣସି ପ୍ରମାଣ ବିନା ପୃଥିବୀରେ ଆନନ୍ଦିତ ହେଉଥିଲ ଏବଂ ଯେଉଁ କାରଣରୁ ତୁମେମାନେ ଅକାରଣରେ ଗର୍ବିତ ହେଉଥିଲ ।"

ذٰلِكُمْ بِمَا كُنْتُمْ تَفْرَحُوْنَ فِي الْاَرْضِ بِغَيْرِ الْحَقِّ وَ بِمَا كُنْتُمْ تَمْرَحُوْنَ ﴿۷۶﴾

୭୭. "(ବର୍ତ୍ତମାନ ତୁମେମାନେ) ନରକ ଦ୍ୱାରରେ ପ୍ରବେଶ କର ; (କାରଣ ତୁମମାନଙ୍କ ସକାଶେ ନିଷ୍ପତ୍ତି କରାଯାଇଅଛି ଯେ) ତୁମେମାନେ ତହିଁରେ ରହିବ ; ଏବଂ ଅହଙ୍କାରୀମାନଙ୍କ ବାସସ୍ଥାନ ଅତ୍ୟନ୍ତ ମନ୍ଦ ଅଟେ ।"

اُدْخُلُوْۤا اَبْوَابَ جَهَنَّمَ خٰلِدِيْنَ فِيْهَا ۚ فَبِئْسَ مَثْوَى الْمُتَكَبِّرِيْنَ ﴿۷۷﴾

فَاصْبِرْ إِنَّ وَعْدَ اللَّهِ حَقٌّ ۚ فَإِمَّا نُرِيَنَّكَ بَعْضَ الَّذِي نَعِدُهُمْ أَوْ نَتَوَفَّيَنَّكَ فَإِلَيْنَا يُرْجَعُونَ ﴿٧٨﴾

୭୮. ସୁତରାଂ ଧୈର୍ଯ୍ୟ ଧର ; ଅଲ୍ଲାହ୍‌ଙ୍କ ଅଙ୍ଗୀକାର ନିଶ୍ଚୟ ପୂରଣ ହେବ ; ଏବଂ ଯଦି ଆମେ ସେମାନଙ୍କ ସହ କରିଥିବା ପ୍ରତିଶ୍ରୁତିଗୁଡିକ ମଧ୍ୟରୁ କେତେକ ତୁମକୁ (ତୁମ ଜୀବଦ୍ଦଶା ମଧ୍ୟରେ) ଦେଖାଇ ଦେଉ, କିମ୍ବା ଆମେ ତୁମକୁ ମୃତ୍ୟୁ ଦେଇ ଦେଉ (ତେବେ ମଧ୍ୟ ଆମେ ତୁମର ମୃତ୍ୟୁ ପରେ ଅନ୍ୟାନ୍ୟ ପ୍ରତିଶ୍ରୁତିକୁ ଅବଶ୍ୟ ପୂରଣ କରିଦେବୁ, ଏବଂ ଏଥିରେ କୌଣସି କ୍ଷତି ହେବ ନାହିଁ କାରଣ ସେମାନଙ୍କୁ ଆମ ନିକଟକୁ ଫେରାଇ ଅଣାଯିବ[୧] (ଓ ସେଠାରେ ସେମାନେ ନିଜ ପରିଣାମକୁ ଦେଖିପାରିବେ) ।

وَلَقَدْ أَرْسَلْنَا رُسُلًا مِّن قَبْلِكَ مِنْهُم مَّن قَصَصْنَا عَلَيْكَ وَمِنْهُم مَّن لَّمْ نَقْصُصْ عَلَيْكَ ۗ وَمَا كَانَ لِرَسُولٍ أَن يَأْتِيَ بِآيَةٍ إِلَّا بِإِذْنِ اللَّهِ ۚ فَإِذَا جَاءَ أَمْرُ اللَّهِ قُضِيَ بِالْحَقِّ وَخَسِرَ هُنَالِكَ الْمُبْطِلُونَ ﴿٧٩﴾

୭୯. ଏବଂ ଆମେ ତୁମ ପୂର୍ବରୁ ଅନେକ ରସୁଲ ପ୍ରେରଣ କରିଥିଲୁ ; କେତେକଙ୍କ ବିଷୟ ଆମେ ତୁମ ନିକଟରେ ବର୍ଣ୍ଣନା କରିଅଛୁ ଏବଂ (ଅନ୍ୟ) କେତେକଙ୍କ ବିଷୟ ଆମେ ତୁମ ନିକଟରେ ବର୍ଣ୍ଣନା କରିନାହୁଁ ; ଏବଂ କୌଣସି ରସୁଲଙ୍କର ଶକ୍ତି ନାହିଁ ଯେ ଅଲ୍ଲାହ୍‌ଙ୍କ ଆଦେଶ ବିନା (ସେ) କୌଣସି ବାଣୀ ଆଣିପାରିବେ ; ଏବଂ ଯେତେବେଳେ ଅଲ୍ଲାହ୍‌ଙ୍କ ଆଦେଶ ଆସିଯାଏ, ସେତେ ବେଳେ ସତ୍ୟର ସହିତ ନିଷ୍ପତ୍ତି କରାଯାଏ, ଏବଂ ମିଥ୍ୟାବାଦୀମାନେ କ୍ଷତିଗ୍ରସ୍ତ ହୁଅନ୍ତି ।

اللَّهُ الَّذِي جَعَلَ لَكُمُ الْأَنْعَامَ لِتَرْكَبُوا مِنْهَا وَمِنْهَا تَأْكُلُونَ ﴿٨٠﴾

୮୦. ସେ ହିଁ ଅଲ୍ଲାହ୍ ଯେ କି ତୁମମାନଙ୍କ ସକାଶେ ଚତୁଷ୍ପଦ (ପ୍ରାଣୀ) ସୃଷ୍ଟି କରିଛନ୍ତି, ଯଦ୍ଦ୍ୱାରା ତୁମେମାନେ ସେମାନଙ୍କ ମଧ୍ୟରୁ କେତେକଙ୍କ ଉପରେ ଆରୋହଣ କରିବ ଓ ସେମାନଙ୍କ ମଧ୍ୟରୁ ଅନ୍ୟ କେତେକଙ୍କ ମାଂସ ଖାଇବ ।

وَلَكُمْ فِيهَا مَنَافِعُ وَلِتَبْلُغُوا عَلَيْهَا حَاجَةً فِي صُدُورِكُمْ وَعَلَيْهَا وَعَلَى الْفُلْكِ تُحْمَلُونَ ﴿٨١﴾

୮୧. ଏବଂ ଏହି ଚତୁଷ୍ପଦ (ପ୍ରାଣୀ)ମାନଙ୍କ ମଧ୍ୟରେ ତୁମମାନଙ୍କ ସକାଶେ ଆହୁରି ଅନେକ ଲାଭ ରହିଅଛି, ଏବଂ (ଏହି ଉଦ୍ଦେଶ୍ୟ ମଧ୍ୟ ନିହିତ ଅଛି ଯେ) ତୁମେମାନେ ସେମାନଙ୍କୁ ପରିବହନ ଆଦି କାର୍ଯ୍ୟରେ ଲଗାଇ ନିଜର ଆବଶ୍ୟକତାକୁ ପୂରଣ କରିପାରିବ ; ଏବଂ ସେ (ଚତୁଷ୍ପଦ)ମାନଙ୍କ ଉପରେ ଏବଂ ନୌକାମାନ ଉପରେ ତୁମମାନଙ୍କୁ ବହନ କରାଯାଏ ।

---

୧. ଏଠାରେ ଦୁଇଟି ସିଦ୍ଧାନ୍ତର ଉଲ୍ଲେଖ ଅଛି: (କ) ପରିଶେଷରେ ଧର୍ମର ଜୟ ସୁନିଶ୍ଚିତ; କିନ୍ତୁ ଏହା ଲାଭ କରିବା ପୂର୍ବରୁ ଧର୍ମନିଷ୍ଠ ବ୍ୟକ୍ତିମାନଙ୍କୁ ବହୁବିଧ ଗୁରୁତର ଦୁଃଖକଷ୍ଟର ସମ୍ମୁଖୀନ ହେବାକୁ ପଡିବ, ସେମାନଙ୍କ ଧର୍ମବିଶ୍ୱାସକୁ ପରୀକ୍ଷା କରାଯିବ ଓ ତାହା ଉପଯୁକ୍ତ ମାନର ହୋଇଥିବା ପ୍ରମାଣିତ ହେବ (ଖ) ଅବିଶ୍ୱାସକାରୀଙ୍କ ଶାସ୍ତି ସମ୍ବନ୍ଧିତ ଭବିଷ୍ୟବାଣୀ ସର୍ତ୍ତାଧୀନ ଅଟେ; ତେଣୁ ତାହାକୁ ସ୍ଥଗିତ ରଖାଯାଇପାରେ ଅଥବା ତାହାକୁ ପ୍ରତ୍ୟାହାର ବା ରଦ କରାଯାଇପାରେ ।

୮୨. ଏବଂ ସେ (ଅଲ୍ଲାହ) ତୁମମାନଙ୍କୁ ନିଜ ନିଦର୍ଶନମାନ ପ୍ରଦର୍ଶିତ କରାନ୍ତି ; ସୁତରାଂ ତୁମେମାନେ ଅଲ୍ଲାହଙ୍କ ନିଦର୍ଶନମାନଙ୍କ ମଧ୍ୟରୁ କେଉଁ ନିଦର୍ଶନକୁ ଅସ୍ୱୀକାର କରିପାରିବ ?

وَيُرِيكُمْ آيَاتِهِ فَأَيَّ آيَاتِ اللَّهِ تُنكِرُونَ ﴿٨٢﴾

୮୩. କ'ଣ ସେମାନେ ପୃଥିବୀରେ ଭ୍ରମଣ କରି ଲକ୍ଷ୍ୟ କରୁ ନାହାନ୍ତି ଯେ ସେମାନଙ୍କ ପୂର୍ବବର୍ତ୍ତୀମାନଙ୍କର ପରିଣାମ କିପରି ହୋଇଥିଲା ? ସେମାନେ ଦେଶ ମଧ୍ୟରେ ସେମାନଙ୍କ ଅପେକ୍ଷା ସଂଖ୍ୟାରେ ଓ ଶକ୍ତିରେ ଅଧିକ ଥିଲେ ଓ ନିର୍ମାଣ ଶୈଳୀରେ ମଧ୍ୟ ଅଧିକ ନିପୁଣ ଥିଲେ ; କିନ୍ତୁ ସେମାନଙ୍କ କର୍ମ ସେମାନଙ୍କୁ କୌଣସି ଲାଭ ଦେଇ ନ ଥିଲା ।

أَفَلَمْ يَسِيرُوا فِي الْأَرْضِ فَيَنظُرُوا كَيْفَ كَانَ عَاقِبَةُ الَّذِينَ مِن قَبْلِهِمْ ۚ كَانُوا أَكْثَرَ مِنْهُمْ وَأَشَدَّ قُوَّةً وَآثَارًا فِي الْأَرْضِ فَمَا أَغْنَىٰ عَنْهُم مَّا كَانُوا يَكْسِبُونَ ﴿٨٣﴾

୮୪. ଏବଂ ଯେତେବେଳେ ସେମାନଙ୍କ ନିକଟକୁ ସେମାନଙ୍କ ରସୁଲ ନିଦର୍ଶନ ଘେନି ଆସିଥିଲେ, ସେତେବେଳେ ସେମାନଙ୍କ ନିକଟରେ ଯାହା କିଛି ଅଳ୍ପ ଜ୍ଞାନ ଥିଲା ସେମାନେ ସେଥିପ୍ରତି ଗର୍ବ କରିଥିଲେ ; ଏବଂ ଯେଉଁ (ଶାସ୍ତି) ବିଷୟରେ ସେମାନେ ପରିହାସ କରୁଥିଲେ ତାହା ହିଁ ସେମାନଙ୍କୁ ପରିବେଷ୍ଟିତ କରିଥିଲା ।

فَلَمَّا جَاءَتْهُمْ رُسُلُهُم بِالْبَيِّنَاتِ فَرِحُوا بِمَا عِندَهُم مِّنَ الْعِلْمِ وَحَاقَ بِهِم مَّا كَانُوا بِهِ يَسْتَهْزِئُونَ ﴿٨٤﴾

୮୫. ତା'ପରେ ସେମାନେ ଯେତେବେଳେ ଆମର ଶାସ୍ତିକୁ ଦେଖିଲେ, ସେତେବେଳେ କହିଲେ, "ଆମେମାନେ ତ ଅଲ୍ଲାହଙ୍କୁ ଅଦ୍ୱିତୀୟ ମନେ କରି ତାହାଙ୍କ ଉପରେ ବିଶ୍ୱାସ କରୁଅଛୁ ଏବଂ ଆମେମାନେ ତାହାଙ୍କ ସହିତ ସମକକ୍ଷ କରିଥିବା ବସ୍ତୁଗୁଡିକୁ ପ୍ରତ୍ୟାଖ୍ୟାନ କରୁଅଛୁ ।

فَلَمَّا رَأَوْا بَأْسَنَا قَالُوا آمَنَّا بِاللَّهِ وَحْدَهُ وَكَفَرْنَا بِمَا كُنَّا بِهِ مُشْرِكِينَ ﴿٨٥﴾

୮୬. ସୁତରାଂ ଯେତେବେଳେ ସେମାନେ ଆମର ଶାସ୍ତିକୁ ଦେଖିଲେ, ସେତେବେଳେ ସେମାନଙ୍କର (ଧର୍ମ) ବିଶ୍ୱାସ ସେମାନଙ୍କ ପାଇଁ କିଛି ଲାଭଦାୟକ ହୋଇ ନ ଥିଲା ; ଏହା ହିଁ ଅଲ୍ଲାହଙ୍କ ନିର୍ଦ୍ଧାରିତ ରୀତି, ଯାହା ତାଙ୍କ ଭକ୍ତଙ୍କ ମଧ୍ୟରେ ପ୍ରଚଳିତ ରହିଅଛି ; ଏବଂ ସେତେବେଳେ ଅବିଶ୍ୱାସକାରୀମାନେ କ୍ଷତିଗ୍ରସ୍ତ ହୋଇଥିଲେ ।

فَلَمْ يَكُ يَنفَعُهُمْ إِيمَانُهُمْ لَمَّا رَأَوْا بَأْسَنَا ۖ سُنَّتَ اللَّهِ الَّتِي قَدْ خَلَتْ فِي عِبَادِهِ ۖ وَخَسِرَ هُنَالِكَ الْكَافِرُونَ ﴿٨٦﴾

سُوْرَةُ حٰمٓ السَّجْدَةِ مَكِّيَّةٌ (٤١)

# ହା— ମୀମ ସଜଦା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସମିଲ୍ଲାହ ସମେତ ୫୫ଟି ଆୟତ ଓ ୬ଟି ରୁକୁ ଅଛି।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି)।

حٰمٓ ②

୨. ହା—ମୀମ ।

تَنْزِيْلٌ مِّنَ الرَّحْمٰنِ الرَّحِيْمِ ③

୩. (ଏହି କୋରାନ ଗ୍ରନ୍ଥ) ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ (ଅଲ୍ଲାହ୍)ଙ୍କ ତରଫରୁ ଅବତୀର୍ଣ୍ଣ ହୋଇଅଛି ।

كِتٰبٌ فُصِّلَتْ اٰيٰتُهٗ قُرْاٰنًا عَرَبِيًّا لِّقَوْمٍ يَّعْلَمُوْنَ ④

୪. (ଏବଂ ଏହା) ଏପରି ଗ୍ରନ୍ଥ ଯାହାର ଆୟତ-ଗୁଡ଼ିକ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି, ଏବଂ ଯାହା ବାରମ୍ବାର ପଠିତ ହେବ; ଏବଂ ଏହା ଏପରି ଭାଷାରେ ରଚନା କରାଯାଇଛି ଯାହା ନିଜର ଉଦ୍ଦେଶ୍ୟକୁ ନିଜେ ସ୍ପଷ୍ଟ ଭାବରେ ବର୍ଣ୍ଣନା କରୁଅଛି ; କିନ୍ତୁ (ଏହି ଗ୍ରନ୍ଥ) ସେହି-ମାନଙ୍କ ପାଇଁ ଲାଭ ଦାୟକ ହେବ ଯେଉଁ ମାନଙ୍କର (ଆଧ୍ୟାତ୍ମିକ) ଜ୍ଞାନ ଅଛି ;

بَشِيْرًا وَّنَذِيْرًا ۚ فَاَعْرَضَ اَكْثَرُهُمْ فَهُمْ لَا يَسْمَعُوْنَ ⑤

୫. (ଏହା ପୁଣ୍ୟବାନ୍‌ମାନଙ୍କ ପାଇଁ) ସୁସମାଚାର ପ୍ରଦାନକାରୀ ଓ (ପାପୀମାନଙ୍କ ପାଇଁ) ସଚେତନକାରୀ ଅଟେ ; ତଥାପି ସେମାନଙ୍କ ମଧ୍ୟରୁ ଅଧିକାଂଶ ବିମୁଖ ହୋଇଛନ୍ତି ଓ ସେମାନେ ଏହାକୁ ଶୁଣିବା ପାଇଁ ମଧ୍ୟ ପ୍ରସ୍ତୁତ ନୁହନ୍ତି ;

وَقَالُوْا قُلُوْبُنَا فِيْٓ اَكِنَّةٍ مِّمَّا تَدْعُوْنَآ اِلَيْهِ وَفِيْٓ اٰذَانِنَا وَقْرٌ وَّمِنْۢ بَيْنِنَا وَبَيْنِكَ حِجَابٌ فَاعْمَلْ اِنَّنَا عٰمِلُوْنَ ⑥

୬. ଏବଂ କହନ୍ତି, "ଯେଉଁ ବିଷୟ ପ୍ରତି ତୁମ୍ଭେ ଆମମାନଙ୍କୁ ଡାକୁଅଛ ତାହା ଗ୍ରହଣ କରିବାକୁ ଆମମାନଙ୍କର ହୃଦୟ ପର୍ଦା ଅନ୍ତରାଳରେ ରହିଅଛି (ଅର୍ଥାତ୍ ତାହା ଆମମାନଙ୍କ ହୃଦୟ ଉପରେ ପ୍ରଭାବ ପକାଇ ପାରିବ ନାହିଁ), ଏବଂ ଆମମାନଙ୍କ କାନରେ ବଧିରତା[୧] ରହିଅଛି (ଯାହା ଫଳରେ ଆମେମାନେ ତୁମ୍ଭ କଥା ଶୁଣି ପାରିବୁ ନାହିଁ) ; ଏବଂ ଆମମାନଙ୍କର ଓ ତୁମ୍ଭ ମଧ୍ୟରେ ଏକ ପର୍ଦା[୨] ରହିଅଛି ; ସୁତରାଂ ତୁମ୍ଭେ (ନିଜ ବିଶ୍ୱାସ ମୁତାବକ) କାର୍ଯ୍ୟ କର ; ଆମେମାନେ (ନିଜ ବିଶ୍ୱାସ ମୁତାବକ) କାର୍ଯ୍ୟ କରିବୁ ।

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେତେବେଳେ ମନ କିଛି ଗ୍ରହଣ କରିବାକୁ ଅନିଚ୍ଛୁକ ସେତେବେଳେ କାନ ମଧ୍ୟ କିଛି ଶୁଣିପାରେ ନାହିଁ ।

୨. ଅର୍ଥାତ୍ ସ୍ୱଭାବ ଭିନ୍ନ ଭିନ୍ନ ପ୍ରକାରର ହୋଇଥାଏ ।

قُلْ اِنَّمَآ اَنَا بَشَرٌ مِّثْلُكُمْ يُوْحٰٓى اِلَيَّ اَنَّمَآ اِلٰهُكُمْ اِلٰهٌ وَّاحِدٌ فَاسْتَقِيْمُوْٓا اِلَيْهِ وَاسْتَغْفِرُوْهُ ۗ وَوَيْلٌ لِّلْمُشْرِكِيْنَ ﴿٧﴾

୭. ତୁମ୍ଭେ କୁହ, "ଆମ୍ଭେ ତୁମମାନଙ୍କ ସଦୃଶ ଏକ ମାନବ ; ଆମ୍ଭ ପ୍ରତି ଓହି କରାଯାଉଛି ଯେ ତୁମମାନଙ୍କର କେବଳ ଜଣେ ମାତ୍ର ଉପାସ୍ୟ ଅଛନ୍ତି ; ସୁତରାଂ ତାହାଙ୍କୁ ଚିନ୍ତାକରି ଅବିଚଳିତ ରୁହ, ଏବଂ ତାହାଙ୍କ ଠାରେ କ୍ଷମାଭିକ୍ଷା କରୁଥାଅ (ଯେପରି ତୁମମାନଙ୍କର ପଦସ୍ଖଳନ ନ ଘଟୁ, ଏବଂ (ମନେ ରଖ ଯେ) ମୁସରିକମାନଙ୍କ ପାଇଁ ଶାସ୍ତି (ନିୟତ) ରହିଅଛି,

الَّذِيْنَ لَا يُؤْتُوْنَ الزَّكٰوةَ وَهُمْ بِالْاٰخِرَةِ هُمْ كٰفِرُوْنَ ﴿٨﴾

୮. ଯେଉଁ (ମୁସରିକ)ମାନେ ଜକାତ ଦିଅନ୍ତି ନାହିଁ କି ପରକାଳ ଉପରେ ବିଶ୍ୱାସ କରନ୍ତି ନାହିଁ ।

اِنَّ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ لَهُمْ اَجْرٌ غَيْرُ مَمْنُوْنٍ ﴿٩﴾

୯. ବାସ୍ତବରେ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ତଦନୁଯାୟୀ କର୍ମ କରିଛନ୍ତି, ସେମାନଙ୍କ ସକାଶେ ଏକ ଅସରନ୍ତି ପୁରସ୍କାର (ନିୟତ) ରହିଅଛି ।

ରୁ : ୨

قُلْ اَئِنَّكُمْ لَتَكْفُرُوْنَ بِالَّذِيْ خَلَقَ الْاَرْضَ فِيْ يَوْمَيْنِ وَتَجْعَلُوْنَ لَهٗٓ اَنْدَادًا ۗ ذٰلِكَ رَبُّ الْعٰلَمِيْنَ ﴿١٠﴾

୧୦. ତୁମ୍ଭେ କୁହ, "କ'ଣ ତୁମେମାନେ ତାହାଙ୍କୁ (ଅର୍ଥାତ୍ ଅଲ୍ଲାହ୍ଙ୍କୁ) ଅବିଶ୍ୱାସ କରୁଅଛ ଯେ କି ପୃଥିବୀକୁ ଦୁଇଗୋଟି[1] ଅବଧିରେ ସୃଷ୍ଟି କରିଛନ୍ତି ଏବଂ ତାହାଙ୍କର ସମକକ୍ଷ ସ୍ଥିର କରୁଅଛ ?" ସେ ସମସ୍ତ ଜଗତର ପାଳନକର୍ତ୍ତା ।

وَجَعَلَ فِيْهَا رَوَاسِيَ مِنْ فَوْقِهَا وَبٰرَكَ فِيْهَا وَقَدَّرَ فِيْهَآ اَقْوَاتَهَا فِيْٓ اَرْبَعَةِ اَيَّامٍ ۗ سَوَآءً لِّلسَّآئِلِيْنَ ﴿١١﴾

୧୧. ଏବଂ ସେ ପୃଥିବୀ ପୃଷ୍ଠରେ ପର୍ବତ ସ୍ଥାପନ କରିଛନ୍ତି, ଓ ସେଥିରେ ଅଶେଷ କଲ୍ୟାଣ ରଖିଛନ୍ତି ; ଏବଂ ଏହାର ବାସିନ୍ଦାମାନଙ୍କ ପାଇଁ ଖାଦ୍ୟ ଓ ପାନୀୟ[2] ନିମନ୍ତେ ପ୍ରତ୍ୟେକ ଦ୍ରବ୍ୟକୁ ଆବଶ୍ୟକ ପରିମାଣରେ ସୃଷ୍ଟି କରିଛନ୍ତି ; ଏ ସବୁ[3] ଚାରିଗୋଟି ଅବଧିରେ (ସୃଷ୍ଟି) କରିଛନ୍ତି ; ଏହି ବିଷୟ ସମସ୍ତ ଅନୁସନ୍ଧିତ୍ସୁଙ୍କ ପାଇଁ ସମାନ ଅଟେ ।

---

୧. ଏହାର ଦୈର୍ଘ୍ୟ କେତେ କଳନା କରିବା ସମ୍ଭବ ନୁହେଁ । ତାହା ବହୁ ସହସ୍ର ବର୍ଷ ହୋଇପାରେ । ପବିତ୍ର କୋରାନରେ 'ୟୋମ' ର ଦୈର୍ଘ୍ୟ ଏକ ହଜାର ବର୍ଷ (୨୨: ୪୮ ଦ୍ରଷ୍ଟବ୍ୟ) ଓ ଏପରିକି ଅନ୍ୟତ୍ର ପଚାଶ ହଜାର ବର୍ଷ (୭୦: ୫ ଦ୍ରଷ୍ଟବ୍ୟ) ବୋଲି ଉଲ୍ଲେଖ ଅଛି । ଦୁଇଗୋଟି କାଳାବଧି ମଧ୍ୟରେ ପୃଥିବୀର ସୃଷ୍ଟି ଏପରି ଦୁଇଟି ପର୍ଯ୍ୟାୟକୁ ସୂଚାଉଛି ଯାହା ମଧ୍ୟ ଦେଇ ପୃଥିବୀର କ୍ରମବିକାଶ ହୋଇଛି; ଏକ ଆକାରହୀନ ବସ୍ତୁ କ୍ରମଶଃ ଶୀତଳ ହୋଇ ଘନୀଭୂତ ହେବା ପରେ ସାମ୍ପ୍ରତିକ ଆକାର ଧାରଣ କରିଛି । ପରବର୍ତ୍ତୀ ଆୟତରେ ଯେଉଁ ଚାରିଗୋଟି କାଳାବଧିର ଉଲ୍ଲେଖ ଅଛି ତା' ମଧ୍ୟରେ ଆଲୋଚ୍ୟ ଦୁଇଗୋଟି କାଳାବଧି ସାମିଲ ହୋଇଛି । ଏହି ଅତିରିକ୍ତ ଦୁଇ ଗୋଟି କାଳାବଧି ମଧ୍ୟରେ ଅଲ୍ଲାହ୍ ପର୍ବତ ସ୍ଥାପନ କରିଛନ୍ତି, ନଦୀ ପ୍ରବାହିତ କରାଇଛନ୍ତି ତଥା ଉଦ୍ଭିଦ ଓ ପ୍ରାଣୀ ଜଗତର ସୃଷ୍ଟି କରିଛନ୍ତି ।

୨. କେତେକ ଭାଷ୍ୟକାରଙ୍କ ମତରେ ଏହି ଆୟତରେ ସୂଚନା ଦିଆଯାଇଛି ଯେ, ଭବିଷ୍ୟତରେ କୌଣସି ଏକ ସମୟରେ ପୃଥିବୀ ଆବଶ୍ୟକ ପରିମାଣର ଶସ୍ୟ ଉତ୍ପାଦନ କରିବାକୁ ଆଉ ଯୋଗ୍ୟ ବିବେଚିତ ହେବ ନାହିଁ, କିନ୍ତୁ ଅଲ୍ଲାହ୍ ଏହି ଧାରଣାକୁ ଖଣ୍ଡନ କରୁଛନ୍ତି । ସେ କହୁଛନ୍ତି 'ଆମ୍ଭେ ଭୂମିକୁ ଏପରି ଶକ୍ତି ପ୍ରଦାନ କରିଛୁ ଯେ ତାହା ଆବଶ୍ୟକତା ଅନୁସାରେ ଖାଦ୍ୟ ଶସ୍ୟ ଉପୁଜାଇବ – ଭୂମିରୁ ହେଉ କି ନୂତନ ଖାଦ୍ୟ ପଦାର୍ଥ ଅନ୍ୱେଷଣ କରି ହେଉ ଅଥବା ସୂର୍ଯ୍ୟ କିରଣର ସହାୟତା କ୍ରମେ ହେଉ ।'

୩. ଅର୍ଥାତ୍ ପ୍ରଶ୍ନକର୍ତ୍ତାଙ୍କ ପାଇଁ ଆମର ଏଇ ଗୋଟିଏ ଉତ୍ତର, କାରଣ ବିଭିନ୍ନ ଦେଶରେ ପ୍ରାୟ ଦୁଇଶହ ବର୍ଷ ହେଲା ଖାଦ୍ୟ ସମସ୍ୟା ଉପରେ ଅନେକ ଆଲୋଚନା ଓ ପର୍ଯ୍ୟାଲୋଚନା ଚାଲିଛି । ତେଣୁ ଉପର୍ଯ୍ୟୁକ୍ତ ଉତ୍ତର ସମସ୍ତଙ୍କ ପାଇଁ ଅଭିପ୍ରେତ ଓ ସମସ୍ତେ ଏହାକୁ ଅନୁଧ୍ୟାନ କରିବା ବିଧେୟ ।

ثُمَّ اسْتَوٰٓى اِلَى السَّمَآءِ وَهِيَ دُخَانٌ فَقَالَ لَهَا وَلِلْاَرْضِ ائْتِيَا طَوْعًا اَوْ كَرْهًا ۭ قَالَتَآ اَتَيْنَا طَآىِٕعِيْنَ ﴿١٢﴾

୧୨. ତା'ପରେ ସେ ଆକାଶ ପ୍ରତି ଧ୍ୟାନ ଦେଲେ ଏବଂ ତାହା କେବଳ ଏକ କୁହୁଡି ସଦୃଶ ଥିଲା, ଏବଂ ସେ ତାହାକୁ ଓ ପୃଥିବୀକୁ କହିଲେ, "ତୁମେ ଦୁହେଁ ସ୍ୱେଚ୍ଛାରେ ବା ଅନିଚ୍ଛାରେ ମୋର ଆଜ୍ଞାବହ ହେବା ନିମନ୍ତେ ଆସ." ସେ ଦୁହେଁ କହିଲେ, "ଆମେମାନେ ଆଜ୍ଞାବହ ହୋଇ ଆସିଅଛୁ ।"

فَقَضٰىهُنَّ سَبْعَ سَمٰوٰتٍ فِيْ يَوْمَيْنِ وَاَوْحٰى فِيْ كُلِّ سَمَآءٍ اَمْرَهَا ۭ وَزَيَّنَّا السَّمَآءَ الدُّنْيَا بِمَصَابِيْحَ ڰ وَحِفْظًا ۭ ذٰلِكَ تَقْدِيْرُ الْعَزِيْزِ الْعَلِيْمِ ﴿١٣﴾

୧୩. ଏହାପରେ ସେ ଦୁଇଗୋଟି ଅବଧିରେ ସେମାନଙ୍କୁ ସପ୍ତ ଆକାଶରୂପେ ନିର୍ମାଣ କଲେ ; ଏବଂ ପ୍ରତ୍ୟେକ ଆକାଶରେ ଯାହା ହେବାର ଥିଲା ତାହାର ସାମର୍ଥ୍ୟ ତହିଁରେ ନ୍ୟସ୍ତ କଲେ ; ଏବଂ ଆମେ ଆକାଶର ନିମ୍ନ ଭାଗକୁ ଆଲୋକ (ଅର୍ଥାତ୍ ତାରା ଓ ନକ୍ଷତ୍ର) ଦ୍ୱାରା ସୁଶୋଭିତ କଲୁ, ଏବଂ ଏତଦ୍‌ବ୍ୟତୀତ ସୁରକ୍ଷା ପାଇଁ ମଧ୍ୟ (ଏଥିରେ ବ୍ୟବସ୍ଥା କଲୁ) ; ଏହା ପରାକ୍ରମୀ (ଓ) ସର୍ବଜ୍ଞ (ଅଲ୍ଲାହ)ଙ୍କର ନିଷ୍ପତ୍ତି ଅଟେ ।

فَاِنْ اَعْرَضُوْا فَقُلْ اَنْذَرْتُكُمْ صٰعِقَةً مِّثْلَ صٰعِقَةِ عَادٍ وَّثَمُوْدَ ﴿١٤﴾

୧୪. ଏହାପରେ ସେମାନେ ଯଦି ବିମୁଖ ହୁଅନ୍ତି, ତେବେ ତୁମେ ସେମାନଙ୍କୁ କୁହ, "ଆମେ ତୁମମାନଙ୍କୁ ଆଦ ଓ ସମୁଦ ସମ୍ପ୍ରଦାୟର ଶାସ୍ତି ସଦୃଶ ଶାସ୍ତି ସଂକ୍ରାନ୍ତରେ ସଚେତନ କରୁଅଛୁ ।"

اِذْ جَآءَتْهُمُ الرُّسُلُ مِنْۢ بَيْنِ اَيْدِيْهِمْ وَمِنْ خَلْفِهِمْ اَلَّا تَعْبُدُوْٓا اِلَّا اللّٰهَ ۭ قَالُوْا لَوْ شَآءَ رَبُّنَا لَاَنْزَلَ مَلٰۗىِٕكَةً فَاِنَّا بِمَآ اُرْسِلْتُمْ بِهٖ كٰفِرُوْنَ ﴿١٥﴾

୧୫. ଯେତେବେଳେ ସେମାନଙ୍କ ଆଗରୁ ଓ ପଛରୁ ମଧ୍ୟ ରସୁଲମାନେ ଆସିଥିଲେ (ଅର୍ଥାତ୍ ସେମାନଙ୍କ ଜାତୀୟ ଜୀବନ କାଳ ମଧ୍ୟରେ ନିରବଚ୍ଛିନ୍ନ ଭାବରେ ରସୁଲମାନେ ଆସିଥିଲେ) ଓ କହିଥିଲେ, "ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରି ଉପାସନା କର ନାହିଁ ;" ସେତେବେଳେ ସେମାନେ ଉତ୍ତର ଦେଇଥିଲେ, "ଯଦି ଆମମାନଙ୍କ ପାଳନକର୍ତ୍ତା ଇଚ୍ଛା କରିଥା'ନ୍ତେ, ତେବେ (ସେ) ନିଜେ ଆମମାନଙ୍କ ପ୍ରତି ଦେବଦୂତମାନଙ୍କୁ ଅବତୀର୍ଣ୍ଣ କରିଥା'ନ୍ତେ ; ସୁତରାଂ ଯେଉଁ ଶିକ୍ଷା ସହିତ ତୁମ୍ଭଙ୍କୁ ପ୍ରେରଣ କରାଯାଇଅଛି,ଆମେମାନେ ତାହାକୁ ପ୍ରତ୍ୟାଖ୍ୟାନ କରୁଅଛୁ ।"

فَاَمَّا عَادٌ فَاسْتَكْبَرُوْا فِي الْاَرْضِ بِغَيْرِ الْحَقِّ وَقَالُوْا مَنْ اَشَدُّ مِنَّا قُوَّةً ۭ اَوَلَمْ يَرَوْا اَنَّ اللّٰهَ الَّذِيْ خَلَقَهُمْ هُوَ اَشَدُّ مِنْهُمْ قُوَّةً ۭ وَكَانُوْا بِاٰيٰتِنَا يَجْحَدُوْنَ ﴿١٦﴾

୧୬. ଏବଂ ଆଦଙ୍କ ସମ୍ପ୍ରଦାୟ ଯଥାର୍ଥ କାରଣ ବିନା ପୃଥିବୀରେ ଅହଙ୍କାର—ପୂର୍ବକ କାର୍ଯ୍ୟ କରୁଥିଲେ ଏବଂ କହୁଥିଲେ, "ଆମମାନଙ୍କ ଅପେକ୍ଷା କିଏ ଅଧିକ ଶକ୍ତିଶାଳୀ ?" କ'ଣ ସେମାନେ ଲକ୍ଷ୍ୟ କରୁନାହାନ୍ତି ଯେ ଯେଉଁ ଅଲ୍ଲାହ ସେମାନଙ୍କୁ ସୃଷ୍ଟି କରିଅଛନ୍ତି ସେ ସେମାନଙ୍କ ଅପେକ୍ଷା ଅଧିକ ଶକ୍ତିଶାଳୀ ଅଟନ୍ତି ? ଏବଂ ସେମାନେ ଆମ୍ଭର ନିଦର୍ଶନଗୁଡ଼ିକୁ (ଜିଦ୍‌ଧରି) ଅସ୍ୱୀକାର କରୁଥିଲେ ।

୧୭. ସୁତରାଂ ଆମ୍ଭେ ସେମାନଙ୍କୁ ଏହି ସଂସାରରେ ଅପମାନଜନକ ଶାସ୍ତି ଆସ୍ୱାଦନ କରାଇବା ସକାଶେ ସେମାନଙ୍କ ପ୍ରତି ଏପରି ଏକ ଭୟଙ୍କର ବାତ୍ୟା ପ୍ରେରଣ କରିଥିଲୁ ଯାହା ଅଶୁଭ ଦିନ-ମାନଙ୍କରେ ଆସିଥିଲା ; ଏବଂ ପରକାଳ ଜୀବନର ଶାସ୍ତି ଏହାଠାରୁ ଅଧିକ ଅପମାନଜନକ ହେବ, ଏବଂ (ସେଠାରେ) ସେମାନଙ୍କୁ କୌଣସି ପ୍ରକାର ସାହାଯ୍ୟ କରାଯିବ ନାହିଁ ।

فَأَرْسَلْنَا عَلَيْهِمْ رِيحًا صَرْصَرًا فِيٓ أَيَّامٍ نَّحِسَاتٍ لِّنُذِيقَهُمْ عَذَابَ الْخِزْيِ فِي الْحَيٰوةِ الدُّنْيَا ۖ وَلَعَذَابُ الْاٰخِرَةِ أَخْزٰى ۖ وَهُمْ لَا يُنصَرُونَ ⑰

୧୮. ଏବଂ ଆମ୍ଭେ ସମୁଦ (ସମ୍ପ୍ରଦାୟ)କୁ ସତ୍‌ପଥ ପ୍ରଦର୍ଶନ କରାଇଥିଲୁ କିନ୍ତୁ ସେମାନେ ସତ୍‌ପଥ ଅପେକ୍ଷା ପଥଭ୍ରଷ୍ଟତାକୁ ଅଧିକ ପ୍ରାଧାନ୍ୟ ଦେଇଥିଲେ, ସୁତରାଂ ସେମାନଙ୍କ କର୍ମ ଯୋଗୁଁ ସେମାନଙ୍କୁ ଏକ ଅପମାନଜନକ ଶାସ୍ତି ପରିବେଷ୍ଟିତ କରିଥିଲା ।

وَأَمَّا ثَمُودُ فَهَدَيْنٰهُمْ فَاسْتَحَبُّوا الْعَمٰى عَلَى الْهُدٰى فَأَخَذَتْهُمْ صٰعِقَةُ الْعَذَابِ الْهُونِ بِمَا كَانُوا يَكْسِبُونَ ⑱

୧୯. ଏବଂ ଯେଉଁମାନେ ବିଶ୍ୱାସକାରୀ ଥିଲେ ଓ ଧର୍ମଭୀରୁ ଥିଲେ ଆମ୍ଭେ ସେମାନଙ୍କୁ ମୁକ୍ତି ଦେଇଥିଲୁ ।

وَنَجَّيْنَا الَّذِينَ اٰمَنُوا وَكَانُوا يَتَّقُونَ ⑲

ରୁ : ୩

୨୦. ଏବଂ ଯେଉଁଦିନ ଅଲ୍ଲାହ୍‌ଙ୍କର ଶତ୍ରୁ (ଅର୍ଥାତ୍ ଅବିଶ୍ୱାସକାରୀ) ମାନଙ୍କୁ (ଜୀବିତ କରି ନରକର) ଅଗ୍ନି ନିକଟକୁ ଏକତ୍ରିତ କରି ଘେନି ନିଆଯିବ ଏବଂ ସେମାନଙ୍କୁ ବିଭିନ୍ନ ଦଳରେ ବିଭକ୍ତ କରାହେବ,

وَيَوْمَ يُحْشَرُ أَعْدَآءُ اللّٰهِ إِلَى النَّارِ فَهُمْ يُوزَعُونَ ⑳

୨୧. ଏପରିକି ଯେତେବେଳେ ସେମାନେ ତାହା (ଅର୍ଥାତ୍ ସେହି ନରକ) ନିକଟରେ ପହଞ୍ଚିବେ, ସେତେବେଳେ ସେମାନଙ୍କ କର୍ଣ୍ଣ, ସେମାନଙ୍କ ଚକ୍ଷୁ ଓ ସେମାନଙ୍କ ଚର୍ମ ସେମାନେ କରିଥିବା କାର୍ଯ୍ୟ ଯୋଗୁଁ ସେମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରଦାନ କରିବେ [1] ।

حَتّٰىٓ إِذَا مَا جَآءُوهَا شَهِدَ عَلَيْهِمْ سَمْعُهُمْ وَأَبْصَارُهُمْ وَجُلُودُهُم بِمَا كَانُوا يَعْمَلُونَ ㉑

୨୨. ଏବଂ ସେମାନେ ନିଜ ଚର୍ମକୁ ପ୍ରଶ୍ନ କରିବେ, ''ତୁମେମାନେ କାହିଁକି ଆମ ବିରୁଦ୍ଧରେ ସାକ୍ଷ୍ୟ ପ୍ରଦାନ କଲ ?'' ସେମାନେ ଉତ୍ତର ଦେବେ, ''ଆମମାନଙ୍କୁ ସେହି ଅଲ୍ଲାହ୍ କୁହାଇଛନ୍ତି ଯେ କି ପ୍ରତ୍ୟେକ ବସ୍ତୁକୁ କୁହାଇଥାନ୍ତି ; ଏବଂ ସେ ହିଁ ତୁମମାନଙ୍କୁ ପ୍ରଥମ ଥର ମଧ୍ୟ ସୃଷ୍ଟି କରିଥିଲେ, ଏବଂ ପୁଣି ତାହାଙ୍କ ନିକଟକୁ ତୁମମାନଙ୍କୁ ଫେରିବାକୁ ହେବ ।''

وَقَالُوا لِجُلُودِهِمْ لِمَ شَهِدتُّمْ عَلَيْنَا ۖ قَالُوٓا أَنطَقَنَا اللّٰهُ الَّذِيٓ أَنطَقَ كُلَّ شَيْءٍ وَهُوَ خَلَقَكُمْ أَوَّلَ مَرَّةٍ وَإِلَيْهِ تُرْجَعُونَ ㉒

[1] ଦେହର ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟ ସାକ୍ଷ୍ୟ ପ୍ରଦାନ କରିଥା'ନ୍ତି (୩୬: ୬୬ ମଧ୍ୟ ଦ୍ରଷ୍ଟବ୍ୟ) ।

୨୩. "ଏବଂ ତୁମେମାନେ ନିଜର ଦୋଷତ୍ରୁଟିକୁ ଏପରି ଭୟ ଯୋଗୁଁ ଲୁକ୍କାୟିତ କରୁ ନ ଥିଲ ଯେ କାଳେ ତୁମମାନଙ୍କର କର୍ଣ୍ଣ, ତୁମମାନଙ୍କର ଚକ୍ଷୁ ଓ ତୁମମାନଙ୍କର ଚର୍ମ ତୁମମାନଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରଦାନ କରିବେ (ବରଂ ଅନ୍ୟ ଲୋକମାନଙ୍କର ଆକ୍ଷେପ ଭୟରେ ଏପରି କରୁଥିଲ) ; ବସ୍ତୁତଃ ତୁମେମାନେ ଧାରଣା କରିଥିଲ ଯେ ତୁମମାନଙ୍କର ଅଧିକାଂଶ କର୍ମ ଅଲ୍ଲାହ୍‌ଙ୍କୁ ଅଗୋଚର ଥିଲା [୧] ।

وَمَا كُنْتُمْ تَسْتَتِرُوْنَ اَنْ يَّشْهَدَ عَلَيْكُمْ سَمْعُكُمْ وَلَآ اَبْصَارُكُمْ وَلَا جُلُوْدُكُمْ وَلٰكِنْ ظَنَنْتُمْ اَنَّ اللّٰهَ لَا يَعْلَمُ كَثِيْرًا مِّمَّا تَعْمَلُوْنَ ﴿٢٣﴾

୨୪. "ଏବଂ ତୁମେମାନେ ନିଜ ପାଳନକର୍ତ୍ତାଙ୍କ ସମ୍ବନ୍ଧରେ ଯେଉଁ ମନ୍ଦ ଧାରଣା ପୋଷଣ କରିଥିଲ, ତାହା ହିଁ ତୁମମାନଙ୍କୁ ବିନଷ୍ଟ କରିଥିଲା ; ଏବଂ ତୁମେମାନେ କ୍ଷତିଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଥିଲ ।"

وَذٰلِكُمْ ظَنُّكُمُ الَّذِيْ ظَنَنْتُمْ بِرَبِّكُمْ اَرْدٰىكُمْ فَاَصْبَحْتُمْ مِّنَ الْخٰسِرِيْنَ ﴿٢٤﴾

୨୫. ସୁତରାଂ ଯଦି ସେମାନେ ଧୈର୍ଯ୍ୟ ଧାରଣ କରିବେ, ତେବେ ସେମାନଙ୍କ ବାସସ୍ଥାନ (ନରକର) ଅଗ୍ନି ହେବ ; ଏବଂ ଯଦି ସେମାନେ ଅଲ୍ଲାହ୍‌ଙ୍କ ସମୀପରେ ଉପସ୍ଥିତ ହେବାକୁ ଇଛା କରିବେ, ତେବେ ସେମାନଙ୍କୁ ଅଲ୍ଲାହ୍‌ଙ୍କ ସମୀପରେ ଉପସ୍ଥିତ ହେବାକୁ ଅନୁମତି ଦିଆଯିବ ନାହିଁ ।

فَاِنْ يَّصْبِرُوْا فَالنَّارُ مَثْوًى لَّهُمْ وَاِنْ يَّسْتَعْتِبُوْا فَمَا هُمْ مِّنَ الْمُعْتَبِيْنَ ﴿٢٥﴾

୨୬. ଏବଂ ଆମେ ସେମାନଙ୍କ ସହିତ ଏପରି କେତେକ ସହଚର ନିଯୁକ୍ତ କରିଥିଲୁ ଯେଉଁମାନେ ସେମାନଙ୍କ କର୍ମକୁ ସେମାନଙ୍କ ପାଇଁ ସୁଶୋଭିତ କରି ଦେଖାଇଥିଲେ, ଏବଂ ସେମାନଙ୍କ ପୂର୍ବରୁ ଜିନ୍ନ ଓ ମାନବ ସମ୍ପ୍ରଦାୟ ପ୍ରତି ଯେଉଁ ଆଦେଶ ଜାରି କରାଯାଇଥିଲା ତାହା ସେମାନଙ୍କ ଉପରେ ମଧ୍ୟ ଜାରି କରାଗଲା ; ବାସ୍ତବରେ ସେମାନେ କ୍ଷତିଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହେବେ ।

وَقَيَّضْنَا لَهُمْ قُرَنَآءَ فَزَيَّنُوْا لَهُمْ مَّا بَيْنَ اَيْدِيْهِمْ وَمَا خَلْفَهُمْ وَحَقَّ عَلَيْهِمُ الْقَوْلُ فِيْٓ اُمَمٍ قَدْ خَلَتْ مِنْ قَبْلِهِمْ مِّنَ الْجِنِّ وَالْاِنْسِ ۚ اِنَّهُمْ كَانُوْا خٰسِرِيْنَ ﴿٢٦﴾ ع

ରୁ : ୪

୨୭. ଏବଂ ଅବିଶ୍ୱାସକାରୀମାନେ କହିଲେ, "ଏହି କୋରାନର ଶିକ୍ଷାକୁ ଶୁଣ ନାହିଁ ; ଏବଂ ଏହାକୁ ଶୁଣାଇଲା ବେଳେ ପାଟିତୁଣ୍ଡ କର, ଯଦ୍ଦ୍ୱାରା ତୁମେମାନେ ବିଜୟୀ ହେବ ।

وَقَالَ الَّذِيْنَ كَفَرُوْا لَا تَسْمَعُوْا لِهٰذَا الْقُرْاٰنِ وَالْغَوْا فِيْهِ لَعَلَّكُمْ تَغْلِبُوْنَ ﴿٢٧﴾

---

୧. ତୁମେମାନେ ନିର୍ଭୟରେ ଏଥିଯୋଗୁଁ ପାପ କାର୍ଯ୍ୟ କରୁଅଛ ଯେ ତୁମମାନଙ୍କ ବିରୁଦ୍ଧରେ ସାକ୍ଷ୍ୟଦେବାକୁ କେହି ନାହାନ୍ତି ।

୨୮. ସୁତରାଂ ଏହାର ପରିଣାମ ସ୍ୱରୂପ ଆମେ ଅବିଶ୍ୱାସକାରୀମାନଙ୍କୁ ନିଶ୍ଚୟ କଠୋର ଶାସ୍ତି ଆସ୍ୱାଦନ କରାଇବୁ, ଏବଂ ସେମାନଙ୍କୁ ସେମାନଙ୍କର ନିକୃଷ୍ଟତମ କର୍ମର ପ୍ରତିଫଳ ଦେବୁ ।

فَلَنُذِيقَنَّ الَّذِينَ كَفَرُوا عَذَابًا شَدِيدًا وَّلَنَجْزِيَنَّهُمْ أَسْوَأَ الَّذِي كَانُوا يَعْمَلُونَ ﴿٢٨﴾

୨୯. (ଏବଂ) ଅଲ୍ଲାହ୍‌ଙ୍କ ଶତ୍ରୁମାନଙ୍କର ପ୍ରତିଫଳ ଏହା ହିଁ ଅଟେ ଅର୍ଥାତ୍ (ନରକର) ଅଗ୍ନି ; ସେଠାରେ ସେମାନଙ୍କୁ ଏକ ଦୀର୍ଘ-ସ୍ଥାୟୀ ବାସସ୍ଥାନ ମିଳିବ ; ଏହି ପ୍ରତିଫଳ ସେମାନଙ୍କୁ ଏଥିପାଇଁ ମିଳିବ ଯେହେତୁ ସେମାନେ ଆମର ନିଦର୍ଶନଗୁଡିକୁ ଜିଦ୍ ପୂର୍ବକ ଅସ୍ୱୀକାର କରୁଥିଲେ ।

ذٰلِكَ جَزَاءُ أَعْدَاءِ اللّٰهِ النَّارُ لَهُمْ فِيهَا دَارُ الْخُلْدِ جَزَاءً بِمَا كَانُوا بِآيَاتِنَا يَجْحَدُونَ ﴿٢٩﴾

୩୦. ଏବଂ ଅବିଶ୍ୱାସକାରୀମାନେ କହିବେ, "ହେ ଆମମାନଙ୍କ ପାଳନକର୍ତ୍ତା ! ଜିନ୍ନ ଓ ମାନବମାନଙ୍କ ମଧ୍ୟରୁ ଯେଉଁ ଲୋକମାନେ ଆମମାନଙ୍କୁ ପଥଭ୍ରଷ୍ଟ କରାଉଥିଲେ, ତୁମେ ଆମମାନଙ୍କୁ ଦେଖାଅ ତାହାହେଲେ ଆମେମାନେ ସେମାନଙ୍କୁ ନିଜ ପାଦ ତଳେ ଦଳି ଦେବୁ ଯାହାଫଳରେ ସେମାନେ ନିକୃଷ୍ଟତମ [୧] ବ୍ୟକ୍ତି ହୋଇଯିବେ ।"

وَقَالَ الَّذِينَ كَفَرُوا رَبَّنَا أَرِنَا الَّذَيْنِ أَضَلَّانَا مِنَ الْجِنِّ وَالْإِنْسِ نَجْعَلْهُمَا تَحْتَ أَقْدَامِنَا لِيَكُونَا مِنَ الْأَسْفَلِينَ ﴿٣٠﴾

୩୧. ଯେଉଁମାନେ ଏହା କହନ୍ତି ଯେ ଅଲ୍ଲାହ୍ ଆମମାନଙ୍କର ପାଳନକର୍ତ୍ତା ଓ ଏହା ପରେ ଏହି ବିଶ୍ୱାସ ଉପରେ ଅଟଳ ରହନ୍ତି, ସେମାନଙ୍କ ନିକଟରେ ଦେବଦୂତମାନେ ଅବତୀର୍ଣ୍ଣ ହୋଇ କହନ୍ତି, "ଭୟ କର ନାହିଁ ଏବଂ (ଅତୀତର କୌଣସି ତ୍ରୁଟି ପାଇଁ) ଦୁଃଖ କର ନାହିଁ, ଏବଂ ଯେଉଁ ବୈକୁଣ୍ଠ [୨] ବିଷୟରେ ତୁମମାନଙ୍କୁ ପ୍ରତିଶ୍ରୁତି ଦିଆଯାଇଥିଲା ତାହାର ପ୍ରାପ୍ତି ସଂକ୍ରାନ୍ତରେ ଆନନ୍ଦିତ ହୁଅ ।"

إِنَّ الَّذِينَ قَالُوا رَبُّنَا اللّٰهُ ثُمَّ اسْتَقَامُوا تَتَنَزَّلُ عَلَيْهِمُ الْمَلٰئِكَةُ أَلَّا تَخَافُوا وَلَا تَحْزَنُوا وَأَبْشِرُوا بِالْجَنَّةِ الَّتِي كُنْتُمْ تُوعَدُونَ ﴿٣١﴾

୩୨. "ଆମେ ଇହକାଳରେ ତଥା ପରକାଳରେ ତୁମମାନଙ୍କର ବନ୍ଧୁ ; ଏବଂ ଏହି (ବୈକୁଣ୍ଠ ଠାରେ ଯାହାକିଛି ତୁମେମାନେ ଚାହିଁବ ତାହା ତୁମମାନଙ୍କୁ ମିଳିବ ; ଏବଂ ଯାହାକିଛି ତୁମେମାନେ ମାଗିବ ତାହା ମଧ୍ୟ ତୁମମାନଙ୍କୁ ଏଠାରେ ମିଳିବ",

نَحْنُ أَوْلِيَاؤُكُمْ فِي الْحَيٰوةِ الدُّنْيَا وَفِي الْآخِرَةِ وَلَكُمْ فِيهَا مَا تَشْتَهِي أَنْفُسُكُمْ وَلَكُمْ فِيهَا مَا تَدَّعُونَ ﴿٣٢﴾

---

୧. ଯେହେତୁ ସଂସାରରେ ବିଭ୍ରାନ୍ତକାରୀ ଲୋକମାନେ ଅତ୍ୟନ୍ତ ସମ୍ମାନାସ୍ପଦ ବିବେଚିତ ହୁଅନ୍ତି ତେଣୁ କୟାମତ ଦିନ ଯେଉଁ ହୀନ ଲୋକମାନେ ସେମାନଙ୍କର ଅନୁଗତ ଥିଲେ ସେମାନେ ନିବେଦନ କରିବେ ଯେ ଅଲ୍ଲାହ୍ ସେହି ବିଭ୍ରାନ୍ତକାରୀମାନଙ୍କୁ ସେମାନଙ୍କ ନିକଟରେ ଛାଡି ଦିଅନ୍ତୁ ତା'ହେଲେ ସେମାନେ ସେମାନଙ୍କୁ ପାଦରେ ଦଳି ଦେବେ । ଫଳରେ ସେମାନଙ୍କର ସକଳ ସମ୍ମାନ ଲୋପ ହେବ ଏବଂ ସେମାନେ ନିକୃଷ୍ଟତମ ବ୍ୟକ୍ତି ଭାବରେ ଗଣ୍ୟ ହେବେ ।

୨. ପବିତ୍ର କୋରାନରେ ଉଭୟ ଇହଲୋକ ଓ ପରଲୋକର ବୈକୁଣ୍ଠ ବିଷୟ ବର୍ଣ୍ଣନା କରାଯାଇଛି । ଏଠାରେ ବୈକୁଣ୍ଠର ଅର୍ଥ ଉଭୟ ପ୍ରକାର ବୈକୁଣ୍ଠ ।

ع نُزُلًا مِّنْ غَفُورٍ رَّحِيمٍ ﴿٣٣﴾

୩୩. "(କାରଣ) ଏହା ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ (ଅଲ୍ଲାହ)ଙ୍କ ତରଫରୁ ଆତିଥ୍ୟ ସ୍ୱରୂପ ହେବ ।"

ରୁ : ୫

وَمَنْ أَحْسَنُ قَوْلًا مِّمَّن دَعَا إِلَى اللَّهِ وَعَمِلَ صَالِحًا وَقَالَ إِنَّنِي مِنَ الْمُسْلِمِينَ ﴿٣٤﴾

୩୪. ଏବଂ ଏହାଠାରୁ ଅଧିକ ଉତ୍ତମ କଥା କାହାର ହେବ ଯେ କି ଲୋକମାନଙ୍କୁ ଅଲ୍ଲାହଙ୍କ ଆଡ଼କୁ ଡାକେ ଓ ନିଜ ବିଶ୍ୱାସ ମୁତାବକ କାର୍ଯ୍ୟ କରେ ଓ କହେ, "ମୁଁ ଆତ୍ମସମର୍ପଣକାରୀମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।"

وَلَا تَسْتَوِي الْحَسَنَةُ وَلَا السَّيِّئَةُ ۚ ادْفَعْ بِالَّتِي هِيَ أَحْسَنُ فَإِذَا الَّذِي بَيْنَكَ وَبَيْنَهُ عَدَاوَةٌ كَأَنَّهُ وَلِيٌّ حَمِيمٌ ﴿٣٥﴾

୩୫. ଏବଂ ପୁଣ୍ୟ ଓ ପାପ ସମାନ ହୋଇ ନ ପାରେ ; ଏବଂ ତୁମେ ମନ୍ଦ କାର୍ଯ୍ୟର ଉତ୍ତର ଅତି ଉତ୍ତମ ବ୍ୟବହାର ଦ୍ୱାରା ଦିଅ ; ଯାହାଫଳରେ ଯେଉଁ ବ୍ୟକ୍ତିର ତୁମ ସହିତ ଶତ୍ରୁତା ଥିଲା ସେ ତୁମର ଉତ୍ତମ ବ୍ୟବହାରକୁ ଦେଖି ତୁମର ଅନ୍ତରଙ୍ଗ ବନ୍ଧୁ ହୋଇଯିବ ।

وَمَا يُلَقَّاهَا إِلَّا الَّذِينَ صَبَرُوا وَمَا يُلَقَّاهَا إِلَّا ذُو حَظٍّ عَظِيمٍ ﴿٣٦﴾

୩୬. ଏବଂ (ଅତ୍ୟାଚ୍ଚରିତ ହେବା ସତ୍ତ୍ୱେ) ଏ (ଭଳି ବ୍ୟବହାର-ଜନିତ) ସୁଯୋଗ କେବଳ ସେହିମାନଙ୍କୁ ମିଳେ ଯେଉଁମାନେ ଅତ୍ୟନ୍ତ ଧୈର୍ଯ୍ୟଶୀଳ ; ଅଥବା ସେମାନଙ୍କୁ ମିଳେ ଯେଉଁମାନଙ୍କୁ (ଅଲ୍ଲାହଙ୍କ ତରଫରୁ ପୁଣ୍ୟର) ଏକ ବଡ଼ ଅଂଶ ପ୍ରାପ୍ତ ହୋଇଥାଏ ।

وَإِمَّا يَنزَغَنَّكَ مِنَ الشَّيْطَانِ نَزْغٌ فَاسْتَعِذْ بِاللَّهِ ۖ إِنَّهُ هُوَ السَّمِيعُ الْعَلِيمُ ﴿٣٧﴾

୩୭. ଏବଂ ଯଦି ସଇତାନ (ଅର୍ଥାତ୍ ସତ୍ୟରୁ ବିଚ୍ୟୁତ ହୋଇଥିବା ବ୍ୟକ୍ତି) ତୁମକୁ ଦୁଃଖ ଦିଏ, ତେବେ (ତୁରନ୍ତ ତା'ର ପ୍ରତିଶୋଧ ନେବାକୁ ଆଗଭର ନ ହୋଇ ବରଂ) ଅଲ୍ଲାହଙ୍କ ଠାରେ ଶରଣ ଭିକ୍ଷା କର ; (ଯଦ୍ଦ୍ୱାରା ସେ ତୁମକୁ ଏହି ନୀଚ ବ୍ୟବହାରରୁ ରକ୍ଷା କରିବେ) ; ଅଲ୍ଲାହ ହିଁ ବାସ୍ତବରେ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

وَمِنْ آيَاتِهِ اللَّيْلُ وَالنَّهَارُ وَالشَّمْسُ وَالْقَمَرُ ۚ لَا تَسْجُدُوا لِلشَّمْسِ وَلَا لِلْقَمَرِ وَاسْجُدُوا لِلَّهِ الَّذِي خَلَقَهُنَّ إِن كُنتُمْ إِيَّاهُ تَعْبُدُونَ ﴿٣٨﴾

୩୮. ଏବଂ ତାହାଙ୍କ ନିଦର୍ଶନମାନଙ୍କ ମଧ୍ୟରେ ରାତି ଓ ଦିନ ତଥା ସୂର୍ଯ୍ୟ ଓ ଚନ୍ଦ୍ର ମଧ୍ୟ ରହିଅଛି ; ସୂର୍ଯ୍ୟଙ୍କୁ ସିଜଦା କର ନାହିଁ କି ଚନ୍ଦ୍ରକୁ, ବରଂ କେବଳ ଅଲ୍ଲାହଙ୍କୁ ସିଜଦା କର ଯେ ଏ ଉଭୟଙ୍କୁ ସୃଷ୍ଟି କରିଛନ୍ତି ; ଯଦି ତୁମେ ବାସ୍ତବରେ ଏକ ଅଲ୍ଲାହଙ୍କ ପ୍ରତି ବିଶ୍ୱାସ କରୁଥାଅ ।

୩୯. ଏହାପରେ ଯଦି ସେମାନେ ଅହଙ୍କାର କରନ୍ତି, ତେବେ ମନେରଖ ଯେ ଯେଉଁମାନେ ତୁମ ପାଳନକର୍ତ୍ତାଙ୍କ ସାମୀପ୍ୟ ଲାଭ କରିଛନ୍ତି, ସେମାନେ ଦିନରାତି ତାହାଙ୍କର ଗୁଣଗାନ କରୁଥାନ୍ତି, ଏବଂ ସେମାନେ କଦାଚିତ୍ କ୍ଲାନ୍ତ ହୁଅନ୍ତି ନାହିଁ ।

فَإِنِ اسْتَكْبَرُوا فَالَّذِينَ عِنْدَ رَبِّكَ يُسَبِّحُونَ لَهُ بِاللَّيْلِ وَالنَّهَارِ وَهُمْ لَا يَسْأَمُونَ ۩ ﴿٣٩﴾

୪୦. ଏବଂ ତାହାଙ୍କ ନିଦର୍ଶନମାନଙ୍କ ମଧ୍ୟରୁ (ଗୋଟିଏ ନିଦର୍ଶନ) ଏହା ମଧ୍ୟ ଅଟେ ଯେ, ତୁମେ ଭୂପୃଷ୍ଠକୁ (ବେଳେ ବେଳେ) ଶୁଷ୍କ ଦେଖୁଅଛ ; ତା'ପରେ ଯେବେ ଆମେ ତାହା ଉପରେ ଜଳ ବୃଷ୍ଟି କରାଉ, ତେବେ ତାହା ଏକ ନୂତନ ଜୀବନ ପାଏ ଏବଂ (ସବୁଜିମାକୁ) ଖୁବ୍ ବୃଦ୍ଧି କରାଏ ; ଯେ(ଅଲ୍ଲାହ) ଏହି ଭୂପୃଷ୍ଠକୁ ଜୀବିତ କରନ୍ତି ସେ ନିଶ୍ଚୟ ମୃତ (ବ୍ୟକ୍ତି) ମାନଙ୍କୁ ମଧ୍ୟ ଜୀବିତ କରିବେ ; ସେ ସକଳ ବିଷୟ କରିବାକୁ ସକ୍ଷମ ।

وَمِنْ آيَاتِهِ أَنَّكَ تَرَى الْأَرْضَ خَاشِعَةً فَإِذَا أَنْزَلْنَا عَلَيْهَا الْمَاءَ اهْتَزَّتْ وَرَبَتْ ۚ إِنَّ الَّذِي أَحْيَاهَا لَمُحْيِي الْمَوْتَىٰ ۚ إِنَّهُ عَلَىٰ كُلِّ شَيْءٍ قَدِيرٌ ﴿٤٠﴾

୪୧. ଯେଉଁମାନେ ଆମର ଆୟତଗୁଡିକ ମଧ୍ୟରୁ ବିକୃତ ଅର୍ଥ ବାହାର କରନ୍ତି, ସେମାନେ ଆମ ନିକଟରେ ଲୁକ୍କାୟିତ ନୁହନ୍ତି ; କ'ଣ ଯେଉଁବ୍ୟକ୍ତି ନରକରେ ନିକ୍ଷିପ୍ତ ହେବ ସେ ଅଧିକ ଭଲ ନା ଯେଉଁ ବ୍ୟକ୍ତି କୟାମତ ଦିନ ଶାନ୍ତିରେ (ଆମ ନିକଟକୁ) ଆସିବ, (ସେ ଭଲ ? ହେ ଲୋକମାନେ !) ଯାହା ଇଚ୍ଛା[1] ତାହା କର ; ଅଲ୍ଲାହ ତୁମମାନଙ୍କର କର୍ମକୁ ଭଲରୂପେ ଦେଖନ୍ତି ।

إِنَّ الَّذِينَ يُلْحِدُونَ فِي آيَاتِنَا لَا يَخْفَوْنَ عَلَيْنَا ۗ أَفَمَنْ يُلْقَىٰ فِي النَّارِ خَيْرٌ أَمْ مَنْ يَأْتِي آمِنًا يَوْمَ الْقِيَامَةِ ۚ اعْمَلُوا مَا شِئْتُمْ ۖ إِنَّهُ بِمَا تَعْمَلُونَ بَصِيرٌ ﴿٤١﴾

୪୨. ଯେଉଁମାନେ ସେମାନଙ୍କ ନିକଟକୁ ଆସିଥିବା ଏହି ସ୍ମାରକକୁ (ଅର୍ଥାତ୍ ପବିତ୍ର କୋରାନକୁ) ଯାହା ଏକ ସମ୍ମାନନୀୟ ଗ୍ରନ୍ଥ ଅଟେ ପ୍ରତ୍ୟାଖ୍ୟାନ କରନ୍ତି (ସେମାନେ ନିଜେ ନିଜର କ୍ଷତି ସାଧନ କରନ୍ତି) ।

إِنَّ الَّذِينَ كَفَرُوا بِالذِّكْرِ لَمَّا جَاءَهُمْ ۖ وَإِنَّهُ لَكِتَابٌ عَزِيزٌ ﴿٤٢﴾

୪୩. ମିଥ୍ୟା ଏହାର ସମ୍ମୁଖରୁ[2] ବା ପଶ୍ଚାତରୁ ଆସି ପାରିବ ନାହିଁ ; ଏହା ତତ୍ତ୍ୱଜ୍ଞ (ଓ) ପ୍ରଶଂସିତ (ଅଲ୍ଲାହ)ଙ୍କ ଠାରୁ ଅବତୀର୍ଣ୍ଣ ହୋଇଅଛି ।

لَا يَأْتِيهِ الْبَاطِلُ مِنْ بَيْنِ يَدَيْهِ وَلَا مِنْ خَلْفِهِ ۖ تَنْزِيلٌ مِنْ حَكِيمٍ حَمِيدٍ ﴿٤٣﴾

୪୪. ତୁମକୁ କେବଳ ସେହି ବିଷୟ କୁହାଯାଉଅଛି ଯାହା ତୁମର ପୂର୍ବବର୍ତ୍ତୀ ରସୁଲମାନଙ୍କୁ କୁହାଯାଇଥିଲା ; ତୁମର ପାଳନକର୍ତ୍ତା ଅତ୍ୟନ୍ତ କ୍ଷମାଶୀଳ ଓ ତାହାଙ୍କର ଶାସ୍ତି ମଧ୍ୟ ଯନ୍ତ୍ରଣାଦାୟକ ଅଟେ ।

مَا يُقَالُ لَكَ إِلَّا مَا قَدْ قِيلَ لِلرُّسُلِ مِنْ قَبْلِكَ ۚ إِنَّ رَبَّكَ لَذُو مَغْفِرَةٍ وَذُو عِقَابٍ أَلِيمٍ ﴿٤٤﴾

---

୧. ଏହାର ଅର୍ଥ ନୁହେଁ ଯେ ମଣିଷ ଯାହା ଗ୍ରହିବ ତାହା କରିବ ଓ ତା' ଉପରେ କାହାରି ନିୟନ୍ତ୍ରଣ ନାହିଁ । ପାପ କାର୍ଯ୍ୟ ଓ ପୁଣ୍ୟ କାର୍ଯ୍ୟ କାହାକୁ କହନ୍ତି ସେ ବିଷୟ ଅଲ୍ଲାହ ପ୍ରକାଶ କରି ଦେଇଛନ୍ତି । ତେଣୁ ପୁଣ୍ୟ କାର୍ଯ୍ୟ ବିଷୟରେ ଅବଗତ ଥାଇ ମଧ୍ୟ ଯଦି କେହି ପାପ କାର୍ଯ୍ୟ କରେ ତେବେ ସେ ନିଜେ ସେଥିପାଇଁ ଦାୟୀ ହେବ । ତା' ବିଷୟରେ ଏହାହି କୁହାଯିବ ଯେ ସେ ନିଜେ ସ୍ୱେଚ୍ଛାରେ ପାପ କରୁଛି ଅଥଚ ଏହା କଦାପି କୁହାଯିବ ନାହିଁ ଯେ ତାକୁ ପାପ କରିବାକୁ ବାଧ୍ୟ କରାଯାଉଛି ।

୨. ପବିତ୍ର କୋରାନ ଏପରି ଏକ ଗ୍ରନ୍ଥ ଯେ ତା' ଆଗରେ ମିଥ୍ୟା ଦଣ୍ଡାୟମାନ ହୋଇ ପାରିବ ନାହିଁ । ତଦନ୍ତର୍ଗତ ଶିକ୍ଷାକୁ ପ୍ରୟୋଗ କରାଗଲେ ମିଥ୍ୟା କୌଣସି ସହାୟତା ପାଇବ ନାହିଁ କାରଣ ଏହି ଶିକ୍ଷାକୁ ଯିଏ ଅବତରଣ କରାଇଛନ୍ତି ସେ ହେଉଛନ୍ତି ତତ୍ତ୍ୱଜ୍ଞ ଓ ଅଶେଷ ପ୍ରଶଂସନୀୟ ଅଲ୍ଲାହ ।

୪୫. ଏବଂ ଯଦି ଆମେ ଏହି କୋରାନକୁ ଅଣ-ଆରବୀ [୧] (ଭାଷାରେ ଅବତୀର୍ଣ୍ଣ) କରିଥା'ନ୍ତୁ ତେବେ ସେ (ମକ୍କାବାସୀ)ମାନେ କହି ପାରିଥା'ନ୍ତେ ଯେ ଏହାର ଆୟତଗୁଡିକ କାହିଁକି ସ୍ପଷ୍ଟ ଭାବରେ ବର୍ଣ୍ଣନା କରାଯାଇ ନାହିଁ ? କ'ଣ ଅଣ-ଆରବୀ ଭାଷା ଓ ଆରବୀୟ ନବିଙ୍କ ମଧ୍ୟରେ କିଛି ସାମଞ୍ଜସ୍ୟ ଅଛି ? ତୁମେ କୁହ, "ତାହା ବିଶ୍ୱାସକାରୀମାନଙ୍କ ସକାଶେ ସତ୍‌ପଥ ପ୍ରଦର୍ଶକ ଓ ଆରୋଗ୍ୟକାରୀ [୨] ଅଟେ (ଅର୍ଥାତ୍ ଏହା ଆରବୀ ଭାଷାରେ ଅବତୀର୍ଣ୍ଣ ହୋଇ ଥିବାରୁ ମକ୍କାବାସୀମାନେ ଏହାକୁ ବୁଝିପାରନ୍ତି) ; ଏବଂ ଯେଉଁମାନେ ବିଶ୍ୱାସ କରୁନାହାନ୍ତି ସେମାନଙ୍କ କାନ ବଧିର ଅଟେ, ଏବଂ ତାହା (ଅର୍ଥାତ୍ ତାହାର ବାସ୍ତବତା) ସେମାନଙ୍କ ପାଇଁ ଗୋପନୀୟ ଅଟେ ; ସେମାନେ ଏପରି ଅଟନ୍ତି ସତେ ଯେପରି ସେମାନଙ୍କୁ ଏକ ଦୂରବର୍ତ୍ତୀ ସ୍ଥାନରୁ [୩] ଡକା ଯାଉଅଛି ।

وَلَوْ جَعَلْنٰهُ قُرْاٰنًا اَعْجَمِيًّا لَّقَالُوْا لَوْلَا فُصِّلَتْ اٰيٰتُهٗ ؕ ءَاَعْجَمِيٌّ وَّعَرَبِيٌّ ؕ قُلْ هُوَ لِلَّذِيْنَ اٰمَنُوْا هُدًى وَّشِفَآءٌ ؕ وَالَّذِيْنَ لَا يُؤْمِنُوْنَ فِيْۤ اٰذَانِهِمْ وَقْرٌ وَّهُوَ عَلَيْهِمْ عَمًى ؕ اُولٰٓئِكَ يُنَادَوْنَ مِنْ مَّكَانٍۭ بَعِيْدٍ ﴿٤٥﴾ ع

ରୁ : ୬

୪୬. ଏବଂ ଆମେ ମୁସାଙ୍କୁ ମଧ୍ୟ ଏକ (ମହାନ୍) ଗ୍ରନ୍ଥ ଦେଇଥିଲୁ ; ଏବଂ ଏ ସଂକ୍ରାନ୍ତରେ ମଧ୍ୟ ଭିନ୍ନ ମତ ପୋଷଣ କରାଯାଇଥିଲା ; ଏବଂ ଯଦି ଗୋଟିଏ କଥା ତୁମ ପାଳନକର୍ତ୍ତାଙ୍କ ତରଫରୁ ପୂର୍ବରୁ ହୋଇ ସାରି ନ ଥାଆନ୍ତା, ତେବେ ସେମାନଙ୍କ ସଂକ୍ରାନ୍ତରେ କେବେ ଠାରୁ ନିଷ୍ପତ୍ତି ହୋଇ ଯାଇଥା'ନ୍ତା ; ସେମାନେ ଏ (କୋରାନ) ସଂକ୍ରାନ୍ତରେ ଏପରି ଏକ ସନ୍ଦେହର ବଶବର୍ତ୍ତୀ ହୋଇଛନ୍ତି ଯାହା ସେମାନଙ୍କ ଶାନ୍ତିକୁ ବ୍ୟାହତ କରିଥାଏ (ଅର୍ଥାତ୍ ସେମାନେ ସନ୍ଦେହର ବଶବର୍ତ୍ତୀ ହୋଇ ଏ ବିଷୟରେ ଚିନ୍ତା କରନ୍ତି ନାହିଁ) ।

وَلَقَدْ اٰتَيْنَا مُوْسَى الْكِتٰبَ فَاخْتُلِفَ فِيْهِ ؕ وَلَوْلَا كَلِمَةٌ سَبَقَتْ مِنْ رَّبِّكَ لَقُضِيَ بَيْنَهُمْ ؕ وَاِنَّهُمْ لَفِيْ شَكٍّ مِّنْهُ مُرِيْبٍ ﴿٤٦﴾

୪୭. ଯେଉଁ ବ୍ୟକ୍ତି ବିଶ୍ୱାସ ମୁତାବକ କାର୍ଯ୍ୟ କରେ ସେ ତାହାର ଲାଭ ପାଏ ; ଏବଂ ଯେ କୁକର୍ମ କରେ ସେ ତାହାର ଶାସ୍ତି ଭୋଗ କରେ ; ଏବଂ ତୁମ ପାଳନକର୍ତ୍ତା ନିଜ ଭକ୍ତମାନଙ୍କ ପ୍ରତି କୌଣସି ଅତ୍ୟାଚାର କରନ୍ତି ନାହିଁ ।

مَنْ عَمِلَ صَالِحًا فَلِنَفْسِهٖ وَمَنْ اَسَآءَ فَعَلَيْهَا ؕ وَمَا رَبُّكَ بِظَلَّامٍ لِّلْعَبِيْدِ ﴿٤٧﴾

୧. 'ଅଜମ' ଅର୍ଥ ମୂକ । ଏହି ଶବ୍ଦକୁ ଆରବ ଦେଶର ଲୋକମାନେ ଅଣଆରବୀୟମାନଙ୍କ ପ୍ରତି ପ୍ରୟୋଗ କରିଥା'ନ୍ତି ଓ କହନ୍ତି ଯେ ଯେଉଁ ଭାଷାରେ ସାହିତ୍ୟିକ ମହତ୍ତ୍ୱ ଅତି ଅଳ୍ପ ତାହା ଏହି ଶବ୍ଦର ପରିସରଭୁକ୍ତ ।

୨. ଏହାର ଅଭିପ୍ରାୟ ହେଉଛି ଯେ ଯେଉଁ ଅବତାରଙ୍କ ଆଗମନ ସାରା ସଂସାର ପାଇଁ ଉଦ୍ଦିଷ୍ଟ ଥିଲା, ତାହାଙ୍କର ଆବିର୍ଭାବ କୌଣସି ଏକ ଦେଶରେ ହେବା ନିଶ୍ଚିତ ଏବଂ ସେ ପ୍ରାରମ୍ଭରେ ଗୋଟିଏ ଜାତିକୁ ହିଁ ସମ୍ବୋଧନ କରିବା ଏକ ସ୍ୱାଭାବିକ ବିଷୟ । ତେଣୁ ଅନ୍ୟାନ୍ୟ ଜାତି ସେହି ପ୍ରଥମୋକ୍ତ ଜାତିଠାରୁ ଶିକ୍ଷାଗ୍ରହଣ କରି ସାରା ସଂସାରରେ ବିସ୍ତାରିତ ହେବା କଥା । ତେଣୁ କୁହାଯାଉଛି ଯେ ଯେହେତୁ ହଜରତ ମହମ୍ମଦ ଆରବ ଦେଶରେ ଜନ୍ମ ଗ୍ରହଣ କରିଥିଲେ, ତେଣୁ ଅଲ୍ଲାହ କୋରାନକୁ ଆରବୀ ଭାଷାରେ ଅବତୀର୍ଣ୍ଣ କରିଛନ୍ତି । ଫଳରେ ଯେଉଁ ମକ୍କାବାସୀ ଏହି ଶିକ୍ଷା ଉପରେ ବିଶ୍ୱାସ କରିବେ ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଲାଭହେବ ଓ ସେମାନେ ଆରୋଗ୍ୟ ଲାଭ କରିବେ । ପରେ ସେମାନଙ୍କଠାରୁ ଅନ୍ୟମାନେ ଲାଭବାନ୍ ହେବେ ।

୩. ଯେଉଁ ବ୍ୟକ୍ତି ଦୂରରେ ଥାଏ ଓ ତତ୍‌ସହିତ ଦୃଷ୍ଟିହୀନ ମଧ୍ୟ ଥାଏ ତାହାକୁ ଉପଦେଶ ଦେବା ଏକ ଦୁରୂହ ବ୍ୟାପାର । ଦୂରରେ ଥିବାରୁ ସେ ଶୁଣି ପାରେ ନାହିଁ କି ଦୃଷ୍ଟିହୀନତା ଯୋଗୁଁ ସେ କୌଣସି ସଙ୍କେତକୁ ମଧ୍ୟ ଦେଖି ପାରେ ନାହିଁ ।

## ଭାଗ–୨୫

୪୮. କୟାମତ ସମ୍ପର୍କିତ ଜ୍ଞାନ ତାହାଙ୍କ ନିକଟକୁ ଫେରାଇ ଦିଆଯାଏ (ଅର୍ଥାତ୍ କୟାମତ ବିଷୟକ ସମ୍ପୂର୍ଣ୍ଣ ଜ୍ଞାନ ଅଲ୍ଲାହଙ୍କୁ ହିଁ ଜ୍ଞାତ); ଏବଂ ତାହାଙ୍କ ଅଜ୍ଞାତସାରରେ ବୃନ୍ତରୁ କୌଣସି ଫଳ ବାହାରେ ନାହିଁ କି କୌଣସି ନାରୀ ଗର୍ଭ ଧାରଣ କରେ ନାହିଁ କି ପ୍ରସବ କରେ ନାହିଁ; ଯେଉଁଦିନ ସେ ସେମାନଙ୍କୁ ଡାକି କହିବେ, "ଆମ୍ଭର ସମକକ୍ଷ କାହାନ୍ତି ?" ସେମାନେ କହିବେ, "ଆମେମାନେ ତୁମ୍ଭଙ୍କୁ ପରିଷ୍କାର ଭାବରେ କହିଅଛୁ ଯେ ଆମମାନଙ୍କ ମଧ୍ୟରେ କେହି ସେ ବିଷୟରେ ସାକ୍ଷୀ ନାହାନ୍ତି ।"

إِلَيْهِ يُرَدُّ عِلْمُ السَّاعَةِ ۚ وَمَا تَخْرُجُ مِن ثَمَرَاتٍ مِّنْ أَكْمَامِهَا وَمَا تَحْمِلُ مِنْ أُنثَىٰ وَلَا تَضَعُ إِلَّا بِعِلْمِهِ ۚ وَيَوْمَ يُنَادِيهِمْ أَيْنَ شُرَكَائِي قَالُوا آذَنَّاكَ مَا مِنَّا مِن شَهِيدٍ ﴿٤٨﴾

୪୯. ଏବଂ ଯେଉଁ (ଉପାସ୍ୟ) ମାନଙ୍କୁ ସେମାନେ ଏଥିପୂର୍ବରୁ ଡାକୁଥିଲେ, ସେମାନେ ସେମାନଙ୍କଠାରୁ ଅଦୃଶ୍ୟ ହୋଇଯିବେ ଏବଂ ସେମାନଙ୍କୁ ବିଶ୍ୱାସ ହୋଇଯିବ ଯେ ଏବେ ସେମାନଙ୍କର ପଳାୟନ ପାଇଁ କୌଣସି ପଥ ନାହିଁ ।

وَضَلَّ عَنْهُم مَّا كَانُوا يَدْعُونَ مِن قَبْلُ ۖ وَظَنُّوا مَا لَهُم مِّن مَّحِيصٍ ﴿٤٩﴾

୫୦. ମନୁଷ୍ୟ କଲ୍ୟାଣ ଭିକ୍ଷା କରିବାରେ କେବେ ହେଁ ଥକି ଯାଏ ନାହିଁ; କିନ୍ତୁ ଯଦି ତାହାକୁ କେବେ କଷ୍ଟ ପହଞ୍ଚେ, ତେବେ ସେ (ପୂର୍ବ ଅବସ୍ଥାକୁ ଭୁଲିଯାଇ) ନିରାଶ ହୋଇଯାଏ ।

لَّا يَسْأَمُ الْإِنسَانُ مِن دُعَاءِ الْخَيْرِ وَإِن مَّسَّهُ الشَّرُّ فَيَئُوسٌ قَنُوطٌ ﴿٥٠﴾

୫୧. ଏବଂ ଯଦି ଆମ୍ଭେ ତାହାକୁ ଦୁଃଖ ପ୍ରାପ୍ତି ପରେ କରୁଣା ଆସ୍ୱାଦନ କରାଉ, ତେବେ ସେ କହେ, "ଏହା ମୋର ପ୍ରାପ୍ୟ ଏବଂ ମୋର ବିଶ୍ୱାସ, କୟାମତ କେବେ ଆସିବ ନାହିଁ; ଏବଂ ଯଦି ମୋତେ ମୋର ପାଳନକର୍ତ୍ତାଙ୍କ ନିକଟକୁ ଫେରାଇ ମଧ୍ୟ ନିଆଯାଏ, ତେବେ ତାହାଙ୍କ ନିକଟରେ ମୋ ପାଇଁ (ଏହି ସଂସାର ଅପେକ୍ଷା) ଉତ୍ତମ ପୁରସ୍କାର ରହିଥିବ;" ଏବଂ ଆମ୍ଭେ ଅବିଶ୍ୱାସକାରୀମାନଙ୍କୁ ସେମାନଙ୍କ କର୍ମ ସଂକ୍ରାନ୍ତରେ ନିଶ୍ଚୟ ଅବଗତ କରାଇବୁ, ଏବଂ ସେମାନଙ୍କୁ ଏକ କଠୋର ଶାସ୍ତି ଆସ୍ୱାଦନ କରାଇବୁ ।

وَلَئِنْ أَذَقْنَاهُ رَحْمَةً مِّنَّا مِن بَعْدِ ضَرَّاءَ مَسَّتْهُ لَيَقُولَنَّ هَٰذَا لِي وَمَا أَظُنُّ السَّاعَةَ قَائِمَةً وَلَئِن رُّجِعْتُ إِلَىٰ رَبِّي إِنَّ لِي عِندَهُ لَلْحُسْنَىٰ ۚ فَلَنُنَبِّئَنَّ الَّذِينَ كَفَرُوا بِمَا عَمِلُوا وَلَنُذِيقَنَّهُم مِّنْ عَذَابٍ غَلِيظٍ ﴿٥١﴾

୫୨. ଏବଂ ଯେତେବେଳେ ଆମେ ମନୁଷ୍ୟଙ୍କୁ କୃପା ପ୍ରଦାନ କରିଥାଉ, ସେତେବେଳେ ସେ ମୁହଁ ଫେରାଇ ନିଏ, ଏବଂ ଆମ୍ଭ ନିକଟରୁ ଅନ୍ୟ ଆଡକୁ ଚାଲିଯାଏ; ଏବଂ ଯେବେ ତାହାକୁ କୌଣସି କଷ୍ଟ ପହଞ୍ଚେ, ତେବେ ସେ ସୁଦୀର୍ଘ ପ୍ରାର୍ଥନା କରିଥାଏ ।

وَاِذَاۤ اَنْعَمْنَا عَلَى الْاِنْسَانِ اَعْرَضَ وَنَاٰ بِجَانِبِهٖ ۚ وَاِذَا مَسَّهُ الشَّرُّ فَذُوْ دُعَآءٍ عَرِيْضٍ ﴿۵۲﴾

୫୩. ତୁମେ ସେମାନଙ୍କୁ କୁହ, "ଆଚ୍ଛା ମୋତେ କହିଲ ଭଲା, ଯଦି ଏହା (ଅର୍ଥାତ୍ ଏହି କୋରାନ) ଅଲ୍ଲାହ୍‌ଙ୍କ ନିକଟରୁ (ଅବତୀର୍ଣ୍ଣ) ହୋଇଥାଏ ଓ ତୁମେମାନେ ଏହାକୁ ପ୍ରତ୍ୟାଖ୍ୟାନ କରୁଥାଅ, ତେବେ ଯେଉଁ ବ୍ୟକ୍ତି ସତ୍ୟଠାରୁ ବହୁଦୂରକୁ ଚାଲିଯାଏ ତା'ଠାରୁ ବଳି ଅଧିକ ପଥଭ୍ରଷ୍ଟ କିଏ ହେବ ?"

قُلْ اَرَءَيْتُمْ اِنْ كَانَ مِنْ عِنْدِ اللّٰهِ ثُمَّ كَفَرْتُمْ بِهٖ مَنْ اَضَلُّ مِمَّنْ هُوَ فِيْ شِقَاقٍۭ بَعِيْدٍ ﴿۵۳﴾

୫୪. ଆମେ ସେମାନଙ୍କୁ ପୃଥିବୀର ଦିଗନ୍ତରେ ଏବଂ ସେମାନଙ୍କ ନିଜ ମଧ୍ୟରେ ଆମର ନିଦର୍ଶନଗୁଡ଼ିକୁ ନିଶ୍ଚୟ ଦେଖାଇବୁ; ପରିଶେଷରେ ଏହା ସେମାନଙ୍କ ନିକଟରେ ସୁସ୍ପଷ୍ଟ ହୋଇଯିବ ଯେ ଏହା (ଅର୍ଥାତ୍ କୋରାନ) ହିଁ ସତ୍ୟ; କ'ଣ ତୁମ୍ଭ ପାଳନକର୍ତ୍ତା ପ୍ରତ୍ୟେକ ବସ୍ତୁ ଉପରେ ସାକ୍ଷୀ ହୋଇ ରହିବା ସେମାନଙ୍କ ପକ୍ଷରେ ଯଥେଷ୍ଟ ନୁହେଁ ?

سَنُرِيْهِمْ اٰيٰتِنَا فِى الْاٰفَاقِ وَفِيْۤ اَنْفُسِهِمْ حَتّٰى يَتَبَيَّنَ لَهُمْ اَنَّهُ الْحَقُّ ؕ اَوَلَمْ يَكْفِ بِرَبِّكَ اَنَّهٗ عَلٰى كُلِّ شَيْءٍ شَهِيْدٌ ﴿۵۴﴾

୫୫. ସାବଧାନ ! ଏ ଲୋକମାନେ ନିଜ ପାଳନକର୍ତ୍ତାଙ୍କ ସହ ସାକ୍ଷାତ୍ ସମ୍ବନ୍ଧରେ ସନ୍ଦେହର ବଶବର୍ତ୍ତୀ ହୋଇଛନ୍ତି; ଶୁଣ ! ଅଲ୍ଲାହ୍ ପ୍ରତ୍ୟେକ ବସ୍ତୁକୁ ନିଜ ଅକ୍ତିଆରରେ ରଖିଛନ୍ତି (ଓ ସେ ତାହାକୁ ଧ୍ୱଂସ କରିବାକୁ ସକ୍ଷମ) ।

اَلَاۤ اِنَّهُمْ فِيْ مِرْيَةٍ مِّنْ لِّقَآءِ رَبِّهِمْ ؕ اَلَاۤ اِنَّهٗ بِكُلِّ شَيْءٍ مُّحِيْطٌ ﴿۵۵﴾

سُورَةُ الشُّورَىٰ مَكِّيَّةٌ (٤٢)

# ଅଲ-ଶୁରା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାଃ ସମେତ ୫୪ ଟି ଆୟତ ଓ ୫ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାଃଙ୍କ ନାମ ନେଇ (ପାଠ କରୁଅଛି) ।

حٰمٓ ②

୨. ହା—ମୀମ ।

عٓسٓقٓ ③

୩. ଅଇନ—ସିନ—କାଫ[୧] ।

كَذٰلِكَ يُوْحِيْٓ اِلَيْكَ وَاِلَى الَّذِيْنَ مِنْ قَبْلِكَ ۙ اللّٰهُ الْعَزِيْزُ الْحَكِيْمُ ④

୪. ଏହିପରି ଭାବରେ ଅଲ୍ଲାଃ ତୁମ୍ଭ ପ୍ରତି ଓହି (ପ୍ରେରଣ) କରିଛନ୍ତି ଓ ଯେଉଁମାନେ ତୁମ୍ଭ ପୂର୍ବରୁ ଥିଲେ ସେମାନଙ୍କ ପ୍ରତି ମଧ୍ୟ (ଓହି ପ୍ରେରଣ କରିଛନ୍ତି); ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

لَهٗ مَا فِي السَّمٰوٰتِ وَمَا فِي الْاَرْضِ ۭ وَهُوَ الْعَلِيُّ الْعَظِيْمُ ⑤

୫. ଯାହା କିଛି ଆକାଶ ଓ ପୃଥିବୀରେ ଅଛି ସେ ସବୁ ତାହାଙ୍କର; ସେ ହିଁ ଅତ୍ୟୁଚ୍ଚ ଓ ମହାନ୍, (ଏବଂ ପ୍ରତ୍ୟେକ ପ୍ରକାର ସୃଷ୍ଟି ଉପରେ ତାହାଙ୍କ ଆଧିପତ୍ୟ ସମ୍ପ୍ରସାରିତ ହୋଇ ରହିଅଛି) ।

تَكَادُ السَّمٰوٰتُ يَتَفَطَّرْنَ مِنْ فَوْقِهِنَّ وَالْمَلٰۗىِٕكَةُ يُسَبِّحُوْنَ بِحَمْدِ رَبِّهِمْ وَيَسْتَغْفِرُوْنَ لِمَنْ فِي

୬. ତାହାଙ୍କ ଦୂତମାନେ ନିଜ ପାଳନକର୍ତ୍ତାଙ୍କର ପ୍ରଶଂସା ଗାନ ଓ ଗୁଣାଗାନ[୨] କରୁଥିବା ସତ୍ତ୍ୱେ ତଥା ଯେଉଁମାନେ ପୃଥିବୀରେ ଅଛନ୍ତି ସେମାନଙ୍କ ପାଇଁ କ୍ଷମା ପ୍ରାର୍ଥନା କରୁଥିବା ସତ୍ତ୍ୱେ, ଶୀଘ୍ର ଆକାଶ ନିଜ ଉପରି ଭାଗରୁ (ସେହି ପରାକ୍ରମୀଙ୍କ ଆଦେଶ

୧. ଅଲିମ (ସର୍ବଜ୍ଞ), ସମୀ (ମହାନ୍ ଶ୍ରୋତା), କଦିର (ସର୍ବଶକ୍ତିମାନ୍) ଶବ୍ଦ ତ୍ରୟରୁ ଏହି ସଂକ୍ଷେପାକ୍ଷରର ସୃଷ୍ଟି ହୋଇଛି । ଅର୍ଥାତ୍ ସର୍ବଜ୍ଞ, ମହାନ୍ ଶ୍ରୋତା ଓ ସର୍ବଶକ୍ତିମାନ୍ ଅଲ୍ଲାଃ ଏହି ଅଧ୍ୟାୟକୁ ଅବତୀର୍ଣ୍ଣ କରିଛନ୍ତି ।

୨. ଏଠାରେ କୁହାଯାଇଛି ଯେ ଦେବଦୂତମାନେ ଲୋକମାନଙ୍କୁ କ୍ଷମା ଦିଆଯିବା ସକାଶେ ଅଲ୍ଲାଃଙ୍କ ନିକଟରେ ପ୍ରାର୍ଥନା କରୁଥା'ନ୍ତି ଓ ତତ୍‌ସହିତ ତାହାଙ୍କର ସ୍ତୁତି ଗାନ କରୁଥା'ନ୍ତି ଓ ତାହାଙ୍କର ନାମ ଜପୁଥା'ନ୍ତି । ଏହାସତ୍ତ୍ୱେ, ମଣିଷ ଏପରି କଳୁଷିତ ହୋଇଯାଇଛି ଯେ ସୃଷ୍ଟିକର୍ତ୍ତା ସେମାନଙ୍କ ବିନାଶ ଚାହୁଁଛନ୍ତି । ଏପରି ଅବସ୍ଥାରେ ତାହାଙ୍କ ବିନାଶକାରୀ ଆଦେଶ ଆଗରେ ଦେବଦୂତମାନଙ୍କ ପ୍ରାର୍ଥନାର କୌଣସି ମୂଲ୍ୟ ରହେ ନାହିଁ ।

الْاَرْضِ اَلَآ اِنَّ اللّٰهَ هُوَ الْغَفُوْرُ الرَّحِيْمُ ۝

ହେତୁ) ଫାଟି ପଡ଼ି ଯାଇପାରେ (ତଥାପି ଅଲ୍ଲାହ ଶାସ୍ତି ପ୍ରଦାନକୁ ଅଟକାଇବେ ନାହିଁ ଯଦ୍ଦ୍ବାରା ତାହାଙ୍କର କ୍ଷମାଶୀଳତା ଓ କରୁଣା ପ୍ରକାଶିତ ହେବ।); ଶୁଣ ! ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ [୧] (ଓ) ସଦା କରୁଣାମୟ ।

وَالَّذِيْنَ اتَّخَذُوْا مِنْ دُوْنِهٖٓ اَوْلِيَآءَ اللّٰهُ حَفِيْظٌ عَلَيْهِمْ ۖ وَمَآ اَنْتَ عَلَيْهِمْ بِوَكِيْلٍ ۝

୭. ଏବଂ ଯେଉଁମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟକୁ ନିଜର ଆଶ୍ରୟ-ଦାତା ମନେ କରନ୍ତି, ଅଲ୍ଲାହ ସେମାନଙ୍କ ବିରୁଦ୍ଧରେ ଥିବା ସମସ୍ତ କର୍ମକୁ ସୁରକ୍ଷିତ କରି ରଖିଥାନ୍ତି; ଏବଂ ତୁମେ ସେମାନଙ୍କର ତତ୍ତ୍ୱାବଧାରକ ନୁହଁ (ବରଂ ଅଲ୍ଲାହ) ।

وَكَذٰلِكَ اَوْحَيْنَآ اِلَيْكَ قُرْاٰنًا عَرَبِيًّا لِّتُنْذِرَ اُمَّ الْقُرٰى وَمَنْ حَوْلَهَا وَتُنْذِرَ يَوْمَ الْجَمْعِ لَا رَيْبَ فِيْهِ ۗ فَرِيْقٌ فِى الْجَنَّةِ وَفَرِيْقٌ فِى السَّعِيْرِ ۝

୮. ଏବଂ ଏହିପରି ଭାବରେ (ଅର୍ଥାତ୍ ନିଜେ ତତ୍ତ୍ୱାବଧାରକ ହୋଇଥିବାରୁ ପ୍ରମାଣ ସ୍ୱରୂପ) ଆମେ ତୁମ ପ୍ରତି ଆରବୀ ଭାଷାରେ କୋରାନ ଅବତୀର୍ଣ୍ଣ କରିଅଛୁ, ଯଦ୍ଦ୍ବାରା ତୁମେ ଦେଶର କେନ୍ଦ୍ରସ୍ଥଳର ଲୋକମାନଙ୍କୁ ଓ ଏହାର ଚତୁଃପାର୍ଶ୍ୱର ବାସିନ୍ଦାମାନଙ୍କୁ ସତର୍କ କରାଇବ ଏବଂ ଯଦ୍ଦ୍ବାରା ତୁମେ ସେହିଦିନ ସମ୍ବନ୍ଧରେ ମଧ୍ୟ (ସେମାନଙ୍କୁ) ସତର୍କ କରାଇବ ଯେଉଁଦିନ ସମସ୍ତଙ୍କୁ ଏକତ୍ରିତ କରାହେବ ଯାହାର ଆଗମନ ସଂକ୍ରାନ୍ତରେ କୌଣସି ସନ୍ଦେହ ନାହିଁ; ସେଦିନ କେତେକ ବୈକୁଣ୍ଠରେ ପ୍ରବେଶ କରିବେ, ଓ କେତେକ ନରକରେ ପ୍ରବେଶ କରିବେ ।

وَلَوْ شَآءَ اللّٰهُ لَجَعَلَهُمْ اُمَّةً وَّاحِدَةً وَّلٰكِنْ يُّدْخِلُ مَنْ يَّشَآءُ فِىْ رَحْمَتِهٖ ۗ وَالظّٰلِمُوْنَ مَا لَهُمْ مِّنْ وَّلِيٍّ وَّلَا نَصِيْرٍ ۝

୯. ଏବଂ ଯଦି ଅଲ୍ଲାହ (ନିଜେ) ଇଚ୍ଛା କରିଥାଆନ୍ତେ (ଅର୍ଥାତ୍ ବାଧ୍ୟ କରନ୍ତେ), ତାହାହେଲେ ସେ ସମସ୍ତଙ୍କୁ ଗୋଟିଏ ସମ୍ପ୍ରଦାୟରେ ପରିଣତ କରିଦିଅନ୍ତେ; କିନ୍ତୁ ସେ ଯାହାକୁ ଇଚ୍ଛା କରନ୍ତି ତାହାକୁ ନିଜ କରୁଣା ମଧ୍ୟରେ ପ୍ରବେଶ କରାନ୍ତି; ଏବଂ ଅତ୍ୟାଚାରୀମାନଙ୍କର କୌଣସି ଆଶ୍ରୟଦାତା ବା କୌଣସି ସାହାଯ୍ୟକାରୀ ନ ଥାଆନ୍ତି ।

اَمِ اتَّخَذُوْا مِنْ دُوْنِهٖٓ اَوْلِيَآءَ ۚ فَاللّٰهُ هُوَ الْوَلِيُّ وَهُوَ يُحْىِ الْمَوْتٰى ۖ وَهُوَ عَلٰى كُلِّ شَىْءٍ قَدِيْرٌ ۝

୧୦. କ'ଣ ସେମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଅନ୍ୟକୁ ଆଶ୍ରୟଦାତା ଭାବରେ ଗ୍ରହଣ କରିଛନ୍ତି ? ସୁତରାଂ (ମନେରଖ ଯେ) ଅଲ୍ଲାହ ହିଁ ଆଶ୍ରୟଦାତା; ସେ ହିଁ ମୃତକୁ ଜୀବିତ କରାନ୍ତି ଓ ସେ ପ୍ରତ୍ୟେକ ବିଷୟ କରିବାକୁ ସମ୍ପୂର୍ଣ୍ଣରୂପେ ସକ୍ଷମ ।

---

୧. ଆୟତର ଏହି ଅଂଶରେ ସୂଚନା ଦିଆଯାଇଛି ଯେ ଦେବଦୂତମାନେ କ୍ଷମାଭିକ୍ଷା କରିବା ସତ୍ତ୍ୱେ ଅଲ୍ଲାହ ସାଂସାରିକ ବ୍ୟବସ୍ଥାକୁ ଭାଙ୍ଗି ଦେବା ତଥା ମଣିଷର ସର୍ବନାଶ କରିବା ତାହାଙ୍କର କ୍ଷମାଶୀଳତା ଓ ଦୟାଳୁତାର ବିରୁଦ୍ଧାଚରଣ କରୁନାହିଁ, କାରଣ ଏହି ସଂସାରରେ ଯେଉଁମାନଙ୍କୁ ବିନାଶ କରାହେବ ତାହା ସେମାନଙ୍କପାପ ଯୋଗୁଁ ହିଁ ହେବ । ସେମାନଙ୍କ ସମ୍ବନ୍ଧରେ ଅବତାରଙ୍କୁ ଏହି ରୂପେ କହିବାକୁ ନିର୍ଦ୍ଦେଶ ଦିଆଯାଇଛି ଯେ ଯଦି ସେମାନେ ବିନମ୍ରତା ପୂର୍ବକ ଅଲ୍ଲାହଙ୍କ ସମୀପରେ ନିପତିତ ନ ହେବେ ତେବେ ଅଲ୍ଲାହ ସେମାନଙ୍କ ପରି ହୀନ ଲୋକମାନଙ୍କର ସର୍ବନାଶ କରିବାକୁ ପରୁଆ କରିବେ ନାହିଁ (୨୫: ୭୮ ଦ୍ରଷ୍ଟବ୍ୟ) । ତେଣୁ ପାପୀମାନଙ୍କର ବିନାଶ ଉପର ବର୍ଣ୍ଣନା ଅନୁସାରୀ ହେବ । ଏହି ଆୟତରେ ଅଲ୍ଲାହଙ୍କୁ 'ଗୁଫୁରୁର ରହିମ' କୁହାଯିବା ଯଥାର୍ଥ, କାରଣ ଯେ ପର୍ଯ୍ୟନ୍ତ ପୃଥିବୀବାସୀ ଲୋକମାନଙ୍କର ଦେହାବସାନ ନ ହୋଇଛି ସେ ପର୍ଯ୍ୟନ୍ତ ସେମାନେ ପରକାଳର ପୁରସ୍କାର କିପରି ପାଇବେ ଏବଂ ଅଲ୍ଲାହଙ୍କର ଦୟାଳୁତାର ପରିପ୍ରକାଶକୁ କିପରି ଅବଲୋକନ କରିପାରିବେ ? ତେଣୁ ସେହି ଗୁଣର ପରିପ୍ରକାଶ ନିମନ୍ତେ ଅବିଶ୍ୱାସକାରୀମାନେ ମୃତ୍ୟୁ ପରେ ଦଣ୍ଡଭୋଗ କରିବା ଏବଂ ବିଶ୍ୱାସକାରୀମାନେ ସତ୍‌କର୍ମ କରିଥିବାରୁ ମୃତ୍ୟୁ ପରେ ପୁରସ୍କାର ଲାଭ କରିବା ଅନିବାର୍ଯ୍ୟ, ଯଦ୍ଦ୍ବାରା ଅଲ୍ଲାହଙ୍କର ଉପରୋକ୍ତ ଦୁଇଗୋଟି ଗୁଣର ପ୍ରମାଣ ମିଳିବ ।

ରୁ: ୨

୧୧. ଏବଂ ତୁମେମାନେ ଯେଉଁ ବିଷୟରେ ଭିନ୍ନ ମତ ପୋଷଣ କରୁଅଛ, ତାହାର ଚୂଡ଼ାନ୍ତ ନିଷ୍ପତ୍ତି ଅଲ୍ଲାଃଙ୍କ ଆୟତ୍ତାଧୀନ; ସେ ହିଁ ତୁମମାନଙ୍କର ଅଲ୍ଲାଃ, ଯେ କି ଆମର ମଧ୍ୟ ପାଳନକର୍ତ୍ତା; ଆମେ ତାହାଙ୍କ ଉପରେ ଭରସା କରୁଅଛୁ ଏବଂ ଆମେ ତାହାଙ୍କ ପ୍ରତି ଅନୁରକ୍ତ ।

وَمَا اخْتَلَفْتُمْ فِيهِ مِنْ شَيْءٍ فَحُكْمُهُ إِلَى اللَّهِ
ذَٰلِكُمُ اللَّهُ رَبِّي عَلَيْهِ تَوَكَّلْتُ وَإِلَيْهِ أُنِيبُ ﴿١١﴾

୧୨. ସେ ଆକାଶ ଓ ପୃଥିବୀର ସ୍ରଷ୍ଟା; ସେ ତୁମମାନଙ୍କ ମଧ୍ୟରୁ ତୁମମାନଙ୍କର ଯୋଡ଼ା (ଅର୍ଥାତ୍ ସ୍ୱାମୀ ବା ସ୍ତ୍ରୀ) ସୃଷ୍ଟି କରିଛନ୍ତି, ଓ ଚତୁଷ୍ପଦ ପ୍ରାଣୀମାନଙ୍କର ମଧ୍ୟ ଯୋଡ଼ା ସୃଷ୍ଟି କରିଛନ୍ତି; ଏବଂ ଏହିପରି ଭାବରେ ସେ ପୃଥିବୀରେ ତୁମମାନଙ୍କର (ବଂଶ) ବୃଦ୍ଧି କରାଉଥାନ୍ତି; ତାହାଙ୍କ ସଦୃଶ କେହି ନାହାନ୍ତି; ସେ ହିଁ ମହାନ୍ ଶ୍ରୋତା (ଓ) ମହାନ୍ ଦ୍ରଷ୍ଟା ।

فَاطِرُ السَّمَاوَاتِ وَالْأَرْضِ جَعَلَ لَكُمْ مِنْ أَنْفُسِكُمْ
أَزْوَاجًا وَمِنَ الْأَنْعَامِ أَزْوَاجًا يَذْرَؤُكُمْ فِيهِ
لَيْسَ كَمِثْلِهِ شَيْءٌ وَهُوَ السَّمِيعُ الْبَصِيرُ ﴿١٢﴾

୧୩. ସ୍ୱର୍ଗର ଗୃବିକାଠି ତାହାଙ୍କ ହସ୍ତରେ ରହିଅଛି ଓ ପୃଥିବୀର ମଧ୍ୟ; ସେ ଯାହାପାଇଁ ଇଚ୍ଛା କରନ୍ତି ଜୀବିକାକୁ ପ୍ରଶସ୍ତ କରିଥା'ନ୍ତି; ଏବଂ (ଯାହା ପାଇଁ ଇଚ୍ଛା କରନ୍ତି) ଜୀବିକାକୁ ସଂକୁଚିତ କରିଥାନ୍ତି; ସେ ପ୍ରତ୍ୟେକ ବିଷୟକୁ ଉତ୍ତମରୂପେ ଜାଣନ୍ତି ।

لَهُ مَقَالِيدُ السَّمَاوَاتِ وَالْأَرْضِ يَبْسُطُ الرِّزْقَ
لِمَنْ يَشَاءُ وَيَقْدِرُ إِنَّهُ بِكُلِّ شَيْءٍ عَلِيمٌ ﴿١٣﴾

୧୪. ତୁମଙ୍କୁ ସେ (ନୀତିଗତ ଭାବରେ) ସେହି ଧର୍ମ ପ୍ରଦାନ କରିଛନ୍ତି ଯାହାର ଆଦେଶ ସେ ନୂହଙ୍କୁ ଦେଇଥିଲେ, ଏବଂ ଯାହା ଆମେ ସମ୍ପ୍ରତି (କୋରାନ ମାଧ୍ୟମରେ) ତୁମ ପ୍ରତି ଅବତୀର୍ଣ୍ଣ କରିଅଛୁ, ଏବଂ ଯେଉଁ ବିଷୟରେ ଆମେ ଇବ୍ରାହିମ, ମୁସା ଓ ଇସାଙ୍କୁ ଆଦେଶ ଦେଇଥିଲୁ, ଓ ତାହା ହେଉଛି, ''(ଅଲ୍ଲାଃଙ୍କର) ଆଜ୍ଞାପାଳନ ସମ୍ବନ୍ଧରେ ନିଷ୍ଠାପର ହୁଅ ଏବଂ ଏ (ଧର୍ମ) ବିଷୟରେ କଦାପି ଭିନ୍ନ ମତ ପୋଷଣ କର ନାହିଁ; ତୁମେ ମୁସରିକମାନଙ୍କୁ ଯେଉଁ (ଶିକ୍ଷା) ଆଡ଼କୁ ଡାକୁଅଛ ତାହା ସେମାନଙ୍କୁ ଦୁର୍ବିଷହ ବୋଧହୁଏ ଅଥଚ ଅଲ୍ଲାଃଙ୍କ ଦୃଷ୍ଟିରେ ଯେ (ବ୍ୟକ୍ତି) ପସନ୍ଦ ଯୋଗ୍ୟ ହୁଏ ସେ ଏଥି ସକାଶେ (ଅର୍ଥାତ୍ ଏହି ଧର୍ମ ସକାଶେ) ତାହାକୁ ମନୋନୀତ କରିଥା'ନ୍ତି; ଏବଂ ଯେ ଅଲ୍ଲାଃଙ୍କ ପ୍ରତି ସର୍ବଦା ଅବନତ ହୁଅନ୍ତି, ଏହି ଶିକ୍ଷା ତାଙ୍କୁ ହିଁ ମିଳେ ।''

شَرَعَ لَكُمْ مِنَ الدِّينِ مَا وَصَّىٰ بِهِ نُوحًا وَالَّذِي
أَوْحَيْنَا إِلَيْكَ وَمَا وَصَّيْنَا بِهِ إِبْرَاهِيمَ وَمُوسَىٰ
وَعِيسَىٰ أَنْ أَقِيمُوا الدِّينَ وَلَا تَتَفَرَّقُوا فِيهِ كَبُرَ
عَلَى الْمُشْرِكِينَ مَا تَدْعُوهُمْ إِلَيْهِ اللَّهُ يَجْتَبِي
إِلَيْهِ مَنْ يَشَاءُ وَيَهْدِي إِلَيْهِ مَنْ يُنِيبُ ﴿١٤﴾

୧୫. ଏବଂ ଅବିଶ୍ୱାସକାରୀମାନେ ଧର୍ମ ସମ୍ବନ୍ଧରେ ସେ ପର୍ଯ୍ୟନ୍ତ ଭିନ୍ନ ମତ ପୋଷଣ କରି ନ ଥିଲେ ଯେ ପର୍ଯ୍ୟନ୍ତ ସେମାନଙ୍କ ନିକଟରେ ଏକ ପୂର୍ଣ୍ଣାଙ୍ଗ ଜ୍ଞାନ (ଅର୍ଥାତ୍ କୋରାନ) ଅବତୀର୍ଣ୍ଣ ହୋଇ ନ ଥିଲା; ଏବଂ (ସେମାନେ ଯୁକ୍ତିସଙ୍ଗତ ପ୍ରମାଣ ବଳରେ ଏ ପ୍ରକାର ବିରୋଧ କରି ନ ଥିଲେ ବରଂ

وَمَا تَفَرَّقُوا إِلَّا مِنْ بَعْدِ مَا جَاءَهُمُ الْعِلْمُ
بَغْيًا بَيْنَهُمْ وَلَوْلَا كَلِمَةٌ سَبَقَتْ مِنْ رَبِّكَ

اِلٰۤى اَجَلٍ مُّسَمًّى لَّقُضِىَ بَيْنَهُمْ ؕ وَاِنَّ الَّذِيْنَ اُوْرِثُوا الْكِتٰبَ مِنْۢ بَعْدِهِمْ لَفِىْ شَكٍّ مِّنْهُ مُرِيْبٍ ⑮

ପରସ୍ପର ମଧ୍ୟରେ ଥିବା ଈର୍ଷା ଓ ଦ୍ୱେଷ ଯୋଗୁଁ କହିଥିଲେ, ଏବଂ ଯଦି ତୁମ ପାଳନକର୍ତ୍ତାଙ୍କ ତରଫରୁ ଏକ ନିର୍ଦ୍ଦିଷ୍ଟ କାଳ ପାଇଁ ଗୋଟିଏ କଥାର ନିଷ୍ପତ୍ତି[୧] ହୋଇ ନ ଥା'ନ୍ତା, ତାହାହେଲେ କେବେଠାରୁ ସେହି ଅବିଶ୍ୱାସକାରୀମାନଙ୍କର ବିନାଶ ହୋଇ ସାରନ୍ତାଣି; ଓ ସେମାନଙ୍କ ପରେ ଯେଉଁମାନଙ୍କୁ ଏହି ଗ୍ରନ୍ଥର ଉତ୍ତରାଧିକାରୀ କରାଯାଇଛି ସେମାନେ ଏହି ଗ୍ରନ୍ଥ ଯୋଗୁଁ ଏପରି ଏକ ସନ୍ଦେହରେ ପଡ଼ିଛନ୍ତି ଯାହା ସେମାନଙ୍କ ମନ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି କରୁଅଛି ।

فَلِذٰلِكَ فَادْعُ ۚ وَاسْتَقِمْ كَمَاۤ اُمِرْتَ ۚ وَلَا تَتَّبِعْ اَهْوَآءَهُمْ ۚ وَقُلْ اٰمَنْتُ بِمَاۤ اَنْزَلَ اللّٰهُ مِنْ كِتٰبٍ ۚ وَاُمِرْتُ لِاَعْدِلَ بَيْنَكُمْ ؕ اَللّٰهُ رَبُّنَا وَرَبُّكُمْ ؕ لَنَاۤ اَعْمَالُنَا وَلَكُمْ اَعْمَالُكُمْ ؕ لَا حُجَّةَ بَيْنَنَا وَبَيْنَكُمْ ؕ اَللّٰهُ يَجْمَعُ بَيْنَنَا ۚ وَاِلَيْهِ الْمَصِيْرُ ؕ ⑯

୧୬. ସୁତରାଂ ତୁମେ ଲୋକମାନଙ୍କୁ (ଏହି ଧର୍ମ ଆଡ଼କୁ) ଡାକ; ଏବଂ ତୁମକୁ ଯେପରି କୁହାଯାଇଅଛି ତୁମେ ସେହିପରି (ଭାବରେ ଏହି ଧର୍ମ ପ୍ରତି) ନିଷ୍ଠାପର ରୁହ, ଏବଂ ସେମାନଙ୍କ (କୁ) ପ୍ରବୃତ୍ତିର ଅନୁସରଣ କର ନାହିଁ, ଏବଂ କୁହ, ''ଅଲ୍ଲାହ୍ ତାହାଙ୍କ ଗ୍ରନ୍ଥରୁ ଯାହା କିଛି ଅବତୀର୍ଣ୍ଣ କରିଛନ୍ତି ଆମେ ତାହା ଉପରେ ବିଶ୍ୱାସ କରୁଅଛୁ ଏବଂ ଆମକୁ ଆଦେଶ ଦିଆଯାଇଛି ଯେ ଆମେ ତୁମମାନଙ୍କ ମଧ୍ୟରେ ନ୍ୟାୟ-ପୂର୍ବକ ନିଷ୍ପତ୍ତି କରିବୁ; ଅଲ୍ଲାହ୍ ଆମର ପାଳନକର୍ତ୍ତା; ଓ ତୁମମାନଙ୍କର ମଧ୍ୟ ପାଳନକର୍ତ୍ତା; ଆମର କର୍ମ ଆମ ସହିତ, ଓ ତୁମମାନଙ୍କର କର୍ମ ତୁମମାନଙ୍କ ସହିତ; ତୁମମାନଙ୍କ ଓ ଆମମାନଙ୍କ ମଧ୍ୟରେ କୌଣସି ବିବାଦ ନାହିଁ; ଅଲ୍ଲାହ୍ (ଦିନେ) ଆମମାନଙ୍କୁ ଏକତ୍ରିତ କରିବେ ଓ ତାହାଙ୍କ ନିକଟକୁ ଆମ ସମସ୍ତଙ୍କୁ ଫେରିବାକୁ ହେବ ।''

وَالَّذِيْنَ يُحَآجُّوْنَ فِى اللّٰهِ مِنْۢ بَعْدِ مَا اسْتُجِيْبَ لَهٗ حُجَّتُهُمْ دَاحِضَةٌ عِنْدَ رَبِّهِمْ وَعَلَيْهِمْ غَضَبٌ وَّلَهُمْ عَذَابٌ شَدِيْدٌ ⑰

୧୭. ତାହାଙ୍କ (ଅର୍ଥାତ୍ ହଜରତ ମହମ୍ମଦଙ୍କ) ପ୍ରାର୍ଥନା ଗୃହୀତ ହୋଇଯିବା (ଦେଖିବା) ପରେ ଯେଉଁମାନେ ଅଲ୍ଲାହ୍‌ଙ୍କ ସମ୍ବନ୍ଧରେ ଯୁକ୍ତିତର୍କ କରନ୍ତି, ସେମାନଙ୍କ ଯୁକ୍ତିର ଅଲ୍ଲାହ୍‌ଙ୍କ ନିକଟରେ କୌଣସି ଗୁରୁତ୍ୱ ନାହିଁ ଏବଂ ସେମାନଙ୍କ ଉପରେ (ଅଲ୍ଲାହ୍‌ଙ୍କ) ପ୍ରକୋପ ନିପତିତ ହେବ ଓ ସେମାନଙ୍କ ସକାଶେ କଠୋର ଶାସ୍ତି (ନିୟତ) ଅଛି ।

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ବିଭିନ୍ନ ଅବିଶ୍ୱାସକାରୀଙ୍କ ସକାଶେ ପବିତ୍ର କୋରାନ ଓ ହଦିସ ଗ୍ରନ୍ଥଗୁଡ଼ିକରେ ଅନେକ ଭବିଷ୍ୟବାଣୀର ବର୍ଣ୍ଣନା ଲିପିବଦ୍ଧ ହୋଇଛି । ତେଣୁ ଯଦି ସେମାନଙ୍କୁ ଅତି ଶୀଘ୍ର ବିନାଶ କରି ଦିଆଯିବ ତେବେ ସେହି ସବୁ ଭବିଷ୍ୟବାଣୀ ନିଜ ନିଜ ସମୟରେ ପୂରଣ ହେବାର ଆଉ କୌଣସି ସମ୍ଭାବନା ରହିବ ନାହିଁ । ବସ୍ତୁତଃ ଏହା ପବିତ୍ର କୋରାନ ଓ ହଦିସ ଗ୍ରନ୍ଥଗୁଡ଼ିକର ସତ୍ୟତା ପ୍ରତିପାଦନ କରିବାକୁ ଅଭିପ୍ରେତ ।

୧୮. ସେ ହିଁ ଅଲ୍ଲାହ ଯେ ସତ୍ୟ ସହିତ ଏହି ପୂର୍ଣ୍ଣାଙ୍ଗ ଗ୍ରନ୍ଥ (ଅର୍ଥାତ୍ କୋରାନ) ଓ ତୁଳାଦଣ୍ଡ [୧] ଅବତୀର୍ଣ୍ଣ କରିଛନ୍ତି; ଏବଂ ତୁମେ କିପରି ଜାଣିପାରିଲ ଯେ ନିର୍ଦ୍ଦିଷ୍ଟ ସମୟ ନିକଟବର୍ତ୍ତୀ ହୋଇଅଛି ।

اَللّٰهُ الَّذِيْٓ اَنْزَلَ الْكِتٰبَ بِالْحَقِّ وَ الْمِيْزَانَ ؕ وَمَا يُدْرِيْكَ لَعَلَّ السَّاعَةَ قَرِيْبٌ ﴿١٨﴾

୧୯. ଯେଉଁମାନେ ଏଥିରେ ବିଶ୍ୱାସ କରନ୍ତି ନାହିଁ ସେମାନେ ଏହାର ତୁରନ୍ତ ଆଗମନ [୨] ସମ୍ବନ୍ଧରେ ପ୍ରୟାସୀ ହେଉଛନ୍ତି; ଏବଂ ବିଶ୍ୱାସକାରୀମାନେ ଏହାକୁ ଭୟ କରନ୍ତି, ଓ ବିଶ୍ୱାସ ମଧ୍ୟ କରନ୍ତି ଯେ ତାହା ଅବଶ୍ୟ ଘଟିବ; ଶୁଣ ! ଯେଉଁମାନେ କୟାମତ ସମ୍ବନ୍ଧରେ ସନ୍ଦେହ କରୁଛନ୍ତି ସେମାନେ ପଥଭ୍ରଷ୍ଟତା ମଧ୍ୟରେ ବହୁଦୂର ଅଗ୍ରସର ହୋଇ ଯାଇଛନ୍ତି ।

يَسْتَعْجِلُ بِهَا الَّذِيْنَ لَا يُؤْمِنُوْنَ بِهَا ۚ وَ الَّذِيْنَ اٰمَنُوْا مُشْفِقُوْنَ مِنْهَا ۙ وَ يَعْلَمُوْنَ اَنَّهَا الْحَقُّ ؕ اَلَآ اِنَّ الَّذِيْنَ يُمَارُوْنَ فِي السَّاعَةِ لَفِيْ ضَلٰلٍۢ بَعِيْدٍ ﴿١٩﴾

୨୦. ଅଲ୍ଲାହ ନିଜ ଭକ୍ତମାନଙ୍କର ଗୁପ୍ତ ବିଷୟଗୁଡ଼ିକୁ ଜାଣନ୍ତି; ସେ ଯାହାପାଇଁ ଇଚ୍ଛା କରନ୍ତି ତାହାକୁ (ପ୍ରଚୁର) ଜୀବିକା ପ୍ରଦାନ କରନ୍ତି, ଏବଂ (ଯାହା ପାଇଁ ଇଚ୍ଛା କରନ୍ତି ତାହାର ଜୀବିକାକୁ ସଂକୁଚିତ କରିଥା'ନ୍ତି); ସେ ହିଁ ବଳବାନ୍ (ଓ) ପରାକ୍ରମୀ

اَللّٰهُ لَطِيْفٌۢ بِعِبَادِهٖ يَرْزُقُ مَنْ يَّشَآءُ ۚ وَ هُوَ الْقَوِيُّ الْعَزِيْزُ ﴿٢٠﴾

ରୁ : ୩

୨୧. ଯେ କେହି ପରକାଳର ଫସଲ ପାଇବାକୁ ଇଚ୍ଛା କରେ, ଆମେ ତାହାପାଇଁ ତାହାର (ପରକାଳର) ଫସଲକୁ ବୃଦ୍ଧି କରିଥାଉ; ଏବଂ ଯେ କେହି ଏହି ସାଂସାରିକ ଫସଲ ଇଚ୍ଛା କରେ, ଆମେ ତହିଁରୁ (ଏହି ସଂସାରରେ) ତାହାର ଭାଗ ଦେଇ ଦେଉ (ଅର୍ଥାତ୍ ସେ ସାଂସାରିକ ସାମଗ୍ରୀମାନ ପାଇଥାଏ); ଏବଂ ପରକାଳରେ ତାହାର କୌଣସି ଭାଗ ନାହିଁ ।

مَنْ كَانَ يُرِيْدُ حَرْثَ الْاٰخِرَةِ نَزِدْ لَهٗ فِيْ حَرْثِهٖ ۚ وَ مَنْ كَانَ يُرِيْدُ حَرْثَ الدُّنْيَا نُؤْتِهٖ مِنْهَا وَ مَا لَهٗ فِي الْاٰخِرَةِ مِنْ نَّصِيْبٍ ﴿٢١﴾

---

[୧] ପବିତ୍ର କୋରାନର ଅନ୍ୟ ଏକ ନାମ ହେଉଛି 'ମିଜାନ୍' କାରଣ ଏଥିରେ ଯେଉଁସବୁ ବିଷୟର ବର୍ଣ୍ଣନା ରହିଛି ସେଗୁଡ଼ିକ ସପ୍ରମାଣ ବର୍ଣ୍ଣନା କରାଯାଇଛି । ଲୋକମାନଙ୍କ ନିକଟରେ ପ୍ରମାଣ ସର୍ବଥା ଅଦ୍ଭୁତ ହୁଏ । ଯେ ପର୍ଯ୍ୟନ୍ତ କୌଣସି ବିଷୟ ଅସତ୍ୟ ପ୍ରମାଣିତ ନ ହୋଇଛି ସେ ପର୍ଯ୍ୟନ୍ତ ଏହାକୁ ନାକଚ କରିବା ଉଚିତ ନୁହେଁ ଏବଂ ସାଧାରଣତଃ ଏହାକୁ କେହି ନାକଚ କରନ୍ତି ନାହିଁ । ସେଥିପାଇଁ ପବିତ୍ର କୋରାନକୁ ମିଜାନ ବା ତୁଳଦଣ୍ଡ ରୂପେ ଆଖ୍ୟାୟିତ କରାଯାଇଛି ଅର୍ଥାତ୍ ଯାହା ଏହି ତୁଳାଦଣ୍ଡରେ ପ୍ରମାଣିତ ହୁଏ ତାହା ହିଁ ସତ୍ୟ ଓ ଅବଶିଷ୍ଟ ବିଷୟ ଅସତ୍ୟ । ବସ୍ତୁତଃ ଏ ରୂପ ତୁଳାଦଣ୍ଡରେ ମଣିଷର କୃତ୍ୟାକୃତ୍ୟର ମୂଲ୍ୟ ନିରୂପଣ କରାଯାଏ, ତାହାକୁ ବିଗ୍ଭର କରାଯାଏ, ମପାଯାଏ ଓ ଓଜନ କରାଯାଏ, ଫଳରେ ମଣିଷ ସତ୍ ଓ ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟକୁ ଚିହ୍ନିପାରେ । ପ୍ରକୃତପକ୍ଷେ ଏହି ଜୀବନରେ, ଏପରିକି ପରକାଳରେ ମଧ୍ୟ, ମଣିଷର କ୍ରିୟାକଳାପକୁ ଆଧ୍ୟାତ୍ମିକ ତୁଳାଦଣ୍ଡରେ ଓଜନ କରାଯାଉଛି ।

[୨] ଅବିଶ୍ୱାସକାରୀମାନଙ୍କ ପ୍ରତି ଶାସ୍ତି ପ୍ରେରିତ ହେବ ବୋଲି ସେମାନେ ଆଦୌ ସ୍ୱୀକାର କରନ୍ତି ନାହିଁ । ଫଳରେ ସେମାନେ ଶୀଘ୍ର ଶାସ୍ତି ଅବତୀର୍ଣ୍ଣ ହେବାପାଇଁ ଦାବି କରୁଥା'ନ୍ତି କାରଣ ଯେବେ ସେମାନଙ୍କ କଥାନୁସାରେ ଶାସ୍ତିର ଆଗମନ ହେବ ନାହିଁ ତେବେ ଶାସ୍ତିର ଆଗମନ ଶୀଘ୍ର ହେଉ ବା ବିଳମ୍ବରେ ହେଉ, ତାହା ଏକା କଥା ।

୨୨. କ'ଣ ସେମାନଙ୍କ ସକାଶେ ଏପରି କେହି ସମକକ୍ଷ ଅଛନ୍ତି ଯେଉଁମାନେ ସେମାନଙ୍କ ପାଇଁ ଏପରି ଧର୍ମ ଶିକ୍ଷା ମନୋନୀତ କରିଛନ୍ତି ଯାହା ନିମନ୍ତେ ଅଲ୍ଲାହ ଅନୁମତି ଦେଇ ନାହାନ୍ତି ? ଏବଂ ଯଦି (ଅଲ୍ଲାହଙ୍କ ତରଫରୁ) ଚୂଡ଼ାନ୍ତ [1] ନିଷ୍ପତ୍ତି ହୋଇ ନ 'ଥାନ୍ତା, ତେବେ ସେମାନଙ୍କ ମଧ୍ୟରେ ନିଷ୍ପତ୍ତି କରି ଦିଆଯାଆନ୍ତା [2] ଏବଂ ଅତ୍ୟାଗ୍ରହୀମାନଙ୍କ ପାଇଁ ନିଶ୍ଚୟ ଯନ୍ତ୍ରଣାଦାୟକ ଶାସ୍ତି ରହିଅଛି ।

أَمْ لَهُمْ شُرَكَٰٓؤُا۟ شَرَعُوا۟ لَهُم مِّنَ ٱلدِّينِ مَا لَمْ يَأْذَنۢ بِهِ ٱللَّهُ ۚ وَلَوْلَا كَلِمَةُ ٱلْفَصْلِ لَقُضِىَ بَيْنَهُمْ ۗ وَإِنَّ ٱلظَّٰلِمِينَ لَهُمْ عَذَابٌ أَلِيمٌ ﴿٢٢﴾

୨୩. ଅତ୍ୟାଗ୍ରହୀମାନେ ନିଜ କର୍ମ ଯୋଗୁଁ ଭୟଭୀତ ହେଉଥିବାର ତୁମେ ଦେଖୁଅଛ, ଅଥଚ ତାହା (ଅର୍ଥାତ୍ ସେହି ଅଙ୍ଗୀକୃତ ଶାସ୍ତି ) ସେମାନଙ୍କ ପ୍ରତି ନିଶ୍ଚୟ ଅବତୀର୍ଣ୍ଣ ହେବ; ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ତଦନୁଯାୟୀ କାର୍ଯ୍ୟ କରିଛନ୍ତି ସେମାନେ (ବୈକୁଣ୍ଠର) ନିଘଞ୍ଚ ଉଦ୍ୟାନରେ ରହିବେ; ଏବଂ ସେମାନେ ଯାହା ଇଚ୍ଛା କରିବେ ସେ ସବୁ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ସେମାନଙ୍କ ପାଇଁ ରହିଥିବ; ଏହା ହିଁ ଅଶେଷ କୃପା ।

تَرَى ٱلظَّٰلِمِينَ مُشْفِقِينَ مِمَّا كَسَبُوا۟ وَهُوَ وَاقِعٌۢ بِهِمْ ۗ وَٱلَّذِينَ ءَامَنُوا۟ وَعَمِلُوا۟ ٱلصَّٰلِحَٰتِ فِى رَوْضَاتِ ٱلْجَنَّاتِ ۖ لَهُم مَّا يَشَآءُونَ عِندَ رَبِّهِمْ ۚ ذَٰلِكَ هُوَ ٱلْفَضْلُ ٱلْكَبِيرُ ﴿٢٣﴾

୨୪. ଏହା ହିଁ ସେହି ବିଷୟ ଯାହା ସଂକ୍ରାନ୍ତରେ ଅଲ୍ଲାହ ନିଜର ବିଶ୍ୱାସକାରୀ ଭକ୍ତମାନଙ୍କୁ ସୁସମାଚାର ଦେଇଥାଆନ୍ତି(ସେ-ଭଳି ବିଶ୍ୱାସକାରୀ ଭକ୍ତମାନଙ୍କୁ) ଯେଉଁମାନେ ବିଶ୍ୱାସ ଅନୁଯାୟୀ କର୍ମ ମଧ୍ୟ କରନ୍ତି; ତୁମେ କୁହ, "ଆମେ ନିଜ ସେବା ବିନିମୟରେ ତୁମମାନଙ୍କ ଠାରୁ କେବଳ ସେହି ପ୍ରେମ ଯାହା ନିଜର ନିକଟତମ [3] ବନ୍ଧୁବାନ୍ଧବଙ୍କ ସହ କରାଯାଏ ତାହା ବ୍ୟତୀତ ଅନ୍ୟ କୌଣସି ପ୍ରତିଦାନ ମାଗୁନାହୁଁ; ଏବଂ ଯେଉଁ ବ୍ୟକ୍ତି କୌଣସି ପୁଣ୍ୟ କାର୍ଯ୍ୟ କରେ ଆମେ ତାହାର ପୁଣ୍ୟକୁ ତାହାପାଇଁ ଅଧିକତର ଶୋଭନୀୟ [4] କରିଦେଉ; ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ଗୁଣଗ୍ରାହୀ ।"

ذَٰلِكَ ٱلَّذِى يُبَشِّرُ ٱللَّهُ عِبَادَهُ ٱلَّذِينَ ءَامَنُوا۟ وَعَمِلُوا۟ ٱلصَّٰلِحَٰتِ ۗ قُل لَّآ أَسْـَٔلُكُمْ عَلَيْهِ أَجْرًا إِلَّا ٱلْمَوَدَّةَ فِى ٱلْقُرْبَىٰ ۗ وَمَن يَقْتَرِفْ حَسَنَةً نَّزِدْ لَهُۥ فِيهَا حُسْنًا ۚ إِنَّ ٱللَّهَ غَفُورٌ شَكُورٌ ﴿٢٤﴾

---

୧. ଅର୍ଥାତ୍ ସେମାନଙ୍କର ସର୍ବନାଶ ହୋଇଯାଆନ୍ତା, କିନ୍ତୁ ଯେହେତୁ ଅଲ୍ଲାହଙ୍କର ଏହି ନିର୍ଦ୍ଦିଷ୍ଟ ନିଷ୍ପତ୍ତି ପବିତ୍ର କୋରାନରେ ଲିପିବଦ୍ଧ ହୋଇଛି ଯେ ଯେପର୍ଯ୍ୟନ୍ତ ତର୍କବିତର୍କ ସମ୍ପୂର୍ଣ୍ଣ ନ ହୋଇଛି ସେ ପର୍ଯ୍ୟନ୍ତ କୌଣସି ସମ୍ପ୍ରଦାୟକୁ ବିନାଶ କରାଯାଏ ନାହିଁ, ତେଣୁ ସେଥିପାଇଁ ସେମାନଙ୍କୁ ଅବ୍ୟାହତି ମିଳିଯାଉଛି ।

୨. ଏହି ଅଧ୍ୟାୟର ଆୟତ ସଂଖ୍ୟା ୧୫ ଦ୍ରଷ୍ଟବ୍ୟ ।

୩. ସିୟା ମୁସଲମାନମାନେ ଏହି ବାକ୍ୟାଂଶର ଏକ ଭିନ୍ନ ଅର୍ଥ କରିଥା'ନ୍ତି । ସେମାନଙ୍କ ଅର୍ଥାନୁସାରେ 'ତୁମେମାନେ କେବଳ ଆମର ବନ୍ଧୁବାନ୍ଧବଙ୍କୁ ପ୍ରେମ କରିବା ବ୍ୟତୀତ ତୁମମାନଙ୍କଠାରୁ ଆମେ ଅନ୍ୟ କୌଣସି ପାରିତୋଷିକ ଚାହୁଁ ନାହୁଁ,' ଅଥଚ ଏହା ମଧ୍ୟ ପାରିତୋଷିକ । ଆମେ ଏହି ଆୟତର ଯେଉଁ ଅନୁବାଦ କରିଛୁ ତାହା ନିଃସନ୍ଦେହରେ ଯଥାର୍ଥ । ବସ୍ତୁତଃ ରସୁଲ ଭାବରେ ସେ ଲୋକମାନଙ୍କୁ ଉପଦେଶ ଦେଇ କହୁଛନ୍ତି ଯେ ସେମାନେ ନିଜର ନିକଟତମ ବନ୍ଧୁ ବାନ୍ଧବଙ୍କୁ ଯେ ପ୍ରକାର ପ୍ରେମ କରୁଛନ୍ତି ସେହି ପ୍ରକାର ପ୍ରେମ ତାଙ୍କୁ ମଧ୍ୟ କରାଯିବା ଦରକାର । ଅନ୍ୟତ୍ର ଏହି ବିଷୟ ଆହୁରି ସ୍ପଷ୍ଟ ରୂପେ ବର୍ଣ୍ଣିତ ହୋଇଛି ଯେ ଅଲ୍ଲାହ ଓ ତାଙ୍କ ରସୁଲଙ୍କୁ ବନ୍ଧୁବାନ୍ଧବଙ୍କ ଅପେକ୍ଷା ଅଧିକ ପ୍ରେମ କରାଯିବା ଦରକାର ଏବଂ ରସୁଲଙ୍କ ନିର୍ଦ୍ଦେଶ ତୁଳନାରେ ଅନ୍ୟ କୌଣସି ବନ୍ଧୁବାନ୍ଧବଙ୍କର ନିର୍ଦ୍ଦେଶକୁ ପ୍ରାଧାନ୍ୟ ଦିଆଯିବା ଉଚିତ ନୁହେଁ (୯ : ୨୪ ଦ୍ରଷ୍ଟବ୍ୟ) ।

୪. ଅର୍ଥାତ୍ ପୁଣ୍ୟ ଅର୍ଜନ କରିବାପାଇଁ ସେ ଏପରି ଆଗ୍ରହର ହୁଅନ୍ତା ଯେତେ ଯେପରି ଜଣେ ପ୍ରେମିକ ଏକ ସୁନ୍ଦର ବସ୍ତୁ ଦେଖି ତା' ଉପରେ ନିଜକୁ ନିକ୍ଷିପ୍ତ କରିଦେଉଛି ।

اَمْ يَقُوْلُوْنَ افْتَرٰى عَلَى اللّٰهِ كَذِبًا ۚ فَاِنْ يَّشَاِ اللّٰهُ يَخْتِمْ عَلٰى قَلْبِكَ ؕ وَ يَمْحُ اللّٰهُ الْبَاطِلَ وَ يُحِقُّ الْحَقَّ بِكَلِمٰتِهٖ ؕ اِنَّهٗ عَلِيْمٌۢ بِذَاتِ الصُّدُوْرِ ﴿٢٥﴾

୨୫. କ'ଣ ସେମାନେ କହନ୍ତି ଯେ ସେହି ବ୍ୟକ୍ତି (ଅର୍ଥାତ୍ ହଜରତ ମହମ୍ମଦ) ଅଲ୍ଲାହ୍‌ଙ୍କ ସଂକ୍ରାନ୍ତରେ ମିଥ୍ୟା ରଚନା କରିଛନ୍ତି ? ତେଣୁ ଯଦି ଅଲ୍ଲାହ୍ ଇଚ୍ଛା କରିବେ, ତେବେ ତୁମ ହୃଦୟ ଉପରେ ମୋହର [୧] ଲଗାଇ ଦେବେ; ଏବଂ ଅଲ୍ଲାହ୍ ସର୍ବଦା ମିଥ୍ୟାକୁ ଲୋପ କରିଦିଅନ୍ତି ଏବଂ ସତ୍ୟକୁ ନିଜ ବାଣୀ ମାଧ୍ୟମରେ ପ୍ରତିଷ୍ଠା କରନ୍ତି ଏବଂ ସେ ଅନ୍ତରର କଥା ଜାଣନ୍ତି ।

وَ هُوَ الَّذِيْ يَقْبَلُ التَّوْبَةَ عَنْ عِبَادِهٖ وَ يَعْفُوْا عَنِ السَّيِّاٰتِ وَ يَعْلَمُ مَا تَفْعَلُوْنَ ﴿٢٦﴾

୨୬. ସେ ହିଁ ନିଜ ଭକ୍ତମାନଙ୍କ ଅନୁତାପକୁ ଗ୍ରହଣ କରନ୍ତି, ଓ ସେମାନଙ୍କ ତ୍ରୁଟି ମାର୍ଜନା କରନ୍ତି; ଏବଂ ତୁମେମାନେ ଯାହା କରୁଅଛ ସେ ତାହା ଜାଣନ୍ତି ।

وَ يَسْتَجِيْبُ الَّذِيْنَ اٰمَنُوْا وَ عَمِلُوا الصّٰلِحٰتِ وَ يَزِيْدُهُمْ مِّنْ فَضْلِهٖ ؕ وَ الْكٰفِرُوْنَ لَهُمْ عَذَابٌ شَدِيْدٌ ﴿٢٧﴾

୨୭. ଏବଂ ସେ ବିଶ୍ୱାସକାରୀ ତଥା ବିଶ୍ୱାସ ମୁତାବକ କାର୍ଯ୍ୟ କରୁଥିବା ଲୋକମାନଙ୍କର ପ୍ରାର୍ଥନାକୁ ଗ୍ରହଣ କରନ୍ତି, ଏବଂ ନିଜ କୃପାରୁ (ଯେତିକି ପୁରସ୍କାର ସେମାନେ ପାଇବାକୁ ହକ୍‌ଦାର ତାହାଠାରୁ) ଅଧିକ ସେମାନଙ୍କୁ ଦେଇଥାନ୍ତି; ଏବଂ ଅବିଶ୍ୱାସକାରୀମାନଙ୍କ ସକାଶେ କଠୋର ଶାସ୍ତି (ନିୟତ) ଅଛି ।

وَ لَوْ بَسَطَ اللّٰهُ الرِّزْقَ لِعِبَادِهٖ لَبَغَوْا فِي الْاَرْضِ وَ لٰكِنْ يُّنَزِّلُ بِقَدَرٍ مَّا يَشَآءُ ؕ اِنَّهٗ بِعِبَادِهٖ خَبِيْرٌۢ بَصِيْرٌ ﴿٢٨﴾

୨୮. ଏବଂ ଯଦି ଅଲ୍ଲାହ୍ ନିଜ ଭକ୍ତମାନଙ୍କ ସକାଶେ ଜୀବିକାକୁ ଅଧିକ ପ୍ରଶସ୍ତ କରି ଦିଅନ୍ତେ, ତେବେ ଦେଶରେ ସେମାନେ ଅଧିକ ଦୁରାଗ୍ରହ କରିବାରେ ଲିପ୍ତ ହୁଅନ୍ତେ; କିନ୍ତୁ ସେ ଯାହାକିଛି ଇଚ୍ଛା କରନ୍ତି ତାହାକୁ ସମୁଚିତ ମାତ୍ରାରେ ପ୍ରେରଣ କରିଥା'ନ୍ତି; ସେ ନିଜ ଭକ୍ତମାନଙ୍କ ଅବସ୍ଥା ସଂକ୍ରାନ୍ତରେ ଅବଗତ ଥା'ନ୍ତି ଓ ସେମାନଙ୍କ ଅବସ୍ଥା ପ୍ରତି ଲକ୍ଷ୍ୟ ରଖିଥା'ନ୍ତି ।

وَ هُوَ الَّذِيْ يُنَزِّلُ الْغَيْثَ مِنْۢ بَعْدِ مَا قَنَطُوْا وَ يَنْشُرُ رَحْمَتَهٗ ؕ وَ هُوَ الْوَلِيُّ الْحَمِيْدُ ﴿٢٩﴾

୨୯. (ଲୋକମାନଙ୍କର) ନୈରାଶ୍ୟ ପରେ ସେ ହିଁ ଜଳବୃଷ୍ଟି କରାନ୍ତି, ଏବଂ ନିଜର କରୁଣାକୁ ସଂପ୍ରସାରିତ କରି ଦିଅନ୍ତି ; ଏବଂ ସେ ହିଁ (ପ୍ରକୃତ) ଆଶ୍ରୟଦାତା (ଓ) ସକଳ ପ୍ରଶଂସାର ପାତ୍ର ।

وَ مِنْ اٰيٰتِهٖ خَلْقُ السَّمٰوٰتِ وَ الْاَرْضِ وَ مَا بَثَّ

୩୦. ଏବଂ ଆକାଶ ଓ ପୃଥିବୀର ସୃଷ୍ଟି ଏବଂ ତନ୍ମଧ୍ୟରେ ଥିବା ବିଭିନ୍ନ ପ୍ରକାର ପ୍ରାଣୀ ଯାହା ଅଲ୍ଲାହ୍ ବିସ୍ତାରିତ କରି ରଖିଛନ୍ତି

---

୧. ଅର୍ଥାତ୍ ଯଦି ମିଛ କହନ୍ତା ତେବେ ତା'ର ଧର୍ମଭୀରୁତା ନଷ୍ଟ ହୋଇଯା'ନ୍ତା ଓ ତା' ହୃଦୟରେ ମୋହର ବସିଯା'ନ୍ତା । କିନ୍ତୁ ସେ ପବିତ୍ର କୋରାନର ଅବତରଣ ପରେ ଧର୍ମଭୀରୁତା ଅବଲମ୍ବନ କରିବାରେ ଯଥେଷ୍ଟ ଆଗେଇ ଯାଇଛନ୍ତି । ସୁତରାଂ ଶତ୍ରୁମାନଙ୍କ ଦୋଷାରୋପ ଯଥାର୍ଥ ନୁହେଁ । ମନେ ରଖିବାକୁ ହେବ ଯେ ପବିତ୍ର କୋରାନରେ ଅବିଶ୍ୱାସକାରୀମାନଙ୍କ ସକାଶେ 'ମୋହର' ଶବ୍ଦ ପ୍ରୟୋଗ କରାଯାଇଛି, କିନ୍ତୁ ସେଠାରେ ଏହାର ଅର୍ଥ ହେବ ଯେ ଯେହେତୁ ସେମାନେ ସୀମା ଅତିକ୍ରମ କରି ଯାଇଛନ୍ତି ତେଣୁ ସେମାନଙ୍କ ହୃଦୟରେ ଆଉ ଧର୍ମଭୀରୁତା ପ୍ରବେଶ କରିପାରିବ ନାହିଁ । କିନ୍ତୁ ହଜରତ ମହମ୍ମଦ ଏପରି ଏକ ସ୍ଥାନରେ ପହଞ୍ଚି ପାରିଛନ୍ତି ଯଦ୍ବାରା ତାଙ୍କ ହୃଦୟରେ କୌଣସି ପ୍ରକାର ଅବିଶ୍ୱାସ ବା ଅବଜ୍ଞା ପ୍ରବେଶ କରିପାରିବ ନାହିଁ । ପ୍ରସଙ୍ଗକ୍ରମେ ଏକଦା ସେ କହିଛନ୍ତି ଯେ ତାଙ୍କ ସଇତାନ ମଧ୍ୟ ମୁସଲମାନ ହୋଇଯାଇଛି ଅର୍ଥାତ୍ ସେ ଯେଉଁସବୁ ବିଷୟ ତାଙ୍କ ମନରେ ଜାଗ୍ରତ କରାଉଛି ତାହା ସ୍ୱତଃ ପୁଣ୍ୟରେ ପରିଣତ ହୋଇଯାଉଛି (ହଦିସ ମୁସଲିମ ଦ୍ରଷ୍ଟବ୍ୟ) ।

ତା ହେଉଛି ତାହାଙ୍କର ଅନ୍ୟତମ ନିଦର୍ଶନ; ଏବଂ ସେ ଯେତେବେଳେ ଇଚ୍ଛା କରିବେ ସେମାନଙ୍କୁ ଏକତ୍ରିତ କରିବାକୁ ସକ୍ଷମ[୧] ହେବେ ।

فِيهِمَا مِنْ دَآبَّةٍ ۚ وَهُوَ عَلَىٰ جَمْعِهِمْ إِذَا يَشَآءُ قَدِيرٌ ﴿٣٠﴾

୩୧. ଏବଂ ତୁମ୍ଭମାନଙ୍କ ପ୍ରତି ଯେଉଁ ପ୍ରତିଟି ବିପଦ ଆସେ, ତାହା ତୁମମାନଙ୍କ ନିଜ କର୍ମ ଯୋଗୁଁ ଆସିଥାଏ; ଏବଂ ଅଲ୍ଲାହ ତୁମମାନଙ୍କର ଅଧିକାଂଶ ଦୋଷ କ୍ଷମା କରନ୍ତି ।

وَمَآ أَصَابَكُم مِّن مُّصِيبَةٍ فَبِمَا كَسَبَتْ أَيْدِيكُمْ وَيَعْفُوا عَن كَثِيرٍ ﴿٣١﴾

୩୨. ଏବଂ ତୁମେମାନେ ତାହାଙ୍କ ଉଦ୍ଦେଶ୍ୟକୁ ପୃଥିବୀର କୌଣସି ସ୍ଥାନରେ ମଧ୍ୟ ବିଫଳ କରାଇ ପାରିବ ନାହିଁ; ଏବଂ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କର କେହି ଆଶ୍ରୟଦାତା ନାହାନ୍ତି କି କେହି ତୁମମାନଙ୍କର ସାହାଯ୍ୟକାରୀ ନାହାନ୍ତି ।

وَمَآ أَنتُم بِمُعْجِزِينَ فِى الْأَرْضِ ۖ وَمَا لَكُم مِّن دُونِ اللّٰهِ مِن وَلِىٍّ وَلَا نَصِيرٍ ﴿٣٢﴾

୩୩. ଏବଂ ସମୁଦ୍ରରେ ଯାତାୟାତ କରୁଥିବା ପର୍ବତ ସଦୃଶ (ଉଚ୍ଚ) ପୋତଗୁଡ଼ିକ ତାହାଙ୍କର ନିଦର୍ଶନମାନଙ୍କ ମଧ୍ୟରୁ ଅଟନ୍ତି ।

وَمِنْ ءَايٰتِهِ الْجَوَارِ فِى الْبَحْرِ كَالْأَعْلٰمِ ﴿٣٣﴾

୩୪. ଯଦି ସେ ଇଚ୍ଛା କରିବେ, ତେବେ ବାୟୁକୁ ସ୍ଥିର କରାଇଦେବେ ଏବଂ ସେ ସବୁ ସମୁଦ୍ର ବକ୍ଷରେ ଅଚଳ ହୋଇ ରହିଯିବେ; ଏଥିରେ ପ୍ରତ୍ୟେକ ଧୈର୍ଯ୍ୟଶୀଳ ଓ କୃତଜ୍ଞ ଲୋକମାନଙ୍କ ସକାଶେ ନିଦର୍ଶନମାନ ରହିଅଛି ।

إِن يَشَأْ يُسْكِنِ الرِّيحَ فَيَظْلَلْنَ رَوَاكِدَ عَلَىٰ ظَهْرِهِۦٓ ۚ إِنَّ فِى ذٰلِكَ لَءَايٰتٍ لِّكُلِّ صَبَّارٍ شَكُورٍ ﴿٣٤﴾

୩୫. କିମ୍ବା ଯଦି ସେ ଇଚ୍ଛା କରିବେ, ତେବେ ସେ (ପୋତ ମାଲିକ) ମାନଙ୍କୁ[୨] ସେମାନଙ୍କ କର୍ମ ହେତୁ ଧ୍ୱଂସ କରିଦେବେ, ଏବଂ ସେ ଅନେକ ପାପକୁ କ୍ଷମା କରିଥା'ନ୍ତି ।

أَوْ يُوبِقْهُنَّ بِمَا كَسَبُوا وَيَعْفُ عَن كَثِيرٍ ﴿٣٥﴾

---

୧. 'ଏକତ୍ରିତ କରିବାକୁ' ସାଧାରଣତଃ କୟାମତକୁ ସୂଚାଇବ । କିନ୍ତୁ ଏଠାରେ ଆରବୀ ଶବ୍ଦ 'ଦାବ୍‌ବତିନ' ପ୍ରୟୋଗ କରାହୋଇଛି, ଯହିଁରୁ ଏହି ସନ୍ଦେହ ଉଦ୍ରେକ ହେଉଛି ଯେ କ'ଣ ଜୀବଜନ୍ତୁଙ୍କର ହିସାବ କିତାବ ନିଆ ହେବ ? ଏହାର ଉତ୍ତର ହେଉଛି: (କ) ଆଲୋଚ୍ୟ ଶବ୍ଦ ପବିତ୍ର କୋରାନରେ ମନୁଷ୍ୟ ପାଇଁ ମଧ୍ୟ ବ୍ୟବହୃତ ହୋଇଛି; (ଖ) ହଜରତ ମହମ୍ମଦ କହିଛନ୍ତି ଯେ କୟାମତ ଦିନ ଜୀବଜନ୍ତୁମାନେ ମଧ୍ୟ ହିସାବ ଦେବେ । ସେ ଏହି ରୂପେ ଦେଖି ପାରୁଥିବା ବର୍ଣ୍ଣନା କରିଛନ୍ତି - 'କୟାମତ ଦିନ ଗୋଟିଏ ଛେଳି ଆଉ ଗୋଟିଏ ଛେଳିକୁ ଶିଙ୍ଗରେ ମାରୁଛି, କାରଣ ସଂସାରରେ ଥିବାବେଳେ ପ୍ରଥମ ଛେଳିକୁ ଦ୍ୱିତୀୟ ଛେଳି ଶିଙ୍ଗରେ ମାରୁଥିଲା ।' ଅତଏବ ଉଭୟ ଦୃଷ୍ଟିରୁ ଏହି ଆୟତର ଅର୍ଥ ଯଥାର୍ଥ (ହଦିସ ତିରମିଜି) ।

ଏହି ଆୟତରୁ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟର ମଧ୍ୟ ସୂଚନା ମିଳୁଛି । ଯେତେବେଳେ ୧୪୦୦ ବର୍ଷ ପୂର୍ବରୁ ଗ୍ରହବିଜ୍ଞାନ ତଥାପି ତା'ର ଶୈଶବାବସ୍ଥାରେ ଥିଲା ସେତେବେଳେ କୌଣସି ବ୍ୟକ୍ତି ପକ୍ଷରେ — ଏପରିକି ମରୁଭୂମିର ସେହି ନିରକ୍ଷର ଅବତାରଙ୍କ ପକ୍ଷରେ — ଏହା କହିବା ସମ୍ଭବ ନ ଥିଲା ଯେ ଆମ ଗ୍ରହ ପୃଥିବୀ ଭିନ୍ନ ଅନ୍ୟ ଗ୍ରହରେ ମଧ୍ୟ, ଯେ କୌଣସି କିସମର ହେଉ ପଛେ, ଜୀବ ଜଗତ ଅଛି । ଏହି ଆୟତର ଶେଷ ବାକ୍ୟାଂଶ ' ସେ ସମସ୍ତଙ୍କୁ ଏକତ୍ରିତ କରିବାକୁ ସକ୍ଷମ ହେବେ' ରୁ ପ୍ରତୀତ ହେଉଛି ଯେ ଏହି ମହାନ୍ ଓ ବିସ୍ମୟକର ସତ୍ୟ ଦିନେ ନା ଦିନେ ପବିତ୍ର କୋରାନ ମାଧ୍ୟମରେ ପ୍ରକଟିତ ହେବ ଏବଂ ଭବିଷ୍ୟତରେ ଉଭୟ ସ୍ଥାନର ଜୀବଜଗତ ଏକତ୍ରିତ ହୋଇପାରିବ ।

୨. ଅବଶ୍ୟ ପବିତ୍ର କୋରାନରେ ପୋତଗୁଡିକୁ ଧ୍ୱଂସ କରାଯିବା ଉଲ୍ଲେଖ ଅଛି । କିନ୍ତୁ ଏଠାରେ 'ପୋତ ମାଲିକ' ନିଆଯାଇଛି । କାରଣ ପୋତ ମାଲିକର ଉପାର୍ଜନ ପୋତ ସହିତ ସଂଶ୍ଳିଷ୍ଟ । ଯଦି ପୋତଗୁଡିକୁ ଧ୍ୱଂସ କରି ଦିଆଯିବ ତେବେ ତାହାର ମାଲିକ ମଧ୍ୟ ବିପର୍ଯ୍ୟୟର ସମ୍ମୁଖୀନ ହେବ । ତେଣୁ ସଂକ୍ଷିପ୍ତୀକରଣ ପଦ୍ଧତିରେ ଅନୁବାଦକୁ ଯଥାର୍ଥ ରୂପ ଦିଆଯାଇଛି । ସେହିପରି ଏଠାରେ ବର୍ଣ୍ଣନା କରାଯାଇଛି ଯେ ପୋତଗୁଡିକୁ ନିଜ କର୍ମଯୋଗୁଁ ଧ୍ୱଂସ କରାଯିବ । ପ୍ରକୃତରେ ପୋତ କୌଣସି କର୍ମ କରେ ନାହିଁ, ମାଲିକ ହିଁ କର୍ମ କରିଥା'ନ୍ତି । ଏଥିରୁ ପ୍ରମାଣିତ ହେଉଛି ଯେ ପୋତ ବଦଳରେ ପୋତ ମାଲିକ ଶବ୍ଦର ପ୍ରୟୋଗ ଯଥାର୍ଥ ।

୩୬. ଏବଂ ଯେଉଁମାନେ ଆମର ନିଦର୍ଶନମାନଙ୍କ ସଂକ୍ରାନ୍ତରେ ଯୁକ୍ତିତର୍କ କରନ୍ତି ସେ ସେମାନଙ୍କୁ ଜାଣନ୍ତି; ସେମାନଙ୍କ ପାଇଁ ପଳାୟନ କରିବାକୁ କୌଣସି ସ୍ଥାନ ନାହିଁ ।

وَّ يَعْلَمَ الَّذِيْنَ يُجَادِلُوْنَ فِيْٓ اٰيٰتِنَا ؕ مَا لَهُمْ مِّنْ مَّحِيْصٍ ۟

୩୭. ଏବଂ ଯାହା କିଛି ତୁମମାନଙ୍କୁ ଦିଆଯାଇଛି ତାହା ସାଂସାରିକ ଜୀବନର ସାମଗ୍ରୀ ଅଟେ; ଏବଂ ଯାହା ଅଲ୍ଲାହ୍‌ଙ୍କ ନିକଟରେ ରହିଅଛି ତାହା ବିଶ୍ୱାସକାରୀ ଓ ନିଜ ପାଳନକର୍ତ୍ତାଙ୍କ ଉପରେ ଭରସା କରୁଥିବା ଲୋକମାନଙ୍କ ସକାଶେ ଅଧିକ ଉତ୍କୃଷ୍ଟ ଓ ଅଧିକ ସ୍ଥାୟୀ ଅଟେ.

فَمَآ اُوْتِيْتُمْ مِّنْ شَيْءٍ فَمَتَاعُ الْحَيٰوةِ الدُّنْيَا ۚ وَمَا عِنْدَ اللّٰهِ خَيْرٌ وَّاَبْقٰى لِلَّذِيْنَ اٰمَنُوْا وَعَلٰى رَبِّهِمْ يَتَوَكَّلُوْنَ ۟

୩୮. ଏବଂ (ସେମାନଙ୍କ ସକାଶେ) ଯେଉଁମାନେ ଗୁରୁତର ପାପ ଓ କୁକର୍ମରୁ ନିଜକୁ ରକ୍ଷା କରନ୍ତି, ଏବଂ କ୍ରୋଧ ଜନ୍ମିବା ବେଳେ କ୍ଷମା କରିଥା'ନ୍ତି,

وَالَّذِيْنَ يَجْتَنِبُوْنَ كَبٰٓئِرَ الْاِثْمِ وَالْفَوَاحِشَ وَاِذَا مَا غَضِبُوْا هُمْ يَغْفِرُوْنَ ۟

୩୯. ଏବଂ (ସେମାନଙ୍କ ସକାଶେ) ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ କହିବା ମାନନ୍ତି, ଓ ଏକତ୍ର ନମାଜ ପାଠ କରନ୍ତି ଓ ନିଜର ପ୍ରତ୍ୟେକ ସମସ୍ୟାକୁ ଆପୋଷ ପରାମର୍ଶ ଦ୍ୱାରା ସମାଧାନ କରନ୍ତି, ଓ ଯାହା କିଛି ଆମେ ସେମାନଙ୍କୁ ଦେଇଅଛୁ ତନ୍ମଧ୍ୟରୁ ବ୍ୟୟ କରନ୍ତି,

وَالَّذِيْنَ اسْتَجَابُوْا لِرَبِّهِمْ وَاَقَامُوا الصَّلٰوةَ ۪ وَاَمْرُهُمْ شُوْرٰى بَيْنَهُمْ ۪ وَمِمَّا رَزَقْنٰهُمْ يُنْفِقُوْنَ ۟

୪୦. ଏବଂ ଯେତେବେଳେ ସେମାନଙ୍କ ପ୍ରତି କୌଣସି ଅତ୍ୟାଚାର ହୁଏ, ସେତେବେଳେ ସେମାନେ ପ୍ରତିଶୋଧ ନେଇଥାନ୍ତି,

وَالَّذِيْنَ اِذَآ اَصَابَهُمُ الْبَغْيُ هُمْ يَنْتَصِرُوْنَ ۟

୪୧. (କିନ୍ତୁ ମନେରଖନ୍ତି) ଯେ ଅନିଷ୍ଟର ପ୍ରତିଶୋଧ ତଦନୁରୂପ ଅନିଷ୍ଟ ଅଟେ; ଏବଂ ଯେ କ୍ଷମା ପ୍ରଦାନ କରେ ଓ ସଂସ୍କାରକୁ ଦୃଷ୍ଟିରେ ରଖେ, ତାହାର ପୁରସ୍କାର ଅଲ୍ଲାହ୍‌ଙ୍କ ଠାରେ ରହିଅଛି; ସେ (ଅଲ୍ଲାହ୍) ଅତ୍ୟାଚାରୀମାନଙ୍କୁ ପସନ୍ଦ କରନ୍ତି ନାହିଁ ।

وَجَزٰٓؤُا سَيِّئَةٍ سَيِّئَةٌ مِّثْلُهَا ۚ فَمَنْ عَفَا وَاَصْلَحَ فَاَجْرُهٗ عَلَى اللّٰهِ ؕ اِنَّهٗ لَا يُحِبُّ الظّٰلِمِيْنَ ۟

୪୨. ଏବଂ ଯେଉଁମାନେ ନିଜ ଉପରେ ଅତ୍ୟାଚାର ହେବା ପରେ ସମୁଚିତ ପ୍ରତିଶୋଧ ନିଅନ୍ତି ସେମାନଙ୍କ ପ୍ରତି କୌଣସି ପ୍ରକାର ଦୋଷାରୋପ କରାହେବ ନାହିଁ ।

وَلَمَنِ انْتَصَرَ بَعْدَ ظُلْمِهٖ فَاُولٰٓئِكَ مَا عَلَيْهِمْ مِّنْ سَبِيْلٍ ۟ؕ

୪୩. ଦୋଷାରୋପ କେବଳ ସେହି ଲୋକମାନଙ୍କ ପ୍ରତି କରାଯାଏ ଯେଉଁମାନେ ଲୋକମାନଙ୍କ ଉପରେ ଅତ୍ୟାଚାର (ଓ ଆକ୍ରମଣ) ଆରମ୍ଭ କରନ୍ତି ଓ କୌଣସି ଯଥାର୍ଥତା ବିନା ଭୂପୃଷ୍ଠରେ ଉପଦ୍ରବ କରନ୍ତି; ସେପରି ଲୋକମାନେ ଯନ୍ତ୍ରଣାଦାୟକ ଶାସ୍ତି ପାଇବେ ।

اِنَّمَا السَّبِيْلُ عَلَى الَّذِيْنَ يَظْلِمُوْنَ النَّاسَ وَيَبْغُوْنَ فِي الْاَرْضِ بِغَيْرِ الْحَقِّ ؕ اُولٰٓئِكَ لَهُمْ عَذَابٌ اَلِيْمٌ ۟

୪୪. ଏବଂ ଯେ ଧୈର୍ଯ୍ୟଧାରଣ କରେ ଓ କ୍ଷମା କରେ ଏହା (ଅର୍ଥାତ୍ ତାହାର ଏପରି କାର୍ଯ୍ୟ) ଅତ୍ୟନ୍ତ ସାହସିକ କାର୍ଯ୍ୟର ଅନ୍ତର୍ଗତ ।

وَلَمَنْ صَبَرَ وَغَفَرَ اِنَّ ذٰلِكَ لَمِنْ عَزْمِ الْاُمُوْرِ ۟

ରୁ: ୫

୪୫. ଏବଂ ଯାହାକୁ ଅଲ୍ଲାହ ପଥଭ୍ରଷ୍ଟ ନିରୂପଣ କରନ୍ତି, ତେବେ ତାହାଙ୍କ ବ୍ୟତୀତ ଅନ୍ୟ କେହି ତାହାର ସାହାଯ୍ୟକାରୀ ହୋଇପାରିବେ ନାହିଁ; ଏବଂ ତୁମେ ଅତ୍ୟାଚାରୀମାନଙ୍କୁ ଲକ୍ଷ୍ୟ କରିବ ଯେ ଯେତେବେଳେ ସେମାନେ ଶାସ୍ତି ଉପସ୍ଥିତ ହେବା ଦେଖିବେ, ସେତେବେଳେ କହିବେ, "କ'ଣ ଏହି ଶାସ୍ତିକୁ ଫେରାଇ ଦେବାର କୌଣସି ଉପାୟ ଅଛି ?"

وَمَنْ يُّضْلِلِ اللّٰهُ فَمَا لَهٗ مِنْ وَّلِيٍّ مِّنْۢ بَعْدِهٖ ۗ وَتَرَى الظّٰلِمِيْنَ لَمَّا رَاَوُا الْعَذَابَ يَقُوْلُوْنَ هَلْ اِلٰى مَرَدٍّ مِّنْ سَبِيْلٍ ﴿٤٥﴾

୪୬. ଏବଂ ତୁମେ ସେମାନଙ୍କୁ ଲକ୍ଷ୍ୟ କରିବ ଯେ ସେମାନଙ୍କୁ ଏହି ଶାସ୍ତି ନିକଟରେ ହାଜର କରାହେବ, ଏବଂ ଅପମାନ ଯୋଗୁଁ ସେମାନେ ମସ୍ତକ ଅବନତ କରି ତଳକୁ ଚାହୁଁଥିବେ; ଏବଂ ବିଶ୍ୱାସକାରୀମାନେ କହିବେ, "ଯେଉଁମାନେ ନିଜକୁ ଓ ନିଜର ପରିବାରବର୍ଗଙ୍କୁ କୟାମତ ଦିନ କ୍ଷତିଗ୍ରସ୍ତ କରାନ୍ତି ସେହିମାନେ ହିଁ ପ୍ରକୃତ କ୍ଷତିଗ୍ରସ୍ତ;" ମନ ଦେଇ ଶୁଣ ! ଅତ୍ୟାଚାରୀମାନେ ଏକ ସ୍ଥାୟୀ ଶାସ୍ତି ଭୋଗ କରିବେ ।

وَتَرٰىهُمْ يُعْرَضُوْنَ عَلَيْهَا خٰشِعِيْنَ مِنَ الذُّلِّ يَنْظُرُوْنَ مِنْ طَرْفٍ خَفِيٍّ ۗ وَقَالَ الَّذِيْنَ اٰمَنُوْٓا اِنَّ الْخٰسِرِيْنَ الَّذِيْنَ خَسِرُوْٓا اَنْفُسَهُمْ وَاَهْلِيْهِمْ يَوْمَ الْقِيٰمَةِ ۗ اَلَآ اِنَّ الظّٰلِمِيْنَ فِيْ عَذَابٍ مُّقِيْمٍ ﴿٤٦﴾

୪୭. ଏବଂ ଅଲ୍ଲାହଙ୍କ ବିରୁଦ୍ଧରେ ସାହାଯ୍ୟ କରି ସେମାନଙ୍କୁ ଆଶ୍ରୟ ଦେବାକୁ କେହି ନ ଥିବେ; ଏବଂ ଯାହାକୁ ଅଲ୍ଲାହ ପଥଭ୍ରଷ୍ଟ ମନେ କରୁଛନ୍ତି ତାହାକୁ (ସତ୍) ପଥ ପ୍ରଦର୍ଶନ କରାଇବାକୁ କୌଣସି ଉପାୟ ନାହିଁ ।

وَمَا كَانَ لَهُمْ مِّنْ اَوْلِيَآءَ يَنْصُرُوْنَهُمْ مِّنْ دُوْنِ اللّٰهِ ۗ وَمَنْ يُّضْلِلِ اللّٰهُ فَمَا لَهٗ مِنْ سَبِيْلٍ ﴿٤٧﴾

୪୮. ଯେଉଁ ସମୟକୁ ଘୁଞ୍ଚାଇ ଦେବାପାଇଁ ଅଲ୍ଲାହଙ୍କ (ଇଚ୍ଛା) ବିରୁଦ୍ଧରେ କାହାରି ଶକ୍ତି ନାହିଁ ତାହାର ଆଗମନ ପୂର୍ବରୁ ତୁମେମାନେ ନିଜ ପାଳନକର୍ତ୍ତାଙ୍କ କହିବା ଶୁଣ; ସେ ଦିନ ତୁମମାନଙ୍କ ସକାଶେ କୌଣସି ଆଶ୍ରୟସ୍ଥଳ ନ ଥିବ ଏବଂ ତୁମମାନଙ୍କ ସକାଶେ (ନିଜ ଅବସ୍ଥାକୁ) ଅସ୍ୱୀକାର କରିବାର କୌଣସି ସୁଯୋଗ ନ ଥିବ ।

اِسْتَجِيْبُوْا لِرَبِّكُمْ مِّنْ قَبْلِ اَنْ يَّاْتِيَ يَوْمٌ لَّا مَرَدَّ لَهٗ مِنَ اللّٰهِ ۗ مَا لَكُمْ مِّنْ مَّلْجَاٍ يَّوْمَئِذٍ وَّمَا لَكُمْ مِّنْ نَّكِيْرٍ ﴿٤٨﴾

୪୯. ତଥାପି ଯଦି ସେମାନେ ବିମୁଖ ହୁଅନ୍ତି, ତେବେ (ସେପରି ହେଉଥା'ନ୍ତୁ) ଆମେ ତୁମକୁ ସେମାନଙ୍କ ଅଭିଭାବକ ନିଯୁକ୍ତ କରି ପ୍ରେରଣ କରିନାହୁଁ; ତୁମ ପକ୍ଷରେ କେବଳ ବାର୍ତ୍ତା ପହଞ୍ଚାଇ ଦେବା ଧାର୍ଯ୍ୟ କରାଯାଇଛି; ଏବଂ ଯେତେବେଳେ ଆମେ ମନୁଷ୍ୟକୁ ନିଜ ତରଫରୁ କରୁଣା ପ୍ରଦାନ କରିଥାଉ, ସେତେବେଳେ ସେ ସେଥିରେ ଆନନ୍ଦିତ ହୁଏ; ଏବଂ ଯଦି ତାହାର କୌଣସି କର୍ମ ଯୋଗୁଁ (ଆମ ନିକଟରୁ) ତାହାକୁ କୌଣସି ଦୁଃଖ ଦିଆଯାଏ, ତେବେ ମନୁଷ୍ୟ ଅକୃତଜ୍ଞ ହୋଇଯାଏ (ଏବଂ ପୂର୍ବରୁ କରାଯାଇଥିବା ସକଳ କରୁଣାକୁ ପାସୋରି ଦିଏ) ।

فَاِنْ اَعْرَضُوْا فَمَآ اَرْسَلْنٰكَ عَلَيْهِمْ حَفِيْظًا ۗ اِنْ عَلَيْكَ اِلَّا الْبَلٰغُ ۗ وَاِنَّآ اِذَآ اَذَقْنَا الْاِنْسَانَ مِنَّا رَحْمَةً فَرِحَ بِهَا ۚ وَاِنْ تُصِبْهُمْ سَيِّئَةٌۢ بِمَا قَدَّمَتْ اَيْدِيْهِمْ فَاِنَّ الْاِنْسَانَ كَفُوْرٌ ﴿٤٩﴾

لِلّٰهِ مُلْكُ السَّمٰوٰتِ وَالْاَرْضِ ۭ يَخْلُقُ مَا يَشَاۗءُ ۭ يَهَبُ لِمَنْ يَّشَاۗءُ اِنَاثًا وَّيَهَبُ لِمَنْ يَّشَاۗءُ الذُّكُوْرَ ۝٥٠

୫୦. ଆକାଶ ଓ ପୃଥିବୀର ଆଧିପତ୍ୟ ଅଲ୍ଲାହ୍‌ଙ୍କର; ସେ ଯାହା ଇଚ୍ଛା କରନ୍ତି, ସୃଷ୍ଟି କରନ୍ତି; ସେ ଯାହାକୁ ଇଚ୍ଛା କରନ୍ତି କନ୍ୟା ପ୍ରଦାନ କରନ୍ତି ଓ ଯାହାକୁ ଇଚ୍ଛା କରନ୍ତି ପୁତ୍ର ପ୍ରଦାନ କରନ୍ତି;

اَوْ يُزَوِّجُهُمْ ذُكْرَانًا وَّاِنَاثًا ۚ وَيَجْعَلُ مَنْ يَّشَاۗءُ عَقِيْمًا ۭ اِنَّهٗ عَلِيْمٌ قَدِيْرٌ ۝٥١

୫୧. ଅଥବା କନ୍ୟା ଓ ପୁତ୍ର ମିଶ୍ରିତ ରୂପେ ପ୍ରଦାନ କରନ୍ତି; ଏବଂ ଯାହାକୁ ଇଚ୍ଛା, ବନ୍ଧ୍ୟା କରି ଦିଅନ୍ତି; ସେ ହିଁ ସର୍ବଜ୍ଞ (ଓ) ସର୍ବ-ଶକ୍ତିମାନ୍ ।

وَمَا كَانَ لِبَشَرٍ اَنْ يُّكَلِّمَهُ اللّٰهُ اِلَّا وَحْيًا اَوْ مِنْ وَّرَاۗئِ حِجَابٍ اَوْ يُرْسِلَ رَسُوْلًا فَيُوْحِيَ بِاِذْنِهٖ مَا يَشَاۗءُ ۭ اِنَّهٗ عَلِيٌّ حَكِيْمٌ ۝٥٢

୫୨. ଏବଂ କୌଣସି ବ୍ୟକ୍ତି ପକ୍ଷରେ ଏହା ସମ୍ଭବପର ନୁହେଁ ଯେ ଅଲ୍ଲାହ୍ ତାହା ସହିତ ଓହି[୧] ମାଧ୍ୟମ ବା ପରଦା ଅନ୍ତରାଳ ଭିନ୍ନ ଅନ୍ୟ କୌଣସି ଉପାୟରେ କଥାବାର୍ତ୍ତା କରିବେ ଅଥବା (ତାହା ନିକଟକୁ ଦେବଦୂତମାନଙ୍କ ମଧ୍ୟରୁ) ଏପରି ବାର୍ତ୍ତାବାହକ ପ୍ରେରଣ କରିବେ ଯେ ତାହାଙ୍କ ଆଦେଶ ଅନୁଯାୟୀ ସେ ଯାହା କହିବାକୁ ଇଚ୍ଛା କରିବେ ତାହା ପହଞ୍ଚାଇ ଦେବେ; ସେ ହିଁ ଅତ୍ୟୁଚ୍ଚ (ଓ) ତତ୍ତ୍ୱଜ୍ଞ ।

وَكَذٰلِكَ اَوْحَيْنَآ اِلَيْكَ رُوْحًا مِّنْ اَمْرِنَا ۭ مَا كُنْتَ تَدْرِيْ مَا الْكِتٰبُ وَلَا الْاِيْمَانُ وَلٰكِنْ جَعَلْنٰهُ نُوْرًا نَّهْدِيْ بِهٖ مَنْ نَّشَاۗءُ مِنْ عِبَادِنَا ۭ وَاِنَّكَ لَتَهْدِيْٓ اِلٰى صِرَاطٍ مُّسْتَقِيْمٍ ۝٥٣

୫୩. ଏବଂ ଏହିପରି ଭାବରେ ଆମେ ତୁମ ପ୍ରତି ନିଜ ଆଦେଶ ଅନୁସାରେ ବାଣୀ ଅବତୀର୍ଣ୍ଣ କରିଅଛୁ, (ଧର୍ମ) ଗ୍ରନ୍ଥ କ'ଣ ବା (ଧର୍ମ) ବିଶ୍ୱାସ କ'ଣ ତାହା ତୁମେ ଜାଣି ନ ଥିଲ; କିନ୍ତୁ ଆମେ ଏହାକୁ (ଅର୍ଥାତ୍ ତୁମ ପ୍ରତି ପ୍ରେରିତ ଓହିକୁ) ଏକ ଜ୍ୟୋତିରେ ପରିଣତ କରିଅଛୁ ଏବଂ ଏହାଦ୍ୱାରା ଆମେ ନିଜ ଭକ୍ତମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା କରୁ ତାହାକୁ ସତ୍‌ପଥ ପ୍ରଦର୍ଶନ କରାଇଥାଉ; ଏବଂ ତୁମେ ବାସ୍ତବରେ ଲୋକମାନଙ୍କୁ ସରଳପଥ ଆଡକୁ ପରିଗ୍ଚାଳିତ କରୁଅଛ ।

صِرَاطِ اللّٰهِ الَّذِيْ لَهٗ مَا فِي السَّمٰوٰتِ وَمَا فِي الْاَرْضِ ۭ اَلَآ اِلَى اللّٰهِ تَصِيْرُ الْاُمُوْرُ ۝٥٣

୫୪. ସେହି ଅଲ୍ଲାହ୍‌ଙ୍କର ପଥ ଆଡକୁ, ଯେ ଆକାଶ ଓ ପୃଥିବୀରେ ଯାହା ଅଛି ତାହାର ଅଧିପତି ଅଟନ୍ତି; ଶୁଣ ! ସକଳ ବିଷୟ ଅଲ୍ଲାହ୍‌ଙ୍କ ନିକଟକୁ ଫେରିଯାଏ (ଅର୍ଥାତ୍ ସକଳ ବିଷୟର ପ୍ରାରମ୍ଭ ଓ ପରିଣତି ଅଲ୍ଲାହ୍‌ଙ୍କ ଠାରେ ନ୍ୟସ୍ତ) ।

---

୧. 'ଓହି' ର ପ୍ରକୃତ ଅର୍ଥ ହେଉଛି ଏପରି ସଙ୍କେତ ଯାହା ଶୀଘ୍ର ଦିଆଯାଏ ଓ ସେ ବିଷୟରେ ଅନ୍ୟ କେହି ଅବଗତ ହୁଅନ୍ତି ନାହିଁ । ସେଥିପାଇଁ ଅଲ୍ଲାହ୍‌ଙ୍କ ବାଣୀକୁ ଓହି କୁହାଯାଏ । ଏହା କେବଳ ସେହି ବ୍ୟକ୍ତି ପାଏ ଯାହାକୁ ସେ ଓହି ପ୍ରେରଣ କରନ୍ତି । ଅବଶ୍ୟ ଅଲ୍ଲାହ୍ ଚାହିଁଲେ ଏଥିରେ ଅନ୍ୟଙ୍କୁ ମଧ୍ୟ ସାମିଲ କରିପାରନ୍ତେ ।

ଏହି ଆୟତରେ ଅଲ୍ଲାହ୍ ନିଜ ଭକ୍ତମାନଙ୍କ ସହିତ ନିମ୍ନୋକ୍ତ ତିନିଗୋଟି ରୀତିରେ ବାର୍ତ୍ତାଳାପ କରିଥା'ନ୍ତି । (କ) ଭକ୍ତ ପ୍ରତି ତାଙ୍କ ବାଣୀର ପ୍ରତ୍ୟକ୍ଷ ଅବତରଣ (ଖ) ତାଙ୍କ ତରଫରୁ ଶବ୍ଦର ଅବତରଣ ହୁଏ ନାହିଁ ବରଂ ବିଷୟଟିର ବିବରଣାତ୍ମକ ଦୃଷ୍ଟାନ୍ତ ମାଧ୍ୟମରେ ଅଥବା ସାଧାରଣ ଦୃଶ୍ୟ ମାଧ୍ୟମରେ ପ୍ରଦର୍ଶନ । ଏହାକୁ ଏହି ଆୟତରେ 'ପରଦା ଅନ୍ତରାଳରେ' ଶବ୍ଦାବଳୀ ଦ୍ୱାରା ବର୍ଣ୍ଣନା କରାଯାଇଛି, ଅର୍ଥାତ୍ ଏହାର ଅସଲ ଉଦ୍ଦେଶ୍ୟ ପରଦା ଅନ୍ତରାଳରେ ଅଛି (ଗ) ସେ ନିଜ ବାଣୀକୁ ପ୍ରଥମେ ଦେବଦୂତମାନଙ୍କ ଉପରେ ଅବତରଣ କରନ୍ତି, ତା'ପରେ ସେମାନେ ଏହି ବାଣୀକୁ ଭକ୍ତଙ୍କ ପର୍ଯ୍ୟନ୍ତ ପହଞ୍ଚାଇ ଦିଅନ୍ତି ।

سُوْرَةُ الزُّخْرُفِ مَكِّيَّةٌ (٤٣)

# ଅଲ—ଜୁଖରୁଫ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୯୦ ଟି ଆୟତ୍ ଓ ୭ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

حٰمٓ ②

୨. ହା—ମୀମ ।

وَالْكِتٰبِ الْمُبِيْنِ ③

୩. ଆମେ ଏହି (ଧର୍ମ)ଗ୍ରନ୍ଥ ନାମରେ ଶପଥ-ପୂର୍ବକ କହୁଅଛୁ (ଅର୍ଥାତ୍ ଏହାକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ) ଯାହା ସ୍ୱ ବିଷୟ ବସ୍ତୁକୁ ସୁସ୍ପଷ୍ଟ ଭାବରେ ବର୍ଣ୍ଣନା କରେ ।

اِنَّا جَعَلْنٰهُ قُرْءٰنًا عَرَبِيًّا لَّعَلَّكُمْ تَعْقِلُوْنَ ④

୪. ଆମେ ଏହି (ଧର୍ମ) ଗ୍ରନ୍ଥକୁ କୋରାନ (ରୂପେ ରଚନା) କରିଅଛୁ; (ଏବଂ ଏହା ଏପରି ଗ୍ରନ୍ଥ)ଯାହାକି ଆରବୀ[1] (ଭାଷାରେ),ଯେପରିକି ତୁମେମାନେ (ସହଜରେ) ବୁଝିପାରିବ ।

وَاِنَّهٗ فِيْٓ اُمِّ الْكِتٰبِ لَدَيْنَا لَعَلِيٌّ حَكِيْمٌ ⑤

୫. ଏବଂ ଏହା (ଅର୍ଥାତ୍ କୋରାନ) ଗ୍ରନ୍ଥମାନଙ୍କର ଜନନୀ[2] ଅଟେ ; ଏବଂ ଆମ ନିକଟରେ ଅତ୍ୟନ୍ତ ମହାନ୍ (ଓ) ତତ୍ତ୍ୱ ସଂବଳିତ ଅଟେ ।

اَفَنَضْرِبُ عَنْكُمُ الذِّكْرَ صَفْحًا اَنْ كُنْتُمْ قَوْمًا مُّسْرِفِيْنَ ⑥

୬. କ'ଣ କେବଳ ଏଥି ସକାଶେ ଆମେ ତୁମମାନଙ୍କ ନିକଟରେ ଏହି ଅନୁସ୍ମାରକକୁ ବର୍ଣ୍ଣନା କରିବାରୁ ବିରତ ହେବୁ ? କାରଣ ତୁମେମାନେ ଏକ ସୀମା ଲଂଘନକାରୀ ସମ୍ପ୍ରଦାୟ ?

وَكَمْ اَرْسَلْنَا مِنْ نَّبِيٍّ فِي الْاَوَّلِيْنَ ⑦

୭. ଏବଂ ଆମେ ପୂର୍ବବର୍ତ୍ତୀ ସମ୍ପ୍ରଦାୟମାନଙ୍କ ମଧ୍ୟରେ ଅନେକ ନବି ପ୍ରେରଣ କରିଅଛୁ ।

وَمَا يَاْتِيْهِمْ مِّنْ نَّبِيٍّ اِلَّا كَانُوْا بِهٖ يَسْتَهْزِءُوْنَ ⑧

୮. ଏବଂ ସେମାନଙ୍କ ନିକଟକୁ ଏପରି କୌଣସି ନବି ଆସି ନ ଥିଲେ ଯାହା ସହିତ ସେମାନେ ପରିହାସ କରି ନ ଥିଲେ. (ତଥାପି ଆମେ ସେମାନଙ୍କ ପ୍ରତି ଓହି ପ୍ରେରଣ କରିଥିଲୁ) ।

---

୧. ଏଠାରେ 'କୋରାନନ୍ ଅରବିୟନ୍' ଶବଦାବଳୀ ପ୍ରୟୋଗ କରାଯାଇଛି । 'କୋରାନ'ଶବ୍ଦର ପ୍ରୟୋଗ ଏଥିଯୋଗୁଁ ହୋଇଛି ଯେ ଏହି ଗ୍ରନ୍ଥ ବହୁଳ ଭାବରେ ପଠିତ ହେବ ଅର୍ଥାତ୍ ଏହାର ପଠନ ସହଜ ହେବ ଏବଂ 'ଅରବିୟନ' ଶବ୍ଦ ମାଧ୍ୟମରେ ଏହା କୁହାଯାଇଛି ଯେ ଏହାର ଭାବାର୍ଥକୁ ବୁଝିବା ମଧ୍ୟ ସହଜ ହେବ, ଯେ ହେତୁ ଏହି ଗ୍ରନ୍ଥରେ ପ୍ରତ୍ୟେକ ବିଷୟ ସପ୍ରମାଣ ବର୍ଣ୍ଣନା କରାଯାଇଛି ।

୨. ମୂଳ ଶବଦ 'ଉମ୍ମୁଲ କିତାବ' ଅର୍ଥ ଗ୍ରନ୍ଥର ଜନନୀ । ଏଠାରେ ଏକ ରୂପକର ପ୍ରୟୋଗ କରାଯାଇଛି । ପ୍ରତ୍ୟେକ ଧର୍ମଶାସ୍ତ୍ର କୌଣସି ନା କୌଣସି ସିଦ୍ଧାନ୍ତର ଅଧାନ ଅଟେ ଏବଂ ସେପରି ସିଦ୍ଧାନ୍ତ ବିଭିନ୍ନ ଗ୍ରନ୍ଥର ଜନନୀ ସଦୃଶ । ଯେପରି ଜଣେ ନାରୀ ମାନବ ସମାଜର ଜନନୀ, ପବିତ୍ର କୋରାନ ସେହି ଅର୍ଥରେ ଅନ୍ୟାନ୍ୟ ଗ୍ରନ୍ଥର ଜନନୀ ଅଟେ. ଅର୍ଥାତ୍ ଅଲ୍ଲାହ ନୀତି ଦୃଷ୍ଟିରୁ ଯେଉଁ ଗ୍ରନ୍ଥକୁ ସଂସାରରେ ଅବତରଣ କରାଇବାର ଥିଲା ତନ୍ମଧ୍ୟରେ ପବିତ୍ର କୋରାନ ଗ୍ରନ୍ଥ ଅନ୍ତର୍ଭୁକ୍ତ । ସମ୍ଭବତଃ ପ୍ରାରମ୍ଭରୁ ଅଲ୍ଲାହ ଇଚ୍ଛା କରିଥିଲେ ଯେ ସଂସାରବାସୀଙ୍କୁ ସର୍ବୋତ୍କୃଷ୍ଟ ଆଦର୍ଶ ସ୍ଥାନୀୟ ଉପଦେଶ ପ୍ରଦାନ କରାଯିବା ପାଇଁ ସେ ଏହି ଗ୍ରନ୍ଥକୁ ଅବତରଣ କରାଇବେ ।

୯. ଏବଂ ଆମ୍ଭେ ସେମାନଙ୍କ ଅପେକ୍ଷା ଅଧିକ ବଳବାନ୍ ଲୋକମାନଙ୍କୁ (ଅବିଶ୍ୱାସ କରିବା ହେତୁ) ବିନାଶ କରିଥିଲୁ; ଏବଂ ସେମାନଙ୍କ ସାମନାରେ ପୂର୍ବବର୍ତ୍ତୀ ଲୋକମାନଙ୍କ ଦୃଷ୍ଟାନ୍ତ ଅତିବାହିତ ହୋଇଅଛି ।

فَأَهْلَكْنَآ أَشَدَّ مِنْهُم بَطْشًا وَمَضَىٰ مَثَلُ الْأَوَّلِينَ ٩

୧୦. ଏବଂ ଯଦି ତୁମ୍ଭେ ସେମାନଙ୍କୁ ପଚାରିବ ଯେ କିଏ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଅଛି, ତେବେ ସେମାନେ କହିବେ, "ପରାକ୍ରମୀ (ଓ) ସର୍ବଜ୍ଞ (ଅଲ୍ଲାହ) ସେଗୁଡ଼ିକୁ ସୃଷ୍ଟି କରିଛନ୍ତି ।"

وَلَئِن سَأَلْتَهُم مَّنْ خَلَقَ السَّمٰوٰتِ وَالْأَرْضَ لَيَقُولُنَّ خَلَقَهُنَّ الْعَزِيزُ الْعَلِيمُ ١٠

୧୧. ସେ (ଅଲ୍ଲାହ), ଯେ କି ତୁମମାନଙ୍କ ପାଇଁ ଭୂପୃଷ୍ଠକୁ ଶଯ୍ୟା କରିଛନ୍ତି, ଏବଂ ତନ୍ମଧ୍ୟରେ ତୁମମାନଙ୍କ ସକାଶେ ପଥ ତିଆରି କରିଛନ୍ତି ଯେପରିକି ତୁମେମାନେ ସତ୍‌ପଥ ପାଇପାରିବ,

الَّذِى جَعَلَ لَكُمُ الْأَرْضَ مَهْدًا وَّجَعَلَ لَكُمْ فِيهَا سُبُلًا لَّعَلَّكُمْ تَهْتَدُونَ ١١

୧୨. ଏବଂ ସେ ମେଘମାଳାରୁ ସମୁଚିତ ପରିମାଣରେ ଜଳ ବୃଷ୍ଟି କରାନ୍ତି; ତା'ପରେ ଏହା ଦ୍ୱାରା ମୃତ ଭୂମିକୁ ଜୀବିତ କରାନ୍ତି; ଏହିପରି ଭାବରେ ତୁମେମାନେ ମଧ୍ୟ (ପୁନର୍ଜୀବିତ ହୋଇ) ଉତ୍‌ଥିତ ହେବ;

وَالَّذِى نَزَّلَ مِنَ السَّمَآءِ مَآءًۢ بِقَدَرٍ فَأَنشَرْنَا بِهِۦ بَلْدَةً مَّيْتًا كَذٰلِكَ تُخْرَجُونَ ١٢

୧୩. ଏବଂ ସେ ହିଁ ତୁମମାନଙ୍କ ସକାଶେ ପ୍ରତ୍ୟେକ ପ୍ରକାର ଯୋଡା ସୃଷ୍ଟି କରିଛନ୍ତି; ଏବଂ ଏହିପରି ଭାବରେ ସେ ନୌକା ଓ ଚତୁଷ୍ପଦ (ପ୍ରାଣୀ) ସୃଷ୍ଟି କରିଛନ୍ତି, ଯାହା ଉପରେ ତୁମେ ଆରୋହଣ କର,

وَالَّذِى خَلَقَ الْأَزْوٰجَ كُلَّهَا وَجَعَلَ لَكُم مِّنَ الْفُلْكِ وَالْأَنْعٰمِ مَا تَرْكَبُونَ ١٣

୧୪. ଯେତେବେଳେ ତୁମେମାନେ ସେମାନଙ୍କ ପିଠି ଉପରେ ଭଲ ଭାବରେ ଆରୋହଣ କର, ସେତେବେଳେ ନିଜ ପାଳନକର୍ତ୍ତାଙ୍କ ଅନୁଗ୍ରହକୁ ସ୍ମରଣ କର, ଏବଂ କୁହ, "ଯେଉଁ ଅଲ୍ଲାହ ଆମମାନଙ୍କୁ ଏମାନଙ୍କ ଉପରେ ଆଧିପତ୍ୟ ପ୍ରଦାନ କରିଛନ୍ତି, ସେ ହିଁ ପବିତ୍ର; ଅନ୍ୟଥା ଆମେମାନେ ନିଜ ବଳରେ ଏମାନଙ୍କୁ ଆୟତ୍ତାଧୀନ କରିବାକୁ ସକ୍ଷମ ନ ଥିଲୁ ।"

لِتَسْتَوُۥا عَلٰى ظُهُورِهِۦ ثُمَّ تَذْكُرُوا نِعْمَةَ رَبِّكُمْ إِذَا اسْتَوَيْتُمْ عَلَيْهِ وَتَقُولُوا سُبْحٰنَ الَّذِى سَخَّرَ لَنَا هٰذَا وَمَا كُنَّا لَهُۥ مُقْرِنِينَ ١٤

୧୫. "ଏବଂ ବାସ୍ତବରେ ଆମେମାନେ ଦିନେ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରିଯିବୁ ।"

وَإِنَّآ إِلٰى رَبِّنَا لَمُنقَلِبُونَ ١٥

୧୬. (କିନ୍ତୁ ପ୍ରକୃତ କଥା ହେଉଛି ଯେ) ସେମାନେ ଅଲ୍ଲାହଙ୍କର କେତେକ ଭକ୍ତଙ୍କୁ ତାହାଙ୍କର ଅଂଶ ମନେ କରୁଛନ୍ତି (ଅର୍ଥାତ୍ ସେହି ଭକ୍ତମାନଙ୍କୁ ପ୍ରକୃତ ପ୍ରଭୁ ରୂପେ ଗ୍ରହଣ କରିଛନ୍ତି); ମନୁଷ୍ୟ ବାସ୍ତବରେ ପ୍ରକାଶ୍ୟ କୃତଘ୍ନ ଅଟେ ।

وَجَعَلُوا لَهُۥ مِنْ عِبَادِهِۦ جُزْءًا إِنَّ الْإِنسٰنَ لَكَفُورٌ مُّبِينٌ ١٦ ع

ରୁ: ୨

୧୭. (ସେମାନଙ୍କୁ ପଚାର ତ ଭଲା) କ'ଣ ସେ ଯାହା ସୃଷ୍ଟି କରିଛନ୍ତି ତହିଁରୁ ନିଜ ପାଇଁ କନ୍ୟାମାନଙ୍କୁ ରଖିଛନ୍ତି, ଏବଂ ତୁମମାନଙ୍କୁ ପୁତ୍ର ଦ୍ୱାରା ଶ୍ରେଷ୍ଠତା ପ୍ରଦାନ କରିଛନ୍ତି ?

أَمِ اتَّخَذَ مِمَّا يَخْلُقُ بَنَاتٍ وَأَصْفَاكُمْ بِالْبَنِينَ ﴿١٧﴾

୧୮. ଏବଂ ଯେତେବେଳେ ସେମାନଙ୍କ ମଧ୍ୟରୁ କାହାରିକୁ ସେହି ବିଷୟରେ ସମାଚାର ଦିଆଯାଏ ଯେଉଁ ବିଷୟକୁ ସେ ଦୟାବାନ୍ (ଅଲ୍ଲାହ)ଙ୍କ ପ୍ରତି ଅଭିପ୍ରେତ କରୁଥାଏ, ସେତେବେଳେ ତାହାର ମୁହଁ କଳା ପଡିଯାଏ ଓ ସେ କ୍ରୋଧାନ୍ବିତ ହୋଇଉଠେ ।

وَإِذَا بُشِّرَ أَحَدُهُمْ بِمَا ضَرَبَ لِلرَّحْمَٰنِ مَثَلًا ظَلَّ وَجْهُهُ مُسْوَدًّا وَهُوَ كَظِيمٌ ﴿١٨﴾

୧୯. କ'ଣ ଯେ ଅଳଙ୍କାରଗୁଡ଼ିକ ମଧ୍ୟରେ ପ୍ରତିପାଳିତ ହୁଏ, ଏବଂ କଳହ ସମୟରେ ନିଜ ବକ୍ତବ୍ୟକୁ ଠିକ୍ ଭାବରେ ପ୍ରକାଶ କରିପାରେ ନାହିଁ (ସେ ଅଲ୍ଲାହଙ୍କ ଭାଗରେ ପଡେ ଓ ପରାକ୍ରମଶାଳୀ ପୁରୁଷମାନଙ୍କ ଭାଗରେ ପଡେ) ?

أَوَمَنْ يُنَشَّأُ فِي الْحِلْيَةِ وَهُوَ فِي الْخِصَامِ غَيْرُ مُبِينٍ ﴿١٩﴾

୨୦. ଏବଂ ସେମାନେ ଦେବଦୂତମାନଙ୍କୁ, ଯେଉଁମାନେ କି ଦୟାବାନ୍ (ଅଲ୍ଲାହ)ଙ୍କ ଭକ୍ତ ଅଟନ୍ତି; ସେମାନଙ୍କୁ ନାରୀ ନିରୂପଣ କରିଛନ୍ତି; କ'ଣ ସେମାନେ ସେମାନଙ୍କ ସୃଷ୍ଟି ସମୟରେ ଉପସ୍ଥିତ ଥିଲେ ? (ଯଦି ଏପରି ହୋଇଥାଏ) ତେବେ ସେମାନଙ୍କର ସାକ୍ଷ୍ୟ ନିଶ୍ଚୟ ଲିପିବଦ୍ଧ ହେବ, ଏବଂ (କୟାମତ ଦିନ) ସେମାନଙ୍କୁ ଏ ସଂକ୍ରାନ୍ତରେ ପ୍ରଶ୍ନ କରାଯିବ ।

وَجَعَلُوا الْمَلَائِكَةَ الَّذِينَ هُمْ عِبَادُ الرَّحْمَٰنِ إِنَاثًا ۚ أَشَهِدُوا خَلْقَهُمْ ۚ سَتُكْتَبُ شَهَادَتُهُمْ وَيُسْأَلُونَ ﴿٢٠﴾

୨୧. ଏବଂ ସେମାନେ କହନ୍ତି, "ଯଦି ଦୟାବାନ୍ (ଅଲ୍ଲାହ) ଇଚ୍ଛା କରିଥାନ୍ତେ, ତେବେ ଆମେମାନେ ତାହାଙ୍କ ବ୍ୟତୀତ ଅନ୍ୟ ଉପାସ୍ୟମାନଙ୍କୁ ଆରାଧନା କରି ନ ଥାନ୍ତୁ"; ଏ ବିଷୟରେ ସେମାନଙ୍କର କୌଣସି ବାସ୍ତବ ଜ୍ଞାନ ନାହିଁ; ସେମାନେ ଏହା କେବଳ ଅନୁମାନ କରି କହୁଛନ୍ତି ।

وَقَالُوا لَوْ شَاءَ الرَّحْمَٰنُ مَا عَبَدْنَاهُمْ ۗ مَا لَهُمْ بِذَٰلِكَ مِنْ عِلْمٍ ۖ إِنْ هُمْ إِلَّا يَخْرُصُونَ ﴿٢١﴾

୨୨. କ'ଣ ଆମେ ଏହା (ଅର୍ଥାତ୍ ଏହି କୋରାନ) ପୂର୍ବରୁ ସେମାନଙ୍କୁ ଏପରି କୌଣସି (ଧର୍ମ) ଗ୍ରନ୍ଥ ଦେଇଅଛୁ (ଯେହିଁରେ ଏହା ଲିପିବଦ୍ଧ ରହିଅଛି) ଯେ ସେମାନେ ତାହାକୁ ପ୍ରମାଣ ମନେ କରୁଛନ୍ତି ।

أَمْ آتَيْنَاهُمْ كِتَابًا مِنْ قَبْلِهِ فَهُمْ بِهِ مُسْتَمْسِكُونَ ﴿٢٢﴾

୨୩. ନା, ଏପରି ନୁହେଁ, ବରଂ ବାସ୍ତବରେ ସେମାନେ ଏ ବିଷୟ ପ୍ରତି ବଦ୍ଧପରିକର ହୋଇ କହନ୍ତି, "ଆମେମାନେ ନିଜର ପୂର୍ବପୁରୁଷମାନଙ୍କୁ ଏକ ପନ୍ଥା ଅନୁସରଣ କରିବା ଦେଖିଥିଲୁ, ଏବଂ ଆମେମାନେ ସେମାନଙ୍କ ପଦାଙ୍କ ଅନୁସରଣ କରିବୁ ।"

بَلْ قَالُوا إِنَّا وَجَدْنَا آبَاءَنَا عَلَىٰ أُمَّةٍ وَإِنَّا عَلَىٰ آثَارِهِمْ مُهْتَدُونَ ﴿٢٣﴾

وَكَذٰلِكَ مَآ اَرۡسَلۡنَا مِنۡ قَبۡلِكَ فِیۡ قَرۡیَةٍ مِّنۡ نَّذِیۡرٍ اِلَّا قَالَ مُتۡرَفُوۡهَاۤ ۙ اِنَّا وَجَدۡنَاۤ اٰبَآءَنَا عَلٰۤی اُمَّةٍ وَّ اِنَّا عَلٰۤی اٰثٰرِهِمۡ مُّقۡتَدُوۡنَ ﴿۲۴﴾

୨୪. ଏବଂ (ହେ ରସୁଲ !) ଆମେ ତୁମ ପୂର୍ବରୁ କୌଣସି ଜନବସତିକୁ କୌଣସି ସଚେତନକାରୀ (ରସୁଲ ଏପରି) ପ୍ରେରଣ କରି ନ ଥିଲୁ ଯେ ତାହାର ଧନଶାଳୀ ଲୋକମାନେ ଏହି (ଲୋକ)ମାନଙ୍କ ଭଳି କହି ନ ଥିଲେ ଯେ ଆମେମାନେ ନିଜର ପୂର୍ବପୁରୁଷମାନଙ୍କୁ ଏକ ପନ୍ଥା ଅନୁସରଣ କରିବା ଦେଖିଥିଲୁ, ଏବଂ ଆମେମାନେ ସେମାନଙ୍କର ପଦାଙ୍କ ହିଁ ଅନୁସରଣ କରିବୁ ।"

قٰلَ اَوَلَوۡ جِئۡتُكُمۡ بِاَهۡدٰی مِمَّا وَجَدۡتُّمۡ عَلَیۡهِ اٰبَآءَكُمۡ ؕ قَالُوۡۤا اِنَّا بِمَاۤ اُرۡسِلۡتُمۡ بِهٖ كٰفِرُوۡنَ ﴿۲۵﴾

୨୫. (ଏ ବିଷୟରେ ପ୍ରତ୍ୟେକ ରସୁଲ) ଉତ୍ତର ଦେଇଥିଲେ, "କ'ଣ ଯଦି ଆମେ ତୁମମାନଙ୍କର ପୂର୍ବପୁରୁଷମାନେ ଅନୁସରଣ କରୁଥିବା ଶିକ୍ଷା ଅପେକ୍ଷା ଅଧିକ ଉତ୍କୃଷ୍ଟ ଶିକ୍ଷା ତୁମମାନଙ୍କ ନିକଟକୁ ଘେନି ଆସୁ, (ତେବେ ମଧ୍ୟ ତୁମେମାନେ ସେ ବିଷୟରେ ବଦ୍ଧପରିକର ରହିବ) ?" ସେମାନେ ଉତ୍ତର ଦେଲେ, "ଯେଉଁ ଶିକ୍ଷା ସହିତ ତୁମେ ପ୍ରେରିତ ହୋଇଅଛ ଆମେମାନେ ତାହାକୁ ଅସ୍ୱୀକାର କରୁଅଛୁ ।"

فَانۡتَقَمۡنَا مِنۡهُمۡ فَانۡظُرۡ كَیۡفَ كَانَ عَاقِبَةُ الۡمُكَذِّبِیۡنَ ﴿۲۶﴾

୨୬. ଏବଂ ଆମେ ସେମାନଙ୍କ ଠାରୁ ପ୍ରତିଶୋଧ ନେଲୁ; ସୁତରାଂ ଦେଖ; ମିଥ୍ୟା ଆରୋପକାରୀମାନଙ୍କ ପରିଣାମ କିପରି ହୋଇଥିଲା ।

ରୁ:୩

وَاِذۡ قَالَ اِبۡرٰهِیۡمُ لِاَبِیۡهِ وَقَوۡمِهٖۤ اِنَّنِیۡ بَرَآءٌ مِّمَّا تَعۡبُدُوۡنَ ﴿۲۷﴾

୨୭. ଏବଂ (ସ୍ମରଣ କର) ଯେତେବେଳେ ଇବ୍ରାହିମ ନିଜର ପିତା ଓ ନିଜର ସମ୍ପ୍ରଦାୟକୁ କହିଥିଲେ, "ତୁମେମାନେ ଯେଉଁମାନଙ୍କର ଉପାସନା କରୁଅଛ ଆମେ ସେମାନଙ୍କୁ ପ୍ରତ୍ୟାଖ୍ୟାନ କରୁଅଛୁ,"

اِلَّا الَّذِیۡ فَطَرَنِیۡ فَاِنَّهٗ سَیَهۡدِیۡنِ ﴿۲۸﴾

୨୮. "କେବଳ ତାହାଙ୍କ ବ୍ୟତୀତ, ଯେ ଆମଙ୍କୁ ସୃଷ୍ଟି କରିଛନ୍ତି; ଏବଂ ସେ ଆମଙ୍କୁ ନିଶ୍ଚୟ ସତ୍‌ପଥ ପ୍ରଦର୍ଶନ କରାଇବେ ।"

وَجَعَلَهَا كَلِمَةًۢ بَاقِیَةً فِیۡ عَقِبِهٖ لَعَلَّهُمۡ یَرۡجِعُوۡنَ ﴿۲۹﴾

୨୯. ଏବଂ ଇବ୍ରାହିମ ଏହି ଶିକ୍ଷାକୁ ଏକ ସ୍ଥାୟୀ ସ୍ମାରକୀ ସ୍ୱରୂପ ନିଜ ବଂଶଧରଙ୍କ ସକାଶେ ଛାଡ଼ି ଯାଇଛନ୍ତି ଯଦ୍ଦ୍ୱାରା ସେମାନେ (ପିତୁଳା ପୂଜାରୁ) ବିରତ ହେବେ ।

بَلۡ مَتَّعۡتُ هٰۤؤُلَآءِ وَاٰبَآءَهُمۡ حَتّٰی جَآءَهُمُ الۡحَقُّ وَرَسُوۡلٌ مُّبِیۡنٌ ﴿۳۰﴾

୩୦. ବାସ୍ତବରେ ସେମାନଙ୍କ ନିକଟକୁ ସତ୍ୟ ଓ ସୁସ୍ପଷ୍ଟ ବର୍ଣ୍ଣନାକାରୀ ରସୁଲ ଆସିବା ପର୍ଯ୍ୟନ୍ତ ଆମେ ସେମାନଙ୍କୁ ଓ ସେମାନଙ୍କ ପିତୃପିତାମହମାନଙ୍କୁ ସାଂସାରିକ ଲାଭ ପ୍ରଦାନ କରିଥିଲୁ ।

୩୧. ଏବଂ ଯେତେବେଳେ ସେମାନଙ୍କ ନିକଟରେ ସତ୍ୟ ଉପସ୍ଥିତ ହେଲା, ସେତେବେଳେ ସେମାନେ କହିଲେ, "ଏହା କେବଳ ପ୍ରତାରଣା-ମୂଳକ କଥା, ଓ ଆମେମାନେ ଏହାକୁ ପ୍ରତ୍ୟାଖ୍ୟାନ କରୁଅଛୁ ।"

وَلَمَّا جَاءَهُمُ الْحَقُّ قَالُوا هَٰذَا سِحْرٌ وَإِنَّا بِهِ كَافِرُونَ ۝٣٠

୩୨. ଏବଂ ସେମାନେ ପ୍ରତିବାଦ-ପୂର୍ବକ କହିଲେ, "ଏହି କୋରାନ ଦୁଇ[1] ମୁଖ୍ୟ ସହରର କୌଣସି ପ୍ରଧାନ ବ୍ୟକ୍ତିଙ୍କ ଉପରେ କାହିଁକି ଅବତୀର୍ଣ୍ଣ ହେଲା ନାହିଁ ?"

وَقَالُوا لَوْلَا نُزِّلَ هَٰذَا الْقُرْآنُ عَلَىٰ رَجُلٍ مِّنَ الْقَرْيَتَيْنِ عَظِيمٍ ۝٣١

୩୩. କ'ଣ ସେମାନେ ତୁମ ପାଳନକର୍ତ୍ତାଙ୍କ କରୁଣାକୁ ବିତରଣ କରୁଛନ୍ତି ? (ଏହା କିପରି ସମ୍ଭବ ହେବ ?)· ଆମେ ସେମାନଙ୍କ ମଧ୍ୟରେ ସାଂସାରିକ ଜୀବିକା-ନିର୍ବାହ ସାମଗ୍ରୀ ବିତରଣ କରିଅଛୁ, ଏବଂ ସେମାନଙ୍କ ମଧ୍ୟରେ କେତେକଙ୍କୁ ଅନ୍ୟ କେତେକଙ୍କ ଉପରେ ପ୍ରାଧାନ୍ୟ ଦେଇଅଛୁ ଯାହା ଫଳରେ ସେମାନଙ୍କ ମଧ୍ୟରୁ କେତେକ ଅନ୍ୟ କେତେକଙ୍କୁ ନଗଣ୍ୟ ମନେ କରୁଛନ୍ତି; ଏବଂ ସେମାନେ ଯାହା ଧନସମ୍ପତ୍ତି ଠୁଳ କରୁଛନ୍ତି ତାହା ଅପେକ୍ଷା ତୁମ ପାଳନକର୍ତ୍ତାଙ୍କ କରୁଣା ଉତ୍କୃଷ୍ଟ ଅଟେ ।

أَهُمْ يَقْسِمُونَ رَحْمَتَ رَبِّكَ ۚ نَحْنُ قَسَمْنَا بَيْنَهُم مَّعِيشَتَهُمْ فِي الْحَيَاةِ الدُّنْيَا ۚ وَرَفَعْنَا بَعْضَهُمْ فَوْقَ بَعْضٍ دَرَجَاتٍ لِّيَتَّخِذَ بَعْضُهُم بَعْضًا سُخْرِيًّا ۗ وَرَحْمَتُ رَبِّكَ خَيْرٌ مِّمَّا يَجْمَعُونَ ۝٣٢

୩୪. ଏବଂ ଯଦି ଏହି ଭୟ ନ ଥା'ନ୍ତା ଯେ ସମସ୍ତେ ଏକା ରକମର ହୋଇଯିବେ, ତେବେ ଆମେ ଦୟାବାନ୍ (ଅଲ୍ଲାହ)ଙ୍କୁ ଅବଜ୍ଞା କରୁଥିବା ଲୋକମାନଙ୍କର ଛାତ ଓ ଯେଉଁ ପାହାଚ ଉପରେ ସେମାନେ ଆରୋହଣ କରନ୍ତି ତାହାକୁ ରୂପାରେ ଗଢ଼ି ଦିଅନ୍ତୁ ।

وَلَوْلَا أَن يَكُونَ النَّاسُ أُمَّةً وَاحِدَةً لَّجَعَلْنَا لِمَن يَكْفُرُ بِالرَّحْمَٰنِ لِبُيُوتِهِمْ سُقُفًا مِّن فِضَّةٍ وَمَعَارِجَ عَلَيْهَا يَظْهَرُونَ ۝٣٣

୩୫. ଏବଂ ସେମାନଙ୍କ ଗୃହର ଦ୍ୱାରକୁ ମଧ୍ୟ (ରୂପାରେ ଗଢ଼ି ଦିଅନ୍ତୁ); ଏବଂ (ସେହିପରି ଭାବରେ) ସେମାନଙ୍କ ପଲଙ୍କକୁ ମଧ୍ୟ, ଯାହା ଉପରେ ସେମାନେ ତକିଆ ଲଗାଇ ବସନ୍ତି (ତାହାକୁ ମଧ୍ୟ ରୂପାରେ ଗଢ଼ି ଦିଅନ୍ତୁ) ।

وَلِبُيُوتِهِمْ أَبْوَابًا وَسُرُرًا عَلَيْهَا يَتَّكِئُونَ ۝٣٤

୩୬. ବରଂ ସୁନାରେ ଗଢ଼ି ଦିଅନ୍ତୁ; କିନ୍ତୁ ଏ ସବୁ ସାଂସାରିକ ଜୀବନର ସାମଗ୍ରୀ; ଏବଂ ପରକାଳ (ସୁଖ) ତୁମ ପାଳନକର୍ତ୍ତାଙ୍କ ନିଷ୍ପତ୍ତି ଅନୁଯାୟୀ କେବଳ ଧର୍ମଭୀରୁମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ହୋଇ ରହିଅଛି ।

وَزُخْرُفًا ۚ وَإِن كُلُّ ذَٰلِكَ لَمَّا مَتَاعُ الْحَيَاةِ الدُّنْيَا ۚ وَالْآخِرَةُ عِندَ رَبِّكَ لِلْمُتَّقِينَ ۝٣٥

---

୧. ଅର୍ଥାତ୍ ମକ୍କା ଓ ତାଏଫ । ସେମାନେ ଆପତ୍ତି କରୁଥିଲେ ଯେ ଜଣେ ଅନାଥଙ୍କ ଉପରେ ଏହି ଗ୍ରନ୍ଥ କାହିଁକି ଅବତୀର୍ଣ୍ଣ ହେଲା ଯେତେବେଳେ କି ଅଲ୍ଲାହ ବିଭିନ୍ନ ସମ୍ପ୍ରଦାୟର ମୁଖ୍ୟମାନଙ୍କୁ ପ୍ରବର୍ତ୍ତାଇବା ସକାଶେ ମକ୍କା ବା ତାଏଫ ସହରର କୌଣସି ମୁଖ୍ୟ ବ୍ୟକ୍ତିଙ୍କ ଉପରେ ଏହାକୁ ଅବତୀର୍ଣ୍ଣ କରାଇ ପାରିଥାନ୍ତେ । ଏହା ଏକ ପୁରୁଣା ଆପତ୍ତି ଓ ଏବେ ବି କରାଯାଉଛି । ଆଜିର ମାନବ ସମାଜ ମଧ୍ୟ ସଂସ୍କାରକମାନଙ୍କ ଉପରେ ଅନୁରୂପ ଦୋଷାରୋପ କରୁଛନ୍ତି ।

ରୁ:୪

୩୭. ଏବଂ ଯେ କେହି ଦୟାବାନ୍ (ଅଲ୍ଲାହ)ଙ୍କ ସ୍ମରଣରୁ ବିମୁଖ ହୁଏ, ଆମ୍ଭେ ତାହା ପାଇଁ ଜଣେ ସଇତାନ ସ୍ୱଭାବର ବ୍ୟକ୍ତିକୁ ନିଯୁକ୍ତ କରୁ; ଏବଂ ସେ ତାହାର ନିତିଦିନିଆ ସାଥୀ ହୋଇ ରହେ ।

وَمَنْ يَّعْشُ عَنْ ذِكْرِ الرَّحْمٰنِ نُقَيِّضْ لَهٗ شَيْطٰنًا فَهُوَ لَهٗ قَرِيْنٌ ۝٣٧

୩୮. ଏବଂ ସେ (ସଇତାନ) ମାନେ ସେମାନଙ୍କୁ ସତ୍‌ପଥରୁ ଅଟକାଇ ରଖନ୍ତି, କିନ୍ତୁ ଏହା ସତ୍ତ୍ୱେ ସେମାନେ ଭାବନ୍ତି ଯେ ସେମାନେ ସତ୍‌ପଥରେ ପରିଚାଳିତ ହେଉଛନ୍ତି ।

وَاِنَّهُمْ لَيَصُدُّوْنَهُمْ عَنِ السَّبِيْلِ وَيَحْسَبُوْنَ اَنَّهُمْ مُّهْتَدُوْنَ ۝٣٨

୩୯. (ମଣିଷ ବଞ୍ଚିଥିବା ପର୍ଯ୍ୟନ୍ତ ଏହା ହୁଏ) କିନ୍ତୁ ଯେତେବେଳେ ସେ ଆମ୍ଭ ନିକଟକୁ ଆସେ, ସେତେବେଳେ (ତାର ସମସ୍ତ ଭ୍ରାନ୍ତ ଧାରଣା ଦୂରୀଭୂତ ହୁଏ ଏବଂ ସେ) କହେ, ''ହାୟ ! ମୋର ଓ ତୋର (ଅର୍ଥାତ୍ ସଇତାନର ) ମଧ୍ୟରେ ପୂର୍ବ ଓ ପଶ୍ଚିମର ବ୍ୟବଧାନ ଥାଆନ୍ତା କି !'' ସୁତରାଂ (ସ୍ୱୟଂ ମନୁଷ୍ୟର ଉପରୋକ୍ତ ବକ୍ତବ୍ୟରୁ ଏହା ପ୍ରମାଣିତ ହେଲା ଯେ) ସେ (ସଇତାନ) ଅତ୍ୟନ୍ତ ମନ୍ଦ ସାଥୀ ଅଟେ ।

حَتّٰۤى اِذَا جَآءَنَا قَالَ يٰلَيْتَ بَيْنِيْ وَبَيْنَكَ بُعْدَ الْمَشْرِقَيْنِ فَبِئْسَ الْقَرِيْنُ ۝٣٩

୪୦. ଏବଂ (ଆମ୍ଭେ ସେ ଦିନ ଲୋକମାନଙ୍କୁ କହିବୁ) ଯେ-ହେତୁ ତୁମେମାନେ ଅତ୍ୟାଚାର କରିଅଛ ତେଣୁ ଆଜି ଏହି ବିଷୟ ତୁମମାନଙ୍କ ପାଇଁ ଲାଭଦାୟକ ହେବନାହିଁ ଯେ ତୁମେ ଓ ତୁମମାନଙ୍କୁ ପ୍ରତାରିତ କରିଥିବା ବ୍ୟକ୍ତିମାନେ ଏକ ସଙ୍ଗେ ଶାସ୍ତି ଭୋଗ କରୁଅଛ ।

وَلَنْ يَّنْفَعَكُمُ الْيَوْمَ اِذْ ظَّلَمْتُمْ اَنَّكُمْ فِى الْعَذَابِ مُشْتَرِكُوْنَ ۝٤٠

୪୧. କ'ଣ ତୁମେ ବଧିର ବ୍ୟକ୍ତିକୁ ଶୁଣାଇ ପାରିବ, ଅଥବା ଅନ୍ଧକୁ ପଥ ପ୍ରଦର୍ଶନ କରାଇ ପାରିବ ତଥା ଯେ ସ୍ପଷ୍ଟରୂପେ ପଥଭ୍ରାନ୍ତ ହୋଇଅଛି ତାହାକୁ (ପଥ ପ୍ରଦର୍ଶନ କରାଇ ପାରିବ) ?

اَفَاَنْتَ تُسْمِعُ الصُّمَّ اَوْ تَهْدِى الْعُمْىَ وَمَنْ كَانَ فِىْ ضَلٰلٍ مُّبِيْنٍ ۝٤١

୪୨. ଯଦି ଆମ୍ଭେ ତୁମ୍ଭଙ୍କୁ ଏହି ସଂସାରରୁ ଘେନି ଯାଉ (ଅର୍ଥାତ୍ ମୃତ୍ୟୁ ପ୍ରଦାନ କରୁ) ତାହାହେଲେ ମଧ୍ୟ ଆମ୍ଭେ ସେମାନଙ୍କ ଠାରୁ ନିଶ୍ଚୟ ପ୍ରତିଶୋଧ ନେବୁ,

فَاِمَّا نَذْهَبَنَّ بِكَ فَاِنَّا مِنْهُمْ مُّنْتَقِمُوْنَ ۝٤٢

୪୩. ଅଥବା ଆମ୍ଭେ ତୁମ୍ଭଙ୍କୁ ସେହି ବିଷୟ ପ୍ରଦର୍ଶିତ କରାଇବୁ ଯାହା ସମ୍ବନ୍ଧରେ ଆମ୍ଭେ ସେମାନଙ୍କ ସହ ଅଙ୍ଗୀକାର କରିଅଛୁ [୧]; (ମନେରଖ) ସେମାନଙ୍କ ଉପରେ ଆମ୍ଭର ସମ୍ପୂର୍ଣ୍ଣ କ୍ଷମତା ରହିଅଛି ।

اَوْ نُرِيَنَّكَ الَّذِىْ وَعَدْنٰهُمْ فَاِنَّا عَلَيْهِمْ مُّقْتَدِرُوْنَ ۝٤٣

୧. ଅର୍ଥାତ୍ ତୁମ ଜୀବଦ୍ଦଶାରେ ବା ତୁମ ମୃତ୍ୟୁ ପରେ ଅବିଶ୍ୱାସକାରୀମାନଙ୍କ ପ୍ରତି ଶାସ୍ତି ପ୍ରେରିତ ହେବ ଏବଂ ଏ ଦୁଇ ବିଷୟ ଅଲ୍ଲାହଙ୍କର ଅଧିକାରଭୁକ୍ତ ।

୪୪. ଏବଂ ତୁମ ପ୍ରତି ଓହି କରାଯାଇଥିବା ଏହି ବାଣୀକୁ ତୁମେ ଦୃଢ଼ ଭାବରେ ଧାରଣ କର, କାରଣ ତୁମେ ସତ୍‌ପଥରେ ରହିଅଛ ।

فَاسْتَمْسِكْ بِالَّذِىٓ اُوْحِىَ اِلَيْكَ ۚ اِنَّكَ عَلٰى صِرَاطٍ مُّسْتَقِيْمٍ ﴿٤٤﴾

୪୫. ଏବଂ ଏହା (ଅର୍ଥାତ୍ କୋରାନ) ତୁମ ସକାଶେ ଓ ତୁମ ସମ୍ପ୍ରଦାୟଙ୍କ ସକାଶେ ଏକ ଅନୁସ୍ମାରକ; ଏବଂ ତୁମମାନଙ୍କୁ ନିଜ କାର୍ଯ୍ୟ ସଂକ୍ରାନ୍ତରେ ନିଶ୍ଚୟ ପ୍ରଶ୍ନ କରାଯିବ ।

وَاِنَّهٗ لَذِكْرٌ لَّكَ وَلِقَوْمِكَ ۚ وَسَوْفَ تُسْـَٔلُوْنَ ﴿٤٥﴾

୪୬. ଏବଂ ଯେଉଁ ରସୁଲମାନଙ୍କୁ ଆମେ ତୁମ ପୂର୍ବରୁ ପ୍ରେରଣ କରିଅଛୁ ସେମାନଙ୍କୁ ପଚ୍ଚର [୧] , "କ'ଣ ଆମେ (ନିଜ ଗ୍ରନ୍ଥମାନଙ୍କରେ) ଦୟାବାନ୍ (ଅଲ୍ଲାହ)ଙ୍କ ବ୍ୟତୀତ ଅନ୍ୟ ଉପାସ୍ୟମାନଙ୍କର ବର୍ଣ୍ଣନା କରିଥିଲୁ, ଯେଉଁମାନଙ୍କର ଉପାସନା କରାଯାଉଥିଲା ?"

وَسْـَٔلْ مَنْ اَرْسَلْنَا مِنْ قَبْلِكَ مِنْ رُّسُلِنَآ اَجَعَلْنَا مِنْ دُوْنِ الرَّحْمٰنِ اٰلِهَةً يُّعْبَدُوْنَ ﴿٤٦﴾

ରୁ : ୫

୪୭. ଏବଂ ଆମେ ମୁସାଙ୍କୁ ନିଜର ନିଦର୍ଶନ ପ୍ରଦାନ କରି ଫିରଔନ ଓ ତାହାଙ୍କ ପାରିଷଦବର୍ଗ ନିକଟକୁ ପ୍ରେରଣ କରିଥିଲୁ, ଏବଂ ସେ (ସେମାନଙ୍କ ନିକଟକୁ ଯାଇ) କହିଥିଲେ, "ଆମେ ସମସ୍ତ ଜଗତର ପାଳନକର୍ତ୍ତାଙ୍କ ନିକଟରୁ ରସୁଲ ଭାବରେ ପ୍ରେରିତ ହୋଇଅଛୁ ।"

وَلَقَدْ اَرْسَلْنَا مُوْسٰى بِاٰيٰتِنَآ اِلٰى فِرْعَوْنَ وَمَلَا۠ئِهٖ فَقَالَ اِنِّىْ رَسُوْلُ رَبِّ الْعٰلَمِيْنَ ﴿٤٧﴾

୪୮. ତା'ପରେ ଯେତେବେଳେ ସେ ସେମାନଙ୍କ ନିକଟକୁ ଆମର ନିଦର୍ଶନ ସହିତ ଆସିଲେ, ସେତେବେଳେ ସେମାନେ ଶୁଣିବା ମାତ୍ରେ ତାହାଙ୍କ ପ୍ରତି ପରିହାସ କରିବାକୁ ଲାଗିଲେ ।

فَلَمَّا جَآءَهُمْ بِاٰيٰتِنَآ اِذَا هُمْ مِّنْهَا يَضْحَكُوْنَ ﴿٤٨﴾

୪୯. ଏବଂ ଆମେ ସେମାନଙ୍କୁ ଦେଖାଇଥିବା ପ୍ରତିଟି ନିଦର୍ଶନ ପୂର୍ବବର୍ତ୍ତୀ ନିଦର୍ଶନ ଅପେକ୍ଷା ବଡ଼ ଥିଲା; ଏବଂ ଆମେ ସେମାନଙ୍କୁ ଶାସ୍ତିରେ କବଳିତ କରିଥିଲୁ, ଯେପରିକି ସେମାନେ (ନିଜ କୁକର୍ମରୁ) ଫେରି ଆସିବେ ।

وَمَا نُرِيْهِمْ مِّنْ اٰيَةٍ اِلَّا هِىَ اَكْبَرُ مِنْ اُخْتِهَا ۚ وَاَخَذْنٰهُمْ بِالْعَذَابِ لَعَلَّهُمْ يَرْجِعُوْنَ ﴿٤٩﴾

୫୦. ଏହା ସତ୍ତ୍ୱେ ସେମାନେ ଏହା ହିଁ କହୁଥିଲେ, "ହେ ଯାଦୁକର ! ନିଜ ପାଳନକର୍ତ୍ତାଙ୍କ ସମୀପରେ ସେ ସମସ୍ତ ଅଙ୍ଗୀକାରର ଦୁହାଇ ଦେଇ, ଯେଉଁ (ଅଙ୍ଗୀକାର)ଗୁଡ଼ିକ କି ସେ ତୁମ ସହିତ କରିଛନ୍ତି, ଆମମାନଙ୍କ ନିମନ୍ତେ ପ୍ରାର୍ଥନା କର; (ଏବଂ ଯଦି ଏହି ଶାସ୍ତି ଦୂରୀଭୂତ ହୋଇଯାଏ) ତେବେ ଆମେମାନେ ନିଶ୍ଚୟ ସତ୍‌ପଥ ପ୍ରାପ୍ତ ହେବୁ ।"

وَقَالُوْا يٰٓاَيُّهَ السّٰحِرُ ادْعُ لَنَا رَبَّكَ بِمَا عَهِدَ عِنْدَكَ ۚ اِنَّنَا لَمُهْتَدُوْنَ ﴿٥٠﴾

---

[୧] ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେଉଁ ଶିକ୍ଷା ପୂର୍ବବର୍ତ୍ତୀ ରସୁଲମାନେ ଦେଉଥିଲେ ସେହି ଶିକ୍ଷା ଅବିଶ୍ୱାସକାରୀମାନଙ୍କ ପାଖରେ ଅଛି କି ନାହିଁ ସେମାନଙ୍କୁ ପଚ୍ଚର । କ'ଣ ସେହି ଶିକ୍ଷାରେ ଏକାଧିକ ଉପାସ୍ୟଙ୍କ ବିଷୟ ଉଲ୍ଲେଖ କରାଯାଇଛି ? ଯଦି ନାହିଁ, ତେବେ ନିଜ ରସୁଲ ବା ଅବତାରଙ୍କ ଶିକ୍ଷାର ବିରୁଦ୍ଧ ଶିକ୍ଷାକୁ କାହିଁକି ପ୍ରସାରିତ କରୁଛ ?

فَلَمَّا كَشَفْنَا عَنْهُمُ الْعَذَابَ اِذَا هُمْ يَنْكُثُوْنَ ۝٥١

وَنَادٰى فِرْعَوْنُ فِيْ قَوْمِهٖ قَالَ يٰقَوْمِ اَلَيْسَ لِيْ مُلْكُ مِصْرَ وَهٰذِهِ الْاَنْهٰرُ تَجْرِيْ مِنْ تَحْتِيْ ۚ اَفَلَا تُبْصِرُوْنَ ۝٥٢

୫୧. ତାପରେ ଯେତେବେଳେ ଆମ୍ଭେ ସେମାନଙ୍କ ଠାରୁ ଶାସ୍ତିକୁ ଦୂରୀଭୂତ କରିଥିଲୁ, ସେମାନେ ତତ୍‌କ୍ଷଣାତ୍ ଅଙ୍ଗୀକାର ଭଙ୍ଗ କରିଥିଲେ ।

୫୨. ଏବଂ ଫିରଔନ ନିଜ ସମ୍ପ୍ରଦାୟ ନିକଟରେ ଘୋଷଣା କରିଥିଲା, "ହେ ମୋର ସମ୍ପ୍ରଦାୟ ! କ'ଣ ମିଶରର ରାଜତ୍ୱ ମୋର ନିୟନ୍ତ୍ରଣାଧୀନ ନାହିଁ ? ଏବଂ (ଦେଖ) ଏହି ନଦୀଗୁଡ଼ିକ ମୋର ନିୟନ୍ତ୍ରଣାଧୀନ ହୋଇ ପ୍ରବାହିତ ହେଉଅଛନ୍ତି ; କ'ଣ ତୁମେମାନେ ଦେଖିପାରୁ ନାହିଁ ?"

اَمْ اَنَا خَيْرٌ مِّنْ هٰذَا الَّذِيْ هُوَ مَهِيْنٌ ۙ وَّلَا يَكَادُ يُبِيْنُ ۝٥٣

فَلَوْلَآ اُلْقِيَ عَلَيْهِ اَسْوِرَةٌ مِّنْ ذَهَبٍ اَوْ جَآءَ مَعَهُ الْمَلٰٓئِكَةُ مُقْتَرِنِيْنَ ۝٥٤

୫୩. "ଯେଉଁ ବ୍ୟକ୍ତି ନୀଚ ଓ ଯେ ସ୍ପଷ୍ଟଭାବରେ କଥା କହି ପାରୁନାହିଁ କ'ଣ ମୁଁ ତାହା ଅପେକ୍ଷା ଉତ୍କୃଷ୍ଟ ନୁହେଁ ?"

୫୪. "(ଏବଂ ଯଦି ସେ ଉତ୍କୃଷ୍ଟ) ତେବେ ତାହା ପାଇଁ ସ୍ୱର୍ଣ୍ଣ କଙ୍କଣ କାହିଁକି ଅବତୀର୍ଣ୍ଣ ହୋଇନାହିଁ ? ଅଥବା କାହିଁକି ତା ସହିତ ଦେବଦୂତମାନେ ଆସି ନାହାନ୍ତି, ଯେଉଁମାନେ କି ତାହାର ଚତୁଃପାର୍ଶ୍ୱରେ(ତାହାର ସୁରକ୍ଷା ନିମିତ୍ତ) ଏକତ୍ରିତ ହୋଇଥା'ନ୍ତେ।"

فَاسْتَخَفَّ قَوْمَهٗ فَاَطَاعُوْهُ ۭ اِنَّهُمْ كَانُوْا قَوْمًا فٰسِقِيْنَ ۝٥٥

୫୫. ତେଣୁ ସେ ଏହିପରି ଭାବରେ ନିଜ ସମ୍ପ୍ରଦାୟକୁ ଭଣ୍ଡେଇ ଥିଲା, ଏବଂ ସେମାନେ ତା କଥା ମାନିନେଲେ; ସେମାନେ ଏକ ଦୁରାଗ୍ରହୀ ସମ୍ପ୍ରଦାୟ ଥିଲେ (ଅର୍ଥାତ୍ ଯେଉଁମାନେ ଅଲ୍ଲାଃଙ୍କ ସହିତ କରିଥିବା ଅଙ୍ଗୀକାରକୁ ଭଙ୍ଗ କରିଥିଲେ) ।

فَلَمَّآ اٰسَفُوْنَا انْتَقَمْنَا مِنْهُمْ فَاَغْرَقْنٰهُمْ اَجْمَعِيْنَ ۝٥٦

فَجَعَلْنٰهُمْ سَلَفًا وَّمَثَلًا لِّلْاٰخِرِيْنَ ۝٥٧ ع

୫୬. ତାପରେ ଯେତେବେଳେ ସେମାନେ ଆମକୁ କ୍ରୋଧାନ୍ୱିତ କଲେ ସେତେବେଳେ ଆମ୍ଭେ ସେମାନଙ୍କ ଠାରୁ ପ୍ରତିଶୋଧ ନେଲୁ ଏବଂ ସେ ସମସ୍ତଙ୍କୁ ଜଳମଗ୍ନ କରିଦେଲୁ ।

୫୭. ଏବଂ ଆମ୍ଭେ ସେମାନଙ୍କୁ ପୂର୍ବକାଳର ଏକ କାହାଣୀରେ ପରିଣତ କରିଦେଲୁ; ଏବଂ ପରବର୍ତ୍ତୀ ଲୋକମାନଙ୍କ ସକାଶେ (ଏହାକୁ) ଦୃଷ୍ଟାନ୍ତର ଏକ ମାଧ୍ୟମ କରିଦେଲୁ ।

ରୁ:୬

୫୮. ଏବଂ ଯେବେ ବି ମରିୟମ-ନନ୍ଦନ[୧] (ଇସା)ଙ୍କ ବିଷୟକୁ ଦୃଷ୍ଟାନ୍ତ ସ୍ୱରୂପ ଉପସ୍ଥାପନ କରାଯାଏ, ତେବେ ତୁମ୍ଭ ସମ୍ପ୍ରଦାୟ (ଏ ବିଷୟରେ) ପାଟିତୁଣ୍ଡ କରନ୍ତି ।

وَلَمَّا ضُرِبَ ابْنُ مَرْيَمَ مَثَلًا إِذَا قَوْمُكَ مِنْهُ يَصِدُّونَ ﴿٥٨﴾

୫୯. ଏବଂ ଆହୁରି କହନ୍ତି, "କ'ଣ ଆମମାନଙ୍କ ଉପାସ୍ୟ[୨] ଉତ୍କୃଷ୍ଟ କି ସେ (ଅର୍ଥାତ୍ ଇସା) ଉତ୍କୃଷ୍ଟ ?" ସେମାନେ ଏହି ବିଷୟକୁ କେବଳ କଳହ କରିବା ଉଦ୍ଦେଶ୍ୟରେ ତୁମ୍ଭ ନିକଟରେ ବର୍ଣ୍ଣନା କରୁଛନ୍ତି, ବସ୍ତୁତଃ ସତ୍ୟ ବିରୁଦ୍ଧରେ ଯୁକ୍ତିତର୍କ କରିବା ଏ ଜାତିର ଅଭ୍ୟାସ ।

وَقَالُوا أَآلِهَتُنَا خَيْرٌ أَمْ هُوَ مَا ضَرَبُوهُ لَكَ إِلَّا جَدَلًا بَلْ هُمْ قَوْمٌ خَصِمُونَ ﴿٥٩﴾

୬୦. ସେ (ଇସା) କେବଳ ଜଣେ ଭକ୍ତ ଥିଲେ ଯାହାଙ୍କ ପ୍ରତି ଆମେ କୃପା କରିଥିଲୁ, ଓ ଇସ୍ରାଇଲୀୟ ସନ୍ତାନମାନଙ୍କ ସକାଶେ ତାହାଙ୍କୁ ଏକ ଦୃଷ୍ଟାନ୍ତ ସ୍ୱରୂପ ଗଢିଥିଲୁ ।

إِنْ هُوَ إِلَّا عَبْدٌ أَنْعَمْنَا عَلَيْهِ وَجَعَلْنَاهُ مَثَلًا لِبَنِي إِسْرَائِيلَ ﴿٦٠﴾

୬୧. ଏବଂ ଯଦି ଆମେ ଇଚ୍ଛା[୩] କରିଥା'ନ୍ତୁ, ତେବେ ତୁମମାନଙ୍କ ଭିତରୁ ମଧ୍ୟ କେତେକଙ୍କୁ ଦେବଦୂତରେ ପରିଣତ କରିଥା'ନ୍ତୁ ଯେଉଁମାନେ କି ତୁମମାନଙ୍କ ପରିବର୍ତ୍ତେ ପୃଥିବୀରେ ବାସ କରନ୍ତେ ।

وَلَوْ نَشَاءُ لَجَعَلْنَا مِنْكُمْ مَلَائِكَةً فِي الْأَرْضِ يَخْلُفُونَ ﴿٦١﴾

୬୨. ଏବଂ ସେ (ଅର୍ଥାତ୍ କୋରାନ) ଅନ୍ତିମ ସମୟର ଜ୍ଞାନ[୪] ପ୍ରଦାନ କରେ; ସୁତରାଂ ତୁମେମାନେ ତ୍ରସ ସଂକ୍ରାନ୍ତରେ ସନ୍ଦେହ କର ନାହିଁ, ଏବଂ (ହେ ଲୋକମାନେ !) ତୁମେମାନେ ଆମ୍ଭଙ୍କୁ ଅନୁସରଣ କର; ଏହା ହିଁ ସରଳ ପଥ ।

وَإِنَّهُ لَعِلْمٌ لِلسَّاعَةِ فَلَا تَمْتَرُنَّ بِهَا وَاتَّبِعُونِ هَذَا صِرَاطٌ مُسْتَقِيمٌ ﴿٦٢﴾

---

୧. ଅର୍ଥାତ୍ ଯେତେବେଳେ ସେମାନେ ପବିତ୍ର କୋରାନରେ ମରିୟମ ନନ୍ଦନଙ୍କ ପୁନରାଗମନ ବିଷୟ ପାଠ କରନ୍ତି ସେତେବେଳେ ଆପତ୍ତି କରନ୍ତି ଯେ କ'ଣ ସେ ଆମମାନଙ୍କ ଉପାସ୍ୟଙ୍କଠାରୁ ଉତ୍କୃଷ୍ଟ ଯେହେତୁ ଆମମାନଙ୍କ ଉପାସ୍ୟମାନଙ୍କୁ ଅଗ୍ନିରେ ନିକ୍ଷେପ କରାଯାଉଛି ଓ ତାହାଙ୍କୁ ମାନବ ସମାଜର ସଂସ୍କାର ପାଇଁ ଫେରାଇ ଅଣାଯାଉଛି । ବସ୍ତୁତଃ ଏଇ ଦୁଇ ବିଷୟରେ ଆକାଶ ପାତାଳ ପାର୍ଥକ୍ୟ ରହିଅଛି । ମସିହ ନିଜେ ନିଜକୁ ଜଣେ ମଣିଷ ବୋଲି କହିଛନ୍ତି । ସେ ଜଣେ ସଦାଗ୍ରହୀ ବ୍ୟକ୍ତି ଥିଲେ । ତେଣୁ ତାଙ୍କ ସହିତ ଅବିଶ୍ୱାସକାରୀମାନଙ୍କୁ ବା ସେମାନଙ୍କ ମୁଖ୍ୟମାନଙ୍କୁ ତୁଳନା କରାଯାଇ ନ ପାରେ ।

୨. ଏଠାରେ 'ଆମମାନଙ୍କ ଉପାସ୍ୟ' ଅର୍ଥ ସେହି ସବୁ ସମ୍ମାନାସ୍ପଦ ବରିଷ୍ଠ ବ୍ୟକ୍ତି, ଯେଉଁମାନଙ୍କୁ ସେମାନେ ଅଲ୍ଲାଙ୍କ ଅପେକ୍ଷା ଅଧିକ ମହତ୍ତ୍ୱପୂର୍ଣ୍ଣ ମନେ କରୁଥା'ନ୍ତି ଯଦିଚ ସେମାନେ ସେମାନଙ୍କ ଆଗରେ ନତମସ୍ତକ ହେଉ ନ ଥା'ନ୍ତି । ସମ୍ପ୍ରତି କେତେକ ବ୍ୟକ୍ତି ଏହା ମଧ୍ୟ କହୁଛନ୍ତି ଯେ ମସିହଙ୍କ ଆଗମନ ପରେ ସବୁ ଅବତାରଙ୍କୁ ପୁନର୍ବାର ଜୀବିତ କରାହେବ ଓ ସେ ସମସ୍ତେ ତାହାଙ୍କର ଆଜ୍ଞା ପାଳନ କରିବେ ।

୩. ଅର୍ଥାତ୍ ମସିହଙ୍କ ନିକଟକୁ ଦେବଦୂତମାନେ ଆସୁଥିଲେ କାରଣ ସେ ଆଧ୍ୟାତ୍ମିକ ଦୃଷ୍ଟିରୁ ଦେବଦୂତରେ ପରିଣତ ହୋଇ ଯାଇଥିଲେ । ଯଦି ହଜରତ ମହମ୍ମଦଙ୍କ ସମୟର ବା ତାଙ୍କ ପରବର୍ତ୍ତୀ ସମୟର ଲୋକମାନେ ମଧ୍ୟ ମସିହଙ୍କ ସଦୃଶ ହୋଇଥା'ନ୍ତେ ତେବେ ସେମାନଙ୍କ ନିକଟକୁ ମଧ୍ୟ ଦେବଦୂତମାନେ ଆସିବାରେ ଆଶ୍ଚର୍ଯ୍ୟ ହେବାଭଳି କିଛି ନାହିଁ । ସମ୍ପ୍ରତି ମୁସଲମାନମାନେ କେବଳ ଜିଦିରେ ଏହି ସମ୍ଭାବନାକୁ ଅସ୍ୱୀକାର କରୁଛନ୍ତି ।

୪. 'ଅନ୍ତିମ ସମୟ' ବା କୟାମତ ବିଷୟକ ଜ୍ଞାନ ପ୍ରଦାନ କରାଯିବାର ଅର୍ଥ ହେଉଛି ଯେ ସଂସାରରେ ଯେଉଁ ସବୁ ଧ୍ୱଂସଲୀଳା ହେବାର ଅଛି ସେସବୁ ବିଷୟରେ ପବିତ୍ର କୋରାନରେ ଉଲ୍ଲେଖ କରାଯାଇଛି । ମୁସଲମାନମାନଙ୍କର ତଥା ଖ୍ରୀଷ୍ଟିୟାନମାନଙ୍କର ଉଭୟ ପ୍ରାରମ୍ଭିକ ପତନ ଓ ଅନ୍ତିମ ପତନ ବିଷୟରେ ଏବଂ ଅନ୍ୟାନ୍ୟ ବୃହତ୍ ଶକ୍ତିର ପତନ ବିଷୟରେ ମଧ୍ୟ ପବିତ୍ର କୋରାନରେ ସୂଚନା ଦିଆଯାଇଛି ।

୬୩. ଏବଂ ସତ୍ୟଠାରୁ ଦୂରେଇ ଯାଉଥିବା ବ୍ୟକ୍ତି (ଅର୍ଥାତ୍ ସଇତାନ) ତୁମମାନଙ୍କୁ (ସରଳ ପଥରୁ) ବାଧା ନ ଦେଉ; ସେ ତୁମମାନଙ୍କର ପ୍ରକାଶ୍ୟ ଶତ୍ରୁ ।

وَ لَا يَصُدَّنَّكُمُ الشَّيْطٰنُ اِنَّهٗ لَكُمْ عَدُوٌّ مُّبِيْنٌ ﴿۶۳﴾

୬୪. ଏବଂ ଯେତେବେଳେ ଇସା[1] ନିଦର୍ଶନ ସହିତ ଆସିଲେ ସେତେବେଳେ ସେ କହିଲେ, "ଆମେ ତୁମମାନଙ୍କ ନିକଟକୁ ତତ୍ତ୍ୱ ସମ୍ବଳିତ ବିଷୟ ସହିତ ଆସି ଅଛୁ; ଏବଂ ଯେଉଁ କେତେକ ବିଷୟରେ ତୁମେମାନେ ମତଭେଦ କରୁଅଛ ତାହାର ସ୍ପଷ୍ଟୀକରଣ ନିମନ୍ତେ ଆମେ ଆସିଅଛୁ, ସୁତରାଂ ଅଲ୍ଲାହଙ୍କୁ ଭୟ କର, ଓ ଆମଙ୍କୁ ଅନୁସରଣ କର ।"

وَ لَمَّا جَآءَ عِيْسٰى بِالْبَيِّنٰتِ قَالَ قَدْ جِئْتُكُمْ بِالْحِكْمَةِ وَ لِاُبَيِّنَ لَكُمْ بَعْضَ الَّذِيْ تَخْتَلِفُوْنَ فِيْهِ ۚ فَاتَّقُوا اللّٰهَ وَ اَطِيْعُوْنِ ﴿۶۴﴾

୬୫. "ଅଲ୍ଲାହ ହିଁ ଆମର ଓ ତୁମମାନଙ୍କର ପାଳନକର୍ତ୍ତା; ସୁତରାଂ ତାହାଙ୍କର ଉପାସନା କର; ଏହା ହିଁ ସରଳ ପଥ ।"

اِنَّ اللّٰهَ هُوَ رَبِّيْ وَ رَبُّكُمْ فَاعْبُدُوْهُ ؕ هٰذَا صِرَاطٌ مُّسْتَقِيْمٌ ﴿۶۵﴾

୬୬. କିନ୍ତୁ ଏହା ଶୁଣି ତାହାଙ୍କ ବିରୋଧୀ ଗୋଷ୍ଠୀ ନିଜ ନିଜ ମଧ୍ୟରେ ବିଭିନ୍ନ ମତପୋଷଣ କରିବାକୁ ଲାଗିଲେ; ସୁତରାଂ ଯେଉଁମାନେ ଅତ୍ୟାଚାର କଲେ ସେମାନଙ୍କ ପାଇଁ ଏକ କଷ୍ଟଦାୟକ ସମୟର ଶାସ୍ତି ମାଧ୍ୟମରେ ବିନାଶ ନିର୍ଦ୍ଦିଷ୍ଟ କରା ହୋଇଅଛି ।

فَاخْتَلَفَ الْاَحْزَابُ مِنْۢ بَيْنِهِمْ ۚ فَوَيْلٌ لِّلَّذِيْنَ ظَلَمُوْا مِنْ عَذَابِ يَوْمٍ اَلِيْمٍ ﴿۶۶﴾

୬୭. ସେମାନେ କେବଳ କୟାମତକୁ ପ୍ରତୀକ୍ଷା କରୁଛନ୍ତି ଯାହା ସେମାନଙ୍କ ନିକଟରେ ଅକସ୍ମାତ୍ ଉପସ୍ଥିତ ହେବ, କିନ୍ତୁ ସେମାନେ ଏହା ବୁଝି ପାରୁ ନାହାନ୍ତି ।

هَلْ يَنْظُرُوْنَ اِلَّا السَّاعَةَ اَنْ تَاْتِيَهُمْ بَغْتَةً وَّ هُمْ لَا يَشْعُرُوْنَ ﴿۶۷﴾

୬୮. ଧର୍ମଭୀରୁମାନଙ୍କ ବ୍ୟତୀତ, ସେ ଦିନ ଅନେକ ବନ୍ଧୁ ପରସ୍ପରର ଶତ୍ରୁ ହେବେ ।

اَلْاَخِلَّآءُ يَوْمَئِذٍۭ بَعْضُهُمْ لِبَعْضٍ عَدُوٌّ اِلَّا الْمُتَّقِيْنَ ﴿۶۸﴾

---

[1] ଏଠାରେ ହଜରତ ଇସାଙ୍କର ଦ୍ୱିତୀୟ ଆଗମନ ବିଷୟରେ ଉଲ୍ଲେଖ କରାଯାଇଛି, କାରଣ ଉପର ଆୟତରେ ମଧ୍ୟ ତାଙ୍କରି ବୃତ୍ତାନ୍ତ ରହିଅଛି ।

ରୁ:୭

يٰعِبَادِ لَا خَوْفٌ عَلَيْكُمُ الْيَوْمَ وَلَآ اَنْتُمْ تَحْزَنُوْنَ ﴿٦٩﴾

୬୯. (ସେମାନଙ୍କୁ ଅଲ୍ଲାହ କହିବେ) ''ହେ ଆମର ଭକ୍ତମାନେ ! ଆଜି ତୁମମାନଙ୍କ ସକାଶେ କୌଣସି ଭୟ ନାହିଁ କି (କୌଣସି ପୂର୍ବବର୍ତ୍ତୀ ତ୍ରୁଟି ପାଇଁ) ତୁମେମାନେ ଦୁଃଖିତ ହେବ ନାହିଁ,

الَّذِيْنَ اٰمَنُوْا بِاٰيٰتِنَا وَكَانُوْا مُسْلِمِيْنَ ﴿٧٠﴾

୭୦. ''ଯେଉଁମାନେ ଆମର ନିଦର୍ଶନଗୁଡ଼ିକ ଉପରେ ବିଶ୍ୱାସ କରିଥିଲେ ଏବଂ ଯେଉଁମାନେ ଆଜ୍ଞା ପାଳନକାରୀଙ୍କ ସଦୃଶ ଜୀବନଯାପନ କରିଥିଲେ; (ସେମାନେ ଏ ପୁରସ୍କାର ପାଇବା ପାଇଁ ଯୋଗ୍ୟ ହେବେ) ।''

اُدْخُلُوا الْجَنَّةَ اَنْتُمْ وَاَزْوَاجُكُمْ تُحْبَرُوْنَ ﴿٧١﴾

୭୧. (ଅଲ୍ଲାହ ସେମାନଙ୍କୁ କହିବେ), ''ତୁମେମାନେ ଓ ତୁମମାନଙ୍କ ସାଥୀମାନେ ଆନନ୍ଦ ସହକାରେ ବୈକୁଣ୍ଠରେ ପ୍ରବେଶ କର ।''

يُطَافُ عَلَيْهِمْ بِصِحَافٍ مِّنْ ذَهَبٍ وَّاَكْوَابٍ ۚ وَفِيْهَا مَا تَشْتَهِيْهِ الْاَنْفُسُ وَتَلَذُّ الْاَعْيُنُ ۚ وَاَنْتُمْ فِيْهَا خٰلِدُوْنَ ﴿٧٢﴾

୭୨. ସେମାନଙ୍କ ନିକଟକୁ ବାରମ୍ବାର ସୁନାର ଥାଳିଆ ଓ ପିଆଲା ଅଣାହେବ, ଏବଂ ସେ (ବୈକୁଣ୍ଠ) ଠାରେ ମନ ଯାହା ଗୃହିବ ଓ ଆଖି ଯାହା ପସନ୍ଦ କରିବ, ତାହା ରହିଥିବ; ଏବଂ (କୁହାଯିବ) ତୁମେମାନେ ସେଠାରେ ସର୍ବଦା ରହିବ,

وَتِلْكَ الْجَنَّةُ الَّتِيْٓ اُوْرِثْتُمُوْهَا بِمَا كُنْتُمْ تَعْمَلُوْنَ ﴿٧٣﴾

୭୩. ''ଏବଂ ଏହା ସେହି ବୈକୁଣ୍ଠ ଯାହାର ଉତ୍ତରାଧିକାରୀ ତୁମମାନଙ୍କୁ ତୁମମାନଙ୍କ କର୍ମଯୋଗୁଁ କରି ଦିଆଯିବ ।''

لَكُمْ فِيْهَا فَاكِهَةٌ كَثِيْرَةٌ مِّنْهَا تَاْكُلُوْنَ ﴿٧٤﴾

୭୪. ''ସେଠାରେ ତୁମମାନଙ୍କ ସକାଶେ ପ୍ରଚୁର ଫଳ ରହିଥିବ ଯହିଁରୁ ତୁମେମାନେ (ପ୍ରୟୋଜନାନୁସାରେ) ଖାଇବ ।''

اِنَّ الْمُجْرِمِيْنَ فِيْ عَذَابِ جَهَنَّمَ خٰلِدُوْنَ ﴿٧٥﴾

୭୫. ଅପରାଧୀମାନେ ଅବଶ୍ୟ ନରକର ଶାସ୍ତି ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ପଡି ରହିଥିବେ ।

لَا يُفَتَّرُ عَنْهُمْ وَهُمْ فِيْهِ مُبْلِسُوْنَ ﴿٧٦﴾

୭୬. ସେମାନଙ୍କ ଶାସ୍ତିକୁ ହାଲୁକା କରାହେବ ନାହିଁ, ଏବଂ ସେମାନେ ସେଠାରେ ନିରାଶ ହୋଇ ପଡିବେ ।

وَمَا ظَلَمْنٰهُمْ وَلٰكِنْ كَانُوْا هُمُ الظّٰلِمِيْنَ ﴿٧٧﴾

୭୭. ଏବଂ ଆମେ ସେମାନଙ୍କ ପ୍ରତି ଅତ୍ୟାଚାର କରିନାହୁଁ, ବରଂ ସେମାନେ ନିଜେ ନିଜ ପ୍ରତି ଅତ୍ୟାଚାର କରିଛନ୍ତି ।

୭୮. ଏବଂ ସେମାନେ ଡାକି କହିବେ, "ହେ (ନରକର ଭାରପ୍ରାପ୍ତ) ଅଧିକାରୀ ! ତୁମ ପାଳନକର୍ତ୍ତା ଆମମାନଙ୍କୁ ମାରି ଦିଅନ୍ତୁ" ସେ କହିବେ, "ତୁମେମାନେ ଏଠାରେ ବହୁକାଳ ରହିବ ।"

وَنَادَوْا يٰمٰلِكُ لِيَقْضِ عَلَيْنَا رَبُّكَ ۖ قَالَ اِنَّكُمْ مّٰكِثُوْنَ ﴿٧٨﴾

୭୯. (ଅଲ୍ଲାହ କହିବେ), "ଆମେ ତୁମମାନଙ୍କ ନିକଟକୁ ସତ୍ୟ ଘେନି ଆସିଥିଲୁ, କିନ୍ତୁ ତୁମମାନଙ୍କ ମଧ୍ୟରୁ ଅଧିକାଂଶ ସତ୍ୟକୁ ଘୃଣା କରୁଥିଲ ।"

لَقَدْ جِئْنٰكُمْ بِالْحَقِّ وَلٰكِنَّ اَكْثَرَكُمْ لِلْحَقِّ كٰرِهُوْنَ ﴿٧٩﴾

୮୦. କ'ଣ ସେମାନେ [୧] (ହଜରତ ମହମ୍ମଦଙ୍କୁ ଆକ୍ରମଣ କରିବାପାଇଁ) କୌଣସି ନିଷ୍ପତ୍ତି କରିଛନ୍ତି ? (ଯଦି ଏପରି ହୋଇଥାଏ) ତେବେ ଆମେ ମଧ୍ୟ ସେମାନଙ୍କ ବିନାଶ ପାଇଁ ନିଷ୍ପତ୍ତି କରିସାରିଛୁ ।

اَمْ اَبْرَمُوْٓا اَمْرًا فَاِنَّا مُبْرِمُوْنَ ﴿٨٠﴾

୮୧. କ'ଣ ସେମାନେ ମନେ କରୁଛନ୍ତି ଯେ ଆମେ ସେମାନଙ୍କ ଗୁପ୍ତ କଥା ଓ ଗୁପ୍ତ ମନ୍ତ୍ରଣାକୁ ଶୁଣୁ ନାହୁଁ ? ତାହା ନୁହେଁ, ବରଂ ଆମର ବାର୍ତ୍ତାବାହକମାନେ [୨] ସେମାନଙ୍କ ନିକଟରେ ଥାଇ ଏ ସବୁ ଲିପିବଦ୍ଧ କରୁଛନ୍ତି ।

اَمْ يَحْسَبُوْنَ اَنَّا لَا نَسْمَعُ سِرَّهُمْ وَنَجْوٰىهُمْ ۗ بَلٰى وَرُسُلُنَا لَدَيْهِمْ يَكْتُبُوْنَ ﴿٨١﴾

୮୨. ତୁମେ କୁହ, "ଯଦି ଦୟାବାନ୍ (ଅଲ୍ଲାହ)ଙ୍କର କୌଣସି ପୁତ୍ର ଥାଆନ୍ତେ; ତେବେ ଆମେ [୩] ସର୍ବପ୍ରଥମେ ତାହାଙ୍କର ଉପାସନା କରନ୍ତୁ ।"

قُلْ اِنْ كَانَ لِلرَّحْمٰنِ وَلَدٌ ۖ فَاَنَا اَوَّلُ الْعٰبِدِيْنَ ﴿٨٢﴾

୮୩. ଆକାଶ ଓ ପୃଥିବୀର ପାଳନ-କର୍ତ୍ତା ଓ ସିଂହାସନର ଅଧିକାରୀ (ଅଲ୍ଲାହ),ସେ ସବୁଥିରୁ (ଊର୍ଦ୍ଧ୍ୱରେ ଓ ) ପବିତ୍ର ଯାହା ସେ (ମୁସରିକ)ମାନେ କହୁଛନ୍ତି ।

سُبْحٰنَ رَبِّ السَّمٰوٰتِ وَالْاَرْضِ رَبِّ الْعَرْشِ عَمَّا يَصِفُوْنَ ﴿٨٣﴾

---

୧. ଏହି ଅଧ୍ୟାୟ ମକ୍କାରେ ଅବତୀର୍ଣ୍ଣ ହୋଇଥିବା ତଥ୍ୟ ହିଁ ଏକ ବଡ଼ ନିଦର୍ଶନ । ଏହି ଅଧ୍ୟାୟରେ ଅବିଶ୍ୱାସକାରୀମାନେ ହଜରତ ମହମ୍ମଦଙ୍କ ବିରୁଦ୍ଧରେ ଭୟାବହ ଷଡ଼ଯନ୍ତ୍ର କରିବା ଓ ସେମାନେ ସେଥିରେ ବିଫଳ ହେବା ତଥା ଅଲ୍ଲାହ ସେମାନଙ୍କୁ ଧ୍ୱଂସ କରିଦେବା ସମ୍ବନ୍ଧରେ ଯେଉଁ ଭବିଷ୍ୟବାଣୀ ଲିପିବଦ୍ଧ କରାଯାଇଛି ତାହା ଯଥା ସମୟରେ ସତ୍ୟ ସାବ୍ୟସ୍ତ ହୋଇଛି । ତେଣୁ ପବିତ୍ର କୋରାନକୁ ଅସ୍ୱୀକାର କରୁଥିବା ଲୋକମାନଙ୍କ ପାଇଁ ଏବେ ଅନ୍ୟ କୌଣସି ଅବକାଶ ନାହିଁ ।

୨. କେତେକ ଭାଷ୍ୟକାର 'ରସୁଲ' ର ଅର୍ଥ ଦେବଦୂତ ସ୍ଥିର କରିଛନ୍ତି । କିନ୍ତୁ ସୁରା ନୁରର ଆୟତ ୨୫ ରୁ ପ୍ରତୀତ ହେଉଛି ଯେ କେବଳ ଦେବଦୂତ ନୁହନ୍ତି ବରଂ ମନୁଷ୍ୟର ନିଜ ଶରୀର ମଧ୍ୟ ପ୍ରତ୍ୟେକ କର୍ମ ପାଇଁ ଏକ ନିଦର୍ଶନ ବହନ କରିଥାଏ ଓ ସେହି ନିଦର୍ଶନ କୟାମତ ଦିନ ତାହାର ଅପରାଧକୁ ପ୍ରକଟିତ କରିବ । ତେଣୁ ଏଠାରେ 'ରସୁଲ' ଶବ୍ଦକୁ ମନୁଷ୍ୟର ଅଙ୍ଗ ପ୍ରତ୍ୟଙ୍ଗ ଅଭିପ୍ରେତ ହୋଇପାରେ । ସମ୍ପ୍ରତି ଚିକିତ୍ସାବିଜ୍ଞାନ ସମ୍ପର୍କରେ ଯେଉଁ ଗବେଷଣା ହେଉଛି ସେଥିରୁ ଜଣାପଡୁଛି ଯେ ମନୁଷ୍ୟର ପ୍ରତ୍ୟେକ ଶୁକ୍ରକୀଟରେ ନିଜ ପୂର୍ବଜମାନଙ୍କ ଆଚରଣର ବିଭିନ୍ନ ଲକ୍ଷଣ ରହିଥାଏ ଏବଂ ଯେତେବେଳେ ସେହି ସବୁ ଲକ୍ଷଣ ପ୍ରଭାବଶାଳୀ ହୁଏ ସେତେବେଳେ ତହିଁରୁ ସୃଷ୍ଟ ସନ୍ତାନ ସେହି ସେହି ଲକ୍ଷଣକୁ ପ୍ରକଟିତ କରିଥାଏ । ସେପରି ପରିସ୍ଥିତିରେ ଜଣେ ଲୋକର ନିଜର କର୍ମ କେବଳ ସୁରକ୍ଷିତ ରହେ ନାହିଁ, ବରଂ ପୁରୁଷ ପୁରୁଷ ଧରି ତାହା ସଂସ୍କାର ଆକାରରେ ସୁରକ୍ଷିତ ରହିଥାଏ । ଏହି ରୂପେ ଶୁକ୍ର ମାଧ୍ୟମରେ ପୂର୍ବଜଙ୍କ ଲକ୍ଷଣମାନ ପୁରୁଷାନୁକ୍ରମେ ଜାରି ରହିଥାଏ ।

୩. କାରଣ ଆମେ ଅଲ୍ଲାହଙ୍କୁ ପ୍ରେମ କରୁ ଓ ତାହାଙ୍କର ଆଜ୍ଞାବହ ଅଟୁ । କିନ୍ତୁ ପୁତ୍ର ସନ୍ତାନ ବିଷୟରେ କୌଣସି ସ୍ୱର୍ଗୀୟ ପ୍ରମାଣ ନାହିଁ କି ଜ୍ଞାନ-ଭିତ୍ତିକ ପ୍ରମାଣ ନାହିଁ; ସେଥିଯୋଗୁଁ ଆମେ ବାଧ୍ୟ ହୋଇ ପୁତ୍ର ସନ୍ତାନ ବିଷୟକ ଭ୍ରମଧାରଣାକୁ ଖଣ୍ଡନ କରୁଅଛୁ ।

୮୪. ସୁତରାଂ (ହେ ରସୁଲ !) ତୁମେ ସେମାନଙ୍କୁ ବୃଥା ଆଲୋଚନା କରିବାକୁ ଅବସର ଦିଅ ଏବଂ ସେମାନେ କ୍ରୀଡା କୌତୁକରେ ଲିପ୍ତ ରହିଥା'ନ୍ତୁ ଏପରିକି ସେମାନଙ୍କ ନିକଟକୁ ସେହି ଶାସ୍ତିର ସମୟ ଆସିଯିବ ଯାହା ସମ୍ବନ୍ଧରେ ସେମାନଙ୍କ ସହିତ ଅଙ୍ଗୀକାର କରାଯାଇଥିଲା ।

فَذَرْهُمْ يَخُوْضُوْا وَيَلْعَبُوْا حَتّٰى يُلٰقُوْا يَوْمَهُمُ الَّذِيْ يُوْعَدُوْنَ ﴿٨٤﴾

୮୫. ଏବଂ ସେ (ଅଲ୍ଲାହ) ହିଁ ଆକାଶ ଓ ପୃଥିବୀର ଏକମାତ୍ର ଉପାସ୍ୟ; ଏବଂ ସେ ହିଁ ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞ ।

وَهُوَ الَّذِيْ فِي السَّمَآءِ اِلٰهٌ وَّفِي الْاَرْضِ اِلٰهٌ ۗ وَهُوَ الْحَكِيْمُ الْعَلِيْمُ ﴿٨٥﴾

୮୬. ଏବଂ ସେ ହିଁ ମଙ୍ଗଳମୟ ଯେ କି ଆକାଶ ଓ ପୃଥିବୀ ତଥା ସେ ଉଭୟ ମଧ୍ୟରେ ଯାହା କିଛି ଅଛି ସେ ସବୁର ଅଧିକାରୀ; ଏବଂ ସେହି (କିୟାମତ) ସମୟର ଜ୍ଞାନ କେବଳ ତାହାଙ୍କଠାରେ ରହିଅଛି; ଏବଂ ତୁମମାନଙ୍କୁ ତାହାଙ୍କ ନିକଟକୁ ଫେରାଇ ନିଆହେବ ।

وَتَبٰرَكَ الَّذِيْ لَهٗ مُلْكُ السَّمٰوٰتِ وَالْاَرْضِ وَمَا بَيْنَهُمَا ۚ وَعِنْدَهٗ عِلْمُ السَّاعَةِ ۚ وَاِلَيْهِ تُرْجَعُوْنَ ﴿٨٦﴾

୮୭. ଏବଂ ଯେଉଁମାନଙ୍କୁ ସେମାନେ ତାହାଙ୍କ ବ୍ୟତୀତ ଡାକନ୍ତି ସେମାନଙ୍କର ସୁପାରିଶ କରିବାକୁ ଅଧିକାର ନାହିଁ; କିନ୍ତୁ ଯେ ସତ୍ୟ ସାକ୍ଷ୍ୟ [୧] ଦିଏ,[୨] ସେ ହିଁ ସୁପାରିଶ କରିବାକୁ ହକ୍‌ଦାର, ଏବଂ ସେ (ଅବିଶ୍ୱାସକାରୀ)ମାନେ ଏହାକୁ ଭଲ ଭାବରେ ଜାଣନ୍ତି ।

وَلَا يَمْلِكُ الَّذِيْنَ يَدْعُوْنَ مِنْ دُوْنِهِ الشَّفَاعَةَ اِلَّا مَنْ شَهِدَ بِالْحَقِّ وَهُمْ يَعْلَمُوْنَ ﴿٨٧﴾

୮୮. ଏବଂ ଯଦି ତୁମେ ସେମାନଙ୍କୁ ପଚାରିବ ଯେ ସେମାନଙ୍କୁ କିଏ ସୃଷ୍ଟି କରିଅଛି ? ତେବେ ସେମାନେ ନିଶ୍ଚୟ କହିବେ, ''ଅଲ୍ଲାହ'', ସେମାନଙ୍କୁ ପ୍ରଲୁବ୍ଧ କରି କେଉଁ ଆଡକୁ ନିଆଯାଉଅଛି ?

وَلَئِنْ سَاَلْتَهُمْ مَّنْ خَلَقَهُمْ لَيَقُوْلُنَّ اللّٰهُ فَاَنّٰى يُؤْفَكُوْنَ ﴿٨٨﴾

୮୯. ଏବଂ ଆମକୁ ତାହାଙ୍କର (ଅର୍ଥାତ୍ ରସୁଲଙ୍କର) ସେହି ଉକ୍ତିର [୨] ରାଣ ! ଯେତେବେଳେ ସେ କହିଥିଲେ, ''ହେ ଆମର ପାଳନକର୍ତ୍ତା ! ଏମାନେ ଏପରି ଏକ ସମ୍ପ୍ରଦାୟ ଯେଉଁମାନେ କୌଣସି ସତ୍ୟ ପ୍ରତି ବିଶ୍ୱାସ କରନ୍ତି ନାହିଁ ।''

وَقِيْلِهٖ يٰرَبِّ اِنَّ هٰٓؤُلَآءِ قَوْمٌ لَّا يُؤْمِنُوْنَ ﴿٨٩﴾

୯୦. ତେଣୁ ଆମେ ତାହାଙ୍କୁ ଉତ୍ତର ଦେଇଥିଲୁ ଯେ ସେମାନଙ୍କ ଠାରୁ ମୁହଁ ଫେରାଇ ନିଅ; ଏବଂ କେବଳ ଏତିକି ମାତ୍ର ପ୍ରାର୍ଥନା କର ଯେ ତୁମ ପ୍ରତି ଅଲ୍ଲାହଙ୍କର ଶାନ୍ତି ବର୍ଷଣ ହେଉ; ଫଳ ସ୍ୱରୂପ, ସେମାନେ (ସତ୍ୟକୁ) ଜାଣିପାରିବେ ।

فَاصْفَحْ عَنْهُمْ وَقُلْ سَلٰمٌ ۚ فَسَوْفَ يَعْلَمُوْنَ ﴿٩٠﴾

---

୧. ଏହି ଆୟତରେ ସୂଚିତ ହୋଇଛି ଯେ କେବଳ ହଜରତ ମହମ୍ମଦଙ୍କ ସୁପାରିଶ ଶୁଣାଯିବ, କାରଣ ତାଙ୍କ ଶତ୍ରୁମାନେ ମଧ୍ୟ ତାଙ୍କୁ ଅମିନ (ଅର୍ଥାତ୍ ସତ୍ୟନିଷ୍ଠ ଓ ସଚ୍ଚୋଟ) ନାମରେ ନାମିତ କରିଥିଲେ, ଏପରିକି କେତେକ ଇସ୍ରାଇଲୀୟ ନବି ମଧ୍ୟ ତାହାଙ୍କୁ ସତ୍ୟନିଷ୍ଠ ପଦବୀରେ ଭୂଷିତ କରିଥିଲେ (**Isaiah 9: 6** ଦ୍ରଷ୍ଟବ୍ୟ) ।

୨. ଅର୍ଥାତ୍ ଏହି ଉକ୍ତିକୁ ସାକ୍ଷ୍ୟ ଭାବରେ ଉପସ୍ଥାପନ କରୁଅଛୁ ।

سُوْرَةُ الدُّخَانِ مَكِّيَّةٌ (٤٤)

# ଅଲ—ଦୁଖାନ

(ଏହି ସୂରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୬୦ ଟି ଆୟତ ଓ ୩ ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ହା:ମୀମ ।

حٰمٓ ②

୩. ଆମେ ଏହି (ଧର୍ମ)ଗ୍ରନ୍ଥ ନାମରେ ଶପଥ କରୁଅଛୁ (ଅର୍ଥାତ୍ ଏହାକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ) ଯହିଁରେ ବିଷୟବସ୍ତୁ ସୁସ୍ପଷ୍ଟ ଭାବରେ ବର୍ଣ୍ଣିତ ହୋଇଅଛି ।

وَالْكِتٰبِ الْمُبِيْنِ ③

୪. ଆମେ ଏହି ଗ୍ରନ୍ଥକୁ ଏକ ମଙ୍ଗଳମୟ ରାତ୍ରିରେ ଅବତୀର୍ଣ୍ଣ କରିଅଛୁ; କାରଣ ଆମେ (ପଥଭ୍ରାନ୍ତଙ୍କୁ) ସର୍ବଦା ସଚେତନ କରାଇଥାଉ ।

اِنَّآ اَنْزَلْنٰهُ فِيْ لَيْلَةٍ مُّبٰرَكَةٍ اِنَّا كُنَّا مُنْذِرِيْنَ ④

୫. ଏହି ରାତ୍ରିରେ [୧] ସକଳ ତତ୍ତ୍ୱ ସମ୍ବଳିତ [୨] ବିଷୟର ବର୍ଣ୍ଣନା କରାଯାଏ,

فِيْهَا يُفْرَقُ كُلُّ اَمْرٍ حَكِيْمٍ ⑤

୬. ଯେପରି ପ୍ରତ୍ୟେକ ବିଷୟ ଯାହାର, ଆମେ ନିଜ ସମୀପରୁ ଆଦେଶ ଦେଇଅଛୁ; ଏପରି ଅବସରରେ ଆମେ ସର୍ବଦା ରସୁଲ ପ୍ରେରଣ କରିଥାଉ [୩] ।

اَمْرًا مِّنْ عِنْدِنَا ۗ اِنَّا كُنَّا مُرْسِلِيْنَ ⑥

୭. ଏହା ତୁମ୍ଭ ପାଳନକର୍ତ୍ତାଙ୍କ ଠାରୁ କରୁଣା ସ୍ୱରୂପ ହୋଇଥାଏ; ସେ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ,

رَحْمَةً مِّنْ رَّبِّكَ ۗ اِنَّهٗ هُوَ السَّمِيْعُ الْعَلِيْمُ ⑦

---

୧. ଅର୍ଥାତ୍ ସେହିଁ ରାତି, ଯେଉଁ ରାତିରେ ନବି ଆବିର୍ଭୂତ ହୁଅନ୍ତି ଓ ଦିବ୍ୟବାଣୀ ଶୁଣନ୍ତି । ତାହା ବାସ୍ତବରେ ଅତ୍ୟନ୍ତ ମଙ୍ଗଳମୟ । ଯେତେବେଳକୁ ସାଂସାରିକ ବ୍ୟବସ୍ଥା ଖୁବ୍ ଦୂଷିତ ହୋଇଯାଇଥାଏ ଓ ଅଲ୍ଲାହ ସତ୍‌ଜ୍ଞାନ ଅବତୀର୍ଣ୍ଣ କରିବାକୁ ଇଚ୍ଛା କରନ୍ତି । ସେଥିଯୋଗୁଁ ଯେଉଁ ରାତି ସାଧାରଣ ଭାବରେ ଖରାପ ଦିଶେ ପ୍ରକୃତରେ ତାହା ହିଁ ସବୁଠାରୁ ଭଲ ରାତି । ଏଥିରେ କୌଣସି ନୂତନତା ନାହିଁ । କାରଣ ହଜରତ ଆଦମଙ୍କ ସମୟରୁ ଏହି ପରମ୍ପରା ଚଳି ଆସୁଛି ଏବଂ ପବିତ୍ର କୋରାନର ଏହି ଆୟତ ପ୍ରମାଣ କରୁଅଛି ଯେ ଏହି ପରମ୍ପରା କୟାମତ ପର୍ଯ୍ୟନ୍ତ ସ୍ଥିର ରହିବ ।

୨. ଏହି ଆୟତର ଶେଷାଂଶ ପୂର୍ବ ଟୀକାରେ ବର୍ଣ୍ଣିତ ବିଷୟକୁ ସୁସ୍ପଷ୍ଟ କରୁଛି ଅର୍ଥାତ୍ ଏପରି ରାତିରେ ନବି ସଂସାରକୁ ସ୍ୱର୍ଗୀୟ ଜ୍ଞାନ ପ୍ରଦାନ କରନ୍ତି । ପବିତ୍ର କୋରାନରେ 'ଅଲ୍ଲାହଙ୍କ ବାଣୀ' ଅର୍ଥାତ୍ କୋରାନର ନାମ 'ତତ୍ତ୍ୱଜ୍ଞଙ୍କ କାର୍ଯ୍ୟ' ବୋଲି ରଖାଯାଇଛି କାରଣ ସେ ହେଉଛନ୍ତି ତତ୍ତ୍ୱଜ୍ଞ ଓ ତାଙ୍କର ଗୋଟିଏ ଗୁଣବାଚକ ନାମ ହେଉଛି 'ହକିମ' । ତେଣୁ ତାଙ୍କ ବାଣୀ ତତ୍ତ୍ୱପୂର୍ଣ୍ଣ ।

୩. ଏହି ଆୟତରେ ଜଣାଇ ଦିଆଯାଇଛି ଯେ ଲୋକମାନେ ଏହି ଶିକ୍ଷାକୁ ଯେତେ ଅସ୍ୱୀକାର କଲେ ମଧ୍ୟ ଏହି ଶିକ୍ଷା ନିଃସନ୍ଦେହରେ ଅଲ୍ଲାହଙ୍କର ଓ ସେ ହିଁ ଏହାକୁ ଅବତୀର୍ଣ୍ଣ କରିଛନ୍ତି । ଲୋକମାନେ ହକ୍‌ଦାର ଥିବା ଯୋଗୁଁ ଯେ ଏହି ଶିକ୍ଷାକୁ ଅବତରଣ କରାଯାଇଥିଲା ଏପରି ନୁହେଁ ବରଂ ଅଲ୍ଲାହ ନିଜ କୃପାରୁ ଏହିପରି କରିଛନ୍ତି । ସାଂସାରିକ ବ୍ୟବସ୍ଥା କଳୁଷିତ ହୋଇଯିବାରୁ ଭକ୍ତମାନେ ସଂସ୍କାର ପାଇଁ ପ୍ରାର୍ଥନା କରନ୍ତି ଓ ଅଲ୍ଲାହ ସେମାନଙ୍କ ପ୍ରାର୍ଥନାକୁ ଶୁଣନ୍ତି । ମନୁଷ୍ୟ ନିଜ କୁକର୍ମ ଦ୍ୱାରା ବିନାଶର ଯେଉଁ ମୂଳଭିତ୍ତି ସ୍ଥାପନ କରୁଥାଏ ତାହାକୁ ଅଲ୍ଲାହ ଭଲଭାବରେ ନିରୀକ୍ଷଣ କରୁଥା'ନ୍ତି ।

୮. ଆକାଶ ଓ ପୃଥିବୀରେ ତଥା ଯାହା କିଛି ସେମାନଙ୍କ ମଧ୍ୟରେ ଅଛି ତାହାର ପାଳନକର୍ତ୍ତା, ଯଦି ତୁମମାନଙ୍କର ବିଶ୍ୱାସ କରିବାକୁ ମନୋବୃତ୍ତି ଥାଏ ।

وقف لازم رَبِّ السَّمٰوٰتِ وَالْاَرْضِ وَمَا بَيْنَهُمَا ۘ اِنْ كُنْتُمْ مُّوْقِنِيْنَ ۝٨

୯. ତାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ; ସେ ଜୀବନ ଦାନ କରନ୍ତି ଓ ମୃତ୍ୟୁ ପ୍ରଦାନ କରନ୍ତି; ସେ ତୁମମାନଙ୍କର ପାଳନକର୍ତ୍ତା ଓ ତୁମମାନଙ୍କ ପିତୃପିତାମହମାନଙ୍କର ମଧ୍ୟ ପାଳନକର୍ତ୍ତା ଥିଲେ ।

لَآ اِلٰهَ اِلَّا هُوَ يُحْيٖ وَيُمِيْتُ ؕ رَبُّكُمْ وَرَبُّ اٰبَآئِكُمُ الْاَوَّلِيْنَ ۝٩

୧୦. କିନ୍ତୁ ସେମାନେ ସନ୍ଦେହରେ ଲିପ୍ତ ରହିଛନ୍ତି, (ଏବଂ) କ୍ରୀଡାକୌତୁକ କରୁଅଛନ୍ତି ।

بَلْ هُمْ فِيْ شَكٍّ يَّلْعَبُوْنَ ۝١٠

୧୧. ସୁତରାଂ ତୁମେ ସେହି ଦିନକୁ ଅପେକ୍ଷା କର ଯେଉଁଦିନ ଆକାଶ ମଣ୍ଡଳରେ ଏକ ସୁସ୍ପଷ୍ଟ ଧୂମ [୧] ପ୍ରକାଶିତ ହେବ,

فَارْتَقِبْ يَوْمَ تَاْتِي السَّمَآءُ بِدُخَانٍ مُّبِيْنٍ ۝١١

୧୨. ଯାହା ସମସ୍ତଙ୍କୁ ଆବୃତ କରିବ; ଏହା ଯନ୍ତ୍ରଣାଦାୟକ ଶାସ୍ତି ହେବ ।

يَّغْشَى النَّاسَ ؕ هٰذَا عَذَابٌ اَلِيْمٌ ۝١٢

୧୩. (ଲୋକମାନେ ଏ ସବୁ ଦେଖି କହିବାକୁ ଲାଗିବେ) ''ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କ ଠାରୁ ଏହି ଶାସ୍ତିକୁ ଦୂର କର, ଆମେମାନେ ବିଶ୍ୱାସ କରୁଅଛୁ ।''

رَبَّنَا اكْشِفْ عَنَّا الْعَذَابَ اِنَّا مُؤْمِنُوْنَ ۝١٣

୧୪. ସେଦିନ ବିଶ୍ୱାସ କରିବାର ସୁଯୋଗ ସେମାନଙ୍କୁ କେଉଁଠାରୁ ମିଳିବ, ଅଥଚ ସେମାନଙ୍କ ନିକଟକୁ ସତ୍ୟକୁ ସ୍ପଷ୍ଟଭାବରେ ବର୍ଣ୍ଣନା କରୁଥିବା ଏକ ରସୁଲ ଆସି ସାରିଛନ୍ତି (ଯାହାଙ୍କୁ ସେମାନେ ଗ୍ରହଣ କରି ନ ଥିଲେ) ।

اَنّٰى لَهُمُ الذِّكْرٰى وَقَدْ جَآءَهُمْ رَسُوْلٌ مُّبِيْنٌ ۝١٤

୧୫. ଏବଂ ସେମାନେ ତାହାଙ୍କ ନିକଟରୁ ମୁହଁ ମୋଡ଼ି ଚାଲିଗଲେ ଓ କହିଲେ, ''ଏ ଜଣେ ତାଲିମପ୍ରାପ୍ତ ପାଗଳ ।''

وقف لازم ثُمَّ تَوَلَّوْا عَنْهُ وَقَالُوْا مُعَلَّمٌ مَّجْنُوْنٌ ۝١٥

୧୬. ଆମେ ଶାସ୍ତିକୁ କିଛି ସମୟ ପାଇଁ ଦୂର କରିଦେବୁ; କିନ୍ତୁ ତୁମେମାନେ ପୁନର୍ବାର ସେହିପରି କରିବ ।

وقف لازم اِنَّا كَاشِفُوا الْعَذَابِ قَلِيْلًا اِنَّكُمْ عَآئِدُوْنَ ۝١٦

୧୭. ଯେଉଁଦିନ ଆମେ ତୁମମାନଙ୍କୁ ଦୃଢ଼ ବନ୍ଧନରେ କବଳିତ କରିବୁ, (ତୁମେମାନେ ଜାଣିପାରିବ ଯେ) ପ୍ରତିଶୋଧ ନେବାରେ ଆମେ ସକ୍ଷମ ।

يَوْمَ نَبْطِشُ الْبَطْشَةَ الْكُبْرٰى ۚ اِنَّا مُنْتَقِمُوْنَ ۝١٧

୧୮. ଏବଂ ସେମାନଙ୍କ ପୂର୍ବରୁ ଆମେ ଫିରଔନ ସମ୍ପ୍ରଦାୟକୁ ମଧ୍ୟ ପରୀକ୍ଷା କରିଥିଲୁ; ଏବଂ ସେମାନଙ୍କ ନିକଟକୁ ଜଣେ ସମ୍ମାନିତ ରସୁଲ ଆସିଥିଲେ ।

وَلَقَدْ فَتَنَّا قَبْلَهُمْ قَوْمَ فِرْعَوْنَ وَجَآءَهُمْ رَسُوْلٌ كَرِيْمٌ ۝١٨

---

୧. ଏଠାରେ ପରମାଣୁ ଓ ଉଦ୍‌ଜାନ ବୋମାର ଉଲ୍ଲେଖ ଅଛି, ଯାହା ନିକ୍ଷିପ୍ତ ହେଲେ ସମସ୍ତ ବାୟୁମଣ୍ଡଳ ଧୂମପୂର୍ଣ୍ଣ ହୋଇଯିବ । ସମ୍ପ୍ରତି ବୈଜ୍ଞାନିକମାନେ ସେପରି ବୋମାର ପ୍ରୟୋଗକୁ କୟାମତର ପୂର୍ବାଭାସ ବୋଲି କହୁଛନ୍ତି ।

୧୯. (ଏବଂ ସେ ରସୁଲ ସେମାନଙ୍କୁ କହିଥିଲେ), "ଅଲ୍ଲାହ୍‌ଙ୍କର ଭକ୍ତମାନଙ୍କୁ ଆମ୍ଭଙ୍କୁ ଅର୍ପଣ କରିଦିଅ; ଆମ୍ଭେ ତୁମମାନଙ୍କ ନିକଟକୁ ଜଣେ ବିଶ୍ୱସ୍ତ ରସୁଲଭାବେ ପ୍ରେରିତ ହୋଇଅଛୁ ।"

أَنْ أَدُّوا إِلَيَّ عِبَادَ اللّٰهِ إِنِّي لَكُمْ رَسُولٌ أَمِينٌ ﴿١٩﴾

୨୦. "ଏବଂ ଏହି ଆଦେଶ ସହିତ ପ୍ରେରିତ ହୋଇଅଛୁ ଯେ ଅଲ୍ଲାହ୍‌ଙ୍କ ବ୍ୟାପାରରେ ସୀମାଲଂଘନ କର ନାହିଁ (ଏବଂ ଆମ୍ଭେ ଆଣିଥିବା ପ୍ରମାଣ ସଂକ୍ରାନ୍ତରେ ବିଗ୍ରହ କର); ଆମ୍ଭେ ତୁମମାନଙ୍କ ନିକଟକୁ ବାସ୍ତବରେ ଏକ ସୁସ୍ପଷ୍ଟ ପ୍ରମାଣ ସହିତ ଆସିଅଛୁ ।"

وَأَنْ لَّا تَعْلُوا عَلَى اللّٰهِ إِنِّي آتِيكُمْ بِسُلْطٰنٍ مُّبِينٍ ﴿٢٠﴾

୨୧. "ଏବଂ ଆମ୍ଭେ ଆମ୍ଭ ପାଳନକର୍ତ୍ତା ଓ ତୁମମାନଙ୍କ ପାଳନକର୍ତ୍ତାଙ୍କ ଠାରେ ଶରଣ ଭିକ୍ଷା କରୁଅଛୁ ଯେ କାଳେ ତୁମେମାନେ ଶିଳାବୃଷ୍ଟି କରି ଆମ୍ଭଙ୍କୁ ହତ୍ୟା କରିବ ।"

وَإِنِّي عُذْتُ بِرَبِّي وَرَبِّكُمْ أَنْ تَرْجُمُونِ ﴿٢١﴾

୨୨. "ଯଦି ତୁମେମାନେ ଆମ୍ଭ ଉପରେ ବିଶ୍ୱାସ କରୁନାହିଁ, ତେବେ (ଅନ୍ତତଃ) ଆମ୍ଭଙ୍କୁ ସମ୍ପୂର୍ଣ୍ଣ ଭାବରେ ଏକୁଟିଆ ଛାଡ଼ି ଦିଅ ।"

وَإِنْ لَّمْ تُؤْمِنُوا لِي فَاعْتَزِلُونِ ﴿٢٢﴾

୨୩. ଏହାପରେ ସେ (ମୁସା) ତାହାଙ୍କ ପାଳନକର୍ତ୍ତାଙ୍କୁ ପ୍ରାର୍ଥନା କରି କହିଥିଲେ, "ଏମାନେ ତ ଏକ ଅପରାଧୀ ସମ୍ପ୍ରଦାୟ; (ଏମାନେ ଆମ୍ଭ ଉପରେ ବିଶ୍ୱାସ କରିବାର ସମ୍ଭାବନା ନାହିଁ) ।"

فَدَعَا رَبَّهُ أَنَّ هٰؤُلَاءِ قَوْمٌ مُّجْرِمُونَ ﴿٢٣﴾

୨୪. ସୁତରାଂ (ଅଲ୍ଲାହ୍) କହିଲେ, "ତୁମେ ଆମ୍ଭ ଭକ୍ତମାନଙ୍କୁ ରାତାରାତି (ଏହି ଦେଶରୁ) ନେଇକରି ଚାଲିଯାଅ ଏବଂ (ମନେରଖ, ଫିରଔନର ସମ୍ପ୍ରଦାୟ ଦ୍ୱାରା) ତୁମମାନଙ୍କର ନିଶ୍ଚୟ ଅନୁଧାବନ କରାହେବ ।"

فَأَسْرِ بِعِبَادِي لَيْلًا إِنَّكُمْ مُّتَّبَعُونَ ﴿٢٤﴾

୨୫. ଏବଂ ବାଲିକୁଦ-ଗୁଡ଼ିକ ଉପରେ ଚାଲିଚାଲି ସମୁଦ୍ରକୁ ପଛରେ ପକାଇ ଦିଅ [୧]; (ଅର୍ଥାତ୍ ସମୁଦ୍ରକୁ ଅତିକ୍ରମ କରିଯାଅ); ସେହି (ଅର୍ଥାତ୍ ଫିରଔନର) ସୈନ୍ୟବାହିନୀ ନିଶ୍ଚୟ ଜଳମଗ୍ନ ହେବେ ।

وَاتْرُكِ الْبَحْرَ رَهْوًا إِنَّهُمْ جُنْدٌ مُّغْرَقُونَ ﴿٢٥﴾

୨୬./୨୭./୨୮. ସେମାନେ (ଅର୍ଥାତ୍ ଫିରଔନର ଲୋକମାନେ) ନିଜ ପଛରେ ଅନେକ ଉଦ୍ୟାନ, ଝରଣା, ଶସ୍ୟକ୍ଷେତ୍ର ଓ ଅତ୍ୟନ୍ତ ଆରାମଦାୟକ ସ୍ଥାନ ଓ ଏପରି ବାସସ୍ଥାନ ଯେଉଁଥିରେ (ସେମାନେ) ଅତ୍ୟନ୍ତ ସୁଖରେ ରହୁଥିଲେ ।

كَمْ تَرَكُوا مِنْ جَنّٰتٍ وَّعُيُونٍ ﴿٢٦﴾

وَّزُرُوعٍ وَّمَقَامٍ كَرِيمٍ ﴿٢٧﴾

وَّنَعْمَةٍ كَانُوا فِيهَا فٰكِهِينَ ﴿٢٨﴾

୧. ଅର୍ଥାତ୍ ଯେଉଁ ବାଲିକୁଦ ଉପରୁ ଜଳ ପଛକୁ ଫେରିଯାଏ ତା' ଉପରେ ଚାଲି ଚାଲି ସମୁଦ୍ର ଅତିକ୍ରମ କର ।

كَذٰلِكَ وَاَوْرَثْنٰهَا قَوْمًا اٰخَرِيْنَ ﴿٢٩﴾

୨୯. ଏହିପରି ହୋଇଥିଲା; ଏବଂ ଆମେ ଅନ୍ୟ ଏକ[୧] ସମ୍ପ୍ରଦାୟକୁ ସେ ସବୁର ଉତ୍ତରାଧିକାରୀ କରିଥିଲୁ ।

فَمَا بَكَتْ عَلَيْهِمُ السَّمَآءُ وَالْاَرْضُ وَمَا كَانُوْا مُنْظَرِيْنَ ﴿٣٠﴾

୩୦. ସୁତରାଂ ଆକାଶ ଓ ପୃଥିବୀ ସେମାନଙ୍କ ପାଇଁ କାନ୍ଦି ନ[୨] ଥିଲା ; ଏବଂ ସେମାନଙ୍କୁ ଅବସର ଦିଆଗଲା ନାହିଁ ।

ରୁ: ୨

وَلَقَدْ نَجَّيْنَا بَنِيْٓ اِسْرَآءِيْلَ مِنَ الْعَذَابِ الْمُهِيْنِ ﴿٣١﴾

୩୧. ଏବଂ ଆମେ ଇସ୍ରାଇଲୀୟ ସନ୍ତାନମାନଙ୍କୁ ଫିରଔନର ଅପମାନଜନକ ଶାସ୍ତିରୁ ରକ୍ଷା କରିଥିଲୁ ।

مِنْ فِرْعَوْنَ ؕ اِنَّهٗ كَانَ عَالِيًا مِّنَ الْمُسْرِفِيْنَ ﴿٣٢﴾

୩୨. ଏବଂ ସେ (ଫିରଔନ) ଅତ୍ୟନ୍ତ ଅହଙ୍କାରୀ ଓ ସୀମାଲଂଘନକାରୀ ଥିଲା ।

وَلَقَدِ اخْتَرْنٰهُمْ عَلٰى عِلْمٍ عَلَى الْعٰلَمِيْنَ ﴿٣٣﴾

୩୩. ଏବଂ ଆମେ ସେ (ଇସ୍ରାଇଲୀୟ ସନ୍ତାନ)ମାନଙ୍କୁ ସେମାନଙ୍କ ପରିସ୍ଥିତି ଦୃଷ୍ଟିରୁ ତତ୍‌କାଳୀନ ସମସ୍ତ ସମ୍ପ୍ରଦାୟ ଉପରେ ଶ୍ରେଷ୍ଠତା ପ୍ରଦାନ କରିଥିଲୁ ।

وَاٰتَيْنٰهُمْ مِّنَ الْاٰيٰتِ مَا فِيْهِ بَلٰٓؤٌا مُّبِيْنٌ ﴿٣٤﴾

୩୪. ଏବଂ ଆମେ ସେମାନଙ୍କ ନିକଟକୁ ନିଦର୍ଶନମାନଙ୍କ ମଧ୍ୟରୁ ଏପରି ଏକ ନିଦର୍ଶନ ପ୍ରେରଣ କରିଥିଲୁ ଯହିଁରେ ସେମାନଙ୍କ ସକାଶେ ଏକ ବଡ଼ ପରୀକ୍ଷା ଥିଲା ।

اِنَّ هٰٓؤُلَآءِ لَيَقُوْلُوْنَ ﴿٣٥﴾

୩୫. ଏ (ମକ୍କାବାସୀ)ମାନେ କହନ୍ତି,

اِنْ هِيَ اِلَّا مَوْتَتُنَا الْاُوْلٰى وَمَا نَحْنُ بِمُنْشَرِيْنَ ﴿٣٦﴾

୩୬. "ଆମେମାନେ କେବଳ ପ୍ରଥମ ମୃତ୍ୟୁ ସହିତ ସମ୍ମୁଖ ହେବୁ; ଏବଂ ଆମମାନଙ୍କୁ ପୁନର୍ବାର ଜୀବିତ କରାହେବ ନାହିଁ ।"

فَاْتُوْا بِاٰبَآئِنَآ اِنْ كُنْتُمْ صٰدِقِيْنَ ﴿٣٧﴾

୩୭. ସୁତରାଂ ଯଦି ତୁମେ ସତ୍ୟବାଦୀ ହୋଇଥାଅ, ତେବେ ଆମମାନଙ୍କର ପିତୃ-ପିତାମହମାନଙ୍କୁ ପୁନର୍ବାର ଏହି ସଂସାରକୁ ଆଣି ଦେଖାଇଦିଅ ।

اَهُمْ خَيْرٌ اَمْ قَوْمُ تُبَّعٍ ۙ وَّالَّذِيْنَ مِنْ قَبْلِهِمْ ؕ اَهْلَكْنٰهُمْ ۫ اِنَّهُمْ كَانُوْا مُجْرِمِيْنَ ﴿٣٨﴾

୩୮. କ'ଣ ସେମାନେ ଉତ୍କୃଷ୍ଟ କି 'ତୁବ୍‌ବା' ସମ୍ପ୍ରଦାୟ ଏବଂ ଯେଉଁମାନେ ସେମାନଙ୍କ ପୂର୍ବରୁ ଥିଲେ (ସେମାନେ ଉତ୍କୃଷ୍ଟ) ? ଆମେ ସେ ସମସ୍ତଙ୍କୁ ଧ୍ୱଂସ କରିଦେଲୁ; ସେମାନେ ବାସ୍ତବରେ ଅପରାଧୀ ଥିଲେ ।

---

୧. ଏଠାରେ ସେହି ଇସ୍ରାଇଲୀୟମାନେ ଅଭିପ୍ରେତ, ଯେଉଁମାନେ ପରବର୍ତ୍ତୀକାଳରେ ସମ୍ମାନ ଲାଭ କରିଥିଲେ । ସେମାନେ ଏକଦା ମିଶର ଦେଶରେ ବିପର୍ଯ୍ୟୟ ସୃଷ୍ଟି କରିଥିଲେ । ଏଠାରେ ଫିରଔନ ଓ ତା' ସମ୍ପ୍ରଦାୟର ଲୋକମାନଙ୍କ ବଂଶଧର ମଧ୍ୟ ଅଭିପ୍ରେତ ହୋଇପାରନ୍ତି । ଯଦ୍ୟପି ସେମାନେ ଫିରଔନ ଭଳି ଗୌରବର ଅଧିକାରୀ ହୋଇ ନ ପାରନ୍ତି ତଥାପି ଦୀର୍ଘକାଳ ପର୍ଯ୍ୟନ୍ତ ସେମାନେ ମିଶରରେ ରାଜତ୍ୱ କରିପାରିଥିଲେ ।

୨. ଅର୍ଥାତ୍ ସ୍ୱର୍ଗବାସୀଙ୍କୁ କିଛି ଦୁଃଖ ହେଲା ନାହିଁ କି ମର୍ତ୍ତ୍ୟବାସୀଙ୍କୁ ।

୩୯. ଆକାଶ ଓ ପୃଥିବୀକୁ ତଥା ସେମାନଙ୍କ ମଧ୍ୟରେ ଯାହା କିଛି ଅଛି ତାହାକୁ ଆମେ ଖେଳି ଖେଳି ସୃଷ୍ଟି କରିନାହୁଁ ।

وَمَا خَلَقْنَا السَّمٰوٰتِ وَالْاَرْضَ وَمَا بَيْنَهُمَا لٰعِبِيْنَ ﴿٣٩﴾

୪୦. ଆମେ ସେମାନଙ୍କୁ କେବଳ ଏକ ଶାଶ୍ୱତ ଉଦ୍ଦେଶ୍ୟରେ ସୃଷ୍ଟି କରିଅଛୁ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ (ଏହା) ଜାଣନ୍ତି ନାହିଁ ।

مَا خَلَقْنٰهُمَآ اِلَّا بِالْحَقِّ وَلٰكِنَّ اَكْثَرَهُمْ لَا يَعْلَمُوْنَ ﴿٤٠﴾

୪୧. ନିଷ୍ପତ୍ତି ଦିବସ ସେ ସମସ୍ତଙ୍କ ପାଇଁ ଅଙ୍ଗୀକୃତ ସମୟ ଅଟେ,

اِنَّ يَوْمَ الْفَصْلِ مِيْقَاتُهُمْ اَجْمَعِيْنَ ﴿٤١﴾

୪୨. ଯେଉଁଦିନ କୌଣସି ବନ୍ଧୁ ଅନ୍ୟ କୌଣସି ବନ୍ଧୁର ଆବଶ୍ୟକତାକୁ ମେଣ୍ଟାଇ ପାରିବ ନାହିଁ, ଏବଂ ସେମାନଙ୍କ ମଧ୍ୟରୁ କାହାରିକୁ ସାହାଯ୍ୟ କରାଯିବ ନାହିଁ,

يَوْمَ لَا يُغْنِيْ مَوْلًى عَنْ مَّوْلًى شَيْئًا وَّلَا هُمْ يُنْصَرُوْنَ ﴿٤٢﴾

୪୩. କେବଳ (ସେହିମାନଙ୍କୁ ସାହାଯ୍ୟ କରାହେବ) ଯେଉଁମାନଙ୍କ ପ୍ରତି ଅଲ୍ଲାହ କରୁଣା କରିବେ; ସେ ହିଁ ପରାକ୍ରମୀ (ଓ) ସଦା କରୁଣାମୟ ।

اِلَّا مَنْ رَّحِمَ اللّٰهُ ۭ اِنَّهٗ هُوَ الْعَزِيْزُ الرَّحِيْمُ ﴿٤٣﴾

୪୪. ବାସ୍ତବରେ (ସିକୁ ଜାତୀୟ) ଜକ୍କୁମ [1] ଗଛ,

اِنَّ شَجَرَتَ الزَّقُّوْمِ ﴿٤٤﴾

୪୫. ପାପୀମାନଙ୍କର ଖାଦ୍ୟ;

طَعَامُ الْاَثِيْمِ ﴿٤٥﴾

୪୬. ଏହା ପୂଯ ଭଳି ତିକ୍ତ, ଯାହା ପେଟ ଭିତରେ ତରଳ ତମ୍ବା ପରି ଫୁଟୁଥିବ;

كَالْمُهْلِ ۚ يَغْلِيْ فِي الْبُطُوْنِ ﴿٤٦﴾

୪୭. ଯେପରି ଗରମ ପାଣି ଫୁଟେ;

كَغَلْيِ الْحَمِيْمِ ﴿٤٧﴾

୪୮. (ଏବଂ ଆମେ ଦେବଦୂତମାନଙ୍କୁ କହିବୁ), "ଏହି ପାପୀକୁ ଧର ଏବଂ ନରକର ମଝି ପର୍ଯ୍ୟନ୍ତ ଏହାକୁ ଘୋଷାଡ଼ି ନିଅ;"

خُذُوْهُ فَاعْتِلُوْهُ اِلٰى سَوَاۗءِ الْجَحِيْمِ ﴿٤٨﴾

୪୯. "ଏବଂ ତାହାର ମୁଣ୍ଡ ଉପରେ ପ୍ରଚୁର ଗରମ ପାଣି ଢାଳି ଦିଅ, ଯାହା ଫଳରେ ସେ ପ୍ରଚଣ୍ଡ ଉତ୍ତାପଜନିତ ଶାସ୍ତି ପାଇବ ।"

ثُمَّ صُبُّوْا فَوْقَ رَاْسِهٖ مِنْ عَذَابِ الْحَمِيْمِ ﴿٤٩﴾

୫୦. (ଏବଂ ଆମେ ସେହି ବ୍ୟକ୍ତିକୁ କହିବୁ), "ତୁମେ ଏହି [2] ଶାସ୍ତିକୁ ଆସ୍ୱାଦନ କର; ତୁମେ (ମନେ ମନେ) ପରାକ୍ରମୀ (ଓ) ସମ୍ମାନିତ ଥିଲ !"

ذُقْ ښ اِنَّكَ اَنْتَ الْعَزِيْزُ الْكَرِيْمُ ﴿٥٠﴾

---

୧. 'ଜକ୍କୁମ' ଶବ୍ଦ ପବିତ୍ର କୋରାନରେ ଘୃଣ୍ୟ ବସ୍ତୁ ପାଇଁ ପ୍ରୟୋଗ କରଯାଇଛି ।

୨. ଏହା ଏକ ବ୍ୟଙ୍ଗାତ୍ମକ ଉକ୍ତି ଏବଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଆଲୋଚ୍ୟ ବ୍ୟକ୍ତି ନିଜକୁ ଏହିପରି ମନେ କରୁଥିଲା ।

إِنَّ هٰذَا مَا كُنتُم بِهِۦ تَمْتَرُونَ ﴿٥١﴾
إِنَّ الْمُتَّقِينَ فِي مَقَامٍ أَمِينٍ ﴿٥٢﴾
فِي جَنَّٰتٍ وَعُيُونٍ ﴿٥٣﴾
يَلْبَسُونَ مِن سُندُسٍ وَإِسْتَبْرَقٍ مُّتَقَٰبِلِينَ ﴿٥٤﴾
كَذَٰلِكَ وَزَوَّجْنَٰهُم بِحُورٍ عِينٍ ﴿٥٥﴾

୫୧. (ପୁନର୍ବାର କହିବୁ), "ଏହା ହି ତ ତାହା, ଯାହା ସଂକ୍ରାନ୍ତରେ ତୁମେ ସନ୍ଦେହ କରୁଥିଲ ।"

୫୨. ଧର୍ମଭୀରୁମାନେ ନିଶ୍ଚୟ ଏକ ଶାନ୍ତିଦାୟକ ସ୍ଥାନରେ ରହିବେ,

୫୩. ଅର୍ଥାତ୍ ସ୍ୱର୍ଗୋଦ୍ୟାନରେ ଓ ଝରଣାମାନଙ୍କରେ ;

୫୪. ସେମାନେ ସୂକ୍ଷ୍ମ ରେଶମ ଓ ବୁଟିଦାର ବସ୍ତ୍ର ପରିଧାନ କରିବେ, ଓ ପରସ୍ପର ସମ୍ମୁଖୀନ ହୋଇ ବସିବେ ।

୫୫. (ଏହିପରି ହିଁ ହେବ); ଏବଂ ଆମେ ସେମାନଙ୍କୁ ସାଥୀ ହିସାବରେ ପଦ୍ମପଳାଶ-ଲୋଚନା ନାରୀ ପ୍ରଦାନ କରିବୁ ।

يَدْعُونَ فِيهَا بِكُلِّ فَٰكِهَةٍ ءَامِنِينَ ﴿٥٦﴾
لَا يَذُوقُونَ فِيهَا الْمَوْتَ إِلَّا الْمَوْتَةَ الْأُولَىٰ وَوَقَىٰهُمْ عَذَابَ الْجَحِيمِ ﴿٥٧﴾

୫୬. ସେମାନେ ସେଠାରେ ପ୍ରତ୍ୟେକ ପ୍ରକାର ଫଳ ତଲବ କରିବେ, ଏବଂ ଶାନ୍ତିରେ (ଜୀବନ) ଅତିବାହିତ କରିବେ ।

୫୭. (ପରକାଳ ଜୀବନ ପୂର୍ବରୁ ଘଟିଥିବା) ପ୍ରଥମ ମୃତ୍ୟୁ ବ୍ୟତୀତ ସେମାନଙ୍କର (ସେଠାରେ) ଅନ୍ୟ କୌଣସି ମୃତ୍ୟୁ ହେବ ନାହିଁ [୧] ; ଏବଂ ଅଲ୍ଲାହ ସେମାନଙ୍କୁ ନରକର ଅଗ୍ନିରୁ ରକ୍ଷା କରିବେ ।

فَضْلًا مِّن رَّبِّكَ ذَٰلِكَ هُوَ الْفَوْزُ الْعَظِيمُ ﴿٥٨﴾
فَإِنَّمَا يَسَّرْنَٰهُ بِلِسَانِكَ لَعَلَّهُمْ يَتَذَكَّرُونَ ﴿٥٩﴾
فَارْتَقِبْ إِنَّهُم مُّرْتَقِبُونَ ﴿٦٠﴾

୫୮. ଏହା ମଧ୍ୟ ତୁମ ପାଳନକର୍ତ୍ତାଙ୍କ ତରଫରୁ କୃପା ସ୍ୱରୂପ ହେବ; ଏବଂ ଏହା ବାସ୍ତବରେ ଏକ ମହାନ୍ ସଫଳତା ।

୫୯. ଅତଏବ ଶୁଣ ! ଆମେ ଏହି କୋରାନ (ଗ୍ରନ୍ଥ)କୁ ତୁମ ଭାଷାରେ ସହଜ କରି ଅବତୀର୍ଣ୍ଣ କରିଅଛୁ ଯେପରି ଏ (ଆରବୀ ଭାଷୀ) ଲୋକମାନେ ତହିଁରୁ ଉପଦେଶ ଗ୍ରହଣ କରିପାରିବେ ।

୬୦. ସୁତରାଂ (ପରିଣାମ ସକାଶେ) ତୁମେ ମଧ୍ୟ ପ୍ରତୀକ୍ଷା କର ଓ ସେମାନେ ମଧ୍ୟ ପ୍ରତୀକ୍ଷା କରିବେ ।

---

୧. ଅର୍ଥାତ୍ ସେମାନେ ଦୀର୍ଘକାଳ ପର୍ଯ୍ୟନ୍ତ ପରକାଳ ଜୀବନର ଆନନ୍ଦ ଲାଭ କରୁଥିବେ ।

سُوْرَةُ الْجَاثِيَةِ مَكِّيَّةٌ (٤٥)

# ଅଲ-ଜାସିୟାଃ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସମିଲ୍ଲାଃ ସମେତ ୩୮ ଟି ଆୟତ୍ ଓ ୪ ଟି ରୁକୁ ଅଛି।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାଃଙ୍କ ନାମ ନେଇ (ପାଠ କରୁଅଛି)।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ହା-ମୀମ୍,

حٰمٓ ②

୩. ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ଅଲ୍ଲାଃଙ୍କ ନିକଟରୁ ଏହି ଗ୍ରନ୍ଥ ଅବତୀର୍ଣ୍ଣ ହୋଇଅଛି।

تَنْزِيْلُ الْكِتٰبِ مِنَ اللّٰهِ الْعَزِيْزِ الْحَكِيْمِ ③

୪. ଆକାଶ ଓ ପୃଥିବୀରେ ବିଶ୍ୱାସକାରୀମାନଙ୍କ ସକାଶେ ମହାନ୍ ନିଦର୍ଶନମାନ ରହିଅଛି।

اِنَّ فِي السَّمٰوٰتِ وَالْاَرْضِ لَاٰيٰتٍ لِّلْمُؤْمِنِيْنَ ④

୫. ଏବଂ ଏହିପରି ଭାବରେ ତୁମମାନଙ୍କ ସୃଷ୍ଟିରେ, ଏବଂ ସେ (ଅଲ୍ଲାଃ) ଯେଉଁ ପ୍ରାଣୀମାନଙ୍କୁ (ଭୂପୃଷ୍ଠରେ) ବିସ୍ତାରିତ କରିଛନ୍ତି ସେମାନଙ୍କ ମଧ୍ୟରେ ବିଶ୍ୱାସକାରୀ ସମ୍ପ୍ରଦାୟ ସକାଶେ ନିଦର୍ଶନମାନ ରହିଅଛି।

وَفِيْ خَلْقِكُمْ وَمَا يَبُثُّ مِنْ دَآبَّةٍ اٰيٰتٌ لِّقَوْمٍ يُّوْقِنُوْنَ ⑤

୬. ଏବଂ ରାତି ଓ ଦିନର ଆଗପଛ ହୋଇ ଯିବା ଆସିବାରେ ମଧ୍ୟ, ଏବଂ ଅଲ୍ଲାଃ ଜୀବିକାର ଯେଉଁ ମାଧ୍ୟମ (ଅର୍ଥାତ୍ ଜଳ)କୁ ମେଘମାଳାରୁ ପଠାଇଥା'ନ୍ତି, ଏବଂ ତଦ୍ୱାରା ମୃତ ଭୂପୃଷ୍ଠକୁ ପୁନର୍ଜୀବିତ କରାନ୍ତି (ତହିଁରେ ମଧ୍ୟ), ଏବଂ ପବନକୁ ବିଭିନ୍ନ ଦିଗରେ ପ୍ରବାହିତ କରାଇବାରେ ମଧ୍ୟ, ବୁଦ୍ଧିମାନ୍ ସମ୍ପ୍ରଦାୟ ପାଇଁ ଅନେକ ନିଦର୍ଶନ ରହିଅଛି।

وَاخْتِلَافِ الَّيْلِ وَالنَّهَارِ وَمَآ اَنْزَلَ اللّٰهُ مِنَ السَّمَآءِ مِنْ رِّزْقٍ فَاَحْيَا بِهِ الْاَرْضَ بَعْدَ مَوْتِهَا وَتَصْرِيْفِ الرِّيٰحِ اٰيٰتٌ لِّقَوْمٍ يَّعْقِلُوْنَ ⑥

୭. ଏ ସବୁ ଅଲ୍ଲାଃଙ୍କର ନିଦର୍ଶନ, ଯାହାକୁ ଆମେ ତୁମ ନିକଟରେ ସମ୍ପୂର୍ଣ୍ଣ ସତ୍ୟ ସହିତ ବର୍ଣ୍ଣନା କରୁଅଛୁ; ତେଣୁ (କୁହ) ଅଲ୍ଲାଃ ଓ ତାହାଙ୍କର ନିଦର୍ଶନକୁ ଛାଡି ତୁମେମାନେ କାହା ଉପରେ ବିଶ୍ୱାସ କରିବ ?

تِلْكَ اٰيٰتُ اللّٰهِ نَتْلُوْهَا عَلَيْكَ بِالْحَقِّ ۚ فَبِاَيِّ حَدِيْثٍۢ بَعْدَ اللّٰهِ وَاٰيٰتِهٖ يُؤْمِنُوْنَ ⑦

୮. ପ୍ରତ୍ୟେକ ମିଥ୍ୟାବାଦୀ ଓ ପାପୀଙ୍କ ପାଇଁ ଶାସ୍ତି ନିୟତ ଅଛି,

وَيْلٌ لِّكُلِّ اَفَّاكٍ اَثِيْمٍ ⑧

୯. ଯେଉଁ ବ୍ୟକ୍ତି ତାହା ସମ୍ମୁଖରେ ବର୍ଣ୍ଣନା କରାଯାଉଥିବା ନିଦର୍ଶନ ଗୁଡ଼ିକ ଶୁଣେ ଏବଂ ଅହଙ୍କାର-ପୂର୍ବକ ନିଜର ସବୁ କଥା ଉପରେ ଏପରି ଅଟଳ ରହେ, ଯତେ ଯେପରି ସେ ଅଲ୍ଲାଃଙ୍କର ନିଦର୍ଶନ ଗୁଡ଼ିକୁ ଶୁଣିନାହିଁ; ଅତଏବ ଏପରି ବ୍ୟକ୍ତିକୁ ଯନ୍ତ୍ରଣାଦାୟକ ଶାସ୍ତିର ସମାଚାର ଦିଅ।

يَّسْمَعُ اٰيٰتِ اللّٰهِ تُتْلٰى عَلَيْهِ ثُمَّ يُصِرُّ مُسْتَكْبِرًا كَاَنْ لَّمْ يَسْمَعْهَا ۚ فَبَشِّرْهُ بِعَذَابٍ اَلِيْمٍ ⑨

وَإِذَا عَلِمَ مِنْ آيَاتِنَا شَيْئًا اتَّخَذَهَا هُزُوًا ۚ أُولَٰئِكَ لَهُمْ عَذَابٌ مُهِينٌ ⑩

୧୦. ଏବଂ ଯେତେବେଳେ ସେ ଆମ ନିଦର୍ଶନ ଗୁଡ଼ିକ ମଧ୍ୟରୁ କାହାରି (ଅର୍ଥାତ୍ କୌଣସି ନିଦର୍ଶନ) ସମ୍ବନ୍ଧରେ ଜାଣିବାକୁ ପାଏ, ସେତେବେଳେ ସେ ତାହାକୁ ପରିହାସ କରେ; ଏପରି ଲୋକମାନଙ୍କୁ ଅପମାନଜନକ ଶାସ୍ତି ମିଳିବ ।

مِنْ وَرَائِهِمْ جَهَنَّمُ ۖ وَلَا يُغْنِي عَنْهُمْ مَا كَسَبُوا شَيْئًا وَلَا مَا اتَّخَذُوا مِنْ دُونِ اللَّهِ أَوْلِيَاءَ ۖ وَلَهُمْ عَذَابٌ عَظِيمٌ ⑪

୧୧. ସେମାନଙ୍କ ସମ୍ମୁଖରେ ନରକ ଅଛି; ଏବଂ ସେମାନଙ୍କ କର୍ମ ସେମାନଙ୍କୁ ସାମାନ୍ୟତମ ଲାଭ ଦେବ ନାହିଁ କି ସେ ଉପାସ୍ୟମାନେ (ଲାଭ ଦେଇପାରିବେ ନାହିଁ) ଯେଉଁମାନଙ୍କୁ ସେମାନେ ଅଲ୍ଲାହଙ୍କ ପରିବର୍ତ୍ତେ ଗ୍ରହଣ କରିଛନ୍ତି, ଏବଂ ସେମାନଙ୍କୁ ଅତି ବୃହତ୍ ଶାସ୍ତି ମିଳିବ ।

هَٰذَا هُدًى ۖ وَالَّذِينَ كَفَرُوا بِآيَاتِ رَبِّهِمْ لَهُمْ عَذَابٌ مِنْ رِجْزٍ أَلِيمٌ ⑫ ع

୧୨. ଏହା ହିଁ ସତ୍‌ପଥ; ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ନିଦର୍ଶନଗୁଡ଼ିକୁ ଅବଜ୍ଞା କରିଛନ୍ତି ସେମାନଙ୍କୁ (ପିତୁଳା ପୂଜା ହେତୁ) ଯନ୍ତ୍ରଣାଦାୟକ ଶାସ୍ତି ମିଳିବ ।

ରୁ: ୨

اللَّهُ الَّذِي سَخَّرَ لَكُمُ الْبَحْرَ لِتَجْرِيَ الْفُلْكُ فِيهِ بِأَمْرِهِ وَلِتَبْتَغُوا مِنْ فَضْلِهِ وَلَعَلَّكُمْ تَشْكُرُونَ ⑬

୧୩. ସେ ହିଁ ଅଲ୍ଲାହ ଯେ କି ସମୁଦ୍ରକୁ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି, ଯଦ୍ଦ୍ୱାରାକି ତାହାଙ୍କ ଆଦେଶ ଅନୁସାରେ ତାହା ଉପରେ ନୌକା ଚାଳିତ ହେବ; ଏବଂ ଯଦ୍ଦ୍ୱାରାକି ତୁମେମାନେ (ଏଗୁଡ଼ିକ ମାଧ୍ୟମରେ) ତାହାଙ୍କ କୃପାର ଅନ୍ୱେଷଣ କରିବ ଏବଂ ଯଦ୍ଦ୍ୱାରାକି ତୁମେମାନେ କୃତଜ୍ଞତା ଜ୍ଞାପନ କରିବ ।

وَسَخَّرَ لَكُمْ مَا فِي السَّمَاوَاتِ وَمَا فِي الْأَرْضِ جَمِيعًا مِنْهُ ۚ إِنَّ فِي ذَٰلِكَ لَآيَاتٍ لِقَوْمٍ يَتَفَكَّرُونَ ⑭

୧୪. ଯାହା କିଛି ଆକାଶରେ ଅଛି ଓ ପୃଥିବୀରେ ଅଛି, ସେ ସବୁକୁ ସେ ତୁମମାନଙ୍କ ସେବାରେ ନିୟୋଜିତ କରିଛନ୍ତି; ଏଥିରେ ଚିନ୍ତାଶୀଳ ସମ୍ପ୍ରଦାୟ ପାଇଁ ମହାନ୍ ନିଦର୍ଶନ ରହିଅଛି ।

قُلْ لِلَّذِينَ آمَنُوا يَغْفِرُوا لِلَّذِينَ لَا يَرْجُونَ أَيَّامَ اللَّهِ لِيَجْزِيَ قَوْمًا بِمَا كَانُوا يَكْسِبُونَ ⑮

୧୫. ତୁମେ ବିଶ୍ୱାସକାରୀମାନଙ୍କୁ କୁହ, "ଯେଉଁମାନେ ଅଲ୍ଲାହଙ୍କର ଶାସ୍ତିକୁ ଭୟ କରନ୍ତି ସେମାନଙ୍କୁ କ୍ଷମା କର;" ପରିଣାମରେ ଅଲ୍ଲାହ (ସ୍ୱୟଂ) ଏପରି ସମ୍ପ୍ରଦାୟକୁ ସେମାନଙ୍କ କର୍ମର ପ୍ରତିଫଳ ପ୍ରଦାନ କରିବେ ।

مَنْ عَمِلَ صَالِحًا فَلِنَفْسِهِ ۖ وَمَنْ أَسَاءَ فَعَلَيْهَا ۖ ثُمَّ إِلَىٰ رَبِّكُمْ تُرْجَعُونَ ⑯

୧୬. ଯେ କେହି (ଧର୍ମ)ବିଶ୍ୱାସ ମୁତାବକ କାର୍ଯ୍ୟକରେ, ସେ ନିଜେ ତାହାର ଲାଭ ପାଏ; ଏବଂ ଯେ କେହି ମନ୍ଦ କାର୍ଯ୍ୟ କରେ, ତାହାର କ୍ଷତି ତାକୁ ହିଁ ପ୍ରାପ୍ତ ହୁଏ; ଏହାପରେ ତୁମମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ନିକଟକୁ ଫେରାଇ ନିଆହେବ ।

୧୭. ଏବଂ ଆମ୍ଭେ ଇସ୍ରାଇଲୀୟ ସନ୍ତାନମାନଙ୍କୁ (ଧର୍ମ)ଗ୍ରନ୍ଥ, ରାଜତ୍ୱ ଓ ନବି-ପଦ ପ୍ରଦାନ କରିଥିଲୁ; ଏବଂ ପବିତ୍ର ବସ୍ତୁମାନଙ୍କ ମଧ୍ୟରୁ ଜୀବିକା ପ୍ରଦାନ କରିଥିଲୁ, ଏବଂ ତତ୍‌କାଳୀନ ଲୋକମାନଙ୍କ ମଧ୍ୟରେ ସେମାନଙ୍କୁ ପ୍ରାଧାନ୍ୟ ଦେଇଥିଲୁ ।

وَلَقَدْ اٰتَيْنَا بَنِيْٓ اِسْرَآءِيْلَ الْكِتٰبَ وَالْحُكْمَ وَالنُّبُوَّةَ وَرَزَقْنٰهُمْ مِّنَ الطَّيِّبٰتِ وَفَضَّلْنٰهُمْ عَلَى الْعٰلَمِيْنَ ﴿١٧﴾

୧୮. ଏବଂ ଆମ୍ଭେ ସେମାନଙ୍କୁ ସୁସ୍ପଷ୍ଟ ଧର୍ମବିଧାନ ପ୍ରଦାନ କରିଥିଲୁ, ଏବଂ ସେ (ଇସ୍ରାଇଲୀୟ ସନ୍ତାନ)ମାନେ ସେତେବେଳେ ତାହା ସମ୍ପର୍କରେ ଭିନ୍ନ ମତ ପୋଷଣ କରିଥିଲେ, ଯେତେବେଳେ ସେମାନଙ୍କ ନିକଟକୁ ସମ୍ପୂର୍ଣ୍ଣ ଜ୍ଞାନ (ଅର୍ଥାତ୍ କୋରାନ) ଆସିଗଲା; (ଏବଂ ଏହି ଭିନ୍ନ ମତ ପୋଷଣ) ସେମାନଙ୍କ ପରସ୍ପର ବିଦ୍ୱେଷ ହେତୁ ଘଟିଥିଲା; ତୁମ ପାଳନକର୍ତ୍ତା କୟାମତ ଦିନ ସେମାନଙ୍କ ବିରୁଦ୍ଧାଚରଣ ସଂକ୍ରାନ୍ତରେ ନିଷ୍ପତ୍ତି କରିବେ ।

وَاٰتَيْنٰهُمْ بَيِّنٰتٍ مِّنَ الْاَمْرِ ۚ فَمَا اخْتَلَفُوْٓا اِلَّا مِنْۢ بَعْدِ مَا جَآءَهُمُ الْعِلْمُ ۙ بَغْيًۢا بَيْنَهُمْ ۗ اِنَّ رَبَّكَ يَقْضِيْ بَيْنَهُمْ يَوْمَ الْقِيٰمَةِ فِيْمَا كَانُوْا فِيْهِ يَخْتَلِفُوْنَ ﴿١٨﴾

୧୯. ଆମ୍ଭେ ତୁମଙ୍କୁ ଧର୍ମ ବିଧାନର ଗୋଟିଏ ମାର୍ଗ[1] ଉପରେ ପ୍ରତିଷ୍ଠିତ କରିଅଛୁ; ସୁତରାଂ ତୁମେ ଏହାର ଅନୁସରଣ କର, ଏବଂ ଯେଉଁମାନଙ୍କର (ଏ ବିଷୟରେ) ଜ୍ଞାନ ନାହିଁ ତୁମେ ସେମାନଙ୍କ ପ୍ରବୃତ୍ତିର ଅନୁସରଣ କର ନାହିଁ ।

ثُمَّ جَعَلْنٰكَ عَلٰى شَرِيْعَةٍ مِّنَ الْاَمْرِ فَاتَّبِعْهَا وَلَا تَتَّبِعْ اَهْوَآءَ الَّذِيْنَ لَا يَعْلَمُوْنَ ﴿١٩﴾

୨୦. ସେମାନେ ଅଲ୍ଲାହ୍‌ଙ୍କ ବିରୁଦ୍ଧରେ ତୁମଙ୍କୁ କୌଣସି ଲାଭ ପହଞ୍ଚାଇ ପାରିବେ ନାହିଁ; ଏବଂ ଅତ୍ୟାଚାରୀମାନେ ନିଜ ମଧ୍ୟରେ ପରସ୍ପରକୁ ଆଶ୍ରୟ ଦେଇଥା'ନ୍ତି; ଏବଂ ଅଲ୍ଲାହ୍ ଧର୍ମଭୀରୁମାନଙ୍କୁ ଆଶ୍ରୟ ଦେଇଥା'ନ୍ତି ।

اِنَّهُمْ لَنْ يُّغْنُوْا عَنْكَ مِنَ اللّٰهِ شَيْـًٔا ۗ وَاِنَّ الظّٰلِمِيْنَ بَعْضُهُمْ اَوْلِيَآءُ بَعْضٍ ۚ وَاللّٰهُ وَلِيُّ الْمُتَّقِيْنَ ﴿٢٠﴾

୨୧. ଏ (ଶିକ୍ଷା) ଲୋକମାନଙ୍କ ପାଇଁ ସୁସ୍ପଷ୍ଟ ପ୍ରମାଣ; ଏବଂ ଏହା ବିଶ୍ୱାସକାରୀ ସମ୍ପ୍ରଦାୟ ସକାଶେ ସତ୍‌ପଥ ଓ କରୁଣାର ଆଧାର ଅଟେ ।

هٰذَا بَصَآئِرُ لِلنَّاسِ وَهُدًى وَّرَحْمَةٌ لِّقَوْمٍ يُّوْقِنُوْنَ ﴿٢١﴾

୨୨. ଯେଉଁମାନେ ମନ୍ଦ କାର୍ଯ୍ୟ କରିଛନ୍ତି କ'ଣ ସେମାନେ ମନେ କରୁଛନ୍ତି ଯେ ଆମ୍ଭେ ସେମାନଙ୍କୁ ବିଶ୍ୱାସକାରୀ[2] ଓ ବିଶ୍ୱାସ ମୁତାବକ କାର୍ଯ୍ୟ କରୁଥିବା ଲୋକମାନଙ୍କ ସଦୃଶ ମର୍ଯ୍ୟାଦା ଦେବୁ ? ଯାହାଫଳରେ ସେ ଉଭୟଙ୍କର ଜୀବନ ଓ ମୃତ୍ୟୁ ସମାନ ହେବ ? ସେମାନଙ୍କ ନିଷ୍ପତ୍ତି ଅତ୍ୟନ୍ତ ମନ୍ଦ ଅଟେ ।

اَمْ حَسِبَ الَّذِيْنَ اجْتَرَحُوا السَّيِّاٰتِ اَنْ نَّجْعَلَهُمْ كَالَّذِيْنَ اٰمَنُوْا وَعَمِلُوا الصّٰلِحٰتِ ۙ سَوَآءً مَّحْيَاهُمْ وَمَمَاتُهُمْ ۗ سَآءَ مَا يَحْكُمُوْنَ ﴿٢٢﴾

---

୧. ପ୍ରତ୍ୟେକ ଧର୍ମ ବିଧାନର ମାର୍ଗଗତ ପାର୍ଥକ୍ୟ ରହିଅଛି । ଉଦାହରଣ ସ୍ୱରୂପ ତୌରାତ ଗ୍ରନ୍ଥରେ ପ୍ରତିଶୋଧ ନେବା ସଂକ୍ରାନ୍ତରେ ଗୁରୁତ୍ୱ ଆରୋପ କରାଯାଇଛି ଓ ଇଂଜିଲରେ କ୍ଷମା ଦେବା ଓ ନମ୍ର ହେବା ଉପରେ ଜୋର୍ ଦିଆଯାଇଛି ଏବଂ କୋରାନରେ ଏକ ମଧ୍ୟବର୍ତ୍ତୀ ପନ୍ଥା ଅବଲମ୍ବନ କରିବାକୁ ଶିକ୍ଷା ଦିଆଯାଇଛି । ବସ୍ତୁତଃ ଶେଷୋକ୍ତ ଗ୍ରନ୍ଥର ଶିକ୍ଷା ଅନ୍ୟ ଦୁଇ ଗ୍ରନ୍ଥଠାରୁ ପୃଥକ୍ ଅଟେ ।

୨. ଯଦି ମାନବ ସମାଜର ଇତିହାସକୁ ବିଚାର କରାଯିବ ତେବେ ଜାଣି ହେବ ଯେ ଅତ୍ୟାଚାରୀମାନେ ସର୍ବଦା ଅତ୍ୟାଚାରୀମାନଙ୍କୁ ସାହାଯ୍ୟ କରିଥା'ନ୍ତି ଏବଂ ଅଲ୍ଲାହ୍ ସର୍ବଦା ଧର୍ମଭୀରୁମାନଙ୍କର ସହାୟତା କରିଥା'ନ୍ତି ଓ ସେମାନଙ୍କୁ ଆଶ୍ରୟ ଦାନ କରୁଥା'ନ୍ତି ।

ରୁ:୩

୨୩. ଏବଂ ଅଲ୍ଲାହ ଆକାଶ ଓ ପୃଥିବୀକୁ ଏକ ଚିରନ୍ତନ ବିଧାନ ଅନୁଯାୟୀ ସୃଷ୍ଟି କରିଛନ୍ତି ଯଦ୍ବାରା ପ୍ରତ୍ୟେକ ବ୍ୟକ୍ତି ତାହାର କର୍ମ ଅନୁସାରେ ପ୍ରତିଦାନ ପାଇବ; ଏବଂ ସେମାନଙ୍କ ମଧ୍ୟରୁ କାହାରି ପ୍ରତି ଅତ୍ୟାଚାର କରାହେବ ନାହିଁ ।

وَخَلَقَ اللّٰهُ السَّمٰوٰتِ وَالْاَرْضَ بِالْحَقِّ وَلِتُجْزٰى كُلُّ نَفْسٍۢ بِمَا كَسَبَتْ وَهُمْ لَا يُظْلَمُوْنَ ۝٢٣

୨୪. କ'ଣ ତୁମେ ସେହି ବ୍ୟକ୍ତିର ଅବସ୍ଥାକୁ ଲକ୍ଷ୍ୟ କରିଅଛ ଯେ ନିଜ ଇନ୍ଦ୍ରିୟ ବାସନାକୁ ନିଜର ଉପାସ୍ୟ ରୂପେ ଗ୍ରହଣ କରିଅଛି ? ଏବଂ ଅଲ୍ଲାହ ନିଜର ସମ୍ପୂର୍ଣ୍ଣ ଜ୍ଞାନ ବଳରେ ତାହାକୁ ପଥଭ୍ରଷ୍ଟ ସାବ୍ୟସ୍ତ କରିଛନ୍ତି, ଏବଂ ତାହାର କର୍ଣ୍ଣ ଓ ତାହାର ହୃଦୟ ଉପରେ ମୋହର ମାରି ଦେଇଛନ୍ତି ଓ ତାହାର ଚକ୍ଷୁ ଉପରେ ପରଦା ପକାଇ ଦେଇଛନ୍ତି; ତେବେ ଅଲ୍ଲାହଙ୍କ (ଏପରି କାର୍ଯ୍ୟ) ପରେ କିଏ ତାହାକୁ ସତ୍ପଥ ପ୍ରଦର୍ଶନ କରାଇପାରିବ ? ତାହାହେଲେ, କ'ଣ ତୁମେମାନେ ଉପଦେଶ ଗ୍ରହଣ କରିବ ନାହିଁ ?

اَفَرَءَيْتَ مَنِ اتَّخَذَ اِلٰهَهٗ هَوٰىهُ وَاَضَلَّهُ اللّٰهُ عَلٰى عِلْمٍ وَّخَتَمَ عَلٰى سَمْعِهٖ وَقَلْبِهٖ وَجَعَلَ عَلٰى بَصَرِهٖ غِشٰوَةً ؕ فَمَنْ يَّهْدِيْهِ مِنْۢ بَعْدِ اللّٰهِ ؕ اَفَلَا تَذَكَّرُوْنَ ۝٢٤

୨୫. ଏବଂ ସେମାନେ କହନ୍ତି, "ଏହି ସାଂସାରିକ ଜୀବନ ଆମମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ରହିଅଛି; ଏହି ଜୀବନ ଅତିବାହିତ କରି ଆମେମାନେ ମୃତ୍ୟୁ ବରଣ କରିବୁ ଓ (ଏହାକୁ ଉପଭୋଗ କରି) ଜୀବିତ ରହିବୁ; ଏବଂ ସମୟ ହିଁ ଆମମାନଙ୍କୁ (ନିଜ ପ୍ରଭାବ ଦ୍ବାରା) ବିନାଶ କରେ;" କିନ୍ତୁ ସେମାନଙ୍କର ଏ ବିଷୟରେ ପ୍ରକୃତ ଜ୍ଞାନ ନାହିଁ; ସେମାନେ କେବଳ ଅନୁମାନ କରୁଛନ୍ତି ।

وَقَالُوْا مَا هِيَ اِلَّا حَيَاتُنَا الدُّنْيَا نَمُوْتُ وَنَحْيَا وَمَا يُهْلِكُنَآ اِلَّا الدَّهْرُ ۚ وَمَا لَهُمْ بِذٰلِكَ مِنْ عِلْمٍ ۚ اِنْ هُمْ اِلَّا يَظُنُّوْنَ ۝٢٥

୨୬. ଏବଂ ଯେତେବେଳେ ସେମାନଙ୍କୁ ଆମର ସୁସ୍ପଷ୍ଟ ବାଣୀ ଶୁଣାଇ ଦିଆଯାଏ, ସେତେବେଳେ ସେମାନେ ଏହି ଉତ୍ତର ଦିଅନ୍ତି, "ଯଦି ତୁମେ ସତ୍ୟବାଦୀ ହୋଇଥାଅ, ତେବେ ଆମମାନଙ୍କର ପିତୃପିତାମହମାନଙ୍କୁ (ଜୀବିତ କରି) ଘେନିଆସ ।"

وَاِذَا تُتْلٰى عَلَيْهِمْ اٰيٰتُنَا بَيِّنٰتٍ مَّا كَانَ حُجَّتَهُمْ اِلَّآ اَنْ قَالُوا ائْتُوْا بِاٰبَآئِنَآ اِنْ كُنْتُمْ صٰدِقِيْنَ ۝٢٦

୨୭. ତୁମେ କୁହ, "ଅଲ୍ଲାହ ହିଁ ତୁମମାନଙ୍କୁ ଜୀବିତ କରନ୍ତି; ତାପରେ ସେ ହିଁ ତୁମମାନଙ୍କୁ ମୃତ୍ୟୁ ପ୍ରଦାନ କରିବେ, ତା ପରେ ସେ ତୁମମାନଙ୍କୁ କୟାମତ ଦିନ ପର୍ଯ୍ୟନ୍ତ ଏକତ୍ରିତ କରାଉଥିବେ[୧]; (ଏବଂ) ଏଥିରେ କୌଣସି ସନ୍ଦେହ ନାହିଁ; କିନ୍ତୁ ଅଧିକାଂଶ ଲୋକ ଏହା ଜାଣନ୍ତି ନାହିଁ ।

قُلِ اللّٰهُ يُحْيِيْكُمْ ثُمَّ يُمِيْتُكُمْ ثُمَّ يَجْمَعُكُمْ اِلٰى يَوْمِ الْقِيٰمَةِ لَا رَيْبَ فِيْهِ وَلٰكِنَّ اَكْثَرَ النَّاسِ لَا يَعْلَمُوْنَ ۝٢٧ ع

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଜୀବନ ଓ ମୃତ୍ୟୁ ଅଲ୍ଲାହଙ୍କର ନିୟନ୍ତ୍ରଣାଧୀନ ଏବଂ ସେ ହିଁ ମୃତ୍ୟୁ ପରେ ଆତ୍ମାକୁ କୟାମତ ପର୍ଯ୍ୟନ୍ତ ଜୀବିତ କରି ରଖିବେ । କିନ୍ତୁ ଏ ବିଷୟ ଦୃଷ୍ଟି ଅନ୍ତରାଳରେ ଘଟୁ ଥିବାରୁ ଅଧିକାଂଶ ଏ ବିଷୟ ଜାଣନ୍ତି ନାହିଁ ।

ରୁ:୪

୨୮. ଏବଂ ଆକାଶ ଓ ପୃଥିବୀର ଆଧିପତ୍ୟ ଅଲ୍ଲାହଙ୍କର ହିଁ ଅଟେ; ଏବଂ ଯେଉଁଦିନ ସେହି ଅଙ୍ଗୀକୃତ ସମୟ ଉପସ୍ଥିତ ହେବ ସେ ଦିନ ମିଥ୍ୟାବାଦୀମାନେ ଅତିଶୟ କ୍ଷତିଗ୍ରସ୍ତ ହେବେ ।

وَ لِلّٰهِ مُلْكُ السَّمٰوٰتِ وَالْاَرْضِ ۚ وَيَوْمَ تَقُوْمُ السَّاعَةُ يَوْمَئِذٍ يَّخْسَرُ الْمُبْطِلُوْنَ ﴿۲۸﴾

୨୯. ଏବଂ ତୁମେ ପ୍ରତ୍ୟେକ ସମ୍ପ୍ରଦାୟକୁ ଭୂମି ଉପରେ ଆଣ୍ଠୁମାଡ଼ି ପଡିଥିବାର ଦେଖିବ; ପ୍ରତ୍ୟେକ ସମ୍ପ୍ରଦାୟକୁ ତାହାର ବିଧାନ [୧] ଆଡକୁ ଡକାଯିବ; ସେ ଦିନ ତୁମମାନଙ୍କୁ ତୁମମାନଙ୍କ କର୍ମ ଅନୁସାରେ ପ୍ରତିଫଳ ପ୍ରଦାନ କରାହେବ ।

وَتَرٰى كُلَّ اُمَّةٍ جَاثِيَةً ۫ كُلُّ اُمَّةٍ تُدْعٰٓى اِلٰى كِتٰبِهَا ۭ اَلْيَوْمَ تُجْزَوْنَ مَا كُنْتُمْ تَعْمَلُوْنَ ﴿۲۹﴾

୩୦. (ଏବଂ ଆମ୍ଭେ କହିବୁ, ଦେଖ) ଏହା ଆମ୍ଭର ପୁସ୍ତକ (ଅର୍ଥାତ୍ ମାନବର କର୍ମପତ୍ର) ଯାହା ତୁମମାନଙ୍କ ବିରୁଦ୍ଧରେ ସତ୍ୟ ସାକ୍ଷ୍ୟ ପ୍ରଦାନ କରୁଅଛି; ତୁମେମାନେ ଯାହା କିଛି କାର୍ଯ୍ୟ କରୁଥିଲ ଆମ୍ଭେ ତାହାକୁ ଲିପିବଦ୍ଧ କରୁଥିଲୁ ।

هٰذَا كِتٰبُنَا يَنْطِقُ عَلَيْكُمْ بِالْحَقِّ ۭ اِنَّا كُنَّا نَسْتَنْسِخُ مَا كُنْتُمْ تَعْمَلُوْنَ ﴿۳۰﴾

୩୧. ସୁତରାଂ ଯେଉଁମାନେ ବିଶ୍ୱାସକାରୀ ଥିଲେ ଓ ସତ୍‌କର୍ମ କରିଥିଲେ, ସେମାନଙ୍କୁ ସେମାନଙ୍କ ପାଳନକର୍ତ୍ତା ନିଜ କରୁଣା (ର ଛାୟା) ତଳେ ରଖିବେ; ଏବଂ ଏହା ହିଁ ପ୍ରକାଶ୍ୟ ସଫଳତା ।

فَاَمَّا الَّذِيْنَ اٰمَنُوْا وَعَمِلُوا الصّٰلِحٰتِ فَيُدْخِلُهُمْ رَبُّهُمْ فِيْ رَحْمَتِهٖ ۭ ذٰلِكَ هُوَ الْفَوْزُ الْمُبِيْنُ ﴿۳۱﴾

୩୨. ଏବଂ ଯେଉଁମାନେ ଅବିଶ୍ୱାସକାରୀ ହୋଇଯାଇଥିଲେ (ସେମାନଙ୍କୁ କୁହାଯିବ), "କ'ଣ ଆମ୍ଭର ବାଣୀ ତୁମମାନଙ୍କ ନିକଟରେ ପାଠ କରି ଶୁଣାଇ ଦିଆଯାଇ ନ ଥିଲା ? କିନ୍ତୁ (ଏହା ସତ୍ତ୍ୱେ) ତୁମେମାନେ ଅହଙ୍କାର କରୁଥିଲ, ଓ ତୁମେମାନେ ଅପରାଧୀ ସମ୍ପ୍ରଦାୟ ସହିତ ସାମିଲ ହୋଇଯାଇଥିଲ ।"

وَاَمَّا الَّذِيْنَ كَفَرُوْا ۣ اَفَلَمْ تَكُنْ اٰيٰتِيْ تُتْلٰى عَلَيْكُمْ فَاسْتَكْبَرْتُمْ وَكُنْتُمْ قَوْمًا مُّجْرِمِيْنَ ﴿۳۲﴾

---

୧. ପ୍ରତ୍ୟେକ ଜାତିର ନିର୍ଣ୍ଣୟ ସର୍ବପ୍ରଥମେ ତା' ନିଜ ଧର୍ମବିଧାନ ଅନୁସାରେ ହେବ କାରଣ ସେ ତ ଅନ୍ୟ ଧର୍ମବିଧାନକୁ ମିଛ ମଣୁଥିଲା । କିନ୍ତୁ କ'ଣ ସେପରି ସ୍ଥଳେ ସେ ନିଜ ଧର୍ମବିଧାନକୁ ସମ୍ପୂର୍ଣ୍ଣରୂପେ ପାଳନ କରୁଥିଲା ? ସାମ୍ପ୍ରତିକ ସମୟ ପ୍ରତି ଧ୍ୟାନ ଦେଲେ ଜଣାଯିବ ଯେ ଏହି ସିଦ୍ଧାନ୍ତ ଦୃଷ୍ଟିରୁ ମୁସଲମାନମାନେ ମୁକ୍ତି ପାଇବେ ନାହିଁ କି କୌଣସି ଖ୍ରୀଷ୍ଟଧର୍ମାବଲମ୍ବୀ ବା ଅନ୍ୟ ଧର୍ମାବଲମ୍ବୀ ମୁକ୍ତି ପାଇବେ ନାହିଁ କାରଣ ଅନ୍ୟର ଧର୍ମବିଧାନକୁ ପାଳିବା ଦୂରେ ଥାଉ ସେମାନେ ନିଜର ଧର୍ମବିଧାନକୁ ମଧ୍ୟ ପାଳନ କରନ୍ତି ନାହିଁ ।

وَإِذَا قِيلَ إِنَّ وَعْدَ اللَّهِ حَقٌّ وَالسَّاعَةُ لَا رَيْبَ فِيهَا قُلْتُمْ مَا نَدْرِي مَا السَّاعَةُ إِنْ نَظُنُّ إِلَّا ظَنًّا وَمَا نَحْنُ بِمُسْتَيْقِنِينَ ﴿٣٢﴾

୩୩. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ ଯେ ଅଲ୍ଲାଃଙ୍କ ଅଙ୍ଗୀକାର ସତ୍ୟ ଅଟେ, ଏବଂ (ସଂସାରର) ଅନ୍ତିମ ବିନାଶ (ସମୟ) ନିଶ୍ଚୟ ଆସିବ, ଯହିଁରେ କୌଣସି ସନ୍ଦେହ ନାହିଁ, ସେତେବେଳେ ସେମାନେ ଏ ବିଷୟରେ କହନ୍ତି ଯେ ସେହି କୟାମତ (ସମୟ) କ'ଣ ଆମେମାନେ ତାହା ଜାଣୁ ନାହୁଁ; ଏ ସଂକ୍ରାନ୍ତରେ ଆମେମାନେ କେବଳ ଅନୁମାନ କରୁଅଛୁ, ଏବଂ ଏଥିପ୍ରତି ଆମମାନଙ୍କର କୌଣସି ବିଶ୍ୱାସ ନାହିଁ ।

وَبَدَا لَهُمْ سَيِّئَاتُ مَا عَمِلُوا وَحَاقَ بِهِمْ مَا كَانُوا بِهِ يَسْتَهْزِئُونَ ﴿٣٣﴾

୩୪. ସେତେବେଳେ ସେମାନଙ୍କ ନିକଟରେ ସେମାନଙ୍କ କର୍ମର ମନ୍ଦଫଳ ପ୍ରକାଶିତ ହେବ, ଏବଂ ଯେଉଁ ବିଷୟରେ ସେମାନେ ପରିହାସ କରୁଥିଲେ (ତଥା ଅସ୍ୱୀକାର କରୁଥିଲେ) ତାହା ସେମାନଙ୍କୁ ପରିବେଷ୍ଟିତ କରିବ; (ଏବଂବାସ୍ତବରେ ତାହା ସେମାନଙ୍କ ଚକ୍ଷୁ ସମ୍ମୁଖରେ ଘଟିବ) ।

وَقِيلَ الْيَوْمَ نَنْسَاكُمْ كَمَا نَسِيتُمْ لِقَاءَ يَوْمِكُمْ هَٰذَا وَمَأْوَاكُمُ النَّارُ وَمَا لَكُمْ مِنْ نَاصِرِينَ ﴿٣٤﴾

୩୫. ଏବଂ ସେମାନଙ୍କୁ କୁହାଯିବ, "ଆଜି ଆମ୍ଭେ ତୁମମାନଙ୍କୁ ସେହିପରି ଅସହାୟ ଭାବରେ ପରିତ୍ୟାଗ କରୁଅଛୁ ଯେପରି ତୁମେମାନେ ଏହି ଦିନର ସାକ୍ଷାତ୍ ସମ୍ବନ୍ଧୀୟ ଚିନ୍ତାଧାରାକୁ ପରିତ୍ୟାଗ କରିଥିଲ; ଏବଂ ତୁମମାନଙ୍କ ବାସସ୍ଥାନ (ନରକର) ଅଗ୍ନି ହେବ, ଏବଂ ତୁମମାନଙ୍କୁ ସାହାଯ୍ୟ କରିବାକୁ କେହି ନ ଥିବେ ।"

ذَٰلِكُمْ بِأَنَّكُمُ اتَّخَذْتُمْ آيَاتِ اللَّهِ هُزُوًا وَغَرَّتْكُمُ الْحَيَاةُ الدُّنْيَا ۚ فَالْيَوْمَ لَا يُخْرَجُونَ مِنْهَا وَلَا هُمْ يُسْتَعْتَبُونَ ﴿٣٥﴾

୩୬. "ଏହା ଏଥି ସକାଶେ ହେବ, ଯେହେତୁ ତୁମେମାନେ ଅଲ୍ଲାଃଙ୍କ ନିଦର୍ଶନ-ଗୁଡିକୁ ପରିହାସର ବିଷୟ କରି ଦେଇଥିଲ; ଏବଂ ସାଂସାରିକ ଜୀବନ ତୁମମାନଙ୍କୁ ପ୍ରତାରିତ କରିଥିଲା;" ସୁତରାଂ ଆଜି ସେମାନଙ୍କୁ ଏହି ଶାସ୍ତିରୁ ନିଷ୍କୃତି ଦିଆଯିବ ନାହିଁ କି ସେମାନଙ୍କ ତରଫରୁ ଅଲ୍ଲାଃଙ୍କର ସନ୍ତୋଷ ବିଧାନ ପାଇଁ ହେଉଥିବା ପ୍ରଚେଷ୍ଟାକୁ ସ୍ୱୀକାର କରାଯିବ ନାହିଁ ।

فَلِلَّهِ الْحَمْدُ رَبِّ السَّمَاوَاتِ وَرَبِّ الْأَرْضِ رَبِّ الْعَالَمِينَ ﴿٣٦﴾

୩୭. ସୁତରାଂ ସମସ୍ତ ପ୍ରଶଂସା ଅଲ୍ଲାଃଙ୍କ ପାଇଁ ଯେ କି ଆକାଶ ଓ ପୃଥିବୀର ପାଳନକର୍ତ୍ତା ଓ ସମସ୍ତ ଜଗତର ପାଳନକର୍ତ୍ତା ଅଟନ୍ତି ।

وَلَهُ الْكِبْرِيَاءُ فِي السَّمَاوَاتِ وَالْأَرْضِ ۖ وَهُوَ الْعَزِيزُ الْحَكِيمُ ﴿٣٧﴾

୩୮. ଏବଂ ଆକାଶ ଓ ପୃଥିବୀର ସମସ୍ତ ଗରିମା ମଧ୍ୟ ତାହାଙ୍କର; ଏବଂ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

ଭାଗ- ୨୬

## سُورَةُ الأحْقَافِ مَكِّيَّةٌ

(٤٦) آياتها — ركوعاتها

## ଅଲ--ଅହକାଫ

(ଏହି ସୂରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୩୬ ଟି ଆୟତ ଓ ୪ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

حٰمٓ ②

୨. ହା-ମୀମ୍ ।

تَنْزِيْلُ الْكِتٰبِ مِنَ اللّٰهِ الْعَزِيْزِ الْحَكِيْمِ ③

୩. ଏହି ଗ୍ରନ୍ଥ ପରାକ୍ରମୀ(ଓ)ତତ୍ତ୍ୱଜ୍ଞ ଅଲ୍ଲାହ୍‌ଙ୍କ ନିକଟରୁ ଅବତୀର୍ଣ୍ଣ ହୋଇଅଛି ।

مَا خَلَقْنَا السَّمٰوٰتِ وَالْاَرْضَ وَمَا بَيْنَهُمَآ اِلَّا بِالْحَقِّ وَاَجَلٍ مُّسَمًّى ؕ وَالَّذِيْنَ كَفَرُوْا عَمَّآ اُنْذِرُوْا مُعْرِضُوْنَ ④

୪. (ସେ କହିଛନ୍ତି) ଆମେ ଆକାଶ ଓ ପୃଥିବୀକୁ ତଥା ସେମାନଙ୍କ ମଧ୍ୟରେ ଯାହା କିଛି ରହିଅଛି, ସେ ସବୁ ଅକାରଣରେ ସୃଷ୍ଟି କରିନାହୁଁ କି ଅନିର୍ଦ୍ଦିଷ୍ଟ କାଳ ପାଇଁ ସୃଷ୍ଟି କରିନାହୁଁ ଏବଂ ଯେଉଁମାନେ (ଅଲ୍ଲାହ୍‌ଙ୍କ) ଚେତାବନୀକୁ ଅସ୍ୱୀକାର କରନ୍ତି ସେହିମାନେ ହିଁ ଏଥିରୁ (ଅର୍ଥାତ୍ ଏହି ଗ୍ରନ୍ଥରୁ) ବିମୁଖ ହୁଅନ୍ତି ।

قُلْ اَرَءَيْتُمْ مَّا تَدْعُوْنَ مِنْ دُوْنِ اللّٰهِ اَرُوْنِيْ مَاذَا خَلَقُوْا مِنَ الْاَرْضِ اَمْ لَهُمْ شِرْكٌ فِى السَّمٰوٰتِ ؕ اِيْتُوْنِيْ بِكِتٰبٍ مِّنْ قَبْلِ هٰذَآ اَوْ اَثٰرَةٍ مِّنْ عِلْمٍ اِنْ كُنْتُمْ صٰدِقِيْنَ ⑤

୫. ତୁମେ (ସେମାନଙ୍କୁ) କୁହ "ଆମ୍ଭଙ୍କୁ କୁହ ତ ଭଲା ତୁମେମାନେ ଯାହାକୁ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ଡାକୁ ଅଛ, ସେମାନେ ଭୂପୃଷ୍ଠର କେଉଁ କେଉଁ ବସ୍ତୁ ସୃଷ୍ଟି କରିଛନ୍ତି ? କିମ୍ବା ଆକାଶ ସୃଷ୍ଟିରେ ସେମାନଙ୍କର କୌଣସି ଅବଦାନ ଅଛି କି ? ଯଦି ତୁମେମାନେ ଏହି ଦାବିରେ ସତ୍ୟବାଦୀ ହୋଇଥାଅ, ତେବେ ଏହାର ପୂର୍ବବର୍ତ୍ତୀ କୌଣସି ଗ୍ରନ୍ଥର ପ୍ରମାଣ, କିମ୍ବା ଯେଦି କୌଣସି ଗ୍ରନ୍ଥ ନାହିଁ ଓ ତୁମେମାନେ ସତ୍ୟବାଦୀ ହୋଇଥାଅ, ତେବେ) ଜ୍ଞାନଭିତ୍ତିକ କୌଣସି ପ୍ରମାଣ ଉପସ୍ଥାପିତ କର ।"

وَمَنْ اَضَلُّ مِمَّنْ يَّدْعُوْا مِنْ دُوْنِ اللّٰهِ مَنْ لَّا يَسْتَجِيْبُ لَهٗٓ اِلٰى يَوْمِ الْقِيٰمَةِ وَهُمْ عَنْ دُعَآئِهِمْ غٰفِلُوْنَ ⑥

୬. ଏବଂ ତାହା ଅପେକ୍ଷା ଅଧିକ ପଥଭ୍ରଷ୍ଟ କିଏ ହୋଇପାରେ ଯେ ଅଲ୍ଲାହ୍‌ଙ୍କ ପରିବର୍ତ୍ତେ ସେ (ଉପାସ୍ୟ)ମାନଙ୍କୁ ଡାକେ ଯେଉଁମାନେ କି କୟାମତ ପର୍ଯ୍ୟନ୍ତ ତାହାର କୌଣସି ପ୍ରାର୍ଥନାକୁ ଗ୍ରହଣ କରି ପାରନ୍ତି ନାହିଁ ; ବରଂ ସେ (ଉପାସ୍ୟ)ମାନେ ସେମାନଙ୍କ ପ୍ରାର୍ଥନା ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ।

୭. ଏବଂ ଯେତେବେଳେ ଲୋକମାନଙ୍କୁ ପୁନର୍ଜୀବିତ କରି ଉତ୍‌ଥିତ କରାହେବ, ସେ (ତଥା କଥିତ ଉପାସ୍ୟ) [୧] ମାନେ ସେମାନଙ୍କ ଶତ୍ରୁ ହୋଇଯିବେ, ଏବଂ ସେମାନଙ୍କ ଉପାସନାକୁ ଅସ୍ୱୀକାର କରିବେ ।

وَإِذَا حُشِرَ النَّاسُ كَانُوا لَهُمْ أَعْدَاءً وَكَانُوا بِعِبَادَتِهِمْ كٰفِرِيْنَ ⑦

୮. ଏବଂ ଯେତେବେଳେ ସେମାନଙ୍କୁ ଆମ୍ଭର ସୁସ୍ପଷ୍ଟ ଆୟତ-ଗୁଡ଼ିକ ପାଠ କରି ଶୁଣାଇ ଦିଆଯାଏ, ସେତେବେଳେ ଅବିଶ୍ୱାସକାରୀମାନେ (ଏହି) ସତ୍ୟବାଣୀକୁ ଶୁଣି କହନ୍ତି ଯେ ଏହା ଏକ ପ୍ରକାଶ୍ୟ ଯାଦୁ (ତେଣୁ ଆମେମାନେ ଏହାକୁ କିପରି ଗ୍ରହଣ କରିବୁ) ।

وَإِذَا تُتْلٰى عَلَيْهِمْ اٰيٰتُنَا بَيِّنٰتٍ قَالَ الَّذِيْنَ كَفَرُوْا لِلْحَقِّ لَمَّا جَآءَهُمْ هٰذَا سِحْرٌ مُّبِيْنٌ ⑧

୯. କ'ଣ ସେମାନେ କହୁଛନ୍ତି ଯେ ଏହାକୁ (ଅର୍ଥାତ୍ କୋରାନ ଗ୍ରନ୍ଥକୁ) ସେ ନିଜେ ରଚନା କରିଛନ୍ତି ; ତୁମେ ସେମାନଙ୍କୁ କୁହ, "ଯଦି ଆମେ ଏହାକୁ ନିଜେ ରଚନା କରିଅଛୁ ତେବେ (ଆମେ ଅଲ୍ଲାହଙ୍କଠାରୁ ଶାସ୍ତି ପାଇବା ପାଇଁ ଯୋଗ୍ୟ ଏବଂ) ତୁମେମାନେ ଆମଙ୍କୁ ଅଲ୍ଲାହଙ୍କ ଶାସ୍ତିର କୌଣସି ଅଂଶରୁ ମଧ୍ୟ ରକ୍ଷା କରିପାରିବ ନାହିଁ, ଯେଉଁ କଥାମାନ ତୁମେମାନେ ଅଯଥାରେ କରୁଥାଅ, ତାହା ସେ ଭଲ ଭାବରେ ଜାଣନ୍ତି ; ସେ ତୁମ ଓ ଆମ ମଧ୍ୟରେ ସାକ୍ଷୀ ରୂପେ ଯଥେଷ୍ଟ ; ଏବଂ ସେ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।"

اَمْ يَقُوْلُوْنَ افْتَرٰىهُ قُلْ اِنِ افْتَرَيْتُهٗ فَلَا تَمْلِكُوْنَ لِيْ مِنَ اللّٰهِ شَيْئًا هُوَ اَعْلَمُ بِمَا تُفِيْضُوْنَ فِيْهِ كَفٰى بِهٖ شَهِيْدًا بَيْنِيْ وَبَيْنَكُمْ وَهُوَ الْغَفُوْرُ الرَّحِيْمُ ⑨

୧୦. ତୁମେ (ସେମାନଙ୍କୁ) କୁହ, "ଆମେ ସଂସାରକୁ ପ୍ରଥମ ରସୁଲ ଭାବେ ଆସି ନାହୁଁ, (ଆମ ପୂର୍ବରୁ ଅନେକ ରସୁଲ ଆସିଛନ୍ତି) ଏବଂ ଆମେ ଜାଣି ନାହୁଁ ଯେ ଅଲ୍ଲାହ ଆମ ସହିତ କିପରି ବ୍ୟବହାର କରିବେ, ଓ ତୁମମାନଙ୍କ ସହିତ କିପରି ବ୍ୟବହାର କରିବେ ; ଆମେ କେବଳ ଆମ ପ୍ରତି ଅବତୀର୍ଣ୍ଣ ହୋଇଥିବା ଓହିର ଅନୁସରଣ କରୁଅଛୁ ; ଏବଂ ଆମେ କେବଳ ଏକ ପ୍ରକାଶ୍ୟ ସଚେତନକାରୀ ।

قُلْ مَا كُنْتُ بِدْعًا مِّنَ الرُّسُلِ وَمَآ اَدْرِيْ مَا يُفْعَلُ بِيْ وَلَا بِكُمْ اِنْ اَتَّبِعُ اِلَّا مَا يُوْحٰٓى اِلَيَّ وَمَآ اَنَا اِلَّا نَذِيْرٌ مُّبِيْنٌ ⑩

୧୧. ତୁମେ (ସେମାନଙ୍କୁ) କୁହ, "ଆମଙ୍କୁ କୁହ ତ ଭଲା, ଯଦି ଆମ ପ୍ରତି ପ୍ରେରିତ ଓହି ଅଲ୍ଲାହଙ୍କ ତରଫରୁ ହୋଇଥାଏ ଏବଂ ତୁମେମାନେ ଏହାକୁ ଅବିଶ୍ୱାସ କରୁଥାଅ, ଏବଂ ଇସ୍ରାଇଲୀୟ ସନ୍ତାନ-ମାନଙ୍କ ମଧ୍ୟରୁ ଜଣେ ସାକ୍ଷୀ (ଅର୍ଥାତ୍ ମୁସା) ଏହି ସାକ୍ଷ୍ୟ (ମଧ୍ୟ) ପ୍ରଦାନ କରିଥାଏ ଯେ ତାହାଙ୍କ ସଦୃଶ ଜଣେ ବ୍ୟକ୍ତିଙ୍କର ଆବିର୍ଭାବ [୨] ହେବ, ତେବେ (କ'ଣ ଏହା

قُلْ اَرَءَيْتُمْ اِنْ كَانَ مِنْ عِنْدِ اللّٰهِ وَكَفَرْتُمْ بِهٖ وَشَهِدَ شَاهِدٌ مِّنْ بَنِيْٓ اِسْرَآءِيْلَ عَلٰى مِثْلِهٖ

୧. ଅର୍ଥାତ୍ ଯେଉଁ ଉପାସ୍ୟମାନଙ୍କ ବିଷୟ ଏଥି ପୂର୍ବ ଆୟତରେ ବର୍ଣ୍ଣନା କରାଯାଇଛି ।

୨. ବାଇବେଲରେ ଅଲ୍ଲାହ ଏହିପରି ବର୍ଣ୍ଣନା କରିଛନ୍ତି ଯେ ସେ ତୁମମାନଙ୍କ ପାଇଁ ତୁମମାନଙ୍କ ମଧ୍ୟରୁ ମୁସାଙ୍କ ଭଳି ଜଣେ ଅବତାରଙ୍କୁ ଉତ୍‌ଥିତ କରାଇବେ, ତାହାଙ୍କ ମୁଖରେ ନିଜର ବାଣୀକୁ ନିକ୍ଷିପ୍ତ କରିବେ ଏବଂ ତାହାଙ୍କୁ ଯେଉଁ ଆଦେଶ ଦିଆଯିବ ସେ ତାହା ଲୋକମାନଙ୍କୁ ଜଣାଇବେ (**Deut. 18:18-19** ଦ୍ରଷ୍ଟବ୍ୟ) ।

فَاٰمَنَ وَاسۡتَكۡبَرۡتُمۡ ؕ اِنَّ اللّٰهَ لَا يَهۡدِى الۡقَوۡمَ الظّٰلِمِيۡنَ ﴿۱۱﴾ ع

ଆଶ୍ଚର୍ଯ୍ୟଜନକ ବିଷୟ ହେବ ନାହିଁ କି) ଯେ ପୂର୍ବରୁ ରହିଥିଲା ସେ ବିଶ୍ୱାସ କଲା, ଅଥଚ (ତୁମମାନଙ୍କ ସମୟରେ ସେ ଆସିଥିଲେ ମଧ୍ୟ) ତୁମେମାନେ ଅହଙ୍କାରର ବଶବର୍ତ୍ତୀ ହୋଇଅଛ ?'' ଅଲ୍ଲାହ ଅତ୍ୟାଚାରୀମାନଙ୍କୁ କଦାପି ସତ୍‌ପଥ ପ୍ରଦର୍ଶନ କରାନ୍ତି ନାହିଁ ।

ରୁ : ୨

وَقَالَ الَّذِيۡنَ كَفَرُوۡا لِلَّذِيۡنَ اٰمَنُوۡا لَوۡ كَانَ خَيۡرًا مَّا سَبَقُوۡنَاۤ اِلَيۡهِ ؕ وَاِذۡ لَمۡ يَهۡتَدُوۡا بِهٖ فَسَيَقُوۡلُوۡنَ هٰذَاۤ اِفۡكٌ قَدِيۡمٌ ﴿۱۲﴾

୧୨. ଏବଂ ଅବିଶ୍ୱାସକାରୀମାନେ ବିଶ୍ୱାସକାରୀମାନଙ୍କୁ କହନ୍ତି, ''ଯଦି ଏହି କୋରାନ ଏକ ଉତ୍ତମ ଶିକ୍ଷା ହୋଇଥାଆନ୍ତା, ତେବେ ସେ (ବିଶ୍ୱାସକାରୀ)ମାନେ ଆମମାନଙ୍କ ପୂର୍ବରୁ ଏହା ଉପରେ ବିଶ୍ୱାସ ସ୍ଥାପନ କରି ନଥା'ନ୍ତେ ;'' ଏବଂ ଯେ-ହେତୁ ସେ (ଅବିଶ୍ୱାସକାରୀ) ମାନଙ୍କ ପ୍ରତି ଏହାର ସତ୍ୟତା ଉନ୍ମୋଚିତ ହେଲା ନାହିଁ, ସେମାନେ (ନିରାଶ ଓ ରାଗାନ୍ୱିତ ହୋଇ) କହିବେ, ''ଏହା ଏକ ପୁରାତନ ମିଥ୍ୟା (ଯାହା ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ ଅଲ୍ଲାହଙ୍କ ସଂକ୍ରାନ୍ତରେ କହି ଆସିଛନ୍ତି) ।''

وَمِنۡ قَبۡلِهٖ كِتٰبُ مُوۡسٰۤى اِمَامًا وَّرَحۡمَةً ؕ وَهٰذَا كِتٰبٌ مُّصَدِّقٌ لِّسَانًا عَرَبِيًّا لِّيُنۡذِرَ الَّذِيۡنَ ظَلَمُوۡا ۖ وَبُشۡرٰى لِلۡمُحۡسِنِيۡنَ ﴿۱۳﴾

୧୩. ଅଥଚ ଏଥି ପୂର୍ବରୁ ମୁସାଙ୍କ (ଧର୍ମ) ଗ୍ରନ୍ଥ ଆସିଅଛି ଯାହା ପଥ ପ୍ରଦର୍ଶକ ମଧ୍ୟ ଥିଲା ତଥା କରୁଣା (ସ୍ୱରୂପ) ମଧ୍ୟ ଥିଲା ; ଏବଂ ଏହା (ଅର୍ଥାତ୍ କୋରାନ୍) ଏପରି ଏକ ଗ୍ରନ୍ଥ ଅଟେ ଯାହା ନିଜ ପୂର୍ବବର୍ତ୍ତୀ ଗ୍ରନ୍ଥମାନଙ୍କର ସତ୍ୟତା ପ୍ରତିପାଦନ [1] କରୁଅଛି ; ଓ ଏହା ଆରବୀ ଭାଷାରେ ରଚିତ ହୋଇଅଛି ଯଦ୍ୱାରା ଯେଉଁମାନେ ଅତ୍ୟାଗ୍ରର କରିଛନ୍ତି ସେମାନଙ୍କୁ ଭୟ ପ୍ରଦର୍ଶନ କରାଇବ, ଓ ଯେଉଁମାନେ ଅଲ୍ଲାହଙ୍କ ଆଦେଶ ଅନୁସାରେ କାର୍ଯ୍ୟ କରନ୍ତି ସେମାନଙ୍କୁ ସୁସମାଚ୍ରାର [2] ଦେବ ।

اِنَّ الَّذِيۡنَ قَالُوۡا رَبُّنَا اللّٰهُ ثُمَّ اسۡتَقَامُوۡا فَلَا خَوۡفٌ عَلَيۡهِمۡ وَلَا هُمۡ يَحۡزَنُوۡنَ ﴿۱۴﴾

୧୪. (ଅର୍ଥାତ୍) ଯେଉଁମାନେ କହନ୍ତି ଯେ ଅଲ୍ଲାହ ହିଁ ଆମମାନଙ୍କର ପାଳନକର୍ତ୍ତା ଅଟନ୍ତି ଓ ତା'ପରେ ସେମାନେ ଏଥିରେ ଦୃଢ଼ ରହନ୍ତି ; ସୁତରାଂ (ଭବିଷ୍ୟତ ବିଷୟରେ) ସେମାନଙ୍କର କୌଣସି ଭୟ ରହିବ ନାହିଁ କି (ଅତୀତର କୌଣସି ତ୍ରୁଟି ପାଇଁ) ଦୁଃଖ ରହିବ ନାହିଁ ।

اُولٰٓئِكَ اَصۡحٰبُ الۡجَـنَّةِ خٰلِدِيۡنَ فِيۡهَا ۚ جَزَآءًۢ بِمَا كَانُوۡا يَعۡمَلُوۡنَ ﴿۱۵﴾

୧୫. ଏହି (ଲୋକ)ମାନେ ବୈକୁଣ୍ଠରେ ବାସ କରିବେ ; ସେମାନେ ନିଜ ଅତୀତ କର୍ମର ପ୍ରତିଦାନ ସ୍ୱରୂପ ସେଠାରେ ସଦା ବାସ କରିବେ ।

---

୧. ଆରବରେ ଜଣେ ନବିଙ୍କ ଆବିର୍ଭାବ ହେବା ବିଷୟ ବାଇବେଲରେ ଉଲ୍ଲେଖ ଅଛି (Isa 21:13-17 ଦ୍ରଷ୍ଟବ୍ୟ) ଏବଂ ତହିଁରେ ବର୍ଣ୍ଣନା କରାଯାଇଛି ଯେ ସେହି ନବିଙ୍କୁ ନିଜଦେଶ ଛାଡ଼ି ଅନ୍ୟତ୍ର ଯିବାକୁ ପଡ଼ିବ, ବିରୋଧୀମାନଙ୍କ ସହିତ ଯୁଦ୍ଧ କରିବାକୁ ହେବ ଏବଂ ଯୁଦ୍ଧରେ ତାହାଙ୍କୁ ସଫଳତା ମିଳିବ ଓ ଶତ୍ରୁମାନେ ଅପମାନିତ ହେବେ ।

୨. ଅର୍ଥାତ୍ ଅତ୍ୟାଚାରୀମାନଙ୍କ ସକାଶେ ଏକ ପଥ ଉନ୍ମୁକ୍ତ ହୋଇଯିବ, ତାହାହେଲେ ସେମାନେ କୌଣସି ପ୍ରକାରେ ଅତ୍ୟାଚାର କରିବାରୁ ଦୂରେଇ ରହିବେ । ଅନ୍ୟ ପକ୍ଷରେ ହିତକାରୀମାନେ ଆହୁରି ଅଧିକ ହିତସାଧନ କରିବା ପାଇଁ ପ୍ରେରଣା ପାଇବେ ।

୧୬. ଏବଂ ଆମେ ମନୁଷ୍ୟଙ୍କୁ ନିଜର ପିତାମାତାଙ୍କ ସହିତ ଉତ୍ତମ ବ୍ୟବହାର କରିବାକୁ ଶିକ୍ଷା ଦେଇଥିଲୁ, କାରଣ ତାହାର ମାତା ତାହାକୁ କଷ୍ଟ କରି ଗର୍ଭରେ ଧାରଣ କରିଥିଲେ, ଏବଂ କଷ୍ଟ କରି ତାହାକୁ ଜନ୍ମ ଦେଇଥିଲେ ; ଏବଂ ତାହାକୁ (ଗର୍ଭରେ) ଧାରଣ କରିବା ଓ ତାହାର କ୍ଷୀରପାନ ଛଡାଇବାରେ ତିରିଶ ମାସ[୧] ଅତିବାହିତ ହୋଇଥାଏ; ତା'ପରେ ଯେତେବେଳେ ଏହି ମନୁଷ୍ୟ ନିଜର ପୂର୍ଣ୍ଣ ଯୌବନ ଅର୍ଥାତ୍ ଚାଳିଶ ବର୍ଷରେ ପଦାର୍ପଣ କରେ, ସେତେବେଳେ ସେ କହେ, "ହେ ମୋର ପାଳନକର୍ତ୍ତା ! ତୁମେ ମୋ ପ୍ରତି ଓ ମୋର ପିତାମାତାଙ୍କ ପ୍ରତି ଯେଉଁ କୃପା ପ୍ରଦର୍ଶନ କରିଅଛ ସେଥିପାଇଁ ତୁମଠାରେ କୃତଜ୍ଞତା ଜ୍ଞାପନ କରିବା ସକାଶେ ମୋତେ ସାମର୍ଥ୍ୟ ପ୍ରଦାନ କର ; (ଏବଂ ଆହୁରି ମଧ୍ୟ ସାମର୍ଥ୍ୟ ପ୍ରଦାନ କର ଯେ) ମୁଁ ଏପରି ଉତ୍ତମ କର୍ମ କରେ ଯାହାକୁ ତୁମେ ପସନ୍ଦ କରିବ ; ଏବଂ ମୋ ସନ୍ତାନ-ସନ୍ତତିଙ୍କ ଭିତରେ ମଧ୍ୟ ପୁଣ୍ୟର ଭିତ୍ତି ସ୍ଥାପନ କର ; ମୁଁ ତୁମ ପ୍ରତି ଅବନମିତ ହେଉଅଛି, ଓ ମୁଁ ତୁମର ଆଜ୍ଞାବହ ଭକ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଅଟେ ।"

وَوَصَّيْنَا الْإِنْسَانَ بِوَالِدَيْهِ إِحْسَانًا ۖ حَمَلَتْهُ أُمُّهُ كُرْهًا وَوَضَعَتْهُ كُرْهًا ۖ وَحَمْلُهُ وَفِصَالُهُ ثَلَاثُونَ شَهْرًا ۚ حَتَّىٰ إِذَا بَلَغَ أَشُدَّهُ وَبَلَغَ أَرْبَعِينَ سَنَةً قَالَ رَبِّ أَوْزِعْنِي أَنْ أَشْكُرَ نِعْمَتَكَ الَّتِي أَنْعَمْتَ عَلَيَّ وَعَلَىٰ وَالِدَيَّ وَأَنْ أَعْمَلَ صَالِحًا تَرْضَاهُ وَأَصْلِحْ لِي فِي ذُرِّيَّتِي ۖ إِنِّي تُبْتُ إِلَيْكَ وَإِنِّي مِنَ الْمُسْلِمِينَ ⑯

୧୭. (ଯେଉଁମାନେ ଏପରି କରିବେ) ସେମାନେ ଏପରି ହେବେ,ଯାହାଙ୍କର ଉତ୍ତମ କର୍ମଗୁଡିକୁ ଆମେ ଗ୍ରହଣ କରିବୁ ଓ ସେମାନଙ୍କର କୁକର୍ମ ପ୍ରତି କ୍ଷମା ଆଚରଣ କରିବୁ : ଏ ଲୋକମାନେ ବୈକୁଣ୍ଠକୁ ଗମନ କରିବେ ; ଏହା ଏକ ସତ୍ୟ ଅଙ୍ଗୀକାର ଯାହା (ମନୁଷ୍ୟ ସୃଷ୍ଟିର ପ୍ରାରମ୍ଭରୁ ବିଶ୍ୱାସକାରୀମାନଙ୍କ ସହିତ) କରାଯାଉ ଅଛି ।

أُولَٰئِكَ الَّذِينَ نَتَقَبَّلُ عَنْهُمْ أَحْسَنَ مَا عَمِلُوا وَنَتَجَاوَزُ عَنْ سَيِّئَاتِهِمْ فِي أَصْحَابِ الْجَنَّةِ ۖ وَعْدَ الصِّدْقِ الَّذِي كَانُوا يُوعَدُونَ ⑰

୧୮. ଏବଂ ଯେଉଁ ବ୍ୟକ୍ତି ତାହାର ପିତାମାତାଙ୍କୁ କହେ, "ତୁମ ଦୁହିଙ୍କୁ ଧିକ୍ ! କ'ଣ ତୁମେମାନେ ମୋତେ ଦୃଢ ଭାବରେ ଏହା କହୁଅଛ ଯେ ମୋତେ ପୁନର୍ଜୀବିତ କରାଯାଇ (ଭୂପୃଷ୍ଠରୁ) ବାହାର କରାହେବ, ଯେତେବେଳେ କି ମୋ ପୂର୍ବରୁ ବହୁ ଶତାବ୍ଦୀ ଅତିବାହିତ ହୋଇଯାଇଛି (ମାତ୍ର ସେମାନଙ୍କ ମଧ୍ୟରୁ କେହି ଜୀବିତ ହୋଇ ଫେରି ନାହାନ୍ତି) ? ଏବଂ ତାହାର (ପିତାମାତା) ଉଭୟେ ଅଲ୍ଲାହଙ୍କ ନିକଟରେ ଗୁହାରି କରି କହନ୍ତି, "ହେ ହତଭାଗ୍ୟ (ପୁତ୍ର) ! (ଅଲ୍ଲାହଙ୍କ ଉପରେ) ବିଶ୍ୱାସ କର ; ଅଲ୍ଲାହଙ୍କ ଅଙ୍ଗୀକାର ଅବଶ୍ୟ ସତ୍ୟ ହେବ ;" କିନ୍ତୁ ସେ କହେ, "ଏଗୁଡିକ ପୁରାତନ କାଳର କାହାଣୀ ମାତ୍ର ।"

وَالَّذِي قَالَ لِوَالِدَيْهِ أُفٍّ لَكُمَا أَتَعِدَانِنِي أَنْ أُخْرَجَ وَقَدْ خَلَتِ الْقُرُونُ مِنْ قَبْلِي وَهُمَا يَسْتَغِيثَانِ اللَّهَ وَيْلَكَ آمِنْ إِنَّ وَعْدَ اللَّهِ حَقٌّ فَيَقُولُ مَا هَٰذَا إِلَّا أَسَاطِيرُ الْأَوَّلِينَ ⑱

---

୧. ୩୧:୧୫ର ଟୀକା ଦ୍ରଷ୍ଟବ୍ୟ ।

أُولَٰٓئِكَ الَّذِينَ حَقَّ عَلَيْهِمُ الْقَوْلُ فِيٓ أُمَمٍ قَدْ خَلَتْ مِنْ قَبْلِهِمْ مِنَ الْجِنِّ وَالْإِنْسِ ۖ إِنَّهُمْ كَانُوا خٰسِرِينَ ﴿١٩﴾

୧୯. ସେମାନଙ୍କ ପୂର୍ବବର୍ତ୍ତୀ ସମ୍ପ୍ରଦାୟମାନଙ୍କ ଭିତରୁ, ସେମାନେ ଜିନ୍ନମାନଙ୍କ [୧] ମଧ୍ୟରୁ ଅଥବା ମାନବମାନଙ୍କ ମଧ୍ୟରୁ ହୋଇଥାଆନ୍ତୁ, ଏହିପରି ଲୋକମାନଙ୍କ ପ୍ରତି ହିଁ ଶାସ୍ତି ବିଷୟକ ଭବିଷ୍ୟବାଣୀ ପୂର୍ଣ୍ଣ ହେଲା ; ସେମାନେ ହିଁ କ୍ଷତିଗ୍ରସ୍ତ ହେଲେ ।

وَلِكُلٍّ دَرَجٰتٌ مِمَّا عَمِلُوا ۚ وَلِيُوَفِّيَهُمْ أَعْمَالَهُمْ وَهُمْ لَا يُظْلَمُونَ ﴿٢٠﴾

୨୦. ଏବଂ ସେ ସମସ୍ତଙ୍କୁ ସେମାନଙ୍କ କର୍ମ ଅନୁଯାୟୀ ପଦମର୍ଯ୍ୟାଦା ମିଳିବ, ଏବଂ ଏହା ଏଥି ସକାଶେ ହେବ ଯେ ଅଲ୍ଲାହ ସେମାନଙ୍କୁ ସେମାନଙ୍କ କର୍ମର ସମ୍ପୂର୍ଣ୍ଣ ପ୍ରତିଫଳ ଦେବେ, ଓ ସେମାନଙ୍କ ପ୍ରତି ଅନ୍ୟାୟ କରାହେବ ନାହିଁ ।

وَيَوْمَ يُعْرَضُ الَّذِينَ كَفَرُوا عَلَى النَّارِ ۖ أَذْهَبْتُمْ طَيِّبٰتِكُمْ فِي حَيَاتِكُمُ الدُّنْيَا وَاسْتَمْتَعْتُمْ بِهَا ۚ فَالْيَوْمَ تُجْزَوْنَ عَذَابَ الْهُونِ بِمَا كُنْتُمْ تَسْتَكْبِرُونَ فِي الْأَرْضِ بِغَيْرِ الْحَقِّ وَبِمَا كُنْتُمْ تَفْسُقُونَ ﴿٢١﴾

୨୧. ଏବଂ ଯେଉଁଦିନ ଅବିଶ୍ୱାସକାରୀମାନଙ୍କୁ (ନର୍କ) ଅଗ୍ନି ସମ୍ମୁଖରେ ହାଜର କରାହେବ (ଓ କୁହାଯିବ), "ତୁମେମାନେ ସାଂସାରିକ ଜୀବନରେ ନିଜର ସକଳ ପୁରସ୍କାରକୁ ନିଃଶେଷ କରି ସାରିଛ, ଏବଂ ସାଂସାରିକ ଜୀବନରେ ଯେତିକି ପରିମାଣରେ ଲାଭ ହାସଲ କରିବା କଥା ତାହା ତୁମେମାନେ ହାସଲ କରିସାରିଛ ; ସୁତରାଂ ପୃଥିବୀରେ ଅଯଥାରେ ଅହଙ୍କାର କରୁଥିବାରୁ ଓ ଅବିଶ୍ୱାସ କରୁଥିବାରୁ ଆଜି ତୁମମାନଙ୍କୁ ଅପମାନଜନକ ଶାସ୍ତି ଦିଆଯିବ ।"

ରୁ : ୩

وَاذْكُرْ أَخَا عَادٍ ۖ إِذْ أَنْذَرَ قَوْمَهُ بِالْأَحْقَافِ وَقَدْ خَلَتِ النُّذُرُ مِنْ بَيْنِ يَدَيْهِ وَمِنْ خَلْفِهِ أَلَّا تَعْبُدُوا إِلَّا اللَّهَ إِنِّيٓ أَخَافُ عَلَيْكُمْ عَذَابَ يَوْمٍ عَظِيمٍ ﴿٢٢﴾

୨୨. ଏବଂ (ହେ ନବି !) ଆଦଙ୍କ ଭାଇ (ହୁଦ)ଙ୍କୁ ମଧ୍ୟ ମନେ ପକାଅ ; ଯେତେବେଳେ ସେ ନିଜ ସମ୍ପ୍ରଦାୟକୁ ବାଲିକୁଦଗୁଡିକ [୨] ମଧ୍ୟରେ ଭୟଭୀତ କରାଇଥିଲେ ଓ ତାହାଙ୍କ ପୂର୍ବରୁ ଅନେକ ସଚେତନକାରୀ (ନବି) ଆସିଥିଲେ ଓ ତାହାଙ୍କ ପରେ ମଧ୍ୟ ଆବିର୍ଭାବ ହୋଇଥିଲେ, ଏବଂ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଏହି ଶିକ୍ଷା ଦେଉଥିଲେ, "ଅଲ୍ଲାହଙ୍କ ବ୍ୟତୀତ କାହାରି ଉପାସନା କର ନାହିଁ ; ଆମ୍ଭେ ତୁମମାନଙ୍କ ପ୍ରତି ଏକ ବିରାଟ ଦିବସର [୩] ଶାସ୍ତି ଆସିବା ସଂକ୍ରାନ୍ତରେ ଭୟଭୀତ ହେଉଅଛୁ ।"

---

୧. ୩୪:୧୫ର ଟୀକା ଦ୍ରଷ୍ଟବ୍ୟ ।

୨. ମୂଳ ଶବ୍ଦ 'ଅହକାଫ' ଅର୍ଥ ଉଚ୍ଚ ବାଲିକୁଦ । ଏହି ନାମ ସେହି ଜାତିର ପରିଣାମ ଦୃଷ୍ଟିରୁ ରଖାଯାଇଛି, ଅନ୍ୟଥା ସେମାନେ ପୂର୍ବରୁ ଏଠାରେ ଏକ ଶସ୍ୟଶ୍ୟାମଳ କ୍ଷେତ୍ରରେ ବାସ କରୁଥିଲେ । କିନ୍ତୁ ପବିତ୍ର କୋରାନରେ ବର୍ଣ୍ଣନା କରାଯାଇଥିବା ମତେ ସେମାନଙ୍କ ଉପରେ ଏକଦା ଦୀର୍ଘ ସାତଦିନ ପର୍ଯ୍ୟନ୍ତ ଏକ ଭୟଙ୍କର ଝଡ଼ ବହିଗଲା ଏବଂ ସେମାନଙ୍କର ସର୍ବନାଶ ହୋଇ ଯାଇଥିଲା (୬୯:୮ ଦ୍ରଷ୍ଟବ୍ୟ) । ଏହି ଝଡ଼ ଯୋଗୁଁ ସେହି ଅଞ୍ଚଳ ବାଲିରେ ପୂର୍ଣ୍ଣ ହୋଇଗଲା, ଏପରିକି କେତେକ ସ୍ଥାନରେ ବାଲିକୁଦମାନ ସୃଷ୍ଟି ହୋଇଥିଲା ଏବଂ ପରିଣାମରେ ସେହି ଜାତି ବାଲି ଭିତରେ ଦବି ଯାଇ ଧ୍ୱଂସ ହୋଇ ଯାଇଥିଲେ ।

୩. ଭୟଙ୍କର ଶାସ୍ତିର ଅଳ୍ପ ସମୟ ମଧ୍ୟ ଦୀର୍ଘ ଜଣାପଡ଼େ । ସେଥିପାଇଁ ପବିତ୍ର କୋରାନରେ ଶାସ୍ତିର ଦିନଗୁଡ଼ିକୁ ସାଧାରଣତଃ ବଡ଼ ଦିନ କୁହାଯାଇଛି କାରଣ ଶାସ୍ତିର ସମୟ ଶେଷ ହେବା ଭଳି ଦୃଷ୍ଟିଗୋଚର ହୁଏ ନାହିଁ ।

قَالُوْٓا اَجِئْتَنَا لِتَاْفِكَنَا عَنْ اٰلِهَتِنَا ۚ فَاْتِنَا بِمَا تَعِدُنَآ اِنْ كُنْتَ مِنَ الصّٰدِقِيْنَ ﴿٢٣﴾

୨୩. ସେ ଲୋକମାନେ କହିଲେ, "କ'ଣ ତୁମେ ଆମମାନଙ୍କ ନିକଟକୁ ଏଥିସକାଶେ ଆସିଅଛ ଯେ ଆମମାନଙ୍କୁ ଆମମାନଙ୍କ ଉପାସ୍ୟମାନଙ୍କ ନିକଟରୁ ଅପସାରିତ କରିବ ? ଯଦି ଏପରି ହୋଇଥାଏ, ତେବେ ତୁମେ ସତ୍ୟବାଦୀ ହୋଇଥିଲେ ,ଯେଉଁ ବିଷୟର ତୁମେ ଆମମାନଙ୍କୁ ପ୍ରତିଶ୍ରୁତି ଦେଉଅଛ, ତାହାକୁ ଆମମାନଙ୍କ ନିକଟକୁ ଘେନି ଆସ ।"

قَالَ اِنَّمَا الْعِلْمُ عِنْدَ اللّٰهِ ۖ وَ اُبَلِّغُكُمْ مَّآ اُرْسِلْتُ بِهٖ وَ لٰكِنِّيْٓ اَرٰىكُمْ قَوْمًا تَجْهَلُوْنَ ﴿٢٤﴾

୨୪. (ହୁଦ) କହିଲେ, "ପ୍ରକୃତ ଜ୍ଞାନ ଅଲ୍ଲାହ୍‌ଙ୍କ ନିକଟରେ ରହିଅଛି ; ଏବଂ ଯେଉଁ ଶିକ୍ଷା ତୁମମାନଙ୍କ ନିକଟରେ ପହଞ୍ଚାଇ ଦେବା ପାଇଁ ଅଲ୍ଲାହ୍ ଆମକୁ ଦାୟିତ୍ୱ ଦେଇଛନ୍ତି ଆମେ କେବଳ ତାହାକୁ ତୁମମାନଙ୍କ ନିକଟରେ ପହଞ୍ଚାଇ ଦେଉଅଛୁ ; କିନ୍ତୁ ଆମେ ଲକ୍ଷ୍ୟ କରୁଅଛୁ ଯେ ତୁମେମାନେ ଏକ ଅଜ୍ଞ ଜାତି ।"

فَلَمَّا رَاَوْهُ عَارِضًا مُّسْتَقْبِلَ اَوْدِيَتِهِمْ ۙ قَالُوْا هٰذَا عَارِضٌ مُّمْطِرُنَا ۚ بَلْ هُوَ مَا اسْتَعْجَلْتُمْ بِهٖ ۚ رِيْحٌ فِيْهَا عَذَابٌ اَلِيْمٌ ﴿٢٥﴾

୨୫. ସୁତରାଂ ଯେତେବେଳେ ତାହାଙ୍କ ସମ୍ପ୍ରଦାୟ ସେହି ଶାସ୍ତିକୁ ଏକ ମେଘ ଆକାରରେ ସେମାନଙ୍କ ଉପତ୍ୟକା ଆଡକୁ ଅଗ୍ରସର ହେଉଥିବାର ଲକ୍ଷ୍ୟ କଲେ, ସେତେବେଳେ ସେମାନେ କହିଲେ, "ଏହା ଏକ ମେଘ ଯାହା ଆମମାନଙ୍କ ଉପରେ ଜଳ ବୃଷ୍ଟି କରିବ ;" (ଆମେ କହିଲୁ), "ନା ; ଏହା ସେହି (ଶାସ୍ତି),ଯାହା ତୁମେମାନେ ଶୀଘ୍ର ଇଚ୍ଛା କରୁଥିଲ ; ଏହା ଏକ ବାତ୍ୟା ଯହିଁରେ ଯନ୍ତ୍ରଣାଦାୟକ ଶାସ୍ତି ଲୁକ୍କାୟିତ ଅଛି ।"

تُدَمِّرُ كُلَّ شَيْءٍۭ بِاَمْرِ رَبِّهَا فَاَصْبَحُوْا لَا يُرٰٓى اِلَّا مَسٰكِنُهُمْ ۚ كَذٰلِكَ نَجْزِي الْقَوْمَ الْمُجْرِمِيْنَ ﴿٢٦﴾

୨୬. "ଏହି ବାତ୍ୟା ନିଜ ପାଳନକର୍ତ୍ତାଙ୍କ ଆଦେଶ ଅନୁସାରେ ପ୍ରତ୍ୟେକ ବସ୍ତୁକୁ ବିନାଶ କରିବ ;" ସୁତରାଂ ପରିଣାମ ଏପରି ହେଲା ଯେ ସକାଳ ହେଲା ବେଳକୁ ସେମାନଙ୍କ ବାସଗୃହ କେବଳ ଦୃଶ୍ୟମାନ ହେଉଥିଲା, (ଓ ସାରା ସମ୍ପ୍ରଦାୟ ବାଲି ଭିତରେ ଲୀନ ହୋଇଗଲା) ; ଏହିପରି ଭାବରେ ଆମେ ଅପରାଧୀ ସମ୍ପ୍ରଦାୟକୁ ପ୍ରତିଫଳ ଦେଇଥାଉଁ ।

وَلَقَدْ مَكَّنّٰهُمْ فِيْمَآ اِنْ مَّكَّنّٰكُمْ فِيْهِ وَجَعَلْنَا لَهُمْ سَمْعًا وَّاَبْصَارًا وَّاَفْـِٕدَةً ۖ فَمَآ اَغْنٰى عَنْهُمْ سَمْعُهُمْ وَلَآ اَبْصَارُهُمْ وَلَآ اَفْـِٕدَتُهُمْ مِّنْ شَيْءٍ اِذْ كَانُوْا يَجْحَدُوْنَ بِاٰيٰتِ اللّٰهِ وَحَاقَ بِهِمْ مَّا كَانُوْا بِهٖ يَسْتَهْزِءُوْنَ ﴿٢٧﴾

୨୭. ଏବଂ ଆମେ ସେମାନଙ୍କୁ ସେହି ଶକ୍ତି ପ୍ରଦାନ କରିଥିଲୁ ଯେଉଁ ଶକ୍ତି ତୁମମାନଙ୍କୁ ଦେଇ ନଥିଲୁ ; ଏବଂ ଆମେ ସେମାନଙ୍କୁ ତୁମମାନଙ୍କ ପରି କର୍ଣ୍ଣ, ଚକ୍ଷୁ ଓ ହୃଦୟ ମଧ୍ୟ ଦେଇଥିଲୁ, (କିନ୍ତୁ ସେମାନେ ମଧ୍ୟ ତୁମମାନଙ୍କ ପରି ଏ ସମସ୍ତଙ୍କୁ କାର୍ଯ୍ୟରେ ନିୟୋଜିତ କଲେ ନାହିଁ) ; ସୁତରାଂ ସେମାନଙ୍କ କର୍ଣ୍ଣ ଓ ଚକ୍ଷୁ ଓ ହୃଦୟ ସେମାନଙ୍କୁ କୌଣସି ଲାଭ ଦେଲା ନାହିଁ, କାରଣ ସେମାନେ ଅଲ୍ଲାହ୍‌ଙ୍କ ନିଦର୍ଶନ-ଗୁଡିକୁ ଅସ୍ୱୀକାର କରିବାରେ ଜିଦ କରୁଥିଲେ ; ଏବଂ ଯେଉଁ ଶାସ୍ତିକୁ ସେମାନେ ପରିହାସ କରୁଥିଲେ ତାହା ହିଁ ସେମାନଙ୍କୁ (ଚତୁଃପାର୍ଶ୍ୱରୁ) ବେଷ୍ଟିତ କରିଥିଲା ।

୨୮. ଏବଂ ଆମେ ତୁମମାନଙ୍କ ପାର୍ଶ୍ୱବର୍ତ୍ତୀ ଜନବସତିଗୁଡ଼ିକୁ ମଧ୍ୟ ଧ୍ୱଂସ କରିଅଛୁ ; ଏବଂ ଆମେ ନିଦର୍ଶନଗୁଡ଼ିକୁ ସୁସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ ଯେପରିକି (ଏହି ଆୟତଗୁଡ଼ିକରେ ଯେଉଁମାନଙ୍କୁ ସମ୍ବୋଧନ କରାହୋଇଛି) ସେମାନେ ନିଜ ଜିଦିରୁ ନିବୃତ୍ତ ହେବେ ।

وَلَقَدْ أَهْلَكْنَا مَا حَوْلَكُمْ مِّنَ الْقُرَىٰ وَصَرَّفْنَا الْآيَاتِ لَعَلَّهُمْ يَرْجِعُونَ ﴿٢٨﴾

୨୯. ଅଲ୍ଲାହଙ୍କ ନିକଟବର୍ତ୍ତୀ କରାଇ ଦେବେ ବୋଲି ସେମାନେ ଅଲ୍ଲାହଙ୍କ ବ୍ୟତୀତ ଯେଉଁମାନଙ୍କୁ ଉପାସ୍ୟ ରୂପେ ଗ୍ରହଣ କରିଥିଲେ, କାହିଁକି ସେମାନେ ସେଭଳି ବ୍ୟକ୍ତିମାନଙ୍କୁ ସାହାଯ୍ୟ କଲେ ନାହିଁ ? ବରଂ ସେମାନେ (ଯଥା ସମୟରେ) ସେମାନଙ୍କ ଦୃଷ୍ଟିରୁ ଅନ୍ତର୍ଦ୍ଧାନ ହୋଇଗଲେ ; ଏବଂ ଏହା ସେମାନଙ୍କ ମିଥ୍ୟା ଓ କପୋଳ - କଳ୍ପିତ ବିଷୟର ପରିଣାମ ଅଟେ ।

فَلَوْلَا نَصَرَهُمُ الَّذِينَ اتَّخَذُوا مِن دُونِ اللَّهِ قُرْبَانًا آلِهَةً ۖ بَلْ ضَلُّوا عَنْهُمْ ۚ وَذَٰلِكَ إِفْكُهُمْ وَمَا كَانُوا يَفْتَرُونَ ﴿٢٩﴾

୩୦. ଏବଂ ଯେତେବେଳେ ଆମେ ଜିନ୍ନମାନଙ୍କ ମଧ୍ୟରୁ କେତେକଙ୍କୁ ତୁମ ନିକଟକୁ ଫେରାଇ [୧] ଆଣିଲୁ ଯେଉଁମାନେ କି (ପବିତ୍ର) କୋରାନ ଶୁଣିବାକୁ ଇଚ୍ଛା କରୁଥିଲେ ; ସୁତରାଂ ଯେତେବେଳେ ସେମାନେ (କୋରାନ-ପାଠ ସମାବେଶରେ) ଉପସ୍ଥିତ ହେଲେ, ସେତେବେଳେ ସେମାନେ ପରସ୍ପରକୁ କହିଲେ, "ନୀରବ ରୁହ", ତା'ପରେ ଯେତେବେଳେ (ପବିତ୍ର) କୋରାନର ଆବୃତ୍ତି ଶେଷ ହୋଇଗଲା, ସେତେବେଳେ ସେମାନେ ନିଜ ସମ୍ପ୍ରଦାୟ ନିକଟକୁ ଫେରିଗଲେ,ଓ ସେମାନଙ୍କ ମଧ୍ୟରେ ଯାଇ ଇସଲାମ (ଧର୍ମ)ର ପ୍ରଚାର ଆରମ୍ଭ କରିଦେଲେ ।

وَإِذْ صَرَفْنَا إِلَيْكَ نَفَرًا مِّنَ الْجِنِّ يَسْتَمِعُونَ الْقُرْآنَ فَلَمَّا حَضَرُوهُ قَالُوا أَنصِتُوا ۖ فَلَمَّا قُضِيَ وَلَّوْا إِلَىٰ قَوْمِهِم مُّنذِرِينَ ﴿٣٠﴾

୩୧. (ଏବଂ ନିଜ ସମ୍ପ୍ରଦାୟକୁ) କହିଲେ, "ହେ ଆମମାନଙ୍କ ସମ୍ପ୍ରଦାୟ ! ଆମେ ଏପରି ଏକ ଗ୍ରନ୍ଥ ଶୁଣିଅଛୁ ଯାହା ମୁସାଙ୍କ ପରେ ଅବତୀର୍ଣ୍ଣ ହୋଇଅଛି, ଏବଂ ଯେଉଁ ଗ୍ରନ୍ଥସବୁ ଏହା ପୂର୍ବରୁ ଅବତୀର୍ଣ୍ଣ ହୋଇଅଛି ସେଗୁଡ଼ିକର ସତ୍ୟତା ପ୍ରତିପାଦନ କରୁଅଛି, ଏବଂ ସତ୍ୟ ପ୍ରତି ତଥା ସତ୍‌ପଥ ପ୍ରତି ପଥ ପ୍ରଦର୍ଶନ କରାଉଅଛି ।"

قَالُوا يَا قَوْمَنَا إِنَّا سَمِعْنَا كِتَابًا أُنزِلَ مِن بَعْدِ مُوسَىٰ مُصَدِّقًا لِّمَا بَيْنَ يَدَيْهِ يَهْدِي إِلَى الْحَقِّ وَإِلَىٰ طَرِيقٍ مُّسْتَقِيمٍ ﴿٣١﴾

---

୧. ଏହି ଆୟତରେ 'ଜିନ' ଶବ୍ଦ ଦୃଷ୍ଟାନ୍ତ ସ୍ୱରୂପ ଇହୁଦୀମାନଙ୍କ ସେହି ପ୍ରତିନିଧି ମଣ୍ଡଳ ସମ୍ବନ୍ଧରେ କୁହାଯାଇଛି ଯେଉଁମାନେ ହଜରତ ମହମ୍ମଦଙ୍କ ବିଷୟ ଶୁଣି ତାହାଙ୍କୁ ଗୁପ୍ତରେ ସାକ୍ଷାତ୍ କରିଥିଲେ । ସେମାନେ ଥିଲେ ଇରାକ ଅନ୍ତର୍ଗତ ନସାବୀନର ନିବାସୀ । ଯେହେତୁ ସେମାନେ ବହୁଦୂରରୁ ଆସିଥିଲେ ତେଣୁ ସେମାନେ ତାଙ୍କ ସହିତ ଗୋପନରେ ସାକ୍ଷାତ୍ କରିଥିଲେ କାରଣ ସେମାନଙ୍କର ଆଶଙ୍କା ଥିଲା ଯେ ସେମାନଙ୍କ ସମ୍ପ୍ରଦାୟ ଓ ଆରବର ଲୋକମାନଙ୍କ ମଧ୍ୟରେ ଶତ୍ରୁତା ସୃଷ୍ଟି ହୋଇପାରେ । (ଫତହୁଲ ବୟାନ ଗ୍ରନ୍ଥଖଣ୍ଡ ୮ ପୃଷ୍ଠା ୩୫୫ ଦ୍ରଷ୍ଟବ୍ୟ) ।

୩୨. "ହେ ଆମମାନଙ୍କ ସମ୍ପ୍ରଦାୟ ! (ଅଲ୍ଲାହଙ୍କଠାରୁ ନୂତନ ଗ୍ରନ୍ଥ ଘେନି ଆସିଥିବା) ସେ ବ୍ୟକ୍ତିଙ୍କର ଅଲ୍ଲାହଙ୍କ ପ୍ରତି ଆହ୍ୱାନକୁ ଗ୍ରହଣ କର, ଏବଂ ତାହାଙ୍କ ଉପରେ ବିଶ୍ୱାସ କର ; ଫଳରେ ସେ (ଅଲ୍ଲାହ) ତୁମମାନଙ୍କ ପାପ ମାର୍ଜନା କରି ଦେବେ, ଏବଂ ଆସନ୍ନ ଯନ୍ତ୍ରଣାଦାୟକ ଶାସ୍ତିରୁ ତୁମମାନଙ୍କୁ ରକ୍ଷା କରିବେ ।"

يٰقَوْمَنَآ اَجِيْبُوْا دَاعِيَ اللّٰهِ وَاٰمِنُوْا بِهٖ يَغْفِرْ لَكُمْ مِّنْ ذُنُوْبِكُمْ وَيُجِرْكُمْ مِّنْ عَذَابٍ اَلِيْمٍ ﴿٣٢﴾

୩୩. "ଏବଂ ଯେ ଅଲ୍ଲାହଙ୍କ ପ୍ରତି ଆହ୍ୱାନକାରୀଙ୍କ କଥାକୁ ଗ୍ରହଣ କରେ ନାହିଁ, ସେ ପୃଥିବୀରେ ତାହାଙ୍କର ଉଦ୍ଦେଶ୍ୟକୁ ପଣ୍ଡ କରି ପାରିବ ନାହିଁ, ଏବଂ ଅଲ୍ଲାହଙ୍କ ବ୍ୟତୀତ ତାହାର କେହି ଆଶ୍ରୟଦାତା ନାହାନ୍ତି ; ଏହିପରି ଲୋକମାନେ ହିଁ ପ୍ରକାଶ୍ୟ ବିଭ୍ରାନ୍ତିରେ କବଳିତ ହୁଅନ୍ତି ।"

وَمَنْ لَّا يُجِبْ دَاعِيَ اللّٰهِ فَلَيْسَ بِمُعْجِزٍ فِي الْاَرْضِ وَلَيْسَ لَهٗ مِنْ دُوْنِهٖٓ اَوْلِيَآءُ ؕ اُولٰٓئِكَ فِيْ ضَلٰلٍ مُّبِيْنٍ ﴿٣٣﴾

୩୪. କ'ଣ ସେମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ ଅଲ୍ଲାହ ହିଁ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ଏବଂ ସେ ସେଗୁଡ଼ିକୁ ସୃଷ୍ଟି କରିବାରେ କ୍ଲାନ୍ତ ହୋଇ ନାହାନ୍ତି ? (କେଣ ସେମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ ଯେଉଁ ଅଲ୍ଲାହ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ଓ ସେଗୁଡ଼ିକୁ ସୃଷ୍ଟି କରିବା ଯୋଗୁଁ କ୍ଲାନ୍ତ ହୋଇ ନାହାନ୍ତି) ସେ ମୃତକୁ ଜୀବିତ କରିବାରେ ମଧ୍ୟ ସକ୍ଷମ ଓ ନିଜର ପ୍ରତିଟି ଇଚ୍ଛାକୁ କାର୍ଯ୍ୟକାରୀ କରିବାରେ ସକ୍ଷମ ।

اَوَلَمْ يَرَوْا اَنَّ اللّٰهَ الَّذِيْ خَلَقَ السَّمٰوٰتِ وَالْاَرْضَ وَلَمْ يَعْيَ بِخَلْقِهِنَّ بِقٰدِرٍ عَلٰٓى اَنْ يُّحْيِۦَ الْمَوْتٰى ؕ بَلٰٓى اِنَّهٗ عَلٰى كُلِّ شَيْءٍ قَدِيْرٌ ﴿٣٤﴾

୩୫. ଏବଂ ଯେଉଁ ଦିନ ଅବିଶ୍ୱାସକାରୀ-ମାନଙ୍କୁ (ନରକ) ଅଗ୍ନି ସମ୍ମୁଖରେ ଉପସ୍ଥିତ କରାଯିବ ଓ କୁହାଯିବ, "କ'ଣ ଏହା ସତ୍ୟ ନୁହେଁ ?" ସେମାନେ କହିବେ, "ହଁ, ହଁ ! ଆମମାନଙ୍କ ପାଳନକର୍ତ୍ତାଙ୍କ ରାଣ ! (ଏହା ହିଁ ସତ୍ୟ)" ; ସେତେବେଳେ ସେ (ଅଲ୍ଲାହ) କହିବେ, "ତାହାହେଲେ ତୁମେମାନେ ନିଜ ଅବିଶ୍ୱାସ ଯୋଗୁଁ ଶାସ୍ତି ଆସ୍ୱାଦନ କର ।"

وَيَوْمَ يُعْرَضُ الَّذِيْنَ كَفَرُوْا عَلَى النَّارِ ؕ اَلَيْسَ هٰذَا بِالْحَقِّ ؕ قَالُوْا بَلٰى وَرَبِّنَا ؕ قَالَ فَذُوْقُوا الْعَذَابَ بِمَا كُنْتُمْ تَكْفُرُوْنَ ﴿٣٥﴾

୩୬. ସୁତରାଂ (ହେ ନବି !) ତୁମେ ମଧ୍ୟ (ସେହିପରି) ଧୈର୍ଯ୍ୟ ଧାରଣ କର ଯେପରି ଦୃଢ଼ ମନୋବଳ-ସମ୍ପନ୍ନ ରସୁଲମାନେ (ତୁମ ପୂର୍ବରୁ) ଧୈର୍ଯ୍ୟ ଧାରଣ କରିଥିଲେ ; ଏବଂ ସେମାନଙ୍କ ପ୍ରତି ଶୀଘ୍ର ଶାସ୍ତି ଉପସ୍ଥିତ ହେବା ସକାଶେ ପ୍ରାର୍ଥନା କର ନାହିଁ ; ଯେଉଁଦିନ ସେମାନେ ନିଜ ପ୍ରତି ଅଙ୍ଗୀକୃତ ଶାସ୍ତିକୁ ଦେଖିବେ, (ସେ ଦିନ) ସେମାନଙ୍କ ଅବସ୍ଥା ଏପରି ହେବ ସତେ ଯେପରି ସେମାନେ ଏହି ସଂସାରରେ ଅତି ଅଳ୍ପ ସମୟ ପାଇଁ ରହିଥିଲେ ; ଏହା (ସେ ଅବିଶ୍ୱାସକାରୀମାନଙ୍କ ପାଇଁ) କେବଳ ଉପଦେଶ ସ୍ୱରୂପ କୁହାଯାଇଛି ; ଏବଂ ଅମାନ୍ୟକାରୀ ସମ୍ପ୍ରଦାୟଙ୍କ ବ୍ୟତୀତ ଅନ୍ୟ କାହାରିକୁ ଧ୍ୱଂସ କରାହେବ ନାହିଁ ।

فَاصْبِرْ كَمَا صَبَرَ اُولُوا الْعَزْمِ مِنَ الرُّسُلِ وَلَا تَسْتَعْجِلْ لَّهُمْ ؕ كَاَنَّهُمْ يَوْمَ يَرَوْنَ مَا يُوْعَدُوْنَ ۙ لَمْ يَلْبَثُوْٓا اِلَّا سَاعَةً مِّنْ نَّهَارٍ ؕ بَلٰغٌ ۚ فَهَلْ يُهْلَكُ اِلَّا الْقَوْمُ الْفٰسِقُوْنَ ﴿٣٦﴾ ع

سُورَةُ مُحَمَّدٍ مَدَنِيَّةٌ (٤٧)

# ମହମ୍ମଦ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୩୯ଟି ଆୟତ ଓ ୪ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

اَلَّذِيْنَ كَفَرُوْا وَصَدُّوْا عَنْ سَبِيْلِ اللّٰهِ اَضَلَّ اَعْمَالَهُمْ ②

୨. ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଅଲ୍ଲାହଙ୍କ ପଥରୁ (ଅନ୍ୟମାନଙ୍କୁ) ବାଧା ଦେଇଛନ୍ତି, ଅଲ୍ଲାହ ସେମାନଙ୍କ କର୍ମକୁ ନଷ୍ଟ କରି ଦେଇଛନ୍ତି ।

وَالَّذِيْنَ اٰمَنُوْا وَعَمِلُوا الصّٰلِحٰتِ وَاٰمَنُوْا بِمَا نُزِّلَ عَلٰى مُحَمَّدٍ وَّهُوَ الْحَقُّ مِنْ رَّبِّهِمْ ۙ كَفَّرَ عَنْهُمْ سَيِّاٰتِهِمْ وَاَصْلَحَ بَالَهُمْ ③

୩. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ବିଶ୍ୱାସ ମୁତାବକ କାର୍ଯ୍ୟ କରିଛନ୍ତି ଏବଂ ଯାହା (ହଜରତ) ମହମ୍ମଦଙ୍କ ପ୍ରତି ଅବତୀର୍ଣ୍ଣ ହୋଇଅଛି ତହିଁରେ ବିଶ୍ୱାସ କରିଛନ୍ତି— ଏବଂ ତାହା ହି ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରୁ ସତ୍ୟ ଅଟେ— ଅଲ୍ଲାହ ସେମାନଙ୍କ କୁକର୍ମଗୁଡିକୁ ଘୋଡାଇ ରଖିବେ ଓ ସେମାନଙ୍କ ଅବସ୍ଥାକୁ ସୁଧାରି ଦେବେ ।

ذٰلِكَ بِاَنَّ الَّذِيْنَ كَفَرُوا اتَّبَعُوا الْبَاطِلَ وَاَنَّ الَّذِيْنَ اٰمَنُوا اتَّبَعُوا الْحَقَّ مِنْ رَّبِّهِمْ ۗ كَذٰلِكَ يَضْرِبُ اللّٰهُ لِلنَّاسِ اَمْثَالَهُمْ ④

୪. ଏହା ଏଥି ସକାଶେ କରାଗଲା ଯେ ଯେଉଁମାନେ ଅବିଶ୍ୱାସ କରିଥିଲେ ସେମାନେ ମିଥ୍ୟାର ଅନୁସରଣ କରିଥିଲେ, ଏବଂ ଯେଉଁମାନେ ବିଶ୍ୱାସ କରିଥିଲେ ସେମାନେ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରୁ ପ୍ରେରିତ ସତ୍ୟର ଅନୁସରଣ କରିଥିଲେ ; ଅଲ୍ଲାହ ଏହିପରି ଭାବରେ ଲୋକମାନଙ୍କ ସମ୍ମୁଖରେ ସେମାନଙ୍କ (ବାସ୍ତବ) ଅବସ୍ଥାକୁ ବର୍ଣ୍ଣନା କରିଥାନ୍ତି ।

فَاِذَا لَقِيْتُمُ الَّذِيْنَ كَفَرُوْا فَضَرْبَ الرِّقَابِ ۗ حَتّٰۤى اِذَاۤ اَثْخَنْتُمُوْهُمْ فَشُدُّوا الْوَثَاقَ ۙ فَاِمَّا مَنًّا بَعْدُ وَاِمَّا

୫. ସୁତରାଂ ଯେତେବେଳେ ଯୁଦ୍ଧ କ୍ଷେତ୍ରରେ ତୁମେମାନେ ଅବିଶ୍ୱାସକାରୀମାନଙ୍କର ସମ୍ମୁଖୀନ ହୁଅ, ସେତେବେଳେ (ସେମାନଙ୍କ) ଶିର [୧] ଛେଦନ କର ; ଏବଂ ସେମାନଙ୍କ ରକ୍ତପାତ ପରେ, ଯୁଦ୍ଧ ନିଜର ଅସ୍ତ୍ରଶସ୍ତ୍ର ତ୍ୟାଗ କରିବା ପର୍ଯ୍ୟନ୍ତ (ଅର୍ଥାତ୍ ଯୁଦ୍ଧ ସରିବା ପର୍ଯ୍ୟନ୍ତ) ବନ୍ଧନଗୁଡିକୁ ଶକ୍ତ କର (ଅର୍ଥାତ୍ ଯୁଦ୍ଧବନ୍ଦୀମାନଙ୍କୁ ବାନ୍ଧିରଖ) ; ତତ୍ପରେ (ସେମାନଙ୍କ ପ୍ରତି) ଅନୁଗ୍ରହ କର (ଓ ଛାଡିଦିଅ), କିମ୍ବା

୧. କେତେକ ବ୍ୟକ୍ତି ଏହି ଆୟତଗୁଡ଼ିକ ସମ୍ବନ୍ଧରେ ଆପତ୍ତି କରୁଛନ୍ତି, କିନ୍ତୁ ଅସଲ କଥା ହେଉଛି ଯେ ଆଜି ମଧ୍ୟ ପୃଥିବୀରେ ଯୁଦ୍ଧ ହେଉଛି ଏବଂ ଯୁଦ୍ଧରେ ଜଣେ ଅନ୍ୟକୁ ହତ୍ୟା କରୁଛି । ଏପରି ପରିସ୍ଥିତିରେ ପୁଣି କାହିଁକି ଏଭଳି ଆଦେଶ ଦିଆଯାଇଛି ? ତାର ଉତ୍ତର ହେଉଛି, ଇସଲାମ ଏପରି ଶାନ୍ତିପ୍ରଦାୟକ ଶିକ୍ଷା ପ୍ରଦାନ କରିଛି ଯେ ଯଦି ଆଲୋଚ୍ୟ ଆୟତ ଅବତୀର୍ଣ୍ଣ ହୋଇ ନଥାନ୍ତା, ତେବେ ମୁସଲମାନମାନେ ଯୁଦ୍ଧରେ ମଧ୍ୟ ଶତ୍ରୁକୁ ହତ୍ୟା କରିବାକୁ ଅନ୍ୟାୟ ମନେ କରିବାର ଆଶଙ୍କା ଥିଲା ।

فِدَآءً حَتّٰى تَضَعَ الْحَرْبُ اَوْزَارَهَا ۚ ذٰلِكَ ۛ وَلَوْ يَشَآءُ اللّٰهُ لَانْتَصَرَ مِنْهُمْ وَلٰكِنْ لِّيَبْلُوَاْ بَعْضَكُمْ بِبَعْضٍ ۗ وَ الَّذِيْنَ قُتِلُوْا فِيْ سَبِيْلِ اللّٰهِ فَلَنْ يُّضِلَّ اَعْمَالَهُمْ ۝٥

ମୁକ୍ତିମୂଲ୍ୟ ଗ୍ରହଣ କର (ଓ ସେମାନଙ୍କୁ ଛାଡିଦିଅ) ; ଏସବୁ (ଆଦେଶ) [1] ପରିସ୍ଥିତି ଦୃଷ୍ଟିରୁ କରା ହୋଇଛି ; ଏବଂ ଯଦି ଅଲ୍ଲାହ ଇଚ୍ଛା କରନ୍ତେ ତେବେ ନିଜେ ସେମାନଙ୍କଠାରୁ ପ୍ରତିଶୋଧ ନେଇ ନିଅନ୍ତେ ; କିନ୍ତୁ ସେ ତୁମମାନଙ୍କ ମଧ୍ୟରୁ କେତେକଙ୍କୁ ଅନ୍ୟ କେତେକଙ୍କ ଦ୍ବାରା ପରୀକ୍ଷା କରିବାକୁ ଇଚ୍ଛା କରିଛନ୍ତି ; ଏବଂ ଯେଉଁମାନେ ଅଲ୍ଲାହଙ୍କ ପଥରେ ନିହତ ହୋଇଛନ୍ତି, ସେ ସେମାନଙ୍କ କର୍ମକୁ କଦାପି ନଷ୍ଟ କରିବେ ନାହିଁ ।

سَيَهْدِيْهِمْ وَيُصْلِحُ بَالَهُمْ ۝٦

୬. ସେ ସେମାନଙ୍କୁ ନିଶ୍ଚୟ ସଫଳତା ଆଡକୁ ନେଇଯିବେ ଏବଂ ସେମାନଙ୍କ ଅବସ୍ଥାକୁ ଉନ୍ନତ କରିବେ,

وَيُدْخِلُهُمُ الْجَنَّةَ عَرَّفَهَا لَهُمْ ۝٧

୭. ଏବଂ ସେମାନଙ୍କୁ ଏପରି ବୈକୁଣ୍ଠରେ ପ୍ରବେଶ କରାଇବେ ଯାହା ସେ ସେମାନଙ୍କୁ ପୂର୍ବରୁ ଅବଗତ କରାଇଛନ୍ତି ।

يٰۤاَيُّهَا الَّذِيْنَ اٰمَنُوْۤا اِنْ تَنْصُرُوا اللّٰهَ يَنْصُرْكُمْ وَ يُثَبِّتْ اَقْدَامَكُمْ ۝٨

୮. ହେ ବିଶ୍ବାସକାରୀମାନେ ! ଯଦି ତୁମେମାନେ ଅଲ୍ଲାହଙ୍କ (ଧର୍ମରେ) ସହାୟତା [2] କରିବ, ତେବେ ସେ ମଧ୍ୟ ତୁମମାନଙ୍କୁ ସାହାଯ୍ୟ କରିବେ ଓ ତୁମମାନଙ୍କ ପାଦକୁ ସୁଦୃଢ କରିବେ ।

وَالَّذِيْنَ كَفَرُوْا فَتَعْسًا لَّهُمْ وَاَضَلَّ اَعْمَالَهُمْ ۝٩

୯. ଏବଂ ଯେଉଁମାନେ ଅବିଶ୍ବାସ କରିଛନ୍ତି, ସେମାନଙ୍କୁ ଧିକ୍ ; ଏବଂ ଅଲ୍ଲାହ ସେମାନଙ୍କ କର୍ମକୁ ନଷ୍ଟ କରିଦେବେ ।

ذٰلِكَ بِاَنَّهُمْ كَرِهُوْا مَاۤ اَنْزَلَ اللّٰهُ فَاَحْبَطَ اَعْمَالَهُمْ ۝١٠

୧୦. କାରଣ ଅଲ୍ଲାହ ଯାହା ଅବତୀର୍ଣ୍ଣ କରିଛନ୍ତି ସେମାନେ ତାହାକୁ ଅପସନ୍ଦ କରିଛନ୍ତି ; ତେଣୁ ଅଲ୍ଲାହ ମଧ୍ୟ ସେମାନଙ୍କ କର୍ମକୁ ନଷ୍ଟ କରି ଦେଇଛନ୍ତି ।

اَفَلَمْ يَسِيْرُوْا فِي الْاَرْضِ فَيَنْظُرُوْا كَيْفَ كَانَ عَاقِبَةُ الَّذِيْنَ مِنْ قَبْلِهِمْ ۚ دَمَّرَ اللّٰهُ عَلَيْهِمْ ۖ وَ لِلْكٰفِرِيْنَ اَمْثَالُهَا ۝١١

୧୧. କ'ଣ ସେମାନେ ପୃଥିବୀରେ ଭ୍ରମଣ କରି ଲକ୍ଷ୍ୟ କରୁ ନାହାନ୍ତି ଯେ ସେମାନଙ୍କ ପୂର୍ବରୁ ଯେଉଁମାନେ ଗ୍ରଲି ଯାଇଛନ୍ତି ସେମାନଙ୍କ ପରିଣାମ କିପରି ହୋଇଥିଲା ? ଅଲ୍ଲାହ ସେମାନଙ୍କ ଉପରେ ଶାସ୍ତି ଅବତୀର୍ଣ୍ଣ କରିଥିଲେ ; ଏବଂ (ବର୍ତ୍ତମାନ ସମୟର) ଅବିଶ୍ବାସକାରୀମାନଙ୍କ ଅବସ୍ଥା ସେମାନଙ୍କ ସଦୃଶ ହେବ ।

---

୧. ଏହି ଆୟତରେ ସଂକ୍ଷିପ୍ତ ଭାବରେ ଯୁଦ୍ଧ ନୀତି ଓ ଯୁଦ୍ଧ ପରିଚାଳନା ସମ୍ବନ୍ଧରେ କେତେକ ଗୁରୁତ୍ବପୂର୍ଣ୍ଣ ନିୟମ ନିର୍ଦ୍ଦିଷ୍ଟ କରାଯାଇଛି ଏବଂ ପ୍ରସଙ୍ଗ କ୍ରମେ କ୍ରୀତଦାସ ପ୍ରଥାକୁ ଏକ ସାଂଘାତିକ ଧକ୍କା ଦିଆଯାଇଛି । ସେଗୁଡ଼ିକ ହେଉଛି: (କ) ନିଜ ଧର୍ମ ବିଶ୍ବାସ, ସମ୍ମାନ, ଜୀବନ ଓ ଧନକୁ ରକ୍ଷା କରିବା ପାଇଁ ଯଦି ଯୁଦ୍ଧ କରାଯାଉଥାଏ ତେବେ ମୁସଲମାନମାନଙ୍କୁ ଅସୀମ ସାହସ ସହିତ ତଥା ନିର୍ଦ୍ଦୟ ଭାବରେ ଲଢ଼ିବାକୁ ହେବ (୮:୧୩-୧୭ ଦ୍ରଷ୍ଟବ୍ୟ) । (ଖ) ଥରେ ଯୁଦ୍ଧ ଆରମ୍ଭ ହୋଇଗଲେ ଶାନ୍ତି ପ୍ରତିଷ୍ଠା ନ ହେବା ପର୍ଯ୍ୟନ୍ତ ଓ ବିବେକ ସ୍ବାଧୀନତାର ସୁରକ୍ଷା ନହେବା ପର୍ଯ୍ୟନ୍ତ ଯୁଦ୍ଧ ଚାଲୁ ରଖାଯିବ । (ଗ) କେବଳ ନିୟମିତ ଯୁଦ୍ଧରେ ଶତ୍ରୁ ପକ୍ଷକୁ ବନ୍ଦୀ କରାଯାଇପାରିବ । (ଘ) ଯୁଦ୍ଧ ଶେଷ ହେଲେ ବନ୍ଦୀମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରି ବା ସେମାନଙ୍କ ବାବଦକୁ ମୁକ୍ତି ମୂଲ୍ୟ ଗ୍ରହଣ କରି ସେମାନଙ୍କୁ ମୁକ୍ତି ଦିଆଯିବ ।

୨. ଅର୍ଥାତ୍ ଅଲ୍ଲାହଙ୍କ ଧର୍ମର ସହାୟତା କର, କାରଣ ଅଲ୍ଲାହ ନିଜେ କାହାରି ସହାୟତା ଉପରେ ନିର୍ଭର କରନ୍ତି ନାହିଁ ।

ذٰلِكَ بِأَنَّ اللّٰهَ مَوْلَى الَّذِيْنَ اٰمَنُوْا وَأَنَّ الْكٰفِرِيْنَ لَا مَوْلٰى لَهُمْ ⑪

୧୨. (ଏହା ଏଥିଯୋଗୁଁ ହେବ) ଯେହେତୁ ଅଲ୍ଲାହ ବିଶ୍ୱାସକାରୀମାନଙ୍କର ହିଁ ସହାୟକ ଅଟନ୍ତି, ଏବଂ ଅବିଶ୍ୱାସକାରୀମାନଙ୍କର କେହି ସହାୟକ ନାହାନ୍ତି ।

إِنَّ اللّٰهَ يُدْخِلُ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ جَنّٰتٍ تَجْرِيْ مِنْ تَحْتِهَا الْأَنْهٰرُ وَالَّذِيْنَ كَفَرُوْا يَتَمَتَّعُوْنَ وَيَأْكُلُوْنَ كَمَا تَأْكُلُ الْأَنْعَامُ وَالنَّارُ مَثْوًى لَّهُمْ ⑫

୧୩. ଅଲ୍ଲାହ ବିଶ୍ୱାସକାରୀମାନଙ୍କୁ ଓ ବିଶ୍ୱାସ ମୁତାବକ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କୁ ଏପରି ବୈକୁଣ୍ଠରେ ପ୍ରବେଶ କରାଇବେ ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ ; ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ସେମାନେ କେତେକ ସାଂସାରିକ ସୁଖ ଭୋଗ କରିବେ ଏବଂ ସେହିପରି ପାନାହାର କରିବେ ଯେପରିକି ଚତୁଷ୍ପଦମାନେ ପାନାହାର କରୁଛନ୍ତି ; ଏବଂ (ନରକ) ଅଗ୍ନି ସେମାନଙ୍କ ବାସସ୍ଥାନ ହେବ ।

وَكَأَيِّنْ مِّنْ قَرْيَةٍ هِيَ أَشَدُّ قُوَّةً مِّنْ قَرْيَتِكَ الَّتِيْ أَخْرَجَتْكَ أَهْلَكْنٰهُمْ فَلَا نَاصِرَ لَهُمْ ⑬

୧୪. ଏବଂ ଯେଉଁ ଜନବସତି ତୁମ୍ଭଙ୍କୁ ବିତାଡ଼ିତ କରିଥିଲା, ତା ଅପେକ୍ଷା ଏପରି ଅନେକ ଅଧିକ ଶକ୍ତିଶାଳୀ ଜନବସତି ଥିଲା, ଯାହାକୁ ଆମ୍ଭେ (ସେମାନଙ୍କ ଶକ୍ତି ସତ୍ତ୍ୱେ) ଧ୍ୱଂସ କରିଥିଲୁ, ଏବଂ କେହି ସେମାନଙ୍କର ସାହାଯ୍ୟକାରୀ ହୋଇ ପାରି ନଥିଲେ ।

أَفَمَنْ كَانَ عَلٰى بَيِّنَةٍ مِّنْ رَّبِّهٖ كَمَنْ زُيِّنَ لَهٗ سُوْءُ عَمَلِهٖ وَاتَّبَعُوْا أَهْوَاءَهُمْ ⑭

୧୫. ଯେ ନିଜ ପାଳନକର୍ତ୍ତାଙ୍କ ତରଫରୁ (ପ୍ରେରିତ) ଏକ (ଦୃଢ଼) ପ୍ରମାଣ ଉପରେ ପ୍ରତିଷ୍ଠିତ, କ'ଣ ସେ ସେମାନଙ୍କ ସଦୃଶ ହୋଇପାରେ ଯେଉଁମାନଙ୍କର କୁକାର୍ଯ୍ୟମାନ ସେମାନଙ୍କୁ ସୁଶୋଭିତ କରି ଦେଖାଇ ଦିଆଯାଇଛି ଓ ଯେଉଁମାନେ ନିଜ କୁପ୍ରବୃତ୍ତିର ଅନୁସରଣ କରୁଅଛନ୍ତି ?

مَثَلُ الْجَنَّةِ الَّتِيْ وُعِدَ الْمُتَّقُوْنَ فِيْهَا أَنْهٰرٌ مِّنْ مَّاءٍ غَيْرِ اٰسِنٍ وَأَنْهٰرٌ مِّنْ لَّبَنٍ لَّمْ يَتَغَيَّرْ طَعْمُهٗ وَأَنْهٰرٌ مِّنْ خَمْرٍ لَّذَّةٍ لِّلشّٰرِبِيْنَ وَأَنْهٰرٌ مِّنْ عَسَلٍ مُّصَفًّى وَلَهُمْ فِيْهَا مِنْ كُلِّ الثَّمَرٰتِ

୧୬. ଧର୍ମଭୀରୁମାନଙ୍କୁ ଯେଉଁ ବୈକୁଣ୍ଠର ପ୍ରତିଶ୍ରୁତି ଦିଆହୋଇଛି ତହିଁରେ ଏପରି ଜଳର ଝରଣାମାନ ଥିବ ଯାହା ଦୂଷିତ ହେବ ନାହିଁ; ଏବଂ ଏପରି ଝରଣାମାନ ଥିବ ଯେଉଁଥିରେ ଏପରି କ୍ଷୀର ପ୍ରବାହିତ ହେଉଥିବ ଯାହାର ସ୍ୱାଦୁ କେବେହେଲେ ପରିବର୍ତ୍ତିତ ହେବ ନାହିଁ; (ଅର୍ଥାତ୍ ତାହା କେବେ ପଚିଯିବ ନାହିଁ) ଏବଂ ଏପରି ସୁରାର ଝରଣାମାନ ଥିବ ଯାହା ପାନକାରୀମାନଙ୍କ ପାଇଁ ସୁସ୍ୱାଦୁ ଲାଗିବ, ଏବଂ ପବିତ୍ର ଓ ବିଶୁଦ୍ଧ ମହୁର ଝରଣାମାନ ଥିବ ; ଏବଂ ସେମାନଙ୍କୁ ସେହି ବୈକୁଣ୍ଠରେ ପ୍ରତ୍ୟେକ ପ୍ରକାର ଫଳ ମିଳିବ, ଏବଂ ସେମାନଙ୍କ ପାଳନକର୍ତ୍ତାଙ୍କ ତରଫରୁ କ୍ଷମା ମଧ୍ୟ ମିଳିବ ; କ'ଣ ଏ

وَمَغْفِرَةٌ مِّنْ رَّبِّهِمْ ۚ كَمَنْ هُوَ خَالِدٌ فِي النَّارِ وَسُقُوا مَاءً حَمِيمًا فَقَطَّعَ أَمْعَاءَهُمْ ⑯

(ବୈକୁଣ୍ଠବାସୀ)ମାନେ ସେହି ଲୋକମାନଙ୍କ ସଦୃଶ ହୋଇପାରିବେ ଯେଉଁମାନେ ବହୁକାଳ ପର୍ଯ୍ୟନ୍ତ (ନରକ) ଅଗ୍ନି ମଧ୍ୟରେ ରହିବାକୁ ଯୋଗ୍ୟ ବିବେଚିତ ହୋଇଛନ୍ତି ଏବଂ ଯେଉଁମାନଙ୍କୁ ଏପରି ଉତପ୍ତ ଜଳ ପାନ କରିବାକୁ ଦିଆଯିବ ଯାହା ସେମାନଙ୍କ ଅନ୍ତକୁ ବିଦୀର୍ଣ୍ଣ କରି ଦେବ ।

وَمِنْهُمْ مَّنْ يَّسْتَمِعُ إِلَيْكَ ۚ حَتَّىٰ إِذَا خَرَجُوا مِنْ عِنْدِكَ قَالُوا لِلَّذِينَ أُوتُوا الْعِلْمَ مَاذَا قَالَ آنِفًا ۚ أُولَٰئِكَ الَّذِينَ طَبَعَ اللَّهُ عَلَىٰ قُلُوبِهِمْ وَاتَّبَعُوا أَهْوَاءَهُمْ ⑰

୧୭. ଏବଂ ସେମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ ତୁମ କଥା ଶୁଣିଲା ଭଳି ଜଣାପଡନ୍ତି, କିନ୍ତୁ ଯେତେବେଳେ ସେମାନେ ତୁମ ନିକଟରୁ ଉଠି ଚାଲିଯାଆନ୍ତି, ସେତେବେଳେ ସେମାନଙ୍କୁ, ଯେଉଁମାନଙ୍କୁ ଜ୍ଞାନ ପ୍ରଦାନ କରାଯାଇଛି, ପଚାରନ୍ତି, "ସେ (ରସୁଲ) ବର୍ତ୍ତମାନ କ'ଣ କହିଥିଲେ?" ସେମାନେ ଏପରି ଲୋକ ଯେଉଁମାନଙ୍କ ହୃଦୟରେ ଅଲ୍ଲାହ ମୋହର ଲଗାଇ ଦେଇଛନ୍ତି, ଓ ସେମାନେ ନିଜ କୁପ୍ରବୃତ୍ତିର ଅନୁସରଣ କରୁଛନ୍ତି ।

وَالَّذِينَ اهْتَدَوْا زَادَهُمْ هُدًى وَّآتَاهُمْ تَقْوَاهُمْ ⑱

୧୮. ଏବଂ ଯେଉଁମାନେ ସତ୍‌ପଥ ପ୍ରାପ୍ତ ହୁଅନ୍ତି, ଅଲ୍ଲାହ ସେମାନଙ୍କୁ ଅଧିକ ସତ୍‌ପଥପ୍ରଦର୍ଶନ କରାନ୍ତି, ଏବଂ ସେମାନଙ୍କୁ (ସେମାନଙ୍କ ଅବସ୍ଥା ଅନୁଯାୟୀ) ଧର୍ମଭୀରୁତା ପ୍ରଦାନ କରନ୍ତି ।

فَهَلْ يَنْظُرُونَ إِلَّا السَّاعَةَ أَنْ تَأْتِيَهُمْ بَغْتَةً ۖ فَقَدْ جَاءَ أَشْرَاطُهَا ۚ فَأَنَّىٰ لَهُمْ إِذَا جَاءَتْهُمْ ذِكْرَاهُمْ ⑲

୧୯. ସୁତରାଂ ସେମାନେ ଅନ୍ତିମ ନିଷ୍ପତ୍ତି ସମୟକୁ କେବଳ ପ୍ରତୀକ୍ଷା କରୁଛନ୍ତି ଯେପରିକି ତାହା ସେମାନଙ୍କ ନିକଟକୁ ଅକସ୍ମାତ୍ ଆସିଯିବ ; ଅବଶ୍ୟ ତାହାର ଲକ୍ଷଣ ପ୍ରକାଶିତ ହୋଇ ସାରିଛି ; ଏବଂ ଯେତେବେଳେ ଏହା ପ୍ରକୃତରେ ସେମାନଙ୍କ ନିକଟରେ ଉପସ୍ଥିତ ହେବ, ସେତେବେଳେ ସେମାନଙ୍କୁ କେଉଁ ବିଷୟ ଲାଭ ପ୍ରଦାନ କରିବ ?

فَاعْلَمْ أَنَّهُ لَا إِلَٰهَ إِلَّا اللَّهُ وَاسْتَغْفِرْ لِذَنْبِكَ وَلِلْمُؤْمِنِينَ وَالْمُؤْمِنَاتِ ۗ وَاللَّهُ يَعْلَمُ مُتَقَلَّبَكُمْ وَمَثْوَاكُمْ ⑳

୨୦. ଏବଂ ଜାଣିରଖ ଯେ ଅଲ୍ଲାହଙ୍କ ବ୍ୟତୀତ କେହି ଉପାସ୍ୟ ନାହାନ୍ତି, ଏବଂ ତୁମ ପ୍ରତି ଯେଉଁମାନେ (ଅର୍ଥାତ୍ ତୁମଙ୍କୁ ଅବଜ୍ଞା କରୁଥିବା ସମ୍ପ୍ରଦାୟ) ପାପ [୧] କରିଛନ୍ତି ସେମାନଙ୍କ ପାଇଁ ଅଲ୍ଲାହଙ୍କ ନିକଟରେ କ୍ଷମାଭିକ୍ଷା କରୁଥାଅ, ଏବଂ ବିଶ୍ୱାସକାରୀ ପୁରୁଷ ଏବଂ ବିଶ୍ୱାସକାରିଣୀ ନାରୀମାନଙ୍କ ପାଇଁ ମଧ୍ୟ (କ୍ଷମାଭିକ୍ଷା କରୁଥାଅ) ଯେ ଅଲ୍ଲାହ ସେମାନଙ୍କର ଦୋଷ ତ୍ରୁଟିକୁ ମାର୍ଜନା କରନ୍ତୁ ; ଏବଂ ଅଲ୍ଲାହ ତୁମମାନଙ୍କର ଏଣେତେଣେ ବୁଲିବା ଓ କୌଣସି ସ୍ଥାନରେ ରହିବା ବିଷୟରେ ଭଲ ଭାବରେ ଅବଗତ ଅଛନ୍ତି ।

---

୧. ୪୮:୩ର ଟୀକା ଦ୍ରଷ୍ଟବ୍ୟ ।

وَيَقُولُ الَّذِينَ آمَنُوا لَوْلَا نُزِّلَتْ سُورَةٌ ۖ فَإِذَا أُنزِلَتْ سُورَةٌ مُّحْكَمَةٌ وَذُكِرَ فِيهَا الْقِتَالُ ۙ رَأَيْتَ الَّذِينَ فِي قُلُوبِهِم مَّرَضٌ يَنظُرُونَ إِلَيْكَ نَظَرَ الْمَغْشِيِّ عَلَيْهِ مِنَ الْمَوْتِ ۖ فَأَوْلَىٰ لَهُمْ ﴿٢١﴾

୨୧. ଏବଂ ବିଶ୍ୱାସକାରୀମାନେ କହନ୍ତି, "କାହିଁକି (ତାହାଙ୍କ ପ୍ରତି) ଏପରି କୌଣସି ଅଧ୍ୟାୟ [୧] ଅବତୀର୍ଣ୍ଣ ହେଉ ନାହିଁ (ଯେଉଁଥିରେ ଯୁଦ୍ଧ ବିଷୟରେ ଆଦେଶ ଥିବ)"? ତେଣୁ ଯେତେବେଳେ ଏପରି କୌଣସି ସ୍ପଷ୍ଟ (ଆଦେଶାତ୍ମକ) ଅଧ୍ୟାୟ ଅବତୀର୍ଣ୍ଣ ହୁଏ ଏବଂ ସେଥିରେ ଯୁଦ୍ଧ ବିଷୟକ ଆଦେଶର ଉଲ୍ଲେଖ ଥାଏ, ସେତେବେଳେ ଯେଉଁମାନଙ୍କ ହୃଦୟ ବ୍ୟାଧିଗ୍ରସ୍ତ ତୁମେ ସେମାନଙ୍କୁ ଦେଖିବ ଯେ ସେମାନେ ତୁମ ପ୍ରତି ଏପରି ବ୍ୟକ୍ତି ସଦୃଶ ଚାହୁଁଛନ୍ତି ଯାହାଙ୍କ ଉପରେ ମୃତ୍ୟୁର [୨] ମୂର୍ଚ୍ଛାକାଳୀନ ଅବସ୍ଥା ଆଗତ ପ୍ରାୟ ; ଅତଏବ ସେମାନଙ୍କ ସକାଶେ (ଅଲ୍ଲାହଙ୍କ ତରଫରୁ) ସର୍ବନାଶ ନିୟତ ରହିଅଛି ।

طَاعَةٌ وَقَوْلٌ مَّعْرُوفٌ ۚ فَإِذَا عَزَمَ الْأَمْرُ فَلَوْ صَدَقُوا اللَّهَ لَكَانَ خَيْرًا لَّهُمْ ﴿٢٢﴾

୨୨. (ସେମାନଙ୍କ ପକ୍ଷରେ କେବଳ ଏତିକି କହିବା ଉଚିତ ହୋଇଥାନ୍ତା ଯେ) ଆଦେଶପାଳନ କରିବା ଏବଂ (ଲୋକମାନଙ୍କୁ) ଭଲ କଥା ଶୁଣାଇବା ଆମମାନଙ୍କର କର୍ତ୍ତବ୍ୟ ; ତା'ପରେ ଯେତେବେଳେ ଏ ବିଷୟରେ ଦୃଢ଼ ନିଷ୍ପତ୍ତି କରାଯାଏ (ଅର୍ଥାତ୍ ଯୁଦ୍ଧ ଆରମ୍ଭ ହୋଇଯାଏ), ସେତେବେଳେ ଯଦି ସେମାନେ ଅଲ୍ଲାହଙ୍କ ସମୀପରେ ସତ୍ୟନିଷ୍ଠ ହୁଅନ୍ତେ (ଅର୍ଥାତ୍ ଆଜ୍ଞା ପାଳନ ସଂକ୍ରାନ୍ତରେ ସେମାନେ ଯେଉଁ ଅଙ୍ଗୀକାର କରିଥିଲେ ତାହାକୁ ପାଳନ କରନ୍ତେ) ତାହାହେଲେ ଏହା ସେମାନଙ୍କ ପକ୍ଷରେ ଶ୍ରେୟସ୍କର ହୋଇଥା'ନ୍ତା ।

فَهَلْ عَسَيْتُمْ إِن تَوَلَّيْتُمْ أَن تُفْسِدُوا فِي الْأَرْضِ وَتُقَطِّعُوا أَرْحَامَكُمْ ﴿٢٣﴾

୨୩. ସୁତରାଂ କ'ଣ ଏ ବିଷୟ ସମ୍ଭବପର [୩] ନୁହେଁ ଯେ ଯଦି ତୁମେମାନେ ପୃଷ୍ଠଭଙ୍ଗ ଦେବ, ତେବେ ବି ତୁମେମାନେ ପୃଥିବୀରେ ବିଶୃଙ୍ଖଳା ସୃଷ୍ଟିର କାରଣ ହେବ ଏବଂ ନିଜର ଜ୍ଞାତି ସମ୍ପର୍କକୁ ଛିନ୍ନ କରିବ ।

---

୧. ବିଶ୍ୱାସକାରୀମାନେ ଧର୍ମ ବିଧାନର ଅନୁଦେଶଗୁଡ଼ିକୁ ପାଳନ କରିବା ପାଇଁ ଏପରି ଆଗ୍ରହୀ ହୋଇଥାନ୍ତି ଯେ ସେମାନେ ଅଲ୍ଲାହଙ୍କର ନୂତନ ଆଦେଶ ଅବତୀର୍ଣ୍ଣ ହେବା ସକାଶେ ସର୍ବଦା ପ୍ରତୀକ୍ଷା କରୁଥାନ୍ତି ଯେପରିକି ସେମାନେ ତାହାକୁ ପାଳନ କରିବେ, ଅଥଚ କପଟୀ-ବିଶ୍ୱାସୀମାନଙ୍କର ଅବସ୍ଥା ସମ୍ପୂର୍ଣ୍ଣ ବିପରୀତ । ସ୍ୱାର୍ଥତ୍ୟାଗ ସଂକ୍ରାନ୍ତରେ କୌଣସି ଆଦେଶ ଅବତୀର୍ଣ୍ଣ ହେଲେ ସେମାନଙ୍କୁ ଏପରି ଲାଗେ ଯଚେ ଯେପରି ସେମାନଙ୍କ ଉପରେ ମୃତ୍ୟୁ ଅବତରଣ କରିଅଛି ।

୨. ଅର୍ଥାତ୍ ଏପରି ମୂର୍ଚ୍ଛା ଯାହା ମୃତ୍ୟୁ ସମୟରେ ହିଁ ଆସିଥାଏ ଓ ସେତେବେଳେ ମଣିଷ ଆଖି ତରାଟି ରହିଯାଏ ।

୩. କ'ଣ ତୁମେମାନେ ଦେଖିପାରୁ ନାହିଁ ଯେ ଇସଲାମୀୟ ଯୁଦ୍ଧ କୌଣସି ଉପଦ୍ରବ ବା ବିଶୃଙ୍ଖଳା ପ୍ରସାରିତ କରେ ନାହିଁ ବରଂ ଯଦି ଏପରି ଯୁଦ୍ଧ ନହେବ ଓ ଅତ୍ୟାଚାରୀମାନଙ୍କୁ ରକ୍ଷା କରା ନଯିବ ତେବେ ଉପଦ୍ରବ ଓ ବିଶୃଙ୍ଖଳା ଚାରିଆଡ଼େ ବ୍ୟାପିଯିବ । ତେଣୁ କୌଣସି ବିଶ୍ୱାସକାରୀ ଏପରି ସାର୍ଥକ ଯୁଦ୍ଧ ପ୍ରତି କେବେ ହେଁ ଭୟଭୀତ ହେବ ନାହିଁ ।

أُولَٰئِكَ الَّذِينَ لَعَنَهُمُ اللَّهُ فَأَصَمَّهُمْ وَأَعْمَىٰ أَبْصَارَهُمْ ﴿٢٣﴾

୨୪. ଏହିମାନଙ୍କୁ ହିଁ ଅଲ୍ଲାହ ଅଭିଶପ୍ତ କରିଛନ୍ତି ଏବଂ ସେମାନଙ୍କୁ ବଧିର କରି ଦେଇଛନ୍ତି ଏବଂ ଏମାନଙ୍କ ଚକ୍ଷୁର ଦୃଷ୍ଟି ଶକ୍ତିକୁ ନଷ୍ଟ କରି ଦେଇଛନ୍ତି ।

أَفَلَا يَتَدَبَّرُونَ الْقُرْآنَ أَمْ عَلَىٰ قُلُوبٍ أَقْفَالُهَا ﴿٢٤﴾

୨୫. କ'ଣ ସେମାନେ କୋରାନ ପ୍ରତି ଧ୍ୟାନ ଦେଉ ନାହାନ୍ତି ? କ'ଣ ସେମାନଙ୍କ ହୃଦୟରେ (ନିଜ କୁକର୍ମ ଯୋଗୁଁ) ତାଲା[୧] ପଡ଼ିଅଛି ?

إِنَّ الَّذِينَ ارْتَدُّوا عَلَىٰ أَدْبَارِهِمْ مِنْ بَعْدِ مَا تَبَيَّنَ لَهُمُ الْهُدَى ۙ الشَّيْطَانُ سَوَّلَ لَهُمْ وَأَمْلَىٰ لَهُمْ ﴿٢٥﴾

୨୬. ଯେଉଁମାନେ ସେମାନଙ୍କ ନିକଟରେ ସତ୍‌ପଥ ପ୍ରକାଶିତ ହେଲା ପରେ ଫେରି ଯାଇଛନ୍ତି, ସଇତାନ ସେମାନଙ୍କୁ ସେମାନଙ୍କ କର୍ମକୁ ସୁଶୋଭିତ କରି ଦେଖାଇଛି ଏବଂ ସେମାନଙ୍କୁ (ବୃଥା) ଆଶା ଦେଇଅଛି ।

ذَٰلِكَ بِأَنَّهُمْ قَالُوا لِلَّذِينَ كَرِهُوا مَا نَزَّلَ اللَّهُ سَنُطِيعُكُمْ فِي بَعْضِ الْأَمْرِ ۖ وَاللَّهُ يَعْلَمُ إِسْرَارَهُمْ ﴿٢٦﴾

୨୭. ଏହା ଏଥି ସକାଶେ (ହୋଇ) ଅଛି ଯେ ଯେଉଁମାନେ ଅଲ୍ଲାହଙ୍କ ଶିକ୍ଷାକୁ ଘୃଣା ଚକ୍ଷୁରେ ଦେଖୁଛନ୍ତି, ସେମାନଙ୍କୁ ସେ (କେପଟବିଶ୍ୱାସୀ)ମାନେ କହନ୍ତି, "ଆମେମାନେ କେତେକ ବିଷୟରେ[୨] ତୁମମାନଙ୍କର ଆଜ୍ଞା ପାଳନ କରିବୁ" ; ଏବଂ ଅଲ୍ଲାହ ସେମାନଙ୍କ ଗୁପ୍ତ ବିଷୟକୁ ଜାଣନ୍ତି ।

فَكَيْفَ إِذَا تَوَفَّتْهُمُ الْمَلَائِكَةُ يَضْرِبُونَ وُجُوهَهُمْ وَأَدْبَارَهُمْ ﴿٢٧﴾

୨୮. ସୁତରାଂ ଯେତେବେଳେ ଦେବଦୂତମାନେ ସେମାନଙ୍କ ପ୍ରାଣ ନାଶ କରୁଥିବେ, (ଓ) ସେମାନଙ୍କ ମୁଖମଣ୍ଡଳକୁ ଓ ସେମାନଙ୍କ ପୃଷ୍ଠ ଦେଶକୁ କୋରଡ଼ାରେ ପ୍ରହାର କରୁଥିବେ, ସେତେବେଳେ ସେମାନଙ୍କ ଅବସ୍ଥା କିପରି ହେବ ।

ذَٰلِكَ بِأَنَّهُمُ اتَّبَعُوا مَا أَسْخَطَ اللَّهَ وَكَرِهُوا رِضْوَانَهُ فَأَحْبَطَ أَعْمَالَهُمْ ﴿٢٨﴾

୨୯. ଏହା ଏଥି ସକାଶେ ହେବ ଯେ ଯେଉଁ ବିଷୟକୁ ଅଲ୍ଲାହ ଅପସନ୍ଦ କରିଛନ୍ତି ସେମାନେ ତାହାର ଅନୁସରଣ କରିଛନ୍ତି, ଏବଂ ଅଲ୍ଲାହ ଯେଉଁଥିରେ ସନ୍ତୁଷ୍ଟ ସେମାନେ ତାହାକୁ ଅପସନ୍ଦ କରିଛନ୍ତି ; ତେଣୁ ଅଲ୍ଲାହ ମଧ୍ୟ ସେମାନଙ୍କ କର୍ମକୁ ନଷ୍ଟ କରିଦେଲେ ।

---

୧. ଅର୍ଥାତ୍ ଅଲ୍ଲାହ ସେହି ତାଲା ପକାଇ ନାହାନ୍ତି ବରଂ ସେମାନଙ୍କ କୁକର୍ମ ଯୋଗୁଁ ସେମାନଙ୍କ ହୃଦୟରେ ସେହି ତାଲା ପଡ଼ିଛି ।

୨. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଇସଲାମ ବିରୁଦ୍ଧରେ ସେମାନେ ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ସାହାଯ୍ୟ କରିବେ ; ଅବଶ୍ୟ ଯଦି ଲଢ଼ିତ ହୋଇଯିବେ ତେବେ ଏହା ଏକ ବାଧ୍ୟବାଧକତା ହେବ ।

୩୦. କ'ଣ ଯେଉଁମାନଙ୍କ ହୃଦୟ ବ୍ୟାଧିଗ୍ରସ୍ତ ହୋଇଅଛି ସେମାନେ ମନେ କରୁଛନ୍ତି ଯେ ଅଲ୍ଲାହ ସେମାନଙ୍କ ହୃଦୟରେ ଲୁକ୍କାୟିତ ଥିବା ବିଦ୍ୱେଷକୁ କଦାପି ପ୍ରକାଶିତ କରିବେ ନାହିଁ ?

أَمْ حَسِبَ الَّذِينَ فِي قُلُوبِهِم مَّرَضٌ أَن لَّن يُخْرِجَ اللَّهُ أَضْغَانَهُمْ ﴿٣٠﴾

୩୧. ଏବଂ ଯଦି ଆମେ ଇଚ୍ଛା କରିବୁ, ତେବେ ସେମାନଙ୍କ ସ୍ଥିତିକୁ ତୁମ ନିକଟରେ ପ୍ରକାଶ କରିଦେବୁ ଯଦ୍ୱାରା ତୁମେ ସେମାନଙ୍କୁ ସେମାନଙ୍କ ମୁଖମଣ୍ଡଳରୁ ଚିହ୍ନି ପାରିବ ; ଏବଂ (ବର୍ତ୍ତମାନ ମଧ୍ୟ) ତୁମେ ସେମାନଙ୍କୁ ସେମାନଙ୍କ ବକ୍ତବ୍ୟ ଶୈଳୀରୁ ଚିହ୍ନି ପାରିବ ; ଏବଂ ଅଲ୍ଲାହ ତୁମମାନଙ୍କ କର୍ମକୁ ଜାଣନ୍ତି ।

وَلَوْ نَشَاءُ لَأَرَيْنَاكَهُمْ فَلَعَرَفْتَهُم بِسِيمَاهُمْ ۚ وَلَتَعْرِفَنَّهُمْ فِي لَحْنِ الْقَوْلِ ۚ وَاللَّهُ يَعْلَمُ أَعْمَالَكُمْ ﴿٣١﴾

୩୨. ତୁମମାନଙ୍କ ମଧ୍ୟରୁ ଅଲ୍ଲାହଙ୍କ ପଥରେ ଜେହାଦ କରୁଥିବା ଓ ଧୈର୍ଯ୍ୟ ଧାରଣ କରୁଥିବା ବ୍ୟକ୍ତିଙ୍କୁ ଜାଣି ନେବା ପର୍ଯ୍ୟନ୍ତ ଆମେ ତୁମମାନଙ୍କୁ ନିଶ୍ଚୟ ପରୀକ୍ଷା କରିବୁ ; ଏବଂ ଆମେ ତୁମମାନଙ୍କ ଅନ୍ତର୍ନିହିତ ଅବସ୍ଥାକୁ ନିଶ୍ଚୟ ପରୀକ୍ଷା କରିବୁ ।

وَلَنَبْلُوَنَّكُمْ حَتَّىٰ نَعْلَمَ الْمُجَاهِدِينَ مِنكُمْ وَالصَّابِرِينَ وَنَبْلُوَ أَخْبَارَكُمْ ﴿٣٢﴾

୩୩. ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଅଲ୍ଲାହଙ୍କ ପଥରୁ (ଲୋକମାନଙ୍କୁ) ବାଧା ଦେଉଛନ୍ତି ଓ ସେମାନଙ୍କ ନିକଟରେ ସତ୍‌ପଥ ପ୍ରକାଶିତ ହେବା ପରେ ରସୁଲଙ୍କର ବିରୁଦ୍ଧାଚରଣ କରୁଛନ୍ତି, ସେମାନେ ଅଲ୍ଲାହଙ୍କର କୌଣସି କ୍ଷତି କରିପାରିବେ ନାହିଁ, ବରଂ ସେ (ଅଲ୍ଲାହ) ସେମାନଙ୍କର କର୍ମକୁ ନଷ୍ଟ କରିଦେବେ ।

إِنَّ الَّذِينَ كَفَرُوا وَصَدُّوا عَن سَبِيلِ اللَّهِ وَشَاقُّوا الرَّسُولَ مِن بَعْدِ مَا تَبَيَّنَ لَهُمُ الْهُدَىٰ لَن يَضُرُّوا اللَّهَ شَيْئًا وَسَيُحْبِطُ أَعْمَالَهُمْ ﴿٣٣﴾

୩୪. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ଆଜ୍ଞା ପାଳନ କର ଏବଂ ନିଜର କର୍ମକୁ ନଷ୍ଟ କର ନାହିଁ ।

يَا أَيُّهَا الَّذِينَ آمَنُوا أَطِيعُوا اللَّهَ وَأَطِيعُوا الرَّسُولَ وَلَا تُبْطِلُوا أَعْمَالَكُمْ ﴿٣٤﴾

୩୫. ବାସ୍ତବରେ ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଅଲ୍ଲାହଙ୍କ ପଥରୁ ଲୋକମାନଙ୍କୁ ବାଧା ଦେଇଛନ୍ତି ; ତା'ପରେ ସେମାନେ ଅବିଶ୍ୱାସକାରୀ ଥାଇ ମୃତ୍ୟୁ ବରଣ କରିଛନ୍ତି, ସେମାନଙ୍କୁ ଅଲ୍ଲାହ କଦାପି କ୍ଷମା କରିବେ ନାହିଁ ।

إِنَّ الَّذِينَ كَفَرُوا وَصَدُّوا عَن سَبِيلِ اللَّهِ ثُمَّ مَاتُوا وَهُمْ كُفَّارٌ فَلَن يَغْفِرَ اللَّهُ لَهُمْ ﴿٣٥﴾

---

୧. ଅର୍ଥାତ୍ ସେପରି ଲୋକମାନଙ୍କୁ ପ୍ରକଟିତ କରିଦେବେ ।

୩୬. ସୁତରାଂ (ହେ ବିଶ୍ୱାସକାରୀମାନେ !) ଆଳସ୍ୟ (ଓ ଭୀରୁତା)ର ବଶବର୍ତ୍ତୀ ହୋଇ ସନ୍ଧି କରିବାକୁ ଡାକ ନାହିଁ ;[୧] ପରିଶେଷରେ ତୁମେମାନେ ହିଁ ବିଜୟୀ ହେବ ; ଏବଂ ଅଲ୍ଲାହ୍ ତୁମମାନଙ୍କ ସହିତ ଅଛନ୍ତି, ଏବଂ କଦାପି ତୁମମାନଙ୍କ କର୍ମକୁ ବୃଥା ହେବାକୁ ଦେବେ ନାହିଁ ।

فَلَا تَهِنُوا وَتَدْعُوا إِلَى السَّلْمِ وَأَنتُمُ الْأَعْلَوْنَ وَاللَّهُ مَعَكُمْ وَلَن يَتِرَكُمْ أَعْمَالَكُمْ ٣٥

୩୭. ଏହି ସାଂସାରିକ ଜୀବନ ଏକ କ୍ରୀଡା ଓ କୌତୁକର ସାମଗ୍ରୀ ମାତ୍ର ; ଏବଂ ଯଦି ତୁମେମାନେ ବିଶ୍ୱାସ କରିବ ଓ ଧର୍ମଭୀରୁତା ଅବଲମ୍ବନ କରିବ, ତେବେ ଅଲ୍ଲାହ୍ ତୁମମାନଙ୍କୁ ତୁମମାନଙ୍କ ପୁରସ୍କାର ପ୍ରଦାନ କରିବେ, ଏବଂ ସେ ତୁମମାନଙ୍କୁ ତୁମମାନଙ୍କ ଧନ ସମ୍ପତ୍ତି ମାଗନ୍ତି ନାହିଁ ।

إِنَّمَا الْحَيَاةُ الدُّنْيَا لَعِبٌ وَلَهْوٌ وَإِن تُؤْمِنُوا وَتَتَّقُوا يُؤْتِكُمْ أُجُورَكُمْ وَلَا يَسْأَلْكُمْ أَمْوَالَكُمْ ٣٦

୩୮. ଯଦି ସେ ତୁମମାନଙ୍କଠାରୁ ତୁମମାନଙ୍କ ଧନସମ୍ପତ୍ତି ମାଗନ୍ତି ଓ (ସେଥି ସକାଶେ) ତୁମମାନଙ୍କ ଉପରେ ଚାପ ପକାନ୍ତି, ତେବେ ତୁମେମାନେ କୃପଣତା ପ୍ରଦର୍ଶନ କରିପାର, ଏବଂ ସେ ନିଶ୍ଚୟ ତୁମମାନଙ୍କ ହୃଦୟରୁ ତୁମମାନଙ୍କର ବିଦ୍ୱେଷକୁ କାଢି ଆଣିବେ ।

إِن يَسْأَلْكُمُوهَا فَيُحْفِكُمْ تَبْخَلُوا وَيُخْرِجْ أَضْغَانَكُمْ ٣٧

୩୯. ଶୁଣ ! ତୁମେମାନେ ଏପରି ଲୋକ ଯେଉଁମାନଙ୍କୁ ଏଥିସକାଶେ ଡକାଯାଉଅଛି ଯେ ତୁମେମାନେ ଅଲ୍ଲାହ୍‌ଙ୍କ ପଥରେ ବ୍ୟୟ କର ; ଏବଂ ତୁମମାନଙ୍କ ମଧ୍ୟରେ ଏପରି କେତେକ ଅଛନ୍ତି ଯେଉଁମାନେ କୃପଣତାର ବଶବର୍ତ୍ତୀ ହୋଇଛନ୍ତି ; ଏବଂ ଯେ-କେହି କୃପଣତା କରେ, ସେ ନିଜ[୨] ବିରୁଦ୍ଧରେ ହିଁ କୃପଣତା କରେ ; ଅଲ୍ଲାହ୍ କାହାରି ଉପରେ ନିର୍ଭର କରନ୍ତି ନାହିଁ ; ଅଥଚ ତୁମେମାନେ ହିଁ ନିର୍ଭରଶୀଳ ଅଟ ; ଏବଂ ଯଦି ତୁମେମାନେ ଫେରିଯିବ, ତେବେ ସେ ତୁମମାନଙ୍କ ପରିବର୍ତ୍ତେ ଅନ୍ୟ ଏକ ସମ୍ପ୍ରଦାୟକୁ ଘେନି ଆସିବେ, ଏବଂ ସେମାନେ ତୁମମାନଙ୍କ ସଦୃଶ (ଅଳସୁଆ) ହେବେ ନାହିଁ ।

هَا أَنتُمْ هَٰؤُلَاءِ تُدْعَوْنَ لِتُنفِقُوا فِي سَبِيلِ اللَّهِ فَمِنكُم مَّن يَبْخَلُ وَمَن يَبْخَلْ فَإِنَّمَا يَبْخَلُ عَن نَّفْسِهِ وَاللَّهُ الْغَنِيُّ وَأَنتُمُ الْفُقَرَاءُ وَإِن تَتَوَلَّوْا يَسْتَبْدِلْ قَوْمًا غَيْرَكُمْ ثُمَّ لَا يَكُونُوا أَمْثَالَكُمْ ٣٨ ع

---

୧. ଇସଲାମ ଅବଶ୍ୟ ସନ୍ଧି ଓ ବୁଝାମଣା ବିଷୟରେ ଶିକ୍ଷା ଦେଉଅଛି କିନ୍ତୁ ଭୀରୁ ଭାବରେ ସନ୍ଧି କରିବାକୁ ଆଗଭର ହେବା ସକାଶେ ବାରଣ କରାଯାଇଛି ।

ଥରେ ଯୁଦ୍ଧ ଆରମ୍ଭ ହୋଇଗଲେ ଯୁଦ୍ଧର ଗତି ଓ ସ୍ଥିତି ଯାହା କିଛି ହେଉ ପଛେ ମୁସଲମାନମାନେ ଶାନ୍ତି ସ୍ଥାପନ କରିବାକୁ ଅନ୍ୟ ପକ୍ଷକୁ ନିବେଦନ କରିବା ଉଚିତ ନୁହେଁ । ସେମାନଙ୍କ ପାଇଁ ଦୁଇଟି ଦ୍ୱାର ଉନ୍ମୁକ୍ତ– ଯୁଦ୍ଧରେ ଜୟଲାଭ କରିବା ଅଥବା ମୃତ୍ୟୁ ବରଣ କରି ସହୀଦ ହେବା ।

୨. ଅର୍ଥାତ୍ ନିଜକୁ ପୁଣ୍ୟ ଅର୍ଜନ କରିବାରୁ ବଞ୍ଚିତ କରୁଛି ।

سُوْرَةُ الْفَتْحِ مَدَنِيَّةٌ

# ଅଲ-ଫତାହ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୩୦ ଟି ଆୟତ ଓ ୪ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦାକରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

إِنَّا فَتَحْنَا لَكَ فَتْحًا مُّبِيْنًا ②

୨. ଆମେ ତୁମଙ୍କୁ ଏକ ପ୍ରକାଶ୍ୟ ବିଜୟ ପ୍ରଦାନ କରିଅଛୁ,

لِّيَغْفِرَ لَكَ اللّٰهُ مَا تَقَدَّمَ مِنْ ذَنْۢبِكَ وَمَا تَأَخَّرَ وَيُتِمَّ نِعْمَتَهٗ عَلَيْكَ وَيَهْدِيَكَ صِرَاطًا مُّسْتَقِيْمًا ③

୩. ଯାହା ଫଳରେ ଏପରି [୧] ହେବ ଯେ ତୁମ ସଂକ୍ରାନ୍ତରେ ଯାହା କିଛି ଦୋଷ ତ୍ରୁଟି ପୂର୍ବରୁ ହୋଇଛି ଅଲ୍ଲାହ ସେ ସବୁକୁ ଘୋଡାଇ ଦେବେ, ଏବଂ ଅଦ୍ୟାବଧି ଯାହା ହୋଇ ନାହିଁ (ଅଥଚ ଭବିଷ୍ୟତରେ ହେବାର ସମ୍ଭାବନା ଅଛି) ସେଗୁଡିକୁ ମଧ୍ୟ ଘୋଡାଇ ଦେବେ, ଏବଂ ତୁମ ପ୍ରତି ନିଜର କୃପାକୁ ସମ୍ପୂର୍ଣ୍ଣ କରିବେ, ଏବଂ ତୁମଙ୍କୁ ସରଳ ପଥ ଦେଖାଇବେ ;

وَّيَنْصُرَكَ اللّٰهُ نَصْرًا عَزِيْزًا ④

୪. ଏବଂ ଅଲ୍ଲାହ ତୁମଙ୍କୁ ଉତ୍ତମ ରୂପେ ସାହାଯ୍ୟ କରିବେ ।

هُوَ الَّذِيْٓ أَنْزَلَ السَّكِيْنَةَ فِيْ قُلُوْبِ الْمُؤْمِنِيْنَ لِيَزْدَادُوْٓا إِيْمَانًا مَّعَ إِيْمَانِهِمْ ۗ وَلِلّٰهِ جُنُوْدُ السَّمٰوٰتِ وَالْأَرْضِ ۗ وَكَانَ اللّٰهُ عَلِيْمًا حَكِيْمًا ⑤

୫. ସେ (ଅଲ୍ଲାହ)ହିଁ ବିଶ୍ୱାସକାରୀମାନଙ୍କ ହୃଦୟରେ ଶାନ୍ତି ଅବତୀର୍ଣ୍ଣ କରିଛନ୍ତି ଯଦ୍ୱାରା ସେମାନେ ଯେଉଁ ବିଶ୍ୱାସ ପୂର୍ବରୁ ଲାଭ କରିଛନ୍ତି ତାହା ସହିତ ସେମାନଙ୍କୁ ଆହୁରି ମଧ୍ୟ ବିଶ୍ୱାସ ଲବ୍ଧ ହେବ, ଏବଂ ଆକାଶରେ ମଧ୍ୟ ଅଲ୍ଲାହଙ୍କର ସୈନ୍ୟବାହିନୀ ଅଛନ୍ତି ଓ ପୃଥିବୀରେ ମଧ୍ୟ ; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

لِّيُدْخِلَ الْمُؤْمِنِيْنَ وَالْمُؤْمِنٰتِ جَنّٰتٍ تَجْرِيْ مِنْ تَحْتِهَا الْأَنْهٰرُ خٰلِدِيْنَ فِيْهَا وَيُكَفِّرَ عَنْهُمْ

୬. (ବିଶ୍ୱାସକାରୀମାନଙ୍କ ବିଶ୍ୱାସ ବୃଦ୍ଧି) ଏଥି ସକାଶେ ହେବ ଯଦ୍ୱାରା ସେ (ଅଲ୍ଲାହ) ବିଶ୍ୱାସକାରୀ ପୁରୁଷ ଓ ବିଶ୍ୱାସକାରିଣୀ ନାରୀମାନଙ୍କୁ ଏପରି ବୈକୁଣ୍ଠରେ ପ୍ରବେଶ କରାଇବେ ଯାହାର ନିମ୍ନ ଦେଶରେ ଝରଣାମାନ ପ୍ରବାହିତ ହେଉଥିବ ; ସେମାନେ

---

[୧] ଏହି ଅଧ୍ୟାୟ ହୁଦବିୟା ସନ୍ଧି ସମ୍ବନ୍ଧରେ ଅବତୀର୍ଣ୍ଣ ହୋଇଛି ଏବଂ ଏଥିରେ ଉଲ୍ଲେଖ ଅଛି ଯେ ମକ୍କା ବିଜୟ ପୂର୍ବରୁ ଅନ୍ୟ ଏକ ବିଜୟ ପ୍ରାପ୍ତ ହେବ ଅର୍ଥାତ୍ ହୁଦବିୟା ସନ୍ଧି, ଯହିଁରେ ଆରବର ଅନେକ ଗୋଷ୍ଠୀ ହଜରତ ମହମ୍ମଦଙ୍କ ସହିତ ବୁଝାମଣା କରିବେ । ସେତେବେଳେ ହଜରତ ମହମ୍ମଦଙ୍କୁ ଅତ୍ୟନ୍ତ କ୍ଷମାଶୀଳ ହେବାକୁ ପଡ଼ିବ ତଥା ସହନଶୀଳତାଅବଲମ୍ବନ କରି କାର୍ଯ୍ୟ ହାସଲ କରିବାକୁ ପଡ଼ିବ । ସେହିପରି ଭାବରେ ଆରବବାସୀମାନେ ଯେଉଁସବୁ ଅପରାଧ କରିଛନ୍ତି ଓ ଆଲୋଚ୍ୟ ସନ୍ଧି ଓ ମକ୍କା ବିଜୟର ମଧ୍ୟବର୍ତ୍ତୀ କାଳରେ ସେମାନେ ଅନ୍ୟ ଯେଉଁ ସବୁ ଅପରାଧ କରିବାର ସମ୍ଭାବନା ଅଛି ସେଥିପାଇଁ ସେ ସେମାନଙ୍କ ସକାଶେ ଅଲ୍ଲାହଙ୍କ ନିକଟରେ କ୍ଷମାପ୍ରାର୍ଥନା କରିବେ; ଅନ୍ୟଥା ହଜରତ ମହମ୍ମଦ କୌଣସି ପାପ କରିଥିବା ଏହି ଆୟତର ତାତ୍ପର୍ଯ୍ୟ ନୁହେଁ ।

'ଜମ୍ବ' ଶବ୍ଦର ପ୍ରୟୋଗ ସର୍ବତ୍ର ବିଜୟ ଅବସରରେ ହିଁ କରାଯାଇଛି;ତେଣୁ ପ୍ରତ୍ୟେକ ବ୍ୟକ୍ତି ଏଥିରୁ ବୁଝିପାରିବ ଯେ ଏହି ଶବ୍ଦ ପ୍ରୟୋଗରୁ ହଜରତ ମହମ୍ମଦ କରିଥିବା ପାପ ଅଭିପ୍ରେତ ନୁହେଁ, ବରଂ ତାଙ୍କ ସମ୍ବନ୍ଧରେ ଆରବର ବିଭିନ୍ନ ଗୋଷ୍ଠୀ ବା ଅବିଶ୍ୱାସକାରୀମାନେ କରିଥିବା ପାପ ଅଭିପ୍ରେତ ।

سَيِّاٰتِهِمْ ۭ وَكَانَ ذٰلِكَ عِنْدَ اللّٰهِ فَوْزًا عَظِيْمًا ۝٦

ସେଠାରେ ସର୍ବଦା ରହିବେ, ଏବଂ ତଦ୍ୱାରା ସେ (ଅଲ୍ଲାହ) ସେମାନଙ୍କ ଦୋଷତ୍ରୁଟିକୁ ଲୋପ [1] କରିଦେବେ ; ଏବଂ ଅଲ୍ଲାହଙ୍କ ନିକଟରେ ଏହା ହିଁ ମହାନ୍ ସଫଳତା ଅଟେ ।

وَّيُعَذِّبَ الْمُنٰفِقِيْنَ وَالْمُنٰفِقٰتِ وَالْمُشْرِكِيْنَ وَالْمُشْرِكٰتِ الظَّاۤنِّيْنَ بِاللّٰهِ ظَنَّ السَّوْءِ ۭ عَلَيْهِمْ دَاۗىِٕرَةُ السَّوْءِ ۚ وَغَضِبَ اللّٰهُ عَلَيْهِمْ وَلَعَنَهُمْ وَاَعَدَّ لَهُمْ جَهَنَّمَ ۭ وَسَاۗءَتْ مَصِيْرًا ۝٧

୭. ଏବଂ ତଦ୍ୱାରା ଯେଉଁ କପଟବିଶ୍ୱାସୀ ପୁରୁଷ ଓ କପଟବିଶ୍ୱାସିନୀ ନାରୀ ଏବଂ ମୁସରିକ ପୁରୁଷ ଓ ମୁସରିକ ନାରୀମାନେ ଅଲ୍ଲାହଙ୍କ ସଂକ୍ରାନ୍ତରେ ମନ୍ଦ ଧାରଣା ପୋଷଣ କରନ୍ତି ସେମାନଙ୍କୁ ସେ ଶାସ୍ତି [2] ଦେବେ ; ସେମାନଙ୍କ ଉପରେ ବିପତ୍ତି ପଡିବ, ଏବଂ ଅଲ୍ଲାହ ସେମାନଙ୍କ ପ୍ରତି ପ୍ରକୋପ ଅବତୀର୍ଣ୍ଣ କରିଛନ୍ତି, ଏବଂ ନିଜ ସମୀପରୁ ସେମାନଙ୍କୁ ବିତାଡିତ କରିଛନ୍ତି, ଏବଂ ସେମାନଙ୍କ ସକାଶେ ନରକକୁ ପ୍ରସ୍ତୁତ କରି ରଖିଛନ୍ତି ଯାହା ଅତ୍ୟନ୍ତ ମନ୍ଦସ୍ଥାନ ଅଟେ ।

وَلِلّٰهِ جُنُوْدُ السَّمٰوٰتِ وَالْاَرْضِ ۭ وَكَانَ اللّٰهُ عَزِيْزًا حَكِيْمًا ۝٨

୮. ଏବଂ ଆକାଶ ଓ ପୃଥିବୀର ସୈନ୍ୟବାହିନୀ ଅଲ୍ଲାହଙ୍କର ହିଁ ଅଟନ୍ତି ; ଏବଂ ଅଲ୍ଲାହ ଅତ୍ୟନ୍ତ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

اِنَّآ اَرْسَلْنٰكَ شَاهِدًا وَّمُبَشِّرًا وَّنَذِيْرًا ۝٩

୯. ଆମେ ତୁମକୁ (ଆପଣା ଗୁଣାବଳୀ ସକାଶେ) ସାକ୍ଷୀ ଓ (ବିଶ୍ୱାସକାରୀମାନଙ୍କ ସକାଶେ) ସୁସମାଚାରଦାତା ତଥା (ଅବିଶ୍ୱାସକାରୀମାନଙ୍କ ସକାଶେ) ସଚେତନକାରୀ ରୂପେ ପ୍ରେରଣ କରିଅଛୁ,

لِّتُؤْمِنُوْا بِاللّٰهِ وَرَسُوْلِهٖ وَتُعَزِّرُوْهُ وَتُوَقِّرُوْهُ ۭ وَتُسَبِّحُوْهُ بُكْرَةً وَّاَصِيْلًا ۝١٠

୧୦. ଯଦ୍ଦ୍ୱାରାକି ତୁମେମାନେ (ତାହାଙ୍କ ମାଧ୍ୟମରେ) ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କରିବ ଓ ତାହାଙ୍କୁ ସାହାଯ୍ୟ କରିବ, ଓ ତାହାଙ୍କୁ ସମ୍ମାନ ଦେଖାଇବ, ଏବଂ ସକାଳେ ଓ ସନ୍ଧ୍ୟାବେଳେ ତାହାଙ୍କର ପ୍ରଶଂସା ଗାନ କରିବ ।

اِنَّ الَّذِيْنَ يُبَايِعُوْنَكَ اِنَّمَا يُبَايِعُوْنَ اللّٰهَ ۭ يَدُ اللّٰهِ فَوْقَ اَيْدِيْهِمْ ۚ فَمَنْ نَّكَثَ فَاِنَّمَا يَنْكُثُ عَلٰي نَفْسِهٖ ۚ وَمَنْ اَوْفٰى بِمَا عٰهَدَ عَلَيْهُ اللّٰهَ فَسَيُؤْتِيْهِ اَجْرًا عَظِيْمًا ۝١١

୧୧. ଯେଉଁମାନେ ଶପଥ-ପୂର୍ବକ ତୁମର ଆନୁଗତ୍ୟ ସ୍ୱୀକାର କରନ୍ତି ସେମାନେ କେବଳ ଅଲ୍ଲାହଙ୍କର ଆନୁଗତ୍ୟ ସ୍ୱୀକାର କରନ୍ତି ; ଅଲ୍ଲାହଙ୍କ ହସ୍ତ ସେମାନଙ୍କ ହସ୍ତ ଉପରେ ରହିଅଛି ; ସୁତରାଂ ଯେ କେହି ଏହି ଅଙ୍ଗୀକାରକୁ ଭଙ୍ଗ କରିବ, ଏହାକୁ ଭଙ୍ଗ କରିବାର ଦୋଷ ତାହା ନିଜ ଉପରେ ହିଁ ପଡିବ ଏବଂ ଯେ କେହି ସେହି ଅଙ୍ଗୀକାରକୁ ପାଳନ କରିବ ଯାହା ସେ ଅଲ୍ଲାହଙ୍କ ସହିତ କରିଥିଲା, ଅଲ୍ଲାହ ତାହାକୁ ତାହାର ମହାନ୍ ପୁରସ୍କାର ଦେବେ ।

---

୧. ବିଶ୍ୱାସର ଅଭିବୃଦ୍ଧି ଘଟିଲେ ଏକ ପକ୍ଷରେ ପରକାଳର ପୁରସ୍କାରରେ ବୃଦ୍ଧି ହେବ ଓ ଅନ୍ୟ ପକ୍ଷରେ ସେମାନେ ପାପମୁକ୍ତ ହେବେ ।

୨. ବିଶ୍ୱାସକାରୀଙ୍କ ବିଶ୍ୱାସରେ ଅଭିବୃଦ୍ଧି ଘଟିଲେ ତାହା କପଟବିଶ୍ୱାସୀ ପୁରୁଷ ଓ କପଟବିଶ୍ୱାସିନୀ ମହିଳାଙ୍କ ସକାଶେ ଶାସ୍ତିର କାରଣ ହେବ ଯେହେତୁ ସେମାନେ ଆଶା ବାନ୍ଧି ବସିଥିଲେ ଯେ ସେପରି ପରିସ୍ଥିତିରେ ବିଶ୍ୱାସକାରୀମାନଙ୍କର ପଦସ୍ଖଳନ ହେବ । କିନ୍ତୁ ପରିଣାମ ବିପରୀତ ହେଲା ଓ ବିଶ୍ୱାସକାରୀମାନଙ୍କ ବିଶ୍ୱାସ ଆହୁରି ବଢ଼ିଲା । ତେଣୁ କପଟବିଶ୍ୱାସୀ ଓ ଅବିଶ୍ୱାସକାରୀମାନଙ୍କ ହୃଦୟ ବିଦାରିତ ହେବା ଓ ସେମାନେ ମାନସିକ ଯନ୍ତ୍ରଣା ଅନୁଭବ କରିବା ଛଡ଼ା ଅନ୍ୟ କିଛି ଘଟିଲା ନାହିଁ । ସେହିପରି ଯେଉଁମାନେ ଅଲ୍ଲାହଙ୍କ ସମ୍ବନ୍ଧରେ ମନ୍ଦ ଅଭିଳାଷ ପୋଷଣ କରିଥିଲେ ଓ ଭାବୁଥିଲେ ଯେ ସେମାନଙ୍କ ଯୋଜନା ଯୋଗୁଁ ଇସଲାମର କ୍ଷତି ହେବ ସେମାନେ କୌଣସି ଲାଭ ପାଇଲେ ନାହିଁ ।

ରୁ: ୨

سَيَقُولُ لَكَ الْمُخَلَّفُونَ مِنَ الْأَعْرَابِ شَغَلَتْنَا أَمْوَالُنَا وَأَهْلُونَا فَاسْتَغْفِرْ لَنَا يَقُولُونَ بِأَلْسِنَتِهِمْ مَا لَيْسَ فِي قُلُوبِهِمْ قُلْ فَمَنْ يَمْلِكُ لَكُمْ مِنَ اللَّهِ شَيْئًا إِنْ أَرَادَ بِكُمْ ضَرًّا أَوْ أَرَادَ بِكُمْ نَفْعًا بَلْ كَانَ اللَّهُ بِمَا تَعْمَلُونَ خَبِيرًا ﴿١٢﴾

୧୨. ଆରବର ପଲ୍ଲୀବାସୀମାନଙ୍କ[1] ମଧ୍ୟରୁ ଯେଉଁମାନେ ପଛରେ ରହିଯାଇଥିଲେ ସେମାନେ ନିଶ୍ଚୟ କହିବେ, "ଆମମାନଙ୍କ ଧନସମ୍ପତ୍ତି ଓ ଆମମାନଙ୍କ ସନ୍ତାନସନ୍ତତି ଆମମାନଙ୍କୁ ନିମଜ୍ଜିତ କରି ରଖିଥିଲା ;(ଏଥି ଯୋଗୁଁ ଆମେମାନେ ଏହି ଯାତ୍ରାରେ[2] ଯାଇ ପାରିଲୁ ନାହିଁ) ; ତେଣୁ ତୁମେ ଆମମାନଙ୍କ ପାଇଁ କ୍ଷମାଭିକ୍ଷା କର ;" ସେମାନେ ନିଜ ମୁଖରେ ତାହା କହୁଛନ୍ତି ଯାହା ସେମାନଙ୍କ ମନରେ ନାହିଁ ; ତୁମେ କୁହ, "ଯଦି ଅଲ୍ଲାଃ ତୁମମାନଙ୍କର କୌଣସି କ୍ଷତି କରିବାକୁ ଇଚ୍ଛା କରିବେ ବା ତୁମମାନଙ୍କୁ କିଛି ଲାଭ ପ୍ରଦାନ କରିବାକୁ ଇଚ୍ଛା କରିବେ, ତେବେ ଏପରି କିଏ ଅଛି ଯେ ତୁମମାନଙ୍କ ସକାଶେ ତାହାଙ୍କ ବିରୁଦ୍ଧରେ କିଛି କରିପାରିବ ? ଏପରି କଦାପି ହେବ ନାହିଁ, ବରଂ ଅଲ୍ଲାଃ ତୁମମାନଙ୍କ କର୍ମ ସଂକ୍ରାନ୍ତରେ ଅବଗତ ଅଛନ୍ତି ।"

بَلْ ظَنَنْتُمْ أَنْ لَنْ يَنْقَلِبَ الرَّسُولُ وَالْمُؤْمِنُونَ إِلَىٰ أَهْلِيهِمْ أَبَدًا وَزُيِّنَ ذَٰلِكَ فِي قُلُوبِكُمْ وَظَنَنْتُمْ ظَنَّ السَّوْءِ وَكُنْتُمْ قَوْمًا بُورًا ﴿١٣﴾

୧୩. "ପ୍ରକୃତ ବିଷୟ ହେଉଛି କି ତୁମେମାନେ ଧାରଣା କରିଥିଲ ଯେ, ସେ ରସୁଲ ଓ ବିଶ୍ୱାସକାରୀମାନେ କଦାପି ନିଜ ନିଜ ପରିବାରବର୍ଗଙ୍କ ନିକଟକୁ ସୁରକ୍ଷିତ ଫେରି ପାରିବେ ନାହିଁ, ଏବଂ ଏହି ବିଷୟକୁ ତୁମମାନଙ୍କ ଦୃଷ୍ଟିରେ ଶୋଭନୀୟ କରି ପ୍ରଦର୍ଶିତ କରା ହୋଇଥିଲା, (ଏବଂ ତୁମେମାନେ ମନେ ମନେ ବହୁତ ଆନନ୍ଦିତ ହୋଇଥିଲ), ଏବଂ ତୁମେମାନେ (ବିଶ୍ୱାସକାରୀମାନଙ୍କ ସଂକ୍ରାନ୍ତରେ ତଥା ଅଲ୍ଲାଃଙ୍କ ସଂକ୍ରାନ୍ତରେ) ମନ୍ଦ ଧାରଣା ପୋଷଣ କରିଥିଲ ; (ଅଥଚ ସେମାନେ ନୁହନ୍ତି) ବରଂ ତୁମେମାନେ ନିଜେ ବିନାଶ ହେବା ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯାଇଥିଲ ।"

وَمَنْ لَمْ يُؤْمِنْ بِاللَّهِ وَرَسُولِهِ فَإِنَّا أَعْتَدْنَا لِلْكَافِرِينَ سَعِيرًا ﴿١٤﴾

୧୪. ଏବଂ ଯେଉଁ ବ୍ୟକ୍ତି ଅଲ୍ଲାଃ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କରୁନାହିଁ (ସେ ମନେ ରଖୁ ଯେ) ଆମେ ଅବିଶ୍ୱାସକାରୀମାନଙ୍କ ସକାଶେ ଜ୍ୱଳନ୍ତ (ଅଗ୍ନିର) ଶାସ୍ତି ପ୍ରସ୍ତୁତ କରି ରଖିଅଛୁ ।

---

୧. 'ଆରାବ' ଅର୍ଥ ଆରବର ସେହି ଲୋକମାନେ ଯେଉଁମାନେ ଜଙ୍ଗଲରେ ରହୁଥିଲେ । ଏହି ଆୟତଗୁଡ଼ିକରେ ସେମାନଙ୍କ ମଧ୍ୟରୁ ଯେଉଁମାନେ କପଟବିଶ୍ୱାସୀ ଥିଲେ, ଯଥା ଆମିର, ଅସଦ ଓ ଗତଫାନ ପରିବାରର ଲୋକ, ଏଠାରେ ସେହିମାନଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି ।

୨. ଅର୍ଥାତ୍ ତବୁକ ଯୁଦ୍ଧକୁ । କେତେକ ଟୀକାକାର ଏହି ଘଟଣାକୁ ମକ୍କାବିଜୟ ସହିତ ସଂଯୁକ୍ତ କରୁଛନ୍ତି କିନ୍ତୁ ଆମେମାନେ ଏହାକୁ ତବୁକ ଯୁଦ୍ଧ ସହ ସଂଯୁକ୍ତ କରୁଅଛୁ କାରଣ ଏଠାରେ 'ସୟକୁଲୁ ଲକଲ ମୁଖଲ ଲଫୁନା' ଅଭିବ୍ୟକ୍ତି ଏକ ଭବିଷ୍ୟବାଣୀକୁ ସୂଚାଉଛି । ଏଥିଯୋଗୁଁ ଆମର ନିର୍ଣ୍ଣୟ ଅଧିକ ଯଥାର୍ଥ । ଅଧିକନ୍ତୁ ସୁରା ତୌବାରୁ ପ୍ରତୀତ ହେଉଛି ଯେ ପଛରେ ରହି ଯାଇଥିବା ଲୋକମାନଙ୍କ ସମ୍ପର୍କ ତବୁକ ଘଟଣା ସହିତ ସଂଶ୍ଳିଷ୍ଟ ।

وَلِلّٰهِ مُلْكُ السَّمٰوٰتِ وَالْاَرْضِ يَغْفِرُ لِمَنْ يَّشَآءُ وَيُعَذِّبُ مَنْ يَّشَآءُ وَكَانَ اللّٰهُ غَفُوْرًا رَّحِيْمًا ⑮

୧୫. ଏବଂ ଆକାଶ ଓ ପୃଥିବୀର ରାଜତ୍ୱ ଅଲ୍ଲାହଙ୍କ ନିୟନ୍ତ୍ରଣରେ ଅଛି ; (ସେ) ଯାହାକୁ ଇଚ୍ଛା କ୍ଷମା କରିଥାନ୍ତି ଓ ଯାହାକୁ ଇଚ୍ଛା ଶାସ୍ତି ଦିଅନ୍ତି ; ଏବଂ ଅଲ୍ଲାହ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

سَيَقُوْلُ الْمُخَلَّفُوْنَ اِذَا انْطَلَقْتُمْ اِلٰى مَغَانِمَ لِتَاْخُذُوْهَا ذَرُوْنَا نَتَّبِعْكُمْ يُرِيْدُوْنَ اَنْ يُّبَدِّلُوْا كَلٰمَ اللّٰهِ قُلْ لَّنْ تَتَّبِعُوْنَا كَذٰلِكُمْ قَالَ اللّٰهُ مِنْ قَبْلُ فَسَيَقُوْلُوْنَ بَلْ تَحْسُدُوْنَنَا بَلْ كَانُوْا لَا يَفْقَهُوْنَ اِلَّا قَلِيْلًا ⑯

୧୬. ଯେତେବେଳେ ତୁମେମାନେ ଯୁଦ୍ଧରୁ ପ୍ରାପ୍ତ ସାମଗ୍ରୀକୁ [1] ଏକତ୍ରିତ କରିବାକୁ ଅଗ୍ରସର ହେବ, ସେତେବେଳେ ପଛରେ ରହିଯାଇଥିବା ଲୋକମାନେ କହିବେ, "ତୁମମାନଙ୍କର ଅନୁଗମନ କରିବା ପାଇଁ ଆମମାନଙ୍କୁ ମଧ୍ୟ ଅନୁମତି ପ୍ରଦାନ କର ;" ସେମାନେ ଅଲ୍ଲାହଙ୍କର ନିଷ୍ପତ୍ତିକୁ ବଦଳାଇ ଦେବାପାଇଁ ଇଚ୍ଛା କରିବେ ; ତୁମେ କୁହ, "ତୁମେମାନେ କଦାପି ଆମମାନଙ୍କର ଅନୁଗମନ କରିପାରିବ ନାହିଁ ; ଏହା ହିଁ ତୁମମାନଙ୍କ ସମ୍ବନ୍ଧରେ ପୂର୍ବରୁ ଅଲ୍ଲାହଙ୍କ ପ୍ରଦତ୍ତ ନିଷ୍ପତ୍ତି ଅଟେ ;" ଏଥି ଉତ୍ତାରୁ ସେମାନେ କହିବେ, "ପ୍ରକୃତରେ ତୁମେ ଆମମାନଙ୍କ ପ୍ରତି ଈର୍ଷା କରୁଅଛ ;" କିନ୍ତୁ ବାସ୍ତବରେ ସେମାନେ ଖୁବ୍ କମ ବୁଝି ପାରୁଛନ୍ତି ।

قُلْ لِّلْمُخَلَّفِيْنَ مِنَ الْاَعْرَابِ سَتُدْعَوْنَ اِلٰى قَوْمٍ اُولِيْ بَاْسٍ شَدِيْدٍ تُقَاتِلُوْنَهُمْ اَوْ يُسْلِمُوْنَ

୧୭. ଆରବର ପଲ୍ଲୀ-ବାସୀମାନଙ୍କ ମଧ୍ୟରୁ ଯେଉଁମାନେ ପଛରେ ରହିଯାଇଥିଲେ ତୁମେ ସେମାନଙ୍କୁ କୁହ, "ତୁମେମାନେ ନିଶ୍ଚୟ ଏପରି ଏକ ଦଳ ସହିତ ଯୁଦ୍ଧ କରିବାକୁ ଡକା [2] ହେବ ଯେ କି ଯୁଦ୍ଧ ବିଦ୍ୟାରେ ନିପୁଣ [3] ; ଯେ ପର୍ଯ୍ୟନ୍ତ ସେମାନେ ଆତ୍ମସମର୍ପଣ [4] କରି ନାହାନ୍ତି ତୁମେମାନେ ସେମାନଙ୍କ ସହିତ ସେ ପର୍ଯ୍ୟନ୍ତ ଯୁଦ୍ଧ କରିବ ;

---

୧. ଏଠାରେ ତବୁକ ବା ଖୈବର ଯୁଦ୍ଧରୁ ପ୍ରାପ୍ତ ଧନସମ୍ପତ୍ତି ପ୍ରତି ସୂଚନା ଦିଆଯାଇଛି ।

୨. ଏଠାରେ ପାରସ୍ୟ ଓ ରୋମ ସମ୍ରାଟଙ୍କ ସହିତ ହୋଇଥିବା ଯୁଦ୍ଧ ବିଷୟରେ ଉଲ୍ଲେଖ ଅଛି । ଏଠାରେ କପଟବିଶ୍ୱାସୀମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେ ଯଦି ସେମାନେ ଯୁଦ୍ଧ କରି ନିଜର ପୌରୁଷ ପ୍ରଦର୍ଶନ କରିବେ ତେବେ ସେମାନଙ୍କୁ କ୍ଷମା ଦିଆଯିବ ଅନ୍ୟଥା ସେମାନେ ଅଲ୍ଲାହଙ୍କର ଶାସ୍ତି ଆସ୍ୱାଦନ କରିବେ ।

ହଜରତ ଉମରଙ୍କ ଶାସନ କାଳରେ ସମ୍ଭ୍ରାନ୍ତ ପରିବାରର କେତେକ ଯୁବକ ତାଙ୍କ ନିକଟକୁ ଆସି ନିଜର ଆନ୍ତରିକ ଇଚ୍ଛା ପ୍ରକାଶ କରିଥିଲେ ଯେ ସେମାନଙ୍କ ପିତୃପିତାମହଙ୍କ କୁକର୍ମ ସେମାନଙ୍କ ପଥରେ ପ୍ରତିବନ୍ଧକ ନହେଉ ଏବଂ ସେହି କାରଣରୁ ଯେହେତୁ ସେ ସେମାନଙ୍କ ପରିବାରକୁ ଜାଣନ୍ତି ତେଣୁ ସେମାନଙ୍କୁ ଏପରି ଉପାୟ ବତାଇ ଦିଅନ୍ତୁ ଯଦ୍ଦ୍ୱାରା ସେମାନଙ୍କ ପରିବାର ଉପରେ ଯେଉଁ କଳଙ୍କ ଲାଗିଛି ସେମାନେ ତାହା ପୋଛି ଦେବାକୁ ସମର୍ଥ ହେବେ । ଏହା ଶୁଣି ହଜରତ ଉମରଙ୍କ ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇଗଲା ଓ ସେ କିଛି କହିପାରିଲେ ନାହିଁ । ସେ ସିରିୟା ଦେଶ ଆଡ଼କୁ ହାତ ଦେଖାଇ କହିଲେ ଯେ ଯଦି ସେମାନେ ସେଠାକୁ ଯାଇ ଯୁଦ୍ଧରେ ଭାଗ ନେବେ ତେବେ ସମ୍ଭବତଃ ସେମାନଙ୍କର ପ୍ରାୟଶ୍ଚିତ୍ତ ହେବ । ଏ ବିଷୟ ଶୁଣିବା ପରେ ସେହି ଯୁବକମାନେ ତତ୍‌କ୍ଷଣାତ୍ ଅଶ୍ୱାରୋହଣ କରି ସିରିୟା ଅଭିମୁଖେ ଯାତ୍ରା କଲେ ଓ ସୈନ୍ୟ ବାହିନୀରେ ଯୋଗ ଦେଲେ । ଇତିହାସରୁ ଜଣାପଡ଼େ ଯେ ସେମାନଙ୍କ ମଧ୍ୟରୁ କେହି ଜଣେ ମଧ୍ୟ ଜୀବିତ ଫେରି ନଥିଲେ ।

୩. ଏଠାରେ ସୂଚାଯାଇଛି ଯେ ସେହି ଯୁଦ୍ଧ ଦୀର୍ଘକାଳ ପର୍ଯ୍ୟନ୍ତ ଚାଲୁ ରହିବ ।

୪. ଏଠାରେ ଆଦେଶ ଦିଆଯାଇ ନାହିଁ ଯେ ସେମାନେ ଆତ୍ମ ସମର୍ପଣ ନକରିବା ପର୍ଯ୍ୟନ୍ତ ସେମାନଙ୍କ ସହିତ ଯୁଦ୍ଧ କର ବରଂ ଅସଲ କଥା ହେଉଛି ଯେ ସେମାନେ ଆତ୍ମସମର୍ପଣ ନକରିବା ପର୍ଯ୍ୟନ୍ତ ତୁମମାନଙ୍କ ସହିତ ଯୁଦ୍ଧ କରୁଥିବେ, ଯେପରି ପାରସ୍ୟ ଓ ରୋମ ସାମ୍ରାଜ୍ୟର ଲୋକମାନେ କରୁଥିଲେ ।

ଫَإِنْ تُطِيعُوا يُؤْتِكُمُ اللّٰهُ أَجْرًا حَسَنًا ۚ وَإِنْ تَتَوَلَّوْا كَمَا تَوَلَّيْتُمْ مِنْ قَبْلُ يُعَذِّبْكُمْ عَذَابًا أَلِيمًا ﴿١٧﴾

ସୁତରାଂ ଯଦି ତୁମେମାନେ (ସେତେବେଳେ ଅଲ୍ଲାହ୍‌ଙ୍କ ଆଦେଶକୁ) ପାଳନ କରିବ, ତେବେ ଅଲ୍ଲାହ୍ ତୁମମାନଙ୍କୁ ଅତି ଉତ୍ତମ ପୁରସ୍କାର ପ୍ରଦାନ କରିବେ ; ଏବଂ ଯଦି ତୁମେମାନେ (ଆଦେଶ ପାଳନ କରିବାରେ) ପୃଷ୍ଠଭଙ୍ଗ କରିବ, ଯେପରିକି ଏହା ପୂର୍ବରୁ (ପୃଷ୍ଠଭଙ୍ଗ) କରିଥିଲ, ତାହା ହେଲେ ଅଲ୍ଲାହ୍ ତୁମମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଦେବେ ।"

لَيْسَ عَلَى الْأَعْمَىٰ حَرَجٌ وَلَا عَلَى الْأَعْرَجِ حَرَجٌ وَلَا عَلَى الْمَرِيضِ حَرَجٌ ۗ وَمَنْ يُطِعِ اللّٰهَ وَرَسُولَهُ يُدْخِلْهُ جَنّٰتٍ تَجْرِي مِنْ تَحْتِهَا الْأَنْهٰرُ ۖ وَمَنْ يَتَوَلَّ يُعَذِّبْهُ عَذَابًا أَلِيمًا ﴿١٨﴾

୧୮. (ଅକ୍ଷମତା ସତ୍ତ୍ୱେ ଯୁଦ୍ଧରେ ଭାଗ ନେବା ପାଇଁ) କୌଣସି ଅନ୍ଧ ପ୍ରତି ବା କୌଣସି ଛୋଟା ପ୍ରତି ବା କୌଣସି ରୋଗୀ ପ୍ରତି ବାଧ୍ୟବାଧକତା ନାହିଁ ; ଏବଂ ଯେ ଅଲ୍ଲାହ୍ ଓ ତାହାଙ୍କ ରସୁଲଙ୍କର ଆଜ୍ଞା ପାଳନ କରେ ତାହାକୁ ସେ ଏପରି ବୈକୁଣ୍ଠରେ ପ୍ରବେଶ କରାଇବେ, ଯାହାର ନିମ୍ନ ଦେଶରେ ଝରଣାମାନ ପ୍ରବାହିତ ହେଉଥିବ ; ଏବଂ ଯେ (କୌଣସି ଆଦେଶ ପାଳନ କରିବାରେ) ପୃଷ୍ଠ ଭଙ୍ଗ କରିବ, ଅଲ୍ଲାହ୍ ତାହାକୁ ଯନ୍ତ୍ରଣା ଦାୟକ ଶାସ୍ତି ଦେବେ ।

ରୁ : ୩

لَقَدْ رَضِيَ اللّٰهُ عَنِ الْمُؤْمِنِينَ إِذْ يُبَايِعُونَكَ تَحْتَ الشَّجَرَةِ فَعَلِمَ مَا فِي قُلُوبِهِمْ فَأَنْزَلَ السَّكِينَةَ عَلَيْهِمْ وَأَثَابَهُمْ فَتْحًا قَرِيبًا ﴿١٩﴾

୧୯. ଅଲ୍ଲାହ୍ ବିଶ୍ୱାସକାରୀମାନଙ୍କ ଉପରେ ସେତେବେଳେ ଅତି ସନ୍ତୁଷ୍ଟ ହୋଇଗଲେ ଯେତେବେଳେ ସେମାନେ ବୃକ୍ଷ[୧] ତଳେ (ଶପଥ-ପୂର୍ବକ) ତୁମର ଆନୁଗତ୍ୟ ସ୍ୱୀକାର କରିଥିଲେ, ଏବଂ ସେମାନଙ୍କ ହୃଦୟରେ ଯାହା (ବିଶ୍ୱାସ) ଥିଲା ସେ ତାହାକୁ ଭଲ ଭାବରେ ଜାଣି ପାରିଲେ ; ତେଣୁ ଏଥିଯୋଗୁଁ ସେ ସେମାନଙ୍କ ହୃଦୟରେ ଶାନ୍ତି ଅବତୀର୍ଣ୍ଣ କଲେ, ଏବଂ ସେମାନଙ୍କୁ ଏକ ଆସନ୍ନ ବିଜୟ ପ୍ରଦାନ କଲେ ;[୨]

وَمَغَانِمَ كَثِيرَةً يَأْخُذُونَهَا ۗ وَكَانَ اللّٰهُ عَزِيزًا حَكِيمًا ﴿٢٠﴾

୨୦. ଏବଂ ଯୁଦ୍ଧରୁ ପ୍ରାପ୍ତ ଅନେକ ସାମଗ୍ରୀ ମଧ୍ୟ ପ୍ରଦାନ କରିଥିଲେ ଯାହା ସେମାନେ ନିଜ ଦଖଲକୁ ଆଣିଥିଲେ ; ଏବଂ ଅଲ୍ଲାହ୍ ହି ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

وَعَدَكُمُ اللّٰهُ مَغَانِمَ كَثِيرَةً تَأْخُذُونَهَا فَعَجَّلَ لَكُمْ هٰذِهِ وَكَفَّ أَيْدِيَ النَّاسِ عَنْكُمْ ۚ وَلِتَكُونَ

୨୧. ଅଲ୍ଲାହ୍ ତୁମମାନଙ୍କୁ ଯୁଦ୍ଧରୁ ପ୍ରାପ୍ତ ଅନେକ ସାମଗ୍ରୀ ବିଷୟରେ ପ୍ରତିଶ୍ରୁତି ଦେଇଛନ୍ତି ଯାହା ତୁମେମାନେ ନିଜ ଦଖଲକୁ ଆଣିବ, ଏବଂ ସେହି ପ୍ରତିଶ୍ରୁତି ଅନୁଯାୟୀ ସମ୍ପ୍ରତି[୩] ଯୁଦ୍ଧରୁ ପ୍ରାପ୍ତ ସାମଗ୍ରୀମାନ ସେ ତୁମମାନଙ୍କୁ ଶୀଘ୍ର ପ୍ରଦାନ

---

୧. ଏଠାରେ ହୁଦବିୟା ସନ୍ଧି ସମୟର ଶପଥ ସଂକ୍ରାନ୍ତରେ ସୂଚନା ଦିଆଯାଇଛି, ଯେବେ କି ହଜରତ ମହମ୍ମଦଙ୍କ ସହଚରମାନେ ତାଙ୍କ ନିକଟରେ ମୃତ୍ୟୁ ବରଣ କରିବା ପାଇଁ ଶପଥ କରିଥିଲେ ।

୨. ଅର୍ଥାତ୍ ଖୈବର ।

୩. ଅର୍ଥାତ୍ ଖୈବର ଯୁଦ୍ଧରୁ ପ୍ରାପ୍ତ ଧନ ସମ୍ପତ୍ତି ।

آيَةً لِّلْمُؤْمِنِيْنَ وَ يَهْدِيَكُمْ صِرَاطًا مُّسْتَقِيْمًا ⓴

କରିଛନ୍ତି, ଏବଂ ତୁମମାନଙ୍କ ଠାରୁ ଲୋକମାନଙ୍କ ହାତକୁ ଅଟକାଇ [୧] ରଖିଛନ୍ତି ଯେପରିକି ଏହା (ଅର୍ଥାତ୍ ଏହି ଘଟଣା) ବିଶ୍ୱାସକାରୀମାନଙ୍କ ସକାଶେ ଏକ ନିଦର୍ଶନ ହେବ, ଏବଂ ସେ (ଅଲ୍ଲାହ) ତୁମମାନଙ୍କୁ ଏହା ଜରିଆରେ ସରଳପଥ ପ୍ରଦର୍ଶନ କରିବେ ।

وَّ اُخْرٰى لَمْ تَقْدِرُوْا عَلَيْهَا قَدْ اَحَاطَ اللّٰهُ بِهَا ۚ وَكَانَ اللّٰهُ عَلٰى كُلِّ شَيْءٍ قَدِيْرًا ㉑

୨୨. ଏବଂ (ଏହା ବ୍ୟତୀତ) ଆହୁରି [୨] ଗୋଟିଏ (ବିଜୟ) ଅଛି ଯାହା ତୁମେମାନେ ଅଦ୍ୟାବଧି ଲାଭ କରି ନାହିଁ, ଅଲ୍ଲାହ ସେ ବିଷୟରେ ନିଷ୍ପତ୍ତି କରି ସାରିଛନ୍ତି ; ଏବଂ ଅଲ୍ଲାହ ନିଜର ଇଛାକୁ କାର୍ଯ୍ୟକାରୀ କରିବାରେ ସମ୍ପୂର୍ଣ୍ଣ ସକ୍ଷମ ।

وَلَوْ قٰتَلَكُمُ الَّذِيْنَ كَفَرُوْا لَوَلَّوُا الْاَدْبَارَ ثُمَّ لَا يَجِدُوْنَ وَلِيًّا وَّلَا نَصِيْرًا ㉒

୨୩. ଏବଂ ଯଦି ଅବିଶ୍ୱାସକାରୀମାନେ (ହୁଦବିୟା ସନ୍ଧି ସମୟରେ ) ତୁମମାନଙ୍କ ସଙ୍ଗରେ ଯୁଦ୍ଧ କରିଥା'ନ୍ତେ, ତେବେ ସେମାନେ ତତ୍କ୍ଷଣାତ୍ ପୃଷ୍ଠଭଙ୍ଗ କରି ପଳାୟନ କରିଥା'ନ୍ତେ ; ଏବଂ ସେମାନେ କୌଣସି ଆଶ୍ରୟଦାତା ବା ସାହାଯ୍ୟକାରୀ ପାଇ ନ ଥାଆନ୍ତେ ।

سُنَّةَ اللّٰهِ الَّتِيْ قَدْ خَلَتْ مِنْ قَبْلُ ۖۚ وَلَنْ تَجِدَ لِسُنَّةِ اللّٰهِ تَبْدِيْلًا ㉓

୨୪. ଅଲ୍ଲାହଙ୍କର ଏହି ରୀତିକୁ ମନେରଖ, ଯାହା ସର୍ବଦା ପ୍ରଚଳିତ ଅଛି ; ଏବଂ ତୁମେ କଦାପି ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ରୀତିରେ କୌଣସି ପରିବର୍ତ୍ତନ ପାଇବ ନାହିଁ ।

وَهُوَ الَّذِيْ كَفَّ اَيْدِيَهُمْ عَنْكُمْ وَاَيْدِيَكُمْ عَنْهُمْ بِبَطْنِ مَكَّةَ مِنْۢ بَعْدِ اَنْ اَظْفَرَكُمْ عَلَيْهِمْ ۚ وَكَانَ اللّٰهُ بِمَا تَعْمَلُوْنَ بَصِيْرًا ㉔

୨୫. ଏବଂ ସେ (ଅଲ୍ଲାହ)ହିଁ ମକ୍କା ଉପତ୍ୟକାରେ ସେମାନଙ୍କ ହାତକୁ ତୁମମାନଙ୍କଠାରୁ ଓ ତୁମମାନଙ୍କ ହାତକୁ ସେମାନଙ୍କଠାରୁ ଅଟକାଇ ଦେଇଥିଲେ ; ଏହାପରେ (ପରିସ୍ଥିତି ଅନୁଯାୟୀ) ତୁମେମାନେ ସେମାନଙ୍କ ଉପରେ ବିଜୟ ଲାଭ କରିଥିଲ ; ଏବଂ ଅଲ୍ଲାହ ତୁମମାନଙ୍କ କର୍ମକୁ ଲକ୍ଷ୍ୟ କରୁଥିଲେ (ଏବଂ ଜାଣିଥିଲେ ଯେ ତୁମେମାନେ ଯୁଦ୍ଧ କରିବାକୁ ଭୟ କରୁ ନ ଥିଲ) ।

هُمُ الَّذِيْنَ كَفَرُوْا وَصَدُّوْكُمْ عَنِ الْمَسْجِدِ الْحَرَامِ وَالْهَدْيَ مَعْكُوْفًا اَنْ يَّبْلُغَ مَحِلَّهٗ ۚ وَلَوْلَا رِجَالٌ مُّؤْمِنُوْنَ وَنِسَآءٌ مُّؤْمِنٰتٌ لَّمْ تَعْلَمُوْهُمْ اَنْ

୨୬. ସେମାନେ ହିଁ (ତୁମମାନଙ୍କର ଶତ୍ରୁ),ଯେଉଁମାନେ କି ଅବିଶ୍ୱାସ କରିଥିଲେ, ଏବଂ ତୁମମାନଙ୍କୁ ପବିତ୍ର ମସଜିଦରେ (ପ୍ରବେଶ କରିବାରେ) ବାଧା ଦେଇଥିଲେ ଏବଂ ଏହିପରି ଭାବରେ (ମକ୍କା ପାଇଁ ଉଦ୍ଦିଷ୍ଟ) କୁର୍ବାନିକୁ ଲକ୍ଷ୍ୟସ୍ଥଳରେ ପହଞ୍ଚିବାରେ ବାଧା ଦେଇଥିଲେ ; ଏବଂ ଯଦି (ମକ୍କାରେ) ଏପରି କେତେକ ବିଶ୍ୱାସକାରୀ ପୁରୁଷ ଓ ଏପରି କେତେକ ବିଶ୍ୱାସକାରିଣୀ ନାରୀ ନଥା'ନ୍ତେ, ଯେଉଁମାନଙ୍କୁ ତୁମେମାନେ

---

୧. ଅର୍ଥାତ୍ ହୁଦବିୟା ସନ୍ଧି ସମୟରେ ।

୨. ଏଠାରେ ଜଣାଇ ଦିଆଯାଇଛି ଯେ ଖୈବର ବିଜୟ ପରେ ସେମାନେ ଆହୁରି ଅନେକ ବିଜୟ ଲାଭ କରିବେ ।

تَطَـُٔوهُمْ فَتُصِيبَكُم مِّنْهُم مَّعَرَّةٌۢ بِغَيْرِ عِلْمٍ ۖ لِّيُدْخِلَ ٱللَّهُ فِى رَحْمَتِهِۦ مَن يَشَآءُ ۚ لَوْ تَزَيَّلُوا۟ لَعَذَّبْنَا ٱلَّذِينَ كَفَرُوا۟ مِنْهُمْ عَذَابًا أَلِيمًا ﴿٢٦﴾

ଜାଣି ନାହିଁ ଏବଂ ଯେଉଁମାନଙ୍କୁ ତୁମେମାନେ ଅଜ୍ଞାତରେ ପଦଦଳିତ କରିଦେବାର ଆଶଙ୍କା ଥା'ନ୍ତା ଏବଂ ସେଥିଯୋଗୁଁ ତୁମମାନଙ୍କ ପ୍ରତି ଦୋଷାରୋପ [୧] କରାଯାଇ ଥା'ନ୍ତା (ତାହାହେଲେ ଆମେ ତୁମମାନଙ୍କୁ ଯୁଦ୍ଧ କରିବାକୁ ସୁଯୋଗ ଦେଇଥାନ୍ତୁ ; କିନ୍ତୁ ଅଲ୍ଲାହ ତାହା ବାରଣ କରିଥିଲେ) ଯଦ୍ଦ୍ୱାରା କି ଅଲ୍ଲାହ ଯାହାକୁ ପସନ୍ଦ କରିବେ ତାହାକୁ ନିଜ କରୁଣା ମଧ୍ୟରେ ପ୍ରବେଶ କରାଇବେ. ଯଦି (ଲୁକ୍କାୟିତ ଥିବା ବିଶ୍ୱାସକାରୀମାନେ) ଇତସ୍ତତଃ ହୋଇ ଯାଇଥା'ନ୍ତେ. ତାହାହେଲେ ସେ (ମକ୍କାବାସୀ) ମାନଙ୍କ ମଧ୍ୟରୁ ଯେଉଁମାନେ ଅବିଶ୍ୱାସକାରୀ ଥିଲେ ଆମେ ସେମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଦେଇଥା'ନ୍ତୁ ।

إِذْ جَعَلَ ٱلَّذِينَ كَفَرُوا۟ فِى قُلُوبِهِمُ ٱلْحَمِيَّةَ حَمِيَّةَ ٱلْجَٰهِلِيَّةِ فَأَنزَلَ ٱللَّهُ سَكِينَتَهُۥ عَلَىٰ رَسُولِهِۦ وَعَلَى ٱلْمُؤْمِنِينَ وَأَلْزَمَهُمْ كَلِمَةَ ٱلتَّقْوَىٰ وَكَانُوٓا۟ أَحَقَّ بِهَا وَأَهْلَهَا ۚ وَكَانَ ٱللَّهُ بِكُلِّ شَىْءٍ عَلِيمًا ﴿٢٧﴾ ع

୨୭. ସେହି ସମୟକୁ ସ୍ମରଣ କର ଯେତେବେଳେ ଅବିଶ୍ୱାସକାରୀମାନେ ନିଜ ହୃଦୟରେ ଏପରି ପକ୍ଷପାତମୂଳକ ଚିନ୍ତାଧାରା ପୋଷଣ କରିଥିଲେ ଯାହା ଅଜ୍ଞାନ ଅନ୍ଧକାର ସମୟର ପକ୍ଷପାତମୂଳକ ଚିନ୍ତାଧାରା ସଦୃଶ ଥିଲା ; ଏଥିଯୋଗୁଁ ଅଲ୍ଲାହ ନିଜ ରସୁଲ ଓ ବିଶ୍ୱାସକାରୀମାନଙ୍କ ଅନ୍ତରରେ ନିଜ ତରଫରୁ ଅବତୀର୍ଣ୍ଣ ହେବା ଶାନ୍ତି ପ୍ରଦାନ କଲେ, ଏବଂ ସେମାନଙ୍କୁ ଧର୍ମଭୀରୁତାର ଭିତ୍ତି ଉପରେ ସୁପ୍ରତିଷ୍ଠିତ କଲେ, ଏବଂ ସେମାନେ ହିଁ ଏଥିପାଇଁ ଅଧିକ ହକଦାର ଓ ଯୋଗ୍ୟ ଥିଲେ ; ଏବଂ ଅଲ୍ଲାହ ସକଳ ବିଷୟକୁ ଜାଣନ୍ତି ।

لَّقَدْ صَدَقَ ٱللَّهُ رَسُولَهُ ٱلرُّءْيَا بِٱلْحَقِّ ۖ لَتَدْخُلُنَّ ٱلْمَسْجِدَ ٱلْحَرَامَ إِن شَآءَ ٱللَّهُ ءَامِنِينَ مُحَلِّقِينَ رُءُوسَكُمْ وَمُقَصِّرِينَ لَا تَخَافُونَ ۖ فَعَلِمَ مَا لَمْ تَعْلَمُوا۟ فَجَعَلَ مِن دُونِ ذَٰلِكَ فَتْحًا قَرِيبًا ﴿٢٨﴾

୨୮. ଅଲ୍ଲାହ ନିଜ ରସୁଲଙ୍କ ନିକଟରେ ସେହି 'ରୋୟା'ର [୨] ବିଷୟବସ୍ତୁକୁ ସମ୍ପୂର୍ଣ୍ଣ ଭାବରେ ସତ୍ୟ ସାବ୍ୟସ୍ତ କରି ଦେଖାଇଲେ ଯେଉଁଥିରେ ଏହା ବର୍ଣ୍ଣିତ ଥିଲା ଯେ ଯଦି ଅଲ୍ଲାହ ଇଚ୍ଛା କରିବେ, ତେବେ ତୁମେମାନେ ନିଜର ମୁଣ୍ଡ ଲଣ୍ଡା କରି ବା କେଶ କର୍ତ୍ତନ କରି, କାହାରିକୁ ଭୟ ନକରି ନିରାପଦରେ ପବିତ୍ର ମସଜିଦରେ ନିଶ୍ଚୟ ପ୍ରବେଶ କରିବ ; ଅତଏବ ଅଲ୍ଲାହ ସେ ସବୁ ଜାଣି ପାରିଲେ, ଯାହା ତୁମେମାନେ ଜାଣି ନଥିଲ ; ଏବଂ ସେ, ଏତଦ୍‌ଭିନ୍ନ, ଅନ୍ୟ ଏକ ବିଜୟ [୩] ଅତି ନିକଟରେ ପ୍ରଦାନ କରିବାକୁ ନିର୍ଦ୍ଦିଷ୍ଟ କରିଛନ୍ତି ।

୧. ସେତେବେଳେ ମକ୍କାରେ ଅତି ଅଳ୍ପ ମୁସଲମାନ ରହୁଥିଲେ । ତେଣୁ ଯଦି ଯୁଦ୍ଧ ହୋଇଥାନ୍ତା ତେବେ ସେମାନେ ନିଶ୍ଚୟ ମୃତ୍ୟୁମୁଖରେ ପଡ଼ିଥାନ୍ତେ ଫଳରେ ନିଜ ସଂଘାର କ୍ଷତି କରିବା ସଙ୍ଗେ ସଙ୍ଗେ ଅପଯଶ ମଧ୍ୟ ଅର୍ଜନ କରିଥାନ୍ତେ ।

୨. ହଜରତ ମହମ୍ମଦ କା'ବା ଧର୍ମପୀଠକୁ ପ୍ରଦକ୍ଷିଣ କରୁଥିବାର 'ରୋୟା' ଅର୍ଥାତ୍ ଅଲୌକିକ ସ୍ୱପ୍ନରେ ଦେଖିଥିଲେ । ଏହି ସ୍ୱପ୍ନର ସତ୍ୟତା ପ୍ରତିପାଦନ ପାଇଁ ସେ ମକ୍କାକୁ ଯାତ୍ରା ଆରମ୍ଭ କଲେ, କିନ୍ତୁ ହୁଦବିୟାରେ ତାଙ୍କୁ ଅଟକାଇ ଦିଆଗଲା । ଶେଷରେ ଅବିଶ୍ୱାସକାରୀମାନେ ସେହି ବର୍ଷ କା'ବା ପ୍ରଦକ୍ଷିଣ ନକରିବା ପାଇଁ ତାଙ୍କୁ ଅନୁରୋଧ କରିଥିଲେ ଓ ପ୍ରତିଶ୍ରୁତି ଦେଇଥିଲେ ଯେ ସେମାନେ ଆଗାମୀ ବର୍ଷ ତାଙ୍କୁ ଆଉ ଅଟକାଇବେ ନାହିଁ ଓ ସେ ପ୍ରଦକ୍ଷିଣ କରିବାକୁ ସମର୍ଥ ହେବେ । ହଜରତ ମହମ୍ମଦ ସେମାନଙ୍କ ନିବେଦନକୁ ସ୍ୱୀକାର କରି ତାହାକୁ ଚୁକ୍ତିନାମାରେ ଲିପିବଦ୍ଧ କରାଇନେଲେ । ବସ୍ତୁତଃ ଏହି ପ୍ରତିଶ୍ରୁତି ସମ୍ବନ୍ଧରେ ଏଠାରେ ସୂଚନା ଦିଆଯାଇଛି ।

୩. ଏଠାରେ ପୁନର୍ବାର ଖୈବର ବିଜୟର ଉଲ୍ଲେଖ ଅଛି ।

هُوَ الَّذِيْٓ اَرْسَلَ رَسُوْلَهٗ بِالْهُدٰى وَدِيْنِ الْحَقِّ لِيُظْهِرَهٗ عَلَى الدِّيْنِ كُلِّهٖ ؕ وَكَفٰى بِاللّٰهِ شَهِيْدًا ﴿۲۹﴾

୨୯. ସେ (ଅଲ୍ଲାହ) ହିଁ ନିଜ ରସୁଲଙ୍କୁ ସତ୍‌ପଥ ଓ ସତ୍ୟଧର୍ମ ସହିତ ପ୍ରେରଣ କରିଛନ୍ତି ଯଦ୍ଦ୍ୱାରା ତାହାଙ୍କୁ (ଅର୍ଥାତ୍ ସତ୍ୟ ଧର୍ମକୁ) ସମସ୍ତ ଧର୍ମ ଉପରେ ପ୍ରାଧାନ୍ୟ ପ୍ରଦାନ କରିବେ ; ଏବଂ ଅଲ୍ଲାହ ହିଁ ସାକ୍ଷୀ ଭାବରେ ଯଥେଷ୍ଟ ।

مُحَمَّدٌ رَّسُوْلُ اللّٰهِ ؕ وَالَّذِيْنَ مَعَهٗٓ اَشِدَّآءُ عَلَى الْكُفَّارِ رُحَمَآءُ بَيْنَهُمْ تَرٰىهُمْ رُكَّعًا سُجَّدًا يَّبْتَغُوْنَ فَضْلًا مِّنَ اللّٰهِ وَرِضْوَانًا ؗ سِيْمَاهُمْ فِيْ وُجُوْهِهِمْ مِّنْ اَثَرِ السُّجُوْدِ ؕ ذٰلِكَ مَثَلُهُمْ فِي التَّوْرٰىةِ ۖۛ وَمَثَلُهُمْ فِي الْاِنْجِيْلِ ۚۛ كَزَرْعٍ اَخْرَجَ شَطْـَٔهٗ فَاٰزَرَهٗ فَاسْتَغْلَظَ فَاسْتَوٰى عَلٰى سُوْقِهٖ يُعْجِبُ الزُّرَّاعَ لِيَغِيْظَ بِهِمُ الْكُفَّارَ ؕ وَعَدَ اللّٰهُ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ مِنْهُمْ مَّغْفِرَةً وَّاَجْرًا عَظِيْمًا ﴿۳۰﴾

୩୦. ମହମ୍ମଦ ଅଲ୍ଲାହଙ୍କର ରସୁଲ ଅଟନ୍ତି ; ଏବଂ ଯେଉଁମାନେ ତାହାଙ୍କ ସହିତ ଅଛନ୍ତି ସେମାନେ ଅବିଶ୍ୱାସକାରୀଙ୍କ ବିପକ୍ଷରେ କଠୋର ମନୋଭାବ ପୋଷଣ କରନ୍ତି, ଅଥଚ ସେମାନେ ପରସ୍ପର ପ୍ରତି ଅତ୍ୟନ୍ତ ସ୍ନେହଶୀଳ ; ତୁମେ ସେମାନଙ୍କୁ ଅଲ୍ଲାହଙ୍କ କୃପା ଓ ସନ୍ତୋଷ ଲାଭ କରିବା ସକାଶେ ରୁକୁ ଓ ସିଜଦା କରୁଥିବାର (ଅର୍ଥାତ୍ ସିର୍କଠାରୁ ଊର୍ଦ୍ଧ୍ୱରେ ଥିବାର ଓ ଅଲ୍ଲାହଙ୍କର ଆଜ୍ଞାବହ ହୋଇଥିବାର) ଦେଖିବାକୁ ପାଇବ ; ସେମାନଙ୍କ (ପରିଚୟ) ଚିହ୍ନ ସେମାନଙ୍କ ଲଲାଟ ଉପରେ ସିଜଦାଜନିତ ଦାଗ ଆକାରରେ ରହିଥାଏ ; ଏବଂ ସେମାନଙ୍କର ଏହି ଅବସ୍ଥା ତୌରାତରେ ବର୍ଣ୍ଣିତ ହୋଇଅଛି ; ଏବଂ ଇଂଜିଲରେ [୧] ସେମାନଙ୍କ ଅବସ୍ଥା ବିଷୟରେ ଏପରି ବର୍ଣ୍ଣନା ଅଛି ଯେ ସେମାନେ ଏପରି ଏକ ଶସ୍ୟ କ୍ଷେତ୍ର [୨] ସଦୃଶ ଯାହା ପ୍ରଥମେ ଅଙ୍କୁରୋଦ୍‌ଗମ କରେ ; ତା'ପରେ ଏହାକୁ (ସ୍ୱର୍ଗୀୟ ଓ ପାର୍ଥିବ ଖାଦ୍ୟ ମାଧ୍ୟମରେ) ସବଳ କରାଏ ; ଏବଂ ସେହି ଅଙ୍କୁର ଅଧିକତର ସବଳ ହୁଏ ; ଏହାପରେ ତାହାର ମୂଳ ଉପରେ ଦୃଢଭାବରେ ଠିଆହୁଏ ଏପରିକି ତାହା ଜମିମାଲିକଙ୍କୁ ପସନ୍ଦ ଯୋଗ୍ୟ ହୋଇଥାଏ ; ଯାହା ଫଳରେ ଅବିଶ୍ୱାସକାରୀମାନେ ସେମାନଙ୍କୁ ଲକ୍ଷ୍ୟ କରି ଈର୍ଷାନ୍ୱିତ ହେବେ ; ଅଲ୍ଲାହ ବିଶ୍ୱାସକାରୀମାନଙ୍କୁ ତଥା ଯେଉଁମାନେ ବିଶ୍ୱାସ ମୁତାବକ କାର୍ଯ୍ୟ କରନ୍ତି, ସେମାନଙ୍କୁ କ୍ଷମା ଓ ମହାନ୍ ପୁରସ୍କାର ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଇଛନ୍ତି ।

---

୧. ଏଠାରେ ଖ୍ରୀଷ୍ଟିୟାନମାନଙ୍କ ସହିତ ମୁସଲମାନମାନଙ୍କର ଏପରି ଏକ ଗୋଷ୍ଠୀକୁ ତୁଳନା କରାଯାଇଛି ଯାହା ଅହମଦିୟା ସମ୍ପ୍ରଦାୟ ଭାବେ ଖ୍ୟାତ ।

୨. ଏହି ଆୟତରେ ସେହି ଭବିଷ୍ୟବାଣୀ ପ୍ରତି ସଙ୍କେତ କରାଯାଇଛି ଯାହା ବାଇବେଲରେ **(Matt. 13:3-9** ଦ୍ରଷ୍ଟବ୍ୟ) ନିମ୍ନମତେ ଉଲ୍ଲିଖିତ ହୋଇଛି– 'ଜଣେ ବୁଣାଳୀ ବୁଣିବାକୁ ବାହାରିଲା । ସେ ବୁଣୁ ବୁଣୁ କେତେକ ବିହନ ବାଟ ପାଖରେ ପଡ଼ିଲା, ପୁଣି ଚଢ଼େଇମାନେ ଆସି ସେଗୁଡ଼ିକୁ ଖାଇଗଲେ । ଆଉ କେତେକ ଅଳ୍ପ ମାଟି ଥିବା ପଥୁରିଆ ଭୂଇଁରେ ପଡ଼ିଲା ଏବଂ ବେଶୀ ମାଟି ନଥିବାରୁ ଶୀଘ୍ର ଗଜା ହେଲା, କିନ୍ତୁ ସୂର୍ଯ୍ୟ ଉଠନ୍ତେ ଜଳିପୋଡ଼ି ଗଲା ଓ ଚେର ନଥିବାରୁ ଶୁଖିଗଲା । ଆଉ କେତେକ କଣ୍ଟାଗଛ-ଗୁଡ଼ାକ ମଧ୍ୟରେ ପଡ଼ିଲା, ପୁଣି କଣ୍ଟା ଗଛଗୁଡ଼ାକ ଉଠି ବଡ଼ ହୋଇ ସେଗୁଡ଼ିକୁ ଚାପି ପକାଇଲା । ମାତ୍ର ଅନ୍ୟ କେତେକ ଭଲ ଭୂଇଁରେ ପଡ଼ିଲା ଓ ଫଳ ଫଳିଲା, କେତେକ ଶହେଗୁଣ, କେତେକ ଷାଠିଏ ଗୁଣ ପୁଣି କେତେକ ତିରିଶ ଗୁଣ ।'

ଆଲୋଚ୍ୟ ଆୟତରେ ଦର୍ଶାଯାଇଛି ଯେ ହଜରତ ମହମ୍ମଦଙ୍କ ଅନୁଗାମୀମାନଙ୍କ ମଧ୍ୟରେ ଆବିର୍ଭାବ ହେବା ମସିହଙ୍କ ସମ୍ପ୍ରଦାୟ ମଧ୍ୟ ଏହିପରି ହେବେ ଯେପରି ଉର୍ବର ଭୂମିରେ ବୁଣାଯାଇଥିବା ବିହନ । ଅଲ୍ଲାହ ତହିଁରେ ଏପରି କଲ୍ୟାଣ ପ୍ରଦାନ କରିବେ ଯେ ପ୍ରତ୍ୟେକଟିରୁ ଷାଠିଏ ଗୁଣ, ସତୁରି ଗୁଣ, ଏପରିକି ଶହ ଶହ ଗୁଣ ଶସ୍ୟ ଉତ୍ପାଦିତ ହେବ କିନ୍ତୁ ଏହା ଅତି ଶୀଘ୍ର ହେବ ନାହିଁ, ବରଂ ଧୀରେ ଧୀରେ ହେବ ।

سُوْرَةُ الْحُجُرَاتِ مَدَنِيَّةٌ (٤٩)

## ଅଲ-ହୁଜୁରାତ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ। ଏଥିରେ ବିସ୍ମିଲ୍ଲାହ ସମେତ ୧୯ଟି ଆୟତ ୨ଟି ରୁକୂ ଅଛି )

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦାକରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

يٰۤاَيُّهَا الَّذِيْنَ اٰمَنُوْا لَا تُقَدِّمُوْا بَيْنَ يَدَيِ اللّٰهِ وَرَسُوْلِهٖ وَاتَّقُوا اللّٰهَ ؕ اِنَّ اللّٰهَ سَمِيْعٌ عَلِيْمٌ ②

୨. ହେ ବିଶ୍ୱାସକାରୀମାନେ ! ତୁମେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ସମ୍ମୁଖରେ ବଢିଚଢି କଥା କୁହ ନାହିଁ, ଏବଂ ଅଲ୍ଲାହଙ୍କୁ ଭୟ କର ; ଅଲ୍ଲାହ ହିଁ ମହାନ୍ ଶ୍ରୋତା (ଓ) ସର୍ବଜ୍ଞ ।

يٰۤاَيُّهَا الَّذِيْنَ اٰمَنُوْا لَا تَرْفَعُوْۤا اَصْوَاتَكُمْ فَوْقَ صَوْتِ النَّبِيِّ وَلَا تَجْهَرُوْا لَهٗ بِالْقَوْلِ كَجَهْرِ بَعْضِكُمْ لِبَعْضٍ اَنْ تَحْبَطَ اَعْمَالُكُمْ وَاَنْتُمْ لَا تَشْعُرُوْنَ ③

୩. ହେ ବିଶ୍ୱାସକାରୀମାନେ ! ନବିଙ୍କ ସ୍ୱରଠାରୁ ନିଜର ସ୍ୱରକୁ ଉଚ୍ଚ କର ନାହିଁ; ଏବଂ ଯେପରି ତୁମେମାନେ ପରସ୍ପର ମଧ୍ୟରେ ଉଚ୍ଚ ସ୍ୱରରେ କଥାବାର୍ତ୍ତା ହେଉଅଛ, ତାହାଙ୍କ ସମ୍ମୁଖରେ ସେପରି ଉଚ୍ଚ ସ୍ୱରରେ କଥାବାର୍ତ୍ତା ହୁଅ ନାହିଁ ; ଏପରି ନ ହେଉ ଯେ (ଏହା ଫଳରେ) ତୁମମାନଙ୍କ ଅଜାଣତରେ ତୁମମାନଙ୍କ କର୍ମଗୁଡିକ ନଷ୍ଟ ହୋଇଯିବ ।

اِنَّ الَّذِيْنَ يَغُضُّوْنَ اَصْوَاتَهُمْ عِنْدَ رَسُوْلِ اللّٰهِ اُولٰٓئِكَ الَّذِيْنَ امْتَحَنَ اللّٰهُ قُلُوْبَهُمْ لِلتَّقْوٰى ؕ لَهُمْ مَّغْفِرَةٌ وَّاَجْرٌ عَظِيْمٌ ④

୪. ଯେଉଁମାନେ ନିଜ ସ୍ୱରକୁ ରସୁଲଙ୍କ ସମ୍ମୁଖରେ ନିମ୍ନ କରିଥାନ୍ତି,ଧର୍ମଭୀରୁତା ସଂକ୍ରାନ୍ତରେ ଅଲ୍ଲାହ ସେମାନଙ୍କ ହୃଦୟକୁ ପରୀକ୍ଷା କରି ସାରିଛନ୍ତି ; ଏବଂ ସେମାନଙ୍କ ସକାଶେ କ୍ଷମା ଓ ମହାନ୍ ପୁରସ୍କାର ରହିଅଛି ।

اِنَّ الَّذِيْنَ يُنَادُوْنَكَ مِنْ وَّرَآءِ الْحُجُرٰتِ اَكْثَرُهُمْ لَا يَعْقِلُوْنَ ⑤

୫. ଯେଉଁମାନେ ତୁମଙ୍କୁ (ତୁମ ନିଜ) ଘର କାନ୍ଥ ଆରପଟୁ ଡାକୁଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ନିର୍ବୋଧ ଅଟନ୍ତି ।

وَلَوْ اَنَّهُمْ صَبَرُوْا حَتّٰى تَخْرُجَ اِلَيْهِمْ لَكَانَ خَيْرًا لَّهُمْ ؕ وَاللّٰهُ غَفُوْرٌ رَّحِيْمٌ ⑥

୬. ଯଦି ତୁମେ ସେମାନଙ୍କ ନିକଟକୁ (ଗୃହରୁ ବାହାରକୁ) ଆସିବା ପର୍ଯ୍ୟନ୍ତ ସେମାନେ ପ୍ରତୀକ୍ଷା କରନ୍ତେ, ତେବେ ଏହା ସେମାନଙ୍କ ସକାଶେ ଉତ୍ତମ ହୁଅନ୍ତା ; ଏବଂ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

୭. ହେ ବିଶ୍ୱାସକାରୀମାନେ ! ଯଦି ତୁମମାନଙ୍କ ନିକଟକୁ କୌଣସି ଭ୍ରଷ୍ଟାଗ୍ରରୀ କୌଣସି ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ଘେନି ଆସେ, ତେବେ (ତୁମେମାନେ) ତାହାର (ସତ୍ୟାସତ୍ୟ) ପୁଙ୍ଖାନୁପୁଙ୍ଖ ପରୀକ୍ଷା କର ; ଏପରି ନ ହେଉ ଯେ ତୁମେମାନେ ଅଜ୍ଞାତରେ କୌଣସି ସମ୍ପ୍ରଦାୟ ଉପରେ ଆକ୍ରମଣ କରିଦିଅ, ଓ ନିଜର କର୍ମ ପାଇଁ ପରେ ଲଜ୍ଜିତ ହୁଅ ।

يَاَيُّهَا الَّذِيْنَ اٰمَنُوْٓا اِنْ جَآءَكُمْ فَاسِقٌۢ بِنَبَاٍ فَتَبَيَّنُوْٓا اَنْ تُصِيْبُوْا قَوْمًاۢ بِجَهَالَةٍ فَتُصْبِحُوْا عَلٰى مَا فَعَلْتُمْ نٰدِمِيْنَ ⑦

୮. ଏବଂ ଜାଣିରଖ ଯେ (ବର୍ତ୍ତମାନ) ତୁମମାନଙ୍କ ମଧ୍ୟରେ ଅଲ୍ଲାହଙ୍କର ରସୁଲ ଉପସ୍ଥିତ ଅଛନ୍ତି ; ଯଦି ଅଧିକାଂଶ କାର୍ଯ୍ୟରେ ସେ ତୁମମାନଙ୍କ କଥା ମାନିଯାʼନ୍ତି, ତେବେ ତୁମେମାନେ କଷ୍ଟରେ ପଡ଼ିଯିବ, କିନ୍ତୁ ଅଲ୍ଲାହ ତୁମମାନଙ୍କ ଦୃଷ୍ଟିରେ ଧର୍ମବିଶ୍ୱାସକୁ ପ୍ରିୟ କରାଇଛନ୍ତି, ଏବଂ ତୁମମାନଙ୍କ ହୃଦୟରେ ତାହାକୁ ଶୋଭନୀୟ କରି ଦେଖାଇଛନ୍ତି ; ଏବଂ ତୁମମାନଙ୍କ ଦୃଷ୍ଟିରେ ଅବିଶ୍ୱାସ, ଭ୍ରଷ୍ଟାଗ୍ରର ଓ ଅମାନ୍ୟତାକୁ ଅପ୍ରିୟ କରି ଦେଖାଇଛନ୍ତି ; (ଯେଉଁମାନଙ୍କ ପ୍ରତି ଏହି ଆୟତ ପ୍ରଯୋଜ୍ୟ) ସେମାନେ ହିଁ ସତ୍ ପଥଗାମୀ ଅଟନ୍ତି ।

وَاعْلَمُوْٓا اَنَّ فِيْكُمْ رَسُوْلَ اللّٰهِ لَوْ يُطِيْعُكُمْ فِيْ كَثِيْرٍ مِّنَ الْاَمْرِ لَعَنِتُّمْ وَلٰكِنَّ اللّٰهَ حَبَّبَ اِلَيْكُمُ الْاِيْمَانَ وَزَيَّنَهٗ فِيْ قُلُوْبِكُمْ وَكَرَّهَ اِلَيْكُمُ الْكُفْرَ وَالْفُسُوْقَ وَالْعِصْيَانَ اُولٰٓئِكَ هُمُ الرّٰشِدُوْنَ ⑧

୯. (ଏହା କେବଳ) ଅଲ୍ଲାହଙ୍କର କୃପା ଓ ଆଶୀର୍ବାଦରୁ ହିଁ (ସମ୍ଭବ) ହୋଇଛି ; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

فَضْلًا مِّنَ اللّٰهِ وَنِعْمَةً وَاللّٰهُ عَلِيْمٌ حَكِيْمٌ ⑨

୧୦. ଏବଂ ଯଦି ବିଶ୍ୱାସକାରୀମାନଙ୍କ ମଧ୍ୟରୁ ଦୁଇ ଗୋଟି ଗୋଷ୍ଠୀ [1] ପରସ୍ପର ମଧ୍ୟରେ [2] କଳହ କରନ୍ତି, ତେବେ ସେ ଉଭୟଙ୍କ ମଧ୍ୟରେ ଶାନ୍ତି ସ୍ଥାପନ କରାଇ ଦିଅ ; ଏବଂ ଶାନ୍ତି ସ୍ଥାପନ ପରେ ଯଦି ସେମାନଙ୍କ ମଧ୍ୟରୁ କେହି ଅନ୍ୟ ଉପରେ ଆକ୍ରମଣ କରେ, ତେବେ ସମସ୍ତେ ଏକତ୍ରିତ ହୋଇ

وَاِنْ طَآئِفَتٰنِ مِنَ الْمُؤْمِنِيْنَ اقْتَتَلُوْا فَاَصْلِحُوْا بَيْنَهُمَا فَاِنْۢ بَغَتْ اِحْدٰىهُمَا عَلَى الْاُخْرٰى فَقَاتِلُوْا

୧. ଏହି ଆୟତରେ ସଂଯୁକ୍ତ ରାଷ୍ଟ୍ର ସଂଘ **(UNO)**ର ଏକ ଚିତ୍ର ଦିଆଯାଇଛି । ଦୁଃଖର ବିଷୟ ଜାତିସଂଘ **(league of Nations)** ଏହି ସିଦ୍ଧାନ୍ତକୁ ପୂରାପୂରି କାର୍ଯ୍ୟକାରୀ କରାଇ ନପାରିବାରୁ ତାହା ଅକାମୀ ହୋଇ ଯାଇଥିଲା । ସଂଯୁକ୍ତ ରାଷ୍ଟ୍ର ସଂଘ ମଧ୍ୟ ଭୀରୁତା ପ୍ରଦର୍ଶନ କରୁଛି । ତାʼର ବିଫଳତାର ଲକ୍ଷଣମାନ ଦୃଷ୍ଟିଗୋଚର ହେଲାଣି । ଯେପର୍ଯ୍ୟନ୍ତ ଏହି ଆୟତରେ ସୂଚିତ ବ୍ୟବସ୍ଥାଗୁଡ଼ିକ କାର୍ଯ୍ୟକାରୀ ହେବ ନାହିଁ ସେ ପର୍ଯ୍ୟନ୍ତ ସଂଯୁକ୍ତ ରାଷ୍ଟ୍ରସଂଘ କୃତକାର୍ଯ୍ୟ ହୋଇପାରିବ ନାହିଁ । ବସ୍ତୁତଃ ଆନ୍ତର୍ଜାତୀୟ ଶାନ୍ତି ରକ୍ଷିବା ପାଇଁ ଏହି ଆୟତରେ ଏକ ବଳିଷ୍ଠ ନୀତି ନିର୍ଦ୍ଦିଷ୍ଟ କରାଯାଇଛି ।

୨. 'ମୁମିନିନ' ଶବ୍ଦର ଭୁଲ ଅର୍ଥ କରି କେହି ବିଭ୍ରାନ୍ତ ହେବା ଉଚିତ ହେବ ନାହିଁ । ଏଠାରେ ମୁମିନିନ ଶବ୍ଦ ଏଥିଯୋଗୁଁ ପ୍ରୟୋଗ କରାଯାଇଛି ଯେ ମୁସଲମାନ ସମ୍ପ୍ରଦାୟ ମୁସଲମାନମାନଙ୍କ ମଧ୍ୟରେ ମୀମାଂସା କରିପାରିବ, ଅନ୍ୟଥା ନୀତି ଦୃଷ୍ଟିରୁ ସବୁ ସମ୍ପ୍ରଦାୟକୁ ପଥ ପ୍ରଦର୍ଶନ କରାଇବାର ସାମର୍ଥ୍ୟ ଏହି ଆୟତରେ ବର୍ଣ୍ଣନା କରାଯାଇଛି ।

الَّتِي تَبْغِي حَتَّىٰ تَفِيءَ إِلَىٰ أَمْرِ اللَّهِ ۚ فَإِن فَاءَتْ فَأَصْلِحُوا بَيْنَهُمَا بِالْعَدْلِ وَأَقْسِطُوا ۖ إِنَّ اللَّهَ يُحِبُّ الْمُقْسِطِينَ ﴿١٠﴾

ଆକ୍ରମଣକାରୀ ବିରୁଦ୍ଧରେ ଯୁଦ୍ଧ କର ଯେପରିକି ସେ ଅଲ୍ଲାହ୍‌ଙ୍କ ଆଦେଶ ପ୍ରତି ଫେରି ଆସିବ ; ଏହାପରେ ଯଦି ସେ ଅଲ୍ଲାହ୍‌ଙ୍କ ଆଦେଶ ପ୍ରତି ଫେରିଆସେ, ତେବେ ସେ (କଳହକାରୀ) ମାନଙ୍କ ମଧ୍ୟରେ ନ୍ୟାୟପୂର୍ବକ [୧] ଶାନ୍ତି ସ୍ଥାପନ କର, ଏବଂ ନ୍ୟାୟ ବିଚାରକୁ [୨] ପ୍ରାଧାନ୍ୟ ଦିଅ ; (କାରଣ) ଅଲ୍ଲାହ୍ ନ୍ୟାୟ ବିଚାରକାରୀଙ୍କୁ ପସନ୍ଦ କରିଥାନ୍ତି ।

إِنَّمَا الْمُؤْمِنُونَ إِخْوَةٌ فَأَصْلِحُوا بَيْنَ أَخَوَيْكُمْ ۚ وَاتَّقُوا اللَّهَ لَعَلَّكُمْ تُرْحَمُونَ ﴿١١﴾

୧୧. ବିଶ୍ୱାସକାରୀମାନଙ୍କର [୩] ପରସ୍ପର ମଧ୍ୟରେ ସମ୍ପର୍କ ଭ୍ରାତୃତୁଲ୍ୟ ; ସୁତରାଂ ତୁମେମାନେ କଳହରତ ଦୁଇ ଭାଇଙ୍କ ମଧ୍ୟରେ ଶାନ୍ତି ସ୍ଥାପନ କରାଅ ; ଏବଂ ଅଲ୍ଲାହ୍‌ଙ୍କୁ ଭୟ କର ତାହା ହେଲେ ତୁମମାନଙ୍କ ପ୍ରତି କରୁଣା କରାହେବ ।

ରୁ : ୨

يَا أَيُّهَا الَّذِينَ آمَنُوا لَا يَسْخَرْ قَوْمٌ مِّن قَوْمٍ عَسَىٰ أَن يَكُونُوا خَيْرًا مِّنْهُمْ وَلَا نِسَاءٌ مِّن نِّسَاءٍ عَسَىٰ أَن يَكُنَّ خَيْرًا مِّنْهُنَّ ۖ وَلَا تَلْمِزُوا أَنفُسَكُمْ وَلَا تَنَابَزُوا بِالْأَلْقَابِ ۖ بِئْسَ الِاسْمُ الْفُسُوقُ بَعْدَ الْإِيمَانِ ۚ وَمَن لَّمْ يَتُبْ فَأُولَٰئِكَ هُمُ الظَّالِمُونَ ﴿١٢﴾

୧୨. ହେ ବିଶ୍ୱାସକାରୀମାନେ ! କୌଣସି ସଂପ୍ରଦାୟ ଅନ୍ୟ ସମ୍ପ୍ରଦାୟକୁ ହେୟ ମନେ କରି ଥଟ୍ଟା ପରିହାସ ନ କରୁ ; ସମ୍ଭବତଃ ସେମାନେ ଏମାନଙ୍କ ଅପେକ୍ଷା ଉତ୍କୃଷ୍ଟ ହୋଇପାରନ୍ତି ; ଏବଂ (କୌଣସି ସମ୍ପ୍ରଦାୟର) ନାରୀମାନେ ଅନ୍ୟ (ସମ୍ପ୍ରଦାୟର) ନାରୀମାନଙ୍କୁ ହେୟ ମନେ କରି ଥଟ୍ଟା ପରିହାସ ନ କରନ୍ତୁ ; ସମ୍ଭବତଃ ସେ (ଶେଷୋକ୍ତ ସମ୍ପ୍ରଦାୟର ବା ଅବସ୍ଥାର) ନାରୀମାନେ ଏମାନଙ୍କ ଅପେକ୍ଷା ଉତ୍କୃଷ୍ଟ ହୋଇଥାଇ ପାରନ୍ତି ; ଏବଂ ତୁମେମାନେ ପରସ୍ପର ପ୍ରତି କଟୁ ମନ୍ତବ୍ୟ ଦିଅ ନାହିଁ କି ଜଣେ ଅନ୍ୟକୁ ବିଦ୍ରୂପାତ୍ମକ ନାମରେ ଡାକ ନାହିଁ, କାରଣ ବିଶ୍ୱାସ କଲାପରେ (ବିଦ୍ରୂପାତ୍ମକ ନାମରେ ଡାକି) ଆଜ୍ଞାପାଳନରୁ ଦୂରେଇ ଯିବା ଫଳରେ ତାହା ନିଜକୁ ଅତ୍ୟନ୍ତ ଦୁର୍ନାମଗ୍ରସ୍ତ କରାଇଥାଏ (ଅର୍ଥାତ୍ ସେ ନିଜେ ଭ୍ରଷ୍ଟାଚାରୀ ହୋଇଯାଏ) ; ଏବଂ ଯେ ଅନୁତାପ କରିବ ନାହିଁ, ସେ ହିଁ ଅତ୍ୟାଚାରୀ ହେବ ।

---

୧. ଅର୍ଥାତ୍ ମୀମାଂସା କରିବା ବେଳେ ନିଜ ହିତକୁ ସମ୍ମୁଖରେ ରଖ ନାହିଁ ବରଂ ଅସଲ ସମସ୍ୟାର ସମାଧାନ କର ।

୨. ଏହାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ଯେ ଯୁଦ୍ଧରତ ଦୁଇପକ୍ଷ ମଧ୍ୟରେ ମୀମାଂସା କରାଇବା ବେଳେ ନିଜର କୌଣସି ଲାଭ ଉଠାଇବାକୁ ଚେଷ୍ଟା କରନାହିଁ ।

୩. ଯେବେ ବା କୌଣସି ମତଭେଦ ଦେଖାଦିଏ ତେବେ ମନେ ରଖିବାକୁ ହେବ ଯେ ସେମାନଙ୍କର ପାରସ୍ପରିକ ମୁଖ୍ୟ ସମ୍ବନ୍ଧ ହେଉଛି ଭ୍ରାତୃଭାବ । ଛୋଟ ଛୋଟ କଳିତକରାଳ ଇସଲାମୀୟ ଭ୍ରାତୃଭାବକୁ ଛିନ୍ନ କରିବାର କାରଣ ନହେବା ଉଚିତ ।

يَاَيُّهَا الَّذِيْنَ اٰمَنُوا اجْتَنِبُوْا كَثِيْرًا مِّنَ الظَّنِّ ۚ اِنَّ بَعْضَ الظَّنِّ اِثْمٌ وَّلَا تَجَسَّسُوْا وَلَا يَغْتَبْ بَّعْضُكُمْ بَعْضًا ۗ اَيُحِبُّ اَحَدُكُمْ اَنْ يَّاْكُلَ لَحْمَ اَخِيْهِ مَيْتًا فَكَرِهْتُمُوْهُ ۗ وَاتَّقُوا اللّٰهَ ۗ اِنَّ اللّٰهَ تَوَّابٌ رَّحِيْمٌ ﴿۱۲﴾

୧୩. ହେ ବିଶ୍ୱାସକାରୀମାନେ ! ଅନେକଗୁଡିଏ ସନ୍ଦେହରୁ ନିଜକୁ ଦୂରେଇ ରଖ, କାରଣ କେତେକ ସନ୍ଦେହ ପାପରେ ପରିଣତ ହୋଇଯାଏ ; ଏବଂ ଗୋପନରେ (ଅନ୍ୟର) ଦୋଷ ଅନ୍ୱେଷଣ କର ନାହିଁ ; ତୁମେମାନେ ପରସ୍ପରର ଚୁଗୁଲି କର ନାହିଁ ; କ'ଣ ତୁମମାନଙ୍କ ମଧ୍ୟରୁ କେହି ନିଜର ମୃତ ଭାଇର ମାଂସ ଖାଇବାକୁ ପସନ୍ଦ କରିବ ? (ଯେଦି ତୁମମାନଙ୍କୁ ଏହା କରିବାକୁ କୁହାଯାଏ ତେବେ,) ତୁମେମାନେ ଏହାକୁ ଅପସନ୍ଦ କରିବ ; [୧] ଏବଂ ଅଲ୍ଲାହଙ୍କୁ ଭୟ କର ; ଅଲ୍ଲାହ ହିଁ ଶ୍ରେଷ୍ଠ ଅନୁତାପ ଗ୍ରହୀତା (ଓ) ସଦା କରୁଣାମୟ ।

يَاَيُّهَا النَّاسُ اِنَّا خَلَقْنٰكُمْ مِّنْ ذَكَرٍ وَّاُنْثٰى وَجَعَلْنٰكُمْ شُعُوْبًا وَّقَبَآئِلَ لِتَعَارَفُوْا ۚ اِنَّ اَكْرَمَكُمْ عِنْدَ اللّٰهِ اَتْقٰكُمْ ۚ اِنَّ اللّٰهَ عَلِيْمٌ خَبِيْرٌ ﴿۱۳﴾

୧୪. ହେ ଲୋକମାନେ ! ଆମେ ତୁମମାନଙ୍କୁ ପୁରୁଷ ଓ ନାରୀଙ୍କଠାରୁ ସୃଷ୍ଟି କରିଅଛୁ ; ଏବଂ ତୁମମାନଙ୍କୁ ଅନେକ ଜାତି ଓ ବଂଶରେ ବିଭକ୍ତ [୨] କରିଅଛୁ ଯେପରିକି ତୁମେମାନେ ପରସ୍ପରକୁ ଚିହ୍ନି ପାରିବ ; ତୁମମାନଙ୍କ ମଧ୍ୟରୁ ଯେ ସବୁଠାରୁ ଅଧିକ ଧର୍ମଭୀରୁ, ସେ ଅଲ୍ଲାହଙ୍କ ନିକଟରେ ସମସ୍ତଙ୍କ ଅପେକ୍ଷା ଅଧିକ ସମ୍ମାନିତ ; ଅଲ୍ଲାହ ନିଶ୍ଚିତ ରୂପେ ସର୍ବଜ୍ଞ (ଓ)ସର୍ବଜ୍ଞାତା ।

قَالَتِ الْاَعْرَابُ اٰمَنَّا ۗ قُلْ لَّمْ تُؤْمِنُوْا وَلٰكِنْ قُوْلُوْٓا اَسْلَمْنَا وَلَمَّا يَدْخُلِ الْاِيْمَانُ فِيْ قُلُوْبِكُمْ

୧୫. ଆରବର ପଲ୍ଲୀବାସୀମାନେ କହନ୍ତି, "ଆମେମାନେ ବିଶ୍ୱାସ କରିଅଛୁ ;" ତୁମେ ସେମାନଙ୍କୁ କୁହ, "ତୁମେମାନେ ପ୍ରକୃତରେ ବିଶ୍ୱାସ କରି ନାହିଁ, ବରଂ ତୁମେମାନେ ଏପରି କୁହ ଯେ ଆମେମାନେ ପ୍ରକାଶ୍ୟ ଭାବରେ ଆନୁଗତ୍ୟ ସ୍ୱୀକାର କରିଅଛୁ, କାରଣ ବର୍ତ୍ତମାନ ସୁଦ୍ଧା ତୁମମାନଙ୍କ ଅନ୍ତର ମଧ୍ୟରେ

---

୧. ଯଦି ଜାଣୁଛ ଯେ ଚୁଗୁଲି କରିବା ଏକ ଗର୍ହିତ କାର୍ଯ୍ୟ ତେବେ କାହିଁକି ଚୁଗୁଲି କରୁଛ ?

୨. ଜାତି ଓ ବଂଶ କେବଳ ପରିଚୟ ପ୍ରଦାନ ପାଇଁ ଆବଶ୍ୟକ । ଯେଉଁ ବ୍ୟକ୍ତି ସେଥିପାଇଁ ଗର୍ବ କରେ ବା ତାହାକୁ ସ୍ୱାଭିମାନର ଏକ ମାଧ୍ୟମ ମନେକରେ, ସେ ଇସଲାମ ବିରୋଧୀ କାର୍ଯ୍ୟ କରୁଛି ।

ଅଲ୍ଲାହଙ୍କ ଦୃଷ୍ଟିରେ ସବୁଲୋକ ସମାନ । ତା'ର ମୂଲ୍ୟ ତା ଚମଡ଼ାର ରଙ୍ଗରୁ ନିରୂପଣ କରାଯାଏ ନାହିଁ କି ତା ଧନରୁ, ଅଥବା ତା ପଦ ମର୍ଯ୍ୟାଦାରୁ ବା ତା ଖାନ୍‌ଦାନିରୁ । ବରଂ ତା'ର ନୈତିକତା ଓ ସେ କିପରି ସୃଷ୍ଟିକର୍ତ୍ତାଙ୍କ ପ୍ରତି ତଥା ସେ ଯାହା ସୃଷ୍ଟି କରିଛନ୍ତି ସେଗୁଡ଼ିକ ପ୍ରତି କର୍ତ୍ତବ୍ୟ ସମ୍ପାଦନ କରୁଛି, ସେଥିରୁ ତା'ର ମୂଲ୍ୟ ନିରୂପିତ ହୁଏ । ସମସ୍ତ ମାନବ ସମାଜ ଗୋଟିଏ ପରିବାର । ଅନ୍ତିମ ହଜ ଯାତ୍ରା ଅବସରରେ ହଜରତ ମହମ୍ମଦ ସେଠାରେ ଉପସ୍ଥିତ ଲୋକମାନଙ୍କୁ ଯାହା କହିଥିଲେ ତାହା ପ୍ରଣିଧାନଯୋଗ୍ୟ । ସେ କହିଥିଲେ, "ହେ ଲୋକମାନେ ! ତୁମମାନଙ୍କର ସୃଷ୍ଟିକର୍ତ୍ତା ଏକ, ତୁମମାନଙ୍କର ପୂର୍ବପୁରୁଷ ଏକ; ଆରବର ଲୋକ ଆରବ ବାହାରର ଲୋକଠାରୁ ଉତ୍କୃଷ୍ଟ ନୁହେଁ କି ଗୋରା କଳାଠାରୁ ବା କଳା ଗୋରାଠାରୁ ଉତ୍କୃଷ୍ଟ ନୁହେଁ; ଯେଉଁ ବ୍ୟକ୍ତି ଅଲ୍ଲାହଙ୍କ ଦୃଷ୍ଟିରେ ଅଧିକ ଧର୍ମଭୀରୁ ସେହି ବ୍ୟକ୍ତି ପ୍ରକୃତରେ ଉତ୍କୃଷ୍ଟ ।"

وَاِنْ تُطِيْعُوا اللّٰهَ وَرَسُوْلَهٗ لَا يَلِتْكُمْ مِّنْ اَعْمَالِكُمْ شَيْـًٔا ۭ اِنَّ اللّٰهَ غَفُوْرٌ رَّحِيْمٌ ⑮

ବିଶ୍ୱାସ ପ୍ରକୃତରୂପେ ପ୍ରବେଶ କରିନାହିଁ." ଏବଂ ହେ ବିଶ୍ୱାସକାରୀମାନେ ! ଯଦି ତୁମେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ପ୍ରକୃତରେ ଆଜ୍ଞାପାଳନ କରିବ, ତେବେ ସେ ତୁମମାନଙ୍କର କର୍ମ ମଧ୍ୟରୁ କୌଣସି କର୍ମକୁ ନଷ୍ଟ ହେବାକୁ (ପ୍ରଶ୍ରୟ) ଦେବେ ନାହିଁ ; ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦାକରୁଣାମୟ ।

اِنَّمَا الْمُؤْمِنُوْنَ الَّذِيْنَ اٰمَنُوْا بِاللّٰهِ وَرَسُوْلِهٖ ثُمَّ لَمْ يَرْتَابُوْا وَجٰهَدُوْا بِاَمْوَالِهِمْ وَاَنْفُسِهِمْ فِيْ سَبِيْلِ اللّٰهِ ۭ اُولٰۗىِٕكَ هُمُ الصّٰدِقُوْنَ ⑯

୧୬. ସେହିମାନେ ହିଁ ବିଶ୍ୱାସକାରୀ ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କରନ୍ତି ; ଏବଂ ଏହାପରେ (କୌଣସି ପ୍ରକାରେ) ସନ୍ଦେହରେ ପଡନ୍ତି ନାହିଁ ; ଏବଂ ନିଜର ଧନ ଓ ଜୀବନ ଦେଇ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ସଂଗ୍ରାମ କରନ୍ତି ; ଏମାନେ ହିଁ ସତ୍ୟବାଦୀ ।

قُلْ اَتُعَلِّمُوْنَ اللّٰهَ بِدِيْنِكُمْ ۭ وَاللّٰهُ يَعْلَمُ مَا فِي السَّمٰوٰتِ وَمَا فِي الْاَرْضِ ۭ وَاللّٰهُ بِكُلِّ شَيْءٍ عَلِيْمٌ ⑰

୧୭. ତୁମେ କୁହ, "କ'ଣ ତୁମେମାନେ ଅଲ୍ଲାହଙ୍କୁ ନିଜ ଧର୍ମ ସଂକ୍ରାନ୍ତରେ ଅବଗତ କରାଉଛ ? ଏବଂ ଯାହାକିଛି ଆକାଶରେ ଅଛି ଓ ଯାହାକିଛି ପୃଥିବୀରେ ଅଛି ଅଲ୍ଲାହ ସେ ସବୁକୁ ଜାଣନ୍ତି, ଏବଂ (ଏହାଛଡ଼ା) ଅଲ୍ଲାହ ସକଳ ବିଷୟକୁ ଜାଣନ୍ତି ।"

يَمُنُّوْنَ عَلَيْكَ اَنْ اَسْلَمُوْا ۭ قُلْ لَّا تَمُنُّوْا عَلَيَّ اِسْلَامَكُمْ ۚ بَلِ اللّٰهُ يَمُنُّ عَلَيْكُمْ اَنْ هَدٰىكُمْ لِلْاِيْمَانِ اِنْ كُنْتُمْ صٰدِقِيْنَ ⑱

୧୮. ଏ (ଆରବବାସୀ) ମାନେ ଇସଲାମ (ଧର୍ମ) ଗ୍ରହଣ କରି ତୁମ ପ୍ରତି ଅନୁଗ୍ରହ କରିଥିବାର ଧାରଣା ପୋଷଣ କରୁଛନ୍ତି ; ତୁମେ କୁହ, "ତୁମେମାନେ ଇସଲାମ (ଧର୍ମ) ଗ୍ରହଣ କରି ଆମପ୍ରତି ଅନୁଗ୍ରହ କରିଥିବାର ଧାରଣା କର ନାହିଁ ; ବାସ୍ତବରେ ଅଲ୍ଲାହ ତୁମମାନଙ୍କୁ ବିଶ୍ୱାସ ଆଡକୁ ପଥ ପ୍ରଦର୍ଶନ କରି ତୁମମାନଙ୍କ ପ୍ରତି ଅନୁଗ୍ରହ କରିଛନ୍ତି, ଯଦି ତୁମେମାନେ (ଏହି ଦାବି ସମ୍ବନ୍ଧରେ) ସତ୍ୟବାଦୀ ହୋଇଥାଅ (ଯେ ତୁମେମାନେ ବିଶ୍ୱାସ କରିଅଛ, ତେବେ ଏହି ସତ୍ୟକୁ ସ୍ୱୀକାର କର) ।"

اِنَّ اللّٰهَ يَعْلَمُ غَيْبَ السَّمٰوٰتِ وَالْاَرْضِ ۭ وَاللّٰهُ بَصِيْرٌۢ بِمَا تَعْمَلُوْنَ ⑲

୧୯. ଅଲ୍ଲାହ ଆକାଶ ଓ ପୃଥିବୀର ଗୁପ୍ତ ବିଷୟକୁ ଜାଣନ୍ତି ; ଏବଂ ଅଲ୍ଲାହ ତୁମମାନଙ୍କ କର୍ମକୁ ଭଲ ଭାବରେ ଲକ୍ଷ୍ୟ କରନ୍ତି ।

سُورَةُ قٓ مَكِّيَّةٌ (٥٠)

# କାଫ

(ଏହି ସୂରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୪୬ଟି ଆୟତ ଓ ୩ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

قٓ ۚ وَالْقُرْاٰنِ الْمَجِيْدِ ②

୨. କାଫ [୧] (ଅର୍ଥାତ୍ ସର୍ବଶକ୍ତିମାନ୍ ଅଲ୍ଲାହ ଏହି ଅଧ୍ୟାୟକୁ ଅବତୀର୍ଣ୍ଣ କରିଛନ୍ତି) ; ଆମେ ଏହି ଗୌରବମୟ କୋରାନକୁ (ଏହି ଅଧ୍ୟାୟର ସତ୍ୟତାର) ପ୍ରମାଣ ସ୍ୱରୂପ ଉପସ୍ଥାପନ କରୁଅଛୁ ।

بَلْ عَجِبُوْٓا اَنْ جَآءَهُمْ مُّنْذِرٌ مِّنْهُمْ فَقَالَ الْكٰفِرُوْنَ هٰذَا شَيْءٌ عَجِيْبٌ ③

୩. ସେମାନେ ଆଶ୍ଚର୍ଯ୍ୟ ହେଉଛନ୍ତି ଯେ, ସେମାନଙ୍କ ନିକଟକୁ ସେମାନଙ୍କ ମଧ୍ୟରୁ ହି ଜଣେ ଭୟ ପ୍ରଦର୍ଶନକାରୀ (ଓ ସଚେତନକାରୀ) ଆସିଛନ୍ତି ; ଏବଂ ଅବିଶ୍ୱାସକାରୀମାନେ କହନ୍ତି, "ଏହା ଏକ ଆଶ୍ଚର୍ଯ୍ୟଜନକ ବିଷୟ ।"

ءَاِذَا مِتْنَا وَكُنَّا تُرَابًا ۚ ذٰلِكَ رَجْعٌ ۢ بَعِيْدٌ ④

୪. "ଯେତେବେଳେ ଆମେମାନେ ମରିଯିବୁ ଓ ମାଟିରେ ପରିଣତ ହେବୁ କ'ଣ ଏହାପରେ ପୁନର୍ବାର ଜୀବିତ ହେବୁ ? ଏପରି ପ୍ରତ୍ୟାବର୍ତ୍ତନ (ବୋଧ ଶକ୍ତିର) ବହୁ ଦୂରରେ ।"

قَدْ عَلِمْنَا مَا تَنْقُصُ الْاَرْضُ مِنْهُمْ ۚ وَعِنْدَنَا كِتٰبٌ حَفِيْظٌ ⑤

୫. ମାଟି ସେମାନଙ୍କୁ (ଅର୍ଥାତ୍ ସେମାନଙ୍କ ଶରୀରକୁ) କେତେ ହ୍ରାସ କରେ (ଓ ସେମାନଙ୍କ ଶରୀରରେ କେତେ ବୃଦ୍ଧି ଘଟାଏ) [୨] ତାହା ଆମକୁ ଭଲ ଭାବରେ ଜଣାଅଛି ; ଏବଂ ଆମ ନିକଟରେ ଏପରି ପୁସ୍ତକ ରହିଅଛି ଯାହା ପ୍ରତ୍ୟେକ ବିଷୟକୁ ସୁରକ୍ଷିତ ରଖେ ।

بَلْ كَذَّبُوْا بِالْحَقِّ لَمَّا جَآءَهُمْ فَهُمْ فِيْٓ اَمْرٍ مَّرِيْجٍ ⑥

୬. ପ୍ରକୃତ କଥା ହେଉଛି ଯେ, ଯେତେବେଳେ ସେମାନଙ୍କ ନିକଟରେ ସତ୍ୟ ଉପସ୍ଥିତ ହେଲା, ସେତେବେଳେ ସେମାନେ ତାହାକୁ ପ୍ରତ୍ୟାଖ୍ୟାନ କରିଦେଲେ ; ସୁତରାଂ ସେମାନେ ଏକ ମିଶ୍ର ଧାରଣାର ବଶବର୍ତ୍ତୀ ହୋଇଛନ୍ତି ; (ଅର୍ଥାତ୍ ସେମାନଙ୍କ ଚିନ୍ତାଧାରାରେ ସତ୍ୟ ଓ ଅସତ୍ୟର ମିଶ୍ରଣ ହୋଇଯାଇଛି ।)

---

୧. 'କାଫ' କାଦିର (ସର୍ବ ଶକ୍ତିମାନ୍ ଅଲ୍ଲାହ) ଶବ୍ଦର ସଂକ୍ଷେପାକ୍ଷର ।

୨. ଆରବୀ ଭାଷା–ବିଜ୍ଞାନ ଅନୁସାରେ ବେଳେ ବେଳେ ଆବଶ୍ୟକ ସ୍ଥଳେ ଗୋଟିଏ ଶବ୍ଦର ବିପରୀତ ଅର୍ଥବୋଧକ ଶବ୍ଦ ସ୍ୱତଃ ବୁଝାପଡ଼େ । ସେଥିଯୋଗୁ ଅନୁବାଦରେ 'ହ୍ରାସ କରେ' ସହିତ ବନ୍ଧନୀ ମଧ୍ୟରେ 'ବୃଦ୍ଧିଘଟାଏ' ମଧ୍ୟ ନିଆଯାଇଛି । ଏଠାରେ 'ହ୍ରାସ କରେ' ଅର୍ଥ ମୃତ୍ୟୁପରେ ଶରୀରକୁ ମାଟି ଖାଇଯାଏ ଏବଂ 'ବୃଦ୍ଧି ଘଟାଏ' ଅର୍ଥ ଭୂମିର ଖାଦ୍ୟ ଆହରଣ କରି ଶରୀରର ବୃଦ୍ଧି ଘଟାଏ ।

୭. ସେମାନଙ୍କ ଉପରେ ଥିବା ଆକାଶକୁ ଆମେ କିପରି ନିର୍ମାଣ କରିଅଛୁ କ'ଣ ସେମାନେ ତାହାକୁ ଲକ୍ଷ୍ୟ କରିନାହାନ୍ତି ? ଏବଂ ତାହାକୁ ସୁଶୋଭିତ କରିଅଛୁ, ଓ ତହିଁରେ କୌଣସି ତ୍ରୁଟି ନାହିଁ ।

أَفَلَمْ يَنظُرُوٓا إِلَى ٱلسَّمَآءِ فَوْقَهُمْ كَيْفَ بَنَيْنَٰهَا وَزَيَّنَّٰهَا وَمَا لَهَا مِن فُرُوجٍ ﴿٧﴾

୮. ଏବଂ ଆମେ ଭୂପୃଷ୍ଠକୁ ବିସ୍ତାରିତ କରିଅଛୁ, ଏବଂ ତହିଁରେ ପ୍ରତ୍ୟେକ ପ୍ରକାର ସୁନ୍ଦର ସୁନ୍ଦର ଯୋଡା ସୃଷ୍ଟି କରିଅଛୁ ।

وَٱلْأَرْضَ مَدَدْنَٰهَا وَأَلْقَيْنَا فِيهَا رَوَٰسِىَ وَأَنۢبَتْنَا فِيهَا مِن كُلِّ زَوْجٍۭ بَهِيجٍ ﴿٨﴾

୯. ଆମ ପ୍ରତି ଆନୁଗତ୍ୟ ପ୍ରକାଶ କରୁଥିବା ପ୍ରତ୍ୟେକ ଭକ୍ତଙ୍କ ପାଇଁ ଏଥିରେ ଦିବ୍ୟଜ୍ଞାନ ଓ ଉପଦେଶ ରହିଅଛି ।

تَبْصِرَةً وَذِكْرَىٰ لِكُلِّ عَبْدٍ مُّنِيبٍ ﴿٩﴾

୧୦. ଏବଂ ଆମେ ମେଘମାଳାରୁ ଆଶୀର୍ବାଦପୂର୍ଣ୍ଣ ଜଳ ବୃଷ୍ଟି କରିଅଛୁ, ତା'ପରେ ଏହା ଦ୍ୱାରା ଆମେ ଉଦ୍ୟାନ ସୃଷ୍ଟି କରୁ ଓ ଅମଳକ୍ଷମ ଶସ୍ୟ ମଧ୍ୟ (ଉତ୍ପନ୍ନ କରୁ) ।

وَنَزَّلْنَا مِنَ ٱلسَّمَآءِ مَآءً مُّبَٰرَكًا فَأَنۢبَتْنَا بِهِۦ جَنَّٰتٍ وَحَبَّ ٱلْحَصِيدِ ﴿١٠﴾

୧୧. ଏବଂ ଉଚ୍ଚ ଖଜୁରିଗଛ ମଧ୍ୟ (ଉତ୍ପନ୍ନ କରୁ) ଯହିଁରେ ଗୋଟିଏ ପରେ ଗୋଟିଏ ପେନ୍ଥା ଲଦି ହୋଇଥାଏ,

وَٱلنَّخْلَ بَاسِقَٰتٍ لَّهَا طَلْعٌ نَّضِيدٌ ﴿١١﴾

୧୨. (ଆମେ) ଭକ୍ତମାନଙ୍କୁ ଜୀବିକା ପ୍ରଦାନ କରିବା ସକାଶେ (ଏପରି କରିଅଛୁ) ; ଏବଂ ଆମେ ଏହା ଦ୍ୱାରା (ଅର୍ଥାତ୍ ଏହି ଜଳ ଦ୍ୱାରା) ମୃତ ଭୂମିକୁ ଜୀବିତ କରିଥାଉ ; ଏହିପରି ଭାବରେ ମୃତ୍ୟୁ ପରେ ପୁନରୁତ୍‌ଥାନ ହେବ ।

رِّزْقًا لِّلْعِبَادِ وَأَحْيَيْنَا بِهِۦ بَلْدَةً مَّيْتًا كَذَٰلِكَ ٱلْخُرُوجُ ﴿١٢﴾

୧୩. ଏମାନଙ୍କ ପୂର୍ବରୁ ନୂହଙ୍କ ସମ୍ପ୍ରଦାୟ ଓ କୂପ ନିକଟବର୍ତ୍ତୀ ସମ୍ପ୍ରଦାୟ ଓ ସମୁଦ (ସମ୍ପ୍ରଦାୟ),

كَذَّبَتْ قَبْلَهُمْ قَوْمُ نُوحٍ وَأَصْحَٰبُ ٱلرَّسِّ وَثَمُودُ ﴿١٣﴾

୧୪. ଏବଂ ଆଦ ଓ ଫିରଔନ, ଓ ଲୁତଙ୍କ ଭାଇମାନେ,

وَعَادٌ وَفِرْعَوْنُ وَإِخْوَٰنُ لُوطٍ ﴿١٤﴾

୧୫. ଏବଂ ବନବାସୀମାନେ [୧] ଓ ତୁବ୍‌ବା ସମ୍ପ୍ରଦାୟ (ଅର୍ଥାତ୍ ୟମେନ-ବାସୀମାନେ) ଆମର ରସୂଲମାନଙ୍କ ପ୍ରତି ମିଥ୍ୟା ଆରୋପ କରିଥିଲେ ; ପରିଶେଷରେ ଆମ ଶାସ୍ତିର ପ୍ରତିଶ୍ରୁତି ପୂରଣ ହୋଇଥିଲା ।

وَأَصْحَٰبُ ٱلْأَيْكَةِ وَقَوْمُ تُبَّعٍ كُلٌّ كَذَّبَ ٱلرُّسُلَ فَحَقَّ وَعِيدِ ﴿١٥﴾

୧୬. କ'ଣ ଆମେ ପ୍ରଥମ ସୃଷ୍ଟି ଯୋଗୁଁ କ୍ଲାନ୍ତ ହୋଇଯାଇଛୁ ? (ନା !) ; କିନ୍ତୁ ବାସ୍ତବତା ଏହିକି ଯେ ସେମାନେ ଦ୍ୱିତୀୟ ସୃଷ୍ଟି ସମ୍ବନ୍ଧରେ ସନ୍ଦେହର ବଶବର୍ତ୍ତୀ ହୋଇଛନ୍ତି ।

أَفَعَيِينَا بِٱلْخَلْقِ ٱلْأَوَّلِ بَلْ هُمْ فِى لَبْسٍ مِّنْ خَلْقٍ جَدِيدٍ ﴿١٦﴾

ରୁ : ୨

୧୭. ଏବଂ ଆମେ ମନୁଷ୍ୟ ସୃଷ୍ଟି କରିଅଛୁ ଏବଂ ତାହାର ମନରେ ଯେଉଁ ସଂଶୟ ଜାତ ହୁଏ ତାହାକୁ ଆମେ ଭଲରୂପେ ଜାଣୁ ଏବଂ ଆମେ ତାହାର ଜୀବନ ନାଡିକାଠାରୁ ମଧ୍ୟ ଅଧିକ ନିକଟବର୍ତ୍ତୀ ।

وَلَقَدْ خَلَقْنَا ٱلْإِنسَٰنَ وَنَعْلَمُ مَا تُوَسْوِسُ بِهِۦ نَفْسُهُۥ وَنَحْنُ أَقْرَبُ إِلَيْهِ مِنْ حَبْلِ ٱلْوَرِيدِ ﴿١٧﴾

---

୧. ଆକ୍ଷରିକ ଅର୍ଥ ବନବାସୀ; କିନ୍ତୁ ଏହାର ତାତ୍ପର୍ଯ୍ୟ ହେଉଛି ସେହି ବନ, ଯାହା ୟମେନରୁ ପାଲେଷ୍ଟାଇନ ଗଲାବେଳେ ମଦୟନ ନିକଟରେ ପଡେ ।

إِذْ يَتَلَقَّى الْمُتَلَقِّيَانِ عَنِ الْيَمِينِ وَعَنِ الشِّمَالِ قَعِيدٌ ⑱

୧୮. ଯେତେବେଳେ କି ତାହାର ଦକ୍ଷିଣ [୧] ଓ ବାମରେ ବସି ଦୁଇଜଣ ସାକ୍ଷୀ (ଦେବଦୂତ) ତାହାର ସକଳ କର୍ମକୁ ଲିପିବଦ୍ଧ କରୁଥା'ନ୍ତି ।

مَا يَلْفِظُ مِنْ قَوْلٍ إِلَّا لَدَيْهِ رَقِيبٌ عَتِيدٌ ⑲

୧୯. ଏବଂ (ମନୁଷ୍ୟ) ଯାହା କିଛି କଥା କହିବ (ତାହାକୁ ଲିପିବଦ୍ଧ କରିବାକୁ) ତାହା ନିକଟରେ ଜଣେ ନିରୀକ୍ଷକ ଅଥବା ସଂରକ୍ଷକ ଥିବେ ।

وَجَاءَتْ سَكْرَةُ الْمَوْتِ بِالْحَقِّ ذَٰلِكَ مَا كُنْتَ مِنْهُ تَحِيدُ ⑳

୨୦. ଏବଂ ମୃତ୍ୟୁକାଳୀନ ମୂର୍ଚ୍ଛା ଅବଶ୍ୟ ଆସିବ ; ଏବଂ ସେତେବେଳେ ଆମେ ତାହାକୁ (ଅର୍ଥାତ୍ ଅମନୋଯୋଗୀ ବ୍ୟକ୍ତିକୁ) କହିବୁ, "ଏହା ସେହି ଅବସ୍ଥା ଯହିଁରୁ ତୁମେ ରକ୍ଷା ପାଇବା ପାଇଁ ଇଚ୍ଛା କରୁଥିଲ ।"

وَنُفِخَ فِي الصُّورِ ذَٰلِكَ يَوْمُ الْوَعِيدِ ㉑

୨୧. ଏବଂ ବିଗୁଲ ଫୁଙ୍କା ଯିବ ; ଏହା ଅଙ୍ଗୀକୃତ ଶାସ୍ତିର ଦିବସ ହେବ ।

وَجَاءَتْ كُلُّ نَفْسٍ مَعَهَا سَائِقٌ وَشَهِيدٌ ㉒

୨୨. ଏବଂ ପ୍ରତ୍ୟେକ ବ୍ୟକ୍ତି ଏପରି ଅବସ୍ଥାରେ ଆସିବେ ଯେ ତାହାଙ୍କ ସହିତ ଜଣେ ଚାଳକ ଓ ଜଣେ ସାକ୍ଷୀ ଥିବେ ।

لَقَدْ كُنْتَ فِي غَفْلَةٍ مِنْ هَٰذَا فَكَشَفْنَا عَنْكَ غِطَاءَكَ فَبَصَرُكَ الْيَوْمَ حَدِيدٌ ㉓

୨୩. (ଏବଂ ଆମେ କହିବୁ), "ତୁମେ ଏ (ଦିବସ) ସଂକ୍ରାନ୍ତରେ ଅମନୋଯୋଗୀ ରହିଥିଲ ; ତେଣୁ ପରିଶେଷରେ ଆମେ ତୁମର ପରଦାକୁ ଉଠାଇ ନେଇଥିଲୁ, ଏବଂ ଆଜି ତୁମର ଦୃଷ୍ଟି ଅତ୍ୟନ୍ତ ତୀକ୍ଷ୍ଣ [୨] ହୋଇଛି (ଓ ତୁମେ ସବୁ ଦେଖିପାରୁଛ) ।"

وَقَالَ قَرِينُهُ هَٰذَا مَا لَدَيَّ عَتِيدٌ ㉔

୨୪. ଏବଂ ତାହାଙ୍କର ସହଚର [୩] କହିବେ, "ଏହାକୁ ମଧ୍ୟ ଦେଖ, ଯାହା ମୋ ନିକଟରେ ପ୍ରସ୍ତୁତ [୪] ହୋଇ ରହିଅଛି (ଅର୍ଥାତ୍ ତାହାର କର୍ମ ବିବରଣୀ) ।"

أَلْقِيَا فِي جَهَنَّمَ كُلَّ كَفَّارٍ عَنِيدٍ ㉕
مَنَّاعٍ لِلْخَيْرِ مُعْتَدٍ مُرِيبٍ ㉖

୨୫./୨୬. (ତା'ପରେ ଆମେ ସେ ଉଭୟ ଦେବଦୂତଙ୍କୁ କହିବୁ), "ସତ୍ୟର ବିରୁଦ୍ଧାଚରଣ କରୁଥିବା ପ୍ରତ୍ୟେକ ଅବିଶ୍ୱାସକାରୀ, ପୁଣ୍ୟ କାର୍ଯ୍ୟରେ ବାଧା ସୃଷ୍ଟିକାରୀ, ସୀମାଲଂଘନକାରୀ ଓ ସନ୍ଦେହକାରୀଙ୍କୁ ତୁମେ ଦୁହେଁ ନରକରେ ନିକ୍ଷେପ କର."

---

୧. ମଣିଷ ସହିତ ଏପରି ଦେବଦୂତ ବା ଶରୀରର ଅଙ୍ଗପ୍ରତ୍ୟଙ୍ଗ ନିର୍ଦ୍ଦିଷ୍ଟ କରାଯାଇଛି ଯେଉଁମାନେ ତା'ର କର୍ମକୁ ସୁରକ୍ଷିତ କରୁଥାନ୍ତି । ଏଠାରେ ସେହିମାନଙ୍କ ବିଷୟ ବର୍ଣ୍ଣନା କରାଯାଇଛି ।

୨. ଅର୍ଥାତ୍ ଆଜି ତୁମେ ନିଜର ସତ୍‌କାର୍ଯ୍ୟ ଓ ଅସତ୍‌କାର୍ଯ୍ୟକୁ ଭଲରୂପେ ବୁଝିପାରୁଛ ଏବଂ ସାଂସାରିକ ପରିସ୍ଥିତିକୁ ଭୁଲିଯାଉଛ, ଯେବେ କି ତୁମେ ନିଜର ପ୍ରତ୍ୟେକ ଉକ୍ତି ଓ କାର୍ଯ୍ୟକୁ ଉତ୍ତମ ବୋଲି ଜୋର୍ ଦେଇ କହୁଥିଲ ।

୩. ଅର୍ଥାତ୍ ତା ସହିତ ନିୟୋଜିତ ସାକ୍ଷୀ ।

୪. ଅର୍ଥାତ୍ ମଣିଷର ଅଙ୍ଗପ୍ରତ୍ୟଙ୍ଗ ବା ଦେବଦୂତମାନେ କହିବେ ଯେ ଏହି ଲୋକର ସମସ୍ତ ଉକ୍ତି ଓ କର୍ମର ଅଭିଲେଖ ସେମାନଙ୍କ ପାଖରେ ସୁରକ୍ଷିତ ଅଛି । ସେଥିଯୋଗୁଁ ସେ କୌଣସି ପ୍ରକାରେ ମଧ୍ୟ ନିଜ ଉକ୍ତି ବା କର୍ମକୁ ଅସ୍ୱୀକାର କରିପାରିବ ନାହିଁ । ସେମାନେ ମଣିଷକୁ ମଧ୍ୟ ନିଜର ଅଭିଲେଖକୁ ଦେଖିବା ପାଇଁ କହିବେ, ଯଦ୍ୱାରା ତା ନିକଟରେ ସବୁ କଥା ପ୍ରମାଣିତ ହୋଇଯିବ ।

୨୭. "ଯେ ଅଲ୍ଲାହଙ୍କ ସହିତ ଅନ୍ୟକୁ ଉପାସ୍ୟ ସ୍ଥିର କରିଥିଲା ; ତେଣୁ ତାହାକୁ ତୁମେ ଦୁହେଁ ଆଜି କଠିନ ଶାସ୍ତି ମଧ୍ୟକୁ ନିକ୍ଷେପ କର ।"

الَّذِىْ جَعَلَ مَعَ اللّٰهِ اِلٰهًا اٰخَرَ فَاَلْقِيٰهُ فِى الْعَذَابِ الشَّدِيْدِ ﴿٢٧﴾

୨୮. ତାହାର ସହଚର [୧] କହିବ, "ହେ ଆମମାନଙ୍କର ପାଳନକର୍ତ୍ତା ! ମୁଁ ତାହାକୁ ବିଦ୍ରୋହ କରିବାକୁ ପ୍ରବର୍ତ୍ତାଇ ନାହିଁ, ବରଂ ସେ ନିଜେ ଏକ ବିଭ୍ରାନ୍ତି ମଧ୍ୟରେ ଲିପ୍ତ ହୋଇଥିଲା ।"

قَالَ قَرِيْنُهٗ رَبَّنَا مَآ اَطْغَيْتُهٗ وَلٰكِنْ كَانَ فِىْ ضَلٰلٍۢ بَعِيْدٍ ﴿٢٨﴾

୨୯. (ଅଲ୍ଲାହ) କହିବେ, "ଆମ ସମୀପରେ କଳହ କର ନାହିଁ, ଏବଂ ମନେରଖ ଯେ ଆମେ ତୁମମାନଙ୍କ ନିକଟକୁ ପୂର୍ବରୁ ହିଁ ଶାସ୍ତିର ସମାଚାର ପ୍ରେରଣ କରିଅଛୁ ।"

قَالَ لَا تَخْتَصِمُوْا لَدَىَّ وَقَدْ قَدَّمْتُ اِلَيْكُمْ بِالْوَعِيْدِ ﴿٢٩﴾

୩୦. "ଏବଂ ଆମ ସମୀପରେ କୌଣସି ବିଷୟକୁ ପରିବର୍ତ୍ତିତ କରି ଉପସ୍ଥାପିତ କରାଯାଇ ପାରେ ନାହିଁ [୨] ; ଏବଂ ଆମେ ନିଜ ଭକ୍ତମାନଙ୍କ ପ୍ରତି କୌଣସି ପ୍ରକାର ଅତ୍ୟାଚାର କରୁନାହୁଁ।"[୩]

مَا يُبَدَّلُ الْقَوْلُ لَدَىَّ وَمَآ اَنَا بِظَلَّامٍ لِّلْعَبِيْدِ ﴿٣٠﴾

୩୧. ସେ ଦିନ ଆମେ ନରକକୁ ପଚାରିବୁ, "କ'ଣ ତୁ ପରିପୂର୍ଣ୍ଣ ହୋଇଅଛୁ ?" ସେ କହିବ, "କ'ଣ ଆଉ କିଛି ଅଧିକ ଅଛି ?"

يَوْمَ نَقُوْلُ لِجَهَنَّمَ هَلِ امْتَلَاْتِ وَتَقُوْلُ هَلْ مِنْ مَّزِيْدٍ ﴿٣١﴾

୩୨. ଏବଂ ସେ ଦିନ ବୈକୁଣ୍ଠକୁ ଧର୍ମଭୀରୁମାନଙ୍କର ଏପରି[୪] ନିକଟବର୍ତ୍ତୀ କରାହେବ ଯେ ସେମାନେ ଏହାକୁ ଅନୁଭବ କରିବାକୁ ଲାଗିବେ ।

وَاُزْلِفَتِ الْجَنَّةُ لِلْمُتَّقِيْنَ غَيْرَ بَعِيْدٍ ﴿٣٢﴾

୩୩. (ଏବଂ କୁହାଯିବ), "ତୁମମାନଙ୍କ ମଧ୍ୟରୁ ପ୍ରତ୍ୟେକ ଅବନତକାରୀ ଓ ଧର୍ମବିଧାନର ସଂରକ୍ଷଣକାରୀଙ୍କୁ ଏହି ପୁରସ୍କାର ସଂକ୍ରାନ୍ତରେ ପ୍ରତିଶ୍ରୁତି ଦିଆଯାଇଥିଲା"

هٰذَا مَا تُوْعَدُوْنَ لِكُلِّ اَوَّابٍ حَفِيْظٍ ﴿٣٣﴾

---

୧. ଅବଶ୍ୟ ଏବେ ମଣିଷ କହିବ ଯେ ତାହାକୁ ଅଲ୍ଲାହ ପଥଭ୍ରଷ୍ଟ କରିଛନ୍ତି କିନ୍ତୁ କୟାମତ ଦିନ ତାକୁ ନିରୀକ୍ଷଣ କରୁଥିବା ଦେବଦୂତମାନେ ଅଥବା ତା ଶରୀରର ନିରୀକ୍ଷଣକାରୀ ଅଙ୍ଗପ୍ରତ୍ୟଙ୍ଗ କହିବେ ଯେ ଏହି ବ୍ୟକ୍ତି ପଥଭ୍ରଷ୍ଟ ହେବାରେ ସେମାନେ ଦାୟୀ ନୁହନ୍ତି ବରଂ ସେ ନିଜେ ପଥଭ୍ରଷ୍ଟ ହୋଇଥିଲା । ସୁତରାଂ ସେ ନିଜେ ଏଥି ସକାଶେ ଦାୟୀ ।

୨. ଅଲ୍ଲାହ କହିବେ ଯେ ଯେଉଁ ସାକ୍ଷୀମାନଙ୍କୁ ଅର୍ଥାତ୍ ଦେବଦୂତମାନଙ୍କୁ ଓ ଶରୀରର ଅଙ୍ଗପ୍ରତ୍ୟଙ୍ଗକୁ ସେ ନିୟୋଜିତ କରିଛନ୍ତି ସେମାନେ ତାହାଙ୍କ ସମ୍ମୁଖରେ କଥା ବଦଳାଇ କହିବାକୁ ସାହସ କରିପାରିବେ ନାହିଁ, କାରଣ ସେମାନେ କେବଳ ସାକ୍ଷୀ ନୁହନ୍ତି ବରଂ ସେମାନଙ୍କ ପାଖରେ ଅଭିଲେଖ ରହିଥିବ ଏବଂ ଅଭିଲେଖକୁ କେହି ମିଥ୍ୟା ବୋଲି ଅବଧାରଣ କରିପାରିବ ନାହିଁ ।

୩. ଅର୍ଥାତ୍ ସେ ଏପରି ସାକ୍ଷ୍ୟ ବ୍ୟବସ୍ଥା କରିଛନ୍ତି ଯେ ତାହା ଅସ୍ୱୀକୃତ ହୋଇ ପାରିବ ନାହିଁ ଏବଂ ତାହାଙ୍କର ଶାସ୍ତିକୁ ଅତ୍ୟାଚାରମୂଳକ ଶାସ୍ତି ବୋଲି ମଧ୍ୟ ଅବଧାରଣ କରାଯାଇ ପାରିବ ନାହିଁ ।

୪. ସେ ଦିନ ବିଶ୍ୱାସକାରୀମାନେ ବୈକୁଣ୍ଠକୁ ଭଲ ଭାବରେ ଦେଖି ପାରିବେ, ଯଦ୍ୱାରା ସେମାନଙ୍କ ମନ ସନ୍ତୋଷ ଲାଭ କରିବ । ଏଠାରେ ଏହା ମଧ୍ୟ ଅଭିପ୍ରେତ ହୋଇପାରେ ଯେ ଶେଷ ଯୁଗରେ ଧର୍ମର ଏଭଳି ବ୍ୟାଖ୍ୟା କରାଯିବ ଯେ ପ୍ରତ୍ୟେକ ବିଶ୍ୱାସକାରୀ ନିଜ ମନ ମଧ୍ୟରେ ବୈକୁଣ୍ଠକୁ ନିକଟବର୍ତ୍ତୀ ମନେ କରିବ ।

୩୪. "(ଅର୍ଥାତ ତାହାକୁ) ଯେ ଦୟାବାନ୍ (ଅଲ୍ଲାହ)ଙ୍କୁ ଗୋପନରେ ଭୟ କରୁଥିଲା ଓ ଅନୁରକ୍ତିପୂର୍ଣ୍ଣ ହୃଦୟରେ ତାହାଙ୍କ ନିକଟକୁ ଆସିଥିଲା ।"

مَنْ خَشِيَ الرَّحْمٰنَ بِالْغَيْبِ وَجَآءَ بِقَلْبٍ مُّنِيْبِ ﴿۳۴﴾

୩୫. (ଅଲ୍ଲାହ କହିବେ), "ଏ ସମସ୍ତଙ୍କୁ ଶାନ୍ତି ପ୍ରଦାନ-ପୂର୍ବକ ତନ୍ମଧ୍ୟରେ (ଅର୍ଥାତ୍ ବୈକୁଣ୍ଠରେ) ପ୍ରବେଶ କରାଅ ; ଏହା ହିଁ ସେହି ଆଶୀର୍ବାଦମୂଳକ ଦିବସ ଯାହାର ଅନ୍ତ ନାହିଁ ।"

ادْخُلُوْهَا بِسَلٰمٍ ۭ ذٰلِكَ يَوْمُ الْخُلُوْدِ ﴿۳۵﴾

୩୬. ସେମାନେ ସେଠାରେ ଯାହା କିଛି ଇଚ୍ଛା କରିବେ, ସେ ସମସ୍ତ ସେମାନଙ୍କୁ ପ୍ରାପ୍ତ ହେବ ; ଏବଂ ଆମ୍ଭ ନିକଟରୁ ସେମାନଙ୍କୁ ଦେବା ପାଇଁ ତଦପେକ୍ଷା ଅଧିକ ଗଚ୍ଛିତ ରହିଅଛି ।

لَهُمْ مَّا يَشَآءُوْنَ فِيْهَا وَلَدَيْنَا مَزِيْدٌ ﴿۳۶﴾

୩୭. ଏବଂ ଆମ୍ଭେ ସେମାନଙ୍କ ପୂର୍ବରୁ ଅନେକ ସମ୍ପ୍ରଦାୟକୁ ଧ୍ୱଂସ କରିଅଛୁ ; ସେମାନେ ଏମାନଙ୍କଠାରୁ ଅଧିକ ବଳବାନ୍ ଥିଲେ, କିନ୍ତୁ (ଯେତେବେଳେ ଶାସ୍ତି ଉପସ୍ଥିତ ହେଲା ସେତେବେଳେ) ସେମାନେ ନିଜକୁ ରକ୍ଷା କରିବା ପାଇଁ ଦେଶର ପ୍ରତ୍ୟେକ କଣରେ ସୁଡଙ୍ଗ ବିଛାଇ ଦେଲେ [୧] ; କିନ୍ତୁ ଅଲ୍ଲାହଙ୍କ ଶାସ୍ତିରୁ ରକ୍ଷା ପାଇବା ପାଇଁ ଆଶ୍ରୟ ସ୍ଥଳୀ କାହିଁ ?

وَكَمْ اَهْلَكْنَا قَبْلَهُمْ مِّنْ قَرْنٍ هُمْ اَشَدُّ مِنْهُمْ بَطْشًا فَنَقَّبُوْا فِي الْبِلَادِ ۭ هَلْ مِنْ مَّحِيْصٍ ﴿۳۷﴾

୩୮. ଏଥିରେ ପ୍ରତ୍ୟେକ ବ୍ୟକ୍ତି ପାଇଁ, ଯାହାର ବୁଝିପାରିବା ଭଳି ହୃଦୟ ଅଛି, ବା ଯେ ଶୁଣିବା ପାଇଁ କର୍ଣ୍ଣପାତ କରେ, ଓ ଚିନ୍ତା ମଧ୍ୟ କରିପାରେ, ଉପଦେଶ ରହିଅଛି ।

اِنَّ فِيْ ذٰلِكَ لَذِكْرٰى لِمَنْ كَانَ لَهٗ قَلْبٌ اَوْ اَلْقَى السَّمْعَ وَهُوَ شَهِيْدٌ ﴿۳۸﴾

୩୯. ଏବଂ ଆମ୍ଭେ ଆକାଶ ଓ ପୃଥିବୀକୁ ତଥା ସେମାନଙ୍କ ମଧ୍ୟରେ ଯାହା କିଛି ରହିଅଛି (ସେ ସବୁକୁ) ଛଅଗୋଟି ଅବଧି ମଧ୍ୟରେ ସୃଷ୍ଟି କରିଅଛୁ ; ଏବଂ ଆମ୍ଭେ ଆଦୌ କ୍ଲାନ୍ତ [୨] ହୋଇ ନାହୁଁ ।

وَلَقَدْ خَلَقْنَا السَّمٰوٰتِ وَالْاَرْضَ وَمَا بَيْنَهُمَا فِيْ سِتَّةِ اَيَّامٍ ڰ وَّمَا مَسَّنَا مِنْ لُّغُوْبٍ ﴿۳۹﴾

୪୦. ସୁତରାଂ ଯାହା କିଛି ସେମାନେ କହୁଛନ୍ତି ସେଥିପ୍ରତି ଧୈର୍ଯ୍ୟ ଧାରଣ କର, ଏବଂ ସୂର୍ଯ୍ୟୋଦୟ ପୂର୍ବରୁ ଓ ସୂର୍ଯ୍ୟାସ୍ତ ପୂର୍ବରୁ ନିଜ ପାଳନକର୍ତ୍ତାଙ୍କ ଗୁଣଗାନ କର ।

فَاصْبِرْ عَلٰى مَا يَقُوْلُوْنَ وَسَبِّحْ بِحَمْدِ رَبِّكَ قَبْلَ طُلُوْعِ الشَّمْسِ وَقَبْلَ الْغُرُوْبِ ﴿۴۰﴾

୪୧. ଏବଂ ରାତ୍ରିକାଳରେ ମଧ୍ୟ ତାହାଙ୍କର ଗୁଣଗାନ କର, ଏବଂ ପ୍ରତ୍ୟେକ ଉପାସନାର ଶେଷରେ ମଧ୍ୟ (ଏହିପରି କର) ।

وَمِنَ الَّيْلِ فَسَبِّحْهُ وَاَدْبَارَ السُّجُوْدِ ﴿۴۱﴾

---

୧. ଅର୍ଥାତ ଦେଶରେ ଏପରି ବ୍ୟବସ୍ଥା ସୃଷ୍ଟି କରିବା ଆରମ୍ଭ କରିଦେଲେ ଯେପରି ସେମାନେ ଏହି ଶାସ୍ତିରୁ ମୁକୁଳି ଯିବେ କିନ୍ତୁ ଅଲ୍ଲାହଙ୍କ ଶାସ୍ତିରୁ ମୁକୁଳିବା ପାଇଁ ମଣିଷର ଉପାୟ ଓ କୌଶଳ କେବେ ବା କେଉଁଠାରେ କାର୍ଯ୍ୟକାରୀ ହୁଏ ନାହିଁ ।

୨. ବାଇବେଲରେ ଲେଖାଅଛି ଯେ ଅଲ୍ଲାହ ପୃଥିବୀକୁ ସୃଷ୍ଟି କଲେ ଓ ଥକି ପଡ଼ିଲେ ଏବଂ ସପ୍ତମ ଦିନ ସେ ବିଶ୍ରାମ କଲେ **(Gen. 2:2** ଦ୍ରଷ୍ଟବ୍ୟ) । ବସ୍ତୁତଃ କୋରାନର ଶିକ୍ଷା ଅତ୍ୟନ୍ତ ଗୌରବମୟ ଓ ସେଥିରେ ଅଲ୍ଲାହଙ୍କ ମହିମାର ଉପଯୁକ୍ତ ବର୍ଣ୍ଣନା ଅଛି । ଅନ୍ୟ ପକ୍ଷରେ ଅଲ୍ଲାହଙ୍କ ମହିମା ଦୃଷ୍ଟିରୁ ବାଇବେଲର ଶିକ୍ଷା ତାଙ୍କ ପ୍ରତି ଅବମାନନା ମୂଳକ । ତେଣୁ ତାହା ପରିତ୍ୟଜ୍ୟ ।

୪୨. ଏବଂ (ହେ ନବି !) ମନେରଖ ଯେ ଦିନେ ଆହ୍ୱାନକାରୀ ଏକ ନିକଟବର୍ତ୍ତୀ ସ୍ଥାନରୁ [୧] ଆହ୍ୱାନ କରିବେ,

وَاسْتَمِعْ يَوْمَ يُنَادِ الْمُنَادِ مِن مَّكَانٍ قَرِيبٍ ۝٤٢

୪୩. ଯେଉଁ ଦିନ କି ସମସ୍ତେ ଏକ ଅପରିହାର୍ଯ୍ୟ ଶାସ୍ତିର ଶବ୍ଦ ଶୁଣିବେ ; ଏହି ଦିବସ ପୁନରୁତ୍‌ଥାନର ଦିବସ ହେବ [୨] ।

يَوْمَ يَسْمَعُونَ الصَّيْحَةَ بِالْحَقِّ ۚ ذَٰلِكَ يَوْمُ الْخُرُوجِ ۝٤٣

୪୪. ଆମେ ହି ଜୀବନ ଦାନ କରୁ ଓ ମୃତ୍ୟୁ ମଧ୍ୟ ଘଟାଉ ; ଏବଂ ଆମ ନିକଟକୁ ହି ପ୍ରତ୍ୟାବର୍ତ୍ତନ କରିବାକୁ ହେବ ।

إِنَّا نَحْنُ نُحْيِي وَنُمِيتُ وَإِلَيْنَا الْمَصِيرُ ۝٤٤

୪୫. ଯେଉଁ ଦିନ କି ଭୂପୃଷ୍ଠ ସେମାନଙ୍କ କୁକର୍ମ ଯୋଗୁଁ ଫାଟିଯିବ ଓ ସେମାନେ ସେଥିରୁ ଶୀଘ୍ର [୩] ବାହାରି ଆସିବେ, ଏହି ମୃତମାନଙ୍କୁ ଜୀବିତ କରିବା ଆମପକ୍ଷରେ ସହଜସାଧ୍ୟ ।

يَوْمَ تَشَقَّقُ الْأَرْضُ عَنْهُمْ سِرَاعًا ۚ ذَٰلِكَ حَشْرٌ عَلَيْنَا يَسِيرٌ ۝٤٥

୪୬. ସେମାନେ ଯାହା କିଛି କହନ୍ତି ସେ ବିଷୟରେ ଆମେ ଭଲ ଭାବରେ ଅବଗତ ଅଛୁ ; ଏବଂ ତୁମ୍ଭକୁ ସେମାନଙ୍କ ଉପରେ ଏକ ପ୍ରତାପୀ (ଶାସକ) ରୂପେ ନିଯୁକ୍ତି ଦିଆଯାଉ ନାହିଁ ; ସୁତରାଂ ତୁମେ କୋରାନ ମାଧ୍ୟମରେ କେବଳ ତାହାକୁ ଉପଦେଶ ଦିଅ ଯେ ଆମ (ଶାସ୍ତିର) ଚେତାବନୀକୁ ଭୟ କରେ ।

نَّحْنُ أَعْلَمُ بِمَا يَقُولُونَ ۖ وَمَا أَنتَ عَلَيْهِم بِجَبَّارٍ ۖ فَذَكِّرْ بِالْقُرْآنِ مَن يَخَافُ وَعِيدِ ۝٤٦

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ମକ୍କାବାସୀଙ୍କୁ ଚେତାବନୀ ଦେବା ସକାଶେ ହଜରତ ମହମ୍ମଦଙ୍କ ଅନୁଗାମୀମାନଙ୍କ ମଧ୍ୟରୁ କେତେକଙ୍କୁ ଅଲ୍ଲାହ ଛିଡ଼ା କରାଇଥିଲେ । ଏପରି ହେଲା ଯେ ହଜରତ ଅବୁବ୍‌କର, ହଜରତ ଉମର, ହଜରତ ଉସମାନ, ହଜରତ ଅଲି ଏବଂ ହଜରତ ଜୁବେରଙ୍କ ପୁତ୍ର ହଜରତ ଅବଦୁଲ୍ଲାହ ମକ୍କାରେ ଜନ୍ମଗ୍ରହଣ କରି ସେଠାକାର ଲୋକମାନଙ୍କୁ ଚେତାବନୀ ଦେଇଥିଲେ ।

୨. ହଜରତ ଅବୁବକରଙ୍କ ଖିଲାଫତ ସମୟରେ ମଦିନା ନିକଟରେ ବାସ କରୁଥିବା କେତେକ ଗୋଷ୍ଠୀ ଅବଶ୍ୟ ଇସଲାମକୁ ପରିତ୍ୟାଗ କରିଥିଲେ କିନ୍ତୁ ସେ ପୁଣି ଥରେ ସେମାନଙ୍କୁ ଇସଲାମ ଧର୍ମରେ ଦୀକ୍ଷିତ କରାଇଥିଲେ । ସେହିପରି ପାରସ୍ୟ ଓ ରୋମ ସମ୍ରାଟଙ୍କ ପରାକ୍ରମ ହେତୁ କେତେକ ମୁସଲମାନ ଭୟରେ ପ୍ରକମ୍ପିତ ହୋଇଥିଲେ କିନ୍ତୁ ହଜରତ ଉମର ଉପଦେଶ ଓ ପ୍ରବଚନ ମାଧ୍ୟମରେ ସେମାନଙ୍କ ମଧ୍ୟରେ ନବ ଉନ୍ମାଦନା ସୃଷ୍ଟି କରାଇଥିଲେ ଏବଂ ସେହି ମାନଙ୍କୁ ସାଙ୍ଗରେ ଧରି ଉଭୟ ସମ୍ରାଟଙ୍କୁ ପରାଜିତ କରିଥିଲେ ।

୩. ଅର୍ଥାତ୍ ଶାସ୍ତି ଆସିଗଲେ ସେମାନେ ନିଜ ନିଜ ସ୍ଥାନ ଛାଡ଼ି ଏଣେ ତେଣେ ପଳାଇବେ କିନ୍ତୁ ସେମାନଙ୍କୁ ମୁକ୍ତିର ପଥ ମିଳିବ ନାହିଁ ।

سُورَةُ الذّٰرِيٰتِ مَكِّيَّةٌ (٥١)

# ଅଲ- ଜାରିଆତ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୬୧ଟି ଆୟତ ଓ ୩ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

وَالذّٰرِيٰتِ ذَرْوًا ②

୨. ଆମ୍ଭେ ସାକ୍ଷ୍ୟ ସ୍ୱରୂପ ତାହାକୁ (ଅର୍ଥାତ୍ ସେହି ବାୟୁକୁ) ଉପସ୍ଥାପିତ କରୁଅଛୁ ଯାହା (ମେଘମାଳାକୁ) ଇତସ୍ତତଃ ଭାସମାନ କରାଉଥାଏ ।

فَالْحٰمِلٰتِ وِقْرًا ③

୩. ଏହା ପରେ (ଜଳୀୟ ବାଷ୍ପର) ଭାର ବହନ କରିଥାଏ,

فَالْجٰرِيٰتِ يُسْرًا ④

୪. ତା'ପରେ ଧୀରେ ଧୀରେ ପ୍ରବାହିତ ହୁଏ,

فَالْمُقَسِّمٰتِ اَمْرًا ⑤

୫. ଏବଂ ପରିଶେଷରେ ଆମ୍ଭର ଆଦେଶ (ଅର୍ଥାତ୍ ବର୍ଷାକୁ ଭୂପୃଷ୍ଠରେ) ବିତରଣ କରିଥାଏ,

اِنَّمَا تُوْعَدُوْنَ لَصَادِقٌ ⑥

୬. ତୁମମାନଙ୍କ ସହିତ ଯେଉଁ ଅଙ୍ଗୀକାର କରାଯାଉଛି ତାହା ଅବଶ୍ୟ ପୂର୍ଣ୍ଣ ହେବ ; [1]

وَّاِنَّ الدِّيْنَ لَوَاقِعٌ ⑦

୭. ଏବଂ ପୁରସ୍କାର ପ୍ରଦାନ ଓ ଶାସ୍ତି ବିଧାନ ଅବଶ୍ୟ ଘଟିବ ।

وَالسَّمَآءِ ذَاتِ الْحُبُكِ ⑧

୮. ଏହାର ପ୍ରମାଣ ସ୍ୱରୂପ ଆମ୍ଭେ ସେହି ଆକାଶକୁ ଉପସ୍ଥାପିତ କରୁଅଛୁ ଯହିଁରେ ନକ୍ଷତ୍ରମାନଙ୍କର [2] ମାର୍ଗସବୁ ରହିଅଛି,

اِنَّكُمْ لَفِيْ قَوْلٍ مُّخْتَلِفٍ ⑨

୯. ତୁମେମାନେ ସମସ୍ତେ ଏକ ବିରୋଧାତ୍ମକ କଥାରେ ଲିପ୍ତ ରହିଅଛ ।

يُّؤْفَكُ عَنْهُ مَنْ اُفِكَ ⑩

୧୦. ଫଳରେ ଯେଉଁ ବ୍ୟକ୍ତିକୁ ସତ୍ୟଠାରୁ ଫେରାଇ ନିଆଯିବା ପାଇଁ ଆଦେଶ ହୁଏ ତାହାକୁ ସତ୍ୟଠାରୁ ଫେରାଇ ନିଆଯାଏ ।

قُتِلَ الْخَرّٰصُوْنَ ⑪

୧୧. ଅନୁମାନକୁ ଭିତ୍ତି କରି କହୁଥିବା ଲୋକମାନେ ଧ୍ୱଂସ ହୋଇଗଲେ,

---

୧. ଏହି ଆୟତଗୁଡ଼ିକରେ ହଜରତ ମହମ୍ମଦଙ୍କ ସହଚରମାନଙ୍କୁ ବା ସେମାନଙ୍କ ପ୍ରଚାର ଉଦ୍ୟମକୁ ବାୟୁ ସହିତ ତୁଳନା କରାଯାଇ କୁହାଯାଇଛି ଯେ ସେମାନେ ବା ସେମାନଙ୍କ ଉଦ୍ୟମ କୋରାନର ଜଳରୂପୀ ଶିକ୍ଷାକୁ ଚତୁର୍ଦ୍ଦିଗରେ ସମ୍ପ୍ରସାରିତ କରିବ ଏବଂ ସେମାନଙ୍କ ପ୍ରଚାର ଉଦ୍ୟମ ପ୍ରତିଦିନ ଉତ୍ତରୋତ୍ତର ବୃଦ୍ଧି ଲାଭ କରୁଥିବ, ଓ ସୁଦୃଢ଼ ହେଉଥିବ, ଏପରିକି ସେମାନଙ୍କ ଦ୍ୱାରା ଉତ୍‌ଥିତ ପ୍ରଚାରରୂପୀ ମେଘମାଳା ଜଳରେ ପୂର୍ଣ୍ଣ ହୋଇଯିବ ଓ ଏହାପରେ ତାହା ଲୋକମାନଙ୍କ ହୃଦୟରେ ଇସଲାମର ପ୍ରଭାବକୁ ଏପରି ସଂଗଠିତ କରିଦେବ ଯେ ସେମାନଙ୍କ ପ୍ରଚାର ଉଦ୍ୟମ ସହଜରେ ବୃଦ୍ଧି ପାଇବ ଏବଂ ସେମାନଙ୍କୁ ବିରୁଦ୍ଧ କରୁଥିବା ଗୋଷ୍ଠୀ ଦୁର୍ବଳ ହୋଇପଡ଼ିବ, ପରିଣାମରେ ମୁସଲମାନମାନେ ବିଭିନ୍ନ ଦେଶରେ ଇସଲାମ ଧର୍ମର ପ୍ରଚାର ଓ ପ୍ରସାର କରିପାରିବେ । ପରିଶେଷରେ ଇସଲାମର ହିଁ ବିଜୟ ହେବ । ଏହିରୂପେ ଯେଉଁ ସଫଳତାର ସମାଚାର ତୁମମାନଙ୍କୁ ଦିଆଯାଉଛି ତାହା ସତ୍ୟସାବ୍ୟସ୍ତ ହେବ ।

୨. ଆକାଶରେ ବିଭିନ୍ନ ଗ୍ରହ-ନକ୍ଷତ୍ରଙ୍କ ମାର୍ଗ ନିର୍ଦ୍ଦିଷ୍ଟ କରାଯାଇଛି । ସେଗୁଡ଼ିକ ନିୟମିତ ଭାବେ, ଯଥା ସମୟରେ, କୌଣସି ତ୍ରୁଟି ନ କରି ଓ ଅନ୍ୟର କାର୍ଯ୍ୟରେ ବାଧା ନ ଦେଇ ନିଜ ନିଜ କାର୍ଯ୍ୟ ସମ୍ପାଦନ କରୁଥାନ୍ତି ।

ٱلَّذِينَ هُمْ فِى غَمْرَةٍ سَاهُونَ ⑪

୧୨. ଯେଉଁମାନେ ବିଭ୍ରାନ୍ତିର ଗହ୍ୱର ମଧ୍ୟରେ ନିପତିତ ହୋଇ ସତ୍ୟକୁ ପାସୋରି ଯାଉଛନ୍ତି ;

يَسْـَٔلُونَ أَيَّانَ يَوْمُ ٱلدِّينِ ⑫

୧୩. ସେମାନେ ପଗ୍ୟୁରୁଛନ୍ତି, "ପୁରସ୍କାର ପ୍ରଦାନ ଓ ଶାସ୍ତି ବିଧାନର ସମୟ କେବେ ଆସିବ ?"

يَوْمَ هُمْ عَلَى ٱلنَّارِ يُفْتَنُونَ ⑬

୧୪. (ତୁମେ କୁହ), "ସେତେବେଳେ (ଆସିବ), ଯେତେବେଳେ ସେମାନଙ୍କୁ ଅଗ୍ନିର ଶାସ୍ତିରେ କବଳିତ କରାହେବ ।"

ذُوقُوا۟ فِتْنَتَكُمْ هَٰذَا ٱلَّذِى كُنتُم بِهِۦ تَسْتَعْجِلُونَ ⑭

୧୫. (ଏବଂ କୁହାଯିବ), "ନିଜ ଶାସ୍ତିକୁ ଆସ୍ୱାଦନ କର ; ଏହା ସେହି (ଶାସ୍ତି),ଯାହାକୁ ତୁମେମାନେ ଶୀଘ୍ର ଚାହୁଁଥିଲ ।"

إِنَّ ٱلْمُتَّقِينَ فِى جَنَّٰتٍ وَعُيُونٍ ⑮

୧୬. ଧର୍ମଭୀରୁମାନେ (ସ୍ୱର୍ଗ) ଉଦ୍ୟାନ ଓ ଝରଣାମାନଙ୍କରେ ରହିବେ ;

ءَاخِذِينَ مَآ ءَاتَىٰهُمْ رَبُّهُمْ ۚ إِنَّهُمْ كَانُوا۟ قَبْلَ ذَٰلِكَ مُحْسِنِينَ ⑯

୧୭. ଓ ସେମାନଙ୍କ ପାଳନକର୍ତ୍ତା ସେମାନଙ୍କୁ ଯାହା ଦେବେ ସେମାନେ ତାହାକୁ ନେଉଥିବେ ; ସେମାନେ ଏଥିପୂର୍ବରୁ ସମ୍ପୂର୍ଣ୍ଣ ଭାବରେ ଆଜ୍ଞାପାଳନକାରୀ ଥିଲେ ।

كَانُوا۟ قَلِيلًا مِّنَ ٱلَّيْلِ مَا يَهْجَعُونَ ⑰

୧୮. ରାତ୍ରିରେ ଅତ୍ୟଳ୍ପ ଶୟନ କରୁଥିଲେ ;

وَبِٱلْأَسْحَارِ هُمْ يَسْتَغْفِرُونَ ⑱

୧୯. ଏବଂ ସକାଳ ସମୟରେ ମଧ୍ୟ କ୍ଷମା ପ୍ରାର୍ଥନା କରୁଥିଲେ ;

وَفِىٓ أَمْوَٰلِهِمْ حَقٌّ لِّلسَّآئِلِ وَٱلْمَحْرُومِ ⑲

୨୦. ଏବଂ ସେମାନଙ୍କ ଧନସମ୍ପତ୍ତିରେ ଭିକ୍ଷୁକମାନଙ୍କର ମଧ୍ୟ ଭାଗ ରହିଥିଲା ; ଏବଂ ଯେଉଁମାନେ ଭିକ୍ଷା [୧] କରିପାରୁ ନଥିଲେ ସେମାନଙ୍କର ମଧ୍ୟ (ଭାଗ ରହିଥିଲା) ।

وَفِى ٱلْأَرْضِ ءَايَٰتٌ لِّلْمُوقِنِينَ ⑳

୨୧. ଏବଂ ବିଶ୍ୱାସକାରୀମାନଙ୍କ ସକାଶେ ଭୂପୃଷ୍ଠରେ ଅନେକ ନିଦର୍ଶନ ରହିଅଛି ,

وَفِىٓ أَنفُسِكُمْ ۚ أَفَلَا تُبْصِرُونَ ㉑

୨୨. ଏବଂ ତୁମମାନଙ୍କ ନିଜଠାରେ ମଧ୍ୟ, (ତାହା ହେଲେ) କ'ଣ ତୁମେମାନେ ଲକ୍ଷ୍ୟ କରି ପାରୁ ନାହିଁ ?

وَفِى ٱلسَّمَآءِ رِزْقُكُمْ وَمَا تُوعَدُونَ ㉒

୨୩. ଏବଂ ଆକାଶରେ ମଧ୍ୟ ତୁମମାନଙ୍କର ଜୀବିକା ରହିଅଛି, ଏବଂ (ଏତଦ୍‌ବ୍ୟତୀତ) ଯାହାକିଛି ଅଙ୍ଗୀକାର କରାଯାଉଛି ତାହା ମଧ୍ୟ (ରହିଅଛି) ।

فَوَرَبِّ ٱلسَّمَآءِ وَٱلْأَرْضِ إِنَّهُۥ لَحَقٌّ مِّثْلَ مَآ أَنَّكُمْ تَنطِقُونَ ㉓

୨୪. ଅତଏବ ଆକାଶ ଓ ପୃଥିବୀର ପାଳନକର୍ତ୍ତାଙ୍କ ରାଣ (ଯେ ଯେବେ ଏହା ପୂରଣ ହେବ, ସେତେବେଳେ ଜଣାପଡିବ ଯେ) ଏହା (ଅର୍ଥାତ୍ କୋରାନ) ଏପରି ଏକ ସତ୍ୟ ଯେପରି ତୁମମାନଙ୍କ କଥା କହିବା (ଏକ ସତ୍ୟ) ।

୧. ଅର୍ଥାତ୍ ଏପରି ପ୍ରାଣୀ ଯେଉଁମାନେ କିଛି କହି ପାରନ୍ତି ନାହିଁ ଏବଂ ଏପରି ଭଦ୍ରଲୋକ ଯେଉଁମାନେ କିଛି ମାଗିବାକୁ ଅପମାନ ବୋଧ କରନ୍ତି ।

୨୫. କ'ଣ ତୁମ ନିକଟରେ ଇବ୍ରାହିମଙ୍କ ସମ୍ମାନିତ ଅତିଥିମାନଙ୍କ ସମାଚାର ପହଞ୍ଚିଛି ?

وقف لازم هَلْ اَتٰىكَ حَدِيْثُ ضَيْفِ اِبْرٰهِيْمَ الْمُكْرَمِيْنَ ۝٢٥

୨୬. ଯେତେବେଳେ ସେମାନେ ତାହାଙ୍କ ନିକଟକୁ ଆସିଥିଲେ, ସେତେବେଳେ ସେମାନେ କହିଲେ, ''(ଆମେମାନେ ତୁମଙ୍କୁ) ସଲାମ (ଜଣାଉଛୁ) ;'' ସେ କହିଲେ ''(ଆମେ ମଧ୍ୟ କହୁଅଛୁ କି) ତୁମମାନଙ୍କ ସକାଶେ (ଅଲ୍ଲାହଙ୍କ ତରଫରୁ) ଚିରସ୍ଥାୟୀ ଶାନ୍ତି ରହିଅଛି''[୧] ; (ଏବଂ ମନେ ମନେ କହିଲେ ଯେ) ଏ ଲୋକମାନେ ଅପରିଚିତ ଜଣା ପଡୁଛନ୍ତି ।

اِذْ دَخَلُوْا عَلَيْهِ فَقَالُوْا سَلٰمًا ۗ قَالَ سَلٰمٌ ۚ قَوْمٌ مُّنْكَرُوْنَ ۝٢٦

୨୭. ଏହା ପରେ ସେ ନୀରବରେ ନିଜ ପରିବାର ଲୋକମାନଙ୍କ ନିକଟକୁ ଚାଲିଗଲେ, ଏବଂ ସେକା ଯାଇଥିବା ଏକ ବାଛୁରୀ (ମାଂସ) ଆଣିଥିଲେ ।

فَرَاغَ اِلٰٓى اَهْلِهٖ فَجَآءَ بِعِجْلٍ سَمِيْنٍ ۝٢٧

୨୮. ଏବଂ ତାହାକୁ ସେମାନଙ୍କ ସମ୍ମୁଖରେ ରଖି ପଚାରିଲେ, ''କ'ଣ ଆପଣମାନେ କିଛି ଖାଇବେ ନାହିଁ ?''

فَقَرَّبَهٗٓ اِلَيْهِمْ قَالَ اَلَا تَاْكُلُوْنَ ۝٢٨

୨୯. ଏବଂ (ମନେ ମନେ) ସେମାନଙ୍କ ପ୍ରତି ଭୟଭୀତ ହେଲେ ; (ସେମାନେ ଏ ବିଷୟକୁ ବୁଝିପାରିଲେ) ଏବଂ କହିଲେ, ''ଭୟକର ନାହିଁ'' ; ଏବଂ ତାହାଙ୍କୁ ଏକ ଜ୍ଞାନବନ୍ତ ପୁତ୍ରର ସୁସମାଚାର ଦେଲେ ।

فَاَوْجَسَ مِنْهُمْ خِيْفَةً ۗ قَالُوْا لَا تَخَفْ ۗ وَبَشَّرُوْهُ بِغُلٰمٍ عَلِيْمٍ ۝٢٩

୩୦. ଏହି ସମୟରେ ତାଙ୍କର ପତ୍ନୀ ସମ୍ମୁଖକୁ ଆସିଲେ ଯାହାଙ୍କର ମୁଖମଣ୍ଡଳରେ ଲଜ୍ଜା-ଜନିତ[୨] ଚିହ୍ନ (ଦୃଷ୍ଟିଗୋଚର ହେଉ) ଥିଲା ; ତେଣୁ ସେ ନିଜ ମୁହଁରେ ଜୋରରେ ହାତ ମାରି କହିଲେ, ''ମୁଁ ଜଣେ ବନ୍ଧ୍ୟା ବୃଦ୍ଧା ଅଟେ ।''

فَاَقْبَلَتِ امْرَاَتُهٗ فِيْ صَرَّةٍ فَصَكَّتْ وَجْهَهَا وَقَالَتْ عَجُوْزٌ عَقِيْمٌ ۝٣٠

୩୧. ସେମାନେ କହିଲେ, ''(ଏହା ସତ୍ୟ ଯେ) ତୁମେ ଏହିପରି ଅଟ ; କିନ୍ତୁ ତୁମ ପାଳନକର୍ତ୍ତା (ତାହା ହିଁ) କହିଛନ୍ତି (ଯାହା ଆମେ କହିଅଛୁ ; କିନ୍ତୁ) ସେ ବାସ୍ତବରେ ଅତିଶୟ ତତ୍ତ୍ୱଜ୍ଞ (ଓ) ସର୍ବଜ୍ଞ ।''

قَالُوْا كَذٰلِكِ ۙ قَالَ رَبُّكِ ۗ اِنَّهٗ هُوَ الْحَكِيْمُ الْعَلِيْمُ ۝٣١

---

୧. ଏ ବିଷୟ କେବଳ ଅଲ୍ଲାହ କହି ପାରିବେ, କିନ୍ତୁ ଏଠାରେ ବିଷୟଟି ହଜରତ ଇବ୍ରାହିମଙ୍କୁ ସଂଶ୍ଳିଷ୍ଟ କରୁଛି । ଯେହେତୁ ହଜରତ ଇବ୍ରାହିମ ଜାଣି ପାରିଥିଲେ ଯେ ସେମାନେ ଆଧ୍ୟାତ୍ମିକତାର ଶିଖର ଦେଶରେ ପହଞ୍ଚି ପାରିଛନ୍ତି ଓ ସେମାନେ ଅଲ୍ଲାହଙ୍କର କୃପାଛାୟାଶ୍ରୟ ମଧ୍ୟକୁ ଆସି ଯାଇଛନ୍ତି, ତେଣୁ ସେ ବିଶ୍ୱାସପୂର୍ବକ କହିପାରିଥିଲେ ଯେ ସେମାନଙ୍କ ସକାଶେ ଚିରସ୍ଥାୟୀ ଶାନ୍ତି ନିୟତ ଅଛି ।

୨. ମୂଳ ଶବ୍ଦ 'ସର୍‌ରତିନ' ଅର୍ଥ ମୁଖମଣ୍ଡଳର କାଳିମା । ଅତଏବ ଏହାର ତାତ୍ପର୍ଯ୍ୟ ହେଉଛି ଯେ ଲଜ୍ଜା ଯୋଗୁଁ ତାହାଙ୍କ ମୁଖମଣ୍ଡଳର ରଙ୍ଗ ବଦଳି ଯାଇଥିଲା ।

## ଭାଗ—୨୭

୩୨. (ଏହା ପରେ ଇବ୍ରାହିମ) କହିଲେ, "ହେ ଦେବଦୂତଗଣ ! ତୁମମାନଙ୍କ ଦାୟିତ୍ୱରେ କେଉଁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଦିଆଯାଇଅଛି ?"

قَالَ فَمَا خَطْبُكُمْ اَيُّهَا الْمُرْسَلُوْنَ ﴿٣٢﴾

୩୩. ସେମାନେ କହିଲେ, "ଆମେମାନେ ଏକ ଅପରାଧୀ ସଂପ୍ରଦାୟ ପ୍ରତି ପ୍ରେରିତ ହୋଇଅଛୁ",

قَالُوْۤا اِنَّاۤ اُرْسِلْنَاۤ اِلٰى قَوْمٍ مُّجْرِمِيْنَ ﴿٣٣﴾

୩୪. "ଏହି କାରଣରୁ ଯେ ଆମେମାନେ (କ୍ରମାଗତ ଭାବରେ) ସେମାନଙ୍କ ଉପରେ ବାଟୁଳି ବୃଷ୍ଟି କରିବୁ,"

لِنُرْسِلَ عَلَيْهِمْ حِجَارَةً مِّنْ طِيْنٍ ﴿٣٤﴾

୩୫. "ଯେଉଁଗୁଡ଼ିକ ଉପରେ ତୁମ ପାଳନକର୍ତ୍ତାଙ୍କ ତରଫରୁ ସୀମା-ଲଂଘନକାରୀଙ୍କୁ ଶାସ୍ତି ଦେବା ସକାଶେ ଚିହ୍ନ ଦିଆଯାଇଛି ।"

مُّسَوَّمَةً عِنْدَ رَبِّكَ لِلْمُسْرِفِيْنَ ﴿٣٥﴾

୩୬. ଏବଂ ସେ ଗ୍ରାମରେ ଯେତେ ବିଶ୍ୱାସକାରୀ ଥିଲେ ଆମେ ସେମାନଙ୍କୁ ବାହାର କରି ନେଇଥିଲୁ ।

فَاَخْرَجْنَا مَنْ كَانَ فِيْهَا مِنَ الْمُؤْمِنِيْنَ ﴿٣٦﴾

୩୭. ଏବଂ ଆମେ ସେ ଗ୍ରାମରେ ଆମ ଆଜ୍ଞାବହମାନଙ୍କର କେବଳ ଗୋଟିଏ ମାତ୍ର ଗୃହ ପାଇଲୁ ।

فَمَا وَجَدْنَا فِيْهَا غَيْرَ بَيْتٍ مِّنَ الْمُسْلِمِيْنَ ﴿٣٧﴾

୩୮. ଏବଂ ଆମେ ସେଠାରେ ଏପରି ଏକ ନିଦର୍ଶନ ଛାଡ଼ି ଦେଲୁ ଯାହା ସର୍ବଦା ସେହି ଲୋକମାନଙ୍କ କାର୍ଯ୍ୟରେ ଲାଗିବ ଯେଉଁମାନେ ଯନ୍ତ୍ରଣା-ଦାୟକ ଶାସ୍ତିକୁ ଭୟ କରନ୍ତି ।

وَتَرَكْنَا فِيْهَاۤ اٰيَةً لِّلَّذِيْنَ يَخَافُوْنَ الْعَذَابَ الْاَلِيْمَ ﴿٣٨﴾

୩୯. ଏବଂ ମୁସାଙ୍କ ଘଟଣାରେ ମଧ୍ୟ (ଅନେକ ନିଦର୍ଶନ ଥିଲା); ଯେତେବେଳେ ଆମେ ତାହାକୁ ପ୍ରକାଶ୍ୟ ପ୍ରମାଣ ସହିତ ଫିରଔନ ନିକଟକୁ ପଠାଇଥିଲୁ,

وَفِيْ مُوْسٰۤى اِذْ اَرْسَلْنٰهُ اِلٰى فِرْعَوْنَ بِسُلْطٰنٍ مُّبِيْنٍ ﴿٣٩﴾

୪୦. ଏବଂ ସେ (ଫିରଔନ) ନିଜ ଦେବାଳୟ [୨] ଆଡ଼କୁ ମୁହଁ ମୋଡ଼ି ଫେରିଗଲା, ଏବଂ କହିଲା, "ଏ (ମୁସା) ଜଣେ ମାୟାବୀ କିମ୍ବା ପାଗଳ ଅଟେ ।"

فَتَوَلّٰى بِرُكْنِهٖ وَقَالَ سٰحِرٌ اَوْ مَجْنُوْنٌ ﴿٤٠﴾

୪୧. ତେଣୁ ଆମେ ତାହାକୁ ଓ ତାହାର ସୈନ୍ୟବାହିନୀକୁ (କ୍ରୋଧାନ୍ୱିତ ହୋଇ) କବଳିତ କରିଥିଲୁ ଓ ସେ ସମସ୍ତଙ୍କୁ ସମୁଦ୍ରରେ ନିକ୍ଷେପ କରିଥିଲୁ; ଏବଂ (ଅଦ୍ୟାବଧି) ତାହାକୁ ଲାଞ୍ଛିତ କରାଯାଉଛି ।

فَاَخَذْنٰهُ وَجُنُوْدَهٗ فَنَبَذْنٰهُمْ فِى الْيَمِّ وَهُوَ مُلِيْمٌ ﴿٤١﴾

---

୧. ୨୯:୩୨ର ଟୀକା ଓ ୨୯:୩୪ର ଟୀକା ଦ୍ରଷ୍ଟବ୍ୟ ।

୨. ମୂଳ ଶବ୍ଦ 'ରୁକୁନ' ଅର୍ଥ ଶକ୍ତିଲାଭ କରିବା ସ୍ଥାନ । ଏହି ଆୟତରେ ଆକ୍ଷରିକ ଅର୍ଥ ହେଉଛି- ଫିରଔନ ନିଜର ଶକ୍ତିପ୍ରାପ୍ତି ସ୍ଥାନକୁ ଫେରି ଆସିଥିଲା । ଯେହେତୁ ଫିରଔନର ବିଶ୍ୱାସ ଅନୁସାରେ ତାହାକୁ ସମସ୍ତ ଶକ୍ତି ବଳିବର୍ଦ୍ଧ ମନ୍ଦିରରୁ ମିଳୁଥିଲା । ତେଣୁ ଏଠାରେ ଅନୁବାଦରେ ଏହି ଅର୍ଥ ପ୍ରତି ଦୃଷ୍ଟି ଦେଇ ଦେବାଳୟ ଶବ୍ଦ ପ୍ରୟୋଗ କରାଯାଇଛି ।

୪୨. ଏବଂ ଆଦଙ୍କ ଘଟଣାରେ ମଧ୍ୟ (ଆମେ ଅନେକ ନିଦର୍ଶନ ରଖିଅଛୁ); ଯେତେବେଳେ ଆମେ ସେମାନଙ୍କ ଉପରେ ଏକ ଭୟଙ୍କର ଝଡ଼ ପ୍ରବାହିତ କରାଇଥିଲୁ,

وَفِي عَادٍ إِذْ أَرْسَلْنَا عَلَيْهِمُ الرِّيحَ الْعَقِيمَ ۝٤٢

୪୩. ତାହା ଯାହା ଉପରେ ପ୍ରବାହିତ ହେଉଥିଲା ତାହାକୁ (ଧ୍ୱସ୍ତବିଧ୍ୱସ୍ତ କରି) ଏକ ପଚାସଢ଼ା ହାଡ଼ ପରି କରି ଦେଉଥିଲା ।

مَا تَذَرُ مِنْ شَيْءٍ أَتَتْ عَلَيْهِ إِلَّا جَعَلَتْهُ كَالرَّمِيمِ ۝٤٣

୪୪. ଏବଂ ସମୁଦ (ସଂପ୍ରଦାୟ) ଭିତରେ ମଧ୍ୟ (ଆମେ ନିଦର୍ଶନ ରଖିଅଛୁ); ଯେତେବେଳେ ସେମାନଙ୍କୁ କୁହାଗଲା ଯେ କିଛି କାଳ ପାଇଁ ଲାଭବାନ୍ ହୁଅ । [୧]

وَفِي ثَمُودَ إِذْ قِيلَ لَهُمْ تَمَتَّعُوا حَتَّىٰ حِينٍ ۝٤٤

୪୫. ଏବଂ ସେମାନେ ନିଜ ପାଳନକର୍ତ୍ତାଙ୍କ ଆଦେଶକୁ ଅମାନ୍ୟ କରିଥିଲେ; ଏବଂ ସେମାନଙ୍କୁ ଏକ ଶାସ୍ତି କବଳିତ କରିଥିଲା ଏବଂ ସେମାନେ ଏହାକୁ ଚାହିଁ ରହିଗଲେ ।

فَعَتَوْا عَنْ أَمْرِ رَبِّهِمْ فَأَخَذَتْهُمُ الصَّاعِقَةُ وَهُمْ يَنْظُرُونَ ۝٤٥

୪୬ ଏବଂ ସେମାନେ ରକ୍ଷା ପାଇବାକୁ ଠିଆ [୨] ହୋଇ ପାରିଲେ ନାହିଁ କି କାହାରି ସାହାଯ୍ୟ ହାସଲ କରି ପାରିଲେ ନାହିଁ ।

فَمَا اسْتَطَاعُوا مِنْ قِيَامٍ وَمَا كَانُوا مُنْتَصِرِينَ ۝٤٦

୪୭. ଏବଂ ସେମାନଙ୍କ ପୂର୍ବରୁ ନୂହଙ୍କ ସଂପ୍ରଦାୟକୁ ମଧ୍ୟ (ଆମେ ବିନାଶ କରି ସାରିଥିଲୁ); ସେମାନେ ଏକ ଅବାଧ୍ୟ ସଂପ୍ରଦାୟ ଥିଲେ ।

وَقَوْمَ نُوحٍ مِنْ قَبْلُ ۖ إِنَّهُمْ كَانُوا قَوْمًا فَاسِقِينَ ۝٤٧ ع

୪୮. ଏବଂ ଆମେ ଆକାଶକୁ ମଧ୍ୟ ଅନେକ ଗୁଣସଂପନ୍ନ [୩] କରି ନିର୍ମାଣ କରିଅଛୁ; ଏବଂ ଆମର ବ୍ୟାପକ ଶକ୍ତି ଅଛି ।

وَالسَّمَاءَ بَنَيْنَاهَا بِأَيْدٍ وَإِنَّا لَمُوسِعُونَ ۝٤٨

୪୯. ଏବଂ ଆମେ ଭୂପୃଷ୍ଠକୁ ଏକ ଶଯ୍ୟା ସଦୃଶ ନିର୍ମାଣ କରିଅଛୁ, ଏବଂ ଆମେ ଶଯ୍ୟା ନିର୍ମାଣରେ ସର୍ବୋତ୍କୃଷ୍ଟ ।

وَالْأَرْضَ فَرَشْنَاهَا فَنِعْمَ الْمَاهِدُونَ ۝٤٩

୫୦. ଏବଂ ଆମେ ପ୍ରତ୍ୟେକ ଜିନିଷର ମାଈ ଓ ଅଣ୍ଡିରା ସୃଷ୍ଟି କରିଅଛୁ ଯେପରିକି ତୁମେମାନେ ଶିକ୍ଷା ଲାଭ କରି ପାରିବ ।

وَمِنْ كُلِّ شَيْءٍ خَلَقْنَا زَوْجَيْنِ لَعَلَّكُمْ تَذَكَّرُونَ ۝٥٠

୫୧. ସୁତରାଂ ତୁମେମାନେ ଅଲ୍ଲାହଙ୍କ ଆଡ଼କୁ ଧାବମାନ ହୁଅ; ଆମେ [୪] ତାହାଙ୍କ ନିକଟରୁ ଜଣେ ସୁସ୍ପଷ୍ଟ ସଚେତକ ଭାବରେ ଆସିଅଛୁ ।

فَفِرُّوا إِلَى اللَّهِ ۖ إِنِّي لَكُمْ مِنْهُ نَذِيرٌ مُبِينٌ ۝٥١

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ କିଛି ସମୟ ପରେ ସେମାନେ ଶାସ୍ତିର କବଳିତ ହେବେ; ଫଳରେ ଏହାପରେ ଆଉ ସାଂସାରିକ ଲାଭ ହାସଲ କରିବାକୁ ଯୋଗ୍ୟ ହେବେ ନାହିଁ ।

୨. ଅର୍ଥାତ୍ ସେମାନଙ୍କୁ ଛିଡ଼ା ହୋଇ ରକ୍ଷା ପାଇବା ପକାଶେ ବ୍ୟବସ୍ଥା କରିବାକୁ ଆଉ ସୁଯୋଗ ମିଳିଲା ନାହିଁ ।

୩. ମୂଳ ଶବ୍ଦ 'ବେଅଇଦିନ' ଅର୍ଥ 'ଅନେକ ହାତରେ ଗଢ଼ିଅଛୁ' । 'ହାତ' ଶକ୍ତି, ସାମର୍ଥ୍ୟ, ବଳ ଓ ଅଧିକାରର ପ୍ରତୀକ । ଅଲ୍ଲାହଙ୍କ ଶକ୍ତି ପାଇଁ ଧର୍ମର ପରିଭାଷାରେ 'ଗୁଣ' ଶବ୍ଦ ବ୍ୟବହାର କରାଯାଏ । ସେଥିପାଇଁ 'ଅନେକ ଗୁଣ ସମ୍ପନ୍ନ କରି ନିର୍ମାଣ କରିଅଛୁ' ଅନୁବାଦ କରାଯାଇଛି , ଯାହାର ଭାବାର୍ଥ ଆକାଶ ଗଢ଼ିବାରେ ଉଭୟ ଶକ୍ତି ଓ ପବିତ୍ରତା ସଂଶ୍ଳିଷ୍ଟ । ସେଥିପାଇଁ ଆକାଶରେ ବିଭିନ୍ନ ଗୁଣର ପରିପ୍ରକାଶ ହୁଏ ।

୪. ଅର୍ଥାତ୍ ହଜରତ ମହମ୍ମଦ ।

୫୨. ଏବଂ ତୁମେମାନେ ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ଉପାସ୍ୟ ସ୍ଥିର କର ନାହିଁ; ଆମେ ତାହାଙ୍କ ନିକଟରୁ ତୁମମାନଙ୍କ ପ୍ରତି ଜଣେ ସୁସ୍ପଷ୍ଟ ସଚେତକ ଭାବରେ ଆସିଅଛୁ ।

وَلَا تَجْعَلُوْا مَعَ اللّٰهِ اِلٰهًا اٰخَرَ ۭ اِنِّيْ لَكُمْ مِّنْهُ نَذِيْرٌ مُّبِيْنٌ ﴿٥٢﴾

୫୩. ଏହିପରି[୧] ଭାବରେ ସେମାନଙ୍କ ପୂର୍ବରୁ ଯେଉଁ (ରସୁଲ) ମାନେ ଆସୁଥିଲେ, ସେମାନଙ୍କୁ ଲୋକମାନେ ଏହା ହିଁ କହିଥିଲେ ଯେ ସେମାନେ ମାୟାପୂର୍ଣ୍ଣ କଥା କହୁଛନ୍ତି କିମ୍ବା ପାଗଳ ।

كَذٰلِكَ مَآ اَتَى الَّذِيْنَ مِنْ قَبْلِهِمْ مِّنْ رَّسُوْلٍ اِلَّا قَالُوْا سَاحِرٌ اَوْ مَجْنُوْنٌ ﴿٥٣﴾

୫୪. କ'ଣ ସେମାନେ ଏ ସମ୍ବନ୍ଧରେ (ଅର୍ଥାତ୍ ଏପରି କଥା କହିବା ପାଇଁ) ଜଣେ ଅନ୍ୟକୁ ଓସିୟତ[୨] କରିଦେଇ ଯାଇଥିଲେ ? (କଦାପି ନୁହେଁ) ବରଂ ସେ ସମସ୍ତେ ଦୁରାଚାରୀ (ଏଥିଯୋଗୁଁ ଏକା ପ୍ରକାର ମନ୍ଦ ଭାବନା ସେମାନଙ୍କ ଅନ୍ତରରେ ଉଦ୍ରେକ ହୁଏ) ।

اَتَوَاصَوْا بِهٖ ۚ بَلْ هُمْ قَوْمٌ طَاغُوْنَ ﴿٥٤﴾

୫୫. ସୁତରାଂ (ହେ ନବି !) ତୁମେ ସେମାନଙ୍କଠାରୁ ମୁହଁ ଫେରାଇ ନିଅ; (ସେମାନଙ୍କ କାର୍ଯ୍ୟ ଯୋଗୁଁ) ତୁମ ପ୍ରତି କୌଣସି ଦୋଷାରୋପ କରାଯିବ ନାହିଁ ।

فَتَوَلَّ عَنْهُمْ فَمَآ اَنْتَ بِمَلُوْمٍ ﴿٥٥﴾

୫୬. ଏବଂ ସ୍ମରଣ କରାଉ ଥାଅ; କାରଣ ସ୍ମରଣ କରାଇବା ବିଶ୍ୱାସକାରୀମାନଙ୍କୁ ଲାଭ ଦେଇଥାଏ ।

وَّذَكِّرْ فَاِنَّ الذِّكْرٰى تَنْفَعُ الْمُؤْمِنِيْنَ ﴿٥٦﴾

୫୭. ଏବଂ ଆମେ ଜିନ୍ନ ଓ ମନୁଷ୍ୟମାନଙ୍କୁ କେବଳ ଆମର ଉପାସନା ସକାଶେ ସୃଷ୍ଟି କରିଅଛୁ ।

وَمَا خَلَقْتُ الْجِنَّ وَالْاِنْسَ اِلَّا لِيَعْبُدُوْنِ ﴿٥٧﴾

୫୮. ଆମେ ସେମାନଙ୍କଠାରୁ କୌଣସି ଜୀବିକା ମାଗୁ ନାହୁଁ କି ସେମାନେ ଆମକୁ ଖାଦ୍ୟ ଖୁଆନ୍ତୁ, ଏହା ଆମେ ଇଚ୍ଛା କରୁନାହୁଁ ।

مَآ اُرِيْدُ مِنْهُمْ مِّنْ رِّزْقٍ وَّمَآ اُرِيْدُ اَنْ يُّطْعِمُوْنِ ﴿٥٨﴾

୫୯. ଅଲ୍ଲାହ ହିଁ ସମସ୍ତଙ୍କୁ ଖାଦ୍ୟ ଖୁଆଇ ଥା'ନ୍ତି ଯେ ଅତି ବଳବାନ୍ ।

اِنَّ اللّٰهَ هُوَ الرَّزَّاقُ ذُو الْقُوَّةِ الْمَتِيْنُ ﴿٥٩﴾

୬୦. ସୁତରାଂ ଯେଉଁମାନେ ଅତ୍ୟାଚାର କରିଛନ୍ତି ସେମାନଙ୍କ ସକାଶେ ମଧ୍ୟ ସେହିପରି ଭାଗ (ଅର୍ଥାତ୍ ପ୍ରତିଫଳ) ରହିଅଛି ଯେପରି ସେମାନଙ୍କ ସଙ୍ଗୀମାନଙ୍କ ସକାଶେ ଭାଗ ରହିଥିଲା; ତେଣୁ ସେମାନେ ଶାସ୍ତି ତଲବ କରିବାରେ ଆମକୁ ତ୍ୱରାନ୍ୱିତ ନ କରାନ୍ତୁ ।

فَاِنَّ لِلَّذِيْنَ ظَلَمُوْا ذَنُوْبًا مِّثْلَ ذَنُوْبِ اَصْحٰبِهِمْ فَلَا يَسْتَعْجِلُوْنِ ﴿٦٠﴾

୬୧. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି, ସେମାନଙ୍କ ସକାଶେ ସେହିଦିନ, ଯେଉଁ ବିଷୟରେ ସେମାନଙ୍କ ସହିତ ଅଙ୍ଗୀକାର କରାଯାଇଛି, ସର୍ବନାଶ ଘଟିବ ।

فَوَيْلٌ لِّلَّذِيْنَ كَفَرُوْا مِنْ يَّوْمِهِمُ الَّذِيْ يُوْعَدُوْنَ ﴿٦١﴾

[୧] 'ଏହିପରି'ର ଅର୍ଥ ଯେପରି ହଜରତ ମୁସା ଓ ହଜରତ ସ୍ୱାଲେହଙ୍କୁ ଲୋକମାନେ ପ୍ରତ୍ୟାଖ୍ୟାନ କରିଥିଲେ ସେହିପରି ସେମାନଙ୍କ ପୂର୍ବବର୍ତ୍ତୀ ରସୁଲମାନଙ୍କୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଥିଲେ ତଥା ସେମାନଙ୍କୁ ମିଥ୍ୟାବାଦୀ କହିଥିଲେ ।

[୨] ଅର୍ଥାତ୍ ବିରୋଧୀମାନେ ଏହିପରି ଏକା ପ୍ରକାର ପ୍ରମାଣ ଉପସ୍ଥାପନ କରୁଥିଲେ ସତେ ଯେପରି ଜଣେ ଅନ୍ୟକୁ ଶିଖାଇଥିଲେ ଯେ ଏହିରୂପେ ଅବତାରମାନଙ୍କୁ ପ୍ରତ୍ୟାଖ୍ୟାନ କରିବାକୁ ହେବ ।

سُوْرَةُ الطُّوْرِ مَكِّيَّةٌ (٥٢)

# ଅଲ–ତୁର

[illegible] ଅଛି ।

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ଆମେ ସାକ୍ଷ୍ୟ ସ୍ୱରୂପ ତୁର [୧] (ପର୍ବତ)କୁ ଉପସ୍ଥାପିତ କରୁଅଛୁ;

وَالطُّوْرِ ②

୩. ଏବଂ ଲିପିବଦ୍ଧ [୨] କରା ହୋଇଥିବା (ଏହି କୋରାନ) ଗ୍ରନ୍ଥକୁ ମଧ୍ୟ;

وَكِتٰبٍ مَّسْطُوْرٍ ③

୪. ଯାହା ଖୋଲା କାଗଜ [୩] ଉପରେ (ଲିପିବଦ୍ଧ ହୋଇଅଛି);

فِيْ رَقٍّ مَّنْشُوْرٍ ④

୫. ଏବଂ କା'ବା [୪] ଗୃହକୁ, ଯାହା ସର୍ବଦା ମୁଖରିତ ରହିବ;

وَّالْبَيْتِ الْمَعْمُوْرِ ⑤

୬. ଏବଂ (କା'ବାର) ସେହି ଛାତକୁ ଯାହା ସର୍ବଦା ଉଚ୍ଚ [୫] (ଅର୍ଥାତ୍ ସମ୍ମାନନୀୟ) ହୋଇ ରହିବ ;

وَالسَّقْفِ الْمَرْفُوْعِ ⑥

୭. ଏବଂ ତରଙ୍ଗାୟିତ ସମୁଦ୍ରକୁ; [୬] ;

وَالْبَحْرِ الْمَسْجُوْرِ ⑦

୮. ତୁମ ପାଳନକର୍ତ୍ତାଙ୍କ ନିକଟରୁ ନିଶ୍ଚୟ ଶାସ୍ତି ଅବତୀର୍ଣ୍ଣ ହେବ;

اِنَّ عَذَابَ رَبِّكَ لَوَاقِعٌ ⑧

୯. ତାହାକୁ ଅପସାରଣ କରିବାକୁ କେହି ନାହିଁ ।

مَّا لَهٗ مِنْ دَافِعٍ ⑨

୧୦. ଯେଉଁଦିନ ମେଘମାଳା [୭] ଆଲୋଡ଼ିତ ହେବ,

يَّوْمَ تَمُوْرُ السَّمَآءُ مَوْرًا ⑩

---

୧. ହଜରତ ମୁସାଙ୍କୁ ତୁର ପର୍ବତ ଉପରେ ଧର୍ମଗ୍ରନ୍ଥ ଦିଆଯାଇଥିଲା, ଯାହାକି ହଜରତ ମହମ୍ମଦଙ୍କ ସତ୍ୟତା ପ୍ରମାଣିତ କରୁଛି ।

୨. ଲିପିବଦ୍ଧ ଗ୍ରନ୍ଥ ଅର୍ଥ ପବିତ୍ର କୋରାନ, ଯହିଁରୁ ହଜରତ ମହମ୍ମଦଙ୍କ ଦ୍ୱାରା ପ୍ରକଟିତ ସତ୍ୟ ଦିବାଲୋକ ସଦୃଶ ପ୍ରମାଣିତ ହେଉଛି ।

୩. 'ଖୋଲା କାଗଜ'ରୁ ସେହିଗ୍ରନ୍ଥ ଅର୍ଥାତ୍ ପବିତ୍ର କୋରାନ ଅଭିପ୍ରେତ; ଯାହାକୁ ବାରମ୍ବାର ପାଠ କରାଯାଏ । ଜଣେ ପ୍ରକୃତ ମୁସଲମାନ ସେହି ଗ୍ରନ୍ଥକୁ ଆପଣା ଘରେ ଏଥି ସକାଶେ ରଖେ ଯେ ସେ ତାକୁ ସବୁବେଳେ ପଢ଼ିପାରିବ ଓ ସେହି କାରଣରୁ ତାହା ସବୁବେଳେ ଖୋଲା ରହିବ ।

୪. ହଜରତ ଇବ୍ରାହିମଙ୍କ ପରେ ହଜରତ ମହମ୍ମଦଙ୍କ ଦ୍ୱାରା ହଜ ଯାତ୍ରାକୁ ଅନିବାର୍ଯ୍ୟ କରାଯାଇଛି । ଏହି କାରଣରୁ ମୁସଲମାନମାନେ ସବୁବେଳେ ହଜ କରୁଥିବେ ଓ ହଜରତ ମହମ୍ମଦଙ୍କର ସତ୍ୟତା ପ୍ରମାଣିତ ହେଉଥିବ ।

୫. ଅର୍ଥାତ୍ କା'ବା; ଏହାର ତାତ୍ପର୍ଯ୍ୟ ହେଉଛି ଯେ ଅଲ୍ଲାହ୍ ସବୁବେଳେ ଏହାର ସମ୍ମାନକୁ ବଜାୟ ରଖିବେ ।

୬. ପବିତ୍ର କୋରାନରେ ସମୁଦ୍ରକୁ ଆଧ୍ୟାତ୍ମିକ ଜ୍ଞାନର ଏକ ନିଦର୍ଶନ ବୋଲି ସ୍ଥିର କରାଯାଇଛି; ତେଣୁ 'ତରଙ୍ଗାୟିତ ସମୁଦ୍ର'ରୁ କୋରାନର ଜ୍ଞାନ ଅଭିପ୍ରେତ । ଏଥିରୁ ସବୁବେଳେ ଜ୍ଞାନ ପ୍ରକଟିତ ହେଉଥିବ ଓ ଇସଲାମର ସତ୍ୟତା ପ୍ରତିପାଦିତ ହେଉଥିବ ।

୭. ମୂଳ ଶବ୍ଦ 'ସମା' ଅର୍ଥ (କ) ମେଘ (ଖ) ଆକାଶ । ଏଠାରେ 'ସମା'ର ଅର୍ଥ ମେଘ । ଏହାର ତାତ୍ପର୍ଯ୍ୟ ହେଉଛି ଯେ ପବିତ୍ର କୋରାନ ମାଧ୍ୟମରେ କରୁଣା ରୂପକ ମେଘ ପୃଥିବୀ ଉପରେ ଆଚ୍ଛାଦିତ ହେବ ।

وَّ تَسِيْرُ الْجِبَالُ سَيْرًا ۝١١

୧୧. ଏବଂ ପର୍ବତ [୧] ଦ୍ରୁତ ଗତିରେ ଗମନ କରିବ,

فَوَيْلٌ يَّوْمَئِذٍ لِّلْمُكَذِّبِيْنَ ۝١٢

୧୨. ସୁତରାଂ ସେହିଦିନ ମିଥ୍ୟା ଆରୋପକାରୀମାନଙ୍କ ଉପରେ ଶାସ୍ତି ଅବତୀର୍ଣ୍ଣ ହେବ,

الَّذِيْنَ هُمْ فِيْ خَوْضٍ يَّلْعَبُوْنَ ۝١٣

୧୩. (ଅର୍ଥାତ୍ ସେହି ଲୋକମାନଙ୍କ ଉପରେ) ଯେଉଁମାନେ କୁତ୍ସାରଟନା କରିବାରେ ରତ ଥିଲେ ।

يَوْمَ يُدَعُّوْنَ اِلٰى نَارِ جَهَنَّمَ دَعًّا ۝١٤

୧୪. ଯେଉଁଦିନ ସେ ସମସ୍ତଙ୍କୁ ନରକର ଅଗ୍ନି ଆଡ଼କୁ ଧକ୍କା ମାରି ନିଆଯିବ ।

هٰذِهِ النَّارُ الَّتِيْ كُنْتُمْ بِهَا تُكَذِّبُوْنَ ۝١٥

୧୫. (ଏବଂ କୁହାଯିବ), ''ଏହା ହିଁ ସେହି ଅଗ୍ନି ଯାହାକୁ, ତୁମେ ଅସ୍ୱୀକାର କରୁଥିଲ ।''

اَفَسِحْرٌ هٰذَآ اَمْ اَنْتُمْ لَا تُبْصِرُوْنَ ۝١٦

୧୬. ''ତାହାହେଲେ କ'ଣ ଏହା ମାୟାପୂର୍ଣ୍ଣ ବିଷୟ ନା ପ୍ରକୃତରେ ତୁମେମାନେ ଏବେ ବି ଦେଖି ପାରୁ ନାହିଁ ?''

اِصْلَوْهَا فَاصْبِرُوْٓا اَوْ لَا تَصْبِرُوْا ۚ سَوَآءٌ عَلَيْكُمْ ۗ اِنَّمَا تُجْزَوْنَ مَا كُنْتُمْ تَعْمَلُوْنَ ۝١٧

୧୭. (ଯଦି ଏହା ହିଁ ତୁମମାନଙ୍କର ଧାରଣା ତେବେ ନିର୍ଭୟରେ) ଏଥିରେ ପ୍ରବେଶ କର; ଏବଂ ତୁମେମାନେ ଧୈର୍ଯ୍ୟ ଧାରଣ କର ବା ଧୈର୍ଯ୍ୟ ଧାରଣ ନ କର, ଏହା ତୁମମାନଙ୍କ ପକ୍ଷରେ ସମାନ; (ଯାହା ହେବା କଥା ତାହା ଅବଶ୍ୟ ହେବ) ତୁମମାନଙ୍କୁ କେବଳ ନିଜ କର୍ମର ପ୍ରତିଫଳ ଦିଆଯାଉଛି ।

اِنَّ الْمُتَّقِيْنَ فِيْ جَنّٰتٍ وَّ نَعِيْمٍ ۝١٨

୧୮. ଧର୍ମଭୀରୁମାନେ ବୈକୁଣ୍ଠରେ ଓ ସୁଖରେ ରହିବେ,

فٰكِهِيْنَ بِمَآ اٰتٰهُمْ رَبُّهُمْ ۚ وَوَقٰهُمْ رَبُّهُمْ عَذَابَ الْجَحِيْمِ ۝١٩

୧୯. (ଏବଂ) ଯାହା କିଛି ସେମାନଙ୍କ ପାଳନକର୍ତ୍ତା ସେମାନଙ୍କୁ ଦେବେ (ସେମାନେ) ତହିଁରେ ଆନନ୍ଦିତ ହେବେ; ଏବଂ ସେମାନଙ୍କ ପାଳନକର୍ତ୍ତା ସେମାନଙ୍କୁ ନରକାଗ୍ନିର ଶାସ୍ତିରୁ ରକ୍ଷା କରିବେ ।

كُلُوْا وَاشْرَبُوْا هَنِيْٓـًٔا بِمَا كُنْتُمْ تَعْمَلُوْنَ ۝٢٠

୨୦. (ଏବଂ କହିବେ ଯେ ଯାହା ତୁମମାନଙ୍କୁ ଦିଆଯାଉଛି ତାହାକୁ) ଖାଅ ଓ ପିଅ; ତାହା ତୁମମାନଙ୍କ କର୍ମ ଯୋଗୁଁ ତୁମମାନଙ୍କ ସକାଶେ ଆଶୀର୍ବାଦପୂର୍ଣ୍ଣ ହେବ ।

مُتَّكِـِٕيْنَ عَلٰى سُرُرٍ مَّصْفُوْفَةٍ ۚ وَزَوَّجْنٰهُمْ بِحُوْرٍ عِيْنٍ ۝٢١

୨୧. ସେଦିନ ସେମାନେ ଧାଡ଼ି ଧାଡ଼ି ହୋଇ ପଡ଼ିଥିବା ପଲଙ୍କମାନଙ୍କ ଉପରେ ତକିଆ ଲଗାଇ ବସିଥିବେ; ଏବଂ ଆମେ ସେମାନଙ୍କୁ ସଙ୍ଗିନୀ ଭାବରେ ସୁନ୍ଦରୀ ସୁଲୋଚନା ନାରୀ ପ୍ରଦାନ କରିବୁ ।

---

୧. ଏଠାରେ 'ପର୍ବତ'ରୁ ମହାନ୍ ବ୍ୟକ୍ତି ବା ଶକ୍ତିଶାଳୀ ସାମ୍ରାଜ୍ୟ ଅଭିପ୍ରେତ । ଯେତେବେଳେ ପବିତ୍ର କୋରାନର ଶିକ୍ଷା ପ୍ରଚାରିତ ହୋଇଯିବ ସେତେବେଳେ ଆରବର ତଥା ପାରସ୍ୟ ଓ ରୋମ ସାମ୍ରାଜ୍ୟର ଶାସନ ବ୍ୟବସ୍ଥା ଛିନ୍ନ ବିଚ୍ଛିନ୍ନ ହୋଇଯିବ, ଏପରିକି ସେ ସବୁ ସଂସାରରୁ ଲୋପ ପାଇବ ।

وَالَّذِيْنَ اٰمَنُوْا وَاتَّبَعَتْهُمْ ذُرِّيَّتُهُمْ بِاِيْمَانٍ اَلْحَقْنَا بِهِمْ ذُرِّيَّتَهُمْ وَمَآ اَلَتْنٰهُمْ مِّنْ عَمَلِهِمْ مِّنْ شَيْءٍ ۭ كُلُّ امْرِئٍۢ بِمَا كَسَبَ رَهِيْنٌ ﴿٢٢﴾

୨୨. ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ଏବଂ ସେମାନଙ୍କ ସନ୍ତାନ ସନ୍ତତିକୁ ମଧ୍ୟ ବିଶ୍ୱାସ ପ୍ରସଙ୍ଗରେ ସେମାନଙ୍କର ଅନୁସରଣ କରିଛନ୍ତି, ଆମେ ସେମାନଙ୍କ ସହିତ ସେମାନଙ୍କ ସନ୍ତାନ-ସନ୍ତତିକୁ ମଧ୍ୟ ବୈକୁଣ୍ଠରେ ଏକତ୍ରିତ କରାଇବୁ; ଏବଂ ସେମାନଙ୍କ (ପିତୃପିତାମହଙ୍କ) କର୍ମଫଳରୁ ମଧ୍ୟ କିଛି ହ୍ରାସ କରିବୁ ନାହିଁ; ପ୍ରତ୍ୟେକ ବ୍ୟକ୍ତି ନିଜ କର୍ମଫଳ ସହିତ ଆବଦ୍ଧ [୧] ରହିଛି ।

وَاَمْدَدْنٰهُمْ بِفَاكِهَةٍ وَّلَحْمٍ مِّمَّا يَشْتَهُوْنَ ﴿٢٣﴾

୨୩. ଏବଂ ଆମେ ସେମାନଙ୍କୁ ସେମାନଙ୍କ ଇଚ୍ଛା ଅନୁଯାୟୀ ବିଭିନ୍ନ ପ୍ରକାର ଫଳ ଓ ବିଭିନ୍ନ ପ୍ରକାର ମାଂସ ଯୋଗାଇ ଦେବୁ ।

يَتَنَازَعُوْنَ فِيْهَا كَاْسًا لَّا لَغْوٌ فِيْهَا وَلَا تَاْثِيْمٌ ﴿٢٤﴾

୨୪. ସେମାନେ ସେଠାରେ ଏପରି ପାନପାତ୍ର [୨] ସଂକ୍ରାନ୍ତରେ କଳହ କରିବେ ଯାହାର ପରିଣାମ ବୃଥା ଆଳାପ ନୁହେଁ କି ପାପ ନୁହେଁ ।

وَيَطُوْفُ عَلَيْهِمْ غِلْمَانٌ لَّهُمْ كَاَنَّهُمْ لُؤْلُؤٌ مَّكْنُوْنٌ ﴿٢٥﴾

୨୫. ଏବଂ ସେବା ସକାଶେ ସେମାନଙ୍କ ନିକଟରେ ସବୁବେଳେ ଯୁବ ଭୃତ୍ୟମାନେ ଉପସ୍ଥିତ ଥିବେ; ସତେ ଯେପରି ସେମାନେ ଆବୃତ [୩] ମୁକ୍ତା ।

وَاَقْبَلَ بَعْضُهُمْ عَلٰى بَعْضٍ يَّتَسَآءَلُوْنَ ﴿٢٦﴾

୨୬. ଏବଂ ସେମାନେ ପରସ୍ପରକୁ ଚାହିଁ ପ୍ରଶ୍ନ ପଚାରିବେ ।

قَالُوْٓا اِنَّا كُنَّا قَبْلُ فِيْٓ اَهْلِنَا مُشْفِقِيْنَ ﴿٢٧﴾

୨୭. ଏବଂ କହିବେ, ''ଏହା ପୂର୍ବରୁ [୪] (ଯେତେବେଳେ) ଆମେମାନେ ନିଜ ସଂପର୍କୀୟମାନଙ୍କ ମଧ୍ୟରେ (ଥିଲୁ ସେତେବେଳେ) ନିଜ ପରିଣାମ ପ୍ରତି ଭୟଭୀତ ହେଉଥିଲୁ,''

فَمَنَّ اللّٰهُ عَلَيْنَا وَوَقٰىنَا عَذَابَ السَّمُوْمِ ﴿٢٨﴾

୨୮. ''କିନ୍ତୁ ଅଲ୍ଲାଃ ଆମମାନଙ୍କ ପ୍ରତି କୃପା କଲେ ଓ ଆମମାନଙ୍କୁ ଉତ୍ତପ୍ତ ବାୟୁର ଶାସ୍ତିରୁ ରକ୍ଷା କଲେ ।''

اِنَّا كُنَّا مِنْ قَبْلُ نَدْعُوْهُ ۭ اِنَّهٗ هُوَ الْبَرُّ الرَّحِيْمُ ﴿٢٩﴾ ع

୨୯. ''ଆମେମାନେ ପୂର୍ବରୁ ତାହାଙ୍କୁ (ଅର୍ଥାତ୍ ଅଲ୍ଲାଃଙ୍କୁ) ଡାକୁଥିଲୁ; ସେ ହିଁ ପରମ ହିତକାରୀ (ଓ) ସଦା କରୁଣାମୟ ।''

فَذَكِّرْ فَمَآ اَنْتَ بِنِعْمَتِ رَبِّكَ بِكَاهِنٍ وَّلَا مَجْنُوْنٍ ﴿٣٠﴾

୩୦. ସୁତରାଂ (ହେ ରସୁଲ ! ଲୋକମାନଙ୍କୁ) ତୁମେ ଉପଦେଶ ଦେଉଥାଅ; କାରଣ ତୁମେ ନିଜ ପାଳନକର୍ତ୍ତାଙ୍କ କୃପାରୁ ଭବିଷ୍ୟଦ୍‌ବକ୍ତା ନୁହଁ କି ପାଗଳ ନୁହଁ ।

---

୧. ଅର୍ଥାତ୍ ଆପଣା କର୍ମଫଳ ନିଶ୍ଚୟ ଭୋଗକରିବ; ଏଣେତେଣେ ପଳାଇ ରକ୍ଷା ପାଇ ପାରିବ ନାହିଁ ।

୨. ପରକାଳରେ ଯେଉଁ ବସ୍ତୁର ନାମ 'ମଦିରା' ରଖାଯାଇଛି ପ୍ରକୃତରେ ତାହା ଅଲ୍ଲାଃଙ୍କର ପ୍ରେମ-ମଦିରା । ଏହା ପାନ କଲେ କୌଣସି ବ୍ୟକ୍ତିର ମାନସିକ ବିକୃତି ହୁଏ ନାହିଁ କି କୌଣସି ବ୍ୟକ୍ତି ଅଯଥା ବାକ୍ୟାଳାପ ବା ଗାଳି ଗୁଲଜ କରେ ନାହିଁ ।

୩. ଅର୍ଥାତ୍ ସୁରକ୍ଷିତ ବ୍ୟକ୍ତି ।

୪. ସେମାନେ କହିବେ ଯେ ସଂସାରରେ ଅବିଶ୍ୱାସକାରୀମାନଙ୍କ ଧମକ ଚମକ ଦ୍ୱାରା ସେମାନେ ବେଳେବେଳେ ବିବ୍ରତ ହୋଇପଡୁଥିଲେ, କିନ୍ତୁ ବର୍ତ୍ତମାନ ସେମାନେ ବିଜୟ ଓ ଶାନ୍ତି ଲାଭ କରିଛନ୍ତି ।

| | |
|---|---|
| ୩୧. କ'ଣ ସେମାନେ ଏହା କହୁଛନ୍ତି ଯେ ଏହି ବ୍ୟକ୍ତି ଜଣେ କବି, (ଓ) ଆମେମାନେ ତାହାଙ୍କ ପ୍ରତି କାଳର ଦୁର୍ବିପାକକୁ ପ୍ରତୀକ୍ଷା କରୁଅଛୁ । | أَمْ يَقُولُونَ شَاعِرٌ نَّتَرَبَّصُ بِهِ رَيْبَ الْمَنُونِ ﴿٣١﴾ |
| ୩୨. ତୁମେ କୁହ, "ପ୍ରତୀକ୍ଷା କରୁଥାଅ, କାରଣ ଆମେ ମଧ୍ୟ ତୁମମାନଙ୍କ ସକାଶେ ପ୍ରତୀକ୍ଷା କରୁଅଛୁ ।" | قُلْ تَرَبَّصُوا فَإِنِّي مَعَكُم مِّنَ الْمُتَرَبِّصِينَ ﴿٣٢﴾ |
| ୩୩. କ'ଣ ସେମାନଙ୍କ ବୁଦ୍ଧି ସେମାନଙ୍କୁ ଏହି ବିଷୟ ଶିଖାଉ ଅଛି ନା ସେମାନେ ଏକ ଦୁରାଚାରୀ ସଂପ୍ରଦାୟ ? | أَمْ تَأْمُرُهُمْ أَحْلَامُهُم بِهَٰذَا ۚ أَمْ هُمْ قَوْمٌ طَاغُونَ ﴿٣٣﴾ |
| ୩୪. ନା, ସେମାନେ କହନ୍ତି କି ଏହା ତାହାଙ୍କର ମନଗଢ଼ା କଥା; ପ୍ରକୃତରେ ସେମାନେ (ଅଲ୍ଲାହଙ୍କ ଠାରୁ ଓହି ଅବତୀର୍ଣ୍ଣ ହେଉଥିବା ବିଷୟରେ) ବିଶ୍ୱାସ କରନ୍ତି ନାହିଁ । | أَمْ يَقُولُونَ تَقَوَّلَهُ ۚ بَل لَّا يُؤْمِنُونَ ﴿٣٤﴾ |
| ୩୫. ଯଦି ସେମାନେ ସତ୍ୟବାଦୀ ହୋଇଥାନ୍ତି, ତେବେ ଏ ପ୍ରକାର ଅନ୍ୟ କୌଣସି ବାଣୀ ଘେନି ଆସନ୍ତୁ (ତାହାହେଲେ ଉଭୟ ସମତୁଲ୍ୟ କି ନୁହେଁ ତାହାର ନିଷ୍ପତ୍ତି କରାଯାଇ ପାରିବ) । | فَلْيَأْتُوا بِحَدِيثٍ مِّثْلِهِ إِن كَانُوا صَادِقِينَ ﴿٣٥﴾ |
| ୩୬. କ'ଣ ବିନା ଉଦ୍ଦେଶ୍ୟରେ ସେମାନଙ୍କୁ ସୃଷ୍ଟି କରାହୋଇଛି ? ନା, ସେମାନେ ନିଜେ ନିଜର ସ୍ରଷ୍ଟା ? | أَمْ خُلِقُوا مِنْ غَيْرِ شَيْءٍ أَمْ هُمُ الْخَالِقُونَ ﴿٣٦﴾ |
| ୩୭. କ'ଣ ସେମାନେ ଆକାଶ ଓ ପୃଥିବୀକୁ ସୃଷ୍ଟି କରିଛନ୍ତି ? (ନା;) ବରଂ ପ୍ରକୃତରେ ସେମାନଙ୍କର (ଆକାଶ ଓ ପୃଥିବୀର ସ୍ରଷ୍ଟାଙ୍କ ଉପରେ) ବିଶ୍ୱାସ ନାହିଁ । | أَمْ خَلَقُوا السَّمَاوَاتِ وَالْأَرْضَ ۚ بَل لَّا يُوقِنُونَ ﴿٣٧﴾ |
| ୩୮. କ'ଣ ସେମାନଙ୍କ ନିକଟରେ ତୁମ ପାଳନକର୍ତ୍ତାଙ୍କର ଧନଭଣ୍ଡାର ରହିଅଛି ? ଅଥବା ସେମାନେ (ଏହାର) ସଂରକ୍ଷକ ? | أَمْ عِندَهُمْ خَزَائِنُ رَبِّكَ أَمْ هُمُ الْمُصَيْطِرُونَ ﴿٣٨﴾ |
| ୩୯. କ'ଣ ସେମାନଙ୍କ ପାଖରେ ଏପରି କୌଣସି ନିଶୁଣି ଅଛି ଯାହା ଉପରେ ଚଢ଼ି ସେମାନେ (ଅଲ୍ଲାହଙ୍କ କଥା) ଶୁଣୁଛନ୍ତି; ତେଣୁ ସେମାନଙ୍କର ଶ୍ରୋତା (ହଜରତ ମହମ୍ମଦଙ୍କ ସଦୃଶ) କୌଣସି ସ୍ପଷ୍ଟ ପ୍ରମାଣ ଉପସ୍ଥାପିତ କରିବା ଉଚିତ । | أَمْ لَهُمْ سُلَّمٌ يَسْتَمِعُونَ فِيهِ ۖ فَلْيَأْتِ مُسْتَمِعُهُم بِسُلْطَانٍ مُّبِينٍ ﴿٣٩﴾ |
| ୪୦. କ'ଣ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ) ସକାଶେ କନ୍ୟା ରହିଛି ଓ ତୁମମାନଙ୍କ ସକାଶେ ପୁତ୍ର ? | أَمْ لَهُ الْبَنَاتُ وَلَكُمُ الْبَنُونَ ﴿٤٠﴾ |
| ୪୧. କ'ଣ ତୁମେ ସେମାନଙ୍କଠାରୁ କୌଣସି ପୁରସ୍କାର ମାଗୁ ଅଛ; ଯଦ୍ଦ୍ୱାରା ସେମାନେ ଏହି ଦେୟ ଯୋଗୁଁ ଭାରାକ୍ରାନ୍ତ ହେଉଛନ୍ତି ? | أَمْ تَسْأَلُهُمْ أَجْرًا فَهُم مِّن مَّغْرَمٍ مُّثْقَلُونَ ﴿٤١﴾ |

୪୨. କ'ଣ ସେମାନଙ୍କ ନିକଟରେ ଅଦୃଷ୍ଟ ବିଷୟକ ଜ୍ଞାନ ଅଛି ଯାହାକୁ ସେମାନେ ଲିପିବଦ୍ଧ କରୁଛନ୍ତି ?

أَمْ عِندَهُمُ الْغَيْبُ فَهُمْ يَكْتُبُونَ ﴿٤٢﴾

୪୩. କ'ଣ ସେମାନେ ତୁମ ବିରୁଦ୍ଧରେ କୌଣସି ଚକ୍ରାନ୍ତ କରୁଛନ୍ତି ? (ସୁତରାଂ ମନେରଖ ଯେ) ସେହି ଅବିଶ୍ୱାସକାରୀମାନଙ୍କ ବିରୁଦ୍ଧରେ ହିଁ ଚକ୍ରାନ୍ତ କରାହେବ ।

أَمْ يُرِيدُونَ كَيْدًا ۖ فَالَّذِينَ كَفَرُوا هُمُ الْمَكِيدُونَ ﴿٤٣﴾

୪୪. କ'ଣ ଅଲ୍ଲାହଙ୍କ ବ୍ୟତୀତ ସେମାନଙ୍କର ଅନ୍ୟ କେହି ଉପାସ୍ୟ ଅଛି ? (ମନେରଖ) ସେମାନେ ଯେଉଁମାନଙ୍କୁ ଅଲ୍ଲାହଙ୍କର ସମକକ୍ଷ ମନେ କରନ୍ତି, ସେ ତହିଁରୁ (ଉର୍ଦ୍ଧ୍ୱରେ ଓ) ପବିତ୍ର ।

أَمْ لَهُمْ إِلَٰهٌ غَيْرُ اللَّهِ ۚ سُبْحَانَ اللَّهِ عَمَّا يُشْرِكُونَ ﴿٤٤﴾

୪୫. ଏବଂ ଯଦି ସେମାନେ ଖଣ୍ଡେ ଆକାଶକୁ ନିପତିତ ହେଉଥିବାର ଦେଖିବେ, ତେବେ ସେମାନେ କହିବେ, "ଏହା ଏକ ଘନୀଭୂତ ମେଘ (ମାତ୍ର) ।"

وَإِن يَرَوْا كِسْفًا مِّنَ السَّمَاءِ سَاقِطًا يَقُولُوا سَحَابٌ مَّرْكُومٌ ﴿٤٥﴾

୪୬. ସୁତରାଂ ତୁମେ ସେମାନଙ୍କୁ (ସେମାନଙ୍କ ଅଜ୍ଞତା ମଧ୍ୟରେ), ଛାଡ଼ିଦିଅ, ଏପରିକି ସେମାନେ ନିଜର ସେହି ନିର୍ଦ୍ଦିଷ୍ଟ ଦିବସକୁ ଦେଖିନେବେ ଯେଉଁଦିନ (ସେମାନଙ୍କ ପ୍ରତି ଶାସ୍ତି ଅବତୀର୍ଣ୍ଣ ହେବ ଏବଂ) ସେମାନେ ଭୟଭୀତ ହୋଇ ମୂର୍ଚ୍ଛା ହୋଇଯିବେ,

فَذَرْهُمْ حَتَّىٰ يُلَاقُوا يَوْمَهُمُ الَّذِي فِيهِ يُصْعَقُونَ ﴿٤٦﴾

୪୭. ଯେଉଁଦିନ ସେମାନଙ୍କ ଯୋଜନା ସେମାନଙ୍କ ପାଇଁ କିଛି ଲାଭଦାୟକ ହେବ ନାହିଁ କି ସେମାନଙ୍କୁ ସାହାଯ୍ୟ କରାଯିବ ନାହିଁ ।

يَوْمَ لَا يُغْنِي عَنْهُمْ كَيْدُهُمْ شَيْئًا وَلَا هُمْ يُنصَرُونَ ﴿٤٧﴾

୪୮. ଏବଂ ଅତ୍ୟାଚାରୀମାନଙ୍କୁ ଏତଦ୍‌ଭିନ୍ନ ଆହୁରି ଅଧିକ ଶାସ୍ତି ମିଳିବ; କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ (ଏହା) ଜାଣନ୍ତି ନାହିଁ ।

وَإِنَّ لِلَّذِينَ ظَلَمُوا عَذَابًا دُونَ ذَٰلِكَ وَلَٰكِنَّ أَكْثَرَهُمْ لَا يَعْلَمُونَ ﴿٤٨﴾

୪୯. ଏବଂ ତୁମେ ନିଜ ପାଳନକର୍ତ୍ତାଙ୍କ ଆଦେଶ ପ୍ରତି ଦୃଢ଼ ରହ, କାରଣ ତୁମେ ଆମ ଦୃଷ୍ଟି ସମ୍ମୁଖରେ (ଆମ ସୁରକ୍ଷାରେ) ଅଛ; ଏବଂ ଯେତେବେଳେ ତୁମେ (ଉପାସନା ପାଇଁ) ଦଣ୍ଡାୟମାନ ହୁଅ, ସେତେବେଳେ ପ୍ରଶଂସା ସହକାରେ ଆମର ଗୁଣଗାନ କରିବା ଉଚିତ ।

وَاصْبِرْ لِحُكْمِ رَبِّكَ فَإِنَّكَ بِأَعْيُنِنَا ۖ وَسَبِّحْ بِحَمْدِ رَبِّكَ حِينَ تَقُومُ ﴿٤٩﴾

୫୦. ଏବଂ ଏହିପରି ଭାବରେ (ଯେତେବେଳେ) ତୁମେ ରାତ୍ରି କାଳରେ (ଉପାସନା ପାଇଁ ଦଣ୍ଡାୟମାନ ହୁଅ ସେତେବେଳେ) ତାହାଙ୍କର ଗୁଣଗାନ କର ଏବଂ ଯେତେବେଳେ ନକ୍ଷତ୍ରମାନେ ଅସ୍ତ ହୁଅନ୍ତି, ସେତେବେଳେ ମଧ୍ୟ ।

وَمِنَ اللَّيْلِ فَسَبِّحْهُ وَإِدْبَارَ النُّجُومِ ﴿٥٠﴾ ع

سُورَةُ النَّجْمِ مَكِّيَّةٌ (٥٣)

# ଅଲ—ନଜମ

(ଏହି ସୂରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୬୩ ଟି ଆୟାତ ଓ ୩ଟି ରୁକୂ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

وَالنَّجْمِ اِذَا هَوٰى ②

୨. ଆମ୍ଭେ ସପ୍ତର୍ଷିମଣ୍ଡଳକୁ ଏହି ବିଷୟରେ ପ୍ରମାଣ[୧] ସ୍ୱରୂପ ପେଶ୍ କରୁଅଛୁ, ଯେତେବେଳେ କି ତାହା (ଆଧ୍ୟାତ୍ମିକ ଦୃଷ୍ଟିରୁ) ତଳକୁ ଆସିଯିବ,

مَا ضَلَّ صَاحِبُكُمْ وَمَا غَوٰى ③

୩. [୨]ଯେ ତୁମମାନଙ୍କର ସାଥୀ ପଥଭ୍ରଷ୍ଟ ହୋଇ ନାହାନ୍ତି କି ବିଭ୍ରାନ୍ତ ହୋଇ ନାହାନ୍ତି ।

وَمَا يَنْطِقُ عَنِ الْهَوٰى ④

୪. ଏବଂ ସେ ନିଜ ଇଚ୍ଛାର ବଶବର୍ତ୍ତୀ ହୋଇ କିଛି କହନ୍ତି ନାହିଁ ।

اِنْ هُوَ اِلَّا وَحْيٌ يُّوْحٰى ⑤

୫. ବରଂ ତାହା (ଅର୍ଥାତ୍ ତାହାଙ୍କ ଦ୍ୱାରା ପେଶ କରାଯାଇଥିବା କୋରାନର ବାଣୀ) କେବଳ ଅଲ୍ଲାହଙ୍କ ତରଫରୁ ଅବତୀର୍ଣ୍ଣ ହୋଇଥିବା ଓହି ଅଟେ ।

عَلَّمَهٗ شَدِيْدُ الْقُوٰى ⑥

୬. ତାହାଙ୍କୁ (ଏହି ବାଣୀ) ଅତ୍ୟନ୍ତ ବଳୀୟାନ୍ (ଅଲ୍ଲାହ) ଶିଖାଇଛନ୍ତି,

ذُوْ مِرَّةٍ ؕ فَاسْتَوٰى ⑦

୭. ଯାହାଙ୍କର ଶକ୍ତି ବାରମ୍ବାର ପ୍ରକଟିତ ହୁଏ, ଏବଂ ଯେ ସ୍ୱୀୟ ଶକ୍ତିର ପ୍ରକାଶ ନିମନ୍ତେ ନିଜ ସିଂହାସନ ଉପରେ ବର୍ତ୍ତମାନ ଦୃଢ଼ ଭାବରେ ପ୍ରତିଷ୍ଠିତ ଅଛନ୍ତି ।

وَهُوَ بِالْاُفُقِ الْاَعْلٰى ⑧

୮. ଏବଂ ପ୍ରତ୍ୟେକ ଦୂରଦୃଷ୍ଟି – ସଂପନ୍ନ ବ୍ୟକ୍ତିଙ୍କୁ ଦିଗ୍‌ବଳୟରେ ତାହାଙ୍କ ପ୍ରକାଶର ଲକ୍ଷଣମାନ ଦୃଷ୍ଟି ଗୋଚର ହୁଏ ।

---

୧. ଆରବୀ 'ଅଲ-ନଜମ' ଅର୍ଥ ତାରକା କିନ୍ତୁ ନିର୍ଦ୍ଦିଷ୍ଟ ନାମ ପାଇଁ ଏହାକୁ ପ୍ରୟୋଗ କରାଗଲେ ଏହା ସପ୍ତର୍ଷି ମଣ୍ଡଳ (Pleiades)କୁ ବୁଝାଏ । ଏଠାରେ ଏକ ଭବିଷ୍ୟବାଣୀର ସୂଚନା ଦିଆଯାଇଛି । ହଜରତ ମହମ୍ମଦ କହିଥିଲେ ଯେ ଯଦି ଧର୍ମବିଶ୍ୱାସ ସପ୍ତର୍ଷିମଣ୍ଡଳ ପର୍ଯ୍ୟନ୍ତ ଉପରକୁ ଉଠିଯାଇଥିବ ତେବେ ପାର୍ସୀ ଜାତିର ଜଣେ ଲୋକ ତାକୁ ସେଠାରୁ ଫେରାଇ ଆଣିବେ ।

୨. ଯେତେବେଳେ ସେହି ବ୍ୟକ୍ତିଙ୍କର ଆବିର୍ଭାବ ହେବ ସେତେବେଳେ ପ୍ରତ୍ୟେକଙ୍କ ନିକଟରେ ଏହା ପ୍ରକଟିତ ହୋଇଯିବ ଯେ ହଜରତ ମହମ୍ମଦଙ୍କ ଶିକ୍ଷା ବାସ୍ତବରେ ପରିପୂର୍ଣ୍ଣ ଓ ଆଦର୍ଶ ସ୍ଥାନୀୟ ଥିଲା; ସେ ବିଭ୍ରାନ୍ତ ହୋଇ ନଥିଲେ କି ପଥଭ୍ରଷ୍ଟ ହୋଇ ନଥିଲେ ବା ଇନ୍ଦ୍ରିୟ ଲାଳସାର ବଶୀଭୂତ ହୋଇ ନଥିଲେ ।

ثُمَّ دَنَا فَتَدَلّٰى ⑨

୯. ଏବଂ ସେ[1] (ଅର୍ଥାତ୍ ହଜରତ ମହମ୍ମଦ ଭକ୍ତମାନଙ୍କର ଏପରି ବ୍ୟଗ୍ରତାକୁ ଲକ୍ଷ୍ୟ କରି ଓ ସେମାନଙ୍କ ପ୍ରତି ଦୟା ପରବଶ ହୋଇ ଅଲ୍ଲାଃଙ୍କୁ ସାକ୍ଷାତ୍ କରିବା ସକାଶେ) ତାହାଙ୍କ ନିକଟବର୍ତ୍ତୀ ହେଲେ ଏବଂ ସେ (ଅଲ୍ଲାଃ) ମଧ୍ୟ (ହଜରତ ମହମ୍ମଦଙ୍କୁ ଭେଟିବା ପାଇଁ) ନିମ୍ନକୁ ଅବତରଣ କଲେ.[2]

فَكَانَ قَابَ قَوْسَيْنِ اَوْ اَدْنٰى ⑩

୧୦. ଏବଂ ସେ ଦୁହେଁ (ଅର୍ଥାତ୍ ଅଲ୍ଲାଃ ଓ ହଜରତ ମହମ୍ମଦ) ଦୁଇ ଗୋଟି ଧନୁର ମିଳିତ ଗୁଣ ଆକାରରେ ପରିବର୍ତ୍ତିତ ହୋଇଗଲେ, ଏବଂ କ୍ରମଶଃ ଏହାଠାରୁ ଆହୁରି ଅଧିକ ନିକଟବର୍ତ୍ତୀ ହୋଇଗଲେ ।

فَاَوْحٰۤى اِلٰى عَبْدِهٖ مَاۤ اَوْحٰى ⑪

୧୧. ତା'ପରେ ସେ ନିଜ ଭକ୍ତଙ୍କ ପ୍ରତି ସେହି ଓହି ପ୍ରେରଣ କରିଥିଲେ ଯାହା ସମ୍ବନ୍ଧରେ ସେ ନିଷ୍ପତ୍ତି କରି ସାରିଥିଲେ ।

مَا كَذَبَ الْفُؤَادُ مَا رَاٰى ⑫

୧୨. (ହଜରତ ମହମ୍ମଦଙ୍କ) ଅନ୍ତର ଯାହା ଅନୁଭବ କଲା ତାହା ହିଁ ବର୍ଣ୍ଣନା କଲା ।

اَفَتُمٰرُوْنَهٗ عَلٰى مَا يَرٰى ⑬

୧୩. ଯାହା ସେ (ମହମ୍ମଦ ସ୍ୱର୍ଗରେ) ଦେଖିଥିଲେ କ'ଣ ତୁମେମାନେ ତାହାଙ୍କ ସହିତ ସେ (ଦୃଶ୍ୟ) ସଂକ୍ରାନ୍ତରେ କଳହ କରୁଅଛ ?

وَلَقَدْ رَاٰهُ نَزْلَةً اُخْرٰى ⑭

୧୪. ଅଥଚ ସେ ଏହାକୁ (ଅର୍ଥାତ୍ ଏହି ଦୃଶ୍ୟକୁ) ଥରେ ନୁହେଁ ବରଂ ଦୁଇଥର ଦେଖିଥିଲେ (ଅର୍ଥାତ୍ ଥରେ ସେ ଅଲ୍ଲାଃଙ୍କ ନିକଟବର୍ତ୍ତୀ ହେବାକୁ ଚେଷ୍ଟା କରୁଥିଲା ବେଳେ, ଓ ଆଉ ଥରେ, ଅଲ୍ଲାଃ ତାହାଙ୍କ ନିକଟରେ ଅବତୀର୍ଣ୍ଣ ହେଲା ବେଳେ) ।

---

୧. ସଂସାରବାସୀଙ୍କ ବ୍ୟାକୁଳତା ଲକ୍ଷ୍ୟ କରି ହଜରତ ମହମ୍ମଦ ସେମାନଙ୍କ ପ୍ରତି ଦୟା ପରବଶ ହେଲେ ଏବଂ ଅଲ୍ଲାଃଙ୍କୁ ସାକ୍ଷାତ୍ କରିବା ସକାଶେ ଆଧ୍ୟାତ୍ମିକ ଭାବରେ ଉର୍ଦ୍ଧ୍ୱକୁ ଆରୋହଣ କରିବାକୁ ଲାଗିଲେ ଫଳରେ ଅଲ୍ଲାଃଙ୍କର ପ୍ରେମଭାବ ଆଲୋଡ଼ିତ ହେଲା ଓ ସେ ମଧ୍ୟ ନିମ୍ନକୁ ଅବତରଣ କରିବାକୁ ଲାଗିଲେ, ଯଦ୍ଦ୍ୱାରା ସେ ହଜରତ ମହମ୍ମଦଙ୍କ ପ୍ରେମରୂପକ ବିନ୍ଦୁ ସହିତ ମିଳିତ ହେବେ । ବସ୍ତୁତଃ ଅଲ୍ଲାଃ ଓ ହଜରତ ମହମ୍ମଦ ଏପରି ମିଳିତ ହୋଇଗଲେ ଯଟେ ଯେପରି ଦୁଇଟି ଧନୁକୁ ଏକତ୍ରିତ କରି ତୀର ନିକ୍ଷେପ କରାଯାଏ, ଅର୍ଥାତ୍ ତାହା ଏପରି ଯେ ଯେପରି ଗୋଟିଏ ପରେ ଅନ୍ୟ ଗୋଟିଏ ତୀର କ୍ରମାନ୍ୱୟରେ ନିକ୍ଷିପ୍ତ ହେବ । ଦୁଇଟି ଧନୁ ବିଷୟ ଏଥିସକାଶେ ମଧ୍ୟ କୁହାଯାଇଛି ଯେ ଦୁଇଗୋଟି ଧନୁର ଗୁଣ ଅଧିକ ଶକ୍ତ ହୋଇଥାଏ ଏବଂ ତୀରର ଆଘାତ ମଧ୍ୟ ଅଧିକ ପ୍ରଚଣ୍ଡ ହୋଇଥାଏ ।

୨. ଏହି ଆୟତରୁ ପ୍ରମାଣିତ ହେଉଛି ଯେ 'ମେରାଜ' ଶରୀରଗତ ସ୍ୱଭାବର ନଥିଲା ବରଂ ଆଧ୍ୟାତ୍ମିକ ସ୍ୱଭାବର ଥିଲା । ସେହିପରି ଏହି 'ମେରାଜ' ଥରେ ହୋଇଥିଲା ବୋଲି କେତେକ ମୁସଲମାନମାନଙ୍କର ଧାରଣା କିନ୍ତୁ ପ୍ରକୃତରେ ଏହା ଦୁଇ ଥର ହୋଇଥିଲା । କେତେକ ଭାଷ୍ୟକାର ମଧ୍ୟ ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ 'ଇସ୍ରା' ବିଷୟକ ଆୟତଗୁଡ଼ିକୁ 'ମେରାଜ' ବିଷୟକ ଆୟତ ବୋଲି ସ୍ଥିର କରିଛନ୍ତି । ପ୍ରକୃତପକ୍ଷେ 'ଇସ୍ରା' ଘଟଣା ପୃଥିବୀ ସହିତ ସମ୍ବନ୍ଧିତ ଅଥଚ ମେରାଜ ଅବସରରେ ହଜରତ ମହମ୍ମଦଙ୍କ ଆତ୍ମା ଆକାଶକୁ ଆରୋହଣ କରିଥିଲା ଏବଂ ଏ ବିଷୟରେ କୁହାଯାଇଛି ଯେ ସେହି ଅଲୌକିକ ଘଟଣା ଦୁଇଥର ଘଟିଥିଲା : ଥରେ 'ଦନା' ରୂପେ ଅର୍ଥାତ୍ ଯେବେ ହଜରତ ମହମ୍ମଦ ଅଲ୍ଲାଃଙ୍କୁ ସାକ୍ଷାତ୍ କରିବା ପାଇଁ 'ଅର୍ଶ' ନିକଟକୁ ଯାଇଥିଲେ ଓ ଆଉଥରେ 'ତଦଲ୍ଲା' ରୂପେ ଅର୍ଥାତ୍ ଯେବେ ହଜରତ ମହମ୍ମଦଙ୍କୁ ସାକ୍ଷାତ୍ କରିବା ପାଇଁ ଅଲ୍ଲାଃ ଉପରୁ ତଳକୁ ଆସିଥିଲେ ।

ମୂଳ ଶବ୍ଦ 'ଦନା' ଅର୍ଥ ଅଲ୍ଲାଃଙ୍କ ଆସ୍ଥାନ ବା 'ଅର୍ଶ'ର ନିକଟବର୍ତ୍ତୀ ହେବା ଏବଂ 'ତଦଲ୍ଲା' ଅର୍ଥ ଜଣେ ବ୍ୟକ୍ତି ସାନ୍ନିଧ୍ୟ ଲାଭ କରିବା ପାଇଁ ଅନ୍ୟ ବ୍ୟକ୍ତି ଆଡ଼କୁ ଅଗ୍ରସର ହେଲେ ସେହି ଅନ୍ୟ ବ୍ୟକ୍ତି ମଧ୍ୟ ପ୍ରଥମ ବ୍ୟକ୍ତିର ନିକଟବର୍ତ୍ତୀ ହେବାକୁ ଉଦ୍ୟମ କରିବା ।

୧୫. ଏବଂ ଏପରି ଏକ ବରକୋଳି ଗଛ[୧] ନିକଟରେ ଯାହା ଶେଷ ସୀମାରେ ଅବସ୍ଥିତ ।

عِنْدَ سِدْرَةِ الْمُنْتَهٰى ⑮

୧୬. ତାହା ନିକଟରେ 'ଜନ ତୁଲମାୱା'[୨] (ନାମକ ବୈକୁଣ୍ଠ) ରହିଅଛି ।

عِنْدَهَا جَنَّةُ الْمَأْوٰى ⑯

୧୭. ଏବଂ ଏହି ଦୃଶ୍ୟ ସେତେବେଳେ ଦେଖିଥିଲେ, ଯେତେବେଳେ ବରକୋଳି ଗଛକୁ ତାହା (ଅର୍ଥାତ୍ ଅଲ୍ଲାହଙ୍କର ଜ୍ୟୋତି) ଆଚ୍ଛାଦିତ କରିଥିଲା , ଯାହା ଏପରି ସମୟରେ (ସାଧାରଣତଃ) ଆଚ୍ଛାଦିତ କରିଥାଏ ।

اِذْ يَغْشَى السِّدْرَةَ مَا يَغْشٰى ⑰

୧୮. ସେତେବେଳେ ତାହାଙ୍କର ଦୃଷ୍ଟି ଇତସ୍ତତଃ ହେଲା ନାହିଁ କି ଅତିକ୍ରମ କଲା ନାହିଁ; (ଅର୍ଥାତ୍ ତାଙ୍କ ଦୃଷ୍ଟିରେ କୌଣସି ଭ୍ରାନ୍ତି ନ ଥିଲା)[୩] ।

مَا زَاغَ الْبَصَرُ وَمَا طَغٰى ⑱

୧୯. ସେତେବେଳେ ସେ ନିଜ ପାଳନକର୍ତ୍ତାଙ୍କ ମହାନ୍ ନିଦର୍ଶନମାନଙ୍କ ମଧ୍ୟରୁ ଗୋଟିଏ ନିଦର୍ଶନ ଦେଖିଥିଲେ ।

لَقَدْ رَاٰى مِنْ اٰيٰتِ رَبِّهِ الْكُبْرٰى ⑲

୨୦. ତୁମେମାନେ ମଧ୍ୟ ଲାତ୍ ଓ ଉଜ୍ଜା ବିଷୟରେ ବର୍ଣ୍ଣନା କର (କ'ଣ ସେହି ବିଗ୍ରହମାନଙ୍କର ମଧ୍ୟ ଏହିପରି ମର୍ଯ୍ୟାଦା ଥିଲା ?).

اَفَرَءَيْتُمُ اللّٰتَ وَالْعُزّٰى ⑳

୨୧. ଏବଂ ଏତଦ୍‌ବ୍ୟତୀତ ତୃତୀୟ (ଠାକୁର) ମନାତ୍[୪] ବିଷୟ ମଧ୍ୟ ।

وَمَنٰوةَ الثَّالِثَةَ الْاُخْرٰى ㉑

୨୨. କ'ଣ ତୁମମାନଙ୍କ ପାଇଁ ପୁତ୍ର ଓ ଅଲ୍ଲାହଙ୍କ ପାଇଁ କନ୍ୟା ରହିଛନ୍ତି ?

اَلَكُمُ الذَّكَرُ وَلَهُ الْاُنْثٰى ㉒

୨୩. ଏହା ତ ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ ବିଭାଜନ ।

تِلْكَ اِذًا قِسْمَةٌ ضِيْزٰى ㉓

---

୧. ମୂଳ ଶବ୍ଦ 'ସିଦରତୁଲ୍ ମୁନତହା' ଅର୍ଥ ବରକୋଳି ଗଛ । ଏହି ଗଛ ସମ୍ବନ୍ଧରେ କୁହାଯାଏ ଯେ ସେଥିରେ ଅମୃତର ବିଶେଷତ୍ୱ ବା ଦ୍ରବ୍ୟଗୁଣ ରହିଅଛି । ସେଥିପାଇଁ ମୃତବ୍ୟକ୍ତିକୁ କବର ଦେବା ପୂର୍ବରୁ କୋଳିଗଛର ପତ୍ରକୁ ପାଣିରେ ସିଝାଇ ସେଥିରେ ତାହାକୁ ସ୍ନାନ କରାଯାଏ ଯଦ୍ୱାରା ମୃତଶରୀର ସଢ଼ିବ ନାହିଁ । ଏଠାରେ 'ସିଦ୍ରା' ଶବ୍ଦରୁ ତାହାର ସୂଚନା ମିଳୁଛି । ପୁନଶ୍ଚ କୁହାଯାଇଛି ଯେ ହଜରତ ମହମ୍ମଦଙ୍କ ପ୍ରତି ଅଲ୍ଲାହ 'ସିଦ୍ରା' (କୋଳିଗଛ) ମାଧ୍ୟମରେ ଅବତୀର୍ଣ୍ଣ ହୋଇଥିଲେ ଅର୍ଥାତ୍ ତାହାଙ୍କୁ ଏପରି ଶିକ୍ଷା ମିଳିଥିଲା ଯାହା ନିଜେ ସଢ଼ିବ ନାହିଁ ବରଂ ଅନ୍ୟକୁ ସଢ଼ିବାରୁ ରକ୍ଷା କରିବ,ଯେପରି ଉଲ୍ଲେଖ କରାଯାଇଛି ଯେ ପୂର୍ବବର୍ତ୍ତୀ ସମସ୍ତ ଧର୍ମଗ୍ରନ୍ଥକୁ ପବିତ୍ର କୋରାନ ଦ୍ୱାରା ସୁରକ୍ଷିତ କରାଯାଇଛି (୯୮:୪ ଦ୍ରଷ୍ଟବ୍ୟ) କାରଣ ସେ ସବୁର ସାରମର୍ମ ପବିତ୍ର କୋରାନରେ ସ୍ଥାନ ପାଇଛି ଏବଂ ତାହା କଦାପି ଲୋପ ହେବ ନାହିଁ । ତେଣୁ ତା ସହିତ ଓ ତା ମାଧ୍ୟମରେ ସେସବୁ ଶିକ୍ଷା ତିଷ୍ଠି ରହିବ ।

୨. ପବିତ୍ର କୋରାନରେ ଚାରି ପ୍ରକାର ବୈକୁଣ୍ଠର ନାମ ଉଲ୍ଲେଖ କରାଯାଇଛି । ସେଗୁଡ଼ିକ ନିମ୍ନରେ ଦର୍ଶାଗଲା :
(କ) ଜନ୍ନତିନ ନୟିମ (୫ : ୬୬ ଦ୍ରଷ୍ଟବ୍ୟ), (ଖ) ଜନ୍ନତେ ଅଦନ (୯ : ୭୨ ଦ୍ରଷ୍ଟବ୍ୟ, (ଗ) ଜନ୍ନତୁଲ ଫିରଦୌସ (୧୮ : ୧୦୮ ଦ୍ରଷ୍ଟବ୍ୟ), (ଘ) ଜନ୍ନତୁଲ ମାୱା (୩୨ : ୨୦ ଦ୍ରଷ୍ଟବ୍ୟ) ।

୩. ଅର୍ଥାତ୍ 'ମେରାଜ'କୁ ଦେଖିବାରେ କୌଣସି ପ୍ରକାର ଭୁଲର ସମ୍ଭାବନା ନଥିଲା । ତାହା ଏକ ସାଧାରଣ ସ୍ୱପ୍ନ ନୁହେଁ ବରଂ ଏକ ମହାନ୍ ଓ ଉଚ୍ଚକୋଟିର ଅଲୌକିକ ସ୍ୱପ୍ନ ।

୪. ଲାତ୍, ଉଜ୍ଜା ଓ ମନାତ ହେଉଛି ଆରବର କେତେକ ଠାକୁରାଣୀଙ୍କ ନାମ ।

إِنْ هِيَ إِلَّآ أَسْمَآءٌ سَمَّيْتُمُوهَآ أَنتُمْ وَءَابَآؤُكُم مَّآ أَنزَلَ ٱللَّهُ بِهَا مِن سُلْطَٰنٍ ۚ إِن يَتَّبِعُونَ إِلَّا ٱلظَّنَّ وَمَا تَهْوَى ٱلْأَنفُسُ ۖ وَلَقَدْ جَآءَهُم مِّن رَّبِّهِمُ ٱلْهُدَىٰٓ ﴿٢٤﴾

୨୪. ଏଗୁଡ଼ିକ କେବଳ କେତେକ ନାମ ମାତ୍ର ଯାହା ତୁମେମାନେ ଓ ତୁମମାନଙ୍କର ପିତୃପିତାମହମାନେ ରଖିଅଛ (ନ ହେଲେ ଏଥିରେ କୌଣସି ବାସ୍ତବତା ନାହିଁ); ଅଲ୍ଲାହ ଏ ବିଗ୍ରହମାନଙ୍କ ପାଇଁ କୌଣସି ପ୍ରମାଣ ଅବତୀର୍ଣ୍ଣ କରି ନାହାନ୍ତି; ସେମାନେ କେବଳ ଏକ ସନ୍ଦେହର ଓ ଇନ୍ଦ୍ରିୟ ଅଭିଳାଷର ଅନୁସରଣ କରୁଅଛନ୍ତି, ଏବଂ ସେମାନଙ୍କ ନିକଟକୁ ସେମାନଙ୍କ ପାଳନକର୍ତ୍ତାଙ୍କଠାରୁ ସତ୍‌ପଥ ଆସି ଯାଇଅଛି (ତଥାପି ସେମାନେ ବୁଝିପାରୁ ନାହାନ୍ତି)।

أَمْ لِلْإِنسَٰنِ مَا تَمَنَّىٰ ﴿٢٥﴾

୨୫. କ'ଣ ମନୁଷ୍ୟ ଯାହା କାମନା କରେ ତାହା ତାକୁ ମିଳିଯାଏ ?

فَلِلَّهِ ٱلْءَاخِرَةُ وَٱلْأُولَىٰ ﴿٢٦﴾ ع

୨୬. ସୁତରାଂ ମନେରଖ ! ପରକାଳ ଓ ଇହକାଳର ସକଳ କୃପା ଅଲ୍ଲାହଙ୍କର ଆୟତ୍ତରେ ଅଛି।

ରୁ: ୨

وَكَم مِّن مَّلَكٍ فِى ٱلسَّمَٰوَٰتِ لَا تُغْنِى شَفَٰعَتُهُمْ شَيْـًٔا إِلَّا مِنۢ بَعْدِ أَن يَأْذَنَ ٱللَّهُ لِمَن يَشَآءُ وَيَرْضَىٰٓ ﴿٢٧﴾

୨୭. ଏବଂ ଅଲ୍ଲାହ ଯାହାକୁ ନିଜ ଇଚ୍ଛା ମୁତାବକ ପାଆନ୍ତି ଓ ପସନ୍ଦ କରନ୍ତି, ତଥା ତା ସଂକ୍ରାନ୍ତରେ ଏପରି (ସୁପାରିଶ) କରିବାକୁ ଅନୁମତି ଦିଅନ୍ତି, ତା ବ୍ୟତୀତ ଅନ୍ୟ କାହାରିକୁ ଆକାଶରେ ଥିବା ବହୁ ଦେବଦୂତମାନଙ୍କ ସୁପାରିଶ କିଛି ଲାଭ ଦିଏ ନାହିଁ।

إِنَّ ٱلَّذِينَ لَا يُؤْمِنُونَ بِٱلْءَاخِرَةِ لَيُسَمُّونَ ٱلْمَلَٰٓئِكَةَ تَسْمِيَةَ ٱلْأُنثَىٰ ﴿٢٨﴾

୨୮. ଯେଉଁମାନେ ପରକାଳରେ ବିଶ୍ୱାସ କରନ୍ତି ନାହିଁ, ସେମାନେ ଦେବଦୂତମାନଙ୍କର ନାମକରଣ ନାରୀମାନଙ୍କ ସଦୃଶ କରିଥା'ନ୍ତି ;

وَمَا لَهُم بِهِۦ مِنْ عِلْمٍ ۖ إِن يَتَّبِعُونَ إِلَّا ٱلظَّنَّ ۖ وَإِنَّ ٱلظَّنَّ لَا يُغْنِى مِنَ ٱلْحَقِّ شَيْـًٔا ﴿٢٩﴾

୨୯. ଏବଂ ସେମାନଙ୍କର ଏ ବିଷୟରେ କୌଣସି ଜ୍ଞାନ ନାହିଁ; ସେମାନେ କେବଳ ଏକ ସଂଦେହର ବଶବର୍ତ୍ତୀ ହୋଇଛନ୍ତି; ଏବଂ ସନ୍ଦେହ ସତ୍ୟର ମୁକାବିଲାରେ ଆଦୌ ଲାଭ-ଦାୟକ ହୁଏ ନାହିଁ।

فَأَعْرِضْ عَن مَّن تَوَلَّىٰ عَن ذِكْرِنَا وَلَمْ يُرِدْ إِلَّا ٱلْحَيَوٰةَ ٱلدُّنْيَا ﴿٣٠﴾

୩୦. ତେଣୁ ଯେଉଁ ବ୍ୟକ୍ତି ଆମର ଅନୁସ୍ମାରକରୁ[୧] ବିମୁଖ ହୁଏ, ଓ ସାଂସାରିକ ଜୀବନ ବ୍ୟତୀତ ଅନ୍ୟ କିଛି ଇଚ୍ଛା କରେ ନାହିଁ; ତୁମେ ମଧ୍ୟ ତାହା ପ୍ରତି ବିମୁଖ ହୁଅ (ଓ ତାହାର ଅନୁସରଣ କର ନାହିଁ)।

---

୧. ପବିତ୍ର କୋରାନରେ 'ଜିକିର୍' ଶବ୍ଦ ଉଭୟ ରସୁଲ ଅର୍ଥରେ ଓ ପବିତ୍ର କୋରାନ ଅର୍ଥରେ ବ୍ୟବହୃତ ହୋଇଛି। ଏଠାରେ ସେହି ଶବ୍ଦର ଅର୍ଥ ହଜରତ ମହମ୍ମଦଙ୍କୁ ବୁଝାଇପାରେ ଓ ପବିତ୍ର କୋରାନକୁ ମଧ୍ୟ ବୁଝାଇପାରେ (୩୭: ୧୬୯ ର ଟୀକା ଦ୍ରଷ୍ଟବ୍ୟ)।

ذٰلِكَ مَبْلَغُهُمْ مِّنَ الْعِلْمِ ۭ اِنَّ رَبَّكَ هُوَ اَعْلَمُ بِمَنْ ضَلَّ عَنْ سَبِيْلِهٖ ۙ وَهُوَ اَعْلَمُ بِمَنِ اهْتَدٰى ﴿٣١﴾

୩୧. ଏହା ହିଁ ସେମାନଙ୍କ ଜ୍ଞାନର ସୀମା ଅଟେ; ତୁମର ପାଳନକର୍ତ୍ତା ସେହି ବ୍ୟକ୍ତିକୁ ଭଲ ଭାବରେ ଜାଣନ୍ତି, ଯେ ତାହାଙ୍କ ପଥରୁ ବିଭ୍ରାନ୍ତ ହୋଇଯାଏ; ଏବଂ ତାହାକୁ ମଧ୍ୟ ଭଲ ଭାବରେ ଜାଣନ୍ତି, ଯେ ସତ୍‌ପଥର ଅନୁସରଣ କରେ ।

وَلِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۙ لِيَجْزِيَ الَّذِيْنَ اَسَاۗءُوْا بِمَا عَمِلُوْا وَيَجْزِيَ الَّذِيْنَ اَحْسَنُوْا بِالْحُسْنٰى ﴿٣٢﴾

୩୨. ଏବଂ ଆକାଶ ଓ ପୃଥିବୀରେ ଯାହା କିଛି ରହିଅଛି ସେସବୁ ଅଲ୍ଲାହଙ୍କ ଆୟତ୍ତାଧୀନ; ଫଳତଃ ଯେଉଁମାନେ କୁକର୍ମ କରନ୍ତି ସେ ସେମାନଙ୍କୁ ସେମାନଙ୍କ କର୍ମ ଅନୁଯାୟୀ ପ୍ରତିଫଳ ଦିଅନ୍ତି; ଏବଂ ଯେଉଁମାନେ ସତ୍ କର୍ମ କରନ୍ତି ସେମାନଙ୍କୁ ପୁରସ୍କାର ଦିଅନ୍ତି ।

اَلَّذِيْنَ يَجْتَنِبُوْنَ كَبٰۗىِٕرَ الْاِثْمِ وَالْفَوَاحِشَ اِلَّا اللَّمَمَ ۭ اِنَّ رَبَّكَ وَاسِعُ الْمَغْفِرَةِ ۭ هُوَ اَعْلَمُ بِكُمْ اِذْ اَنْشَاَكُمْ مِّنَ الْاَرْضِ وَاِذْ اَنْتُمْ اَجِنَّةٌ فِيْ بُطُوْنِ اُمَّهٰتِكُمْ ۚ فَلَا تُزَكُّوْٓا اَنْفُسَكُمْ ۭ هُوَ اَعْلَمُ بِمَنِ اتَّقٰى ﴿٣٣﴾

୩୩. (ଅର୍ଥାତ୍) ଏପରି ଲୋକମାନେ ଯେଉଁମାନେ ମହାପାପ ଓ ପ୍ରକାଶ୍ୟ ମନ୍ଦ କର୍ମରୁ ନିଜକୁ ରକ୍ଷା କରନ୍ତି; କିନ୍ତୁ ଯଦି ସେମାନଙ୍କୁ କିଞ୍ଚିତ୍ ମାତ୍ର (ପାପ) ସ୍ପର୍ଶ କରେ, ତେବେ (ସେମାନେ ଅନୁତାପ କରନ୍ତି, ଓ) ତୁମର ପାଳନକର୍ତ୍ତା ଅତି ବ୍ୟାପକ କ୍ଷମାଶୀଳ; ଯେତେବେଳେ ସେ ତୁମମାନଙ୍କୁ ଭୂମିରୁ ସୃଷ୍ଟି କରିଥିଲେ, ଓ ଯେତେବେଳେ ତୁମେମାନେ ମାତୃଗର୍ଭରେ ଲୁକ୍କାୟିତ ଥିଲ, ସେତେବେଳ-ଠାରୁ ସେ ତୁମମାନଙ୍କୁ ଭଲ ଭାବରେ ଜାଣନ୍ତି; ସୁତରାଂ ନିଜକୁ ନିଜେ ପବିତ୍ର ମନେ କର ନାହିଁ; ଅଲ୍ଲାହ ହିଁ ଧର୍ମଭୀରୁମାନଙ୍କୁ ଭଲ ଭାବରେ ଜାଣନ୍ତି ।

ରୁ:୩

اَفَرَءَيْتَ الَّذِيْ تَوَلّٰى ﴿٣٤﴾

୩୪. କ'ଣ ତୁମ୍ଭେ ସେହି ବ୍ୟକ୍ତିକୁ ଜାଣିଅଛ ଯେ (ତୁମଙ୍କୁ ପ୍ରେରିତ ଓହିରୁ) ବିମୁଖ ହୋଇଅଛି ।

وَاَعْطٰى قَلِيْلًا وَّاَكْدٰى ﴿٣٥﴾

୩୫. ଏବଂ (ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ସ୍ୱଳ୍ପ ଦେଇଅଛି, ଏବଂ ଏହାପରେ କୃପଣତା ପ୍ରକାଶ କରିଅଛି ।

اَعِنْدَهٗ عِلْمُ الْغَيْبِ فَهُوَ يَرٰى ﴿٣٦﴾

୩୬. କ'ଣ ତାହା ନିକଟରେ ଅଦୃଷ୍ଟ ଜ୍ଞାନ ରହିଅଛି; ଏବଂ ସେ (ନିଜର ପରିଣାମ) ଦେଖୁଅଛି ?

اَمْ لَمْ يُنَبَّاْ بِمَا فِيْ صُحُفِ مُوْسٰى ﴿٣٧﴾ وَاِبْرٰهِيْمَ الَّذِيْ وَفّٰٓى ﴿٣٨﴾

୩୭./୩୮. କ'ଣ ତାହାକୁ ମୁସା ଓ ବିଶ୍ୱସ୍ତ ଇବ୍ରାହିମଙ୍କ ଧର୍ମଗ୍ରନ୍ଥରେ ଯାହା କିଛି ଅଛି ସେ ସଂକ୍ରାନ୍ତରେ ଜ୍ଞାନ ପ୍ରଦାନ କରାଯାଇ ନାହିଁ ?

اَلَّا تَزِرُ وَازِرَةٌ وِّزْرَ اُخْرٰى ﴿٣٩﴾

୩୯. (ତାହା ହେଉଛି ଯେ) କୌଣସି ଭାରବାହକ ପ୍ରାଣୀ ଅନ୍ୟ (ପ୍ରାଣୀ)ର ଭାର [୧] ବହନ କରି ପାରିବ ନାହିଁ;

୧. ଖ୍ରୀଷ୍ଟିୟାନମାନଙ୍କ ମତରେ 'କଫ୍‌ଫାରା' (ପ୍ରାୟଶ୍ଚିତ୍ତ) କେବଳ ନିର୍ଦ୍ଦୋଷ ବ୍ୟକ୍ତି ଅର୍ପଣ କରିପାରନ୍ତି । ସେପରି ବ୍ୟକ୍ତି ହେଉଛନ୍ତି କେବଳ ହଜରତ ଇସା । ପ୍ରକୃତପକ୍ଷେ ପବିତ୍ର କୋରାନ ଓ ବାଇବେଲ ଅନୁସାରେ ନିର୍ଦ୍ଦୋଷ ବ୍ୟକ୍ତି ହେଉଛନ୍ତି ହଜରତ ମହମ୍ମଦ । ଏହି ଆୟତର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଯେ ଯେଉଁ ବ୍ୟକ୍ତି ବୋଝ ଉଠାଇବା ଅବସ୍ଥାରେ ଜନ୍ମଲାଭ କରିଛି ସେ କାହାରି ବୋଝ ଉଠାଇ ପାରିବ ନାହିଁ କାରଣ ସେ ନିଜେ ଅଲ୍ଲାହଙ୍କ ଆଦେଶର ଅଧୀନ । ଅତଏବ କେବଳ ଅଲ୍ଲାହ ବୋଝ ଉଠାଇ ପାରିବେ କାରଣ ତାହାଙ୍କୁ ଆଦେଶ କରିବା ପାଇଁ ଅନ୍ୟ କେହି ନାହିଁ ।

୪୦. ଏବଂ ମନୁଷ୍ୟକୁ ତାହା ହିଁ ମିଳେ ଯାହା ପାଇଁ ସେ ଚେଷ୍ଟା କରେ;

وَاَنْ لَّيْسَ لِلْاِنْسَانِ اِلَّا مَا سَعٰى ﴿٤٠﴾

୪୧. (ଏତଦ୍‌ଭିନ୍ନ ଏହି ଧର୍ମଗ୍ରନ୍ଥଗୁଡ଼ିକରେ ଏହା ମଧ୍ୟ ଲିପିବଦ୍ଧ ରହିଅଛି ଯେ) ସେ (ବ୍ୟକ୍ତି) ନିଜ ଚେଷ୍ଟାର ପରିଣାମ ଅବଶ୍ୟ ଦେଖିବ;

وَاَنَّ سَعْيَهٗ سَوْفَ يُرٰى ﴿٤١﴾

୪୨. ଏବଂ ତାହାକୁ ସଂପୂର୍ଣ୍ଣ ପୁରସ୍କାର ମିଳିବ;

ثُمَّ يُجْزٰىهُ الْجَزَآءَ الْاَوْفٰى ﴿٤٢﴾

୪୩. ଏବଂ (ଅତୀତ ଓ ବର୍ତ୍ତମାନର ସମସ୍ତ ସଂପ୍ରଦାୟ ସଂକ୍ରାନ୍ତରେ) ଶେଷ ନିଷ୍ପତ୍ତି ତୁମ ପାଳନକର୍ତ୍ତାଙ୍କ ହସ୍ତରେ ନ୍ୟସ୍ତ ଅଛି;

وَاَنَّ اِلٰى رَبِّكَ الْمُنْتَهٰى ﴿٤٣﴾

୪୪. ଏବଂ ସେ ହିଁ ହସାଇ ଥାନ୍ତି ଓ କନ୍ଦାଇ ଥା'ନ୍ତି;

وَاَنَّهٗ هُوَ اَضْحَكَ وَاَبْكٰى ﴿٤٤﴾

୪୫. ଏବଂ ସେ ହିଁ ମୃତ୍ୟୁ ଦିଅନ୍ତି ଓ ସେ ହିଁ ଜୀବିତ କରାନ୍ତି;

وَاَنَّهٗ هُوَ اَمَاتَ وَاَحْيَا ﴿٤٥﴾

୪୬./୪୭. ଏବଂ ସେ ହିଁ (ମାତୃଗର୍ଭରେ) ନିକ୍ଷିପ୍ତ ହେଉଥିବା ଶୁକ୍ର ବିନ୍ଦୁରୁ (ସକଳ ସଜୀବଙ୍କୁ) ମାଈ ଅଣ୍ଡିରା ଭାବରେ ସୃଷ୍ଟି କରିଛନ୍ତି;

وَاَنَّهٗ خَلَقَ الزَّوْجَيْنِ الذَّكَرَ وَالْاُنْثٰى ﴿٤٦﴾

مِنْ نُّطْفَةٍ اِذَا تُمْنٰى ﴿٤٧﴾

୪୮. ଏବଂ ଦ୍ୱିତୀୟବାର ସୃଷ୍ଟି କରିବା ମଧ୍ୟ ତାହାଙ୍କ ଦାୟିତ୍ୱ;

وَاَنَّ عَلَيْهِ النَّشْاَةَ الْاُخْرٰى ﴿٤٨﴾

୪୯. ଏବଂ ସେ ହିଁ ଧନୀ କରାଇଥା'ନ୍ତି ଓ ସେ ହିଁ ଦରିଦ୍ର କରାଇଥା'ନ୍ତି;

وَاَنَّهٗ هُوَ اَغْنٰى وَاَقْنٰى ﴿٤٩﴾

୫୦. ଏବଂ ସେ ଶେ'ରା (ନକ୍ଷତ୍ର)ର ପ୍ରଭୁ;

وَاَنَّهٗ هُوَ رَبُّ الشِّعْرٰى ﴿٥٠﴾

୫୧. ଏବଂ ସେ ହିଁ ସର୍ବପ୍ରଥମ ଆଦ ସଂପ୍ରଦାୟକୁ ବିନାଶ କରିଥିଲେ,

وَاَنَّهٗۤ اَهْلَكَ عَادًا الْاُوْلٰى ﴿٥١﴾

୫୨. ଏବଂ ସେମାନଙ୍କ ପରେ ସମୁଦ ସଂପ୍ରଦାୟଙ୍କୁ ମଧ୍ୟ (ଯେ ଆଦ ସଂପ୍ରଦାୟର ହିଁ ଏକ ଅଂଶ ଥିଲା). ଏବଂ (ସେହି ଶାସ୍ତି) ତାହାଙ୍କର କିଛି ବାକି ରଖି ନଥିଲା,

وَثَمُوْدَاۡ فَمَاۤ اَبْقٰى ﴿٥٢﴾

୫୩. ଏବଂ ତା'ପୂର୍ବରୁ ନୁହଙ୍କ ସଂପ୍ରଦାୟକୁ ମଧ୍ୟ (ବିନାଶ କରିଥିଲେ); ସେମାନେ ଖୁବ୍ ଅତ୍ୟାଚାର କରୁଥିଲେ ଓ ଅତ୍ୟନ୍ତ ଦୁରାଚାରୀ ଥିଲେ;

وَقَوْمَ نُوْحٍ مِّنْ قَبْلُ اِنَّهُمْ كَانُوْا هُمْ اَظْلَمَ وَاَطْغٰى ﴿٥٣﴾

୫୪. ଏବଂ ଧ୍ୱସ୍ତ ବିଧ୍ୱସ୍ତ ଜନବସତିକୁ ସେ ତଳ ଉପର କରି ଦେଇଥିଲେ,

وَالْمُؤْتَفِكَةَ اَهْوٰى ﴿٥٣﴾

୫୫. ଏବଂ ତା'ପରେ ସେମାନଙ୍କୁ ଏପରି ବସ୍ତୁ (ଅର୍ଥାତ୍ ଶାସ୍ତି) ଆଚ୍ଛାଦିତ କରିଥିଲା ଯାହା ଏଭଳି ପରିସ୍ଥିତିରେ (ସାଧାରଣତଃ) ଆଚ୍ଛାଦିତ କରିଥାଏ ।

فَغَشّٰىهَا مَا غَشّٰى ﴿٥٥﴾

୫୬. ସୁତରାଂ (ହେ ମାନବ !) ତୁମେମାନେ ନିଜ ପାଳନକର୍ତ୍ତାଙ୍କର କେଉଁ କେଉଁ କୃପାକୁ ସନ୍ଦେହ କରିବ ?

فَبِاَيِّ اٰلَآءِ رَبِّكَ تَتَمَارٰى ﴿٥٦﴾

୫୭. ଆମର ଏହି ରସୁଲ ପୂର୍ବବର୍ତ୍ତୀ ରସୁଲମାନଙ୍କ ସଦୃଶ ଜଣେ ରସୁଲ ।

هٰذَا نَذِيْرٌ مِّنَ النُّذُرِ الْاُوْلٰى ﴿٥٧﴾

୫୮. (ଏହି ସଂପ୍ରଦାୟ ପାଇଁ ନିଷ୍ପତ୍ତିର) ସମୟ ନିକଟବର୍ତ୍ତୀ ହୋଇଅଛି ।

اَزِفَتِ الْاٰزِفَةُ ﴿٥٨﴾

୫୯. ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କେହି ତାହାକୁ ଅପସାରିତ କରି ପାରିବେ ନାହିଁ ।

لَيْسَ لَهَا مِنْ دُوْنِ اللّٰهِ كَاشِفَةٌ ﴿٥٩﴾

୬୦. କ'ଣ ତୁମେମାନେ ଏ କଥାରେ ଆଶ୍ଚର୍ଯ୍ୟାନ୍ୱିତ ହେଉଅଛ ?

اَفَمِنْ هٰذَا الْحَدِيْثِ تَعْجَبُوْنَ ﴿٦٠﴾

୬୧. ଏବଂ ହସୁଅଛ ଓ କାନ୍ଦୁ ନାହିଁ ?

وَتَضْحَكُوْنَ وَلَا تَبْكُوْنَ ﴿٦١﴾

୬୨. ଏବଂ ତୁମେମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଦଣ୍ଡାୟମାନ ରହିଅଛ (ଓ କୌଣସି ଉଚିତ ନିଷ୍ପତ୍ତି କରିବାକୁ ସକ୍ଷମ ହେଉ ନାହଁ) ?

وَاَنْتُمْ سٰمِدُوْنَ ﴿٦٢﴾

୬୩. ତେଣୁ (ଉଠ ଓ) ଅଲ୍ଲାହ୍‌ଙ୍କ ସମକ୍ଷରେ ସିଜଦା କର, ଓ ତାହାଙ୍କର ଉପାସନା କର ।

فَاسْجُدُوْا لِلّٰهِ وَاعْبُدُوْا ﴿٦٣﴾ السجدة ۩ ع

سُوْرَةُ الْقَمَرِ مَكِّيَّةٌ (٥٤)

# ଅଲ-କମର

(ଏହି ସୂରା ମକ୍କାରେ ଅବତୀର୍ଣ୍ଣ । ଏଥିରେ [illegible] ଆୟାତ ଓ ୩ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

اِقْتَرَبَتِ السَّاعَةُ وَانْشَقَّ الْقَمَرُ ②

୨. (ଆରବବାସୀମାନଙ୍କ) ବିନାଶ କାଳ ଉପସ୍ଥିତ ହୋଇଅଛି ଓ ଚନ୍ଦ୍ର ବିଦୀର୍ଣ୍ଣ[୧] ହୋଇଅଛି ।

وَاِنْ يَّرَوْا اٰيَةً يُّعْرِضُوْا وَيَقُوْلُوْا سِحْرٌ مُّسْتَمِرٌّ ③

୩. ଏବଂ ଯଦି ସେମାନେ କୌଣସି ନିଦର୍ଶନ ଦେଖିବେ, ତେବେ ନିଶ୍ଚୟ ମୁହଁ ଫେରାଇ ନେଇ କହିବେ, "ଏହା କେବଳ ଏକ ପ୍ରତାରଣା, ଯାହା ସର୍ବଦା ପ୍ରଚଳିତ ।"[୨]

وَكَذَّبُوْا وَاتَّبَعُوْٓا اَهْوَآءَهُمْ وَكُلُّ اَمْرٍ مُّسْتَقِرٌّ ④

୪. ଏବଂ ସେମାନେ (ସତ୍ୟକୁ) ମିଥ୍ୟା ମନେ କରିଛନ୍ତି ଏବଂ ନିଜ ପ୍ରବୃତ୍ତିର ଅନୁସରଣ କରିଛନ୍ତି ଏବଂ ପ୍ରତ୍ୟେକ କାର୍ଯ୍ୟ ସକାଶେ ଏକ ସମୟ ନିର୍ଦ୍ଧାରିତ ହୋଇଅଛି ।

وَلَقَدْ جَآءَهُمْ مِّنَ الْاَنْۢبَآءِ مَا فِيْهِ مُزْدَجَرٌ ⑤

୫. ଏବଂ ସେମାନଙ୍କ ନିକଟରେ ଏପରି ସମ୍ବାଦ ପହଞ୍ଚି ଥିଲା ଯହିଁରେ ଚେତାବନୀମୂଳକ ବିଷୟ ରହିଥିଲା ।

حِكْمَةٌ ۢ بَالِغَةٌ فَمَا تُغْنِ النُّذُرُ ⑥

୬. ପୁନଶ୍ଚ ଏଥିରେ ଏପରି ତତ୍ତ୍ୱ ସଂବଳିତ କଥାମାନ ମଧ୍ୟ ରହିଥିଲା ଯାହା ପ୍ରଭାବଶାଳୀ ଥିଲା । କିନ୍ତୁ (ହାୟ !) ଭୟ ପ୍ରଦର୍ଶନକାରୀମାନେ ସେମାନଙ୍କୁ କୌଣସି ଲାଭ ଦେଲେ ନାହିଁ ।

---

୧. ଆରବ ଦେଶର ଲୋକମାନଙ୍କ ନିକଟରେ ଚନ୍ଦ୍ର ଆରବ ଶାସନର ପ୍ରତୀକ ଥିଲା । ଇହୁଦୀମାନେ ମଧ୍ୟ ଅନୁରୂପ ବିଶ୍ୱାସ କରୁଥିଲେ । ହଜରତ ମହମ୍ମଦଙ୍କ ଅନ୍ୟତମ ଧର୍ମପତ୍ନୀ ସଫିୟା ଜଣେ ଇହୁଦୀ ମୁଖ୍ୟଙ୍କ କନ୍ୟା ଥିଲେ । ଥରେ ସେ ସ୍ୱପ୍ନରେ ଚନ୍ଦ୍ର ତାହାଙ୍କ କୋଳରେ ଆସି ପଡ଼ିଥିବାର ଦେଖିଲେ । ତାଙ୍କର ମାତା ଏହି ସ୍ୱପ୍ନକୁ ଭିତ୍ତି କରି କହିଲେ ଯେ ସେ ଜଣେ ସମ୍ରାଟଙ୍କୁ ବିବାହ କରିବେ । ଏଠାରେ ଅନ୍ୟ ଏକ ଅର୍ଥ ମଧ୍ୟ କରାଯାଇ ପାରେ । ଚନ୍ଦ୍ର ଫାଟିଯିବାର ଅର୍ଥ ଆରବ ଦେଶର ବିନାଶ ସମୟ ଉପସ୍ଥିତ ହେଲାଣି ଅର୍ଥାତ୍ ଆରବ ଶାସନ ଧ୍ୱସ୍ତବିଧ୍ୱସ୍ତ ହେବାକୁ ବସିଲାଣି । କେତେକ ଭାଷ୍ୟକାର ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ ମତବ୍ୟକ୍ତ କରିଛନ୍ତି ଯେ ହଜରତ ମହମ୍ମଦ ଥରେ ଏହି ଅଲୌକିକ ଘଟଣାକୁ ଦେଖାଇଥିଲେ ଅର୍ଥାତ୍ ଚନ୍ଦ୍ର ଆଡ଼କୁ ହସ୍ତ ପ୍ରସାର କରିବାରୁ ତାହା ବାସ୍ତବରେ ଦୁଇ ଖଣ୍ଡ ହୋଇଯାଇଥିଲା (ଫତହୁଲ ବୟାନ ଦ୍ରଷ୍ଟବ୍ୟ), କିନ୍ତୁ ଏହା ଭୁଲ । ଯଦି ସତ୍ୟରେ ଏପରି ଘଟିଥାନ୍ତା ତେବେ ଆରବର ବିଭିନ୍ନ ଅଞ୍ଚଳରେ, ଏପରିକି ପୃଥିବୀର ଅନ୍ୟ ସବୁଠାରେ ମଧ୍ୟ, ଏହି ଦୃଶ୍ୟ ଦୃଷ୍ଟିଗୋଚର ହୋଇଥାନ୍ତା; ଅନ୍ୟପକ୍ଷରେ ଏପରି ଘଟିଥିଲେ ସୌର ଜଗତରେ ବିପ୍ଳବ ସୃଷ୍ଟି ହୋଇଥାନ୍ତା । କାରଣ ସୂର୍ଯ୍ୟ ପରିବାରରେ ସବୁ ଗ୍ରହ ଉପଗ୍ରହ ନିଜ ନିଜ ସ୍ଥାନରେ ଠିକ ରହିଲେ ହିଁ ସୌର ଜଗତ ତିଷ୍ଠି ରହିବ । ପୁନଶ୍ଚ ତତ୍କାଳୀନ ଅନ୍ୟ କୌଣସି ସହାବି ଅର୍ଥାତ୍ ହଜରତ ମହମ୍ମଦଙ୍କ ସହଚର– ସେ ତାଙ୍କ ଗହଣରେ ଥାଆନ୍ତୁ କି ମକ୍କା ସହର ବା ଆରବର ଅନ୍ୟ ଯେ କୌଣସି ସ୍ଥାନରେ ଥାଆନ୍ତୁ–ଚନ୍ଦ୍ର ବିଦୀର୍ଣ୍ଣ ହୋଇଯିବା ସମ୍ବନ୍ଧରେ କୌଣସି ସାକ୍ଷ୍ୟ ପ୍ରଦାନ କରିନାହାନ୍ତି । ଏତଦ୍ ବ୍ୟତୀତ ଚନ୍ଦ୍ର ବାସ୍ତବରେ ଫାଟିଯିବା ସହିତ କୟାମତର କୌଣସି ସମ୍ବନ୍ଧ ନାହିଁ । ଇତିହାସ ମଧ୍ୟ ଏ ବିଷୟରେ ନୀରବ ରହିଛି ।

୨. ଅର୍ଥାତ୍ ଏଭଳି ପ୍ରତାରଣାମୂଳକ କଥା ସବୁବେଳେ ନବିମାନେ କହନ୍ତି ।

ୣ. ସୁତରାଂ ତୁମେ ସେମାନଙ୍କ ଠାରୁ ମୁହଁ ଫେରାଇ ନିଅ; ଏବଂ ସେହି ସମୟ ପର୍ଯ୍ୟନ୍ତ ପ୍ରତୀକ୍ଷା କର ଯେତେବେଳେ ଆହ୍ୱାନକାରୀ ଏକ ଅପ୍ରିୟ ବିଷୟ (ଅର୍ଥାତ୍ ଶାସ୍ତି) ଆଡ଼କୁ ସେମାନଙ୍କୁ ଆହ୍ୱାନ କରିବେ ।

فَتَوَلَّ عَنْهُمْ يَوْمَ يَدْعُ الدَّاعِ إِلَىٰ شَيْءٍ نُكُرٍ ۝٧

୮. ସେମାନଙ୍କ ଚକ୍ଷୁ ଅବନତ ଥିବ; ସେମାନେ ବିକ୍ଷିପ୍ତ ପଙ୍ଗପାଳ ପରି କବରରୁ ବାହାରିବେ,

خُشَّعًا أَبْصَارُهُمْ يَخْرُجُونَ مِنَ الْأَجْدَاثِ كَأَنَّهُمْ جَرَادٌ مُنْتَشِرٌ ۝٨

୯. (ସେମାନେ) ଆହ୍ୱାନକାରୀଙ୍କ ଆଡ଼କୁ ଦଉଡ଼ି ପଳାଉଥିବେ; ଏବଂ ଅବିଶ୍ୱାସକାରୀମାନେ ଏହା ମଧ୍ୟ କହୁଥିବେ, "ଏହା ଅତ୍ୟନ୍ତ କଠିନ ଦିବସ ।"

مُهْطِعِينَ إِلَى الدَّاعِ ۖ يَقُولُ الْكَافِرُونَ هَٰذَا يَوْمٌ عَسِرٌ ۝٩

୧୦. ସେମାନଙ୍କ ପୂର୍ବରୁ ନୁହଙ୍କ ସଂପ୍ରଦାୟ ମିଥ୍ୟା ଆରୋପ କରିଥିଲେ; ଏବଂ ଆମ ଭକ୍ତଙ୍କୁ ମିଥ୍ୟାବାଦୀ ମନେ କରି କହିଥିଲେ ଯେ ସେ ଜଣେ ପାଗଳ ଏବଂ (ଆମମାନଙ୍କ ଠାକୁରଙ୍କ ଦ୍ୱାରା) ସେ ଲାଞ୍ଛିତ ହୋଇଛନ୍ତି ।

كَذَّبَتْ قَبْلَهُمْ قَوْمُ نُوحٍ فَكَذَّبُوا عَبْدَنَا وَقَالُوا مَجْنُونٌ وَازْدُجِرَ ۝١٠

୧୧. ପରିଶେଷରେ ସେ ନିଜ ପାଳନକର୍ତ୍ତାଙ୍କୁ ପ୍ରାର୍ଥନା କରି କହିଲେ, "ଆମେ (ଶତ୍ରୁମାନଙ୍କ ଦ୍ୱାରା) ପରାଭୂତ ହୋଇଅଛୁ; ଅତଏବ ତୁମେ ଏହାର ପ୍ରତିଶୋଧ ନିଅ ।"

فَدَعَا رَبَّهُ أَنِّي مَغْلُوبٌ فَانْتَصِرْ ۝١١

୧୨. ଏହାପରେ ଆମେ ଏକ ପ୍ରଖର ଗତିରେ ପ୍ରବାହିତ ହେଉଥିବା ଜଳରାଶି ଦ୍ୱାରା ମେଘମାଳାର ଦ୍ୱାରଗୁଡ଼ିକୁ ଉନ୍ମୁକ୍ତ କରାଇ ଦେଇଥିଲୁ ।

فَفَتَحْنَا أَبْوَابَ السَّمَاءِ بِمَاءٍ مُنْهَمِرٍ ۝١٢

୧୩. ଏବଂ ଆମେ ଭୂପୃଷ୍ଠରେ ମଧ୍ୟ ଝରଣା ନିର୍ଗତ କରାଇଥିଲୁ; ସୁତରାଂ (ଆକାଶ ଓ ଭୂପୃଷ୍ଠର) ଜଳରାଶି ଏପରି ଏକ ଘଟଣା ଉଦ୍ଦେଶ୍ୟରେ ଏକତ୍ରିତ ହୋଇଗଲା ଯାହା ସଂକ୍ରାନ୍ତରେ ନିଷ୍ପତ୍ତି ହୋଇ ସାରିଥିଲା ।

وَفَجَّرْنَا الْأَرْضَ عُيُونًا فَالْتَقَى الْمَاءُ عَلَىٰ أَمْرٍ قَدْ قُدِرَ ۝١٣

୧୪. ଏବଂ ତାହାଙ୍କୁ (ଅର୍ଥାତ୍ ନୁହଙ୍କୁ) ପଟା ଓ କଣ୍ଟାର ଏକ ବସ୍ତୁ (ଅର୍ଥାତ୍ ନୌକା) ଉପରକୁ ଉଠାଇ ନେଇଥିଲୁ ।

وَحَمَلْنَاهُ عَلَىٰ ذَاتِ أَلْوَاحٍ وَدُسُرٍ ۝١٤

୧୫. ତାହା ଆମ ଚକ୍ଷୁ ସମ୍ମୁଖରେ (ଆମ ତତ୍ତ୍ୱାବଧାନ କ୍ରମେ) ଚାଲିବାକୁ ଲାଗିଲା; ଏହା ସେହି ବ୍ୟକ୍ତି ପାଇଁ ପୁରସ୍କାର (ସ୍ୱରୂପ) ଥିଲା ଯାହାକୁ ପ୍ରତ୍ୟାଖ୍ୟାନ କରାଯାଇଥିଲା ।

تَجْرِي بِأَعْيُنِنَا جَزَاءً لِمَنْ كَانَ كُفِرَ ۝١٥

୧୬. ଏବଂ ଆମେ ଏହି ଘଟଣାକୁ ଏକ ନିଦର୍ଶନ ସ୍ୱରୂପ (ପରବର୍ତ୍ତୀ ସଂପ୍ରଦାୟମାନଙ୍କ ସକାଶେ) ଛାଡ଼ି ଦେଇଅଛୁ;[1] ତାହାହେଲେ କ'ଣ କେହି ଉପଦେଶ ଗ୍ରହଣ କରିବାକୁ ଅଛନ୍ତି ?

وَلَقَدْ تَرَكْنَاهَا آيَةً فَهَلْ مِنْ مُدَّكِرٍ ۝١٦

---

୧. ପ୍ରାୟ ପ୍ରତ୍ୟେକ ଦେଶର ଇତିହାସରୁ ଏପରି ଏକ ଜଳପ୍ଲାବନର ବୃତ୍ତାନ୍ତ ଦେଖିବାକୁ ମିଳେ । ଏହା ପୃଥିବୀର ଏକ ବିସ୍ତୀର୍ଣ୍ଣ ଅଞ୍ଚଳକୁ ଜଳାର୍ଣ୍ଣବ କରିଦେଇଥିଲା ଏବଂ ଏହା ହଜରତ ନୁହଙ୍କ ସମୟର ଜଳ ପ୍ଲାବନ ସଦୃଶ ଥିଲା ।

فَكَيْفَ كَانَ عَذَابِىْ وَنُذُرِ ⑰

୧୭. ସୁତରାଂ (ଦେଖ) ଆମର ଶାସ୍ତି ଓ ଆମର ଭୟ ପ୍ରଦର୍ଶନ କିପରି (ଭୟାବହ ଓ ଯଥାର୍ଥ) ଥିଲା ।

وَلَقَدْ يَسَّرْنَا الْقُرْاٰنَ لِلذِّكْرِ فَهَلْ مِنْ مُّدَّكِرٍ ⑱

୧୮. ଏବଂ ଅନୁସରଣ କରିବା ସକାଶେ ଆମେ କୋରାନକୁ ସହଜସାଧ୍ୟ କରିଅଛୁ; ତେବେ କ'ଣ କେହି ଉପଦେଶ ଗ୍ରହଣ କରିବାକୁ ଅଛି ?

كَذَّبَتْ عَادٌ فَكَيْفَ كَانَ عَذَابِىْ وَنُذُرِ ⑲

୧୯. ଆଦ (ସଂପ୍ରଦାୟ) ମଧ୍ୟ (ନିଜର ରସୁଲଙ୍କୁ) ପ୍ରତ୍ୟାଖ୍ୟାନ କରିଥିଲେ; (ତାହାହେଲେ ଦେଖ) ଆମର ଶାସ୍ତି ଓ ଆମର ଭୟ ପ୍ରଦର୍ଶନ କିପରି (ଭୟାବହ ଓ ଯଥାର୍ଥ) ଥିଲା ।

اِنَّاۤ اَرْسَلْنَا عَلَيْهِمْ رِيْحًا صَرْصَرًا فِىْ يَوْمِ نَحْسٍ مُّسْتَمِرٍّ ⑳

୨୦. ଆମେ ସେମାନଙ୍କ ପ୍ରତି ପ୍ରଖର ଗତିରେ ପ୍ରବାହିତ ହେଉଥିବା ବାୟୁ ୧ପ୍ରେରଣ କରିଥିଲୁ, ଏବଂ ତାହାକୁ ଏକ ଦୀର୍ଘସ୍ଥାୟୀ ଅଶୁଭ ସମୟରେ ପ୍ରବାହିତ କରାଯାଇଥିଲା ।

تَنْزِعُ النَّاسَ كَاَنَّهُمْ اَعْجَازُ نَخْلٍ مُّنْقَعِرٍ ㉑

୨୧. ତାହା ଲୋକମାନଙ୍କୁ ଏପରି ଭାବରେ ଉତ୍ତୋଳିତ କରି ନିକ୍ଷେପ କରୁଥିଲା ଯେତେ ଯେପରି ସେମାନେ ଖଜୁରି ଗଛର ଏକ ଫମ୍ପା ଗଣ୍ଡି ।

فَكَيْفَ كَانَ عَذَابِىْ وَنُذُرِ ㉒

୨୨. ଅତଏବ ଦେଖ ! ଆମର ଶାସ୍ତି (କିପରି ଭୟାବହ) ଓ ଆମର ଭୟ ପ୍ରଦର୍ଶନ କିପରି (ଯଥାର୍ଥ) ଥିଲା ।

وَلَقَدْ يَسَّرْنَا الْقُرْاٰنَ لِلذِّكْرِ فَهَلْ مِنْ مُّدَّكِرٍ ㉓ ع

୨୩. ଏବଂ ଅନୁସରଣ କରିବା ସକାଶେ ଆମେ କୋରାନକୁ ସହଜସାଧ୍ୟ କରିଅଛୁ; ତେବେ କ'ଣ କେହି ଉପଦେଶ ଗ୍ରହଣ କରିବାକୁ ଅଛି ? ରୁ: ୨

كَذَّبَتْ ثَمُوْدُ بِالنُّذُرِ ㉔

୨୪.୨ ସମୁଦ ସଂପ୍ରଦାୟ ମଧ୍ୟ ସଚେତନକାରୀ (ନବି) ମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ।

فَقَالُوْۤا اَبَشَرًا مِّنَّا وَاحِدًا نَّتَّبِعُهٗۤ اِنَّاۤ اِذًا لَّفِىْ ضَلٰلٍ وَّسُعُرٍ ㉕

୨୫. ଏବଂ କହିଥିଲେ, "କ'ଣ ଆମେମାନେ (ନିଜ ପ୍ରତି ପ୍ରେରିତ) ଆପଣା ମଧ୍ୟରୁ ଜଣେ ଲୋକର ଅନୁସରଣ କରିବୁ ? ଯଦି ଆମେମାନେ ଏପରି କରିବୁ, ତେବେ ଏକ ଅତିଶୟ ବିଭ୍ରାନ୍ତି ଓ ପାଗଳାମିରେ(ଅର୍ଥାତ୍ ଜ୍ୱଳନ୍ତ ଶାସ୍ତିରେ) ନିପତିତ ହେବୁ ।"

ءَاُلْقِىَ الذِّكْرُ عَلَيْهِ مِنْۢ بَيْنِنَا بَلْ هُوَ كَذَّابٌ اَشِرٌ ㉖

୨୬. "କ'ଣ ଅଲ୍ଲାଃଙ୍କର ଓହି ଆମମାନଙ୍କ ମଧ୍ୟରୁ (କେବଳ) ଏହା ପ୍ରତି ଅବତୀର୍ଣ୍ଣ ହୋଇଅଛି ? ବାସ୍ତବରେ ସେ ଜଣେ ବଡ଼ ମିଥ୍ୟାବାଦୀ ଓ ଅହଙ୍କାରୀ ।"

---

୧. କୌଣସି ସମୟ ଅଶୁଭ ନୁହେଁ କି କୌଣସି ସମୟ ଶୁଭ ନୁହେଁ ବରଂ ଏଠାରେ ଏହାର ତାତ୍ପର୍ଯ୍ୟ ହେଉଛି ଯେ ସେହି ନିର୍ଦ୍ଦିଷ୍ଟ ସମୟ ସେହି ଜାତି ପାଇଁ ଅଶୁଭ ଥିଲା ।

୨. ଏଠାରେ କେବଳ ହଜରତ ସ୍ୱାଲେଃଙ୍କ ବୃତ୍ତାନ୍ତ ଅଛି କିନ୍ତୁ ତାହାଙ୍କୁ ଅସ୍ୱୀକାର କରାଯିବା ତଥ୍ୟକୁ ନବିମାନଙ୍କୁ ଅସ୍ୱୀକାର କରିବା କୁହାଯାଇଛି କାରଣ ସବୁ ନବିଙ୍କର ସତ୍ୟତା ସମ୍ପର୍କିତ ପ୍ରମାଣ ଏକ ପ୍ରକାରର ହୋଇଥାଏ । ବସ୍ତୁତଃ ଜଣକୁ ଅସ୍ୱୀକାର କରିବା ଅର୍ଥ ସମସ୍ତଙ୍କୁ ଅସ୍ୱୀକାର କରିବା ।

୨୭. (ଆମେ କହିଲୁ), "ସେମାନେ ଆଗାମୀ କାଲି (ଅର୍ଥାତ୍ ଆଗାମୀ ଯୁଗରେ) ଜାଣି ପାରିବେ ଯେ କିଏ ମିଥ୍ୟାବାଦୀ ଓ ଅହଙ୍କାରୀ।"

سَيَعْلَمُوْنَ غَدًا مَّنِ الْكَذَّابُ الْاَشِرُ ﴿۲۷﴾

୨୮. (ଆମେ ସେମାନଙ୍କୁ କହିଲୁ ଯେ), "ସେମାନଙ୍କୁ ପରୀକ୍ଷା କରିବା ପାଇଁ ଆମେ ଏକ ମାଈ ଓଟ ପଠାଇବୁ; (ସୁତରାଂ ହେ ସ୍ୱାଲେଃ !) ସେମାନଙ୍କ ପରିଣାମକୁ ଅପେକ୍ଷା କର ଓ ଧୈର୍ଯ୍ୟ ଧାରଣ କର।"

اِنَّا مُرْسِلُوا النَّاقَةِ فِتْنَةً لَّهُمْ فَارْتَقِبْهُمْ وَاصْطَبِرْ ﴿۲۸﴾

୨୯. ଏବଂ ସେମାନଙ୍କୁ କୁହ, "ସେମାନଙ୍କ ଓ ତୁମମାନଙ୍କ ମଧ୍ୟରେ ଜଳ ବାଣ୍ଟି ଦିଆଯାଇଅଛି ; (ତେଣୁ) ପ୍ରତ୍ୟେକ ଗୋଷ୍ଠୀ ନିଜ ଜଳପାନ ସମୟରେ ଉପସ୍ଥିତ ହୁଅନ୍ତୁ।"

وَنَبِّئْهُمْ اَنَّ الْمَآءَ قِسْمَةٌۢ بَيْنَهُمْ كُلُّ شِرْبٍ مُّحْتَضَرٌ ﴿۲۹﴾

୩୦. ସୁତରାଂ ସେମାନେ ନିଜ ଦଳପତିଙ୍କୁ ଡାକିଥିଲେ ଓ ସେ ଆସିଲା ଓ ସେହି ମାଈ ଓଟର ଗୋଛି କାଟି ପକାଇଲା।

فَنَادَوْا صَاحِبَهُمْ فَتَعَاطٰى فَعَقَرَ ﴿۳۰﴾

୩୧. ତାହାହେଲେ ଦେଖ ! ଆମର ଶାସ୍ତି ଓ ଆମର ଭୟ ପ୍ରଦର୍ଶନ କିପରି (ଭୟଙ୍କର ଓ ଯଥାର୍ଥ) ଥିଲା ?

فَكَيْفَ كَانَ عَذَابِيْ وَنُذُرِ ﴿۳۱﴾

୩୨. ଆମେ ସେମାନଙ୍କ ପ୍ରତି ଗୋଟିଏ ମାତ୍ର ଶାସ୍ତି ଅବତୀର୍ଣ୍ଣ କରିଥିଲୁ, ଏବଂ ସେମାନେ ଜଣେ ବାଡ଼ ବୁଜିବା ଲୋକ (ଗଛରୁ) ପକାଉଥିବା ଶୁଖିଲା ଡାଳ ପରି ହୋଇଗଲେ।

اِنَّاۤ اَرْسَلْنَا عَلَيْهِمْ صَيْحَةً وَّاحِدَةً فَكَانُوْا كَهَشِيْمِ الْمُحْتَظِرِ ﴿۳۲﴾

୩୩. ଏବଂ ଅନୁସରଣ କରିବା ସକାଶେ ଆମେ କୋରାନକୁ ସହଜ ସାଧ୍ୟ କରିଅଛୁ; ତେବେ କ'ଣ କେହି ଉପଦେଶ ଗ୍ରହଣ କରିବାକୁ ଅଛି ?

وَلَقَدْ يَسَّرْنَا الْقُرْاٰنَ لِلذِّكْرِ فَهَلْ مِنْ مُّدَّكِرٍ ﴿۳۳﴾

୩୪. [୧] ଲୁତଙ୍କର ସଂପ୍ରଦାୟ ମଧ୍ୟ ସଚେତନକାରୀ (ନବି) ମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ।

كَذَّبَتْ قَوْمُ لُوْطٍۢ بِالنُّذُرِ ﴿۳۴﴾

୩୫. ଆମେ ସେମାନଙ୍କୁ ଧ୍ୱଂସ କରିବା ସକାଶେ କଙ୍କର-ପୂର୍ଣ୍ଣ ବାୟୁ ପ୍ରବାହିତ କରାଇଥିଲୁ (ଯାହା ଲୁତଙ୍କ ପରିବାର ବର୍ଗଙ୍କ ବ୍ୟତୀତ ଅନ୍ୟମାନଙ୍କୁ ଧ୍ୱଂସ କରି ଦେଇଥିଲା); ଅବଶ୍ୟ ସକାଳ ସମୟରେ (ସେହି ଶାସ୍ତି ଉପସ୍ଥିତ ହେବା ବେଳେ) ଆମେ ଲୁତଙ୍କ ପରିବାରବର୍ଗଙ୍କୁ ରକ୍ଷା କରିଥିଲୁ।

اِنَّاۤ اَرْسَلْنَا عَلَيْهِمْ حَاصِبًا اِلَّاۤ اٰلَ لُوْطٍؕ نَجَّيْنٰهُمْ بِسَحَرٍ ﴿۳۵﴾

୩୬. ଏହା ଆମ ତରଫରୁ ଏକ ଅନୁଗ୍ରହ ଥିଲା; ଯେ କୃତଜ୍ଞତା ଜ୍ଞାପନ କରେ ଆମେ (ତାହାକୁ) ଏ ପ୍ରକାର ପୁରସ୍କାର ପ୍ରଦାନ କରିଥାଉ।

نِّعْمَةً مِّنْ عِنْدِنَا ؕ كَذٰلِكَ نَجْزِيْ مَنْ شَكَرَ ﴿۳۶﴾

---

୧. ଏଠାରେ ବହୁ ବଚନ ସୂଚକ ଶବ୍ଦ ପ୍ରୟୋଗ କରାଯାଇଛି ଅଥଚ ହଜରତ ଲୁତ ଜଣେ ବ୍ୟକ୍ତି ଥିଲେ। ଏହା ପବିତ୍ର କୋରାନ ଅନ୍ତର୍ଗତ ଭାଷାର ବିଶେଷତ୍ୱ (୫୪:୨୪ର ଟୀକା ଦ୍ରଷ୍ଟବ୍ୟ)।

୩୭. ଏବଂ ସେ (ଲୁତ) ସେମାନଙ୍କୁ ପୂର୍ବରୁ ଆମ ଶାସ୍ତି ବିଷୟରେ ଜଣାଇ ଦେଇଥିଲେ, କିନ୍ତୁ ସେମାନେ ନବିମାନଙ୍କ ସହିତ ଯୁକ୍ତିତର୍କ କରିବାକୁ ଲାଗିଲେ ।

وَلَقَدْ اَنْذَرَهُمْ بَطْشَتَنَا فَتَمَارَوْا بِالنُّذُرِ ﴿٣٧﴾

୩୮. ଏବଂ ସେମାନେ ତାହାକୁ ନିଜ ଅତିଥିମାନଙ୍କ ବିରୁଦ୍ଧରେ ପ୍ରବର୍ତ୍ତାଇବାକୁ[୧] ଲାଗିଲେ; ଏବଂ ଆମେ ସେମାନଙ୍କ ଚକ୍ଷୁକୁ ପରଦା ଦ୍ୱାରା ଆଚ୍ଛାଦିତ କରିଦେଲୁ ଏବଂ କହିଲୁ, "ଆମର ଶାସ୍ତି ଓ ଆମର ଭୟ ପ୍ରଦର୍ଶନକୁ ଆସ୍ୱାଦନ କର ।"

وَلَقَدْ رَاوَدُوْهُ عَنْ ضَيْفِهٖ فَطَمَسْنَآ اَعْيُنَهُمْ فَذُوْقُوْا عَذَابِيْ وَنُذُرِ ﴿٣٨﴾

୩୯. ଏବଂ ସକାଳ ସମୟରେ ସେମାନଙ୍କ ପ୍ରତି ଏପରି ଏକ ଶାସ୍ତି ଉପସ୍ଥିତ ହେଲା ଯାହାର ଆଗମନ ଅନିବାର୍ଯ୍ୟ ଥିଲା ।

وَلَقَدْ صَبَّحَهُمْ بُكْرَةً عَذَابٌ مُّسْتَقِرٌّ ﴿٣٩﴾

୪୦. (ଏବଂ ଆମେ ସେମାନଙ୍କୁ କହିଲୁ),"ଆମର ଶାସ୍ତି ଓ ଆମର ଭୟ ପ୍ରଦର୍ଶନକୁ ଆସ୍ୱାଦନ କର ।"

فَذُوْقُوْا عَذَابِيْ وَنُذُرِ ﴿٤٠﴾

୪୧. ଏବଂ ଅନୁସରଣ କରିବା ସକାଶେ ଆମେ କୋରାନକୁ ସହଜସାଧ୍ୟ କରିଅଛୁ; ତେବେ କ'ଣ କେହି ଉପଦେଶ ଗ୍ରହଣ କରିବାକୁ ଅଛି ?

وَلَقَدْ يَسَّرْنَا الْقُرْاٰنَ لِلذِّكْرِ فَهَلْ مِنْ مُّدَّكِرٍ ﴿٤١﴾

ରୁ: ୩

୪୨. ଏବଂ ଫିରଔନ ସଂପ୍ରଦାୟ ନିକଟକୁ ମଧ୍ୟ ସଚେତନକାରୀ (ନବି) ଆସିଥିଲେ ।

وَلَقَدْ جَآءَ اٰلَ فِرْعَوْنَ النُّذُرُ ﴿٤٢﴾

୪୩. କିନ୍ତୁ ଫିରଔନ ସଂପ୍ରଦାୟ ଆମର ସକଳ ନିଦର୍ଶନ ପ୍ରତ୍ୟାଖ୍ୟାନ କରିଥିଲେ; ତେଣୁ ଆମେ ଜଣେ ପରାକ୍ରମୀ (ଓ) ବଳବାନ୍ ସଦୃଶ ସେମାନଙ୍କୁ ଶାସ୍ତିର କବଳିତ କରିଥିଲୁ ।

كَذَّبُوْا بِاٰيٰتِنَا كُلِّهَا فَاَخَذْنٰهُمْ اَخْذَ عَزِيْزٍ مُّقْتَدِرٍ ﴿٤٣﴾

୪୪. (ହେ ମକ୍କାବାସୀମାନେ !) କ'ଣ ତୁମମାନଙ୍କ ମଧ୍ୟରେ ଥିବା ଅବିଶ୍ୱାସକାରୀମାନେ ପୂର୍ବବର୍ତ୍ତୀ ଲୋକମାନଙ୍କ ତୁଳନାରେ ଉତ୍ତମ ଅଟନ୍ତି ? ଅଥବା ତୁମମାନଙ୍କ ପାଇଁ ପୂର୍ବବର୍ତ୍ତୀ (ଧର୍ମ) ଗ୍ରନ୍ଥମାନଙ୍କରେ ଶାସ୍ତିରୁ ଅବ୍ୟାହତି ପାଇବା ବିଷୟ ଲିପିବଦ୍ଧ କରାଯାଇଛି ?

اَكُفَّارُكُمْ خَيْرٌ مِّنْ اُولٰٓئِكُمْ اَمْ لَكُمْ بَرَآءَةٌ فِي الزُّبُرِ ﴿٤٤﴾

୪୫. କ'ଣ ସେମାନେ କହୁଛନ୍ତି ଆମେମାନେ ଏପରି ଏକ ସଂପ୍ରଦାୟ ଯେ କି ବିଜୟୀ ହେବୁ ?

اَمْ يَقُوْلُوْنَ نَحْنُ جَمِيْعٌ مُّنْتَصِرٌ ﴿٤٥﴾

୧. ଅର୍ଥାତ୍ ତାଙ୍କୁ କହିଲେ ଯେ ସେମାନଙ୍କୁ ସହରରୁ ତଡ଼ିଦିଅ ।

سَيُهْزَمُ الْجَمْعُ وَيُوَلُّونَ الدُّبُرَ ﴿٤٦﴾

୪୬. ଶୀଘ୍ର ସେମାନଙ୍କ ଦଳ ପରାଜିତ ହେବ ଏବଂ[୧] ସେମାନେ ପୃଷ୍ଠଭଙ୍ଗ କରି ପଳାୟନ କରିବେ ।

بَلِ السَّاعَةُ مَوْعِدُهُمْ وَالسَّاعَةُ أَدْهَىٰ وَأَمَرُّ ﴿٤٧﴾

୪୭. ବରଂ ସେମାନଙ୍କ ବିନାଶ କାଳ ବିଷୟରେ ଅଙ୍ଗୀକାର କରାଯାଇଛି; ଏବଂ ସେହି ଅଙ୍ଗୀକୃତ ସମୟ ଅତ୍ୟନ୍ତ ବିନାଶଶୀଳ ଓ କଠୋର ହେବ ।

إِنَّ الْمُجْرِمِينَ فِي ضَلَالٍ وَسُعُرٍ ﴿٤٨﴾

୪୮. ଅପରାଧୀମାନେ ବିଭ୍ରାନ୍ତି ଓ ପାଗଳାମିରେ (ଅର୍ଥାତ୍ ଜ୍ୱଳନ୍ତ ଶାସ୍ତିରେ) ନିପତିତ ହେବେ ।

يَوْمَ يُسْحَبُونَ فِي النَّارِ عَلَىٰ وُجُوهِهِمْ ذُوقُوا مَسَّ سَقَرَ ﴿٤٩﴾

୪୯. ଯେଉଁଦିନ ସେମାନେ ନିଜ ଦଳପତିମାନଙ୍କ[୨] ସହିତ ଅଗ୍ନି ମଧ୍ୟକୁ ଘୋଷରା ହୋଇଯିବେ, (ଏବଂ ସେମାନଙ୍କୁ କୁହାଯିବ) "ନରକର ଶାସ୍ତି ଆସ୍ୱାଦନ କର ।"

إِنَّا كُلَّ شَيْءٍ خَلَقْنَاهُ بِقَدَرٍ ﴿٥٠﴾

୫୦. ଆମ୍ଭେ ପ୍ରତ୍ୟେକ ବସ୍ତୁକୁ (ଏକ ନିର୍ଦ୍ଦିଷ୍ଟ) ପରିମାଣ ଅନୁଯାୟୀ ସୃଷ୍ଟି କରିଅଛୁ ।

وَمَا أَمْرُنَا إِلَّا وَاحِدَةٌ كَلَمْحٍ بِالْبَصَرِ ﴿٥١﴾

୫୧. ଏବଂ ଆମର ଆଦେଶ ଚକ୍ଷୁର ପଲକ ପଡ଼ିବା ପରି ତୁରନ୍ତ ପାଳିତ ହୁଏ ।

وَلَقَدْ أَهْلَكْنَا أَشْيَاعَكُمْ فَهَلْ مِنْ مُدَّكِرٍ ﴿٥٢﴾

୫୨. ଏବଂ ତୁମମାନଙ୍କ ସଦୃଶ ଲୋକମାନଙ୍କୁ ଆମ୍ଭେ ପୂର୍ବରୁ ମଧ୍ୟ ବିନାଶ କରିଅଛୁ; (ଏହା ଜାଣିବା ପରେ ମଧ୍ୟ କ'ଣ) କେହି ଉପଦେଶ ଗ୍ରହଣ କରିବାକୁ ଅଛି ?

وَكُلُّ شَيْءٍ فَعَلُوهُ فِي الزُّبُرِ ﴿٥٣﴾

୫୩. ଏବଂ ଯାହା କିଛି ସେମାନେ କରିଛନ୍ତି ତାହା ପୁସ୍ତକ ମାନଙ୍କରେ ଲିପିବଦ୍ଧ ହୋଇଅଛି ।

وَكُلُّ صَغِيرٍ وَكَبِيرٍ مُسْتَطَرٌ ﴿٥٤﴾

୫୪. ଏବଂ ପ୍ରତ୍ୟେକ ଛୋଟ ଓ ବଡ଼ ବିଷୟ ଲିପିବଦ୍ଧ[୩] ହୋଇ ରହିଅଛି ।

إِنَّ الْمُتَّقِينَ فِي جَنَّاتٍ وَنَهَرٍ ﴿٥٥﴾

୫୫. (ଏବଂ) ଧର୍ମଭୀରୁମାନେ ବୈକୁଣ୍ଠ ମଧ୍ୟରେ ତଥା ବିଭିନ୍ନ ପ୍ରକାର ପ୍ରାଚୁର୍ଯ୍ୟ ମଧ୍ୟରେ ରହିବେ ।

فِي مَقْعَدِ صِدْقٍ عِنْدَ مَلِيكٍ مُقْتَدِرٍ ﴿٥٦﴾

୫୬. ତାହା ଏପରି ଏକ ସ୍ଥାନ, ଯାହା ଚିରସ୍ଥାୟୀ ହେବ; (ଏବଂ ସେମାନେ) ଶକ୍ତିଶାଳୀ ସମ୍ରାଟଙ୍କ ଗହଣରେ (ରହିବେ, ଅର୍ଥାତ୍ ସେମାନେ କଦାପି ଲାଞ୍ଛିତ ହେବେ ନାହିଁ କି ସେମାନଙ୍କର ଅବନତି ଘଟିବ ନାହିଁ) ।

---

୧. ଏଠାରେ ଅହଜାବ ଯୁଦ୍ଧର ଭବିଷ୍ୟବାଣୀ ରହିଅଛି । ଏହା ଇସଲାମ ଧର୍ମର ଏକ ସତ୍ୟତା ସାବ୍ୟସ୍ତକାରୀ ନିଦର୍ଶନ ।

୨. ଅଭିଧାନ ଅନୁସାରେ 'ଓଜୁହୁନ' ଶବ୍ଦର ଅର୍ଥ (କ) ମୁଖ ମଣ୍ଡଳ (ଖ) ଦଳପତି । ଏଠାରେ ଦ୍ୱିତୀୟ ଅର୍ଥ ପ୍ରଯୋଜ୍ୟ ।

୩. ଏଠାରେ କଲମରେ ଲେଖା ହୋଇଥିବା ଅଭିପ୍ରେତ ନୁହେଁ, ବରଂ ସୁରକ୍ଷିତ ରହିଥିବା ଅଭିପ୍ରେତ । ଅନ୍ୟତ୍ର ବର୍ଣ୍ଣନା କରାଯାଇଛି ଯେ କୟାମତ ଦିନ ପାପୀମାନଙ୍କ ବିରୁଦ୍ଧରେ ସେମାନଙ୍କ ଚର୍ମ, ସେମାନଙ୍କ ଜିହ୍ୱା ଓ ସେମାନଙ୍କ ହସ୍ତପଦାଦି ସାକ୍ଷ୍ୟ ଦେବେ ।

سُوْرَةُ الرَّحْمٰنِ مَكِّيَّةٌ (٥٥)

# ଅଲ— ରହମାନ

[illegible]

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. (ସେ ହିଁ) ଅଶେଷ ଦୟାବାନ୍ (ଅଲ୍ଲାହ୍) ।

اَلرَّحْمٰنُ ②

୩. ଯେ କୋରାନ ଶିଖାଇଛନ୍ତି ।

عَلَّمَ الْقُرْاٰنَ ③

୪. ସେ ମନୁଷ୍ୟକୁ ସୃଷ୍ଟି କରିଛନ୍ତି ।

خَلَقَ الْاِنْسَانَ ④

୫. ଏବଂ ତାହାକୁ କଥନ ଶୈଳୀ ଓ ବର୍ଣ୍ଣନା ପ୍ରଣାଳୀ ପ୍ରଦାନ କରିଛନ୍ତି ।

عَلَّمَهُ الْبَيَانَ ⑤

୬. ସୂର୍ଯ୍ୟ ଓ ଚନ୍ଦ୍ର ଏକ ନିର୍ଦ୍ଦିଷ୍ଟ ନିୟମ ଅନୁସାରେ ଘୂରୁଛନ୍ତି ।

اَلشَّمْسُ وَالْقَمَرُ بِحُسْبَانٍ ⑥

୭. ଏବଂ ଗୁଳ୍ମ ଓ ବୃକ୍ଷ ମଧ୍ୟ ଅଲ୍ଲାହ୍‌ଙ୍କ ସମକ୍ଷରେ ନତମସ୍ତକ ହୁଅନ୍ତି ।

وَّالنَّجْمُ وَالشَّجَرُ يَسْجُدٰنِ ⑦

୮. ଏବଂ ଆକାଶକୁ ଆମେ ଉଚ୍ଚ କରିଅଛୁ ଏବଂ ମନୁଷ୍ୟ ସମାଜ ପାଇଁ ଓଜନ ମାପର ନୀତି ନିର୍ଦ୍ଧାରଣ କରିଅଛୁ,

وَالسَّمَآءَ رَفَعَهَا وَوَضَعَ الْمِيْزَانَ ⑧

୯. ଯେପରିକି ତୁମେମାନେ ନ୍ୟାୟର ତୁଳାଦଣ୍ଡକୁ ଅବନତ କରିବ ନାହିଁ ।

اَلَّا تَطْغَوْا فِى الْمِيْزَانِ ⑨

୧୦. ଏବଂ ନ୍ୟାୟ-ପୂର୍ବକ ଓଜନ କର ଏବଂ ମାପ କମ କର ନାହିଁ ।

وَاَقِيْمُوا الْوَزْنَ بِالْقِسْطِ وَلَا تُخْسِرُوا الْمِيْزَانَ ⑩

୧୧. ଏବଂ ଆମେ ପୃଥିବୀକୁ ସମଗ୍ର ପ୍ରାଣୀଙ୍କ ହିତାର୍ଥେ ନିର୍ମାଣ କରିଅଛୁ ।

وَالْاَرْضَ وَضَعَهَا لِلْاَنَامِ ⑪

୧୨. ଏଠାରେ ଫଳ ମଧ୍ୟ ରହିଅଛି ଓ ଆବରଣଯୁକ୍ତ ଫଳ ଥିବା ଖଜୁରି ଗଛ ମଧ୍ୟ ରହିଅଛି,

فِيْهَا فَاكِهَةٌ وَّالنَّخْلُ ذَاتُ الْاَكْمَامِ ⑫

୧୩. ଏବଂ ଏଠାରେ ଚୋପା ଲଗା ଶସ୍ୟ ତଥା ସୁବାସିତ ପୁଷ୍ପ ମଧ୍ୟ ଅଛି ।

وَالْحَبُّ ذُو الْعَصْفِ وَالرَّيْحَانُ ⑬

୧୪. ତେବେ କହିଲ ଭଲା ତୁମେ ଦୁହେଁ (ଅର୍ଥାତ୍ ଜିନ୍ନ ଓ ମାନବ) ନିଜ ପାଳନକର୍ତ୍ତାଙ୍କର କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ⑭

୧୫. ସେ ମନୁଷ୍ୟକୁ ଝଣଝଣିଆ ଶୁଖିଲା ମାଟିରୁ ସୃଷ୍ଟି କରିଛନ୍ତି ।

خَلَقَ الْإِنْسَانَ مِنْ صَلْصَالٍ كَالْفَخَّارِ ﴿١٥﴾

୧୬. ଏବଂ ଜିନ୍ନମାନଙ୍କୁ ଅଗ୍ନିଶିଖାରୁ[୧] ସୃଷ୍ଟି କରିଛନ୍ତି ।

وَخَلَقَ الْجَانَّ مِنْ مَارِجٍ مِنْ نَارٍ ﴿١٦﴾

୧୭. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِأَيِّ آلَاءِ رَبِّكُمَا تُكَذِّبَانِ ﴿١٧﴾

୧୮. ସେ ଦୁଇ ପୂର୍ବ ଦିଗର ମଧ୍ୟ ପାଳନକର୍ତ୍ତା ଓ ଦୁଇ. ପଶ୍ଚିମ ଦିଗର[୨] ମଧ୍ୟ ପାଳନକର୍ତ୍ତା ଅଟନ୍ତି ।

رَبُّ الْمَشْرِقَيْنِ وَرَبُّ الْمَغْرِبَيْنِ ﴿١٨﴾

୧୯. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِأَيِّ آلَاءِ رَبِّكُمَا تُكَذِّبَانِ ﴿١٩﴾

୨୦. ସେ ଦୁଇ ଗୋଟି ସମୁଦ୍ରକୁ ଏପରି ନିକଟବର୍ତ୍ତୀ କରି ସୃଷ୍ଟି କରାଇଛନ୍ତି ଯେ ସେମାନେ ଏକ ସମୟରେ ମିଶି ଯିବେ ।[୩]

مَرَجَ الْبَحْرَيْنِ يَلْتَقِيَانِ ﴿٢٠﴾

୨୧. (ସଂପ୍ରତି) ସେମାନଙ୍କ ମଧ୍ୟରେ ଏକ ପ୍ରତିବନ୍ଧକ ଅଛି; ଯେଉଁଥିପାଇଁ ଗୋଟିଏ ଅନ୍ୟ ମଧ୍ୟରେ ପ୍ରବେଶ କରି ପାରୁ ନାହିଁ ।

بَيْنَهُمَا بَرْزَخٌ لَا يَبْغِيَانِ ﴿٢١﴾

୨୨. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِأَيِّ آلَاءِ رَبِّكُمَا تُكَذِّبَانِ ﴿٢٢﴾

୨୩. ସେହି ଦୁଇ ସମୁଦ୍ର ମଧ୍ୟରୁ ମୁକ୍ତା ଓ ପ୍ରବାଳ ବାହାରେ ।

يَخْرُجُ مِنْهُمَا اللُّؤْلُؤُ وَالْمَرْجَانُ ﴿٢٣﴾

୨୪. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِأَيِّ آلَاءِ رَبِّكُمَا تُكَذِّبَانِ ﴿٢٤﴾

---

୧. ୩୪:୧୫ର ଟୀକା ଦ୍ରଷ୍ଟବ୍ୟ ।

୨. ପୃଥିବୀର ଆକାର ଗୋଲ ବୋଲି ଏଠାରେ ସୂଚିତ କରାଯାଇଛି । ସେହି ହେତୁ ଦୁଇଟି ପୂର୍ବ ଓ ଦୁଇଟି ପଶ୍ଚିମର ଉଲ୍ଲେଖ ଅଛି । ପୃଥିବୀର ଯେ କୌଣସି ସ୍ଥାନ ଅନ୍ୟ କୌଣସି ସ୍ଥାନ ସମ୍ପର୍କରେ ଏକ ପକ୍ଷରେ ପୂର୍ବ ଦିଗରେ ଓ ଅନ୍ୟପକ୍ଷରେ ପଶ୍ଚିମ ଦିଗରେ ଅବସ୍ଥିତ । ଅଧିକନ୍ତୁ ପୃଥିବୀ ଗୋଲାକାର ହୋଇଥିବାରୁ ପୂର୍ବ ଗୋଲାର୍ଦ୍ଧର ପୂର୍ବ ହେଉଛି ପଶ୍ଚିମ ଗୋଲାର୍ଦ୍ଧର ପଶ୍ଚିମ । ସେହିପରି ପଶ୍ଚିମ ଗୋଲାର୍ଦ୍ଧର ପଶ୍ଚିମ ହେଉଛି ପୂର୍ବ ଗୋଲାର୍ଦ୍ଧର ପୂର୍ବ । ଅତଏବ ଏହି ରୂପେ ଦୁଇଟି ପୂର୍ବ ଓ ଦୁଇଟି ପଶ୍ଚିମର ସ୍ଥିତି ଅଛି । ଆଧୁନିକ ରାଷ୍ଟ୍ର ବିଜ୍ଞାନ ଭାଷାରେ ନିକଟ ପ୍ରାଚ୍ୟ ଓ ଦୂର ପ୍ରାଚ୍ୟକୁ ଦୁଇଟି ପୂର୍ବ ଏବଂ ୟୁରୋପ ଓ ଆମେରିକାକୁ ଦୁଇଟି ପଶ୍ଚିମ କୁହାଯାଇପାରେ ।

୩. ଏଠାରେ ସୁଏଜ କେନାଲ ଓ ପାନାମା କେନାଲ ସମ୍ବନ୍ଧରେ ଭବିଷ୍ୟବାଣୀ ରହିଅଛି । କୁହାଯାଇଛି ଯେ ଦୁଇଟି ସମୁଦ୍ର ପରସ୍ପରର ନିକଟବର୍ତ୍ତୀ ଅଥଚ ସେମାନଙ୍କ ମଧ୍ୟରେ ଏକ ଭୂଭାଗ ରହିଅଛି । ଦିନେ ସେ ଉଭୟେ ମିଳିତ ହେବେ । ସେହି ଦୁଇ ସମୁଦ୍ରରେ ମୁକ୍ତା ଓ ପ୍ରବାଳ ଉପଲବ୍ଧ ହୁଏ । ଏହାହିଁ ସେଗୁଡ଼ିକର ପରିଚୟ । ସୁଏଜ ଓ ପାନାମା ଜଳ ଭାଗରେ ପ୍ରଚୁର ପରିମାଣରେ ମୁକ୍ତା ଓ ପ୍ରବାଳ ମିଳେ । ଲୋହିତ ସାଗରକୁ ଭୂମଧ୍ୟ ସାଗର ସହିତ ସୁଏଜ କେନାଲ ଏବଂ ପ୍ରଶାନ୍ତ ମହାସାଗରକୁ ଆଟଲାଣ୍ଟିକ ମହାସାଗର ସହିତ ପାନାମା କେନାଲ ସଂଯୁକ୍ତ କରୁଅଛି ।

୨୫. ଏବଂ ତାହାଙ୍କ ଦ୍ୱାରା ନିର୍ମିତ ନୌକା ଏବଂ ପୋତ ମଧ୍ୟ ଅଛି ଯାହା ସାଗର ବକ୍ଷରେ ପର୍ବତ [୧] ସଦୃଶ ଦୃଷ୍ଟିଗୋଚର ହୁଏ ।

وَلَهُ الْجَوَارِ الْمُنْشَئٰتُ فِى الْبَحْرِ كَالْاَعْلَامِ ۝

୨୬. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ۝

୨୭. ଏଠାରେ (ଅର୍ଥାତ୍ ଏହି ପୃଥିବୀରେ) ଯାହା କିଛି ଅଛି ତାହା ପରିଶେଷରେ ବିନାଶଶୀଳ ।

كُلُّ مَنْ عَلَيْهَا فَانٍ ۝

୨୮. ଏବଂ କେବଳ ସେ ବସ୍ତୁ ରହେ ଯାହା ପ୍ରତି ତୁମର ମହିମମୟ ଓ ସମ୍ମାନନୀୟ ପାଳନକର୍ତ୍ତା ଧ୍ୟାନ ଦିଅନ୍ତି ।

وَّيَبْقٰى وَجْهُ رَبِّكَ ذُو الْجَلٰلِ وَالْاِكْرَامِ ۝

୨୯. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ۝

୩୦. ଆକାଶ ଓ ପୃଥିବୀରେ ଯେ କେହି ବି ଥାଆନ୍ତୁ ସେ ତାଙ୍କ ଠାରୁ ନିଜ ଆବଶ୍ୟକତା ଭିକ୍ଷା କରନ୍ତି; ସେ ପ୍ରତି ମୁହୂର୍ତ୍ତରେ ଏକ ନୂତନ ଅବସ୍ଥାରେ [୨] ପ୍ରକାଶିତ ହୁଅନ୍ତି ।

يَسْئَلُهُ مَنْ فِى السَّمٰوٰتِ وَالْاَرْضِ كُلَّ يَوْمٍ هُوَ فِىْ شَاْنٍ ۝

୩୧. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ۝

୩୨. ହେ [୪] ଦୁଇ ମହାଶକ୍ତି! [୩] ଆମେ ତୁମ ଦୁହିଁଙ୍କ ସକାଶେ ପ୍ରସ୍ତୁତ ହେଉଅଛୁ ।

سَنَفْرُغُ لَكُمْ اَيُّهَ الثَّقَلٰنِ ۝

୩୩. ତେବେ କହିଲ [୫] ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ۝

---

୧. ପର୍ବତ ସଦୃଶ ବିରାଟ ଆକୃତିର ଆଧୁନିକ ଜଳପୋତକୁ ବୁଝାଉଛି । ଏହା ଚଉଦ ଶହ ବର୍ଷର ପୁରୁଣା ଏକ ଭବିଷ୍ୟବାଣୀ ଯାହା ସତ୍ୟ ସାବ୍ୟସ୍ତ ହୋଇଛି । ଜଳ ଯାତ୍ରା କରୁଥିବା ବ୍ୟକ୍ତିମାନେ ଏହାର ସତ୍ୟତା ସମ୍ପର୍କରେ ସାକ୍ଷୀ ଅଟନ୍ତି ।

୨. ଏହାର ତାତ୍ପର୍ଯ୍ୟ ହେଉଛି, ତାହାର ଗୁଣ ଏପରି ଅସୀମ ଯେ ତାହା ପ୍ରତି ମୁହୂର୍ତ୍ତରେ ନିଜର ନୂଆ ନୂଆ ଗୁଣ ପ୍ରକଟିତ କରୁଥାଏ । ମଣିଷର ଗୁଣ ଭଳି ତାର ଗୁଣ ସୀମିତ ନୁହେଁ ।

୩. ଅର୍ଥାତ୍ ରୁଷିଆ ଓ ଆମେରିକାର ସମ୍ମିଳିତ ଶକ୍ତି ।

୪. ଅର୍ଥାତ୍ କିଛିଦିନ ପାଇଁ ଅବ୍ୟାହତି ଦେଇ ଉଭୟକୁ ଧ୍ୱଂସ କରିଦେବେ ।

୫. ଧ୍ୱଂସ କରିବା ସମୟରେ ସେମାନଙ୍କୁ ପଚରାଯିବ ଯେ କ'ଣ ତୁମମାନଙ୍କ ପ୍ରତି ଅଲ୍ଲାହ ଅସୀମ କୃପା ପ୍ରଦର୍ଶନ କରି ନଥିଲେ ଏବଂ କ'ଣ ତୁମେମାନେ ଧର୍ମର ପରିହାସ କରୁ ନଥିଲ ?

يَٰمَعْشَرَ ٱلْجِنِّ وَٱلْإِنسِ إِنِ ٱسْتَطَعْتُمْ أَن تَنفُذُوا۟ مِنْ أَقْطَارِ ٱلسَّمَٰوَٰتِ وَٱلْأَرْضِ فَٱنفُذُوا۟ ۚ لَا تَنفُذُونَ إِلَّا بِسُلْطَٰنٍ ٣٤

୩୪. ହେ ଜିନ୍ନ[1] ଓ ମାନବ ଗୋଷ୍ଠୀ ! ଯଦି ଆକାଶ[2] ଓ ପୃଥିବୀର ସୀମା ଅତିକ୍ରମ କରି ପଳାୟନ କରିବା ପାଇଁ ତୁମମାନଙ୍କର ଶକ୍ତି ଅଛି, ତେବେ ପଳାୟନ କରି ଦେଖାଇ ଦିଅ; ତୁମେମାନେ ବିନା ପ୍ରମାଣରେ କଦାପି ପଳାୟନ କରିପାରିବ ନାହିଁ ।[3]

فَبِأَيِّ ءَالَآءِ رَبِّكُمَا تُكَذِّبَانِ ٣٥

୩୫. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

يُرْسَلُ عَلَيْكُمَا شُوَاظٌ مِّن نَّارٍ وَنُحَاسٌ فَلَا تَنتَصِرَانِ ٣٦

୩୬. ତୁମମାନଙ୍କ ଉପରକୁ ଅଗ୍ନି ଶିଖା[4] ଓ ତମ୍ବା ନିକ୍ଷେପ କରାହେବ; ସୁତରାଂ ତୁମେ ଦୁହେଁ କଦାପି ବିଜୟୀ ହେବ ନାହିଁ ।

فَبِأَيِّ ءَالَآءِ رَبِّكُمَا تُكَذِّبَانِ ٣٧

୩୭. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَإِذَا ٱنشَقَّتِ ٱلسَّمَآءُ فَكَانَتْ وَرْدَةً كَٱلدِّهَانِ ٣٨

୩୮. ଯେତେବେଳେ ଆକାଶ ଫାଟିଯିବ ଓ ଲାଲ ଚମଡ଼ା ପରି ହୋଇଯିବ, (ସେତେବେଳେ ଅନ୍ତିମ ବିଚାର ଦିବସ ଉପସ୍ଥିତ ହେବ) ।

فَبِأَيِّ ءَالَآءِ رَبِّكُمَا تُكَذِّبَانِ ٣٩

୩୯. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فَيَوْمَئِذٍ لَّا يُسْـَٔلُ عَن ذَنۢبِهِۦٓ إِنسٌ وَلَا جَآنٌّ ٤٠

୪୦. ସେହି (ଅନ୍ତିମ ବିଚାର) ଦିବସରେ ମନୁଷ୍ୟ କିମ୍ବା ଜିନ୍ନକୁ ତାହାର ପାପ[6] ବିଷୟରେ ପଚରାଯିବ ନାହିଁ ।

فَبِأَيِّ ءَالَآءِ رَبِّكُمَا تُكَذِّبَانِ ٤١

୪୧. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

يُعْرَفُ ٱلْمُجْرِمُونَ بِسِيمَٰهُمْ فَيُؤْخَذُ بِٱلنَّوَٰصِى وَٱلْأَقْدَامِ ٤٢

୪୨. ଅପରାଧୀମାନେ ନିଜ ଚେହେରାର ଲକ୍ଷଣରୁ ଚିହ୍ନା ପଡ଼ିବେ, ଏବଂ ସେମାନଙ୍କୁ ସେମାନଙ୍କ କପାଳର କେଶ ଦ୍ୱାରା ଓ ପାଦ ଦ୍ୱାରା ଧରି ନିଆହେବ ।

---

୧. ଏଠାରେ 'ଜିନ' ଧନବାନ୍ ବ୍ୟକ୍ତିଙ୍କୁ ଓ 'ଇନସ୍' ସାଧାରଣ ବ୍ୟକ୍ତିଙ୍କୁ ବୁଝାଉଛି । ଆଜି ଗୋଟିଏ ପାର୍ଶ୍ୱରେ ପୁଞ୍ଜିପତିଙ୍କ ଗୋଷ୍ଠୀ ଅର୍ଥାତ୍ ଆମେରିକା ଓ ଅନ୍ୟ ପାର୍ଶ୍ୱରେ ସର୍ବହରା ଗୋଷ୍ଠୀର ପ୍ରତୀକ କମ୍ୟୁନିଷ୍ଟ ମତବାଦ ଅର୍ଥାତ ରୁଷିଆ ।

୨. ଉଭୟ ପକ୍ଷ ଏପରି ରକେଟ ନିର୍ମାଣ କରୁଛନ୍ତି ଯେ ତା ସାହାଯ୍ୟରେ ସୁଦୂର ଗ୍ରହ ନକ୍ଷତ୍ର ପର୍ଯ୍ୟନ୍ତ ପହଞ୍ଚି ହେବ । କିନ୍ତୁ ଅଲ୍ଲାହ କହୁଛନ୍ତି ଯେ ସେମାନେ ସେଥିରେ କୃତକାର୍ଯ୍ୟ ହୋଇ ପାରିବେ ନାହିଁ । ସେମାନେ ଅତି ବେଶିରେ ସେହି ସବୁ ଗ୍ରହ ନକ୍ଷତ୍ର ପର୍ଯ୍ୟନ୍ତ ପହଞ୍ଚି ପାରିବେ ଯାହାକୁ ଖାଲି ଆଖିରେ ଦେଖିହୁଏ ।

୩. ଅର୍ଥାତ୍ ତୁମେମାନେ ବଳ ପ୍ରୟୋଗ କରି ଦିବ୍ୟ ଶିକ୍ଷାର ସମ୍ମୁଖୀନ ହୋଇପାରିବ ନାହିଁ କି ନିଜ ଶକ୍ତିକୁ ଆଧାର କରି ସେଥିରୁ ଅବ୍ୟାହତି ପାଇପାରିବ ନାହିଁ । ଅବଶ୍ୟ ଏକମାତ୍ର ଉପାୟ ଅଛି ; ତା'ହେଉଛି ପ୍ରମାଣ ସହିତ ସେହି ଦିବ୍ୟ ଶିକ୍ଷାକୁ ଖଣ୍ଡନ କର ।

୪. ଏଠାରେ ମହାଜାଗତିକ ରଶ୍ମି **(Cosmic. Ray)** ବିଷୟରେ ସୂଚନା ଦିଆଯାଇଛି

୫. ଏଠାରେ ବୋମା ବିଷୟରେ ସୂଚନା ଦିଆଯାଇଛି ।

୬. ଏଠାରେ ପ୍ରଶ୍ନ ହୋଇଯିବା ଅଭିପ୍ରେତ ନୁହେଁ, ବରଂ ସେମାନଙ୍କ ପାପର ଶାସ୍ତି ସେମାନଙ୍କୁ କବଳିତ କରିବ । ସେମାନଙ୍କୁ ପଚାରିବା ଆବଶ୍ୟକ ହେବ ନାହିଁ ।

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ﴿٤٣﴾

୪୩. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

هٰذِهٖ جَهَنَّمُ الَّتِيْ يُكَذِّبُ بِهَا الْمُجْرِمُوْنَ ﴿٤٤﴾

୪୪. ଏହା ହିଁ ସେହି ନରକ, ଯାହାକୁ ଅପରାଧୀମାନେ ଅସ୍ୱୀକାର କରୁଛନ୍ତି ।

يَطُوْفُوْنَ بَيْنَهَا وَبَيْنَ حَمِيْمٍ اٰنٍ ﴿٤٥﴾

୪୫. (ଯେତେବେଳେ ନରକରେ[୧] ପ୍ରବେଶ କରିବା ସମୟ ଉପସ୍ଥିତ ହେବ), ସେତେବେଳେ ସେମାନେ ଏହା ମଧ୍ୟରେ ଓ ଫୁଟନ୍ତା ଜଳ ମଧ୍ୟରେ ଘୂରି ବୁଲୁଥିବେ ।

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ﴿٤٦﴾

୪୬. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

وَلِمَنْ خَافَ مَقَامَ رَبِّهٖ جَنَّتٰنِ ﴿٤٧﴾

୪୭. ଏବଂ ଯେଉଁ ବ୍ୟକ୍ତି ନିଜ ପାଳନକର୍ତ୍ତାଙ୍କ ମହିମାକୁ ଭୟ କରୁଥାଏ, ତାହା ପାଇଁ (ସାଂସାରିକ ଓ ସ୍ୱର୍ଗୀୟ) ଦୁଇ ଗୋଟି ବୈକୁଣ୍ଠ ରହିଅଛି ।

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ﴿٤٨﴾

୪୮. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

ذَوَاتَآ اَفْنَانٍ ﴿٤٩﴾

୪୯. ସେ ଦୁଇଟି (ବୈକୁଣ୍ଠ) ରେ ଅନେକ ଶାଖାଯୁକ୍ତ (ବୃକ୍ଷ) ଥିବ (ଅର୍ଥାତ୍ ସେଠାକାର ବୃକ୍ଷ ଘଞ୍ଚ ହୋଇଥିବ) ।

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ﴿٥٠﴾

୫୦. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فِيْهِمَا عَيْنٰنِ تَجْرِيٰنِ ﴿٥١﴾

୫୧. ସେ ଦୁଇଟି (ବୈକୁଣ୍ଠ)ରେ (ଜଳପୂର୍ଣ୍ଣ) ଦୁଇ ଗୋଟି ଝରଣା ପ୍ରବାହିତ ହେଉଥିବ ।

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ﴿٥٢﴾

୫୨. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فِيْهِمَا مِنْ كُلِّ فَاكِهَةٍ زَوْجٰنِ ﴿٥٣﴾

୫୩. ସେ ଦୁଇଟି (ବୈକୁଣ୍ଠ)ରେ ପ୍ରତ୍ୟେକ ପ୍ରକାର ଫଳ ଦୁଇ ଦୁଇ କିସମର ହେବ ।

فَبِاَيِّ اٰلَآءِ رَبِّكُمَا تُكَذِّبٰنِ ﴿٥٤﴾

୫୪. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ[୨] ପ୍ରତ୍ୟାଖ୍ୟାନ କରିବ ?

---

୧. ଅର୍ଥାତ୍ ସେମାନଙ୍କ ଉଭୟ ପାର୍ଶ୍ୱରୁ ବିପତ୍ତି ଓ କେବଳ ବିପତ୍ତି ହିଁ ଦୃଷ୍ଟିଗୋଚର ହେବ । ସେମାନେ ଯୁଦ୍ଧ ପ୍ରସ୍ତୁତି ଆରମ୍ଭ କଲେ ଆର୍ଥିକ ଦୁର୍ଦ୍ଦଶାର ସମ୍ମୁଖୀନ ହେବେ ଏବଂ ଯଦି ପ୍ରସ୍ତୁତି ପରିହାର କରିବେ ତେବେ ଶତ୍ରୁ ଦ୍ୱାରା ନିହତ ହେବେ ।

୨. ଏଠାରେ ମୁଖ୍ୟତଃ ଆଧ୍ୟାତ୍ମିକ ପୁରସ୍କାର ଅଭିପ୍ରେତ । ଅବଶ୍ୟ ଏହି ବିଷୟକୁ ଧ୍ୟାନରେ ରଖିବା ଆବଶ୍ୟକ ଯେ ଏଠାରେ କେବଳ ନାରୀ କୁହାଯାଇଛି । ଏହାର ଅର୍ଥ ପୁରୁଷର ପାର୍ଥିବ ଧର୍ମପତ୍ନୀ ହୋଇପାରେ ଯାହାକୁ ପରକାଳରେ ସୌନ୍ଦର୍ଯ୍ୟ ପ୍ରଦାନ କରାଯିବ ।

مُتَّكِـِٔينَ عَلَىٰ فُرُشٍۭ بَطَآئِنُهَا مِنْ إِسْتَبْرَقٍ ۚ وَجَنَى ٱلْجَنَّتَيْنِ دَانٍ ۝٥٥

୫୫. (ବୈକୁଣ୍ଠବାସୀ) ଶଯ୍ୟା ଉପରେ ଏପରି ତକିଆ ଲଗାଇ ବସି ଥିବେ ଯହିଁରେ ବୁଟିଦାର ବସ୍ତ୍ରର ଅସ୍ତର ଲାଗି ଥିବ ଏବଂ ଦୁଇଟି ଯାକ ଉଦ୍ୟାନର ଫଳ (ଲଦି ହୋଇଥିବା ଯୋଗୁଁ) ନଇଁ ପଡ଼ିଥିବ ।

فَبِأَىِّ ءَالَآءِ رَبِّكُمَا تُكَذِّبَانِ ۝٥٦

୫୬. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فِيهِنَّ قَٰصِرَٰتُ ٱلطَّرْفِ لَمْ يَطْمِثْهُنَّ إِنسٌ قَبْلَهُمْ وَلَا جَآنٌّ ۝٥٧

୫୭. ସେଠାରେ ଦୃଷ୍ଟି – ଅବନତ – ନୟନା ନାରୀଗଣ[୧] ଥିବେ, ଯେଉଁମାନଙ୍କ ସହିତ (ଏହି ବୈକୁଣ୍ଠବାସୀଙ୍କ) ପୂର୍ବରୁ, କୌଣସି ମାନବ ବା ଜିନ୍ନ ସଂପର୍କ ରଖି ନଥିବ ।

فَبِأَىِّ ءَالَآءِ رَبِّكُمَا تُكَذِّبَانِ ۝٥٨

୫୮. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

كَأَنَّهُنَّ ٱلْيَاقُوتُ وَٱلْمَرْجَانُ ۝٥٩

୫୯. ସେ (ନାରୀ) ମାନେ ପଦ୍ମରାଗ ମଣି[୨] ଅବା ମୁକ୍ତା ସଦୃଶ ହୋଇଥିବେ ।

فَبِأَىِّ ءَالَآءِ رَبِّكُمَا تُكَذِّبَانِ ۝٦٠

୬୦. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

هَلْ جَزَآءُ ٱلْإِحْسَٰنِ إِلَّا ٱلْإِحْسَٰنُ ۝٦١

୬୧. ହିତର ପୁରସ୍କାର ହିତ ଛଡ଼ା ଆଉ କ'ଣ ହୋଇପାରେ ?

فَبِأَىِّ ءَالَآءِ رَبِّكُمَا تُكَذِّبَانِ ۝٦٢

୬୨. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

وَمِن دُونِهِمَا جَنَّتَانِ ۝٦٣

୬୩. ଏବଂ ସେହି ଦୁଇ ଗୋଟି ବୈକୁଣ୍ଠ ବ୍ୟତୀତ ଅନ୍ୟ ଦୁଇ ଗୋଟି ବୈକୁଣ୍ଠ ମଧ୍ୟ ଥିବ ।

فَبِأَىِّ ءَالَآءِ رَبِّكُمَا تُكَذِّبَانِ ۝٦٤

୬୪. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

مُدْهَآمَّتَانِ ۝٦٥

୬୫. ସେ (ବୈକୁଣ୍ଠ) ଦ୍ୱୟ ଗାଢ଼ ସବୁଜ ବର୍ଣ୍ଣର ହେବ ।

فَبِأَىِّ ءَالَآءِ رَبِّكُمَا تُكَذِّبَانِ ۝٦٦

୬୬. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

---

୧. ଅର୍ଥାତ୍ ସେମାନେ ସତୀ, ସ୍ୱାଧ୍ୱୀ ଓ ଧର୍ମପ୍ରାଣା ହୋଇଥିବେ ।

୨. ଅର୍ଥାତ୍ ସେମାନଙ୍କ ଦେହର ରଙ୍ଗ ନାଲି ମିଶା ଗୋରା ହୋଇଥିବ ଓ ସେମାନେ ସୁକୁମାରୀ ହୋଇଥିବେ । ପଦ୍ମରାଗ ମଣି ନିଜର ଲୋହିତରଙ୍ଗ ଦୃଷ୍ଟିରୁ ପ୍ରସିଦ୍ଧ ଏବଂ ପ୍ରବାଳ ନିଜର କୋମଳତା ତଥା ନାଲି ଓ ଧଳାର ମିଶ୍ରଣ ଯୋଗୁଁ ପ୍ରସିଦ୍ଧ ଅଟେ । ଏଠାରେ ଏହି ଦୁଇଟି ଶବ୍ଦ ମାଧ୍ୟମରେ ସେହି ନାରୀମାନଙ୍କ ଠାରେ ଥିବା ଗୁଣ ବିଷୟରେ ସୂଚନା ଦିଆଯାଇଛି ।

فِيهِمَا عَيْنٰنِ نَضَّاخَتٰنِ ﴿٦٧﴾

୬୭. ସେ (ବୈକୁଣ୍ଠ) ଦ୍ୱୟରେ ଦୁଇ ଗୋଟି ଝରଣା ପ୍ରବଳ ବେଗରେ ନିର୍ଗତ ହେଉଥିବ ।

فَبِأَيِّ آلَآءِ رَبِّكُمَا تُكَذِّبٰنِ ﴿٦٨﴾

୬୮. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فِيهِمَا فٰكِهَةٌ وَّنَخْلٌ وَّرُمَّانٌ ﴿٦٩﴾

୬୯. ସେଠାରେ ଫଳ ମଧ୍ୟ ଥିବ, ଖଜୁରି ତଥା ଡାଳିମ୍ବ ମଧ୍ୟ ଥିବ ।

فَبِأَيِّ آلَآءِ رَبِّكُمَا تُكَذِّبٰنِ ﴿٧٠﴾

୭୦. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

فِيهِنَّ خَيْرٰتٌ حِسَانٌ ﴿٧١﴾

୭୧. ସେଠାରେ ପୁଣ୍ୟବତୀ ଓ ସୁନ୍ଦରୀ ନାରୀମାନେ ଥିବେ ।

فَبِأَيِّ آلَآءِ رَبِّكُمَا تُكَذِّبٰنِ ﴿٧٢﴾

୭୨. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

حُورٌ مَّقْصُورٰتٌ فِي الْخِيَامِ ﴿٧٣﴾

୭୩. ସେ ନାରୀମାନେ[୧] ସୁନ୍ଦରୀ ଓ କୃଷ୍ଣ-ନେତ୍ରଯୁକ୍ତା ହୋଇଥିବେ, ଓ ଶିବିର ମଧ୍ୟରେ ରଖା ହୋଇଥିବେ ।

فَبِأَيِّ آلَآءِ رَبِّكُمَا تُكَذِّبٰنِ ﴿٧٤﴾

୭୪. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

لَمْ يَطْمِثْهُنَّ إِنْسٌ قَبْلَهُمْ وَلَا جَآنٌّ ﴿٧٥﴾

୭୫. ସେମାନଙ୍କୁ ପୂର୍ବରୁ (ବୈକୁଣ୍ଠରେ ପ୍ରବେଶ କରିଥିବା) କୌଣସି ମାନବ ବା ଜିନ୍ନ ସ୍ପର୍ଶ କରି ନ ଥିବ ।[୨]

فَبِأَيِّ آلَآءِ رَبِّكُمَا تُكَذِّبٰنِ ﴿٧٦﴾

୭୬. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

مُتَّكِـِٔينَ عَلٰى رَفْرَفٍ خُضْرٍ وَّعَبْقَرِيٍّ حِسَانٍ ﴿٧٧﴾

୭୭. ସେ (ବୈକୁଣ୍ଠ ବାସୀ)ମାନେ ଶିବିର ମଧ୍ୟରେ ସବୁଜ ରଙ୍ଗର ଅତ୍ୟନ୍ତ ମନୋରମ ଓ ଉଚ୍ଚ-କୋଟିର ଚଟାଣ ଉପରେ ତକିଆ ଲଗାଇ ବସିଥିବେ ।

فَبِأَيِّ آلَآءِ رَبِّكُمَا تُكَذِّبٰنِ ﴿٧٨﴾

୭୮. ତେବେ କହିଲ ଭଲା ତୁମେ ଦୁହେଁ ନିଜ ପାଳନକର୍ତ୍ତାଙ୍କ କେଉଁ କେଉଁ ଅନୁଗ୍ରହକୁ ପ୍ରତ୍ୟାଖ୍ୟାନ କରିବ ?

تَبٰرَكَ اسْمُ رَبِّكَ ذِى الْجَلٰلِ وَالْإِكْرَامِ ﴿٧٩﴾

୭୯. ତୁମର ମହିମମୟ ଓ ସମ୍ମାନନୀୟ ପାଳନକର୍ତ୍ତାଙ୍କ ନାମ ଅତ୍ୟନ୍ତ ମଙ୍ଗଳମୟ ଅଟେ ।

---

୧. ସେମାନଙ୍କ ବିଷୟ ପୂର୍ବବର୍ତ୍ତୀ ଆୟତ ୩୧ରେ ମଧ୍ୟ ବର୍ଣ୍ଣନା କରାଯାଇଛି ।

୨. ଅର୍ଥାତ ସେମାନେ ନିଜ ନିଜ ପତିଙ୍କ ନିକଟରେ ଥିବେ ।

سُوْرَةُ الْوَاقِعَةِ مَكِّيَّةٌ (٥٦)

## ଅଲ– ୱାକେୟା

(ଏହା ମକ୍କାରେ ଅବତୀର୍ଣ୍ଣ । ଏହାର ବିସ୍ମିଲ୍ଲାହ ସମେତ ୯୭ଟି ଆୟତ ଓ ୩ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

اِذَا وَقَعَتِ الْوَاقِعَةُ ②

୨. ଯେତେବେଳେ ସେହି ଅନିବାର୍ଯ୍ୟ ଘଟଣା ଘଟିବ[1] (ଅର୍ଥାତ୍ କୟାମତ ଉପସ୍ଥିତ ହେବ)—

لَيْسَ لِوَقْعَتِهَا كَاذِبَةٌ ③

୩. ଏହାର ଘଟିବା ସମୟକୁ ଟଳାଇ ଦେବା ପାଇଁ କେହି ନାହିଁ ।

خَافِضَةٌ رَّافِعَةٌ ④

୪. ତାହା କେତେକଙ୍କୁ ନୀଚ କରିଦେବ, ଓ ଅନ୍ୟ କେତେକଙ୍କୁ ଉଚ୍ଚ[2] କରିଦେବ ।

اِذَا رُجَّتِ الْاَرْضُ رَجًّا ⑤

୫. ଯେଉଁଦିନ ଭୂପୃଷ୍ଠକୁ ପ୍ରକମ୍ପିତ କରାହେବ,

وَّبُسَّتِ الْجِبَالُ بَسًّا ⑥

୬. ଏବଂ ପର୍ବତ ମାନଙ୍କୁ ଖଣ୍ଡ ବିଖଣ୍ଡ କରି ଦିଆଯିବ ।

فَكَانَتْ هَبَآءً مُّنْۢبَثًّا ⑦

୭. ସେ ସବୁ ଚତୁର୍ଦ୍ଦିଗରେ ବାୟୁରେ ଉଡୁଥିବା ଧୂଳି କଣା ସଦୃଶ ହୋଇଯିବେ ।

وَّكُنْتُمْ اَزْوَاجًا ثَلٰثَةً ⑧

୮. ଏବଂ ତୁମେମାନେ ତିନି ଗୋଟି ଦଳରେ ବିଭକ୍ତ ହେବ ।

فَاَصْحٰبُ الْمَيْمَنَةِ ۙ مَآ اَصْحٰبُ الْمَيْمَنَةِ ⑨

୯. ଦଳେ ଦକ୍ଷିଣ ହସ୍ତ ପାର୍ଶ୍ବରେ ଥିବେ; ଏବଂ ଦକ୍ଷିଣ ହସ୍ତପାର୍ଶ୍ବସ୍ଥ ବ୍ୟକ୍ତିମାନେ କିପରି ହୋଇଥିବେ, ତାହା ତୁମକୁ କ'ଣ ଜଣା ?

وَاَصْحٰبُ الْمَشْئَمَةِ ۙ مَآ اَصْحٰبُ الْمَشْئَمَةِ ⑩

୧୦. ଦଳେ ବାମ ହସ୍ତ ପାର୍ଶ୍ବରେ ଥିବେ; ଏବଂ ବାମ ହସ୍ତପାର୍ଶ୍ବସ୍ଥ ଲୋକମାନେ କିପରି ହୋଇଥିବେ, ତାହା ତୁମକୁ କ'ଣ ଜଣା ?

وَالسّٰبِقُوْنَ السّٰبِقُوْنَ ⑪

୧୧. ଏବଂ ଅନ୍ୟ ଗୋଟିଏ ଦଳ (ବିଶ୍ବାସ ଓ କାର୍ଯ୍ୟ ସଂପାଦନରେ) ଅଗ୍ରଗାମୀ ମାନଙ୍କର ଥିବ ; ସେମାନେ ଅବଶ୍ୟ ଅନ୍ୟମାନଙ୍କ ଅପେକ୍ଷା ଅଗ୍ରଗାମୀ ହୋଇ ରହିବେ;

---

୧. ଅର୍ଥାତ କୟାମତର ଶାସ୍ତି ଆସିଯିବ ।

୨. ମୁସଲମାନ ଓ ଅବିଶ୍ବାସକାରୀମାନଙ୍କ ମଧ୍ୟରେ ଏକ ନିଷ୍ପତ୍ତିକାରୀ ଦିବସ ଅବଶ୍ୟ ଆସିବ । ଅବିଶ୍ବାସକାରୀମାନେ ଯେତେ ଚେଷ୍ଟା କଲେ ମଧ୍ୟ ସେହି ସମୟକୁ ତା'ର ଆଗମନ ସମୟଠାରୁ ବିଳମ୍ବିତ କରି ପାରିବେ ନାହିଁ । ଯେତେବେଳେ ତାହା ଆସିବ ସେତେବେଳେ ତାହା କେତେକଙ୍କୁ ଉଚ୍ଚ ଓ ଅନ୍ୟ କେତେକଙ୍କୁ ନୀଚ କରିଦେବ ଅର୍ଥାତ୍ ଆଜି ଯେଉଁ ଅବିଶ୍ବାସକାରୀମାନେ ବିଜୟୀ ହୋଇଛନ୍ତି ସେତେବେଳେ ସେମାନେ ପରାଜିତ ହେବେ ଓ ଆଜି ଯେଉଁ ମୁସଲମାନମାନେ ପରାଜିତ ହୋଇଛନ୍ତି ସେତେବେଳେ ସେମାନେ ବିଜୟୀ ହେବେ ।

୧୨. ଏବଂ ସେମାନେ (ଅଲ୍ଲାହଙ୍କର) ନିକଟବର୍ତ୍ତୀ ହେବେ,

اُولٰٓئِكَ الۡمُقَرَّبُوۡنَ ۝١٢

୧୩. ମଙ୍ଗଳମୟ ବୈକୁଣ୍ଠରେ ।

فِیۡ جَنّٰتِ النَّعِیۡمِ ۝١٣

୧୪. ଆଦ୍ୟ ବିଶ୍ୱାସକାରୀମାନଙ୍କ[1] ମଧ୍ୟରେ ସେମାନଙ୍କର ସଂଖ୍ୟା ଅଧିକ ହେବ,

ثُلَّۃٌ مِّنَ الۡاَوَّلِیۡنَ ۝١٤

୧୫. ଏବଂ ପରବର୍ତ୍ତୀ ବିଶ୍ୱାସକାରୀମାନଙ୍କ ମଧ୍ୟରେ ସେମାନଙ୍କ ସଂଖ୍ୟା (ଅପେକ୍ଷାକୃତ) କମ୍ ହେବ ।

وَ قَلِیۡلٌ مِّنَ الۡاٰخِرِیۡنَ ۝١٥

୧୬. ସେମାନେ (ମଣିମୁକ୍ତା) ଖଚିତ ପଲଙ୍କ ଉପରେ,

عَلٰی سُرُرٍ مَّوۡضُوۡنَۃٍ ۝١٦

୧୭. ତକିଆ ଲଗାଇ ପରସ୍ପରର ସମ୍ମୁଖୀନ ହୋଇ ବସିଥିବେ ।

مُّتَّکِـِٕیۡنَ عَلَیۡہَا مُتَقٰبِلِیۡنَ ۝١٧

୧୮. ସେମାନଙ୍କ ନିକଟକୁ ସେବା କରିବା ପାଇଁ ଅନେକ ଯୁବ ଭୃତ୍ୟ ଆସିବେ; ଯେଉଁମାନେ ସର୍ବଦା ନିଜର ପୁଣ୍ୟ ଉପରେ ପ୍ରତିଷ୍ଠିତ ରହିଥିବେ,

یَطُوۡفُ عَلَیۡہِمۡ وِلۡدَانٌ مُّخَلَّدُوۡنَ ۝١٨

୧୯. (ସେମାନେ) ଗ୍ଲାସ ଓ ଜଳପାତ୍ର ତଥା ଝରଣା ଜଳରେ ପୂର୍ଣ୍ଣ ପିଆଲା ଘେନି (ଆସିବେ),

بِاَکۡوَابٍ وَّ اَبَارِیۡقَ ۬ۙ وَ کَاۡسٍ مِّنۡ مَّعِیۡنٍ ۝١٩

୨୦. (ସେହି ପିଆଲା ଓ ଜଳପାତ୍ରରୁ ପାନ କରି) ବୈକୁଣ୍ଠବାସୀମାନେ ମାତାଲ ହେବେ ନାହିଁ, କି ଅଯଥା ବାକ୍ୟାଳାପ କରିବେ ନାହିଁ,

لَّا یُصَدَّعُوۡنَ عَنۡہَا وَ لَا یُنۡزِفُوۡنَ ۝٢٠

୨୧. (ଏବଂ ସେହିପରି ଭାବରେ ଯୁବ ଭୃତ୍ୟମାନେ) ସେ (ବୈକୁଣ୍ଠବାସୀ)ମାନଙ୍କ ନିକଟକୁ ଏପରି ଫଳ ଥାଳି ଘେନି ଆସିବେ ଯାହାକୁ ସେମାନେ ପସନ୍ଦ କରିବେ;

وَ فَاکِہَۃٍ مِّمَّا یَتَخَیَّرُوۡنَ ۝٢١

୨୨. ଏବଂ ଏପରି ପକ୍ଷୀ – ମାଂସ ଯାହା ସେ (ବୈକୁଣ୍ଠବାସୀ)ମାନେ ପସନ୍ଦ କରିବେ ।

وَ لَحۡمِ طَیۡرٍ مِّمَّا یَشۡتَہُوۡنَ ۝٢٢

୨୩. ଏବଂ ସେଠାରେ (ସୁନ୍ଦରୀ ଓ) କୃଷ୍ଣ-ନୟନା ନାରୀ ଥିବେ ।

وَ حُوۡرٌ عِیۡنٌ ۝٢٣

୨୪. ଯେଉଁମାନେ କି ସୁରକ୍ଷିତ ମୁକ୍ତା ସଦୃଶ ହୋଇଥିବେ,

کَاَمۡثَالِ اللُّؤۡلُؤِ الۡمَکۡنُوۡنِ ۝٢٤

---

୧. କେତେକଙ୍କ ମତରେ ଯେଉଁମାନେ ହଜରତ ମହମ୍ମଦଙ୍କ ଉପରେ ଆଦ୍ୟରୁ ବିଶ୍ୱାସ କରିଥିଲେ ସେମାନଙ୍କ ମଧ୍ୟରେ ଅନେକ ଉଚ୍ଚ ସ୍ଥାନ ଲାଭ କରିବେ କିନ୍ତୁ ଯେଉଁମାନେ ତାହାଙ୍କ ଅନ୍ତେ ବିଶ୍ୱାସ କରିବେ ସେମାନଙ୍କ ମଧ୍ୟରୁ ବହୁତ କମ୍ ଲୋକ ସେଭଳି ଉଚ୍ଚ ସ୍ଥାନ ପାଇବେ । କିନ୍ତୁ ଅହମଦିଆ ସମ୍ପ୍ରଦାୟର ପ୍ରତିଷ୍ଠାତା ଏହା ଯଥାର୍ଥ ନୁହେଁ ବୋଲି କହିଛନ୍ତି । ତାଙ୍କ ମତରେ ପ୍ରତ୍ୟେକ ଯୁଗରେ ଯେବେ ବି କୌଣସି ସତ୍ୟ ସମାଚାରର ଆଗମନ ହୁଏ, ଯେଉଁମାନେ ଆରମ୍ଭରୁ ତାକୁ ବିଶ୍ୱାସ କରନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ଉଚ୍ଚ ସ୍ଥାନ ଲାଭ କରିଥାନ୍ତି ଏବଂ ଯେଉଁମାନେ ତାହାର ଉନ୍ନତି ସମୟରେ ଗ୍ରହଣ କରନ୍ତି ସେମାନଙ୍କ ମଧ୍ୟରେ ସେଭଳି ଉଚ୍ଚସ୍ଥାନ ଲାଭ କରିବା ବ୍ୟକ୍ତିଙ୍କ ସଂଖ୍ୟା ଅବଶ୍ୟ ଅଳ୍ପ । ବସ୍ତୁତଃ ଏହି ଅର୍ଥ ଅଧିକ ନ୍ୟାୟସଂଗତ ।

୨. ଅର୍ଥାତ୍ ପୁଣ୍ୟବାନ୍ ଓ ପବିତ୍ର ।

جَزَآءًۢ بِمَا كَانُوْا يَعْمَلُوْنَ ﴿٢٥﴾

୨୫. ଏସବୁ ବିଶ୍ୱାସକାରୀମାନଙ୍କୁ ନିଜର କର୍ମ ଯୋଗୁଁ ପୁରସ୍କାର ସ୍ୱରୂପ ମିଳିବ ।

لَا يَسْمَعُوْنَ فِيْهَا لَغْوًا وَّلَا تَاْثِيْمًا ﴿٢٦﴾

୨୬. ସେ (ବିଶ୍ୱାସକାରୀ) ମାନେ ସେଠାରେ କୌଣସି ଅଯଥା ବାକ୍ୟାଳାପ କି ପାପ କଥା ଶୁଣିବେ ନାହିଁ,

اِلَّا قِيْلًا سَلٰمًا سَلٰمًا ﴿٢٧﴾

୨୭. କେବଳ ଏପରି କଥନ ଶୁଣିବେ ଯାହା ଶାନ୍ତିଦାୟକ ହୋଇଥିବ ।

وَاَصْحٰبُ الْيَمِيْنِ ۙ مَآ اَصْحٰبُ الْيَمِيْنِ ﴿٢٨﴾

୨୮. ଏବଂ (ତୁମେ) ଦକ୍ଷିଣ ପାର୍ଶ୍ୱସ୍ଥ ଲୋକମାନଙ୍କ ଅବସ୍ଥା ବିଷୟରେ ଶୁଣ; ଏବଂ ଦକ୍ଷିଣ ପାର୍ଶ୍ୱସ୍ଥ ଲୋକମାନେ କିପରି ହୋଇଥିବେ ତାହା ତୁମଙ୍କୁ କ'ଣ ଜଣା ?

فِيْ سِدْرٍ مَّخْضُوْدٍ ﴿٢٩﴾

୨୯. ସେମାନେ କଣ୍ଟାଶୂନ୍ୟ ବରକୋଳି ବଗିଚାରେ ବାସ କରିବେ,

وَّطَلْحٍ مَّنْضُوْدٍ ﴿٣٠﴾

୩୦. ଏବଂ କଦଳୀ (ବଗିଚା) ମଧ୍ୟରେ, ଯାହାର ଫଳ ପରସ୍ପର ଉପରେ ଲଦି ହୋଇ ରହିଥିବ,

وَّظِلٍّ مَّمْدُوْدٍ ﴿٣١﴾

୩୧. ଏବଂ ସୁଦୀର୍ଘ ଛାୟାରେ;

وَّمَآءٍ مَّسْكُوْبٍ ﴿٣٢﴾

୩୨. ଏବଂ ପ୍ରବହମାନ ଜଳ, (ଅର୍ଥାତ୍ ଜଳ ପ୍ରପାତ ନିକଟରେ);

وَّفَاكِهَةٍ كَثِيْرَةٍ ﴿٣٣﴾

୩୩. ଏବଂ ପ୍ରଚୁର ଫଳ ମଧ୍ୟରେ,

لَّا مَقْطُوْعَةٍ وَّلَا مَمْنُوْعَةٍ ﴿٣٤﴾

୩୪. ତାହା ଶେଷ ହେବ ନାହିଁ କି ତହିଁରୁ ସେ (ବୈକୁଣ୍ଠବାସୀ) ମାନଙ୍କୁ ବାଧା ଦିଆଯିବ ନାହିଁ (ଅର୍ଥାତ୍ ସେ ସବୁ ସେମାନଙ୍କ ଦଖଲରେ ରହିବ) ।

وَّفُرُشٍ مَّرْفُوْعَةٍ ﴿٣٥﴾

୩୫. ଏବଂ ସୁନ୍ଦରୀ ପତ୍ନୀମାନଙ୍କ ସହିତ ବାସ କରିବେ,

اِنَّآ اَنْشَاْنٰهُنَّ اِنْشَآءً ﴿٣٦﴾

୩୬. ଆମେ ହିଁ ସେମାନଙ୍କୁ ସୃଷ୍ଟି କରିଅଛୁ,

فَجَعَلْنٰهُنَّ اَبْكَارًا ﴿٣٧﴾

୩୭. ଏବଂ କୁମାରୀ ଭାବରେ ସୃଷ୍ଟି କରିଅଛୁ,

عُرُبًا اَتْرَابًا ﴿٣٨﴾

لِّاَصْحٰبِ الْيَمِيْنِ ﴿٣٩﴾

୩୮।୩୯. (ସେମାନେ) ଅତ୍ୟନ୍ତ ସୁନ୍ଦରୀ ଓ ବୈକୁଣ୍ଠ ବାସୀମାନଙ୍କର ସମବୟସ୍କା ହେବେ, (ଯେଉଁମାନଙ୍କୁ) ଦକ୍ଷିଣ ପାର୍ଶ୍ୱ ଭୁକ୍ତ ଦଳ ପାଇଁ (ସୃଷ୍ଟି କରାଯାଇଛି) ।

ରୁ: ୨

ثُلَّةٌ مِّنَ الْاَوَّلِيْنَ ﴿٤٠﴾

୪୦. ଏହି ଦଳ ଆଦ୍ୟରୁ ବିଶ୍ୱାସକାରୀମାନଙ୍କ ମଧ୍ୟରେ ମଧ୍ୟ ବହୁ ସଂଖ୍ୟକ ହେବେ,

وَثُلَّةٌ مِّنَ الْاٰخِرِيْنَ ﴿٤١﴾

୪୧. ଏବଂ ଶେଷରେ ବିଶ୍ୱାସକାରୀମାନଙ୍କ ମଧ୍ୟରେ ମଧ୍ୟ ବହୁ ସଂଖ୍ୟକ ହେବେ,

୪୨. ଏବଂ ବାମ ପାର୍ଶ୍ୱସ୍ଥ (ଲୋକମାନଙ୍କ ଅବସ୍ଥା ବିଷୟରେ ଶୁଣ); ବାମ ପାର୍ଶ୍ୱସ୍ଥ ଲୋକମାନେ କିପରି ହୋଇଥିବେ ତାହା ତୁମଙ୍କୁ କ'ଣ ଜଣା ?

وَ اَصۡحٰبُ الشِّمَالِ ۬ۙ مَاۤ اَصۡحٰبُ الشِّمَالِ ﴿۴۲﴾

୪୩. ସେମାନେ ଉତପ୍ତ ବାୟୁ ଓ ଉତପ୍ତ ଜଳ ମଧ୍ୟରେ ରହିବେ,

فِیۡ سَمُوۡمٍ وَّ حَمِیۡمٍ ﴿۴۳﴾

୪୪. ଏବଂ ଏପରି ଛାୟା ମଧ୍ୟରେ ରହିବେ ଯାହା କଳାଧୂଆଁ ସଦୃଶ ହୋଇଥିବ,

وَّ ظِلٍّ مِّنۡ یَّحۡمُوۡمٍ ﴿۴۴﴾

୪୫. ତାହା ଶୀତଳ ହେବ ନାହିଁ ବା ତାହା ତଳେ ରହିବା ସୁଖକର ହେବ ନାହିଁ ।

لَّا بَارِدٍ وَّ لَا کَرِیۡمٍ ﴿۴۵﴾

୪୬. ସେମାନେ ଏହା ପୂର୍ବରୁ ସଂସାରରେ ଖୁବ୍ ଆରାମରେ ରହୁଥିଲେ ।

اِنَّهُمۡ کَانُوۡا قَبۡلَ ذٰلِکَ مُتۡرَفِیۡنَ ﴿۴۶﴾

୪୭. ଏବଂ ମହାପାପ (ଅର୍ଥାତ୍ ସିର୍କ) ଉପରେ ଅଡ଼ି ବସିଥିଲେ ।

وَ کَانُوۡا یُصِرُّوۡنَ عَلَی الۡحِنۡثِ الۡعَظِیۡمِ ﴿۴۷﴾

୪୮. ଏବଂ ସେମାନେ କହୁଥିଲେ, "ଯେତେବେଳେ ଆମେମାନେ ମରିଯିବୁ ଏବଂ ମାଟି ଓ ହାଡ଼ରେ ପରିଣତ ହେବୁ, (ସେତେବେଳେ) କ'ଣ ଆମମାନଙ୍କୁ ପୁନର୍ଜୀବିତ କରି ଉତ୍ଥିତ କରାହେବ ?"

وَ کَانُوۡا یَقُوۡلُوۡنَ ۬ۙ اَئِذَا مِتۡنَا وَ کُنَّا تُرَابًا وَّ عِظَامًا ءَاِنَّا لَمَبۡعُوۡثُوۡنَ ﴿۴۸﴾

୪୯. ଅଥବା କ'ଣ ଆମମାନଙ୍କ ପିତୃପିତାମହମାନଙ୍କ ସହିତ ମଧ୍ୟ ଅନୁରୂପ ବ୍ୟବହାର କରାହେବ ?

اَوَ اٰبَآؤُنَا الۡاَوَّلُوۡنَ ﴿۴۹﴾

୫୦. ତୁମେ କୁହ, "ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ (ଲୋକମାନେ) ମଧ୍ୟ",

قُلۡ اِنَّ الۡاَوَّلِیۡنَ وَ الۡاٰخِرِیۡنَ ﴿۵۰﴾

୫୧. ସମସ୍ତଙ୍କୁ ଏକ ଜ୍ଞାତ ଦିବସର ଅଙ୍ଗୀକାର ଆଡ଼କୁ ଏକତ୍ରିତ କରି ଘେନି ନିଆହେବ ।

لَمَجۡمُوۡعُوۡنَ ۬ۙ اِلٰی مِیۡقَاتِ یَوۡمٍ مَّعۡلُوۡمٍ ﴿۵۱﴾

୫୨. ତା'ପରେ ତୁମେମାନେ, ହେ ମିଥ୍ୟା ଆରୋପକାରୀ ଓ ପଥଭ୍ରାନ୍ତ (ଲୋକ)ମାନେ !

ثُمَّ اِنَّکُمۡ اَیُّهَا الضَّآلُّوۡنَ الۡمُکَذِّبُوۡنَ ﴿۵۲﴾

୫୩. (ତୁମେମାନେ ଶିଙ୍କୁ ଜାତୀୟ) ଜକୁମ[୧] ବୃକ୍ଷରୁ ଖାଇବ,

لَاٰکِلُوۡنَ مِنۡ شَجَرٍ مِّنۡ زَقُّوۡمٍ ﴿۵۳﴾

୫୪. ଏବଂ ତଦ୍ୱାରା ଉଦର ପୂର୍ଣ୍ଣ କରିବ,

فَمَالِـُٔوۡنَ مِنۡهَا الۡبُطُوۡنَ ﴿۵۴﴾

୫୫. ଏବଂ ତା ଉପରେ ଉତପ୍ତ ଜଳ ପାନ କରିବ,

فَشٰرِبُوۡنَ عَلَیۡهِ مِنَ الۡحَمِیۡمِ ﴿۵۵﴾

୫୬. ଏବଂ ତୃଷାଗ୍ରସ୍ତ ଓଟ ପରି ପିଉଥିବ ।

فَشٰرِبُوۡنَ شُرۡبَ الۡهِیۡمِ ﴿۵۶﴾

---

୧. ଅର୍ଥାତ୍ କଠିନ ଯନ୍ତ୍ରଣାଦାୟକ ଶାସ୍ତି ପାଇବ ।

୫୭. ବିଚାର ଦିବସରେ ଏହା ହିଁ ହେବ ସେମାନଙ୍କ ପାଇଁ ଆତିଥ୍ୟ ।

هٰذَا نُزُلُهُمۡ يَوۡمَ الدِّيۡنِ ؕ﴿۵۷﴾

୫୮. ଆମେ ହିଁ ତୁମମାନଙ୍କୁ ସୃଷ୍ଟି କରିଅଛୁ; ତେବେ କାହିଁକି ତୁମେମାନେ ଆମ କଥାକୁ ସତ୍ୟ ମଣୁ ନାହଁ ?

نَحۡنُ خَلَقۡنٰكُمۡ فَلَوۡلَا تُصَدِّقُوۡنَ ﴿۵۸﴾

୫୯. ଏବଂ ସେହି ବସ୍ତୁର ଅବସ୍ଥା କୁହ, ଯାହା ତୁମେମାନେ ନାରୀ ଗର୍ଭରେ ନିକ୍ଷେପ କରୁଅଛ ।

اَفَرَءَيۡتُمۡ مَّا تُمۡنُوۡنَ ؕ﴿۵۹﴾

୬୦. କ'ଣ ତୁମେମାନେ ତାହାକୁ ସୃଷ୍ଟି କରୁଅଛ କି ଆମେ ତାହାକୁ ସୃଷ୍ଟି କରୁଅଛୁ ?

ءَاَنۡتُمۡ تَخۡلُقُوۡنَهٗۤ اَمۡ نَحۡنُ الۡخٰلِقُوۡنَ ﴿۶۰﴾

୬୧. ଆମେ ତୁମମାନଙ୍କ ମଧ୍ୟରେ ମୃତ୍ୟୁର ପରମ୍ପରା ଜାରି କରିଛୁ ଏବଂ କେହି ଆମଙ୍କୁ ବଳାଇ ଯିବେ[1] ନାହିଁ ।

نَحۡنُ قَدَّرۡنَا بَيۡنَكُمُ الۡمَوۡتَ وَمَا نَحۡنُ بِمَسۡبُوۡقِيۡنَ ۙ﴿۶۱﴾

୬୨. ଏବଂ ତୁମମାନଙ୍କ ବଦଳରେ ତୁମମାନଙ୍କ ପରି ଅନ୍ୟ ସଂପ୍ରଦାୟକୁ ନେଇ ଆସିବାରେ କେହି ଆମଙ୍କୁ ଅସମର୍ଥ କରିପାରିବ ନାହିଁ, (ଏବଂ ଏ ବିଷୟରେ ମଧ୍ୟ ଅସମର୍ଥ କରିପାରିବ ନାହିଁ ଯେ) ଆମେ ତୁମମାନଙ୍କୁ ଏମିତି କୌଣସି ରୂପରେ ସୃଷ୍ଟି କରିବୁ[2] ଯାହା ତୁମେମାନେ ଜାଣ ନାହିଁ ।

عَلٰۤی اَنۡ نُّبَدِّلَ اَمۡثَالَكُمۡ وَنُنۡشِئَكُمۡ فِيۡ مَا لَا تَعۡلَمُوۡنَ ﴿۶۲﴾

୬୩. ଏବଂ ତୁମେମାନେ ପ୍ରଥମ ସୃଷ୍ଟି ସଂକ୍ରାନ୍ତରେ ଅବଗତ ଅଛ; ତେବେ ତୁମମାନଙ୍କର କ'ଣ ହୋଇଛି ଯେ ତୁମେମାନେ ଉପଦେଶ ଗ୍ରହଣ କରୁ ନାହଁ ?

وَلَقَدۡ عَلِمۡتُمُ النَّشۡاَةَ الۡاُوۡلٰی فَلَوۡلَا تَذَكَّرُوۡنَ ﴿۶۳﴾

୬୪. ତୁମେମାନେ ଯାହା ରୋପଣ କରୁଅଛ, କ'ଣ ତାହା ତୁମମାନଙ୍କୁ ଜଣାଅଛି ?

اَفَرَءَيۡتُمۡ مَّا تَحۡرُثُوۡنَ ؕ﴿۶۴﴾

୬୫. କ'ଣ ତୁମେମାନେ ତାହାକୁ ଉତ୍ପାଦନ କରୁଅଛ ନା ଆମେ ତାହାକୁ ଉତ୍ପାଦନ କରୁଅଛୁ ?

ءَاَنۡتُمۡ تَزۡرَعُوۡنَهٗۤ اَمۡ نَحۡنُ الزّٰرِعُوۡنَ ﴿۶۵﴾

୬୬. ଯଦି ଆମେ ଇଚ୍ଛା କରନ୍ତୁ, ତେବେ ତାହାକୁ ଦଗ୍ଧ କରି ସଂପୂର୍ଣ୍ଣ ରୂପେ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦିଅନ୍ତୁ, ତା'ପରେ ତୁମେମାନେ ଚକିତ ହୋଇ ରହିଯାଆନ୍ତ ।

لَوۡ نَشَآءُ لَجَعَلۡنٰهُ حُطَامًا فَظَلۡتُمۡ تَفَكَّهُوۡنَ ﴿۶۶﴾

୬୭. ଏବଂ କହନ୍ତ ଯେ ଆମେମାନେ ତ କାଙ୍ଗାଳ ହୋଇଗଲୁ ।

اِنَّا لَمُغۡرَمُوۡنَ ۙ﴿۶۷﴾

---

୧. ଅର୍ଥାତ୍ ଆମର ଏହି ବିଧାନକୁ କେହି ରଦ କରିପାରିବ ନାହିଁ ।

୨. ପୁନର୍ଜନ୍ମରେ ବିଶ୍ୱାସ କରୁଥିବା ଲୋକମାନେ କହନ୍ତି ଯେ ଏହା ପୁନର୍ଜନ୍ମ ସଂକ୍ରାନ୍ତ ଶିକ୍ଷା, ଅଥଚ ଏଠାରେ ମୃତ୍ୟୁ ପର ଜୀବନ ବିଷୟରେ ଏକ ବର୍ଣ୍ଣନା ଅଛି । ପୁନର୍ଜନ୍ମ ଚକ୍ରରେ ଏହି ସଂସାରରେ ପୁନର୍ଜନ୍ମ ଲାଭ କରିବା ବିଷୟ ରହିଅଛି । ଏଠାରେ କୁହାଯାଇଛି ଯେ ଏବେ ତୁମେମାନେ ସୁପ୍ରତିଷ୍ଠିତ ହୋଇଛ । କିନ୍ତୁ ହଜରତ ମହମ୍ମଦଙ୍କର ବିରୁଦ୍ଧାଚରଣ କରୁଥିବାରୁ ତୁମେମାନେ ଏପରି ଏକ ପରିସ୍ଥିତିର ସମ୍ମୁଖୀନ ହେବ ଯାହା ତୁମ ପକ୍ଷରେ ଅପମାନଜନକ ହେବ ।

୬୮. ବରଂ ବାସ୍ତବରେ ଆମେମାନେ ନିଜ ପରିଶ୍ରମର ଫଳରୁ ସଂପୂର୍ଣ୍ଣ ରୂପେ ବଞ୍ଚିତ ହୋଇଗଲୁ ।

بَلْ نَحْنُ مَحْرُوْمُوْنَ ﴿٦٧﴾

୬୯. ତୁମେମାନେ ଯେଉଁ ଜଳପାନ କରୁଅଛ ତାହାକୁ ଲକ୍ଷ୍ୟ କର ।

اَفَرَءَيْتُمُ الْمَآءَ الَّذِىْ تَشْرَبُوْنَ ﴿٦٨﴾

୭୦. କ'ଣ ତୁମେମାନେ ଏହାକୁ ମେଘମାଳାରୁ ଅବତରଣ କରାଇଛ, କି ଆମେ ଅବତରଣ କରାଇଛୁ ?

ءَاَنْتُمْ اَنْزَلْتُمُوْهُ مِنَ الْمُزْنِ اَمْ نَحْنُ الْمُنْزِلُوْنَ ﴿٦٩﴾

୭୧. ଯଦି ଆମେ ଇଚ୍ଛା କରିଥାଆନ୍ତୁ, ତେବେ ତାହାକୁ ତିକ୍ତ କରି ଦେଇଥା'ନ୍ତୁ; ତେବେ ତୁମେମାନେ କାହିଁକି କୃତଜ୍ଞ ହେଉ ନାହିଁ ?

لَوْ نَشَآءُ جَعَلْنٰهُ اُجَاجًا فَلَوْلَا تَشْكُرُوْنَ ﴿٧٠﴾

୭୨. ତୁମେମାନେ ଯେଉଁ ଅଗ୍ନି ଜଳାଉଅଛ ତାହାକୁ ଟିକିଏ ଲକ୍ଷ୍ୟ କର ।

اَفَرَءَيْتُمُ النَّارَ الَّتِىْ تُوْرُوْنَ ﴿٧١﴾

୭୩. କ'ଣ ତୁମେମାନେ ଏହାର (ଅର୍ଥାତ୍ ଏହି ଅଗ୍ନିର) ବୃକ୍ଷକୁ ସୃଷ୍ଟି କରିଅଛ, କି ଆମେ ଏହାର ସୃଷ୍ଟିକର୍ତ୍ତା ?

ءَاَنْتُمْ اَنْشَاْتُمْ شَجَرَتَهَآ اَمْ نَحْنُ الْمُنْشِـُٔوْنَ ﴿٧٢﴾

୭୪. ଆମେ ଏହାକୁ ଏକ ଉପଦେଶ[୧] ସ୍ୱରୂପ ଓ ପଥିକମାନଙ୍କ ଉପକାର ପାଇଁ ସୃଷ୍ଟି କରିଅଛୁ ।

نَحْنُ جَعَلْنٰهَا تَذْكِرَةً وَّمَتَاعًا لِّلْمُقْوِيْنَ ﴿٧٣﴾

୭୫. ସୁତରାଂ ତୁମେ ନିଜର ମହିମାମୟ ପାଳନକର୍ତ୍ତାଙ୍କ ନାମ ମାଧ୍ୟମରେ (ତାହାଙ୍କର) ଗୁଣ ଗାନ କର ।

فَسَبِّحْ بِاسْمِ رَبِّكَ الْعَظِيْمِ ﴿٧٤﴾

## ରୁ:୩

୭୬. ସୁତରାଂ ଆମେ ନକ୍ଷତ୍ରର ପତନକୁ ପ୍ରମାଣ ସ୍ୱରୂପ ଉପସ୍ଥାପନ କରୁଅଛୁ ।

فَلَآ اُقْسِمُ بِمَوٰقِعِ النُّجُوْمِ ﴿٧٥﴾

୭୭. ଯଦି ତୁମେମାନେ ଜାଣ, ତେବେ ଏହା ଏକ ବଡ଼ ପ୍ରମାଣ ।

وَاِنَّهٗ لَقَسَمٌ لَّوْ تَعْلَمُوْنَ عَظِيْمٌ ﴿٧٦﴾

୭୮. ବାସ୍ତବରେ ଏହି କୋରାନ ଅତି ମହାନ୍,

اِنَّهٗ لَقُرْاٰنٌ كَرِيْمٌ ﴿٧٧﴾

---

୧. ଅର୍ଥାତ୍ ଓଦାକାଠ ସହଜରେ ଜଳେ ନାହିଁ । ଅଲ୍ଲାହ ସେହି ଓଦା କାଠକୁ ଭଲ ଭାବରେ ଶୁଖାଇଦିଅନ୍ତି, ତା'ପରେ ଯାଇ ସେହି କାଠ ଭଲ ରୂପେ ଜଳିବାକୁ ଲାଗେ । ଏହିରୂପେ କୌଣସି ଏକ ସମୟରେ ସବୁ ଜାତି ଧ୍ୱଂସ ହୁଅନ୍ତି ନାହିଁ, ବରଂ କେତେକ ଜୀବିତ ରହନ୍ତି ଏବଂ ଅନ୍ୟ ସମୟରେ ସେମାନେ ନିଜର ଶକ୍ତି ହରାଇ ଶୁଖିଲା କାଠ ଭଳି ଧୁ ଧୁ ହୋଇ ଜଳିଯାଆନ୍ତି ।

فِيْ كِتٰبٍ مَّكْنُوْنٍ ۙ﴿٧٩﴾

୭୯. ଏବଂ ଏହା ଏକ ଗୋପନୀୟ ଗ୍ରନ୍ଥ[1] ମଧ୍ୟରେ ରହିଅଛି,

لَّا يَمَسُّهٗۤ اِلَّا الْمُطَهَّرُوْنَ ؕ﴿٨٠﴾

୮୦. ପବିତ୍ର[2] ବ୍ୟକ୍ତିମାନଙ୍କ ବ୍ୟତୀତ ଅନ୍ୟ କେହି ଏହାର ସତ୍ୟତାକୁ ଉପଲବ୍ଧି କରି ପାରନ୍ତି ନାହିଁ ।

تَنْزِيْلٌ مِّنْ رَّبِّ الْعٰلَمِيْنَ ﴿٨١﴾

୮୧. ଏହା ସମଗ୍ର ଜଗତର ପାଳନକର୍ତ୍ତାଙ୍କ ଠାରୁ ଅବତୀର୍ଣ୍ଣ ହୋଇଅଛି ।

اَفَبِهٰذَا الْحَدِيْثِ اَنْتُمْ مُّدْهِنُوْنَ ۙ﴿٨٢﴾

୮୨. କ'ଣ ତୁମେମାନେ ଏହି ବାଣୀକୁ ଉପେକ୍ଷା କରୁଅଛ ?

وَ تَجْعَلُوْنَ رِزْقَكُمْ اَنَّكُمْ تُكَذِّبُوْنَ ﴿٨٣﴾

୮୩. ଏବଂ ମିଥ୍ୟା ଆରୋପ କରିବାକୁ ନିଜର ବୃତ୍ତି ରୂପେ ବାଛି ନେଇଛ ।

فَلَوْلَاۤ اِذَا بَلَغَتِ الْحُلْقُوْمَ ۙ﴿٨٤﴾

୮୪. ତେବେ କାହିଁକି, ଯେତେବେଳେ ପ୍ରାଣ କଣ୍ଠଗତ ହୁଏ,

وَ اَنْتُمْ حِيْنَئِذٍ تَنْظُرُوْنَ ۙ﴿٨٥﴾

୮୫. ଏବଂ ସେତେବେଳେ ତୁମେମାନେ (ନିରାଶ ହୋଇ ଚତୁର୍ଦ୍ଦିଗକୁ) ଦେଖୁଥାଅ,

وَ نَحْنُ اَقْرَبُ اِلَيْهِ مِنْكُمْ وَ لٰكِنْ لَّا تُبْصِرُوْنَ ﴿٨٦﴾

୮୬. (ଏବଂ ସେତେବେଳେ ତୁମମାନଙ୍କ ପ୍ରତି ଓ ତୁମମାନଙ୍କର ସଂପର୍କୀୟମାନଙ୍କ ପ୍ରତି ଏହା ସ୍ପଷ୍ଟ ହୋଇଯାଏ ଯେ) ଆମେ ତୁମମାନଙ୍କ ଅପେକ୍ଷା ସେହି ମୃତ ବ୍ୟକ୍ତିର ନିକଟତର; କିନ୍ତୁ ତୁମମାନଙ୍କ ଠାରେ ଏହାର ସତ୍ୟତା ପୂର୍ବରୁ ପ୍ରକଟିତ ହୋଇ ନଥିଲା ।

---

୧. 'ଗୋପନୀୟ ଗ୍ରନ୍ଥ' ଅର୍ଥ ମାନବ-ପ୍ରକୃତି, କାରଣ ପବିତ୍ର କୋରାନର ଶିକ୍ଷା ମାନବ-ପ୍ରକୃତିର ଅନୁକୂଳ । ଏଥିଯୋଗୁଁ ଜିଦ କରୁନଥିବା ପ୍ରତ୍ୟେକ ଲୋକ ପବିତ୍ର କୋରାନର ଏହି ଶିକ୍ଷାକୁ ସ୍ୱୀକାର କରିବାକୁ ବାଧ୍ୟ ହେବ । ପବିତ୍ର କୋରାନରେ ଅନ୍ୟତ୍ର ଉଲ୍ଲେଖ କରାଯାଇଛି ଯେ ତୁମେମାନେ ଅଲ୍ଲାହଙ୍କ ଦ୍ୱାରା ସୃଷ୍ଟି କରାଯାଇଥିବା ପ୍ରାକୃତିକ ସ୍ୱଭାବକୁ ଗ୍ରହଣ କର ଯେପରି ଭାବରେ ସେ ମନୁଷ୍ୟ ପାଇଁ ତାହାକୁ ଅନୁକୂଳ କରି ସୃଷ୍ଟି କରିଛନ୍ତି (୩୦:୩୧ ଦ୍ରଷ୍ଟବ୍ୟ) ।

ଅର୍ଥାତ୍ ଅଲ୍ଲାହ କେତେକ ସତ୍ୟକୁ ମାନବର ପ୍ରକୃତି ମଧ୍ୟରେ ରଖିଥାନ୍ତି । ସେପରି ତା'ମଧ୍ୟରେ ନିଷ୍ପତ୍ତିକାରୀ ଶକ୍ତି ମଧ୍ୟ ରଖିଥାନ୍ତି । ଯେତେବେଳେ ମନୁଷ୍ୟ ଏ ସବୁ ପ୍ରୟୋଗ କରେ ସେତେବେଳେ ପବିତ୍ର କୋରାନର ସତ୍ୟ ତା' ପାଖରେ ସ୍ପଷ୍ଟ ହୋଇଯାଏ କାରଣ ତାହା ଏପରି ଏକ ଗୋପନୀୟ ପୁସ୍ତକ ଯାହା ମାନବ-ପ୍ରକୃତି ମଧ୍ୟରେ ବିଦ୍ୟମାନ ଥାଏ ।

୨. ମୂଳ ଶବ୍ଦ 'ମସ୍‌ସ' ଅର୍ଥ ଛୁଇଁବା, କିନ୍ତୁ ଆରବୀ ଭାଷାର ରୂଢ଼ି ଅନୁସାରେ ଏହାର ଅର୍ଥ ହେଉଛି- ଯଦି କୌଣସି ବିଷୟ ପ୍ରତି ମନୁଷ୍ୟର ନିବିଡ଼ ସମ୍ପର୍କ ଥିବ ତେବେ ତାହାର ସୂକ୍ଷ୍ମ ତତ୍ତ୍ୱ ମଧ୍ୟ ତା ନିକଟରେ ପ୍ରକଟିତ ହେବାକୁ ଲାଗିବ । ବସ୍ତୁତଃ ଏହି ଆୟତର ତାତ୍ପର୍ଯ୍ୟ ହେଉଛି ଯେ ଯେଉଁବ୍ୟକ୍ତି ଲୋକମାନଙ୍କ ନିକଟରେ ନୁହେଁ ବରଂ ଅଲ୍ଲାହଙ୍କ ନିକଟରେ ପବିତ୍ର ସାବ୍ୟସ୍ତ ହୁଏ,ସେହି ବ୍ୟକ୍ତି ନିକଟରେ ପବିତ୍ର କୋରାନର ଗୂଢ଼ ତତ୍ତ୍ୱ ପ୍ରକଟିତ ହୁଏ ଅନ୍ୟଥା ଅଲ୍ଲାହ ଯେଉଁମାନଙ୍କୁ ମହାପୁରୁଷ ରୂପେ ପ୍ରେରଣ କରନ୍ତି ସେହିମାନଙ୍କୁ ଲୋକମାନେ ଆକ୍ଷେପ କରିଥାନ୍ତି, ଯେପରି ହଜରତ ମହମ୍ମଦଙ୍କ ପ୍ରତି ଅଦ୍ୟାବଧି ଲୋକମାନେ ଆକ୍ଷେପ କରି ଆସୁଛନ୍ତି । ସେହିପରି ହଜରତ ମହମ୍ମଦଙ୍କ ପରେ ଅନ୍ୟ ଯେଉଁ ମହାପୁରୁଷମାନେ ଆସିଛନ୍ତି ସେମାନଙ୍କ ପ୍ରତି ମଧ୍ୟ ଏ ଯାବତ୍ ଅନ୍ୟ ଲୋକମାନେ ସେହିପରି ଆକ୍ଷେପ କରି ଆସୁଛନ୍ତି ।

୮୭/୮୮. ସୁତରାଂ ଯଦି ତୁମମାନଙ୍କୁ କୌଣସି ପ୍ରତିଫଳ ମିଳିବାକୁ ନ ଥିଲା, ଏବଂ ତୁମେମାନେ ଏହି ଦାବି ସଂକ୍ରାନ୍ତରେ ସତ୍ୟବାଦୀ ହୋଇଥାଅ, ତେବେ ଏପରି କାହିଁକି ହେଲା ନାହିଁ ଯେ ତୁମେମାନେ (ମୃତ୍ୟୁ ସମୟରେ ଆସୁଥିବା) ଏହି ଅବସ୍ଥାକୁ ଫେରାଇ ପାରିଲ ନାହିଁ ।

فَلَوْلَآ اِنْ كُنْتُمْ غَيْرَ مَدِيْنِيْنَ ۝٨٦ تَرْجِعُوْنَهَآ اِنْ كُنْتُمْ صٰدِقِيْنَ ۝٨٧

୮୯. ସୁତରାଂ ଯେଉଁ ବ୍ୟକ୍ତି ଅଲ୍ଲାହଙ୍କର ସାମୀପ୍ୟ ଲାଭ କରିଥାଏ,

فَاَمَّآ اِنْ كَانَ مِنَ الْمُقَرَّبِيْنَ ۝٨٩

୯୦. ତାହା ଭାଗ୍ୟରେ ସୁଖ ସ୍ୱାଚ୍ଛନ୍ଦ୍ୟ ରହିଅଛି ଏବଂ ସେହିପରି ମଙ୍ଗଳମୟ ବୈକୁଣ୍ଠ ଅଛି ।

فَرَوْحٌ وَّرَيْحَانٌ ۙ وَّجَنَّتُ نَعِيْمٍ ۝٩٠

୯୧. ଏବଂ ଯଦି ସେ (ବ୍ୟକ୍ତି) ଦକ୍ଷିଣ ପାର୍ଶ୍ୱଭୁକ୍ତ ଲୋକମାନଙ୍କ ମଧ୍ୟରୁ ହୋଇଥାଏ,

وَاَمَّآ اِنْ كَانَ مِنْ اَصْحٰبِ الْيَمِيْنِ ۝٩١

୯୨. ତେବେ ତାକୁ କୁହାଯାଏ, "ହେ ଦକ୍ଷିଣ ପାର୍ଶ୍ୱ ଦଳଭୁକ୍ତ ବ୍ୟକ୍ତି ! ତୁମ ପ୍ରତି ସର୍ବଦା ଶାନ୍ତି ହେଉ ।"

فَسَلٰمٌ لَّكَ مِنْ اَصْحٰبِ الْيَمِيْنِ ۝٩٢

୯୩. ଏବଂ ଯଦି ସେ (ମରୁଥିବା ବ୍ୟକ୍ତି) ସତ୍ୟକୁ ପ୍ରତ୍ୟାଖ୍ୟାନ କରୁଥିବା ଓ ପଥଭ୍ରଷ୍ଟ ବ୍ୟକ୍ତି-ମାନଙ୍କ ମଧ୍ୟରୁ ହୋଇଥିବ,

وَاَمَّآ اِنْ كَانَ مِنَ الْمُكَذِّبِيْنَ الضَّآلِّيْنَ ۝٩٣

୯୪. ତେବେ ଏପରି ବ୍ୟକ୍ତିର ଆତିଥ୍ୟ ଉତପ୍ତ ଜଳ ଦ୍ୱାରା କରାହେବ,

فَنُزُلٌ مِّنْ حَمِيْمٍ ۝٩٤

୯୫. ଏବଂ ବାସସ୍ଥାନ ରୂପେ ତାହାକୁ ନରକ ପ୍ରଦାନ କରାହେବ ।

وَّتَصْلِيَةُ جَحِيْمٍ ۝٩٥

୯୬. ନିଶ୍ଚୟ ଏହା (ଅର୍ଥାତ୍ ଏ ବିଷୟ) ବିଶ୍ୱାସଭିତ୍ତିକ ସତ୍ୟ ଅଟେ ।

اِنَّ هٰذَا لَهُوَ حَقُّ الْيَقِيْنِ ۝٩٦

୯୭. ସୁତରାଂ ତୁମେ ନିଜ ମହିମା ମୟ ପାଳନକର୍ତ୍ତାଙ୍କ ନାମ ମାଧ୍ୟମରେ (ତାହାଙ୍କର) ଗୁଣଗାନ କର ।

فَسَبِّحْ بِاسْمِ رَبِّكَ الْعَظِيْمِ ۝٩٧

سُوْرَةُ الْحَدِيْدِ مَدَنِيَّةٌ (٥٧) رُكُوْعَاتُهَا ٤ اٰيَاتُهَا ٣٠

# ଅଲ— ହଦିଦ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ। ଏଥିରେ ବିସ୍‌ମିଲ୍ଲାହ ସମେତ ତିରିଶି ଆୟତ ଓ ୪ଟି ରୁକୁ ଅଛି।)

بِسْمِ اللّٰهِ الرَّحْمٰنِ الرَّحِيْمِ ۞

୧. ଅଶେଷ ଦୟାବାନ୍ (ଓ) ସଦାକରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି)।[1]

سَبَّحَ لِلّٰهِ مَا فِي السَّمٰوٰتِ وَالْاَرْضِ ۚ وَهُوَ الْعَزِيْزُ الْحَكِيْمُ ۞

୨. ଆକାଶ ଓ ପୃଥିବୀରେ ଯାହା କିଛି ଅଛି ତାହା ଅଲ୍ଲାହଙ୍କ ଗୁଣଗାନ କରୁଅଛି; ଏବଂ ସେ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ।

لَهٗ مُلْكُ السَّمٰوٰتِ وَالْاَرْضِ ۚ يُحْيٖ وَيُمِيْتُ ۚ وَهُوَ عَلٰى كُلِّ شَيْءٍ قَدِيْرٌ ۞

୩. ଆକାଶ ଓ ପୃଥିବୀର ରାଜତ୍ୱ ତାହାଙ୍କର; ସେ ଜୀବନ ଦାନ କରନ୍ତି ଓ ମୃତ୍ୟୁ ମଧ୍ୟ ଦିଅନ୍ତି; ଏବଂ ପ୍ରତ୍ୟେକ ବିଷୟ କରିବାକୁ ସେ ସଂପୂର୍ଣ୍ଣ ରୂପେ ସକ୍ଷମ।

هُوَ الْاَوَّلُ وَالْاٰخِرُ وَالظَّاهِرُ وَالْبَاطِنُ ۚ وَهُوَ بِكُلِّ شَيْءٍ عَلِيْمٌ ۞

୪. ସେ ହିଁ ଆଦି ଓ ସେ ହିଁ ଅନ୍ତ; ସେ ହିଁ ପ୍ରକାଶ୍ୟ ଓ ସେ ହିଁ ଗୁପ୍ତ, ଏବଂ ସେ ପ୍ରତ୍ୟେକ ବିଷୟକୁ ଜାଣନ୍ତି।

هُوَ الَّذِيْ خَلَقَ السَّمٰوٰتِ وَالْاَرْضَ فِيْ سِتَّةِ اَيَّامٍ ثُمَّ اسْتَوٰى عَلَى الْعَرْشِ ۚ يَعْلَمُ مَا يَلِجُ فِي الْاَرْضِ وَمَا يَخْرُجُ مِنْهَا وَمَا يَنْزِلُ مِنَ السَّمَآءِ وَمَا يَعْرُجُ فِيْهَا ۚ وَهُوَ مَعَكُمْ اَيْنَ مَا كُنْتُمْ ۚ وَاللّٰهُ بِمَا تَعْمَلُوْنَ بَصِيْرٌ ۞

୫. ସେ ହିଁ ଆକାଶ ଓ ପୃଥିବୀକୁ ଛଅ ଗୋଟି ଅବଧି ମଧ୍ୟରେ ସୃଷ୍ଟି କରିଛନ୍ତି; ଏହାପରେ ସେ ଦୃଢ଼ତା ସହକାରେ ସିଂହାସନ ଉପରେ ପ୍ରତିଷ୍ଠିତ ହୋଇଛନ୍ତି. ଯାହା ଭୂପୃଷ୍ଠରେ ପ୍ରବେଶ କରେ, ତାହାକୁ ଓ ଯାହା ତହିଁରୁ ବହିର୍ଗତ ହୁଏ ତାହାକୁ ମଧ୍ୟ ଜାଣନ୍ତି, ଏବଂ ଯାହା ଆକାଶରୁ ଅବତରଣ କରେ ଓ ଯାହା ତାହା ଆଡ଼କୁ ଆରୋହଣ କରେ ତାହାକୁ ମଧ୍ୟ (ଜାଣନ୍ତି); ଏବଂ ତୁମେ ଯେଉଁଠାକୁ ମଧ୍ୟ ଯାଅ ସେ ତୁମ ସହିତ ଥାଆନ୍ତି ଏବଂ ଅଲ୍ଲାହ ତୁମମାନଙ୍କ କାର୍ଯ୍ୟକଳାପ ସଂକ୍ରାନ୍ତରେ ଭଲ ଭାବରେ ଅବଗତ ଅଛନ୍ତି।

لَهٗ مُلْكُ السَّمٰوٰتِ وَالْاَرْضِ ۚ وَاِلَى اللّٰهِ تُرْجَعُ الْاُمُوْرُ ۞

୬. (ଏବଂ) ଆକାଶ ଓ ପୃଥିବୀର ରାଜତ୍ୱ ମଧ୍ୟ ତାହାଙ୍କର; ଏବଂ (ନିଷ୍ପତ୍ତି ସକାଶେ) ତାହାଙ୍କ ନିକଟକୁ ସବୁ ବିଷୟକୁ ଫେରାଇ ନିଆହେବ।

يُوْلِجُ الَّيْلَ فِي النَّهَارِ وَيُوْلِجُ النَّهَارَ فِي الَّيْلِ ۚ وَهُوَ عَلِيْمٌ بِذَاتِ الصُّدُوْرِ ۞

୭. ସେ ରାତିକୁ ଦିନ ମଧ୍ୟରେ ପ୍ରବେଶ କରାନ୍ତି ଓ ଦିନକୁ ରାତି ମଧ୍ୟରେ ପ୍ରବେଶ କରାନ୍ତି; ଏବଂ ସେ ଅନ୍ତରର କଥାକୁ ଭଲ ରୂପେ ଜାଣନ୍ତି।

---

୧. ୩୪:୩ର ଟୀକା ଦ୍ରଷ୍ଟବ୍ୟ।

آمِنُوا بِاللَّهِ وَرَسُولِهِ وَأَنفِقُوا مِمَّا جَعَلَكُم مُّسْتَخْلَفِينَ فِيهِ ۖ فَالَّذِينَ آمَنُوا مِنكُمْ وَأَنفَقُوا لَهُمْ أَجْرٌ كَبِيرٌ ٨

୮. ହେ ଲୋକମାନେ ! ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ପ୍ରତି ବିଶ୍ୱାସ କର; ଏବଂ (ପୂର୍ବବର୍ତ୍ତୀ ସଂପ୍ରଦାୟଙ୍କ ପରେ) ତୁମମାନଙ୍କୁ ଯେଉଁ (ଧନ–ସଂପତ୍ତି) ବିଷୟରେ ମାଲିକ କରାଯାଇଛି ସେଥିରୁ ବ୍ୟୟ କର; ଏବଂ ତୁମମାନଙ୍କ ମଧ୍ୟରୁ ଯେଉଁମାନେ ବିଶ୍ୱାସକାରୀ ଅଟନ୍ତି ଓ (ଅଲ୍ଲାହଙ୍କ ପଥରେ) ବ୍ୟୟ କରନ୍ତି ସେମାନଙ୍କୁ ମହାନ୍ ପୁରସ୍କାର ମିଳିବ ।

وَمَا لَكُمْ لَا تُؤْمِنُونَ بِاللَّهِ ۙ وَالرَّسُولُ يَدْعُوكُمْ لِتُؤْمِنُوا بِرَبِّكُمْ وَقَدْ أَخَذَ مِيثَاقَكُمْ إِن كُنتُم مُّؤْمِنِينَ ٩

୯. ଏବଂ ତୁମମାନଙ୍କର (ଏପରି) କ'ଣ ହୋଇଛି ଯେ ତୁମେମାନେ ଅଲ୍ଲାହ ଓ ରସୁଲଙ୍କ ପ୍ରତି ବିଶ୍ୱାସ କରୁ ନାହଁ ? ଏବଂ (ଅଲ୍ଲାହଙ୍କ) ରସୁଲ ତୁମମାନଙ୍କୁ କେବଳ ଏଥି ସକାଶେ ଡାକୁଛନ୍ତି ଯେ ତୁମେମାନେ ନିଜ ପାଳନକର୍ତ୍ତାଙ୍କ ପ୍ରତି ବିଶ୍ୱାସ କର, (ଏବଂ) ଯଦି ତୁମେମାନେ ବିଶ୍ୱାସକାରୀ ହୋଇଥାଅ, ତେବେ ଅଲ୍ଲାହ ତୁମମାନଙ୍କଠାରୁ ଏକ ଅଙ୍ଗୀକାର[1] ଗ୍ରହଣ କରି ସାରିଛନ୍ତି ।

هُوَ الَّذِي يُنَزِّلُ عَلَىٰ عَبْدِهِ آيَاتٍ بَيِّنَاتٍ لِّيُخْرِجَكُم مِّنَ الظُّلُمَاتِ إِلَى النُّورِ ۚ وَإِنَّ اللَّهَ بِكُمْ لَرَءُوفٌ رَّحِيمٌ ١٠

୧୦. ସେ (ଅଲ୍ଲାହ) ହିଁ ଆପଣା ଭକ୍ତଙ୍କ ପ୍ରତି ସୁସ୍ପଷ୍ଟ ନିଦର୍ଶନମାନ ଅବତୀର୍ଣ୍ଣ କରିଥାନ୍ତି, ଯାହା ଫଳରେ ସେ ଏହି ନିଦର୍ଶନମାନଙ୍କ ମାଧ୍ୟମରେ ତୁମମାନଙ୍କୁ ଅନ୍ଧକାର ମଧ୍ୟରୁ ବାହାର କରି ଆଲୋକ ଆଡ଼କୁ ଘେନିଯା'ନ୍ତି ; ଏବଂ ବାସ୍ତବରେ ଅଲ୍ଲାହ ଅତିଶୟ ଦୟାଶୀଳ (ଓ) ସଦା କରୁଣାମୟ ।

وَمَا لَكُمْ أَلَّا تُنفِقُوا فِي سَبِيلِ اللَّهِ وَلِلَّهِ مِيرَاثُ السَّمَاوَاتِ وَالْأَرْضِ ۚ لَا يَسْتَوِي مِنكُم مَّنْ أَنفَقَ مِن قَبْلِ الْفَتْحِ وَقَاتَلَ ۚ أُولَٰئِكَ أَعْظَمُ دَرَجَةً مِّنَ الَّذِينَ أَنفَقُوا مِن بَعْدُ وَقَاتَلُوا ۚ وَكُلًّا وَعَدَ اللَّهُ الْحُسْنَىٰ ۚ وَاللَّهُ بِمَا تَعْمَلُونَ خَبِيرٌ ١١ ع

୧୧. ଏବଂ ତୁମମାନଙ୍କର (ଏପରି) କ'ଣ ହୋଇଛି ଯେ ତୁମେମାନେ ଅଲ୍ଲାହଙ୍କ ପଥରେ ବ୍ୟୟ କରୁ ନାହିଁ, ଅଥଚ ଆକାଶ ଓ ପୃଥିବୀର ଉତ୍ତରାଧିକାର[2] କେବଳ ଅଲ୍ଲାହଙ୍କର; ହେ ବିଶ୍ୱାସକାରୀମାନେ ! ବିଜୟ (ଲାଭ) ପୂର୍ବରୁ ଯେ ଅଲ୍ଲାହଙ୍କ ପଥରେ ବ୍ୟୟ କରିଅଛି ଓ ତାହାଙ୍କ ଉଦ୍ଦେଶ୍ୟରେ ସଂଗ୍ରାମ କରିଅଛି ସେ ତାହା ସହିତ ସମାନ ହୋଇ ପାରିବ ନାହିଁ ଯେ ବିଜୟ ପରେ ବ୍ୟୟ କରିଛି ଓ ବିଜୟ ପରେ ସଂଗ୍ରାମ କରିଛି; ବିଜୟ ପୂର୍ବର ସଂଗ୍ରାମକାରୀ ତଥା ବ୍ୟୟକାରୀ ପଦମର୍ଯ୍ୟାଦା ଦୃଷ୍ଟିରୁ ବହୁ ଉର୍ଦ୍ଧ୍ୱରେ ଏବଂ ଅଲ୍ଲାହ ଉଭୟ ପ୍ରକାରର ଲୋକମାନଙ୍କ ସକାଶେ କଲ୍ୟାଣର ପ୍ରତିଶ୍ରୁତି ଦେଇଛନ୍ତି; ଏବଂ ଅଲ୍ଲାହ ତୁମମାନଙ୍କ କାର୍ଯ୍ୟକଳାପ ସଂକ୍ରାନ୍ତରେ ଅତି ଭଲ ଭାବରେ ଅବଗତ ଅଛନ୍ତି ।

---

୧. ଅର୍ଥାତ୍ ମାନବ-ପ୍ରକୃତିରେ ଅଲ୍ଲାହଙ୍କ ଉପରେ ବିଶ୍ୱାସକରିବା ଓ ତାହାଙ୍କ ନିକଟରୁ ଆକର୍ଷିତ ହେବା ଗୁଣ ଗୁପ୍ତ ଭାବରେ ନିହିତ ଅଛି ।

୨. ଏହି ଭୌତିକ ସଂସାରରେ ମନୁଷ୍ୟ ଠାରେ ଯାହାକିଛି ଅଛି ମନୁଷ୍ୟ ପରିଶେଷରେ ତାକୁ ଛାଡ଼ି ମୃତ୍ୟୁମୁଖରେ ପଡ଼ିବ ଏବଂ ତାହା ଅଲ୍ଲାହଙ୍କ ଦଖଲକୁ ଚାଲିଯିବ ।

مَنْ ذَا الَّذِىْ يُقْرِضُ اللّٰهَ قَرْضًا حَسَنًا فَيُضٰعِفَهٗ لَهٗ وَلَهٗٓ اَجْرٌ كَرِيْمٌ ﴿١٢﴾

୧୨. କ'ଣ ଏପରି କେହି ଅଛି ଯେ ଅଲ୍ଲାହ୍‌ଙ୍କୁ (ନିଜ ଧନ ସଂପତ୍ତି ମଧ୍ୟରୁ) ଏକ ଉତ୍ତମ ଅଂଶ ଅଲଗା କରି ଦେଇଦେବ ? ତାହାହେଲେ ସେ ତାହାକୁ ତା ପାଇଁ ଅଭିବୃଦ୍ଧି କରାଇବେ, ଏବଂ ତାହା ପାଇଁ ଏକ ସମ୍ମାନ-ଜନକ ପ୍ରତିଫଳ ନିୟତ ଅଛି ।

يَوْمَ تَرَى الْمُؤْمِنِيْنَ وَالْمُؤْمِنٰتِ يَسْعٰى نُوْرُهُمْ بَيْنَ اَيْدِيْهِمْ وَبِاَيْمَانِهِمْ بُشْرٰىكُمُ الْيَوْمَ جَنّٰتٌ تَجْرِىْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَا ۗ ذٰلِكَ هُوَ الْفَوْزُ الْعَظِيْمُ ﴿١٣﴾

୧୩. ଯେଉଁଦିନ ତୁମେ ବିଶ୍ୱାସକାରୀ ପୁରୁଷ ଓ ବିଶ୍ୱାସକାରିଣୀ ନାରୀମାନଙ୍କୁ ଦେଖିବାକୁ ପାଇବ ଯେ ସେମାନଙ୍କର ଜ୍ୟୋତି ସେମାନଙ୍କ ସମ୍ମୁଖରେ ଓ ସେମାନଙ୍କ ଦକ୍ଷିଣ ପାର୍ଶ୍ୱରେ (ଉଦ୍ଭାସିତ ହୋଇ) ଧାବମାନ ହେଉଥିବ (ଏବଂ ଅଲ୍ଲାହ୍ ଓ ତାହାଙ୍କର ଦୂତମାନେ ସେମାନଙ୍କୁ କହିବେ), "ଆଜି ତୁମମାନଙ୍କୁ ବିଭିନ୍ନ ପ୍ରକାର ବୈକୁଣ୍ଠ ସଂକ୍ରାନ୍ତରେ ସୁସମାଚାର ଦିଆଯାଉଛି, (ତାହା ଏପରି ବୈକୁଣ୍ଠ) ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ; ଏ (ସୁସମାଚାର ପ୍ରାପ୍ତ) ଲୋକମାନେ ସେହି ବୈକୁଣ୍ଠରେ ବାସ କରୁଥିବେ; ଏବଂ ଏହା ହିଁ ମହାନ୍ ସଫଳତା ।

يَوْمَ يَقُوْلُ الْمُنٰفِقُوْنَ وَالْمُنٰفِقٰتُ لِلَّذِيْنَ اٰمَنُوا انْظُرُوْنَا نَقْتَبِسْ مِنْ نُّوْرِكُمْ ۚ قِيْلَ ارْجِعُوْا وَرَآءَكُمْ فَالْتَمِسُوْا نُوْرًا ۗ فَضُرِبَ بَيْنَهُمْ بِسُوْرٍ لَّهٗ بَابٌ ۗ بَاطِنُهٗ فِيْهِ الرَّحْمَةُ وَظَاهِرُهٗ مِنْ قِبَلِهِ الْعَذَابُ ﴿١٤﴾

୧୪. ଯେଉଁଦିନ କପଟ–ବିଶ୍ୱାସୀ ପୁରୁଷ ଓ କପଟ–ବିଶ୍ୱାସିନୀ ନାରୀମାନେ ବିଶ୍ୱାସକାରୀମାନଙ୍କୁ କହିବେ, "ଆମମାନଙ୍କ ପାଇଁ ମଧ୍ୟ ଟିକିଏ ଅପେକ୍ଷା କର; ଆମେମାନେ ତୁମମାନଙ୍କର ଜ୍ୟୋତିରୁ ଆଲୋକ ହାସଲ କରିବୁ;"[୧] ସେତେବେଳେ ସେମାନଙ୍କୁ କୁହାଯିବ, "ନିଜ ପଛପଟକୁ ଫେରିଯାଅ, ଓ (ସେଠାକୁ ଯାଇ) ଜ୍ୟୋତିର ସନ୍ଧାନ ନିଅ;" "ତା'ପରେ (ଅଲ୍ଲାହ୍‌ଙ୍କ ତରଫରୁ) ବିଶ୍ୱାସକାରୀ ଓ ସେମାନଙ୍କ ମଧ୍ୟରେ ଏକ ପ୍ରାଚୀର ସ୍ଥାପନ କରି ଦିଆଯିବ,[୨] ଯାହାର ଗୋଟିଏ ଦ୍ୱାର ଥିବ; ଏହାର ଅନ୍ତର୍ଭାଗରେ କରୁଣା ଓ ଏହାର ବାହାର ପଟ ସମ୍ମୁଖରେ ଶାସ୍ତି ଦୃଷ୍ଟିଗୋଚର ହେଉଥିବ ।

୧. ସଂସାରରେ କରିଥିବା କର୍ମ ଅନୁସାରେ ପରକାଳରେ ଜ୍ୟୋତି ପ୍ରାପ୍ତ ହେବ । ଯଦି ତୁମମାନଙ୍କର ସାମର୍ଥ୍ୟ ଅଛି ତେବେ ସଂସାରକୁ ଫେରିଆସ ।

୨. ଅର୍ଥାତ୍ ବିଶ୍ୱାସକାରୀଙ୍କୁ ଯେଉଁ ଆଡ଼କୁ ଯିବାକୁ ଥିବ ସେଇଆଡ଼େ ଅଲ୍ଲାହ୍‌ଙ୍କର କରୁଣା ରହିଥିବ ଏବଂ ଅବିଶ୍ୱାସକାରୀଙ୍କ ପକ୍ଷରେ ଶାସ୍ତି ରହିଥିବ ଯଦ୍ଦ୍ୱାରା ସେମାନେ ପଳାୟନ କରି ନିଜକୁ ରକ୍ଷା କରିପାରିବେ ନାହିଁ ।

يُنَادُوْنَهُمْ اَلَمْ نَكُنْ مَّعَكُمْ ۗ قَالُوْا بَلٰى وَلٰكِنَّكُمْ فَتَنْتُمْ اَنْفُسَكُمْ وَتَرَبَّصْتُمْ وَارْتَبْتُمْ وَغَرَّتْكُمُ الْاَمَانِيُّ حَتّٰى جَآءَ اَمْرُ اللّٰهِ وَغَرَّكُمْ بِاللّٰهِ الْغَرُوْرُ ⑮

୧୫. ସେ (କପଟ–ବିଶ୍ୱାସୀ)ମାନେ ବିଶ୍ୱାସକାରୀମାନଙ୍କୁ ଡାକି କହିବେ, "କ'ଣ ଆମେମାନେ ତୁମମାନଙ୍କ ସହିତ ନ ଥିଲୁ ?" ସେ (ବିଶ୍ୱାସକାରୀ) ମାନେ ଉତ୍ତର ଦେବେ, "ଅବଶ୍ୟ ଥିଲ, କିନ୍ତୁ ତୁମେମାନେ ନିଜକୁ ନିଜେ ଶାସ୍ତି ମଧ୍ୟକୁ ନିକ୍ଷେପ କରିଥିଲ; ତୁମେମାନେ (ଆମମାନଙ୍କର ବିନାଶକୁ) ଅପେକ୍ଷା କରୁଥିଲ ଓ ଦ୍ୱିଧା ଓ ସନ୍ଦେହର ବଶବର୍ତ୍ତୀ ହୋଇଥିଲ; ଏବଂ ତୁମମାନଙ୍କର କାମନାମାନ ତୁମମାନଙ୍କୁ ସେ ପର୍ଯ୍ୟନ୍ତ ପ୍ରତାରିତ କରିଥିଲା ଯେତେବେଳେ କି ଅଲ୍ଲାହଙ୍କର ନିଷ୍ପତ୍ତି ଆସି ଉପସ୍ଥିତ ହେଲା; ଏବଂ ଅଲ୍ଲାହଙ୍କ (କାର୍ଯ୍ୟାବଳୀ) ବିଷୟରେ ପ୍ରତାରକ (ସଇତାନ) ତୁମମାନଙ୍କୁ ପ୍ରତାରିତ କରିଥିଲା ।"

فَالْيَوْمَ لَا يُؤْخَذُ مِنْكُمْ فِدْيَةٌ وَّلَا مِنَ الَّذِيْنَ كَفَرُوْا ۗ مَاْوٰىكُمُ النَّارُ ۗ هِيَ مَوْلٰىكُمْ ۗ وَبِئْسَ الْمَصِيْرُ ⑯

୧୬. "ଅତଏବ (ହେ କପଟ–ବିଶ୍ୱାସୀ– ମାନେ !) ଆଜି ତୁମମାନଙ୍କଠାରୁ ବା ଅବିଶ୍ୱାସକାରୀମାନଙ୍କଠାରୁ କୌଣସି ମୁକ୍ତି-ମୂଲ୍ୟ ଗ୍ରହଣ କରାଯିବ ନାହିଁ; ତୁମ ସମସ୍ତଙ୍କର ବାସସ୍ଥାନ ନରକ ହେବ; ତାହା ହିଁ ତୁମମାନଙ୍କର ଚିର ସଂପର୍କିତ-ବସ୍ତୁ ଓ ତାହା ଅତିଶୟ ମନ୍ଦ ଆଶ୍ରୟସ୍ଥଳ ।"

اَلَمْ يَاْنِ لِلَّذِيْنَ اٰمَنُوْٓا اَنْ تَخْشَعَ قُلُوْبُهُمْ لِذِكْرِ اللّٰهِ وَمَا نَزَلَ مِنَ الْحَقِّ ۙ وَلَا يَكُوْنُوْا كَالَّذِيْنَ اُوْتُوا الْكِتٰبَ مِنْ قَبْلُ فَطَالَ عَلَيْهِمُ الْاَمَدُ فَقَسَتْ قُلُوْبُهُمْ ۗ وَكَثِيْرٌ مِّنْهُمْ فٰسِقُوْنَ ⑰

୧୭. (ବର୍ତ୍ତମାନ ଆମ୍ଭେ ବିଶ୍ୱାସକାରୀମାନଙ୍କୁ କହୁଅଛୁ ଯେ) କ'ଣ ଅଦ୍ୟାବଧି ସେମାନଙ୍କ ହୃଦୟ ଅଲ୍ଲାହଙ୍କୁ ସ୍ମରଣ କରିବା ପାଇଁ ଓ ଯେଉଁ ବାଣୀ ସତ୍ୟ (ଓ ତତ୍ତ୍ୱ) ସହିତ ଅବତୀର୍ଣ୍ଣ ହୋଇଛି ତାହା ପାଇଁ ଅବନତ ହେଉ ନାହିଁ ? ଏବଂ ସେ (ବିଶ୍ୱାସକାରୀ)ମାନେ ସେମାନଙ୍କ ସଦୃଶ ହେବା ଉଚିତ ନୁହେଁ ଯେଉଁମାନଙ୍କୁ ସେମାନଙ୍କ ପୂର୍ବରୁ (ଧର୍ମ) ଗ୍ରନ୍ଥ ପ୍ରଦାନ କରାଯାଇଥିଲା ; କିନ୍ତୁ (ଅଲ୍ଲାହଙ୍କର ଅନୁଗ୍ରହ ଅବତୀର୍ଣ୍ଣ ହେବା) ସମୟ ସେମାନଙ୍କ ପକ୍ଷରେ ସୁଦୀର୍ଘ ହୋଇଯାଇଛି ; ଯାହା ଫଳରେ ସେମାନଙ୍କ ହୃଦୟ କଠିନ ହୋଇଯାଇଛି, ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଭ୍ରଷ୍ଟାଚାରୀ ହୋଇଯାଇଥିଲେ ।

اِعْلَمُوْٓا اَنَّ اللّٰهَ يُحْيِ الْاَرْضَ بَعْدَ مَوْتِهَا ۗ قَدْ بَيَّنَّا لَكُمُ الْاٰيٰتِ لَعَلَّكُمْ تَعْقِلُوْنَ ⑱

୧୮. ମନେରଖ, ଅଲ୍ଲାହ ଭୂପୃଷ୍ଠକୁ ତାହା ନିର୍ଜୀବତା ପରେ (ପୁନର୍ବାର) ଜୀବିତ ରଖିଥା'ନ୍ତି; ଆମ୍ଭେ ତୁମମାନଙ୍କ ସକାଶେ ଆପଣା ନିଦର୍ଶନଗୁଡ଼ିକୁ ସୁସ୍ପଷ୍ଟ ଭାବରେ ବର୍ଣ୍ଣନା କରିଅଛୁ ଯେପରିକି ତୁମେମାନେ ବୁଝି ବିଚାରି କାର୍ଯ୍ୟ କରିବ ।

اِنَّ الْمُصَّدِّقِيْنَ وَالْمُصَّدِّقٰتِ وَاَقْرَضُوا اللّٰهَ

୧୯. ବାସ୍ତବରେ ଦାନକାରୀ ପୁରୁଷମାନେ ଓ ଦାନକାରିଣୀ ନାରୀମାନେ, ଏବଂ ଯେଉଁମାନେ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ନିଜ ଧନ ସମ୍ପତ୍ତି ମଧ୍ୟରୁ ଏକ ଉତ୍ତମ ଅଂଶ ଅଲଗା କରି

قَرْضًا حَسَنًا يُّضٰعَفُ لَهُمْ وَلَهُمْ اَجْرٌ كَرِيْمٌ ﴿١٩﴾

ଦେଇଛନ୍ତି, ସେମାନଙ୍କ ଧନ ସଂପତ୍ତିକୁ ସେମାନଙ୍କ ସକାଶେ ବୃଦ୍ଧି କରାଯିବ, ଏବଂ ସେମାନଙ୍କୁ ସମ୍ମାନଜନକ ପୁରସ୍କାର ଦିଆ ହେବ ।

وَالَّذِيْنَ اٰمَنُوْا بِاللّٰهِ وَرُسُلِهٖٓ اُولٰٓئِكَ هُمُ الصِّدِّيْقُوْنَ ۖ وَالشُّهَدَآءُ عِنْدَ رَبِّهِمْ ۗ لَهُمْ اَجْرُهُمْ وَنُوْرُهُمْ ۗ وَالَّذِيْنَ كَفَرُوْا وَكَذَّبُوْا بِاٰيٰتِنَآ اُولٰٓئِكَ اَصْحٰبُ الْجَحِيْمِ ﴿٢٠﴾

୨୦. ଏବଂ ଯେ ଅଲ୍ଲାହଙ୍କ ପ୍ରତି ଓ ତାହାଙ୍କ ରସୁଲମାନଙ୍କ ପ୍ରତି ବିଶ୍ୱାସ କରିବ ସେ ନିଜ ପାଳନକକର୍ତ୍ତାଙ୍କ ନିକଟରେ 'ସିଦ୍ଦିକ୍'[1] (ସତ୍ୟନିଷ୍ଠ) ଓ 'ସହିଦ'ର ପଦମର୍ଯ୍ୟାଦା ଲାଭ କରିବ ; ସେମାନଙ୍କୁ ସେମାନଙ୍କର ପୂର୍ଣ୍ଣ ପୁରସ୍କାର ମିଳିବ, ଏବଂ ସେହିପରି ସେମାନଙ୍କୁ ନିଜର ଜ୍ୟୋତି ପ୍ରାପ୍ତ ହେବ ;. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଆମର ନିଦର୍ଶନଗୁଡ଼ିକୁ ମିଥ୍ୟା ମନେ କରିଛନ୍ତି, ସେମାନେ ନିରକବାସୀ ହେବେ ।

### ରୁ:୩

اِعْلَمُوْٓا اَنَّمَا الْحَيٰوةُ الدُّنْيَا لَعِبٌ وَّلَهْوٌ وَّزِيْنَةٌ وَّتَفَاخُرٌۢ بَيْنَكُمْ وَتَكَاثُرٌ فِى الْاَمْوَالِ وَالْاَوْلَادِ ۗ كَمَثَلِ غَيْثٍ اَعْجَبَ الْكُفَّارَ نَبَاتُهٗ ثُمَّ يَهِيْجُ فَتَرٰىهُ مُصْفَرًّا ثُمَّ يَكُوْنُ حُطٰمًا ۗ وَفِى الْاٰخِرَةِ عَذَابٌ شَدِيْدٌ ۙ وَّمَغْفِرَةٌ مِّنَ اللّٰهِ وَرِضْوَانٌ ۗ وَمَا الْحَيٰوةُ الدُّنْيَآ اِلَّا مَتَاعُ الْغُرُوْرِ ﴿٢١﴾

୨୧. ହେ ଲୋକମାନେ ! ଜାଣିରଖ ଯେ ସାଂସାରିକ ଜୀବନ କେବଳ ଏକ କ୍ରୀଡ଼ାକୌତୁକ ଓ ଚିତ୍ତବିନୋଦନ ବିଷୟ ଅଟେ; ଏବଂ ଏହା ଚାକଚକ୍ୟ ତଥା ପରସ୍ପର ମଧ୍ୟରେ ଅହଙ୍କାର ପ୍ରଦର୍ଶନ ଏବଂ ଧନ-ସଂପତ୍ତି ଓ ସନ୍ତାନ-ସନ୍ତତି ସଂକ୍ରାନ୍ତରେ ବଡ଼ିମା ପ୍ରଦର୍ଶନ କରିବାର ମାଧ୍ୟମ ଅଟେ, ଏହାର ଅବସ୍ଥା ବୃଷ୍ଟି ଦ୍ୱାରା ଉତ୍ପାଦିତ ହୋଇଥିବା ଶସ୍ୟ ଶ୍ୟାମଳ ଶସ୍ୟ କ୍ଷେତ୍ର ସଦୃଶ ଯାହାର ଉଦ୍‌ଗମ କୃଷକଙ୍କୁ ଖୁବ୍ ସନ୍ତୋଷ ପ୍ରଦାନ କରେ, କିନ୍ତୁ ପରିଶେଷରେ ତୁମେ ତାହାକୁ ହଳଦିଆ ଅବସ୍ଥାରେ ଦେଖ; ପୁଣି (ଏହାପରେ) ତାହା ପଚିସଢ଼ି ଖଣ୍ଡ ଖଣ୍ଡ ହୋଇଯାଏ; ଏବଂ ପର କାଳରେ (ଏପରି ସଂସାର-ପ୍ରେମୀ ଲୋକମାନଙ୍କ ସକାଶେ) କଠିନ ଶାସ୍ତି ନିୟତ ଅଛି, ଏବଂ କେତେକଙ୍କ ସକାଶେ ଅଲ୍ଲାହଙ୍କ ତରଫରୁ କ୍ଷମା ଓ ଅଲ୍ଲାହଙ୍କର ସନ୍ତୋଷ ବିଧାନ ନିୟତ ଅଛି; ଏବଂ ସାଂସାରିକ ଜୀବନ କେବଳ ଏକ ପ୍ରତାରଣାପୂର୍ଣ୍ଣ ଉପଭୋଗ୍ୟ ବସ୍ତୁ ।

---

[1]. କେତେକ କହନ୍ତି ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସକଲେ, ଫଳସ୍ୱରୂପ ଜଣେ ସିଦ୍ଦିକ ଓ ସହିଦ ପଦ ଯାଏ ପହଞ୍ଚିପାରିବ କିନ୍ତୁ ନବି ପଦ ପର୍ଯ୍ୟନ୍ତ ପହଞ୍ଚ ପାରିବ ନାହିଁ । ଏ ସଂକ୍ରାନ୍ତରେ ସୁରା-ନିସାର ଆୟତ- ୭୦ ପ୍ରଣିଧାନଯୋଗ୍ୟ ।

ଆଲୋଚ୍ୟ ଆୟତରେ ଉଲ୍ଲେଖ କରାଯାଇଛି ଯେ ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କରିବେ ସେହିମାନେ ସିଦ୍ଦିକ ଓ ସହୀଦର ପଦମର୍ଯ୍ୟାଦା ପାଇବେ କିନ୍ତୁ ସୁରା-ନିସାରେ ଯେଉଁ ଅର୍‌ରସୁଲ ଶବ୍ଦ ବ୍ୟବହୃତ ହୋଇଛି ତହିଁରୁ କେବଳ ହଜରତ ମହମ୍ମଦ ଅଭିପ୍ରେତ ।

ସୁରା ନିସା ଅନୁସାରେ ଲୋକମାନେ ଅଲ୍ଲାହ ଓ ରସୁଲଙ୍କ ଆଜ୍ଞାପାଳନ କରି ନବି, ସିଦ୍ଦିକ, ସ୍ୱାଲେହ ଓ ସହୀଦ ପଦ ପାଇପାରିବେ । ଏଥିରୁ ଜଣାପଡୁଛି ଯେ ହଜରତ ମହମ୍ମଦଙ୍କ ପୂର୍ବବର୍ତ୍ତୀ ନବିମାନଙ୍କ ଆଜ୍ଞାପାଳନ କରି ଜଣେ ବ୍ୟକ୍ତି କେବଳ ସିଦ୍ଦିକ ଓ ସହୀଦର ପଦମର୍ଯ୍ୟାଦା ପାଇପାରୁଥିଲା କିନ୍ତୁ ଅଲ୍ଲାହ ଓ ହଜରତ ମହମ୍ମଦଙ୍କ ଆଜ୍ଞାପାଳନ କରି ଯେ କେହି ଉପରବର୍ଣ୍ଣିତ ଚାରିଗୋଟି ପଦ ପାଇପାରେ ।

سَابِقُوٓا إِلَىٰ مَغْفِرَةٍ مِّن رَّبِّكُمْ وَجَنَّةٍ عَرْضُهَا كَعَرْضِ السَّمَآءِ وَالْأَرْضِ أُعِدَّتْ لِلَّذِينَ ءَامَنُوا بِاللَّهِ وَرُسُلِهِۦ ۚ ذَٰلِكَ فَضْلُ اللَّهِ يُؤْتِيهِ مَن يَشَآءُ ۚ وَاللَّهُ ذُو الْفَضْلِ الْعَظِيمِ ﴿٢٢﴾

୨୨. ହେ ଲୋକମାନେ ! ତୁମେମାନେ ନିଜ ପାଳନକର୍ତ୍ତାଙ୍କ ତରଫରୁ ମିଳୁଥିବା କ୍ଷମା ଓ ଏପରି ବୈକୁଣ୍ଠ ଆଡ଼କୁ ଦ୍ରୁତ ଗତିରେ ଅଗ୍ରସର ହୁଅ ଯାହାର ମୂଲ୍ୟ ସମଗ୍ର ଆକାଶ ଓ ପୃଥିବୀର ମୂଲ୍ୟ ସହିତ ସମାନ, ଯାହାକି ଅଲ୍ଲାଃ ଓ ତାହାଙ୍କ ରସୁଲ ପ୍ରତି ବିଶ୍ୱାସକାରୀମାନଙ୍କ ପାଇଁ ମନୋନୀତ ହୋଇଛି; ଏହା ଅଲ୍ଲାଃଙ୍କର କୃପା; ସେ ଯାହାକୁ ପସନ୍ଦ କରନ୍ତି, ତାହାକୁ ପ୍ରଦାନ କରନ୍ତି; ଏବଂ ଅଲ୍ଲାଃ ଅତ୍ୟନ୍ତ କୃପାଶୀଳ ।

مَآ أَصَابَ مِن مُّصِيبَةٍ فِي الْأَرْضِ وَلَا فِيٓ أَنفُسِكُمْ إِلَّا فِي كِتَٰبٍ مِّن قَبْلِ أَن نَّبْرَأَهَآ ۚ إِنَّ ذَٰلِكَ عَلَى اللَّهِ يَسِيرٌ ﴿٢٣﴾

୨୩. ଭୂପୃଷ୍ଠରେ ଅଥବା ତୁମ ନିଜ ପ୍ରତି ଏପରି କୌଣସି ବିପତ୍ତି ଆସେ ନାହିଁ ଯାହାକୁ କି ତାହାର ଘଟିବା ପୂର୍ବରୁ, ଆମେ ନିର୍ଦ୍ଧାରିତ[୧] କରି ନ ଥାଉ; ଏହା ଅଲ୍ଲାଃଙ୍କ ପକ୍ଷରେ ଅତି ସହଜ,

لِّكَيْلَا تَأْسَوْا عَلَىٰ مَا فَاتَكُمْ وَلَا تَفْرَحُوا بِمَآ ءَاتَىٰكُمْ ۗ وَاللَّهُ لَا يُحِبُّ كُلَّ مُخْتَالٍ فَخُورٍ ﴿٢٤﴾

୨୪. ଯଦ୍ୱାରା ନିଜ ତ୍ରୁଟି ଯୋଗୁଁ ତୁମମାନଙ୍କର କୌଣସି ଦୁଃଖ ନ ହେଉ ଏବଂ ଅଲ୍ଲାଃ ତୁମମାନଙ୍କୁ ଯାହା ଦିଅନ୍ତି, ସେଥିପାଇଁ ତୁମେମାନେ ଆନନ୍ଦିତ ହୁଅ ନାହିଁ; ଏବଂ ଅଲ୍ଲାଃ ପ୍ରତ୍ୟେକ ଗର୍ବୀ ଓ ଉଦ୍ଧତ (ବ୍ୟକ୍ତି)କୁ ପସନ୍ଦ କରନ୍ତି ନାହିଁ ।

الَّذِينَ يَبْخَلُونَ وَيَأْمُرُونَ النَّاسَ بِالْبُخْلِ ۗ وَمَن يَتَوَلَّ فَإِنَّ اللَّهَ هُوَ الْغَنِيُّ الْحَمِيدُ ﴿٢٥﴾

୨୫. ଯେଉଁମାନେ ନିଜେ କୃପଣତା (ପ୍ରଦର୍ଶନ) କରନ୍ତି ଓ ଅନ୍ୟମାନଙ୍କୁ କୃପଣତା ବିଷୟକ ଶିକ୍ଷା ଦିଅନ୍ତି, ଏବଂ ଯେ କେହି ଏହି ଶିକ୍ଷାରୁ ମୁହଁ ଫେରାଇ ନିଏ, ତେବେ ମନେରଖ ଯେ ଅଲ୍ଲାଃ ହିଁ ବାସ୍ତବରେ ସ୍ୱୟଂ-ପର୍ଯ୍ୟାପ୍ତ ଓ ବାସ୍ତବ ପ୍ରଶଂସା ପାଇଁ ଯୋଗ୍ୟ ।

لَقَدْ أَرْسَلْنَا رُسُلَنَا بِالْبَيِّنَٰتِ وَأَنزَلْنَا مَعَهُمُ الْكِتَٰبَ وَالْمِيزَانَ لِيَقُومَ النَّاسُ بِالْقِسْطِ ۖ وَأَنزَلْنَا الْحَدِيدَ فِيهِ بَأْسٌ شَدِيدٌ وَمَنَٰفِعُ لِلنَّاسِ وَلِيَعْلَمَ اللَّهُ مَن يَنصُرُهُۥ وَرُسُلَهُۥ بِالْغَيْبِ ۚ إِنَّ اللَّهَ قَوِيٌّ عَزِيزٌ ﴿٢٦﴾

୨୬. ଆମେ ନିଜର ରସୁଲମାନଙ୍କୁ ସ୍ପଷ୍ଟ ନିଦର୍ଶନ ସହିତ ପ୍ରେରଣ କରିଅଛୁ ଏବଂ ସେମାନଙ୍କ ସହିତ (ଧର୍ମ) ଗ୍ରନ୍ଥ ଓ ତୁଳାଦଣ୍ଡ ମଧ୍ୟ ଅବତୀର୍ଣ୍ଣ କରିଅଛୁ ଯଦ୍ୱାରା ଲୋକମାନେ ନ୍ୟାୟ ବିଚାର କରିବେ; ଏବଂ ଆମେ ଲୌହ ଅବତରଣ କରିଅଛୁ; ଯହିଁରେ ଭୟାବହ ଯୁଦ୍ଧ ସାମଗ୍ରୀ ଅଛି ଏବଂ ଲୋକମାନଙ୍କ ପାଇଁ (ଏଥିରେ) ଆହୁରି ଅନେକ ପ୍ରକାର ଉପକାର ରହିଅଛି, ଏବଂ କିଏ ଅଲ୍ଲାଃଙ୍କୁ ଓ ତାହାଙ୍କ ରସୁଲମାନଙ୍କୁ ନ ଦେଖି ସାହାଯ୍ୟ କରୁଛି ତା ଜାଣିବା ପାଇଁ ସେ ଏ ସବୁକୁ ସୃଷ୍ଟି କରିଛନ୍ତି; ଏବଂ ଅଲ୍ଲାଃ ହିଁ ବଳୀୟାନ (ଓ) ପରାକ୍ରମୀ ।

୧. ପ୍ରତ୍ୟେକଟି ମନ୍ଦ କାର୍ଯ୍ୟ ଓ ପ୍ରତ୍ୟେକଟି ଭଲ କାର୍ଯ୍ୟ ପାଇଁ ନିର୍ଦ୍ଦିଷ୍ଟ ପ୍ରତିଫଳ ରହିଛି ଅଥବା ମଣିଷ ଭାଗ୍ୟରେ ପ୍ରତିଫଳ ବିଷୟ ଲେଖାଅଛି ବୋଲି କହିବା ଏଠାରେ ଅଭିପ୍ରେତ ନୁହେଁ, ବରଂ ଏହାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ଯେ ଅଲ୍ଲାଃ ପ୍ରତ୍ୟେକଟି କାର୍ଯ୍ୟର ପରିଣାମକୁ ସୁନିଶ୍ଚିତ କରି ଦେଇଛନ୍ତି । ବସ୍ତୁତଃ ଯିଏ ଯେପରି କର୍ମ କରିବ ସେ ତଦନୁରୂପ ଫଳ ପାଇବ । ସୁତରାଂ ମଣିଷ ହିଁ ନିଜେ ପ୍ରତିଫଳର ଜନକ, ଅଲ୍ଲାଃ ନୁହନ୍ତି । ଅଲ୍ଲାଃ କେବଳ ସିଦ୍ଧାନ୍ତର ଜନକ ।

୨୭. ଏବଂ ଆମ୍ଭେ ନୁହ ଓ ଇବ୍ରାହିମଙ୍କୁ ମଧ୍ୟ ରସୁଲ ଭାବେ ପ୍ରେରଣ କରିଥିଲୁ, ଏବଂ ସେମାନଙ୍କ ସନ୍ତାନମାନଙ୍କ ମଧ୍ୟରେ ନବି ପଦ ଓ (ଧର୍ମ) ଗ୍ରନ୍ଥ ନିର୍ଦ୍ଦିଷ୍ଟ କରି ଦେଇଥିଲୁ; ତେଣୁ ସେମାନଙ୍କ ମଧ୍ୟରୁ କେତେକ ସତ୍‌ପଥର ଅନୁସରଣ କରିଥିଲେ, ଓ ସେମାନଙ୍କ ମଧ୍ୟରୁ ଅନେକ ଭ୍ରଷ୍ଟାଚାରୀ ଥିଲେ ।

وَلَقَدْ أَرْسَلْنَا نُوحًا وَإِبْرَاهِيمَ وَجَعَلْنَا فِي ذُرِّيَّتِهِمَا النُّبُوَّةَ وَالْكِتَابَ فَمِنْهُمْ مُهْتَدٍ وَكَثِيرٌ مِنْهُمْ فَاسِقُونَ ﴿٢٦﴾

୨୮. ସେମାନଙ୍କ ପରେ (ଅର୍ଥାତ୍ ନୁହ ଓ ଇବ୍ରାହିମଙ୍କ ସନ୍ତାନମାନଙ୍କ ପରେ) ଆମ୍ଭେ ନିଜର ରସୁଲମାନଙ୍କୁ ସେମାନଙ୍କ ପଦାଙ୍କ ଅନୁସରଣ କରାଇ ପ୍ରେରଣ କରିଥିଲୁ; ଏବଂ ମରିୟମ-ନନ୍ଦନ ଇସାଙ୍କୁ ମଧ୍ୟ ସେମାନଙ୍କ ପଦାଙ୍କ ଅନୁସରଣ କରାଇଥିଲୁ, ଓ ତାହାଙ୍କୁ ଇଂଜିଲ ପ୍ରଦାନ କରିଥିଲୁ; ଏବଂ ଯେଉଁମାନେ ତାହାଙ୍କ ଆଜ୍ଞା-ବହ ହେଲେ ଆମ୍ଭେ ସେମାନଙ୍କ ହୃଦୟରେ ଅନୁକମ୍ପା ଓ କରୁଣା ଉଦ୍ରେକ କରାଇଥିଲୁ; ଏବଂ ସେମାନେ ସନ୍ନ୍ୟାସ (ଅର୍ଥାତ୍ ଚିର କୁମାର ରହିବାର ପନ୍ଥା) ଗ୍ରହଣ କରିଥିଲେ; ଏହା ସେମାନେ ନିଜେ ଆଦରି ଥିଲେ, ଆମ୍ଭେ ସେମାନଙ୍କ ପାଇଁ ଏହି ଆଦେଶ ବିହିତ କରି ନ ଥିଲୁ; ବରଂ ଏହା ପରିବର୍ତ୍ତେ ଅଲ୍ଲାହ୍‌ଙ୍କ ସନ୍ତୋଷ ଲାଭ କରିବା ପ୍ରଚେଷ୍ଟାକୁ ଆମ୍ଭେ ବିହିତ କରିଥିଲୁ, ଯାହା ସେମାନେ ଯଥୋଚିତ ଭାବରେ ପାଳନ କରିନଥିଲେ; ସୁତରାଂ ସେମାନଙ୍କ ମଧ୍ୟରୁ ଯେଉଁମାନେ ବିଶ୍ୱାସକାରୀ ଥିଲେ ସେମାନଙ୍କୁ ଆମ୍ଭେ ସମୁଚିତ ପୁରସ୍କାର ପ୍ରଦାନ କରିଥିଲୁ, ଏବଂ ସେମାନଙ୍କ ମଧ୍ୟରୁ ଅନେକେ ଭ୍ରଷ୍ଟାଚାରୀ ଥିଲେ ।

ثُمَّ قَفَّيْنَا عَلَىٰ آثَارِهِمْ بِرُسُلِنَا وَقَفَّيْنَا بِعِيسَى ابْنِ مَرْيَمَ وَآتَيْنَاهُ الْإِنْجِيلَ وَجَعَلْنَا فِي قُلُوبِ الَّذِينَ اتَّبَعُوهُ رَأْفَةً وَرَحْمَةً وَرَهْبَانِيَّةً ابْتَدَعُوهَا مَا كَتَبْنَاهَا عَلَيْهِمْ إِلَّا ابْتِغَاءَ رِضْوَانِ اللَّهِ فَمَا رَعَوْهَا حَقَّ رِعَايَتِهَا فَآتَيْنَا الَّذِينَ آمَنُوا مِنْهُمْ أَجْرَهُمْ وَكَثِيرٌ مِنْهُمْ فَاسِقُونَ ﴿٢٧﴾

୨୯. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ୍‌ଙ୍କୁ ଭୟକର ଓ ତାହାଙ୍କ ରସୁଲଙ୍କ ଉପରେ ବିଶ୍ୱାସ କର; ତାହା ହେଲେ ତୁମମାନଙ୍କୁ ଅଲ୍ଲାହ୍ ନିଜ କରୁଣାରୁ ଦୁଇ ଗୁଣ ପ୍ରଦାନ କରିବେ ଏବଂ ତୁମମାନଙ୍କ ସକାଶେ ଜ୍ୟୋତି ନିୟୋଜିତ କରିବେ, ଯାହା ସାହାଯ୍ୟରେ ତୁମେମାନେ ଗମନ କରିବ, ଏବଂ ତୁମମାନଙ୍କର ପାପ ମୋଚନ କରିବେ; ଏବଂ ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

يَا أَيُّهَا الَّذِينَ آمَنُوا اتَّقُوا اللَّهَ وَآمِنُوا بِرَسُولِهِ يُؤْتِكُمْ كِفْلَيْنِ مِنْ رَحْمَتِهِ وَيَجْعَلْ لَكُمْ نُورًا تَمْشُونَ بِهِ وَيَغْفِرْ لَكُمْ وَاللَّهُ غَفُورٌ رَحِيمٌ ﴿٢٨﴾

୩୦. ଏବଂ ଏହାକୁ ଆମ୍ଭେ ଏଥି ସକାଶେ କହୁଅଛୁ ଯଦ୍ୱାରା ଗ୍ରନ୍ଥଧାରୀମାନେ ଏହା ମନେ ନ କରନ୍ତୁ ଯେ ସେ (ମୁସଲମାନ)ମାନଙ୍କୁ ଅଲ୍ଲାହ୍‌ଙ୍କର କୃପାରୁ କିଛି ମିଳିଲା ନାହିଁ ବରଂ ଏହା ମନେ କରନ୍ତୁ ଯେ ଅଲ୍ଲାହ୍‌ଙ୍କ ହସ୍ତରେ କୃପା ରହିଅଛି; ସେ ଯାହାକୁ ଇଚ୍ଛା କରନ୍ତି ତାହାକୁ ପ୍ରଦାନ କରନ୍ତି; ଏବଂ ଅଲ୍ଲାହ୍ ହିଁ ପରମ କୃପାମୟ ।

لِئَلَّا يَعْلَمَ أَهْلُ الْكِتَابِ أَلَّا يَقْدِرُونَ عَلَىٰ شَيْءٍ مِنْ فَضْلِ اللَّهِ وَأَنَّ الْفَضْلَ بِيَدِ اللَّهِ يُؤْتِيهِ مَنْ يَشَاءُ وَاللَّهُ ذُو الْفَضْلِ الْعَظِيمِ ﴿٢٩﴾

سُوْرَةُ الْمُجَادِلَةِ مَدَنِيَّةٌ (٥٨)

## ଅଲ—ମୁଜାଦିଲା

ଅଧ୍ୟାୟ ୫୮

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୨୩ଟି ଆୟତ ଓ ୩ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

قَدْ سَمِعَ اللّٰهُ قَوْلَ الَّتِيْ تُجَادِلُكَ فِيْ زَوْجِهَا وَتَشْتَكِيْٓ اِلَى اللّٰهِ ۖ وَاللّٰهُ يَسْمَعُ تَحَاوُرَكُمَا ۭ اِنَّ اللّٰهَ سَمِيْعٌۢ بَصِيْرٌ ②

୨. ଯେଉଁ ନାରୀ ଆପଣା ପତି ସମ୍ବନ୍ଧରେ ତୁମ ନିକଟରେ ଯୁକ୍ତି ତର୍କ କରୁଥିଲା, ଓ ଅଲ୍ଲାହଙ୍କ ନିକଟରେ ଗୁହାରି କରୁଥିଲା ; ଅଲ୍ଲାହ ତାହାର ପ୍ରାର୍ଥନା ଶୁଣିଥିଲେ, ଏବଂ ଅଲ୍ଲାହ ତୁମ ଦୁହିଁଙ୍କର ଯୁକ୍ତିତର୍କ ଶୁଣୁଥିଲେ ; ଅଲ୍ଲାହ ହି ମହାନ୍ ଶ୍ରୋତା (ଓ) ମହାନ୍ ଦ୍ରଷ୍ଟା ।

اَلَّذِيْنَ يُظٰهِرُوْنَ مِنْكُمْ مِّنْ نِّسَاۗىِٕهِمْ مَّا هُنَّ اُمَّهٰتِهِمْ ۭ اِنْ اُمَّهٰتُهُمْ اِلَّا الّٰۗـِٔيْ وَلَدْنَهُمْ ۭ وَاِنَّهُمْ لَيَقُوْلُوْنَ مُنْكَرًا مِّنَ الْقَوْلِ وَزُوْرًا ۭ وَاِنَّ اللّٰهَ لَعَفُوٌّ غَفُوْرٌ ③

୩. (ତେଣୁ ମନେରଖ) ତୁମମାନଙ୍କ ମଧ୍ୟରୁ ଯେଉଁ ଲୋକମାନେ ଆପଣା ପତ୍ନୀମାନଙ୍କୁ ମାଆ କହି ଦିଅନ୍ତି (ଓ ସମ୍ପର୍କ ଛିନ୍ନ କରନ୍ତି) ସେମାନଙ୍କର ଏପରି କହିବା ଦ୍ୱାରା ସେମାନେ ସେମାନଙ୍କ[୧] ମାଆ ହୋଇ ଯାଆନ୍ତି ନାହିଁ ; ଯେଉଁମାନେ ସେମାନଙ୍କୁ ଜନ୍ମ ଦେଇଛନ୍ତି ସେହିମାନେ ହି ସେମାନଙ୍କର ମାଆ ; ଏବଂ ଯାହା କିଛି ସେମାନେ ଭୁଲବଶତଃ କହିଥାନ୍ତି ସେମାନଙ୍କ ସମ୍ବନ୍ଧରେ ଏହା କୁହା ଯାଇପାରେ ଯେ) ସେମାନେ ଏକ ଅପସନ୍ଦ ଓ ମିଥ୍ୟା ବିଷୟ କହୁଛନ୍ତି ; ଏବଂ ଅଲ୍ଲାହ ବାସ୍ତବରେ ଅତ୍ୟନ୍ତ ମାର୍ଜନା-କାରୀ (ଓ) ଅତିଶୟ କ୍ଷମାଶୀଳ ।

وَالَّذِيْنَ يُظٰهِرُوْنَ مِنْ نِّسَاۗىِٕهِمْ ثُمَّ يَعُوْدُوْنَ

୪. ଏବଂ ଯେଉଁ ଲୋକମାନେ ଆପଣା ପତ୍ନୀକୁ ମାଆ ବୋଲି କହିଦିଅନ୍ତି, ଓ ଏହାପରେ (ଅଲ୍ଲାହ ମନା କରିବା ସତ୍ତ୍ୱେ) ଯାହାକିଛି ସେମାନେ କହିଥିଲେ ତହିଁରୁ ସେହି ଆଡ଼କୁ ଫେରି-ଯାନ୍ତି,[୨] ତେବେ ସେ ଦୁହେଁ (ଅର୍ଥାତ୍ ପତି ଓ ପତ୍ନୀ)

---

୧. 'ସୁରା-ଅହଜାବ'ରେ ଉଲ୍ଲିଖିତ ଅଛି ଯେ ନବିଙ୍କର ପତ୍ନୀମାନେ ବିଶ୍ୱାସକାରୀମାନଙ୍କର ମାଆ । କିନ୍ତୁ ଏଠାରେ ଉଲ୍ଲେଖ କରାଯାଇଛି ଯେ ଯେ-କେହି ନିଜ ପତ୍ନୀକୁ ମା' କହିଦେଲେ ସେ ମା' ହୋଇଯିବ ନାହିଁ । ଏ ଦୁଇଟି ବିରୋଧାତ୍ମକ ତତ୍ତ୍ୱ ନୁହେଁ କାରଣ ଜଣେ ବ୍ୟକ୍ତିର ଉକ୍ତି ଅନୁସାରେ ଜଣେ ମହିଳା ସ୍ୱତଃ ମା' ହୋଇଯାଏ ନାହିଁ, କିନ୍ତୁ ଯଦି ଅଲ୍ଲାହ କାହାରିକୁ ମା' ଧାର୍ଯ୍ୟ କରନ୍ତି ତେବେ ଯେହେତୁ ସେ ଅଧିକାର ପ୍ରଦାନକାରୀ, ତେଣୁ ତାହାଙ୍କ ଆଦେଶ ଅନୁଯାୟୀ ଜଣେ ମହିଳା ମା' ବୋଲି ଅଭିହିତ ହୋଇପାରେ । ପୁନଶ୍ଚ ମନେ ରଖିବାକୁ ହେବ ଯେ ଏହା ଏକ ନିଷେଧାତ୍ମକ ଆଦେଶ । ଏହି ଆଦେଶ ଦ୍ୱାରା କାହାରି ଅଧିକାରକୁ ଲୋପ କରାଯାଇ ନାହିଁ କି କାହାରି ଉପରେ ଅଧିକ ଦାୟିତ୍ୱ ଦିଆଯାଇ ନାହିଁ ।

୨. ଅର୍ଥାତ୍ ପୁନର୍ବାର ସେହି ମନ୍ଦ କାର୍ଯ୍ୟ କରନ୍ତି

لِمَا قَالُوْا فَتَحْرِيْرُ رَقَبَةٍ مِّنْ قَبْلِ اَنْ يَّتَمَآسَّا ۚ ذٰلِكُمْ تُوْعَظُوْنَ بِهٖ ۚ وَاللّٰهُ بِمَا تَعْمَلُوْنَ خَبِيْرٌ ٤

ପରସ୍ପରକୁ ସ୍ପର୍ଶ କରିବା ପୂର୍ବରୁ ଜଣେ କ୍ରୀତଦାସକୁ ମୁକ୍ତି ଦେବା ଆବଶ୍ୟକ ; ତୁମମାନଙ୍କୁ ଏ ସଂକ୍ରାନ୍ତରେ ଉପଦେଶ ଦିଆଯାଉଛି, ଏବଂ ଅଲ୍ଲାହ ତୁମମାନଙ୍କ କାର୍ଯ୍ୟକଳାପ ସଂକ୍ରାନ୍ତରେ ଭଲ ଭାବରେ ଅବଗତ ଅଛନ୍ତି ।

فَمَنْ لَّمْ يَجِدْ فَصِيَامُ شَهْرَيْنِ مُتَتَابِعَيْنِ مِنْ قَبْلِ اَنْ يَّتَمَآسَّا ۚ فَمَنْ لَّمْ يَسْتَطِعْ فَاِطْعَامُ سِتِّيْنَ مِسْكِيْنًا ۚ ذٰلِكَ لِتُؤْمِنُوْا بِاللّٰهِ وَرَسُوْلِهٖ ۚ وَتِلْكَ حُدُوْدُ اللّٰهِ ۗ وَلِلْكٰفِرِيْنَ عَذَابٌ اَلِيْمٌ ٥

୫. ଏବଂ ଯେଉଁ ବ୍ୟକ୍ତି (କ୍ରୀତଦାସ) ପାଏ ନାହିଁ, ସେ ଦୁହେଁ ପରସ୍ପରକୁ ସ୍ପର୍ଶ କରିବା ପୂର୍ବରୁ କ୍ରମାଗତ ଭାବରେ ଦୁଇ ମାସ (ପର୍ଯ୍ୟନ୍ତ) ରୋଜା ରଖୁ ; ଏବଂ ଯାହାର ଏ ପ୍ରକାର ଶକ୍ତି ମଧ୍ୟ ନ ଥାଏ ; ସେ ଷାଠିଏ ଜଣ ଦରିଦ୍ରଙ୍କୁ ଭୋଜନ କରାଉ ; ଏ (ଆଦେଶ) ଏଥି ସକାଶେ (ଦିଆଯାଇ) ଅଛି ଯଦ୍ଦ୍ୱାରା ତୁମେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ କଥା ମାନିବ ; ଏବଂ ଏହା ଅଲ୍ଲାହଙ୍କ (ଦ୍ୱାରା ନିର୍ଦ୍ଧାରିତ) ସୀମା ; ଏବଂ ଅବିଶ୍ୱାସକାରୀମାନଙ୍କ ପାଇଁ ଯନ୍ତ୍ରଣାଦାୟକ ଶାସ୍ତି ନିୟତ ଅଛି ।

اِنَّ الَّذِيْنَ يُحَآدُّوْنَ اللّٰهَ وَرَسُوْلَهٗ كُبِتُوْا كَمَا كُبِتَ الَّذِيْنَ مِنْ قَبْلِهِمْ وَقَدْ اَنْزَلْنَآ اٰيٰتٍۢ بَيِّنٰتٍ ۚ وَلِلْكٰفِرِيْنَ عَذَابٌ مُّهِيْنٌ ٦

୬. ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଆଦେଶର ବିରୁଦ୍ଧାଚରଣ କରନ୍ତି, ସେମାନଙ୍କୁ ଲାଞ୍ଛିତ କରାଯିବ, ଯେପରି ସେମାନଙ୍କ ପୂର୍ବବର୍ତ୍ତୀ ଲୋକମାନଙ୍କୁ ଲାଞ୍ଛିତ କରାଯାଇଥିଲା ; ଏବଂ ଆମେ ନିଜର ସୁସ୍ପଷ୍ଟ ଆଦେଶାବଳୀ ଅବତୀର୍ଣ୍ଣ କରିଅଛୁ ; ଏବଂ ଯେଉଁମାନେ (ଏହି ସ୍ପଷ୍ଟ ଆଦେଶାବଳୀକୁ) ଅବଜ୍ଞା କରିବେ ସେମାନଙ୍କୁ ଅପମାନ ଜନକ ଶାସ୍ତି ମିଳିବ ।

يَوْمَ يَبْعَثُهُمُ اللّٰهُ جَمِيْعًا فَيُنَبِّئُهُمْ بِمَا عَمِلُوْا ۚ اَحْصٰىهُ اللّٰهُ وَنَسُوْهُ ۚ وَاللّٰهُ عَلٰى كُلِّ شَيْءٍ شَهِيْدٌ ٧ ع

୭. ଯେଉଁଦିନ ଅଲ୍ଲାହ ସେ ସମସ୍ତଙ୍କୁ ଏକତ୍ରିତ କରି ଉତ୍ଥିତ କରିବେ, ଏବଂ ସେମାନଙ୍କୁ ସେମାନଙ୍କ ସେହି କାର୍ଯ୍ୟକଳାପ ସଂକ୍ରାନ୍ତରେ ଜଣାଇବେ ଯାହା ଅଲ୍ଲାହ ହିସାବ କରି ରଖିଛନ୍ତି, ଅଥଚ ସେମାନେ ତାହାକୁ ଭୁଲି ଯାଇଛନ୍ତି ; ଏବଂ ଅଲ୍ଲାହ ପ୍ରତ୍ୟେକ ବିଷୟର ତତ୍ତ୍ୱାବଧାରକ ।

اَلَمْ تَرَ اَنَّ اللّٰهَ يَعْلَمُ مَا فِى السَّمٰوٰتِ وَمَا فِى الْاَرْضِ ۚ مَا يَكُوْنُ مِنْ نَّجْوٰى ثَلٰثَةٍ اِلَّا هُوَ رَابِعُهُمْ وَلَا خَمْسَةٍ اِلَّا هُوَ سَادِسُهُمْ وَلَآ اَدْنٰى مِنْ ذٰلِكَ وَلَآ اَكْثَرَ اِلَّا هُوَ مَعَهُمْ اَيْنَ مَا كَانُوْا ۚ ثُمَّ يُنَبِّئُهُمْ بِمَا عَمِلُوْا يَوْمَ الْقِيٰمَةِ ۗ اِنَّ اللّٰهَ بِكُلِّ شَيْءٍ عَلِيْمٌ ٨

୮. କ'ଣ ତୁମକୁ ଜଣାନାହିଁ ଯେ ଆକାଶ ଓ ପୃଥିବୀରେ ଯାହାକିଛି ରହିଅଛି ଅଲ୍ଲାହ ତାହାକୁ ଜାଣନ୍ତି ? ସଂସାରରେ (ଯେତେବେଳେ) ଯେ କୌଣସି ତିନି ଜଣ ପୃଥକ୍ ଭାବରେ ମନ୍ତ୍ରଣା କରୁଥାନ୍ତି, ସେତେବେଳେ ସେ ହିଁ ସେମାନଙ୍କ ସଙ୍ଗରେ ଚତୁର୍ଥ ହୋଇ ରହିଥାନ୍ତି; ଏବଂ ଯେ କୌଣସି ପାଞ୍ଚ ଜଣ ମନ୍ତ୍ରଣାକାରୀ ଥା'ନ୍ତି, ସେ ସେମାନଙ୍କ ସଙ୍ଗରେ ଷଷ୍ଠ ହୋଇ ରହିଥା'ନ୍ତି ; ଏବଂ ସେ ସେହି ସଂଖ୍ୟାରୁ କମ୍ ହୁଅନ୍ତି ନାହିଁ କି ଅଧିକ ହୁଅନ୍ତି ନାହିଁ ; ସେମାନେ ଯେଉଁଠାରେ (ମନ୍ତ୍ରଣା କରୁ) ଥିଲେ ମଧ୍ୟ ସେ (ସବୁ ଅବସ୍ଥାରେ) ସେମାନଙ୍କ ସଙ୍ଗରେ ରହିଥା'ନ୍ତି ; ତା'ପରେ ସେ ସେମାନଙ୍କ କାର୍ଯ୍ୟକଳାପ ସଂକ୍ରାନ୍ତରେ କୟାମତ ଦିନ ସେମାନଙ୍କୁ ଜଣାଇବେ ; ଅଲ୍ଲାହ ପ୍ରତ୍ୟେକ ବିଷୟକୁ ଜାଣନ୍ତି ।

أَلَمْ تَرَ إِلَى الَّذِينَ نُهُوا عَنِ النَّجْوَىٰ ثُمَّ يَعُودُونَ لِمَا نُهُوا عَنْهُ وَيَتَنَاجَوْنَ بِالْإِثْمِ وَالْعُدْوَانِ وَمَعْصِيَتِ الرَّسُولِ وَإِذَا جَاءُوكَ حَيَّوْكَ بِمَا لَمْ يُحَيِّكَ بِهِ اللَّهُ وَيَقُولُونَ فِي أَنفُسِهِمْ لَوْلَا يُعَذِّبُنَا اللَّهُ بِمَا نَقُولُ ۚ حَسْبُهُمْ جَهَنَّمُ يَصْلَوْنَهَا ۖ فَبِئْسَ الْمَصِيرُ ﴿٩﴾

୯. କ'ଣ ତୁମେ ସେମାନଙ୍କୁ ଲକ୍ଷ୍ୟ କରିନାହଁ ଯେଉଁମାନଙ୍କୁ ଗୁପ୍ତ ମନ୍ତ୍ରଣା କରିବାକୁ ବାରଣ କରାଯାଇଛି, ତଥାପି ସେମାନେ ଏହି ନିଷିଦ୍ଧ ବିଷୟ ପ୍ରତି (ବାରମ୍ବାର) ପ୍ରତ୍ୟାବର୍ତ୍ତନ କରିଥାଆନ୍ତି, ଏବଂ ପାପ ଓ ସୀମାଲଂଘନ ତଥା ରସୁଲଙ୍କୁ ଅବଜ୍ଞା କରିବା ସମ୍ବନ୍ଧରେ ମନ୍ତ୍ରଣା କରୁଥା'ନ୍ତି ? ଏବଂ ଯେତେବେଳେ ସେମାନେ ତୁମ ନିକଟକୁ ଆସନ୍ତି, ସେତେବେଳେ ତୁମଙ୍କୁ ସେମାନେ ଏପରି ଭାଷାରେ ଆଶୀର୍ବାଦ କରନ୍ତି ଯେଉଁ ଭାଷାରେ ଅଲ୍ଲାହ[୧] ଆଶୀର୍ବାଦ କରି ନାହାନ୍ତି ; ଏବଂ ନିଜ ଅନ୍ତରରେ କହନ୍ତି, ଯେ ଅଲ୍ଲାହ ଆମମାନଙ୍କର (କପଟ) କଥନ ଯୋଗୁଁ କାହିଁକି ଆମମାନଙ୍କୁ ଶାସ୍ତି ଦେଉନାହାନ୍ତି ? ନରକ ସେମାନଙ୍କ ପାଇଁ ଯଥେଷ୍ଟ ; ସେମାନେ ତହିଁରେ ପ୍ରବେଶ କରିବେ ଏବଂ ତାହା ଅତିଶୟ ମନ୍ଦ ବାସସ୍ଥାନ ଅଟେ ।

يَا أَيُّهَا الَّذِينَ آمَنُوا إِذَا تَنَاجَيْتُمْ فَلَا تَتَنَاجَوْا بِالْإِثْمِ وَالْعُدْوَانِ وَمَعْصِيَتِ الرَّسُولِ وَتَنَاجَوْا بِالْبِرِّ وَالتَّقْوَىٰ ۖ وَاتَّقُوا اللَّهَ الَّذِي إِلَيْهِ تُحْشَرُونَ ﴿١٠﴾

୧୦. ହେ ବିଶ୍ୱାସକାରୀମାନେ ! ଯେବେ ବି (ତୁମେମାନେ) ଗୁପ୍ତ ପରାମର୍ଶ[୨] କର, ତେବେ ପାପ, ସୀମାଲଂଘନ ଓ ରସୁଲଙ୍କ ପ୍ରତି ଅବଜ୍ଞା ବିଷୟରେ ଗୁପ୍ତ ପରାମର୍ଶ କରନାହିଁ ; ବରଂ ପୁଣ୍ୟକାର୍ଯ୍ୟ ଓ ଧର୍ମଭୀରୁତା ସଂକ୍ରାନ୍ତରେ ପରସ୍ପର ମନ୍ତ୍ରଣା କର, ଏବଂ ଅଲ୍ଲାହଙ୍କୁ ହିଁ ଭୟକର ଯାହାଙ୍କ ନିକଟକୁ ତୁମ ସମସ୍ତଙ୍କୁ (ପୁନର୍ଜୀବିତ କରି) ଫେରାଇ ନିଆଯିବ ।

إِنَّمَا النَّجْوَىٰ مِنَ الشَّيْطَانِ لِيَحْزُنَ الَّذِينَ آمَنُوا وَلَيْسَ بِضَارِّهِمْ شَيْئًا إِلَّا بِإِذْنِ اللَّهِ ۚ وَعَلَى اللَّهِ فَلْيَتَوَكَّلِ الْمُؤْمِنُونَ ﴿١١﴾

୧୧. ଗୁପ୍ତ ପରାମର୍ଶ କରିବା ସଇତାନର ପଦ୍ଧତି ;[୩] ଏବଂ ବିଶ୍ୱାସକାରୀମାନଙ୍କୁ ଚିନ୍ତାଗ୍ରସ୍ତ କରାଇବା ଏହାର ଲକ୍ଷ୍ୟ ; ଏବଂ ସେ ଅଲ୍ଲାହଙ୍କ ଆଦେଶ ବିନା ସେମାନଙ୍କର କୌଣସି କ୍ଷତି କରି ପାରିବ ନାହିଁ ; ଏବଂ ବିଶ୍ୱାସକାରୀମାନଙ୍କୁ କେବଳ ଅଲ୍ଲାହଙ୍କ ଉପରେ ଭରସା କରିବା ଉଚିତ ।

يَا أَيُّهَا الَّذِينَ آمَنُوا إِذَا قِيلَ لَكُمْ تَفَسَّحُوا فِي الْمَجَالِسِ فَافْسَحُوا يَفْسَحِ اللَّهُ لَكُمْ ۖ وَإِذَا قِيلَ

୧୨. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମମାନଙ୍କୁ ସଭାରେ ସମ୍ପ୍ରସାରିତ ହୋଇ ବସିବାକୁ କୁହାଯାଏ, ସେତେବେଳେ ସମ୍ପ୍ରସାରିତ ହୋଇ ବସ ; ଅଲ୍ଲାହ ମଧ୍ୟ ତୁମମାନଙ୍କ ସକାଶେ ସମ୍ପ୍ରସାରଣର ବ୍ୟବସ୍ଥା କରିବେ ; ଏବଂ ଯେତେବେଳେ ତୁମମାନଙ୍କୁ ଉଠିଯିବାକୁ କୁହାଯାଏ,

୧. ଅର୍ଥାତ୍ ଆଶୀର୍ବାଦ ଦେଲାବେଳେ ମଧ୍ୟ ସେମାନେ ଅତିଶୟୋକ୍ତି କରନ୍ତି ଯଦ୍ଦ୍ୱାରା କି ସେମାନଙ୍କ ସମ୍ବନ୍ଧରେ ଉତ୍ତମ ମନୋଭାବ ସୃଷ୍ଟି ହେବ । ବସ୍ତୁତଃ ସେମାନଙ୍କ ଆଶୀର୍ବାଦରେ କୌଣସି ଆନ୍ତରିକତା ନାହିଁ । ବରଂ ସେମାନେ କହନ୍ତି ଯେ ଯଦି ସେ ସତ୍ୟବାଦୀ ହୋନ୍ତେ ଆମେମାନେ ଏତେବଡ଼ ମିଛ କହିବା ସତ୍ତ୍ୱେ କାହିଁକି ଆମମାନଙ୍କୁ ଶାସ୍ତି ଦିଆଯାଉ ନାହିଁ ।

୨. ଏଠାରେ 'ଗୁପ୍ତ ପରାମର୍ଶ' ଅର୍ଥ ସେହି ପରାମର୍ଶ ଯାହା କଲ୍ୟାଣପ୍ରଦ ବିଷୟ ସମ୍ପର୍କରେ କରାଯାଏ । ପରବର୍ତ୍ତୀ ଆୟତରେ ଯେଉଁ ପରାମର୍ଶର ଉଲ୍ଲେଖ ଅଛି ତାହା ମନ୍ଦ କାର୍ଯ୍ୟ ସମ୍ପର୍କିତ ପରାମର୍ଶ । ସେପରି ପରାମର୍ଶକୁ ନିଷେଧ କରାଯାଇଛି ଓ ଅନୁଚିତ ବୋଲି କୁହାଯାଇଛି । ବସ୍ତୁତଃ ଆୟତ ଦୁଇଟିରେ କୌଣସି ବିରୋଧାତ୍ମକ ତତ୍ତ୍ୱର ବର୍ଣ୍ଣନା ନାହିଁ ।

୩. ଅର୍ଥାତ୍ ଏପରି ପରାମର୍ଶ ଯାହା ମନ୍ଦକାର୍ଯ୍ୟ ବିଷୟରେ ଦିଆଯାଇଥାଏ ।

انْشُزُوْا فَانْشُزُوْا يَرْفَعِ اللّٰهُ الَّذِيْنَ اٰمَنُوْا مِنْكُمْ وَالَّذِيْنَ اُوْتُوا الْعِلْمَ دَرَجٰتٍ ۗ وَاللّٰهُ بِمَا تَعْمَلُوْنَ خَبِيْرٌ ⑪

ସେତେବେଳେ ତୁମେମାନେ ଉଠିଯାଅ ; ଯେଉଁମାନେ ପ୍ରକୃତରେ ବିଶ୍ୱାସକାରୀ ଓ ପ୍ରକୃତ ଜ୍ଞାନୀ, ଅଲ୍ଲାହ ସେମାନଙ୍କ ପଦମର୍ଯ୍ୟାଦାକୁ ଅଭିବୃଦ୍ଧି କରିବେ, ଏବଂ ଅଲ୍ଲାହ ତୁମମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ଭଲ ଭାବରେ ଅବଗତ ଅଛନ୍ତି ।

يٰٓاَيُّهَا الَّذِيْنَ اٰمَنُوْٓا اِذَا نَاجَيْتُمُ الرَّسُوْلَ فَقَدِّمُوْا بَيْنَ يَدَيْ نَجْوٰىكُمْ صَدَقَةً ۭ ذٰلِكَ خَيْرٌ لَّكُمْ وَاَطْهَرُ ۭ فَاِنْ لَّمْ تَجِدُوْا فَاِنَّ اللّٰهَ غَفُوْرٌ رَّحِيْمٌ ⑫

୧୩. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମେମାନେ ରସୁଲଙ୍କ ସହିତ ପୃଥକ୍ ଭାବରେ ମନ୍ତ୍ରଣା କରିବା ଇଚ୍ଛା କର, ସେତେବେଳେ ମନ୍ତ୍ରଣା କରିବା ପୂର୍ବରୁ କିଛି ଦାନ କର ; ଏହା ତୁମମାନଙ୍କ ପକ୍ଷରେ ଉତ୍ତମ ହେବ ଓ ଅନ୍ତରକୁ ନିର୍ମଳ କରିବାର ଏକ ସାଧନ ହେବ ; (କିନ୍ତୁ ଏହି ଆଦେଶ କେବଳ ସେହିମାନଙ୍କ ସକାଶେ ପ୍ରଯୋଜ୍ୟ ଯେଉଁ–ମାନଙ୍କର ସାମର୍ଥ୍ୟ ଅଛି) ; ଯଦି ତୁମେମାନେ (ଦାନ କରିବା ପାଇଁ) କିଛି ନ ପାଅ ତେବେ (ଭୟ କର ନାହିଁ) ଅଲ୍ଲାହ ହିଁ ପରମ କ୍ଷମାଶୀଳ (ଓ) ସଦା କରୁଣାମୟ ।

ءَاَشْفَقْتُمْ اَنْ تُقَدِّمُوْا بَيْنَ يَدَيْ نَجْوٰىكُمْ صَدَقٰتٍ ۭ فَاِذْ لَمْ تَفْعَلُوْا وَتَابَ اللّٰهُ عَلَيْكُمْ فَاَقِيْمُوا الصَّلٰوةَ وَاٰتُوا الزَّكٰوةَ وَاَطِيْعُوا اللّٰهَ وَرَسُوْلَهٗ ۭ وَاللّٰهُ خَبِيْرٌۢ بِمَا تَعْمَلُوْنَ ⑬

୧୪. କ'ଣ ତୁମେମାନେ ପରାମର୍ଶ କରିବା ପୂର୍ବରୁ ଦାନ କରିବା ପାଇଁ ଭୟଭୀତ ହେଉଅଛ ? ଯେହେତୁ ତୁମେମାନେ ଏପରି କରି ନାହଁ ଓ ଅଲ୍ଲାହ ତୁମମାନଙ୍କ ପ୍ରତି କୃପା କରିଛନ୍ତି ତେଣୁ ତୁମେମାନେ ନମାଜ ପାଠ କର ଓ ଜକାତ ଦିଅ ଏବଂ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ଆଜ୍ଞା ପାଳନ କର ଏବଂ ଯାହା କିଛି ତୁମେମାନେ କରୁଅଛ ଅଲ୍ଲାହ ତାହାକୁ ଭଲରୂପେ ଜାଣନ୍ତି ।

اَلَمْ تَرَ اِلَى الَّذِيْنَ تَوَلَّوْا قَوْمًا غَضِبَ اللّٰهُ عَلَيْهِمْ ۭ مَا هُمْ مِّنْكُمْ وَلَا مِنْهُمْ ۙ وَيَحْلِفُوْنَ عَلَى الْكَذِبِ وَهُمْ يَعْلَمُوْنَ ⑭

୧୫. କ'ଣ ତୁମେ ସେହି ଲୋକମାନଙ୍କ ପ୍ରତି ଲକ୍ଷ୍ୟ କରିଅଛ ଯେଉଁମାନେ ଏପରି ସମ୍ପ୍ରଦାୟ ସହିତ ବନ୍ଧୁତା ସ୍ଥାପନ କରିଛନ୍ତି ଯେଉଁମାନଙ୍କ ଉପରେ ଅଲ୍ଲାହଙ୍କ ପ୍ରକୋପ ଅବତୀର୍ଣ୍ଣ ହୋଇଥିଲା ; ସେପରି ଲୋକେ ତୁମମାନଙ୍କ ମଧ୍ୟରୁ ନୁହନ୍ତି କି ସେମାନଙ୍କ ମଧ୍ୟରୁ ନୁହନ୍ତି ; ସେମାନେ ମିଥ୍ୟା ବିଷୟ ସଂକ୍ରାନ୍ତରେ ଜାଣିଶୁଣି ଶପଥ କରନ୍ତି ।

اَعَدَّ اللّٰهُ لَهُمْ عَذَابًا شَدِيْدًا ۭ اِنَّهُمْ سَاۗءَ مَا كَانُوْا يَعْمَلُوْنَ ⑮

୧୬. ଅଲ୍ଲାହ ସେମାନଙ୍କ ପାଇଁ କଠିନ ଶାସ୍ତି ପ୍ରସ୍ତୁତ କରି ରଖିଛନ୍ତି,ସେମାନଙ୍କର କର୍ମ ଅତିଶୟ ମନ୍ଦ ଅଟେ ।

---

୧. ଏଠାରେ 'ସଦକା' (ଅର୍ଥାତ୍ ଦାନ) ଦେବାକୁ ମୁସଲମାନମାନେ ଭୟ କରୁ ନ ଥିଲେ ବରଂ 'ସଦକା'ର ଅର୍ଥ ଓ ପରିସର ବ୍ୟାପକ ହୋଇଥିବାରୁ ସେମାନେ ଅଲ୍ଲାହଙ୍କ ଦ୍ୱାରା ନିର୍ଦ୍ଧାରିତ ପରିମାଣ ଦାନ କରିଛନ୍ତି କି ନାହିଁ, ସେଥିପାଇଁ ଭୟ କରୁଥିଲେ । ତେଣୁ ଏଠାରେ ସେହି ସନ୍ଦେହର ଦୂରୀକରଣ ସକାଶେ ଉତ୍ତର ଦିଆଯାଇଛି ଯେ ଯେତେବେଳେ କି ତୁମେମାନେ ଦାନ କରିବାକୁ ପ୍ରସ୍ତୁତ,ସେତେବେଳେ ତୁମେମାନେ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ଦାନ କରିଛ କି ନାହିଁ ସେ ବିଷୟରେ ତୁମମାନଙ୍କର ଆଶଙ୍କା ହେଉଛି । ପ୍ରକୃତରେ ଏହାର ଅର୍ଥ ହେଉଛି ଯେ ତୁମେମାନେ କେବଳ ସେହିଦାନ ଦେଇ ନାହଁ ଯାହା ଦେବାକୁ ତୁମମାନଙ୍କର ସାମର୍ଥ୍ୟ ନାହିଁ । ନିଜ ସାମର୍ଥ୍ୟ ବାହାରେ ଦାନ କରିବା ସମ୍ବନ୍ଧରେ ପୂର୍ବରୁ ଅବ୍ୟାହତି ବା କ୍ଷମା ଦିଆଯାଇଛି, କାରଣ ପୂର୍ବବର୍ତ୍ତୀ ଆୟତରେ ଉଲ୍ଲେଖ କରାଯାଇଛି ଯେ ଯଦି ତୁମେମାନେ କିଛି ପାଇବ ନାହିଁ ତେବେ କ୍ଷମା ପାଇବା ପାଇଁ ଯୋଗ୍ୟ । ଏଠାରେ 'ପାଇବ ନାହିଁ' ଅର୍ଥ ନିଜ ଇଚ୍ଛା ଅନୁସାରେ ପାଇବ ନାହିଁ । ତେଣୁ ଏଠାରେ କୌଣସି ବିରୋଧାତ୍ମକ ତତ୍ତ୍ୱର ଉଲ୍ଲେଖ ନାହିଁ ।

୧୭. ସେମାନେ ନିଜ ଶପଥକୁ ଢାଲ (ସଦୃଶ ବ୍ୟବହାର) କରନ୍ତି,[1] ଓ (ସେହି ଶପଥ ମାଧ୍ୟମରେ ଲୋକମାନଙ୍କୁ) ଅଲ୍ଲାହଙ୍କ ପଥରୁ ପ୍ରତିରୋଧ କରନ୍ତି ; ସୁତରାଂ ସେମାନଙ୍କୁ ଅପମାନ-ଜନକ ଶାସ୍ତି ମିଳିବ ।

اِتَّخَذُوْٓا اَيْمَانَهُمْ جُنَّةً فَصَدُّوْا عَنْ سَبِيْلِ اللّٰهِ فَلَهُمْ عَذَابٌ مُّهِيْنٌ ﴿١٦﴾

୧୮. ସେମାନଙ୍କ ଧନ ସମ୍ପତ୍ତି ଓ ସେମାନଙ୍କ ସନ୍ତାନ-ସନ୍ତତି ଅଲ୍ଲାହଙ୍କ ବିରୁଦ୍ଧରେ ସେମାନଙ୍କୁ କୌଣସି ଲାଭ ଦେବ ନାହିଁ ; ସେହିମାନେ ହିଁ ନରକବାସୀ ଅଟନ୍ତି ଓ ସେମାନେ ସେଠାରେ ରହିବେ ।

لَنْ تُغْنِيَ عَنْهُمْ اَمْوَالُهُمْ وَلَآ اَوْلَادُهُمْ مِّنَ اللّٰهِ شَيْـًٔا ؕ اُولٰٓئِكَ اَصْحٰبُ النَّارِ ؕ هُمْ فِيْهَا خٰلِدُوْنَ ﴿١٧﴾

୧୯. ଯେଉଁ ଦିନ ଅଲ୍ଲାହ ସେମାନଙ୍କୁ ଏକତ୍ରିତ କରି ଉତ୍ଥିତ କରିବେ, (ସେ ଦିନ) ସେମାନେ ତାହାଙ୍କ ସମ୍ମୁଖରେ ମଧ୍ୟ ସେହିପରି ଶପଥ କରିବେ ଯେଉଁପରି ଶପଥ ତୁମ ସମ୍ମୁଖରେ କରୁଛନ୍ତି ; ଏବଂ ଭାବିବେ ଯେ ସେମାନେ ଏକ ଦୃଢ଼ (ଓ ସମୁଚିତ) ନୀତି ଉପରେ ପ୍ରତିଷ୍ଠିତ ଅଛନ୍ତି ; ଶୁଣ ! ଏମାନେ (ଶପଥ କରିବା ସତ୍ତ୍ୱେ) ମିଥ୍ୟାବାଦୀ ଅଟନ୍ତି ।

يَوْمَ يَبْعَثُهُمُ اللّٰهُ جَمِيْعًا فَيَحْلِفُوْنَ لَهٗ كَمَا يَحْلِفُوْنَ لَكُمْ وَيَحْسَبُوْنَ اَنَّهُمْ عَلٰى شَيْءٍ ؕ اَلَآ اِنَّهُمْ هُمُ الْكٰذِبُوْنَ ﴿١٨﴾

୨୦. ସଇତାନ ସେମାନଙ୍କ ଉପରେ ବିଜୟୀ ହୋଇଅଛି ; ଏବଂ ସେ ସେମାନଙ୍କୁ ଅଲ୍ଲାହଙ୍କ ସ୍ମରଣରୁ ଭୁଲାଇ ଦେଇଅଛି ; ଏ ଲୋକମାନେ ସଇତାନର ଦଳଭୁକ୍ତ ଅଟନ୍ତି ; ଏବଂ ମନେରଖ ଯେ ସଇତାନର ଦଳ ଅବଶେଷରେ କ୍ଷତିଗ୍ରସ୍ତ ହେବେ ।

اِسْتَحْوَذَ عَلَيْهِمُ الشَّيْطٰنُ فَاَنْسٰىهُمْ ذِكْرَ اللّٰهِ ؕ اُولٰٓئِكَ حِزْبُ الشَّيْطٰنِ ؕ اَلَآ اِنَّ حِزْبَ الشَّيْطٰنِ هُمُ الْخٰسِرُوْنَ ﴿١٩﴾

୨୧. ବାସ୍ତବରେ ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ବିରୁଦ୍ଧାଚରଣ କରନ୍ତି ସେମାନେ ଅତି ଲାଞ୍ଛିତ ବ୍ୟକ୍ତିମାନଙ୍କ ମଧ୍ୟରେ ଗଣ୍ୟ ହେବେ ।

اِنَّ الَّذِيْنَ يُحَآدُّوْنَ اللّٰهَ وَرَسُوْلَهٗٓ اُولٰٓئِكَ فِي الْاَذَلِّيْنَ ﴿٢٠﴾

୨୨. ଅଲ୍ଲାହ ନିଷ୍ପତ୍ତି କରିସାରିଛନ୍ତି, "ଆମ୍ଭେ ଓ ଆମ୍ଭର ରସୁଲ ବିଜୟୀ ହେବୁ," ଏବଂ ଅଲ୍ଲାହ ବାସ୍ତବରେ ବଳୀୟାନ୍ (ଓ) ପରାକ୍ରମୀ ।

كَتَبَ اللّٰهُ لَاَغْلِبَنَّ اَنَا وَرُسُلِيْ ؕ اِنَّ اللّٰهَ قَوِيٌّ عَزِيْزٌ ﴿٢١﴾

୨୩. ତୁମ୍ଭେ ଏପରି କୌଣସି ସମ୍ପ୍ରଦାୟକୁ ପାଇବ ନାହିଁ ଯେ କି ଅଲ୍ଲାହ ଓ ଅନ୍ତିମ ଦିବସ ଉପରେ ବିଶ୍ବାସ କରୁଥିବ ଏବଂ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କର ଅତିଶୟ ବିରୁଦ୍ଧାଚରଣ କରୁଥିବା ଲୋକମାନଙ୍କୁ ମଧ୍ୟ ପ୍ରେମ କରୁଥିବ ; ଏପରି ଲୋକମାନେ ସେମାନଙ୍କର ପିତା ବା ପୁତ୍ର ବା ଭାଇ ବା ସେମାନଙ୍କ ପରିବାର ମଧ୍ୟରୁ ହୋଇଥାଆନ୍ତୁ ନା କାହିଁକି, ଏ (ବିଶ୍ବାସକାରୀ) ମାନଙ୍କ

لَا تَجِدُ قَوْمًا يُّؤْمِنُوْنَ بِاللّٰهِ وَالْيَوْمِ الْاٰخِرِ يُوَآدُّوْنَ مَنْ حَآدَّ اللّٰهَ وَرَسُوْلَهٗ وَلَوْ كَانُوْٓا اٰبَآءَهُمْ اَوْ اَبْنَآءَهُمْ اَوْ اِخْوَانَهُمْ اَوْ عَشِيْرَتَهُمْ ؕ اُولٰٓئِكَ

---

୧. ଅର୍ଥାତ୍ ଶପଥ କରନ୍ତି ଓ ବୁଝି ପାରନ୍ତି ଯେ ବର୍ତ୍ତମାନ ସେମାନଙ୍କ କଥାରେ ବିଶ୍ବାସ କରିବାକୁ ହେବ ଅଥଚ ଅଲ୍ଲାହ ଶପଥ ଓ ସାକ୍ଷ୍ୟକୁ ପୃଥକ୍ ପୃଥକ୍ ବିଷୟ ପାଇଁ ଧାର୍ଯ୍ୟ କରିଛନ୍ତି ।

كَتَبَ فِيْ قُلُوْبِهِمُ الْاِيْمَانَ وَاَيَّدَهُمْ بِرُوْحٍ مِّنْهُ ۭ وَيُدْخِلُهُمْ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَا ۭ رَضِيَ اللّٰهُ عَنْهُمْ وَرَضُوْا عَنْهُ ۭ اُولٰۗىِٕكَ حِزْبُ اللّٰهِ ۭ اَلَآ اِنَّ حِزْبَ اللّٰهِ هُمُ الْمُفْلِحُوْنَ ۝٢٣

ହୃଦୟରେ ହି ଅଲ୍ଲାହ (ସତ୍) ବିଶ୍ୱାସକୁ ଅଙ୍କନ କରିଦେଇଛନ୍ତି ଏବଂ ନିଜ ତରଫରୁ ବାଣୀ ପ୍ରଦାନ କରି ସେମାନଙ୍କୁ ସାହାଯ୍ୟ କରିଛନ୍ତି ; ଏବଂ ସେ ସେମାନଙ୍କୁ ଏପରି ବୈକୁଣ୍ଠମାନଙ୍କରେ ପ୍ରବେଶ କରାଇବେ ଯାହାର ନିମ୍ନଦେଶରେ ଝରଣାମାନ ପ୍ରବାହିତ ହେଉଥିବ ; ସେମାନେ ସେଠାରେ ସର୍ବଦା ରହିବେ ; ଅଲ୍ଲାହ ସେମାନଙ୍କ ଉପରେ ସନ୍ତୁଷ୍ଟ ଓ ସେମାନେ ଅଲ୍ଲାହଙ୍କ ଉପରେ ସନ୍ତୁଷ୍ଟ ହୋଇଛନ୍ତି ; ସେମାନେ ଅଲ୍ଲାହଙ୍କ ଦଳଭୁକ୍ତ ; (ଏବଂ) ମନେରଖ ! ଅଲ୍ଲାହଙ୍କ ଦଳ ହି କୃତକାର୍ଯ୍ୟ ହୋଇଥାଏ ।

آياتها ٢٤ (٥٩) سُوْرَةُ الْحَشْرِ مَدَنِيَّةٌ ركوعاتها ٣

ଅଧ୍ୟାୟ ୫୯ ଭାଗ ୨୮

## ଅଲ—ହଶର

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୨୬ଟି ଆୟତ ଓ ୩ଟି ରୁକୂ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ۝١

୧. ଅଶେଷ ଦୟାବାନ୍ (ଓ) ସଦାକରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

سَبَّحَ لِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۚ وَهُوَ الْعَزِيْزُ الْحَكِيْمُ ۝٢

୨. ଆକାଶ ଓ ପୃଥିବୀରେ ଯାହା କିଛି ଅଛି ସେସବୁ ଅଲ୍ଲାହଙ୍କ ଗୁଣଗାନ କରୁଛନ୍ତି ; ଏବଂ ସେ (ଅଲ୍ଲାହ) ହି ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

هُوَ الَّذِيْٓ اَخْرَجَ الَّذِيْنَ كَفَرُوْا مِنْ اَهْلِ الْكِتٰبِ مِنْ دِيَارِهِمْ لِاَوَّلِ الْحَشْرِ ۭ مَا ظَنَنْتُمْ اَنْ يَّخْرُجُوْا وَظَنُّوْٓا اَنَّهُمْ مَّانِعَتُهُمْ حُصُوْنُهُمْ مِّنَ اللّٰهِ فَاَتٰىهُمُ اللّٰهُ مِنْ حَيْثُ لَمْ يَحْتَسِبُوْا ۤ وَقَذَفَ فِيْ قُلُوْبِهِمُ الرُّعْبَ يُخْرِبُوْنَ بُيُوْتَهُمْ بِاَيْدِيْهِمْ وَاَيْدِي الْمُؤْمِنِيْنَ ۤ فَاعْتَبِرُوْا يٰٓاُولِي الْاَبْصَارِ ۝٣

୩. ସେ (ଅଲ୍ଲାହ) ହି ଗ୍ରନ୍ଥଧାରୀ ଅବିଶ୍ୱାସକାରୀମାନଙ୍କୁ ପ୍ରଥମ[୧] ଯୁଦ୍ଧ ସମୟରେ ନିଜ ଗୃହରୁ ବିତାଡ଼ିତ କରିଥିଲେ ; ଏବଂ ତୁମେମାନେ ଭାବି ନଥିଲ ଯେ ସେମାନେ ବିତାଡ଼ିତ ହେବେ, ଏବଂ ସେମାନେ ଭାବୁଥିଲେ ଯେ ସେମାନଙ୍କ ଦୁର୍ଗଗୁଡ଼ିକ ସେମାନଙ୍କୁ ଅଲ୍ଲାହଙ୍କଠାରୁ ରକ୍ଷା କରିବେ ; ଏବଂ ଅଲ୍ଲାହ ସେମାନଙ୍କ ନିକଟକୁ ସେ ଦିଗରୁ[୨] ଆସିଲେ ଯେଉଁଠାରୁ ଆସିବା ବିଷୟରେ ସେମାନେ ଅନୁମାନ କରି ନଥିଲେ ; ଏବଂ ସେ ସେମାନଙ୍କ ହୃଦୟରେ ଭୟ ସଞ୍ଚାର କରିଥିଲେ ; ସେମାନେ ସ୍ୱଗୃହକୁ (କିଛି) ଆପଣା ହାତରେ ଓ (କିଛି) ବିଶ୍ୱାସକାରୀମାନଙ୍କ ହାତରେ ନଷ୍ଟ କରିଥିଲେ ; ସୁତରାଂ ହେ ଚକ୍ଷୁଷ୍ମାନ୍ ବ୍ୟକ୍ତିମାନେ ! ଏଥିରୁ ଶିକ୍ଷା ଲାଭକର ।

୧. ଅର୍ଥାତ୍ ସେହି ଯୁଦ୍ଧ, ଯାହା ଇହୁଦୀବଂଶୀୟ 'ବନୁନଜିର' ଓ ମୁସଲମାନମାନଙ୍କ ମଧ୍ୟରେ ହୋଇଥିଲା (ଫତ୍‌ହୁଲ ବୟାନ ଗ୍ରନ୍ଥଖଣ୍ଡ ୯, ପୃଷ୍ଠା ୨୬୩ ଦ୍ରଷ୍ଟବ୍ୟ) ।

୨. ପବିତ୍ର କୋରାନରୁ ପ୍ରମାଣ ମିଳୁଛି ଯେ କେତେକ ସ୍ଥାନରେ ଅଲ୍ଲାହ ଓ ଦେବଦୂତମାନଙ୍କର ଆଗମନକୁ ବିପଦ୍ ବା ଶାସ୍ତିର ଆଗମନ ଅର୍ଥ କରାଯାଏ । ଏଠାରେ ମଧ୍ୟ ଆରବୀ ଭାଷାରେ ରୀତି ଅନୁସାରେ ସେହି ଅର୍ଥ କରାଯାଇଛି ।

୪. ଏବଂ ଯଦି ଅଲ୍ଲାହ ସେମାନଙ୍କ ପାଇଁ ନିର୍ବାସନ (ଶାସ୍ତି) ନିର୍ଦ୍ଦିଷ୍ଟ କରି ନ ଥା'ନ୍ତେ , ତେବେ ସେମାନଙ୍କୁ ଏହି ସଂସାରରେ ମଧ୍ୟ ଶାସ୍ତି ଦେଇଥା'ନ୍ତେ ଓ ପରକାଳରେ ସେମାନଙ୍କ ପାଇଁ ନରକର ଶାସ୍ତି ନିୟତ ଅଛି ।

وَلَوْلَآ اَنْ كَتَبَ اللّٰهُ عَلَيْهِمُ الْجَلَآءَ لَعَذَّبَهُمْ فِي الدُّنْيَا ۖ وَلَهُمْ فِي الْاٰخِرَةِ عَذَابُ النَّارِ ③

୫. ଏସବୁ ଏଥି ଯୋଗୁଁ ହେଲା ଯେ ସେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ବିରୁଦ୍ଧାଚରଣ କରିଥିଲେ ଓ ଯିଏ ଅଲ୍ଲାହଙ୍କ ବିରୁଦ୍ଧାଚରଣ କରେ (ତାହାର ମନେ ରଖିବା ଉଚିତ ଯେ) ଅଲ୍ଲାହଙ୍କ ଶାସ୍ତି ବାସ୍ତବରେ କଠୋର ଅଟେ ।

ذٰلِكَ بِاَنَّهُمْ شَآقُّوا اللّٰهَ وَرَسُوْلَهٗ ۚ وَمَنْ يُّشَآقِّ اللّٰهَ فَاِنَّ اللّٰهَ شَدِيْدُ الْعِقَابِ ④

୬. ତୁମେମାନେ ଯେଉଁସବୁ ଖଜୁରି[୧] ଗଛର ମୂଳକୁ କାଟି ଅଛ ବା ଯେଉଁ ସବୁ (ଗଛ)କୁ ମୂଳ ଉପରେ ଦଣ୍ଡାୟମାନ ଛାଡ଼ି ଦେଇଅଛ, ତାହା ତୁମେ ଅଲ୍ଲାହଙ୍କ ଆଦେଶ ଅନୁସାରେ ହିଁ କରିଅଛ ଏବଂ ତାହା ଏଥିଯୋଗୁଁ (କରାଯାଇ) ଥିଲା ଯେ ଅବିଶ୍ୱାସକାରୀମାନଙ୍କୁ ଅପମାନିତ କରାଯିବ ।

مَا قَطَعْتُمْ مِّنْ لِّيْنَةٍ اَوْ تَرَكْتُمُوْهَا قَآئِمَةً عَلٰٓى اُصُوْلِهَا فَبِاِذْنِ اللّٰهِ وَلِيُخْزِيَ الْفٰسِقِيْنَ ⑤

୭. ଏବଂ ଅଲ୍ଲାହ ଯାହା କିଛି ସେ (ବିଶ୍ୱାସ-ଘାତକ) ମାନଙ୍କ[୨] ଧନ ସମ୍ପତ୍ତି ନିଜ ରସୁଲଙ୍କୁ ପ୍ରଦାନ କରିଛନ୍ତି (ତୁମମାନଙ୍କୁ ଜଣାଅଛି ଯେ) ସେସବୁ ହାସଲ କରିବା ପାଇଁ ତୁମେମାନେ ନିଜର ଘୋଡ଼ା ଓ ଓଟ ଦଉଡ଼ାଇ ନଥିଲ ; କିନ୍ତୁ ଅଲ୍ଲାହ ନିଜ ରସୁଲମାନଙ୍କୁ ଯାହା ଉପରେ ଇଚ୍ଛା ତାହା ଉପରେ ଆଧିପତ୍ୟ ପ୍ରଦାନ କରନ୍ତି ; ଏବଂ ଅଲ୍ଲାହ ହିଁ ସକଳ ବିଷୟ କରିବାକୁ ସମ୍ପୂର୍ଣ୍ଣ ରୂପେ ସକ୍ଷମ ।

وَمَآ اَفَآءَ اللّٰهُ عَلٰى رَسُوْلِهٖ مِنْهُمْ فَمَآ اَوْجَفْتُمْ عَلَيْهِ مِنْ خَيْلٍ وَّلَا رِكَابٍ وَّلٰكِنَّ اللّٰهَ يُسَلِّطُ رُسُلَهٗ عَلٰى مَنْ يَّشَآءُ ۚ وَاللّٰهُ عَلٰى كُلِّ شَيْءٍ قَدِيْرٌ ⑥

୮. ଗ୍ରାମବାସୀମାନଙ୍କର[୩] ଯେଉଁ ଧନ ସମ୍ପତ୍ତିକୁ ଅଲ୍ଲାହ ତାହାଙ୍କ ରସୁଲଙ୍କୁ ଅର୍ପଣ କରିଥିଲେ ତାହା ଅଲ୍ଲାହଙ୍କର ତଥା ରସୁଲଙ୍କର ଓ ନିକଟ ସମ୍ପର୍କୀୟଙ୍କର, ଓ ଅନାଥମାନଙ୍କର , ଓ ଦରିଦ୍ରମାନଙ୍କର ଓ ପଥିକମାନଙ୍କର ଅଟେ ; ଯେପରିକି ସେହି ଧନସମ୍ପତ୍ତି ତୁମମାନଙ୍କ ମଧ୍ୟରେ ଥିବା ଧନୀ ବ୍ୟକ୍ତି ମାନଙ୍କ

مَآ اَفَآءَ اللّٰهُ عَلٰى رَسُوْلِهٖ مِنْ اَهْلِ الْقُرٰى فَلِلّٰهِ وَلِلرَّسُوْلِ وَلِذِي الْقُرْبٰى وَالْيَتٰمٰى وَالْمَسٰكِيْنِ وَابْنِ السَّبِيْلِ ۙ كَيْ لَا يَكُوْنَ دُوْلَةً ۢ بَيْنَ الْاَغْنِيَآءِ

୧. ଏଠାରେ ମଧ୍ୟ ବନୁନଜିରଙ୍କ ସହିତ ହୋଇଥିବା ଯୁଦ୍ଧର ଉଲ୍ଲେଖ ଅଛି । ସେମାନଙ୍କ ଖଜୁରିଗଛ କାଟିବାକୁ ହଜରତ ମହମ୍ମଦ ଅନୁମତି ଦେଇଥିଲେ (ହଦିସ ବୁଖାରି ଓ ହଦିସ୍ ମୁସଲିମ ଦ୍ରଷ୍ଟବ୍ୟ) ।

୨. ଏହି ଘଟଣା ମଧ୍ୟ ବନୁନଜିରଙ୍କ ସହିତ ସମ୍ପୃକ୍ତ । ସେମାନେ ପ୍ରଥମେ ହଜରତ ମହମ୍ମଦଙ୍କ ସହିତ ବିଶ୍ୱାସଘାତକତା କରିଥିଲେ କିନ୍ତୁ ଯୁଦ୍ଧ ଲାଗିଯିବାରୁ ସେମାନେ ଭୟଭୀତ ହୋଇ ଯାଇଥିଲେ ଏବଂ ମଦିନା ଛାଡ଼ି ଚାଲିଯିବାକୁ ମୁସଲମାନଙ୍କ ସହିତ ସନ୍ଧି କରିଥିଲେ (ଫତହୁଲ୍ ବୟାନ୍ ଗ୍ରନ୍ଥଖଣ୍ଡ ୯, ପୃଷ୍ଠା ୩୬୪ ଦ୍ରଷ୍ଟବ୍ୟ) ।

୩. ଅର୍ଥାତ୍ ଖୈବର ଆଦି । ଖୈବର ସହର ଛୋଟ ଛୋଟ ଗ୍ରାମକୁ ନେଇ ଗଠିତ ହୋଇଥିଲା ।

مِنْكُمْ ۚ وَمَآ اٰتٰىكُمُ الرَّسُوْلُ فَخُذُوْهُ ۚ وَمَا نَهٰىكُمْ عَنْهُ فَانْتَهُوْا ۚ وَاتَّقُوا اللّٰهَ ۗ اِنَّ اللّٰهَ شَدِيْدُ الْعِقَابِ ۝٨

ମଧ୍ୟରେ ସଞ୍ଚାଳିତ[୧] ନ ହେଉ ; ଏବଂ ରସୁଲ ତୁମମାନଙ୍କୁ ଯାହା କିଛି ଦେଉଛନ୍ତି, ତୁମେମାନେ ତାହା ଗ୍ରହଣ କର, ଓ ଯେଉଁଥିରୁ ବାରଣ କରନ୍ତି ସେଥିରୁ ନିବୃତ୍ତ ହୁଅ ; ଏବଂ ଅଲ୍ଲାହ୍‌ଙ୍କୁ ଭୟ କର ; (କାରଣ) ବାସ୍ତବରେ ଅଲ୍ଲାହ୍‌ଙ୍କର ଶାସ୍ତି ଖୁବ୍ କଠୋର ।

لِلْفُقَرَآءِ الْمُهٰجِرِيْنَ الَّذِيْنَ اُخْرِجُوْا مِنْ دِيَارِهِمْ وَاَمْوَالِهِمْ يَبْتَغُوْنَ فَضْلًا مِّنَ اللّٰهِ وَرِضْوَانًا وَّيَنْصُرُوْنَ اللّٰهَ وَرَسُوْلَهٗ ۚ اُولٰٓئِكَ هُمُ الصّٰدِقُوْنَ ۝٩

୯. ଏ (ଧନ-ସମ୍ପତ୍ତି ଉପରୋକ୍ତ ଲୋକମାନଙ୍କ ବ୍ୟତୀତ) ସେହି ହିଜରତକାରୀ ଦରିଦ୍ର ଲୋକମାନଙ୍କର ପ୍ରାପ୍ୟ ଅଟେ ଯେଉଁମାନଙ୍କୁ ସେମାନଙ୍କ ଗୃହ ଓ ଧନ ସମ୍ପତ୍ତିରୁ (ବେଦଖଲ କରାଇ) ବିତାଡ଼ିତ କରାଯାଇ ଥିଲା : ସେମାନେ ଅଲ୍ଲାହ୍‌ଙ୍କର କୃପା ଓ ସନ୍ତୋଷ (ପ୍ରାପ୍ତି) ଲୋଡୁଛନ୍ତି, ଏବଂ ସର୍ବଦା ଅଲ୍ଲାହ୍‌ଙ୍କ (ଧର୍ମ)ର ଓ ତାହାଙ୍କ ରସୁଲଙ୍କ ସହାୟତା କରୁ'ଥାନ୍ତି ; ସେହି (ଲୋକ)ମାନେ ହିଁ (ବିଶ୍ୱାସ ଦୃଷ୍ଟିରୁ) ସତ୍ୟନିଷ୍ଠ ।

وَالَّذِيْنَ تَبَوَّؤُ الدَّارَ وَالْاِيْمَانَ مِنْ قَبْلِهِمْ يُحِبُّوْنَ مَنْ هَاجَرَ اِلَيْهِمْ وَلَا يَجِدُوْنَ فِيْ صُدُوْرِهِمْ حَاجَةً مِّمَّآ اُوْتُوْا وَيُؤْثِرُوْنَ عَلٰٓى اَنْفُسِهِمْ وَلَوْ كَانَ بِهِمْ خَصَاصَةٌ ۗ وَمَنْ يُّوْقَ شُحَّ نَفْسِهٖ فَاُولٰٓئِكَ هُمُ الْمُفْلِحُوْنَ ۝١٠

୧୦. ଏବଂ (ଏହିପରି ଉକ୍ତ ଧନ ସମ୍ପତ୍ତି ସେହି ଲୋକମାନଙ୍କ ସକାଶେ ଅଛି) ଯେଉଁମାନେ ମଦିନାରେ ପୂର୍ବରୁ ରହୁଥିଲେ, ଏବଂ (ହିଜରତକାରୀମାନଙ୍କ ଆଗମନ ପୂର୍ବରୁ) ବିଶ୍ୱାସ କରି ସାରିଥିଲେ ଓ ହିଜରତ କରି ସେମାନଙ୍କ ନିକଟକୁ ଆସିଥିବା ଲୋକମାନଙ୍କୁ ପ୍ରେମ କରୁଥିଲେ, ଓ ଯାହା (ଧନସମ୍ପତ୍ତି) ଦିଆ ଯାଇଥିଲା ସେଥିପାଇଁ ନିଜ ଅନ୍ତରରେ କୌଣସି କାମନା ପୋଷଣ କରି ନଥିଲେ, ଏବଂ ସେମାନେ ଦରିଦ୍ର ଥିବା ସତ୍ତ୍ୱେ ସେ (ହିଜରତକାରୀ) ମାନଙ୍କୁ ନିଜ ଅପେକ୍ଷା ଅଗ୍ରାଧିକାର ଦେଉଥିଲେ ; ଏବଂ ଯେଉଁମାନଙ୍କୁ ନିଜ କୃପଣତାରୁ ରକ୍ଷା କରାଯାଏ, ଏପରି ସମସ୍ତ ଲୋକେ କୃତକାର୍ଯ୍ୟ ହେବେ ।

---

୧. ଅର୍ଥାତ୍ ସେହି ଧନ ସମ୍ପତ୍ତି ହଜରତ ମହମ୍ମଦଙ୍କୁ ଏଥି ସକାଶେ ଦିଆଯାଇଥିଲା ଯେ ତାହା ଦରିଦ୍ରମାନଙ୍କ ମଧ୍ୟରେ ବଣ୍ଟାଯିବ । ସେହି ଧନ ସମ୍ପତ୍ତି ଧନୀମାନଙ୍କୁ ଦେଇ ସେମାନଙ୍କୁ ଆହୁରି ଅଧିକ ଧନଶାଳୀ କରିବାକୁ ଦିଆଯାଇ ନଥିଲା । ଏହି ଆଦେଶରୁ ପ୍ରକଟିତ ହେଉଛି ଯେ ଯଦ୍ୟପି ଖୈବରର ଭୂମି ଓ ଉଦ୍ୟାନ ହଜରତ ମହମ୍ମଦଙ୍କୁ ଓ ତାହାଙ୍କ ପରିବାରକୁ ମିଳିଥିଲା ତଥାପି ଏହାର ପ୍ରକୃତ ଉଦ୍ଦେଶ୍ୟ ଥିଲା ଯେ ସେଗୁଡିକ ଏଭଳି ମୁସଲମାନମାନଙ୍କ ମଧ୍ୟରେ ବାଣ୍ଟି ଦିଆଯିବ ଯେଉଁମାନେ ସାହାଯ୍ୟ ପାଇବାକୁ ପ୍ରକୃତରେ ଯୋଗ୍ୟ । ଯେଉଁ ସିଆମାନେ 'ଫିଦକ' ନାମକ ଉଦ୍ୟାନ ସମ୍ବନ୍ଧରେ ଏ ଯାବତ୍ ବିବାଦ କରି ଆସୁଛନ୍ତି ଏଠାରେ ସେହିମାନଙ୍କ ଚିନ୍ତାଧାରାକୁ ଖଣ୍ଡନ କରାଯାଇଛି । ପ୍ରକୃତପକ୍ଷେ, ଖୈବରର ଉଦ୍ୟାନ ହଜରତ ମହମ୍ମଦଙ୍କ ପାଖରେ ଏଥିଯୋଗୁଁ ଅସ୍ଥାୟୀ ଭାବରେ ରହିଥିଲା ଯେପରିକି ତାଙ୍କ ପରିବାର କିଛି ଦିନ ପାଇଁ ସେଥିରେ ଚଳିଯିବେ । ବସ୍ତୁତଃ ଏହା ସ୍ଥାୟୀ ଭାବେ ଉତ୍ତରାଧିକାର ସୂତ୍ରେ ତାଙ୍କୁ ମିଳି ନ ଥିଲା । ସୁତରାଂ ହଜରତ ଅବୁ ବକରଙ୍କ ନିର୍ଣ୍ଣୟ ଯଥାର୍ଥ ଓ ସିଆମାନଙ୍କର ଆପତ୍ତି ତ୍ରୁଟିଯୁକ୍ତ ଥିଲା ।

وَالَّذِيْنَ جَآءُوْ مِنْۢ بَعْدِهِمْ يَقُوْلُوْنَ رَبَّنَا اغْفِرْ لَنَا وَلِاِخْوَانِنَا الَّذِيْنَ سَبَقُوْنَا بِالْاِيْمَانِ وَلَا تَجْعَلْ فِيْ قُلُوْبِنَا غِلًّا لِّلَّذِيْنَ اٰمَنُوْا رَبَّنَآ اِنَّكَ رَءُوْفٌ رَّحِيْمٌ ⑪

୧୧. ଏବଂ ଯେଉଁମାନେ [1] ସେମାନଙ୍କ ପରବର୍ତ୍ତୀ କାଳରେ ଆସିଛନ୍ତି ସେମାନେ କହନ୍ତି, "ହେ ଆମମାନଙ୍କ ପାଳନକର୍ତ୍ତା ! ଆମମାନଙ୍କୁ ଏବଂ ଯେଉଁମାନେ ଆମମାନଙ୍କ ପୂର୍ବରୁ ବିଶ୍ୱାସ କରିଛନ୍ତି ସେମାନଙ୍କୁ କ୍ଷମା କର, ଏବଂ ଯେଉଁମାନେ ବିଶ୍ୱାସ କରିଛନ୍ତି ସେମାନଙ୍କ ପ୍ରତି ଆମମାନଙ୍କ ଅନ୍ତରରେ ବିଦ୍ୱେଷ ଜାତ କରାଅ ନାହିଁ ; ହେ ଆମମାନଙ୍କ ପାଳନକର୍ତ୍ତା ! ତୁମେ ହିଁ ଅତ୍ୟନ୍ତ ଦୟାଶୀଳ (ଓ) ସଦା କରୁଣାମୟ ।

ରୁ:୨

اَلَمْ تَرَ اِلَى الَّذِيْنَ نَافَقُوْا يَقُوْلُوْنَ لِاِخْوَانِهِمُ الَّذِيْنَ كَفَرُوْا مِنْ اَهْلِ الْكِتٰبِ لَئِنْ اُخْرِجْتُمْ لَنَخْرُجَنَّ مَعَكُمْ وَلَا نُطِيْعُ فِيْكُمْ اَحَدًا اَبَدًا وَّاِنْ قُوْتِلْتُمْ لَنَنْصُرَنَّكُمْ وَاللّٰهُ يَشْهَدُ اِنَّهُمْ لَكٰذِبُوْنَ ⑫

୧୨. କ'ଣ ତୁମେ ସେହି କପଟ–ବିଶ୍ୱାସୀମାନଙ୍କୁ ଲକ୍ଷ୍ୟ କରି ନାହଁ ଯେଉଁମାନେ ଗ୍ରନ୍ଥଧାରୀମାନଙ୍କ ମଧ୍ୟରୁ ନିଜ ଅବିଶ୍ୱାସକାରୀ ଭାଇମାନଙ୍କୁ କହିଥିଲେ, "ଯଦି ତୁମମାନଙ୍କୁ (ମଦିନାରୁ) ବିତାଡ଼ିତ କରାଯାଏ, ତେବେ ଆମେମାନେ (ମଧ୍ୟ) ତୁମମାନଙ୍କ ସହିତ ବାହାରି ଯିବୁ, ଏବଂ ତୁମମାନଙ୍କ ବିପକ୍ଷରେ କେବେ ହେଲେ କାହାରି କଥା ମାନିବୁ ନାହିଁ ; ଏବଂ ଯଦି ତୁମମାନଙ୍କ ବିପକ୍ଷରେ ଯୁଦ୍ଧ କରାଯାଏ, ତେବେ ଆମେମାନେ ତୁମମାନଙ୍କର ସହାୟତା କରିବୁ ;" ଏବଂ ଅଲ୍ଲାହ ସାକ୍ଷ୍ୟ ଦେଉଛନ୍ତି ଯେ ସେମାନେ ନିଶ୍ଚୟ ମିଥ୍ୟାବାଦୀ ।

لَئِنْ اُخْرِجُوْا لَا يَخْرُجُوْنَ مَعَهُمْ وَلَئِنْ قُوْتِلُوْا لَا يَنْصُرُوْنَهُمْ وَلَئِنْ نَّصَرُوْهُمْ لَيُوَلُّنَّ الْاَدْبَارَ

୧୩. ଯଦି ସେ (ଗ୍ରନ୍ଥଧାରୀ)ମାନଙ୍କୁ ବିତାଡ଼ିତ କରାହେବ, ତେବେ ଏ (କପଟ ବିଶ୍ୱାସୀ) ମାନେ କଦାପି ସେମାନଙ୍କ ସହିତ ବାହାରିବେ ନାହିଁ ; ଏବଂ ଯଦି ଏ (ଗ୍ରନ୍ଥଧାରୀ)ମାନଙ୍କ ବିରୁଦ୍ଧରେ ଯୁଦ୍ଧ କରାହେବ, ତେବେ ଏ (କପଟ ବିଶ୍ୱାସୀ)ମାନେ ସେମାନଙ୍କୁ ଆଦୌ ସାହାଯ୍ୟ କରିବେ ନାହିଁ, ଏବଂ ଯଦି ବା ସାହାଯ୍ୟ କରିବେ, ତେବେ (ଏପରି ଅମନୋଯୋଗୀ ଭାବରେ କରିବେ ଯେ) ଯୁଦ୍ଧ ଆରମ୍ଭ ହେବାମାତ୍ରେ ପୃଷ୍ଠଭଙ୍ଗ କରି ପଳାୟନ କରିବେ ; ଏବଂ

---

୧. ଯେଉଁମାନେ ହଜରତ ମହମ୍ମଦଙ୍କ ସାଥୀ ଅର୍ଥାତ୍ ସହାବାମାନଙ୍କ ପ୍ରତି ଦୋଷାରୋପ କରନ୍ତି ଏହି ଆୟତରେ ମଧ୍ୟ ସେମାନଙ୍କ ବକ୍ତବ୍ୟକୁ ଖଣ୍ଡନ କରାଯାଇଛି. କାରଣ ଏଠାରେ ବିଶ୍ୱାସକାରୀମାନଙ୍କଠାରେ ଯେଉଁ ଲକ୍ଷଣ ଦେଖାଯାଏ ସେ ସମ୍ବନ୍ଧରେ ଆଲୋକପାତ କରାଯାଇଛି । ସେହି ଲକ୍ଷଣ ହେଉଛି: ସେମାନଙ୍କୁ ନିଜ ପୂର୍ବରୁ ବିଶ୍ୱାସ କରିଥିବା ଲୋକମାନଙ୍କଠ ନାମ ସମ୍ମାନେ ନେବାକୁ ହେବ ତଥା ସେମାନଙ୍କ ପାଇଁ ପ୍ରାର୍ଥନା କରିବାକୁ ହେବ ! କେତେକ ଲୋକ ହଜରତ ଉମର, ହଜରତ ଅବୁବକର ଓ ଅନ୍ୟାନ୍ୟ ସହଚରମାନଙ୍କୁ ଗାଳିଗୁଲଜ କରନ୍ତି. ଏପରିକି ସେମାନଙ୍କୁ ଅଭିଶାପ ଦିଅନ୍ତି ଅଥଚ ପବିତ୍ର କୋରାନରେ ଉପଦେଶ ଦିଆଯାଇଛି ଯେ ବିଶ୍ୱାସକାରୀମାନେ ସେମାନଙ୍କ ପୂର୍ବରୁ ବିଶ୍ୱାସ କରିଥିବା ଭାଇମାନଙ୍କ ଲାଗି ପ୍ରାର୍ଥନା କରିବା ଉଚିତ ଏବଂ ଅଲ୍ଲାହଙ୍କଠାରେ ଏହା ମଧ୍ୟ ପ୍ରାର୍ଥନା କରିବା ଉଚିତ ଯେ ପୂର୍ବରୁ ମୃତ୍ୟୁବରଣ କରିଥିବା ଲୋକମାନଙ୍କ ସମ୍ବନ୍ଧରେ ସେମାନଙ୍କ ମନରେ କୌଣସି ପ୍ରକାର ଈର୍ଷା ଓ ଦ୍ୱେଷ ଉଦ୍ରେକ ନ ହେଉ । ଏହି ଆୟତର ଶେଷାଂଶକୁ ଲକ୍ଷ୍ୟ କଲେ ଜଣାଯିବ ଯେ ଯେଉଁ ବ୍ୟକ୍ତି ଉପରବର୍ଣ୍ଣିତ ଚିନ୍ତାଧାରାକୁ ସର୍ବାନ୍ତକରଣରେ ଗ୍ରହଣ କରିଛି ସେ ଅବଶ୍ୟ ବୁଝିପାରିବ ଯେ ଅଲ୍ଲାହ ତା ପ୍ରତି ନିଶ୍ଚୟ ଦୟାଶୀଳ ହେବେ । ଅନ୍ୟପକ୍ଷରେ ଯେଉଁ ବ୍ୟକ୍ତି ଏହାର ପ୍ରତିକୂଳ ମନୋଭାବ ପୋଷଣ କରେ ସେ ବୁଝିବା ଉଚିତ ହେବ ଯେ ସେ ଅଲ୍ଲାହଙ୍କର କୃପା ଓ ସନ୍ତୋଷରୁ ବଞ୍ଚିତ ହେବା ସଙ୍ଗେ ସଙ୍ଗେ ତାହାଙ୍କ ପ୍ରକୋପର ଅଧୀନ ହୋଇଛି ।

ثُمَّ لَا يُنْصَرُوْنَ ⑬

(ସେମାନେ ସେ ଗ୍ରନ୍ଥଧାରୀ-ମାନଙ୍କୁ ସାହାଯ୍ୟ କରିବା ଦୂରେ ଥାଉ, ବରଂ ବିପଦବେଳେ) ସେମାନଙ୍କୁ ସାହାଯ୍ୟ କରିବା ପାଇଁ କେହି ନଥିବେ ।

لَاَنْتُمْ اَشَدُّ رَهْبَةً فِيْ صُدُوْرِهِمْ مِّنَ اللّٰهِ ۭ ذٰلِكَ بِاَنَّهُمْ قَوْمٌ لَّا يَفْقَهُوْنَ ⑭

୧୪. (ହେ ବିଶ୍ୱାସକାରୀମାନେ !) ସେ (କପଟ-ବିଶ୍ୱାସୀ) ମାନଙ୍କ ଅନ୍ତରରେ ଅଲ୍ଲାହ୍‌ଙ୍କ ଅପେକ୍ଷା ତୁମମାନଙ୍କ ପ୍ରତି ଅଧିକ ଭୟ ଅଛି ; କାରଣ ସେମାନେ ଏପରି ଏକ ଗୋଷ୍ଠୀ ଯେଉଁମାନେ କିଛି ବୁଝି ପାରନ୍ତି ନାହିଁ ।

لَا يُقَاتِلُوْنَكُمْ جَمِيْعًا اِلَّا فِيْ قُرًى مُّحَصَّنَةٍ اَوْ مِنْ وَّرَاۗءِ جُدُرٍ ۭ بَاْسُهُمْ بَيْنَهُمْ شَدِيْدٌ ۭ تَحْسَبُهُمْ جَمِيْعًا وَّقُلُوْبُهُمْ شَتّٰى ۭ ذٰلِكَ بِاَنَّهُمْ قَوْمٌ لَّا يَعْقِلُوْنَ ⑮

୧୫. ଦୁର୍ଗ ଦ୍ୱାରା ସୁରକ୍ଷିତ ଗ୍ରାମ କିମ୍ବା ପ୍ରାଚୀର ପଶ୍ଚାଦ୍‌ଭାଗରେ ନ ଥାଇ ସେମାନେ ତୁମମାନଙ୍କ ସହିତ କଦାପି ଯୁଦ୍ଧ କରିବେ ନାହିଁ ; ସେମାନଙ୍କ ଯୁଦ୍ଧ ପରସ୍ପର ମଧ୍ୟରେ ଅତ୍ୟନ୍ତ ଭୟାବହ ହୁଏ ; ତୁମେ ସେମାନଙ୍କୁ ଏକ (ସଂଗଠିତ) ସମ୍ପ୍ରଦାୟ ମନେ କରୁଅଛ, କିନ୍ତୁ ସେମାନଙ୍କ ହୃଦୟ ବିଭାଜିତ ହୋଇଅଛି ; କାରଣ ସେମାନେ ଏପରି ଏକ ସମ୍ପ୍ରଦାୟ, ଯେଉଁମାନଙ୍କର ବୁଦ୍ଧି ନାହିଁ ।

كَمَثَلِ الَّذِيْنَ مِنْ قَبْلِهِمْ قَرِيْبًا ذَاقُوْا وَبَالَ اَمْرِهِمْ ۚ وَلَهُمْ عَذَابٌ اَلِيْمٌ ⑯

୧୬. ସେମାନଙ୍କ ଅବସ୍ଥା ସେହି (ସମ୍ପ୍ରଦାୟ)ମାନଙ୍କ ସଦୃଶ ଯେଉଁମାନେ ସେମାନଙ୍କ ନିକଟ ଅତୀତରେ ନିଜ (କୁ) କର୍ମର ପରିଣାମ ଭୋଗ କରି ଅପସରି ଯାଇଛନ୍ତି ; ଏବଂ ସେମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତି ଦିଆଯାଇଛି ।

كَمَثَلِ الشَّيْطٰنِ اِذْ قَالَ لِلْاِنْسَانِ اكْفُرْ ۚ فَلَمَّا كَفَرَ قَالَ اِنِّيْ بَرِيْۗءٌ مِّنْكَ اِنِّيْٓ اَخَافُ اللّٰهَ رَبَّ الْعٰلَمِيْنَ ⑰

୧୭. (ପୁନଶ୍ଚ) ସେ (କପଟ-ବିଶ୍ୱାସୀ) ମାନଙ୍କ ଅବସ୍ଥା ସଇତାନର ଅବସ୍ଥା ସଦୃଶ ; ଯେତେବେଳେ ସେ ମନୁଷ୍ୟକୁ କହେ, "ଅବିଶ୍ୱାସ କର" ; କିନ୍ତୁ ଯେତେବେଳେ ସେ (ମନୁଷ୍ୟ) ଅବିଶ୍ୱାସ କରେ ; ସେତେବେଳେ ସେ (ସଇତାନ) ତାହାକୁ କହେ, "ମୁଁ ତୁମଠାରୁ ପୃଥକ୍ ଅଛି ; ମୁଁ ସମସ୍ତ ଜଗତର ପାଳନକର୍ତ୍ତା ଅଲ୍ଲାହ୍‌ଙ୍କୁ ଭୟ କରେ ।"

فَكَانَ عَاقِبَتَهُمَآ اَنَّهُمَا فِي النَّارِ خَالِدَيْنِ فِيْهَا ۭ وَذٰلِكَ جَزٰۗؤُا الظّٰلِمِيْنَ ⑱ ع

୧୮. ସୁତରାଂ ସେ ଦୁହିଙ୍କର ପରିଣାମ ଏପରି ହୁଏ ଯେ ସେ ଦୁହେଁ ନରକରେ ନିପତିତ ହୁଅନ୍ତି, ଏବଂ ସେହିଠାରେ ରହିଥାନ୍ତି ; ଏବଂ ଅତ୍ୟାଚାରୀମାନଙ୍କର ପ୍ରତିଫଳ ଏହିପରି ହୋଇଥାଏ ।

ରୁ:୩

يٰٓاَيُّهَا الَّذِيْنَ اٰمَنُوا اتَّقُوا اللّٰهَ وَلْتَنْظُرْ نَفْسٌ مَّا قَدَّمَتْ لِغَدٍ ۚ وَاتَّقُوا اللّٰهَ ۭ اِنَّ اللّٰهَ خَبِيْرٌۢ بِمَا تَعْمَلُوْنَ ⑲

୧୯. ହେ ବିଶ୍ୱାସକାରୀମାନେ ! ଅଲ୍ଲାହ୍‌ଙ୍କୁ ଭୟକର ; ଏବଂ ପ୍ରତ୍ୟେକଙ୍କ ପକ୍ଷରେ ଏହା ବିଧେୟ ଯେ ସେ ଆଗାମୀ କାଲି ପାଇଁ କ'ଣ ପଠାଇଛି, ତାହା ପ୍ରତି ଦୃଷ୍ଟିଦେଉ ; ଏବଂ ତୁମେ ସମସ୍ତେ ଅଲ୍ଲାହ୍‌ଙ୍କୁ ଭୟକର ; ଅଲ୍ଲାହ୍ ତୁମମାନଙ୍କ କାର୍ଯ୍ୟକଳାପ ସଂକ୍ରାନ୍ତରେ ଭଲଭାବରେ ଅବଗତ ଅଛନ୍ତି ।

୨୦. ଏବଂ ସେ (ଲୋକ) ମାନଙ୍କ ସଦୃଶ ହୁଅ ନାହିଁ ଯେଉଁମାନେ ଅଲ୍ଲାହଙ୍କୁ ଭୁଲି ଯାଇଛନ୍ତି;[1] ତେଣୁ ଅଲ୍ଲାହ ମଧ୍ୟ ସେମାନଙ୍କୁ ନିଜ କଲ୍ୟାଣ ସମ୍ବନ୍ଧରେ ଭୁଲାଇ ଦେଇଛନ୍ତି ; ଏମାନେ ହିଁ ଅମାନ୍ୟକାରୀ ।

وَلَا تَكُونُوا كَالَّذِينَ نَسُوا اللَّهَ فَأَنْسَاهُمْ أَنْفُسَهُمْ ۚ أُولَٰئِكَ هُمُ الْفَاسِقُونَ ⑳

୨୧. ନରକବାସୀ ଓ ବୈକୁଣ୍ଠବାସୀ ସମାନ ହୋଇ ନ ପାରନ୍ତି ; ବୈକୁଣ୍ଠବାସୀମାନେ ହିଁ କୃତକାର୍ଯ୍ୟ ହେବେ ।

لَا يَسْتَوِي أَصْحَابُ النَّارِ وَأَصْحَابُ الْجَنَّةِ ۚ أَصْحَابُ الْجَنَّةِ هُمُ الْفَائِزُونَ ㉑

୨୨. ଯଦି ଏହି କୋରାନକୁ ଆମ୍ଭେ କୌଣସି ପର୍ବତ[2] ଉପରେ ଅବତୀର୍ଣ୍ଣ କରାଇ ଥା'ନ୍ତୁ, ତେବେ ତୁମେ ତାହାକୁ ଲକ୍ଷ୍ୟ କରିଥା'ନ୍ତ ଯେ ତାହା (ସେସମସ୍ତାନେ) ଅବନତ ହୋଇଯା'ନ୍ତା ଏବଂ ଅଲ୍ଲାହଙ୍କ ଭୟରେ ଖଣ୍ଡ-ବିଖଣ୍ଡ ହୋଇଯା'ନ୍ତା ; ଏବଂ ଏହିସବୁ ବିଷୟ ଆମ୍ଭେ ମନୁଷ୍ୟମାନଙ୍କ ସକାଶେ ତୁମ ନିକଟରେ ବର୍ଣ୍ଣନା କରୁଅଛୁ, ଯଦ୍ଦ୍ୱାରା କି ସେମାନେ ଚିନ୍ତା କରିପାରିବେ ।

لَوْ أَنْزَلْنَا هَٰذَا الْقُرْآنَ عَلَىٰ جَبَلٍ لَرَأَيْتَهُ خَاشِعًا مُتَصَدِّعًا مِنْ خَشْيَةِ اللَّهِ ۚ وَتِلْكَ الْأَمْثَالُ نَضْرِبُهَا لِلنَّاسِ لَعَلَّهُمْ يَتَفَكَّرُونَ ㉒

୨୩. ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସେ ଅଦୃଷ୍ଟ ଓ ଦୃଷ୍ଟ (ବିଷୟ)କୁ ଜାଣନ୍ତି ;ସେ ହିଁ ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ।

هُوَ اللَّهُ الَّذِي لَا إِلَٰهَ إِلَّا هُوَ ۖ عَالِمُ الْغَيْبِ وَالشَّهَادَةِ ۖ هُوَ الرَّحْمَٰنُ الرَّحِيمُ ㉓

୨୪. (ପ୍ରକୃତ ବିଷୟ ହେଉଛି ଯେ) ସେ ହିଁ ଅଲ୍ଲାହ, ଯାହାଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ ; ସେ ହିଁ ସମ୍ରାଟ ; (ନିଜେ) ପବିତ୍ର, (ଓ ଅନ୍ୟକୁ ପବିତ୍ର କରାନ୍ତି ; ନିଜେ) ପ୍ରତ୍ୟେକ ପ୍ରକାର ଦୋଷରୁ ମୁକ୍ତ (ଓ ଅନ୍ୟକୁ ଦୋଷମୁକ୍ତ କରିଥା'ନ୍ତି) ; ସମସ୍ତଙ୍କ ପାଇଁ ଶାନ୍ତି-ପ୍ରଦାୟକ ଓ ସମସ୍ତଙ୍କର ତତ୍ତ୍ୱାବଧାରକ ; (ସେ ହିଁ) ପରାକ୍ରମୀ ; (ସେ ହିଁ) ସମସ୍ତ ଭଗ୍ନ ହୃଦୟକୁ ସଂଯୁକ୍ତ କରିଥା'ନ୍ତି ; (ସେ ହିଁ) ମହାମହିମମୟ ; ସେମାନେ ତାହାଙ୍କ ସହିତ ଯେଉଁ ଯେଉଁ ବିଷୟକୁ ସମକକ୍ଷ ମନେ କରନ୍ତି, ଅଲ୍ଲାହ ସେସବୁରୁ ପବିତ୍ର ।

هُوَ اللَّهُ الَّذِي لَا إِلَٰهَ إِلَّا هُوَ الْمَلِكُ الْقُدُّوسُ السَّلَامُ الْمُؤْمِنُ الْمُهَيْمِنُ الْعَزِيزُ الْجَبَّارُ الْمُتَكَبِّرُ ۚ سُبْحَانَ اللَّهِ عَمَّا يُشْرِكُونَ ㉔

---

୧. ଅଲ୍ଲାହଙ୍କୁ ଭୁଲିଯିବାର ପରିଣତି ହେଉଛି ଯେ ମଣିଷ ଏପରି କାର୍ଯ୍ୟରେ ଜଡିତ ହୋଇଯାଏ ଯାହା ତା' ନିଜ ଜୀବନ ପ୍ରତି ବିପତ୍ତିର କାରଣ ହୁଏ ।

୨. ଏହି ଆୟତରେ 'ପର୍ବତ' ଅର୍ଥ ଏପରି ଲୋକ ଯେଉଁମାନେ ନିଜ ନିଜ ସମ୍ପ୍ରଦାୟ ଭିତରେ ପର୍ବତ ସଦୃଶ, ଅର୍ଥାତ୍ ମୁଖ୍ୟ । ତେଣୁ ଏଠାରେ ପର୍ବତର ଅର୍ଥ ପ୍ରକୃତ ପର୍ବତ ନୁହେଁ, ବରଂ ପବିତ୍ର କୋରାନରେ ଅଲ୍ଲାହଙ୍କୁ ଭୟ କରିବା ସମ୍ପର୍କରେ ଯେଉଁଶିକ୍ଷା ପ୍ରଦାନ କରାଯାଇଛି ଯଦି ତାହା ଅତ୍ୟନ୍ତ ପ୍ରତାପଶାଳୀ ବା ସମ୍ମାନାସ୍ପଦ ବ୍ୟକ୍ତିଙ୍କ ଉପରେ ଅବତୀର୍ଣ୍ଣ ହୁଅନ୍ତା ତେବେ ସେହି ବ୍ୟକ୍ତି ମଧ୍ୟ ଅଲ୍ଲାହଙ୍କ ସମ୍ମୁଖରେ ଖଣ୍ଡ ଖଣ୍ଡ ହୋଇ ନିପତିତ ହୁଅନ୍ତା ।

هُوَ اللّٰهُ الْخَالِقُ الْبَارِئُ الْمُصَوِّرُ لَهُ الْاَسْمَآءُ الْحُسْنٰى ۭ يُسَبِّحُ لَهٗ مَا فِي السَّمٰوٰتِ وَالْاَرْضِ ۚ وَهُوَ الْعَزِيْزُ الْحَكِيْمُ ﴿٢٥﴾

୨୫. (ପ୍ରକୃତ ବିଷୟ ହେଉଛି ଯେ) ଅଲ୍ଲାହ ପ୍ରତ୍ୟେକ ବସ୍ତୁର ସ୍ରଷ୍ଟା ଓ ପ୍ରତ୍ୟେକ ବସ୍ତୁର ରଚୟିତା ଏବଂ ପ୍ରତ୍ୟେକ ବସ୍ତୁକୁ ତାହାର ଆବଶ୍ୟକତା ଅନୁଯାୟୀ ଆକୃତି ଦେଇଥାନ୍ତି ; ତାହାଙ୍କର ଅନେକ ଉତ୍ତମ ଗୁଣବାଚକ ନାମ ଅଛି ; ଆକାଶ ଓ ପୃଥିବୀରେ ଯାହା କିଛି ଅଛି (ସେସବୁ) ତାହାଙ୍କର ଗୁଣଗାନ କରୁଛନ୍ତି ; ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।




ଅଧ୍ୟାୟ ୬୦

## ଅଲ-ମୁମତହନାହ

ଭାଗ ୨୮

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୪ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ﴿١﴾

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

يٰٓاَيُّهَا الَّذِيْنَ اٰمَنُوْا لَا تَتَّخِذُوْا عَدُوِّيْ وَعَدُوَّكُمْ اَوْلِيَآءَ تُلْقُوْنَ اِلَيْهِمْ بِالْمَوَدَّةِ وَقَدْ كَفَرُوْا بِمَا جَآءَكُمْ مِّنَ الْحَقِّ ۚ يُخْرِجُوْنَ الرَّسُوْلَ وَاِيَّاكُمْ اَنْ تُؤْمِنُوْا بِاللّٰهِ رَبِّكُمْ ۭ اِنْ كُنْتُمْ خَرَجْتُمْ جِهَادًا فِيْ سَبِيْلِيْ وَابْتِغَآءَ مَرْضَاتِيْ ۖ تُسِرُّوْنَ اِلَيْهِمْ بِالْمَوَدَّةِ ۖ وَاَنَا اَعْلَمُ بِمَآ اَخْفَيْتُمْ وَمَآ اَعْلَنْتُمْ ۭ وَمَنْ يَّفْعَلْهُ مِنْكُمْ فَقَدْ ضَلَّ سَوَآءَ السَّبِيْلِ ﴿٢﴾

୨. ହେ ବିଶ୍ୱାସକାରୀମାନେ ! ଆମର ଓ ତୁମମାନଙ୍କର ଶତ୍ରୁମାନଙ୍କୁ ଅନ୍ତରଙ୍ଗ ବନ୍ଧୁରୂପେ ଗ୍ରହଣ କରନାହିଁ ; ତୁମେମାନେ ସେମାନଙ୍କ ନିକଟକୁ ପ୍ରେମ-ବାର୍ତ୍ତା ପ୍ରେରଣ କରୁଅଛ ; ଅଥଚ ତୁମ ନିକଟକୁ ଯେଉଁ ସତ୍ୟ ଆସିଅଛି ସେମାନେ ତାହାକୁ ଅବିଶ୍ୱାସ କରୁଛନ୍ତି ; ସେମାନେ ତୁମମାନଙ୍କୁ ଓ ରସୁଲଙ୍କୁ ମଧ୍ୟ କେବଳ ଏଥି ସକାଶେ (ଗୃହରୁ)[1] ଯୁଦ୍ଧ କରିବାକୁ ନିଷ୍କ୍ରାନ୍ତ କରାଉଛନ୍ତି, ଯେହେତୁ ତୁମେମାନେ ନିଜ ପାଳନକର୍ତ୍ତା ଅଲ୍ଲାହଙ୍କ ଉପରେ ବିଶ୍ୱାସ କରିଅଛ ; ଯଦି ତୁମେମାନେ ଆମ ପଥରେ ପ୍ରଚେଷ୍ଟା କରିବା ଉଦ୍ଦେଶ୍ୟରେ ଓ ଆମର ସନ୍ତୋଷ ଲାଭ ପାଇଁ ବାହାର, ତେବେ ତୁମମାନଙ୍କ ମଧ୍ୟରୁ କେତେକ ଗୋପନରେ ସେମାନଙ୍କ ନିକଟକୁ ପ୍ରେମବାର୍ତ୍ତା[2] ପ୍ରେରଣ କରିଥା'ନ୍ତି ; ଏବଂ ତୁମେମାନେ ଯାହା ଗୋପନ କରୁଅଛ ଓ ଯାହା ପ୍ରକାଶ କରୁଅଛ ତାହା ଆମେ ଭଲଭାବେ ଜାଣୁ ଏବଂ ତୁମମାନଙ୍କ ମଧ୍ୟରୁ ଯେ-କେହି ଏପରି କାର୍ଯ୍ୟକରେ, ସେ ଜାଣିରଖୁ ଯେ ସେ ସରଳ ପଥରୁ ବିଭ୍ରାନ୍ତ ହୋଇଅଛି ।

---

୧. ଅର୍ଥାତ୍ ପ୍ରଥମେ ଆକ୍ରମଣ କରନ୍ତି । ସେଥିପାଇଁ ହଜରତ ମହମ୍ମଦ ଓ ତାଙ୍କର ସହଚରମାନଙ୍କୁ [illegible]

୨. ଏଠାରେ ଏପରି କେତେକ ମୁସଲମାନଙ୍କ ପ୍ରତି ସଙ୍କେତ କରାଯାଇଛି ଯେଉଁମାନେ ବିଶ୍ୱାସ କରିଥିଲେ ଯେ ଯେହେତୁ ସେମାନେ ଯେ କୌଣସି ପ୍ରକାରରେ ବିଜୟ ହାସଲ କରିବେ, ତେଣୁ ସେମାନେ ମକ୍କାରେ ରହି ଯାଇଥିବା ନିଜ ବନ୍ଧୁ ବାନ୍ଧବଙ୍କୁ ରକ୍ଷା କରିବା ସକାଶେ ମକ୍କାନିବାସୀ ଅବିଶ୍ୱାସକାରୀଙ୍କ ନିକଟକୁ ମୁସଲମାନ ସୈନ୍ୟବାହିନୀ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିବା ବିଷୟରେ ପୂର୍ବରୁ ସମ୍ବାଦ ପ୍ରେରଣ କରିଥିଲେ । କିନ୍ତୁ ଅଲ୍ଲାହ ଓହି ମାଧ୍ୟମରେ ହଜରତ ମହମ୍ମଦଙ୍କୁ ଏ ବିଷୟ ଜଣାଇ ଦେଇଥିଲେ ଏବଂ ସମ୍ବାଦ-ବାହକ ଧରାପଡି ଯାଇଥିଲା । (ହଦିସ ବୁଖାରି ଦ୍ରଷ୍ଟବ୍ୟ) ।

إِن يَثْقَفُوكُمْ يَكُونُوا لَكُمْ أَعْدَاءً وَيَبْسُطُوا إِلَيْكُمْ أَيْدِيَهُمْ وَأَلْسِنَتَهُم بِالسُّوءِ وَوَدُّوا لَوْ تَكْفُرُونَ ۝٣

୩. ଯଦି ସେମାନେ ତୁମମାନଙ୍କୁ ଆୟତ୍ତ କରି ନିଅନ୍ତି, ତେବେ ତୁମେମାନେ ଜାଣିନେବ ଯେ ସେମାନେ ତୁମମାନଙ୍କର ଶତ୍ରୁ, ଓ ତୁମମାନଙ୍କ ବିନାଶ ପାଇଁ ନିଜ ହାତ ଓ ଜିଭର ସଞ୍ଚାଳନ ଦ୍ୱାରା ଉଦ୍ୟମ କରୁଛନ୍ତି ; ଏବଂ ସେମାନେ ଇଚ୍ଛା କରନ୍ତି ଯେ ତୁମେମାନେ ଅବିଶ୍ୱାସକାରୀ ହୋଇଯାଅ ।

لَن تَنفَعَكُمْ أَرْحَامُكُمْ وَلَا أَوْلَادُكُمْ ۚ يَوْمَ الْقِيَامَةِ يَفْصِلُ بَيْنَكُمْ ۚ وَاللَّهُ بِمَا تَعْمَلُونَ بَصِيرٌ ۝٤

୪. କୟାମତ ଦିନ ତୁମମାନଙ୍କୁ ସହୋଦରୀୟ ସମ୍ପର୍କ ବା ସନ୍ତାନସନ୍ତତି (କୌଣସି) ଲାଭ ଦେବ ନାହିଁ ; ସେଦିନ ଅଲ୍ଲାହ ହିଁ ନିଷ୍ପତ୍ତି କରିବେ ; ଓ ଅଲ୍ଲାହ ତୁମମାନଙ୍କର କର୍ମକୁ ଭଲରୂପେ ନିରୀକ୍ଷଣ କରୁଛନ୍ତି ।

قَدْ كَانَتْ لَكُمْ أُسْوَةٌ حَسَنَةٌ فِي إِبْرَاهِيمَ وَالَّذِينَ مَعَهُ إِذْ قَالُوا لِقَوْمِهِمْ إِنَّا بُرَآءُ مِنكُمْ وَمِمَّا تَعْبُدُونَ مِن دُونِ اللَّهِ كَفَرْنَا بِكُمْ وَبَدَا بَيْنَنَا وَبَيْنَكُمُ الْعَدَاوَةُ وَالْبَغْضَاءُ أَبَدًا حَتَّىٰ تُؤْمِنُوا بِاللَّهِ وَحْدَهُ إِلَّا قَوْلَ إِبْرَاهِيمَ لِأَبِيهِ لَأَسْتَغْفِرَنَّ لَكَ وَمَا أَمْلِكُ لَكَ مِنَ اللَّهِ مِن شَيْءٍ ۖ رَّبَّنَا عَلَيْكَ تَوَكَّلْنَا وَإِلَيْكَ أَنَبْنَا وَإِلَيْكَ الْمَصِيرُ ۝٥

୫. ଇବ୍ରାହିମ ଓ ତାହାଙ୍କ ସହଚରମାନଙ୍କ ମଧ୍ୟରେ ତୁମମାନଙ୍କ ସକାଶେ ଏକ ଉତ୍ତମ ଦୃଷ୍ଟାନ୍ତ ରହିଅଛି, ଯେତେବେଳେ କି ସେମାନେ ନିଜ ସଂପ୍ରଦାୟକୁ କହିଥିଲେ, "ଆମେମାନେ ତୁମମାନଙ୍କଠାରୁ ଓ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କ ଉପାସ୍ୟମାନଙ୍କଠାରୁ ନିଜକୁ ସମ୍ପୂର୍ଣ୍ଣ ରୂପେ ଅସମ୍ପୃକ୍ତ ମନେ କରୁଅଛୁ ; ଆମେମାନେ ତୁମମାନଙ୍କର କଥାକୁ ପ୍ରତ୍ୟାଖ୍ୟାନ କରୁଅଛୁ ; ଏବଂ ତୁମେମାନେ ଅଲ୍ଲାହଙ୍କ ଉପରେ ବିଶ୍ୱାସ ନ କରିବା ପର୍ଯ୍ୟନ୍ତ ଆମମାନଙ୍କ ଓ ତୁମମାନଙ୍କ ମଧ୍ୟରେ ଶତ୍ରୁତା ଓ ବିଦ୍ୱେଷ ପ୍ରକାଶିତ ହୋଇ ରହିଥିବ ;" ଅବଶ୍ୟ ଇବ୍ରାହିମ ନିଜ ପିତାଙ୍କ ସହିତ କରିଥିବା ଅଙ୍ଗୀକାରକୁ ଆମେ (ଏଥିରୁ) ବାଦ୍ ଦେଉଅଛୁ ; ତା ହେଉଛି, "ଆମେ ତୁମ ସକାଶେ କ୍ଷମା ପ୍ରାର୍ଥନା[1] କରିବୁ ; କିନ୍ତୁ ଅଲ୍ଲାହଙ୍କ ସମ୍ମୁଖରେ ତୁମକୁ କୌଣସି ପ୍ରକାର ସାହାଯ୍ୟ କରିବାକୁ ଆମେ ସକ୍ଷମ ନୋହୁଁ ;" (ଏବଂ ଇବ୍ରାହିମ ଆହୁରି କହିଲେ ଯେ), "ହେ ଆମର ପାଳନକର୍ତ୍ତା ! ଆମେ ତୁମ ଉପରେ ଆସ୍ଥା ରଖିଅଛୁ ଓ ତୁମ ପ୍ରତି ଅବନତ ହେଉଅଛୁ ଏବଂ ତୁମ ନିକଟକୁ ହିଁ ଆମକୁ ଫେରିବାକୁ ହେବ ।"

رَبَّنَا لَا تَجْعَلْنَا فِتْنَةً لِّلَّذِينَ كَفَرُوا وَاغْفِرْ لَنَا رَبَّنَا ۖ إِنَّكَ أَنتَ الْعَزِيزُ الْحَكِيمُ ۝٦

୬. "ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କୁ, ଅବିଶ୍ୱାସକାରୀମାନଙ୍କ ପାଇଁ ଭ୍ରମର କାରଣ କରନାହିଁ, ଏବଂ ଆମମାନଙ୍କର ଦୋଷ କ୍ଷମାକର ; ହେ ଆମମାନଙ୍କର ପାଳନକର୍ତ୍ତା ! ତୁମେ ହିଁ ଅତ୍ୟନ୍ତ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।"

---

୧. ପବିତ୍ର କୋରାନରେ ଅନ୍ୟତ୍ର ବର୍ଣ୍ଣନା କରାଯାଇଛି ଯେ ଅବିଶ୍ୱାସୀଙ୍କ [illegible] କ୍ଷମାଭିକ୍ଷା କରିବା [illegible] କିନ୍ତୁ ଏଠାରେ ତାହାର ବିପରୀତ ତଥ୍ୟ ବର୍ଣ୍ଣିତ ହୋଇନାହିଁ, କାରଣ ଏହି ଆୟତରୁ କେବଳ ଏତିକି ଜଣାପଡ଼େ [illegible] ସେ ଅବିଶ୍ୱାସୀ ଥିଲେ । [illegible] ସେ [illegible] ଓ ପ୍ରତାଡ଼ିତ [illegible] ଯାଉଥିଲେ । [illegible] ଅଲ୍ଲାହଙ୍କ [illegible] କରୁଥିଲେ ସେଥିପାଇଁ ତାଙ୍କ ପାଇଁ କ୍ଷମାଭିକ୍ଷା କରିବା [illegible] କିନ୍ତୁ [illegible] ସମୟ ଆସିଲା ଯେତେବେଳେ [illegible] କାଟିପାରିଲେ । [illegible]

୭. ସେ (ଲୋକ)ମାନଙ୍କ ମଧ୍ୟରେ ତୁମମାନଙ୍କ ସକାଶେ ଏକ ଉତ୍ତମ ଦୃଷ୍ଟାନ୍ତ ରହିଅଛି ଅର୍ଥାତ୍ ପ୍ରତ୍ୟେକ ସେହି ବ୍ୟକ୍ତି ନିମନ୍ତେ ଯେ ଅଲ୍ଲାହ ଓ ଅନ୍ତିମ ଦିବସକୁ ଦେଖିବାର ଆଶା ପୋଷଣ କରିଥାଏ, ଏବଂ ଯେ କେହି ମୁହଁମୋଡ଼ି ଚାଲିଯାଏ, ସେ ମନେରଖୁ ଯେ ଅଲ୍ଲାହ ହିଁ ସ୍ୱୟଂ-ପର୍ଯ୍ୟାପ୍ତ (ଓ) ସମସ୍ତ ପ୍ରଶଂସାର ପାତ୍ର ।

لَقَدْ كَانَ لَكُمْ فِيهِمْ أُسْوَةٌ حَسَنَةٌ لِّمَن كَانَ يَرْجُوا اللَّهَ وَالْيَوْمَ الْآخِرَ ۚ وَمَن يَتَوَلَّ فَإِنَّ اللَّهَ هُوَ الْغَنِيُّ الْحَمِيدُ ۝

ରୁଃ ୨

୮. ଅଲ୍ଲାହ ତୁମମାନଙ୍କ ମଧ୍ୟରେ ଓ ସେମାନଙ୍କ ମଧ୍ୟରେ ଯେଉଁମାନେ କି ତୁମମାନଙ୍କ ସହିତ ଶତ୍ରୁତା କରୁଛନ୍ତି (ସମ୍ଭବତଃ) ଶୀଘ୍ର ବନ୍ଧୁତା ସ୍ଥାପନ କରାଇଦେବେ ; ଏବଂ ଅଲ୍ଲାହ ଏ ବିଷୟରେ ସକ୍ଷମ ; ଏବଂ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

عَسَى اللَّهُ أَن يَجْعَلَ بَيْنَكُمْ وَبَيْنَ الَّذِينَ عَادَيْتُم مِّنْهُم مَّوَدَّةً ۚ وَاللَّهُ قَدِيرٌ ۚ وَاللَّهُ غَفُورٌ رَّحِيمٌ ۝

୯. ଯେଉଁମାନେ ତୁମମାନଙ୍କ ସହିତ ଧର୍ମ ସମ୍ବନ୍ଧୀୟ ମତ ପାର୍ଥକ୍ୟ ଯୋଗୁଁ ଯୁଦ୍ଧ କରି ନାହାନ୍ତି, ଓ ଯେଉଁମାନେ ତୁମମାନଙ୍କୁ ତୁମମାନଙ୍କ ଗୃହରୁ ବିତାଡ଼ିତ କରିନାହାନ୍ତି, ସେମାନଙ୍କର କଲ୍ୟାଣ ସାଧନ କରିବା ପାଇଁ ଓ ସେମାନଙ୍କ ସହିତ ନ୍ୟାୟସଙ୍ଗତ ବ୍ୟବହାର କରିବା ପାଇଁ ଅଲ୍ଲାହ ତୁମମାନଙ୍କୁ ବାରଣ କରିନାହାନ୍ତି ; ଅଲ୍ଲାହ ନ୍ୟାୟବାନ୍‌ମାନଙ୍କୁ ପସନ୍ଦ କରିଥା'ନ୍ତି ।

لَّا يَنْهَاكُمُ اللَّهُ عَنِ الَّذِينَ لَمْ يُقَاتِلُوكُمْ فِي الدِّينِ وَلَمْ يُخْرِجُوكُم مِّن دِيَارِكُمْ أَن تَبَرُّوهُمْ وَتُقْسِطُوا إِلَيْهِمْ ۚ إِنَّ اللَّهَ يُحِبُّ الْمُقْسِطِينَ ۝

୧୦. ଅଲ୍ଲାହ ତୁମମାନଙ୍କୁ କେବଳ ସେହି ଲୋକମାନଙ୍କଠାରୁ (ବନ୍ଧୁତା ସ୍ଥାପନ କରିବା ସମ୍ବନ୍ଧରେ) ବାରଣ କରୁଛନ୍ତି, ଯେଉଁମାନେ ତୁମମାନଙ୍କ ସହିତ ଧର୍ମ ସମ୍ବନ୍ଧୀୟ ମତପାର୍ଥକ୍ୟ ଯୋଗୁଁ ଯୁଦ୍ଧ କରିଛନ୍ତି, ଓ ଯେଉଁମାନେ ତୁମମାନଙ୍କୁ (ନିଜ) ଗୃହରୁ ବିତାଡ଼ିତ କରିଛନ୍ତି, କିମ୍ବା ତୁମମାନଙ୍କୁ ବିତାଡ଼ିତ କରିବାରେ ତୁମମାନଙ୍କର ଅନ୍ୟାନ୍ୟ ଶତ୍ରୁଙ୍କୁ ସାହାଯ୍ୟ କରିଛନ୍ତି ; ଏବଂ ଯେଉଁମାନେ ଏପରି ଲୋକମାନଙ୍କ ସହିତ ବନ୍ଧୁତା ସ୍ଥାପନ କରନ୍ତି, ସେହିମାନେ ହିଁ ଅତ୍ୟାଚାରୀ ।

إِنَّمَا يَنْهَاكُمُ اللَّهُ عَنِ الَّذِينَ قَاتَلُوكُمْ فِي الدِّينِ وَأَخْرَجُوكُم مِّن دِيَارِكُمْ وَظَاهَرُوا عَلَىٰ إِخْرَاجِكُمْ أَن تَوَلَّوْهُمْ ۚ وَمَن يَتَوَلَّهُمْ فَأُولَٰئِكَ هُمُ الظَّالِمُونَ ۝

୧୧. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମମାନଙ୍କ ନିକଟକୁ ବିଶ୍ୱାସକାରିଣୀ ନାରୀମାନେ ହିଜରତ କରିଆସନ୍ତି, ସେତେବେଳେ ସେମାନଙ୍କୁ ଭଲଭାବରେ ପରୀକ୍ଷା କର ; ଅଲ୍ଲାହ ସେମାନଙ୍କର (ଧର୍ମ) ବିଶ୍ୱାସକୁ ଭଲଭାବରେ ଜାଣନ୍ତି ; କିନ୍ତୁ ଯଦି ତୁମେମାନେ ମଧ୍ୟ ଉପଲବ୍ଧି କର ଯେ ସେମାନେ ବିଶ୍ୱାସକାରିଣୀ ନାରୀ, ତେବେ ସେମାନଙ୍କୁ ଅବିଶ୍ୱାସକାରୀମାନଙ୍କ ନିକଟକୁ ଫେରାଇ ଦିଅ ନାହିଁ ;

يَا أَيُّهَا الَّذِينَ آمَنُوا إِذَا جَاءَكُمُ الْمُؤْمِنَاتُ مُهَاجِرَاتٍ فَامْتَحِنُوهُنَّ ۖ اللَّهُ أَعْلَمُ بِإِيمَانِهِنَّ ۖ فَإِنْ عَلِمْتُمُوهُنَّ

مُؤْمِنٰتٍ فَلَا تَرْجِعُوْهُنَّ اِلَى الْكُفَّارِ لَا هُنَّ حِلٌّ لَّهُمْ وَلَا هُمْ يَحِلُّوْنَ لَهُنَّ وَاٰتُوْهُمْ مَّآ اَنْفَقُوْا وَلَا جُنَاحَ عَلَيْكُمْ اَنْ تَنْكِحُوْهُنَّ اِذَآ اٰتَيْتُمُوْهُنَّ اُجُوْرَهُنَّ وَلَا تُمْسِكُوْا بِعِصَمِ الْكَوَافِرِ وَسْـَٔلُوْا مَآ اَنْفَقْتُمْ وَلْيَسْـَٔلُوْا مَآ اَنْفَقُوْا ذٰلِكُمْ حُكْمُ اللّٰهِ يَحْكُمُ بَيْنَكُمْ وَاللّٰهُ عَلِيْمٌ حَكِيْمٌ ﴿١٠﴾

ସେମାନେ ସେ (ଅବିଶ୍ୱାସକାରୀ)ମାନଙ୍କ ସକାଶେ ବୈଧ ନୁହନ୍ତି କି ସେ (ଅବିଶ୍ୱାସକାରୀ)ମାନେ ସେ (ନାରୀ) ମାନଙ୍କ ସକାଶେ ବୈଧ ନୁହନ୍ତି ; ଏବଂ ସେ ଅବିଶ୍ୱାସକାରୀମାନେ ସେ ନାରୀମାନଙ୍କ (ବିବାହ) ନିମନ୍ତେ ଯାହା କିଛି ଖର୍ଚ୍ଚ କରିଥା'ନ୍ତି, ତାହା ସେମାନଙ୍କୁ ଫେରାଇଦେବା ଉଚିତ ; ଏବଂ ଯେତେବେଳେ ତୁମେମାନେ ସେହି ନାରୀମାନଙ୍କୁ ଅବିଶ୍ୱାସକାରୀମାନଙ୍କଠାରୁ ମୁକୁଳାଇ ଆଣ, ସେତେବେଳେ ସେମାନଙ୍କର କ୍ଷତିପୂରଣ (ଅର୍ଥାତ୍‌ଦେଏନ ମହେର)ଦେବାଛଳେ ତୁମେମାନେ ସେମାନଙ୍କୁ ବିବାହ କଲେ ସେଥିରେ କୌଣସି ଆପତ୍ତି ନାହିଁ; ଏବଂ ଅବିଶ୍ୱାସକାରିଣୀ ନାରୀମାନଙ୍କ ସତୀତ୍ୱକୁ ନିଜ ଅଧିକାର ମଧ୍ୟରେ ରଖ ନାହିଁ ; ଏବଂ ଯାହା କିଛି ତୁମେମାନେ ସେମାନଙ୍କ ପାଇଁ ଖର୍ଚ୍ଚ କରିଅଛ ଯେଦି ସେମାନେ ପଳାୟନ କରି ଅବିଶ୍ୱାସକାରୀମାନଙ୍କ ନିକଟକୁ ଚାଲିଯାଆନ୍ତି, ତେବେ) ଅବିଶ୍ୱାସକାରୀମାନଙ୍କଠାରୁ (ତାହା) ଦାବି କର [1]; ଏବଂ ଯେଦି ଅବିଶ୍ୱାସକାରୀମାନଙ୍କର ପତ୍ନୀମାନେ ଇସଲାମ ଧର୍ମ ଗ୍ରହଣ କରି ମୁସଲମାନମାନଙ୍କ ନିକଟକୁ ଆସିଯାଆନ୍ତି, ତେବେ) ଯାହା କିଛି ସେମାନେ (ନିଜ ବିବାହରେ) ଖର୍ଚ୍ଚ କରିଛନ୍ତି (ତାହା) ମୁସଲମାନମାନଙ୍କଠାରୁ ଦାବି [2] କରନ୍ତୁ; ଏହା ତୁମମାନଙ୍କ ପ୍ରତି ଅଲ୍ଲାହଙ୍କର ନିର୍ଦ୍ଦେଶ ; ସେ ତୁମମାନଙ୍କ ମଧ୍ୟରେ ନିଷ୍ପତ୍ତି କରନ୍ତି ; ଏବଂ ଅଲ୍ଲାହ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَاِنْ فَاتَكُمْ شَيْءٌ مِّنْ اَزْوَاجِكُمْ اِلَى الْكُفَّارِ

୧୨. ଏବଂ ଯଦି ତୁମମାନଙ୍କ ପତ୍ନୀମାନଙ୍କ ମଧ୍ୟରୁ କେହି ପଳାୟନ କରି ଅବିଶ୍ୱାସକାରୀମାନଙ୍କ ନିକଟକୁ ଚାଲିଯାଏ ଏବଂ ତା'ପରେ କୌଣସି ଅବିଶ୍ୱାସକାରିଣୀ ନାରୀ (ଯୁଦ୍ଧବନ୍ଦିନୀ ଭାବରେ) ତୁମମାନଙ୍କର ହସ୍ତଗତ ହୁଏ, ତେବେ ଯେଉଁମାନଙ୍କର ପତ୍ନୀ ପଳାୟନ କରି ଅବିଶ୍ୱାସକାରୀମାନଙ୍କ

୧. ଅର୍ଥାତ୍ [illegible]

୨. ଅର୍ଥାତ୍ ଅବିଶ୍ୱାସକାରୀମାନେ [illegible] କରନ୍ତୁ । [illegible]

فَعَاقَبْتُمْ فَاٰتُوا الَّذِيْنَ ذَهَبَتْ اَزْوَاجُهُمْ مِّثْلَ مَآ اَنْفَقُوْا ؕ وَاتَّقُوا اللّٰهَ الَّذِيْٓ اَنْتُمْ بِهٖ مُؤْمِنُوْنَ ﴿۱۲﴾

ନିକଟକୁ ଚାଲିଯାଇଛନ୍ତି, ତୁମେମାନେ ସେମାନଙ୍କୁ (ଅବିଶ୍ୱାସକାରିଣୀ ଯୁଦ୍ଧବନ୍ଦିନୀମାନଙ୍କୁ ଅର୍ପଣ ନକରି) ସେମାନେ ନିଜ ବିବାହରେ ଯାହା ପ୍ରକୃତରେ ଖର୍ଚ୍ଚ କରିଛନ୍ତି ତାହା ଦେଇଦିଅ [୧] ; ଏବଂ ଯେଉଁ ଅଲ୍ଲାହ୍‌ଙ୍କ ଉପରେ ତୁମେମାନେ ବିଶ୍ୱାସ କରିଅଛ, ତାହାଙ୍କୁ ଭୟ କର ।

يٰٓاَيُّهَا النَّبِيُّ اِذَا جَآءَكَ الْمُؤْمِنٰتُ يُبَايِعْنَكَ عَلٰٓى اَنْ لَّا يُشْرِكْنَ بِاللّٰهِ شَيْـًٔا وَّلَا يَسْرِقْنَ وَلَا يَزْنِيْنَ وَلَا يَقْتُلْنَ اَوْلَادَهُنَّ وَلَا يَاْتِيْنَ بِبُهْتَانٍ يَّفْتَرِيْنَهٗ بَيْنَ اَيْدِيْهِنَّ وَاَرْجُلِهِنَّ وَلَا يَعْصِيْنَكَ فِيْ مَعْرُوْفٍ فَبَايِعْهُنَّ وَاسْتَغْفِرْ لَهُنَّ اللّٰهَ ؕ اِنَّ اللّٰهَ غَفُوْرٌ رَّحِيْمٌ ﴿۱۳﴾

୧୩. ହେ ନବି ! ଯେବେ ତୁମ ନିକଟକୁ ନାରୀମାନେ ମୁସଲମାନ ହୋଇ ଆସନ୍ତି, ଓ ଏହି ସର୍ତ୍ତରେ ଦୀକ୍ଷା ଗ୍ରହଣ କରିବାକୁ ଇଚ୍ଛାକରନ୍ତି ଯେ ସେମାନେ ଅଲ୍ଲାହ୍‌ଙ୍କ ସହିତ (ଅନ୍ୟ) କାହାକୁ ସମକକ୍ଷ କରିବେ ନାହିଁ, ଓ ଚୋରି କରିବେ ନାହିଁ, ଓ ବ୍ୟଭିଚାର କରିବେ ନାହିଁ, ଓ ସନ୍ତାନଙ୍କୁ ହତ୍ୟା କରିବେ ନାହିଁ, ଓ କାହାରି ପ୍ରତି ମିଥ୍ୟା ଆରୋପ କରିବେ ନାହିଁ, ଏବଂ ପୁଣ୍ୟକାର୍ଯ୍ୟରେ ତୁମର ଅମାନ୍ୟ କରିବେ ନାହିଁ, ତେବେ ତୁମେ ସେମାନଙ୍କର ଦୀକ୍ଷା ଗ୍ରହଣ କର, ଓ ସେମାନଙ୍କ ପାଇଁ ଅଲ୍ଲାହ୍‌ଙ୍କ ନିକଟରେ କ୍ଷମାପ୍ରାର୍ଥନା କର ; ଅଲ୍ଲାହ୍ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

يٰٓاَيُّهَا الَّذِيْنَ اٰمَنُوْا لَا تَتَوَلَّوْا قَوْمًا غَضِبَ اللّٰهُ عَلَيْهِمْ قَدْ يَئِسُوْا مِنَ الْاٰخِرَةِ كَمَا يَئِسَ الْكُفَّارُ مِنْ اَصْحٰبِ الْقُبُوْرِ ﴿۱۴﴾

୧୪. ହେ ବିଶ୍ୱାସକାରୀମାନେ ! ଏପରି କୌଣସି ସମ୍ପ୍ରଦାୟ ସହିତ ବନ୍ଧୁତା ସ୍ଥାପନ କରନାହିଁ ଯେଉଁମାନଙ୍କ ଉପରେ ଅଲ୍ଲାହ୍ ଅସନ୍ତୁଷ୍ଟ [୨] ଅଛନ୍ତି ; ସେମାନେ ପରକାଳ ଜୀବନ ସମ୍ବନ୍ଧରେ ଏପରି ଭାବେ ନିରାଶ ହୋଇ ପଡ଼ିଛନ୍ତି ଯେପରି ଅବିଶ୍ୱାସକାରୀମାନେ କବରରେ ଥିବା (ମୃତ) ଲୋକମାନଙ୍କ ସମ୍ବନ୍ଧରେ ନିରାଶ ହୋଇ ଯାଇଛନ୍ତି ।

---

୧. ଯେଉଁ ମୁସଲମାନମାନେ, ନିଜର ପତ୍ନୀମାନେ ପଳାୟନ କରିଥିବାରୁ ବା ଯୁଦ୍ଧବନ୍ଦିନୀ ହୋଇଥିବାରୁ କ୍ଷତିଗ୍ରସ୍ତ ହୋଇଛନ୍ତି, ଯୁଦ୍ଧବନ୍ଦିନୀ ଭାବରେ ଆନୀତ ସେମାନଙ୍କ ପତ୍ନୀମାନଙ୍କ ପ୍ରତି ସରକାର ପ୍ରତିଶୋଧ ପରାୟଣ ହୁଅନ୍ତୁ ନାହିଁ ବରଂ ନିଜ ତରଫରୁ ଆର୍ଥିକ କ୍ଷତିର ପ୍ରତିପୂରଣ କରନ୍ତୁ, ତା' ହେଲେ ନାରୀଜାତିର ସମ୍ମାନ ରକ୍ଷା କରିବାପାଇଁ ଇସଲାମ ଯେଉଁ ନୀତି ପ୍ରତିଷ୍ଠା କରିବାକୁ ଇଚ୍ଛା କରୁଛି ତାହାର ଅବମାନନା ହେବ ନାହିଁ ।

୨. ଏହାର ମର୍ମ ହେଉଛି ଯେ ଯେଉଁମାନଙ୍କ ଉପରେ ଅଲ୍ଲାହ୍ ଅସନ୍ତୁଷ୍ଟ ନୁହନ୍ତି ସେମାନେ ନିଜ ଶତ୍ରୁତାରେ ସୀମା ଅତିକ୍ରମ କରନ୍ତି ନାହିଁ । କିନ୍ତୁ ଯେଉଁମାନଙ୍କ ଉପରେ ଅଲ୍ଲାହ୍ ଅସନ୍ତୁଷ୍ଟ ହୁଅନ୍ତି ସେମାନେ ନିଜ ଶତ୍ରୁତାରେ ସୀମା ଅତିକ୍ରମ କରନ୍ତି । ଏହି କାରଣରୁ ସେମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ଅସମୀଚୀନ ।

سُوْرَةُ الصَّفِّ مَدَنِيَّةٌ (٦١)

# ଅଲ–ସଫ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ ଏହାରେ ବିସ୍ମିଲ୍ଲା ସମେତ ୧୫ଟି ଆୟତ ଓ ୨ଟି ରୁକୁ ଅଛି ।)

١. بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

سَبَّحَ لِلّٰهِ مَا فِي السَّمٰوٰتِ وَمَا فِي الْاَرْضِ ۚ وَهُوَ الْعَزِيْزُ الْحَكِيْمُ ②

୨. ଆକାଶ ଓ ପୃଥିବୀରେ ଯାହାକିଛି ରହିଅଛି ସେସବୁ ଅଲ୍ଲାହ୍‌ଙ୍କର ଗୁଣଗାନ କରୁଛନ୍ତି ; ଏବଂ ସେ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

يٰۤاَيُّهَا الَّذِيْنَ اٰمَنُوْا لِمَ تَقُوْلُوْنَ مَا لَا تَفْعَلُوْنَ ③

୩. ହେ ବିଶ୍ୱାସକାରୀମାନେ ! ତୁମେମାନେ କାହିଁକି ସେ ବିଷୟ କହୁଅଛ ଯାହା ତୁମେମାନେ କରୁନାହିଁ ?

كَبُرَ مَقْتًا عِنْدَ اللّٰهِ اَنْ تَقُوْلُوْا مَا لَا تَفْعَلُوْنَ ④

୪. ଅଲ୍ଲାହ୍‌ଙ୍କ ନିକଟରେ ତାହା ଅତ୍ୟନ୍ତ ଗର୍ହିତ ଯାହା ତୁମେମାନେ କହୁଅଛ ଅଥଚ କରୁନାହିଁ ।

اِنَّ اللّٰهَ يُحِبُّ الَّذِيْنَ يُقَاتِلُوْنَ فِيْ سَبِيْلِهٖ صَفًّا كَاَنَّهُمْ بُنْيَانٌ مَّرْصُوْصٌ ⑤

୫. ଅଲ୍ଲାହ୍ ସେହି ଲୋକମାନଙ୍କୁ ପସନ୍ଦ କରନ୍ତି ଯେଉଁମାନେ ତାହାଙ୍କ ଉଦ୍ଦେଶ୍ୟରେ ଧାଡ଼ିବାନ୍ଧି ଯୁଦ୍ଧ କରନ୍ତି, ସତେ ଯେପରି ସେମାନେ ଏକ ପ୍ରାଚୀର ଯାହାର ଦୃଢ଼ତା ନିମନ୍ତେ ତା' ଉପରେ ତରଳ ସୀସା ଢଳାଯାଇଛି ।

وَاِذْ قَالَ مُوْسٰى لِقَوْمِهٖ يٰقَوْمِ لِمَ تُؤْذُوْنَنِيْ وَقَدْ تَّعْلَمُوْنَ اَنِّيْ رَسُوْلُ اللّٰهِ اِلَيْكُمْ ۗ فَلَمَّا زَاغُوْۤا اَزَاغَ اللّٰهُ قُلُوْبَهُمْ ۗ وَاللّٰهُ لَا يَهْدِي الْقَوْمَ الْفٰسِقِيْنَ ⑥

୬. ଏବଂ (ସ୍ମରଣକର) ଯେତେବେଳେ ମୁସା ନିଜ ସମ୍ପ୍ରଦାୟକୁ କହିଲେ, "ହେ ଆମ୍ଭର ସମ୍ପ୍ରଦାୟ ! ତୁମେମାନେ ଆମ୍ଭଙ୍କୁ କାହିଁକି ଦୁଃଖ ଦେଉଅଛ ଅଥଚ ତୁମମାନଙ୍କୁ ଜଣାଅଛି ଯେ ଆମ୍ଭେ ଅଲ୍ଲାହ୍‌ଙ୍କ ତରଫରୁ ତୁମମାନଙ୍କ ନିକଟକୁ ରସୁଲ ଭାବରେ ଆସିଅଛୁ ;" କିନ୍ତୁ (ଏହାସତ୍ତ୍ୱେ) ଯେତେବେଳେ ସେ (ଲୋକ)ମାନେ ସତ୍‌ପଥରୁ ବିଚ୍ୟୁତ ହୋଇଗଲେ, ସେତେବେଳେ ଅଲ୍ଲାହ୍ ସେମାନଙ୍କ ହୃଦୟକୁ କୁଟିଳ କରିଦେଲେ ; ଏବଂ ଅଲ୍ଲାହ୍ ଅମାନ୍ୟକାରୀମାନଙ୍କୁ ସଫଳତାର ମାର୍ଗ ପ୍ରଦର୍ଶନ କରାନ୍ତି ନାହିଁ ।

وَاِذْ قَالَ عِيْسَى ابْنُ مَرْيَمَ يٰبَنِيْۤ اِسْرَآءِيْلَ اِنِّيْ رَسُوْلُ اللّٰهِ اِلَيْكُمْ مُّصَدِّقًا لِّمَا بَيْنَ يَدَيَّ مِنَ

୭. ଏବଂ (ସ୍ମରଣ କର) ଯେତେବେଳେ ମରିୟମ-ନନ୍ଦନ ଇସା ନିଜ ସମ୍ପ୍ରଦାୟକୁ କହିଲେ, "ହେ ଇସ୍ରାଇଲୀୟ ସନ୍ତାନମାନେ ! ଆମ୍ଭେ ଅଲ୍ଲାହ୍‌ଙ୍କ ତରଫରୁ ତୁମମାନଙ୍କ ନିକଟକୁ ରସୁଲ ଭାବରେ ଆସିଅଛୁ ; ଯାହା (ଅର୍ଥାତ୍ ଯେଉଁ ବାଣୀ) ଆମ୍ଭର ଆଗମନ ପୂର୍ବରୁ ଅବତୀର୍ଣ୍ଣ ହୋଇଅଛି, ଅର୍ଥାତ୍

التَّوْرٰىةِ وَمُبَشِّرًۢا بِرَسُوْلٍ يَّاْتِيْ مِنْۢ بَعْدِي اسْمُهٗٓ اَحْمَدُ ۚ فَلَمَّا جَآءَهُمْ بِالْبَيِّنٰتِ قَالُوْا هٰذَا سِحْرٌ مُّبِيْنٌ ⑦

ତୌରାତ, ଆମ୍ଭେ ତାହାର ଭବିଷ୍ୟବାଣୀର ସତ୍ୟତା ପ୍ରତିପାଦିତ କରୁଅଛୁ, ଏବଂ ଏପରି ଜଣେ ରସୁଲଙ୍କ ସମ୍ବନ୍ଧରେ ସୁସମାଚାର ଦେଉଅଛୁ ଯେ କି ଆମ୍ଭ ପରେ ଆସିବେ, ଯାହାଙ୍କର ନାମ-ଅହମଦ [୧] ହେବ '' ; (କିନ୍ତୁ) ଏହାପରେ ଯେତେବେଳେ ସେ ରସୁଲ ପ୍ରମାଣ ସହିତ ଆସିଥିଲେ, ସେତେବେଳେ ସେମାନେ କହିଥିଲେ, ''ଏହା ସ୍ପଷ୍ଟ ପ୍ରତାରଣା'' ।

وَمَنْ اَظْلَمُ مِمَّنِ افْتَرٰى عَلَى اللّٰهِ الْكَذِبَ وَهُوَ يُدْعٰٓى اِلَى الْاِسْلَامِ ۚ وَاللّٰهُ لَا يَهْدِي الْقَوْمَ الظّٰلِمِيْنَ ⑧

୮. ଏବଂ ତା'ଠାରୁ ଅଧିକ ଅତ୍ୟାଚାରୀ କିଏ ହୋଇପାରେ ଯେ ଅଲ୍ଲାହ୍‌ଙ୍କ ନାମରେ ମିଥ୍ୟା ରଚନା କରେ ଅଥଚ ତାହାଙ୍କୁ [୨] ଇସଲାମ (ଧର୍ମ) ପ୍ରତି ଡକା ଯାଉଛି ? ଏବଂ ଅଲ୍ଲାହ୍ ଅତ୍ୟାଚାରୀମାନଙ୍କୁ କଦାପି ସତ୍‌ପଥ ପ୍ରଦର୍ଶନ କରାନ୍ତି ନାହିଁ ।

يُرِيْدُوْنَ لِيُطْفِـُٔوْا نُوْرَ اللّٰهِ بِاَفْوَاهِهِمْ وَاللّٰهُ مُتِمُّ نُوْرِهٖ وَلَوْ كَرِهَ الْكٰفِرُوْنَ ⑨

୯. ସେମାନେ ଆପଣା ମୁଖ ଦ୍ୱାରା ଅଲ୍ଲାହ୍‌ଙ୍କ ଜ୍ୟୋତିକୁ ଲିଭାଇଦେବାକୁ ଇଚ୍ଛା କରୁଛନ୍ତି ; ଏବଂ ଅବିଶ୍ୱାସକାରୀମାନେ ଯେତେ ଅପସନ୍ଦ କଲେ ମଧ୍ୟ ଅଲ୍ଲାହ୍ ନିଜ ଜ୍ୟୋତିକୁ ସମ୍ପୂର୍ଣ୍ଣ (ରୂପେ ବିସ୍ତାରିତ) କରିବେ ।

هُوَ الَّذِيْٓ اَرْسَلَ رَسُوْلَهٗ بِالْهُدٰى وَدِيْنِ الْحَقِّ لِيُظْهِرَهٗ عَلَى الدِّيْنِ كُلِّهٖ وَلَوْ كَرِهَ الْمُشْرِكُوْنَ ⑩

୧୦. ସେ (ଅଲ୍ଲାହ୍) ହିଁ ନିଜ ରସୁଲଙ୍କୁ ସତ୍‌ପଥ ସହିତ ଓ ସତ୍ୟଧର୍ମ ପ୍ରଦାନ କରି ପ୍ରେରଣ କରିଛନ୍ତି ଯଦ୍ୱାରା କି ମୁସରିକମାନେ ଯେତେ ଅପସନ୍ଦ କଲେ ମଧ୍ୟ (ସେ) ତାହାଙ୍କୁ ସମସ୍ତ ଧର୍ମ ଉପରେ ବିଜୟୀ କରିବେ ।

---

୧. ଏହି ଆୟତରେ ହଜରତ ମହମ୍ମଦଙ୍କ ସମ୍ବନ୍ଧରେ ଏକ ଭବିଷ୍ୟବାଣୀ ଅଛି ଯାହା ବର୍ଣ୍ଣବାସ ସଙ୍କଳିତ ବାଇବେଲ (ଅର୍ଥାତ୍ ଇଂଜିଲ) ରେ ଲିପିବଦ୍ଧ ହୋଇଛି । ଖ୍ରୀଷ୍ଟିୟାନମାନେ ଏହାକୁ ପ୍ରକୃତ ବାଇବେଲ ରୂପେ ସ୍ୱୀକାର କରନ୍ତି ନାହିଁ ଯଦ୍ୟପି ଏହା ପୋପଙ୍କ ଗ୍ରନ୍ଥାଗାରରେ ଅଛି । ଏତଦ୍‌ଭିନ୍ନ ପ୍ରଚଳିତ ବାଇବେଲରେ ପାରାକ୍ଲିଟ (**Paraclete**) ବା ସାନ୍ତ୍ୱନାଦାତା (**Comforter**) ଙ୍କ ବିଷୟ ବର୍ଣ୍ଣନା କରାଯାଇଛି (**John 14: 16-17, 15: 26, 16: 7** ଦ୍ରଷ୍ଟବ୍ୟ) । ବାଇବେଲକୁ ଅନୁଧ୍ୟାନ କଲେ ନିମ୍ନଲିଖିତ ମୁଖ୍ୟ ବିଷୟର ପ୍ରମାଣ ମିଳିବ: (କ) ଯୀଶୁଙ୍କ ପ୍ରସ୍ଥାନ ପରେ ପାରାକ୍ଲିଟ ଆସିବେ, (ଖ) ଯୀଶୁ କହିପାରି ନ ଥିବା ବିଷୟ ସେ କହିବେ, (ଗ) ପୂର୍ଣ୍ଣସତ୍ୟ ଲାଭ କରିବା ପର୍ଯ୍ୟନ୍ତ ସେ ଲୋକମାନଙ୍କୁ ପଥ ପ୍ରଦର୍ଶନ କରାଇବେ, (ଘ) ସେ ଯୀଶୁଙ୍କର ଗୌରବ ଗାନ କରିବେ ଓ ତାଙ୍କୁ ସତ୍ୟ ବୋଲି ପ୍ରମାଣିତ କରିବେ, (ଙ) ସେ ନିଜେ ମନରୁ କିଛି କହିବେ ନାହିଁ; ବରଂ ଯାହା କିଛି ଦିବ୍ୟବାଣୀ [illegible] କହିବେ ।

ଯୀଶୁଙ୍କ ପରେ ହଜରତ ମହମ୍ମଦଙ୍କର ଆବିର୍ଭାବ ହୋଇଥିଲା । ହଜରତ ମହମ୍ମଦ ଅନ୍ତିମ ଧର୍ମ ବିଧାନ ଆଣିଥିବା, ସେ ଅନ୍ତିମ [illegible] ରସୁଲ ହୋଇଥିବା, ତାଙ୍କ ଶିକ୍ଷା ପ୍ରଳୟ ପର୍ଯ୍ୟନ୍ତ ପ୍ରଚଳିତ ହୋଇ ରହିବା, ସେ ଅଲ୍ଲାହ୍‌ଙ୍କ ନାମରେ ଧର୍ମଶିକ୍ଷା ଦେବା ଓ ଯୀଶୁଙ୍କୁ ପଇଗାମ ପ୍ରଦାନ କରିବା ଆଦି ସକଳ ବିଷୟ କେବଳ ହଜରତ ମହମ୍ମଦଙ୍କଠାରେ ପ୍ରତିପୋଷିତ ହୁଏ । ଅବଶ୍ୟ ନାମରେ ପାର୍ଥକ୍ୟଥିବା ଦେଖିବାକୁ ମିଳେ । ଏ ସମ୍ବନ୍ଧରେ 'ପାରାକ୍ଲିଟ' ଶବ୍ଦ, ଗ୍ରୀକ୍ ଶବ୍ଦ ପେରିକ୍ଲୁଟୋସ୍ (**Periklutos**) ବା ପାରାକ୍ଲେଟୋସ୍ (**parakletos**) ଶବ୍ଦଗୁଡ଼ିକୁ ଅନୁଧ୍ୟାନ କଲେ ଜଣାଯିବ ଯେ ଆରବୀ ଶବ୍ଦ 'ଅହମଦ' ସହିତ ଏଗୁଡ଼ିକର ଅର୍ଥଗତ ସାମଞ୍ଜସ୍ୟ ଅଛି । ଅତଏବ ଏହି ଆୟତରେ ପ୍ରତ୍ୟକ୍ଷ ଭାବେ ହଜରତ ମହମ୍ମଦଙ୍କ ବିଷୟ ଓ ପରୋକ୍ଷ ଭାବେ ତାଙ୍କର ଅନୁରୂପ ବିଷୟ ସୂଚିତ କରାଯାଇଛି ।

୨. ଏହି ଆୟତରେ [illegible] ସ୍ୱତନ୍ତ୍ର ଧ୍ୟାନ [illegible] ତାଙ୍କ ସମ୍ପର୍କ ପରୋକ୍ଷ ହୋଇଥିଲେ ମଧ୍ୟ ଇସଲାମ ଧର୍ମ ଗ୍ରହଣ କରିବାକୁ ତାଙ୍କୁ ନିମନ୍ତ୍ରଣ କରାହେବ । ତେଣୁ ଏଠାରେ 'ସମ୍ବୋଧିତ ବ୍ୟକ୍ତି' ହଜରତ ମହମ୍ମଦ ହୋଇ ନ ପାରନ୍ତି, କାରଣ ସେ ନିଜେ ମାନବ ସମାଜକୁ ଇସଲାମ ଧର୍ମ ଗ୍ରହଣ କରିବାପାଇଁ ନିମନ୍ତ୍ରଣ କରୁଥିଲେ ।

يٰۤاَيُّهَا الَّذِيْنَ اٰمَنُوْا هَلْ اَدُلُّكُمْ عَلٰى تِجَارَةٍ تُنْجِيْكُمْ مِّنْ عَذَابٍ اَلِيْمٍ ﴿١١﴾

୧୧. ହେ ବିଶ୍ୱାସକାରୀମାନେ ! କ'ଣ ଆମେ ତୁମମାନଙ୍କୁ ଏପରି ଏକ ବ୍ୟବସାୟ ସମ୍ବନ୍ଧରେ ସମାଚାର ଦେବୁ ଯାହା ତୁମମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତିରୁ ରକ୍ଷା କରିବ ?

تُؤْمِنُوْنَ بِاللّٰهِ وَرَسُوْلِهٖ وَتُجَاهِدُوْنَ فِيْ سَبِيْلِ اللّٰهِ بِاَمْوَالِكُمْ وَاَنْفُسِكُمْ ۚ ذٰلِكُمْ خَيْرٌ لَّكُمْ اِنْ كُنْتُمْ تَعْلَمُوْنَ ﴿١٢﴾

୧୨. (ସେ ବ୍ୟବସାୟ ଏହି ଯେ) ତୁମେମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ପ୍ରତି ବିଶ୍ୱାସ କର, ଓ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଆପଣା ଧନସମ୍ପତ୍ତି ଓ ଜୀବନ ଅର୍ପଣ କରି ଜେହାଦ କର ; ଯଦି ତୁମେମାନେ ଜାଣିପାର, ତେବେ ଏହା ତୁମମାନଙ୍କ ପକ୍ଷରେ ଅତି ଉତ୍ତମ ।

يَغْفِرْ لَكُمْ ذُنُوْبَكُمْ وَيُدْخِلْكُمْ جَنّٰتٍ تَجْرِيْ مِنْ تَحْتِهَا الْاَنْهٰرُ وَمَسٰكِنَ طَيِّبَةً فِيْ جَنّٰتِ عَدْنٍ ۚ ذٰلِكَ الْفَوْزُ الْعَظِيْمُ ﴿١٣﴾

୧୩. (ତୁମେମାନେ ଏପରି କଲେ) ସେ ତୁମମାନଙ୍କ ପାପକୁ କ୍ଷମା କରିବେ, ଏବଂ ତୁମମାନଙ୍କୁ ଏପରି ବୈକୁଣ୍ଠରେ ପ୍ରବେଶ କରାଇବେ ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥିବ, ଏବଂ ଚିରସ୍ଥାୟୀ ବୈକୁଣ୍ଠର ପବିତ୍ର ଗୃହମାନଙ୍କରେ (ତୁମମାନଙ୍କୁ ରଖିବେ) ; ଏହା ଏକ ମହାନ୍ ସଫଳତା ।

وَاُخْرٰى تُحِبُّوْنَهَا ۚ نَصْرٌ مِّنَ اللّٰهِ وَفَتْحٌ قَرِيْبٌ ۚ وَبَشِّرِ الْمُؤْمِنِيْنَ ﴿١٤﴾

୧୪. ଏତଦ୍‌ବ୍ୟତୀତ, ଅନ୍ୟ ଏକ ବିଷୟ ମଧ୍ୟ ଅଛି ଯାହା ତୁମେମାନେ ବହୁତ ଚାହୁଁଅଛ, ତାହା ହେଉଛି ଅଲ୍ଲାହଙ୍କ ସମର୍ଥନ ଓ ଆସନ୍ନ ବିଜୟ ; ଏବଂ ବିଶ୍ୱାସକାରୀମାନଙ୍କୁ ସୁସମାଚାର ପ୍ରଦାନ କର (ଯେ ସେମାନଙ୍କୁ ଅନ୍ୟ ଏକ ଆସନ୍ନ ବିଜୟ ପ୍ରାପ୍ତହେବ) ।

يٰۤاَيُّهَا الَّذِيْنَ اٰمَنُوْا كُوْنُوْۤا اَنْصَارَ اللّٰهِ كَمَا قَالَ عِيْسَى ابْنُ مَرْيَمَ لِلْحَوَارِيّٖنَ مَنْ اَنْصَارِيْۤ اِلَى اللّٰهِ ۚ قَالَ الْحَوَارِيُّوْنَ نَحْنُ اَنْصَارُ اللّٰهِ فَاٰمَنَتْ طَّآئِفَةٌ مِّنْ بَنِيْۤ اِسْرَآءِيْلَ وَكَفَرَتْ طَّآئِفَةٌ ۚ فَاَيَّدْنَا الَّذِيْنَ اٰمَنُوْا عَلٰى عَدُوِّهِمْ فَاَصْبَحُوْا ظٰهِرِيْنَ ﴿١٥﴾

୧୫. ହେ ବିଶ୍ୱାସକାରୀମାନେ ! ତୁମେମାନେ ଅଲ୍ଲାହଙ୍କ (ଧର୍ମ)ର ସାହାଯ୍ୟକାରୀ ହୋଇଯାଅ, ଯେପରି ମରିୟମ-ନନ୍ଦନ ଇସା ଯେତେବେଳେ (ନିଜ) ଶିଷ୍ୟମାନଙ୍କୁ କହିଥିଲେ, "ଅଲ୍ଲାହଙ୍କ (ସାମୀପ୍ୟ ଲାଭ କରିବା) କାର୍ଯ୍ୟ ଗୁଡ଼ିକରେ କିଏ ଆମର ସାହାଯ୍ୟକାରୀ ହେବ ?" ସେତେବେଳେ ସେମାନେ କହିଥିଲେ, "ଆମେମାନେ ଅଲ୍ଲାହଙ୍କ (ଧର୍ମ)ର ସାହାଯ୍ୟକାରୀ ଅଟୁ ;" ତା'ପରେ ଇସ୍ରାଇଲୀୟ ସନ୍ତାନମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ବିଶ୍ୱାସ କରିଥିଲା, ଓ ଅନ୍ୟ ଗୋଟିଏ ଗୋଷ୍ଠୀ ଅବଜ୍ଞା କରିଥିଲା ; ତେଣୁ ଆମେ ବିଶ୍ୱାସକାରୀମାନଙ୍କୁ ସେମାନଙ୍କ ଶତ୍ରୁ ବିରୁଦ୍ଧରେ ସାହାଯ୍ୟ କରିଥିଲୁ, ଏବଂ ସେ (ବିଶ୍ୱାସକାରୀ)ମାନେ ବିଜୟୀ ହୋଇଥିଲେ ।

سُوْرَةُ الْجُمُعَةِ مَدَنِيَّةٌ (٦٢) رُكُوْعَاتُهَا آيَاتُهَا

## ଅଲ—ଜୁମା

(ଏହି ସୂରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୨ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି ।)

يُسَبِّحُ لِلّٰهِ مَا فِي السَّمٰوٰتِ وَمَا فِي الْاَرْضِ الْمَلِكِ الْقُدُّوْسِ الْعَزِيْزِ الْحَكِيْمِ ②

୨. ଆକାଶ ଓ ପୃଥିବୀରେ ଯାହା ଅଛି, ସେସବୁ ଅଲ୍ଲାହଙ୍କର ଗୁଣଗାନ କରୁଛନ୍ତି, ତାହାଙ୍କର (ଅର୍ଥାତ୍ ସେହି ଅଲ୍ଲାହଙ୍କର) ଯେ କି ସମ୍ରାଟ ଏବଂ ପବିତ୍ର, (ଓ ସମସ୍ତ ଗୁଣର ସମାହାର ଅଟନ୍ତି), ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

هُوَ الَّذِيْ بَعَثَ فِي الْاُمِّيّٖنَ رَسُوْلًا مِّنْهُمْ يَتْلُوْا عَلَيْهِمْ اٰيٰتِهٖ وَيُزَكِّيْهِمْ وَيُعَلِّمُهُمُ الْكِتٰبَ وَالْحِكْمَةَ ۗ وَاِنْ كَانُوْا مِنْ قَبْلُ لَفِيْ ضَلٰلٍ مُّبِيْنٍ ③

୩. ସେ (ଅଲ୍ଲାହ) ହିଁ ଏକ ନିରକ୍ଷର ସମ୍ପ୍ରଦାୟ ପ୍ରତି ତାହାରି ମଧ୍ୟରୁ ଜଣେ ବ୍ୟକ୍ତିଙ୍କୁ ରସୁଲ ଭାବରେ ପ୍ରେରଣ କରିଛନ୍ତି ; (ସେ ନିରକ୍ଷର ହେବା ସତ୍ତ୍ୱେ) ସେମାନଙ୍କୁ ଅଲ୍ଲାହଙ୍କ ଆଦେଶାବଳୀକୁ ପାଠକରି ଶୁଣାଉଛନ୍ତି, ଓ ସେମାନଙ୍କୁ ପବିତ୍ର କରାଉଛନ୍ତି, ଓ ସେମାନଙ୍କୁ (ଧର୍ମ) ଗ୍ରନ୍ଥ ଓ ତତ୍ତ୍ୱଶିକ୍ଷା ଦେଉଛନ୍ତି, ଅଥଚ ସେମାନେ ଏଥିପୂର୍ବରୁ ସ୍ପଷ୍ଟ ବିଭ୍ରାନ୍ତ ମଧ୍ୟରେ ରହିଥିଲେ ।

وَّاٰخَرِيْنَ مِنْهُمْ لَمَّا يَلْحَقُوْا بِهِمْ ۭ وَهُوَ الْعَزِيْزُ الْحَكِيْمُ ④

୪. ଏବଂ ସେମାନଙ୍କ ବ୍ୟତୀତ ଅନ୍ୟ ଏକ ସମ୍ପ୍ରଦାୟରେ[୧] ମଧ୍ୟ ସେ ତାହାଙ୍କୁ ପ୍ରେରଣ କରିବେ ଯେଉଁମାନେ ଅଦ୍ୟାବଧି ସେମାନଙ୍କ ସହିତ ଯୋଗଦାନ କରିନାହାନ୍ତି; ଏବଂ ସେ ହିଁ ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

ذٰلِكَ فَضْلُ اللّٰهِ يُؤْتِيْهِ مَنْ يَّشَاۗءُ ۭ وَاللّٰهُ ذُو الْفَضْلِ الْعَظِيْمِ ⑤

୫. ଏହା ହିଁ ଅଲ୍ଲାହଙ୍କର କୃପା, ସେ ଯାହାକୁ ଇଚ୍ଛା କରନ୍ତି ତାହାକୁ ଦେଇଥା'ନ୍ତି ; ଅଲ୍ଲାହ ହିଁ ଅତ୍ୟନ୍ତ କୃପାଶୀଳ ।

---

୧. ଏହି ଆୟତରେ ଏକ ନିର୍ଦ୍ଦିଷ୍ଟ ହଦିସ ପ୍ରତି ସୂଚନା ଦିଆଯାଇଛି । ସେହି ହଦିସରେ ନିମ୍ନୋକ୍ତ ଭାବେ ବର୍ଣ୍ଣନା କରାଯାଇଛି – ହଜରତ ମହମ୍ମଦଙ୍କ ସାହାବା ଅର୍ଥାତ୍ ତାଙ୍କ ସାଥୀମାନେ ତାଙ୍କୁ ସେହି ଅନ୍ୟ ସମ୍ପ୍ରଦାୟ କିଏ ବୋଲି ପଚାରିବାରୁ, ହଜରତ ମହମ୍ମଦ ସଲମାନ ଫାରସୀଙ୍କ କାନ୍ଧ ଉପରେ ହାତରଖି କହିଲେ ଯେ ଯଦି କୌଣସି ଏକ ସମୟରେ ଧର୍ମବିଶ୍ୱାସ ସପ୍ତର୍ଷିମଣ୍ଡଳ ପର୍ଯ୍ୟନ୍ତ ଆରୋହଣ କରିଯିବ, ତେବେ ଇରାନୀୟ ବଂଶୋଦ୍ଭବ ଏକ ବା ଏକାଧିକ ଲୋକ ତାହାକୁ ଫେରାଇ ଆଣିବେ (ହଦିସ ବୁଖାରି ଦ୍ରଷ୍ଟବ୍ୟ) । ଏଥିରେ ଇମାମ ମେହେଦିଙ୍କର ଶୁଭ ଆଗମନ ବିଷୟରେ ସୂଚନା ଦିଆଯାଇଛି । ହଜରତ ମହମ୍ମଦଙ୍କର ଉପରୋକ୍ତ ବିବୃତି ଅନୁସାରେ, ଏହି ଆୟତ ଜଣେ ଇରାନୀୟ ବଂଶୋଦ୍ଭବ ବ୍ୟକ୍ତିଙ୍କ ପ୍ରତି ପ୍ରଯୋଜ୍ୟ । ଅହମଦିୟା ସମ୍ପ୍ରଦାୟର ପ୍ରତିଷ୍ଠାତା ପ୍ରତିଶ୍ରୁତ ମସିହ ଜଣେ ଇରାନୀୟ ବଂଶୋଦ୍ଭବ ବ୍ୟକ୍ତି ଥିଲେ । ଏତଦ୍‌ଭିନ୍ନ ତାହାଙ୍କ ଆବିର୍ଭାବ ସମ୍ବନ୍ଧରେ ହଜରତ ମହମ୍ମଦଙ୍କର ଆହୁରି ଅନେକ ହଦିସ ରହିଅଛି ।

୬. ଯେଉଁ (ଲୋକ)ମାନଙ୍କ ଉପରେ ତୌରାତର ଅନୁସରଣ ଅନିବାର୍ଯ୍ୟ କରାଯାଇଅଛି, କିନ୍ତୁ ଏହା ସତ୍ତ୍ୱେ ସେମାନେ ତଦନୁସାରେ କର୍ମ କରି ନାହାନ୍ତି, ସେମାନଙ୍କର ଦୃଷ୍ଟାନ୍ତ ଗର୍ଦ୍ଦଭ ସଦୃଶ, ଯେ କି ଅନେକଗୁଡ଼ିଏ ପୁସ୍ତକ ବହନ କରିଥାଏ (କିନ୍ତୁ ସେ ବିଷୟରେ କିଛି ଜାଣେ ନାହିଁ) ; ଅଲ୍ଲାହ୍‌ଙ୍କ ଆଦେଶାବଳୀକୁ ପ୍ରତ୍ୟାଖ୍ୟାନ କରୁଥିବା ସମ୍ପ୍ରଦାୟର ଅବସ୍ଥା ଅତିଶୟ ମନ୍ଦ ଅଟେ ; ଏବଂ ଅଲ୍ଲାହ୍ ଅତ୍ୟାଚାରୀ ସମ୍ପ୍ରଦାୟକୁ କଦାପି ସଫଳତା ପ୍ରଦାନ କରନ୍ତି ନାହିଁ ।

مَثَلُ الَّذِيْنَ حُمِّلُوا التَّوْرٰىةَ ثُمَّ لَمْ يَحْمِلُوْهَا كَمَثَلِ الْحِمَارِ يَحْمِلُ اَسْفَارًا ؕ بِئْسَ مَثَلُ الْقَوْمِ الَّذِيْنَ كَذَّبُوْا بِاٰيٰتِ اللّٰهِ ؕ وَاللّٰهُ لَا يَهْدِى الْقَوْمَ الظّٰلِمِيْنَ ۞۶

୭. ତୁମେ କୁହ, ''ହେ ଇହୁଦୀମାନେ ! ଯଦି ତୁମେମାନେ ଏପରି ଦାବି କରୁଥାଅ ଯେ ଅବଶିଷ୍ଟ ପୃଥିବୀର ଲୋକମାନଙ୍କ ବ୍ୟତୀତ ତୁମେମାନେ ହିଁ ଅଲ୍ଲାହ୍‌ଙ୍କର ମିତ୍ର ଓ ତାହାଙ୍କର ଶରଣାଧୀନ, ଏବଂ ଯଦି ତୁମେମାନେ (ଏ ଦାବି ସମ୍ବନ୍ଧରେ) ସତ୍ୟବାଦୀ ଅଟ, ତେବେ ମୃତ୍ୟୁ କାମନା କର (ଅର୍ଥାତ୍ ଅଲ୍ଲାହ୍‌ଙ୍କ ଅଭିଶାପକୁ ମିଥ୍ୟାବାଦୀ ପ୍ରତି ଆବାହନ କର) ।

قُلْ يٰۤاَيُّهَا الَّذِيْنَ هَادُوْۤا اِنْ زَعَمْتُمْ اَنَّكُمْ اَوْلِيَآءُ لِلّٰهِ مِنْ دُوْنِ النَّاسِ فَتَمَنَّوُا الْمَوْتَ اِنْ كُنْتُمْ صٰدِقِيْنَ ۞۷

୮. କିନ୍ତୁ ସେମାନେ ନିଜର ଅତୀତ କର୍ମ ଯୋଗୁଁ କଦାପି ଏହା କାମନା କରିବେ ନାହିଁ ; ଏବଂ ଅଲ୍ଲାହ୍ ଅତ୍ୟାଚାରୀମାନଙ୍କ ସମ୍ବନ୍ଧରେ ଭଲରୂପେ ଅବଗତ ଅଛନ୍ତି ।

وَلَا يَتَمَنَّوْنَهٗۤ اَبَدًاۢ بِمَا قَدَّمَتْ اَيْدِيْهِمْ ؕ وَاللّٰهُ عَلِيْمٌۢ بِالظّٰلِمِيْنَ ۞۸

୯. ତୁମେ କୁହ, ''ଯେଉଁ ମୃତ୍ୟୁଠାରୁ ତୁମେମାନେ ପଳାୟନ କରୁଅଛ ତାହା ଦିନେ ନା ଦିନେ ଅବଶ୍ୟ ତୁମମାନଙ୍କୁ କବଳିତ କରିବ ; ତା'ପରେ ତୁମମାନଙ୍କୁ ଦୃଷ୍ଟ ଓ ଅଦୃଷ୍ଟ (ବିଷୟ)କୁ ଜାଣିଥିବା ଅଲ୍ଲାହ୍‌ଙ୍କ ନିକଟକୁ ଫେରାଇ ନିଆହେବ ; ଏବଂ ସେ ତୁମମାନଙ୍କୁ ତୁମମାନଙ୍କ କର୍ମ ସଂକ୍ରାନ୍ତରେ ଜଣାଇବେ ।,,

ରୁ:୨

قُلْ اِنَّ الْمَوْتَ الَّذِىْ تَفِرُّوْنَ مِنْهُ فَاِنَّهٗ مُلٰقِيْكُمْ ثُمَّ تُرَدُّوْنَ اِلٰى عٰلِمِ الْغَيْبِ وَالشَّهَادَةِ فَيُنَبِّئُكُمْ بِمَا كُنْتُمْ تَعْمَلُوْنَ ۞۹ ع

୧୦. ହେ ବିଶ୍ୱାସକାରୀମାନେ ! ଯେତେବେଳେ ତୁମମାନଙ୍କୁ ଶୁକ୍ରବାର ଦିନ ନମାଜ (ଅର୍ଥାତ୍ ଜୁମାନମାଜ) ପାଠ କରିବା ସକାଶେ ଡକା ହୁଏ, ସେତେବେଳେ ଅଲ୍ଲାହ୍‌ଙ୍କୁ ସ୍ମରଣ କରିବା ପାଇଁ ଶୀଘ୍ର ଶୀଘ୍ର ଗମନ କର, ଏବଂ (କ୍ରୟ) ବିକ୍ରୟ ପରିତ୍ୟାଗ କର ; ଯଦି ତୁମମାନଙ୍କର କିଛି ମଧ୍ୟ ଜ୍ଞାନ ଥାଏ, ତେବେ ଏହା ତୁମମାନଙ୍କ ପକ୍ଷରେ ଉତ୍ତମ ।

يٰۤاَيُّهَا الَّذِيْنَ اٰمَنُوْۤا اِذَا نُوْدِىَ لِلصَّلٰوةِ مِنْ يَّوْمِ الْجُمُعَةِ فَاسْعَوْا اِلٰى ذِكْرِ اللّٰهِ وَذَرُوا الْبَيْعَ ؕ ذٰلِكُمْ خَيْرٌ لَّكُمْ اِنْ كُنْتُمْ تَعْلَمُوْنَ ۞۱۰

୧୧. ଏବଂ ନମାଜ ପାଠ ଶେଷ ହେବା ପରେ ଭୂପୃଷ୍ଠରେ (ଚତୁର୍ଦ୍ଦିଗକୁ) ବ୍ୟାପି ଯାଅ ଓ ଅଲ୍ଲାହ୍‌ଙ୍କର କୃପା ଅନ୍ୱେଷଣ କର, ଓ ଅଲ୍ଲାହ୍‌ଙ୍କୁ ବହୁତ ସ୍ମରଣ କର, ଯଦ୍ଦ୍ୱାରା ତୁମେମାନେ କୃତକାର୍ଯ୍ୟ ହେବ ।

فَاِذَا قُضِيَتِ الصَّلٰوةُ فَانْتَشِرُوْا فِى الْاَرْضِ وَابْتَغُوْا مِنْ فَضْلِ اللّٰهِ وَاذْكُرُوا اللّٰهَ كَثِيْرًا لَّعَلَّكُمْ تُفْلِحُوْنَ ۞۱۱

وَإِذَا رَأَوْا تِجَارَةً أَوْ لَهْوًا انفَضُّوا إِلَيْهَا وَتَرَكُوكَ قَائِمًا ۚ قُلْ مَا عِندَ اللَّهِ خَيْرٌ مِّنَ اللَّهْوِ وَمِنَ التِّجَارَةِ ۚ وَاللَّهُ خَيْرُ الرَّازِقِينَ ⑫

୧୨. ଏବଂ ଯେତେବେଳେ ଏ (ଲୋକ)ମାନେ ବ୍ୟବସାୟ ଓ ଖେଳ କୌତୁକ ବିଷୟ ଦେଖନ୍ତି, ସେତେବେଳେ (ସେମାନେ) ତୁମଠାରୁ ଅଲଗା ହୋଇ ସେ ଆଡ଼କୁ ଚାଲିଯାଆନ୍ତି, ଓ ତୁମକୁ ଏକାକୀ ଛାଡ଼ି ଯାଆନ୍ତି ; ତୁମେ (ସେମାନଙ୍କୁ) କୁହ, "ଯାହାକିଛି ଅଲ୍ଲାହ୍‌ଙ୍କ ନିକଟରେ ଅଛି ତାହା ଖେଳ କୌତୁକ ତଥା ବ୍ୟବସାୟ ଠାରୁ ମଧ୍ୟ ଉତ୍କୃଷ୍ଟ,[୧] ଏବଂ ଅଲ୍ଲାହ୍ ଉତ୍କୃଷ୍ଟ ଜୀବିକା ପ୍ରଦାନକାରୀ।"



ଅଧ୍ୟାୟ ୬୩ ଭାଗ ୨୮

## ଅଲ—ମୁନାଫେକୁନ

(ଏହି ସୂରା ମଦିନାରେ ଅବତୀର୍ଣ୍ଣ। ଏଥିରେ ବିସ୍‌ମିଲ୍ଲାହ୍ ସମେତ ୧୨ଟି ଆୟତ ଓ ୨ଟି ରୁକୂ ଅଛି।)

بِسْمِ اللَّهِ الرَّحْمَٰنِ الرَّحِيمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି)।

إِذَا جَاءَكَ الْمُنَافِقُونَ قَالُوا نَشْهَدُ إِنَّكَ لَرَسُولُ اللَّهِ ۗ وَاللَّهُ يَعْلَمُ إِنَّكَ لَرَسُولُهُ وَاللَّهُ يَشْهَدُ إِنَّ الْمُنَافِقِينَ لَكَاذِبُونَ ②

୨. ଯେତେବେଳେ କପଟବିଶ୍ୱାସୀମାନେ ତୁମ ନିକଟକୁ ଆସନ୍ତି, ସେତେବେଳେ ସେମାନେ କହନ୍ତି, "ଆମେମାନେ ଶପଥ କରି ସାକ୍ଷ୍ୟ ଦେଉଅଛୁ ଯେ ତୁମେ ଅଲ୍ଲାହ୍‌ଙ୍କର ରସୁଲ ;" ଏବଂ ଅଲ୍ଲାହ୍ ଜାଣନ୍ତି ଯେ ତୁମେ ତାହାଙ୍କର ରସୁଲ, କିନ୍ତୁ (ଏହା ସହିତ) ଅଲ୍ଲାହ୍ ମଧ୍ୟ ଶପଥପୂର୍ବକ ସାକ୍ଷ୍ୟ ଦିଅନ୍ତି ଯେ କପଟ-ବିଶ୍ୱାସୀମାନେ ମିଥ୍ୟାବାଦୀ।

اتَّخَذُوا أَيْمَانَهُمْ جُنَّةً فَصَدُّوا عَن سَبِيلِ اللَّهِ ۚ إِنَّهُمْ سَاءَ مَا كَانُوا يَعْمَلُونَ ③

୩. ସେମାନେ ନିଜ ଶପଥକୁ (ତୁମଠାରୁ ରକ୍ଷା ପାଇବା ସକାଶେ) ଢାଲ (ରୂପେ ବ୍ୟବହାର) କରିଛନ୍ତି ; ଏବଂ ସେମାନେ ଅଲ୍ଲାହ୍‌ଙ୍କ ପଥରୁ ଲୋକମାନଙ୍କୁ ବାଧା ଦେଉଛନ୍ତି ; ସେମାନେ ଯାହା କରୁଛନ୍ତି ତାହା ଅତ୍ୟନ୍ତ ମନ୍ଦ ଅଟେ।

ذَٰلِكَ بِأَنَّهُمْ آمَنُوا ثُمَّ كَفَرُوا فَطُبِعَ عَلَىٰ قُلُوبِهِمْ فَهُمْ لَا يَفْقَهُونَ ④

୪. ଏହି କାର୍ଯ୍ୟ ସେମାନେ ଏଥିଯୋଗୁଁ କରୁଛନ୍ତି ଯେ ସେମାନେ ପ୍ରଥମେ ବିଶ୍ୱାସ କଲେ, ଓ ପରେ ଅବିଶ୍ୱାସ କଲେ ; ଯାହା ଫଳରେ ସେମାନଙ୍କ ହୃଦୟରେ ମୋହର[୨] ଲଗାଇ ଦିଆଗଲା ଏବଂ ବର୍ତ୍ତମାନ ସେମାନେ (ତାହା) ବୁଝୁ ନାହାନ୍ତି।

---

୧. ଏହି ଆୟତର ପ୍ରାରମ୍ଭରେ ଉଲ୍ଲିଖିତ ଅଛି ଯେ ବ୍ୟବସାୟ ଓ କ୍ରୀଡ଼ା ଯୋଗୁଁ କପଟବିଶ୍ୱାସୀମାନେ ହଜରତ ମହମ୍ମଦଙ୍କୁ ଅନେକ ସମୟରେ ଏକୁଟିଆ ଛାଡ଼ି ଚାଲି ଯାଉଥିଲେ। କିନ୍ତୁ ଆୟତର ଶେଷାଂଶରେ ଉଲ୍ଲିଖିତ ଅଛି ଯାହା କିଛି ଅଲ୍ଲାହ୍‌ଙ୍କ ନିକଟରେ ଅଛି ତାହା କ୍ରୀଡ଼ା ଓ ବ୍ୟବସାୟଠାରୁ ଉତ୍କୃଷ୍ଟ। ବସ୍ତୁତଃ ଆୟତର ପ୍ରଥମାଂଶରେ ବ୍ୟବସାୟକୁ ପ୍ରଥମେ ଏବଂ ଶେଷାଂଶରେ କ୍ରୀଡ଼ାକୁ ପ୍ରଥମେ ବ୍ୟବହାର କରାଯାଇଛି। ଏପରି ବ୍ୟବହାର କରାଯିବାର ଉଦ୍ଦେଶ୍ୟ ହେଉଛି, ଅଲ୍ଲାହ୍ କହିବା ଦେବାକୁ ଚାହାନ୍ତି ଯେ ବ୍ୟବସାୟ ନିଶ୍ଚିତ ରୂପେ କ୍ରୀଡ଼ାଠାରୁ ଉତ୍କୃଷ୍ଟ, କିନ୍ତୁ ତାଙ୍କ ପାଖରେ ଯାହା ଅଛି ତାହା ବ୍ୟବସାୟ ଓ କ୍ରୀଡ଼ା ଉଭୟ ଅପେକ୍ଷା ଉତ୍କୃଷ୍ଟ। ସେଥିଲାଗି ଉଲ୍ଲିଖିତ ଶବ୍ଦ ଦୁଇଟିର କ୍ରମ ପରିବର୍ତ୍ତିତ କରାଯିବାରେ ନିଶ୍ଚୟ କିଛି ରହସ୍ୟ ଅଛି।

୨. ଅଲ୍ଲାହ୍‌ଙ୍କ ତରଫରୁ ଅକାରଣରେ [illegible] ଲଗାଇ ଦିଆଯାଇ ନ ଥିଲା। ପ୍ରକୃତ ପକ୍ଷେ, ସେମାନଙ୍କର [illegible] ହୋଇଥିଲା। ସେହି କୁକର୍ମ ମଧ୍ୟ ଗୋପନରେ ଏପରିକି [illegible] ତେଣୁ ତାହା ହିଁ ମୋହର [illegible]

وَاِذَا رَاَيْتَهُمْ تُعْجِبُكَ اَجْسَامُهُمْ ۚ وَاِنْ يَّقُوْلُوْا تَسْمَعْ لِقَوْلِهِمْ ۚ كَاَنَّهُمْ خُشُبٌ مُّسَنَّدَةٌ ۚ يَحْسَبُوْنَ كُلَّ صَيْحَةٍ عَلَيْهِمْ ۚ هُمُ الْعَدُوُّ فَاحْذَرْهُمْ ۚ قٰتَلَهُمُ اللّٰهُ ۚ اَنّٰى يُؤْفَكُوْنَ ⑤

୫. ଯେତେବେଳେ ତୁମେ ସେମାନଙ୍କୁ ଦେଖ, ସେତେବେଳେ ସେମାନଙ୍କ ବଳିଷ୍ଠ ଶରୀର ତୁମକୁ ଖୁବ୍ ଭଲଲାଗେ ; ଏବଂ ଯଦି ସେମାନେ କିଛି କଥା କହନ୍ତି, ତେବେ (ଏପରି ସୁନ୍ଦର ଭାବରେ କହନ୍ତି ଯେ ସେମାନଙ୍କ ଅବସ୍ଥାକୁ ଜାଣିବା ସତ୍ତ୍ୱେ) ତୁମେ ସେମାନଙ୍କ କଥା ଶୁଣ ; (ସେମାନେ ସଭାରେ ଏପରି ବସିଥା'ନ୍ତି) ସତେ ଯେପରି ସେମାନେ କାନ୍ଥରେ ଡ଼ିରା ଲଗା ହୋଇ ରଖାଯାଇଥିବା କାଠଗଡି ସଦୃଶ ; ଯେତେବେଳେ କୌଣସି ଶାସ୍ତିର ସମାଚାର (କୋରାନ ମାଧ୍ୟମରେ) ଅବତୀର୍ଣ୍ଣ ହୁଏ, ସେତେବେଳେ ସେମାନେ ମନେ କରନ୍ତି ଯେ ଏହା ସେମାନଙ୍କ ନିମନ୍ତେ ହିଁ ଉଦ୍ଦିଷ୍ଟ ; ସେମାନେ ହିଁ ପ୍ରକୃତ ଶତ୍ରୁ ; ସୁତରାଂ ତୁମେ ସେମାନଙ୍କ ପ୍ରତି ସାବଧାନ ରୁହ ; ଅଲ୍ଲାହ ସେମାନଙ୍କୁ ଧ୍ୱଂସ କରନ୍ତୁ ; ସେମାନଙ୍କୁ କେଉଁଠାରୁ ଫେରାଇ (ସତ୍ୟପଥରୁ ଦୂରକୁ) ନିଆ ଯାଉଅଛି ?

وَاِذَا قِيْلَ لَهُمْ تَعَالَوْا يَسْتَغْفِرْ لَكُمْ رَسُوْلُ اللّٰهِ لَوَّوْا رُءُوْسَهُمْ وَرَاَيْتَهُمْ يَصُدُّوْنَ وَهُمْ مُّسْتَكْبِرُوْنَ ⑥

୬. ଏବଂ ଯେତେବେଳେ ସେମାନଙ୍କୁ କୁହାଯାଏ, "ଆସ, ଅଲ୍ଲାହଙ୍କ ରସୁଲ ତୁମମାନଙ୍କ ସକାଶେ କ୍ଷମାଭିକ୍ଷା କରିବେ," ସେତେବେଳେ ସେମାନେ (ଗର୍ବ ଓ ଘୃଣାରେ) ନିଜ ମୁଣ୍ଡକୁ ବୁଲାଇ ଦିଅନ୍ତି, ଏବଂ ତୁମେ ସେମାନଙ୍କୁ ଲକ୍ଷ୍ୟ କରୁଅଛ ଯେ ସେମାନେ ଲୋକମାନଙ୍କୁ ସତ୍‌ପଥରୁ ଫେରାଇ ନେଉଛନ୍ତି ଓ ସେମାନେ ଗର୍ବର ବଶବର୍ତ୍ତୀ ହୋଇଛନ୍ତି ।

سَوَآءٌ عَلَيْهِمْ اَسْتَغْفَرْتَ لَهُمْ اَمْ لَمْ تَسْتَغْفِرْ لَهُمْ ۚ لَنْ يَّغْفِرَ اللّٰهُ لَهُمْ ۚ اِنَّ اللّٰهَ لَا يَهْدِي الْقَوْمَ الْفٰسِقِيْنَ ⑦

୭. ତୁମେ ସେମାନଙ୍କ ପାଇଁ କ୍ଷମାଭିକ୍ଷା କର ବା କ୍ଷମାଭିକ୍ଷା ନ କର, ସେମାନଙ୍କ ପକ୍ଷେ ଉଭୟ ସମାନ ; କାରଣ (ସେମାନେ ନିଜେ ଅନୁତାପ ନ କରିବା ପର୍ଯ୍ୟନ୍ତ) ଅଲ୍ଲାହ ସେମାନଙ୍କୁ କଦାପି କ୍ଷମା କରିବେ ନାହିଁ ; ଅଲ୍ଲାହ ଅମାନ୍ୟକାରୀ ସମ୍ପ୍ରଦାୟକୁ ସଫଳତା ପ୍ରଦାନ କରନ୍ତି ନାହିଁ ।

هُمُ الَّذِيْنَ يَقُوْلُوْنَ لَا تُنْفِقُوْا عَلٰى مَنْ عِنْدَ رَسُوْلِ اللّٰهِ حَتّٰى يَنْفَضُّوْا ۚ وَلِلّٰهِ خَزَآئِنُ السَّمٰوٰتِ وَالْاَرْضِ وَلٰكِنَّ الْمُنٰفِقِيْنَ لَا يَفْقَهُوْنَ ⑧

୮. ଏହି (ଲୋକ)ମାନେ କହନ୍ତି, "ଯେଉଁମାନେ ଅଲ୍ଲାହଙ୍କ ରସୁଲଙ୍କ ନିକଟରେ ଅଛନ୍ତି ସେମାନଙ୍କ ସକାଶେ ଖର୍ଚ୍ଚ କର ନାହିଁ ତାହାହେଲେ ସେମାନେ (ଭୋକ ଉପାସରେ ପଡ଼ି) ପଳାୟନ କରିବେ ;" ଅଥଚ ଆକାଶ ଓ ପୃଥିବୀର ଧନଭଣ୍ଡାର ଅଲ୍ଲାହଙ୍କ ପାଖରେ ରହିଅଛି, କିନ୍ତୁ କପଟ–ବିଶ୍ୱାସୀମାନେ ଏହା ବୁଝୁନାହାନ୍ତି ।

يَقُولُونَ لَئِنْ رَّجَعْنَآ إِلَى الْمَدِينَةِ لَيُخْرِجَنَّ الْأَعَزُّ مِنْهَا الْأَذَلَّ ۚ وَلِلّٰهِ الْعِزَّةُ وَلِرَسُولِهٖ وَلِلْمُؤْمِنِينَ وَلٰكِنَّ الْمُنٰفِقِينَ لَا يَعْلَمُونَ ﴿٨﴾ ع

୯. ସେମାନେ କହନ୍ତି, "ଯଦି ଆମେମାନେ ମଦିନାକୁ ଫେରିଯାଉ, ତେବେ ମଦିନାର ସର୍ବଶ୍ରେଷ୍ଠ ସମ୍ମାନଜନକ ବ୍ୟକ୍ତି ମଦିନାର ନିକୃଷ୍ଟତମ[1] ବ୍ୟକ୍ତିକୁ ସେଠାରୁ ବାହାର କରିଦେବେ ;" ଏବଂ ସମ୍ମାନ, ଅଲ୍ଲାହ ଓ ତାହାଙ୍କ ରସୁଲ ଓ ବିଶ୍ୱାସକାରୀମାନଙ୍କୁ ହିଁ ଲବ୍‌ଧ ହୋଇଅଛି ; କିନ୍ତୁ କପଟବିଶ୍ୱାସୀମାନେ ଏହା ଜାଣନ୍ତି ନାହିଁ ।

يٰٓأَيُّهَا الَّذِينَ اٰمَنُوا لَا تُلْهِكُمْ أَمْوٰلُكُمْ وَلَآ أَوْلٰدُكُمْ عَنْ ذِكْرِ اللّٰهِ ۚ وَمَنْ يَّفْعَلْ ذٰلِكَ فَأُولٰٓئِكَ هُمُ الْخٰسِرُونَ ﴿١٠﴾

୧୦. ହେ ବିଶ୍ୱାସକାରୀମାନେ ! ତୁମମାନଙ୍କୁ ତୁମମାନଙ୍କ ଧନସମ୍ପତ୍ତି ଓ ତୁମମାନଙ୍କ ସନ୍ତାନସନ୍ତତି ଅଲ୍ଲାହଙ୍କ ସ୍ମରଣରୁ ଅମନୋଯୋଗୀ ନ କରୁ ; ଏବଂ ଯେଉଁ (ଲୋକ)ମାନେ ଏପରି କରିବେ ସେମାନେ ହିଁ କ୍ଷତିଗ୍ରସ୍ତ ହେବେ ।

وَأَنْفِقُوا مِنْ مَّا رَزَقْنٰكُمْ مِّنْ قَبْلِ أَنْ يَّأْتِيَ أَحَدَكُمُ الْمَوْتُ فَيَقُولَ رَبِّ لَوْلَآ أَخَّرْتَنِيٓ إِلٰٓى أَجَلٍ قَرِيبٍ ۙ فَأَصَّدَّقَ وَأَكُنْ مِّنَ الصّٰلِحِينَ ﴿١١﴾

୧୧. ଏବଂ (ହେ ବିଶ୍ୱାସକାରୀମାନେ !) ଆମେ ତୁମମାନଙ୍କୁ ଯାହାକିଛି ଦେଇଅଛୁ ମୃତ୍ୟୁର ଆଗମନ ପୂର୍ବରୁ ତହିଁରୁ ବ୍ୟୟ କର; ନୋହିଲେ ଯେତେବେଳେ ମୃତ୍ୟୁ ଉପସ୍ଥିତ ହେବ, ସେତେବେଳେ ବ୍ୟୟ କରୁ ନଥିବା ଲୋକକୁ କହିବାକୁ ପଡ଼ିବ, "ହେ ମୋର ପାଳନକର୍ତ୍ତା ! ତୁମେ କାହିଁକି ମୋତେ କିଛି ଅବସର ଦେଲ ନାହିଁ ? ଯଦ୍ଦ୍ୱାରା ମୁଁ ଏହି (ଅବସର) କାଳରେ କିଛି ଦାନ କରି ପୁଣ୍ୟବାନ୍ ହୋଇଥାଆନ୍ତି ।"

وَلَنْ يُّؤَخِّرَ اللّٰهُ نَفْسًا إِذَا جَآءَ أَجَلُهَا ۚ وَاللّٰهُ خَبِيرٌۢ بِمَا تَعْمَلُونَ ﴿١٢﴾ ع

୧୨. କିନ୍ତୁ ଯେତେବେଳେ କୌଣସି ବ୍ୟକ୍ତିର ମୃତ୍ୟୁ ସମୟ ଉପସ୍ଥିତ ହୁଏ, ସେତେବେଳେ ଅଲ୍ଲାହ ତାହାକୁ ଅବସର ଦିଅନ୍ତି ନାହିଁ ; ଏବଂ ଅଲ୍ଲାହ ତୁମମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ଅବଗତ ଅଛନ୍ତି ।

---

୧. ଅବଦୁଲ୍ଲାହ ଇବ୍‌ନ ଅବ୍ଣି ଇବ୍‌ନ ସଲୁଲ କପଟବିଶ୍ୱାସୀମାନଙ୍କର ନେତା ଥିଲା । ସେ 'ମୁସ୍ତଲିକ' ନାମକ ଯୁଦ୍ଧରେ କିପରି ମୁସଲମାନମାନଙ୍କ ମଧ୍ୟରେ କଳହ ସୃଷ୍ଟି ହେବ, ସେହି ଉଦ୍ଦେଶ୍ୟରେ ହଜରତ ମହମ୍ମଦଙ୍କୁ ଲକ୍ଷ୍ୟ କରି ଏହିପରି କହିଥିଲା । ସେ ଏପରି କହିବା ସମୟରେ ତା' ପୁଅ ଏ ବିଷୟ ଜାଣିଥିଲା; କିନ୍ତୁ ସେହି ପୁତ୍ର ଜଣେ ନିଷ୍ଠାପର ମୁସଲମାନ ଥିଲା । ଯେତେବେଳେ ମୁସଲମାନ ସୈନ୍ୟବାହିନୀ ମଦିନାକୁ ଫେରି ଆସୁଥିଲେ ସେତେବେଳେ ସେ ପ୍ରବେଶ ଦ୍ୱାର ନିକଟକୁ ଅଗ୍ରସର ହେଲା ଓ ତରବାରି ବାହାର କରି ତା'ର ପିତାକୁ ଓଟ ପିଠିରୁ ଓହ୍ଲାଇବାକୁ ନିର୍ଦ୍ଦେଶ ଦେଲା ଓ କହିଲା ଯେ ସେ ଏଠାରେ ଉପସ୍ଥିତ ଜନତା ଆଗରେ ନିଜକୁ ନିକୃଷ୍ଟତମ ବ୍ୟକ୍ତି ଓ ହଜରତ ମହମ୍ମଦଙ୍କୁ ସର୍ବଶ୍ରେଷ୍ଠ ବ୍ୟକ୍ତି ବୋଲି ଘୋଷଣା କରୁ । ସେ ପୁନର୍ବାର ଚିତ୍କାର କରି କହିଲା ଯେ ଯେପର୍ଯ୍ୟନ୍ତ ତା'ର ପିତା ଏ ରୂପେ ଘୋଷଣା ନ କରିଛି ସେ ପର୍ଯ୍ୟନ୍ତ ସେ ମଦିନାରେ ପ୍ରବେଶ କରିପାରିବ ନାହିଁ । ସେ ଆହୁରି ମଧ୍ୟ ଘୋଷଣା କଲା ଯେ ଯଦି ତା'ର ପିତା ପ୍ରବେଶ କରିବାକୁ ଚେଷ୍ଟା କରେ ତେବେ ସେ ତାକୁ ବଧ କରିବ । ଏହା ଶୁଣି ଅବଦୁଲ୍ଲାହ ଭୟଭୀତ ହୋଇଗଲା ଏବଂ ସର୍ବ ସମକ୍ଷରେ ପୁତ୍ର କହିଥିବା ପ୍ରକାରେ ଘୋଷଣା କଲା । ତା' ପରେ ଯାଇ ସେହି ପୁତ୍ର ପିତାକୁ ସହର ମଧ୍ୟରେ ପ୍ରବେଶ କରିବାକୁ ଅନୁମତି ଦେଇଥିଲା ।

سُورَةُ التَّغَابُنِ مَدَنِيَّةٌ (٦٤)

# ଅଲ—ତଗାବୁନ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୯ଟି ଆୟତ ଓ ୨ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ଆକାଶ ଓ ପୃଥିବୀରେ ଯାହାକିଛି ଅଛି ସେସବୁ ଅଲ୍ଲାହଙ୍କର ଗୁଣଗାନ କରୁଛନ୍ତି ; ରାଜତ୍ୱ ମଧ୍ୟ ତାହାଙ୍କର ଏବଂ ପ୍ରଶଂସା ମଧ୍ୟ ତାହାଙ୍କର; ଏବଂ ପ୍ରତ୍ୟେକ କାର୍ଯ୍ୟ କରିବାକୁ ସେ ପୂର୍ଣ୍ଣ-ରୂପେ ସକ୍ଷମ ।

يُسَبِّحُ لِلّٰهِ مَا فِي السَّمٰوٰتِ وَمَا فِي الْاَرْضِ لَهُ الْمُلْكُ وَلَهُ الْحَمْدُ وَهُوَ عَلٰى كُلِّ شَيْءٍ قَدِيْرٌ ②

୩. ସେ ହିଁ ତୁମମାନଙ୍କୁ ସୃଷ୍ଟି କରିଛନ୍ତି, କିନ୍ତୁ ତୁମମାନଙ୍କ ମଧ୍ୟରୁ କେହି ଅବିଶ୍ୱାସକାରୀ ହୁଏ ଓ କେହି ବିଶ୍ୱାସକାରୀ ହୁଏ ; ଏବଂ ଅଲ୍ଲାହ ତୁମମାନଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଛନ୍ତି ।

هُوَ الَّذِيْ خَلَقَكُمْ فَمِنْكُمْ كَافِرٌ وَّمِنْكُمْ مُّؤْمِنٌ وَاللّٰهُ بِمَا تَعْمَلُوْنَ بَصِيْرٌ ③

୪. ସେ ଆକାଶ ଓ ପୃଥିବୀକୁ ଏକ ବିଶେଷ ଉଦ୍ଦେଶ୍ୟରେ ସୃଷ୍ଟି କରିଛନ୍ତି ; ଏବଂ ସେ ତୁମମାନଙ୍କର ଆକୃତି ଗଠନ କରିଛନ୍ତି ଏବଂ ତୁମମାନଙ୍କ ଆକୃତିକୁ ଉତ୍ତମ ଭାବରେ ଗଢ଼ିଛନ୍ତି, ଏବଂ ତୁମମାନଙ୍କୁ ତାହାଙ୍କ ନିକଟକୁ ହିଁ ଫେରିବାକୁ ହେବ ।

خَلَقَ السَّمٰوٰتِ وَالْاَرْضَ بِالْحَقِّ وَصَوَّرَكُمْ فَاَحْسَنَ صُوَرَكُمْ وَاِلَيْهِ الْمَصِيْرُ ④

୫. ଆକାଶ ଓ ପୃଥିବୀରେ ଯାହା କିଛି ଅଛି ତାହାକୁ ସେ ଜାଣନ୍ତି, ଏବଂ ତୁମେମାନେ ଯେଉଁ କର୍ମକୁ ଗୋପନ କରୁଅଛ ଅଥବା ପ୍ରକାଶ କରୁଅଛ ତାହାକୁ ମଧ୍ୟ ଜାଣନ୍ତି ; ଏବଂ ଅଲ୍ଲାହ ଅନ୍ତରର କଥା ମଧ୍ୟ ଜାଣନ୍ତି ।

يَعْلَمُ مَا فِي السَّمٰوٰتِ وَالْاَرْضِ وَيَعْلَمُ مَا تُسِرُّوْنَ وَمَا تُعْلِنُوْنَ وَاللّٰهُ عَلِيْمٌ بِذَاتِ الصُّدُوْرِ ⑤

୬. କ'ଣ ତୁମମାନଙ୍କ ନିକଟରେ ତୁମମାନଙ୍କ ପୂର୍ବବର୍ତ୍ତୀ ଅବିଶ୍ୱାସକାରୀମାନଙ୍କର ସମାଚାର ପହଞ୍ଚି ନାହିଁ ? ସେମାନେ ନିଜ କର୍ମର ଶାସ୍ତି ଭୋଗ କରିଥିଲେ, ଓ ସେମାନଙ୍କ ସକାଶେ ଯନ୍ତ୍ରଣାଦାୟକ ଶାସ୍ତି (ନିୟତ) ରହିଅଛି ।

اَلَمْ يَاْتِكُمْ نَبَؤُا الَّذِيْنَ كَفَرُوْا مِنْ قَبْلُ فَذَاقُوْا وَبَالَ اَمْرِهِمْ وَلَهُمْ عَذَابٌ اَلِيْمٌ ⑥

୭. ଏହା ଏଥିସକାଶେ ହୋଇଥିଲା ଯେ ସେମାନଙ୍କ ନିକଟକୁ ସେମାନଙ୍କ ରସୁଲ ପ୍ରମାଣମାନ ଘେନି ଆସୁଥିଲେ, କିନ୍ତୁ ସେମାନେ ଏହି ଉତ୍ତର ଦେଉଥିଲେ, "କ'ଣ ମାନବ ରୂପରେ ଆସୁଥିବା ବ୍ୟକ୍ତି ହିଁ ଆମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇବ ? ଯେଦି ଆମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇବା ଥାଆନ୍ତା,

ذٰلِكَ بِاَنَّهٗ كَانَتْ تَّاْتِيْهِمْ رُسُلُهُمْ بِالْبَيِّنٰتِ

فَقَالُوٓا أَبَشَرٌ يَهْدُونَنَا فَكَفَرُوا وَتَوَلَّوا وَّاسْتَغْنَى اللّٰهُ ۗ وَاللّٰهُ غَنِيٌّ حَمِيدٌ ۝٧

ତେବେ ସ୍ୱର୍ଗରୁ ଦେବଦୂତମାନେ ଅବତୀର୍ଣ୍ଣ ହୋଇଥାଆନ୍ତେ) ;" ସୁତରାଂ ସେମାନେ ଅବିଶ୍ୱାସ କରି ମୁହଁ ଫେରାଇନେଲେ, ଏବଂ ଅଲ୍ଲାହ ମଧ୍ୟ ସେମାନଙ୍କ (ଧର୍ମ) ବିଶ୍ୱାସ ପ୍ରତି ଅନାସ୍ଥାଭାବ ପ୍ରକାଶ କରିଥିଲେ ; ଏବଂ ଅଲ୍ଲାହ ସ୍ୱୟଂ-ପର୍ଯ୍ୟାପ୍ତ (ଓ) ଅତିଶୟ ପ୍ରଶଂସାର ପାତ୍ର ।

زَعَمَ الَّذِينَ كَفَرُوٓا أَن لَّن يُبْعَثُوا ۚ قُلْ بَلَىٰ وَرَبِّي لَتُبْعَثُنَّ ثُمَّ لَتُنَبَّؤُنَّ بِمَا عَمِلْتُمْ ۚ وَذَٰلِكَ عَلَى اللّٰهِ يَسِيرٌ ۝٨

୮. ଅବିଶ୍ୱାସକାରୀମାନେ ଭାବୁଛନ୍ତି ଯେ ସେମାନଙ୍କୁ କେବେ ହେଁ (ପୁନର୍ଜୀବିତ କରି) ଉତ୍‌ଥିତ କରାହେବ ନାହିଁ ; ତୁମେ କୁହ, "ତୁମେମାନେ ଯେପରି ଭାବୁଛ ସେପରି ହେବ ନାହିଁ, ବରଂ ଆମେ ନିଜ ପାଳନକର୍ତ୍ତାଙ୍କ ନାମରେ ଶପଥପୂର୍ବକ କହୁଅଛୁ କି ତୁମମାନଙ୍କୁ ପୁନର୍ଜୀବିତ କରି ଉତ୍‌ଥିତ କରାହେବ ; ତା'ପରେ ତୁମମାନଙ୍କୁ ତୁମମାନଙ୍କ କାର୍ଯ୍ୟକଳାପ ସଂକ୍ରାନ୍ତରେ ଅବଗତ କରାଇ ଦିଆଯିବ ; ଏବଂ ଏହା ଅଲ୍ଲାହଙ୍କ ପକ୍ଷରେ ସହଜସାଧ୍ୟ ।"

فَآمِنُوا بِاللّٰهِ وَرَسُولِهِ وَالنُّورِ الَّذِي أَنزَلْنَا ۚ وَاللّٰهُ بِمَا تَعْمَلُونَ خَبِيرٌ ۝٩

୯. ସୁତରାଂ ହେ ଲୋକମାନେ ! ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ ପ୍ରତି ବିଶ୍ୱାସ କର ଏବଂ ଆମେ ଅବତୀର୍ଣ୍ଣ କରିଥିବା ଏହି ଜ୍ୟୋତି (ଅର୍ଥାତ୍ କୋରାନ) ପ୍ରତି ମଧ୍ୟ, ଏବଂ ଅଲ୍ଲାହ ତୁମମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ସଚେତନ ଅଛନ୍ତି ।

يَوْمَ يَجْمَعُكُمْ لِيَوْمِ الْجَمْعِ ذَٰلِكَ يَوْمُ التَّغَابُنِ ۗ وَمَن يُؤْمِن بِاللّٰهِ وَيَعْمَلْ صَالِحًا يُكَفِّرْ عَنْهُ سَيِّئَاتِهِ وَيُدْخِلْهُ جَنَّاتٍ تَجْرِي مِن تَحْتِهَا الْأَنْهَارُ خَالِدِينَ فِيهَا أَبَدًا ۚ ذَٰلِكَ الْفَوْزُ الْعَظِيمُ ۝١٠

୧୦. ଯେଉଁଦିନ ସେ ତୁମ ସମସ୍ତଙ୍କୁ ଏକତ୍ରିତ କରିବା ଦିବସରେ (ଅର୍ଥାତ୍ କୟାମତ ଦିନ ପୁନର୍ଜୀବିତ କରି) ଏକତ୍ରିତ କରିବେ,ତାହା ଜୟ ପରାଜୟର ନିଷ୍ପତ୍ତିକାରୀ ଦିବସ ହେବ ; ଏବଂ ଯେ କେହି ଅଲ୍ଲାହଙ୍କ ପ୍ରତି ବିଶ୍ୱାସ କରେ ଓ ତଦନୁସାରେ କାର୍ଯ୍ୟକରେ ଅଲ୍ଲାହ ମଧ୍ୟ ତାହାର କୁକର୍ମକୁ ଘୋଡ଼ାଇ ଦିଅନ୍ତି ଏବଂ ତାହାକୁ ଏପରି ବୈକୁଣ୍ଠରେ ପ୍ରବେଶ କରାନ୍ତି ଯାହାର ନିମ୍ନଦେଶରେ ଝରଣା ପ୍ରବାହିତ ହେଉଥାଏ, ଏବଂ ସେ ସେଠାରେ ଚିରକାଳ ରହିବ; ଏହାହିଁ ମହାନ ସଫଳତା ।

وَالَّذِينَ كَفَرُوا وَكَذَّبُوا بِآيَاتِنَا أُولَٰئِكَ أَصْحَابُ النَّارِ خَالِدِينَ فِيهَا ۖ وَبِئْسَ الْمَصِيرُ ۝١١ ع

୧୧. ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି ଓ ଆମର ନିଦର୍ଶନମାନଙ୍କୁ ମିଥ୍ୟା ମନେ କରିଛନ୍ତି, ସେମାନେ ନରକବାସୀ ଅଟନ୍ତି, ଓ ସେମାନେ ନରକରେ ରହିବେ ; ଏବଂ ତାହା ଅତିଶୟ ମନ୍ଦ ଆଶ୍ରୟସ୍ଥଳ ଅଟେ ।

୧୨. ଅଲ୍ଲାହ୍‌ଙ୍କ ଆଦେଶ ବିନା କୌଣସି ବିପତ୍ତି ଆସେ ନାହିଁ ; ଏବଂ ଯେ ଅଲ୍ଲାହ୍‌ଙ୍କ ପ୍ରତି ବିଶ୍ୱାସ କରେ, ସେ ତାହାର ହୃଦୟକୁ ସଫଳତାର ମାର୍ଗ ଆଡ଼କୁ ଘେନି ଯାଆନ୍ତି ; ଏବଂ ଅଲ୍ଲାହ୍ ପ୍ରତ୍ୟେକ ବିଷୟକୁ ଜାଣନ୍ତି ।

مَآ أَصَابَ مِن مُّصِيبَةٍ إِلَّا بِإِذْنِ ٱللَّهِ ۗ وَمَن يُؤْمِنۢ بِٱللَّهِ يَهْدِ قَلْبَهُۥ ۚ وَٱللَّهُ بِكُلِّ شَىْءٍ عَلِيمٌ ﴿١١﴾

୧୩. ଏବଂ ଅଲ୍ଲାହ୍ ଓ ରସୁଲଙ୍କର ଆଜ୍ଞା ପାଳନ କର ; କିନ୍ତୁ ଯଦି ତୁମେମାନେ ଫେରିଯାଅ, ତେବେ କେବଳ ସୁସ୍ପଷ୍ଟଭାବରେ ବାର୍ତ୍ତା ପହଞ୍ଚାଇ ଦେବା ଆମ ରସୁଲଙ୍କ ଦାୟିତ୍ୱ ।

وَأَطِيعُوا۟ ٱللَّهَ وَأَطِيعُوا۟ ٱلرَّسُولَ ۚ فَإِن تَوَلَّيْتُمْ فَإِنَّمَا عَلَىٰ رَسُولِنَا ٱلْبَلَٰغُ ٱلْمُبِينُ ﴿١٢﴾

୧୪. ଅଲ୍ଲାହ୍‌ଙ୍କ ବ୍ୟତୀତ ଅନ୍ୟ କେହି ଉପାସ୍ୟ ନାହିଁ, ଏବଂ ବିଶ୍ୱାସକାରୀମାନଙ୍କୁ କେବଳ ଅଲ୍ଲାହ୍‌ଙ୍କ ଉପରେ ଭରସା କରିବା ଉଚିତ ।

ٱللَّهُ لَآ إِلَٰهَ إِلَّا هُوَ ۚ وَعَلَى ٱللَّهِ فَلْيَتَوَكَّلِ ٱلْمُؤْمِنُونَ ﴿١٣﴾

୧୫. ହେ ବିଶ୍ୱାସକାରୀମାନେ ! ତୁମମାନଙ୍କ ପତ୍ନୀମାନଙ୍କ ମଧ୍ୟରୁ ଓ ସନ୍ତାନସନ୍ତତିଙ୍କ ମଧ୍ୟରୁ ଏପରି କେତେକ ଅଛନ୍ତି ଯେଉଁମାନେ ତୁମମାନଙ୍କର ଶତ୍ରୁ, ତେଣୁ ସେମାନଙ୍କ ପ୍ରତି ସାବଧାନ ରୁହ ; ଏବଂ ଯଦି ତୁମେମାନେ କ୍ଷମା କର ଓ ଅବ୍ୟାହତି ଦିଅ ଓ (ଦୋଷ) ମାର୍ଜନା କର ତେବେ ଅଲ୍ଲାହ୍ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

يَٰٓأَيُّهَا ٱلَّذِينَ ءَامَنُوٓا۟ إِنَّ مِنْ أَزْوَٰجِكُمْ وَأَوْلَٰدِكُمْ عَدُوًّا لَّكُمْ فَٱحْذَرُوهُمْ ۚ وَإِن تَعْفُوا۟ وَتَصْفَحُوا۟ وَتَغْفِرُوا۟ فَإِنَّ ٱللَّهَ غَفُورٌ رَّحِيمٌ ﴿١٤﴾

୧୬. ତୁମମାନଙ୍କ ଧନସମ୍ପତ୍ତି ଓ ତୁମମାନଙ୍କ ସନ୍ତାନସନ୍ତତି (ତୁମମାନଙ୍କ ସକାଶେ) କେବଳ ଏକ ପରୀକ୍ଷାର ମାଧ୍ୟମ ଅଟେ ; ଏବଂ ଅଲ୍ଲାହ୍‌ଙ୍କ ନିକଟରେ ମହାନ୍ ପୁରସ୍କାର ରହିଅଛି ।

إِنَّمَآ أَمْوَٰلُكُمْ وَأَوْلَٰدُكُمْ فِتْنَةٌ ۚ وَٱللَّهُ عِندَهُۥٓ أَجْرٌ عَظِيمٌ ﴿١٥﴾

୧୭. ସୁତରାଂ ଯଥାସମ୍ଭବ ଅଲ୍ଲାହ୍‌ଙ୍କୁ ଭୟକର, ଏବଂ ତାହାଙ୍କର ବାଣୀ ଶ୍ରବଣ କର, ଓ ତାହାଙ୍କର ଆଜ୍ଞା ପାଳନ କର, ଏବଂ ନିଜ ଧନସମ୍ପତ୍ତି (ତାହାଙ୍କ ଉଦ୍ଦେଶ୍ୟରେ) ବ୍ୟୟ କର ; ଏହା ତୁମମାନଙ୍କ ପକ୍ଷରେ ଉତ୍ତମ ହେବ ; ଏବଂ ଯେଉଁ ଲୋକମାନେ ନିଜ ହୃଦୟକୁ କୃପଣତାରୁ ରକ୍ଷା କରନ୍ତି ସେମାନେ ସଫଳ ହୁଅନ୍ତି ।

فَٱتَّقُوا۟ ٱللَّهَ مَا ٱسْتَطَعْتُمْ وَٱسْمَعُوا۟ وَأَطِيعُوا۟ وَأَنفِقُوا۟ خَيْرًا لِّأَنفُسِكُمْ ۗ وَمَن يُوقَ شُحَّ نَفْسِهِۦ فَأُو۟لَٰٓئِكَ هُمُ ٱلْمُفْلِحُونَ ﴿١٦﴾

୧୮. ଯଦି ତୁମେମାନେ ଅଲ୍ଲାହ୍‌ଙ୍କ ନିମନ୍ତେ ନିଜ ଧନସମ୍ପତ୍ତିରୁ ଏକ ଉତ୍ତମ ଅଂଶ ପୃଥକ୍ କରି ରଖ, ତେବେ ସେ ଏହି ଅଂଶକୁ ତୁମମାନଙ୍କ ସକାଶେ ବୃଦ୍ଧି କରିବେ, ଓ ତୁମମାନଙ୍କ ସକାଶେ କ୍ଷମାର ସାମଗ୍ରୀ ସୃଷ୍ଟି କରିବେ ; ଏବଂ ଅଲ୍ଲାହ୍ ଅତ୍ୟନ୍ତ ଗୁଣଗ୍ରାହୀ (ଓ) ସହନଶୀଳ ।

إِن تُقْرِضُوا۟ ٱللَّهَ قَرْضًا حَسَنًا يُضَٰعِفْهُ لَكُمْ وَيَغْفِرْ لَكُمْ ۚ وَٱللَّهُ شَكُورٌ حَلِيمٌ ﴿١٧﴾

୧୯. ସେ ଦୃଷ୍ଟ ଓ ଅଦୃଷ୍ଟ (ବିଷୟ)କୁ ଜାଣନ୍ତି ; ଏବଂ (ସେ) ପରାକ୍ରମୀ (ଓ) ତତ୍ତ୍ୱଜ୍ଞ ।

عَٰلِمُ ٱلْغَيْبِ وَٱلشَّهَٰدَةِ ٱلْعَزِيزُ ٱلْحَكِيمُ ﴿١٨﴾

سُوْرَةُ الطَّلَاقِ مَدَنِيَّةٌ (٦٥)

# ଅଲ-ତଲାକ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୩ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

يٰٓاَيُّهَا النَّبِيُّ اِذَا طَلَّقْتُمُ النِّسَآءَ فَطَلِّقُوْهُنَّ لِعِدَّتِهِنَّ وَاَحْصُوا الْعِدَّةَ ۚ وَاتَّقُوا اللّٰهَ رَبَّكُمْ ۚ لَا تُخْرِجُوْهُنَّ مِنْۢ بُيُوْتِهِنَّ وَلَا يَخْرُجْنَ اِلَّآ اَنْ يَّاْتِيْنَ بِفَاحِشَةٍ مُّبَيِّنَةٍ ۗ وَتِلْكَ حُدُوْدُ اللّٰهِ ۭ وَمَنْ يَّتَعَدَّ حُدُوْدَ اللّٰهِ فَقَدْ ظَلَمَ نَفْسَهٗ ۭ لَا تَدْرِيْ لَعَلَّ اللّٰهَ يُحْدِثُ بَعْدَ ذٰلِكَ اَمْرًا ②

୨. ହେ ନବି[1] (ତଥା ତାହାଙ୍କର ଅନୁଗାମୀଗଣ !) ଯେବେ ତୁମେମାନେ ପତ୍ନୀମାନଙ୍କୁ ତଲାକ ଦିଅ ତେବେ ନିର୍ଦ୍ଧାରିତ ସମୟ ମୁତାବକ ସେମାନଙ୍କୁ ତଲାକ ଦିଅ, ଏବଂ (ତଲାକ ପର) ସମୟର ହିସାବ ରଖ ; ଏବଂ ତୁମମାନଙ୍କ ପାଳନକର୍ତ୍ତା ଅଲ୍ଲାହଙ୍କୁ ଭୟ କର ; ସେମାନେ ପ୍ରକାଶ୍ୟ ପାପ[2] ନକଲେ, ସେମାନଙ୍କୁ ସେମାନଙ୍କ ଗୃହରୁ ବାହାର କର ନାହିଁ କି ସେମାନେ ମଧ୍ୟ ନିଜେ ବାହାରି ନ ଯାଆନ୍ତୁ ; ଏବଂ ଏହା ଅଲ୍ଲାହଙ୍କ (ଦ୍ୱାରା ନିର୍ଦ୍ଧାରିତ) ସୀମା ; ଏବଂ ଯେକେହି ଅଲ୍ଲାହଙ୍କ (ଦ୍ୱାରା ନିର୍ଦ୍ଧାରିତ) ସୀମା ଲଙ୍ଘନ କରେ ସେ ନିଜ ପ୍ରତି ହିଁ ଅତ୍ୟାଚାର କରିଥାଏ ; (ହେ ତଲାକ ଦେଉଥିବା ବ୍ୟକ୍ତି !) ତୁମେ ଜାଣ ନାହିଁ ଯେ ସମ୍ଭବତଃ ଅଲ୍ଲାହ ଏହି ଘଟଣା ପରେ ଅନ୍ୟ କିଛି ପ୍ରକାଶିତ କରିପାରନ୍ତି ।

فَاِذَا بَلَغْنَ اَجَلَهُنَّ فَاَمْسِكُوْهُنَّ بِمَعْرُوْفٍ اَوْ فَارِقُوْهُنَّ بِمَعْرُوْفٍ وَّاَشْهِدُوْا ذَوَيْ عَدْلٍ مِّنْكُمْ وَاَقِيْمُوا الشَّهَادَةَ لِلّٰهِ ۭ ذٰلِكُمْ يُوْعَظُ بِهٖ مَنْ

୩. ତା'ପରେ ଯେତେବେଳେ ମହିଳାମାନେ ଇଦ୍‌ଦତର ଶେଷ ସୀମାରେ ପହଞ୍ଚି ଯାଆନ୍ତି ସେତେବେଳେ ସେମାନଙ୍କୁ ସମୁଚିତ ପନ୍ଥାରେ ଅଟକାଅ ବା ସେମାନଙ୍କୁ ସମୁଚିତ ପନ୍ଥାରେ ବିଦାୟ ଦିଅ, ଏବଂ ତୁମମାନଙ୍କ ମଧ୍ୟରୁ ଦୁଇଜଣ ନ୍ୟାୟପରାୟଣ ସାକ୍ଷୀ ନିଯୁକ୍ତ କର ଏବଂ ଅଲ୍ଲାହଙ୍କ ସକାଶେ ସତ୍ୟ ସାକ୍ଷ୍ୟ ପ୍ରଦାନ କର ; ତୁମମାନଙ୍କ ମଧ୍ୟରୁ ଯେକେହି ଅଲ୍ଲାହ ଓ ଅନ୍ତିମ

---

୧. ଅବଶ୍ୟ ନବିଙ୍କୁ ସମ୍ବୋଧନ କରାଯାଇଛି କିନ୍ତୁ ଏଠାରେ ନବିଙ୍କର ଅନୁଗାମୀମାନେ ଅଭିପ୍ରେତ, କାରଣ ସେମାନେ ତାହାଙ୍କର ଅଧୀନସ୍ଥ । ଅର୍ଥାତ୍ କ୍ରୋଧାନ୍ୱିତ ହୋଇ ତଲାକ ଦିଅ ନାହିଁ, ବରଂ ଏପରି ଅବସ୍ଥାରେ ତଲାକ ଦିଅ ଯେତେବେଳେ କି ସେମାନେ ମାସିକ ଋତୁସ୍ରାବ କାଳ ମଧ୍ୟରେ ଥା'ନ୍ତି, ଅର୍ଥାତ୍ ଶୁଦ୍ଧପୂତ ଥାଆନ୍ତି ଓ ତା' ପୂର୍ବରୁ ତୁମେମାନେ ସେମାନଙ୍କ ସହିତ ସହବାସ ମଧ୍ୟ କରି ନ ଥାଅ, ତା' ହେଲେ ସକଳ କ୍ରୋଧ ଦୂର ହୋଇଯାଇଥିବ ଏବଂ କାମ ଲାଳସା ଉତ୍ତେଜିତ ହୋଇ ମନରେ ପ୍ରେମଭାବନା ସୃଷ୍ଟି କରୁଥିବ, ଯାହା ଫଳରେ ଆଉ ତଲାକ ଦେବା ପ୍ରୟୋଜନ ହେବ ନାହିଁ । ବସ୍ତୁତଃ କ୍ରୋଧାନ୍ୱିତ ଥାଇ ବା କ୍ଷଣିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ତରବରରେ ତଲାକ ଦେବାର ନିଷ୍ପତ୍ତି କରାଯିବା ଉଚିତ ନୁହେଁ । ଭାବିଚିନ୍ତି ଓ ଥଣ୍ଡା ମିଜାଜରେ ଏ ପ୍ରକାର ନିଷ୍ପତ୍ତି ନେବାକୁ ହେବ । ଅଧିକନ୍ତୁ 'ଇଦ୍‌ଦତ, ଅବଧିର ଶେଷ ପର୍ଯ୍ୟନ୍ତ ପତ୍ନୀକୁ ଗୃହ ମଧ୍ୟରେ ରହିବାକୁ ହେବ । ଏ ପ୍ରକାର ବ୍ୟବସ୍ଥା କରାଯିବାର ଉଦ୍ଦେଶ୍ୟ ହେଉଛି ଯେ 'ଇଦ୍‌ଦତ' ଅବଧି ମଧ୍ୟରେ ବିଚ୍ଛିନ୍ନ ହୋଇଯାଇଥିବା ଉଭୟ ପକ୍ଷ ବିବାଦର କାରଣଗୁଡ଼ିକୁ ଦୂର କରିବା ଓ ପୁନର୍ମିଳିତ ହେବା ସମ୍ଭବ ହେବ ।

୨. ଉଦ୍ଦେଶ୍ୟ ହେଉଛି, ଯଦି ସେମାନେ ବାହାରିଯିବେ ତେବେ ପ୍ରକାଶ୍ୟ ପାପ କାର୍ଯ୍ୟରେ ଲିପ୍ତ ହେବେ ।

كَانَ يُؤْمِنُ بِاللّٰهِ وَالْيَوْمِ الْاٰخِرِ ۬ۙ وَمَنْ يَّتَّقِ اللّٰهَ يَجْعَلْ لَّهٗ مَخْرَجًا ۙ﴿۳﴾

ଦିବସ ଉପରେ ବିଶ୍ୱାସ କରେ, ତାହାକୁ ଏହି ଉପଦେଶ ଦିଆଯାଉଅଛି ; ଏବଂ ଯେଉଁ ବ୍ୟକ୍ତି ଅଲ୍ଲାହ୍‌ଙ୍କୁ ଭୟ କରିବ, ଅଲ୍ଲାହ୍ ତା' ସକାଶେ କୌଣସି ନା କୌଣସି ପଥ ଉନ୍ମୁକ୍ତ କରିଦେବେ ।

وَّيَرْزُقْهُ مِنْ حَيْثُ لَا يَحْتَسِبُ ؕ وَمَنْ يَّتَوَكَّلْ عَلَى اللّٰهِ فَهُوَ حَسْبُهٗ ؕ اِنَّ اللّٰهَ بَالِغُ اَمْرِهٖ ؕ قَدْ جَعَلَ اللّٰهُ لِكُلِّ شَیْءٍ قَدْرًا ﴿۴﴾

୪. ଏବଂ ତାକୁ ଏପରି ସ୍ଥାନରୁ ଜୀବିକା ପ୍ରଦାନ କରିବେ ଯେଉଁ ସ୍ଥାନରୁ ଜୀବିକା ଲାଭ କରିବା ସମ୍ବନ୍ଧରେ ସେ ଧାରଣା ମଧ୍ୟ କରି ନଥିବ ; ଏବଂ ଯେ କେହି ଅଲ୍ଲାହ୍‌ଙ୍କ ଉପରେ ଭରସା କରେ, ସେ (ଅଲ୍ଲାହ୍) ତାହାପାଇଁ ଯଥେଷ୍ଟ ; ଅଲ୍ଲାହ୍ ଅବଶ୍ୟ ନିଜ ଉଦ୍ଦେଶ୍ୟକୁ ସମ୍ପୂର୍ଣ୍ଣ କରିଥା'ନ୍ତି ; ପ୍ରତ୍ୟେକ ବସ୍ତୁ ପାଇଁ ଅଲ୍ଲାହ୍ ଏକ ପରିମାଣ ନିର୍ଦ୍ଦିଷ୍ଟ କରିଛନ୍ତି ।

وَالّٰٓیِٴْ يَئِسْنَ مِنَ الْمَحِيْضِ مِنْ نِّسَآئِكُمْ اِنِ ارْتَبْتُمْ فَعِدَّتُهُنَّ ثَلٰثَةُ اَشْهُرٍ ۙ وَّالّٰٓیِٴْ لَمْ يَحِضْنَ ؕ وَاُولَاتُ الْاَحْمَالِ اَجَلُهُنَّ اَنْ يَّضَعْنَ حَمْلَهُنَّ ؕ وَمَنْ يَّتَّقِ اللّٰهَ يَجْعَلْ لَّهٗ مِنْ اَمْرِهٖ يُسْرًا ﴿۵﴾

୫. ଏବଂ ତୁମମାନଙ୍କ ପତ୍ନୀମାନଙ୍କ ମଧ୍ୟରୁ ଯେଉଁ ନାରୀମାନେ ରକ୍ତସ୍ରାବରୁ ନିରାଶ ହୋଇସାରିଛନ୍ତି, ଯଦି (ସେମାନଙ୍କ ଇଦ୍ଦତ ସଂକ୍ରାନ୍ତରେ) ତୁମେମାନେ ସନ୍ଦେହରେ ଥାଅ, ତେବେ ସେମାନଙ୍କ ଇଦ୍ଦତ ତିନିମାସ ଅଟେ ; ଏବଂ ଏହିପରି ଭାବରେ, ଯେଉଁମାନଙ୍କର ରକ୍ତସ୍ରାବ [1] ହେଉନାହିଁ (ସେମାନଙ୍କ ଇଦ୍ଦତ ମଧ୍ୟ ତିନିମାସ), ଏବଂ ଯେଉଁ ମହିଳାମାନେ ଗର୍ଭବତୀ ଥାଆନ୍ତି, ସେମାନଙ୍କର ଇଦ୍ଦତ ପ୍ରସବ ପର୍ଯ୍ୟନ୍ତ ହେବ ; ଏବଂ ଯେକେହି ଅଲ୍ଲାହ୍‌ଙ୍କୁ ଭୟ କରେ, ଅଲ୍ଲାହ୍ ତାହାର କାର୍ଯ୍ୟକୁ ଅବଶ୍ୟ ସହଜସାଧ୍ୟ କରିଦିଅନ୍ତି ।

ذٰلِكَ اَمْرُ اللّٰهِ اَنْزَلَهٗٓ اِلَيْكُمْ ؕ وَمَنْ يَّتَّقِ اللّٰهَ يُكَفِّرْ عَنْهُ سَيِّاٰتِهٖ وَيُعْظِمْ لَهٗٓ اَجْرًا ﴿۶﴾

୬. ଏହାହିଁ ଅଲ୍ଲାହ୍‌ଙ୍କର ଆଦେଶ ଯାହା ସେ ତୁମମାନଙ୍କ ସକାଶେ ଅବତୀର୍ଣ୍ଣ କରିଛନ୍ତି ; ଏବଂ ଯେ କେହି ଅଲ୍ଲାହ୍‌ଙ୍କୁ ଭୟ କରେ, ସେ (ଅଲ୍ଲାହ୍) ତାହାର ଅପକର୍ମକୁ ଲୋପ କରି ଦିଅନ୍ତି ଏବଂ ତାହାର ପୁରସ୍କାରକୁ ବୃଦ୍ଧି କରିଥା'ନ୍ତି ।

اَسْكِنُوْهُنَّ مِنْ حَيْثُ سَكَنْتُمْ مِّنْ وُّجْدِكُمْ وَلَا تُضَآرُّوْهُنَّ لِتُضَيِّقُوْا عَلَيْهِنَّ ؕ وَاِنْ كُنَّ اُولَاتِ حَمْلٍ فَاَنْفِقُوْا عَلَيْهِنَّ حَتّٰى يَضَعْنَ حَمْلَهُنَّ ۚ فَاِنْ

୭. (ହେ ମୁସଲମାନମାନେ ! ତଲାକପ୍ରାପ୍ତ ମହିଳାମାନଙ୍କ ଅଧିକାରକୁ ଭୁଲିଯାଅ ନାହିଁ, ତୁମେମାନେ ନିଜ ସାମର୍ଥ୍ୟ [2] ଅନୁସାରେ ଯେଉଁଠାରେ ରହୁଥାଅ, ସେଠାରେ ସେମାନଙ୍କୁ ରଖ, ଏବଂ ସେମାନଙ୍କୁ ହଇରାଣ କରି (ଗୃହରୁ) ବିତାଡ଼ିତ କରିବା ଉଦ୍ଦେଶ୍ୟରେ ସେମାନଙ୍କୁ କୌଣସି ପ୍ରକାର କଷ୍ଟ ଦିଅ ନାହିଁ ; ଏବଂ ଯଦି ସେମାନେ ଗର୍ଭବତୀ ହୋଇଥା'ନ୍ତି, ତେବେ ସେମାନେ ପ୍ରସବ କରିବା ପର୍ଯ୍ୟନ୍ତ ସେମାନଙ୍କ ସକାଶେ ବ୍ୟୟ କର ; ଏବଂ ଯଦି ସେମାନେ ତୁମମାନଙ୍କ ଶିଶୁମାନଙ୍କୁ ଦୁଗ୍ଧପାନ କରାନ୍ତି, ତେବେ ସେମାନଙ୍କୁ ସେମାନଙ୍କର ଉଚିତ ପାରିଶ୍ରମିକ

---

୧. ଅର୍ଥାତ୍ ମାସିକ ରକ୍ତସ୍ରାବ ବନ୍ଦ ହୋଇ ଯାଇଥିବ ଅଥବା ଆଦ୍ୟରୁ ରକ୍ତସ୍ରାବ ହୋଇ ନ ଥିବ। କେତେକ ନାରୀ ଏ ଭଳି ରୋଗରେ ପୀଡ଼ିତ ହୁଅନ୍ତି ।

୨. ଇଦ୍ଦତ ସମୟ ମଧ୍ୟରେ ଏବଂ ପତ୍ନୀ ଘର ଛାଡ଼ି ଯିବା ପୂର୍ବରୁ ପତି ତଲାକପ୍ରାପ୍ତ ପତ୍ନୀର ଠିକ୍ ସେହିପରି ଯତ୍ନ ନେବ ଯେପରି ସେ ତଲାକ ପୂର୍ବରୁ ନେଉଥିବ ।

ପ୍ରଦାନ କର, ଏବଂ ସେ ସଂକ୍ରାନ୍ତରେ ପରସ୍ପର ମଧ୍ୟରେ ଆଲୋଚନା କରି ପରମ୍ପରା ଅନୁଯାୟୀ ନିଷ୍ପତ୍ତି କର ; ଏବଂ ଯଦି ତୁମେମାନେ ପରସ୍ପର ମଧ୍ୟରେ କୌଣସି ନିଷ୍ପତ୍ତିରେ ଉପନୀତ ହୋଇ ନପାର, ତେବେ ଅନ୍ୟ କୌଣସି ମହିଳା ସେ ଶିଶୁକୁ ଦୁଗ୍ଧପାନ କରାଉ ।

أَرْضَعْنَ لَكُمْ فَآتُوهُنَّ أُجُورَهُنَّ ۖ وَأْتَمِرُوا بَيْنَكُم بِمَعْرُوفٍ ۖ وَإِن تَعَاسَرْتُمْ فَسَتُرْضِعُ لَهُ أُخْرَىٰ ﴿٦﴾

୮. ଧନୀବ୍ୟକ୍ତି (ଦୁଗ୍ଧପାନ କରାଉଥିବା ନାରୀପାଇଁ) ନିଜ ସାମର୍ଥ୍ୟ ଅନୁଯାୟୀ ବ୍ୟୟ କରିବା ଉଚିତ ; ଏବଂ ଯେ ଧନୀ ନୁହେଁ ତାହାକୁ ଅଲ୍ଲାହ ଯାହା ଦେଇଛନ୍ତି, ସେ ତଦନୁସାରେ ବ୍ୟୟ କରୁ ; ଅଲ୍ଲାହ କୌଣସି ପ୍ରାଣୀକୁ ଏପରି ଆଦେଶ ଦିଅନ୍ତି ନାହିଁ ଯାହା ତା ପାଇଁ ସାମର୍ଥ୍ୟର ବାହାରେ, ବରଂ ଏପରି ଆଦେଶ ଦିଅନ୍ତି ଯାହାକୁ ପାଳନ କରିବା ପାଇଁ ମଧ୍ୟ ତାହାକୁ ଶକ୍ତି ଦେଇଥାନ୍ତି ; ସୁତରାଂ ଯଦି କୌଣସି ବ୍ୟକ୍ତି ଅଲ୍ଲାହଙ୍କ ଆଦେଶକୁ ପାଳନ କରି ଦୁଗ୍ଧପାନ କରାଉଥିବା ମହିଳାକୁ ଉଚିତ ପାରିଶ୍ରମିକ ଦେବ, ତେବେ ସେ ଅଭାବରେ ଥିଲେ ମଧ୍ୟ ଅଲ୍ଲାହ ତାହା ପାଇଁ ତା' ପରେ ପ୍ରାଚୁର୍ଯ୍ୟ ସୃଷ୍ଟି କରିଦେବେ ।

لِيُنفِقْ ذُو سَعَةٍ مِّن سَعَتِهِ ۖ وَمَن قُدِرَ عَلَيْهِ رِزْقُهُ فَلْيُنفِقْ مِمَّا آتَاهُ اللَّهُ ۚ لَا يُكَلِّفُ اللَّهُ نَفْسًا إِلَّا مَا آتَاهَا ۚ سَيَجْعَلُ اللَّهُ بَعْدَ عُسْرٍ يُسْرًا ﴿٨﴾

୯. ଏବଂ ଏପରି ଅନେକ ଗ୍ରାମ(ବାସୀ) ଅଛନ୍ତି ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ଆଦେଶ ଓ ତାହାଙ୍କ ରସୁଲମାନଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ ; ଏବଂ ଆମ୍ଭେ ସେମାନଙ୍କଠାରୁ ଏଥିସକାଶେ କଡ଼ାକଡ଼ି ଭାବରେ ହିସାବ ନେଲୁ, ଏବଂ ସେମାନଙ୍କ ପ୍ରତି କଠିନ ଶାସ୍ତି ଅବତୀର୍ଣ୍ଣ କଲୁ ।

وَكَأَيِّن مِّن قَرْيَةٍ عَتَتْ عَنْ أَمْرِ رَبِّهَا وَرُسُلِهِ فَحَاسَبْنَاهَا حِسَابًا شَدِيدًا وَعَذَّبْنَاهَا عَذَابًا نُّكْرًا ﴿٩﴾

୧୦. ଏବଂ ସେମାନେ ନିଜ କାର୍ଯ୍ୟ ପାଇଁ ଶାସ୍ତି ଭୋଗ କରିଥିଲେ, ଏବଂ ସେମାନଙ୍କ ପରିଣାମ କ୍ଷତିକାରକ ହୋଇଥିଲା ।

فَذَاقَتْ وَبَالَ أَمْرِهَا وَكَانَ عَاقِبَةُ أَمْرِهَا خُسْرًا ﴿١٠﴾

اَعَدَّ اللّٰهُ لَهُمْ عَذَابًا شَدِيْدًا ۙ فَاتَّقُوا اللّٰهَ يٰۤاُولِى الْاَلْبَابِ ۖۚ الَّذِيْنَ اٰمَنُوْا ۛؕ قَدْ اَنْزَلَ اللّٰهُ اِلَيْكُمْ ذِكْرًا ۙ﴿۱۱﴾

رَّسُوْلًا يَّتْلُوْا عَلَيْكُمْ اٰيٰتِ اللّٰهِ مُبَيِّنٰتٍ لِّيُخْرِجَ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ مِنَ الظُّلُمٰتِ اِلَى النُّوْرِ ؕ وَمَنْ يُّؤْمِنْۢ بِاللّٰهِ وَيَعْمَلْ صَالِحًا يُّدْخِلْهُ جَنّٰتٍ تَجْرِىْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَاۤ اَبَدًا ؕ قَدْ اَحْسَنَ اللّٰهُ لَهٗ رِزْقًا ﴿۱۲﴾

୧୧/୧୨. ଏପରି ଲୋକମାନଙ୍କ ପାଇଁ ଅଲ୍ଲାହ କଠିନ ଶାସ୍ତି ନିର୍ଦ୍ଦିଷ୍ଟ କରିଛନ୍ତି ; ସୁତରାଂ ବିଶ୍ବାସକାରୀମାନଙ୍କ ମଧ୍ୟରୁ ହେ ବୁଦ୍ଧିମାନ୍ ବ୍ୟକ୍ତିମାନେ ! ଅଲ୍ଲାହଙ୍କୁ ଭୟକର ; ଅଲ୍ଲାହ ତୁମମାନଙ୍କ ସକାଶେ ସମ୍ମାନଜନକ ବିଷୟ ଅର୍ଥାତ୍ ରସୁଲ ଅବତୀର୍ଣ୍ଣ କରିଛନ୍ତି ଯେ ତୁମମାନଙ୍କୁ ଅଲ୍ଲାହଙ୍କର ଏପରି ନିଦର୍ଶନମାନ (ପାଠକରି) ଶୁଣାନ୍ତି ଯାହା (ପ୍ରତ୍ୟେକ ପୁଣ୍ୟ ଓ ପାପକୁ) ପ୍ରକାଶିତ କରିଦିଏ ; ଯାହା ଫଳରେ ଯେଉଁ ବିଶ୍ବାସକାରୀମାନେ ନିଜ ବିଶ୍ବାସ ଅନୁଯାୟୀ କାର୍ଯ୍ୟ କରନ୍ତି ସେମାନେ ଅନ୍ଧକାର ମଧ୍ୟରୁ ବାହାରି ଆଲୋକ ମଧ୍ୟକୁ ଆସିଯା'ନ୍ତି ; ଏବଂ ଯେକେହି ଅଲ୍ଲାହଙ୍କ ଉପରେ ବିଶ୍ବାସ କରେ ଓ ତଦନୁଯାୟୀ କାର୍ଯ୍ୟ କରେ, ସେ ତାହାକୁ ଏପରି ବୈକୁଣ୍ଠରେ ପ୍ରବେଶ କରାଇବେ ଯାହାର ନିମ୍ନଦେଶରେ ଝରଣାମାନ ପ୍ରବାହିତ ହେଉଥିବ ; ସେ ସେଠାରେ ସର୍ବଦା ରହିଥିବ ; ଅଲ୍ଲାହ ଏପରି ବ୍ୟକ୍ତିକୁ ଉତ୍ତମ ଜୀବିକା ପ୍ରଦାନ କରିଛନ୍ତି ।

اَللّٰهُ الَّذِىْ خَلَقَ سَبْعَ سَمٰوٰتٍ وَّمِنَ الْاَرْضِ مِثْلَهُنَّ ؕ يَتَنَزَّلُ الْاَمْرُ بَيْنَهُنَّ لِتَعْلَمُوْۤا اَنَّ اللّٰهَ عَلٰى كُلِّ شَىْءٍ قَدِيْرٌ ۙ وَّاَنَّ اللّٰهَ قَدْ اَحَاطَ بِكُلِّ شَىْءٍ عِلْمًا ﴿۱۳﴾

୧୩. ଅଲ୍ଲାହ ହିଁ ସପ୍ତ ଆକାଶକୁ ସୃଷ୍ଟି କରିଛନ୍ତି, ଏବଂ ପୃଥିବୀକୁ ମଧ୍ୟ ଆକାଶର ସଂଖ୍ୟା ଅନୁଯାୟୀ (ସୃଷ୍ଟି କରିଛନ୍ତି) ; ଏହି (ଆକାଶ ଓ ପୃଥିବୀ) ମଧ୍ୟରେ ତାହାଙ୍କର ଆଦେଶ ଅବତୀର୍ଣ୍ଣ ହେଉଥାଏ, ଯଦ୍ଵାରା ତୁମେମାନେ ଜାଣିପାରିବ ଯେ ଅଲ୍ଲାହ ପ୍ରତ୍ୟେକ ବିଷୟ କରିବାକୁ ସମ୍ପୂର୍ଣ୍ଣ ରୂପେ ସକ୍ଷମ ;[୧] ଏବଂ ଏହିପରି ଭାବରେ, ଅଲ୍ଲାହ ପ୍ରତ୍ୟେକ ବିଷୟକୁ ନିଜ ଜ୍ଞାନ ଦ୍ଵାରା ପରିବେଷ୍ଟିତ କରିଛନ୍ତି[୨] ।

୧. ତୁମେମାନେ ପଥଭ୍ରଷ୍ଟ ହୋଇ ଯେତେ ଦୂର ଚାଲିଯାଇଥିଲେ ମଧ୍ୟ, ସେ ତଥାପି ତୁମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇ ଫେରାଇ ଆଣିପାରିବେ ।

୨. ଅର୍ଥାତ୍ ଯେତେ ଅଲ୍ଲାହଙ୍କ ତରଫରୁ କୌଣସି ଶିକ୍ଷା ଆସେ ତେବେ ତାହା ପ୍ରତ୍ୟେକ ମନୁଷ୍ୟର ଆଭ୍ୟନ୍ତରୀଣ ସାମର୍ଥ୍ୟ ଅନୁସାରେ ଆସେ ; ଏଥିରୁ ଜଣାପଡୁଛି ଯେ ମନୁଷ୍ୟର ସମସ୍ତ ସାମର୍ଥ୍ୟକୁ ଅଲ୍ଲାହ ଆପଣା ଜ୍ଞାନ ମାଧ୍ୟମରେ ପରିବେଷ୍ଟିତ କରି ରଖିଛନ୍ତି ।




## ଅଲ—ତହରିମ

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୩ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

يٰۤاَيُّهَا النَّبِيُّ لِمَ تُحَرِّمُ مَاۤ اَحَلَّ اللّٰهُ لَكَ ۚ تَبْتَغِيْ مَرْضَاتَ اَزْوَاجِكَ ؕ وَاللّٰهُ غَفُوْرٌ رَّحِيْمٌ ②

୨. ହେ ନବି ! ଅଲ୍ଲାହ ତୁମ ସକାଶେ ଯାହା ବୈଧ କରିଛନ୍ତି, ତାହାକୁ କାହିଁକି ତୁମେ ଅବୈଧ[୧] କରୁଅଛ ? ତୁମେ ନିଜ ପତ୍ନୀମାନଙ୍କୁ ସନ୍ତୁଷ୍ଟ କରିବାକୁ ଇଚ୍ଛା କରୁଅଛ ; ଏବଂ ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।

قَدْ فَرَضَ اللّٰهُ لَكُمْ تَحِلَّةَ اَيْمَانِكُمْ ۚ وَاللّٰهُ مَوْلٰىكُمْ ۚ وَهُوَ الْعَلِيْمُ الْحَكِيْمُ ③

୩. ଅଲ୍ଲାହ ତୁମ ସକାଶେ ଏପରି ଶପଥ ଯେଦ୍ୱାରା ବିଶୃଙ୍ଖଳା ସୃଷ୍ଟି ହୁଏ) ଭଙ୍ଗ କରିବାକୁ ଧାର୍ଯ୍ୟ କରିଛନ୍ତି ; ଅଲ୍ଲାହ ତୁମମାନଙ୍କର ପ୍ରଭୁ ; ଏବଂ ସେ ହିଁ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَاِذْ اَسَرَّ النَّبِيُّ اِلٰى بَعْضِ اَزْوَاجِهٖ حَدِيْثًا ۚ فَلَمَّا نَبَّاَتْ بِهٖ وَاَظْهَرَهُ اللّٰهُ عَلَيْهِ عَرَّفَ بَعْضَهٗ وَ

୪. ଏବଂ (ସ୍ମରଣ କର) ଯେତେବେଳେ ନବି ନିଜ ପତ୍ନୀମାନଙ୍କ ମଧ୍ୟରୁ ଜଣକୁ ଏକ ଗୁପ୍ତ କଥା କହିଥିଲେ, ତା'ପରେ ଯେତେବେଳେ ସେ ସେହି କଥାକୁ ଅନ୍ୟ ଆଗରେ ପ୍ରକାଶ କରିଦେଲେ, ଏବଂ ଅଲ୍ଲାହ ତାହାଙ୍କୁ (ଅର୍ଥାତ୍ ନବିଙ୍କୁ) ସେହି ଖବର ଦେଲେ,ସେତେବେଳେ ସେ ସେହି କଥାର କେତେକ ଅଂଶ ପତ୍ନୀଙ୍କୁ କହିଥିଲେ, ଓ ଅନ୍ୟ କେତେକ ଅଂଶ ଗୋପନ ରଖିଥିଲେ ; ତା'ପରେ ଯେତେବେଳେ ସେ ପ୍ରକୃତ ଘଟଣା ବିଷୟରେ ସେହି ପତ୍ନୀଙ୍କୁ ଜଣାଇଲେ,

---

୧. ଏକଦା କୌଣସି ପତ୍ନୀଙ୍କ ଗୃହରେ ହଜରତ ମହମ୍ମଦଙ୍କର ପାଳି ଥିଲା, ସେହି ପତ୍ନୀ ତାଙ୍କୁ ମହୁ ସରବତ ପିଇବାକୁ ଦେଇଥିଲେ ଓ ସେ ଏହାକୁ ଖୁବ୍ ପସନ୍ଦ କରିଥିଲେ । ସେଥିଯୋଗୁଁ ସେ ସେଠାରେ କିଛି ଅଧିକ ସମୟପାଇଁ ଅଟକି ଯାଇଥିଲେ । ଅନ୍ୟ ପତ୍ନୀମାନଙ୍କୁ ଏ ବିଷୟ ଭଲ ଲାଗିଲା ନାହିଁ । ସମ୍ଭବତଃ ସେମାନଙ୍କ ମଧ୍ୟରୁ ଜଣେ ମହୁ ପସନ୍ଦ କରୁ ନ ଥିଲେ ଓ ସେ ମନ୍ତବ୍ୟ ଦେଇଥିଲେ ଯେ ହଜରତଙ୍କ ମୁହଁରୁ ଦୁର୍ଗନ୍ଧ ବାହାରୁଛି । ହଜରତ ମହମ୍ମଦ ଅତିଶୟ ସମ୍ବେଦନଶୀଳ ହୋଇଥିବାରୁ ସେ ଆଉ ମହୁ ନ ଖାଇବାକୁ ମନରେ ପ୍ରତିଜ୍ଞା କଲେ । ସେହି କାରଣରୁ ଆଲୋଚ୍ୟ ଆୟତ ଅବତୀର୍ଣ୍ଣ ହୋଇଥିଲା । ଅଲ୍ଲାହ ମହୁକୁ ଏକ ଉତ୍କୃଷ୍ଟ ପଦାର୍ଥ ବୋଲି ଧାର୍ଯ୍ୟ କରିଛନ୍ତି । ପବିତ୍ର କୋରାନରେ ମଧ୍ୟ ଏହା ଏକ ଆରୋଗ୍ୟକାରୀ ପଦାର୍ଥ ଭାବେ ଉଲ୍ଲିଖିତ ଅଛି (୧୬: ୭୦ ଦ୍ରଷ୍ଟବ୍ୟ) । କୌଣସି ପତ୍ନୀଙ୍କ ପାଇଁ ଏପରି ଏକ ଉତ୍କୃଷ୍ଟ ପଦାର୍ଥକୁ ପରିହାର କରିବା ଉଚିତ ନୁହେଁ । କେତେକ ଟୀକାକାର ଭ୍ରମ ଧାରଣାର ବଶବର୍ତ୍ତୀ ହୋଇ ନିମ୍ନୋକ୍ତ ପ୍ରକାରେ ଏହି ଆୟତର ବ୍ୟାଖ୍ୟା କରିଛନ୍ତି: 'ହଜରତ ମହମ୍ମଦ ନିଜ ଦାସୀ ମାରିୟାଙ୍କ ସହିତ ସହବାସ କରିଥିଲେ ଓ ଏ ବିଷୟ ଜଣେ ପତ୍ନୀଙ୍କୁ ଶପଥ କରାଇ ଶୁଣାଇଥିଲେ, କିନ୍ତୁ ସେ ଅନ୍ୟ ଜଣେ ସପତ୍ନୀଙ୍କୁ ଏହା ଜଣାଇ ଦେଇଥିଲେ । କ୍ରମେ ଏହା ଅଧିକ ପ୍ରସାରିତ ହୋଇଥିଲା' କିନ୍ତୁ ଏ ପ୍ରକାର ବର୍ଣ୍ଣନା ସମ୍ପୂର୍ଣ୍ଣ ଭୁଲ । ହଜରତ ମହମ୍ମଦଙ୍କର ଦୁର୍ନାମ ରଟନା କରିବା ଲକ୍ଷ୍ୟରେ ଏ ପ୍ରକାର କାହାଣୀ ସୃଷ୍ଟି କରାଯାଇଛି । ପ୍ରକୃତରେ ସେ ତାଙ୍କର ଜଣେ ପତ୍ନୀଙ୍କ ଘରେ ମହୁ ଖାଇଥିଲେ ଓ ବିଳମ୍ବର କାରଣ ମଧ୍ୟ ତାଙ୍କର ଅନ୍ୟ ପତ୍ନୀଙ୍କୁ କହିଥିଲେ । ମହୁମାଛି ବିଭିନ୍ନ ଗଛରୁ ମହୁ ସଂଗ୍ରହ କରିଥାଏ । ବେଳେବେଳେ ଦୁର୍ଗନ୍ଧଯୁକ୍ତ ଗଛରୁ ମଧ୍ୟ ମହୁ ସଂଗୃହୀତ ହୋଇଥାଏ, ଫଳରେ ସେଭଳି ମହୁରେ ଦୁର୍ଗନ୍ଧ ରହିବା ସ୍ୱାଭାବିକ । ଏହି ବିଷୟକୁ ଲକ୍ଷ୍ୟ କରି ସେହି ପତ୍ନୀ ଓ ତାଙ୍କ ସଙ୍ଗିନୀ ଭାବିଲେ ଯେ ମହୁ ସରବତ ଦେଇଥିବା ପତ୍ନୀଙ୍କ ଘରକୁ ସେ ଯେପରି ଅଧିକ ଆଉ ଯାଇ ନ ପାରିବେ ସେଥିପାଇଁ ମହୁରେ ଦୁର୍ଗନ୍ଧ ରହିଥିବା ବିଷୟ ତାଙ୍କୁ କହିଥିଲେ । ବସ୍ତୁତଃ ଏହି ଦୁର୍ଗନ୍ଧ ବିଷୟ ଏଠାରେ ଉଲ୍ଲିଖିତ ହୋଇଛି (ଫତହୁଲ ବୟାନ ଗ୍ରନ୍ଥ ଖଣ୍ଡ ୯) ।

اَعْرَضَ عَنْۢ بَعْضٍ ۚ فَلَمَّا نَبَّاَهَا بِهٖ قَالَتْ مَنْ اَنْۢبَاَكَ هٰذَا ؕ قَالَ نَبَّاَنِیَ الْعَلِیْمُ الْخَبِیْرُ ۝

ସେତେବେଳେ ସେ କହିଲେ, "କିଏ ଆପଣଙ୍କୁ ଏହି ସମାଚାର ଦେଇଛନ୍ତି ?" ଏଥିଉତ୍ତାରୁ ସେ (ନବୀ) କହିଲେ, "ଆମ୍ଭଙ୍କୁ ସର୍ବଜ୍ଞ(ଓ) ସର୍ବବିଦିତ ଅଲ୍ଲାହ ଏହି ସମାଚାର ଦେଇଛନ୍ତି ।"

اِنْ تَتُوْبَاۤ اِلَى اللّٰهِ فَقَدْ صَغَتْ قُلُوْبُكُمَا ۚ وَ اِنْ تَظٰهَرَا عَلَیْهِ فَاِنَّ اللّٰهَ هُوَ مَوْلٰىهُ وَ جِبْرِیْلُ وَ صَالِحُ الْمُؤْمِنِیْنَ ۚ وَ الْمَلٰٓىِٕكَةُ بَعْدَ ذٰلِكَ ظَهِیْرٌ ۝

୫. ତା'ପରେ ସେ କହିଲେ, "ହେ (ଆମର) ଦୁଇ ପତ୍ନୀ ! ଯଦି ତୁମେମାନେ ନିଜ ତ୍ରୁଟି ପାଇଁ ଅଲ୍ଲାହଙ୍କ ନିକଟରେ ଅନୁତାପ କରିବ, ତେବେ ତୁମ ଦୁହିଙ୍କ ହୃଦୟ ତ ଆରମ୍ଭରୁ ଏଥିପ୍ରତି ଅବନତ ରହିଛି (ଓ ଅନୁତାପ କରିବାକୁ ପ୍ରସ୍ତୁତ ରହିଛି) ; ଏବଂ ଯଦି ତୁମେ ଦୁହେଁ ପରସ୍ପରର ପୃଷ୍ଠପୋଷକତା କରିବା ପାଇଁ ଆଗଭର ହୁଅ, ତେବେ ମନେରଖ ଯେ ଅଲ୍ଲାହ ଏହି ରସୁଲଙ୍କର ମିତ୍ର ଅଟନ୍ତି ;" ଏହିପରି ଭାବରେ ଜିବ୍ରାଇଲ ଓ ସମସ୍ତ ନିଷ୍ଠାପର ବିଶ୍ବାସକାରୀ, ଓ ଏମାନଙ୍କ ବ୍ୟତୀତ ଦେବଦୂତମାନେ ମଧ୍ୟ ନବିଙ୍କର ପୃଷ୍ଠପୋଷକତା କରୁଛନ୍ତି ।

عَسٰى رَبُّهٗۤ اِنْ طَلَّقَكُنَّ اَنْ یُّبْدِلَهٗۤ اَزْوَاجًا خَیْرًا مِّنْكُنَّ مُسْلِمٰتٍ مُّؤْمِنٰتٍ قٰنِتٰتٍ تٰٓىِٕبٰتٍ عٰبِدٰتٍ سٰٓىِٕحٰتٍ ثَیِّبٰتٍ وَّ اَبْكَارًا ۝

୬. ତାହାଙ୍କ ପାଳନକର୍ତ୍ତାଙ୍କ ପକ୍ଷରେ ଏହା ଖୁବ୍ ସମ୍ଭବପର ଯେ ଯଦି ସେ ତୁମମାନଙ୍କୁ ତଲାକ ଦେଇଦିଅନ୍ତି, ତେବେ ସେ (ଅଲ୍ଲାହ) ତୁମମାନଙ୍କ ଠାରୁ ଉତ୍କୃଷ୍ଟତର ପତ୍ନୀ ତୁମମାନଙ୍କ ପରିବର୍ତ୍ତେ ତାହାଙ୍କୁ ଅର୍ପଣ କରିଦେବେ, ଯେଉଁମାନେ କି ମୁସଲମାନ, ବିଶ୍ବାସକାରିଣୀ, ଆଜ୍ଞାବହ, ଅନୁତାପକାରିଣୀ, ଉପାସନାକାରିଣୀ ଓ ଉପବାସକାରିଣୀ ହୋଇଥିବେ, ତଥା ବିଧବା ମଧ୍ୟ ହୋଇଥିବେ ଓ କୁମାରୀ ମଧ୍ୟ ହୋଇଥିବେ ।

یٰۤاَیُّهَا الَّذِیْنَ اٰمَنُوْا قُوْۤا اَنْفُسَكُمْ وَ اَهْلِیْكُمْ نَارًا وَّ قُوْدُهَا النَّاسُ وَ الْحِجَارَةُ عَلَیْهَا مَلٰٓىِٕكَةٌ غِلَاظٌ

୭. ହେ ବିଶ୍ବାସକାରୀମାନେ ! ନିଜକୁ ଓ ନିଜର ପରିବାରବର୍ଗଙ୍କୁ ମଧ୍ୟ ନରକର ଅଗ୍ନିରୁ ରକ୍ଷାକର ଯାହାର କାଳେଣି କେତେକ ବିଶିଷ୍ଟ ଲୋକ (ଅର୍ଥାତ୍ ଅବିଶ୍ବାସକାରୀମାନେ) ହେବେ, ଏବଂ ଏହିପରି ଭାବରେ ପଥର ମଧ୍ୟ (ଯେଉଁଥିରୁ[୨] ମୂର୍ତ୍ତି ଗଢ଼ାଯାଇଛି) ; ସେଠାରେ

୧. ଏଠାରେ 'ତୁମମାନଙ୍କ ହୃଦୟ ବକ୍ର ହୋଇଯାଇଛି' ବୋଲି କେତେକ ଭାଷ୍ୟକାର ଯେଉଁ ଅର୍ଥ କରିଛନ୍ତି ତାହା ଭ୍ରମାତ୍ମକ । ବସ୍ତୁତଃ ଅଲ୍ଲାହ କହିଥିଲେ ଯେ ତୁମମାନଙ୍କର ହୃଦୟ ପ୍ରଥମରୁ ଅନୁତାପ ପ୍ରତି ଅବନତ ହୋଇରହିଛି । ଯେତେବେଳେ କି ଅଲ୍ଲାହ ପବିତ୍ର କୋରାନରେ ଏହି ରୂପେ କହିଛନ୍ତି ଯେ —— ' ଫକଦ୍ ସଗତ୍ କୋଲୁବୋକୋମା' (ଅର୍ଥାତ୍ ତୁମ ଦୁହିଙ୍କ ହୃଦୟ ତ ଆରମ୍ଭରୁ ଏଥିପ୍ରତି ଅବନତ ରହିଛି ) ସେତେବେଳେ ଭାଷ୍ୟକାରମାନେ ହଜରତ ମହମ୍ମଦଙ୍କ ଧର୍ମପତ୍ନୀମାନଙ୍କ ପ୍ରତି ଦୋଷାରୋପ କରିବାରେ କାହିଁକି ଏପରି ଆଗ୍ରହ ପ୍ରକାଶ କରୁଛନ୍ତି ; ସମ୍ଭବତଃ କୌଣସି ସିଆ ମୁସଲମାନ ନିଜ ଭାଷ୍ୟରେ ଏହି ରୂପେ ବର୍ଣ୍ଣନା କରିଛନ୍ତି କାରଣ ସେମାନଙ୍କ ମତରେ କେବଳ ହଜରତ ଫାତିମା, ହଜରତ ଅଲି ଓ ସେ ଦୁହିଙ୍କର ପିଲାମାନେ ହଜରତ ମହମ୍ମଦଙ୍କ ପରିବାରର ଅନ୍ତର୍ଭୁକ୍ତ ଓ ସେମାନଙ୍କ ମଧ୍ୟରେ ହଜରତଙ୍କ ପତ୍ନୀମାନେ ତାଙ୍କ ପରିବାରର ଅନ୍ତର୍ଭୁକ୍ତ ନୁହନ୍ତି, ଅଥଚ ପବିତ୍ର କୋରାନରେ ହଜରତ ଇବ୍ରାହିମଙ୍କ କ୍ଷେତ୍ରରେ ତାଙ୍କ ପତ୍ନୀଙ୍କୁ ତାଙ୍କ ପରିବାରର ଲୋକଭାବେ ସ୍ବୀକାର କରାଯାଇଛି ।

୨. ଏଠାରେ ପ୍ରଶ୍ନ ଉଠିପାରେ ଯେ ପଥର ତିଆରି ମୂର୍ତ୍ତିମାନଙ୍କୁ ଅଗ୍ନିରେ ନିକ୍ଷେପ କରିବାର ଉଦ୍ଦେଶ୍ୟ କ'ଣ ? କାରଣ ସେମାନେ ତ ନିର୍ଜୀବ । ଏହାର ଉତ୍ତର ହେଉଛି ଯେ ଯଦିଓ ସେମାନେ ନିର୍ଜୀବ ତଥାପି ଅବିଶ୍ବାସକାରୀମାନେ ସେହି ମୂର୍ତ୍ତି ଭିତରେ ଅଲ୍ଲାହଙ୍କର ବିଭିନ୍ନ ଗୁଣଥିବାର ସ୍ବୀକାର କରୁଥିଲେ । ତେଣୁ ସେମାନଙ୍କୁ ଅଗ୍ନିରେ ନିକ୍ଷେପ କରିବା ଦ୍ବାରା ଅବିଶ୍ବାସକାରୀମାନଙ୍କ ନିକଟରେ ସେମାନଙ୍କର ତ୍ରୁଟିପୂର୍ଣ୍ଣ ବିଶ୍ବାସ ଯେ ନିରର୍ଥକ, ଏଠାରେ ସେହି ବିଷୟ ପ୍ରମାଣିତ ହେଉଛି । ଅତଏବ ମୂର୍ତ୍ତିଗୁଡିକ ନିର୍ଜୀବ ହୋଇଥିବାରୁ ଏହା ସେଗୁଡିକ ପ୍ରତି ଅତ୍ୟାଚାର ନୁହେଁ ।

شِدَادٌ لَّا يَعْصُونَ اللَّهَ مَا أَمَرَهُمْ وَيَفْعَلُونَ مَا يُؤْمَرُونَ ٧

(ଅର୍ଥାତ୍ ସେହି ନରକରେ) ଏଭଳି ଦେବଦୂତମାନେ ନିଯୁକ୍ତ ଅଛନ୍ତି, ଯେଉଁମାନେ କାହାରି କାକୁତିମିନତି ଶୁଣନ୍ତି ନାହିଁ, ବରଂ ନିଜ କର୍ତ୍ତବ୍ୟ ସମ୍ପାଦନ କରିବାରେ ଅତ୍ୟନ୍ତ କଠୋର, ଏବଂ ଅଲ୍ଲାହ ସେମାନଙ୍କୁ ଯେଉଁ ଆଦେଶ ଦେଇଛନ୍ତି ତାହାକୁ ସେମାନେ ଅବଜ୍ଞା କରନ୍ତି ନାହିଁ ଏବଂ ଯାହା ଆଦେଶ ଦିଆଯାଏ ତାହାକୁ ପାଳନ କରନ୍ତି ।

يَا أَيُّهَا الَّذِينَ كَفَرُوا لَا تَعْتَذِرُوا الْيَوْمَ ۖ إِنَّمَا تُجْزَوْنَ مَا كُنتُمْ تَعْمَلُونَ ٨

୮. ହେ ଅବିଶ୍ୱାସକାରୀମାନେ ! ଆଜି କୌଣସି ଆପତ୍ତି କର ନାହିଁ ; ତୁମମାନଙ୍କୁ ତୁମମାନଙ୍କର କର୍ମ ଅନୁସାରେ ପ୍ରତିଫଳ ମିଳିବ ।

يَا أَيُّهَا الَّذِينَ آمَنُوا تُوبُوا إِلَى اللَّهِ تَوْبَةً نَّصُوحًا عَسَىٰ رَبُّكُمْ أَن يُكَفِّرَ عَنكُمْ سَيِّئَاتِكُمْ وَيُدْخِلَكُمْ جَنَّاتٍ تَجْرِي مِن تَحْتِهَا الْأَنْهَارُ يَوْمَ لَا يُخْزِي اللَّهُ النَّبِيَّ وَالَّذِينَ آمَنُوا مَعَهُ ۖ نُورُهُمْ يَسْعَىٰ بَيْنَ أَيْدِيهِمْ وَبِأَيْمَانِهِمْ يَقُولُونَ رَبَّنَا أَتْمِمْ لَنَا نُورَنَا وَاغْفِرْ لَنَا ۖ إِنَّكَ عَلَىٰ كُلِّ شَيْءٍ قَدِيرٌ ٩

୯. ହେ ଅବିଶ୍ୱାସୀକାରୀମାନେ ! ଅଲ୍ଲାହଙ୍କ ପ୍ରତି ନିଷ୍ଠାର ସହିତ ମନୋନିବେଶ କର (ତହିଁରେ କୌଣସି ପ୍ରକାର କପଟତା ନ ରହୁ), ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ତୁମମାନଙ୍କ ପାଳନକର୍ତ୍ତା ତୁମମାନଙ୍କ ପାପକୁ ଲୋପ କରିଦେବେ, ଓ ତୁମମାନଙ୍କୁ ଏପରି ବୈକୁଣ୍ଠରେ ପ୍ରବେଶ କରାଇବେ ଯାହାର ନିମ୍ନଦେଶରେ ଝରଣାମାନ ପ୍ରବାହିତ ହେଉଥିବ ; ଏବଂ ସେଦିନ ଅଲ୍ଲାହ ନିଜ ନବିଙ୍କୁ ଓ ସେ (ଲୋକ)ମାନଙ୍କୁ, ଯେଉଁମାନେ ତାହାଙ୍କ ସହିତ ବିଶ୍ୱାସ କରିଛନ୍ତି, ଅପମାନିତ କରିବେ ନାହିଁ ; ସେମାନଙ୍କ ଜ୍ୟୋତି ସେମାନଙ୍କ ଅଗ୍ରଭାଗରେ ଓ ଦକ୍ଷିଣ ପାର୍ଶ୍ୱରେ ମଧ୍ୟ ଧାବମାନ ହେଉଥିବ ; ସେମାନେ କହିବେ, "ହେ ଆମମାନଙ୍କର ପାଳନକର୍ତ୍ତା ! ଆମମାନଙ୍କର ଜ୍ୟୋତିକୁ ଆମମାନଙ୍କ ହିତାର୍ଥେ ସମ୍ପୂର୍ଣ୍ଣ କରିଦିଅ, ଓ ଆମମାନଙ୍କୁ କ୍ଷମା କର ; ତୁମେ ହିଁ ପ୍ରତ୍ୟେକ ବିଷୟରେ ସର୍ବଶକ୍ତିମାନ୍ ।"

يَٰٓأَيُّهَا ٱلنَّبِىُّ جَٰهِدِ ٱلْكُفَّارَ وَٱلْمُنَٰفِقِينَ وَٱغْلُظْ عَلَيْهِمْ ۚ وَمَأْوَىٰهُمْ جَهَنَّمُ ۖ وَبِئْسَ ٱلْمَصِيرُ ⑩

୧୦. ହେ ନବି ! ଅବିଶ୍ୱାସକାରୀମାନଙ୍କ ଓ କପଟ–ବିଶ୍ୱାସୀମାନଙ୍କ ବିରୁଦ୍ଧରେ ପ୍ରବଳ ପ୍ରଚାର କର ; [୧] ଏବଂ ସେମାନଙ୍କର କୌଣସି ପ୍ରଭାବକୁ ସ୍ୱୀକାର କର ନାହିଁ ଏବଂ (ଜାଣିରଖ ଯେ) ନରକ ସେମାନଙ୍କର ବାସସ୍ଥାନ, ଓ ଏହା ଅତ୍ୟନ୍ତ ମନ୍ଦ ବାସସ୍ଥାନ ଅଟେ ।

ضَرَبَ ٱللَّهُ مَثَلًا لِّلَّذِينَ كَفَرُوا۟ ٱمْرَأَتَ نُوحٍ وَٱمْرَأَتَ لُوطٍ ۖ كَانَتَا تَحْتَ عَبْدَيْنِ مِنْ عِبَادِنَا صَٰلِحَيْنِ فَخَانَتَاهُمَا فَلَمْ يُغْنِيَا عَنْهُمَا مِنَ ٱللَّهِ شَيْـًٔا وَقِيلَ ٱدْخُلَا ٱلنَّارَ مَعَ ٱلدَّٰخِلِينَ ⑪

୧୧. ଅଲ୍ଲାହ ଅବିଶ୍ୱାସକାରୀମାନଙ୍କ ଅବସ୍ଥା, ନୁହ ଓ ଲୁତଙ୍କ ପତ୍ନୀମାନଙ୍କ ଅବସ୍ଥା ସଦୃଶ ବର୍ଣ୍ଣନା କରୁଛନ୍ତି ; ସେ ଦୁହେଁ ଆମର ପୁଣ୍ୟବାନ୍ ଭକ୍ତ–ମାନଙ୍କ ସହିତ ବିବାହ କରିଥିଲେ, କିନ୍ତୁ ସେ ଦୁହେଁ ସେ ଉଭୟ (ଭକ୍ତ)ଙ୍କ ପ୍ରତି ବିଶ୍ୱାସଘାତକତା କରିଥିଲେ ; ଏବଂ ସେ ଉଭୟ ଅଲ୍ଲାହଙ୍କ ଶାସ୍ତି ସମୟରେ ସେ (ପତ୍ନୀ)ମାନଙ୍କୁ କୌଣସି ସାହାଯ୍ୟ କରିପାରିଲେ ନାହିଁ, [୨] ଏବଂ ସେ ଦୁଇ ମହିଳାଙ୍କୁ କୁହାଯାଇଥିଲା, "ନରକଗାମୀମାନଙ୍କ ସହିତ ତୁମେମାନେ ମଧ୍ୟ (ନରକରେ) ପ୍ରବେଶ କର ।"

وَضَرَبَ ٱللَّهُ مَثَلًا لِّلَّذِينَ ءَامَنُوا۟ ٱمْرَأَتَ فِرْعَوْنَ إِذْ قَالَتْ رَبِّ ٱبْنِ لِى عِندَكَ بَيْتًا فِى ٱلْجَنَّةِ وَنَجِّنِى مِن فِرْعَوْنَ وَعَمَلِهِۦ وَنَجِّنِى مِنَ ٱلْقَوْمِ ٱلظَّٰلِمِينَ ⑫

୧୨. ଏବଂ ଅଲ୍ଲାହ ବିଶ୍ୱାସକାରୀମାନଙ୍କ ଅବସ୍ଥା ଫିରଔନର ପତ୍ନୀଙ୍କ ଅବସ୍ଥା ସଦୃଶ ବର୍ଣ୍ଣନା କରିଛନ୍ତି ; ଯେତେବେଳେ ସେ (ପତ୍ନୀ) ନିଜ ପାଳନକର୍ତ୍ତାଙ୍କୁ କହିଥିଲା, "ହେ ଅଲ୍ଲାହ ! ତୁମେ ବୈକୁଣ୍ଠରେ ନିଜ ନିକଟରେ ମୋ ପାଇଁ ଏକ ଗୃହ ନିର୍ମାଣ କର, ଏବଂ ମୋତେ ଫିରଔନ ଓ ତାହାର କୁକର୍ମରୁ ରକ୍ଷାକର, ଏବଂ (ଏପରି ଭାବରେ ତାହାର) ଅତ୍ୟାଚାରୀ ସମ୍ପ୍ରଦାୟଠାରୁ ମଧ୍ୟ ମୁକ୍ତି ଦିଅ ।"

---

୧. ଆରବୀ 'ଗାଇଜବୁନ' ଶବ୍ଦ କୌଣସି ବସ୍ତୁର ଏଭଳି କଠିନତାକୁ ବୁଝାଏ ଯାହା ମଧ୍ୟରେ ଅନ୍ୟ କୌଣସି ବସ୍ତୁ ପ୍ରବେଶ କରିପାରିବ ନାହିଁ । ତେଣୁ ଏଠାରେ କୁହାଯାଇଛି ଯେ ତୁମେ ଅବିଶ୍ୱାସକାରୀମାନଙ୍କର କୌଣସି ପ୍ରଭାବକୁ ସ୍ୱୀକାର କର ନାହିଁ । ଏହାର ଅର୍ଥ ନୁହେଁ ଯେ ସେମାନଙ୍କର ଅବିଶ୍ୱାସମୂଳକ କଥାକୁ ସ୍ୱୀକାର କର ନାହିଁ କାରଣ ସେପରି କଥାକୁ ସ୍ୱୀକାର କରିବା ହଜରତ ମହମ୍ମଦଙ୍କ ପକ୍ଷରେ ଆଦୌ ସମ୍ଭବ ନ ଥିଲା । ତେଣୁ ସେମାନଙ୍କ ଦ୍ୱାରା ପ୍ରଭାବିତ ନ ହେବାର ପ୍ରକୃତ ଉଦ୍ଦେଶ୍ୟ ହେଉଛି ଯଦି କୌଣସି ସମୟରେ ସେମାନେ ଆକ୍ରମଣ କରି ଦିଅନ୍ତି ତେବେ ତୁମେ କେବେ ହେଁ ଏହା ମନେ କରନାହିଁ ଯେ ସେମାନେ ଇସଲାମୀୟ ସାମ୍ରାଜ୍ୟର କୌଣସି କ୍ଷତି କରିପାରିବେ ଅଥବା ଇସଲାମର ଉନ୍ନତିରେ ପ୍ରତିବନ୍ଧକ ହେବେ, କାରଣ ଆମେ ସେମାନଙ୍କୁ ଆମର ତଥା ତୁମର ବଶବର୍ତ୍ତୀ କରିଅଛୁ ଏବଂ ସେମାନଙ୍କ ଭାଗ୍ୟରେ ଧ୍ୱଂସ ହେବା ସୁନିଶ୍ଚିତ କରାଯାଇଛି । ସୁତରାଂ ଯଦି ଅସ୍ଥାୟୀ ଭାବରେ ସେମାନଙ୍କର କୌଣସି ଉନ୍ନତି ହୁଏ, ତେବେ ତାହାର ପରିଣାମରେ ସେମାନେ ଯେ ମୁସଲମାନମାନଙ୍କର କୌଣସି କ୍ଷତି କରିପାରିବେ ଏହା ଆଦୌ ସମ୍ଭବ ନୁହେଁ ।

୨. ପ୍ରତ୍ୟେକ ବ୍ୟକ୍ତି ସହିତ ଅଲ୍ଲାହଙ୍କର ବ୍ୟବହାର ଭିନ୍ନ ଭିନ୍ନ ହୋଇଥାଏ । ଯଦି କେହି ସଦାଗ୍ରହୀ ବ୍ୟକ୍ତି ଥାଆନ୍ତି ତେବେ ସେ ଆପଣା ବୋଝ ଉଠାଇ ପାରନ୍ତି; ଅନ୍ୟର ଉଠାଇ ପାରନ୍ତି ନାହିଁ । ପବିତ୍ର କୋରାନରେ ଅଲ୍ଲାହ କହୁଛନ୍ତି ଯେ ଯଦି ହଜରତ ମହମ୍ମଦଙ୍କ ପତ୍ନୀମାନେ କୌଣସି ପାପ କରନ୍ତି ତେବେ ସେମାନଙ୍କୁ ଦୁଇଗୁଣ ଶାସ୍ତି ଦିଆଯିବ (୩୩: ୩୧ ଦ୍ରଷ୍ଟବ୍ୟ) । ତେଣୁ ଜଣେ ସଦାଗ୍ରହୀ ବ୍ୟକ୍ତିଙ୍କ ପତ୍ନୀ ହୋଇଗଲେ ଯେ ତାହାକୁ ରିଆତି ମିଳିଯିବ ତା ନୁହେଁ ବରଂ ତାଙ୍କର ଦାୟିତ୍ୱ ବଢ଼ିଯିବ ।

୧୩. ଏବଂ[1] ତା'ପରେ ଅଲ୍ଲାହ ବିଶ୍ୱାସକାରୀମାନଙ୍କ ଅବସ୍ଥା ଇମରାନଙ୍କ କନ୍ୟା ମରିୟମଙ୍କ ଅବସ୍ଥା ସଦୃଶ ବର୍ଣ୍ଣନା କରିଛନ୍ତି ଯେ ନିଜର ସତୀତ୍ୱକୁ ରକ୍ଷା କରିଥିଲେ, ଏବଂ ଆମେ ତାହାଙ୍କ ପ୍ରତି ନିଜର ବାଣୀ[2] ଅବତୀର୍ଣ୍ଣ କରିଥିଲୁ ଏବଂ ସେ (ମରିୟମ) ତାଙ୍କ ପାଳନକର୍ତ୍ତାଙ୍କ ତରଫରୁ ତାଙ୍କ ପ୍ରତି ଅବତୀର୍ଣ୍ଣ ହୋଇଥିବା ସେହି ବାଣୀର ସତ୍ୟତା ପ୍ରମାଣିତ କରିଥିଲେ,[3] ଏବଂ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ) ଗ୍ରନ୍ଥମାନଙ୍କ ଉପରେ ମଧ୍ୟ ବିଶ୍ୱାସ କରିଥିଲେ[4] ଏବଂ (ଅବଶେଷରେ) ଆଜ୍ଞାପାଳନକାରୀମାନଙ୍କର ସ୍ଥାନ ଲାଭ କରିଥିଲେ ।[5]

وَمَرْيَمَ ابْنَتَ عِمْرٰنَ الَّتِيْٓ اَحْصَنَتْ فَرْجَهَا فَنَفَخْنَا فِيْهِ مِنْ رُّوْحِنَا وَصَدَّقَتْ بِكَلِمٰتِ رَبِّهَا وَكُتُبِهٖ وَكَانَتْ مِنَ الْقٰنِتِيْنَ ﴿١٣﴾

---

୧. କେତେକ ବ୍ୟକ୍ତି ଆପତ୍ତି କରୁଛନ୍ତି ଯେ ଇମ୍ରାନ ତ ହଜରତ ମୁସାଙ୍କର ପିତା ଥିଲେ ଏବଂ ହଜରତ ମରିୟମ ତାଙ୍କର ଦେଢ ହଜାର ବର୍ଷ ପରେ ଜନ୍ମଗ୍ରହଣ କରିଥିଲେ, ତେଣୁ ଜଣାପଡୁଛି ଯେ ଯିଏ କୋରାନ ପ୍ରେରଣ କରିଛନ୍ତି ତାଙ୍କର ଇତିହାସରେ କୌଣସି ଜ୍ଞାନ ନାହିଁ, କିନ୍ତୁ ଏହି ଆପତ୍ତି ଯଥାର୍ଥ ନୁହେଁ । ହଜରତ ମହମ୍ମଦଙ୍କ ନିକଟରେ ମଧ୍ୟ ଏ ପ୍ରକାର ଆପତ୍ତି କରାଯାଇଥିଲା । ସେ କହିଥିଲେ ଯେ ପ୍ରତ୍ୟେକ ସମ୍ପ୍ରଦାୟ ଶୁଭ ଓ ସୌଭାଗ୍ୟ ଆଶାରେ ବଡ଼ମାନଙ୍କର ନାମ ନିଜ ପିଲାଙ୍କ ପାଇଁ ରଖିବାରେ ଆଶ୍ଚର୍ଯ୍ୟ ହେଲାଭଳି କିଛି ନାହିଁ । ତେଣୁ ଯଦି ମରିୟମଙ୍କର ଜେଜେବାପା ମରିୟମଙ୍କ ବାପାଙ୍କ ନାମ ଉକ୍ତ ପରମ୍ପରା ଦୃଷ୍ଟିରୁ ଇମ୍ରାନ ରଖିଥାନ୍ତି ତେବେ ସେଥିରେ କୌଣସି ଆଶ୍ଚର୍ଯ୍ୟଜନକ ଘଟଣା ନାହିଁ ।

୨. କେତେକ କହନ୍ତି ମସିହ 'ରୁହ' ଅର୍ଥାତ୍ ଆତ୍ମା ଥିଲେ, ଯାହାକୁ ହଜରତ ମରିୟମଙ୍କ ଜରାୟୁରେ ନିକ୍ଷେପ କରାଯାଇଥିଲା । କିନ୍ତୁ ଏହା ଏକ ଅବୁଝାମଣା କଥା । 'ରୁହ' ର ଅନ୍ୟ ଏକ ଅର୍ଥ ହେଉଛି ବାଣୀ । ତେଣୁ ଏଠାରେ କେବଳ ଏହି ଅର୍ଥ ହେବ ଯେ ଅଲ୍ଲାହ ହଜରତ ମରିୟମଙ୍କ ପ୍ରତି ନିଜର ବାଣୀ ପ୍ରେରଣ କରିଥିଲେ ଏବଂ ଦିବ୍ୟବାଣୀ ମାଧ୍ୟମରେ ତାହାଙ୍କୁ ହଜରତ ଇସାଙ୍କ ଜନ୍ମ ବୃତ୍ତାନ୍ତ ଜଣାଇ ଦେଇଥିଲେ ।

୩. ହଜରତ ମରିୟମ ବିଶ୍ୱାସ କରିସାରି ଥିଲେ ଯେ ବାସ୍ତବରେ ଅଲ୍ଲାହଙ୍କ ତରଫରୁ ତା'ଙ୍କୁ ଏକ ପୁତ୍ର ସନ୍ତାନ ପ୍ରଦାନ କରାଯିବ ।

୪. ହଜରତ ଇସାଙ୍କ ସମ୍ବନ୍ଧରେ ପୁରାତନ ଧର୍ମଗ୍ରନ୍ଥମାନଙ୍କରେ ଯେଉଁ ସବୁ ଭବିଷ୍ୟବାଣୀ ରହିଥିଲା, ହଜରତ ମରିୟମ ସେ ସବୁ ଉପରେ ଓହି ମାଧ୍ୟମରେ କେବଳ ବିଶ୍ୱାସ କରି ନ ଥିଲେ ବରଂ ସେ ସବୁ ଗ୍ରନ୍ଥରେ ରହିଥିବା ଭବିଷ୍ୟବାଣୀ ଯୋଗୁଁ ମଧ୍ୟ ତାହାଙ୍କର ସେ ବିଷୟରେ ଆସ୍ଥା ଥିଲା ।

୫. ମୂଳ ଶବ୍ଦ 'ମିନଲ କାନେତିନ' ଏଠାରେ ପୁଂଲିଙ୍ଗ ଭାବରେ ବ୍ୟବହୃତ ହୋଇଛି । ତେଣୁ ସେଥିରୁ ଏହି ଅର୍ଥ ହେବ ଯେ ହଜରତ ମରିୟମ ସ୍ତ୍ରୀ ଜାତିର ଥାଇ ମଧ୍ୟ ଆଜ୍ଞାକାରୀ ବ୍ୟକ୍ତିମାନଙ୍କ ମଧ୍ୟରେ ସାମିଲ ହୋଇଗଲେ, ଅର୍ଥାତ୍ ଅଲ୍ଲାହ ତାହାଙ୍କୁ ପର୍ଯ୍ୟାୟକ୍ରମେ ଉନ୍ନତି ପ୍ରଦାନ କରି ଏପରି ଗୌରବମୟ ସ୍ଥାନ ଦେଇଥିଲେ ଯେଉଁସ୍ଥାନ କେବଳ ଆଦର୍ଶ ଓ ପରିପୂର୍ଣ୍ଣ ପୁରୁଷ ପାଇଥାନ୍ତି । ବସ୍ତୁତଃ ଏହା ଏପରି ଏକ ଭବିଷ୍ୟବାଣୀ ଯାହା ଭବିଷ୍ୟତରେ ସତ୍ୟସାବ୍ୟସ୍ତ ହେବାକୁ ଥିଲା । ତଦନୁସାରେ ଏପରି ଜଣେ ବ୍ୟକ୍ତି ଅଲ୍ଲାହଙ୍କ ତରଫରୁ ପ୍ରକଟିତ ହେବେ ଯାହାଙ୍କୁ ପ୍ରଥମେ ମରିୟମ ଭାବେ ନାମିତ କରାହେବ ଏବଂ ସେ କ୍ରମଶଃ ଉନ୍ନତି କରି ଇସା ନାମରେ ନାମିତ ହେବେ । ସେ ହେବେ ଜଣେ ଆଦର୍ଶ ଯୁଗ ପୁରୁଷ ।

سُوْرَةُ الْمُلْكِ مَكِّيَّةٌ (٦٧) اٰيَاتُهَا

# ଅଲ-ମୁଲକ

ଅଧ୍ୟାୟ ୬୭

( ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୩୧ଟି ଆୟତ ଓ ୨ଟି ରୁକୂ ଅଛି )

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

تَبٰرَكَ الَّذِيْ بِيَدِهِ الْمُلْكُ وَهُوَ عَلٰى كُلِّ شَيْءٍ قَدِيْرُ ②

୨. ସେ (ଅଲ୍ଲାହ) ଅତ୍ୟନ୍ତ ମଙ୍ଗଳମୟ ଯାହାଙ୍କ ଦଖଲରେ ରାଜତ୍ୱ ରହିଅଛି, ଏବଂ ସେ ପ୍ରତ୍ୟେକ (ଅଭିଳାଷ)କୁ ପୂର୍ଣ୍ଣ କରିବାରେ ସକ୍ଷମ ।

الَّذِيْ خَلَقَ الْمَوْتَ وَالْحَيٰوةَ لِيَبْلُوَكُمْ اَيُّكُمْ اَحْسَنُ عَمَلًا وَهُوَ الْعَزِيْزُ الْغَفُوْرُ ③

୩. ତୁମମାନଙ୍କ ମଧ୍ୟରେ କିଏ ଉତ୍ତମ କାର୍ଯ୍ୟ କରୁଅଛି ତାହା ପରୀକ୍ଷା କରିବା ନିମନ୍ତେ ସେ ମୃତ୍ୟୁ ଓ ଜୀବନକୁ ସୃଷ୍ଟି କରିଛନ୍ତି ; ସେ ହି ପରାକ୍ରମୀ (ଓ) ଅତ୍ୟନ୍ତ କ୍ଷମାଶୀଳ ।

الَّذِيْ خَلَقَ سَبْعَ سَمٰوٰتٍ طِبَاقًا مَا تَرٰى فِيْ خَلْقِ الرَّحْمٰنِ مِنْ تَفٰوُتٍ فَارْجِعِ الْبَصَرَ هَلْ تَرٰى مِنْ فُطُوْرٍ ④

୪. ସେ ହି ସପ୍ତ ଆକାଶକୁ ପର୍ଯ୍ୟାୟ କ୍ରମେ ଗଢ଼ିଛନ୍ତି ; ଏବଂ ତୁମେ ଦୟାବାନ୍ (ଅଲ୍ଲାହ)ଙ୍କ ସୃଷ୍ଟିରେ କୌଣସି ତ୍ରୁଟି ଦେଖିବାକୁ ପାଇବ ନାହିଁ ; ଏବଂ ତୁମେ ନିଜ ଚକ୍ଷୁକୁ (ଚତୁର୍ଦିଗକୁ) ବୁଲାଇ ଭଲ ଭାବରେ ଦେଖ ; କ'ଣ ତୁମକୁ (ଅଲ୍ଲାହଙ୍କ ସୃଷ୍ଟିରେ) କୌଣସି ତ୍ରୁଟି ଦୃଷ୍ଟିଗୋଚର ହେଉଛି ?

ثُمَّ ارْجِعِ الْبَصَرَ كَرَّتَيْنِ يَنْقَلِبْ اِلَيْكَ الْبَصَرُ خَاسِئًا وَّهُوَ حَسِيْرٌ ⑤

୫. ତା'ପରେ ବାରମ୍ବାର ଦୃଷ୍ଟି ଘୂରାଇ ଦେଖ ; ତାହା ଅବଶେଷରେ ବ୍ୟର୍ଥ ହୋଇ ତୁମ ନିକଟକୁ ଫେରି ଆସିବ ଏବଂ ତାହା କ୍ଳାନ୍ତ ହୋଇଯିବ, (ତେବେ ବି କୌଣସି ତ୍ରୁଟି ଦୃଷ୍ଟିଗୋଚର ହେବ ନାହିଁ )।

وَلَقَدْ زَيَّنَّا السَّمَآءَ الدُّنْيَا بِمَصَابِيْحَ وَجَعَلْنٰهَا رُجُوْمًا لِّلشَّيٰطِيْنِ وَاَعْتَدْنَا لَهُمْ عَذَابَ السَّعِيْرِ ⑥

୬. ଏବଂ ଆମେ ଆକାଶର ନିମ୍ନ ଭାଗକୁ ପ୍ରଦୀପ (ଅର୍ଥାତ୍ ଗ୍ରହନକ୍ଷତ୍ର) ଦ୍ୱାରା ସୁଶୋଭିତ କରିଅଛୁ, ଏବଂ ଏ (ପ୍ରଦୀପ)ଗୁଡ଼ିକୁ ସଇତାନମାନଙ୍କ ସକାଶେ ଶିଳାପାତର ସାଧନ କରିଅଛୁ, ଏବଂ ଆମେ ଏ (ସଇତାନ)ମାନଙ୍କ ପାଇଁ ଏକ ଜ୍ୱଳନ୍ତ ଶାସ୍ତି ପ୍ରସ୍ତୁତ କରି ରଖି ଅଛୁ ।

وَلِلَّذِيْنَ كَفَرُوْا بِرَبِّهِمْ عَذَابُ جَهَنَّمَ وَبِئْسَ الْمَصِيْرُ ⑦

୭. ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ପ୍ରତ୍ୟାଖ୍ୟାନ କରିଛନ୍ତି ସେମାନଙ୍କୁ ନରକର ଶାସ୍ତି ଦିଆଯିବ, ଏବଂ ତାହା ଅତ୍ୟନ୍ତ ମନ୍ଦ ବାସସ୍ଥାନ ।

୮. ଯେତେବେଳେ ସେମାନେ ସେଥିରେ ନିକ୍ଷିପ୍ତ ହେବେ, ସେତେବେଳେ ସେମାନେ ସେଠାରେ (ଗଧର ଚିତ୍କାର ସଦୃଶ) ତାହାର ଏକ ଭୀଷଣ ଚିତ୍କାର ଶୁଣିବେ ଏବଂ ତାହା (ଅର୍ଥାତ୍ ସେ ନରକ ଅତ୍ୟନ୍ତ) ଉତ୍ତେଜିତ ଥିବ ।

إِذَآ أُلْقُوا۟ فِيهَا سَمِعُوا۟ لَهَا شَهِيقًا وَهِىَ تَفُورُ ۝

୯. ସତେ ଯେପରି କି ତାହା କ୍ରୋଧରେ ଫାଟି ପଡ଼ୁଥିବ ; ଯେବେ ବି ତହିଁରେ କୌଣସି ଦଳକୁ ନିକ୍ଷେପ କରାହେବ, ସେତେବେଳେ ତାହାର ରକ୍ଷୀମାନେ ସେମାନଙ୍କୁ ପଚାରିବେ, "କ'ଣ ତୁମମାନଙ୍କ ନିକଟକୁ କୌଣସି ସଚେତକ (ନବୀ) ଆସି ନ ଥିଲେ ?"

تَكَادُ تَمَيَّزُ مِنَ ٱلْغَيْظِ ۖ كُلَّمَآ أُلْقِىَ فِيهَا فَوْجٌ سَأَلَهُمْ خَزَنَتُهَآ أَلَمْ يَأْتِكُمْ نَذِيرٌ ۝

୧୦. ସେମାନେ କହିବେ, "ହଁ, ଆମମାନଙ୍କ ନିକଟକୁ ଅବଶ୍ୟ ସଚେତକ (ନବୀ) ଆସି ଥିଲେ ; କିନ୍ତୁ ଆମେମାନେ ତାହାଙ୍କୁ ମିଥ୍ୟାବାଦୀ ମନେ କରିଥିଲୁ ଏବଂ ତାହାଙ୍କୁ କହିଥିଲୁ ଅଲ୍ଲାହ୍ କିଛି ଅବତୀର୍ଣ୍ଣ କରିନାହାନ୍ତି ; (ଏସବୁ ତୁମର ମିଥ୍ୟା ରଚନା ଅଟେ) ତୁମେ ଏକ ପ୍ରକାଶ୍ୟ ବିଭ୍ରାନ୍ତିର ବଶବର୍ତ୍ତୀ ହୋଇଅଛ (ଏବଂ ନିଜ ଭାବନାକୁ ଅଲ୍ଲାହ୍‌ଙ୍କ ପ୍ରେରିତ ବାଣୀ ମନେ କରୁଅଛ) ।"

قَالُوا۟ بَلَىٰ قَدْ جَآءَنَا نَذِيرٌ فَكَذَّبْنَا وَقُلْنَا مَا نَزَّلَ ٱللَّهُ مِن شَىْءٍ إِنْ أَنتُمْ إِلَّا فِى ضَلَـٰلٍ كَبِيرٍ ۝

୧୧. ଏବଂ ସେମାନେ ଏହା ମଧ୍ୟ କହିବେ, "ଯଦି ଆମମାନଙ୍କର ଶୁଣିବା ଶକ୍ତି ବା ଜ୍ଞାନ ଥାଆନ୍ତା, ତେବେ କଦାପି (ଆମେମାନେ) ନରକବାସୀ ହୋଇ ନ ଥା'ନ୍ତୁ ।"

وَقَالُوا۟ لَوْ كُنَّا نَسْمَعُ أَوْ نَعْقِلُ مَا كُنَّا فِىٓ أَصْحَـٰبِ ٱلسَّعِيرِ ۝

୧୨. ସୁତରାଂ ସେମାନେ ନିଜ ପାପକୁ ସ୍ୱୀକାର କରିବେ ; ତେଣୁ (ହେ ଦେବଦୂତମାନେ !) ନରକବାସୀମାନଙ୍କ ପାଇଁ ଅଭିଶାପ ନିର୍ଦ୍ଦିଷ୍ଟ କର ।

فَٱعْتَرَفُوا۟ بِذَنۢبِهِمْ فَسُحْقًا لِّأَصْحَـٰبِ ٱلسَّعِيرِ ۝

୧୩. ବାସ୍ତବରେ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କୁ ଏକାନ୍ତରେ ଭୟ କରନ୍ତି, ସେମାନଙ୍କୁ କ୍ଷମା ଓ ମହାନ୍ ପୁରସ୍କାର ମିଳିବ ।

إِنَّ ٱلَّذِينَ يَخْشَوْنَ رَبَّهُم بِٱلْغَيْبِ لَهُم مَّغْفِرَةٌ وَأَجْرٌ كَبِيرٌ ۝

୧୪. ଏବଂ (ହେ ଲୋକମାନେ !) ତୁମେମାନେ ନିଜ କଥାକୁ ଗୋପନ ରଖ ବା ପ୍ରକାଶ କର, ସେ (ଅଲ୍ଲାହ୍) ଅନ୍ତରର କଥାକୁ ଭଲ ଭାବରେ ଜାଣନ୍ତି ।

وَأَسِرُّوا۟ قَوْلَكُمْ أَوِ ٱجْهَرُوا۟ بِهِۦٓ ۖ إِنَّهُۥ عَلِيمٌۢ بِذَاتِ ٱلصُّدُورِ ۝

୧୫. କ'ଣ ଏପରି ସମ୍ଭବ ଯେ, ଯେ ସୃଷ୍ଟି କରିଛନ୍ତି ସେ ଆଭ୍ୟନ୍ତରୀଣ ଅବସ୍ଥାକୁ ଜାଣନ୍ତି ନାହିଁ ; ଅଥଚ ସେ ହିଁ ଅତ୍ୟନ୍ତ ସୂକ୍ଷ୍ମଦର୍ଶୀ (ଓ) ସର୍ବବିଦିତ ।

أَلَا يَعْلَمُ مَنْ خَلَقَ وَهُوَ ٱللَّطِيفُ ٱلْخَبِيرُ ۝

ରୁ:୨

୧୬. ସେ ହିଁ ତୁମମାନଙ୍କ ପାଇଁ ପୃଥିବୀକୁ ବାସୋପଯୋଗୀ କରିଛନ୍ତି ; ସୁତରାଂ ନିଜ ଇଚ୍ଛା ଅନୁସାରେ ଏହାର ପୃଷ୍ଠଦେଶରେ ବିଚରଣ କର, ଏବଂ ତାହାଙ୍କ (ପ୍ରଦତ୍ତ) ଜୀବିକା ମଧ୍ୟରୁ ଖାଅ, ଏବଂ ତାହାଙ୍କ ନିକଟକୁ ଫେରିବାକୁ ହେବ ।

هُوَ الَّذِي جَعَلَ لَكُمُ الْأَرْضَ ذَلُولًا فَامْشُوا فِي مَنَاكِبِهَا وَكُلُوا مِن رِّزْقِهِ ۖ وَإِلَيْهِ النُّشُورُ ﴿١٦﴾

୧୭. କ'ଣ ତୁମେମାନେ ତାହାଙ୍କ ଠାରୁ, ଯେ କି ଆକାଶରେ ବିଦ୍ୟମାନ, ଏ ବିଷୟରେ ସୁରକ୍ଷିତ ମନେ କରୁଅଛ ଯେ ସେ ତୁମମାନଙ୍କୁ ସଂସାରରେ (ସେତେବେଳେ) ଧ୍ୱଂସ କରିବେ ନାହିଁ ଯେତେବେଳେ ତାହା (ଅର୍ଥାତ୍ ପୃଥିବୀ) ପ୍ରକମ୍ପିତ ହେବାକୁ ଲାଗିବ ?

أَأَمِنتُم مَّن فِي السَّمَاءِ أَن يَخْسِفَ بِكُمُ الْأَرْضَ فَإِذَا هِيَ تَمُورُ ﴿١٧﴾

୧୮. କିମ୍ବା, କ'ଣ ତୁମେମାନେ ତାହାଙ୍କ ଠାରୁ, ଯେ କି ଆକାଶରେ ବିଦ୍ୟମାନ, ଏ ବିଷୟରେ ସୁରକ୍ଷିତ ମନେ କରୁଅଛ ଯେ ସେ ତୁମମାନଙ୍କ ଉପରେ ଶିଳା ବୃଷ୍ଟି କରିବେ ନାହିଁ ? ସୁତରାଂ (ଯେଉଁ ରୂପରେ ମଧ୍ୟ ଆମ୍ଭର ଶାସ୍ତି ଅବତୀର୍ଣ୍ଣ ହେବ) ତୁମେମାନେ ଜାଣିବ ଯେ ଆମ୍ଭର ଭୟ ପ୍ରଦର୍ଶନ କରାଇବା କିପରି ଭୟାବହ ଥିଲା ।

أَمْ أَمِنتُم مَّن فِي السَّمَاءِ أَن يُرْسِلَ عَلَيْكُمْ حَاصِبًا ۖ فَسَتَعْلَمُونَ كَيْفَ نَذِيرِ ﴿١٨﴾

୧୯. ଏବଂ ସେମାନଙ୍କର ପୂର୍ବବର୍ତ୍ତୀ ଲୋକମାନେ ମଧ୍ୟ ରସୁଲମାନଙ୍କୁ ମିଥ୍ୟାବାଦୀ ମନେ କରିଥିଲେ, ତା'ପରେ ଆମ୍ଭର ଶାସ୍ତି କିପରି ଭୟାବହ ହୋଇଥିଲା ।

وَلَقَدْ كَذَّبَ الَّذِينَ مِن قَبْلِهِمْ فَكَيْفَ كَانَ نَكِيرِ ﴿١٩﴾

୨୦. କ'ଣ ସେମାନେ ନିଜ ଉପରେ ପକ୍ଷୀମାନଙ୍କୁ ଧାଡ଼ି ବାନ୍ଧି ଓ ଡେଣା (ପ୍ରସାରିତ କରି ତଥା) ସଙ୍କୁଚିତ କରି ଉଡ଼ୁଥିବାର ଦେଖି ନାହାନ୍ତି ? ଦୟାବାନ୍ ଅଲ୍ଲାହ ହିଁ ସେମାନଙ୍କୁ ଅଟକାଇ ରଖନ୍ତି; [୧] ସେ ସବୁ ବିଷୟରେ ଭଲ ଭାବରେ ଅବଗତ ଅଛନ୍ତି ।

أَوَلَمْ يَرَوْا إِلَى الطَّيْرِ فَوْقَهُمْ صَافَّاتٍ وَيَقْبِضْنَ ۚ مَا يُمْسِكُهُنَّ إِلَّا الرَّحْمَٰنُ ۚ إِنَّهُ بِكُلِّ شَيْءٍ بَصِيرٌ ﴿٢٠﴾

୨୧. ଯେଉଁମାନେ ତୁମମାନଙ୍କର ସୈନ୍ୟବାହିନୀ ବୋଲାଉଛନ୍ତି, କ'ଣ ସେମାନେ ତୁମମାନଙ୍କୁ ଦୟାବାନ୍ (ଅଲ୍ଲାହଙ୍କ) ବିରୁଦ୍ଧରେ ସାହାଯ୍ୟ କରିପାରିବେ ? ଅବିଶ୍ୱାସକାରୀମାନେ କେବଳ ପ୍ରତାରଣାର ବଶବର୍ତ୍ତୀ ହୋଇଛନ୍ତି ।

أَمَّنْ هَٰذَا الَّذِي هُوَ جُندٌ لَّكُمْ يَنصُرُكُم مِّن دُونِ الرَّحْمَٰنِ ۚ إِنِ الْكَافِرُونَ إِلَّا فِي غُرُورٍ ﴿٢١﴾

---

୧. ଅର୍ଥାତ୍ ସେ ତୁମମାନଙ୍କୁ ଭୂମିକମ୍ପରୁ ଓ ବ୍ୟାଧିରୁ ସୁରକ୍ଷିତ କରି ରଖିଛନ୍ତି, ଅନ୍ୟଥା ତୁମେମାନେ ଶାସ୍ତିର କବଳିତ ହୋଇ ମୃତ୍ୟୁବରଣ କଲେ ପକ୍ଷୀମାନେ ଶୀଘ୍ର ତୁମମାନଙ୍କର ଶବକୁ ଖାଇବାପାଇଁ ଆକାଶରେ ଉଡୁଥିବାବେଳେ ମଧ୍ୟ ପ୍ରତୀକ୍ଷା କରୁଥିବେ ।

أَمَّنْ هَٰذَا الَّذِي يَرْزُقُكُمْ إِنْ أَمْسَكَ رِزْقَهُ ۚ بَلْ لَجُّوا فِي عُتُوٍّ وَنُفُورٍ ﴿٢٢﴾

୨୨. ଯେ ତୁମମାନଙ୍କୁ ଜୀବିକା ପ୍ରଦାନ କରନ୍ତି, ସେ ଯଦି ନିଜର ଜୀବିକା ଦାନକୁ ବନ୍ଦ କରି ଦିଅନ୍ତି, (ତେବେ ତୁମମାନଙ୍କୁ କିଏ ଜୀବିକା ପ୍ରଦାନ କରିବ ?) ବସ୍ତୁତଃ ସେମାନେ ବିଦ୍ରୋହ ଓ ସତ୍ୟରୁ ଦୂରକୁ ପଳାୟନ କରିବାରେ ଅଭିବୃଦ୍ଧି ଲାଭ କରିଛନ୍ତି ।

أَفَمَنْ يَمْشِي مُكِبًّا عَلَىٰ وَجْهِهِ أَهْدَىٰ أَمَّنْ يَمْشِي سَوِيًّا عَلَىٰ صِرَاطٍ مُسْتَقِيمٍ ﴿٢٣﴾

୨୩. କ'ଣ ଯେଉଁ ବ୍ୟକ୍ତି ମୁହଁମାଡ଼ି ଚାଲୁଥାଏ ସେ ସତ୍‌ପଥ ଲାଭ କରିବାରେ ସେହି ବ୍ୟକ୍ତିର ସମକକ୍ଷ ହୋଇପାରିବ ଯେ ସରଳ ପଥରେ ଥାଇ ସିଧା ଭାବରେ ଚାଲୁଥାଏ ?

قُلْ هُوَ الَّذِي أَنْشَأَكُمْ وَجَعَلَ لَكُمُ السَّمْعَ وَالْأَبْصَارَ وَالْأَفْئِدَةَ ۖ قَلِيلًا مَا تَشْكُرُونَ ﴿٢٤﴾

୨୪. ତୁମେ କୁହ, "ଅଲ୍ଲାହ ହିଁ ତୁମମାନଙ୍କୁ ସୃଷ୍ଟି କରିଛନ୍ତି, ଓ ତୁମମାନଙ୍କ ପାଇଁ କାନ, ଆଖି ଓ ହୃଦୟ ଗଢ଼ିଛନ୍ତି, ଅଥଚ ତୁମେମାନେ ଆଦୌ କୃତଜ୍ଞତା ଜ୍ଞାପନ କରୁନାହଁ ।"

قُلْ هُوَ الَّذِي ذَرَأَكُمْ فِي الْأَرْضِ وَإِلَيْهِ تُحْشَرُونَ ﴿٢٥﴾

୨୫. ତୁମେ କୁହ, "ସେ ହିଁ ତୁମମାନଙ୍କୁ ପୃଥିବୀରେ ସୃଷ୍ଟି କରିଛନ୍ତି ; ଏବଂ ତାହାଙ୍କ ନିକଟକୁ ତୁମମାନଙ୍କୁ ପୁନର୍ଜୀବିତ କରି ଫେରାଇ ନିଆହେବ ।"

وَيَقُولُونَ مَتَىٰ هَٰذَا الْوَعْدُ إِنْ كُنْتُمْ صَادِقِينَ ﴿٢٦﴾

୨୬. ଏବଂ ସେମାନେ କହନ୍ତି, "ଯଦି ତୁମେ ସତ୍ୟବାଦୀ ହୋଇଥାଅ, ତେବେ ଏହି ଅଙ୍ଗୀକାର କେବେ ପୂରଣ ହେବ ?"

قُلْ إِنَّمَا الْعِلْمُ عِنْدَ اللَّهِ وَإِنَّمَا أَنَا نَذِيرٌ مُبِينٌ ﴿٢٧﴾

୨୭. ତୁମେ କୁହ, "ଏହାର ଜ୍ଞାନ କେବଳ ଅଲ୍ଲାହଙ୍କ ନିକଟରେ ଅଛି ; ଏବଂ ଆମେ କେବଳ ଜଣେ ପ୍ରକାଶ୍ୟ ସଚେତନକାରୀ ଅଟୁ ।"

فَلَمَّا رَأَوْهُ زُلْفَةً سِيئَتْ وُجُوهُ الَّذِينَ كَفَرُوا وَقِيلَ هَٰذَا الَّذِي كُنْتُمْ بِهِ تَدَّعُونَ ﴿٢٨﴾

୨୮. ଏବଂ ଯେତେବେଳେ ସେମାନେ ତାହାକୁ (ଅର୍ଥାତ୍ ଅଙ୍ଗୀକୃତ ଶାସ୍ତିକୁ) ନିକଟବର୍ତ୍ତୀ ହେବାର ଦେଖିବେ, ସେତେବେଳେ ଅବିଶ୍ୱାସକାରୀମାନଙ୍କ ମୁଖ ବିକୃତ ହୋଇଯିବ ; ଏବଂ ସେମାନଙ୍କୁ କୁହା ହେବ, "ଏହା ସେହି ବିଷୟ ଯାହାକୁ ତୁମେମାନେ ବାରମ୍ବାର ମାଗୁ ଥିଲ ।"

قُلْ أَرَأَيْتُمْ إِنْ أَهْلَكَنِيَ اللَّهُ وَمَنْ مَعِيَ أَوْ رَحِمَنَا فَمَنْ يُجِيرُ الْكَافِرِينَ مِنْ عَذَابٍ أَلِيمٍ ﴿٢٩﴾

୨୯. ତୁମେ କୁହ, "ଆମକୁ କୁହ ତ ଭଲା, ଯଦି ଅଲ୍ଲାହ ଆମକୁ ଓ ଆମର ସହଚରମାନଙ୍କୁ ବିନାଶ କରିଦେବେ, ବା ଆମମାନଙ୍କ ପ୍ରତି ଦୟାପରବଶ ହେବେ, ତାହା ହେଲେ ମଧ୍ୟ ଅବିଶ୍ୱାସକାରୀମାନଙ୍କୁ [୧] କିଏ ଯନ୍ତ୍ରଣାଦାୟକ ଶାସ୍ତିରୁ ରକ୍ଷାକରିବ ?"

---

୧. ଅର୍ଥାତ୍ ଯଦି ଆମମାନଙ୍କ ମୃତ୍ୟୁ ପରେ ଅବିଶ୍ୱାସକାରୀମାନଙ୍କ ପ୍ରତି ଶାସ୍ତି ପ୍ରେରିତ ହେବ ତେବେ ଆମ ମୃତ୍ୟୁରେ ସେମାନଙ୍କର କି ଲାଭ ହେବ ?

୩୦. ତୁମେ କୁହ, "ସେ ଦୟାବାନ୍ (ଅଲ୍ଲାହ)ଙ୍କ ବ୍ୟତୀତ ଅନ୍ୟ କେହି ନୁହେଁ ; ଆମେମାନେ ତାହାଙ୍କ ଉପରେ ବିଶ୍ୱାସ କରିଅଛୁ ଓ ଆମେମାନେ ତାହାଙ୍କ ଉପରେ ଭରସା କରିଅଛୁ ; ସୁତରାଂ କିଏ ପ୍ରକାଶ୍ୟ ବିଭ୍ରାନ୍ତିରେ କବଳିତ ହୋଇଅଛି ତାହା ତୁମେମାନେ ଶୀଘ୍ର ଜାଣି ପାରିବ ।"

قُلْ هُوَ الرَّحْمٰنُ اٰمَنَّا بِهٖ وَعَلَيْهِ تَوَكَّلْنَا فَسَتَعْلَمُوْنَ مَنْ هُوَ فِيْ ضَلٰلٍ مُّبِيْنٍ ﴿٣٠﴾

୩୧. ତୁମେ (ପୁନଶ୍ଚ) କୁହ, "ଆମକୁ କୁହ ତ ଭଲା, ଯଦି ତୁମମାନଙ୍କର ସବୁ ଜଳ ପୃଥିବୀର ଗଭୀରତା ମଧ୍ୟରେ ବିଲୀନ ହୋଇଯିବ, ତେବେ ଅଲ୍ଲାହଙ୍କ ବ୍ୟତୀତ ତୁମମାନଙ୍କ ପାଇଁ ପ୍ରବହମାନ ଜଳକୁ ଅନ୍ୟ କିଏ ଆଣି ଦେବ ।"

قُلْ اَرَءَيْتُمْ اِنْ اَصْبَحَ مَآؤُكُمْ غَوْرًا فَمَنْ يَّاْتِيْكُمْ بِمَآءٍ مَّعِيْنٍ ﴿٣١﴾



## ଅଲ-କଲମ

ଅଧ୍ୟାୟ ୬୮

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୫୩ଟି ଆୟତ ଓ ୨ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ﴿١﴾

୨. (ଆମେ) କଲମ ଓ ଦୁଆତକୁ ତଥା ସେଗୁଡ଼ିକ ଦ୍ୱାରା ଯାହା ଲେଖାଯାଏ ତାହାକୁ ପ୍ରମାଣ ସ୍ୱରୂପ ପେଶ୍ କରି କହୁଅଛୁ,[୧]

نٓ وَالْقَلَمِ وَمَا يَسْطُرُوْنَ ﴿٢﴾

୩. ଯେ ତୁମେ ନିଜ ପାଳନକର୍ତ୍ତାଙ୍କ କୃପାରୁ ପାଗଳ ନୁହଁ ।

مَآ اَنْتَ بِنِعْمَةِ رَبِّكَ بِمَجْنُوْنٍ ﴿٣﴾

୪. ଏବଂ ତୁମକୁ (ଅଲ୍ଲାହଙ୍କ ତରଫରୁ)[୨] ଏପରି ଏକ ପୁରସ୍କାର ମିଳିବ ଯାହା ଅସରନ୍ତି ।

وَاِنَّ لَكَ لَاَجْرًا غَيْرَ مَمْنُوْنٍ ﴿٤﴾

୫. (ଏତଦ୍ ଭିନ୍ନ ଆମେ ଶପଥପୂର୍ବକ କହୁଅଛୁ କି ନିଜ ଶିକ୍ଷା ଓ କର୍ମ ଦୃଷ୍ଟିରୁ) ତୁମେ ଉନ୍ନତ ମାନର[୩] ଚରିତ୍ର ଉପରେ ପ୍ରତିଷ୍ଠିତ ଅଛ ।

وَاِنَّكَ لَعَلٰى خُلُقٍ عَظِيْمٍ ﴿٥﴾

---

୧. ପବିତ୍ର କୋରାନରେ ଯେତେ ପ୍ରକାର ଶପଥର ଉଲ୍ଲେଖ ଅଛି ବାସ୍ତବରେ ସେ ସବୁ ସେହିସବୁ ବସ୍ତୁର ସାକ୍ଷ୍ୟ ପ୍ରଦାନ କରାଯିବା ପାଇଁ ଉଦ୍ଦିଷ୍ଟ । ଏଠାରେ ମଧ୍ୟ ଅନୁରୂପ ଅଭିପ୍ରାୟର ଉଲ୍ଲେଖ ଅଛି । ଅଲ୍ଲାହ କହୁଛନ୍ତି, କଲମ ଓ ଦୁଆତ ସାହାଯ୍ୟରେ ଯେଉଁ ସବୁ ବିଦ୍ୟା ଲିପିବଦ୍ଧ କରାଯାଏ ସେ ତୁଲଟି ଏ ବିଷୟରେ ସାକ୍ଷ୍ୟ ପ୍ରଦାନ କରୁଛନ୍ତି ଯେ ହଜରତ ମହମ୍ମଦ ପାଗଳ ନୁହନ୍ତି ।

୨. ଏହା ଦ୍ୱିତୀୟ ପ୍ରମାଣ । ଜଣେ ପାଗଳର କାର୍ଯ୍ୟ ନିଶ୍ଚିତ ରୂପେ ବିଫଳ ହେବ, କିନ୍ତୁ ବିନିମୟରେ ହଜରତ ମହମ୍ମଦଙ୍କୁ ଏପରି ଫଳ ମିଳିବ ଯାହା କୟାମତ ପର୍ଯ୍ୟନ୍ତ ତିଷ୍ଠି ରହିବ ଓ ତାହାର କଦାପି ହ୍ରାସ ହେବ ନାହିଁ । ଯେବେ ବି ମୁସଲମାନମାନଙ୍କର ଦୁର୍ବଳତା ହେତୁ ସେଥିରେ କୌଣସି ହ୍ରାସ ଦୃଷ୍ଟିଗୋଚର ହେବ ତେବେ ଅଲ୍ଲାହ ହଜରତ ମହମ୍ମଦଙ୍କର ଏପରି ପ୍ରତିନିଧିଙ୍କୁ ମନୋନୟନ କରିବେ ଯିଏ ପୁନର୍ବାର ଇସଲାମ ଧର୍ମର ପୂର୍ବ ଗୌରବକୁ ସଂସାର ସମ୍ମୁଖରେ ଉପସ୍ଥାପିତ କରିବେ ।

୩. ହଜରତ ମହମ୍ମଦ ପାଗଳ ନ ଥିବା ବିଷୟରେ ଏହା ତୃତୀୟ ପ୍ରମାଣ । ଅଲ୍ଲାହ କହୁଛନ୍ତି ଯେ ଜଣେ ପାଗଳ ଅଯଥା କାର୍ଯ୍ୟ କରେ କିନ୍ତୁ ହଜରତ ମହମ୍ମଦ ଉଚ୍ଚକୋଟିର ଶିଷ୍ଟାଚାର ପ୍ରଦର୍ଶନ କରିଛନ୍ତି । ଏପରି ପରିସ୍ଥିତିରେ ତାଙ୍କୁ କିପରି ପାଗଳ କୁହାଯାଇ ପାରିବ ?

୬. ସୁତରାଂ ତୁମେ ଶୀଘ୍ର ଦେଖିବାକୁ ପାଇବ ଓ ସେମାନେ ମଧ୍ୟ ଦେଖିବାକୁ ପାଇବେ (ଯେ କିଏ ଅଲ୍ଲାହ୍‌ଙ୍କ[୧] ସାହାଯ୍ୟରୁ ବଞ୍ଚିତ ହେଉଅଛି ) ।

فَسَتُبْصِرُ وَيُبْصِرُونَ ۝٦

୭. ଏବଂ (ସେମାନେ ଜାଣି ପାରିବେ ଯେ) ତୁମ ଦୁହିଙ୍କ ମଧ୍ୟରେ କିଏ ପଥଭ୍ରଷ୍ଟ ହୋଇଅଛି ।

بِأَييِّكُمُ الْمَفْتُونُ ۝٧

୮. ଯେ ତାହାଙ୍କ ପଥରୁ ବିଭ୍ରାନ୍ତ ହୋଇଅଛି, ଅଲ୍ଲାହ୍ ତାହାକୁ ଭଲ ଭାବରେ ଜାଣନ୍ତି, ଏବଂ ତାହାକୁ ମଧ୍ୟ ଭଲ ଭାବରେ ଜାଣନ୍ତି ଯେ ସତ୍‌ପଥପ୍ରାପ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ।

إِنَّ رَبَّكَ هُوَ أَعْلَمُ بِمَن ضَلَّ عَن سَبِيلِهِ وَهُوَ أَعْلَمُ بِالْمُهْتَدِينَ ۝٨

୯. (ଏବଂ ଯଦି ତୁମେ ଅଲ୍ଲାହ୍‌ଙ୍କର ସତ୍‌ପଥ ଉପରେ ପ୍ରତିଷ୍ଠିତ ଅଛ ଏବଂ ତୁମଙ୍କୁ ଅବଜ୍ଞା କରୁଥିବା ବ୍ୟକ୍ତିମାନେ ବିନାଶ ହେବେ, ତେବେ) ତୁମେ (ସତ୍ୟକୁ) ଅସ୍ୱୀକାର କରୁଥିବା ସେହି ବ୍ୟକ୍ତିମାନଙ୍କର କଥା ମାନ ନାହିଁ ।

فَلَا تُطِعِ الْمُكَذِّبِينَ ۝٩

୧୦. ଏ (ଅବିଶ୍ୱାସକାରୀ)ମାନେ ଇଚ୍ଛା କରନ୍ତି ଯେ ତୁମେ ନିଜ ଧର୍ମରେ କିଛି ମୃଦୁତା ଆଣିଲେ ସେମାନେ ମଧ୍ୟ (ନିଜ ପକ୍ଷାରେ), ମୃଦୁ ହେବେ ।

وَدُّوا لَوْ تُدْهِنُ فَيُدْهِنُونَ ۝١٠

୧୧. ଏବଂ ତୁମେ ସେହି ବ୍ୟକ୍ତିର କଥା କେବେ ହେଲେ ମାନ ନାହିଁ ଯେ ଶପଥ କରେ, (କିନ୍ତୁ ଅଲ୍ଲାହ୍‌ଙ୍କ ନିକଟରୁ ସାହାଯ୍ୟ ନ ଆସିବା ହେତୁ) ଅତ୍ୟନ୍ତ ଲାଞ୍ଛିତ[୨] ହୋଇ ରହିଥାଏ ।

وَلَا تُطِعْ كُلَّ حَلَّافٍ مَّهِينٍ ۝١١

୧୨. ଯେ (ପୁଣ୍ୟବାନ୍‌ଙ୍କ ପ୍ରତି) କଟୁ ମନ୍ତବ୍ୟ ଦେବାରେ ଓ ଚୁଗୁଲି କରିବାରେ ଅଭ୍ୟସ୍ତ,

هَمَّازٍ مَّشَّاءٍ بِنَمِيمٍ ۝١٢

୧୩. ଯେ (ଲୋକମାନଙ୍କୁ) ସତ୍‌କର୍ମ କରିବାରେ ବାଧାଦାନକାରୀ, ସୀମାଲଙ୍ଘନକାରୀ ଓ ପାପୀ ।

مَّنَّاعٍ لِّلْخَيْرِ مُعْتَدٍ أَثِيمٍ ۝١٣

୧୪. ସେ ଲଗାମ ଛଡ଼ା (ଅର୍ଥାତ୍ ଅଭଦ୍ର) ମଧ୍ୟ ଅଟେ, ଏବଂ ଅଲ୍ଲାହ୍‌ଙ୍କର ଭକ୍ତ ହୋଇ ମଧ୍ୟ ସଇତାନ ସହିତ ସମ୍ପର୍କ ରଖିଥାଏ ।

عُتُلٍّ بَعْدَ ذَٰلِكَ زَنِيمٍ ۝١٤

---

୧. ସେ ପାଗଳ ନ ଥିବା ସମ୍ବନ୍ଧରେ ଏହା ଚତୁର୍ଥ ପ୍ରମାଣ । କ'ଣ ପାଗଳକୁ ଅଲ୍ଲାହ୍‌ଙ୍କଠାରୁ ସାହାଯ୍ୟ ମିଳେ ବୋଲି ସେ ପ୍ରଶ୍ନ କରୁଛନ୍ତି । ପରିଣାମ ଏପରି ହେଲା ଯେ ତାହାଙ୍କର ବନ୍ଧୁମାନେ ଓ ଶତ୍ରୁମାନେ ଉଭୟେ ତା'ଙ୍କୁ ଅସାଧାରଣ ବ୍ୟକ୍ତିତ୍ୱସମ୍ପନ୍ନ ହୋଇଥିବା ମନେ କରୁଥିଲେ । ସୁତରାଂ ଏପରି ପରିସ୍ଥିତିରେ ହଜରତ ମହମ୍ମଦ ପାଗଳ ନା ଯିଏ ତା'ଙ୍କୁ ପାଗଳ କହୁଛି ସିଏ ପାଗଳ ?

୨. ଅର୍ଥାତ୍ ଶରିୟତରେ ତଥା ଦେଶର ଆଇନକାନୁନରେ ସାକ୍ଷ୍ୟଦାନର ପଦ୍ଧତି ନିର୍ଦ୍ଦିଷ୍ଟ କରାହୋଇଛି । ଯେଉଁ ବ୍ୟକ୍ତି ଉପରୋକ୍ତ ପଦ୍ଧତିର ବିରୁଦ୍ଧାଚରଣ କରି ନିଜ ସାକ୍ଷ୍ୟକୁ ସତ୍ୟସାବ୍ୟସ୍ତ କରିବାପାଇଁ ଶପଥ କରେ, ସେ ଅଲ୍ଲାହ୍‌ଙ୍କ ଦ୍ୱାରା ଲାଞ୍ଛିତ ହେଉଥାଏ । କାରଣ ଅଲ୍ଲାହ୍ ସେହି ସାକ୍ଷ୍ୟକୁ ସମର୍ଥନ କରନ୍ତି ନାହିଁ । ତେଣୁ ଏହି ପରିପ୍ରେକ୍ଷୀରେ ସେଭଳି ବ୍ୟକ୍ତି ଯେତେଥର ଶପଥ କଲେ ମଧ୍ୟ ତା'ର କଥାକୁ ଆଦୌ ଗ୍ରହଣ କର ନାହିଁ ।

୧୫. ଏହା କେବଳ ଏଥିଯୋଗୁଁ ଯେ ସେ ଖୁବ୍ ଧନବାନ୍ ଓ ତାହାର ଅନେକ ସନ୍ତାନସନ୍ତତି ଓ ସାଥୀ ଅଛନ୍ତି ।

أَن كَانَ ذَا مَالٍ وَبَنِينَ ﴿١٤﴾

୧୬. ଯେତେବେଳେ ତାହା ନିକଟରେ ଆମର ବାଣୀ ପାଠ କରାଯାଏ, ସେତେବେଳେ ସେ କହେ, "ଏହା ପ୍ରାଚୀନ କାଳର ଗଳ୍ପ ମାତ୍ର ।"

إِذَا تُتْلَىٰ عَلَيْهِ آيَاتُنَا قَالَ أَسَاطِيرُ الْأَوَّلِينَ ﴿١٥﴾

୧୭. ଆମେ ଶୀଘ୍ର ତା'ର ନାକ ଉପରେ ଦାଗ ଦେବୁ, (ଏବଂ ତାହାକୁ ଆମ ସାହାଯ୍ୟରୁ ବଞ୍ଚିତ କରିବୁ ) ।

سَنَسِمُهُ عَلَى الْخُرْطُومِ ﴿١٦﴾

୧୮. ଆମେ ସେହି ଶତ୍ରୁମାନଙ୍କୁ ଏପରି ପରୀକ୍ଷାର ବଶବର୍ତ୍ତୀ କରିଅଛୁ ଯେପରି ପରୀକ୍ଷାର ବଶବର୍ତ୍ତୀ ସେହି ଉଦ୍ୟାନବାସୀମାନଙ୍କୁ [୧] କରିଥିଲୁ, ଯେଉଁମାନେ ପରସ୍ପର ମଧ୍ୟରେ ଜଣେ ଅନ୍ୟକୁ ଶପଥପୂର୍ବକ କହିଥିଲେ, "ଆମେମାନେ ସକାଳେ ନିଜ ବଗିଚାରୁ ଫଳ ତୋଳିବୁ ।"

إِنَّا بَلَوْنَاهُمْ كَمَا بَلَوْنَا أَصْحَابَ الْجَنَّةِ إِذْ أَقْسَمُوا لَيَصْرِمُنَّهَا مُصْبِحِينَ ﴿١٧﴾

୧୯. ଏବଂ ଅଲ୍ଲାହଙ୍କର ନାମ ଉଚ୍ଚାରଣ କରି ନ ଥିଲେ ।

وَلَا يَسْتَثْنُونَ ﴿١٨﴾

୨୦. ପରିଣାମ ଏପରି ହେଲା ଯେ ରାତ୍ରି ସମୟରେ ସେମାନେ ଶୋଇଥିବା ବେଳେ ସେମାନଙ୍କ ବଗିଚା ଉପରେ ଏକ ଶାସ୍ତି ଅବତୀର୍ଣ୍ଣ ହୋଇଥିଲା ।

فَطَافَ عَلَيْهَا طَائِفٌ مِّن رَّبِّكَ وَهُمْ نَائِمُونَ ﴿١٩﴾

୨୧. ଏବଂ ସକାଳେ ସେ ବଗିଚା କଟା [୨] ହୋଇ ପଡ଼ିଥିବା ପରି ଦେଖାଗଲା ।

فَأَصْبَحَتْ كَالصَّرِيمِ ﴿٢٠﴾

୨୨. ତେଣୁ ସକାଳୁ ସକାଳୁ ସେମାନେ ପରସ୍ପରକୁ ଡାକ ପକାଇଲେ ;

فَتَنَادَوْا مُصْبِحِينَ ﴿٢١﴾

୨୩. ଏବଂ କହିଲେ, "ଯଦି ତୁମମାନେ ବଗିଚାରୁ ଫଳ ତୋଳିବାକୁ ଇଚ୍ଛା କରୁଥାଅ, ତେବେ ତତ୍କ୍ଷଣାତ୍ ନିଜ ବଗିଚାକୁ ଚାଲ ।"

أَنِ اغْدُوا عَلَىٰ حَرْثِكُمْ إِن كُنتُمْ صَارِمِينَ ﴿٢٢﴾

୨୪. ସୁତରାଂ ସେମାନେ ଚାଲିଗଲେ ଓ ସେମାନେ ଧୀରେ ଧୀରେ ଏହା କହୁ ଥିଲେ,

فَانطَلَقُوا وَهُمْ يَتَخَافَتُونَ ﴿٢٣﴾

---

୧. ଏଠାରେ 'ଅସହାବୁଲ ଜନ୍ନା' (ଅର୍ଥାତ୍ ଉଦ୍ୟାନବାସୀମାନେ) ର ଅର୍ଥ ହଜରତ ମହମ୍ମଦ ଓ ତାଙ୍କର ମକ୍କା-ନିବାସୀ ବନ୍ଧୁବାନ୍ଧବ ଯେଉଁମାନଙ୍କ ପାଇଁ ଅଲ୍ଲାହ ସ୍ୱର୍ଗ ରୂପୀ ପବିତ୍ର କୋରାନ ଗ୍ରନ୍ଥ ଅବତୀର୍ଣ୍ଣ କରାଇଥିଲେ । କିନ୍ତୁ ସେମାନେ ସେଭଳି ସ୍ୱର୍ଗରୁ ଲାଭବାନ୍ ହେବା ପରିବର୍ତ୍ତେ ଅନ୍ୟ ଲୋକମାନଙ୍କୁ ତହିଁରୁ ବଞ୍ଚିତ କରାଇବା ସକାଶେ ଉଦ୍ୟମ କଲେ । ସେମାନେ ପରସ୍ପର ମଧ୍ୟରେ ବୁଝାମଣା କରି ଅନ୍ୟମାନଙ୍କୁ ତା ମଧ୍ୟରେ ପ୍ରବେଶ କରିବାକୁ ସୁଯୋଗ ଦେଲେ ନାହିଁ । ସେମାନେ ନିଷ୍ପତ୍ତି କରିଥିଲେ ଯେ ଯେତେବେଳେ ସେହି ସ୍ୱର୍ଗକୁ ଅନ୍ୟ କେହି ଆସିବାର ନ ଥିବ ସେତେବେଳେ ସେମାନେ ସେଠାରେ ପ୍ରବେଶ କରିବେ । ମକ୍କାବାସୀ ଏହିପରି ପନ୍ଥା ଅବଲମ୍ବନ କରିଥିଲେ ଅର୍ଥାତ୍ ଯେବେ ବି କୌଣସି ବ୍ୟକ୍ତି ହଜରତ ମହମ୍ମଦଙ୍କ ଉପଦେଶ ଶୁଣିବାକୁ ଆସୁଥିଲା ସେତେବେଳେ ସେମାନେ ତା' କାନରେ ତୁଳା ଗେଞ୍ଜି ଦେଉଥିଲେ । ଅଧିକନ୍ତୁ ଯେବେ ବି ହଜରତ ମହମ୍ମଦ କୌଣସି ଉପଦେଶ ଦେଉଥିଲେ ସେତେବେଳେ ସେମାନେ ସେଠାରେ ପାଟିତୁଣ୍ଡ କରୁଥିଲେ, ଯଦ୍ୱାରା କେହି ତା'ଙ୍କ କଥା ଶୁଣି ପାରିବ ନାହିଁ କି ସେଥିରୁ କୌଣସି ଲାଭ ପାଇବ ନାହିଁ (୪୧ : ୨୭ ଦ୍ରଷ୍ଟବ୍ୟ) ।

୨. ଅବିଶ୍ୱାସକାରୀମାନଙ୍କ ପରିଣାମ ସେହି ଉଦ୍ୟାନ ସଦୃଶ ହେବ ଏବଂ ସେମାନେ ନିଜର କର୍ମଫଳ ପାଇବାରୁ ବଞ୍ଚିତ ହେବେ ।

୨୫. ଯେ ଆଜି ତୁମମାନଙ୍କ ଉପସ୍ଥିତିରେ କୌଣସି ଦରିଦ୍ର ବଗିଚାରେ ପ୍ରବେଶ ନ କରୁ ।

أَن لَّا يَدْخُلَنَّهَا الْيَوْمَ عَلَيْكُم مِّسْكِينٌ ۝

୨୬. ଏବଂ ସକାଳର ଆଗମନ ପୂର୍ବରୁ, ସେମାନେ କୃପଣତାମୂଳକ ନିଷ୍ପତ୍ତି କରି ସାରିଥିଲେ । [୧]

وَغَدَوْا عَلَىٰ حَرْدٍ قَادِرِينَ ۝

୨୭. ତା'ପରେ ଯେତେବେଳେ ସେମାନେ ଏହି ବଗିଚାକୁ ଦେଖିଲେ, ସେତେବେଳେ କହିଲେ, "ଆମେମାନେ ନିଶ୍ଚୟ ବାଟ ଭୁଲି ଆସିଅଛୁ ।"

فَلَمَّا رَأَوْهَا قَالُوا إِنَّا لَضَالُّونَ ۝

୨୮. "କିନ୍ତୁ ବାସ୍ତବତା ଏହି କି ଯେ ବାସ୍ତବରେ ଆମେମାନେ (ନିଜ ଫଳରୁ) ସମ୍ପୂର୍ଣ୍ଣରୂପେ ବଞ୍ଚିତ ହୋଇଅଛୁ ।"

بَلْ نَحْنُ مَحْرُومُونَ ۝

୨୯. ସେମାନଙ୍କ ମଧ୍ୟରେ ଥିବା ସର୍ବୋତ୍ତମ ବ୍ୟକ୍ତି (ସେମାନଙ୍କୁ) କହିଲା, "କ'ଣ ମୁଁ ତୁମମାନଙ୍କୁ କହି ନ ଥିଲି ଯେ ତୁମେମାନେ କାହିଁକି ଅଲ୍ଲାହଙ୍କର ଗୁଣଗାନ କରୁନାହଁ ?"

قَالَ أَوْسَطُهُمْ أَلَمْ أَقُل لَّكُمْ لَوْلَا تُسَبِّحُونَ ۝

୩୦. ସେମାନେ କହିଲେ, "ଆମମାନଙ୍କ ପାଳନକର୍ତ୍ତା (ସବୁଦୋଷରୁ) ପବିତ୍ର ; ଆମେମାନେ ହିଁ ଅତ୍ୟାଚାରୀ ଥିଲୁ ।"

قَالُوا سُبْحَانَ رَبِّنَا إِنَّا كُنَّا ظَالِمِينَ ۝

୩୧. ଏହାପରେ ସେମାନେ ତିରସ୍କାର-ପୂର୍ବକ ପରସ୍ପରର ସମ୍ମୁଖୀନ ହେଲେ ।

فَأَقْبَلَ بَعْضُهُمْ عَلَىٰ بَعْضٍ يَتَلَاوَمُونَ ۝

୩୨. ଏବଂ କହିବାକୁ ଲାଗିଲେ, "ଆମମାନଙ୍କୁ ଧିକ୍ ! ଆମେମାନେ ଦୁରାଚାରୀ ହୋଇଗଲୁ ।"

قَالُوا يَا وَيْلَنَا إِنَّا كُنَّا طَاغِينَ ۝

୩୩. "(ଯେବି ଆମେମାନେ ଅନୁତାପ କରିବା ତେବେ) ସମ୍ଭବତଃ [୨] ଆମମାନଙ୍କର ପାଳନକର୍ତ୍ତା ଆମମାନଙ୍କୁ ଏହା ଠାରୁ ଉତ୍କୃଷ୍ଟତର (ଏକ ବଗିଚା) ଦେଇ ଦେବେ ; ଆମେମାନେ ନିଶ୍ଚୟ ନିଜର ପାଳନକର୍ତ୍ତାଙ୍କର ଅନୁଗତ ହେବୁ ।"

عَسَىٰ رَبُّنَا أَن يُبْدِلَنَا خَيْرًا مِّنْهَا إِنَّا إِلَىٰ رَبِّنَا رَاغِبُونَ ۝

୩୪. ଏହିପରି ଭାବରେ ଶାସ୍ତି ଅବତୀର୍ଣ୍ଣ ହୁଏ ; ଏବଂ ପରକାଳର ଶାସ୍ତି ଇହକାଳର ଶାସ୍ତି ଅପେକ୍ଷା ଯେ ଅଧିକ ଗୁରୁତର ଏହା ସେମାନେ ଜାଣିପାରନ୍ତେ କି !

كَذَٰلِكَ الْعَذَابُ ۖ وَلَعَذَابُ الْآخِرَةِ أَكْبَرُ ۚ لَوْ كَانُوا يَعْلَمُونَ ۝

---

୧. ଯେହେତୁ ସେମାନେ ଆପଣା ମାଲକୁ ନିଜ ପାଇଁ ଅଟକାଇ ରଖିବାକୁ ଓ ସେଥିରେ ଅନ୍ୟ କାହାରିକୁ ଅଂଶୀଦାର ନ କରିବାକୁ ପୂର୍ବରୁ ନିଷ୍ପତ୍ତି କରିସାରିଥିଲେ ତେଣୁ ସେମାନେ ସକାଳ ପର୍ଯ୍ୟନ୍ତ ସେହି ଅବସ୍ଥାରେ ରହିଥିଲେ ।

୨. ଅର୍ଥାତ୍ ପରିଣାମକୁ ଲକ୍ଷ୍ୟ କରି କେତେକ ମକ୍କାବାସୀ ଅନୁତାପ କରିବେ । ବସ୍ତୁତଃ ଏହିପରି ଘଟିଲା ଓ ସେମାନେ ପୁରସ୍କୃତ ହେଲେ ।

ରୁ: ୨

୩୪. ଧର୍ମଭୀରୁଙ୍କ ପାଇଁ ସେମାନଙ୍କ ପାଳନକର୍ତ୍ତାଙ୍କ ନିକଟରେ ଆଶୀର୍ବାଦପୂର୍ଣ୍ଣ ଉଦ୍ୟାନମାନ ରହିଥିବ ।

إِنَّ لِلْمُتَّقِينَ عِندَ رَبِّهِمْ جَنَّٰتِ ٱلنَّعِيمِ ۝

୩୫. କ'ଣ ଆମେ ମୁସଲମାନମାନଙ୍କୁ ଅପରାଧୀମାନଙ୍କ ସହ ସମାନ ମଣିବୁ ?

أَفَنَجْعَلُ ٱلْمُسْلِمِينَ كَٱلْمُجْرِمِينَ ۝

୩୬. ତୁମମାନଙ୍କର କ'ଣ ହୋଇଛି, ତୁମେମାନେ କିପରି ନିଷ୍ପତ୍ତି କରୁଅଛ ?

مَا لَكُمْ كَيْفَ تَحْكُمُونَ ۝

୩୭. କ'ଣ ତୁମମାନଙ୍କ ପାଖରେ ଏପରି କୌଣସି (ଧର୍ମ) ଗ୍ରନ୍ଥ ଅଛି ଯହିଁରୁ ତୁମେମାନେ ଏହା ପାଠ କରୁଅଛ,

أَمْ لَكُمْ كِتَٰبٌ فِيهِ تَدْرُسُونَ ۝

୩୮. ଯେ ତୁମେମାନେ ଯାହା ପସନ୍ଦ କରିବ ତାହା ହିଁ ତୁମମାନଙ୍କୁ ମିଳିଯିବ ?

إِنَّ لَكُمْ فِيهِ لَمَا تَخَيَّرُونَ ۝

୩୯. କିମ୍ବା କ'ଣ ତୁମେମାନେ ଆମ ଠାରୁ ଶପଥମୂଳକ ଏପରି କୌଣସି ଅଙ୍ଗୀକାର ଗ୍ରହଣ କରିଅଛ ଯାହା କୟାମତ ପର୍ଯ୍ୟନ୍ତ ବଳବତ୍ତର ରହିବ ଏବଂ ଏହା ଯେ ଯାହା ତୁମେମାନେ କହି ଦେବ ତାହା ହିଁ ତୁମମାନଙ୍କୁ ମିଳିଯିବ ?

أَمْ لَكُمْ أَيْمَٰنٌ عَلَيْنَا بَٰلِغَةٌ إِلَىٰ يَوْمِ ٱلْقِيَٰمَةِ إِنَّ لَكُمْ لَمَا تَحْكُمُونَ ۝

୪୦. ଏମାନଙ୍କୁ ପଚାର, "ଏ ବିଷୟରେ ସେମାନଙ୍କ ମଧ୍ୟରୁ କିଏ ଦାୟୀ ହେବ ?"

سَلْهُمْ أَيُّهُم بِذَٰلِكَ زَعِيمٌ ۝

୪୧. କ'ଣ ସେମାନଙ୍କ ପକ୍ଷରେ କେହି ଅଲ୍ଲାହଙ୍କ ସମକକ୍ଷ ଉପାସ୍ୟ ଅଛନ୍ତି ? ସୁତରାଂ ଯଦି ସେମାନେ ସତ୍ୟବାଦୀ ହୋଇଥା'ନ୍ତି, ତେବେ ସେହି ସମକକ୍ଷମାନଙ୍କୁ ଉପସ୍ଥାପିତ କରନ୍ତୁ ।

أَمْ لَهُمْ شُرَكَآءُ فَلْيَأْتُوا۟ بِشُرَكَآئِهِمْ إِن كَانُوا۟ صَٰدِقِينَ ۝

୪୨. ଯେଉଁ ଦିନ ବିପତ୍ତି ବେଳ ଉପସ୍ଥିତ ହେବ ଏବଂ ସେମାନଙ୍କୁ ସିଜଦା କରିବା ପାଇଁ ଡକାଯିବ, ସେତେବେଳେ ସେମାନେ ସିଜଦା କରିବାକୁ ଅସମର୍ଥ ହେବେ ।

يَوْمَ يُكْشَفُ عَن سَاقٍ وَيُدْعَوْنَ إِلَى ٱلسُّجُودِ فَلَا يَسْتَطِيعُونَ ۝

୪୩. ସେମାନଙ୍କ ଚକ୍ଷୁ ଲଜ୍ଜାରେ ଅବନତ ହୋଇଥିବ ଏବଂ ସେମାନଙ୍କ ମୁଖମଣ୍ଡଳ ଲାଞ୍ଛନା ଜର୍ଜରିତ ହୋଇଥିବ; ଏବଂ ଏକଦା ସେମାନଙ୍କୁ ସିଜଦା କରିବା ପାଇଁ ଡକାଯାଉଥିଲା ଓ ସେମାନେ ବ୍ୟାଧିଗ୍ରସ୍ତ ନ ଥିଲେ (ଅଥଚ ସିଜଦା କରିବାକୁ ମନା କରିଥିଲେ । ପୁନଶ୍ଚ ଏବେ ଯେତେବେଳେ ସିର୍କ-ରୂପକ କଳଙ୍କ ସେମାନଙ୍କ ହୃଦୟକୁ ଆଚ୍ଛାଦିତ କରିଅଛି ; ସେମାନେ କିପରି ସିଜଦା କରିବେ ?)

خَٰشِعَةً أَبْصَٰرُهُمْ تَرْهَقُهُمْ ذِلَّةٌ وَقَدْ كَانُوا۟ يُدْعَوْنَ إِلَى ٱلسُّجُودِ وَهُمْ سَٰلِمُونَ ۝

୪୪. ସୁତରାଂ ତୁମେ ଆମକୁ ଓ ଯେଉଁମାନେ ଏହି ଗ୍ରନ୍ଥକୁ ମିଥ୍ୟା ମନେ କରୁଛନ୍ତି ସେମାନଙ୍କୁ ଛାଡ଼ି ଦିଅ (ନିଜେ ଶାସ୍ତି

فَذَرْنِى وَمَن يُكَذِّبُ بِهَٰذَا ٱلْحَدِيثِ سَنَسْتَدْرِجُهُم

مِّنْ حَيْثُ لَا يَعْلَمُونَ ۝

ଦେବାପାଇଁ ଚିନ୍ତା କର ନାହିଁ ; ଆମେ ସେମାନଙ୍କୁ ପର୍ଯ୍ୟାୟ କ୍ରମେ ସେପରି ଦିଗମାନଙ୍କରୁ ବିନାଶ ଆଡ଼କୁ ଘେନି ଯିବୁ ଯେଉଁଗୁଡ଼ିକୁ ସେମାନେ ମଧ୍ୟ ଜାଣି ନାହାନ୍ତି ।

وَأُمْلِي لَهُمْ ۚ إِنَّ كَيْدِي مَتِينٌ ۝

୪୬. ଏବଂ ଆମେ ସେମାନଙ୍କୁ ଅବସର ଦେବୁ (ଅର୍ଥାତ୍ ତୁମେ ସେମାନଙ୍କ ବିନାଶ କାମନା କର ନାହିଁ ; ଆମର ଯୋଜନା ଅତ୍ୟନ୍ତ ଦୃଢ଼ ଅଟେ, (ତାହା ପରିଶେଷରେ ସେମାନଙ୍କୁ ବିନାଶ କରି ଛାଡ଼ିବ) ।

أَمْ تَسْأَلُهُمْ أَجْرًا فَهُم مِّن مَّغْرَمٍ مُّثْقَلُونَ ۝

୪୭. କ'ଣ ତୁମେ ସେମାନଙ୍କ-ଠାରୁ କୌଣସି ପୁରସ୍କାର କାମନା କରୁଅଛ ; ଏବଂ କ'ଣ ସେମାନେ ଏହି ମାହାସୁଲ ଯୋଗୁଁ ଭାରାକ୍ରାନ୍ତ ହେଉଛନ୍ତି ?

أَمْ عِندَهُمُ الْغَيْبُ فَهُمْ يَكْتُبُونَ ۝

୪୮. କ'ଣ ସେମାନଙ୍କ ପାଖରେ ଅଦୃଷ୍ଟର ଜ୍ଞାନ ଅଛି ଏବଂ ସେମାନେ ତାହାକୁ ଲିପିବଦ୍ଧ କରୁଅଛନ୍ତି ?

فَاصْبِرْ لِحُكْمِ رَبِّكَ وَلَا تَكُن كَصَاحِبِ الْحُوتِ إِذْ نَادَىٰ وَهُوَ مَكْظُومٌ ۝

୪୯. ସୁତରାଂ ତୁମେ ନିଜ ପାଳନକର୍ତ୍ତାଙ୍କ ଆଦେଶ ଉପରେ ପ୍ରତିଷ୍ଠିତ ରୁହ, ଏବଂ ସେହି ମତ୍ସ୍ୟ-ପୁରୁଷ [୧] (ଅର୍ଥାତ୍ ହଜରତ ୟୁନୁସ) ସଦୃଶ ହୁଅ ନାହିଁ ଯେତେବେଳେ କି ସେ ନିଜ ପାଳନକର୍ତ୍ତାଙ୍କୁ ଡାକି ଥିଲେ ଓ ଦୁଃଖରେ ଅଭିଭୂତ ହୋଇଥିଲେ ।

لَّوْلَا أَن تَدَارَكَهُ نِعْمَةٌ مِّن رَّبِّهِ لَنُبِذَ بِالْعَرَاءِ وَهُوَ مَذْمُومٌ ۝

୫୦. ଯଦି ତାହାଙ୍କ ପ୍ରତି ତାହାଙ୍କ ପାଳନକର୍ତ୍ତାଙ୍କର କୃପା ହୋଇ ନ ଥା'ନ୍ତା, ତେବେ ତାହାଙ୍କୁ ଏକ ମରୁପ୍ରାନ୍ତର ମଧ୍ୟରେ ନିକ୍ଷେପ କରାଯାଇଥା'ନ୍ତା, ଏବଂ ତାହାଙ୍କୁ ସଂସାରରେ ନିନ୍ଦା କରାଯାଇଥା'ନ୍ତା ।

فَاجْتَبَاهُ رَبُّهُ فَجَعَلَهُ مِنَ الصَّالِحِينَ ۝

୫୧. କିନ୍ତୁ ତାହାଙ୍କର ପାଳନକର୍ତ୍ତା ତାହାଙ୍କୁ ମନୋନୀତ କରିଥିଲେ ଏବଂ ତାହାଙ୍କୁ ଧର୍ମନିଷ୍ଠ ଭକ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ କରିଥିଲେ ।

وَإِن يَكَادُ الَّذِينَ كَفَرُوا لَيُزْلِقُونَكَ بِأَبْصَارِهِمْ لَمَّا سَمِعُوا الذِّكْرَ وَيَقُولُونَ إِنَّهُ لَمَجْنُونٌ ۝

୫୨. ଅବିଶ୍ୱାସକାରୀମାନେ ତୁମଠାରୁ କୋରାନ ଶୁଣିଲା ବେଳେ ଏପରି ମନେ ହେଉଥିଲା ଯେ ସେମାନେ ନିଜ କ୍ରୋଧ ଜର୍ଜରିତ ଚକ୍ଷୁ ଦ୍ୱାରା ତୁମକୁ (ଅଲ୍ଲାହଙ୍କ ପ୍ରଦତ୍ତ ସ୍ଥାନରୁ) ସ୍ଥାନଚ୍ୟୁତ କରିଦେବେ ; ଏବଂ ସେମାନେ କହୁଥା'ନ୍ତି, "ଏ ବ୍ୟକ୍ତି ତ ଜଣେ ପାଗଳ ।"

وَمَا هُوَ إِلَّا ذِكْرٌ لِّلْعَالَمِينَ ۝

୫୩. ଅଥଚ ଏହା (ଅର୍ଥାତ୍ କୋରାନ) ସମଗ୍ର ଜଗତ ପାଇଁ ଏକ ସମ୍ମାନ[୨] ଘେନି ଆସିଅଛି ।

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ହଜରତ ୟୁନୁସଙ୍କ ସଦୃଶ ହୁଅ ନାହିଁ, ଅର୍ଥାତ୍ ସେ ନିଜ ସମ୍ପ୍ରଦାୟ ସଂକ୍ରାନ୍ତରେ ଯେପରି ଆଶୁ ନିଷ୍ପତ୍ତି ଭିକ୍ଷା କରିଥିଲେ, ସେପରି ଅନୁରୋଧ କର ନାହିଁ । ଅଲ୍ଲାହ ନିଜେ ଯଥା ସମୟରେ ନିଷ୍ପତ୍ତି କରିବେ ।

୨. ତେବେ ଏହି ଧର୍ମଗ୍ରନ୍ଥ ଆଣିଥିବା ଲୋକ କିପରି ପାଗଳ ହୋଇପାରେ ?

سُورَةُ الْحَاقَّةِ مَكِّيَّةٌ (٦٩)

# ଅଲ-ହାକ୍‌କା

(ଏହି ସୁରା ମକ୍‌କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୫୩ଟି ଆୟତ ଓ ୨ଟି ରୁକୁ ଅଛି ।)

| | |
|---|---|
| ୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) । | بِسْمِ اللّٰهِ الرَّحْمٰنِ الرَّحِيْمِ ① |
| ୨. ସେହି ଅନିବାର୍ଯ୍ୟ ସମ୍ବାଦ (ଯାହା କୋରାନରେ ବର୍ଣ୍ଣିତ ଅଛି) । | اَلْحَآقَّةُ ② |
| ୩. ସେହି ଅନିବାର୍ଯ୍ୟ ସମ୍ବାଦ କ'ଣ (ତୁମମାନଙ୍କୁ ଜଣା ଅଛି କି) ? | مَا الْحَآقَّةُ ③ |
| ୪. ଏବଂ ସେହି ଅନିବାର୍ଯ୍ୟ ସମ୍ବାଦ କ'ଣ ତାହା ତୁମେ କିପରି ଜାଣିଲ ? | وَمَآ اَدْرٰىكَ مَا الْحَآقَّةُ ④ |
| ୫. ସମୁଦ ଓ ଆଦ(ସମ୍ପ୍ରଦାୟ) ପ୍ରଳୟଙ୍କରୀ ବିପତ୍ତିକୁ ମିଥ୍ୟା ମନେ କରିଥିଲେ (ଯାହା ସେ ଯୁଗ ପାଇଁ ଶାସ୍ତିର ସମ୍ବାଦ ଥିଲା) । | كَذَّبَتْ ثَمُوْدُ وَعَادٌۢ بِالْقَارِعَةِ ⑤ |
| ୬. (ସୁତରାଂ ଏହି ସମ୍ବାଦ ଅନୁଯାୟୀ) ସମୁଦ (ସମ୍ପ୍ରଦାୟ)କୁ ଏକ ଭୟାନକ ଶାସ୍ତି ଦ୍ୱାରା ବିନାଶ କରାଯାଇଥିଲା । | فَاَمَّا ثَمُوْدُ فَاُهْلِكُوْا بِالطَّاغِيَةِ ⑥ |
| ୭. ଏବଂ ଆଦ (ସମ୍ପ୍ରଦାୟ)କୁ ଏପରି ଏକ ଶାସ୍ତି ଦ୍ୱାରା ବିନାଶ କରାଗଲା ଯାହା ଅନବରତ ପ୍ରବାହିତ ହେଉଥିବା ଅତି ପ୍ରବଳ ବାତ୍ୟା ରୂପରେ ଆସିଥିଲା । | وَاَمَّا عَادٌ فَاُهْلِكُوْا بِرِيْحٍ صَرْصَرٍ عَاتِيَةٍ ⑦ |
| ୮. ସେ (ଅଲ୍ଲାହ) ଏହି ବାତ୍ୟାକୁ ସେମାନଙ୍କ ବିନାଶ ପାଇଁ ଅନବରତ ଭାବରେ ସାତ ରାତି ଓ ଆଠ ଦିନ ନିଯୁକ୍ତ କରିଥିଲେ ; ସୁତରାଂ ଏହାର ପରିଣାମ ତୁମମାନଙ୍କୁ ଜଣା ଅଛି ଯେ ପ୍ରବଳ ବାତ୍ୟା ଦ୍ୱାରା ମୂଳୋତ୍ପାଟିତ ଏକ ଫମ୍ପା ଖଜୁରି ଗଛ ସଦୃଶ ସେହି ସମ୍ପ୍ରଦାୟ ସମ୍ପୂର୍ଣ୍ଣ ବିନାଶ ହୋଇଥିଲା । | سَخَّرَهَا عَلَيْهِمْ سَبْعَ لَيَالٍ وَّثَمٰنِيَةَ اَيَّامٍ ۙ حُسُوْمًا ۙ فَتَرَى الْقَوْمَ فِيْهَا صَرْعٰى ۙ كَاَنَّهُمْ اَعْجَازُ نَخْلٍ خَاوِيَةٍ ⑧ |
| ୯. ତାହା ହେଲେ ଏବେ କୁହ କ'ଣ ସେମାନଙ୍କର କୌଣସି ଚିହ୍ନ ତୁମମାନଙ୍କର ଦୃଷ୍ଟିଗୋଚର ହେଉଛି ? | فَهَلْ تَرٰى لَهُمْ مِّنْۢ بَاقِيَةٍ ⑨ |
| ୧୦. ଏବଂ ଫିରଔନ ଓ ଯେଉଁମାନେ ତାହାଙ୍କ ପୂର୍ବରୁ ଥିଲେ ତଥା (ଲୁତ ସମ୍ପ୍ରଦାୟର) ଯେଉଁ ଜନବସତିକୁ ପାପ ଯୋଗୁଁ ଓଲଟାଇ ଦିଆଯାଇଥିଲା ସେମାନେ ସମସ୍ତେ (ଏହି ସଂସାରକୁ) ଅପରାଧୀ ଭାବେ ଆସି ଥିଲେ । | وَجَآءَ فِرْعَوْنُ وَمَنْ قَبْلَهٗ وَالْمُؤْتَفِكٰتُ بِالْخَاطِئَةِ ⑩ |

୧୧. (ଏବଂ) ସେମାନେ (ମଧ୍ୟ ଦୋଷ କରିଥିଲେ ଓ) ନିଜ ପାଳନକର୍ତ୍ତାଙ୍କ ରସୁଲଙ୍କୁ ଅମାନ୍ୟ କରିଥିଲେ ; ସୁତରାଂ ସେମାନଙ୍କୁ ମଧ୍ୟ ଅଲ୍ଲାହ ଏପରି ଏକ ଶାସ୍ତି ଦ୍ୱାରା କବଳିତ କରିଥିଲେ ଯାହାର କ୍ରମବୃଦ୍ଧି ହେଉଥିଲା (ଓ ଅତ୍ୟନ୍ତ ଭୟାବହ ଥିଲା) ।

فَعَصَوْا رَسُولَ رَبِّهِمْ فَأَخَذَهُمْ أَخْذَةً رَّابِيَةً ⑪

୧୨. (ଆମେ ନୁହଙ୍କ ସମୟରେ) ଯେତେବେଳେ ଜଳ ଉପରକୁ ଉଠିବାକୁ ଲାଗିଲା ସେତେବେଳେ ଆମେ ତୁମମାନଙ୍କୁ ଏକ ନୌକାରେ ଆରୋହଣ କରାଇଥିଲୁ ।

إِنَّا لَمَّا طَغَا الْمَاءُ حَمَلْنَاكُمْ فِي الْجَارِيَةِ ⑫

୧୩. ଯଦ୍ଦ୍ୱାରା ଏହି ଘଟଣାକୁ ତୁମମାନଙ୍କ ସକାଶେ ଏକ ନିଦର୍ଶନ[1] ସ୍ୱରୂପ କରିବୁ ଏବଂ ଶୁଣୁଥିବା କାନଗୁଡ଼ିକ ଏହା ଶୁଣନ୍ତୁ (ଏବଂ ମନେରଖନ୍ତୁ) ।

لِنَجْعَلَهَا لَكُمْ تَذْكِرَةً وَتَعِيَهَا أُذُنٌ وَاعِيَةٌ ⑬

୧୪. ସୁତରାଂ ଯେତେବେଳେ ଥରେ ମାତ୍ର ଜୋରରେ ତୂରୀ ଫୁଙ୍କା ଯିବ–

فَإِذَا نُفِخَ فِي الصُّورِ نَفْخَةٌ وَاحِدَةٌ ⑭

୧୫. ଏବଂ ଭୂପୃଷ୍ଠ ଓ ପର୍ବତମାନଙ୍କୁ ସ୍ୱସ୍ଥାନରୁ ବିଚ୍ୟୁତ କରାହେବ ଏବଂ ସେମାନେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯିବେ–

وَحُمِلَتِ الْأَرْضُ وَالْجِبَالُ فَدُكَّتَا دَكَّةً وَاحِدَةً ⑮

୧୬. ସେଦିନ ନିର୍ଦ୍ଧାରିତ[2] ଘଟଣା ଘଟିବ ।

فَيَوْمَئِذٍ وَقَعَتِ الْوَاقِعَةُ ⑯

୧୭. ଓ ଆକାଶ ଫାଟିଯିବ[3] ଓ ସେଦିନ ତାହା ଶ୍ରୀହୀନ ଦେଖାଯିବ ।

وَانشَقَّتِ السَّمَاءُ فَهِيَ يَوْمَئِذٍ وَاهِيَةٌ ⑰

୧୮. ଏବଂ ଦେବଦୂତମାନେ ତାହାର ପ୍ରାନ୍ତରେ[4] ରହିଥିବେ; ଏବଂ ସେ ଦିନ ତୁମ ପାଳନକର୍ତ୍ତାଙ୍କ ସିଂହାସନକୁ ଆଠ ଜଣ[5] ଧାରଣ କରିଥିବେ ।

وَالْمَلَكُ عَلَىٰ أَرْجَائِهَا ۚ وَيَحْمِلُ عَرْشَ رَبِّكَ فَوْقَهُمْ يَوْمَئِذٍ ثَمَانِيَةٌ ⑱

୧. ଅର୍ଥାତ୍ ହଜରତ ମହମ୍ମଦଙ୍କ ସମ୍ପ୍ରଦାୟ ପାଇଁ ଏହିପରି ହେବ ଓ ସେମାନେ ବିଭିନ୍ନ ପ୍ରକାର ଶାସ୍ତିରେ ଲିପ୍ତ ହୋଇଯିବେ ।

୨. ଏହି ଅଧ୍ୟାୟର ଆୟତ ସଂ ୨ରେ ବର୍ଣ୍ଣିତ ଭବିଷ୍ୟବାଣୀ ସେହି ଦିନ ସତ୍ୟ ହେବ, ଯେଉଁଦିନ ମକ୍‌କାର ନେତୃବୃନ୍ଦ ଓ ସାଧାରଣ ଜନତା ଧ୍ୱଂସ ହେବାକୁ ଲାଗିବେ ଓ ସେମାନେ ଅନେକ ପରାଜୟର ସମ୍ମୁଖୀନ ହେବେ ।

୩. ମକ୍‌କାବାସୀଙ୍କର ଆକାଶ ଅର୍ଥାତ୍ ସେମାନଙ୍କ ଧର୍ମ ପୁରାପୁରି ଫମ୍ପା ବା ଅର୍ଥହୀନ ହୋଇଯିବ ଏବଂ ଲୋକମାନଙ୍କ ମନରେ ସେହି ଧର୍ମର ଯଥାର୍ଥତା ସମ୍ବନ୍ଧରେ ଆଉ ବିଶ୍ୱାସ ରହିବ ନାହିଁ ।

୪. ଏଠାରେ କୁହାଯାଇଛି ଯେ ଯେଉଁ ମୁସଲମାନମାନଙ୍କୁ ଅବିଶ୍ୱାସକାରୀମାନେ ଶତ୍ରୁ ମନେ କରୁଥିଲେ ସେହିମାନେ ଅନ୍ତିମ ଶାସ୍ତି ବିଧାନ ସମୟରେ ଅବିଶ୍ୱାସକାରୀମାନଙ୍କୁ ରକ୍ଷା କରିବାପାଇଁ ପ୍ରାର୍ଥନା କରୁଥିବେ ।

୫. 'ସେଦିନ ତୁମ ପାଳନକର୍ତ୍ତାଙ୍କ ସିଂହାସନକୁ ଆଠଜଣ ଦେବଦୂତ ଧାରଣ କରିଥିବେ' ବାକ୍ୟାଂଶରୁ ଏପରି ଏକ ବିଷୟର ସୂଚନା ମିଳୁଛି ଯେ ସୁରା 'ଫାତିହା' ରେ ଅଲ୍ଲାହଙ୍କର ଅବଶ୍ୟ ଚାରିଗୋଟି ଗୁଣ (ଯଥା: – ସେ ହିଁ ପାଳନକର୍ତ୍ତା, ଅଶେଷ ଦୟାବାନ୍, ସଦା କରୁଣାମୟ ଓ ବିଗ୍ରହ ଦିବସର ପ୍ରଭୁ) ବର୍ଣ୍ଣନା କରାଯାଇଛି, କିନ୍ତୁ, ମକ୍‌କା-ବିଜୟ ଅବସରରେ ଅଲ୍ଲାହଙ୍କର ବିଭିନ୍ନ ଗୁଣ ଏପରି ଦ୍ରୁତ ଗତିରେ ପ୍ରକଟିତ ହେବ ଯଦ୍ଦ୍ୱାରା ଯେପରି ତାହା ଚାରିଗୋଟି ଗୁଣ ନୁହେଁ ବରଂ ଆଠଗୋଟି । ବସ୍ତୁତଃ ସେଦିନ ହଜରତ ମହମ୍ମଦଙ୍କ ସକାଶେ ସମଗ୍ର ପୃଥିବୀରେ ଅଲ୍ଲାହଙ୍କର ଦୀପ୍ତି ଓ ପରାକ୍ରମ ପ୍ରକଟିତ ହୋଇଥିବ ।

୧୯. ସେଦିନ ତୁମମାନଙ୍କୁ ଅଲ୍ଲାହ୍‌ଙ୍କ ସମ୍ମୁଖରେ ଉପସ୍ଥାପିତ କରାହେବ ; ଏବଂ କୌଣସି ବିଷୟ ତୁମମାନଙ୍କ ଠାରୁ ଗୁପ୍ତ ରହିବ ନାହିଁ (ଅର୍ଥାତ୍ ତୁମମାନଙ୍କର ସମସ୍ତ ହିସାବକୁ ତୁମମାନଙ୍କ ସମ୍ମୁଖରେ ପେଶ୍ କରାହେବ) ।

يَوْمَئِذٍ تُعْرَضُونَ لَا تَخْفَىٰ مِنكُمْ خَافِيَةٌ ﴿١٩﴾

୨୦. ସୁତରାଂ ଯାହାକୁ ତାହାର କର୍ମପତ୍ର ତାହାର ଦକ୍ଷିଣ ହସ୍ତରେ ଦିଆଯିବ, ସେ ଅବଶିଷ୍ଟ ସାଥୀମାନଙ୍କୁ କହିବ, "ଆସ, ମୋ କର୍ମପତ୍ରକୁ ଦେଖ ।" [୧]

فَأَمَّا مَنْ أُوتِيَ كِتَابَهُ بِيَمِينِهِ فَيَقُولُ هَاؤُمُ اقْرَءُوا كِتَابِيَهْ ﴿٢٠﴾

୨୧. "ମୋର ବିଶ୍ୱାସ ଥିଲା ଯେ ଦିନେ ମୁଁ ନିଜ ହିସାବକୁ ଦେଖିବି ।" [୨]

إِنِّي ظَنَنتُ أَنِّي مُلَاقٍ حِسَابِيَهْ ﴿٢١﴾

୨୨. ସୁତରାଂ ଏପରି ବ୍ୟକ୍ତି ଅତ୍ୟନ୍ତ ସୁଖକର ଜୀବନର ଦିବସଗୁଡ଼ିକୁ ଦେଖିବ ।

فَهُوَ فِي عِيشَةٍ رَّاضِيَةٍ ﴿٢٢﴾

୨୩. ଏବଂ ଉଚ୍ଚ ଉଦ୍ୟାନ ମଧ୍ୟରେ ରହିବ,

فِي جَنَّةٍ عَالِيَةٍ ﴿٢٣﴾

୨୪. ତାହାର ଫଳ ତଳକୁ ଓହଳି ଥିବ ।

قُطُوفُهَا دَانِيَةٌ ﴿٢٤﴾

୨୫. (ଏବଂ ସେମାନଙ୍କୁ କୁହାଯିବ), "ଅତୀତ ଜୀବନରେ ତୁମେମାନେ ଯେଉଁ କର୍ମ କରିଥିଲ ତାହାର ପରିଣାମ ସ୍ୱରୂପ ପ୍ରଚୁର (ଫଳ) ଖାଅ ଓ (ଝରଣାର) ଜଳ ପାନ କର ।"

كُلُوا وَاشْرَبُوا هَنِيئًا بِمَا أَسْلَفْتُمْ فِي الْأَيَّامِ الْخَالِيَةِ ﴿٢٥﴾

୨୬. ଏବଂ ଯାହାକୁ ତାହାର ବାମ ହସ୍ତରେ ତାହାର କର୍ମପତ୍ର ଦିଆଯିବ, ସେ କହିବ, "ହାୟ ! ମୋତେ ମୋର କର୍ମପତ୍ର ଦିଆ ନ ଯାଆନ୍ତା କି !"

وَأَمَّا مَنْ أُوتِيَ كِتَابَهُ بِشِمَالِهِ فَيَقُولُ يَا لَيْتَنِي لَمْ أُوتَ كِتَابِيَهْ ﴿٢٦﴾

୨୭. "ଏବଂ ମୋର ହିସାବ କ'ଣ, ଏହା ମୁଁ ନ ଜାଣନ୍ତି କି !"

وَلَمْ أَدْرِ مَا حِسَابِيَهْ ﴿٢٧﴾

୨୮. "ହାୟ ! ମୋର ମୃତ୍ୟୁ ମୋତେ ସମ୍ପୂର୍ଣ୍ଣ ନିଃଶେଷ କରିଦିଅନ୍ତା କି !"

يَا لَيْتَهَا كَانَتِ الْقَاضِيَةَ ﴿٢٨﴾

୨୯. "ମୋର ଧନ ସମ୍ପତ୍ତି ଆଜି ମୋତେ କୌଣସି ଲାଭ ଦେଲା ନାହିଁ ।"

مَا أَغْنَىٰ عَنِّي مَالِيَهْ ﴿٢٩﴾

୩୦. "ଏବଂ ମୋର ଆଧିପତ୍ୟ ମୋ'ଠାରୁ ଚାଲିଗଲା ।"

هَلَكَ عَنِّي سُلْطَانِيَهْ ﴿٣٠﴾

---

୧. 'ଦକ୍ଷିଣ ହସ୍ତ' ଆଶୀର୍ବାଦ ପ୍ରାପ୍ତିର ସୂଚକ । ସୁତରାଂ ଯାହାର ଦକ୍ଷିଣ ହସ୍ତରେ ତା'ର କର୍ମପତ୍ରିକା ଦିଆଯିବ, ସେ ବୁଝି ପାରିବ ଯେ ତା' ସପକ୍ଷରେ ସମୀଚୀନ ନିଷ୍ପତ୍ତି ହୋଇଛି ଓ ତା'ର କର୍ମସମୂହକୁ ସତ୍‌କର୍ମ ବୋଲି ସ୍ୱୀକାର କରାଯାଇଛି । ସେଥିଯୋଗୁଁ ସେ ନିଜ ସାଥୀମାନଙ୍କୁ ଡାକିବ ଓ ତା'ର ପରିଣାମ ତଥା କର୍ମପତ୍ରିକା ଦେଖିବାକୁ କହିବ । ସେହିପରି ପରବର୍ତ୍ତୀ ଆୟତ — ୨୬ ରେ 'ବାମହସ୍ତ' ଶବ୍ଦ ମଣିଷର ଅସଫଳତାକୁ ସୂଚାଉଛି ।

୨. ଯେହେତୁ ସେ କୟାମତ ସମ୍ବନ୍ଧରେ ବିଶ୍ୱାସ କରୁଥିଲା, ସେଥିପାଇଁ ସେ ପ୍ରସ୍ତୁତ ହେଉଥିଲା । ଫଳରେ ସେ ତା'ର ଲାଭ ପାଇସାରିଛି ଏବଂ ଅଲ୍ଲାହ୍ ତା' ସପକ୍ଷରେ ନିଷ୍ପତ୍ତି କରିସାରିଛନ୍ତି ଯେ ସେ ନିଶ୍ଚୟ ଜୀବନର ଉତ୍ତମ ଦିନଗୁଡ଼ିକୁ ଦେଖିବାକୁ ପାଇବ ।

خُذُوهُ فَغُلُّوهُ ۝

୩୧. (ସେତେବେଳେ ଅଲ୍ଲାହ ଦେବଦୂତମାନଙ୍କୁ କହିବେ), "ତାହାକୁ ଧର ଏବଂ ତାହାର ଗଳାରେ ଶିକୁଳି ପକାଅ."

ثُمَّ الْجَحِيمَ صَلُّوهُ ۝

୩୨. "ଏବଂ ତାହାକୁ ନରକରେ ନିକ୍ଷେପ କର ।"

ثُمَّ فِي سِلْسِلَةٍ ذَرْعُهَا سَبْعُونَ ذِرَاعًا فَاسْلُكُوهُ ۝

୩୩. "ଏହାପରେ ତାହାକୁ ଏକ ସୁଦୀର୍ଘ ଜଞ୍ଜିରରେ ବାନ୍ଧି ପକାଅ [୧] ।"

إِنَّهُ كَانَ لَا يُؤْمِنُ بِاللَّهِ الْعَظِيمِ ۝

୩୪. "ମହାନ୍ ଅଲ୍ଲାହଙ୍କ ଉପରେ ସେ ବିଶ୍ୱାସ କରି ନ ଥିଲା ।"

وَلَا يَحُضُّ عَلَىٰ طَعَامِ الْمِسْكِينِ ۝

୩୫. "ଏବଂ ଦରିଦ୍ରମାନଙ୍କୁ ଖୁଆଇବା ବିଷୟରେ (ଲୋକମାନଙ୍କୁ) ଉତ୍ସାହିତ କରୁ ନ ଥିଲା ।"

فَلَيْسَ لَهُ الْيَوْمَ هَاهُنَا حَمِيمٌ ۝

୩୬. "ସୁତରାଂ ଆଜି ତାହାର କେହି ବନ୍ଧୁ ହେବେ ନାହିଁ ; (କାରଣ ନିଜ ଅତ୍ୟାଚାର ଯୋଗୁଁ ସେ ଲୋକମାନଙ୍କର ସହାନୁଭୂତି ହରାଇ ବସିଲା) ;"

وَلَا طَعَامٌ إِلَّا مِنْ غِسْلِينٍ ۝

୩୭. "ଏବଂ ତାହାକୁ ପୂଯପାଣି ବ୍ୟତୀତ ଅନ୍ୟ କୌଣସି ଖାଦ୍ୟ ମିଳିବ ନାହିଁ."

لَا يَأْكُلُهُ إِلَّا الْخَاطِئُونَ ۝ ع

୩୮. "ଏପରି ଖାଦ୍ୟ କେବଳ ପାପୀମାନେ ଖାଆନ୍ତି ।"

ରୁ:୨

فَلَا أُقْسِمُ بِمَا تُبْصِرُونَ ۝

୩୯. (ସୁତରାଂ କୌଣସି ପ୍ରକାର ପ୍ରତାରଣାର ବଶବର୍ତ୍ତୀ ହୁଅ ନାହିଁ) ଆମେ ପ୍ରମାଣ ସ୍ୱରୂପ ତାହାକୁ ମଧ୍ୟ ଉପସ୍ଥାପିତ କରୁଅଛୁ, ଯାହା ତୁମେ ଦେଖୁଅଛ ।

وَمَا لَا تُبْصِرُونَ ۝

୪୦. ଏବଂ ଯାହା ତୁମେ ଦେଖୁ ନାହଁ (ଅର୍ଥାତ୍ ପ୍ରକାଶ୍ୟ ପରିସ୍ଥିତି ଓ ଆଭ୍ୟନ୍ତରୀଣ ଚିନ୍ତାଧାରା ଏ ବିଷୟରେ ସାକ୍ଷ୍ୟ ଦେଉଅଛି କି).

إِنَّهُ لَقَوْلُ رَسُولٍ كَرِيمٍ ۝

୪୧. ଏହା (ଅର୍ଥାତ୍ କୋରାନ) ଜଣେ ସମ୍ମାନନୀୟ ରସୁଲଙ୍କ (ଦ୍ୱାରା ଆନୀତ) ବାଣୀ ;

وَمَا هُوَ بِقَوْلِ شَاعِرٍ ۚ قَلِيلًا مَا تُؤْمِنُونَ ۝

୪୨. ଏବଂ ଏହା କୌଣସି କବିର ବାଣୀ ନୁହେଁ ; କିନ୍ତୁ ଦୁଃଖର ବିଷୟ ହେଉଛି ଯେ ତୁମେମାନେ ବିଶ୍ୱାସ କରୁନାହଁ ।

وَلَا بِقَوْلِ كَاهِنٍ ۚ قَلِيلًا مَا تَذَكَّرُونَ ۝

୪୩. ଏହା କୌଣସି ଜ୍ୟୋତିଷୀ ବାଣୀ ନୁହେଁ କିନ୍ତୁ ତୁମେମାନେ ଆଦୌ ଶିକ୍ଷାଲାଭ କରୁନାହଁ ।

تَنْزِيلٌ مِنْ رَبِّ الْعَالَمِينَ ۝

୪୪. ଏହା ସମଗ୍ର ଜଗତର ପାଳନକର୍ତ୍ତାଙ୍କ ଠାରୁ ଅବତୀର୍ଣ୍ଣ ହୋଇଅଛି ।

---

[୧] ଅର୍ଥାତ୍ ତା'ର ପୂର୍ବ କୁକାର୍ଯ୍ୟମାନ ଭବିଷ୍ୟତରେ ମଧ୍ୟ ତାହାକୁ ଅବିଶ୍ୱାସ ଓ ଅବଜ୍ଞା କରିବାପାଇଁ ପ୍ରୋତ୍ସାହିତ କରୁଥିବ । ତେଣୁ ସେ ବିଶ୍ୱାସ କରିବାକୁ ଆଗଭର ହେବ ନାହିଁ ।

୪୫. ଏବଂ ଯଦି ଏହି ବ୍ୟକ୍ତି ନିଜେ ମିଥ୍ୟା ରଚନା କରି ଏହାକୁ ଆମର ବାର୍ତ୍ତା [୧] ବୋଲି କହନ୍ତେ (ତାହା ଥରେ ମାତ୍ର ହେଲେ ମଧ୍ୟ),

وَلَوْ تَقَوَّلَ عَلَيْنَا بَعْضَ الْأَقَاوِيلِ

୪୬. ତେବେ ଆମେ ନିଶ୍ଚୟ ଦକ୍ଷିଣ ହସ୍ତ ଦ୍ୱାରା ତାହାଙ୍କୁ ଧରି ପକାନ୍ତୁ,

لَأَخَذْنَا مِنْهُ بِالْيَمِينِ

୪୭. ଏବଂ ତାହାଙ୍କର ଜୀବନ ନାଡିକାକୁ କାଟି ଦିଅନ୍ତୁ,

ثُمَّ لَقَطَعْنَا مِنْهُ الْوَتِينَ

୪୮. ଅତଏବ ଏପରି ପରିସ୍ଥିତିରେ ତୁମମାନଙ୍କ ମଧ୍ୟରୁ କେହି ହେଲେ ତାହାକୁ ଅଲ୍ଲାହ୍‌ଙ୍କ ଶାସ୍ତିରୁ ରକ୍ଷା କରିପାରନ୍ତେ ନାହିଁ ।

فَمَا مِنكُم مِّنْ أَحَدٍ عَنْهُ حَاجِزِينَ

୪୯. ଏବଂ ଏହା (ଅର୍ଥାତ୍ କୋରାନ) ଅଲ୍ଲାହ୍‌ଙ୍କୁ ଭୟ କରୁଥିବା ଲୋକମାନଙ୍କ ସକାଶେ ଉପଦେଶ (ଓ ସମ୍ମାନ)ର ଉତ୍ସ ଅଟେ ।

وَإِنَّهُ لَتَذْكِرَةٌ لِّلْمُتَّقِينَ

୫୦. ଏବଂ ଆମେ ଭଲ ଭାବରେ ଜାଣୁ ଯେ ତୁମମାନଙ୍କ ମଧ୍ୟରେ ଏହାର ପ୍ରତ୍ୟାଖ୍ୟାନକାରୀଗଣ ମଧ୍ୟ ଅଛନ୍ତି ।

وَإِنَّا لَنَعْلَمُ أَنَّ مِنكُم مُّكَذِّبِينَ

୫୧. ଏବଂ (ଏହା ମଧ୍ୟ ଜାଣୁ ଯେ) ଏହି କୋରାନ ଅବିଶ୍ୱାସକାରୀମାନଙ୍କ ହୃଦୟରେ ଅନୁଶୋଚନା [୨] ଉଦ୍ରେକ କରୁଅଛି ।

وَإِنَّهُ لَحَسْرَةٌ عَلَى الْكَافِرِينَ

୫୨. ଏହା ନିଶ୍ଚିତରୂପେ ବିଶ୍ୱାସଭିତ୍ତିକ ସତ୍ୟ ଅଟେ ।

وَإِنَّهُ لَحَقُّ الْيَقِينِ

୫୩. ସୁତରାଂ ତୁମେ ନିଜର ମହାମହିମ ପାଳନକର୍ତ୍ତାଙ୍କ ନାମ ମାଧ୍ୟମରେ ତାଙ୍କର ପବିତ୍ରତା ଗାନ କର ।

فَسَبِّحْ بِاسْمِ رَبِّكَ الْعَظِيمِ

---

୧. 'ବହାଈ'ମାନଙ୍କ ମତରେ ବହାଉଲ୍ଲାହ୍ ଏଥି ସକାଶେ ସତ୍ୟବାଦୀ ଅଟନ୍ତି ଯେହେତୁ ସେ ଦାବି କରିବା ପରେ ଏକ ଦୀର୍ଘ ସମୟ ପର୍ଯ୍ୟନ୍ତ ଜୀବିତ ରହିବାକୁ ସୁଯୋଗ ପାଇଥିଲେ । କିନ୍ତୁ ଏହି ଉକ୍ତି ମିଥ୍ୟା । ବହାଉଲ୍ଲାହ୍‌ଙ୍କ ନିକଟକୁ ଦିବ୍ୟବାଣୀ ପ୍ରେରିତ ହେଉଥିବା ବିଷୟରେ ସେ କେବେ କିଛି କହି ନାହାନ୍ତି, ବରଂ ସେ ନିଜକୁ ସ୍ୱୟଂ ଭଗବାନ ବୋଲି ଦାବି କରୁଥିଲେ । ଜଣେ ଲୋକ ଯେବେ ନିଜକୁ ସ୍ୱୟଂ ଭଗବାନ ବୋଲି ଦାବି କରେ ତେବେ ସେହି ଦାବି ଯେ କେତେ ଦୁର୍ବଳ ଏହା ସମସ୍ତେ ସହଜରେ ବୁଝିପାରିବେ । ଯଦି କୌଣସି ବ୍ୟକ୍ତି ଦିବ୍ୟବାଣୀ ଲାଭ କରୁଥିବା ଦାବି କରେ ତେବେ ସେଥିରେ ଜନସାଧାରଣ ପ୍ରବଞ୍ଚିତ ହେବାର ସମ୍ଭାବନା ଅଛି । ତେଣୁ ଅଲ୍ଲାହ୍ ସେଭଳି ମିଥ୍ୟାବାଦୀଙ୍କ ସମ୍ବନ୍ଧରେ ତୁରନ୍ତ ଦଣ୍ଡବିଧାନ କରାଯିବା ଜଣାଇଛନ୍ତି । ଅନ୍ୟ ପକ୍ଷରେ ଜଣେ ଲୋକ ନିଜକୁ ସ୍ୱୟଂ ଭଗବାନ ବୋଲି ଦାବି କଲେ ତାହାକୁ କି ପ୍ରକାର ଦଣ୍ଡ ଭୋଗ କରିବାକୁ ହେବ ଅଲ୍ଲାହ୍ ସେ ବିଷୟରେ କିଛି ଜଣାଇ ନାହାନ୍ତି, କାରଣ ଏପରି ଅହେତୁକ ଓ କପୋଳକଳ୍ପିତ ଦାବିକୁ ପ୍ରତ୍ୟେକ ବୁଦ୍ଧିମାନ୍ ବ୍ୟକ୍ତି ନିଜେ ନାକଚ କରିପାରିବ ।

୨. ପବିତ୍ର କୋରାନର ଶିକ୍ଷାକୁ ଜାଣିବା ପରେ ଅନେକ ସମୟରେ ସେମାନଙ୍କ ମନରେ ନିମ୍ନୋକ୍ତ ଅଭିଳାଷର ଉଦ୍ରେକ ହୁଏ 'ଆହା ! ଏପରି ଶିକ୍ଷା ଆମ ପାଖରେ ଥାଆନ୍ତା କି, ତାହେଲେ ଆମେ ଯୁକ୍ତିତର୍କ ବେଳେ ଏଭଳି ଅପମାନିତ ହୁଅନ୍ତୁ ନାହିଁ !'

سُوْرَةُ الْمَعَارِجِ مَكِّيَّةٌ

# ଅଲ-ମ'ଆରିଜ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୪୫ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ○

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

سَاَلَ سَآئِلٌۢ بِعَذَابٍ وَّاقِعٍ ○

୨. ପ୍ରଶ୍ନକର୍ତ୍ତା ପଚାରୁଛନ୍ତି (ଯେ ଅବିଶ୍ୱାସକାରୀମାନଙ୍କ ଉପରେ) କେବେ ସେହି ନିଶ୍ଚିତ ଶାସ୍ତି ଆସିବ ?

لِّلْكٰفِرِيْنَ لَيْسَ لَهٗ دَافِعٌ ○

୩. (ମନେରଖ) ଅବିଶ୍ୱାସକାରୀମାନଙ୍କୁ ଏଥିରୁ କେହି ରକ୍ଷା କରିପାରିବ ନାହିଁ, (ଅତଏବ ସମୟ ସଂକ୍ରାନ୍ତରେ ପ୍ରଶ୍ନ ଅସମ୍ପୃକ୍ତ ଓ ଅହେତୁକ ଅଟେ) ।

مِّنَ اللّٰهِ ذِى الْمَعَارِجِ ○

୪. ଏ (ଶାସ୍ତି) ପର୍ଯ୍ୟାୟକ୍ରମେ ଉନ୍ନତି ପ୍ରଦାନକାରୀ ଅଲ୍ଲାହଙ୍କ ତରଫରୁ ଆସିବ ।

تَعْرُجُ الْمَلٰٓئِكَةُ وَالرُّوْحُ اِلَيْهِ فِىْ يَوْمٍ كَانَ مِقْدَارُهٗ خَمْسِيْنَ اَلْفَ سَنَةٍ ○

୫. ସାଧାରଣ ଦେବଦୂତମାନେ ଓ ଜିବ୍ରାଇଲ ତାହାଙ୍କ (ଅର୍ଥାତ୍ ଅଲ୍ଲାହଙ୍କ) ନିକଟକୁ ସେତିକି ସମୟରେ ଆରୋହଣ କରିଥା'ନ୍ତି, ଯାହାର ପରିମାଣ ପଚାଶ ହଜାର ବର୍ଷ [୧] ସଙ୍ଗେ ସମାନ ।

فَاصْبِرْ صَبْرًا جَمِيْلًا ○

୬. ସୁତରାଂ ତୁମେ ଭଲ ଭାବରେ ଧୈର୍ଯ୍ୟ ଧାରଣ କର ।

اِنَّهُمْ يَرَوْنَهٗ بَعِيْدًا ○

୭. ଏ (ଲୋକ)ମାନେ ତାହାକୁ (ଅର୍ଥାତ୍ ସେହି ଦିନକୁ) ବହୁ-ଦୂର ମନେ କରୁଛନ୍ତି ।

وَّنَرٰىهُ قَرِيْبًا ○

୮. କିନ୍ତୁ ଆମେ ତାହାକୁ ଖୁବ୍ ନିକଟରେ ଦେଖୁଅଛୁ ।

يَوْمَ تَكُوْنُ السَّمَآءُ كَالْمُهْلِ ○

୯. ସେହିଦିନ (ଭୀଷଣ ଉତ୍ତାପ ଯୋଗୁଁ) ଆକାଶ ତରଳ ହୋଇଥିବା ତମ୍ବା ସଦୃଶ ହୋଇଯିବ ।

وَتَكُوْنُ الْجِبَالُ كَالْعِهْنِ ○

୧୦. ଏବଂ ପର୍ବତ ଭିଣା ହୋଇଥିବା ପଶମ [୨] ସଦୃଶ ହୋଇଯିବ,

---

୧. କେତେକ ବୈଜ୍ଞାନିକ ପୃଥିବୀର ଆୟୁ ପ୍ରାୟ ପଚାଶ ହଜାର ବର୍ଷ ହେବ ବୋଲି ଅନୁମାନ କରିଛନ୍ତି । ତେଣୁ ଯଦି ସେମାନଙ୍କ ଅନୁମାନ ଠିକ, ତେବେ ଏହି ଆୟତରେ ପୃଥିବୀର ସମଗ୍ର ଆୟୁ ବିଷୟରେ ସୂଚନା ଦିଆଯାଇଛି । ଅବଶ୍ୟ କେତେକ ଧର୍ମନିଷ୍ଠ ଓ ପୁଣ୍ୟାତ୍ମା ବ୍ୟକ୍ତି ହଜରତ ଆଦମଙ୍କଠାରୁ ହଜରତ ମହମ୍ମଦଙ୍କ ଯୁଗ ପର୍ଯ୍ୟନ୍ତ ସମୟକୁ ପାଞ୍ଚ ହଜାର ବର୍ଷ ସ୍ଥିର କରିଛନ୍ତି । ଆଦମଙ୍କ ବଂଶଧରମାନଙ୍କଠାରୁ ଅବତାରମାନଙ୍କ ଆଗମନର ପରମ୍ପରା ସୃଷ୍ଟି ହୋଇଥିଲା । ତେଣୁ ସେହି ସମୟରୁ ଆଜିପର୍ଯ୍ୟନ୍ତ ପ୍ରାୟ ସାତ ହଜାର ବର୍ଷ ହୋଇପାରେ । ତେଣୁ ପୃଥିବୀର ଆୟୁ ପଚାଶହଜାର ବର୍ଷ ହୋଇଥିବା ବିଷୟରେ କୌଣସି ମତପାର୍ଥକ୍ୟ ନାହିଁ ।

୨. ଅର୍ଥାତ୍ ଏପରି ବିଭିନ୍ନ ପ୍ରକାର ଉଦ୍ଭାବନ ହେବ । ତନ୍ମଧ୍ୟରେ ପରମାଣୁବୋମା ଓ ହାଇଡ୍ରୋଜେନ ବୋମା ଅନ୍ତର୍ଭୁକ୍ତ । ଏଗୁଡିକୁ ନିକ୍ଷେପ କରାଗଲେ ପର୍ବତ ସଦୃଶ ଦୃଢ଼ ବସ୍ତୁ ମଧ୍ୟ ତୁଳା ଭଳି ଉଡ଼ିବାକୁ ଲାଗିବ ।

୧୧. ଏବଂ ସେଦିନ କୌଣସି ମିତ୍ର ଅନ୍ୟ ମିତ୍ର ସଂକ୍ରାନ୍ତରେ କୌଣସି ପ୍ରଶ୍ନ ପଚାରିବ ନାହିଁ ।

وَلَا يَسْـَٔلُ حَمِيْمٌ حَمِيْمًا ﴿١١﴾

୧୨. କାରଣ ସେଦିନ ପ୍ରତ୍ୟେକ ବ୍ୟକ୍ତିର ଅବସ୍ଥା ତା'ର ମିତ୍ରକୁ ଦେଖାଇ ଦିଆ ହେବ ; ସେଦିନ ଅପରାଧୀ ଇଚ୍ଛା କରିବ ଯେ ହାୟ ! ସେ ଆଜି ନିଜ ପୁତ୍ର,

يُّبَصَّرُوْنَهُمْ ۭ يَوَدُّ الْمُجْرِمُ لَوْ يَفْتَدِيْ مِنْ عَذَابِ يَوْمِىِٕذٍۢ بِبَنِيْهِ ﴿١٢﴾

୧୩. ନିଜ ପତ୍ନୀ ଓ ନିଜ ଭାଇ,

وَصَاحِبَتِهٖ وَاَخِيْهِ ﴿١٣﴾

୧୪. ଏବଂ ନିଜର ସେହି ଜ୍ଞାତିକୁଟୁମ୍ବ ମାଧ୍ୟମରେ, ଯାହାଙ୍କ ନିକଟରେ ସେ ଆଶ୍ରୟ ପାଉଥିଲା,

وَفَصِيْلَتِهِ الَّتِيْ تُـْٔوِيْهِ ﴿١٤﴾

୧୫. ଏବଂ ସଂସାରରେ ଯାହା କିଛି ଅଛି ସେ ସବୁକୁ ଉତ୍ସର୍ଗ କରି ନିଜକୁ ଶାସ୍ତିରୁ ରକ୍ଷା କରିପାରନ୍ତା କି !

وَمَنْ فِي الْاَرْضِ جَمِيْعًا ۙ ثُمَّ يُنْجِيْهِ ﴿١٥﴾

୧୬. କିନ୍ତୁ ତା' ହେବ ନାହିଁ ; ଶୁଣ, ସେହି ଶାସ୍ତି (ଯାହା ବିଷୟରେ ସମାଚାର ଦିଆଯାଇଛି ତାହା) ଏକ ଅଗ୍ନିଶିଖାମୟ ଶାସ୍ତି ଅଟେ,

كَلَّا ۭ اِنَّهَا لَظٰى ﴿١٦﴾

୧୭. (ଏହା) ମୁଣ୍ଡ ପର୍ଯ୍ୟନ୍ତ ଚମଡ଼ା ଉଠାଇ ଦେବା ଶାସ୍ତି ଅଟେ ।

نَزَّاعَةً لِّلشَّوٰى ﴿١٧﴾

୧୮. ଯେଉଁ ବ୍ୟକ୍ତି ଏହା ନିକଟରୁ ପଳାୟନ କରିବା ଇଚ୍ଛା କରିବ ଓ ପୃଷ୍ଠଭଙ୍ଗ ଦେବ ତାହାକୁ ମଧ୍ୟ ସେ ନିଜ ଆଡ଼କୁ ଡାକ ପକାଇବ,

تَدْعُوْا مَنْ اَدْبَرَ وَتَوَلّٰى ﴿١٨﴾

୧୯. ଏବଂ ତାହାକୁ ମଧ୍ୟ, ଯେ ଜୀବନ ସାରା ସଂସାରରେ ଧନ ଠୁଳ କରୁଥିଲା, ଓ ଏକ ବିରାଟ ପରିମାଣ ଗଚ୍ଛିତ କରିବାରେ କୃତକାର୍ଯ୍ୟ ହୋଇଥିଲା ।

وَجَمَعَ فَاَوْعٰى ﴿١٩﴾

୨୦. ମଣିଷ ସ୍ୱଭାବରେ କୃପଣତା ପୂରି ରହିଛି ।

اِنَّ الْاِنْسَانَ خُلِقَ هَلُوْعًا ﴿٢٠﴾

୨୧. ଯେବେ ସେ କୌଣସି କଷ୍ଟ ପାଏ, ତେବେ ବ୍ୟସ୍ତ ହୋଇପଡ଼େ ।

اِذَا مَسَّهُ الشَّرُّ جَزُوْعًا ﴿٢١﴾

୨୨. ଏବଂ ଯେବେ ସେ କୌଣସି ଲାଭ ପାଏ, ତେବେ କୃପଣତା କରିବାକୁ ଲାଗେ (ଏବଂ କେହି ସେଥିରେ ଭାଗୀଦାର୍ ହେଉ ବୋଲି ସେ ଇଚ୍ଛା କରେ ନାହିଁ) ।

وَّاِذَا مَسَّهُ الْخَيْرُ مَنُوْعًا ﴿٢٢﴾

୨୩. (ଅବଶ୍ୟ) ନମାଜ ପାଠ କରୁଥିବା (ବ୍ୟକ୍ତି)ମାନଙ୍କ ବ୍ୟତୀତ ;

اِلَّا الْمُصَلِّيْنَ ﴿٢٣﴾

୨୪. ଯେଉଁମାନେ ସର୍ବଦା ନମାଜ ପାଠ ବଜାୟ ରଖି ଥା'ନ୍ତି,

الَّذِيْنَ هُمْ عَلٰى صَلَاتِهِمْ دَاۗىِٕمُوْنَ ﴿٢٤﴾

୨୫/୨୬. ଏବଂ ଯେଉଁମାନଙ୍କ ଧନ ସମ୍ପତ୍ତିରେ ଦରିଦ୍ର ଭିକ୍ଷୁକମାନଙ୍କର ତଥା ଯେଉଁମାନେ ଭିକ୍ଷା କରିବାରୁ ବଞ୍ଚିତ [୧] ସେମାନଙ୍କର ମଧ୍ୟ ଏକ ନିର୍ଦ୍ଦିଷ୍ଟ ଭାଗ ରହିଅଛି ।

୨୭. ଏବଂ ଯେଉଁମାନେ ବିଚାର ଦିବସକୁ ସତ୍ୟ ମଣନ୍ତି,

୨୮. ଏବଂ ଯେଉଁମାନେ ନିଜ ପାଳନକର୍ତ୍ତାଙ୍କ ଶାସ୍ତିକୁ ଭୟ କରନ୍ତି,

୨୯. (ଏବଂ ପ୍ରକୃତ ଘଟଣା ହେଉଛି) ଯେ ସେମାନଙ୍କର ପାଳନକର୍ତ୍ତାଙ୍କ ଶାସ୍ତିରୁ ନିଜ (ବାହୁ) ବଳରେ କେହି ରକ୍ଷାପାଇ ପାରିବେ ନାହି,

୩୦/୩୧. ଏବଂ ଯେଉଁମାନେ ନିଜ ପତ୍ନୀମାନଙ୍କ ଓ ଦାସୀମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ଠାରୁ ନିଜ ରନ୍ଧ୍ର (ଅର୍ଥାତ୍ ଜନନେନ୍ଦ୍ରିୟ)ଗୁଡ଼ିକର ରକ୍ଷା କରନ୍ତି, ସେମାନଙ୍କର କୌଣସି ଦୋଷ ନାହି ;

୩୨. କିନ୍ତୁ ଯେଉଁମାନେ ଏହାଠାରୁ ଅଧିକ ଅଗ୍ରସର ହେବା ଇଚ୍ଛା କରନ୍ତି, ସେମାନେ ସୀମାଲଙ୍ଘନକାରୀ ଅଟନ୍ତି,

୩୩. (ଏବଂ ସେମାନେ ମଧ୍ୟ ଏହିପରି ଭାବରେ ଶାସ୍ତିରୁ ସୁରକ୍ଷିତ) ଯେଉଁମାନେ ନିଜ ପାଖରେ ଥିବା ଅମାନତ ଓ ନିଜ ଅଙ୍ଗୀକାରର ସୁରକ୍ଷା କରନ୍ତି ।

୩୪. ଏବଂ ଯେଉଁମାନେ ନିଜ ସାକ୍ଷ୍ୟରେ ଦୃଢ଼ ରହନ୍ତି (ଓ କାହାରିକୁ ଭୟ କରି ମିଥ୍ୟା ସାକ୍ଷ୍ୟ ଦିଅନ୍ତି ନାହି),

୩୫. ଏବଂ ଯେଉଁମାନେ ନିଜର ନମାଜ ପ୍ରତି ମନୋଯୋଗୀ,

୩୬. ସେହି (ଲୋକ)ମାନଙ୍କୁ ବୈକୁଣ୍ଠରେ ସସମ୍ମାନେ ରଖାହେବ ।

ରୁ:୨

୩୭. ସୁତରାଂ ଅବିଶ୍ୱାସକାରୀମାନଙ୍କର କ'ଣ ହୋଇଛି ଯେ ସେମାନେ ତୁମ ନିକଟକୁ କ୍ରୋଧାନ୍ୱିତ ହୋଇ ଧାଇଁ ଆସୁଛନ୍ତି,

୩୮. ଦକ୍ଷିଣ ପାର୍ଶ୍ୱରୁ ଓ ବାମ ପାର୍ଶ୍ୱରୁ ମଧ୍ୟ, ଦଳ ଦଳ ହୋଇ ।

وَالَّذِينَ فِي أَمْوَالِهِمْ حَقٌّ مَّعْلُومٌ ﴿٢٤﴾

لِّلسَّائِلِ وَالْمَحْرُومِ ﴿٢٥﴾

وَالَّذِينَ يُصَدِّقُونَ بِيَوْمِ الدِّينِ ﴿٢٦﴾

وَالَّذِينَ هُم مِّنْ عَذَابِ رَبِّهِم مُّشْفِقُونَ ﴿٢٧﴾

إِنَّ عَذَابَ رَبِّهِمْ غَيْرُ مَأْمُونٍ ﴿٢٨﴾

وَالَّذِينَ هُمْ لِفُرُوجِهِمْ حَافِظُونَ ﴿٢٩﴾

إِلَّا عَلَىٰ أَزْوَاجِهِمْ أَوْ مَا مَلَكَتْ أَيْمَانُهُمْ فَإِنَّهُمْ غَيْرُ مَلُومِينَ ﴿٣٠﴾

فَمَنِ ابْتَغَىٰ وَرَاءَ ذَٰلِكَ فَأُولَٰئِكَ هُمُ الْعَادُونَ ﴿٣١﴾

وَالَّذِينَ هُمْ لِأَمَانَاتِهِمْ وَعَهْدِهِمْ رَاعُونَ ﴿٣٢﴾

وَالَّذِينَ هُم بِشَهَادَاتِهِمْ قَائِمُونَ ﴿٣٣﴾

وَالَّذِينَ هُمْ عَلَىٰ صَلَاتِهِمْ يُحَافِظُونَ ﴿٣٤﴾

ع أُولَٰئِكَ فِي جَنَّاتٍ مُّكْرَمُونَ ﴿٣٥﴾

فَمَالِ الَّذِينَ كَفَرُوا قِبَلَكَ مُهْطِعِينَ ﴿٣٦﴾

عَنِ الْيَمِينِ وَعَنِ الشِّمَالِ عِزِينَ ﴿٣٧﴾

---

୧. ଯଥା:– ପଶୁପକ୍ଷୀ ଓ ଭିକ୍ଷା ମାଗୁ ନ ଥିବା ଗରିବ ଲୋକ ।

୩୯. କ'ଣ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଇଚ୍ଛା କରୁଛି ଯେ ତାହାକୁ ମଙ୍ଗଳମୟ ବୈକୁଣ୍ଠରେ (ତାହା ଇହକାଳରେ ହେଉ କି ପରକାଳରେ ହେଉ) ପ୍ରବିଷ୍ଟ କରାଯିବ ?

أَيَطْمَعُ كُلُّ امْرِئٍ مِّنْهُمْ أَن يُدْخَلَ جَنَّةَ نَعِيمٍ ﴿٣٩﴾

୪୦. ଏପରି କଦାପି ହେବ ନାହିଁ ; ଆମେ ସେମାନଙ୍କୁ ଏପରି ବସ୍ତୁରୁ ସୃଷ୍ଟି କରିଅଛୁ ଯାହା ସେମାନେ ଜାଣନ୍ତି ।

كَلَّا ۖ إِنَّا خَلَقْنَاهُم مِّمَّا يَعْلَمُونَ ﴿٤٠﴾

୪୧. ସୁତରାଂ ଆମେ (ଏହି କୋରାନକୁ ଅବତୀର୍ଣ୍ଣ କରିଥିବା) ପୂର୍ବ ଓ ପଶ୍ଚିମର ପାଳନକର୍ତ୍ତାଙ୍କୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ କି ଆମେ ଏହି ବିଷୟରେ ସକ୍ଷମ,

فَلَا أُقْسِمُ بِرَبِّ الْمَشَارِقِ وَالْمَغَارِبِ إِنَّا لَقَادِرُونَ ﴿٤١﴾

୪୨. ଯେ ଏହି ସମ୍ପ୍ରଦାୟକୁ ଧ୍ୱଂସ କରି ଆମେ ଅନ୍ୟ ଏକ ଉତ୍କୃଷ୍ଟ ସମ୍ପ୍ରଦାୟ ସୃଷ୍ଟି କରିପାରୁ ଏବଂ କେହି ଆମକୁ ଏହି ଇଚ୍ଛା (କାର୍ଯ୍ୟକାରୀ କରିବା)ରେ ବିଫଳ କରାଇ ପାରିବ ନାହିଁ ।

عَلَىٰ أَن نُّبَدِّلَ خَيْرًا مِّنْهُمْ وَمَا نَحْنُ بِمَسْبُوقِينَ ﴿٤٢﴾

୪୩. ସୁତରାଂ ତୁମେ ସେମାନଙ୍କୁ ସତ୍ୟକୁ କଳୁଷିତ କରିବାରେ ଓ ଖେଳ କୌତୁକରେ ମଜ୍ଜି ରହିବାରେ ସେ ପର୍ଯ୍ୟନ୍ତ ଛାଡ଼ି ଦିଅ ଯେତେ ବେଳେ କି ସେମାନେ ସେହି ଦିନକୁ ଦେଖି ନେବେ, ଯାହା ସଂକ୍ରାନ୍ତରେ ସେମାନଙ୍କୁ ପ୍ରତିଶ୍ରୁତି ଦିଆଯାଉଛି ।

فَذَرْهُمْ يَخُوضُوا وَيَلْعَبُوا حَتَّىٰ يُلَاقُوا يَوْمَهُمُ الَّذِي يُوعَدُونَ ﴿٤٣﴾

୪୪. ଯେଉଁ ଦିନ ସେମାନେ କବର ମଧ୍ୟରୁ ଜୀବିତ ହୋଇ ବାହାରିବେ ଓ ଅତି ଶୀଘ୍ର ଏପରି ଦୌଡ଼ିଥିବେ, ସତେ ଯେପରି ସେମାନେ ଏକ ସ୍ୱତନ୍ତ୍ର ଲକ୍ଷ୍ୟସ୍ଥଳ[୧] ଆଡ଼କୁ ଦୌଡ଼ୁଛନ୍ତି ।

يَوْمَ يَخْرُجُونَ مِنَ الْأَجْدَاثِ سِرَاعًا كَأَنَّهُمْ إِلَىٰ نُصُبٍ يُوفِضُونَ ﴿٤٤﴾

୪୫. ସେମାନଙ୍କ ଚକ୍ଷୁ ଲଜ୍ଜାରେ ଅବନତ ହୋଇଥିବ, ଓ ସେମାନଙ୍କ ମୁଖମଣ୍ଡଳ ଲାଞ୍ଛନା ଜର୍ଜରିତ ହୋଇଥିବ ; ଏହା ସେହି ଦିନ ଯେଉଁ ଦିନ ସଂକ୍ରାନ୍ତରେ ସେମାନଙ୍କୁ ପ୍ରତିଶ୍ରୁତି ଦିଆଯାଉଛି ।

خَاشِعَةً أَبْصَارُهُمْ تَرْهَقُهُمْ ذِلَّةٌ ۚ ذَٰلِكَ الْيَوْمُ الَّذِي كَانُوا يُوعَدُونَ ﴿٤٥﴾

---

୧. ଏଠାରେ ଯଦି ସାଂସାରିକ ପ୍ରଳୟ ଅର୍ଥ କରାଯିବ ତେବେ ଏହି ଆୟତର ଅର୍ଥ ମଧ୍ୟ ହେବ ଯେ ଯେତେବେଳେ ସଂସାରରେ ଶାନ୍ତିର ଆଗମନ ହେବ ଓ ଅବିଶ୍ୱାସକାରୀମାନଙ୍କ ମନରେ ଭୟ ହେତୁ ଏକ ନୂତନ ଜାଗରଣ ସୃଷ୍ଟି ହେବ ସେତେବେଳେ ସେମାନେ ଦ୍ରୁତ ଗତିରେ ନିଜ ନିଜ କବର ମଧ୍ୟରୁ ବାହାରି ଆସିବେ ଅର୍ଥାତ୍ ଜୀବନର ବିଭିନ୍ନ ବିଶିଷ୍ଟ ଲକ୍ଷଣ ସେମାନଙ୍କ ମଧ୍ୟରେ ଏପରି ସୃଷ୍ଟି ହେବ ଯେପରି ମକ୍କା-ବିଜୟ ଦିନ ମକ୍କାବାସୀଙ୍କ ମନରେ ନୂତନ ଜାଗରଣ ସୃଷ୍ଟି ହୋଇଥିଲା । ସେପରି ଅବସ୍ଥାରେ ସେମାନଙ୍କୁ ଏପରି ବୋଧହେବ ସତେ ଯେପରି ସେମାନେ ଏକ ଉଚ୍ଚ ସ୍ତମ୍ଭ ଆଡ଼କୁ ଦଉଡୁଛନ୍ତି । ଏପରି କହିବାର ତାତ୍ପର୍ଯ୍ୟ ହେଉଛି ଯେ ସେମାନେ ସେଦିନ ଶାନ୍ତିରୁ ରକ୍ଷା ପାଇବାପାଇଁ ନିଜ ନିଜ ନେତାଙ୍କ ପାଖକୁ ଦଉଡି ଆସିବେ । ବସ୍ତୁତଃ ମକ୍କା ବିଜୟ ଅବସରରେ ଏହିପରି ଘଟିଥିଲା କାରଣ ସେହିଦିନ ହଜରତ ମହମ୍ମଦ ଘୋଷଣା କରିଥିଲେ ଯେ ଯେଉଁ ବ୍ୟକ୍ତି ନିଜ ଗୃହର ଦ୍ୱାର ବନ୍ଦ କରି ବସି ରହିବ ତାକୁ ଆଶ୍ରୟ ପ୍ରଦାନ କରାହେବ । ସେହିପରି ଯିଏ ଅବୁ ସୁଫିୟାନଙ୍କ ଗୃହ ମଧ୍ୟକୁ ପଶି ଆସିବ ବା ଯିଏ ହଜରତ ବିଲାଲଙ୍କ ପତାକା ତଳେ ଆସି ଛିଡ଼ା ହେବ ତାକୁ ଆଶ୍ରୟ ଦିଆଯିବ । ଏହି ଘୋଷଣା ଶୁଣିବା ପରେ ଲୋକମାନେ ପାଗଳ ପରି ନିଜ ନିଜ ଘରକୁ ଦଉଡିଲେ ଯେପରିକି ସେମାନେ ଶୀଘ୍ର ଦ୍ୱାର ବନ୍ଦ କରିପାରିବେ । ସେହିପରି କେତେକ ଆଶ୍ରୟ ପ୍ରାପ୍ତି ଆଶାରେ ଅବୁସୁଫିୟାନଙ୍କ ଘରକୁ ଦଉଡିଲେ ଏବଂ ଅନ୍ୟ କେତେକ ଶାନ୍ତି ପ୍ରାପ୍ତି ଲକ୍ଷ୍ୟରେ ହଜରତ ବିଲାଲଙ୍କ ପତାକା ନିକଟକୁ ଦଉଡି ଆସିଲେ । ଅଧିକନ୍ତୁ କା'ବା ଗୃହକୁ ଏକ ଆଶ୍ରୟସ୍ଥଳ ଘୋଷଣା କରାଯାଇଥିଲା । ସୁତରାଂ ସୁରକ୍ଷା ପାଇଁ ଅନ୍ୟ କେତେକ ମଧ୍ୟ ସେଠାରେ ଆଶ୍ରୟ ନେଇଥିଲେ ।



سُوْرَةُ نُوْحٍ مَكِّيَّةٌ

# ନୁହ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୨୯ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ۝

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

اِنَّآ اَرْسَلْنَا نُوْحًا اِلٰى قَوْمِهٖٓ اَنْ اَنْذِرْ قَوْمَكَ مِنْ قَبْلِ اَنْ يَّاْتِيَهُمْ عَذَابٌ اَلِيْمٌ ۝

୨. ଆମେ ନୁହଙ୍କୁ ତାହାଙ୍କ ସମ୍ପ୍ରଦାୟ ପ୍ରତି ଏହା କହି ପ୍ରେରଣ କରିଥିଲୁ ଯେ ନିଜ ସମ୍ପ୍ରଦାୟ ଉପରେ ଯନ୍ତ୍ରଣାଦାୟକ ଶାସ୍ତି ଅବତୀର୍ଣ୍ଣ ହେବା ପୂର୍ବରୁ ସେମାନଙ୍କୁ ସଚେତନ କରାଅ ।

قَالَ يٰقَوْمِ اِنِّيْ لَكُمْ نَذِيْرٌ مُّبِيْنٌ ۝

୩. ସେ (ନିଜ ସମ୍ପ୍ରଦାୟକୁ) କହିଥିଲେ, "ହେ ଆମର ସମ୍ପ୍ରଦାୟ ! ଆମେ ତୁମମାନଙ୍କ ନିକଟକୁ ଜଣେ ପ୍ରକାଶ୍ୟ ସଚେତନକାରୀ (ନବି) ରୂପେ ଆସିଅଛୁ ।"

اَنِ اعْبُدُوا اللّٰهَ وَاتَّقُوْهُ وَاَطِيْعُوْنِ ۝

୪. "(ଏବଂ ତୁମମାନଙ୍କୁ କହୁଅଛୁ ଯେ) କେବଳ ଅଲ୍ଲାହଙ୍କର ଉପାସନା କର ଓ ତାହାଙ୍କୁ ଭୟ କର ଓ ଆମକୁ ଅନୁସରଣ କର ।"

يَغْفِرْ لَكُمْ مِّنْ ذُنُوْبِكُمْ وَيُؤَخِّرْكُمْ اِلٰٓى اَجَلٍ مُّسَمًّى ۭ اِنَّ اَجَلَ اللّٰهِ اِذَا جَاۗءَ لَا يُؤَخَّرُ ۘ لَوْ كُنْتُمْ تَعْلَمُوْنَ ۝

୫. ସେ ତୁମମାନଙ୍କ ପାପକୁ କ୍ଷମା କରିବେ ଏବଂ ତୁମମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଅବ୍ୟାହତି ଦେବେ ; ଏବଂ ଯଦି ତୁମେମାନେ ଜାଣି ଥାଅ, ତେବେ ମନେରଖ ଯେ ଅଲ୍ଲାହ କୌଣସି ସମ୍ପ୍ରଦାୟର ବିନାଶ ପାଇଁ ଯେଉଁ ସମୟ ନିର୍ଦ୍ଧାରିତ କରିଥା'ନ୍ତି ତାହା ଉପସ୍ଥିତ ହେବା ବେଳେ, ତାହାକୁ ଆଗ ପଛ କରାଯାଇ ପାରେ ନାହିଁ ।"

قَالَ رَبِّ اِنِّيْ دَعَوْتُ قَوْمِيْ لَيْلًا وَّنَهَارًا ۝

୬. ତା'ପରେ ସେ (ଅଲ୍ଲାହଙ୍କୁ) କହିଲେ, "ହେ ଆମ ପାଳନକର୍ତ୍ତା ! ଆମେ ନିଜ ସମ୍ପ୍ରଦାୟକୁ ରାତିରେ ଓ ଦିନରେ ମଧ୍ୟ ଡାକି ଥିଲୁ ।"

فَلَمْ يَزِدْهُمْ دُعَاۗءِيْٓ اِلَّا فِرَارًا ۝

୭. "କିନ୍ତୁ ଆମର ଡାକିବା ଯୋଗୁଁ ସେମାନେ ଆହୁରି ଦୂରକୁ ପଳାୟନ କରିବାକୁ ଲାଗିଲେ ।"

وَاِنِّيْ كُلَّمَا دَعَوْتُهُمْ لِتَغْفِرَ لَهُمْ جَعَلُوْٓا اَصَابِعَهُمْ فِيْٓ اٰذَانِهِمْ وَاسْتَغْشَوْا ثِيَابَهُمْ وَاَصَرُّوْا وَاسْتَكْبَرُوا اسْتِكْبَارًا ۝

୮. "ଏବଂ ଯେବେ ବି ଆମେ ସେମାନଙ୍କୁ ଏହି ଉଦ୍ଦେଶ୍ୟରେ ଡାକିଲୁ ଯେ ସେମାନେ ସ୍ୱୀକାର କରିବେ ଓ ତୁମେ ସେମାନଙ୍କୁ କ୍ଷମା କରିଦେବ, ସେତେବେଳେ ସେମାନେ ନିଜ ଆଙ୍ଗୁଳିକୁ ନିଜ କାନରେ ଦେଲେ ଓ ନିଜ ବସ୍ତ୍ରକୁ (ନିଜ ମୁଣ୍ଡ ଚାରିପଟେ) ଗୁଡ଼ାଇ ନେଲେ ଓ ଅବଜ୍ଞା କରିବାକୁ ଅଡ଼ି ବସିଲେ ଓ ଅତ୍ୟଧିକ ଗର୍ବ କଲେ ।"

ثُمَّ اِنِّیۡۤ دَعَوۡتُہُمۡ جِہَارًا ۙ

୯. "ତା'ପରେ ଆମେ ସେମାନଙ୍କୁ ଉଚ୍ଚ ସ୍ୱରରେ (ଅର୍ଥାତ୍ ଭାଷଣ ମାଧ୍ୟମରେ ଧର୍ମ ଆଡ଼କୁ) ଡାକିଲୁ ।"

ثُمَّ اِنِّیۡۤ اَعۡلَنۡتُ لَہُمۡ وَ اَسۡرَرۡتُ لَہُمۡ اِسۡرَارًا ۙ

୧୦. "ପୁନଶ୍ଚ ଆମେ ସେମାନଙ୍କୁ ପ୍ରକାଶ୍ୟରେ ବୁଝାଇବା ପରେ ସେମାନଙ୍କୁ ଗୋପନରେ ମଧ୍ୟ କହିଥିଲୁ ।"

فَقُلۡتُ اسۡتَغۡفِرُوۡا رَبَّکُمۡ ؕ اِنَّہٗ کَانَ غَفَّارًا ۙ

୧୧. "ଏବଂ ଆମେ ସେମାନଙ୍କୁ କହିଥିଲୁ, ନିଜ ପାଳନକର୍ତ୍ତାଙ୍କ ନିକଟରେ କ୍ଷମାଭିକ୍ଷା କର ; (କାରଣ) ସେ ଅତ୍ୟନ୍ତ କ୍ଷମାଶୀଳ ।"

یُّرۡسِلِ السَّمَآءَ عَلَیۡکُمۡ مِّدۡرَارًا ۙ

୧୨. "ଯେଦି ତୁମେମାନେ ଅନୁତାପ କରିବ, ତେବେ) ସେ ତୁମମାନଙ୍କ ପ୍ରତି ବର୍ଷଣକାରୀ ମେଘ ପ୍ରେରଣ କରିବେ,"

وَّ یُمۡدِدۡکُمۡ بِاَمۡوَالٍ وَّ بَنِیۡنَ وَ یَجۡعَلۡ لَّکُمۡ جَنّٰتٍ وَّ یَجۡعَلۡ لَّکُمۡ اَنۡہٰرًا ؕ

୧୩. "ଏବଂ ଧନ ସମ୍ପତ୍ତି ତଥା ସନ୍ତାନସନ୍ତତି ଦ୍ୱାରା ତୁମମାନଙ୍କୁ ସାହାଯ୍ୟ କରିବେ ; ଏବଂ ତୁମମାନଙ୍କ ସକାଶେ ଉଦ୍ୟାନ ସୃଷ୍ଟି କରିଦେବେ ଓ ତୁମମାନଙ୍କ ସକାଶେ ନଦୀ ପ୍ରବାହିତ କରାଇବେ ।"

مَا لَکُمۡ لَا تَرۡجُوۡنَ لِلّٰہِ وَقَارًا ۚ

୧୪. "ତୁମମାନଙ୍କର କ'ଣ ହୋଇଛି ଯେ ତୁମେମାନେ ଅଲ୍ଲାହଙ୍କ ଠାରୁ ତତ୍ତ୍ୱ ସଂକ୍ରାନ୍ତରେ ଆଶା ପୋଷଣ କରୁ ନାହଁ ?"

وَ قَدۡ خَلَقَکُمۡ اَطۡوَارًا

୧୫. "ଅଥଚ ସେ ତୁମମାନଙ୍କୁ ଅଶେଷ ଉନ୍ନତି ସାଧନର ସାମର୍ଥ୍ୟ ପ୍ରଦାନ କରି ସୃଷ୍ଟି କରିଛନ୍ତି ।"

اَلَمۡ تَرَوۡا کَیۡفَ خَلَقَ اللّٰہُ سَبۡعَ سَمٰوٰتٍ طِبَاقًا ۙ

୧୬. "କ'ଣ ତୁମେମାନେ ଲକ୍ଷ୍ୟ କରିନାହଁ ଯେ ଅଲ୍ଲାହ କିପରି ଭାବରେ ସପ୍ତ ଆକାଶ ସୃଷ୍ଟି କରିଛନ୍ତି ଯେଉଁଗୁଡ଼ିକ (ନିୟମାନୁସାରେ) ପରସ୍ପର ସହିତ ସମନ୍ୱୟ ରକ୍ଷା କରିଛନ୍ତି", [୧]

وَّ جَعَلَ الۡقَمَرَ فِیۡہِنَّ نُوۡرًا وَّ جَعَلَ الشَّمۡسَ سِرَاجًا

୧୭. "ଏବଂ ସେ ଚନ୍ଦ୍ରକୁ ଏଥିରେ (ଅର୍ଥାତ୍ ଆକାଶରେ) ଜ୍ୟୋତିର ମାଧ୍ୟମ କରିଛନ୍ତି ଓ ସୂର୍ଯ୍ୟକୁ ଆକାଶରେ ଏକ ପ୍ରଦୀପ ସଦୃଶ ଗଢ଼ିଛନ୍ତି ?"

وَ اللّٰہُ اَنۡۢبَتَکُمۡ مِّنَ الۡاَرۡضِ نَبَاتًا ۙ

୧୮. "ଏବଂ ଅଲ୍ଲାହ ତୁମମାନଙ୍କୁ ଭୂପୃଷ୍ଠରୁ ସୃଷ୍ଟିକରି ବିକଶିତ କରିଛନ୍ତି",

ثُمَّ یُعِیۡدُکُمۡ فِیۡہَا وَ یُخۡرِجُکُمۡ اِخۡرَاجًا

୧୯. "ତା'ପରେ ସେ ତୁମମାନଙ୍କୁ ତନ୍ମଧ୍ୟରୁ ଫେରାଇ ନେବେ, ଓ ତୁମମାନଙ୍କୁ ତନ୍ମଧ୍ୟରୁ ବାହାର କରିବେ ।"

وَ اللّٰہُ جَعَلَ لَکُمُ الۡاَرۡضَ بِسَاطًا ۙ

୨୦. "ଏବଂ ଅଲ୍ଲାହ ଭୂପୃଷ୍ଠକୁ ସମତଳ କରି ଗଢ଼ିଛନ୍ତି,"

لِّتَسۡلُکُوۡا مِنۡہَا سُبُلًا فِجَاجًا ۙ

୨୧. "ଯଦ୍ୱାରା ତୁମେମାନେ ତାହାର ପ୍ରଶସ୍ତ ପଥରେ ଗମନାଗମନ କରିପାରିବ ।"

---

୧. ଅର୍ଥାତ୍ ସମଗ୍ର ସୌର ଜଗତ ଏକେଶ୍ୱରବାଦ ସମ୍ବନ୍ଧରେ ସାକ୍ଷ୍ୟ ପ୍ରଦାନ କରୁଅଛି ।

ରୁ:୨

୨୨. ତା'ପରେ ନୁହ କହିଲେ, "ହେ ଆମର ପାଳନକର୍ତ୍ତା ! ସେମାନେ ଆମକୁ ଅମାନ୍ୟ କରିଛନ୍ତି ଓ (ଆମକୁ ପରିତ୍ୟାଗ କରି) ତାହାକୁ ଅନୁସରଣ କରୁଛନ୍ତି ଯାହାର ଧନସମ୍ପତ୍ତି ଓ ସନ୍ତାନସନ୍ତତି ତାହାକୁ (କେବଳ ଆଧ୍ୟାତ୍ମିକ) କ୍ଷତିରେ ବଢ଼ାଇଛି।"

قَالَ نُوحٌ رَّبِّ إِنَّهُمْ عَصَوْنِي وَاتَّبَعُوا مَن لَّمْ يَزِدْهُ مَالُهُ وَوَلَدُهُ إِلَّا خَسَارًا ۝

୨୩. "ଏବଂ ସେମାନେ (ଆମ ବିରୁଦ୍ଧରେ) ଭୀଷଣ ଚକ୍ରାନ୍ତ କରିଛନ୍ତି।"

وَمَكَرُوا مَكْرًا كُبَّارًا ۝

୨୪. "ଏବଂ (ସେମାନେ ନିଜ ସମ୍ପ୍ରଦାୟକୁ) କହୁଛନ୍ତି, "ତୁମେମାନେ ନିଜ ଉପାସ୍ୟମାନଙ୍କୁ ପରିତ୍ୟାଗ କର ନାହିଁ ; ଓ୍ୱଦ୍‌କୁ ପରିତ୍ୟାଗ କର ନାହିଁ କି ସୁଓ୍ୱାକୁ ପରିତ୍ୟାଗ କର ନାହିଁ, କିମ୍ବା ୟାଗୁସକୁ, କି ୟାଉକକୁ, କି ନସରକୁ [୧] (କାହାରିକୁ ପରିତ୍ୟାଗ କର ନାହିଁ)।"

وَقَالُوا لَا تَذَرُنَّ آلِهَتَكُمْ وَلَا تَذَرُنَّ وَدًّا وَلَا سُوَاعًا وَلَا يَغُوثَ وَيَعُوقَ وَنَسْرًا ۝

୨୫. "ଏବଂ ସେମାନେ ଅନେକ ଲୋକଙ୍କୁ ପଥଭ୍ରଷ୍ଟ କରାଇଲେ ; ଏବଂ (ହେ ଅଲ୍ଲାହ !) ଅତ୍ୟାଚାରୀମାନଙ୍କୁ କେବଳ ବିଫଳତାରେ ହିଁ ବୃଦ୍ଧି କରାଅ।"

وَقَدْ أَضَلُّوا كَثِيرًا ۖ وَلَا تَزِدِ الظَّالِمِينَ إِلَّا ضَلَالًا ۝

୨୬. ସେମାନେ ନିଜ ପାପ ଯୋଗୁଁ ଜଳମଗ୍ନ କରାଗଲେ, ଏବଂ ଅଗ୍ନିରେ ପ୍ରବିଷ୍ଟ କରାଗଲେ ; ଏବଂ ସେମାନେ ଅଲ୍ଲାହଙ୍କ ବ୍ୟତୀତ ଅନ୍ୟ କାହାରିକୁ ନିଜର ସାହାଯ୍ୟକାରୀ ଭାବେ ପାଇ ନ ଥିଲେ।

مِّمَّا خَطِيئَاتِهِمْ أُغْرِقُوا فَأُدْخِلُوا نَارًا فَلَمْ يَجِدُوا لَهُم مِّن دُونِ اللَّهِ أَنصَارًا ۝

୨୭. ଏବଂ ନୁହ ଏହା ମଧ୍ୟ ପ୍ରାର୍ଥନା କରିଥିଲେ, "ହେ ଆମର ପାଳନକର୍ତ୍ତା ! ଅବିଶ୍ୱାସକାରୀମାନଙ୍କର ପୃଥିବୀ ପୃଷ୍ଠରେ କୌଣସି ଗୃହ ବାକି ନ ରହୁ [୨], (ଅର୍ଥାତ୍ ସମସ୍ତେ ବିଶ୍ୱାସ କରନ୍ତୁ)।

وَقَالَ نُوحٌ رَّبِّ لَا تَذَرْ عَلَى الْأَرْضِ مِنَ الْكَافِرِينَ دَيَّارًا ۝

---

୧. ଏହିସବୁ ନାମରେ ମକ୍କା ଓ ତାଏଫର ଲୋକମାନେ ବିଭିନ୍ନ ବିଗ୍ରହ ଗଢ଼ିଥିଲେ। ପ୍ରକୃତରେ ଗ୍ରହ ନକ୍ଷତ୍ର ବା ସେଗୁଡ଼ିକର ରାଶିଚକ୍ର ଅନୁସାରେ ଏହି ସବୁ ନାମ ରଖାଯାଇଛି। ଖ୍ରୀଷ୍ଟିୟାନ ଲେଖକମାନେ ଅଜ୍ଞାନତାର ବଶବର୍ତ୍ତୀ ହୋଇ ମତବ୍ୟକ୍ତ କରୁଛନ୍ତି ଯେ ହଜରତ ମହମ୍ମଦ ମକ୍କାସ୍ଥିତ ବିଗ୍ରହଗୁଡ଼ିକ ହଜରତ ନୁହଙ୍କ ସହିତ ସମ୍ପୃକ୍ତ ଥିବା କହିଛନ୍ତି ଅଥଚ କେତେକ ଭୁଲ ତଥ୍ୟକୁ ଲୋକମାନେ ଅନୁକରଣ ଓ ଅନୁସରଣ କରିଥାନ୍ତି। ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହେବା ପରେ ଲୋକମାନେ ବିଭିନ୍ନ ବିଗ୍ରହ ଗଢ଼ିଥାନ୍ତି। ମକ୍କାବାସୀମାନେ ନିଜ ପିତୃପିତାମହଙ୍କଠାରୁ ବିଭିନ୍ନ ବିଷୟ ଶୁଣି ନିଜ ବିଗ୍ରହଗୁଡ଼ିକର ଏହିପରି ନାମକରଣ କରିଥିଲେ ଯଥା:— ଓ୍ୱଦ୍, ସୁଓ୍ୱା, ୟାଗୁସ୍, ୟାଉକ ଓ ନସର।

୨. ଏଠାରେ ସବୁ ଅବିଶ୍ୱାସକାରୀ ନିହତ ହେବା ବିଷୟରେ ଅଭିଶାପ ଦିଆଯାଇ ନାହିଁ, ବରଂ ସମସ୍ତେ ବିଶ୍ୱାସ କରନ୍ତୁ ଓ କେହି ଅବିଶ୍ୱାସକାରୀ ନ ରହନ୍ତୁ ବୋଲି ପ୍ରାର୍ଥନା କରାଯାଇଛି।

إِنَّكَ إِن تَذَرْهُمْ يُضِلُّوا عِبَادَكَ وَلَا يَلِدُوا إِلَّا فَاجِرًا كَفَّارًا ⑱

୨୮. "ଯଦି ତୁମେ ସେମାନଙ୍କୁ ଏହିପରି ଭାବରେ ଛାଡ଼ିଦେବ, [୧] ତେବେ ସେମାନେ ତୁମର ଅନ୍ୟାନ୍ୟ ଭକ୍ତଙ୍କୁ ମଧ୍ୟ ପଥଭ୍ରଷ୍ଟ କରାଇବେ ଏବଂ ସେମାନେ କେବଳ କୃତଘ୍ନ ଓ ପାପୀ ସନ୍ତାନଙ୍କୁ ଜନ୍ମ ଦେବେ ।"

رَّبِّ اغْفِرْ لِي وَلِوَالِدَيَّ وَلِمَن دَخَلَ بَيْتِيَ مُؤْمِنًا وَلِلْمُؤْمِنِينَ وَالْمُؤْمِنَاتِ وَلَا تَزِدِ الظَّالِمِينَ إِلَّا تَبَارًا ⑲

୨୯. "ହେ ଆମର ପାଳନକର୍ତ୍ତା ! ଆମକୁ ଓ ଆମର ପିତାମାତାଙ୍କୁ ଏବଂ ଏପରି ପ୍ରତ୍ୟେକ ବ୍ୟକ୍ତି ଯେ କି ଆମ ଗୃହରେ ବିଶ୍ୱାସକାରୀ ହୋଇ ପ୍ରବେଶ କରେ, ତାହାକୁ ଏବଂ ସମସ୍ତ ବିଶ୍ୱାସକାରୀ ପୁରୁଷମାନଙ୍କୁ ଓ ବିଶ୍ୱାସକାରିଣୀ ନାରୀମାନଙ୍କୁ ମଧ୍ୟ କ୍ଷମା ପ୍ରଦାନ କର, ଏବଂ ଏପରି ମଧ୍ୟ ହେଉ ଯେ ଅତ୍ୟାଚାରୀମାନେ କେବଳ ବିନାଶରେ ବୃଦ୍ଧି ଲାଭ କରନ୍ତୁ (ଓ ସେମାନଙ୍କୁ ସଫଳତା ପ୍ରାପ୍ତ ନ ହେଉ) ।"




## ଅଲ-ଜିନ୍ନ

ଅଧ୍ୟାୟ ୭୨

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୨୯ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللَّهِ الرَّحْمَٰنِ الرَّحِيمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

قُلْ أُوحِيَ إِلَيَّ أَنَّهُ اسْتَمَعَ نَفَرٌ مِّنَ الْجِنِّ فَقَالُوا إِنَّا سَمِعْنَا قُرْآنًا عَجَبًا ②

୨. ତୁମେ କୁହ, "ଆମକୁ [୨] ଓହି କରାହୋଇଛି ଯେ ଜିନ୍ନମାନଙ୍କ ମଧ୍ୟରୁ କେତେକ ତୁମଠାରୁ (କୋରାନ) ଶୁଣିଛନ୍ତି"; ତେଣୁ (ଯେତେବେଳେ ସେମାନେ ନିଜ ସମ୍ପ୍ରଦାୟ ନିକଟକୁ ଫେରିଗଲେ, ସେତେବେଳେ) ସେମାନେ ନିଜ ସମ୍ପ୍ରଦାୟ ନିକଟରେ କହିଲେ, "ଆମେମାନେ ଏକ ଆଶ୍ଚର୍ଯ୍ୟଜନକ କୋରାନ ଶୁଣିଅଛୁ,"

---

୧. ଅର୍ଥାତ୍ ଯଦି ଏମାନେ ଅବିଶ୍ୱାସ କରିବା ଅବସ୍ଥାରେ ରହିଯିବେ, ତେବେ ଅନ୍ୟମାନଙ୍କୁ ମଧ୍ୟ ଅବିଶ୍ୱାସକାରୀ କରାଇଦେବେ । ଏପରିକି ଯେଉଁ ଶିଶୁ ଜନ୍ମ ହେବେ ସେମାନଙ୍କୁ ମଧ୍ୟ ସିର୍କ କରିବା ଶିଖାଇବେ । ଅବଶ୍ୟ ଏଠାରେ ଏପରି ଅର୍ଥ କରାଯିବା ଠିକ୍ ହେବନାହିଁ ଯେ ଯେଉଁ ଶିଶୁ ଜନ୍ମହେବ ସେ ନିଜ ସହିତ ଅବଜ୍ଞା କରିବା ପ୍ରବୃତ୍ତିକୁ ଘେନି ଆସିଥିବ ।

୨. ଏହା ପୂର୍ବରୁ ମଧ୍ୟ ଜିନମାନଙ୍କର ଆଗମନ ବିଷୟ ଉଲ୍ଲେଖ କରାଯାଇଛି ଏବଂ ସେଠାରେ କୁହାଯାଇଛି ଯେ କେତେକ ଜିନ ହଜରତ ମହମ୍ମଦଙ୍କ ପାଖକୁ ଆସିଥିଲେ । ଏଠାରେ ବର୍ଣ୍ଣନା କରାଯାଇଛି ଯେ କେତେକ ଜିନ କୋରାନ ଶୁଣୁଥିବା ବିଷୟ ତାଙ୍କୁ ଓହି ମାଧ୍ୟମରେ ଅଲ୍ଲାହ ଜଣାଇ ଦେଇଥିଲେ । ତେଣୁ ଉଭୟ ବିଷୟ ସମାନ ନୁହେଁ । ଆଲୋଚ୍ୟ ବିଷୟ ଓ ଜିନମାନଙ୍କ ବିଷୟକୁ ବୁଝିବାପାଇଁ ସୁରା ଅହକାଫର ଆୟତ ୨୨ ଓ ସୁରା ସବାର ଆୟତ ୧୩ ଦ୍ରଷ୍ଟବ୍ୟ । ସୁରା ଅହକାଫରେ ଯେଉଁ ଜିନ୍ନମାନଙ୍କ ବୃତ୍ତାନ୍ତ ଲିପିବଦ୍ଧ ଅଛି ସେମାନେ ଇହୁଦୀ ବୋଲି ଇତିହାସ ଓ ହଦିସରୁ ପ୍ରମାଣ ମିଳୁଛି । ଏଠାରେ ମଧ୍ୟ ମକ୍କା ବାହାରର କେତେକ ଇହୁଦୀଙ୍କୁ ଜିନ ନାମରେ ଅଭିହିତ କରାଯାଇଛି । ସେମାନେ ପବିତ୍ର କୋରାନ ବିଷୟରେ ଅବଗତ ହେବା ପରେ ତାହାକୁ ଶୁଣିବାପାଇଁ ଆସିଥିଲେ, ମାତ୍ର ନିଜ ସମ୍ପ୍ରଦାୟର ଲୋକମାନଙ୍କ ଭୟରେ ତାହାକୁ ଗୋପନରେ ଶୁଣିବା ପରେ ସେଠାରୁ ଚାଲି ଯାଇଥିଲେ ।

يَهْدِيْٓ اِلَى الرُّشْدِ فَاٰمَنَّا بِهٖ ۭ وَلَنْ نُّشْرِكَ بِرَبِّنَآ اَحَدًا ۝

୩. "ତାହା ସତ୍‌ପଥ ଆଡ଼କୁ ଘେନିଯାଏ ଯାହା ଫଳରେ ଆମେମାନେ ସେଥିପ୍ରତି ବିଶ୍ୱାସ କରିଅଛୁ, ଏବଂ ଆମେମାନେ ଭବିଷ୍ୟତରେ କେବେ ହେଲେ ନିଜ ପାଳନକର୍ତ୍ତାଙ୍କ ସହିତ ଅନ୍ୟ କାହାକୁ ସମକକ୍ଷ ମଣିବୁ ନାହି."

وَّاَنَّهٗ تَعٰلٰى جَدُّ رَبِّنَا مَا اتَّخَذَ صَاحِبَةً وَّلَا وَلَدًا ۝

୪. "ଏବଂ ଏହା ସତ୍ୟ ଯେ ଆମମାନଙ୍କ ପାଳନକର୍ତ୍ତା ମହାମହିମମୟ ; ଏବଂ ସେ କେବେ ହେଲେ (କାହାରିକୁ) ପତ୍ନୀ ରୂପେ ଗ୍ରହଣ କରିନାହାନ୍ତି କିମ୍ବା (କାହାରିକୁ) ପୁତ୍ର ରୂପେ ଗ୍ରହଣ କରି ନାହାନ୍ତି ।"[୧]

وَّاَنَّهٗ كَانَ يَقُوْلُ سَفِيْهُنَا عَلَى اللّٰهِ شَطَطًا ۝

୫. "ଏବଂ ଏହା ମଧ୍ୟ ସତ୍ୟ ଯେ ଆମମାନଙ୍କ ମଧ୍ୟରେ ଥିବା ନିର୍ବୋଧ ଲୋକମାନେ ଅଲ୍ଲାହ୍‌ଙ୍କ ସମ୍ବନ୍ଧରେ ଅନ୍ୟାଯ୍ୟ କଥା କହି ଆସୁଥିଲେ ।"

وَّاَنَّا ظَنَنَّآ اَنْ لَّنْ تَقُوْلَ الْاِنْسُ وَالْجِنُّ عَلَى اللّٰهِ كَذِبًا ۝

୬. "ଏବଂ ଆମେମାନେ ଏପରି ଧାରଣା କରିଥିଲୁ ଯେ ମାନବ ଓ ଜିନ୍ନ ଅଲ୍ଲାହ୍‌ଙ୍କ ସଂକ୍ରାନ୍ତରେ ମିଥ୍ୟା କହି ପାରିବେ ନାହିଁ।"

وَّاَنَّهٗ كَانَ رِجَالٌ مِّنَ الْاِنْسِ يَعُوْذُوْنَ بِرِجَالٍ مِّنَ الْجِنِّ فَزَادُوْهُمْ رَهَقًا ۝

୭. "ଏବଂ ଏହା ମଧ୍ୟ ସତ୍ୟ ଯେ ମାନବମାନଙ୍କ ମଧ୍ୟରୁ ଏପରି କେତେକ ଥିଲେ ଯେଉଁମାନେ କେତେକ ଜିନ୍ନଙ୍କ ନିକଟରେ ଆଶ୍ରୟ ଭିକ୍ଷା କରୁଥିଲେ ଯାହା ଫଳରେ (ମାନବ ଜିନ୍ନମାନଙ୍କ ଆଶ୍ରୟ ଭିକ୍ଷା କରିବାରୁ) ଜିନ୍ନମାନଙ୍କର ଅହଙ୍କାର ଅଧିକ ବୃଦ୍ଧି ପାଇଲା ।"

وَّاَنَّهُمْ ظَنُّوْا كَمَا ظَنَنْتُمْ اَنْ لَّنْ يَّبْعَثَ اللّٰهُ اَحَدًا ۝

୮. "ତୁମେମାନେ ଯେପରି ବିଶ୍ୱାସ କରୁଅଛ ଯେ ଅଲ୍ଲାହ୍ କାହାରିକୁ ନବି ରୂପ ପ୍ରେରଣ[୨] କରିବେ ନାହି, ସେହିପରି ସେହି (ଇହୁଦୀ) ଜିନ୍ନମାନେ ମଧ୍ୟ ବିଶ୍ୱାସ କରୁଥିଲେ ।"

وَّاَنَّا لَمَسْنَا السَّمَاۗءَ فَوَجَدْنٰهَا مُلِئَتْ حَرَسًا شَدِيْدًا وَّشُهُبًا ۝

୯. "ଏବଂ ଆମେମାନେ ଆକାଶକୁ ସ୍ପର୍ଶ କରିଅଛୁ (ଅର୍ଥାତ୍ ଆକାଶର ଜ୍ଞାନ ହାସଲ କରିବାକୁ ପ୍ରୟାସ କରିଅଛୁ), ଏବଂ ଆମେମାନେ ତାହାକୁ ବଳବାନ୍ ପ୍ରହରୀ ଓ ଉଲ୍‌କାପିଣ୍ଡରେ ପୂର୍ଣ୍ଣ ଥିବାର ଦେଖିବାକୁ ପାଇଲୁ ।"

---

୧. ଏଥିରୁ ଜଣାପଡୁଛି ଯେ ସେମାନେ ଖ୍ରୀଷ୍ଟିୟାନମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ, କାରଣ ଇହୁଦୀମାନେ ପ୍ରକୃତରେ ଏପରି ବିଶ୍ୱାସ କରୁ ନଥିଲେ ବରଂ ଖ୍ରୀଷ୍ଟିୟାନମାନେ କରୁଥିଲେ। ଇତିହାସରୁ ପ୍ରମାଣ ମିଳୁଛି ଯେ ଯେଉଁ ଯୁଗରେ ଖ୍ରୀଷ୍ଟିୟାନମାନଙ୍କର ଉନ୍ନତି ହୋଇଥିଲା ସେତେବେଳେ କେତେକ ଇହୁଦୀ ସେମାନଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ।

୨. ସେମାନେ ଯେ ଇହୁଦୀ, ଏହାର ପ୍ରମାଣ ପବିତ୍ର କୋରାନରୁ ମିଳୁଛି । ପବିତ୍ର କୋରାନରେ ଏହିପରି ଉଲ୍ଲେଖ ଅଛି – ଯେତେବେଳେ ହଜରତ ୟୁସୁଫ ପ୍ରାଣତ୍ୟାଗ କଲେ ସେତେବେଳେ ଲୋକମାନେ କହିଥିଲେ ଯେ ଭବିଷ୍ୟତରେ ଅନ୍ୟ କୌଣସି ରସୁଲ ଆସିବେ ନାହି (୪୦: ୩୫ ଦ୍ରଷ୍ଟବ୍ୟ) । ଏଠାରେ ମଧ୍ୟ ଏହି ଜିନ୍ନମାନଙ୍କ ମୁହଁରେ ଅନୁରୂପ ମନ୍ତବ୍ୟର ପୁନରାବୃତ୍ତି କରାଯାଇଛି ଯେ ଭବିଷ୍ୟତରେ ଅଲ୍ଲାହ୍ ଅନ୍ୟ କୌଣସି ବ୍ୟକ୍ତିଙ୍କୁ ରସୁଲ ନିଯୁକ୍ତ କରିବେ ନାହି, କାରଣ 'ଖାତମୁନ ନବୀଇନ' ଆସି ଯାଇଛନ୍ତି । ତେଣୁ ମୁସଲମାନମାନେ ଏହି ଆୟତକୁ ଅନୁଧ୍ୟାନ କରନ୍ତୁ ତଥା ନିଜ ପରିଣାମ ବିଷୟରେ ଚିନ୍ତା କରନ୍ତୁ ।

୧୦. "ଏବଂ ଆମେମାନେ ସେଠାରେ (ଆକାଶର କଥା) ଶୁଣିବା ପାଇଁ (ପୂର୍ବେ) ବସୁଥିଲୁ, କିନ୍ତୁ ଏବେ ଯେଉଁ ବ୍ୟକ୍ତି (ଆକାଶର କଥା) ଶୁଣିବାକୁ ପ୍ରୟାସ କରୁଛି ସେ ଏକ ବିନାଶକାରୀ ଜ୍ୱଳନ୍ତ ନକ୍ଷତ୍ରକୁ ତା'ପାଇଁ ଅପେକ୍ଷମାଣ ଥିବାର ଦେଖିବାକୁ ପାଉଛି।"[୧]

وَّاَنَّا كُنَّا نَقْعُدُ مِنْهَا مَقَاعِدَ لِلسَّمْعِ فَمَنْ يَّسْتَمِعِ الْاٰنَ يَجِدْ لَهٗ شِهَابًا رَّصَدًا ۝١٠

୧୧. "ଏବଂ ଆମେମାନେ ଜାଣିନାହୁଁ ଯେ ଏହି ଆଗନ୍ତୁକଙ୍କ ମାଧ୍ୟମରେ ପୃଥିବୀବାସୀଙ୍କ ପାଇଁ କୌଣସି, ଶାସ୍ତି ସମ୍ବନ୍ଧରେ ନିଷ୍ପତ୍ତି କରାଯାଇଅଛି କିମ୍ବା ସେମାନଙ୍କ ପାଳନକର୍ତ୍ତା (ସେମାନଙ୍କୁ) ସତ୍‌ପଥ ପ୍ରଦର୍ଶନ କରାଇବାକୁ ନିଷ୍ପତ୍ତି କରିଛନ୍ତି।"

وَّاَنَّا لَا نَدْرِيْٓ اَشَرٌّ اُرِيْدَ بِمَنْ فِي الْاَرْضِ اَمْ اَرَادَ بِهِمْ رَبُّهُمْ رَشَدًا ۝١١

୧୨. "ଏବଂ ଆମମାନଙ୍କ ମଧ୍ୟରେ କେତେକ ମଧ୍ୟ ପୁଣ୍ୟବାନ୍ ଅଛନ୍ତି ଏବଂ କେତେକ ଏହାର ବିପରୀତ ଅଟନ୍ତି ; ଆମେମାନେ ଭିନ୍ନ ଭିନ୍ନ ମାର୍ଗରେ ଯାଉଥିଲୁ।"

وَّاَنَّا مِنَّا الصّٰلِحُوْنَ وَمِنَّا دُوْنَ ذٰلِكَ كُنَّا طَرَآئِقَ قِدَدًا ۝١٢

୧୩. "ଏବଂ ଆମେମାନେ ବିଶ୍ୱାସ କରୁଥିଲୁ ଯେ ଆମେମାନେ ସଂସାରରେ ଅଲ୍ଲାହଙ୍କୁ ଅକୃତକାର୍ଯ୍ୟ କରାଇ ପାରିବୁ ନାହିଁ କିମ୍ବା ପଳାୟନ କରି ତାହାକୁ ଅକୃତକାର୍ଯ୍ୟ କରାଇ ପାରିବୁ ନାହିଁ।"

وَّاَنَّا ظَنَنَّآ اَنْ لَّنْ نُّعْجِزَ اللّٰهَ فِي الْاَرْضِ وَلَنْ نُّعْجِزَهٗ هَرَبًا ۝١٣

୧୪. "ଏବଂ ଆମେମାନେ ଯେତେବେଳେ ଉପଦେଶମୂଳକ ବାଣୀ ଶୁଣିଲୁ, ସେତେବେଳେ ହିଁ ତାହା ପ୍ରତି ବିଶ୍ୱାସ କଲୁ ; ଏବଂ ଯେକେହି ନିଜ ପାଳନକର୍ତ୍ତାଙ୍କ ଉପରେ ବିଶ୍ୱାସ କରେ,ସେ କୌଣସି କ୍ଷତି ସମ୍ବନ୍ଧରେ ଭୟ କରେ ନାହିଁ କି କୌଣସି ଅତ୍ୟାଚାର ସମ୍ବନ୍ଧରେ ଭୟଭୀତ ହୁଏ ନାହିଁ।"

وَّاَنَّا لَمَّا سَمِعْنَا الْهُدٰٓى اٰمَنَّا بِهٖ فَمَنْ يُّؤْمِنْ بِرَبِّهٖ فَلَا يَخَافُ بَخْسًا وَّلَا رَهَقًا ۝١٤

୧୫. "ଏବଂ ଆମମାନଙ୍କ ମଧ୍ୟରେ କେତେକ ଆଜ୍ଞାବହ ଓ କେତେକ ଅତ୍ୟାଚାରୀ ଅଛନ୍ତି ;" ଏବଂ ଯେ କେହି ଆଜ୍ଞାବହ ହୁଏ,ସେ ହିଁ ସତ୍‌ପଥର ଅନ୍ୱେଷଣକାରୀ।

وَّاَنَّا مِنَّا الْمُسْلِمُوْنَ وَمِنَّا الْقٰسِطُوْنَ فَمَنْ اَسْلَمَ فَاُولٰٓئِكَ تَحَرَّوْا رَشَدًا ۝١٥

୧୬. ଏବଂ ଯେଉଁମାନେ ଅତ୍ୟାଚାର କରନ୍ତି, ସେହିମାନେ ହିଁ ନରକର ଇନ୍ଧନ ହେବେ।

وَاَمَّا الْقٰسِطُوْنَ فَكَانُوْا لِجَهَنَّمَ حَطَبًا ۝١٦

୧୭. ଏବଂ (ହେ ବାର୍ତ୍ତାବହ ! ଆମେ ନିଷ୍ପତ୍ତି କରିଥିଲୁ ଯେ) ଯଦି ଏ (ମେକ୍‌କାବାସୀ ଅବିଶ୍ୱାସକାରୀ)ମାନେ ଆମର ପ୍ରଦର୍ଶିତ ପନ୍ଥାକୁ ଗ୍ରହଣ କରି ନିଅନ୍ତେ ତାହା ହେଲେ ଆମେ ସେମାନଙ୍କୁ ପ୍ରଚୁର ଜଳ ପାନ କରିବାକୁ ଦିଅନ୍ତୁ,

وَّاَنْ لَّوِ اسْتَقَامُوْا عَلَى الطَّرِيْقَةِ لَاَسْقَيْنٰهُمْ مَّآءً غَدَقًا ۝١٧

---

୧. ଅର୍ଥାତ୍ ଯେପରି ପୂର୍ବରୁ ବର୍ଣ୍ଣନା କରାଯାଇଛି ସେହିପରି ଯଦି କୌଣସି ବ୍ୟକ୍ତି ଇସଲାମ ଧର୍ମରେ କିଛି ଅପମିଶ୍ରଣ କରିବାକୁ ଇଚ୍ଛା କରେ ତେବେ ଅଲ୍ଲାହ ତାହାକୁ ବିନାଶ କରିବାପାଇଁ ବ୍ୟବସ୍ଥା କରିଥାନ୍ତି।

୧୮. ଯଦ୍ଦ୍ୱାରା ଏହା ମାଧ୍ୟମରେ ସେମାନଙ୍କୁ ପରୀକ୍ଷା କରିପାରିବୁ, ଏବଂ ଯେ କେହି ନିଜ ପାଳନକର୍ତ୍ତାଙ୍କୁ ସ୍ମରଣ କରିବାରେ ବିମୁଖ ହୁଏ, ସେ (ଅଲ୍ଲାହ) ତାହାକୁ ଏପରି ଶାସ୍ତିଦାୟକ ରାସ୍ତାରେ ପରିଚାଳିତ କରନ୍ତି ଯାହା ବଢ଼ି ଚାଲିଥାଏ (ଏବଂ ସେମାନେ ସେହି ପନ୍ଥାକୁ ଗ୍ରହଣ କରିଛନ୍ତି)।

لِنَفْتِنَهُمْ فِيهِ ۚ وَمَنْ يُعْرِضْ عَنْ ذِكْرِ رَبِّهِ يَسْلُكْهُ عَذَابًا صَعَدًا ﴿١٧﴾

୧୯. ଏବଂ (ଆମେ ଆହୁରି ମଧ୍ୟ ନିଷ୍ପତ୍ତି କରିଥିଲୁ ଯେ) ମସଜିଦଗୁଡ଼ିକ କେବଳ ଅଲ୍ଲାହଙ୍କ (ଉପାସନା) ପାଇଁ ଉଦ୍ଦିଷ୍ଟ ; ସୁତରାଂ ହେ ଲୋକମାନେ ! ତାହାଙ୍କ ବ୍ୟତୀତ ସେଠାରେ ଅନ୍ୟ କାହାରିକୁ ଡାକ ନାହିଁ।

وَأَنَّ الْمَسَاجِدَ لِلَّهِ فَلَا تَدْعُوا مَعَ اللَّهِ أَحَدًا ﴿١٨﴾

୨୦. ଏବଂ ଆମେ ଦେଖିପାରୁଛୁ ଯେ ଯେତେବେଳେ ଅଲ୍ଲାହଙ୍କର ଭକ୍ତ (ହଜରତ ମହମ୍ମଦ) ତାହାଙ୍କୁ ଡାକିବାକୁ ଦଣ୍ଡାୟମାନ ହୁଅନ୍ତି, ସେତେବେଳେ ସେ (ମକ୍କାବାସୀ)ମାନେ ତାହାଙ୍କ ଉପରକୁ ଲମ୍ଫ ପ୍ରଦାନ କରନ୍ତି।

وَأَنَّهُ لَمَّا قَامَ عَبْدُ اللَّهِ يَدْعُوهُ كَادُوا يَكُونُونَ عَلَيْهِ لِبَدًا ﴿١٩﴾

ରୁ : ୨

୨୧. ତୁମେ କୁହ, "ଆମେ ତ କେବଳ ନିଜ ପାଳନକର୍ତ୍ତାଙ୍କୁ ଡାକୁଅଛୁ, ଏବଂ ତାହାଙ୍କ ସହିତ କାହାରିକୁ ସମକକ୍ଷ ମନେ କରୁ ନାହୁଁ।"

قُلْ إِنَّمَا أَدْعُو رَبِّي وَلَا أُشْرِكُ بِهِ أَحَدًا ﴿٢٠﴾

୨୨. ଏବଂ (ତୁମେ) ଏହା ମଧ୍ୟ କୁହ, "ତୁମମାନଙ୍କର କୌଣସି ପ୍ରକାର କ୍ଷତି କରିବାକୁ ବା ତୁମମାନଙ୍କୁ ସତ୍‌ପଥ ପ୍ରଦର୍ଶନ କରାଇବାକୁ ଆମ ଠାରେ ଶକ୍ତି ନାହିଁ।"

قُلْ إِنِّي لَا أَمْلِكُ لَكُمْ ضَرًّا وَلَا رَشَدًا ﴿٢١﴾

୨୩. (ବରଂ ଏହା ମଧ୍ୟ) କୁହ, "(ଯେ ଯଦି ଅଲ୍ଲାହ ଆମ ପ୍ରତି ଶାସ୍ତି ପ୍ରେରଣ କରିବେ, ତେବେ) ଆମକୁ ଅଲ୍ଲାହଙ୍କ ଶାସ୍ତିରୁ ରକ୍ଷାକରିବା ସକାଶେ କେହି ନାହିଁ, ଏବଂ ତାହାଙ୍କ ବିନା ଆମେ କୌଣସି ଆଶ୍ରୟସ୍ଥଳ ପାଉ ନାହୁଁ।"

قُلْ إِنِّي لَنْ يُجِيرَنِي مِنَ اللَّهِ أَحَدٌ وَلَنْ أَجِدَ مِنْ دُونِهِ مُلْتَحَدًا ﴿٢٢﴾

୨୪. "ଅଲ୍ଲାହଙ୍କ ବାଣୀ ତଥା ବାର୍ତ୍ତାକୁ ପହଞ୍ଚାଇ ଦେବା ହିଁ ଆମର କର୍ତ୍ତବ୍ୟ ;" ଏବଂ ଯେଉଁମାନେ ଅଲ୍ଲାହ ଓ ତାହାଙ୍କ ରସୁଲଙ୍କ କଥା ମାନନ୍ତି ନାହିଁ, ସେମାନଙ୍କୁ ନରକ ପ୍ରାପ୍ତ ହୁଏ ଓ ସେମାନେ ସେଠାରେ ବହୁକାଳ ରହିବେ।

إِلَّا بَلَاغًا مِنَ اللَّهِ وَرِسَالَاتِهِ ۚ وَمَنْ يَعْصِ اللَّهَ وَرَسُولَهُ فَإِنَّ لَهُ نَارَ جَهَنَّمَ خَالِدِينَ فِيهَا أَبَدًا ﴿٢٣﴾

حَتّٰۤى اِذَا رَاَوْا مَا يُوْعَدُوْنَ فَسَيَعْلَمُوْنَ مَنْ اَضْعَفُ نَاصِرًا وَّاَقَلُّ عَدَدًا ﴿۲۵﴾

୨୫. ଅବଶ୍ୟ ଯେତେବେଳେ ସେମାନେ ପ୍ରତିଶ୍ରୁତ ଶାସ୍ତିକୁ ଦେଖିବେ, ସେତେବେଳେ ଜାଣିପାରିବେ (ଯେ ସେମାନଙ୍କ ଓ ହଜରତ ମହମ୍ମଦଙ୍କ ମଧ୍ୟରେ ଥିବା ବିବାଦ ପରିପ୍ରେକ୍ଷୀରେ) ସାହାଯ୍ୟକାରୀ ଦୃଷ୍ଟିରୁ କିଏ ଦୁର୍ବଳ ଓ ସଂଖ୍ୟା ଦୃଷ୍ଟିରୁ କିଏ ନ୍ୟୂନ [୧] ।

قُلْ اِنْ اَدْرِيْۤ اَقَرِيْبٌ مَّا تُوْعَدُوْنَ اَمْ يَجْعَلُ لَهٗ رَبِّيْۤ اَمَدًا ﴿۲۶﴾

୨୬. ତୁମେ କୁହ, "ଆମେ ଜାଣି ନାହୁଁ ଯେ ତୁମମାନଙ୍କର ପ୍ରତିଶ୍ରୁତ ସମୟ ନିକଟବର୍ତ୍ତୀ କି ଅଲ୍ଲାହ ଏଥି ସକାଶେ କୌଣସି ଦୀର୍ଘ ସମୟ ନିର୍ଦ୍ଧାରିତ କରିବେ ।"

عٰلِمُ الْغَيْبِ فَلَا يُظْهِرُ عَلٰى غَيْبِهٖۤ اَحَدًا ﴿۲۷﴾

୨୭. ସେ ହିଁ ଅଦୃଷ୍ଟ ବିଷୟକୁ ଜାଣିଥା'ନ୍ତି, ଏବଂ ସେ ନିଜ ଗୁପ୍ତ ଜ୍ଞାନକୁ କାହାରି ନିକଟରେ ପ୍ରକାଶ କରନ୍ତି ନାହିଁ ।

اِلَّا مَنِ ارْتَضٰى مِنْ رَّسُوْلٍ فَاِنَّهٗ يَسْلُكُ مِنْۢ بَيْنِ يَدَيْهِ وَمِنْ خَلْفِهٖ رَصَدًا ﴿۲۸﴾

୨୮. (ଅବଶ୍ୟ) ଏପରି ରସୁଲଙ୍କ ବ୍ୟତୀତ ସେ ଯାହାଙ୍କୁ ଏହି କାର୍ଯ୍ୟ ସକାଶେ ପସନ୍ଦ କରନ୍ତି [୨] ; ଏବଂ ରସୁଲଙ୍କ ମର୍ଯ୍ୟାଦା ଏପରି ଯେ ତାହାଙ୍କ ଦକ୍ଷିଣ ପାର୍ଶ୍ୱରେ ଓ ପଶ୍ଚାତରେ ଅଙ୍ଗରକ୍ଷକ ଦେବଦୂତମାନଙ୍କ ଦଳ ଗମନ କରୁଥା'ନ୍ତି,

لِّيَعْلَمَ اَنْ قَدْ اَبْلَغُوْا رِسٰلٰتِ رَبِّهِمْ وَاَحَاطَ بِمَا لَدَيْهِمْ وَاَحْصٰى كُلَّ شَيْءٍ عَدَدًا ﴿۲۹﴾

୨୯. ଯଦ୍ଦ୍ୱାରା ଅଲ୍ଲାହ ଜାଣିପାରିବେ ଯେ ସେ (ରସୁଲ)ମାନେ [୩] ନିଜ ପାଳନକର୍ତ୍ତାଙ୍କ ବାର୍ତ୍ତା ଲୋକମାନଙ୍କ ନିକଟରେ ପହଞ୍ଚାଇ ଦେଇଛନ୍ତି ; ଏବଂ ଯାହା କିଛି ସେମାନଙ୍କ ନିକଟରେ ଅଛି ସେ ତାହାକୁ ପରିବେଷ୍ଟନ କରି ରଖିଥା'ନ୍ତି ଓ ସବୁଗୁଡ଼ିକୁ ଗଣି ରଖନ୍ତି ।

---

୧. ଅର୍ଥାତ୍ ନିର୍ଦ୍ଧାରିତ ସମୟ ଉପନୀତ ହେବା ସଙ୍ଗେ ସଙ୍ଗେ ହଜରତ ମହମ୍ମଦଙ୍କ ଅନୁଗାମୀମାନଙ୍କର ସଂଖ୍ୟା ବୃଦ୍ଧି ହେବ ଓ ଅବିଶ୍ୱାସକାରୀମାନଙ୍କର ସଂଖ୍ୟା ହ୍ରାସ ହେବ । ବାସ୍ତବରେ ତାହା ହିଁ ହୋଇଛି । ଏହା ଏକ ମହାନ୍ ଭବିଷ୍ୟବାଣୀ ଓ ଯଥା ସମୟରେ ଏହା ସତ୍ୟସାବ୍ୟସ୍ତ ହୋଇଛି । ଏହାର ବିଶେଷତ୍ୱ ହେଉଛି ଯେ ଏହି ଅଧ୍ୟାୟ ମକ୍କାରେ ଯେତେବେଳେ ଅବତୀର୍ଣ୍ଣ ହୋଇଥିଲା ସେତେବେଳେ ମୁସଲମାନମାନେ ସଂଖ୍ୟାଲଘୁ ଓ ଅତ୍ୟନ୍ତ ଦୁର୍ବଳ ଥିଲେ ।

୨. ଅର୍ଥାତ୍ ସେ ତାହାଙ୍କୁ ଯଥେଷ୍ଟ ପରିମାଣରେ ଅଦୃଷ୍ଟ ବିଷୟରେ ଜ୍ଞାନ ପ୍ରଦାନ କରିଥାନ୍ତି ।

୩. ଏଠାରେ ବହୁବଚନ ପ୍ରୟୋଗ କରାଯାଇଥିଲେ ମଧ୍ୟ ଏହା ହଜରତ ମହମ୍ମଦଙ୍କୁ ବୁଝାଉଛି ।

سُوْرَةُ الْمُزَّمِّلِ مَكِّيَّةٌ

## ଅଲ-ମୁଜମ୍ମିଲ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାଃ ସମେତ ୨୧ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାଃଙ୍କ ନାମ ନେଇ (ପାଠ କରୁଅଛି) ।

يٰٓاَيُّهَا الْمُزَّمِّلُ ②

୨. ହେ ବସ୍ତ୍ରରେ ଆବୃତ (ଓ ଅଲ୍ଲାଃଙ୍କ କରୁଣା ଆଶାୟୀ) ବ୍ୟକ୍ତି !

قُمِ الَّيْلَ اِلَّا قَلِيْلًا ③

୩. ରାତିରେ ଉଠି ଉପାସନା କର (ଅର୍ଥାତ୍ ରାତ୍ରିର ଅଧିକାଂଶ ଭାଗ ଉପାସନାରେ ବ୍ୟୟ କର)—

نِّصْفَهٗٓ اَوِ انْقُصْ مِنْهُ قَلِيْلًا ④

୪. ଅର୍ଥାତ୍ ତାହାର ଅଧା ବା ଅଧାଠାରୁ କିଛି କମ କରି ଦିଅ ; [୧]

اَوْ زِدْ عَلَيْهِ وَرَتِّلِ الْقُرْاٰنَ تَرْتِيْلًا ⑤

୫. କିମ୍ବା ତା'ଠାରୁ କିଛି ଅଧିକ କରିଦିଅ, ଏବଂ ସୁଲଳିତ କଣ୍ଠରେ କୋରାନ ପାଠ କର ।

اِنَّا سَنُلْقِيْ عَلَيْكَ قَوْلًا ثَقِيْلًا ⑥

୬. ଆମେ ତୁମ ଉପରେ ଏପରି ଏକ ବାଣୀ ଅବତୀର୍ଣ୍ଣ କରିବୁ ଯାହା (ଦାୟିତ୍ୱ ଦୃଷ୍ଟିରୁ) ଗୁରୁଭାରଯୁକ୍ତ ।

اِنَّ نَاشِئَةَ الَّيْلِ هِيَ اَشَدُّ وَطْاً وَّاَقْوَمُ قِيْلًا ⑦

୭. ରାତିରେ (ଶଯ୍ୟା ତ୍ୟାଗକରି) ଉଠିବା ନିଜ କୁପ୍ରବୃତ୍ତିକୁ ଦମନ କରିବାର ପ୍ରକୃଷ୍ଟ ପନ୍ଥା ଏବଂ ରାତ୍ରିରେ ଜାଗ୍ରତ ରହୁଥିବା ବ୍ୟକ୍ତି ସତ୍ୟ କହିବାରେ ମଧ୍ୟ ଅଭ୍ୟସ୍ତ ହୋଇଯାଏ । [୨]

اِنَّ لَكَ فِي النَّهَارِ سَبْحًا طَوِيْلًا ⑧

୮. ଦିନରେ ତୁମର ଅନେକ କାର୍ଯ୍ୟ ଥାଏ । [୩]

وَاذْكُرِ اسْمَ رَبِّكَ وَتَبَتَّلْ اِلَيْهِ تَبْتِيْلًا ⑨

୯. ତୁମେ ନିଜ ପାଳନକର୍ତ୍ତାଙ୍କ ଗୁଣାବଳୀକୁ ସ୍ମରଣ କରିବା ଓ ତାହାଙ୍କ ଠାରେ ମନୋନିବେଶ କରିବା ଉଚିତ୍ ।

---

୧. ସବୁ ସ୍ଥାନରେ ସବୁ ସମୟରେ ଦିନରାତି ସମାନ ନୁହେଁ । ତେଣୁ ରାତି ବହୁତ ଛୋଟ ହୋଇଥିଲେ ସ୍ୱାସ୍ଥ୍ୟ ପ୍ରତି ଉପଯୁକ୍ତ ଦୃଷ୍ଟି ଦେଇ କୌଣସି ବ୍ୟକ୍ତି ଅଳ୍ପ ସମୟ ପାଇଁ ଉଜାଗର ରହିପାରନ୍ତି । ଯଦି ଦିନ ଓ ରାତି ପ୍ରାୟ ସମାନ ହୋଇଥାଏ ତେବେ ରାତିର ଅର୍ଦ୍ଧେକ ଭାଗ ଉଜାଗର ରହିବାକୁ ଏବଂ ଅନ୍ୟ ଅର୍ଦ୍ଧେକ ଭାଗରେ ନିଦ୍ରା ଯିବାକୁ ଅଲ୍ଲାଃ ନିର୍ଦ୍ଦେଶ ଦେଇଛନ୍ତି । ଯଦି ରାତି ଦୀର୍ଘ ହୋଇଥାଏ,ତେବେ ଅଧିକ ସମୟ ଜାଗ୍ରତ ରହିବାକୁ ଓ କମ ସମୟ ନିଦ୍ରା ଯିବାକୁ ନିର୍ଦ୍ଦେଶ ଦିଆଯାଇଛି । ନିଦ୍ରା ତ୍ୟାଗ କରିବା ପରେ ପବିତ୍ର କୋରାନ ଆବୃତ୍ତି କରିବାକୁ ମଧ୍ୟ ଅଲ୍ଲାଃ ନିର୍ଦ୍ଦେଶ ଦେଇଛନ୍ତି ।

୨. ଉପାସନା ଯୋଗୁଁ ତାର ଆଧ୍ୟାତ୍ମିକତା ପୂର୍ଣ୍ଣତା ଲାଭକରେ ଏବଂ ସେ ମିଥ୍ୟାକୁ ପରିହାର କରିବାକୁ ଚେଷ୍ଟିତ ହୁଏ ।

୩. ରାତିରେ ଉପାସନା କରିବାକୁ ହଜରତ ମହମ୍ମଦଙ୍କୁ ଏଥିଲାଗି ନିର୍ଦ୍ଦେଶ ଦିଆଯାଇଥିଲା ଯେହେତୁ ଦିନବେଳେ ଲୋକମାନେ ହଜରତ ମହମ୍ମଦଙ୍କ ସହିତ ଦେଖାସାକ୍ଷାତ୍ କରୁଥିଲେ, ନିଜର ସାଂସାରିକ ଆବଶ୍ୟକତାକୁ ତାଙ୍କ ନିକଟରେ ଉପସ୍ଥାପନ କରୁଥିଲେ ବା ଧର୍ମ ବିଷୟରେ ବିଭିନ୍ନ ପ୍ରଶ୍ନ ପଚାରୁଥିଲେ ।

ଏଠାରେ 'ସବ୍‌ହନ' ଶବ୍ଦ ବ୍ୟବହାର କରାଯାଇଛି ଯହିଁରୁ ପହଁରିବା ବା ବହୁଦୂର ପର୍ଯ୍ୟନ୍ତ ଯିବା ଅର୍ଥ ବାହାରେ । ଏଠାରେ ଧର୍ମଜ୍ଞାନ ବିକିରଣ କରାଯିବାର ବର୍ଣ୍ଣନା ଅଛି, କାରଣ ହଜରତ ମହମ୍ମଦଙ୍କୁ ବିଶେଷ ଭାବରେ ଏହି ଜ୍ଞାନ ପ୍ରଦାନ କରାଯାଇଥିଲା । ସେ ତାହାର ପ୍ରଚାର ଓ ପ୍ରସାର ପାଇଁ ଅହୋରାତ୍ର ଉଦ୍ୟମ କରୁଥିଲେ । ବସ୍ତୁତଃ ପବିତ୍ର କୋରାନ ତାଙ୍କ ହୃଦୟର ଅଭ୍ୟନ୍ତରରେ ପ୍ରବେଶ କରି ସାରିଥିଲା, ଯଦ୍ଦ୍ୱାରା ସେ ପ୍ରତ୍ୟେକ ସମସ୍ୟାର ସମାଧାନ ବିଷୟରେ ସହଜରେ ବର୍ଣ୍ଣନା କରିପାରୁଥିଲେ ।

رَّبُّ الْمَشْرِقِ وَالْمَغْرِبِ لَا إِلَٰهَ إِلَّا هُوَ فَاتَّخِذْهُ وَكِيلًا ﴿١٠﴾

୧୦. ସେ ହିଁ ପୂର୍ବ ଓ ପଶ୍ଚିମର ପାଳନକର୍ତ୍ତା ; ତାହାଙ୍କ ବ୍ୟତୀତ (ଅନ୍ୟ) କେହି ଉପାସ୍ୟ ନାହିଁ ; ସୁତରାଂ ତାହାଙ୍କୁ ହିଁ ନିଜର କାର୍ଯ୍ୟ ସମ୍ପାଦନକାରୀ ନିରୂପିତ କର ।

وَاصْبِرْ عَلَىٰ مَا يَقُولُونَ وَاهْجُرْهُمْ هَجْرًا جَمِيلًا ﴿١١﴾

୧୧. ଏବଂ ସେମାନେ ଯାହା କିଛି (ତୁମ୍ଭ ବିରୁଦ୍ଧରେ) କହୁଛନ୍ତି ସେଥି ପ୍ରତି ଧୈର୍ଯ୍ୟ ଧାରଣ କର, ଏବଂ ଭଦ୍ର ଭାବରେ ସେମାନଙ୍କ ଠାରୁ ଦୂରେଇ ଯାଅ ।

وَذَرْنِي وَالْمُكَذِّبِينَ أُولِي النَّعْمَةِ وَمَهِّلْهُمْ قَلِيلًا ﴿١٢﴾

୧୨. ଏବଂ ଯେଉଁମାନେ ଅସ୍ୱୀକାର କରୁଛନ୍ତି ତଥା ପ୍ରାଚୁର୍ଯ୍ୟ ମଧ୍ୟରେ ଅଛନ୍ତି ସେମାନଙ୍କୁ ଓ ଆମ୍ଭଙ୍କୁ ଏକାକୀ ଛାଡ଼ି ଦିଅ, ଏବଂ ତୁମେ ସେମାନଙ୍କୁ କିଛି ଅବସର ଦିଅ (ଏବଂ ସେମାନଙ୍କର ଶୀଘ୍ର ବିନାଶ ପାଇଁ ପ୍ରାର୍ଥନା କର ନାହିଁ କାରଣ ଆମ୍ଭେ ନିଜେ ସେମାନଙ୍କୁ ବିନାଶ କରିଦେବୁ) ।

إِنَّ لَدَيْنَا أَنكَالًا وَجَحِيمًا ﴿١٣﴾

୧୩. ଆମ୍ଭ ନିକଟରେ ବିଭିନ୍ନ ପ୍ରକାରର ବେଡ଼ି ଓ ନରକ ରହିଅଛି,

وَطَعَامًا ذَا غُصَّةٍ وَعَذَابًا أَلِيمًا ﴿١٤﴾

୧୪. ଏବଂ ଏପରି ଖାଦ୍ୟ ଅଛି ଯାହା ଗଳାରେ ଅଟକି ଯାଏ, ଏବଂ ଯନ୍ତ୍ରଣାଦାୟକ ଶାସ୍ତି ମଧ୍ୟ ରହିଅଛି ।

يَوْمَ تَرْجُفُ الْأَرْضُ وَالْجِبَالُ وَكَانَتِ الْجِبَالُ كَثِيبًا مَّهِيلًا ﴿١٥﴾

୧୫. ଯେଉଁ ଦିନ ପୃଥିବୀ ଓ ପର୍ବତ ପ୍ରକମ୍ପିତ ହେବ ଏବଂ ପର୍ବତଗୁଡ଼ିକ ଏପରି ବାଲୁକାସ୍ତୂପ ସଦୃଶ ହୋଇ ଯିବ ଯାହା ଆପେ ଆପେ ଖସି ପଡୁଥିବ (ସେହି ଦିନ ଉକ୍ତ ଶାସ୍ତି ଉପସ୍ଥିତ ହେବ) ।

إِنَّا أَرْسَلْنَا إِلَيْكُمْ رَسُولًا شَاهِدًا عَلَيْكُمْ كَمَا أَرْسَلْنَا إِلَىٰ فِرْعَوْنَ رَسُولًا ﴿١٦﴾

୧୬. ହେ ଲୋକମାନେ ! ଆମ୍ଭେ ତୁମମାନଙ୍କ ନିକଟକୁ ଏପରି ଜଣେ ରସୁଲଙ୍କୁ ପ୍ରେରଣ କରିଅଛୁ ଯେ କି ତୁମମାନଙ୍କର ତତ୍ତ୍ୱାବଧାରକ ଅଟନ୍ତି, ଯେପରି ଆମ୍ଭେ ଫିରଔନ ନିକଟକୁ ରସୁଲ ପ୍ରେରଣ କରିଥିଲୁ ।

فَعَصَىٰ فِرْعَوْنُ الرَّسُولَ فَأَخَذْنَاهُ أَخْذًا وَبِيلًا ﴿١٧﴾

୧୭. କିନ୍ତୁ ଫିରଔନ ସେହି ରସୁଲଙ୍କୁ ଅବଜ୍ଞା କରିଥିଲା, ଏବଂ ଆମ୍ଭେ ତାହାକୁ ଏକ ଭୟାନକ ଶାସ୍ତିରେ କବଳିତ କରିଥିଲୁ ।

فَكَيْفَ تَتَّقُونَ إِن كَفَرْتُمْ يَوْمًا يَجْعَلُ الْوِلْدَانَ شِيبًا ﴿١٨﴾

୧୮. ଏବଂ କୁହ ତ ଭଲା ! ଯଦି ତୁମେ ସେହି ଦିନକୁ ଅବିଶ୍ୱାସ କର ଯାହା ଯୁବକମାନଙ୍କୁ ବୃଦ୍ଧ କରିଥାଏ, ତେବେ ତୁମେମାନେ କିପରି (ସେହି ଶାସ୍ତିରୁ) ରକ୍ଷା ପାଇବ ?

ۨالسَّمَآءُ مُنْفَطِرٌۢ بِهٖ ؕ كَانَ وَعْدُهٗ مَفْعُوْلًا ﴿۱۹﴾

୧୯. ସେ ଶାସ୍ତି ଦ୍ୱାରା ଆକାଶ ନିଜେ ନିଜେ ଫାଟି ଯିବ ; ଏହା ତାହାଙ୍କର ଅଙ୍ଗୀକାର, ଯାହା ଅବଶ୍ୟ କାର୍ଯ୍ୟରେ ପରିଣତ ହେବ ।

اِنَّ هٰذِهٖ تَذْكِرَةٌ ۚ فَمَنْ شَآءَ اتَّخَذَ اِلٰى رَبِّهٖ سَبِيْلًا ﴿۲۰﴾

୨୦. ଏହା (ଅର୍ଥାତ୍ ଏହି କୋରାନ) ଏକ ଉପଦେଶ ; ସୁତରାଂ ଯାହାର ଇଚ୍ଛା ସେ ନିଜ ପାଳନକର୍ତ୍ତାଙ୍କ ଆଡ଼କୁ ଯାଇଥିବା ପଥ ଗ୍ରହଣ କରି ନେଉ ।

ରୁ : ୨

اِنَّ رَبَّكَ يَعْلَمُ اَنَّكَ تَقُوْمُ اَدْنٰى مِنْ ثُلُثَيِ الَّيْلِ وَنِصْفَهٗ وَثُلُثَهٗ وَطَآئِفَةٌ مِّنَ الَّذِيْنَ مَعَكَ ؕ وَاللّٰهُ يُقَدِّرُ الَّيْلَ وَالنَّهَارَ ؕ عَلِمَ اَنْ لَّنْ تُحْصُوْهُ فَتَابَ عَلَيْكُمْ فَاقْرَءُوْا مَا تَيَسَّرَ مِنَ الْقُرْاٰنِ ؕ عَلِمَ اَنْ سَيَكُوْنُ مِنْكُمْ مَّرْضٰى ۙ وَاٰخَرُوْنَ يَضْرِبُوْنَ فِى الْاَرْضِ يَبْتَغُوْنَ مِنْ فَضْلِ اللّٰهِ ۙ وَاٰخَرُوْنَ يُقَاتِلُوْنَ فِىْ سَبِيْلِ اللّٰهِ ۖ فَاقْرَءُوْا مَا تَيَسَّرَ مِنْهُ ۙ وَاَقِيْمُوا الصَّلٰوةَ وَاٰتُوا الزَّكٰوةَ وَاَقْرِضُوا اللّٰهَ قَرْضًا حَسَنًا ؕ وَمَا تُقَدِّمُوْا لِاَنْفُسِكُمْ مِّنْ خَيْرٍ تَجِدُوْهُ عِنْدَ اللّٰهِ هُوَ خَيْرًا وَّاَعْظَمَ اَجْرًا ؕ وَاسْتَغْفِرُوا اللّٰهَ ؕ اِنَّ اللّٰهَ غَفُوْرٌ رَّحِيْمٌ ﴿۲۱﴾

୨୧. ତୁମ୍ଭ ପାଳନକର୍ତ୍ତା ଜାଣନ୍ତି ଯେ ତୁମ୍ଭେ ରାତିର ଦୁଇ ତୃତୀୟାଂଶରୁ କିଛି କମ (ସମୟ) ନମାଜ ସକାଶେ ଦଣ୍ଡାୟମାନ ହେଉଅଛ, ଏବଂ ବେଳେ ବେଳେ ଅର୍ଦ୍ଧେକ ସହ ସମାନ ଓ ଅନ୍ୟ ବେଳେ ଏକ ତୃତୀୟାଂଶ ସହ ସମାନ (ସମୟ ନମାଜ ପାଠ କରୁଅଛ) ; ଏବଂ ଏହିପରି ଭାବରେ ତୁମ୍ଭର କେତେକ ସହଚର ମଧ୍ୟ ; ଏବଂ ଅଲ୍ଲାହ ରାତି ଓ ଦିନକୁ ହ୍ରାସ ବୃଦ୍ଧି କରିଥା'ନ୍ତି ; ସେ ଜାଣନ୍ତି ଯେ ତୁମ୍ଭେମାନେ ସମ୍ପୂର୍ଣ୍ଣରୂପେ ନମାଜ ସମୟ ନିରୂପଣ କରି ପାରିବ ନାହିଁ, ସୁତରାଂ ସେ ତୁମ୍ଭମାମାନଙ୍କ ପ୍ରତି କରୁଣା କରିଛନ୍ତି ; ସୁତରାଂ ତୁମ୍ଭେମାନେ (ରାତିରେ) ଯଥାସମ୍ଭବ କୋରାନକୁ ଆବୃତ୍ତି କର ; ସେ ଜାଣନ୍ତି ଯେ ତୁମ୍ଭମାନଙ୍କ ମଧ୍ୟରେ କେତେକ ପୀଡ଼ିତ ଥାଇ ପାରନ୍ତି ଏବଂ (ଅନ୍ୟ) କେତେକ ବ୍ୟବସାୟ ଉଦ୍ଦେଶ୍ୟରେ ଯାତ୍ରା ମଧ୍ୟ କରିବେ ଏବଂ (ଅନ୍ୟ) କେତେକ ଅଲ୍ଲାହଙ୍କ ଉଦ୍ଦେଶ୍ୟରେ ଜିହାଦ କରିବାକୁ ବାହାରିବେ ; ତେଣୁ ତୁମ୍ଭେମାନେ ଯଥାସମ୍ଭବ କୋରାନ ଆବୃତ୍ତି କର ଓ ନିୟମାନୁସାରେ ନମାଜ ପାଠକର, ଓ ଜକାତ ଦିଅ ; ଏବଂ ଅଲ୍ଲାହଙ୍କ ସନ୍ତୋଷ ବିଧାନ ପାଇଁ ନିଜ ଧନ ସମ୍ପତ୍ତିର ଏକ ଉତ୍ତମ ଅଂଶକୁ ଅଲଗା କରିଦିଅ ; ଏବଂ ଯାହା କିଛି ପୁଣ୍ୟ ତୁମ୍ଭେମାନେ ନିଜ ପାଇଁ ପୂର୍ବରୁ ପ୍ରେରଣ କରିବ, ତାହାକୁ ତୁମ୍ଭେମାନେ ଅଲ୍ଲାହଙ୍କ ନିକଟରେ ପାଇବ ; ସେ ହିଁ ଉତ୍କୃଷ୍ଟ ପରିଣାମ ଦେଖାଇ ଥା'ନ୍ତି ଓ ଅଧିକରୁ ଅଧିକ ପୁରସ୍କାର ଦେଇଥା'ନ୍ତି ; ଏବଂ ଅଲ୍ଲାହଙ୍କ ନିକଟରେ କ୍ଷମାଭିକ୍ଷା କର ; ଅଲ୍ଲାହ ହିଁ ଅତ୍ୟନ୍ତ କ୍ଷମାଶୀଳ (ଓ) ସଦା କରୁଣାମୟ ।




# ଅଲ-ମୁଦସ୍‌ସିର

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୫୭ଟି ଆୟତ ଓ ୨ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାଃଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللَّهِ الرَّحْمَٰنِ الرَّحِيمِ ①

୨. ହେ ପୋଷାକ ପରିଧାନ କରି ଠିଆ ହୋଇଥିବା ବ୍ୟକ୍ତି ! [୧]

يَا أَيُّهَا الْمُدَّثِّرُ ②

୩. ଠିଆ ହୁଅ ଓ ଦୂରଦୂରାନ୍ତକୁ ଯାଇ (ଲୋକମାନଙ୍କୁ) ସାବଧାନ କରାଅ ।

قُمْ فَأَنذِرْ ③

୪. ଏବଂ ନିଜ ପାଳନକର୍ତ୍ତାଙ୍କ ମହିମା ଗାନ କର ।

وَرَبَّكَ فَكَبِّرْ ④

୫. ଏବଂ ନିଜ ଚତୁଃପାର୍ଶ୍ୱରେ ରହୁଥିବା ଲୋକମାନଙ୍କୁ ପବିତ୍ର କରାଅ ।

وَثِيَابَكَ فَطَهِّرْ ⑤

୬. ଏବଂ ସିର୍କକୁ ଲୋପ କର ।

وَالرُّجْزَ فَاهْجُرْ ⑥

୭. ଏବଂ ପ୍ରତିବଦଳରେ ଅଧିକ ମିଳିବା ଲକ୍ଷ୍ୟରେ ଅନୁଗ୍ରହ ପ୍ରଦର୍ଶନ କର ନାହିଁ ।

وَلَا تَمْنُن تَسْتَكْثِرُ ⑦

୮. ଏବଂ (ଭୀରୁ ଭାବରେ ନୁହେଁ, ବରଂ) ନିଜ ପାଳନକର୍ତ୍ତାଙ୍କ ସନ୍ତୋଷ ବିଧାନ ସକାଶେ ଧୈର୍ଯ୍ୟ ସହକାରେ କାର୍ଯ୍ୟ କର;

وَلِرَبِّكَ فَاصْبِرْ ⑧

୯. ଏବଂ ଯେବେ ବିଗୁଲ ଫୁଙ୍କା ଯିବ ;

فَإِذَا نُقِرَ فِي النَّاقُورِ ⑨

୧୦. ତେବେ ସେହି ଦିବସ ଏକ କଠୋର ଦିବସ ହେବ ।

فَذَٰلِكَ يَوْمَئِذٍ يَوْمٌ عَسِيرٌ ⑩

---

୧. ମୂଳ ଶବ୍ଦ 'ମୁଦସ୍‌ସିର' ର ସାଧାରଣ ଅର୍ଥ କମ୍ବଳ ଘୋଡେଇ ହୋଇଥିବା ଲୋକ ବା ପୋଷାକ ପରିଧାନ କରିଥିବା ବ୍ୟକ୍ତି । ଏତଦ୍‌ଭିନ୍ନ ଅଭିଧାନରେ ନିମ୍ନୋକ୍ତ ଅର୍ଥ ମଧ୍ୟ ଉଲ୍ଲେଖ ଅଛି: (କ) ଅଶ୍ୱ ନିକଟରେ ଛିଡା ହୋଇଥିବା ଏଭଳି ଜଣେ ଲୋକ, ଯେ କି ଆଦେଶ ପାଇବା ମାତ୍ରେ ତା' ଉପରକୁ ଲମ୍ଫ ଦେଇ ଚଢି ଯାଇପାରେ, (ଖ) ପୋଷାକ ପିନ୍ଧି ପ୍ରସ୍ତୁତ ହୋଇଥିବା ବ୍ୟକ୍ତି । କିନ୍ତୁ 'ଦିସାର' ଅର୍ଥ ସେହି ପୋଷାକ, ଯାହା କୁର୍ତ୍ତା ଉପରେ ପିନ୍ଧାଯାଏ । ଯେତେବେଳେ ଜଣେ ଲୋକ କୌଣସି କାର୍ଯ୍ୟରେ ବାହାରକୁ ଯାଏ ସେତେବେଳେ ସାଧାରଣତଃ ସେ ଭଲ ପୋଷାକ ପିନ୍ଧି ବାହାରେ । ଅନେକ ଅଞ୍ଚଳରେ କୁର୍ତ୍ତା ଉପରେ କୋଟ ଆଦି ପିନ୍ଧିବା ଏକ ସାଧାରଣ ପ୍ରଚଳିତ ପ୍ରଥା । ସୈନ୍ୟବାହିନୀରେ କାର୍ଯ୍ୟରତ ଲୋକେ ଯୁଦ୍ଧ ସମୟରେ ଉର୍ଦ୍ଦି ବ୍ୟବହାର କରିଥାନ୍ତି । ତେଣୁ ହଜରତ ମହମ୍ମଦଙ୍କ ମର୍ଯ୍ୟାଦା ଦୃଷ୍ଟିରୁ ଅନୁବାଦରେ 'ପୋଷାକ ପରିଧାନ କରି ଠିଆ ହୋଇଥିବା ବ୍ୟକ୍ତି' ବୁଝିବାକୁ ହେବ ।

୧୧. (ତାହା) ଅବିଶ୍ୱାସକାରୀମାନଙ୍କ ସକାଶେ ଆଦୌ ସହଜ ହେବ ନାହିଁ । ୧

عَلَى الْكٰفِرِيْنَ غَيْرُ يَسِيْرٍ ⑪

୧୨. (ହେ ରସୁଲ !) ଆମକୁ ଏବଂ ଯାହାକୁ ଆମେ ବନ୍ଧୁହୀନ ଓ ନିରାଶ୍ରୟ ସୃଷ୍ଟି କରିଥିଲୁ, ତାହାକୁ ଏକାକୀ ଛାଡ଼ିଦିଅ ,

ذَرْنِيْ وَمَنْ خَلَقْتُ وَحِيْدًا ⑫

୧୩. ଏବଂ ତାହା ପାଇଁ ଆମେ ପ୍ରଚୁର ଧନସମ୍ପତ୍ତିର ବ୍ୟବସ୍ଥା କରିଥିଲୁ ।

وَّجَعَلْتُ لَهٗ مَالًا مَّمْدُوْدًا ⑬

୧୪. ଏବଂ ଏପରି ସନ୍ତାନସନ୍ତତି ମଧ୍ୟ, ଯେଉଁମାନେ ସର୍ବଦା ତାହା ନିକଟରେ ରହୁଥିଲେ ।

وَّبَنِيْنَ شُهُوْدًا ⑭

୧୫. ଏବଂ ଆମେ ତାହା ପାଇଁ ପ୍ରଭୃତ ଉନ୍ନତିର ସାଧନ ସୃଷ୍ଟି କରିଥିଲୁ,

وَّمَهَّدْتُّ لَهٗ تَمْهِيْدًا ⑮

୧୬. ତଥାପି ସେ ଲୋଭ କରୁଅଛି ଯେ ଆମେ ତାହାକୁ ଆହୁରି ଅଧିକ ଦେବୁ ।

ثُمَّ يَطْمَعُ اَنْ اَزِيْدَ ⑯

୧୭. ଶୁଣ ! ସେ ଆମ ନିଦର୍ଶନଗୁଡ଼ିକର ବିରୁଦ୍ଧାଚରଣ କରୁଥିଲା ।

كَلَّا ؕ اِنَّهٗ كَانَ لِاٰيٰتِنَا عَنِيْدًا ⑰

୧୮. ତେଣୁ ଆମେ ମଧ୍ୟ ତାହାକୁ ଏପରି ଏକ ଶାସ୍ତିର କବଳିତ କରିବୁ ଯାହା ସର୍ବଦା ବୃଦ୍ଧି ପାଉଥିବ ।

سَاُرْهِقُهٗ صَعُوْدًا ⑱

୧୯. ସେ (ଆମର ନିଦର୍ଶନଗୁଡ଼ିକ ସଂକ୍ରାନ୍ତରେ) ଚିନ୍ତା କରିଥିଲା ଓ ବିବେଚନା କରିଥିଲା ।

اِنَّهٗ فَكَّرَ وَقَدَّرَ ⑲

୨୦. ଏବଂ ତାହାର ସର୍ବନାଶ ହେଉ ! ସେ କିପରି ଭୁଲ୍ ବିବେଚନା କରିଥିଲା !

فَقُتِلَ كَيْفَ قَدَّرَ ⑳

୨୧. ଆମେ ପୁନଶ୍ଚ କହୁଅଛୁ ଯେ ତାହାର ୨ ସର୍ବନାଶ ହେଉ ! ସେ କିପରି ଭୁଲ ବିବେଚନା କରିଥିଲା ! ।

ثُمَّ قُتِلَ كَيْفَ قَدَّرَ ㉑

୨୨. ଏହାପରେ ସେ ପୁନର୍ବାର ଚିନ୍ତା କରିଥିଲା.

ثُمَّ نَظَرَ ㉒

---

୧. ସୈନ୍ୟମାନଙ୍କୁ ଏକତ୍ରିତ କରିବା ସକାଶେ ବିଗୁଲ ବଜା ଯାଉଥିବାରୁ ଏଠାରେ ଉପମା ଆକାରରେ ବିଗୁଲ ଶବ୍ଦର ପ୍ରୟୋଗ ହୋଇଛି । ବର୍ଣ୍ଣନା କରାଯାଇଛି ଯେ ଦିନେ ଅବିଶ୍ୱାସକାରୀମାନଙ୍କୁ ଏକତ୍ରିତ କରାଯାଇ ହଜରତ ମହମ୍ମଦଙ୍କ ନିକଟରେ ହାଜର କରାହେବ ଓ ସେ ସେମାନଙ୍କୁ କ୍ଷମା ପ୍ରଦାନ କରିବେ । ଅବଶ୍ୟ ସେହି ଦିନଟି ଅବିଶ୍ୱାସକାରୀମାନଙ୍କ ପକ୍ଷରେ ଅତ୍ୟନ୍ତ ଦୁଃସହ ହେବ କାରଣ ସେମାନେ ଜୟଲାଭ କରିବେ ବୋଲି ସବୁବେଳେ କହୁଥିଲେ ଏବଂ ତତ୍‌ସହିତ ହଜରତ ମହମ୍ମଦଙ୍କୁ ଜଣେ ଅନଭିଜ୍ଞ ବାଳକ ବୋଲି ଆଖ୍ୟାୟିତ କରୁଥିଲେ । ଯେତେବେଳେ ସେହି ଅନଭିଜ୍ଞ ବାଳକ ମକ୍କା ଜୟ କରିଥିଲେ ଏବଂ ଅବିଶ୍ୱାସକାରୀମାନଙ୍କୁ ତାଙ୍କ ସମ୍ମୁଖକୁ ଅଣାଗଲା ପରେ ସେମାନେ ବାଧ୍ୟ ହୋଇ ହଜରତ ମହମ୍ମଦଙ୍କର କ୍ଷମା ଘୋଷଣା ଶୁଣିଥିଲେ, ସତରେ ସେମାନଙ୍କ ପକ୍ଷେ ସେହି ଦିନଟି କେତେ ଦୁଃସହ ହୋଇଥିବ, ଏହା ଅବଶ୍ୟ ପ୍ରତ୍ୟେକ ବୁଝିପାରିବେ ।

୨. ଏଠାରେ ବିଶେଷ ଭାବରେ ଖାଲିଦ ବିନ୍ ମୁଘିରା ବିଷୟରେ ଉଲ୍ଲେଖ କରାଯାଇଛି । ସେ ଅନେକ ଦୁରବସ୍ଥାର ସମ୍ମୁଖୀନ ହୋଇଥିଲା । ତାହାର ତିନିଜଣ ପୁଅ ଓଲିଦ, ଖାଲିଦ ଓ ହିସାମ ଇସଲାମ ଧର୍ମ ଗ୍ରହଣ କରିଥିଲେ ଏବଂ ଅନ୍ୟମାନେ ତା ଆଗରେ ଧ୍ୱଂସ ହୋଇ ଯାଇଥିଲେ । ତା'ର ଘୋର ଆର୍ଥିକ କ୍ଷତି ହୋଇଥିଲା ଓ ପରିଶେଷରେ ସେ ଅତ୍ୟନ୍ତ ଦରିଦ୍ର ଓ ଲାଞ୍ଛିତ ହୋଇ ମୃତ୍ୟୁବରଣ କରିଥିଲା ।

ثُمَّ عَبَسَ وَبَسَرَ

୨୩. ତତ୍ପରେ ସେ ଭ୍ରୂକୁଞ୍ଚନ କରିଥିଲା ଓ ମୁହଁ ମୋଡ଼ିଥିଲା,

ثُمَّ أَدْبَرَ وَاسْتَكْبَرَ

୨୪. ତା'ପରେ ପିଠି ଫେରାଇ ଚାଲିଗଲା ଓ ଅହଙ୍କାର କରିଥିଲା,

فَقَالَ إِنْ هَٰذَا إِلَّا سِحْرٌ يُؤْثَرُ

୨୫. ଏବଂ କହିଥିଲା, "ଏହା ଏପରି ଏକ ମିଥ୍ୟା ଯାହା ପୂର୍ବବର୍ତ୍ତୀ ଲୋକମାନଙ୍କ ଠାରୁ ନକଲ କରାଯାଇଛି ;"

إِنْ هَٰذَا إِلَّا قَوْلُ الْبَشَرِ

୨୬. "ଏହା ଏକ ମାନବର ବାଣୀ ଅଟେ ।"

سَأُصْلِيهِ سَقَرَ

୨୭. ଆମେ ତାହାକୁ ନରକରେ ଫୋପାଡ଼ି ଦେବୁ ।

وَمَا أَدْرَاكَ مَا سَقَرُ

୨୮. ଏବଂ ନରକ କ'ଣ,ତୁମଙ୍କୁ କ'ଣ ଜଣା ?

لَا تُبْقِي وَلَا تَذَرُ

୨୯. ତାହା କାହାରିକୁ ବାକି ରଖେ ନାହିଁ କି କୌଣସି ପ୍ରକାର ଶାସ୍ତିକୁ ଛାଡ଼େ ନାହିଁ ।

لَوَّاحَةٌ لِلْبَشَرِ

୩୦. ତାହା ଚମଡ଼ାକୁ ଜଳାଇ ଦିଏ ।

عَلَيْهَا تِسْعَةَ عَشَرَ

୩୧. ସେଠାରେ ଉଣେଇଶ ଜଣ ରକ୍ଷୀ ନିଯୁକ୍ତ ହୋଇଛନ୍ତି ।

وَمَا جَعَلْنَا أَصْحَابَ النَّارِ إِلَّا مَلَائِكَةً ۙ وَمَا جَعَلْنَا عِدَّتَهُمْ إِلَّا فِتْنَةً لِلَّذِينَ كَفَرُوا لِيَسْتَيْقِنَ الَّذِينَ أُوتُوا الْكِتَابَ وَيَزْدَادَ الَّذِينَ آمَنُوا إِيمَانًا ۙ وَلَا يَرْتَابَ الَّذِينَ أُوتُوا الْكِتَابَ وَالْمُؤْمِنُونَ ۙ وَلِيَقُولَ الَّذِينَ فِي قُلُوبِهِمْ مَرَضٌ وَالْكَافِرُونَ مَاذَا أَرَادَ اللَّهُ بِهَٰذَا مَثَلًا ۚ كَذَٰلِكَ يُضِلُّ اللَّهُ مَنْ يَشَاءُ وَيَهْدِي مَنْ يَشَاءُ ۚ وَمَا يَعْلَمُ جُنُودَ رَبِّكَ إِلَّا هُوَ ۚ وَمَا هِيَ إِلَّا ذِكْرَىٰ لِلْبَشَرِ

୩୨. ଏବଂ ଆମେ କେବଳ ଦେବଦୂତମାନଙ୍କ[୧] ମଧ୍ୟରୁ ନରକର ରକ୍ଷୀ ନିଯୁକ୍ତ କରିଅଛୁ ; ଏବଂ ସେମାନଙ୍କର ସଂଖ୍ୟା କେବଳ ଅବିଶ୍ୱାସକାରୀମାନଙ୍କ ପରୀକ୍ଷା ପାଇଁ କହିଅଛୁ, ଏବଂ ଏହାର ଏପରି ପରିଣାମ ହେବ ଯେ ଗ୍ରନ୍ଥଧାରୀମାନେ ବିଶ୍ୱାସ କରିବେ ଓ ବିଶ୍ୱାସକାରୀମାନେ ବିଶ୍ୱାସରେ ସମୃଦ୍ଧି ଲଭିବେ, ଏବଂ ଗ୍ରନ୍ଥଧାରୀମାନେ କି ବିଶ୍ୱାସକାରୀମାନେ ସନ୍ଦେହ କରିବେ ନାହିଁ ; ପରିଣାମ ଏହା ହେବ ଯେ ଯେଉଁମାନଙ୍କର ହୃଦୟ ବ୍ୟାଧିଗ୍ରସ୍ତ ସେମାନେ ଓ ଅନ୍ୟ ଅବିଶ୍ୱାସକାରୀମାନେ କହିବେ, "ଏ ବିଷୟ କହିବାରେ ଅଲ୍ଲାହ୍‌ର ଉଦ୍ଦେଶ୍ୟ କ'ଣ ?" ଏହିପରି ଭାବରେ ଅଲ୍ଲାହ୍ ଯାହାକୁ ଇଚ୍ଛା କରନ୍ତି ତାହାକୁ ପଥଭ୍ରଷ୍ଟ ସାବ୍ୟସ୍ତ କରିଥା'ନ୍ତି, ଏବଂ ଯାହାକୁ ଇଚ୍ଛା କରନ୍ତି ତାହାକୁ ସତ୍‌ପଥ ଦେଖାଇ ଥା'ନ୍ତି ; ଏବଂ ତୁମ ପାଳନକର୍ତ୍ତାଙ୍କ ସୈନ୍ୟ-ବାହିନୀକୁ ତାହାଙ୍କ ବ୍ୟତୀତ ଅନ୍ୟ କେହି ଜାଣେ ନାହିଁ ଏବଂ ଏହା (ଅର୍ଥାତ୍ ଏହି କୋରାନ) ମାନବ ସମାଜ ପାଇଁ କେବଳ ଏକ ଉପଦେଶ ।

ରୁ : ୨

كَلَّا وَالْقَمَرِ

୩୩. ଶୁଣ ! ଆମେ ଚନ୍ଦ୍ରକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ,

---

୧. ନରକରେ ଏତେ ଲୋକଙ୍କୁ ଅଟକାଇ ରଖିବା କେବଳ ଦେବଦୂତମାନଙ୍କ ପକ୍ଷରେ ସମ୍ଭବ, କାରଣ ସେମାନେ ଅତ୍ୟନ୍ତ ବଳବାନ୍ । ତେଣୁ ଅଲ୍ଲାହ୍ ସେମାନଙ୍କୁ ସେଠାରେ ନିଯୁକ୍ତି ଦେବା ସ୍ୱାଭାବିକ । ଅବଶ୍ୟ ବେଳେ ବେଳେ ମନୁଷ୍ୟମାନେ ମଧ୍ୟ ନିଜକୁ ଦେବଦୂତମାନଙ୍କ ସହିତ ସମାନ ମନେ କରି ସେମାନଙ୍କ କାର୍ଯ୍ୟ କରିବାକୁ ଲାଗିବେ ।

୩୪. ଏବଂ ରାତ୍ରିକୁ,ଯେତେବେଳେ ତାହା ପ୍ରସ୍ଥାନ କରେ,

وَالَّيْلِ إِذْ أَدْبَرَ

୩୫. ଏବଂ ପ୍ରଭାତକୁ, ଯେତେବେଳେ ତାହା ଆଲୋକିତ ହୁଏ,

وَالصُّبْحِ إِذَا أَسْفَرَ

୩୬. ଏହା (ଅର୍ଥାତ୍ ଉପରୋକ୍ତ ମୁହୂର୍ତ୍ତ) ପ୍ରଧାନ ପ୍ରଧାନ ବିଷୟ ମଧ୍ୟରୁ ଅନ୍ୟତମ ଅଟେ।

إِنَّهَا لَإِحْدَى الْكُبَرِ

୩୭. ଏହା ମନୁଷ୍ୟ ପାଇଁ ଏକ ଚେତାବନୀ,

نَذِيرًا لِّلْبَشَرِ

୩୮. ତାହା ପାଇଁ, ଯେ ତୁମମାନଙ୍କ ମଧ୍ୟରୁ (ପୁଣ୍ୟକର୍ମରେ) ଆଗଭର ହେବାକୁ କିମ୍ବା (କୁକର୍ମରୁ) ପଛକୁ ହଟି ଯିବାକୁ ଇଚ୍ଛା କରେ।

لِمَن شَاءَ مِنكُمْ أَن يَتَقَدَّمَ أَوْ يَتَأَخَّرَ

୩୯. ପ୍ରତ୍ୟେକ ପ୍ରାଣୀ ଯାହା କିଛି କରିଥିବ ସେ ତାହା ପରିବର୍ତ୍ତେ ବନ୍ଧକ [୧] ରହିବ ;

كُلُّ نَفْسٍ بِمَا كَسَبَتْ رَهِينَةٌ

୪୦. ଦକ୍ଷିଣ ପାର୍ଶ୍ବରେ ଥିବା ଲୋକମାନଙ୍କ ବ୍ୟତୀତ।

إِلَّا أَصْحَابَ الْيَمِينِ

୪୧./୪୨. ସେମାନେ ବୈକୁଣ୍ଠରେ ରହିଥିବେ ଓ ଅପରାଧୀମାନଙ୍କୁ ପଚାରିବେ,

فِي جَنَّاتٍ يَتَسَاءَلُونَ
عَنِ الْمُجْرِمِينَ

୪୩. "ତୁମମାନଙ୍କୁ କେଉଁ ବିଷୟ ନରକଗାମୀ କରାଇଛି ?"

مَا سَلَكَكُمْ فِي سَقَرَ

୪୪. ସେମାନେ ଉତ୍ତର ଦେବେ, "ଆମେମାନେ ନମାଜ ପାଠ କରୁ ନ ଥିଲୁ,"

قَالُوا لَمْ نَكُ مِنَ الْمُصَلِّينَ

୪୫. "ଏବଂ ଆମେମାନେ ଦରିଦ୍ରମାନଙ୍କୁ ଭୋଜନ କରାଉ ନ ଥିଲୁ",

وَلَمْ نَكُ نُطْعِمُ الْمِسْكِينَ

୪୬. "ଏବଂ ଅଯଥା କଥା କହୁ ଥିବା ଲୋକମାନଙ୍କ ସହିତ ମିଳିତ ହୋଇ ଅଯଥା କଥା କହୁଥିଲୁ",

وَكُنَّا نَخُوضُ مَعَ الْخَائِضِينَ

୪୭./୪୮. "ଏବଂ ଆମେମାନେ ମୃତ୍ୟୁମୁଖରେ ପଡ଼ିବା ପର୍ଯ୍ୟନ୍ତ ବିଚାର ଦିବସକୁ ପ୍ରତ୍ୟାଖ୍ୟାନ କରୁଥିଲୁ।"

وَكُنَّا نُكَذِّبُ بِيَوْمِ الدِّينِ
حَتَّىٰ أَتَانَا الْيَقِينُ

୪୯. ସୁତରାଂ ଏପରି ଲୋକମାନଙ୍କ ପାଇଁ ସୁପାରିଶକାରୀମାନଙ୍କ ସୁପାରିଶ ଲାଭଦାୟକ ହେବ ନାହିଁ।

فَمَا تَنفَعُهُمْ شَفَاعَةُ الشَّافِعِينَ

୫୦. ସେମାନଙ୍କର (ଏପରି) କ'ଣ ହୋଇଛି ଯେ ସେମାନେ ଉପଦେଶ (ମୂଳକ ବାଣୀ)ରୁ ଏପରି ବିମୁଖ ହେଉଛନ୍ତି,

فَمَا لَهُمْ عَنِ التَّذْكِرَةِ مُعْرِضِينَ

୧. ପରିଶୋଧ କରା ନ ଯିବା ପର୍ଯ୍ୟନ୍ତ ବନ୍ଧକ ମୁକ୍ତିଳି ପାରିବ ନାହିଁ। ବିଶ୍ବାସକାରୀମାନେ ସବୁବେଳେ ସ୍ବାଧୀନ। ତେଣୁ ପୂର୍ବବର୍ତ୍ତୀ ଆୟତ ଅନ୍ତର୍ଗତ ଆଦେଶ ବିଶ୍ବାସକାରୀମାନଙ୍କ ପ୍ରତି ପ୍ରଯୋଜ୍ୟ ନୁହେଁ କାରଣ ସେମାନେ ସ୍ବାଧୀନ; ସେମାନେ କାହାରି ପାଖରେ ବନ୍ଧା ପଡି ନାହାନ୍ତି। ବସ୍ତୁତଃ ଯେ ପର୍ଯ୍ୟନ୍ତ ପ୍ରତ୍ୟେକ ପ୍ରାଣୀ ନିଜ ପାପର ମୂଲ୍ୟ ପରିଶୋଧ ନ କରିଛି ସେ ପର୍ଯ୍ୟନ୍ତ ସେ ବନ୍ଧା ପଡିଥିବ, ଅର୍ଥାତ୍ ତା'କୁ ତା' ପାପର ଶାସ୍ତି ଭୋଗ କରିବାକୁ ହେବ।

୫୧. ସତେ ଯେପରି ସେମାନେ ଭୟଭୀତ ହୋଇଥିବା ଗର୍ଦ୍ଦଭ ଅଟନ୍ତି,

كَأَنَّهُمْ حُمُرٌ مُّسْتَنفِرَةٌ

୫୨. ଯେଉଁମାନେ କି ସିଂହଙ୍କୁ ଦେଖି ପଳାୟନ କରିଛନ୍ତି ।

فَرَّتْ مِن قَسْوَرَةٍ

୫୩. ପ୍ରକୃତ ବିଷୟ ହେଉଛି ଯେ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ବ୍ୟକ୍ତି ଇଚ୍ଛା କରୁଛି ଯେ ତା' ହାତରେ ଖୋଲା ପୁସ୍ତକ ଦିଆଯାଉ ।

بَلْ يُرِيدُ كُلُّ امْرِئٍ مِّنْهُمْ أَن يُؤْتَىٰ صُحُفًا مُّنَشَّرَةً

୫୪. ଏ ଆଶା ପୂରଣ ହେବ ନାହିଁ, ବରଂ ପ୍ରକୃତ ବିଷୟ ହେଉଛି ଯେ ସେମାନେ ପରକାଳକୁ ଭୟ କରୁ ନାହାନ୍ତି ।

كَلَّا ۖ بَل لَّا يَخَافُونَ الْآخِرَةَ

୫୫. ଶୁଣ ! ଏ ବାଣୀ ଏକ ଉପଦେଶ ଅଟେ ।

كَلَّا إِنَّهُ تَذْكِرَةٌ

୫୬. ସୁତରାଂ ଯେ ଇଚ୍ଛା କରୁଛି, ସେ ଏଥିରୁ ଉପଦେଶ ଗ୍ରହଣ କରୁ ।

فَمَن شَاءَ ذَكَرَهُ

୫୭. ଏବଂ ଅଲ୍ଲାଃଙ୍କ ବିନା ଇଚ୍ଛାରେ ଅମାନ୍ୟକାରୀମାନେ କଦାପି ଉପଦେଶ ଗ୍ରହଣ କରିବେ ନାହିଁ ; (ଏବଂ ଏହା ଅସମୀଚୀନ ନୁହେଁ, କାରଣ) ସେ (ଅଲ୍ଲାଃ) ହିଁ ଧର୍ମଭୀରୁତା ଦାନ କରିଥା'ନ୍ତି ଓ କ୍ଷମା ମଧ୍ୟ ପ୍ରଦାନ କରିଥା'ନ୍ତି ।

وَمَا يَذْكُرُونَ إِلَّا أَن يَشَاءَ اللَّهُ ۚ هُوَ أَهْلُ التَّقْوَىٰ وَأَهْلُ الْمَغْفِرَةِ




## ଅଲ-କେୟାମାଃ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୪୧ ଟି ଆୟତ ଓ ୨ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାଃଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللَّهِ الرَّحْمَٰنِ الرَّحِيمِ

୨. ଆମେ କୟାମତ ଦିବସର ରାଣ ଖାଉ ଅଛୁ (ଅର୍ଥାତ୍ ଏହାକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ) ।

لَا أُقْسِمُ بِيَوْمِ الْقِيَامَةِ

୩. ଏବଂ ଆମେ "ନଫସେ ଲଓ୍ୱାମା" କୁ (ଅର୍ଥାତ୍ ଆତ୍ମ-ସୁରକ୍ଷାକାରୀ ଗୁଣ) ମଧ୍ୟ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ ।

وَلَا أُقْسِمُ بِالنَّفْسِ اللَّوَّامَةِ

୪. କ'ଣ ମନୁଷ୍ୟ ମନେ କରୁଅଛି ଯେ ଆମେ ତାହାର ଅସ୍ଥିଗୁଡ଼ିକୁ ଏକତ୍ରିତ କରାଇବୁ ନାହିଁ ?

أَيَحْسَبُ الْإِنسَانُ أَلَّن نَّجْمَعَ عِظَامَهُ

୫. ନା ! ନା ! (ଏପରି ନୁହେଁ) ଆମେ ତ ତାହାର ସମସ୍ତ ହାଡ଼ ଗଣ୍ଠିକୁ ପୁନର୍ବାର ଗଢ଼ି ଦେବାରେ ସକ୍ଷମ ଅଟୁ ।

بَلَىٰ قَادِرِينَ عَلَىٰ أَن نُّسَوِّيَ بَنَانَهُ

୬. ପ୍ରକୃତ ବିଷୟ ହେଉଛି, ମନୁଷ୍ୟ ଇଚ୍ଛା କରେ ଯେ ସେ ଭବିଷ୍ୟତରେ ମଧ୍ୟ କୁକର୍ମରେ ଲିପ୍ତ ରହୁ ।

بَلْ يُرِيدُ الْإِنسَانُ لِيَفْجُرَ أَمَامَهُ ٦

୭. ସେ (ବାରମ୍ବାର) ପଚାରେ, "କୟାମତ ଦିବସ କେବେ ଆସିବ ?"

يَسْأَلُ أَيَّانَ يَوْمُ الْقِيَامَةِ ٧

୮. ସୁତରାଂ ଯେତେବେଳେ ଆଖି ଝଲସି ଉଠିବ ;

فَإِذَا بَرِقَ الْبَصَرُ ٨

୯. ଏବଂ ଚନ୍ଦ୍ରରେ ଗ୍ରହଣ ଲାଗିବ ;

وَخَسَفَ الْقَمَرُ ٩

୧୦. ଏବଂ ସୂର୍ଯ୍ୟ ଓ ଚନ୍ଦ୍ରକୁ ଏକତ୍ରିତ [୧] କରାହେବ,

وَجُمِعَ الشَّمْسُ وَالْقَمَرُ ١٠

୧୧. ସେତେବେଳେ ମନୁଷ୍ୟ ପଚାରିବ, "ଏବେ ମୁଁ ପଳାୟନ କରି କେଉଁଠାକୁ ଯାଇ ପାରିବି ?"

يَقُولُ الْإِنسَانُ يَوْمَئِذٍ أَيْنَ الْمَفَرُّ ١١

୧୨. ଶୁଣ ! ଆଜି ଶାସ୍ତି ଠାରୁ ମୁକ୍ତି ପାଇବାର କୌଣସି (ଆଶ୍ରୟ) ସ୍ଥାନ ନାହିଁ ।

كَلَّا لَا وَزَرَ ١٢

୧୩. କିନ୍ତୁ ସେ ଦିନ ତୁମ ପାଳନକର୍ତ୍ତାଙ୍କ ନିକଟରେ ହିଁ ଆଶ୍ରୟସ୍ଥଳ ଥିବ ।

إِلَىٰ رَبِّكَ يَوْمَئِذٍ الْمُسْتَقَرُّ ١٣

୧୪. ସେ ଦିନ ମନୁଷ୍ୟକୁ ସେହି କାର୍ଯ୍ୟ ବିଷୟରେ ମଧ୍ୟ ଜଣାଇ ଦିଆଯିବ ଯାହା ସେ ନ କରିବା ଉଚିତ ଥିଲା, ଅଥଚ ସେ ତାହା କରିଥିଲା, ଏବଂ ସେ କାର୍ଯ୍ୟ ବିଷୟରେ ମଧ୍ୟ ଯାହା ତାହାର କରିବା ଉଚିତ ଥିଲା ଅଥଚ ସେ ତାହା କରି ନ ଥିଲା ।

يُنَبَّأُ الْإِنسَانُ يَوْمَئِذٍ بِمَا قَدَّمَ وَأَخَّرَ ١٤

୧୫. ବସ୍ତୁତଃ ମନୁଷ୍ୟ ନିଜେ ନିଜକୁ ଭଲ ଭାବରେ ଦେଖୁଛି (ଏବଂ ସେ କେତେ ପାଣିରେ ଅଛି ତାହା ତାକୁ ଜଣା )।

بَلِ الْإِنسَانُ عَلَىٰ نَفْسِهِ بَصِيرَةٌ ١٥

୧୬. ଯଦିଚ ସେ ତା'ର ଅନେକ ସଫେଇ ଦେଉ ଅଛି ।

وَلَوْ أَلْقَىٰ مَعَاذِيرَهُ ١٦

୧୭. (ହେ ନବି !) ଏହି କୋରାନ ଶୀଘ୍ର ଅବତୀର୍ଣ୍ଣ ହେବା ପାଇଁ ତୁମେ ନିଜର ଜିହ୍ୱା ଚାଳନା [୨] (କରି ପ୍ରାର୍ଥନା) କର ନାହିଁ ।

لَا تُحَرِّكْ بِهِ لِسَانَكَ لِتَعْجَلَ بِهِ ١٧

୧୮. ଏହାକୁ ଏକତ୍ରିତ କରିବା ଏବଂ ଏହାକୁ (ମାନବ ସମାଜ ନିକଟରେ ପାଠ କରି) ଶୁଣାଇବା ମଧ୍ୟ ଆମର ଦାୟିତ୍ୱ ।

إِنَّ عَلَيْنَا جَمْعَهُ وَقُرْآنَهُ ١٨

୧୯. ସୁତରାଂ ଯେତେବେଳେ ଆମେ ଏହାର ପଠନ ଶେଷ କରୁ, ସେତେବେଳେ ଆମେ ପାଠ କରିବା ପରେ, ତୁମେ ମଧ୍ୟ ଏହାକୁ ପାଠ କର ।

فَإِذَا قَرَأْنَاهُ فَاتَّبِعْ قُرْآنَهُ ١٩

---

୧. ଏହା ଶେଷ ଯୁଗରେ ପ୍ରକଟିତ ହେବାକୁ ଥିବା ଏକ ଗୁରୁତ୍ୱପୂର୍ଣ୍ଣ ଭବିଷ୍ୟବାଣୀ । ଏଠାରେ ରମଜାନ ମାସରେ ସୂର୍ଯ୍ୟ ଓ ଚନ୍ଦ୍ରରେ ଗ୍ରହଣ ଲାଗିବା ବିଷୟରେ ସୂଚନା ଦିଆଯାଇଛି ।

୨. ଅର୍ଥାତ୍ ଶୀଘ୍ର ପବିତ୍ର କୋରାନକୁ ଅବତରଣ କରାଯିବା ପାଇଁ ପ୍ରାର୍ଥନା କର ନାହିଁ, କାରଣ ଯଥା ସମୟରେ ଏହାର ଅନ୍ୟାନ୍ୟ ଅଂଶ ଅବଶ୍ୟ ଅବତୀର୍ଣ୍ଣ ହେବ । ବସ୍ତୁତଃ ଅଲ୍ଲାହଙ୍କର ବିଧାନ ଅପରିବର୍ତ୍ତନୀୟ ।

୨୦. ଏବଂ ତୁମ୍ଭ ମୁଖ ଦ୍ୱାରା ଏହାକୁ ଲୋକମାନଙ୍କ ନିକଟରେ ସ୍ପଷ୍ଟରୂପେ ଶୁଣାଇ ଦେବା ଆମ୍ଭର କର୍ତ୍ତବ୍ୟ । ثُمَّ إِنَّ عَلَيْنَا بَيَانَهُ

୨୧. ଶୁଣ ! ତୁମେମାନେ ତୁରନ୍ତ ମିଳୁ ଥିବା ସୁଖ ସମ୍ପଦକୁ ପସନ୍ଦ କରୁଅଛ । كَلَّا بَلْ تُحِبُّونَ الْعَاجِلَةَ

୨୨. ଏବଂ ପରକାଳରେ ମିଳୁଥିବା ସୁଖସମ୍ପଦକୁ ଅବହେଳା କରୁଅଛ । وَتَذَرُونَ الْآخِرَةَ

୨୩. ସେଦିନ କେତେକ ଲୋକ ପ୍ରଫୁଲ୍ଲିତ ଥିବେ, وُجُوهٌ يَوْمَئِذٍ نَاضِرَةٌ

୨୪. (ଓ) ନିଜ ପାଳନକର୍ତ୍ତାଙ୍କୁ ନିରୀକ୍ଷଣ କରୁଥିବେ ; إِلَىٰ رَبِّهَا نَاظِرَةٌ

୨୫. ସେଦିନ କେତେକ ଲୋକ ବିରସ ହୋଇ ବସିଥିବେ, وَوُجُوهٌ يَوْمَئِذٍ بَاسِرَةٌ

୨୬. କାରଣ ସେମାନେ ଭାବୁଥିବେ ଯେ ସେମାନଙ୍କ ପ୍ରତି ଏପରି ବ୍ୟବହାର କରାହେବ ଯାହା ଫଳରେ ସେମାନଙ୍କର ଅଣ୍ଟା ଭାଙ୍ଗି ଯିବ । تَظُنُّ أَنْ يُفْعَلَ بِهَا فَاقِرَةٌ

୨୭. ଶୁଣ ! ଯେତେବେଳେ ପ୍ରାଣ କଣ୍ଠାଗତ ହେବ, كَلَّا إِذَا بَلَغَتِ التَّرَاقِيَ

୨୮. ଏବଂ କୁହାଯିବ, "କ'ଣ ଆଜି କେହି ଅଛି ଯେ ତାହାକୁ ମନ୍ତ୍ର ଦ୍ୱାରା ରକ୍ଷା କରି ଦେବ ?" وَقِيلَ مَنْ ۜ رَاقٍ

୨୯. ଏବଂ ପ୍ରତ୍ୟେକେ ବିଶ୍ୱାସ କରିବେ ଯେ ବର୍ତ୍ତମାନ ବିଦାୟ ସମୟ ଆସି ଯାଇଅଛି ; وَظَنَّ أَنَّهُ الْفِرَاقُ

୩୦. ଏବଂ ମୃତ୍ୟୁ ଯନ୍ତ୍ରଣାର ସମୟ ଉପସ୍ଥିତ ହେବ ; وَالْتَفَّتِ السَّاقُ بِالسَّاقِ

୩୧. ସେହିଦିନ ତୁମ୍ଭ ପାଳନକର୍ତ୍ତାଙ୍କ ନିକଟକୁ ହିଁ ଯିବାକୁ ହେବ । إِلَىٰ رَبِّكَ يَوْمَئِذٍ الْمَسَاقُ

ରୁ : ୨

୩୨. ସୁତରାଂ ଏପରି କ'ଣ ହେଲା ଯେ ସେହି ବ୍ୟକ୍ତି ଦାନ କଲା ନାହିଁ, କି ନମାଜ ପାଠ କଲା ନାହିଁ ; فَلَا صَدَّقَ وَلَا صَلَّىٰ

୩୩. ବରଂ (ସତ୍ୟକୁ) ପ୍ରତ୍ୟାଖ୍ୟାନ କଲା ଓ (ତାହାଠାରୁ) ବିମୁଖ ହେଲା ; وَلَٰكِنْ كَذَّبَ وَتَوَلَّىٰ

୩୪. (ଏବଂ ଏହାପରେ ଲଜ୍ଜିତ ହେବା ପରିବର୍ତ୍ତେ) ନିଜ ପରିବାର ନିକଟକୁ ସଗର୍ବେ ଗମନ କଲା । ثُمَّ ذَهَبَ إِلَىٰ أَهْلِهِ يَتَمَطَّىٰ

୩୫. (ହେ ପାଷାଣ୍ଡ !) ତୋ'ର ସର୍ବନାଶ ହେଉ ! أَوْلَىٰ لَكَ فَأَوْلَىٰ

୩୬. ଆମେ ପୁନଶ୍ଚ କହୁ ଅଛୁ କି ତୋ'ର ସର୍ବନାଶ ହେଉ ! ثُمَّ أَوْلَىٰ لَكَ فَأَوْلَىٰ

୩୭. କ'ଣ ମଣିଷ ଭାବୁଛି ଯେ ତାହାକୁ ବେଲଗାମ୍ ଛାଡ଼ି ଦିଆଯିବ ?

أَيَحْسَبُ الْإِنْسَانُ أَنْ يُتْرَكَ سُدًى

୩୮. କ'ଣ ସେ କୌଣସି ଏକ ସମୟରେ ଏପରି ଏକ ଜଳ ବିନ୍ଦୁ ନ ଥିଲା ଯାହାକୁ ଉପଯୁକ୍ତ ସ୍ଥାନରେ ନିକ୍ଷେପ କରା ହୋଇଥିଲା ?

أَلَمْ يَكُ نُطْفَةً مِنْ مَنِيٍّ يُمْنَى

୩୯. ତା'ପରେ ସେ ଏକ ଘନୀଭୂତ ରକ୍ତପିଣ୍ଡରେ ପରିଣତ ହେଲା ; ଏହାପରେ ସେ (ଅଲ୍ଲାହ) ତାହାକୁ ଅନ୍ୟ ଏକ ରୂପ ପ୍ରଦାନ କଲେ, ଏବଂ ପରିଶେଷରେ ତାହାକୁ ପୂର୍ଣ୍ଣାବୟବ କଲେ ।

ثُمَّ كَانَ عَلَقَةً فَخَلَقَ فَسَوَّى

୪୦. ଏବଂ ତାହାକୁ ଯୋଡ଼ା ଯୋଡ଼ା କରି ସୃଷ୍ଟି କଲେ ଅର୍ଥାତ୍ ପୁରୁଷ ଓ ନାରୀ ଭାବରେ ।

فَجَعَلَ مِنْهُ الزَّوْجَيْنِ الذَّكَرَ وَالْأُنْثَى

୪୧. କ'ଣ ସେ (ଅଲ୍ଲାହ) ମୃତକୁ ପୁନର୍ଜୀବିତ କରିବାକୁ ସମର୍ଥ ନୁହଁନ୍ତି ?

أَلَيْسَ ذَلِكَ بِقَادِرٍ عَلَى أَنْ يُحْيِيَ الْمَوْتَى




ଅଧ୍ୟାୟ ୭୬

## ଅଲ-ଦହର

(ଏହି ସୂରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୩୨ଟି ଆୟତ ଓ ୨ଟି ରୁକୁ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللَّهِ الرَّحْمَنِ الرَّحِيمِ

୨. କ'ଣ ମାନବ ଉପରେ ସେହି ସମୟ ଆସି ନ ଥିଲା ଯେତେବେଳେ ତାହାର ଆଦୌ କୌଣସି ଗୁରୁତ୍ୱ ନ ଥିଲା ଏବଂ ତାହାର କାର୍ଯ୍ୟକଳାପକୁ କେହି ମନେ ପକାଉ ନ ଥିଲା ।

هَلْ أَتَى عَلَى الْإِنْسَانِ حِينٌ مِنَ الدَّهْرِ لَمْ يَكُنْ شَيْئًا مَذْكُورًا

୩. ଆମେ ମାନବକୁ ଏପରି ଏକ ଶୁକ୍ରବିନ୍ଦୁରୁ ସୃଷ୍ଟି କରିଅଛୁ ଯହିଁରେ ବିଭିନ୍ନ (ପ୍ରକାର) ଶକ୍ତି ସମିଶ୍ରିତ ହୋଇ ରହିଅଛି ଯଦ୍ଦ୍ୱାରା କି ଆମେ ତାହାକୁ ପରୀକ୍ଷା କରିପାରିବୁ ; ତେଣୁ ଆମେ ତାହାକୁ ଉତ୍ତମ ଶ୍ରୋତା (ଓ) ଦ୍ରଷ୍ଟା ରୂପେ ଗଢ଼ିଅଛୁ ।

إِنَّا خَلَقْنَا الْإِنْسَانَ مِنْ نُطْفَةٍ أَمْشَاجٍ نَبْتَلِيهِ فَجَعَلْنَاهُ سَمِيعًا بَصِيرًا

୪. ଆମେ ତାହାକୁ ତାହାର ଅବସ୍ଥା ଅନୁଯାୟୀ ମାର୍ଗ ପ୍ରଦର୍ଶନ କରାଇଅଛୁ, ସେ କୃତଜ୍ଞତା ଜ୍ଞାପନ କରୁ ବା କୃତଘ୍ନ ହୋଇଯାଉ ।

إِنَّا هَدَيْنَاهُ السَّبِيلَ إِمَّا شَاكِرًا وَإِمَّا كَفُورًا

୫. ଆମେ ଅବିଶ୍ୱାସକାରୀମାନଙ୍କ ସକାଶେ ଶିକୁଳି: ଗଳାବନ୍ଧନ ଓ ନରକ ପ୍ରସ୍ତୁତ କରି ରଖିଅଛୁ ।

إِنَّآ أَعْتَدْنَا لِلْكَٰفِرِينَ سَلَٰسِلَا۟ وَأَغْلَٰلًا وَسَعِيرًا ٥

୬. (ଅଲ୍ଲାହ୍‌ଙ୍କର) ପୁଣ୍ୟବାନ୍ ବ୍ୟକ୍ତିମାନେ ଏପରି ପିଆଲାରୁ ପାନ କରିବେ ଯହିଁରେ କର୍ପୂରର ଗୁଣ ମିଶ୍ରିତ ହୋଇଥିବ ।

إِنَّ الْأَبْرَارَ يَشْرَبُونَ مِن كَأْسٍ كَانَ مِزَاجُهَا كَافُورًا ٦

୭. ସେ (କର୍ପୂର) [୧] ଏକ ଝରଣା ହୋଇଥିବ ଯହିଁରୁ ଅଲ୍ଲାହ୍‌ଙ୍କର ଭକ୍ତମାନେ ପାନ କରିବେ ; ସେମାନେ ଚେଷ୍ଟା କରି [୨] ତାହାକୁ (ଅର୍ଥାତ୍ ସେହି ଝରଣାକୁ) ଭୂମିରୁ ନିର୍ଗତ କରାଉଛନ୍ତି ।

عَيْنًا يَشْرَبُ بِهَا عِبَادُ اللَّهِ يُفَجِّرُونَهَا تَفْجِيرًا ٧

୮. ସେମାନେ ନିଜ ପ୍ରତିଜ୍ଞାକୁ ପାଳନ କରନ୍ତି, ଏବଂ ସେହି ଦିବସକୁ ଭୟ କରନ୍ତି ଯେଉଁ ଦିନର ଅମଙ୍ଗଳ ସମଗ୍ର ଜଗତରେ ସମ୍ପ୍ରସାରିତ ହୋଇଥିବ ।

يُوفُونَ بِالنَّذْرِ وَيَخَافُونَ يَوْمًا كَانَ شَرُّهُ مُسْتَطِيرًا ٨

୯. ଏବଂ ତାହାଙ୍କ (ଅର୍ଥାତ୍ ଅଲ୍ଲାହ୍‌ଙ୍କ) ପ୍ରତି ପ୍ରେମ ହେତୁ (ସେମାନେ) ଦରିଦ୍ର, ଅନାଥ ଓ ବନ୍ଦୀମାନଙ୍କୁ ଖାଦ୍ୟ ଖୁଆନ୍ତି ।

وَيُطْعِمُونَ الطَّعَامَ عَلَىٰ حُبِّهِ مِسْكِينًا وَيَتِيمًا وَأَسِيرًا ٩

୧୦. ଏବଂ କହନ୍ତି, "ହେ ଲୋକମାନେ ! ଆମେମାନେ କେବଳ ଅଲ୍ଲାହ୍‌ଙ୍କ ସନ୍ତୋଷ ବିଧାନ ପାଇଁ ତୁମମାନଙ୍କୁ ଖାଦ୍ୟ ଖୁଆଉଛୁ ; ଆମେମାନେ ତୁମମାନଙ୍କ ଠାରୁ (ଏଥିପାଇଁ) କୌଣସି ପୁରସ୍କାର ମାଗୁ ନାହୁଁ କି କୃତଜ୍ଞତା ଲୋଡ଼ୁ ନାହୁଁ ।"

إِنَّمَا نُطْعِمُكُمْ لِوَجْهِ اللَّهِ لَا نُرِيدُ مِنكُمْ جَزَاءً وَلَا شُكُورًا ١٠

୧୧. "ଆମେମାନେ ଆମ ପାଳନକର୍ତ୍ତାଙ୍କ ଠାରୁ ସେହି ଦିନ ସମ୍ବନ୍ଧରେ ଭୟଭୀତ ହେଉଛୁ ଯେଉଁ ଦିନ ଭୟରେ ଲୋକମାନଙ୍କର ମୁଖ ବିକୃତ ହୋଇ ଯାଇଥିବ ଓ ଭ୍ରୂକୁଞ୍ଚିତ ହୋଇଥିବ ।"

إِنَّا نَخَافُ مِن رَّبِّنَا يَوْمًا عَبُوسًا قَمْطَرِيرًا ١١

୧୨. ଅତଏବ ଅଲ୍ଲାହ୍ ସେମାନଙ୍କୁ ସେହି ଦିନର ମନ୍ଦ ପରିଣାମରୁ ରକ୍ଷା କରିବେ, ଓ ସେମାନଙ୍କୁ ଆନନ୍ଦ ଓ ସୁଖ ପ୍ରଦାନ କରିବେ ।

فَوَقَاهُمُ اللَّهُ شَرَّ ذَٰلِكَ الْيَوْمِ وَلَقَّاهُمْ نَضْرَةً وَسُرُورًا ١٢

୧୩. ଏବଂ ସେମାନେ ପୁଣ୍ୟ କାର୍ଯ୍ୟରେ ଅଟଳ ରହିଥିବା ଯୋଗୁଁ ସେମାନଙ୍କୁ (ରହିବାପାଇଁ) ଉଦ୍ୟାନ ଓ (ପିନ୍ଧିବା ପାଇଁ) ରେଶମ (ବସ୍ତ୍ର) ଦେବେ ।

وَجَزَاهُم بِمَا صَبَرُوا جَنَّةً وَحَرِيرًا ١٣

୧୪. ସେମାନେ ସେଠାରେ ପଲଙ୍କ ଉପରେ ତକିଆ ଲଗାଇ ବସି ଥିବେ ; ସେମାନେ ସେଠାରେ ତୀବ୍ର ଉତ୍ତାପ ବା ପ୍ରବଳ ଶୀତ ଅନୁଭବ କରିବେ ନାହିଁ ।

مُّتَّكِئِينَ فِيهَا عَلَى الْأَرَائِكِ لَا يَرَوْنَ فِيهَا شَمْسًا وَلَا زَمْهَرِيرًا ١٤

---

୧. ସେହି ଝରଣାରେ କର୍ପୂରର ଗୁଣ ମିଶି ରହିଥିବ ଓ ତାହାର ନାମ ମଧ୍ୟ କର୍ପୂର ହେବ । ତାହା ମନ୍ଦ ଭାବନାଗୁଡ଼ିକୁ ଶୀତଳ କରିବ ।

୨. ଅର୍ଥାତ୍ ସେମାନଙ୍କ କର୍ମ ଯୋଗୁଁ ସେହି ଝରଣା ବିଦୀର୍ଣ୍ଣ ହେବ ।

୧୫. ଏବଂ ସେହି ଉଦ୍ୟାନର ଛାୟା ସେମାନଙ୍କ ଉପରେ ଅବନତ ଥିବ, ଏବଂ ତାହାର ଫଳଗୁଡ଼ିକୁ ସେମାନଙ୍କର ନିକଟବର୍ତ୍ତୀ କରି ଦିଆଯିବ ।

وَدَانِيَةً عَلَيْهِمْ ظِلَالُهَا وَذُلِّلَتْ قُطُوفُهَا تَذْلِيلًا ﴿١٤﴾

୧୬. ଏବଂ ରୂପା ବାସନ ଓ ପାତ୍ର ତଥା କାଚ [୧] ଘୁରେଇ ସେମାନଙ୍କ ନିକଟକୁ ବାରମ୍ବାର ଅଣା ହେବ ।

وَيُطَافُ عَلَيْهِمْ بِآنِيَةٍ مِّن فِضَّةٍ وَأَكْوَابٍ كَانَتْ قَوَارِيرَا ﴿١٥﴾

୧୭. କାଚ ସଦୃଶ ଦେଖା ଯାଉଥିବା ଏହି ବାସନ ପ୍ରକୃତରେ ରୂପାର ହୋଇଥିବ, ଯାହାକୁ ଅଲ୍ଲାହଙ୍କ ଦେବଦୂତମାନେ ନିଜର କୁଶଳ କାରିଗରି ଦ୍ୱାରା ଗଢ଼ିଥିବେ (ଯଦ୍ଦ୍ୱାରା ତାହା କାଚ ସଦୃଶ ଝଟକି ଉଠିବ) ।

قَوَارِيرَا مِن فِضَّةٍ قَدَّرُوهَا تَقْدِيرًا ﴿١٦﴾

୧୮. ଏବଂ ବିଶ୍ୱାସକାରୀମାନଙ୍କୁ ସେ ବୈକୁଣ୍ଠରେ ଏପରି ଗ୍ଲାସ୍‌ରେ ଜଳପାନ କରିବାକୁ ଦିଆ ହେବ ଯହିଁରେ ଶୁଣ୍ଠି ମିଶା ଯାଇଥିବ ।

وَيُسْقَوْنَ فِيهَا كَأْسًا كَانَ مِزَاجُهَا زَنجَبِيلًا ﴿١٧﴾

୧୯. ଏବଂ ସେ ବୈକୁଣ୍ଠରେ 'ସଲସବିଲ' [୨] ନାମକ ଏକ ଝରଣା ଥିବ (ଯେହିଁରୁ ବିଶ୍ୱାସକାରୀମାନେ ପାନ କରିବେ) ।

عَيْنًا فِيهَا تُسَمَّىٰ سَلْسَبِيلًا ﴿١٨﴾

୨୦. ଏବଂ ସେବା କରିବାକୁ ସେମାନଙ୍କ ନିକଟକୁ ଯୁବକ (ଭୃତ୍ୟ)ମାନେ ବାରମ୍ବାର ଆସୁଥିବେ ; ଯେବେ ତୁମେ ସେମାନଙ୍କୁ ଦେଖିବ, ତେବେ ସେମାନଙ୍କୁ ବିକ୍ଷିପ୍ତ ମୁକ୍ତା ବୋଲି ମନେ କରିବ ।

وَيَطُوفُ عَلَيْهِمْ وِلْدَانٌ مُّخَلَّدُونَ إِذَا رَأَيْتَهُمْ حَسِبْتَهُمْ لُؤْلُؤًا مَّنثُورًا ﴿١٩﴾

୨୧. ଏବଂ ସେମାନେ ରହୁଥିବା ସ୍ଥାନରେ ତୁମେ ପ୍ରଚୁର ସୁଖ ସମ୍ପଦ ଓ ଏକ ବିଶାଳ ସାମ୍ରାଜ୍ୟ ଦେଖିବାକୁ ପାଇବ ।

وَإِذَا رَأَيْتَ ثَمَّ رَأَيْتَ نَعِيمًا وَمُلْكًا كَبِيرًا ﴿٢٠﴾

୨୨. ସେମାନଙ୍କ ପରିଧାନ ସୂକ୍ଷ୍ମ ରେଶମୀ ସବୁଜ ଓ ବୁଟିଦାର ବସ୍ତ୍ର ହୋଇଥିବ ; ଏବଂ ସେମାନଙ୍କୁ ରୂପାର ଖଡ଼ୁ ପିନ୍ଧାଇ ଦିଆଯିବ ; ଏବଂ ସେମାନଙ୍କ ପାଳନକର୍ତ୍ତା ସେମାନଙ୍କୁ ପବିତ୍ରକାରକ ମଦିରା ପାନ କରିବାକୁ ଦେବେ ।

عَالِيَهُمْ ثِيَابُ سُندُسٍ خُضْرٌ وَإِسْتَبْرَقٌ وَحُلُّوا أَسَاوِرَ مِن فِضَّةٍ وَسَقَاهُمْ رَبُّهُمْ شَرَابًا طَهُورًا ﴿٢١﴾

୨୩. (ଏବଂ ସେମାନଙ୍କୁ କୁହାଯିବ, "ହେ ବୈକୁଣ୍ଠବାସୀ !) ଏ ପୁରସ୍କାର ତୁମମାନଙ୍କ ପାଇଁ ନିର୍ଦ୍ଦିଷ୍ଟ କରାହୋଇଛି, ଏବଂ ତୁମମାନଙ୍କର ପ୍ରଚେଷ୍ଟାକୁ ଉପଯୁକ୍ତ ସମ୍ମାନ ଦିଆଯାଇଅଛି ।"

إِنَّ هَٰذَا كَانَ لَكُمْ جَزَاءً وَكَانَ سَعْيُكُم مَّشْكُورًا ﴿٢٢﴾

---

୧. ପ୍ରକୃତରେ ସେଗୁଡ଼ିକ କାଚରେ ତିଆରି ହୋଇ ନ ଥିବ ; କିନ୍ତୁ ସେଗୁଡ଼ିକ ଅତ୍ୟନ୍ତ କୋମଳ ହୋଇଥିବ ଓ କାଚ ଭଳି ଏପରି ସ୍ୱଚ୍ଛ ହୋଇଥିବ ଯେ ତହିଁରେ ମୁହଁ ଦେଖା ଯାଉଥିବ ।

୨. ଏହା ଏକ ଉପମା । ଏହାର ତାତ୍ପର୍ଯ୍ୟ ହେଉଛି, ବିଶ୍ୱାସକାରୀମାନଙ୍କୁ ପ୍ରଥମେ କର୍ପୂର ମିଶ୍ରିତ ଜଳ ମିଳିବ, ଫଳରେ ସେମାନଙ୍କର ସକଳ ମନ୍ଦ ଭାବନା ବିଲୁପ୍ତ ହେବ । ତା' ପରେ ଶୁଣ୍ଠିର ଝରଣା ଜଳ ମିଳିବ, ଫଳରେ ସତ୍‌କାର୍ଯ୍ୟ କରିବାକୁ ଉତ୍ସାହ ଜନ୍ମିବ । କିନ୍ତୁ ସେତେବେଳକୁ ପୁଣ୍ୟକାର୍ଯ୍ୟ କରିବା ପାଇଁ ଏତେ ଅଧିକ ପ୍ରେରଣା ସୃଷ୍ଟି ହୋଇ ନ ଥିବା ଯୋଗୁଁ ତାହା ସ୍ୱତଃ ଅଗ୍ରସର କରାଉ ନ ଥିବ । ତେଣୁ ଏହା ପରେ 'ସଲସବିଲ' ନାମକ ଝରଣାର ପାଣି ପିଇବାକୁ ଦିଆଯିବ, ଫଳରେ ସେମାନେ ଅନ୍ୟ କାହାରି ସାହାଯ୍ୟ ନ ନେଇ ସ୍ୱାଭାବିକ ଭାବରେ ଅଗ୍ରସର ହେବେ । ଅବଶ୍ୟ ସେତେବେଳକୁ ସେମାନେ ପ୍ରଭୁଙ୍କର ପ୍ରେମ-ମଦିରା ପାନ କରି ଏପରି ଅଭିଭୂତ ହୋଇଯାଇଥିବେ ଯେ ତାଙ୍କ ସାନ୍ନିଧ୍ୟ ଲାଭ କରିବା ପାଇଁ ଅତ୍ୟନ୍ତ ବ୍ୟଗ୍ର ହୋଇ ପଡିବେ ।

ରୁ: ୨

୨୪. ଆମେ କୋରାନକୁ ତୁମ ପ୍ରତି ଭାଗ ଭାଗ କରି ଅବତୀର୍ଣ୍ଣ କରିଅଛୁ ।

إِنَّا نَحْنُ نَزَّلْنَا عَلَيْكَ الْقُرْآنَ تَنْزِيلًا ﴿٢٤﴾

୨୫. ସୁତରାଂ ନିଜ ପାଳନକର୍ତ୍ତାଙ୍କ ଆଦେଶ ଉପରେ ଅଟଳ ରୁହ, ଏବଂ ଲୋକମାନଙ୍କ ମଧ୍ୟରେ ଥିବା ପାପୀ ଓ କୃତଘ୍ନମାନଙ୍କର ଆଜ୍ଞା ପାଳନ କର ନାହିଁ ।

فَاصْبِرْ لِحُكْمِ رَبِّكَ وَلَا تُطِعْ مِنْهُمْ آثِمًا أَوْ كَفُورًا ﴿٢٥﴾

୨୬. ଏବଂ ସକାଳେ ଓ ସନ୍ଧ୍ୟାରେ ନିଜ ପାଳନକର୍ତ୍ତାଙ୍କୁ ସ୍ମରଣ କର ।

وَاذْكُرِ اسْمَ رَبِّكَ بُكْرَةً وَأَصِيلًا ﴿٢٦﴾

୨୭. ଏବଂ ରାତ୍ରି ସମୟରେ ମଧ୍ୟ ତାହାଙ୍କ ସମକ୍ଷରେ ସିଜଦା କର, ଏବଂ ବହୁରାତ୍ରି ପର୍ଯ୍ୟନ୍ତ ତାହାଙ୍କର ପ୍ରଶଂସା ଗାନ କର ।

وَمِنَ اللَّيْلِ فَاسْجُدْ لَهُ وَسَبِّحْهُ لَيْلًا طَوِيلًا ﴿٢٧﴾

୨୮. ଏମାନେ ସାଂସାରିକ ସୁଖକୁ ପସନ୍ଦ କରୁଛନ୍ତି ଏବଂ ଆଗାମୀ ଭୟାବହ ଦିନ ସଂକ୍ରାନ୍ତରେ ଅବହେଳା କରନ୍ତି ।

إِنَّ هَٰؤُلَاءِ يُحِبُّونَ الْعَاجِلَةَ وَيَذَرُونَ وَرَاءَهُمْ يَوْمًا ثَقِيلًا ﴿٢٨﴾

୨୯. ଆମେ ହିଁ ସେମାନଙ୍କୁ ସୃଷ୍ଟି କରିଅଛୁ, ଏବଂ ସେମାନଙ୍କ ଶାରୀରିକ ଗଠନ କରିଅଛୁ ଏବଂ ଯେବେ ଆମେ ଇଚ୍ଛା କରିବୁ, ତେବେ ସେମାନଙ୍କ ପରି ଅନ୍ୟାନ୍ୟଙ୍କୁ ସୃଷ୍ଟି କରି ସେମାନଙ୍କ ସ୍ଥାନରେ ସ୍ଥାପିତ କରିଦେବୁ ।

نَحْنُ خَلَقْنَاهُمْ وَشَدَدْنَا أَسْرَهُمْ وَإِذَا شِئْنَا بَدَّلْنَا أَمْثَالَهُمْ تَبْدِيلًا ﴿٢٩﴾

୩୦. ଏହା ଏକ ଉପଦେଶ ଅଟେ ; ସୁତରାଂ ଯାହାର ଇଚ୍ଛା ସେ ନିଜ ପାଳନକର୍ତ୍ତାଙ୍କ ନିକଟରେ ପହଞ୍ଚାଉ ଥିବା ମାର୍ଗ ଅବଲମ୍ବନ କରୁ ।

إِنَّ هَٰذِهِ تَذْكِرَةٌ فَمَنْ شَاءَ اتَّخَذَ إِلَىٰ رَبِّهِ سَبِيلًا ﴿٣٠﴾

୩୧. ଏବଂ ଅଲ୍ଲାହ୍‌ଙ୍କର ଇଚ୍ଛା ବିନା ତୁମେମାନେ ଏପରି ଇଚ୍ଛା କରିପାରିବ ନାହିଁ ; କାରଣ ଅଲ୍ଲାହ୍ ସର୍ବଜ୍ଞ (ଓ) ତତ୍ତ୍ୱଜ୍ଞ ।

وَمَا تَشَاءُونَ إِلَّا أَنْ يَشَاءَ اللَّهُ إِنَّ اللَّهَ كَانَ عَلِيمًا حَكِيمًا ﴿٣١﴾

୩୨. ସେ ଯାହାକୁ ପସନ୍ଦ କରନ୍ତି ତାହାକୁ ନିଜ କରୁଣା ମଧ୍ୟକୁ ଘେନି ଆସନ୍ତି ; ଏବଂ ଅତ୍ୟାଚାରୀମାନଙ୍କ ସକାଶେ ସେ ଯନ୍ତ୍ରଣାଦାୟକ ଶାସ୍ତି ନିର୍ଦ୍ଦିଷ୍ଟ କରି ରଖିଛନ୍ତି ।

يُدْخِلُ مَنْ يَشَاءُ فِي رَحْمَتِهِ وَالظَّالِمِينَ أَعَدَّ لَهُمْ عَذَابًا أَلِيمًا ﴿٣٢﴾

سُوْرَةُ الْمُرْسَلٰتِ مَكِّيَّةٌ (٧٧)

## ଅଲ-ମୁରସଲାତ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୫୧ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

وَالْمُرْسَلٰتِ عُرْفًا ②

୨. ଆମେ ପ୍ରମାଣ ସ୍ୱରୂପ ସେହିମାନଙ୍କୁ [1] ଉପସ୍ଥାପିତ କରୁଅଛୁ ଯାହାଙ୍କୁ (ପ୍ରଥମେ) ଧୀରେ ଧୀରେ ପରିଚାଳିତ କରାଯାଏ,

فَالْعٰصِفٰتِ عَصْفًا ③

୩. ଏହାପରେ ସେମାନେ ଦ୍ରୁତଗତିରେ [2] ଗମନ କରନ୍ତି,

وَّالنّٰشِرٰتِ نَشْرًا ④

୪. ଏବଂ ଯେଉଁମାନେ ପୃଥିବୀରେ (ବାର୍ତ୍ତା) ପ୍ରସାରିତ [3] କରାନ୍ତି ସେମାନଙ୍କୁ ମଧ୍ୟ ଆମେ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ,

فَالْفٰرِقٰتِ فَرْقًا ⑤

୫. ଏବଂ ଯେଉଁମାନେ ସତ୍ୟ ଓ ଅସତ୍ୟକୁ [4] ପ୍ରଭେଦ କରନ୍ତି, ସେମାନଙ୍କୁ ମଧ୍ୟ,

فَالْمُلْقِيٰتِ ذِكْرًا ⑥

୬. ଏବଂ ଯେଉଁମାନେ ଅଲ୍ଲାହ୍‌ଙ୍କ ବାଣୀ ଶୁଣାଇ ଥା'ନ୍ତି, ସେମାନଙ୍କୁ ମଧ୍ୟ,

عُذْرًا اَوْ نُذْرًا ⑦

୭. ଏଥିଯୋଗୁଁ (ଉପସ୍ଥାପିତ କରୁଅଛୁ) ଯେ ତଦ୍ୱାରା ଲୋକମାନଙ୍କ ଉପରେ ଯୁକ୍ତି ସମ୍ପୂର୍ଣ୍ଣ ହୋଇଯିବ ଏବଂ ଏଥିଯୋଗୁଁ ମଧ୍ୟ ଯେ ଲୋକମାନଙ୍କୁ ସାବଧାନ କରାଇ ଦିଆଯିବ ।

اِنَّمَا تُوْعَدُوْنَ لَوَاقِعٌ ⑧

୮. ତୁମମାନଙ୍କୁ ଯେଉଁ ବିଷୟର ପ୍ରତିଶ୍ରୁତି ଦିଆଯାଉଅଛି ତାହା ଅବଶ୍ୟ ଘଟିବ ।

---

୧. ଏହି ଆୟତରେ ସେହି ଅଶ୍ୱମାନଙ୍କୁ ଅଥବା ହଜରତ ମହମ୍ମଦଙ୍କର ସେ ସବୁ ସାଥୀମାନଙ୍କୁ, ଯେଉଁମାନେ ଅଶ୍ୱ ଆରୋହଣ କରୁଥିଲେ, ପ୍ରମାଣ ସ୍ୱରୂପ ପେଶ କରାଯାଇଛି । ଅଲ୍ଲାହ୍ ସେମାନଙ୍କୁ ପୁଣ୍ୟ କାର୍ଯ୍ୟର ପ୍ରଚାର ଓ ପ୍ରସାର ପାଇଁ ଧୀରେ ଧୀରେ ସଂସାରରେ ବିସ୍ତାରିତ କରିବେ । 'ମୁରସଲାତ' ଶବ୍ଦର ଏହା ହିଁ ପ୍ରକୃତ ଅର୍ଥ ।

୨. ଅର୍ଥାତ୍ ସେହି ସାଥୀମାନେ କ୍ରମଶଃ ସଂସାରରେ ବ୍ୟାପିଯିବେ, କିନ୍ତୁ ସେମାନେ ଧୀରେ ଧୀରେ ଶକ୍ତିଶାଳୀ ହେଉଥିବେ ଓ ସେମାନଙ୍କ ଉନ୍ନତିର ବେଗ ଖୁବ୍ ଦ୍ରୁତ ହେଉଥିବ ।

୩. ଏଠାରେ ମଧ୍ୟ ସେହିସବୁ ସାଥୀମାନଙ୍କ ବିଷୟରେ ଉଲ୍ଲେଖ କରାଯାଇଛି ଯେଉଁମାନେ ପରିଶେଷରେ ସାରା ସଂସାରରେ ଇସଲାମ ଧର୍ମକୁ ପ୍ରସାରିତ କରିବେ ।

୪. ଏଠାରେ ମଧ୍ୟ ସେହି ସାଥୀମାନଙ୍କ ବିଷୟରେ ବର୍ଣ୍ଣନ କରାଯାଇଛି ଯେଉଁମାନେ ପରିଶେଷରେ ସତ୍ୟ ଓ ଅସତ୍ୟ ମଧ୍ୟରେ ଥିବା ପାର୍ଥକ୍ୟକୁ ପ୍ରଦର୍ଶିତ କରାଇବେ ।

୯. ଏବଂ ଯେତେବେଳେ ନକ୍ଷତ୍ରଗୁଡ଼ିକ[୧] ଦୀପ୍ତିହୀନ ହୋଇଯିବେ,

فَإِذَا النُّجُومُ طُمِسَتْ ﴿٨﴾

୧୦. ଏବଂ ଆକାଶରେ[୨] ଫାଟ ଦେଖା ଦେବ,

وَإِذَا السَّمَاءُ فُرِجَتْ ﴿٩﴾

୧୧. ଏବଂ ଯେତେବେଳେ ପର୍ବତଗୁଡ଼ିକୁ[୩] ଉଡ଼ାଇ ଦିଆଯିବ ।

وَإِذَا الْجِبَالُ نُسِفَتْ ﴿١٠﴾

୧୨. ଏବଂ ଯେତେବେଳେ ସମସ୍ତ[୪] ରସୁଲ ନିଜ ନିଜ ନିର୍ଦ୍ଧାରିତ ସମୟରେ ହାଜର କରାହେବେ ;

وَإِذَا الرُّسُلُ أُقِّتَتْ ﴿١١﴾

୧୩. (ଏବଂ ଲୋକମାନଙ୍କୁ କୁହାଯିବ ଯେ) ଏ ବିଷୟକୁ କେଉଁ ଦିନ ପାଇଁ ସ୍ଥଗିତ ରଖାଯାଇଛି,

لِأَيِّ يَوْمٍ أُجِّلَتْ ﴿١٢﴾

୧୪. (ଏକ) ନିଷ୍ପତ୍ତିକାରୀ ଦିନ ସକାଶେ ।

لِيَوْمِ الْفَصْلِ ﴿١٣﴾

୧୫. ଏବଂ ତୁମ୍ଭଙ୍କୁ କ'ଣ ଜଣାଅଛି ଯେ, ସେ ନିର୍ଣ୍ଣାୟକ ଦିନ କ'ଣ ?

وَمَا أَدْرَاكَ مَا يَوْمُ الْفَصْلِ ﴿١٤﴾

୧୬. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ, (ଏଥିରେ କୌଣସି ସନ୍ଦେହ ନାହିଁ) ।

وَيْلٌ يَوْمَئِذٍ لِلْمُكَذِّبِينَ ﴿١٥﴾

୧୭. କ'ଣ ଆମେ ପୂର୍ବବର୍ତ୍ତୀ ଲୋକମାନଙ୍କୁ ବିନାଶ କରିନାହୁଁ ?

أَلَمْ نُهْلِكِ الْأَوَّلِينَ ﴿١٦﴾

୧୮. ତା ହାହେଲେ କ'ଣ ଆମେ ସେମାନଙ୍କ ପରବର୍ତ୍ତୀ ଲୋକମାନଙ୍କୁ ସେମାନଙ୍କର ଅନୁସରଣ କରାଇବୁ[୫] ନାହିଁ ? (ତେବେ ଏ ପ୍ରକାର ପୃଥକ୍ ପୃଥକ୍ ବ୍ୟବହାର କାହିଁକି କରାଯିବ) ।

ثُمَّ نُتْبِعُهُمُ الْآخِرِينَ ﴿١٧﴾

୧୯. ଆମେ ଅପରାଧୀମାନଙ୍କ ସହିତ ଏହିଭଳି ବ୍ୟବହାର କରିଥାଉ ।[୬]

كَذَٰلِكَ نَفْعَلُ بِالْمُجْرِمِينَ ﴿١٨﴾

୨୦. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ ।

وَيْلٌ يَوْمَئِذٍ لِلْمُكَذِّبِينَ ﴿١٩﴾

---

୧. ଅର୍ଥାତ୍ ପଣ୍ଡିତ ଓ ବିଦ୍ୱାନ୍ ବ୍ୟକ୍ତିମାନେ ନୀତିଭ୍ରଷ୍ଟ ହୋଇଯିବେ ।

୨. ଅର୍ଥାତ୍ ପୁନର୍ବାର ଦିବ୍ୟବାଣୀର ଆଗମନ ଆରମ୍ଭ ହେବ ।

୩. ଅର୍ଥାତ୍ ରାଜା ମହାରାଜାମାନଙ୍କୁ ଉଚ୍ଛେଦ କରାଯିବ ।

୪. ଅର୍ଥାତ୍ ଏପରି ଜଣେ ସଂସ୍କାରକଙ୍କର ଆବିର୍ଭାବ ହେବ ଯାହାଙ୍କୁ ସମସ୍ତ ନବିଙ୍କ ନାମରେ ନାମିତ କରାହେବ । ତାହାଙ୍କ ସମ୍ବନ୍ଧରେ ଯେପରି ହଜରତ ମୁସା, ହଜରତ ଈସା, ଶ୍ରୀକୃଷ୍ଣ, ଶ୍ରୀ ରାମଚନ୍ଦ୍ର ଓ ମହାତ୍ମା ବୁଦ୍ଧ ସମସ୍ତଙ୍କର ଭବିଷ୍ୟବାଣୀ ରହିଥିବ, ସେହିପରି ହଜରତ ଇମାମ ଅହମଦ ସରହିନ୍ଦି, ହଜରତ ନିଆମତୁଲ୍ଲାହ ଓଲି ଆଦି ଧର୍ମାତ୍ମାମାନଙ୍କର ମଧ୍ୟ ଭବିଷ୍ୟବାଣୀ ଥିବ ।

୫. ଅର୍ଥାତ୍ କ'ଣ ଧ୍ୱଂସ କରିବୁ ନାହିଁ ?

୬. ଇତିହାସରୁ ଜଣାପଡୁଛି ଯେ ଅପରାଧୀମାନଙ୍କ ସହିତ ଏଭଳି ବ୍ୟବହାରର ପ୍ରଚଳନ ଅଛି । ତେଣୁ ହଜରତ ମହମ୍ମଦଙ୍କ ସମୟର ଅପରାଧୀମାନଙ୍କ ସହିତ ଅନୁରୂପ ବ୍ୟବହାର କରା ନ ଯିବା ପାଇଁ କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ ।

أَلَمْ نَخْلُقكُّم مِّن مَّآءٍ مَّهِينٍ ۝٢٠

୨୧. ଏବଂ ଆମେ ସେମାନଙ୍କୁ ପଚାରିବୁ, "କ'ଣ ଆମେ ତୁମମାନଙ୍କୁ ଏକ ତୁଚ୍ଛ ତରଳ ପଦାର୍ଥ (ଅର୍ଥାତ୍ ଶୁକ୍ରବିନ୍ଦୁ)ରୁ ସୃଷ୍ଟି କରିନାହୁଁ ?"

فَجَعَلْنَٰهُ فِى قَرَارٍ مَّكِينٍ ۝٢١

୨୨. ଏବଂ ଏହା ପରେ ତାହାକୁ ଏପରି ଏକ ସ୍ଥାନରେ (ଅର୍ଥାତ୍ ମାତୃଗର୍ଭରେ) ସ୍ଥାପିତ କରିଦେଲୁ ଯାହା ତାହାକୁ ସମୁଚିତ ଭାବରେ ସୁରକ୍ଷିତ କରିବାକୁ ସମର୍ଥ ଥିଲା ।

إِلَىٰ قَدَرٍ مَّعْلُومٍ ۝٢٢

୨୩. ଏବଂ ଯେତିକି ସମୟ ପର୍ଯ୍ୟନ୍ତ ସେହି ଶୁକ୍ରବିନ୍ଦୁ (ମାତୃ) ଗର୍ଭ ମଧ୍ୟରେ ରଖାଯିବା ଉଚିତ ଥିଲା, ସେତିକି ସମୟ ପର୍ଯ୍ୟନ୍ତ ଆମେ ତାହାକୁ ଗର୍ଭ ମଧ୍ୟରେ ରଖିଲୁ ।

فَقَدَرْنَا فَنِعْمَ ٱلْقَٰدِرُونَ ۝٢٣

୨୪. ଏବଂ ଆମେ ଏକ ଅନ୍ଦାଜ ନିରୂପିତ [୧] କରିଅଛୁ ; ଏବଂ ଆମେ ହିଁ (ପ୍ରକୃତରେ) ଅନ୍ଦାଜ ନିରୂପିତକାରୀ ।

وَيْلٌ يَوْمَئِذٍ لِّلْمُكَذِّبِينَ ۝٢٤

୨୫. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ ।

أَلَمْ نَجْعَلِ ٱلْأَرْضَ كِفَاتًا ۝٢٥

أَحْيَآءً وَأَمْوَٰتًا ۝٢٦

୨୬./୨୭. କ'ଣ ଆମେ ପୃଥିବୀକୁ ଜୀବିତ ଓ ମୃତମାନଙ୍କୁ ଧାରଣ କରିବା ସକାଶେ ଗଢ଼ିନାହୁଁ ? [୨]

وَجَعَلْنَا فِيهَا رَوَٰسِىَ شَٰمِخَٰتٍ وَأَسْقَيْنَٰكُم مَّآءً فُرَاتًا ۝٢٧

୨୮. ଏବଂ ଆମେ ତହିଁରେ ଉଚ୍ଚ ପର୍ବତ ଗଢ଼ିଅଛୁ, ଯାହା ଫଳରେ ତୁମମାନଙ୍କୁ ମଧୁର [୩] ଜଳପାନ କରାଉଅଛୁ ।

وَيْلٌ يَوْمَئِذٍ لِّلْمُكَذِّبِينَ ۝٢٨

୨୯. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ ।

ٱنطَلِقُوٓا۟ إِلَىٰ مَا كُنتُم بِهِۦ تُكَذِّبُونَ ۝٢٩

୩୦. (ଆମେ) ସେମାନଙ୍କୁ କହିବୁ, "ଯେଉଁ ବିଷୟକୁ ତୁମେମାନେ ମିଥ୍ୟା ମଣୁ ଥିଲ ତାହାରି ଆଡ଼କୁ ଯାଅ ।"

---

୧. ପ୍ରତ୍ୟେକ ଶିଶୁ ପାଇଁ କୌଣସି ସ୍ୱତନ୍ତ୍ର ନିୟମ ନାହିଁ ବରଂ ଏଥିପାଇଁ ପ୍ରାକୃତିକ ଭାବରେ ଏକ ସମୟ ନିର୍ଦ୍ଦିଷ୍ଟ କରାଯାଇଛି । ଯେବେଠାରୁ ପୃଥିବୀର ସୃଷ୍ଟି ହୋଇଛି ସେବେଠାରୁ ତଦନୁସାରେ ଏହି କାର୍ଯ୍ୟ ଚାଲିଛି, ଅର୍ଥାତ୍ ବିଭିନ୍ନ ପ୍ରକାର ପ୍ରାଣୀ ସେମାନଙ୍କ ଉଦ୍ଭବ ସକାଶେ ନିଜ ନିଜ ମାତୃ ଗର୍ଭରେ ସେଭଳି ନିର୍ଦ୍ଦିଷ୍ଟ କାଳାବଧି ପର୍ଯ୍ୟନ୍ତ ରହିଥାନ୍ତି ।

୨. ଅର୍ଥାତ୍ ଜୀବିତ ପ୍ରାଣୀ ଧରା ପୃଷ୍ଠରେ ବାସ କରନ୍ତି ଏବଂ ମୃତ ପ୍ରାଣୀକୁ ଭୂମିତଳେ ପୋତି ଦିଆଯାଏ ଅଥବା ସେମାନଙ୍କ ଚିତା-ଭସ୍ମକୁ ନଦୀରେ ଭସାଇ ଦିଆଯାଏ ।

୩. ପୃଥିବୀରେ ଅନେକ ଧର୍ମନିଷ୍ଠ ବ୍ୟକ୍ତି ତଥା ସାଂସାରିକ ମର୍ଯ୍ୟାଦାପ୍ରାପ୍ତ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ । ଯେଉଁ ଭୌତିକ ଓ ଆଧ୍ୟାତ୍ମିକ ଜଳ ଅତ୍ୟନ୍ତ ମଧୁର ତାହାକୁ ଏଭଳି ଧର୍ମନିଷ୍ଠ ଓ ମର୍ଯ୍ୟାଦାବନ୍ତ ଲୋକମାନେ ଅନ୍ୟମାନଙ୍କୁ ପାନ କରିବାକୁ ଦିଅନ୍ତି । ଏହି କଥାର ତାତ୍ପର୍ଯ୍ୟ ହେଉଛି ଯେ ଧର୍ମନିଷ୍ଠ ବ୍ୟକ୍ତିମାନେ ଲୋକମାନଙ୍କୁ ଦିବ୍ୟବାଣୀ ଶୁଣାଇ ସେମାନଙ୍କର ତୃଷ୍ଣା ନିବାରଣ କରନ୍ତି ଏବଂ ମର୍ଯ୍ୟାଦାବନ୍ତ ଲୋକମାନେ କୂଅ, ପୋଖରୀ ଓ କେନାଲ ଆଦି ଖୋଳି ଅନ୍ୟମାନଙ୍କୁ ମଧୁର ଜଳ ଯୋଗାଇ ଦିଅନ୍ତି ।

୩୧. "ଅର୍ଥାତ୍ ସେହି ଛାୟା ନିକଟକୁ ଯାଅ, ଯାହାର ତିନିଗୋଟି ଶାଖା ଅଛି"[1],

انْطَلِقُوا إِلَىٰ ظِلٍّ ذِي ثَلَاثِ شُعَبٍ

୩୨. "ତାହା ଛାୟାଦାନ କରେ ନାହିଁ କି ଉତ୍ତାପରୁ ରକ୍ଷାକରେ ନାହିଁ",

لَا ظَلِيلٍ وَلَا يُغْنِي مِنَ اللَّهَبِ

୩୩. ବରଂ ତାହା ଅଙ୍ଗାରିକା ସଦୃଶ ଉଚ୍ଚ ଅଗ୍ନି ଶିଖା ନିକ୍ଷେପ କରେ ।

إِنَّهَا تَرْمِي بِشَرَرٍ كَالْقَصْرِ

୩୪. (ତାହା) ଏତେ ଉଚ୍ଚ ଯେ ସେଗୁଡ଼ିକ ବଡ଼ ବଡ଼ ଜାହାଜକୁ, ବାନ୍ଧି ରଖିବା ହଳଦିଆ ରଙ୍ଗର ଦଉଡ଼ି ସଦୃଶ ଦେଖାଯା'ନ୍ତି ।

كَأَنَّهُ جِمَالَتٌ صُفْرٌ

୩୫. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ ।

وَيْلٌ يَوْمَئِذٍ لِلْمُكَذِّبِينَ

୩୬. ସେହିଦିନ ସେ (ଅପରାଧୀ)ମାନେ (ନିଜ ଇଚ୍ଛାରେ) କଥା କହି ପାରିବେ ନାହିଁ ।

هَٰذَا يَوْمُ لَا يَنْطِقُونَ

୩୭. ଏବଂ ସେମାନଙ୍କୁ ଆପତ୍ତି କରିବା ସକାଶେ ଅଲ୍ଲାହଙ୍କ ତରଫରୁ ମଧ୍ୟ ଅନୁମତି ଦିଆଯିବ ନାହିଁ ।[2]

وَلَا يُؤْذَنُ لَهُمْ فَيَعْتَذِرُونَ

୩୮. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ ।

وَيْلٌ يَوْمَئِذٍ لِلْمُكَذِّبِينَ

୩୯. ଏହା ନିଷ୍ପତ୍ତିର ଦିବସ ହେବ, ଯେଉଁଥିରେ ଆମେ ତୁମମାନଙ୍କୁ ଓ (ତୁମମାନଙ୍କର) ପୂର୍ବବର୍ତ୍ତୀ ସମ୍ପ୍ରଦାୟମାନଙ୍କୁ ମଧ୍ୟ ଏକତ୍ରିତ କରାଇବୁ ।

هَٰذَا يَوْمُ الْفَصْلِ جَمَعْنَاكُمْ وَالْأَوَّلِينَ

୪୦. ସୁତରାଂ ଯଦି ତୁମମାନଙ୍କ ପାଖରେ କୌଣସି ଉପାୟ ଅଛି, ତେବେ ସେହି ଉପାୟକୁ ଆମ ବିରୁଦ୍ଧରେ କାର୍ଯ୍ୟକାରୀ କରାଅ ।

فَإِنْ كَانَ لَكُمْ كَيْدٌ فَكِيدُونِ

୪୧. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ । ରୁ : ୨

وَيْلٌ يَوْمَئِذٍ لِلْمُكَذِّبِينَ ع

୪୨. ସେଦିନ ଧର୍ମଭୀରୁମାନେ ନିଶ୍ଚୟ ଛାୟା ଓ ଝରଣାଯୁକ୍ତ ସ୍ଥାନରେ ରହିବେ ।

إِنَّ الْمُتَّقِينَ فِي ظِلَالٍ وَعُيُونٍ

---

୧. ଶେଷ ଯୁଗରେ ଇସଲାମର ବିରୁଦ୍ଧାଚରଣ କରୁଥିବା ବ୍ୟକ୍ତିମାନଙ୍କର ଆଶ୍ରୟସ୍ଥଳ ଏହିପରି ହେବ ଯାହା ପ୍ରକୃତରେ ଆଶ୍ରୟସ୍ଥଳ ନୁହେଁ, ବରଂ ତାହା ଏକ ଯନ୍ତ୍ରଣାଦାୟକ ସ୍ଥାନ ହେବ ।

୨. ଅର୍ଥାତ୍ ସେହି ଦିନ ସେମାନଙ୍କ ନିଜ ଅଙ୍ଗ ପ୍ରତ୍ୟଙ୍ଗ ସେମାନଙ୍କ ବିଷୟରେ ସାକ୍ଷ୍ୟ ଦେଉଥିବେ, ଫଳରେ କୌଣସି ମୌଖିକ ସାକ୍ଷ୍ୟର ପ୍ରୟୋଜନ ହେବ ନାହିଁ ।

୪୩. ଏବଂ ନିଜ ପସନ୍ଦଯୋଗ୍ୟ ଫଳମାନଙ୍କ ମଧ୍ୟରେ ରହିଥିବେ (ଯାହା ସେମାନଙ୍କୁ ସେମାନଙ୍କ ଇଚ୍ଛାନୁସାରେ ମିଳିବ)।

وَّفَوَاكِهَ مِمَّا يَشْتَهُوْنَ ۝

୪୪. ଏବଂ ସେମାନଙ୍କୁ କୁହାଯିବ, "ମନଲୋଭା ଫଳମାନ ଖାଅ ଓ ବିଶୁଦ୍ଧ ଜଳ ପାନକର ; ଏହା ତୁମମାନଙ୍କ କର୍ମର ପୁରସ୍କାର।

كُلُوْا وَاشْرَبُوْا هَنِيْٓـًٔا بِمَا كُنْتُمْ تَعْمَلُوْنَ ۝

୪୫. ଆମେ ହିତକାରୀମାନଙ୍କୁ ଏହିପରି ପୁରସ୍କାର ଦେଇଥାଉ।

اِنَّا كَذٰلِكَ نَجْزِى الْمُحْسِنِيْنَ ۝

୪୬. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ।

وَيْلٌ يَّوْمَىِٕذٍ لِّلْمُكَذِّبِيْنَ ۝

୪୭. (ଏବଂ ଆମେ ସେମାନଙ୍କୁ କହୁ) ଖାଅ ଓ କିଛି ସାଂସାରିକ ଜୀବନ ଉପଭୋଗ କର ; ତୁମେମାନେ ହିଁ ଅପରାଧୀ।

كُلُوْا وَتَمَتَّعُوْا قَلِيْلًا اِنَّكُمْ مُّجْرِمُوْنَ ۝

୪୮. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ।

وَيْلٌ يَّوْمَىِٕذٍ لِّلْمُكَذِّبِيْنَ ۝

୪୯. ଏବଂ ଯେତେବେଳେ ମଧ୍ୟ ଏହି ଲୋକମାନଙ୍କୁ କୁହାଯାଏ ଯେ ଏକେଶ୍ୱରବାଦ ଉପରେ ଦୃଢ଼ ରହ, ସେତେବେଳେ ସେମାନେ ଏକେଶ୍ୱରବାଦ ଉପରେ ଦୃଢ଼ ରହନ୍ତି ନାହିଁ (ବରଂ ଅନ୍ୟାନ୍ୟ ଉପାସ୍ୟମାନ ସ୍ଥିର କରିବାକୁ ଉଦ୍ୟତ ହୁଅନ୍ତି)।

وَاِذَا قِيْلَ لَهُمُ ارْكَعُوْا لَا يَرْكَعُوْنَ ۝

୫୦. ସେଦିନ ପ୍ରତ୍ୟାଖ୍ୟାନକାରୀମାନଙ୍କର ସର୍ବନାଶ ହେବ।

وَيْلٌ يَّوْمَىِٕذٍ لِّلْمُكَذِّبِيْنَ ۝

୫୧. ଅତଏବ (କୁହ ତ ଭଲା) ଏହା (ଅର୍ଥାତ୍ ଏହି ପବିତ୍ର କୋରାନ) ପରେ ସେମାନେ କେଉଁ ଗ୍ରନ୍ଥ ଉପରେ ବିଶ୍ୱାସ କରିବେ ?

فَبِاَيِّ حَدِيْثٍۭ بَعْدَهٗ يُؤْمِنُوْنَ ۝

## ଭାଗ - ୩୦



# ଅଲ—ନବା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୪୧ଟି ଆୟତ ଓ ୨ଟି ରୁକୁ ଅଛି ।)

بِسۡمِ اللّٰہِ الرَّحۡمٰنِ الرَّحِیۡمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

عَمَّ یَتَسَآءَلُوۡنَ ②

୨. ଏମାନେ କେଉଁ ବିଷୟରେ (ଆଶ୍ଚର୍ଯ୍ୟ ହୋଇ) ପରସ୍ପରକୁ ପ୍ରଶ୍ନ ପଚାରୁଛନ୍ତି ?

عَنِ النَّبَاِ الۡعَظِیۡمِ ③

୩. କ'ଣ ସେହି (ଉପରୋକ୍ତ 'ୟୋମୁଲ ଫସଲ' ବିଷୟକ) ମହାନ୍ ଘଟଣାର ସମାଚାର ସଂକ୍ରାନ୍ତରେ ?

الَّذِیۡ ہُمۡ فِیۡہِ مُخۡتَلِفُوۡنَ ④

୪. ଯେଉଁ ବିଷୟରେ ଏ (ଲୋକ) ମାନେ (କୋରାନ ବର୍ଣ୍ଣିତ ସତ୍ୟ ସଂକ୍ରାନ୍ତରେ) ଭିନ୍ନ ମତ ପୋଷଣ କରୁଛନ୍ତି ।

کَلَّا سَیَعۡلَمُوۡنَ ⑤

୫. ଆଦୌ ନୁହେଁ, (ମନେରଖ, ସେହି ସତ୍ୟ ସେମାନଙ୍କ ବିଶ୍ୱାସର ପରିପନ୍ଥୀ ଅଟେ ଓ) ସେମାନେ ଦିନେ ଏହାକୁ ଜାଣି ପାରିବେ ।

ثُمَّ کَلَّا سَیَعۡلَمُوۡنَ ⑥

୬. ଆମେ ପୁନଶ୍ଚ କହୁଅଛୁ, ଆଦୌ ନୁହେଁ, (ସେହି ବିଷୟ ସେମାନଙ୍କ ବିଶ୍ୱାସର ପରିପନ୍ଥୀ ଅଟେ ; ଏବଂ ଏହି ଭବିଷ୍ୟବାଣୀକୁ, ଯାହା ଏହି ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି) ; ସେମାନେ ଦିନେ ଏହାକୁ ଜାଣି ପାରିବେ ।

اَلَمۡ نَجۡعَلِ الۡاَرۡضَ مِہٰدًا ⑦

୭. (ଚିନ୍ତା କରି ଦେଖ) କ'ଣ ଆମେ ଭୂପୃଷ୍ଠକୁ ଶଯ୍ୟା ରୂପେ ଗଢ଼ି ନାହୁଁ ?

وَّ الۡجِبَالَ اَوۡتَادًا ⑧

୮. ଏବଂ ପର୍ବତମାନଙ୍କୁ କୀଲା ରୂପେ ପୋତି ନାହୁଁ ?

وَّ خَلَقۡنٰکُمۡ اَزۡوَاجًا ⑨

୯. ଏବଂ (ଏହା ମଧ୍ୟ ମନେରଖ ଯେ) ଆମେ ତୁମ ସମସ୍ତଙ୍କୁ ଯୋଡ଼ା (ଯୋଡ଼ା) କରି ସୃଷ୍ଟି କରିଅଛୁ,

وَّ جَعَلۡنَا نَوۡمَکُمۡ سُبَاتًا ⑩

୧୦. ଏବଂ ଆମେ ତୁମମାନଙ୍କ ନିଦ୍ରାକୁ ବିଶ୍ରାମର ସାଧନ ରୂପେ ଗଢ଼ିଅଛୁ,

وَّ جَعَلۡنَا الَّیۡلَ لِبَاسًا ⑪

୧୧. ଏବଂ ଆମେ ରାତ୍ରିକୁ ଆବରଣ ସ୍ୱରୂପ ଗଢ଼ିଅଛୁ,

وَّ جَعَلۡنَا النَّہَارَ مَعَاشًا ⑫

୧୨. ଏବଂ ଆମେ ଦିନକୁ ଜୀବିକା ନିର୍ବାହର ପନ୍ଥା ରୂପେ ଗଢ଼ିଅଛୁ ।

୧୩. ଏବଂ ଆମେ ତୁମମାନଙ୍କ ଉପରେ ସାତଗୋଟି (ଉଚ୍ଚ ଓ) ସୁଦୃଢ଼ (ଆକାଶ) ସୃଷ୍ଟି କରିଅଛୁ ;

وَّبَنَيْنَا فَوْقَكُمْ سَبْعًا شِدَادًا ﴿١٣﴾

୧୪. ଏବଂ ଆମେ ଏକ ଦୀପ୍ତିମାନ୍ ସୂର୍ଯ୍ୟ (ମଧ୍ୟ) ସୃଷ୍ଟି କରିଅଛୁ ।

وَّجَعَلْنَا سِرَاجًا وَّهَّاجًا ﴿١٤﴾

୧୫. ଏବଂ ଆମେ ଘନ ମେଘମାଳାରୁ ପ୍ରଚୁର ପରିମାଣରେ ବହୁଥିବା ଜଳଧାରା (ମଧ୍ୟ) ଅବତରଣ କରିଅଛୁ,

وَّاَنْزَلْنَا مِنَ الْمُعْصِرٰتِ مَآءً ثَجَّاجًا ﴿١٥﴾

୧୬. ଯଦ୍ୱାରା କି ଆମେ ଏହା ଦ୍ୱାରା ଶସ୍ୟ, ଓ ଉଦ୍‌ଭିଦ ଉତ୍ପାଦନ କରି ପାରିବୁ,

لِّنُخْرِجَ بِهٖ حَبًّا وَّنَبَاتًا ﴿١٦﴾

୧୭. ଏବଂ ଘଞ୍ଚ ଉଦ୍ୟାନ (ସୃଷ୍ଟି କରି ପାରିବୁ) ।

وَّجَنّٰتٍ اَلْفَافًا ﴿١٧﴾

୧୮. ବାସ୍ତବରେ ସେହି ନିଷ୍ପତ୍ତିକାରୀ ଦିବସର ଏକ ନିର୍ଦ୍ଧାରିତ ସମୟ ଅଛି,

اِنَّ يَوْمَ الْفَصْلِ كَانَ مِيْقَاتًا ﴿١٨﴾

୧୯. ଯେଉଁ ଦିନ ବିଗୁଲ ବଜାଯିବ, ତାପରେ ତୁମେମାନେ ବହୁ ସଂଖ୍ୟାରେ (ଆମ୍ଭ ସମୀପକୁ) ଆସିବ ;

يَّوْمَ يُنْفَخُ فِى الصُّوْرِ فَتَاْتُوْنَ اَفْوَاجًا ﴿١٩﴾

୨୦. ଏବଂ ଆକାଶକୁ ଉନ୍ମୁକ୍ତ କରି ଦିଆ ହେବ ; ଏପରି କି ତାହା ଦ୍ୱାର[1] (ସଦୃଶ) ହୋଇଯିବ ।

وَّفُتِحَتِ السَّمَآءُ فَكَانَتْ اَبْوَابًا ﴿٢٠﴾

୨୧. ଏବଂ ପର୍ବତକୁ (ସ୍ୱସ୍ଥାନରୁ)[3] ଚାଳିତ[2] କରା ହେବ ଏପରିକି ସେଗୁଡ଼ିକ ମରୀଚିକା (ସଦୃଶ) ହୋଇଯିବ ।

وَّسُيِّرَتِ الْجِبَالُ فَكَانَتْ سَرَابًا ﴿٢١﴾

୨୨. ବାସ୍ତବରେ ନରକ (ସେ ଲୋକମାନଙ୍କୁ) ଛକି ରହିଅଛି ।

اِنَّ جَهَنَّمَ كَانَتْ مِرْصَادًا ﴿٢٢﴾

୨୩. (ଏବଂ) ତାହା ଦୁରାଗ୍ରହୀମାନଙ୍କର ରହିବା ସ୍ଥାନ ଅଟେ ।

لِّلطّٰغِيْنَ مَاٰبًا ﴿٢٣﴾

୨୪. ସେମାନେ ସେଠାରେ ବହୁକାଳ ରହିବେ ।

لّٰبِثِيْنَ فِيْهَآ اَحْقَابًا ﴿٢٤﴾

---

୧. ଅର୍ଥାତ୍ ଆକାଶରୁ ଅନେକ ନିଦର୍ଶନ ପ୍ରକଟିତ ହେବ ଯେ ଯେପରି ଆକାଶରେ ଅନେକ ଦ୍ୱାର ନିର୍ମିତ ହୋଇଛି । ବିଶ୍ୱାସକାରୀମାନଙ୍କ ସକାଶେ ପ୍ରଚୁର ପରିମାଣରେ କରୁଣା ଅବତରଣ ହେବ ଓ ଅବିଶ୍ୱାସକାରୀଙ୍କ ସକାଶେ ଶାସ୍ତି ପ୍ରକାଶିତ ହେବ ।

୨. ଅର୍ଥାତ୍ ଶେଷ ଯୁଗରେ ଲୋକମାନେ ରାଜାମାନଙ୍କର ବୃତାନ୍ତ ପାଠ କରିବେ । କିନ୍ତୁ ଯେତେବେଳେ ଲୋକମାନେ ସେମାନଙ୍କ ନିକଟକୁ ଆସିବେ, ସେତେବେଳେ ସେହି ରାଜାମାନଙ୍କର ରାଜତ୍ୱ ସେମାନଙ୍କ ନିକଟରେ ଏକ ମୃଗତୃଷ୍ଣା ସଦୃଶ ପ୍ରତୀତ ହେବ, ଅର୍ଥାତ୍ ସେଭଳି ରାଜାମାନେ ନାମମାତ୍ର ରାଜା ହୋଇଥିବେ ଅଥଚ ପ୍ରଜାମାନେ ସେମାନଙ୍କ ଉପରେ ରାଜତ୍ୱ କରୁଥିବେ । ଅଧିକନ୍ତୁ ରାଜାମାନେ ମଧ୍ୟ ଆଇନକାନୁନ ଦ୍ୱାରା ନିୟନ୍ତ୍ରିତ ହେଉଥିବେ । ଯଦି ଏହି ଆୟତକୁ ଧର୍ମଗତ ବ୍ୟବସ୍ଥା ସମ୍ବନ୍ଧରେ ବୁଝିବାକୁ ହେବ, ତେବେ ଏହାର ଅର୍ଥ ନିମ୍ନମତେ ହେବ : ଅଲ୍ଲଃ ଧର୍ମ ପଣ୍ଡିତ ଓ ବିଦ୍ୱାନ୍‌ମାନଙ୍କୁ ପର୍ବତ ସଦୃଶ ଗଢ଼ିବେ । କିନ୍ତୁ ଯେବେ ବା ସାଧାରଣ ଜନତା ଧର୍ମର ଉନ୍ନତି କଲ୍ପେ ଉଦ୍ୟମ କରିବେ, ତେବେ ଧର୍ମଧ୍ୱଜାଧାରୀ ଓ ନାମମାତ୍ର ବିଦ୍ୱାନ୍‌ମାନେ ସେମାନଙ୍କ ମାର୍ଗରେ ପ୍ରତିବନ୍ଧକ ହେବେ ଏବଂ ସେମାନଙ୍କ ଉଦ୍ୟମକୁ ବିଫଳ କରାଇବେ । ସେମାନଙ୍କ ଦ୍ୱାରା ଧର୍ମର କୌଣସି ପ୍ରକାର ବିକାଶ ହେଉ ନ ଥିବ ବରଂ ତାହା କ୍ରମଶଃ ଦୁର୍ବଳ ହେଉଥିବା ଦେଖି ଧର୍ମନିଷ୍ଠ ଲୋକମାନେ ବିସ୍ମିତ ହେବେ ଓ ସେମାନଙ୍କ ପ୍ରତି ଥିବା ଧାରଣା ପରିବର୍ତ୍ତିତ ହେବ ।

୩. ଅର୍ଥାତ୍ ଅବିଶ୍ୱାସକାରୀମାନଙ୍କର ଶାସନ ବ୍ୟବସ୍ଥା ଓ ସଙ୍ଗଠନକୁ ଭାଙ୍ଗି ଦିଆଯିବ । ମୂଳ ଶବ୍ଦ 'ଜେବାଲ୍' ଅର୍ଥ ପର୍ବତ, ଯାହା ସମ୍ରାଟ ଓ କ୍ଷମତାଶାଳୀ ବା ବିଦ୍ୱାନ୍ ବ୍ୟକ୍ତିକୁ ବୁଝାଏ । ଅତଏବ ଏହି ଆୟତର ଭାବାର୍ଥ ହେଉଛି : (କ) ପର୍ବତଗୁଡ଼ିକୁ ଡିନାମାଇଟ୍ ଦ୍ୱାରା ଭାଙ୍ଗି ସଡ଼କ, ସୁଡ଼ଙ୍ଗ ଓ ପ୍ରାନ୍ତର ଗଢ଼ାଯିବ, (ଖ) ଧର୍ମ ବିରୁଦ୍ଧରେ ଯୋଜନା କରୁଥିବା ପର୍ବତ ସଦୃଶ ଶାସକ ଓ ସେମାନଙ୍କ ଶାସନ ବ୍ୟବସ୍ଥାକୁ ଧୂଳିସାତ୍ କରି ଦିଆଯିବ ।

୨୫. ସେଠାରେ ସେମାନଙ୍କ ଅବସ୍ଥା ଏପରି ହେବ ଯେ ସେମାନେ ସେଠାରେ କୌଣସି ପ୍ରକାର ଶୀତଳତା (ଅନୁଭବ କରିବେ ନାହିଁ) ବା (ତୃଷା ମେଣ୍ଟାଇବା ସକାଶେ) କୌଣସି କିସମର ପାନୀୟ ପାଇବେ ନାହିଁ।

لَا يَذُوقُونَ فِيهَا بَرْدًا وَلَا شَرَابًا ﴿٢٥﴾

୨୬. ଅବଶ୍ୟ ଅଲ୍ଲାହ ସେମାନଙ୍କୁ (ଅତ୍ୟନ୍ତ) ଉତପ୍ତ ଜଳ ଓ (ଅସହ୍ୟ) ଶୀତଳ ଜଳ ଦେବେ।

إِلَّا حَمِيمًا وَغَسَّاقًا ﴿٢٦﴾

୨୭. (ଏହିପରି ଭାବରେ[1] ସେମାନଙ୍କୁ ସେମାନଙ୍କ କର୍ମାନୁସାରେ) ଉପଯୁକ୍ତ ପ୍ରତିଫଳ (ଦିଆଯିବ)।

جَزَاءً وِفَاقًا ﴿٢٧﴾

୨୮. ପ୍ରକୃତରେ ସେମାନେ (ନିଜ ହୃଦୟରେ କୌଣସି) ହିସାବର ଭୟ ରଖୁ ନଥିଲେ।

إِنَّهُمْ كَانُوا لَا يَرْجُونَ حِسَابًا ﴿٢٨﴾

୨୯. ଏବଂ ଆମର ନିଦର୍ଶନଗୁଡିକୁ ପ୍ରତ୍ୟାଖ୍ୟାନ କରୁଥିଲେ।

وَكَذَّبُوا بِآيَاتِنَا كِذَّابًا ﴿٢٩﴾

୩୦. ଏବଂ ଆମେ ପ୍ରତିଟି ବିଷୟର ସମ୍ପୂର୍ଣ୍ଣ ହିସାବ ରଖିଅଛୁ।

وَكُلَّ شَيْءٍ أَحْصَيْنَاهُ كِتَابًا ﴿٣٠﴾

୩୧. ସୁତରାଂ (ନିଜ କର୍ମ ଅନୁସାରେ) ଶାସ୍ତି ଆସ୍ୱାଦନ କର ; ଏବଂ ଆମେ ତୁମମାନଙ୍କୁ ଶାସ୍ତି (ଉପରେ ଶାସ୍ତି) ପ୍ରଦାନ କରୁଥିବୁ।

فَذُوقُوا فَلَنْ نَزِيدَكُمْ إِلَّا عَذَابًا ﴿٣١﴾

ରୁ : ୨

୩୨. ବାସ୍ତବରେ ଧର୍ମଭୀରୁମାନଙ୍କ ସକାଶେ ସଫଳତା (ନିୟତ) ଅଛି,

إِنَّ لِلْمُتَّقِينَ مَفَازًا ﴿٣٢﴾

୩୩. (ଅର୍ଥାତ୍) ଉଦ୍ୟାନ ଓ ଅଙ୍ଗୁର,

حَدَائِقَ وَأَعْنَابًا ﴿٣٣﴾

୩୪. ଏବଂ ସମବୟସ୍କା ଯୁବତୀ,

وَكَوَاعِبَ أَتْرَابًا ﴿٣٤﴾

୩୫. ଏବଂ ଉଚ୍ଛୁଳି ପଡୁଥିବା ପିଆଲା।

وَكَأْسًا دِهَاقًا ﴿٣٥﴾

୩୬. ସେମାନେ ସେଠାରେ (ଅର୍ଥାତ୍ ବୈକୁଣ୍ଠରେ) ଅଯଥା କଥା ଶୁଣିବେ ନାହିଁ କି (ସେମାନଙ୍କ କଥାକୁ) କେବେ କେହି ମିଥ୍ୟା ମଣିବେ ନାହିଁ।

لَا يَسْمَعُونَ فِيهَا لَغْوًا وَلَا كِذَّابًا ﴿٣٦﴾

୩୭. ସେମାନଙ୍କୁ ତୁମ ପାଳନକର୍ତ୍ତାଙ୍କ ତରଫରୁ ଏପରି ପ୍ରତିଦାନ ମିଳିବ ଯାହା ଉପଯୁକ୍ତ ପୁରସ୍କାର ହିଁ ହେବ।

جَزَاءً مِنْ رَبِّكَ عَطَاءً حِسَابًا ﴿٣٧﴾

୩୮. (ଏହା ତୁମ ପାଳନକର୍ତ୍ତାଙ୍କ ତରଫରୁ ହେବ ଯେ କି) ଆକାଶ ଓ ପୃଥିବୀର ତଥା ସେ ଉଭୟ ମଧ୍ୟରେ ଯାହା କିଛି ରହିଅଛି ସେ ସବୁର ପାଳନକର୍ତ୍ତା (ଏବଂ) ଅତ୍ୟନ୍ତ ଦୟାବାନ୍ ଅଟନ୍ତି ; ସେମାନେ ତାହାଙ୍କ ସମୀପରେ (ବିନା ଅନୁମତିରେ) କଥା କହିବାକୁ ସମର୍ଥ ହେବେ ନାହିଁ।

رَبِّ السَّمَاوَاتِ وَالْأَرْضِ وَمَا بَيْنَهُمَا الرَّحْمَٰنِ لَا يَمْلِكُونَ مِنْهُ خِطَابًا ﴿٣٨﴾

---

୧. ଧର୍ମଗତ ବିଷୟରେ ଶୀତଳତା ଅର୍ଥାତ୍ ଶିଥିଳତା ପ୍ରଦର୍ଶନ କରୁଥିଲେ। ତେଣୁ ସେମାନଙ୍କୁ ଶୀତଳ ଜଳ ପାନ କରିବାକୁ ଦିଆଯିବ। କିନ୍ତୁ ଧର୍ମ ବିରୁଦ୍ଧ କାର୍ଯ୍ୟ କରିବାରେ ଉଷ୍ଣତା ଅର୍ଥାତ୍ କ୍ଷିପ୍ରତା ପ୍ରଦର୍ଶନ କରୁଥିଲେ। ତେଣୁ ସେମାନଙ୍କୁ ଉତପ୍ତ ଜଳ ପାନ କରିବାକୁ ଦିଆଯିବ।

୩୯. (ଏହା ସେହି ଦିନ ହେବ) ଯେଉଁଦିନ ପରିପୂର୍ଣ୍ଣ ଆତ୍ମା ଓ ଦେବଦୂତମାନେ ଧାଡ଼ି ବାନ୍ଧି ଠିଆ ହୋଇଥିବେ, (ଏବଂ) ଦୟାବାନ୍ ଅଲ୍ଲାହ ଯାହାକୁ ଅନୁମତି ଦେଇଥିବେ ତାହା ବ୍ୟତୀତ ଅନ୍ୟ କେହି କିଛି କହିପାରିବେ ନାହିଁ, ଏବଂ ସେପରି ବ୍ୟକ୍ତି କେବଳ ଉଚିତ କଥା କହିବେ ।

يَوْمَ يَقُومُ الرُّوحُ وَالْمَلَٰٓئِكَةُ صَفًّا ۖ لَّا يَتَكَلَّمُونَ إِلَّا مَنْ أَذِنَ لَهُ الرَّحْمَٰنُ وَقَالَ صَوَابًا ۝

୪୦. ସେହି ଦିନ ନିଶ୍ଚୟ ଉପସ୍ଥିତ ହେବ ; ସୁତରାଂ (ତୁମମାନଙ୍କ ମଧ୍ୟରୁ) ଯେ ଇଚ୍ଛା କରୁଛି ସେ ନିଜ ପାଳନକର୍ତ୍ତାଙ୍କ ନିକଟରେ (ନିଜର) ଆଶ୍ରୟ ସ୍ଥାନ ବାଛି ନେଉ ।

ذَٰلِكَ الْيَوْمُ الْحَقُّ ۖ فَمَن شَآءَ اتَّخَذَ إِلَىٰ رَبِّهِۦ مَـَٔابًا ۝

୪୧. ଆମେ ତୁମମାନଙ୍କୁ ଏକ ଆସନ୍ନ ଶାସ୍ତି ସଂକ୍ରାନ୍ତରେ ସାବଧାନ କରାଇ ଦେଇଛୁ ଯେଉଁଦିନ ମନୁଷ୍ୟ ସେହି ବିଷୟକୁ ଦେଖିବାକୁ ପାଇବ ଯାହା ତାର ଦୁଇ ହାତ ପୂର୍ବରୁ (ଅର୍ଜନ କରି) ପ୍ରେରଣ କରିଛି,[1] ଏବଂ (ସେ ଦିନ) ଅବିଶ୍ୱାସକାରୀ କହିବ, "ହାୟ ! ମୁଁ ମାଟି ହୋଇଥା'ନ୍ତି କି !"

إِنَّآ أَنذَرْنَٰكُمْ عَذَابًا قَرِيبًا ۖ يَوْمَ يَنظُرُ الْمَرْءُ مَا قَدَّمَتْ يَدَاهُ وَيَقُولُ الْكَافِرُ يَٰلَيْتَنِى كُنتُ تُرَٰبًۢا ۝

---

୧. ପରିତାପର ବିଷୟ, କେତେକ ମୁସଲମାନ ସମ୍ପ୍ରଦାୟ ହଜରତ ମହମ୍ମଦଙ୍କର 'ସାହାବା' ଅର୍ଥାତ୍ କେତେକ ସାଥୀଙ୍କ ପ୍ରତି ଏପରି ଈର୍ଷାନ୍ୱିତ ହୋଇ ଯାଇଛନ୍ତି ଯେ ସେମାନେ ତାହାଙ୍କର ପରମ ଶିଷ୍ୟ ହଜରତ ଅବୁବକରଙ୍କ ପ୍ରତି ଦୋଷାରୋପ କରିବାକୁ କୁଣ୍ଠାବୋଧ କରିନାହାନ୍ତି । ହଜରତ ଅବୁବକର ମୃତ୍ୟୁ ଶଯ୍ୟାରେ 'ମୁଁ ମାଟି ହୋଇ ଯାଆନ୍ତି କି' ବାକ୍ୟାଂଶ କହିଛନ୍ତି ବୋଲି ସେମାନେ ବର୍ଣ୍ଣନା କରୁଛନ୍ତି ଓ ତତ୍‌ସହିତ ମତ ବ୍ୟକ୍ତ କରୁଛନ୍ତି ଯେ ସେ ଏତଦ୍ୱାରା ଇସଲାମ ଧର୍ମରେ ଆସ୍ଥା ସ୍ଥାପନ କରୁ ନ ଥିବା ପ୍ରମାଣିତ ହେଉଛି । ଯଦି ସେମାନଙ୍କର ଉପରୋକ୍ତ ବକ୍ତବ୍ୟ ସତ୍ୟ ଓ ଏହି ଆୟତ ହଜରତ ଅବୁବକରଙ୍କୁ ସମ୍ପୃକ୍ତ କରୁଅଛି, ତେବେ ଇସଲାମ ଧର୍ମରେ ହଜରତ ଅବୁବକରଙ୍କ ଆନ୍ତରିକତାକୁ ବିଚାର କଲେ ଏହାର ଅର୍ଥ ନିମ୍ନମତେ ହେବ– ଅବିଶ୍ୱାସକାରୀମାନଙ୍କ କଥାକୁ ପ୍ରତ୍ୟାଖ୍ୟାନ କରୁଥିବା ବ୍ୟକ୍ତି ଅର୍ଥାତ୍ ହଜରତ ଅବୁବକର କହିବେ, 'ହାୟ ! ମୋ ସହିତ ଅଲ୍ଲାହ ଏହିପରି ବ୍ୟବହାର କରନ୍ତେ ଯେ ସେ ମୋ ସତ୍‌କର୍ମର ପୁରସ୍କାର ଦେଇ ନ ଥା'ନ୍ତେ କି ମୋ ତ୍ରୁଟି ପାଇଁ ଦଣ୍ଡବିଧାନ କରି ନ ଥା'ନ୍ତେ ।' ଏହିପରି ବିବୃତି ଜଣେ ଆଦର୍ଶ ବିଶ୍ୱାସକାରୀଙ୍କର ହିଁ ହୋଇପାରେ । ହଦିସରେ ସ୍ୱୟଂ ହଜରତ ମହମ୍ମଦଙ୍କ ସମ୍ବନ୍ଧରେ ମଧ୍ୟ ନିମ୍ନୋକ୍ତ ବର୍ଣ୍ଣନା ରହିଅଛି– 'ମୁଁ ମୋର କର୍ମ ଯୋଗୁଁ କ୍ଷମା ପାଇ ପାରିବି ନାହିଁ, ବରଂ ଅଲ୍ଲାହ ସ୍ୱୀୟ କୃପା ବଳରେ ମୋତେ କ୍ଷମା ପ୍ରଦାନ କରିବେ ।'

ଏହି ଆୟତରେ 'କାଫିର୍' ଶବ୍ଦ ବ୍ୟଙ୍ଗାତ୍ମକ ଭାବରେ ପ୍ରୟୋଗ କରାଯାଇଛି । ଏହାର ଅଭିପ୍ରାୟ ହେଉଛି ଯେ ଲୋକମାନେ ଅବୁବକରଙ୍କ ଭଳି ଧର୍ମନିଷ୍ଠ ମୁସଲମାନଙ୍କୁ କାଫିର କହୁଛନ୍ତି, ଯେ କି ସବୁ ଯୁଦ୍ଧ କ୍ଷେତ୍ରରେ ହଜରତ ମହମ୍ମଦଙ୍କ ପାଖେ ପାଖେ ରହିଥିଲେ, ନିଜର ସମସ୍ତ ଧନ ସମ୍ପତ୍ତିକୁ ହଜରତ ମହମ୍ମଦଙ୍କ ପାଇଁ ଉତ୍ସର୍ଗ କରି ଦେଇଥିଲେ , ନିଜର ଏଗାର ବର୍ଷର କନ୍ୟାକୁ ତାଙ୍କ ସହିତ ବିବାହ କରାଇଥିଲେ, ଯେତେବେଳେ କି ତାଙ୍କ ବୟସ ଚଉବନ/ ପଞ୍ଚାବନରେ ପହଞ୍ଚିଥିଲା ଓ ଯେ କି ହିଜରତ ବେଳେ ତାଙ୍କ ଗହଣରେ ଥିଲେ । ଯେତେବେଳେ ସମଗ୍ର ଆରବ ଜଗତ ହଜରତ ମହମ୍ମଦଙ୍କୁ ବିରୋଧ କରୁଥିଲା, ସେତେବେଳେ ହଜରତ ଅବୁବକର ହିଁ ତାହାଙ୍କର ଘନିଷ୍ଠ ସହକର୍ମୀ ତଥା ସମର୍ଥକ ଥିଲେ । ତେବେ କ'ଣ ଏପରି ଏକ ଉତ୍ସର୍ଗୀକୃତ ଜୀବନ କାଫିର ହୋଇପାରେ ? ଅନ୍ୟ ଯେଉଁମାନେ ତାଙ୍କ ସହିତ ତୁଳନା କରାଯିବା ଭଳି କୌଣସି କାର୍ଯ୍ୟ କରି ନାହାନ୍ତି, କ'ଣ ସେମାନେ ପ୍ରକୃତ ବିଶ୍ୱାସକାରୀ ବୋଲାଇବେ ? କେବଳ ସେତିକି ନୁହେଁ, ହିଜରତ ସମୟରେ 'ଶୌର' ଗୁମ୍ଫାରେ ଶତ୍ରୁ ଭୟରେ କେବଳ ହଜରତ ଅବୁବକରଙ୍କ ସହିତ ଲୁଚି ରହିବା ଏବଂ ଯେତେବେଳେ ଚାରିଆଡ଼େ ଶତ୍ରୁମାନେ ଘେରି ରହିଥିଲେ ସେତେବେଳେ ଦୀର୍ଘ ଦୁଇ ଶହ ମାଇଲ ପର୍ଯ୍ୟନ୍ତ ପଳାୟନ କରୁଥିବା ବେଳେ ଏକମାତ୍ର ଅବୁବକରଙ୍କ ନିଜ ଗହଣରେ ରଖିବା କ'ଣ ଅବୁବକରଙ୍କ ଉଚ୍ଚକୋଟିର ମର୍ଯ୍ୟାଦାକୁ ପ୍ରମାଣିତ କରୁନାହିଁ ? ଯେତେବେଳେ ହଜରତ ମହମ୍ମଦଙ୍କୁ ଜୀବିତାବସ୍ଥାରେ ହେଉ କି ମୃତାବସ୍ଥାରେ ହେଉ ଧରି ଆଣି ପେଶ୍ କଲେ ପ୍ରଚୁର ପରିମାଣରେ ପୁରସ୍କାର ମିଳିବା ବିଷୟ ଘୋଷଣା କରାଯାଇଥିଲା ସେତେବେଳେ ନିଃସନ୍ଦେହରେ ହଜରତ ଅବୁବକରଙ୍କ ପକ୍ଷରେ ଅକୃତଜ୍ଞ ହେବା ପାଇଁ ଅନେକ ସୁଯୋଗ ଥିଲା । କିନ୍ତୁ ସେ ହଜରତ ମହମ୍ମଦଙ୍କ ପ୍ରତି କେତେ ଦୂର ଅନୁରକ୍ତ ସେ ନିଜେ ତାହାର ଭୂରି ଭୂରି ପ୍ରମାଣ ଛାଡ଼ି ଯାଇଛନ୍ତି । ଅନ୍ୟ ପକ୍ଷରେ ହଜରତ ଅବୁବକରଙ୍କ ସାହସ ମଧ୍ୟ ଅତୁଳନୀୟ । ପ୍ରତ୍ୟେକ

(ଅବଶିଷ୍ଟାଂଶ.... ପୃ ୧୦୨୧)

سُوْرَةُ النّٰزِعٰتِ مَكِّيَّةٌ (٧٩) اٰيَاتُهَا

# ଅଲ - ନାଜିୟାତ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୪୭ଟି ଆୟତ ଓ ୨ଟି ରୁକୁ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

وَالنّٰزِعٰتِ غَرْقًا ②

୨. ଆମେ ସେହିମାନଙ୍କୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ,[୧] ଯେଉଁମାନେ ସମ୍ପୂର୍ଣ୍ଣ ଧ୍ୟାନ ଦେଇ ଧର୍ମ-ଜ୍ଞାନକୁ ଆକର୍ଷଣ କରିଥା'ନ୍ତି,

وَّالنّٰشِطٰتِ نَشْطًا ③

୩. ଏବଂ ସେମାନଙ୍କୁ, ଯେଉଁମାନେ କି ଦୃଢଭାବରେ ଗଣ୍ଠି ପକାଇ ଥା'ନ୍ତି (ଅର୍ଥାତ୍ ଅଲ୍ଲାହ୍‌ଙ୍କ ସହିତ ସମ୍ପର୍କକୁ ଦୃଢୀଭୂତ କରିଥା'ନ୍ତି),

وَّالسّٰبِحٰتِ سَبْحًا ④

୪. ଏବଂ ସେମାନଙ୍କୁ, ଯେଉଁମାନେ କି ଦୂରଦୂରାନ୍ତରକୁ ଚାଲିଯାଆନ୍ତି,[୨]

فَالسّٰبِقٰتِ سَبْقًا ⑤

୫. ତା'ପରେ (ପ୍ରତିଦ୍ୱନ୍ଦ୍ୱିତା କରି ନିଜ ପ୍ରତିଦ୍ୱନ୍ଦ୍ୱୀଙ୍କ ଠାରୁ) ବହୁତ ଆଗେଇ ଯାଆନ୍ତି,[୩]

وقف لازم فَالْمُدَبِّرٰتِ اَمْرًا ⑥

୬. ତା'ପରେ (ସାଂସାରିକ) କାର୍ଯ୍ୟ ସମ୍ପାଦନ ପାଇଁ ଯୋଜନା କରିବାରେ ଲାଗି ପଡନ୍ତି ।

---

ଯୁଦ୍ଧରେ ସେ ହଜରତ ମହମ୍ମଦଙ୍କର ଅତି ନିକଟରେ ରହୁଥିଲେ । ପରିଶେଷରେ ତାଙ୍କ ଧର୍ମନିଷ୍ଠା ଓ ଅନୁରକ୍ତିର ଅନ୍ୟ ଏକ ପ୍ରମାଣ ମଧ୍ୟ ପ୍ରଣିଧାନ-ଯୋଗ୍ୟ । ହଜରତ ମହମ୍ମଦ ଅଲ୍ଲାହ୍‌ଙ୍କ ଠାରୁ ବଦର ଯୁଦ୍ଧରେ ଜୟଲାଭ କରିବାର ପ୍ରତିଶ୍ରୁତି ପାଇଥିଲେ ମଧ୍ୟ, ଯେତେବେଳେ ସେ ତଥାପି ବିକଳ ପ୍ରାର୍ଥନା କରୁଥିଲେ ସେତେବେଳେ ହଜରତ ଅବୁବକର ତାଙ୍କୁ ଏହିପରି ପଚାରିଥିଲେ ଯେ ଯେବେ ଅଲ୍ଲାହ୍‌ଙ୍କର ପ୍ରତିଶ୍ରୁତି ମିଳିଛି ତେବେ କ'ଣ ତାହା ଅନ୍ୟଥା ହୋଇପାରେ ? ଏପରି କି ହଜରତ ମହମ୍ମଦ ମୃତ୍ୟୁ ଶଯ୍ୟାରେ ହଜରତ ଆଏଶାଙ୍କୁ ଯାହା କହିଥିଲେ ତାହା ମଧ୍ୟ ହଜରତ ଅବୁବକରଙ୍କ ସଂକ୍ରାନ୍ତରେ ଅତୀବ ଗୁରୁତ୍ୱପୂର୍ଣ୍ଣ । ତାଙ୍କ କହିବା ଅନୁସାରେ ଯଦିଚ ସେ ତା'ଙ୍କୁ ତାଙ୍କ ଅନ୍ତେ ଖଲିଫା ବୋଲି ଘୋଷଣା କରିବାକୁ ଚାହୁଁ ଥିଲେ ତଥାପି ସେ ଜାଣି ଥିଲେ ଯେ ଅଲ୍ଲାହ୍ ବା ବିଶ୍ୱାସକାରୀମାନେ ଅବୁବକରଙ୍କ ବ୍ୟତୀତ ଅନ୍ୟ କାହାରିକୁ ଖଲିଫା ପଦରେ ନିଯୁକ୍ତି ଦେବାକୁ ମନା କରି ଦେବେ । ତେଣୁ ସେ ନିଜର ଏହି ଅଭିଳାଷକୁ ଗୋପନ ରଖିଥିଲେ ।

୧. ଏଠାରେ ସାହାବା ବା ହଜରତ ମହମ୍ମଦଙ୍କ ସାଥୀମାନଙ୍କ ବିଷୟ ଏହିପରି ବର୍ଣ୍ଣନା କରାଯାଇଛି ଯେ ସେମାନେ ସଂସାରରେ ଉଚ୍ଚକୋଟିର ସଦାଚାର ପ୍ରତିଷ୍ଠା କରିବା ପାଇଁ ଗୁରୁତ୍ୱ ଆରୋପ କରୁଥିଲେ । କେତେକ ଭାଷ୍ୟକାରଙ୍କ ମତରେ ଏଠାରେ ଦେବଦୂତମାନଙ୍କର ବିବରଣ ରହିଅଛି । କିନ୍ତୁ ଆମ ମତରେ ଏଠାରେ ଉପର ଲିଖିତ ସାଥୀମାନଙ୍କ ବିଷୟ ବର୍ଣ୍ଣନା କରାଯାଇଛି । ବସ୍ତୁତଃ ଏଠାରେ ସେହି ସାଥୀମାନଙ୍କୁ ସାକ୍ଷ୍ୟ ଭାବରେ ପେଶ୍ କରାଯାଇଛି । ଦେବଦୂତମାନଙ୍କ ସାକ୍ଷ୍ୟକୁ ବିଶ୍ୱାସକାରୀମାନେ ବୁଝି ପାରିବେ ନାହିଁ କି ଅବିଶ୍ୱାସକାରୀମାନେ ବୁଝି ପାରିବେ ନାହିଁ, ଅଥଚ ସେହି ସାଥୀମାନଙ୍କର ସାକ୍ଷ୍ୟକୁ ସମସ୍ତେ ବୁଝିପାରିବେ ।

୨ ଅର୍ଥାତ୍ ହଜରତ ମହମ୍ମଦ୍‌ଙ୍କ ସାଥୀମାନେ ଇସ୍‌ଲାମ ଧର୍ମର ପ୍ରଚାର ପାଇଁ ଦେଶ ବିଦେଶରେ ଭ୍ରମଣ କରୁଥିଲେ ।

୩. ସାଥୀମାନଙ୍କ ମଧ୍ୟରେ ଜଣେ ଅନ୍ୟକୁ ପୁଣ୍ୟ କାର୍ଯ୍ୟ କରି ଆଗକୁ ବଢ଼ିଯିବାପାଇଁ ଉତ୍ସାହ ଥିଲା । ଫଳରେ ସେମାନେ ପୁଣ୍ୟକାର୍ଯ୍ୟ କରିବାପାଇଁ ତଥା ଜଣେ ଅନ୍ୟକୁ ବଳି ଯିବା ପାଇଁ ଯେଉଁ ଉଦ୍ୟମ କରୁଥିଲେ, ସେଥିରେ ସେମାନେ କୌଣସି ପ୍ରକାର କଠିନତା ଅନୁଭବ କରି ନ ଥିଲେ କି ଅସୁବିଧାର ସମ୍ମୁଖୀନ ହୋଇ ନ ଥିଲେ ।

ୢ (ତାହା ହିଁ ଉପରୋକ୍ତ ଗୁଣସମ୍ପନ୍ନ ଜାତିର ଆବିର୍ଭାବ ଦିବସ ହେବ) ; ଯେଉଁ ଦିନ ଯୁଦ୍ଧ (ପାଇଁ ପ୍ରସ୍ତୁତି) କରୁଥିବା ଜାତି ଯୁଦ୍ଧର ପ୍ରସ୍ତୁତି କରିବ[୧]।

يَوْمَ تَرْجُفُ الرَّاجِفَةُ ⑦

୮. ଏହା ପରେ (ଅର୍ଥାତ୍ ଏହି ଯୁଦ୍ଧ ପ୍ରସ୍ତୁତି ପରେ ଏ ପ୍ରକାର) ପଛରେ ଆସୁଥିବା[୨] (ଅନ୍ୟ ଏକ) ସମୟ ଆସିବ ।

تَتْبَعُهَا الرَّادِفَةُ ⑧

୯. ସେ ଦିନ କେତେକ (ଲୋକଙ୍କର) ହୃଦୟ ପ୍ରକମ୍ପିତ[୩] ହେଉଥିବ,

قُلُوبٌ يَوْمَئِذٍ وَاجِفَةٌ ⑨

୧୦. ଏବଂ ସେମାନଙ୍କ ଚକ୍ଷୁ ଭୟରେ ଅବନତ ହୋଇଥିବ ।

أَبْصَارُهَا خَاشِعَةٌ ⑩

୧୧. (ଏବଂ) ସେମାନେ କହିବେ, ''କ'ଣ ଆମମାନଙ୍କୁ ନିଜ ପୂର୍ବ ଅବସ୍ଥାକୁ ଫେରାଇ ଦିଆଯିବ ?''

يَقُولُونَ أَإِنَّا لَمَرْدُودُونَ فِي الْحَافِرَةِ ⑪

୧୨. ''କ'ଣ (ଏପରି ଅବସ୍ଥାରେ ମଧ୍ୟ) ଯେତେବେଳେ ଆମମାନଙ୍କର ହାଡ ପଚିସଢି ଯାଇଥିବ[୪] ; (ଏପରି ହେବ) ?''

أَإِذَا كُنَّا عِظَامًا نَّخِرَةً ⑫

୧୩. ସେମାନେ କହନ୍ତି, (ଯଦି ଏପରି ହେବ) ''ତେବେ ଏହା ଅତ୍ୟନ୍ତ କ୍ଷତିକାରକ ପ୍ରତ୍ୟାବର୍ତ୍ତନ ହେବ ।''

قَالُوا تِلْكَ إِذًا كَرَّةٌ خَاسِرَةٌ ⑬

୧୪. (ଏବଂ ଏହା ମଧ୍ୟ ମନେରଖ ଯେ) ଏହି ଯୁଦ୍ଧ ସମାଗ୍ରର କେବଳ ଏକ ଚେତାବନୀ[୫] (ସ୍ୱରୂପ) ଥିଲା ।

فَإِنَّمَا هِيَ زَجْرَةٌ وَاحِدَةٌ ⑭

୧୫. ଅତଏବ (ଏହି ଚେତାବନୀ ପରେ) ସେମାନେ ପୁନରାୟ (ଯୁଦ୍ଧ) କ୍ଷେତ୍ରରେ ଉପସ୍ଥିତ[୬] ହେବେ ।

فَإِذَا هُم بِالسَّاهِرَةِ ⑮

୧୬. କ'ଣ ତୁମ ନିକଟରେ ମୁସାଙ୍କ ବୃତ୍ତାନ୍ତ (ମଧ୍ୟ) ପହଞ୍ଚିଛି ?

هَلْ أَتَاكَ حَدِيثُ مُوسَىٰ ⑯

---

୧. ଅର୍ଥାତ୍ ପୂର୍ବ ଆୟତଗୁଡ଼ିକରେ ସେହି ସମୟର ଉଲ୍ଲେଖ ଅଛି ଯେଉଁ ସମୟରେ ମୁସଲମାନମାନେ ଅବିଶ୍ୱାସକାରୀଙ୍କ ଆକ୍ରମଣରୁ ରକ୍ଷାପାଇବା ପାଇଁ ଓ ନିଜର ସୁରକ୍ଷା ଲାଗି ଯୁଦ୍ଧ କରିବାକୁ ବାଧ୍ୟ ହେବେ ।

୨. ଅର୍ଥାତ୍ ଯେତେବେଳେ ମୁସଲମାନମାନେ ଯୁଦ୍ଧ କରିବାକୁ ବାଧ୍ୟ ହେବେ, ସେତେବେଳେ ଅସ୍ତ୍ରଶସ୍ତ୍ରକୁ କେବଳ ହସ୍ତରେ ଧାରଣ କରିବା ଯଥେଷ୍ଟ ହେବ ନାହିଁ ବରଂ ସେମାନେ ଗୋଟିଏ ପରେ ଗୋଟିଏ ଆକ୍ରମଣ ସେ ପର୍ଯ୍ୟନ୍ତ କରି ଚାଲିଥିବେ ଯେ ପର୍ଯ୍ୟନ୍ତ ସେମାନେ ବିଜୟ ମଣ୍ଡିତ ହୋଇ ନାହାନ୍ତି ।

୩. ଅର୍ଥାତ୍ ଅବିଶ୍ୱାସକାରୀମାନେ ସେତେବେଳେ ଭୀରୁତା ପ୍ରଦର୍ଶନ କରିବାକୁ ଲାଗିବେ ।

୪. ଯେତେବେଳେ ଇସଲାମର ପ୍ରାଧାନ୍ୟ ବିସ୍ତାର ସତ୍ୟସାବ୍ୟସ୍ତ ହୋଇଯିବ ସେତେବେଳେ ଅବିଶ୍ୱାସକାରୀମାନେ ସେହି ଦ୍ୱିତୀୟ ବିଷୟ ଘଟିବ କି ନାହିଁ ବୋଲି ପଚାରିବେ ଅର୍ଥାତ୍ 'ଆମେମାନେ ମରିଯିବା ପରେ କ'ଣ ଆମମାନଙ୍କୁ ପୁନର୍ଜୀବିତ କରାଯାଇ ଉତ୍‌ଥିତ କରାହେବ ?'

୫. ଅର୍ଥାତ୍ ଅବିଶ୍ୱାସକାରୀମାନଙ୍କର ଶାସ୍ତି କେବଳ ବଦର ଯୁଦ୍ଧ କ୍ଷେତ୍ରରେ ପରାଜୟ ନୁହେଁ, ବରଂ ସେମାନେ ଏହିପରି ଅନେକ ପରାଜୟର ସମ୍ମୁଖୀନ ହେବେ ।

୬. ଅର୍ଥାତ୍ ଯେତେବେଳେ ଯୁଦ୍ଧ କରିବାପାଇଁ ପ୍ରକୃତ ସମୟ ଆସିବ, ସେତେବେଳେ ଅବିଶ୍ୱାସକାରୀମାନେ ମଧ୍ୟ ବାରମ୍ବାର ଆକ୍ରମଣ ପ୍ରତି ଧ୍ୟାନ ଦେବେ, କିନ୍ତୁ ପରିଶେଷରେ ପରାଜୟ ବରଣ କରିବେ ।

| | |
|---|---|
| ୧୬. ଯେତେବେଳେ ତାହାକୁ ତାହାଙ୍କ ପାଳନକର୍ତ୍ତା ପବିତ୍ର ଉପତ୍ୟକା 'ତୁୱା'ରେ ଡାକିଥିଲେ । | إِذْ نَادَاهُ رَبُّهُ بِالْوَادِ الْمُقَدَّسِ طُوًى ﴿١٦﴾ |
| ୧୮. (ଏବଂ କହିଥିଲେ ଯେ), "ଫିରଔନ ନିକଟକୁ ଯାଅ, କାରଣ ସେ ବିଦ୍ରୋହୀ ହୋଇଅଛି ।" | اذْهَبْ إِلَىٰ فِرْعَوْنَ إِنَّهُ طَغَىٰ ﴿١٧﴾ |
| ୧୯. ଏବଂ (ତାହାକୁ) କୁହ, "କଣ ତୁମେ ପବିତ୍ର ହେବାକୁ ଇଚ୍ଛା କରୁଛ ?" | فَقُلْ هَل لَّكَ إِلَىٰ أَن تَزَكَّىٰ ﴿١٨﴾ |
| ୨୦. "ଏବଂ (ସେଥିପାଇଁ) ଆମେ ତୁମକୁ ତୁମ ପାଳନକର୍ତ୍ତାଙ୍କ ନିକଟକୁ ପଥ ପ୍ରଦର୍ଶନ କରାଇବୁ ଏବଂ (ଏହା ଫଳରେ) ତୁମେ (ଅଲ୍ଲାହଙ୍କୁ) ଭୟ କରିବ ।" | وَأَهْدِيَكَ إِلَىٰ رَبِّكَ فَتَخْشَىٰ ﴿١٩﴾ |
| ୨୧. ସୁତରାଂ (ମୁସା ତା ନିକଟକୁ ଗଲେ ଓ) ତାହାକୁ ଏକ ମହାନ୍ ନିଦର୍ଶନ ଦେଖାଇଲେ, | فَأَرَاهُ الْآيَةَ الْكُبْرَىٰ ﴿٢٠﴾ |
| ୨୨. କିନ୍ତୁ ସେ ଏ ବିଷୟରେ (ମୁସାଙ୍କୁ) ମିଥ୍ୟାବାଦୀ ମନେ କଲା ଓ ଅମାନ୍ୟ କଲା । | فَكَذَّبَ وَعَصَىٰ ﴿٢١﴾ |
| ୨୩. ତତ୍ପରେ ସେ ବିଶୃଙ୍ଖଳା ସୃଷ୍ଟି କରିବାକୁ ପରିକଳ୍ପନା କରି (ସତ୍ୟଠାରୁ) ବିମୁଖ ହେଲା । | ثُمَّ أَدْبَرَ يَسْعَىٰ ﴿٢٢﴾ |
| ୨୪. ଏହାପରେ (ସେ ନିଜ ପାରିଷଦ ବର୍ଗଙ୍କୁ) ଏକତ୍ରିତ କରାଇଲା ଏବଂ (ଦେଶର ସର୍ବସାଧାରଣଙ୍କ ନିକଟରେ) ଘୋଷଣା (ମଧ୍ୟ) କରାଇଲା । | فَحَشَرَ فَنَادَىٰ ﴿٢٣﴾ |
| ୨୫. ଏବଂ (ଲୋକମାନଙ୍କୁ ଏକତ୍ରିତ କରାଇ) କହିଲା, "ମୁଁ ତୁମମାନଙ୍କର ସର୍ବଶ୍ରେଷ୍ଠ ପାଳନକର୍ତ୍ତା ଅଟେ ।" | فَقَالَ أَنَا رَبُّكُمُ الْأَعْلَىٰ ﴿٢٤﴾ |
| ୨୬. ଏଥିଯୋଗୁଁ ଅଲ୍ଲାହ ତା'କୁ ପରକାଳ ଓ ଇହକାଳର ଶାସ୍ତିରେ ଜଡିତ କରାଇବା ପାଇଁ କବଳିତ କଲେ । | فَأَخَذَهُ اللَّهُ نَكَالَ الْآخِرَةِ وَالْأُولَىٰ ﴿٢٥﴾ |
| ୨୭. ଯେଉଁମାନେ (ଅଲ୍ଲାହଙ୍କୁ) ଭୟ କରନ୍ତି ବାସ୍ତବରେ ଏଥିରେ (ଅର୍ଥାତ୍ ଏହି ଘଟଣାରେ) ସେମାନଙ୍କ ପାଇଁ ଶିକ୍ଷା (ମୂଳକ ବିଷୟ) ରହିଅଛି । | إِنَّ فِي ذَٰلِكَ لَعِبْرَةً لِّمَن يَخْشَىٰ ﴿٢٦﴾ |

ରୁ : ୨

| | |
|---|---|
| ୨୮. (ଟିକିଏ ଭାବି ଦେଖ ତ) କ'ଣ ତୁମମାନଙ୍କୁ (ପୁନରାୟ) ସୃଷ୍ଟି କରିବା ଅଧିକ କଷ୍ଟସାଧ୍ୟ ନା ଆକାଶକୁ, ଯାହାକୁ (ଅଲ୍ଲାହ) ଗଢିଛନ୍ତି ? | أَأَنتُمْ أَشَدُّ خَلْقًا أَمِ السَّمَاءُ ۚ بَنَاهَا ﴿٢٧﴾ |

୧. ମୂଳ ଶବ୍ଦ 'ତୁୱା' ଅର୍ଥ ଘୂରିବା । ତେଣୁ ଏହାର ଭାବାର୍ଥ ହେଉଛି ଯେ ତାହା ଏପରି ଏକ ଉପତ୍ୟକା ଯେଉଁଠାରୁ ମନୁଷ୍ୟ ଅଲ୍ଲାହଙ୍କ ଆଡ଼କୁ ଫେରି ଆସେ ଅର୍ଥାତ୍ ଆଧ୍ୟାତ୍ମିକ ଦୃଷ୍ଟିରୁ ତା'ର ଉନ୍ନତିର ବ୍ୟବସ୍ଥା କରାଯାଉଥିଲା ।

୨. ହଜରତ ମୁସା ତାଙ୍କ ପୂର୍ବବର୍ତ୍ତୀ ତଥା ପରବର୍ତ୍ତୀ ସମସ୍ତ ନବିଙ୍କର ପଛା ଅନୁସରଣ କରିଥିଲେ । ତାଙ୍କୁ ନବି ବୋଲି ସ୍ୱୀକାର କରି ତାଙ୍କ ଉପଦେଶକୁ ଗ୍ରହଣ କରିବା ଶ୍ରେୟସ୍କର ହେବ, ଏ ବିଷୟ ସେ ଫିରଔନକୁ କହିଥିଲେ । ତାଙ୍କ ଆଗମନ ଫିରଔନ ପାଇଁ ଅଲ୍ଲାହଙ୍କ ପ୍ରକୋପର କାରଣ ନ ହେଉ ବୋଲି ମଧ୍ୟ ସେ ତାକୁ ଜଣାଇ ଦେଇଥିଲେ ।

୨୯. (ଏବଂ ସେ) ତାହାର ଉଚ୍ଚତାକୁ ବଢ଼ାଇଛନ୍ତି ଓ ତା'ପରେ ତାହାକୁ ତ୍ରୁଟିଶୂନ୍ୟ କରିଛନ୍ତି ।

رَفَعَ سَمْكَهَا فَسَوّٰىهَا

୩୦. ଏବଂ ତାହାର ରାତ୍ରିକୁ ଅନ୍ଧକାରମୟ କରିଛନ୍ତି, ଏବଂ ତାହାର ଦିନକୁ (ଆଲୋକିତ କରି) ପ୍ରକାଶ କରିଛନ୍ତି ।

وَاَغْطَشَ لَيْلَهَا وَاَخْرَجَ ضُحٰىهَا

୩୧. ଏବଂ ତତ୍‌ସହିତ (ସେହି ସମୟରେ) ଭୂପୃଷ୍ଠକୁ ମଧ୍ୟ ସମ୍ପ୍ରସାରିତ କରିଛନ୍ତି ।

وَالْاَرْضَ بَعْدَ ذٰلِكَ دَحٰىهَا

୩୨. ଏବଂ (ତନ୍ମଧ୍ୟରୁ) ତାହାର ଜଳ ଓ ତାହାର ତୃଣ ଉତ୍ପନ୍ନ କରିଛନ୍ତି ।

اَخْرَجَ مِنْهَا مَآءَهَا وَمَرْعٰىهَا

୩୩. ଏବଂ ସେ ପର୍ବତମାନଙ୍କୁ ତହିଁରେ ପୋତିଛନ୍ତି ।

وَالْجِبَالَ اَرْسٰىهَا

୩୪. ତୁମମାନଙ୍କର ଓ ତୁମମାନଙ୍କ ଜୀବଜନ୍ତୁଙ୍କର ଉପକାର ସକାଶେ (ସେ ଏସବୁ କରିଛନ୍ତି) ।

مَتَاعًا لَّكُمْ وَلِاَنْعَامِكُمْ

୩୫. ସୁତରାଂ ଯେତେବେଳେ ସେହି ମହା ବିପଦ ଉପସ୍ଥିତ ହେବ,

فَاِذَا جَآءَتِ الطَّآمَّةُ الْكُبْرٰى

୩୬. ଯେଉଁ ଦିନ ମନୁଷ୍ୟ ନିଜ କୃତିକୁ ସ୍ମରଣ କରିବ,

يَوْمَ يَتَذَكَّرُ الْاِنْسَانُ مَا سَعٰى

୩୭. ଏବଂ ଯେ (ନିଜ ଜ୍ଞାନ ଚକ୍ଷୁ ସାହାଯ୍ୟରେ) ନରକକୁ ଦେଖିବ ତା'ପାଇଁ ଏହାକୁ ପ୍ରକାଶିତ କରି ଦିଆଯିବ ।

وَبُرِّزَتِ الْجَحِيْمُ لِمَنْ يَّرٰى

୩୮. ସୁତରାଂ ଯେ ବିଦ୍ରୋହ ଆଚରଣ କରିଅଛି,

فَاَمَّا مَنْ طَغٰى

୩୯. ଏବଂ ଇହକାଳକୁ (ପରକାଳ ଉପରେ) ପ୍ରାଧାନ୍ୟ ଦେଇଅଛି,

وَاٰثَرَ الْحَيٰوةَ الدُّنْيَا

୪୦. ନରକ ବାସ୍ତବରେ ତାହାର ବାସସ୍ଥାନ ହେବ ।

فَاِنَّ الْجَحِيْمَ هِيَ الْمَاْوٰى

୪୧. ଏବଂ ଯେ ନିଜ ପାଳନକର୍ତ୍ତାଙ୍କ ମହିମା ପ୍ରତି ଭୟସଙ୍କୁଳ ହୋଇଛି ଓ ନିଜକୁ କୁପ୍ରବୃତ୍ତିଠାରୁ ଦୂରେଇ ରଖିଛି,

وَاَمَّا مَنْ خَافَ مَقَامَ رَبِّهٖ وَنَهَى النَّفْسَ عَنِ الْهَوٰى

୪୨. ବାସ୍ତବରେ ବୈକୁଣ୍ଠ ହିଁ ତାହାର ବାସସ୍ଥାନ ହେବ ।

فَاِنَّ الْجَنَّةَ هِيَ الْمَاْوٰى

୪୩. ସେମାନେ ତୁମ୍ଭଙ୍କୁ ସେହି ସମୟ ସଂକ୍ରାନ୍ତରେ ପଚାରୁଛନ୍ତି ଯେ ତାହା କେବେ ଉପସ୍ଥିତ ହେବ ?

يَسْـَٔلُوْنَكَ عَنِ السَّاعَةِ اَيَّانَ مُرْسٰىهَا

୪୪. ତାହାର (ଆଗମନ ବିଷୟକ) ଆଲୋଚନା ସମ୍ବନ୍ଧରେ ତୁମର କି ସମ୍ପର୍କ ?

فِيْمَ اَنْتَ مِنْ ذِكْرٰىهَا

୪୫. ଏହାର ଅନ୍ତିମ (ସମୟର ନିର୍ଦ୍ଧାରଣ) ସହିତ ତୁମ ପାଳନକର୍ତ୍ତା ସମ୍ପୃକ୍ତ ।

اِلٰى رَبِّكَ مُنْتَهٰىهَا

୪୬. ଯେ ଏହାକୁ (ଅର୍ଥାତ୍ ଏହି ବିପଦକୁ) ଭୟ କରେ ତୁମେ କେବଳ ତାହା ପାଇଁ ଜଣେ ସତର୍କକାରୀ (ସ୍ୱରୂପ) ଅଟ ।

اِنَّمَآ اَنْتَ مُنْذِرُ مَنْ يَّخْشٰىهَا

୪୭. ସେମାନେ ଯେଉଁଦିନ ଏହାକୁ ଦେଖିବେ, (ସେମାନଙ୍କ ଅବସ୍ଥା ଏପରି ହେବ) ସତେ ଯେପରି ସେମାନେ (ଏହି ସଂସାରରେ) କେବଳ ଗୋଟିଏ ସନ୍ଧ୍ୟା ବା ତାହାର ସକାଳ ରହିଥିଲେ ।

كَأَنَّهُمْ يَوْمَ يَرَوْنَهَا لَمْ يَلْبَثُوٓا۟ إِلَّا عَشِيَّةً أَوْ ضُحَىٰهَا ﴿٤٧﴾




ଭାଗ ୩୦ **ଅବସା** ଅଧ୍ୟାୟ ୮୦

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୪୩ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ ٱللَّهِ ٱلرَّحْمَٰنِ ٱلرَّحِيمِ ﴿١﴾

୨. (କ'ଣ) ସେ ଭ୍ରୂକୁଞ୍ଚନପୂର୍ବକ ମୁହଁ ଫେରାଇ ଚାଲିଗଲା ?[୧]

عَبَسَ وَتَوَلَّىٰٓ ﴿٢﴾

୩. କାରଣ ତାହାଙ୍କ ନିକଟକୁ ଜଣେ ଅନ୍ଧ ଆସିଥିଲା (ଯାହାକୁ କେତେକ ଜାଣନ୍ତି) ।

أَن جَآءَهُ ٱلْأَعْمَىٰ ﴿٣﴾

୪. ଏବଂ (ହେ ରସୁଲ !) କେଉଁ କଥା ତୁମଙ୍କୁ (ଏହା) ଜଣାଇ ପାରିଥାଆନ୍ତା ଯେ ସେ ନିଶ୍ଚୟ ପବିତ୍ର ହୋଇଯିବ,

وَمَا يُدْرِيكَ لَعَلَّهُۥ يَزَّكَّىٰٓ ﴿٤﴾

୫. ଅଥବା (ଉପଦେଶମୂଳକ କଥାମାନଙ୍କୁ) ସ୍ମରଣ କରିବ, ତେବେ (ଏହି) ସ୍ମରଣ ତାହା ପାଇଁ ଲାଭଦାୟକ ହେବ ।

أَوْ يَذَّكَّرُ فَتَنفَعَهُ ٱلذِّكْرَىٰٓ ﴿٥﴾

୬. କ'ଣ ଏପରି ହୋଇପାରେ ଯେ ଯେଉଁ ବ୍ୟକ୍ତି (ସତ୍ୟକୁ) ବେଖାତିର କରେ,

أَمَّا مَنِ ٱسْتَغْنَىٰ ﴿٦﴾

୭. (ତାହା ପ୍ରତି) ତୁମେ ଅଧିକ ଧ୍ୟାନ ଦେବ, (ଯେଦିଚ ତାହା କୋରାନର ପରିପନ୍ଥୀ ଅଟେ) ।

فَأَنتَ لَهُۥ تَصَدَّىٰ ﴿٧﴾

---

୧. ଏଠାରେ ଏକ ସୁବିଦିତ ଐତିହାସିକ ଘଟଣା ବିଷୟରେ ଉଲ୍ଲେଖ ଅଛି । ଏକଦା ହଜରତ ମହମ୍ମଦ ମକ୍କାରେ କୁରେଶ ବଂଶୀୟ କେତେକ ନେତାଙ୍କ ସହିତ ଇସଲାମ ଧର୍ମର ସିଦ୍ଧାନ୍ତ ସମ୍ପର୍କରେ ଆଲୋଚନା କରୁଥିବା ବେଳେ 'ଅବ୍ଦ ଅଲ୍ଲାହ ବିନ୍ ଉମ୍ମ ମକତୁମ' ନାମକ ଜଣେ ଅନ୍ଧ ମୁସଲମାନ ସେଠାରେ ପହଞ୍ଚିଲେ । ବନ୍ଧ ଅବିଶ୍ୱାସକାରୀମାନଙ୍କ ପାଇଁ ହଜରତ ମହମ୍ମଦଙ୍କର ମୂଲ୍ୟବାନ ସମୟ ଓ ଶକ୍ତିର ଅପଚୟ ହେଉଛି ଭାବି, ସେ ହଜରତ ମହମ୍ମଦଙ୍କର ଧ୍ୟାନ ଆକର୍ଷଣ କରିବାପାଇଁ ତାଙ୍କୁ ଧର୍ମ ସମ୍ବନ୍ଧରେ କେତେକ ପ୍ରଶ୍ନ ପଚାରିଥିଲେ । କିନ୍ତୁ ହଜରତ ମହମ୍ମଦ ଏ ପ୍ରକାର ଅନଧିକାର ହସ୍ତକ୍ଷେପକୁ ପସନ୍ଦ କରି ନ ଥିଲେ ; ତେଣୁ ଅସନ୍ତୋଷ ପ୍ରକାଶ କରିବାକୁ ଯାଇ, ସେ ଅବ୍ଦ ଅଲ୍ଲାହଙ୍କ ଆଡ଼ୁ ମୁହଁ ଫେରାଇ ନେଇଥିଲେ । ଏଠାରେ ଦୁଇଟି ଦିଗରୁ ହଜରତ ମହମ୍ମଦଙ୍କ ଠାରେ ଅତି ଉଚ୍ଚକୋଟିର ନୈତିକତା ଥିବା ବିଷୟରେ ପ୍ରମାଣ ମିଳୁଛି । ଏକ ପକ୍ଷରେ ସେ କୁରେଶ ବଂଶୀୟ ମୁଖ୍ୟମାନଙ୍କର ଆଧ୍ୟାତ୍ମିକ ବିକାଶ ପାଇଁ ଏତେ ଆଗ୍ରହୀ ଥିଲେ ଯେ ଅବ୍ଦ ଅଲ୍ଲାହଙ୍କ ହସ୍ତକ୍ଷେପ ସତ୍ତ୍ୱେ ସେ ପ୍ରବଚନ ଜାରି ରଖିଥିଲେ ଓ ତାଙ୍କ ପ୍ରତି ଧ୍ୟାନ ଦେଇ ନ ଥିଲେ । ଅନ୍ୟ ପକ୍ଷରେ ସେହି ଅନ୍ଧ ଲୋକର ସମ୍ବେଦନଶୀଳତା ପ୍ରତି ମଧ୍ୟ ସେ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିଥିଲେ । ତେଣୁ ସେ ତାଙ୍କ ତରଫରୁ କେବଳ ମୁହଁ ଫେରାଇ ନେଇଥିଲେ କାରଣ ଅବ୍ଦ ଅଲ୍ଲାହ ଅନ୍ଧ ହୋଇଥିବାରୁ ଏହା ଦେଖି ପାରିବେ ନାହିଁ ଏବଂ ତାଙ୍କର ଅସମୟୋଚିତ ଓ ଅପରିଣାମଦର୍ଶୀ ହସ୍ତକ୍ଷେପ ପାଇଁ ତାଙ୍କୁ ପଦେ ହେଲେ ଭର୍ତ୍ସନାମୂଳକ ବା ଅଶ୍ରଦ୍ଧାପୂର୍ଣ୍ଣ କଥା କହି ନ ଥିଲେ । ତଦ୍ୱାରା ହଜରତ ମହମ୍ମଦ ସେହି ଅନ୍ଧ ବ୍ୟକ୍ତିଙ୍କର ଆତ୍ମସମ୍ମାନ ଓ ସମ୍ବେଦନଶୀଳତାକୁ ଆଘାତ ନ ଲାଗୁ ଭଳି ସତର୍କ ଦୃଷ୍ଟି ଦେଇଥିଲେ । ବସ୍ତୁତଃ ହଜରତ ମହମ୍ମଦ ଦରିଦ୍ର ଓ ବିନମ୍ର ବ୍ୟକ୍ତିମାନଙ୍କ ସକାଶେ ଅଧିକ ସମ୍ବେଦନଶୀଳ ଥିଲେ ।

୮. ଏବଂ ତୁମେ ଏହା କିପରି ଭାବରେ କରିପାରିବ ଯେତେବେଳେ କି ତା'ର ସତ୍‌ପଥ ପ୍ରାପ୍ତ ନ ହେବାରେ ତୁମ ଉପରେ କୌଣସି ଦାୟିତ୍ୱ ନାହିଁ।

وَمَا عَلَيْكَ أَلَّا يَزَّكّٰى ۝٨

୯. ଏବଂ ଯେ କେହି ତୁମ ନିକଟକୁ ଦ୍ରୁତ ଗତିରେ ଆସେ ;

وَأَمَّا مَنْ جَآءَكَ يَسْعٰى ۝٩

୧୦. ଏବଂ (ତତ୍ ସହିତ ଅଲ୍ଲାହ୍‌ଙ୍କୁ ମଧ୍ୟ) ଭୟ କରୁଥାଏ ;

وَهُوَ يَخْشٰى ۝١٠

୧୧. ତୁମେ (ବିରୋଧୀଙ୍କ ଉକ୍ତି ଅନୁସାରେ) ତାହା ପ୍ରତି ଅବହେଳା କରୁଅଛ ;

فَأَنْتَ عَنْهُ تَلَهّٰى ۝١١

୧୨. (ଏପରି) ଆଦୌ ନୁହେଁ, (ବରଂ ଏ ପ୍ରକାର ଦୋଷାରୋପ ଠିକ୍ ନୁହେଁ,) ବାସ୍ତବରେ ଏହା (ଅର୍ଥାତ୍ କୋରାନ) ଏକ ଉପଦେଶ ଅଟେ। (ଏହା ସହିତ ତରବାରି ଅବତରିତ ହୋଇ ନାହିଁ ଯେ ତୁମେ ଲୋକମାନଙ୍କୁ ମୁସଲମାନ କରାଇବାରେ ବାଧ୍ୟ କରିବ।)

كَلَّآ إِنَّهَا تَذْكِرَةٌ ۝١٢

୧୩. ସୁତରାଂ ଯାହାର ଇଚ୍ଛା ସେ ତାହା ପ୍ରତି ମନୋନିବେଶ କରୁ।

فَمَنْ شَآءَ ذَكَرَهٗ ۝١٣

୧୪/୧୫. (ଏହି କୋରାନ ଏପରି) ପୋଥିରେ (ଲିପିବଦ୍ଧ ହୋଇ ରହି)ଅଛି ଯାହା ସମ୍ମାନିତ, ଉଚ୍ଚ ମର୍ଯ୍ୟାଦାସମ୍ପନ୍ନ ତଥା ପବିତ୍ର ଅଟେ,

فِيْ صُحُفٍ مُّكَرَّمَةٍ ۝١٤

مَّرْفُوْعَةٍ مُّطَهَّرَةٍ ۝١٥

୧୬. ତାହା[୧] (ପୋଥିପ୍ରଣେତା ଓ ଦୂର ଦୂରାନ୍ତ) ପରିବ୍ରାଜକମାନଙ୍କ ହସ୍ତରେ (ଅଛି),

بِأَيْدِيْ سَفَرَةٍ ۝١٦

୧୭. (ଏପରି ଲୋକମାନଙ୍କ ହସ୍ତରେ ଅଛି) ଯେଉଁମାନେ ସମ୍ମାନିତ (ବ୍ୟକ୍ତି) ଅଟନ୍ତି ଏବଂ ଉଚ୍ଚକୋଟୀର ପୁଣ୍ୟବାନ୍[୨] (ବ୍ୟକ୍ତି) ଅଟନ୍ତି।

كِرَامٍۭ بَرَرَةٍ ۝١٧

୧୮. ମନୁଷ୍ୟର ସର୍ବନାଶ[୩] ହେଉ ! ସେ କିପରି କୃତଘ୍ନ !

قُتِلَ الْإِنْسَانُ مَآ أَكْفَرَهٗ ۝١٨

୧୯. (ସେ ଚିନ୍ତା କରି ଦେଖୁ ଯେ) ଅଲ୍ଲାହ୍ ତାହାକୁ କେଉଁ ବସ୍ତୁରୁ ସୃଷ୍ଟି କରିଛନ୍ତି।

مِنْ أَيِّ شَيْءٍ خَلَقَهٗ ۝١٩

୨୦. (ସେ ଜାଣିପାରିବ ଯେ ନିଶ୍ଚୟ) ଏକ ଶୁକ୍ରବିନ୍ଦୁରୁ (ସୃଷ୍ଟି କଲେ ଓ ପ୍ରଥମେ ତ) ତାହାକୁ ସୃଷ୍ଟି କଲେ, ପୁଣି ତା'ପାଇଁ (ଉନ୍ନତିର ଏକ) ସୀମା ନିର୍ଦ୍ଦିଷ୍ଟ କଲେ ;

مِنْ نُّطْفَةٍ خَلَقَهٗ فَقَدَّرَهٗ ۝٢٠

---

୧. ଅର୍ଥାତ୍ ହଜରତ ମହମ୍ମଦଙ୍କ ସାଥୀମାନେ ପବିତ୍ର କୋରାନକୁ ନେଇ ବହୁ ଦୂର ପର୍ଯ୍ୟନ୍ତ ବ୍ୟାପି ଯିବେ।

୨. ଅର୍ଥାତ୍ ପବିତ୍ର କୋରାନ ଆଶୀର୍ବାଦରୁ ସେହି ସାଥୀମାନେ ଯଥେଷ୍ଟ ସମ୍ମାନ ଲାଭ କରିବେ ଓ ସେମାନଙ୍କର ପୁଣ୍ୟ କାର୍ଯ୍ୟରେ ଅଭିବୃଦ୍ଧି ଘଟିବ।

୩. ଅବିଶ୍ୱାସକାରୀ ଧ୍ୱଂସ ହେବ, କାରଣ ସେ ଅତିଶୟ କୃତଘ୍ନ ଭାବରେ କାର୍ଯ୍ୟ କରିଛି।

୨୧. ଏହା ପରେ (ତାହାର) ପଥକୁ ସୁଗମ[1] କଲେ ଓ ଅଧିକ ସୁଗମ କଲେ,

ثُمَّ السَّبِيلَ يَسَّرَهُ ﴿٢٠﴾

୨୨. ଏହା ପରେ (ସ୍ୱାଭାବିକ ଜୀବନ[2] ଦେଇ) ତାହାକୁ ମୃତ୍ୟୁ ପ୍ରଦାନ କଲେ (ଓ) ତା'ପରେ ତାହାକୁ (ନିର୍ଦ୍ଦିଷ୍ଟ) କବରରେ ରଖିଲେ ;

ثُمَّ أَمَاتَهُ فَأَقْبَرَهُ ﴿٢١﴾

୨୩. ଏହା[3] ପରେ ଯେତେବେଳେ ଇଚ୍ଛା କରିବେ ତାହାକୁ ପୁନର୍ଜୀବିତ କରିବେ ।

ثُمَّ إِذَا شَاءَ أَنْشَرَهُ ﴿٢٢﴾

୨୪. (ଏପରି) ଆଦୌ ନୁହେଁ,[4] (କେ'ଣ ତୁମେ ଦେଖି ପାରୁ ନାହଁ ଯେ) ଯେଉଁ ଆଦେଶ ତାହାକୁ (ଅର୍ଥାତ୍ ମନୁଷ୍ୟକୁ)[5] ଦିଆ ଯାଇଥିଲା ଆଜି ପର୍ଯ୍ୟନ୍ତ ସେ ତାହାକୁ ପାଳନ କରି ନାହିଁ ।

كَلَّا لَمَّا يَقْضِ مَا أَمَرَهُ ﴿٢٣﴾

୨୫. ମନୁଷ୍ୟ ନିଜର ଖାଦ୍ୟକୁ ଦେଖିବା ଉଚିତ ।

فَلْيَنْظُرِ الْإِنْسَانُ إِلَىٰ طَعَامِهِ ﴿٢٤﴾

୨୬. (ଏବଂ ସେ ଦେଖୁ ଯେ) ଆମେ ମେଘମାଳାରୁ ପ୍ରଚୁର ଜଳବୃଷ୍ଟି କରାଉଛୁ,

أَنَّا صَبَبْنَا الْمَاءَ صَبًّا ﴿٢٥﴾

୨୭. ଏହା ପରେ ଭୂପୃଷ୍ଠକୁ ଭଲ ଭାବରେ ବିଦୀର୍ଣ୍ଣ କରାଉଛୁ ।[6]

ثُمَّ شَقَقْنَا الْأَرْضَ شَقًّا ﴿٢٦﴾

୨୮. ଅତଏବ ଏହାକୁ ବିଦୀର୍ଣ୍ଣ କରିବା ଫଳରେ ଆମେ ତହିଁରେ ବିଭିନ୍ନ ପ୍ରକାର ଶସ୍ୟ ଉତ୍ପାଦନ କରିଅଛୁ ।

فَأَنْبَتْنَا فِيهَا حَبًّا ﴿٢٧﴾

୨୯. ସେହିପରି ଅଙ୍ଗୁର ଓ (ବିଭିନ୍ନ) ଉଦ୍ଭିଦ,

وَعِنَبًا وَقَضْبًا ﴿٢٨﴾

୩୦. ତଥା ଜୈତୁନ ଓ ଖଜୁରି (ମଧ୍ୟ),

وَزَيْتُونًا وَنَخْلًا ﴿٢٩﴾

---

୧. ଅର୍ଥାତ୍ ତା'ର ବିକାଶର ମାର୍ଗ ହେଉଛି ପବିତ୍ର କୋରାନ, ଯାହାକୁ ଅନୁସରଣ କରିବା ସହଜସାଧ୍ୟ ।

୨. ଏହାର ତାତ୍ପର୍ଯ୍ୟ ହେଉଛି ଯେ ସଂସାରରେ ତା'ର ବନ୍ଧୁବାନ୍ଧବମାନେ ତାକୁ କବର ମଧ୍ୟରେ ରଖିଦିଅନ୍ତି, କିନ୍ତୁ ମନୁଷ୍ୟର ତାହା ହି ପ୍ରକୃତ କବର ଯେଉଁଠାରେ ଅଲ୍ଲାହ ଜୀବାତ୍ମାକୁ ରଖନ୍ତି ।

୩. ଏଠାରେ ମଧ୍ୟ ପାର୍ଥିବ କବର ଅଭିପ୍ରେତ ନୁହେଁ, ବରଂ ତାହା ପାରଲୌକିକ କବର । ଏହାର ଭାବାର୍ଥ ହେଉଛି ଯେ ଅଲ୍ଲାହ ମନୁଷ୍ୟକୁ ପରଲୋକରେ ଅନ୍ୟ ଏକ ଜୀବନ ଦାନ କରିବେ ।

୪. ଅର୍ଥାତ୍ ତୁମେମାନେ ମନେ କରୁଅଛ ଯେ ମୃତ୍ୟୁ ପରେ ମନୁଷ୍ୟକୁ ଆଉ ଜୀବନ ଦାନ କରାଯିବ ନାହିଁ । ମାତ୍ର ତାହା ଯଥାର୍ଥ ନୁହେଁ ।

୫. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେବେ ମନୁଷ୍ୟ ଅଲ୍ଲାହଙ୍କ ପ୍ରଦତ୍ତ ଶରିୟତ ବା ଧର୍ମବିଧାନର ପାଳନ କରିବ ନାହିଁ ତେବେ ତା'ର ହିସାବ କିତାବ ନ କରାଯିବା କିପରି ସମ୍ଭବ ହେବ ? ତେଣୁ ହିସାବକିତାବ କରାଯିବା ସକାଶେ ତାକୁ ମୃତ୍ୟୁପରେ ପୁନର୍ଜୀବିତ କରାଯିବା ଆବଶ୍ୟକ ।

୬. ଅର୍ଥାତ୍ ଫସଲ ଉତ୍ପାଦନ ପାଇଁ ଉପଯୋଗୀ କରିଛୁନ୍ତି ।

୩୧. ଏବଂ ତରୁ ସହିତ ଘନ ଉଦ୍ୟାନ ମଧ୍ୟ,[୧]

وَّحَدَآىِٕقَ غُلْبًا ۝

୩୨. ଏବଂ ଫଳ ଓ ଶୁଷ୍କ ତୃଣ (ଓ ଗୁଳ୍ମ ଆଦି) ମଧ୍ୟ,

وَّ فَاكِهَةً وَّاَبًّا ۝

୩୩. (ଏ ସବୁ) ଓ ତୁମମାନଙ୍କର ଓ ତୁମମାନଙ୍କ ଜୀବଜନ୍ତୁଙ୍କ ଉପକାର ପାଇଁ (ସୃଷ୍ଟି କରା ହୋଇଛି) ।[୨]

مَّتَاعًا لَّكُمْ وَلِاَنْعَامِكُمْ ۝

୩୪. ଏହା ପରେ (ଚିନ୍ତା କର) ଯେତେବେଳେ କର୍ଣ୍ଣ-ବିଦାରକ (ବିପଦ) ଉପସ୍ଥିତ ହେବ,

فَاِذَا جَآءَتِ الصَّآخَّةُ ۝

୩୫. ଯେଉଁ ଦିନ ମନୁଷ୍ୟ ନିଜ ଭାଇଠାରୁ (ଦୂରକୁ) ପଳାୟନ କରିବ,

يَوْمَ يَفِرُّ الْمَرْءُ مِنْ اَخِيْهِ ۝

୩୬. ଏବଂ (ସେହିପରି) ନିଜ ମାତା ଓ ନିଜ ପିତାଙ୍କ ଠାରୁ,

وَاُمِّهٖ وَاَبِيْهِ ۝

୩୭. ଏବଂ ନିଜ ପତ୍ନୀ ଓ ପୁତ୍ରମାନଙ୍କଠାରୁ (ମଧ୍ୟ ପଳାୟନ କରିବ),

وَصَاحِبَتِهٖ وَبَنِيْهِ ۝

୩୮. ସେ ଦିନ ପ୍ରତ୍ୟେକ ବ୍ୟକ୍ତିର ଅବସ୍ଥା ଏପରି ହେବ ଯେ ତାହା ତାକୁ ନିଜ ଚିନ୍ତାରେ (ହିଁ) ମଗ୍ନ ରଖିଥିବ ।

لِكُلِّ امْرِئٍ مِّنْهُمْ يَوْمَىِٕذٍ شَاْنٌ يُّغْنِيْهِ ۝

୩୯. ସେଦିନ କେତେକ (ଲୋକ)ଙ୍କର ମୁଖମଣ୍ଡଳ ଉଜ୍ଜ୍ୱଳ ହୋଇଥିବ,

وُجُوْهٌ يَّوْمَىِٕذٍ مُّسْفِرَةٌ ۝

୪୦. ହର୍ଷ ଉଲ୍ଲସିତ (ହୋଇଥିବ),

ضَاحِكَةٌ مُّسْتَبْشِرَةٌ ۝

୪୧. ଏବଂ (ସେ ଦିନ) କେତେକଙ୍କ ମୁଖମଣ୍ଡଳ ଏପରି ହେବ ସତେ ଯେପରି ସେଗୁଡିକ ଉପରେ ଧୂଳି ଆବୃତ ହୋଇଅଛି,

وَوُجُوْهٌ يَّوْمَىِٕذٍ عَلَيْهَا غَبَرَةٌ ۝

୪୨. ଏବଂ (ଆଭ୍ୟନ୍ତରୀଣ ଅବସ୍ଥା ଜଣାଇବା ସକାଶେ) ସେମାନଙ୍କ ମୁଖମଣ୍ଡଳରେ (ଏପରି) ଏକ କାଳିମା ମଧ୍ୟ ଆବୃତ ହୋଇଥିବ (ଯାହା ସାଧାରଣତଃ ସେପରି ପରିସ୍ଥିତିରେ ହୋଇଥାଏ) ।

تَرْهَقُهَا قَتَرَةٌ ۝

୪୩. ଏହି (ଲୋକ)ମାନେ ହିଁ ଅବିଶ୍ୱାସକାରୀ ଓ ଦୁରାଗ୍ରହୀ ସାବ୍ୟସ୍ତ ହେବେ ।

اُولٰٓىِٕكَ هُمُ الْكَفَرَةُ الْفَجَرَةُ ۝

---

୧. ପ୍ରଥମେ ବିଭିନ୍ନ ପ୍ରକାର ଫଳର ବର୍ଣ୍ଣନା ଅଛି ଓ ତା'ପରେ କୁହାଯାଇଛି ଯେ ମନୁଷ୍ୟ ହସ୍ତର କଳାକୁଶଳତା ଭିନ୍ନ ଭିନ୍ନ ଗଛରୁ ପ୍ରକଟିତ ହୁଏ ନାହିଁ ବରଂ ଉଦ୍ୟାନ ନିର୍ମାଣରେ ପ୍ରକଟିତ ହୋଇଥାଏ । ସେହି ହେତୁ ଅଲ୍ଲାହ ମନୁଷ୍ୟକୁ ଉଦ୍ୟାନ କୃଷି ସମ୍ବନ୍ଧରେ ଜ୍ଞାନ ପ୍ରଦାନ କରିଛନ୍ତି । ସେ ମନୁଷ୍ୟକୁ ଏହି ଜ୍ଞାନ ପ୍ରଦାନ କରିଥିବାରୁ ନିର୍ମାଣ କାର୍ଯ୍ୟକୁ ତାଙ୍କ ସହିତ ସମ୍ପୃକ୍ତ କରାଯାଇଛି ।

୨. ଅର୍ଥାତ୍ ଲୋକମାନେ ଲଗାଇଥିବା ଗଛର ଫଳ ଏବଂ ସେଗୁଡ଼ିକରେ ଲାଗିଥିବା ଫୁଲକୁ ମନୁଷ୍ୟ ବ୍ୟବହାର କରେ । କିନ୍ତୁ ସେଗୁଡ଼ିକର ପତ୍ର ଓ ଖସି ପଡ଼ିଥିବା ଫଳଗୁଡ଼ିକୁ ଜୀବଜନ୍ତୁମାନେ ଖାଦ୍ୟ ଆକାରରେ ବ୍ୟବହାର କରନ୍ତି । ତେଣୁ ଏସବୁ ଫଳ ଓ ପତ୍ର ମନୁଷ୍ୟ ଓ ବିଭିନ୍ନ ପ୍ରାଣୀଙ୍କ ହିତ ପାଇଁ ସୃଷ୍ଟି କରାଯାଇଛି ।



# ଅଲ - ତକୱିର

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୩୦ଟି ଆୟତ ଅଛି ।)

| | |
|---|---|
| ୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) । | بِسْمِ اللّٰهِ الرَّحْمٰنِ الرَّحِيْمِ ① |
| ୨. ଯେତେବେଳେ ସୂର୍ଯ୍ୟ (କିରଣ)କୁ ଗୁଡ଼ାଇ ଦିଆ ହେବ,[୧] | إِذَا الشَّمْسُ كُوِّرَتْ ② |
| ୩. ଏବଂ ଯେତେବେଳେ ନକ୍ଷତ୍ରମାନେ[୨] ମଳିନ ପଡ଼ିଯିବେ, | وَإِذَا النُّجُومُ انْكَدَرَتْ ③ |
| ୪. ଏବଂ ଯେତେବେଳେ ପର୍ବତମାନଙ୍କୁ[୩] ଗ୍ଚଳିତ କରା ହେବ, | وَإِذَا الْجِبَالُ سُيِّرَتْ ④ |
| ୫. ଏବଂ ଯେତେବେଳେ ଦଶମାସର ଗର୍ଭବତୀ ଓଟମାନଙ୍କୁ[୪] ପରିତ୍ୟାଗ କରାହେବ, | وَإِذَا الْعِشَارُ عُطِّلَتْ ⑤ |
| ୬. ଏବଂ ଯେତେବେଳେ ବନ୍ୟ ପ୍ରାଣୀମାନଙ୍କୁ ଏକତ୍ରିତ କରାହେବ,[୫] | وَإِذَا الْوُحُوشُ حُشِرَتْ ⑥ |

---

୧. ଏଠାରେ ଏପରି ସାମୟିକ ଦୁର୍ବଳତା ପ୍ରତି ସଙ୍କେତ ଦିଆଯାଇଛି ଯାହା ଭବିଷ୍ୟତରେ ମୁସଲମାନମାନଙ୍କ ଉପରେ ଆସିବାର ସମ୍ଭାବନା ଥିଲା । ପବିତ୍ର କୋରାନରେ ହଜରତ ମହମ୍ମଦଙ୍କୁ ସୂର୍ଯ୍ୟ ବୋଲି କୁହାଯାଇଛି (୩୩ : ୪୭ ଦ୍ରଷ୍ଟବ୍ୟ) ଏବଂ ଆଲୋଚ୍ୟ ଆୟତରେ ଦର୍ଶାଯାଇଛି ଯେ ଏଭଳି ଏକ ସମୟ ଆସିବ ଯେତେବେଳେ ସୂର୍ଯ୍ୟଙ୍କ ଉପରେ ପରଦା ପକାଇ ଦିଆଯିବ ଅର୍ଥାତ୍ ହଜରତ ମହମ୍ମଦ ଯେତିକି ସମ୍ମାନ ପାଇବାପାଇଁ ଯୋଗ୍ୟ, ଲୋକମାନଙ୍କ ମନରେ ତାଙ୍କ ପ୍ରତି ଆଉ ସେତିକି ସମ୍ମାନ ରହିବ ନାହିଁ ।

୨. ମୂଳ ଶବ୍ଦ 'ଅଲ-ନୁଜୁମ' ଧର୍ମପଣ୍ଡିତଙ୍କୁ ବୁଝାଏ । ହଜରତ ମହମ୍ମଦଙ୍କର ଏକ ପ୍ରଖ୍ୟାତ ହଦିସ ଏହି ଅର୍ଥକୁ ସମର୍ଥନ କରୁଛି । ତାଙ୍କ ଉକ୍ତି ଅନୁସାରେ, 'ମୋ ସାଥୀମାନେ ନକ୍ଷତ୍ର ସଦୃଶ ; ସେମାନଙ୍କ ମଧ୍ୟରୁ ତୁମେମାନେ ଯାହାଙ୍କୁ ଅନୁସରଣ କଲେ ମଧ୍ୟ ସତ୍‌ପଥ ପ୍ରାପ୍ତ ହେବ । ତେଣୁ ଏହି ଆୟତର ଭାବାର୍ଥ ଏହି ରୂପେ ହେବ ଯେ ଧର୍ମପଣ୍ଡିତମାନେ ଭ୍ରଷ୍ଟାଚାରୀ ହୋଇଯିବେ ଓ ସେମାନଙ୍କର ଆଉ କୌଣସି ପ୍ରଭାବ ରହିବ ନାହିଁ ।

୩. ଏହି ଆୟତର ନିମ୍ନୋକ୍ତ ଅର୍ଥ କରାଯାଇପାରେ : (କ) ପର୍ବତ ଉପରେ ସଡ଼କ ନିର୍ମାଣ କରାଯିବ, (ଖ) ପ୍ରୟୋଜନ ବେଳେ ଡିନାମାଇଟ୍ ଖଣ୍ଡି ପର୍ବତକୁ ଭାଙ୍ଗି ଦିଆଯିବ ଓ ସେଠାରେ ସଡ଼କ ନିର୍ମାଣ କରାଯିବ, (ଗ) ପର୍ବତ ସଦୃଶ ବଡ଼ ବଡ଼ ଲୋକ ବା ରାଜା ମହାରାଜାମାନେ ନିଜର ସ୍ଥିତି ଓ ପଦମର୍ଯ୍ୟାଦା ହରାଇବେ ।

୪. ଅର୍ଥାତ୍ ରେଳଗାଡ଼ି ଓ ମୋଟର ଗାଡ଼ି ଉଦ୍ଭାବନ ହେବା ପରେ ଆରବରେ ଓଟ ପିଠିରେ ଯାତ୍ରା କରିବାର ଆବଶ୍ୟକତା କମି ଯିବ । ଦଶ ମାସର ଗର୍ଭିଣୀ ଓଟ ବିଷୟ ଏଠାରେ ଉଲ୍ଲେଖ କରାଯିବାର ଉଦ୍ଦେଶ୍ୟ ହେଉଛି ଯେ ସେଭଳି ଗର୍ଭିଣୀ ଓଟ ଦଶ ମାସ ବେଳକୁ ଖୁବ୍ ମୂଲ୍ୟବାନ୍ ହୋଇଥିବା ସତ୍ତ୍ୱେ, ଲୋକମାନେ ତାକୁ ପରିତ୍ୟାଗ କରିବେ । ବସ୍ତୁତଃ ଏହି ଆୟତର ପ୍ରକୃତ ମର୍ମ ହେଉଛି ଯେ ଉପର ବର୍ଣ୍ଣିତ ଯାନବାହନର ଉଦ୍ଭାବନ ହେବା ପରେ ମରୁଜାହାଜ ନାମରେ ପରିଚିତ ଓଟ ମଧ୍ୟ ଅନାବଶ୍ୟକ ହୋଇ ପଡ଼ିବ ।

୫. ଏହାର ଅର୍ଥ ବ୍ୟାପକ : (କ) ଚିଡ଼ିଆଖାନା ନିର୍ମାଣ କରାଯିବ, (ଖ) ଅସଭ୍ୟ ଜାତିର ଲୋକମାନେ ସୁସଭ୍ୟ ହେବେ, (ଗ) ଅସଭ୍ୟ ଜାତିର ଲୋକମାନଙ୍କୁ ନିଜ ଦେଶରୁ ବିତାଡ଼ିତ କରାଯିବ, ଯେପରି ଆମେରିକା ଓ ଅଷ୍ଟ୍ରେଲିଆରେ ଘଟିଛି । ଏହି ଆୟତରେ ବ୍ୟବହୃତ 'ହୁସେରତ'ର ଅନ୍ୟତମ ଅର୍ଥ ହେଉଛି ନିଜ ଦେଶରୁ ବିତାଡ଼ିତ ହେବା ।

| | |
|---|---|
| ୭. ଏବଂ ଯେତେବେଳେ ନଦୀଗୁଡିକୁ [୧] (ଅର୍ଥାତ୍ ସେଗୁଡିକର ଜଳକୁ ପ୍ରବାହିତ କରାଇ ଅନ୍ୟ ନଦୀ ବା କେନାଲ ସହିତ) ମିଶାଇ ଦିଆଯିବ, [୨] | وَإِذَا الْبِحَارُ سُجِّرَتْ ۝٦ |
| ୮. ଏବଂ ଯେତେବେଳେ (ବିଭିନ୍ନ) ଲୋକଙ୍କୁ ଏକତ୍ରିତ [୩] କରା ହେବ, | وَإِذَا النُّفُوسُ زُوِّجَتْ ۝٧ |
| ୯. ଏବଂ ଯେତେବେଳେ ଜୀବନ୍ତ ପୋତି ଦିଆଯାଉଥିବା (କନ୍ୟା) ବିଷୟରେ ପ୍ରଶ୍ନ [୪] କରାହେବ, | وَإِذَا الْمَوْءُودَةُ سُئِلَتْ ۝٨ |
| ୧୦. ଯେ କେଉଁ ଅପରାଧରେ ତାହାକୁ ବଧ କରାଯାଇଥିଲା ? | بِأَيِّ ذَنْبٍ قُتِلَتْ ۝٩ |
| ୧୧. ଏବଂ ଯେତେବେଳେ ପୁସ୍ତକଗୁଡିକର ପ୍ରସାରଣ [୫] ହେବ (ଅର୍ଥାତ୍ ବହୁଳ ଭାବରେ ମୁଦ୍ରଣାଳୟ ସ୍ଥାପିତ ହେବ), | وَإِذَا الصُّحُفُ نُشِرَتْ ۝١٠ |
| ୧୨. ଏବଂ ଯେତେବେଳେ ଆକାଶର ଆବରଣକୁ [୬] ଉନ୍ମୁକ୍ତ କରାହେବ, | وَإِذَا السَّمَاءُ كُشِطَتْ ۝١١ |
| ୧୩. ଏବଂ ଯେତେବେଳେ ନରକ (ଅଗ୍ନି)କୁ ପ୍ରଜ୍ୱଳିତ [୭] କରାହେବ, | وَإِذَا الْجَحِيمُ سُعِّرَتْ ۝١٢ |
| ୧୪. ଏବଂ ଯେତେବେଳେ ବୈକୁଣ୍ଠକୁ ନିକଟତର [୮] କରାହେବ, | وَإِذَا الْجَنَّةُ أُزْلِفَتْ ۝١٣ |

---

୧. ଏଠାରେ ଆଧୁନିକ ଯୁଗ ସମ୍ବନ୍ଧରେ ଏକ ଗୁରୁତ୍ୱପୂର୍ଣ୍ଣ ସମାଚାର ଦିଆଯାଇଛି । ନିର୍ମାଣ କଳାର ଏଭଳି ଉନ୍ନତି ହେବ ଯେ ବିଭିନ୍ନ ନଦନଦୀକୁ ସଂଯୁକ୍ତ କରାଯିବ । ପୃଥିବୀର ଅନେକ ଦେଶରେ– ଭାରତ, ଆମେରିକା ଓ ଜର୍ମାନୀରେ–ଇଞ୍ଜିନିୟରମାନେ ଏହି କାର୍ଯ୍ୟରେ ସଫଳତା ଲାଭ କରିଛନ୍ତି ।

୨. ମୂଳ ଶବ୍ଦ 'ସଜ୍ଜରା' ଅର୍ଥ ଶୁଖାଇ ଦେବା । ତେଣୁ କେତେକ ଭାଷ୍ୟକାର ନଦୀକୁ ଶୁଖାଇ ଦିଆଯିବା ଅର୍ଥ କରିଛନ୍ତି । କିନ୍ତୁ 'ସଜ୍ଜରା' ଶବ୍ଦର ଅନ୍ୟ ଏକ ଅର୍ଥ ମଧ୍ୟ ଅଛି; ଅର୍ଥାତ୍ ଜଳକୁ ବାହାର କରି ନିଜ ଇଛାରେ ଅନ୍ୟତ୍ର ନେବା । କେନାଲକୁ ଲକ୍ଷ୍ୟ କଲେ ଏହି ଅର୍ଥର ଯଥାର୍ଥତା ପରିଷ୍କାର ଭାବରେ ବୁଝି ହେବ । ତେଣୁ ଉଭୟ ଅର୍ଥରୁ ଯେଉଁ ସାଧାରଣ ଅର୍ଥ ବାହାରୁଛି, ତାହା ହେଉଛି କେନାଲ ଖୋଳି ନଦୀକୁ ଶୁଖାଇ ଦିଆଯିବ । ନଦୀର ଜଳ ଆକାଶକୁ ଉଠାଇ ନେଇ ନଦୀକୁ ଶୁଖାଇ ଦିଆଯିବା ଅର୍ଥ କରିବା ଯଥାର୍ଥ ନୁହେଁ ।

୩. ଅର୍ଥାତ୍ ଯାତ୍ରା ସୁଗମ ହେବ । ବିଭିନ୍ନ ଦେଶର ଲୋକମାନେ ସ୍ଥଳ ଯାନ ଓ ବାୟୁଯାନ ସାହାଯ୍ୟରେ ପରସ୍ପରକୁ ସହଜରେ ସାକ୍ଷାତ୍ କରି ପାରିବେ ।

୪. ଅର୍ଥାତ୍ ବାଳିକାମାନଙ୍କୁ ଜୀବିତ ପୋତି ଦେବା ଏକ ଅପରାଧ ହେବ ।

୫. ଅର୍ଥାତ୍ ବହୁଳ ଭାବରେ ମୁଦ୍ରାଯନ୍ତ୍ର ସ୍ଥାପିତ ହେବ ।

୬. ଅର୍ଥାତ୍ ଖ-ଗୋଳ ବିଦ୍ୟାରେ ବହୁତ ଉନ୍ନତି ହେବ ।

୭. ଅର୍ଥାତ୍ ଶେଷ ଯୁଗରେ ପାପର ମାତ୍ରା ବହୁତ ବଢ଼ିଯିବ ଯଦ୍ୱାରା ନରକ ଲୋକମାନଙ୍କର ନିକଟବର୍ତ୍ତୀ ହେବ ।

୮. ଧର୍ମର ଗୂଢ଼ ତତ୍ତ୍ୱମାନ ଏପରି ସ୍ପଷ୍ଟ ଭାବରେ ବ୍ୟାଖ୍ୟା କରାଯିବ ଯେ ଲୋକମାନଙ୍କ ପକ୍ଷରେ ସେଗୁଡ଼ିକୁ ଗ୍ରହଣ କରିବା ଓ ତଦନ୍ତର୍ଗତ ନୀତି ନିୟମକୁ ପାଳନ କରିବା ସହଜ ହେବ ।

عَلِمَتْ نَفْسٌ مَّا أَحْضَرَتْ ⑮

୧୫. (ସେ ଦିନ) ପ୍ରତ୍ୟେକ ପ୍ରାଣୀ ଯାହା ଉପସ୍ଥାପିତ କରିଥିବ ତାହା ଜାଣି ପାରିବ ।

فَلَآ أُقْسِمُ بِالْخُنَّسِ ⑯

୧୬. କିନ୍ତୁ (ଯେପରି ତୁମେମାନେ ମନେ କରୁଅଛ), ସେପରି ନୁହେଁ ; ଯେଉଁମାନେ ସ୍ଖଳି ସ୍ଖଳି ପଛେଇ ଯାଆନ୍ତି, ଆମେ ସେମାନଙ୍କୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ,

الْجَوَارِ الْكُنَّسِ ⑰

୧୭. ଯେଉଁମାନେ ନାକ ସିଧା ଚାଲୁଥାନ୍ତି (ଓ ପୁଣି) ଘରେ ବସି ରହୁଥା'ନ୍ତି ।[୧]

وَالَّيْلِ إِذَا عَسْعَسَ ⑱

୧୮. ଏବଂ ରାତ୍ରିକୁ, (ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ) ଯେତେବେଳେ ତାହା ଅନ୍ତ ହୁଏ ;

وَالصُّبْحِ إِذَا تَنَفَّسَ ⑲

୧୯. ଏବଂ ପ୍ରଭାତକୁ, ଯେତେବେଳେ ତାହା ଶ୍ୱାସପ୍ରଶ୍ୱାସ[୨] ନେବା ଆରମ୍ଭ କରେ (ଅର୍ଥାତ୍ ପ୍ରଭାତର ଅଭ୍ୟୁଦୟ ହୁଏ),

إِنَّهُ لَقَوْلُ رَسُولٍ كَرِيمٍ ⑳

୨୦. ବାସ୍ତବରେ ତାହା (ଅର୍ଥାତ୍ କୋରାନ) ଜଣେ ସମ୍ମାନିତ ରସୁଲଙ୍କ[୩] ବାଣୀ ଅଟେ,

ذِي قُوَّةٍ عِنْدَ ذِي الْعَرْشِ مَكِينٍ ㉑

୨୧. (ଯେ କି) ଶକ୍ତିଶାଳୀ ଓ ସିଂହାସନର ଅଧିକାରୀଙ୍କ ନିକଟରେ ଉଚ୍ଚ ପଦମର୍ଯ୍ୟାଦାର ଅଧିକାରୀ ଅଟନ୍ତି,

مُّطَاعٍ ثَمَّ أَمِينٍ ㉒

୨୨. (ସେ) ଆଜ୍ଞାବହ ଅଟନ୍ତି ଓ ତତ୍ ସହିତ ବିଶ୍ୱସନୀୟ[୪] ମଧ୍ୟ ।

وَمَا صَاحِبُكُم بِمَجْنُونٍ ㉓

୨୩. ଏବଂ ତୁମମାନଙ୍କ ବନ୍ଧୁ ଆଦୌ ପାଗଳ ନୁହନ୍ତି ।

---

୧. ଏଠାରେ ବିନାଶମୁଖୀ ଜାତିର କେତେକ ଲକ୍ଷଣ ବର୍ଣ୍ଣନା କରାଯାଇଛି । ତେଣୁ ମୁସଲମାନମାନେ ପ୍ରଥମେ ଏଥିପ୍ରତି ଧ୍ୟାନ ଦେବା ଆବଶ୍ୟକ । ସେହି ଲକ୍ଷଣଗୁଡ଼ିକ ହେଉଛି : (କ) ବିପଦବେଳେ ପଛଘୁଞ୍ଚା ଦେବା, (ଖ) ଅପରିଣାମଦର୍ଶୀ ହୋଇ କାର୍ଯ୍ୟ କରିବାକୁ ଦୁଃସାହସ କରିବା, (ଗ) କାର୍ଯ୍ୟକୁ ଉପେକ୍ଷା କରି ଗୃହରେ ବସି ରହିବା ।

୨. ମୁସଲମାନମାନଙ୍କ ପାଇଁ ବିନାଶର ସମୟ ସ୍ଥାୟୀ ହେବ ନାହିଁ; ରାତି ପରେ ଅବଶ୍ୟ ସକାଳ ହେବା ନିଶ୍ଚିତ ।

୩. ପବିତ୍ର କୋରାନ ଯେ ହଜରତ ମହମ୍ମଦଙ୍କର ବାଣୀ ତାହା ଜଣାଇବା ଏହି ଆୟତର ପ୍ରକୃତ ଉଦ୍ଦେଶ୍ୟ ନୁହେଁ । ବସ୍ତୁତଃ ଏହାର ଭାବାର୍ଥ ହେଉଛି ଯେ ଅଲ୍ଲାହ୍‌ଙ୍କ ସହିତ ହଜରତ ମହମ୍ମଦଙ୍କର ଘନିଷ୍ଠ ସମ୍ପର୍କ ଅଛି ଏବଂ ଦେବଦୂତମାନେ ଏହି ବାଣୀକୁ ତାହାଙ୍କ ନିକଟକୁ ଆଣିଆନ୍ତି । ସେଥିପାଇଁ ପବିତ୍ର କୋରାନର ବାଣୀକୁ ଅଲ୍ଲାହ୍‌ଙ୍କର ବାଣୀ (ଅର୍ଥାତ୍ କଲାମୁଲ୍ଲାହ୍) ତଥା ମହମ୍ମଦଙ୍କର ବାଣୀ ମଧ୍ୟ କୁହାଯାଏ, କାରଣ ସଂସାରବାସୀ ତାଙ୍କରି ମୁହଁରୁ ଏହି ବାଣୀ ଶୁଣିଛନ୍ତି । କିନ୍ତୁ ଏହି ବାଣୀ ଅଲ୍ଲାହ୍‌ଙ୍କର ବାଣୀ ବୋଲି ପବିତ୍ର କୋରାନରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି । ସେଥିରେ ଏହିପରି ଉଲ୍ଲେଖ ଅଛି ଯେ ନିଃସନ୍ଦେହରେ ଏହି କୋରାନ୍ ସମଗ୍ର ଜଗତର ପାଳନକର୍ତ୍ତାଙ୍କ ତରଫରୁ ଅବତୀର୍ଣ୍ଣ ହୋଇଛି; ତାହାକୁ ସଙ୍ଗରେ ଧରି ଜଣେ ସଚ୍ଚୋଟ ଦେବଦୂତ ତୁମ ହୃଦୟରେ ଅବତରଣ କରାଇଛନ୍ତି, ଯେପରିକି ତୁମେ ଏକ ସଚେତକ ଗୋଷ୍ଠୀ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯିବ (୩୭:୯୩–୯୫ ଦ୍ରଷ୍ଟବ୍ୟ) ।

୪. ଯେହେତୁ ସେ ଜଣେ ରସୁଲ ଥିଲେ ତେଣୁ ତାଙ୍କ ପ୍ରତି ବାଣୀ ଅବତୀର୍ଣ୍ଣ ହେବା ଆବଶ୍ୟକ ହେଉଥିଲା । ପୁନଶ୍ଚ ତାଙ୍କର ଅସାଧାରଣ ଦାବି ପରେ ସେ ଏକ ଆଜ୍ଞାବହ ଗୋଷ୍ଠୀ ଗଢ଼ି ପାରିଥିଲେ । ସେ ସତ୍ୟବାଦୀ ଥିଲେ, ଏପରିକି ଶତ୍ରୁମାନଙ୍କ ସ୍ୱୀକୃତି ଅନୁସାରେ ମଧ୍ୟ ସେ ସଚ୍ଚୋଟ ଥିଲେ । ଅତଏବ ଯେବେ ସେ ଏହାକୁ ଅଲ୍ଲାହ୍‌ଙ୍କର ବାଣୀ ବୋଲି ଦାବି କରୁଛନ୍ତି ତେବେ ତାଙ୍କର ଏହି ଦାବି କଦାପି ମିଥ୍ୟା ହୋଇ ନ ପାରେ ।

୨୪. ଏବଂ ସେ ତାହାକୁ (ଅର୍ଥାତ୍ ସେହି ଅଦୃଷ୍ଟକୁ) ଆକାଶର ମୁକ୍ତ ଦିଗ୍‌ବଳୟରେ ଦେଖିଛନ୍ତି ।

وَلَقَدْ رَاٰهُ بِالْاُفُقِ الْمُبِيْنِ ﴿۲۴﴾

୨୫. ଏବଂ ସେ ଅଦୃଷ୍ଟର ସମାଗ୍ରର ଦେବାରେ ଆଦୌ କୃପଣ ନୁହନ୍ତି ।

وَمَا هُوَ عَلَى الْغَيْبِ بِضَنِيْنٍ ﴿۲۵﴾

୨୬. ଏବଂ ତାହା (ଅର୍ଥାତ୍ ମହାପୁରୁଷ ମହମ୍ମଦଙ୍କ ପ୍ରତି ପ୍ରେରିତ ବାଣୀ) ଅଭିଶପ୍ତ ସଇତାନ (କଥିତ) ବାଣୀ ନୁହେଁ ।

وَمَا هُوَ بِقَوْلِ شَيْطٰنٍ رَّجِيْمٍ ﴿۲۶﴾

୨୭. ତେଣୁ (ଏହା ସତ୍ତ୍ୱେ) ତୁମେମାନେ କେଉଁ ଆଡକୁ ଯାଉଅଛ ?

فَاَيْنَ تَذْهَبُوْنَ ﴿۲۷﴾

୨୮. ଏହା ସମସ୍ତ ଜଗତ ପାଇଁ ଏକ ଉପଦେଶ ମାତ୍ର,

اِنْ هُوَ اِلَّا ذِكْرٌ لِّلْعٰلَمِيْنَ ﴿۲۸﴾

୨୯. (ବିଶେଷତଃ) ତୁମମାନଙ୍କ ମଧ୍ୟରୁ ତାହା ପାଇଁ ଯେ କି ସରଳ ପଥ ଅନୁସରଣ କରିବାକୁ ଇଚ୍ଛା କରେ,

لِمَنْ شَآءَ مِنْكُمْ اَنْ يَّسْتَقِيْمَ ﴿۲۹﴾

୩୦. ତୁମେମାନେ ଏହା (କଦାପି) ଇଚ୍ଛା କରିପାରିବ ନାହିଁ[୧] ଯେ- ପର୍ଯ୍ୟନ୍ତ ସମସ୍ତ ଜଗତର ପାଳନକର୍ତ୍ତା (ଅଲ୍ଲାହ) ଇଚ୍ଛା କରି ନାହାନ୍ତି ।

وَمَا تَشَآءُوْنَ اِلَّآ اَنْ يَّشَآءَ اللّٰهُ رَبُّ الْعٰلَمِيْنَ ﴿۳۰﴾

---

୧. ଏହାର ଅର୍ଥ ନୁହେଁ ଯେ ଅଲ୍ଲାହ ଭାଗ୍ୟ ନିର୍ଦ୍ଦିଷ୍ଟ କରିଛନ୍ତି, ଅର୍ଥାତ୍ ଅମୁକ ଲୋକ ଭଲ ହେବ ବା ଅମୁକ ଲୋକ ମନ୍ଦ ହେବ । ପବିତ୍ର କୋରାନ ଏପରି କୌଣସି ବିଶ୍ୱାସ ବା ମନ୍ତବ୍ୟକୁ ଅସମୀଚୀନ ସ୍ଥିର କରିଛି । ଆଲୋଚ୍ୟ ଆୟତରେ ପବିତ୍ର କୋରାନର ଅନ୍ୟ ଏକ ଆୟତ ବିଷୟରେ ସୂଚନା ଦିଆଯାଇଛି ଯେ, ଅଲ୍ଲାହ ଜିନ୍ନ ଓ ମାନବକୁ କେବଳ ଏଥି ସକାଶେ ସୃଷ୍ଟି କରିଛନ୍ତି ଯେ ସେମାନେ ତାହାଙ୍କର ଉପାସନା କରିବେ (୫୧:୫୭ ଦ୍ରଷ୍ଟବ୍ୟ) । ଏଠାରେ ଅନ୍ୟ ଏକ ଆୟତର ମଧ୍ୟ ସୂଚନା ଦିଆଯାଇଛି, ଯାହାର ଅର୍ଥ ହେଉଛି, ଅଲ୍ଲାହ ପ୍ରତ୍ୟେକ ମନୁଷ୍ୟକୁ ଉଚ୍ଚ-ମାନର ଶକ୍ତି ପ୍ରଦାନ କରି ପଠାଇଛନ୍ତି (୯୧:୮ ଦ୍ରଷ୍ଟବ୍ୟ) । ସୁତରାଂ ଯେହେତୁ ତୁମମାନଙ୍କର ସଂସ୍କାର କରାଯାଇ ତୁମମାନଙ୍କୁ ଆଦର୍ଶ ଭକ୍ତ ବା ବିଶ୍ୱାସକାରୀ ରୂପେ ଗଢ଼ାଯିବା ସଂକ୍ରାନ୍ତରେ ଅଲ୍ଲାହଙ୍କର ଇଚ୍ଛା ପ୍ରକାଶିତ ହୋଇଛି, ତେଣୁ ତୁମେମାନେ ବିରୋଧ କରିପାରିବ ନାହିଁ । ବସ୍ତୁତଃ ଯଦି ମାନବ ଅଲ୍ଲାହଙ୍କ ପ୍ରଦତ୍ତ ବିଧାନ ଅନୁସାରେ ନିଜ ଇଚ୍ଛାକୁ କାର୍ଯ୍ୟକାରୀ କରିବ, ତେବେ ତାହାର ଧର୍ମ ବିଶ୍ୱାସ ମଧ୍ୟ ସତ୍‌ମାର୍ଗରେ ପରିଚାଳିତ ହେବ ।

سُوْرَةُ الْاِنْفِطَارِ مَكِّيَّةٌ (٨٢) رُكُوْعُهَا ١ اٰيَاتُهَا ١٩

# ଅଲ-ଇନ୍‌ଫିତାର

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୨୦ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

اِذَا السَّمَآءُ انْفَطَرَتْ ②

୨. ଯେତେବେଳେ ଆକାଶ ଫାଟି ପଡିବ,[1]

وَاِذَا الْكَوَاكِبُ انْتَثَرَتْ ③

୩. ଯେତେବେଳେ ନକ୍ଷତ୍ରମାନେ ଖସି ପଡିବେ,[2]

وَاِذَا الْبِحَارُ فُجِّرَتْ ④

୪. ଏବଂ ଯେତେବେଳେ ସାଗରଗୁଡ଼ିକୁ ଚିରି ମିଶାଇ ଦିଆଯିବ,[3]

وَاِذَا الْقُبُوْرُ بُعْثِرَتْ ⑤

୫. ଏବଂ ଯେତେବେଳେ କବରଗୁଡିକୁ ଖୋଳି ଏଣେ ତେଣେ ଫିଙ୍ଗି ଦିଆଯିବ,[4]

عَلِمَتْ نَفْسٌ مَّا قَدَّمَتْ وَاَخَّرَتْ ⑥

୬. ସେତେବେଳେ ସେ ପ୍ରାଣୀ[5] (ଯାହା ବିଷୟରେ ଏଠାରେ ଆଲୋଚନା କରାଯାଉଛି) ଜାଣି ପାରିବ[6] ଯେ ସେ କ'ଣ ସବୁ ଆଗକୁ ପଠାଇଛି ଓ କ'ଣ ସବୁ ପଛରେ ଛାଡି ଆସିଛି ।

يٰٓاَيُّهَا الْاِنْسَانُ مَا غَرَّكَ بِرَبِّكَ الْكَرِيْمِ ⑦

୭. ହେ ମାନବ ! ତୁମକୁ କିଏ ନିଜ ପାଳନକର୍ତ୍ତାଙ୍କ ସଂକ୍ରାନ୍ତରେ ଅହଙ୍କାରୀ (ଓ ପ୍ରତାରିତ) କରିଅଛି,[7][8]

---

୧. ଏହି ଅଧ୍ୟାୟରେ ଶେଷ ଯୁଗ ସଂପର୍କରେ କେତେକ ଲକ୍ଷଣର ବର୍ଣ୍ଣନା ଅଛି । ଆଲୋଚ୍ୟ ଆୟତରେ ସୂଚାଯାଇଛି ଯେ ପୃଥିବୀରେ ସିର୍କ ଓ ନାସ୍ତିକତା ଏତେ ଦୂର ବ୍ୟାପିଯିବ ଯେ ଅଲ୍ଲାହ ସଂସାରକୁ ଶାସ୍ତି ପ୍ରେରଣ କରିବା ନିମନ୍ତେ ନିଷ୍ପତ୍ତି କରିବେ ।

୨. ହୁଏତ ବିଦ୍ୱାନ୍ ବ୍ୟକ୍ତିମାନେ ଧରା ପୃଷ୍ଠରୁ ବିଲୁପ୍ତ ହେବେ ବା ସତ୍‌ପଥ ପ୍ରଦର୍ଶନକାରୀଙ୍କର ସଂଖ୍ୟା ହ୍ରାସ ହେବ ।

୩. ଅର୍ଥାତ୍ ପାନାମା କେନାଲ ଓ ସୁଏଜ୍ କେନାଲ ଦ୍ୱାରା ଦୁଇ ଦୁଇଟି ବିସ୍ତୀର୍ଣ୍ଣ ଜଳଭାଗକୁ ସଂଯୁକ୍ତ କରାଯାଇଛି ।

୪. ଅର୍ଥାତ୍ ପ୍ରାଚୀନ ମିଶର ଦେଶର ଫିରଔନ (Pharaoh) ନାମଧେୟ ରାଜାମାନଙ୍କ କବରଗୁଡ଼ିକୁ ଖୋଳି ସେମାନଙ୍କ ଶବଗୁଡ଼ିକୁ ଇଂଲାଣ୍ଡ, ଫ୍ରାନ୍ସ ଓ ରୁଷିଆ ଆଦି ଦେଶର ସଂଗ୍ରହାଳୟ ଗୁଡ଼ିକରେ ରଖାଯିବା ପାଇଁ ପଠାଯିବ ।

୫. ଏଠାରେ 'ନଫସ' ଖ୍ରୀଷ୍ଟଧର୍ମକୁ ବୁଝାଉଛି, କାରଣ ସଂପ୍ରତି ଖ୍ରୀଷ୍ଟିୟାନମାନଙ୍କ ଦ୍ୱାରା ସାରା ସଂସାରରେ ସିର୍କ ବା ନାସ୍ତିକତାର ପ୍ରଚାର ଓ ପ୍ରସାର ହେଉଛି ।

୬. ଅର୍ଥାତ୍ ଅଲ୍ଲାହ ଏପରି ନିଦର୍ଶନମାନ ସୃଷ୍ଟି କରିବେ ଯଦ୍ଦ୍ୱାରା ଖ୍ରୀଷ୍ଟଧର୍ମର ପତନର ଲକ୍ଷଣମାନ ଦୃଷ୍ଟିଗୋଚର ହେବ । ଖ୍ରୀଷ୍ଟିୟାନମାନେ ମଧ୍ୟ ଜାଣି ପାରିବେ ଯେ ସେମାନେ ଅନେକ ଘୃଣ୍ୟ କର୍ମ କରିଛନ୍ତି ଓ କରୁଛନ୍ତି ଏବଂ ନିଜ ପଛରେ ଏପରି କୃତିମାନ ଛାଡ଼ି ଯାଉଛନ୍ତି ଯାହା ଲୋକମାନଙ୍କ ମନରେ ସେମାନଙ୍କ ପ୍ରତି ଘୃଣାଭାବ ଜାଗ୍ରତ କରାଉଥିବ ।

୭. ଏଠାରେ ପାଶ୍ଚାତ୍ୟ ଜଗତର ଦର୍ଶନ ଶାସ୍ତ୍ର ପ୍ରତି ସଂକେତ ଦିଆଯାଇଛି ଯେ ସେହି ଶାସ୍ତ୍ର ଅଧ୍ୟୟନ କରୁଥିବା ଲୋକମାନେ ନିଜକୁ ଧର୍ମବିଧାନଠାରୁ ଓ ଅଲ୍ଲାହଙ୍କଠାରୁ ଶ୍ରେଷ୍ଠ ମନେ କରୁଛନ୍ତି । ସେମାନେ ଅଲ୍ଲାହଙ୍କ ଦ୍ୱାରା ସୃଷ୍ଟ ହୋଇଥିବା ବିଷୟରେ ଆଦୌ ଚିନ୍ତା କରୁ ନାହାନ୍ତି, ବରଂ ନିଜ ଭ୍ରମାତ୍ମକ ଦର୍ଶନକୁ ଭିତ୍ତିକରି ମନେ କରୁଛନ୍ତି ଯେ ସେମାନେ ନିଜେ ନିଜେ ସୃଷ୍ଟ ହୋଇଛନ୍ତି ।

୮. ଅର୍ଥାତ୍ ପର କାଳରେ ବିଚାର ହେବ ଓ ପ୍ରତିଫଳ ମିଳିବ । ସେତେବେଳେ କୌଣସି ବନ୍ଧୁ ଅନ୍ୟ କୌଣସି ବନ୍ଧୁଙ୍କ ପକ୍ଷରେ ଲାଭ ଦାୟକ ହେବେ ନାହିଁ ।

୮. (ସେହି ପାଳନକର୍ତ୍ତାଙ୍କ ସଂକ୍ରାନ୍ତରେ) ଯେ କି ତୁମକୁ ସୃଷ୍ଟି କଲେ ତା'ପରେ ତୁମକୁ (ଅର୍ଥାତ୍ ତୁମର ଆଭ୍ୟନ୍ତରୀଣ ଶକ୍ତିକୁ) ପୂର୍ଣ୍ଣତା ପ୍ରଦାନ କଲେ, (ଏବଂ ଏହା) ପରେ ତୁମକୁ ସମୁଚିତ ଶକ୍ତି ପ୍ରଦାନ କଲେ ?

الَّذِیْ خَلَقَكَ فَسَوّٰىكَ فَعَدَلَكَ ۝٨

୯. ଏହା ପରେ ସେ ଯେଉଁ ରୂପ ପସନ୍ଦ କଲେ ତହିଁରେ (ଅର୍ଥାତ୍ ସେହି ରୂପରେ) ତୁମକୁ ଗଢ଼ିଲେ ।

فِیْۤ اَیِّ صُوْرَةٍ مَّا شَآءَ رَكَّبَكَ ۝٩

୧୦. (ଯେପରି ତୁମେ ମନେ କରୁଅଛ) ସେପରି କଦାପି ନୁହେଁ, ବରଂ ତୁମେ ତ ବିଚାର (ଦିବସ)କୁ ମିଥ୍ୟା ମନେ କରୁଅଛ ।

كَلَّا بَلْ تُكَذِّبُوْنَ بِالدِّیْنِ ۝١٠

୧୧. ଏବଂ (ଅଲ୍ଲାଃଙ୍କ ତରଫରୁ) ତୁମମାନଙ୍କ ପାଇଁ ନିଶ୍ଚିତ ରୂପେ ତତ୍ତ୍ୱାବଧାରକ ନିଯୁକ୍ତ ହୋଇଛନ୍ତି ।

وَاِنَّ عَلَیْكُمْ لَحٰفِظِیْنَ ۝١١

୧୨. (ସେମାନେ) ଭଦ୍ର ଓ ପ୍ରତ୍ୟେକ ବିଷୟକୁ ଲିପିବଦ୍ଧ କରିଥା'ନ୍ତି ।

كِرَامًا كَاتِبِیْنَ ۝١٢

୧୩. ତୁମେମାନେ ଯାହା କରୁଅଛ ସେମାନେ ତାହା ଜାଣନ୍ତି ।

یَعْلَمُوْنَ مَا تَفْعَلُوْنَ ۝١٣

୧୪. ବାସ୍ତବରେ ପୁଣ୍ୟକାର୍ଯ୍ୟରେ ଅଗ୍ରସର ହେଉଥିବା ଲୋକମାନେ (ସର୍ବଦା) ଆନନ୍ଦରେ ରହନ୍ତି ;

اِنَّ الْاَبْرَارَ لَفِیْ نَعِیْمٍ ۝١٤

୧୫. ଏବଂ ଦୁରାଚାରୀ ଲୋକମାନେ ବାସ୍ତବରେ ନରକରେ ରହନ୍ତି ;

وَّاِنَّ الْفُجَّارَ لَفِیْ جَحِیْمٍ ۝١٥

୧୬. (ବିଶେଷତଃ) ସେମାନେ ବିଚାର ଦିବସରେ ତହିଁରେ ପ୍ରବେଶ କରିବେ ।

یَّصْلَوْنَهَا یَوْمَ الدِّیْنِ ۝١٦

୧୭. ଏବଂ ସେମାନେ କୌଣସି ପ୍ରକାରେ ମଧ୍ୟ ସେଥିରୁ ରକ୍ଷା ପାଇ ଅନ୍ତର୍ଦ୍ଧାନ ହୋଇ ଯାଇ ପାରିବେ ନାହିଁ ।

وَمَا هُمْ عَنْهَا بِغَآئِبِیْنَ ۝١٧

୧୮. ଏବଂ (ହେ ରସୁଲ !) ବିଚାର ଦିବସର ସମୟ କେବେ, ତାହା ତୁମକୁ କିଏ ଜଣାଇଛି ?

وَمَاۤ اَدْرٰىكَ مَا یَوْمُ الدِّیْنِ ۝١٨

୧୯. ପୁନଶ୍ଚ (ଆମେ ତୁମକୁ କହୁଅଛୁ କି) ବିଚାର ଦିବସର ସମୟ କେବେ, ତାହା ତୁମକୁ କିଏ ଜଣାଇଛି ?

ثُمَّ مَاۤ اَدْرٰىكَ مَا یَوْمُ الدِّیْنِ ۝١٩

୨୦. (ସେହି ସମୟ) ସେ ଦିନ (ହେବ), ଯେଉଁ ଦିନ କୌଣସି ପ୍ରାଣୀର ଅନ୍ୟ ପ୍ରାଣୀକୁ ଲାଭ ଦେବା ପାଇଁ କିଛି ସାମର୍ଥ୍ୟ ନଥିବ ; ଏବଂ ସେଦିନ ସବୁ ପ୍ରକାର ମୀମାଂସା ଅଲ୍ଲାଃଙ୍କ ହସ୍ତରେ ନ୍ୟସ୍ତ ଥିବ ।

یَوْمَ لَا تَمْلِكُ نَفْسٌ لِّنَفْسٍ شَیْـًٔا ؕ وَالْاَمْرُ یَوْمَئِذٍ لِّلّٰهِ ۝٢٠

سُوْرَةُ التَّطْفِيْفِ مَكِّيَّةٌ (٨٣)

# ଅଲ—ମୁତଫ୍‌ଫିଫୀନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୩୭ଟି ଆୟତ )

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

وَيْلٌ لِّلْمُطَفِّفِيْنَ ②

୨. କ୍ରୟବିକ୍ରୟ ବେଳେ ଓଜନ କମ କରୁଥିବା ଲୋକମାନଙ୍କ ସକାଶେ ଶାସ୍ତି ରହିଅଛି ;

الَّذِيْنَ اِذَا اكْتَالُوْا عَلَى النَّاسِ يَسْتَوْفُوْنَ ③

୩. (ସେମାନଙ୍କ ସକାଶେ) ଯେଉଁମାନେ ଅନ୍ୟ ମାନଙ୍କଠାରୁ ଓଜନ କରି ନେବା ବେଳେ ସମ୍ପୂର୍ଣ୍ଣ ପରିମାଣରେ ନେଇଥା'ନ୍ତି ;

وَاِذَا كَالُوْهُمْ اَوْ وَّزَنُوْهُمْ يُخْسِرُوْنَ ④

୪. ଅଥଚ ସେମାନେ ଅନ୍ୟମାନଙ୍କୁ କୌଣସି ଦ୍ରବ୍ୟ ଓଜନ କରି ଦେବା ବେଳେ, ଓଜନରେ କମ କରିଥା'ନ୍ତି ।

اَلَا يَظُنُّ اُولٰٓئِكَ اَنَّهُمْ مَّبْعُوْثُوْنَ ⑤

୫. କ'ଣ ସେମାନେ ବିଶ୍ୱାସ କରୁନାହାନ୍ତି ଯେ ସେମାନଙ୍କୁ (ପୁନର୍ଜୀବିତ କରି) ଉତ୍‌ଥିତ କରାହେବ ?

لِيَوْمٍ عَظِيْمٍ ⑥

୬. ଏହି ମହାନ୍ ଦିବସ (ରେ ନିଷ୍ପତ୍ତି ଦେଖିବା) ସକାଶେ,

يَّوْمَ يَقُوْمُ النَّاسُ لِرَبِّ الْعٰلَمِيْنَ ⑦

୭. ଯେଉଁ ଦିନ ମାନବ-ସମାଜ ସମସ୍ତ ଜଗତର ପାଳନକର୍ତ୍ତାଙ୍କ (ନିଷ୍ପତ୍ତି ଶୁଣିବା) ସକାଶେ ଦଣ୍ଡାୟମାନ ହୋଇଥିବେ ।

كَلَّآ اِنَّ كِتٰبَ الْفُجَّارِ لَفِيْ سِجِّيْنٍ ⑧

୮.(ସେମାନେ ଯାହା ବୁଝୁଛନ୍ତି) ସେପରି ନୁହେଁ ; ଦୁରାଗ୍ରହୀମାନଙ୍କ ପ୍ରତି (ସେମାନଙ୍କ କର୍ମର ପ୍ରତିଫଳ ସମ୍ବନ୍ଧୀୟ) ବାସ୍ତବରେ ସିଜ୍ଜୀନ [୧] (ଅର୍ଥାତ୍ ଏକ ସ୍ଥାୟୀ ପୁସ୍ତକ)ରେ ଅଛି ।

وَمَآ اَدْرٰىكَ مَا سِجِّيْنٌ ⑨

୯. ଏବଂ ସିଜ୍ଜୀନ କ'ଣ, ଏହା ତୁମକୁ କିଏ ଜଣାଇଛି ?

كِتٰبٌ مَّرْقُوْمٌ ⑩

୧୦. ତାହା ଏପରି ଆଦେଶ ଯାହା (ଅନନ୍ତ କାଳରୁ) ଲିପିବଦ୍ଧ ହୋଇଅଛି ।

وَيْلٌ يَّوْمَئِذٍ لِّلْمُكَذِّبِيْنَ ⑪

୧୧. ସେ ଦିନ ମିଥ୍ୟା ଆରୋପକାରୀମାନଙ୍କ ପାଇଁ ଶାସ୍ତି ରହିଥିବ,

الَّذِيْنَ يُكَذِّبُوْنَ بِيَوْمِ الدِّيْنِ ⑫

୧୨. ସେ (ମିଥ୍ୟାବାଦୀ) ମାନଙ୍କ ପାଇଁ, ଯେଉଁମାନେ ବିଗ୍ରହ ଦିବସକୁ ପ୍ରତ୍ୟାଖ୍ୟାନ କରୁଛନ୍ତି ।

---

୧. ମୂଳ ଶବ୍ଦ 'ସିଜ୍ଜୀନ' ଅର୍ଥ କଠୋର ଓ ସ୍ଥାୟୀ । ଅତଏବ ଏହାର ଭାବାର୍ଥ ହେଉଛି ଯେ ଅବିଶ୍ୱାସକାରୀମାନଙ୍କୁ ଦିଆଯିବା ଶାସ୍ତି କଠୋର ଓ ସ୍ଥାୟୀ ହେବ (ଫତହୁଲ ବୟାନ : ଗ୍ରନ୍ଥ ଖଣ୍ଡ ୧୦ ଦ୍ରଷ୍ଟବ୍ୟ) ।

وَمَا يُكَذِّبُ بِهِۦٓ إِلَّا كُلُّ مُعْتَدٍ أَثِيمٍ ﴿١٣﴾

୧୩. ଯେ ସୀମାଲଂଘନକାରୀ ଓ ମହାପାପୀ, ତାହା ଭିନ୍ନ ଅନ୍ୟ କେହି ଏହାକୁ ପ୍ରତ୍ୟାଖ୍ୟାନ କରିପାରିବ ନାହିଁ,

إِذَا تُتْلَىٰ عَلَيْهِ ءَايَٰتُنَا قَالَ أَسَٰطِيرُ ٱلْأَوَّلِينَ ﴿١٤﴾

୧୪. ଯେତେବେଳେ ସେଭଳି ଲୋକମାନଙ୍କ ନିକଟରେ ଆମର ନିଦର୍ଶନ ପାଠ କରାଯାଏ, ସେତେବେଳେ ସେମାନେ କହନ୍ତି, "ଏହା ତ ପୂର୍ବକାଳର ଲୋକମାନଙ୍କଠାରୁ ନକଲ କରା ଯାଇଥିବା କଥା ।"

كَلَّا ۖ بَلْ ۜ رَانَ عَلَىٰ قُلُوبِهِم مَّا كَانُوا۟ يَكْسِبُونَ ﴿١٥﴾

୧୫. (ସେମାନେ ଯେପରି କହୁଛନ୍ତି ସେପରି) ଆଦୌ ନୁହେଁ, ବରଂ (ପ୍ରକୃତ ବିଷୟ ହେଉଛି ଯେ) ସେମାନେ ଯାହା କିଛି ଅର୍ଜନ କରିଛନ୍ତି ତାହା ସେମାନଙ୍କ ମନକୁ କଳଙ୍କିତ କରିଅଛି ।

كَلَّآ إِنَّهُمْ عَن رَّبِّهِمْ يَوْمَئِذٍ لَّمَحْجُوبُونَ ﴿١٦﴾

୧୬. ବରଂ ଏପରି କୁହ ଯେ ସେଦିନ ସେମାନଙ୍କୁ ନିଜ ପାଳନକର୍ତ୍ତାଙ୍କ ସମ୍ମୁଖକୁ ଆସିବା ସକାଶେ ନିଶ୍ଚୟ ବାଧା ଦିଆଯିବ ।

ثُمَّ إِنَّهُمْ لَصَالُوا۟ ٱلْجَحِيمِ ﴿١٧﴾

୧୭. ଏହା ପରେ ସେମାନେ ନରକ ମଧ୍ୟରେ ନିଶ୍ଚୟ ପ୍ରବେଶ କରିବେ,

ثُمَّ يُقَالُ هَٰذَا ٱلَّذِى كُنتُم بِهِۦ تُكَذِّبُونَ ﴿١٨﴾

୧୮. ଏହା ପରେ ସେମାନଙ୍କୁ କୁହାଯିବ, "ଏହା ହିଁ ସେହି (ପରିଣାମ), ଯାହାକୁ ତୁମେମାନେ ପ୍ରତ୍ୟାଖ୍ୟାନ କରୁଥିଲ ।"

كَلَّآ إِنَّ كِتَٰبَ ٱلْأَبْرَارِ لَفِى عِلِّيِّينَ ﴿١٩﴾

୧୯. ତୁମମାନଙ୍କ ଧାରଣାର ବିପରୀତରେ ପୁଣ୍ୟବାନ୍ ଲୋକମାନଙ୍କ (ପୁରସ୍କାର ବିଷୟକ) ଆଦେଶ ବାସ୍ତବରେ ଇଲ୍ଲିୟୀନରେ [1] ରହିଅଛି ।

وَمَآ أَدْرَىٰكَ مَا عِلِّيُّونَ ﴿٢٠﴾

୨୦. ଏବଂ ଇଲ୍ଲିୟୁନ [2] କ'ଣ, ଏହା ତୁମଙ୍କୁ କିଏ ଜଣାଇଛି ?

كِتَٰبٌ مَّرْقُومٌ ﴿٢١﴾

୨୧. ତାହା ଏକ ଲିଖିତ ଆଦେଶ ।

يَشْهَدُهُ ٱلْمُقَرَّبُونَ ﴿٢٢﴾

୨୨. ଯାହାକୁ (ଅଲ୍ଲାହଙ୍କ) ସାମୀପ୍ୟ ଲାଭ କରିଥିବା ଲୋକମାନେ (ନିଜ ଆଖିରେ) ଦେଖିବାକୁ ପାଇବେ ।

إِنَّ ٱلْأَبْرَارَ لَفِى نَعِيمٍ ﴿٢٣﴾

୨୩. ବାସ୍ତବରେ ପୁଣ୍ୟରେ ଅଗ୍ରସର ହୋଇଥିବା ଲୋକମାନେ ଆନନ୍ଦ (ମୟ ସ୍ଥାନ)ରେ ରହିବେ,

عَلَى ٱلْأَرَآئِكِ يَنظُرُونَ ﴿٢٤﴾

୨୪. ପଲଙ୍କ ଉପରେ (ବସି ରହି ସବୁ) ଦେଖୁଥିବେ ।

تَعْرِفُ فِى وُجُوهِهِمْ نَضْرَةَ ٱلنَّعِيمِ ﴿٢٥﴾

୨୫. ତୁମେ (ଯେବି ସେମାନଙ୍କୁ ଦେଖ, ତେବେ) ସେମାନଙ୍କ ମୁଖମଣ୍ଡଳରେ ଆଶୀର୍ବାଦଜନିତ ପ୍ରଶାନ୍ତି ଥିବା ଅନୁଭବ କରିବ ।

---

୧. 'ଇଲ୍‌ଲିୟୀନ' ଅର୍ଥ ଏଭଳି ମହାପୁରୁଷ, ଯେ କି ଅନ୍ୟମାନଙ୍କ ଅପେକ୍ଷା ଶ୍ରେଷ୍ଠ ।

୨. ସେହି ଲୋକମାନଙ୍କୁ 'ଇଲ୍‌ଲିୟୁନ' କୁହାଯାଏ, ଯେଉଁମାନଙ୍କ ସମ୍ବନ୍ଧରେ ସ୍ୱତନ୍ତ୍ର ଆଦେଶ ଜାରି କରାଯାଏ । ଅଲ୍ଲାହଙ୍କର ପାଖ ଲୋକମାନେ ନିଜ ଆଖିରେ ତାକୁ ପଢ଼ି ଆନନ୍ଦିତ ହୁଅନ୍ତି ।

يُسْقَوْنَ مِنْ رَّحِيْقٍ مَّخْتُوْمٍ ﴿٢٥﴾

୨୬. ସେମାନଙ୍କୁ ମୁଦଦିଆ ବିଶୁଦ୍ଧ ମଦିରା ପାନ କରିବାକୁ ଦିଆଯିବ,

خِتٰمُهٗ مِسْكٌ ۭ وَفِيْ ذٰلِكَ فَلْيَتَنَافَسِ الْمُتَنَافِسُوْنَ ﴿٢٦﴾

୨୭. ତାହାର ଶେଷ ଭାଗରେ କସ୍ତୁରି ରହିଥିବ ; ତେଣୁ କାମନାକାରୀମାନେ ଏହିଭଳି ବସ୍ତୁର ହିଁ କାମନା କରିବା ଉଚିତ,

وَمِزَاجُهٗ مِنْ تَسْنِيْمٍ ﴿٢٧﴾

୨୮. ଏବଂ ସେଥିରେ ତସନିମ [୧] ମିଶ୍ରିତ ହୋଇଥିବ,

عَيْنًا يَّشْرَبُ بِهَا الْمُقَرَّبُوْنَ ﴿٢٨﴾

୨୯. ସେହି ଝରଣା, ଯେଉଁଥିରୁ ସାମୀପ୍ୟ ଲାଭ କରିଥିବା ଲୋକେ ପାନ କରିବେ ।

اِنَّ الَّذِيْنَ اَجْرَمُوْا كَانُوْا مِنَ الَّذِيْنَ اٰمَنُوْا يَضْحَكُوْنَ ﴿٢٩﴾ۡ

୩୦. ଅପରାଧୀମାନେ ବାସ୍ତବରେ ବିଶ୍ୱାସକାରୀମାନଙ୍କ ସହିତ ପରିହାସ କରୁଥିଲେ,

وَاِذَا مَرُّوْا بِهِمْ يَتَغَامَزُوْنَ ﴿٣٠﴾ۡ

୩୧. ଏବଂ ଯେତେବେଳେ ସେମାନେ ସେମାନଙ୍କ ପାଖ ଦେଇ ଯାଉଥିଲେ, ସେତେବେଳେ ପରସ୍ପରକୁ ଆଖି ଠାରୁ ଥିଲେ ।

وَاِذَا انْقَلَبُوْٓا اِلٰٓى اَهْلِهِمُ انْقَلَبُوْا فَكِهِيْنَ ﴿٣١﴾ۡ

୩୨. ଏବଂ ଯେତେବେଳେ ନିଜ ଘର ଲୋକମାନଙ୍କ ନିକଟକୁ ଫେରୁଥିଲେ ; ସେତେବେଳେ ( ମୁସଲମାନଙ୍କ ବିରୁଦ୍ଧରେ) ବିଭିନ୍ନ ପ୍ରକାର କଥାବାର୍ତ୍ତା କରି ଫେରୁଥିଲେ ;

وَاِذَا رَاَوْهُمْ قَالُوْٓا اِنَّ هٰٓؤُلَاۗءِ لَضَاۗلُّوْنَ ﴿٣٢﴾ۙ

୩୩. ଏବଂ ଯେବେ ବି ସେମାନଙ୍କୁ ଦେଖୁଥିଲେ, ତେବେ କହୁଥିଲେ, "ଏମାନେ ତ ସମ୍ପୂର୍ଣ୍ଣ ରୂପେ ପଥଭ୍ରଷ୍ଟ ହୋଇଛନ୍ତି ।"

وَمَآ اُرْسِلُوْا عَلَيْهِمْ حٰفِظِيْنَ ﴿٣٣﴾ۭ

୩୪. ଏବଂ ପ୍ରକୃତ ବିଷୟ ହେଉଛି ଯେ ସେମାନେ ସେମାନଙ୍କ ପ୍ରତି ତତ୍ତ୍ୱାବଧାରକ ରୂପେ ପ୍ରେରିତ ହୋଇ ନଥିଲେ [୨] ।

فَالْيَوْمَ الَّذِيْنَ اٰمَنُوْا مِنَ الْكُفَّارِ يَضْحَكُوْنَ ﴿٣٤﴾ۙ

୩୫. ସୁତରାଂ ଯେଉଁମାନେ ବିଶ୍ୱାସ କରିଛନ୍ତି, ସେମାନେ ଏହି (ବିଗ୍ରହ) ଦିନ ଅବିଶ୍ୱାସକାରୀମାନଙ୍କୁ ପରିହାସ କରିବେ,

عَلَى الْاَرَاۗىِٕكِ ۙ يَنْظُرُوْنَ ﴿٣٥﴾ۭ

୩୬. ପଲଙ୍କ ଉପରେ (ବସି ରହି ସେମାନଙ୍କର ସବୁ ବିଷୟ) ଦେଖୁଥିବେ ।

هَلْ ثُوِّبَ الْكُفَّارُ مَا كَانُوْا يَفْعَلُوْنَ ﴿٣٦﴾ۧ

୩୭. (ଏବଂ ପରସ୍ପରକୁ କହିବେ), "ଅବିଶ୍ୱାସକାରୀମାନେ ଯାହା କିଛି କରୁଥିଲେ କ'ଣ ସେମାନଙ୍କୁ ସମ୍ପୂର୍ଣ୍ଣ ପ୍ରତିଫଳ ମିଳିଗଲା ?"

---

୧. 'ତସ୍‌ନିମ' ଅର୍ଥ ଉଚ୍ଚ ମର୍ଯ୍ୟାଦା ଓ ଗୌରବ । ତେଣୁ 'ତସ୍‌ନିମ'ର ମିଶ୍ରଣକୁ ଏହା ପ୍ରତୀତ ହେଉଛି ଯେ, ସେହି ସବୁ ବୈକୁଣ୍ଠବାସୀଙ୍କର ଜଳରେ ତସ୍‌ନିମ ଜଳ ମିଶ୍ରିତ ହୋଇଥିବ, ଯାହା ଫଳରେ ସେମାନଙ୍କ ମର୍ଯ୍ୟାଦା କ୍ରମଶଃ ବିକାଶ ଲାଭ କରୁଥିବ ।

୨. ଏଠାରେ ସୂଚୀତ ଦିଆଯାଇଛି ଯେ, କୌଣସି ବ୍ୟକ୍ତିର ଆନ୍ତରିକ ବିଶ୍ୱାସ ସମ୍ବନ୍ଧରେ 'ଫତୱା' ବା ଧର୍ମବିଷୟକ ସିଦ୍ଧାନ୍ତକୁ ପ୍ରୟୋଗ କରାଯିବା ଉଚିତ ନୁହେଁ, କାରଣ ଏପରି ହୋଇପାରେ ଯେ ସିଦ୍ଧାନ୍ତକାରୀ ସେହି ବ୍ୟକ୍ତିର ଅନ୍ତରର କଥା ଭଲ ରୂପେ ଜାଣି ନଥାଏ ଓ ତ୍ରୁଟିପୂର୍ଣ୍ଣ ସିଦ୍ଧାନ୍ତରେ ଉପନୀତ ହୋଇ ପାରେ ।



# ଅଲ–ଇନ ସିକାକ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ ଏଥିରେ ବିସମିଲ୍ଲାହ ସମେତ ୨୬ ଟି ଆୟତ ଅଛି ।)

| | |
|---|---|
| ୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) । | بِسْمِ اللّٰهِ الرَّحْمٰنِ الرَّحِيْمِ ① |
| ୨. ଯେତେବେଳେ ଆକାଶ ଫାଟି ପଡିବ [୧] | اِذَا السَّمَآءُ انْشَقَّتْ ② |
| ୩. ଏବଂ ନିଜ ପାଳନକର୍ତ୍ତାଙ୍କ (ଆଦେଶ ଶୁଣିବା) ସକାଶେ କାନ ପାତିବ [୨] ଏବଂ ଏହା ହିଁ (ତାହା ପାଇଁ) ଅନିବାର୍ଯ୍ୟ ଅଟେ । [୩] | وَاَذِنَتْ لِرَبِّهَا وَحُقَّتْ ③ |
| ୪. ଏବଂ ଯେତେବେଳେ ପୃଥିବୀକୁ ପ୍ରସାରିତ କରି ଦିଆଯିବ, [୪] | وَاِذَا الْاَرْضُ مُدَّتْ ④ |
| ୫. ଏବଂ ଯାହା କିଛି ତନ୍ମଧ୍ୟରେ ଅଛି ସେ ତାହାକୁ କାଢି [୫] ଫିଙ୍ଗି ଦେବ, ଓ ଶୂନ୍ୟ ହୋଇଯିବ ; [୬] | وَاَلْقَتْ مَا فِيْهَا وَتَخَلَّتْ ⑤ |

---

୧. ଅର୍ଥାତ୍ ଯେତେବେଳେ ଆକାଶରୁ ନିରନ୍ତର ଭାବେ ନିଦର୍ଶନଗୁଡ଼ିକ ପ୍ରକଟିତ ହେବାକୁ ଲାଗିବ ।

୨. ଏତେ ଅଧିକ ସଂଖ୍ୟାରେ ନିଦର୍ଶନ ଗୁଡ଼ିକ ପ୍ରକଟିତ ହେବ ଯେ ବଡ଼ ବଡ଼ ଲୋକ ଓ ବିଦ୍ବାନ୍ମାନେ ମଧ୍ୟ ଅଲ୍ଲାହଙ୍କ ପ୍ରଦତ୍ତ ଶିକ୍ଷା ସମ୍ବନ୍ଧରେ ଚିନ୍ତା କରିବାକୁ ଲାଗିବେ ।

୩. ପୂର୍ବରୁ ନିଦର୍ଶନ ପ୍ରକଟିତ ହେଉ ବା ନ ହେଉ, ମନୁଷ୍ୟ ଆପଣା ବୁଦ୍ଧି ପ୍ରୟୋଗ କରି ଅଲ୍ଲାହଙ୍କ ପ୍ରତି ଅନୁରକ୍ତ ହେବା ଉଚିତ । ଅନ୍ୟ ପକ୍ଷରେ ସେ ନିଦର୍ଶନକୁ ତାହା ଶୁଭ ହେଉ କି ଅଶୁଭ ହେଉ ପ୍ରତୀକ୍ଷା କରିବା ମଧ୍ୟ ଉଚିତ ନୁହେଁ; କିନ୍ତୁ ସେ ଏପରି କରେ ନାହିଁ ।

୪. ଅର୍ଥାତ୍ ଆକାଶ ସହିତ ସଂପୃକ୍ତ ବୋଲି ଦୃଷ୍ଟିଗୋଚର ହେଉଥିବା ଅନେକ ମଣ୍ଡଳ ଯଥା– ଚନ୍ଦ୍ର, ମଙ୍ଗଳ ଆଦି ମଣ୍ଡଳ ପ୍ରକୃତରେ ପୃଥିବୀର ଅଂଶ ବିଶେଷ । ଆଧୁନିକ ବିଜ୍ଞାନ ଏ ସମ୍ବନ୍ଧରେ ଯଥେଷ୍ଟ ଆଲୋକପାତ କରିଛି, ଯାହା ପୂର୍ବରୁ ଲୋକମାନଙ୍କୁ ଅଜଣା ଥିଲା । ଇତିମଧ୍ୟରେ ମଣିଷ ଚନ୍ଦ୍ରରେ ଅବତରଣ କରିସାରିଲାଣି ଏବଂ ଅନ୍ୟାନ୍ୟ ଗ୍ରହରେ ପହଞ୍ଚିବା ପାଇଁ ନିଜର ଉଦ୍ୟମ ଅବ୍ୟାହତ ରଖିଛି । ସେହିସବୁ ଗ୍ରହ ଉପଗ୍ରହରେ ଉପନିବେଶ ସ୍ଥାପନ କରିବା ତଥା ପୃଥିବୀବାସୀଙ୍କୁ ଲାଭବାନ୍ କରାଇବା ମଧ୍ୟ ମଣିଷର ଲକ୍ଷ୍ୟ । ସେହି ଅର୍ଥରେ ପୃଥିବୀ ସଂପ୍ରସାରିତ ହୋଇଥିବା ଏଠାରେ ଦର୍ଶାଯାଇଛି ।

୫. ଅର୍ଥାତ୍ ଭୂତତ୍ତ୍ୱର ପରିସର ସଂପ୍ରସାରିତ ହେବ ଓ ପୃଥିବୀର ଅତି ସୂକ୍ଷ୍ମ ରହସ୍ୟମାନ ପ୍ରକଟିତ ହେବ । ସଂପ୍ରତି ଏହି କ୍ଷେତ୍ରରେ ଅନେକ ନୂତନ ଜ୍ଞାନର ସନ୍ଧାନ ମିଳିଲାଣି । ପୃଥିବୀ ଓ ଆକାଶର ବୟସ ନିର୍ଣ୍ଣୟ କରାଯିବା ପାଇଁ ଚେଷ୍ଟା ଚାଲିଛି । ମାନବ ସମାଜର ହିତାର୍ଥେ ଭୂତାତ୍ତ୍ୱିକ ଗବେଷଣାରୁ ଅନେକ ଲାଭ ମିଳିଲାଣି ।

୬. ଏଠାରେ 'ଶୂନ୍ୟ ହୋଇଯିବ' ର ଏହା ଅର୍ଥ ନୁହେଁ ଯେ ତନ୍ମଧ୍ୟରେ ଅନ୍ୟ କୌଣସି ଲାଭପ୍ରଦ ବସ୍ତୁ ରହିବ ନାହିଁ ବରଂ ଏହାର ତାତ୍ପର୍ଯ୍ୟ ହେଉଛି ଯେ ତନ୍ମଧ୍ୟରୁ ଏତେ ମାତ୍ରାରେ ରହସ୍ୟ ଉଦ୍‌ଘାଟିତ ହେବ ଯେ ସତେ ଯେପରି ଅନ୍ୟ କୌଣସି ରହସ୍ୟ ଉଦ୍‌ଘାଟିତ ହେବାକୁ ବାକି ନାହିଁ ।

୬. ଏବଂ ନିଜ ପାଳନକର୍ତ୍ତାଙ୍କ (ଆଦେଶ ଶୁଣିବା) ସକାଶେ କାନ ପାତିବ [୧], ଏବଂ ଏହା ହିଁ (ତାହା ପାଇଁ) ଅନିବାର୍ଯ୍ୟ ଅଟେ ।

وَاَذِنَتْ لِرَبِّهَا وَحُقَّتْ ۝٦

୭. ହେ ମାନବ ! ତୁମକୁ ପୂରାମାତ୍ରାରେ [୨] ଉଦ୍ୟମ କରି ନିଜ ପାଳନକର୍ତ୍ତାଙ୍କ ନିକଟକୁ ଯିବାକୁ ହେବ, ଓ ତା'ପରେ ତାହାଙ୍କ ସହିତ ସାକ୍ଷାତ୍ କରିବ ।

يٰۤاَيُّهَا الْاِنْسَانُ اِنَّكَ كَادِحٌ اِلٰى رَبِّكَ كَدْحًا فَمُلٰقِيْهِ ۝٧

୮. ତେଣୁ ଯାହାର ଦକ୍ଷିଣ ହସ୍ତରେ [୩] ତାହାର କର୍ମପତ୍ର ଦିଆଯିବ,

فَاَمَّا مَنْ اُوْتِيَ كِتٰبَهٗ بِيَمِيْنِهٖ ۝٨

୯. ତା'ଠାରୁ ହିସାବ ଶୀଘ୍ର ଓ ସହଜରେ [୪] ନିଆଯିବ,

فَسَوْفَ يُحَاسَبُ حِسَابًا يَّسِيْرًا ۝٩

୧୦. ଏବଂ ସେ ତାହାର ପରିବାର ନିକଟକୁ ଆନନ୍ଦରେ ଫେରିବ ।

وَّيَنْقَلِبُ اِلٰۤى اَهْلِهٖ مَسْرُوْرًا ۝١٠

୧୧. ଏବଂ ଯାହାକୁ ତାହାର ପିଠି ପଛରୁ [୫] ତାହାର କର୍ମ-ପତ୍ର ଦିଆଯିବ,

وَاَمَّا مَنْ اُوْتِيَ كِتٰبَهٗ وَرَآءَ ظَهْرِهٖ ۝١١

୧୨. ସେ (ନିଜେ) ଶୀଘ୍ର ତାହାର ବିନାଶକୁ ନିମନ୍ତ୍ରଣ କରିବ [୬]

فَسَوْفَ يَدْعُوْا ثُبُوْرًا ۝١٢

---

୧. ଏଠାରେ ପୃଥିବୀ ଅର୍ଥ ପୃଥିବୀବାସୀ । ଆଲୋଚ୍ୟ ଆୟତର ଭାବାର୍ଥ ହେଉଛି, ଯେତେବେଳେ ଏହିସବୁ ବିଷୟ ପ୍ରକଟିତ ହେବ, ଅଲ୍ଲାହ ପବିତ୍ର କୋରାନର ପ୍ରଚାର ଓ ପ୍ରସାର ନିମନ୍ତେ ଏପରି ବ୍ୟବସ୍ଥା କରିଦେବେ, ଯାହା ପୃଥିବୀବାସୀଙ୍କୁ ଆଶ୍ଚର୍ଯ୍ୟାନ୍ବିତ କରିଦେବ । ଅଧିକନ୍ତୁ ଅନ୍ତିମ ଯୁଗର ଆଗମନ ପୂର୍ବରୁ ମଧ୍ୟ ସେମାନେ ଏହାକୁ କର୍ତ୍ତବ୍ୟ ମନେ କରୁଥିଲେ । କିନ୍ତୁ ପରିତାପର ବିଷୟ ଉଭୟ ପୃଥିବୀ ଓ ଆକାଶରୁ ନିଦର୍ଶନମାନ ପ୍ରକଟିତ ହେଲା ଅଥଚ ସେମାନେ ଲାଭବାନ୍ ହେଲେ ନାହିଁ ।

୨. ଅବଶ୍ୟ ଅଲ୍ଲାହ ଯାହାକୁ ଦର୍ଶନ ଦେବାକୁ ଇଚ୍ଛା କରିବେ ତା' ବ୍ୟତୀତ ଅନ୍ୟ ଲୋକଙ୍କୁ ତାଙ୍କ ଦର୍ଶନ ଲାଭ କରିବା ପାଇଁ ସାରା ଜୀବନ ପରିଶ୍ରମ କରିବାକୁ ହେବ ।

୩. ଦକ୍ଷିଣ ହସ୍ତ ପୁଣ୍ୟର ପ୍ରତୀକ । ତେଣୁ ଦକ୍ଷିଣ ହସ୍ତରେ କର୍ମ–ପତ୍ରିକା ପାଇଥିବା ବ୍ୟକ୍ତି ବୈକୁଣ୍ଠକୁ ଯିବ ।

୪. ଦକ୍ଷିଣ ହସ୍ତରେ କର୍ମ–ପତ୍ରିକା ପାଇବା ପରେ ସେ ଜାଣିପାରିବ ଯେ ଅଲ୍ଲାହ ତା'ର ହିସାବ ନିକାଶ କରିଛନ୍ତି ଓ ତା ପାଇଁ ବୈକୁଣ୍ଠରେ ସ୍ଥାନ ନିରୂପଣ କରିଛନ୍ତି । ତେଣୁ ଏହାଠୁଁ ବଳି ଆଉ ଅଧିକ ସହଜ ହିସାବ କ'ଣ ବା ହୋଇ ପାରେ !

୫. ଯେପରି ଅବିଶ୍ୱାସକାରୀମାନେ ଇହକାଳରେ ଧର୍ମବିଧାନକୁ ନିଜ ପଛପଟକୁ ଫୋପାଡ଼ି ଦେଉଥିଲେ, ସେହିପରି ବିଚାର ଦିବସରେ ସେମାନଙ୍କ କର୍ମପତ୍ରିକାକୁ ସେମାନଙ୍କ ପଛପଟୁ ଦିଆଯିବ ଓ ତଦ୍ୱାରା ସେମାନଙ୍କୁ ସୂଚିତ କରାହେବ ଯେ ସେମାନେ ପବିତ୍ର କୋରାନକୁ ପଛପଟକୁ ଫିଙ୍ଗି ଦେଉଥିବାରୁ ଅର୍ଥାତ୍ ତାହାକୁ ହେୟ ମନେ କରୁଥିବାରୁ ସେମାନଙ୍କ ପ୍ରତି ଏହିପରି ବ୍ୟବହାର କରାଯିବ ।

୬. ଅର୍ଥାତ୍ ଯେତେବେଳେ ସେହି ଅବିଶ୍ୱାସକାରୀ ଜାଣି ପାରିବ ଯେ ସେ ଏକ ମସ୍ତବଡ଼ ଶାସ୍ତି ପାଇବାର ଅଛି ଏବଂ ବୁଝି ପାରିବ ଯେ ସେହି ଶାସ୍ତିରୁ ମୁକ୍ତି ପାଇବାର ଯେଉଁ ଏକମାତ୍ର ପନ୍ଥା ଅଛି, ତାହା ହେଉଛି ତାକୁ ସମ୍ପୂର୍ଣ୍ଣଭାବରେ ଲୋପ କରିଦେବା । ତେଣୁ ତାକୁ ଶାସ୍ତି ନ ଦେଇ ଲୋପ କରି ଦେବା ପାଇଁ ସେ ଅଲ୍ଲାହଙ୍କୁ ପ୍ରାର୍ଥନା କରିବ ।

୧୩. ଏବଂ (ନରକର) ଜ୍ୱଳନ୍ତ ଅଗ୍ନି ମଧ୍ୟରେ ପ୍ରବେଶ କରିବ।[୧]

وَّ يَصۡلٰى سَعِيۡرًا ؕ﴿۱۲﴾

୧୪. ସେ ନିଜ ପରିବାର ମଧ୍ୟରେ ଅତି ଆନନ୍ଦରେ ରହୁଥିଲା।[୨]

اِنَّهٗ كَانَ فِىۡۤ اَهۡلِهٖ مَسۡرُوۡرًا ؕ﴿۱۳﴾

୧୫. ଏବଂ ବିଶ୍ୱାସ କରୁଥିଲା ଯେ ସ୍ୱଚ୍ଛଳତା ପରେ କେବେ ହେଁ ତାହାକୁ ଅଭାବ ସ୍ପର୍ଶ କରିବ ନାହିଁ।

اِنَّهٗ ظَنَّ اَنۡ لَّنۡ يَّحُوۡرَ ۛۚ﴿۱۴﴾

୧୬. କିନ୍ତୁ ଏପରି (ଅବଶ୍ୟ) ଘଟିବାକୁ ଥିଲା, କାରଣ ବାସ୍ତବରେ ତାହାର ପାଳନକର୍ତ୍ତା ତାକୁ ଲକ୍ଷ୍ୟ କରୁଥିଲେ[୩]।

بَلٰٓى ۛۚ اِنَّ رَبَّهٗ كَانَ بِهٖ بَصِيۡرًا ؕ﴿۱۵﴾

୧୭. ଏବଂ ସେମାନଙ୍କ ଭ୍ରାନ୍ତ ଧାରଣାର ପ୍ରମାଣ ସ୍ୱରୂପ ଆମେ ଗୋଧୂଳି[୪] ଆଲୋକକୁ ଉପସ୍ଥାପିତ କରୁଅଛୁ,

فَلَاۤ اُقۡسِمُ بِالشَّفَقِ ۙ﴿۱۶﴾

୧୮. ଏବଂ ରାତ୍ରିକୁ ମଧ୍ୟ, ତଥା ତାହାକୁ ମଧ୍ୟ ଯାହାକୁ ସେ ଆବୃତ କରିଥାଏ,

وَالَّيۡلِ وَمَا وَسَقَ ۙ﴿۱۷﴾

୧୯. ଏବଂ ପୂର୍ଣ୍ଣିମାର ଚନ୍ଦ୍ରକୁ[୫] (ମଧ୍ୟ ପ୍ରମାଣସ୍ୱରୂପ ଉପସ୍ଥାପିତ କରୁଅଛୁ),

وَالۡقَمَرِ اِذَا اتَّسَقَ ۙ﴿۱۸﴾

୨୦ ତୁମେ ନିଶ୍ଚୟ ପର୍ଯ୍ୟାୟକ୍ରମେ ସେହି ଅବସ୍ଥାରେ ଉପନୀତ ହେବ।

لَتَرۡكَبُنَّ طَبَقًا عَنۡ طَبَقٍ ؕ﴿۱۹﴾

୨୧. ଏବଂ ସେହି ଅବିଶ୍ୱାସକାରୀମାନଙ୍କର (ଏପରି) କ'ଣ ହୋଇଛି ଯେ ସେମାନେ ବିଶ୍ୱାସ କରୁ ନାହାନ୍ତି,

فَمَا لَهُمۡ لَا يُؤۡمِنُوۡنَ ۙ﴿۲۰﴾

୨୨. ଏବଂ ଯେତେବେଳେ ସେମାନଙ୍କ ନିକଟରେ କୋରାନ ପାଠ କରାଯାଏ, ସେତେବେଳେ ସେମାନେ ସିଜଦା କରନ୍ତି ନାହିଁ,

وَاِذَا قُرِئَ عَلَيۡهِمُ الۡقُرۡاٰنُ لَا يَسۡجُدُوۡنَ ؕ۩﴿۲۱﴾ السجدة

୨୩. ବରଂ ଅବିଶ୍ୱାସକାରୀମାନେ ନିଜ ଅବିଶ୍ୱାସରେ ଏତେ ଆଗେଇ ଯାଇଛନ୍ତି ଯେ ସେମାନେ କୋରାନର ସତ୍ୟତାକୁ ପ୍ରତ୍ୟାଖ୍ୟାନ କରୁଛନ୍ତି।

بَلِ الَّذِيۡنَ كَفَرُوۡا يُكَذِّبُوۡنَ ۖ﴿۲۲﴾

---

୧. ଅର୍ଥାତ୍ ତା'ର ପ୍ରାର୍ଥନା ଗୃହୀତ ହେବ ନାହିଁ ଓ ତାକୁ ନରକରେ ନିକ୍ଷେପ କରା ହେବ।

୨. ଅର୍ଥାତ୍ ସେ ଏହି ସଂସାରରେ ଏକ ମଦ୍ମତ୍ତ ଅହଙ୍କାରୀ ଥିଲା ଓ ନିଜ ପରିବାରରେ ସେ ଏପରି ଆନନ୍ଦ ଉଲ୍ଲାସ ମଧ୍ୟରେ ଜୀବନ ଯାପନ କରୁଥିଲା, ଯେତେ ଯେପରି ସେ ଜଣେ ସଫଳ ବ୍ୟକ୍ତି।

୩. ତା'ର ମନୋଭାବ ନିଶ୍ଚିତ ରୂପେ ଭ୍ରମାତ୍ମକ ସାବ୍ୟସ୍ତ ହେଲା, କାରଣ ଅଲ୍ଲାହ ତା'ର କାର୍ଯ୍ୟକଳାପକୁ ନିରୀକ୍ଷଣ କରୁଥିଲେ ଓ ତା'ର କର୍ମ ଅନୁସାରେ ତାକୁ ଦଣ୍ଡ ଦେବା ପାଇଁ ସଚେତନ ଥିଲେ।

୪. ଯେପରି ଗୋଧୂଳି ଆଲୋକ କ୍ଷଣସ୍ଥାୟୀ, ସେହିପରି ଇସଲାମର ସୂର୍ଯ୍ୟ ଅସ୍ତ ହେବାର ପରବର୍ତ୍ତୀ ସମୟ ମଧ୍ୟ କ୍ଷଣସ୍ଥାୟୀ ହେବ ଏବଂ ପୁନର୍ବାର ସୂର୍ଯ୍ୟ ଉଦୟ ହେବାର ସମୟ ନିକଟବର୍ତ୍ତୀ ହେବ।

୫. ଯେପରି ଆକାର ଦୃଷ୍ଟିରୁ ତ୍ରୟୋଦଶୀ, ଚତୁର୍ଦ୍ଦଶୀ, ପଞ୍ଚଦଶୀ ଓ ଷୋଡ଼ଶୀ ଚନ୍ଦ୍ର ପ୍ରାୟ ପୂର୍ଣ୍ଣ ଗୋଲାକୃତି ହୋଇଥାଏ ସେହିପରି ତ୍ରୟୋଦଶ, ଚତୁର୍ଦ୍ଦଶ, ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀ ହିଜ୍ରିରେ ଇସଲାମର ବିକାଶ କ୍ରମଶଃ ପରିପୂର୍ଣ୍ଣ ହେବ।

୨୪. ଏବଂ ସେମାନେ (ନିଜ ଅନ୍ତରରେ) ଯାହା ଗୋପନ ରଖୁଛନ୍ତି ଅଲ୍ଲାହ ତାହାକୁ ଭଲ ରୂପେ ଜାଣନ୍ତି ।

وَاللّٰهُ اَعْلَمُ بِمَا يُوْعُوْنَ ﴿٢٤﴾

୨୫. ତେଣୁ (ସେମାନଙ୍କର ଗୁପ୍ତ ଚିନ୍ତାଧାରା ଓ ପ୍ରକାଶ୍ୟ କାର୍ଯ୍ୟକଳାପ ଯୋଗୁଁ ତୁମେ) ସେମାନଙ୍କୁ ଯନ୍ତ୍ରଣାଦାୟକ ଶାସ୍ତିର ସମାଗ୍ରର ଦିଅ ।

فَبَشِّرْهُمْ بِعَذَابٍ اَلِيْمٍ ﴿٢٥﴾

୨୬. କିନ୍ତୁ ଯେଉଁ (ଲୋକ) ମାନେ ବିଶ୍ୱାସ କରିଛନ୍ତି ଓ ସମୁଚିତ କର୍ମ କରୁଛନ୍ତି, ସେମାନଙ୍କୁ ଏକ ଅସରନ୍ତି (ଓ ଉତ୍ତମ) ପୁରସ୍କାର ମିଳିବ ।

اِلَّا الَّذِيْنَ اٰمَنُوْا وَعَمِلُوا الصّٰلِحٰتِ لَهُمْ اَجْرٌ غَيْرُ مَمْنُوْنٍ ﴿٢٦﴾





# ଅଲ - ବୁରୂଜ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୨୩ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ﴿١﴾

୨. ଆମେ ନକ୍ଷତ୍ର ମଣ୍ଡଳ–ବିଶିଷ୍ଟ ଆକାଶକୁ ପ୍ରମାଣସ୍ୱରୂପ ଉପସ୍ଥାପିତ କରୁଅଛୁ,

وَالسَّمَآءِ ذَاتِ الْبُرُوْجِ ﴿٢﴾

୩. ଏବଂ ସେହି ପ୍ରତିଶ୍ରୁତ ଦିବସକୁ ।

وَالْيَوْمِ الْمَوْعُوْدِ ﴿٣﴾

୪. ଏବଂ ସେହି ବ୍ୟକ୍ତିଙ୍କୁ ଯେ ପ୍ରମାଣ [୧] କରେ ଏବଂ ସେହି ବ୍ୟକ୍ତିଙ୍କୁ ଯାହାଙ୍କର ପ୍ରମାଣକୁ ବହନ କରାଯାଇ ଅଛି,

وَشَاهِدٍ وَّمَشْهُوْدٍ ﴿٤﴾

୫. ପରିଖା ଅଧିକାରୀମାନେ [୨] ଧ୍ୱଂସ ହୋଇଥିଲେ,

قُتِلَ اَصْحٰبُ الْاُخْدُوْدِ ﴿٥﴾

---

୧. ଅର୍ଥାତ୍ ସେହି ଦିନ ଏପରି ଜଣେ ବ୍ୟକ୍ତିଙ୍କର ଆବିର୍ଭାବ ହେବ ଯେଉଁ ଦିନ ସେ ଅଲ୍ଲାହଙ୍କ ଠାରୁ ଦିବ୍ୟବାଣୀ ଲାଭ କରି ହଜରତ ମହମ୍ମଦଙ୍କ ସତ୍ୟତା ସମ୍ପର୍କରେ ପ୍ରମାଣ ଦେବେ । ଅନ୍ୟ ପକ୍ଷରେ ହଜରତ ମହମ୍ମଦଙ୍କ କଥିତ ହଦିସ ମଧ୍ୟରେ ତାଙ୍କ ସତ୍ୟତା ସମ୍ବନ୍ଧରେ ମଧ୍ୟ ପ୍ରମାଣ ରହିଥିବ । ବସ୍ତୁତଃ ସେ ନିଜେ ପ୍ରମାଣ ଦେବେ ଓ ତାଙ୍କ ସମ୍ବନ୍ଧରେ ପ୍ରମାଣ ଦିଆଯିବ । ଏହି ଆୟତରେ ପ୍ରତିଶ୍ରୁତ ମସିହଙ୍କ ସମ୍ବନ୍ଧରେ ଏକ ଭବିଷ୍ୟବାଣୀର ସୂଚନା ଦିଆଯାଇଛି ।

୨. ସତ୍‌ଧର୍ମର ବିରୁଦ୍ଧାଚରଣ କରୁଥିବା ଲୋକମାନେ ସର୍ବଦା ସେହି ଧର୍ମର ଉପାସକମାନଙ୍କୁ ଧ୍ୱଂସ କରିବା ଉଦ୍ଦେଶ୍ୟରେ ନିଆଁ ଜାଳି ଦେବେ । କିନ୍ତୁ ସେମାନେ ସେଥିରେ ବିଫଳ ହେବେ ଓ ନିଜେ ଧ୍ୱଂସ ମୁଖରେ ପଡ଼ିବେ ।

النَّارِ ذَاتِ الْوَقُودِ ۝٦

୬. ଅର୍ଥାତ୍ (ପରିଖା ମଧ୍ୟସ୍ଥ) ଅଗ୍ନି, ଯହିଁରେ (ପ୍ରଚୁର ପରିମାଣରେ ପ୍ରଜ୍ଜ୍ୱଳନକାରୀ)ଇନ୍ଧନ [୧] (ନିକ୍ଷେପ କରା ହୋଇ) ଥିଲା ।

إِذْ هُمْ عَلَيْهَا قُعُودٌ ۝٧

୭. ଯେତେବେଳେ ସେମାନେ ସେହି ଅଗ୍ନି ନିକଟରେ (ଧାରଣା ଦେଇ) ବସି ରହିଥିଲେ [୨]।

وَهُمْ عَلَىٰ مَا يَفْعَلُونَ بِالْمُؤْمِنِينَ شُهُودٌ ۝٨

୮. ଏବଂ ସେମାନେ ବିଶ୍ୱାସକାରୀମାନଙ୍କ ସହିତ ଯାହା କିଛି ବ୍ୟବହାର କରୁଥିଲେ ସେମାନଙ୍କ ମନ ଏହାର ବାସ୍ତବତାକୁ ବୁଝିପାରୁ ଥିଲା [୩] ।

وَمَا نَقَمُوا مِنْهُمْ إِلَّا أَنْ يُؤْمِنُوا بِاللَّهِ الْعَزِيزِ الْحَمِيدِ ۝٩

୯. ଏବଂ ଏମାନେ ସେ (ବିଶ୍ୱାସକାରୀ) ମାନଙ୍କ ସହିତ କେବଳ ଏଥିଯୋଗୁଁ ଶତ୍ରୁତା କରୁଥିଲେ ଯେ ସେମାନେ ପରାକ୍ରମୀ ଓ ସକଳ ପ୍ରଶଂସାର ପାତ୍ର ଅଲ୍ଲାହ୍‌ଙ୍କ ଉପରେ କାହିଁକି ବିଶ୍ୱାସ କଲେ [୪],

الَّذِي لَهُ مُلْكُ السَّمَاوَاتِ وَالْأَرْضِ ۚ وَاللَّهُ عَلَىٰ كُلِّ شَيْءٍ شَهِيدٌ ۝١٠

୧୦. ସେ ଅଲ୍ଲାହ୍, ଯାହାଙ୍କ ଅଧୀନରେ ଆକାଶ ଓ ପୃଥିବୀର ରାଜତ୍ୱ ରହିଅଛି ; ଏବଂ (ସେ ଅବିଶ୍ୱାସକାରୀମାନେ ଭାବୁ ନାହାନ୍ତି ଯେ) ଅଲ୍ଲାହ୍ ପ୍ରତ୍ୟେକ ବସ୍ତୁର ଅବସ୍ଥା ସଂକ୍ରାନ୍ତରେ ଅବଗତ ଅଛନ୍ତି [୫] ।

إِنَّ الَّذِينَ فَتَنُوا الْمُؤْمِنِينَ وَالْمُؤْمِنَاتِ ثُمَّ لَمْ يَتُوبُوا فَلَهُمْ عَذَابُ جَهَنَّمَ وَلَهُمْ عَذَابُ الْحَرِيقِ ۝١١

୧୧. ଯେଉଁମାନେ ବିଶ୍ୱାସକାରୀ ପୁରୁଷମାନଙ୍କୁ ଓ ବିଶ୍ୱାସକାରିଣୀ ନାରୀମାନଙ୍କୁ ଉତ୍ପୀଡ଼ନ କରିଥିଲେ ; ଓ ଏହାପରେ (ନିଜ କୁକର୍ମ ଯୋଗୁଁ) ଅନୁତାପ ମଧ୍ୟ କଲେ ନାହିଁ, ସେମାନଙ୍କୁ ନିଶ୍ଚୟ ନରକର ଶାସ୍ତି ମିଳିବ, ଓ ସେମାନଙ୍କୁ (ଏହି ସଂସାରରେ ମଧ୍ୟ ହୃଦୟ) ଦହନକାରୀ ଶାସ୍ତି ମିଳିବ ।

---

୧. ଅର୍ଥାତ୍ ସତ୍‌ଧର୍ମର ଉପାସକ ଓ ସେମାନଙ୍କ ନେତୃବର୍ଗଙ୍କ ବିରୁଦ୍ଧରେ ଯେଉଁସବୁ ଅଗ୍ନିବର୍ଷୀ ଉତ୍ତେଜନା ସୃଷ୍ଟି କରାଯାଏ ତାହା ସାଧାରଣ ଉତ୍ତେଜନା ନୁହେଁ, ବରଂ ସେଭଳି ଉତ୍ତେଜନାକୁ ବାରମ୍ବାର ଶତ୍ରୁତାମୂଳକ ଇନ୍ଧନ ଦ୍ୱାରା ପ୍ରଜ୍ଜ୍ୱଳିତ କରାଯାଏ ।

୨. ଅର୍ଥାତ୍ ସତ୍ୟର ବିରୁଦ୍ଧାଚରଣ କରୁଥିବା ଲୋକମାନେ ନିଆଁ ପାଖରେ ବସି ରହନ୍ତି, କାରଣ ଯଦି ସେହି ନିଆଁ ଜଳିବା କମିଯାଏ, ତେବେ ସେମାନେ ସେଥିରେ ପୁଣି ଇନ୍ଧନ ନିକ୍ଷେପ କରିବେ ।

୩. ସଂସାରିକ ଓ ଅନ୍ୟାନ୍ୟ ଧର୍ମନିଷ୍ଠ ବିଶ୍ୱାସକାରୀଙ୍କୁ ବିରୋଧ କରୁଥିବା ଲୋକେ ସେମାନଙ୍କୁ ଦୁଃଖ କଷ୍ଟ ଦେଉଥିଲେ ମଧ୍ୟ ସେମାନେ ନିଜେ ଅତ୍ୟାଚାର କରୁଛନ୍ତି ବୋଲି ସେମାନଙ୍କର ହୃଦ୍‌ବୋଧ ହୁଏ । ଅଧିକନ୍ତୁ ସମୟେ ସମୟେ ସେମାନଙ୍କର ଏହି କାର୍ଯ୍ୟ ଗର୍ହିତ ବୋଲି ସେମାନେ ନିଜେ କହି ପକାନ୍ତି ।

୪. ଆଲୋଚ୍ୟ ଆୟତ ପୂର୍ବବର୍ତ୍ତୀ ଆୟତକୁ ସମର୍ଥନ କରୁଛି । ସେମାନଙ୍କ ବିରୋଧର କୌଣସି ଭିତ୍ତି ନାହିଁ, ବରଂ ସେମାନେ ଈର୍ଷା ପରାୟଣ ହୋଇ ଏହିପରି କରିଥା'ନ୍ତି ।

୫. ଅର୍ଥାତ୍ ଈର୍ଷା ଓ ଦ୍ୱେଷର ବଶବର୍ତ୍ତୀ ହୋଇ ସେମାନେ ଯେତିକି ବିରୋଧ କରିଥିବେ ତଦନୁସାରେ ଦଣ୍ଡ ପାଇବେ ।

إِنَّ الَّذِينَ آمَنُوا وَعَمِلُوا الصَّالِحَاتِ لَهُمْ جَنَّاتٌ تَجْرِي مِن تَحْتِهَا الْأَنْهَارُ ۚ ذَٰلِكَ الْفَوْزُ الْكَبِيرُ ⑫

୧୨. (ଏବଂ) ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ତତ୍‌ସହିତ ସମୁଚିତ କାର୍ଯ୍ୟ କରିଛନ୍ତି, ସେମାନଙ୍କୁ (ଏପରି) ବୈକୁଣ୍ଠ ପ୍ରାପ୍ତହେବ ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ ; (ଏବଂ) ଏହା ହିଁ ମହାନ୍ ସଫଳତା ଅଟେ ।

إِنَّ بَطْشَ رَبِّكَ لَشَدِيدٌ ⑬

୧୩. ବାସ୍ତବରେ ତୁମ ପାଳନକର୍ତ୍ତାଙ୍କର ପକଡ଼ କଠୋର ହୋଇଥାଏ ।

إِنَّهُ هُوَ يُبْدِئُ وَيُعِيدُ ⑭

୧୪. (କାରଣ) ସେ ହିଁ (ସଂସାରରେ ଶାସ୍ତି ପ୍ରଦାନ) ଆରମ୍ଭ କରିଥା'ନ୍ତି ଓ ଯେଦି କୌଣସି ଜାତି କୁକର୍ମରୁ ବିରତ ହୁଏ ନାହିଁ, ତେବେ ଶାସ୍ତି ପ୍ରେରଣ ବାରମ୍ବାର, କରିଥା'ନ୍ତି ;

وَهُوَ الْغَفُورُ الْوَدُودُ ⑮

୧୫. ଏବଂ (ତତ୍ ସହିତ) ସେ ଅତ୍ୟନ୍ତ କ୍ଷମାଶୀଳ [୧] (ଓ) ପରମ ପ୍ରେମମୟ ।

ذُو الْعَرْشِ الْمَجِيدُ ⑯

୧୬. (ସେ ହିଁ) ସିଂହାସନର ଅଧିକାରୀ [୨] ଓ ଗୌରବମୟ ;

فَعَّالٌ لِّمَا يُرِيدُ ⑰

୧୭. (ସେ) ଯାହା କରିବାକୁ ଇଚ୍ଛା କରନ୍ତି, ତାହାକୁ ଅବଶ୍ୟ କରିଥା'ନ୍ତି ।

هَلْ أَتَاكَ حَدِيثُ الْجُنُودِ ⑱

୧୮. କ'ଣ ତୁମକୁ (ସତ୍ୟର ବିରୁଦ୍ଧାଚରଣ କରୁଥିବା ବ୍ୟକ୍ତିମାନଙ୍କ) ସୈନ୍ୟବାହିନୀ ବିଷୟରେ ସମାଚାର ମିଳିନାହିଁ ?

فِرْعَوْنَ وَثَمُودَ ⑲

୧୯. ଅର୍ଥାତ୍ ଫିରଔନ ଓ ସମୁଦର ସୈନ୍ୟବାହିନୀର ?

بَلِ الَّذِينَ كَفَرُوا فِي تَكْذِيبٍ ⑳

୨୦. ପ୍ରକୃତରେ ଅବିଶ୍ୱାସକାରୀମାନେ (ଗର୍ହିତ) ଅବଜ୍ଞାଜନିତ ବ୍ୟାଧି ମଧ୍ୟରେ ପଡ଼ି ରହିଛନ୍ତି ।

وَاللَّهُ مِن وَرَائِهِم مُّحِيطٌ ㉑

୨୧. ଅଥଚ ଅଲ୍ଲାହ ସେମାନଙ୍କୁ ସବୁ ଦିଗରୁ (ଆସି) ଘେରି ନେବେ ।

بَلْ هُوَ قُرْآنٌ مَّجِيدٌ ㉒

୨୨. (ଏତଦ୍ ବ୍ୟତୀତ) ଏହା ମଧ୍ୟ ଏକ ସତ୍ୟ ଅଟେ ଯେ ସେହି କୋରାନ (ଯାହା ଉପରୋକ୍ତ ବିଷୟରେ ସମାଚାର ଦେଉଅଛି) ଏକ ଗୌରବମୟ ବାଣୀ ଅଟେ ଓ ପ୍ରତ୍ୟେକ ଜାଗାରେ ଓ ପ୍ରତ୍ୟେକ ଯୁଗରେ ପଠନୋପଯୋଗୀ ଅଟେ ।

فِي لَوْحٍ مَّحْفُوظٍ ㉓

୨୩. (ଏବଂ ତାହାର ଅନ୍ୟତମ ବିଶେଷତ୍ୱ ହେଉଛି ଯେ) ତାହା ସୁରକ୍ଷିତ [୩] ଫଳକରେ (ଲିପିବଦ୍ଧ ) ଅଛି ।

---

୧. ଅଲ୍ଲାହ ଯେ କ୍ଷମାଶୀଳ, ଏ ବିଷୟରେ ପବିତ୍ର କୋରାନ-ର ବହୁ ସ୍ଥାନରେ ଉଲ୍ଲେଖ କରାଯାଇଛି. ଏପରିକି ଅଲ୍ଲାହ ଅବିଶ୍ୱାସକାରୀମାନଙ୍କ ପ୍ରତି ମଧ୍ୟ ବେଳେ ବେଳେ ଇହକାଳରେ ଓ ବେଳେ ବେଳେ ପରକାଳରେ କରୁଣା ପ୍ରଦାନ କରିଥା'ନ୍ତି ।

୨. ଏଠାରେ 'ଅର୍ଶ' ଅର୍ଥ ଅଲ୍ଲାହଙ୍କର ରାଜତ୍ୱ । ସେ ଅତ୍ୟନ୍ତ ଗୌରବମୟ ଅର୍ଶର ଅଧିକାରୀ ହୋଇଥିବା ଅର୍ଥ ସେ ଏପରି ବିଧାନ ଦ୍ୱାରା ସଂସାରରେ ରାଜତ୍ୱ କରିଥା'ନ୍ତି ଯଦ୍ଦ୍ୱାରା ତାଙ୍କର ମହିମା ପ୍ରକାଶିତ ହୁଏ ଅଥଚ ଅତ୍ୟାଚାର ଓ ବଳ ପ୍ରୟୋଗ ପ୍ରମାଣିତ ହୁଏ ନାହିଁ ।

୩. ଅର୍ଥାତ୍ ପବିତ୍ର କୋରାନ ପ୍ରଳୟ ପର୍ଯ୍ୟନ୍ତ ତିଷ୍ଠି ରହିବ ।

سُوْرَةُ الطَّارِقِ مَكِّيَّةٌ (٨٦)

## ଅଲ- ତାରିକ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୧୮ଟି ଆୟତ ଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

وَالسَّمَآءِ وَالطَّارِقِ ②

୨. ଆମେ ଆକାଶକୁ ଓ ପ୍ରଭାତକାଳୀନ ନକ୍ଷତ୍ରକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ ।

وَمَآ اَدْرٰىكَ مَا الطَّارِقُ ③

୩. ଏବଂ ପ୍ରଭାତକାଳୀନ ନକ୍ଷତ୍ର କ'ଣ ଏ ବିଷୟରେ ତୁମକୁ କିଏ ଜଣାଇଲା ?

النَّجْمُ الثَّاقِبُ ④

୪. ତାହା ଏକ ଅତ୍ୟନ୍ତ ଦୀପ୍ତିମାନ୍ ନକ୍ଷତ୍ର ।

اِنْ كُلُّ نَفْسٍ لَّمَّا عَلَيْهَا حَافِظٌ ⑤

୫. (ଆମେ ଦାବି କରି କହୁଅଛୁ ଯେ ଏପରି) କୌଣସି ଜୀବ ନାହିଁ ଯାହା ଉପରେ (ଅଲ୍ଲାହଙ୍କ ତରଫରୁ) କୌଣସି ତତ୍ତ୍ୱାବଧାରକ ନିଯୁକ୍ତ ହୋଇନାହାନ୍ତି ।

فَلْيَنْظُرِ الْاِنْسَانُ مِمَّ خُلِقَ ⑥

୬. ସୁତରାଂ ମାନବ କେଉଁ କେଉଁ ଉପାଦାନରୁ ସୃଷ୍ଟ ତାହା ସେ ଭାବିବା ଉଚିତ ।

خُلِقَ مِنْ مَّآءٍ دَافِقٍ ⑦

୭. ତାହାକୁ ଏକ ଉତ୍କ୍ଷିପ୍ତ ଜଳରୁ ସୃଷ୍ଟି କରାଯାଇଛି,

يَّخْرُجُ مِنْۢ بَيْنِ الصُّلْبِ وَالتَّرَآئِبِ ⑧

୮. ତାହା ପିଠି ଓ ଛାତି (ହାଡ) ମଧ୍ୟରୁ [୧] ନିର୍ଗତ ହୁଏ ।

اِنَّهٗ عَلٰى رَجْعِهٖ لَقَادِرٌ ⑨

୯. ସେ (ଅଲ୍ଲାହ ନିଶ୍ଚୟ) ତାହାକୁ ପୁନର୍ବାର (ଜୀବିତ କରି) ଫେରାଇ ଆଣିବାକୁ ସକ୍ଷମ ।

يَوْمَ تُبْلَى السَّرَآئِرُ ⑩

୧୦. ସେ ଦିନ ଯେତେବେଳେ କି ଗୂଢ ରହସ୍ୟ ଉଦ୍‌ଘାଟିତ ହେବ,।

فَمَا لَهٗ مِنْ قُوَّةٍ وَّلَا نَاصِرٍ ⑪

୧୧. ଯାହା ଫଳରେ (ନିଜ ଉପରୁ ବିପଦକୁ ଅପସାରିତ କରିବା ପାଇଁ) ତାହାର କୌଣସି ଶକ୍ତି ନ ଥିବ କି ତାହାର କେହି ସାହାଯ୍ୟକାରୀ ନଥିବେ ।

---

୧. ଅର୍ଥାତ୍ ସନ୍ତାନ ଉତ୍ପାଦନକାରୀ ଅଙ୍ଗକୁ ପିଠି ଓ ଛାତି ହାଡ଼ ମଧ୍ୟରେ ରଖାଯାଇଛି । ପବିତ୍ର କୋରାନର ଏକ ବିଶେଷତ୍ୱ ହେଉଛି ଯେ ସେଥିରେ କେତେକ ନଗ୍ନ ବିଷୟ ମଧ୍ୟ ସୂକ୍ଷ୍ମାତିସୂକ୍ଷ୍ମ ସଙ୍କେତ ମାଧ୍ୟମରେ ବର୍ଣ୍ଣନା କରାଯାଇଛି ।

୧୨. ଜଳପୂର୍ଣ୍ଣ ଓ ବାରମ୍ବାର ବର୍ଷଣମୁଖର ସେହି ମେଘମାଳାକୁ ଆମେ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ.

وَالسَّمَآءِ ذَاتِ الرَّجْعِ ۝١١

୧୩. ଯେଉଁ ଭୂମି ବର୍ଷା ପରେ ବିଦୀର୍ଣ୍ଣ ହୋଇ ଉଦ୍ଭିଦ ଜନ୍ମାଏ ତାହାକୁ ମଧ୍ୟ ଆମେ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ.

وَالْاَرْضِ ذَاتِ الصَّدْعِ ۝١٢

୧୪. ଏହି ପ୍ରମାଣ ଏ ବିଷୟ ନିମନ୍ତେ ରହିଛି ଯେ ତାହା (ଅର୍ଥାତ୍ ସେହି କୋରାନ) ନିଶ୍ଚିତ ରୂପେ ନିର୍ଣ୍ଣାୟକ [୧] ଓ ଚୂଡାନ୍ତ କଥା ଅଟେ.

اِنَّهٗ لَقَوْلٌ فَصْلٌ ۝١٣

୧୫. ଏବଂ ତାହା କୌଣସି (ଅଯଥା ଓ) ଦୁର୍ବଳ ବାଣୀ [୨] ନୁହେଁ ।

وَّمَا هُوَ بِالْهَزْلِ ۝١٤

୧୬. ସେ (ଲୋକ)ମାନେ ନିଶ୍ଚୟ (ଏହି କୋରାନ ବିରୁଦ୍ଧରେ) ବହୁତ ଷଡଯନ୍ତ୍ର କରିବେ,

اِنَّهُمْ يَكِيْدُوْنَ كَيْدًا ۝١٥

୧୭. ଏବଂ ଆମେ (ସେମାନଙ୍କ ବିରୁଦ୍ଧରେ) ଭଲ ଭାବେ ଯୋଜନା କରିବୁ, (ଫଳରେ ସତ୍ୟ ପ୍ରକାଶିତ ହୋଇଯିବ) ।

وَّاَكِيْدُ كَيْدًا ۝١٦

୧୮. ସୁତରାଂ (ହେ ରସୁଲ !) ଅବିଶ୍ୱାସକାରୀମାନଙ୍କୁ ଅବସର ଦିଅ ; (ହଁ) ଆଉ କିଛି ଦିନ ପାଇଁ ସେମାନଙ୍କୁ ଅବସର [୩] ଦିଅ. (ଯେପରିକି ସେମାନେ କୋରାନ ବିରୁଦ୍ଧରେ ଯାହା ଚେଷ୍ଟା କରିବାର କଥା ତାହା କରନ୍ତୁ) ।

فَمَهِّلِ الْكٰفِرِيْنَ اَمْهِلْهُمْ رُوَيْدًا ۝١٧

---

୧. ଯେପରି ଅଲ୍ଲାହ ପୃଥିବୀର ତୃପ୍ତି ସକାଶେ ବର୍ଷା କରାନ୍ତି– ଏପରିକି ଥରେ ନୁହେଁ, ବରଂ ମଝିରେ ମଝିରେ ବୃଷ୍ଟି କରାଉଥାନ୍ତି, ସେହିପରି ଆବଶ୍ୟକ ସ୍ଥଳେ ଆଧ୍ୟାତ୍ମିକ ଜଳ ବୃଷ୍ଟି ନ ହେବା କ'ଣ ସମ୍ଭବ ହୋଇ ପାରେ ? ସେହି ଜଳ ହେଉଛି ପବିତ୍ର କୋରାନ ବା ସେହି ଗ୍ରନ୍ଥକୁ ସମର୍ଥନ କରୁଥିବା ଦିବ୍ୟ ବାଣୀ ।

୨. ଉପରୋକ୍ତ ଆୟତଗୁଡିକରୁ ଏହା ମଧ୍ୟ ପ୍ରମାଣିତ ହେଉଛି ଯେ ପବିତ୍ର କୋରାନ ଏକ ନିର୍ଣ୍ଣାୟକ ଧର୍ମଗ୍ରନ୍ଥ ଅଟେ କାରଣ ଏହା ପ୍ରତ୍ୟେକ ବିଷୟକୁ ପ୍ରମାଣ ସହିତ ବର୍ଣ୍ଣନା କରିଅଛି. ଅଥଚ ଅନ୍ୟାନ୍ୟ ଗ୍ରନ୍ଥରେ ପ୍ରମାଣ ନ ଥାଇ ମଧ୍ୟ ବିଭିନ୍ନ ତଥ୍ୟର ବର୍ଣ୍ଣନା ରହିଛି, ଫଳରେ ସେଥିରେ କେଉଁଟି ସତ୍ୟ ଓ କେଉଁଟି ଅସତ୍ୟ ତାହା ଜାଣିବା କଷ୍ଟକର । ଅନ୍ୟ ପକ୍ଷରେ ପବିତ୍ର କୋରାନର ବାଣୀ ଯେ ଦୁର୍ବଳ ନୁହେଁ ତାହା ଆଲୋଚ୍ୟ ଆୟତର ଶେଷାଂଶରେ ଉଲ୍ଲେଖ କରାଯାଇଛି । ପ୍ରଥମେ ମେଘମାଳା ଓ ଭୂ-ପୃଷ୍ଠକୁ ପବିତ୍ର କୋରାନର ସତ୍ୟତା ପ୍ରତିପାଦନ ସକାଶେ ଉପସ୍ଥାପନ କରାଯାଇଛି । ବର୍ଷା ହେଲେ ଯେପରି ଗଛଲତା ବଢ଼ିବାକୁ ଲାଗେ, ସେହିପରି ପବିତ୍ର କୋରାନର ଅବତରଣ ପରେ ଏପରି ଅନେକ ପୁଣ୍ୟବାନ୍ ଓ ଉତ୍ତମ ସନ୍ତାନସନ୍ତତି ଜନ୍ମ ହେବେ ଯେଉଁମାନେ ପ୍ରମାଣ କରିଦେବେ ଯେ ଏହା ହିଁ ଅନ୍ତିମ ଧର୍ମ ବିଧାନ ସମ୍ବଳିତ ଗ୍ରନ୍ଥ । ଏହା ପରେ ତଦନୁରୂପ ଗ୍ରନ୍ଥର ଅବତରଣ ଆଶା କରିବା ବୃଥା । ନିଃସନ୍ଦେହରେ ପବିତ୍ର କୋରାନରେ କୌଣସି ଦୁର୍ବଳତା ନାହିଁ କି କୌଣସି ନିରର୍ଥକ ବିଷୟର ବର୍ଣ୍ଣନା ନାହିଁ । ଏଥିରେ ବର୍ଣ୍ଣିତ ବିଷୟଗୁଡ଼ିକ ଲାଭଦାୟକ ଓ ସୁଦୃଢ଼ ।

୩. ଏଠାରେ କୁହାଯାଇଛି ଯେ ଅବିଶ୍ୱାସକାରୀମାନେ ପବିତ୍ର କୋରାନ ବିରୁଦ୍ଧରେ ସମସ୍ତ ପ୍ରକାର କୌଶଳ ଅବଲମ୍ବନ କରିବେ । ସୁତରାଂ ଯଦି ଏହି ଗ୍ରନ୍ଥ ମିଥ୍ୟା ହୋଇଥାନ୍ତା, ତେବେ ଏହା କଦାପି ସଫଳ ହୋଇ ନ ଥାନ୍ତା । ଯେହେତୁ ତାହା ଅଲ୍ଲାହଙ୍କ ଦ୍ୱାରା ପ୍ରେରିତ ଗ୍ରନ୍ଥ, ତେଣୁ ଯେତେବେଳେ ସେମାନେ ଏହାକୁ ଲୋପ କରିଦେବା ପାଇଁ ଚେଷ୍ଟା କରିବେ ସେତେବେଳେ ସେମାନଙ୍କୁ ଲୋପ କରିଦେବା ପାଇଁ ଅଲ୍ଲାହ ଉପାୟ କରିବେ ଏବଂ ସେଭଳି ପରିସ୍ଥିତିରେ ଅଲ୍ଲାହ କୃତକାର୍ଯ୍ୟ ହେବା ଅବଶ୍ୟମ୍ଭାବୀ । କିନ୍ତୁ ଏହା ସତ୍ତ୍ୱେ, ସେ ଦୋଷୀମାନଙ୍କ ପ୍ରତି ଦଣ୍ଡବିଧାନ କରିବାରେ ବିଳମ୍ବ କରିଥାନ୍ତି । ସେହି କାରଣରୁ ଅବିଶ୍ୱାସକାରୀମାନଙ୍କୁ ଯଥେଷ୍ଟ ଅବସର ଦିଆଯିବା ପାଇଁ ଅଲ୍ଲାହ ଏଠାରେ ନିର୍ଦ୍ଦେଶ ଦେଇଛନ୍ତି । ପରିଣାମରେ ସେଭଳି ଅବିଶ୍ୱାସକାରୀମାନେ ନିଜର ସମସ୍ତ ଶକ୍ତି ବିନିଯୋଗ କରି ଇସଲାମକୁ ଲୋପ କରିଦେବା ପାଇଁ ଉଦ୍ୟମ କରିବେ ଏବଂ ସେମାନେ ସେପରି ପରିସ୍ଥିତିରେ ଆଉ କହି ପାରିବେ ନାହିଁ ଯେ ମୁସଲମାନଙ୍କୁ ଲୋପ କରିଦେବା ପାଇଁ ସୁଯୋଗ ମିଳି ନଥିଲା । ସେମାନଙ୍କୁ ସୁଯୋଗ ମିଳିବା ପରେ ସେମାନେ ଆଉ କିଛି କହି ପାରିବେ ନାହିଁ ।




## ଅଲ-ଆ'ଲା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲା ସମେତ ୨୦ଟି ଆୟତ ଅଛି)

ବِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

سَبِّحِ اسْمَ رَبِّكَ الْأَعْلَى ②

୨. (ହେ ରସୁଲ ! ତୁମେ) ନିଜର ସର୍ବୋଚ୍ଚ (ଓ ଗୌରବମୟ) ପାଳନକର୍ତ୍ତାଙ୍କ ନାମ ନିଖୁଣ ହୋଇଥିବାର ବର୍ଣ୍ଣନା କର,

الَّذِيْ خَلَقَ فَسَوّٰى ③

୩. ସେ ହିଁ (ମନୁଷ୍ୟକୁ) ସୃଷ୍ଟି କରିଛନ୍ତି ଓ ତାହାକୁ ନିଖୁଣ [୧] କରିଛନ୍ତି ;

وَالَّذِيْ قَدَّرَ فَهَدٰى ④

୪. ଏବଂ ଯେ (ତାହାର) ଶକ୍ତିର କଳନା କରିଛନ୍ତି ଓ (ତଦନୁସାରେ) ତାହାକୁ ସତ୍‌ପଥ ପ୍ରଦର୍ଶନ କରିଛନ୍ତି,

وَالَّذِيْ أَخْرَجَ الْمَرْعٰى ⑤

୫. ଏବଂ ଯେ ଭୂମିରୁ ଉଦ୍‌ଭିଦ ଉପୁଜାଇଛନ୍ତି,

فَجَعَلَهٗ غُثَآءً أَحْوٰى ⑥

୬. ତତ୍‌ପରେ ତାହାକୁ କଳା ଆବର୍ଜନାରେ ପରିଣତ କରିଛନ୍ତି,

سَنُقْرِئُكَ فَلَا تَنْسٰى ⑦

୭. (ହେ ମୁସଲମାନ !) ଆମେ ତୁମକୁ ଏପରି ଭାବରେ ଶିକ୍ଷାଦାନ କରିବୁ ଯାହା ଫଳରେ ତୁମେ ଭୁଲିଯିବ ନାହିଁ [୨] ;

إِلَّا مَا شَآءَ اللّٰهُ إِنَّهٗ يَعْلَمُ الْجَهْرَ وَمَا يَخْفٰى ⑧

୮. ଅବଶ୍ୟ ଯାହା ଅଲ୍ଲାହ ଭୁଲାଇ ଦେବାକୁ ଇଚ୍ଛା କରିବେ [୩] ତାହା ବ୍ୟତୀତ ; ବାସ୍ତବରେ ସେ ପ୍ରକାଶ୍ୟ ଓ ଗୁପ୍ତ (ଉଭୟ)କୁ ଜାଣନ୍ତି ।

---

୧. ଅର୍ଥାତ୍ ମନୁଷ୍ୟଠାରେ ଆଧ୍ୟାତ୍ମିକ ବିକାଶର ଅପରିମିତ ବୈଶିଷ୍ଟ୍ୟମାନ ରଖାଯାଇଛି । ସେହିପରି ଜ୍ଞାନର ବିକାଶ ପାଇଁ ମଧ୍ୟ ବିଭିନ୍ନ ବୈଶିଷ୍ଟ୍ୟ ରଖାଯାଇଛି । ତେଣୁ ଏହି ଆୟତରେ ଦର୍ଶାଯାଇଛି ଯେ ଯେହେତୁ ସୃଷ୍ଟିକର୍ତ୍ତା ନିଷ୍କଳଙ୍କ ତେଣୁ ତାଙ୍କ ସୃଷ୍ଟି ମଧ୍ୟ ନିଖୁଣ ଓ କଳଙ୍କଶୂନ୍ୟ । ସେ ସର୍ବଗୁଣ-ସଂପନ୍ନ ଓ ନିଷ୍କଳଙ୍କ ହୋଇ ନଥିଲେ ଏପରି ମାନବ ସମାଜକୁ ସୃଷ୍ଟି କରିବା କିପରି ସମ୍ଭବ ହୋଇଥା'ନ୍ତା ?

୨. ଅର୍ଥାତ୍ ମୁସଲମାନମାନଙ୍କ ହୃଦୟରେ କୋରାନ ପ୍ରତି ଏଭଳି ସଞ୍ଚରିତ ହୋଇଯିବ ଯେ ସେମାନଙ୍କ ମଧ୍ୟରେ କୌଣସି ନା କୌଣସି ଗୋଷ୍ଠୀ ଏହାକୁ କୟାମତ ପର୍ଯ୍ୟନ୍ତ ଅତ୍ୟଧିକ ପ୍ରେମ କରୁଥିବ ତଥା ତା'ର ଅଧ୍ୟୟନ ଓ ଅଧ୍ୟାପନାରେ ନିଜକୁ ନିୟୋଜିତ କରିବ । ଏପରି ମହାପୁରୁଷମାନେ ଥରକୁ ଥର ଜନ୍ମ ଗ୍ରହଣ କରୁଥିବେ ଓ ପବିତ୍ର କୋରାନର ନିଶାଣକୁ ସର୍ବଦା ସମୁନ୍ନତ କରି ରଖୁଥିବେ ।

୩. ଏଥିରୁ ଜଣାପଡୁଛି ଯେ ଅଲ୍ଲାହ କୌଣସି ବ୍ୟକ୍ତିକୁ ସତ୍ୟ ନିକଟରୁ ଦୂରେଇ ନିଅନ୍ତି ନାହିଁ, ବରଂ ମନୁଷ୍ୟ ନିଜେ ସତ୍ୟଠାରୁ ଦୂରେଇ ଯାଏ । ମୁସଲମାନମାନଙ୍କୁ କୋରାନ ଶିଖାଇ ଦେବା ତାଙ୍କର କାର୍ଯ୍ୟ ବୋଲି ଅଲ୍ଲାହ ନିଜେ କହିଛନ୍ତି । କିନ୍ତୁ ଯଦି କେତେକ ହତଭାଗା ତାହାକୁ ପାସୋରି ଦେବାକୁ ଚାହିଁବେ ତେବେ ଯେହେତୁ ଅଲ୍ଲାହ ମନୁଷ୍ୟର ବାହ୍ୟ ଓ ଅଭ୍ୟନ୍ତର ବିଷୟକୁ ଜାଣନ୍ତି ତେଣୁ, ସେ ସେମାନଙ୍କ ଅଭିଳାଷର କାର୍ଯ୍ୟକାରିତାରେ ପ୍ରତିବନ୍ଧକ ହେବେ ନାହିଁ । ଅନ୍ୟ ପକ୍ଷରେ, ଯଦି ସେମାନେ ନିଜେ ନିଜେ ଧ୍ୱଂସ ହେବାକୁ ଚାହୁଁଛନ୍ତି ତେବେ ସେ ସେମାନଙ୍କୁ ସେପରି ଧ୍ୱଂସ ହେବାକୁ ଛାଡ଼ିଦେବେ ।

୯. ଏବଂ (ହେ ମୁସଲମାନ !) ଆମେ ତୁମ ସକାଶେ (ସଫଳତା ଓ) ସହଜତାର ପ୍ରାପ୍ତିକୁ ସହଜ କରିଦେବୁ [୧] । وَنُيَسِّرُكَ لِلْيُسْرٰى ⑧

୧୦. ସୁତରାଂ ତୁମେ ମଧ୍ୟ ଉପଦେଶ [୨] ପ୍ରଦାନ କରୁଥାଅ ; ଉପଦେଶ ପ୍ରଦାନ କରିବା (ସର୍ବଦା) ଲାଭଦାୟକ ହୋଇଥାଏ । فَذَكِّرْ اِنْ نَّفَعَتِ الذِّكْرٰى ⑨

୧୧. ଯେ (ଅଲ୍ଲାହଙ୍କୁ) ଭୟ କରେ, ସେ ନିଶ୍ଚୟ ଉପଦେଶ ଲାଭ କରିବ ; سَيَذَّكَّرُ مَنْ يَّخْشٰى ⑩

୧୨. ଏବଂ (ପକ୍ଷାନ୍ତରେ) ଯେ ଅତ୍ୟନ୍ତ ହତଭାଗ୍ୟ ହେବ ସେ ହିଁ ତହିଁରୁ ବିମୁଖ ହେବ [୩], وَيَتَجَنَّبُهَا الْاَشْقَى ⑪

୧୩. ସେ ହିଁ ଭୟାନକ ଅଗ୍ନିରେ ପ୍ରବେଶ କରିବ [୪] । الَّذِيْ يَصْلَى النَّارَ الْكُبْرٰى ⑫

୧୪. (ଏଥିରେ ପ୍ରବେଶ କରିବା) ପରେ ସେ ସେଠାରେ ମରିବ ନାହିଁ କି ଜୀବିତ [୫] ରହିବ ନାହିଁ । ثُمَّ لَا يَمُوْتُ فِيْهَا وَلَا يَحْيٰى ⑬

୧୫. ଯେ ନିଜକୁ ପବିତ୍ର କରିବ ସେ ନିଶ୍ଚୟ କୃତକାର୍ଯ୍ୟ ହେବ, قَدْ اَفْلَحَ مَنْ تَزَكّٰى ⑭

୧୬. ସର୍ତ୍ତ ହେଉଛି କି (ପବିତ୍ର ରହିବା ସହିତ) ସେ ନିଜ ପାଳନକର୍ତ୍ତାଙ୍କ ନାମ ସ୍ମରଣ କରୁଥିବ ଓ ନମାଜ ପାଠ କରୁଥିବ । وَذَكَرَ اسْمَ رَبِّهٖ فَصَلّٰى ⑮

୧୭. କିନ୍ତୁ (ହେ ବିରୋଧୀମାନେ !) ତୁମେମାନେ ତ ସାଂସାରିକ ଜୀବନକୁ (ପରକାଳ ଉପରେ) ପ୍ରାଧାନ୍ୟ ଦେଉଅଛ, بَلْ تُؤْثِرُوْنَ الْحَيٰوةَ الدُّنْيَا ⑯

୧୮. ଅଥଚ ପରକାଳ ଅତ୍ୟନ୍ତ ଉତ୍କୃଷ୍ଟତର ଓ ବହୁକାଳ ସ୍ଥାୟୀ । وَالْاٰخِرَةُ خَيْرٌ وَّاَبْقٰى ⑰

---

୧. ଏଠାରେ କୁହାଯାଇଛି ଯେ ଯେହେତୁ ପବିତ୍ର କୋରାନ ମଣିଷ ସ୍ୱଭାବର ଅନୁକୂଳ । ତେଣୁ ମଣିଷ ତଦନୁସାରେ ପରିଚାଳିତ ହେବା ଆଦୌ କଷ୍ଟକର ନୁହେଁ, ଯଦି କେହି ସେଭଳି ପରିଚାଳିତ ହେବେ ବା ତଦନ୍ତର୍ଗତ ଆଜ୍ଞା ପାଳନ କରିବାକୁ ଚାହିଁବେ, ତେବେ ଅଲ୍ଲାହ ତାକୁ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ତା ପକ୍ଷରେ ଉକ୍ତ ଆଜ୍ଞା ପାଳନକୁ ସହଜ କରିଦେବେ ।

୨. ଯେପରି ଅଲ୍ଲାହ ମନୁଷ୍ୟକୁ ସତ୍‌ପଥ ଦେଖାନ୍ତି ସେହିପରି ମନୁଷ୍ୟ ମଧ୍ୟ ତାହାଙ୍କ ପଦାଙ୍କ ଅନୁସରଣ କରି ଅନ୍ୟକୁ ସତ୍ ପଥ ଦେଖାଇବା ଉଚିତ । ପଥଭ୍ରଷ୍ଟ ବ୍ୟକ୍ତି କଦାପି ସତ୍ ପଥ ପାଇବ ନାହିଁ ବୋଲି ଧାରଣା କରିବା ସମୀଚୀନ ନୁହେଁ ବରଂ, ଆଶା ପୋଷଣ କରିବା ଉଚିତ ହେବ ଯେ ଯଦି କୌଣସି ବ୍ୟକ୍ତିର ହୃଦୟରେ ଅଲ୍ଲାହଙ୍କ ପ୍ରତି କିଞ୍ଚିତ୍ ଭୟ ଥିବ ତେବେ ସେ ନିଶ୍ଚୟେ ସତ୍‌ପଥ ପ୍ରାପ୍ତ ହେବ ।

୩. ଯେଉଁ ବ୍ୟକ୍ତିର କୁକର୍ମ ତା ମନରେ ମୋହର ଲଗାଇଛି, ସେ ପବିତ୍ର କୋରାନ ପ୍ରତି ବିମୁଖ ହେବ ।

୪. ଅର୍ଥାତ୍ କୁକର୍ମ ଯୋଗୁ ତାହାକୁ ନରକରେ ନିକ୍ଷେପ କରାଯିବା ପାଇଁ ଅଲ୍ଲାହ ନିଷ୍ପତ୍ତି କରିଦେଇ ଥିବେ ।

୫. ଅର୍ଥାତ୍ ସେହି ଶାସ୍ତି ଅତ୍ୟନ୍ତ କଠୋର ହେବ ଓ ସେହି ବ୍ୟକ୍ତି ତାକୁ ଆସ୍ୱାଦନ କରିବ । ସେହି ଶାସ୍ତି ଏପରି ଯନ୍ତ୍ରଣାଦାୟକ ହେବ ଯେ ତାହାକୁ ଉଭୟ ମୃତ୍ୟୁ ରୂପେ ଓ ଜୀବନ ରୂପେ ଅଭିହିତ କରାଯାଇ ପାରେ । ନରକର ଅଗ୍ନି ଏପରି ପ୍ରଚଣ୍ଡ ହୋଇଥିବ ଯେ ମନୁଷ୍ୟର ଚମଡ଼ା ଟାଣି ହୋଇଯିବ । ଫଳରେ ତା'ର ଅନୁଭବ କରିବା ଶକ୍ତି ହ୍ରାସ ପାଇବ । ଅତଏବ ସେଭଳି ଅବସ୍ଥାରେ ସେହି ମନୁଷ୍ୟ ମୃତ ନା ଜୀବିତ, କିଛି କୁହାଯାଇ ପାରିବ ନାହିଁ ।

୧୯. ବାସ୍ତବରେ ଏହି ବିଷୟ ପୂର୍ବବର୍ତ୍ତୀ ପୋଥିଗୁଡିକରେ ମଧ୍ୟ (ଲିପିବଦ୍ଧ) ରହିଛି ।

إِنَّ هَٰذَا لَفِي الصُّحُفِ الْأُولَىٰ ﴿١٩﴾

୨୦. ଅର୍ଥାତ୍ ଇବ୍ରାହିମ ଓ ମୁସାଙ୍କ ପୋଥିଗୁଡିକରେ [୧]।

صُحُفِ إِبْرَاهِيمَ وَمُوسَىٰ ﴿٢٠﴾



ଅଧ୍ୟାୟ ୮୮

## ଅଲ- ଗାସିୟା

ଭାଗ ୩୦

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୨୭ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللَّهِ الرَّحْمَٰنِ الرَّحِيمِ ﴿١﴾

୨. କ'ଣ ତୁମ ନିକଟରେ (ପୃଥିବୀକୁ) ଆଚ୍ଛନ୍ନକାରୀ ବିପତ୍ତିର ସମାଚ୍ଚାର ପହଞ୍ଚିଛି ?

هَلْ أَتَاكَ حَدِيثُ الْغَاشِيَةِ ﴿٢﴾

୩. ସେ ଦିନ ଯେତେବେଳେ ସେହି ବିପଦ ଆଚ୍ଛନ୍ନ [୨] କରିବ, ସେତେବେଳେ କେତେକ ମୁଖମଣ୍ଡଳ ମଳିନ ପଡିଯାଇଥିବ ;

وُجُوهٌ يَوْمَئِذٍ خَاشِعَةٌ ﴿٣﴾

୪. (ସେମାନେ) ପରିଶ୍ରମ କରି ଅତ୍ୟନ୍ତ କ୍ଳାନ୍ତ ହୋଇ ପଡିଥିବେ ।

عَامِلَةٌ نَّاصِبَةٌ ﴿٤﴾

୫. କିନ୍ତୁ ସେପରି ପରିଶ୍ରମ ଲାଭଦାୟକ ହେବ ନାହିଁ ଏବଂ ଅବଶେଷରେ ସେହି ସମ୍ପ୍ରଦାୟ ଏକ ଜ୍ୱଳନ୍ତ ଅଗ୍ନିରେ ପ୍ରବେଶ କରିବେ ;

تَصْلَىٰ نَارًا حَامِيَةً ﴿٥﴾

---

୧. ଅର୍ଥାତ୍ ଉପରୋକ୍ତ ଶିକ୍ଷା ଏପରି ସାଧାରଣ ଯେ ସବୁ ରସୁଲଙ୍କର ଶିକ୍ଷାର ଯେଉଁ ଯେଉଁ ଅଂଶ ଅଦ୍ୟାବଧି ସୁରକ୍ଷିତ ରହିଛି ସେ ସବୁଥିରୁ ପବିତ୍ର କୋରାନ ପ୍ରତି ସମର୍ଥନ ମିଳୁଛି । ପ୍ରାକ୍ତନ ନବିମାନଙ୍କର ଶିକ୍ଷାକୁ ସୁରକ୍ଷିତ କରି ରଖାଯିବା ପାଇଁ ଅତି ଅଳ୍ପ ଉଦ୍ୟମ ହୋଇଛି । କେବଳ ଇହୁଦୀମାନେ ନିଜ ଧର୍ମଗ୍ରନ୍ଥ 'ତାଲମୁଦ'ରେ ଅଧିକାଂଶ ନବି, ସଂସ୍କାରକ ଓ ପୁଣ୍ୟବାନ୍ ବ୍ୟକ୍ତିଙ୍କର ଶିକ୍ଷାକୁ ସୁରକ୍ଷିତ କରି ରଖିବା ପାଇଁ ଉଦ୍ୟମ କରିଛନ୍ତି । ସେହି ଗ୍ରନ୍ଥକୁ ଅଧ୍ୟୟନ କଲେ ଜଣାଯିବ ଯେ ପବିତ୍ର କୋରାନର ଅନେକ ସତ୍ୟ ପ୍ରାକ୍ତନ ନବିମାନଙ୍କ ଦ୍ୱାରା ବର୍ଣ୍ଣନା କରାଯାଇଛି, ଯାହା ଏହା ଅଧ୍ୟାୟର ଆୟତ ୧୯ ଓ ୨୦ କୁ ସମର୍ଥନ କରୁଛି । ବସ୍ତୁତଃ ପବିତ୍ର କୋରାନର ବିଶେଷ ବିଶେଷ ଅଂଶ ସେଭଳି ପ୍ରାଚୀନ ପୁସ୍ତକରେ ମଧ୍ୟ ରହିଅଛି ।

୨. ଏଠାରେ ସେହି ଶାସ୍ତି ସମ୍ବନ୍ଧରେ ସୂଚନା ଦିଆଯାଇଛି ଯାହା ଶେଷ ଯୁଗରେ ମାନବ ସମାଜ ପ୍ରତି ପ୍ରେରିତ ହେବ । ଏଠାରେ ଆହୁରି ଦର୍ଶାଯାଇଛି ଯେ ଯେତେବେଳେ ସେହି ଶାସ୍ତି ଉପନୀତ ହେବ, ସେତେବେଳେ ଅପରାଧୀମାନଙ୍କର ମୁଖମଣ୍ଡଳ ଶ୍ରୀହୀନ ଦେଖାଯିବ । ସେତେବେଳେ ଅବଶ୍ୟ ମନୁଷ୍ୟ ସେହି ଶାସ୍ତିରୁ ରକ୍ଷା ପାଇବା ପାଇଁ ପ୍ରବଳ ଉଦ୍ୟମ କରିବ ।

୬. ଏବଂ ସେହି ସମ୍ପ୍ରଦାୟର ସମସ୍ତଙ୍କୁ ଫୁଟୁଥିବା ଝରଣାରୁ (ଜଳ) ପାନ କରିବାକୁ ଦିଆଯିବ ;

تُسْقٰى مِنْ عَيْنٍ اٰنِيَةٍ ۝٦

୭. ତାହାଙ୍କୁ କେବଳ ଶୁଖିଲା ଶିବ୍ରିକ [୧] ଘାସ ଛଡା ଅନ୍ୟ କିଛି ଖାଇବାକୁ ମିଳିବ ନାହିଁ,

لَيْسَ لَهُمْ طَعَامٌ اِلَّا مِنْ ضَرِيْعٍ ۝٧

୮. ତାହା ସେମାନଙ୍କୁ ପରିପୁଷ୍ଟ କରିବ ନାହିଁ କି କ୍ଷୁଧା (କଷ୍ଟ) ଦୂର କରିବ ନାହିଁ ।

لَّا يُسْمِنُ وَلَا يُغْنِيْ مِنْ جُوْعٍ ۝٨

୯. ସେ ଦିନ (ଅନ୍ୟ) କେତେକଙ୍କ ମୁଖମଣ୍ଡଳ ହର୍ଷୋଲ୍ଲସିତ ଥିବ ।

وُجُوْهٌ يَّوْمَئِذٍ نَّاعِمَةٌ ۝٩

୧୦. (ସେମାନେ) ନିଜର (ବିଗତ) ପ୍ରଚେଷ୍ଟା ଯୋଗୁଁ ସନ୍ତୁଷ୍ଟ ହେବେ ;

لِّسَعْيِهَا رَاضِيَةٌ ۝١٠

୧୧. ବହୁ ଉଚ୍ଚ ବୈକୁଣ୍ଠରେ (ସେମାନେ ରହୁ) ଥିବେ,

فِيْ جَنَّةٍ عَالِيَةٍ ۝١١

୧୨. ସେମାନେ ସେଠାରେ କୌଣସି ଅଯଥା କଥା ଶୁଣିବେ ନାହିଁ ;

لَّا تَسْمَعُ فِيْهَا لَاغِيَةً ۝١٢

୧୩. ତହିଁରେ ଏକ ପ୍ରବହମାନ ଝରଣା ଥିବ,

فِيْهَا عَيْنٌ جَارِيَةٌ ۝١٣

୧୪. ଏବଂ ସେଠାରେ ଉଚ୍ଚ ଆସନ ଥିବ,

فِيْهَا سُرُرٌ مَّرْفُوْعَةٌ ۝١٤

୧୫. ଏବଂ ପାନ-ପାତ୍ରମାନ ରଖା ହୋଇଥିବ,

وَّاَكْوَابٌ مَّوْضُوْعَةٌ ۝١٥

୧୬. ଏବଂ ଆଉଜି ବସିବା ପାଇଁ ଛୋଟ ଛୋଟ ତକିଆମାନ ଧାଡ଼ି ଧାଡ଼ି ହୋଇ ରଖା ହୋଇଥିବ ,

وَّنَمَارِقُ مَصْفُوْفَةٌ ۝١٦

୧୭. ଏବଂ ଗାଲିଚ୍ଛମାନ ବିଛା ହୋଇଥିବ ।

وَّزَرَابِيُّ مَبْثُوْثَةٌ ۝١٧

୧୮. କ'ଣ ସେମାନେ ମେଘମାଳାକୁ [୨] ଲକ୍ଷ୍ୟ କରୁନାହାନ୍ତି ଯେ ସେଗୁଡ଼ିକୁ କିପରି ଭାବରେ ସୃଷ୍ଟି କରାଯାଇଛି ?

اَفَلَا يَنْظُرُوْنَ اِلَى الْاِبِلِ كَيْفَ خُلِقَتْ ۝١٨

---

୧. ଏହା ଏକ ଚେର ନଥିବା ଘାସ ଯାହା, ଆରବୀ ଭାଷାରେ, ଶୁଖିଗଲା ପରେ 'ଢରିଇ' ଓ କଞ୍ଚା ଥିଲା ବେଳେ 'ଶିବ୍ରିକ' ନାମରେ ଅଭିହିତ । ଏହାକୁ ଖାଦ୍ୟ ଆକାରରେ ବ୍ୟବହାର କଲେ କୌଣସି ଲାଭ ମିଳେ ନାହିଁ, ଅର୍ଥାତ୍ ମନୁଷ୍ୟ ତାକୁ ଖାଇଲେ ସେଥିରେ ତାକୁ କୌଣସି ଶକ୍ତି ମିଳେ ନାହିଁ କି ମନୁଷ୍ୟ ତଦ୍ଦ୍ୱାରା ବଳିଷ୍ଠ ହୁଏ ନାହିଁ । ଅତଏବ ଏହି ଆୟତର ପ୍ରକୃତ ମର୍ମ ହେଉଛି ଯେ ନରକବାସୀମାନଙ୍କୁ ଖାଦ୍ୟ ଖାଇବାକୁ ଦିଆଯିବ ତଦ୍ଦ୍ୱାରା ସେମାନେ କୌଣସି ଶକ୍ତି ଲାଭ କରିବେ ନାହିଁ କି ତୃପ୍ତ ହେବେ ନାହିଁ ।

୨. 'ଇବିଲ'ର ସାଧାରଣ ଅର୍ଥ ଓଟ, କିନ୍ତୁ ଶବ୍ଦକୋଷରେ ତାହାର ଅର୍ଥ 'ମେଘମାଳା' ମଧ୍ୟ ରହିଅଛି ଓ ଏହି ଅର୍ଥ ଏଠାରେ ପ୍ରଯୁଜ୍ୟ । ଯେପରି ମେଘମାଳା କୌଣସି ଏକ ସ୍ଥାନରୁ ଉପରକୁ ଉଠୁଥିଲେ ମଧ୍ୟ ଏକ ବିସ୍ତୀର୍ଣ୍ଣ ଅଞ୍ଚଳରେ ବୃଷ୍ଟି କରାଏ, ସେହିପରି ମେଘମାଳାର ସ୍ରଷ୍ଟା ଅଲ୍ଲାହ୍ କ'ଣ ଆରବରୁ ଉତ୍ଥିତ ଆଧ୍ୟାତ୍ମିକ ଜଳକୁ ସାରା ପୃଥିବୀରେ ବିତରଣ କରିବାକୁ ସକ୍ଷମ ନୁହନ୍ତି ?

وَإِلَى السَّمَآءِ كَيْفَ رُفِعَتْ ⑱

୧୯. ଏବଂ (କ'ଣ ସେମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ) ଆକାଶକୁ [୧] କିପରି ଭାବରେ ଉଚ୍ଚ କରାଯାଇଛି ?

وَإِلَى الْجِبَالِ كَيْفَ نُصِبَتْ ⑳

୨୦. ଏବଂ (କ'ଣ ସେମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ ) ପର୍ବତମାନଙ୍କୁ [୨] କିପରି ଭାବରେ ପୋତା ଯାଇଛି ?

وَإِلَى الْأَرْضِ كَيْفَ سُطِحَتْ ㉑

୨୧. ଏବଂ (କ'ଣ ସେମାନେ ଲକ୍ଷ୍ୟ କରୁ ନାହାନ୍ତି ଯେ) ଭୂପୃଷ୍ଠକୁ କିପରି ଭାବରେ ସମତଳ [୩] କରାଯାଇଛି ?

فَذَكِّرْ إِنَّمَآ أَنْتَ مُذَكِّرٌ ㉒

୨୨. ସୁତରାଂ (ତୁମେ) ଉପଦେଶ ଦିଅ, କାରଣ ତୁମେ କେବଳ ଜଣେ ଉପଦେଶ-ଦାତା ;

لَسْتَ عَلَيْهِمْ بِمُصَيْطِرٍ ㉓

୨୩. ତୁମେ ସେମାନଙ୍କ ଉପରେ ସଂରକ୍ଷକ ଭାବରେ ନିଯୁକ୍ତି ହୋଇ ନାହିଁ;

إِلَّا مَنْ تَوَلَّى وَكَفَرَ ㉔

୨୪. କିନ୍ତୁ ଯେ ପୃଷ୍ଠଭଙ୍ଗ କରି ଚାଲିଯାଏ ଓ ଅବିଶ୍ୱାସ ମଧ୍ୟ କରେ,

فَيُعَذِّبُهُ اللّٰهُ الْعَذَابَ الْأَكْبَرَ ㉕

୨୫. ଏହା ଫଳରେ ଅଲ୍ଲାହ ତାହାକୁ ଅତି କଠିନ ଶାସ୍ତି ପ୍ରଦାନ କରିବେ ।

إِنَّ إِلَيْنَآ إِيَابَهُمْ ㉖

୨୬. ବାସ୍ତବରେ ସେମାନଙ୍କୁ ଆମ ନିକଟକୁ ହି ଫେରିବାକୁ ହେବ,

ثُمَّ إِنَّ عَلَيْنَا حِسَابَهُمْ ㉗

୨୭. ତା'ପରେ ସେମାନଙ୍କଠାରୁ ହିସାବ ନେବା ମଧ୍ୟ ଆମର କାର୍ଯ୍ୟ ।

---

୧. ଅର୍ଥାତ୍ ଯେପରି ଆକାଶକୁ ଉଚ୍ଚ କରାଯାଇଛି ସେହିପରି ଆଧ୍ୟାତ୍ମିକ ଆକାଶ ଅର୍ଥାତ୍ ହଜରତ ମହମ୍ମଦଙ୍କୁ ଉଚ୍ଚ କରାଯିବ । ସୁରା 'ନୁର'ର ଆୟତ ୩୭କୁ ଅନୁଧ୍ୟାନ କଲେ ଜଣାଯିବ ଯେ ଯେଉଁ ଗୃହରେ ଅଲ୍ଲାହଙ୍କର ଜ୍ୟୋତି ଅର୍ଥାତ୍ ପବିତ୍ର କୋରାନର ସମୁନ୍ନତ ଶିକ୍ଷା ରହିଥିବ, ସେ ଗୃହକୁ ନିଶ୍ଚିତ ରୂପେ ଉଚ୍ଚ କରା ହେବ । ତେଣୁ ଯାହାଙ୍କ ଶିଷ୍ୟମାନଙ୍କର ଗୃହକୁ ଏ ରୂପେ ଉଚ୍ଚ କରା ହେବ, ତାଙ୍କ ନିଜ ଗୃହକୁ ନିଃସନ୍ଦେହରେ ଆହୁରି ଉଚ୍ଚ କରାହେବ; ଏପରିକି ତାହାକୁ ଆକାଶ ଠାରୁ ମଧ୍ୟ ଅଧିକ ଉଚ୍ଚ କରାହେବ ।

୨. ଆୟତ ଅନ୍ତର୍ଗତ 'ପର୍ବତ' ଶବ୍ଦ ହଜରତ ମହମ୍ମଦଙ୍କ ସାଥୀ ତଥା ଅନ୍ୟାନ୍ୟ ମୁଖ୍ୟ ଲୋକଙ୍କୁ ବୁଝାଉଛି । ତେଣୁ ଏଠାରେ ଏପରି ଅର୍ଥ ହେବ ଯେ ହଜରତ ମହମ୍ମଦଙ୍କର ସାଥୀମାନେ ଶତ୍ରୁ ପକ୍ଷର ପ୍ରବଳ ଉଦ୍ୟମ ସତ୍ତ୍ୱେ ପର୍ବତ ସଦୃଶ ଅଟଳ ରହିଥିଲେ ।

୩. ଏଠାରେ ସେହି ଭୂମିକୁ ବୁଝିବାକୁ ହେବ ଯେଉଁଠାରେ ହଜରତ ମହମ୍ମଦଙ୍କ ସାଥୀମାନେ ଅଶ୍ୱ ଆରୋହଣ କରୁଥିଲେ । କ'ଣ ସେଠାକାର ଭୂମିକୁ ସମତଳ କରାଯାଇଥିବା, ସେମାନେ ସ୍ୱଇଚ୍ଛାରେ ପ୍ରତିପକ୍ଷ ଉପରେ ଚଢ଼ଉ କରୁଥିବା ତଥା କେହି ସେମାନଙ୍କର ମୁକାବିଲା କରିପାରୁ ନଥିବା ବିଷୟ ଗୁଡ଼ିକୁ ଅବିଶ୍ୱାସକାରୀମାନେ ଦେଖିପାରୁ ନାହାନ୍ତି ?

سُوْرَةُ الْفَجْرِ مَكِّيَّةٌ (٨٩)

# ଅଲ – ଫଜର

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୩୧ ଟି ଆୟତ ଅଛି)

بِسْمِ اللّٰهِ الرَّحْمٰنِ الرَّحِيْمِ ①
وَالْفَجْرِ ②
وَلَيَالٍ عَشْرٍ ③
وَّالشَّفْعِ وَالْوَتْرِ ④
وَالَّيْلِ اِذَا يَسْرِ ⑤
هَلْ فِيْ ذٰلِكَ قَسَمٌ لِّذِيْ حِجْرٍ ⑥
اَلَمْ تَرَ كَيْفَ فَعَلَ رَبُّكَ بِعَادٍ ⑦
اِرَمَ ذَاتِ الْعِمَادِ ⑧
الَّتِيْ لَمْ يُخْلَقْ مِثْلُهَا فِي الْبِلَادِ ⑨
وَثَمُوْدَ الَّذِيْنَ جَابُوا الصَّخْرَ بِالْوَادِ ⑩

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

୨. ଆମେ ପ୍ରମାଣ ସ୍ୱରୂପ ଏକ ଆଗାମୀ ପ୍ରଭାତକୁ ଉପସ୍ଥାପିତ କରୁଅଛୁ ।[୧]

୩. ଏବଂ ଦଶଗୋଟି ରାତ୍ରିକୁ[୨] ମଧ୍ୟ.

୪. ଏବଂ ଗୋଟିଏ ଯୋଡ଼ ଓ ଗୋଟିଏ ବିଯୋଡ଼କୁ (ମଧ୍ୟ).

୫. ଏବଂ (ଉପରୋକ୍ତ ଦଶରାତ୍ରି ପରେ ଆସୁଥିବା ରାତ୍ରିକୁ (ମଧ୍ୟ); ଯେତେବେଳେ ତାହା ଅତିବାହିତ ହୁଏ.[୩] .

୬. କ'ଣ ଏଥିରେ ବୁଦ୍ଧିମାନ୍ ଲୋକଙ୍କ ପାଇଁ କୌଣସି ଶପଥ (ଅର୍ଥାତ୍ ପ୍ରମାଣ) ଅଛି (ନା ନାହିଁ) ?

୭/୮. କ'ଣ ତୁମକୁ ଜଣା ନାହିଁ କି ତୁମ ପାଳନକର୍ତ୍ତା ଇରମର ଆଦି (ସମ୍ପ୍ରଦାୟ) ସହିତ କ'ଣ (ବ୍ୟବହାର) କରିଥିଲେ ଯେଉଁମାନଙ୍କର ବଡ଼ ବଡ଼ ଅଟ୍ଟାଳିକାମାନ ଥିଲା ?

୯. ସେମାନଙ୍କ ସଦୃଶ ଅନ୍ୟ କୌଣସି ସମ୍ପ୍ରଦାୟକୁ ସେ ଦେଶମାନଙ୍କରେ ସୃଷ୍ଟି କରାଯାଇ ନ ଥିଲା.

୧୦. ଏବଂ (କ'ଣ ) ସମୁଦ ସମ୍ପ୍ରଦାୟ (ସମ୍ବନ୍ଧରେ ତୁମକୁ ଜଣା ଅଛି ?), ଯେଉଁମାନେ ଉପତ୍ୟକାର ପ୍ରସ୍ତରଗୁଡ଼ିକୁ ଖନନ କରି (ନିଜର ଗୃହ) ନିର୍ମାଣ କରୁଥିଲେ ।

---

୧. ଅର୍ଥାତ୍ ମଦିନାକୁ ହିଜରତ କରିଥିଲେ ।

୨. ଏହି ଅଧ୍ୟାୟ ଅବତୀର୍ଣ୍ଣ ହେବା ପରେ. ହଜରତ ମହମ୍ମଦ ୧୦ ବର୍ଷ କାଳ ମକ୍କାରେ ଏପରି ବହୁ ଦୁଃଖ କଷ୍ଟ ସହି ରହିଥିଲେ ଯେଉଁ ସମୟକୁ 'ରାତ୍ରି' କୁହାଯାଇ ପାରେ ।

୩. ଅର୍ଥାତ୍ ମଦିନାରେ ଯେଉଁ କଷ୍ଟଦାୟକ ରାତ୍ରି ଆସିବ ତାହା କ୍ଷଣସ୍ଥାୟୀ ହେବ ।

وَفِرْعَوْنَ ذِى الْأَوْتَادِ ﴿١٠﴾

୧୧. ଏବଂ ତୁମକୁ ଫିରଔନଙ୍କ ସମ୍ବନ୍ଧରେ କିଛି ଜଣା ଅଛି କି, ଯେ ପର୍ବତମାନଙ୍କର [1] ଅଧିପତି ଥିଲା ?

الَّذِينَ طَغَوْا فِي الْبِلَادِ ﴿١١﴾

୧୨. ସେ (ପର୍ବତ) ମାନେ, ଯେଉଁମାନେ ସହରମାନଙ୍କରେ ପ୍ରବଳ ବିଶୃଙ୍ଖଳା ସୃଷ୍ଟି କରିଥିଲେ,

فَأَكْثَرُوا فِيهَا الْفَسَادَ ﴿١٢﴾

୧୩. ଏବଂ ବିଶୃଙ୍ଖଳା କରିବାରେ ବଢି ଚାଲିଥିଲେ ।

فَصَبَّ عَلَيْهِمْ رَبُّكَ سَوْطَ عَذَابٍ ﴿١٣﴾

୧୪. ଯାହାଫଳରେ ତୁମ ପାଳନକର୍ତ୍ତା ସେମାନଙ୍କ ଉପରେ କୋରଡା (ପ୍ରହାର) ର ଶାସ୍ତି ବର୍ଷଣ କରିଥିଲେ ।

إِنَّ رَبَّكَ لَبِالْمِرْصَادِ ﴿١٤﴾

୧୫. ତୁମ ପାଳନକର୍ତ୍ତା ବାସ୍ତବରେ ଛକି ରହିଛନ୍ତି ।

فَأَمَّا الْإِنسَانُ إِذَا مَا ابْتَلَاهُ رَبُّهُ فَأَكْرَمَهُ وَنَعَّمَهُ فَيَقُولُ رَبِّي أَكْرَمَنِ ﴿١٥﴾

୧୬. ସୁତରାଂ ମଣିଷର ଅବସ୍ଥାକୁ (ଲକ୍ଷ୍ୟ କର), ଯେତେବେଳେ ତାହାର ପାଳନକର୍ତ୍ତା ତାହାକୁ ପରୀକ୍ଷାର ସମ୍ମୁଖୀନ କରାନ୍ତି ଓ ତାହାକୁ ସମ୍ମାନିତ କରନ୍ତି ଏବଂ ତାହା ପ୍ରତି କୃପା ପ୍ରଦାନ କରନ୍ତି, ସେତେବେଳେ ସେ କହେ, ''(ମୁଁ ଏପରି ସମ୍ମାନାସ୍ପଦ ଅଟେ ଯେ) ମୋର ପାଳନକର୍ତ୍ତା (ମଧ୍ୟ) ମୋତେ ସମ୍ମାନିତ କରିଛନ୍ତି ।''

وَأَمَّا إِذَا مَا ابْتَلَاهُ فَقَدَرَ عَلَيْهِ رِزْقَهُ فَيَقُولُ رَبِّي أَهَانَنِ ﴿١٦﴾

୧୭. ଏବଂ ଯେତେବେଳେ (ଅଲ୍ଲାହ) ତାହାକୁ ପରୀକ୍ଷାର ସମ୍ମୁଖୀନ କରାନ୍ତି ଓ ତାହାର ଜୀବିକାକୁ ସଙ୍କୁଚିତ କରି ଦିଅନ୍ତି, ସେତେବେଳେ ସେ କହେ, ''ମୋର ପାଳନକର୍ତ୍ତା (ବିନା କାରଣରେ) ମୋର ଅସମ୍ମାନ କରିଛନ୍ତି ।''

كَلَّا ۖ بَل لَّا تُكْرِمُونَ الْيَتِيمَ ﴿١٧﴾

୧୮. (ଅଲ୍ଲାହ ବିନା କାରଣରେ ଶାସ୍ତି ପ୍ରଦାନ କରନ୍ତି ନାହିଁ ବରଂ ଏହା ତୁମମାନଙ୍କର ନିଜର ହିଁ ଦୋଷ ଯେ) ତୁମେମାନେ ଅନାଥକୁ (ଉପଯୁକ୍ତ) ସମ୍ମାନ ଦେଉ ନ ଥିଲ,

وَلَا تَحَاضُّونَ عَلَىٰ طَعَامِ الْمِسْكِينِ ﴿١٨﴾

୧୯. ଏବଂ (ତୁମେମାନେ) ଦରିଦ୍ରକୁ ଭୋଜନ କରାଇବାପାଇଁ ପରସ୍ପରକୁ ଉତ୍ସାହିତ କରୁ ନ ଥିଲ,

وَتَأْكُلُونَ التُّرَاثَ أَكْلًا لَّمًّا ﴿١٩﴾

୨୦. ଏବଂ ଉତ୍ତରାଧିକାର ସୂତ୍ରେ ପ୍ରାପ୍ତ ସମସ୍ତ ସମ୍ପତ୍ତିକୁ ବିଳାସରେ ବ୍ୟୟ କରୁଥିଲ,

---

୧. ଏଠାରେ 'ପର୍ବତ' ଫିରଔନ ଅଧୀନସ୍ଥ ମୁଖ୍ୟ ବ୍ୟକ୍ତିମାନଙ୍କୁ ବୁଝାଉଛି । ସେମାନେ ମିଶରର ଶାସନ ବ୍ୟବସ୍ଥାକୁ ନିଜ ଶକ୍ତି ଓ ସାମର୍ଥ୍ୟ ଦ୍ୱାରା ପରିଚାଳିତ କରାଉଥିଲେ ।

وَّتُحِبُّوْنَ الْمَالَ حُبًّا جَمًّا ﴿٢١﴾

୨୧. ଏବଂ ତୁମେମାନେ ଧନ ସମ୍ପତ୍ତିକୁ ଅସୀମ ପ୍ରେମ କରୁଥିଲ ।

كَلَّآ اِذَا دُكَّتِ الْاَرْضُ دَكًّا دَكًّا ﴿٢٢﴾

୨୨. ଶୁଣ ! ଯେତେବେଳେ ଭୂପୃଷ୍ଠକୁ ଖଣ୍ଡ ବିଖଣ୍ଡ କରି ଦିଆଯିବ; [୧]

وَّجَآءَ رَبُّكَ وَالْمَلَكُ صَفًّا صَفًّا ﴿٢٣﴾

୨୩. ଏବଂ ତୁମ ପାଳନକର୍ତ୍ତା ଏପରି ସସମ୍ମାନେ [୨] ଆସିବେ ଯେତେବେଳେ କି ଦେବଦୂତମାନେ ଧାଡ଼ି ବାନ୍ଧି ଠିଆ ହୋଇଥିବେ;

وَجِايْٓءَ يَوْمَئِذٍۭ بِجَهَنَّمَ ۙ يَوْمَئِذٍ يَّتَذَكَّرُ الْاِنْسَانُ وَاَنّٰى لَهُ الذِّكْرٰى ﴿٢٤﴾

୨୪. ଏବଂ ସେହି ଦିନ ନରକ (ନିକଟକୁ) ଅଣାଯିବ; [୩] ସେହି ଶାସ୍ତି (ପ୍ରଦାନ) ସମୟରେ ମନୁଷ୍ୟ ଶିକ୍ଷା ଲାଭ କରିବାକୁ ଇଚ୍ଛା କରିବ, କିନ୍ତୁ ସେ ସମୟ ଶିକ୍ଷା ଲାଭ କରି ସମ୍ପୂର୍ଣ୍ଣ ଲାଭବାନ୍ ହେବା ସକାଶେ ନ ଥିବ । [୪]

---

୧. ଅର୍ଥାତ୍ ଅବିଶ୍ୱାସକାରୀମାନଙ୍କ ମଧ୍ୟରେ ମତଭେଦ ସୃଷ୍ଟି ହେବ ଓ ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଯିବେ ଅଥବା ମୁସଲମାନମାନେ ଯେଉଁସବୁ ଅଞ୍ଚଳକୁ ଜୟ କରିଥିବେ, ସେହିସବୁ ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ସୃଷ୍ଟି ହେବ ଏବଂ ସେମାନେ ସଂଗଠିତ ଭାବରେ ମୁସଲମାନମାନଙ୍କର ପ୍ରତିରୋଧ କରିବା ପାଇଁ ସମର୍ଥ ହେବେ ନାହିଁ ।

୨. ପବିତ୍ର କୋରାନରେ ବର୍ଣ୍ଣନା କରାଯାଇଛି ଯେ ଯେତେବେଳେ ଅଲ୍ଲାହ୍ ଓ ଦେବଦୂତମାନେ ଅବିଶ୍ୱାସକାରୀମାନଙ୍କ ଆଡ଼କୁ ଆସନ୍ତି, ସେତେବେଳେ ଶାସ୍ତି ନେଇ ଆସିଥାନ୍ତି (୫୯:୩ ଓ ୨:୨୧୧ ଦ୍ରଷ୍ଟବ୍ୟ) । ଅଲ୍ଲାହ୍ ଓ ଦେବଦୂତମାନଙ୍କର ଆଗମନ ସୂଚାଇ ଦେବ ଯେ ସେମାନଙ୍କ ବିନାଶ ସମୟ ଆଗତ-ପ୍ରାୟ । ଇତିହାସରୁ ଜଣାପଡ଼େ ଯେ ବଦର ଯୁଦ୍ଧରେ ଏହିପରି ଏକ ଘଟଣା ଘଟିଥିଲା । ସେତେବେଳେ ଦେବଦୂତମାନେ ସେମାନଙ୍କ ଉପରେ ତରବାରି ଚାଳନା କରୁଥିବାର ଓ ଶିଳା ବୃଷ୍ଟି କରୁଥିବାର ଅବିଶ୍ୱାସକାରୀମାନେ ମଧ୍ୟ ଦେଖିପାରିଥିଲେ । ଦେବଦୂତମାନଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖିଥିବା ଘଟଣା ସେମାନଙ୍କ ମନରେ ଏଭଳି ବିଶ୍ୱାସ ଜନ୍ମାଇଥିଲା ଯେ ଯେତେବେଳେ ପରେ ମୁସଲମାନମାନେ ସେମାନଙ୍କ ସହିତ ଦେଖା କରିଥିଲେ, ସେମାନେ ମୁସଲମାନମାନଙ୍କୁ ସେମାନଙ୍କ ଗହଣରେ ଏହିପରି ଏକ ପୋଷାକ ପିନ୍ଧି ଜଣେ ଦେବଦୂତ ଯୁଦ୍ଧ କରୁଥିବାର ଜଣାଇଥିଲେ । ସେହି ମୁସଲମାନମାନେ ମଧ୍ୟ ସେମାନଙ୍କର ଏହି ବକ୍ତବ୍ୟକୁ ସମର୍ଥନ କରିଥିଲେ । ପ୍ରତୀତ ହେଉଛି ବଦର ଯୁଦ୍ଧ ସମୟରେ ଏଭଳି ଏକ ଅଲୌକିକ ଦୃଶ୍ୟ ଉଭୟ ବିଶ୍ୱାସକାରୀ ଓ ଅବିଶ୍ୱାସକାରୀଙ୍କୁ ଦେଖାଇ ଦିଆ ଯାଇ ଥିଲା ।

୩. ଅର୍ଥାତ୍ ତାହା ଦଣ୍ଡ ଭୋଗ କରିବା ଦିନ ହେବ ଏବଂ ଅବିଶ୍ୱାସକାରୀମାନଙ୍କୁ ନରକ ଦେଖାଯିବ ।

୪. ଅଲ୍ଲାହ୍‌ଙ୍କ ଗ୍ରନ୍ଥରେ ସବୁବେଳେ କରୁଣାପ୍ରଦ ଶିକ୍ଷା ରହିଥାଏ । ଯେତେବେଳେ ଫିରଔନ ଶେଷ ମୁହୂର୍ତ୍ତରେ ଅଲ୍ଲାହ୍‌ଙ୍କ ଉପରେ ବିଶ୍ୱାସ ସ୍ଥାପନ କରିଥିଲା, ସେତେବେଳେ ଅଲ୍ଲାହ୍ ଯଦିଓ ତା'ର ସକଳ ପ୍ରାର୍ଥନାକୁ ଗ୍ରହଣ କରି ନଥିଲେ ତଥାପି ତା'ର ମୃତ ଶରୀରକୁ ସୁରକ୍ଷିତ କରି ରଖାଇ ଥିଲେ (୧୦:୯୩ ଦ୍ରଷ୍ଟବ୍ୟ) । ମକ୍କାବାସୀଙ୍କର ମଧ୍ୟ ଏହିପରି ଅବସ୍ଥା ହୋଇଥିଲା । ଯେତେବେଳେ ମୁସଲମାନମାନେ ମକ୍କା ଜୟ କରିଥିଲେ ସେତେବେଳେ ସେମାନଙ୍କୁ ହତ୍ୟା କରାଯିବ ନାହିଁ ଓ ଅବମାନନାରୁ ରକ୍ଷା କରାଯିବ ତଥା କ୍ଷମା ଦିଆଯିବ ବୋଲି ହଜରତ ମହମ୍ମଦ ସର୍ବସାଧାରଣରେ ଘୋଷଣା କରିଥିଲେ । ଅବଶ୍ୟ ସେମାନଙ୍କୁ ପୂର୍ବତନ ମୁସଲମାନଙ୍କ ସଦୃଶ ପଦମର୍ଯ୍ୟାଦା ମିଳି ନଥିଲା । ପବିତ୍ର କୋରାନରେ ଏ ସଂକ୍ରାନ୍ତରେ ଅନ୍ୟତ୍ର ବର୍ଣ୍ଣନା କରାଯାଇଛି ଯେ ଯେଉଁମାନେ ମକ୍କାବିଜୟ ପରେ ଇସଲାମ ଧର୍ମ ଗ୍ରହଣ କରିଛନ୍ତି ସେମାନେ ଆଦ୍ୟ ମୁସଲମାନମାନଙ୍କ ସହିତ ସମାନ ହୋଇ ନ ପାରନ୍ତି (୫୭:୧୧ ଦ୍ରଷ୍ଟବ୍ୟ) ।

୨୫. ସେ କହିବ, "ହାୟ ! ମୁଁ ମୋର ନିଜ (ଜୀବନ) ପାଇଁ କିଛି (ପୁଣ୍ୟ) ଆଗକୁ ପଠାଇଥାନ୍ତି କି !" [୧]

يَقُولُ يَٰلَيْتَنِى قَدَّمْتُ لِحَيَاتِى ﴿٢٤﴾

୨୬. ତେଣୁ ସେଦିନ ଅଲ୍ଲାହ ଯେପରି ଶାସ୍ତି ବିଧାନ କରିବେ ସେପରି ଶାସ୍ତି [୨] ଅନ୍ୟ କେହି ତାହାକୁ ଦେବେ ନାହିଁ;

فَيَوْمَئِذٍ لَّا يُعَذِّبُ عَذَابَهُۥٓ أَحَدٌ ﴿٢٥﴾

୨୭. ଏବଂ ସେ ଯେପରି ବାନ୍ଧି ନେବେ ଅନ୍ୟ କେହି ସେପରି ବାନ୍ଧି ନେବେ ନାହିଁ।

وَلَا يُوثِقُ وَثَاقَهُۥٓ أَحَدٌ ﴿٢٦﴾

୨୮. ହେ ପ୍ରଶାନ୍ତ ଆତ୍ମା !

يَٰٓأَيَّتُهَا ٱلنَّفْسُ ٱلْمُطْمَئِنَّةُ ﴿٢٧﴾

୨୯. ନିଜ ପାଳନକର୍ତ୍ତାଙ୍କ ନିକଟକୁ (ଏପରି ଅବସ୍ଥାରେ) ଫେରିଆସ, [୩] ଯେତେବେଳେ କି ତୁମେ (ତାହାଙ୍କ ପ୍ରତି) ସନ୍ତୁଷ୍ଟ ହୋଇଥିବ ଓ ସେ ତୁମ ପ୍ରତି ସନ୍ତୁଷ୍ଟ ହୋଇଥିବେ।

ٱرْجِعِىٓ إِلَىٰ رَبِّكِ رَاضِيَةً مَّرْضِيَّةً ﴿٢٨﴾

୩୦. ପୁନଶ୍ଚ (ତୁମ ପାଳନକର୍ତ୍ତା ତୁମକୁ କହୁଛନ୍ତି କି) ଆସ, ଆମର (ବିଶେଷ) ଭକ୍ତମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯାଅ,

فَٱدْخُلِى فِى عِبَٰدِى ﴿٢٩﴾

୩୧. ଏବଂ (ଆସ) ଆମ ବୈକୁଣ୍ଠରେ ମଧ୍ୟ ପ୍ରବେଶ କର।

وَٱدْخُلِى جَنَّتِى ﴿٣٠﴾




ଅଧ୍ୟାୟ ୯୦ ଭାଗ ୩୦

## ଅଲ – ବଲଦ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସମିଲ୍ଲାହ ସମେତ ୨୧ ଟି ଆୟତ ଅଛି।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି)।



୨. ଶୁଣ ! ତୁମମାନଙ୍କ କଥା ଭୁଲ, ଆମେ ଏହି (ମକ୍କା) ସହରକୁ ତୁମ ସତ୍ୟତାର ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ,

---

୧. ଅର୍ଥାତ୍ ପରିଣାମ ଜଣାପଡ଼ିବା ସମୟରେ ତାହା ଇହଲୋକରେ ଜଣା ପଡୁ କି ପରଲୋକରେ,ତା'ର ପୂର୍ବ କର୍ମ ହିଁ ଲାଭପ୍ରଦ ହେବ।

୨. ଅର୍ଥାତ୍ ଯେବେ ଅଲ୍ଲାହଙ୍କର ଶାସ୍ତି ଅବତରଣ କରିବ, ତେବେ ଅନ୍ୟ କୌଣସି ଶାସ୍ତିକୁ ତା ସହିତ ତୁଳନା କରାଯାଇ ପାରିବ ନାହିଁ।

୩. ଏଠାରେ ଦର୍ଶାଯାଇଛି ଯେ ଅଲ୍ଲାହଙ୍କୁ ସାକ୍ଷାତ୍ କରିପାରିଲେ ମନୁଷ୍ୟ ସଂପୂର୍ଣ୍ଣ ସନ୍ତୋଷ ଲାଭ କରେ। ଅଲ୍ଲାହ ମନୁଷ୍ୟ ଭାଗ୍ୟରେ ଯାହା କିଛି ସ୍ଥିର କରିଛନ୍ତି, ଯଦି ସେ ତାହାକୁ ପସନ୍ଦ କରେ ଏବଂ ମନୁଷ୍ୟ ଯେଉଁ କାର୍ଯ୍ୟ କରେ ଯଦି ତାହା ଅଲ୍ଲାହଙ୍କୁ ଭଲ ଲାଗେ ତେବେ ତାହା ହିଁ ହେବ 'ସାକ୍ଷାତ୍'ର ସଙ୍କେତ।

୩. (ଏବଂ କହୁଅଛୁ ଯେ ହେ ମହମ୍ମଦ !) ତୁମେ (ଦିନେ) ପୁଣି ଥରେ ଏହି ସହର (ମକ୍କା) ରେ ପ୍ରବେଶ କରିବ,

وَأَنْتَ حِلٌّ بِهَٰذَا الْبَلَدِ ۝٢

୪. ଏବଂ ପିତାଙ୍କୁ [୧] ମଧ୍ୟ ଓ ପୁତ୍ରଙ୍କୁ ମଧ୍ୟ (ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ),

وَوَالِدٍ وَمَا وَلَدَ ۝٣

୫. ଆମେ ବାସ୍ତବରେ ମଣିଷକୁ କଠିନ ପରିଶ୍ରମ [୨] କରିବା ସକାଶେ ସୃଷ୍ଟି କରିଅଛୁ ।

لَقَدْ خَلَقْنَا الْإِنْسَانَ فِي كَبَدٍ ۝٤

୬. କ'ଣ ସେ ମନେ କରୁଅଛି ଯେ ତାହା ଉପରେ କାହାରି କ୍ଷମତା ଚଳିବ ନାହିଁ ? [୩]

أَيَحْسَبُ أَنْ لَنْ يَقْدِرَ عَلَيْهِ أَحَدٌ ۝٥

୭. ସେ କହେ, "ମୁଁ ତ ପ୍ରଚୁର ପରିମାଣରେ ଧନ ବ୍ୟୟ କରି ଦେଇଛି [୪] ।"

يَقُولُ أَهْلَكْتُ مَالًا لُبَدًا ۝٦

୮. କ'ଣ ସେ ଭାବୁଛି ଯେ ତାକୁ କେହି ଲକ୍ଷ୍ୟ କରୁନାହିଁ ? [୫]

أَيَحْسَبُ أَنْ لَمْ يَرَهُ أَحَدٌ ۝٧

୯. କ'ଣ ଆମେ ତା ପାଇଁ ଦୁଇଗୋଟି ଚକ୍ଷୁ ସୃଷ୍ଟି କରିନାହୁଁ ? [୬]

أَلَمْ نَجْعَلْ لَهُ عَيْنَيْنِ ۝٨

୧୦. ଏବଂ ଜିଭ ଓ ଦୁଇଗୋଟି ଓଠ ମଧ୍ୟ (ସୃଷ୍ଟି କରିନାହୁଁ)? [୭]

وَلِسَانًا وَشَفَتَيْنِ ۝٩

---

୧. ଏଠାରେ ହଜରତ ଇବ୍ରାହିମ ଓ ହଜରତ ଇସମାଇଲ ଅଭିପ୍ରେତ । ସେମାନେ ମଧ୍ୟ ହଜରତ ମହମ୍ମଦଙ୍କ ସତ୍ୟତା ସମ୍ବନ୍ଧରେ ସାକ୍ଷ୍ୟ ଦେଇଛନ୍ତି, କାରଣ କା'ବା ଗୃହର ଭିତ୍ତି ନିର୍ମାଣ କଲାବେଳେ ମକ୍କାରେ ଯେପରି ଶୁଦ୍ଧପୂତ ଲୋକମାନେ ରହିବେ ସେଥିପାଇଁ ସେମାନେ ପ୍ରାର୍ଥନା କରିଥିଲେ । ଅବଶ୍ୟ ସବୁବେଳେ ସେଠାରେ ସେଭଳି ଲୋକ ନଥିଲେ, କାରଣ ହଜରତ ମହମ୍ମଦଙ୍କ ସମୟରେ ସେଠାରେ ମୁସରିକମାନେ ରହୁଥିଲେ । ତେଣୁ ହଜରତ ଇବ୍ରାହିମ ଓ ହଜରତ ଇସମାଇଲଙ୍କ ଉକ୍ତି ଯେପରି ସତ୍ୟ ସାବ୍ୟସ୍ତ ହେବ ଓ ମକ୍କା ସହରରେ ଶୁଦ୍ଧପୂତ ଲୋକେ ରହିବେ, ସେଥିପାଇଁ ହଜରତ ମହମ୍ମଦଙ୍କର ମକ୍କା ବିଜୟ ଅବଶ୍ୟମ୍ଭାବୀ ଥିଲା ।

୨. ଅର୍ଥାତ୍ ସହଜରେ ମକ୍କା ଜୟ କରି ହେବ ନାହିଁ । ସେଥିପାଇଁ ଅଧିକ ପରିଶ୍ରମ କରିବାକୁ ହେବ, ଯୁଦ୍ଧ କରିବାକୁ ହେବ ଓ ପ୍ରଚାର ମଧ୍ୟ ।

୩. ଏଠାରେ ସୂଚାଯାଇଛି ଯେ ଯଦିଚ ମକ୍କାବାସୀଙ୍କ ପ୍ରତି କେହି ଦୟା କରି ପାରିବେ ନାହିଁ ବୋଲି ସେମାନେ ଭାବୁଛନ୍ତି, ତଥାପି ସେମାନଙ୍କର ଏହି ଧାରଣା ଭୁଲ ପ୍ରମାଣିତ ହେବ ।

୪. ସେମାନେ ଇସଲାମ ଧର୍ମକୁ ଲୋପ କରିବା ପାଇଁ ଯେତେ ଅଧିକ ବ୍ୟୟ କଲେ ମଧ୍ୟ, ଇସଲାମର ବିଜୟ ହେବ ଓ ସେମାନେ ବିଫଳ ମନୋରଥ ହେବେ ।

୫. ଅର୍ଥାତ୍ ଅଲ୍ଲାହ ହିଁ ପରିଣାମର ସ୍ରଷ୍ଟା । ସାଂସାରିକ ସାମଗ୍ରୀ ମାଧ୍ୟମରେ ପରିଣାମ ଉଦ୍ଭବ ହୁଏ ନାହିଁ । ଏଥି ଯୋଗୁଁ ଯେତେବେଳେ ଅଲ୍ଲାହ ସେମାନଙ୍କ ଅନ୍ତରରେ ସିର୍କ ଓ ଅବଜ୍ଞା ରହିଥିବାର ତଥା ସେମାନେ ଲୋକ ଦେଖାଣିଆ କାର୍ଯ୍ୟ କରୁଥିବାର ଲକ୍ଷ୍ୟ କରୁଛନ୍ତି, ସେତେବେଳେ ଏହା ନିଃସନ୍ଦେହ ଯେ ସେମାନଙ୍କର ସେହି କାର୍ଯ୍ୟ ଯୋଗୁଁ ସେମାନଙ୍କୁ ସୁଖସ୍ୱାଚ୍ଛନ୍ଦ୍ୟ ଦିଆଯିବ ନାହିଁ ବରଂ ଶାସ୍ତି ଦିଆଯିବ ।

୬. ଅର୍ଥାତ୍ ମନଶ୍ଚକ୍ଷୁ, ଯାହା ମାଧ୍ୟମରେ ସେ ସତ୍ୟକୁ ବୁଝିପାରେ ।

୭. ଅର୍ଥାତ୍ ନିଜ ଜିଭ ଓ ଓଠ ସେହି ସନ୍ଦେହବୃତ୍ତିକୁ ପ୍ରକାଶ କରୁ ତଥା ନିଜ ମନକୁ ପବିତ୍ର କରୁ ।

୧୧. ଏବଂ ଆମେ ତାହାକୁ (ସତ୍‌ପଥ ଓ ଅସତ୍‌ପଥ) ଉଭୟ ପଥ ମଧ୍ୟ ଦେଖାଇ ଦେଇଛୁ[୧]।

وَهَدَيْنٰهُ النَّجْدَيْنِ ⑪

୧୨. (କିନ୍ତୁ) ଏହା ସତ୍ତ୍ୱେ ସେ ଶିଖରରେ ପହଞ୍ଚିଲା ନାହିଁ[୨]।

فَلَا اقْتَحَمَ الْعَقَبَةَ ⑫

୧୩. ଶିଖର କ'ଣ (ତଥା କେଉଁ ବସ୍ତୁର ନାମ), ଏହା ତୁମକୁ କିଏ ଜଣାଇଛି ?

وَمَآ اَدْرٰىكَ مَا الْعَقَبَةُ ⑬

୧୪. (ଶିଖରରେ ପହଞ୍ଚିବା ଅର୍ଥ କ୍ରୀତଦାସକୁ) ମୁକ୍ତି ପ୍ରଦାନ କରିବା

فَكُّ رَقَبَةٍ ⑭

୧୫. ଏବଂ କ୍ଷୁଧା (ପ୍ରପୀଡ଼ିତ) କାଳରେ ଭୋଜନ କରାଇବା

اَوْ اِطْعٰمٌ فِيْ يَوْمٍ ذِيْ مَسْغَبَةٍ ⑮

୧୬. ଏବଂ ନିକଟ ସମ୍ପର୍କୀୟ[୩] ଅନାଥକୁ,

يَّتِيْمًا ذَا مَقْرَبَةٍ ⑯

୧୭. ଅଥବା ଭୂଲୁଣ୍ଠିତ[୪] ଦରିଦ୍ରକୁ ।

اَوْ مِسْكِيْنًا ذَا مَتْرَبَةٍ ⑰

୧୮. ପୁନଶ୍ଚ (ଶିଖରରେ ପହଞ୍ଚିବା ଅର୍ଥ ଏହି କାର୍ଯ୍ୟଗୁଡ଼ିକ ବ୍ୟତୀତ) ସେ ସେହି ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ହୋଇଯାଆନ୍ତା , ଯେଉଁମାନେ ବିଶ୍ୱାସ କରିଛନ୍ତି ଓ (ଯେଉଁମାନେ) ପରସ୍ପର ପ୍ରତି ଧୈର୍ଯ୍ୟଶୀଳତାର ଉପଦେଶ ଦେଇଛନ୍ତି ଓ ପରସ୍ପର ପ୍ରତି ଦୟା ପ୍ରଦର୍ଶନ କରିବାର ଉପଦେଶ ଦେଇଛନ୍ତି[୫]।

ثُمَّ كَانَ مِنَ الَّذِيْنَ اٰمَنُوْا وَتَوَاصَوْا بِالصَّبْرِ وَتَوَاصَوْا بِالْمَرْحَمَةِ ⑱

---

୧. ସତ୍‌ପଥ କ'ଣ ଏବଂ ଅସତ୍ ପଥ କ'ଣ ସେ ବିଷୟରେ ପବିତ୍ର କୋରାନରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଇଛି । ଏହାପରେ ଯଦି କୌଣସି ବ୍ୟକ୍ତି ପଥଭ୍ରଷ୍ଟ ହୁଏ ତେବେ ଜଣାଯିବ ଯେ ଏଥିରେ ତା ନିଜର ଦୋଷ ଅଛି, କାରଣ ଅଲ୍ଲାହ ତାହାକୁ ମନଶ୍ଚକ୍ଷୁ ମଧ୍ୟ ପ୍ରଦାନ କରିଛନ୍ତି । ଯଦି ସେ ଚକ୍ଷୁ ଦ୍ୱାରା କିଛି ଦେଖିବାକୁ ସମର୍ଥ ନ ହୁଏ ତେବେ ନିଜ ଜିଭ ଓ ଓଠକୁ ପଚାରି ନିଜର ସନ୍ଦେହ ମୋଚନ କରିପାରେ । ଏହି ରୂପେ ତାର ସମସ୍ତ ଓଜରଆପତ୍ତିର ଉତ୍ତର ଦିଆଯାଇଛି ଏବଂ ପବିତ୍ର ବାଣୀ ମାଧ୍ୟମରେ ସତ୍ ଓ ଅସତ୍ ମଧ୍ୟରେ ଥିବା ପାର୍ଥକ୍ୟକୁ ଦେଖାଇ ଦିଆଯାଇଛି । ସେହିପରି ଦିବ୍ୟବାଣୀର ମହତ୍ତ୍ୱ ବୁଝିବା ପାଇଁ ତାକୁ ଆଧ୍ୟାତ୍ମିକ ଚକ୍ଷୁ ପ୍ରଦାନ କରାଯାଇଛି । ଅଲ୍ଲାହ ମନୁଷ୍ୟକୁ ଜିଭ ଦେଇଛନ୍ତି ଓ ଉପଦେଷ୍ଟା ମଧ୍ୟ ଦେଇଛନ୍ତି ଏବଂ ତଦ୍ଦ୍ୱାରା ତାକୁ ସମର୍ଥ ମଧ୍ୟ କରିଛନ୍ତି ଯେ ଯଦି ଦିବ୍ୟବାଣୀର କୌଣସି ଅଂଶକୁ ସେ ବୁଝିବାକୁ ଅସମର୍ଥ ହେବ ତେବେ ସେ ଅନ୍ୟମାନଙ୍କୁ ପଚାରି ତା'ର ମର୍ମ ବୁଝିବ ।

୨. ଅର୍ଥାତ୍ ଏତେ ଅଧିକ ଉତ୍ତମ ସାମଗ୍ରୀ ଥିବା ସତ୍ତ୍ୱେ, ଅବିଶ୍ୱାସକାରୀ ଉନ୍ନତିର ଶିଖର ଦେଶରେ ପହଞ୍ଚି ପାରିଲା ନାହିଁ ବରଂ ବିଭ୍ରାନ୍ତିର ଗହ୍ୱର ମଧ୍ୟରେ ନିକ୍ଷିପ୍ତ ହେଲା ।

୩. ଅର୍ଥାତ୍ ଯେତେବେଳେ ମନୁଷ୍ୟ ଏହି ସଂସାରରୁ ଦାସତ୍ୱ ଲୋପ କରିବାକୁ, ଦାରିଦ୍ର୍ୟ ଦୂର କରିବାକୁ ଏବଂ ଅନାଥ ଓ ଅସହାୟଙ୍କ ପାଇଁ ସୁବ୍ୟବସ୍ଥା କରିବାକୁ ସମର୍ଥ ହେବ, ସେତେବେଳେ ତାକୁ ଆଧ୍ୟାତ୍ମିକ ଉନ୍ନତି ପ୍ରାପ୍ତ ହେବ ।

୪. ଅର୍ଥାତ୍ ଏପରି ଅସହାୟ ଓ ଦରିଦ୍ର ବ୍ୟକ୍ତି, ଯାହାର କେହି ସହାୟକ ନଥିବେ । ଯଦି ତା'ର କେହି ମିତ୍ର ଥିବେ, ତେବେ ସେ ପଡ଼ିଗଲେ ସେହି ମିତ୍ର ତାକୁ ଧରି ଉଠାଇ ଦେବେ । ତେଣୁ ନିଃସହାୟ ଦରିଦ୍ର ବ୍ୟକ୍ତିକୁ ସାହାଯ୍ୟ କରିବା ମୁସଲମାନମାନଙ୍କର ପରମ କର୍ତ୍ତବ୍ୟ ।

୫. ଶିଖର ଦେଶରେ ପହଞ୍ଚିବା ସମ୍ବନ୍ଧରେ ପୂର୍ବରୁ କିଛି ବ୍ୟାଖ୍ୟା କରାଯାଇଛି । ଏଠାରେ ସେହି ବ୍ୟାଖ୍ୟାକୁ ଆଉ କିଛି ବୃଦ୍ଧି କରାଯାଇଛି, ଅର୍ଥାତ୍ ଯେପର୍ଯ୍ୟନ୍ତ ମନୁଷ୍ୟ ଧର୍ମରେ ଆସ୍ଥା ସ୍ଥାପନ ନ କରିଛି– ଏପରିକି କେବଳ ନିଜର ଧର୍ମ ବିଶ୍ୱାସ ଉପରେ ସନ୍ତୁଷ୍ଟ ରହିଲେ ଯଥେଷ୍ଟ ହେବ ନାହିଁ ବରଂ ଅନ୍ୟମାନଙ୍କୁ ସେଥିରେ ବିଶ୍ୱାସ କରିବାକୁ ଓ ଉତ୍ତମ କାର୍ଯ୍ୟ ସଂପାଦନ କରିବାକୁ ଅନୁପ୍ରାଣିତ ନ କରିଛି– ସେ ପର୍ଯ୍ୟନ୍ତ କେବଳ ପୁଣ୍ୟ କର୍ମ ଲାଭଦାୟକ ହେବ ନାହିଁ ।

୧୯. ଏହି (ଲୋକ) ମାନେ କଲ୍ୟାଣୀୟ ହେବେ ।

أُولَٰئِكَ أَصْحَابُ الْمَيْمَنَةِ ⑲

୨୦. ଏବଂ ଯେଉଁମାନେ ଆମର ନିଦର୍ଶନଗୁଡିକ ପ୍ରତି ଅବିଶ୍ୱାସ କରିଛନ୍ତି, ସେମାନେ ଅମଙ୍ଗଳସୂଚକ ହେବେ ।

وَالَّذِينَ كَفَرُوا بِآيَاتِنَا هُمْ أَصْحَابُ الْمَشْأَمَةِ ⑳

୨୧. ସେମାନଙ୍କ ପ୍ରତି ଭାଡି ନିଆଁ (ଶାସ୍ତି) ଅବତୀର୍ଣ୍ଣ ହେବ ।

عَلَيْهِمْ نَارٌ مُؤْصَدَةٌ ㉑





# ଅଲ – ଶମସ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୧୬ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللَّهِ الرَّحْمَٰنِ الرَّحِيمِ ①

୨. ଆମେ ସୂର୍ଯ୍ୟକୁ [୧] ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ ଏବଂ 'ଜୁହା' ସମୟକୁ ଯେତେବେଳେ ତାହା ଉଦିତ ହେବା ପରେ (କିଞ୍ଚିତ ଉର୍ଦ୍ଧ୍ୱଗାମୀ ହୋଇ) ଦୀପ୍ତିମାନ୍ ହୁଏ,

وَالشَّمْسِ وَضُحَاهَا ②

୩. ଏବଂ ଚନ୍ଦ୍ରକୁ, ଯେତେବେଳେ ତାହା ସୂର୍ଯ୍ୟର ଅନୁସରଣ କରେ, [୨]

وَالْقَمَرِ إِذَا تَلَاهَا ③

୪. ଏବଂ ଦିନକୁ [୩] (ମଧ୍ୟ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ), ଯେତେବେଳେ ଏହା ତାହାକୁ (ଅର୍ଥାତ୍ ସୂର୍ଯ୍ୟକୁ) ପ୍ରକାଶିତ କରିଥାଏ,

وَالنَّهَارِ إِذَا جَلَّاهَا ④

---

୧. ଅର୍ଥାତ୍ ହଜରତ ମହମ୍ମଦଙ୍କୁ ଇସଲାମର ସତ୍ୟତା ସାବ୍ୟସ୍ତ କରିବା ପାଇଁ ଏଠାରେ ସାକ୍ଷୀ ଭାବରେ ପେଶ କରାଯାଇଛି କାରଣ ସେ ଆବିର୍ଭାବ ହେବା ପରେ ଏକ ସାଧାରଣ ଅବସ୍ଥାରୁ ଅସାଧାରଣ ଓ ମର୍ଯ୍ୟାଦାସଂପନ୍ନ ଅବସ୍ଥାରେ ଉପନୀତ ହେବେ ଏବଂ ସଂସାର ସମକ୍ଷରେ ଏକ ଚିରନ୍ତନ ଗ୍ରନ୍ଥକୁ ଉପସ୍ଥାପନ କରି ନିଜକୁ ସୂର୍ଯ୍ୟ ବୋଲି ପ୍ରମାଣିତ କରିବେ ।

୨. ଅଲ୍ଲାହ କହୁଛନ୍ତି ଯେ ସେ ସେହିସବୁ ଯୁଗ-ପୁରୁଷ ଓ ସଂସ୍କାରକମାନଙ୍କୁ ହଜରତ ମହମ୍ମଦଙ୍କ ସତ୍ୟତା ସାବ୍ୟସ୍ତ କରିବା ସକାଶେ ଉପସ୍ଥାପନ କରୁଛନ୍ତି, ଯେଉଁମାନେ କି ତାଙ୍କ ପରେ ଆବିର୍ଭାବ ଲଭିବେ । ସେମାନେ ଯାହା କିଛି ଲାଭ କରିବେ, ସେସବୁ କେବଳ ହଜରତ ମହମ୍ମଦଙ୍କୁ ଅନୁସରଣ କରିଥିବା ହେତୁ ଓ ତାହାଙ୍କର ଅଧୀନସ୍ଥ ହୋଇଥିବା ଯୋଗୁଁ ସମ୍ଭବ ହେବ ।

୩. ଏଠାରେ ଦିନକୁ ପ୍ରମାଣ ସ୍ୱରୂପ ଉପସ୍ଥାପନ କରାଯାଇଛି । ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେତେବେଳେ ଇସଲାମର ଉନ୍ନତି କାଳ ଉପନୀତ ହେବ, ଯାହା କି ଦିନ ସହିତ ତୁଳନୀୟ, ସେତେବେଳେ ହଜରତ ମହମ୍ମଦଙ୍କ ଚରିତ୍ର କ୍ରମଶଃ ପ୍ରକାଶିତ ହେଉଥିବ ।

وَالَّيْلِ إِذَا يَغْشٰهَا ﴿٥﴾

୫. ଏବଂ ରାତିକୁ [୧] ମଧ୍ୟ (ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ) ଯେତେବେଳେ ଏହା ତାହାର (ଅର୍ଥାତ୍ ସୂର୍ଯ୍ୟର) ରଶ୍ମିକୁ ଦୃଷ୍ଟି ଆଢୁଆଳକୁ ନେଇଯାଏ,

وَالسَّمَآءِ وَمَا بَنٰهَا ﴿٦﴾

୬. ଏବଂ ଆକାଶକୁ [୨] ଓ ତାହାର ଗଠନକୁ,

وَالْأَرْضِ وَمَا طَحٰهَا ﴿٧﴾

୭. ଏବଂ ଭୂପୃଷ୍ଠକୁ ଓ ତାହାର ବିସ୍ତୃତିକୁ ମଧ୍ୟ (ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ),

وَنَفْسٍ وَّمَا سَوّٰىهَا ﴿٨﴾

୮. ଏବଂ ମନୁଷ୍ୟର ଆତ୍ମାକୁ ମଧ୍ୟ, ଏବଂ ତାହାର ଦୋଷଶୂନ୍ୟ ଗଠନକୁ ମଧ୍ୟ [୩] (ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ ଯେ),

فَأَلْهَمَهَا فُجُوْرَهَا وَتَقْوٰىهَا ﴿٩﴾

୯. ସେ (ଅଲ୍ଲାହ) ତାହା (ଅର୍ଥାତ୍ ଆତ୍ମା) ପାଇଁ ତାହାର କୁକର୍ମ (ର ପଥକୁ) ତଥା ତାହାର ଧର୍ମଭୀରୁତା (ର ପଥ) କୁ ଭଲ ଭାବରେ ଉନ୍ମୁକ୍ତ କରି ଦେଇଛନ୍ତି,

قَدْ أَفْلَحَ مَنْ زَكّٰىهَا ﴿١٠﴾

୧୦. ସୁତରାଂ ଯେ ତାହାକୁ (ଅର୍ଥାତ୍ ସେହି ଆତ୍ମାକୁ) ପବିତ୍ର କରେ (ଜାଣି ନିଅ ଯେ) ସେ ନିଜର ଲକ୍ଷ୍ୟ ହାସଲ କରେ,

وَقَدْ خَابَ مَنْ دَسّٰىهَا ﴿١١﴾

୧୧. ଏବଂ ଯେ ତାହାକୁ (ମାଟିରେ) ପୋତି ପକାଏ (ଜାଣିନିଅ ଯେ) ସେ ଧ୍ୱଂସ ହୁଏ ।

كَذَّبَتْ ثَمُوْدُ بِطَغْوٰىهَآ ﴿١٢﴾

୧୨. ସମୁଦ (ସମ୍ପ୍ରଦାୟ) ନିଜର ସୀମାତୀତ ଔଦ୍ଧତ୍ୟ ଯୋଗୁଁ (ତତ୍କାଳୀନ ରସୁଲଙ୍କୁ) ମିଥ୍ୟାବାଦୀ ମନେ କରିଥିଲା ।

إِذِ انْبَعَثَ أَشْقٰىهَا ﴿١٣﴾

୧୩. ସେହି ସମୟରେ, ଯେତେବେଳେ କି ତାହାଙ୍କ ସମ୍ପ୍ରଦାୟର ସବୁଠାରୁ ଅଧିକ ହତଭାଗ୍ୟ ବ୍ୟକ୍ତି ତାହାଙ୍କର (ଅର୍ଥାତ୍ ତତ୍କାଳୀନ ରସୁଲଙ୍କର) ବିରୁଦ୍ଧାଚରଣ କରିବାକୁ ଆଗଭର ହୋଇଥିଲା,

---

୧. ଅର୍ଥାତ୍ ସେହି ସମୟକୁ, ଯେତେବେଳେ କି ସଂସାରରେ ଅଧର୍ମ ଓ ଅନ୍ଧକାର ବ୍ୟାପିଯିବ । ସେତେବେଳେ ହଜରତ ମହମ୍ମଦଙ୍କ ଜ୍ୟୋତି ସଂସାରବାସୀଙ୍କୁ ଆଉ ଦେଖା ଯିବ ନାହିଁ ।

୨. ଏହି ଆୟତରେ ଦର୍ଶାଯାଇଛି ଯେ ଇସଲାମର ବାହ୍ୟ ଉନ୍ନତି ହଜରତ ମହମ୍ମଦଙ୍କ ଜ୍ୟୋତିକୁ ନିଃସନ୍ଦେହରେ ପ୍ରକଟିତ କରିବ ଓ ଇସଲାମର ଅବନତି ତାହାଙ୍କର ଜ୍ୟୋତିକୁ ଲୋକମାନଙ୍କ ଦୃଷ୍ଟିରୁ ଲୁକ୍କାୟିତ ରଖିବ । କିନ୍ତୁ ଆକାଶର ସ୍ଥିତି ଓ ତାହାର ନିର୍ମାଣରେ ଥିବା ରହସ୍ୟ ଅବଶ୍ୟ ଜଣାଇଦେବ ଯେ ସତ୍ୟ ସର୍ବଦା ବିଜୟୀ ହେବ— ଇହଲୋକରେ ହେଉ କି ପରଲୋକରେ । ତେଣୁ ସାମୟିକ ବିଜୟରେ ଆନନ୍ଦିତ ହେବା ଉଚିତ ନୁହେଁ କି ଅସ୍ଥାୟୀ ପ୍ରତିବନ୍ଧକ ଯୋଗୁଁ ବ୍ୟସ୍ତ ହେବା ଉଚିତ ନୁହେଁ ।

୩. ଏଠାରେ ସୂଚାଯାଇଛି ଯେ ଅଲ୍ଲାହ ମାନବର ସ୍ୱଭାବକୁ ପବିତ୍ର କରି ଗଢ଼ିଛନ୍ତି । ତେଣୁ ସାରା ସଂସାର ବା ସଂସାରର କିଛି ଅଂଶ ସତ୍ପଥ ପ୍ରାପ୍ତିରୁ ବଞ୍ଚିତ ହେବା ଅସମ୍ଭବ । ଯଦିଚ ସମଗ୍ର ବିଶ୍ୱ କିଛି କାଳ ପାଇଁ ସତ୍ପଥଗାମୀ ହେବ ତଥାପି ମାନବ ସମାଜର ଏକ ଅଂଶ ନିଶ୍ଚୟ ସବୁଦିନ ପାଇଁ ସତ୍ପଥଗାମୀ ହେବ, ଯେପରି ହଜରତ ମହମ୍ମଦ ଓ ତାହାଙ୍କର କେତେକ ବିଶିଷ୍ଟ ଅନୁଗାମୀ ହୋଇଥିଲେ ।

୧୪. ସେତେବେଳେ ସେ (ସମୁଦ ସମ୍ପ୍ରଦାୟର ଲୋକ) ମାନଙ୍କୁ ଅଲ୍ଲାହଙ୍କର ରସୁଲ (ସ୍ୱାଲେହ) କହିଥିଲେ, "ଅଲ୍ଲାହଙ୍କ ପାଇଁ ଉତ୍ସର୍ଗ କରାଯାଇଥିବା ମାଈ ଓଟଠାରୁ ଦୂରେଇ ରହ, ଏବଂ ସେହିପରି ଭାବରେ ତାହାର ଜଳପାନ ସଂକ୍ରାନ୍ତରେ ମଧ୍ୟ ପ୍ରତ୍ୟେକ ପ୍ରକାର ଔଦ୍ଧତ୍ୟରୁ ଦୂରେଇ ରହ ।"

فَقَالَ لَهُمْ رَسُوْلُ اللّٰهِ نَاقَةَ اللّٰهِ وَسُقْيٰهَا ⑭

୧୫. କିନ୍ତୁ ସେମାନେ ତାହାଙ୍କ କଥା ମାନିଲେ ନାହିଁ, ବରଂ ତାହାଙ୍କୁ ପ୍ରତ୍ୟାଖ୍ୟାନ କରିଥିଲେ, ଏବଂ ସେହି ମାଈ ଓଟର ଗୋଡ଼ି କାଟିଦେଲେ; (ଯାହାଠାରୁ ଦୂରେଇ ରହିବାକୁ ସେମାନଙ୍କୁ ଆଦେଶ ଦିଆଯାଇଥିଲା) ଫଳରେ ଅଲ୍ଲାହ ସେମାନଙ୍କୁ ଧୂଳିସାତ୍ କରିଦେବାକୁ ନିଷ୍ପତ୍ତି କରିଥିଲେ, ଏବଂ ଏପରି ଉପାୟ କରିଥିଲେ ଯେ ତାହା ହିଁ ଘଟିଲା ।

فَكَذَّبُوْهُ فَعَقَرُوْهَا فَدَمْدَمَ عَلَيْهِمْ رَبُّهُمْ بِذَنْۢبِهِمْ فَسَوّٰىهَا ⑮

୧୬. ଏବଂ ସେ (ସେହିପରି ଭାବରେ) ସେ (ମକ୍କାବାସୀ) ମାନଙ୍କ ପରିଣାମକୁ ମଧ୍ୟ ଖାତିର କରିବେ ନାହିଁ ।

وَلَا يَخَافُ عُقْبٰهَا ⑯




ଭାଗ ୩୦

## ଅଲ—ଲଏଲ

ଅଧ୍ୟାୟ ୯୨

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୨୨ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ଆମେ ରାତ୍ରିକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ ଯେତେବେଳେ ତାହା ଆବୃତ [1] କରିଥାଏ ।

وَالَّيْلِ اِذَا يَغْشٰى ②

୩. ଏବଂ ଦିବସକୁ [2] ମଧ୍ୟ (ଆମେ ପ୍ରମାଣ ସ୍ୱରୂପ ପେଶ କରୁଅଛୁ) ଯେତେବେଳେ ତାହା ଅତ୍ୟନ୍ତ ଆଲୋକିତ ହୋଇଥାଏ,

وَالنَّهَارِ اِذَا تَجَلّٰى ③

---

୧. ଅର୍ଥାତ୍ ଯେତେବେଳେ ଧର୍ମଗତ ଅନ୍ଧକାର ସଂସାରକୁ ଆଚ୍ଛନ୍ନ କରିଥିବ, ସେତେବେଳେ ଯଦି କେହି ଯତ୍ନ ସହକାରେ ଲକ୍ଷ୍ୟ କରିବ ତାହାହେଲେ ସେ ଜାଣି ପାରିବ ଯେ ସେହି ସମୟରେ କୌଣସି ସଂସ୍କାରକ ବା ଯୁଗପୁରୁଷ ପୃଥିବୀରେ ନ ଥିବେ ।

୨. ଅର୍ଥାତ୍ ଯେବେ ବି ସଂସାରରେ ସଦାଚାର ଓ ପୁଣ୍ୟର ସମୟ ଉପନୀତ ହୁଏ ତେବେ ଚିନ୍ତା କଲେ ଜାଣି ହେବ ଯେ ଉପସ୍ଥିତ ଯୁଗର ସଂସ୍କାରକମାନଙ୍କ ପ୍ରଚେଷ୍ଟା ଫଳରେ ଲୋକମାନଙ୍କ ଅନ୍ତରରେ ଇସଲାମର ଜ୍ୟୋତି ପ୍ରବିଷ୍ଟ ହୋଇଛି ।

| | |
|---|---|
| ୪. ଏବଂ ପୁରୁଷ ଓ ନାରୀର [୧] ସୃଷ୍ଟିକୁ ମଧ୍ୟ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ, | وَمَا خَلَقَ الذَّكَرَ وَالْأُنْثَىٰ ۝٣ |
| ୫. ତୁମମାନଙ୍କ [୨] ପ୍ରଚେଷ୍ଟା ବାସ୍ତବରେ ବହୁବିଧ । | إِنَّ سَعْيَكُمْ لَشَتَّىٰ ۝٤ |
| ୬. ସୁତରାଂ ଯେ (ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ବ୍ୟୟ କରିଅଛି ଓ ଧର୍ମଭୀରୁତା ଅବଲମ୍ବନ କରିଅଛି, | فَأَمَّا مَنْ أَعْطَىٰ وَاتَّقَىٰ ۝٥ |
| ୭. ଏବଂ ସତ୍‌କଥାକୁ ସମର୍ଥନ କରିଅଛି, | وَصَدَّقَ بِالْحُسْنَىٰ ۝٦ |
| ୮. ତାହାପାଇଁ ଆମେ ନିଶ୍ଚୟ ସହଜ ପନ୍ଥାର ବ୍ୟବସ୍ଥା କରିଦେବୁ । | فَسَنُيَسِّرُهُ لِلْيُسْرَىٰ ۝٧ |
| ୯. ଏବଂ ଯେ (ବ୍ୟକ୍ତି) କୃପଣତା ସହକାରେ କାର୍ଯ୍ୟ କରିଅଛି ଏବଂ ବେଖାତିର ମନୋଭାବର ପରିପ୍ରକାଶ କରିଅଛି, | وَأَمَّا مَنْ بَخِلَ وَاسْتَغْنَىٰ ۝٨ |
| ୧୦. ଏବଂ ସତ୍‌କଥାକୁ ମିଥ୍ୟା ମନେ କରିଅଛି, | وَكَذَّبَ بِالْحُسْنَىٰ ۝٩ |
| ୧୧. ତାହାକୁ ଆମେ ପୀଡା (ସାମଗ୍ରୀ) ଯୋଗାଇଦେବୁ । | فَسَنُيَسِّرُهُ لِلْعُسْرَىٰ ۝١٠ |
| ୧୨. ଏବଂ ଯେତେବେଳେ ସେ ଧ୍ୱଂସ ହେବ ସେତେବେଳେ ତାହାର ଧନ ସମ୍ପତ୍ତି ତା ପାଇଁ ଲାଭଦାୟକ ହେବ ନାହିଁ । | وَمَا يُغْنِي عَنْهُ مَالُهُ إِذَا تَرَدَّىٰ ۝١١ |
| ୧୩. ସତପଥ ପ୍ରଦର୍ଶନ ବାସ୍ତବରେ ଆମର ଦାୟିତ୍ୱ; | إِنَّ عَلَيْنَا لَلْهُدَىٰ ۝١٢ |
| ୧୪. ଏବଂ ପ୍ରତ୍ୟେକ ବିଷୟର ଅନ୍ତ ଓ ଆରମ୍ଭ ମଧ୍ୟ ବାସ୍ତବରେ ଆମର ଆୟତ୍ତାଧୀନ । | وَإِنَّ لَنَا لَلْآخِرَةَ وَالْأُولَىٰ ۝١٣ |
| ୧୫. ସୁତରାଂ (ମନେରଖ !) ଆମେ ତୁମମାନଙ୍କୁ ଏକ ଜ୍ୱଳନ୍ତ ଅଗ୍ନି (ର ଶାସ୍ତି) ବିଷୟରେ ସାବଧାନ କରାଇ ଦେଇଅଛୁ । | فَأَنْذَرْتُكُمْ نَارًا تَلَظَّىٰ ۝١٤ |
| ୧୬. ନିତାନ୍ତ ହତଭାଗ୍ୟ ବ୍ୟକ୍ତିକୁ ଛାଡି ଅନ୍ୟ କେହି ସେଥିରେ ପ୍ରବେଶ କରିବ ନାହିଁ । | لَا يَصْلَاهَا إِلَّا الْأَشْقَى ۝١٥ |
| ୧୭. (ସେଭଳି ହତଭାଗ୍ୟ) ଯେ କି (ସତ୍ୟକୁ) ମିଥ୍ୟା ମନେ କରିଅଛି ଏବଂ (ସତ୍ୟଠାରୁ) ବିମୁଖ ହୋଇଛି । | الَّذِي كَذَّبَ وَتَوَلَّىٰ ۝١٦ |
| ୧୮. ଏବଂ ଯେ ଅତ୍ୟନ୍ତ ଧର୍ମଭୀରୁ ହେବ, ତାହାକୁ ନିଶ୍ଚୟ ସେଠାରୁ ଦୂରେଇ ରଖାହେବ, | وَسَيُجَنَّبُهَا الْأَتْقَى ۝١٧ |

୧. ଅର୍ଥାତ୍ ମାନବ ସମାଜରେ ଏପରି କେତେକ ଲୋକ ଅଛନ୍ତି ଯେଉଁମାନେ ଲୋକମାନଙ୍କୁ ସତ୍‌ମାର୍ଗରେ ପରିଚାଳିତ ହେବା ପାଇଁ ଉପଦେଶ ଦେଉଛନ୍ତି ଏବଂ ଅନ୍ୟ କେତେକ ଅଛନ୍ତି ଯେଉଁମାନେ ପୂର୍ବୋକ୍ତ ଲୋକମାନଙ୍କ ପ୍ରଚାର ଦ୍ୱାରା ସତ୍‌ପଥ ପ୍ରାପ୍ତ ହୁଅନ୍ତି ।

୨. ଅର୍ଥାତ୍ ବିଶ୍ୱାସକାରୀ ଓ ଅବିଶ୍ୱାସକାରୀଙ୍କର ଚେଷ୍ଟା । ଜଣେ ସତ୍‌ପଥ ପାଇଁ ଚେଷ୍ଟା କରୁଥିଲା ବେଳେ ଅନ୍ୟ ଜଣେ ବିଭ୍ରାନ୍ତି ମଧ୍ୟରେ ଗତି କରୁଥାଏ ।

| | |
|---|---|
| ୧୯. (ସେ ଭଳି ଧର୍ମଭୀରୁ) ଯେ ନିଜର ଧନ ସମ୍ପତ୍ତିକୁ ପବିତ୍ରତା ଲାଭ କରିବା ନିମନ୍ତେ (ଅଲ୍ଲାହଙ୍କ ଉଦ୍ଦେଶ୍ୟରେ) ଦାନ କରେ । | ٱلَّذِى يُؤْتِى مَالَهُۥ يَتَزَكَّىٰ ١٨ |
| ୨୦. ଏବଂ କୌଣସି ଲୋକର ତାହା ପ୍ରତି କୌଣସି ଅନୁଗ୍ରହ ନ ଥାଏ, ଯାହାକୁ କି ସେ ପରିଶୋଧ କରିବାକୁ ଚିନ୍ତା କରିବ । | وَمَا لِأَحَدٍ عِندَهُۥ مِن نِّعْمَةٍ تُجْزَىٰٓ ١٩ |
| ୨୧. ଅବଶ୍ୟ ନିଜର ଅତି ମହାନ୍ ପାଳନକର୍ତ୍ତାଙ୍କ ସନ୍ତୋଷ ଲାଭ କରିବା (ତାହାର ଲକ୍ଷ୍ୟ ହୋଇଥାଏ) । | إِلَّا ٱبْتِغَآءَ وَجْهِ رَبِّهِ ٱلْأَعْلَىٰ ٢٠ |
| ୨୨. ଏବଂ ସେ (ଅଲ୍ଲାହ) ନିଶ୍ଚୟ ତାହା ପ୍ରତି ସନ୍ତୁଷ୍ଟ ହେବେ । | وَلَسَوْفَ يَرْضَىٰ ٢١ |






## ଅଲ — ଦ୍ଦୁହା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୧୨ ଟି ଆୟତ ଅଛି ।)

| | |
|---|---|
| ୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) । | بِسْمِ ٱللَّهِ ٱلرَّحْمَٰنِ ٱلرَّحِيمِ ١ |
| ୨. ଆମେ ଦିବସକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ ଯେତେବେଳେ ତାହା ଆଲୋକମୟ ହୋଇଯାଏ,[1] | وَٱلضُّحَىٰ ٢ |
| ୩. ଏବଂ ରାତ୍ରିକୁ (ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ) ଯେତେବେଳେ ତାହାର ଅନ୍ଧକାର ଚତୁର୍ଦ୍ଦିଗକୁ ସମ୍ପ୍ରସାରିତ ହୋଇଯାଏ. | وَٱلَّيْلِ إِذَا سَجَىٰ ٣ |
| ୪. ତୁମ ପାଳନକର୍ତ୍ତା ତୁମକୁ ପରିତ୍ୟାଗ[2] କରି ନାହାନ୍ତି କି ତୁମ ଉପରେ ଅସନ୍ତୁଷ୍ଟ ହୋଇ ନାହାନ୍ତି । | مَا وَدَّعَكَ رَبُّكَ وَمَا قَلَىٰ ٤ |

---

୧. ଅର୍ଥାତ୍ ଇସଲାମ ଧର୍ମର ବିକାଶ ସହିତ ହଜରତ ମହମ୍ମଦଙ୍କର ସତ୍ୟତା ପ୍ରକଟିତ ହେଉଥିବ ।

୨. ଅର୍ଥାତ୍ ଯେବେ ଧର୍ମ ବ୍ୟାପାରରେ ଏକ ଦୀର୍ଘ ସମୟ ପର୍ଯ୍ୟନ୍ତ ଦୁର୍ବଳତା ଦେଖାଦେବ, ତେବେ ଏହା ପ୍ରମାଣିତ ହୋଇଯିବ ଯେ ହଜରତ ମହମ୍ମଦଙ୍କ ଜ୍ୟୋତିର ବିକିରଣ ହେବାରେ କିଛି ବାଧା ଘଟୁଛି । ଫଳରେ ସଂସାର ସେହି ଜ୍ୟୋତି ଦ୍ୱାରା ସମ୍ପୂର୍ଣ୍ଣ ଲାଭବାନ୍ ହେଉ ନାହିଁ ।

وَلَلْاٰخِرَةُ خَيْرٌ لَّكَ مِنَ الْاُوْلٰى ٥

୫. ଏବଂ (ଲକ୍ଷ୍ୟକର ଯେ) ତୁମର ପ୍ରତ୍ୟେକ ପରବର୍ତ୍ତୀ ସମୟ ପୂର୍ବବର୍ତ୍ତୀ (ସମୟ) ଅପେକ୍ଷା ଉତ୍କୃଷ୍ଟ ହେବ।[1]

وَلَسَوْفَ يُعْطِيْكَ رَبُّكَ فَتَرْضٰى ٦

୬. ଏବଂ ତୁମ ପାଳନକର୍ତ୍ତା ନିଶ୍ଚୟ ତୁମକୁ (ଏତେ ମାତ୍ରାରେ) ଦେବେ ଯଦ୍ୱାରା ତୁମେ ଆନନ୍ଦିତ ହୋଇଯିବ।[2]

اَلَمْ يَجِدْكَ يَتِيْمًا فَاٰوٰى ٧

୭. କ'ଣ (ଏହି ଜୀବଦଶାରେ ତୁମ ପ୍ରତି ତାହାଙ୍କର ବ୍ୟବହାର ଅସାଧାରଣ ନୁହେଁ ଏବଂ) ସେ ତୁମକୁ ଅନାଥ ପାଇ (ନିଜ ବାହୁ ଛାୟା ତଳେ) ଆଶ୍ରୟ ଦେଇ ନାହାନ୍ତି ?

وَوَجَدَكَ ضَآلًّا فَهَدٰى ٨

୮. ଏବଂ (ଯେତେବେଳେ) ସେ ତୁମକୁ (ନିଜ ଜାତି ପ୍ରେମରେ) ନିମଜ୍ଜିତ[3] ଥିବାର ଦେଖିଲେ ସେତେବେଳେ (ସେମାନଙ୍କ ସଂସ୍କାର ନିମନ୍ତେ) ତୁମକୁ ଉପଯୁକ୍ତ ମାର୍ଗ ପ୍ରଦର୍ଶନ କଲେ ।

وَوَجَدَكَ عَآئِلًا فَاَغْنٰى ٩

୯. ଏବଂ ଯେତେବେଳେ ସେ ତୁମକୁ ବହୁ କୁଟୁମ୍ବୀ (ଦେଖିବାକୁ) ପାଇଲେ, ସେତେବେଳେ ସେ (ନିଜ କୃପା ବଳରେ) ତୁମକୁ ଧନବାନ୍ କରିଦେଲେ ।

فَاَمَّا الْيَتِيْمَ فَلَا تَقْهَرْ ١٠

୧୦. ସୁତରାଂ (ସେହି ଅନୁଗ୍ରହ ହେତୁ) ତୁମେ ମଧ୍ୟ[4] ଅନାଥମାନଙ୍କ ଉନ୍ନତିରେ (ନିଜକୁ) ନିୟୋଜିତ କରୁଥାଅ ।

---

୧. ସଂସାର ଅନ୍ଧକାରାଚ୍ଛନ୍ନ ହୋଇଗଲେ ଏହା କୁହାଯାଇ ପାରିବ ନାହିଁ ଯେ ହଜରତ ମହମ୍ମଦ ମିଥ୍ୟାବାଦୀ, ବରଂ ଏହା ପ୍ରମାଣିତ ହେବ ଯେ ମାନବସମାଜ ଭ୍ରଷ୍ଟ ହୋଇଯାଇଛି । ସୁତରାଂ ସେହି ସମାଜର ସଂସ୍କାର ସକାଶେ ନୂତନ ସୂର୍ଯ୍ୟ ଉଦୟ ହେବା ଅବଶ୍ୟମ୍ଭାବୀ ଓ ସେହି ସୂର୍ଯ୍ୟ ମାଧ୍ୟମରେ ଇସଲାମର ଅବଶ୍ୟ ପୁନରୁତ୍ଥାନ ହେବ ।

୨. ଅର୍ଥାତ୍ ଯେବେ ବି ସଂସାରରେ କୌଣସି ଅମଙ୍ଗଳ ସୃଷ୍ଟି ହୁଏ, ଅଲ୍ଲାହ ହଜରତ ମହମ୍ମଦଙ୍କ ସମର୍ଥନ ସକାଶେ ଅନ୍ୟ ଲୋକଙ୍କୁ ଆଗକୁ ନେଇ ଆସନ୍ତି । ଏହି ପରମ୍ପରା କୟାମତ ପର୍ଯ୍ୟନ୍ତ ଅବ୍ୟାହତ ରହିବ । ଏହା ହିଁ ତାଙ୍କ ସତ୍ୟତାର ପ୍ରମାଣ ।

୩. କେତେକ ଭାଷ୍ୟକାରଙ୍କ ମତରେ ଏହି ଆୟତ ଅନ୍ତର୍ଗତ ଶବ୍ଦ 'ଦ୍ଵାଲନ୍'ର ଅର୍ଥ ହେଉଛି ଯେ ତୁମେ ପଥଭ୍ରଷ୍ଟ ଥିଲ, ଆମେ ତୁମକୁ ସତ୍ପଥ ଦେଖାଇଲୁ । କିନ୍ତୁ ଅଭିଧାନରୁ ଏହାର ଅର୍ଥ 'ପ୍ରେମରେ ମୁଗ୍ଧ ହୋଇଯିବା' (ମୁଫରାଦାତେ ରାଗିବ ଦ୍ରଷ୍ଟବ୍ୟ) । ଏହି ଅର୍ଥ ହଜରତ ମହମ୍ମଦଙ୍କ ଗୌରବ ଦୃଷ୍ଟିରୁ ଯଥାର୍ଥ । ତେଣୁ ହଜରତ ମହମ୍ମଦ ନିଜ ଜାତିର ଲୋକମାନଙ୍କୁ ସତ୍ପଥ ଦେଖାଇବାକୁ ଅତିଶୟ ଆଗ୍ରହାନ୍ୱିତ ଥିବାରୁ, ଅଲ୍ଲାହ ତାହାଙ୍କୁ ମାର୍ଗ ପ୍ରଦର୍ଶନ କରାଇଥିଲେ ଯେପରି କି ସେ ନିଜ ଜାତିର ଲୋକମାନଙ୍କୁ ସତ୍ପଥ ଦେଖାଇ ପାରିବେ ।

୪. ଅର୍ଥାତ୍ ସେମାନେ ନ ଭାବନ୍ତୁ ଯେ ସେମାନଙ୍କ ଭରଣ-ପୋଷଣ ଲୋକମାନଙ୍କ ଦାନରେ ହେଉଛି । ସେପରି ଭାବିଲେ, ସେମାନଙ୍କର ଉତ୍ସାହ ଓ ସାହସ ବିଲୀନ ହୋଇଯିବ । ତେଣୁ ଲୋକମାନେ ଅନାଥମାନଙ୍କର ଭରଣ-ପୋଷଣ ନିଜ ବନ୍ଧୁବାନ୍ଧବଙ୍କ ସଦୃଶ କରନ୍ତୁ, ଫଳରେ ସେମାନେ ଅଧିକ ଉତ୍ସାହିତ ହେବେ ଓ ସେମାନଙ୍କର ସାହସ ବଢ଼ିବ । ହଜରତ ମହମ୍ମଦଙ୍କ ସହିତ ଅନୁରୂପ ବ୍ୟବହାର କରାଯାଇଥିଲା । ଯଦ୍ୟପି ସେ ଅନାଥ ଥିଲେ ତଥାପି ତାହାଙ୍କ ପିତାମହ ଓ ପିତୃବ୍ୟ ତାଙ୍କୁ ନିଜ ପୁତ୍ରଠାରୁ ମଧ୍ୟ ଅଧିକ ଭଲ ବ୍ୟବହାର କରୁଥିଲେ । ସୁତରାଂ ଅଲ୍ଲାହ ନିର୍ଦ୍ଦେଶ ଦେଇଛନ୍ତି ଯେ ଲୋକମାନେ ଅନାଥମାନଙ୍କୁ ନିଜ ସମ୍ପର୍କୀୟଙ୍କ ସଦୃଶ ବ୍ୟବହାର କରନ୍ତୁ ଓ ସେମାନଙ୍କୁ ଆପଣାର ମନେ କରନ୍ତୁ, ତାହାହେଲେ ସେମାନେ ନିରୁତ୍ସାହିତ ହେବେ ନାହିଁ । ବରଂ ଅନ୍ୟ ପକ୍ଷରେ ସେମାନଙ୍କ ସାହସର ସ୍ତର ସର୍ବଦା ବୃଦ୍ଧି ଲାଭ କରୁଥିବ ।

| | |
|---|---|
| ୧୧. ଏବଂ ଭିକ୍ଷୁକକୁ ତୁମେ ଭର୍ତ୍ସନା କର ନାହିଁ । | وَاَمَّا السَّآئِلَ فَلَا تَنۡهَرۡ ⑩ |
| ୧୨. ଏବଂ ତୁମେ ନିଜ ପାଳନକର୍ତ୍ତାଙ୍କ ବଦାନ୍ୟତାକୁ ନିଶ୍ଚୟ ପରିପ୍ରକାଶ କରୁଥାଅ । | وَاَمَّا بِنِعۡمَةِ رَبِّكَ فَحَدِّثۡ ⑪ |



ଭାଗ ୩୦

## ଅଲ — ଇନଶୀରାହ

ଅଧ୍ୟାୟ ୯୪

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୯ ଟି ଆୟତ ଅଛି ।)

| | |
|---|---|
| ୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) । | بِسۡمِ اللّٰهِ الرَّحۡمٰنِ الرَّحِيۡمِ ① |
| ୨. କ'ଣ ଆମେ ତୁମ ସକାଶେ ତୁମ ବକ୍ଷକୁ ଉନ୍ମୁକ୍ତ କରିନାହୁଁ; | اَلَمۡ نَشۡرَحۡ لَكَ صَدۡرَكَ ② |
| ୩. ଏବଂ ତୁମର ଏହି ବୋଝକୁ ତୁମଠାରୁ ଓହ୍ଲାଇ ଦିଗି ଦେଇନାହୁଁ ; | وَوَضَعۡنَا عَنۡكَ وِزۡرَكَ ③ |
| ୪. ଏପରି ବୋଝ,[୨] ଯାହା ତୁମର ଅଣ୍ଟା ଭାଙ୍ଗି[୩] ପକାଉଥିଲା, ? | الَّذِىۡۤ اَنۡقَضَ ظَهۡرَكَ ④ |
| ୫. ଏବଂ ଆମେ ତୁମ ନାମକୁ ମଧ୍ୟ ସମୁନ୍ନତ କରିଅଛୁ । | وَرَفَعۡنَا لَكَ ذِكۡرَكَ ⑤ |
| ୬. ସୁତରାଂ (ମନେରଖ) ଏହି କଷ୍ଟ ସହିତ ଏକ ମହାନ୍ ସଫଳତା (ନିୟତ ଅଛି) | فَاِنَّ مَعَ الۡعُسۡرِ يُسۡرًا ⑥ |

---

୧. ରାଜତ୍ୱ ପ୍ରାପ୍ତି ପରେ, ନିଃସନ୍ଦେହରେ ତାଙ୍କୁ ବହୁ ସାଂସାରିକ ସୁଖ ସମ୍ପଦ ମିଳିଥିଲା । ତେଣୁ ସେ ମୁସଲମାନ ପ୍ରଜାମାନଙ୍କୁ ସହାୟତା ପ୍ରଦାନ କରି ସେମାନଙ୍କୁ ଏହି ସୁଖସମ୍ପଦରେ ଅଂଶୀଦାର କରିଥିଲେ । କିନ୍ତୁ ଏଠାରେ ବିଶେଷ ଭାବରେ ବର୍ଣ୍ଣନା କରାଯାଇଛି ଯେ ପବିତ୍ର କୋରାନ ଆକାରରେ ହଜରତ ମହମ୍ମଦଙ୍କୁ ଯେଉଁ ସମ୍ପଦ ମିଳିଛି, ସେ ତାହାକୁ ସମଗ୍ର ବିଶ୍ୱରେ ବିତରଣ କରନ୍ତୁ । ଅଲ୍ଲାହ ପବିତ୍ର କୋରାନରେ ଅନ୍ୟତ୍ର ହଜରତ ମହମ୍ମଦଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ଯେ ଯଦି ମୁସରିକମାନଙ୍କ ମଧ୍ୟରୁ କେହି ତାଙ୍କର ଶରଣ ଭିକ୍ଷା କରେ ତେବେ ସେ ତାକୁ ଶରଣ ଦିଅନ୍ତୁ, ଏପରିକି ସେ ଅଲ୍ଲାହଙ୍କ ବାଣୀ ଶୁଣିବାର ସୁଯୋଗ ପାଉ (୯:୬ ଦ୍ରଷ୍ଟବ୍ୟ) ।

୨. ଅର୍ଥାତ୍ ତୁମ ପ୍ରତି ଏହି ଆଦର୍ଶ ଓ ସମ୍ପୂର୍ଣ୍ଣ ଧର୍ମବିଧାନ (କୋରାନ) ପ୍ରେରଣ କରିଛନ୍ତି, ଯେପରିକି ତୁମେ ଅଲ୍ଲାହଙ୍କ ସତ୍ପଥ ରୂପକ ଆଲୋକରେ ଅଗ୍ରସର ହେବ ଓ ଅସୁବିଧାର ସମ୍ମୁଖୀନ ହେବ ନାହିଁ ।

୩. ଅର୍ଥାତ୍ ହଜରତ ମହମ୍ମଦ ନିଜ ବୁଦ୍ଧି ବଳରେ କିପରି ଅଲ୍ଲାହଙ୍କୁ ପାଇ ପାରିବେ ଓ ମାନବ ସମାଜର ସଂସ୍କାର କରିବାରେ କିପରି ସଫଳ ହୋଇ ପାରିବେ ସେଥିପାଇଁ ସେ ବ୍ୟାକୁଳ ହୋଇ ତପସ୍ୟା କରିବା ପାଇଁ ହେରା ନାମକ ଗୁମ୍ଫାକୁ ଯାଉଥିଲେ । ଅଲ୍ଲାହ ତାହାଙ୍କୁ କୋରାନ ଗ୍ରନ୍ଥ ମାଧ୍ୟମରେ ଆଦର୍ଶ ଓ ସମ୍ପୂର୍ଣ୍ଣ ସତ୍ପଥ ପ୍ରଦାନ କରି ତାଙ୍କ ବ୍ୟାକୁଳତାକୁ ଦୂର କରିଥିଲେ । ଏ ବିଷୟରେ ସୁରା 'ଅଲକ' (ଅଧ୍ୟାୟ ସଂ. ୯୬)ରେ ସବିସ୍ତାର ବର୍ଣ୍ଣନା କରାଯାଇଛି ।

إِنَّ مَعَ الْعُسْرِ يُسْرًا ⑦

୭. (ହଁ), ବାସ୍ତବରେ ଏହି କଷ୍ଟ ସହିତ (ଅନ୍ୟ) ଏକ ମହାନ୍ ସଫଳତା (ନିୟତ ଅଛି) ।

فَإِذَا فَرَغْتَ فَانْصَبْ ⑧

୮. ସୁତରାଂ ଯେତେବେଳେ ମଧ୍ୟ ତୁମଙ୍କୁ ଅବସର[2] ମିଳେ ସେତେବେଳେ (ଅଲ୍ଲାହଙ୍କ ସହିତ ସାକ୍ଷାତ୍ କରିବାକୁ) ଅତୁରି ଚେଷ୍ଟା କର.

وَإِلَىٰ رَبِّكَ فَارْغَبْ ⑨

୯. ଏବଂ ତୁମେ ନିଜ ପାଳନକର୍ତ୍ତାଙ୍କ ପ୍ରତି (ମନୋଯୋଗ ସହିତ) ଧ୍ୟାନ ଦିଅ ।




ଅଧ୍ୟାୟ ୯୫ **ଅଲ — ତି'ନ** ଭାଗ ୩୦

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୯ ଟି ଆୟତ ଅଛି)



୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

---

୧. ଏହି ଆୟତରେ ତଥା ଏହାର ପୂର୍ବବର୍ତ୍ତୀ ଆୟତରେ ବ୍ୟବହୃତ 'ଉସ୍ର' ଓ 'ୟୁସ୍ର' ଶବ୍ଦଦ୍ବୟ ଯଥାକ୍ରମେ କଷ୍ଟ ଓ ସଫଳତାକୁ ବୁଝାଉଛି । ପ୍ରଥମୋକ୍ତ ଶବ୍ଦ ମାଧ୍ୟମରେ ସଙ୍କେତ ଦିଆଯାଇଛି ଯେ ତାହା ଏକ ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ରହି ଦୂର ହୋଇଯିବ ଏବଂ ଶେଷୋକ୍ତ ଶବ୍ଦ ମାଧ୍ୟମରେ ସଙ୍କେତ ଦିଆଯାଇଛି ଯେ ତାହା ବାରମ୍ବାର ଆସିବ । ଅତଏବ ଏହି ଆୟତରେ ଉଲ୍ଲିଖିତ ଭବିଷ୍ୟବାଣୀ ଅନୁସାରେ ହଜରତ ମହମ୍ମଦଙ୍କ ପ୍ରତି ଏପରି କୌଣସି ସଙ୍କଟ ଆସିବ ନାହିଁ ଯାହା ଚିରସ୍ଥାୟୀ ହେବ ଅଥଚ ଏପରି ସଫଳତାର ସମୟ ଆସିବ ଯାହାକୁ ଚିରସ୍ଥାୟୀ କୁହାଯାଇ ପାରିବ । ବସ୍ତୁତଃ ମକ୍କା ଓ ଆରବର ଲୋକମାନେ ଆଠ ବର୍ଷ ମଧ୍ୟରେ ଧ୍ବସ୍ତବିଧ୍ବସ୍ତ ହୋଇଗଲେ । କିନ୍ତୁ ଯେବେ ହଜରତ ମହମ୍ମଦ ମକ୍କା ଜୟ କଲେ ଓ ଇସଲାମୀୟ ଶାସନ-ବ୍ୟବସ୍ଥାର ଭିତ୍ତି ସ୍ଥାପିତ ହେଲା ଏବଂ ମୁସଲମାନମାନଙ୍କ ସକାଶେ ସ୍ବଚ୍ଛନ୍ଦ ପଥ ଉନ୍ମୁକ୍ତ ହେଲା, ସେବେଠାରୁ ଏହି ଶାସନବ୍ୟବସ୍ଥା ବିଭିନ୍ନ ଆକାରରେ ପରିବର୍ତ୍ତିତ ହୋଇ ଆଜି ପର୍ଯ୍ୟନ୍ତ ଅବ୍ୟାହତ ରହିଛି । ଏବେ ବି କେତେକ ଦେଶରେ ଇସଲାମୀୟ ଶାସନ-ବ୍ୟବସ୍ଥା ପ୍ରଚଳନ କରାଯାଇଛି ।

୨. ଅର୍ଥାତ୍ ଯେବେ ବି ତୁମଙ୍କୁ ଶାସନଗତ କାର୍ଯ୍ୟରୁ ଓ ମୁସଲମାନମାନଙ୍କୁ ଶିକ୍ଷାଦୀକ୍ଷା ଦେବାରୁ ଅବସର ମିଳୁଛି, ତୁମେ ନିଜକୁ ଆଧ୍ୟାତ୍ମିକ ଯାତ୍ରାରେ ନିୟୋଜିତ କର, କାରଣ ତୁମ ପାଇଁ ତାହା ଏକ ଅନନ୍ତ ଯାତ୍ରା ଏବଂ ସେଥିରୁ ଅବସର ମିଳିବାର ପ୍ରଶ୍ନ ହିଁ ଉଠୁନାହିଁ ।

୨. ଆମେ ଡିମିରି[୧] ଓ ଜୈତୁନକୁ[୨] ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ,

୩. ଏବଂ ଏହିପରି ଭାବରେ ସିନାଇ[୩] ପର୍ବତକୁ,

୪. ଏବଂ ଏହି ଶାନ୍ତିମୟ[୪] (ମେକ୍କା) ସହରକୁ ମଧ୍ୟ,

وَالتِّيْنِ وَالزَّيْتُوْنِ ②

وَطُوْرِ سِيْنِيْنَ ③

وَهٰذَا الْبَلَدِ الْاَمِيْنِ ④

---

୧. 'ଇତ୍ତିର' ଶବ୍ଦ ମାଧ୍ୟମରେ ହଜରତ ଆଦମଙ୍କ ପ୍ରତି ଯେଉଁ ସଙ୍କେତ ଦିଆଯାଇଛି, ତା ହେଉଛି, ମାନବକୁ ଉଚ୍ଚ କୋଟିର ପ୍ରକୃତି ପ୍ରଦାନ କରାଯାଇଛି । ତାଙ୍କ ସମ୍ବନ୍ଧରେ ବାଇବେଲରେ ଲିପିବଦ୍ଧ ହୋଇଛି ଯେ ଅଲ୍ଲାହ ତାହାଙ୍କୁ ନିଜ ରୂପ ଅନୁସାରେ ସୃଷ୍ଟି କରିଛନ୍ତି (**Genesis 1.27** ଦ୍ରଷ୍ଟବ୍ୟ) । ପବିତ୍ର କୋରାନରେ ଉଲ୍ଲେଖ ଅଛି ଯେ ଅଲ୍ଲାହ ତାଙ୍କୁ ନିଜର ଖଲିଫା ନିଯୁକ୍ତ କରିଥିଲେ (୨:୩୧ ଦ୍ରଷ୍ଟବ୍ୟ) । ସୁତରାଂ ଉପରୋକ୍ତ ଦୁଇଟି ଗ୍ରନ୍ଥରେ ଯେଉଁ ସମନ୍ୱସ ବିଷୟ ଅଛି ତାହା ହେଉଛି ଯେ ତାହାଙ୍କର ସନ୍ତାନମାନେ ତାହାଙ୍କ ଗୁଣ ଧାରଣ କରି ସଦାଚାରୀ ହୋଇ ଜନ୍ମ ଗ୍ରହଣ କରିବେ ଏବଂ ସେମାନଙ୍କ ଉତ୍ପତ୍ତି ମନ୍ଦ ବିଷୟ ଉପରେ ଆଧାରିତ ହୋଇ ନ ଥିବ ବରଂ ଉତ୍ତମ ବିଷୟ ଉପରେ ଆଧାରିତ ହୋଇଥିବ । ସେହି ବିଷୟକୁ ସୂଚାଇବା ପାଇଁ ଏଠାରେ ଇତ୍ତିର ଅର୍ଥାତ୍ ଡିମିରିକୁ ପ୍ରମାଣ ସ୍ୱରୂପ ଉପସ୍ଥାପନ କରାଯାଇଛି । ବାଇବେଲରେ ପୁନଶ୍ଚ ବର୍ଣ୍ଣନା କରାଯାଇଛି ଯେ ଯେତେବେଳେ ହଜରତ ଆଦମ ଓ ତାଙ୍କ ପତ୍ନୀ ଅଲ୍ଲାହଙ୍କର ବିରାଗଭାଜନ ହେବା ଭଳି କୌଣସି କାର୍ଯ୍ୟ କରିଥିବା ଅନୁଭବ କଲେ, ସେତେବେଳେ ସେମାନେ ନଗ୍ନ ହୋଇ ଯାଇଥିବାର ମନେ କଲେ ଏବଂ ନିଜ ନିଜ ଶରୀରକୁ ଡିମିରି ପତ୍ର ଦ୍ୱାରା ଆବୃତ କରିବାକୁ ଲାଗିଲେ (**Genesis 3.7** ଦ୍ରଷ୍ଟବ୍ୟ) । କିନ୍ତୁ ପବିତ୍ର କୋରାନ ଏହି ତତ୍ତ୍ୱକୁ ଖଣ୍ଡନ କରୁଛି ଓ ଦର୍ଶାଉଛି ଯେ ସେମାନେ କୌଣସି ବାସ୍ତବ ପାପ କରି ନଥିଲେ ବରଂ କେବଳ ଗୋଟିଏ ଦୋଷ କରିଥିଲେ, ଯାହା ପାପର ପଦବାଚ୍ୟ ନୁହେଁ । ଅଧିକନ୍ତୁ ସେମାନେ ଏହି କାର୍ଯ୍ୟର ପୁନରାବୃତ୍ତି କରିବାକୁ ଇଚ୍ଛା ପୋଷଣ କରି ନଥିଲେ ।

୨. ଏଠାରେ ଜୈତୁନ ବିଷୟ ଏଥିଯୋଗୁଁ ବର୍ଣ୍ଣନା କରାଯାଇଛି ଯେହେତୁ ତାର ଶାଖା ହଜରତ ନୂହଙ୍କ ବୃତ୍ତାନ୍ତକୁ ସ୍ମରଣ କରାଉଛି । ତହିଁରେ କରୁଣା ଓ ଶାନ୍ତିର ବିଷୟ ନିହିତ ଅଛି । ବାଇବେଲରେ ବର୍ଣ୍ଣନା କରାଯାଇଛି ଯେ ହଜରତ ନୂହଙ୍କର ନୌକା ଯେତେବେଳେ 'ଜୁଦି' ବା 'ଅରରାଟ୍' ପର୍ବତ ଶିଖରରେ ପହଞ୍ଚିଲା, ସେତେବେଳେ ହଜରତ ନୂହ ବିଭିନ୍ନ ପକ୍ଷୀଙ୍କୁ ଭୂମି ଦୃଷ୍ଟିଗୋଚର ହେଉଛି କି ନାହିଁ ଅବଗତ ହେବା ସକାଶେ ପଠାଇଲେ । ପରିଶେଷରେ ସେ ଏକ ପାରାକୁ ପଠାଇଲେ । ଯେତେବେଳେ ସେହି ପାରା ଫେରି ଆସିଲା, ସେତେବେଳେ ତା ପାଟିରେ ଜୈତୁନର ଏକ କଞ୍ଚା ଶାଖା ରହିଥିଲା । ଏଥିରୁ ହଜରତ ନୂହ ବୁଝି ପାରିଥିଲେ ଯେ ଅଲ୍ଲାହଙ୍କ କୃପାର ଅବତରଣ ହୋଇଗଲାଣି ଓ ଭୂମି ଦୃଷ୍ଟିଗୋଚର ହେଲାଣି । ତେଣୁ ସେ ନିଜ ସାଥୀମାନଙ୍କ ସହିତ ସେଠାରେ ଅବତରଣ କରିଥିଲେ । ସେ ଅବତରଣ କରିଥିବା ସ୍ଥାନର ନାମ ପବିତ୍ର କୋରାନରେ 'ଜୁଦି' ଭାବରେ ବର୍ଣ୍ଣିତ ହୋଇଅଛି, କିନ୍ତୁ ବାଇବେଲରେ ତାହାର ନାମ 'ଅରରାଟ' ଲିପିବଦ୍ଧ ହୋଇଛି । 'ଅରରାଟ' ପ୍ରକୃତରେ ଆରବୀ ଭାଷାର ଏକ ଶବ୍ଦ । ହଜରତ ନୂହ ଯେହେତୁ ଇରାକରେ ବାସ କରୁଥିଲେ, ତେଣୁ ତାଙ୍କ ପାଇଁ ଏହି ଶବ୍ଦର ବ୍ୟବହାର ସହଜ ଥିଲା । ଆରବୀ ଭାଷାରେ 'ଜୁଦ' (ଯେଉଁଥିରୁ ଜୁଦି ଶବ୍ଦର ବ୍ୟୁତ୍ପନ୍ନ ହୋଇଛି) ଅର୍ଥ କରୁଣା ଓ ହିତ । ତେଣୁ ଏହି ସ୍ଥାନର ନାମକରଣ ଜୁଦି କରାଯିବା ଦ୍ୱାରା ତାହା ଅଲ୍ଲାହଙ୍କର କରୁଣା ଓ ହିତସାଧନକୁ ସୂଚାଉଛି । ଅଭିଧାନକୁ ଅନୁଧ୍ୟାନ କଲେ ଜଣାଯିବ ଯେ 'ଅରରାଟ' ଓ 'ଜୁଦି' ସମ ଅର୍ଥବୋଧକ ଶବ୍ଦ ।

୩. 'ସାନା' ଶବ୍ଦ ଏକବଚନ, କିନ୍ତୁ ଏଠାରେ ଏହା ବହୁବଚନରେ ପ୍ରୟୋଗ କରାଯାଇଛି, କାରଣ ଏହା ଗୋଟିଏ ପର୍ବତ ନୁହେଁ ବରଂ ଏକ ପର୍ବତମାଳା ।

୪. ହଜରତ ଇବ୍ରାହିମ ଓ ହଜରତ ଇସମାଇଲ ମକ୍କାକୁ ଏକ ଶାନ୍ତିପୂର୍ଣ୍ଣ ସହର ବୋଲି ସ୍ଥିର କରିଥିଲେ । ବହୁ ସହସ୍ର ବର୍ଷ ଅତିବାହିତ ହୋଇ ଯାଇଥିଲେ ମଧ୍ୟ ଆରବର ଲୋକମାନେ ଆଜି ପର୍ଯ୍ୟନ୍ତ ତାହାର ସମ୍ମାନ ପ୍ରତି ଯଥେଷ୍ଟ ଧ୍ୟାନ ଦେଉଛନ୍ତି । ତେଣୁ ମକ୍କା ସହିତ ସମ୍ପୃକ୍ତ ଧର୍ମ ଯେ ସତ୍ୟ, ତାହା ଉପରୋକ୍ତ ତଥ୍ୟରୁ ପ୍ରମାଣିତ ହେଉଛି । ପରିଶେଷରେ ମକ୍କା ମୁସଲମାନମାନଙ୍କ ଦଖଲକୁ ଆସିଥିଲା ଓ ଇସଲାମ ହିଁ ମକ୍କାର ଧର୍ମ ବୋଲାଇଲା । ପୁଣି ମୁସଲମାନମାନଙ୍କ ସମ୍ବନ୍ଧ ହେତୁ ମକ୍କାକୁ ଅନ୍ୟ ଏକ ନୂତନ ଶାନ୍ତି ପ୍ରାପ୍ତ ହୋଇଥିଲା, ଯାହାକି ଏ ଯାବତ୍ ତିଷ୍ଠି ରହିଛି । ଏହା ଏପରି ଶାନ୍ତି ଯାହା ପୂର୍ବରୁ ମିଳି ନ ଥିଲା, କାରଣ ଏଠାକାର ଅଧିବାସୀମାନେ ନିଜ ଇଚ୍ଛା ମୁତାବକ ମାସଗୁଡ଼ିକୁ ଆଗପଛ କରି ଶୃଙ୍ଖଳା ଓ ଶାନ୍ତି ଭଙ୍ଗ କରୁଥିଲେ । କିନ୍ତୁ ବର୍ତ୍ତମାନ ଇସଲାମ ଧର୍ମରେ ଏପରି ବାରମାସ ସ୍ଥିର ହୋଇ ସାରିଛି ଯେ ତାହାକୁ ଆଗପଛ କରିବାକୁ କେହି ସାହସ କରି ପାରିବ ନାହିଁ । ସେହି କାରଣରୁ ବର୍ଷସାରା ସେହି ଗଣନା ଅନୁସାରେ ପବିତ୍ର କା'ବା ଧର୍ମପୀଠର ପରିସରର ସୁରକ୍ଷା ବ୍ୟବସ୍ଥା କରାଯାଉଛି । ଅବଶ୍ୟ ଏଥି ପୂର୍ବରୁ ସୁରକ୍ଷା ବ୍ୟବସ୍ଥା ମକ୍କାବାସୀଙ୍କ ଖିଆଲ ଉପରେ ନିର୍ଭର କରୁଥିଲା ।

لَقَدْ خَلَقْنَا الْإِنْسَانَ فِي أَحْسَنِ تَقْوِيمٍ ۝٥

୫. (ଏ ସମସ୍ତ ସାକ୍ଷ୍ୟ ପ୍ରମାଣିତ କରୁଅଛି ଯେ) ବାସ୍ତବରେ ଆମେ ମନୁଷ୍ୟକୁ ସର୍ବୋତ୍କୃଷ୍ଟ ଅବସ୍ଥାରେ ସୃଷ୍ଟି କରିଅଛୁ,

ثُمَّ رَدَدْنَاهُ أَسْفَلَ سَافِلِينَ ۝٦

୬. ଏହାପରେ ଆମେ ତାହାକୁ ନିକୃଷ୍ଟ ଅବସ୍ଥାରୁ ନିକୃଷ୍ଟତର ଅବସ୍ଥା ଆଡ଼କୁ ଫେରାଇ ନେଇଅଛୁ,

إِلَّا الَّذِينَ آمَنُوا وَعَمِلُوا الصَّالِحَاتِ فَلَهُمْ أَجْرٌ غَيْرُ مَمْنُونٍ ۝٧

୭. ଅବଶ୍ୟ ସେ (ଲୋକ)ମାନଙ୍କ ବ୍ୟତୀତ, ଯେଉଁମାନେ ବିଶ୍ୱାସ କରିଛନ୍ତି ଓ ସମୁଚିତ କାର୍ଯ୍ୟ କରିଛନ୍ତି; ସୁତରାଂ ସେମାନଙ୍କ ପାଇଁ ଏକ ଅସରନ୍ତି ଉତ୍ତମ ପୁରସ୍କାର ରହିଅଛି।

فَمَا يُكَذِّبُكَ بَعْدُ بِالدِّينِ ۝٨

୮. ସୁତରାଂ ଏହା (ଅର୍ଥାତ୍ ଏହାର ସତ୍ୟାସତ୍ୟ ପ୍ରକାଶିତ ହୋଇଯିବା) ପରେ କେଉଁ ବିଷୟ ତୁମଙ୍କୁ ବିଚାର ସଂକ୍ରାନ୍ତରେ ମିଥ୍ୟା ପ୍ରମାଣିତ କରୁଛି ?

أَلَيْسَ اللَّهُ بِأَحْكَمِ الْحَاكِمِينَ ۝٩

୯. କ'ଣ (ଏବେ ମଧ୍ୟ କେହି ମନେ କରୁଛନ୍ତି ଯେ) ଅଲ୍ଲାହ ସମସ୍ତ ବିଚାରପତିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବିଚାରପତି ନୁହନ୍ତି ?






## ଅଲ – ଅଲକ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ। ଏଥିରେ ବିସ୍ମିଲ୍ଲାହ ସମେତ ୨୦ ଟି ଆୟତ ଅଛି।)

بِسْمِ اللَّهِ الرَّحْمَٰنِ الرَّحِيمِ ۝١

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି)।

اقْرَأْ بِاسْمِ رَبِّكَ الَّذِي خَلَقَ ۝٢

୨. ନିଜ ପାଳନକର୍ତ୍ତାଙ୍କ ନାମରେ ଆବୃତ୍ତି କର[୧] ଯେ (ସମସ୍ତ ବସ୍ତୁକୁ) ସୃଷ୍ଟି କରିଛନ୍ତି,

خَلَقَ الْإِنْسَانَ مِنْ عَلَقٍ ۝٣

୩. (ଏବଂ ଯେ) ମନୁଷ୍ୟକୁ ଏକ ରକ୍ତ ପିଣ୍ଡରୁ ସୃଷ୍ଟି କରିଛନ୍ତି।

୧. କେତେକ ଭାଷ୍ୟକାର ଓ କେତେକ ଖ୍ରୀଷ୍ଟିୟାନ ଏଠାରେ ଭ୍ରମାତ୍ମକ ବ୍ୟାଖ୍ୟା କରିଛନ୍ତି ଯେ ଜଣେ ଦେବଦୂତ ହେରା ଗୁମ୍ଫାରେ ହଜରତ ମହମ୍ମଦଙ୍କୁ ରେଶମବସ୍ତ୍ର ଉପରେ ଲିଖିତ ଏକ ଲେଖା ଦେଖାଇ ତାଙ୍କୁ ପଢ଼ିବାକୁ ଦେଇଥିଲେ। କିନ୍ତୁ ପ୍ରକୃତରେ 'ଇକ୍ରା' ଅର୍ଥ (କ) ପଢ଼ିବା, (ଖ) ପୁନରାବୃତ୍ତି କରିବା। ଏହି ଅଧ୍ୟାୟରେ ଦର୍ଶା ଯାଇଛି ଯେ ଯେତେବେଳେ ଦେବଦୂତ ପ୍ରଥମଥର ଓହି ଘେନି ହଜରତ ମହମ୍ମଦଙ୍କ ନିକଟକୁ ଆସିଥିଲେ ସେତେବେଳେ ସେ କହୁଥିବା ପ୍ରକାରେ ପୁନରାବୃତ୍ତି କରିବାକୁ ତାଙ୍କୁ କହିଥିଲେ।

୪. (ପୁନଶ୍ଚ ଆମେ କହୁଅଛୁ ଯେ କୋରାନ) ଆବୃତ୍ତି କରି ଶୁଣାଉଥାଅ, କାରଣ ତୁମ ପାଳନକର୍ତ୍ତା ଅତିଶୟ ବଦାନ୍ୟ,[୧]

اِقْرَاْ وَرَبُّكَ الْاَكْرَمُ ﴿٣﴾

୫. ସେ ପାଳନକର୍ତ୍ତା,ଯେ କି କଲମ ଦ୍ୱାରା (ତୁମମାନଙ୍କୁ) ବିଦ୍ୟା ଶିକ୍ଷା ଦେଇଛନ୍ତି (ଓ ଭବିଷ୍ୟତରେ ମଧ୍ୟ ଶିକ୍ଷା ଦେଉଥିବେ),

الَّذِيْ عَلَّمَ بِالْقَلَمِ ﴿٤﴾

୬. ମନୁଷ୍ୟ ଯାହା (କିଛି) ପୂର୍ବରୁ ଜାଣି ନ ଥିଲା ସେ ତାହାକୁ ସେ ସବୁ ଶିଖାଇଛନ୍ତି ।

عَلَّمَ الْاِنْسَانَ مَا لَمْ يَعْلَمْ ﴿٥﴾

୭. (ସେମାନେ ଯେପରି ଭାବୁଛନ୍ତି ସେପରି) ନୁହେଁ; ବରଂ ବାସ୍ତବରେ ମଣିଷ ସୀମା ଲଙ୍ଘନ କରୁଅଛି,

كَلَّآ اِنَّ الْاِنْسَانَ لَيَطْغٰىٓ ﴿٦﴾

୮. କାରଣ ସେ ନିଜକୁ ଅଭାବର ଊର୍ଦ୍ଧ୍ୱରେ ଥିବା ମନେ କରୁଛି ।

اَنْ رَّاٰهُ اسْتَغْنٰى ﴿٧﴾

୯. ବାସ୍ତବତା ଏହିକି ଯେ ତୁମ୍ଭ ପାଳନକର୍ତ୍ତାଙ୍କ ନିକଟକୁ ହିଁ ଫେରିବାକୁ ହେବ ।

اِنَّ اِلٰى رَبِّكَ الرُّجْعٰى ﴿٨﴾

୧୦/୧୧. (ହେ ମହମ୍ମଦ ! ଆମ୍ଭଙ୍କୁ) ତୁମେ ତା ବିଷୟରେ ସମାଗ୍ଭର ଦିଅ ଯିଏ ଜଣେ (ଉପାସନାକାରୀ) ଭକ୍ତକୁ ନମାଜ ପଢୁଥିବା ବେଳେ ବାଧା ଦିଏ ।[୨]

اَرَءَيْتَ الَّذِيْ يَنْهٰى ﴿٩﴾ عَبْدًا اِذَا صَلّٰى ﴿١٠﴾

୧୨. (ହେ ମହମ୍ମଦ ! ଆମ୍ଭଙ୍କୁ) ତୁମେ କୁହ ତ ଭଲା, କ'ଣ ସେ (ଉପାସନାକାରୀ ଭକ୍ତ) ଯଦି ସତ୍‌ପଥରେ ଥାଏ ;

اَرَءَيْتَ اِنْ كَانَ عَلَى الْهُدٰىٓ ﴿١١﴾

୧୩. ବା ଧର୍ମଭୀରୁତା ଅବଲମ୍ବନ କରିବାକୁ ଆଦେଶ ଦେଉଥାଏ ।

اَوْ اَمَرَ بِالتَّقْوٰى ﴿١٢﴾

୧୪. ଏବଂ ତାହାକୁ ବାଧା ଦେଉଥିବା ବ୍ୟକ୍ତି (ସତ୍‌ପଥର) ଅମାନ୍ୟକାରୀ ହୋଇଥାଏ, (ତାହାହେଲେ ସେହି ବାଧାଦାନକାରୀର ପରିଣାମ କ'ଣ ହେବ) ?

اَرَءَيْتَ اِنْ كَذَّبَ وَتَوَلّٰى ﴿١٣﴾

୧୫. କ'ଣ ସେ (ଏତିକି ମଧ୍ୟ) ଜାଣୁ ନାହିଁ ଯେ ଅଲ୍ଲାହ ପ୍ରତ୍ୟେକ ବିଷୟକୁ ଜାଣନ୍ତି (ତେଣୁ ସେ ମନୋଯୋଗପୂର୍ବକ ଶୁଣୁ ଯେ ସେ ଭୁଲ କରୁଛି) ।

اَلَمْ يَعْلَمْ بِاَنَّ اللّٰهَ يَرٰى ﴿١٤﴾

---

୧. ଅର୍ଥାତ୍ ତୁମେ ଯେତେ କୋରାନ ଆବୃତ୍ତି କରିବ, ତୁମ ପ୍ରଭୁଙ୍କର ଗୌରବ ତଥା ମାନବଜାତିର ସମ୍ମାନ ସେତେ ପ୍ରକଟିତ ହେବ ।

୨. ଏଠାରେ 'ଅବ୍‌ଦ' ଶବ୍ଦ ଦ୍ୱାରା ହଜରତ ମହମ୍ମଦଙ୍କ ପ୍ରତି ସଙ୍କେତ ଦିଆଯାଇ ଦର୍ଶାଯାଇଛି ଯେ ଯେତେବେଳେ ସେ କା'ବା ଧର୍ମ-ପୀଠରେ ନମାଜ ପାଠ କରୁଥିଲେ ସେତେବେଳେ ଅବିଶ୍ୱାସକାରୀମାନେ ସେଠାକୁ ଆସି ତାଙ୍କ ମସ୍ତକରେ ତଥା ସାରା ଶରୀରରେ ଧୂଳିମାଟି ପକାଇ ଦେଉଥିଲେ । ଥରେ ସେମାନେ ଗୋଟିଏ ଓଟର ଅନ୍ତବୁଜୁଳାକୁ ତାଙ୍କ ମୁଣ୍ଡ ଉପରେ ରଖି ଦେଇଥିଲେ, ଫଳରେ ସେ ସିଜଦା କରୁଥିବା ସ୍ଥିତିରୁ ନିଜ ମସ୍ତକକୁ ଉତ୍ତୋଳନ କରି ପାରି ନଥିଲେ ।

كَلَّا لَئِن لَّمْ يَنتَهِ لَنَسْفَعًا بِالنَّاصِيَةِ ⑯

୧୬. (ସେ ଯେପରି ଭାବୁଅଛି ସେପରି ହେବ) ନାହିଁ, ବରଂ ଯଦି ସେ (ନିଜର ଏପରି କାର୍ଯ୍ୟରୁ) ନିବୃତ୍ତ ନ ହୁଏ ତେବେ ଆମ୍ଭେ ତାହାର ଝୁଟି ଧରି ଜୋରରେ ଟାଣି ନେବୁ,

نَاصِيَةٍ كَاذِبَةٍ خَاطِئَةٍ ⑰

୧୭. ତାହା ଏପରି ମସ୍ତକର ଝୁଟି[1] ଯାହା ମିଥ୍ୟାବାଦୀ ଓ ପାପୀ ମଧ୍ୟ ଅଟେ ।

فَلْيَدْعُ نَادِيَهُ ⑱

୧୮. ସୁତରାଂ ସେ (ଅବିଶ୍ୱାସକାରୀ) ନିଜର ସହଚର-ମାନଙ୍କୁ ଡାକୁ,

سَنَدْعُ الزَّبَانِيَةَ ⑲

୧୯. ଆମ୍ଭେ ମଧ୍ୟ ଆମ୍ଭର ପୋଲିସ[2] (ଅର୍ଥାତ୍ ଦଣ୍ଡ ବିଧାନକାରୀ ଦୂତମାନଙ୍କୁ) ଡକାଇବୁ ।

كَلَّا لَا تُطِعْهُ وَاسْجُدْ وَاقْتَرِبْ ⑳ السجدة

୨୦. ଶତ୍ରୁମାନଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ ହେବ ନାହିଁ; (ସୁତରାଂ ହେ ନବି !) ତୁମେ ସେ (ପ୍ରକାର ଅବିଶ୍ୱାସକାରୀ) ମାନଙ୍କର ଆଜ୍ଞା-ପାଳନକାରୀ ହୁଅ ନାହିଁ, ଏବଂ (କେବଳ ନିଜ ପାଳନକର୍ତ୍ତାଙ୍କୁ) ସିଜଦା କର, ଏବଂ (ଏହି ସିଜଦା କରିବାର ପରିଣାମ ସ୍ୱରୂପ ନିଜ ପାଳନକର୍ତ୍ତାଙ୍କର) ନିକଟତର ହୋଇଯାଅ ।



ଅଧ୍ୟାୟ ୯୭ | **ଅଲ – କଦର** | ଭାଗ ୩୦

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୬ ଟି ଆୟତ ଅଛି ।)



୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

---

୧. ଆୟତ ସଂ ୧୦ରୁ ୧୮ ସାଧାରଣ ଭାବରେ ସମସ୍ତ ଉଦ୍ଧତ ଓ କଠୋର ଅବିଶ୍ୱାସକାରୀଙ୍କ ପ୍ରତି ପ୍ରଯୋଜ୍ୟ ହେଉଥିଲେ ହେଁ, କେତେକ ଭାଷ୍ୟକାରଙ୍କ ମତରେ ଏଗୁଡ଼ିକ ଅବିଶ୍ୱାସକାରୀଙ୍କ ମୁଖ୍ୟ ଅବୁଜହଲ ପ୍ରତି ବିଶେଷ ଭାବରେ ପ୍ରଯୋଜ୍ୟ । ହଜରତ ମହମ୍ମଦ ଓ ତାଙ୍କ ଅନୁଗାମୀମାନଙ୍କୁ ହଇରାଣ ହରକତ କରିବାରେ, ସେମାନଙ୍କୁ ବିରୋଧ କରିବାରେ ତଥା ସେମାନଙ୍କୁ ଅକଥନୀୟ ନିର୍ଯାତନା ଦେବାରେ ସେ ଆଗୁସାର ଥିଲା । ଯେଉଁ କେତେଜଣ କ୍ରୀତଦାସ ଇସଲାମଧର୍ମରେ ଦୀକ୍ଷିତ ହୋଇଥିଲେ, ସେମାନଙ୍କ ଝୁଟି ଧରି ମକ୍କାର ବିଚ ଦାଣ୍ଡରେ ଘୋଷାଡ଼ିବା ପାଇଁ ଅବୁଜହଲ ଲୋକମାନଙ୍କୁ ପ୍ରବର୍ତ୍ତାଉଥିଲା । ବଦର ଯୁଦ୍ଧରେ ମୃତ୍ୟୁବରଣ କରିଥିବା ଅବିଶ୍ୱାସକାରୀମାନଙ୍କ ମଧ୍ୟରେ ଅବୁଜହଲ ମଧ୍ୟ ଥିଲା । ତେଣୁ ତାର ଝୁଟିକୁ ଧରି ତାର ମୃତଶରୀରକୁ ଖାତ ଭିତରକୁ ଫୋପାଡ଼ି ଦିଆଯାଇଥିଲା । ତାହା ହିଁ ଥିଲା ତା ପାଇଁ ଉପଯୁକ୍ତ ଶାସ୍ତି ।

୨. ଅର୍ଥାତ୍ ଶାସ୍ତି ପ୍ରଦାନକାରୀ ଦେବଦୂତମାନେ । ସେମାନେ ସତ୍ୟର ବିରୁଦ୍ଧାଚରଣ କରୁଥିବା ଲୋକମାନଙ୍କୁ ଇହଜଗତରେ ତଥା ପରଜଗତରେ ଶାସ୍ତି ପ୍ରଦାନ କରିଥାନ୍ତି ।

إِنَّآ أَنزَلْنَٰهُ فِى لَيْلَةِ ٱلْقَدْرِ ۝٢

୨. ଆମେ ବାସ୍ତବରେ ଏହାକୁ[୧] (ଅର୍ଥାତ୍ କୋରାନକୁ) ଏକ ମହତ୍ତ୍ୱପୂର୍ଣ୍ଣ ଭାଗ୍ୟଶାଳୀ ରାତ୍ରିରେ ଅବତୀର୍ଣ୍ଣ କରିଅଛୁ ।

وَمَآ أَدْرَىٰكَ مَا لَيْلَةُ ٱلْقَدْرِ ۝٣

୩. ଏବଂ (ହେ ମହମ୍ମଦ !) ତୁମକୁ କ'ଣ ଜଣା ଯେ ଯେଉଁ ରାତ୍ରିରେ ଭାଗ୍ୟ ଅବତରଣ କରିଥାଏ ତାହା କ'ଣ ?

لَيْلَةُ ٱلْقَدْرِ خَيْرٌ مِّنْ أَلْفِ شَهْرٍ ۝٤

୪. ଏହି (ମହତ୍ତ୍ୱ ପୂର୍ଣ୍ଣ) ଭାଗ୍ୟଶାଳୀ ରାତ୍ରି ତ ହଜାରେ ମାସ[୨] ଅପେକ୍ଷା ଉତ୍କୃଷ୍ଟତର ।

تَنَزَّلُ ٱلْمَلَٰٓئِكَةُ وَٱلرُّوحُ فِيهَا بِإِذْنِ رَبِّهِم مِّن كُلِّ أَمْرٍ ۝٥

୫. (ପ୍ରତ୍ୟେକ ପ୍ରକାର) ଦେବଦୂତ ଓ (ପରିପୂର୍ଣ୍ଣ) ଆତ୍ମା ନିଜ ପାଳନକର୍ତ୍ତାଙ୍କ ଆଦେଶ ଅନୁସାରେ ଏହି ରାତ୍ରିରେ ସମସ୍ତ (ସାଂସାରିକ ଓ ଆଧ୍ୟାତ୍ମିକ) କାର୍ଯ୍ୟ ସହ ଅବତରଣ କରିଥା'ନ୍ତି ।

سَلَٰمٌ هِىَ حَتَّىٰ مَطْلَعِ ٱلْفَجْرِ ۝٦

୬. (ଦେବଦୂତମାନେ[୩] ଅବତରଣ କଲା ପରେ) ପ୍ରଭାତର ଆଗମନ ପର୍ଯ୍ୟନ୍ତ ଶାନ୍ତି (ହିଁ ଶାନ୍ତି) ବିରାଜମାନ କରୁଥାଏ ।

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ନବିଙ୍କର ଯୁଗ 'ରାତ୍ରି' ସହିତ ତୁଳନୀୟ । କିନ୍ତୁ ସେହି ରାତ୍ରି ଏପରି ଅଟେ ଯେ ତହିଁରେ ଭବିଷ୍ୟତ ସମ୍ବନ୍ଧରେ ଅଲ୍ଲାହଙ୍କର ନିଷ୍ପତ୍ତି ଅବତରିତ ହୁଏ । ସୁତରାଂ ଏହି ଅଧ୍ୟାୟରେ ଦର୍ଶାଯାଇଛି ଯେ ଅଲ୍ଲାହ ଏହି ଅଧ୍ୟାୟକୁ ସେହି ସମୟରେ ଅବତରଣ କରାଇଛନ୍ତି ଯେଉଁ ସମୟରେ ଭାଗ୍ୟର ଅବତରଣ ହୁଏ, ଅର୍ଥାତ୍ ଭବିଷ୍ୟତରେ ଯାହାକିଛି ଏହି ସଂସାରରେ ଘଟିବାର ଅଛି ତାହା ଏହି କୋରାନ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଛି । ଏହାର ଆଉ ଏକ ଅର୍ଥ ହେଉଛି ଯେ ଅଲ୍ଲାହ ହଜରତ ମହମ୍ମଦଙ୍କୁ ଏକ ମହାନ୍ ଓ ଭାଗ୍ୟଶାଳୀ ରାତ୍ରିରେ ଅବତୀର୍ଣ୍ଣ କରିଛନ୍ତି । କେତେକଙ୍କ ମତରେ ରମଜାନ ମାସର ଶେଷ ଦଶରାତ୍ରି ମଧ୍ୟରୁ ବିଯୋଡ଼ ରାତ୍ରିଗୁଡ଼ିକ ଅର୍ଥାତ୍ ୨୧ଶ, ୨୩ଶ, ୨୫ଶ, ୨୭ଶ ଓ ୨୯ଶ ରାତ୍ରିଗୁଡ଼ିକ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

୨. ହଦିସଗୁଡ଼ିକରୁ ଜଣାପଡ଼େ ଯେ ଏକ ହଜାର ବର୍ଷ ପର୍ଯ୍ୟନ୍ତ ପଥଭ୍ରଷ୍ଟତା ଲାଗି ରହିବ । ହଜରତ ମହମ୍ମଦଙ୍କ କଥନାନୁସାରେ ସେ ଯେଉଁ ଶତାବ୍ଦୀରେ ଥିଲେ, ତାହା ସର୍ବାଧିକ ଉତ୍କୃଷ୍ଟ ଶତାବ୍ଦୀ । ତାର ପରବର୍ତ୍ତୀ ଦୁଇ ଶତାବ୍ଦୀ ମଧ୍ୟ ଉତ୍କୃଷ୍ଟ ହେବ । ଏହାପରେ ପଥଭ୍ରଷ୍ଟତାର ଯୁଗ ଆସିବ (ମିଶକାତ ଶରିଫ ଦ୍ରଷ୍ଟବ୍ୟ) । ଏହି ଆୟତରେ ଥିବା 'ହଜାରେ ମାସ'ର ଅର୍ଥ ଏକ ହଜାର ବର୍ଷ । ସେହିପରି 'ବର୍ଷ'ର ତାତ୍ପର୍ଯ୍ୟ ସେହି ସମୟ, ଯେତେବେଳେ ହଜରତ ମହମ୍ମଦଙ୍କର ଛାୟା ସଙ୍କୁଚିତ ହୋଇ ଯାଇଥିଲା ଓ ସଂସାରରେ ଭ୍ରଷ୍ଟାଚାର ବ୍ୟାପି ଯାଇଥିଲା । ଏହି ପ୍ରସଙ୍ଗରେ, ଏଠାରେ ଦର୍ଶାଇ ଦିଆଯାଇଛି ଯେ ଯେଉଁ ଆଧ୍ୟାତ୍ମିକ ରାତ୍ରିରେ ହଜରତ ମହମ୍ମଦଙ୍କର ଆବିର୍ଭାବ ହେଲା ଅଥବା ପବିତ୍ର କୋରାନ ଅବତୀର୍ଣ୍ଣ ହେଲା, ତାହା ରାତ୍ରି ହୋଇଥିବା ସତ୍ତ୍ୱେ ହଜରତ ମହମ୍ମଦଙ୍କ ଯୋଗୁଁ ପଥଭ୍ରଷ୍ଟତାର ହଜାରେ ବର୍ଷଠାରୁ ଉତ୍କୃଷ୍ଟ ହେବ ।

୩. ଅର୍ଥାତ୍ ନବି ବିଜୟ ମଣ୍ଡିତ ହେବା ପର୍ଯ୍ୟନ୍ତ ଦେବଦୂତମାନେ ତାଙ୍କ ସଙ୍ଗରେ ଥାଆନ୍ତି ଏବଂ ଯେପର୍ଯ୍ୟନ୍ତ ସଫଳତାର ସୂର୍ଯ୍ୟ ଉଏଁ ନାହିଁ ସେପର୍ଯ୍ୟନ୍ତ ସେମାନେ ନବିଙ୍କୁ ଛାଡ଼ି ଯାଆନ୍ତି ନାହିଁ । ଦେବଦୂତମାନେ ଅବତରଣ କରିବା ପରେ ଶାନ୍ତି ବିରାଜମାନ ହେବା ବିଷୟରେ ଯାହା ବର୍ଣ୍ଣନା କରାଯାଇଛି, ତାହାର ଅସଲ ମର୍ମ ହେଉଛି ଯେ ଯଦିଓ ସେହି ସମୟ ଅନ୍ଧକାର-ସମୟ ହୋଇଥାଏ ତଥାପି ନବିଙ୍କ ଉପସ୍ଥିତି ହେତୁ ଅଲ୍ଲାହ ସେହି ସମୟରେ ପ୍ରକୃତ କଲ୍ୟାଣ ପ୍ରଦାନ କରିଥାନ୍ତି ଓ ପୁନର୍ବାର ଉଷାଲୋକ ଦୃଷ୍ଟିଗୋଚର ହେବା ପର୍ଯ୍ୟନ୍ତ ତାହା ଅବ୍ୟାହତ ରହେ ଏବଂ ସେହି ସମୟରେ ହଜରତ ମହମ୍ମଦଙ୍କର ଆଧ୍ୟାତ୍ମିକ ପୁନରାଗମନ ହୁଏ ।

سُوْرَةُ الْبَيِّنَةِ مَدَنِيَّةٌ (٩٨)

## ଅଲ–ବୟିଏନାହ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୯ ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦାକରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

لَمْ يَكُنِ الَّذِيْنَ كَفَرُوْا مِنْ اَهْلِ الْكِتٰبِ وَالْمُشْرِكِيْنَ مُنْفَكِّيْنَ حَتّٰى تَاْتِيَهُمُ الْبَيِّنَةُ ②

୨. ଯେଉଁ ଲୋକମାନେ ଅବିଶ୍ୱାସ କରିଛନ୍ତି ଅର୍ଥାତ୍ ଗ୍ରନ୍ଥଧାରୀ[୧] ଓ ମୁସରିକମାନେ (ଉଭୟେ) ସେମାନଙ୍କ ନିକଟକୁ ପ୍ରକାଶ୍ୟ ପ୍ରମାଣ[୨] ନ ଆସିବା ପର୍ଯ୍ୟନ୍ତ କେବେ ହେଁ (ଅବିଶ୍ୱାସ କରିବାରୁ) ନିବୃତ୍ତ ହୋଇ ନ ଥାଆନ୍ତେ ।

رَسُوْلٌ مِّنَ اللّٰهِ يَتْلُوْا صُحُفًا مُّطَهَّرَةً ③

୩. ଅର୍ଥାତ୍ ଅଲ୍ଲାହଙ୍କ ତରଫରୁ ପ୍ରେରିତ ଜଣେ ରସୁଲ ଯେ କି (ସେମାନଙ୍କୁ ଏପରି) ପବିତ୍ର ପୋଥି ଆବୃତ୍ତି କରି ଶୁଣାଇଥାନ୍ତେ ।

فِيْهَا كُتُبٌ قَيِّمَةٌ ④

୪. ଯହିଁରେ ସ୍ଥାୟୀ ଆଦେଶାବଳୀ[୩] ରହିଥିବ ।

وَمَا تَفَرَّقَ الَّذِيْنَ اُوْتُوا الْكِتٰبَ اِلَّا مِنْ بَعْدِ مَا جَآءَتْهُمُ الْبَيِّنَةُ ⑤

୫. ଏବଂ (ବିଚିତ୍ର କଥା ଏହି ଯେ) ଯେଉଁ ଲୋକମାନଙ୍କୁ (ପବିତ୍ର କୋରାନ ସଦୃଶ ପୂର୍ଣ୍ଣାଙ୍ଗ ଧର୍ମ) ଗ୍ରନ୍ଥ ପ୍ରଦାନ କରାଯାଇଅଛି ସେମାନେ ଏହି ପ୍ରକାଶ୍ୟ ପ୍ରମାଣର[୪] (ଅର୍ଥାତ୍ ରସୁଲଙ୍କ) ଆଗମନ ପରେ ହିଁ (ବିଭିନ୍ନ ଦଳରେ) ବିଭକ୍ତ ହୋଇଛନ୍ତି ।

---

୧. ଏଠାରେ ସ୍ପଷ୍ଟତଃ ଗ୍ରନ୍ଥଧାରୀମାନଙ୍କୁ ଅବିଶ୍ୱାସକାରୀ ବୋଲି କୁହାଯାଇଛି ।

୨. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେହେତୁ ଗ୍ରନ୍ଥଧାରୀମାନେ, ଭୁଲରେ ହେଉ କି ଠିକରେ ହେଉ, ଏକ ସ୍ୱର୍ଗୀୟ ଗ୍ରନ୍ଥ ସହିତ ସଂଶ୍ଳିଷ୍ଟ, ତେଣୁ ହଜରତ ମହମ୍ମଦ ପବିତ୍ର କୋରାନ ନେଇ ନ ଆସିବା ପର୍ଯ୍ୟନ୍ତ ସେମାନଙ୍କୁ ସୁଧାରିବାର କୌଣସି ସମ୍ଭାବନା ନ ଥିଲା ।

୩. ଅର୍ଥାତ୍ ହଜରତ ମହମ୍ମଦ ଚିରନ୍ତନ ସତ୍ୟ ସମ୍ବଳିତ ଏକ ଗ୍ରନ୍ଥ ଆଣିଥିଲେ, ଯଦ୍ୱାରା ଇହୁଦୀ ଓ ଖ୍ରୀଷ୍ଟୟାନମାନଙ୍କ ଗ୍ରନ୍ଥ ଯେ ନିକୃଷ୍ଟ ଓ ନଶ୍ୱର ଏବଂ କୋରାନ ଗ୍ରନ୍ଥ ଯେ ଉତ୍କୃଷ୍ଟ ଓ ଶାଶ୍ୱତ, ସେ ବିଷୟ ସେମାନଙ୍କ ନିକଟରେ ପ୍ରମାଣିତ ହେବ । ଫଳରେ ସେମାନେ କୋରାନର ସତ୍ୟତାକୁ ଗ୍ରହଣ କରିବାକୁ ବାଧ୍ୟ ହେବେ ।

୪. ଅର୍ଥାତ୍ ଯେଉଁ ଗ୍ରନ୍ଥଧାରୀମାନଙ୍କ ସମୟରେ ପବିତ୍ର କୋରାନର ଅବତରଣ ହୋଇଛି ସେହିମାନେ ହିଁ ପୂର୍ବରୁ ନିଜର ଅସତ୍ୟ କାହାଣୀକୁ ଆଶ୍ରୟ କରି ଆନନ୍ଦିତ ହେଉଥିଲେ । ବର୍ତ୍ତମାନ ସେମାନେ ପବିତ୍ର କୋରାନ ବର୍ଣ୍ଣିତ ସତ୍ୟ ଘଟଣାଗୁଡ଼ିକ ସମକ୍ଷରେ ବାଇବେଲ ବର୍ଣ୍ଣିତ ମିଥ୍ୟା ଘଟଣାଗୁଡ଼ିକୁ ପେଶ କରି ବିରୋଧ କରୁଛନ୍ତି ।

وَمَآ اُمِرُوْٓا اِلَّا لِيَعْبُدُوا اللّٰهَ مُخْلِصِيْنَ لَهُ الدِّيْنَ ۙ۬ حُنَفَآءَ وَيُقِيْمُوا الصَّلٰوةَ وَيُؤْتُوا الزَّكٰوةَ وَذٰلِكَ دِيْنُ الْقَيِّمَةِ ؕ﴿۶﴾

୬. ଅଥଚ ସେମାନଙ୍କୁ ଏହି ଆଦେଶ ଦିଆ ଯାଇଥିଲା ଯେ ସେମାନେ କେବଳ ଜଣେ ମାତ୍ର ଅଲ୍ଲାହଙ୍କର ଉପାସନା କରନ୍ତୁ, ଏବଂ କେବଳ ତାହାଙ୍କ ପାଇଁ ଉପାସନାକୁ (ଏପରି ଅବସ୍ଥାରେ) ମଧ୍ୟ ନିର୍ଦ୍ଦିଷ୍ଟ କରନ୍ତୁ ଯେ ସେମାନେ ନିଜ ପବିତ୍ର ଅନୁରକ୍ତିରେ ଦୃଢ ରହନ୍ତୁ, ଏବଂ (ପୁନଶ୍ଚ ଏହାମଧ୍ୟ ଆଦେଶ କରାଯାଇଥିଲା ଯେ) ସାମୂହିକ ନମାଜ ପାଠ କରନ୍ତୁ, ଓ ଜକାତ ଦିଅନ୍ତୁ; ଏବଂ ଏହାହିଁ (ସର୍ବଦା ସତ୍ୟ ଉପରେ) ପ୍ରତିଷ୍ଠିତ ଧର୍ମ ଅଟେ ।

اِنَّ الَّذِيْنَ كَفَرُوْا مِنْ اَهْلِ الْكِتٰبِ وَالْمُشْرِكِيْنَ فِيْ نَارِ جَهَنَّمَ خٰلِدِيْنَ فِيْهَا ؕ اُولٰٓئِكَ هُمْ شَرُّ الْبَرِيَّةِ ؕ﴿۷﴾

୭. ଗ୍ରନ୍ଥଧାରୀ ଓ ମୁସରିକମାନଙ୍କ ମଧ୍ୟରୁ ଅବିଶ୍ୱାସ ଉପରେ ପ୍ରତିଷ୍ଠିତ ଥିବା ଲୋକମାନେ ନିଶ୍ଚୟ ନରକ ଅଗ୍ନି ମଧ୍ୟରେ ରହିବେ, ଓ (ସେମାନେ) ସେଠାରେ ଦୀର୍ଘକାଳ ରହିବେ, ସେମାନେ ଅତି ନିକୃଷ୍ଟ ପ୍ରାଣୀ ।

اِنَّ الَّذِيْنَ اٰمَنُوْا وَعَمِلُوا الصّٰلِحٰتِ ۙ اُولٰٓئِكَ هُمْ خَيْرُ الْبَرِيَّةِ ؕ﴿۸﴾

୮. (ପକ୍ଷାନ୍ତରେ ଗ୍ରନ୍ଥଧାରୀ ଓ ମୁସରିକମାନଙ୍କ ମଧ୍ୟରୁ) ଯେଉଁମାନେ,ତଦନୁଯାୟୀ ସମୁଚିତ କର୍ମ କରିଛନ୍ତି, ସେହିମାନେ ହିଁ ଅତି ଉତ୍କୃଷ୍ଟ ପ୍ରାଣୀ ।

جَزَآؤُهُمْ عِنْدَ رَبِّهِمْ جَنّٰتُ عَدْنٍ تَجْرِيْ مِنْ تَحْتِهَا الْاَنْهٰرُ خٰلِدِيْنَ فِيْهَآ اَبَدًا ؕ رَضِيَ اللّٰهُ عَنْهُمْ وَرَضُوْا عَنْهُ ؕ ذٰلِكَ لِمَنْ خَشِيَ رَبَّهٗ ﴿۹﴾

୯. ସେମାନଙ୍କର ପୁରସ୍କାର ସେମାନଙ୍କ ପାଳନକର୍ତ୍ତାଙ୍କ ସମୀପରେ ସ୍ଥାୟୀ ବୈକୁଣ୍ଠ ହେବ ଯାହାର ନିମ୍ନ ଦେଶରେ ଝରଣା ପ୍ରବାହିତ ହେଉଥିବ; ସେମାନେ ସେଠାରେ ସର୍ବଦା ରହିଥିବେ; ଅଲ୍ଲାହ ସେମାନଙ୍କ ଉପରେ ସନ୍ତୁଷ୍ଟ ଓ ସେମାନେ (ମଧ୍ୟ) ତାହାଙ୍କ ଉପରେ ସନ୍ତୁଷ୍ଟ ହେବେ; ଯେ ନିଜ ପାଳନକର୍ତ୍ତାଙ୍କୁ ଭୟ କରେ ତା ପାଇଁ ଏହାହିଁ ତାହାର ମର୍ଯ୍ୟାଦା ଅନୁରୂପ ପୁରସ୍କାର ।




ଭାଗ ୩୦ ଅଧ୍ୟାୟ ୯୯

## ଅଲ — ଜିଲଜାଲ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୯ ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ﴿۱﴾

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

إِذَا زُلْزِلَتِ الْأَرْضُ زِلْزَالَهَا ۝٢

وَأَخْرَجَتِ الْأَرْضُ أَثْقَالَهَا ۝٣

وَقَالَ الْإِنْسَانُ مَا لَهَا ۝٤

يَوْمَئِذٍ تُحَدِّثُ أَخْبَارَهَا ۝٥

بِأَنَّ رَبَّكَ أَوْحَىٰ لَهَا ۝٦

يَوْمَئِذٍ يَصْدُرُ النَّاسُ أَشْتَاتًا لِيُرَوْا أَعْمَالَهُمْ ۝٧

فَمَنْ يَعْمَلْ مِثْقَالَ ذَرَّةٍ خَيْرًا يَرَهُ ۝٨

وَمَنْ يَعْمَلْ مِثْقَالَ ذَرَّةٍ شَرًّا يَرَهُ ۝٩

୨. ଯେତେବେଳେ ପୃଥିବୀକୁ ସମ୍ପୂର୍ଣ୍ଣ ଭାବରେ ପ୍ରକମ୍ପିତ କରା ହେବ,[1]

୩. ଏବଂ ପୃଥିବୀ ଆପଣା ବୋଝକୁ ବାହାର କରି ଫିଙ୍ଗି ଦେବ,[2]

୪. ଏବଂ ମନୁଷ୍ୟ କହି ପକାଇବ, ''ଏହାର କ'ଣ ହୋଇଛି ?''[3]

୫. ସେଦିନ ସେ ନିଜର (ସମସ୍ତ ଗୁପ୍ତ) ତଥ୍ୟ ପ୍ରକାଶ କରିବ,[4]

୬. କାରଣ ତୁମର ପାଳନକର୍ତ୍ତା ଏହାକୁ (ଅର୍ଥାତ୍ ପୃଥିବୀକୁ) ଆଦେଶ ଦେଇଛନ୍ତି,[5]

୭. ସେଦିନ ଲୋକମାନେ ବିଭିନ୍ନ ଦଳ ରୂପେ ଏକତ୍ରିତ ହେବେ[6] ଯଦ୍ବାରା ସେମାନେ ନିଜ ନିଜ କର୍ମର ପରିଣାମକୁ ଦେଖିବେ ।

୮. ତା' ପରେ ଯେ ଅଣୁ ପରିମାଣର ପୁଣ୍ୟ[7] କରିଥିବ ସେ ତାହାକୁ (ଅର୍ଥାତ୍ ତାହାର ପରିଣାମକୁ) ଦେଖିବ,

୯. ଏବଂ ଯେ ଅଣୁ ପରିମାଣର ପାପ କରିଥିବ ସେ ତାହାକୁ (ଅର୍ଥାତ୍ ତାହାର ପରିଣାମକୁ) ଦେଖିବ ।

---

୧. ଅର୍ଥାତ୍ ଭୂ-ପୃଷ୍ଠର ନିମ୍ନଭାଗରେ ତଥା ଉପରିଭାଗରେ ଭୂମିକମ୍ପ ହେବ । ସମ୍ପ୍ରତି ଯେପରି ଭୂ-ଗର୍ଭସ୍ଥ ତରଳ ପଦାର୍ଥ **(Lava)** ର ଉଦ୍‌ଗୀରଣ ଯୋଗୁଁ ଭୂଗର୍ଭରେ ଭୂମିକମ୍ପ ହେଉଛି ଏବଂ ପରମାଣୁ ବୋମା ଓ ହାଇଡ୍ରୋଜେନ ବୋମାର ବିସ୍ଫୋରଣ ଯୋଗୁଁ ଭୂପୃଷ୍ଠରେ ଭୂମିକମ୍ପ ହେଉଛି, ସେହିପରି ସାମ୍ପ୍ରତିକ ଆଧ୍ୟାତ୍ମିକ ଆନ୍ଦୋଳନ ଯୋଗୁଁ ପୃଥିବୀବାସୀଙ୍କ ହୃଦୟ ମଧ୍ୟ ଆଲୋଡ଼ିତ ହୋଇଯାଉଛି ।

୨. ଅର୍ଥାତ୍ ସଂସାରରେ ଲୁକ୍କାୟିତ ଥିବା ସମସ୍ତ ଜ୍ଞାନ ଓ ବିଦ୍ୟା— ଧର୍ମଗତ ହେଉ କି ସାଂସାରିକ ହେଉ— ପ୍ରକଟିତ ହେବ । ବର୍ତ୍ତମାନ ବିଜ୍ଞାନର ପ୍ରଭୂତ ଉନ୍ନତି ହୋଇଛି ଓ ପବିତ୍ର କୋରାନରୁ ବହୁ ନୂତନ ଜ୍ଞାନର ସନ୍ଧାନ ମିଳୁଛି ।

୩. ଭୂଗର୍ଭସ୍ଥ ତରଳ ପଦାର୍ଥର ଉଦ୍‌ଗୀରଣ ଯୋଗୁଁ ଭୂକମ୍ପନ, ଭୂ-ଭାଗ ଉପରେ ବିସ୍ଫୋରଣ ଜନିତ ଭୂକମ୍ପନ ଏବଂ ଭୂପୃଷ୍ଠର ଲୋକମାନଙ୍କ ହୃଦୟକୁ ଆଧ୍ୟାତ୍ମିକ ଦୃଷ୍ଟିରୁ ଆଲୋଡ଼ନ କରିଦେଲା ଭଳି କାର୍ଯ୍ୟସମୂହକୁ ଅବଲୋକନ କରି ମାନବ ସମାଜ ସ୍ତମ୍ଭୀଭୂତ ହୋଇଯିବ ଏବଂ ଏପରି ଘଟଣା ସମ୍ବନ୍ଧରେ ପ୍ରଶ୍ନ ପଚାରିବ ।

୪. ଅର୍ଥାତ୍ ସେହି ଦିନ ଅନ୍ତିମ ଯୁଗ ସମ୍ବନ୍ଧରେ ଯେତେଗୁଡ଼ିଏ ଭବିଷ୍ୟବାଣୀ କରାଯାଇଥିଲା ସେଗୁଡ଼ିକ ଏପରି ସତ୍ୟ ସାବ୍ୟସ୍ତ ହେବ, ଯତେ ଯେପରି ସେଦିନ ପୃଥିବୀ ନିଜ ଗୁପ୍ତ ଭଣ୍ଡାରକୁ ଉନ୍ମୁକ୍ତ କରିଦେଉଛି ।

୫. ଏଠାରେ ସୂଚିତ କରାଯାଉଛି ଯେ ଏହି ସବୁ ଭୂମିକମ୍ପ ସ୍ୱାଭାବିକ ଅବସ୍ଥାର ବଶବର୍ତ୍ତୀ ହୋଇ ଘଟୁନାହିଁ, ବରଂ ଅନ୍ତିମ ଯୁଗରେ ଏସବୁ ଘଟଣା ଘଟିବା ସକାଶେ ହଜରତ ମହମ୍ମଦଙ୍କ ସମୟରୁ ପୃଥିବୀକୁ ଆଦେଶ ଦିଆଯାଇଛି ।

୬. ଏହାର ତାତ୍ପର୍ଯ୍ୟ ହେଉଛି, ସେହି ସମୟ ସ୍ୱତନ୍ତ୍ରତାର ସମୟ ହେବ ; ଯେତେବେଳେ ବିଭିନ୍ନ ଦଳ ଗଠନ କରାଯିବ ଏବଂ ପ୍ରତ୍ୟେକ ଦଳ ନିଜର ନାମ ଓ କାର୍ଯ୍ୟକ୍ରମକୁ ସର୍ବସାଧାରଣଙ୍କ ଆଗରେ ଉପସ୍ଥାପନ କରି ସେମାନେ ଅନ୍ୟମାନଙ୍କୁ ନିଜ ଦଳରେ ସାମିଲ ହେବାକୁ ସୁଯୋଗ ଦେବେ । ଅଧିକନ୍ତୁ ସେମାନେ ଇଚ୍ଛା କରିବେ ଯେ ଅନ୍ୟମାନେ ସେମାନଙ୍କୁ ସର୍ବୋତ୍କୃଷ୍ଟ ଦଳ ବୋଲି ନିର୍ଣ୍ଣୟ କରନ୍ତୁ ।

୭. ଅର୍ଥାତ୍ ଏହି ଅନ୍ତିମ ଯୁଗରେ ଅଲ୍ଲାହ ଲୋକମାନଙ୍କୁ ସେମାନଙ୍କ କାର୍ଯ୍ୟ ଅନୁସାରେ ବ୍ୟବହାର ପ୍ରଦର୍ଶନ କରିବେ ଓ ତଦନୁପାତରେ ଫଳ ପ୍ରଦାନ କରିବେ । ଅତଏବ ଯେଉଁ ସମ୍ପ୍ରଦାୟ ଉତ୍ତମ ଓ ପୁଣ୍ୟ କାର୍ଯ୍ୟ ସମ୍ପାଦନ କରିବ, ସେ ତଦନୁଯାୟୀ ଫଳ ପାଇବ ଓ ଅଲ୍ଲାହଙ୍କଠାରୁ ତଦନୁରୂପ ବ୍ୟବହାର ମଧ୍ୟ ଲାଭ କରିବ ।

سُوْرَةُ الْعٰدِيٰتِ مَكِّيَّةٌ (١٠٠) (١١)

# ଅଲ – ଆଦିୟାତ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୧୨ଟି ଆୟତ ଅଛି)



୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହ୍‌ଙ୍କ ନାମ ନେଇ (ପାଠ କରୁଅଛି) ।

وَالْعٰدِيٰتِ ضَبْحًا ۝٢

୨. ଆମେ ପ୍ରମାଣ ସ୍ୱରୂପ ସେହି ଗୋଷ୍ଠୀଗୁଡିକୁ ଉପସ୍ଥାପିତ କରୁଅଛୁ ଯେଉଁମାନେ ଅଶ୍ୱ ଆରୋହଣ କରି ଏପରି ଦ୍ରୁତ ଗତିରେ ଧାବମାନ ହୁଅନ୍ତି ଯେ ସେମାନଙ୍କ ଅଶ୍ୱମାନଙ୍କ ମୁଖରୁ ଧ୍ୱନି ନିର୍ଗତ ହେଉଥାଏ,[୧]

فَالْمُوْرِيٰتِ قَدْحًا ۝٣

୩. ପୁନଶ୍ଚ ସେହି ଅଶ୍ୱାରୋହୀମାନଙ୍କୁ (ମଧ୍ୟ ଉପସ୍ଥାପିତ କରୁଅଛୁ) ଯେଉଁମାନଙ୍କ (ଅଶ୍ୱମାନଙ୍କର ଖୁରା) ଆଘାତରେ ଅଗ୍ନିକଣା ନିର୍ଗତ ହୁଏ,

فَالْمُغِيْرٰتِ صُبْحًا ۝٤

୪. ପୁନଶ୍ଚ ପ୍ରଭାତକାଳରେ ଆକ୍ରମଣକାରୀମାନଙ୍କୁ,[୨]

فَاَثَرْنَ بِهٖ نَقْعًا ۝٥

୫. ଯାହା ଫଳରେ ସେଥିରେ (ପ୍ରଭାତ କାଳରେ) ଧୂଳି ଉଡାନ୍ତି,[୩]

فَوَسَطْنَ بِهٖ جَمْعًا ۝٦

୬. ଏବଂ (ସେମାନେ ଶତ୍ରୁ) ସୈନ୍ୟମାନଙ୍କ ମଧ୍ୟରେ ପ୍ରବେଶ କରନ୍ତି,[୪]

---

୧. ଏହି ଆୟତରେ ଇସଲାମର ସତ୍ୟତା ପ୍ରତିପାଦନ ପାଇଁ ହଜରତ ମହମ୍ମଦଙ୍କର ସାଥୀମାନଙ୍କୁ ପେଶ୍ କରାଯାଇଛି । ଯଦିଚ ଆଲୋଚ୍ୟ ଆୟତରେ 'ଅଶ୍ୱ' ଶବ୍ଦର ପ୍ରୟୋଗ ହୋଇଛି, ତଥାପି ଯେହେତୁ 'ଅଶ୍ୱ' ସ୍ୱେଚ୍ଛାରେ ଅଗ୍ରସର ହୁଏ ନାହିଁ ବରଂ ଚାଳକ ଦ୍ୱାରା ପରିଚାଳିତ ହୁଏ, ତେଣୁ ଏହି ଶବ୍ଦରୁ ଧର୍ମଯୁଦ୍ଧ (ଜିହାଦ)ରେ ନିୟୋଜିତ ଥିବା ଅଶ୍ୱାରୋହୀ ଦଳ ହିଁ ଅଭିପ୍ରେତ । ପରବର୍ତ୍ତୀ ଆୟତର ବ୍ୟାଖ୍ୟା ମଧ୍ୟ ତଦନୁରୂପ କରାଯାଇ ପାରେ ।

୨. ଏହି ଆୟତରେ ସବୁ ଗୂଢ଼ ରହସ୍ୟକୁ ଉନ୍ମୁକ୍ତ କରି ଦିଆଯାଇଛି, କାରଣ ଏଠାରେ ସକାଳ ସମୟରେ ଆକ୍ରମଣ କରିବା ବିଷୟରେ ଉଲ୍ଲେଖ ଅଛି । ଏପରି ସତର୍କତା ଅବଲମ୍ବନ କରି ଯୁଦ୍ଧ କରିବା ଅଶ୍ୱମାନଙ୍କ ପକ୍ଷରେ ସମ୍ଭବ ନୁହେଁ ବରଂ ଅଶ୍ୱ ଆରୋହଣକାରୀମାନଙ୍କ ପକ୍ଷେ ସମ୍ଭବ । ତେଣୁ ଏଠାରେ କେବଳ ଅବିଶ୍ୱାସକାରୀମାନଙ୍କ ବୃତ୍ତାନ୍ତ ବର୍ଣ୍ଣିତ ହୋଇନାହିଁ ବରଂ ହଜରତ ମହମ୍ମଦଙ୍କ ସାଥୀମାନଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି ।

୩. ଅର୍ଥାତ୍ ଆକ୍ରମଣ ଏତେ ପ୍ରବଳ ହେଉଥିଲା ଯେ ଘୋଡ଼ା ଟାପୁରେ ଲାଗିଥିବା ନାଲରୁ ଅଗ୍ନିକଣା ବାହାରି ଆସୁଥିଲା ଏବଂ ପ୍ରଚଣ୍ଡ କୋଳାହଳ ଶୁଣି ଗ୍ରାମବାସୀମାନେ ଭୟରେ ଘରୁ ବାହାରି ଆସୁଥିଲେ ଓ ସମଗ୍ର ପରିବେଶ ଧୂଳିରେ ପୂର୍ଣ୍ଣ ହୋଇ ଯାଉଥିଲା ।

୪. ଅର୍ଥାତ୍ ଅଶ୍ୱାରୋହୀଦଳ ଯେଉଁମାନଙ୍କୁ ଆକ୍ରମଣ କରୁଥିଲେ ସେମାନେ ସେହି ଦଳକୁ ଦେଖି ଭୟଭୀତ ହେଉ ନ ଥିଲେ ବରଂ ବୀରତ୍ୱ ସହକାରେ ସେମାନଙ୍କ ବ୍ୟୂହ ଭିତରକୁ ପଶି ଯାଉଥିଲେ, ପରିଣାମରେ ମୁହାଁମୁହିଁ ଯୁଦ୍ଧ ହେଉଥିଲା ।

إِنَّ الْإِنسَانَ لِرَبِّهِ لَكَنُودٌ ۝۷

୭. ମନୁଷ୍ୟ ବାସ୍ତବରେ ନିଜ ପାଳନକର୍ତ୍ତାଙ୍କ ପ୍ରତି ଅତ୍ୟନ୍ତ କୃତଘ୍ନ[1] ଅଟେ;

وَإِنَّهُ عَلَىٰ ذَٰلِكَ لَشَهِيدٌ ۝۸

୮. ଏବଂ ବାସ୍ତବରେ ସେ ହିଁ (ନିଜ ଉକ୍ତି ଓ କାର୍ଯ୍ୟଦ୍ୱାରା) ଏ ବିଷୟରେ ସାକ୍ଷ୍ୟ ଦେଉଅଛି;

وَإِنَّهُ لِحُبِّ الْخَيْرِ لَشَدِيدٌ ۝۹

୯. ଏବଂ (ଏହା ସତ୍ତ୍ୱେ) ସେ ନିଶ୍ଚିତ ରୂପେ ଧନ ଲୋଭରେ ଅତି ଆଗଭର ।[2]

أَفَلَا يَعْلَمُ إِذَا بُعْثِرَ مَا فِي الْقُبُورِ ۝۱۰

୧୦. କ'ଣ ଏପରି ଲୋକ ଜାଣେ ନାହିଁ ଯେ ଯେତେବେଳେ କବରରେ ଥିବା ଲୋକମାନଙ୍କୁ ଉତ୍‌ଥିତ କରା ହେବ,

وَحُصِّلَ مَا فِي الصُّدُورِ ۝۱۱

୧୧. ଏବଂ ଯାହା କିଛି ହୃଦୟରେ (ଲୁକ୍କାୟିତ) ରହିଅଛି ତାହାକୁ ପ୍ରକାଶ କରାଯିବ,[3]

---

୧. ଏଠାରେ ହଜରତ ମହମ୍ମଦଙ୍କ ସାଥୀମାନଙ୍କ ସହିତ ଯୁଦ୍ଧ କରୁଥିବା ସେହି କୃତଘ୍ନ ଲୋକମାନଙ୍କ ବିଷୟରେ ବର୍ଣ୍ଣନା କରାଯାଇଛି । ସେହି ସାଥୀମାନେ ଯେଉଁମାନଙ୍କ ପାଖରେ ଅଲ୍ଲାହଙ୍କର ବାଣୀ ପହଞ୍ଚାଉଥିଲେ ସେହି ଶେଷୋକ୍ତ ବ୍ୟକ୍ତିମାନେ ସେମାନଙ୍କୁ ଆଦର ଅଭ୍ୟର୍ଥନା କରିବା ପରିବର୍ତ୍ତେ ସେମାନଙ୍କ ଉପରେ ଆକ୍ରମଣ କରୁଥିଲେ । ପରିଣାମରେ ସେମାନେ ନିଜେ ସେମାନଙ୍କ ବଚନ ଓ କର୍ମଦ୍ୱାରା ନିଜ କୃତଘ୍ନତାର ପ୍ରମାଣ ଦେଇଛନ୍ତି ।

୨. ଅର୍ଥାତ୍ ସେହି ଅବିଶ୍ୱାସକାରୀମାନେ ଏତିକି ମଧ୍ୟ ବୁଝିପାରୁ ନଥିଲେ ଯେ ଯେଉଁ ମୁସଲମାନମାନଙ୍କ ଭାଗ୍ୟରେ ବିଜୟପ୍ରାପ୍ତି ଲିପିବଦ୍ଧ ହୋଇଛି ସେମାନଙ୍କ ସହିତ ଯୁଦ୍ଧ କଲେ ତା'ର ପରିଣାମ ସ୍ୱରୂପ ନିଶ୍ଚିତ ରୂପେ ନିଜ ଧନର ଅପଚୟ ହେବ । କିନ୍ତୁ ତା ସତ୍ତ୍ୱେ ସେମାନେ ଲୋଭର ବଶବର୍ତ୍ତୀ ହୋଇ ତଥା ନିଜ ଅଜ୍ଞାନତା ଯୋଗୁଁ ଏଥିସକାଶେ ଯୁଦ୍ଧ କରୁଥାନ୍ତି ଯେ କାଳେ ଏପରି କୌଣସି ପରିସ୍ଥିତି ସୃଷ୍ଟି ହେବ ଯଦ୍ୱାରା ସେମାନେ ବିଜୟଲାଭ କରିବେ ଓ ସେମାନଙ୍କୁ ପ୍ରଚୁର ଧନଦୌଲତ ମିଳିବ ।

୩. ଯଦି ଏହି ଆୟତଗୁଡ଼ିକୁ ପୃଥିବୀ ସହିତ ସମ୍ପୃକ୍ତ କରାଯିବ ତାହାର ଅର୍ଥ ହେବ ଯେ ଅବିଶ୍ୱାସକାରୀମାନେ ବାହ୍ୟତଃ ଜୀବିତ ଦେଖାଯାଉଥିଲେ ମଧ୍ୟ ସେମାନେ ଧର୍ମ ଦୃଷ୍ଟିରୁ କବର ମଧ୍ୟରେ ଅଛନ୍ତି । ଯେତେବେଳେ ସେମାନଙ୍କୁ ଇସଲାମ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ନିର୍ଦ୍ଦେଶ ଦିଆଯିବ ସେତେବେଳେ ସେମାନଙ୍କ ଅନ୍ତରରେ ଯେଉଁସବୁ ରହସ୍ୟ ଲୁକ୍‌କାୟିତ ଭାବେ ରହିଅଛି ସେସବୁଡ଼ିକୁ ପ୍ରକଟିତ କରାହେବ ଅର୍ଥାତ୍ ସେମାନେ ଇସଲାମ ଧର୍ମର ବହୁ ସତ୍ୟକୁ ଅନ୍ତରରେ ସ୍ୱୀକାର କରିଛନ୍ତି, ଅଥଚ ପ୍ରକାଶ୍ୟରେ ଇସଲାମ ଧର୍ମର ବିରୁଦ୍ଧାଚରଣ କରୁଛନ୍ତି । ଏ ସଂକ୍ରାନ୍ତରେ ଏକ ଐତିହାସିକ ଘଟଣା ପ୍ରଣିଧାନଯୋଗ୍ୟ । ଯେତେବେଳେ ମୁସଲମାନମାନେ ମକ୍କା ଜୟ କଲେ ସେତେବେଳେ ହଜରତ ମହମ୍ମଦ ଘୋଷଣା କରିଥିଲେ ଯେ ଯେଉଁମାନେ ମୁସଲମାନମାନଙ୍କୁ ଯୁଦ୍ଧରେ ନୁହେଁ ବରଂ ଯୁଦ୍ଧକ୍ଷେତ୍ର ବାହାରେ ହତ୍ୟା କରିଛନ୍ତି ବା କରାଇଛନ୍ତି ସେମାନଙ୍କୁ କ୍ଷମା ଦିଆଯିବ ନାହିଁ । ସେମାନଙ୍କ ଅପରାଧ ପାଇଁ ସେମାନଙ୍କୁ ହତ୍ୟା କରାଯିବ । ଅବୁ ସୁଫିୟାନର ପତ୍ନୀ ହିନ୍ଦା ମଧ୍ୟ ସେଭଳି ଲୋକମାନଙ୍କ ମଧ୍ୟରେ ସାମିଲ ଥିଲା । ସେ ଭାବୁଥିଲା ଯେ ଯେହେତୁ ସେ ଶାନ୍ତି ସମୟରେ ମଧ୍ୟ ଅନ୍ୟ ଲୋକମାନଙ୍କୁ ମୁସଲମାନମାନଙ୍କ ବିରୁଦ୍ଧରେ ଉତ୍ତେଜିତ କରିଥିଲା, ତେଣୁ ମୁସଲମାନମାନଙ୍କ ହାତରେ ଧରାପଡ଼ିଲେ ତାକୁ ନିଶ୍ଚୟ ହତ୍ୟା କରାଯିବ । ଉହଦ ଯୁଦ୍ଧ କ୍ଷେତ୍ରରେ ସେ ଅନ୍ୟମାନଙ୍କ ସହିତ ଉପସ୍ଥିତ ଥିଲା । ସେତେବେଳେ କୌଣସି ସ୍ତ୍ରୀଲୋକ ଉପରେ ଆକ୍ରମଣ ନ କରିବା ପାଇଁ ହଜରତ ମହମ୍ମଦ ତାଙ୍କ ଅନୁଗାମୀମାନଙ୍କୁ ସ୍ପଷ୍ଟ ନିର୍ଦ୍ଦେଶ ଦେଇଥିଲେ । ଏହା ସତ୍ତ୍ୱେ ହିନ୍ଦା ଆବିସିନିଆର ଓହଶି ନାମକ ଜଣେ କ୍ରୀତଦାସକୁ ଟଙ୍କାପଇସା ଦେଇ ସେହି ଯୁଦ୍ଧରେ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟ ହାସଲ କରିବା ପାଇଁ ତାକୁ କହିଥିଲା । ସେହି କାର୍ଯ୍ୟ ଥିଲା ହଜରତ ହମଜାଙ୍କ ପେଟ ଚିରି ତାଙ୍କ କଲିଜା କାଟି ବାହାରକୁ ଆଣିବା ଓ ତାଙ୍କର କାନ କାଟିଦେବା । ତେଣୁ ଏସବୁ ବିଷୟ ମନେ ପକାଇ ସେ ଆଶଙ୍କିତ ହୋଇଯାଇଥିଲା । ଯେତେବେଳେ ସ୍ତ୍ରୀଲୋକମାନେ ଦୀକ୍ଷା ଗ୍ରହଣ କରିବାକୁ ହଜରତ ମହମ୍ମଦଙ୍କ ନିକଟରେ ଉପସ୍ଥିତ ହେଲେ ସେତେବେଳେ ହିନ୍ଦା ମଧ୍ୟ ଅନ୍ୟ ସ୍ତ୍ରୀଲୋକମାନଙ୍କ ସହିତ ଗୋଟିଏ ବଡ଼ ଚାଦର ଘୋଡ଼େଇ ହୋଇ ହଜରତ ମହମ୍ମଦଙ୍କ ନିକଟକୁ ଆସିଲା । ଦୀକ୍ଷା ଦେବା ସମୟରେ ଯେତେବେଳେ ହଜରତ ମହମ୍ମଦ ସେମାନଙ୍କୁ 'ଆମେମାନେ ଅଲ୍ଲାହଙ୍କ ସହିତ ଅନ୍ୟ କାହାରିକୁ ସମକକ୍ଷ ମଣିବୁ ନାହିଁ'' ବୋଲି ଘୋଷଣା କରି ଦୀକ୍ଷା ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଲେ, ସେତେବେଳେ ହିନ୍ଦା ହଠାତ୍ ଏହିପରି କହିପକାଇଲା 'ହେ ଅଲ୍ଲାହଙ୍କ ଅବତାର ! ଯେବେ ଆପଣଙ୍କ ଏକମାତ୍ର ଉପାସ୍ୟ ଜିତିଗଲେ ଓ ଆମମାନଙ୍କର ହଜାର ହଜାର ଉପାସ୍ୟ ହାରିଗଲେ, ତେବେ ଆମେମାନେ ଅଲ୍ଲାହଙ୍କ ବ୍ୟତୀତ କ'ଣ ଆଉ କାହାରିକୁ ଉପାସ୍ୟ ଭାବେ ଗ୍ରହଣ କରିପାରିବୁ ?' ଏହାଶୁଣି ହଜରତ ମହମ୍ମଦ ପଚାରିଲେ, 'କ'ଣ ହିନ୍ଦା ଉପରୋକ୍ତ ବିଷୟ କହୁଅଛି ?' ତା'ପରେ ହିନ୍ଦା ମଧ୍ୟ ହଜରତ ମହମ୍ମଦଙ୍କୁ କହିଥିଲା, 'ବର୍ତ୍ତମାନ ଆପଣ ମୋର କିଛି କ୍ଷତି କରିପାରିବେ ନାହିଁ କାରଣ ମୁସଲମାନମାନଙ୍କର ଉପାସ୍ୟ ଅଲ୍ଲାହ ସେମାନଙ୍କର ହିଁ ସଂରକ୍ଷକ ଅଟନ୍ତି ଓ ଦୀକ୍ଷା ଗ୍ରହଣ କଲାପରେ ସେମାନଙ୍କର ସମସ୍ତ ପୂର୍ବବର୍ତ୍ତୀ ପାପ ବା ଅପରାଧକୁ ଅଲ୍ଲାହ କ୍ଷମା ଦେଇଥାନ୍ତି । ହଜରତ ମହମ୍ମଦ ତାହାର ଏହି ବକ୍ତବ୍ୟକୁ ଯଥାର୍ଥ ବୋଲି କହିଥିଲେ ଓ ତାକୁ ଛାଡ଼ି ଦେଇଥିଲେ ।

୧୨. ସେଦିନ ସେମାନଙ୍କ ପାଳନକର୍ତ୍ତା ନିଶ୍ଚିତ ରୂପେ ସେମାନଙ୍କର ତତ୍ତ୍ୱ ନେବେ ।

إِنَّ رَبَّهُم بِهِمْ يَوْمَئِذٍ لَّخَبِيرٌ ⑪




## ଭାଗ ୩୦ ଅଲ – କାରିୟା ଅଧ୍ୟାୟ ୧୦୧

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୨ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللَّهِ الرَّحْمَٰنِ الرَّحِيمِ ①

୨. (ସଂସାର ପ୍ରତି)ଏକ ମହାବିପଦ (ଆଗତ ପ୍ରାୟ) !

الْقَارِعَةُ ②

୩. ଏବଂ ସେ ବିପଦ କିପରି, ତୁମକୁ କ'ଣ ଜଣା ?

مَا الْقَارِعَةُ ③

୪. ଏବଂ (ପୁନଶ୍ଚ ଆମେ କହୁଅଛୁ ହେ ମହମ୍ମଦ !) ଏହି (ମହା) ବିପଦ କିପରି, ତୁମକୁ କ'ଣ ଜଣା ?

وَمَا أَدْرَاكَ مَا الْقَارِعَةُ ④

୫. (ଏହି ବିପଦ ଯେତେବେଳେ ଉପସ୍ଥିତ ହେବ) ସେତେବେଳେ ମନୁଷ୍ୟମାନେ ବିକ୍ଷିପ୍ତ ପତଙ୍ଗ ସଦୃଶ (ବ୍ୟତିବ୍ୟସ୍ତ ହୋଇ) ବୁଲୁଥିବେ,

يَوْمَ يَكُونُ النَّاسُ كَالْفَرَاشِ الْمَبْثُوثِ ⑤

୬. ଏବଂ [1]ପର୍ବତଗୁଡ଼ିକ ଭିଣା ହୋଇଥିବା ପଶମ ସଦୃଶ ହୋଇଯିବେ ।

وَتَكُونُ الْجِبَالُ كَالْعِهْنِ الْمَنفُوشِ ⑥

୭. ସେତେବେଳେ ଯାହାର (କର୍ମର) ପଲା ଭାରି ହେବ,

فَأَمَّا مَن ثَقُلَتْ مَوَازِينُهُ ⑦

୮. ସେ (ସର୍ବୋତ୍କୃଷ୍ଟ) ପସନ୍ଦଯୋଗ୍ୟ ଅବସ୍ଥାରେ ରହିଥିବ ।

فَهُوَ فِي عِيشَةٍ رَّاضِيَةٍ ⑧

୯. ଏବଂ ଯାହାର (କର୍ମର) ପଲା ହାଲୁକା ହେବ,

وَأَمَّا مَنْ خَفَّتْ مَوَازِينُهُ ⑨

୧୦. ତାହାର ବାସସ୍ଥାନ [2]ହାୱିୟା (ନାମକ ନରକ) ହେବ ।

فَأُمُّهُ هَاوِيَةٌ ⑩

---

[1] ଏଠାରେ ମଧ୍ୟ 'ପର୍ବତ' ଅର୍ଥ 'ମୁଖ୍ୟ ବ୍ୟକ୍ତି' । ଏହି ଆୟତର ତାତ୍ପର୍ଯ୍ୟ ହେଉଛି ଯେ ଯେତେବେଳେ ସେହି ଭୟାବହ ବିପତ୍ତିର ଆଗମନ ହେବ, ଅର୍ଥାତ୍ ଅବିଶ୍ୱାସକାରୀମାନେ ପରାଜୟ ବରଣ କରିବେ, ସେତେବେଳେ ସେମାନଙ୍କର ମୁଖ୍ୟମାନେ ହଜରତ ମହମ୍ମଦଙ୍କୁ ଆକ୍ରମଣ କରିବା ପରିବର୍ତ୍ତେ ଇତସ୍ତତଃ ପଳାୟନ କରିବେ । ସେମାନଙ୍କ ମଧ୍ୟରୁ କେତେକ-ଉମରବିନ ଅସ ଓ ଅବୁ ସୁଫିୟାନ ଇତ୍ୟାଦି-ଇସଲାମଧର୍ମରେ ଦୀକ୍ଷିତ ହେବାକୁ ହଜରତ ମହମ୍ମଦଙ୍କ ନିକଟକୁ ଧାଇଁ ଆସିଥିଲେ । ସେହିପରି ଅବୁ ଜହଲର ପୁତ୍ର ଅକରମା ନିଜ ଜୀବନ ରକ୍ଷାର୍ଥେ ଆବିସିନିଆକୁ ପଳାୟନ କରିଥିଲା । ବସ୍ତୁତଃ ଆରବର ସମସ୍ତ ସମ୍ଭ୍ରାନ୍ତ ବଂଶୀୟ ବ୍ୟକ୍ତି କାର୍ପାସ ସଦୃଶ ଇତସ୍ତତଃ ବିକ୍ଷିପ୍ତ ହୋଇଗଲେ ।

[2] ମୂଳ ଶବ୍ଦ 'ଉମ୍ମ'ର ଅର୍ଥ 'ମାତା' ହେଲେ ମଧ୍ୟ ଏଠାରେ ତାହାର ଭବାର୍ଥ ବାସସ୍ଥାନ ବା ଆଶ୍ରୟସ୍ଥଳ । ପବିତ୍ର କୋରାନରେ ଅନ୍ୟତ୍ର ମାତାକୁ ଆଶ୍ରୟସ୍ଥଳ ରୂପେ ମଧ୍ୟ ବର୍ଣ୍ଣନା କରାଯାଇଛି । (୨୩:୧୪ ଦ୍ରଷ୍ଟବ୍ୟ)

୧୧. ଏବଂ (ହେ ମହମ୍ମଦ !) ଏହା (ଅର୍ଥାତ୍ ହାୱିୟା) କ'ଣ, ତୁମକୁ କ'ଣ ଜଣା ?

وَمَآ اَدْرٰىكَ مَا هِيَهْ ⑪

୧୨. ଏହା ଏକ ଜ୍ୱଳନ୍ତ ଅଗ୍ନି ।

نَارٌ حَامِيَةٌ ⑫




## ଅଧ୍ୟାୟ ୧୦୨ ଅଲ – ତକାସୁର ଭାଗ ୩୦

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୯ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦାକରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ①

୨. ପରସ୍ପରଠାରୁ ଅଭିବୃଦ୍ଧି ଲାଭ କରିବାର [1] ଅଭିଳାଷ ତୁମମାନଙ୍କୁ ଅବହେଳା ମଧ୍ୟରେ ନିମଜ୍ଜିତ କରି ଦେଲା (ଏବଂ ତୁମେମାନେ ଏହିପରି ହି ରହିଥିବ),

اَلْهٰىكُمُ التَّكَاثُرُ ②

୩. ଏପରିକି ତୁମେମାନେ କବରରେ ଯାଇ ପହଞ୍ଚିବ[2] ।

حَتّٰى زُرْتُمُ الْمَقَابِرَ ③

୪. (ଭଲ ଭାବରେ ମନେରଖ ଯେ) ତୁମେମାନେ ଶୀଘ୍ର (ପବିତ୍ର କୋରାନ ବର୍ଣ୍ଣିତ ସତ୍ୟକୁ) ଜାଣିପାରିବ ।

كَلَّا سَوْفَ تَعْلَمُوْنَ ④

୫. ପୁନଶ୍ଚ (ଆମେ କହୁଅଛୁ ଯେ ତୁମମାନଙ୍କ ଅବସ୍ଥା ସେଭଳି ନୁହେଁ ଯେଭଳି ତୁମେମାନେ ଚିନ୍ତା କରୁଅଛ ଓ) ତୁମେମାନେ ଶୀଘ୍ର ଜାଣିପାରିବ (ଯେ ତୁମମାନଙ୍କର ଆଭ୍ୟନ୍ତରୀଣ ଅବସ୍ଥା ବାସ୍ତବରେ ତାହା ହିଁ ଅଟେ ଯାହା ପବିତ୍ର କୋରାନରେ ବର୍ଣ୍ଣନା କରାଯାଇଛି) ।

ثُمَّ كَلَّا سَوْفَ تَعْلَمُوْنَ ⑤

୬. (ପ୍ରକୃତ ସତ୍ୟ ତୁମମାନଙ୍କ ଚିନ୍ତାଧାରା ଅନୁସାରେ) ଆଦୌ ନୁହେଁ; ହାୟ ! ତୁମେମାନେ ଏହାକୁ ସୁନିଶ୍ଚିତ ଜ୍ଞାନ ବଳରେ ଜାଣି ପାରନ୍ତ କି !

كَلَّا لَوْ تَعْلَمُوْنَ عِلْمَ الْيَقِيْنِ ⑥

---

[1] ଏଠାରେ ସୂଚାଯାଇଛି ଯେ, ଅବିଶ୍ୱାସକାରୀମାନଙ୍କଠାରେ ଅବଶ୍ୟ କୌଣସି ପୁଣ୍ୟ ନ ଥିଲା, ତଥାପି ସେମାନେ ପ୍ରତାରଣା ଦ୍ୱାରା ମୁସଲମାନମାନଙ୍କ ଅପେକ୍ଷା ଅଧିକ ଆଗେଇ ଯିବାକୁ ଇଚ୍ଛା କରୁଥିଲେ । ଫଳରେ ସେମାନେ ନିଜର ଲୋକ ଦେଖାଣିଆ କାର୍ଯ୍ୟକୁ ପ୍ରକୃତ କାର୍ଯ୍ୟ ବୋଲି ଭାବୁଥିଲେ । ତେଣୁ ସେମାନେ ଧର୍ମର ଗୂଢ଼ ତତ୍ତ୍ୱ ବିଷୟରେ ଅମନୋଯୋଗୀ ହୋଇ ପଡୁଥିଲେ ।

[2] ଅଳ୍ପ କେତେକଙ୍କୁ ଛାଡ଼ି, ଯେଉଁମାନଙ୍କୁ କି ଅଲ୍ଲାହ ସତ୍‌ପଥ ପ୍ରଦର୍ଶନ କରାଇଥିଲେ, ଅନ୍ୟମାନଙ୍କର ଏପରି ଅବସ୍ଥା ମୃତ୍ୟୁ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା । ନିଜେ ସତ୍‌ପଥ ପାଇବା ଓ ଅଲ୍ଲାହଙ୍କ ପ୍ରଦତ୍ତ ସତ୍‌ପଥ ମାଧ୍ୟମରେ ଲାଭବାନ୍ ହେବା, ଏହି ଦୁଇଟି ବିଷୟରେ ବହୁ ପାର୍ଥକ୍ୟ ରହିଅଛି । ଏଣୁ ନିଜେ ପାଇଥିବା ସତ୍‌ପଥକୁ ଅଲ୍ଲାହଙ୍କ ସହିତ ସଂଶ୍ଳିଷ୍ଟ କରାଯାଇ ପାରିବ ନାହିଁ ।

لَتَرَوُنَّ الْجَحِيمَ ﴿٧﴾

୭. (ତେବେ ତୁମେମାନେ ଜାଣି ପାରନ୍ତ ଯେ) ତୁମେମାନେ ନିଶ୍ଚୟ ନରକକୁ (ଇହକାଳରେ) ଦେଖିବାକୁ ପାଇବ ।

ثُمَّ لَتَرَوُنَّهَا عَيْنَ الْيَقِينِ ﴿٨﴾

୮. ଏବଂ ତା' ପରେ ତୁମେମାନେ ଏହାକୁ (ପରକାଳରେ) ବିଶ୍ୱାସମୟ ଦୃଷ୍ଟି ଯୋଗେ ମଧ୍ୟ ଦେଖିପାରିବ ।

ثُمَّ لَتُسْأَلُنَّ يَوْمَئِذٍ عَنِ النَّعِيمِ ﴿٩﴾

୯. (ପୁନଶ୍ଚ ମନେରଖ ଯେ) ସେଦିନ (ପ୍ରତ୍ୟେକ ମହାନ୍) ଅନୁଗ୍ରହ ସମ୍ବନ୍ଧରେ ତୁମମାନଙ୍କୁ ପ୍ରଶ୍ନ କରାଯିବ (ଯେ ତୁମେମାନେ ତାହା ନିମନ୍ତେ କୃତଜ୍ଞ ହୋଇଛ କି ନାହିଁ ।




ଭାଗ–୩୦ ଅଧ୍ୟାୟ ୧୦୩

## ଅଲ – ଅସର

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୪ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيمِ ﴿١﴾

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

وَالْعَصْرِ ﴿٢﴾

୨. ଆମେ (ମହମ୍ମଦଙ୍କ) ପତନୋଦ୍ୟତ ଯୁଗକୁ ପ୍ରମାଣ ସ୍ୱରୂପ ଉପସ୍ଥାପିତ କରୁଅଛୁ,

إِنَّ الْإِنْسَانَ لَفِي خُسْرٍ ﴿٣﴾

୩. ବାସ୍ତବରେ (ନବିମାନଙ୍କ ବିରୋଧୀ) ମନୁଷ୍ୟ (ସର୍ବଦା) କ୍ଷତିଗ୍ରସ୍ତ (ହୋଇ) ରହେ ।

إِلَّا الَّذِينَ آمَنُوا وَعَمِلُوا الصّٰلِحٰتِ وَتَوَاصَوْا بِالْحَقِّ ۙ وَتَوَاصَوْا بِالصَّبْرِ ﴿٤﴾

୪. କିନ୍ତୁ ଯେଉଁ ଲୋକମାନେ (ନବିମାନଙ୍କ ଉପରେ) ବିଶ୍ୱାସ କରିଛନ୍ତି, ଏବଂ (ତା' ପରେ) ସେମାନେ (ସମୟୋପଯୋଗୀ) ସମୁଚିତ କାର୍ଯ୍ୟ କରିଛନ୍ତି, ଏବଂ ସତ୍ୟର ନୀତି ଉପରେ ପ୍ରତିଷ୍ଠିତ ରହିବାପାଇଁ ପରସ୍ପରକୁ ଉପଦେଶ ଦେଇଛନ୍ତି, ଏବଂ (ଆସନ୍ନ ବିପତ୍ତି ସମୟରେ ଧୈର୍ଯ୍ୟ ଧାରଣ କରିବାକୁ) ପରସ୍ପରକୁ ଉପଦେଶ ଦେଇ ଆସୁଛନ୍ତି, (ସେପରି ଲୋକେ କଦାପି କ୍ଷତିଗ୍ରସ୍ତ ହେବେ ନାହିଁ ।

سُوْرَةُ الْهُمَزَةِ مَكِّيَّةٌ
(١٠٤)

# ଅଲ – ହୁମଜା

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୧୦ ଟି ଆୟତ ଅଛି ।)

| | |
|---|---|
| ୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) । | بِسْمِ اللّٰهِ الرَّحْمٰنِ الرَّحِيْمِ ① |
| ୨. ପ୍ରତ୍ୟେକ ଚୁଗୁଲିଆ ଓ ପରଛିଦ୍ରାନ୍ବେଷୀ ପାଇଁ ଶାସ୍ତି (ହିଁ ଶାସ୍ତି) ରହିଅଛି, | وَيْلٌ لِّكُلِّ هُمَزَةٍ لُّمَزَةِ ② |
| ୩. ଯେ ଧନ ଠୁଳ କରେ ଓ ତାହାକୁ ଗଣୁଥାଏ । | الَّذِيْ جَمَعَ مَالًا وَّعَدَّدَهٗ ③ |
| ୪. ସେ ମନେ କରେ ଯେ ତାହାର ଧନ ତାହାର ନାମକୁ ବଞ୍ଚାଇ ରଖିବ । | يَحْسَبُ اَنَّ مَالَهٗٓ اَخْلَدَهٗ ④ |
| ୫. (ସେ ଯେପରି ମନେ କରୁଛି) ସେପରି କଦାପି ହେବ ନାହିଁ, (ବରଂ) ସେ ନିଶ୍ଚୟ (ନିଜ ଧନ ସମେତ) ହୁତମା[୧] (ନାମକ ନରକ) ରେ ନିକ୍ଷିପ୍ତ ହେବ ; | كَلَّا لَيُنْۢبَذَنَّ فِي الْحُطَمَةِ ⑤ |
| ୬. ଏବଂ (ହେ ମହମ୍ମଦ !) ତୁମକୁ କ'ଣ ଜଣା ଯେ ହୁତମା କ'ଣ ? | وَمَآ اَدْرٰىكَ مَا الْحُطَمَةُ ⑥ |
| ୭. ଏହା ଅଲ୍ଲାହଙ୍କ ଦ୍ବାରା ଅତିଶୟ ପ୍ରଜ୍ବଳିତ କରା ହୋଇଥିବା ଅଗ୍ନି, | نَارُ اللّٰهِ الْمُوْقَدَةُ ⑦ |
| ୮. ଯାହା ହୃଦୟର ଅନ୍ତଃ ସ୍ଥଳ ପର୍ଯ୍ୟନ୍ତ ପହଞ୍ଚିବ[୨] । | الَّتِيْ تَطَّلِعُ عَلَى الْاَفْـِٕدَةِ ⑧ |
| ୯. ତା' ପରେ ତାହାକୁ (ଅର୍ଥାତ୍ ସେହି ଅଗ୍ନିକୁ) ସବୁ ଦିଗରୁ ସେମାନଙ୍କ ପାଇଁ ବନ୍ଦ କରି ଦିଆଯିବ, (ଯଦ୍ଦ୍ବାରା କି ତାହାର ଉତ୍ତାପ ସେମାନଙ୍କୁ ଅଧିକ କଷ୍ଟଦାୟକ ପ୍ରତୀତ ହେବ) । | اِنَّهَا عَلَيْهِمْ مُّؤْصَدَةٌ ⑨ |

---

୧. ଆୟତ ଅନ୍ତର୍ଗତ 'ହୁତ୍‌ମା'ରୁ ନରକ ଅଭିପ୍ରେତ । କାରଣ ଏହି ଶବ୍ଦର ଅର୍ଥ 'ଯାହାକୁ ଭାଙ୍ଗି ଦିଆଯିବ' । ପବିତ୍ର କୋରାନ ଓ ହଦିସ୍‌ରୁ ଜଣାପଡୁଛି ଯେ ପରିଶେଷରେ ଅଲ୍ଲାହ ଲୋକମାନଙ୍କ ପ୍ରତି ଦୟା ପରବଶ ହୋଇ ନରକକୁ ଲୋପ କରିଦେବେ । ଅନ୍ୟତ୍ର ଉଲ୍ଲିଖିତ ହୋଇଛି ଯେ ମନୁଷ୍ୟ ସବୁ ଦିନ ପାଇଁ ନରକରେ ରହିବ ନାହିଁ ବରଂ ଯେପରି ଶିଶୁ ମାଆ ପେଟରେ କିଛି ସମୟ ପାଇଁ ରହେ, ସେହିପରି ମନୁଷ୍ୟ ମଧ୍ୟ ନରକରେ କିଛି କାଳ ପାଇଁ ରହିବ । ଏହାପରେ ସେ ଖୋଲା ପବନ ଅର୍ଥାତ୍ ବୈକୁଣ୍ଠକୁ ଆସିଯିବ । ହଜରତ ମହମ୍ମଦ ମଧ୍ୟ କହିଛନ୍ତି ଯେ, ଏପରି ଏକ ସମୟ ଆସିବ ଯେତେବେଳେ ନରକରେ କେହି ଜଣେ ହେଲେ ରହି ନ ଥିବେ ଓ ଶୀତଳ ପବନ ନରକର ଦ୍ବାରକୁ ଖୋଲି ଦେଉଥିବ । ତେଣୁ ଉପରୋକ୍ତ ହଦିସ ପବିତ୍ର କୋରାନ ବର୍ଣ୍ଣିତ ଆୟତକୁ ସମର୍ଥନ କରୁଛି ।

୨. ଅର୍ଥାତ୍ ମନୁଷ୍ୟ ଅନ୍ତରରେ ଯେଉଁ ଆବର୍ଜନା ଅଛି ତାକୁ ଅଗ୍ନି ଭସ୍ମ କରିଦେବ ।

فِي عَمَدٍ مُّمَدَّدَةٍ ١٠

୧୦. ଏବଂ (ସେମାନେ ସେତେବେଳେ) ଉଚ୍ଚ ସ୍ତମ୍ଭ ସହିତ ବନ୍ଧା ହୋଇଥିବେ ।[୧]



ଭାଗ ୩୦

## ଅଲ – ଫୀଲ

ଅଧ୍ୟାୟ ୧୦୫

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୬ ଟି ଆୟତ ଅଛି ।)

بِسْمِ اللَّهِ الرَّحْمَٰنِ الرَّحِيمِ ١

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

أَلَمْ تَرَ كَيْفَ فَعَلَ رَبُّكَ بِأَصْحَابِ الْفِيلِ ٢

୨. (ହେ ମହମ୍ମଦ !) କ'ଣ ତୁମକୁ ଜଣା ନାହିଁ[୨] ଯେ ତୁମ ପାଳନକର୍ତ୍ତା ହସ୍ତୀ ନିୟୋଜିତକାରୀମାନଙ୍କ ସହିତ କିପରି ବ୍ୟବହାର କରିଥିଲେ ?

أَلَمْ يَجْعَلْ كَيْدَهُمْ فِي تَضْلِيلٍ ٣

୩. କ'ଣ ସେ (ଆକ୍ରମଣ ପୂର୍ବରୁ ସେମାନଙ୍କୁ ଧ୍ୱଂସ କରି) ସେମାନଙ୍କ ଯୋଜନାକୁ ବିଫଳ କରି ଦେଇ ନ ଥିଲେ ?

وَأَرْسَلَ عَلَيْهِمْ طَيْرًا أَبَابِيلَ ٤

୪. ଏବଂ (ତା' ପରେ) ସେମାନଙ୍କ (ଶବ) ଉପରେ ଦଳ ଦଳ ପକ୍ଷୀ ପ୍ରେରଣ କରିଥିଲେ,

تَرْمِيهِم بِحِجَارَةٍ مِّن سِجِّيلٍ ٥

୫. (ଯେଉଁମାନେ) ସେମାନଙ୍କୁ (ଅର୍ଥାତ୍ ସେମାନଙ୍କ ମାଂସକୁ) କଠିନ ପଥର ଉପରେ କଚାଡୁ ଥିଲେ (ଓ ଚଞ୍ଚୁଦ୍ୱାରା ବିଦାରୁ ଥିଲେ) ।[୩]

---

୧. ଯେତେବେଳେ ଅଲ୍ଲାହଙ୍କ ତରଫରୁ ଶାନ୍ତିର ଆଗମନ ହେବ, ସେତେବେଳେ ଅବଶ୍ୟ ଅଲ୍ଲାହଙ୍କର ଦୟାଭାବ ସେହି ନରକଗାମୀମାନଙ୍କୁ ବାହାରକୁ ନେଇ ଆସିବା ପାଇଁ ଇଚ୍ଛା କରିବ । କିନ୍ତୁ ସେମାନେ ନିଜ ପୂର୍ବପୁରୁଷଙ୍କର ଯେଉଁ ରୀତିନୀତି ଦ୍ୱାରା ପରିଚାଳିତ ହେଉଥିଲେ, ତାହା ସେମାନଙ୍କୁ ସେଠାରେ ଅଟକାଇ ରଖିବ, କାରଣ ସେମାନେ ଅନେକ ମନ୍ଦ କାର୍ଯ୍ୟ କରିଥିବାରୁ ନରକର କଠିନ ଶାସ୍ତି ଭୋଗ କରିବା ସେମାନଙ୍କ ପକ୍ଷରେ ଅପରିହାର୍ଯ୍ୟ ଥିଲା ।

୨. ଆବିସିନିଆ ସାମ୍ରାଜ୍ୟର ୟମନ୍‌ଠାରେ ଅବ୍‌ରହା ନାମକ ଜଣେ ବ୍ୟକ୍ତି ରାଜ୍ୟପାଳ ଥିଲା । ଯେହେତୁ ଜଣେ ଆରବବାସୀ ଗୀର୍ଜାରେ ମଳତ୍ୟାଗ କରିଦେଇଥିଲା, ତେଣୁ ସେ କା'ବାକୁ ଧ୍ୱଂସ କରିବାକୁ ଶପଥ କରିଥିଲା । ଏଠାରେ ତାହାରି ବିଷୟରେ ଓ ତା ପ୍ରତି କରାଯାଇଥିବା ଦଣ୍ଡବିଧାନ ବିଷୟରେ ସୂଚନା ଦିଆଯାଇଛି ।

୩. ଚିଲ ଆଦି ପକ୍ଷୀମାନେ ଯେତେବେଳେ କୌଣସି ଶବକୁ ଖାଆନ୍ତି, ସେତେବେଳେ ସେମାନେ ପ୍ରଥମେ ସେହି ଶବଦେହରୁ ଖଣ୍ଡେ ମାଂସ ଛିଣ୍ଡାଇ ନିଅନ୍ତି ଓ ପରେ ତାହାକୁ ବାରମ୍ବାର ପଥର ଉପରେ କଚାଡୁ ଥାଆନ୍ତି । ସମ୍ଭବତଃ ଏପରି କରିବାର କାରଣ ହେଉଛି ଯେ ମାଂସ ଉପରେ ଲାଗିଥିବା ଧୂଳିମାଟି ସେଥିରୁ ଖସି ପଡ଼ିବ ।

୬. ସୁତରାଂ ଏହା ଫଳରେ ସେ ସେମାନଙ୍କୁ ଏପରି[୧] କୁଣ୍ଡା ସଦୃଶ କରି ଦେଇଥିଲେ ଯାହାକୁ ପଶୁମାନେ ଖାଇ ସାରିଥା'ନ୍ତି ।

فَجَعَلَهُمْ كَعَصْفٍ مَّأْكُولٍ ۝٦



# ଅଲ–କୁରୈଶ

ଅଧ୍ୟାୟ ୧୦୬ ଭାଗ ୩୦

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୫ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ۝١

୨. (ଅନ୍ୟାନ୍ୟ ଉଦ୍ଦେଶ୍ୟ ଭିନ୍ନ) କୁରେଶମାନଙ୍କ ହୃଦୟରେ ପ୍ରୀତି ଉଦ୍ରେକ କରାଇବା ପାଇଁ,[୨]

لِاِيْلٰفِ قُرَيْشٍ ۝٢

୩. ଅର୍ଥାତ୍ ସେମାନଙ୍କ ହୃଦୟରେ ଗ୍ରୀଷ୍ମକାଳୀନ ଓ ଶୀତକାଳୀନ ଯାତ୍ରାପାଇଁ ପ୍ରୀତି ଉଦ୍ରେକ କରାଇବା ସକାଶେ (ଆମେ ଅବ୍ରହାକୁ ଧ୍ୱଂସ କଲୁ) ।

اٖلٰفِهِمْ رِحْلَةَ الشِّتَآءِ وَالصَّيْفِ ۝٣

୪. ସୁତରାଂ ସେ (କୁରୈଶ) ମାନେ ଏହି (କା'ବା) ଗୃହର ପ୍ରଭୁଙ୍କର ଉପାସନା କରିବା ଉଚିତ,

فَلْيَعْبُدُوْا رَبَّ هٰذَا الْبَيْتِ ۝٤

୫. ଯେ ସେମାନଙ୍କୁ (ପ୍ରତ୍ୟେକ ପ୍ରକାର) କ୍ଷୁଧାର୍ତ୍ତ ଥିବାବେଳେ ଭୋଜନ କରାଇଲେ ଏବଂ ପ୍ରତ୍ୟେକ ପ୍ରକାର ଭୟ ସମୟରେ ନିରାପତ୍ତା ପ୍ରଦାନ କରିଥିଲେ ।

الَّذِيْٓ اَطْعَمَهُمْ مِّنْ جُوْعٍ ۙ وَّاٰمَنَهُمْ مِّنْ خَوْفٍ ۝٥

---

୧. ଅର୍ଥାତ୍ ସେମାନଙ୍କୁ ସମ୍ପୂର୍ଣ୍ଣ ଧ୍ୱଂସ କରି ଦେଇଥିଲେ ।

୨. ମୂଳ ଶବ୍ଦ 'ଲେଇଲାଫ'ରେ ଆରବୀ ଅକ୍ଷର 'ଲାମ' ପ୍ରୟୋଗ କରାଯାଇ ପୂର୍ବବର୍ତ୍ତୀ ଅଧ୍ୟାୟ ସହିତ ଏହି ଅଧ୍ୟାୟର ସମ୍ବନ୍ଧ ଥିବା ଦର୍ଶାଯାଇଛି, ଅର୍ଥାତ୍ ଅବ୍ରହାର ଧ୍ୱଂସ ହେବା ଘଟଣା ଏଥିଯୋଗୁଁ ଘଟିଥିଲା ଯଦ୍ଦ୍ୱାରା ମକ୍କାର ଲୋକମାନେ ସହଜରେ ଏଣେତେଣେ ବୁଲିପାରିବେ ।

سُوْرَةُ الْمَاعُوْنِ مَكِّيَّةٌ (١٠٧)

## ଅଲ – ମାଉନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୮ ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

اَرَءَيْتَ الَّذِىْ يُكَذِّبُ بِالدِّيْنِ ②

୨. (ହେ ମହମ୍ମଦ !) କ'ଣ ତୁମେ ସେହି ବ୍ୟକ୍ତିକୁ ଚିହ୍ନିଲ ଯେ ଧର୍ମକୁ ମିଥ୍ୟା ମଣୁଛି ?

فَذٰلِكَ الَّذِىْ يَدُعُّ الْيَتِيْمَ ③

୩. ସେ ହି ଅନାଥକୁ ବିତାଡିତ କରୁଥିଲା,

وَلَا يَحُضُّ عَلٰى طَعَامِ الْمِسْكِيْنِ ④

୪. ଏବଂ ସେ ଦରିଦ୍ରମାନଙ୍କୁ ଭୋଜନ କରାଇବା ସକାଶେ (ଲୋକମାନଙ୍କୁ କେବେ) ଅନୁପ୍ରାଣିତ କରୁ ନ ଥିଲା ।

فَوَيْلٌ لِّلْمُصَلِّيْنَ ⑤

୫. ଏବଂ ସେହି ନମାଜ ପାଠକାରୀମାନଙ୍କର ମଧ୍ୟ ସର୍ବନାଶ ହେବ,

الَّذِيْنَ هُمْ عَنْ صَلَاتِهِمْ سَاهُوْنَ ⑥

୬. ଯେଉଁମାନେ ନିଜ ନମାଜ ପାଠରୁ ଅମନୋଯୋଗୀ ହୁଅନ୍ତି ।

الَّذِيْنَ هُمْ يُرَآءُوْنَ ⑦

୭. (ଏବଂ) ଯେଉଁମାନେ କେବଳ ଲୋକ ଦେଖାଣିଆ କାର୍ଯ୍ୟ କରୁଥା'ନ୍ତି,[୧]

وَيَمْنَعُوْنَ الْمَاعُوْنَ ⑧

୮. ଏବଂ ସେମାନେ ନିଜ ଗୃହର ସାଧାରଣ ଦ୍ରବ୍ୟ ଦେବାରେ (ମଧ୍ୟ ନିଜକୁ ତଥା ଅନ୍ୟମାନଙ୍କୁ) ବାରଣ କରନ୍ତି ।[୨]



ଭାଗ ୩୦

## ଅଲ – କୌଶର

ଅଧ୍ୟାୟ ୧୦୮

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୪ ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ①

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

---

୧. ଏହାର ତାତ୍ପର୍ଯ୍ୟ ହେଉଛି ଯେ ଏହି ଅଧ୍ୟାୟରେ ବର୍ଣ୍ଣିତ କୁକର୍ମର ପରିଣାମ ହି ବିନାଶ ଘଟାଇବ ।

୨. ଏପରିକି ଦରିଦ୍ର ବ୍ୟକ୍ତି ଫେରାଇ ଦେବାକୁ ପ୍ରତିଶ୍ରୁତି ଦେଲେ ମଧ୍ୟ, ସେ ନିଜେ କିଛି ଦିଏ ନାହିଁ ବରଂ ଦେବାପାଇଁ ଅନ୍ୟମାନଙ୍କୁ ବାରଣ କରେ ।

୨. (ହେ ନବି !) ବାସ୍ତବରେ ଆମେ ତୁମକୁ କୌଶର[୧] ପ୍ରଦାନ କରିଅଛୁ;

إِنَّآ أَعْطَيْنَٰكَ ٱلْكَوْثَرَ ۝٢

୩. ସୁତରାଂ ତୁମେ (କୃତଜ୍ଞତା ସ୍ୱରୂପ) ନିଜ ପାଳନକର୍ତ୍ତାଙ୍କର (ଅତ୍ୟଧିକ) ଉପାସନା କର ଓ (ତାହାଙ୍କ ସକାଶେ ) ନିଜକୁ ଉତ୍ସର୍ଗ କର ।

فَصَلِّ لِرَبِّكَ وَٱنْحَرْ ۝٣

୪. ଏବଂ ବିଶ୍ୱାସ ରଖ ଯେ ତୁମର ବିରୋଧୀ ହିଁ ପୁତ୍ର ସନ୍ତାନରୁ ବଞ୍ଚିତ ହେବ ।[୨]

إِنَّ شَانِئَكَ هُوَ ٱلْأَبْتَرُ ۝٤




ଅଧ୍ୟାୟ ୧୦୯ ଅଲ – କାଫେରୁନ ଭାଗ ୩୦

## ଅଲ – କାଫେରୁନ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୭ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ ٱللَّهِ ٱلرَّحْمَٰنِ ٱلرَّحِيمِ ۝١

୨. (ଆମେ ପ୍ରତ୍ୟେକ ଯୁଗର ମୁସଲମାନମାନଙ୍କୁ କହୁଅଛୁ ଯେ ତୁମେ ନିଜ ଯୁଗର ଅବିଶ୍ୱାସକାରୀମାନଙ୍କୁ କହୁଥାଅ, "ହେ ଅବିଶ୍ୱାକାରୀମାନେ, ଶୁଣ !"

قُلْ يَٰٓأَيُّهَا ٱلْكَٰفِرُونَ ۝٢

---

୧. ମୂଳ ଶବ୍ଦ 'କୌଶର' ଅର୍ଥ: (କ) କୌଣସି ବସ୍ତୁର ଆଧିକ୍ୟ (ଖ) ମହାଦାନୀ । ହଦିସରେ ମସିହଙ୍କ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି ଯେ ସେ ଆସିଲେ ଲୋକମାନଙ୍କ ମଧ୍ୟରେ ଧନସମ୍ପତ୍ତି ବିତରଣ କରିବେ, କିନ୍ତୁ ଲୋକମାନେ ତାହା ଗ୍ରହଣ କରିବେ ନାହିଁ । ତେଣୁ ଏଠାରେ ଯେଉଁ ବ୍ୟକ୍ତିଙ୍କର ଆଗମନ ସମ୍ବନ୍ଧରେ ସୂଚନା ଦିଆଯାଇଛି, ସେ ନିଶ୍ଚିତ ରୂପେ ଇସଲାମ ଧର୍ମାବଲମ୍ବୀ ହୋଇଥିବେ ଓ ଆଧ୍ୟାତ୍ମିକ ଦୃଷ୍ଟିରୁ ହଜରତ ମହମ୍ମଦଙ୍କ ପୁତ୍ର ହୋଇଥିବେ । ଏହି ଆୟତରେ ଅବିଶ୍ୱାସକାରୀମାନଙ୍କ ଆକ୍ଷେପ ସମ୍ବନ୍ଧରେ ଉତ୍ତର ଦିଆଯାଇଛି । ସେମାନେ ଆକ୍ଷେପ କରୁଥିଲେ ଯେ ଯେହେତୁ ହଜରତ ମହମ୍ମଦଙ୍କର ପୁତ୍ର ସନ୍ତାନ ନାହାନ୍ତି, ତେଣୁ ସେ ଜଣେ ନିକୃଷ୍ଟ ବ୍ୟକ୍ତି ! ଯେତେବେଳେ ତାଙ୍କର ଆଧ୍ୟାତ୍ମିକ ପୁତ୍ରମାନଙ୍କ ମଧ୍ୟରୁ ଏପରି ଜଣେ ଉଭା ହେବେ ଯିଏ ହଜରତ ମହମ୍ମଦ ଆଣିଥିବା ଆଧ୍ୟାତ୍ମିକ ଧନକୁ ବିତରଣ କରିବେ ସେତେବେଳେ ହଜରତ ମହମ୍ମଦ କିପରି ଜଣେ ନିକୃଷ୍ଟ ବ୍ୟକ୍ତି ହେବେ ? ସେହି ପୁତ୍ର ଏଭଳି ପ୍ରଚୁର ପରିମାଣରେ ଧନ ବିତରଣ କରିବେ ଯେ ଲୋକମାନେ ତାକୁ ଗ୍ରହଣ କରିବାକୁ ମଧ୍ୟ ମନା କରିଦେବେ । ଯେଉଁ ଧନ ଗ୍ରହଣ କରିବାକୁ ଲୋକମାନେ ପ୍ରତ୍ୟାଖ୍ୟାନ କରନ୍ତି ତାହା ପ୍ରକୃତରେ ଜ୍ଞାନ-ଧନ ବା ବିଦ୍ୟା-ଧନ, ଅନ୍ୟଥା କୋଟିପତି ମଧ୍ୟ ଗୋଟିଏ ଟଙ୍କା ଗ୍ରହଣ କରିବାକୁ ମନାକରେ ନାହିଁ ।

୨. ଅର୍ଥାତ୍ ହଜରତ ମହମ୍ମଦଙ୍କ ଶତ୍ରୁମାନେ ଆଧ୍ୟାତ୍ମିକ ସନ୍ତାନ ଲାଭରୁ ବଞ୍ଚିତ ହୋଇଛନ୍ତି । ପବିତ୍ର କୋରାନରୁ ପ୍ରମାଣିତ ହେଉଛି ଯେ ଯେଉଁ ବ୍ୟକ୍ତି ଆଧ୍ୟାତ୍ମିକ ସନ୍ତାନ ଲାଭ କରନ୍ତି ଅଲ୍ଲାହ ତାଙ୍କ ସହିତ ବାର୍ତ୍ତାଳାପ କରନ୍ତି । ସେହି ବ୍ୟକ୍ତି ମଧ୍ୟ ଅଲ୍ଲାହଙ୍କ ଦିବ୍ୟ ବାଣୀର ଅଧିକାରୀ ହୁଅନ୍ତି । 'ସୁରା ଅହଜାବ'ର ଆୟତ ସଂ.୪୧ରେ ବର୍ଣ୍ଣନା କରାଯାଇଛି ଯେ ହଜରତ ମହମ୍ମଦ ତୁମମାନଙ୍କ ମଧ୍ୟରୁ କାହାରି ପିତା ନ ଥିଲେ କି ପିତା ନୁହନ୍ତି । ଅନ୍ୟ ପକ୍ଷରେ ହଜରତ ମହମ୍ମଦଙ୍କର ଆଧ୍ୟାତ୍ମିକ ସନ୍ତାନ ଲାଭ ହେବ ଅଥଚ ତାଙ୍କ ଶତ୍ରୁମାନଙ୍କର ଏଭଳି ସନ୍ତାନ ଲାଭ ହେବନାହିଁ । ଏହି ଆୟତରେ ଦର୍ଶାଯାଇଛି ଯେ, ଅବିଶ୍ୱାସକାରୀମାନଙ୍କ ପୁତ୍ର ସନ୍ତାନମାନେ ଅଲ୍ଲାହଙ୍କ କୃପା ଲାଭ କରିବାରୁ ବଞ୍ଚିତ ହେବେ । କିନ୍ତୁ ଯଦି ଅବିଶ୍ୱାସକାରୀମାନଙ୍କ ସନ୍ତାନମାନେ ହଜରତ ମହମ୍ମଦଙ୍କ ଉପରେ ବିଶ୍ୱାସ ସ୍ଥାପନ କରିବେ ତେବେ ସେମାନେ ମଧ୍ୟ ଅଲ୍ଲାହଙ୍କର କୃପା ଲାଭ କରିବେ ।

୩. "ଆମେ ତୁମମାନଙ୍କ ପଦ୍ଧତି ଅନୁସାରେ ଉପାସନା କରୁନାହୁଁ ;"

لَآ اَعْبُدُ مَا تَعْبُدُوْنَ ۝٣

୪. "ଏବଂ ତୁମେମାନେ ଆମ ପଦ୍ଧତି ଅନୁସାରେ ଉପାସନା କରୁନାହଁ;"

وَلَآ اَنْتُمْ عٰبِدُوْنَ مَآ اَعْبُدُ ۝٤

୫. "ଏବଂ ଆମେ ତାହାଙ୍କର ଉପାସନା କରୁନାହୁଁ, ଯାହାର ତୁମେମାନେ ଉପାସନା କରୁଅଛ."

وَلَآ اَنَا عَابِدٌ مَّا عَبَدْتُّمْ ۝٥

୬. "ଏବଂ ତୁମେମାନେ ତାହାଙ୍କର ଉପାସନା କରୁନାହଁ ଯାହାଙ୍କର ଆମେ ଉପାସନା କରୁଅଛୁ ।"

وَلَآ اَنْتُمْ عٰبِدُوْنَ مَآ اَعْبُدُ ۝٦

୭. (ଉପରୋକ୍ତ ଘୋଷଣା ଅନୁସାରେ) ତୁମମାନଙ୍କ ଧର୍ମ ତୁମମାନଙ୍କ ସକାଶେ, (ଏକ କର୍ମ- ପଦ୍ଧତି ନିର୍ଦ୍ଧାରିତ କରେ) ଏବଂ ଆମର ଧର୍ମ ଆମ ସକାଶେ (ଅନ୍ୟ ଏକ କର୍ମ- ପଦ୍ଧତି ନିର୍ଦ୍ଧାରିତ କରେ) ।

لَكُمْ دِيْنُكُمْ وَلِيَ دِيْنِ ۝٧




ଭାଗ ୩୦

## ଅଲ — ନସର

ଅଧ୍ୟାୟ ୧୧୦

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସ୍ମିଲ୍ଲାହ ସମେତ ୪ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ۝١

୨. ଯେତେବେଳେ ଅଲ୍ଲାହଙ୍କ ସାହାଯ୍ୟ, ଓ ସମ୍ପୂର୍ଣ୍ଣ ବିଜୟ ଉପସ୍ଥିତ ହେବ,

اِذَا جَآءَ نَصْرُ اللّٰهِ وَالْفَتْحُ ۝٢

୩. ଏବଂ ତୁମେ ସେ ବିଷୟର ଲକ୍ଷଣ ଦେଖିବାକୁ ପାଇବ[୧] ଯେ ଲୋକମାନେ ଦଳ ଦଳ ହୋଇ ଅଲ୍ଲାହଙ୍କ ଧର୍ମରେ ପ୍ରବେଶ କରିବେ,

وَرَاَيْتَ النَّاسَ يَدْخُلُوْنَ فِيْ دِيْنِ اللّٰهِ اَفْوَاجًا ۝٣

୧. ସୁରା 'କୌଶର'ରେ ଅଲ୍ଲାହ ପ୍ରତିଶ୍ରୁତି ଦେଇଛନ୍ତି ଯେ ହଜରତ ମହମ୍ମଦଙ୍କ ଅନୁଗାମୀମାନଙ୍କ ମଧ୍ୟରେ ଅନେକ ଧର୍ମପ୍ରାଣ ବ୍ୟକ୍ତି ଜନ୍ମଗ୍ରହଣ କରିବେ । ଆଲୋଚ୍ୟ ଆୟତରେ ମଧ୍ୟ ବହୁ ଲୋକ ଇସଲାମ ଧର୍ମରେ ଦୀକ୍ଷିତ ହେବା ବିଷୟରେ ବର୍ଣ୍ଣନା କରାଯାଇଛି । ତେଣୁ ସୁରା କୌଶର ସହିତ ଏହି ଅଧ୍ୟାୟର ସମ୍ପର୍କ ଅଛି ।

୪. ସେତେବେଳେ ତୁମେ ନିଜ ପାଳନକର୍ତ୍ତାଙ୍କର ପ୍ରଶଂସା (ଗାନ) ସହିତ ତାହାଙ୍କର ପବିତ୍ରତା ବର୍ଣ୍ଣନା କରିବାରେ ନିମଜ୍ଜିତ ହୁଅ, ଏବଂ (ମୁସଲମାନଙ୍କ ଶିକ୍ଷା ଦୀକ୍ଷାରେ ଯାହା କିଛି ତ୍ରୁଟି ରହିଯାଇଥିବ ତାହାର ବିମୋଚନ ସକାଶେ) ତାହାଙ୍କ ନିକଟରେ କ୍ଷମା ପ୍ରାର୍ଥନା କର; ସେ ବାସ୍ତବରେ ନିଜ ଭକ୍ତମାନଙ୍କ ପ୍ରତି (ଅନୁକମ୍ପା ସହ) ବାରମ୍ବାର ପ୍ରତ୍ୟାବର୍ତ୍ତନ କରନ୍ତି ।

فَسَبِّحْ بِحَمْدِ رَبِّكَ وَاسْتَغْفِرْهُ ۚ إِنَّهُ كَانَ تَوَّابًا ④



ଅଧ୍ୟାୟ ୧୧୧ ଭାଗ ୩୦

## ଅଲ – ଲହବ

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୬ ଟି ଆୟତ ଅଛି ।)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللَّهِ الرَّحْمَٰنِ الرَّحِيمِ ①

୨. ଅଗ୍ନିଶିଖାର[୧] ଜନକର ଦୁଇ ହସ୍ତକୁ ଜଡ଼ କରି ଦିଆଗଲା ଏବଂ ସେ (ନିଜେ) ମଧ୍ୟ ଜଡ଼ବତ୍ ରହିଗଲା ।

تَبَّتْ يَدَا أَبِي لَهَبٍ وَتَبَّ ②

୩. ତାହାର ଧନ[୨] ତାହାକୁ କୌଣସି ଲାଭ ଦେଲା ନାହିଁ କି ତାହାର ପ୍ରଚେଷ୍ଟା[୩] (ତାହାକୁ କିଛି ଲାଭ ଦେଲା ନାହିଁ) ।

مَا أَغْنَىٰ عَنْهُ مَالُهُ وَمَا كَسَبَ ③

---

୧. ଅବୁ ଲହବର ଦେହର ରଙ୍ଗ ଖୁବ୍ ଗୋରା ଓ ତାହାର ସ୍ୱଭାବ ଅତ୍ୟନ୍ତ ଉଗ୍ର ଥିଲା । ତେଣୁ ଏଠାରେ ହୁଏତ ତା ଦେହର ରଙ୍ଗପ୍ରତି ବା ତା' ସ୍ୱଭାବ ପ୍ରତି ଅଥବା ସାଧାରଣ ଭାବରେ ଇସଲାମ-ବିରୋଧୀ ବ୍ୟକ୍ତିମାନଙ୍କର ଆଭ୍ୟନ୍ତରୀଣ ଅବସ୍ଥାକୁ ଲକ୍ଷ୍ୟକରି ସେମାନଙ୍କ ପ୍ରତି ସଙ୍କେତ ଦିଆଯାଇଛି । ଏତଦ୍ଭିନ୍ନ ଏହି ସଙ୍କେତ ଆମେରିକା ବା ରୁଷିଆ ପ୍ରତି ଦିଆଯାଇପାରିଥାଏ, କାରଣ ସେମାନେ ଉଭୟ ନିଜର ସହାୟକ ଗୋଷ୍ଠୀ ସ୍ଥିର କରିଛନ୍ତି, ଯେଉଁମାନେ କି ଯୁଦ୍ଧ ଲାଗିଲେ ଆବଶ୍ୟକ ବେଳେ ସେମାନଙ୍କ ପକ୍ଷରେ ଲାଭଦାୟକ ହେବେ । 'ହାତ' ଶବ୍ଦର ଅର୍ଥ ସହାୟକ ମଧ୍ୟ ହୋଇପାରେ, କାରଣ ହାତ ଦ୍ୱାରା ଅନ୍ୟକୁ ସାହାଯ୍ୟ କରିହେବ ଓ ନିଜକୁ ମଧ୍ୟ ରକ୍ଷା କରିହେବ । ଅଲ୍ଲାହ କହୁଛନ୍ତି, ଯେହେତୁ ଉପରୋକ୍ତ ଦୁଇଟି ଦେଶ ଭ୍ରମର ବଶବର୍ତ୍ତୀ ହୋଇଛନ୍ତି ଅର୍ଥାତ୍ ଗୋଟିଏ ତ୍ରିତ୍ୱବାଦରେ ଆସ୍ଥା ସ୍ଥାପନ କରିଥିବାବେଳେ ଅନ୍ୟ ଦେଶ ନାସ୍ତିକତାକୁ ନିଜସ୍ୱ କରିଅଛି, ତେଣୁ ଅଲ୍ଲାହ ସେହି ଉଭୟ ଦେଶ ବା ଗୋଷ୍ଠୀର ଦୁଇହାତକୁ ଅଚଳ ଓ ଅକ୍ଷମ କରିଦେଇଛନ୍ତି । ଏପରି କହିବାର ତାତ୍ପର୍ଯ୍ୟ ହେଉଛି ଯେ ଉଭୟ ଦେଶର ମୁଖ୍ୟ ସହାୟକମାନଙ୍କର ସର୍ବନାଶ ପାଇଁ ବ୍ୟବସ୍ଥା କରାଯାଇଅଛି ଏବଂ ଏହିରୂପେ ସେହି ଉଭୟ ଦେଶର ବିନାଶ ପାଇଁ ମଧ୍ୟ ସମୁଚିତ ପନ୍ଥା ଗ୍ରହଣ କରାଯାଇଛି ।

୨. ଅର୍ଥାତ୍ ସେମାନେ ଧନବାନ୍ ହେବେ, କିନ୍ତୁ ସେମାନଙ୍କ ଧନ ସେମାନଙ୍କର କୌଣସି କାମରେ ଲାଗିବ ନାହିଁ ।

୩. ସେମାନେ ବିଜ୍ଞାନରେ ପ୍ରଭୂତ ଉନ୍ନତି ସାଧନ କରିବେ, ତଥାପି ତାହା ସେମାନଙ୍କ ପକ୍ଷରେ ଲାଭପ୍ରଦ ହେବ ନାହିଁ ।

سَيَصْلٰى نَارًا ذَاتَ لَهَبٍ ﴿٤﴾

୪. ସେ ନିଶ୍ଚୟ ଅଗ୍ନିରେ ନିପତିତ ହେବ[୧], ଯାହା କି (ତାହାରି ସଦୃଶ) ଅଗ୍ନି ଶିଖା ଉଦ୍‌ଗୀରଣ କରୁଥିବ;

وَّامْرَاَتُهٗ ؕ حَمَّالَةَ الْحَطَبِ ﴿٥﴾

୫. ଏବଂ ତାହାର ପତ୍ନୀ[୨] ମଧ୍ୟ, ଯେ କି ଜାଳେଣି ବହନ କରି ଆଣୁଥାଏ (ଅଗ୍ନି ମଧ୍ୟରେ ନିପତିତ ହେବ) ।

فِيْ جِيْدِهَا حَبْلٌ مِّنْ مَّسَدٍ ﴿٦﴾

୬. ତାହାର (ଅର୍ଥାତ୍ ତା ପତ୍ନୀର) ବେକରେ ଖଜୁରିର ବଳା ହୋଇଥିବା ଶକ୍ତ ଦଉଡ଼ି[୩] ବନ୍ଧା ହେବ ।




ଭାଗ ୩୦ | ଅଲ — ଇଖଲାସ | ଅଧ୍ୟାୟ ୧୧୨

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ । ଏଥିରେ ବିସମିଲ୍ଲାହ ସମେତ ୫ ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ﴿١﴾

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

---

୧. ଅର୍ଥାତ୍ ସେମାନେ ପରିଶେଷରେ ଇହଜଗତରେ ଓ ପରଜଗତରେ ଶାସ୍ତି ଭୋଗ କରିବେ । ଇସଲାମ ଧର୍ମ ବିରୁଦ୍ଧରେ ସେମାନଙ୍କ ଅନ୍ତରରେ ଈର୍ଷା ଓ ଦ୍ୱେଷର ଯେପରି ନିଆଁ ଜଳୁଛି ସେମାନେ ସେହିପରି ନିଆଁରେ ପିଙ୍ଗାଯିବେ ।

୨. ଏଠାରେ 'ପତ୍ନୀ' ଶବ୍ଦ ଅଧୀନସ୍ଥ ବ୍ୟକ୍ତି ବା ଦେଶର ଜନତାଙ୍କୁ ବୁଝାଉଛି । ଏହାର ତାତ୍ପର୍ଯ୍ୟ ହେଉଛି ଯେ ସେମାନେ ବିଦେଶରେ ଯେଉଁମାନଙ୍କ ସହିତ ମିତ୍ରତା ସ୍ଥାପନ କରିବେ ସେମାନେ ନିଜେ ଧ୍ୱଂସ ହେବେ ତଥା ସେମାନଙ୍କର ଧନସମ୍ପତ୍ତି ଓ ଅନ୍ୟାନ୍ୟ ସାମଗ୍ରୀ ନଷ୍ଟ ହୋଇଯିବ । ସେହିପରି ସେମାନଙ୍କ ଦେଶବାସୀମାନେ ମଧ୍ୟ ଧ୍ୱଂସ ମୁଖରେ ପଡ଼ିବେ, କାରଣ ସେମାନେ ସେହି ନିଆଁରେ ଇନ୍ଧନ ଯୋଗାଇ ତାହାକୁ ଅଧିକ ପ୍ରଜ୍ୱଳିତ କରିଥିଲେ ।

୩. ଯେହେତୁ ଏହା ଗଣତାନ୍ତ୍ରିକ ଶାସନବ୍ୟବସ୍ଥା ହେବ ତେଣୁ ସେଠାକାର ଜନତା ଓ ଜନନେତାମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିବ । ସେହି ସମ୍ପର୍କ ଏପରି ଦୃଢ଼ ହୋଇଥିବ ଯେ ତାହାକୁ ଛିନ୍ନ କରାଯିବ ନାହିଁ । ସେହି କାରଣରୁ ଏଠାରେ ଖଜୁରି ଦଉଡ଼ିର ଉଲ୍ଲେଖ ଅଛି, ଯାହାକି ସହଜରେ ଛିଣ୍ଡେ ନାହିଁ । ବସ୍ତୁତଃ ଏହାର ପ୍ରକୃତ ମର୍ମ ହେଉଛି ଯେ ଜନତା ସେମାନଙ୍କ ନେତୃବର୍ଗଙ୍କୁ ଯୁଦ୍ଧ ସାମଗ୍ରୀର ବ୍ୟବସ୍ଥା ପାଇଁ ସର୍ବଦା ପ୍ରବର୍ତ୍ତାଉଥିବେ ।

୨. (ଆମେ ପ୍ରତ୍ୟେକ ଯୁଗର ମୁସଲମାନଙ୍କୁ ଆଦେଶ ଦେଉଅଛୁ ଯେ) ତୁମେ (ଅନ୍ୟ ଲୋକମାନଙ୍କୁ) କହୁଥାଅ, "ସେ ହିଁ ଅଲ୍ଲାହ , ଯେ କି ଅଦ୍ୱିତୀୟ।"[1][2]

قُلْ هُوَ اللّٰهُ اَحَدٌ ۝٢

୩. ସେ ହିଁ ଅଲ୍ଲାହ, ଯାହାଙ୍କ ଉପରେ ସମସ୍ତେ ନିର୍ଭରଶୀଳ,[3] (ଏବଂ ସେ କାହାରି ଉପରେ ନିର୍ଭରଶୀଳ ନୁହନ୍ତି)।

اَللّٰهُ الصَّمَدُ ۝٣

୪. ସେ କାହାକୁ ପ୍ରସବ କରି ନାହାନ୍ତି କି ତାହାଙ୍କୁ ପ୍ରସବ[4] କରାଯାଇ ନାହିଁ;

لَمْ يَلِدْ ۙ وَلَمْ يُوْلَدْ ۝٤

---

୧. ମୂଳ ଶବ୍ଦ 'କୁଲ୍' (ଅର୍ଥାତ୍ କହୁଥାଅ)କୁ ଶେଷ ତିନି ଅଧ୍ୟାୟର ପ୍ରାରମ୍ଭିକ ଶବ୍ଦ ଭାବରେ ପ୍ରୟୋଗ କରା ଯାଇ ସୂଚନା ଦିଆଯାଇଛି ଯେ ଅଲ୍ଲାହଙ୍କର ବାର୍ତ୍ତାକୁ ଅନ୍ୟମାନଙ୍କ ପର୍ଯ୍ୟନ୍ତ ପହଞ୍ଚାଇ ଦିଅ। ଏପରି ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ହେଉଛି ଯେ ଯେବେ ହଜରତ ମହମ୍ମଦ ଲୋକମାନଙ୍କ ନିକଟରେ ଅଲ୍ଲାହଙ୍କ ବାର୍ତ୍ତା ପହଞ୍ଚାଇ ଦେବେ, ତେବେ ଏହାପରେ ମଧ୍ୟ ଲୋକମାନେ ପବିତ୍ର କୋରାନ ମଧ୍ୟରେ ଏହି 'କୁଲ୍' ଶବ୍ଦକୁ ପାଠ କରୁଥିବେ। ଏଣୁ ସେହି ବାର୍ତ୍ତାକୁ ଅନ୍ୟମାନଙ୍କ ପାଖରେ ପହଞ୍ଚାଇଦେବା ସେମାନଙ୍କର ମଧ୍ୟ ପରମ କର୍ତ୍ତବ୍ୟ ହେବ। ତେଣୁ ସେହି ଶବ୍ଦ ମାଧ୍ୟମରେ ସର୍ବସାଧାରଣଙ୍କୁ ନିର୍ଦ୍ଦେଶ ଦିଆଯାଇଛି ଯେ ସେମାନେ ଅଲ୍ଲାହଙ୍କର ବାର୍ତ୍ତାକୁ ନିଜ ପ୍ରତି ସୀମିତ ନ ରଖି ତାହାକୁ ଅନ୍ୟମାନଙ୍କ ପାଖରେ ପହଞ୍ଚାଇ ଦେବା ଉଚିତ, ତାହାହେଲେ ଯେଉଁମାନେ ସେମାନଙ୍କଠାରୁ ଏହି ବାର୍ତ୍ତା ଶୁଣିବେ ସେମାନେ ଅନ୍ୟମାନଙ୍କୁ ଓ ତା'ପରେ ଅନ୍ୟମାନେ ଆହୁରି ଅନେକଙ୍କୁ ତାହା ଶୁଣାଇବେ। ପରିଶେଷରେ ସେହି ବାର୍ତ୍ତା ସାରା ସଂସାରରେ ପ୍ରସାର ଲାଭ କରିବ।

୨. 'ଅହଦ୍' ଶବ୍ଦ ନିଶ୍ଚିତ ରୂପେ ଓ ନିର୍ଦ୍ଦିଷ୍ଟ ଭାବରେ 'ଏକ'କୁ ବୁଝାଏ, ଅର୍ଥାତ୍ ତାହା ଅଭିନ୍ନ, ଅଦ୍ୱିତୀୟ ବା ଯହିଁରେ ଅନ୍ୟର ସ୍ଥାନ ନାହିଁ। ଅନ୍ୟ ପକ୍ଷରେ ଆରବୀ ଭାଷାର 'ୱାହିଦ୍' ଶବ୍ଦ ଠିକ୍ ସେତିକି ଅର୍ଥ ବହନ କରୁନାହିଁ। ତେଣୁ ଏଠାରେ ଅଲ୍ଲାହ 'ଅହଦ୍' ଶବ୍ଦ ପ୍ରୟୋଗ କରି ଜଣାଇ ଦେଇଛନ୍ତି ଯେ ସେ ସମ୍ପୂର୍ଣ୍ଣ ଭାବରେ ଏକ ଓ ତାହାଙ୍କ ସଦୃଶ ବା ସମକକ୍ଷ ଅନ୍ୟ କେହି ହୋଇ ନ ପାରନ୍ତି।

୩. ମୂଳ ଶବ୍ଦ 'ସମଦ' ଅର୍ଥ ଯିଏ ଅନ୍ୟ ଉପରେ ନିର୍ଭର କରେ ନାହିଁ, ଅଥଚ ଅନ୍ୟମାନେ ତାହାଙ୍କ ଉପରେ ନିର୍ଭର କରନ୍ତି ଓ ଅନ୍ୟ କେହି ତାହାଙ୍କ ବିନା ସହାୟତାରେ ତିଷ୍ଠି ରହି ପାରିବ ନାହିଁ। ଏହି ଶବ୍ଦରେ ମଧ୍ୟ ସମ୍ପୂର୍ଣ୍ଣ ଏକେଶ୍ୱରବାଦ ସ୍ପଷ୍ଟଭାବେ ନିହିତ ଅଛି ଏବଂ ଦର୍ଶାଯାଇଛି ଯେ ଏହି ସଂସାରରେ ଯାହା କିଛି ଅଛି ତାହା ଅଲ୍ଲାହଙ୍କ ବିନା ସାହାଯ୍ୟରେ ଚଳି ପାରିବ ନାହିଁ। କିନ୍ତୁ ଅନ୍ୟ ପକ୍ଷରେ ଅଲ୍ଲାହଙ୍କ ନିକଟରେ ଏ ସବୁର ଆବଶ୍ୟକତା ନାହିଁ। ଯିଏ ସର୍ବଦା ତିଷ୍ଠି ରହିପାରେ ଓ ଯିଏ ମହିମମୟ ସେ ମଧ୍ୟ 'ସମଦ' ଶବ୍ଦର ପରିସରଭୁକ୍ତ। ଏ ଉଭୟ ଅର୍ଥ ମଧ୍ୟ ସମ୍ପୂର୍ଣ୍ଣ ଏକେଶ୍ୱରବାଦକୁ ପ୍ରମାଣ କରୁଅଛି। ଯିଏ ସର୍ବଦା ତିଷ୍ଠି ରହିବ ତାହାର ମୁକାବିଲା କେହି କରିପାରିବେ ନାହିଁ। ଯିଏ ମହିମା ଓ ଗୌରବରେ ଏତେ ଅଭିବୃଦ୍ଧି ଲାଭ କରିଥିବ, ଅନ୍ୟ କୌଣସି ବସ୍ତୁ ସେହି ସ୍ଥାନ ପର୍ଯ୍ୟନ୍ତ ପହଞ୍ଚି ପାରିବ ନାହିଁ। ଏହାର ତାତ୍ପର୍ଯ୍ୟ ହେଉଛି, ଯିଏ ସେପରି ମହିମମୟ ସେ ଏକ, ଅଭିନ୍ନ ଓ ଅଦ୍ୱିତୀୟ। ବସ୍ତୁତଃ ବିଶ୍ୱର କୌଣସି ବସ୍ତୁ, ଏପରିକି କ୍ଷୁଦ୍ର ଅଣୁ ମଧ୍ୟ, ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ ଅଥଚ ଅଲ୍ଲାହ ସ୍ୱୟଂସମ୍ପୂର୍ଣ୍ଣ। ସେ ସମସ୍ତ ଧାରଣା ଓ ଅନୁମାନର ଊର୍ଦ୍ଧ୍ୱରେ। ତାହାଙ୍କ ଗୁଣାବଳୀ ଅସୀମ ଓ ଅପରିମିତ।

୪. ଏହି ଆୟତରେ ମଧ୍ୟ ସମ୍ପୂର୍ଣ୍ଣ ଏକେଶ୍ୱରବାଦର ପ୍ରମାଣ ଅଛି, କାରଣ ଯିଏ କାହାକୁ ପ୍ରସବ କରି ନଥାଏ ତାକୁ ବନ୍ଧ୍ୟା ହିଁ କୁହାଯାଏ ଅଥବା ତାହା ଏପରି ଏକ ସତ୍ତା ଯାହା ଅପରିବର୍ତ୍ତନୀୟ, ଯେପରି ନଦୀ ବା ପର୍ବତ। କିନ୍ତୁ ଅଲ୍ଲାହଙ୍କ ମହିମା ସହିତ ନଦୀ ଓ ପର୍ବତର କୌଣସି ସମ୍ବନ୍ଧ ନାହିଁ। ଏହି ଆୟତର ଶେଷାଂଶ 'ତାହାଙ୍କୁ ପ୍ରସବ କରାଯାଇ ନାହିଁ' ମଧ୍ୟ ସମ୍ପୂର୍ଣ୍ଣ ଏକେଶ୍ୱରବାଦକୁ ପ୍ରମାଣିତ କରୁଅଛି, କାରଣ ପୃଥିବୀରେ ଯାହା କିଛି ଅଛି ସେ ସବୁକୁ କେହି ନା କେହି ପ୍ରସବ କରିଛନ୍ତି।

ୖ وَلَمْ يَكُنْ لَّهٗ كُفُوًا اَحَدٌ ﴿٥﴾

୫. ଏବଂ (ଗୁଣାବଳୀ ଦୃଷ୍ଟିରୁ) କେହି ତାହାଙ୍କର ସମକକ୍ଷ ନୁହନ୍ତି ।




ଭାଗ ୩୦

# ଅଲ — ଫଲକ

ଅଧ୍ୟାୟ ୧୧୩

(ଏହି ସୁରା ମକ୍କାରେ ଅବତୀର୍ଣ୍ଣ ମଦିନାରେ ଏଥିରେ ବିସ୍ମିଲ୍ଲାହ ସମେତ ୬ ଟି ଆୟତ ଅଛି ।)

بِسْمِ اللّٰهِ الرَّحْمٰنِ الرَّحِيْمِ ﴿١﴾

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

قُلْ اَعُوْذُ بِرَبِّ الْفَلَقِ ﴿٢﴾

୨. (ଆମେ ପ୍ରତ୍ୟେକ ଯୁଗର ମୁସଲମାନଙ୍କୁ କହୁଅଛୁ ଯେ) ତୁମେ (ଅନ୍ୟ ଲୋକମାନଙ୍କୁ) କହୁଥାଏ, "ମୁଁ ସକଳ ସୃଷ୍ଟିର ପାଳନକର୍ତ୍ତାଙ୍କ ନିକଟରେ ଆଶ୍ରୟ ଭିକ୍ଷା କରୁଅଛି,"

مِنْ شَرِّ مَا خَلَقَ ﴿٣﴾

୩. "ସେ ସୃଷ୍ଟି କରିଥିବା ପ୍ରତ୍ୟେକଙ୍କର (ପ୍ରକାଶ୍ୟ ଓ ଗୁପ୍ତ) କୁକର୍ମରୁ (ରକ୍ଷା ପାଇବା ସକାଶେ)",

وَمِنْ شَرِّ غَاسِقٍ اِذَا وَقَبَ ﴿٤﴾

୪. "ଏବଂ ଅନ୍ଧକାର ସୃଷ୍ଟିକାରୀର ପ୍ରତ୍ୟେକ ଚକ୍ରାନ୍ତରୁ (ରକ୍ଷା ପାଇବା ସକାଶେ) ଯେତେବେଳେ ସେ ଅନ୍ଧକାର କରିଥାଏ,"

---

୧. ପ୍ରଥମେ ଅଲ୍ଲାହଙ୍କର 'ଜାତି ତୌହିଦ' (ଅର୍ଥାତ୍ ବ୍ୟକ୍ତିଗତ ଏକେଶ୍ୱରବାଦ)ର ବର୍ଣ୍ଣନା କରାଯାଇଥିଲା । ବର୍ତ୍ତମାନ ଯେଉଁ ଏକେଶ୍ୱରବାଦ ବର୍ଣ୍ଣନା କରାଯାଉଛି ତାହା ହେଉଛି 'ସିଫାତି ତୌହିଦ' (ଅର୍ଥାତ୍ ଗୁଣ ସମ୍ବନ୍ଧୀୟ ଏକେଶ୍ୱରବାଦ) । ଏଠାରେ ଅବଶ୍ୟ ମନେ ରଖିବାକୁ ହେବ ଯେ ମନୁଷ୍ୟ ସୃଷ୍ଟିକର୍ତ୍ତାଙ୍କ ଭଳି କେତେକ କାର୍ଯ୍ୟ କରୁଥିଲେ ମଧ୍ୟ ତାଙ୍କ ସହିତ ବା ତାଙ୍କର ସମକକ୍ଷ ହୋଇପାରିବ ନାହିଁ । ଉଦାହରଣ ସ୍ୱରୂପ, ମନୁଷ୍ୟ ଶୁଣିପାରେ ଓ ଦେଖିପାରେ ଏବଂ ସୃଷ୍ଟିକର୍ତ୍ତା ମଧ୍ୟ ଶୁଣିପାରନ୍ତି ଓ ଦେଖିପାରନ୍ତି । ଉଭୟଙ୍କ କାର୍ଯ୍ୟ ଏକା ରକମର ଜଣାପଡୁଥିଲେ ମଧ୍ୟ ଉଭୟ ସମାନ ହୋଇ ନ ପାରନ୍ତି, କାରଣ ମନୁଷ୍ୟ କାନ ସାହାଯ୍ୟରେ ଶୁଣେ ଓ ଆଖି ସାହାଯ୍ୟରେ ଦେଖେ ଅଥଚ ସୃଷ୍ଟିକର୍ତ୍ତାଙ୍କର ଆଖି ନ ଥାଇ ମଧ୍ୟ ସେ ଦେଖି ପାରନ୍ତି ଓ କାନ ନଥାଇ ମଧ୍ୟ ଶୁଣି ପାରନ୍ତି । ଶୁଣିବା ବା ଦେଖିବା ପାଇଁ ସେ କୌଣସି ଉପକରଣ ବା ଯନ୍ତ୍ରପାତି ଆବଶ୍ୟକ କରନ୍ତି ନାହିଁ । ତେଣୁ ମଣିଷ ଶୁଣୁଥିଲେ ଓ ଦେଖୁଥିଲେ ମଧ୍ୟ ତାଙ୍କ ସହ ସମାନ ବା ତାଙ୍କର ସମକକ୍ଷ ହୋଇପାରିବ ନାହିଁ ।

୨. ଏହି ଆୟତରେ ଏକ ପ୍ରାର୍ଥନା କରିବାକୁ ନିର୍ଦ୍ଦେଶ ଦିଆଯାଇଛି । ତା' ହେଉଛି ଏକ ନିର୍ଦ୍ଦିଷ୍ଟ ଚନ୍ଦ୍ରଗ୍ରହଣ ଯେଉଁ ଯୁଗରେ ପ୍ରକଟିତ ହେବ, ସେହି ଯୁଗର ମନ୍ଦ ପ୍ରଭାବରୁ ରକ୍ଷାପାଇବା ପାଇଁ ମନୁଷ୍ୟ ପ୍ରାର୍ଥନା କରିବା ଉଚିତ । ଅଙ୍ଗୀକୃତ ମସିହଙ୍କ ସମୟରେ ଦୁଇଗୋଟି ନିଦର୍ଶନ ପ୍ରକଟିତ ହେବା ସମ୍ବନ୍ଧରେ ହଜରତ ମହମ୍ମଦ ଭବିଷ୍ୟବାଣୀ କରିଛନ୍ତି । ସେହି ଭବିଷ୍ୟବାଣୀ ହେଉଛି, 'ରମଜାନ ମାସରେ ଉଭୟ ସୂର୍ଯ୍ୟ ଓ ଚନ୍ଦ୍ରରେ ଗ୍ରହଣ ଲାଗିବ' । ସୁତରାଂ ଏହି ଆୟତରେ ଇମାମ ମେହେଦିଙ୍କ ଯୁଗ ସମ୍ବନ୍ଧରେ ସୂଚନା ଦିଆଯାଇଛି ଏବଂ ମୁସଲମାନମାନଙ୍କୁ ନିମ୍ନମତେ ପ୍ରାର୍ଥନା କରିବାକୁ ନିର୍ଦ୍ଦେଶ ଦିଆଯାଇଛି, 'ହେ ଅଲ୍ଲାହ ! ଆମେମାନେ ଯେପରି ଇମାମ ମେହେଦିଙ୍କୁ ଅସ୍ୱୀକାର ନ କରୁ, ତୁମେ ଆମମାନଙ୍କୁ ସେହିପରି ମାର୍ଗ ନିର୍ଦ୍ଦେଶ କର ।'

୫. ''ଏବଂ ସେଭଳି ସମସ୍ତ ପ୍ରାଣୀମାନଙ୍କ ଚକ୍ରାନ୍ତରୁ[୧] (ରକ୍ଷା ପାଇବା ସକାଶେ ମଧ୍ୟ) ଯେଉଁମାନେ (ପାରସ୍ପରିକ ସମ୍ପର୍କର) ବନ୍ଧନକୁ (ଛିନ୍ନ କରାଇବା ଉଦ୍ଦେଶ୍ୟରେ) ପ୍ରରୋଚିତ କରନ୍ତି,''

وَمِنْ شَرِّ النَّفّٰثٰتِ فِي الْعُقَدِ ۝٤

୬. ''ଏବଂ ପ୍ରତ୍ୟେକ ଈର୍ଷାକାରୀର[୨] ଚକ୍ରାନ୍ତରୁ (ମଧ୍ୟ) ଯେତେବେଳେ କି ସେ ହିଂସା କରିବାକୁ ଅଡି ବସେ ।''

وَمِنْ شَرِّ حَاسِدٍ اِذَا حَسَدَ ۝٥



ଅଧ୍ୟାୟ ୧୧୪ **ଅଲ — ନାସ** ଭାଗ ୩୦

(ଏହି ସୁରା ମଦିନାରେ ଅବତୀର୍ଣ୍ଣ । ଏଥିରେ ବିସ୍‌ମିଲ୍ଲାହ ସମେତ ୭ ଟି ଆୟତ ଅଛି)

୧. ଅଶେଷ ଦୟାବାନ୍ (ଓ) ସଦା କରୁଣାମୟ ଅଲ୍ଲାହଙ୍କ ନାମ ନେଇ (ପାଠ କରୁଅଛି) ।

بِسْمِ اللّٰهِ الرَّحْمٰنِ الرَّحِيْمِ ۝١

୨. (ଆମେ ପ୍ରତ୍ୟେକ ଯୁଗର ମୁସଲମାନଙ୍କୁ କହୁଅଛୁ ଯେ) ତୁମେ (ଅନ୍ୟମାନଙ୍କୁ) କହୁଥାଅ, ''ମୁଁ ମାନବ ସମାଜର ପାଳନକର୍ତ୍ତାଙ୍କ ନିକଟରେ ତାହାଙ୍କର ଆଶ୍ରୟ ଭିକ୍ଷା କରୁଅଛି,''

قُلْ اَعُوْذُ بِرَبِّ النَّاسِ ۝٢

୩. ''(ସେ ପାଳନକର୍ତ୍ତା) ଯେ କି ମାନବ ସମାଜର ସମ୍ରାଟ,''[୩]

مَلِكِ النَّاسِ ۝٣

୪. ''ଏବଂ ମାନବ ସମାଜର ଉପାସ୍ୟ;''[୪]

اِلٰهِ النَّاسِ ۝٤

---

୧. ଅର୍ଥାତ୍ ଏହିପରି କର ଯେ ଯେଉଁ ଲୋକମାନେ ଆମମାନଙ୍କୁ ଇମାମ ମେହେଦିଙ୍କ ନିକଟରୁ ଦୂରେଇ ନେଉଛନ୍ତି ଆମେମାନେ ସେମାନଙ୍କ ଚକ୍ରାନ୍ତର ଶିକାର ନ ହେଉ ।

୨. ଏହି ଆୟତରୁ ସୂଚନା ମିଳୁଛି ଯେ ଇମାମ ମେହେଦିଙ୍କ ଦ୍ୱାରା ଇସଲାମ ଧର୍ମର ଉନ୍ନତି ଅତି ଦ୍ରୁତ ଗତିରେ ହେବ ଏବଂ ତାଙ୍କୁ ବିରୋଧ କରୁଥିବା ଲୋକମାନେ ଏହା ଦେଖି ଈର୍ଷାନ୍ୱିତ ହେବେ । ସୁତରାଂ ଏହି ପରିପ୍ରେକ୍ଷୀରେ, ତତ୍କାଳୀନ ମୁସଲମାନମାନେ ସେପରି ବିରୋଧୀମାନଙ୍କଠାରୁ ରକ୍ଷା ପାଇବା ସକାଶେ ଏହି ଆୟତରେ ଦର୍ଶାଯାଇଥିବା ପ୍ରକାରେ ପ୍ରାର୍ଥନା କରିବା ଉଚିତ ।

୩. ଏଠାରେ ସୂଚନା ଦିଆଯାଇଛି ଯେ ଶେଷ ଯୁଗରେ କେତେକ ସମ୍ରାଟ ଓ ଶାସକ ଇସଲାମର ବିରୁଦ୍ଧାଚରଣ କରିବାକୁ ଅଗ୍ରସର ହେବେ । ତେଣୁ ମୁସଲମାନମାନଙ୍କୁ ନିମ୍ନମତେ ପ୍ରାର୍ଥନା କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି, 'ହେ ଆମମାନଙ୍କର ପ୍ରକୃତ ସମ୍ରାଟ (ଅଲ୍ଲାହ) ! ଆମମାନଙ୍କୁ ଏଇ ପୃଥିବୀର ଶାସକମାନଙ୍କ ହୀନ ଚକ୍ରାନ୍ତରୁ ରକ୍ଷା କର ।'

୪. ଏଠାରେ ମଧ୍ୟ ଉଲ୍ଲେଖ କରାଯାଇଛି ଯେ ଆମମାନଙ୍କର ପ୍ରକୃତ ସମ୍ରାଟ (ଅଲ୍ଲାହ) ସମସ୍ତ ପୃଥିବୀର ଉପାସ୍ୟ ଅଟନ୍ତି । ଲୋକମାନେ ତାଙ୍କ ପରିବର୍ତ୍ତେ ମିଥ୍ୟା ଉପାସ୍ୟ ସ୍ଥିର କରୁଥିଲେ ମଧ୍ୟ ଯେଉଁମାନେ ଅଲ୍ଲାହଙ୍କ ଉପରେ ଆସ୍ଥା ସ୍ଥାପନ କରିଛନ୍ତି, ସେମାନେ ମିଥ୍ୟା ଉପାସ୍ୟମାନଙ୍କ ମନ୍ଦ ଚକ୍ରାନ୍ତରୁ ପରିତ୍ରାଣ ପାଇବା ପାଇଁ ପ୍ରାର୍ଥନା କରିବା ଉଚିତ ।

مِنْ شَرِّ الْوَسْوَاسِ الْخَنَّاسِ ۝٤

الَّذِي يُوَسْوِسُ فِي صُدُورِ النَّاسِ ۝٥

مِنَ الْجِنَّةِ وَالنَّاسِ ۝٦

୫. "(ମୁଁ ତାହାଙ୍କର ଆଶ୍ରୟ ଭିକ୍ଷା କରୁଅଛି) ପ୍ରତ୍ୟେକ କୁମନ୍ତ୍ରଣାଦାତାର ଚକ୍ରାନ୍ତରୁ[1] ଯେ (ପ୍ରତ୍ୟେକ ପ୍ରକାର କୁମନ୍ତ୍ରଣା ଦେଇ)ପଛକୁ ଫେରିଯାଏ,

୬. "(ଏବଂ) ଯେ ମଣିଷମାନଙ୍କ ମନରେ ସନ୍ଦେହମାନ ଜାତ କରାଏ,"

୭. ସେ (ବିଶୃଙ୍ଖଳା ସୃଷ୍ଟିକାରୀ) ଅଦୃଶ୍ୟ[2] ରହୁଥିବା ସତ୍ତାମାନଙ୍କ ମଧ୍ୟରୁ ହୋଇ ଥାଉ କି ସାଧାରଣ ମନୁଷ୍ୟମାନଙ୍କ ମଧ୍ୟରୁ ହୋଇ ଥାଉନା କାହିଁକି ।

---

୧. ଏଠାରେ ଦର୍ଶାଯାଇଛି ଯେ ଯେତେବେଳେ ଶେଷ ଯୁଗରେ ମିଥ୍ୟା ଉପାସ୍ୟ ଓ ମିଥ୍ୟା ଶାସକମାନେ ପ୍ରାଧାନ୍ୟ ବିସ୍ତାର କରି ରହିଥିବେ ସେତେବେଳେ ଏପରି ଲୋକମାନେ ମଧ୍ୟ ଜନ୍ମଗ୍ରହଣ କରିବେ, ଯେଉଁମାନେ ଜନସାଧାରଣଙ୍କ ମନରେ ଦ୍ବନ୍ଦ୍ବ ଓ ସନ୍ଦେହ ସୃଷ୍ଟି କରିବେ । କେତେକ ବିଦ୍ବାନ୍ ବ୍ୟକ୍ତି ଓ ଦାର୍ଶନିକ ଏପରି ସନ୍ଦେହ ସୃଷ୍ଟିକାରୀ ଲୋକମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ତେଣୁ ଲୋକମାନେ ସେମାନଙ୍କ ପ୍ରଭାବରୁ ରକ୍ଷା ପାଇବା ସକାଶେ ପ୍ରାର୍ଥନା କରିବା ଉଚିତ । ଏହି ଆୟତର ଶେଷାଂଶରେ ସେଭଳି ଲୋକମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ସୂଚନା ଦିଆଯାଇଛି । ସେମାନେ ଏପରି ପୁସ୍ତକ ରଚନା କରନ୍ତି ଯାହା ବାହ୍ୟତଃ ଧର୍ମ ବିରୋଧୀ ପ୍ରତୀତ ହୁଏନାହିଁ, କିନ୍ତୁ ତଦ୍ଦ୍ବାରା ମଣିଷ ମନରେ ଧର୍ମ ସମ୍ବନ୍ଧରେ ସନ୍ଦେହ ଓ ଦ୍ବନ୍ଦ୍ବ ସୃଷ୍ଟି ହୁଏ ।

୨. ଯେଉଁମାନେ ଲୁକ୍‌କାୟିତ ଭାବରେ ରହନ୍ତି ଏହି ଆୟତରେ 'ଜିନ୍ନ' ଶବ୍ଦ ସେହିମାନଙ୍କ ପାଇଁ ବ୍ୟବହୃତ ହୋଇଛି ଓ 'ଅନ୍‌ନସ' ସାଧାରଣ ମନୁଷ୍ୟଙ୍କ ପାଇଁ ବ୍ୟବହୃତ ହୋଇଛି । ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯେଉଁମାନେ ସନ୍ଦେହ ଓ ଦ୍ବନ୍ଦ୍ବ ସୃଷ୍ଟି କରିଥାନ୍ତି, ସେମାନେ ହୁଏତ ବିଦେଶୀୟ ହୋଇପାରନ୍ତି— ଯାହାଙ୍କୁ ଆମେମାନେ ଦେଖିପାରୁ ନାହୁଁ— ଅଥବା ସାଧାରଣ ଲୋକ ହୋଇପାରନ୍ତି, ଯେଉଁମାନେ ଏକ ନିର୍ଦ୍ଦିଷ୍ଟ ବିଷୟକୁ ଏପରି ସୁରୁ ଗମ୍ଭୀର କଣ୍ଠରେ ବର୍ଣ୍ଣନା କରନ୍ତି ଯେ ତାହା ମନରେ ଦ୍ବନ୍ଦ୍ବ ଓ ସନ୍ଦେହ ସୃଷ୍ଟି କରିଥାଏ ।

دُعَاءُ خَتْمِ الْقُرْاٰنِ

اَللّٰهُمَّ اٰنِسْ وَحْشَتِيْ فِيْ قَبْرِيْ اَللّٰهُمَّ ارْحَمْنِيْ بِالْقُرْاٰنِ الْعَظِيْمِ وَاجْعَلْهُ لِيْ اِمَامًا وَّ نُوْرًا وَّ هُدًى وَّ رَحْمَةً اَللّٰهُمَّ ذَكِّرْنِيْ مِنْهُ مَا نَسِيْتُ وَ عَلِّمْنِيْ مِنْهُ مَا جَهِلْتُ وَارْزُقْنِيْ تِلَاوَتَهٗ اٰنَاۤءَ الَّيْلِ وَاٰنَاۤءَ النَّهَارِ وَاجْعَلْهُ لِيْ حُجَّةً يَّا رَبَّ الْعٰلَمِيْنَ

## କୋରାନ ପାଠ ସମାପ୍ତି ପର ପ୍ରାର୍ଥନା

ହେ ଅଲ୍ଲାହ ! କବର ମଧ୍ୟରେ ମୋର ଭୟ ଦୂର କର । ହେ ଅଲ୍ଲାହ ! ମହାନ୍ ଓ କଲ୍ୟାଣକର କୋରାନ ମାଧ୍ୟମରେ ମୋ ପ୍ରତି କରୁଣା ପ୍ରଦାନ କର ଏବଂ ତାହାକୁ ମୋର ପଥ ପ୍ରଦର୍ଶନ କର ଓ ମୋ ପାଇଁ ତାହାକୁ ଜ୍ୟୋତି, ସତ୍‌ପଥ ଓ କରୁଣାର ଉତ୍ସରେ ପରିଣତ କର । ହେ ଅଲ୍ଲାହ ! ମୁଁ ଯାହାକିଛି ତନ୍ମଧ୍ୟରୁ ପାସୋରି ଦେଇଅଛି ତାହା ମୋତେ ସ୍ମରଣ କରାଅ ଏବଂ ଯାହା ମୋତେ ଜଣାନାହିଁ ତାହା ମୋତେ ଶିଖାଇ ଦିଅ, ଏବଂ ଦିବାରାତ୍ର ଏହାକୁ ଆବୃତ୍ତି କରିବାପାଇଁ ମୋତେ ସୁଯୋଗ ଦିଅ । ହେ ସମସ୍ତ ଜଗତର ପାଳନକର୍ତ୍ତା ! ତାହାକୁ ମୋ ପାଇଁ ପ୍ରମାଣ ସ୍ୱରୂପ କରିଦିଅ ।

...ସମାପ୍ତ......

# ପରିଭାଷା

**ଅଦୃଶ୍ୟ** — ପରୋକ୍ଷ । ଯାହାକୁ ଇନ୍ଦ୍ରିୟ ଦ୍ୱାରା ଅନୁଭବ କରି ହୁଏ ନାହିଁ ଅଥଚ ତାହା ବିଦ୍ୟମାନ । ଅଲ୍ଲାହ, ଦେବଦୂତ, କୟାମତ ଇତ୍ୟାଦି ଏହାର ଅର୍ଥାନ୍ତର୍ଗତ ।

**ଅନୁତାପ** — ଅରବୀରେ ତୌବାଃ କରିଥିବା ଅସତ୍ କର୍ମଜନିତ ପାପରୁ ରକ୍ଷା ପାଇବା ପାଇଁ ଓ ଆଉ ପାପ ନ କରିବା ପାଇଁ ଯେଉଁ ସଂକଳ୍ପ କରାଯାଏ ତାହା 'ତୌବା'ର ଅର୍ଥାନ୍ତର୍ଗତ ।

**ଅବତୀର୍ଣ୍ଣ** — ଅଲ୍ଲାହଙ୍କ ନିକଟରୁ ରସୁଲମାନଙ୍କ ପ୍ରତି ଦିବ୍ୟବାଣୀର ପ୍ରେରଣ । ହଜରତ ମହମ୍ମଦ ନବିପଦ ଲାଭ କଲା ପରେ ମକ୍କା ଓ ମଦିନା ଉଭୟ ସ୍ଥାନରେ ତାଙ୍କ ନିକଟକୁ ଅଳ୍ପ ଅଳ୍ପ କରି ପବିତ୍ର କୋରାନର ବାଣୀ ପ୍ରେରିତ ହେଉଥିଲା । ଏଣୁ ପ୍ରତ୍ୟେକ ଅଧ୍ୟାୟର ପ୍ରାରମ୍ଭରେ ଏହି 'ଅବତୀର୍ଣ୍ଣ' ବିଷୟ ସୂଚାଯାଇଛି ।

**ଅବିଶ୍ୱାସ** — ଆରବୀ ଶବ୍ଦ 'କୁଫ୍ର୍' । ଅଲ୍ଲାହଙ୍କ ଆଦେଶକୁ ଅବମାନନା କରିବା ; ତାଙ୍କ କୃପାକୁ ଅସ୍ୱୀକାର କରିବା, ତାଙ୍କ ପ୍ରେରିତ ଅବତାରଙ୍କୁ ପ୍ରତ୍ୟାଖ୍ୟାନ କରିବା ।

**ଅବିଶ୍ୱାସକାରୀ** — 'କାଫିର୍' । ଯେଉଁ ବ୍ୟକ୍ତି ଅଲ୍ଲାହ, ଦେବଦୂତ,ନବି ଓ ଧର୍ମଗ୍ରନ୍ଥକୁ ପ୍ରତ୍ୟାଖ୍ୟାନ କରେ ।

**ଅଲ୍ଲାହ** — ପରମାତ୍ମାଙ୍କ ନାମ ଅଲ୍ଲାହ । ଆରବୀ ଭାଷାରେ ଅଲ୍ଲାହ ଶବ୍ଦଟି ଅନ୍ୟ କୌଣସି ବସ୍ତୁ ବା ବ୍ୟକ୍ତି ପାଇଁ ବ୍ୟବହୃତ ହୁଏ ନାହିଁ । ଅନ୍ୟାନ୍ୟ ଭାଷାରେ ପରଂବ୍ରହ୍ମଙ୍କର ନାମ ସବୁ ଗୁଣାତ୍ମକ କିମ୍ବା ବର୍ଣ୍ଣନାତ୍ମକ ଏବଂ ଅନେକ ସମୟରେ ତାହା ବହୁବଚନରେ ବ୍ୟବହୃତ ହୋଇଥାଏ, ମାତ୍ର ଅଲ୍ଲାହ ଶବ୍ଦଟି କଦାପି ବହୁବଚନରେ ବ୍ୟବହୃତ ହୁଏ ନାହିଁ ।

**ଆୟତ** — ପଂକ୍ତି ବା ବାକ୍ୟ । ଏହାର ଅନ୍ୟାନ୍ୟ ଅର୍ଥ ହେଉଛି (୧) ଆଦେଶ (୨) ଅନୁଦେଶ (୩) ଚିହ୍ନ ବା ନିଶାଣ (୪) ଉପଦେଶ (୫) ଯୁକ୍ତି (୬) ସତ୍ୟତା (୭) ଏପରି ବିଷୟ ଯାହା (କ) ସତ୍‌ମାର୍ଗ ପ୍ରଦର୍ଶନ କରେ, (ଖ) ଦୁଃଖରୁ ମୁକ୍ତି ଦିଏ (ଗ) ଧର୍ମବିଶ୍ୱାସ ଆଡ଼କୁ ଘେନିଯାଏ (ଘ) ଅଲ୍ଲାହଙ୍କ ପ୍ରତି ମନୋନିବେଶ କରାଏ ।

**ଇଂଜିଲ** — ନୂତନ ସମାଗ୍ରର ବା New testament । ହଜରତ ଇସାଙ୍କ ଉପରେ ଅବତୀର୍ଣ୍ଣ ଧର୍ମଗ୍ରନ୍ଥ ।

**ଇଦ୍‌ଦତ** — ଇସଲାମୀୟ ଆଇନ ଅନୁସାରେ ଯେଉଁ ସମୟ ସୀମା ମଧ୍ୟରେ କୌଣସି ମହିଳା ପୁନର୍ବିବାହ କରିପାରିବ ନାହିଁ ତାହାକୁ ଇଦ୍‌ଦତ କୁହାଯାଏ । ଏହା ତଲାକ୍‌ପ୍ରାପ୍ତ ମହିଳା ପାଇଁ ତିନି ମାସ, ବିଧବା ପାଇଁ ଚାରିମାସ ଦଶଦିନ ଓ ଗର୍ଭବତୀ ମହିଳା ପାଇଁ ସନ୍ତାନ ଜନ୍ମ ହେବା ପର୍ଯ୍ୟନ୍ତ ।

**ଇବଲିସ** — ଯିଏ ଅଲ୍ଲାହଙ୍କ କୃପାରୁ ନିରାଶ ହୋଇଛି ; ଯିଏ ପରୋପକାର କରିବାକୁ ଅନିଚ୍ଛୁକ ; ଯାହାର ଧୈର୍ଯ୍ୟ ନାହିଁ ; ଯିଏ ସଫଳତା ପାଇ ନାହିଁ ।

**ଇମାମ** — ଧାର୍ମିକ ନେତା ; ଦଳପତି ; ନବି ; ପଥପ୍ରଦର୍ଶକ ; ଯାହାଙ୍କୁ ଅନୁସରଣ କରାଯାଏ ।

**ଇଲହାମ** — ସଂକେତ ଦେବା ; ଶୀଘ୍ରତା ସହକାରେ ସଂକେତ ଦେବା ; କୌଣସି ବିଷୟକୁ ହୃଦୟ ମଧ୍ୟରେ ନିକ୍ଷେପ କରାଯିବା ; ଅଲ୍ଲାହଙ୍କଠାରୁ ପ୍ରେରିତ ବାଣୀ ।

**ଇସ୍ରା** — ଆଧ୍ୟାତ୍ମିକ ରାତ୍ରିକାଳୀନ ଯାତ୍ରା; ସ୍ୱପ୍ନରେ ହଜରତ ମହମ୍ମଦଙ୍କର ମକ୍‌କାଠାରୁ ଜେରୁଜେଲମ ପର୍ଯ୍ୟନ୍ତ ଯାତ୍ରା ।

**ଇସଲାମ** — ଅଲ୍ଲାହଙ୍କ ନିକଟରେ ଆତ୍ମସମର୍ପଣ ; ଅଲ୍ଲାହଙ୍କର ଆଜ୍ଞାପାଳନ ; ହଜରତ ମହମ୍ମଦଙ୍କ ପ୍ରବର୍ତ୍ତିତ ଧର୍ମ । ଏହା ଶାନ୍ତିର ବାର୍ତ୍ତା ପ୍ରଚାର କରେ ।

**ଇସ୍ରାଇଲ** — ଅଲ୍ଲାହଙ୍କର ସୈନିକ ବା ବୀର ; ହଜରତ ୟାକୁବଙ୍କର ଏକ ଗୁଣବାଚକ ନାମ, ଯହିଁରୁ ନିର୍ଦ୍ଦିଷ୍ଟ ଭାବେ ତାଙ୍କ ସନ୍ତାନମାନଙ୍କୁ ଓ ସାଧାରଣ ଭାବେ ତାଙ୍କ ଜାତିକୁ ବନି ଇସ୍ରାଇଲ (ବା ଇସ୍ରାଇଲୀୟ ସନ୍ତାନ) ଭାବେ ଅଭିହିତ କରାଯାଏ ।

**ଇହୁଦୀ** — ହଜରତ ମୁସାଙ୍କର ଅନୁଗାମୀ । ତାଂଙ୍କ ଧର୍ମଗ୍ରନ୍ଥର ନାମ ତୌରାତ ।

**ଉମରା** — ହଜ ଦିନମାନଙ୍କ ବ୍ୟତୀତ ଅନ୍ୟ ଦିନମାନଙ୍କରେ ଏହରାମ ବାନ୍ଧି କା'ବାର ପ୍ରଦକ୍ଷିଣ କରିବା, ସଫା ଓ ମରୱା ପାହାଡ଼ ଦୁଇଟି ମଧ୍ୟରେ ଦୌଡ଼ିବା । କୁର୍ବାନି ମଧ୍ୟ ଦିଆଯାଇପାରେ । ଏହା ସାନ ହଜ ।

**ଏତକାଫ** — ରମଜାନ ମାସର ଏକୋଇଶ ତାରିଖ ରାତିରୁ ମାସ ଶେଷ ପର୍ଯ୍ୟନ୍ତ ଉପାସନା ଇତ୍ୟାଦି ସକାଶେ ମସଜିଦରେ ଅନବରତ ରହିବା ।

**ଏହରାମ** — ହଜ ବା ଉମରା ସମୟରେ ସିଲେଇ ହୋଇ ନ ଥିବା ଯେଉଁ ଦୁଇଗୋଟି ଶୁଭ୍ର ବସ୍ତ୍ରକୁ ପରିଧାନ ଭାବେ ବ୍ୟବହାର କରାଯାଏ ।

**ଓଜୁ** — ନମାଜ ପାଠ କରିବା ପୂର୍ବରୁ ହସ୍ତ-ପଦାଦିର ପ୍ରକ୍ଷାଳନ କର୍ମ ।

**ଓସିୟତ** — ନିର୍ଦ୍ଦେଶାତ୍ମକ କଥା; ଅନ୍ୟତ୍ର ଯିବାବେଳେ ବା ଆସନ୍ନ ମୃତ୍ୟୁଶଯ୍ୟାରେ ଥାଇ ଜଣେ ବ୍ୟକ୍ତି ନିଜର ଅବର୍ତ୍ତମାନରେ କ'ଣ କ'ଣ କରିବାକୁ ହେବ ବୋଲି ଯେଉଁ ନିର୍ଦ୍ଦେଶ ଦିଏ; ଉଇଲ ବା ଇଚ୍ଛାପତ୍ର ।

**ଓହି** — ସଂକେତ କରିବା ; ଦେବଦୂତଙ୍କ ମାଧ୍ୟମରେ ଅଲ୍ଲାହଙ୍କ ବାଣୀର ଅବତରଣ । ପବିତ୍ର କୋରାନ ଗ୍ରନ୍ଥ ଏହି ରୂପେ ଅବତୀର୍ଣ୍ଣ ହୋଇଛି ।

**କପଟବିଶ୍ୱାସୀ** — ଆରବୀରେ 'ମୁନାଫିକ୍' । ଯେଉଁ ବ୍ୟକ୍ତି ପ୍ରକାଶ୍ୟରେ ବିଶ୍ୱାସ ଆଣିଥିବା କହେ ଅଥଚ ତା'ହୃଦୟରେ ବିଶ୍ୱାସ ନ ଥାଏ ।

**କବର** — ଶବ ପୋତାଯିବା ସ୍ଥାନ, ଏପରି ସ୍ଥାନ ବା ପରିବେଶ ଯେଉଁଠାରେ ଆତ୍ମା ଭୌତିକ ଶରୀର ତ୍ୟାଗ କରିବା ପରେ ନିଜ କର୍ମାନୁସାରେ ନୂତନ ଆଧ୍ୟାତ୍ମିକ ଶରୀର ଲାଭ କରି ରହେ ।

**କୟାମତ** — ପ୍ରଳୟ ; ପରଲୋକ ; ମୃତ୍ୟୁପରେ ଅଲ୍ଲାହଙ୍କ ନିକଟରେ ହାଜର ହେବା ସମୟ ; ସର୍ବନାଶ ; ବ୍ୟକ୍ତିଗତ ବା ଜାତୀୟ ମୃତ୍ୟୁ ।

**କଲିମା** — ବାଣୀ ; ବାକ୍ୟ ; ଆଦେଶ । ପବିତ୍ର କୋରାନରେ ଏହା ନିଦର୍ଶନ ; ଶାସ୍ତି, ଯୋଜନା, ସୁସମାଚାର, ଅଲ୍ଲାହଙ୍କ ସୃଷ୍ଟି ଓ ଏକ ଶକ୍ତି ଅର୍ଥରେ ମଧ୍ୟ ବ୍ୟବହୃତ ହୋଇଛି । ଇସଲାମ ଧର୍ମର ମୂଳ ମନ୍ତ୍ରକୁ ମଧ୍ୟ କଲିମା କୁହାଯାଏ ଯାହାକୁ ପାଠ କରି ଓ ଯାହା ଉପରେ ବିଶ୍ୱାସ କରି ଜଣେ ଲୋକ ଇସଲାମ ଧର୍ମ ଗ୍ରହଣ କରେ । ସେହି କଲିମା ହେଉଛି 'ଲା ଇଲାହା ଇଲ୍ଲଲାହ, ମହମ୍ମଦୁର ରସୁଲୁଲ୍ଲାହ' ।

**କଶଫ** — ପ୍ରକାଶିତ ହେବା ; ଜାଗ୍ରତ ଅବସ୍ଥାରେ କୌଣସି ଅଦୃଷ୍ଟ ଦୃଶ୍ୟ ଦେଖିବା । ସ୍ୱପ୍ନ ଓ କଶଫର ପାର୍ଥକ୍ୟ ହେଉଛି ଯେ, ସ୍ୱପ୍ନ ନିଦ୍ରିତାବସ୍ଥାରେ ଦେଖାଯାଏ କିନ୍ତୁ କଶଫ ଜାଗ୍ରତ ଅବସ୍ଥାରେ ଦୃଷ୍ଟିଗୋଚର ହୁଏ ।

**କା'ବା** — ହଜରତ ଇବ୍ରାହିମ ଓ ହଜରତ ଇସମାଇଲ ଅଲ୍ଲାହଙ୍କ ଉପାସନା ନିମନ୍ତେ ପ୍ରଥମେ ମକ୍କାରେ ଯେଉଁ ଗୃହ ନିର୍ମାଣ କରିଥିଲେ । ସେଠାକୁ ବହୁ ପୁରାତନ କାଳରୁ ଯାତ୍ରୀମାନେ ତୀର୍ଥ କରିବାକୁ ଯାଆନ୍ତି । ଏହାର ଅନ୍ୟ ନାମ 'ବଇତୁଲ୍ଲାହ', 'ବଇତୁଲ ହରାମ' ଓ 'ମସଜିଦ-ଏ-ହରାମ' ।

**କିବଲା** — ସାମନାସାମନି ; ଯେଉଁ ଦିଗ ମୁଖମଣ୍ଡଳର ସମ୍ମୁଖରେ ଥାଏ ; ଯେଉଁ ଆଡ଼କୁ ମୁହଁ କରି ନମାଜ ପଢ଼ାଯାଏ । କା'ବା ମୁସଲମାନମାନଙ୍କର କିବଲା । ସମସ୍ତ ବିଶ୍ୱର ମୁସଲମାନମାନେ କା'ବା ଆଡ଼କୁ ମୁହଁକରି ନମାଜ ପଢ଼ନ୍ତି ।

**କୁର୍ବାନି** — ଉତ୍ସର୍ଗ ; ତ୍ୟାଗ ; ବଳିଦାନ । ଇଦୁଲ୍‌ଜୁହା ପରେ ଓ ହଜ ବ୍ରତ ପାଳନ କାଳରେ ମୁସଲମାନମାନେ ଦେଉଥିବା ଜୀବ ବଳି ।

**କୋରାନ** — ମୁସଲମାନମାନଙ୍କ ଧର୍ମଗ୍ରନ୍ଥ । ଏହା ଜିବ୍ରାଇଲଙ୍କ ମାଧ୍ୟମରେ ହଜରତ ମହମ୍ମଦଙ୍କ ନିକଟକୁ ପ୍ରେରିତ ହୋଇଥିଲା । କୋରାନର ଅନ୍ୟ କେତୋଟି ନାମ ହେଉଛି :– କଲାମୁଲ୍ଲାହ, କୋରାନ ସରିଫ୍, କୋରାନ ମଜିଦ ଇତ୍ୟାଦି ।

**କ୍ରୁଶ** — ଆରବୀ ଭାଷାରେ ସଲିବ । ଫାଶୀ ଦିଆଯିବା, ଫାଶୀଖୁଣ୍ଟରେ ଚଢ଼ିବା; ହାଡ଼ ଭାଙ୍ଗି ମୃତ୍ୟୁ ମୁଖରେ ପକାଇବା ।

**ଗ୍ରନ୍ଥଧାରୀ** — ଯେଉଁମାନଙ୍କୁ ଅଲ୍ଲାହଙ୍କଠାରୁ ଧର୍ମଗ୍ରନ୍ଥ ପ୍ରଦାନ କରାଯାଇଛି । ଇହୁଦୀ ଓ ଖ୍ରୀଷ୍ଟିୟାନ ଏହି ଶବ୍ଦର ଅନ୍ତର୍ଗତ ।

**ଜକାତ** — ଇସଲାମ ଧର୍ମାନୁମୋଦିତ କର, ଯାହା ଧନବାନ୍ ମୁସଲମାନମାନଙ୍କଠାରୁ ନିର୍ଦ୍ଦିଷ୍ଟ ହାରରେ ସଂଗ୍ରହ କରାଯାଇ ଦରିଦ୍ରମାନଙ୍କ ମଧ୍ୟରେ ବିତରଣ କରାଯାଏ । ଏହା ରାଜ୍ୟ ହିତାର୍ଥେ ମଧ୍ୟ ବ୍ୟୟ କରାଯାଇପାରେ ।

**ଜବେହ** — ବଧ କରିବା; କଣ୍ଠଚ୍ଛେଦନ କରି ବଧ କରିବା; ଅଲ୍ଲାହଙ୍କ ନାମ ଉଚ୍ଚାରଣ କରି ବା ମନ୍ତ୍ର ପାଠ କରି ଇସଲାମୀୟ ଧର୍ମବିଧାନ ଅନୁସାରେ ଜଣେ ମୁସଲମାନ ଖାଦ୍ୟାର୍ଥ ଉପଯୋଗ ହେବା ସକାଶେ ଯେଉଁ ଜୀବକୁ ବଧ କରିପାରେ ସେହି ଜୀବର କଣ୍ଠଚ୍ଛେଦନ କରିବା କର୍ମ । କଥିତ ଭାଷାରେ ହଲାଲ ।

**ଜିନ୍ନ** — ଯେଉଁମାନେ ଲୁକ୍କାୟିତ ରହନ୍ତି ; ପରଦା ଅନ୍ତରାଳରେ ରହନ୍ତି ; ବଡ଼ଲୋକ ; ଧନୀଲୋକ ; ଶକ୍ତିଶାଳୀ ମନୁଷ୍ୟ ।

**ଜିବ୍ରାଇଲ** — ଦିବ୍ୟବାଣୀ ବାହକ ଦେବଦୂତ ।

**ଜିହାଦ**— ପ୍ରବଳ ଉଦ୍ୟମ କରିବା । ନିଜକୁ ସୁଧାରିବା ପାଇଁ ଅଥବା ଧର୍ମ ପ୍ରସାର ପାଇଁ ପ୍ରଚେଷ୍ଟା କରିବା । ନିଜ ଧର୍ମ ରକ୍ଷାର୍ଥେ ପ୍ରତିରକ୍ଷାମୂଳକ ଯୁଦ୍ଧ କରିବା ।

**ତୟମ୍ମୁମ** — ପାଣି ନ ମିଳିଲେ ବା ପୀଡ଼ିତ ଥିଲେ ବିଶୁଦ୍ଧ ମୃତ୍ତିକାରେ ହାତ ଘଷି ହାତକୁ ମୁଖମଣ୍ଡଳ ଓ ହାତ ଉପରେ ଘଷିବା ।

**ତଲାକ** — ଛାଡ଼ି ଦେବା ; ଛାଡ଼ପତ୍ର ଦେବା । ପତି ବିବାହ ବନ୍ଧନକୁ ଛିନ୍ନ କରିବା ଓ ତଜ୍ଜନିତ ଦାୟିତ୍ୱରୁ ମୁକ୍ତ ହେବା ସଂପର୍କରେ ଘୋଷଣା କରିବା ।

**ତୌଆଫ** — ପରିକ୍ରମା । ହଜ୍ ବା ଉମରା କଲାବେଳେ ମକ୍କାସ୍ଥିତ କା'ବା ଧର୍ମପୀଠର ଚତୁର୍ଦ୍ଦିଗରେ ସାତଥର ଘୁରିବା ।

**ତୌରାତ** — ପୁରାତନ ସମାଗ୍ରର ବା **Old Testament,** ଇହୁଦୀମାନଙ୍କର ଧର୍ମଗ୍ରନ୍ଥ, ଯାହା ହଜରତ ମୁସାଙ୍କ ଉପରେ ଅବତୀର୍ଣ୍ଣ ହୋଇଥିଲା ।

**ଦେବଦୂତ** — ଆରବୀରେ ଫରିସ୍ତା । ଏମାନେ ପୁଣ୍ୟବାନ୍ ଓ ସମସ୍ତ ପ୍ରକାର ପାପର ଊର୍ଦ୍ଧ୍ୱରେ ଓ ପାପରୁ ମୁକ୍ତ । ଅଲ୍ଲାହ ଯାହା ଆଦେଶ ଦିଅନ୍ତି ସେମାନେ ତାହା ପାଳନ କରନ୍ତି ।

**ଧର୍ମଭୀରୁ** — ଆରବୀ ଶବ୍ଦ ମୁତ୍‌ତକି ; ସଂଯମୀ ; ପୁଣ୍ୟବାନ୍ । ଯିଏ ଅଲ୍ଲାହଙ୍କ ଆଦେଶାବଳୀକୁ ସଂପୂର୍ଣ୍ଣ ରୂପେ ପାଳନ କରି ତାହାଙ୍କର ଶରଣାଧୀନ ହୁଏ । ଆରବୀରେ ମୁତ୍‌ତକି ।

**ଧର୍ମଭୀରୁତା** — ଧର୍ମରେ ଦୃଢ଼ ବିଶ୍ୱାସ ସ୍ଥାପନ କରିବା ; ନିଷ୍ପାପର ଭାବରେ ଅଲ୍ଲାହଙ୍କର ପ୍ରତିଟି ଆଜ୍ଞାକୁ ପାଳନ କରିବା ଓ ତତ୍ ସହିତ ତାଙ୍କୁ ଭୟ କରିବା ।

**ନବି** — ଆରବୀରେ ରସୁଲ, ପୈଗମ୍ବର । ଧର୍ମ ଉପଦେଷ୍ଟା, ଲୋକମାନଙ୍କୁ ସତ୍‌ପଥ ଦେଖେଇବାକୁ ଅଲ୍ଲାହଙ୍କ ତରଫରୁ ପ୍ରେରିତ ବ୍ୟକ୍ତି । ଅଲ୍ଲାହ ତାଙ୍କୁ ନବି ବା ରସୁଲ ଭାବେ ସମ୍ବୋଧନ କରିଥାନ୍ତି । ତାଙ୍କୁ ଅଦୃଷ୍ଟ ବିଷୟରେ ଅବଗତ କରାଯାଏ ।

**ନମାଜ** — ଇସଲାମୀୟ ଉପାସନା । ପ୍ରତ୍ୟେକ ମୁସଲମାନ ପ୍ରତ୍ୟହ ପାଞ୍ଚ ଥର ନିର୍ଦ୍ଦିଷ୍ଟ ସମୟରେ ନମାଜ ପାଠ କରିବା ଅନିବାର୍ଯ୍ୟ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ଇଚ୍ଛାଧୀନ ନମାଜ ମଧ୍ୟ ଅଛି ।

**ନରକ** — ଆରବୀରେ ଜହନ୍ନମ । ମୃତ୍ୟୁ ପରେ ପାପୀମାନେ ଯେଉଁଠାରେ ଶାସ୍ତିଭୋଗ କରିବାକୁ ରହନ୍ତି ।

**ନିକାହ** — ବିବାହ ; ବିବାହ ବନ୍ଧନ ; ସହବାସ । କେତୋଟି ନିର୍ଦ୍ଦିଷ୍ଟ ଆୟତ ଆବୃତ୍ତି କରାଯାଇ ବର ଓ କନ୍ୟାଙ୍କ ସମ୍ମତି କ୍ରମେ ଏବଂ ଲୋକମାନଙ୍କ ଉପସ୍ଥିତିରେ ବିବାହ ସଂକ୍ରାନ୍ତରେ ଯେଉଁ ଘୋଷଣା କରାଯାଏ ତାହା ନିକାହ ରୂପେ ଅଭିହିତ ।

**ନିଦର୍ଶନ** — ଅଲୌକିକ ଚିହ୍ନ ; ଯୁକ୍ତି ; ପ୍ରମାଣ ।

**ବିଶ୍ୱାସ** — ଆରବୀରେ ଇମାନ । କୌଣସି ତତ୍ତ୍ୱକୁ ଗ୍ରହଣ କରିବା ଯଥା :— ଅଲ୍ଲାହ, ଦେବଦୂତ, ରସୁଲ, ଅଲ୍ଲାହଙ୍କ ପ୍ରଦତ୍ତ ଗ୍ରନ୍ଥ ଓ ପାରଲୌକିକ ଜୀବନକୁ ସ୍ୱୀକାର କରିବା ।

**ବିଶ୍ୱାସକାରୀ** — ଆରବୀରେ ମୁମିନ । ଯେଉଁ ବ୍ୟକ୍ତି ଅଦୃଷ୍ଟରେ ବିଶ୍ୱାସ କରେ; ଧର୍ମାନୁମୋଦିତ କର୍ମକରେ ; ଧର୍ମାନୁଷ୍ଠାନ ସମେତ ଧର୍ମର ପ୍ରତ୍ୟେକଟି ଆଜ୍ଞାପାଳନ କରେ ।

**ବୈକୁଣ୍ଠ** — ଏହାର ଆରବୀ ଭାଷାନ୍ତର ଜନ୍ନତ । ଅବଶ୍ୟ ଜନ୍ନତର ଅର୍ଥ ବ୍ୟାପକ ଯଥା :— ସ୍ୱର୍ଗ, ବୈକୁଣ୍ଠ, ଉଦ୍ୟାନ, ଛାୟାଯୁକ୍ତ ଉଦ୍ୟାନ, ସୁଖଦାୟକ ଶାନ୍ତିପ୍ରଦ ସ୍ଥାନ । ମୃତ୍ୟୁପରେ ପୁଣ୍ୟବାନ୍ ବ୍ୟକ୍ତିମାନେ ଯେଉଁଠାରେ ଚିରକାଳ ରହିବେ ତାହା ବୈକୁଣ୍ଠ ଅଟେ ।

**ଭାଗ** — ପବିତ୍ର କୋରାନକୁ ତିରିଶ ଗୋଟି ପ୍ରାୟଶଃ ସମାନ ଭାଗରେ ବିଭକ୍ତ କରାଯାଇଛି । ପ୍ରତିଟି ଭାଗକୁ ଆରବୀରେ 'ପାରା' କୁହାଯାଏ ।

**ମସଜିଦ** — ଇସଲାମ ଧର୍ମାବଲମ୍ବୀମାନଙ୍କର ଉପାସନା ଗୃହ ।

**ମହର** — ପୁରୁଷ ନିଜ ବିବାହ ଉପଲକ୍ଷେ ନିଜ ପତ୍ନୀକୁ ଯେଉଁ ଧନ ବା ଦ୍ରବ୍ୟ ଦେବାକୁ ପ୍ରତିଶ୍ରୁତିବଦ୍ଧ, ତାହାକୁ ମହର କହନ୍ତି । ଏହା ପତ୍ନୀର ବ୍ୟକ୍ତିଗତ ସଂପତ୍ତି ।

**ମିକାଇଲ** — ସାଂସାରିକ ଉନ୍ନତିର ବ୍ୟବସ୍ଥା କରୁଥିବା ଦେବଦୂତ ।

**ମୁସରିକ** — ଅଲ୍ଲାହଙ୍କୁ ପରିତ୍ୟାଗ କରି ଯିଏ ଅନ୍ୟାନ୍ୟ ଉପାସ୍ୟକୁ ଗ୍ରହଣ କରେ ଓ ଅନ୍ୟଙ୍କୁ ଅଲ୍ଲାହଙ୍କର ସମକକ୍ଷ ମନେ କରେ ।

**ମୁସଲମାନ** — ଇସଲାମ ଧର୍ମାବଲମ୍ବୀ । ଏକେଶ୍ୱରବାଦ ଓ ହଜରତ ମହମ୍ମଦଙ୍କୁ ଅଲ୍ଲାହଙ୍କ ପ୍ରେରିତ ଅନ୍ତିମ ବିଧାନବାହୀ ଅବତାର ତତ୍ତ୍ୱକୁ ସ୍ୱୀକାର କରୁଥିବା ବ୍ୟକ୍ତି ।

**ମେରାଜ** — ଆଧ୍ୟାତ୍ମିକ ଆରୋହଣ; ହଜରତ ମହମ୍ମଦଙ୍କର ଅଲ୍ଲାହଙ୍କ ପର୍ଯ୍ୟନ୍ତ ଅଲୌକିକ ଗମନ । ଏହା ସ୍ୱପ୍ନ ଭଳି ଏକ ଅଲୌକିକ ଯାତ୍ରା, ଯାହା ସଶରୀରରେ ନୁହେଁ ।

**ରସୁଲ** — 'ନବି' ଦ୍ରଷ୍ଟବ୍ୟ ।

**ରୁକୁ** — (କ) ପରିଚ୍ଛେଦ । ଅଧ୍ୟାୟର ଏକ ଅଂଶ । କେତୋଟି ଆୟତର ସମଷ୍ଟିକୁ ରୁକୁ କୁହାଯାଏ । (ଖ) ଠିଆ ହୋଇ, ବସି, ହାତ ବାନ୍ଧି, ନଇଁ ଓ ମୁଣ୍ଡିଆ ମାରି ନମାଜ ପାଠ କରାଯାଏ । ଆଣ୍ଠୁରେ ହାତରଖି ନଇଁବା ଅବସ୍ଥାକୁ ରୁକୁ କୁହାଯାଏ ।

**ରୋଜା** — ଉପବାସ । ସୂର୍ଯ୍ୟୋଦୟ ପୂର୍ବରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଅନ୍ନ ଜଳ ସ୍ପର୍ଶ ନ କରିବା ସମେତ ଇସଲାମ ଅନୁମୋଦିତ ଅନ୍ୟାନ୍ୟ ଆବଶ୍ୟକ ବିଧିବିଧାନକୁ ମଧ୍ୟ ପାଳନ କରିବା । ରମଜାନ ମାସର ଉପବାସ ବାଧ୍ୟତାମୂଳକ । ଅନ୍ୟ ଦିନମାନଙ୍କରେ ମଧ୍ୟ ଇଚ୍ଛାଧୀନ ଉପବାସ କରାଯାଇପାରେ ।

**ରୋୟା** — ଅଲୌକିକ ସ୍ୱପ୍ନ ।

**ଶରିୟତ** — ଇସଲାମୀୟ ଧର୍ମବିଧାନ ।

**ଶହୀଦ** — ସାକ୍ଷୀ ; ଯଥାର୍ଥ ସାକ୍ଷ୍ୟ ପ୍ରଦାନକାରୀ ; ଅଲ୍ଲାଙ୍କ ପଥରେ ଯେ ନିଜ ଜୀବନ ଉତ୍ସର୍ଗ କରେ ।

**ସଂପ୍ରଦାୟ** — ଆରବୀରେ ଉମ୍ମତ । ନବିଙ୍କର ଅନୁଗାମୀ ।

**ସଇତାନ** — ଯେ ପାପକର୍ମ କରିବାକୁ ପ୍ରେରଣା ଦିଏ ; ଅଲ୍ଲାଙ୍କ ଠାରୁ ଦୂରେଇ ନିଏ ; କ୍ରୋଧୀ ; ଦୁରାଗ୍ରହୀ ; ଉଦ୍ଧତ ; ବିଦ୍ରୋହୀ ; ଅହଂକାରୀ ; ସୀମାଲଂଘନକାରୀ ।

**ସତ୍‌ପଥ** — ଆରବୀରେ ହିଦାୟତ ।

**ସବତ** — ଶନିବାର । ଇହୁଦୀମାନେ ଏହାକୁ ଏକ ଉତ୍ସବ ଦିବସ ଭାବେ ପାଳନ କରନ୍ତି ।

**ସଲାମ** — ଶାନ୍ତି ଓ ଆଶୀର୍ବାଦବ୍ୟଞ୍ଜକ ଅଭିବାଦନ । ମୁସଲମାନମାନେ ଜଣେ ଅନ୍ୟକୁ 'ଅସ୍‌ସଲାମୋ ଅଲୈକୁମ' କହି ଅନ୍ୟକୁ ଅଭିବାଦନ କରିଥା'ନ୍ତି । ଉପରୋକ୍ତ ବାକ୍ୟାଂଶର ଅର୍ଥ ତୁମ ଉପରେ ଶାନ୍ତି ବିରାଜିତ ହେଉ ।

**ସହାବି** — ହଜରତ ମହମ୍ମଦଙ୍କ ଅନୁଗାମୀ ସାଥୀ ।

**ସାବି** — ନକ୍ଷତ୍ର ଉପାସକ ।

**ସିଜଦା** — ଆଜ୍ଞାପାଳନ କରିବା । ନମାଜ ପାଠ ସମୟରେ ସାଷ୍ଟାଙ୍ଗ ପ୍ରଣିପାତ କରିବା, ଯହିଁରେ ଦୁଇପାଦ, ଦୁଇ ଆଣ୍ଠୁ, ଦୁଇ ହାତ ପାପୁଲି, ନାକ ଓ ମଥାକୁ ଭୂମିରେ ସ୍ପର୍ଶ କରାଇବାକୁ ହୁଏ ।

**ସିଦ୍ଦିକ** — ସତ୍ୟବାଦୀ ; ଅତ୍ୟନ୍ତ ନିଷ୍ଠାପର ; ସତ୍ୟବାଦିତାରେ ପରିପୂର୍ଣ୍ଣ ; ନିଜ କର୍ମଦ୍ୱାରା ନିଜ ବଚନକୁ ସତ୍ୟ ସାବ୍ୟସ୍ତ କରୁଥିବା ବ୍ୟକ୍ତି ।

**ସିର୍କ** — ଅଲ୍ଲାଙ୍କ ଭିନ୍ନ ଅନ୍ୟକୁ ଉପାସ୍ୟ ମନେ କରିବା ; ଅଲ୍ଲାଙ୍କ ସହିତ ଅନ୍ୟକୁ ସମକକ୍ଷ ସ୍ଥାନ କରିବା ଓ ତାହାଠାରୁ ସାହାଯ୍ୟ ଲୋଡ଼ିବା ।

**ସୁରା** — ପବିତ୍ର କୋରାନର ଅଧ୍ୟାୟ । ପବିତ୍ର କୋରାନରେ ଛୋଟ ବଡ଼ ୧୧୪ଟି ସୁରା ଅଛି ।

**ସ୍ୱାଲେହ** — ଜଣେ 'ନବି'ଙ୍କ ନାମ । ପୁଣ୍ୟବାନ୍ ବ୍ୟକ୍ତି ; ଧର୍ମନିଷ୍ଠ ।

**ହଜ** — ତୀର୍ଥଯାତ୍ରା । ସମର୍ଥ ଥିଲେ, ସୁଯୋଗ ଥିଲେ ଏବଂ ମାର୍ଗ ନିରାପଦ ଥିଲେ, ପ୍ରତ୍ୟେକ ମୁସଲମାନ ନିଜ ଜୀବଦଶା ଭିତରେ ଅନ୍ତତଃ ଥରେ ମକ୍କାକୁ ତୀର୍ଥଯାତ୍ରା କରିବା ଅନିବାର୍ଯ୍ୟ ।

**ହଜରତ** — ମାନ୍ୟାର୍ଥସୂଚକ ଶବ୍ଦ ଯାହା ନାମ ପୂର୍ବରେ ବସେ ।

**ହଦିସ** — ହଜରତ ମହମ୍ମଦଙ୍କ ମୁଖନିଃସୃତ ଉପଦେଶାତ୍ମକ ବାଣୀ, ଯାହାକୁ ବହୁବର୍ଷ ପରେ ଏକତ୍ର କରାଯାଇଥିଲା । ସେଗୁଡ଼ିକୁ ପୁରୁଷାନୁକ୍ରମେ କଣ୍ଠସ୍ଥ କରାଯାଉଥିଲା । ତନ୍ମଧ୍ୟରୁ ଅତ୍ୟନ୍ତ ନିର୍ଭରଯୋଗ୍ୟ ଛଅଗୋଟି ହଦିସ ପୁସ୍ତକକୁ 'ସିହା ସିତା' କୁହାଯାଏ । ଏତଦ୍‌ଭିନ୍ନ ଅନ୍ୟାନ୍ୟ ହଦିସ ପୁସ୍ତକ ମଧ୍ୟ ଅଛି ।

**ହରାମ** — ଅବୈଧ ।

**ହଲାଲ** — ବୈଧ ।

# ସୂଚକ ପତ୍ର (Index)

ପ୍ରସଙ୍ଗ ସୂଚନାରେ ବ୍ୟବହୃତ ସଂଖ୍ୟାଗୁଡ଼ିକ ମଧ୍ୟରୁ ବନ୍ଧନୀ ବାହାରେ ଥିବା ପ୍ରଥମ ସଂଖ୍ୟା କୋରାନର ସୁରାକୁ ଓ ତତ୍‌ପରବର୍ତ୍ତୀ ସଂଖ୍ୟା (ଗୁଡ଼ିକ) ସେହି ସୁରାର ଆୟତ (ଗୁଡ଼ିକ)କୁ ଏବଂ ବନ୍ଧନୀ ମଧ୍ୟସ୍ଥ ସଂଖ୍ୟା (ଗୁଡ଼ିକ) ଏହି ପୁସ୍ତକର ପୃଷ୍ଠା ସଂଖ୍ୟା (ଗୁଡ଼ିକ)କୁ ସୂଚାଉଛି । ଉଦାହରଣ ସ୍ୱରୂପ ୨ : ୨୯ (୮) ର ଅର୍ଥ ସଂପୃକ୍ତ ବିଷୟ ଅଧ୍ୟାୟ ସଂଖ୍ୟା ୨ର ଆୟତ ସଂଖ୍ୟା ୨୯ରେ ବର୍ଣ୍ଣିତ, ଯାହାକି ଏହି ପୁସ୍ତକର ପୃଷ୍ଠା ୮ରେ ରହିଅଛି ।

## ସୂଚକ ପତ୍ର

### ଅଲ୍ଲାହ ଜାଣନ୍ତି



### ଅଲ୍ଲାହ ନିଜକୁ ପ୍ରକଟିତ କରନ୍ତି



### ଅଲ୍ଲାହଙ୍କ ପଥରେ ବ୍ୟୟ



### ଅଲ୍ଲାହଙ୍କ ପ୍ରଶଂସାଗାନ (ତେସ୍‌ବିହ)



### ଅଲ୍ଲାହଙ୍କ ପ୍ରେମ



### ଅଲ୍ଲାହଙ୍କ ଭକ୍ତମାନେ

# ସୂଚକ ପତ୍ର



## ଆକାଶ



## ଆଜ୍ଞାପାଳନ



## ଆତ୍ମା (ରୁହ୍)



## ଆଦମ



## ଆନୁଗତ୍ୟ

# ସୂଚକ ପତ୍ର

# ସୂଚକ ପତ୍ର

## ଇସମାଇଲ



## ଇସଲାମ



## ଇସହାକ



## ଇସା (ଯୀଶୁ)

# ସୂଚକ ପତ୍ର

ଅଲ୍ଲାହଙ୍କ ଭକ୍ତ ତଥା ଅବତାର ୧୯ : ୩୧ (୪୯୮), ୫ : ୭୬ (୧୮୬); ପ୍ରାର୍ଥନା, ଦାନ ଓ ମାତାଙ୍କ ପ୍ରତି ସଦ୍‌ବ୍ୟବହାର କରିବାକୁ –ଙ୍କୁ ନିର୍ଦ୍ଦେଶ ୧୯ : ୨୨ ଓ ୨୩ (୪୯୬); ଏକେଶ୍ୱରବାଦର ପ୍ରଚାର ୩ : ୫୨ (୯୧), ୫ : ୧୧୮ (୧୯୭), ୧୯ : ୩୭ (୪୯୯), ୪୩ : ୬୫ (୮୩୮); – ଙ୍କୁ ଅଲ୍ଲାହ ବୋଲି କହୁଥିବା ଲୋକେ କାଫିର ୫ : ୧୮, ୭୩ ଓ ୭୪ (୧୭୦, ୧୮୫); – ଓ ତାଙ୍କ ମାତା ଅଲ୍ଲାହ ହୋଇ ନ ଥିବା ବିଷୟରେ ପ୍ରମାଣ ୫ : ୭୬ (୧୮୬); – ମାଟିରୁ ସୃଷ୍ଟ ୩ : ୬୦ (୯୩) – କ୍ରୁଶରେ ମରିଥିବା ସମ୍ବନ୍ଧରେ ଇହୁଦୀ ଓ ଖ୍ରୀଷ୍ଟିୟାନଙ୍କ ବିଶ୍ୱାସ ଜାଗି ରହିବା ୪ : ୧୬୦ (୧୬୧), – ଅଲ୍ଲାହଙ୍କର ପୁତ୍ର ନୁହନ୍ତି ୯ : ୨୦ (୩୦୨); – ପିତା ବିନା ଜନ୍ମ ହୋଇଛନ୍ତି ୩ : ୪୮ (୯୦), ୧୯ : ୨୧ ଓ ୨୨ (୪୯୬); – ଙ୍କ ମୃତ୍ୟୁ ସମ୍ବନ୍ଧରେ ପବିତ୍ର କୋରାନରୁ ପ୍ରମାଣ ୩ : ୫୬ ଓ ୧୪୫ (୯୨, ୧୦୮), ୫ : ୭୬ ଓ ୧୧୮ (୧୮୬, ୧୯୭), ୭ : ୨୬ (୨୩୯), ୧୭ : ୯୪ (୪୬୫), ୨୧ : ୩୫ (୫୩୫); – ଙ୍କର ଶିଷ୍ୟମାନେ ଧର୍ମର ସାହାଯ୍ୟକାରୀ ୩ : ୫୩ (୯୨); – ଅଲ୍ଲାହଙ୍କର ସେବକ ୪ : ୧୭୩ (୧୬୩)।

## ଇସ୍ରାଇଲୀୟ ସନ୍ତାନ (ବନି ଇସ୍ରାଇଲ)

– ବିଷୟରେ ବର୍ଣ୍ଣନା କରିବାର ତାତ୍ପର୍ଯ୍ୟ ୭ : ୧୪୩ (୨୬୫); ଯାକୁବଙ୍କ ନାମ ଇସ୍ରାଇଲ ୩ : ୯୪ (୯୯), ୧୯ : ୫୯ (୫୦୨); – ମାନେ ତତ୍‌କାଳୀନ ସମସ୍ତ ଜାତି ଉପରେ ଶ୍ରେଷ୍ଠ ଥିଲେ ୨ : ୪୮ (୧୩), ୨ : ୧୨୩ (୩୦); – ମାନଙ୍କ ଉପରେ ଅଲ୍ଲାହଙ୍କର ଅବିଚ୍ଛିନ୍ନ କୃପା ୨ : ୪୮ ଓ ୧୨୩ (୧୩ ଓ ୩୦); – ମାନଙ୍କ ଉପରେ ଫିରଔନର ଅତ୍ୟାଚାର ୨ :୫୦ (୧୩), ୭ : ୧୪୨ (୨୬୫), ୧୪ : ୭ (୪୦୭), ୨୮ : ୫ (୬୪୩), – ମାନଙ୍କୁ ରକ୍ଷା କରିବା ପାଇଁ ମୁସାଙ୍କ ଆବିର୍ଭାବ ୨୮ : ୬ (୬୪୩); – ମାନଙ୍କ ଉପରେ ଅତ୍ୟାଚାର ନ କରିବାକୁ ଫରଔନଙ୍କୁ ମୁସାଙ୍କ ଆବେଦନ ୭ : ୧୦୬ (୨୫୯), ୨୦ : ୪୮ (୫୧୫); ଫରିଔନ ଶାସ୍ତି ଅବଲୋକନ କରିବା ପରେ – ଙ୍କୁ ଛାଡ଼ି ଦେବାକୁ ପ୍ରଥମେ ପ୍ରତିଶ୍ରୁତି ଦେଇଥିଲା ୪୩ : ୫୦ ଓ ୫୧ (୮୩୫, ୮୩୬); – ମାନଙ୍କୁ ମିଶରରୁ ବାହାର କରି ଦେବାକୁ ଅଲ୍ଲାହଙ୍କ ନିର୍ଦ୍ଦେଶ ୨୦ : ୭୮ (୫୨୦), ୨୬ : ୫୩ (୬୦୯), ୪୪ : ୨୪ (୮୪୪); – ମାନେ ସମୁଦ୍ର ପାର ହେବା ଓ ଫିରଔନ ଦଳବଳ ସହିତ ବୁଡ଼ିଯିବା ୨ : ୫୧ (୧୩), ୭ : ୧୩୭ (୨୬୪), ୧୭ : ୧୦୪ (୪୬୭); ଦେଶତ୍ୟାଗ ସମୟରେ – ମାନଙ୍କ ସଂଖ୍ୟା ୨ : ୨୪୪ (୬୬); ସମୁଦ୍ର ପାର ହେଲା ପରେ – ମାନେ ପିତ୍ତୁଳା ପୂଜା କରିବାକୁ ଚାହିଁଲେ ୭ : ୧୩୯ (୨୬୪); – ମାନେ ମୁସାଙ୍କୁ ଜଳ ମାଗିବା ଓ ସେ ପଥର ଭାଙ୍ଗିବା ୨ : ୬୧ (୧୫) ୭ : ୧୬୧ (୨୭୦); – ମାନେ ସିନାଇ ମରୁ ଅଞ୍ଚଳ ଅତିକ୍ରମ କଲାବେଳେ ଛାୟା ଦାନ ଏବଂ ମନ୍ନ ଓ ସଲୱା ପ୍ରେରଣ ୨ : ୫୮ (୧୪), ୭ : ୧୬୧ (୨୭୦); ମୁସାଙ୍କ ଅନୁପସ୍ଥିତିରେ – ମାନଙ୍କର ବାଛୁରୀ ପୂଜା ୨ : ୫୨ ଓ ୯୪ (୧୩ ଓ ୨୩), ୭ : ୧୪୯ (୨୬୭), ୨୦ : ୯୧ (୫୨୨); ମୁସା ପିତୁଳା ପୂଜକମାନଙ୍କୁ ଦଣ୍ଡ ଦେଲେ ୨ : ୫୫ (୧୪); ବାଛୁରୀକୁ ପୋଡ଼ି ଦିଆଗଲା ୨୦ : ୯୮ (୫୨୩); – ମାନଙ୍କୁ ଏକ ଗାଈ ମାରିବାକୁ ଆଦେଶ ୨ : ୬୮ ରୁ ୭୦ (୧୭); – ମାନଙ୍କର ଶାକଶବଜି ଖାଇବା ପାଇଁ ଅଭିଳାଷ ୨ : ୬୨ (୧୫); ଏକ ଅଂଗୀକାର ସକାଶେ – ମାନଙ୍କ ନେତାମାନଙ୍କର ତୁର ପର୍ବତ ପାର୍ଶ୍ୱକୁ ଗମନ ୨ : ୬୪ ଓ ୯୪ (୧୬, ୨୩), ୭ : ୧୭୨ (୨୭୩); – ମାନେ ଅଲ୍ଲାହଙ୍କୁ ଦେଖିବାକୁ ଚାହିଁଲେ ୨ : ୫୬ (୧୪); – ମାନଙ୍କୁ ପାଲେଷ୍ଟାଇନ ଯିବାକୁ ମୁସାଙ୍କ ଆଦେଶ, ସେମାନଙ୍କ ଅବଜ୍ଞା ଓ ତଜ୍ଜନିତ ଶାସ୍ତି ୫ : ୨୨ (୧୭୧); – ମାନଙ୍କର ଅଲ୍ଲାହଙ୍କ ନିଦର୍ଶନକୁ ଅସ୍ୱୀକାର ଓ ଅବତାରଙ୍କର ହତ୍ୟା ୨ : ୬୨ (୧୫); ସବତ ବିଧିଲଂଘନ ୨ : ୬୬ (୧୭); – ମାନେ ବାନର ହୋଇଯିବାର ତାତ୍ପର୍ଯ୍ୟ ୭ : ୧୬୭ (୨୭୨); ଉପାସନା କରାଯାଉଥିବା ବଳଦକୁ ମାରି ଦେବାକୁ ଆଦେଶ ୨ : ୬୮ (୧୭); – ମାନଙ୍କ ପ୍ରତି କୟାମତ ପର୍ଯ୍ୟନ୍ତ ଶାସ୍ତି ଦିଆଯିବା ନେଇ ଭବିଷ୍ୟବାଣୀ ୨ : ୧୬୮ (୨୭୨); ରାଜା ରୂପେ ତାଲୁତଙ୍କର ନିଯୁକ୍ତି ୨ : ୨୪୭ ଓ ୨୫୦ (୬୬, ୬୮); ଦାଉଦଙ୍କ ମାଧ୍ୟମରେ ରାଜତ୍ୱ ସ୍ଥାପନ ୨ : ୨୫୨ (୬୯); – ମାନଙ୍କ ମଧ୍ୟରେ ବାର ଜଣ ଆଧ୍ୟାତ୍ମିକ ନେତା ୫ : ୧୩ (୧୬୯), ୩୨ : ୨୫ (୬୯୬); – ମାନଙ୍କ ମଧ୍ୟରେ ନବିପଦ ଓ ସମ୍ରାଟ ପଦର ପ୍ରଚଳନ ୫ : ୨୧ (୧୭୧); – ମାନେ ଇସା ଓ ଦାଉଦଙ୍କ ଦ୍ୱାରା ଅଭିଶପ୍ତ ୫ : ୭୯ (୧୮୬); ଧର୍ମଗ୍ରନ୍ଥର ଭାଷା ବଦଳାଇବା ୨: ୮୦ (୨୦); ମହମ୍ମଦଙ୍କ ଆବିର୍ଭାବର ପ୍ରତୀକ୍ଷା ୨ : ୯୦ (୨୨); ପବିତ୍ର କୋରାନର ମର୍ମକୁ ଦୂଷିତ କରିବା ୫ : ୪୨ (୧୭୬); – ମାନେ ଦୀର୍ଘଜୀବନ ଲାଭ କରିବା ୩୬ : ୬୯ (୭୪୭)।

## ଇହୁଦୀ

– ସେହିମାନେ ଯେଉଁମାନେ ଅଲ୍ଲାହଙ୍କ ପ୍ରକୋପର ଭାଜନ ହୋଇଛନ୍ତି ୧ :୭ (୨); ଧର୍ମ ସଂକ୍ରାନ୍ତରେ ଅଯଥା ସୀମାଲଂଘନ ନ କରିବାକୁ – ମାନଙ୍କୁ ନିର୍ଦ୍ଦେଶ ୫ : ୭୮ (୧୮); – ମାନଙ୍କର ମୁସଲମାନମାନଙ୍କ ପ୍ରତି ଅହଜାବ ଯୁଦ୍ଧରେ ବିଶ୍ୱାସଘାତକତା ୩୩ : ୨୭ ଓ ୨୮ (୭୦୪); ବନୁ ନଜିରଙ୍କ ସହିତ ଯୁଦ୍ଧ ଓ ମଦିନାରୁ – ମାନଙ୍କ ବିତାଡ଼ନ ୫୯ : ୩ ରୁ ୭ (୯୪୦-୯୪୧); ଅଭିଶପ୍ତ ବୃକ୍ଷର ମର୍ମ ୧୭ : ୬୧ (୪୫୯); ମସିହଙ୍କୁ ପ୍ରତ୍ୟାଖ୍ୟାନ କରିବାରୁ – ମାନଙ୍କ ପାଇଁ ନବି ପଦର ସମାପ୍ତି ୪ : ୧୬୧ (୧୬୧)।

## ଉତ୍ତରାଧିକାର

– ବିଧି ୪ : ୮, ୯, ୧୨, ୧୩ ଓ ୧୭୭ (୧୨୪, ୧୨୫, ୧୬୪); ସଂପତ୍ତିର ଓସିୟତ ଓ ବଣ୍ଟନ ୨ : ୧୮୧ (୪୪); ଓସିୟତର ପରିବର୍ତ୍ତନ ଏକ ପାପ ୨ : ୧୮୨ (୪୪); ଓସିୟତକର୍ତ୍ତାଙ୍କ ପକ୍ଷପାତିତା ବା ଭୁଲକୁ ସଂଶୋଧନ କରାଯାଇ ପାରିବ ୨ : ୧୮୩ (୪୫); ସଂପତ୍ତି ବଣ୍ଟନ ଅଲ୍ଲାହଙ୍କ ଦ୍ୱାରା ଧାର୍ଯ୍ୟ ହୋଇଛି ୪ : ୧୨ (୧୨୫); ବଣ୍ଟନ ବେଳେ ବଂଧୁବାନ୍ଧବ, ଅନାଥ ଓ ଦରିଦ୍ରଙ୍କୁ ମଧ୍ୟ କିଛି ଦେବାକୁ

## କର୍ମ, ସତ୍

## କା'ବା (ବୈତୁଲ ହରାମ)



## କାରୁନ



## କୋରାନ, ପବିତ୍ର

# ସୂଚକ ପତ୍ର

# ସୂଚକ ପତ୍ର

## ନକ୍ଷତ୍ର



## ନବି (ବା ରସୁଲ)



## ନରକ

## ନାରୀ ଓ ବିବାହ



## ନୁହ



## ପରକାଳ

## ସୂଚକ ପତ୍ର

# ସୂଚକ ପତ୍ର

## ପିତୁଳାପୂଜା



## ପୃଥିବୀ



## ପ୍ରଶଂସନୀୟ ରାତ୍ରି



## ପ୍ରଶାସନ



## 'ପ୍ରାଚୀନ ଜାତି



## ପ୍ରାର୍ଥନା

## ପ୍ରାର୍ଥନା, କୋରାନ ବର୍ଣ୍ଣିତ



## ଫିରଔନ

# ସୂଚକ ପତ୍ର

## ବିବିଧ ପ୍ରସଙ୍ଗ



## ବିଭିନ୍ନ ଦୃଷ୍ଟାନ୍ତମୂଳକ କଥା :

# ସୂଚକ ପତ୍ର

**ବୈଧ ଓ ଅବୈଧ :**



**ବ୍ୟବସାୟ ଓ ବାଣିଜ୍ୟ**



**ଭବିଷ୍ୟବାଣୀ** (ସାଧାରଣ) :

## ମହମ୍ମଦଙ୍କ ଧର୍ମପତ୍ନୀମାନେ

### ମେଘମାଳା



### ମେରାଜ (ଅଲୌକିକ ଭ୍ରମଣ)



### ମୋକ୍ଷ



### ଯୁଦ୍ଧ



### ଯୁଦ୍ଧବନ୍ଦୀ

# ସୂଚକ ପତ୍ର

## ସଇତାନ



## ସତ୍‌ପଥ



## ସନ୍ତାନ ସନ୍ତତି



## ସାଂସାରିକ ଜୀବନ



## ସାକ୍ଷୀ

# ସୂଚକ ପତ୍ର

## ସାମେରି



## ସିର୍କ



## ସୁଏବ



## ସୁପାରିଶ



## ସୁଲେମାନ



## ସୂର୍ଯ୍ୟ

# The Holy Qur'an

(Arabic Text with Oriya Translation)

Translated into Oriya by :

Abdul Qadar Khan
&
Dr. Mohammed Anwarul Haque.

Available at :

1. Nazarat Dawat-O'-Tabligh,
Sadr Anjuman Ahmadiyya,
Qadian-143516 (India)

2. Ahmadiyya Muslim Mission,
A/33, Bhoumanagar, Unit-4,
Bhubaneswar - 751 001 (India)

3. Ahmadiyya Muslim Mission,
205, New Park Street,
Calcutta - 700 017 (India)

## Acknowledgement

The Publisher of
'The Holy Quran'
thankfully acknowledges the
kind assistance of the following:-

Oriya Phototypesetting:

M/s. Utkal Sambad Prakashan Pvt. Ltd.,
Bhubaneswar, INDIA.

Proof Reading:

A. Q. Khan & S. A. Halim

Page Layout:

Dr. M. A. Haque & Promod Tripathy (Artist)

M/s. DIPS, BHUBANESWAR, INDIA.